ବ୍ୟାସକୃତ

# ଶ୍ରୀମଦ୍‌ଭାଗବତ

ଗଦ୍ୟାନୁବାଦ

ଶ୍ରୀ ଜାନକୀବଲ୍ଲଭ ପଟ୍ଟନାୟକ

ଆମ ଓଡ଼ିଶା
AMA ODISHA
୪ଆର୍‌-୧/୨ ଖାରବେଳ ନଗର, ୟୁନିଟ୍‌-୩, ଭୁବନେଶ୍ୱର-୭୫୧୦୦୧

| | |
|---|---|
| ପ୍ରକାଶକ | 'ଆମ ଓଡ଼ିଶା', କ୍ୱାର୍ଟର୍ସ ନଂ-୪ଆର୍-୧/୨, ଖାରବେଳ ନଗର, ୟୁନିଟ୍-୩, ଭୁବନେଶ୍ୱର-୭୫୧୦୦୧, ଟେଲିଫୋନ୍ ନଂ (୦୬୭୪) ୨୪୧୩୨୮୪ |
| ପ୍ରଚ୍ଛଦ | ଅସିତ୍ ମୁଖାର୍ଜୀ |
| ଅକ୍ଷର ସଜ୍ଜା | ଜୟକୃଷ୍ଣ ଭଞ୍ଜ ଓ ତ୍ରିଲୋଚନ ସାହୁ |
| ମୁଦ୍ରଣ | ଚନ୍ଦନ ପବ୍ଲିକେସନ୍ସ ପ୍ରା. ଲି଼., ବି/୨୭, ଇଣ୍ଡଷ୍ଟ୍ରିଆଲ୍ ଇଷ୍ଟେଟ୍, ରସୁଲଗଡ଼, ଭୁବନେଶ୍ୱର-୭୫୧୦୧୦ |
| ପ୍ରଥମ ପ୍ରକାଶ | ଭାଗବତ ଜନ୍ମ-୧୦ ସେପ୍ଟେମ୍ବର, ୨୦୦୩ |
| ମୂଲ୍ୟ | ତିନିଶହ ଟଙ୍କା ମାତ୍ର |



**SHREEMAT BHAGABATA**

(Oriya Translation)

**Janaki Ballav Patnaik**

Published by 'AMA ODISHA', Qrs. No. 4R-1/2, Kharavela Nagar, Unit-3, Bhubaneswar-751001, Tel. No. (0674) 2413284

Price: Rupees Three Hundred only

ଯାହାଙ୍କ ଅପାର କରୁଣାରୁ ଏହି ଭାଗବତ ଗ୍ରନ୍ଥ
ଆରମ୍ଭ ହୋଇ ଶେଷ ହେଲା, ସମଗ୍ର ଭାଗବତର ଆରାଧ୍ୟ ସେହି
ଶ୍ରୀଜଗନ୍ନାଥଙ୍କ ଚରଣ ତଳେ ଗଙ୍ଗାଙ୍କୁ ଗଙ୍ଗାଜଳରେ ପୂଜା କରିବା ନ୍ୟାୟରେ
ଲୀଳାମୟଙ୍କର ଲୀଳାପୂର୍ଣ୍ଣ ଏହି ଗ୍ରନ୍ଥଟିକୁ ସମର୍ପଣ କଲି।

**ଜାନକୀବଲ୍ଲଭ ପଟ୍ଟନାୟକ**

# ସତ୍ୟଂ ପରଂ ଧୀମହି

ପରମାତ୍ମା ସତ୍ୟସ୍ୱରୂପ । ତାଙ୍କଦ୍ୱାରା ସୂର୍ଯ୍ୟ, ଚନ୍ଦ୍ର, ଗ୍ରହ, ନକ୍ଷତ୍ର, ସ୍ଥାବର, ଜଙ୍ଗମ ଆଦି ସମସ୍ତ ଜୀବଜଗତ୍‌ସହ ଏହି ବିଶ୍ୱ ବ୍ରହ୍ମାଣ୍ଡର ସୃଷ୍ଟି । ସେ ହିଁ ସମସ୍ତଙ୍କୁ ଆତଯାତ କରାଉଛନ୍ତି ଏବଂ ପ୍ରଳୟ କାଳରେ ଏହି ସମସ୍ତ ସୃଷ୍ଟି ତାଙ୍କଠାରେ ଲୀନ ହୋଇଯାଉଛି । ଅସତ୍ ବସ୍ତୁଠାରୁ ପୃଥକ୍ ସମସ୍ତ ସତ୍ ପଦାର୍ଥ ମଧ୍ୟରେ ସେ ବିଦ୍ୟମାନ । ସେ ଚୈତନ୍ୟମୟ, ସ୍ୱୟଂସମ୍ପୂର୍ଣ୍ଣ ଓ ସ୍ୱତନ୍ତ୍ର । ତାଙ୍କର ସଙ୍କଳ୍ପରୁ ଜାତ ବ୍ରହ୍ମାଙ୍କୁ ସେ ବେଦଜ୍ଞାନ ପ୍ରଦାନ କରିଛନ୍ତି । ବଡ଼ ବଡ଼ ପଣ୍ଡିତମାନେ ମଧ୍ୟ ମୋହଗ୍ରସ୍ତ ହୋଇ ତାଙ୍କୁ ବୁଝିପାରନ୍ତି ନାହିଁ ।

ଯେପରି ସୂର୍ଯ୍ୟକିରଣପାତରେ ମରୀଚିକାରୂପ ଜଳର ଭ୍ରମ ହୁଏ ଓ ଜଳରେ ସ୍ଥଳର ଭ୍ରମ ଜାତ ହୁଏ, ସେହିପରି ଏହି ମାୟାମୟ ସୃଷ୍ଟି ସତ୍ୟ ପରି ପ୍ରତୀତ ହୁଏ । ମାୟାଠାରୁ ଦୂରରେ ରହିଥିବା ସେହି ସତ୍ୟସ୍ୱରୂପ ପରମେଶ୍ୱରଙ୍କୁ ଆମେ ଧ୍ୟାନ କରୁଚୁ ।

ତାଙ୍କର ଲୀଳାମୟ କୀର୍ତ୍ତିଗାଥା ମହାମୁନି ବ୍ୟାସଦେବଙ୍କକୃତ ଭାଗବତରେ ବର୍ଣ୍ଣିତ ହୋଇଛି । ଏହି ଭାଗବତ ହିଁ ମନୁଷ୍ୟର ଶାରୀରିକ, ମାନସିକ ଓ ଆଧ୍ୟାତ୍ମିକ କ୍ଳେଶ ନିବାରଣ କରେ । ପ୍ରକୃତ ଧର୍ମ କ'ଣ, ସରଳ ଭାବରେ ଏଥିରେ ବ୍ୟାଖ୍ୟା କରାଯାଇଛି, ଯାହାକି ସାଧୁପୁରୁଷମାନେ ନିଷ୍କପଟ ହୃଦୟରେ ଅନୁଭବ କରିପାରିବେ । ପ୍ରାଣୀର ମଙ୍ଗଳକାରୀ ଏହି ଭାଗବତକୁ ଯେ ଶୁଣିବାକୁ ଇଚ୍ଛା କରିବ, ତା'ର ହୃଦୟ ମଧ୍ୟରେ ଈଶ୍ୱର ସ୍ୱୟଂ ବାନ୍ଧିହୋଇ ରହିଯିବେ ।

ପୁଣି, ଏହି ଭାଗବତ ହେଉଛି ବେଦରୂପକ କଳ୍ପବୃକ୍ଷର ଫଳ । ଶୁକ ମୁଖରୁ ବାହାରିଥିବାରୁ ଏହା ଅମୃତମୟ ରସରେ ପୂରି ରହିଛି । ହେ ଭାବୁକ ରସିକଗଣ ! ଭାଗବତର ଏହି ଅମୃତମୟ ରସକୁ ବାରମ୍ବାର ପାନ କର ।

– ଶ୍ରୀମଦ୍‌ଭାଗବତ, ପ୍ରଥମ ସ୍କନ୍ଧ, ପ୍ରଥମ ତିନି ଶ୍ଳୋକ

# ଭାଗବତ ଭଜନମାଳା

ଭାଗବତ ଭଜନମାଳା
ମନ-ସୂତ୍ରେ ଗୁନ୍ଥ ନ କର ହେଳା

ପ୍ରଥମ ଦ୍ୱିତୀୟେ ଆଗମ ଏ ବାଣୀ
ତୃତୀୟେ ବ୍ରହ୍ମାଣ୍ଡ ସର୍ଜନା ହେଲା
ଚ଼ତୁର୍ଥରେ ଧ୍ରୁବ ତପ ଆଚରିଣ
ଅଜପା ମନ୍ତ୍ରକୁ ହୃଦେ ଧଇଲା ।

ପଞ୍ଚମରେ ପୃଥୀ ସାତ ଭାଗ କରି
ବାଣ୍ଟିଣ ଭରତ ପୁଅଙ୍କୁ ଦେଲା
ଷଷ୍ଠ ସ୍କନ୍ଧରେ ପାପୀ ଅଜାମିଳ
ନାରାୟଣ ନାମ ହୃଦେ ଧଇଲା ।

ସପ୍ତମ ସ୍କନ୍ଧରେ ପ୍ରହଲାଦ ଜନ୍ମ
ହିରଣାକ୍ଷ ବିଦାରଣ ହୋଇଲା
ଅଷ୍ଟମ ସ୍କନ୍ଧରେ ସମୁଦ୍ର ମନ୍ଥନ
ଗଜ କୁମ୍ଭୀରଙ୍କ ଯୁଦ୍ଧ ଲାଗିଲା ।

ନବମ ସ୍କନ୍ଧରେ ବଂଶାନୁଚରିତ
ଦଶମେ କହ୍ନାଇ ଜନ୍ମ ହୋଇଲା
ଗୋପ ବୃନ୍ଦାବନ ମଥୁରା ଦ୍ୱାରକା
ବାଳ ଲୀଳା ଭାବ ଏଥୁଁ ସଇଲା ।

ଏକାଦଶ ସ୍କନ୍ଧେ ତତ୍ତ୍ୱ ନିରୂପଣ
ଉଦ୍ଧବେ ଶ୍ରୀହରି କରୁଣା ହେଲା
ଏକାକ୍ଷର ବ୍ରହ୍ମ ଯହିଁ ବିରାଜିତ
ଅଧଃ ଉର୍ଦ୍ଧ୍ୱ ତହିଁ ବାରି ନୋହିଲା ।

ଦ୍ୱାଦଶ ସ୍କନ୍ଧରେ ଆଗତ ଭବିଷ୍ୟ
ପରିକ୍ଷିତ ଆଗେ ଶୁକ କହିଲା
କହେ ଯଶୋବନ୍ତ ସେ ପାଦେ ଶରଣ
ଅକାରଣେ ମୋର ଜନମ ଗଲା ।

**— ମହାପୁରୁଷ ଯଶୋବନ୍ତ ଦାସ**

# ଭୂମିକା

ଭାରତୀୟ ଧାର୍ମିକ ପରମ୍ପରାରେ ଭାଗବତର ସ୍ଥାନ ଅଦ୍ୱିତୀୟ । ବେଦ, ଉପନିଷଦ୍‌, ରାମାୟଣ, ମହାଭାରତ ଓ ପୁରାଣମାନଙ୍କୁ ପ୍ରାଚୀନ ଭାରତୀୟ ସଂସ୍କୃତିର ଆଧାର ବୋଲି ଗଣାଯାଏ । ବେଦ ହେଉଛି ଭାରତୀୟ ମହାଜାତିର ପ୍ରାଚୀନତମ ସାହିତ୍ୟ । ଏଥିରେ ଏକ ଉଚ୍ଛଳ ପ୍ରାଣଶକ୍ତିର ଅଭିବ୍ୟକ୍ତି ଦେଖିବାକୁ ମିଳେ । ଇହଲୋକରେ ଏକ କର୍ମମୁଖର, ଆନନ୍ଦମୟ ଜୀବନ ଓ ପରଲୋକରେ ସୁଖ ଶାନ୍ତିପାଇଁ ବେଦରେ ବିଭିନ୍ନ ଦେବତାଙ୍କୁ ପ୍ରାର୍ଥନା କରାଯାଇଛି ଏବଂ ଯାଗଯଜ୍ଞାଦିର କଥା କୁହାଯାଇଛି । ଯେଉଁ ଦାର୍ଶନିକ ଚିନ୍ତାଧାରା ପରବର୍ତ୍ତୀ କାଳରେ ପ୍ରକାଶ ପାଇଛି, ତାହା ହିଁ ଉପନିଷଦ୍‌ମାନଙ୍କରେ ରୂପାୟିତ ହୋଇଛି । କିନ୍ତୁ ବେଦ ବା ଉପନିଷଦ୍‌ ସାଧାରଣଙ୍କପାଇଁ ବୋଧଗମ୍ୟ ନୁହେଁ । ସମସ୍ତ ବେଦ ଓ ଉପନିଷଦ୍‌ର ସାରକଥାକୁ ଭଗବାନ ଶ୍ରୀକୃଷ୍ଣ ଅର୍ଜୁନଙ୍କୁ ଉପଦେଶ ଦେବା ଛଳରେ ଭଗବତ୍‌ଗୀତାରେ ପ୍ରକାଶ କରିଛନ୍ତି ।

**ସର୍ବୋପନିଷଦଃ ଗାବଃ ଦୋଗ୍ଧା ଗୋପାଳନନ୍ଦନଃ**
**ପାର୍ଥଃ ବତ୍ସଃ, ସୁଧୀର୍ଭୋକ୍ତା ଦୁଗ୍ଧଂ ଗୀତାମୃତଂମହତ୍‌ ।**

ସମସ୍ତ ଉପନିଷଦ୍‌ ହେଲେ ଗାଭୀ । ଅର୍ଜୁନ ବତ୍ସ । ଗୋପାଳନନ୍ଦନ ଶ୍ରୀକୃଷ୍ଣ ଏମାନଙ୍କର ଦୋହନକାରୀ ଓ ସୁଧୀମାନେ ସେହି ଅମୃତତୁଲ୍ୟ କ୍ଷୀରର ଭୋକ୍ତା । ଏଥିରେ ସୁଧୀମାନଙ୍କର କଥା କୁହାଯାଇଛି । ତେଣୁ ଯେଉଁମାନେ ପଣ୍ଡିତ ନୁହନ୍ତି, ସେମାନଙ୍କୁ ଅର୍ଥାତ୍‌ ସାଧାରଣ ଜନତାକୁ ଶିକ୍ଷା ଦେବାପାଇଁ ଆଉ କିଛି ଶାସ୍ତ୍ର ଆବଶ୍ୟକ ହେଉଛି । ତାହା ହେଉଛି ଶ୍ରୀମଦ୍‌ଭାଗବତ । ଆଚାର୍ଯ୍ୟ ବିନୋବା ଭାବେ କହିଛନ୍ତି, ଗୀତାର କ୍ଷୀରରେ ମହୁ ମିଶାଇଲେ ଯାହା ହେବ, ତାହା ହିଁ ଭାଗବତ ।

ଭାଗବତର ମାହାତ୍ମ୍ୟ ବିଷୟରେ କୁହାଯାଇଛି--

**କ୍ୱ ସୁଧା କ୍ୱ କଥା ଲୋକେ**
**କ୍ୱ କାଚଃ କ୍ୱ ମଣିର୍ମହାନ୍‌ ।**

ଅମୃତ ହେଉଛି କାଚ ଓ ଶ୍ରୀମଦ୍‌ଭାଗବତ ହେଉଛି ମଣି । ଦେବତାମାନେ ଶୁକଦେବଙ୍କୁ କହିଲେ, **'କଥାଂ ସୁଧାଂ ପ୍ରଯଚ୍ଛସ୍ୱ ଗୃହୀତ୍ୱୈବ ସୁଧାମିମାମ୍‌ ।'** ଆମକୁ କଥାମୃତ ଦିଅ, ଆମେ ତୁମକୁ ଅମୃତ ଦେଉଛୁ । ଶୁକଦେବ ଉତ୍ତର ଦେଲେ, ସେ ଅମୃତରେ କ'ଣ ହେବ ? ଅମୃତ ପାନକଲେ ଲୋକେ ଅମର ହୁଅନ୍ତି; ଅର୍ଥାତ୍‌ ସ୍ୱର୍ଗଲୋକ ଲାଭ କରନ୍ତି । କିନ୍ତୁ ପୁଣ୍ୟ ସରିଗଲେ ପୁଣି ମର୍ତ୍ତ୍ୟଲୋକର ଦୁଃଖ ଭୋଗ କରିବାକୁ ହୁଏ । **'କ୍ଷୀଣେ ପୁଣ୍ୟେ ମର୍ତ୍ତ୍ୟଲୋକଂ ବିଶନ୍ତି'** । ଦେବତା ହେଲେ ଅମୃତର ଅଧିକାରୀ ହୁଅନ୍ତି, କିନ୍ତୁ ଧନୀ, ଗରିବ, ଜ୍ଞାନୀ, ଅଜ୍ଞାନୀ, ଛୋଟ, ବଡ଼, ପୁରୁଷ, ସ୍ତ୍ରୀ ସମସ୍ତେ ଭାଗବତ କଥା ଶୁଣିବାକୁ ଅଧିକାରୀ । ତାହା ଶୁଣି ସେମାନେ ଯେଉଁ ଅମରତ୍ୱ ଲାଭ କରନ୍ତି ତାହା ଅମୃତରେ ନାହିଁ । ତେଣୁ ଅମୃତ କାଚ ହେଲେ ଭାଗବତ ମଣି ।

## ପ୍ରେମ ପ୍ରଧାନ ଗ୍ରନ୍ଥ

ବେଦ କର୍ମ-ପ୍ରଧାନ । **'ତ୍ରୈଗୁଣ୍ୟବିଷୟା ବେଦାଃ'** ବୋଲି ଭଗବାନ ଶ୍ରୀକୃଷ୍ଣ ଶ୍ରୀମଦ୍‌ଭଗବଦ୍‌ଗୀତାରେ କହିଛନ୍ତି । ଏଥିରେ ଯାଗଯଜ୍ଞ ମନ୍ତ୍ର ତନ୍ତ୍ର ଆଦି ନାନା କର୍ମର କଥା କୁହାଯାଇଛି । ଏ ସବୁ ମାର୍ଗରେ ଧର୍ମ, ଅର୍ଥ, କାମ, ମୋକ୍ଷ ଏହି ଚତୁର୍ବର୍ଗ ଫଳ ମିଳିପାରିବ । ଉପନିଷଦ୍ ହେଉଚି ଜ୍ଞାନମାର୍ଗ । **'କ୍ଷୁରସ୍ୟଧାରାଃ ନିଶିତା ଦୁରତ୍ୟୟା, ଦୁର୍ଗପଥଃ ତତ୍ କବୟୋ ବଦନ୍ତି'** । ଏହା ହେଉଛି ଦୁର୍ଗମ ପଥ, କ୍ଷୁର ଧାର ପରି ଅତିଶୟ ତୀକ୍ଷ୍ଣ । ତେଣୁ ଏହା କେବଳ ବିଦ୍ୱାନ୍‌ମାନଙ୍କପାଇଁ ଉଦ୍ଦିଷ୍ଟ । କିନ୍ତୁ ଭାଗବତ ହେଉଛି ପ୍ରେମ-ପ୍ରଧାନ । ଭକ୍ତିର ମାର୍ଗ । ସାଧାରଣ ଲୋକଙ୍କପାଇଁ ଅତିଶୟ ସରଳ । ତାହାକୁ ଗ୍ରହଣ କଲେ କେବେ ଭୁଲ ହେବ ନାହିଁ । ଏ ବାଟ ଏପରି ସରଳ ଯେ ଧାଇଁ ଧାଇଁ ଗଲେ ମଧ୍ୟ ଗୋଡ଼ ଖସିବ ନାହିଁ କି ପଡ଼ିବ ନାହିଁ । **'ଧାବନ୍ ନିମୀଲ୍ୟ ବା ନେତ୍ରେ ନ ସ୍ଖଲେନ୍ନ ପତେଦିହ'** ।

**ଯେ ବୈ ଭଗବତା ପ୍ରୋକ୍ତା ଉପାୟା ହ୍ୟାତ୍ମଲବ୍ଧୟେ**
**ଅଞ୍ଜଃ ପୁଂସାଂ ଅବିଦୁଷାଂ ବିଦ୍ଧି ଭାଗବତାନ୍ ହି ତାନ୍ ।**

ଭଗବାନ୍ ନିଜେ ଭଗବତ୍ ପ୍ରାପ୍ତିର ଉପାୟ କହୁଛନ୍ତି । ଯେପରିକି ଅଜ୍ଞ ଜନତା ନିଜକୁ ଉପଲବ୍ଧି କରିପାରିବ । ସେଥିପାଇଁ **ଅଞ୍ଜଃ** ଅର୍ଥାତ୍ ସରଳ ବାଟର କଥା କୁହାଯାଇଛି । ମନୁଷ୍ୟ ସବୁକିଛି ଲାଭ କରିପାରିବ--ଧନ, ଜନ, ଗୋପଲକ୍ଷ୍ମୀ, ବିଦ୍ୟା, ଯଶ; କିନ୍ତୁ ନିଜକୁ ବା ଆତ୍ମସ୍ୱରୂପକୁ ଲାଭ କରିବା ସହଜ ନୁହେଁ, ସେଥିପାଇଁ ଭଗବାନ୍ ଆତ୍ମସ୍ୱରୂପ ବା ଭଗବତ୍ ପ୍ରାପ୍ତିପାଇଁ ଯେଉଁ ସରଳ ଉପାୟ ବତାଇ ଦେଇଛନ୍ତି, ତାହାର ନାମ ହେଉଛି ଭାଗବତ ବା ଭାଗବତଧର୍ମ ।

## ସମର୍ପଣ ଭାବ

ଏହି ମାର୍ଗରେ ଗଲେ ନିଜର ସମସ୍ତ କର୍ମ ଭଗବାନଙ୍କୁ ଅର୍ପଣ କରିବାକୁ ହେବ । **'କାୟେନ ବାଚା ମନସା ଇନ୍ଦ୍ରିୟୈଃ ବା ବୁଦ୍ଧ୍ୟାଽଽତ୍ମନା ବାନୁସୃତସ୍ୱଭାବାତ୍ । କରୋତି ଯତ୍ ଯତ୍ ସକଳଂ ପରସ୍ମୈ ନାରାୟଣାୟେତି ସମର୍ପୟେତ୍ ତତ୍'** । କାୟମନୋବାକ୍ୟରେ ଇନ୍ଦ୍ରିୟ ବା ନିଜ ବୁଦ୍ଧି ବା ସ୍ୱଭାବ ଅନୁସାରେ ଯାହା କିଛି କରିବ, ସେ ସମସ୍ତ ନାରାୟଣଙ୍କୁ ସମର୍ପଣ କରିବ । ଭାଗବତର ଏହା ଏକ ପ୍ରସିଦ୍ଧ ଶ୍ଳୋକ । ଭଗବାନଙ୍କୁ ସମର୍ପଣ କଲେ ତାହା ମଧ୍ୟରେ ମନ୍ଦ କର୍ମ ମଧ୍ୟ ଆସିଯାଇପାରେ । କିନ୍ତୁ ଜାଣିଶୁଣି ମନ୍ଦକର୍ମ ଭଗବାନଙ୍କୁ ଅର୍ପଣ କରି ପାରିବ ନାହିଁ । ଭୁଲ୍‌ରେ ଅର୍ପଣ କଲେ ମଧ୍ୟ ତା'ର ସଂଶୋଧନ ହୋଇଯିବ । ଏହି ଆତ୍ମସମର୍ପଣ ଭାବ, ଭଗବାନ୍ ହିଁ ଏକମାତ୍ର ଆଶ୍ରୟ, ତାଙ୍କ ଛଡ଼ା ଅନ୍ୟ କେହି ନାହିଁ -- ଏହା ହିଁ ଭାଗବତ ତତ୍ତ୍ୱର ମୂଳ କଥା ।

ଭଗବାନଙ୍କଠାରେ ଦୃଢ଼ ବିଶ୍ୱାସ ରଖିଥିଲେ ତାଙ୍କୁ କିପରି ଭକ୍ତି କରିବାକୁ ହେବ, ତାହାର ବାଟ ସେ ବତାଇ ଦିଅନ୍ତି । ପାଞ୍ଚ ବର୍ଷର ବାଳକ ଧ୍ରୁବ ଭଗବାନଙ୍କୁ ଲାଭ କରିବାପାଇଁ ବନକୁ ଚାଲିଗଲେ । ତାଙ୍କ ମନରେ ଦୃଢ଼ ବିଶ୍ୱାସ ଅଛି କି ନାହିଁ ଏହା ପରୀକ୍ଷା କରିବାପାଇଁ ନାରଦ ଆସି ପହଞ୍ଚିଲେ । ଯେତେବେଳେ ବାଳକର ସଂକଳ୍ପ କଥା ଜାଣିଲେ, କିପରି ତପସ୍ୟା କରିବାପାଇଁ ହେବ ତା'ର ବାଟ ସେ ବତାଇଦେଲେ । ପୃଥୁଙ୍କ ବଂଶରେ ଜନ୍ମ ପ୍ରଚେତା ନାମରେ ଦଶଜଣ ରାଜପୁତ୍ର ତପସ୍ୟା କରିବାପାଇଁ ବାହାରିଲେ, କିନ୍ତୁ କିପରି ପ୍ରାର୍ଥନା ଓ ତପସ୍ୟା କରିବାକୁ ହେବ ସେମାନେ ତାହା ଜାଣି ନ ଥିଲେ । ଭଗବାନ ଶଙ୍କର ତାଙ୍କୁ

ବାଟରେ ଦେଖାଦେଇ ତାହାର ମାର୍ଗ ଦେଖାଇଦେଲେ; ଯାହାକି ଭାଗବତରେ ରୁଦ୍ରଗୀତ ନାମରେ ପ୍ରସିଦ୍ଧ । ତେଣୁ ଯେ ତାଙ୍କଠାରେ ସମର୍ପିତ, ଭଗବାନ ତାକୁ ବିଭିନ୍ନ ଉପାୟରେ ଭକ୍ତିର ମାର୍ଗକୁ ଦେଖାଇ ଦିଅନ୍ତି ।

ଅଭିମାନ ଓ ଅହଙ୍କାର ଏହି ସମର୍ପଣ ଭାବର ବିରୋଧୀ । ବିଶ୍ୱର ସୃଷ୍ଟି କରିବାପାଇଁ ନିଜ ନାଭିକମଳରୁ ଭଗବାନ ବ୍ରହ୍ମାଙ୍କୁ ସୃଷ୍ଟିକଲେ । ବ୍ରହ୍ମା ତାଙ୍କ ନାଭିକମଳ ଉପରେ ରହି ଦେଖିଲେ ଯେ ପ୍ରଳୟ ଜଳରେ ଚତୁର୍ଦ୍ଦିଗ ଜଳାର୍ଣ୍ଣବ । ତାଙ୍କ ମନରେ କୌତୂହଳ ଜାତ ହେଲା । ତାଙ୍କ ନିଜର କିପରି ସୃଷ୍ଟିହୋଇଛି, ସେ ଯେଉଁ ପଦ୍ମନାଡ଼ରେ ବସିଛନ୍ତି, ତାହା କେଉଁଠାରୁ ଆସିଛି, ତାହା ଜାଣିବାପାଇଁ ସେ ସେହି ନାଡ଼ ଭିତରେ ପଶିଗଲେ । ବର୍ଷ ବର୍ଷ ଧରି ସେ ନାଡ଼ ଭିତରେ ପଶି ନାଡ଼ର ଅନ୍ତ କେଉଁଠି ଓ ଉତ୍ପତ୍ତି କେଉଁଠି ତାହା ଜାଣିପାରିଲେ ନାହିଁ । ଭଗବାନ ଅନନ୍ତ । ତାଙ୍କର ମାୟାର ଅନ୍ତକୁ କିଏ ଜାଣି ପାରିବ ? ଯେତେବେଳେ ସେ ନାଡ଼ ଉପରକୁ ଉଠିଆସି ଭଗବାନଙ୍କଠାରେ ସମ୍ପୂର୍ଣ୍ଣ ଭାବରେ ନିଜକୁ ସମର୍ପଣ କରିଦେଲେ ସେତେବେଳେ ଆକାଶବାଣୀ ହେଲା – 'ତପ ତପ' । ଏହା ଭଗବାନଙ୍କର ନିର୍ଦ୍ଦେଶ ବୋଲି ସେ ମନେ କଲେ ଓ ଦୀର୍ଘକାଳ ତପସ୍ୟା କଲେ ।

## ଭାଗବତର ପ୍ରସାର

ବହୁକାଳ ପରେ ଦିନେ ଭଗବାନ ନିଜର ତେଜୋମୟ ରୂପରେ ବ୍ରହ୍ମାଙ୍କୁ ଦେଖାଦେଇ ତାଙ୍କୁ ଯେଉଁ ତତ୍ତ୍ୱ ଉପଦେଶ ଦେଲେ ଏଥିରୁ ଚତୁଃଶ୍ଳୋକୀ ଭାଗବତର ଜନ୍ମ ହେଲା । ଏହି ଜ୍ଞାନ ଲାଭ କରି ବ୍ରହ୍ମା ବିଶ୍ୱର ସର୍ଜନାପାଇଁ ବାହାରିଲେ । ପରେ ଭଗବାନଙ୍କଠାରୁ ଲାଭ କରିଥିବା ଏହି ଜ୍ଞାନକୁ ବିସ୍ତାର କରିବାପାଇଁ ବ୍ରହ୍ମା ନିଜର ପୁତ୍ର ନାରଦଙ୍କୁ ଏହା ଶୁଣାଇଲେ । ନାରଦ ଅର୍ଥାତ୍ ଜ୍ଞାନଦାତା 'ନାରଂ ଜ୍ଞାନଂ ଦଦାତି ଇତି ନାରଦଃ' । ବ୍ରହ୍ମା କହିଲେ, **'ଇଦଂ ଭାଗବତଂ ନାମ ଯନ୍ମେ ଭଗବତୋଦିତମ୍ । ସଂଗ୍ରହୋଽୟଂ ବିଭୂତୀନାଂ ତ୍ୱମେତଦ୍ ବିପୁଳୀକୁରୁ ।'** ଭଗବାନ ସ୍ୱୟଂ ମୋତେ ଯେଉଁ ଉପଦେଶ ଦେଇଥିଲେ ତାହା ହେଉଛି ଏହି ଭାଗବତ । ଏଥିରେ ଭଗବାନଙ୍କ ବିଭୂତି ସଂଗୃହୀତ ହୋଇଛି । ତୁମେ ଏହାର ବିସ୍ତାର କର ।

ନାରଦ ବ୍ରହ୍ମାଙ୍କଠାରୁ ଶୁଣିଥିବା ଭାଗବତଜ୍ଞାନକୁ ତାଙ୍କର ଶିଷ୍ୟ ବ୍ୟାସଦେବଙ୍କଦ୍ୱାରା ବିସ୍ତାରିତ କରାଇଲେ । ଯେଉଁ ଭାଗବତ ଗ୍ରନ୍ଥ ବର୍ତ୍ତମାନ ଲୋକରେ ପ୍ରଚାରିତ ତାହା ହେଉଛି ବ୍ୟାସଙ୍କ ପୁତ୍ର ଓ ଶିଷ୍ୟ ଶ୍ରୀ ଶୁକଦେବଙ୍କର ମୁଖନିଃସୃତ ବାଣୀ, ଯାହାକି ଅଠର ହଜାର ଶ୍ଳୋକରେ ଲିପିବଦ୍ଧ । ଏହା ବ୍ୟାସଦେବଙ୍କ ସୃଷ୍ଟ ଭାଗବତ ଗ୍ରନ୍ଥକୁ ଯେ ଅଧିକ ସାରଯୁକ୍ତ କରିଛି, ତାହା ସ୍ପଷ୍ଟ ହୋଇଯାଇଛି ଭାଗବତର ପ୍ରଥମ ଅଧ୍ୟାୟ ତୃତୀୟ ଶ୍ଳୋକରେ ।

**ନିଗମକଳ୍ପତରୋର୍ଗଳିତଂ ଫଳଂ**
**ଶୁକମୁଖାଦମୃତଦ୍ରବସଂଯୁତମ୍**
**ପିବତ ଭାଗବତଂ ରସମାଳୟଂ**
**ମୁହୁରହୋ ରସିକା ଭୁବି ଭାବୁକାଃ ॥**

ଏହା ବେଦରୂପକ କଳ୍ପବୃକ୍ଷର ଫଳ, କିନ୍ତୁ ଶ୍ରୀ ଶୁକଦେବଙ୍କ ମୁହଁରେ ଚର୍ଚ୍ଚିତ ହୋଇ ରସ ଆକାରରେ ଶ୍ରୋତା ବା ପାଠକମାନଙ୍କ ପାଖକୁ ଆସିଥିବାରୁ ତାହା ସମ୍ପୂର୍ଣ୍ଣ ରସମୟ ହୋଇପାରିଛି । ପୁଣି ଶୁକଦେବ ଖାଲି ଯାହାକୁ ତାହାକୁ ଭାଗବତ ଶୁଣାଇ ନାହାନ୍ତି । ଭଗବାନ ଶ୍ରୀକୃଷ୍ଣଙ୍କର ଜଣେ ପରମଭକ୍ତ ଯେ କି ତାଙ୍କର ଲୀଳାକଥା ଶୁଣିବା ପାଇଁ ଆଗ୍ରହୀ ଓ ଏପରି ଆଗ୍ରହୀ

ଯେ ଅଳ୍ପଦିନ ପରେ ମରିବେ ଓ ମରିବା ପୂର୍ବରୁ ଭାଗବତ ଶୁଣି ମରିବେ, ସେହି ପରିକ୍ଷିତଙ୍କୁ ହିଁ ଶୁଣାଇଛନ୍ତି । ଭଗବାନ ଶ୍ରୀକୃଷ୍ଣ ଅର୍ଜୁନଙ୍କୁ ସେତେବେଳେ ହିଁ ଗୀତାମୃତ ଶୁଣାଇଲେ, ଯେତେବେଳେ ଅର୍ଜୁନ ଶୁଣିବାପାଇଁ ବ୍ୟାକୁଳହୋଇ କହିବାକୁ ଲାଗିଲେ, ମୁଁ ତୁମର ଜଣେ ବାଧ୍ୟ ଶିଷ୍ୟ, ଶରଣାଗତ, ଯେପରି ଉପଦେଶ ଦେଇ ମୋତେ ଚାଳିତ କରିବାର କଥା ତାହା କରନ୍ତୁ । **ଶିଷ୍ୟସ୍ତେଽହଂ ଶାଧି ମାଂ ତ୍ୱାଂ ପ୍ରପନ୍ନଃ** । ସେହିପରି ରାଜା ପରିକ୍ଷିତ ବ୍ୟାକୁଳ ହୋଇ ଭାଗବତ ଶୁଣିବାପାଇଁ ଶ୍ରୀ ଶୁକଦେବଙ୍କୁ ପ୍ରାର୍ଥନା କଲେ । ତାପରେ ଶୁକଦେବ ତାଙ୍କୁ ଆନନ୍ଦରେ ଶୁଣାଇଲେ । ଅର୍ଜୁନଙ୍କ ପରି ମଧ୍ୟ ପରିକ୍ଷିତ ଖାଲି ଶୁଣିଗଲେ ନାହିଁ, ମଝିରେ ମଝିରେ ପଚାରି ନିଜର ସନ୍ଦେହ ମୋଚନ କରୁଥିଲେ । ଗୀତା କୃଷ୍ଣ-ଅର୍ଜୁନଙ୍କ କଥାପରି ଭାଗବତ ଶୁକ ଏବଂ ପରିକ୍ଷିତଙ୍କର ସମ୍ବାଦ । ଶ୍ରୀ ଜଗନ୍ନାଥ ଦାସ ତାଙ୍କ ଭାଗବତରେ କହିଛନ୍ତି--

**'ଶୁଣ ପରିକ୍ଷ ନରନାଥ - କୃଷ୍ଣ ଚରିତ ଭାଗବତ ।'**

ଭାଗବତ ହେଉଛି ଅତିଶୟ ଆଗ୍ରହୀ, ସମର୍ପିତ ବା ଭଗବାନଙ୍କର ଶରଣାଗତ ଭକ୍ତଜନସାଧାରଣଙ୍କପାଇଁ ଉଦ୍ଦିଷ୍ଟ ।

ଭାଗବତର ପ୍ରଥମ ସ୍କନ୍ଧ ପ୍ରଥମ ଅଧ୍ୟାୟରେ କୁହାଯାଇଛି ଯେ **'ଶ୍ରୀମଦ୍‌ଭାଗବତେ ମହାମୁନି କୃତେ'** । ଭାଗବତର ପ୍ରସିଦ୍ଧ ଟୀକାକାର ଶ୍ରୀଧରସ୍ୱାମୀ ଏଠାରେ ମହାମୁନିଙ୍କୁ ନାରାୟଣ ବୋଲି କହିଛନ୍ତି । ଅର୍ଥାତ୍ ଭାଗବତ ହେଉଛି ସ୍ୱୟଂ ଭଗବାନଙ୍କର ମୁଖନିଃସୃତ ବାଣୀ । ସ୍ୱୟଂ ନାରାୟଣ ଭାଗବତର ସ୍ରଷ୍ଟା । କିନ୍ତୁ ତାହା ବ୍ରହ୍ମା ଓ ନାରଦଙ୍କ ଦ୍ୱାରା ସଂସାରର କଲ୍ୟାଣପାଇଁ କିପରି ବ୍ୟାସଦେବଙ୍କ ହୃଦୟରେ ସ୍ଫୁରିତ ହେଲା, ସେ ସମ୍ପର୍କରେ ଏକ ମନୋରମ ଆଖ୍ୟାୟିକା ଅଛି, ଯାହାକୁ ପାଠକଲେ ବା ଶୁଣିଲେ ଅହଂଭାବ ବା ଅଭିମାନ ଦୂର ହୋଇ ସମର୍ପଣ ବା ଭକ୍ତିଭାବ ଜାତହୁଏ । ନାରଦ ବ୍ରହ୍ମାଙ୍କଠାରୁ ଶୁଣିଥିବା ଯେଉଁ ଜ୍ଞାନର ବିସ୍ତାର କଲେ ତାହା ପୁଣି ସେ ନିଜ ଶିଷ୍ୟ ବ୍ୟାସଦେବଙ୍କଦ୍ୱାରା ଆହୁରି ବିସ୍ତାରିତ କଲେ, ଯାହାକି ଲୋକରେ ପ୍ରଚାରିତ ଭାଗବତ ଗ୍ରନ୍ଥ । ଏ ସମ୍ପର୍କରେ ଆଖ୍ୟାୟିକା ହେଉଛି ବ୍ୟାସଦେବ ବେଦମାନଙ୍କର ସଂକଳନ ଓ ବିଭାଗ କଲେ । ଯେଉଁଥିପାଇଁ ତାଙ୍କର ନାମ ବେଦବ୍ୟାସ । ବ୍ରହ୍ମସୂତ୍ର ରଚନା କଲେ, ମହାଭାରତପରି ବିଶାଳ ଗ୍ରନ୍ଥର ସୃଷ୍ଟି କଲେ, ଯେଉଁ ମହାଭାରତର ଅମୂଲ୍ୟ ଅଂଶ ହେଉଛି ଶ୍ରୀମଦ୍ ଭଗବଦ୍‌ଗୀତା । ଭଗବତ୍ ଗୀତାର ସାରତତ୍ତ୍ୱ ହେଲା-- ଭଗବାନଙ୍କଠାରେ ତୁମକୁ ସଂପୂର୍ଣ୍ଣ ସମର୍ପିତ କରିବାକୁ ହେବ ।

ମହାଭାରତ ରଚନା କରି ମଧ୍ୟ ବ୍ୟାସଦେବଙ୍କ ମନରେ ଶାନ୍ତି ଆସିଲା ନାହିଁ । ସେ ଅଶାନ୍ତ ଚିତ୍ତରେ ସରସ୍ୱତୀ ନଦୀକୂଳରେ ନିଜ ଆଶ୍ରମରେ ବସିଛନ୍ତି, ଏହି ସମୟରେ ତାଙ୍କର ଗୁରୁ ଦେବର୍ଷି ନାରଦ ସେଠାରେ ଉପସ୍ଥିତ ହେଲେ । ନାରଦ କହିଲେ, ମହାମୁନି, ଆପଣ ବେଦ, ବ୍ରହ୍ମସୂତ୍ର, ମହାଭାରତ, ପୁରାଣ ଆଦି କେତେ କାମ କରିଛନ୍ତି । ରାଜନୀତି, ଅର୍ଥନୀତି, କାମତତ୍ତ୍ୱ, ଧର୍ମନୀତି ଆଦି ବିଷୟରେ ବିସ୍ତାରିତଭାବରେ ବର୍ଣ୍ଣନା କରିଛନ୍ତି । ଆପଣ ଯାହା କରିଛନ୍ତି, ତାହା ସାଧାରଣ ମନୁଷ୍ୟର ଶକ୍ତିର ବାହାରେ । କିନ୍ତୁ ଭଗବାନଙ୍କ ଗୁଣାବଳୀର ଯେପରି ବର୍ଣ୍ଣନା କରିବାର କଥା, ତାହା ପ୍ରଚୁର ଭାବରେ କରି ନାହାନ୍ତି । **'ନୈଷ୍କର୍ମ୍ୟମପି ଅଚ୍ୟୁତଭାବବର୍ଜିତଂ ନ ଶୋଭତେ ଜ୍ଞାନମଲଂ ନିରଞ୍ଜନମ୍'** । ଭଗବତ୍‌ଭାବ ବର୍ଜିତ ହେଲେ ନିଷ୍କାମ କର୍ମର ମଧ୍ୟ କିଛି ମୂଲ୍ୟ ନାହିଁ । ତେଣୁ ଯେଉଁ ଶାସ୍ତ୍ରଦ୍ୱାରା ଭଗବାନଙ୍କପ୍ରତି ପରମ ଭକ୍ତିଭାବ ଜାତ ହେବ ତାହା ଆପଣ ରଚନା କରନ୍ତୁ । ସେଥିପାଇଁ ନିଜ ଆଶ୍ରମରେ ବ୍ୟାସଦେବଙ୍କୁ ଧ୍ୟାନସ୍ଥ ହେବାକୁ ପଡ଼ିଲା । ଯାହା ଫଳରେ ତାଙ୍କ ହୃଦୟରେ ଭାଗବତର ତତ୍ତ୍ୱ ସ୍ଫୁରିତ ହେଲା । କିପରି ଏତେବଡ଼ ଗ୍ରନ୍ଥ ତାଙ୍କ ହୃଦୟରେ ସ୍ଫୁରିତ ହେଲା ?

ବ୍ୟାସଦେବ ସ୍ୱୟଂ ଭଗବାନଙ୍କର ଅବତାର ଥିଲେ । ତାଙ୍କୁ କୃଷ୍ଣ ଦ୍ୱୈପାୟନ ବୋଲି କୁହାଯାଏ । ତାଙ୍କର ଆହୁରି ପ୍ରଶସ୍ତି କରି କୁହାଯାଇଛି, ସେ ବ୍ରହ୍ମା, ବିଷ୍ଣୁ, ମହେଶ୍ୱରଙ୍କର ସମନ୍ୱିତ ଅବତାର । ଚତୁର୍ମୁଖ ନ ହୋଇଥିଲେ ମଧ୍ୟ ସେ ବ୍ରହ୍ମା ।

ଚତୁର୍ଭୁଜ ନ ହୋଇଥିଲେ ବି ବିଷ୍ଣୁ । ତ୍ରିଲୋଚନ ନ ହୋଇଥିଲେ ମଧ୍ୟ ସେ ଶଙ୍କର । **'ଅଚତୁର୍ବଦନଃ ବ୍ରହ୍ମା, ଦ୍ୱିବାହୁରପରଃ ହରିଃ, ଅଭାଲଲୋଚନଃ ଶମ୍ଭୁଃ ଭଗବାନ୍ ବାଦରାୟଣଃ'** । ବ୍ୟାସଦେବ ସ୍ୱୟଂ ଭଗବାନଙ୍କର ଅବତାର ହୋଇଥିବାଯୋଗୁଁ, ସେ ଧ୍ୟାନ କରିବା ମାତ୍ରେ ତାଙ୍କ ହୃଦୟରେ ତାହା ପ୍ରକଟିତ ହୋଇଗଲା । ଭାଗବତ ଗ୍ରନ୍ଥ ହେଲା କୃଷ୍ଣମୟ ।

ଭାଗବତର ଏପରି କୌଣସି ସ୍କନ୍ଧ ନାହିଁ, ଯେଉଁଥିରେ କି ଶ୍ରୀକୃଷ୍ଣଙ୍କ ନାମ, ଲୀଳା ଓ ଗୁଣାବଳୀର ବର୍ଣ୍ଣନା କରାଯାଇ ନାହିଁ । ଯେଉଁ ଲୀଳା ଓ ଯଶ ଶ୍ରବଣ ଓ ପଠନ କଲେ ସାଧୁ ପ୍ରାଣରେ ଅଫୁରନ୍ତ ଭକ୍ତିପ୍ଲାବନ ଜାତହୁଏ । ଭକ୍ତ କବି ମହାପୁରୁଷ ଯଶୋବନ୍ତ ଦାସ କହିଛନ୍ତି **'ଭାଗବତ ଭଜନମାଳା । ମନ ସୂତ୍ରେ ଗୁନ୍ଥ ନକରି ହେଳା'** । ଭାଗବତର ପ୍ରଥମ ଶ୍ଳୋକ ଯାହାକୁ ଗାୟତ୍ରୀ ମନ୍ତ୍ର ସ୍ୱରୂପ ଧରାଯାଏ, ସେଥିରେ ଭଗବାନ ବା ଶ୍ରୀକୃଷ୍ଣଙ୍କର ନାମ ନିଆଯାଇ ନାହିଁ ସତ୍ୟ ମାତ୍ର ସତ୍ୟ-ସ୍ୱରୂପ ଭଗବାନଙ୍କର ସ୍ତୁତି କରାଯାଇଛି । ସେହି ପରମ ସତ୍ୟକୁ ଆମେ ଧ୍ୟାନ କରିବା -- **'ସତ୍ୟଂ ପରଂ ଧୀମହି'** । ଉପସଂହାର ଦ୍ୱାଦଶ ସ୍କନ୍ଧ ୧୯ ଶ୍ଳୋକରେ ମଧ୍ୟ କୁହାଯାଇଛି- 'ବିଶୋକମମୃତଂ ସତ୍ୟଂ ପରମ୍ ଧୀମହି' । ସେହି ଶୋକନାଶକ ଅମୃତମୟ ପରମ ସତ୍ୟକୁ ଧ୍ୟାନ କର । ଭାଗବତରେ କୁହାଯାଇଚି, ସତ୍ୟ ହିଁ ଈଶ୍ୱର । ଯାହାକୁ ମହାତ୍ମା ଗାନ୍ଧୀ କହିଥିଲେ Truth is God । କିନ୍ତୁ ଏହି ପରମ ସତ୍ୟ ହିଁ ପରବର୍ତ୍ତୀ ବର୍ଣ୍ଣନାମାନଙ୍କରେ ଭଗବାନ ଶ୍ରୀକୃଷ୍ଣଙ୍କୁ ହିଁ ବୁଝାଯାଉଛି । ଦ୍ୱିତୀୟ ଅଧ୍ୟାୟ ୨୮-୨୯ ଶ୍ଳୋକରେ କୁହାଯାଇଛି :

**ବାସୁଦେବପରା ବେଦା ବାସୁଦେବପରା ମଖା**
**ବାସୁଦେବପରା ଯୋଗା ବାସୁଦେବପରା କ୍ରିୟାଃ ।**
**ବାସୁଦେବପରଂ ଜ୍ଞାନଂ ବାସୁଦେବପରଂ ତପଃ**
**ବାସୁଦେବପରୋଧର୍ମୋ ବାସୁଦେବପରା ଗତିଃ ।।**

ବେଦ, ଯଜ୍ଞ, ଯୋଗ, ବିଭିନ୍ନ ପ୍ରକାର କ୍ରିୟାକର୍ମ, ଜ୍ଞାନ, ତପ, ଧର୍ମ ଏବଂ ଗତି -- ଏସବୁ ଶ୍ରୀକୃଷ୍ଣଙ୍କଠାରୁ ଭିନ୍ନ ନୁହେଁ । ଏହା ତାଙ୍କଠାରେ ଭକ୍ତି ଲାଭପାଇଁ ଉଦ୍ଦିଷ୍ଟ ।

ଦ୍ୱିତୀୟ ସ୍କନ୍ଧ ଚତୁର୍ଥ ଅଧ୍ୟାୟରେ ପୁଣି କୃଷ୍ଣାର୍ପଣ କଥା କୁହାଯାଇଛି । ବଡ଼ ବଡ଼ ତପସ୍ୱୀ, ଜ୍ଞାନୀ, ଯଶସ୍ୱୀ, ମନସ୍ୱୀ, ସଦାଚାରୀ, ମନ୍ତ୍ରବିଦ୍ ଯେ ପର୍ଯ୍ୟନ୍ତ ନିଜକୁ ଭଗବାନଙ୍କ ଚରଣରେ ସମର୍ପିତ କରି ନାହାନ୍ତି ସେ ପର୍ଯ୍ୟନ୍ତ ସେମାନଙ୍କୁ କଲ୍ୟାଣପ୍ରାପ୍ତ ହୁଏ ନାହିଁ ।

**ତପସ୍ୱିନୋ ଦାନପରା ଯଶସ୍ୱିନୋ**
**ମନସ୍ୱିନୋ ମନ୍ତ୍ରବିଦଃ ସୁମଙ୍ଗଳା ।**
**କ୍ଷେମଂ ନ ବିନ୍ଦନ୍ତି ବିନା ଯଦର୍ପଣମ୍**
**ତସ୍ମୈ ସୁଭଦ୍ରଶ୍ରବସେ ନମୋନମଃ ।।**

ଭଗବାନ ଶ୍ରୀକୃଷ୍ଣ ଗୀତାରେ ଅର୍ଜ୍ଜୁନଙ୍କୁ କହିଛନ୍ତି **'ଯତ୍ କରୋଷି ଯଦଶ୍ନାସି ଯଜ୍ଜୁହୋଷି ଦଦାସିଯତ୍ । ଯତ୍ତପସ୍ୟସି କୌନ୍ତେୟ ତତ୍ କୁରୁଷ୍ୱ ମଦର୍ପଣମ୍ ।'** ଯାହା କରୁଛ, ଯାହା ଖାଉଛ, ଯାହା ଆହୁତି ଦେଉଛ, ଯାହା ଦାନ କରୁଛ, ଯାହା ତପ କରୁଚ, ତାହା ମୋତେ ଅର୍ପଣ କର । **'ସର୍ବ ଧର୍ମାନ୍ ପରିତ୍ୟଜ୍ୟ ମାମେକଂ ଶରଣଂ ବ୍ରଜ'** । ଯେତେ ଯାହା ଧର୍ମାଚରଣ ସବୁ ଛାଡ଼ିଦେଇ ମୋର ଶରଣାଗତ ହୋଇଯାଅ । ଭାଗବତର ପ୍ରତ୍ୟେକ ଅଧ୍ୟାୟରେ ତାହା ହିଁ ପ୍ରତିପାଦିତ ହୋଇଛି ।

ଅନ୍ୟତ୍ର ସନକାଦି ଋଷିମାନେ କଳିଯୁଗର ଦୁରବସ୍ଥା ସମ୍ପର୍କରେ ନାରଦଙ୍କୁ ପରାମର୍ଶ ଦେଇ କହିଛନ୍ତି, ମହର୍ଷି, କଳିଯୁଗରେ ଭାଗବତ ରସାମୃତ ଶୁଣାଇବାଦ୍ୱାରା ଲୋକଙ୍କ ମଧ୍ୟରେ ଧର୍ମଭାବ ଫେରିଆସିବ । ସଂସାରରେ ଦାନ, ପୁଣ୍ୟ, ତପସ୍ୟାର ସେପରି ମହତ୍ତ୍ୱ ନାହିଁ । ଏହା ଶୁଭକର୍ମ ହୋଇପାରେ । କିନ୍ତୁ ସତ୍‌କର୍ମ ହେଉଛି ସତ୍ୟସ୍ୱରୂପ ପରମାତ୍ମାଙ୍କର ଉପଲବ୍ଧି । ଏହାଦ୍ୱାରା ସଂସାରରେ ସମସ୍ତ ବସ୍ତୁ ଅନିତ୍ୟ ଏବଂ ଏକମାତ୍ର ଭଗବାନ ନିତ୍ୟ ସତ୍ୟ ବୋଲି ଜ୍ଞାନ ଲାଭହୁଏ । ବିଷୟ ବାସନା ପ୍ରତି ବୈରାଗ୍ୟ ଜାତହୁଏ । ଜ୍ଞାନ ଓ ବୈରାଗ୍ୟ ନହେବା ପର୍ଯ୍ୟନ୍ତ ଭକ୍ତି ହୁଏ ନାହିଁ । ବୈରାଗ୍ୟ ଅର୍ଥାତ୍ ବୀତରାଗ । କାହାରିପ୍ରତି ରାଗଦ୍ୱେଷ ନ ରହିବା । ଦୈହିକ ରାଗ ଓ ଅହଂଭାବାପନ୍ନ ଦ୍ୱେଷବର୍ଜନ । ସଂସାରର ସମସ୍ତ ଜୀବ ଓ ସମସ୍ତ ପଦାର୍ଥ ମଧ୍ୟରେ ପରମାତ୍ମାଙ୍କ ଦର୍ଶନ--ଏହିପରି ଜ୍ଞାନ ଓ ବୈରାଗ୍ୟ ନହେବା ପର୍ଯ୍ୟନ୍ତ ଭକ୍ତି ଜାତ ହେବ ନାହିଁ । କିନ୍ତୁ ଏହି ପରମ ପବିତ୍ର ଭାବ କେବଳ ଭାଗବତଦ୍ୱାରା ହିଁ ସମ୍ଭବ । ଭକ୍ତି କେବଳ ଶ୍ରୀମଦ୍‌ଭାଗବତ କଥା ଶ୍ରବଣଦ୍ୱାରା ସମ୍ଭବ ।

## ଭାଗବତର ମାହାତ୍ମ୍ୟ

ପୁଣି ଭାଗବତରେ କୁହାଯାଇଛି – 'ଯେଉଁ ବ୍ୟକ୍ତି ଭଗବାନ ଶ୍ରୀକୃଷ୍ଣଙ୍କ କଥା କେବେହେଲେ ଶୁଣି ନାହିଁ, ତାହାର କାନ ଏକ ଗହ୍ୱର ସହିତ ସମାନ । ଯେଉଁ ଜିଭ ଭଗବାନଙ୍କ ଲୀଳାଗାନ କରି ନାହିଁ, ତାହା କେବଳ ବେଙ୍ଗର ଜିଭ ପରି ଲହଲହ ହେଉଥାଏ । ଏହି ଜିଭ ନ ରହିଲେ ଭଲ । ଯେଉଁ ମୁଣ୍ଡ ପ୍ରଭୁଙ୍କ ପାଦରେ ନୁଏଁ ନାହିଁ, ସୁନ୍ଦର ରେଶମୀ ପଗଡ଼ିରେ ବନ୍ଧା ସେ ମୁଣ୍ଡ ଶରୀରର ଏକ ବୋଝମାତ୍ର । ଯେଉଁ ହାତ ଭଗବାନଙ୍କର ସେବା ପୂଜା କରେ ନାହିଁ, ସୁନାର କଙ୍କଣ ପିନ୍ଧିଥିଲେ ମଧ୍ୟ ସେ ହାତ ଶବର ହାତ ସହିତ ସମାନ । ଯେଉଁ ଆଖି ଭଗବାନଙ୍କର ମୂର୍ତ୍ତି, ତୀର୍ଥ ଆଦିର ଦର୍ଶନ କରେ ନାହିଁ, ମୟୂର ପଙ୍ଖାର ଆଖିଚିହ୍ନ ସହ ତାହା ସମାନ । ଯେଉଁ ପାଦ ଭଗବାନଙ୍କର ଲୀଳା ସ୍ଥଳକୁ ଯାତ୍ରା କରେ ନାହିଁ, ତାହା ଏକ ଚଳନ୍ତା ଗଛ ସହିତ ସମାନ । ଯେଉଁ ବ୍ୟକ୍ତି ସାଧୁସନ୍ଥଙ୍କର ପଦଧୂଳି କେବେ ମଧ୍ୟ ନିଜ ମସ୍ତକରେ ଧାରଣ କରି ନାହିଁ, ସେ ଜିଇଥିଲେ ମଧ୍ୟ ମୃତବ୍ୟକ୍ତି ସହିତ ସମାନ । ଯେଉଁ ମନୁଷ୍ୟ ଭଗବାନଙ୍କ ଚରଣତୁଳସୀର ସୁଗନ୍ଧର ପ୍ରଶଂସା କରେ ନାହିଁ, ସେ ନିଃଶ୍ୱାସ ନେଉଥିଲେ ମଧ୍ୟ ଶ୍ୱାସରହିତ ଶବ । ଭଗବାନଙ୍କର ମଙ୍ଗଳମୟ ନାମର ଶ୍ରବଣ କୀର୍ତ୍ତନ କଲେ ମଧ୍ୟ ଯେଉଁ ହୃଦୟ ବିଗଳିତ ହୁଏ ନାହିଁ, ତାହା ଲୁହା ସହିତ ସମାନ । ହୃଦୟ ବିଗଳିତ ହେଲେ ଆଖିରେ ଅଶ୍ରୁ ଭରିଯିବ ଏବଂ ଶରୀରରେ ରୋମାଞ୍ଚ ସୃଷ୍ଟିହେବ । ନିଜର ସମସ୍ତ ଅଙ୍ଗପ୍ରତ୍ୟଙ୍ଗ ଦ୍ୱାରା କାୟମନୋବାକ୍ୟରେ ଭଗବାନଙ୍କ ସେବା କରିବା କଥା ହିଁ ଏହି ଭାଗବତରେ କୁହାଯାଇଛି ।

ପୁଣି ଏକାଦଶ ସ୍କନ୍ଧରେ ଉଦ୍ଧବଙ୍କୁ ଉପଦେଶ ଦେବାଛଳରେ ଭଗବାନ ଶ୍ରୀକୃଷ୍ଣ କହିଛନ୍ତି; ଯୋଗସାଧନାଦ୍ୱାରା ମୋତେ ଲାଭ କରାଯାଇପାରେ ନାହିଁ । ସାଂଖ୍ୟତତ୍ତ୍ୱଦ୍ୱାରା ନୁହେଁ, ସ୍ୱାଧ୍ୟାୟ, ତପସ୍ୟା ଓ ତ୍ୟାଗଦ୍ୱାରା ନୁହେଁ, କେବଳ ଦିନୁଦିନ ବଢୁଥିବା ଭକ୍ତିଦ୍ୱାରା ହିଁ ମୋତେ ଲାଭ କରାଯାଇପାରେ । ଦ୍ୱାଦଶ ସ୍କନ୍ଧର ଦ୍ୱାଦଶ ଅଧ୍ୟାୟରେ କୁହାଯାଇଛି, ଯେଉଁ କଥା ଭଗବାନଙ୍କ ଗୁଣାବଳୀରେ ପୂର୍ଣ୍ଣ ତାହା ମନୋହର, ରୁଚିର, ନିତ୍ୟନବୀନ ଓ ରସମୟ । ତାହା ମନକୁ ସବୁବେଳେ ଆନନ୍ଦ ଦିଏ ଏବଂ ମନୁଷ୍ୟର ଶୋକରୂପୀ ସମୁଦ୍ରକୁ ଶୁଖାଇଦିଏ ।

ତଦେବ ରମ୍ୟଂ ରୁଚିରଂ ନବଂ ନବଂ
ତଦେବ ଶଶ୍ୱନ୍‌ମନସୋ ମହୋତ୍ସବଂ ।
ତଦେବ ଶୋକାର୍ଣ୍ଣବଶୋଷଣଂ ନୃଣାଂ
ଯଦୁତ୍ତମଶ୍ଳୋକଯଶୋଽନୁଗୀୟତେ ॥

ତେଣୁ ଭଗବାନଙ୍କ ଠାରେ ଭକ୍ତି ଜାତ ହେବାପରେ ସାଧୁପୁରୁଷର ଆଉ କୌଣସିଥିରେ ଆବଶ୍ୟକତା ନଥାଏ । **'ଭକ୍ତିଂ ଲବ୍ଧବତଃ ସାଧୋଃ କିମେତଦବଶିଷ୍ୟତେ'** । ଆଉ କୌଣସି ବସ୍ତୁ ସେ ଭଗବାନଙ୍କୁ ମାଗେ ନାହିଁ ।

ସପ୍ତମ ସ୍କନ୍ଧରେ ଅଛି, ଭକ୍ତ ପ୍ରହ୍ଲାଦଙ୍କୁ ରକ୍ଷା କରିବାପାଇଁ ଭଗବାନ ଭୟାନକ ନୃସିଂହ ରୂପରେ ଅବତୀର୍ଣ୍ଣ ହୋଇ ହିରଣ୍ୟକଶିପୁର ପେଟକୁ ନଖରେ ବିଦାରଣ କଲେ । ସେହି ଭୟଙ୍କର ନୃସିଂହ ମୂର୍ତ୍ତି ପାଖକୁ ଯିବା ତ ଦୂରର କଥା ବ୍ରହ୍ମାଦି ଦେବତାମାନେ କେହି ତାଙ୍କୁ ଚାହିଁ ପାରିଲେ ନାହିଁ । କିନ୍ତୁ ବାଳକ ପ୍ରହ୍ଲାଦ ଭଗବାନଙ୍କ ପାଖକୁ ଯିବାରୁ ସେ ତାଙ୍କୁ କୋଳରେ ବସାଇ ହସି ହସି ବର ମାଗିବାକୁ କହିଲେ । ପ୍ରହ୍ଲାଦ କହିଲେ, ମୋର କୌଣସି ବର ଦରକାର ନାହିଁ, ମୋର କେବଳ ଆପଣଙ୍କ ପ୍ରତି ସଦା ଭକ୍ତି ରହୁ, ଏହି ବର ଦିଅନ୍ତୁ । **'ନମଃ ସ୍ତୁତି କର୍ମପୂଜା କର୍ମସ୍ମୃତିଶ୍ଚରଣୟୋଃ ଶ୍ରବଣଂ କଥାୟାଂ'** । ମୋର ଜୀବନ ଆପଣଙ୍କଠାରେ ସମର୍ପିତ ହେଉ । ମୁଁ ସର୍ବଦା ଆପଣଙ୍କର କଥା କୀର୍ତ୍ତନ କରେ । ମୁଁ ଯାହା କରିବି ଆପଣଙ୍କ ପାଇଁ ହିଁ କରିବି । ଆପଣଙ୍କ ମନୋହର ଲୀଳାର ସ୍ମରଣ କରୁଥିବି, ଆଉ ମୋର ଜୀବନରେ ମାଗିବାର କୌଣସି ବାସନା ଜାତହେବା ଉଚିତ ନୁହେଁ ।

ଦ୍ୱାଦଶ ସ୍କନ୍ଧରେ ମାର୍କଣ୍ଡେୟ ଋଷିଙ୍କ ସମ୍ପର୍କରେ ବର୍ଣ୍ଣନା କରାଯାଇଛି । ତାଙ୍କର କଠୋର ତପସ୍ୟାରେ ମୁଗ୍ଧ ହୋଇ ସ୍ୱୟଂ ଆଶୁତୋଷ ଶିବ ତାଙ୍କୁ ବର ମାଗିବାପାଇଁ କହିଲେ । କିନ୍ତୁ ମାର୍କଣ୍ଡେୟ କୌଣସି ବର ମାଗିବାପାଇଁ ନାରାଜ । ଶେଷରେ ଶିବ ତାଙ୍କୁ ବାଧ୍ୟ କରିବାରୁ ସେ କହିଲେ ପ୍ରଭୁ, ମୋତେ କେବଳ ବିମଳ ଭକ୍ତି ଦାନ କରନ୍ତୁ । ତେଣୁ ପ୍ରକୃତ ଭକ୍ତ ଭଗବାନଙ୍କଠାରୁ ଭକ୍ତି ଛଡ଼ା ଅନ୍ୟ କିଛି ମାଗେ ନାହିଁ ।

ଭକ୍ତି ପୁଣି ନଅ ପ୍ରକାର । ପ୍ରହ୍ଲାଦ ନିଜ ପିତା ହିରଣ୍ୟକଶିପୁଙ୍କୁ ନବଧା ଭକ୍ତିର କଥା କହିଛନ୍ତି--

**ଶ୍ରବଣଂ କୀର୍ତ୍ତନଂ ବିଷ୍ଣୋଃ ସ୍ମରଣଂ ପାଦସେବନମ୍**
**ଅର୍ଚ୍ଚନଂ ବନ୍ଦନଂ ଦାସ୍ୟଂ ସଖ୍ୟମାତ୍ମନିବେଦନମ୍ ।**

ଭଗବାନଙ୍କର ନାମ ଓ ଲୀଳା ଆଦିର ଶ୍ରବଣ, କୀର୍ତ୍ତନ, ସ୍ମରଣ, ପଦସେବା, ପୂଜାର୍ଚ୍ଚନା, ବନ୍ଦନ, ନିଜକୁ ଭଗବାନଙ୍କର ଦାସ ରୂପେ ବା ସଖାରୂପେ କଳ୍ପନା କରିବା ଏବଂ ତାଙ୍କଠାରେ ଆତ୍ମସମର୍ପଣ କରିବା । ଶୁକଦେବ କହିଛନ୍ତି ଯେ ଏହା ମଧ୍ୟରୁ ଭଗବାନଙ୍କ ନାମ, ରୂପ, ଗୁଣାଦିର ଶ୍ରବଣ, କୀର୍ତ୍ତନ ଓ ସ୍ମରଣ ସବୁଠାରୁ ସହଜ । ନିଜେ ରାଜା ପରିକ୍ଷିତ ଭାଗବତ ଶ୍ରବଣଦ୍ୱାରା ମୋକ୍ଷ ଲାଭ କଲେ । ନାରଦ ସର୍ବଦା ଭଗବାନଙ୍କର ନାମ କୀର୍ତ୍ତନ କରନ୍ତି । ଯୁଗେ ଯୁଗେ ବୈଷ୍ଣବ ଭକ୍ତମାନେ ଭଗବାନଙ୍କର ନାମ କୀର୍ତ୍ତନ ଉପରେ ସବୁଠାରୁ ଗୁରୁତ୍ୱ ଦେଇ ଆସିଛନ୍ତି । ଅଜାଣତରେ ଭଗବାନଙ୍କର ନାମ ସ୍ମରଣ କରି ପାପୀ ଅଜାମିଳ ମୋକ୍ଷ ହୋଇଗଲା । ଭକ୍ତ ସାଧୁମାନେ ଭଗବାନଙ୍କ ପଦସେବାରେ ନିଜକୁ ନିୟୋଜିତ କରନ୍ତି । ମନ୍ଦିରରେ ତାଙ୍କର ମୂର୍ତ୍ତି ସ୍ଥାପନ କରି ପୂଜାର୍ଚ୍ଚନା କରାଯାଏ । ଭଗବତ୍‌ଗୀତାରେ ଭଗବାନ କହିଛନ୍ତି, ଯେ ମୋତେ ଭକ୍ତିରେ ପତ୍ର, ଫୁଲ, ଫଳ, ଜଳ ଆଦି ଅର୍ପଣ କରେ, ମୁଁ ସେହି ଭକ୍ତର ଉପହାରକୁ ଆନନ୍ଦରେ ଗ୍ରହଣ କରେ ।

ରାମାୟଣରେ ଶବରୀ ଓ ମହାଭାରତରେ ବିଦୁରଙ୍କର ଆତିଥ୍ୟକୁ ଭଗବାନ ଆନନ୍ଦରେ ଗ୍ରହଣ କରିଥିଲେ । ବନ୍ଦନ ଭକ୍ତି ହେଉଛି ବିଭିନ୍ନ ଭକ୍ତଙ୍କର ଭଗବାନଙ୍କୁ ସ୍ତୁତି ଓ ବନ୍ଦନା କରିବାର ଭକ୍ତି । ହନୁମାନ୍ ହେଉଛନ୍ତି ଦାସ୍ୟ ଭକ୍ତିର ଆଦର୍ଶ ଏବଂ ଅର୍ଜୁନ ସଖ୍ୟ ଭକ୍ତିର ପ୍ରତୀକ । ବନ୍ଧନଗ୍ରସ୍ତ ରାଜା ବଳି ବିନା ଭୟରେ ଭଗବାନଙ୍କ ନିକଟରେ ନିଜକୁ ସମର୍ପଣ କରିଦେଇଥିଲେ--ସେ ହିଁ ଆତ୍ମନିବେଦନର ଆଦର୍ଶ ।

## ପୁରାଣାର୍କ

ବେଦ, ଉପନିଷଦ୍, ମହାଭାରତ, ରାମାୟଣ ପରେ ପୁରାଣମାନଙ୍କର ସୃଷ୍ଟି । ପୁରାଣମାନଙ୍କ ମଧ୍ୟରେ ଭାଗବତ ଶ୍ରେଷ୍ଠ । ଏହାକୁ ପୁରାଣାର୍କ ବା ପୁରାଣମାନଙ୍କ ମଧ୍ୟରେ ସୂର୍ଯ୍ୟ ବୋଲି କୁହାଯାଇଛି । ଜନସାଧାରଣଙ୍କ ମଧ୍ୟରେ ବିଭିନ୍ନ ଆଖ୍ୟାୟିକା ଛଳରେ ଧର୍ମଭାବର ଜାଗରଣପାଇଁ ପୁରାଣ ରଚନା କରାଯାଇଛି । ପୃଥିବୀର ସାହିତ୍ୟମାନଙ୍କ ମଧ୍ୟରେ ପୁରାଣ ସାହିତ୍ୟ ଏକ ଅଦ୍ୱିତୀୟ ସୃଷ୍ଟି । ବ୍ୟାସକୃତ ଅଠରଟି ମହାପୁରାଣ ମଧ୍ୟରେ ଭାଗବତର କ୍ରମ ପଞ୍ଚମ । ବିଷ୍ଣୁ ପୁରାଣରେ କୁହାଯାଇଛି-**ବ୍ରାହ୍ମ ପାଦ୍ମ ବୈଷ୍ଣବଂଚ୍ ଶୈବଂ ଭାଗବତଂ** ତଥା । ଅର୍ଥାତ୍ ବ୍ରହ୍ମ ପୁରାଣ, ପଦ୍ମ ପୁରାଣ, ବିଷ୍ଣୁ ପୁରାଣ, ଶିବ ପୁରାଣ ଏବଂ ଭାଗବତ ପୁରାଣ ।

ବ୍ୟାସଦେବ ତାଙ୍କ ଶିଷ୍ୟମାନଙ୍କ ମଧ୍ୟରୁ ପୁରାଣ ବିଦ୍ୟା ରୋମହର୍ଷଣଙ୍କୁ ପ୍ରଦାନ କଲେ । ସୂତ କହନ୍ତି **'ଇତିହାସ ପୁରାଣାନାଂ ପିତା ମେ ରୋମହର୍ଷଣଃ'** । ରୋମହର୍ଷଣ ଇତିହାସ ଓ ପୁରାଣର ସ୍ନାତକ ଥିଲେ । ସୂତ ନିଜର ପିତା ରୋମହର୍ଷଣଙ୍କଠାରୁ ପୁରାଣମାନଙ୍କ ସଂପର୍କରେ ଶିକ୍ଷାଲାଭ କରିଥିଲେ ହେଁ ସେ ଭାଗବତ କଥା ଶ୍ରୀ ଶୁକଦେବଙ୍କଠାରୁ ଶୁଣିଥିଲେ । ଲୋକମଙ୍ଗଳପାଇଁ ବ୍ୟାସଦେବ ନିଜର ପୁତ୍ର ଶୁକଦେବଙ୍କୁ ଏହି ଭାଗବତ ବିଦ୍ୟା ପ୍ରଦାନ କରିଥିଲେ । ଶୁକଦେବ ବ୍ରହ୍ମଜ୍ଞାନୀ । ଜନ୍ମରୁ ସେ ଅବଧୂତ ଥିଲେ । ସଂସାର ପ୍ରତି ସମ୍ପୂର୍ଣ୍ଣ ନିର୍ଲିପ୍ତ ଓ ଅନାସକ୍ତ । ଏପରି ନିରାକାର ବ୍ରହ୍ମଙ୍କ ଉପାସକ ଶୁକଦେବ ମଧ୍ୟ ଭଗବାନଙ୍କ ସାକାର ସ୍ୱରୂପ ଶ୍ରୀକୃଷ୍ଣଙ୍କର ପରମଭକ୍ତ ଥିଲେ । ଜ୍ଞାନୀଶ୍ରେଷ୍ଠ ଶୁକଦେବ ଶାପଗ୍ରସ୍ତ ରାଜା ପରିକ୍ଷିତଙ୍କୁ ଗଙ୍ଗାକୂଳରେ ଏହି ଭାଗବତ ଶୁଣାଇବାବେଳେ ସେଠାରେ ଉପସ୍ଥିତ ସୂତ ତାହା ଶୁଣିଥିଲେ । ନୈମିଷାରଣ୍ୟରେ ଶୌନକ ଆଦି ମୁନିମାନେ ଏକ ଦୀର୍ଘସତ୍ର ବା ଜ୍ଞାନଯଜ୍ଞ କରୁଥିବାବେଳେ ସେମାନଙ୍କ ଅନୁରୋଧରେ ତାହା ସେ ସେମାନଙ୍କୁ ଶୁଣାଇଥିଲେ ।

**'ଯଥାଧୀତଂ ଯଥାମତି'** । ଯାହା ମୁଁ ଅଧ୍ୟୟନ କରିଛି, ଯାହା ମୋର ମନେ ଅଛି ତାହା ମୁଁ ତୁମମାନଙ୍କୁ ଶୁଣାଉଅଛି ।

## ଶ୍ଳୋକ ସଂଖ୍ୟା

ଭାଗବତରେ ଅଠର ହଜାର ଶ୍ଳୋକଥିବାର କୁହାଯାଏ । କିନ୍ତୁ ପ୍ରକୃତରେ ଏହା ଚଉଦ ହଜାର ଅନେଶତ ଶ୍ଳୋକ, ଯାହାକି ଭାଗବତ ପ୍ରଯୁକ୍ତ ବିଭିନ୍ନ ଛନ୍ଦ ଅନୁସାରେ ଗଣନା କରାଯାଇଛି । କେବଳ ଅନୁଷ୍ଟୁପ୍ ଛନ୍ଦଯୁକ୍ତ ଶ୍ଳୋକ ଦୃଷ୍ଟିରୁ ଏହା ଅଠର ହଜାର । ତେଣୁ ଭାଗବତରେ ସବୁ ଶ୍ଳୋକ ସମାନ ନୁହେଁ । ବଡ଼ ବଡ଼ ଶ୍ଳୋକ ଅଛି ଯାହାକି ୨,୩,୪ ଅନୁଷ୍ଟୁପ୍ ଛନ୍ଦର ଶ୍ଳୋକ ସହିତ ସମାନ । ପୁଣି ଗୋଟିଏ ସ୍କନ୍ଧ ସମ୍ପୂର୍ଣ୍ଣ ଗଦ୍ୟମୟ । ଏହି ଗଦ୍ୟରେ ଗୋଟିଏ ଗୋଟିଏ ବାକ୍ୟ ଦୁଇ ତିନୋଟି ଅନୁଷ୍ଟୁପ୍ ଛନ୍ଦଯୁକ୍ତ ଶ୍ଳୋକ ସହିତ ସମାନ । ସେଥିପାଇଁ ଭାଗବତରେ ଅଠର ହଜାର ଶ୍ଳୋକ ଅଛି ବୋଲି କୁହାଯାଏ ।

ଭାଗବତ ବାରଟି ସ୍କନ୍ଧରେ ବିଭକ୍ତ । ତାହା ମଧ୍ୟରୁ ଦଶମ ସ୍କନ୍ଧ ଯାହାକି କୃଷ୍ଣଲୀଳା ରୂପେ କୀର୍ତ୍ତିତ, ତାହା ସବୁଠାରୁ ବଡ଼ ନବେ ଅଧ୍ୟାୟ ଓ ୩ ହଜାର ୯୪୬ ଶ୍ଳୋକ । ଦ୍ୱିତୀୟ ସ୍କନ୍ଧ ସବୁଠାରୁ ଛୋଟ-ଦଶ ଅଧ୍ୟାୟ ଓ ୩୯୧ ଶ୍ଳୋକ ।

## ରଚନା କାଳ

ଭାଗବତର ରଚନାକାଳ ସମ୍ପର୍କରେ ଭିନ୍ନ ମତ ଦେଖାଯାଏ । କେହି କେହି ଐତିହାସିକଙ୍କ ମତରେ ଭାଗବତଦ୍ୱାରା ପ୍ରଭାବିତ ଭକ୍ତି ଆନ୍ଦୋଳନର ସମୟ ଦୃଷ୍ଟିରୁ ଏହା ନବମ ବା ଦଶମ ଶତାବ୍ଦୀରେ ରଚିତ । କେହି କେହି ତ୍ରୟୋଦଶ ଶତାବ୍ଦୀର

ସଂସ୍କୃତ କବି ବୋପଦେବଙ୍କୁ ଏହାର ରଚୟିତା ବୋଲି ଧରିନିଅନ୍ତି । କାରଣ ବୋପଦେବ ଭାଗବତ ତତ୍ତ୍ୱ ସମ୍ପର୍କୀୟ ହରିଲୀଳାମୃତ ଆଦି ବହୁଗ୍ରନ୍ଥ ରଚନା କରିଥିଲେ । ତାଙ୍କର 'ଭାଗବତାନୁକ୍ରମଣିକା'ରେ ସେ ସମ୍ପୂର୍ଣ୍ଣ ଭାଗବତର ସାରାଂଶ ଦେଇଛନ୍ତି । ସେଥିରେ ଭାଗବତର କେତୋଟି ଶ୍ଳୋକକୁ ମଧ୍ୟ ଉଦ୍ଧାର କରାଯାଇଛି । ବୋପଦେବ କେବଳ ନୁହନ୍ତି; ବିଶିଷ୍ଟାଦ୍ୱୈତ ମତର ପ୍ରବର୍ତ୍ତକ ରାମାନୁଜାଚାର୍ଯ୍ୟ ତାଙ୍କର 'ବେଦାନ୍ତତତ୍ତ୍ୱସାର'ରେ ଭାଗବତର କେତୋଟି ଶ୍ଳୋକ ଉଦ୍ଧାର କରିଛନ୍ତି । ରାମାନୁଜଙ୍କର ସମୟ ଏକାଦଶ ଶତାବ୍ଦୀ । ଆଲ୍‌ବରୁଣି ତାଙ୍କର 'ଭାରତ' ଗ୍ରନ୍ଥରେ ଭାଗବତର ଉଲ୍ଲେଖ କରିଛନ୍ତି । ଏହି ଗ୍ରନ୍ଥର ରଚନାକାଳ ୧୦୩୦ ଖ୍ରୀଷ୍ଟାବ୍ଦ । ତେଣୁ ୧୦୦୦ ଖ୍ରୀଷ୍ଟାବ୍ଦ ବେଳକୁ ଭାଗବତର ବହୁଳ ପ୍ରସାର ହୋଇସାରିଥିଲା । ଶ୍ରୀ ଶଙ୍କରାଚାର୍ଯ୍ୟ ଭାଗବତର କେତେକ ଶ୍ଳୋକର ଛାୟାରେ ତାଙ୍କର କେତେକ ଶ୍ଳୋକ ରଚନା କରିଛନ୍ତି ଏବଂ ତାହା ବ୍ୟାସଙ୍କର ବଚନ ବୋଲି କହିଛନ୍ତି । ଶଙ୍କରାଚାର୍ଯ୍ୟଙ୍କର ସମୟ ହେଉଛି ଅଷ୍ଟମ ଶତାବ୍ଦୀ (୭୮୮-୮୨୦) । 'ସାଂଖ୍ୟକାରିକା'ର ଚୀନ୍ ଭାଷାରେ ଅନୂଦିତ ଟୀକାରେ ଭାଗବତର ବହୁ ଶ୍ଳୋକ ଉଦ୍ଧାର କରାଯାଇଛି । ଅନୁବାଦକ ପରମାର୍ଥଙ୍କର ସମୟ ୬ଷ୍ଠ ଶତାବ୍ଦୀ, ଅର୍ଥାତ୍ ୬ଷ୍ଠ ଶତାବ୍ଦୀ ବେଳକୁ ମଧ୍ୟ ଭାଗବତ ପ୍ରସିଦ୍ଧ ହୋଇଯାଇଥିଲା ।

ଭାଗବତର ଦ୍ୱିତୀୟ ସ୍କନ୍ଧର ଏକ ଶ୍ଳୋକ ଏହିପରି-

**କିରାତହୂଣାନ୍ଧ୍ର ପୁଳିନ୍ଦ ପୁଲ୍‌କସା**
**ଆଭୀରକଙ୍କା ଯବନାଃ ଖସାଦୟଃ ।**
**ଯେ ଅନ୍ୟେଽଚ ପାପା ଯଦପାଶ୍ରୟାଶ୍ରୟାଃ**
**ଶୁଦ୍ଧ୍ୟନ୍ତି ତସ୍ମୈ ପ୍ରଭବିଷ୍ଣବେ ନମଃ ॥**

ଯବନମାନଙ୍କ ସହିତ ଭାରତର ପରିଚୟ ଆଲେକ୍‌ଜାଣ୍ଡାର (ଖ୍ରୀ:ପୂ:୩୨୬) ଙ୍କ ସମୟରୁ ଓ ହୂଣମାନେ ତା'ପରେ ପରେ ଦ୍ୱିତୀୟ ଚନ୍ଦ୍ରଗୁପ୍ତଙ୍କ ସମୟପର୍ଯ୍ୟନ୍ତ ବାରମ୍ବାର ଭାରତ ଆକ୍ରମଣ କରିଥିଲେ । ତେଣୁ ଭାଗବତ ରଚନା ଏହାର ପରବର୍ତ୍ତୀ । ଦ୍ୱିତୀୟ ଚନ୍ଦ୍ରଗୁପ୍ତଙ୍କ ସମୟ ଖ୍ରୀ: ୩୭୫-୪୧୩ ବୋଲି ଧରାଯାଏ । ଏହା ହିନ୍ଦୁ ଧର୍ମର ପୁନରୁତ୍ଥାନ ବେଳ । ମୌଖିକ ପରମ୍ପରାରେ ଚଳିଆସୁଥିବା ଭାଗବତ ପୁରାଣ ହୁଏତ ତାଙ୍କ ସମୟରେ ରଚିତ ହୋଇଥିବା ସମ୍ଭବ ।

## ଟୀକାକାର ଶ୍ରୀଧରସ୍ୱାମୀ

ଭାଗବତର ବହୁ ଟୀକାକାର ଅଛନ୍ତି । ଭକ୍ତି ଆନ୍ଦୋଳନର ଭିନ୍ନ ଭିନ୍ନ ପ୍ରବକ୍ତାମାନେ ନିଜ ନିଜ ଦୃଷ୍ଟିକୋଣରୁ ଭାଗବତର ଟୀକା କରିଛନ୍ତି । ଏହା ମଧ୍ୟରେ ସୁଦର୍ଶନ ସୂରୀଙ୍କର 'ଶୁକପରୀକ୍ଷା' (ବିଶିଷ୍ଟାଦ୍ୱୈତ), ବୀରରାଘବଙ୍କର ଭାଗବତ ଚନ୍ଦ୍ରିକା (ବିଶିଷ୍ଟାଦ୍ୱୈତ), ବିଜୟଧ୍ୱଜଙ୍କର ପଦରତ୍ନାବଳୀ (ଦ୍ୱୈତ), ଶୁକଦେବାଚାର୍ଯ୍ୟଙ୍କର ସିଦ୍ଧାନ୍ତ ପ୍ରଦୀପ (ଦ୍ୱୈତାଦ୍ୱୈତ), ଶ୍ରୀବଲ୍ଲଭାଚାର୍ଯ୍ୟଙ୍କର ସୁବୋଧିନୀ ଟୀକା (ଶୁଦ୍ଧାଦ୍ୱୈତ), ସନାତନ ଗୋସ୍ୱାମୀଙ୍କର ବୃହତ୍‌ବୈଷ୍ଣବତୋଷିଣୀ, ଜୀବଗୋସ୍ୱାମୀଙ୍କର କର୍ମ ସନ୍ଦର୍ଭ (ଚୈତନ୍ୟମତ), ବିଶ୍ୱନାଥ ଚକ୍ରବର୍ତ୍ତୀଙ୍କର ସାରାର୍ଥଦର୍ଶିନୀ ଏବଂ ଶ୍ରୀହରିଙ୍କର ହରିଭକ୍ତି ରସାୟନ ଆଦି ପ୍ରସିଦ୍ଧ । କିନ୍ତୁ ସବୁ ଟୀକା ମଧ୍ୟରେ ଶ୍ରୀଧର ସ୍ୱାମୀଙ୍କର ଟୀକାକୁ ଶ୍ରେଷ୍ଠବୋଲି ଗଣାଯାଏ । ଶ୍ରୀ ଚୈତନ୍ୟଦେବ ନିଜେ କହିଛନ୍ତି,

**'ଶ୍ରୀଧରସ୍ୱାମୀ ପ୍ରସାଦେ ଭାଗବତ ଜାନି**
**ଜଗତ୍‌ଗୁରୁ ଶ୍ରୀଧର ସ୍ୱାମୀ ଗୁରୁ କରି ମାନି'**

ଶ୍ରୀଧର ସ୍ୱାମୀଙ୍କର ଜନ୍ମ ଓଡ଼ିଶାର ନୀଳଗିରି ନିକଟରେ ମରେଇ ଗ୍ରାମରେ ହୋଇଥିଲା । ଭାଗବତର ଯେତେ ଆଧୁନିକ ପ୍ରବକ୍ତା ଅଛନ୍ତି ସମସ୍ତେ ଶ୍ରୀଧର ସ୍ୱାମୀଙ୍କର ଟୀକାକୁ ପ୍ରାମାଣିକ ବୋଲି ଗ୍ରହଣ କରନ୍ତି । ହିନ୍ଦୀରେ ଭାଗବତର ପ୍ରସିଦ୍ଧ ଭାବାନୁବାଦ କରିଥିବା ସ୍ୱାମୀ ଅଖଣ୍ଡାନନ୍ଦଜୀ ମହାରାଜ ଶ୍ରୀଧର ସ୍ୱାମୀଙ୍କର ଟୀକାକୁ ଅତି ଉଚ୍ଚସ୍ଥାନ ଦେଇଛନ୍ତି । ଭଗବାନ ଶଙ୍କର ନିଜେ କହିଥିବା କିମ୍ବଦନ୍ତୀ ଅଛି ଯେ -- **ଅହଂ ବେତ୍ତି ଶୁକଃ ବେତ୍ତି ବ୍ୟାସଃ ବେତ୍ତି ନ ବେତ୍ତି ବା, ଶ୍ରୀଧରଃ ସକଳଂ ବେତ୍ତି ।** ଅର୍ଥାତ୍ ମୁଁ, ଶୁକଦେବ ଓ ବ୍ୟାସଦେବ ଏହି ଭାଗବତ ବିଷୟରେ ଯାହା ଜାଣୁ ବା ନ ଜାଣୁ, ଶ୍ରୀଧର ସବୁ କିଛି ଜାଣନ୍ତି । ନାଭାଦାସ ତାଙ୍କ ଭକ୍ତମାଳାରେ ଲେଖିଛନ୍ତି-- **'ଶ୍ରୀଧର ଶ୍ରୀ ଭାଗୌତମେଁ ପରମ ଧରମ ନିରାନୈ କିୟୋ'** । ଶ୍ରୀଧର ଭାଗବତରେ ପରମଧର୍ମ ନିର୍ଣ୍ଣୟ କରିଛନ୍ତି ।

ଦ୍ୱାଦଶ ସ୍କନ୍ଧକୁ କେହି କେହି ଭାଗବତର ପ୍ରକ୍ଷିପ୍ତ ବୋଲି କହନ୍ତି । କାରଣ ଶ୍ରୀ ଶୁକଦେବ ଏକାଦଶ ସ୍କନ୍ଧ ଶେଷ ଶ୍ଳୋକରେ କହିଛନ୍ତି--

**ଇତ୍ଥଂ ହରେର୍ଭଗବତୋ ରୁଚିରାବତାର**
**ବୀର୍ଯ୍ୟାଣି ବାଲଚରିତାନି ଚ ଶନ୍ତମାନି**
**ଅନ୍ୟତ୍ର ଚେହ ଚ ଶ୍ରୁତାନି ଗୃଣନ୍ ମନୁଷ୍ୟୋ**
**ଭକ୍ତିଂପରାଂ ପରମହଂସଗତୌ ଲଭେତ ।**

ଯେଉଁ ବ୍ୟକ୍ତି ଭକ୍ତଭୟହାରୀ ଏହି ମଧୁର ରୁଚିର କୃଷ୍ଣ ଚରିତର ବୀରତ୍ୱପୂର୍ଣ୍ଣ ବାଲଲୀଳା, କିଶୋର ଲୀଳା ଆଦିର କୀର୍ତ୍ତନ କରେ ସେ ପରମହଂସମାନଙ୍କର ଲକ୍ଷ୍ୟ ଶ୍ରୀକୃଷ୍ଣଙ୍କ ପ୍ରତି ଶ୍ରେଷ୍ଠ ଭକ୍ତି ଲାଭ କରେ-- ଏହା ଗ୍ରନ୍ଥର ଏକ ସମାପ୍ତିସୂଚକ ଶ୍ଳୋକ । କିନ୍ତୁ ପୁଣି ପରିକ୍ଷିତ ଶୁକଦେବଙ୍କୁ ପଚାରୁଛନ୍ତି, ଶ୍ରୀକୃଷ୍ଣ ପରମଧାମକୁ ଚାଲିଯିବା ପରେ ପୃଥିବୀରେ କେଉଁ କେଉଁ ରାଜବଂଶ ରାଜପଣ କଲେ । ଏହା ଅପ୍ରାସଙ୍ଗିକ ଓ ପ୍ରକ୍ଷିପ୍ତ ବୋଲି ମନେହୁଏ । ସେହିପରି ଭାଗବତର କେତେକ ପ୍ରସଙ୍ଗ ଅପ୍ରାସଙ୍ଗିକ, ଯଥା-- ଶୁକଦେବ ଓ ମୈତ୍ରେୟଙ୍କର ବିରାଟପୁରୁଷଙ୍କର ବର୍ଣ୍ଣନା ସମ୍ପର୍କିତ ବୈଷମ୍ୟ । ନବମ ସ୍କନ୍ଧରେ କେତେକ ରାଜାଙ୍କର ବର୍ଣ୍ଣନା କରାଯାଇଛି ; ଯାହାଙ୍କର ଭକ୍ତିମାର୍ଗ ବା ଜ୍ଞାନମାର୍ଗ ସହିତ କୌଣସି ସମ୍ପର୍କ ନାହିଁ ।

ଭାଗବତ ହେଉଛି ନିର୍ଗୁଣ-ନିରାକାର, ସେହିପରି ସଗୁଣ-ସାକାର, ଜ୍ଞାନମାର୍ଗ, ଭକ୍ତିମାର୍ଗ, କର୍ମମାର୍ଗ, ଯୋଗମାର୍ଗ, ପ୍ରେମତତ୍ତ୍ୱ, ସାଂଖ୍ୟ, ବେଦାନ୍ତ ଓ ଭାରତୀୟ ଅଧ୍ୟାତ୍ମ୍ୟ ସାଧନାର ସମନ୍ୱୟ । ତେଣୁ ଏହି ଶ୍ରେଣୀର ସମସ୍ତ ଭକ୍ତଙ୍କର, ସନ୍ଥ, ସାଧକମାନଙ୍କର ଭାଗବତ ପୁରାଣ ହେଉଛି କଣ୍ଠହାର । ସେଥିପାଇଁ ଦ୍ୱାଦଶ ସ୍କନ୍ଧରେ କୁହାଯାଇଛି--

**ଶ୍ରୀମଦ୍‌ଭାଗବତଂ ପୁରାଣମମଲଂ ଯଦ୍‌ବୈଷ୍ଣବାନାଂ ପ୍ରିୟମ୍**
**ଯସ୍ମିନ୍ ପାରମହଂସ୍ୟମେକମମଲଂ ଜ୍ଞାନଂ ପରଂ ଗୀୟତେ ।**
**ତତ୍ର ଜ୍ଞାନବିରାଗଭକ୍ତିସହିତଂ ନୈଷ୍କର୍ମ୍ୟମାବିଷ୍କୃତମ୍**
**ତଚ୍ଛୃଣ୍ୱନ୍ ବିପଠନ୍ ବିଚାରଣପରୋ ଭକ୍ତ୍ୟା ବିମୁଚ୍ୟେନ୍ ନରଃ ॥**

ଶ୍ରୀମଦ୍‌ଭାଗବତ ଏକ ନିର୍ଦୋଷ, ନିର୍ମଳ ପୁରାଣ । ବୈଷ୍ଣବମାନଙ୍କର ପ୍ରିୟ । ଏଥିରେ ପରମହଂସମାନଙ୍କର ପବିତ୍ର ଶ୍ରେଷ୍ଠ ଜ୍ଞାନର ଗାୟନ କରାଯାଇଛି । ଜ୍ଞାନବୈରାଗ୍ୟ ଓ ଭକ୍ତି ସହିତ ନିଷ୍କାମ କର୍ମର ଉଲ୍ଲେଖ ଅଛି । ଏହାକୁ ଶୁଣିଲେ, ପଢ଼ିଲେ, ଚିନ୍ତାକଲେ ଭଗବତ୍ ପ୍ରାପ୍ତି ଓ ମୁକ୍ତି ମିଳିଯାଏ ।

ଭାଗବତକୁ ମହାପୁରାଣ ଓ ପରମହଂସ ସଂହିତା ବୋଲି କୁହାଯାଇଛି-- **'ଇତି ଶ୍ରୀମଦ୍‌ଭାଗବତ ମହାପୁରାଣେ ପାରମହଂସ୍ୟାଂ ସଂହିତାୟାଂ ପ୍ରଥମ ସ୍କନ୍ଧେ ନୈମିଷୀୟୋପାଖ୍ୟାନେ ଚତୁର୍ଥୋଽଧ୍ୟାୟଃ ।'** ପୁରାଣର ପାଞ୍ଚ ଲକ୍ଷଣ -- ସର୍ଗ, ପ୍ରତିସର୍ଗ, ବଂଶ, ମନ୍ୱନ୍ତର ଓ ବଂଶାନୁଚରିତ । ଏହା ସବୁ ଭାଗବତରେ ଅଛି । ଦ୍ୱିତୀୟ ସ୍କନ୍ଧର ପଞ୍ଚମ ଅଧ୍ୟାୟରେ ସର୍ଗ ବା ସୃଷ୍ଟିତତ୍ତ୍ୱ ଓ ତୃତୀୟ ସ୍କନ୍ଧର ବିଂଶତମ ଅଧ୍ୟାୟରେ ପ୍ରତିସର୍ଗର ଉଲ୍ଲେଖ କରାଯାଇଛି । ଚତୁର୍ଥ ସ୍କନ୍ଧରେ ରାଜବଂଶ ଓ ସେମାନଙ୍କର ବଂଶଧର ଓ ଅଷ୍ଟମ ସ୍କନ୍ଧର ପ୍ରଥମ ଅଧ୍ୟାୟରେ ମନ୍ୱନ୍ତରର ବର୍ଣ୍ଣନା କରାଯାଇଛି । କିନ୍ତୁ ଭାଗବତର ଦ୍ୱିତୀୟ ସ୍କନ୍ଧ ଦଶମ ଅଧ୍ୟାୟର ପ୍ରଥମ ଶ୍ଳୋକରେ ପାଞ୍ଚ ଲକ୍ଷଣ ନୁହେଁ, ଭାଗବତରେ ଦଶ ଲକ୍ଷଣ ଅଛି ବୋଲି କୁହାଯାଇଛି-- ସର୍ଗ, ବିସର୍ଗ, ସ୍ଥାନ, ପୋଷଣ, ଊତି, ମନ୍ୱନ୍ତର, ଈଶାନୁକଥା, ନିରୋଧ, ମୁକ୍ତି ଏବଂ ଆଶ୍ରୟ । ଦ୍ୱିତୀୟ ଶ୍ଳୋକରୁ ନବେ ଶ୍ଳୋକ ପର୍ଯ୍ୟନ୍ତ ଏହି ଦଶ ଲକ୍ଷଣ ବର୍ଣ୍ଣନା କରାଯାଇଛି । ପଣ୍ଡିତ ବଳଦେବ ଉପାଧ୍ୟାୟ ଏହାର ବିଶଦ ବ୍ୟାଖ୍ୟା କରି ଏହା ଭାଗବତର ସ୍ୱାତନ୍ତ୍ର୍ୟ ବୋଲି କହିଛନ୍ତି ।

ଭାଷାର ସରଳତା, ମାଧୁର୍ଯ୍ୟ, ସୌନ୍ଦର୍ଯ୍ୟ ଓ ଲାଳିତ୍ୟ ଦୃଷ୍ଟିରୁ ଭାଗବତ ଏକ ଶ୍ରେଷ୍ଠ କାବ୍ୟ । କିନ୍ତୁ ଭାବର ଗମ୍ଭୀରତା ଓ ଗୂଢ଼ତତ୍ତ୍ୱର ବିଚାର ଦୃଷ୍ଟିରୁ ଭାଗବତର ସମସ୍ତ କଥା ସହଜରେ ବୋଧଗମ୍ୟ ନୁହେଁ । ସେଥିପାଇଁ କୁହାଯାଇଛି--**'ବିଦ୍ୟାବତାଂ ଭାଗବତେ ପରୀକ୍ଷା'** - ଭାଗବତରେ ବିଦ୍ୱାନ୍‌ମାନଙ୍କର ପରୀକ୍ଷା ହୁଏ ।

## ମଙ୍ଗଳାଚରଣ

ମଙ୍ଗଳାଚରଣର ଉଦ୍ଦେଶ୍ୟ ହେଉଛି ବିଘ୍ନବିନାଶନ, ଇଷ୍ଟଦେବତାଙ୍କର ସ୍ଥାପନା ଓ ସମ୍ପୂର୍ଣ୍ଣ ଗ୍ରନ୍ଥର ପ୍ରତିପାଦ୍ୟ ବସ୍ତୁ । ଭାଗବତର ପ୍ରଥମ ଶ୍ଳୋକ ହେଲା--

**ଜନ୍ମାଦ୍ୟସ୍ୟ ଯତୋଽନ୍ୱୟାଦିତରତଶ୍ଚାର୍ଥେ ଷ୍ୱଭିଜ୍ଞଃ ସ୍ୱରାଟ୍**
**ତେନେ ବ୍ରହ୍ମହୃଦା ଯ ଆଦିକବୟେ ମୁହ୍ୟନ୍ତି ଯତ୍‌ସୂରୟଃ ।**
**ତେଜୋବାରିମୃଦାଂ ଯଥା ବିନିମୟୋ ଯତ୍ର ତ୍ରିସର୍ଗୋଽମୃଷା**
**ଧାମ୍ନା ସ୍ୱେନ ସଦା ନିରସ୍ତକୁହକଂ ସତ୍ୟପରଂ ଧୀମହି ।।**

ଏଥିରେ ପରମ ସତ୍ୟରୂପୀ ପରମେଶ୍ୱରଙ୍କୁ ପ୍ରଣାମ କରାଯାଇଛି । 'ନିରସ୍ତକୁହକ' ଶବ୍ଦରେ କୁହକ ରୂପକ ଅବିଦ୍ୟାର ବା ବିଘ୍ନର ବିନାଶ । 'ସତ୍ୟଂପରଂ' ଶବ୍ଦରେ ପରମ ସତ୍ୟରୂପୀ ଇଷ୍ଟଦେବତାଙ୍କର ସ୍ଥାପନା ଏବଂ ସେହି ପରମାତ୍ମାଙ୍କର ସ୍ୱରୂପ ଦର୍ଶନ ହେଉଛି ପ୍ରତିପାଦ୍ୟ ବିଷୟ ।

ପରମାତ୍ମା -- ଯାହାଙ୍କଠାରୁ ଏହି ଜଗତ ଉତ୍ପନ୍ନ, ଯେ ସ୍ୱରାଟ୍ ବା ସ୍ୱୟଂପ୍ରକାଶ, ଅଭିଜ୍ଞ, ବ୍ରହ୍ମାଙ୍କୁ ବେଦ ପ୍ରଦାନ କରିଥିଲେ, ଯାହାଙ୍କ ମାୟାରେ ବିଜ୍ଞବ୍ୟକ୍ତିମାନେ ମୋହିତ ହୋଇଯାଆନ୍ତି, ସେହି ପରମ ସତ୍ୟକୁ ଆମେ ଧ୍ୟାନ କରୁଛୁ । ଦ୍ୱିତୀୟ ଶ୍ଳୋକରେ **'ଧର୍ମଃ ପ୍ରୋଜ୍‌ଝିତକୈତବଃ'** ବା କପଟରହିତ ଧର୍ମ କ'ଣ - ତାହା ପ୍ରତିପାଦନ କରାଯାଇଛି । ଏହି ଧର୍ମର ଅଧିକାରୀ କେବଳ ସେହିମାନେ, ଯେଉଁମାନେ ନିର୍ମତ୍ସର ବା ଈର୍ଷ୍ୟାରହିତ(**ନିର୍ମତ୍ସରାଣାଂ ସତାମ୍**) । ଏଥିରେ ତ୍ରିତାପ(ଆଧ୍ୟାତ୍ମିକ, ଆଧିଭୌତିକ ଓ ଆଧିଦୈବିକ)ର ଖଣ୍ଡନ କରାଯାଇଛି । ଏହା ଶିବଦ ବା ମଙ୍ଗଳମୟ । ଯେଉଁମାନେ ଏହାକୁ ଶୁଣନ୍ତି ଈଶ୍ୱର ସେମାନଙ୍କ ହୃଦୟରେ ଅବରୁଦ୍ଧ (**ସଦ୍ୟୋହୃଦ୍ୟବରୁଧ୍ୟତେ**) ହୋଇଯାଆନ୍ତି । ତୃତୀୟ ଶ୍ଳୋକରେ

କୁହାଯାଇଛି, ବେଦ ନିଗମ କଳ୍ପତରୁ । କାମଧେନୁ ଓ କଳ୍ପତରୁ ଇଚ୍ଛା ପୂରଣ କରନ୍ତି, କିନ୍ତୁ ଏହାଦ୍ୱାରା ବାସନାର ଶେଷ ହୁଏ ନାହିଁ । କିନ୍ତୁ ଭାଗବତର ଉପାସନାଦ୍ୱାରା ବାସନା ଦୂରହୋଇଯାଏ । ଏହାର ଫଳ ରସମୟ । ଶୁକଙ୍କ ମୁହଁରୁ ଆସିଥିବା ହେତୁ ଅମୃତତୁଲ୍ୟ(ଶୁକମୁଖାଦମୃତଦ୍ରବସଂଯୁତମ୍) । ତେଣୁ ରସିକ ଓ ଭାବୁକମାନେ ଏହାକୁ ବାରମ୍ବାର ପାନକରନ୍ତୁ । ରସମାଲୟଂ- - ଆଲୟ ଶବ୍ଦର ଅର୍ଥ ହେଉଛି ଚିରକାଳ । ଲୟଂ ଯାବତ୍ । ଭାଗବତ ଚିରକାଳପାଇଁ ଗ୍ରନ୍ଥ ।

ନୈମିଷାରଣ୍ୟରେ ଶ୍ରଦ୍ଧାବାନ୍ ହୋଇ ଶୌନକାଦି ଋଷିମାନେ ଶ୍ରୀ ସୂତଙ୍କୁ ଯେଉଁ ଛ'ଟି ପ୍ରଶ୍ନ ପଚାରିଲେ ତାହାର ଉତ୍ତର ସେ ଭାଗବତ କଥାରେ ଦେଉଛନ୍ତି । ପ୍ରଥମ ପ୍ରଶ୍ନ ହେଉଛି, ପୁରୁଷର ଏକାନ୍ତ ଶ୍ରେୟ ବସ୍ତୁ କ'ଣ ? ଦ୍ୱିତୀୟ ପ୍ରଶ୍ନ - ଆତ୍ମା କିପରି ପ୍ରସନ୍ନ ହୁଏ ? ତୃତୀୟ ପ୍ରଶ୍ନ - ଭଗବାନ ଦେବକୀ ଓ ବସୁଦେବଙ୍କର ପୁତ୍ର ରୂପେ କାହିଁକି ଜନ୍ମ ହେଲେ ? ଚତୁର୍ଥ ପ୍ରଶ୍ନ- ଏହି ଅବତାରରେ ସେ କେଉଁ କେଉଁ ଉଦାର କର୍ମ ଓ ଲୀଳାମାନ ରଚନା କରିଥିଲେ ? ପଞ୍ଚମ ପ୍ରଶ୍ନ- ଭଗବାନ କେଉଁ କେଉଁ ଅବତାର ଗ୍ରହଣ କରିଥିଲେ ? ଏବଂ ଷଷ୍ଠ ପ୍ରଶ୍ନ ହେଉଛି, ଭଗବାନ ଶ୍ରୀକୃଷ୍ଣ ନିଜ ଧାମକୁ ଚାଲିଯିବା ପରେ ଧର୍ମ କାହାର ଶରଣ ବା ଆଶ୍ରୟ ନେଲା ? ଏହାର ଉତ୍ତରରେ ଶ୍ରୀ ସୂତ କହିଛନ୍ତି, ଭଗବାନଙ୍କଠାରେ ସର୍ବଦା ନିଷ୍କାମ ଭକ୍ତି ରଖିବା ହେଉଛି ସବୁଠାରୁ ଶ୍ରେୟ । ଭଗବାନଙ୍କଠାରେ ଏହି ଭକ୍ତି ରକ୍ଷାକରି ପାରିଲେ ଆତ୍ମାକୁ ପରମ ଆନନ୍ଦ ମିଳିପାରେ । ତୃତୀୟ ଓ ଚତୁର୍ଥ ପ୍ରଶ୍ନର ଉତ୍ତର ଦଶମ ସ୍କନ୍ଧରେ ବିସ୍ତାରିତ ଭାବରେ ଦିଆଯାଇଛି । ଭଗବାନଙ୍କର ବିଭିନ୍ନ ଅବତାର ବିଷୟ ପ୍ରଥମ ସ୍କନ୍ଧର ତୃତୀୟ ଅଧ୍ୟାୟ ଓ ଅନ୍ୟ ସ୍କନ୍ଧମାନଙ୍କରେ ଦିଆଯାଇଛି । ଷଷ୍ଠ ପ୍ରଶ୍ନର ଉତ୍ତର ହେଉଛି ଭଗବାନ ଶ୍ରୀକୃଷ୍ଣ ଧର୍ମଜ୍ଞାନାଦି ସହ ନିଜ ଧାମକୁ ଚାଲିଯିବା ପରେ ଭାଗବତ ପୁରାଣ ରୂପକ ସୂର୍ଯ୍ୟ ଉଦିତ ହୋଇଛନ୍ତି ଏବଂ ତାହାକୁ ହିଁ ଧର୍ମ ଆଶ୍ରୟ କରିଛି ।

**କୃଷ୍ଣେ ସ୍ୱଧାମୋପଗତେ ଧର୍ମଜ୍ଞାନାଦିଭିଃ ସହ**
**କଲୌ ନଷ୍ଟଦୃଶାମେଷ ପୁରାଣାର୍କୋଧୁନୋଦିତଃ ।**

ଶ୍ରୀମଦ୍‌ଭାଗବତକୁ ଶ୍ରୀକୃଷ୍ଣଙ୍କର ସ୍ୱରୂପ ବୋଲି ଗ୍ରହଣ କରାଯାଏ ।

## ଗ୍ରନ୍ଥ ହିଁ ଭଗବାନ, ଗ୍ରନ୍ଥ ହିଁ ଗୁରୁ

ଶ୍ରୀ ଜଗନ୍ନାଥ ଦାସ ଭାଗବତ ଲେଖିଯିବା ପରେ ତାଳପତ୍ର ପୋଥି ଆକାରରେ ଭାଗବତ ଗ୍ରନ୍ଥ ଓଡ଼ିଶାର ଗ୍ରାମେ ଗ୍ରାମେ ପୂଜିତ ହେବାକୁ ଲାଗିଲା ଏବଂ ଯେଉଁଠାରେ ବା ଯେଉଁ ଗୃହରେ ଏହା ରଖାଗଲା ତାହାର ନାମହେଲା ଭାଗବତ ଗାଦି ବା ଭାଗବତ ମନ୍ଦିର । ଆସାମରେ ଧର୍ମ ବିପ୍ଳବ ଘଟାଇଥିବା ଶ୍ରୀ ଶଙ୍କରଦେବ ତାଙ୍କ ରଚିତ ଭାଗବତ ପୋଥିକୁ ପରମେଶ୍ୱରଙ୍କର ମାନ୍ୟତା ଦେଇଛନ୍ତି । ଶ୍ରୀ ଜଗନ୍ନାଥଙ୍କୁ ଛାଡ଼ିଦେଲେ ଶଙ୍କର ଧର୍ମୀମାନେ କୌଣସି ପିତୁଳା ପୂଜା ବା ମୂର୍ତ୍ତି ଦର୍ଶନରେ ବିଶ୍ୱାସ କରନ୍ତି ନାହିଁ । ଶିଖମାନେ ସେହିପରି 'ଗୁରୁଗ୍ରନ୍ଥସାହେବ'କୁ ସର୍ବାଧିକ ମାନ୍ୟତା ଦିଅନ୍ତି । ଶିଖମାନଙ୍କର ଦଶମ ଗୁରୁ ଗୁରୁ ଗୋବିନ୍ଦ ସିଂହ କହିଯାଇଥିଲେ ଯେ ତାଙ୍କ ପରେ ଆଉ କୌଣସି ଗୁରୁ ରହିବେ ନାହିଁ । ଏହି ଗ୍ରନ୍ଥ ହିଁ ହେବ ସମସ୍ତଙ୍କର ଗୁରୁ । ଖ୍ରୀଷ୍ଟାନ୍ ଧର୍ମରେ ବାଇବଲ୍ ଓ ଇସଲାମ୍ ଧର୍ମରେ କୋରାନ୍‌କୁ ସେହିପରି ପବିତ୍ର ସ୍ଥାନ ଦିଆଯାଇଥାଏ । ଏକାଦଶ ସ୍କନ୍ଧର ତୃତୀୟ ଅଧ୍ୟାୟରେ **'ଭକ୍ତ୍ୟୈକୟେଶଂ ଗୁରୁଦେବତାତ୍ମା'** କଥା କୁହାଯାଇଛି । ଏହାର ଅର୍ଥ ହେଉଛି, ଗୁରୁ, ଦେବତା ଓ ଆତ୍ମାକୁ ଏକ ବୋଲି ଅନୁଭବ କରିବ । ଅର୍ଥାତ୍ ମୁଁ, ପରମାତ୍ମା ଓ ଗୁରୁ ଏ ତିନିହେଁ ହେଉଛନ୍ତି ଏକ । ମୁଁ ଓ ପରମାତ୍ମାଙ୍କ କଥା ତ ଚିନ୍ତା କରାଯାଇପାରିବ । କିନ୍ତୁ ସଦ୍‌ଗୁରୁ ନମିଳିଲେ କ'ଣ କରିବ ? ବିବେକାନନ୍ଦଙ୍କୁ ରାମକୃଷ୍ଣ ପରମହଂସ ମିଳିଥିଲେ ।

କିନ୍ତୁ ସମସ୍ତଙ୍କୁ ସେପରି ଗୁରୁ ମିଳିବା କଷ୍ଟକର । ସେଥିପାଇଁ ଗ୍ରନ୍ଥକୁ ହିଁ ଗୁରୁ ବୋଲି ଗ୍ରହଣ କରିବା କଥା କୁହାଯାଇଛି । ଯଥା, ଗୁରୁଗ୍ରନ୍ଥ ସାହେବ । ସେଥିପାଇଁ ଭାଗବତକୁ ପରମାତ୍ମା ଓ ଗୁରୁଙ୍କ ସ୍ଥାନରେ ରଖାଯାଇଛି ।

ବିଶାଳ ଭାଗବତ ଗ୍ରନ୍ଥରେ ବହୁ ଉପାଖ୍ୟାନ ଜରିଆରେ ସଦ୍-ଅସଦ୍, ଧର୍ମ-ଅଧର୍ମ, ପାପ-ପୁଣ୍ୟ ଉଚିତ-ଅନୁଚିତ ଆଦି ସମସ୍ତ ବ୍ୟବହାର ବା ଆଚରଣର ଦୃଷ୍ଟାନ୍ତ ଦିଆଯାଇଛି । **ଆଚାରପ୍ରଭବୋ ଧର୍ମଃ, ଧର୍ମସ୍ୟ ପ୍ରଭୁରଚ୍ୟୁତଃ ।** ସଦାଚାର କ'ଣ - ତା' ଭାଗବତର ଛତ୍ରେ ଛତ୍ରେ ପ୍ରକଟିତ ହୋଇଛି ଏବଂ ଏହି ସଦାଚାରର ନିୟାମକ ହୋଇଛନ୍ତି ସ୍ୱୟଂ ଅଚ୍ୟୁତ । ଅଚ୍ୟୁତ ଶବ୍ଦର ଅର୍ଥ ହେଉଛି ନିଜ ଦର୍ଶିତ ଧର୍ମ ମାର୍ଗରୁ ଯେ ଚ୍ୟୁତ ହୁଅନ୍ତି ନାହିଁ ।

ଭଗବାନଙ୍କ ଲୀଳା ସମେତ ଏହାର କେତେଗୁଡ଼ିଏ ପ୍ରଧାନ ବିଷୟ ହେଲା ରୁଦ୍ରଗୀତ, ବେଣୁଗୀତ, ରାସଲୀଳା ଓ ଗୋପୀଗୀତ । ରାଜା ନିମିଙ୍କୁ ନବଯୋଗୀନ୍ଦ୍ରଙ୍କର ଉପଦେଶ । ଭିକ୍ଷୁଗୀତ - ଯେଉଁଥିରେ ଅବଧୂତଙ୍କର ଚବିଶ ଗୁରୁଙ୍କର କଥା କୁହାଯାଇଛି ଏବଂ କୃଷ୍ଣ-ଉଦ୍ଧବ ସମ୍ବାଦ--ଯାହାକି ଏକାଦଶ ସ୍କନ୍ଧର ବିଷୟବସ୍ତୁ । ଦଶମ ସ୍କନ୍ଧ ଓ ଏକାଦଶ ସ୍କନ୍ଧକୁ ଭାଗବତର ମୁଖ୍ୟ ଦୁଇ ସ୍କନ୍ଧ ବୋଲି ଧରାଯାଏ । ଦଶମ ସ୍କନ୍ଧରେ ଶ୍ରୀକୃଷ୍ଣଙ୍କର ଗୋପଲୀଳା, ମଥୁରାଲୀଳା ଓ ଦ୍ୱାରକାଲୀଳାର ସବିସ୍ତାର ବର୍ଣ୍ଣନା କରାଯାଇଛି । ଏକାଦଶ ସ୍କନ୍ଧରେ ଭାଗବତର ସାରତତ୍ତ୍ୱ ପ୍ରକାଶ ପାଇଛି । ନିମ୍ନରେ ଅତି ସଂକ୍ଷେପରେ ବିଭିନ୍ନ ସ୍କନ୍ଧର ଆଲୋଚନା କରାଗଲା ।

## ପ୍ରଥମ ସ୍କନ୍ଧ

ପ୍ରଥମ ସ୍କନ୍ଧ ସମ୍ପର୍କରେ ପ୍ରଥମରୁ କିଛି ଆଲୋଚନା କରାଯାଇଛି । ବର୍ତ୍ତମାନ କଥାବସ୍ତୁ ଆଲୋଚ୍ୟ । ଅଶ୍ୱତ୍ଥାମାର ବ୍ରହ୍ମାସ୍ତ୍ରରୁ ଶ୍ରୀକୃଷ୍ଣ ଅଭିମନ୍ୟୁଙ୍କ ସ୍ତ୍ରୀ ଉତ୍ତରାଙ୍କର ଗର୍ଭରକ୍ଷା କରୁଛନ୍ତି । ଉତ୍ତରାଙ୍କ ଗର୍ଭରେ ଥାଇ ପରିକ୍ଷିତ ଦେଖୁଛନ୍ତି, ଭଗବାନ ମାତାଙ୍କ ଗର୍ଭରେ ପ୍ରବେଶ କରି ଗଦା ଓ ଚକ୍ରଦ୍ୱାରା ବ୍ରହ୍ମାସ୍ତ୍ରକୁ ପ୍ରତିହତ କରୁଛନ୍ତି । ପୀତାମ୍ବରଧାରୀ ଘନଶ୍ୟାମଙ୍କର ଓଷ୍ଠରେ ସ୍ମିତହାସ୍ୟ । ଚାରିଆଡ଼କୁ ଅନାଇ ଦେଖୁଥିବାରୁ ତାଙ୍କର ନାମ ପରିକ୍ଷିତ । **ପରିତଃ ଈକ୍ଷଣତ୍ୱାତ୍ ଇତି ପରିକ୍ଷିତଃ ।** ବିଦୁର ଧୃତରାଷ୍ଟ୍ରଙ୍କୁ ଆଉ ଘାଣ୍ଟି ନ ହୋଇ ବନକୁ ଯିବାପାଇଁ ଉପଦେଶ ଦେଉଛନ୍ତି । ବିଦୁର ଓ ଗାନ୍ଧାରୀଙ୍କ ସହିତ ଧୃତରାଷ୍ଟ୍ର ବନଯାତ୍ରା କରୁଛନ୍ତି । ପରେ ପରେ ଅର୍ଜୁନ ଦ୍ୱାରକାରୁ ଆସି ଶୋକାର୍ତ୍ତଭାବରେ ଯୁଧିଷ୍ଠିରଙ୍କୁ ଶ୍ରୀକୃଷ୍ଣଙ୍କର ସ୍ୱଧାମଯାତ୍ରା କଥା କହୁଛନ୍ତି । ସମ୍ବାଦ ଶୁଣିବାମାତ୍ରେ କୁନ୍ତୀଙ୍କର ପ୍ରାଣ ଚାଲିଯାଉଛି । ପରିକ୍ଷିତଙ୍କୁ ରାଜମୁକୁଟ ପିନ୍ଧାଇ ଯୁଧିଷ୍ଠିର ଚାଲିଯାଉଛନ୍ତି । ଦ୍ରୌପଦୀ ଧ୍ୟାନସ୍ଥ ହୋଇ ଗୋବିନ୍ଦଙ୍କ ଚରଣରେ ଲୀନ ହେଉଛନ୍ତି ଏବଂ ଅର୍ଜୁନଙ୍କ ସମେତ ଅନ୍ୟ ପାଣ୍ଡବମାନେ ଧ୍ୟାନସ୍ଥ ହୋଇ ଦେହତ୍ୟାଗ କରୁଛନ୍ତି ।

ପରିକ୍ଷିତ ରାଜା ହୋଇ ଦିଗ୍‌ବିଜୟୀ ହେଲେ । ଦିନେ ବାଟରେ ଯାଉଥିବା ବେଳେ ଦେଖିଲେ, ଗୋଟିଏ ଷଣ୍ଢ ଠିଆ ହୋଇଛି ଓ ତାର ତିନୋଟି ପାଦ କଟିଯାଇଛି ଏବଂ ତା ପାଖରେ ଏକ ଦୁର୍ବଳ ଭୋକିଲା ଗାଈ । ଏକ ରାଜବେଶଧାରୀ ଶୂଦ୍ରବ୍ୟକ୍ତି ତାଙ୍କୁ ମାରିବାପାଇଁ ଖଣ୍ଡାଧରି ଠିଆହୋଇଛି । ଷଣ୍ଢ ଏବଂ ଗାଈ ହେଲେ, ଧର୍ମ ଓ ପୃଥିବୀ; ରାଜବେଶୀ ଶୂଦ୍ର ହେଉଛି କଳି । ଅର୍ଥାତ୍ କଳିଯୁଗ ପୃଥିବୀରେ ପ୍ରବେଶ କରିଛି, ଯାହାଫଳରେ ପୃଥିବୀକୁ ଦୁର୍ଗତି ଓ ଧର୍ମହାନି । ପରିକ୍ଷିତ କଳିକୁ ଶାସ୍ତି ଦେବାପାଇଁ ନିଜର ଖଡ୍‌ଗକୁ କୋଷମୁକ୍ତ କଲେ । କଳି ତାଙ୍କର ଶରଣ ପଶି କହିଲା--କାଳଚକ୍ର ଅନୁସାରେ ମୋର ସମୟ ଆସିଯାଇଛି, ତେଣୁ ମୋତେ ହତ୍ୟା କରନ୍ତୁ ନାହିଁ । ପରିକ୍ଷିତ କହିଲେ, ଶରଣାଗତକୁ ମୁଁ ହତ୍ୟାକରେ ନାହିଁ; କିନ୍ତୁ ତୁ ମୋର

ରାଜ୍ୟ ଛାଡ଼ି ଚାଲିଯାଅ । କଳି କହିଲା, ଚାରିଆଡ଼େ ତ ଆପଣଙ୍କ ରାଜ୍ୟ । ମୁଁ କୁଆଡ଼େ ଯିବି ? ମୋତେ ରହିବାପାଇଁ ଏକ ନିର୍ଦ୍ଦିଷ୍ଟ ସ୍ଥାନ ଦିଆଯାଉ । ପରିକ୍ଷିତ କହିଲେ, ଠିକ୍ ଅଛି--ଯେଉଁଠି ଦ୍ୟୂତ, ମଦିରା, ବ୍ୟଭିଚାର ଓ ହିଂସା ରହିଛି ସେହି ଚାରୋଟି ସ୍ଥାନରେ ରହ । ପୁଣି କଳି ଆଉ ଏକ ସ୍ଥାନ ମାଗିବାରୁ ତାକୁ ସୁବର୍ଣ୍ଣର କାରବାର ହେବା ସ୍ଥାନଟି ମଧ୍ୟ ରାଜା ଦାନ କଲେ ।

ଦ୍ୟୂତଂ ପାନଂ ସ୍ତ୍ରିୟଃ ସୂନା ଯତ୍ରାଧର୍ମଃ ଚତୁର୍ବିଧଃ
ପୁନଶ୍ଚ ଯାଚମାନାୟ ଜାତରୂପମଦାତ୍ ପ୍ରଭୁଃ ।

ଦିନେ ରାଜା ପରିକ୍ଷିତ ମୃଗୟାକୁ ଯାଇଥିଲେ । ପ୍ରବଳ ଖରା ଓ ଭୋକ ଉପାସରେ ଅସ୍ଥିର ହୋଇ ସେ ଶମୀଋଷିଙ୍କ ଆଶ୍ରମରେ ପହଞ୍ଚିଲେ । ଋଷି ସମାଧିସ୍ଥ । ସେ ରାଜାଙ୍କର ଆସିବା କଥା ଜାଣି ପାରିଲେ ନାହିଁ । କିନ୍ତୁ ଋଷି କିଛି ନ କହିବାରୁ ଓ ତାଙ୍କୁ ଆତିଥ୍ୟ ନ ଦେବାରୁ କ୍ଳାନ୍ତ ବିବଶ ରାଜା କ୍ରୋଧାବିଷ୍ଟ ହୋଇ ଏକ ମୃତ ସର୍ପକୁ ଋଷିଙ୍କ ବେକରେ ଗଳାଇଦେଲେ ଓ ରାଜପ୍ରାସାଦକୁ ଫେରି ଆସିଲେ । ଦୂରରେ ଖେଳୁଥିବା ଋଷିକୁମାର ପିତୃ ଅପମାନରେ ଅତିଶୟ କ୍ଷୁବ୍ଧ ଓ କ୍ରୋଧିତ ହୋଇ ରାଜାଙ୍କୁ ଅଭିଶାପ ଦେଲେ--ଆଜିଠାରୁ ସପ୍ତମ ଦିନରେ ତୁମକୁ ତକ୍ଷକ ସର୍ପ ଦଂଶନ କରୁ । ପରିକ୍ଷିତ ପ୍ରାସାଦରେ ପହଞ୍ଚି ଅନୁତପ୍ତ ହେଲେ । ବର୍ତ୍ତମାନ ଏହି ଅଭିଶାପ ସମ୍ବାଦ ପାଇ ଏହାକୁ ତାଙ୍କ ପ୍ରତି ଶାସ୍ତିରୂପକ ଆଶୀର୍ବାଦ ବୋଲି ମନେ କଲେ ଓ ପୁତ୍ର ଜନ୍ମେଜୟଙ୍କୁ ଅଭିଷିକ୍ତ କରି ରାଜ୍ୟ, ସମ୍ପଦ, ପ୍ରଜା ଓ ପ୍ରିୟଜନ ସମସ୍ତଙ୍କୁ ଛାଡ଼ି ଗଙ୍ଗାକୂଳକୁ ଚାଲିଗଲେ ଓ ସେଠାରେ ଉପସ୍ଥିତ ମୁନି ଋଷିମାନଙ୍କୁ ଭଗବାନଙ୍କ କଥା ଶୁଣାଇବାପାଇଁ ପ୍ରାର୍ଥନା କଲେ । ଏହି ସମୟରେ ପରମ ଅବଧୂତ ମହାମୁନି ଶୁକଦେବ ଭଗବତ୍‌ପ୍ରେରିତ ହୋଇ ସେଠାରେ ଉପସ୍ଥିତ ହେଲେ । ପରିକ୍ଷିତ ମୁନିଙ୍କୁ ପ୍ରଣାମ କରି ତାଙ୍କୁ ତିନୋଟି ପ୍ରଶ୍ନ ପଚାରିଲେ । ମୃତ୍ୟୁକାଳ ଉପସ୍ଥିତ ହେଲେ ମନୁଷ୍ୟର କ'ଣ କରିବା ଉଚିତ ? କ'ଣ ଶୁଣିବା ଉଚିତ ? କ'ଣ ଜପ କରିବା ଉଚିତ ?

# ଦ୍ୱିତୀୟ ସ୍କନ୍ଧ

## ସାଧନ

ଦଶ ଅଧ୍ୟାୟ ବିଶିଷ୍ଟ ଦ୍ୱିତୀୟ ସ୍କନ୍ଧରେ ଶୁକଦେବ ଭାଗବତ ଶୁଣାଇବା ଆରମ୍ଭ କରୁଛନ୍ତି । ସେ ରାଜାଙ୍କ ପ୍ରଶ୍ନର ପ୍ରଶଂସା କରି କହୁଛନ୍ତି--ତୁମେ ଯଥାର୍ଥ ପ୍ରଶ୍ନ କରିଛ । 'ବରୀୟାନେଷ ତେ ପ୍ରଶ୍ନଃ', କେବଳ ଭଗବାନଙ୍କୁ ସ୍ମରଣ କରିବା, ତାଙ୍କ କଥା ଶୁଣିବା ଓ ତାଙ୍କର ଜପ ତପ କରିବା ଉଚିତ ।

ତସ୍ମାତ୍ ଭାରତ ସର୍ବାତ୍ମା ଭଗବାନୀଶ୍ୱରୋ ହରିଃ
ଶ୍ରୋତବ୍ୟଃ କୀର୍ତ୍ତିତବ୍ୟଶ୍ଚ ସ୍ମର୍ତ୍ତବ୍ୟଶ୍ଚେଚ୍ଛତାଭୟମ୍ ।

ଭଗବାନଙ୍କର ଶ୍ରବଣ, କୀର୍ତ୍ତନ ଓ ସ୍ମରଣ ପ୍ରତ୍ୟେକ ମନୁଷ୍ୟପାଇଁ ଅଭୟପ୍ରଦ । ତୁମକୁ ସାତ ଦିନ ସମୟ ମିଳିଛି; କିଛି କମ ନୁହେଁ । ଖଟ୍ୱାଙ୍ଗରାଜାଙ୍କୁ ଅଢ଼େଇ ଘଡ଼ି ମାତ୍ର ସମୟ ମିଳିଥିଲା ଏବଂ ତାଙ୍କର କଲ୍ୟାଣ ହୋଇଥିଲା । ଭଗବାନଙ୍କୁ କିପରି ଧ୍ୟାନ କରିବାକୁ ହେବ ତାହା ଶୁକଦେବ ପରିକ୍ଷିତଙ୍କୁ ଉପଦେଶ ଦେଲେ । ଆସନରେ ଦୃଢ଼ ହୋଇ ବସି ପ୍ରାଣାୟାମପୂର୍ବକ ଭଗବାନଙ୍କର ସ୍ଥୂଳ ବିରାଟ ରୂପକୁ ଧ୍ୟାନ କରିବା ଦରକାର । ଏହି ବିରାଟ ରୂପ ହେଉଛି ସାରା ସଂସାର, ଯାହାକି ଭଗବାନଙ୍କର

ଶରୀର । ବେକର ଉପରି ଭାଗରେ ସତ୍ୟ, ଜନ ଆଦି ଲୋକ; ଅଣ୍ଟାର ନିମ୍ନ ଭାଗରେ ତଳ, ବିତଳ, ପାତାଳ ଆଦି ଲୋକ; ହୃଦୟରେ ଧର୍ମ; ପିଠିରେ ଅଧର୍ମ; ଅଧର ଓ ଓଷ୍ଠରେ ଲୋଭ; ବାହୁ ଦୁଇଟିରେ ଇନ୍ଦ୍ର; ନାଡ଼ିମାନଙ୍କରେ ନଦୀଗଣ; ଅସ୍ଥି ସମୂହରେ ପର୍ବତ ଓ ରୋମାବଳୀରେ ବୃକ୍ଷରାଜି । ତେଣୁ ଯୁଆଡ଼େ ଚାହିଁବ, ତାହା ଭଗବାନଙ୍କର ରୂପ ।

**ସ୍ଥୂଳେ ଭଗବତୋ ରୂପେ ମନଃ ସନ୍ଧାରୟେତ୍ ଧିୟା ।**
(୨ ୧ : ୨୩)

ହୃଦପଦ୍ମରେ ଇଷ୍ଟଦେବ ଭଗବାନଙ୍କୁ ସ୍ଥାପନ କରିବା ଉଚିତ । ପାଦପଦ୍ମରୁ ମୁଖପଦ୍ମପର୍ଯ୍ୟନ୍ତ ତାଙ୍କ ରୂପକୁ ବାରମ୍ବାର ଧ୍ୟାନରେ ଦେଖିବା ଓ ମନେ ମନେ ପୂଜା କରିବା । ଯେ ପର୍ଯ୍ୟନ୍ତ ସାକ୍ଷୀ ଓ ଦ୍ରଷ୍ଟା ପରମାତ୍ମାଙ୍କଠାରେ ଭକ୍ତି ଯୋଗ ନ ହୋଇଛି, ସେପର୍ଯ୍ୟନ୍ତ ଏହା କରିବାକୁ ପଡ଼ିବ । ଯେପରିକି ନିଜର ରୂପକୁ ଏକ ନିର୍ମଳ ଦର୍ପଣଦ୍ୱାରା ଦେଖାଯାଏ, ସେହିପରି ନିର୍ମଳ ବୁଦ୍ଧିରେ ଆତ୍ମସାକ୍ଷାତ୍‌କାର ଆବଶ୍ୟକ । ଏଇ ସ୍ଥିତିରେ ପହଞ୍ଚିଲେ ଜନ୍ମ ମରଣର ଭୟ ନ ଥାଏ । ଏହାକୁ ପରମ ପଦ ବୋଲି କୁହାଯାଏ ।

ଦୁଇ ପ୍ରକାର ମୁକ୍ତି । ସଦ୍ୟ ମୁକ୍ତି ଓ କ୍ରମ ମୁକ୍ତି । ପ୍ରଥମ ମୁକ୍ତିର କ୍ରମ ହେଉଛି ପାଦର ଗୋଇଠିକୁ ମଳଦ୍ୱାରରେ ଲଗାଇ ପ୍ରାଣବାୟୁକୁ ଉପରକୁ ନେବାକୁ ହେବ । ଦେହରେ ସାତୋଟି ଚକ୍ର ଅଛି -- ମୂଳାଧାର, ସ୍ୱାଧିଷ୍ଠାନ, ମଣିପୂର, ଅନାହତ, ବିଶୁଦ୍ଧ, ଆଜ୍ଞାଚକ୍ର ଓ ସହସ୍ରାର । ପ୍ରାଣବାୟୁକୁ ଏହି ସବୁ ଚକ୍ରମାନ ପାରକରି ବ୍ରହ୍ମରନ୍ଧ୍ରରେ ବାହାର କରିଦେବା ହେଉଛି ସଦ୍ୟମୁକ୍ତି । କ୍ରମ ମୁକ୍ତିର କ୍ରମ ହେଉଛି, ଯଦି ଲୋକଲୋକାନ୍ତର ଭ୍ରମଣ କରିବାର ଇଚ୍ଛା ତା'ହେଲେ ମନ ଇନ୍ଦ୍ରିୟମାନଙ୍କ ସହିତ ପ୍ରାଣବାୟୁକୁ ବହିର୍ଗତ କରେ । ଅର୍ଥାତ୍ ସୁଷୁମ୍ନା ମାର୍ଗ (Spinal cord) ରେ ପ୍ରାଣ ଚାଲିଯାଏ । ପ୍ରଥମେ ଅଗ୍ନିଲୋକ ଦେଇ କ୍ରମେ କ୍ରମେ ତାହା ବ୍ରହ୍ମଲୋକରେ ପହଞ୍ଚେ । ବ୍ରହ୍ମଲୋକରେ ପହଞ୍ଚିଲେ ଜୀବର କୌଣସି ଦୁଃଖ ନ ଥାଏ । ତଥାପି ପ୍ରାଣୀମାନଙ୍କ ଦୁଃଖରେ ଦୁଃଖୀହୋଇ ସେ ପୃଥିବୀକୁ ଚାଲିଆସେ ଏବଂ ତା'ପରେ ପୃଥିବୀରୁ ଜଳ, ଜଳରୁ ତେଜ, ତେଜରୁ ବାୟୁ ଓ ବାୟୁରୁ ଆକାଶମୟ ହୋଇ କ୍ରମେ ବ୍ରହ୍ମମୟ ହୋଇଯାଏ । ଶ୍ରୀ ଶୁକଦେବ ଏହି ମୁକ୍ତି ବର୍ଣ୍ଣନା କରିଛନ୍ତି ।

ଶ୍ରୀ ଶୁକଦେବ କହିଛନ୍ତି ଯଦି କୌଣସି କାର୍ଯ୍ୟପାଇଁ କାମନା ଥାଏ, ତାହାହେଲେ ପୃଥକ୍ ପୃଥକ୍ ଦେବତାଙ୍କର ଆରାଧନା କରିବା ଉଚିତ । ସନ୍ତାନ ଲାଭପାଇଁ ପ୍ରଜାପତି, ରୂପଲାଭ ପାଇଁ ଗନ୍ଧର୍ବ, ବିଦ୍ୟାଲାଭ ପାଇଁ ଭଗବାନ ଶଙ୍କର ଏବଂ ଦାମ୍ପତ୍ୟପାଇଁ ଉମାଭଗବତୀ, ସୁନ୍ଦର ବରପାଇଁ ଭଗବତୀ ପରାମ୍ବାଙ୍କୁ ଆରାଧନା କରିବାକୁ ହେବ । କିନ୍ତୁ ଯଦି କାମନା ବାସନା ନ'ରହେ, ତା'ହେଲେ ତୀବ୍ର ଭକ୍ତିଯୋଗରେ ଭଗବାନ ଶ୍ରୀହରିଙ୍କର ଆରାଧନା ଆବଶ୍ୟକ ।

**ଅକାମଃ ସର୍ବକାମୋ ବା ମୋକ୍ଷକାମ ଉଦାରଧୀଃ**
**ତୀବ୍ରେଣ ଭକ୍ତିଯୋଗେନ ଯଜେତ ପୁରୁଷଂ ପରମ୍ ।**

ପ୍ରାଣୀମାନେ ଆହାର, ନିଦ୍ରା, ଭୟ, ମୈଥୁନ ଦ୍ୱାରା ପରିଚାଳିତ ହୁଅନ୍ତି । ଅନ୍ୟମାନଙ୍କଠାରୁ ମନୁଷ୍ୟର ବିଶେଷତ୍ୱ ହେଉଛି ସେ ତାର ସ୍ରଷ୍ଟା ଭଗବାନଙ୍କୁ ଆରାଧନା କରେ ।

ଏହାପରେ ସୃଷ୍ଟିର ପ୍ରଶ୍ନ । ନିରୀହ ବା ନିଃସ୍ପୃହ ଈଶ୍ୱର କିପରି ସୃଷ୍ଟିର ଇଚ୍ଛା କରନ୍ତି ? ସେ ସାକାର ନା ନିରାକାର ? ଯଦି ସାକାର ତା'ହେଲେ ତାଙ୍କୁ କିଏ ଆକାର ଦେଲା ? ଯଦି ନିରାକାର ତେବେ ସୃଷ୍ଟି ସାକାର ହେଲା କିପରି ? ଏହିସବୁ ପ୍ରଶ୍ନ ପରିକ୍ଷିତ ଶୁକଦେବଙ୍କୁ ପଚାରୁଛନ୍ତି ଏବଂ ସବୁ ପ୍ରଶ୍ନର ଉତ୍ତର ଶୁକଦେବ ମଙ୍ଗଳାଚରଣରେ ଦେଉଛନ୍ତି । ବାରମନ୍ତ୍ର ପର୍ଯ୍ୟନ୍ତ

ଶୁକଦେବ ନିର୍ଗୁଣ, ନିରାକାର ଓ ନିର୍ବିକାରଙ୍କର ସ୍ତୁତି କରିଛନ୍ତି । ସେଥିରେ ମଧ୍ୟ ସଗୁଣ ଭଗବାନଙ୍କର ସ୍ତୁତି ଅଛି । **'କିରାତହୂଣାନ୍ଧ୍ରପୁଲିନ୍ଦପୁଲ୍‌କସାଃ'**ର ଉଦ୍ଧାର କରି ସେ ଭଗବାନ ଶ୍ରୀହରିଙ୍କର ବନ୍ଦନା କରିଛନ୍ତି । ଶେଷରେ **'ସୋଽଙ୍ଗ କୃଷୀଷ୍ଟ ଭଗବାନ୍ ବଚାଂସି ମେ'** ବା ଭଗବାନ ମୋର ବାଣୀରେ ବସିଯାନ୍ତୁ ବୋଲି ପ୍ରାର୍ଥନା କରିଛନ୍ତି ।

ମଙ୍ଗଳାଚରଣ ପରେ ଦେବର୍ଷି ନାରଦ ବ୍ରହ୍ମାଙ୍କୁ ପଚାରୁଛନ୍ତି, ଆମେମାନେ ନିଜକୁ କିପରି ଜାଣିବୁ ? ଏହି ସଂସାର କାହା ମଧ୍ୟରେ ଜନ୍ମ ହୁଏ, କାହା ମଧ୍ୟରେ ଲୀନ ହୁଏ ଓ ଏହାର ପ୍ରକୃତ ପ୍ରଭୁ କିଏ ? ବ୍ରହ୍ମା ଉତ୍ତର ଦେଲେ, ଅଦ୍ୱିତୀୟ ପରମାତ୍ମା ହେଉଛନ୍ତି ସୃଷ୍ଟିର ଜନକ, ସୃଷ୍ଟିର ପାଳକ ଓ ସୃଷ୍ଟି ତାଙ୍କଠାରେ ଲୀନ ହୁଏ । ପରମାତ୍ମା ସୃଷ୍ଟିପାଇଁ ନିଜର ଇଚ୍ଛାଶକ୍ତି ପ୍ରକୃତିକୁ ଆଦେଶ ଦେଲେ । ପ୍ରକୃତିରୁ ଦ୍ରବ୍ୟ ଶକ୍ତି ବା ସ୍ଥୁଳ ଶରୀର ଓ ପଞ୍ଚମହାଭୂତ ଆଦିର ସୃଷ୍ଟି ହେଲା । ମହତତ୍ତ୍ୱଦ୍ୱାରା ଜ୍ଞାନଶକ୍ତି ଓ ମନ ଅହଙ୍କାର ଆଦି ସୃଷ୍ଟି ହେଲା । ଅହଙ୍କାରରୁ କ୍ରିୟାଶକ୍ତି, ମୁଁ ବା ମୋର ବୋଲି ଭାବନା ଓ ଦଶ ଇନ୍ଦ୍ରିୟର ସୃଷ୍ଟି ହେଲା । ବ୍ରହ୍ମାଣ୍ଡ ରୂପକ ଅଣ୍ଡାକୁ ଭଗବାନ ଜୀବିତ କରିବାରୁ ଏଥିରୁ ସହସ୍ରଶୀର୍ଷା, ସହସ୍ରାକ୍ଷ ଓ ସହସ୍ରପାଦ ବିରାଟପୁରୁଷ ପ୍ରକଟିତ ହେଲେ । ତାଙ୍କର ଗୋଟିଏ ଗୋଟିଏ ଅଙ୍ଗରୁ ଚଉଦ ଭୁବନ ବାହାରିଲା । ତାଙ୍କର ମୁହଁରୁ ବ୍ରାହ୍ମଣ, ବାହୁରୁ କ୍ଷତ୍ରିୟ, ଉଦରରୁ ବୈଶ୍ୟ, ପାଦରୁ ଶୂଦ୍ର । ତାଙ୍କର ପାଦରୁ ଭୂଲୋକ, ନାଭିରୁ ଭୁବଲୋକ ଏବଂ ହୃଦୟରୁ ସ୍ୱର୍ଗଲୋକ କଳ୍ପିତ ହେଲା ।

କ୍ଷୀର ସମୁଦ୍ରରେ ଶୋଇଥିବା ଭଗବାନଙ୍କର ନାଭିରୁ ଏକ ପଦ୍ମଫୁଲ ବାହାରିଲା । ଏହି ପଦ୍ମଫୁଲରୁ ବ୍ରହ୍ମାଙ୍କର ଜନ୍ମ । ବ୍ରହ୍ମା ବହୁକାଳ ତପସ୍ୟାପରେ ଅନନ୍ତ ଭଗବାନଙ୍କର ଦର୍ଶନ କଲେ । ଭଗବାନ ବ୍ରହ୍ମାଙ୍କୁ ଆଦେଶ ଦେଲେ ସୃଷ୍ଟି କର । ବ୍ରହ୍ମା କହିଲେ, ସୃଷ୍ଟି କର୍ତ୍ତା ବୋଲି ମୋର ଅହଙ୍କାର ନ ଆସୁ । ଭଗବାନ ବ୍ରହ୍ମାଙ୍କୁ ଚତୁଃଶ୍ଳୋକୀ ଭାଗବତର ଦିବ୍ୟ ରହସ୍ୟ ପ୍ରଦାନ କଲେ । ଭଗବାନ କହୁଛନ୍ତି, ମୁଁ ପ୍ରଥମେ ନ ଥିଲି । ଆଉ କେହି ନ ଥିଲେ । ସୃଷ୍ଟି ଆଗରୁ ମୁଁ ଅଛି । ସୃଷ୍ଟି ଶେଷରେ ମଧ୍ୟ ମୁଁ ଥିବି ।

ଦ୍ୱିତୀୟ ଶ୍ଳୋକରେ ଭଗବାନ ମାୟାର ଲକ୍ଷଣ କହୁଛନ୍ତି । ନିଜେ ନ ଥାଇ ଯେ ସମ୍ପୂର୍ଣ୍ଣ ସୃଷ୍ଟିକୁ ଦେଖାଇପାରେ । ମା ଅର୍ଥାତ୍ ନାହିଁ, ଯା ଅର୍ଥାତ୍ ଯେ ଅଛି । ସ୍ୱୟଂ ପ୍ରକାଶ ନିତ୍ୟବିଦ୍ୟମାନ ଭଗବତ୍ ସତ୍ତାକୁ ସେ ଘୋଡ଼ାଇଦିଏ ।

ତାପରେ ତୃତୀୟ ଶ୍ଳୋକରେ ଜଗତର ବର୍ଣ୍ଣନା କରାଯାଇଛି । ଦେବତା, ମନୁଷ୍ୟ ଆଦି ଉତ୍ତମ, ଅଧମ ସମସ୍ତଙ୍କ ଶରୀରରେ ପଞ୍ଚମହାଭୂତ ପ୍ରବେଶ କରିଛନ୍ତି ଏବଂ ଭଗବାନ ଏହି ଶରୀରର ସ୍ରଷ୍ଟା ଭାବରେ ତାହା ମଧ୍ୟରେ ଆତ୍ମସ୍ୱରୂପରେ ବିଦ୍ୟମାନ ଅଛନ୍ତି । ଆତ୍ମ ଦୃଷ୍ଟିରେ ଦେଖିବାକୁ ଗଲେ ଭଗବାନଙ୍କର ଅତିରିକ୍ତ ଅନ୍ୟ କୌଣସି ବସ୍ତୁ ନଥିବା କାରଣରୁ ସେ ମଧ୍ୟ ଏଥିରେ ବିଦ୍ୟମାନ ନାହାନ୍ତି ବୋଲି କୁହାଯାଇପାରେ । 'ଏ ବ୍ରହ୍ମ ନୁହନ୍ତି, ଏ ବ୍ରହ୍ମ ନୁହନ୍ତି' -- ଏହି ନିଷେଧ ପଦ୍ଧତିରେ ଏବଂ 'ଏ ବ୍ରହ୍ମ, ଏ ବ୍ରହ୍ମ' -- ଏହି ଅନ୍ୱୟ ପଦ୍ଧତିରେ ଏହା ସିଦ୍ଧ ହେଉଛି ଯେ ସର୍ବାତୀତ ଏବଂ ସର୍ବସ୍ୱରୂପ ଭଗବାନ ହିଁ ସର୍ବତ୍ର ଓ ସର୍ବଦା ବିଦ୍ୟମାନ । ଆତ୍ମା ଓ ପରମାତ୍ମାର ତତ୍ତ୍ୱ ଜାଣିବାକୁ ହେଲେ ଏହା ହିଁ ଜାଣିବା ଆବଶ୍ୟକ ।

ତା'ପରେ ପୂର୍ବରୁ କୁହାଯାଇଥିବା ଭାଗବତର ସର୍ଗ, ବିସର୍ଗ ଆଦି ଦଶ ଲକ୍ଷଣର ବର୍ଣ୍ଣନା କରାଯାଇଛି । ସର୍ଗ ହେଉଛି ବ୍ରହ୍ମାଣ୍ଡ ରଚନା, ବିସର୍ଗ ଅର୍ଥାତ୍ ବିବିଧ ପ୍ରକାର ସୃଷ୍ଟି ଓ ବିବିଧ ପ୍ରାଣୀଙ୍କ ମଧ୍ୟରେ ଭିନ୍ନତା । ତୃତୀୟ ଓ ଚତୁର୍ଥ ସ୍କନ୍ଧରେ ଏହା ବର୍ଣ୍ଣିତ ହୋଇଛି । ପଞ୍ଚମ ସ୍କନ୍ଧରେ ସ୍ଥିତି -- ଏହି ଲକ୍ଷଣର ବର୍ଣ୍ଣନା । ପରମାତ୍ମା ଅନନ୍ତ । ଷଷ୍ଠ ସ୍କନ୍ଧରେ ପୋଷଣ ଅର୍ଥାତ୍ ଅନୁଗ୍ରହ । ଭଗବାନ କିପରି ଦେବ, ଦୈତ୍ୟ, ମନୁଷ୍ୟ ଓ ସମସ୍ତଙ୍କ ପ୍ରତି ଅନୁଗ୍ରହ କରନ୍ତି । ଊତି ଲକ୍ଷଣରେ କର୍ମବାସନା, ମନ୍ୱନ୍ତରରେ ସତ୍‌ଧର୍ମ, ଈଶାନୁକଥାରେ ଭଗବାନଙ୍କର ଲୀଳା ଓ ଭଗବତ୍ ଭକ୍ତମାନଙ୍କର ପବିତ୍ର ଚରିତ -- ଏହି ତିନୋଟି ଲକ୍ଷଣ

ଯଥାକ୍ରମେ ସପ୍ତମ, ଅଷ୍ଟମ ଓ ନବମ ସ୍କନ୍ଧରେ ବର୍ଣ୍ଣିତ ହୋଇଛି । ନିରୋଧ ଅର୍ଥାତ୍ ଅସତ୍‌ର ନିରାକରଣ ଦଶମ ସ୍କନ୍ଧରେ, ମୋକ୍ଷ ଅର୍ଥାତ୍ ଆତ୍ମାର ମୁକ୍ତି ଏକାଦଶ ସ୍କନ୍ଧରେ ଏବଂ ଆଶ୍ରୟ ତତ୍ତ୍ୱର ବର୍ଣ୍ଣନା ଦ୍ୱାଦଶ ସ୍କନ୍ଧରେ କରାଯାଇଛି । ପରମାତ୍ମା ହିଁ ଏକମାତ୍ର ଆଶ୍ରୟ -- ତାହା ପ୍ରତିପାଦିତ କରିବା ପାଇଁ ବାକି ଅନ୍ୟ ଲକ୍ଷଣଗୁଡ଼ିକର ବର୍ଣ୍ଣନା କରାଯାଇଛି । **'ସଃ ଆଶ୍ରୟଃ ପରବ୍ରହ୍ମଃ ପରମାତ୍ମେତି ଶଦ୍ଧ୍ୟତେ'** ।

ସଦ୍-ଅସଦ୍, ସେହିପରି ସ୍ଥୁଳ-ସୂକ୍ଷ୍ମ କାର୍ଯ୍ୟକାରଣ ରୂପରେ ପ୍ରତୀୟମାନ ଏହି ଜଗତ୍ ହେଉଛି ଭଗବାନଙ୍କର ସ୍ୱରୂପ । **ସର୍ବଂ ଖଳୁ ଇଦଂ ବ୍ରହ୍ମ** ।

# ତୃତୀୟ ସ୍କନ୍ଧ

## ସର୍ଗ

ଏହି ଅଧ୍ୟାୟରେ ଆସୁରୀ ଓ ଦୈବୀ ଶକ୍ତିର ପ୍ରତିପାଦନ କରାଯାଇଛି । ଜଗତର ଦ୍ୱନ୍ଦ୍ୱ-ରୂପ ଏଥିରେ ବର୍ଣ୍ଣିତ । ସଜ୍ଜନ-ଦୁର୍ଜନ, ହାନି-ଲାଭ, ଜୀବନ-ମରଣ ସବୁ ଦ୍ୱନ୍ଦ୍ୱ । ଏହା କେବଳ ଆଜି ନୁହେଁ, ସବୁଦିନୁ ଲାଗିରହିଛି । ବିଦୁର ଓ ଦୁର୍ଯ୍ୟୋଧନ ଉପାଖ୍ୟାନରେ ଏହାର ଉଦାହରଣ ଦିଆଯାଇଛି । ଧୃତରାଷ୍ଟ୍ର ବିଦୁରଙ୍କୁ ରାଜସଭାକୁ ଡାକି ମହାଭାରତ ଯୁଦ୍ଧ ପୂର୍ବରୁ ଯେତେବେଳେ ତାଙ୍କର ପରାମର୍ଶ ଲୋଡ଼ିଲେ, ଦୁର୍ଯ୍ୟୋଧନ କୁଳନାଶକବୋଲି କହି ବିଦୁର ତା'ର ଅନ୍ୟାୟର ଘୋର ନିନ୍ଦା କଲେ ଓ ଦୁର୍ଯ୍ୟୋଧନଙ୍କୁ ନ ଛାଡ଼ିଲେ ରାଜାଙ୍କର ମଙ୍ଗଳ ହେବ ନାହିଁ ବୋଲି ପରାମର୍ଶ ଦେଲେ । ଫଳ ହେଲା, ଦୁର୍ଯ୍ୟୋଧନଦ୍ୱାରା ଅପମାନିତ ହୋଇ ବିଦୁର କୌରବମାନଙ୍କୁ ତ୍ୟାଗକଲେ ଏବଂ ନିଜର ଧନୁକୁ ରାଜଦରବାରର ଦ୍ୱାରଦେଶରେ ରଖିଦେଇ ତୀର୍ଥଯାତ୍ରାରେ ବାହାରିଗଲେ । **ହିତଂ ମନୋହାରି ଚ ଦୁର୍ଲଭଂ ବଚଃ** । ଅପ୍ରିୟ ସତ୍ୟ କହି ସତ୍‌ପୁରୁଷମାନେ ଅପମାନିତ ହୋଇଛନ୍ତି । ଯେପରିକି ରାବଣଦ୍ୱାରା ଅପମାନିତହୋଇ ବିଭୀଷଣଙ୍କୁ ଲଙ୍କା ତ୍ୟାଗ କରିବାକୁ ହେଲା । କିନ୍ତୁ କ୍ଷତି ଅପମାନିତ ବ୍ୟକ୍ତିର ନୁହେଁ, ଅପମାନ ଦେଇଥିବା ବ୍ୟକ୍ତିର । **ସ ନିର୍ଗତଃ କୌରବପୁଣ୍ୟଲବ୍ଧଃ** । ବିଦୁର ଖାଲି ଚାଲିଗଲେ ନାହିଁ, ତାଙ୍କ ସହିତ କୌରବଙ୍କର ପୁଣ୍ୟ ଚାଲିଗଲା ।

ବୃନ୍ଦାବନରେ ଉଦ୍ଧବଙ୍କ ସହିତ ବିଦୁରଙ୍କର ମିଳନ ହେଲା । ଦୁଇ ଜଣ ଜ୍ଞାନୀ ସନ୍ଥ । ଉଦ୍ଧବ ଅଶ୍ରୁପୂର୍ଣ୍ଣ ନୟନରେ ଶ୍ରୀକୃଷ୍ଣଙ୍କର ପ୍ରୟାଣ ସଂବାଦ ବିଦୁରଙ୍କୁ ଦେଲେ ଏବଂ କହିଲେ ଶ୍ରୀକୃଷ୍ଣ ପ୍ରୟାଣ ପୂର୍ବରୁ ତାଙ୍କୁ କହିଛନ୍ତି, ବିଦୁରଙ୍କ ସହିତ ତୁମର ଦେଖାହେଲେ କହିବ, ସେ ମୈତ୍ରେୟ ଋଷିଙ୍କଠାରୁ ଉପଦେଶ ଗ୍ରହଣ କରିବେ । ବିଦୁର ହରିଦ୍ୱାର ଯାଇ ମୈତ୍ରେୟଙ୍କର ଦର୍ଶନ କଲେ ଏବଂ ତାଙ୍କୁ ନିଜର ସଂଶୟ ମୋଚନପାଇଁ ପଚାରିଲେ । ଋଷି, ସଂସାରୀ ଲୋକ ସୁଖ ଲାଭପାଇଁ କର୍ମ କରୁଛନ୍ତି; କିନ୍ତୁ ସେମାନଙ୍କୁ ଖାଲି ଦୁଃଖ ହିଁ ମିଳୁଛି । ଏହାର ଉତ୍ତର କ'ଣ ? ଏବଂ କିପରି ହୃଦୟରେ ଭଗବାନଙ୍କ ପ୍ରତି ଭକ୍ତି ଜାତ ହେବ ?

ମୈତ୍ରେୟ ପ୍ରସନ୍ନ ହୋଇ କହିଲେ, ବିଦୁର, ତୁମେ ସାକ୍ଷାତ୍ ଧର୍ମାବତାର । ମାଣ୍ଡବ ଋଷିଙ୍କ ଅଭିଶାପ ଯୋଗୁଁ ଦାସୀପୁତ୍ର ହୋଇ ଜନ୍ମ ହୋଇଛ । ତୁମେ ଜାଣ ଯେ ପରମାତ୍ମା ଏକ, ଜ୍ଞାନସ୍ୱରୂପ ଓ ସ୍ୱୟଂପ୍ରକାଶ । ସେ ନିଜ ମଧ୍ୟରୁ ମାୟାକୁ ଜାତ କରନ୍ତି ଏବଂ ତା ମଧ୍ୟରେ ନିଜର ଚିଦାଭାସକୁ ନିହିତ କରି ମହତ୍ତତ୍ତ୍ୱର ସୃଷ୍ଟି କରନ୍ତି । ଏହି ମହତ୍ତତ୍ତ୍ୱରୁ ଅହଙ୍କାରର ଜନ୍ମ ଏବଂ ସେଥିରୁ ମନ ଓ କର୍ମେନ୍ଦ୍ରିୟମାନେ ଜନ୍ମ ହେଲେ । କିନ୍ତୁ ବ୍ରହ୍ମ ଅଦ୍ୱିତୀୟ । ସଚ୍ଚିଦାନନ୍ଦ ରୂପେ ମୂଳରୁ ବିଦ୍ୟମାନ । ଆଧ୍ୟାତ୍ମିକ ଇନ୍ଦ୍ରିୟମାନଙ୍କ

ମଧ୍ୟରୁ ପ୍ରତ୍ୟେକ ଇନ୍ଦ୍ରିୟଙ୍କ ମଧ୍ୟରେ ଆଦିଦେବ ରୂପେ ଜଣେ ଜଣେ ଦେବତା ବିଦ୍ୟମାନ । ତା'ର ଉଦାହରଣ ଦେଇ ସେ କହୁଛନ୍ତି, ବିରାଟପୁରୁଷଙ୍କର ଯେତେବେଳେ କହିବାର ଇଚ୍ଛା ହେଲା, ବାକ୍ ଇନ୍ଦ୍ରିୟ ଖୋଲିଗଲା । ସେଥିରେ ଅଗ୍ନି ଦେବତା ରହିଲେ । କହିବାର ରୂପ ହେଲା ଶବ୍ଦ । ଶବ୍ଦ, ଅଗ୍ନି ଏବଂ ମୁଖ--ଏହି ତିନୋଟି ବାକ୍ ଇନ୍ଦ୍ରିୟର ମୂଳରେ ଅଛନ୍ତି । ଏମାନଙ୍କ ମଧ୍ୟରେ ଯେଉଁ ଚେତନା ରହିଛି ତା'ର ସ୍ୱରୂପ ହେଲେ ଭଗବାନ । ତାଙ୍କୁ ପ୍ରେମ କରିବା ଜୀବର ପ୍ରଧାନ କର୍ତ୍ତବ୍ୟ । ଜଗତର ସମସ୍ତ ପଦାର୍ଥ ନାଶଶୀଳ । ବୈରାଗ୍ୟ ଆସିଲେ ଏମାନଙ୍କପ୍ରତି ଅନାସ୍ଥା ଭାବ ସୃଷ୍ଟି ହୁଏ । ଏହା ହେଉଛି ଅନାସକ୍ତି ଓ ଜ୍ଞାନର ସାରକଥା । ଭଗବତ୍‌ପ୍ରେମୀ ରାଗଦ୍ୱେଷ ରହିତ ହୋଇ ପ୍ରଭୁଙ୍କ ପ୍ରେମରେ ମଗ୍ନ ହୁଏ । ତେଣୁ ଦୁଃଖ ଅନୁଭବ କରିବାକୁ ତାର ସମୟ ନ ଥାଏ ।

## ବରାହ ଅବତାର

ତା'ପରେ ସୃଷ୍ଟି ତତ୍ତ୍ୱର କଥା । ସୃଷ୍ଟିର ଚିନ୍ତାରେ ବ୍ରହ୍ମା ଦୁଇଭାଗ ହୋଇଗଲେ । ପୁରୁଷ ଓ ସ୍ତ୍ରୀ । ପୁରୁଷ ହେଲେ ମନୁ ଓ ସ୍ତ୍ରୀ ଶତରୂପା । ବ୍ରହ୍ମା ମନୁଙ୍କୁ ସୃଷ୍ଟିର ଆଦେଶ ଦେଲେ । ମନୁ କହିଲେ, ପୃଥିବୀ ତ ନାହିଁ, ସୃଷ୍ଟି କିପରି ହେବ ? କାରଣ ସେତେବେଳେ ପୃଥିବୀକୁ ହିରଣାକ୍ଷ ନାମକ ଦୈତ୍ୟ ହରଣ କରିନେଇ ଗଭୀର ଜଳ ମଧ୍ୟରେ ରଖିଥିଲା । ବ୍ରହ୍ମା ଚିନ୍ତାମଗ୍ନ ହେଲେ । ତାଙ୍କୁ ଛିଙ୍କ ଆସିଲା । ସେହି ଛିଙ୍କରେ ବ୍ରହ୍ମାଙ୍କ ନାକରୁ ଏକ କ୍ଷୁଦ୍ରାକୃତି ବରାହର ଜନ୍ମ ହେଲା । କିନ୍ତୁ ସେ କ୍ରମେ ଅତି ବିଶାଳ ରୂପ ଧାରଣ କରି ବିପୁଳ ଜଳ ମଧ୍ୟରେ ପ୍ରବେଶ କଲେ । ସେ ହେଉଛନ୍ତି ବରାହ ଅବତାର । ସେ ହିରଣାକ୍ଷକୁ ବଧ କରି ପୃଥିବୀକୁ ଉଦ୍ଧାର କରିଥିଲେ ।

## ହିରଣାକ୍ଷ ଓ ହିରଣ୍ୟକଶିପୁ

ପରିକ୍ଷିତ ହିରଣାକ୍ଷ ସମ୍ପର୍କରେ ଜାଣିବାକୁ ଚାହିବାରୁ ଶ୍ରୀ ଶୁକଦେବ ବିସ୍ତାରିତ ଭାବରେ ତାହା ବର୍ଣ୍ଣନା କଲେ । ଦିନେ ସନ୍ଧ୍ୟା ସମୟରେ ଅଗ୍ନିହୋତ୍ର ସାରି କଶ୍ୟପ ଋଷି ଯଜ୍ଞଶାଳାରେ ବସିଛନ୍ତି । ତାଙ୍କର ପତ୍ନୀ ଦିତି ସେଠାକୁ ଆସି ତାଙ୍କଠାରୁ ପୁତ୍ରକାମନା କଲେ । ଅଗ୍ନିହୋତ୍ର ଏକ ପବିତ୍ର ସ୍ଥାନ । ପୁଣି ସନ୍ଧ୍ୟାକାଳ । ଦିବସ ଓ ରାତ୍ରିର ସନ୍ଧି ସମୟ । ଏହି ସମୟର ଦେବତା ରୁଦ୍ର । ଏହି ସମୟରେ ପୁତ୍ର ଉତ୍ପାଦନ ଆଦୌ କରଣୀୟ ନୁହେଁ । କିନ୍ତୁ ଦିତି ପ୍ରବଳ କାମାବେଗରେ ବଶୀଭୂତ । ସେ କଶ୍ୟପଙ୍କ ମନା ମାନିବାକୁ ପ୍ରସ୍ତୁତ ନୁହନ୍ତି । କଶ୍ୟପ କହିଲେ ବର୍ତ୍ତମାନ ତୁମର ଗର୍ଭାଧାନ ହେଲେ ଏକ ମହାଭୟଙ୍କର ଦୈତ୍ୟର ଜନ୍ମ ହେବ । କିନ୍ତୁ ପ୍ରବଳ କାମାବେଗରେ ଦିତି କଶ୍ୟପଙ୍କୁ ଟାଣିବାକୁ ଲାଗିଲେ । ଦିତିଙ୍କ ସହିତ କଶ୍ୟପଙ୍କର ସଙ୍ଗମ ହେବାରୁ ଦିତିଙ୍କ ଗର୍ଭରୁ ଭଗବାନଙ୍କର ଶାପଗ୍ରସ୍ତ ଜୟ ଓ ବିଜୟ ନାମକ ପାର୍ଷଦ ଦ୍ୱୟ ଭୟଙ୍କର ରାକ୍ଷସ ରୂପରେ ଜନ୍ମ ଗ୍ରହଣ କଲେ । ଏହି ଯମଜ ସନ୍ତାନ ହେଲେ ହିରଣାକ୍ଷ ଓ ହିରଣ୍ୟକଶିପୁ ।

ଏମାନେ କାହିଁକି ଶାପଗ୍ରସ୍ତ ହୋଇଥିଲେ ବୋଲି ପରିକ୍ଷିତ ପଚାରିବାରୁ ଶୁକଦେବ କହିଲେ, ସନକ ଆଦି ଚାରି ଜଣ ଋଷି ଭଗବାନଙ୍କ ଦର୍ଶନପାଇଁ ବୈକୁଣ୍ଠକୁ ଯାଇଥିଲେ । କିନ୍ତୁ ଦ୍ୱାରପାଳ ଜୟ ବିଜୟ ତାଙ୍କୁ ବାଟ ଛାଡ଼ିଲେ ନାହିଁ । ସେମାନେ କ୍ରୋଧରେ ଅଭିଶାପ ଦେଲେ, ତିନି ଜନ୍ମ ପର୍ଯ୍ୟନ୍ତ ତୁମେ ଦୁଇ ଜଣ ଭୟଙ୍କର ଦୈତ୍ୟରୂପରେ ଜନ୍ମହେବ । ଜୟ ବିଜୟ ଅନୁତାପ କଲେ ଓ ଭଗବାନଙ୍କର ଶରଣାଗତ ହେଲେ । ଭଗବାନ କହିଲେ ପାପୀ ଦଣ୍ଡନୀୟ । ମୋର ଡାହାଣ ହାତ ପାପ

କଲେ ମୁଁ ତାକୁ କାଟିଦେବି । କିନ୍ତୁ ତୁମେ ମୋର ପାର୍ଷଦ ହୋଇଥିବାରୁ ତୁମେ ରାକ୍ଷସ ଭାବରେ ତିନି ଥର ଜନ୍ମହେବ ଏବଂ ସେତେବେଳେ ମୁଁ ପୃଥିବୀକୁ ଆସି ତୁମକୁ ଉଦ୍ଧାର କରିବି ।

ହିରଣାକ୍ଷ ଘୋର ତପ କରି ବଳଶାଳୀ ହେଲା । ସମସ୍ତ ଦେବତାଙ୍କୁ ଜୟକରି ପୃଥିବୀକୁ ହସ୍ତଗତ କଲା ଏବଂ ଆଉ କେହି ତାର ପ୍ରତିରୋଧପାଇଁ ନ ଥିବା ହେତୁ ବରୁଣଙ୍କ ସହିତ ଲଢ଼ିବାପାଇଁ ସମୁଦ୍ରରେ ପଶିଲା । ବରୁଣ କହିଲେ, ତୋର ସମକକ୍ଷ ଯୋଦ୍ଧା ଅଳ୍ପକାଳ ମଧ୍ୟରେ ଆସିଯିବେ, ଚିନ୍ତା କର ନାହିଁ । ବରାହ ଅବତାରରେ ଭଗବାନ ତା'ସହିତ ଲଢ଼ି ତାକୁ ବଧ କଲେ ଓ ପୃଥିବୀକୁ ଉଦ୍ଧାର କଲେ ।

## ଭଗବାନ କପିଳ

ପୃଥିବୀର ଉଦ୍ଧାର ହେବାରୁ ମନୁ ଓ ଶତରୂପା ସନ୍ତାନ ସୃଷ୍ଟି କାର୍ଯ୍ୟରେ ଲାଗିଗଲେ । ତାଙ୍କର ଦୁଇ ଜଣ ପୁତ୍ର ହେଲେ-- ପ୍ରିୟବ୍ରତ ଓ ଉତ୍ତାନପାଦ ଏବଂ ତିନି ଜଣ କନ୍ୟା ହେଲେ-- ଆହୁତି, ପ୍ରସୂତି ଓ ଦେବହୂତି । ବ୍ରହ୍ମା ପୁଣି ସୃଷ୍ଟି କାର୍ଯ୍ୟପାଇଁ ଯେଉଁ ପ୍ରଜାପତିମାନଙ୍କୁ ଜନ୍ମ ଦେଇଥିଲେ, ସେମାନଙ୍କ ମଧ୍ୟରେ କର୍ଦ୍ଦମ ଥିଲେ ଅନ୍ୟତମ । ସୃଷ୍ଟିପାଇଁ ବ୍ରହ୍ମାଙ୍କଦ୍ୱାରା ଆଦିଷ୍ଟ ହୋଇ ସେ ଭଗବାନଙ୍କୁ ଘୋର ତପସ୍ୟା କରୁଥିଲେ । ଭଗବାନ ମନୁଙ୍କୁ କହିଲେ, ''ତୁମେ କର୍ଦ୍ଦମଙ୍କ ସହିତ ଦେବହୂତିଙ୍କର ବିବାହ ଦିଅ, ଏବଂ କର୍ଦ୍ଦମଙ୍କୁ କହିଲେ, ମୁଁ ତୁମ ଉପରେ ପ୍ରସନ୍ନ, ତୁମର ସୃଷ୍ଟିର ଇଚ୍ଛା ପୂର୍ଣ୍ଣ ହେବ । ତୁମେ ଦେବହୂତିଙ୍କୁ ବିବାହ କର । କର୍ଦ୍ଦମ ଗୋଟିଏ ସର୍ତ୍ତରେ ଦେବହୂତିଙ୍କୁ ବିବାହ କଲେ । ଗର୍ଭାଧାନ ହେବାପରେ ସେ ଗୃହସ୍ଥାଶ୍ରମରେ ରହିବେ ନାହିଁ । ତପସ୍ୟାପାଇଁ ଚାଲିଯିବେ । ଉଭୟଙ୍କ ଔରସରୁ ନଅଟି କନ୍ୟା ଜନ୍ମ ହେଲେ । କର୍ଦ୍ଦମ କହିଲେ, ମୋର ସତ୍ୟ ପୂରଣ ହେଲା, ମୁଁ ଯାଉଛି । ଦେବହୂତି ନିବେଦନ କଲେ, ଠିକ୍ କଥା, କିନ୍ତୁ ଏ କନ୍ୟାମାନଙ୍କର ବିବାହ ହେବ । ମୁଁ ଏକାକୀ ହୋଇଯିବି । ମୋର ଶୋକ ନିବାରଣର ଉପାୟ ବାହାର କରନ୍ତୁ । ଉଭୟ କର୍ଦ୍ଦମ ଓ ଦେବହୂତି ମିଶି ଭଗବାନଙ୍କୁ ତପସ୍ୟା କଲେ । ଭଗବାନ ସନ୍ତୁଷ୍ଟ ହୋଇ ତାଙ୍କର ପୁତ୍ରରୂପେ ଜନ୍ମ ହେବେ ବୋଲି ସ୍ୱୀକାର କଲେ । ଏହି ପୁତ୍ର ହେଲେ ସାଂଖ୍ୟ ଶାସ୍ତ୍ରର ପ୍ରବର୍ତ୍ତକ ଭଗବାନ କପିଳ । କନ୍ୟାମାନଙ୍କର ବିବାହ ଦେଇ କର୍ଦ୍ଦମ ସନ୍ୟାସୀ ହୋଇ ଚାଲିଗଲେ । ଏଣେ ମାତା ଦେବହୂତି ପୁତ୍ର ଭଗବାନ କପିଳଙ୍କର ଶରଣାଗତ ହେଲେ -- ତାଙ୍କୁ କଲ୍ୟାଣର ମାର୍ଗ ଦେଖାଇବାପାଇଁ । କପିଳ କହିଲେ, ମାତା, ଅଧ୍ୟାତ୍ମ୍ୟ ମାର୍ଗରେ ଚାଲ, ଯେପରିକି ଦୁଃଖ ଓ ସୁଖରୁ ପରମ ନିବୃତ୍ତି ମିଳିପାରିବ । ସତ୍‌ସଙ୍ଗ କଣ ଏବଂ କିଏ ପ୍ରକୃତ ସାଧୁ ତାର ଲକ୍ଷଣ ସେ ବର୍ଣ୍ଣନା କଲେ ।

**ତିତିକ୍ଷବଃ କାରୁଣିକାଃ ସୁହୃଦଃ ସର୍ବଦେହିନାମ୍**
**ଅଜାତଶତ୍ରବଃ ଶାନ୍ତାଃ ସାଧବଃ ସାଧୁଭୂଷଣାଃ ।**

ସାଧୁ, ତିତିକ୍ଷୁ, କାରୁଣିକ, ସମସ୍ତ ଲୋକର ବନ୍ଧୁ, ଅଜାତଶତ୍ରୁ ଓ ଶାନ୍ତ । ମାତାଙ୍କ ପ୍ରଶ୍ନର ଉତ୍ତର ଦେଇ କପିଳ ତିନିପ୍ରକାର ଭକ୍ତିର କଥା କହିଲେ । ପ୍ରଥମ ଭକ୍ତି ହେଉଛି ଶାସ୍ତ୍ର ଅନୁସାରେ ସତ୍‌କର୍ମ କରିବା । ରଜୋଗୁଣ ଓ ତମୋଗୁଣ ଦୂର ହୋଇ ବୁଦ୍ଧି ସାତ୍ତ୍ୱିକ ହୁଏ । ଏହା ଅହୈତୁକୀ ଭକ୍ତି । ଦ୍ୱିତୀୟ ପ୍ରକାର ଭକ୍ତି-- ଭଗବାନଙ୍କୁ ହୃଦପଦ୍ମରେ ବସାଇ ତାଙ୍କ ଭାବମୂର୍ତ୍ତିକୁ ଦର୍ଶନ କରିବା । ଏଥିରେ ଅନ୍ତର ଶୁଦ୍ଧି ହୁଏ । ତୃତୀୟ ପ୍ରକାର ଭକ୍ତି ହେଉଛି -- ଭଗବାନଙ୍କୁ ସମସ୍ତ ପ୍ରାଣୀଙ୍କର ଆତ୍ମସ୍ୱରୂପ ବୋଲି ବିଚାର ନ କରି ତାଙ୍କର ପୂଜା କରିବା । ଏହା ହେଉଛି ପାଉଁଶରେ ଆହୁତି ଦେବା ସହିତ ସମାନ ।

ଏହାପରେ ଭଗବାନ କପିଳ ସାଂଖ୍ୟଯୋଗ(ଜ୍ଞାନଯୋଗ)ର ବର୍ଣ୍ଣନା କଲେ । ଆତ୍ମା ସ୍ୱୟଂ ପ୍ରକାଶ, ନିର୍ଗୁଣ । ନିଜ ଲୀଳାରେ ପ୍ରକୃତିକୁ ସ୍ୱୀକାର କରେ । ତ୍ରିଗୁଣାତ୍ମିକା ପ୍ରକୃତି ଅନାଦିକାଳରୁ ପ୍ରଜାସୃଷ୍ଟି କରି ଚାଲିଛି । ପ୍ରକୃତିଦ୍ୱାରା କର୍ମହୁଏ । ଦ୍ରଷ୍ଟା ଜୀବ ଏହାକୁ ସ୍ୱୀକାର କରିନିଏ ଓ ଦୁଃଖ ସୁଖର ଆବର୍ତ୍ତ ମଧ୍ୟରେ ପଡ଼ିଯାଏ । ଯେତେବେଳେ ଅହମିକା ବା ମୁଁ ଓ ମୋର ଧାରଣା ଦୂରହୁଏ, ସେତେବେଳେ ଯାଇ ସୁଖ ଦୁଃଖରୁ ନିବୃତ୍ତି ମିଳେ । ଆକାଶରେ ସୂର୍ଯ୍ୟ ଏକ । କିନ୍ତୁ ଜଳରେ ଏହାର ପ୍ରତିବିମ୍ବ ବହୁରୂପରେ ଦେଖାଯାଏ । ମନରେ ଭ୍ରମ ହୁଏ ଯେ ଏହା ଅନେକ । ସେହିପରି ଆତ୍ମା ଏକ, ଯଦିଓ ଏହା ଅନେକଙ୍କଠାରେ ରହିଥାଏ । ଇନ୍ଦ୍ରିୟର ମାଧ୍ୟମରେ ଦ୍ରଷ୍ଟା, ଶ୍ରୋତା, ଧାରଣକର୍ତ୍ତା -- ସେହି ଏକ ପରମାତ୍ମା ରହିଥା'ନ୍ତି ।

ଯୋଗର ବର୍ଣ୍ଣନା କରି ଭଗବାନ କପିଳ ଯମ, ନିୟମ, ଆସନ, ପ୍ରାଣାୟାମର କଥା କହୁଛନ୍ତି । ଯୋଗ ସବୀଜ ଓ ନିର୍ବୀଜ । ସବୀଜ ଯୋଗରେ ମନ ପ୍ରସନ୍ନ ହୁଏ ଓ ନିଜେ ନିଜେ ସତ୍‌ମାର୍ଗରେ ଚାଲେ । ଧ୍ୟାନର ବିଧି ହେଲା ସିଧାଭାବରେ ବସି ସ୍ଥିର ଆସନ ସ୍ଥିର ଚିତ୍ତ ହୋଇ କୁଆଡ଼କୁ ନ ଚାହିଁ କେବଳ ନାସିକାର ଅଗ୍ରଭାଗକୁ ଦେଖିବା ଉଚିତ । ପ୍ରାଣବାୟୁ ଯେତିକି ଧୀର ଭାବରେ ନିଆଯିବ ସେତିକି ମନସ୍ଥିର ରହିବ । ମନସ୍ଥିର ହେଲେ ବାଣୀ ମୌନ ହେବ । ଧ୍ୟାନପାଇଁ ପ୍ରାଣାୟାମର ଏକାନ୍ତ ଆବଶ୍ୟକତା ଅଛି । ସଗୁଣ ଭଗବାନଙ୍କର ଉପାସକମାନେ ଭଗବାନଙ୍କୁ ସୌନ୍ଦର୍ଯ୍ୟ, ମାଧୁର୍ଯ୍ୟ ଓ କରୁଣାଦି ଗୁଣର ଆଧାର ବୋଲି କହନ୍ତି । ଭକ୍ତମାନଙ୍କ ସହିତ ବିବିଧ ସମ୍ବନ୍ଧ କରିବାପାଇଁ ଭଗବାନ ଅବତାର ହୁଅନ୍ତି । ଭଗବାନ ସଗୁଣ ନୁହନ୍ତି କି ନିର୍ଗୁଣ ନୁହନ୍ତି । ସାକାର ନୁହନ୍ତି କି ନିରାକାର ନୁହନ୍ତି । ଭକ୍ତର ଭାବନାନୁସାରେ ସେ ସଗୁଣ ସାକାର ବା ନିର୍ଗୁଣ ନିରାକାର ।

ଜୀବାତ୍ମା ଓ ପରମାତ୍ମା ଏକ । ସମସ୍ତ ବିଷୟରୁ ଇନ୍ଦ୍ରିୟମାନଙ୍କୁ ଟାଣିଆଣି ନିଜର ପ୍ରିୟତମ ଭଗବାନଙ୍କଠାରେ ଲଗାଇବା ଦରକାର । ଆହାର, ବିହାର, ବ୍ୟବହାର, ବିଚାରର ଶୁଦ୍ଧି-- ଯୋଗପାଇଁ ଏକାନ୍ତ ଆବଶ୍ୟକ । ନିଷ୍କାମ ଭାବରେ ଧର୍ମପାଳନ ଓ ତୀବ୍ର ଭକ୍ତିଯୋଗଦ୍ୱାରା ପ୍ରକୃତି ସହିତ ସମ୍ବନ୍ଧ ଛିନ୍ନ ହୁଏ ଓ ସମସ୍ତ ଘଟରେ ଏକ ଭଗବାନଙ୍କର ଦର୍ଶନ ମିଳେ ।

ଆତ୍ମା ନିର୍ବିକାର । ସେ ସାକ୍ଷୀରୂପେ ରହେ । ଏହାର ସାକ୍ଷିତ୍ୱ ଓ ପ୍ରକାଶରେ ଇନ୍ଦ୍ରିୟମାନେ କାମ କରିଚାଲନ୍ତି । ଜଣେ ଭାଗବତକାର ସାଧୁ ବିଜୁଳିଶକ୍ତି ସହିତ ଏହାର ତୁଳନା କରିଛନ୍ତି । ବିଜୁଳିରେ ପଙ୍ଖା ଚାଲେ, ହିଟର୍ ଗରମ ହୁଏ ଓ କୁଲର୍ କକ୍ଷକୁ ଶୀତଳ କରେ । ବିଦ୍ୟୁତ୍‌ଶକ୍ତି ସେଥିପାଇଁ ଶୀତୋଷ୍ଣରହିତ ଓ ନିର୍ବିକାର । ସେହି ଆତ୍ମସ୍ୱରୂପ ଶ୍ରୀହରିଙ୍କ ଶରଣ ହେଉଛି ମୁକ୍ତିର ଏକମାତ୍ର ପନ୍ଥା । ଏହି ସ୍କନ୍ଧରେ ଭଗବାନ କପିଳ ମାତା ଦେବହୂତିଙ୍କୁ ଭକ୍ତିଯୋଗ ଓ ଜ୍ଞାନଯୋଗ, ଧର୍ମ, କର୍ମଯୋଗ ଆଦିର ଉପଦେଶ ଦେଇଛନ୍ତି ଏବଂ ତଦ୍ଦ୍ୱାରା ଦେବହୂତିଙ୍କର ସମସ୍ତ ଆସକ୍ତି ଦୂର ହୋଇଯାଇଛି । ପୁତ୍ରଙ୍କଠାରେ ଭଗବାନଙ୍କୁ ଦର୍ଶନ କରି ସେ ମୁକ୍ତ ହୋଇଯାଇଛନ୍ତି ।

କପିଳ-ଦେବହୂତି ସମ୍ବାଦ ଭାଗବତର ଏକ ଉଲ୍ଲେଖନୀୟ ବିଷୟ । ବେଦ, ଭାଗବତ ଓ ଶାସ୍ତ୍ରାଲୋଚନା କୁସଂସ୍କାରଶୀଳ ସମାଜରେ ନାରୀମାନଙ୍କପାଇଁ ନିଷିଦ୍ଧ ଥିଲା । କିନ୍ତୁ ଭଗବାନ ସ୍ୱୟଂ ନିଜ ମାତାଙ୍କୁ ଉପଦେଶ ଦେଇ ଏହି ଭ୍ରାନ୍ତଧାରଣା ଦୂର କରିଦେଲେ ।

# ଚତୁର୍ଥ ସ୍କନ୍ଧ

## ବିସର୍ଗ

ଚତୁର୍ଥ ସ୍କନ୍ଧର ନାମ ବିସର୍ଗ । ସୃଷ୍ଟିର ବିବିଧତା ହେଉଛି ବିସର୍ଗ । ମନୁଷ୍ୟ ମାତ୍ରେ ସୁଖକାମୀ । ସୁଖପାଇଁ ସେ ଧର୍ମ କର୍ମ କରେ । ଧନ, ଜନ, ଯଶ ଲାଭ ଏପରିକି ସୁଖପାଇଁ ମୋକ୍ଷର ଅନ୍ୱେଷଣ କରେ । ଧର୍ମାର୍ଥ କାମମୋକ୍ଷର ଉଦ୍ଦେଶ୍ୟ -- ଧର୍ମ ମୋକ୍ଷପାଇଁ। ଅର୍ଥାର୍ଜନ ଧର୍ମପାଇଁ ଓ କାମନାର ପୂରଣପାଇଁ । ମାତ୍ର କାମନା କେବେ ପୂର୍ଣ୍ଣ ହୁଏ ନାହିଁ । ଏଥିପାଇଁ ତତ୍ତ୍ୱ ଜିଜ୍ଞାସାର ଆବଶ୍ୟକ । ଏହି ସ୍କନ୍ଧରେ ସାତ ଅଧ୍ୟାୟ ଯଜ୍ଞ, ସାତ ଅଧ୍ୟାୟ ଧର୍ମ, ପାଞ୍ଚ ଅଧ୍ୟାୟ ଅର୍ଥ, ଏଗାର ଅଧ୍ୟାୟ ମନ ସହିତ ଏଗାର ଇନ୍ଦ୍ରିୟକୁ ନେଇ କାମର ବର୍ଣ୍ଣନା ଏବଂ ଚାରି ଅଧ୍ୟାୟ ହେଉଛି ମୋକ୍ଷର ବର୍ଣ୍ଣନା ।

ଧର୍ମ ଓ ଅଧର୍ମର ନିୟାମକ ହେଉଛି ଶାସ୍ତ୍ର । ହିଂସା ଅଧର୍ମ, କିନ୍ତୁ ରଣକ୍ଷେତ୍ରରେ ଧର୍ମ । ସନ୍ନ୍ୟାସୀ ପାଇଁ ସ୍ତ୍ରୀ ସମ୍ଭୋଗ ଅଧର୍ମ, ମାତ୍ର ସନ୍ତାନପାଇଁ ପତ୍ନୀର ସମ୍ଭୋଗ ଧର୍ମ । ପୂର୍ବରୁ କୁହାଯାଇଛି ମନୁ ତାଙ୍କର କନ୍ୟା ଦେବହୂତିଙ୍କୁ କର୍ଦ୍ଦମ ପ୍ରଜାପତିଙ୍କ ସହିତ ବିବାହ ଦେଇଥିଲେ । ତାଙ୍କର ନଅ କନ୍ୟାଙ୍କ ମଧ୍ୟରୁ ଅରୁନ୍ଧତୀ ବଶିଷ୍ଠଙ୍କୁ, ଅନସୂୟା ଅତ୍ରିଙ୍କୁ ବିବାହ କଲେ । ଅତ୍ରି-ଅନସୂୟା ତପସ୍ୟା କରି ବ୍ରହ୍ମା, ବିଷ୍ଣୁ, ମହେଶ୍ୱର ତିନିଜଣଙ୍କୁ ସନ୍ତୁଷ୍ଟ କଲେ । ଅନସୂୟା ପରମ ସତୀ ଥିଲେ । ସେ ବ୍ରହ୍ମା, ବିଷ୍ଣୁ, ଶିବଙ୍କୁ ଶିଶୁ କରି ଦେଇଥିଲେ । ଏହି ତିନି ଦେବତା ନିଜ ନିଜ ସ୍ତ୍ରୀଙ୍କଦ୍ୱାରା ପ୍ରେରିତହୋଇ ଅନସୂୟାଙ୍କ ସତୀତ୍ୱ ପରୀକ୍ଷାପାଇଁ ଯାଇଥିଲେ । ସେମାନେ କହିଲେ, ଆପଣଙ୍କ ସ୍ତନରେ ମୁହଁ ଲଗାଇ ଆମେ କ୍ଷୀର ପିଇବୁ । ଅନସୂୟା ନିଜ ସ୍ୱାମୀଙ୍କର ପାଦୋଦକ ସେ ତିନି ଜଣଙ୍କ ଉପରେ ଛିଞ୍ଚିଦେଲେ । ତିନି ଜଣଯାକ ଶିଶୁ ହୋଇଗଲେ ।

### ଦକ୍ଷ ଯଜ୍ଞ ଭଙ୍ଗ

ମନୁଙ୍କର ତୃତୀୟ କନ୍ୟା ପ୍ରସୂତି । ଦକ୍ଷ ପ୍ରଜାପତିଙ୍କ ସହିତ ତାଙ୍କର ବିବାହ ହେଲା । ତାଙ୍କର ଷୋଳ କନ୍ୟା । ତେରଜଣ ଧର୍ମଙ୍କୁ, ଜଣେ ଅଗ୍ନିଙ୍କୁ, ଜଣେ ପିତରଙ୍କୁ ଓ ଜଣେ(ସତୀ) ଶିବଙ୍କୁ ବିବାହ କଲେ । ଦିନେ ଦକ୍ଷ ବ୍ରହ୍ମାଙ୍କ ଦରବାରକୁ ଯାଇଥିଲେ । ସମସ୍ତ ଦେବଦେବୀ ତାଙ୍କ ସମ୍ମାନରେ ଠିଆ ହୋଇପଡ଼ିଲେ । ମାତ୍ର ଶିବ ଉଠିଲେ ନାହିଁ । ଦକ୍ଷ ଶିବଙ୍କୁ ଗାଳି ଦେବାକୁ ଲାଗିଲେ । କିନ୍ତୁ ଶିବ କିଛି ଉତ୍ତର ଦେଲେ ନାହିଁ । ଏତିକିରେ ଦକ୍ଷଙ୍କର ରାଗ ଶାନ୍ତ ହେଲା ନାହିଁ । ସେ ଶିବଙ୍କୁ ଅପମାନିତ କରିବାପାଇଁ ହରଦ୍ୱାର(ଶିବକ୍ଷେତ୍ର) ରେ ଏକ ଯଜ୍ଞ କଲେ । ସମସ୍ତ ଦେବତାଙ୍କୁ ନିମନ୍ତ୍ରଣ କଲେ । ମାତ୍ର ଶିବଙ୍କୁ ନିମନ୍ତ୍ରଣ କଲେ ନାହିଁ । ଯଜ୍ଞସ୍ଥଳରେ ନିଜର ମା ଓ ଭଉଣୀମାନଙ୍କୁ ଦେଖିବାପାଇଁ ସତୀ ବ୍ୟାକୁଳ ହେଲେ । ଅନିମନ୍ତ୍ରିତ ସ୍ଥାନକୁ ଯିବା ଉଚିତ ନୁହେଁ ବୋଲି ଶିବଙ୍କର ବାରଣ ସତ୍ତ୍ୱେ ସେ ମାନିଲେ ନାହିଁ ଏବଂ ଯଜ୍ଞସ୍ଥଳରେ ପହଞ୍ଚିଲେ । ଦେଖିଲେ ଯେ ଶିବଙ୍କୁ ଯଜ୍ଞଭାଗ ନ ଦେଇ ତାଙ୍କୁ ଅପମାନିତ କରାଯାଉଛି । ସେ ଶିବଙ୍କର ଅଖଣ୍ଡ ବିଭୂତିର କଥା କହି ଏଭଳି କାର୍ଯ୍ୟପାଇଁ ତାଙ୍କର ପିତାଙ୍କୁ ଭର୍ତ୍ସନା କଲେ ଏବଂ ଅପମାନ ସମ୍ଭାଳି ନ ପାରି ସେହିଠାରେ ଦେହତ୍ୟାଗ କଲେ । ଏ ସମ୍ବାଦ ପାଇ ଶିବ ବୀରଭଦ୍ରଙ୍କୁ ପଠାଇ ଦକ୍ଷ ଯଜ୍ଞ ଭଙ୍ଗ ସହିତ ଦକ୍ଷଙ୍କର ଶିରଚ୍ଛେଦନ କଲେ । ଦେବତାମାନେ ଶରଣ ପଶିବାରୁ ଶିବ ଦକ୍ଷଙ୍କ ଗ୍ରୀବାରେ ଏକ ଛାଗଳର ମସ୍ତକ ଲଗାଇ ତାଙ୍କୁ ବଞ୍ଚାଇଦେଲେ । ଦକ୍ଷ ଶିବଙ୍କର ସ୍ତୁତିଗାନ କଲେ ଓ ଦକ୍ଷ ଯଜ୍ଞ ସମ୍ପୂର୍ଣ୍ଣ ହେଲା । ଦକ୍ଷ ଯଜ୍ଞ ଭାଗବତର ଏକ ଅମୂଲ୍ୟ ଚରିତ ।

## ଧ୍ରୁବ ଚରିତ

ପୁଣି ଏହି ସ୍କନ୍ଧରେ ଧ୍ରୁବଙ୍କର କଥା । ରାଜା ଉତ୍ତାନପାଦଙ୍କର ସୁରୁଚି ଓ ସୁନୀତି ନାମକ ଦୁଇ ଜଣ ରାଣୀ ଥିଲେ । ସୁରୁଚିଙ୍କ ପୁତ୍ର ଉତ୍ତମ ଓ ସୁନୀତିଙ୍କ ପୁତ୍ର ଧ୍ରୁବ । ଭାଇ ଉତ୍ତମ ପିତାଙ୍କ କୋଳରେ ବସିଥିବାର ଦେଖି ଧ୍ରୁବ ପିତାଙ୍କ କୋଳରେ ବସିବାପାଇଁ ଅଳି କଲେ । ମାତ୍ର ପିତା ଉତ୍ତାନପାଦ ଏବଂ ବିମାତା ସୁରୁଚି ତାଙ୍କୁ କଠୋର ବାକ୍ୟ କହି ଅପମାନିତ କଲେ । ଧ୍ରୁବ କାନ୍ଦି କାନ୍ଦି ମାତାଙ୍କ ପାଖକୁ ଆସିଲେ । ମାତା ଦୁଃଖରେ କହିଲେ, ଈଶ୍ୱର ହିଁ ତୋର ଏକମାତ୍ର ଆଶ୍ରୟ । ଧ୍ରୁବ ପାଞ୍ଚ ବର୍ଷ ବୟସରେ ଭଗବାନଙ୍କୁ ଖୋଜିବା ପାଇଁ ଘରଛାଡ଼ି ଚାଲିଗଲେ ଓ କଠୋର ତପସ୍ୟାରେ ଭଗବାନଙ୍କୁ ସନ୍ତୁଷ୍ଟ କଲେ । ଭଗବାନଙ୍କ ବରପ୍ରାପ୍ତି ପରେ ସେ ଯେତେବେଳେ ଫେରିଆସିଲେ ତାଙ୍କ ଅନୁତପ୍ତ ପିତା ତାଙ୍କୁ ସ୍ୱାଗତ କରି ଆଣିଲେ ଏବଂ ବୟସପ୍ରାପ୍ତି ପରେ ତାଙ୍କୁ ରାଜକାର୍ଯ୍ୟ ଦେଇ ବନକୁ ଚାଲିଗଲେ । ଧ୍ରୁବ ଭଗବାନଙ୍କର ଏପରି ପରମଭକ୍ତ ଥିଲେ ଯେ ଭଗବାନ ତାଙ୍କୁ ବର ଦେଇଥିଲେ, ତୁମେ ଚିରଭାସ୍ୱର ହୋଇ ଏକ ନୂଆ ଲୋକରେ ଅଧିଷ୍ଠିତ ହେବ । ଧ୍ରୁବ ହେଲେ ଧ୍ରୁବତାରା । ତାଙ୍କର ଲୋକର ନାମ ଧ୍ରୁବଲୋକ ।

ରାଜା ବେନଙ୍କର କଥା । ରାଜା ବେନ ଏକ ଅତ୍ୟାଚାରୀ ରାଜା ଥିଲେ । ଯଜ୍ଞରୁ ଋଷିମାନେ ତାଙ୍କୁ ଉତ୍ପନ୍ନ କରାଇଥିଲେ । ମାତ୍ର ଋଷିମାନଙ୍କର ପରାମର୍ଶ ସେ ଗ୍ରହଣ ନ କରିବାରୁ ଋଷିମାନେ କୁଶ ଘାସଦ୍ୱାରା ତାଙ୍କୁ ହତ୍ୟା କଲେ । ତାଙ୍କ ମୃତ ଦେହର ବାହୁକୁ ମନ୍ଥନ କରିବାରୁ ପୃଥୁ ଓ ଅର୍ଚି ନାମରେ ପୁତ୍ରକନ୍ୟା ଜନ୍ମ ହେଲେ । ପୃଥୁଙ୍କଠାରୁ ପୃଥିବୀ ବା ପୃଥ୍ୱୀ ନାମ ଆସିଛି । ଦୁର୍ବୃତ୍ତମାନେ ଅତ୍ୟାଚାର କରୁଥିବାରୁ ପୃଥ୍ୱୀ ତାହାର ସମସ୍ତ ଧନଧାନ୍ୟ ଲୁଚାଇ ରଖିଥିଲା । ପୃଥୁ ଦୁଷ୍ଟମାନଙ୍କୁ ଶାସ୍ତି ଦେଇ ପ୍ରଜାମାନଙ୍କର ସୁଖସମୃଦ୍ଧିପାଇଁ ସମସ୍ତ ଧନଧାନ୍ୟ ପୁଣି ଫେରାଇଆଣିଲେ ଏବଂ ପୃଥିବୀ ପୁଣି ଶସ୍ୟଶାଳିନୀ ଓ ରତ୍ନଗର୍ଭା ହେଲା । ରାଜାର ତିନୋଟି କର୍ତ୍ତବ୍ୟ ବିଷୟରେ ପୃଥୁ ଉପଦେଶ ଦେଇଥିଲେ । ପ୍ରଜାଙ୍କୁ ଜୀବିକା ଦେବା, ସେମାନଙ୍କର ଧନଜୀବନ ରକ୍ଷା କରିବା ଏବଂ ସ୍ୱୟଂ ଏକ ଧାର୍ମିକ ଜୀବନଯାପନ କରିବା । ଏହା ନ କଲେ ପ୍ରଜାଙ୍କଠାରୁ ନେଉଥିବା କରର ଅସଦ୍ ବ୍ୟବହାର କରି ରାଜା ସ୍ୱୟଂ ନରକଗାମୀ ହୁଏ । ପରମଧାର୍ମିକ ରାଜାଭାବରେ ପ୍ରଜାମାନଙ୍କୁ ପୃଥୁଙ୍କର ଧର୍ମୋପଦେଶ ଭାଗବତରେ ଏକ ଅମୂଲ୍ୟ ଅଂଶ ।

ଚତୁର୍ଥ ପ୍ରକରଣ ମୋକ୍ଷର । ପୃଥୁଙ୍କ ବଂଶରେ ତାଙ୍କର ଜଣେ ବଂଶଧର ହେଲେ ରାଜା ପ୍ରାଚୀନ- ବର୍ହି । ନାରଦ ତାଙ୍କୁ ତତ୍ତ୍ୱଜ୍ଞାନର ଉପଦେଶ ଦେଇଥିଲେ । ପୂର୍ବରୁ କୁହାଯାଇଛି ଯେ ତାଙ୍କର ଦଶ ଜଣ ପୁତ୍ର ସମୁଦ୍ରକୂଳରେ ଭଗବାନ ଶଙ୍କରଙ୍କ ଉପଦିଷ୍ଟ 'ରୁଦ୍ରଗୀତ' ଦ୍ୱାରା ଭଗବାନଙ୍କର ଆରାଧନା କରିଥିଲେ ।

## ପୁରଞ୍ଜନ ଉପାଖ୍ୟାନ

ଏଣେ ନାରଦ ପ୍ରାଚୀନବର୍ହିଙ୍କୁ ତତ୍ତ୍ୱ ଉପଦେଶ ଦେଇ ଏକ କାହାଣୀ ଶୁଣାଇଥିଲେ । ଏହି କାହାଣୀଟି ହେଉଛି ପୁରଞ୍ଜନ ଉପାଖ୍ୟାନ । ପୁରଞ୍ଜନ ଓ ଅବିଜ୍ଞାତ ନାମରେ ଦୁଇ ଜଣ ମିତ୍ର ଥିଲେ । ପୁରଞ୍ଜନ ରାଜା ହୋଇ ଅବିଜ୍ଞାତଙ୍କୁ ଭୁଲିଗଲେ । ଦିନେ ପୁରଞ୍ଜନ ପୃଥିବୀ ଭ୍ରମଣ କରୁଥିବା ବେଳେ ଏକ ନବଦ୍ୱାର ବିଶିଷ୍ଟ ନଗରୀକୁ ଦେଖିବାକୁ ପାଇଲେ । ତା'ମଧ୍ୟରେ ଏକ ଉଦ୍ୟାନରେ ଜଣେ ସୁନ୍ଦରୀ ଯୁବତୀ ନିଜ ସଖୀମାନଙ୍କ ସହିତ ଭ୍ରମଣ କରୁଥିଲେ । ପୁରଞ୍ଜନ ସେହି ଯୁବତୀଙ୍କୁ ବିବାହ କରିବାକୁ ଇଚ୍ଛା ପ୍ରକାଶ କରିବାରୁ ଯୁବତୀ କହିଲେ, ମୁଁ ଏହି ସ୍ଥାନର ରାଜକନ୍ୟା । ତୁମେ ଏଠାରେ ରାଜା ହୋଇ ରହିଲେ, ତୁମର ରାଣୀ

ହେବାରେ ମୋର ଆପତ୍ତି ନାହିଁ । ପୁରଞ୍ଜନ ସେଥିରେ ରାଜି ହୋଇଗଲେ । ରାଣୀଙ୍କପ୍ରତି ତାଙ୍କର ଏପରି ଆସକ୍ତି ବଢ଼ିଗଲା ଯେ ସେ ରାଣୀଙ୍କର ସମ୍ପୂର୍ଣ୍ଣ କ୍ରୀତଦାସ ହୋଇଗଲେ । ଭାଗବତରେ ଏପରି ଲୋକଙ୍କୁ ସ୍ତ୍ରୀମାନଙ୍କର କ୍ରୀଡ଼ାମୃଗ ବୋଲି ବର୍ଣ୍ଣନା କରାଯାଇଛି । ଦିନେ ଏହି ନଗରୀ ଶତ୍ରୁମାନଙ୍କଦ୍ୱାରା ଆକ୍ରାନ୍ତ ହୋଇ ସମ୍ପୂର୍ଣ୍ଣ ଧ୍ୱସ୍ତ ହୋଇଗଲା । ପୁରଞ୍ଜନ ସେଠାରୁ ବହିଷ୍କୃତ ହୋଇ ନିଜ ସ୍ତ୍ରୀ ପୁତ୍ରଙ୍କ ଚିନ୍ତାରେ ପାଗଳ ହୋଇ ବୁଲିଲେ । ପରଜନ୍ମରେ ସେ ଏକ କନ୍ୟା ହୋଇ ଜନ୍ମ ହେଲେ ଓ ରାଜା ମଳୟଧ୍ୱଜଙ୍କୁ ବିବାହ କଲେ । ରାଜାଙ୍କ ମୃତ୍ୟୁପରେ ସେ ତାଙ୍କର ବିରହକୁ ସହି ନ ପାରି ତାଙ୍କ ଚିତାଗ୍ନିରେ ପଶିବାକୁ ଯାଉଛନ୍ତି, ସେଠାରେ ସଖା ଅବିଜ୍ଞାତ ଆସି ପହଞ୍ଚିଲେ । ସେ କହିଲେ ତୁମେ ଭୁଲରେ ଯାହାଙ୍କୁ ପତି ବୋଲି ଭାବିଛ, ସେ ତୁମର ପତି ନୁହନ୍ତି କିମ୍ବା ତୁମେ ତାଙ୍କର ପତ୍ନୀ ନୁହଁ । ଏହା କେବଳ ମିଛମାୟା । ତୁମେ ତୁମର ପ୍ରିୟତମ ସଖାକୁ ଚିହ୍ନିପାରୁ ନାହଁ । ମୋର ଓ ତୁମ ମଧ୍ୟରେ କୌଣସି ଭେଦ ନାହିଁ । ଏହା ଶୁଣି ପୁରଞ୍ଜନଙ୍କର ମୋହ ଭଙ୍ଗ ହେଲା । ନାରଦ ଏହି ଆଖ୍ୟାୟିକାଟିକୁ ପୁଣି ବିଶ୍ଳେଷଣ କରି କହିଲେ, ପୁରଞ୍ଜନର ପ୍ରକୃତ ଅର୍ଥ ହେଉଛି, ପୁରଂ-ଜନ । ଅର୍ଥାତ୍ ଦେବ ତିର୍ଯ୍ୟକ୍ ଆଦି ଯୋନିରେ ଭ୍ରମୁଥିବା ଜନ । ଅବିଜ୍ଞାତ ଅର୍ଥ ହେଉଛି ମନୁଷ୍ୟ ମଧ୍ୟରେ ଥିବା ଆତ୍ମା ରୂପକ ଈଶ୍ୱର, ଯାହାଙ୍କୁ ମନୁଷ୍ୟ ଚିହ୍ନିପାରେ ନାହିଁ । ପୁରଞ୍ଜନୀ ବା ପୁରଞ୍ଜନଙ୍କ ସ୍ତ୍ରୀ ହେଉଛି ମାୟାରୂପକ ବୁଦ୍ଧି । ଯାହାକି ମନୁଷ୍ୟକୁ ବିଷୟବାସନାରେ ମୋହିତ କରେ ଓ ପରିଣାମରେ ବ୍ୟକ୍ତି ଭୋଗୀ, ରୋଗୀ ଓ ଶେଷରେ ଦୁଃଖଭାଗୀ ହୋଇ ମୃତ୍ୟୁବରଣ କରେ । ନାରଦଙ୍କର ଏହି ଉପଦେଶ ପରେ ରାଜା ପ୍ରାଚୀନବର୍ହି ବନକୁ ଯାଇ ତପସ୍ୟା କଲେ ଓ ଶେଷରେ ମୁକ୍ତିଲାଭ କଲେ ।

ତପସ୍ୟାପରେ ପ୍ରଚେତସମାନେ ଫେରିଦେଖିଲେ ତାଙ୍କର ରାଜ୍ୟ ଜଙ୍ଗଲ ହୋଇଯାଇଛି । କ୍ରୋଧରେ ସେମାନେ ସମସ୍ତ ଗଛକୁ କାଟିଦେବାପାଇଁ ବାହାରିଲେ । ଆକାଶବାଣୀ ହେଲା, ଗଛଗୁଡ଼ିକୁ କାଟ ନାହିଁ । ତାହା ହେଉଛି ପୃଥିବୀର ଐଶ୍ୱର୍ଯ୍ୟ । ପରିବେଶ ଦୃଷ୍ଟିରୁ ଏହି କଥାର ଗୁରୁତ୍ୱ ଓ ଯଥାର୍ଥତା ଏବେ ମଧ୍ୟ ଅନୁମାନ କରାଯାଇପାରେ । ବୃକ୍ଷମାନେ ଦଶ ଜଣ ପ୍ରଚେତସଙ୍କୁ ତାଙ୍କର ପାଳିତାକନ୍ୟା ମାରିଷାଙ୍କୁ ପ୍ରଦାନ କଲେ । ଏହି କନ୍ୟାଠାରୁ ବିଶାଳ ସୃଷ୍ଟି ସମ୍ଭବ ହେଲା ।

ଏହିଠାରେ ମୈତ୍ରେୟ-ବିଦୁର ସମ୍ବାଦ ଶେଷ । ମୈତ୍ରେୟଙ୍କଠାରୁ ସବୁ କଥା ଶୁଣି ବିଦୁର ତାଙ୍କୁ ପ୍ରଣାମ କରି ଚାଲିଗଲେ । ବିସର୍ଗ ପ୍ରକରଣରେ ଧର୍ମ, ଅର୍ଥ, କାମ ଓ ମୋକ୍ଷର ଅନୁଭୂତି ବର୍ଣ୍ଣନା କରାଯାଇଛି ଓ ମାନବଜୀବନର ପ୍ରଧାନଲକ୍ଷ୍ୟ ଈଶ୍ୱର ପ୍ରାପ୍ତି କଥା କୁହାଯାଇଛି ।

## ପଞ୍ଚମ ସ୍କନ୍ଧ

### ସ୍ଥିତି

ପଞ୍ଚମ ସ୍କନ୍ଧର ନାମ ହେଉଛି ସ୍ଥାନ ବା ସ୍ଥିତି । ସ୍ଥିତି ଦୁଇ ପ୍ରକାର । ଆତ୍ମସ୍ଥିତି ଓ ଦେଶସ୍ଥିତି । ଭଗବାନ ସମସ୍ତ କାଳ, ପରିସ୍ଥିତି ଓ ବୃତ୍ତିର ଆଶ୍ରୟସ୍ଥଳ ଏବଂ ନିଜକୋଳକୁ ନେବାପାଇଁ ସମସ୍ତ ଜୀବଙ୍କୁ ଆହ୍ୱାନ କରୁଛନ୍ତି । ଏଥିରେ ଦେଶସ୍ଥିତିରେ ସପ୍ତ ସମୁଦ୍ର ଓ ସପ୍ତ ଦ୍ୱୀପର କଥା କୁହାଯାଇଛି । ରାଜା ପ୍ରିୟବ୍ରତଙ୍କ କଥା । ସେ ସୂର୍ଯ୍ୟଙ୍କର ପଛେ ପଛେ ରଥରେ ବସି ପୃଥିବୀକୁ ସାତ ଥର ପରିକ୍ରମା କଲେ । ଯାହାଫଳରେ ସପ୍ତ ସମୁଦ୍ର ଓ ସପ୍ତ ଦ୍ୱୀପ ହେଲା । ସପ୍ତ ଦ୍ୱୀପ ମଧ୍ୟରେ ଜମ୍ବୁଦ୍ୱୀପ ଶ୍ରେଷ୍ଠ । ଏହା ହେଉଛି ଭାରତବର୍ଷର ଅନ୍ୟନାମ । ବ୍ୟାସଦେବ କହିଛନ୍ତି ଯେ-

**ଅହୋ ଅମୀଷାଂ କିମକାରି ଶୋଭନମ୍**
**ଯୈର୍ଜନ୍ମ ଲବ୍ଧଂ ନୃଷୁ ଭାରତାଜିରେ ॥**

ଭାରତବର୍ଷରେ ଜନ୍ମଲାଭ କରିଥିବା ବ୍ୟକ୍ତି ଧନ୍ୟ । ବୁଦ୍ଧଦେବ ତାଙ୍କର ଶିଷ୍ୟମାନଙ୍କୁ କହିଥିଲେ ଜମ୍ବୁଦ୍ୱୀପ ହେଉଛି ଶ୍ରେଷ୍ଠଭୂମି । ଏଠାରେ ମନୁଷ୍ୟମାନଙ୍କର ଜୀବନଯାପନ ବାସ୍ତବରେ ମନୋରମ, **'ଚିତ୍ରଂ ଜମ୍ବୁଦ୍ୱୀପଂ, ମନୋରମଂ ଜୀବିତଂ ମନୁଷ୍ୟାଣାମ୍'** । ଜମ୍ବୁଦ୍ୱୀପର ରାଜାମାନଙ୍କ ମଧ୍ୟରେ ନାଭିଙ୍କର ପୁତ୍ର ଋଷଭଦେବ ପ୍ରଧାନ । ଋଷଭ ଥିଲେ ଭଗବାନଙ୍କର ଅନ୍ୟ ଏକ ଅବତାର । ସେ ବେଦ, ବ୍ରାହ୍ମଣ, ଯଜ୍ଞର ଅନୁଷ୍ଠାତା । ଋଷଭଙ୍କର ଶହେ ଜଣ ପୁତ୍ର । ଏକାଶୀ ଜଣ ବ୍ରାହ୍ମଣ ହୋଇଗଲେ । ବାକି ପୁତ୍ରମାନଙ୍କ ମଧ୍ୟରୁ ନଅ ଜଣ ନଅଟି ଦ୍ୱୀପର ରାଜା ଥିଲେ । ନଅ ଜଣ ଯୋଗୀଶ୍ୱର ହୋଇଗଲେ । ଏକାଦଶ ସ୍କନ୍ଧରେ ଏହି ଯୋଗୀଶ୍ୱରମାନଙ୍କୁ ନବଯୋଗୀନ୍ଦ୍ର ବୋଲି କୁହାଯାଇଛି । ବାକି ଯେ ରହିଲେ ସେ ହେଲେ ରାଜା ଭରତ । ଯେ ରାଜଚକ୍ରବର୍ତ୍ତୀ ଭାବରେ ପ୍ରସିଦ୍ଧ ହୋଇଥିଲେ । ତାଙ୍କ ନାମାନୁସାରେ ଦେଶର ନାମ ଭାରତ ହେଲା । ମହାରାଜା ପୃଥୁ ପ୍ରଜାମାନଙ୍କୁ ଉପଦେଶ ଦେବାପରି ଋଷଭଦେବ ପୁତ୍ରମାନଙ୍କୁ ଉପଦେଶ ଦେଇଥିଲେ-- **'ନାୟଂ ଦେହୋ ଦେହଭାଜାମ୍ ନୃଲୋକେ'** । ଶରୀର ଭୋଗପାଇଁ ନୁହେଁ ଯୋଗପାଇଁ । ସାଧୁ ମହାତ୍ମା ଗୁରୁଜନଙ୍କର ଅନୁଗ୍ରହ ଲାଭ ବାଞ୍ଛନୀୟ ।

## ରାଜା ଭରତ

ରାଜା ଭରତଙ୍କର ମନୋରମ ଜୀବନ ଚରିତ ଏଥିରେ ବର୍ଣ୍ଣିତ ହୋଇଛି । ଭରତ ସମସ୍ତ ପ୍ରକାର ଯଜ୍ଞ ଓ ପ୍ରଜାପାଳନ ଆଦିକରି ଶେଷକୁ ପୁତ୍ରମାନଙ୍କ ମଧ୍ୟରେ ରାଜ୍ୟ ବାଣ୍ଟିଦେଇ ବନକୁ ଚାଲିଗଲେ । ଭକ୍ତିତଦ୍‌ଗତ ଚିତ୍ତରେ ଜଣେ ପରମ ତପସ୍ୱୀ ଭାବରେ ସେ କାଳଯାପନ କରୁଥିବାବେଳେ ଏକ ହରିଣଶାବକର ଆସକ୍ତିରେ ପଡ଼ିଗଲେ । ଯାହାଫଳରେ ପରଜନ୍ମରେ ସେ ମୃଗ ହୋଇ ଜନ୍ମହେଲେ । କିନ୍ତୁ ସେ ଜାତିସ୍ମର ବା ପୂର୍ବଜନ୍ମର କଥା ସ୍ମରଣ କରୁଥିଲେ । ତା'ପରେ ଏକ ବ୍ରାହ୍ମଣକୁଳରେ ତାଙ୍କର ଜନ୍ମ ହେଲା । ତାଙ୍କର ପିତା ଯେତେ ଚେଷ୍ଟାକଲେ ମଧ୍ୟ ବିଦ୍ୟାଲାଭ ବା ଯଜ୍ଞକର୍ମ ଆଦି ପ୍ରତି ତାଙ୍କର ମନ ଲାଗିଲା ନାହିଁ । ସେ ପାଗଳପ୍ରାୟ ଅବଧୂତ ହୋଇ ବୁଲିବା ଅବସ୍ଥାରେ ସିନ୍ଧୁସୌବୀର ଦେଶର ରାଜା ରହୁଗଣଙ୍କର ହାବୁଡ଼ରେ ପଡ଼ିଗଲେ । ରାଜାଙ୍କର ଗୋଟିଏ ଶିବିକାବାହକର ଅଭାବ ଥିଲା । ତାଙ୍କୁ ଧରିନେଇ ସେହି କାର୍ଯ୍ୟରେ ଲଗାଗଲା । ଏହି କାର୍ଯ୍ୟରେ ତାଙ୍କର ଅଭିଜ୍ଞତା ନ ଥିବାଯୋଗୁଁ ଶିବିକାଟି ଠିକ୍‌ଭାବରେ ଚାଲିଲା ନାହିଁ । ରାଜା କ୍ରୁଦ୍ଧ ହୋଇ ଗାଳିଦେଲେ, ତୁମେ ତ ବେଶ୍ ସୁସ୍ଥ ସବଳ ଦେଖାଯାଉଛ । ଦୁଇଟି ବଳଦର କାମ ଏକାକୀ କରି ପାରିବ । ଅନ୍ୟମାନଙ୍କ ସହିତ ଶିବିକା ବୋହିବାରେ କ'ଣ ଅସୁବିଧା ହେଉଛି ? ଭରତ କହିଲେ ରାଜା, ତୁମେ ଯଦି ଶରୀରର କଥା କହୁଛ, ତା'ହେଲେ ତୁମ ଶରୀର ପରି ଏହା ଏକ ରକ୍ତମାଂସରେ ଗଢ଼ା । ମୁଁ ପାଗଳ ନୁହେଁ । ମୋର ମନ ପରମାତ୍ମାଙ୍କଠାରେ ସ୍ଥିର ରହିଛି, ବାହାରର ବସ୍ତୁରେ ନୁହେଁ । ଆତ୍ମା କାହାର ପ୍ରଭୁ ନୁହେଁ ବା କାହାର ଦାସ ନୁହେଁ । କିଏ ଆଦେଶ ଦେବ ଏବଂ କିଏ ତାହା ମାନିବ । ହେ ରାଜା, ଏହି ସତ୍ୟକୁ ତୁମେ ଉପଲବ୍ଧି କର । ରାଜା ଆଶ୍ଚର୍ଯ୍ୟ ହୋଇଗଲେ ଓ ଭରତଙ୍କୁ ନିଜର ଗୁରୁ ବୋଲି ସ୍ୱୀକାର କଲେ ଓ ତାଙ୍କଠାରୁ ତତ୍ତ୍ୱୋପଦେଶ ଶୁଣିବାପାଇଁ ପ୍ରାର୍ଥନା କଲେ । ଭରତ ଯେଉଁ ତତ୍ତ୍ୱୋପଦେଶ ଦେଇଥିଲେ ତା'ର ସାରକଥା ହେଉଛି, ସଂସାର ଅବିଦ୍ୟାକଳ୍ପିତ । ଏଥିରୁ ମୁକ୍ତି ପାଇବା କଠିନ । ଭଗବତ୍‌ଭକ୍ତିଦ୍ୱାରା ବୁଦ୍ଧି ଶୁଦ୍ଧ ହୁଏ ଏବଂ ତଦ୍ଦ୍ୱାରା ଆତ୍ମଜ୍ଞାନବଳରେ ମୁକ୍ତି ସମ୍ଭବ ହୁଏ । ଭରତ ଏହିପରି ଅବଧୂତ ଭାବରେ ଦାବାଗ୍ନିରେ ନିଜ ଶରୀରପାତ କରିଥିଲେ ଓ ଭଗବାନଙ୍କର ପରମଧାମ ପ୍ରାପ୍ତ ହୋଇଥିଲେ ।

ଏହି ସ୍କନ୍ଧରେ ବିଭିନ୍ନ ଦ୍ୱୀପ, ସ୍ୱର୍ଗ ଓ ନରକ ଆଦିର ବିସ୍ତୃତ ବର୍ଣ୍ଣନା କରାଯାଇଛି । ଯେ ପର୍ଯ୍ୟନ୍ତ ସୂର୍ଯ୍ୟ, ଚନ୍ଦ୍ର ଓ ନକ୍ଷତ୍ର ଆଦିର ପ୍ରକାଶ ଦେଖିବାକୁ ମିଳେ ସେ ପର୍ଯ୍ୟନ୍ତ ଖଗୋଳ ବା ଭୂଗୋଳ ରହିଛି । ତାହା ହେଉଛି ଭଗବାନଙ୍କର ଶରୀର । ସପ୍ତଦ୍ୱୀପରୂପକ ପଦ୍ମକୋଷର ଭିତର ଅଂଶ ହେଉଛି ଜମ୍ବୁଦ୍ୱୀପ । ତା'ର ନଅଟି ବର୍ଷ ବା ଦେଶ । ଏ ସବୁ ବର୍ଷର ବର୍ଣ୍ଣନା

କରାଯାଇଛି । ଅନ୍ତରୀକ୍ଷ, ସୂର୍ଯ୍ୟ, ଚନ୍ଦ୍ର, ଗ୍ରହ, ନକ୍ଷତ୍ର, ସପ୍ତର୍ଷି, ବିଷ୍ଣୁପଦ ଏବଂ ଧ୍ରୁବଲୋକ । ପୃଥିବୀର ତଳେ ଅଛି ନରକ । ଏମାନେ ଅର୍ଥାତ୍ ପୃଥିବୀ, ଦ୍ୱୀପ, ବର୍ଷ, ନଦୀ, ପର୍ବତ, ଆକାଶ, ସମୁଦ୍ର, ପାତାଳ, ଦଶଦିଗ, ନରକ, ଆକାଶରେ ସ୍ଥିତ ଜ୍ୟୋତିଷଗଣ ଭଗବାନଙ୍କ ସ୍ଥୂଳ ଶରୀରର ସ୍ୱରୂପ ମାତ୍ର ।

# ଷଷ୍ଠ ସ୍କନ୍ଧ

## ପୋଷଣ

ପଞ୍ଚମ ସ୍କନ୍ଧରେ ମନୁଷ୍ୟ ନିଜକୃତ ପାପଯୋଗୁଁ କିପରି ନରକଯନ୍ତ୍ରଣା ଭୋଗକରେ ତାହା ଶ୍ରୀ ଶୁକଦେବ ବର୍ଣ୍ଣନା କରିଛନ୍ତି । କାରୁଣିକ ପରିକ୍ଷିତ ତାଙ୍କୁ ପଚାରିଛନ୍ତି, କିପରି ସଂସାରରେ ମନୁଷ୍ୟ ନରକର ଏହି ଯନ୍ତ୍ରଣାରୁ ରକ୍ଷା ପାଇପାରିବ । ଏହାର ଉତ୍ତରରେ ଶ୍ରୀ ଶୁକଦେବ କହିଛନ୍ତି, ମନୁଷ୍ୟ ନିଜ ଜୀବନକାଳ ମଧ୍ୟରେ ତାର ପାପପାଇଁ ପ୍ରାୟଶ୍ଚିତ୍ତ କରିବା ଦରକାର । ଆତ୍ମଜ୍ଞାନ ହେଉଛି ଏକ ଉପାୟ । ସେହିପରି ସଂଯତ ସନ୍ନ୍ୟାସୀ ନିଜର ବହିରିନ୍ଦ୍ରିୟମାନଙ୍କୁ ନିୟନ୍ତ୍ରଣକରି ଅହିଂସା ବ୍ରତ ପାଳନ କରିବ । ମଦ, ମାତ୍ସର୍ଯ୍ୟ ଆଦି ଷଡ଼ରିପୁଙ୍କଠାରୁ ଦୂରରେ ରହିବ ଓ ସବୁ ପ୍ରାଣୀଙ୍କପ୍ରତି ସମଭାବ ପୋଷଣ କରିବ । କିନ୍ତୁ ସବୁରି ମଧ୍ୟରେ ଭଗବାନଙ୍କପ୍ରତି ଅଚଳାଭକ୍ତି ହେଉଛି ଶ୍ରେଷ୍ଠ । ଯେଉଁ ବ୍ୟକ୍ତି ତା'ର ହୃଦୟପଦ୍ମରେ ଭଗବାନଙ୍କର ଚିନ୍ତା କରୁଥିବ, ସ୍ୱପ୍ନରେ ମଧ୍ୟ ଯମ ତାର କିଛି କରିପାରିବ ନାହିଁ । ସେଥିରେ ସେ ଅଜାମିଳର ଉପାଖ୍ୟାନ କହିଛନ୍ତି । ବହୁ ପାପକରି ଅଜାମିଳ ମୃତ୍ୟୁ ସମୟରେ କେବଳ ନାରାୟଣ ବୋଲି ଡାକି ଯମଦଣ୍ଡରୁ ରକ୍ଷା ପାଇଗଲା ଏବଂ ଏହି ନାରାୟଣ ଥିଲା ତା ପୁତ୍ରର ନାମ । ତେଣୁ ହରିନାମର ମାହାତ୍ମ୍ୟ କେତେ ତାହା ଏଥିରେ ଦର୍ଶାଯାଇଛି ।

## ନାରାୟଣ କବଚ

ନାରାୟଣ ନାମ ସହ ଏହି ସ୍କନ୍ଧରେ ନାରାୟଣକବଚ୍‌ର ଉଲ୍ଲେଖ କରାଯାଇଛି । ବୃହସ୍ପତିଙ୍କୁ ଅପମାନିତ କରିଥିବାଯୋଗୁଁ ବୃହସ୍ପତି ଇନ୍ଦ୍ରଙ୍କୁ ଛାଡ଼ି ଚାଲିଗଲେ । ବୃହସ୍ପତି ଯିବା ପରେ ଇନ୍ଦ୍ର ଓ ଦେବତାମାନଙ୍କର ତେଜ ହ୍ରାସ ହେଲା । ତାର ସୁଯୋଗ ନେଇ ଅସୁରମାନେ ଇନ୍ଦ୍ର ଓ ଦେବତାମାନଙ୍କୁ ଯୁଦ୍ଧରେ ପରାସ୍ତ କଲେ । ଗୁରୁ ନ ଥିବା ଦେବତାମାନେ ତ୍ୱଷ୍ଟାଙ୍କ ପୁତ୍ର ବିଶ୍ୱରୂପଙ୍କୁ ବରଣ କରିବାରୁ ସେ ଇନ୍ଦ୍ରଙ୍କୁ ନାରାୟଣକବଚ ମନ୍ତ୍ର ଦାନକଲେ । 'ନମୋ ନାରାୟଣାୟ'ରୁ ଏହି ମନ୍ତ୍ର ଆରମ୍ଭ ଏବଂ ଏଥିରେ ଭଗବାନଙ୍କର ବିଭିନ୍ନ ଅବତାର ଓ ଲୀଳା ଏବଂ ତାଙ୍କ ଶଙ୍ଖ, ଚକ୍ର, ଗଦା, ପଦ୍ମ ଆଦି ଅସ୍ତ୍ରର ମାହାତ୍ମ୍ୟ ବର୍ଣ୍ଣନା କରାଯାଇଛି । ଏହି କବଚ ବଳରେ ଇନ୍ଦ୍ର ପୁଣି ତାଙ୍କର ରାଜ୍ୟ ଫେରିପାଇଲେ । ନାରାୟଣକବଚ ଭାଗବତର ଏକ ପ୍ରଧାନ ମନ୍ତ୍ର । ଏହାକୁ ଅଭ୍ୟାସ କଲେ ମହାବିପଦରୁ ମନୁଷ୍ୟ ରକ୍ଷାପାଇପାରେ ବୋଲି କୁହାଯାଇଛି ।

## ବୃତ୍ରାସୁର

କିଛିକାଳ ପରେ ଦେବତାମାନଙ୍କପାଇଁ ଯଜ୍ଞ କରୁଥିବାବେଳେ ବିଶ୍ୱରୂପ ଅସୁରମାନଙ୍କ ମଙ୍ଗଳ ପାଇଁ ଘୃତାହୁତି ଦେଲେ । କାରଣ ତାଙ୍କର ମାତା ଥିଲେ ଅସୁରକନ୍ୟା । ଇନ୍ଦ୍ର ଏଥିରେ କ୍ଷୁବ୍ଧ ହୋଇ ତାଙ୍କର ଶିରଚ୍ଛେଦନ କଲେ । ବ୍ରାହ୍ମଣ ଓ ଗୁରୁଙ୍କୁ ହତ୍ୟା

କରିଥିବାହେତୁ ଇନ୍ଦ୍ରଙ୍କୁ ଗୁରୁହତ୍ୟା ଓ ବ୍ରହ୍ମହତ୍ୟାର ପାପ ଲାଗିଲା । ଏଣେ ତ୍ୱଷ୍ଟା ନିଜର ପୁତ୍ର ବିଶ୍ୱରୂପଙ୍କ ମୃତ୍ୟୁରେ କ୍ରୁଦ୍ଧ ହୋଇ ଏପରି ଏକ ଯଜ୍ଞ କଲେ, ଯେଉଁ ଯଜ୍ଞରୁ ବୃତ୍ରାସୁର ନାମକ ଏକ ଭୟଙ୍କର ଦୈତ୍ୟ ପ୍ରକଟ ହେଲା । ଇନ୍ଦ୍ରଙ୍କୁ ମାରିବାପାଇଁ ତ୍ୱଷ୍ଟା ବୃତ୍ରାସୁରକୁ ପଠାଇଲେ । ଇନ୍ଦ୍ର ସମେତ ଦେବତାମାନେ ଏହି ଭୟାନକ ଦୈତ୍ୟର ସମ୍ମୁଖୀନ ହୋଇ ନ ପାରି ସ୍ୱର୍ଗଛାଡ଼ି ପଳାଇଗଲେ ଓ ଭଗବାନଙ୍କର ଶରଣାପନ୍ନ ହେଲେ । ଭଗବାନ କହିଲେ, ଦଧୀଚି ମୁନିଙ୍କର ହାଡ଼ରେ ବଜ୍ର ନିର୍ମାଣ କଲେ ସେଥିରେ କେବଳ ଏହି ଦୈତ୍ୟର ନିଧନ ହୋଇପାରିବ । ଦେବତାମାନଙ୍କର ଆତୁର ଆବେଦନରେ ଦଧୀଚି ଦେହତ୍ୟାଗ କରି ତାଙ୍କର ଅସ୍ଥି ଦାନ କଲେ ଏବଂ ଏଥିରେ ବଜ୍ର ନିର୍ମିତ ହେଲା । ବୃତ୍ରାସୁର ଥିଲା ପୂର୍ବଜନ୍ମରେ ଏକ ଗନ୍ଧର୍ବ ଓ ଭଗବାନଙ୍କର ପରମ ଭକ୍ତ । ଥରେ ଶିବଙ୍କ କୋଳରେ ପାର୍ବତୀ ବସିଥିବାବେଳେ ସେ ଉପହାସ କରିବାରୁ ପାର୍ବତୀ ତାକୁ ରାକ୍ଷସ ଯୋନିରେ ଜନ୍ମ ହେବାପାଇଁ ଅଭିଶାପ ଦେଇଥିଲେ । ତେଣୁ ରାକ୍ଷସ ଜନ୍ମରେ ଇନ୍ଦ୍ର ଓ ଦେବତାମାନଙ୍କର ଶତ୍ରୁ ହେଲେ ମଧ୍ୟ ସେ ଭଗବାନଙ୍କର ଜଣେ ପରମ ଭକ୍ତ ଥିଲା । ଭୀଷଣ ଯୁଦ୍ଧରେ ଇନ୍ଦ୍ର ବଜ୍ରଧାରୀ ହୋଇ ମଧ୍ୟ ବାରମ୍ବାର ହାରୁଥିବା ବେଳେ ବୃତ୍ରାସୁର କହିଲା, ଇନ୍ଦ୍ର, ଏହି ବଜ୍ରକୁ କାହିଁକି ଧରିଛ, ଶୀଘ୍ର ମାର । ମୋତେ ଏହି ସଂସାର ଏକ ନାଟକ ପରି ଦେଖାଯାଉଛି । ମୋର ସ୍ୱର୍ଗରାଜ୍ୟ ଦରକାର ନାହିଁ । କେବଳ ଭଗବାନଙ୍କ ଚରଣରେ ସର୍ବଦା ପ୍ରେମ ଦରକାର । ଯେପରି ପକ୍ଷୀଶାବକ ତାର ମାତାକୁ, ଭୋକିଲା ବାଛୁରୀ ଗାଈକୁ ଏବଂ ବିଦେଶରେ ଥିବା ପତି ତାର ପ୍ରିୟତମାର ଚିନ୍ତା କରେ, ସେହିପରି ମୋର ଚିନ୍ତା ହେଉଛି ଭଗବାନଙ୍କଠାରେ ମନ ଲାଗିରହୁ । ଇନ୍ଦ୍ରବଜ୍ରରେ ବୃତ୍ରାସୁରର ମୃତ୍ୟୁ ହେଲେ ମଧ୍ୟ ସେ ଭଗବାନଙ୍କର ପରମ ଭକ୍ତ ଥିବାରୁ ମୁକ୍ତ ହୋଇଗଲା ।

## ଚିତ୍ରକେତୁ

ତୃତୀୟ ଆଖ୍ୟାୟିକା ହେଉଛି ରାଜା ଚିତ୍ରକେତୁଙ୍କର । ତାଙ୍କର ସନ୍ତାନ ନ ହେବାରୁ ସେ ଦୁଃଖରେ କାଳଯାପନ କରୁଥିଲେ । ଦିନେ ଅଙ୍ଗିରା ଋଷି ଆସି ପହଞ୍ଚିବାରୁ ପୁତ୍ରପାଇଁ ସେ ତାଙ୍କୁ ବହୁ ଅନୁନୟ କଲେ । ଅଙ୍ଗିରାଙ୍କ କୃପାରୁ ମହାରାଣୀଙ୍କ ଗର୍ଭରୁ ଏକ ପୁତ୍ର ସନ୍ତାନ ଜନ୍ମ ହେଲା । ରାଜା ରାଣୀ ସନ୍ତାନ ପ୍ରେମରେ ବିହ୍ୱଳ ହୋଇଗଲେ । ମାତ୍ର ପାଟରାଣୀଙ୍କର ଯେଉଁ ସଉତୁଣୀ ଅନ୍ୟ ରାଣୀମାନେ ଥିଲେ, ସେମାନେ ରାଜକୁମାରଙ୍କୁ ପ୍ରଚ୍ଛନ୍ନଭାବରେ ବିଷ ଦେବାଫଳରେ ତାଙ୍କର ମୃତ୍ୟୁ ହୋଇଗଲା । ରାଜା ଓ ରାଣୀଙ୍କର ଶୋକର ସୀମା ରହିଲା ନାହିଁ । ରାଜପ୍ରାସାଦରେ ଶୋକର ଛାୟା । ଅଙ୍ଗିରା ଓ ନାରଦ ଋଷି ଆସି ଯେତେ ବୁଝାଇଲେ ମଧ୍ୟ ରାଜାଙ୍କର ଶୋକ ନିବାରଣ ହେଲା ନାହିଁ । ଋଷି ଦୁହେଁ ରାଜାଙ୍କୁ କହିଲେ, ଆମେ ଜୀବାତ୍ମାକୁ ଡାକିଆଣୁଛୁ । ସେ କ'ଣ କହୁଛି ତୁମେ ଶୁଣ । ଜୀବାତ୍ମା କହିଲା, ମୁଁ ନିଜର କର୍ମ ଅନୁସାରେ ଦେବ, ମନୁଷ୍ୟ, ପଶୁପକ୍ଷୀ ଆଦି ବିଭିନ୍ନ ଯୋନିରେ ଜନ୍ମ ହୋଇ ଏହି ସଂସାରଚକ୍ରରେ ଘୂରି ବୁଲୁଛି । ଏମାନେ କିପରି ମୋର ପିତାମାତା ହେଲେ ? ଏହି ସଂସାରରେ କେହି କାହାର ମିତ୍ର ନୁହେଁ କି ଶତ୍ରୁ ନୁହେଁ, ପୁତ୍ର ନୁହେଁ କି ପିତା ନୁହେଁ । ଜଗତ୍ ହେଉଛି କେବଳ ପରମାତ୍ମାଙ୍କର ଖେଳ । ଏଥିରେ ରାଜା, ରାଣୀ ଓ ଅନ୍ୟ ସମସ୍ତେ ଆଶ୍ଚର୍ଯ୍ୟ ହୋଇଗଲେ । ନାରଦଙ୍କଠାରୁ ଦିବ୍ୟ ମନ୍ତ୍ର ଲାଭ କରି ରାଜା ଭଗବାନଙ୍କର ଆରାଧନା କଲେ । ସେଥିରେ ତାଙ୍କର ପାପ ନଷ୍ଟ ହୋଇଗଲା । ସେ ପୂର୍ବେ ବିଦ୍ୟାଧରଙ୍କର ରାଜା ଚିତ୍ରକେତୁ ଥିଲେ । ପୁଣି ସେ ନିଜର ସ୍ୱରୂପକୁ ଫେରିଗଲେ ।

ଏହିପରି ପୋଷଣ ତତ୍ତ୍ୱରେ ଦେବତା, ମନୁଷ୍ୟ ଓ ଅସୁର ସମସ୍ତଙ୍କପ୍ରତି ଭଗବାନଙ୍କର ଅନୁଗ୍ରହ ବର୍ଣ୍ଣିତ ହୋଇଛି ।

# ସପ୍ତମ ସ୍କନ୍ଧ

## ଊତି

ସପ୍ତମ ସ୍କନ୍ଧରେ ଅଛି ଊତି ବା କର୍ମବାସନା । ଏଥିରେ ହିରଣ୍ୟକଶିପୁ ଓ ପ୍ରହ୍ଲାଦଙ୍କର ଚରିତ ବର୍ଣ୍ଣନା ହୋଇଛି । ଭଗବାନଙ୍କ ସହିତ ପାଞ୍ଚ ପ୍ରକାର ସମ୍ବନ୍ଧ ଯୋଡ଼ିବାଦ୍ୱାରା ମନୁଷ୍ୟର କଲ୍ୟାଣ ହୁଏ ।

**ଗୋପ୍ୟଃ କାମାଦ୍ ଭୟାତ୍ କଂସୋ ଦ୍ୱେଷାଚ୍ଚୈଦାଦୟୋ ନୃପାଃ**
**ସମ୍ବନ୍ଧାତ୍ ବୃଷ୍ଣୟଃ ସ୍ନେହାଦ୍ ଯୂୟଂ ଭକ୍ତ୍ୟା ବୟଂ ବିଭୋ ।**

କାମଭାବରେ ଗୋପୀମାନେ, ଭୟରେ କଂସ, ଶତ୍ରୁଭାବରେ ଶିଶୁପାଳ, ସମ୍ବନ୍ଧରେ ଯାଦବମାନେ, ସ୍ନେହବଶରେ ପାଣ୍ଡବମାନେ ଓ ଭକ୍ତିଦ୍ୱାରା (ଆମେ) ଋଷିମାନେ ଭଗବାନଙ୍କୁ ଲାଭ କରିଥିଲେ । ପୂର୍ବରୁ କୁହାଯାଇଛି ଯେ ଭଗବାନଙ୍କର ପାର୍ଷଦ ଜୟ, ବିଜୟ ଅଭିଶାପଗ୍ରସ୍ତ ହୋଇଥିଲେ । ତିନି ଜନ୍ମରେ ସେମାନଙ୍କୁ ମୁକ୍ତି ଦେବାପାଇଁ ଭଗବାନ ଅବତାର ଗ୍ରହଣ କଲେ । ପ୍ରଥମ ଜନ୍ମରେ ହିରଣାକ୍ଷ ଓ ହିରଣ୍ୟକଶିପୁ । ତାଙ୍କୁ ବରାହ ଓ ନୃସିଂହ ଅବତାରରେ । ଦ୍ୱିତୀୟ ଜନ୍ମରେ ରାବଣ ଓ କୁମ୍ଭକର୍ଣ୍ଣଙ୍କୁ ରାମାବତାରରେ ଏବଂ ଶିଶୁପାଳ ଓ ଦନ୍ତବକ୍ତ୍ରଙ୍କୁ କୃଷ୍ଣାବତାରରେ ଉଦ୍ଧାର କଲେ ।

## ନୃସିଂହ ଅବତାର

ହିରଣାକ୍ଷର ମୃତ୍ୟୁପରେ ହିରଣ୍ୟକଶିପୁ ତାର ପ୍ରତିଶୋଧ ନେବାପାଇଁ ବ୍ୟାକୁଳ ହୋଇଉଠିଲା । ନିଜ ରାଜ୍ୟରେ ବିଷ୍ଣୁ ଭକ୍ତମାନଙ୍କୁ ବହୁ କଷ୍ଟ ଦେଲା । ଯଜ୍ଞ, ହବନ, ଦାନ ଆଦି ବନ୍ଦ ହୋଇଗଲା । ବିଷ୍ଣୁଙ୍କୁ ମାରିବାପାଇଁ ସେ ଘୋର ତପସ୍ୟା କଲା । ବ୍ରହ୍ମାଙ୍କୁ ସନ୍ତୁଷ୍ଟକରି ବର ମାଗିଲା---ମୋର ମୃତ୍ୟୁ ଜଳ, ସ୍ଥଳ, ଆକାଶରେ, ଘର ଭିତରେ ବା ବାହାରେ କେଉଁଠି ହେଲେ ହେବ ନାହିଁ । ମନୁଷ୍ୟ ବା ଅନ୍ୟ କୌଣସି ପ୍ରାଣୀ ମୋତେ ମାରିପାରିବ ନାହିଁ । ବ୍ରହ୍ମା ବର ଦେଲେ । ସେହି ବରରେ ବଳୀୟାନ୍ ହିରଣ୍ୟକଶିପୁ ତ୍ରିଲୋକକୁ କରଗତ କଲା । ସମ୍ପୂର୍ଣ୍ଣ ଇନ୍ଦ୍ରସମ୍ପଦ ଭୋଗକରି ମଧ୍ୟ ସେ ସନ୍ତୁଷ୍ଟ ହେଲା ନାହିଁ । ଭଗବାନଙ୍କ ପ୍ରତି ଏହି ଶତ୍ରୁତାରେ ପୁତ୍ରକୁ ଦୀକ୍ଷିତ କରିବାପାଇଁ ସେ ଶୁକ୍ରାଚାର୍ଯ୍ୟଙ୍କର ପୁତ୍ରମାନଙ୍କୁ ତା'ର ପୁତ୍ରର ଗୁରୁରୂପେ ନିଯୁକ୍ତ କଲା । କିଛି ସମୟପରେ ପୁଅ କ'ଣ ପଢ଼ିଛି, ତାହା ଜାଣିବାପାଇଁ ପ୍ରହ୍ଲାଦଙ୍କୁ କୋଳକୁ ନେଇ ହିରଣ୍ୟକଶିପୁ ପଚାରିଲା, କ'ଣ ପଢ଼ିଛୁ, କ'ଣ ଭଲଲାଗିଲା ? ପ୍ରହ୍ଲାଦ କହିଲେ, ବିନାଶଶୀଳ ବସ୍ତୁରେ ସୁଖ ନାହିଁ । ଗୃହ ତ୍ୟାଗକରି ବନରେ ଭଜନ କରିବା ଭଲ । ରାଜା ଯେତେ ପ୍ରହ୍ଲାଦଙ୍କୁ ରାକ୍ଷସୀ ବିଦ୍ୟା ପଢ଼ାଇବାପାଇଁ ଚେଷ୍ଟା କଲା ସେ ତାହା ନ ପଢ଼ି ଭଗବାନଙ୍କର ଭଜନକଲେ । ହିରଣ୍ୟକଶିପୁକୁ ବିଷ୍ଣୁଙ୍କ ପ୍ରତି ନବଧା ଭକ୍ତି କଥା ଶୁଣାଇଲେ । ହିରଣ୍ୟକଶିପୁ ଶେଷରେ ଭାବିଲା ଏ ମୋର ପୁତ୍ର ନୁହେଁ, ଶତ୍ରୁ । ସେ ଦୈତ୍ୟମାନଙ୍କୁ ଆଦେଶ ଦେଲା, ଏହାକୁ ହତ୍ୟାକର । ସେମାନେ ଅଗ୍ନିରେ ପୋଡ଼ିବାପାଇଁ ବାହାରିଲେ, ଜଳରେ ବୁଡ଼ାଇଲେ, ପର୍ବତ ଉପରୁ ପକାଇଦେଲେ, ବିଷ ପିଆଇଲେ । କିନ୍ତୁ ପ୍ରହ୍ଲାଦଙ୍କର କିଛି ହେଲା ନାହିଁ । ଶେଷରେ ହିରଣ୍ୟକଶିପୁ କ୍ରୁଦ୍ଧ ହୋଇ ନିଜେ ଖଣ୍ଡାଧରି ତାଙ୍କୁ ମାରିବାକୁ ଆସିଲା । କହିଲା, ତୋର ଭଗବାନ ତ ସବୁଠାରେ ଅଛି ବୋଲି କହୁଛୁ, ମୁଁ ଏହି ଖମ୍ବକୁ ଗୋଇଠା ମାରୁଛି । ଯଦି ସେ ତୋତେ ରକ୍ଷାକରିବ, ତେବେ ଏ ଖମ୍ବରୁ ବାହାରି ଆସୁ । ଭଗବାନ ନୃସିଂହ ବାହାରି ଆସିଲେ--**ନ ମୃଗଃ ନ ମାନୁଷଃ** । ଦିନ ନୁହେଁ କି ରାତି ନୁହେଁ-ସନ୍ଧ୍ୟା ସମୟରେ; ଘରେ ନୁହଁ କି ବାହାରେ ନୁହେଁ, ଦୁଆରବନ୍ଧରେ

ନୃସିଂହ ଭଗବାନ ହିରଣ୍ୟକଶିପୁକୁ ଘୋଷାଡ଼ିନେଇ ନଖରେ ତାର ପେଟକୁ ବିଦାରି ତାକୁ ହତ୍ୟାକଲେ । ଭୟଙ୍କର ନୃସିଂହ ମୂର୍ତ୍ତିକୁ ବ୍ରହ୍ମା କି ଦେବତାମାନେ କେହି ଚାହିଁ ପାରିଲେ ନାହିଁ । କିନ୍ତୁ ପ୍ରହ୍ଲାଦଙ୍କ ସ୍ତୁତିରେ ସନ୍ତୁଷ୍ଟ ହୋଇ ଭଗବାନ ବର ମାଗିବାକୁ କହିଲେ । ପ୍ରହ୍ଲାଦ ମାଗିଲେ, ମୋତେ ଆପଣଙ୍କପ୍ରତି ଅଚଳାଭକ୍ତି ଦାନ କରନ୍ତୁ । ମୋର ଆଉ କିଛି ଦରକାର ନାହିଁ । ମୋର ପିତା ବହୁ ଅପରାଧ କରିଛନ୍ତି, ଆପଣ କ୍ଷମାଦେଇ ତାଙ୍କର ଉଦ୍ଧାର କରନ୍ତୁ ।

ଭଗବାନ କହିଲେ, ତୁମର ସମସ୍ତ ପିତୃପୁରୁଷଙ୍କର ଉଦ୍ଧାର ହୋଇଯାଇଛି । ଏବେ ଏହି ରାଜସିଂହାସନକୁ ମୋର ପ୍ରସାଦ ବୋଲି ଗ୍ରହଣକରି ବହୁଦିନଯାଏ ରାଜ୍ୟ ଶାସନକର ।

## ସୀମିତ ଆବଶ୍ୟକତା

ପୁଣି ଏହି ସ୍କନ୍ଧରେ ବିଭିନ୍ନ ବର୍ଣ୍ଣ ଓ ଆଶ୍ରମର ବର୍ଣ୍ଣନା କରାଯାଇଛି । ବ୍ରହ୍ମଚାରୀ, ଗୃହସ୍ଥ, ବାନପ୍ରସ୍ଥୀ ଓ ଶେଷରେ ସନ୍ନ୍ୟାସ ଆଶ୍ରମ । ଚଉଦ ଓ ପନ୍ଦର ଅଧ୍ୟାୟରେ ଜୀବନର ଅତି ମହତ୍ତ୍ୱପୂର୍ଣ୍ଣ କଥା କୁହାଯାଇଛି । (୧) ନିଜର ଆବଶ୍ୟକତାକୁ ଅଳ୍ପ ଓ ସୀମିତ ରଖ । ତାର ପୂରଣପାଇଁ ଧନଅର୍ଜନ କରିବାରେ ଦୋଷ ନାହିଁ । କିନ୍ତୁ ନିଜର ସୀମିତ ଆବଶ୍ୟକତାଠାରୁ ଅଧିକ ଧନ ଅର୍ଜ୍ଜନ କରିବା ହେଉଛି ଚୋରି ।

ସନ୍ଥ କବୀର କହିଥିଲେ -

**ସାଇଁ ଏତୋ ଦିଜିଓ ଯା ମେଁ କୁଟୁମ ବାଁଚାୟ**
**ମେଁ ଭି ଭୁଖା ନା ରହୁଁ ସାଧୁ ଭୁଖା ନ ଯାୟ**

ଅର୍ଥାତ୍ ସାଇଁ, ଯେତିକିରେ ମୋର କୁଟୁମ୍ବକୁ ବଞ୍ଚାଇ ପାରିବି, ନିଜେ ଭୋକିଲା ରହିବି ନାହିଁ କି ଅତିଥି ଅଭ୍ୟାଗତ ଭୋକିଲା ରହିବେ ନାହିଁ, ମୋତେ ସେତିକିମାତ୍ର ଦିଅ ।

(୨) ସଂସାରର ସମସ୍ତ ଜୀବଜନ୍ତୁ ଈଶ୍ୱର ସୃଷ୍ଟ, ସମସ୍ତଙ୍କର ଆବଶ୍ୟକତା ଅଛି । ତେଣୁ ସମସ୍ତଙ୍କ ପ୍ରତି ସମଭାବ ରଖିବା ବିଧେୟ । (୩) ଅତିଥି ସେବା ଗୃହସ୍ଥଙ୍କର କର୍ତ୍ତବ୍ୟ । (୪) ନିଜର ତନ (ଦେହ)କୁ ସେବାକାର୍ଯ୍ୟରେ, ଧନକୁ ଦେବାକାର୍ଯ୍ୟରେ ଓ ମନକୁ ଭଗବାନଙ୍କଠାରେ ଲଗାଇବାରେ ହିଁ ଶୁଦ୍ଧହୁଏ । (୫) ଭଗବାନ ଯାହା ଦେଇଛନ୍ତି ସେଥିରେ ସନ୍ତୁଷ୍ଟ ରହିବା ଆବଶ୍ୟକ ।

**ସନ୍ତୋଷସ୍ତିଷୁ କର୍ତ୍ତବ୍ୟଃ ଆହାରେ ମୈଥୁନେ ଧନେ**
**ସନ୍ତୋଷୋ ନୈବ କର୍ତ୍ତବ୍ୟଃ ଅଧ୍ୟୟନେ ଜପଦାନୟୋଃ ।**

(୬) ସମସ୍ତଙ୍କ ଶରୀରରେ ପରମାତ୍ମା ଅଛନ୍ତି । (୭) ଅନୁଭୂତିଦ୍ୱାରା ଭାବାଦ୍ୱୈତ, କ୍ରିୟାଦ୍ୱୈତ ଓ ଦ୍ରବ୍ୟାଦ୍ୱୈତ ସମ୍ଭବ ହୁଏ । ସୁନା ଓ ସୁନା ମୁଦି ଏକ ବସ୍ତୁ । ମୁଦି ଆଙ୍ଗୁଠିରେ ପିନ୍ଧିଲେ ମଧ୍ୟ ଏହା ସୁନା । ଏହା ହେଉଛି ଭାବାଦ୍ୱୈତ । ନିଜର କାୟମନୋବାକ୍ୟରେ କରାଯାଉଥିବା କର୍ମ ଭଗବାନଙ୍କଠାରେ ଅର୍ପଣ କରିବା କ୍ରିୟାଦ୍ୱୈତ । ସମସ୍ତ ବସ୍ତୁରେ ପରମାତ୍ମାଙ୍କ ଦର୍ଶନ ଦ୍ରବ୍ୟାଦ୍ୱୈତ ।

# ଅଷ୍ଟମ ସ୍କନ୍ଧ

## ମନ୍ୱନ୍ତର

ଏହି ସ୍କନ୍ଧରେ ମନ୍ୱନ୍ତରମାନ ବର୍ଣ୍ଣନା କରାଯାଇଛି । ମନ୍ୱନ୍ତର ହେଉଚି ଜଣେ ଜଣେ ମନୁଙ୍କର ସମୟ । ମନୁ ହେଉଛନ୍ତି ମନୁଷ୍ୟ ଜାତିର ଆଦିପୁରୁଷ । ସଂସାରରେ ଚଉଦ ଜଣ ମନୁ ରହିଆସିଛନ୍ତି । ବର୍ତ୍ତମାନ ସପ୍ତମ ମନୁ ଶ୍ରାଦ୍ଧଦେବ ବା ବୈବସ୍ୱତ ମନୁଙ୍କର ସମୟ ଚାଲିଛି ।

ଏହି ସ୍କନ୍ଧରେ ଅନ୍ୟନାମ ହେଉଛି ସଦ୍‌ଧର୍ମ ପ୍ରକରଣ । ବିବିଧ ରୂପରେ ଭଗବାନଙ୍କର କୃପା ମିଳିଥାଏ । ପ୍ରଥମ ପ୍ରକରଣରେ ଈଶ୍ୱରବିମୁଖ ଜୀବ ସଙ୍କଟରେ ପଡ଼ିବା ଓ ଈଶ୍ୱରଭକ୍ତ କଷ୍ଟରୁ ରକ୍ଷା ପାଇବା କଥା ବର୍ଣ୍ଣନା କରାଯାଇଛି । ଦ୍ୱିତୀୟ ପ୍ରକରଣରେ ଦୈବୀ ଓ ଆସୁରୀ ଶକ୍ତି ମଧ୍ୟରେ ଦ୍ୱନ୍ଦ୍ୱ, ତୃତୀୟରେ ସମ୍ପତ୍ତିର ସମର୍ପଣ, ଚତୁର୍ଥରେ ଶରଣାଗତି ।

## ଗଜ ଉଦ୍ଧାରଣ

ଏହି ସ୍କନ୍ଧରେ ଗଜେନ୍ଦ୍ର ମୋକ୍ଷ ବା ଗଜ ଉଦ୍ଧାରଣ ଏକ ଅନୁପମ ଆଖ୍ୟାୟିକା । ତ୍ରିକୂଟାଚଳ ପର୍ବତରେ ଗଜରାଜ ରହୁଥିଲା । ଏହି ଗଜରାଜ ନିଜର ପରିବାର ସହିତ ଆସକ୍ତ ରହି ବଳଗର୍ବରେ କାହାରିକୁ ଖାତିର କରୁ ନ ଥିଲା । ଦିନେ ପରିବାର ସହିତ ସେ ଏକ ବିଶାଳ ପୁଷ୍କରିଣୀରେ ପାଣି ପିଇବାକୁ ଯାଉଛି, ଏକ ଭୟଙ୍କର କୁମ୍ଭୀର ତାର ପାଦକୁ ଧରିନେଲା । ସେ ନିଜେ ଓ ତାର ପରିବାର ଯେତେ ଚେଷ୍ଟା କଲେ ମଧ୍ୟ କୁମ୍ଭୀରର ବଳ ନିକଟରେ ହାରି ଯାଉଛନ୍ତି । ଗଜେନ୍ଦ୍ର ଆର୍ତ୍ତତ୍ରାଣ ପ୍ରଭୁଙ୍କର ଶରଣ ଭିକ୍ଷାକରି ଏହିପରି ସ୍ତୁତି କରୁଛି – ହେ ଭଗବାନ, ଏହି ସାରା ବିଶ୍ୱ ଆପଣଙ୍କଠାରୁ ପ୍ରକଟ ହୋଇଛି । ଆପଣ ଅତୀନ୍ଦ୍ରିୟ, ପୂର୍ଣ୍ଣ, ସର୍ବସାକ୍ଷୀ । ଆପଣଙ୍କୁ ମୋର ନମସ୍କାର । ମୋର ହୃଦୟରେ ସ୍ଥିତ ପରମାତ୍ମାଙ୍କୁ ମୁଁ ଭୁଲିଯାଇଛି । ନିଜର ଶୁଣ୍ଢରେ ଗୋଟିଏ ପଦ୍ମ ଫୁଲ ଆଣି ଗଜେନ୍ଦ୍ର ଭଗବାନଙ୍କ ଉଦ୍ଦେଶ୍ୟରେ ଅର୍ପଣ କରୁଛି । ଗଜେନ୍ଦ୍ର ମୋକ୍ଷର ଏହି ଅଠେଇଶି ଶ୍ଳୋକ ଭକ୍ତି ସାହିତ୍ୟରେ ଏକ ଅତୁଳନୀୟ ସ୍ଥାନ ଅଧିକାର କରିଛି । ଭଗବାନ କୁମ୍ଭୀରକୁ ମାରି ଗଜକୁ ଉଦ୍ଧାର କରିଛନ୍ତି । **'ଚକ୍ର ପେଶି ନକ୍ର ନାଶି ଉଦ୍ଧରିଲ ଗଜକୁ'** ।

## ସମୁଦ୍ର ମନ୍ଥନ

ଅନ୍ୟ ଏକ ଆଖ୍ୟାୟିକା ସମୁଦ୍ର ମନ୍ଥନ । ଦେବତା ଓ ରାକ୍ଷସମାନେ ଅମୃତ ଲକ୍ଷ୍ୟରେ ସମୁଦ୍ର ମନ୍ଥନ କରୁଛନ୍ତି । ମନ୍ଦର ପର୍ବତ ମନ୍ଥନ ଦଣ୍ଡ । କୂର୍ମରୂପୀ ଭଗବାନ ତାକୁ ଧାରଣ କରୁଛନ୍ତି । ବାସୁକୀ ହୋଇଛି ରଜ୍ଜୁ । ଅସୁରମାନେ ମୁଣ୍ଡ ପଟ ଓ ଦେବତାମାନେ ଲାଞ୍ଜ ପଟ ଧରିଛନ୍ତି । ପ୍ରଥମେ ବିଷର ସୃଷ୍ଟି । ଜଗତର କଲ୍ୟାଣପାଇଁ ଏହି ଭୟାନକ ହଳାହଳକୁ ଭଗବାନ ଶଙ୍କର ପାନ କରୁଛନ୍ତି । ଲକ୍ଷ୍ମୀ ଓ ଚନ୍ଦ୍ରମାର ସୃଷ୍ଟି । ତା'ପରେ ଅମୃତ । ଭଗବାନ ମୋହିନୀ ରୂପରେ ଦେବତାମାନଙ୍କୁ ଅମୃତ ସେବନ କରାଉଛନ୍ତି । ରାକ୍ଷସମାନେ ବଞ୍ଚିତହେବାରୁ ଦେବାସୁର ଯୁଦ୍ଧ । ଅମୃତ ସେବନ କରି ଦେବତାମାନଙ୍କର ବଳ ବଢ଼ିଯାଇଛି । ସେମାନେ ଜୟଲାଭ କରୁଛନ୍ତି । ଅସୁରରାଜ ବଳି ଗୁରୁ ଶୁକ୍ରାଚାର୍ଯ୍ୟଙ୍କର ପ୍ରରୋଚନାରେ ବିଶ୍ୱଜିତ୍ ଯଜ୍ଞ କରୁଛନ୍ତି ।

ରଥ, ଘୋଡ଼ା, ଧ୍ୱଜା, ଧନୁ, ଅକ୍ଷୟ ତୂଣୀର, ଦିବ୍ୟକବଚାଦି ଏହି ଯଜ୍ଞରୁ ବାହାରୁଛି । ଶୁକ୍ରାଚାର୍ଯ୍ୟ ତାଙ୍କୁ ଏକ ଦିବ୍ୟଶଙ୍ଖ ଓ ପିତାମହ ପ୍ରହ୍ଲାଦ ତାଙ୍କୁ ଏକମାଳା ଦାନ କରୁଛନ୍ତି । ଏଥିରେ ବଳୀୟାନ୍ ବଳି ସ୍ୱର୍ଗ ଜୟକରି ଦେବତାମାନଙ୍କୁ ବିତାଡ଼ିତ କଲେ । ଦେବମାତା ଅଦିତିଙ୍କର ଭଗବାନଙ୍କୁ ସ୍ତୁତି ଓ ଭଗବାନଙ୍କର ବାମନ ଅବତାର ।

## ବାମନ ଅବତାର

ବାମନ ଭଗବାନ ବଳିଙ୍କର ଯଜ୍ଞକୁ ଯାଇ ତିନି ପାଦ ଭୂମି ମାଗୁଛନ୍ତି । ବଳିଙ୍କର ପ୍ରତିଶ୍ରୁତି ଓ ଶୁକ୍ରଚାର୍ଯ୍ୟଙ୍କର ବିରୋଧ । ଶୁକ୍ରାଚାର୍ଯ୍ୟ କହୁଛନ୍ତି -- ଏ ମାନବରୂପୀ ବିଷ୍ଣୁ । ତିନି ପାଦ ଭୂମି ଛଳରେ ତୁମର ସମସ୍ତ ସମ୍ପତ୍ତି ହରିନେବେ । ବଳିଙ୍କର ଉତ୍ତର, ମୁଁ ଯେଉଁ କଥା ଦେଇଛି, ତାକୁ ଫେରାଇ ନେଇ ପାରିବି ନାହିଁ । ଯଦି ସେ ଭଗବାନ ବିଷ୍ଣୁ ତା'ହେଲେ ତ ସମସ୍ତ ସମ୍ପତ୍ତି ତାଙ୍କର । ତାଙ୍କୁ ତାହା ଫେରାଇ ଦେବାରେ ଯଶ ଲାଭହେବ । ବାମନଙ୍କର ବିରାଟ ରୂପ, ଗୋଟିଏ ପାଦରେ ସମଗ୍ର ବିଶ୍ୱ ପାରହୋଇ ବ୍ରହ୍ମ ଲୋକ, ଅନ୍ୟପାଦରେ ପୃଥିବୀ ଓ ପାତାଳାଦି ସମସ୍ତ ଲୋକ, ତୃତୀୟ ପାଦ କେଉଁଠି ରଖିବି ବୋଲି ତାଙ୍କର ପ୍ରଶ୍ନ ଓ ବଳିଙ୍କର ବନ୍ଧନ । ବଳି ଉତ୍ତର ଦେଇଛନ୍ତି ମୋର ଇନ୍ଦ୍ରର ବଜ୍ର କିମ୍ବା ଯମଦଣ୍ଡର ଭୟ ନାହିଁ । କେବଳ ନିଜର ଅପକୀର୍ତ୍ତିକୁ ଭୟ । ବର୍ତ୍ତମାନ ତୃତୀୟ ପାଦ ଆପଣ ମୋର ମସ୍ତକ ଉପରେ ରଖନ୍ତୁ । **'ପଦଂ ତୃତୀୟଂ କୁରୁ ଶୀର୍ଷ୍ଣି ମେ ଦ୍ୱିଜ'** ଭଗବାନଙ୍କ ନିକଟରେ ପୂର୍ଣ୍ଣ ଆତ୍ମସମର୍ପଣ କରି ବଳି ମୁଣ୍ଡ ଦେଖାଇଦେଲେ । ପୂର୍ବରୁ ବଳିଙ୍କର ଅଭିମାନ ଥିଲା । ସେ ତ୍ରିଲୋକର ରାଜା ଓ ଏହି ବାମନ ଜଣେ ସାଧାରଣ ବ୍ରାହ୍ମଣ । ବଳିଙ୍କର ବନ୍ଧନ ପରେ ତାଙ୍କର ଅଭିମାନ ତୁଟିଗଲା । ଭଗବାନ ବଳିଙ୍କୁ ସୁତଳ ଲୋକକୁ ପଠାଇଦେଲେ ଏବଂ ବଳିଙ୍କ ଭବନର ସ୍ୱୟଂ ରକ୍ଷକ ସାଜି ତାଙ୍କୁ ଅତୁଳ ବିଭବ ଦାନକଲେ ।

## ମତ୍ସ୍ୟ ଅବତାର

ରାଜର୍ଷି ସତ୍ୟବ୍ରତଙ୍କର କଥା । ଦିନେ ରାଜା କୃତମାଳା ନଦୀରେ ସ୍ନାନ କରି ତର୍ପଣ କରୁଛନ୍ତି, ଗୋଟିଏ ଛୋଟ ମୀନ ତାଙ୍କ ଆଞ୍ଜୁଳାକୁ ଚାଲିଆସି କହିଲା, ମୋତେ ଜଳ ଜନ୍ତୁଙ୍କଠାରୁ ରକ୍ଷାକରନ୍ତୁ । କମଣ୍ଡଳୁରେ ତାକୁ ସେ ରଖିନେଲେ । କିନ୍ତୁ ମାଛ ବଢ଼ିଯିବାରୁ କମଣ୍ଡଳୁ ଛୋଟ ହୋଇଗଲା । ତା'ପରେ ତାକୁ ହ୍ରଦରେ ରଖିଲେ । ହ୍ରଦ ମଧ୍ୟ ଛୋଟ ହୋଇଗଲା । ହ୍ରଦରୁ ସମୁଦ୍ର । ସେଠାରେ ମଧ୍ୟ ମାଛ କହିଲା, ମୋତେ ରକ୍ଷାକର । ଏଥିରେ ଆଶ୍ଚର୍ଯ୍ୟ ହୋଇ ସତ୍ୟବ୍ରତ ପଚାରିଲେ, ଆପଣ ପ୍ରକୃତରେ କିଏ ? ତା'ପରେ ସେ ମତ୍ସ୍ୟରୂପୀ ଭଗବାନଙ୍କର ସ୍ତୁତି କଲେ । ଭଗବାନ କହିଲେ, ପ୍ରଳୟକାଳରେ ନୌକାରେ ବସି ମନୁ ଆସିବେ । ସେହି ନୌକାକୁ ମୋ ଶିଙ୍ଘରେ ବାନ୍ଧିଦେଇ ତୁମେ ନୌକାରେ ବସିଯିବ । ସେତେବେଳେ ମୁଁ ତୁମ ପ୍ରଶ୍ନର ଉତ୍ତର ଦେବି । ସାତ ଦିନ ପରେ ପ୍ରଳୟ ହେଲା । ମତ୍ସ୍ୟରୂପୀ ଭଗବାନ ଯେପରି କହିଥିଲେ, ରାଜା ସତ୍ୟବ୍ରତ ସେହିପରି କଲେ । ତାଙ୍କର ସମସ୍ତ ପ୍ରଶ୍ନରୂପକ ଶଙ୍କାର ସମାଧାନ ହୋଇଗଲା । ଏହା ମତ୍ସ୍ୟ ପୁରାଣରେ ବିଶଦ ଭାବରେ ବର୍ଣ୍ଣିତ ହୋଇଛି । ପ୍ରଳୟ ଶେଷ ହେଲା । ଭଗବାନ ବେଦକୁ ଉଦ୍ଧାର କରି ବ୍ରହ୍ମାଙ୍କୁ ଦେଲେ ।

# ନବମ ସ୍କନ୍ଧ

## ଈଶାନୁ କଥା

ନବମ ସ୍କନ୍ଧ ହେଉଛି ଈଶାନୁ କଥା ବା ଭଗବାନଙ୍କ ଭକ୍ତମାନଙ୍କର କାହାଣୀ । ବ୍ରହ୍ମାଙ୍କ ପୁତ୍ର ମରୀଚି, ମରୀଚିଙ୍କ ପୁତ୍ର କଶ୍ୟପ । କଶ୍ୟପଙ୍କ ପୁତ୍ର ବିବସ୍ୱାନ୍, ବିବସ୍ୱାନ୍‌ଙ୍କ ପୁତ୍ର ଶ୍ରାଦ୍ଧଦେବ । ଶ୍ରାଦ୍ଧଦେବ ନିଃସନ୍ତାନ ଥିବାରୁ ଯଜ୍ଞ କଲେ । ରାଣୀଙ୍କ ଇଚ୍ଛାରେ ଏକ କନ୍ୟା ଜନ୍ମ ହେଲା । କିନ୍ତୁ ରାଜାଙ୍କ ଇଚ୍ଛା ଓ ବଶିଷ୍ଠଙ୍କ ତେଜ ପ୍ରଭାବରେ କନ୍ୟା ପୁତ୍ର ହୋଇଗଲା । ଏହି ପୁତ୍ରର ନାମହେଲା ସୁଦ୍ୟୁମ୍ନ । ଦିନେ ସୁଦ୍ୟୁମ୍ନ ମହାଦେବଙ୍କ ନିଷିଦ୍ଧ ଅରଣ୍ୟରେ ପ୍ରବେଶ କରିବାରୁ ସ୍ତ୍ରୀ ହୋଇଗଲେ । ବୁଧଙ୍କ ସଂଯୋଗରେ ତାଙ୍କର ଏକ ପୁତ୍ର ହେଲା-ପୁରୂରବା । ବଶିଷ୍ଠଙ୍କ ଅନୁଗ୍ରହରୁ ସୁଦ୍ୟୁମ୍ନ ମାସେ ପୁରୁଷ ହେଲେ, ମାସେ ସ୍ତ୍ରୀ ହେଲେ ।

## ଚ୍ୟବନ-ସୁକନ୍ୟା

ସୁଦ୍ୟୁମ୍ନଙ୍କ ପରେ ପୁରୂରବା ରାଜା ହେଲେ । ତାଙ୍କଠାରୁ ଚନ୍ଦ୍ରବଂଶର ଆରମ୍ଭ । ବୈବସ୍ୱତ ମନୁଙ୍କର ସ୍ତ୍ରୀ ଶ୍ରଦ୍ଧା ଦଶ ଜଣ ପୁତ୍ରଙ୍କୁ ଜନ୍ମଦେଲେ । ଜ୍ୟେଷ୍ଠଙ୍କର ନାମ ଇକ୍ଷ୍ୱାକୁ । ତାଙ୍କଠାରୁ ସୂର୍ଯ୍ୟବଂଶର ଆରମ୍ଭ । ପୌରାଣିକ ଯୁଗରେ ଏହି ଦୁଇଟି ବଂଶ ଭାରତବର୍ଷରେ ରାଜପଣ କରୁଥିଲେ । ବୈବସ୍ୱତ ମନୁଙ୍କର ଅନ୍ୟ ଜଣେ ପୁତ୍ର ଶର୍ଯାତି । ଶର୍ଯାତିଙ୍କର କନ୍ୟା ସୁକନ୍ୟା । ସୁକନ୍ୟା ଥରେ ପିତାଙ୍କ ସହିତ ବନରେ ବୁଲୁଥିବାବେଳେ ଏକ ଉଇ ହୁଙ୍କା ଭିତରୁ କ'ଣ ଜୁଳୁଜୁଳୁ ହୋଇ ଦେଖାଯାଉଛି ବୋଲି ମନେକରି ସେଥିରେ ଏକ କଣ୍ଟା ଫୋଡ଼ିଦେଲେ । ତପସ୍ୟା କରି କରି ଚ୍ୟବନ ଋଷିଙ୍କର ଚାରିପଟେ ଉଇହୁଙ୍କା ହୋଇଯାଇଥିଲା ଏବଂ ତାଙ୍କର ଆଖି ଦୁଇଟି ବାହାରୁ ଜୁଳୁଜୁଳୁ ହୋଇ ଦେଖାଯାଉଥିଲା । ଚ୍ୟବନ ଋଷିଙ୍କର କ୍ରୋଧ ସମ୍ବରଣ ପାଇଁ ନିଜର କନ୍ୟାକୁ ରାଜା ଚ୍ୟବନଙ୍କ ସହିତ ବିବାହ ଦେଲେ । ସୁକନ୍ୟାଙ୍କ ପୁଣ୍ୟବଳରେ ଚ୍ୟବନ କିପରି ଯୁବକ ହୋଇଗଲେ ତା'ର ବର୍ଣ୍ଣନା କରାଯାଇଛି ।

## ରାଜା ଅମ୍ବରୀଷ

ପୁଣି ରାଜଚକ୍ରବର୍ତ୍ତୀ ଅମ୍ବରୀଷଙ୍କ କଥା । ବିଷ୍ଣୁଙ୍କର ପରମ ଭକ୍ତ ଅମ୍ବରୀଷ । ସେ ନିଷ୍ଠାର ସହିତ ଏକାଦଶୀ ବ୍ରତ ପରେ ଦ୍ୱାଦଶୀ ପାରଣପାଇଁ ବସିଛନ୍ତି, ଏହି ସମୟରେ ଦୁର୍ବାସା ପହଞ୍ଚିଗଲେ ଓ ରାଜାଙ୍କର ଅତିଥି ହେଲେ । ଦୁର୍ବାସା ସ୍ନାନ କରିବାକୁ ଯାଇଛନ୍ତି, ବହୁ ସମୟ ପର୍ଯ୍ୟନ୍ତ ଆଉ ଫେରିଲେ ନାହିଁ । ବ୍ରତ ପାଳନର ଶେଷ ସମୟ ଦେଖି ରାଜା ଜଳଗ୍ରହଣ କରିବାକୁ ଯାଉଛନ୍ତି ଏହି ସମୟରେ ଦୁର୍ବାସା ଫେରିଆସି କ୍ରୋଧରେ କହିଲେ, ରାଜା, ତୁମେ ଅତିଥିଙ୍କର ଅବଜ୍ଞା କରଛ ତୁମର ବିନାଶ ଘଟିବ । ସେ ଜଟାରୁ ଏକ କୃତ୍ୟା (ଭୟଙ୍କର ରାକ୍ଷସ)କୁ ସୃଷ୍ଟି କରି ରାଜାଙ୍କୁ ମାରିବାକୁ ଆଦେଶ ଦେଲେ ରାଜା ବିଷ୍ଣୁଙ୍କର ପରମଭକ୍ତ ଥିବାରୁ ତାଙ୍କୁ ରକ୍ଷା କରୁଥିବା ସୁଦର୍ଶନ ଚକ୍ର କୃତ୍ୟାକୁ କାଟିଦେଲା ଓ ଦୁର୍ବାସାଙ୍କଆଡ଼କୁ ଧାବିତ ହେଲା । ଦୁର୍ବାସା ଭୟରେ ଚାରିଆଡ଼େ ବୁଲି କେଉଁଠି ହେଲେ ରକ୍ଷା ପାଇଲେ ନାହିଁ । ଶେଷରେ ସେ ରାଜାଙ୍କର ଶରଣ ପଶିଲେ ।

## ଭଗୀରଥ ଗଙ୍ଗାଙ୍କୁ ଆଣିଲେ

ତା'ପରେ ମାନ୍ଧାତା, ତ୍ରିଶଙ୍କୁ ଓ ସଗରଙ୍କର କଥା । ସଗରଙ୍କର ଷାଠିଏ ହଜାର ପୁଅ । ଇନ୍ଦ୍ର ତାଙ୍କର ଯଜ୍ଞାଶ୍ୱକୁ ହରଣ କରିନେବାରୁ ସଗରପୁତ୍ରମାନେ ଖୋଜିବାପାଇଁ ଚାରିଆଡ଼େ ବୁଲି ମହର୍ଷି କପିଳଙ୍କ ଆଶ୍ରମରେ ଅଶ୍ୱଟିକୁ ଦେଖିବାକୁ ପାଇଲେ । ସେମାନେ ତପସ୍ୟାରତ ମହର୍ଷିଙ୍କୁ ଅପମାନିତ କରିବା ଫଳରେ ତାଙ୍କର ଅଭିଶାପରେ ଭସ୍ମ ହୋଇଗଲେ । ସଗରଙ୍କର ନାତି ଅଂଶୁମାନ୍ କପିଳଙ୍କୁ ପ୍ରାର୍ଥନାରେ ସନ୍ତୁଷ୍ଟ କରି ଅଶ୍ୱଟିକୁ ଫେରାଇ ଆଣିଲେ ଓ ଭସ୍ମ ହୋଇଥିବା ସଗରପୁତ୍ରମାନଙ୍କର ମୁକ୍ତିପାଇଁ ତାଙ୍କୁ ନିବେଦନ କଲେ । କପିଳ କହିଲେ, ଗଙ୍ଗାଙ୍କୁ ଆଣି ପାରିଲେ ତୁମ ପିତୃପୁରୁଷଙ୍କର ମୁକ୍ତି ହେବ । ଅଂଶୁମାନ୍ ତପସ୍ୟା କଲେ, ମାତ୍ର ଗଙ୍ଗାଙ୍କୁ ଆଣିପାରିଲେ ନାହିଁ । ଶେଷରେ ତାଙ୍କର ନାତି ଭଗୀରଥ ଗଙ୍ଗାଙ୍କୁ ସନ୍ତୁଷ୍ଟ କରି ତାଙ୍କୁ ପୃଥିବୀକୁ ଆଣିଲେ ଓ ନିଜ ପିତୃପୁରୁଷଙ୍କର ଉଦ୍ଧାର କଲେ । ସେହି ସୂର୍ଯ୍ୟବଂଶରେ ରାଜା ରଘୁ, ଅଜ ଓ ଦଶରଥ ରାଜପଣ କଲେ ଏବଂ ଦଶରଥଙ୍କର ପୁତ୍ର ହେଲେ ଭଗବାନ ଶ୍ରୀରାମଚନ୍ଦ୍ର । ଯାହାଙ୍କର ପାବନ ଚରିତ ସଂକ୍ଷେପରେ ମାତ୍ର ମଧୁରଭାବରେ ବର୍ଣ୍ଣନା କରାଯାଇଛି ।

ରାଜା ନିମିଙ୍କର କଥା । ବଶିଷ୍ଠ ତାଙ୍କୁ ମୃତ୍ୟୁର ଅଭିଶାପ ଦେଇଥିଲେ । ନିମି ମରିଗଲେ ମଧ୍ୟ ତାଙ୍କ ପୁଣ୍ୟର ପ୍ରଭାବରେ ସେ ସମସ୍ତଙ୍କ ଆଖିର ପତାରେ ରହିଗଲେ । ସେଥିରୁ ନିମିଷ ଶବ୍ଦର ସୃଷ୍ଟି ।

ଏହାପରେ ଚନ୍ଦ୍ରବଂଶର କଥା ଏବଂ ଉର୍ବଶୀ-ପୁରୂରବାଙ୍କର ଉପାଖ୍ୟାନ । ରାଜା ଗାଧୀଙ୍କର ପୁତ୍ର ହେଲେ ବିଶ୍ୱାମିତ୍ର । ଯେ ରାଜର୍ଷିରୁ ବ୍ରହ୍ମର୍ଷି ହୋଇଥିଲେ । ଋଷି ଯମଦଗ୍ନି । ଯମଦଗ୍ନିଙ୍କର ପତ୍ନୀ ରେଣୁକା ଓ ପୁତ୍ର ପରଶୁରାମ । ସେ ସହସ୍ରାର୍ଜ୍ଜୁନଙ୍କୁ ବଧ କରି ପୃଥିବୀକୁ ଏକୋଇଶବାର ନିଃକ୍ଷତ୍ରିୟ କରିଥିଲେ । ଭଗବାନ ରାମଚନ୍ଦ୍ରଙ୍କ ଆଗରେ ବଳ ପ୍ରଦର୍ଶନ କରିବାକୁ ବାହାରିବାରୁ ତାଙ୍କର କଳାହରଣ ହୋଇଗଲା ଓ ସେ ତପସ୍ୟାପାଇଁ ମହେନ୍ଦ୍ରଗିରିକୁ ଚାଲିଗଲେ ।

ପୁରୂରବାଙ୍କ ପୁତ୍ର ଆୟୁ । ଆୟୁଙ୍କ ପୁତ୍ର ନହୁଷ । ନହୁଷ ଥରେ ଇନ୍ଦ୍ରପଦ ଲାଭ କରିଥିଲେ । ପୁଣି କଚ୍-ଦେବଯାନୀ, ଦୁଷ୍ମନ୍ତ-ଶକୁନ୍ତଳା ଓ ପରମଭାଗବତ ରାଜା ରନ୍ତିଦେବଙ୍କର ଚରିତ । ଜରାସନ୍ଧର ଜନ୍ମ, ଦୁର୍ବାସାଙ୍କର କୁନ୍ତୀଙ୍କୁ ବରଦାନ ଓ କର୍ଣ୍ଣଙ୍କର ଜନ୍ମ ଓ ପରେ ପଞ୍ଚ ପାଣ୍ଡବଙ୍କର ଜନ୍ମ ।

ଯଦୁବଂଶରେ ରାଜା ମଧୁ । ମଧୁଙ୍କର ପୁତ୍ର ବୃଷ୍ଣି । ଏହି ବଂଶରେ ସୁରସେନଙ୍କର ପୁତ୍ର ହେଲେ ବସୁଦେବ । ବସୁଦେବଙ୍କ ସହିତ କଂସର ଭଉଣୀ ଦେବକୀଙ୍କର ବିବାହ । ଆକାଶବାଣୀ--ଦେବକୀଙ୍କର ପୁତ୍ର କଂସକୁ ନିହତ କରିବ । କଂସଦ୍ୱାରା ଦେବକୀ ଓ ବସୁଦେବ ବନ୍ଦି ଏବଂ ଦେବକୀଙ୍କର ଛଅ ପୁଅ କଂସଦ୍ୱାରା ନିହତ । ସପ୍ତମ ବଳରାମ ଓ ଅଷ୍ଟମ ହେଲେ ଭଗବାନ ଶ୍ରୀକୃଷ୍ଣ । ପରବର୍ତ୍ତୀ ସ୍କନ୍ଧରେ କୃଷ୍ଣଲୀଳାର ବର୍ଣ୍ଣନା ।

## ଦଶମ ସ୍କନ୍ଧ

## ନିରୋଧ

ଦଶମ ସ୍କନ୍ଧ ହେଉଛି ନିରୋଧ । ମନ ସର୍ବଦା ଚଞ୍ଚଳ । ବିଷୟବାସନାପ୍ରତି ଶୀଘ୍ର ଆସକ୍ତ ହୋଇଯାଏ । ଭଗବତ୍‌ଲୀଳା ଶ୍ରବଣଦ୍ୱାରା ଯେଉଁ ଭକ୍ତି ଜାତହୁଏ ସେଥିରେ କେବଳ ମନର ନିରୋଧ କରାଯାଇପାରେ । ସେଥିପାଇଁ ଦଶମ ସ୍କନ୍ଧରେ

ଭାଗବତ ମହାପୁରାଣର ପ୍ରତିପାଦ୍ୟ ଭଗବାନ ଶ୍ରୀକୃଷ୍ଣଙ୍କର ଅମୃତମୟ ଲୀଳାର ବର୍ଣ୍ଣନା କରାଯାଇଛି । ଏହି ଲୀଳା ଶ୍ରବଣପାଇଁ ପରିକ୍ଷିତଙ୍କର ବ୍ୟାକୁଳତା ଉଲ୍ଲେଖଯୋଗ୍ୟ । ଭଗବାନ ଶ୍ରୀକୃଷ୍ଣଙ୍କର ମଧୁରଲୀଳା ଏହି ସ୍କନ୍ଧରେ ବର୍ଣ୍ଣିତ ହୋଇଥିବାରୁ ଏହାକୁ ନିରୋଧ କୁହାଯାଏ । ଜଗତ୍‌ର ବିଷୟବାସନାର ବିସ୍ମରଣ ଓ ଭଗବତ୍ ଆସକ୍ତି ହିଁ ନିରୋଧ । ସାଂସାରିକ ଆସକ୍ତି, ବିଷୟଜଞ୍ଜାଳ କେବେ ଆନନ୍ଦ ଦିଏ ନାହିଁ । ପ୍ରକୃତ ଆନନ୍ଦ ଭଗବାନଙ୍କୁ ଅନ୍ତରଙ୍ଗଭାବରେ ଭଲ ପାଇଲେ ହିଁ ମିଳିପାରିବ ।

ପରିକ୍ଷିତ ଶ୍ରୀ ଶୁକଦେବଙ୍କୁ କହୁଛନ୍ତି, ଆପଣ ଚନ୍ଦ୍ରବଂଶ ଓ ସୂର୍ଯ୍ୟବଂଶ ରାଜାମାନଙ୍କର ବର୍ଣ୍ଣନା କଲେ । ଯଦୁବଂଶର ମଧ୍ୟ ବର୍ଣ୍ଣନା କଲେ । ବର୍ତ୍ତମାନ ସେହି ବଂଶରେ ଜନ୍ମ ହୋଇଥିବା ଭଗବାନ ଶ୍ରୀକୃଷ୍ଣଙ୍କର ପରମ ପବିତ୍ର ଚରିତ ମୋତେ ଶୁଣାଇବା ହୁଅନ୍ତୁ । ଆମର ବଂଶପ୍ରତି ଭଗବାନ ଶ୍ରୀକୃଷ୍ଣଙ୍କର ଅପାର ଅନୁଗ୍ରହ ଥିଲା । ମହାଭାରତ ଯୁଦ୍ଧରେ ସେ ପାଣ୍ଡବମାନଙ୍କୁ ରକ୍ଷା କରି ବିଜୟୀ କରିଥିଲେ । କୌରବ ଓ ପାଣ୍ଡବଙ୍କର ଏକମାତ୍ର ଦାୟାଦ ମୋର ଶରୀରକୁ ଅଶ୍ୱତ୍‌ଥାମାର ବ୍ରହ୍ମାସ୍ତ୍ରରୁ ସେ ରକ୍ଷା କରିଛନ୍ତି । କେବଳ ମୁଁ ନୁହେଁ, ସମସ୍ତ ଶରୀରଧାରୀଙ୍କ ଭିତରେ ସେ ଆତ୍ମାରୂପରେ ରହି ଅମୃତତତ୍ତ୍ୱ ଦାନ କରୁଛନ୍ତି । ମନୁଷ୍ୟ ଶରୀର ଧାରଣ କରିବା ତାଙ୍କର ଏକ ଲୀଳା । ସେ ଲୀଳାମୟଙ୍କର ମଧୁର ପବିତ୍ର ଲୀଳାମାନ ଶୁଣିବାପାଇଁ ମୋର ମନ ବ୍ୟାକୁଳ ହୋଇଉଠୁଛି ।

ଶୁକଦେବ ପରିକ୍ଷିତଙ୍କୁ ପରୀକ୍ଷା କରିବାପାଇଁ କହିଲେ ମହାରାଜ, ଆପଣ ପାଞ୍ଚଦିନ ହେଲା ଗୋଟିଏ ଆସନରେ ବସି ଶୁଣୁଛନ୍ତି । ଭୋକଉପାସରେ ଆପଣଙ୍କ ଶରୀର ଅବଶ ହୋଇଯିବଣି । ତେଣୁ ଆପଣ କିଛି ଖାଇ ନିଅନ୍ତୁ ଓ ସୁସ୍ଥ ହୋଇଯାଆନ୍ତୁ । ପରିକ୍ଷିତ କହିଲେ ଋଷିଶ୍ରେଷ୍ଠ, ମୁଁ ଅନ୍ନ ଜଳ ଛାଡ଼ିଦେଇ ଆପଣଙ୍କର କଥାମୃତ ହିଁ ପାନକରୁଛି । ଯେତେ ଶୁଣିଲେ ମଧ୍ୟ ମୋର ମନ ସନ୍ତୁଷ୍ଟ ହେଉ ନାହିଁ । ଏହି ଭୋକ ଶୋଷ ହିଁ ସମସ୍ତ ଅନର୍ଥର କାରଣ । ଦିନେ ଏହି ଅବସ୍ଥାରେ ମୁଁ ଋଷିଙ୍କ ବେକରେ ମୃତ ସର୍ପ ଗଳାଇ ଦେଇଥିଲି । ଏବେ ମୋର ମନ ସମ୍ପୂର୍ଣ୍ଣ ତୃପ୍ତ । ଅନ୍ୟ କୌଣସି ବିଷୟର ଆବଶ୍ୟକତା ନାହିଁ । କୃଷ୍ଣକଥାରେ ଯେଉଁ ମାଦକତା ଅଛି ଅନ୍ୟ କେଉଁଥିରେ ନାହିଁ । କାରଣ ସେଥିରେ ସମସ୍ତ ରସ ପୂରି ରହିଛି । ବାତ୍ସଲ୍ୟ, ବୀର, ହାସ୍ୟ, କରୁଣ, ଶୃଙ୍ଗାର ଓ ଭୟାନକ ଆଦି । ବାଳକ, ଯୁବକ, ବୃଦ୍ଧ ସମସ୍ତେ କୃଷ୍ଣ ରସରେ ତନ୍ମୟ ହୋଇଯାଆନ୍ତି । ଶୁକଦେବ ନିଜେ ଅନାସକ୍ତ ହୋଇ ମଧ୍ୟ କୃଷ୍ଣ କଥା ଛାଡ଼ିନଥିଲେ । ଶୁକଦେବ ପରିକ୍ଷିତଙ୍କର ଆନ୍ତରିକତାରେ ମୁଗ୍ଧ ହେଲେ ଏବଂ ଦଶମ ଓ ଏକାଦଶ ସ୍କନ୍ଧରେ ତାଙ୍କୁ କୃଷ୍ଣ ଲୀଳାମୃତ ଶୁଣାଇଲେ ।

**'ଉତ୍ତମଶ୍ଳୋକଗୁଣାନୁବାଦାତ୍ କଃ ବିରଜ୍ୟେତ'**

ରାଜାରୂପୀ ଦାନବମାନଙ୍କ ଅତ୍ୟାଚାରରେ ପୃଥ୍ୱୀମାତା ତ୍ରାହିତ୍ରାହି ଡାକଦେଲେ । ସେ ଗାଭୀରୂପରେ ବ୍ରହ୍ମାଙ୍କର ଶରଣାପନ୍ନ ହେଲେ । ପୃଥିବୀଙ୍କୁ ରକ୍ଷା କରିବାପାଇଁ ଦେବଗଣଙ୍କ ସହ ବ୍ରହ୍ମା ଭଗବାନଙ୍କୁ ସ୍ତୁତି କଲେ । ଆକାଶବାଣୀ ହେଲା--ପୃଥିବୀର ଭାରହରଣ କରିବାପାଇଁ ଭଗବାନ ଶୀଘ୍ର ଅବତାର ଗ୍ରହଣ କରିବେ । ଯଦୁକୁଳରେ ବସୁଦେବଙ୍କ ଗୃହରେ ସେ ଜନ୍ମହେବେ । ଦେବତାମାନେ ତାଙ୍କର ସେବାକରିବା ପାଇଁ ଶୀଘ୍ର ପୃଥିବୀରେ ଅବତୀର୍ଣ୍ଣ ହୁଅନ୍ତୁ ।

କଂସର ଭଗିନୀ ଦେବକୀ । ସୁରଙ୍କର ପୁତ୍ର ବସୁଦେବ ତାଙ୍କ ନବବିବାହିତା ପତ୍ନୀ ଦେବକୀଙ୍କୁ ସାଙ୍ଗରେ ଧରି ରଥରେ ଆସୁଛନ୍ତି ଏବଂ କଂସ ନିଜ ଭଗିନୀର ସ୍ନେହରେ ସେହି ରଥ ଚଳାଇ ଯାଉଛି । ଏହି ସମୟରେ ଦୈବବାଣୀ ହେଲା-- ଦେବକୀର ଅଷ୍ଟମ ଗର୍ଭ ହିଁ ତୋର କାଳ ହେବ । ଏଥିରେ କଂସ କ୍ରୁଦ୍ଧହୋଇ ଦେବକୀଙ୍କର ଚୁଟିଧରି ମାରିବାକୁ ବାହାରିଲା । ବସୁଦେବ କହିଲେ, କଂସ, ଦେବକୀର କୌଣସି ଅପରାଧ ନାହିଁ । ଯଦି ତାର ପୁତ୍ରପାଇଁ ତୁମେ ଏତେ ଶଙ୍କିତ, ତା'ହେଲେ

ତାର ପ୍ରତ୍ୟେକ ଜନ୍ମିତ ସନ୍ତାନକୁ ମୁଁ ତୁମ ହାତରେ ଟେକି ଦେବି । ବସୁଦେବଙ୍କ କଥାରେ କଂସର କ୍ରୋଧ ଶାନ୍ତ ହେଲା । ଦିନେ କିନ୍ତୁ ଦେବର୍ଷି ନାରଦ ଆସି କଂସକୁ କହିଲେ, ଦେବକୀଙ୍କର କେଉଁ ଗର୍ଭ ଅଷ୍ଟମ ଗର୍ଭ ହେବ, ତାହା ତୁ କିପରି ଜାଣିବୁ ? ତା ଛଡ଼ା ବ୍ରଜରେ ନନ୍ଦ ଆଦି ଅନ୍ୟାନ୍ୟ ଗୋପମାନେ ଏବଂ ବସୁଦେବ ଆଦି ବୃଷ୍ଣିବଂଶର ଯାଦବମାନେ ଓ ସେମାନଙ୍କର ସମସ୍ତ ବନ୍ଧୁବାନ୍ଧବ ହେଉଛନ୍ତି ଦେବତା । ପୃଥିବୀରେ ଦୈତ୍ୟମାନଙ୍କ ନିପାତପାଇଁ ସେମାନେ ଜନ୍ମ ହୋଇଛନ୍ତି । ବର୍ତ୍ତମାନ ଏଥିପାଇଁ ପ୍ରସ୍ତୁତି ଚାଲିଛି ।

କଂସ କାଳବିଳମ୍ବ ନ କରି ଦେବକୀ ଓ ବସୁଦେବଙ୍କୁ କାରାରୁଦ୍ଧ କଲା ଏବଂ ଗୋଟିକ ପରେ ଗୋଟିଏ ଦେବକୀଙ୍କର ଛଅଟି ସନ୍ତାନ ହତ୍ୟାକଲା । ସପ୍ତମ ବଳରାମ ଦେବକୀଙ୍କ ଗର୍ଭରୁ ଯାଇ ନନ୍ଦଗୋପରେ ଥିବା ବସୁଦେବଙ୍କର ଅନ୍ୟତମ ପତ୍ନୀ ରୋହିଣୀଙ୍କ ଗର୍ଭରେ ଅବସ୍ଥାନ କଲେ । ଅଷ୍ଟମ ଗର୍ଭରେ ଭଗବାନ କୃଷ୍ଣ ଜନ୍ମହେଲେ ।

ବସୁଦେବ ନବଜାତପୁତ୍ରଙ୍କୁ ଧରି ନନ୍ଦଙ୍କ ଗୃହରେ ପ୍ରବେଶ କଲେ ଏବଂ ଯଶୋଦାଙ୍କର ସଦ୍ୟଜାତ କନ୍ୟାକୁ ଧରି କାରାଗାରକୁ ଫେରି ଆସିଲେ । ତାଙ୍କର ବେଡ଼ି କିପରି ଫିଟିଲା, କାରାଗୃହରେ ଦ୍ୱାରପାଳମାନେ ଗାଢ଼ ନିଦ୍ରାରେ ଶୋଇଗଲେ, ବଢ଼ିଥିବା ଯମୁନା ନଦୀ ବାଟ ଛାଡ଼ିଦେଲା--ଭଗବାନଙ୍କର ଏହି ଅପାରଲୀଳା ଏଥିରେ ବର୍ଣ୍ଣନା କରାଯାଇଛି । କଂସ ଦେବକୀଙ୍କର ଏହି କନ୍ୟାକୁ ତାଙ୍କର ଜନ୍ମିତ ସନ୍ତାନ ବୋଲି ଭାବି ଯେତେବେଳେ କଚାଡ଼ି ମାରିବାକୁ ବସିଲା, ସେତେବେଳେ ସେହି ଶିଶୁକନ୍ୟା କଂସ ହାତରୁ ଖସିଯାଇ ଆକାଶରେ ଉଭାହେଲେ ଓ ଅଷ୍ଟଭୁଜା ଦୁର୍ଗାରୂପରେ କହିଲେ, ମୂର୍ଖ, ତୋର ଶତ୍ରୁ ଜନ୍ମ ହୋଇସାରିଲାଣି । ତୁ ବୃଥାରେ ନିର୍ଦୋଷ ଶିଶୁମାନଙ୍କୁ ହତ୍ୟା କର ନାହିଁ ।

## ବ୍ରଜଲୀଳା

ଏଣେ ଗୋପରେ ଉତ୍ସବ । କୃଷ୍ଣ ଓ ବଳରାମଙ୍କ ନାମକରଣ । ବାଲ୍ୟଲୀଳା, ପୂତନା ବଧ, ତୃଣାବର୍ତ୍ତ ନିଧନ, କୃଷ୍ଣଙ୍କର ମାଟିଖିଆ ଲୀଳା, ମାଟିଖାଇ ଯଶୋଦାଙ୍କୁ ପାଟିଦେଖାଇ ତା ମଧ୍ୟରେ ବ୍ରହ୍ମାଣ୍ଡର ଦୃଶ୍ୟ ଦେଖାଇବା, ଲହୁଣି ଖାଇବା ଅଭିଯୋଗରେ ତାଙ୍କୁ ଢିଙ୍କିରେ ବନ୍ଧାଯିବା, ଯାମଳାର୍ଜ୍ଜୁନ ଭଞ୍ଜନ, ବ୍ରଜବାସୀଙ୍କର ବୃନ୍ଦାବନ ଯାତ୍ରା, ବକାସୁର ଓ ଅଘାସୁର ବଧ, ବ୍ରହ୍ମା ପରୀକ୍ଷା କରିବାପାଇଁ ବାଛୁରୀ ଓ ଗୋପବାଳକମାନଙ୍କୁ ଲୁଚାଇବା, ବ୍ରହ୍ମାଙ୍କର ଅନୁତାପ ଓ ସ୍ତୁତି, କାଳୀୟଦଳନ, ନନ୍ଦଙ୍କ ସମେତ ଗୋପମାନେ ବନରେ ଶୋଇଥିବାବେଳେ ଅଗ୍ନିରୂପୀ ଅସୁରର ଉପଦ୍ରବ ଓ କୃଷ୍ଣ ହିଁ ଅଗ୍ନିକୁ ପାନ କରିଦେବା; ପ୍ରଲମ୍ବାସୁର ବଧ, କୃଷ୍ଣଙ୍କୁ ପତିରୂପେ ପାଇବାପାଇଁ ବ୍ରଜକନ୍ୟାମାନଙ୍କର ପୂଜା, ସେଥିପାଇଁ କୃଷ୍ଣଙ୍କର ରାସଲୀଳାର ପ୍ରତିଶ୍ରୁତି, ବ୍ରଜବାସୀଙ୍କୁ ରକ୍ଷା କରିବାପାଇଁ ଗୋବର୍ଦ୍ଧନ ଧାରଣ, ବୃନ୍ଦାବନରେ ପୂର୍ଣ୍ଣିମା ରାତିରେ ବଂଶୀବାଦନ, ରାସର ଆରମ୍ଭ, ଗୋପୀମାନଙ୍କର ବିରହ ଓ କୃଷ୍ଣତନ୍ମୟତା; ପ୍ରେମ ଓ କାମନା ମଧ୍ୟରେ ପାର୍ଥକ୍ୟ, ପ୍ରେମ ଦିଏ ଓ କାମନା ନିଏ; ପ୍ରେମୀ ପ୍ରେମାସ୍ପଦର ସୁଖକଥା ବିଚାରକରେ, କିନ୍ତୁ କାମୀ ନିଜ ସୁଖ କଥା ଜାଣେ; ପ୍ରେମୀ ନିଜର ସମ୍ପତ୍ତି, ସମୟ, ଶକ୍ତି ଅନ୍ୟମାନଙ୍କପାଇଁ ଲଗାଇ ସୁଖୀ ହୁଏ, କାମୀ ବା କାମ ଅହଙ୍କାରୀ ନିଜେ ପ୍ରେମକରି ଅନ୍ୟମାନଙ୍କୁ ନିର୍ଯ୍ୟାତନା ଦିଏ । ମହାରାସରେ ଜଣେ ଜଣେ ଗୋପୀଙ୍କୁ ଜଣେ ଜଣେ କୃଷ୍ଣ, ଦୁଇ ଗୋପୀଙ୍କୁ ଜଣେ କୃଷ୍ଣ, ଅନେକ ଗୋପୀଙ୍କୁ ଏକ କୃଷ୍ଣ; **'ରସୋ ବୈ ସଃ'** ପରମାତ୍ମା ନିଜେ ଗୋପୀ ଓ ନିଜେ କୃଷ୍ଣ ।

## ମଥୁରା ଲୀଳା

କଂସର ଅକ୍ରୂରଙ୍କୁ ବ୍ରଜ ପ୍ରେରଣ । କୃଷ୍ଣଙ୍କର ମଥୁରା ଯାତ୍ରା । ମଥୁରା ଦର୍ଶନ । ମଥୁରାର ଆବାଳବୃଦ୍ଧବନିତା କୃଷ୍ଣ ଦର୍ଶନରେ ମୁଗ୍ଧ । କଂସର ସେବକ ଉଦ୍ଧତ ରଜକର ମୃତ୍ୟୁ, ସୁଦାମା ମାଳୀଦ୍ୱାରା ବେଶ ହେବା, କୃଷ୍ଣଙ୍କ ସ୍ପର୍ଶରେ କୁବ୍‌ଜାର କୁବ୍‌ଜ ଦୂରହେବା ଏବଂ ସେ ଏକ ସୁନ୍ଦରୀ ନାରୀରେ ପରିଣତ ହେବା--**ମୁକୁନ୍ଦସ୍ପର୍ଶଜାତ୍ ସଦ୍ୟୋବଭୂବ ପ୍ରମଦୋତ୍ତମା ।** ଧନୁଯାତ୍ରାର ଧନୁଭଙ୍ଗ, କୁବଳୟାପୀଡ଼ ହସ୍ତୀର ନିଧନ, ମୁଷ୍ଟିକ ଚାଣୁର ନିଧନ, କଂସ ବଧ । କଂସ ଭୟରେ ମଥୁରା ଛାଡ଼ି ଯାଇଥିବା ଧର୍ମାତ୍ମା ସାଧୁମାନଙ୍କର ପ୍ରତ୍ୟାବର୍ତ୍ତନ, ନନ୍ଦ ଓ ବ୍ରଜର ଗୋପାଳଙ୍କର ମଥୁରାରୁ ବିଦାୟ, ଉଗ୍ରସେନ ପୁଣି ରାଜାହେଲେ । ଗୋପୀମାନଙ୍କୁ ସାନ୍ତ୍ୱନା ଦେବାପାଇଁ ଉଦ୍ଧବଙ୍କୁ ଶ୍ରୀକୃଷ୍ଣଙ୍କ ବ୍ରଜ ପ୍ରେରଣ, ଉଦ୍ଧବ ଦର୍ଶନରେ ଗୋପୀଙ୍କର ଉକ୍ତି--ବଣ ପୋଡ଼ିଗଲେ ମୃଗ ପଳାଇଯାଏ; ଦକ୍ଷିଣା ମିଳିଗଲେ ବ୍ରାହ୍ମଣମାନେ ଯଜମାନଙ୍କୁ ଛାଡ଼ି ଚାଲିଯାଆନ୍ତି; ଏଣୁ ନିଜର କାମ ତୁଟିଗଲା ପରେ କୃଷ୍ଣ ଆମକୁ ଛାଡ଼ି ଚାଲିଗଲେ । ଭ୍ରମରଗୀତ, ଉଦ୍ଧବଙ୍କଦ୍ୱାରା ଗୋପୀମାନଙ୍କୁ ଶ୍ରୀକୃଷ୍ଣଙ୍କ ସନ୍ଦେଶ--ପ୍ରାଣପ୍ରିୟ ବ୍ରଜ ରମଣୀଗଣ, ମୋ'ଠାରୁ ତୁମମାନଙ୍କର ବିୟୋଗ ଘଟି ନାହିଁ, ମାଟିର ଘଡ଼ିରେ ଯେପରି ମାଟି ମିଶିରହିଛି ଆତ୍ମା ରୂପରେ ତୁମର ରୋମ ରୋମରେ ମୁଁ ମିଶିଯାଇଛି । ବ୍ରଜନାରୀଙ୍କର କୃଷ୍ଣଙ୍କପ୍ରତି ଅନନ୍ୟ ଅନୁରାଗ ଦେଖି ଉଦ୍ଧବଙ୍କର ଉକ୍ତି--ବ୍ରଜବାସିନୀଙ୍କର ପଦଧୂଳି ମୋର କାମ୍ୟ, ଉଦ୍ଧବଙ୍କଠାରୁ ଗୋପୀଗଣଙ୍କର ତନ୍ମୟତା ଶୁଣି କୃଷ୍ଣଙ୍କର ଗଦ୍‌ଗଦ୍‌ଭାବ । ପାଣ୍ଡବଙ୍କର ହାଲଚାଲ ଜାଣିବା ପାଇଁ ଅକ୍ରୂରଙ୍କୁ ଶ୍ରୀକୃଷ୍ଣଙ୍କ ହସ୍ତିନା ପ୍ରେରଣ, କୁନ୍ତୀ ଓ ଦ୍ରୌପଦୀଙ୍କ ସମ୍ବାଦ ଶୁଣି ଶ୍ରୀକୃଷ୍ଣଙ୍କର ପୁଣି ଗଦ୍‌ଗଦ୍‌ଭାବ । ଜରାସନ୍ଧର ମଥୁରା ଆକ୍ରମଣ, ସତର ଥର ତେଇଶି ତେଇଶି ଅକ୍ଷୌହିଣୀ ସୈନ୍ୟ ସହ ପରାଜୟ, ଅଷ୍ଟାଦଶ ଥର ଜରାସନ୍ଧ ଓ କାଳଯବନ ଉଭୟଙ୍କ ଆକ୍ରମଣଯୋଗୁଁ ମଥୁରା ତ୍ୟାଗ ।

## ଦ୍ୱାରକା ଲୀଳା

ଦ୍ୱାରକାପୁରୀର ନିର୍ମାଣ କରି ଯାଦବ ମୁଖ୍ୟମାନଙ୍କ ସହିତ ସେଠାରେ ଅବସ୍ଥାନ, ରୁକ୍ମିଣୀ ହରଣ, ଶିଶୁପାଳ, ଜରାସନ୍ଧ ଆଦି ରାଜାମାନଙ୍କର ପରାଜୟ, ସତ୍ରାଜିତ୍ ଓ ସ୍ୟମନ୍ତକ ମଣି, ଜାମ୍ବବତୀଙ୍କ ସହ ବିବାହ, ସତ୍ରାଜିତ୍‌ଙ୍କର କନ୍ୟା ସତ୍ୟଭାମାଙ୍କ ସହ ବିବାହ, ଶତଧନ୍ୱାର ମୃତ୍ୟୁ, ଯମୁନାକୂଳରେ ଆରାଧନା କରୁଥିବା କାଳିନ୍ଦୀ ସହ ବିବାହ, ସାତଟି ଅମାନିଆ ଷଣ୍ଢଙ୍କୁ ମନାଇ ସତ୍ୟାଙ୍କୁ ଲାଭ କରିବା, ମିତ୍ରବିନ୍ଦାଙ୍କ ସହ ବିବାହ, ଶ୍ରୁତକୀର୍ତ୍ତିଙ୍କ କନ୍ୟା ଭଦ୍ରା ଓ ମଦ୍ରାଧିପତିଙ୍କ କନ୍ୟା ଲକ୍ଷ୍ମଣାଙ୍କ ସହିତ ପରିଣୟ, ଭୌମାସୁରକୁ ମାରି ସେ ହରଣକରିନେଇଥିବା ଷୋଳହଜାର କନ୍ୟାଙ୍କ ସହ ବିବାହ, ଦ୍ୱାରକାରେ ଗୃହସ୍ଥାଶ୍ରମ, ପୁତ୍ରୋତ୍ପତ୍ତି ଓ ପୁତ୍ରମାନଙ୍କର ବିବାହ, ନୃଗ ରାଜା ଉପାଖ୍ୟାନ, ବଳରାମଙ୍କ ବ୍ରଜ ଯାତ୍ରା, ଦ୍ୱିବିଦ ବାନରର ମୃତ୍ୟୁ, ଜାମ୍ବବତୀଙ୍କ ପୁତ୍ରଦ୍ୱାରା ଦୁର୍ଯ୍ୟୋଧନଙ୍କ କନ୍ୟାର ହରଣ, ବଳରାମଙ୍କ ହସ୍ତିନା ଯାତ୍ରା ଓ ହସ୍ତିନାକୁ ତାଡ଼ିଦେବାର ଧମକ । କୌରବମାନଙ୍କ ସନ୍ଧି, କପଟ ବାସୁଦେବର କଥା । ଯୁଧିଷ୍ଠିରଙ୍କ ରାଜସୂୟ ଯଜ୍ଞ, ଜରାସନ୍ଧ ଓ ଶିଶୁପାଳ ବଧ, ଦୁର୍ଯ୍ୟୋଧନଙ୍କ ଭ୍ରମ ଓ ଅପମାନ, ମହାଭାରତ ଯୁଦ୍ଧ, ଦ୍ୱାରକା ପ୍ରତ୍ୟାବର୍ତ୍ତନ । ସୁଦାମା ବ୍ରାହ୍ମଣ ପ୍ରସଙ୍ଗ । କୁରୁକ୍ଷେତ୍ରରେ ସୂର୍ଯ୍ୟ ଗ୍ରହଣ ମେଳା, ଗୋପୀମାନଙ୍କ ସମେତ ନନ୍ଦ ଓ ଯଶୋଦାଙ୍କସହ ମିଳନ । ଗୋପୀଙ୍କୁ ଉପଦେଶ । ବସୁଦେବଙ୍କୁ ବିମଳ ଭକ୍ତିର ବରଦାନ । ମିଥିଳାର ରାଜା ଓ ଶ୍ରୁତିଦେବ ବ୍ରାହ୍ମଣଙ୍କ ନିମନ୍ତ୍ରଣ ରକ୍ଷା କରି ମିଥିଳା ଯାତ୍ରା ଓ ସେଠାରେ ଭକ୍ତିର ଚମତ୍କାରିତା, ଶଙ୍କରଙ୍କର ଭସ୍ମାସୁରକୁ ବରଦାନ

କାହାଣୀ, ବ୍ରହ୍ମା, ବିଷ୍ଣୁ, ମହେଶ୍ୱରଙ୍କୁ ଭୃଗୁଙ୍କର ପରୀକ୍ଷା ଓ ବିଷ୍ଣୁଙ୍କର ଶ୍ରେଷ୍ଠତ୍ୱ, ଦ୍ୱାରକାରେ ମୃତ ବ୍ରାହ୍ମଣପୁତ୍ରମାନଙ୍କର ପୁନରୁଦ୍ଧାରପାଇଁ ଅର୍ଜୁନଙ୍କର ପ୍ରତିଜ୍ଞା ଓ ଶ୍ରୀକୃଷ୍ଣଙ୍କ ସହାୟତାରେ ତାଙ୍କର ପ୍ରତିଜ୍ଞା ପାଳନ ।

ଦଶମ ସ୍କନ୍ଧର ଶେଷରେ ଶ୍ରୀ ଶୁକଦେବ ପରିକ୍ଷିତଙ୍କୁ କହୁଛନ୍ତି--ଭଗବାନଙ୍କର ମାହାତ୍ମ୍ୟ ହେଉଛି ଯେ ତାଙ୍କୁ ପ୍ରେମକରୁଥିବା ଭକ୍ତ ଓ ଦ୍ୱେଷ କରୁଥିବା ଶତ୍ରୁ ଉଭୟ ତାଙ୍କର ସ୍ୱରୂପ ଲାଭ କରନ୍ତି । ତାଙ୍କର ନାମ ଥରେ ଶୁଣିଲେ ବା ଉଚ୍ଚାରଣ କଲେ ସମସ୍ତ ଅମଙ୍ଗଳ ନଷ୍ଟ ହୋଇଯାଏ । ନିଜର ସ୍ଥାପିତ ଧର୍ମ ମର୍ଯ୍ୟାଦାର ରକ୍ଷାପାଇଁ ସେ ଦିବ୍ୟ ଲୀଳା-ଶରୀର ଗ୍ରହଣ କରନ୍ତି । ସେ ନିଜର ଏହି ବେଦୋକ୍ତ ଧର୍ମକୁ ବାରମ୍ବାର ଆଚରଣ କରି ଲୋକଙ୍କୁ ଦେଖାଇ ଦିଅନ୍ତି ଯେ ଗୃହସ୍ଥାଶ୍ରମ ହେଉଛି ଧର୍ମ, ଅର୍ଥ ଏବଂ କାମ ସାଧନପାଇଁ ସ୍ଥାନ । ସେଥିପାଇଁ ସେ ନିଜେ ଗୃହସ୍ଥାଶ୍ରମରେ ରହି ଶ୍ରେଷ୍ଠ ଧର୍ମ ଆଚରଣ କରିଥିଲେ । ଲୀଳାମୟଙ୍କର ଗୋଟିଏ ଗୋଟିଏ କର୍ମ ସ୍ମରଣ କଲେ କର୍ମବନ୍ଧନ କଟିଯାଏ । ଯଦୁବଂଶତିଳକ ଭଗବାନ ଶ୍ରୀକୃଷ୍ଣଙ୍କ ପାଦପଦ୍ମର ସେବା ଯେ କାମନା କରେ, ସେ ତାଙ୍କର ଲୀଳାମାନ ଶ୍ରବଣକରିବା ଉଚିତ । ମନୁଷ୍ୟ ଯେତେ ଅଧିକ ତାଙ୍କ ଲୀଳା କଥାର ଶ୍ରବଣ, ଚିନ୍ତନ ଏବଂ କୀର୍ତ୍ତନ କରିବ, ତାର ଭଗବତ୍ ଭକ୍ତି ସେତିକି ବଢ଼ିବ ଓ ଭଗବାନଙ୍କ ପରମଧାମରେ ତାକୁ ପହଞ୍ଚାଇ ଦେବ, ଯେଉଁ ଧାମରେ ପହଞ୍ଚିବାପାଇଁ ବହୁ ରାଜର୍ଷି, ଯୋଗୀ, ଋଷି, ମୁନି ଆଦି ଘୋର ତପସ୍ୟା କରିଛନ୍ତି ।

## ଏକାଦଶ ସ୍କନ୍ଧ

### ମୁକ୍ତି

ଏକାଦଶ ସ୍କନ୍ଧର ନାମ ମୁକ୍ତି । ଏହା ପୂର୍ବ ଦଶସ୍କନ୍ଧର ଉପସଂହାର । ଭାଗବତ ଭଗବାନଙ୍କର ସ୍ୱରୂପ ହେଲେ ଏକାଦଶ ସ୍କନ୍ଧ ତାଙ୍କର ମୁଖ ବୋଲି କୁହାଯାଏ ।

ଆତ୍ମା ନିତ୍ୟମୁକ୍ତ ହୋଇଥିବାହେତୁ ମନକୁ ହିଁ ମୁକ୍ତ ହେବାକୁ ପଡ଼ିବ । ବିଷୟ ଚିନ୍ତାରେ ଆସକ୍ତ ନ ହୋଇ ଈଶ୍ୱର ଚିନ୍ତନଦ୍ୱାରା ହିଁ ଏହି ମୁକ୍ତି ମିଳିପାରିବ । ଏକାଦଶ ସ୍କନ୍ଧର ପ୍ରଥମ ଅଧ୍ୟାୟ ବୈରାଗ୍ୟରୁ ଆରମ୍ଭ ହୋଇଛି । ସତ୍ତ୍ୱଗୁଣଦ୍ୱାରା ରଜୋଗୁଣର ଓ ତମୋଗୁଣର ନିବୃତ୍ତି ହୁଏ । ଭଗବାନ ଶ୍ରୀକୃଷ୍ଣ ଯେଉଁ ଯାଦବମାନଙ୍କୁ ଧରି ଦୁଷ୍ଟମାନଙ୍କର ସଂହାର କରିଥିଲେ, ସେହି ଯାଦବମାନେ ଐଶ୍ୱର୍ଯ୍ୟ ମଦରେ ମତ୍ତ ହୋଇଗଲେ । ଭଗବାନ ଚିନ୍ତାକଲେ ଯେ ସେମାନଙ୍କୁ ଶେଷ ନ କଲେ ତାଙ୍କର ଲୀଳା ଶେଷ ହେବ ନାହିଁ ଏବଂ ପୁଣି ଏକ ଲୀଳାର ଅଭିନୟ ସେ ଆରମ୍ଭ କରିଦେଲେ । ବିଶ୍ୱାମିତ୍ର, ଦୁର୍ବାସା, ଭୃଗୁ, ଅଙ୍ଗିରା ଆଦି ଋଷି ଦ୍ୱାରକାରେ ସମ୍ମାନର ସହ ଚାତୁର୍ମାସ୍ୟ ବ୍ରତ ପାଳନ କଲେ । ପରେ ସେମାନେ ପିଣ୍ଡାରକ କ୍ଷେତ୍ରକୁ ଗଲେ । ଯଦୁବଂଶୀ ଯୁବକମାନେ ଶାମ୍ବଙ୍କୁ ନାରୀବେଶ କରି ମୁନିମାନଙ୍କୁ ପଚାରିଲେ, ଏ ଗର୍ଭବତୀ ହୋଇଚି । ଏହାର ପୁଅ ହେବ ନା ଝିଅ ହେବ । ମୁନିମାନେ ଜାଣି ପାରିଲେ । ସେମାନେ ଅଭିଶାପ ଦେଇ କହିଲେ-ପୁତ୍ର ନୁହେ, କନ୍ୟା ନୁହେ, ଏହା ଗର୍ଭରୁ ଏକ ମୁଷଳ ଜାତ ହେବ, ଯେ କି ଯଦୁବଂଶକୁ ଧ୍ୱଂସ କରିବ । ଏମାନେ ଦୁଃଖରେ ଯାଦବ ମୁଖ୍ୟମାନଙ୍କୁ ଏ କଥା କହିଲେ । ମୁଷଳକୁ ଚୂରି ସମୁଦ୍ରରେ ପକାଗଲା, ମାତ୍ର ଛୋଟ ଖଣ୍ଡେ ରହିଗଲା । ତାକୁ ମଧ୍ୟ ସମୁଦ୍ରରେ ନିକ୍ଷେପ କରାଗଲା । ଏହି ମୁଷଳ ଚୂର୍ଣ୍ଣରୁ ସମୁଦ୍ର କୂଳରେ ମୁନିଆ ଏରକା ବଣ ହୋଇଗଲା ଏବଂ ଏହା ଯାଦବମାନଙ୍କ ବିନାଶର କାରଣ ହେଲା । ଲୌହ ଖଣ୍ଡ ଶବରର ଶରମୂନ ହୋଇ ଶ୍ରୀକୃଷ୍ଣଙ୍କୁ ନିହତ କଲା ।

## ନାରଦ-ବସୁଦେବ ସଂବାଦ : ନବ ଯୋଗୀନ୍ଦ୍ର

ଦିନେ ନାରଦ ଦ୍ୱାରକାକୁ ଆସିଲେ । ବସୁଦେବ ପଚାରିଲେ, ସ୍ୱୟଂ ଭଗବାନଙ୍କୁ ପୁତ୍ର ରୂପେ ଲାଭ କରି ମୁକ୍ତି ପାଇପାରିଲି ନାହିଁ । ଏହା ହିଁ ମାୟା । ମୁଁ ତାଙ୍କର ସ୍ୱରୂପକୁ ଜାଣି ପାରିଲି ନାହିଁ । ମୋତେ ଭଗବତ୍ ଧର୍ମ କଣ କହନ୍ତୁ । ନାରଦ ପ୍ରସନ୍ନ ହୋଇ ମିଥିଳାରାଜା ବିଦେହଙ୍କୁ ନବଯୋଗୀଶ୍ୱରଙ୍କ ଶୁଣାଇଥିବା ସଂବାଦ ଶୁଣାଇଲେ । ଯୋଗୀଶ୍ୱରମାନେ ହେଲେ- କବି, ହରି, ଅନ୍ତରିକ୍ଷ, ପିପ୍ପଳାୟନ, ଆବିର୍ହୋତ୍ର, ଦ୍ରୁମିଳ, ଚମସ ଓ କରଭାଜନ । ସେମାନେ ଜ୍ଞାନୀ, ବୈରାଗ୍ୟର ପ୍ରତିମୂର୍ତ୍ତି ଓ ବେଦବେଦାଙ୍ଗ ବିଶାରଦ । ମହାରାଜା ତାଙ୍କୁ ଭାଗବତଧର୍ମ କଥା ପଚାରିଲେ । **‘ଧର୍ମାନ୍ ଭାଗବତାନ୍ ବ୍ରୂହି ଯଦି ନ ଶ୍ରୂୟତେ କ୍ଷମଃ’** । ମୁଁ ଯଦି ଶୁଣିବାର ଯୋଗ୍ୟ ହୋଇଥାଏ ମୋତେ ଶୁଣାନ୍ତୁ । ସେମାନେ ପ୍ରସନ୍ନ ହେଲେ ।

ପ୍ରଥମେ **କବି** କହିଲେ -- ବିନାଶଶୀଳ ପଦାର୍ଥରେ ସୁଖର ଆଶା ସଫଳ ହୁଏ ନାହିଁ । ବରଂ ଭୋଗର ବାସନା ବଢ଼ିଚାଲେ । ବାସନାର ବିନାଶ ଆବଶ୍ୟକ । କେବଳ ଭଗବତ୍ ଚରଣର ଉପାସନାଦ୍ୱାରା ଏହା ସମ୍ଭବ । ଯେଉଁ ଯେଉଁ ଉପାୟରେ ଭଗବତ୍ ପ୍ରାପ୍ତି ହୁଏ ସେ ସବୁକୁ ଭାଗବତ ଧର୍ମ କୁହାଯାଏ । ଭଗବାନଙ୍କୁ ସମସ୍ତ କର୍ମ ସମର୍ପଣ କରି କାର୍ଯ୍ୟକଲେ ବିଧି ବିଧାନ ବା ନିୟମରେ ଦୋଷତ୍ରୁଟି ରହିଲେ ମଧ୍ୟ କେବେ ପତନ ଘଟେ ନାହିଁ । ଭଗବାନଙ୍କ ମଧୁରନାମ ଉଚ୍ଚାରଣ କରି ତାଙ୍କର ସ୍ମରଣରେ ଗାନ ନୃତ୍ୟ ଆଦି କଲେ ଓ ସେଥିରେ ମଗ୍ନ ରହିଲେ ମନୁଷ୍ୟ ପରମଭକ୍ତ ହୋଇଯାଏ । କାହାରି ପ୍ରତି ରାଗଦ୍ୱେଷ ରହେ ନାହିଁ । ସମସ୍ତଙ୍କ ମଧ୍ୟରେ ପରମାତ୍ମାଙ୍କ ଦର୍ଶନ ହୁଏ । ‘ସକଳ ଘଟେ ନାରାୟଣ, ବସନ୍ତି ଅନାଦି କାରଣ’ ।

ରାଜା ପଚାରିଲେ, ଭକ୍ତ କେତେ ପ୍ରକାର ଓ ତାଙ୍କର ଲକ୍ଷଣ କଣ ? ତା’ର ଉତ୍ତରରେ **ଦ୍ୱିତୀୟ ଯୋଗୀଶ୍ୱର ହରି** କହିଲେ, ଉତ୍ତମ ଭକ୍ତ ସମସ୍ତଙ୍କ ମଧ୍ୟରେ ପରମାତ୍ମା ଓ ପରମାତ୍ମାଙ୍କ ମଧ୍ୟରେ ସମସ୍ତଙ୍କୁ ଦର୍ଶନ କରେ । ମଧ୍ୟମ ଭକ୍ତ ଈଶ୍ୱରଙ୍କଠାରେ ପ୍ରେମ, ଭକ୍ତମାନଙ୍କସହିତ ମିତ୍ରତା ଓ ଶତ୍ରୁକୁ ଉପେକ୍ଷା କରେ । ପ୍ରାକୃତ ଭକ୍ତ ମନ୍ଦିରରେ ଭଗବାନଙ୍କର ପୂଜା କରେ, କିନ୍ତୁ ସମସ୍ତଙ୍କ ମଧ୍ୟରେ ଥିବା ପରମାତ୍ମାଙ୍କୁ ଚିହ୍ନିପାରେ ନାହିଁ । ଯେ ମନ୍ଦିରରେ ଥିବା ଭଗବାନଙ୍କୁ ସମସ୍ତଙ୍କ ହୃଦୟ ମଧ୍ୟରେ ଦେଖିପାରେ, ସେ କେବେହେଲେ ବ୍ରହ୍ମଲୋକ କାମନା କରେ ନାହିଁ ।

ମହାରାଜା ମାୟାର ଲକ୍ଷଣ ପଚାରିବାରୁ **ତୃତୀୟ ଯୋଗୀଶ୍ୱର ଅନ୍ତରିକ୍ଷ** କହିଲେ - ମହାଭୂତମାନଙ୍କଦ୍ୱାରା ହିଁ ମାୟାର ସୃଷ୍ଟି । ଯେ ଆଗରେ ଦେଖାଯାଏ, ତାହା ସତ୍ୟ ନୁହେଁ, ମାୟା । କିନ୍ତୁ ତାହା ସତ୍ୟପରି ମନେହୁଏ । କିନ୍ତୁ ତାହା ସ୍ୱପ୍ନ ପରି ମିଥ୍ୟା ।

ମାୟାରୁ କିପରି ରକ୍ଷା ପାଇବାକୁ ହେବ ବୋଲି ପଚାରିବାରୁ **ଚତୁର୍ଥ ଯୋଗୀନ୍ଦ୍ର ପ୍ରବୁଦ୍ଧ** ତାର ଉତ୍ତର ଦେଲେ । ସଂସାରରେ ଲୋକ ସୁଖପାଇଁ ରାତି ଦିନ ବ୍ୟସ୍ତ । କିନ୍ତୁ ସୁଖ ବଦଳରେ ଦୁଃଖ ହିଁ ପାଆନ୍ତି । ବ୍ରହ୍ମନିଷ୍ଠ ଗୁରୁଙ୍କର ସେବା ଓ ସତ୍‌ସଙ୍ଗର ଆବଶ୍ୟକତା । ଶ୍ରବଣ କୀର୍ତ୍ତନ ଆଦି ନବଧା ଭକ୍ତିଦ୍ୱାରା ସମ୍ପୂର୍ଣ୍ଣ କଳୁଷ ଧ୍ୱଂସ ପାଏ । ଭଗବତ୍ ଭକ୍ତି ହିଁ ଜ୍ଞାନ ଓ ବୈରାଗ୍ୟର ଜନକ । ନାରାୟଣଙ୍କ ଭକ୍ତ ମାୟାକୁ ସହଜରେ ବାଧା ଦେଇପାରେ ।

ମହାରାଜା ପଚାରିଲେ, ନାରାୟଣଙ୍କ ସ୍ୱରୂପ କଣ ? **ପଞ୍ଚମ ପିପ୍ପଳାୟନ** ଉତ୍ତର ଦେଲେ-- ଉଦ୍ଭିଜ୍ଜ, ସ୍ୱେଦଜ, ଅଣ୍ଡଜ, ଜରାୟୁଜ ଚାରି ପ୍ରକାର ଜୀବର ଉତ୍ପତ୍ତି ଜଳରୁ ହୁଏ; ଜଳ ହିଁ ଆଶ୍ରୟ । ଫୁଲର ରସ ଓ ମହକରେ ନାରାୟଣ ହିଁ ବିଦ୍ୟମାନ । ଆତ୍ମାର ଯାହା ଲକ୍ଷଣ ତାହା ହିଁ ପରମାତ୍ମାଙ୍କର ଲକ୍ଷଣ । ଦେହ, ଇନ୍ଦ୍ରିୟ, ମନ, ବୁଦ୍ଧିର ପ୍ରକାଶକ ଆତ୍ମା । ମନକୁ

ବାଣୀଦ୍ୱାରା କେହି ଜାଣିପାରନ୍ତି ନାହିଁ । ଶବ୍ଦ 'ନେତି ନେତି' ଦ୍ୱାରା ଏହାକୁ (ଆତ୍ମା) ବୁଝାଇବାକୁ ଚେଷ୍ଟା କରାଯାଏ । ନିଷେଧ କରି କରି ଶେଷକୁ ଯାହାକୁ ନିଷେଧ କରାଯାଇପାରେ ନାହିଁ, ସେ ଆତ୍ମା । ତତ୍ତ୍ୱବିଦ୍‌ମାନେ ଯାହାକୁ ଅଦ୍ୱୟ ଜ୍ଞାନ କହନ୍ତି, ସେ ହେଉଛନ୍ତି ପରମାତ୍ମା ।

ରାଜା କର୍ମ ଯୋଗ କଣ ଏବଂ କିପରି ନିଷ୍କାମତା ଜନ୍ମେ ବୋଲି ପଚାରିବାରୁ ଆବିର୍ହୋତ୍ର ଉତ୍ତର ଦେଲେ-- ଶାସ୍ତ୍ରରେ କର୍ତ୍ତବ୍ୟକୁ କର୍ମ କୁହାଯାଏ । ଅକର୍ମ ନିଷିଦ୍ଧ କର୍ମ । ବିକର୍ମ  ବିପରୀତ ଆଚରଣ । ଅନ୍ତଃକରଣର ଶୁଦ୍ଧିପାଇଁ କର୍ମବାଦ । ସତ୍ ମାର୍ଗରେ ଲାଗି ଅସତ୍ ପ୍ରବୃତ୍ତିକୁ ବିରୋଧ କରିବାପାଇଁ କର୍ମର ନିର୍ଦ୍ଦେଶ କରାଯାଇଚି । ଗୁରୁଦେବଙ୍କଠାରୁ ତାନ୍ତ୍ରିକ, ବୈଦିକ, ପୌରାଣିକ ତିନିଙ୍କ ମଧ୍ୟରୁ ଗୋଟିଏ ପ୍ରକ୍ରିୟା ଶିକ୍ଷା କରିବା ଆବଶ୍ୟକ । ଭଗବାନ ଅଗ୍ନି, ସୂର୍ଯ୍ୟ, ଜଳ, ଅତିଥି ଓ ହୃଦୟରେ ବିରାଜମାନ ବୋଲି ଭାବି ତାଙ୍କର ପୂଜା କର ।

ଭଗବାନଙ୍କର କେବେ ଓ କେତେ ଅବତାର ହୁଏ ବୋଲି ପଚାରିବାରୁ **ଦ୍ରୁମିଳ** ଉତ୍ତର ଦେଲେ-- ଭଗବାନ ଅନନ୍ତ । ତାଙ୍କର ଗୁଣ ମଧ୍ୟ ଅନନ୍ତ ଓ ଅବତାର ମଧ୍ୟ ଅନନ୍ତ । ବ୍ୟାସ, ନାରଦ, ନୃସିଂହ, ବରାହ, ମତ୍ସ୍ୟ, କଚ୍ଛପ, ଧର୍ମ, ମର୍ଯ୍ୟାଦାପୁରୁଷୋତ୍ତମ ରାମ, କର୍ମବୀର କପିଳ, ପ୍ରେମାବତାର କୃଷ୍ଣ । ତାଙ୍କର ଅବତାର ସଂସାରର କଲ୍ୟାଣପାଇଁ ।

ଭଗବାନଙ୍କ ଭଜନ ନ କଲେ କଣ ଦଶା ହୁଏ ବୋଲି ପଚାରିବାରୁ ତାର ଉତ୍ତର ଦେଇ **ଚମସ** କହିଲେ, ଭଗବାନଙ୍କ କୃପା ସମସ୍ତଙ୍କ ଉପରେ ଥାଏ । କିନ୍ତୁ ଜୀବ ହିଂସା ଅତ୍ୟାଚାର ଆଦି କରି ନରକଗାମୀ ହୁଏ ।

କେଉଁ ସମୟରେ ଭଗବାନଙ୍କର କିପରି ଆରାଧନା କରିବ ? କରଭାଜନ କହିଲେ-- ଚାରି ଯୁଗ । ସତ୍ୟଯୁଗରେ ପ୍ରଜାମାନେ ଶ୍ୱେତବର୍ଣ୍ଣ । ନିର୍ବୈର ଓ ଶାନ୍ତ । ଚତୁର୍ବାହୁ, ଶୁକ୍ଳ, ବଲ୍କଳ ଅମ୍ବରଧାରୀ ଭଗବାନଙ୍କ ଆରାଧନା । ତ୍ରେତାରେ ରକ୍ତବର୍ଣ୍ଣ । ବୈଦିକ ଯଜ୍ଞ ବିଧାନରେ ତାଙ୍କର ପୂଜା । ଦ୍ୱାପରରେ  କୃଷ୍ଣବର୍ଣ୍ଣ । ବାସୁଦେବ, ସଂକର୍ଷଣ, ପ୍ରଦ୍ୟୁମ୍ନ, ଅନିରୁଦ୍ଧ ରୂପେ ତାଙ୍କର ପୂଜା । କଳି ଯୁଗରେ ସେ ଉଜ୍ଜ୍ୱଳ ନୀଳମଣି । ନାମ ସଂକୀର୍ତ୍ତନରେ ଭଗବାନ ପ୍ରସନ୍ନ ହୁଅନ୍ତି ।

ନାରଦ ବସୁଦେବଙ୍କୁ କହିଲେ-- ସର୍ବାତ୍ମା ଶ୍ରୀକୃଷ୍ଣଙ୍କଠାରେ ପୁତ୍ରଭାବ ଛାଡ଼ି ବ୍ରହ୍ମଭାବର ଚିନ୍ତନ କର । ବସୁଦେବ ତାହା ପାଳନକଲେ । ଶ୍ରୀକୃଷ୍ଣଙ୍କ ଉପଦେଶ ଅନୁସାରେ ଧର୍ମ କାର୍ଯ୍ୟ କରିବାପାଇଁ ଯଦୁ ବଂଶୀୟମାନେ ପ୍ରଭାସ ତୀର୍ଥକୁ ଗଲେ । ଯାତ୍ରା ପୂର୍ବରୁ ବ୍ରହ୍ମା ଦେବତାମାନଙ୍କ ସହିତ ଆସି କହିଗଲେ, ଭଗବାନ, ଆପଣଙ୍କ ନିଜ ଧାମକୁ ଯିବାର ବେଳ ଆସି ହୋଇଗଲା । ଉଦ୍ଧବ ଆସି ପହଞ୍ଚିଲେ । ସେ କହିଲେ, ଆପଣଙ୍କ ଇଚ୍ଛାରେ ଯଦୁବଂଶ ଶେଷହେବାକୁ ଯାଉଚି । ଆପଣ ମଧ୍ୟ ସ୍ୱଧାମକୁ ଯିବେ । ମୁଁ ଆପଣଙ୍କର ଏକାନ୍ତ ଭକ୍ତ । ଆପଣଙ୍କୁ ଛାଡ଼ି ରହିପାରିବି ନାହିଁ । ମୋତେ ବି ସାଙ୍ଗରେ ନେଇଯାନ୍ତୁ ।

## ଅବଧୂତଙ୍କ ଚବିଶଗୁରୁ

ଭଗବାନ ଅତିଶୟ ପ୍ରେମରେ ଉଦ୍ଧବଙ୍କୁ ଉପଦେଶ ଦେଲେ । କହିଲେ, ଉଦ୍ଧବ, ତୁମେ ଅବିନାଶୀ, ସତ୍ ସ୍ୱରୂପ; ଜୀବନ ମରଣ ଜରା ବ୍ୟାଧି ଆଦି ବିକାର ତୁମକୁ ସ୍ପର୍ଶ କରିପାରିବ ନାହିଁ । ତୁମେ ସମ୍ପୂର୍ଣ୍ଣ ସଚ୍ଚିଦାନନ୍ଦ ସ୍ୱରୂପ । ଉଦ୍ଧବ କହିଲେ, ମୋର ବୁଦ୍ଧି ସ୍ଥୂଳ । ମୋତେ ବିଶଦଭାବରେ ଉପଦେଶ ଦିଅନ୍ତୁ । ତାପରେ ଭଗବାନ ତାଙ୍କର ପୂର୍ବପୁରୁଷ ମହାରାଜ

ଯଦୁ ଓ ଅବଧୂତ(ଦତ୍ତାତ୍ରେୟ)ଙ୍କ ସଂବାଦ ଶୁଣାଉଛନ୍ତି । ଅବଧୂତ କିପରି ସବୁବେଳେ ଶାନ୍ତ, ପ୍ରସନ୍ନ ରହିପାରୁଛନ୍ତି ବୋଲି ରାଜା ଯଦୁ ପଚାରିଲେ । ଅବଧୂତ କହିଲେ-- ମୋର ଚବିଶ ଗୁରୁ । ସେମାନେ ହେଲେ--

ପୃଥିବୀ ବାୟୁ ଆକାଶ ଆପ ଅଗ୍ନି ଚନ୍ଦ୍ରମା ରବି
କପୋତ ଅଜଗର ସିନ୍ଧୁ ପତଙ୍ଗ ମଧୁକୃତ୍ ଗଜ
ମଧୁହା ହରିଣ ମୀନ ପିଙ୍ଗଳା କୁରର ଅର୍ଭକ
କୁମାରୀ ଶରକୃତ୍ ସର୍ପ ଉର୍ଣ୍ଣନାଭି ସୁପେଶକୃତ୍ ॥

ଏଥିରେ ପଞ୍ଚ ମହାଭୂତ, କୀଟ ପତଙ୍ଗ, ଛୋଟ ବଡ଼, ଉଚ୍ଚ ନୀଚ ସମସ୍ତେ ଗୁରୁ ହୋଇଛନ୍ତି । (୧) ପୃଥିବୀ ସର୍ବଂସହା, ସମସ୍ତଙ୍କୁ କ୍ଷମା ଦିଏ । (୨) ବାୟୁ ନିଃସଙ୍ଗ ଭାବ ଶିକ୍ଷା ଦିଏ । ସୁଗନ୍ଧ, ଦୁର୍ଗନ୍ଧ ସବୁରୁ ସେ ଅନାସକ୍ତ । (୩) ଆକାଶ ରାଗଦ୍ୱେଷରହିତ । ଆତ୍ମାପରି ସର୍ବବ୍ୟାପୀ (୪) ନିର୍ମଳ ଜଳ ସ୍ୱଚ୍ଛ; ରଙ୍ଗ ଓ ଆକାର ରହିତ; ଯାହାର ସ୍ପର୍ଶରେ ଅନ୍ୟମାନେ ପବିତ୍ର ହୁଅନ୍ତି । (୫) ଅଗ୍ନିର ଆକାର ନାହିଁ । ସମସ୍ତଙ୍କୁ ଭସ୍ମ କରିଦିଏ । (୬) ଚନ୍ଦ୍ର ବଢ଼େ ଓ ଛିଡ଼େ ପରି ଦେଖାଯାଏ । କିନ୍ତୁ ଚନ୍ଦ୍ର ଯେପରି ରହିବାର କଥା ଥାଏ । ଦେହର ପରିଣାମ ଅଛି । ଆତ୍ମା ଏକ ଓ ଅଭିନ୍ନ । (୭) ପାଣିରେ ସୂର୍ଯ୍ୟର ପ୍ରତିବିମ୍ବ ଭିନ୍ନ ଭିନ୍ନ ଦେଖାଗଲେ ମଧ୍ୟ ସୂର୍ଯ୍ୟ ଏକ ଓ ଅଭିନ୍ନ । ସେହିପରି ଆତ୍ମା । ସୂର୍ଯ୍ୟ ସମୁଦ୍ରରୁ ଅଳ୍ପ ଜଳ ନେଇ ତା'ର ବହୁ ଗୁଣ ଜଳ ମେଘଦ୍ୱାରା ବର୍ଷା କରାଏ । (୮) କପୋତ-- ଛୁଆମାନେ ବ୍ୟାଧ ଜାଲରେ ପଡ଼ିଯିବାରୁ ବାତ୍ସଲ୍ୟ ମମତାଯୋଗୁଁ କପୋତୀ ଓ କପୋତ ସେଥିରେ ଯାଇ ପଡ଼ିଲେ । ଅତ୍ୟଧିକ ମମତା ବିନାଶର କାରଣ । (୯) ଅଜଗର -- ତାର କୌଣସି ଚିନ୍ତା ନାହିଁ । ଅଜଗରର ଦାତାରାମ । ତେଣୁ ଯେଉଁ ଭଗବାନ ଜନ୍ମ ଦେଇଛନ୍ତି, ସେ ହେଉଛନ୍ତି ଏକମାତ୍ର ରକ୍ଷକ ଓ ପୋଷକ । (୧୦) ସିନ୍ଧୁ -- ବର୍ଷା ହେଲେ ମଧ୍ୟ ବଢ଼େ ନାହିଁ, ନ ହେଲେ ମଧ୍ୟ ଛିଡ଼େ ନାହିଁ । ଯୋଗୀ ସେହିପରି ହର୍ଷ ବିଷାଦ ରହିତ ହେବା ଦରକାର । (୧୧) ପତଙ୍ଗ-- ଚକ୍ଷୁ ଇନ୍ଦ୍ରିୟର ବଶୀଭୂତ ହୋଇ ଦୀପଶିଖାରେ ଜଳିଯାଏ । (୧୨) ମଧୁକୃତ୍ -- କମଳର ମଧୁ ଚାଖିବାପାଇଁ ଭ୍ରମର କମଳ କୋଷରେ ବସେ । ସୂର୍ଯ୍ୟାସ୍ତପରେ ପଦ୍ମ ବୁଜି ହୋଇଗଲେ ସେଥିରେ ବନ୍ଦି ହୋଇ ରହେ । (୧୩) ଗଜ-- କାମାସକ୍ତ । ପୋଷା ହସ୍ତିନୀକୁ ନେଇ ତାକୁ ପ୍ରଲୁବ୍ଧ କରାଯାଏ ଓ ଖେଦାରେ ପକାଇ ତାକୁ ଧରି ନିଆଯାଏ । (୧୪) ମଧୁହା -- ମହୁ ମାଛି ଚାରିଆଡ଼େ ବୁଲି ଫୁଲରୁ ଫୁଲ ମହୁ ସଂଗ୍ରହ କରି ମହୁଫେଣା ତିଆରି କରେ । କିନ୍ତୁ କ୍ଷଣକ ମଧ୍ୟରେ ମହୁ ସଂଗ୍ରହକାରୀ ତାକୁ ଛଡ଼ାଇନିଅନ୍ତି । (୧୫) ହରିଣ -- ଶ୍ରୋତ୍ରେନ୍ଦ୍ରିୟର ବଶୀଭୂତ ହୋଇଯାଏ । ବ୍ୟାଧ ବଂଶୀ ବଜାଇ ତାକୁ ମୋହିତ କରେ ଓ ଜାଲରେ ପକାଇ ଦିଏ । (୧୬) ମୀନ -- ଜିହ୍ୱାର ବଶବର୍ତ୍ତୀ ହୋଇ ବନିଶୀ କଣ୍ଟାରେ ପଡ଼େ । (୧୭) ପିଙ୍ଗଳା ବେଶ୍ୟା -- ଦିନେ ଗ୍ରାହକମାନଙ୍କ ଅପେକ୍ଷାରେ ବ୍ୟର୍ଥ ହୋଇ ତା'ର ବୈରାଗ୍ୟ ଜାତ ହୁଏ । ସେ ଗାନକରେ- ମୁଁ ଦେହକୁ ଦାନ କରି ସମସ୍ତଙ୍କର ଭୋଗ୍ୟା ହେଲି । ଏହା ହେଉଚି ରକ୍ତ, ହାଡ଼ ମାଂସ, ମଳମୂତ୍ରର ଶରୀର । ତେଣୁ ଏ ମିଥ୍ୟା ପ୍ରେମରେ ନ ମାତି ଭଗବାନଙ୍କ ପ୍ରେମରେ ଜୀବନ ବିତାଇବି । (୧୮) କୁରର(ଚିଲ) -- ମାଂସ ଖଣ୍ଡେ ପାଟିରେ ଧରି ଉଡିଲା ବେଳକୁ ଅନ୍ୟ ଚିଲମାନେ ତାକୁ ଘେରି ଗଲେ । ସେ ମାଂସ ଖଣ୍ଡକୁ ପକାଇଦେବା ପର୍ଯ୍ୟନ୍ତ ତାକୁ ନିସ୍ତାର ମିଳିଲା ନାହିଁ । (୧୯) ଅର୍ଭକ-- (ବାଳକ) ରାଗଦ୍ୱେଷ ରହିତ । ସରଳ । ଯୋଗୀ ସରଳ ହେବା ଉଚିତ । (୨୦) କୁମାରୀ -- ଧାନ କୁଟିବା ବେଳେ କାଚ ସବୁ ଝଣଝଣ ହେଲା । ହାତରେ ଗୋଟିଏ କାଚ ରଖିବା ପରେ ଆଉ ହେଲା ନାହିଁ । ସାଧକ ଏକାକୀ ରହିବା ଉଚିତ । (୨୧) ବାଣାକାର(ଶର ତିଆରି କରୁଥିବା ଲୋକ) -- ତା'କାମରେ ବ୍ୟସ୍ତ । ରାଜାର ପଟୁଆର ଗଲେ ବି ସେ ଦେଖେ ନାହିଁ । ସାଧକର ଏକାଗ୍ରତା । (୨୨) ସର୍ପ -- କେବେ

ବିଲରଚନା କରେ ନାହିଁ । ଯୋଗୀ ମଧ୍ୟ ଅଘରୀ ହେବା ଦରକାର । (୨୩) ଊର୍ଣ୍ଣନାଭ (ବୁଢ଼ିଆଣୀ) -- ନିଜେ ଜାଲ ତିଆରି କରେ ଓ ସେ ଜାଲ ପୁଣି ତା'ଠାରେ ଲୀନ ହୋଇଯାଏ । ପରମାତ୍ମା ଜଗତକୁ ନିର୍ମାଣ କରିଛନ୍ତି ଓ ନିଜ ଭିତରେ ତାକୁ ପ୍ରଳୟ ସମୟରେ ଲୀନ କରି ଦିଅନ୍ତି । (୨୪) ସୁବେଶକୃତ୍ (ଭୃଙ୍ଗି) ବା କୁମ୍ଭାରିଆ ପୋକ-ନିଜ ବସାକୁ ଜବରଦସ୍ତ ଧରି ଆଣିଥିବା କୀଟ ସେହି କୁମ୍ଭାରିଆ ପୋକକୁ ଭୟରେ ଧ୍ୟାନ କରୁଥାଏ । ଫଳରେ ତାର ଦେହ ବଦଳିଯାଇ ସେ କୁମ୍ଭାରିଆ ପୋକ ହୋଇଯାଏ । ତେଣୁ ଅନ୍ୟର ନୁହେଁ, ସର୍ବଦା ଭଗବାନଙ୍କର ଧ୍ୟାନ କରିବ ।

ମନ ସହିତ ଏଗାର ଇନ୍ଦ୍ରିୟ ମନୁଷ୍ୟକୁ ପୀଡ଼ା ଦେଉଛନ୍ତି । କେବଳ ଦୃଢ଼ ବୈରାଗ୍ୟଦ୍ୱାରା ସେମାନଙ୍କୁ ବଶୀଭୂତ କରିବାକୁ ହେବ । ବୈରାଗ୍ୟ ବିନା ଯୋଗ ସମ୍ଭବ ନୁହେଁ । ପରମାତ୍ମା ଅଦ୍ୱିତୀୟ । ତାଙ୍କୁ ଲାଭ କରିବାକୁ ହେଲେ ସେହିପରି ଗୁରୁ ଦରକାର । ରାଜା ଯଦୁ ଅବଧୂତଙ୍କ ଉପଦେଶ ଲାଭ କରି ଆସକ୍ତିରୁ ମୁକ୍ତ ହେଲେ ଏବଂ ପରମପଦ ଲାଭ କଲେ ।

## ଆତ୍ମା କଣ ?

ଶ୍ରୀକୃଷ୍ଣ କହିଲେ ଉଦ୍ଧବ, ଶରୀର ମଧ୍ୟରେ ଥିଲେ ମଧ୍ୟ ଆତ୍ମା ସମ୍ପୂର୍ଣ୍ଣ ଭିନ୍ନ; ନିତ୍ୟମୁକ୍ତ; ଯେପରିକି କାଠରେ ଥିବା ନିଆଁ । ନିଜର ବର୍ଣ୍ଣ, ଆଶ୍ରମ ଓ କୁଳ ଅନୁସାରେ କର୍ମ କରିବା ଉଚିତ । ସଦ୍‌ଗୁରୁଙ୍କ ଉପଦେଶରେ କାର୍ଯ୍ୟ କଲେ ହୃଦୟରେ ପ୍ରକଟିତ ଜ୍ଞାନାଗ୍ନି ଦ୍ୱାରା ଗୁଣ ସହିତ ମାୟା ଧ୍ୱଂସ ହୋଇଯାଏ । ବିଦ୍ୟା ଓ ଅବିଦ୍ୟା ନିଜ ଭିତରେ ଅଛି । ଅବିଦ୍ୟାଯୁକ୍ତ ଜୀବ । ବିଦ୍ୟାଯୁକ୍ତ ନିତ୍ୟମୁକ୍ତ ଈଶ୍ୱର । ସଂସାରକୁ ଅଳୀକ ବୋଲି ମନେ କରି କାହାର ନିନ୍ଦା କିମ୍ବା କାହାର ସ୍ତୁତି କରିବା ଉଚିତ ନୁହେଁ । ଅବିଦ୍ୟା ଦୋଷରୁ ଜୀବ ନିଜକୁ କର୍ତ୍ତା ଓ ଭୋକ୍ତା ବୋଲି ମନେକରେ ।

ଶରୀରରେ ସାତଟି ଚକ୍ର -- ମୂଳାଧାର (ମଳଦ୍ୱାର ପାଖରେ), ସ୍ୱାଧିଷ୍ଠାନ (ମୂତ୍ରେନ୍ଦ୍ରିୟ ପାଖରେ), ମଣିପୂର (ନାଭିରେ), ଅନାହତ (ହୃଦୟରେ), ବିଶୁଦ୍ଧ(କଣ୍ଠରେ), ଆଜ୍ଞା ଚକ୍ର(ଭ୍ରୂଲତା ଦୁଇଟି ମଝିରେ) ଏବଂ ସହସ୍ରାର (ବ୍ରହ୍ମରନ୍ଧ୍ରରେ) । ଏହିସବୁ ଚକ୍ରରେ ଈଶ୍ୱର ପ୍ରକଟ ହୁଅନ୍ତି । ମୂଳାଧାରରେ ପରା ନାମରେ, ନାଭିରେ ପଶ୍ୟନ୍ତୀ ରୂପରେ, ଯେତେବେଳେ ଏହି ପ୍ରାଣରୂପ ଈଶ୍ୱର ବିଶୁଦ୍ଧ ଚକ୍ରକୁ ଆସିଲେ ମୁଖ ହୋଇ ଧ୍ୱନି, ମାତ୍ରା, ସ୍ୱର ଏବଂ ବର୍ଣ୍ଣ ଭାବରେ ବୈଖରୀ ବାଣୀ ରୂପେ ଅଭିହିତ ହୁଅନ୍ତି । ଅଗ୍ନି ଯେପରି ପ୍ରଥମେ ସ୍ଫୁଲିଙ୍ଗ ଓ ପରେ ବିଶାଳ ଆକାରରେ ଦେଖାଯାଏ, ଈଶ୍ୱର ସେହିପରି କ୍ରମଶଃ ଆଦି ରୂପରେ ପ୍ରକଟ ହୁଅନ୍ତି । ହାତ, ପାଦ, ନାକ, କାନ, ବୁଦ୍ଧି, ଅହଂକାର ଆଦି ସମସ୍ତ ରୂପରେ ପରମାତ୍ମା ହିଁ ଦେଖାଯାନ୍ତି । ରଜୋଗୁଣ ଓ ତମୋଗୁଣ-ଗ୍ରସ୍ତ ବୁଦ୍ଧି ପକ୍ଷରେ ଏହା ବୋଧଗମ୍ୟ ନୁହେଁ । ତେଣୁ ସତ୍ତ୍ୱଗୁଣର ଆଶ୍ରୟ ନେବା ଉଚିତ । ଗୁଣପାଇଁ ଦଶୋଟି କଥା ଆବଶ୍ୟକ ।

**ଆଗମୋଽପଃ ପ୍ରଜା ଦେଶଃ କାଳଃ କର୍ମ ଚ ଜନ୍ମ ଚ**
**ଧ୍ୟାନଂ ମନ୍ତ୍ରୋଽଥ ସଂସ୍କାରୋ ଦଶୈତେ ଗୁଣହେତବଃ ।**

(୧) ଆଗମ -- ପୁସ୍ତକମାନଙ୍କଦ୍ୱାରା ଗୁଣର ହ୍ରାସ ବୃଦ୍ଧି । ପୁରାଣଶାସ୍ତ୍ର ଦ୍ୱାରା ସାତ୍ତ୍ୱିକ ବୃଦ୍ଧି । ଶସ୍ତା ଉପନ୍ୟାସ ଦ୍ୱାରା ତାମସିକ ବୃଦ୍ଧି । (୨) ଅପଃ -- ଜଳ । ଦେଶ ଓ କାଳ ଅନୁସାରେ ଯେପରି ଜଳବାୟୁ ହୁଏ, ସେହିପରି ଗୁଣମାନଙ୍କର ହ୍ରାସ ବୃଦ୍ଧି ଘଟେ । (୩) ପ୍ରଜା ଅର୍ଥ ଭାବ । ମନୁଷ୍ୟର ମନୋରଥ ବା ଭାବନାର କାରଣରୁ ଗୁଣମାନଙ୍କର ହ୍ରାସ ବୃଦ୍ଧି । (୪) ଦେଶ ବା ସ୍ଥାନର ସ୍ପଷ୍ଟ ପ୍ରଭାବ ପଡ଼େ । (୫) କାଳ -- ସକାଳୁ ରାତିଯାଏ ଓ ରାତି ମଧ୍ୟରେ ବିଭିନ୍ନ ଗୁଣର ପ୍ରଭାବ ପଡ଼େ । (୬) କର୍ମ

-- ଯେଉଁ କୁଳରେ ଜନ୍ମ ସେ କୁଳ ପରମ୍ପରାର ପ୍ରଭାବ ପଡ଼େ । (୭) ଜନ୍ମ -- କର୍ମ ଅନୁସାରେ ବିଭିନ୍ନ ପ୍ରଭାବ ପଡ଼େ । (୮) ବିଭିନ୍ନ ବ୍ୟକ୍ତିଙ୍କର ଧ୍ୟାନ ଭିନ୍ନ ଭିନ୍ନ । (୯) ମନ୍ତ୍ର -- ଭୈରବ ଓ ଧୂମାବତୀ ଆଦିଙ୍କ ମନ୍ତ୍ର ଉତ୍ତେଜକ । ଏହାର ବିପରୀତ ବାସୁଦେବ ମନ୍ତ୍ର ସତ୍ତ୍ୱ ଗୁଣ ବୃଦ୍ଧି କରେ । (୧୦) ସଂସ୍କାର -- ଏହାର ପ୍ରଭାବ ବହୁତ ବେଶୀ । ଜନ୍ମ ଜନ୍ମାନ୍ତରେ ଘଟିଥିବା ଘଟଣାବଳୀ ଗୁଣମାନଙ୍କର ହେତୁ ହୁଅନ୍ତି । ଏ ସମସ୍ତ ବିଷୟ ଜାଣି ସାଧକ ରଜୋଗୁଣ ଓ ତମୋଗୁଣର ହ୍ରାସ ଓ ସତ୍ତ୍ୱଗୁଣର ବୃଦ୍ଧିପାଇଁ ଚେଷ୍ଟା କରିବା ଉଚିତ ।

## ହଂସାବତାର

ଏହାପରେ ହଂସାବତାରର ବର୍ଣ୍ଣନା । ସନକାଦି ମୁନିମାନେ ନିଜର ପିତା ବ୍ରହ୍ମାଙ୍କୁ ପଚାରିଲେ -- ମନ ପ୍ରାୟ ବିଷୟମାନଙ୍କ (ଗୁଣମାନଙ୍କ) ଆଡ଼କୁ ଓ ବିଷୟମାନ ମନଆଡ଼କୁ ଚାଲିଯାଉଛନ୍ତି । ଏହାର ପ୍ରତିକାର କଣ ? ବ୍ରହ୍ମା ଉତ୍ତର ଦେଇପାରିଲେ ନାହିଁ । ଭଗବାନଙ୍କୁ ପ୍ରାର୍ଥନା କଲେ । ଭଗବାନ ଏକ ହଂସ ହୋଇ ଆସିଲେ । ବ୍ରହ୍ମା ପଚାରିଲେ, ତୁମେ କିଏ ? ହଂସ କହିଲା -- ଏ ପ୍ରଶ୍ନ ନିରର୍ଥକ । ଶରୀର ଓ ଆତ୍ମା, ଜଡ଼ ଓ ଚେତନ, ଅପୂର୍ଣ୍ଣ ଓ ପୂର୍ଣ୍ଣ -- ଏ ଦୁଇଟି ମଧ୍ୟରୁ କାହା ସମ୍ପର୍କରେ ଏ ପ୍ରଶ୍ନ ? ଦେହପାଇଁ ଯଦି ପ୍ରଶ୍ନ, ଆପଣମାନଙ୍କର ଓ ମୋର ଦେହ ପଞ୍ଚ ମହାଭୂତଙ୍କୁ ନେଇ ଗଢ଼ାହୋଇଛି । ସେ ଦୃଷ୍ଟିରୁ ଆମର ଦେହ ଏକ । ତେଣୁ ଦେହପାଇଁ ଏ ପ୍ରଶ୍ନ ହୋଇ ନ ପାରେ । ଦେହରେ ବ୍ୟାପ୍ତ ଚୈତନ୍ୟ ମୋର ଏବଂ ଆପଣମାନଙ୍କର ଏକ । ତା' ହେଲେ ଆପଣଙ୍କର ପ୍ରଶ୍ନର ଅର୍ଥ ଅଛି । ଯାହା କିଛି ଦେଖାଯାଉଚି, ଶୁଣାଯାଉଚି ବା ଇନ୍ଦ୍ରିୟଙ୍କଦ୍ୱାରା ଗୃହୀତ ହେଉଛି, ତାହା ହେଉଛି ମୁଁ ଯେ କି ଆତ୍ମାର ଅତିରିକ୍ତ ଅନ୍ୟ କିଛି ନୁହେଁ । (ଯେପରି ତୁମ୍ବୀର ଫଳ ପାଣିରେ ହାତଦ୍ୱାରା ବଳପୂର୍ବକ ବୁଡ଼ାଇ ରଖିଲେ ତାହା କିଛି ସମୟ ବୁଡ଼ି ରହେ, ମାତ୍ର ହାତ ଛାଡ଼ିଦେଲେ ଉପରକୁ ଉଠିଆସେ । ସେହିପରି ମନକୁ ବଳପୂର୍ବକ ସ୍ୱରୂପରେ ଲଗାଇଲେ, ସେ ସୁବିଧା ପାଇଲେ ବିଷୟ ଆଡ଼କୁ ଚାଲି ଆସେ ।) କାରଣ ମନ ଓ ବିଷୟ ଦୁହେଁ ଏକ ଜାତୀୟ ।

ମନ ଓ ବିଷୟ ଦୁହେଁ ହେଉଛନ୍ତି କ୍ଷେତ୍ର ବା ଜୀବର ଶରୀର । ଶରୀର ଓ ଶରୀରୀ ଦୁହିଁଙ୍କ ମଧ୍ୟରେ ପାର୍ଥକ୍ୟ ଅଛି । ଆପଣମାନେ କ୍ଷେତ୍ର ନୁହନ୍ତି କ୍ଷେତ୍ରଜ୍ଞ । ଶରୀର ନୁହନ୍ତି ଶରୀରୀ । କ୍ଷେତ୍ର ଅପୂର୍ଣ୍ଣ, ବିନାଶଶୀଳ, ଜଡ଼ । ଆପଣ ଏହାର ସାକ୍ଷୀ । ଜାଗ୍ରତ ଓ ସ୍ୱପ୍ନ ଦେହ ସୁଷୁପ୍ତିରେ ନ ଥାଏ । କିନ୍ତୁ ଏହି ତିନୋଟିର ସାକ୍ଷୀ ଚେତନ । ତାହା ହେଉଛନ୍ତି ଆପଣ, ଯେ କି ଆତ୍ମା । ତେଣୁ ସଂସାରରୁ ଦୃଷ୍ଟି ହଟାଇ ନିଜର ସ୍ୱରୂପରେ ଲଗାଇଦିଅନ୍ତୁ । ଯେତେବେଳେ ସର୍ବତୋଭାବରେ ଆତ୍ମାରୂପରେ ମୋତେ ଆଶ୍ରୟ କରି ସମସ୍ତ ପ୍ରାଣୀ ଏକ ବୋଲି ଅନୁଭବ କରାଯାଏ, ସେତେବେଳେ ମନ ବିଷୟଆଡ଼କୁ ବା ବିଷୟ ମନଆଡ଼କୁ ଯିବାର ପ୍ରଶ୍ନ ଉଠେ ନାହିଁ । ସମସ୍ତ ଗୁଣର ସାକ୍ଷୀସ୍ୱରୂପ ନିର୍ଗୁଣ (ମୋତେ) କୁ ସେବା କରାଯାଏ । ମୁଁ ସମସ୍ତଙ୍କର ପ୍ରିୟ ସୁହୃଦ୍ । ବ୍ରହ୍ମା ଓ ସନକ ଆଦି ଋଷିମାନେ ସମସ୍ତ କଥା ବୁଝିଯାଇ ହଂସ ଭଗବାନଙ୍କର ସ୍ତୁତି କଲେ ।

## ଧ୍ୟାନଯୋଗ

ଏହାପରେ ଭଗବାନ ଶ୍ରୀକୃଷ୍ଣ ଭକ୍ତର ମାହାତ୍ମ୍ୟ ଓ ଧ୍ୟାନ ଯୋଗର ବର୍ଣ୍ଣନା କଲେ । ଭଗବାନଙ୍କ ଠାରେ ପୂର୍ଣ୍ଣ ସମର୍ପିତ ଜୀବନ ହେଉଚି ଭକ୍ତି । ଭକ୍ତ ନିଷ୍କିଞ୍ଚନ । ଦିନ ରାତି ତା'ର ଚିତ୍ତ ଭଗବାନଙ୍କଠାରେ ମଗ୍ନ ହୋଇ ରହିଥାଏ । ଭକ୍ତ ହିଁ ମୋର ଆପଣାର ବନ୍ଧୁ (ମୋର ଅଚିନ୍ତ୍ୟ, ଅନବଦ୍ୟ, ଅନନ୍ତ ସୌନ୍ଦର୍ଯ୍ୟ, ମାଧୁର୍ଯ୍ୟ ଓ ତାର ସର୍ବସ୍ୱ ଶ୍ରୀ ବିଗ୍ରହରେ ଅପଲକ ଭାବରେ

ଦୃଷ୍ଟି ନିବଦ୍ଧ କରିବା, ମୋର ଦିବ୍ୟ ମଧୁମୟ, ଲଳିତ ଲୀଳାର ଦର୍ଶନ ଓ ଶ୍ରବଣରେ ମଗ୍ନ ହେବା, ସମସ୍ତଙ୍କ ପ୍ରତି ମୈତ୍ରୀ, କରୁଣା, ଉଦାରତା ଓ ସଦ୍‌ବ୍ୟବହାର ଦେଖାଇବା, ଏହିପରି ଶାନ୍ତ ଜିତେନ୍ଦ୍ରିୟ ବ୍ୟକ୍ତି ହେଉଚି ମୋର ଭକ୍ତ) । ମୁଁ ମୋର ଭକ୍ତର ପଛେ ପଛେ ଦୌଡ଼େ, ଯେପରିକି ତାର ପାଦଧୂଳି ମୋ ମସ୍ତକ ଉପରେ ପଡ଼ିବ ।

ତା'ପରେ ଧ୍ୟାନ ଯୋଗର ବର୍ଣ୍ଣନା । ନିତ୍ୟକର୍ମ ସାରି ସମତଳ ଭୂମିରେ ଶାନ୍ତ ଭାବରେ ବସି ପ୍ରାଣାୟାମ କରିବା । ଏଥିରେ ପୂରକ, ରେଚକ ଓ କୁମ୍ଭକର ଅନୁପାତ ୧:୨:୪: ହେବା ଦରକାର । ପ୍ରାଣୟାମଦ୍ୱାରା ପ୍ରାଣଶୁଦ୍ଧି ହୁଏ । ଏକ ମିନିଟରେ ପୂରକ, ଦୁଇ ମିନିଟରେ ରେଚକ ଓ ଚାରି ମିନିଟରେ କୁମ୍ଭକ ହେବା ଉଚିତ । ପ୍ରାଣାୟାମଦ୍ୱାରା ମନ ସଂଯତ ହେଲେ ବାଣୀ ସଂଯତ ହୁଏ । ସିଧା ହୋଇ ବସି, ଦୁଇ ହାତକୁ କୋଳରେ ରଖି ଦୃଷ୍ଟିକୁ ନାକ ଅଗରେ ରଖିବ । ଦଶ ଦଶ ବାର ଲମ୍ବା ଶ୍ୱାସ ଓଁକାର ସ୍ୱରରେ, ତିନି ବାର ଓଁକାର ଉଚ୍ଚାରଣ କଲେ ପ୍ରାଣ ସ୍ଥିର ହୋଇଯିବ । ହୃଦୟ ପ୍ରସ୍ଫୁଟିତ ପଦ୍ମପରି । ଏହାର ଆଠୋଟି ପାଖୁଡ଼ା ଅଛି । ଏହା ଚିନ୍ତା କରି ଗୋଟିଏ ଗୋଟିଏ ପାଖୁଡ଼ାକୁ ଅଗ୍ନି, ସୂର୍ଯ୍ୟ ଓ ଚନ୍ଦ୍ର ବୋଲି କଳ୍ପନା କରି ଧ୍ୟାନ କରିବ ।

ଉଦ୍ଧବଙ୍କୁ ଭଗବାନ ସିଦ୍ଧିର କଥା କହୁଛନ୍ତି । ସିଦ୍ଧିର ଚକରରେ ଆଦୌ ପଡ଼ିବା ଉଚିତ ନୁହେ । ଏହା ମନକୁ ଚଞ୍ଚଳ କରେ ଓ ଲକ୍ଷ୍ୟଭ୍ରଷ୍ଟ କରାଏ ।

ଏହାପରେ ଭଗବାନ ନିଜର ବିଭୂତି ବର୍ଣ୍ଣନା କରୁଛନ୍ତି । ସଂସାରର ସମସ୍ତ ପ୍ରମୁଖ ବସ୍ତୁ, ତେଜ, ବୀର୍ଯ୍ୟ, ଐଶ୍ୱର୍ଯ୍ୟ, ସୌନ୍ଦର୍ଯ୍ୟ ସମସ୍ତ ତାଙ୍କର ବିଭୂତି । ସର୍ବତ୍ର ଭଗବତ୍ ଦର୍ଶନ । ଗୀତାରେ ମଧ୍ୟ ବିଭୂତିଯୋଗର କଥା କହିଛନ୍ତି । ଜଡ଼, ଚେତନ ଯେଉଁଠି ମଧ୍ୟ କିଛି ବିଶେଷ ଗୁଣ ଦେଖାଯାଏ, ସେ ସବୁ ଭଗବାନ । ଯେପରିକି ବୃକ୍ଷମାନଙ୍କ ମଧ୍ୟରେ ଅଶ୍ୱତ୍ଥ । ପର୍ବତମାନଙ୍କ ମଧ୍ୟରେ ହିମାଳୟ । ନଦୀମାନଙ୍କ ମଧ୍ୟରେ ଗଙ୍ଗା । ଗ୍ରହରେ ସୂର୍ଯ୍ୟ, ନକ୍ଷତ୍ରରେ ଚନ୍ଦ୍ରମା, ଇନ୍ଦ୍ରିୟମାନଙ୍କ ମଧ୍ୟରେ ମନ । ସବୁଠି ଭଗବାନଙ୍କ ଦର୍ଶନ କରାଯିବା ଉଚିତ ।

ତା'ପରେ ବର୍ଣ୍ଣାଶ୍ରମର କଥା । ନିଜର ପ୍ରବୃତ୍ତି ଅନୁସାରେ ମନୁଷ୍ୟ ବ୍ରାହ୍ମଣ, କ୍ଷତ୍ରିୟ, ବୈଶ୍ୟ ଓ ଶୂଦ୍ର ହୁଏ, ଜନ୍ମ ଅନୁସାରେ ନୁହେଁ । ସେମାନଙ୍କର ବିଶିଷ୍ଟ ଗୁଣମାନଙ୍କ କଥା କୁହାଯାଇଚି । ବ୍ରହ୍ମଚର୍ଯ୍ୟ; ଗୁରୁଗୃହରେ ବ୍ରହ୍ମଚାରୀ କିପରି ଆଚରଣ କରିବ (ସର୍ବଦେବମୟୋ ଗୁରୁଃ) । ଗୃହସ୍ଥାଶ୍ରମରେ ପଞ୍ଚଯଜ୍ଞ । ପ୍ରତିଦିନ ହୋମାହୂତି ଦେବା ଦେବଯଜ୍ଞ । ଋଷିମାନଙ୍କ କୃତ ସଦ୍‌ଗ୍ରନ୍ଥର ପଠନ ପାଠନ ଋଷିଯଜ୍ଞ (ଗୀତା ଉପନିଷଦ୍, ରାମାୟଣ, ଭାଗବତ ଆଦି) । ଶ୍ରାଦ୍ଧ, ତର୍ପଣ ପିତୃଯଜ୍ଞ । କୁକୁର, କୁଆ ଆଦିଙ୍କୁ କିଛି ଖାଇବାକୁ ଦେବା ଭୂତଯଜ୍ଞ । ଅତିଥିମାନଙ୍କ ସେବା ଅତିଥିଯଜ୍ଞ । ଗୃହସ୍ଥାଶ୍ରମ ଅନ୍ୟ ତିନୋଟି ଆଶ୍ରମର ପାଳକ । ଏଥିପାଇଁ ଶ୍ରେଷ୍ଠ । ପରିବାରର ସେବା କରିବା ଉଚିତ । କିନ୍ତୁ ଗୃହସ୍ଥାଶ୍ରମରେ ମଧ୍ୟ ସର୍ବଦା ଭଗବାନଙ୍କ ଆରାଧନା ଏକାନ୍ତ ଆବଶ୍ୟକ । ଅନାସକ୍ତ ହୋଇ କର୍ମ କରିବା ହିଁ ବାନପ୍ରସ୍ଥ । ପୁତ୍ର ପୌତ୍ରାଦିଙ୍କ ଆସକ୍ତି ଛାଡ଼ି ଭଗବାନଙ୍କ ନାମ ଭଜନ, କୀର୍ତ୍ତନ ଏସବୁ ବାନପ୍ରସ୍ଥୀ ପ୍ରବୃତ୍ତି ।

ସନ୍ନ୍ୟାସ ଆଶ୍ରମ । ତୁରୀୟ ତତ୍ତ୍ୱକୁ ହୃଦୟଙ୍ଗମ କରିବା ଉଚିତ । ସମସ୍ତ ବିଧି ନିଷେଧରୁ ମୁକ୍ତ ହେବା । ଯାହା ମିଳିଲା ଖାଇବା, ପିନ୍ଧିବା; **'ଅକଳ୍ପିତଭିକ୍ଷାଶୀ'** । ଚାରି ବର୍ଣ୍ଣର ହାତରୁ ଭିକ୍ଷା ନିଆଯାଇପାରେ । ଆତ୍ମା ଓ ପରମାତ୍ମାଙ୍କୁ ଅଭେଦଭାବରେ ଦେଖିବା ଓ ସମସ୍ତଙ୍କଠାରେ ଭଗବାନଙ୍କୁ ଦର୍ଶନ କରିବା ।

ବେଦମାନଙ୍କ ସାର କଥା । ସମସ୍ତ ପ୍ରାଣୀ ସତ୍ତ୍ୱ, ରଜ, ତମୋଗୁଣରେ ନିର୍ମିତ । ଏ ସବୁ ଗୁଣ ମାୟାରୁ ଜାତ । ତେଣୁ ଶରୀରର ବିକାର ଯଥା ଜନ୍ମ, ମୃତ୍ୟୁ, ଜରା ବ୍ୟାଧି, ପ୍ରାଣଧାରଣପାଇଁ ଭୋକ ଶୋଷ । ମନର ଶୋକ ମୋହ ଅଛି । ଆତ୍ମାର ବିକାର ନାହିଁ । ଯାହାର ଜନ୍ମ ଥାଏ, ତା'ର ବିନାଶ ହୁଏ । ଯେ ଆରମ୍ଭରେ ଥାଏ ଓ ଅନ୍ତରେ ଥାଏ ସେ ମଧ୍ୟ ମଧ୍ୟରେ ରହେ । ଯେପରିକି ମୁଦି ହେବା ପୂର୍ବର ସୁନା । ସର୍ପ ପରି ପ୍ରତୀତ ହେଉଥିବା ଦଉଡ଼ି ପରି । ଦଉଡ଼ି ସହିତ ସର୍ପର ସମ୍ପର୍କ ନ ଥାଏ । ନିଜର ଶରୀରଠାରୁ-ଆତ୍ମା ସମ୍ପୂର୍ଣ୍ଣ ଭିନ୍ନ । ଏହି ତତ୍ତ୍ୱବୋଧପାଇଁ ଏକମାତ୍ର ସାଧନ ହେଉଚି ଭଗବତ୍ ଭକ୍ତି । ପଣ୍ଡିତମାନେ କର୍ମ, ଭକ୍ତି ଓ ଜ୍ଞାନର ମାର୍ଗ ଦର୍ଶାଇଛନ୍ତି ।

## କର୍ମଯୋଗ

ସମସ୍ତ କର୍ମ ଭଗବାନଙ୍କପାଇଁ କରୁଚ ବୋଲି ଅନୁଭବ କର । ଏପରିକି ଶୌଚ କର୍ମ, ଘର ଓଳାଇବା, ଭାତ ରାନ୍ଧିବା, ସ୍ନାନ, ନିତ୍ୟକର୍ମ ଭଗବାନଙ୍କପାଇଁ । ଏହା ହେଉଚି ଧର୍ମ । ଏହାର ବିପରୀତ ଯେତେବଡ଼ କାମ କଲେ ମଧ୍ୟ ତାହା ଅଧର୍ମ, ଯେପରିକି ଦକ୍ଷଙ୍କର ଯଜ୍ଞ । ତିନୋଟି ସର୍ତ୍ତ । (୧) କର୍ମର କର୍ତ୍ତା ବୋଲି ନିଜକୁ ବିଚାର ନ କରିବା । ସମାଜର ମଙ୍ଗଳ, ଲୋକ କଲ୍ୟାଣକର କର୍ମ, ଏପରିକି ନିଜର କର୍ମ ଭଗବାନ କରୁଛନ୍ତି ବୋଲି ବିଚାର କରିବା ଉଚିତ । ରାମାନୁଜାଚାର୍ଯ୍ୟଙ୍କ ମତରେ ଭଗବାନ ସବୁ କିଛି କରୁଛନ୍ତି ଓ କରାଉଛନ୍ତି । ଯାହାକୁ ଉଠାଇବାକୁ ଚାହାନ୍ତି ତା ଜରିଆରେ ଭଲ କାମ କରାନ୍ତି-- ଯାହାକୁ ପକାଇବାକୁ ଚାହାନ୍ତି, ତା ଜରିଆରେ ମନ୍ଦ କର୍ମ କରାନ୍ତି । (୨) କୃତକର୍ମର କର୍ମଫଳ ମଧ୍ୟ ଭଗବାନ ଦିଅନ୍ତି । କର୍ମର ଅଧିକାର ମନୁଷ୍ୟର, ମାତ୍ର ଫଳର ଅଧିକାର ଭଗବାନଙ୍କର । (୩) ସମସ୍ତ କର୍ମ ଭଗବାନଙ୍କଠାରେ ସମର୍ପଣ କରିବା ଉଚିତ । ଗୀତାରେ କୁହାଯାଇଚି--**'ମୟି ସର୍ବାଣି କର୍ମାଣି ସନ୍ନ୍ୟସ୍ୟାଧ୍ୟାତ୍ମ ଚେତସା'** । ଏଥିରେ କର୍ମ ବନ୍ଧନ ହୁଏନାହିଁ ।

## ଭକ୍ତି ଯୋଗ

ଭଗବତ୍ ପ୍ରେମ ହେଉଚି ଭକ୍ତି । ଭକ୍ତି ହେଉଚି ଭଗବାନଙ୍କ କଥାରେ ଶ୍ରଦ୍ଧା, ତାଙ୍କ ନାମର କୀର୍ତ୍ତନ, ତାଙ୍କର ସେବାପ୍ରତି ଆଦର, ଭଗବତ୍ ଭକ୍ତମାନଙ୍କର ସଂଗ ।

## ଜ୍ଞାନଯୋଗ

ପ୍ରକୃତିରୁ ପୃଥିବୀ ପର୍ଯ୍ୟନ୍ତ ଅଠେଇଶ ତତ୍ତ୍ୱ ମଧ୍ୟରେ ସବୁଠାରୁ ମୂଳତତ୍ତ୍ୱ ହେଉଚି ଜ୍ଞାନ । ଏହାର ଅନୁଭବ ହେଉଚି ବିଜ୍ଞାନ । ସମସ୍ତ ପଦାର୍ଥ ଏକର ଅନୁଗତ, ଏହା ହେଉଚି ଜ୍ଞାନ । ମାତ୍ର ଯେତେବେଳେ ଏକ ପରମାତ୍ମା ସତ୍ୟ, ଅନ୍ୟସବୁ ମାୟା ବୋଲି ଅନୁଭୂତ ହୁଏ, ତାହା ବିଜ୍ଞାନ ।

ତା'ପରେ ଉଦ୍ଧବଙ୍କ ବିଭିନ୍ନ ପ୍ରଶ୍ନର ଉତ୍ତର ଦେଇ ଭଗବାନ କହୁଛନ୍ତି-- ନିଜର ଦେହ ମୋର ବୋଲି ଯେ କହେ, ସେ ହେଉଚି ମୂର୍ଖ । ଅସନ୍ତୁଷ୍ଟ ହେଉଚି ଦରିଦ୍ର । ଯଦ୍ଦ୍ୱାରା ମୋତେ ଲାଭ କରାଯାଏ, ତାହା ହେଉଚି ଠିକ୍ ମାର୍ଗ ଓ ସାଧନ । ବେଦ ଗୁଣ ଦୋଷର ବିଭାଗ କରେ । ପ୍ରକୃତରେ ବସ୍ତୁ ଯାହା ହେଉନା କାହିଁକି, ଆମର ବାସନାଯୋଗୁଁ ହିଁ ସେଥିରେ ଗୁଣଦୋଷ ଦେଖାଯାଏ । ଏଥିପାଇଁ ଧର୍ମ ଉଦ୍ଦେଶ୍ୟରେ ଶୁଦ୍ଧି-ଅଶୁଦ୍ଧି, ବ୍ୟବହାର ନିମନ୍ତେ ଗୁଣ ଦୋଷ ଓ ଜୀବନ ନିର୍ବାହପାଇଁ ଶୁଭ-

ଅଶୁଭର ବିଚାର କରାଯାଏ । ଏହାର ନିୟାମକ ହେଉଚି ବେଦ । ଉଦ୍ଧବ ପଚାରିଲେ ଆତ୍ମାରେ ପ୍ରକୃତି ଓ ପ୍ରକୃତିରେ ଆତ୍ମା ଥିବା ଜଣାଯାଉଚି । ଭଗବାନ୍ କହିଲେ ପ୍ରକୃତି ଦୃଶ୍ୟ, ଅନିତ୍ୟ, ଜଡ଼ ଓ ଆସକ୍ତ । ଏଥିରୁ ଭିନ୍ନ ପୁରୁଷ ହେଉଚି ଦ୍ରଷ୍ଟା, ନିତ୍ୟ, ଚେତନ ଓ ଅସଙ୍ଗ ।

## ଭିକ୍ଷୁଗୀତ

ଏକ ବ୍ରାହ୍ମଣର କଥା । ବହୁତ ଧନ ଅର୍ଜନ କଲା, କିନ୍ତୁ ଖର୍ଚ୍ଚ କଲା ନାହିଁ । ଧନ ନଷ୍ଟ ହୋଇଗଲା, ପରିବାରବର୍ଗ ମଧ୍ୟ ଗାଳିଦେବାକୁ ଲାଗିଲେ । ସେତେବେଳେ ଯାଇ ଜ୍ଞାନୋଦୟ ହେଲା । ସନ୍ନ୍ୟାସୀ ହୋଇ ଚାଲିଗଲା ପରେ ପାଗଳ ବୋଲି ଭାବି ଲୋକେ ଗାଳି ଫଂଜିତ୍ କଲେ, ଛେପ ପକାଇଲେ, ମାଡ଼ ଦେଲେ । ଏଥିରେ କିନ୍ତୁ ସେ ଅବିଚଳିତ ରହି ଏକ ଗୀତ ଗାନକଲା, ଯାହାକି ଭାଗବତରେ ଭିକ୍ଷୁ ଗୀତ ନାମରେ ପ୍ରସିଦ୍ଧ । ଗୀତଟି ହେଉଚି, ଲୋକମାନେ ମୋ'ସହିତ ଯେପରି ବ୍ୟବହାର କରୁଛନ୍ତି, ତାହା ମୋର ଦୁଃଖର କାରଣ ନୁହେଁ । ଏହା ମୋର ପ୍ରାରବ୍ଧର ଫଳ । ଦେବତା, ଆତ୍ମା, ସୂର୍ଯ୍ୟ, ଚନ୍ଦ୍ର, ଗ୍ରହ, କର୍ମ ଏବଂ କାଳ ଦୁଃଖ ଦିଅନ୍ତି ନାହିଁ । ନିଜର ଭୁଲ ହିଁ ସୁଖ ଦୁଃଖର କାରଣ । ମନକୁ ରାଗ ଦ୍ୱେଷରୁ ମୁକ୍ତକରି ନିଜର ଆଶ୍ରୟ ତତ୍ତ୍ୱରେ ସ୍ଥିର ରହିଲେ, ଭ୍ରାନ୍ତିର ନିବୃତ୍ତି ଘଟେ ଓ ଯେ କୌଣସି ପରିସ୍ଥିତିରେ ଲୋକକୁ ଆନନ୍ଦ ମିଳେ ।

ଭିକ୍ଷୁଗୀତ ପରେ ଉଦ୍ଧବଙ୍କୁ ଭଗବାନ ସାଂଖ୍ୟଯୋଗ କଥା ଶୁଣାଇଲେ । ଜ୍ଞାନର ନାମ ପୁରୁଷ । ସେ ଆଖିର ମାଧ୍ୟମରେ ଦ୍ରଷ୍ଟା; କାନ ମାଧ୍ୟମରେ ଶ୍ରୋତା ।

ଜ୍ଞେୟ ହେଲେ ପ୍ରକୃତି । ପ୍ରକୃତିରୁ ସତ୍ତ୍ୱାଦି ତିନି ଗୁଣ । ସେହି ଗୁଣଦ୍ୱାରା ଏହି ସାରା ଜଗତ୍ ତିଆରି ହୋଇଚି । ଭଗବାନଙ୍କ ନାଭି ଆକାଶ ସ୍ୱରୂପ । ସେଥିରୁ ଉତ୍ପନ୍ନ ପଦ୍ମରୁ ବ୍ରହ୍ମାଙ୍କର ଜନ୍ମ । ପରମାତ୍ମା ଆଦି, ଅନ୍ତ ଓ ମଧ୍ୟରେ ବିଦ୍ୟମାନ । ଯେପରି ଘଡ଼ି, ସରା, ସୁରେଇ ଆଦି ବ୍ୟବହାର ହୁଏ, କିନ୍ତୁ ତାର ଆଦି ଅନ୍ତ ଓ ମଧ୍ୟରେ ମାଟି ରହିଥାଏ । ସେହିପରି ଏହି ସାରା ବିଶ୍ୱ ସଂସାରର ଆଦି, ମଧ୍ୟ ଓ ଅନ୍ତରେ ଭଗବାନ ବିଦ୍ୟମାନ ।

ମନୁଷ୍ୟର ଶରୀର ସାଧନର ଧାମ । ଆସକ୍ତିର ନୁହେଁ । ଏଥିରେ 'ମୁଁ ମୋର' ଆଦି ଅହଂକାର ସ୍ଥାନ ପାଇବା ଉଚିତ ନୁହେ । ସାଧୁ ସତ୍ ଓ ଅନାସକ୍ତ ଜୀବନ ବିତାଇବାଦ୍ୱାରା ମନୁଷ୍ୟ ଏହି ଭିକ୍ଷୁପରି ସୁଖୀ ହୋଇପାରିବ ।

ସମସ୍ତ ଇନ୍ଦ୍ରିୟକୁ ଭଗବାନଙ୍କ ଆରାଧନାରେ ଲଗାଇବାର ନାମ କ୍ରିୟାଯୋଗ । ବୈଦିକ, ତାନ୍ତ୍ରିକ ଓ ମିଶ୍ରିତ ଏହି ତିନି ପ୍ରକାର କ୍ରିୟାଯୋଗ । ମୂର୍ତ୍ତି, ଦେଶ, ଅଗ୍ନି, ସୂର୍ଯ୍ୟ, ଜଳ, ହୃଦୟ ଓ ବ୍ରାହ୍ମଣଙ୍କଦ୍ୱାରା ହିଁ ଭଗବାନଙ୍କର ପୂଜା ହୁଏ । ଯଜ୍ଞୋପବୀତ ସାଧନ, ସ୍ନାନ, ସନ୍ଧ୍ୟା ଆଦି କରି ପ୍ରତିମାରେ ପ୍ରାଣ ପ୍ରତିଷ୍ଠା କରାଯାଏ । ଭୂତଶୁଦ୍ଧିଦ୍ୱାରା ମାନସିକ ମୂର୍ତ୍ତିର ମଧ୍ୟ ପୂଜନ କରାଯାଇପାରେ । ଭଗବାନଙ୍କର ଆୟୁଧ, ଅସ୍ତ୍ର, ଭୂଷଣ ଓ ପାର୍ଷଦମାନଙ୍କୁ ମଧ୍ୟ ବିଧିପୂର୍ବକ ପୂଜା କରିବା ଉଚିତ ।

ସଂସାର ଆତ୍ମାରୁ ଜାତ ଓ ଆତ୍ମାରେ ଲୀନ ହୋଇଯାଏ । ଆତ୍ମା ଶରୀର ନୁହେ । ଆତ୍ମା ଏକମାତ୍ର ଚେତନ । ପ୍ରତି ମୁହୂର୍ତ୍ତ ତୀବ୍ର ଭକ୍ତିଯୋଗଦ୍ୱାରା ପରମାତ୍ମାଙ୍କଠାରେ ନିୟୋଜିତ କରିବା ଉଚିତ । ଆତ୍ମା ଅଦ୍ୱିତୀୟ । ଏଥିରେ ଅନେକତା ଦେଖିବା ହେଉଚି ଭ୍ରମ । ସବୁ ଧର୍ମକୁ ଛାଡ଼ି ଭଗବାନଙ୍କ ଶରଣାଗତ ହେବା ଉଚିତ । **'ସର୍ବଧର୍ମାନ୍ ପରିତ୍ୟଜ୍ୟ ମାମେକଂ ଶରଣଂ ବ୍ରଜ'** । ଉଦ୍ଧବଙ୍କୁ ବଦରୀନାଥ ଯାଇ ଭଗବାନଙ୍କ ସନ୍ଦେଶ ସ୍ମରଣ କରିବା, ପ୍ରଚାର ଓ ପ୍ରସାର କରିବାପାଇଁ ଆଦେଶ । ଶ୍ରୀକୃଷ୍ଣଙ୍କଠାରୁ ନିଜର ବିୟୋଗ ଅସହ୍ୟ ବୋଲି ମନେ କରି ଉଦ୍ଧବ କହିଲେ, 'ସକଳ ତୀର୍ଥ ତୋ ଚରଣେ, ବଦ୍ରିକା ଯିବି କି

କାରଣେ' । ମାତ୍ର ଭଗବାନ୍ ଶ୍ରୀକୃଷ୍ଣଙ୍କ ଆଦେଶ ଅଲଂଘ୍ୟ । ଉଦ୍ଧବ ଭଗବାନଙ୍କ ଚରଣ ପାଦୁକା ମସ୍ତକରେ ଧାରଣ କରି ତାଙ୍କୁ ପ୍ରଦକ୍ଷିଣ ପୂର୍ବକ ବଦରୀକା ଅଭିମୁଖେ ଯାତ୍ରା କଲେ ।

## ଯଦୁ ବଂଶ ଧ୍ୱଂସ

ଏଣେ ପ୍ରଭାସ କ୍ଷେତ୍ରକୁ ଯାଇ ଯଦୁ ବଂଶୀୟମାନେ ମଦ୍ୟପାନ କରି ଉନ୍ମତ୍ତ ହୋଇଗଲେ ଓ ଏରକା ବଣରୁ ତୀକ୍ଷ୍ଣ ଏରକା ଆଣି ପରସ୍ପରକୁ ହତ୍ୟା କରିବାକୁ ଲାଗିଲେ । ବଳରାମ ସମୁଦ୍ରକୂଳରେ ସମାଧିସ୍ଥ ହୋଇ ଦେହ ତ୍ୟାଗ କଲେ । ଅଶ୍ୱତ୍ଥ ଗଛର ତଳେ ପାଦ ଉପରେ ପାଦ ରଖି ଭଗବାନ ଶ୍ରୀକୃଷ୍ଣ ମନ୍ଦ ମନ୍ଦ ହସୁଥିଲେ । ମୁଷଳର ଶେଷ ଖଣ୍ଡ ଜରାର ଶର ହୋଇଥିଲା । ସେ ଭଗବାନଙ୍କର ପାଦକୁ ମୃଗର କାନ ବୋଲି ଭାବି ଶର ବିନ୍ଧ କଲା । ପରେ କଣ ଘଟିଲା ବୋଲି ଜାଣିପାରି ଉପଯୁକ୍ତ ଦଣ୍ଡ ନିମନ୍ତେ ଭଗବାନଙ୍କୁ ପ୍ରାର୍ଥନା କଲା । ଭଗବାନ ତାକୁ ଆଶ୍ୱସ୍ତ କରି ବିମାନଦ୍ୱାରା ସ୍ୱର୍ଗକୁ ପଠାଇଦେଲେ । ଦାରୁକକୁ ଆଦେଶ ଦେଲେ, ମୁଁ ଅନ୍ତର୍ହିତ ହେବାପରେ ଦ୍ୱାରକା ସମୁଦ୍ରରେ ବୁଡ଼ିଯିବ । ତୁମେ ଶୀଘ୍ର ସେଠାକୁ ଯାଇ ଅର୍ଜୁନଙ୍କଦ୍ୱାରା ସୁରକ୍ଷିତ ବାଳବୃଦ୍ଧବନିତାଙ୍କୁ ନିରାପଦରେ ପହଞ୍ଚାଇଦିଅ । ଦାରୁକ ତାହା ହିଁ କଲେ । ବ୍ରହ୍ମା, ଇନ୍ଦ୍ର ଆଦି ଦେବତା ଆବିର୍ଭୂତ ହୋଇ ଭଗବାନଙ୍କୁ ସ୍ତୁତି କରିବାକୁ ଲାଗିଲେ । ଶଙ୍ଖ ଚକ୍ର ଗଦା ପଦ୍ମଧାରୀ ଭଗବାନ ସ୍ୱଦେହରେ ନିଜ ଧାମକୁ ଚାଲିଗଲେ । ଏହିପରି ସାଧୁମାନଙ୍କ ପରିତ୍ରାଣ ଓ ଦୁଷ୍ଟଙ୍କର ବିନାଶ କରି ଭଗବାନ ନିଜର ଅବତାରକୁ ଶେଷ କଲେ । ଏକାଦଶ ସ୍କନ୍ଧ ମୁକ୍ତିର ସ୍କନ୍ଧ ।

## ଦ୍ୱାଦଶ ସ୍କନ୍ଧ

### ଆଶ୍ରୟ

ଏହାର ନାମ ଆଶ୍ରୟ । ଉପସଂହାରରେ ଶୁକଦେବ କହୁଛନ୍ତି, ରେ ମନ, ଚାଲ ନନ୍ଦନନ୍ଦନ ମଦନମୋହନ ଶ୍ୟାମସୁନ୍ଦରଙ୍କ ଚାରୁ ଚରଣଯୁଗଳକୁ ଆଶ୍ରୟ କର । ସେଥିପାଇଁ ଏହାର ନାମ ଆଶ୍ରୟ । ଯେପରି ପୃଥିବୀର ଆଶ୍ରୟ ଜଳ, ଜଳର ଆଶ୍ରୟ ଅଗ୍ନି, ଅଗ୍ନିର ବାୟୁ, ବାୟୁର ଆକାଶ ଓ ଆକାଶର ଆଶ୍ରୟ ପରମାତ୍ମା । ଏଥିରେ କଳିଯୁଗର ବର୍ଣ୍ଣନା, ଚାରି ପ୍ରଳୟର ବର୍ଣ୍ଣନାକରି ଶୁକଦେବ ପରିକ୍ଷିତଙ୍କୁ ଅନ୍ତିମ ଉପଦେଶ ଦେଇଛନ୍ତି -- ଯାହାକି ଉପନିଷଦ୍‌ମାନଙ୍କର ସାରତତ୍ତ୍ୱ ।

ପ୍ରଥମେ କଳିଯୁଗର ରାଜାମାନଙ୍କ ବର୍ଣ୍ଣନା । ମନୁଷ୍ୟମାନଙ୍କ ଆୟୁ କୋଡ଼ିଏ ବର୍ଷ । ନିଜ ଭିତରେ ହଣାହଣି ହୋଇ ଜଣେ ଅନ୍ୟର ଧନ, ସ୍ତ୍ରୀ, ସମ୍ମାନ ହରଣ କରିବାକୁ ଲାଗିବ । ମ୍ଳେଚ୍ଛମାନେ ଶାସନ କରିବେ । ଯେତେବେଳେ ଅତ୍ୟାଚାର, ଅନାଚାର ବହୁତ ବଢ଼ିଯିବ, ସେତେବେଳେ ସମ୍ଭଳ ଗ୍ରାମରେ ବିଷ୍ଣୁ ଶର୍ମାଙ୍କ ପୁତ୍ର ହୋଇ ଭଗବାନ କଳ୍କି ଅବତାର ହେବେ ଓ ମ୍ଳେଚ୍ଛ ସଂହାର କରି ସତ୍ୟଯୁଗର ପ୍ରତିଷ୍ଠା କରିବେ ।

ଭଗବାନ ଶ୍ରୀକୃଷ୍ଣ ଯିବାପରେ କଳି ପ୍ରବେଶ କରିବ । ଯେଉଁମାନେ ତାଙ୍କର ଦିବ୍ୟନାମ ନେଉଥିବେ, କଳି ତାଙ୍କର କିଛି କରିପାରିବନାହିଁ । ପ୍ରଳୟ-- ଚାରୋଟି । ନିତ୍ୟ, ପ୍ରାକୃତିକ, ନୈମିତ୍ତିକ, ଆତ୍ୟନ୍ତିକ । ସବୁ ବସ୍ତୁ, ପ୍ରାଣୀ ଧୀରେ ଧୀରେ ନଷ୍ଟ ହେବାକୁ ଯାଉଛନ୍ତି, ତାହା ହିଁ ନିତ୍ୟ ପ୍ରଳୟ । ପ୍ରାକୃତିକ ପ୍ରଳୟ ହେଉଚି -- ୪ ଲକ୍ଷ ୩୨ହଜାର ବର୍ଷରେ

ଏକ ଏକ ଚତୁର୍ଯୁଗ ୭୧ ଥର ହେବାପରେ ଗୋଟିଏ ମନ୍ୱନ୍ତର ହୁଏ । ୧୪ ମନ୍ୱନ୍ତରରେ ଗୋଟିଏ କଳ୍ପ । ଏହା ହେଉଚି ବ୍ରହ୍ମାଙ୍କର ଗୋଟିଏ ଦିନ । ବ୍ରହ୍ମାଙ୍କର ଆୟୁ ଶହେ ବର୍ଷ । ସାତ ପ୍ରକୃତି ସମସ୍ତେ ତା'ପରେ ଲୀନ ହୋଇଯାନ୍ତି, ସେଥିପାଇଁ ତାହା ପ୍ରାକୃତିକ ପ୍ରଳୟ । ନୈମିତ୍ତିକ ପ୍ରଳୟ -- ବ୍ରହ୍ମାଙ୍କର ରାତି ହେଲେ, ସମସ୍ତ ପ୍ରାଣୀଙ୍କର ପ୍ରଳୟ ଘଟେ । ଆତ୍ୟନ୍ତିକ ପ୍ରଳୟ ହେଉଚି -- ଏହା ମୁକ୍ତ ମହାପୁରୁଷମାନଙ୍କ ଜୀବନରେ ଘଟେ । ବ୍ରହ୍ମ ସହିତ ଏକାତ୍ମବୋଧ ହେଲେ ସମସ୍ତ ସୃଷ୍ଟି ସ୍ୱପ୍ନ ପରି ପ୍ରତିଭାତ ହୁଏ ।

ବର୍ତ୍ତମାନ ଶୁକଦେବ ରାଜା ପରିକ୍ଷିତଙ୍କୁ ତାଙ୍କର ଅନ୍ତିମ ଉପଦେଶ ଦେଉଛନ୍ତି -- ହେ ରାଜା, 'ମୁଁ ମରିବି' ଏହି ବାକ୍ୟ ଅନୁଭବର ବିରୁଦ୍ଧ । ଆପଣଙ୍କୁ କେବେ ଅଭାବ ଅନୁଭବ ହୋଇ ନାହିଁ କି ହେବ ନାହିଁ । ନିଜର ପରିବାର ଭାବନା ହେଉଚି ପଶୁବୁଦ୍ଧି । ତାହା ତ୍ୟାଗକରିବା ଉଚିତ । ଜୀବ ହେଉଚି ବ୍ରହ୍ମ । ଶରୀର ନଷ୍ଟ ହେଲେ ଜୀବ ବ୍ରହ୍ମରେ ଲୀନ ହୋଇଯାଏ । କାଳପ୍ରେରିତ ତକ୍ଷକ ଆସିବ । ଦଂଶନ କରିବ । କିନ୍ତୁ ତୁମେ ମରିପାରିବ ନାହିଁ । କାରଣ ତୁମେ ଅମର ଆତ୍ମା – ମୃତ୍ୟୁର ମୃତ୍ୟୁ ସ୍ୱରୂପ । ଦେହ ଉପାଧିରୁ ତୁମେ ଅତିରିକ୍ତ, ଚେତନ, ବ୍ରହ୍ମ । ଏହି ଉପଦେଶ ଶୁଣି ପରିକ୍ଷିତ ଶୁକଦେବଙ୍କ ପାଦତଳେ ପଡ଼ି ନିଜର କୃତଜ୍ଞତା ଜ୍ଞାପନ କଲେ । ସେ କହିଲେ, ଗୁରୁଦେବ, ଆପଣଙ୍କ ଉପଦେଶରେ ମୋର ସମସ୍ତ ସନ୍ଦେହ ଦୂର ହୋଇଚି । ଏବେ ଆଉ ମୋର ମୃତ୍ୟୁ ଭୟ ନାହିଁ । ଭାଗବତର ପ୍ରତ୍ୟେକ ସ୍କନ୍ଧରେ ଭଗବାନ ଶ୍ରୀକୃଷ୍ଣଙ୍କର ଶ୍ରୀବିଗ୍ରହର ମୁଁ ଦର୍ଶନ କରୁଛି ।

## ସର୍ପ ଯଜ୍ଞ

ପରମ ଭାଗବତ ପରିକ୍ଷିତଙ୍କର ଭାଗବତ କଥା ଶ୍ରବଣର ଫଳ ଶ୍ରୁତି ମିଳିଗଲା । ଜୀବନ୍ମୁକ୍ତି ଲକ୍ଷଣ ପ୍ରକଟିତ ହେଲା । ଶୁକଦେବ ଶିଷ୍ୟମାନଙ୍କ ସହିତ ଅନ୍ତର୍ହିତ ହେଲେ । ପରିକ୍ଷିତ ଗଙ୍ଗାର ପବିତ୍ର କୂଳରେ ବସି ଧ୍ୟାନପୂର୍ବକ ନିଜର ଆତ୍ମଜ୍ୟୋତିକୁ ବ୍ରହ୍ମଙ୍କ ସହିତ ଏକ ବୋଲି ଅନୁଭବ କଲେ । ସେତେବେଳେ ତାଙ୍କ ଦେହରେ ପ୍ରାଣ ନ ଥିଲା । ସେହି ସମୟରେ ତକ୍ଷକ ବ୍ରାହ୍ମଣ ବେଶରେ ଆସି ନିଜର ରୂପ ପ୍ରକାଶ କରି ତାଙ୍କୁ ଦଂଶନ କଲା । ପରିକ୍ଷିତଙ୍କର ଦେହ ଜଳି ଭସ୍ମ ହୋଇଗଲା । ଚାରିଆଡ଼େ ହାହାକାର ଶୁଣାଗଲା । ପ୍ରତିଶୋଧପାଇଁ ଜନମେଜୟ ସର୍ପ ଯଜ୍ଞ କଲେ । ସାପମାନେ ଆହୁତିଦ୍ୱାରା ଯଜ୍ଞ କୁଣ୍ଡରେ ପଡୁଥିଲେ । ଯେତେବେଳେ ତକ୍ଷକର ପାଳି ପଡ଼ିଲା; ଇନ୍ଦ୍ରଙ୍କ ଶରଣାଗତ ତକ୍ଷକ ଇନ୍ଦ୍ରଙ୍କ ସହିତ ଆକାଶରେ ଝୁଲିବାକୁ ଲାଗିଲା । ବୃହସ୍ପତି ଉପସ୍ଥିତ ହୋଇ ଜନମେଜୟଙ୍କୁ ଉପଦେଶ ଦେଲେ -- ରାଜା, ସଂସାରରେ ସମସ୍ତଙ୍କର ମୃତ୍ୟୁ ଅଛି । କୌଣସି ନା କୌଣସି କାରଣରୁ ମୃତ୍ୟୁ ହେଉଚି । ଆୟୁଭୋଗ ପୂର୍ବ-ନିର୍ଦ୍ଧାରିତ । ଋଷିଙ୍କ ଶାପକୁ କାର୍ଯ୍ୟକାରୀ କରିବାପାଇଁ ତକ୍ଷକ ଦୈବପ୍ରେରିତ ହୋଇ ଆସିଥିଲା । ତେଣୁ ସେ ନିରପରାଧ । ଜନମେଜୟ ବୃହସ୍ପତିଙ୍କ କଥାମାନି ତକ୍ଷକକୁ ଛାଡ଼ିଦେଲେ । ଯଜ୍ଞ ସେତିକିରେ ଶେଷ ହେଲା ।

ଏହାପରେ ଶୌନକଙ୍କର ପ୍ରଶ୍ନ ଓ ସୂତଙ୍କର ଉତ୍ତର । ପୁରାଣ କାହାକୁ କୁହାଯାଏ ? -- ପୁରାଣରେ ସର୍ଗ, ବିସର୍ଗ, ସ୍ଥାନ, ପୋଷଣ, ଊତି, ମନ୍ୱନ୍ତର, ଈଶାନୁକଥା, ନିରୋଧ, ମୁକ୍ତି ଆଶ୍ରୟ ରହିଚି । ସଂହିତା ସଂପର୍କରେ ଅଛି ଯେ ଯାଜ୍ଞ୍ୟବଲ୍କଙ୍କ ସହିତ ତାଙ୍କର ଗୁରୁଙ୍କର ପଟିଲା ନାହିଁ । ସେ କହିଲେ, ମୋର ବିଦ୍ୟା ଫେରାଇ ଦିଅ । ଯାଜ୍ଞବଲ୍କ ତାହା ବାନ୍ତି କରିଦେଲେ । ଉଚ୍ଛିଷ୍ଟ ବ୍ରାହ୍ମଣମାନଙ୍କ ପକ୍ଷରେ ନିଷିଦ୍ଧ । ତେଣୁ ଋଷିମାନେ ତିତର ପକ୍ଷୀ ହୋଇ ତାକୁ ସବୁ ଖାଇଦେଲେ । ସେଥିରୁ ତୈତରେୟ

ଉପନିଷଦ୍ ହେଲା । ଯେତେ ଋଷି ତାଙ୍କ ନାମରେ ସେତିକି ସଂହିତା । ଯାଜ୍ଞ୍ୟବଲ୍କ୍ୟ ସୂର୍ଯ୍ୟଙ୍କୁ ଉପାସନା କରି ସଂହିତା ସବୁ ଲାଭ କଲେ । ଏହିପରି ବେଦର ୧୧୩୦ ଶାଖା ହେଲା ।

ପୁଣି ମାର୍କଣ୍ଡେୟ ଋଷିଙ୍କ ବିଷୟରେ ବର୍ଣ୍ଣନା କରାଯାଇଚି । ତାଙ୍କର କଠୋର ତପସ୍ୟା । ଭଗବାନ ବର ମାଗିବା ପାଇଁ କହିଲେ । ମାର୍କଣ୍ଡେୟ ଅନିଚ୍ଛା ସତ୍ତ୍ୱେ ବର ମାଗିଲେ, ସେ ଭଗବାନଙ୍କ ମାୟା ଦେଖିବାପାଇଁ ଚାହାନ୍ତି । ଘୋର ପ୍ରଳୟ ଆସିଗଲା । ପ୍ରଳୟ ସମୁଦ୍ରରେ ମାର୍କଣ୍ଡେୟ ଉବୁ ଡୁବୁ ହେଲେ । ଭଗବାନଙ୍କୁ ସ୍ମରଣ କରିବାରୁ ଏକ ବଟବୃକ୍ଷର ଆବିର୍ଭାବ ହେଲା ଏବଂ ଏହି ବଟର ଏକ ପତ୍ରରେ ଏକ ଚମତ୍କାର ବାଳକ ଶୋଇଥିବାର ସେ ଦେଖିପାରିଲେ ।

ପଦାରବିନ୍ଦେନ କରାରବିନ୍ଦଂ
ମୁଖାରବିନ୍ଦେ ବିନିବେଶୟନ୍ତମ୍
ବଟସ୍ୟ ପତ୍ରସ୍ୟ ପୁଟେ ଶୟାନଂ
ବାଳଂମୁକୁନ୍ଦଂ ମନସା ସ୍ମରାମି ॥

ମାର୍କଣ୍ଡେୟ ସେ ଶିଶୁ ପାଖରେ ପହଞ୍ଚିବାବେଳକୁ ତା'ର ଶ୍ୱାସରେ ସେ ତା'ର ପେଟ ଭିତରକୁ ଚାଲିଗଲେ ଏବଂ ପେଟ ଭିତରେ ସେ ନିଜକୁ ଓ ବିଶ୍ୱବ୍ରହ୍ମାଣ୍ଡକୁ ଦେଖିପାରିଲେ । ଏଥିପରେ ସେ ଆଖି ବୁଜିଦେବା ମାତ୍ରକେ ସବୁ ମାୟାର ଖେଳ ବନ୍ଦ ହୋଇଗଲା ଏବଂ ନିଜ ଆଶ୍ରମରେ ସେ ନିଜକୁ ସ୍ୱାଭାବିକ ଅବସ୍ଥାରେ ଦେଖିବାକୁ ପାଇଲେ । ମାୟାରୁ ରକ୍ଷାପାଇବାର ଏକମାତ୍ର ରାସ୍ତା ହେଉଚି ଭଗବାନଙ୍କ ଆଶ୍ରୟ । ମାର୍କଣ୍ଡେୟଙ୍କର ତପସ୍ୟାରେ ମୁଗ୍ଧ ହୋଇ ସ୍ୱୟଂ ଆଶୁତୋଷ ଶିବ ତାଙ୍କୁ ବିମଳ ଭକ୍ତି ଦାନ କରିଥିଲେ ।

ତା'ପରେ ସୂତ ବୈଷ୍ଣବୀ ବିଭୂତିର କଥା କହୁଛନ୍ତି । ଭଗବାନଙ୍କ ପାଦ ପୃଥିବୀ, ଶିର ସ୍ୱର୍ଗ, ନାଭି ଆକାଶ, ନେତ୍ର ସୂର୍ଯ୍ୟ । ଏହା ହେଉଚି ତାଙ୍କର ବିରାଟ ସ୍ୱରୂପ । ତାଙ୍କର କୌସ୍ତୁଭମଣି ହେଉଚି ଶୁଦ୍ଧ ଚୈତନ୍ୟ, ପୀତାମ୍ବର ବେଦ, ଉପବୀତ ଓଁକାର, ସାଂଖ୍ୟ ଯୋଗ କୁଣ୍ଡଳ, ଶେଷ-ଶଯ୍ୟା ପ୍ରଧାନ ତତ୍ତ୍ୱ, କମଳ କାମପ୍ରଦ ସତ୍ତ୍ୱଗୁଣ, ଗଦା ଅର୍ଥପଦ ପ୍ରାଣତତ୍ତ୍ୱ, ଶଙ୍ଖ ମୋକ୍ଷପ୍ରଦ ଜଳତତ୍ତ୍ୱ ଏବଂ ଚକ୍ର କାଳବାଚକ ତେଜସ ତତ୍ତ୍ୱ । କାଳରୂପ ଧନୁ, ବେଦସ୍ୱରୂପ ଗରୁଡ଼ ଏବଂ ତାଙ୍କର ଇଚ୍ଛା ଶକ୍ତି ଲକ୍ଷ୍ମୀ ।

ଏହାପରେ ସୂତ ଭାଗବତର ପ୍ରଥମ ସ୍କନ୍ଧରୁ ଶେଷ ସ୍କନ୍ଧ ପର୍ଯ୍ୟନ୍ତ ସଂକ୍ଷେପରେ ଶୁଣାଉଛନ୍ତି । ଭାଗବତର ମହତ୍ତ୍ୱ ପ୍ରତିପାଦନ କରି କହୁଛନ୍ତି --

ସର୍ବବେଦାନ୍ତସାରଂ ଯତ୍ ବ୍ରହ୍ମାତ୍ମୈକତ୍ୱଲକ୍ଷଣମ୍
ବସ୍ତ୍ୱଦ୍ୱିତୀୟଂ ତନ୍ନିଷ୍ଠଂ କୈବଲ୍ୟୈକପ୍ରୟୋଜନମ୍ ।
ନିମ୍ନଗାନାଂ ଯଥା ଗଙ୍ଗା ଦେବାନାମଚ୍ୟୁତୋ ଯଥା
ବୈଷ୍ଣବାନାଂ ଯଥା ଶମ୍ଭୁଃ ପୁରାଣାନାମିଦଂ ତଥା ।।

ଏହି ଭାଗବତ ପୁରାଣ ବୈଷ୍ଣବମାନଙ୍କ ଶ୍ରେଷ୍ଠ ଧନ, ପରମହଂସମାନଙ୍କର ଜ୍ଞାନର ଭଣ୍ଡାର । ଏଥିରେ ଜ୍ଞାନ, ବୈରାଗ୍ୟ, ଭକ୍ତି ଓ ନିଷ୍କାମ କର୍ମର ଶିକ୍ଷା ମିଳେ । ସ୍ୱୟଂ ନାରାୟଣ ଏହା ବ୍ରହ୍ମାଙ୍କୁ କହିଥିଲେ, ବ୍ରହ୍ମାଙ୍କଠାରୁ ନାରଦ, ନାରଦଙ୍କଠାରୁ ବ୍ୟାସ ଓ ତାଙ୍କଠାରୁ ଶୁକଦେବ ଏହା ଲାଭ କଲେ ଏବଂ ଶୁକଦେବ ତାହା ପରିକ୍ଷିତଙ୍କୁ ଶୁଣାଇଲେ ।

## ବେଣୁଗୀତ

ଭାଗବତର ଏକ ମନୋରମ ଅଧ୍ୟାୟ ହେଉଚି ବେଣୁଗୀତ । ଏହା ହେଉଚି, କୃଷ୍ଣଙ୍କର ବଂଶୀବାଦନରେ ଗୋପୀମାନଙ୍କ ପ୍ରତିକ୍ରିୟା । କୃଷ୍ଣ ବୃନ୍ଦାବନରେ । ଗୋପୀମାନେ ନିଜ ଘରେ ରହିଛନ୍ତି । କିନ୍ତୁ ବୃନ୍ଦାବନରେ ପ୍ରବେଶ କଲାବେଳେ ତାଙ୍କର ମନୋମୋହକର ରୂପ ଓ ବଂଶୀବାଦନ ସେମାନେ ସବୁ ଦେଖିପାରୁଛନ୍ତି ଓ ବଂଶୀଧ୍ୱନି ଶୁଣି ତନ୍ମୟ ହୋଇଯାଉଛନ୍ତି ।

ବର୍ଷାଯାଇ ବୃନ୍ଦାବନରେ ଶରତଋତୁ ପ୍ରବେଶ କରୁଚି । ଜଳ ନିର୍ମଳ । ପୁଷ୍କରିଣୀମାନଙ୍କରେ ଫୁଟିଥିବା ପଦ୍ମଫୁଲର ମହକ ମନ୍ଦ ମନ୍ଦ ବାୟୁରେ ଆସୁଚି । ଶ୍ରୀକୃଷ୍ଣ ମୁଗ୍ଧ ମନୋହର ବେଶରେ ଗାଈପଲ ଓ ଗୋପାଳମାନଙ୍କ ସହିତ ବୃନ୍ଦାବନରେ ପ୍ରବେଶ କରୁଛନ୍ତି :-

**ବର୍ହାପୀଡ଼ଂ ନଟବରବପୁଃ କର୍ଣ୍ଣୟୋଃ କର୍ଣ୍ଣିକାରଂ**
**ବିଭ୍ରଦ୍‌ବାସଃ କନକକପିଶଂ ବୈଜୟନ୍ତୀଂ ଚ ମାଳାମ୍ ।**
**ରନ୍ଧ୍ରାନ୍ ବେଣୋରଧରସୁଧୟା ପୂରୟନ୍ ଗୋପବୃନ୍ଦୈଃ**
**ବୃନ୍ଦାରଣ୍ୟେ ସ୍ୱପଦରମଣଂ ପ୍ରାବିଶଦ୍ ଗୀତକୀର୍ତ୍ତିଃ ॥**

ମୟୂରର ଚୂଳ, ନଟବର ବା ନୃତ୍ୟକାରୀ ଭଙ୍ଗୀ, କାନରେ କନିଅର ଫୁଲ, ପୀତାମ୍ବର, ଗଳାରେ ବିଭିନ୍ନ ରଙ୍ଗର ଫୁଲର ମାଳା, ଅଧରରେ ବେଣୁବାଦନ କରି ତାଙ୍କର ଗୁଣକୀର୍ତ୍ତି ବର୍ଣ୍ଣନା କରୁଥିବା ଗୋପାଳ ବାଳକମାନଙ୍କ ସହିତ ଶ୍ରୀକୃଷ୍ଣ ବୃନ୍ଦାବନରେ ପ୍ରବେଶ କରୁଛନ୍ତି । କୃଷ୍ଣଙ୍କର ଏହି ରୂପ ଓ ବଂଶୀବାଦନ ଶୁଣି ଗୋପୀମାନଙ୍କର ଯେଉଁ ଭାବାବେଗ ଗାନ ଆକାରରେ ପ୍ରକାଶ ପାଉଚି, ତାହା ହିଁ ବେଣୁଗୀତ । **'ବେଣୁମୁଦ୍ଦିଶ୍ୟ ଗୋପୀଭିର୍ଗୀତଂ ଇତି ବେଣୁଗୀତମ୍'** ।

ଗୋପୀମାନେ କହୁଛନ୍ତି, ଏହି ବେଣୁ ପୂର୍ବଜନ୍ମରେ ବହୁ ପୁଣ୍ୟ କରିଥିଲା, ବହୁ ସାଧନଭଜନ କରିଥିଲା, ଯାହାଫଳରେ ସେ ଏ ଜନ୍ମରେ କୃଷ୍ଣଙ୍କର ଅଧରାମୃତ ପାନ କରିବାରେ ଲାଗିଚି । ଏ ତ ଆମର ସମ୍ପତ୍ତି ହରଣ କରିନେଉଚି ।

ଶ୍ରୀକୃଷ୍ଣ ମୁନିଜନମୋହିନୀ ତାଙ୍କର ମୁରଲୀ ବଜାଇବାବେଳେ ମତ୍ତ ମୟୂରମାନେ ନୃତ୍ୟ କରିବା ଆରମ୍ଭ କରିଦେଇଛନ୍ତି । ପର୍ବତର ପାଦଦେଶରେ ଯେଉଁ ଗୋରୁ ଗାଈ ଓ ଅନ୍ୟାନ୍ୟ ପଶୁ ଘାସ ଚରୁଛନ୍ତି ସେମାନେ ଘାସ ଚରା ଛାଡ଼ିଦେଇ ନୀରବରେ ଶାନ୍ତ ହୋଇ କାନ ଡେରି ଶୁଣୁଛନ୍ତି ।

କୃଷ୍ଣ ବଂଶୀବଜାଇବା ମାତ୍ରେ ହରିଣୀମାନେ ନିଜର ପତି କୃଷ୍ଣସାର ମୃଗମାନଙ୍କୁ ଧରି ସେଠାକୁ ଚାଲି ଯାଉଛନ୍ତି ଏବଂ ପ୍ରେମଭରା ଆଖିରେ ତାଙ୍କୁ ଚାହିଁ ରହୁଛନ୍ତି । ସେମାନଙ୍କର ଜୀବନ ଧନ୍ୟ । କିନ୍ତୁ ଆମେ ବୃନ୍ଦାବନର ଗୋପୀ ହୋଇ ମଧ୍ୟ ଆମର ସ୍ୱାମୀମାନେ ଆମକୁ ଜଗି ରହିଛନ୍ତି ।

ହରିଣୀଙ୍କର କଥା ଛାଡ଼ । ସ୍ୱର୍ଗର ଦେବୀମାନେ ବଂଶୀସ୍ୱନ ଶୁଣି ମୂର୍ଚ୍ଛିତ ହୋଇଯାଉଛନ୍ତି । ତାଙ୍କର କେଶବାସ ଅସମ୍ଭାଳ ହୋଇପଡୁଚି । ତାଙ୍କର ଚୂଡ଼ା ଖୋଲିଯିବାରୁ ସେଥିରେ ଖୋସା ହୋଇଥିବା ଫୁଲ ସବୁ ତଳେ ପଡ଼ିଯାଉଚି ଓ ପିନ୍ଧିଥିବା ବସ୍ତ୍ର ଖସିଗଲାଣି, ସେମାନେ ଜାଣିପାରୁ ନାହାନ୍ତି । ପକ୍ଷୀମାନେ ବୃକ୍ଷର ଡାଳମାନଙ୍କ ଉପରେ ବସି ଆଖି ବନ୍ଦକରି ସେହି ମଧୁର ମନୋହର ବଂଶୀ ଧ୍ୱନି ଶୁଣୁଛନ୍ତି । ଅଚେତନ ହେଲେ ମଧ୍ୟ ନଦୀମାନେ ସ୍ଥିର ହୋଇଯାଉଛନ୍ତି । ବ୍ରଜରାଜ କୁମାରଙ୍କୁ କାଳେ ଗ୍ରୀଷ୍ମତାପରେ କଷ୍ଟ ଲାଗିବ, ସେଥିପାଇଁ ମେଘମାନେ ତାଙ୍କ ଉପରେ ଉପରେ ଯାଇ ଛାୟାଦାନ କରୁଛନ୍ତି । ପୁଣି ବୃନ୍ଦାବନର

ଶବରୀମାନେ ଧନ୍ୟ, ଯେଉଁମାନେ କୃଷ୍ଣଙ୍କର ଚରଣଧୂଳି ଦେହରେ ବୋଳି ହୋଇ ନିଜର କାମପୀଡ଼ାକୁ ଶାନ୍ତ କରୁଛନ୍ତି । ଏହିପରି କୃଷ୍ଣ ବନକୁ ବନ ବଂଶୀ ବଜାଇ ଯାଉଥିବାବେଳେ ଜଡ଼ ଚେତନ ପଶୁପକ୍ଷୀ ନଦୀ ଆଦି ସ୍ଥିର ହୋଇ ଯାଉଛନ୍ତି ଏବଂ ବୃକ୍ଷମାନେ ରୋମାଞ୍ଚିତ ହେଉଛନ୍ତି ।

ବେଣୁଗୀତପରେ ବ୍ରଜବାଳାମାନଙ୍କର ବସ୍ତ୍ରହରଣ ଓ କିଛିକାଳପରେ ଗୋପୀମାନଙ୍କ ସହିତ କୃଷ୍ଣଙ୍କର ରାସଲୀଳା ।

କୃଷ୍ଣଙ୍କର ବଂଶୀବାଦନକୁ ଆଧାର କରି ବୈଷ୍ଣବ କବିମାନେ ତନ୍ମୟଭାବରେ ଯେଉଁ ସବୁ ସଙ୍ଗୀତ ରଚନା କରିଛନ୍ତି, ତାହା ଓଡ଼ିଆ ଭକ୍ତି ସାହିତ୍ୟ ଓ ସଙ୍ଗୀତରେ ଉଚ୍ଚସ୍ଥାନ ଅଧିକାର କରିଚି । ଏସବୁ ସଙ୍ଗୀତ ଯେ ନ ଶୁଣିଛି ସେ ଓଡ଼ିଆ ଭାଷାକୁ ଜାଣି ନାହିଁ । ସାଲବେଗ, ଗୋପାଳକୃଷ୍ଣ, ବନମାଳୀ ଏହାର ଚମତ୍କାର ବର୍ଣ୍ଣନା କରିଛନ୍ତି । ସାଲବେଗଙ୍କର ବଂଶୀ ଗୀତ :

ଶ୍ରୀକୃଷ୍ଣଙ୍କ ବଂଶୀଧ୍ୱନି ଶୁଣି
ଥକିତ ହେଲେ ଯମୁନା ପାଣି
ମୃଗମାନେ ତୃଣ ଚାପିଣ ରହିଲେ
ଭାଙ୍ଗିଗଲା ତାଙ୍କ ବାଙ୍କ ଚାହାଣି ।
ବଂଶୀସ୍ୱନ, ଆଉ ନ ବଜା ନ ବଜା ଶ୍ୟାମଘନ ହେ
ଜଳଛାଡ଼ି ମୀନ ତଳେ ପଡ଼ି
ବୃକ୍ଷରୁ ପତର ଗଲା ଝଡ଼ି
ଶୁଷ୍କତରୁମାନେ ପଲ୍ଲବିତ ହେଲେ, କୁଳବଧୂ ଗଲେ ଲାଜ ଛାଡ଼ି ।
ବଂଶୀସ୍ୱନ.......
କାଠପିତୁଳି ପରି ହୋଇ
ସହସ୍ର ଗୋପୀ ରହିଲେ ଚାହିଁ
ଭଣେ ସାଲବେଗ ବଂଶୀରେ ଶରଣ ।
ବଂଶୀସ୍ୱନ.......

ପୁଣି ଅନ୍ୟ ଏକ ଗୀତରେ ଭକ୍ତ ସାଲବେଗ କହିଛନ୍ତି :-

ବୃନ୍ଦାବନେ ବଂଶୀ କେ ବଜାଇଲା
ଏକା ରାଧା ରାଧା ନାମ ରାଇଲା ।
ଛିଡ଼ିଲା ସେ ଛିଦ୍ର ଗଣ୍ଠି, ନୀବୀ ବନ୍ଧ ଗଲା ଫିଟି
ବସନ ପିନ୍ଧନ୍ତେ ତର ନୋହିଲା ।
ପାଷାଣ ହୋଇଲା ପାଣି, ଯମୁନା ବହେ ଉଜାଣି
ଝରଝର ମକରନ୍ଦ ବୋଳିଲା ।
ମୁନିଙ୍କ ଆଶ୍ରମ ଟଳି ରସରେ ପଡ଼ିଲେ ଢଳି
ବ୍ୟାଘ୍ରପଛେ କୁରଙ୍ଗୀ ଗୋଡ଼ାଇଲା ।

ଗୋପାଳକୃଷ୍ଣଙ୍କର 'କଦମ୍ବବନେ ବଂଶୀ ବାଜିଲାରେ, ରାଧାଦମ୍ଭ ଶିଖରୀ ଭାଜିଲାରେ' ।

ପୁଣି
କି ନାଦରେ ପ୍ରାଣସଙ୍ଗିନୀ, ଶୁଭୁଚି କଦମ୍ବବନେ
ଶ୍ରୁତିରେ ସୁଧାବରଷି ଧୃତି ନେଲା ମୋ ଜୀବନେ
ଦିଗବିଦିଗପ୍ରସରି ଖଗ ମୃଗ ଜଡ଼ କରି
କୂଳବଧୂ ନୀବୀଗ୍ରନ୍ଥି ଫିଟାଉଛି ଅଯତନେ ।

ନୀପଫୁଲ ପରି ରୋମ ପୂରିଲା ମୋ ଅପଘନେ
ଆସୁକିନା ମୋ ପାଶକୁ ଲଭିଲି ମୁଁ କି ଦଶାକୁ
ବଜାଉଚି ରସାଳସୀ ନିକୁଞ୍ଜଦେବତା ବସି
ଗୋପାଳ କୃଷ୍ଣ ଭାଷଇ ପ୍ରକଟିଲା ତ୍ରିଭୁବନେ ।

ବନମାଳୀଙ୍କର- 'କାହିଁଗଲେ ମୁରଲୀଫୁଙ୍କା, ଯୁବତୀ ରସିଆ କାମିନୀରଙ୍କା ।
ତ୍ରିଭଙ୍ଗୀ ଭଙ୍ଗୀରେ ମୁରଲୀ ବଜାଇ ଡ଼ାକୁଛନ୍ତି ଆସ ଆସ ରାଧିକା ।
ଯମୁନା କୂଳରେ ବସ୍ତ୍ର ଚୋରି କରି କେଳି କଦମ୍ବରେ ବାନ୍ଧେ ପତାକା....।

ପୁଣି 'କୁଞ୍ଜେ ମୁରଲୀ ବାଜୁଚି, ଗଲେ ହେବ ଅପରାଧ, ନ ଗଲେ ମରୁଚି ।
ସେ ମୋହନ ବେଣୁଧର'... ଇତ୍ୟାଦି ।

ଅନ୍ୟ ଏକ ଗୀତ- 'ମୁରଲୀ, ତୋରେ ଶରଣଗଲି, ଦିନେ ନ ଡାକିବୁ ରାଧିକା ବୋଲି'... ।

କେବଳ ଓଡ଼ିଆ ଭାଷାରେ ନୁହେ, ଅନ୍ୟ ସମସ୍ତ ଭାରତୀୟ ଭାଷାରେ ବୈଷ୍ଣବ କବିମାନେ ଏହି ବେଣୁଗୀତଦ୍ୱାରା ମୁଗ୍ଧହୋଇ ମଧୁର ସଙ୍ଗୀତ ରଚନାରେ ଆତ୍ମହରା ହୋଇ ପଡ଼ିଛନ୍ତି ।

## ରାସପଞ୍ଚାଧ୍ୟାୟୀ

ଭାଗବତର ଦଶମ ସ୍କନ୍ଧକୁ ତା'ର ହୃଦୟ ଏବଂ ରାସଲୀଳାକୁ ତା'ର ପ୍ରାଣ ବୋଲି କୁହାଯାଏ । ଦଶମ ସ୍କନ୍ଧର ୨୯ରୁ ୩୩ - ଏହି ପାଞ୍ଚ ଅଧ୍ୟାୟରେ ୧୭୨ଟି ଶ୍ଳୋକରେ ରାସଲୀଳାର ବର୍ଣ୍ଣନା କରାଯାଇଛି । ରାସ ଶବ୍ଦ ରସଶବ୍ଦରୁ ଆସିଛି । **'ରସୋ ବୈ ସଃ'** । ଭଗବାନ ରସମୟ । ରସର ସାଗର । ଏହି ପଞ୍ଚ ଅଧ୍ୟାୟରେ ସବୁଠାରୁ ମଧୁର ପ୍ରେମରସର ଶ୍ରେଷ୍ଠତ୍ୱ ଦେଖାଇ ଦିଆଯାଇଛି ।

ରାସ କ୍ରୀଡ଼ା କ'ଣ ସେ ପ୍ରସଙ୍ଗରେ ଶ୍ରୀଧରସ୍ୱାମୀ ତାଙ୍କ ଟୀକାରେ କହିଛନ୍ତି । **'ରାସ କ୍ରୀଡାଂ-ରାସୋନାମ ବହୁନର୍ତ୍ତକୀଯୁକ୍ତଃ ନୃତ୍ୟବିଶେଷଃ, ତାଂ ରାସକ୍ରୀଡ଼ାମ୍'** । କିନ୍ତୁ ଯେ କୌଣସି ବହୁ ନର୍ତ୍ତକୀଯୁକ୍ତ କ୍ରୀଡ଼ା ରାସକ୍ରୀଡ଼ା ନୁହେଁ ।

କେବଳ ବ୍ରଜାଙ୍ଗନାଙ୍କ ସହିତ ଶ୍ରୀକୃଷ୍ଣଙ୍କର ନୃତ୍ୟ ହେଉଛି ରାସକ୍ରୀଡ଼ା ବା ରାସଲୀଳା । ଏଠାରେ ରାସର ରୂଢ଼ି ପ୍ରୟୋଗ କରାଯାଇଛି । ଗୋପୀମାନେ ମଣ୍ଡଳାକାରରେ ଠିଆ ହୋଇ ଜଣେ କୃଷ୍ଣଙ୍କ ସହିତ ବା ଦୁଇ ଜଣ ଗୋପୀଙ୍କ ମଧ୍ୟରେ ଜଣେ ଜଣେ କୃଷ୍ଣ ହୋଇ ଭଗବାନ ନୃତ୍ୟ କରୁଛନ୍ତି । ତେଣୁ ଯେ କୌଣସି ସ୍ତ୍ରୀପୁରୁଷଙ୍କର ମଣ୍ଡଳାକାର ନୃତ୍ୟ ରାସ ନୃତ୍ୟ ବା ରାସଲୀଳା ହୋଇ ନ ପାରେ ।

ଏଥିରେ ଭୌତିକ ଶରୀରର ସମ୍ଭୋଗ ବୋଲି କେହି କେହି କହିପାରନ୍ତି । ସେଥିପାଇଁ ଶ୍ରୀଧର ସ୍ୱାମୀ ତାଙ୍କ ଟୀକାର ମଙ୍ଗଳାଚରଣରେ କହିଛନ୍ତି:-

**ବ୍ରହ୍ମା-ବିଜୟ-ସମ୍ଭୂତ-ଦର୍ପ-କନ୍ଦର୍ପ-ଦର୍ପହା**
**ଜୟତି ଶ୍ରୀପତିଃ ଗୋପୀରାସମଣ୍ଡଳମଣ୍ଡିତଃ**

ବ୍ରହ୍ମାଦି ଦେବତାମାନଙ୍କୁ ଜୟ କରି ଯେଉଁ କନ୍ଦର୍ପର ଦର୍ପ ବଢ଼ିଯାଇଥିଲା, ଭଗବାନ ଶ୍ରୀକୃଷ୍ଣ ତାହା ଚୂର୍ଣ୍ଣ କରି ରାସମଣ୍ଡଳକୁ ମଣ୍ଡନ କରିଥିଲେ । ଦଶମ ସ୍କନ୍ଧ (୧୦:୩୨:୨)ରେ ଶ୍ରୀକୃଷ୍ଣଙ୍କୁ କୁହାଯାଇଛି, 'ସାକ୍ଷାତ୍ ମନ୍ମଥଃ ମନ୍ମଥଃ' - ମନ୍ମଥଙ୍କ ମଧ୍ୟରେ ମନ୍ମଥ । ତେଣୁ ଏହାର ଅନ୍ୟନାମ ହେଉଛି କନ୍ଦର୍ପ ବିଜୟ ଲୀଳା ।

ଏହା ପୂର୍ବରୁ ଗୋପବାଳାମାନେ ଯମୁନା କୂଳରେ କାତ୍ୟାୟନୀ ଗୌରୀଙ୍କର ପୂଜା କରି ଶ୍ରୀକୃଷ୍ଣଙ୍କୁ ପତିରୂପେ ବରଣ କରିଥିଲେ । ଶ୍ରୀକୃଷ୍ଣ ତାଙ୍କ ନିଷ୍ଠାରେ ମୁଗ୍ଧ ହୋଇ ବସ୍ତ୍ରହରଣବେଳେ ତାଙ୍କର ପରୀକ୍ଷା କଲେ । କେଳି ଗୃହରେ ପତି ନିକଟରେ ପତ୍ନୀର ଲଜ୍ଜା ନ ଥାଏ । ତେଣୁ ଗୋପୀମାନଙ୍କର ଲଜ୍ଜା ଛାଡ଼ିବା ଦରକାର । ଏଠାରେ ଗୋପୀ ଓ କୃଷ୍ଣଙ୍କର ସମ୍ପର୍କ ଜୀବ ଓ ପରମାତ୍ମାଙ୍କର ସମ୍ପର୍କ । ସେ ସମ୍ପର୍କ ମଧ୍ୟରେ କୌଣସି ଆବରଣ ବା ବାଧା ବନ୍ଧନ ରହିବା ଉଚିତ ନୁହେଁ । ଯେତେବେଳେ ଗୋପୀମାନଙ୍କର ଲଜ୍ଜା ଛାଡ଼ିଗଲା, ମନର ଆବରଣ ଦୂର ହୋଇଗଲା ଏବଂ ଭଗବାନ ଶ୍ରୀକୃଷ୍ଣଙ୍କ ପାଖରେ ସେମାନେ ନିଜକୁ ସମ୍ପୂର୍ଣ୍ଣ ସମର୍ପଣ କରିଦେଲେ ସେତେବେଳେ ଭଗବାନ ପ୍ରତିଶ୍ରୁତି ଦେଲେଯେ ଆଗାମୀ ଶରତପୂର୍ଣ୍ଣିମାରେ ସେ ସେମାନଙ୍କର ମନୋବାଞ୍ଛା ବା ରମଣର ଇଚ୍ଛା ପୂରଣ କରିବେ ।

କିମ୍ବଦନ୍ତୀ ଅଛି ଯେ ରାମାବତାରରେ ଭଗବାନ ଶ୍ରୀରାମ ଯେତେବେଳେ ଦଣ୍ଡକାରଣ୍ୟରେ ବୁଲୁଥିଲେ, ଦଣ୍ଡକାରଣ୍ୟର ମୁନିଋଷିମାନେ ରାମଚନ୍ଦ୍ରଙ୍କର ଅପୂର୍ବ ରୂପ ଲାବଣ୍ୟରେ ମୋହିତ ହୋଇଯାଉଥିଲେ । ସେତେବେଳେ ଭଗବାନ ତାଙ୍କୁ ପ୍ରତିଶ୍ରୁତି ଦେଇଥିଲେ, ପରବର୍ତ୍ତୀ ଅବତାରରେ ତୁମେମାନେ ଗୋପାଙ୍ଗନା ରୂପେ ଜନ୍ମ ହେବ ଏବଂ ସେତେବେଳେ ମୋତେ ବରଣ କରିପାରିବ ।

**'ଷୋଳ ସହସ୍ର ଗୋପନାରୀ**
**ମୋତେ ବରିଲେ ତପକରି' ।**

ବୃନ୍ଦାବନର ଚାରିଆଡ଼େ ମଲ୍ଲି ଫୁଲର ବାସ ଚହଟାଇ ଶରତ ପୂର୍ଣ୍ଣିମା ଆସିଗଲା । ନିର୍ମଳ ଆକାଶରେ ପୂର୍ଣ୍ଣ ଚନ୍ଦ୍ରର ଶୋଭା ।

**ଭଗବାନପି ତା ରାତ୍ରୀଃ ଶରଦୋତ୍‌ଫୁଲ୍ଲମଲ୍ଲିକାଃ**

ଜଣେ ବୈଷ୍ଣବ କବି ଶାରଦୀୟ ପୂର୍ଣ୍ଣିମା ରାତିକୁ ଲକ୍ଷ୍ୟ କରି କହିଛନ୍ତି - **'ଯା ରାକା ଶଶିଶୋଭନା ଗତଘନା ସା ଯାମିନୀ ଯାମିନୀ'** । ସେହି ରାତ୍ରି ହେଉଛି ଶ୍ରେଷ୍ଠ ଯେଉଁ ରାତ୍ରିରେ ନିର୍ମଳ ଆକାଶରେ ପୂର୍ଣ୍ଣଚନ୍ଦ୍ର ଶୋଭାପାଉଥାଏ । କିନ୍ତୁ

ବୃନ୍ଦାବନରେ ଏହି ପୂର୍ଣ୍ଣିମା ଏକ ସାଧାରଣ ପୂର୍ଣ୍ଣିମା ନ ଥିଲା । ଶରତ ପୂର୍ଣ୍ଣିମାରେ ମଲ୍ଲି ଫୁଲ କୁଆଡୁ ଆସିବ ? ଭଗବାନ ଗୋପୀମାନଙ୍କ ସହିତ ତାଙ୍କର ଲୀଳା ରଚନା କରିବାର ସମୟ ଆସିଗଲା ବୋଲି ମନେକରି ତାଙ୍କର ମୋହିନୀ ଶକ୍ତି ଯୋଗମାୟାର ସାହାଯ୍ୟରେ ଏକ ଅପୂର୍ବ ପରିବେଶ ସୃଷ୍ଟି କଲେ । ଯେପରିକି ସେହି ରାତି ସବୁଠାରୁ ମଧୁମୟ ଓ ଉପଭୋଗ୍ୟ ହୋଇପାରିବ । ବ୍ୟାସଦେବ ତାଙ୍କର ଚମତ୍କାର ବର୍ଣ୍ଣନା କୌଶଳରେ ଏହାକୁ ରୂପାୟିତ କରିଛନ୍ତି ।

ପୁଣି ସେ ଛୁଟାଇଦେଲେ ତାଙ୍କର ମଧୁର ମୁରଲୀର ଧ୍ୱନି । ବଂଶୀଧ୍ୱନି ଶୁଣି ଗୋପୀମାନଙ୍କର ବିଚିତ୍ର ଅବସ୍ଥା ସୃଷ୍ଟି ହେଲା । ସେମାନେ ସଙ୍ଗେ ସଙ୍ଗେ ନିଜର ସବୁକାମ ଛାଡ଼ିଦେଇ କୃଷ୍ଣଙ୍କ ଆଡ଼କୁ ଦଉଡ଼ିଲେ । କେଉଁ ଗୋପୀ କ୍ଷୀର ଦୁହୁଁଥିଲା - ଛାଡ଼ି ଚାଲି ଆସିଲା । କିଏ ଖାଇ ବସିଥିଲା, କିଏ ସ୍ୱାମୀର ସେବା ଶୁଶ୍ରୂଷା କରୁଥିଲା, ପିଲାକୁ କ୍ଷୀର ପିଆଉଥିଲା ସବୁ ଛାଡ଼ିଛୁଡ଼ି ଦଉଡ଼ିଗଲା । କିଏ ଲୁଗା ପିନ୍ଧୁଥିଲା, ମୁଣ୍ଡ କୁଣ୍ଡାଉଥିଲା, କେଶବାସ ଅସମ୍ଭାଳ ଅବସ୍ଥାରେ ଦଉଡ଼ିଲା । ଗୋପୀମାନେ ବେଣୁଗୀତରେ ଦେବାଙ୍ଗନାମାନଙ୍କର ଯେଉଁ ଅବସ୍ଥା କଥା ବର୍ଣ୍ଣନା କରୁଥିଲେ, ସେମାନଙ୍କର ସେହି ଅବସ୍ଥା ହୋଇଥିଲା ।

ଗୋପୀମାନେ କୃଷ୍ଣଙ୍କ ପାଖରେ ପହଞ୍ଚିବାରୁ, କୃଷ୍ଣ କହିଲେ, 'ସ୍ୱାଗତଂ ବୋ ମହାଭାଗାଃ' ମହାଭାଗ୍ୟବତୀ ଗୋପୀମାନେ, ତୁମମାନଙ୍କୁ ସ୍ୱାଗତ । କିନ୍ତୁ ପର ମୁହୂର୍ତ୍ତରେ କହୁଛନ୍ତି - ଏ ରାତ୍ରିକାଳ, ତୁମର ପିତା, ମାତା, ପତି, ପୁତ୍ର ସମସ୍ତେ ତୁମକୁ ବହୁତ ଖୋଜୁଥିବେ, ତୁମେ ଶୀଘ୍ର ଘରକୁ ଫେରିଯାଅ । ଗୋପୀମାନେ କହିଲେ, ଏ କି କଥା କହୁଛ ! ଘରଦ୍ୱାର, ବାପ ମା', ପତି ପୁତ୍ର ତୁମପାଇଁ ସବୁ ଛାଡ଼ିଆସିଲୁ । ଆମର ମନକୁ ତୁମେ ଚୋରାଇ ନେଇଛ । ତେଣୁ ତୁମକୁ ଛାଡ଼ି ଆମେ କୁଆଡ଼େ ଯିବୁ ? ଆମେ ତୁମର ଦାସୀ । ଆମକୁ ଏପରି କଠୋର କଥା କହ ନାହିଁ ।

ଚିତ୍ତଂ ସୁଖେନ ଭବତାପହୃତଂ ଗୃହେଷୁ
ଯନ୍ନିର୍ବିଶତ୍ୟୁତ କରାବପି ଗୃହ୍ୟକୃତ୍ୟେ ।
ପାଦୌ ପଦଂ ନ ଚଳତସ୍ତବ ପାଦମୂଳାଦ୍
ଯାମଃ କଥଂ ବ୍ରଜମଥୋ କରବାମ କିଂ ବା ।।

ମୋର ହାତ ଗୃହ କାର୍ଯ୍ୟରେ ଲାଗିଥିଲା, କିନ୍ତୁ ଦେଖୁ ଦେଖୁ ତୁମେ ଆମର ଚିତ୍ତ ହରଣ କରିନେଲ । ବର୍ତ୍ତମାନ ତ ଚିତ୍ତ ତୁମଠାରେ ଲୀନ । ତେଣୁ ତୁମ ପାଦପଦ୍ମକୁ ଛାଡ଼ି ଆମେ ଗୋଟିଏ ପାଦ ଯାଇପାରିବୁ ନାହିଁ । ତେଣୁ ଆମେ କିପରି ଘରକୁ ଫେରିଯିବୁ ଏବଂ ଘରକୁ ଯାଇ କ'ଣ କରିବୁ ?

ଭଗବାନ ଶ୍ରୀକୃଷ୍ଣ ପତ୍ନୀର ଆଦର୍ଶ କଥା ବୁଝାଇଲେ । ବହୁ ଧର୍ମୋପଦେଶ ଦେଲେ । ପତି ସେବା, ପୁତ୍ର କନ୍ୟାଙ୍କର ସେବା, ଗୃହସ୍ଥାଶ୍ରମର ମହତ୍ତ୍ୱ ଆଦି କଥା କହିଲେ । ଗୋପୀମାନେ ଉତ୍ତର ଦେଲେ, ଏସବୁର ଲକ୍ଷ୍ୟ ହେଉଛି ତୁମକୁ ଲାଭ କରିବା, ତୁମଠାରେ ନିଜର ଚିତ୍ତକୁ ଅର୍ପଣ କରିବା । ବର୍ତ୍ତମାନ ଆମେ କିପରି ସେହି ସଂସାର ଚକ୍ରକୁ ଫେରିଯିବୁ ? ତୁମେ କ'ଣ ଆମର ମନକୁ ଫେରାଇ ଦେଇପାରିବ ?

କେବଳ କାତରୋକ୍ତି ନୁହେଁ, ଗୋପୀମାନଙ୍କର ଯୁକ୍ତିରେ ଭଗବାନ ଶ୍ରୀକୃଷ୍ଣ ଦବିଗଲେ । ସେ ହସି ହସି ଗୋପୀମାନଙ୍କ ସହିତ ରାସକ୍ରୀଡ଼ା ଆରମ୍ଭ କରିଦେଲେ । କୃଷ୍ଣଙ୍କର ଅଙ୍ଗ ସ୍ପର୍ଶ ଓ ଆଲିଙ୍ଗନରେ ଗୋପୀମାନଙ୍କର ରୋମାଞ୍ଚ ଜାତହେଲା । କୃଷ୍ଣ

ତାଙ୍କ ସହିତ ହସୁଛନ୍ତି, ନାଚୁଛନ୍ତି, ଆଲିଙ୍ଗନ କରୁଛନ୍ତି, ସେମାନଙ୍କୁ ଏତେ ସୁଖ ସୌଭାଗ୍ୟ ଦେଉଛନ୍ତି -- ଏଥିରେ ତାଙ୍କର ଗର୍ବ ଓ ଅଭିମାନ ଆସିଗଲା । ଏହା ଦେଖି ଶ୍ରୀକୃଷ୍ଣ ସଙ୍ଗେ ସଙ୍ଗେ ଅନ୍ତର୍ଦ୍ଧାନ ହୋଇଗଲେ ।

ତାସାଂ ତତ୍ ସୌଭଗମଦଂ ବୀକ୍ଷ୍ୟ ମାନଂଚ କେଶବଃ
ପ୍ରଶମାୟ ପ୍ରସାଦାୟ ତତ୍ରୈବାନ୍ତରଧୀୟତ ।

ଯେତେବେଳେ ଭଗବାନ ଦେଖିଲେ ଯେ ଗୋପୀମାନଙ୍କ ମନରେ ନିଜର ସୌଭାଗ୍ୟପାଇଁ ଗର୍ବ ଓ ଅଭିମାନ ଆସିଗଲା, ତାହା ଦୂର କରି ସେମାନଙ୍କୁ ପ୍ରକୃତ ଆନନ୍ଦ ଦେବାପାଇଁ ସେ ଅନ୍ତର୍ଦ୍ଧାନ ହୋଇଗଲେ । ଏହାପରେ ଗୋପୀମାନଙ୍କର ବିରହଲୀଳା ଆରମ୍ଭ ହୋଇଗଲା । ଚାରିଆଡ଼େ ବୁଲି ସେମାନେ ତାଙ୍କୁ ଖୋଜିବାକୁ ଲାଗିଲେ । ବିରହର ଆବେଗରେ ବାସ୍ତବକୁ ଭୁଲି ସେମାନେ ଅଶୋକ, ଅଶ୍ୱତ୍ଥ, ଚମ୍ପା, ମାଳତୀ ଆଦି ବୃକ୍ଷଙ୍କୁ ପଚାରିବାକୁ ଲାଗିଲେ । ଅତ୍ୟନ୍ତ ଭାବାବେଗରେ କୃଷ୍ଣଙ୍କ ସହିତ ନିଜକୁ ଏକାକାର କରିଦେଲେ । କିଏ ଗୋପୀ କୃଷ୍ଣ ହେଲା ତ କିଏ ତୃଣାବର୍ତ୍ତ, ବକାସୁର, ଅଘାସୁର ହୋଇଗଲା, କିଏ ବଂଶୀ ବଜାଇଲା ତ କିଏ ଗୋବର୍ଦ୍ଧନ ଧାରଣର ଅଭିନୟ କଲା । ଏହିପରି ଯାଉ ଯାଉ ବାଟରେ ସେମାନେ କୃଷ୍ଣଙ୍କର ପାଦଚିହ୍ନ ଦେଖିଲେ ଏବଂ ତା ସହିତ ଆଉ ଜଣଙ୍କର ପାଦଚିହ୍ନ । ସେମାନେ ପ୍ରଶ୍ନ କଲେ, ଏହି ଭାଗ୍ୟବତୀଟି କିଏ ଯେ ଶ୍ରୀକୃଷ୍ଣଙ୍କର ଏକାନ୍ତ ସୁଖଲାଭ କରିଛି ?

ଅନୟାଽଽରାଧିତୋ ନୂନଂ ଭଗବାନ୍ ହରିରୀଶ୍ୱରଃ
ଯନ୍ନୋବିହାୟ ଗୋବିନ୍ଦଃ ପ୍ରଗତୋ ଯାମନୟଦ୍ ରହଃ ।।

ଏହି ସ୍ତ୍ରୀଟି ଭଗବାନ ଶ୍ରୀକୃଷ୍ଣଙ୍କର ନିଶ୍ଚୟ ବିଶେଷ ଆରାଧନା କରିଛି, ଯେଉଁ କାରଣରୁ ଆମର ପ୍ରିୟ ଶ୍ରୀକୃଷ୍ଣ ଆମକୁ ଛାଡ଼ି ତାକୁ ଏକାନ୍ତ ସ୍ଥାନକୁ ନେଇଯାଇଛନ୍ତି ।

ଏହାପରେ କୃଷ୍ଣଙ୍କର ଗଭୀର ପାଦଚିହ୍ନ ବାଲୁକା ଉପରେ ଦେଖି ସେମାନେ ଭାବୁଛନ୍ତି, କୃଷ୍ଣ କିଛି ଭାରି ଜିନିଷକୁ ଉଠାଇଛନ୍ତି । ଫୁଲ ପଡ଼ିଥିବା ଦେଖି କୃଷ୍ଣ ନିଜର ପ୍ରିୟାପାଇଁ ନିଶ୍ଚୟ ଫୁଲ ତୋଳିଛନ୍ତି । ଏହିପରି ଭାବି ଗୋପୀମାନେ ଆଗକୁ ଯାଇ ଦେଖିଲେ, ଜଣେ ଗୋପୀ ବେହୋସ ହୋଇ ପଡ଼ିଛି । ତାକୁ ହୋସ୍‌ରେ ଆଣିବା ପରେ ସେ କହୁଛି, କୃଷ୍ଣଙ୍କ ଏକାନ୍ତ ସାନ୍ନିଧ୍ୟର ସୌଭାଗ୍ୟ ଲାଭକରି ତା'ର ଅଭିମାନ ବଢ଼ିଗଲା । କୃଷ୍ଣ ଆଉ କାହାର ନୁହନ୍ତି, ତା'ର ହିଁ କେବଳ ଏକାନ୍ତବୋଲି ଭାବି ସେ କହିଲା -- **ନ ପାରୟେଽହଂ ଚଳିତୁଂ, ନୟ ମାଂ ଯତ୍ର ତେ ମନଃ** । ମୁଁ ଚାଲିପାରୁ ନାହିଁ, ମୋତେ ଉଠାଇ କାନ୍ଧରେ ବସାଇ ନିଅ ! ଯେତେବେଳେ ସେ ଗୋପୀଟି କୃଷ୍ଣଙ୍କ କାନ୍ଧକୁ ଚଢ଼ିବା ପାଇଁ ଆରମ୍ଭ କରିଛି, ସେ ତାର ଗର୍ବକୁ ଭାଙ୍ଗିବାପାଇଁ ସଙ୍ଗେ ସଙ୍ଗେ ଉଭାନ୍ ହୋଇଗଲେ । ଗୋପୀଟିର ମନସ୍ତାପ ବଢ଼ିଗଲା । ସମସ୍ତେ ମିଶି କୃଷ୍ଣଙ୍କୁ ଖୋଜିଲେ ।

## ଗୋପୀ-ଗୀତ

ଯେପରି ଭାବାବେଶରେ ସେମାନେ କୃଷ୍ଣଙ୍କୁ ଖୋଜିଲେ, ଭାଗବତରେ ୧୯ଟି ଶ୍ଳୋକରେ ତାହା ପ୍ରକାଶ ପାଇଛି ଏବଂ ଗୋପୀଗୀତ ନାମରେ ସଂସ୍କୃତ ସାହିତ୍ୟରେ ପ୍ରସିଦ୍ଧି ଲାଭ କରିଛି । ସଂକ୍ଷେପରେ କହିଲେ ଏ ଗୀତଟି ହେଉଛି--ହେ ଦୟିତ, ଆମେ ତୁମର ଦେଖା ନ ପାଇ ଏଣେତେଣେ ବୁଲୁଛୁ, ତୁମର ଟିକିଏ ହେଲେ ଦୟା ହେଉନାହିଁ । ତୁମର ମଧୁର କଟାକ୍ଷ ସ୍ମରଣ କରି ତୁମକୁ ନ ଦେଖି ଆମେ ମୃତପ୍ରାୟ ହୋଇଗଲୁଣି ।

ତୁମେ ତୁମର ଅଭୟ ହାତ ଆମ ମୁଣ୍ଡ ଉପରେ ରଖି ଆମର ଦୁଃଖ ହରଣ କର । ଥରେ ମାତ୍ର ତୁମର ମୁଖପଦ୍ମକୁ ଆମେ ଦେଖୁ । ହେ ସଖା, ତୁମର ଦାସୀମାନଙ୍କର ମନୋରଥ ପୂର୍ଣ୍ଣ କର । ତୁମର ଅଧରାମୃତ କ'ଣ ଆମେ ପାନ କରିବୁ ନାହିଁ ? ଗୋଡ଼ିପଥରରେ ଚାଲି ତୁମର ପାଦରେ କେତେ ବ୍ୟଥା ହେଉଥିବ । ସେହି ପାଦକୁ ଆମର ଛାତିରେ ରଖି ତୁମେ ଆମମାନଙ୍କୁ କାମାନଳରୁ ରକ୍ଷାକର । ତୁମେ ଚାଲିଯିବା ପରେ ଆମକୁ ତ ଯୁଗ ପରି ଲାଗୁଛି । ଅଚ୍ୟୁତ ! ଆମ ନିଜ ଲୋକଙ୍କୁ ଓ ସବୁ କିଛି ଛାଡ଼ି ତୁମ ପାଖକୁ ଆସିଛୁ । କପଟୀ ! ଏ ରାତ୍ରିରେ ଆମକୁ ଛାଡ଼ି କୁଆଡ଼େ ଗଲ ? ପ୍ରିୟତମ ! ତୁମର ଚିନ୍ତା କରି କରି ଆମର ଦୁଃଖ ବଢ଼ିଯାଉଛି, ତୁମେ ଶୀଘ୍ର ଆସି ଆମକୁ ଦେଖାଦିଅ ।

ଗୋପୀମାନଙ୍କର ଏ ଅବସ୍ଥା ଦେଖି ତାଙ୍କ ପ୍ରତି କୃଷ୍ଣଙ୍କର ପରୀକ୍ଷା ସରିଗଲା । ତାଙ୍କର ସମର୍ପଣ ଭାବନାରେ ସେ ସେମାନଙ୍କ ପାଖକୁ ଫେରିଆସିଲେ । ଯମୁନାକୂଳ ପୁଳିନରେ ଶାରଦୀୟ ଚନ୍ଦ୍ରମାରେ କୃଷ୍ଣଙ୍କର ଗୋପୀମାନଙ୍କ ସହ ମହାରାସ ଆରମ୍ଭହେଲା । ଶ୍ରୀକୃଷ୍ଣ ଗୋପୀମାନଙ୍କ ସହ ରମଣ କରି ସେମାନଙ୍କୁ ସମ୍ପୂର୍ଣ୍ଣ ପ୍ରେମ ସୁଖ ପ୍ରଦାନ କଲେ ।

ଏହି ରାସ ପଞ୍ଚାଧ୍ୟାୟୀରେ ଦୁଇଟି ପ୍ରଶ୍ନ ଉଠେ । ଗୋଟିଏ ରାଧାଙ୍କର ପ୍ରଶ୍ନ । ଯେଉଁ ଗୋପୀ ଏକାନ୍ତରେ କୃଷ୍ଣଙ୍କୁ ଲାଭ କରିଥିଲେ, 'ଅନୟାଽଽରାଧିତୋ' ଏହି ଶବ୍ଦରୁ ବୈଷ୍ଣବମାନେ କହନ୍ତି ଯେ ସେ ହେଉଛନ୍ତି ଆରାଧିତା ବା ରାଧା । ସମସ୍ତ ଭାଗବତରେ ରାଧାଙ୍କର ନାମୋଲ୍ଲେଖ ନାହିଁ । ଯେଉଁ ଗୋପୀ କୃଷ୍ଣଙ୍କୁ ଏକାନ୍ତ ଭାବରେ ଲାଭ କରିଥିଲେ ତାଙ୍କୁ ରାଧା ବୋଲି ଧରାଗଲେ ତାଙ୍କର ନାମୋଲ୍ଲେଖ ନ କରିବାର କୌଣସି କାରଣ ନାହିଁ । ଭାଗବତରେ ତ ବ୍ୟାସଦେବ ଅସଂଖ୍ୟ ନାମୋଲ୍ଲେଖ କରିଛନ୍ତି ! ରାଧା ତ କୃଷ୍ଣଙ୍କର ହ୍ଲାଦିନୀ ଶକ୍ତି । କୃଷ୍ଣ ନିଜର ଆନନ୍ଦ ପାଇଁ ତାଙ୍କୁ ସୃଷ୍ଟି କରିଥିବାର କୁହାଯାଏ । 'ଗୀତ ଗୋବିନ୍ଦ'ରେ ତାଙ୍କୁ ଏପରି ପ୍ରାଧାନ୍ୟ ଦିଆଯାଇଛି ଯେ ରାଧାଙ୍କର ମାନ ଭାଙ୍ଗିବାପାଇଁ କୃଷ୍ଣ କହୁଛନ୍ତି--

'ସ୍ମର-ଗରଳ-ଖଣ୍ଡନମ୍
ମମ ଶିରସି ମଣ୍ଡନଂ, ଦେହି ପଦପଲ୍ଲବମୁଦାରମ୍' ।

ମୋ ମୁଣ୍ଡରେ ଅର୍ଥାତ୍ କୃଷ୍ଣ ତାଙ୍କ ମୁଣ୍ଡରେ ରାଧାଙ୍କର ପାଦପଲ୍ଲବ ରଖିବାର କଥା କହୁଛନ୍ତି । ରାଧାକୃଷ୍ଣ ପ୍ରେମ ସମ୍ପର୍କରେ ବହୁ କାବ୍ୟ ରଚିତ ହୋଇଛି । କୃଷ୍ଣ ରାଧାଙ୍କୁ ଏତେ ଉଚ୍ଚ ସ୍ଥାନ ଦେଇଛନ୍ତି ଯେ ରାଧାଙ୍କ ଛଡ଼ା କୃଷ୍ଣଙ୍କର କଳ୍ପନା କରାଯାଇପାରିବ ନାହିଁ । କ୍ୱଚିତ୍ କୃଷ୍ଣ ଏକାକୀ ପୂଜିତ । କୃଷ୍ଣଙ୍କ ମନ୍ଦିରରେ ଉଭୟ ରାଧା ଓ କୃଷ୍ଣଙ୍କୁ ପୂଜା କରାଯାଏ । ସମସ୍ତ ବୃନ୍ଦାବନ କୁଞ୍ଜ ଗଳିରେ କେବଳ ରାଧାଙ୍କର ନାମ ହିଁ ଶୁଣାଯାଏ ଏବଂ ସେଠାରେ ପରସ୍ପରକୁ ଭେଟିବାବେଳେ 'ରାଧେ ରାଧେ' ବୋଲି କୁହାଯାଏ । ଭକ୍ତି ଶାସ୍ତ୍ରରେ କିପରି ରାଧା ଆସିଲେ, ତାହା ଅନ୍ୟ ଏକ ଚର୍ଚ୍ଚା ଓ ଗବେଷଣାର ବିଷୟ । କିନ୍ତୁ ଭାଗବତର ପୃଷ୍ଠାରେ ରାଧାଙ୍କର ନାମ ଯେ ନାହିଁ, ତାହା ଅନସ୍ୱୀକାର୍ଯ୍ୟ ।

ଦ୍ୱିତୀୟ ପ୍ରଶ୍ନଟି ହେଉଛି, ଶ୍ରୀ ଶୁକଦେବଙ୍କ ମୁହଁରୁ ମହାରାସ ବିଷୟଟି ଶୁଣିବା ପରେ ପରିକ୍ଷିତ ନିଜର ଶଙ୍କା ପ୍ରକାଶ କରି କହୁଛନ୍ତି, ଗୋପୀମାନଙ୍କ ସହିତ ଶ୍ରୀକୃଷ୍ଣଙ୍କର ରମଣ 'ପରଦାରାଧିମର୍ଷଣ' ନୁହେଁ ତ ! ଏହା କ'ଣ ଧର୍ମବିରୁଦ୍ଧ ନୁହେଁ । ଶୁକଦେବ ଏହାର ସମାଧାନ କରି କହୁଛନ୍ତି, ଏହା ଲୌକିକ ସ୍ତ୍ରୀ ପୁରୁଷଙ୍କର ଶୃଙ୍ଗାର ଲୀଳା ନୁହେଁ । ଜୀବ ସହିତ ପରମାତ୍ମାଙ୍କର ଯେଉଁ ମିଳନ, ତାହା'ହିଁ ପରମାନନ୍ଦରୂପୀ ଏହି ମହାରାସରେ ରୂପାୟିତ ହୋଇଛି । ଶ୍ରୀ ଶୁକଦେବ କହୁଛନ୍ତି --

ବିକ୍ରୀଡିତଂ ବ୍ରଜବଧୂଭିରିଦଂ ଚ ବିଷ୍ଣୋଃ
ଶ୍ରଦ୍ଧାନ୍ୱିତୋଽନୁଶୃଣୁୟାଦଥ ବର୍ଣ୍ଣୟେଦ୍ ଯଃ ।
ଭକ୍ତିଂପରାଂ ଭଗବତି ପ୍ରତିଲଭ୍ୟ କାମଂ
ହୃଦ୍ରୋଗମାଶ୍ୱପହିନୋତ୍ୟଚିରେଣ ଧୀରଃ ।।

ଯେଉଁ ଧୀର ପୁରୁଷ ବ୍ରଜ ଯୁବତୀଙ୍କ ସହିତ ଶ୍ରୀକୃଷ୍ଣଙ୍କର ଏହି ରାସବିଳାସ ଶ୍ରଦ୍ଧାର ସହିତ ଶ୍ରବଣ ବା ବର୍ଣ୍ଣନ କରେ ଭଗବାନଙ୍କ ପାଦରେ ତାର ପରମଭକ୍ତି ଲାଭ ହୁଏ ଏବଂ ଶୀଘ୍ର ତାର ହୃଦୟର ରୋଗ ଓ କାମ ବିକାର ଦୂରହୁଏ । ତେଣୁ ଶ୍ରୀଧରସ୍ୱାମୀଙ୍କ ଭାଷାରେ ଏହା ହେଉଛି 'କାମବିଜୟ ଲୀଳା' ।

## ପ୍ରେମ-ଭକ୍ତି

ପୂର୍ବର ଆଲୋଚନାରେ ଭଗବତ୍‌ଭକ୍ତିର ମାହାତ୍ମ୍ୟ ବିଷୟରେ କୁହାଯାଇଚି । କିନ୍ତୁ ଭାଗବତ ଗ୍ରନ୍ଥରେ ପ୍ରେମ-ଭକ୍ତି ତତ୍ତ୍ୱ ପ୍ରଧାନ ସ୍ଥାନ ଅଧିକାର କରିଥିବାଯୋଗୁଁ ସେ ସମ୍ପର୍କୀୟ କିଞ୍ଚିତ୍ ଅଧିକ ଆଲୋଚନା ଆବଶ୍ୟକ ।

'ନାରଦ ଭକ୍ତି ସୂତ୍ର'ରେ ଭକ୍ତିର ସଂଜ୍ଞା ନିରୂପଣ କରାଯାଇ କୁହାଯାଇଚି -- **ସା କସ୍ମୈଚିତ୍ ପରମପ୍ରେମରୂପା ।** କାହାରି ପ୍ରତି ପରମ ପ୍ରେମଭାବ । ସାଧାରଣ ଭାବରେ ଭକ୍ତି ଗୁରୁଜନମାନଙ୍କୁ ଭକ୍ତି କରିବା ବୁଝାଯାଏ । ପିତୃଭକ୍ତି, ମାତୃଭକ୍ତି, ଗୁରୁ ଭକ୍ତି । କିନ୍ତୁ ଯେଉଁ ଭକ୍ତି ପରମ ପ୍ରେମଭାବର ଦ୍ୟୋତକ, ତାହା ଈଶ୍ୱରଙ୍କୁ ହିଁ କରାଯାଏ । 'ଶାଣ୍ଡିଲ୍ୟ ସୂତ୍ର' ଅନୁଯାୟୀ **ସା ପରାନୁରକ୍ତିରୀଶ୍ୱରେ ।** ଈଶ୍ୱରଙ୍କଠାରେ ପରମ ଅନୁରକ୍ତି, ଯାହାକୁ ଅହୈତୁକୀ ଭକ୍ତି ବୋଲି କୁହାଯାଏ । ଅର୍ଥାତ୍ ଏହା କୌଣସି ହେତୁରୁ, କୌଣସି ଅଭିଳାଷ ଦୃଷ୍ଟିରୁ କରାଯାଏ ନାହିଁ । **ପୁତ୍ରଂ ଦେହି ଧନଂ ଦେହି ଯଶୋ ଦେହି ଦ୍ୱିଷୋ ଜହି ।** ମୋତେ ପୁତ୍ର ଦିଅ, ଧନ ଦିଅ, ଯଶ ଦିଅ, ମୋର ଶତ୍ରୁଙ୍କୁ ନାଶ କର -- ଏହା ମାଗିବାପାଇଁ ଯେଉଁ ଭକ୍ତି କରାଯାଏ, ତାହା ହୈତୁକୀ ଭକ୍ତି । ମନୋବାଞ୍ଛା ସିଦ୍ଧିପାଇଁ ଭକ୍ତି ଅସଲ ଭକ୍ତି ନୁହେ । ଅସଲ ଭକ୍ତି ମୁକ୍ତି ବା ମୋକ୍ଷପଦ ପର୍ଯ୍ୟନ୍ତ ମଧ୍ୟ ଚାହେ ନାହିଁ ।

ଭାଗବତ ଏକାଦଶ ସ୍କନ୍ଧରେ ଭଗବାନ ଶ୍ରୀକୃଷ୍ଣ ଉଦ୍ଧବଙ୍କୁ କହୁଛନ୍ତି, ମୋ'ଠାରେ ଆତ୍ମସମର୍ପଣ କରିଥିବା ଭକ୍ତ ବ୍ରହ୍ମାଙ୍କର ପଦ, ସ୍ୱର୍ଗରେ ଇନ୍ଦ୍ରପଦ, ସାର୍ବଭୌମ ଅଧିକାର, ପାତାଳର ଆଧିପତ୍ୟ, ଯୋଗସିଦ୍ଧି ଏପରିକି ମୋକ୍ଷପଦ ମଧ୍ୟ ଚାହେ ନାହିଁ । ମୋ ଛଡ଼ା ସେ ଅନ୍ୟ କିଛି ଚାହେ ନାହିଁ । **ନ ଯୋଗସିଦ୍ଧୀରପୁନର୍ଭବଂବା ମୟ୍ୟର୍ପିତାତ୍ମେଚ୍ଛତି ମଦ୍‌ବିନାଽନ୍ୟତ୍ ।** ଯଦି ଭଗବାନ ମୁକୁନ୍ଦଙ୍କ ପଦରେ ପରମ ଆନନ୍ଦମୟ ଭକ୍ତି ଜାତ ହୁଏ, ତା'ହେଲେ ଭକ୍ତର ପାଦପଦ୍ମରେ ମୋକ୍ଷରୂପକ ସାମ୍ରାଜ୍ୟଲକ୍ଷ୍ମୀ ଗଡ଼ ଗଡ଼ଉ ଥାନ୍ତି । **ଯଦି ଭବତି ମୁକୁନ୍ଦେ ଭକ୍ତିରାନନ୍ଦସାନ୍ଦ୍ରା, ବିଲୁଠତି ଚରଣାବ୍ଜେ ମୋକ୍ଷସାମ୍ରାଜ୍ୟ ଲକ୍ଷ୍ମୀଃ ।** ଭକ୍ତ ମୁକ୍ତିପାଇଁ ଲାଳାୟିତ ହୁଏ ନାହିଁ, ମୁକ୍ତି ତା'ର ପାଦରେ ଆଶ୍ରୟପାଇଁ ଲାଳାୟିତ ହୁଏ ।

ଧ୍ରୁବ ରାଜପଦପାଇଁ ତପସ୍ୟା କରୁଥିଲେ । କିନ୍ତୁ ଭଗବାନ ଆବିର୍ଭୂତ ହୋଇ ଯେତେବେଳେ ବରମାଗିବା କଥା କହିଲେ, ଧ୍ରୁବ ତାହା ସମ୍ପୂର୍ଣ୍ଣ ଭୁଲିଗଲେ । ସେ କହିଲେ, ଆପଣଙ୍କ ପାଦପଦ୍ମ ଦର୍ଶନ ପରେ ଆଉ ବର କଣ ଦରକାର ? ଭଗବାନ ତାଙ୍କୁ ଚିରଦେଦୀପ୍ୟମାନ ଧ୍ରୁବଲୋକ ଦେଇଦେଲେ । ବାମନ ବଳି ରାଜାଙ୍କ ଠାରୁ ସମସ୍ତ ଐଶ୍ୱର୍ଯ୍ୟ ଛଡ଼ାଇ ନେଇ ତାଙ୍କୁ ବନ୍ଦି କଲେ ମଧ୍ୟ ସେ ଟିକିଏ ହେଲେ ବିଚଳିତ ହେଲେ ନାହିଁ । ବଳି କହିଲେ, ଐଶ୍ୱର୍ଯ୍ୟ ତ ଭଗବାନଙ୍କର । ସେ ନେଇଗଲେ । ମୋର ସେଥିରେ କଣ ଅଛି ? ଭଗବାନଙ୍କ ପାଦରେ ସମର୍ପିତ ବଳିରାଜାଙ୍କୁ ଭଗବାନ ବନ୍ଧନମୁକ୍ତ କରି ସୁତଳର ରାଜା କରିଦେଲେ ଓ ନିଜେ ତାଙ୍କର ପ୍ରହରୀ ହୋଇଗଲେ । ପାଣ୍ଡବମାନେ ତାଙ୍କର ସମସ୍ତ ଦୁଃଖ ଓ ବିପଦ ସତ୍ତ୍ୱେ ତାଙ୍କଠାରେ ନିଜକୁ ସମ୍ପୂର୍ଣ୍ଣ ସମର୍ପଣ କରିଦେଇଥିଲେ । କୁରୁକ୍ଷେତ୍ର ଯୁଦ୍ଧ ପରେ ସେମାନେ ଅତୁଳ ଐଶ୍ୱର୍ଯ୍ୟ ଓ ସାମ୍ରାଜ୍ୟର

ଅଧିକାରୀ ହେଲେ । ସେମାନଙ୍କୁ ରାଜପଦରେ ବସାଇ ସାରିବାପରେ କୃଷ୍ଣ ଯେତେବେଳେ କୁନ୍ତୀଙ୍କଠାରୁ ବିଦାୟ ନେବାକୁ ଗଲେ, କୁନ୍ତୀ ତାଙ୍କୁ ସ୍ତୁତି କରି କହିଲେ, କୃଷ୍ଣ, କାଳେ ଆମେ ତୁମକୁ ଭୁଲିଯିବୁ, ତୁମେ ସବୁବେଳେ ସେଥିପାଇଁ ଆମକୁ ଦୁଃଖ ଓ ବିପଦ ଦେଉଥାଅ । **ବିପଦଃ ସନ୍ତୁ ନଃ ଶଶ୍ୱତ୍ତ୍ର ତତ୍ର ଜଗଦ୍‌ଗୁରୋ ।**

ରାଜସୂୟ ଯଜ୍ଞ ହେଲା । କୃଷ୍ଣ ଆସି ଯୁଧିଷ୍ଠିରଙ୍କର ସେବକ ହୋଇଗଲେ ଓ ସମସ୍ତ ଅତିଥିଙ୍କର ପାଦଧୋଇବା କାମ ଗ୍ରହଣକଲେ । କେଉଁ ଇନ୍ଦ୍ରପଦ, କେଉଁ ସାମ୍ରାଜ୍ୟ ଲକ୍ଷ୍ମୀ ବା ମୋକ୍ଷପଦକୁ ଏହା ସହିତ ତୁଳନା କରାଯାଇ ପାରିବ ?

ଦରିଦ୍ର ସୁଦାମା କୃଷ୍ଣଙ୍କର ପରମ ଭକ୍ତ । ଗୁରୁ ଗୃହରେ କୃଷ୍ଣଙ୍କ ସହିତ ଏକାଠି ପାଠ ପଢୁଥିଲେ । ତାଙ୍କର ଦରିଦ୍ର ଅବସ୍ଥା ଦୂର କରିବାପାଇଁ ସ୍ତ୍ରୀ ବହୁତ ବୁଝାଇବା ପରେ ଖଣ୍ଡେ ଚିରାକନାରେ କିଛି ଖୁଦ ବାନ୍ଧି କୃଷ୍ଣଙ୍କୁ ଉପହାର ଦେବା ଉଦ୍ଦେଶ୍ୟରେ ଦ୍ୱାରକାରେ ପହଞ୍ଚିଲେ ସିଧା କୃଷ୍ଣଙ୍କ ଶୟନ କକ୍ଷରେ । କୃଷ୍ଣ ରୁକ୍ମିଣୀଙ୍କ ସହିତ ବସିଥିଲେ । ସଙ୍ଗେ ସଙ୍ଗେ ଉଠି ଆସି ସଂକୋଚରେ ବୁଡ଼ିଯାଉଥିବା ସୁଦାମାଙ୍କର ଗୋଡ଼ ଧୋଇଦେଲେ ଓ ନିଜ ଶଯ୍ୟାପାଖରେ ଆଣି ବସାଇଲେ । ପିଲାଦିନର କଥା ସବୁ କଥାଭାଷା ହେବାକୁ ଲାଗିଲେ । ସୁଦାମା କୃଷ୍ଣପ୍ରେମରେ ଏତେ ବିହ୍ୱଳ ହୋଇଗଲେ ଯେ ସେ କଣ ମାଗିବାକୁ ଆସିଛନ୍ତି, ତାହା ସମ୍ପୂର୍ଣ୍ଣ ଭୁଲିଗଲେ । ପ୍ରକୃତ ଭକ୍ତ ଭଗବାନଙ୍କୁ ଦର୍ଶନ କଲେ କିଛି ମାଗିବାକୁ ତାର ଇଚ୍ଛା ହୁଏ ନାହିଁ । ଅବଶ୍ୟ ସୁଦାମା ଫେରିଆସି ଦେଖିବାବେଳକୁ ତାଙ୍କ ପାଦରେ ଇନ୍ଦ୍ରସମ୍ପଦ ଲୋଟୁଛି ।

ଭାଗବତରେ ଗୋପୀମାନଙ୍କ ଭକ୍ତିକୁ ହିଁ ଶ୍ରେଷ୍ଠସ୍ଥାନ ଦିଆଯାଇଚି । ଗୋପୀଙ୍କର ଭକ୍ତି ପ୍ରେମ-ଭକ୍ତି । ଭକ୍ତିର ସଜ୍ଞାରେ ତ ନାରଦ କହିଛନ୍ତି ସା କସ୍ମୈ ପରମ ପ୍ରେମରୂପା । ପୁଣି 'ନାରଦ ପଞ୍ଚରାତ୍ର'ରେ କୁହାଯାଇଚି :

**ଅନନ୍ୟମମତା ବିଷ୍ଣୌ ମମତା ପ୍ରେମସଂଗତା**
**ଭକ୍ତିରିତ୍ୟୁଚ୍ୟତେ ଭୀଷ୍ମ-ପ୍ରହ୍ଲାଦୋଦ୍ଧବ-ନାରଦୈଃ ।**

ବିଷ୍ଣୁଙ୍କଠାରେ ଅନନ୍ୟ ମମତା, ପ୍ରେମଯୁକ୍ତ ମମତାକୁ ଭୀଷ୍ମ, ପ୍ରହ୍ଲାଦ, ଉଦ୍ଧବ ଓ ନାରଦ ପ୍ରଭୃତି ଭକ୍ତି ବୋଲି କହିଛନ୍ତି । ପ୍ରହ୍ଲାଦଙ୍କ କଥା ପୂର୍ବରୁ କୁହାଯାଇଚି । ଉଦ୍ଧବ ଏପରି କୃଷ୍ଣଗତପ୍ରାଣ ଥିଲେ ଯେ କୃଷ୍ଣ ତାଙ୍କୁ ଏକାଦଶ ସ୍କନ୍ଧ ସାରା ଉପଦେଶ ଦେଇ ଦେଇ ମଧ୍ୟ ତାଙ୍କର ମନ ମାନିଲା ନାହିଁ । ସେ କୃଷ୍ଣଙ୍କୁ ଛାଡ଼ି ମୁହୂର୍ତ୍ତେ ମାତ୍ର ବଞ୍ଚିପାରିବେ ନାହିଁ ବୋଲି କହି ଚାଲିଥା'ନ୍ତି । ଶେଷକୁ ଭଗବାନ ତାଙ୍କୁ ବହୁତ ବୁଝାଇ ସୁଝାଇ ନିଜର କଠଉ ଦୁଇଟି ଧରାଇଦେଲେ । ତାକୁ ମସ୍ତକରେ ଧରି ବହୁ କଷ୍ଟରେ କୃଷ୍ଣଙ୍କୁ ଛାଡ଼ି ସେ ବଦରୀକା ଆଶ୍ରମକୁ ପ୍ରସ୍ଥାନକଲେ । ନାରଦ ଭଗବାନଙ୍କର ଏପରି ପ୍ରେମୀ ଭକ୍ତ ଯେ ସବୁବେଳେ 'ନାରାୟଣ ନାରାୟଣ' ଉଚ୍ଚାରଣ କରୁଥା'ନ୍ତି ଏବଂ ପ୍ରଭୁଙ୍କ ଲୀଳା ରଚନାର ଏକ ମାଧ୍ୟମ ହୋଇଥା'ନ୍ତି । ବାକି ଭୀଷ୍ମଙ୍କର କଥା । ଭୀଷ୍ମ ବୀର ଯୋଦ୍ଧା । ଏକୋଇଶ ଦିନ ଯୁଦ୍ଧରେ ପରଶୁରାମଙ୍କୁ ପରାସ୍ତ କରିଥିଲେ । କିନ୍ତୁ କୃଷ୍ଣଙ୍କୁ ଦେଖିବା ମାତ୍ରେ ତାଙ୍କ ପ୍ରେମରେ ସେ ବିହ୍ୱଳ ହୋଇ ପଡୁଥିଲେ । ଯୁଧିଷ୍ଠିରଙ୍କର ରାଜସୂୟ ଯଜ୍ଞରେ ଯେତେବେଳେ ଅଗ୍ରପୂଜା (କାହାକୁ ପ୍ରଥମେ ପୂଜା କରାଯିବ) କଥା ଉଠିଲା, ସେତେବେଳେ ଭୀଷ୍ମ କହିଲେ, ସମସ୍ତଙ୍କ ମଧ୍ୟରେ ଶ୍ରେଷ୍ଠ ପୁରୁଷ କୃଷ୍ଣ । ତେଣୁ ତାଙ୍କୁ ହିଁ ପ୍ରଥମେ ବରଣ କରିବାକୁ ହେବ ।

କୁରୁକ୍ଷେତ୍ର ଯୁଦ୍ଧରେ ଅଗତ୍ୟା ଭୀଷ୍ମଙ୍କୁ କୌରବଙ୍କ ପକ୍ଷରେ ଲଢ଼ିବାକୁ ହୋଇଥିଲା, ଯଦିବା ସେ ପାଣ୍ଡବମାନଙ୍କର ବିଜୟ କାମନା କରୁଥିଲେ । ଯୁଦ୍ଧଦ୍ୱାରା ସେ କିପରି କୃଷ୍ଣପ୍ରେମର ନିଦର୍ଶନ ଦେବେ, ସେଥିପାଇଁ ସେ ପ୍ରତିଜ୍ଞା କଲେ, ଏପରି

ମୁଁ ଯୁଦ୍ଧ କରିବି, କୃଷ୍ଣଙ୍କୁ ଅସ୍ତ୍ରଧାରଣ କରିବାକୁ ହେବ । ସେ ନିରପେକ୍ଷ ରହିପାରିବେ ନାହିଁ । ତା ନ କରି ପାରିଲେ ମୁଁ ଗଙ୍ଗାଙ୍କୁ ଜନନୀ ଓ ନିଜକୁ ଶାନ୍ତନୁଙ୍କ ପୁତ୍ର ବୋଲି କହିବି ନାହିଁ ।

ଆଯୁଜୌ ହରିହିଂ ନ ଶସ୍ତ୍ର ଗହାଇଁ
ତୌ ଲାଜଉଁ ଗଙ୍ଗା ଜନନୀ କୋ ଶାନ୍ତନୁସୁତ ନ କହାଉଁ ।
(ସୁର ଦାସ)

ସତକୁ ସତ ତାହା ହିଁ ହେଲା । ଭୀଷ୍ମ ଏପରି ଯୁଦ୍ଧ କଲେ ଯେ ଅର୍ଜୁନ ତାଙ୍କର ସମ୍ମୁଖୀନ ହୋଇପାରିଲେ ନାହିଁ । ଶ୍ରୀକୃଷ୍ଣ ରଥରୁ ଡ଼େଇଁପଡ଼ି ରଥଚକ ଧରି ଭୀଷ୍ମଙ୍କୁ ମାରିବାପାଇଁ ଦଉଡ଼ିଗଲେ । ଭୀଷ୍ମ କହିଲେ, ଆସ ମାର, ମୁଁ ତୁମର ଏହି ରୂପ ଦେଖିବାକୁ ଚାହୁଁଥିଲି ।

ଏହ୍ୟେହି ଦେବେଶ ଜଗନ୍ନିବାସ
ନମୋଽସ୍ତୁତେ ଶାର୍ଙ୍ଗଗଦାସିପାଣେ
ପ୍ରସହ୍ୟ ମାଂ ପାତୟ ଲୋକନାଥ
ରଥାଦୂଦଗ୍ରାଦ୍‌ଭୁତଶୌର୍ଯ୍ୟସଂଖ୍ୟେ ।
(ମହାଭାରତ)

ଅର୍ଜୁନ ଆସି କୃଷ୍ଣଙ୍କୁ ବୁଝାଇ ନେଇଗଲେ । କିନ୍ତୁ ଶରଶଯ୍ୟାରେ ରହି ଯେତେବେଳେ ପିତାମହ ଭୀଷ୍ମଙ୍କର ମରଣର ସମୟ ଆସିଗଲା, କୃଷ୍ଣଙ୍କର ସେହିରୂପର ସେ ଚିନ୍ତା କରିବାକୁ ଲାଗିଲେ :-

ତ୍ରିଭୁବନକମନଂ ତମାଲବର୍ଣ୍ଣଂ
ରବିକରଗୌରବରାମ୍ବରଂ ଦଧାନେ ।
ବପୁରଲକକୁଲାବୃତାନନାବ୍ଜଂ
ବିଜୟସଖେ ରତିରସ୍ତୁ ମେଽନବଦ୍ୟା ॥

ଯାହାଙ୍କ ଶରୀର ତ୍ରିଭୁବନ ସୁନ୍ଦର, ଶ୍ୟାମ ତମାଳ ପରି ଶ୍ୟାମବର୍ଣ୍ଣ, ଯାହାଙ୍କ ଦେହରେ ସୂର୍ଯ୍ୟକିରଣ ପରି ଝଲମଲ କରୁଥିବା ପୀତାମ୍ବର ଶୋଭା ପାଉଚି ଓ ପଦ୍ମ ପରି ସୁନ୍ଦର ମୁଖରେ କୁଞ୍ଚିତ କେଶ ଆସି ପଡୁଚି, ଅର୍ଜୁନର ସଖା ସେହି କୃଷ୍ଣଙ୍କ ପ୍ରତି ମୋର ନିଷ୍କପଟ ପ୍ରୀତି ରହୁ । ସବୁଠାରୁ ବେଶୀ ମନେ ପଡୁଚି ସେହି କଥା-- ଯୁଦ୍ଧ ସମୟର ସେ ଅପୂର୍ବ ଛବି ମୋ ମନକୁ ଆସିଯାଉଚି, ଯେତେବେଳେ ମୋର ପ୍ରତିଜ୍ଞା ପୂରଣପାଇଁ ତାଙ୍କ ନିଜ ପ୍ରତିଜ୍ଞା ଛାଡ଼ି ସେ ରଥର ଚକ୍ର ଧରି ମୋତେ ମାରିବାପାଇଁ ଦଉଡ଼ି ଆସୁଛନ୍ତି ଓ ତାଙ୍କର ଉତ୍ତରୀୟ ଖସିପଡୁଚି ।

ସ୍ୱନିଗମପହାୟ ଯତ୍ ପ୍ରତିଜ୍ଞା
ମୃତମଧିକର୍ତ୍ତୁମବଲୁପ୍ତରଥସ୍ଥଃ
ଧୃତରଥଚରଣୋଽଭ୍ୟୟାଚ୍ଚଲଦ୍‌ଗୁ
ର୍ହରିରିବ ହନ୍ତୁମିମଂ ଗତୋତ୍ତରୀୟଃ ।

ଭଗବାନ ଭକ୍ତ ପ୍ରେମର ଅଧୀନ । ଭକ୍ତ ଅମ୍ବରୀଷଙ୍କୁ ମାରିବାପାଇଁ କ୍ରୁଦ୍ଧ ଦୁର୍ବାସା ଋଷି ଯେତେବେଳେ ଏକ କୃତ୍ୟା (ରାକ୍ଷସ)କୁ ପଠାଇଲେ, ଭଗବାନଙ୍କ ସୁଦର୍ଶନ ଚକ୍ର ତାକୁ ଖଣ୍ଡ ଖଣ୍ଡ କରିଦେଲା ଓ ଦୁର୍ବାସାଙ୍କୁ ଗୋଡ଼ାଇଲା । ଦୁର୍ବାସା କୁଆଡ଼େ ଆଶ୍ରୟ ନ ପାଇ ବିଷ୍ଣୁଙ୍କ ଶରଣ ପଶିଲେ । ସେତେବେଳେ ଭଗବାନ କହିଲେ, ମୁଁ ଭକ୍ତର ଅଧୀନ । ତୁମେ ଅମ୍ବରୀଷଙ୍କର ଶରଣାପନ୍ନ ହେଲେ ରକ୍ଷା ପାଇବ ।

ଅହଂ ଭକ୍ତପରାଧୀନୋ ହ୍ୟସ୍ୱତନ୍ତ୍ର ଇବ ଦ୍ୱିଜ
ସାଧୁଭିର୍ଗ୍ରସ୍ତହୃଦୟୋ ଭକ୍ତୈର୍ଭକ୍ତଜନପ୍ରିୟଃ ।

ମୁଁ ସ୍ୱତନ୍ତ୍ର ନୁହେ । ପରାଧୀନ । ଭକ୍ତଙ୍କର ଅଧୀନ । ସାଧୁମାନେ ମୋର ହୃଦୟକୁ ଗ୍ରାସ କରିଯାଇଛନ୍ତି । ମୁଁ ଭକ୍ତମାନଙ୍କର ଓ ଭକ୍ତମାନେ ହିଁ ମୋର ପ୍ରିୟ । ପୁଣି ସେହି ନବମ ସ୍କନ୍ଧ ଚତୁର୍ଥ ଅଧ୍ୟାୟରେ କହୁଛନ୍ତି । ମୋର ଭକ୍ତମାନଙ୍କର ମୁଁ ଏକମାତ୍ର ଆଶ୍ରୟ । ମୁଁ ମୋର ଅନୁରକ୍ତ ଅର୍ଦ୍ଧାଙ୍ଗିନୀ ଲକ୍ଷ୍ମୀଙ୍କୁ ଛାଡ଼ିଦେଇପାରେ । ଏପରିକି ନିଜକୁ ମଧ୍ୟ ଛାଡ଼ି ଦେଇପାରେ । କିନ୍ତୁ ଭକ୍ତମାନଙ୍କୁ ଛାଡ଼ିପାରିବି ନାହିଁ । ଆଉ ପୁଣି କହୁଛନ୍ତି--ଯେଉଁମାନେ ତାଙ୍କର ସ୍ତ୍ରୀ, ପୁତ୍ର, ଗୃହ, ସ୍ୱଜନ, ପ୍ରାଣ, ଧନ, ଇହଲୋକ, ପରଲୋକ--ଏସବୁର ମମତା ଛାଡ଼ି ମୋର ଶରଣ ନେଇଛନ୍ତି, ମୁଁ ସେମାନଙ୍କୁ କିପରି ଛାଡ଼ିପାରିବି ?

ଯେ ଦାରାଗାରପୁତ୍ରାପ୍ତପ୍ରାଣାନ୍ ବିତ୍ତମିମଂ ପରମ୍
ହିତ୍ୱା ମାଂ ଶରଣଂ ଯାତାଃ କଥଂ ତାଁସ୍ତ୍ୟକ୍ତୁମୁତ୍ସହେ ।

ଭକ୍ତଙ୍କ ସହିତ ଏକାକାର ବୋଲି ବୁଝାଇ ଭଗବାନ କହୁଛନ୍ତି, ଭକ୍ତମାନେ ମୋର ହୃଦୟ ଓ ମୁଁ ସେମାନଙ୍କର ହୃଦୟ । ମୋ'ଛଡ଼ା ସେମାନେ କିଛି ଜାଣନ୍ତି ନାହିଁ କି ମୁଁ ତାଙ୍କ ଛଡ଼ା କିଛି ଜାଣେ ନାହିଁ ।

ସାଧବୋ ହୃଦୟଂ ମହ୍ୟଂ ସାଧୂନାଂ ହୃଦୟଂତ୍ୱହମ୍
ମଦନ୍ୟତ୍ ତେ ନ ଜାନନ୍ତି ନାହଂ ତେଭ୍ୟୋ ମନାଗପି ।

ଭକ୍ତ ସାଲବେଗଙ୍କର ଭଜନ:

ଏକା ତୋ ଭକତ ଜୀବନ ।
ଭକତ ନିମନ୍ତେ ତୋର ଶଙ୍ଖଚକ୍ର ଚିହ୍ନ
ଭକତ ତୋ ମାତା ପିତା ଭକତ ତୋ ବନ୍ଧୁ
ଭକତ ହିତରେ ତୋର ନାମ କୃପାସିନ୍ଧୁ
ଏକା ତୋ ଭକତ ଜୀବନ ।
ଧେନୁ ପଛେ ପଛେ ବତ୍ସା ଧାଏଁ କ୍ଷୀର ଲୋଭେ
ଭକତ ପଛରେ ତୁହି ଥାଉ ସେହିଭାବେ ।

ବ୍ରଜ ଛାଡ଼ି ଯେତେବେଳେ କୃଷ୍ଣ ମଥୁରାରେ ରହିଲେ, ସେତେବେଳେ କେବଳ ନନ୍ଦ, ଯଶୋଦା ଓ ଗୋପୀମାନଙ୍କର କଥା ହିଁ ସେ ସର୍ବଦା ଚିନ୍ତା କରୁଥିଲେ । ସେମାନଙ୍କୁ ଦେଖି ଆସିବାପାଇଁ ଉଦ୍ଧବଙ୍କୁ ପଠାଇ କହିଲେ, ଉଦ୍ଧବ, ମୁଁ ସିନା ମଥୁରାରେ ଅଛି । କିନ୍ତୁ ମୋର ମନ ଯାଇ ବ୍ରଜରେ । ନନ୍ଦ, ଯଶୋଦା ଓ ଗୋପୀମାନଙ୍କ ପାଖରେ । ଉଦ୍ଧବ ବ୍ରଜକୁ ଯାଇ

ସେମାନଙ୍କୁ ବ୍ରହ୍ମଜ୍ଞାନ (ନିର୍ଗୁଣ ନିରାକାର ବ୍ରହ୍ମଙ୍କର ଜ୍ଞାନ) ଦେବାପାଇଁ ଚେଷ୍ଟାକଲେ । ସେହି ବାଟରେ ଭଗବାନ ମିଳିବେ ବୋଲି ବୁଝାଇଲେ । କିନ୍ତୁ ଗୋପୀମାନେ କହିଲେ, ତୁମ ଜ୍ଞାନ ତୁମ ପାଖରେ ରଖ । ସେ ତ ଆମକୁ ମିଳି ଯାଇଛନ୍ତି-**'ଯତ୍ର ଯତ୍ର ମନୋ ଯାତି ତତ୍ର ତତ୍ର ତ୍ୱ ମାଧବଃ ।'** ଆମେ ତ ଚାରିଆଡ଼େ କୃଷ୍ଣରୂପ ଦର୍ଶନ କରୁଚୁ । ଆମେ ତାଙ୍କୁ ଛାଡ଼ି ନିରାକାର ବ୍ରହ୍ମଙ୍କୁ କାହିଁକି ପୂଜିବୁ ?

କୃଷ୍ଣଙ୍କ ପ୍ରେମରେ ଅଧୀରା ଗୋପୀମାନେ ତାଙ୍କ ସହିତ ମିଶିଯାଇଥିବାଯୋଗୁଁ କୃଷ୍ଣଙ୍କ ଉପରେ ତାଙ୍କର ଏକ ଅଧିକାର ଆସିଯାଇଥିଲା । ସେମାନେ ଅଭିମାନରେ ତାଙ୍କୁ ଯାହା ପାରୁଥିଲେ କହୁଥିଲେ ଓ କୃଷ୍ଣଙ୍କୁ ତାହା ଭଲ ଲାଗୁଥିଲା । **ଭ୍ରମର ଗୀତ**ରେ ତାଙ୍କୁ ନିଷ୍ଠୁର, ଠକ, କପଟୀ, ଲମ୍ପଟ ବୋଲି କୁହାଯାଇଚି । ଗୁଜୁରାଟରେ ତାଙ୍କପାଇଁ ତ ଆହୁରି ଗୋଟାଏ ବୋଲି ଅଛି--'ରଣଛୋଡ଼' । କାପୁରୁଷ । ଜରାସନ୍ଧ ମଥୁରା ଆକ୍ରମଣ କଲାବେଳେ ସେ ଯୁଦ୍ଧ ଛାଡ଼ି ପଳାଇ ଆସି ନ ଥିଲେ କି ? କିନ୍ତୁ ଏହି ଗାଳିରେ ମଧୁର ଭାବ ପୂରିରହିଛି । କୃଷ୍ଣଙ୍କୁ ଗୋପୀମାନଙ୍କର ଗାଳି ଜ୍ଞାନୀମାନଙ୍କ ବେଦପାଠ ଅପେକ୍ଷା ବେଶୀ ଭଲ ଲାଗୁଥିଲା । ଭୂପତି ପଣ୍ଡିତଙ୍କ ଭାଷାରେ --

**ସେ ଭାବଗ୍ରାହୀ ନନ୍ଦ ସୁତ**
**ଗାଳି ଶୁଣଇ ଗୋପୀମୁଖେ**
**ବେଦ ନ ଶୁଣେ ତେଡ଼େ ସୁଖେ ।**

ଡାକି ବଜାଇ ଗାଳି ଦେଇ **କବିସୂର୍ଯ୍ୟ ବଳଦେବ ରଥ** ତାଙ୍କର ସର୍ପ ଜଣାଣରେ କହିଛନ୍ତି--

ବାଧିଲା ଜାଣି କ୍ଷମା କର ନୋହିଲେ ରମା
ରମଣ ଦଣ୍ଡେ ଦିଅ ଟାଳି ।
ତୁମ୍ଭଙ୍କୁ ଜଗନ୍ନାଥ ଆଜ ମୋ ମନୋରଥ
ଭରତି କରି ଦେବି ଗାଳି ହେ କୃପାନିଧି ।
କରୁଣାସିନ୍ଧୁ ବୋଲି କରି କରନ୍ତି ବୁଧେ ଡରିମରି,
କାଳସର୍ପ ଆପଣ କବଳ କର ପ୍ରାଣ-
ପବନମାନଙ୍କୁ ସବୁରି ହେ କୃପାନିଧି ।।

ଭଗବାନଙ୍କୁ ତାଙ୍କର ପରମ ଭକ୍ତ କେବଳ ଗାଳି ନୁହେ, ମାଡ଼ ମଧ୍ୟ ଦିଅନ୍ତି । ଯଶୋଦା ମା ଛାଟ ଧରି କେତେଥର ଗୋଡ଼ାଇଛନ୍ତି ! ପୁଣି ଚୋରକୁ ବାନ୍ଧିବାପରି ବାଳକ ଅବସ୍ଥାରେ କୃଷ୍ଣଙ୍କ ଦୁଷ୍ଟାମି ବନ୍ଦ କରିବାପାଇଁ ଯଶୋଦା ମାତା ତାଙ୍କୁ ରଜ୍ଜୁରେ ବାନ୍ଧିବାକୁ ଚେଷ୍ଟାକଲେ । ତାଙ୍କୁ ଡିଙ୍କିରେ ଯେଉଁ ରସିରେ ବାନ୍ଧିବା କଥା, ବାନ୍ଧିବାବେଳେ ତାହା ଦୁଇ ଆଙ୍ଗୁଳ ଛୋଟ ହେଲା । ସେ ତା'ସହିତ ଆହୁରି ଏକ ଦଉଡ଼ି ଆଣି ଯୋଡ଼ିଲେ, ପୁଣି ସେହି ଦୁଇ ଆଙ୍ଗୁଳ ଛୋଟ । ଘରେ ତାଙ୍କର ଯେତେ ରସିଥିଲା, ସବୁ ଆଣି ବାନ୍ଧିଲେ ବି ପୁଣି ସେହିପରି ଦୁଇ ଆଙ୍ଗୁଳ ଛୋଟ ରହିଲା । ଗୋପୀମାନେ ହସିବାକୁ ଲାଗିଲେ । ଯଶୋଦା ବି ହସିଲେ । ସେତେବେଳେ ସେ ଗଳଦ୍‌ଘର୍ମ । ପରିଶ୍ରମ କରି ଥକି ଗଲେଣି । କବରୀରୁ ଫୁଲମାଳ ଖସି ଗଲାଣି । ମାତାଙ୍କର ଏ ଅବସ୍ଥା ଦେଖି କୃଷ୍ଣ ନିଜେ ବାନ୍ଧି ହୋଇଗଲେ । **'ଦୃଷ୍ଟ୍ୱା ପରିଶ୍ରମଂ କୃଷ୍ଣଃ କୃପୟାଽଽସୀତ୍ ସ୍ୱବନ୍ଧନେ ।'** ଭକ୍ତଙ୍କ ପ୍ରେମରେ

ଭଗବାନ ବାନ୍ଧି ହୋଇଯା'ନ୍ତି । ଭାଗବତରେ କୁହାଯାଇଛି ବ୍ରହ୍ମା, ଶଙ୍କର, ଲକ୍ଷ୍ମୀ ଭଗବାନଙ୍କର ଯେଉଁ ଅନୁଗ୍ରହ ପାଇ ନ ଥିଲେ ବାତ୍ସଲ୍ୟ ପ୍ରେମରେ ଗୋପାଳୁଣୀ ଯଶୋଦା ତାହା ଲାଭ କରିଥିଲେ ।

ନେମଂ ବିରିଞ୍ଚୋ ନ ଭବୋ ନ ଶ୍ରୀରପ୍ୟଙ୍ଗସଂଶ୍ରୟା ।
ପ୍ରସାଦଂ ଲେଭିରେ ଗୋପୀ ଯତ୍ତତ୍ ପ୍ରାପ ବିମୁକ୍ତିଦାତ୍ ॥
(ଭାଗବତ-୧୦ :୯ :୨୦)

ଭଗବାନଙ୍କର ଗୋଟିଏ ନାମ ଶ୍ରୀବତ୍ସଲାଞ୍ଛନ । ଶ୍ରୀବତ୍ସ ବ୍ରାହ୍ମଣ ତାଙ୍କର ବକ୍ଷରେ ପ୍ରହାର କରିଥିଲେ । ସେହି ଚିହ୍ନ ଧାରଣ କରିଥିବାଯୋଗୁଁ ଶ୍ରୀବତ୍ସଲାଞ୍ଛନ । ଭାଗବତରେ ଭୃଗୁଋଷିଙ୍କ କଥା କୁହାଯାଇଚି । ଭୃଗୁ ଋଷି ପରୀକ୍ଷା କରିବାପାଇଁ ବ୍ରହ୍ମାଙ୍କ ପାଖକୁ ଗଲେ ଓ ତାଙ୍କୁ ଗାଳିଦେଲେ । ବ୍ରହ୍ମା ତାଙ୍କୁ ଓଲଟା ଗାଳି ଦେଲେ । ଶିବଙ୍କ ପାଖକୁ ଯାଇ ଗାଳିଦେଲେ । ଶିବ ମାରିବାପାଇଁ ଗୋଡ଼ାଇଲେ । ବିଷ୍ଣୁଙ୍କ ପାଖକୁ ଯାଇ ଦେଖିଲେ, ସେ ଶୋଇରହିଛନ୍ତି । ଗାଳି ଦେଇ ନ ଉଠିବାରୁ ପାଦରେ ପ୍ରହାରକଲେ । ଭଗବାନ ସାଙ୍ଗେ ସାଙ୍ଗେ ଉଠିଯାଇ ତାଙ୍କ ହାତଧରି କହିଲେ, ଆପଣଙ୍କ ପାଦକୁ କଷ୍ଟ ହୋଇ ନାହିଁ ତ ? ଭକ୍ତପାଇଁ ଭଗବାନ ସବୁକିଛି ସହିପାରନ୍ତି, ସେଥିପାଇଁ ବିଷ୍ଣୁସହସ୍ରନାମରେ ତାଙ୍କର ଏକ ନାମ ସହିଷ୍ଣୁ । **'ସହିଷ୍ଣୁର୍ଗତିସତ୍ତମ ।'** ଯେତେ ଯାହା ଗାଳିଦେଲେ ଅଭିମାନ କଲେ ମଧ୍ୟ ଭଗବାନ ହେଉଛନ୍ତି ଭକ୍ତଙ୍କର ପ୍ରାଣ ।

ତାଙ୍କୁ ଲମ୍ପଟ ବୋଲି କହି ସେ ଯେ ପ୍ରାଣନାଥ, ଶ୍ରୀଚୈତନ୍ୟ ତାଙ୍କର **ଶିକ୍ଷାଷ୍ଟକରେ** ତାହା ଅତି ସୁନ୍ଦର ଭାବରେ ବର୍ଣ୍ଣନା କରିଛନ୍ତି—

**ଆଶ୍ଲିଷ୍ୟ ବା ପାଦରତାଂ ପିନଷ୍ଟୁ ମାମଦର୍ଶନାନ୍ମର୍ମହତାଂ କରୋତୁ ବା ।**
**ଯଥା ତଥା ବା ବିଦଧାତୁ ଲମ୍ପଟୋ ମତ୍ପ୍ରାଣନାଥସ୍ତୁ ସ ଏବ ନାପରଃ ॥**

'ମୁଁ ତାଙ୍କର ପାଦର ଆଶ୍ରିତ । ମୋତେ ସେ ଆଲିଙ୍ଗନ କରନ୍ତୁ ବା ମୋତେ ଚାପି ଧରି ପେଷଣ କରନ୍ତୁ କିମ୍ବା ଦର୍ଶନ ନ ଦେଇ ମର୍ମାହତ କରନ୍ତୁ, ସେ ଲମ୍ପଟ ଯାହା ତାହା କରନ୍ତୁ ନା କାହିଁକି ସେ ମୋର ପ୍ରାଣନାଥ ।' ମୀରାବାଈ ତାଙ୍କର ଏକ ପ୍ରସିଦ୍ଧ ଭଜନରେ କହିଛନ୍ତି--

**ମେରେ ତ ଗିରିଧର ଗୋପାଳ ଦୁସରା ନ କୋଇ ।**
**ଜାକେ ଶିର ମୋର ମୁକୁଟ ମୋରୋ ପତି ସୋଇ ॥**
**ତାତ ମାତ ଭ୍ରାତ ବନ୍ଧୁ ଆପନା ନହି କୋଈ ।**
**ଛୋଡ଼ଦଈ କୁଳ କି କାନ କ୍ୟା କରେଗା କୋଈ ॥**

ଯାହା କହିଛନ୍ତି 'ମଦନ୍ୟତ୍ ତେ ନ ଜାନନ୍ତି ନାହଂ ତେଭ୍ୟୋ ମନାଗପି' । ମୋ ଭକ୍ତମାନେ ମୋ ଛଡ଼ା କାହାରିକୁ ଜାଣନ୍ତି ନାହିଁ । ବେଳେ ବେଳେ ପ୍ରେମୀ ଭକ୍ତଙ୍କୁ ଭଗବାନ ଚିଡ଼ାଇ ଦିଅନ୍ତି । ଏହାର ପ୍ରତିକ୍ରିୟାରେ ଭକ୍ତମାନେ ଅଭିମାନଭରା କ୍ରୋଧରେ ଭଗବାନଙ୍କୁ ଡାକନ୍ତି ।

ଦିନେ ଅନ୍ଧ ସୁରଦାସଙ୍କୁ ବୃନ୍ଦାବନର କୁଞ୍ଜଗଳିରେ ଭଗବାନ ରାସ୍ତା ଦେଖାଇ ଯାଉଥିଲେ, ବାଳକବେଶରେ ଗୋଟିଏ ବାଡ଼ିର ସାହାଯ୍ୟରେ । ତାଙ୍କର ମିଠା କଥା ଶୁଣି ସୁରଦାସ ଭାବିଲେ, ଏ ବାଳକ ବୃନ୍ଦାବନଚନ୍ଦ୍ରଙ୍କ ଛଡ଼ା ଅନ୍ୟ କେହି ନୁହେ ।

ତାଙ୍କର ଦେହ ସ୍ପର୍ଶ କରିବାପାଇଁ ବାଡ଼ି ଛାଡ଼ି ଯେତେବେଳେ ତାଙ୍କ ହାତ ଧରି ପକାଇଛନ୍ତି, ସେତେବେଳେ ସେ ହାତ ଛାଟି ଦେଇ ପଳାଇଗଲେ । ଭକ୍ତ ସୁରଦାସ କାନ୍ଦି କାନ୍ଦି କହିଲେ, ''ହେ କୃଷ୍ଣ, ବଳପୂର୍ବକ ହାତ ଛାଟି ଦେଇ ପଳାଇଗଲ । ଏଥିରେ ଆଶ୍ଚର୍ଯ୍ୟ ହେବାର କଣ ଅଛି ? ଯଦି ମୋର ହୃଦୟ ଛାଡ଼ି ଚାଲିଯାଇ ପାରିବ, ତେବେ ଯାଇ ତୁମର ମରଦପଣିଆ ଜଣାଯିବ ।''

ହସ୍ତାବୁତ୍କ୍ଷିପ୍ୟ ନିର୍ଯ୍ୟାସି ବଳାତ୍ କୃଷ୍ଣ କିମଦ୍‌ଭୁତମ୍
ହୃଦୟାଦ୍ ଯଦି ନିର୍ଯ୍ୟାସି ପୌରୁଷଂ ଗଣୟାମି ତେ ॥

ମିଥିଳା ପଣ୍ଡିତ ଉଦୟନାଚାର୍ଯ୍ୟ ନୈୟାୟିକ ଥିଲେ । ତାର୍କିକ ହେଲେ ମଧ୍ୟ ସେ ଭଗବାନଙ୍କର ପରମ ଭକ୍ତ ଥିଲେ । ସେ ପୁରୀରେ ଜଗନ୍ନାଥ ଦର୍ଶନ କରିବାକୁ ଆସିଲେ । ସେ ଭଗବାନଙ୍କୁ ଦର୍ଶନ କରିବାକୁ ଯାଉଛନ୍ତି, ହଠାତ୍ ଭିତରର କବାଟ ପଡ଼ିଗଲା । ଆଚାର୍ଯ୍ୟ ଅଭିମାନଭରା କ୍ରୋଧରେ କହିଲେ--

ଐଶ୍ୱର୍ଯ୍ୟମଦମତ୍ତୋଽସି ମାମବଜ୍ଞାୟ ତିଷ୍ଠସି
ଉପସ୍ଥିତେଷୁ ବୌଦ୍ଧେଷୁ ମଦଧୀନା ତବସ୍ଥିତିଃ ।

''ହଉ, ଐଶ୍ୱର୍ଯ୍ୟ ଗର୍ବରେ ମତ୍ତ ହୋଇ ମୋତେ ଅପମାନ କଲ । ଦର୍ଶନ ଦେଲ ନାହିଁ । କିନ୍ତୁ ଜାଣିରଖ, ନାସ୍ତିକ ବୌଦ୍ଧମାନଙ୍କଠାରୁ ମୁଁ ହିଁ ତୁମକୁ ରକ୍ଷା କରୁଚି । ସଙ୍ଗେ ସଙ୍ଗେ କବାଟ ଖୋଲିଗଲା ।''

ପ୍ରେମ ଭକ୍ତି ହିଁ ଶ୍ରେଷ୍ଠ ଭକ୍ତି । ଭକ୍ତିର ପ୍ରକାର ଭେଦ ବୁଝାଇ ଭଗବାନ କପିଳ ମାତା ଦେବହୂତିଙ୍କୁ ତୃତୀୟ ସ୍କନ୍ଧରେ କହୁଛନ୍ତି-- ଚାରି ପ୍ରକାର ଭକ୍ତ ଅଛନ୍ତି । ଭେଦଦର୍ଶୀ କ୍ରୋଧୀ ବ୍ୟକ୍ତି ହୃଦୟରେ ରାଗ-ଦ୍ୱେଷ ରଖି ଭଗବାନଙ୍କୁ ଭକ୍ତି କରେ । ଏ ହେଉଚି ତାମସୀ ଭକ୍ତି । ଯେଉଁ ବ୍ୟକ୍ତି ବିଷୟର କାମନା, ଯଶ ଓ ଐଶ୍ୱର୍ଯ୍ୟର ଅଭିଳାଷରେ ଭଗବାନଙ୍କୁ ଭକ୍ତି କରେ, ଭେଦ ଭାବରେ ରାମ, କୃଷ୍ଣ, କାଳୀ ଦୁର୍ଗା ଆଦିଙ୍କର ପୂଜା କରେ ତାର ଭକ୍ତି ହେଉଚି ରାଜସୀ ଭକ୍ତି । ଯେଉଁ ଭକ୍ତ ମୁକ୍ତିପାଇଁ ପରମାତ୍ମାଙ୍କୁ ସବୁ ଅର୍ପଣ କରି କର୍ତ୍ତବ୍ୟଭାବନାରେ କାର୍ଯ୍ୟ କରେ, ସେ ହେଉଚି ସାତ୍ତ୍ୱିକ ଭକ୍ତ । କିନ୍ତୁ ଯେଉଁ ଭକ୍ତ ନିଷ୍କାମ ଭାବରେ ଅନନ୍ୟ ପ୍ରେମରେ ଭଗବାନଙ୍କଠାରେ ନିଜକୁ ସମର୍ପଣ କରିଦିଏ, ଭଗବାନଙ୍କ ଛଡ଼ା ଆଉ କିଛି କାମନା କରେ ନାହିଁ, ସେ ହେଉଚି ଶ୍ରେଷ୍ଠ ଭକ୍ତ ।

ରାମାୟଣରେ ଅତି ସରଳ ମାର୍ଗରେ ଭକ୍ତ ଭଗବାନଙ୍କୁ ଲାଭ କରିପାରେ ବୋଲି କୁହାଯାଇଚି । ବିଭୀଷଣ ଯେତେବେଳେ ରାମଚନ୍ଦ୍ରଙ୍କର ଶରଣ ନେଲେ ସେ ତାଙ୍କୁ ଗ୍ରହଣ କରିବେ କି ନାହିଁ ଏହି ପ୍ରଶ୍ନ ଉଠିଲା । ରାମଚନ୍ଦ୍ର କହିଲେ--

ସକୃଦେବ ପ୍ରପନ୍ନାୟ ତବାସ୍ମୀତି ଚ ଯାଚତେ
ଅଭୟଂ ସର୍ବଭୂତେଭ୍ୟୋ ଦଦାମ୍ୟେତଦ୍ ବ୍ରତଂ ମମ ।

ବେଳେବେଳେ ଭକ୍ତ ଭଗବାନଙ୍କଠାରୁ ବଳିଯାଇ ବଡ଼ କାମକରେ ଏବଂ ତାଙ୍କୁ ମଧ୍ୟ ଭଗବତ୍ ପଦବୀ ମିଳିଯାଏ । ଶ୍ରୀ ରାମକୃଷ୍ଣ ପରମହଂସ କହିଛନ୍ତି, ଲଙ୍କାକୁ ଯିବାପାଇଁ ରାମଚନ୍ଦ୍ରଙ୍କୁ ସମୁଦ୍ରରେ ବନ୍ଧ ବାନ୍ଧିବାପାଇଁ ହୋଇଥିଲା । କିନ୍ତୁ 'ଜୟ ରାମ' କହି ହନୁମାନ ସାଗର ଲଙ୍ଘନ କରିଥିଲେ ।

ଭାଗବତର ଏକାଦଶ ସ୍କନ୍ଧରେ ଭଗବାନ ଉତ୍ତମ ଭକ୍ତର ଲକ୍ଷଣ କହୁଛନ୍ତି । ଯେ ସମସ୍ତ ପ୍ରାଣୀଙ୍କ ମଧ୍ୟରେ ନିଜକୁ ଓ ଈଶ୍ୱରଙ୍କୁ ଦର୍ଶନ କରେ, ଇନ୍ଦ୍ରିୟମାନଙ୍କଦ୍ୱାରା ବିଷୟମାନ ଗ୍ରହଣ କରୁଥିଲେ ମଧ୍ୟ ଅନାସକ୍ତ ରହେ, ହୃଦୟରେ ଆନନ୍ଦ ଓ

ପ୍ରତିକୂଳ ବିଷୟରେ ବିଷାଦ ଅନୁଭବ କରେ ନାହିଁ ଏବଂ ଏ ଦୁଇଟି ଅବସ୍ଥା ଭଗବାନଙ୍କ ମାୟା ବୋଲି ଜାଣେ, ଜନ୍ମ-ମରଣ, ଡର-ଭୟ, କ୍ଷୁଧା-ତୃଷା ଆଦି ଯାହାକୁ ବିଚଳିତ କରେ ନାହିଁ, ଯାହାର ଜାତିଧର୍ମର ଅଭିମାନ ନ ଥାଏ, ଆପଣା ପରର ଭେଦ ନ ଥାଏ, ସବୁବେଳେ ଶାନ୍ତିରେ ରହେ, ସେ ହେଉଚି ଭଗବାନଙ୍କର ଶ୍ରେଷ୍ଠ ଭକ୍ତ । **'ସ ବୈ ଭାଗବତୋତ୍ତମଃ'** ।

ଭଗବତ୍‌ଗୀତାର ଦ୍ୱାଦଶ ଅଧ୍ୟାୟ ୧୮-୧୯ ଶ୍ଳୋକରେ ଭଗବାନ ଅର୍ଜୁନଙ୍କୁ ସେହି କଥା କହୁଛନ୍ତି-

**ସମଃ ଶତ୍ରୌ ଚ ମିତ୍ରେ ଚ ତଥା ମାନାପମାନୟୋଃ**
**ଶୀତୋଷ୍ଣସୁଖଦୁଃଖେଷୁ ସମଃ ସଙ୍ଗବିବର୍ଜିତଃ ॥**
**ତୁଲ୍ୟନିନ୍ଦାସ୍ତୁତିର୍ମୌନୀ ସନ୍ତୁଷ୍ଟଃ ଯେନକେନଚିତ୍**
**ଅନିକେତଃ ସ୍ଥିରମତିର୍ଭକ୍ତିମାନ୍ ମେ ପ୍ରିୟୋ ନରଃ ॥**

''ଯାହା ନିକଟରେ ଶତ୍ରୁ-ମିତ୍ର, ମାନ-ଅପମାନ, ଶୀତ-ଉଷ୍ଣ, ସୁଖ-ଦୁଃଖ ସମାନ, ଯେ ସଙ୍ଗହୀନ ବା ଅନାସକ୍ତ, ନିନ୍ଦା-ସ୍ତୁତି ଉଭୟରେ ଯାହାର କିଛି ଯାଏ ଆସେ ନାହିଁ, ଯେ ବେଶୀ କଥାଭାଷା କରେ ନାହିଁ, ଯାହା ମିଳେ ସେଥିରେ ସନ୍ତୁଷ୍ଟ ରହେ, କୌଣସି ଗୋଟିଏ ସ୍ଥାନରେ ଯେ ସବୁବେଳେ ରହେ ନାହିଁ, ଯେ ସ୍ଥିର ଚିତ୍ତ, ମୋର ଏକାନ୍ତ ଭକ୍ତ ସେହି ବ୍ୟକ୍ତି ହିଁ ମୋର ପ୍ରିୟ ।''

ଶ୍ରୀ ଚୈତନ୍ୟ ପ୍ରକୃତ ବୈଷ୍ଣବ ଭକ୍ତ ସମ୍ପର୍କରେ କହିଥିଲେ ଯେ ନିଜକୁ ଘାସଠାରୁ ନୀଚ, ବୃକ୍ଷପରି ସହିଷ୍ଣୁ ଓ ଯେଉଁମାନେ ସମାଜରେ ସମ୍ମାନ ପାଆନ୍ତି ନାହିଁ, ସେମାନଙ୍କୁ ମାନ ଦେବା ବ୍ୟକ୍ତି ପ୍ରକୃତ ଭକ୍ତ । ସେ ସର୍ବଦା ଶ୍ରୀହରିଙ୍କର କୀର୍ତ୍ତନ କରିବାପାଇଁ ଯୋଗ୍ୟ ।

**ତୃଣାଦପି ସୁନୀଚେନ ତରୋରିବ ସହିଷ୍ଣୁନା**
**ଅମାନିନାଂ ମାନଦେନ କୀର୍ତ୍ତନୀୟୋ ସଦା ହରିଃ ।**

ଶ୍ରୀ ଚୈତନ୍ୟ ସନାତନ ଗୋସ୍ୱାମୀଙ୍କୁ କଳିଯୁଗରେ ପ୍ରେମଭକ୍ତିର ସାଧନାପାଇଁ ପାଞ୍ଚୋଟି କଥାର ଉପଦେଶ ଦେଇଛନ୍ତି--

**ସତ୍‌ସଙ୍ଗ, କୃଷ୍ଣସେବା, ଭାଗବତ, ନାମ, ବ୍ରଜେବାସ**
**ଏହି ପଞ୍ଚ ସାଧନ ପ୍ରଧାନ ।**
**ଏଇ ପଞ୍ଚମଧ୍ୟେ ଏକ ସ୍ୱଳ୍ପ ଯଦି ହୟ, ସୁବୁଦ୍ଧି ଜନେର**
**ହୟ କୃଷ୍ଣ ପ୍ରେମୋଦୟ ॥**
(ଶ୍ରୀ ଚୈତନ୍ୟ ଚରିତାମୃତ)

ସତ୍‌ସଙ୍ଗ ହେଉଚି ଭକ୍ତିପଥର ସହାୟକ । ଏହା ଭାଗବତସମେତ ସମସ୍ତ ଶାସ୍ତ୍ରରେ କୁହାଯାଇଚି । ଅସତ୍‌ସଙ୍ଗ ବା କୁସଙ୍ଗ ଘୋର ପତନ ଆଡ଼କୁ ଟାଣିନିଏ । ସତ୍‌ସଙ୍ଗ ହୃଦୟରେ ପରମ ଭକ୍ତିଭାବ ଜାଗ୍ରତ କରେ । ଶ୍ରୀ ଶଙ୍କରାଚାର୍ଯ୍ୟ କହିଛନ୍ତି - **କ୍ଷଣମିହ ସଜ୍ଜନସଙ୍ଗତିରେକା, ଭବତି ଭବାର୍ଣ୍ଣବତରଣେ ନୌକା ।**

ଦ୍ୱିତୀୟ ହେଉଚି କୃଷ୍ଣ-ସେବା, କୃଷ୍ଣ ମୂର୍ତ୍ତିର ପୂଜା ଓ ଆରାଧନା । ଚୈତନ୍ୟ ଶ୍ରୀଜଗନ୍ନାଥଙ୍କୁ କୃଷ୍ଣ ରୂପରେ ଦର୍ଶନ କରୁଥିଲେ ଏବଂ ସେଥିପାଇଁ ଜୀବନର ଶେଷ ଅଠର ବର୍ଷ ପୁରୀରେ କଟାଇଥିଲେ ।

ତୃତୀୟ ହେଉଚି ଭାଗବତ । ଭାଗବତକୁ ବୈଷ୍ଣବମାନେ ଶ୍ରେଷ୍ଠ ଗ୍ରନ୍ଥ ବୋଲି ମାନନ୍ତି । **ବୈଷ୍ଣବାନାଂ ପ୍ରିୟଂ** । ପୂର୍ବରୁ କୁହାଯାଇଚି ଭଗବାନ ଶ୍ରୀକୃଷ୍ଣ ପରମଧାମକୁ ଯିବାପରେ କଳିଯୁଗରେ ଭାଗବତ ଶାସ୍ତ୍ର ହିଁ ତାଙ୍କର ସ୍ଥାନ ଅଧିକାର କଲା । ନିତ୍ୟ ଭାଗବତର ପଠନ ପାଠନ ପ୍ରତ୍ୟେକ ସାଧକର କର୍ତ୍ତବ୍ୟ ।

ଚତୁର୍ଥ, ନାମ । ଶ୍ରୀ ଚୈତନ୍ୟ ନାମ ସଂକୀର୍ତ୍ତନକୁ ହିଁ ସବୁଠାରୁ ଅଧିକ ଗୁରୁତ୍ୱ ଦେଇଛନ୍ତି । ଭଗବାନଙ୍କୁ ଲାଭ କରିବାପାଇଁ ସତ୍ୟ, ତ୍ରେତା, ଓ ଦ୍ୱାପରରେ କଠୋର ତପସ୍ୟା କରିବାକୁ ପଡୁଥିଲା । ମାତ୍ର କଳିଯୁଗରେ ଜପ କରିବା, ଭଗବାନଙ୍କ ନାମ କୀର୍ତ୍ତନ କରିବାଦ୍ୱାରା ହିଁ ଶ୍ରେଷ୍ଠଭକ୍ତି ଜାତହୁଏ । ଭାଗବତର ଦ୍ୱାଦଶ ସ୍କନ୍ଧରେ କୁହାଯାଇଚି--

**ତଦେବ ରମ୍ୟଂ ରୁଚିରଂ ନବଂ ନବଂ**
**ତଦେବ ଶଶ୍ୱନ୍‌ମନସୋ ମହୋତ୍ସବମ୍**
**ତଦେବ ଶୋକାର୍ଣ୍ଣବଶୋଷଣଂ ନୃଣାଂ**
**ଯଦୁତ୍ତମଶ୍ଳୋକଯଶୋଽନୁଗୀୟତେ ।।**

ଭଗବାନଙ୍କ ଗୁଣାବଳୀର ବର୍ଣ୍ଣନ ମନୋହର, ରୁଚିର, ନିତ୍ୟ-ନବୀନ ଏବଂ ରସମୟ । ଏହା ସର୍ବଦା ଆନନ୍ଦ ଦିଏ ଓ ମନୁଷ୍ୟର ଶୋକରୂପକ ସମୁଦ୍ରକୁ ସୁଖାଇଦିଏ ।

'ବୃହନ୍‌ନାରଦୀୟ ପୁରାଣ'ରେ କୁହାଯାଇଚି--

**ହରେର୍ନାମ ହରେର୍ନାମ ହରେର୍ନାମୈବ କେବଳମ୍**
**କଲୌ ନାସ୍ତ୍ୟେବ ନାସ୍ତ୍ୟେବ ନାସ୍ତ୍ୟେବ ଗତିରନ୍ୟଥା ।**

ପଞ୍ଚମ, ତୀର୍ଥବାସ । ଭାରତବର୍ଷରେ ମହାନ୍ ତୀର୍ଥମାନଙ୍କର ଅଭାବ ନାହିଁ । ଭାରତର ଗୋଟିଏ ଗୋଟିଏ ଅଞ୍ଚଳରେ କୌଣସି ନା କୌଣସି ପ୍ରସିଦ୍ଧ ତୀର୍ଥ ରହିଚି । ପୂର୍ବରୁ ବାନପ୍ରସ୍ଥ ବ୍ରତର ଆଚରଣ କରାଯାଉଥିଲା । ବର୍ତ୍ତମାନ ବନ ଆଉ ନାହିଁ । ସବୁ ଶେଷ ହେବା ଉପରେ । ତେଣୁ ତୀର୍ଥ ସ୍ଥାନରେ ଜୀବନ କଟାଇବା ଉପରେ ଜୋର ଦିଆଯାଉଚି । '**ତୃ**' ଧାତୁରୁ ତୀର୍ଥ ଶବ୍ଦ ଆସିଚି । ତରଣ କରିବା-ଯେଉଁ ସ୍ଥାନ ମନୁଷ୍ୟକୁ ଭବଭୟରୁ ତାରଣ କରିପାରେ ଓ ମାନସିକ ଶାନ୍ତି ଦେଇପାରେ ।

ଭାଗବତ ହେଉଚି ସରଳ ପ୍ରେମମାର୍ଗର ଗ୍ରନ୍ଥ । ଭକ୍ତିଶାସ୍ତ୍ରରେ ଏହା ସହିତ କୌଣସି ତୁଳନୀୟ ଗ୍ରନ୍ଥ ନାହିଁ ।

## ଅନୁବାଦ ଓ ନିଜ କଥା

ଭାଗବତ ପରି ଉଚ୍ଚକୋଟୀର ଭକ୍ତି ଗ୍ରନ୍ଥ ପୃଥିବୀର ବହୁ ଭାଷାରେ ଅନୂଦିତ ହୋଇଚି ଏବଂ ଏପରି କୌଣସି ପ୍ରଧାନ ଭାରତୀୟ ଭାଷା ନାହିଁ, ଯେଉଁଥିରେ ଏହାର ଅନୁବାଦ ପ୍ରକାଶ ପାଇ ନାହିଁ ।

ଇଂରେଜୀ ଭାଷାରେ ତ ଏହାର ବହୁ ଅନୁବାଦ ହୋଇଚି ଓ ଏବେ ମଧ୍ୟ ହେଉଚି । କିନ୍ତୁ ପ୍ରଥମ ଅନୁବାଦର ଶ୍ରେୟ ଯଦି କାହାକୁ ଯାଏ, ତା'ହେଲେ ସେ ଇଷ୍ଟ ଇଣ୍ଡିଆ କମ୍ପାନୀର ଜଣେ ଡିରେକ୍ଟର ଓ ଭାରତର ପ୍ରଥମ ଗଭର୍ଣ୍ଣର ଜେନେରାଲ ୱାରେନ୍ ହେଷ୍ଟିଂସ୍ । କଂପାନୀର ଭାରତରେ ବ୍ୟବସାୟ ବାଣିଜ୍ୟ ଓ ରାଜ୍ୟ ବିସ୍ତାର କାର୍ଯ୍ୟରେ ବ୍ୟସ୍ତ ଥାଇ ମଧ୍ୟ ତାଙ୍କୁ ହୁଏତ

ସେତେବେଳେ ଭାଗବତ ଶୁଣିବାର ସମୟ ଓ ସୁଯୋଗ ମିଳୁଥିଲା ଓ ଏହାର ଉଚ୍ଚକୋଟୀର ଭାବନାରେ ପ୍ରଭାବିତ ହୋଇ ସେ ଏହାର ଇଂରାଜୀ ଅନୁବାଦରେ ହାତ ଦେଇଥିଲେ । ଭାଗବତର ଅନୁବାଦ କରି ସେ କହିଥିଲେ--ଏହାର କଳ୍ପନାର ଚମତ୍କାରିତା ଓ ଉଚ୍ଚକୋଟୀର ବିଚାରଧାରା ଯେଉଁ ଶିଖର ଦେଶରେ ପହଞ୍ଚିଯାଇଚି, ତାହା ଆମର (ପାଶ୍ଚାତ୍ୟଲୋକଙ୍କର) ଚିନ୍ତାଧାରାର ବହୁ ଉର୍ଦ୍ଧ୍ୱରେ ଏବଂ ତାହା ଅବଧାରଣା କରିବା ଆମପକ୍ଷରେ କଷ୍ଟକର । (Its ornament of fancy unsuited to our taste and passages elevated to a tract of sublimity into which our habits of judgement will find it difficult to persue them.) ସଂସ୍କୃତ ସାହିତ୍ୟର ଐତିହାସିକ ମାକ୍‌ଡୋନେଲଙ୍କ ମତରେ - ଅନ୍ୟ ଯେ କୌଣସି ପୁରାଣ ଅପେକ୍ଷା ଭାରତୀୟ ଜନମାନସ ଉପରେ ଭାଗବତର ପ୍ରଭାବ ଅଧିକ । (It exercises a more powerful influence on Indian mind than any other Purana.)

## ବୈଶ୍ୟ ଭାଗବତ

ଓଡ଼ିଶାର ଏକ ସନ୍ଧିକ୍ଷଣରେ ପ୍ରାୟ ପାଞ୍ଚଶ ବର୍ଷ ତଳେ ଜଗନ୍ନାଥ ଦାସ ଓଡ଼ିଆ ଭାଗବତ ରଚନା କଲେ । ଏହା ଏପରି ଜନପ୍ରିୟ ହେଲା ଯେ ବୈଷ୍ଣବଧର୍ମର ପ୍ରଚାର ସଙ୍ଗେ ସଙ୍ଗେ ଭାଗବତ ପୋଥି ଓଡ଼ିଶାର ଘରେ ଘରେ ଦେଖିବାକୁ ମିଳିଲା । ପୁରୀର ଅନତିଦୂରରେ ଏକ ଶାସନୀ ବ୍ରାହ୍ମଣ ପରିବାରରେ ଜଗନ୍ନାଥ ଦାସ ଜନ୍ମଗ୍ରହଣ କରିଥିଲେ । ସଂସ୍କୃତ ଭାଷାରେ ତାଙ୍କର ଅଗାଧ ଜ୍ଞାନ ଥିଲା ଏବଂ 'ଭକ୍ତି କଲ୍ପଲତା' ଆଦି ସେ ଅନେକ ସଂସ୍କୃତ ଗ୍ରନ୍ଥ ରଚନା କରିଥିଲେ । ମାତ୍ର ତାଙ୍କର ମାତା ସଂସ୍କୃତ ଜାଣି ନ ଥିଲେ । ଭାଗବତ ଶୁଣିବାପାଇଁ ତାଙ୍କର ପ୍ରବଳ ଆଗ୍ରହଥିବାଯୋଗୁଁ ଓଡ଼ିଆରେ ଭାଗବତ ଶୁଣିବାପାଇଁ ସେ ପୁଅଙ୍କୁ ଅନୁରୋଧ କଲେ । ମାତାଙ୍କ ଅନୁରୋଧରେ ଜଗନ୍ନାଥ ସଂସ୍କୃତ ଭାଗବତକୁ ଓଡ଼ିଆରେ ରଚନା କଲେ । କୃଷ୍ଣପ୍ରେମ ଓ ମାତାଙ୍କ ପ୍ରତି ଶ୍ରଦ୍ଧାଯୋଗୁଁ ନବାକ୍ଷରୀ ବୃତ୍ତରେ ଲିଖିତ ଜଗନ୍ନାଥ ଦାସଙ୍କ ଭାଗବତ ସରଳ, ମର୍ମସ୍ପର୍ଶୀ ଭାଷା ଓ ଉଚ୍ଚକୋଟୀର ଭାବଯୋଗୁଁ ଏକ ଅନନ୍ୟ ଗ୍ରନ୍ଥରେ ପରିଣତ ହେଲା । ନିଗମ କଳ୍ପତରୁର ଫଳ ସ୍ୱରୂପ ବ୍ୟାସକୃତ ଭାଗବତ ଯେପରି ଶୁକ ମୁଖରୁ ନିର୍ଗତ ହୋଇ ଅମୃତରସରେ ପରିଣତ ହୋଇଥିଲା, ସେହିପରି ଶ୍ରୀ ଜଗନ୍ନାଥ ଦାସଙ୍କ ମୁଖ ନିଃସୃତ ଭାଗବତ ଓଡ଼ିଆ ଜାତିକୁ ଅମୃତ ରସ ବିତରଣ କରିଥିଲା ।

ଓଡ଼ିଆରେ ଭାଗବତ ଲେଖି ଶ୍ରୀ ଜଗନ୍ନାଥ ଦାସଙ୍କୁ କମ୍ ଅପମାନ ସହିବାକୁ ପଡ଼ି ନ ଥିଲା । ଶାସନୀ ବ୍ରାହ୍ମଣମାନେ ଜଗନ୍ନାଥଙ୍କ ଭାଗବତର ନିନ୍ଦାକରି ଏହାକୁ ବୈଶ୍ୟ ଭାଗବତ ବୋଲି ଆଖ୍ୟା ଦେଇଥିଲେ ଏବଂ ଏହାକୁ ବର୍ଜନ କରିବାପାଇଁ ପରାମର୍ଶ ଦେଇଥିଲେ । ଏପରିକି ଜଗନ୍ନାଥ ଦାସଙ୍କୁ ଅପାଙ୍‌କ୍ତେୟ (ଅଜାତିଆ) ଘୋଷଣା କଲେ । ମାତ୍ର ମହାପୁରୁଷ ଜଗନ୍ନାଥ ଦାସ ସେଥିରେ ଆଦୌ ବିବ୍ରତ ହେଲେ ନାହିଁ । ସେ ବୈଷ୍ଣବ । ଅତି ବିନମ୍ର ଭାବରେ କହିଲେ --

**ପାମର ମୁହିଁ ହୀନଭାଷା**
**କେବଳ କୃଷ୍ଣରେ ଭରସା ।**

ଯେତେବେଳେ ପରାଧୀନତାର ଅନ୍ଧକାର ଘୋଟି ଆସି ଚାରି ଶହ ବର୍ଷ ଧରି ଓଡ଼ିଶାକୁ କବଳିତ କରିଥିଲା, ସେତେବେଳେ ଭାଗବତ ଟୁଙ୍ଗିରେ ମିଞ୍ଜି ମିଞ୍ଜି ହୋଇ ଜଳୁଥିବା ଦୀପ ଶିଖାର ଆଲୁଅ ହିଁ ଓଡ଼ିଆ ଜାତି ଓ ଓଡ଼ିଆ ଭାଷାକୁ ଆଲୋକିତ କରି ରଖିଥିଲା । ଯେତେବେଳେ ସାମରିକ ଶକ୍ତି ନିଃଶେଷ ପ୍ରାୟ, ସେତେବେଳେ ଭକ୍ତିର ପାବନ ପ୍ରବାହ ।

ଜଗନ୍ନାଥ ଦାସଙ୍କ ଭାଗବତ ସଂସ୍କୃତ ଭାଗବତର ଆକ୍ଷରିକ ଅନୁବାଦ ନୁହେଁ । ଏହା ଭାବାନୁବାଦ । ଏହା ଆକ୍ଷରିକ ଅନୁବାଦ ହୋଇଥିଲେ ପଠନଯୋଗ୍ୟ ହୋଇ ନ ଥାନ୍ତା । ପରବର୍ତ୍ତୀ ଅନେକ କବି ଭାଗବତର ପଦ୍ୟାନୁବାଦ କରିଛନ୍ତି । ସେମାନଙ୍କ ମଧ୍ୟରେ ଦୀନବନ୍ଧୁ ଖାଡ଼ଙ୍ଗା ଅନ୍ୟତମ । ତାଙ୍କ ଭାଗବତକୁ 'ଖାଡଙ୍ଗା ଭାଗବତ' କୁହାଯାଏ । ମାତ୍ର ତାହା ଏପରି ଆକ୍ଷରିକ ହୋଇଛି ଯେ ମୂଳ ଭାଗବତଠାରୁ ତାହା ଅନେକ ସ୍ଥଳରେ ଅଧିକ କ୍ଲିଷ୍ଟ ଓ ଅବୋଧ୍ୟ ମନେହୁଏ । ସେହି ଦୃଷ୍ଟିରୁ ଭାଗବତର କେବଳ ଆକ୍ଷରିକ ଅନୁବାଦ ସମ୍ଭବ ହେଲେ ମଧ୍ୟ ଗ୍ରହଣୀୟ ନୁହେଁ ।

ବର୍ତ୍ତମାନ ଯୁଗରେ ଗଦ୍ୟ ପ୍ରତି ଆଗ୍ରହ ବଢ଼ିବା ସଙ୍ଗେ ସଙ୍ଗେ ଭାଗବତର ଗଦ୍ୟ ଅନୁବାଦର ଆବଶ୍ୟକତା ଅନୁଭୂତ ହୋଇଛି । ହିନ୍ଦୀ ଭାଷାରେ ଭାଗବତର ଗଦ୍ୟାନୁବାଦ ଗୀତା ପ୍ରେସ୍, ଗୋରଖପୁର ପ୍ରକାଶ କରିଛନ୍ତି । ସ୍ୱାମୀ ଅଖଣ୍ଡାନନ୍ଦ ସରସ୍ୱତୀଙ୍କ ରଚିତ ଏହି ଜନପ୍ରିୟ ପୁସ୍ତକ ଏକ ଭାବାନୁବାଦ । ଓଡ଼ିଆରେ ମଧ୍ୟ ସଂସ୍କୃତ ଶ୍ଳୋକ ସହ ଗୋଟିଏ ଦୁଇଟି ଗଦ୍ୟାନୁବାଦ ପ୍ରକାଶ ପାଇଛି ।

ରାମାୟଣ ଓ ମହାଭାରତ ରଚନା ପରେ ଏହାର ଜନପ୍ରିୟତା ଦେଖି ବହୁ ବନ୍ଧୁ ମୋତେ ଭାଗବତ ଲେଖିବାପାଇଁ ଅନୁରୋଧ କରିଥିଲେ । ବିଧିପ୍ରେରିତ ଭାବରେ ମୋ'ପାଇଁ ମଧ୍ୟ ଏକ ସମୟ ଓ ସୁଯୋଗ ଆସିଗଲା । ରାମାୟଣ ଓ ମହାଭାରତ ପରି ଭାଗବତର ସଂକ୍ଷିପ୍ତ ସାର ଲେଖିବାକୁ ହେଲେ ସମଗ୍ର ସଂସ୍କୃତ ଭାଗବତକୁ ଅଧ୍ୟୟନ କରିବାକୁ ହେବ । ଅଠର ହଜାର ଶ୍ଳୋକ ସହିତ ଏହା ଏକ ବିଶାଳ ଗ୍ରନ୍ଥ । ମୁଁ ଏହାର ଅଧ୍ୟୟନ କରିବାବେଳେ ଅନୁଭବ କଲି, ସଂକ୍ଷିପ୍ତ ସାର ପରିବର୍ତ୍ତେ ଏହାର ଗଦ୍ୟାନୁବାଦ କରି ଖଣ୍ଡେ ବହି ଆକାରରେ ପ୍ରକାଶ କରିବା ଠିକ୍ ହେବ । ମୁଁ ଡାକିଲି ଏବଂ ଲେଖିବା କାର୍ଯ୍ୟରେ ଡକ୍ଟର ଗୋବିନ୍ଦ ଭୂୟାଁ ସହାୟତା କଲେ । ପ୍ରୁଫ୍ ସଂଶୋଧନ କାର୍ଯ୍ୟରେ ଭାଗବତପ୍ରେମୀ ଅଧ୍ୟାପକ ପଣ୍ଡିତ ରଙ୍ଗାଧର ଷଡ଼ଙ୍ଗୀଙ୍କର ସାହାଯ୍ୟ ଉଲ୍ଲେଖନୀୟ । ଅତି ସୁଲଭ ମୂଲ୍ୟରେ ଏହା କିପରି ଲୋକଙ୍କ ପାଖରେ ପହଞ୍ଚାଇବାକୁ ହେବ, ସେଥିପାଇଁ 'ଆମ ଓଡ଼ିଶା' ଏହାର ପ୍ରକାଶନ ଓ ପ୍ରସାରର ଦାୟିତ୍ୱ ଏବଂ ଛାପା କାଗଜ ସାହାଯ୍ୟକରି ଲକ୍ଷ୍ମୀପତ୍ ସିଂହାଣିଆ ଏଜୁକେଶନ ଫାଉଣ୍ଡେସନ, ନୂଆଦିଲ୍ଲୀ ଆମର ଧନ୍ୟବାଦାର୍ହ ହୋଇଛନ୍ତି ।

ମୁଁ ପୂର୍ବରୁ କହିଛି ଯେ ଅନୁବାଦ କେବଳ ଆକ୍ଷରିକ ହେବା ଠିକ୍ ନୁହେଁ । ଯଥାସମ୍ଭବ ଆକ୍ଷରିକ ହେବା ସଙ୍ଗେ ସଙ୍ଗେ ଅନେକ କ୍ଲିଷ୍ଟ ଶ୍ଳୋକ କ୍ଷେତ୍ରରେ ଏହାର ଭାବାନୁବାଦ କରାଯାଇଛି । ଶ୍ରୀ ଜଗନ୍ନାଥଙ୍କର ଅପାର କରୁଣା ନ ଥିଲେ ଏହା କେବେ ସମ୍ପୂର୍ଣ୍ଣ ହୋଇ ନ ଥାନ୍ତା । ତେଣୁ ଗଙ୍ଗାଜଳରେ ଗଙ୍ଗାଙ୍କ ପୂଜା କରିବାପରି ତାଙ୍କର ଲୀଳାପୂର୍ଣ୍ଣ ଏହି ଗ୍ରନ୍ଥ ତାଙ୍କୁ ହିଁ ଅର୍ପଣ କରିଚି । ପାଠକ ଜନସାଧାରଣଙ୍କ ମଧ୍ୟରେ ଏହା ଆଦୃତ ହେଲେ ନିଜର ଶ୍ରମ ସାର୍ଥକ ମନେକରିବି ।

**ଜନ୍ମାଷ୍ଟମୀ, ୨୦୦୩**

**ଜାନକୀବଲ୍ଲଭ ପଟ୍ଟନାୟକ**

# ସୂଚିପତ୍ର

| ଅଧ୍ୟାୟ | ବିଷୟ | ପୃଷ୍ଠା |
|---|---|---|
| ୭୬ | ଶାଲ୍ୱର ଦ୍ୱାରକା ଆକ୍ରମଣ | ୭୯୯ |
| ୭୭ | ଶାଲ୍ୱ ବଧ | ୮୦୧ |
| ୭୮ | ଦନ୍ତବକ୍ତ୍ରର ନିଧନ | ୮୦୩ |
| ୭୯ | ବଲ୍ୱଳ ବଧ ଓ ବଳରାମଙ୍କ ତୀର୍ଥଯାତ୍ରା | ୮୦୫ |
| ୮୦ | ସୁଦାମା ପ୍ରସଙ୍ଗ | ୮୦୭ |
| ୮୧ | ସୁଦାମାଙ୍କ ଦାରିଦ୍ର୍ୟଭଂଞ୍ଜନ | ୮୦୯ |
| ୮୨ | ଗୋପଗୋପୀଙ୍କ ସହିତ କୃଷ୍ଣ ବଳରାମଙ୍କର ଭେଟ | ୮୧୨ |
| ୮୩ | ଶ୍ରୀକୃଷ୍ଣଙ୍କ ପାଟରାଣୀମାନଙ୍କ ସହିତ ଦ୍ରୌପଦୀ | ୮୧୫ |
| ୮୪ | ବସୁଦେବଙ୍କ ଯଜ୍ଞ | ୮୧୮ |
| ୮୫ | ଦେବକୀଙ୍କ ମୃତ ପୁତ୍ରମାନେ ଫେରିଆସିଲେ | ୮୨୨ |
| ୮୬ | ସୁଭଦ୍ରା ହରଣ | ୮୨୬ |
| ୮୭ | ବେଦସ୍ତୁତି | ୮୨୯ |
| ୮୮ | ଶିବଙ୍କର ସଙ୍କଟ | ୮୩୫ |
| ୮୯ | ମୃତ ବ୍ରାହ୍ମଣବାଳକ ଫେରିଆସିଲେ | ୮୩୭ |
| ୯୦ | ଦ୍ୱାରକାପୁରୀରେ ଶ୍ରୀକୃଷ୍ଣଙ୍କ ବିହାର | ୮୪୧ |
| | **ଏକାଦଶ ସ୍କନ୍ଧ** | ୮୪୫-୯୨୮ |
| ୧ | ଯଦୁବଂଶୀମାନଙ୍କୁ ଋଷିମାନଙ୍କର ଅଭିଶାପ | ୮୪୫ |
| ୨ | ରାଜା ଜନକଙ୍କର କିମ୍ବଦନ୍ତୀ | ୮୪୬ |
| ୩ | ମାୟା, ବ୍ରହ୍ମ, କର୍ମଯୋଗ | ୮୫୦ |
| ୪ | ଭଗବାନଙ୍କ ଅବତାର ବର୍ଣ୍ଣନା | ୮୫୪ |
| ୫ | ଭଗବାନଙ୍କ ପୂଜାବିଧି | ୮୫୬ |
| ୬ | ସ୍ୱଧାମକୁ ଫେରିଯିବାପାଇଁ ଭଗବାନଙ୍କୁ ପ୍ରାର୍ଥନା | ୮୫୯ |
| ୭ | ଅବଧୂତ ଉପାଖ୍ୟାନ | ୮୬୨ |
| ୮ | ପୁଣି ଅବଧୂତ ଉପାଖ୍ୟାନ | ୮୬୬ |
| ୯ | ପୁଣି ଅବଧୂତ ଉପାଖ୍ୟାନ | ୮୬୯ |
| ୧୦ | ଭୋଗର ଅସାରତା | ୮୭୧ |
| ୧୧ | ବଦ୍ଧ ଓ ମୁକ୍ତ ଜୀବଙ୍କର ଲକ୍ଷଣ | ୮୭୩ |
| ୧୨ | ସତ୍ସଙ୍ଗ | ୮୭୬ |
| ୧୩ | ହଂସଗୀତି | ୮୭୮ |
| ୧୪ | ଭକ୍ତିଯୋଗ ଓ ଧ୍ୟାନବିଧି | ୮୮୦ |

# ପ୍ରଥମ ସ୍କନ୍ଧ

## ପ୍ରଥମ ଅଧ୍ୟାୟ

## ଶୌନକାଦି ଋଷିଙ୍କର ସୂତଙ୍କୁ ପ୍ରଶ୍ନ

ଯେ ଜଗତର ଆଦିମୂଳ; ପ୍ରତ୍ୟକ୍ଷ, ପରୋକ୍ଷ ସମସ୍ତ ବିଷୟର ଜ୍ଞାତା; ଯେ ସ୍ୱୟଂସିଦ୍ଧ; ଆଦିକବି ବେଦଜ୍ଞ ବ୍ରହ୍ମାଙ୍କ ହୃଦୟରେ ଯେ ବେଦର ଜ୍ଞାନ ପ୍ରକଟ କରିଥିଲେ; ମୁନିଋଷିମାନେ ଯାହାଙ୍କ ସ୍ୱରୂପ ଜାଣିବାପାଇଁ ଭ୍ରମିତ ହୁଅନ୍ତି; ତେଜ, ଜଳ ଓ ମୃତ୍ତିକା ପରସ୍ପର ଯୋଗରେ ଭିନ୍ନ ରୂପ ଧାରଣ କରିବା ପରି ଏହି ତ୍ରିଗୁଣାତ୍ମକ ସୃଷ୍ଟି ଯାହାଙ୍କ ଯୋଗେ ବାସ୍ତବ ବୋଲି ମନେହୁଏ; ସ୍ୱଧାମରେ ସଦା ବିଦ୍ୟମାନ କପଟରହିତ ସେହି ପରମ ସତ୍ୟଙ୍କୁ ମୁଁ ଧ୍ୟାନ କରୁଛି ॥୧॥ ମହାମୁନି ବ୍ୟାସଙ୍କ କୃତ ଏହି ଭାଗବତରେ କଥିତ ଧର୍ମ ସମସ୍ତ କପଟଧର୍ମରୁ ପୃଥକ୍ ଶ୍ରେଷ୍ଠ ଧର୍ମରୂପେ ପରିଚିତ । ଯେଉଁ ସଜ୍ଜନମାନେ ନିର୍ମଳହୃଦୟ, ପରନିନ୍ଦା ବା ଈର୍ଷା କରନ୍ତି ନାହିଁ, ସେମାନେ ଏହି ଗ୍ରନ୍ଥ ପାଠ କଲେ ସମସ୍ତ କାମନା ବାସନାକୁ ଦୂରେଇଦେଇ ପରମ ଆନନ୍ଦ ଲାଭ କରିପାରିବେ । ଅନ୍ୟ ଗ୍ରନ୍ଥ ଶୁଣି କି ଲାଭ ? ଭାଗବତ ଗ୍ରନ୍ଥ ମନ ଦେଇ ଶୁଣିଲେ, ଶୁଣିବା ବ୍ୟକ୍ତିଙ୍କ ହୃଦୟରେ ଈଶ୍ୱର ବାନ୍ଧିହୋଇ ରହିଯାଆନ୍ତି ॥୨॥ ବେଦରୂପ କଳ୍ପବୃକ୍ଷର ଫଳ ଶୁକ (ମୁନିଶ୍ରେଷ୍ଠ ଶୁକଦେବ)ଙ୍କ ମୁହଁରୁ ଅମୃତ ରସରୂପରେ ଝରି ପଡୁଛି, ଏହି ଭାଗବତ ଗ୍ରନ୍ଥରେ । ରସିକ, ଭାବୁକମାନେ ସେହି ଭାଗବତ ରସକୁ ବାରମ୍ବାର ପାନ କରନ୍ତୁ ॥୩॥

ବିଷ୍ଣୁକ୍ଷେତ୍ର ନୈମିଷାରଣ୍ୟରେ ଶୌନକ ପ୍ରଭୃତି ଋଷିମାନେ ସ୍ୱର୍ଗଲୋକ ପ୍ରାପ୍ତି କାମନା କରି ହଜାର ବର୍ଷ ଧରି ସତ୍ରନାମକ ଏକ ଯଜ୍ଞ କରିବାପାଇଁ ଏକତ୍ର ହୋଇଥିଲେ ॥୪॥ ଏକଦା ମୁନିମାନେ ପ୍ରାତଃକାଳରେ ଅଗ୍ନିରେ ଆହୁତି ଦାନ ଆଦି ଶେଷ କରି ସେଠାକୁ ଆସିଥିବା ସୂତ ମୁନିଙ୍କୁ ଯଥାବିଧି ସତ୍କାରପୂର୍ବକ ଆସନ ଦେଇ ଶ୍ରଦ୍ଧାରେ ପଚାରିଲେ ॥୫॥ ଋଷିମାନେ କହିଲେ, ହେ ନିଷ୍ପାପ ! ତୁମେ ସମସ୍ତ ପୁରାଣ ଓ ଇତିହାସ ବ୍ୟାଖ୍ୟା କରିଛ । ତୁମେ ସମସ୍ତ ଧର୍ମଶାସ୍ତ୍ରକୁ ଅଧ୍ୟୟନ କରିଛ ॥୬॥ ବେଦଜ୍ଞମାନଙ୍କ ମଧ୍ୟରେ ଶ୍ରେଷ୍ଠ ଭଗବାନ୍ ବ୍ୟାସଦେବ ଯାହା ଜାଣନ୍ତି, ଅନ୍ୟ ବ୍ରହ୍ମଜ୍ଞ ଋଷିମାନେ ଯାହା ଜାଣନ୍ତି, ହେ ସୌମ୍ୟ ! ଜଣେ ଶ୍ରଦ୍ଧାବାନ୍ ଶିଷ୍ୟ ଭାବରେ ସେମାନଙ୍କ ଅନୁଗ୍ରହରୁ ସେ ସମସ୍ତ ଗୋପନୀୟ ତଥ୍ୟ ଗୁରୁଶିଷ୍ୟ ପରମ୍ପରାରେ ତୁମକୁ ବିଦିତ ଅଛି ॥୭-୮॥ ହେ ଆୟୁଷ୍ମାନ୍ ! ତୁମେ ଜାଣିଥିବା ସେ ସମସ୍ତ ବିଷୟରୁ ଜନସାଧାରଣଙ୍କର ଏକାନ୍ତ ମଙ୍ଗଳପାଇଁ ଯାହା ଜାଣିବା ଆବଶ୍ୟକ, ତାହା ସରଳ ଭାବରେ ଆମ୍ଭମାନଙ୍କୁ ବୁଝାଇଦିଅ ॥୯॥ ସୁଧୀବର ! ଏହି କଳିଯୁଗରେ ଲୋକମାନେ ପ୍ରାୟ ଅଳ୍ପାୟୁଷ, ମନ୍ଦ, ମନ୍ଦମତି, ମନ୍ଦଭାଗ୍ୟ ଏବଂ ନାନା ଉପଦ୍ରବରେ ପୀଡ଼ିତ ॥୧୦॥ ଶାସ୍ତ୍ର ବହୁତ ଓ ସେଥିରେ ବହୁକର୍ମ କରିବାର ଉପଦେଶ ଦିଆଯାଇଛି । ତେଣୁ ହେ ସାଧୁ ! ଶାସ୍ତ୍ରମାନଙ୍କ ମଧ୍ୟରେ ଯାହା ସାର ବୋଲି ଆପଣ ଚିନ୍ତା କରୁଛନ୍ତି, ତାହା ଉଦ୍ଧାର କରି ଆମ୍ଭମାନଙ୍କୁ କହନ୍ତୁ । ଆମେ ଶ୍ରଦ୍ଧାର ସହିତ ଶୁଣି ଆତ୍ମସନ୍ତୋଷ ଲାଭ କରିପାରିବୁ ॥୧୧॥ ହେ ସୂତ ! ତୁମର ମଙ୍ଗଳ ହେଉ । କେଉଁ ଉଦ୍ଦେଶ୍ୟରେ ଭକ୍ତରକ୍ଷକ ଭଗବାନ ଦେବକୀଙ୍କ ଗର୍ଭରୁ ବସୁଦେବଙ୍କ ପୁତ୍ରରୂପେ ଜନ୍ମଗ୍ରହଣ କରିଥିଲେ, ତାହା ତୁମକୁ ଜଣାଅଛି ॥୧୨॥ ହେ ସୂତ ! ଯାହାଙ୍କ ଅବତାର ପ୍ରାଣୀମାନଙ୍କର ମଙ୍ଗଳ ଓ ଉତ୍‌ଥାନପାଇଁ, ତାଙ୍କ ଲୀଳା ଆମେ ଶୁଣିବାପାଇଁ ଉତ୍ସୁକ । ତୁମେ ତାହା ବର୍ଣ୍ଣନା କର ॥୧୩॥ ଘୋର ସଂସାରଦୁଃଖରେ ବିବଶ ବ୍ୟକ୍ତି ଯେଉଁ ନାମ ଉଚ୍ଚାରଣ କଲେ ସଙ୍ଗେ ସଙ୍ଗେ

ମୁକ୍ତି ପାଇଯାଏ, ସେହି ନାମକୁ ଭୟ ମଧ୍ୟ ଭୟ କରେ ॥୧୪॥ ଗଙ୍ଗାଜଳରେ ବାରମ୍ବାର ସ୍ନାନ କଲେ ଲୋକ ଯେଉଁ ପୁଣ୍ୟ ଲାଭ କରେ, ଈଶ୍ୱରଙ୍କ ପାଦତଳେ ଆଶ୍ରିତ ନିଷ୍କାମ ମୁନିମାନଙ୍କର ସଂସ୍ପର୍ଶରେ ସେହି ପୁଣ୍ୟ ମିଳିଥାଏ ॥୧୫॥ କଳିକଲ୍ମଷରୁ ମୁକ୍ତି ପାଇବାପାଇଁ ପୁଣ୍ୟଶ୍ଳୋକ ଭଗବାନଙ୍କର ମହତ୍‌କର୍ମମାନଙ୍କୁ କିଏ ବା ଶୁଣିବାକୁ ଇଚ୍ଛା ନ କରିବ ? ॥୧୬॥ ସ୍ୱେଚ୍ଛାରେ ବିଭିନ୍ନ ଅବତାର ଗ୍ରହଣ କରିଥିବା ସେହି ଭଗବାନ୍‌ଙ୍କର ମହିମାମାନ ଋଷିମାନେ ବାରମ୍ବାର ଗାନ କରନ୍ତି । ଆମେ ଶ୍ରଦ୍ଧାର ସହିତ ତାହା ଶୁଣିବାପାଇଁ ଇଚ୍ଛୁକ । ତୁମେ ତାହା ବର୍ଣ୍ଣନା କର ॥୧୭॥ ଧୀମାନ୍, ଈଶ୍ୱର ଆତ୍ମମାୟାରେ ଯେଉଁ ଲୀଳା ରଚନା କରିଥିଲେ, ହରିଙ୍କର ସେହି ବିଭିନ୍ନ ମଙ୍ଗଳମୟ ଲୀଳାକଥା ତୁମେ ବ୍ୟାଖ୍ୟାନ କର ॥୧୮॥ ସେହି ପୁଣ୍ୟଶ୍ଳୋକ ହରିଙ୍କର କଥା ଯେତେ ଶୁଣିଲେ ମଧ୍ୟ ଆମର ତୃପ୍ତି ହୁଏ ନାହିଁ । କାରଣ ତାହା ଶୁଣିଲେ ରସଜ୍ଞ ବ୍ୟକ୍ତି ପଦେ ପଦେ ନୂଆ ନୂଆ ସ୍ୱାଦ ଅନୁଭବ କରେ ॥୧୯॥ ଭଗବାନ ଶ୍ରୀକୃଷ୍ଣ କପଟମାନବ ରୂପ ଧାରଣ କରି ବଳରାମଙ୍କ ସହିତ ଅତିମାନସ କାର୍ଯ୍ୟମାନ କରିଯାଇଛନ୍ତି ॥୨୦॥ କଳିଯୁଗ ଆସିଯାଇଛି ଜାଣି ଆମ୍ଭେମାନେ ଏହି ବୈଷ୍ଣବ କ୍ଷେତ୍ରରେ ବସିଛୁ, ଦୀର୍ଘକାଳ ଯଜ୍ଞସତ୍ରରେ ହରିକଥା ଶୁଣିବାପାଇଁ ॥୨୧॥ ଏହି କଳିଯୁଗ ମନୁଷ୍ୟର ସମସ୍ତ ସୁଗୁଣ ଅପହରଣ କରେ । ଏଣୁ ଦୁସ୍ତର ସମୁଦ୍ରରୂପୀ ଏହି ଘୋର କଳିକୁ ପାରି ହେବାପାଇଁ, ନାବିକରୂପେ ବିଧାତା ତୁମକୁ ଆମ ପାଖକୁ ପଠାଇଛନ୍ତି ॥୨୨॥ ଆମ୍ଭଙ୍କୁ କହ, ଧର୍ମରକ୍ଷକ ପରଂବ୍ରହ୍ମ ଯୋଗେଶ୍ୱର କୃଷ୍ଣ ସ୍ୱଧାମକୁ ଯିବା ପରେ ଧର୍ମ ଏବେ କାହାର ଆଶ୍ରୟରେ ରହିଛି ॥୨୩॥

## ଦ୍ୱିତୀୟ ଅଧ୍ୟାୟ

# ଭଗବତ୍ କଥା ଓ ଭଗବତ୍ ଭକ୍ତିର ମାହାତ୍ମ୍ୟ

ଋଷିମାନଙ୍କ ପ୍ରଶ୍ନରେ ରୋମହର୍ଷଣଙ୍କ ପୁତ୍ର ସୂତ ଆନନ୍ଦିତ ହୋଇ, ଯଥାମାନ୍ୟ ସେମାନଙ୍କ ପ୍ରଶ୍ନର ଉତ୍ତର ଦେବା ଆରମ୍ଭ କଲେ ॥୧॥ ସୂତ କହିଲେ ଯେ ଜନ୍ମହେବା ମାତ୍ରେ କୌଣସି ସଂସ୍କାର ବିନା ସନ୍ନ୍ୟାସୀ ହୋଇ ଗୃହ ତ୍ୟାଗ କଲେ; ବିରହକାତର ବ୍ୟାସଦେବ ଭାବବିହ୍ୱଳ ହୋଇ ଯାହାଙ୍କୁ ପୁତ୍ର ପୁତ୍ର ବୋଲି ଡାକିବାକୁ ଲାଗିଲେ ଓ ଅରଣ୍ୟରେ ବୃକ୍ଷମାନେ ତା'ର ପ୍ରତିଧ୍ୱନି କଲେ, ସମସ୍ତଙ୍କ ହୃଦୟରେ ଥିବା ସେହି ଶୁକଦେବଙ୍କୁ ମୁଁ ପ୍ରଣାମ କରୁଛି ॥୨॥ ଯେଉଁ ସଂସାରୀମାନେ ଘୋର ଅନ୍ଧକାର ମଧ୍ୟରେ ପାରି ହେବାର ବାଟ ଦେଖିପାରୁ ନାହାନ୍ତି, ସେମାନଙ୍କ ପ୍ରତି ଦୟାର୍ଦ୍ର ହୋଇ ସମସ୍ତ ଶାସ୍ତ୍ରର ସାର ଏହି ପୁରାଣର ଗୂଢ଼ତତ୍ତ୍ୱକୁ ଯେ ଆଧ୍ୟାତ୍ମିକତାର ଏକ ମହାନ୍ ପ୍ରଦୀପ ରୂପେ ପ୍ରଜ୍ୱଳିତ କଲେ, ମୁନିମାନଙ୍କର ଗୁରୁ ସେହି ବ୍ୟାସପୁତ୍ର ଶୁକଦେବଙ୍କର ମୁଁ ଶରଣ ନେଉଛି ॥୩॥ ମନୁଷ୍ୟମାନଙ୍କ ମଧ୍ୟରେ ଶ୍ରେଷ୍ଠ ନର-ନାରାୟଣ ଋଷିଙ୍କୁ, ଦେବୀ ସରସ୍ୱତୀଙ୍କୁ ଓ ବ୍ୟାସଙ୍କୁ ନମସ୍କାରପୂର୍ବକ ଏହି ଶାସ୍ତ୍ର ପାଠ କରାଯାଇଥାଏ ॥୪॥ ସୂତ କହିଲେ, ମୁନିବୃନ୍ଦ, ଆପଣମାନେ ମୋତେ ଏକ ଉତ୍ତମ ପ୍ରଶ୍ନ କରିଛନ୍ତି । କୃଷ୍ଣଙ୍କ ସମ୍ପର୍କୀୟ ଏହି ପ୍ରଶ୍ନ ଲୋକଙ୍କର ମଙ୍ଗଳକାରକ ଏବଂ ଏହା ଆତ୍ମାକୁ ପ୍ରସନ୍ନ କରାଇଥାଏ ॥୫॥ ବିଷ୍ଣୁଭକ୍ତି ହିଁ ମନୁଷ୍ୟର ଶ୍ରେଷ୍ଠ ଧର୍ମ । ସେହି ଅଚଳା ଓ ନିଷ୍କାମ ଭକ୍ତି ଆତ୍ମାକୁ ପ୍ରସନ୍ନ କରାଏ ॥୬॥ ଭଗବାନ୍ ବାସୁଦେବଙ୍କୁ ଏକାନ୍ତ ଭାବରେ ଭଜନ କଲେ, ନିଷ୍କାମ ତତ୍ତ୍ୱଜ୍ଞାନ ମିଳେ ଓ ବୈରାଗ୍ୟ ଜାତ ହୁଏ ॥୭॥ ମନୁଷ୍ୟ ବିଭିନ୍ନ ଧର୍ମାନୁଷ୍ଠାନ କରେ । ମାତ୍ର ସେଥିରେ ଭଗବତ୍ ପ୍ରୀତି ନଥିଲେ ତାହା ନିରର୍ଥକ କର୍ମରେ ପରିଣତ ହୁଏ ॥୮॥ ସବୁ ଧର୍ମାନୁଷ୍ଠାନର ଲକ୍ଷ୍ୟ ହେଉଛି ମୋକ୍ଷଲାଭ, ଅର୍ଥଲାଭ ନୁହେଁ । ଅର୍ଥ କେବଳ ଧର୍ମପାଇଁ । ଭୋଗ ବିଳାସ ଏହାର ଲକ୍ଷ୍ୟ ହୋଇ ନ ପାରେ ॥୯॥ ବିଷୟଭୋଗ, ଇନ୍ଦ୍ରିୟତୃପ୍ତି ଜୀବନର ଲକ୍ଷ୍ୟ ନୁହେଁ,

ତତ୍ତ୍ୱଜିଜ୍ଞାସା ଜୀବନର ଲକ୍ଷ୍ୟ ।।୧୦।। ବ୍ରହ୍ମ, ପରମାତ୍ମା ଓ ଭଗବାନ୍,-- ଏହି ନାମରେ ସେହି ଅଦ୍ୱିତୀୟ ଜ୍ଞାନକୁ ତତ୍ତ୍ୱଜ୍ଞମାନେ ତତ୍ତ୍ୱରୂପେ ନାମିତ କରିଥାନ୍ତି ।।୧୧।। ଏହି ଅଦ୍ୱିତୀୟ ତତ୍ତ୍ୱକୁ ମୁନି, ଜ୍ଞାନୀ ଓ ବୈରାଗୀମାନେ ନିଜ ଆତ୍ମାରେ ଦର୍ଶନ କରିପାରନ୍ତି, ଅନୁଭବ କରିପାରନ୍ତି ।।୧୨।। ତେଣୁ ହେ ଋଷିଗଣ ! ନିଜ ନିଜର ବର୍ଣ୍ଣ ଆଶ୍ରମ ଅନୁଯାୟୀ ଲୋକେ ଯେଉଁ ଧର୍ମାନୁଷ୍ଠାନ କରନ୍ତି, ସେଥିରେ ଈଶ୍ୱରଙ୍କର ସନ୍ତୋଷ ଏବଂ ତାହା ହିଁ ସେମାନଙ୍କର ପ୍ରକୃତ ସିଦ୍ଧି ।।୧୩।। ସେଥିପାଇଁ ନିରନ୍ତର ଏକ ମନରେ, ଏକ ଧ୍ୟାନରେ ଭକ୍ତବତ୍ସଳ ଭଗବାନଙ୍କର ପୂଜା, ଧ୍ୟାନ ଏବଂ ତାଙ୍କ ଲୀଳାଶ୍ରବଣ ଓ କୀର୍ତ୍ତନ କରାଯିବା ବାଞ୍ଛନୀୟ ।।୧୪।। ଯାହାଙ୍କୁ ଧ୍ୟାନ କରି କୋବିଦ ବା ପଣ୍ଡିତମାନେ ଖଡ୍ଗରେ ରଜ୍ଜୁକୁ ଛେଦନ କରିବାପରି କର୍ମ ବନ୍ଧନକୁ ଛେଦିବାପାଇଁ ସମର୍ଥ ହୁଅନ୍ତି, ତାଙ୍କ କଥା ଶୁଣିବାପାଇଁ କିଏ ବା ଇଚ୍ଛା ନ କରିବ ? ।।୧୫।। ହେ ଦ୍ୱିଜଗଣ ! ପବିତ୍ର ତୀର୍ଥମାନଙ୍କରେ ବାସ କରି ଶ୍ରଦ୍ଧାର ସହିତ ମହତ୍ ବ୍ୟକ୍ତିମାନଙ୍କର ସେବା ଶୁଶ୍ରୂଷାଦ୍ୱାରା କୃଷ୍ଣକଥାରେ ରୁଚି ଜାତ ହୁଏ ।।୧୬।। ଭଗବାନ ଶ୍ରୀକୃଷ୍ଣ ତାଙ୍କ ଲୀଳା ଶ୍ରବଣ ଓ କୀର୍ତ୍ତନ କରୁଥିବା ବ୍ୟକ୍ତିର ହୃଦୟରେ ରହି ତାହାର କାମନା ବାସନା ଆଦି ସମସ୍ତ ଅମଙ୍ଗଳ ବିନାଶ କରନ୍ତି ।।୧୭।। ନିରନ୍ତର ଭଗବତ୍ ଭକ୍ତମାନଙ୍କ ସେବା କରିବାଦ୍ୱାରା ସମସ୍ତ ଅଶୁଭ କାମନା ବାସନା ନଷ୍ଟ ହୋଇଯାଏ ଏବଂ ପୁଣ୍ୟଶ୍ଳୋକ ଭଗବାନଙ୍କଠାରେ ଅଚଳା ଭକ୍ତି ଜାତ ହୁଏ ।।୧୮।। ତାହେଲେ ଯାଇ କାମ ଲୋଭାଦି ରଜୋଗୁଣ ଓ ତମୋଗୁଣ ହୃଦୟକୁ ବଶୀଭୂତ କରିପାରେ ନାହିଁ ଓ ସତ୍ତ୍ୱଗୁଣର ପ୍ରଭାବରେ ଚିତ୍ତ ପ୍ରସନ୍ନ ହୁଏ ।।୧୯।। ଭଗବଦ୍ ଭକ୍ତିଯୋଗୁଁ ଏପରି ପ୍ରସନ୍ନଚେତା ବ୍ୟକ୍ତିର କୌଣସି ବସ୍ତୁରେ ଆସକ୍ତି ଜନ୍ମେ ନାହିଁ ଓ ସେ ପରମ ଭଗବତ୍ ତତ୍ତ୍ୱ ପ୍ରାପ୍ତ ହୁଏ ।।୨୦।। ହୃଦୟର ଅହଙ୍କାର ନଷ୍ଟ ହୁଏ, ସମସ୍ତ ସନ୍ଦେହ ଦୂର ହୁଏ ଏବଂ କର୍ମବନ୍ଧନ କ୍ଷୀଣ ହୋଇଯାଏ ।।୨୧।। ଏଥିପାଇଁ ପରମ ଆନନ୍ଦରେ ମନୀଷୀମାନେ ପ୍ରତିଦିନ କୃଷ୍ଣଙ୍କ ଠାରେ ଆତ୍ମନିବେଦନ କରିଥାନ୍ତି ।।୨୨।।

ସେହି ପରମ ପୁରୁଷ ଏକ ହେଲେ ମଧ୍ୟ ସତ୍ତ୍ୱ, ରଜ ଓ ତମ-ଏହି ତିନିଗୁଣରେ ଯୁକ୍ତ ହୋଇ ବ୍ରହ୍ମା, ବିଷ୍ଣୁ ଓ ଶିବ ସଂଜ୍ଞା ଗ୍ରହଣ କରନ୍ତି । ସେମାନଙ୍କ ମଧ୍ୟରେ ସତ୍ତ୍ୱ ଗୁଣଧାରୀ ଭଗବାନ ବିଷ୍ଣୁଙ୍କଠାରୁ ହିଁ ଶ୍ରେୟଲାଭ ହୋଇଥାଏ ।।୨୩।। ମୃତ୍ତିକାରୁ ଦାରୁ, ସେଥିରୁ ଧୂଆଁ ଓ ଧୂଆଁରୁ ନିଆଁ ଯେପରି ଶ୍ରେଷ୍ଠ, ସେହିପରି ସତ୍ତ୍ୱ, ରଜ, ତମ-ଏହି ତିନିଗୁଣ ମଧ୍ୟରୁ ସତ୍ତ୍ୱ ଗୁଣ ଶ୍ରେଷ୍ଠ ଏବଂ ଏହି ଗୁଣଦ୍ୱାରା ହିଁ ବ୍ରହ୍ମଦର୍ଶନ ସମ୍ଭବ ହୁଏ ।।୨୪।। ସେଥିପାଇଁ ପୂର୍ବରୁ ହିଁ ମୁନିମାନେ ଭଗବାନ ବିଷ୍ଣୁଙ୍କୁ ଭଜନ କରିଆସୁଛନ୍ତି ଏବଂ ବିଶ୍ୱର କଲ୍ୟାଣପାଇଁ ତାଙ୍କୁ ବିଶୁଦ୍ଧ ସତ୍ତ୍ୱ ରୂପରେ କଳ୍ପନା କରିଛନ୍ତି ।।୨୫।। ଘୋରରୂପୀ ଭୈରବାଦି ଭୂତଗଣଙ୍କ ଉପାସନା ନ କରି ମୁକ୍ତିକାମୀମାନେ ଶାନ୍ତିଦାତା ନାରାୟଣଙ୍କର ବିଭିନ୍ନ କଳା ବା ଅଂଶାବତାରମାନଙ୍କୁ ଭଜନ କରନ୍ତି ।।୨୬।। ରଜ ଓ ତମ ପ୍ରକୃତିର ଲୋକମାନେ ନିଜର ଧନ, ସମ୍ପଦ, ଐଶ୍ୱର୍ଯ୍ୟ ଓ ପୁତ୍ରସନ୍ତାନ ଆଦି ଲାଭପାଇଁ ପିତୃଗଣ, ଭୂତ, ପ୍ରେତ ଓ ବିଭିନ୍ନ ଅପଦେବତାଙ୍କୁ ଉପାସନା କରନ୍ତି ।।୨୭।। ତେଣୁ ମୋକ୍ଷପ୍ରାପ୍ତିପାଇଁ ବାସୁଦେବ କୃଷ୍ଣଙ୍କ ଛଡ଼ା ଅନ୍ୟ ଗତି ନାହିଁ । ସେ ହିଁ ବେଦ, ସେ ହିଁ ଯଜ୍ଞ, ସେ ହିଁ ଯୋଗ, ସେ ହିଁ କ୍ରିୟା, ସେ ହିଁ ଜ୍ଞାନ, ସେ ହିଁ ତପ ଏବଂ ସେ ହିଁ ଧର୍ମ ।।୨୮/୨୯।। ନିର୍ଗୁଣ ହେଲେ ମଧ୍ୟ ଭଗବାନ୍ ନିଜ ଗୁଣମୟୀ ମାୟାଦ୍ୱାରା ଭଲ, ମନ୍ଦ ଓ ତ୍ରିଗୁଣଯୁକ୍ତ ଏହି ସଂସାରକୁ ସୃଷ୍ଟିର ଆଦ୍ୟରୁ ହିଁ ରଚନା କରିଛନ୍ତି ।। ୩୦।। ନିଜ ମାୟା-ସୃଷ୍ଟ ଏହି ଗୁଣମୟ ସଂସାର ମଧ୍ୟରେ ପ୍ରବେଶ କରି ସେ ଏହିସବୁ ଗୁଣଯୁକ୍ତ ବୋଲି ପ୍ରତୀୟମାନ ହେଲେ ମଧ୍ୟ ପ୍ରକୃତରେ ନିର୍ଗୁଣ ବ୍ରହ୍ମ ଅଟନ୍ତି ।। ୩୧।। ଯେପରି ସେହି ଏକ ଅଗ୍ନି ବିଭିନ୍ନ କାଷ୍ଠ ମଧ୍ୟରେ ପ୍ରବେଶ କରି ଭିନ୍ନ ଭିନ୍ନ ରୂପ ଓ ବର୍ଣ୍ଣ ଧାରଣ କରେ, ସେହିପରି ସମସ୍ତଙ୍କ ଆତ୍ମସ୍ୱରୂପ ଭଗବାନ୍ ବିଭିନ୍ନ ପ୍ରାଣୀଙ୍କର ଅନ୍ତରାତ୍ମାରେ ରହି ଭିନ୍ନ ରୂପରେ ପ୍ରକାଶ ପାଆନ୍ତି ।। ୩୨।। ନିଜସୃଷ୍ଟ ପ୍ରାଣୀମାନଙ୍କ ଅନ୍ତରାତ୍ମା ରୂପେ ରହି ସ୍ଥୂଳ ଓ ସୂକ୍ଷ୍ମ ଇନ୍ଦ୍ରିୟମାନଙ୍କଦ୍ୱାରା ଏହି ପ୍ରାଣୀମାନଙ୍କୁ ବିଭିନ୍ନ ଗୁଣ ଓ କର୍ମଦ୍ୱାରା ଲିପ୍ତ କରାନ୍ତି ।।୩୩।। ସେ ସମସ୍ତ ଲୋକକୁ ରଚନା କରନ୍ତି ଏବଂ ଦେବତା, ପଶୁ, ପକ୍ଷୀ, ମନୁଷ୍ୟ ଆଦି ରୂପରେ ଲୀଳାମାନ କରି ସତ୍ତ୍ୱ ଗୁଣଦ୍ୱାରା ପ୍ରାଣୀମାନଙ୍କୁ ପାଳନ ପୋଷଣ କରନ୍ତି ।।୩୪।।

## ତୃତୀୟ ଅଧ୍ୟାୟ

# ଭଗବାନଙ୍କ ଅବତାରମାନଙ୍କ ବର୍ଣ୍ଣନା

ଭଗବାନ୍ ମହତ୍ ଆଦି ତତ୍ତ୍ୱଦ୍ୱାରା ଏହି ବିଶ୍ୱବ୍ରହ୍ମାଣ୍ଡ ସୃଷ୍ଟି କରିବାପାଇଁ ଷୋଳକଳାଯୁକ୍ତ ପୂର୍ଣ୍ଣ ପୁରୁଷରୂପ ଧାରଣ କରନ୍ତି ॥୧॥ ଜଳରେ ଶୟନ କରୁଥିବା ସେହି ଯୋଗନିଦ୍ରାଯୁକ୍ତ ପୁରୁଷଙ୍କର ନାଭିପଦ୍ମରୁ ବିଶ୍ୱ ସ୍ରଷ୍ଟା ବ୍ରହ୍ମା ଆବିର୍ଭୂତ ହୁଅନ୍ତି ॥୨॥ ସମସ୍ତ ଲୋକରେ ପରିବ୍ୟାପ୍ତ ଭଗବାନଙ୍କର ଏହି ବିଶୁଦ୍ଧ ସତ୍ତ୍ୱମୟ ରୂପ ସୁପ୍ରସିଦ୍ଧ ॥୩॥ ସହସ୍ରପାଦ, ଉରୁ, ଭୁଜ, ମସ୍ତକ, ଶ୍ରବଣ, ଚକ୍ଷୁ ଏବଂ ନାସାଯୁକ୍ତ ଓ ସହସ୍ର ମୁକୁଟକୁଣ୍ଡଳ ଦ୍ୱାରା ଜାଜ୍ୱଲ୍ୟମାନ ଭଗବାନଙ୍କର ଏହି ରୂପକୁ ଯୋଗୀମାନେ ନିଜର ଧ୍ୟାନଚକ୍ଷୁରେ ଦେଖିଥାନ୍ତି ॥୪॥ ଭଗବାନଙ୍କର ଏହି ରୂପ ବିଭିନ୍ନ ଅବତାରର ମୂଳ ବୀଜସ୍ୱରୂପ, ଯାହାର ଅଂଶରୁ ଦେବତା, ମନୁଷ୍ୟ ଓ ଅନ୍ୟ ପ୍ରାଣୀଙ୍କର ସୃଷ୍ଟି ହୁଏ ॥୫॥ ପ୍ରଥମରେ ଶ୍ରୀ ଭଗବାନ ବ୍ରହ୍ମଜ୍ଞାନୀ କୁମାର (ସନତ୍‌କୁମାର ଆଦି) ରୂପରେ ଆବିର୍ଭୂତ ହୋଇ ଅଖଣ୍ଡ, ଦୁଷ୍କର ବ୍ରହ୍ମଚର୍ଯ୍ୟ ବ୍ରତ ପାଳନ କଲେ ॥୬॥ ଦ୍ୱିତୀୟରେ ରସାତଳଗାମୀ ପୃଥିବୀକୁ ଉଦ୍ଧାର କରିବାପାଇଁ ଯଜ୍ଞବରାହ ବପୁ ଧାରଣ କଲେ ॥୭॥ ତୃତୀୟରେ ମରୀଚି ପ୍ରଭୃତି ଋଷିଗଣଙ୍କ ସୃଷ୍ଟିକାଳରେ ଦେବର୍ଷି ନାରଦ ରୂପରେ ଅବତୀର୍ଣ୍ଣ ହୋଇ ନିଷ୍କାମ କର୍ମଯୁକ୍ତ ଭକ୍ତିଯୋଗର ପ୍ରଚାର କଲେ ॥୮॥ ଚତୁର୍ଥରେ ନରନାରାୟଣ ରୂପରେ ଧର୍ମଙ୍କର ପତ୍ନୀଙ୍କଠାରୁ ଜନ୍ମଲାଭ କରି ଆତ୍ମସଂଯମପାଇଁ ଘୋର ତପସ୍ୟାରେ ରତ ହେଲେ ॥୯॥ ପଞ୍ଚମରେ ସିଦ୍ଧପୁରୁଷଙ୍କ ମଧ୍ୟରେ ଶ୍ରେଷ୍ଠ କପିଳ ନାମରେ ଆବିର୍ଭୂତ ହୋଇ ଜ୍ଞାନୀମାନଙ୍କ ମଧ୍ୟରେ କାଳକ୍ରମେ ଲୁପ୍ତ ହୋଇ ପଡ଼ିଥିବା ସାଂଖ୍ୟତତ୍ତ୍ୱର ଜ୍ଞାନ ପ୍ରଚାର କରିଥିଲେ ॥୧୦॥ ଷଷ୍ଠରେ ଅତ୍ରିପତ୍ନୀ ଅନସୂୟାଙ୍କର ମନୋବାଞ୍ଛା ପୂର୍ଣ୍ଣ କରି ଦତ୍ତାତ୍ରେୟ ନାମରେ ତାଙ୍କ ପୁତ୍ରରୂପରେ ଜନ୍ମ ଗ୍ରହଣ କଲେ ଏବଂ ଅଳର୍କ ଓ ପ୍ରହ୍ଲାଦ ପ୍ରଭୃତି ବିଷ୍ଣୁଭକ୍ତମାନଙ୍କୁ ଆତ୍ମବିଦ୍ୟା ପ୍ରଦାନ କରିଥିଲେ ॥୧୧॥ ସପ୍ତମରେ ଭଗବାନ୍ ରୁଚି ପ୍ରଜାପତି (ଋଷି)ଙ୍କର ପତ୍ନୀ ଆକୂତିଙ୍କ ଗର୍ଭରେ ଯଜ୍ଞରୂପରେ ଅବତୀର୍ଣ୍ଣ ହୋଇ ନିଜର ପୁତ୍ର ଯାମ ଆଦି ଦେବମାନଙ୍କ ସହିତ ସ୍ୱାୟଂମ୍ଭୁବ ମନୁଙ୍କର ସମଗ୍ର ମନ୍ୱନ୍ତରକୁ ରକ୍ଷା କରିଥିଲେ ॥୧୨॥ ଅଷ୍ଟମରେ ଉରୁକ୍ରମ ନାଭିଙ୍କର ପତ୍ନୀ ମେରୁଦେବୀଙ୍କ ପୁତ୍ର ଋଷଭରୂପରେ ଋଷିମାନଙ୍କୁ ସବୁ ଆଶ୍ରମର ନମସ୍ୟ ପରମାର୍ଥୀ ମାର୍ଗ ଦର୍ଶାଇଥିଲେ ॥୧୩॥ ନବମ ଅବତାରରେ ଭଗବାନ୍ ଋଷିମାନଙ୍କ ପ୍ରାର୍ଥନାରେ ରାଜା ପୃଥୁରୂପେ ପାର୍ଥିବ ଶରୀର ଧାରଣ କରିଥିଲେ ଏବଂ ଏହି କମନୀୟ ଅବତାରରେ ସେ ସମସ୍ତ ଔଷଧୀୟ ବସ୍ତୁ ପୃଥିବୀରୁ ଦୋହନ କରିଥିଲେ ॥୧୪॥ ଦଶମ ଅବତାରରେ ଭଗବାନ୍ ମତ୍ସ୍ୟରୂପ ଗ୍ରହଣ କରି ଚାକ୍ଷୁଷ ମନ୍ୱନ୍ତର ପରେ ପ୍ରଳୟପୟୋଧି ଜଳରେ ବୁଡ଼ିଯାଇଥିବା ନୌକାକୁ ଉଦ୍ଧାର କରି ସେଥିରେ ପରବର୍ତ୍ତୀ ମନ୍ୱନ୍ତରର ଅଧିପତି ବୈବସ୍ୱତ ମନୁଙ୍କୁ ବସାଇଥିଲେ ॥୧୫॥ ଏକାଦଶ ଅବତାରରେ ଦେବାସୁରମାନଙ୍କ ସମୁଦ୍ରମନ୍ଥନବେଳରେ କୂର୍ମରୂପରେ ସେ ମନ୍ଦର ପର୍ବତକୁ ମନ୍ଥନଦଣ୍ଡ ରୂପେ ନିଜ ପିଠିରେ ଧାରଣ କରିଥିଲେ ॥୧୬॥ ଦ୍ୱାଦଶ ଅବତାରରେ ଧନ୍ୱନ୍ତରି ଏବଂ ତ୍ରୟୋଦଶ ଅବତାରରେ ମୋହିନୀ ରୂପରେ ଅସୁରମାନଙ୍କୁ ମୋହିତ କରି ଦେବତାମାନଙ୍କୁ ଅମୃତପାନ କରାଇଥିଲେ ॥୧୭॥ ଚତୁର୍ଦ୍ଦଶରେ ନରସିଂହ ଅବତାର; ଯେଉଁ ରୂପରେ ମସିଣାବୁଣାଳି ଘାସକୁ ଚିରିଲାଭଳି ଦୈତ୍ୟପତି ହିରଣ୍ୟକଶିପକୁ ନିଜ ଜଂଘରେ ରଖି ନଖରେ ବିଦାରଣ କରିଥିଲେ ॥୧୮॥ ପଞ୍ଚଦଶ ଅବତାରରେ ବାମନରୂପରେ ବଳିର ଯଜ୍ଞସ୍ଥଳକୁ ଯାଇ ତ୍ରିଲୋକପ୍ରାପ୍ତି ଇଚ୍ଛାରେ ବଳିରାଜାକୁ ତ୍ରିପାଦ ଭୂମି ଭିକ୍ଷା କରିଥିଲେ ॥୧୯॥ ଷୋଡ଼ଶ ଅବତାରରେ ବ୍ରହ୍ମଦ୍ରୋହୀ ରାଜାମାନଙ୍କୁ ଦେଖି କୋପରେ ପର୍ଶୁରାମ ରୂପରେ ପୃଥିବୀକୁ ଏକୋଇଶବାର

ନିଃକ୍ଷତ୍ରିୟ କରିଥିଲେ ॥୨୦॥ ସପ୍ତଦଶ ଅବତାରରେ ସତ୍ୟବତୀଙ୍କଠାରେ ପରାଶରଙ୍କ ଔରସରୁ ବେଦବ୍ୟାସ ରୂପରେ ଜନ୍ମଲାଭ କରି ସାଧାରଣ ବୁଦ୍ଧିର ଲୋକମାନଙ୍କପାଇଁ ବେଦକୁ ବହୁ ଶାଖା-ଉପଶାଖାରେ ବିଭକ୍ତ କରିଥିଲେ ॥୨୧॥ ଦେବତାମାନଙ୍କ କାର୍ଯ୍ୟସାଧନପାଇଁ ଅଷ୍ଟାଦଶ ଅବତାରରେ ଶ୍ରୀରାମରୂପେ ସମୁଦ୍ରରେ ବନ୍ଧ ବାନ୍ଧି ଓ ରାବଣକୁ ନିହତ କରି ବହୁ ବୀରତ୍ୱପୂର୍ଣ୍ଣ କାର୍ଯ୍ୟ ସମ୍ପାଦନ କରିଥିଲେ ॥୨୨॥ ଉନବିଂଶ ଓ ବିଂଶ ଅବତାରରେ ବୃଷ୍ଣିଯାଦବକୁଳରେ ରାମ ଓ କୃଷ୍ଣ ରୂପରେ ଜନ୍ମଗ୍ରହଣ କରି ପୃଥିବୀର ଭାର ଉଶ୍ୱାସ କରିଥିଲେ ॥୨୩॥ ଏହାପରେ କଳି ଆସିଗଲା । ଭଗବାନ୍ ଏହି କଳିକାଳରେ ବୁଦ୍ଧରୂପରେ ଅଜିନଙ୍କର ପୁତ୍ର ହୋଇ ଗୟା ପ୍ରଦେଶରେ ଜନ୍ମଗ୍ରହଣ କରିବେ ଏବଂ ଅସୁରପ୍ରକୃତିର ଲୋକଙ୍କୁ ମୋହିତ କରିବେ ॥୨୪॥ ଏହାପରେ କଳିଯୁଗର ଶେଷ ଓ ପରବର୍ତ୍ତୀ ଯୁଗ ଆରମ୍ଭର ସନ୍ଧିକାଳରେ ଭଗବାନ୍ ଜଗଦୀଶ୍ୱର ବିଷ୍ଣୁଯଶାଙ୍କ ପୁତ୍ରରୂପରେ କଳ୍କି ନାମରେ ଜନ୍ମଗ୍ରହଣ କରିବେ । ସେତେବେଳେ ଦସ୍ୟୁସ୍ୱଭାବସମ୍ପନ୍ନ ରାଜାମାନେ ରାଜତ୍ୱ କରୁଥିବେ ॥୨୫॥

ହେ ବିପ୍ରଗଣ ! ଯେପରି ବିଶାଳ ହ୍ରଦମଧ୍ୟରୁ ଅସଂଖ୍ୟ ଝରଣା ପ୍ରବାହିତ ହୁଅନ୍ତି, ସେହିପରି ସତ୍ତ୍ୱଗୁଣର ନିଧାନ ଶ୍ରୀହରି ଅସଂଖ୍ୟ ଅବତାର ଗ୍ରହଣ କରିଥାନ୍ତି ॥୨୬॥ ପ୍ରଜାପତିମାନଙ୍କ ସମେତ ଋଷିଗଣ, ମନୁଷ୍ୟଗଣ, ଦେବତାଗଣ ଏବଂ ମହାତେଜସ୍ୱୀ ମନୁପୁତ୍ରଗଣ ସମସ୍ତେ ଭଗବାନଙ୍କର କଳାରୂପେ ଗୃହୀତ ହୁଅନ୍ତି ॥୨୭॥ ଭଗବାନଙ୍କର ଏହି ସମସ୍ତ ଅବତାର ତାଙ୍କର ଏକ ଏକ ଅଂଶ ବା କଳାବତାର ମାତ୍ର । କିନ୍ତୁ କୃଷ୍ଣ ହେଉଛନ୍ତି ସମସ୍ତକଳାଯୁକ୍ତ ସ୍ୱୟଂ ଭଗବାନ୍ । ଦୈତ୍ୟମାନଙ୍କ ଅତ୍ୟାଚାରରେ ଲୋକେ ବ୍ୟାକୁଳ ହୋଇଉଠନ୍ତେ, ସେମାନଙ୍କୁ ରକ୍ଷା କରିବାପାଇଁ ସେ ଯୁଗେ ଯୁଗେ ଅବତୀର୍ଣ୍ଣ ହୁଅନ୍ତି ॥୨୮॥ ଯେଉଁ ବ୍ୟକ୍ତି ସନ୍ଧ୍ୟାରେ ଏବଂ ସକାଳେ ନିଷ୍ପାପର ଭାବରେ ଭଗବାନଙ୍କର ଏହି ଗୋପନୀୟ ଜନ୍ମରହସ୍ୟକୁ ଜପ କରେ, ସେ ସଂସାରଦୁଃଖରୁ ମୁକ୍ତ ହୋଇଯାଏ ॥୨୯॥ ଚିନ୍ମୟ ଭଗବାନଙ୍କର କୌଣସି ରୂପ ନାହିଁ । କିନ୍ତୁ ଜୀବମାନଙ୍କ ମଧ୍ୟରେ ବିଶ୍ୱାସ ଜନ୍ମାଇବାପାଇଁ ମହତ୍ ଆଦି ତତ୍ତ୍ୱମାନଙ୍କ ସାହାଯ୍ୟରେ ମାୟାଗୁଣରେ ସେ ଏହିପରି ରୂପମାନ ଗ୍ରହଣ କରିଥାନ୍ତି ॥୩୦॥ ଯେପରି ରୂପହୀନ ଆକାଶ ମେଘଦ୍ୱାରା ଆଚ୍ଛନ୍ନ ହୋଇ ମେଘୁଆ ହୁଏ ବା ପବନରେ ଧୂଳିଯୁକ୍ତ ହୋଇ ଧୂଳିର ରୂପ ଗ୍ରହଣ କରେ, ସେହିପରି ଅରୂପ ଭଗବାନ ଅଳ୍ପବୁଦ୍ଧି ଲୋକମାନଙ୍କର ଆଖିରେ ସ୍ଥୁଳରୂପରେ ଦୃଶ୍ୟମାନ ହୁଅନ୍ତି ॥୩୧॥ ଏହି ସ୍ଥୁଳରୂପର ବାହାରେ ଆଉ ଏକ ସୂକ୍ଷ୍ମରୂପ ଅଛି, ଯାହାର ଆକାର ନାହିଁ, ଯାହାକୁ କେହି ଦେଖିପାରନ୍ତି ନାହିଁ କି ଶୁଣିପାରନ୍ତି ନାହିଁ । ସେହି ଅବ୍ୟକ୍ତ ବସ୍ତୁଯୋଗୁଁ ଜୀବ ସଂସାରରେ ବାରମ୍ବାର ଜନ୍ମଗ୍ରହଣ କରେ ॥୩୨॥ ଯେତେବେଳେ ମନୁଷ୍ୟ ନିଜର ସାଧନାଲବ୍ଧ ଜ୍ଞାନବଳରେ ଏହି ସ୍ଥୁଳ ଓ ସୂକ୍ଷ୍ମ ରୂପର ଆତ୍ମାସହିତ କୌଣସି ସମ୍ପର୍କ ନାହିଁ ବୋଲି ଅନୁଭବ କରେ, ସେତେବେଳେ ତା'ର ପ୍ରକୃତ ବ୍ରହ୍ମଜ୍ଞାନ ଲାଭ ହୁଏ ॥୩୩॥ ଯେତେବେଳେ ଆତ୍ମବିଦ୍ୟାଦ୍ୱାରା ଏହି ସ୍ଥୁଳ ଓ ସୂକ୍ଷ୍ମରୂପୀ ମାୟାର ଆବରଣ ତୁଟିଯାଏ, ସେତେବେଳେ ଜୀବ ନିଜର ମହିମାମୟ ସ୍ୱରୂପ ଅନୁଭବ କରେ ॥୩୪॥ ଏହିପରି ଜନ୍ମ ଏବଂ କର୍ମରହିତ ଭଗବାନ ହୃଦୟେଶ୍ୱରଙ୍କର ବେଦଗୁହ୍ୟ ଜନ୍ମ ଓ କର୍ମର ଗାଥା କବିମାନେ ବର୍ଣ୍ଣନା କରିଥାନ୍ତି ॥୩୫॥

ଅମୋଘ ଲୀଳାମୟ ଭଗବାନ ଏହି ବିଶ୍ୱକୁ ସୃଷ୍ଟି କରନ୍ତି, ରକ୍ଷା କରନ୍ତି ଏବଂ ସଂହାର କରନ୍ତି । କଲେ ମଧ୍ୟ ସେ ଏହି ସଂସାରଠାରୁ ନିର୍ଲିପ୍ତ । ସେ ସମସ୍ତ ଜୀବଙ୍କର ଅନ୍ତରରେ ଥିଲେ ମଧ୍ୟ ସ୍ୱତନ୍ତ୍ର । ଷଡ଼ିନ୍ଦ୍ରିୟଯୁକ୍ତ ଜୀବମଧ୍ୟରେ ଥିଲେ ମଧ୍ୟ ଇନ୍ଦ୍ରିୟେଶ ହୋଇଥିବାରୁ ଦୂରରେ ରହି କୌଣସି ବସ୍ତୁକୁ ଆଘ୍ରାଣ କରିବା ପରି ସେ ଅନାସକ୍ତ ରହନ୍ତି ॥୩୬॥ ଅଭିନେତାର ପ୍ରକୃତ ସ୍ୱରୂପ ଯେପରି ତା'ର ଅଭିନୟରୁ ଜଣାପଡ଼େ ନାହିଁ, ସେହିପରି ଏହି ସଂସାରକୁ ସୃଷ୍ଟି କରିଥିବା ଭଗବାନଙ୍କର ଲୀଳା, ତାଙ୍କର ନାମ ଏବଂ ରୂପ ସମ୍ପର୍କରେ ଅଜ୍ଞଥିବା ଜୀବ ନିଜ ବୁଦ୍ଧିର ଚାତୁର୍ଯ୍ୟରେ ଜାଣିପାରେ ନାହିଁ ॥୩୭॥ ଅମିତତେଜା ଚକ୍ରଧରଙ୍କର ପାଦପଦ୍ମରେ ଯେ ନିଜକୁ ସମର୍ପିତ କରି ସବୁବେଳେ ନିଷ୍କାମ ସେବା କରୁଥାଏ, ସେହି କେବଳ ଲୀଳାମୟଙ୍କର

ଲୀଳା ହିଁ ଜାଣିପାରେ ॥୩୮॥ ଯେଉଁମାନେ ଅଖିଳ ଲୋକଙ୍କ ଈଶ୍ୱର ଭଗବାନ ବାସୁଦେବଙ୍କୁ ସର୍ବାନ୍ତଃକରଣରେ ଭଜନ କରନ୍ତି, ସେମାନେ ଆଉ ଏ ସଂସାରରେ ଜନ୍ମଗ୍ରହଣ କରନ୍ତି ନାହିଁ ॥୩୯॥ ଭଗବାନ ବ୍ୟାସଦେବ ଉତ୍ତମଶ୍ଳୋକ ଭଗବାନଙ୍କ ଚରିତରୂପକ ଏହି ଭାଗବତ ପୁରାଣ ରଚନା କରିଛନ୍ତି । ଏହି ପୁରାଣ ନିଜେ ହିଁ ବ୍ରହ୍ମସ୍ୱରୂପ । ସମସ୍ତ ପ୍ରାଣୀଙ୍କର ମଙ୍ଗଳପାଇଁ ଏହା ରଚନା କରାଯାଇଛି ॥୪୦॥ ଆତ୍ମଜ୍ଞାନୀଙ୍କ ମଧ୍ୟରେ ଶ୍ରେଷ୍ଠ ନିଜର ପୁତ୍ରଙ୍କୁ ବ୍ୟାସଦେବ ଏହି ଶାସ୍ତ୍ର ଦାନ କରିଥିଲେ । ସମସ୍ତ ବେଦ ଓ ଇତିହାସରେ ଯାହା କିଛି ସାର, ତାହା ଏଥିରେ ଉଦ୍ଧାର କରାଯାଇଛି ॥୪୧॥ ଶୁକଦେବ ଗଙ୍ଗାକୂଳରେ ଋଷିମାନଙ୍କ ମଧ୍ୟରେ ମୃତ୍ୟୁର ଅପେକ୍ଷାରେ ପ୍ରାୟୋପବେଶନ କରିଥିବା ମହାରାଜ ପରିକ୍ଷିତଙ୍କୁ ଏହା ଶୁଣାଇଥିଲେ ॥୪୨॥ ଧର୍ମଜ୍ଞାନାଦି ସହିତ କୃଷ୍ଣ ନିଜ ଧାମକୁ ଚାଲିଯିବା ପରେ କଳିଯୁଗରେ ଅଜ୍ଞାନରୂପ ଅନ୍ଧକାରରେ ଥିବା ଲୋକମାନଙ୍କପାଇଁ ଏହି ପୁରାଣରୂପକ ସୂର୍ଯ୍ୟ ଉଦିତ ହୋଇଛି ॥୪୩॥ ହେ ବିପ୍ରଗଣ ! ସେହି ମହାତେଜା ଋଷିଶ୍ରେଷ୍ଠ ଶୁକଦେବ ଏହି ଭାଗବତ କୀର୍ତ୍ତନ କରୁଥିବାବେଳେ ମୁଁ ସେଠାରେ ଉପସ୍ଥିତ ରହି ନିବିଷ୍ଟ ଚିତ୍ତରେ ତାଙ୍କ ଅନୁଗ୍ରହରୁ ଯାହାକିଛି ଶିକ୍ଷା କରିଛି, ଆପଣମାନଙ୍କୁ ଏବେ ତାହା ଯଥାମତି ଶୁଣାଇବାକୁ ଯାଉଛି ॥୪୪॥

## ଚତୁର୍ଥ ଅଧ୍ୟାୟ

## ବ୍ୟାସଙ୍କ ଅସନ୍ତୋଷ ଓ ନାରଦଙ୍କ ଆଗମନ

ସୂତ ଏହା କହିବା ପରେ ବୃଦ୍ଧ କୁଳପତି ଋଗ୍‌ବେଦଜ୍ଞ ଶୌନକ ଋଷି ସୂତଙ୍କୁ ପ୍ରଶଂସା କରି କହିଲେ, ବାଗ୍ମୀବର ସୂତ ମହାତ୍ମା ! ଯେଉଁ ପବିତ୍ର ଭଗବତ୍ କଥା ଭଗବାନ ଶୁକଦେବ କହିଥିଲେ, ତାହା ଆପଣ ଆମ୍ଭମାନଙ୍କୁ ଶୁଣାଇବା ହୁଅନ୍ତୁ ॥୧-୨॥ କେଉଁ ଯୁଗରେ, କେଉଁ ସ୍ଥାନରେ, କେଉଁ କାରଣରୁ ଶ୍ରୀ ବ୍ୟାସଦେବ ଏହି ଭାଗବତ ଗ୍ରନ୍ଥ ପ୍ରଣୟନରେ ପ୍ରବୃତ୍ତ ହୋଇଥିଲେ ? ॥୩॥ ତାଙ୍କ ପୁତ୍ର ଶୁକଦେବ ମହାଯୋଗୀ, ସମଦର୍ଶୀ, ନିଜପର ଭେଦଭାବରହିତ, ବ୍ରହ୍ମନିଷ୍ଠ ଓ ସଂଯମୀ । ସେ ଏପରି ବିନୟୀ ଓ ନିରହଙ୍କାର ଥିଲେ ଯେ, ଲୋକେ ତାଙ୍କୁ ଏକ ସାଧାରଣ ମୂଢ଼ ବ୍ୟକ୍ତି ପରି ମନେ କରୁଥିଲେ ॥୪॥ ତାଙ୍କ ସମ୍ପର୍କରେ କଥିତ ଅଛି ଯେ, ସେ ଯେତେବେଳେ ସନ୍ନ୍ୟାସୀ ଭାବରେ ନଗ୍ନ ଦେହରେ ଗୃହ ଛାଡ଼ି ପଳାଉଥିଲେ, ସେତେବେଳେ ତାଙ୍କ ପଛରେ ଗୋଡ଼ାଉଥିବା ପିତା ବ୍ୟାସଦେବ ଏକ ଦୃଶ୍ୟ ଦେଖି ଆଶ୍ଚର୍ଯ୍ୟ ହୋଇଗଲେ । ଶୁକଦେବ ଯିବାବେଳେ କେତେକ ସୁନ୍ଦରୀ ସ୍ତ୍ରୀ ଉଲଗ୍ନ ହୋଇ ସ୍ନାନ କରୁଥିଲେ । ମାତ୍ର ଯେତେବେଳେ ବ୍ୟାସଦେବଙ୍କୁ ଦେଖିଲେ, ସେମାନେ ସାଙ୍ଗେ ସାଙ୍ଗେ ବସ୍ତ୍ର ପିନ୍ଧି ପକାଇଲେ । ବ୍ୟାସ ଏହାର କାରଣ ପଚାରିବାରୁ ସେହି ଯୁବତୀମାନେ କହିଲେ, ଆପଣଙ୍କ ପୁତ୍ରଙ୍କର ପବିତ୍ର ଦୃଷ୍ଟିରେ ସ୍ତ୍ରୀପୁରୁଷ ଭେଦଭାବ ନାହିଁ । କିନ୍ତୁ ଆପଣଙ୍କର ଅଛି । ତେଣୁ ଆପଣଙ୍କୁ ଦେଖି ଲଜ୍ଜାରେ ଆମେ ଲୁଗା ପିନ୍ଧି ପକାଇଲୁ ॥୫॥ ଯେତେବେଳେ ସେ ଏକ ପାଗଳ, ମୂକ ଓ ଜଡ଼ ବ୍ୟକ୍ତିପରି କୁରୁଜାଙ୍ଗଳ ପ୍ରଦେଶରେ ବିଚରଣ କରୁଥିଲେ, ସେତେବେଳେ ରାଜଧାନୀ ହସ୍ତିନାପୁରରେ ଲୋକେ ତାଙ୍କୁ ଦେଖି କ'ଣ ଭାବିଲେ ? ॥୬॥ କିପରି ପାଣ୍ଡବେୟ ରାଜର୍ଷି ପରିକ୍ଷିତଙ୍କର ସେହି ମୁନିଙ୍କ ସହ ସାକ୍ଷାତ୍ ହେଲା ଏବଂ ମୁନି କିପରି ତାଙ୍କୁ ସମସ୍ତ ବେଦର ସାର ଭାଗବତ କଥା ଶୁଣାଇଲେ ? ॥୭॥ କୌଣସି ଗୃହସ୍ଥର ଘରକୁ ଗଲେ ସେ କେବଳ ଗାଈଦୁହାଁ ବେଳତକ ରହୁଥିଲେ । ତାହା କେବଳ ସେ ଗୃହକୁ ପବିତ୍ର କରିବାପାଇଁ ॥୮॥ ହେ ସୂତ ! ଯେଉଁ ଅଭିମନ୍ୟୁପୁତ୍ର ପରିକ୍ଷିତଙ୍କୁ ଭଗବାନଙ୍କ ପରମ ଭକ୍ତ ବୋଲି କୁହାଯାଏ, ତାଙ୍କର ଜନ୍ମ ମଧ୍ୟ ଆଶ୍ଚର୍ଯ୍ୟଜନକ । ତାଙ୍କର ସେହି ଜନ୍ମ ଓ କର୍ମାବଳୀ ଆମ୍ଭମାନଙ୍କୁ ବ୍ୟାଖ୍ୟାନ କରନ୍ତୁ ॥୯॥ ପାଣ୍ଡୁବଂଶର ମାନବର୍ଦ୍ଧନ ସେହି ସମ୍ରାଟ୍ ରାଜସମ୍ପଦକୁ

ଅବଜ୍ଞା କରି କେଉଁ କାରଣରୁ ଗଙ୍ଗାକୂଳକୁ ଯାଇ ମୃତ୍ୟୁର ଅପେକ୍ଷାରେ ପ୍ରାୟୋପବେଶନ କରିଥିଲେ ? ॥୧୦॥ ହେ ସୂତ ! ନିଜର ମଙ୍ଗଳକାମନାରେ ଶତ୍ରୁମାନେ ଧନ ଓ ବିଭିନ୍ନ ଉପହାର ଆଣି ଯାହାଙ୍କ ପାଦତଳେ ପ୍ରଣାମ କରୁଥିଲେ, ସେହି ବୀର ପରିକ୍ଷିତ ଯୁବକ ହେଲେ ମଧ୍ୟ କେଉଁ କାରଣରୁ ନିଜର ପ୍ରିୟ ରାଜଲକ୍ଷ୍ମୀଙ୍କୁ ଏପରିକି ଜୀବନକୁ ମଧ୍ୟ ବିସର୍ଜନ କରିବାପାଇଁ ଚାହିଥିଲେ ? ॥୧୧॥ ଭଗବତ୍‌ପରାୟଣ ଲୋକମାନେ ଜଗତର ସୁଖସମୃଦ୍ଧିପାଇଁ ଜୀବନ ଧାରଣ କରନ୍ତି । ଆତ୍ମସୁଖପାଇଁ ନୁହେଁ । ତେଣୁ ଅନ୍ୟମାନଙ୍କର ଆଶ୍ରୟଦାତା ମହାରାଜା ପରିକ୍ଷିତ ସବୁଥିରୁ ନିଜକୁ ନିର୍ଲିପ୍ତ ରଖି କାହିଁକି ଦେହତ୍ୟାଗ କରିବାପାଇଁ ଇଚ୍ଛା କରିଥିଲେ ? ॥୧୨॥ ଯାହା ଆମ୍ଭେମାନେ ପଚାରିଲୁ, ସେ ସମସ୍ତ ବିଷୟ ଭଲଭାବରେ ଆପଣ ଆମ୍ଭମାନଙ୍କୁ ବୁଝାଇ ଦିଅନ୍ତୁ । ବେଦବିଷୟକ ଆଲୋଚନା ଛଡ଼ା ଅନ୍ୟ ସମସ୍ତ ବିଷୟରେ ଆପଣ ପାରଙ୍ଗମ, ବିଦ୍ୱାନ୍ ॥୧୩॥

ସୂତ କହିଲେ -- ଯୁଗପରମ୍ପରାରେ ତୃତୀୟ ଅର୍ଥାତ୍ ଦ୍ୱାପରଯୁଗ ହେବା ପରେ ମହର୍ଷି ପରାଶରଙ୍କ ଔରସରେ ବସୁକନ୍ୟା ସତ୍ୟବତୀଙ୍କ ଗର୍ଭରେ ବିଷ୍ଣୁକଳା ଘେନି ମହର୍ଷି ବ୍ୟାସଦେବଙ୍କର ଜନ୍ମ ହେଲା ॥୧୪-୧୮॥ ଦିନେ ସୂର୍ଯ୍ୟୋଦୟବେଳେ ପବିତ୍ର ସରସ୍ୱତୀ ନଦୀରେ ସ୍ନାନାଦି ନିତ୍ୟକର୍ମ ଶେଷ କରି ମହର୍ଷି ବ୍ୟାସ ଏକ ଆସନରେ ବସି ଧ୍ୟାନସ୍ଥ ହେଲେ । ତ୍ରିକାଳଜ୍ଞ ଋଷି ଦେଖିପାରିଲେ ଯେ, ଯୁଗେ ଯୁଗେ କାଳବଶରେ କୌଣସି ନା କୌଣସି ଧର୍ମବିରୋଧୀ କାର୍ଯ୍ୟ ଘଟିଯାଉଛି । ତା'ଫଳରେ ଲୋକଙ୍କର ବିଶ୍ୱାସ ତୁଟିଯାଉଛି, ଶରୀରର ବଳ କମିଯାଉଛି । ଧନପ୍ରତି ଶ୍ରଦ୍ଧା ରହୁ ନାହିଁ । ଆୟୁ ହ୍ରାସ ପାଇବାରେ ଲାଗିଛି । ନିଜର ଦିବ୍ୟ ଚକ୍ଷୁରେ ଏହାସବୁ ଦେଖିପାରି ଜାତିବର୍ଣ୍ଣନିର୍ବିଶେଷରେ କିପରି ସମସ୍ତଙ୍କର ମଙ୍ଗଳ ହେବ, ତାହା ସେ ଚିନ୍ତା କରିବାକୁ ଲାଗିଲେ ॥ ୧୯-୨୦॥ ବୈଦିକ କ୍ରିୟାକର୍ମଦ୍ୱାରା ଲୋକଙ୍କର ଆଚରଣ ଶୁଦ୍ଧ ହେବ ବୋଲି ମନେ କରି ଯେଉଁ ବେଦ ଏକମାତ୍ର ଥିଲା, ତାକୁ ସେ ଚାରି ଭାଗରେ ବିଭକ୍ତ କଲେ । ତାହା ଋକ୍, ଯଜୁଃ, ସାମ ଏବଂ ଅଥର୍ବ । ଏହା ଚାରି ବେଦ ରୂପରେ କଥିତ ହେଲା । ଇତିହାସ ଓ ପୁରାଣକୁ ପଞ୍ଚମ ବେଦ କୁହାଗଲା ॥୨୧-୨୪॥ ପୈଳ ଋଷି ଋକ୍ ବେଦକୁ ଆୟତ୍ତ କଲେ । ଜୈମିନି ସାମ ବେଦରେ ଏବଂ ବୈଶମ୍ପାୟନ ଯଜୁଃ ବେଦରେ ସୁପଣ୍ଡିତ ହେଲେ । ସୁମନ୍ତୁ ଅଥର୍ବ ବେଦରେ ପାରଙ୍ଗମ ହେଲେ ଏବଂ ମୋର ପିତା ରୋମହର୍ଷଣ ଇତିହାସ ଓ ପୁରାଣରେ ପାରଦର୍ଶିତା ଲାଭ କଲେ । ଏହି ଋଷିମାନଙ୍କର ଶିଷ୍ୟପ୍ରଶିଷ୍ୟମାନଙ୍କ ଜରିଆରେ ବେଦ ବହୁ ଶାଖାରେ ବିଭକ୍ତ ହେଲା । ଲୋକବତ୍ସଳ ବ୍ୟାସଦେବ ସମସ୍ତେ ଗ୍ରହଣ କରିବା ଭଳି ବେଦକୁ ଏହିପରି ବିଭିନ୍ନ ଭାବରେ ବିଭକ୍ତ କଲେ ॥୨୫॥ ବେଦବିନ୍ୟାସ କଲା ପରେ ମଧ୍ୟ ବ୍ୟାସଦେବ ଦେଖିଲେ ଯେ ସ୍ତ୍ରୀ, ଶୂଦ୍ର ଓ ପତିତ ଦ୍ୱିଜମାନେ ଏବଂ ଅଳ୍ପବୁଦ୍ଧିର ଲୋକମାନେ ବେଦକୁ ଗ୍ରହଣ କରିପାରୁ ନାହାନ୍ତି । ତେଣୁ ସେମାନଙ୍କର କଲ୍ୟାଣପାଇଁ ସେ ମହାଭାରତ ରଚନା କଲେ ॥୨୬-୩୧॥ ସମସ୍ତଙ୍କର ମଙ୍ଗଳପାଇଁ ଏହା କରିସାରି ମଧ୍ୟ ତାଙ୍କ ଆତ୍ମାକୁ ସନ୍ତୋଷ ମିଳିଲା ନାହିଁ । ତେଣୁ ପବିତ୍ର ସରସ୍ୱତୀ ନଦୀ କୂଳରେ ଏକାକୀ ବସି ନିଜ ହୃଦୟର ଅସନ୍ତୋଷକୁ ସେ ପ୍ରକାଶ କରିବାକୁ ଲାଗିଲେ । ସେ କହିଲେ, ବ୍ରହ୍ମଚର୍ଯ୍ୟ ବ୍ରତ ଧାରଣ କରି ମୁଁ ବେଦକୁ ଅଧ୍ୟୟନ କଲି ଏବଂ ଗୁରୁଜନଙ୍କୁ ଓ ଅଗ୍ନିଙ୍କୁ ପୂଜା କରି ସତ୍ୟନିଷ୍ଠ ଭାବରେ ସେମାନଙ୍କ ଅନୁଶାସନ ପାଳନ କଲି; ସ୍ତ୍ରୀ, ଶୂଦ୍ର ଏବଂ ଅଳ୍ପବୁଦ୍ଧି ଲୋକମାନେ ଯେପରି ଠିକ୍‌ରୂପେ ଧର୍ମାଚରଣ କରିପାରିବେ, ସେଥିପାଇଁ ମହାଭାରତ ରଚନା କଲି, ତଥାପି ମୋର ସନ୍ତୋଷ ନାହିଁ । ବ୍ରହ୍ମତେଜା ହୋଇ ମଧ୍ୟ ମୋ ମନ ଓ ଆତ୍ମାରେ ସନ୍ତୋଷ ଆସୁ ନାହିଁ । କିଛି ଯେପରି ଅସମ୍ପୂର୍ଣ୍ଣ ରହିଯାଉଛି । ତା'ହେଲେ କ'ଣ ଭଗବାନ ଅଚ୍ୟୁତଙ୍କର ଓ ତାଙ୍କ ଭକ୍ତ ପରମହଂସମାନଙ୍କର ପ୍ରିୟ ଭାଗବତ ଧର୍ମକୁ ମୁଁ ପ୍ରକାଶ କରିପାରିଲି ନାହିଁ? ॥ ୩୨-୩୩॥ ଏହିପରି ବ୍ୟାସଦେବ ମନଦୁଃଖରେ ଥିବାବେଳେ ତାଙ୍କ ଆଶ୍ରମରେ ଦେବର୍ଷି ନାରଦ ଆସି ପହଞ୍ଚିଗଲେ । ସହସା ଦେବର୍ଷି ନାରଦଙ୍କୁ ଦେଖି ବ୍ୟାସଦେବ ନିଜ ଆସନରୁ ଉଠି ଏହି ଦେବବନ୍ଦ୍ୟ ଋଷିଙ୍କର ଚରଣ ବନ୍ଦନା କଲେ ॥୩୪॥

## ପଞ୍ଚମ ଅଧ୍ୟାୟ

# ଦେବର୍ଷି ନାରଦଙ୍କ ପୂର୍ବ ଚରିତ

ବୀଣାହସ୍ତ, ବିପୁଳଯଶା ଦେବର୍ଷି ନାରଦ ଆରାମରେ ବସିସାରିବା ପରେ ଅଳ୍ପ ହସି ବ୍ୟାସଦେବଙ୍କୁ କହିଲେ, ହେ ପରାଶରପୁତ୍ର ମହାଭାଗ ବ୍ୟାସଦେବ ! ଆପଣଙ୍କ ଶରୀର, ମନ ଓ ଆତ୍ମା କୁଶଳ ଅଛି ତ ? ॥୧-୨॥ ସମସ୍ତ ଜ୍ଞାନକୁ ଆୟତ୍ତ କରି, ସମସ୍ତ ଧର୍ମାନୁଷ୍ଠାନ ଶେଷ କରି, ସମସ୍ତ ପୁରୁଷାର୍ଥରେ ପରିପୂର୍ଣ୍ଣ ଆପଣ ନିତ୍ୟସନାତନ ବ୍ରହ୍ମଙ୍କୁ ଜାଣିବାପାଇଁ ବିଚାର କରି ଜାଣିପାରିଛନ୍ତି; ତଥାପି ଅକୃତକାର୍ଯ୍ୟ ଲୋକପରି ଆପଣ କାହିଁକି ଶୋଚନା କରୁଛନ୍ତି ? ॥୩-୪॥ ବ୍ୟାସ କହିଲେ, ସେ ସମସ୍ତ ମୁଁ ସମ୍ପୂର୍ଣ୍ଣ କରିଛି । ତଥାପି ମୋର ଆତ୍ମାର ସନ୍ତୋଷ ନାହିଁ । ତେଣୁ ଏହି ଅସନ୍ତୋଷର ମୂଳ କାରଣ କ'ଣ ମୁଁ ତାହା ଜାଣିବାକୁ ଚାହୁଁଛି । ଆପଣ ବ୍ରହ୍ମାଙ୍କର ପୁତ୍ର ଏବଂ ଆପଣଙ୍କ ଜ୍ଞାନ ଅଗାଧ । ଆପଣ ପୁରାଣ ପୁରୁଷଙ୍କର ଉପାସକ ଭାବରେ ବିଶ୍ୱର ସମସ୍ତ ଗୋପନୀୟ ରହସ୍ୟ ଜାଣନ୍ତି । ଭଗବାନ୍ ନିଜେ ନିର୍ଲିପ୍ତ ହେଲେ ମଧ୍ୟ ନିଜ ସଂକଳ୍ପଦ୍ୱାରା ସତ୍ତ୍ୱ, ରଜ, ତମ - ଏହି ତିନି ଗୁଣର ସାହାଯ୍ୟରେ ଏହି ବ୍ରହ୍ମାଣ୍ଡର ସୃଷ୍ଟି,ପାଳନ ଓ ସଂହାର କ୍ରିୟା ସଂପାଦନ କରନ୍ତି । ଆପଣ ସୂର୍ଯ୍ୟଙ୍କ ପରି ତ୍ରିଭୁବନ ପର୍ଯ୍ୟଟନ କରନ୍ତି । ପ୍ରାଣବାୟୁପରି ଯୋଗବଳରେ ଆପଣ ସମସ୍ତ ପ୍ରାଣୀଙ୍କର ଅନ୍ତରରେ ବିଚରଣ କରନ୍ତି । ଆପଣ ଅନ୍ତରାତ୍ମା ପରି ମନୁଷ୍ୟଙ୍କ ଅନ୍ତରର ସାକ୍ଷିସ୍ୱରୂପ । ମୁଁ ଧର୍ମତଃ ସମସ୍ତ ବ୍ରତ ପାଳନ କରି ପରଂବ୍ରହ୍ମଙ୍କଠାରେ ପୂର୍ଣ୍ଣ ଲୟ ରଖିଆସିଥିଲେ ମଧ୍ୟ କାହିଁକି ମୋର ଏ ଅସନ୍ତୋଷ ଓ ଅପୂର୍ଣ୍ଣତା ? ॥୫-୭॥

ନାରଦ କହିଲେ; ମୁଁ ମନେକରୁଛି, ଭଗବାନ୍ ତାଙ୍କ ବିମଳ ଯଶୋଗାନଦ୍ୱାରା ସନ୍ତୁଷ୍ଟ ହୁଅନ୍ତି । ତେଣୁ ଭଗବାନଙ୍କ ଯଶୋଗାନହୀନ ଶୁଷ୍କ ଦର୍ଶନ ଆପଣଙ୍କୁ ସନ୍ତୋଷ ଦେଇପାରୁ ନାହିଁ ॥୮॥ ମୁନିବର ! ଆପଣ ଧର୍ମାଦି ଚତୁର୍ବର୍ଗର ବ୍ୟାଖ୍ୟା କରିଛନ୍ତି ସତ; ମାତ୍ର ବାସୁଦେବଙ୍କର ମହିମା ବର୍ଣ୍ଣନା କରି ନାହାନ୍ତି । ଯେଉଁଥିରେ ଜଗତପବିତ୍ରକାରକ ଶ୍ରୀହରିଙ୍କ ଯଶକୀର୍ତ୍ତନ ନ ଥାଏ, ସେପରି ବର୍ଣ୍ଣନା ବହୁ ଅଳଙ୍କାରଯୁକ୍ତ ହେଲେ ମଧ୍ୟ ତାହା କାକମାନଙ୍କର ତୀର୍ଥ-ଉଚ୍ଛିଷ୍ଟ ଭୋଜନର ସ୍ଥାନ ପରି ହୋଇଥାଏ । ମାନସସରୋବରରେ ବିହରଣ କରୁଥିବା ହଂସ ବା ଭକ୍ତମାନେ ସେଥିରେ ରମଣ କରନ୍ତି ନାହିଁ ॥୯-୧୦॥ ଯେଉଁଥିରେ ଭଗବାନ ଅନନ୍ତଙ୍କର ନାମ ଓ ଯଶ କୀର୍ତ୍ତିତ ହୋଇଥାଏ, ସେଥିରେ ବାଗାଡ଼ମ୍ବର ନ ଥିଲେ ମଧ୍ୟ ତଦ୍ଦ୍ୱାରା ଜନତାର ପାପନାଶନ ହୁଏ । ସାଧୁମାନେ ତାହାର ଶ୍ରବଣ, ଗାୟନ ଓ କୀର୍ତ୍ତନରେ ଆନନ୍ଦ ଅନୁଭବ କରନ୍ତି ॥୧୧॥ ମୋକ୍ଷସାଧନ ପାଇଁ ଜ୍ଞାନର ମାର୍ଗ ଯେତେ ନିର୍ମଳ ହେଲେ ମଧ୍ୟ ଭଗବତ୍ ଭାବନା ନ ଥିଲେ ତାହା ଶୋଭା ପାଏ ନାହିଁ । ଭଗବାନଙ୍କଠାରେ ଅର୍ପିତ ନ ହୋଇଥିବା କର୍ମ ବୃଥା ହୁଏ ଏବଂ ସର୍ବଦା ଅମଙ୍ଗଳକାରକ ହୋଇଥାଏ ॥୧୨॥ ମହାଭାଗ ବ୍ୟାସ ! ଆପଣଙ୍କ ଦୃଷ୍ଟିର ଅଗୋଚର କିଛି ନାହିଁ । ଆପଣ ନିର୍ମଳଯଶା, ସତ୍ୟନିଷ୍ଠ, ଦୃଢ଼ସଙ୍କଳ୍ପ । ତେଣୁ ଆପଣ ସଂସାରରେ ଆବଦ୍ଧ ଜୀବଙ୍କର ମୁକ୍ତିପାଇଁ ଏକାନ୍ତ ଚିତ୍ତରେ ଭଗବାନଙ୍କର ବିଭିନ୍ନ ଲୀଳା ମନେ ପକାନ୍ତୁ ଓ ବର୍ଣ୍ଣନା କରନ୍ତୁ ॥୧୩॥ ତା ଛଡ଼ା ପୃଥକ୍ ଦୃଷ୍ଟିରେ ଅନ୍ୟ କିଛି ରୂପ ଚିନ୍ତା କରି ବର୍ଣ୍ଣନା କରିବାକୁ ଗଲେ ବାୟୁରେ ଆନ୍ଦୋଳିତ ନୌକାପରି ଆପଣଙ୍କର ଅଶାନ୍ତ ମନରେ କେବେହେଲେ ଶାନ୍ତି ଆସିବ ନାହିଁ ॥୧୪॥ ଆପଣ ସ୍ୱକୃତ ଶାସ୍ତ୍ରମାନଙ୍କରେ ଧର୍ମ ନାମରେ ଯାହାସବୁ କରିବାକୁ ଉପଦେଶ ଦେଇଛନ୍ତି, ସେହିସବୁ ସକାମ କର୍ମ ପ୍ରକୃତ ଧର୍ମାଚରଣର ବିପରୀତ ହୋଇଛି । ସ୍ୱଭାବତଃ କାମନାବାସନାଯୁକ୍ତ ଲୋକେ ଏହା ଫଳରେ ବିଭିନ୍ନ ନିନ୍ଦନୀୟ କର୍ମରେ ଲିପ୍ତ ହୋଇ କୌଣସି ବାରଣକୁ ମାନୁ ନାହାନ୍ତି ॥୧୫॥

ଆପଣ ବିଚକ୍ଷଣ । ଭଗବାନଙ୍କର ଅନନ୍ତ ଏବଂ ଅପାର ଲୀଳା ଶୁଣିଲେ ଯେଉଁ ନିବୃତ୍ତି-ସୁଖ ମିଳିବ, ବିଭିନ୍ନ ମାୟାଗୁଣରେ ବଶୀଭୂତ ମନୁଷ୍ୟକୁ ତାହା ଶୁଣାଇ ଆପଣ ହିଁ ରାସ୍ତା ଦେଖାଇପାରିବେ ॥୧୬॥ ନିଜର ସ୍ୱଧର୍ମ ତ୍ୟାଗ କରି ଶ୍ରୀହରିଙ୍କ ପାଦ-ପଦ୍ମରେ ଯଦି କେହି ଆଶ୍ରୟ ନେଇ ତାଙ୍କୁ ଭଜନ କରୁ କରୁ ସେଥିରୁ ପତିତ ହୁଏ, ତେବେ ତା'ର କିଛି କ୍ଷତି ହୁଏ ନାହିଁ । କିନ୍ତୁ ଯେଉଁମାନେ ଭଗବାନଙ୍କୁ ଭଜନ ନ କରି ସ୍ୱଧର୍ମରେ ଅଛନ୍ତି ବୋଲି କହନ୍ତି, ସେମାନଙ୍କର ସେପରି ଆଚରଣର କୌଣସି ମୂଲ୍ୟ ନାହିଁ ॥୧୭॥ ଉପରୁ ତଳଯାଏ ଅର୍ଥାତ୍ ବ୍ରହ୍ମାଙ୍କ ଠାରୁ ତୃଣ ଯାଏ ସମସ୍ତ ଯୋନି ଭ୍ରମଣ କରି ଯାହା ଲାଭ କରାଯାଇ ନ ପାରେ, ସେହି ବସ୍ତୁ ଲାଭପାଇଁ ପଣ୍ଡିତମାନେ ଚେଷ୍ଟିତ ହେବା ଉଚିତ । ବାକି ଦୁଃଖମୟ ସଂସାରରେ ଯେଉଁ ବିଷୟସୁଖକୁ ସୁଖ ବୋଲି ମନେକରାଯାଏ, ତାହା ବିନା ଚେଷ୍ଟାରେ କର୍ମଫଳରୁ ପ୍ରାପ୍ତ ହୋଇଥାଏ ॥୧୮॥ ପ୍ରିୟ ବ୍ୟାସଦେବ ! ଯେଉଁ ବ୍ୟକ୍ତି ଭଗବାନଙ୍କ ପାଦପଦ୍ମ ସେବା କରୁଥାଏ, ସେ ଅନ୍ୟମାନଙ୍କ ପରି କେବେହେଲେ ସଂସାର ଚକ୍ରରେ ପଡ଼େ ନାହିଁ । ବରଂ ସେ ସେହି ପାଦପଦ୍ମକୁ ସ୍ମରଣ କରି ଭଗବାନଙ୍କ ପଦସେବାର ରସାସ୍ୱାଦନକୁ ଛାଡ଼ିପାରେ ନାହିଁ ॥୧୯॥ ଯାହାଙ୍କଠାରୁ ବିଶ୍ୱର ଉତ୍ପତ୍ତି, ସ୍ଥିତି ଓ ପ୍ରଳୟ ସମ୍ଭବ ହୁଏ, ସେହି ବିଶ୍ୱ ହିଁ ଭଗବାନଙ୍କର ସ୍ୱରୂପ, ତଥାପି ସେ ବିଶ୍ୱଠାରୁ ଭିନ୍ନ । ଏ ସମସ୍ତ ବିଷୟରେ ଆପଣ ଜାଣନ୍ତି । ତଥାପି ଆପଣଙ୍କୁ ସଙ୍କେତମାତ୍ର ଦେଇଦେଲି ॥୨୦॥ ପୁନଶ୍ଚ ଆପଣ କ୍ରାନ୍ତଦର୍ଶୀ ଏବଂ ଅଜନ୍ମା ହେଲେ ମଧ୍ୟ ସେହି ପୁରୁଷୋତ୍ତମ ପରମାତ୍ମାଙ୍କର କଳାରୂପେ ଜଗତର କଲ୍ୟାଣପାଇଁ ଜନ୍ମ ନେଇଛନ୍ତି । ସେହି ମହାନୁଭବଙ୍କର ଅବତାର ଲୀଳାକୁ ଆପଣ ବର୍ଣ୍ଣନା କରନ୍ତୁ । ଜ୍ଞାନୀମାନେ ଏହା ସ୍ଥିର କରିଛନ୍ତି ଯେ, ସଂସାରରେ ବ୍ୟକ୍ତିର ସମସ୍ତ ସାଧନ ଯଥା ବେଦାଧ୍ୟୟନ, ଯଜ୍ଞାନୁଷ୍ଠାନ, ତପସ୍ୟା, ସ୍ୱାଧ୍ୟାୟ, ଜ୍ଞାନ ଓ ଦାନର ଏକମାତ୍ର ଲକ୍ଷ୍ୟ ପୁଣ୍ୟଶ୍ଳୋକ ଭଗବାନଙ୍କର ଗୁଣକୀର୍ତ୍ତନ ॥୨୧-୨୨॥

ବହୁପୂର୍ବେ ଅନ୍ୟ ଏକ କଳ୍ପରେ ମୁଁ ଏକ ଦାସୀପୁତ୍ର ରୂପେ ଜନ୍ମଲାଭ କରିଥିଲି । ସେହି ଦାସୀ ବେଦାଧ୍ୟାୟୀ ବ୍ରାହ୍ମଣଙ୍କୁ ସେବା କରୁଥିଲେ । ସେଠାରେ ମୋର ବାଲ୍ୟାବସ୍ଥାରେ ମୁନିମାନେ ଏକତ୍ର ଚତୁର୍ମାସ ବ୍ରତ ପାଳନ କରୁଥିଲେ । ମୁଁ ସେମାନଙ୍କ ସେବାରେ ନିଜକୁ ନିୟୋଜିତ କରିଥିଲି ॥୨୩॥ ଅତି ଛୋଟପିଲା ହେଲେ ମଧ୍ୟ ମୋର ବାଲ୍ୟଚପଳତା ନ ଥିଲା, ଖେଳବୁଲ କରୁ ନ ଥିଲି । ମୋର ଆଚରଣ ସଂଯତ ଥିଲା ଏବଂ ମୁଁ ଅଳ୍ପଭାଷୀ ଥିଲି । ମୋର ସେବା ଶୁଶ୍ରୁଷାରେ ସମଦର୍ଶୀ ମୁନିମାନେ ସନ୍ତୁଷ୍ଟ ହୋଇ ମୋ ପ୍ରତି ଅତିଶୟ କୃପା କରିଥିଲେ ॥୨୪॥ ସେହି ବ୍ରାହ୍ମଣମାନଙ୍କର ଆଜ୍ଞା ନେଇ ମୁଁ ଦିନରେ ଥରେ ମାତ୍ର ସେମାନଙ୍କର ଉଚ୍ଛିଷ୍ଟ ଭୋଜନ କରୁଥିଲି । ତା' ଫଳରେ ମୋର ସମସ୍ତ କଳ୍ମଷ ଦୂର ହୋଇଗଲା । ହୃଦୟ ଶୁଦ୍ଧ ହେଲା ଏବଂ ସେମାନଙ୍କ ଧର୍ମାଚରଣପ୍ରତି ମୋର ରୁଚି ଜାତ ହେଲା ॥୨୫॥ ପ୍ରତ୍ୟହ ସେମାନେ ଭଗବାନ କୃଷ୍ଣଙ୍କର କଥା ଗାନ କରୁଥିଲେ ଏବଂ ସେମାନଙ୍କ ଅନୁଗ୍ରହରୁ ମୁଁ ସେହି ମନୋହର କଥା ଶୁଣିବାକୁ ପାଉଥିଲି । ହେ ବ୍ୟାସ ! ବିଶେଷ ଧ୍ୟାନ ଦେଇ ମୁଁ ସେହି କଥା ଶୁଣନ୍ତେ ମୋର କୃଷ୍ଣକଥା ପ୍ରତି ରୁଚି ଆସିଗଲା ॥୨୬॥ ମହାମୁନି, ଏହିପରି ମୋର ରୁଚି ଜାତ ହେବାରୁ ମଧୁରଯଶା ଭଗବାନଙ୍କଠାରେ ମୋର ଅଚଳା ଭକ୍ତି ଜନ୍ମିଲା ଏବଂ ମୁଁ ବୁଝିପାରିଲି ଯେ ଏହି ସ୍ଥୂଳ ଓ ସୂକ୍ଷ୍ମ ଶରୀର କେବଳ ମାୟାଦ୍ୱାରା କଳ୍ପିତ । ମାତ୍ର ଆତ୍ମା ହେଉଚି ପରଂବ୍ରହ୍ମଙ୍କ ପ୍ରକୃତ ସ୍ୱରୂପ ॥୨୭॥ ଏହିପରି ବର୍ଷା ଓ ଶରତ୍‌ଋତୁରେ ସେହି ସାଧୁ ମହାତ୍ମାମାନଙ୍କଠାରୁ ଶ୍ରୀହରିଙ୍କ ବିମଳ ଯଶ କୀର୍ତ୍ତନ ଶୁଣି ଶୁଣି ମୋ ମନରେ ସାତ୍ତ୍ୱିକ ଭକ୍ତି ଜାତ ହେଲା । ମୁଁ ବାଳକ ଥିଲେ ମଧ୍ୟ ଶ୍ରଦ୍ଧାଳୁ, ଅନୁରକ୍ତ, ବିନୟୀ, ସଂଯମୀ ଏବଂ ଆଜ୍ଞାବହ ଥିବା ଦେଖି ସେହି ଦୀନବତ୍ସଳ ସାଧୁମାନେ ଯିବା ସମୟରେ, ସ୍ୱୟଂ ଭଗବାନ୍ କହିଥିବା ଗୂଢ଼ ତତ୍ତ୍ୱଜ୍ଞାନ ସମ୍ପର୍କରେ ମୋତେ ଉପଦେଶ ଦେଇଥିଲେ, ଯଦ୍ୱାରା ମୁଁ ଶ୍ରୀକୃଷ୍ଣଙ୍କର ମାୟାଜାତ ଏହି ସଂସାର ସମ୍ପର୍କରେ ଜ୍ଞାନ ଲାଭ କରିଥିଲି । ଏହି ଜ୍ଞାନଦ୍ୱାରା ହିଁ ଭକ୍ତମାନେ ତାଙ୍କ ପରମପଦ ଲାଭ କରିପାରନ୍ତି ॥୨୮-୩୧॥

ହେ ମୁନି ! ସର୍ବନିୟନ୍ତା ଈଶ୍ୱରଙ୍କଠାରେ ନିଜର ଭକ୍ତିଭାବ ନିବେଦନ କଲେ ତ୍ରିତାପର ବିନାଶ ସମ୍ଭବ ହୁଏ ॥୩୨॥ ଯେଉଁ ବସ୍ତୁଦ୍ୱାରା ରୋଗ ଜାତ ହୁଏ, ଚିକିତ୍ସାଶାସ୍ତ୍ର ଅନୁଯାୟୀ ସେହି ବସ୍ତୁର ପ୍ରୟୋଗରେ ରୋଗ ଭଲ ହେବା ସତ୍ୟ ନୁହେଁ କି ?

ସେହିପରି ଯେଉଁସବୁ କର୍ମଯୋଗୁଁ ମନୁଷ୍ୟ ବାରମ୍ବାର ସଂସାରରେ ଜନ୍ମ ହୁଏ, ସେହିସବୁ କର୍ମ ପରମାତ୍ମାଙ୍କୁ ସମର୍ପଣ କଲେ ତାହାର ବିନାଶ ଘଟେ ।।୩୩-୩୪।। ଭଗବାନ ଶ୍ରୀକୃଷ୍ଣଙ୍କ ଉପଦେଶ ଅନୁଯାୟୀ ତାଙ୍କଠାରେ ନିଜକୁ ସମର୍ପଣ କଲେ ତାଙ୍କ ଗୁଣ ତଥା ନାମ ସ୍ମରଣ କରିବାର ସୌଭାଗ୍ୟ ମିଳିଥାଏ ।।୩୫-୩୬।। ଭଗବାନ ବାସୁଦେବ ! ଆପଣଙ୍କୁ ନମସ୍କାର । ଆମେ ଆପଣଙ୍କୁ ଧ୍ୟାନ କରୁଛୁ । ପ୍ରଦ୍ୟୁମ୍ନ, ଅନିରୁଦ୍ଧ ଓ ସଙ୍କର୍ଷଣଙ୍କୁ ନମସ୍କାର କରୁଛୁ । ସେହି ଭଗବାନଙ୍କର ପ୍ରକୃତ ମୂର୍ତ୍ତି ନ ଥିଲେ ମଧ୍ୟ ଯେଉଁ ବ୍ୟକ୍ତି ଯଜ୍ଞପୁରୁଷଙ୍କୁ ଏହି ସବୁ ମନ୍ତ୍ରପୂତ ମୂର୍ତ୍ତିମାନଙ୍କ ରୂପରେ ପୂଜା କରେ, ସେ ହିଁ ପ୍ରକୃତ ଜ୍ଞାନୀ ଓ ସମଦର୍ଶୀ ।।୩୭-୩୮।। ବ୍ରହ୍ମନ୍ ! ମୁଁ ଏହିପରି ଜ୍ଞାନରୂପୀ ଭଗବାନଙ୍କର ଆଜ୍ଞା ପାଳନ କରୁଥିବାରୁ ସେ (ଭଗବାନ ଶ୍ରୀକୃଷ୍ଣ) ମୋତେ ଐଶ୍ୱର୍ଯ୍ୟ ଓ ତାଙ୍କ ପ୍ରତି ଅଶେଷ ଭକ୍ତିଭାବ ପ୍ରଦାନ କଲେ ।।୩୯।। ହେ ବ୍ୟାସ ! ଆପଣ ବହୁଶାସ୍ତ୍ରଦର୍ଶୀ । ଆପଣ ଭଗବାନଙ୍କର ସେହି ପ୍ରସିଦ୍ଧ ଲୀଳାମାନ କୀର୍ତ୍ତନ କରନ୍ତୁ, ଯଦ୍ଦ୍ୱାରା କି ବାରମ୍ବାର ଦୁଃଖାର୍ତ୍ତ ଜନଙ୍କର ଦୁଃଖ ନାଶ ହୋଇପାରିବ । ଅନ୍ୟ କୌଣସି ରାସ୍ତା ମୋତେ ଦେଖାଯାଉ ନାହିଁ ।।୪୦।।

## ଷଷ୍ଠ ଅଧ୍ୟାୟ

# ନାରଦଙ୍କ ପ୍ରାରବ୍ଧର ଅବସାନ

ସୂତ କହିଲେ, ଶୌନକ ! ଏହିପରି ଦେବର୍ଷି ନାରଦଙ୍କର ଜନ୍ମକର୍ମ ବିଷୟ ଶୁଣି ସତ୍ୟବତୀନନ୍ଦନ ବ୍ୟାସ ତାଙ୍କୁ ପ୍ରଶ୍ନ କଲେ, ହେ ଦେବର୍ଷି ! ଆପଣଙ୍କୁ ଜ୍ଞାନୋପଦେଶ ଦେଇ ମୁନିମାନେ ଚାଲିଯିବା ପରେ ଆପଣ ସେହି ଆଦ୍ୟବୟସରେ କ'ଣ କ'ଣ କରିଥିଲେ ? ।।୧-୨।। ହେ ବ୍ରହ୍ମାଙ୍କର ପୁତ୍ର, ଆପଣ କିପରି ଜୀବନଯାପନ କଲେ, ଦେହ ତ୍ୟାଗ କଲେ ଏବଂ ଏହି ଶରୀର ପ୍ରାପ୍ତ ହେଲେ ? ।।୩।। ମୁନିଶ୍ରେଷ୍ଠ ! ଯେଉଁ କାଳଦ୍ୱାରା ସବୁକିଛି ବିଲୁପ୍ତ ହୋଇଯାଏ, ଆପଣ ସେହି କାଳର ଅନ୍ୟ ଏକ କଳ୍ପର କଥା କିପରି ଏ ପର୍ଯ୍ୟନ୍ତ ମନେ ରଖିଛନ୍ତି ? ଅର୍ଥାତ୍ ଆପଣଙ୍କର ଏହି ସ୍ମୃତି ଲୁପ୍ତ ହୋଇ ନାହିଁ କିପରି ? ।।୪।।

ଦେବର୍ଷି ନାରଦ କହିଲେ, ମୋତେ ଜ୍ଞାନୋପଦେଶ ଦେଇ ସାଧୁମହାତ୍ମାମାନେ ଚାଲିଯିବା ପରେ ମୋର ବୟସ ମୁଁ ଏହିପରି ଭାବରେ କଟାଇଥିଲି ।।୫।। ମୋର ମା' ଯେ କି ଜଣେ ଦାସୀ, ସେ ଜଣେ ସାଧାରଣ ସରଳ ସ୍ତ୍ରୀଲୋକ ଥିଲେ । ମୋ ଛଡ଼ା ତାଙ୍କର ଅନ୍ୟ ଗତି ନ ଥିଲା । ମୋତେ ସେ ତାଙ୍କ ସ୍ନେହରେ ବାନ୍ଧି ରଖିଥିଲେ ।।୬।। ମୋର ମା' ସ୍ୱାଧୀନ ନ ଥିବାଯୋଗୁଁ ମୋର ମଙ୍ଗଳପାଇଁ ଯାହା କିଛି କରିବେବୋଲି ଭାବୁଥିଲେ, କରିପାରୁ ନ ଥିଲେ, ଯେପରିକି ଈଶ୍ୱରଙ୍କ ଇଚ୍ଛାଧୀନ ଏହି ଜଗତରେ କାଠପିତୁଳିଟିଏ କିଛି କରିପାରେ ନାହିଁ ।।୭।। ମୁଁ ସେତେବେଳେ ପାଞ୍ଚ ବର୍ଷର ପିଲା । ମୋର ଦେଶକାଳ ବିଷୟରେ କୌଣସି ଧାରଣା ନ ଥିଲା ଏବଂ ମୁଁ ମା'ଙ୍କର ସ୍ନେହରେ ବାନ୍ଧି ହୋଇ ସେହି ବ୍ରାହ୍ମଣଙ୍କର ଘରେ ରହୁଥିଲି । ଦିନେ ରାତିରେ ଘରୁ ବାହାରି ଗାଈ ଦୁହିଁବାକୁ ଯାଉଥିବାବେଳେ ବାଟରେ ମୋ ମା'ଙ୍କର ପାଦ ଏକ ସାପ ଉପରେ ପଡ଼ିଯିବାରୁ କାଳପ୍ରେରିତ ସର୍ପ ତାଙ୍କୁ ଦଂଶନ କଲା ଓ ସେଥିରେ ତାଙ୍କର ମୃତ୍ୟୁ ଘଟିଲା ।।୮-୯।। ମୋର ମା'ଙ୍କ ମୃତ୍ୟୁକୁ ଭକ୍ତବାଞ୍ଛାକଳ୍ପତରୁ ଭଗବାନଙ୍କର ଅନୁଗ୍ରହ ବୋଲି ମୁଁ ମନେକରି ଗୃହତ୍ୟାଗପୂର୍ବକ ଉତ୍ତରଦିଗକୁ ଯାତ୍ରା କଲି ।।୧୦।। ସମୃଦ୍ଧ ଜନପଦ, ନଗର, ଗ୍ରାମ, ଗୋପାଳଙ୍କ ବସ୍ତି, ଖଣିଜ ଅଞ୍ଚଳ, କୃଷିକ୍ଷେତ୍ର, ମାଳଭୂମି, ପୁଷ୍ପବାଟିକା, ବନ, ଉପବନ, ସ୍ୱର୍ଣ୍ଣ-ରଜତ-ତାମ୍ରପୂର୍ଣ୍ଣ ପର୍ବତମାଳା, ବିଭିନ୍ନ ପକ୍ଷୀଙ୍କର କୂଜନ ଓ ଭ୍ରମରଙ୍କର ମଧୁର ଗୁଞ୍ଜନରେ ଭରିଉଠୁଥିବା ନିର୍ମଳ ପଦ୍ମସରୋବର, ନଳବନ, କୁଶକାଶପୂର୍ଣ୍ଣ ଭୂମି, ନୀରନ୍ଧ୍ର ବଂଶବନ ଆଦି ଦେଖି ଦେଖି ସର୍ପ, ପେଚକ ଓ ଶୃଗାଳମାନଙ୍କ କ୍ରୀଡ଼ାସ୍ଥଳୀ ଘୋର ଅରଣ୍ୟ ମଧ୍ୟରେ ମୁଁ ପ୍ରବେଶ

କଲି ॥୧୧-୧୪॥ ବହୁ ପଥ ଚାଲି ମୁଁ ଅତିଶୟ କ୍ଳାନ୍ତ ହୋଇପଡ଼ିଥିଲି । କ୍ଷୁଧା ଓ ପିପାସାରେ ଆତୁର ହୋଇ ନଦୀଦ୍ୱାରା ସୃଷ୍ଟ ନିକଟବର୍ତ୍ତୀ ଏକ ହ୍ରଦରେ ସ୍ନାନ କଲି । ତୃଷା ନିବାରଣପାଇଁ ଜଳ ପାନ କଲି । ତଦ୍ଦ୍ୱାରା ମୁଁ ବହୁ ପରିମାଣରେ ଆଶ୍ୱସ୍ତି ଅନୁଭବ କଲି । ଜନମନୁଷ୍ୟଶୂନ୍ୟ ସେହି ଅରଣ୍ୟ ମଧ୍ୟରେ ଏକ ଛାୟାପ୍ରଦ ଅଶ୍ୱତ୍ଥ ବୃକ୍ଷ ଦେଖି ତା'ମୂଳରେ ଯାଇ ବସିଲି । ମୁନିମାନଙ୍କର ଉପଦେଶ ମୋର ମନେ ପଡ଼ିଲା ଓ ନିଜର ଆତ୍ମାରେ ସ୍ଥିତ ପରମାତ୍ମାଙ୍କୁ ମୁଁ ଧ୍ୟାନ କରିବାକୁ ଲାଗିଲି ॥୧୫-୧୬॥

ଭାବବିହ୍ୱଳ ଚିତ୍ତରେ ମୁଁ ଭଗବାନଙ୍କ ପାଦପଦ୍ମକୁ ଧ୍ୟାନ କରୁଥିବାବେଳେ ତାଙ୍କୁ କିପରି ଲାଭ କରିବି, ସେଥିପାଇଁ ମୋର ପ୍ରବଳ ଉତ୍କଣ୍ଠା ଜାତ ହେଲା ଏବଂ ମୋର ଚକ୍ଷୁରୁ ଧାର ଧାର ହୋଇ ଲୁହ ଝରିବାକୁ ଲାଗିଲା । ମୁଁ ଅନୁଭବ କଲି, ମୋର ହୃଦୟରେ ଶ୍ରୀହରି ନିଜେ ଆସି ବସିଛନ୍ତି ॥୧୭॥ ସେହି ରୂପକୁ ଦେଖି ମୋର ସର୍ବାଙ୍ଗ ପୁଲକିତ ହୋଇଉଠିଲା । ଆନନ୍ଦ-ଆବେଗରେ ମୂର୍ଚ୍ଛିତ ହୋଇ ମୋର ନିଜ ପରଜ୍ଞାନ ରହିଲା ନାହିଁ ॥୧୮॥ ସମସ୍ତ ଦୁଃଖଶୋକ ହରଣକାରୀ ଭଗବାନଙ୍କର ସେହି ମନୋହର ରୂପ ମୁଁ ଦେଖୁଛି, ଏହି ସମୟରେ ସେ ହଠାତ୍ ଅନ୍ତର୍ହିତ ହୋଇଗଲେ ଏବଂ ମୋର ମନ ଦୁଃଖରେ ଭରିଗଲା ॥୧୯॥ ସେହି ରୂପକୁ ପୁଣି ଥରେ ଦେଖିବାପାଇଁ ଯେତେ ମନୋନିବେଶ, ଯେତେ ଧ୍ୟାନ କଲେ ମଧ୍ୟ ମୁଁ ଆଉ ଦେଖିପାରିଲି ନାହିଁ । ହୃଦୟରେ ଅତୃପ୍ତି ଓ ମନରେ ସନ୍ତାପ ଜାତ ହେଲା ॥୨୦॥ ସେହି ନିର୍ଜନ ବନରେ ଏହିପରି ଧ୍ୟାନସ୍ଥ ଅବସ୍ଥାରେ ମୁଁ ଏକ ଗୁରୁଗମ୍ଭୀର ଅଶରୀରୀ ବାଣୀ ଶୁଣିବାକୁ ପାଇଲି । ଭଗବାନଙ୍କର ସେହି ଶ୍ରୁତିମଧୁର ସ୍ୱରରେ ମୋର ସମସ୍ତ ଶୋକ ଦୂର ହୋଇଗଲା । ଭଗବାନ କହିଲେ, ହେ ନାରଦ, ଏ ଜନ୍ମରେ ତୁମେ ଆଉ ମୋତେ ଦେଖିପାରିବ ନାହିଁ । ଯେଉଁ ଯୋଗୀମାନଙ୍କର ହୃଦୟରୁ ଆବିଳତା ଦୂର ହୋଇ ନ ଥାଏ, ସେମାନଙ୍କୁ ମୁଁ ଦେଖା ଦିଏ ନାହିଁ ॥୨୧-୨୨॥ ହେ ନିଷ୍ପାପ ! ମୋତେ ଲାଭ କରିବାପାଇଁ ତୁମର ଯେଉଁ ଲାଳସା, ତାହା ବଢ଼ାଇବା ନିମନ୍ତେ ମୁଁ ଥରେ ମାତ୍ର ତୁମକୁ ଦର୍ଶନ ଦେଲି । ମୋତେ ପାଇବାକୁ ହେଲେ ହୃଦୟରୁ ସମସ୍ତ କଳୁଷରୂପକ ବିଷୟବାସନା ଦୂର କରିବା ଆବଶ୍ୟକ ॥୨୩॥ ତୁମେ ଅଳ୍ପକାଳ ଯେଉଁ ସାଧୁ ମହାତ୍ମାମାନଙ୍କ ସେବା କରିଥିଲ, ତଦ୍ଦ୍ୱାରା ମୋ ପ୍ରତି ତୁମର ଦୃଢ଼ ଭକ୍ତି ଜନ୍ମିଛି । ଏହି ପାର୍ଥିବ ମଳିନ ଦେହ ତ୍ୟାଗ କରିବା ପରେ ତୁମେ ନିଶ୍ଚୟ ମୋ ପାଖକୁ ଆସିଯିବ ॥୨୪॥ ମୋ'ଠାରେ ମନୋନିବେଶ କରିଥିବାଯୋଗୁଁ ଆଉ କେବେ ସ୍ଖଳନ ହେବ ନାହିଁ । କଳ୍ପକଳ୍ପାନ୍ତରରେ ମଧ୍ୟ ତୁମର ଏହି ସାଧନାର ସ୍ମୃତି ଜାଗରୂକ ରହିବ ॥୨୫॥ ସେହି ଶୂନ୍ୟରୂପୀଙ୍କର ବାଣୀ ଶୁଣି ମୋ ପ୍ରତି ତାଙ୍କର ଅଶେଷ କୃପା ଅଛି ବୋଲି ମୁଁ ଅନୁଭବ କଲି ଏବଂ ସେହି ମହାମହିମଙ୍କ ଉଦ୍ଦେଶ୍ୟରେ ମୁଣ୍ଡ ନୁଆଁଇ ପ୍ରଣାମ ଜଣାଇଲି । ସେହି ସମୟଠାରୁ ନିଃସ୍ପୃହ ଭାବରେ ସମସ୍ତ ଲଜ୍ଜା, ସଂକୋଚ, ଅହଙ୍କାର ତ୍ୟାଗ କରି, କାହାରି ପ୍ରତି କିଛି ଈର୍ଷା ବା ଅସୂୟା ଭାବ ନ ରଖି ମୁଁ ଭଗବାନଙ୍କର ମଧୁର ନାମ ଓ ଲୀଳା କୀର୍ତ୍ତନ କରିବାକୁ ଲାଗିଲି । ଏହିପରି କରି କରି ପୃଥିବୀ ପର୍ଯ୍ୟଟନ କଲି ଏବଂ ଅନ୍ତିମ କାଳକୁ ଅପେକ୍ଷା କରି ରହିଲି ॥୨୬-୨୭॥

ବ୍ୟାସଦେବ ! ଏହିପରି ମୁଁ ନିର୍ମଳ ହୃଦୟରେ ଓ ଅନାସକ୍ତଭାବରେ କୃଷ୍ଣଚିନ୍ତାରେ ତନ୍ମୟ ରହୁଥିଲି । ହଠାତ୍ ଦିନେ ବିଜୁଳିର ଝଲକପରି ମୃତ୍ୟୁକାଳ ଆସି ଉପସ୍ଥିତ ହେଲା ॥୨୮॥ ମୋର ପ୍ରାରବ୍ଧ କର୍ମର ଅବସାନ ଘଟିଲା । ପଞ୍ଚଭୂତରେ ଗଢ଼ା ଶରୀରର ମଧ୍ୟ ଅବସାନ ହେଲା ଏବଂ ମୁଁ ଶୁଦ୍ଧ ଭାଗବତ ଶରୀର ପ୍ରାପ୍ତ ହେଲି ॥୨୯॥ କଳ୍ପଶେଷରେ ସମସ୍ତ ସଂସାରକୁ ସଂହାର କରି ଭଗବାନ ପ୍ରଳୟ-ପୟୋଧିରେ ଏକାକୀ ଶୟନ କରିବାପାଇଁ ଇଚ୍ଛା କଲେ । ସେତେବେଳେ ବ୍ରହ୍ମା ତାଙ୍କ ହୃଦୟରେ ପ୍ରବେଶ କଲେ ଓ ମୁଁ ମଧ୍ୟ ବ୍ରହ୍ମାଙ୍କର ନିଃଶ୍ୱାସ ସହିତ ତାଙ୍କ ହୃଦୟରେ ପ୍ରବେଶ କଲି ॥ ୩୦॥ ସହସ୍ର ଯୁଗ ବିତିଯିବା ପରେ ଯେତେବେଳେ ତାଙ୍କଦ୍ୱାରା ଆଦିଷ୍ଟ ହୋଇ ବ୍ରହ୍ମା ସୃଷ୍ଟି ରଚନା କରିବାପାଇଁ ଇଚ୍ଛା କଲେ, ତାଙ୍କ ପ୍ରାଣରୁ ମରୀଚି ଆଦି ଋଷିମାନଙ୍କ ସହ ମୁଁ ଆବିର୍ଭୂତ ହେଲି । ସେହି କାଳରୁ ମହାବିଷ୍ଣୁଙ୍କ ଅନୁଗ୍ରହରୁ ମୁଁ ତିନି ଲୋକ ମଧ୍ୟରେ (ଭିତରେ ଓ ବାହାରେ) ଅବାଧରେ ବିଚରଣ କରିପାରୁଛି ଏବଂ କୃଷ୍ଣପ୍ରେମ ରୂପ ମୋର ବ୍ରତ ପାଳନ କରିଆସୁଛି ॥ ୩୧-୩୨॥ ଈଶ୍ୱର

ମୋତେ ସପ୍ତସ୍ୱରଯୁକ୍ତ ଏହି ବୀଣାଟିକୁ ଦେଇଛନ୍ତି ଏବଂ ସେହି ବୀଣାର ଗାନରେ ମୁଁ ହରିକଥାର ମୂର୍ଚ୍ଛନା ସୃଷ୍ଟିକରି ସଂସାରରେ ବିଚରଣ କରୁଛି ॥ ୩୩॥ ଯାହାଙ୍କ ପାଦ ସକଳ ତୀର୍ଥର ସ୍ୱରୂପ, ଯେ ତାଙ୍କ ଭଜନ ଶୁଣି ପ୍ରୀତ ହୁଅନ୍ତି, ମୁଁ ସେହି ଭଗବାନଙ୍କର ଲୀଳା ଗାନ କରେ ଏବଂ ଡାକିବା ମାତ୍ରେ ଆସିବାପରି ସେ ମୋ ହୃଦୟରେ ଆସି ଦେଖାଦିଅନ୍ତି ॥ ୩୪॥ ଏହି ସଂସାରରେ ବିଷୟବାସନାରେ ବ୍ୟାକୁଳ ମନୁଷ୍ୟମାନଙ୍କପାଇଁ ହରିଙ୍କର ଲୀଳାବର୍ଣ୍ଣନ ଭବସିନ୍ଧୁ ପାରିହେବା ନିମନ୍ତେ ଏକମାତ୍ର ନୌକା ସଦୃଶ ॥ ୩୫॥ ବାରମ୍ବାର କାମଲୋଭଦ୍ୱାରା ଆହତ ମନୁଷ୍ୟ ଶ୍ରୀକୃଷ୍ଣସେବାଦ୍ୱାରା ଆତ୍ମାରେ ଯେଭଳି ଶାନ୍ତି ଅନୁଭବ କରେ, ଯମ, ନିୟମ ଆଦି ଅଷ୍ଟାଙ୍ଗ ଯୋଗ ମାଧ୍ୟମରେ ସେଭଳି ଶାନ୍ତି ଲାଭ କରେ ନାହିଁ ॥ ୩୬॥ ହେ ଅନଘ , ମୋର ଜନ୍ମକର୍ମ ବିଷୟରେ ଆପଣ ଯେଉଁସବୁ ପ୍ରଶ୍ନ କରିଥିଲେ ଏବଂ ତା'ସହିତ ଆପଣଙ୍କ ଆତ୍ମାର ସନ୍ତୋଷପାଇଁ ଯାହା କିଛି ଆବଶ୍ୟକ, ମୁଁ ସେସବୁ କଥା ଆପଣଙ୍କୁ ଶୁଣାଇଲି ॥ ୩୭ ॥

ସୂତ କହିଲେ, ଏହିପରି ଦେବର୍ଷି ନାରଦ ବ୍ୟାସଦେବଙ୍କୁ ସମ୍ଭାଷଣ କରି ତାଙ୍କଠାରୁ ବିଦାୟ ନେଲେ ଏବଂ ବୀଣା ବାଦନ କରି ତାଙ୍କ ସ୍ୱଚ୍ଛନ୍ଦ ବିଚରଣପାଇଁ ବାହାରିଲେ ॥ ୩୮॥ ଦେବର୍ଷି ନାରଦ ଧନ୍ୟ । ସେ ଶାର୍ଙ୍ଗଧନ୍ୱା ଭଗବାନଙ୍କର ବିମଳକୀର୍ତ୍ତିଗାଥା ଗାନ କରି ତ୍ରିତାପରେ ବ୍ୟାକୁଳ ଏହି ଜଗତକୁ ଆନନ୍ଦିତ କରନ୍ତି ॥୩୯॥

## ସପ୍ତମ ଅଧ୍ୟାୟ

# ଅଶ୍ୱତ୍ଥାମାର ମାନମର୍ଦ୍ଦନ

ଶୌନକ ପଚାରିଲେ; ହେ ସୂତ ! ଦେବର୍ଷି ନାରଦ ଚାଲିଯିବା ପରେ ଭଗବାନ ବ୍ୟାସଦେବ ତାଙ୍କ ଅଭିପ୍ରାୟ ଜାଣି କେଉଁପରି କାର୍ଯ୍ୟ କଲେ ? ॥୧॥ ସୂତ କହିଲେ; ବ୍ରହ୍ମନଦୀ ସରସ୍ୱତୀର ପଶ୍ଚିମ ତଟରେ ଶମ୍ୟାପ୍ରାସ ନାମକ ଏକ ଆଶ୍ରମ ଅଛି, ଯେଉଁଠି ଋଷିମାନେ ମିଳିତ ହୋଇ ଯଜ୍ଞ କରନ୍ତି । ନାରଦ ଯିବାପରେ ବରକୋଳି ଗଛପୂର୍ଣ୍ଣ ସେହି ଆଶ୍ରମରେ ବସି ଭଗବାନ ବ୍ୟାସ ଆଚମନପୂର୍ବକ ସଙ୍ଗେ ସଙ୍ଗେ ଧ୍ୟାନସ୍ଥ ହୋଇଗଲେ ॥୨-୩॥ ତାଙ୍କ ଚିତ୍ତ ଭକ୍ତିଯୋଗଯୁକ୍ତ ଓ ମନ ନିର୍ମଳ ଥିଲା । ସେ ପୂର୍ଣ୍ଣପୁରୁଷ ଭଗବାନଙ୍କୁ ଓ ତାଙ୍କ ଆଶ୍ରିତ ମାୟାଶକ୍ତିକୁ ଦର୍ଶନ କଲେ ॥୪॥ ଜୀବାତ୍ମା ତ୍ରିଗୁଣାତୀତ ହେଲେ ମଧ୍ୟ ମାୟାରେ ମୋହିତ ହୋଇ ନିଜକୁ ତ୍ରିଗୁଣାତ୍ମକ ବୋଲି ମନେ କରେ । ଅର୍ଥାତ୍ ରଜଃ, ତମ ଓ ସତ୍ତ୍ୱ ଗୁଣଦ୍ୱାରା ପରିଚାଳିତ ହୁଏ । ସେଥିପାଇଁ ଏହି ସଂସାର ବହୁ ଅନର୍ଥର ବଶବର୍ତ୍ତୀ ହୋଇଥାଏ ॥୫॥ ସାକ୍ଷାତ୍ ଭଗବତ୍ ଭକ୍ତିଯୋଗଦ୍ୱାରା ଏହି ଅନର୍ଥର ଉପଶମ ଯେ ସମ୍ଭବ, ଏହା ହୃଦୟଙ୍ଗମ କରି ମହର୍ଷି ବ୍ୟାସଦେବ ଏହି ସାତ୍ୱତସଂହିତା (ଭାଗବତ ଶାସ୍ତ୍ର) ରଚନା କଲେ, ଯାହା ଶୁଣିବାମାତ୍ରେ ପରମପୁରୁଷ କୃଷ୍ଣଙ୍କ ପ୍ରତି ଭକ୍ତିଭାବ ଜାତ ହୁଏ ଏବଂ ମନୁଷ୍ୟର ଶୋକ, ମୋହ ଓ ଭୟ ଦୂର ହୁଏ ॥୬-୭॥ ବ୍ୟାସଦେବ ସେହି ଭାଗବତ ସଂହିତା ରଚନା କରି ବିଷୟବାସନାରୁ ନିବୃତ୍ତ ତାଙ୍କ ପୁତ୍ର ଶୁକଦେବଙ୍କୁ ତାହା ପାଠ କରାଇଲେ ॥ ୮॥

ଶୌନକ ପଚାରିଲେ, ଶୁକଦେବ ତ ଶୁଦ୍ଧ ସନ୍ନ୍ୟାସୀ ଥିଲେ, ସଂସାରକୁ ଉପେକ୍ଷା କରିଥିଲେ ଏବଂ ନିଜର ଆତ୍ମାକୁ ଚିହ୍ନିଥିବାଯୋଗୁଁ ଆନନ୍ଦରେ ରହୁଥିଲେ, ସେ କାହିଁକି ଏପରି ଏକ ବିଶାଳ ଗ୍ରନ୍ଥ ଅଧ୍ୟୟନପାଇଁ ମନ ବଳାଇଲେ ?॥୯॥ ସୂତ କହିଲେ, ଯେଉଁ ମୁନିମାନେ ବ୍ରହ୍ମନିଷ୍ଠ, ସେମାନଙ୍କର କୌଣସି ଗ୍ରନ୍ଥ ପଢ଼ିବା ଆବଶ୍ୟକ ନ ଥିଲେ ମଧ୍ୟ ସର୍ବଦା ଭଗବାନଙ୍କ ପ୍ରତି ନିଷ୍କାମ ଭକ୍ତି ରହିଥାଏ । କାରଣ ଶ୍ରୀହରିଙ୍କର ଏହା ହିଁ ଏକ ଆକର୍ଷଣୀୟ ଶକ୍ତି ॥୧୦॥ ସେହି ହରିଙ୍କର ଗୁଣାବଳୀଦ୍ୱାରା ବ୍ୟାସପୁତ୍ର ଶୁକଦେବ ଆକୃଷ୍ଟ ହୋଇ ଏହି ବିଶାଳ ଗ୍ରନ୍ଥ ଅଧ୍ୟୟନ କଲେ ଏବଂ ହରିଭକ୍ତମାନଙ୍କର ପ୍ରିୟ

ହୋଇଗଲେ ।।୧୧।। ଶୌନକ, ବର୍ତ୍ତମାନ ମୁଁ ରାଜର୍ଷି ପରିକ୍ଷିତଙ୍କ ଜନ୍ମ, କର୍ମ ଓ ମୋକ୍ଷର ବିଷୟ ଏବଂ ପାଣ୍ଡବମାନଙ୍କ ମହାପ୍ରସ୍ଥାନ ବୃତ୍ତାନ୍ତ ଶୁଣାଇବି । ଏଥିରୁ ହିଁ ଆପେ ଆପେ କୃଷ୍ଣକଥାର ଅବତାରଣା ହୋଇଯିବ ।।୧୨।। ଯେତେବେଳେ କୁରୁକ୍ଷେତ୍ର ଯୁଦ୍ଧଭୂମିରେ କୌରବ ଓ ପାଣ୍ଡବ ପକ୍ଷର ଯୋଦ୍ଧାମାନେ ବୀରଗତି ଲାଭକଲେ ଏବଂ ଧୃତରାଷ୍ଟ୍ରପୁତ୍ର ଦୁର୍ଯ୍ୟୋଧନ ଭୀମଦ୍ୱାରା ଉରୁଭଙ୍ଗ ଯନ୍ତ୍ରଣାରେ ପୀଡ଼ିତ ହୋଇ ଶୋକାର୍ତ୍ତ ଅବସ୍ଥାରେ ଥିଲେ, ସେତେବେଳେ ପ୍ରଭୁଭକ୍ତ ଅଶ୍ୱତ୍‌ଥାମା ତାଙ୍କୁ ସନ୍ତୁଷ୍ଟ କରିବାପାଇଁ ଦ୍ରୌପଦୀଙ୍କ ସୁପ୍ତ ପଞ୍ଚପୁତ୍ରଙ୍କର ଶିରଚ୍ଛେଦନ କରି ତାଙ୍କୁ ଉପହାର ଦେଲେ । କିନ୍ତୁ ଦୁର୍ଯ୍ୟୋଧନ ଏଥିରେ ସନ୍ତୁଷ୍ଟ ହେବା ପରିବର୍ତ୍ତେ ଏହି ଘୃଣିତ ଓ ଗର୍ହିତ କାର୍ଯ୍ୟର ବହୁତ ନିନ୍ଦା କଲେ ।।୧୩-୧୪।। ମାତା ଦ୍ରୌପଦୀ ନିଜ ଶିଶୁପୁତ୍ରମାନଙ୍କର ନିଧନବାର୍ତ୍ତା ଶୁଣି ଦାରୁଣ ଶୋକରେ ବିଳାପ କରିବାକୁ ଲାଗିଲେ । ଶୋକାକୁଳ ଦ୍ରୌପଦୀଙ୍କୁ ଅର୍ଜ୍ଜୁନ ସାନ୍ତ୍ୱନା ଦେଇ କହିଲେ, ଭଦ୍ରେ, ଗାଣ୍ଡୀବ ଧନୁର୍ବାଣରେ ମୁଁ ସେହି ଆତତାୟୀ ଅଶ୍ୱତ୍‌ଥାମାର ଶିରଚ୍ଛେଦନ କରି ତୁମକୁ ଉପହାର ଦେବି । ତୁମେ ପୁତ୍ରମାନଙ୍କର ଶବଦାହ ପରେ ସେହି ଛିନ୍ନ ଶିର ଉପରେ ପାଦ ଦେଇ ସ୍ନାନପୂର୍ବକ ଶୋକ ନିବାରଣ କରିବ ।।୧୫-୧୬।। ଏହିପରି ମଧୁର ବାକ୍ୟରେ ଦ୍ରୌପଦୀଙ୍କୁ ସାନ୍ତ୍ୱନା ଦେଇ ମିତ୍ର କୃଷ୍ଣଙ୍କୁ କପିଧ୍ୱଜ ରଥରେ ସାରଥି କରି ଭୟାନକ ଗାଣ୍ଡୀବ ଧନୁର ଟଙ୍କାରପୂର୍ବକ ଅର୍ଜ୍ଜୁନ ଗୁରୁପୁତ୍ର ଅଶ୍ୱତ୍‌ଥାମାଙ୍କର ପଶ୍ଚାତ୍‌ଧାବନ କଲେ ।।୧୭-।। କୁମାରମାନଙ୍କ ହତ୍ୟାକାରୀ ଅଶ୍ୱତ୍‌ଥାମା ଦୂରରୁ ରଥରେ ଅର୍ଜ୍ଜୁନଙ୍କୁ ଆସୁଥିବାର ଦେଖି ଅତ୍ୟନ୍ତ ଭୟ ପାଇ ପ୍ରାଣବିକଳରେ ପଳାଇବାକୁ ଲାଗିଲେ, ଯେପରିକି ଥରେ ମହାଦେବଙ୍କ ଭୟରେ ସୂର୍ଯ୍ୟ ଦଉଡ଼ି ପଳାଇଥିଲେ ।।୧୮।। ଯେତେବେଳେ ଅଶ୍ୱତ୍‌ଥାମା ଦେଖିଲେ ଯେ, ତାଙ୍କ ଅଶ୍ୱମାନେ କ୍ଲାନ୍ତ ଏବଂ ଆଉ ତାଙ୍କ ରକ୍ଷାର ଉପାୟ ନାହିଁ, ସେତେବେଳେ ସେ ଆତ୍ମରକ୍ଷାପାଇଁ ବ୍ରହ୍ମଶିର ଏକମାତ୍ର ଅସ୍ତ୍ର ବୋଲି ଚିନ୍ତା କଲେ । ପ୍ରାଣସଙ୍କଟ ଉପସ୍ଥିତ ଦେଖି ସେ ଆଚମନ ଓ ମନ୍ତ୍ରୋଚ୍ଚାରଣପୂର୍ବକ ଏହି ଅସ୍ତ୍ରଟିକୁ ପ୍ରେରଣ କଲେ । ସେଥିରୁ ଏକ ପ୍ରଚଣ୍ଡ ତେଜ ନିର୍ଗତ ହୋଇ ଚତୁର୍ଦ୍ଦିଗକୁ ବ୍ୟାପିବାକୁ ଲାଗିଲା । ଅର୍ଜ୍ଜୁନ ନିଜର ଜୀବନକୁ ବିପନ୍ନ ମଣି କୃଷ୍ଣଙ୍କୁ ନିବେଦନ କଲେ ।।୧୯-୨୧।। ଅର୍ଜୁନ କହିଲେ, ମହାବାହୁ କୃଷ୍ଣ, ତୁମେ ଭକ୍ତମାନଙ୍କର ଅଭୟଦାତା, ସଂସାରଦୁଃଖରେ ଦଗ୍ଧ ଜୀବମାନଙ୍କର ଶୋକାପହାରୀ, ତୁମେ ହିଁ ଆଦି ପୁରୁଷ, ପରମେଶ୍ୱର, ଏହି ପ୍ରାକୃତ ବିଶ୍ୱର ଊର୍ଦ୍ଧ୍ୱରେ ଅବସ୍ଥିତ । ତୁମେ ନିଜର ଚେତନଶକ୍ତିଦ୍ୱାରା ସମସ୍ତପ୍ରକାର ମାୟାକୁ ଦୂର କରି ପରମାନନ୍ଦ ନାମରେ ବିରାଜିତ ।।୨୨-୨୩।। ତୁମେ ତୁମର ପ୍ରଭାବରେ ମାୟାମୋହିତ ଜୀବମାନଙ୍କପାଇଁ ବିଭିନ୍ନ ଧର୍ମାଚରଣ ବ୍ୟବସ୍ଥା କରି ସେମାନଙ୍କର ମଙ୍ଗଳ କର । ତୁମେ ଭୂଭାର ହରଣ କରିବାପାଇଁ ଏବଂ ତୁମର ଅନନ୍ୟ ଭକ୍ତମାନଙ୍କୁ ଆନନ୍ଦ ଦେବାପାଇଁ ଏହି ଅବତାର ଗ୍ରହଣ କରିଛ । ହେ ଦେବଦେବ ! ତୁମେ ଥାଉ ଥାଉ କିପରି ଏହି ସର୍ବଗ୍ରାସୀ ମହାଭୟାନକ ତେଜ ସମ୍ଭବ ହେଉଛି ? କେଉଁଠାରୁ ଏହା ମାଡ଼ିଆସୁଛି, ମୁଁ ଜାଣିପାରୁ ନାହିଁ ।।୨୪-୨୬।।

ଶ୍ରୀ ଭଗବାନ କହିଲେ, ଅର୍ଜ୍ଜୁନ, ତୁମର ଜାଣିବାପାଇଁ କହୁଛି, ଦ୍ରୋଣପୁତ୍ର ଅଶ୍ୱତ୍‌ଥାମା ପ୍ରାଣସଂକଟ ବେଳ ଜାଣି ଏହି ବ୍ରହ୍ମାସ୍ତ୍ରକୁ ପ୍ରୟୋଗ କରିଛି । ଏହାକୁ ଫେରାଇ ନେବାର ବିଦ୍ୟା ତାକୁ ଜଣା ନାହିଁ ।।୨୭।। ଏହି ଅସ୍ତ୍ରକୁ ନିବାରଣ କରିବାପାଇଁ ସେହି ବ୍ରହ୍ମାସ୍ତ୍ର ଛଡ଼ା ଆଉ କୌଣସି ଅସ୍ତ୍ର ନାହିଁ । ତୁମେ ସମସ୍ତ ଅସ୍ତ୍ରଶସ୍ତ୍ରରେ ପାରଙ୍ଗମ; ବ୍ରହ୍ମାସ୍ତ୍ର ପ୍ରୟୋଗ କରି ଏହାର ତେଜକୁ ଦହନ କର ।।୨୮।। ସୂତ କହିଲେ, କୃଷ୍ଣଙ୍କଠାରୁ ଏହା ଶୁଣି ଶତ୍ରୁହନ୍ତା ଅର୍ଜ୍ଜୁନ ମନ୍ତ୍ରିତ ଜଳ ସ୍ପର୍ଶପୂର୍ବକ କୃଷ୍ଣଙ୍କୁ ପ୍ରଦକ୍ଷିଣ କରି ବ୍ରହ୍ମାସ୍ତ୍ର ନିକ୍ଷେପ କଲେ ।।୨୯।। ଏହି ଦୁଇ ବ୍ରହ୍ମାସ୍ତ୍ରର ତେଜ ପ୍ରଳୟକାଳୀନ ସୂର୍ଯ୍ୟ ଓ ଅଗ୍ନିପରି ସମଗ୍ର ପୃଥିବୀ ଓ ଆକାଶମଣ୍ଡଳକୁ ଆଚ୍ଛାଦିତ କରି ବଢ଼ିବାକୁ ଲାଗିଲା । ତିନିଲୋକକୁ ଜାଳିଦେବାର ଶକ୍ତି ଥିବା ଏହି ଅସ୍ତ୍ରଦୁଇଟିର ତେଜରେ ବିଶ୍ୱର ପ୍ରାଣୀମାନେ ଚିନ୍ତାକଲେ, ସାଂବର୍ତ୍ତକ ଅଗ୍ନିସହ ପ୍ରଳୟକାଳ ଆସିଗଲା ।। ୩୦-୩୧।। ସମଗ୍ର ଜଗତ ଓ ଲୋକସମୂହ ଅଚିରେ ଧ୍ୱଂସ ପାଇଯିବ ବୋଲି ଦେଖି କୃଷ୍ଣଙ୍କ ପରାମର୍ଶରେ ଅର୍ଜ୍ଜୁନ ଦୁଇଟିଯାକ ଅସ୍ତ୍ରକୁ ଫେରାଇନେଲେ ।।୩୨।।

କ୍ରୋଧରେ ଅର୍ଜୁନଙ୍କର ଆଖି ଲାଲ ପଡ଼ିଯାଇଥିଲା । ସେ ସେହି ନିଷ୍ଠୁର ଗୌତମୀପୁତ୍ର ଅଶ୍ୱତ୍ଥାମାକୁ ଧରିଆଣି ପଶୁମାନଙ୍କୁ ଦଉଡ଼ିରେ ବାନ୍ଧିବା ପରି ତାକୁ ବାନ୍ଧି ପକାଇଲେ ॥୩୩॥ ଅର୍ଜୁନ ବଳପୂର୍ବକ ଅଶ୍ୱତ୍ଥାମାକୁ ରଜ୍ଜୁରେ ବାନ୍ଧି ନିଜର ଶିବିରକୁ ନେଇଯାଉଥିବାବେଳେ ପୁଣ୍ଡରୀକାକ୍ଷ କୃଷ୍ଣ କ୍ରୁଦ୍ଧ ହୋଇ କହିଲେ, ଅର୍ଜୁନ, ଏହି ଅଧମ ବ୍ରାହ୍ମଣକୁ ନ ମାରି ଛାଡ଼ିବା ଆଦୌ ଉଚିତ ହେଲା ନାହିଁ ॥୩୪॥ ଯେ ରାତିରେ ଶୋଇଥିବା ନିରୀହ ବାଳକମାନଙ୍କୁ ହତ୍ୟା କରିପାରେ, ଅପେକ୍ଷା ନ କରି ତାକୁ ଶୀଘ୍ର ହତ୍ୟା କର ॥୩୫॥ ଅସାବଧାନ, ପାଗଳ, ନିଶାସକ୍ତ, ସୁପ୍ତ, ବାଳକ, ସ୍ତ୍ରୀ, ଜଡ଼, ଶରଣାଗତ, ବିରଥ ଓ ଭୀତ ଶତ୍ରୁକୁ ଧର୍ମଜ୍ଞମାନେ ବଧ କରନ୍ତି ନାହିଁ ॥୩୬॥ ଯେଉଁ ବ୍ୟକ୍ତି ଅନ୍ୟମାନଙ୍କ ପ୍ରାଣ ହରଣ କରି ନିଜେ ବଞ୍ଚିରହିବାପାଇଁ ଚେଷ୍ଟା କରେ, ସେହି ବ୍ୟକ୍ତି ଅତ୍ୟନ୍ତ ଘୃଣ୍ୟ ଓ ବଧର ଯୋଗ୍ୟ । କାରଣ ସେହି ଅଧୋଗାମୀ ବ୍ୟକ୍ତି ବହୁକାଳ ବଞ୍ଚି ରହିବା ତା ପାଇଁ ମଧ୍ୟ ମଙ୍ଗଳକର ନୁହେଁ ॥୩୭॥ ମୁଁ ନିଜେ ଶୁଣିଛି, ଦ୍ରୌପଦୀଙ୍କ ନିକଟରେ ତୁମେ ପ୍ରତିଜ୍ଞା କରିଥିଲ, ହେ ମାନିନୀ, ତୁମ ପୁତ୍ରହନ୍ତାର ଶିରଚ୍ଛେଦନ କରି ମୁଁ ତୁମ ପାଖରେ ପହଞ୍ଚାଇବି ॥୩୮॥ ଏହି ଅଶ୍ୱତ୍ଥାମା ମହାପାପୀ, କୁଳାଙ୍ଗାର । ଶିଶୁବଧ କରି ସେ ନିଜ ପ୍ରଭୁ ଦୁର୍ଯ୍ୟୋଧନର ମଧ୍ୟ ପ୍ରୀତିଭାଜନ ହୋଇପାରିଲା ନାହିଁ । ଏହି ଶିଶୁହନ୍ତା ଆତତାୟୀକୁ ତୁମେ ଶୀଘ୍ର ବଧ କର ॥୩୯॥ ଶ୍ରୀକୃଷ୍ଣ ଅର୍ଜୁନଙ୍କୁ ଏହିପରି ଧର୍ମପରୀକ୍ଷାରେ ପ୍ରରୋଚିତ କଲେ ମାତ୍ର ମହାମନା ଅର୍ଜୁନ ନିଜର ଗୁରୁପୁତ୍ର ଅଶ୍ୱତ୍ଥାମାକୁ ପୁତ୍ରହନ୍ତା ହେଲେ ମଧ୍ୟ ବଧ କରିବାକୁ ଇଚ୍ଛା କଲେ ନାହିଁ ॥୪୦॥ ନିଜର ପ୍ରିୟ ସାରଥି ଗୋବିନ୍ଦଙ୍କ ସହ ସେ ଶିବିରକୁ ପ୍ରତ୍ୟାବର୍ତ୍ତନ କରି ସେଠାରେ ନିଜ ପୁତ୍ରଶୋକରେ ବିଳାପ କରୁଥିବା ଦ୍ରୌପଦୀଙ୍କୁ ବନ୍ଦି ଅଶ୍ୱତ୍ଥାମାକୁ ସମର୍ପଣ କଲେ ॥୪୧॥

ଦ୍ରୌପଦୀ ଦେଖିଲେ, ଗୁରୁପୁତ୍ର ଅଶ୍ୱତ୍ଥାମା ପଶୁପରି ବନ୍ଧା ହୋଇଛନ୍ତି ଏବଂ ଅତ୍ୟନ୍ତ ନିନ୍ଦିତ କର୍ମ କରିଥିବାଯୋଗୁଁ ତାଙ୍କ ମୁହଁ ତଳକୁ ହୋଇଯାଇଛି । ପାଟିରୁ କଥା ବାହାରୁ ନାହିଁ । ସେ ନାରୀ, କୃପାଳୁ । ଗୁରୁପୁତ୍ରଙ୍କୁ ନମସ୍କାର କରି ସେ ଏପରି ବନ୍ଧା ହୋଇ ଆସିଥିବା ଦେଖି ସହିପାରିଲେ ନାହିଁ । ଅର୍ଜୁନଙ୍କୁ କହିଲେ, ଶୀଘ୍ର ଏହାଙ୍କୁ ମୁକ୍ତ କରିଦିଅ । ଏ ବ୍ରାହ୍ମଣ ଓ ସର୍ବଦା ଆମର ଗୁରୁ । ଯାହାଙ୍କ ଅନୁଗ୍ରହରୁ ତୁମେ ଧନୁର୍ବିଦ୍ୟା ଶିକ୍ଷା କରିଛ, ବିଭିନ୍ନ ଅସ୍ତ୍ରଶସ୍ତ୍ରର ପ୍ରୟୋଗ ତଥା ପ୍ରତ୍ୟାବର୍ତ୍ତନର କୌଶଳ ଶିକ୍ଷା କରିଛ, ଅଶ୍ୱତ୍ଥାମା ସେହି ଗୁରୁ ଦ୍ରୋଣଙ୍କର ପୁତ୍ର । ଦ୍ରୋଣଙ୍କର ସ୍ତ୍ରୀ କୃପୀ ନିଜ ବୀରପୁତ୍ରର ମୁହଁକୁ ଚାହିଁ ମୃତ ପତିଙ୍କ ସହ ଗମନ କଲେ ନାହିଁ ॥୪୨-୪୫॥ ତୁମେ ଧର୍ମଜ୍ଞ, ମହାଭାଗ୍ୟବାନ୍ । ସର୍ବଦା ପୂଜ୍ୟ, ବନ୍ଦନୀୟ ସେହି ଗୌରବାବହ ଗୁରୁବଂଶକୁ ତୁମେ ଦୁଃଖ ଦେବା ଉଚିତ ନୁହେଁ ॥୪୬॥ ମୁଁ ଯେପରି ପୁତ୍ରଶୋକରେ ସର୍ବଦା ରୋଦନ କରୁଛି, ଅଶ୍ୱତ୍ଥାମାଙ୍କ ଜନନୀ ପତିଭକ୍ତା ଗୌତମୀ ସେପରି ରୋଦନ ନ କରନ୍ତୁ ॥୪୭॥ ଯେଉଁ ଅସଂଯତ ରାଜାମାନେ ବ୍ରାହ୍ମଣବଂଶର କୋପର କାରଣ ହୁଅନ୍ତି, କ୍ରୁଦ୍ଧ ବ୍ରାହ୍ମଣମାନଙ୍କଯୋଗୁଁ ସେହି ରାଜାମାନଙ୍କର ସବଂଶ ବିନାଶ ହୁଏ ॥୪୮॥ ସୂତ କହିଲେ, ଦ୍ୱିଜଗଣ, ଦ୍ରୌପଦୀ ନିଷ୍କପଟ ଭାବରେ ଏପରି ଧର୍ମ ଓ ନ୍ୟାୟଯୁକ୍ତ, କାରୁଣ୍ୟପୂର୍ଣ୍ଣ କଥା କହିବାରୁ ରାଜା ଯୁଧିଷ୍ଠିର ତାହା ପୂର୍ଣ୍ଣ ସମର୍ଥନ କଲେ । ନକୁଳ, ସହଦେବ, ସାତ୍ୟକି, ଅର୍ଜୁନ ଏବଂ ଦେବକୀପୁତ୍ର ଭଗବାନ କୃଷ୍ଣ ଓ ସେଠାରେ ଉପସ୍ଥିତ ଅନ୍ୟ ସ୍ତ୍ରୀଲୋକମାନେ ମଧ୍ୟ ଦ୍ରୌପଦୀଙ୍କୁ ସମର୍ଥନ କଲେ । କିନ୍ତୁ କ୍ରୁଦ୍ଧ ଭୀମ କହିଲେ, ନିଜର ବା ନିଜ ପ୍ରଭୁଙ୍କର କୌଣସି ସ୍ୱାର୍ଥ ନ ଥାଇ ଯେଉଁ ବ୍ୟକ୍ତି ସୁପ୍ତ ଶିଶୁମାନଙ୍କୁ ହତ୍ୟା କରେ, ସେ ବଧର ଯୋଗ୍ୟ । ଏହା ଶାସ୍ତ୍ରସମ୍ମତ ଓ ସମସ୍ତଙ୍କପାଇଁ ମଙ୍ଗଳକର ॥୪୯-୫୧॥ ଉଭୟ ଦ୍ରୌପଦୀ ଏବଂ ଭୀମଙ୍କର କଥା ଶୁଣି ଶ୍ରୀକୃଷ୍ଣ ସଖା ଅର୍ଜୁନଙ୍କ ମୁହଁକୁ ଚାହିଁ ଅଳ୍ପ ହସି କହିଲେ; ଅଧମ ବ୍ରାହ୍ମଣକୁ ମଧ୍ୟ ହତ୍ୟା କରିବା ଉଚିତ ନୁହେଁ । କିନ୍ତୁ ଆତତାୟୀ ବଧଯୋଗ୍ୟ । ମୋ ଦ୍ୱାରା ଶାସ୍ତ୍ରାନୁମୋଦିତ ଏହି ଉଭୟ କଥା କୁହାଯାଇଛି । ତୁମେ ତୁମର ପ୍ରିୟା ପାଞ୍ଚାଳୀଙ୍କୁ ସାନ୍ତ୍ୱନା ଦେବାପାଇଁ ଯେଉଁ ପ୍ରତିଶ୍ରୁତି ଦେଇଛ ଏବଂ ସତ୍ୟ କରିଛ, ମୋର ଓ ଭୀମଙ୍କର ପ୍ରିୟ ସେହି କାର୍ଯ୍ୟ ସମ୍ପାଦନ କର ॥୫୨-୫୪॥ ଅର୍ଜୁନ କୃଷ୍ଣଙ୍କର କଥାକୁ ହୃଦୟଙ୍ଗମ କରି ନିଜର ତରବାରିରେ ଅଶ୍ୱତ୍ଥାମାଙ୍କ ମସ୍ତକରେ ଥିବା ମଣିକୁ କେଶସହିତ ଛେଦନ କଲେ ଏବଂ ଅଶ୍ୱତ୍ଥାମାକୁ ବନ୍ଧନମୁକ୍ତ କରି ଶିବିରରୁ ବିତାଡ଼ିତ କଲେ । ଏକେ ତ

ବାଳକହତ୍ୟାକାରୀ ଅଶ୍ୱତ୍ଥାମା ମଳିନ ପଡ଼ିଯାଇଥିଲେ, ଏବେ ମସ୍ତକର ମଣି ହରାଇ ସେ ସମ୍ପୂର୍ଣ୍ଣ ତେଜୋହୀନ ହୋଇଗଲେ ॥୫୫-୫୬॥ ନିଜ ମସ୍ତକର ମୁଣ୍ଡନ, ଧନହାନି ଓ ସ୍ୱସ୍ଥାନରୁ ବିତାଡ଼ନ ଜଣେ ବ୍ରାହ୍ମଣପାଇଁ ପ୍ରାଣହରଣ ସହିତ ସମାନ । ଆଉ ମୃତ୍ୟୁଦଣ୍ଡର କଣ ଆବଶ୍ୟକତା ଅଛି ? ॥୫୭॥ ଏହାପରେ ପୁତ୍ରଶୋକାତୁର ଦ୍ରୌପଦୀ ଓ ପାଣ୍ଡବମାନେ ମୃତ ବନ୍ଧୁ ଓ ସ୍ୱଜନମାନଙ୍କର ଶେଷକୃତ୍ୟାଦି ସମ୍ପାଦନ କଲେ ॥୫୮॥

## ଅଷ୍ଟମ ଅଧ୍ୟାୟ

# ଗର୍ଭସ୍ଥ ପରିକ୍ଷିତଙ୍କର ରକ୍ଷା ଓ କୁନ୍ତୀଙ୍କର ସ୍ତୁତି

ସୂତ କହିଲେ, ପରଲୋକଗତ ଜ୍ଞାତି କୁଟୁମ୍ବମାନଙ୍କ ଉଦ୍ଦେଶ୍ୟରେ ତର୍ପଣ କରିବାପାଇଁ ପାଣ୍ଡବମାନେ ଶ୍ରୀକୃଷ୍ଣଙ୍କ ସହିତ ଗଙ୍ଗାକୂଳକୁ ଯାତ୍ରା କଲେ ॥୧॥ ସେମାନେ ମୃତ ବ୍ୟକ୍ତିମାନଙ୍କପାଇଁ ଜଳଦାନ କରିବା ବେଳେ ସେମାନଙ୍କୁ ସ୍ମରଣ କରି ବାରମ୍ବାର ବିଳାପ କଲେ ଏବଂ ବିଷ୍ଣୁପାଦରୁ ନିର୍ଗତ ଗଙ୍ଗାର ପବିତ୍ର ଜଳରେ ସ୍ନାନ କଲେ ॥୨॥ ସେଠାରେ ମୃତ ସ୍ୱଜନମାନଙ୍କପାଇଁ ଶୋକାକୁଳ ଅବସ୍ଥାରେ ବସିଥିବା ଯୁଧିଷ୍ଠିର ଓ ତାଙ୍କ ସାନଭାଇମାନଙ୍କୁ ଓ ଧୃତରାଷ୍ଟ୍ର, ଗାନ୍ଧାରୀ, କୁନ୍ତୀ ଏବଂ ଶୋକାର୍ତ୍ତ ଦ୍ରୌପଦୀଙ୍କୁ ଭଗବାନ ଶ୍ରୀକୃଷ୍ଣ ଓ ଧୌମ୍ୟାଦି ମୁନିମାନେ ସାନ୍ତ୍ୱନା ଦେଇ କହିଲେ, ସମସ୍ତ ପ୍ରାଣୀ କାଳର ଅଧୀନ ଏବଂ କାଳକୁ କେହି ନିବାରଣ କରି ପାରିବ ନାହିଁ ॥୩-୪॥ କପଟପାଶାରେ ଅପହୃତ ଅଜାତଶତ୍ରୁ ରାଜା ଯୁଧିଷ୍ଠିରଙ୍କ ରାଜ୍ୟ ତାଙ୍କୁ ଫେରାଇଦେଇ, ଦ୍ରୌପଦୀଙ୍କ କେଶାକର୍ଷଣ ଦୋଷରେ ଯେଉଁ ରାଜାମାନଙ୍କର ଆୟୁଷ କ୍ଷୟ ଯାଇଥିଲା, ସେମାନଙ୍କୁ ବିନାଶ କରି ଓ ତିନୋଟି ସୁପରିକଳ୍ପିତ ଅଶ୍ୱମେଧ ଯଜ୍ଞ କରାଇ ଭଗବାନ କୃଷ୍ଣ ଇନ୍ଦ୍ରଙ୍କ ପରି ଚତୁର୍ଦ୍ଦିଗରେ ଯୁଧିଷ୍ଠିରଙ୍କର ଯଶ ବିସ୍ତାର କରାଇଲେ ॥୫-୬॥

ସୂତ କହିଲେ, ହେ ଶୌନକ, ଏହାପରେ ଶ୍ରୀକୃଷ୍ଣ ଦ୍ୱାରକା ଫେରିଯିବାପାଇଁ ପାଣ୍ଡବମାନଙ୍କଠାରୁ ବିଦାୟ ନେଲେ । ବ୍ୟାସଦେବ ଆଦି ଋଷିମାନଙ୍କୁ ଉପଯୁକ୍ତ ସମ୍ମାନ ଦେଇ ଏବଂ ସେମାନଙ୍କଦ୍ୱାରା ସମ୍ମାନିତ ହୋଇ ସେ ରଥରେ ବସୁଛନ୍ତି, ଏହି ସମୟରେ ଦେଖିଲେ ଅଭିମନ୍ୟୁଙ୍କର ପତ୍ନୀ ଉତ୍ତରା ଭୟବିହ୍ୱଳ ଅବସ୍ଥାରେ ତାଙ୍କ ଆଡ଼କୁ ଦଉଡ଼ିଆସୁଛନ୍ତି । ଉତ୍ତରା ପ୍ରାର୍ଥନା କଲେ ହେ ଦେବଦେବ, ହେ ମହାଯୋଗୀ, ହେ ଜଗଦୀଶ୍ୱର, ମୋତେ ରକ୍ଷାକର, ରକ୍ଷାକର; ତୁମ ଛଡ଼ା ମୋତେ କେହି ରକ୍ଷା କରିପାରିବେ ନାହିଁ । କାରଣ ଏହି ଜଗତରେ ସମସ୍ତେ ପରସ୍ପର ମୃତ୍ୟୁର କାରଣ ହୋଇଛନ୍ତି । ହେ ଅନାଥର ନାଥ, ହେ ବିଭୁ, ଦେଖନ୍ତୁ କିପରି ଏକ ଜ୍ୱଳନ୍ତ ଲୌହମୟ ଅସ୍ତ୍ର ମହାବେଗରେ ମୋ ଆଡ଼କୁ ଆସୁଛି । ଏ ଅସ୍ତ୍ର ପଛେ ମୋତେ ଦଗ୍ଧ କରୁ, ମୋର ଗର୍ଭ ନଷ୍ଟ ନ ହେଉ ॥୭-୧୦॥ ସୂତ କହିଲେ, ଭକ୍ତବତ୍ସଳ ଭଗବାନ ଉତ୍ତରାଙ୍କର କଥା ଶୁଣି ଅଶ୍ୱତ୍ଥାମା ପୃଥିବୀକୁ ଅପାଣ୍ଡବା କରିବାପାଇଁ ଏପରି ଅସ୍ତ୍ରପ୍ରୟୋଗ କରିଛି ବୋଲି ଜାଣିପାରିଲେ ॥୧୧॥ ମୁନିଶ୍ରେଷ୍ଠ ! ଏହି ସମୟରେ ପାଣ୍ଡବମାନେ ଦେଖିଲେ ଯେ, ତାଙ୍କ ଆଡ଼କୁ ମଧ୍ୟ ପାଞ୍ଚୋଟି ପ୍ରଜ୍ୱଳିତ ଶର ପ୍ରଧାବିତ ହେଉଛି । ସଙ୍ଗେସଙ୍ଗେ ସେମାନେ ନିଜର ଅସ୍ତ୍ରଧାରଣ କଲେ ॥୧୨॥ ତାଙ୍କର ପୂର୍ଣ୍ଣ ଶରଣାଗତ ଅନନ୍ୟଭକ୍ତ ପାଣ୍ଡବମାନଙ୍କର ଏ ବିପଦ ଦେଖି କୃଷ୍ଣ ସଙ୍ଗେ ସଙ୍ଗେ ସୁଦର୍ଶନ ଚକ୍ରଦ୍ୱାରା ସେମାନଙ୍କୁ ରକ୍ଷା କଲେ ॥୧୩॥ ଯୋଗେଶ୍ୱର ହରି ସମସ୍ତ ପ୍ରାଣୀର ଅନ୍ତରାତ୍ମା ରୂପେ ବିରାଜମାନ । ସେ କୁରୁବଂଶକୁ ରକ୍ଷା କରିବାପାଇଁ ଉତ୍ତରାଙ୍କ ଗର୍ଭରେ ପ୍ରବେଶ କରି ତାଙ୍କ ଗର୍ଭକୁ ଘୋଡ଼ାଇ ରଖିଲେ ॥୧୪॥ ବ୍ରହ୍ମାସ୍ତ୍ର ଅମୋଘ ଓ ଅନିବାର୍ଯ୍ୟ ହେଲେ ମଧ୍ୟ

ବିଷ୍ଣୁତେଜ ଆଗରେ ତାହା ଶାନ୍ତ ପଡ଼ିଗଲା ।।୧୫।। ଯେ ମାୟାଶକ୍ତିଦ୍ୱାରା ଏହି ବିଶ୍ୱକୁ ସର୍ଜନା କରନ୍ତି, ପାଳନ କରନ୍ତି ଓ ସଂହାର କରନ୍ତି, ସେହି ସର୍ବୈଶ୍ୱର୍ଯ୍ୟମୟ ଅଚ୍ୟୁତଙ୍କ ପକ୍ଷରେ ଏହି ସାମାନ୍ୟ ବ୍ରହ୍ମାସ୍ତ୍ର ନିବାରଣ କରିବା କେବେହେଲେ ଆଶ୍ଚର୍ଯ୍ୟଜନକ ନୁହେଁ ।।୧୬।।

ବ୍ରହ୍ମଶରରୁ ମୁକ୍ତ ହୋଇ ନିଜର ପୁତ୍ରବଧୂ ଦ୍ରୌପଦୀ ଓ ପୁତ୍ରମାନଙ୍କ ସହ କୃଷ୍ଣଙ୍କୁ ବିଦାୟ ଦେବାବେଳେ କୁନ୍ତୀଦେବୀ ଏହିପରି ସ୍ତୁତି କଲେ ।।୧୭।। ହେ କୃଷ୍ଣ ! ତୁମେ ସ୍ୱୟଂ ଈଶ୍ୱର, ସନାତନ ପୁରୁଷ । ବିଶ୍ୱପ୍ରକୃତିର ନିୟନ୍ତା । ସମସ୍ତ ଜୀବଙ୍କର ଅନ୍ତରରେ ଓ ବାହାରେ ଅବସ୍ଥିତ । ତଥାପି ସାଧାରଣ ବୁଦ୍ଧିର ଅଗୋଚର ତୁମକୁ ମୁଁ ପ୍ରଣାମ କରୁଛି ।।୧୮।। ନାଟକରେ ଅଭିନୟ କରୁଥିବା ବ୍ୟକ୍ତିର ପ୍ରକୃତ ସ୍ୱରୂପ ଯେପରି ଜଣାପଡ଼େ ନାହିଁ, ସେହିପରି ମାୟାଯବନିକାଦ୍ୱାରା ଆଚ୍ଛନ୍ନ ତୁମର ଇନ୍ଦ୍ରିୟାତୀତ ଅବ୍ୟୟ ସ୍ୱରୂପକୁ ମୋର ଅଜ୍ଞତାଦୃଷ୍ଟିରୁ ମୁଁ ବୁଝିପାରୁ ନାହିଁ ।।୧୯।। ତୁମେ ପରମହଂସ ମୁନିମାନଙ୍କୁ ଭକ୍ତିଯୋଗ ଶିକ୍ଷା ଦେବାପାଇଁ ଅବତୀର୍ଣ୍ଣ ହୋଇଛ । ଆମେମାନେ ସାମାନ୍ୟ ନାରୀ ହୋଇ କିପରି ତାହା ବୁଝିପାରିବୁ ? ।।୨୦।। ହେ ବାସୁଦେବ ! ହେ ଦେବକୀନନ୍ଦନ ! ହେ ନନ୍ଦଗୋପକୁମାର ଗୋବିନ୍ଦ ! ମୁଁ ତୁମକୁ ବାରମ୍ବାର ନମସ୍କାର କରୁଛି ।।୨୧।। ତୁମେ ପଦ୍ମନାଭ, ପଦ୍ମମାଳୀ, କମଳନୟନ । ମୁଁ ତୁମର ପାଦପଦ୍ମକୁ ପ୍ରଣାମ କରୁଛି ।।୨୨।। ଦୁଷ୍ଟ କଂସ ତୁମର ମାତା ସତୀ ଦେବକୀଙ୍କୁ ବହୁକାଳ କାରାରୁଦ୍ଧ କରି ରଖିଥିଲା । ତୁମେ ତାଙ୍କୁ ରକ୍ଷା କଲ । ହେ ପ୍ରଭୁ, ହେ ହୃଷୀକେଶ, ହେ ନାଥ ! ତୁମେ ବାରମ୍ବାର ବିପଦରୁ ମୋତେ ଓ ମୋର ପୁତ୍ରମାନଙ୍କୁ ରକ୍ଷା କରିଛ ।।୨୩।। ହେ ହରି, ବିଷଲଡୁରୁ ଭୀମକୁ, ଜତୁଗୃହଦାହରୁ ମୋ ସହିତ ମୋର ପୁତ୍ରମାନଙ୍କୁ, ହିଡ଼ିମ୍ବାଦି ରାକ୍ଷସମାନଙ୍କଠାରୁ, କୁରୁସଭାରେ ଦ୍ରୌପଦୀଙ୍କୁ, କୁରୁକ୍ଷେତ୍ରରେ ଅନେକ ରଥୀ, ମହାରଥୀଙ୍କର ଆକ୍ରମଣରୁ ଏବଂ ଶେଷରେ ଦ୍ରୋଣପୁତ୍ର ଅଶ୍ୱତ୍ଥାମାର ବ୍ରହ୍ମାସ୍ତ୍ରରୁ ତୁମେ ଆମ୍ଭମାନଙ୍କୁ ରକ୍ଷା କରିଛ ।।୨୪।। ହେ ଜଗଦ୍‌ଗୁରୁ; ବାରମ୍ବାର ବିପଦ ଆସୁ, ଯେପରିକି ଆମ୍ଭେମାନେ ତୁମର ଦର୍ଶନ ଲାଭ କରିପାରିବୁ ଏବଂ ଆମର ଆଉ ପୁନର୍ଜନ୍ମ ହେବ ନାହିଁ ।।୨୫।। ଆପଣ ଅଜ୍ଞ, ଅକିଞ୍ଚନମାନଙ୍କର ଗୋଚର ହୁଅନ୍ତି, କିନ୍ତୁ ଧନସମ୍ପଦ, ପାଣ୍ଡିତ୍ୟ ଓ ସୌନ୍ଦର୍ଯ୍ୟର ଅଭିମାନ ଓ ଗର୍ବ କରୁଥିବା ଲୋକମାନଙ୍କୁ ଉପଲବ୍ଧ ହୁଅନ୍ତି ନାହିଁ ।।୨୬।। ଆପଣ ଅକିଞ୍ଚନମାନଙ୍କର ଧନ, ବିଷୟରୁ ନିବୃତ୍ତ ଭକ୍ତମାନଙ୍କର ଆତ୍ମାରାମ, ଶାନ୍ତିର ଆସ୍ପଦ ଏବଂ ମୁକ୍ତିଦାତା । ମୁଁ ଆପଣଙ୍କୁ ପ୍ରଣାମ କରୁଛି ।।୨୭।। ହେ ବିଭୁ ! ମୁଁ ତୁମକୁ ଅନାଦି, ଅନନ୍ତ, ସର୍ବବ୍ୟାପୀ ଏବଂ ସ୍ୱୟଂ କାଳସ୍ୱରୂପ ପରମେଶ୍ୱର ବୋଲି ମନେକରେ । ସମସ୍ତଙ୍କ ମଧ୍ୟରେ ସମାନ ଭାବରେ ତୁମେ ବିଚରଣ କର । କିନ୍ତୁ ଲୋକେ ନିଜ ନିଜ ମଧ୍ୟରେ ବିବାଦ ଓ ବୈଷମ୍ୟ ସୃଷ୍ଟି କରନ୍ତି ।।୨୮।। ହେ ଭଗବାନ ! ତୁମର କେହି ପ୍ରିୟ ନୁହନ୍ତି କି ଅପ୍ରିୟ ନୁହନ୍ତି । ନରଦେହରେ ତୁମର ଲୀଳାକୁ ବୁଝି ନ ପାରି ତୁମର ପ୍ରିୟ ଅପ୍ରିୟ ନିଜଭାବ ଅଛି ବୋଲି କେତେକଙ୍କର ବୁଦ୍ଧିଭ୍ରମ ଦେଖାଯାଏ ।।୨୯।। ହେ ବିଶ୍ୱାତ୍ମା ! ଆଶ୍ଚର୍ଯ୍ୟର ବିଷୟ, ତୁମେ ଜନ୍ମ ଓ କର୍ମରୁ ଅତୀତ ହେଲେ ମଧ୍ୟ ବିଭିନ୍ନ ପ୍ରାଣୀଙ୍କ ରୂପରେ ଯଥା ଜଳଚର ମତ୍ସ୍ୟ, ବନ୍ୟ ବରାହ ଓ ନର ରୂପରେ ଏହି ସଂସାରର ଲୀଳା ରଚନା କରିବାପାଇଁ ଅବତୀର୍ଣ୍ଣ ହୋଇଛ ।।୩୦।। ପିଲା ଥିଲାବେଳେ ଯେତେବେଳେ ଗୋପୀଙ୍କର ଦୁଧବସା ହାଣ୍ଡି ଭାଙ୍ଗି ଦେଇଥିଲ, ରାଗରେ ମାତା ଯଶୋଦା ରଜ୍ଜୁରେ ତୁମକୁ ବାନ୍ଧିବାପାଇଁ ବସିଲେ, ସେତେବେଳେ ବନ୍ଧନଭୟରେ ତୁମେ ମୁହଁ ତଳକୁ କରି ଆଖିରୁ ଏପରି ଲୁହ ଗଡ଼ାଇଲ ଯେ, କଜ୍ଜଳ ସହିତ ଗଣ୍ଡସ୍ଥଳକୁ ତାହା ଧୋଇଦେଲା । ନିଜେ ଭୟ ଯାହାକୁ ଭୟ କରେ ତୁମର ସେହି ଦୃଶ୍ୟ ଚିନ୍ତାକରି ମୋତେ ବଡ଼ ଆଶ୍ଚର୍ଯ୍ୟ ଲାଗେ ।।୩୧।। ମଳୟ ପର୍ବତର ଗୌରବ ବଢ଼ାଇବାପାଇଁ ଯେପରି ଚନ୍ଦନ ବୃକ୍ଷ ସେଠାରେ ଜାତ ହୁଏ, ସେହିପରି ତୁମର ପ୍ରିୟ ପୁଣ୍ୟଶ୍ଳୋକ ଯଦୁଙ୍କ ଯଶ ବଢ଼ାଇବା ପାଇଁ ତୁମେ ଅଜନ୍ମା ହେଲେ ମଧ୍ୟ ସେହି ବଂଶରେ ଜନ୍ମ ଗ୍ରହଣ କରିଛ । ଅନ୍ୟମାନେ ଭାବନ୍ତି, ବସୁଦେବ ଓ ଦେବକୀ ପ୍ରାର୍ଥନା କରିବାରୁ ଅଜନ୍ମା ହୋଇ ମଧ୍ୟ ତୁମେ ଜଗତର ମଙ୍ଗଳ ଓ ଅସୁରମାନଙ୍କ ବିନାଶପାଇଁ ତାଙ୍କର ପୁତ୍ରରୂପେ ଜନ୍ମଗ୍ରହଣ କଲ ।।୩୨-୩୩।। ସମୁଦ୍ରରେ ନୌକା ଭାରି ହୋଇଗଲେ ଯେପରି ଟଳମଟଳ ହୁଏ, ସେହିପରି

ଅଧର୍ମରେ ଅବସନ୍ନ ପୃଥିବୀର ଭାର ଉଶ୍ୱାସ କରିବାପାଇଁ ବ୍ରହ୍ମା ପ୍ରାର୍ଥନା କରିବାରୁ ତୁମେ ଅବତାର ଗ୍ରହଣ କଲ ।।୩୪।। ଆଉ କେହି କେହି କହନ୍ତି, ଅଜ୍ଞତାଦ୍ୱାରା ବିଭିନ୍ନ କର୍ମ କରି କଷ୍ଟ ପାଉଥିବା ଲୋକଙ୍କର ଦୁଃଖହରଣ ନିମନ୍ତେ ତୁମେ ଅବତୀର୍ଣ୍ଣ ହୋଇଛ, ଯେପରିକି, ତୁମର ଲୀଳାଦ୍ୱାରା ଏହି ଜୀବମାନେ ତୁମର ଯଶ ସ୍ମରଣ ଓ କୀର୍ତ୍ତନ କରିପାରିବେ । ଯେଉଁ ଭକ୍ତମାନେ ବାରମ୍ବାର ତୁମର ଲୀଳାମାନ ଶ୍ରବଣ, କୀର୍ତ୍ତନ, ଗାୟନ ଓ ସ୍ମରଣ କରନ୍ତି, ଶୀଘ୍ର ସେମାନେ ତୁମର ଭବଭୟହାରୀ ପଦାମ୍ବୁଜକୁ ଦର୍ଶନ କରିଥାନ୍ତି ।।୩୫-୩୬।।

ହେ ପ୍ରଭୁ ! ସଂସାରରେ ଏବେ ତୁମର କର୍ତ୍ତବ୍ୟ ଶେଷ ହୋଇଛି ସତ, କିନ୍ତୁ ଆମେ ତୁମର ବନ୍ଧୁ, ତୁମକୁ ଧରି ବଞ୍ଚି ରହିଛୁ । ଆମେ ସ୍ୱଜନଙ୍କ ମୃତ୍ୟୁରେ ଦୁଃଖିତ, ତେଣୁ ତୁମର ପଦାମ୍ବୁଜରେ ଆଶ୍ରିତ । ଆମମାନଙ୍କୁ ଛାଡ଼ି ତୁମେ କିପରି ଚାଲିଯିବ ? ।।୩୭।। ଯେପରି ପ୍ରାଣ ବିନା ଇନ୍ଦ୍ରିୟମାନଙ୍କର କୌଣସି ମୂଲ୍ୟ ନ ଥାଏ, ସେହିପରି ତୁମକୁ ନ ଦେଖିଲେ ଯାଦବ ହୁଅନ୍ତୁ ବା ପାଣ୍ଡବ ହୁଅନ୍ତୁ, ତାଙ୍କର ମୂଲ୍ୟ ବା କ'ଣ ଅଛି ? ।।୩୮।। ହେ ଗଦାଧର ! ଧ୍ୱଜ ଅଙ୍କୁଶ ଆଦି ବିଭିନ୍ନ ଲକ୍ଷଣରେ ଯୁକ୍ତ ତୁମର ପାଦ ପଡ଼ି ଯେଉଁ ହସ୍ତିନା ରାଜ୍ୟ ଆଜି ଶୋଭା ପାଉଛି, ତୁମେ ଚାଲିଗଲେ ତାହାର ଅବସ୍ଥା କ'ଣ ହେବ ? ।।୩୯।। ତୁମର ସୁଦୃଷ୍ଟି ପଡୁଥିବାରୁ ଏହି ରାଜ୍ୟର ଶସ୍ୟ, ଓଷଧି ବୃକ୍ଷଲତା, ବନ, ପର୍ବତ, ନଦୀ, ଜଳାଶୟ ଆଦିର ଶ୍ରୀବୃଦ୍ଧି ଘଟୁଛି ।।୪୦।। ହେ ବିଶ୍ୱେଶ୍ୱର, ବିଶ୍ୱାତ୍ମା, ବିଶ୍ୱମୂର୍ତ୍ତି, ପାଣ୍ଡବ ଓ ଯାଦବମାନଙ୍କ ପ୍ରତି ମୋର ଯେଉଁ ସ୍ନେହମମତା ସୃଷ୍ଟି ହୋଇଛି, ତୁମେ ସେହି ମମତାର ବନ୍ଧନ ଛେଦନ କର ।।୪୧।। ହେ ଯଦୁପତି ! ଯେପରି ଗଙ୍ଗା ସମୁଦ୍ରରେ ମିଶିବାପାଇଁ ଅବାରିତ ଗତିରେ ପ୍ରବାହିତ ହେଉଛି, ସେହିପରି ମୋର ଚିତ୍ତ, ଅନ୍ୟ କେଉଁ ଦିଗକୁ ନ ଯାଇ ତୁମ ଆଡ଼କୁ ପ୍ରଧାବିତ ହେଉ ।।୪୨।। ହେ କୃଷ୍ଣ, ଅର୍ଜୁନର ପ୍ରିୟ ସଖା ! ହେ ଯାଦବଶ୍ରେଷ୍ଠ ! ଧର୍ମଦ୍ରୋହୀ ଦୁଷ୍ଟ ରାଜନ୍ୟବର୍ଗଙ୍କର ହନନକାରୀ, ହେ ଅମିତତେଜା ଗୋବିନ୍ଦ ! ଗୋବ୍ରାହ୍ମଣମାନଙ୍କର ଦୁଃଖ ହରଣ କରିବାପାଇଁ ତୁମେ ଧରାରେ ଅବତାର ଗ୍ରହଣ କରିଥାଅ । ହେ ଯୋଗେଶ୍ୱର ! ଅଖିଳ ଜଗଦ୍‌ଗୁରୁ ଭଗବାନ୍, ମୁଁ ତୁମକୁ ନମସ୍କାର କରୁଛି ।।୪୩।।

ସୂତ କହିଲେ, ଏହିପରି ସୁପରିକଳ୍ପିତ ପଦାବଳୀରେ କୁନ୍ତୀଙ୍କଦ୍ୱାରା ବନ୍ଦିତ ହୋଇ ବୈକୁଣ୍ଠବିହାରୀ କୃଷ୍ଣ ନିଜର ମନ୍ଦହାସରେ ସମସ୍ତଙ୍କୁ ମୋହିତ କଲେ ।।୪୪।। କୁନ୍ତୀଙ୍କର ଅନୁରୋଧ ରକ୍ଷା କରି ରଥରୁ ଯାଇ ହସ୍ତିନା ରାଜପୁରୀରେ ପ୍ରବେଶ କଲେ । ସୁଭଦ୍ରା ଆଦି ସ୍ତ୍ରୀମାନଙ୍କଠାରୁ ବିଦାୟ ନେଇ ଦ୍ୱାରକା ଯିବାପାଇଁ ପ୍ରସ୍ତୁତ ହେଲେ । ଏହି ସମୟରେ ରାଜା ଯୁଧିଷ୍ଠିର ସ୍ନେହ ସମ୍ଭାଷଣ କରି ତାଙ୍କୁ ଯିବାପାଇଁ ବାରଣ କଲେ ।।୪୫।। ସ୍ୱଜ୍ଞାତିକୁଟୁମ୍ବର ନିଧନରେ ଶୋକାତୁର ଯୁଧିଷ୍ଠିରଙ୍କୁ ବ୍ୟାସ ଆଦି ତତ୍ତ୍ୱଜ୍ଞ ଋଷିମାନେ ଯେତେ ସାନ୍ତ୍ୱନା ଦେଲେ ମଧ୍ୟ ଏବଂ ବିଚିତ୍ରକର୍ମା ଶ୍ରୀକୃଷ୍ଣ ଯେତେ ବୁଝାଇଲେ ମଧ୍ୟ ସେ ବୁଝିଲେ ନାହିଁ ।।୪୬।। ସୂତ କହିଲେ; ହେ ଶୌନକଆଦି ଋଷିଗଣ ! ମୋହବଶରେ ଧର୍ମପୁତ୍ର ରାଜା ଯୁଧିଷ୍ଠିର ନିଜର ପ୍ରିୟ ବନ୍ଧୁ ଓ ସ୍ୱଜନମାନଙ୍କ ମୃତ୍ୟୁର ଦୁଃଖ ଭୁଲି ନ ପାରି ଏହିପରି ବିଳାପ କରିବାକୁ ଲାଗିଲେ-ମୁଁ କେଡ଼େ ମୂର୍ଖ ! କେଡ଼େ ଦୁରାତ୍ମା ! ଶ୍ୱାନ- ଶୃଗାଳଙ୍କର ଭକ୍ଷ୍ୟ ମୋର ଏହି ଦେହପାଇଁ ମୁଁ କେତେ ଅକ୍ଷୌହିଣୀ ସେନାର ବିନାଶ କଲି । ବାଳକ, ବ୍ରାହ୍ମଣ, ସୁହୃଦ୍, ସଖା, ପିତା, ଭ୍ରାତା, ଗୁରୁ ସମସ୍ତଙ୍କଠାରେ ଦ୍ରୋହ କଲି । ଅୟୁତ ଯୁଗ ଧରି ମୁଁ ନର୍କ ଭୋଗ କରିବି । ଆଉ ମୋର ମୋକ୍ଷ ନାହିଁ । ପ୍ରଜାବତ୍ସଳ ରାଜା ଧର୍ମଯୁଦ୍ଧରେ ଶତ୍ରୁମାନଙ୍କୁ ହତ୍ୟା କରିବାରେ ପାପ ନାହିଁ । କିନ୍ତୁ ମୋପରି ରାଜ୍ୟଲୋଭୀ ପ୍ରତି ତାହା ପ୍ରଯୁଜ୍ୟ ନୁହେଁ । ଯୁଦ୍ଧରେ ନିହତ ମୋର ଭାଇବନ୍ଧୁଙ୍କର କୁଳସ୍ତ୍ରୀମାନଙ୍କ ପ୍ରତି ମୁଁ ଯେଉଁ ଦ୍ରୋହ କରିଛି କୌଣସି ଶାସ୍ତ୍ରୋକ୍ତ ଯାଗଯଜ୍ଞରେ ତାର ପ୍ରାୟଶ୍ଚିତ୍ତ ସମ୍ଭବ ନୁହେଁ । ଯେପରି ପଙ୍କରେ ପଙ୍କିଳ ଜଳକୁ କିମ୍ବା ମଦ୍ୟରେ ମଦ୍ୟପାତ୍ରକୁ ନିର୍ମଳ କରିହେବ ନାହିଁ, ସେହିପରି ଯଜ୍ଞଦ୍ୱାରା ଜୀବହତ୍ୟାର ପାପ ମାର୍ଜିତ ହେବ ନାହିଁ ।।୪୭-୫୨।।

## ନବମ ଅଧ୍ୟାୟ

# ପିତାମହ ଭୀଷ୍ମଙ୍କର ତିରୋଧାନ

ସୂତ କହିଲେ, ଏହିପରି ଲୋକକ୍ଷୟଜନିତ ପାପଭୟରେ ଭୀତ ଯୁଧିଷ୍ଠିର ଧର୍ମସମ୍ପର୍କରେ ସମସ୍ତ ବିଷୟ ଜାଣିବାପାଇଁ କୁରୁକ୍ଷେତ୍ର ଯୁଦ୍ଧରେ ନିପତିତ ଶରଶଯ୍ୟାଗତ ପିତାମହ ଭୀଷ୍ମଙ୍କ ପାଖକୁ ଯାତ୍ରା କଲେ ॥୧॥ ସୁବର୍ଣ୍ଣମଣ୍ଡିତ ଅଶ୍ୱଯୁକ୍ତ ରଥମାନଙ୍କରେ ବସି ତାଙ୍କ ଭାଇମାନେ ତାଙ୍କ ପଛେ ପଛେ ଚାଲିଲେ । ସେହିପରି ବ୍ୟାସ ଓ ଧୌମ୍ୟ ପ୍ରଭୃତି ଋଷିମାନେ ମଧ୍ୟ । ହେ ବିପ୍ରର୍ଷି ଶୌନକ ! ଧନଂଜୟଙ୍କୁ ସାଙ୍ଗରେ ଧରି ରଥରେ ବସି ଶ୍ରୀକୃଷ୍ଣ ମଧ୍ୟ ସେମାନଙ୍କ ସହିତ ଯାତ୍ରା କଲେ । ସେତେବେଳେ ରାଜା ଯୁଧିଷ୍ଠିର ଯକ୍ଷଗଣବେଷ୍ଟିତ କୁବେରଙ୍କ ପରି ଶୋଭା ପାଉଥିଲେ ॥୨-୩॥ କୃଷ୍ଣଙ୍କ ସହିତ ପାଣ୍ଡବମାନେ ଭୀଷ୍ମଙ୍କ ପାଖକୁ ଯାଇ ତାଙ୍କୁ ପ୍ରଣିପାତ କଲେ । ସ୍ୱର୍ଗର ଦେବତା ଯେପରି ତଳକୁ ଖସିପଡ଼ି ଭୂମିରେ ଶୟନ କରିଛନ୍ତି, ସେହିପରି ଭୀଷ୍ମ ଦେଖାଯାଉଥିଲେ ॥୪॥ ଭରତବଂଶର ଏହି ଶ୍ରେଷ୍ଠ ପୁରୁଷଙ୍କୁ ଦେଖିବାପାଇଁ ସେଠାରେ ବ୍ରହ୍ମର୍ଷିମାନେ, ଦେବର୍ଷିମାନେ ଓ ରାଜର୍ଷିମାନେ ସମବେତ ହୋଇଥିଲେ । ପର୍ବତ ଓ ନାରଦ ଋଷି, ପାଣ୍ଡବମାନଙ୍କର କୁଳଗୁରୁ ଧୌମ୍ୟ, ଭଗବାନ୍ ବ୍ୟାସଦେବ, ଋଷି ବୃହଦଶ୍ୱ, ଭରଦ୍ୱାଜ, ଶିଷ୍ୟମାନଙ୍କ ସହିତ ପର୍ଶୁରାମ, ବଶିଷ୍ଠ, ଋଷି ଇନ୍ଦ୍ରପ୍ରମଦ, ତ୍ରିତ, ଗୃତ୍ସମଦ, ଅସିତ, କକ୍ଷୀବାନ୍, ଗୌତମ, ଅତ୍ରି, କୌଶିକ ଏବଂ ସୁଦର୍ଶନ ସେଠାରେ ଉପସ୍ଥିତ ଥିଲେ ॥୫-୭॥ ଅନ୍ୟମାନଙ୍କ ମଧ୍ୟରେ ପୁଣ୍ୟାତ୍ମା ଶୁକଦେବ, ଶିଷ୍ୟମାନଙ୍କ ସହିତ ଋଷି କଶ୍ୟପ ଓ ଅଙ୍ଗିରାଙ୍କ ପୁତ୍ର ଦେବଗୁରୁ ବୃହସ୍ପତି ମଧ୍ୟ ଉପସ୍ଥିତ ଥିଲେ ॥୮॥ ସେହି ମହାତ୍ମାମାନଙ୍କୁ ସେଠାରେ ସମବେତ ହୋଇଥିବାର ଦେଖି, କେଉଁ ସମୟରେ, କିପରି, କେଉଁ ସ୍ଥାନରେ କ'ଣ କରିବାକୁ ହେବ, ତାହା ଜାଣିଥିବା ଭୀଷ୍ମଦେବ ସେମାନଙ୍କୁ ଯଥାବିଧି ସମ୍ମାନ ଜଣାଇଲେ । ମାୟାରେ ମନୁଷ୍ୟରୂପ ଧାରଣ କରି ନିଜର ହୃଦୟରେ ବିରାଜମାନ ଜଗଦୀଶ୍ୱର କୃଷ୍ଣ ସେଠାରେ ଆସି ବସିଥିବାର ଦେଖି ମନେ ମନେ ତାଙ୍କୁ ନମସ୍କାର କଲେ ॥୯-୧୦॥ ଶ୍ରଦ୍ଧାବାନ୍, ବିନୟୀ ପାଣ୍ଡୁପୁତ୍ରମାନେ ପାଖରେ ବସିଥିବାର ଦେଖି ଭୀଷ୍ମଙ୍କର ଆଖି ସ୍ନେହରେ ଛଳଛଳ ହୋଇଗଲା । ସେ କହିଲେ, ତୁମେମାନେ ଧର୍ମାତ୍ମା ହୋଇଥିବାଯୋଗୁଁ କେତେ ଦୁଃଖ କଷ୍ଟ ଭୋଗ କରିଛ, କେତେ ଅନ୍ୟାୟ ସହିଛ । ଏତେ ଅନ୍ୟାୟ ଓ କଷ୍ଟରେ ଜୀବନଧାରଣ କରିବା ସମ୍ଭବ ନୁହେଁ । କେବଳ ବ୍ରାହ୍ମଣ, ଧର୍ମ ଓ କୃଷ୍ଣଙ୍କର ଆଶ୍ରୟରେ ଥିବାରୁ ତୁମେମାନେ ବଞ୍ଚିପାରିଲ ॥୧୧-୧୨॥ ମହାବୀର ପାଣ୍ଡୁଙ୍କର ମୃତ୍ୟୁସମୟରେ ତୁମେମାନେ ବାଳକ ଥିଲ ଏବଂ ତୁମମାନଙ୍କପାଇଁ ମାତା କୁନ୍ତୀଙ୍କୁ କେତେ କଷ୍ଟ କରିବାକୁ ନ ପଡ଼ିଛି ! ଏପରିକି ତୁମେମାନେ ବଡ଼ ହେଲା ପରେ ମଧ୍ୟ । ବାୟୁରେ ମେଘମାନେ ଇତସ୍ତତଃ ହେବାପରି କାଳଦ୍ୱାରା ସମସ୍ତେ ଚାଳିତ ହୁଅନ୍ତି ॥୧୩-୧୪॥ ନଚେତ୍ ଯେଉଁଠାରେ ଧର୍ମପୁତ୍ର ଯୁଧିଷ୍ଠିର, ଗଦାଧାରୀ ଭୀମ, ଗାଣ୍ଡୀବଧନ୍ୱା ଅର୍ଜୁନ ଏବଂ ସଖା କୃଷ୍ଣ ବିଦ୍ୟମାନ, ସେଠାରେ କଣ ଏପରି ବିପଦ ପଡ଼ିଥାନ୍ତା ? ॥୧୫॥ ହେ ରାଜନ୍ ! ସେହି କୃଷ୍ଣଙ୍କ ଇଚ୍ଛା କେହି ଜାଣିପାରନ୍ତି ନାହିଁ, ଯାହାଙ୍କ ଇଚ୍ଛା ଜାଣିବାପାଇଁ ଚେଷ୍ଟା କରି ମୁନିମାନେ ମଧ୍ୟ ମୋହିତ ହୋଇଯା'ନ୍ତି ॥୧୬॥ ରାଜା ଯୁଧିଷ୍ଠିର ! ସମସ୍ତ ଦୈବାଧୀନ, ଏହା ଜାଣି ପ୍ରଭୁଙ୍କୁ ଅନୁସରଣ କରି ଅନାଥ ପ୍ରଜାମାନଙ୍କର ରକ୍ଷକଭାବରେ ସେମାନଙ୍କୁ ପାଳନ କର ॥୧୭॥ ଏହି କୃଷ୍ଣ ହେଉଛନ୍ତି, ସ୍ୱୟଂ ଭଗବାନ୍ । ଆଦିପୁରୁଷ ନାରାୟଣ । ମାୟାରେ ସଂସାରକୁ ମୋହିତ କରି ଯଦୁବଂଶରେ ଜନ୍ମ ହୋଇଛନ୍ତି ଓ ନିଜର ଲୀଳା ପ୍ରକଟ କରୁଛନ୍ତି ॥୧୮॥

ହେ ରାଜା ! ଏହାଙ୍କର ଗୂଢ଼ ପ୍ରଭାବ କେବଳ ଭଗବାନ୍ ଶିବ, ଦେବର୍ଷି ନାରଦ ଏବଂ ସାକ୍ଷାତ୍ ଭଗବାନ୍ କପିଳ ଜାଣନ୍ତି ॥୧୯॥ ତୁମେ ଯାହାଙ୍କୁ ମାମୁପୁଅ ଭାଇ, ପ୍ରିୟ ସଖା ଓ ସବୁଠାରୁ ହିତାକାଙ୍କ୍ଷୀ ବନ୍ଧୁ ବୋଲି ଭାବି କେବେ କେବେ ମନ୍ତ୍ରୀ,

ଦୂତ ଓ ସାରଥି ଭାବରେ ବ୍ୟବହାର କରିଛ, ସେ ସ୍ୱୟଂ ପରମାତ୍ମା; ସର୍ବାନ୍ତର୍ଯାମୀ, ସମଦର୍ଶୀ, ନିରହଙ୍କାର । ତାଙ୍କ ବିଚାରରେ କୌଣସି କର୍ମ ଉଚ୍ଚ ନୁହେ, ବା କୌଣସି କର୍ମ ନୀଚ ନୁହେ ।।୨୦-୨୧।। ତଥାପି ହେ ରାଜା ! ଦେଖ, ଏକାନ୍ତ ଭକ୍ତମାନଙ୍କ ପ୍ରତି ତାଙ୍କର କିଭଳି ଅନୁକମ୍ପା ! ମୋର ପ୍ରାଣବିସର୍ଜନ ସମୟରେ କୃଷ୍ଣ କିପରି ମୋତେ ସାକ୍ଷାତ୍ ଦର୍ଶନ ଦେବାପାଇଁ ଆସିଛନ୍ତି ! ।।୨୨।। ଯେଉଁ ଯୋଗୀ ଦେହତ୍ୟାଗ ସମୟରେ ଭକ୍ତିରେ ତାଙ୍କଠାରେ ମନୋନିବେଶ କରେ, କଥାରେ ତାଙ୍କ ନାମ କୀର୍ତ୍ତନ କରେ, ସେ ସମସ୍ତ କାମନାଯୁକ୍ତ କର୍ମବନ୍ଧନରୁ ମୁକ୍ତ ହୁଏ ।।୨୩।। ପ୍ରସନ୍ନତାଯୋଗୁଁ ଯାହାଙ୍କର ମୁଖ ହର୍ଷୋତ୍‌ଫୁଲ୍ଲ, ଚକ୍ଷୁ ଅରୁଣବର୍ଣ୍ଣ, ଯୋଗୀମାନେ ଯାହାଙ୍କୁ କେବଳ ଧ୍ୟାନରେ ଦର୍ଶନ କରନ୍ତି, ସେହି ଚତୁର୍ଭୁଜ ଦେବଦେବ ଭଗବାନ ମୋ ପାଖରେ ଉପସ୍ଥିତ ଅଛନ୍ତି । ମୁଁ ତନୁ ତ୍ୟାଗ କରିବାପର୍ଯ୍ୟନ୍ତ ମୋ ପାଖରେ ସେ ରହନ୍ତୁ ବୋଲି ପ୍ରାର୍ଥନା କରୁଛି ।।୨୪।।

ଯେଉଁ ମୁନିଋଷିମାନେ ଭୀଷ୍ମଙ୍କୁ ଦେଖିବାପାଇଁ ଓ ତାଙ୍କ କଥା ଶୁଣିବାପାଇଁ ସେଠାକୁ ଆସିଥିଲେ, ରାଜା ଯୁଧିଷ୍ଠିର ସେମାନଙ୍କ ସମ୍ମୁଖରେ ଶରଶଯ୍ୟାରେ ଶୋଇଥିବା ପିତାମହଙ୍କୁ ଧର୍ମବିଷୟରେ ବହୁ ପ୍ରଶ୍ନ ପଚାରିଲେ ।।୨୫।। ବର୍ଣ୍ଣାଶ୍ରମ ଧର୍ମ ଅନୁସାରେ ପୁରୁଷମାନଙ୍କର ସ୍ୱାଭାବସିଦ୍ଧ କର୍ତ୍ତବ୍ୟ, ବୈରାଗ୍ୟ ଓ ଅନୁରାଗ ଦୃଷ୍ଟିରୁ ନିବୃତ୍ତି ଓ ପ୍ରବୃତ୍ତିର ବିଚାର, ଦାନଧର୍ମ, ରାଜଧର୍ମ,ସ୍ତ୍ରୀଧର୍ମ, ମୋକ୍ଷଧର୍ମ ଏବଂ ଭଗବତ୍‌ଧର୍ମ ବିଷୟରେ ସେ ସଂକ୍ଷେପରେ ଏବଂ ବିସ୍ତାରିତ ଭାବରେ ବର୍ଣ୍ଣନା କଲେ । ହେ ଶୌନକ ! ତାହା ସହିତ ତତ୍ତ୍ୱଜ୍ଞ ଭୀଷ୍ମ ଧର୍ମ,ଅର୍ଥ, କାମ ଓ ମୋକ୍ଷ -ଏହି ଚାରି ପୁରୁଷାର୍ଥ ଲାଭର ଉପାୟ ବହୁ ଉପାଖ୍ୟାନ ଓ ଇତିହାସର ଉଦାହରଣ ସହ ବୁଝାଇଲେ ।।୨୬-୨୮।। ଏହିପରି ଧର୍ମକଥା କହୁଥିବାବେଳେ ତାଙ୍କର ଇଚ୍ଛାମୃତ୍ୟୁ-ସମୟ ଉପସ୍ଥିତ ହେଲା । ତାହା ହେଉଚି ଯୋଗୀମାନଙ୍କର ଈପ୍ସିତ ସୂର୍ଯ୍ୟଙ୍କର ସେହି ଉତ୍ତରାୟଣ କାଳ ।।୨୯।। ସମରରେ ସହସ୍ର ରଥୀଙ୍କର ସମକକ୍ଷ ସେହି ବୀରପୁରୁଷ ଏଣିକି ଆଉ କିଛି ନ କହି ସମସ୍ତ ବିଷୟରୁ ନିଜର ଚିତ୍ତବୃତ୍ତି ଫେରାଇଆଣିଲେ ଏବଂ ଭଗବାନଙ୍କଠାରେ ତାହା ସମର୍ପଣ କଲେ, ସେହି ଭଗବାନ ଯେ କି ପୀତାମ୍ବରଧାରୀ ସୁନ୍ଦର ଚତୁର୍ଭୁଜ କୃଷ୍ଣରୂପରେ ତାଙ୍କ ଚକ୍ଷୁସମ୍ମୁଖରେ ବିଦ୍ୟମାନ ଥିଲେ ।।୩୦।। କୃଷ୍ଣଙ୍କଠାରେ ବିଶୁଦ୍ଧ ଭକ୍ତିଭାବ ଥିବା ଯୋଗୁ ତାଙ୍କ କୃପାଦୃଷ୍ଟି ପଡ଼ିବା ମାତ୍ରେ ସମସ୍ତ ଅଶୁଭ ଦୂର ହୋଇଗଲା ଓ ଶରଶଯ୍ୟାର ପୀଡ଼ା ଆଉ ଭୀଷ୍ମଙ୍କୁ ବାଧିଲା ନାହିଁ । ଦେହତ୍ୟାଗ କରିବାପାଇଁ ସେ ସମସ୍ତ ଇନ୍ଦ୍ରିୟ ନିରୋଧ କରି ଜନାର୍ଦ୍ଦନ କୃଷ୍ଣଙ୍କୁ ସ୍ତୁତି କରିବାକୁ ଲାଗିଲେ ।।୩୧।। ଭୀଷ୍ମ କହିଲେ, ଭଗବାନ୍ ନିଜେ ଆନନ୍ଦମୟ; ବେଳେ ବେଳେ ଲୀଳାପାଇଁ ସଂସାରପ୍ରବାହର ମୂଳ କାରଣ ପ୍ରକୃତିକୁ ସେ ନିଯୁକ୍ତ କରନ୍ତି ଏବଂ ସଂସାରରେ ସ୍ୱୟଂ ଅବତୀର୍ଣ୍ଣ ହୋଇ ଲୀଳା ରଚନା କରନ୍ତି । ବର୍ତ୍ତମାନ ବହୁ ଚେଷ୍ଟା ଫଳରେ ମୋର ମତି ବିତୃଷ୍ଣ । ମୁଁ ସେହି ଭକ୍ତଚିନ୍ତାମଣି ବିଷ୍ଣୁଙ୍କଠାରେ ହିଁ ନିଜକୁ ସମର୍ପଣ କରୁଛି ।।୩୨।। ତ୍ରିଭୁବନକମନୀୟ ତମାଳବର୍ଣ୍ଣ କୃଷ୍ଣଙ୍କର ପୀତାମ୍ବର ସୂର୍ଯ୍ୟକିରଣରେ କି ସୁନ୍ଦର ଝଟକୁଛି ! ଆଲୁଳାୟିତ କେଶରାଶି ଗଣ୍ଡସ୍ଥଳରେ ପଡ଼ି ତାଙ୍କର ମୁଖପଦ୍ମ କି ସୁନ୍ଦର ଦେଖାଯାଉଛି ! ସେହି ଅର୍ଜୁନ-ସଖାଙ୍କଠାରେ ମୋର ନିଷ୍କାମ ଭକ୍ତି ଅତୁଟ ରହିଥାଉ ।।୩୩।। ଯୁଦ୍ଧଭୂମିରେ ଅଶ୍ୱଖୁରାରୁ ଉତ୍‌ଥିତ ଧୂଳିପଟଳ ଯେଉଁ କୃଷ୍ଣଙ୍କର କେଶରାଶିକୁ ଧୂସରିତ କରିଥିଲା, ଶ୍ରମଜନିତ ସ୍ୱେଦବିନ୍ଦୁମାନ ଯାହାଙ୍କର ମୁଖମଣ୍ଡଳକୁ ଅଳଂକୃତ କରିଥିଲା, ମୋର ଶର ଯାହାଙ୍କର କବଚକୁ ଫଟାଇ ଶରୀରର ଚର୍ମକୁ ଭେଦ କରିଥିଲା, ସେହି କୃଷ୍ଣଙ୍କଠାରେ ମୋର ଆତ୍ମା ନିଶ୍ଚଳ ରହୁ ।।୩୪।। ଯେ ସଖା ଅର୍ଜୁନଙ୍କ କଥା ଶୁଣି କୁରୁକ୍ଷେତ୍ର ଯୁଦ୍ଧର ଆରମ୍ଭରେ ଉଭୟ ସେନାଙ୍କ ମଧ୍ୟରେ ରଥକୁ ସ୍ଥାପନ କରିଥିଲେ ଓ ଦୃଷ୍ଟିମାତ୍ରେ ଶତ୍ରୁମାନଙ୍କର ଆୟୁ ହରଣ କରିଥିଲେ, ସେହି ପାର୍ଥସଖା କୃଷ୍ଣଙ୍କଠାରେ ମୋର ପରମପ୍ରୀତି ଜାତ ହେଉ ।।୩୫।। ଉପସ୍ଥିତ ଶତ୍ରୁସେନାର ମୁଖଦର୍ଶନ କରି ସ୍ୱଜନହତ୍ୟାବିମୁଖ ଅର୍ଜୁନଙ୍କର ମୋହବୁଦ୍ଧିକୁ ଯେ ଆତ୍ମବିଦ୍ୟାଦ୍ୱାରା ଖଣ୍ଡନ କରିଥିଲେ, ସେହି ପରମପୁରୁଷଙ୍କର ଚରଣରେ ମୋର ମତି ରମଣ କରୁ ।।୩୬।। ଯେ ମୋର ପ୍ରତିଜ୍ଞା ପୂରଣ କରିବାପାଇଁ ତାଙ୍କ ନିଜ ପ୍ରତିଜ୍ଞାକୁ ଭୁଲି ଯାଇଥିଲେ ଏବଂ ରଥରୁ ଡେଇଁପଡ଼ି ସିଂହ, ଗଜକୁ ମାରିବାପାଇଁ ମାଡ଼ିଆସିବା ପରି ଚକ୍ରହସ୍ତରେ ମୋ ଆଡ଼କୁ ମାଡ଼ି ଆସିଲେ, ଯାହାଙ୍କର ସୁନ୍ଦର ଉତ୍ତରୀୟ ଉଡ଼ିଗଲା,

ପଦଭାରରେ ମେଦିନୀ କମ୍ପିଗଲା, ମୋ ପରି ଆତତାୟୀର ତୀକ୍ଷ୍ଣ ଶରରେ କବଚ ଛିଡ଼ିଗଲା, ତଥାପି ମୋତେ ବଧ କରିବାପାଇଁ ଯେ ମାଡ଼ି ଆସିଲେ, ସେହି ଭଗବାନ ମୁକୁନ୍ଦ ମୋତେ ଉଦ୍ଧାର କରନ୍ତୁ ।।୩୭-୩୮।। ଯେ ଅର୍ଜୁନଙ୍କର ରଥକୁ ସବୁବେଳେ ରକ୍ଷା କରିବାପାଇଁ ଡାହାଣ ହାତରେ ଚାବୁକ ଓ ବାମ ହାତରେ ରଥରେ ଯୋଚା ହୋଇଥିବା ଘୋଡ଼ାମାନଙ୍କର ଲଗାମ ଧରିଥିଲେ, ଯାହାଙ୍କ ଦର୍ଶନମାତ୍ରେ ମୃତ୍ୟୁମୁଖୀ ଯୋଦ୍ଧାମାନେ ସାରୂପ୍ୟମୋକ୍ଷ ପ୍ରାପ୍ତ ହୋଇଥିଲେ, ସେହି କୃଷ୍ଣଙ୍କଠାରେ ମୃତ୍ୟୁଇଚ୍ଛାରେ ଅପେକ୍ଷାରତ ମୋର ମତି ନିଶ୍ଚଳ ରହୁ ।।୩୯।। ଯାହାଙ୍କ ସୁମଧୁର ଚାଲିବାର ଚାତୁରୀ, ମନ୍ଦହାସ ଓ ପ୍ରେମପୂର୍ଣ୍ଣ କଟାକ୍ଷକୁ ନିଜର ଗୌରବ ବୋଲି ମନେକରି ପ୍ରେମର ଉନ୍ମାଦରେ ଅନ୍ଧ ଗୋପବଧୂମାନେ, ଯାହାଙ୍କ ଚାଲିଯିବା ପରେ ମଧ୍ୟ ତାଙ୍କ ଲୀଳାକୁ ଅନୁକରଣ କରିଥିଲେ; ଯୁଧିଷ୍ଠିରଙ୍କ ରାଜସୂୟ ଯଜ୍ଞପାଇଁ ସମବେତ ମୁନିଗଣ ଓ ରାଜନ୍ୟବର୍ଗଙ୍କର ସଭାରେ ଯେଉଁ ଦର୍ଶନୀୟ ବ୍ୟକ୍ତି ଅଗ୍ରପୂଜ୍ୟ ଭାବରେ ସମସ୍ତଙ୍କ ପୂଜା ଗ୍ରହଣ କରିଥିଲେ, ସେହି ପରମାତ୍ମା ଆଜି ମୋର ଦୃଷ୍ଟିଗୋଚର ହୋଇଛନ୍ତି ।।୪୦-୪୧।। ଭିନ୍ନ ଭିନ୍ନ ଲୋକ ସୂର୍ଯ୍ୟଙ୍କୁ ଭିନ୍ନ ଭିନ୍ନ ସ୍ଥାନରୁ ଦେଖିଲେ ମଧ୍ୟ ସେ ସେଇ ଏକ ସୂର୍ଯ୍ୟ ଭାବରେ ବିରାଜମାନ । ସେହିପରି ମୋ ଆଗରେ ଯେଉଁ କୃଷ୍ଣ ଦେଖାଯାଉଛନ୍ତି ସେହି ଏକ କୃଷ୍ଣ ସମସ୍ତ ଜୀବଙ୍କର ଅନ୍ତରରେ ରହିଛନ୍ତି । ମୋର ଭେଦଭାବ ଓ ମୋହ ଦୂର ହୋଇଛି ଏବଂ ସେହି ଅଜନ୍ମା ଭଗବାନଙ୍କୁ ମୁଁ ଭଲଭାବରେ ହୃଦୟଙ୍ଗମ କରିପାରିଛି ।।୪୨।।

ଏହିପରି ଭଗବାନ କୃଷ୍ଣଙ୍କଠାରେ ମନ, ବାକ୍ୟ, ଦୃଷ୍ଟି ଓ ସମସ୍ତ ଚିତ୍ତବୃତ୍ତି ସହ ନିଜର ଆତ୍ମାକୁ ନିବିଷ୍ଟ କରି ଭୀଷ୍ମଦେବ ଶେଷ ନିଃଶ୍ୱାସ ତ୍ୟାଗ କଲେ ।।୪୩।। ସେ ଅନନ୍ତ ବ୍ରହ୍ମରେ ଲୀନ ହୋଇଯିବାର ଜାଣି ସେଠାରେ ଉପସ୍ଥିତ ସମସ୍ତେ ନୀରବ ହୋଇଗଲେ, ଯେପରିକି ଦିନଶେଷରେ ପକ୍ଷୀମାନଙ୍କର କଳରବ ନୀରବ ହୋଇଯାଏ ।।୪୪।। ସେତେବେଳେ ଆକାଶରୁ ପୁଷ୍ପବୃଷ୍ଟି ହେଲା । ଦେବତା ଓ ମାନବମାନେ ଦୁନ୍ଦୁଭି ନାଦ କଲେ । ସାଧୁସ୍ୱଭାବ ରାଜାମାନେ ତାଙ୍କର ଯଶୋଗାନ କରିବାକୁ ଲାଗିଲେ ।।୪୫।। ପ୍ରିୟ ଶୌନକ, ପରଲୋକଗତ ଭୀଷ୍ମଙ୍କର ଦାହାଦି ଅନ୍ତ୍ୟେଷ୍ଟିକ୍ରିୟା ଶେଷ କରି ମୁହୂର୍ତ୍ତକପାଇଁ ଯୁଧିଷ୍ଠିର ଶୋକଗ୍ରସ୍ତ ହେଲେ ।।୪୬।। ମୁନିମାନେ ହୃଷ୍ଟଚିତ୍ତରେ ରହସ୍ୟମୟ ହରିନାମ କୀର୍ତ୍ତନପୂର୍ବକ କୃଷ୍ଣଙ୍କୁ ସ୍ତବ କଲେ ଏବଂ ନିଜର ହୃଦୟ ମଧ୍ୟରେ କୃଷ୍ଣଙ୍କ କଥା ଚିନ୍ତା କରି ସ୍ୱ ସ୍ୱ ଆଶ୍ରମକୁ ଫେରିଗଲେ ।।୪୭।। ଯୁଧିଷ୍ଠିର କୃଷ୍ଣଙ୍କ ସହିତ ହସ୍ତିନାକୁ ଫେରିଯାଇ ପିତୃବ୍ୟ ଧୃତରାଷ୍ଟ୍ର ଓ ତପସ୍ୱିନୀ ଗାନ୍ଧାରୀଙ୍କୁ ସାନ୍ତ୍ୱନା ପ୍ରଦାନ କଲେ ।।୪୮।। ପରେ ପରେ ରାଜା ଯୁଧିଷ୍ଠିର ଧୃତରାଷ୍ଟ୍ରଙ୍କ ଅନୁମତି ନେଇ କୃଷ୍ଣଙ୍କର ଅନୁମୋଦନ କ୍ରମେ ନିଜ ପିତୃପିତାମହଙ୍କର ପ୍ରଦତ୍ତ ରାଜ୍ୟକୁ ଧର୍ମରେ ପାଳନ କରିବାକୁ ଲାଗିଲେ ।।୪୯।।

## ଦଶମ ଅଧ୍ୟାୟ

# ଶ୍ରୀକୃଷ୍ଣଙ୍କ ଦ୍ୱାରକାଯାତ୍ରା

ଶୌନକ ପଚାରିଲେ, ରାଜା ଯୁଧିଷ୍ଠିର ଧର୍ମାତ୍ମାମାନଙ୍କ ମଧ୍ୟରେ ଶ୍ରେଷ୍ଠ ଥିଲେ । ତାଙ୍କ ପୈତୃକ ଅଧିକାର ପ୍ରତିଦ୍ୱନ୍ଦ୍ୱୀ ଆତତାୟୀମାନଙ୍କୁ ବିନାଶ କରି ସ୍ୱଜନବିଲୋପ ଦୁଃଖରେ ସେ ଭାଇମାନଙ୍କ ସହିତ କିପରି ରାଜ୍ୟଭୋଗ କଲେ ଏବଂ ଶେଷରେ କି କି କାମ କଲେ ? ।।୧।। ବନାଗ୍ନିରେ ବଂଶ (ବାଉଁଶ) ଦଗ୍ଧ ହୋଇ ଯେପରି ପୁଣି ଅଙ୍କୁରିତ ହୁଏ, ସେହିପରି ଦଗ୍ଧ କୁରୁବଂଶର ଅଙ୍କୁରସ୍ୱରୂପ ପରିକ୍ଷିତଙ୍କୁ ରକ୍ଷା କରି ଓ ସୃଷ୍ଟିଚିନ୍ତକ ଭଗବାନ ଶ୍ରୀକୃଷ୍ଣ ଯୁଧିଷ୍ଠିରଙ୍କ ହାତରେ ରାଜ୍ୟ ନିବେଶ କରି ଅତିଶୟ ଆନନ୍ଦିତ ହେଲେ ।।୨।। ଭୀଷ୍ମ ଓ ଅଚ୍ୟୁତଙ୍କର ଉପଦେଶମାନ ଶୁଣି ଏବଂ 'ରାଜ୍ୟ ଈଶ୍ୱରଙ୍କର' ଏହି ଜ୍ଞାନରେ କୃଷ୍ଣଙ୍କୁ ଆଶ୍ରୟ କରି ଦେବରାଜ ଇନ୍ଦ୍ରଙ୍କ ପରି ସେ ସସାଗରା ଧରାକୁ ପାଳନ କଲେ ।।୩।। ତାଙ୍କ ରାଜ୍ୟରେ ଠିକ୍ ସମୟରେ ବର୍ଷା

ହେଉଥିଲା । ପୃଥିବୀ ଶସ୍ୟଶାଳିନୀ ଓ ସମସ୍ତ ଐଶ୍ୱର୍ଯ୍ୟରେ ପୂର୍ଣ୍ଣ ଥିଲା । ଗାଭୀମାନଙ୍କର ସ୍ତନ ଦୁଗ୍ଧରେ ପୂରି ଯାଉଥିଲା । ଓଷଧିମାନେ ସବୁ ସମୟରେ ଫଳବତୀ ହେଉଥିଲେ । ରାଜା ଅଜାତଶତ୍ରୁ ଥିବା ହେତୁ ପ୍ରଜାମାନେ ରୋଗବ୍ୟାଧି ବା ମନସ୍ତାପରେ ପୀଡ଼ିତ ହେଉ ନ ଥିଲେ ॥୪-୬॥ ନିଜ ସ୍ୱଜନ ବନ୍ଧୁମାନଙ୍କ ଶୋକାପନୋଦନ ପାଇଁ ଓ ସୁଭଦ୍ରାଙ୍କୁ ସାନ୍ତ୍ୱନା ଦେବାପାଇଁ କୃଷ୍ଣ ହସ୍ତିନାପୁରରେ କିଛି ମାସ ରହିଲେ ॥୭॥ ତା'ପରେ ଦ୍ୱାରକା ଯିବା ପାଇଁ ଯୁଧିଷ୍ଠିରଙ୍କ ଅନୁମତି ମାଗିଲେ । ଯୁଧିଷ୍ଠିର ସମ୍ମତି ନେଇ ତାଙ୍କୁ ଆଲିଙ୍ଗନ କଲେ । ସୁହୃଦ୍‌ମାନଙ୍କର ଆଲିଙ୍ଗନ ଏବଂ ଅନ୍ୟମାନଙ୍କର ପ୍ରଣାମ ଗ୍ରହଣ କରି ସେ ରଥାରୋହଣ କଲେ ॥୮॥ ସୁଭଦ୍ରା, ଦ୍ରୌପଦୀ, କୁନ୍ତୀ, ଉତ୍ତରା, ଗାନ୍ଧାରୀ, ଧୃତରାଷ୍ଟ୍ର, ଯୁଯୁତ୍ସୁ, କୃପାଚାର୍ଯ୍ୟ, ଦୁଇ ଯାଆଁଳା ଭାଇ ନକୁଳ ଓ ସହଦେବ, ଭୀମ, କୁଳଗୁରୁ ଧୌମ୍ୟ, ଭୀଷ୍ମଙ୍କର ବିମାତା ସତ୍ୟବତୀ ଆଦି ଶାର୍ଙ୍ଗଧନ୍ୱା କୃଷ୍ଣଙ୍କର ବିରହ ସହିପାରିଲେ ନାହିଁ ॥୯-୧୦॥ ଯେଉଁ ବିବେକୀମାନେ ଅସାଧୁ ସଙ୍ଗ ଦୂର କରି ସତ୍‌ସଙ୍ଗ ଲାଭ କରିଛନ୍ତି, ତାହା ଛାଡ଼ିବା ସେମାନଙ୍କ ପକ୍ଷରେ ଅସହ୍ୟ ହୁଏ । ଥରେ ଭଗବାନଙ୍କ ଯଶୋକୀର୍ତ୍ତନ ଶୁଣିବା ପରେ ତାହା ବାରମ୍ବାର ଶୁଣିବାକୁ ଇଚ୍ଛା ହୁଏ । ଯେଉଁ କୁନ୍ତୀପୁତ୍ରମାନେ କୃଷ୍ଣଙ୍କୁ ଛାଡ଼ି ଅନ୍ୟ କିଛି ଚିନ୍ତା କରି ପାରୁ ନ ଥିଲେ, ତାଙ୍କୁ ସବୁବେଳେ ଦେଖୁଥିଲେ, ଆଳାପ କରୁଥିଲେ, ଏକାଠି ବସି ଭୋଜନ ଶୟନାଦି କରୁଥିଲେ, ସେମାନେ କିପରି ତାଙ୍କ ବିରହ ସହ୍ୟ କରିପାରିବେ ? ॥୧୧-୧୨॥ କୃଷ୍ଣଙ୍କଠାରେ ସେମାନେ ନିଜନିଜର ହୃଦୟ ଅର୍ପଣ କରିଥିଲେ । ତେଣୁ ନିର୍ନିମେଷ ଦୃଷ୍ଟିରେ ସେମାନେ ତାଙ୍କୁ ଚାହିଁ ରହି ତାଙ୍କ ପଛେ ପଛେ ଯିବାକୁ ଲାଗିଲେ ॥୧୩॥

ଦେବକୀପୁତ୍ର ହସ୍ତିନାପୁରରୁ ଯିବାବେଳେ ସମ୍ପର୍କୀୟ ସ୍ତ୍ରୀଲୋକମାନଙ୍କର ଚକ୍ଷୁ ଲୋତକପୂର୍ଣ୍ଣ ହୋଇଗଲା । କିନ୍ତୁ ଲୁହ ପଡ଼ିଲେ କାଳେ ଅମଙ୍ଗଳ ଘଟିବ, ସେଥିପାଇଁ କଷ୍ଟରେ ସେମାନେ ଲୁହ ସମ୍ବରଣ କଲେ ॥୧୪॥ ମୃଦଙ୍ଗ, ଶଙ୍ଖ, ଭେରୀ, ବୀଣା, ପଣବ, ଗୋମୁଖ, ଦୁନ୍ଦୁଭି, ଆନକ, ଘଣ୍ଟା ଓ ଧୁନ୍ଦୁରି ଆଦି ବାଦ୍ୟ ବାଜିବାକୁ ଲାଗିଲା । କୃଷ୍ଣଙ୍କୁ ଦେଖିବା ପାଇଁ ପ୍ରାସାଦଶିଖରରେ ଆରୋହଣ କରିଥିବା କୁରୁନାରୀମାନେ ସଲଜ୍ଜ ପ୍ରେମପୂର୍ଣ୍ଣ ଦୃଷ୍ଟିରେ ତାଙ୍କ ଉପରେ ପୁଷ୍ପବୃଷ୍ଟି କଲେ ॥୧୫॥ ଏହି ସମୟରେ କୃଷ୍ଣଙ୍କର ପ୍ରିୟ ସଖା କୁଞ୍ଚିତକେଶ ଅର୍ଜୁନ ନିଜ ପ୍ରିୟତମ ସଖାଙ୍କ ମସ୍ତକ ଉପରେ ମୁକ୍ତାମାଳଶୋଭିତ ରତ୍ନବର୍ଣ୍ଣର ଶ୍ୱେତଛତ୍ର ଧାରଣ କରିଥିଲେ ! ॥୧୬-୧୭॥ ଉଦ୍ଧବ ଏବଂ ସାତ୍ୟକି ଚିତ୍ରିତ ଚାମରମାନ ଧରି ତାଙ୍କୁ ବ୍ୟଜନ କରୁଥିଲେ । ଯାତ୍ରାପଥରେ ଚତୁର୍ଦିଗରୁ ପୁଷ୍ପବୃଷ୍ଟି ହେଉଥିଲା ଓ ତାହା ମଧ୍ୟରେ କୃଷ୍ଣ ଅତିଶୟ ଶୋଭା ପାଉଥିଲେ ॥୧୮॥ କୃଷ୍ଣ ଯେଉଁ ବାଟରେ ଯାଉଥିଲେ, ବ୍ରାହ୍ମଣମାନଙ୍କ ଆଶୀର୍ବାଦ ଶୁଣିବାକୁ ପାଉଥିଲେ । ତାହା ତାଙ୍କ ସଗୁଣ (ଅବତାର) ଓ ନିର୍ଗୁଣ (ବ୍ରହ୍ମ) ସ୍ୱରୂପର ଅନୁରୂପ ଥିଲା ॥୧୯॥ ହସ୍ତିନାପୁରର କୁଳନାରୀମାନେ କୃଷ୍ଣଙ୍କ ଗୁଣ ସ୍ମରଣ କରି ନିଜ ନିଜ ମଧ୍ୟରେ କଥାଭାଷା ହେଉଥିଲେ । ସେମାନଙ୍କ କଥା ଅଧିକ ସୁନ୍ଦର ଶୁଣାଯାଉଥିଲା ॥୨୦॥ ସେମାନେ କହୁଥିଲେ, ଏ ହେଉଛନ୍ତି ସେହି ଆଦିପୁରୁଷ ଭଗବାନ୍ ଯେକି ସୃଷ୍ଟିର ପୂର୍ବରୁ ଏକମାତ୍ର ବିରାଜମାନ ଥିଲେ ଓ ପ୍ରଳୟକାଳରେ ସେହି ପୁରୁଷଙ୍କଠାରେ ସମସ୍ତଜୀବ ଲୀନ ହୋଇଯାଇଥିଲେ । ସେତେବେଳେ ତାଙ୍କର ସୃଷ୍ଟିକାରିଣୀ ଶକ୍ତି ସୁପ୍ତ ଅବସ୍ଥାରେ ରହିଥିଲା । ସେ ନିଜର ସେହି ମାୟାରୂପ ସୁପ୍ତ ଶକ୍ତିଦ୍ୱାରା ପୁଣି ଏହି ଜୀବଜଗତକୁ ସୃଷ୍ଟି କଲେ । ତାଙ୍କ ନିଜର ନାମ ଏବଂ ରୂପ ନ ଥିଲେ ମଧ୍ୟ ନାମରୂପ ଥିବା ଜୀବମାନଙ୍କୁ କର୍ମରେ ପ୍ରବୃତ୍ତ କରିବାପାଇଁ ସେ ପ୍ରକୃତିକୁ ଅନୁସରଣ କଲେ । ଭକ୍ତିପୂତ ନିର୍ମଳ ହୃଦୟରେ ଜିତେନ୍ଦ୍ରିୟ ମୁନିମାନେ ହିଁ ତାଙ୍କୁ ଦେଖିପାରନ୍ତି । ତାଙ୍କଠାରେ ଭକ୍ତି ନ ଥିଲେ ହୃଦୟ ନିର୍ମଳ ହୁଏ ନାହିଁ । ବେଦରେ ଏବଂ ଅନ୍ୟ ଗୂଢ଼ ଶାସ୍ତ୍ରମାନଙ୍କରେ ତତ୍ତ୍ୱଜ୍ଞ ପଣ୍ଡିତମାନେ ଏହାଙ୍କ ନିତ୍ୟଲୀଳାର ବର୍ଣ୍ଣନା କରିଛନ୍ତି । ଏ ସେହି ନିତ୍ୟ ଲୀଳାମୟ ଏକ ଈଶ୍ୱର ଯେ କି ଏହି ଜଗତର ସୃଷ୍ଟି, ପାଳନ ଓ ସଂହାର କରନ୍ତି; କିନ୍ତୁ ସେଥିରେ କେବେ ଆସକ୍ତ ହୁଅନ୍ତି ନାହିଁ ॥୨୧-୨୪॥ ଯେତେବେଳେ ତମୋଗୁଣରେ ଅନ୍ଧବୁଦ୍ଧି ରାଜାମାନେ ଅଧର୍ମରେ ନିଜର ପ୍ରାଣ ଧାରଣ କରନ୍ତି, ସେତେବେଳେ ସଂସାରର ରକ୍ଷାପାଇଁ ସେ ବିଶୁଦ୍ଧ ସତ୍ତ୍ୱ ରୂପ ଧାରଣ କରନ୍ତି ଏବଂ ଯୁଗେ ଯୁଗେ ସତ୍ୟ, ଧର୍ମ, ଦୟା, ଯଶ, ରୂପ ଓ ଐଶ୍ୱର୍ଯ୍ୟକୁ ଏହି

ଧରାରେ ପ୍ରତିଷ୍ଠା କରିବାପାଇଁ ଅବତାର ଗ୍ରହଣ କରନ୍ତି ॥୨୫॥ ଯଦୁକୁଳ ତାଙ୍କୁ ଲାଭ କରି ଧନ୍ୟ ହୋଇଛି, ମଧୁବନ (ମଥୁରା) ପବିତ୍ର ହୋଇଛି । ଏହି ପୁରୁଷଶ୍ରେଷ୍ଠ ଶ୍ରୀପତି କୃଷ୍ଣ ସେଠାରେ ଜନ୍ମ ହୋଇ ଓ ବିଚରଣ କରି ତାଙ୍କ ବିଭିନ୍ନ ଲୀଳାଦ୍ୱାରା ସେ ସ୍ଥାନମାନଙ୍କୁ ପବିତ୍ର କରିଛନ୍ତି ॥୨୬॥ ଏଥିରେ ଆଶ୍ଚର୍ଯ୍ୟ ହେବାର ନାହିଁ ଯେ, କୃଷ୍ଣଙ୍କର ଦ୍ୱାରକାପୁରୀ ସ୍ୱର୍ଗଲୋକର ଯଶକୁ ମଧ୍ୟ ତିରସ୍କାର କରେ ଏବଂ ଭୂଲୋକର ଯଶୋବର୍ଦ୍ଧନ କରେ । ଦ୍ୱାରକାର ପ୍ରଜାମାନେ ସ୍ୱାମୀ ଶ୍ରୀକୃଷ୍ଣଙ୍କ ମଧୁର ହାସ୍ୟଯୁକ୍ତ ଦୃଷ୍ଟିଦ୍ୱାରା ନିଜକୁ ସର୍ବଦା ଅନୁଗୃହୀତ ମନେକରନ୍ତି ॥୨୭॥

ପୁରନାରୀମାନେ କହୁଛନ୍ତି, ସଖି, ଏହାଙ୍କର ସ୍ତ୍ରୀମାନେ ନିଶ୍ଚୟ ବହୁ ବ୍ରତ,ତୀର୍ଥ, ଯାଗଯଜ୍ଞାଦି କରି ତାଙ୍କୁ ପାଇଛନ୍ତି । ତା' ନ ହେଲେ, ଯେଉଁ ଅଧରାମୃତପାନ ଚିନ୍ତା କରିବା ମାତ୍ରେ ବ୍ରଜବାଳୀମାନେ ମୂର୍ଚ୍ଛିତ ହୋଇପଡ଼ନ୍ତି, ସେମାନେ ତାହା ବାରମ୍ବାର ପାନ କରୁ ନ ଥାନ୍ତେ ॥୨୮॥ ସ୍ୱୟଂବରରେ ଶିଶୁପାଳ ଆଦି ଶକ୍ତିଶାଳୀ ରାଜାମାନଙ୍କୁ ପରାଭୂତ କରି ସେ ରୁକ୍ମିଣୀ, ଜାମ୍ବବତୀ ଓ ସତ୍ୟାଙ୍କ ପରି ରାଜକନ୍ୟାମାନଙ୍କୁ ବଳପୂର୍ବକ ଅପହରଣ କରିଥିଲେ – ଯେଉଁମାନେ ପ୍ରଦ୍ୟୁମ୍ନ, ଶାମ୍ବ, ଆମ୍ବ ପ୍ରଭୃତି ତାଙ୍କ ପୁତ୍ରମାନଙ୍କୁ ଜନ୍ମ ଦେଇଥିଲେ, ସେମାନଙ୍କ ଛଡ଼ା ନରକାସୁରକୁ ବଧ କରିବା ପରେ ସହସ୍ର ସହସ୍ର ନାରୀ ତାଙ୍କୁ ପତିରୂପରେ ବରଣ କରିଥିଲେ । ଏହି ନାରୀମାନେ ଧନ୍ୟ; ଏମାନେ ଶୌଚ ଓ ସୌଭଗ ବର୍ଜିତ ନାରୀତ୍ୱକୁ ସାର୍ଥକ କଲେ; କାରଣ କମଳଲୋଚନ କୃଷ୍ଣଙ୍କୁ ସେମାନେ ପତିରୂପରେ ଲାଭ କରିଛନ୍ତି; ଯେକି ନାନା ଉପହାରଦ୍ୱାରା ସେମାନଙ୍କର ମନୋରଞ୍ଜନ କରନ୍ତି ଏବଂ ସେମାନଙ୍କୁ କେବେ ଛାଡ଼ି ଯାଆନ୍ତି ନାହିଁ ॥୨୯-୩୦॥ ଏହିପରି ନିଜ ନିଜ ଭିତରେ କୁହାକୁହି ହେଉଥିବା ପୁରନାରୀମାନଙ୍କୁ ଦେଖି ନିଜର ସ୍ମିତହାସରେ ସେମାନଙ୍କୁ ଅଭିନନ୍ଦନ କରି ଶ୍ରୀକୃଷ୍ଣ ଯାତ୍ରା କରୁଥିଲେ ॥୩୧॥ କାଳେ ବାଟରେ କେହି ଶତ୍ରୁ ଆକ୍ରମଣ କରିବ, ସେଥିପାଇଁ ସ୍ନେହବଶତଃ ଅଜାତଶତ୍ରୁ ରାଜା ଯୁଧିଷ୍ଠିର ମଧୁସୂଦନଙ୍କ ସୁରକ୍ଷା ପାଇଁ ଚତୁରଙ୍ଗ ସେନା ପ୍ରେରଣ କଲେ ॥୩୨॥ ଏହିପରି ବହୁ ଦୂରପର୍ଯ୍ୟନ୍ତ ତାଙ୍କୁ ଛାଡ଼ିବାପାଇଁ ଆସିଥିବା ବିରହକାତର ପାଣ୍ଡବମାନଙ୍କଠାରୁ ବିଦାୟ ନେଇ ସାତ୍ୟକି, ଉଦ୍ଧବାଦି ପ୍ରିୟଜନଙ୍କ ସହିତ ଶ୍ରୀକୃଷ୍ଣ ଦ୍ୱାରକାଭିମୁଖରେ ଯାତ୍ରା କଲେ ॥୩୩॥ ହେ ପ୍ରିୟ ଶୌନକ, କୃଷ୍ଣ କୁରୁଜାଙ୍ଗଳ, ପାଞ୍ଚାଳ, ଶୂରସେନ, ଯମୁନାତଟବର୍ତ୍ତୀ ଅଞ୍ଚଳମାନ, ବ୍ରହ୍ମାବର୍ତ୍ତ, କୁରୁକ୍ଷେତ୍ର, ମତ୍ସ୍ୟ, ସାରସ୍ୱତ ଓ ନିର୍ଜଳ ମରୁପ୍ରଦେଶ ଆଦି ଅତିକ୍ରମ କରି ସୌବୀର ଓ ଆଭୀର ରାଜ୍ୟର ପରବର୍ତ୍ତୀ ଦ୍ୱାରକାରେ ପ୍ରବେଶ କଲେ । ସେତେବେଳେ ପଥକ୍ଳେଶରେ ତାଙ୍କ ଅଶ୍ୱମାନେ ଥକି ପଡ଼ିଥିଲେ ॥୩୪-୩୫॥ ଏହିସବୁ ପ୍ରଦେଶ ଦେଇ ଯାତ୍ରା କଲାବେଳେ ଲୋକମାନେ ବିଭିନ୍ନ ସ୍ଥାନରେ ବହୁ ଉପହାର ଦେଇ ତାଙ୍କୁ ଅଭ୍ୟର୍ଥନା କରୁଥିଲେ । ସୂର୍ଯ୍ୟାସ୍ତ ପରେ ସେ ତାଙ୍କର ଯାତ୍ରା ବନ୍ଦ କରି ସନ୍ଧ୍ୟାବନ୍ଦନାଦି କରୁଥିଲେ । ଏହା ହିଁ ତାଙ୍କ ନିତ୍ୟନୈମିତ୍ତିକ କର୍ମ ଥିଲା ॥୩୬॥

## ଏକାଦଶ ଅଧ୍ୟାୟ

# ଶ୍ରୀକୃଷ୍ଣଙ୍କୁ ଦ୍ୱାରକାରେ ଉଲ୍ଲସିତ ସ୍ୱାଗତ

ସୂତ କହିଲେ, କୃଷ୍ଣ ନିଜ ସମୃଦ୍ଧ ଦ୍ୱାରକା ନଗରୀର ଉପକଣ୍ଠରେ ପହଞ୍ଚି ତାଙ୍କ ପ୍ରିୟ ପାଞ୍ଚଜନ୍ୟ ଶଙ୍ଖ ବାଦନ କଲେ । ତାଙ୍କର ଏହି ଆଗମନୀ ଶଙ୍ଖ ଧ୍ୱନିରେ ଦ୍ୱାରକାବାସୀଙ୍କ ବିଷାଦ ଦୂର ହେଲା ॥୧॥ ସେହି ଧବଳବର୍ଣ୍ଣର ଶଙ୍ଖ କୃଷ୍ଣଙ୍କ ଅରୁଣବର୍ଣ୍ଣ କରପୁଟରେ ରହି ରଙ୍ଗାଧରରେ ବାଜୁଥିବାବେଳେ ରକ୍ତପଦ୍ମବନରେ ମଧୁର ନିଃସ୍ୱନ କରୁଥିବା କଳହଂସପରି ଶୋଭା ପାଉଥିଲା ॥୨॥ ଭୟାବହ ଭବଭୟର ହରଣକାରୀ ସେହି ଶଙ୍ଖଧ୍ୱନି ଶୁଣି ଦ୍ୱାରକାର ଜନତା କୃଷ୍ଣଦର୍ଶନ ଲାଳସାରେ ଦଉଡ଼ି

ଆସିଲେ ।।୩।। ଯାହାଙ୍କପାଇଁ କୌଣସି ବସ୍ତୁ ଅଲଭ୍ୟ ନୁହେଁ, ସେହି ପୂର୍ଣ୍ଣ ପରମାନନ୍ଦ କୃଷ୍ଣଙ୍କୁ ଦ୍ୱାରକାବାସୀମାନେ ସୂର୍ଯ୍ୟଙ୍କୁ ଦୀପଦାନ କଲାଭଳି ବହୁ ଉପହାର ପ୍ରଦାନ କଲେ ।।୪।। ବହୁଦିନ ପରେ ନିଜର ପିତାଙ୍କୁ ଦେଖୁଥିବା ସନ୍ତାନମାନେ ଯେପରି ହର୍ଷୋତ୍‌ଫୁଲ୍ଲ ହୋଇ ଅନେକ କଥା କହିଯାଆନ୍ତି, ସେହିପରି ଦ୍ୱାରକାବାସୀମାନେ କୃଷ୍ଣଙ୍କ ସ୍ୱାଗତିକାରେ ମୁଖର ହୋଇଗଲେ ।।୫।। ହେ ପ୍ରଭୁ ! ବ୍ରହ୍ମା ଓ ବ୍ରହ୍ମାଙ୍କର ପୁତ୍ର ସନକାଦି କୁମାରମାନେ ଏବଂ ଇନ୍ଦ୍ରାଦି ଦେବତାମାନେ ଯେଉଁ ପାଦପଦ୍ମକୁ ବନ୍ଦନା କରନ୍ତି, ଯେଉଁ ପରମପଦ ନିଜର ମଙ୍ଗଳ କାମନା କରୁଥିବା ବ୍ୟକ୍ତିମାନଙ୍କର ଏକମାତ୍ର ଆଶ୍ରୟସ୍ଥଳ, ସମସ୍ତଙ୍କ ଉପରେ ଥିବା କାଳ ଯାହା ନିକଟରେ ପ୍ରଭୁତ୍ୱ ବିସ୍ତାର କରିପାରେ ନା, ତୁମର ସେହି ପାଦପଦ୍ମକୁ ଆମେମାନେ ବନ୍ଦନା କରୁଛୁ ।।୬।। ହେ ବିଶ୍ୱଭାବନ; ତୁମେ ଆମର ମଙ୍ଗଳ କର । ତୁମେ ଆମମାନଙ୍କର ପିତା, ମାତା, ସଖା ଏବଂ ସ୍ୱାମୀ; ଆମର ସଦ୍‌ଗୁରୁ, ପରମ ଦେବତା । ତୁମକୁ ଅନୁସରଣ କରି ଆମେ କୃତାର୍ଥ ହୋଇଛୁ ।।୭।। ଆମେ ଅନାଥ ହୋଇପଡ଼ିଥିଲୁ । ତୁମକୁ ଫେରିପାଇ ତୁମର ସେହି ସ୍ନେହପୂର୍ଣ୍ଣ ଦୃଷ୍ଟି ଓ ଦେବଦୁର୍ଲଭ ସୁନ୍ଦର ମୁଖମଣ୍ଡଳ ଦର୍ଶନ କରି ଆମେ ନିଜକୁ ଭାଗ୍ୟବାନ୍ ମନେ କରୁଛୁ ।।୮।। ହେ କମଳନୟନ ! ଯେତେବେଳେ ତୁମେ ତୁମ ବନ୍ଧୁମାନଙ୍କୁ ଦେଖିବାକୁ ଇଚ୍ଛା କରି ହସ୍ତିନାକୁ ବା ମଥୁରାକୁ ଯାତ୍ରା କର, ସେତେବେଳେ ତୁମ ବିନା ଗୋଟିଏ ଗୋଟିଏ ମୁହୂର୍ତ୍ତ ଆମପାଇଁ କୋଟି କୋଟି ବର୍ଷପରି ହୁଏ । ଯେପରି ସୂର୍ଯ୍ୟ ନ ଥିଲେ ଚକ୍ଷୁର ଅବସ୍ଥା, ହେ ଅଚ୍ୟୁତ, ସେହିପରି ଆମର ଅବସ୍ଥା ହୁଏ । ଯାହାଙ୍କ ପ୍ରସନ୍ନ ଦୃଷ୍ଟିରେ ଅଖିଳ ଦୁଃଖ ଓ ତାପ ଦୂର ହୋଇଯାଏ, ବହୁଦିନ ଧରି ହାସ୍ୟଯୁକ୍ତ ସେହି ସୁନ୍ଦର ମୁଖମଣ୍ଡଳକୁ ନ ଦେଖି ଆମେ କିପରି ବଞ୍ଚିପାରିବୁ ! ।।୯।।

ଭକ୍ତବତ୍ସଳ କୃଷ୍ଣ ଦ୍ୱାରକାବାସୀଙ୍କର ଏହିସବୁ କଥା ଶୁଣି ନିଜର ମଧୁର ଦୃଷ୍ଟିଦ୍ୱାରା ସେମାନଙ୍କୁ ଆପ୍ୟାୟିତ କରି ଦ୍ୱାରକାନଗରୀରେ ପ୍ରବେଶ କଲେ ।।୧୦।। ଯେପରି ନାଗଲୋକର ଭୋଗବତୀ ନଗରୀ ନାଗମାନଙ୍କ ଦ୍ୱାରା ସୁରକ୍ଷିତ, ସେହିପରି ମଧୁ, ଭୋଜ, ଦଶାର୍ହ, ଅର୍ହ, କୁକୁର, ଅନ୍ଧକ, ବୃଷ୍ଣି ପ୍ରଭୃତି କୃଷ୍ଣଙ୍କ ତୁଲ୍ୟ ବଳବାନ୍ ଯାଦବ ବୀରମାନଙ୍କଦ୍ୱାରା ଦ୍ୱାରକାପୁରୀ ସୁରକ୍ଷିତ ଥିଲା ।।୧୧।। ଦ୍ୱାରକାପୁରୀ ସବୁ ଋତୁରେ ସମସ୍ତ ସମ୍ପଦରେ ପରିପୂର୍ଣ୍ଣ ଥିଲା । ବୃକ୍ଷଲତାପୂର୍ଣ୍ଣ ପବିତ୍ର ଆଶ୍ରମ, ଉଦ୍ୟାନ, ଉପବନ, ପୁଷ୍ପବାଟିକା, ପଦ୍ମସରୋବର ଆଦି ଏହାର ଶୋଭାବର୍ଦ୍ଧନ କରୁଥିଲା । ଚିତ୍ରିତ ଧ୍ୱଜପତାକାଯୁକ୍ତ ତୋରଣାଦିଦ୍ୱାରା ଶୋଭା ପାଉଥିଲା ଏବଂ ସମଗ୍ର ନଗରୀରେ ରୌଦ୍ରତାପ ଜଣାପଡୁ ନ ଥିଲା ।।୧୨-୧୩।। ନଗରୀର ମହାମାର୍ଗ ସମ୍ମାର୍ଜିତ ଓ ତା'ସହିତ ଅନ୍ୟ ଗଳିରାସ୍ତାମାନ ମଧ୍ୟ ପରିଷ୍କାର କରାଯାଇଥିଲା । ବଜାର ଓ ଛକମାନଙ୍କରେ ସୁଗନ୍ଧିଜଳ ଛିଞ୍ଚା ଯାଇଥିଲା । ଫଳ, ପୁଷ୍ପ, ଅକ୍ଷତ, ଅଙ୍କୁରାଦି ଚାରିଆଡ଼େ ବିଞ୍ଚା ଯାଇଥିଲା ।।୧୪।। ପ୍ରତି ଗୃହଦ୍ୱାରକୁ ପୂର୍ଣ୍ଣକୁମ୍ଭ ସହିତ ଦଧି, ଅକ୍ଷତ, ଫଳ, ଆଖୁଖଣ୍ଡ, ଧୂପଦୀପ, ନୈବେଦ୍ୟ ଆଦି ପୂଜାଯୋଗ୍ୟ ବସ୍ତୁମାନଙ୍କଦ୍ୱାରା ଅଳଙ୍କୃତ କରାଯାଇଥିଲା ।।୧୫।। ମହାମନା ବସୁଦେବ, ଅକ୍ରୂର, ଉଗ୍ରସେନ, ଅଦ୍ଭୁତବିକ୍ରମ ପ୍ରଦ୍ୟୁମ୍ନ, ଚାରୁଦେଷ୍ଣ ଏବଂ ଜାମ୍ବବତୀଙ୍କ ପୁତ୍ର ଶାମ୍ବ ଆଦି ଆନନ୍ଦର ଆତିଶଯ୍ୟରେ ଆହାର ନିଦ୍ରା ତ୍ୟାଗ କରି ପାଟହାତୀକୁ ଆଗରେ ରଖି ସ୍ୱସ୍ତ୍ୟୟନ ଗାନ କରୁଥିବା ବ୍ରାହ୍ମଣମାନଙ୍କ ସହ ଶଙ୍ଖ, ତୂରୀ ଓ ବେଦଧ୍ୱନିରେ କୃଷ୍ଣଙ୍କୁ ସ୍ନେହପୂର୍ଣ୍ଣ ସ୍ୱାଗତ ଜଣାଇବାପାଇଁ ରଥାରୂଢ଼ ହୋଇ ବାହାରିଲେ ।।୧୬-୧୮।। ଶହଶହ ବାରାଙ୍ଗନା କୃଷ୍ଣଙ୍କ ଦର୍ଶନପାଇଁ ଉତ୍ସୁକ ହୋଇ ଯାନମାନଙ୍କରେ ଆରୋହଣ କରି ଏହି ଶୋଭାଯାତ୍ରାରେ ଯୋଗ ଦେଲେ । ସେମାନଙ୍କ କପୋଳରେ ଝଲକୁଥିବା କୁଣ୍ଡଳ ମୁଖମଣ୍ଡଳର ଶୋଭାବର୍ଦ୍ଧନ କରୁଥିଲା ।।୧୯।। ନଟ, ନର୍ତ୍ତକ, ସଙ୍ଗୀତଜ୍ଞ, ସ୍ତୁତିକାରୀ ସୂତ, ମାଗଧ ଓ ବନ୍ଦିମାନେ ଉତ୍ତମଶ୍ଳୋକ କୃଷ୍ଣଙ୍କର ବିଚିତ୍ର ଚରିତ୍ରମାନ ଗାନ କରୁଥିଲେ ।।୨୦।। ଏହିପରି ଅଭିନନ୍ଦିତ ହୋଇ ଶ୍ରୀକୃଷ୍ଣ ତାଙ୍କୁ ପାଛୋଟି ନେବାପାଇଁ ଆସିଥିବା ସ୍ୱଜନ ଓ ବନ୍ଧୁମାନଙ୍କୁ, ନାଗରିକ ଓ ଅନୁଗାମୀମାନଙ୍କୁ ଯଥାବିଧି ସ୍ନେହ ଓ ସମ୍ମାନ ଜଣାଇଲେ ।।୨୧।। କାହାକୁ ମୁଣ୍ଡ ନୁଆଁଇ, କାହାକୁ କୋଳାଗ୍ରତ କରି ଓ କାହାରି କାହାରି କରସ୍ପର୍ଶ କରି ଏବଂ ଅନ୍ୟମାନଙ୍କୁ ହସି ହସି ନିଜର ଦୃଷ୍ଟିପାତଦ୍ୱାରା ସେ ପ୍ରତ୍ୟଭିବାଦନ ଜଣାଇଲେ । ଏପରିକି କୁକୁରଭୋଜୀ ଚଣ୍ଡାଳମାନେ ମଧ୍ୟ ତାଙ୍କର ଆଶୀର୍ବାଦ ଲାଭ

କରିଥିଲେ ॥୨୨॥ ଗୁରୁ, ବ୍ରାହ୍ମଣ ଏବଂ ସସ୍ତ୍ରୀକ ବୃଦ୍ଧ ନାଗରିକମାନଙ୍କ ଆଶୀର୍ବାଦ ପାଇ ଏବଂ ଚାରଣମାନଙ୍କଦ୍ୱାରା ବନ୍ଦିତ ହୋଇ ସେ ଦ୍ୱାରକାପୁରରେ ପ୍ରବେଶ କଲେ ॥୨୩॥

ହେ ବିପ୍ର ଶୌନକ, ରାଜମାର୍ଗରେ ଗଲାବେଳେ ତାଙ୍କ ଦର୍ଶନ ଏକ ଆନନ୍ଦ ଉତ୍ସବର ବେଳ ବୋଲି ମନେକରି ଦ୍ୱାରକାର କୁଳସ୍ତ୍ରୀମାନେ ନିଜ ନିଜର ହର୍ମ୍ୟମାନଙ୍କ ଉପରକୁ ଉଠିଗଲେ ॥୨୪॥ ଯାହାଙ୍କ ବକ୍ଷସ୍ଥଳରେ ଲକ୍ଷ୍ମୀ, ସୌନ୍ଦର୍ଯ୍ୟପିପାସା ମେଣ୍ଟିବାପାଇଁ ଯାହାଙ୍କର ମୁଖ ପାତ୍ରସ୍ୱରୂପ, ଯାହାଙ୍କର ବାହୁତଳେ ଲୋକପାଳମାନେ ଅଭୟ ଲାଭ କରନ୍ତି, ଯାହାଙ୍କ ପଦାମ୍ବୁଜ ଭକ୍ତମାନଙ୍କ ଆଶ୍ରୟସ୍ଥଳ, ସେହି କୃଷ୍ଣଙ୍କୁ ସବୁଦିନ ଦେଖି ମଧ୍ୟ ଦ୍ୱାରକାବାସୀ ତୃପ୍ତି ଅନୁଭବ କରୁ ନ ଥିଲେ ॥୨୫-୨୬॥ ଶ୍ରୀକୃଷ୍ଣ ରାଜମାର୍ଗରେ ଗଲାବେଳେ ଶ୍ୱେତଛତ୍ର ତାଙ୍କ ମୁଣ୍ଡ ଉପରେ ଶୋଭା ପାଉଥିଲା, ଆଲଟଦ୍ୱାରା ତାଙ୍କୁ ବ୍ୟଜନ କରାଯାଉଥିଲା । ପୁଷ୍ପବୃଷ୍ଟି ତାଙ୍କ ଉପରେ ଚାରିଆଡୁ ହେଉଥିଲା । ପୀତବାସ ବନମାଳୀଙ୍କୁ ଦେଖି ମନେହେଉଥିଲା ଯେପରିକି କଳାମେଘ ଏକସମୟରେ ସୂର୍ଯ୍ୟ, ଚନ୍ଦ୍ର, ଇନ୍ଦ୍ରଧନୁ ଓ ବିଜୁଳିଦ୍ୱାରା ଯୁକ୍ତ ହୋଇ ଶୋଭାପାଉଛି ॥୨୭॥ ପିତୃଗୃହରେ ପ୍ରବେଶ କରି ସେ ମାତାମାନଙ୍କଦ୍ୱାରା ଆଲିଙ୍ଗିତ ହେଲେ ଏବଂ ଦେବକୀପ୍ରମୁଖଙ୍କ ପାଦରେ ମୁଣ୍ଡ ଲଗାଇ ପ୍ରଣାମ କଲେ । ଯେତେବେଳେ ହର୍ଷବିହ୍ୱଳ ମାତାମାନେ ଆଲିଙ୍ଗନପୂର୍ବକ ନିଜର ପୁତ୍ରକୁ କୋଳରେ ବସାଇଲେ, ସେତେବେଳେ ସ୍ନେହରେ ସେମାନଙ୍କ ସ୍ତନରୁ କ୍ଷୀରଧାର ଝରିବାକୁ ଲାଗିଲା ଏବଂ ସେମାନେ ତାଙ୍କୁ ଆଖିର ଲୁହରେ ଭିଜାଇଦେଲେ ॥୨୮-୨୯॥ ଏହାପରେ ଯେଉଁ ପ୍ରାସାଦରେ ତାଙ୍କର ଷୋଳସହସ୍ର ପତ୍ନୀ ବାସ କରୁଥିଲେ, ନିଜର ସେହି ଐଶ୍ୱର୍ଯ୍ୟପୂର୍ଣ୍ଣ ଭବନରେ ସେ ପ୍ରବେଶ କଲେ । ବହୁଦିନ ପ୍ରବାସ ପରେ ନିଜର ପତି ଗୃହକୁ ଫେରିଆସୁଥିବାର ଦେଖି ସେମାନଙ୍କ ମନରେ ଆନନ୍ଦ ଉଲ୍ଲାସ ଖେଳିଗଲା ଏବଂ ପ୍ରେମବଶତଃ ସେମାନେ ଲଜ୍ଜାରେ ଅଧୋବଦନା ହୋଇ ଠିଆ ହେଲେ ॥୩୦-୩୧॥ ଆନନ୍ଦର ଆତିଶଯ୍ୟହେତୁ ସେମାନେ ପ୍ରଥମେ ନିଜର ଅନ୍ତରାତ୍ମା ମଧ୍ୟରେ କୃଷ୍ଣଙ୍କୁ ଆଲିଙ୍ଗନ କଲେ ଏବଂ ପରେ ଦୃଷ୍ଟିଦ୍ୱାରା । ପୁଣି ସେମାନଙ୍କର ପୁତ୍ରମାନଙ୍କୁ ଯେତେବେଳେ କୃଷ୍ଣ ଆଲିଙ୍ଗନ କଲେ ସେମାନେ ନିଜେ ସେହି ଆଲିଙ୍ଗନସୁଖ ଅନୁଭବ କଲେ ଏବଂ ବହୁ କଷ୍ଟରେ ନିବାରିତ ନିଜ ନୟନାଶ୍ରୁ ଆଉ ବାଧା ମାନିଲା ନାହିଁ ॥୩୨॥ ସେମାନେ କୃଷ୍ଣଙ୍କୁ ଅତି ପାଖରେ ଏକାନ୍ତ ଭାବରେ ଲାଭ କଲେ ମଧ୍ୟ ତାଙ୍କ ପାଦ ଦୁଇଟି ସବୁବେଳେ ନୂଆ ନୂଆ ଦେଖାଯାଉଥିଲା । ଯେଉଁ ପାଦକୁ ଲକ୍ଷ୍ମୀ ଚଞ୍ଚଳା ହୋଇ ମଧ୍ୟ କେବେ ଛାଡ଼ିପାରନ୍ତି ନାହିଁ, ସେମାନେ ତାଙ୍କୁ କିପରି ଛାଡ଼ି ପାରିବେ ? ॥୩୩॥ ଯେପରି ପବନରେ ପରସ୍ପର ଘଷି ହୋଇ ବାଉଁଶବଣରେ ନିଆଁ ଲାଗିଲେ ତାହା ଧ୍ୱଂସ ହୋଇଯାଏ, ସେହିପରି ଅସଂଖ୍ୟ ସୈନ୍ୟବଳ ସହିତ କ୍ଷିତିଭାରସ୍ୱରୂପ ଶକ୍ତିଶାଳୀ ରାଜାମାନଙ୍କୁ ନିଜ ନିଜ ମଧ୍ୟରେ ଲଢ଼ାଇ ଦେଇ ଅସ୍ତ୍ରଧାରଣ ନ କରି ମଧ୍ୟ ଶ୍ରୀକୃଷ୍ଣ ସେମାନଙ୍କୁ ଧ୍ୱଂସ କରି ଆଶ୍ୱସ୍ତି ଅନୁଭବ କଲେ ॥୩୪॥ ନିଜର ଲୀଳା ଦେଖାଇବା ପାଇଁ ଭଗବାନ କୃଷ୍ଣ ଏହି ସଂସାରରେ ଅବତୀର୍ଣ୍ଣ ହୋଇଥିଲେ ଏବଂ ପ୍ରାକୃତ ଦେହଧାରୀ ମନୁଷ୍ୟପରି ସ୍ତ୍ରୀରତ୍ନମାନଙ୍କ ମଧ୍ୟରେ ରହି କ୍ରୀଡ଼ା କରୁଥିଲେ ॥୩୫॥ ଯେଉଁମାନଙ୍କର ଉନ୍ମାଦସୂଚକ ନିର୍ମଳ ମନ୍ଦହାସ ଏବଂ ସଲଜ୍ଜ କଟାକ୍ଷଦ୍ୱାରା ସ୍ୱୟଂ ମଦନ ପରାଭୂତ ହୋଇ ନିଜର ପୁଷ୍ପଧନୁ ବ୍ୟର୍ଥ ହେଲା ବୋଲି ଭାବି ପରିତ୍ୟାଗ କରିଥିଲେ, ସେହି ସୁନ୍ଦରୀ ସ୍ତ୍ରୀମାନେ ପ୍ରେମର କୁହୁକଦ୍ୱାରା କୃଷ୍ଣଙ୍କ ହୃଦୟରେ କୌଣସି ବିକାର ସୃଷ୍ଟି କରିପାରୁ ନ ଥିଲେ । ଏହି ସଂସାରରେ କେବଳ ଅବୋଧ ବ୍ୟକ୍ତି ସେହି ଅନାସକ୍ତ ପୁରୁଷଙ୍କୁ ନିଜତୁଲ୍ୟ ଜଣେ ଆସକ୍ତ ମନୁଷ୍ୟ ବୋଲି ବିଚାର କରେ ॥୩୭॥ ଏହା ହେଉଛି ଈଶ୍ୱରଙ୍କର ବିଶେଷତ୍ୱ, ତାଙ୍କର ଦିବ୍ୟଗୁଣ ପ୍ରକୃତି ମଧ୍ୟରେ ଥିଲେ ମଧ୍ୟ ସେ ପ୍ରକୃତିର ଗୁଣରେ ଲିପ୍ତ ହୁଅନ୍ତି ନାହିଁ । ସେହିପରି ତାଙ୍କର ଆଶ୍ରୟରେ ଥିବା ବ୍ୟକ୍ତିମାନେ ଭୌତିକ ଗୁଣମାନଙ୍କ ଦ୍ୱାରା ବଶୀଭୂତ ହଅନ୍ତି ନାହିଁ ॥୩୮॥ କୃଷ୍ଣଙ୍କର ସ୍ତ୍ରୀମାନେ ତାଙ୍କ ଈଶ୍ୱରୀୟ ମାହାତ୍ମ୍ୟକୁ ଜାଣି ନ ଥିଲେ । ତେଣୁ ସେହି ମୂଢ଼ ଅବଳାମାନେ ତାଙ୍କର ସ୍ୱାମୀଙ୍କୁ ଜଣେ ଅନୁଗତ ବ୍ୟକ୍ତି ବୋଲି ଧରିନେଇଥିଲେ ॥୩୯॥

## ଦ୍ୱାଦଶ ଅଧ୍ୟାୟ

# ପରିକ୍ଷିତଙ୍କର ଜନ୍ମ

ଶୌନକ କହିଲେ, ସୂତ ମହାତ୍ମା, ଅଶ୍ୱତ୍‌ଥାମାଙ୍କ ପ୍ରେରିତ ବ୍ରହ୍ମଶିର ଅସ୍ତ୍ରର ତେଜରେ ଉତ୍ତରାଙ୍କ ଗର୍ଭ ନଷ୍ଟ ହୋଇଥିଲେ ମଧ୍ୟ ଭଗବାନ କୃଷ୍ଣ ଗର୍ଭସ୍ଥ ସନ୍ତାନକୁ ପୁଣି ଜୀବଦାନ କରିଥିଲେ ॥୧॥ ସେହି ମହାତ୍ମା ବୁଦ୍ଧିମାନ୍ ରାଜା ପରିକ୍ଷିତଙ୍କର ଜନ୍ମ, କର୍ମ ଓ ମୃତ୍ୟୁ ଏବଂ ଶୁକଦେବ ତାଙ୍କୁ ଯେଉଁ ଜ୍ଞାନ ଉପଦେଶ ଦେଇଥିଲେ, ସେ ସବୁ ଶୁଣିବାକୁ ଆମର ଶ୍ରଦ୍ଧା ଜାତ ହେଉଅଛି । ଆପଣ ତାହା ଆମମାନଙ୍କୁ କହନ୍ତୁ ॥୨-୩॥ ସୂତ କହିଲେ, ଧର୍ମରାଜ ଯୁଧିଷ୍ଠିର ଶ୍ରୀକୃଷ୍ଣଙ୍କ ପାଦପଦ୍ମରେ ସର୍ବଦା ଧ୍ୟାନ ରଖି ଓ ସମସ୍ତ ବିଷୟଭୋଗରୁ ନିଃସ୍ପୃହ ରହି ପ୍ରଜାମାନଙ୍କୁ ପୁତ୍ରପରି ପାଳନ କଲେ । ତାଙ୍କର ଅତୁଳନୀୟ ସମ୍ପଦ, ଯଜ୍ଞାଦିଦ୍ୱାରା ସ୍ୱର୍ଗଲୋକର ଫଳଲାଭ, ତାଙ୍କ ରାଣୀମାନଙ୍କର କଥା ଓ ଭାଇମାନଙ୍କର କଥା, ତାଙ୍କ ବିଶାଳ ରାଜ୍ୟ, ଜମ୍ବୁଦ୍ୱୀପରେ ଆଧିପତ୍ୟ, ଯଶ ଏବଂ କୀର୍ତ୍ତି ସ୍ୱର୍ଗଲୋକକୁ ବ୍ୟାପ୍ତ ହୋଇଥିଲା । କିନ୍ତୁ ହେ ଋଷିମାନେ, ଯାହାଙ୍କର ମନ ମୁକୁନ୍ଦଙ୍କଠାରେ ନ୍ୟସ୍ତ, ଦେବତାମାନଙ୍କର ସ୍ପୃହଣୀୟ ଏ ସମସ୍ତ ଭୋଗ୍ୟବସ୍ତୁ ତାଙ୍କୁ ସନ୍ତୋଷ ଦେଇପାରିଲା ନାହିଁ, ଯେପରି କ୍ଷୁଧିତ ବ୍ୟକ୍ତି ଭୋଜନ ଛଡ଼ା ଅନ୍ୟ କୌଣସିଥିରେ ସନ୍ତୁଷ୍ଟ ହୁଏ ନାହିଁ ॥୪-୬॥ ହେ ଶୌନକ ! ଯେତେବେଳେ ପରିକ୍ଷିତ ମାତୃଗର୍ଭରେ ଥିଲେ, ଅଶ୍ୱତ୍‌ଥାମାପ୍ରେରିତ ବ୍ରହ୍ମାସ୍ତ୍ର ତାଙ୍କୁ ଦଗ୍ଧ କରୁଥିଲା । ସେତେବେଳେ ସେ ଅଙ୍ଗୁଷ୍ଠପ୍ରମାଣ ଏକ ପୁରୁଷଙ୍କୁ ଦେଖିଲେ, ଯେ କି ଅତିଶୟ ସୁନ୍ଦର, ଶ୍ୟାମବର୍ଣ୍ଣ ଓ ବିଜୁଳିପରି ଝଟକୁଥିବା ଏକ ପୀତବସ୍ତ୍ର ପରିଧାନ କରିଥିଲେ । ଏହି ବିମଳକାନ୍ତି ପୁରୁଷଙ୍କ ମସ୍ତକରେ ସୁବର୍ଣ୍ଣର କିରୀଟ ଶୋଭା ପାଉଥିଲା ॥୭-୮॥ ସେହି ଚତୁର୍ଭୁଜଙ୍କ ବାହୁ ଆଜାନୁଲମ୍ବିତ; ସେ ତପ୍ତକାଞ୍ଚନବର୍ଣ୍ଣର କୁଣ୍ଡଳ ପିନ୍ଧିଥିଲେ; ତାଙ୍କର ଚକ୍ଷୁ କ୍ରୋଧରେ ରକ୍ତବର୍ଣ୍ଣ ଦେଖାଯାଉଥିଲା ଏବଂ ନିଜର ଚାରିପାଖରେ ଘୂରି ଉଲ୍‌କାପରି ଜଳୁଥିବା ତାଙ୍କ ଗଦାକୁ ସେ ଘୂର୍ଣ୍ଣନ କରୁଥିଲେ ॥୯॥ ସୂର୍ଯ୍ୟର ତେଜରେ ଯେପରି କୁହୁଡ଼ି ଅନ୍ତର୍ହିତ ହୋଇଯାଏ, ସେପରି ତାଙ୍କ ଗଦାର ତେଜରେ ବ୍ରହ୍ମାସ୍ତ୍ର ନିଷ୍ପ୍ରଭ ହୋଇଗଲା । 'ଏ କିଏ - ପରିକ୍ଷିତ ମନେ ମନେ ପଚାରିବାକୁ ଲାଗିଲେ ॥୧୦॥ ଏହିପରି ଅମେୟାତ୍ମା ଧର୍ମରକ୍ଷକ ସର୍ବବ୍ୟାପୀ ଭଗବାନ୍ ଶ୍ରୀକୃଷ୍ଣ ବ୍ରହ୍ମାସ୍ତ୍ରକୁ ନିବାରଣ କରି ପରିକ୍ଷିତ ଦେଖୁ ଦେଖୁ ଅନ୍ତର୍ହିତ ହୋଇଗଲେ ॥୧୧॥

ଯେଉଁସବୁ ଗ୍ରହମାନଙ୍କ ଯୋଗରେ ସମସ୍ତ ଉତ୍ତମ ଫଳ ମିଳିଥାଏ, ସେହି ଅନୁକୂଳ ଗ୍ରହମାନଙ୍କ ଉଦୟ ସମୟରେ ପାଣ୍ଡୁଙ୍କ ବଂଶଧର ଏବଂ ତେଜରେ ପାଣ୍ଡୁଙ୍କପରି ପରିକ୍ଷିତଙ୍କର ଜନ୍ମ ହେଲା ॥୧୨॥ ରାଜା ଯୁଧିଷ୍ଠିର ଅତିଶୟ ଆନନ୍ଦିତ ହୋଇ କୁଳଗୁରୁ ଧୌମ୍ୟ, କୃପାଚାର୍ଯ୍ୟ ପ୍ରଭୃତି ବ୍ରାହ୍ମଣମାନଙ୍କୁ ଡକାଇ ସ୍ୱସ୍ତିବାଚନପୂର୍ବକ ନବଜାତକର ଜାତକର୍ମ ସମ୍ପାଦନ କରିଥିଲେ । ଦାନଧର୍ମଜ୍ଞ ରାଜା ଯୁଧିଷ୍ଠିର ବ୍ରାହ୍ମଣମାନଙ୍କୁ ଉତ୍ତମ ଅନ୍ନ, ସୁବର୍ଣ୍ଣ, ଗାଭୀ, ଭୂମି, ଗ୍ରାମ, ଉତ୍ତମ ହସ୍ତୀ ଓ ଅଶ୍ୱମାନ ଦାନ କଲେ ॥୧୩-୧୪॥ ବ୍ରାହ୍ମଣମାନେ ସନ୍ତୁଷ୍ଟ ହୋଇ ବିନୟାବନତ ରାଜା ଯୁଧିଷ୍ଠିରଙ୍କୁ କହିଲେ, ହେ କୁରୁଶ୍ରେଷ୍ଠ ! ଦୁର୍ନିବାର କାଳର ଗତିରେ ଯେତେବେଳେ ପବିତ୍ର କୁରୁବଂଶ ଲୋପ ପାଇବାପାଇଁ ବସିଥିଲା, ସେତେବେଳେ ତୁମପ୍ରତି ଅନୁଗ୍ରହ ଦେଖାଇ ଭଗବାନ ବିଷ୍ଣୁ ଏହି ବାଳକକୁ ପୁନର୍ଜୀବିତ କଲେ । ତେଣୁ ତୁମ ବଂଶର ପରମ୍ପରା ବର୍ତ୍ତମାନ ସୁରକ୍ଷିତ ହେଲା ॥୧୫-୧୬॥ ସେଥିପାଇଁ ଏହାଙ୍କର ସଂସାରରେ ବିଷ୍ଣୁରାତ (ବିଷ୍ଣୁଙ୍କ ଦତ୍ତ) ନାମରେ ଖ୍ୟାତି ହେବ । ହେ ମହାଭାଗ ! ଏହି ନବଜାତକ ପରମ ଭାଗବତ ଓ ସର୍ବଗୁଣସମ୍ପନ୍ନ ହେବ, ଏଥିରେ ସନ୍ଦେହ ନାହିଁ ॥୧୭॥ ଯୁଧିଷ୍ଠିର

କହିଲେ, ମହାତ୍ମାମାନେ ! ଏହି ପୁତ୍ର କ'ଣ ନିଜର ଯଶକୀର୍ତ୍ତିଦ୍ୱାରା ଏହି ବଂଶରେ ଜନ୍ମ ହୋଇଥିବା ପୁଣ୍ୟଶ୍ଳୋକ ମହାତ୍ମା ରାଜର୍ଷିମାନଙ୍କର ଅନୁସରଣ କରିପାରିବ ? ॥୧୮॥ ବ୍ରାହ୍ମଣମାନେ କହିଲେ, ହେ କୁନ୍ତୀପୁତ୍ର ! ପ୍ରଜାପାଳନ କରିବାରେ ଏ ସାକ୍ଷାତ୍ ମନୁଙ୍କ ପୁତ୍ର ଇକ୍ଷ୍ୱାକୁଙ୍କ ପରି ହେବ, ଦାଶରଥି ରାମଙ୍କ ପରି ବ୍ରାହ୍ମଣମାନଙ୍କ ହିତକାରୀ ଓ ସତ୍ୟସନ୍ଧ ହେବ ॥୧୯॥ ଉଶୀନର ବଂଶୀୟ ଶିବିଙ୍କ ପରି ଦାତା ଓ ଶରଣବତ୍ସଳ ଏବଂ ଦୁଷ୍ମନ୍ତପୁତ୍ର ଭରତଙ୍କ ପରି ନିଜ ବଂଶର ଓ ଯାଜ୍ଞିକମାନଙ୍କର ଯଶ ବିସ୍ତାର କରିବ ॥୨୦॥ ଧାନୁଷ୍କମାନଙ୍କର ଅଗ୍ରଣୀ ଅର୍ଜୁନ ଓ କାର୍ତ୍ତବୀର୍ଯ୍ୟାର୍ଜୁନଙ୍କ ପରି ସେ ଧନୁର୍ଦ୍ଧାରୀ ହେବ । ଅଗ୍ନିଙ୍କ ପରି ଦୁର୍ଦ୍ଧର୍ଷ ଓ ସମୁଦ୍ରପରି ଅଲଂଘନୀୟ ହେବ । ସିଂହପରି ପରାକ୍ରମୀ, ହିମବାନ୍‌ଙ୍କ ପରି ସେବନୀୟ, ବସୁଧା ପରି କ୍ଷମାଶୀଳ ଏବଂ ପିତାମାତାଙ୍କ ପରି ସହିଷ୍ଣୁ ହେବ ॥୨୧-୨୨॥ ସାମ୍ୟଭାବରେ ପିତାମହ ବ୍ରହ୍ମାଙ୍କ ପରି, କୃପାବିତରଣରେ ଭଗବାନ ଶିବଙ୍କ ପରି ଏବଂ ସମସ୍ତ ପ୍ରାଣୀଙ୍କୁ ଆଶ୍ରୟ ଦେବାରେ ଲକ୍ଷ୍ମୀପତି ବିଷ୍ଣୁଙ୍କ ପରି ହେବ । ସମସ୍ତ ସଦ୍‌ଗୁଣରେ ଭୂଷିତ ହୋଇ କୃଷ୍ଣଭକ୍ତ ଏହି ବାଳକ ରାଜା ରନ୍ତିଦେବଙ୍କ ପରି ଉଦାର ଓ ଯଯାତିଙ୍କ ପରି ଧାର୍ମିକ ହେବ ॥୨୩-୨୪॥ ଧୈର୍ଯ୍ୟରେ ବଳିରାଜାଙ୍କ ପରି, କୃଷ୍ଣଭକ୍ତିରେ ପ୍ରହ୍ଲାଦଙ୍କ ପରି ହେବ ଏବଂ ବହୁ ଅଶ୍ୱମେଧ ଯଜ୍ଞ କରି ବୃଦ୍ଧମାନଙ୍କର ସେବା କରିବ । ଏହାର ପୁତ୍ରସନ୍ତାନମାନେ ରାଜର୍ଷି ହେବେ । ପଥଭ୍ରଷ୍ଟ ଦୁଷ୍ଟମାନଙ୍କୁ ଦଣ୍ଡ ଦେଇ ଏ ଶାସନ କରିବ । ସେ ମାତା ପୃଥିବୀ ଓ ଧର୍ମଙ୍କୁ ରକ୍ଷା କରିବାପାଇଁ କଳିକୁ ଦମନ କରିବ ॥୨୫-୨୬॥ ବ୍ରାହ୍ମଣପୁତ୍ରର ଅଭିଶାପରେ ତକ୍ଷକ ସର୍ପର ଦଂଶନଯୋଗୁଁ ଏହାର ମୃତ୍ୟୁ ହେବ ଜାଣି ଏ ସମସ୍ତ ବିଷୟରୁ ଅନାସକ୍ତ ରହି ବିଷ୍ଣୁପଦ ଲାଭ କରିବ ॥୨୭॥ ହେ ରାଜା ! ବ୍ୟାସଙ୍କ ପୁତ୍ର ଶୁକଦେବଙ୍କଠାରୁ ଆତ୍ମା ସମ୍ପର୍କରେ ଯାହା ଜାଣିବାର କଥା ତାହା ପଚାରି ଆତ୍ମଜ୍ଞାନ ଲାଭପୂର୍ବକ ଗଙ୍ଗାକୂଳରେ ସେ ଦେହ ତ୍ୟାଗ କରିବ ଏବଂ ବିଷ୍ଣୁଙ୍କ ଅଭୟ ପାଦ ପ୍ରାପ୍ତ ହେବ ॥୨୮॥

ଜ୍ୟୋତିର୍ବିଦ୍ ବ୍ରାହ୍ମଣମାନେ ଏହିପରି ଜାତକର ଫଳ ସବୁ କହି ଏବଂ ରାଜାଙ୍କ ଠାରୁ ଯଥେଷ୍ଟ ଉପହାର ଲାଭ କରି ନିଜ ନିଜ ଗୃହକୁ ପ୍ରସ୍ଥାନ କଲେ ॥୨୯॥ ସଂସାରରେ ସେ ପରିକ୍ଷିତ ନାମରେ ବିଖ୍ୟାତ ହେଲେ । କାରଣ ମାତୃଗର୍ଭରେ ସେ ଯେଉଁ ପୁରୁଷଙ୍କୁ ଦେଖିଥିଲେ, ତାହାଙ୍କୁ ସ୍ମରଣ କରି ମନୁଷ୍ୟମାନଙ୍କୁ ସେ ମନେ ମନେ ପରୀକ୍ଷା କରୁଥିଲେ, ସେମାନଙ୍କ ମଧ୍ୟରେ ଏହି ପୁରୁଷ କିଏ ଅବା ହୋଇପାରନ୍ତି ॥୩୦॥ ଶୁକ୍ଳ ପକ୍ଷରେ ଚନ୍ଦ୍ରମା ପରି ସେହି ରାଜପୁତ୍ର ନିଜର ପିତାମହମାନଙ୍କ ଯତ୍ନରେ ସମସ୍ତ କଳାରେ ପରିପୂର୍ଣ୍ଣ ହୋଇ ବଢ଼ିବାକୁ ଲାଗିଲେ ॥୩୧॥ ନିଜର ଜ୍ଞାତିନାଶରୂପ ପାପରୁ ମୁକ୍ତ ହେବାପାଇଁ ରାଜା ଯୁଧିଷ୍ଠିର ଏକ ଅଶ୍ୱମେଧ ଯଜ୍ଞ କରିବାକୁ ଚିନ୍ତା କଲେ । ସ୍ୱାଭାବିକ ଭାବରେ ପ୍ରଜାମାନଙ୍କଠାରୁ କର ଓ ଦଣ୍ଡସୂତ୍ରରେ ଯେଉଁ ଧନ ମିଳୁଥିଲା, ତାହା ଏଥିପାଇଁ ଯଥେଷ୍ଟ ହେବ ନାହିଁ ବୋଲି ବିଚାର କରି ସେ ଚିନ୍ତିତ ହେଲେ ॥୩୨॥ ରାଜାଙ୍କର ଅଭିଳାଷ ଜାଣି ତାଙ୍କ ଭାଇମାନେ କୃଷ୍ଣଙ୍କଦ୍ୱାରା ଉପଦିଷ୍ଟ ହୋଇ ଧନସଂଗ୍ରହପାଇଁ ଉତ୍ତର ଦିଗକୁ ଯାତ୍ରା କଲେ ଓ ସେଠାରୁ ପ୍ରଚୁର ପରିମାଣର (ରାଜା ମରୁତ୍ତ ଓ ବ୍ରାହ୍ମଣମାନେ ଛାଡ଼ିଯାଇଥିବା) ଧନ ସଂଗ୍ରହ କଲେ ॥୩୩॥ ସେହି ସଂଗୃହୀତ ଧନ ତିନୋଟି ଯଜ୍ଞପାଇଁ ଯଥେଷ୍ଟ ଥିଲା ଏବଂ ଜ୍ଞାତିନାଶ ପାପଭୟରେ ଭୀତ ଯୁଧିଷ୍ଠିର ସେହି ସମସ୍ତ ଯଜ୍ଞ ଶେଷ କରି ଯଜ୍ଞପୁରୁଷ ଶ୍ରୀହରିଙ୍କୁ ସନ୍ତୁଷ୍ଟ କଲେ ॥୩୪॥ ଯୁଧିଷ୍ଠିରଙ୍କଦ୍ୱାରା ନିମନ୍ତ୍ରିତ ଭଗବାନ ଶ୍ରୀକୃଷ୍ଣ ବ୍ରାହ୍ମଣମାନଙ୍କଦ୍ୱାରା ଯଜ୍ଞକାର୍ଯ୍ୟାଦି ଶେଷ କରାଇ ନିଜ ବନ୍ଧୁମାନଙ୍କର ସନ୍ତୋଷପାଇଁ ସେଠାରେ କେତେକ ମାସ ଅବସ୍ଥାନ କଲେ । ଏହାପରେ ଦ୍ରୌପଦୀ ଓ ଅନ୍ୟ ବନ୍ଧୁମାନଙ୍କ ସମେତ ରାଜା ଯୁଧିଷ୍ଠିରଙ୍କଠାରୁ ଅନୁମତି ନେଇ ଯାଦବମାନଙ୍କଦ୍ୱାରା ପରିବେଷ୍ଟିତ କୃଷ୍ଣ ଅର୍ଜୁନଙ୍କୁ ସାଙ୍ଗରେ ଧରି ଦ୍ୱାରକାକୁ ଫେରିଆସିଲେ ॥୩୫-୩୬॥

## ତ୍ରୟୋଦଶ ଅଧ୍ୟାୟ

# ଗାନ୍ଧାରୀଙ୍କ ସହ ଧୃତରାଷ୍ଟ୍ରଙ୍କ ବନପ୍ରସ୍ଥାନ

ତୀର୍ଥଯାତ୍ରା ସମୟରେ ବିଦୁର ମୈତ୍ରେୟ ଋଷିଙ୍କଠାରୁ ଆତ୍ମଜ୍ଞାନ ଲାଭ କଲେ । ଯାହାକିଛି ଜାଣିବାର କଥା ସେସବୁ ଭଲରୂପେ ଜାଣିସାରି ସେ ହସ୍ତିନା ଫେରିଆସିଲେ । ମୈତ୍ରେୟ ଋଷିଙ୍କୁ ଯାହା ଯାହା ପ୍ରଶ୍ନ ପଚାରିଥିଲେ ସେ ସବୁର ଉତ୍ତର ଶୁଣିବା ପୂର୍ବରୁ ଗୋବିନ୍ଦଙ୍କ ପ୍ରତି ତାଙ୍କର ଏକାନ୍ତ ଭକ୍ତି ଜାତ ହେଲା । ସେ ଆଉ ଅଧିକ ଶୁଣିବାପାଇଁ ଇଚ୍ଛା କଲେ ନାହିଁ ॥୧-୨॥ ହେ ଶୌନକ, ବନ୍ଧୁ ବିଦୁରଙ୍କୁ ଆସିବାର ଦେଖି ନିଜର ଅନୁଜମାନଙ୍କ ସହ ଯୁଧିଷ୍ଠିର, ଧୃତରାଷ୍ଟ୍ର, ଯୁଯୁତ୍ସୁ, ସଂଜୟ, କୃପାଚାର୍ଯ୍ୟ, କୁନ୍ତୀ, ଗାନ୍ଧାରୀ, ଦ୍ରୌପଦୀ, ସୁଭଦ୍ରା, ଉତ୍ତରା, କୃପୀ, ଅନ୍ୟାନ୍ୟ କୁରୁକୁଳବଧୂ, ପାଣ୍ଡବମାନଙ୍କର ଜ୍ଞାତି, ପୁତ୍ରମାନଙ୍କ ସହିତ ଅନ୍ୟ ସ୍ତ୍ରୀଗଣ ସମସ୍ତେ ପିଣ୍ଡରେ ପ୍ରାଣ ପଶିବା ପରି ଆନନ୍ଦ ଅନୁଭବ କଲେ ଓ ବିଦୁରଙ୍କୁ ଅଭିବାଦନ ଜଣାଇଲେ । କେହି କେହି ତାଙ୍କୁ ଆଲିଙ୍ଗନ କଲେ । ବିଦୁରଙ୍କ ବିରହକାତର ଏହି ବ୍ୟକ୍ତିମାନଙ୍କ ଚକ୍ଷୁରୁ ଆନନ୍ଦାଶ୍ରୁ ବହିବାକୁ ଲାଗିଲା । ରାଜା ଯୁଧିଷ୍ଠିର ତାଙ୍କୁ ଆସନରେ ବସାଇ ଯଥୋଚିତ ସମ୍ମାନ ଜଣାଇଲେ ॥୩-୬॥ ବିଦୁର ଭୋଜନ ଶେଷ କରି ବିଶ୍ରାମ ପରେ ସୁଖରେ ବସିଥିବାବେଳେ ଯୁଧିଷ୍ଠିର ବିନୟପୂର୍ବକ ତାଙ୍କୁ ପଚାରିଲେ, 'ଆପଣ ଆମମାନଙ୍କୁ ବହୁ ବିପଦରୁ ଉଦ୍ଧାର କରିଛନ୍ତି । ବାରମ୍ବାର ବିଷପ୍ରୟୋଗରୁ ଓ ଜତୁଗୃହଦାହରୁ ମାତାଙ୍କ ସହିତ ଆମମାନଙ୍କୁ ରକ୍ଷା କରିଛନ୍ତି । ପକ୍ଷୀର ପକ୍ଷଛାୟାରେ ତା'ର ଶାବକମାନେ ବର୍ଦ୍ଧିତ ହେବା ପରି ଆପଣ ସବୁବେଳେ ଆମ ପକ୍ଷରେ ରହି ଆପଣଙ୍କ ସ୍ନେହଛାୟାରେ ଆମକୁ ବର୍ଦ୍ଧିତ କରିଛନ୍ତି । ଆପଣ ଏସବୁ ବିଷୟ ଭାବି ଆମକୁ ମନେ ପକାନ୍ତି କି ନାହିଁ ? ॥୭-୮॥ ଆପଣ ଏହି ଭୂମଣ୍ଡଳରେ ବୁଲୁଥିବାବେଳେ କେଉଁ ବୃତ୍ତିଦ୍ୱାରା ଜୀବନ ଧାରଣ କରୁଥିଲେ ଏବଂ କେଉଁ କେଉଁ ତୀର୍ଥ ଓ ମୁଖ୍ୟ ସ୍ଥାନମାନ ଦର୍ଶନ କଲେ ? ॥୯॥ ଆପଣଙ୍କ ପରି ଭଗବତ୍‌ଭକ୍ତ ସ୍ୱୟଂ ତୀର୍ଥସ୍ୱରୂପ । ଆପଣଙ୍କ ହୃଦୟରେ ଗଦାଧାରୀ ଭଗବାନ୍ ବିଦ୍ୟମାନ । ଏଣୁ ତୀର୍ଥସବୁ ଆପଣଙ୍କ ଯାତ୍ରାଦ୍ୱାରା ପବିତ୍ରିତ ହୋଇଛନ୍ତି ॥୧୦॥ କୃଷ୍ଣଗତପ୍ରାଣ ଆମମାନଙ୍କର ବନ୍ଧୁ ଯାଦବମାନେ ସୁଖରେ ଅଛନ୍ତି ତ ? ଆପଣ ନିଶ୍ଚୟ ସେମାନଙ୍କୁ ଦେଖିଥିବେ କିମ୍ବା ସେମାନଙ୍କ ବିଷୟରେ ଶୁଣିଥିବେ ॥୧୧॥

ରାଜା ଯୁଧିଷ୍ଠିରଙ୍କ କଥା ଶୁଣି ବିଦୁର ଯାହା ସବୁ ଦେଖିଶୁଣି ଅନୁଭବ କରିଥିଲେ, ସେ ସମସ୍ତ ବିଷୟ କ୍ରମାନୁସାରେ କହିଗଲେ । କିନ୍ତୁ ଯଦୁବଂଶ ଧ୍ୱଂସ କଥା କହିଲେ ନାହିଁ । ଯେଉଁ କଥା କହିଲେ ଲୋକ ତା'ର ଦୁଃଖଶୋକକୁ ସମ୍ଭାଳି ପାରିବ ନାହିଁ, ସେଭଳି କଥା ହଠାତ୍ କୁହାଯାଏ ନାହିଁ । ବିଶେଷତଃ ପାଣ୍ଡବବତ୍ସଳ ବିଦୁର ସେ କଥା କହି ପାଣ୍ଡବମାନଙ୍କର ଦୁଃଖ ଦେଖିପାରି ନ ଥାନ୍ତେ ॥୧୨-୧୩॥ ପାଣ୍ଡବମାନେ ବିଦୁରଙ୍କୁ ଦେବତାପରି ସେବା କଲେ । ବିଦୁର ଜ୍ୟେଷ୍ଠଭ୍ରାତା ଧୃତରାଷ୍ଟ୍ରଙ୍କ ମଙ୍ଗଳ ଓ ପାଣ୍ଡବମାନଙ୍କ ପ୍ରୀତିବର୍ଦ୍ଧନପାଇଁ ହସ୍ତିନାପୁରରେ କିଛିକାଳ ବାସ କଲେ ॥୧୪॥ ବିଦୁର ଥିଲେ ଅଭିଶପ୍ତ ଧର୍ମରାଜ । ଶହେବର୍ଷ ଶୂଦ୍ର ହୋଇ ରହିବେ ବୋଲି ମାଣ୍ଡବ୍ୟ ଋଷି ଧର୍ମରାଜ ଯମଙ୍କୁ ଅଭିଶାପ ଦେଇଥିଲେ । ସେହି ସମୟତକ ଯମଙ୍କ ଅନୁପସ୍ଥିତିରେ ପାପୀମାନଙ୍କୁ ଦଣ୍ଡ ଦେବା କାର୍ଯ୍ୟ ସୂର୍ଯ୍ୟ କରୁଥିଲେ ॥୧୫॥ ରାଜ୍ୟଲାଭ କରିବା ପରେ ନିଜର ବଂଶଧରରୂପେ ପରିକ୍ଷିତଙ୍କୁ ପାଇ ରାଜା ଯୁଧିଷ୍ଠିର ଆନନ୍ଦରେ ରାଜ୍ୟ ଶାସନ କଲେ ଏବଂ ଉଚିତ ପ୍ରଜାପାଳନ କରୁଥିବା ତାଙ୍କ ଭାଇମାନଙ୍କ ସହିତ ଅତୁଳ ସମ୍ପତ୍ତି ଭୋଗ କଲେ ॥୧୬॥ ଗୃହସଂସାରରେ ଆସକ୍ତ ବ୍ୟକ୍ତିମାନେ ଜାଣିପାରନ୍ତି ନାହିଁ ଯେ, ତାଙ୍କର ଆୟୁ ଶେଷ ହୋଇଯାଉଛି । କାଳ ଅଲଂଘନୀୟ । ତାକୁ କେହି ଟାଳିପାରନ୍ତି ନାହିଁ ॥୧୭॥ ବିଦୁର ଏହା ଜାଣିପାରି ଧୃତରାଷ୍ଟ୍ରଙ୍କୁ କହିଲେ,

ମହାରାଜ ! ଦେଖ, ମହାଭୟର ସମୟ ଆସିଯାଉଛି । ଶୀଘ୍ର ଏଠାରୁ ଚାଲିଯାଅ ॥୧୮॥ ହେ ରାଜା ! ଇହସଂସାରରେ କେବେହେଲେ କାଳର ପ୍ରତିକାର କରିହେବ ନାହିଁ । ସେହି ସର୍ବଶକ୍ତିମାନ୍ କାଳ ଆମମାନଙ୍କ ସମ୍ମୁଖରେ ଉପସ୍ଥିତ ॥୧୯॥ କାଳର କବଳରେ ନିଜର ପ୍ରିୟ ପ୍ରାଣକୁ ତ୍ୟାଗ କରିବାକୁ ପଡ଼େ । ବାକି ଧନସମ୍ପତ୍ତି ପ୍ରାଣର ତୁଳନାରେ ଅବା କ'ଣ ? ॥୨୦॥ ଆପଣଙ୍କର ପିତା, ଭ୍ରାତା, ବନ୍ଧୁ, ପୁତ୍ର ସମସ୍ତେ ନିହତ ହୋଇଛନ୍ତି । ଆପଣଙ୍କର ଆୟୁ ଶେଷ ହେବାକୁ ଯାଉଛି । ଆପଣ ଅତିଶୟ ବୃଢ଼ା ହୋଇଗଲେଣି । ପରଘରେ ପଡ଼ିରହିଛନ୍ତି ॥୨୧॥ ଓଃ ହୋ ! ବଞ୍ଚି ରହିବାର ଆଶା ପୁଣି ଏଡ଼େ ପ୍ରବଳ ହୋଇପାରେ ? ସେଥିପାଇଁ ଭୀମ ପକାଇଦେଉଥିବା ଗୁଣ୍ଡାଏ ଅନ୍ନ ଆପଣ କୁକୁର ଭଳି ଖାଇ ରହିଛନ୍ତି ? ॥୨୨॥ ଯେଉଁମାନଙ୍କୁ ଆପଣ ଅଗ୍ନିରେ ଜାଳିଦେବାକୁ ବସିଥିଲେ, ବିଷ ଦେଇ ମାରିଦେବାକୁ ଚାହିଥିଲେ, ଯେଉଁମାନଙ୍କର ପତ୍ନୀକୁ ଆପଣ ସଭାରେ ଅପମାନିତ କରିଥିଲେ, ତାଙ୍କ ରାଜ୍ୟ ଓ ଧନ ଅପହରଣ କରିନେଇଥିଲେ, ସେହିମାନଙ୍କ ଅନ୍ନରେ ଆପଣ ବଞ୍ଚି ରହିଛନ୍ତି କିପରି ? ॥୨୩॥ ଅତି ନିକୃଷ୍ଟ ଭାବରେ ଆପଣ ବଞ୍ଚି ରହିବାକୁ ଇଚ୍ଛା କରନ୍ତି । ବସ୍ତ୍ର ପୁରୁଣା ହୋଇ ଚିରିଯିବାପରି ଆପଣ ନ ଚାହିଁଲେ ମଧ୍ୟ ଆପଣଙ୍କ ଶରୀର ଜରାଜୀର୍ଣ୍ଣ ହୋଇଗଲାଣି ॥୨୪॥ ଯେ ନିଜ ଦେହର ସ୍ୱାର୍ଥକୁ ତ୍ୟାଗକରି ସମସ୍ତ ବନ୍ଧନରୁ ମୁକ୍ତ ଓ ବିଷୟରେ ଅନାସକ୍ତ ରହି ସମସ୍ତଙ୍କ ଅଲକ୍ଷ୍ୟରେ ନିଜର ଦେହତ୍ୟାଗ କରେ, ତାହାକୁ ହିଁ ପ୍ରକୃତ ଜ୍ଞାନୀ ବୋଲି କୁହାଯାଏ ॥୨୫॥ ଯେ ନିଜ ବୁଦ୍ଧିରେ ହେଉ ବା ଅନ୍ୟମାନଙ୍କଠାରୁ ଜାଣି ହେଉ, ଏ ସଂସାର ପ୍ରତି ଅନାସକ୍ତ ହୁଏ ଏବଂ ମନକୁ ବଶୀଭୂତ କରି ଗୋବିନ୍ଦଙ୍କ ଧ୍ୟାନପାଇଁ ଘର ଛାଡ଼ି ଚାଲିଯାଏ, ତାକୁ ହିଁ ଉତ୍ତମ ପୁରୁଷ ଆଖ୍ୟା ଦିଆଯାଏ ॥୨୬॥ ତେଣୁ ଆପଣ ନିଜର ଜ୍ଞାତିମାନଙ୍କ ଅଲକ୍ଷ୍ୟରେ ଉତ୍ତର ଦିଗକୁ ଯାତ୍ରା କରନ୍ତୁ । ଏହାପରେ ସମସ୍ତଙ୍କର ତେଜହରଣକାରୀ ଭୟଙ୍କର କାଳ ଉପସ୍ଥିତ ହୋଇଯିବ ॥୨୭॥

ନିଜ ଅନୁଜ ବିଦୁରଙ୍କଠାରୁ ଏହିପରି ଶୁଣି ଅନ୍ଧ ଧୃତରାଷ୍ଟ୍ରଙ୍କର ପ୍ରଜ୍ଞାଚକ୍ଷୁ ଖୋଲିଗଲା । ସେ ନିଜ ଭାଇବନ୍ଧୁମାନଙ୍କର ସମସ୍ତ ସ୍ନେହବନ୍ଧନ ଛେଦନ କରି ଗୃହତ୍ୟାଗପୂର୍ବକ ବିଦୁରଙ୍କ ଦର୍ଶିତ ପଥ ଅବଲମ୍ବନ କଲେ ॥୨୮॥ ସୁବଳରାଜକନ୍ୟା ପତିବ୍ରତା ସତୀ ଗାନ୍ଧାରୀ ହିମାଳୟ ଯାତ୍ରା କରୁଥିବା ପତିଙ୍କର ଅନୁଗମନ କଲେ । ଯୁଦ୍ଧକ୍ଷେତ୍ରରେ ଯେପରି ବୀର ଯୋଦ୍ଧା ଶତ୍ରୁର ପ୍ରହାରରୂପକ ଦଣ୍ଡକୁ ଆନନ୍ଦରେ ଗ୍ରହଣ କରେ, ସେହିପରି ମନସ୍ୱୀମାନଙ୍କପାଇଁ ସନ୍ନ୍ୟାସର ଦଣ୍ଡ ସୁଖପ୍ରଦ ହୋଇଥାଏ ॥୨୯॥ ଅଜାତଶତ୍ରୁ ଯୁଧିଷ୍ଠିର ପ୍ରାତଃକାଳୀନ ପୂଜା ଓ ହୋମାଦି ଶେଷ କରି ଏବଂ ବ୍ରାହ୍ମଣମାନଙ୍କୁ ନମସ୍କାରପୂର୍ବକ ତିଳ, ଗୋ, ଭୂମି, ସୁବର୍ଣ୍ଣ ଆଦି ଦାନ କରି ପିତୃବନ୍ଦନାପାଇଁ ଯେତେବେଳେ ଧୃତରାଷ୍ଟ୍ରଙ୍କ ପ୍ରାସାଦରେ ପହଞ୍ଚିଲେ, ସେତେବେଳେ ସେ ବିଦୁର, ଧୃତରାଷ୍ଟ୍ର ବା ଗାନ୍ଧାରୀ କାହାରିକୁ ଦେଖିବାକୁ ପାଇଲେ ନାହିଁ ॥୩୦॥ ଉଦ୍‌ବିଗ୍ନଚିତ୍ତ ରାଜା ଯୁଧିଷ୍ଠିର ସେଠାରେ ସଞ୍ଜୟଙ୍କୁ ବସିଥିବାର ଦେଖି ପଚାରିଲେ, ସଂଜୟ, ଆମର ବୃଦ୍ଧ ଅନ୍ଧ ଜ୍ୟେଷ୍ଠ ତାତ, ପୁତ୍ରଶୋକାର୍ତ୍ତା ମାତା ଗାନ୍ଧାରୀ ଓ ପରମହିତୈଷୀ ପିତୃବ୍ୟ ବିଦୁର କୁଆଡ଼େ ଗଲେ ? ମୋ ପରି ମନ୍ଦମତିଠାରୁ କୌଣସି ଅପରାଧ ଆଶଙ୍କା କରି ସେହି ବନ୍ଧୁହୀନ ରାଜା ଦୁଃଖରେ ନିଜ ଭାର୍ଯ୍ୟାଙ୍କ ସହିତ ଗଙ୍ଗାରେ ଝାସ ଦେଇ ନାହାନ୍ତି ତ ? ॥୩୧-୩୨॥ ଆମର ପିତା ପାଣ୍ଡୁଙ୍କର ମୃତ୍ୟୁବେଳକୁ ଆମେମାନେ ଛୋଟ ଛୋଟ ଶିଶୁ ଥିଲୁ । ଏହି ପିତୃବ୍ୟମାନେ ଆଗକୁ ଆଗକୁ ସମସ୍ତ ବିପଦରୁ ଆମକୁ ରକ୍ଷା କରୁଥିଲେ । ଏବେ ସେମାନେ କୁଆଡ଼େ ଚାଲିଗଲେ ? ॥୩୩॥

ସୂତ କହିଲେ, ସଂଜୟ ନିଜର ସ୍ୱାମୀ ଧୃତରାଷ୍ଟ୍ରଙ୍କୁ ନ ଦେଖି ତାଙ୍କ ପ୍ରତି ସ୍ନେହବଶରୁ ବିରହାତୁର ହୋଇ ବସିଥିଲେ । ସେ ପ୍ରଥମେ କୌଣସି ଉତ୍ତର ଦେଇପାରିଲେ ନାହିଁ ॥୩୪॥ ତା'ପରେ ହାତରେ ଆଖିର ଲୁହ ପୋଛି କୌଣସିମତେ ନିଜକୁ ସ୍ଥିର ରଖି ସେ ଧୃତରାଷ୍ଟ୍ରଙ୍କର ପାଦକୁ ଅନୁଧ୍ୟାନପୂର୍ବକ ଯୁଧିଷ୍ଠିରଙ୍କୁ ଉତ୍ତର ଦେଲେ, ହେ କୁଳନନ୍ଦନ ମହାବାହୁ, ଗାନ୍ଧାରୀ ଓ ତୁମର ପିତୃବ୍ୟଦ୍ୱୟଙ୍କ ବିଷୟରେ ମୁଁ କିଛି ଜାଣେ ନାହିଁ । ସେମାନେ ତ ମୋତେ ଛାଡ଼ି ଚାଲିଗଲେ ! ॥୩୫-୩୬॥ ଏହି

ସମୟରେ ବୀଣା ଧରି ଦେବର୍ଷି ନାରଦ ସେଠାରେ ଆସି ପହଞ୍ଚିଗଲେ । ନିଜର ଭାଇମାନଙ୍କ ସହିତ ସ୍ୱସ୍ଥାନରୁ ଉଠିପଡ଼ି ଯୁଧିଷ୍ଠିର ତାଙ୍କୁ ଅଭିବାଦନ କରି ପଦବନ୍ଦନା କଲେ ॥୩୭॥ ଯୁଧିଷ୍ଠିର କହିଲେ, ଭଗବନ୍ ! ଆମ ପିତୃବ୍ୟ ଦୁହେଁ ଏବଂ ପୁତ୍ରଶୋକାତୁରା ତପସ୍ୱିନୀ ମାତା ଗାନ୍ଧାରୀ କୁଆଡ଼େ ଗଲେ ମୁଁ ଜାଣିପାରୁ ନାହିଁ । ଆପଣଙ୍କୁ ଆଶ୍ରୟ କରି ଆମେମାନେ ଏହି ଶୋକସାଗରକୁ ପାରି ହୋଇପାରିବୁ । ମୁନିଶ୍ରେଷ୍ଠ ନାରଦ କହିଲେ, ରାଜା ! ତୁମେ ଶୋକ କର ନାହିଁ । କାରଣ ଏହି ଜଗତ ଈଶ୍ୱରଙ୍କର ଅଧୀନ । ସମସ୍ତଲୋକ ଓ ଲୋକପାଳ ଈଶ୍ୱରଙ୍କ ବଶରେ ହିଁ କାର୍ଯ୍ୟରତ । ଈଶ୍ୱର ବେଳେବେଳେ ଜୀବମାନଙ୍କୁ ପରସ୍ପର ଏକାଠି କରାନ୍ତି ବା ବେଳେବେଳେ ପରସ୍ପର ଅଲଗା କରିଦିଅନ୍ତି ॥୩୮-୪୦॥ ଯେପରି ବଳଦର ନାକରେ ରଶି ଲଗାଇ ପୁଣି ତାକୁ ପଘା ଦଉଡ଼ିରେ ବାନ୍ଧି କାମରେ ଲଗାଯାଏ, ସେହିପରି ବର୍ଣ୍ଣାଶ୍ରମ ପ୍ରଭୃତି ନାମରେ ଛନ୍ଦା ହୋଇ ଓ ବେଦୋକ୍ତ ଧର୍ମରେ ବାନ୍ଧି ହୋଇ ବଦ୍ଧଜୀବ ଈଶ୍ୱରଙ୍କ ବଶରେ ହିଁ କାର୍ଯ୍ୟ କରେ ॥୪୧॥ ଯେପରି ଖେଳାଳି ତାର ଇଚ୍ଛା ଅନୁସାରେ ଖେଳ ଉପକରଣଗୁଡ଼ିକ ଏକାଠି କରେ ବା ଅଲଗା କରି ରଖେ, ସେହିପରି ଈଶ୍ୱରଙ୍କ ଇଚ୍ଛାରେ ତାଙ୍କ କ୍ରୀଡ଼ନକ ମନୁଷ୍ୟମାନଙ୍କର କେତେବେଳେ ସଂଯୋଗ ବା କେତେବେଳେ ବିୟୋଗ ଘଟିଥାଏ ॥୪୨॥ ତୁମେ ମୋହବଶରୁ ଜୀବକୁ ନିତ୍ୟ ବା ଅନିତ୍ୟ ବୋଲି ମନେକରୁଛ । ଆତ୍ମା ରୂପରେ ସେ ନିତ୍ୟ ବା ଦେହଧାରୀ ରୂପରେ ସେ ଅନିତ୍ୟ; କିନ୍ତୁ ବ୍ରହ୍ମରୂପରେ ସେ ନିତ୍ୟ ବା ଅନିତ୍ୟର ଊର୍ଦ୍ଧ୍ୱରେ । ଜଡ଼ ବା ଚେତନର ସମାହାର ଦୃଷ୍ଟିରୁ ସେ ଉଭୟ ନିତ୍ୟ ବା ଅନିତ୍ୟ ହୋଇପାରେ । ଯେକୌଣସି ଦୃଷ୍ଟିରୁ ବିଚାର କଲେ ମଧ୍ୟ ସଂସାରୀ ଜୀବପାଇଁ ଶୋକ କରିବା ଉଚିତ ନୁହେଁ ॥୪୩॥ ସେଥିପାଇଁ ହେ ରାଜା ! 'ଦୀନ ଓ ଅସହାୟ ଭାବରେ ସେମାନେ ମୋ ବିନା କିପରି ବଞ୍ଚିବେ' ବୋଲି ତୁମେ ଯେପରି ବିକଳ ହେଉଛ, ସେପରି ବ୍ୟାକୁଳତା ଶୀଘ୍ର ତ୍ୟାଗ କର ॥୪୪॥ ଯେପରି ସର୍ପମୁଖରେ ପଡ଼ିଥିବା ଜଣେ ବ୍ୟକ୍ତି ଅନ୍ୟ ଜଣେ ସର୍ପଗ୍ରସ୍ତ ବ୍ୟକ୍ତିକୁ ରକ୍ଷା କରିପାରେନା, ସେହିପରି ପଞ୍ଚଭୂତରେ ଗଢ଼ା କାଳ, କର୍ମ ଓ ଗୁଣର ଅଧୀନ ଏହି ନଶ୍ୱର ଶରୀରକୁ ଧରି ଜଣେ ଅନ୍ୟ ଜଣେ ବ୍ୟକ୍ତିକୁ କିପରି ରକ୍ଷା କରିପାରିବ ? ॥୪୫॥ ହାତ ନ ଥିବା ଜୀବ ହାତଥିବା ଜୀବର, ପାଦ ନ ଥିବା ଜୀବ ଚତୁଷ୍ପଦ ଜୀବଙ୍କର, କ୍ଷୁଦ୍ରଜୀବ ବୃହତ୍ ଜୀବର ଆହାରରୂପେ ଗଣାଯାଏ । ସେଥିପାଇଁ ହେ ରାଜା, ଭଗବାନ ଅନ୍ତର୍ଯାମୀଙ୍କୁ ଏକ ଓ ଅଦ୍ୱିତୀୟ ବୋଲି ଦେଖ । ସେହି ଏକ ପରମାତ୍ମା ସମସ୍ତ ଜୀବର ଅନ୍ତରେ ଓ ବାହାରେ ବିଦ୍ୟମାନ । କେବଳ ମାୟାବଶରୁ ସେ ବହୁ ରୂପରେ ପ୍ରତିଭାତ ହୁଅନ୍ତି ॥୪୬-୪୭॥ ମହାରାଜ, ଏବେ ସେହି ଭୂତଭାବନ ଭଗବାନ ଦେବଦ୍ୱେଷୀମାନଙ୍କର ବିନାଶପାଇଁ କାଳରୂପରେ ଅବତୀର୍ଣ୍ଣ ହୋଇଛନ୍ତି ॥୪୮॥ ଦେବତାମାନଙ୍କର କୃତ୍ୟ ପ୍ରାୟ ଶେଷ ହୋଇଗଲାଣି, ତାହା ଅଳ୍ପ ଯାହା ବାକି ଅଛି । ତାହା ଶେଷ କରିବାପାଇଁ ଭଗବାନ କୃଷ୍ଣ ଇହଧାମରେ ଯେତେଦିନ ଅଛନ୍ତି, ତୁମେମାନେ ସେପର୍ଯ୍ୟନ୍ତ ଅପେକ୍ଷା କର ॥୪୯॥ ଭ୍ରାତା ବିଦୁର ଓ ଭାର୍ଯ୍ୟା ଗାନ୍ଧାରୀଙ୍କ ସହିତ ଧୃତରାଷ୍ଟ୍ର ହିମାଳୟର ଦକ୍ଷିଣ ଭାଗରେ ଥିବା ଋଷିମାନଙ୍କ ଆଶ୍ରମକୁ ଯାଇଛନ୍ତି । ସେଠାରେ ଗଙ୍ଗାନଦୀ ସପ୍ତଧାରରେ ବିଭକ୍ତ ହୋଇ ସପ୍ତର୍ଷିମାନଙ୍କର ପ୍ରୀତିବିଧାନ କରୁଛି ॥୫୦-୫୧॥ ସେଠାରେ ଯଥାବିଧି ସ୍ନାନ, ତ୍ରିସନ୍ଧ୍ୟା, ହୋମ ଆଦି କରି ଏବଂ ଜଳମାତ୍ର ପାନ କରି ସେମାନେ ଶାନ୍ତିରେ ରହିଛନ୍ତି । ସେମାନଙ୍କର ଚିତ୍ତ ନିର୍ମଳ ହୋଇଛି ॥୫୨॥ ସତ୍ତ୍ୱ, ରଜ ଓ ତମ ଗୁଣର ପ୍ରଭାବରେ ତାଙ୍କ (ଧୃତରାଷ୍ଟ୍ର)ଚିତ୍ତରେ ଯେଉଁ ମଳିନତା ଥିଲା, ଆସନ, ପ୍ରାଣାୟାମ, ଇନ୍ଦ୍ରିୟନିଗ୍ରହ ଓ ହରିଭଜନଦ୍ୱାରା ତାହା ସମ୍ପୂର୍ଣ୍ଣ ଦୂରୀଭୂତ ହୋଇଛି ॥୫୩॥ ବର୍ତ୍ତମାନ ସେ ସମାଧିସ୍ଥ ଅବସ୍ଥାରେ । ସେ ଅହଙ୍କାରକୁ ବୁଦ୍ଧିରେ ଯୋଗ କରି ଏବଂ ବୁଦ୍ଧିକୁ କ୍ଷେତ୍ରଜ୍ଞ ଆତ୍ମାରେ ନିବେଶପୂର୍ବକ ତାହାକୁ ପରମାତ୍ମାରେ ଲୀନ କରିଦେଇଛନ୍ତି, ଯେପରିକି ଘଟାକାଶ ମହାକାଶରେ ଲୀନ ହୋଇଯାଏ । ସେ ଇନ୍ଦ୍ରିୟ ଓ ମନକୁ ସମ୍ପୂର୍ଣ୍ଣ ବଶୀଭୂତ କରି ଏବଂ ଆହାରାଦି ତ୍ୟାଗ କରି ସ୍ଥାଣୁପରି ନିଶ୍ଚଳ ହୋଇ ବସିରହିଛନ୍ତି । ସମସ୍ତ କର୍ମରୁ ସନ୍ନ୍ୟାସ ଗ୍ରହଣ କରିଥିବା ତାଙ୍କ ରାସ୍ତାରେ ତୁମେ ଅନ୍ତରାୟ ହୁଅ ନାହିଁ ॥୫୪-୫୫॥ ଯୁଧିଷ୍ଠିର, ଆଜିଠାରୁ ପଞ୍ଚମ ଦିବସରେ ସେ ନିଜର ଶରୀର ତ୍ୟାଗ କରିବେ ଏବଂ ସେହି ଶରୀର

ଭସ୍ମୀଭୂତ ହୋଇଯିବ ॥୫୬॥ ଅଗ୍ନିରେ ପର୍ଣ୍ଣକୁଟୀର ସହିତ ଧୃତରାଷ୍ଟ୍ରଙ୍କୁ ଜଳିଯାଉଥିବାର ଦେଖି କୁଟୀରବାହାରେ ଥିବା ତାଙ୍କ ପତ୍ନୀ ସାଧ୍ୱୀ ଗାନ୍ଧାରୀ ସେହି ଅଗ୍ନିରେ ପ୍ରବେଶ କରି ଦେହତ୍ୟାଗ କରିବେ ॥୫୭॥ ବିଦୁର ସେହି ଆଶ୍ଚର୍ଯ୍ୟଜନକ ଘଟଣା ଦେଖି ଯୁଗପତ୍ ହର୍ଷ ଓ ବିଷାଦରେ ଅଭିଭୂତ ହୋଇଯିବେ । ନିଜ ଭ୍ରାତାଙ୍କ ମୋକ୍ଷରେ ଆନନ୍ଦ ଓ ମୃତ୍ୟୁରେ ଦୁଃଖ । ଏହାପରେ ତୀର୍ଥଭ୍ରମଣପାଇଁ ସେ ଚାଲିଯିବେ ॥୫୮॥ ଏହା କହି ଦେବର୍ଷି ନାରଦ ନିଜର ବୀଣା ଧରି ସ୍ୱର୍ଗକୁ ଚାଲିଗଲେ । ତାଙ୍କ ଉପଦେଶ ହୃଦୟଙ୍ଗମ କରି ଯୁଧିଷ୍ଠିର ଶୋକମୁକ୍ତ ହେଲେ ॥୫୯॥

## ଚତୁର୍ଦ୍ଦଶ ଅଧ୍ୟାୟ

# ଅର୍ଜୁନ ଦ୍ୱାରକାରୁ ଫେରିଲେ

ସୂତ କହିଲେ, ନିଜର ବନ୍ଧୁ ଓ ସ୍ୱଜନମାନଙ୍କୁ ଦେଖିବାପାଇଁ ଏବଂ ପୁଣ୍ୟଶ୍ଲୋକ କୃଷ୍ଣ କ'ଣ କରିବାକୁ ଯାଉଛନ୍ତି ତାହା ଜାଣିବାପାଇଁ ଅର୍ଜୁନ ଦ୍ୱାରକା ଯାଇଥିଲେ ॥୧॥ ଏ ମଧ୍ୟରେ କେତେ ମାସ ବିତିଗଲା । କିନ୍ତୁ ଅର୍ଜୁନ ଫେରିଲେ ନାହିଁ । ଏଣେ ହସ୍ତିନାରେ ରହି ରାଜା ଯୁଧିଷ୍ଠିର ଭୟଙ୍କର ଅପଶକୁନମାନ ଦେଖିବାକୁ ପାଇଲେ । କାଳର ଗତି ଭୀଷଣ ହେଲାଣି । ଋତୁମାନେ ବଦଳିଗଲେଣି । ଲୋକମାନେ କ୍ରୋଧ, ଲୋଭ ଓ ମିଥ୍ୟାର ବଶବର୍ତ୍ତୀ ହୋଇ ପାପପୂର୍ଣ୍ଣ ଉପାୟରେ ଜୀବନନିର୍ବାହ କରୁଛନ୍ତି ॥୨-୩॥ ମିତ୍ରମାନଙ୍କ ମଧ୍ୟରେ ଶଙ୍କାପୂର୍ଣ୍ଣ ବ୍ୟବହାର । ପିତାମାତା, ବନ୍ଧୁ, ଭ୍ରାତା ଓ ଦମ୍ପତୀମାନଙ୍କ ମଧ୍ୟରେ ସର୍ବଦା କଳହ ଦେଖିବାକୁ ମିଳୁଛି ॥୪॥ କାଳର ଏହି ଗତି ଦେଖି ଏବଂ ଏ ସବୁ ଅଶୁଭ ଲକ୍ଷଣରେ ଓ ପ୍ରଜାମାନଙ୍କ ଅଧର୍ମ ସ୍ୱଭାବରେ ବିଚଳିତ ହୋଇ ଯୁଧିଷ୍ଠିର ନିଜର ସାନଭାଇ ଭୀମସେନଙ୍କୁ କହିଲେ, ପୁଣ୍ୟଶ୍ଲୋକ କୃଷ୍ଣ କ'ଣ କରିବାକୁ ଯାଉଛନ୍ତି ଜାଣିବାପାଇଁ ଓ ନିଜ ବନ୍ଧୁ ଯାଦବମାନଙ୍କୁ ଦେଖିବାପାଇଁ ମୁଁ ଅର୍ଜୁନଙ୍କୁ ଦ୍ୱାରକା ପଠାଇଥିଲି ॥୫-୬॥ ହେ ଭୀମ ! ତୁମ ସାନଭାଇ ଯିବାର ସାତ ମାସ ହୋଇଗଲାଣି । ତଥାପି ସେ ଫେରିଲେ ନାହିଁ । ଏହାର୍ କାରଣ କ'ଣ ମୁଁ ବୁଝିପାରୁ ନାହିଁ । ଭଗବାନ ତାଙ୍କର ଲୀଳା ଶେଷ କରି ଦେହତ୍ୟାଗ କରିବେ ବୋଲି ଦେବର୍ଷି ନାରଦ ଯାହା କହିଥିଲେ, ସେ ସମୟ କ'ଣ ଆସିଗଲାଣି ? ॥୭-୮॥ ସେହି କୃଷ୍ଣଙ୍କପାଇଁ ଆମର ସମସ୍ତ ସମ୍ପଦ, ରାଜ୍ୟ, ସ୍ତ୍ରୀ, ପ୍ରାଣ, ପ୍ରଜା ଓ ବଂଶର ଅଭିମାନ ସମ୍ଭବ ହୋଇଛି । ତାଙ୍କରି ଅନୁଗ୍ରହରୁ ଆମେ ଶତ୍ରୁମାନଙ୍କୁ ଜୟ କରିଛେ ଏବଂ ସ୍ୱର୍ଗ-ଲୋକାଦି ପୁଣ୍ୟ ଅର୍ଜନ କରିଛେ ॥୯॥ ହେ ନରବ୍ୟାଘ୍ର ଭୀମସେନ, ଦେଖ; କିପରି ଆକାଶରେ, ପୃଥିବୀରେ ଓ ମନୁଷ୍ୟର ଦେହରେ ନାନା ଅଶୁଭ ଲକ୍ଷଣମାନ ଦେଖାଦେଉଛି । ଏପରି କୌଣସି ଭୟଙ୍କର ବିପଦ ଆସିବାର ଅଛି କି ଯଦ୍ୱାରା ଆମର ବୁଦ୍ଧି ମୋହଗ୍ରସ୍ତ ହୋଇଯିବ ? ॥୧୦॥ ବାରମ୍ବାର ମୋର ବାମଜଂଘ, ବାମ ଚକ୍ଷୁ ଓ ବାମବାହୁ କମ୍ପିତ ହେଉଛି ଏବଂ ହୃତ୍‌କମ୍ପ ଜାତ ହେଉଛି । କିଛି ଅପ୍ରିୟ ଘଟିବାକୁ ଯାଉଛି ବୋଲି ମୁଁ ମନେକରୁଛି ॥୧୧॥ ଦେଖ, ମାଈ ବିଲୁଆଟା ସୂର୍ଯ୍ୟଙ୍କ ଆଡ଼କୁ ମୁହଁ କରି କିପରି ରଡ଼ି ଛାଡ଼ୁଛି ଏବଂ ତାହାର ମୁହଁରୁ ନିଆଁ ବାହାରୁଛି । କୁକୁରଟା ମୋ ଆଡ଼କୁ ଚାହିଁ ଭୋ ଭୋ ହେଉଛି । ହେ ଭୀମ, ଗୋମହିଷାଦି ଗୃହପାଳିତ ପଶୁମାନେ ମୋର ଡାହାଣରେ ଓ ଗଧଆଦି ପଶୁମାନେ ମୋର ବାଁରେ ଚାଲିଯାଉଛନ୍ତି । ଅଶ୍ୱମାନେ କାନ୍ଦିଲାପରି ମୋତେ ଦେଖାଯାଉଛନ୍ତି ॥୧୨-୧୩॥ ମୃତ୍ୟୁର ଦୂତ ଏହି ପେଚା ଏବଂ କାଉଙ୍କୁ ସବୁ ଦେଖ । ଏମାନେ ଏପରି ଭାବରେ ରାବୁଛନ୍ତି ଯେ, ମନରେ ଭୟସଞ୍ଚାର ହେଉଛି, ଯେପରିକି ତାଙ୍କ ରାବଦ୍ୱାରା ସାରା ସଂସାରକୁ ଫଟାଇଦେବେ ॥୧୪॥ ଦୂର ଦିଗ୍‌ବଳୟପର୍ଯ୍ୟନ୍ତ ଚତୁର୍ଦ୍ଦିଗ ଧୂମପୂର୍ଣ୍ଣ । ପର୍ବତମାନଙ୍କ ସହିତ ପୃଥିବୀ କାନ୍ଦିଉଠୁଛି । ଘଡ଼ଘଡ଼ି, ଚଡ଼ଚଡ଼ି ସହ ବଜ୍ରପାତ ହେଉଛି ॥୧୫॥ ଚାରିଆଡ଼େ ଧୂଳିଝଡ଼ ସୃଷ୍ଟି କରି ପ୍ରବଳ ବେଗରେ ପବନ ବହୁଛି । ଭୟଙ୍କର

ମେଘମାନେ ଚାରିଆଡ଼େ ରକ୍ତବୃଷ୍ଟି କରୁଛନ୍ତି ॥୧୬॥ ସୂର୍ଯ୍ୟ ନିଷ୍ପ୍ରଭ ଓ ଆକାଶରେ ଗ୍ରହମାନଙ୍କ ମଧ୍ୟରେ ସଂଘର୍ଷ ଉପସ୍ଥିତ, ଯେପରି ଭୂତଗଣଙ୍କଦ୍ୱାରା ଆକାଶ, ପୃଥିବୀ ଜଳିପୋଡ଼ି ଯିବାକୁ ବସିଛି ॥୧୭॥ ନଦନଦୀ, ପୁଷ୍କରିଣୀ ଓ ଲୋକଙ୍କର ମନ କ୍ଷୁବ୍ଧ ହେଉଛି । ଘିଅରେ ନିଆଁ ଜଳୁ ନାହିଁ । ଏହି ଭୟଙ୍କର ସମୟରେ କ'ଣ ହେବ ଜଣାଯାଉ ନାହିଁ ॥୧୮॥ ବାଛୁରିମାନେ ମା'ର ସ୍ତନରୁ କ୍ଷୀର ପିଉ ନାହାନ୍ତି । କାରଣ ମା'ମାନଙ୍କର ସ୍ତନରୁ ଆଉ କ୍ଷୀର ଝରୁ ନାହିଁ । ଗାଈମାନେ ଲୁହ ଗଡ଼ାଇ କାନ୍ଦୁଛନ୍ତି ॥୧୯॥ ବୃଷଭମାନଙ୍କର ମନରେ ଆନନ୍ଦ ନାହିଁ । ମନ୍ଦିରରେ ଦେବପ୍ରତିମା ସବୁ ରୋଦନ କରୁଛନ୍ତି । ସେମାନଙ୍କ ଦେହରୁ ଝାଳ ବାହାରୁଛି, ସେମାନେ ଟଳମଳ ହେବାପରି ଦିଶୁଛନ୍ତି । ଗ୍ରାମ, ନଗର, ଖଣିଖଦାନ, ଆଶ୍ରମ ଓ ଉଦ୍ୟାନ ଶ୍ରୀହୀନ ଓ ନିରାନନ୍ଦ ଦେଖାଯାଉଛି । କି ବିପଦ ଆଗକୁ ପଡ଼ିବ କେଜାଣି ? ॥୨୦॥ ଏହି ସବୁ ଭୟାନକ ଉତ୍ପାତ ଦେଖି ମୋର ମନେହେଉଛି, ଏହି ହତଭାଗ୍ୟ ପୃଥିବୀ ସେହି ଅନନ୍ୟ ପୁରୁଷ ଭଗବାନଙ୍କର ପାଦଚିହ୍ନରୁ ବଞ୍ଚିତ ହୋଇ ଶ୍ରୀହୀନ ହୋଇପଡ଼ିଛି ॥୨୧॥

ସୂତ କହିଲେ, ହେ ଶୌନକ, ରାଜା ଯୁଧିଷ୍ଠିର ଏହି ଅନିଷ୍ଟମାନ ଦେଖି ଯେତେବେଳେ ଚିନ୍ତାମଗ୍ନ ଅବସ୍ଥାରେ ଥିଲେ, ସେତେବେଳେ ଯଦୁପୁରୀ ଦ୍ୱାରକାରୁ କପିଧ୍ୱଜ ଅର୍ଜୁନ ଫେରିଆସିଲେ ॥୨୨॥ ଯେତେବେଳେ ଅର୍ଜୁନ ତାଙ୍କ ପାଦତଳେ ପଡ଼ି ପ୍ରଣାମ କଲେ, ସେ କେବେହେଲେ ତାଙ୍କର ଏପରି ବିକଳ ଅବସ୍ଥା ଦେଖି ନ ଥିଲେ । ଅର୍ଜୁନ ମୁହଁ ପୋତି ରହିଛନ୍ତି ଏବଂ ତାଙ୍କ କମଳନିନ୍ଦୀ ନୟନଯୁଗଳରୁ ଅଶ୍ରୁଧାର ବହିବାରେ ଲାଗିଛି ଏବଂ ଅଙ୍ଗକାନ୍ତି ମଳିନ ହୋଇପଡିଛି । ଏହା ଦେଖି ନାରଦଙ୍କ କଥା ଯୁଧିଷ୍ଠିରଙ୍କର ମନେ ପଡ଼ିଲା । ସେ ଶଙ୍କିତ ହୃଦୟରେ ନିଜ ଜ୍ଞାତିମାନଙ୍କ ଉପସ୍ଥିତିରେ ଅର୍ଜୁନଙ୍କୁ ପଚାରିଲେ, ହେ ଅର୍ଜୁନ ! ମଧୁ, ଭୋଜ, ଦଶାର୍ହ, ଆର୍ହ, ସାତ୍ୱତ, ଅନ୍ଧକ, ବୃଷ୍ଣି ଆଦି ଆମ ସ୍ୱଜନମାନେ ଦ୍ୱାରକାପୁରୀରେ କୁଶଳରେ ଅଛନ୍ତି ତ ? ॥୨୩-୨୫॥ ଆମର ପୂଜ୍ୟ ମାତାମହ ଶୂରସେନ ଓ ମାତୁଳ ବସୁଦେବ ତାଙ୍କ ଭାଇମାନଙ୍କ ସହିତ କୁଶଳରେ ଅଛନ୍ତି ତ ? ମାତୁଳଙ୍କ ପତ୍ନୀମାନେ ଦେବକୀ ପ୍ରଭୃତି ସାତଭଉଣୀ ସେମାନଙ୍କ ପୁତ୍ର ଓ ପୁତ୍ରବଧୂମାନଙ୍କ ସହ କୁଶଳରେ ଅଛନ୍ତି ତ ? ॥୨୬-୨୭॥ ନିଜର ଦୁଷ୍ଟ ପୁତ୍ରକୁ ହରାଇଥିବା ରାଜା ଉଗ୍ରସେନ ଓ ତାଙ୍କ ସାନ ଭାଇ ଦେବକ ବଞ୍ଚିଛନ୍ତି କି ନାହିଁ ? ହୃଦୀକ ଓ ତାଙ୍କ ପୁତ୍ର କୃତବର୍ମା, ଅକ୍ରୂର, ଜୟନ୍ତ, ଗଦ, ସାରଣ, ଶତ୍ରୁଜିତ୍ ପ୍ରଭୃତି ଯାଦବ ବୀରମାନେ କୁଶଳରେ ଅଛନ୍ତି ତ ? ଭକ୍ତମାନଙ୍କର ରକ୍ଷକ ଭଗବାନ ବଳରାମ କିପରି ଅଛନ୍ତି ? ॥୨୮-୨୯॥ ଯାଦବମାନଙ୍କ ମଧ୍ୟରେ ଶ୍ରେଷ୍ଠ ଯୋଦ୍ଧା ମହାରଥୀ ପ୍ରଦ୍ୟୁମ୍ନ ଓ ଯୁଦ୍ଧରେ ଅତି ଦ୍ରୁତଗାମୀ ଅନିରୁଦ୍ଧ କୁଶଳରେ ଅଛନ୍ତି ତ ? ସୁଷେଣ, ଚାରୁଦେଷ୍ଣ, ଜାମ୍ବବତୀଙ୍କ ପୁତ୍ର ସାମ୍ବ ଏବଂ ଋଷଭ ଆଦି କୃଷ୍ଣଙ୍କର ଅନ୍ୟପୁତ୍ରମାନେ ସମସ୍ତେ ଭଲରେ ଅଛନ୍ତି ତ ? ॥୩୦-୩୧॥ ଶ୍ରୁତଦେବ ଓ ଉଦ୍ଧବ ଆଦି କୃଷ୍ଣଙ୍କ ଅନୁଚର ଏବଂ ସୁନନ୍ଦ ଓ ନନ୍ଦ ପ୍ରଭୃତି ରାମକୃଷ୍ଣଙ୍କ ବାହୁବଳକୁ ଆଶ୍ରୟ କରିଥିବା ଅନ୍ୟ ଯଦୁବଂଶୀ ବୀରମାନେ କୁଶଳରେ ଅଛନ୍ତି ତ ? ସେମାନଙ୍କ ସହିତ ଆମର ଘନିଷ୍ଠ ବନ୍ଧୁତା ଥିବା ଦୃଷ୍ଟିରୁ ସେମାନେ ଆମ କୁଶଳ ସମାଚାର ପଚାରନ୍ତି କି ନାହିଁ ? ବ୍ରାହ୍ମଣମାନଙ୍କର ପ୍ରିୟ ଭକ୍ତବତ୍ସଳ ଭଗବାନ ଗୋବିନ୍ଦ ଦ୍ୱାରକାପୁରରେ ବନ୍ଧୁମାନଙ୍କ ସହିତ ସୁଖରେ ଅଛନ୍ତି ତ ? ॥୩୨-୩୪॥ ଆଦିପୁରୁଷ ବିଷ୍ଣୁ କ୍ଷୀରାବ୍ଧିରେ ଅନନ୍ତଶୟନ କରିବା ପରି ଆଦିପୁରୁଷ କୃଷ୍ଣ ଅନନ୍ତ ବଳରାମଙ୍କ ସହିତ ଦ୍ୱାରବତୀରୂପୀ କ୍ଷୀରାବ୍ଧିରେ ସୁଖରେ ବିହାର କରୁଛନ୍ତି ତ ? ॥୩୫॥ ଯାହାଙ୍କର ବାହୁଦଣ୍ଡକୁ ଆଶ୍ରୟ କରି ଯାଦବମାନେ ସ୍ୱର୍ଗଲୋକରେ ରହିବା ପରି ସ୍ୱପୁରରେ ପରମାନନ୍ଦରେ ରହିଛନ୍ତି, ସତ୍ୟଭାମାପ୍ରଭୃତି ଷୋଳସହସ୍ର ନାରୀ ଯାହାଙ୍କର ପାଦସେବା ବଳରେ ଯୁଦ୍ଧରେ ଦେବତାମାନଙ୍କୁ ପରାଜିତ କରି ଇନ୍ଦ୍ରାଣୀଙ୍କର ଉପଭୋଗ୍ୟ ପାରିଜାତ ପୁଷ୍ପ ଆଦି ସ୍ୱର୍ଗରୁ ଆଣି ମର୍ତ୍ତ୍ୟରେ ଉପଭୋଗ କରୁଛନ୍ତି, ଯାହାଙ୍କର ବାହୁଦଣ୍ଡକୁ ଆଶ୍ରୟ କରି ଅକୁତୋଭୟ ଯଦୁବୀରମାନେ ଇନ୍ଦ୍ରର ସୁଧର୍ମା ସଭାକୁ ବଳପୂର୍ବକ ଅଧିକାର କରି ବାରମ୍ବାର ପଦଦଳିତ କରୁଛନ୍ତି, ସେହି ଭଗବାନ ଶ୍ରୀକୃଷ୍ଣ କୁଶଳରେ ଅଛନ୍ତି ତ ? ॥୩୬-୩୮॥ ହେ ବତ୍ସ ଅର୍ଜୁନ ! ତୁମ ନିଜର ସବୁ ଭଲ ତ ? ମୁଖ କାହିଁକି ଏପରି ନିସ୍ତେଜ ଦେଖାଯାଉଛି ? ବହୁଦିନ ଦ୍ୱାରକାରେ ରହିବା ଫଳରେ ତୁମକୁ କେହି ଅସମ୍ମାନ ବା ଅବଜ୍ଞା କରି

ନାହାନ୍ତି ତ ? ॥୩୮-୩୯॥ କଠୋର ବାକ୍ୟରେ କେହି ତୁମକୁ ତାଡ଼ନା କରି ନାହାନ୍ତି ତ ? କାହାରିକୁ କିଛି ପ୍ରତିଶ୍ରୁତି ଦେଇ ତାକୁ ନିରାଶ କରି ନାହଁ ତ ? ॥୪୦॥ ତୁମେ ଶରଣବତ୍ସଳ । ଗୋବ୍ରାହ୍ମଣ, ବାଳକ, ବୃଦ୍ଧ, ରୋଗୀ, ସ୍ତ୍ରୀ ପ୍ରଭୃତି ତୁମର ଶରଣାଗତ କାହାରିକୁ ଶରଣ ଦେବାପାଇଁ ମନା କରି ନାହଁ ତ ? ॥୪୧॥ ତୁମେ କୌଣସି ଅଗମ୍ୟା ସ୍ତ୍ରୀ ସହିତ ସଙ୍ଗମ କରିଛ କି ? କିମ୍ବା ସଙ୍ଗମଯୋଗ୍ୟା ସ୍ତ୍ରୀକୁ ପ୍ରତ୍ୟାଖ୍ୟାନ କରିଛ କି ? ବା ଆସୁଥିବାବେଳେ ବାଟରେ ତୁମଠାରୁ ହୀନବଳ ବା ସମାସ୍କନ୍ଧ କୌଣସି ବ୍ୟକ୍ତି ତୁମକୁ ପରାସ୍ତ କରିଛନ୍ତି କି ? ॥୪୨॥ କ୍ଷୁଧିତ ବାଳକ, ବୃଦ୍ଧମାନଙ୍କୁ ଭୋଜନ ନ ଦେଇ ନିଜେ ଭୋଜନ କରି ନାହଁ ତ ? ମୁଁ ଜାଣେ ଏପରି କୌଣସି ଅକ୍ଷମଣୀୟ ଓ ନିନ୍ଦିତ କର୍ମ ତୁମେ କରିନାହଁ ॥୪୩॥ ବୋଧହୁଏ ତୁମ ପ୍ରିୟତମ ସଖା କୃଷ୍ଣଙ୍କୁ ଚିରଦିନପାଇଁ ହରାଇ ତୁମେ ନିଜକୁ ଏପରି ଶୂନ୍ୟ ମନେକରୁଛ ! ଏତଦ୍‌ବ୍ୟତୀତ ତୁମ ଦୁଃଖର ଅନ୍ୟ କୌଣସି କାରଣ ମୁଁ ଦେଖିପାରୁ ନାହିଁ ॥୪୪॥

## ପଞ୍ଚଦଶ ଅଧ୍ୟାୟ

# କୃଷ୍ଣବିରହବିଧୁର ପାଣ୍ଡବମାନଙ୍କ ସ୍ୱର୍ଗଯାତ୍ରା

କୃଷ୍ଣଙ୍କ ବିରହରେ ଅର୍ଜୁନ ଦୁର୍ବଳ ହୋଇପଡ଼ିଥିଲେ । ତାଙ୍କ ମୁହଁ ଶୁଖି ଯାଇଥିଲା । ମନରେ ସରସତା ନ ଥିଲା । ଅଙ୍ଗକାନ୍ତି ଝାଉଁଳି ପଡ଼ିଥିଲା । ତାଙ୍କୁ ଏପରି ଦେଖି ଭ୍ରାତା ରାଜା ଯୁଧିଷ୍ଠିର ଯେଉଁସବୁ ପ୍ରଶ୍ନ ପଚାରିଲେ, କୃଷ୍ଣବିରହକାତର ଅର୍ଜୁନ କୃଷ୍ଣଙ୍କ କଥା ଭାଳି ଭାଳି ତାର କୌଣସି ଉତ୍ତର ଦେଇପାରିଲେ ନାହିଁ ॥୧-୨॥ କୃଷ୍ଣଙ୍କର ସ୍ନେହପୂର୍ଣ୍ଣ ବନ୍ଧୁତା ତାଙ୍କର ମନେ ପଡୁଥିଲା । ସେ ତାଙ୍କର ସଖା, ମିତ୍ର, ସୁହୃଦ୍ ସବୁ କିଛି ଥିଲେ ଏବଂ ଶେଷରେ ତାଙ୍କ ରଥରେ ସାରଥି ହୋଇଥିଲେ । ଏ ସବୁ ବାରମ୍ବାର ମନେପଡୁଥିବାରୁ ତାଙ୍କ ଆଖିରୁ ଲୁହ ବହିଯାଉଥିଲା । ବହୁ କଷ୍ଟରେ ସେ ଆଖିଲୁହକୁ ହାତରେ ପୋଛି ଅଗ୍ରଜ ଯୁଧିଷ୍ଠିରଙ୍କୁ ବାଷ୍ପଗଦ୍‌ଗଦ କଣ୍ଠରେ କହିଲେ, ମହାରାଜ ! ମୁଁ ଏବେ ସେ ଶ୍ରୀହରିଙ୍କ ବନ୍ଧୁତାରୁ ବଞ୍ଚିତ । ମୋର ଯେଉଁ ଶୌର୍ଯ୍ୟ ଓ ତେଜ ଦେବତାମାନଙ୍କର ବିସ୍ମୟ ଉତ୍ପାଦନ କରୁଥିଲା, ସେ ତାକୁ ଅପହରଣ କରିନେଇଛନ୍ତି । ପିଣ୍ଡରୁ ପ୍ରାଣ ଚାଲିଗଲେ ଯେପରି ମଡ଼ା କୁହାଯାଏ, ସେହିପରି ତାଙ୍କର କ୍ଷଣେ ମାତ୍ର ବିୟୋଗରେ ଏ ସଂସାର ଦେଖିବା ଯୋଗ୍ୟ ହେଉ ନାହିଁ ॥୩-୬॥ ଯାହାଙ୍କ ଆଶ୍ରୟରେ ଦ୍ରୌପଦୀଙ୍କ ସ୍ୱୟଂବରକାଳରେ ଦୁର୍ଦ୍ଧର୍ଷ ରାଜାମାନଙ୍କର ତେଜ ମୁଁ ହରଣ କରିନେଇଥିଲି, ଧନୁରେ ବାଣକୁ ଯୋଖି ମତ୍ସ୍ୟଭେଦ କରିଥିଲି, ଯାହାଙ୍କ ସାନ୍ନିଧ୍ୟରୁ ସମସ୍ତ ଦେବତାଙ୍କ ସହ ଇନ୍ଦ୍ରଙ୍କୁ ଜୟ କରି ଅଗ୍ନିଙ୍କର ସନ୍ତୋଷପାଇଁ ଖାଣ୍ଡବବନ ଦାନ କରିଥିଲି ଏବଂ ଅପୂର୍ବ ଶିଳ୍ପଚାତୁରୀଦ୍ୱାରା ମୟଦାନବ ଆମପାଇଁ ଏକ ସଭାଗୃହ ନିର୍ମାଣ କରିଥିଲେ ଏବଂ ସେହି ସଭାଗୃହରେ ଆପଣ ରାଜସୂୟ ଯଜ୍ଞ କରିଥିଲେ ଓ ନାନା ଦେଶରୁ ଆସିଥିବା ରାଜାମାନେ ଆପଣଙ୍କୁ ବହୁ ଉପହାର ପ୍ରଦାନ କରିଥିଲେ ; ॥୭-୮॥ ଯାହାଙ୍କର ତେଜରେ ଅୟୁତ ଗଜର ବଳରେ ବଳୀୟାନ୍ ଆପଣଙ୍କର ଅନୁଜ ଆର୍ଯ୍ୟ ଭୀମସେନ ମହାଭୈରବଙ୍କ ଯଜ୍ଞରେ ବଳି ଦେବାପାଇଁ ରାଜାମାନଙ୍କୁ ଆଣି ବନ୍ଦି କରିଥିବା ଦୁର୍ଦ୍ଦାନ୍ତ ସମ୍ରାଟ୍ ଜରାସନ୍ଧଙ୍କୁ ନିହତ କରି ସେମାନଙ୍କୁ ମୁକ୍ତି ଦେଇଥିଲେ ଏବଂ ଆପଣଙ୍କ ରାଜସୂୟ ଯଜ୍ଞକୁ ଆସି ସେହି ରାଜାମାନେ ଉପହାର ସହ ଆପଣଙ୍କ ଆନୁଗତ୍ୟ ସ୍ୱୀକାର କରିଥିଲେ ; ॥୯॥ ରାଜସୂୟ ଯଜ୍ଞର ମନ୍ତ୍ରିତ ଜଳରେ ସିକ୍ତ ଆପଣଙ୍କ ପତ୍ନୀ ଦ୍ରୌପଦୀଙ୍କର ରୁଚିର କେଶରାଶିକୁ ଆକର୍ଷଣ କରି ଦୁଷ୍ଟ କପଟୀମାନେ କୁରୁସଭାରେ ତାଙ୍କୁ ଭୂପତିତ କରିଥିଲେ । ପ୍ରଭୁଙ୍କ ଚରଣାଶ୍ରିତ ଅଶ୍ରୁମୁଖୀ ସେହି ଦ୍ରୌପଦୀଙ୍କ ଅପମାନର ପ୍ରତିଶୋଧ ନେବାପାଇଁ ଯେ ଯୁଦ୍ଧରେ ଏହି ଦୁଷ୍ଟମାନଙ୍କର ନିଧନ କରାଇ ସେମାନଙ୍କ ସ୍ତ୍ରୀମାନଙ୍କୁ ମୁକ୍ତକେଶା

କରାଇଥିଲେ, ଅର୍ଥାତ୍ ବୈଧବ୍ୟ ଦୁଃଖ ଦେଇଥିଲେ; ॥୧୦॥ ଆମର ବନବାସ ସମୟରେ ଶତ୍ରୁମାନେ ମନ୍ତ୍ରଣା କରି ଦଶସହସ୍ର କ୍ଷୁଧିତ ଶିଷ୍ୟଙ୍କ ସହିତ କ୍ରୋଧୀ ଦୁର୍ବାସା ଋଷିଙ୍କୁ ଅସମୟରେ ଆମ ପାଖକୁ ପଠାଇଥିଲେ ଏବଂ ଦୁର୍ବାସା ଭୋଜନପୂର୍ବରୁ ସ୍ନାନ କରିବାକୁ ଯାଇଥିବା ବେଳେ ପାତ୍ରରେ ଲାଗିଥିବା ଟିକିଏ ଶାକାନ୍ନ ମାତ୍ର ଖାଇ ସେମାନଙ୍କୁ ଏପରି ତୃପ୍ତ କରିଦେଲେ ଯେ, ତଦ୍ୱାରା ତ୍ରିଲୋକ ତୃପ୍ତ ହେଲା ବୋଲି ସେମାନେ ଅନୁଭବ କଲେ ଏବଂ ଏହିପରି ଋଷିଙ୍କ ଅଭିଶାପ ଭୟରୁ ଯେ ଆମକୁ ରକ୍ଷା କରିଥିଲେ ; ॥୧୧॥ ଯାହାଙ୍କ ବଳରେ, ମୁଁ ଯୁଦ୍ଧରେ ଗିରିନନ୍ଦିନୀ ପାର୍ବତୀଙ୍କ ସହିତ ଭଗବାନ ଶୂଳପାଣି ଶିବଙ୍କୁ ଆଶ୍ଚର୍ଯ୍ୟଚକିତ କରିଦେଇ ତାଙ୍କଠାରୁ ଅମୋଘ ପାଶୁପତ ଅସ୍ତ୍ର ଏବଂ ଅନ୍ୟ ଲୋକପାଳମାନଙ୍କଠାରୁ ମଧ୍ୟ ବହୁ ଶକ୍ତିଶାଳୀ ଅସ୍ତ୍ର ଲାଭ କରିଥିଲି ଏବଂ ଯାହାଙ୍କ କୃପାରୁ ସ୍ୱର୍ଗଲୋକକୁ ଯାଇ ଇନ୍ଦ୍ରଙ୍କଦ୍ୱାରା ସମ୍ମାନିତ ହେବା ଏବଂ ଏକ ଆସନରେ ବସିବାର ସୌଭାଗ୍ୟ ମୋତେ ମିଳିଥିଲା; ॥୧୨॥ ହେ ମହାରାଜ ! ଯାହାଙ୍କ ପ୍ରଭାବରୁ, ସେଇଠି ମୁଁ ବିହାର କରୁଥିବା ବେଳେ ନିବାତ, କବଚ ଆଦି ରାକ୍ଷସମାନଙ୍କ ବଧପାଇଁ ଇନ୍ଦ୍ରାଦି ଦେବତାମାନେ ଗାଣ୍ଡୀବଧନୁଚିହ୍ନିତ ମୋର ଭୁଜଦଣ୍ଡକୁ ଆଶ୍ରୟ କରିଥିଲେ, ସେହି ମହାପୁରୁଷ ଶ୍ରୀକୃଷ୍ଣ ମୋତେ ଆଜି ଛାଡ଼ି ଚାଲିଯାଇଛନ୍ତି ॥୧୩॥ ଯାହାଙ୍କ ବନ୍ଧୁତାବଳରେ ମୁଁ ଜଣେ କେବଳ ରଥରେ ବସି ହସ୍ତିନାର ଅପାର କୁରୁସେନାସମୁଦ୍ରକୁ ପାର ହୋଇଥିଲି, ସେମାନଙ୍କଦ୍ୱାରା ଅପହୃତ ବିରାଟଙ୍କ ଗୋଧନକୁ ଫେରାଇ ଆଣିଥିଲି ଏବଂ ମୋହନାସ୍ତ୍ରଦ୍ୱାରା ଶତ୍ରୁମାନଙ୍କୁ ଧରାଶାୟୀ କରି ସେମାନଙ୍କ ତେଜୋଦୀପ୍ତ ମଣିମୟ ମୁକୁଟମାନଙ୍କୁ ହରଣ କରିଥିଲି ; ॥୧୪॥ ଭୀଷ୍ମ, ଦ୍ରୋଣ, କର୍ଣ୍ଣ, ଶଲ୍ୟ ପ୍ରଭୃତି ମହାରଥୀ ଏବଂ ବୀରଶ୍ରେଷ୍ଠ ଅସଂଖ୍ୟ ରାଜାମାନଙ୍କର ରଥଦ୍ୱାରା ମଣ୍ଡିତ ଅଭେଦ୍ୟ କୌରବସେନା ମଧ୍ୟରେ ଯେ ମୋର ରଥକୁ ସାରଥିଭାବରେ ଆପେ ଆପେ ନେଇ ଯାଇଥିଲେ ଏବଂ ଦୃଷ୍ଟି ପଡ଼ିବାମାତ୍ରେ ଯେ ଏହି ରଥୀ ଯୂଥପତିମାନଙ୍କର ବଳ, ତେଜ ଆଦି ଅପହରଣ କରିନେଉଥିଲେ; ॥୧୫॥ ନୃସିଂହଙ୍କ ଭକ୍ତ ପ୍ରହ୍ଲାଦଙ୍କୁ ଅସୁରମାନଙ୍କ ଅସ୍ତ୍ର ଯେପରି ସ୍ପର୍ଶ କରିପାରି ନ ଥିଲା, ସେହିପରି ଭୀଷ୍ମ, ଦ୍ରୋଣ, କର୍ଣ୍ଣ, ଭୂରିଶ୍ରବା, ସୁଶର୍ମା, ଶଲ୍ୟ, ଜୟଦ୍ରଥ ପ୍ରଭୃତି ଯୋଦ୍ଧାମାନଙ୍କ ଅମୋଘ ଅସ୍ତ୍ର ଯାହାଙ୍କ କୃପାରୁ ମୋତେ ସ୍ପର୍ଶ କରିପାରି ନ ଥିଲା ; ॥୧୬॥ ଶ୍ରେଷ୍ଠ ଭକ୍ତମାନେ ସଂସାରରୁ ମୁକ୍ତି ପାଇବାପାଇଁ ଯେଉଁ ଗୋବିନ୍ଦଙ୍କ ପାଦପଦ୍ମ ଦର୍ଶନ କରିଥାନ୍ତି, ମୋର କୁବୁଦ୍ଧିଦୋଷରୁ ମୁଁ ତାଙ୍କୁ ସାରଥିକାର୍ଯ୍ୟରେ ନିଯୁକ୍ତ କରାଇଥିଲି ଏବଂ ଜୟଦ୍ରଥବଧ ଦିନ ଯେତେବେଳେ ମୋ ରଥର ଅଶ୍ୱମାନେ କ୍ଲାନ୍ତ ହୋଇପଡ଼ିଲେ ଓ ସେମାନଙ୍କୁ ପାଣି ପିଆଇବା ପାଇଁ ମୁଁ ରଥରୁ ଓହ୍ଲାଇ ପଡ଼ିଥିଲି, ସେହି ରଥୀ ମହାରଥୀମାନେ ସେତେବେଳେ ମୋତେ ମାରି ପାରି ନ ଥିଲେ, କାରଣ ସେହି ଈଶ୍ୱରଙ୍କଦ୍ୱାରା ସେମାନଙ୍କ ଚିତ୍ତଭ୍ରଂଶ ହୋଇଥିଲା; ॥୧୭॥ ହେ ପାର୍ଥ ! ହେ ଅର୍ଜୁନ ! ହେ ସଖା ! ହେ କୁରୁନନ୍ଦନ ! ଆଦି ସମ୍ବୋଧନ ଏବଂ ହାସ୍ୟପରିହାସଯୁକ୍ତ ତାଙ୍କ ମଧୁର ମନୋହର କଥାସବୁ ଚିନ୍ତା କରି ମୋ ହୃଦୟ ଫାଟିପଡୁଛି ॥୧୮॥ ଆମେ ଦୁହେଁ ଏକାଠି ଶୋଉଥିଲୁ, ବସୁଥିଲୁ, ଖାଉଥିଲୁ, ବୁଲି ଯାଉଥିଲୁ ଏବଂ ନିଜ ନିଜର ପ୍ରଶଂସା କରୁଥିଲୁ । ବେଳେବେଳେ ମୁଁ ତାଙ୍କୁ 'ଭାରି ସତ କହୁଛ' ବୋଲି ବ୍ୟଙ୍ଗୋକ୍ତି କରି କହୁଥିଲି, ତଥାପି ବନ୍ଧୁ ବନ୍ଧୁର କଥାକୁ ଏବଂ ପିତା ପୁତ୍ରର କଥାକୁ ସ୍ନେହବଶତଃ ଯେପରି ଧରେ ନାହିଁ, ସେ ସେହିପରି ମୋ ଭଳି ମନ୍ଦମତିର କଥାକୁ ଧରୁ ନ ଥିଲେ ॥୧୯॥ ମହାରାଜ ! ସେହି ପରମ ସଖା, ପ୍ରିୟ ସୁହୃଦ୍, ପୁରୁଷୋତ୍ତମ କୃଷ୍ଣଙ୍କୁ ହରାଇ ଶୂନ୍ୟ ହୃଦୟରେ ତାଙ୍କ ସ୍ତ୍ରୀମାନଙ୍କୁ ଘେନି ହସ୍ତିନାପୁରକୁ ଆସୁଥିବାବେଳେ ଦସ୍ୟୁମାନଙ୍କଦ୍ୱାରା ଆକ୍ରାନ୍ତ ହୋଇ ମୁଁ ପରାଜିତ ହେଲି ॥୨୦॥ ମୋର ସେହି ଗାଣ୍ଡୀବ ଧନୁ ଅଛି; ପାଶୁପତ ଆଦି ଅସ୍ତ୍ର ଅଛି, ସେହି ରଥ ଓ ସେହି ଅଶ୍ୱମାନେ ଅଛନ୍ତି, ମୁଁ ସେହି ରଥୀ ମଧ୍ୟ ଅଛି, ଯେଉଁଥିପାଇଁ ବିଭିନ୍ନ ରାଜା ବିନା ଯୁଦ୍ଧରେ ମୋର ବଶତା ସ୍ୱୀକାର କରନ୍ତି । କିନ୍ତୁ ଆଜି କୃଷ୍ଣଙ୍କ ବିହୁନେ ସେହି ସବୁ ଅସ୍ତ୍ର, ଶସ୍ତ୍ର, ତେଜ, ବଳ ଆଦି ଯଜ୍ଞର ପରେ ଭସ୍ମପରି, ଇନ୍ଦ୍ରଜାଲରେ ମିଳିଥିବା ଧନପରି ଏବଂ ମରୁବାଲିରେ ବୁଣା ହୋଇଥିବା ବିହନପରି ବ୍ୟର୍ଥ ଓ ନିଷ୍ଫଳ ଜଣାଯାଉଛି ॥୨୧॥ ହେ ରାଜା ! ଦ୍ୱାରକାର ଯେଉଁ ବନ୍ଧୁମାନଙ୍କ ବିଷୟରେ ଆପଣ ମୋତେ ବାରମ୍ବାର ପଚାରିଲେ, ସେମାନେ

ବ୍ରହ୍ମଶାପରେ ମୋହଗ୍ରସ୍ତ ହୋଇ ଏବଂ ବାରୁଣୀ ମଦିରା ପାନ କରି ମଦୋନ୍ମତ୍ତ ଅବସ୍ଥାରେ କେହି କାହାରିକୁ ଚିହ୍ନିପାରିଲେ ନାହିଁ ଏବଂ ନିଜ ନିଜ ଭିତରେ ମାରପିଟ ହେଲେ । ଯାହାଫଳରେ ଚାରି ପାଞ୍ଚ ଜଣଙ୍କୁ ଛାଡ଼ିଦେଲେ ସମସ୍ତଙ୍କର ବିନାଶ ଘଟିଲା ॥୨୨-୨୩॥ ଏହା କେବଳ ଭଗବାନ ଈଶ୍ୱରଙ୍କର ଲୀଳା । ବେଳେବେଳେ ଜୀବଗଣ ପରସ୍ପରକୁ ରକ୍ଷା କରନ୍ତି ବା ବେଳେବେଳେ ବିନାଶ କରନ୍ତି ॥୨୪॥ ହେ ରାଜା ! ଜଳଚର ପ୍ରାଣୀମାନଙ୍କ ଭିତରେ ଯେପରି ବଡ଼ମାନେ ଛୋଟଙ୍କୁ ଖାଇଯାଆନ୍ତି, ବଳବାନ୍‌ମାନେ ମଧ୍ୟ ଦୁର୍ବଳ ଏବଂ ପରସ୍ପରକୁ ଗ୍ରାସ କରନ୍ତି । ସେହିପରି ବଳିଷ୍ଠ ଯଦୁବୀରମାନଙ୍କଦ୍ୱାରା ଭଗବାନ କୃଷ୍ଣ ଅନ୍ୟ ରାଜାମାନଙ୍କୁ ସଂହାର କଲେ ଏବଂ ଶେଷରେ ସେମାନଙ୍କୁ ନିଜ ନିଜ ଦ୍ୱାରା ନାଶ କରାଇ ପୃଥିବୀର ଭାର ହରଣ କଲେ ॥୨୫ -୨୬॥ ନିଜ ହୃଦୟର ଦୁଃଖ ଉପଶମ କରିବାପାଇଁ ଦେଶ ଓ କାଳ ଦୃଷ୍ଟିରୁ ଶ୍ରୀ ଗୋବିନ୍ଦ ଯେଉଁସବୁ ସଦୁପଦେଶମାନ ଦେଇଛନ୍ତି, ତାହା ମୋର ଚିତ୍ତକୁ ହରଣ କରୁଛି ॥୨୭॥

ସୂତ କହିଲେ, ଏହିପରି କୃଷ୍ଣପାଦପଦ୍ମକୁ ଅତି ପ୍ରେମରେ ଓ ଦୃଢ଼ ଭାବରେ ଚିନ୍ତା କରିବାଦ୍ୱାରା ଅର୍ଜୁନଙ୍କ ମନର ଅସ୍ଥିରତା ଦୂର ହେଲା ଏବଂ ଚିତ୍ତବୃତ୍ତି ଶାନ୍ତ ଓ ନିର୍ମଳ ହୋଇଗଲା ॥୨୮॥ ବାସୁଦେବଙ୍କ ପାଦପଦ୍ମରେ ଏକାନ୍ତ ଲୟ ରଖିବା ଯୋଗୁଁ ଅର୍ଜୁନଙ୍କର ଭକ୍ତିଭାବ ଏପରି ବଢ଼ିଗଲା ଯେ ତାଙ୍କର ଚିତ୍ତର ସମସ୍ତ ବିକାର ଦୂର ହୋଇଗଲା । କୁରୁକ୍ଷେତ୍ର ଯୁଦ୍ଧ ମଧ୍ୟରେ ଭଗବାନ କୃଷ୍ଣ ତାଙ୍କୁ ଯେଉଁ ଗୀତାର ଜ୍ଞାନ ପ୍ରଦାନ କରିଥିଲେ ଏବଂ କର୍ମଜଞ୍ଜାଳ ମଧ୍ୟରେ ସେ ଯାହାକୁ ଭୁଲିଯାଇଥିଲେ, ତାହା ତାଙ୍କ ହୃଦୟରେ ପୁନର୍ବାର ଜାଗରିତ ହେଲା ॥୨୯-୩୦॥ ବ୍ରହ୍ମଜ୍ଞାନଲାଭଯୋଗୁଁ ତାଙ୍କର ଶୋକ ଦୂର ହେଲା । ଭଗବାନଙ୍କର କେହି ଦ୍ୱିତୀୟ ନାହିଁ, ଏ ବିଷୟରେ ତାଙ୍କ ମନର ସନ୍ଦେହ ଦୂର ହେଲା । ଗୁଣଯୁକ୍ତ ପ୍ରକୃତିର ଲୋପ ହୋଇ ନିର୍ଗୁଣଭାବର ଉଦୟ ହେବା ଯୋଗୁଁ ସେ ଜନ୍ମମୃତ୍ୟୁର ଚକ୍ରରୁ ମୁକ୍ତ ହୋଇଗଲେ । ଯଦୁକୁଳର ବିନାଶ ଏବଂ ଭଗବାନ କୃଷ୍ଣଙ୍କର ସ୍ୱଧାମପ୍ରାପ୍ତି ବିଷୟ ଶୁଣି ଯୁଧିଷ୍ଠିର ସେହି ଭଗବତ୍‌ପଥରେ ଯିବାପାଇଁ ମନ ସ୍ଥିର କରିନେଲେ ॥୩୧-୩୨॥ ଯଦୁବଂଶର ବିନାଶ ଓ କୃଷ୍ଣଙ୍କର ସ୍ୱଧାମଗମନ ବିଷୟ ଅର୍ଜୁନଙ୍କଠାରୁ ଶୁଣି ମାତା କୁନ୍ତୀ ଭକ୍ତିଯୋଗରେ କୃଷ୍ଣଙ୍କଠାରେ ଚିତ୍ତ ରଖି ଦେହ ତ୍ୟାଗ କଲେ ॥୩୩॥ କଣ୍ଟାରେ କଣ୍ଟାକୁ ବାହାର କରି ଉଭୟ କଣ୍ଟାକୁ ଫିଙ୍ଗିଦେବାପରି ଜନ୍ମାଦିରହିତ ଭଗବାନ୍ କୃଷ୍ଣ ପୃଥିବୀର ଭାର ହରଣ କରିବା ସହ ନିଜର ତନୁ ତ୍ୟାଗ କରିଥିଲେ ॥୩୪॥ ଯେପରି ଅଭିନେତା ଭିନ୍ନ ଭିନ୍ନ ବେଶରେ ଅଭିନୟ କରେ ଏବଂ ଅଭିନୟ ଶେଷରେ ତା'ର ନିଜ ରୂପକୁ ଫେରିଆସେ, ସେହିପରି ଭଗବାନ କିଛି ସମୟପାଇଁ ମତ୍ସ୍ୟ ଆଦି ବିଭିନ୍ନ କଳେବର ଧାରଣ କରି ପୁଣି ସ୍ୱରୂପକୁ ଫେରିଗଲେ ॥୩୫॥

ଯେଉଁଦିନ ଭଗବାନ ମୁକୁନ୍ଦ; ଯାହାଙ୍କ କଥା ସମସ୍ତଙ୍କର ଶ୍ରବଣୀୟ, ଧରାଧାମ ତ୍ୟାଗ କଲେ, ସେଇଦିନ ଅଧର୍ମର ମୂଳ ଭୟଙ୍କର କଳିକାଳ ମୂଢ଼ଜନମାନଙ୍କୁ ଗ୍ରାସ କରିବାପାଇଁ ମାଡ଼ିଆସିଲା ॥୩୬॥ ବିଜ୍ଞ ଯୁଧିଷ୍ଠିର କଳିର ପ୍ରଭାବରୁ ନିଜ ମନ, ରାଜ୍ୟ, ରାଜଧାନୀ, ସ୍ଥାନ ତଥା ଲୋକଙ୍କ ମଧ୍ୟରେ ଲୋଭ, ମିଥ୍ୟା, କୂଟନୀତି, ହିଂସା ଆଦିର ପ୍ରଭାବ ଅନୁଭବ କଲେ ଓ ଶୀଘ୍ର ସଂସାର ତ୍ୟାଗ କରିବାପାଇଁ ମନସ୍ଥ କଲେ ॥୩୭॥ ଯୁଧିଷ୍ଠିରଙ୍କ ପରି ତାଙ୍କ ନାତି ପରିକ୍ଷିତ ବିନୟୀ ଏବଂ ଗୁଣବାନ୍ ଥିଲେ । ଯୁଧିଷ୍ଠିର ହସ୍ତିନାର ରାଜଗାଦିରେ ନାତି ପରିକ୍ଷିତଙ୍କୁ ସମୁଦ୍ର ବେଷ୍ଟିତ ପୃଥିବୀର ସମ୍ରାଟ୍ ରୂପେ ଅଭିଷିକ୍ତ କରାଇଲେ ॥୩୮॥ ସେହିପରି ଶ୍ରୀକୃଷ୍ଣଙ୍କର ଅଣନାତି ବଜ୍ରଙ୍କୁ ଶୂରସେନ ରାଜ୍ୟର ରାଜାରୂପେ ରାଜଧାନୀ ମଥୁରା ନଗରୀରେ ଅଧିଷ୍ଠିତ କରାଇଲେ । ତା'ପରେ ରାଜା ଯୁଧିଷ୍ଠିର ପ୍ରାଜାପତ୍ୟ ଇଷ୍ଟି ନାମକ ଯଜ୍ଞ କରି ଆହବନୀୟ, ଗାର୍ହପତ୍ୟ ଆଦି ଅଗ୍ନିମାନଙ୍କୁ ପିଇବାପାଇଁ ପ୍ରସ୍ତୁତ ହୋଇଗଲେ ॥୩୯॥ ସଙ୍ଗେ ସଙ୍ଗେ ନିଜର ପଟ୍ଟବସ୍ତ୍ର, ଅଳଙ୍କାର ଆଦି ଭୂଷଣ ତ୍ୟାଗ କଲେ । ଅହମିକା ଓ ମମତ୍ୱକୁ ଦୂରକରି ସମସ୍ତ ସଂସାରବନ୍ଧନରୁ ମୁକ୍ତ ହୋଇଗଲେ ॥୪୦॥ ସେ ପଞ୍ଚେନ୍ଦ୍ରିୟକୁ ମନରେ ନିବେଶ କରି ଅନ୍ନମୟ କୋଷ, ପ୍ରାଣମୟ କୋଷ, ମନୋମୟ କୋଷ, ବିଜ୍ଞାନମୟ କୋଷ -ଏହିପରି କ୍ରମରେ ଗୋଟିକ ପରେ ଗୋଟିକର ଊର୍ଦ୍ଧ୍ୱକୁ ଉଠି ଆନନ୍ଦମୟ କୋଷରେ

ନିଜକୁ ଲୀନ କଲେ ଏବଂ ତ୍ରିଗୁଣାତ୍ମକ ଏହି ନାଶଶୀଳ ଶରୀରରେ ଅବିନାଶୀ ବ୍ରହ୍ମଙ୍କର ସତ୍ତା ଅନୁଭବ କଲେ ।।୪୧-୪୨।। ସେ ଆହାର ଛାଡ଼ିଦେଲେ । ପୁରୁଣା ଛିଣ୍ଡା ଲୁଗା ପିନ୍ଧିଲେ । କାହାରିକୁ କଥା ନ କହି ମୂକ ପାଲଟିଗଲେ ଏବଂ ବାଳକୁ ମୁକୁଳା କରି ରହିଲେ । ତାଙ୍କୁ ଯେ ଦେଖିଲା ଜଡ଼, ପାଗଳ ବା ପିଶାଚ ବୋଲି ମନେକଲା ।।୪୩।। ଏହିପରି କାହାରିକୁ ଅପେକ୍ଷା ନ କରି ବଧିର ପରି ହୋଇ କାହାରି କଥା ନ ଶୁଣି ସେ ଘରୁ ବାହାରିଗଲେ । ତାଙ୍କ ପୂର୍ବସୂରୀ ମହାତ୍ମାମାନେ ଯେଉଁ ରାସ୍ତାରେ ଯାଇଥିଲେ, ଯେଉଁ ରାସ୍ତାରେ ଗଲେ କେହି ଫେରନ୍ତି ନାହିଁ, ହୃଦୟରେ ପରମବ୍ରହ୍ମଙ୍କୁ ଧ୍ୟାନ କରି ରାଜା ଯୁଧିଷ୍ଠିର ସେହି ରାସ୍ତାରେ ଉତ୍ତର ଦିଗକୁ ଯାତ୍ରା କଲେ ।।୪୪।। ଅଧର୍ମର ମିତ୍ର କଳି ସଂସାରରେ ଲୋକମାନଙ୍କୁ ଗ୍ରାସ କରିବାକୁ ବସିଲାଣି ଦେଖି ଭୀମ, ଅର୍ଜୁନ ଆଦି ଯୁଧିଷ୍ଠିରଙ୍କର ସାନଭାଇମାନେ ସଙ୍ଗେ ସଙ୍ଗେ ତାଙ୍କୁ ଅନୁଗମନ କଲେ । ଜୀବନର ସବୁକିଛି ସେମାନେ ଭୋଗକରି ସାରିଥିଲେ, ବର୍ତ୍ତମାନ କୃଷ୍ଣଙ୍କର ପାଦପଦ୍ମକୁ ହିଁ ସେମାନେ ଧ୍ୟାନ କରିବାକୁ ଲାଗିଲେ ।।୪୫-୪୬।। କୃଷ୍ଣଙ୍କ ପାଦପଦ୍ମ ଧ୍ୟାନ କରିବାଦ୍ୱାରା ତାଙ୍କ ଭକ୍ତିଭାବର ଉଦ୍ରେକ ହୋଇ ଚିତ୍ତ ନିର୍ମଳ ହେଲା ଓ ସମସ୍ତ କଳୁଷ ଦୂର ହୋଇଗଲା । ବିଷୟଭୋଗରେ ଲିପ୍ତ ବ୍ୟକ୍ତିମାନେ ଯେଉଁ ପଦ ପାଇପାରନ୍ତି ନାହିଁ, କୃଷ୍ଣଙ୍କର ଏକାନ୍ତ ଭକ୍ତ ପାଣ୍ଡବମାନେ ନାରାୟଣଙ୍କର ସେହି ପରମପଦ ପ୍ରାପ୍ତ ହେଲେ ।।୪୭-୪୮।। କୃଷ୍ଣଙ୍କଠାରେ ଚିତ୍ତ ନିବେଶ କରି ବିଦୁର ପ୍ରଭାସତୀର୍ଥରେ ଦେହତ୍ୟାଗ କଲେ ଏବଂ ପିତୃମାନଙ୍କ ଗହଣରେ ସ୍ୱଧାମ ପିତୃଲୋକକୁ ଯାତ୍ରା କଲେ ।।୪୯।। ସ୍ୱାମୀମାନେ ତାଙ୍କୁ ଅପେକ୍ଷା ନ କରି ଚାଲିଯାଇଥିବାର ଦେଖି କୃଷ୍ଣଗତପ୍ରାଣା ଦ୍ରୌପଦୀ ଭଗବାନ ବାସୁଦେବଙ୍କଠାରେ ଏକାନ୍ତ ଲୟ ରଖି ଲୀନ ହୋଇଗଲେ ।।୫୦।। ଭଗବାନଙ୍କ ପ୍ରିୟ ପାଣ୍ଡବମାନଙ୍କର ଏହି ପବିତ୍ର ମନୋହର ମଙ୍ଗଳମୟ ମହାପ୍ରସ୍ଥାନ କଥା ଯେ ଶ୍ରବଣ କରେ, ତାର ହୃଦୟରେ ଦୃଢ଼ ଈଶ୍ୱରଭକ୍ତି ଜାଗରିତ ହୁଏ ଓ ସେ ଇଷ୍ଟସିଦ୍ଧି ଲାଭ କରେ ।।୫୧।।

## ଷୋଡ଼ଶ ଅଧ୍ୟାୟ

# ପରିକ୍ଷିତଙ୍କ ଦିଗ୍‌ବିଜୟ

ସୂତ କହିଲେ, ହେ ଶୌନକ ! ପାଣ୍ଡବମାନଙ୍କ ପ୍ରୟାଣ ପରେ ଭଗବାନଙ୍କର ପରମଭକ୍ତ ରାଜା ପରିକ୍ଷିତ ଦ୍ୱିଜଶ୍ରେଷ୍ଠମାନଙ୍କର ପରାମର୍ଶରେ ଏହି ପୃଥିବୀକୁ ଶାସନ କଲେ । ତାଙ୍କ ଜନ୍ମସମୟରେ ଜ୍ୟୋତିଷପଣ୍ଡିତମାନେ ତାଙ୍କ ସମ୍ପର୍କରେ ଯାହାସବୁ କହିଥିଲେ, ସେ ସମସ୍ତ ମହତ୍‌ଗୁଣର ସେ ଅଧିକାରୀ ହୋଇଥିଲେ ।।୧।। ସେ ରାଜକୁମାର ଉତ୍ତରଙ୍କ କନ୍ୟା ଇରାବତୀଙ୍କୁ ବିବାହ କରି ଜନମେଜୟ ଆଦି ଚାରୋଟି ଔରସ ପୁତ୍ରଙ୍କର ଜନକ ହେଲେ ।।୨।। ସେ କୃପାଚାର୍ଯ୍ୟଙ୍କୁ ଆଚାର୍ଯ୍ୟରୂପେ ବରଣ କରି ଗଙ୍ଗାକୂଳରେ ତିନୋଟି ଅଶ୍ୱମେଧ ଯଜ୍ଞ କରିଥିଲେ ଓ ବ୍ରାହ୍ମଣମାନଙ୍କୁ ଭୂରିଭୂରି ଦକ୍ଷିଣା ଦେଇଥିଲେ । ଯଜ୍ଞଭାଗ ପାଇବାପାଇଁ ଦେବତାମାନେ ଏଠାରେ ପ୍ରତ୍ୟକ୍ଷଭାବରେ ଆବିର୍ଭୂତ ହୋଇଥିଲେ ।।୩।। ସେ ଥରେ ଦିଗ୍‌ବିଜୟରେ ଯାତ୍ରା କରୁଥିବାବେଳେ ଦେଖିଲେ, ଚଣ୍ଡାଳ କଳି ରାଜବେଶ ଧାରଣ କରି ଗୋଟିଏ ଗାଈ ଓ ଗୋଟିଏ ବୃଷଭକୁ ପଦାଘାତ କରୁଛି । ଉଚିତ ଦଣ୍ଡ ଦେବାପାଇଁ ସେ ତାକୁ ବଳପୂର୍ବକ ଧରିଆଣିଲେ ।।୪।। ଶୌନକ ପଚାରିଲେ, ଦିଗ୍‌ବିଜୟ ସମୟରେ ଗୋମାତାକୁ ପଦାଘାତ କରୁଥିବା ରାଜବେଶଧାରୀ ଏହି କୁତ୍ସିତ କଳିକୁ ରାଜା କି ଦଣ୍ଡ ବିଧାନ କଲେ ? ଭଗବାନଙ୍କର ଶ୍ରୀଚରଣକମଳ ମକରନ୍ଦ ପାନ କରୁଥିବା ସାଧୁ ମହାତ୍ମାମାନଙ୍କର ଏହି ପ୍ରସଙ୍ଗ ସହିତ ଯଦି କିଛି ସମ୍ପର୍କ ଥାଏ, କିମ୍ବା କୃଷ୍ଣକଥାର କିଛି ସମ୍ପର୍କ ଥାଏ, ତା'ହେଲେ ସେ ବିଷୟ ଆମମାନଙ୍କୁ ବର୍ଣ୍ଣନା କରନ୍ତୁ । ନଚେତ୍ କୌଣସି ଅସଦ୍ ବିଷୟର ଆଲୋଚନାଦ୍ୱାରା କେବଳ ଆୟୁକ୍ଷୟ ହେବା

ସାର ହେବ ॥୫-୬॥ ହେ ସୂତ ! ମନୁଷ୍ୟମାନେ ଅଳ୍ପାୟୁ ଏବଂ ମରଣଶୀଳ । କିନ୍ତୁ ସେମାନେ ମୋକ୍ଷକାମୀ । ତେଣୁ ଆମେମାନେ ମୃତ୍ୟୁର ଦେବତା ଯମଙ୍କୁ ସନ୍ତୁଷ୍ଟ କରିବାପାଇଁ ତାଙ୍କୁ ଏହି ଯଜ୍ଞରେ ଆବାହନ କରିଛୁ ॥୭॥ ଏଠାରେ ଯମରାଜ ଥିବା ପର୍ଯ୍ୟନ୍ତ କାହାରି ମୃତ୍ୟୁ ହେବ ନାହିଁ ଏବଂ ଲୋକେ ମରଦେହରେ ଶ୍ରୀହରିଙ୍କର ଅମୃତମୟ ଲୀଳା ଶ୍ରବଣ କରିପାରିବେ, ଏଥିପାଇଁ ମହର୍ଷିମାନେ ଯଜ୍ଞରେ ଯମଙ୍କୁ ଆବାହନ କରିଥିଲେ ॥୮॥ ମନ୍ଦବୁଦ୍ଧି, ଅଳ୍ପାୟୁଷ, ମନ୍ଦ ଲୋକମାନଙ୍କର ସମୟ ଦିନବେଳେ ବ୍ୟର୍ଥ କର୍ମରେ ଏବଂ ରାତି ହେଲେ ନିଦ୍ରାରେ କଟିଯାଏ ॥୯॥

ସୂତ କହିଲେ, ପରିକ୍ଷିତ ଚକ୍ରବର୍ତ୍ତୀ ରାଜା ଥିବା ସମୟରେ, ତାଙ୍କ ସୁରକ୍ଷିତ କୁରୁଜାଙ୍ଗଳ ରାଜ୍ୟରେ କଳି ପ୍ରବେଶ କରିଥିବାର ଅପ୍ରିୟ ବାର୍ତ୍ତା ଶୁଣିପାରି ସେ ଶରାସନ ଧାରଣ କରି ବାହାରିଲେ । ଶ୍ୟାମବର୍ଣ୍ଣ ଅଶ୍ୱଯୁକ୍ତ ସିଂହଚିହ୍ନିତ ଧ୍ୱଜାବିଶିଷ୍ଟ ସୁସଜ୍ଜିତ ରଥ ଆରୋହଣ କରି ଅଶ୍ୱ, ଗଜ, ପଦାତିକ ଆଦି ଚତୁରଙ୍ଗ ସେନା ସହ ଦିଗ୍‌ବିଜୟପାଇଁ ଯାତ୍ରା କଲେ ॥୧୦-୧୧॥ ଭଦ୍ରାଶ୍ୱ, କେତୁମାଳ, ଭାରତ, ଉତ୍ତରକୁରୁ କିଂପୁରୁଷ ଆଦି ଦେଶମାନ ଜୟ କରି ସେହିସବୁ ରାଜାମାନଙ୍କଠାରୁ କର ଆଦାୟ କଲେ ॥୧୨॥ ସେ ଯେଉଁ ଯେଉଁ ଦେଶକୁ ଯାଉଥିଲେ, ସେଠାରେ ସେ ତାଙ୍କ ପୂର୍ବପୁରୁଷମାନଙ୍କ ଯଶକୀର୍ତ୍ତି ଓ କୃଷ୍ଣଙ୍କ ମାହାତ୍ମ୍ୟର ଗାଥାମାନ ଶୁଣୁଥିଲେ ॥୧୩॥ ଅଶ୍ୱତ୍‌ଥାମାଙ୍କର ବ୍ରହ୍ମାସ୍ତ୍ରତେଜରୁ ସେ କିପରି ନିଜେ ରକ୍ଷା ପାଇଥିଲେ, ପାଣ୍ଡବ ଓ ଯାଦବମାନଙ୍କ ମଧ୍ୟରେ କିପରି ସ୍ନେହସମ୍ପର୍କ ଥିଲା, କୃଷ୍ଣଙ୍କଠାରେ ସେମାନଙ୍କର କିପରି ଭକ୍ତି ରହିଥିଲା, ତାହା ଶୁଣି ସେ ପରମ ସନ୍ତୋଷ ଲାଭ କଲେ ଓ ଆନନ୍ଦରେ ତାଙ୍କ ଚକ୍ଷୁଯୁଗଳ ବିସ୍ଫାରିତ ହୋଇଗଲା । ଉଦାରମନା ରାଜା ପରିକ୍ଷିତ ବହୁ ପରିମାଣରେ ଧନ, ବସ୍ତ୍ର, ହାର ଓ ଅଳଙ୍କାରମାନ ଦାନ କଲେ ॥୧୪-୧୫॥ ସାରା ବିଶ୍ୱରେ ପୂଜନୀୟ କୃଷ୍ଣ ପାଣ୍ଡବମାନଙ୍କ ପ୍ରତି ସ୍ନେହବଶରୁ କେତେବେଳେ ସେମାନଙ୍କର ସାରଥି, କେତେବେଳେ ସଭାସଦ୍‌, କେତେବେଳେ ସେବକ, କେତେବେଳେ ସଖା, କେତେବେଳେ ଦୂତ ଏବଂ କେତେବେଳେ ଖଡ୍‌ଗହସ୍ତରେ ପ୍ରହରୀଭାବରେ ସେମାନଙ୍କ ପ୍ରଶଂସା ଓ ଗୁଣଗାନ କରି ସଙ୍ଗେ ସଙ୍ଗେ ରହୁଥିଲେ । ଏପରିକି ସମସ୍ତ ଜଗତକୁ ସେମାନଙ୍କ ପାଖରେ ନତଶିର କରାଇଥିଲେ । ଏହି ସମସ୍ତ କଥା ଶୁଣି ମହାରାଜ ପରିକ୍ଷିତଙ୍କର କୃଷ୍ଣଚରଣାରବିନ୍ଦରେ ଆହୁରି ପ୍ରଗାଢ଼ ଭକ୍ତି ଜାତ ହେଲା ॥୧୬॥

ସୂତ କହିଲେ, ଏହିପରି ନିଜ ପୂର୍ବପୁରୁଷଙ୍କ ବୃତ୍ତିକୁ ଅନୁସରଣ କରୁଥିବା ରାଜା ପରିକ୍ଷିତଙ୍କର ଦିନ ପରେ ଦିନ ଅତିବାହିତ ହେଉଥିବାବେଳେ ଦିନେ ତାଙ୍କ ନିକଟରେ ଏକ ଆଶ୍ଚର୍ଯ୍ୟଜନକ ଘଟଣା ଘଟିଗଲା । ତାହା ମୁଁ ଆପଣମାନଙ୍କୁ କହୁଛି, ଶୁଣନ୍ତୁ ॥୧୭॥ ଧର୍ମଦେବ ବୃଷଭରୂପରେ ଗୋଟିଏ ପାଦରେ ବିଚରଣ କରୁଥିଲେ । ବିବର୍ଣ୍ଣା ଓ ଅଶ୍ରୁମୁଖୀ ମାତା ପୃଥିବୀ ଗାଭୀରୂପ ଧାରଣ କରିଥିଲେ । ବତ୍ସକୁ ହରାଇ ମାତା ରୋଦନ କରିବା ପରି ସେ ଶୋକ କରୁଥିଲେ ॥୧୮॥ ଧର୍ମ ପଚାରିଲେ, ଭଦ୍ରେ ! ତୁମର ସବୁ କୁଶଳ ତ ? କାହିଁକି ଏପରି ଶ୍ରୀହୀନ ଦେଖାଯାଉଛ ? ତୁମର ମୁଖ ମଳିନ ପଡ଼ିଯାଇଛି । ତୁମ ମନରେ କିଛି ଗଭୀର ଦୁଃଖ ଜାତ ହୋଇଛି କିମ୍ବା କୌଣସି ଦୂରସ୍ଥ ବନ୍ଧୁଙ୍କ ସମ୍ପର୍କରେ ତୁମେ ଶୋଚନା କରୁଛ ! ॥୧୯॥ ମୋର ତିନୋଟିଯାକ ପାଦ ଚାଲିଯାଇଛି । କେବଳ ଗୋଟିଏ ପାଦ ଅଛି । ତାହା ଦେଖି ତୁମର ଦୁଃଖ ହେଉଛି କି ? କିମ୍ବା ଅଳ୍ପ ଦିନ ପରେ ଶୂଦ୍ରରାଜାମାନେ ତୁମକୁ ଭୋଗ କରିବେ, ଦେବତାମାନେ ସେମାନଙ୍କର ଯଜ୍ଞଭାଗ ପାଇବେ ନାହିଁ, ବର୍ଷା ନ ହୋଇ ଚାରିଆଡ଼େ ମରୁଡ଼ି ଓ ଦୁର୍ଭିକ୍ଷ ଘୋଟିଯିବ ଏବଂ ପ୍ରଜାମାନେ ଦୁଃଖ ଭୋଗ କରିବେ, ଏହି କଥା ଭାବି ଭାବି ତୁମ ମନରେ ଦୁଃଖ ହେଉଛି ॥୨୦॥ ହେ ପୃଥିବୀ, ସ୍ତ୍ରୀ ବାଳକମାନେ ବର୍ତ୍ତମାନ ସୁରକ୍ଷିତ ନାହାନ୍ତି । ନିର୍ଦ୍ଦୟ ପୁରୁଷମାନେ ତାଙ୍କୁ ନିର୍ଯାତନା ଦେଉଛନ୍ତି । ବିଦ୍ୟା ବା ବାଗ୍‌ଦେବୀ ବର୍ତ୍ତମାନ କୁକାର୍ଯ୍ୟରେ ରତ ବ୍ରାହ୍ମଣମାନଙ୍କ ହାତରେ ପଡ଼ିଛନ୍ତି ଏବଂ କୁଳୀନ ବ୍ରାହ୍ମଣମାନେ ଏବେ ବିପ୍ରଦ୍ରୋହୀ ରାଜାମାନଙ୍କର ଆଶ୍ରୟ ନେବାପାଇଁ ବାଧ୍ୟ ହୋଇଚନ୍ତି । ଏହିସବୁ ଦେଖି କ'ଣ ତୁମର ଶୋକ ଜାତ ହେଉଛି ? ॥୨୧॥ ନୀଚ କ୍ଷତ୍ରିୟମାନେ ବର୍ତ୍ତମାନ କଳିଦ୍ୱାରା ପ୍ରଭାବିତ । ରାଷ୍ଟ୍ରସବୁ ଉଜୁଡ଼ି ଗଲାଣି । ଲୋକମାନେ ଖାଦ୍ୟ, ପାନୀୟ, ପରିଧାନ, ସ୍ନାନ, ମୈଥୁନ ଆଦିରେ ସମ୍ପୂର୍ଣ୍ଣ ଅସଂଯତ

ଓ ସ୍ୱେଚ୍ଛାଚାରୀ । ଏହିସବୁ ଦେଖି କ'ଣ ତୁମେ ଶୋକ କରୁଛ ? । ।୨୨।। ହେ ମାତା ଧରିତ୍ରି ! ତୁମ ଭାରକୁ ହରଣ କରିବାପାଇଁ ଭଗବାନ କୃଷ୍ଣ ଅବତୀର୍ଣ୍ଣ ହୋଇଥିଲେ । ସେ ଆଉ ନାହାନ୍ତି । ମୋକ୍ଷପ୍ରାପ୍ତିଠାରୁ ଯାହା ଅଧିକ ସୁଖକର, ତାଙ୍କର ସେହି ଲୀଳାମାନ ସ୍ମରଣ କରି ତୁମର କଣ ଏପରି ଶୋକ ଜାତ ହେଉଛି ? ।।୨୩।। ହେ ମାତା ବସୁନ୍ଧରା ! ତୁମ ଶୋକର ମୂଳ କାରଣ କ'ଣ ? ମୋତେ ବୁଝାଇ କହ । ତୁମେ କାହିଁକି ଏତେ ଦୁର୍ବଳ ଦେଖାଯାଉଛ ? ବଳବାନ୍‌ମାନଙ୍କଠାରୁ ମଧ୍ୟ ଅଧିକ ବଳୀୟାନ୍ କାଳ ତୁମର ସେହି ଦେବଦୁର୍ଲଭ ସୌଭାଗ୍ୟକୁ ହରଣ କରି ନାହିଁ ତ ? ।।୨୪।।

ପୃଥ୍ୱୀ କହିଲେ, ହେ ଧର୍ମ ! ତୁମେ ଯାହା ମୋତେ ପଚାରିଲ, ସେ ସବୁ ବିଷୟ ତୁମକୁ ଜଣା ଅଛି । ତୁମେ ଯାହାଙ୍କ କୃପାରୁ ଲୋକଙ୍କୁ ସୁଖକର ଚତୁଷ୍ପାଦ ଧାରଣ କରିଥିଲ; ସତ୍ୟ, ଶୌଚ, ଦୟା, କ୍ଷମା, ତ୍ୟାଗ, ସନ୍ତୋଷ, ସରଳତା, ଶାନ୍ତି, ସଂଯମ, ତପସ୍ୟା, ସହିଷ୍ଣୁତା, ସାମ୍ୟ, ଉପରତି, ଶାସ୍ତ୍ରଶ୍ରବଣ, ଜ୍ଞାନ, ବୈରାଗ୍ୟ, ଐଶ୍ୱର୍ଯ୍ୟ, ଶୌର୍ଯ୍ୟ, ଓଜ, ତେଜ, ବଳ, କର୍ତ୍ତବ୍ୟନିର୍ଣ୍ଣୟ, ସ୍ୱାଧୀନତା, କର୍ମଠତା, ସୌନ୍ଦର୍ଯ୍ୟ, ଧୈର୍ଯ୍ୟ, କୋମଳତା, ପ୍ରଗଲ୍‌ଭତା, ବିନୟ, ଶୀଳ, ସାହସ, ଉତ୍ସାହ, ସୌଭାଗ୍ୟ, ଗାମ୍ଭୀର୍ଯ୍ୟ, ନିଷ୍ଠା, ଶ୍ରଦ୍ଧା, କୀର୍ତ୍ତି, ନିରହଂକାରିତା-ଏହିସବୁ ମହତ ଗୁଣମାନଙ୍କର ନିତ୍ୟ ଆଶ୍ରୟସ୍ଥଳ ସେହି ସର୍ବଗୁଣାକର ସୌନ୍ଦର୍ଯ୍ୟର ଧାମ ଶ୍ରୀକୃଷ୍ଣ ମୋତେ ଛାଡ଼ି ଚାଲିଯାଇଛନ୍ତି ଓ ପାପାତ୍ମା କଳି ପ୍ରବେଶ କରିଛି । ତାହା ହିଁ ମୋ ଶୋକର କାରଣ । ବର୍ତ୍ତମାନ କଳିର ଦୃଷ୍ଟିରେ ସମସ୍ତେ ପଡ଼ିଲେଣି । ଏହି ଜୀବଜଗତ୍, ଦେବଶ୍ରେଷ୍ଠ ସ୍ୱୟଂ ଆପଣ, ମୁଁ, ଦେବ-ଋଷି-ପିତୃଗଣ-ସାଧୁଗଣ ଓ ବର୍ଣ୍ଣାଶ୍ରମ ଧର୍ମରେ ପରିଚାଳିତ ସମସ୍ତ ଲୋକ । ଏ ସମସ୍ତଙ୍କପାଇଁ ମୁଁ ଶୋକ କରୁଛି ।।୨୫-୩୧।। ଯାହାଙ୍କର କୃପାକଟାକ୍ଷ ଲାଭ କରିବାପାଇଁ ବ୍ରହ୍ମାଦି ଦେବତାମାନେ ଭଗବାନଙ୍କର ଶରଣାଗତ ହୋଇ ଦୀର୍ଘକାଳ ତପସ୍ୟା କରନ୍ତି, ସେହି ଲକ୍ଷ୍ମୀ ନିଜର ବାସସ୍ଥଳ ପଦ୍ମବନକୁ ତ୍ୟାଗ କରି ଯାହାଙ୍କ ପାଦପଙ୍କଜର ସେବାକୁ ନିଜର ସୌଭାଗ୍ୟ ମନେକରନ୍ତି, ପଦ୍ମ, ବଜ୍ର, ଅଙ୍କୁଶ, ଧ୍ୱଜ ଆଦି ଚିହ୍ନିତ ସେହି ଭଗବାନଙ୍କର ପାଦପଦ୍ମ ମୋତେ ଅଳଙ୍କୃତ କରିଥିଲା । ତ୍ରିଭୁବନବନ୍ଦିତ ସେହି ସୌଭାଗ୍ୟରେ ମୁଁ ଉତ୍‌ଫୁଲ୍ଲିତ ହେଉଥିଲି । କିନ୍ତୁ ଆଜି ମୋର ସେ ଗୌରବ ନାହିଁ, କାରଣ ଶେଷରେ ଭଗବାନ୍ ଶ୍ରୀକୃଷ୍ଣ ମୋତେ ଛାଡ଼ି ଚାଲି ଯାଇଛନ୍ତି ।।୩୨-୩୩।। ଯେଉଁସବୁ ଅସୁରବଂଶୀୟ ରାଜାମାନେ ମୋର ଅତି ଭାରସ୍ୱରୂପ ହୋଇଥିଲେ, ସେ ସେମାନଙ୍କୁ ଶତ ଶତ ଅକ୍ଷୌହିଣୀ ସେନା ସହିତ ନିପାତ କରିଥିଲେ । ଦୁଃଖରେ ଗୋଟିଏ ପାଦରେ ଭରା ଦେଇ ତୁମେ ଚାଲୁଥିଲ । ସେ ଯଦୁକୁଳରେ ଜନ୍ମ ହୋଇ ତୁମକୁ ସୁନ୍ଦର ଓ ସୁସ୍ଥ କରିଥିଲେ ।।୩୪।। ଯେ ତାଙ୍କର ସେହି ପ୍ରେମପୂର୍ଣ୍ଣ ସୁନ୍ଦର ଦୃଷ୍ଟି, ସ୍ମିତହାସ ଓ ମଧୁରମନୋହର କଥାରେ ମାନିନୀ ଗୋପୀମାନଙ୍କ ଧୈର୍ଯ୍ୟ ଓ ଗୁମାନ ହରଣ କରିନେଇଥିଲେ ଏବଂ ଯାହାଙ୍କ ଚରଣ କମଳର ସ୍ପର୍ଶରେ ମୋର ରୋମ ଟାଙ୍କୁରି ଉଠୁଥିଲା, ତାଙ୍କ ବିରହ କିଏ ବା ସହିପାରିବ ! ।।୩୫।। ଏହିପରି ପୃଥିବୀ ଓ ଧର୍ମ ନିଜ ନିଜ ମଧ୍ୟରେ କଥୋପକଥନ କରୁଥିବା ବେଳେ ରାଜା ପରିକ୍ଷିତ ପୂର୍ବଦିଗକୁ ପ୍ରବାହିତ ସରସ୍ୱତୀ କୂଳରେ ଆସି ପହଞ୍ଚିଲେ ।।୩୬।।

## ସପ୍ତଦଶ ଅଧ୍ୟାୟ

# କଳିର ଦମନ

ସୂତ କହିଲେ, ସେଠାରେ ପହଞ୍ଚି ରାଜା ପରିକ୍ଷିତ ଦେଖିଲେ ଯେ ରାଜବେଶଧାରୀ ଏକ ଶୂଦ୍ର ହାତରେ ବାଡ଼ି ଧରି ଗାଈ ଓ ବୃଷଭ ଦୁହିଁଙ୍କୁ ଅନାଥପରି ପ୍ରହାର କରିବାରେ ଲାଗିଛି ।।୧।। ବୃଷଭଟି ଧବଳ ପଦ୍ମପରି ଶ୍ୱେତବର୍ଣ୍ଣ ଓ ଏକପାଦବିଶିଷ୍ଟ । ସେ ଶୂଦ୍ରଦ୍ୱାରା ତାଡ଼ିତ ହୋଇ ଭୟରେ ଥରୁଛି ଓ ମୂତ୍ର ତ୍ୟାଗ କରୁଛି ।।୨।। ଗାଭୀଟି ଦୁଗ୍ଧବତୀ । କିନ୍ତୁ ଶୂଦ୍ରର ପଦାଘାତରେ ଅତିଶୟ

ଦୁଃଖିନୀ ଜଣାଯାଉଛି । ତା'ର ବତ୍ସ ମଧ୍ୟ ପାଖରେ ନାହିଁ । କ୍ଷୁଧିତ ଅବସ୍ଥାରେ ତା' ଚକ୍ଷୁରୁ ଲୋତକଧାର ବହିଯାଉଛି ॥୩॥ ସ୍ୱର୍ଣ୍ଣାଳଙ୍କାରଖଚିତ ରଥାରୂଢ଼ ରାଜା ଧନୁରେ ଗୁଣ ଚଢ଼ାଇ ମେଘଗମ୍ଭୀର ସ୍ୱରରେ ପଚାରିଲେ, କିଏ ତୁମେ, ମୋର ଶରଣାଗତ ଏହି ରାଜ୍ୟରେ ରହି ବଳପୂର୍ବକ ଦୁର୍ବଳଙ୍କୁ ମାରିବାପାଇଁ ଚେଷ୍ଟା କରୁଛ ? ନଟପରି ତୁମେ ରାଜାର ବେଶ ପିନ୍ଧିଛ; କିନ୍ତୁ କାର୍ଯ୍ୟରେ ଶୂଦ୍ରପରି ଜଣାଯାଉଛ । ଗାଣ୍ଡୀବଧନୁର୍ଧାରୀ ଅର୍ଜୁନଙ୍କ ସହ କୃଷ୍ଣ ଆଉ ନାହାନ୍ତି ବୋଲି ଭାବି ଏହି ନିର୍ଦୋଷମାନଙ୍କୁ ପ୍ରହାର କରୁଛ ! ଏହି ଅପରାଧପାଇଁ ତୁମେ ବଧଯୋଗ୍ୟ ॥୪-୬॥ ତା'ପରେ ବୃଷକୁ ଲକ୍ଷ୍ୟ କରି ରାଜା ପଚାରିଲେ; ତୁମେ ବା କିଏ ? ମାତ୍ର ଗୋଟିଏ ପାଦରେ ଚାଲୁଛ । ମୃଣାଳପରି ଶ୍ୱେତବର୍ଣ୍ଣ । ତୁମେ କୌଣସି ଦେବତା ନୁହଁ ତ ? ବୃଷର ରୂପରେ ଆମକୁ ଦୁଃଖ ଦେବାପାଇଁ ବୁଲୁଛ ? ॥୭॥ କୁରୁବଂଶୀୟ ରାଜାମାନଙ୍କ ଶାସନରେ ସୁରକ୍ଷିତ ଏହି ରାଜ୍ୟରେ ତୁମ ଛଡ଼ା ଆଉ କୌଣସି ପ୍ରାଣୀ ଏପରି ଅଶ୍ରୁପାତ କରନ୍ତି ନାହିଁ ॥୮॥ ହେ ସୁରଭିଙ୍କ ପୁତ୍ର ! ତୁମେ ଆଉ ଶୋକ କର ନାହିଁ । ଏହି ଚଣ୍ଡାଳକୁ ଆଉ ଭୟ କର ନାହିଁ । ହେ ଗୋମାତା ! ଦୁଷ୍ଟମାନଙ୍କୁ ଦଣ୍ଡ ଦେବାପାଇଁ ମୁଁ ଅଛି । ମୁଁ ଥିବା ପର୍ଯ୍ୟନ୍ତ ତୁମର ଭୟ ନାହିଁ । ତୁମେ ରୋଦନ କର ନାହିଁ । ତୁମର ମଙ୍ଗଳ ହେଉ ॥୯॥ ମାତା ! ଯେଉଁ ରାଜ୍ୟରେ ପ୍ରଜାମାନେ ଦୁଷ୍ଟମାନଙ୍କ ଉପଦ୍ରବରେ ଭୟଭୀତ ହୋଇ ରହନ୍ତି, ସେ ରାଜ୍ୟର ରାଜାର କୀର୍ତ୍ତି, ଆୟୁ, ସୌଭାଗ୍ୟ ଓ ପରଲୋକପାଇଁ ସଞ୍ଚିତ ସମସ୍ତ ପୁଣ୍ୟ ନଷ୍ଟ ହୁଏ । ଆର୍ତ୍ତମାନଙ୍କ ଦୁଃଖମୋଚନ ହେଉଛି ରାଜାର ପରମ ଧର୍ମ । ଅତଏବ ଏହି ପରପୀଡ଼କ ବୃଷଳକୁ ମୁଁ ଏହିକ୍ଷଣି ବଧ କରିବି ॥୧୦-୧୧॥ ହେ ସୁରଭିଙ୍କର ପୁତ୍ର ତୁମେ ଚତୁଷ୍ପଦ । ତୁମର ତିନୋଟି ପାଦକୁ କିଏ ଛେଦନ କରିଛି ? ଯେଉଁ ରାଜ୍ୟର ରାଜା କୃଷ୍ଣଙ୍କୁ ଅନୁସରଣ କରନ୍ତି, ସେ ରାଜ୍ୟରେ ତୁମପରି ଦୁଃଖୀ ଦେଖାଯାଆନ୍ତି ନାହିଁ ॥୧୨॥ ହେ ବୃଷଭ, ତୁମର ମଙ୍ଗଳ ହେଉ । ମୋତେ କହ, କିଏ ତୁମପରି ନିରପରାଧ ଜୀବକୁ ଅଙ୍ଗଚ୍ଛେଦ କରି ଏପରି ବିରୂପ କରିଛି ଓ ପାଣ୍ଡବଙ୍କ କୀର୍ତ୍ତିରେ କଳଙ୍କ ଲଗାଇଛି ? ॥୧୩॥ ଅସାଧୁମାନଙ୍କ ଦମନ ଦ୍ୱାରା, ସାଧୁମାନଙ୍କ ମଙ୍ଗଳ ହୁଏ । ତେଣୁ ଏ ରାଜ୍ୟରେ ଏପରି କିଏ ଅଛି, ଯେ ମୋତେ ଭୟ ନ କରି ନିର୍ଦୋଷ ପ୍ରାଣୀଙ୍କୁ ଏପରି କଷ୍ଟ ଦେଇପାରିବ ? ॥୧୪॥ ଯେଉଁ ଉଦଣ୍ଡ ବ୍ୟକ୍ତି ନିର୍ଦୋଷ ପ୍ରାଣୀଙ୍କୁ ଦୁଃଖ ଦିଏ, ସେ ଦେବତା ହେଲେ ମଧ୍ୟ, ତା'ର ଅଳଙ୍କାରଯୁକ୍ତ ଭୁଜକୁ ମୁଁ ଉପାଡ଼ି ନେଇ ପାରିବି ॥୧୫॥ ସ୍ୱଧର୍ମରେ ଥିବା ଲୋକମାନଙ୍କୁ ପାଳନ କରିବା ଓ ଆପଦକାଳ ବିନା ଅନ୍ୟ ସମୟରେ ନିଜର ମର୍ଯ୍ୟାଦା ଉଲ୍ଲଂଘନ କରୁଥିବା ଦୁଷ୍ଟ ବ୍ୟକ୍ତିଙ୍କୁ ଦଣ୍ଡ ଦେବା ରାଜାର ପ୍ରଧାନ କର୍ତ୍ତବ୍ୟ ॥୧୬॥

ଧର୍ମ କହିଲେ, ରାଜା, ଆର୍ତ୍ତ ଲୋକମାନଙ୍କୁ ଅଭୟ ଦେବା ସମ୍ପର୍କରେ ପାଣ୍ଡୁବଂଶର ଦାୟାଦରୂପେ ଆପଣ ଯାହା କହିଛନ୍ତି, ତାହା ଯଥାର୍ଥ । ପାଣ୍ଡବମାନଙ୍କ ଗୁଣାବଳୀଦ୍ୱାରା ସ୍ୱୟଂ ଭଗବାନ କୃଷ୍ଣ ବଶୀଭୂତ ହୋଇ ସେମାନଙ୍କ ସାରଥି ଓ ଦୂତ ଆଦି କାର୍ଯ୍ୟ କରିଥିଲେ ! ॥୧୭॥ ହେ ନରେନ୍ଦ୍ର ! ଲୋକେ ବିଭିନ୍ନ କଥା କହୁଥିବା ଯୋଗୁଁ, ଆମର ଏହି ଦୁଃଖର କାରଣ କିଏ ହୋଇପାରେ, ଆମ୍ଭେ ତାହା ଜାଣି ପାରୁ ନାହୁଁ ॥୧୮॥ ଅଦ୍ୱୈତବାଦୀମାନେ ଆତ୍ମା ହିଁ ଆତ୍ମାର ଦୁଃଖର କାରଣ ବୋଲି ମନେ କରନ୍ତି, ଦୈବଜ୍ଞମାନେ ଗ୍ରହଦୋଷରୁ ଏପରି ଘଟେ ବୋଲି କହନ୍ତି ଏବଂ ନିଜର ସ୍ୱଭାବ ହିଁ ସୁଖଦୁଃଖର କାରଣ ବୋଲି ଜଡ଼ବାଦୀମାନେ ମତ ବ୍ୟକ୍ତ କରନ୍ତି ॥୧୯॥ ଅନ୍ୟ କାହାରି କାହାରି ମତରେ ତର୍କ ବା ଅନୁମାନ ଦ୍ୱାରା ଦୁଃଖର କାରଣ ନିର୍ଣ୍ଣୟ ସମ୍ଭବ ନୁହେଁ । ତେଣୁ ହେ ରାଜର୍ଷି, ତୁମେ ନିଜର ବିଚାରବଳରେ କେଉଁଟା ଠିକ୍, ତାହା ସ୍ଥିର କର ॥୨୦॥

ସୂତ କହିଲେ, ଶୌନକ ! ଧର୍ମ ଏହିପରି କହିବାରୁ ସମ୍ରାଟ୍ ପରିକ୍ଷିତଙ୍କ ମନରୁ ସଂଶୟ ଦୂର ହେଲା । ସେ ଏହିପରି ଭାବରେ ଉତ୍ତର ଦେଲେ -- ॥୨୧॥ ହେ ଧର୍ମଜ୍ଞ ! ଆପଣ ଧର୍ମର କଥା କହୁଛନ୍ତି । ଆପଣ ବୃଷରୂପଧାରୀ ସ୍ୱୟଂ ଧର୍ମଦେବତା ବୋଲି ମୁଁ ଜାଣିପାରୁଛି । ଯେ ଅଧର୍ମ କରେ ତା'ର ଯେଉଁ ସ୍ଥାନ, ଅଧର୍ମୀ ବିଷୟରେ ଯେ ଚୁଗୁଲି କରେ, ସେ ମଧ୍ୟ ସେହି ସ୍ଥାନ ଲାଭ କରେ ॥୨୨॥ ଦେବମାୟା ସମସ୍ତଙ୍କୁ ଅଗୋଚର । କେହି ମନରେ ବା ବାକ୍ୟରେ ଏହାର ସ୍ୱରୂପ ନିରୂପଣ

କରିପାରିବ ନାହିଁ ॥୨୩॥ ସତ୍ୟଯୁଗରେ ତପ, ଶୌଚ, ଦୟା ଓ ସତ୍ୟ -- ଏହି ଚାରୋଟି ପାଦରେ ତୁମେ ବିରାଜମାନ ଥିଲ । ମାତ୍ର ମଦ, ଅହଙ୍କାର ଓ ବ୍ୟଭିଚାରରୂପୀ ଅଧର୍ମ ଅଂଶ ଦ୍ୱାରା ଏହି ଚାରିପାଦରୁ ତିନୋଟି ପାଦ ତୁମର ଭାଙ୍ଗିଯାଇଛି । ଏବେ ଗୋଟିଏମାତ୍ର ପାଦ ବାକି ଅଛି ॥୨୪॥ ହେ ଧର୍ମ ! ତୁମର ସେହି ସତ୍ୟରୂପୀ ଚତୁର୍ଥ ପାଦଟିକୁ ମିଥ୍ୟାଦ୍ୱାରା ବର୍ଦ୍ଧିତ ଅଧର୍ମସ୍ୱରୂପ କଳି ଗ୍ରାସ କରିବାକୁ ବସିଛି ॥୨୫॥ ଏ ଗୋମାତା ହେଉଛନ୍ତି ସ୍ୱୟଂ ପୃଥିବୀ । ରାକ୍ଷସମାନଙ୍କ ଉପଦ୍ରବରୂପ ଯେଉଁ ଗୁରୁଭାରରେ ଏ କଷ୍ଟ ପାଉଥିଲେ, ଭଗବାନ ସଂସାରରେ ଅବତୀର୍ଣ୍ଣ ହୋଇ ତାଙ୍କର ସେଇ ଭାର ଓହ୍ଲାଇ ଦେଲେ ଏବଂ ଭଗବାନଙ୍କ ଶ୍ରୀପାଦଚିହ୍ନରେ ଚିହ୍ନିତ ଓ ବିଭିନ୍ନ ଲୀଳାରେ ଲୀଳାୟିତ ଏହି ପୃଥ୍ୱୀମାତା ଶୋଭା ପାଇବାକୁ ଲାଗିଲେ । ବର୍ତ୍ତମାନ ତାଙ୍କର ସେହି ସୌଭାଗ୍ୟ ଆଉ ନାହିଁ । ଏବେ ବ୍ରାହ୍ମଣଦ୍ୱେଷୀ-ଶୂଦ୍ରମାନେ ରାଜା ବୋଲାଇ ତାଙ୍କୁ ଭୋଗ କରିବେ, ଏହି ଚିନ୍ତାରେ ସେ ସାଶ୍ରୁ ନୟନରେ ରୋଦନ କରୁଛନ୍ତି ॥୨୬-୨୭॥

ଏହିପରି ଧର୍ମ ଓ ପୃଥିବୀଙ୍କୁ ସାନ୍ତ୍ୱନା ଦେଇ, ମହାବୀର ପରିକ୍ଷିତ ଅଧର୍ମର ହେତୁ କଳିର ବଧପାଇଁ ତୀକ୍ଷ୍ଣଧାର ଖଡ୍‌ଗ ଧାରଣ କଲେ ॥୨୮॥ ବର୍ତ୍ତମାନ ରାଜା ତାକୁ ମାରିବାକୁ ଯାଉଛନ୍ତି, ଜାଣି ଭୟବିହ୍ୱଳ କଳି ନିଜ ରାଜବେଶ ତ୍ୟାଗକରି ତାଙ୍କ ପାଦତଳେ ପଡ଼ିଗଲା ଓ ଦଣ୍ଡପ୍ରଣାମ କଲା ॥୨୯॥ ଦୀନବତ୍ସଳ, ଶରଣରକ୍ଷକ ବୀର ପରିକ୍ଷିତ କଳି ତାଙ୍କ ପାଦତଳେ ପଡ଼ିଥିବା ଦେଖି ଆଉ ତାକୁ ମାରିବାପାଇଁ ଇଚ୍ଛା କଲେ ନାହିଁ । ରାଜା ସ୍ୱଭାବରେ ଦୟାଳୁ । ସେ ଈଷତ୍ ହସି କହିଲେ, ବର୍ତ୍ତମାନ ତୁ ହାତ ଯୋଡ଼ି ଶରଣ ପଶିଲୁଣି । ଅର୍ଜୁନଙ୍କ ବଂଶର ଯଶଦୃଷ୍ଟିରୁ ତୋତେ ମୁଁ ଏବେ ଅଭୟ ଦେଉଛି । କିନ୍ତୁ ରେ ଅଧର୍ମର ମୂଳ କଳି, ମୋ ରାଜ୍ୟରେ ତୁ କୌଣସିମତେ ରହିପାରିବୁ ନାହିଁ ॥୩୦-୩୧॥ ତୁ ଯଦି ରାଜାର ଆଶ୍ରୟରେ ରହୁ, ତା'ହେଲେ କାମ, ମିଥ୍ୟା, ଚୋରି, ବର୍ବରତା, ଅବିଶ୍ୱାସ, ଅଧର୍ମ, ଅଲକ୍ଷ୍ମୀ, କୂଟ, କପଟ, କଳହ ଓ ଅହଂକାରାଦି ଲୋକମାନଙ୍କ ମଧ୍ୟରେ ବ୍ୟାପିଯିବ ॥୩୨॥ ରେ ଅଧର୍ମର ବନ୍ଧୁ, ଯେଉଁ ବ୍ରହ୍ମାବର୍ତ୍ତରେ ଲୋକେ ସତ୍ୟ ଓ ଧର୍ମରେ ଚଳନ୍ତି, ଯେଉଁଠି ଯଜ୍ଞକାରୀ ବିପ୍ରମାନେ ଯଜ୍ଞେଶ୍ୱର ହରିଙ୍କୁ ଆରାଧନା କରନ୍ତି, ସେଠାରେ ତୁ ମୁହୂର୍ତ୍ତେ ମାତ୍ର ରହି ପାରିବୁ ନାହିଁ ॥୩୩॥ ବାୟୁ ଯେପରି ପ୍ରାଣୀର ଭିତରେ ଓ ବାହାରେ ରହିଥାଏ, ସେହିପରି ଏଠାରେ ଯଜ୍ଞପୁରୁଷ ଭଗବାନ ଶ୍ରୀହରି ସ୍ଥାବର ଜଙ୍ଗମ ସମସ୍ତଙ୍କ ଠାରେ ବିରାଜମାନ ରହି ସେମାନଙ୍କ ମନୋବାଞ୍ଛା ପୂରଣପୂର୍ବକ ଅଶେଷ କଲ୍ୟାଣ ସାଧନ କରନ୍ତି । ତେଣୁ ଏଠାରେ ତୁ ରହିପାରିବୁ ନାହିଁ ॥୩୪॥

ସୂତ କହିଲେ; ଅସିହସ୍ତ ପରିକ୍ଷିତଙ୍କୁ ସାକ୍ଷାତ୍ ଯମ ବୋଲି ମନେକରି କଳି ଭୟରେ ଥରିବାକୁ ଲାଗିଲା । ସେ କହିଲା, ହେ ରାଜଚକ୍ରବର୍ତ୍ତି ! ମୁଁ କେଉଁଠି ଯାଇ ରହିବି ? ଯେଉଁଠି ରହିବି, ସେଠାରେ ଆପଣଙ୍କୁ ଧନୁର୍ବାଣହସ୍ତରେ ଠିଆ ହୋଇଥିବାର ଦେଖିବି । ତେଣୁ ହେ ଧାର୍ମିକଶ୍ରେଷ୍ଠ, ଆଜ୍ଞା ଦିଅନ୍ତୁ, କେଉଁଠିକି ଗଲେ ମୁଁ ନିଶ୍ଚିନ୍ତରେ ରହିପାରିବି ? ॥୩୫-୩୭॥ କଳିର ପ୍ରାର୍ଥନା ଶୁଣି ରାଜା ପରିକ୍ଷିତ ତାକୁ ଚାରୋଟି ଧର୍ମବର୍ଜିତ ସ୍ଥାନ ପ୍ରଦାନ କଲେ । ତାହା ହେଉଛି; ଦ୍ୟୂତକ୍ରୀଡ଼ା, ମଦ୍ୟପାନ, ପରସ୍ତ୍ରୀଗମନ ଓ ଜୀବହିଂସାର ସ୍ଥାନ ॥୩୮॥ ପୁଣି କଳି କିଛି ମାଗିବାରୁ ରାଜା ତାକୁ କାଞ୍ଚନ ଥିବା ସ୍ଥାନ ଦାନ କଲେ । କାରଣ ଏହି କାଞ୍ଚନକୁ ଘେନି ମିଥ୍ୟା, ଗର୍ବ, କାମ, କ୍ରୋଧ ଓ ଶତ୍ରୁତା ଜାତ ହୁଏ । ଏହିପରି ଅଧର୍ମରୁ ଜନ୍ମିଥିବା କଳି ଉତ୍ତରାଙ୍କ ପୁତ୍ରଙ୍କ ଠାରୁ ପାଞ୍ଚୋଟି ପାପଯୁକ୍ତ ସ୍ଥାନ ଲାଭ କଲା ଏବଂ ରାଜାଙ୍କ ଆଦେଶ ପାଳନ କରି ସେଠାରେ ବାସ କରିବାକୁ ଲାଗିଲା । ସେଥିପାଇଁ ନିଜର ମଙ୍ଗଳକାମନା କରୁଥିବା କୌଣସି ବ୍ୟକ୍ତି ବିଶେଷତଃ ଧର୍ମଶୀଳ ରାଜା, ଲୋକନାୟକ ଓ ଗୁରୁମାନେ ଏହି ପାଞ୍ଚୋଟି ସ୍ଥାନପ୍ରତି ଆଦୌ ଆସକ୍ତ ହେବା ଉଚିତ ନୁହେଁ ॥୩୯-୪୧॥ ସୂତ କହିଲେ ; ବୃଷଙ୍କର ଯେଉଁ ତିନୋଟି ପାଦ — ତପ, ଶୌଚ ଓ ଦୟା ନଷ୍ଟ ହୋଇ ଯାଇଥିଲା, ରାଜା ପରିକ୍ଷିତ ତାହା ପୁଣି ଲଗାଇ ଦେଲେ । ମାତା ପୃଥିବୀଙ୍କୁ ସାନ୍ତ୍ୱନା ଦେଇ ତାଙ୍କର ସମସ୍ତପ୍ରକାର ସମୃଦ୍ଧି ଘଟାଇଲେ ॥୪୨॥ ପିତାମହ ଯୁଧିଷ୍ଠିର ବାନପ୍ରସ୍ଥ ଇଚ୍ଛା କରି ଯେଉଁଦିନୁ ପରିକ୍ଷିତଙ୍କ ହାତରେ

ରାଜଗାଦି ନ୍ୟସ୍ତ କରି ଗଲେ, ସେହିଦିନୁ ଏବଯାଏଁ ସେହି କୁରୁଶ୍ରେଷ୍ଠ ରାଜର୍ଷି ହସ୍ତିନାପୁରରେ ରାଜପଣ କରୁଛନ୍ତି । ସେହି ମହାଯଶା ରାଜଚକ୍ରବର୍ତ୍ତୀଙ୍କଯୋଗୁଁ କୁରୁବଂଶର ଐଶ୍ୱର୍ଯ୍ୟ ଓ ଗୌରବ ବୃଦ୍ଧି ପାଇବାରେ ଲାଗିଛି । ସେହି ଅଭିମନ୍ୟୁପୁତ୍ର ମହାନୁଭାବ ରାଜା ପରିକ୍ଷିତ ଶାନ୍ତିରେ ପୃଥିବୀକୁ ପାଳନ କରୁଥିବାଯୋଗୁଁ, ଆପଣମାନେ ତାଙ୍କରି ସମୟରେ ଏହି ଯଜ୍ଞରେ ଦୀକ୍ଷିତ ହୋଇଛନ୍ତି ॥୪୩-୪୫॥

## ଅଷ୍ଟାଦଶ ଅଧ୍ୟାୟ

# ରାଜା ପରିକ୍ଷିତଙ୍କୁ ଶୃଙ୍ଗୀଋଷିଙ୍କ ଅଭିଶାପ

ସୂତ କହିଲେ, ଅଦ୍ଭୁତକର୍ମା ଭଗବାନ ଶ୍ରୀକୃଷ୍ଣଙ୍କ ଅନୁଗ୍ରହରୁ ଅଶ୍ୱତ୍ଥାମାର ବ୍ରହ୍ମାସ୍ତ୍ର ଯାହାଙ୍କୁ ମାତୃଗର୍ଭରେ ମାରିପାରି ନ ଥିଲା, ସେହି ଭଗବତ୍‌ପାଦାଶ୍ରିତ ରାଜା ପରିକ୍ଷିତଙ୍କୁ ପୁଣି ବ୍ରହ୍ମଶାପ ହେଲା ଯେ ସେ ତକ୍ଷକ ସର୍ପର ଦଂଶନରେ ପ୍ରାଣତ୍ୟାଗ କରିବେ । ମାତ୍ର ମୃତ୍ୟୁର ଏହି ମହାଭୟ ତାଙ୍କୁ ବିଚଳିତ କରି ପାରି ନ ଥିଲା ॥୧-୨॥ ସେ ସମସ୍ତ ବିଷୟଭୋଗ ପ୍ରତି ଆସକ୍ତି ଛାଡ଼ିଦେଲେ । ଗଙ୍ଗାକୂଳକୁ ଯାଇ ବ୍ୟାସପୁତ୍ର ଶୁକଦେବଙ୍କର ଶିଷ୍ୟତ୍ୱ ଗ୍ରହଣ କଲେ ଏବଂ ତାଙ୍କ ଉପଦେଶ ଶ୍ରବଣ କଲେ । ଭଗବାନ(ଅଜିତ)ଙ୍କର ସ୍ୱରୂପକୁ ଚିନ୍ତା କରି ସେ ତନୁତ୍ୟାଗ କଲେ ॥୩॥ ଉତ୍ତମଶ୍ଳୋକ ଶ୍ରୀକୃଷ୍ଣଙ୍କ ଲୀଳା ଯେଉଁମାନେ କୀର୍ତ୍ତନ କରନ୍ତି, ତାଙ୍କ କଥାମୃତକୁ ପାନ କରନ୍ତି ଏବଂ ତାଙ୍କ ପାଦପଦ୍ମକୁ ସ୍ମରଣ କରନ୍ତି, ଅନ୍ତକାଳରେ ସେମାନଙ୍କୁ ମୋହ ଗ୍ରାସ କରେ ନାହିଁ ॥୪॥ ଯେପର୍ଯ୍ୟନ୍ତ ଅଭିମନ୍ୟୁନନ୍ଦନ ସମ୍ରାଟ୍ ପରିକ୍ଷିତ ଏହି ପୃଥିବୀରେ ରାଜପଣ କରୁଥିଲେ, ସେପର୍ଯ୍ୟନ୍ତ ସର୍ବତ୍ର କଳି ପ୍ରବେଶ କରିଥିଲେ ମଧ୍ୟ କେଉଁଠି ହେଲେ ପ୍ରଭାବ ବିସ୍ତାର କରିପାରୁ ନ ଥିଲା ॥୫॥ ଯେଉଁଦିନ, ଯେଉଁ ମୁହୂର୍ତ୍ତରେ ଭଗବାନ ଶ୍ରୀକୃଷ୍ଣ ଧରାଧାମ ତ୍ୟାଗ କଲେ, ସେହିଦିନ, ସେହି ମୁହୂର୍ତ୍ତରୁ ଅଧର୍ମରୁ ଜନ୍ମିଥିବା କଳି ସଂସାରରେ ପ୍ରବେଶ କରିଥିଲା ॥୬॥ ସବୁ ଫୁଲରୁ ରସ ଗ୍ରହଣ କରିବା ଭ୍ରମରପରି, ସମ୍ରାଟ୍ ପରିକ୍ଷିତ ଅତିଶୟ ସାରଗ୍ରାହୀ ଥିଲେ । ଏଣୁ କଳିପ୍ରତି ତାଙ୍କର ଦ୍ୱେଷଭାବ ନ ଥିଲା । କାରଣ କଳିଯୁଗରେ ସଂକଳ୍ପମାତ୍ରେ ପୁଣ୍ୟକର୍ମର ଫଳ ମିଳିଯାଏ; କିନ୍ତୁ ପାପକର୍ମ ନ କରିବା ଯାଏ, ତାହାର କୁଫଳ ମିଳେ ନାହିଁ ॥୭॥ କଳିର ଚରିତ୍ର ହେଟାବାଘପରି । ସେ ଦୋଷୀ ଅସାବଧାନ ଲୋକଙ୍କୁ ବୀରପରି ଆକ୍ରମଣ କରେ । ମାତ୍ର ସାବଧାନ ବିବେକୀ ବ୍ୟକ୍ତିଙ୍କୁ ଭୟ କରେ ॥୮॥ ସୂତ କହିଲେ, ଋଷିବୃନ୍ଦ, ତୁମେମାନେ ମୋତେ ଯାହା ପଚାରିଥିଲ, ମୁଁ ତାର ଉତ୍ତର ଦେଲି ଏବଂ କୃଷ୍ଣକଥାସହ ପରିକ୍ଷିତଙ୍କ ପବିତ୍ର ଚରିତ ମୁଁ ତୁମମାନଙ୍କୁ ଶୁଣାଇଲି ॥୯॥ ଅଦ୍ଭୁତକର୍ମା ଭଗବାନ କୃଷ୍ଣଙ୍କର ମହନୀୟ ଲୀଳା ଓ ଗୁଣାବଳୀ ହିତକାମୀ ବ୍ୟକ୍ତିମାନଙ୍କ ପକ୍ଷରେ ଅବଶ୍ୟ ଶ୍ରବଣୀୟ ଓ କୀର୍ତ୍ତନୀୟ ॥୧୦॥ ଋଷିମାନେ କହିଲେ ହେ ସୂତ ! ହେ ସୌମ୍ୟ ! ତୁମେ ଆମପରି ମରଣଶୀଳ ଜୀବଙ୍କୁ କୃଷ୍ଣଙ୍କ ନିର୍ମଳ ଯଶରୂପୀ ଅମୃତ ଶୁଣାଇଲ । ତୁମେ ଦୀର୍ଘଜୀବୀ ହୁଅ ॥୧୧॥ ଯଜ୍ଞକାଳର ହୋମଧୂଆଁରେ ଆମ ଶରୀର ମଳିନ ପଡ଼ିଗଲାଣି । ଏହାର ଫଳାଫଳରେ ଆମର ବିଶ୍ୱାସ ନାହିଁ । ଏ ପରିସ୍ଥିତିରେ ତୁମେ ପୁଣି ଆମକୁ ଗୋବିନ୍ଦଙ୍କ ପାଦପଦ୍ମର ମଧୁର ରସ ପାନ କରାଇ ଆପ୍ୟାୟିତ କରାଉଛ ॥୧୨॥ ଭଗବାନଙ୍କ ଭକ୍ତଙ୍କ ସହିତ କ୍ଷଣମାତ୍ର ସଙ୍ଗଲାଭଦ୍ୱାରା ଯେଉଁ ଫଳ ମିଳେ, ସ୍ୱର୍ଗ ବା ମୋକ୍ଷ ମଧ୍ୟ ତା'ର ତୁଳନୀୟ ନୁହେଁ, ସାମାନ୍ୟ ସାଂସାରିକ ସୁଖର କଥାକୁ ବା ପଚାରେ କିଏ ? ॥୧୩॥ ବ୍ରହ୍ମା ଓ ମହେଶ୍ୱରଙ୍କ ପରି ଶ୍ରେଷ୍ଠ ଯୋଗୀମାନେ ଯେଉଁ ଗୁଣାତୀତଙ୍କ ଗୁଣାବଳୀର ଅନ୍ତ ପାଆନ୍ତି ନାହିଁ, ସେହି ଏକାନ୍ତ ଭକ୍ତପରାୟଣ ଭଗବାନ୍ ଶ୍ରୀକୃଷ୍ଣଙ୍କ ମଧୁର ନାମ ଓ ଲୀଳାମାନ

ଯେତେ ଶୁଣାଇଲେ ମଧ୍ୟ କେଉଁ ରସଲାଳସୀମାନଙ୍କୁ ତୃପ୍ତ କରି ହେବ ? ॥୧୪॥ ଆପଣ ଭକ୍ତଶ୍ରେଷ୍ଠ । ଆମେ ଏକାନ୍ତ ଭକ୍ତିପରାୟଣ ବୋଲି ଶ୍ରୀହରିଙ୍କ ଉଦାର ନିର୍ମଳ ଚରିତ ଶୁଣିବାକୁ ବ୍ୟାକୁଳ ହେଉଛୁ । ହେ ବିଦ୍ୱାନ୍ ! ଆମମାନଙ୍କୁ ତାହା ବିସ୍ତାରିତ ଭାବରେ ଶୁଣାଇବା ହୁଅନ୍ତୁ ॥୧୫॥ ବିଶୁଦ୍ଧଚେତା ରାଜା ପରୀକ୍ଷିତ ପରା ଭଗବାନଙ୍କର ପରମ ଭକ୍ତ ଥିଲେ ! ବ୍ୟାସପୁତ୍ରଙ୍କ ଠାରୁ ଉପଦେଶଛଳରେ ସେ ଯେଉଁ ଜ୍ଞାନ ଲାଭ କଲେ, ତାହାଫଳରେ ଗରୁଡ଼ଧ୍ୱଜ ଶ୍ରୀହରିଙ୍କ ପାଦପଦ୍ମରେ ତାଙ୍କର ମୋକ୍ଷପ୍ରାପ୍ତି ହୋଇଥିଲା ॥୧୬॥ ତେଣୁ ହେ ସୂତ ! ରାଜା ପରିକ୍ଷିତ ଶୁଣିଥିବା ସେହି ପରମ ପୁଣ୍ୟ ଅଦ୍ଭୁତ ଭକ୍ତିଯୋଗଯୁକ୍ତ ଅନନ୍ତଙ୍କ ଆଚରିତ ଆଖ୍ୟାନ ଆମମାନଙ୍କୁ ବୟାନ କରନ୍ତୁ । କୌଣସି କଥା ଗୋପନୀୟ ରଖନ୍ତୁ ନାହିଁ ॥୧୭॥

ସୂତ କହିଲେ, ଯାହାହେଉ, ବର୍ଣ୍ଣସଙ୍କର ହେଲେ ମଧ୍ୟ ବୃଦ୍ଧସେବାଦ୍ୱାରା ମୋର ଜନ୍ମ ସଫଳ ହୋଇଛି । କାରଣ ମହାପୁରୁଷମାନଙ୍କ ସମ୍ପର୍କରେ ଆସିଗଲେ ନୀଚକୁଳଜାତ ଦୋଷ ଓ ସମସ୍ତ ମାନସିକ ଅଶାନ୍ତି ଦୂର ହୋଇଯାଏ । ଆଉ ଯେଉଁମାନେ ଭଗବାନଙ୍କ ନାମ ନିଅନ୍ତି, ସେମାନଙ୍କ କଥା କ'ଣ କହିବା? କାରଣ ଭଗବାନ ଏକାନ୍ତ ଭକ୍ତପରାୟଣ, ମହତ୍‌ଗୁଣମାନଙ୍କର ଆଧାର ॥୧୮-୧୯॥ ବଳି ଯିବା ତ ଦୂରର କଥା, ଯାହାଙ୍କ ସହିତ ଗୁଣରେ କେହି ସମାନ ହୋଇପାରିବ ନାହିଁ, ସେହି ଭଗବାନଙ୍କ ସମ୍ପର୍କରେ ଏତିକି କହିଲେ ଯଥେଷ୍ଟ ହେବ ଯେ ଯେଉଁ ଲକ୍ଷ୍ମୀଙ୍କର ଆଶୀର୍ବାଦ ପାଇବାପାଇଁ ଦେବତାମାନେ ପ୍ରାର୍ଥନାରତ, ସେହି ଲକ୍ଷ୍ମୀ ଭଗବାନ୍ ନ ଚାହୁଁଥିଲେ ମଧ୍ୟ ତାଙ୍କ ପଦରଜ ସେବନ କରିବାକୁ ସାର୍ଥକ ମନେକରନ୍ତି ॥୨୦॥ ବ୍ରହ୍ମା ଜଳଦ୍ୱାରା ଯାହାଙ୍କ ପାଦ ପ୍ରକ୍ଷାଳନ କରିଥିଲେ ଏବଂ ଯାହାଙ୍କ ପାଦର ନଖକୋଣରୁ ଗଙ୍ଗାରୂପୀ ସେହି ଜଳ ପ୍ରବାହିତ ହୋଇ ମହାଦେବଙ୍କ ସହିତ ସମସ୍ତ ଜଗତକୁ ପବିତ୍ର କଲା, ସେହି ମୁକୁନ୍ଦଙ୍କ ଛଡ଼ା ଅନ୍ୟ କିଏ ଭଗବତ୍ ପଦର ଅର୍ଥ ହୋଇପାରେ ? ॥୨୧॥ ବିଜ୍ଞ ବ୍ୟକ୍ତିମାନେ ଈଶ୍ୱରଙ୍କ ପ୍ରତି ଅନୁରକ୍ତ ହେବାମାତ୍ରେ ସେମାନଙ୍କର ଦେହ ଓ ଇନ୍ଦ୍ରିୟମାନଙ୍କଠାରେ ଆସକ୍ତି ଦୂର ହୋଇଯାଏ ଏବଂ ଶେଷରେ ସେମାନଙ୍କୁ ଯୋଗୀମାନଙ୍କ ଶୀର୍ଷସ୍ଥାନ ପରମହଂସପଦ ପ୍ରାପ୍ତ ହୁଏ, ଯହିଁରେ ଅହିଂସାମୂଳକ ଶାନ୍ତି ସେମାନଙ୍କର ସ୍ୱଧର୍ମରେ ପରିଣତ ହୁଏ ॥୨୨॥ ହେ ସୂର୍ଯ୍ୟପରି ତେଜସ୍ୱୀ ଋଷିଗଣ, ଆପଣମାନେ ମୋତେ ଯାହା ପଚାରିଲେ, ମୁଁ ପାରୁପର୍ଯ୍ୟନ୍ତ ତା'ର ଉତ୍ତର ଦେବାପାଇଁ ଚେଷ୍ଟିତ । ଆକାଶ ବିପୁଳ, ମାତ୍ର ପକ୍ଷୀ ତା'ର ଶକ୍ତି ଅନୁଯାୟୀ ଉଡ଼େ । ସେହିପରି ପଣ୍ଡିତମାନେ ଭଗବାନଙ୍କର ଅନନ୍ତ ଲୀଳା ବର୍ଣ୍ଣନା କରିବାପାଇଁ ଚେଷ୍ଟା କରିଥାନ୍ତି ॥୨୩॥

ଏକଦା ରାଜା ପରିକ୍ଷିତ ମୃଗୟାର୍ଥ ଧନୁଶର ଧରି ବନରେ ବୁଲୁଥିବାବେଳେ ମୃଗପଛରେ ଗୋଡ଼ାଇ ଗୋଡ଼ାଇ କ୍ଳାନ୍ତ ହୋଇପଡ଼ିଲେ । ଅତିଶୟ କ୍ଷୁଧାତୃଷାରେ ଆତୁର ରାଜା ଜଳାଶୟ ନ ଦେଖି ଜଣେ ମୁନିଙ୍କ ଆଶ୍ରମରେ ପ୍ରବେଶ କଲେ । ସେ ଦେଖିଲେ, ଅତି ଶାନ୍ତଭାବରେ ମୁନି ଆଖି ବୁଜି ଧ୍ୟାନରେ ବସିଛନ୍ତି । ମୃଗଚର୍ମପରିହିତ ତାଙ୍କ ଶରୀର ଜଟାଜୁଟରେ ଆଚ୍ଛନ୍ନ । ଇନ୍ଦ୍ରିୟ, ପ୍ରାଣ, ମନ ଓ ବୁଦ୍ଧିକୁ ନିରୁଦ୍ଧ କରି ସେ ସ୍ୱପ୍ନ, ସୁଷୁପ୍ତି ଓ ଜାଗରଣ ଏହି ତିନୋଟି ଅବସ୍ଥା ଅତିକ୍ରମ କରି ତୁରୀୟ ଅବସ୍ଥାରେ ପହଞ୍ଚିଛନ୍ତି; ଏହିପରି ବାହ୍ୟଜ୍ଞାନଶୂନ୍ୟ, ସମାଧିସ୍ଥ ମୁନିଙ୍କ ପାଖକୁ ଯାଇ ରାଜା ଜଳ ଭିକ୍ଷା କଲେ । ॥୨୪-୨୭॥ ମୁନି ତ ବାହ୍ୟଜ୍ଞାନଶୂନ୍ୟ । ତାଙ୍କଠାରୁ କୌଣସି ମଧୁର ବଚନ, ବସିବାପାଇଁ ତୃଣ, ଭୂମି ଆଦି ଆସନ ବା ଅନ୍ୟ କୌଣସି ସତ୍କାର ନ ପାଇ ରାଜା ମନେକଲେ ମୁନି ତାଙ୍କୁ ଅପମାନିତ କରିଛନ୍ତି । ହେ ଶୌନକ, କ୍ଷୁଧାତୃଷାରେ ବ୍ୟଥିତ ରାଜା ପରିକ୍ଷିତ ପୂର୍ବେ ଯାହା କରି ନ ଥିଲେ, ସେହିପରି ଏକ କାର୍ଯ୍ୟ କଲେ । ସେ ଈର୍ଷା ଓ କ୍ରୋଧରେ ଅଭିଭୂତ ହୋଇ ଧନୁହୂଳାରେ ଏକ ମୃତ ସର୍ପକୁ ଗୋଟାଇ ନେଇ ଋଷିଙ୍କ ବେକରେ ଗଳାଇ ଦେଲେ ଓ ରାଜଧାନୀକୁ ଫେରିଆସିଲେ ॥୨୮-୩୦॥ ରାଜା ଭାବିଲେ, ଏ ଋଷି ସତରେ କ'ଣ ଇନ୍ଦ୍ରିୟନିରୋଧ କରି ଆଖି ବୁଜି ବସିଛନ୍ତି, ନା ମୋତେ ଜଣେ ନୀଚ କ୍ଷତ୍ରିୟ ମନେ କରି ଅବଜ୍ଞା କରିବାପାଇଁ ମିଛରେ ସମାଧିସ୍ଥ ହୋଇଛନ୍ତି ! ॥୩୧-୩୨॥ ମୁନିଙ୍କର ଜଣେ ତେଜସ୍ୱୀ ବାଳକ ପୁତ୍ର ସାଙ୍ଗମାନଙ୍କ ମଧ୍ୟରେ

ଖେଳୁଥିଲା । ସେ ଶୁଣିବାକୁ ପାଇଲା ଯେ, ରାଜା ପରିକ୍ଷିତ ଏହିପରି ତା'ର ପିତାଙ୍କୁ ଦୁର୍ବ୍ୟବହାର କରିଛନ୍ତି । ସେ କହିଉଠିଲା - ଓଃ, ରାଜା କେଡ଼େ ଅଧର୍ମ କାର୍ଯ୍ୟ କଲା ? ରାଜା ହୋଇ ଉଚ୍ଛିଷ୍ଟପୁଷ୍ଟ କାକଙ୍କ ପରି ଆଚରଣ କରୁଛି ! ଦ୍ୱାରରେ ଜଗିଥିବା କୁକୁର ତା'ର ସ୍ୱାମୀକୁ ଅବମାନନା କରିବା ପରି ସେ କାର୍ଯ୍ୟ କରିଛି । ବ୍ରାହ୍ମଣମାନେ କ୍ଷତ୍ରିୟଙ୍କୁ ଦ୍ୱାରପାଳରୂପେ ନିଯୁକ୍ତ କରିଥାନ୍ତି । ସେ ଦ୍ୱାରପାଳ ଶ୍ୱାନପରି ଗୃହମଧ୍ୟରେ ପ୍ରବେଶ କରି ଗୃହସ୍ୱାମୀର ହାଣ୍ଡିରେ ଖାଇବା ଉଚିତ କି ? ବିପଥଗାମୀମାନଙ୍କର ଦଣ୍ଡଦାତା ଭଗବାନ୍ ଶ୍ରୀକୃଷ୍ଣ ଆଉ ନ ଥିବା ଯୋଗୁଁ ଏପରି ହେଉଛି । ଆଜି ସେହି ବିପଥଗାମୀକୁ ମୁଁ ଉପଯୁକ୍ତ ଶାସ୍ତି ଦେବାକୁ ଯାଉଛି । ବର୍ତ୍ତମାନ ତୁମେ ମୋର ଶକ୍ତିକୁ ଦେଖ ॥୩୩-୩୫॥ ସମବୟସ୍କମାନଙ୍କୁ ଏହିପରି କହି କ୍ରୋଧରେ ଆରକ୍ତଚକ୍ଷୁ ସେହି ଋଷିପୁତ୍ର କୌଶିକୀ ନଦୀ ଜଳରେ ଆଚମନ କରି ବଜ୍ରତୁଲ୍ୟ ବାକ୍ୟରେ କହିଲା-- ଆଜିଠାରୁ ସପ୍ତମ ଦିବସରେ ମୋର ପିତୃଦ୍ରୋହୀ ରାଜମର୍ଯ୍ୟାଦାଲଂଘନକାରୀ ସେହି କୁଳାଙ୍ଗାରକୁ ମତ୍‌ପ୍ରେରିତ ତକ୍ଷକ ଦଂଶନ କରିବ ॥୩୬-୩୭॥ ତା'ପରେ ସେହି ବାଳକ ପିତାଙ୍କର ଗଳାରେ ଏକ ମୃତ ସର୍ପ ଲମ୍ବିଥିବାର ଦେଖି ଦୁଃଖାର୍ତ୍ତ ହୋଇ ଉଚ୍ଚସ୍ୱରରେ ରୋଦନ କରିବାକୁ ଲାଗିଲା ॥୩୮॥ ହେ ଶୌନକ, ନିଜ ପୁତ୍ରର ବିଳାପ ଶୁଣି ମୁନି ଧୀରେ ଧୀରେ ଆଖି ଖୋଲି ଦେଖିଲେ ଯେ, ଏକ ମୃତ ସର୍ପ ତାଙ୍କ ବେକରେ ପଡ଼ିଛି । ତାକୁ ସାଙ୍ଗେ ସାଙ୍ଗେ ଫିଙ୍ଗିଦେଇ 'କାହିଁକି କାନ୍ଦୁଛୁ, ତୋ'ର କିଏ କ'ଣ କରିଛି' ବୋଲି ପୁତ୍ରକୁ ପଚାରିବାରୁ ସେ ବାଳକ ସତକଥା କହିଗଲା ॥୩୯-୪୦॥

ଶାପର ଅଯୋଗ୍ୟ ରାଜା ପରିକ୍ଷିତଙ୍କୁ ଏପରି ଅଭିଶାପ ଦେଇଥିବା ଶୁଣି ଋଷି ନିଜ ପୁତ୍ରର ବାକ୍ୟକୁ ଆଦୌ ଅନୁମୋଦନ କଲେ ନାହିଁ । ସେ ପୁତ୍ରକୁ କହିଲେ, ଆଜି ତୁ କେତେବଡ଼ ପାପ କଲୁ ! ସାମାନ୍ୟ ଦୋଷପାଇଁ ଏପରି ଗୁରୁଦଣ୍ଡ ଦିଆଯାଏ ନାହିଁ ॥୪୧॥ ରାଜା ପରିକ୍ଷିତଙ୍କଦ୍ୱାରା ପ୍ରଜାମାନେ ସୁରକ୍ଷିତ ହୋଇ ନିର୍ଭୟରେ ଚଳୁଛନ୍ତି ଏବଂ ରାଜା ସେମାନଙ୍କର ସମସ୍ତ ମଙ୍ଗଳବିଧାନ କରୁଛନ୍ତି । ବିଷ୍ଣୁଙ୍କ ସମାନ ସେହି ଦେବତୁଲ୍ୟ ରାଜାଙ୍କୁ ସାଧାରଣ ଲୋକଙ୍କ ସହିତ ତୁଳନା କରିବା ଉଚିତ ହୋଇ ନାହିଁ । ତୋର ବୁଦ୍ଧି ଅପରିପକ୍ୱ ଥିବା ଯୋଗୁଁ ତୁ ଏପରି କାର୍ଯ୍ୟ କରିଛୁ ॥୪୨॥ ରେ ପୁତ୍ର ! ଏହି ସଂସାରରେ ରାଜାରୂପୀ ନାରାୟଣ ନ ଥିଲେ ଚୋର, ତସ୍କରମାନେ ପ୍ରଚୁର ସଂଖ୍ୟାରେ ବଢ଼ିଯିବେ ଏବଂ ଅରକ୍ଷ ମେଷପଲଙ୍କ ପରି ପ୍ରଜାମାନଙ୍କର ବିନାଶ ଘଟିବ । ଆର୍ଯ୍ୟଧର୍ମରୁ ଲୋକମାନେ ବିଚ୍ୟୁତ ହେବେ ॥୪୩॥ ରାଜାବିହୀନ ରାଜ୍ୟରେ ଲୋକମାନେ ନିଜ ନିଜ ମଧ୍ୟରେ କଳହ କରିବେ, ପରସ୍ପରକୁ ହତ୍ୟା କରିବେ, ରାଜ୍ୟ ଓ ଧନ ଲୁଣ୍ଠନ କରିବେ, ସ୍ତ୍ରୀ-ପଶୁ-ଅର୍ଥ ଆଦି ଅପହରଣ କରିବେ । ଆମେ ଏସବୁ କିଛି ନ କଲେ ମଧ୍ୟ ଆଜିଠାରୁ ଆମକୁ ଏହି ପାପ ଲାଗିବ ॥୪୪॥ ସଦାଚାରଯୁକ୍ତ ବେଦବିହିତ ବର୍ଣ୍ଣାଶ୍ରମ, ଯାହାକି ଆର୍ଯ୍ୟଧର୍ମରୂପେ ପରିଚିତ, ତାହା ଲୋପ ପାଇଯିବ ଏବଂ ଲୋକେ ଅର୍ଥ ଓ କାମରେ ବଶୀଭୂତ ହୋଇ ସମାଜରେ ଶ୍ୱାନ ଓ ମର୍କଟଙ୍କ ପରି ବର୍ଣ୍ଣସଙ୍କର ସୃଷ୍ଟି କରିବେ ॥୪୫॥ ପରିକ୍ଷିତ କେବଳ ଧର୍ମରକ୍ଷକ ରାଜା ନୁହନ୍ତି । ସେ ବହୁ ଅଶ୍ୱମେଧ ଯଜ୍ଞ କରିଛନ୍ତି । ଭଗବାନଙ୍କର ପରମଭକ୍ତ ରୂପେ ବିପୁଳ ଯଶ ଅର୍ଜନ କରିଛନ୍ତି । କ୍ଷୁଧା, ତୃଷା ଓ ଶ୍ରମ କଷ୍ଟରେ କାତର ହୋଇ ସେ ଆମ ଆଶ୍ରମକୁ ଆସିଥିଲେ । ସେ କଦାପି ଶାପର ଯୋଗ୍ୟ ନୁହନ୍ତି । ହେ ଭଗବାନ୍ ! ଆପଣଙ୍କ ସେବକ ଏହି ନିଷ୍ପାପ ରାଜାଙ୍କୁ ଅଭିଶାପ ଦେଇ ଜଣେ ଅବୋଧ ବାଳକ ଯେଉଁ ଅପରାଧ କରିଚି; ଆପଣ ସର୍ବାନ୍ତର୍ଯାମୀ; ତାକୁ କ୍ଷମା କରନ୍ତୁ ॥୪୬-୪୭॥ ଭଗବତ୍‌ଭକ୍ତମାନେ ତିରସ୍କୃତ, ବଞ୍ଚିତ, ଅବହେଳିତ ବା ତାଡ଼ିତ ହେଲେ ମଧ୍ୟ ଶକ୍ତି ଥାଇ ତା'ର ପ୍ରତିକାର କରନ୍ତି ନାହିଁ ॥୪୮॥ ଏହିପରି ପୁତ୍ରକୃତ ଅପରାଧପାଇଁ ମହର୍ଷି ଅନୁତପ୍ତ ହେଲେ; କିନ୍ତୁ ରାଜା କରିଥିବା ଅପରାଧ ବିଷୟ ଚିନ୍ତା କଲେ ନାହିଁ । ସାଧୁ ଲୋକଙ୍କର ସ୍ୱଭାବ ହେଉଛି, କେହି ଯଦି ତାଙ୍କୁ ସୁଖ ଦିଏ ବା ଦୁଃଖ ଦିଏ, ସେଥିରେ ସେମାନେ ଆନନ୍ଦିତ ବା ବ୍ୟଥିତ ହୁଅନ୍ତି ନାହିଁ; କାରଣ ଆତ୍ମା ସକଳଗୁଣାତୀତ ବୋଲି ସେମାନେ ଜାଣିଥାଆନ୍ତି ॥୪୯॥

ଊନବିଂଶ ଅଧ୍ୟାୟ

# ପରିକ୍ଷିତଙ୍କ ଅନଶନ ବ୍ରତ ଓ ଶୁକଙ୍କ ସହିତ ସାକ୍ଷାତ

ସୂତ କହିଲେ, ଏଣେ ରାଜା ପରିକ୍ଷିତ ନିଜର କାର୍ଯ୍ୟପାଇଁ ପଶ୍ଚାତ୍ତାପ କରିବାକୁ ଲାଗିଲେ । ସେ ଭାବିଲେ, ଗୂଢ଼ତେଜା ନିରପରାଧ ବ୍ରାହ୍ମଣଙ୍କ ପ୍ରତି ମୁଁ କେଡ଼େ ନୀଚ ଅନାର୍ଯ୍ୟ ଭଳି ଆଚରଣ କଲି ? ॥୧॥ ମୁଁ ସେହି ମହାତ୍ମାଙ୍କୁ ଯେପରି ଅବଜ୍ଞା କରିଛି, ଖୁବ୍ ଶୀଘ୍ର ମୋ'ଉପରେ ଏକ ଭୟାନକ ବିପତ୍ତି ପଡ଼ିବାକୁ ଯାଉଛି । ମୋର ପାପରୁ ନିଷ୍କୃତିପାଇଁ ସେପରି ବିପଦ ଆସି ପଡ଼ିବା ଉଚିତ; ତା'ହେଲେ ଭବିଷ୍ୟତରେ ମୁଁ ଆଉ ଏପରି କାର୍ଯ୍ୟ କରିବି ନାହିଁ ॥୨॥ ଆଜି ବ୍ରାହ୍ମଣଙ୍କ କୋପାନଳରେ ମୋର ରାଜ୍ୟ, ବଳ ଓ ରାଜକୋଷ ଭସ୍ମ ହୋଇଯାଉ ପଛେ ଭବିଷ୍ୟତରେ ଗୋ, ବ୍ରାହ୍ମଣ, ଦେବତାମାନଙ୍କ ପ୍ରତି ମୋ'ପରି ଅଭଦ୍ର ବ୍ୟକ୍ତିର ଏପରି ପାପବୁଦ୍ଧି ଜାତ ନ ହେଉ ॥୩॥ ରାଜା ଏହିପରି ଚିନ୍ତିତ ଥିବାବେଳେ ମୁନିପୁତ୍ରଙ୍କର ତକ୍ଷକଦଂଶନ ବିଷୟକ ଅଭିଶାପ କଥା ଶୁଣିବାକୁ ପାଇଲେ । ରାଜା ପରିକ୍ଷିତ ଏହାକୁ ଏକ ସୁସଂବାଦ ବୋଲି ମନେକଲେ, କାରଣ ଅଳ୍ପକାଳ ମଧ୍ୟରେ ତକ୍ଷକର ବିଷାନଳରେ ସେ ସମସ୍ତ ବିଷୟବାସନାରୁ ମୁକ୍ତ ହୋଇଯିବେ ॥୪॥ ପୂର୍ବରୁ ହିଁ ରାଜା ପରିକ୍ଷିତ ଇହକାଳ ଓ ପରକାଳର ବିଷୟସୁଖକୁ ହେୟ ମନେ କରୁଥିଲେ । ବର୍ତ୍ତମାନ ଶ୍ରୀକୃଷ୍ଣଙ୍କ ପାଦପଦ୍ମର ସେବାକୁ ପରମ ପୁରୁଷାର୍ଥ ବୋଲି ମନେକରି ଗଙ୍ଗାନଦୀ କୂଳରେ ପ୍ରାୟୋପବେଶନ କଲେ ॥୫॥ ଯେଉଁ ଗଙ୍ଗା ଶୋଭାନ୍ୱିତ ତୁଳସୀମିଶ୍ରିତ ଭଗବାନ ଶ୍ରୀକୃଷ୍ଣଙ୍କର ସର୍ବୋତ୍କୃଷ୍ଟ ପଦରେଣୁ ବହନ କରି ପ୍ରବାହିତ ହେଉଛନ୍ତି ଏବଂ ତାଙ୍କ ପବିତ୍ର ଜଳଦ୍ୱାରା ଅନ୍ତରେ ଓ ବାହାରେ ଲୋକପାଳଙ୍କ ସହିତ ଲୋକଗୁଡ଼ିକୁ ପବିତ୍ରିତ କରୁଛନ୍ତି, ମରଣକାଳ ଉପସ୍ଥିତ ହେଲେ ସେହି ଗଙ୍ଗାକୂଳରେ ରହିବାପାଇଁ କିଏ ବା ଇଚ୍ଛା ନ କରିବ ? ॥୬॥ ଏହା ସ୍ଥିର କରି ପାଣ୍ଡବମାନଙ୍କ ବଂଶଧର ରାଜା ପରିକ୍ଷିତ ଗଙ୍ଗାକୂଳରେ ପ୍ରାୟୋପବେଶନ କଲେ । ସମସ୍ତ ବିଷୟାସକ୍ତି ତ୍ୟାଗ କରି ମୁନିବ୍ରତ ଧାରଣପୂର୍ବକ ଅନନ୍ୟଭାବରେ ମୁକୁନ୍ଦଙ୍କ ପାଦପଦ୍ମରେ ମନୋନିବେଶ କଲେ ॥୭॥

ତ୍ରିଲୋକପାବନ ଯେଉଁ ସାଧୁ ମହାତ୍ମାମାନେ ତୀର୍ଥଗମନ ଛଳରେ ସ୍ୱୟଂ ତୀର୍ଥମାନଙ୍କୁ ପବିତ୍ର କରି ପାରନ୍ତି; ସେହି ମହାନୁଭାବମାନେ ଶିଷ୍ୟମାନଙ୍କ ସହିତ ସେଠାରେ ଆସି ଉପସ୍ଥିତ ହେଲେ ॥୮॥ ସେମାନେ ହେଲେ ଅତ୍ରି, ବଶିଷ୍ଠ, ଚ୍ୟବନ, ଶରଦ୍ୱାନ, ଅରିଷ୍ଟନେମି, ଭୃଗୁ, ଅଙ୍ଗିରା, ପରାଶର, ବିଶ୍ୱାମିତ୍ର, ପରଶୁରାମ ଓ ଉତଥ୍ୟ, ଇନ୍ଦ୍ରପ୍ରମଦ, ଇଧ୍ମବାହ, ମେଧାତିଥି, ଦେବଳ, ଆର୍ଷ୍ଟିଷେଣ, ଭରଦ୍ୱାଜ, ଗୌତମ, ପିପ୍ପଳାଦ, ମୈତ୍ରେୟ, ଔର୍ବ, କବଷ, ଅଗସ୍ତ୍ୟ, ବ୍ୟାସଦେବ ଏବଂ ଭଗବାନ ନାରଦ । ଅନ୍ୟ ପ୍ରଧାନ ପ୍ରଧାନ ଦେବର୍ଷି, ବ୍ରହ୍ମର୍ଷି ଓ ଅରୁଣାଦି ରାଜର୍ଷିଙ୍କୁ ଏବଂ ନାନା ନାମଧାରୀ ଗୋତ୍ରର ଋଷିଶ୍ରେଷ୍ଠମାନଙ୍କୁ ରାଜା ପରିକ୍ଷିତ ଯଥାବିଧି ସମ୍ମାନିତ କରି ମୁଣ୍ଡ ପାତି ସେମାନଙ୍କ ପାଦବନ୍ଦନା କଲେ ॥୯-୧୧॥ ସେମାନେ ନିଜ ନିଜ ଆସନ ଗ୍ରହଣ କରି ସୁଖରେ ବସିବା ପରେ ଶୁଦ୍ଧଚେତା ରାଜା ସେମାନଙ୍କୁ ବାରମ୍ବାର ପ୍ରଣାମ କରି କୃତାଞ୍ଜଳିପୁଟରେ ନିଜର ନିଷ୍ପତ୍ତି ବିଷୟ ଜଣାଇଲେ ॥୧୨॥ ରାଜା କହିଲେ, ରାଜବଂଶୀୟମାନେ ନିନ୍ଦିତକର୍ମ କଲେ ବ୍ରାହ୍ମଣମାନଙ୍କ ପାଦଧୁଆ ସ୍ଥାନରେ ମଧ୍ୟ ରହିବାକୁ ଯୋଗ୍ୟ ନୁହନ୍ତି । ଆଜି ସେହି ରାଜାମାନଙ୍କ ମଧ୍ୟରେ ମୁଁ ଧନ୍ୟ । ଆପଣମାନେ ମୋ ଆଚରଣ ଦେଖି ମୋତେ ଅନୁଗୃହୀତ କରିଛନ୍ତି ॥୧୩॥ ଗୃହର ଆସକ୍ତି ସର୍ବଦା ମୋତେ ବାନ୍ଧି ରଖିଥିଲା । ବ୍ରହ୍ମଶାପକୁ ଲୋକ ଭୟ କରେ । କିନ୍ତୁ ପାପକର୍ମ କରି ବ୍ରାହ୍ମଣର ଅଭିଶାପ ଫଳରେ ମୁଁ ବିଷୟାସକ୍ତିରୁ ମୁକ୍ତ ହୋଇଛି । ପାର୍ଥିବ ଅପାର୍ଥିବ ସମସ୍ତ ବସ୍ତୁର ଈଶ୍ୱର, ଅନାସକ୍ତିର ମୂଳ ଭଗବାନ ନିଜେ ଅଭିଶାପରୂପେ ଆସି ମୋତେ ଆଶୀର୍ବାଦ କରିଛନ୍ତି ॥୧୪॥ ବିପ୍ରଗଣ, ଆପଣମାନେ

ଜାଣନ୍ତୁ, ମୁଁ ସେହି ଭଗବାନ କୃଷ୍ଣଙ୍କର ଶରଣାଗତ । ଗଙ୍ଗାଦେବୀ ଜାଣନ୍ତୁ, ମୁଁ ଈଶ୍ୱରଙ୍କଠାରେ ମୋର ଚିତ୍ତ ସମର୍ପଣ କରିଛି । ବ୍ରାହ୍ମଣଙ୍କ ଅଭିଶାପରେ ପ୍ରେରିତ ତକ୍ଷକ ବା କୁହକ ମୋତେ ଦଂଶନ କରୁ, ମୋର ଭୟ ନାହିଁ । ଏବେ ହରିକୀର୍ତ୍ତନ କରିବାର ବେଳ । ଆପଣମାନେ ତାହା କରି ମୋତେ ଅନୁଗୃହୀତ କରନ୍ତୁ ॥୧୫॥ ବ୍ରାହ୍ମଣମାନଙ୍କୁ ନମସ୍କାର । ମୋର ପ୍ରାର୍ଥନା, ଭବିଷ୍ୟତରେ ମୋର ଯେତେ ଜନ୍ମ ହେବ, ତହିଁ ଭଗବାନ ଅନନ୍ତଙ୍କ ପ୍ରତି ଅନୁରାଗ, ତାଙ୍କ ଆଶ୍ରିତ ଭକ୍ତମାନଙ୍କ ସଙ୍ଗଲାଭ ଏବଂ ସମସ୍ତ ପ୍ରାଣୀଙ୍କ ସହିତ ମୋର ମିତ୍ରତା ହେଉ ॥୧୬॥ ଏହିପରି ଦୃଢ଼ ନିଶ୍ଚୟପୂର୍ବକ ବିଜ୍ଞ ରାଜା ନିଜର ପୁତ୍ରଙ୍କୁ ରାଜ୍ୟଭାର ଅର୍ପଣ କରି ଓ ଗଙ୍ଗାର ଦକ୍ଷିଣ କୂଳରେ ପୂର୍ବାଗ୍ରକୁଶ ଆସନ ପାରି ଉତ୍ତରାଭିମୁଖୀ ହୋଇ ବସିରହିଲେ ॥୧୭॥ ମହାରାଜ ପରିକ୍ଷିତ ପ୍ରାୟୋପବେଶନ (ଆମରଣ ଅନଶନବ୍ରତ) କରିବାରୁ ଦେବତାମାନେ ଆନନ୍ଦରେ ତାଙ୍କୁ ପ୍ରଶଂସା କରି ସ୍ୱର୍ଗରୁ ପୁଷ୍ପବୃଷ୍ଟିପୂର୍ବକ ଦୁନ୍ଦୁଭି ବାଦ୍ୟମାନ ବଜାଇଲେ ॥୧୮॥ ଯେଉଁ ମହର୍ଷିମାନେ ସେଠାରେ ଉପସ୍ଥିତ ଥିଲେ, ସେମାନେ ରାଜାଙ୍କୁ ପ୍ରଶଂସା କଲେ ଏବଂ ସାଧୁ ସାଧୁ କହି ତାଙ୍କ ସଂକଳ୍ପକୁ ଅନୁମୋଦନ ଜଣାଇଲେ । ଋଷିମାନେ ସ୍ୱଭାବତଃ ଲୋକଙ୍କର କଲ୍ୟାଣ କାମନା କରନ୍ତି । ସେମାନେ ଉତ୍ତମ ଶ୍ଳୋକ କୃଷ୍ଣଙ୍କର ଅନୁରୂପ ଗୁଣ ଆଣିଥିବା ରାଜା ପରିକ୍ଷିତଙ୍କୁ କହିଲେ, ରାଜର୍ଷିଶ୍ରେଷ୍ଠ, ଆପଣଙ୍କ ପରି କୃଷ୍ଣ-ଅନୁଗାମୀ ବ୍ୟକ୍ତିଙ୍କ ପକ୍ଷରେ ଏପରି ନିର୍ଣ୍ଣୟ ନେବା ବିଚିତ୍ର ନୁହେଁ; ଯେଉଁଥିପାଇଁ କି ଭଗବାନଙ୍କ ପାଖରେ ରହିବା ଇଚ୍ଛାରେ ଆପଣ ବହୁ ରାଜମୁକୁଟବନ୍ଦିତ ରାଜସିଂହାସନକୁ ସଙ୍ଗେସଙ୍ଗେ ଛାଡ଼ି ଦେଇପାରିଲେ ॥୧୯-୨୦॥

ସେମାନେ ପୁଣି କହିଲେ, ଏଇ ଭକ୍ତପ୍ରଧାନ ରାଜା ପରିକ୍ଷିତ ମାୟାରହିତ ଓ ଶୋକରହିତ ପରମଧାମକୁ ଯାତ୍ରା କରିବା ପର୍ଯ୍ୟନ୍ତ ଆମେ ଏଠାରେ ଅବସ୍ଥାନ କରିବା ॥୨୧॥ ପରିକ୍ଷିତ ବିଷ୍ଣୁଙ୍କର ମନୋହର ଚରିତ୍ର ଶୁଣିବା ଇଚ୍ଛାରେ ଋଷିମାନଙ୍କର ସେହି ପକ୍ଷପାତଶୂନ୍ୟ, ଗମ୍ଭୀର ଅଥଚ ଅମୃତସ୍ରାବୀ ସତ୍ୟବଚନ ଶୁଣି ସେମାନଙ୍କୁ ଅଭିନନ୍ଦନ କଲେ ॥୨୨॥ ପରିକ୍ଷିତ କହିଲେ, ଆପଣମାନେ ଚାରିଆଡୁ ଆସି ସତ୍ୟଲୋକରେ ମୂର୍ତ୍ତିମନ୍ତ ହୋଇଥିବା ବେଦ ପରି ଧରାପୃଷ୍ଠରେ ଅବତୀର୍ଣ୍ଣ ହୋଇଛନ୍ତି । ଲୋକମାନଙ୍କୁ ଅନୁଗ୍ରହ କରିବା ଆପଣମାନଙ୍କର ସ୍ୱଭାବ । ଇହଲୋକ ବା ପରଲୋକରେ ଏହାଛଡ଼ା ଆପଣମାନଙ୍କର ଅନ୍ୟ କିଛି କାର୍ଯ୍ୟ ନାହିଁ । ତେଣୁ ବିଶ୍ୱାସରେ ମୁଁ ଏହି ପ୍ରଶ୍ନୋପଯୋଗୀ ବିଷୟ ପଚାରୁଛି -- ମୋର କର୍ତ୍ତବ୍ୟ କ'ଣ ? ବିଶେଷତଃ ଯେଉଁ ଲୋକ ମରିବାକୁ ଯାଉଛି, ତା'ପକ୍ଷରେ ସର୍ବଥା କେଉଁ କର୍ମକୁ ବିଶୁଦ୍ଧ ବୋଲି ଧରାଯିବ, ତାହା ଆପଣମାନେ ବିଚାରପୂର୍ବକ ବତାଇ ଦିଅନ୍ତୁ ॥୨୩-୨୪॥

ଏହି ସମୟରେ ସ୍ୱେଚ୍ଛାରେ ପୃଥିବୀ ସାରା ବିଚରଣ କରୁଥିବା ମହାତେଜା ଶୁକଦେବ ସେଠାରେ ଆସି ପହଞ୍ଚିଗଲେ । ଗାର୍ହସ୍ଥ୍ୟ ବା ସନ୍ନ୍ୟାସ ଆଦି କୌଣସି ଆଶ୍ରମଚିହ୍ନ ତାଙ୍କଠାରେ ଦେଖାଯାଉ ନ ଥିଲା । ସେ ଥିଲେ ନିଜର ଆନନ୍ଦରେ ନିଜେ ବିଭୋର । ତାଙ୍କ ଉଲଗ୍ନ ଅବଧୂତ ରୂପ ଦେଖି ମହିଳା ଓ ବାଳକମାନେ କୌତୂହଳବଶତଃ ତାଙ୍କୁ ଘେରି ରହିଥିଲେ ॥୨୫॥ ଷୋଡ଼ଶବର୍ଷୀୟ ସେହି ଯୁବକଙ୍କର ସୁକୁମାର ହସ୍ତ, ପାଦ ଓ ଉରୁ, ବାହୁ, ସ୍କନ୍ଧ, କପୋଳ ଓ ଗାତ୍ର, ସୁନ୍ଦର ଓ ଆୟତ ଚକ୍ଷୁ, ଉନ୍ନତ ନାସିକା, ସମାନ କର୍ଣ୍ଣ, ସୁନ୍ଦର ଭ୍ରୂଲତାଯୁକ୍ତ ମୁଖମଣ୍ଡଳ, କମ୍ବୁକଣ୍ଠ, ନିଗୂଢ଼ଜତ୍ରୁ (କଣ୍ଠ ଦୁଇ ପାଖର ହାଡ଼), ଆବର୍ତ୍ତନାଭି, ଉନ୍ନତ ବିପୁଳ ବକ୍ଷସ୍ଥଳ, ରେଖାତ୍ରୟ ଯୁକ୍ତ ଉଦର, ଆଜାନୁଲମ୍ବିତ ବାହୁ, ଆଲୁଳାୟିତ କେଶରାଶି, ଦିଗମ୍ବର ବପୁ, କୃଷ୍ଣଙ୍କ ତୁଲ୍ୟ ଶ୍ୟାମ ମନୋହାରୀ ଅଙ୍ଗକାନ୍ତି, ନାରୀମାନଙ୍କ ମନୋହର ସ୍ମିତହାସ୍ୟ--ଏହିସବୁ ତାଙ୍କୁ ଚିହ୍ନାଇ ଦେଉଥିଲା, ସେ କିଏ । ଯଦିବା ସେ ନିଜକୁ ସବୁବେଳେ ଗୁପ୍ତ ରଖୁଥିଲେ, ତଥାପି ତାଙ୍କୁ ଦେଖି ମୁନିମାନେ ସଂଭ୍ରମରେ ନିଜ ନିଜ ଆସନରୁ ଉଠିପଡ଼ିଲେ ॥୨୬-୨୮॥ ବିଷ୍ଣୁରାତ (ବିଷ୍ଣୁଙ୍କର ରକ୍ଷିତ) ନାମରେ କଥିତ ରାଜା ପରିକ୍ଷିତ ଅତିଥିଭାବରେ ଶୁକଦେବଙ୍କୁ ଦେଖି ତାଙ୍କୁ ମୁଣ୍ଡ ନୁଆଁଇ ପ୍ରଣାମ କଲେ । ପାଗଳ ଭାବି ଯେଉଁ ସ୍ତ୍ରୀ ଓ ବାଳକମାନେ ତାଙ୍କ ପଛେ ପଛେ ଗୋଡ଼ାଉଥିଲେ, ଏ ସବୁ ଦେଖି ସେମାନେ ପଳାଇଗଲେ । (ରାଜାଙ୍କ ଦ୍ୱାରା ଅର୍ଚ୍ଚିତ ହୋଇ) ଶୁକଦେବ ଉତ୍ତମ ଆସନ ଗ୍ରହଣ କଲେ ॥୨୯॥ ଗ୍ରହ,

ନକ୍ଷତ୍ର ଓ ତାରାମାନଙ୍କ ମଧ୍ୟରେ ଚନ୍ଦ୍ରମା ଶୋଭା ପାଇବା ପରି ବ୍ରହ୍ମର୍ଷି, ଦେବର୍ଷି ଓ ରାଜର୍ଷିମାନଙ୍କ ଗହଣରେ ମହାତେଜସ୍ୱୀ ଶୁକଦେବ ଶୋଭା ପାଇବାକୁ ଲାଗିଲେ ।।୩୦।।

ସେହି ପ୍ରଖରମେଧା ମୁନିଙ୍କୁ ଦଣ୍ଡ ପ୍ରଣାମ କରି ଭଗବତ୍‌ଭକ୍ତ ରାଜା ପରିକ୍ଷିତ ମଧୁର ସ୍ୱରରେ କୃତାଞ୍ଜଳି ହୋଇ କହିଲେ, ହେ ବ୍ରହ୍ମନ୍, ମୋ ପରି କ୍ଷତ୍ରିୟାଧମ ଆଜି ଆପଣଙ୍କ ସେବାର ସୁଯୋଗ ଲାଭ କରି ଧନ୍ୟ ହେଲା । ଆପଣ ତା'ର ଆତିଥ୍ୟ ଗ୍ରହଣ କରି ତାକୁ ପବିତ୍ର କରିଛନ୍ତି । ଯାହାଙ୍କୁ ସ୍ମରଣ କରିବା ମାତ୍ରେ ଲୋକର ଗୃହ ପବିତ୍ର ହୋଇଯାଏ, ତାଙ୍କୁ ପାଖରେ ଦେଖିବା, ତାଙ୍କ ପାଦ ଛୁଇଁବା, ପାଦ ଧୋଇଦେବା ଏବଂ ଆସନରେ ବସାଇବାଠାରୁ ବଳି ଅଧିକ ପୁଣ୍ୟ କ'ଣ ହୋଇପାରେ ? ।।୩୧-୩୩।। ହେ ମହାଯୋଗି ! ବିଷ୍ଣୁଙ୍କ ପାଖକୁ ଆସିଲେ ରାକ୍ଷସମାନଙ୍କର ଯେପରି ବିନାଶ ଘଟେ, ଆପଣଙ୍କ ସନ୍ନିଧିରେ ମହାପାତକମାନେ ସେହିପରି ସଦ୍ୟ ନଷ୍ଟ ହୋଇଯାଆନ୍ତି ।।୩୪।। ଭଗବାନ କୃଷ୍ଣ ପାଣ୍ଡବମାନଙ୍କର ପ୍ରିୟ । କୃଷ୍ଣଙ୍କର ସେହି ପିଉସୀପୁଅମାନଙ୍କର ମୁଁ ବଂଶଧର ବୋଲି ଆଜି ମୋ ପ୍ରତି ସେ ବନ୍ଧୁସ୍ନେହୀ ହୋଇଛନ୍ତି । ତା'ନ ହେଲେ ଆପଣଙ୍କ ପରି ସିଦ୍ଧବ୍ୟକ୍ତି, ଯାହାଙ୍କ ଗମନାଗମନ କାହାରିକୁ ଜଣା ନ ଥାଏ, ସ୍ୱେଚ୍ଛାରେ ମୋ ମୃତ୍ୟୁସମୟରେ ଆସି ମୋତେ ଦେଖାଦିଅନ୍ତେ କିପରି ?।।୩୫-୩୬।। ଏଣୁ ଯୋଗୀମାନଙ୍କର ପରମଗୁରୁ ସକଳ ସିଦ୍ଧିର ମୂଳ ଶୁକଦେବଙ୍କୁ ମୁଁ ପଚାରୁଛି, ଏହି ସମୟରେ ମୋ ପରି ମ୍ରିୟମାଣ ବ୍ୟକ୍ତିର କର୍ତ୍ତବ୍ୟ କ'ଣ ? ।।୩୭।। ପ୍ରଭୁ, ଯାହା ଶୁଣିବାର ଯୋଗ୍ୟ, ଯାହା ଜପର ଯୋଗ୍ୟ, କରିବାର ଯୋଗ୍ୟ, ସ୍ମରଣର ଯୋଗ୍ୟ, ଭଜନର ଯୋଗ୍ୟ କିମ୍ବା ଯାହା ଏସବୁର ଅଯୋଗ୍ୟ, ତାହା ମୋତେ କହିଦିଅନ୍ତୁ ।।୩୮।। ହେ ବ୍ରହ୍ମନ୍ ! ଜଣେ ଗୃହସ୍ଥକୁ ଗାଈ ଦୁହିଁବାକୁ ଯେତିକି ସମୟ ଲାଗେ, ଆପଣ ତା' ଗୃହରେ ସେତିକି ସମୟ ମଧ୍ୟ ରହନ୍ତି ନାହିଁ । ତେଣୁ ଆପଣଙ୍କ ଦର୍ଶନ ସୁଦୁର୍ଲ୍ଲଭ ।।୩୯।। ସୂତ କହିଲେ, ରାଜା ପରିକ୍ଷିତ ମଧୁର ବାକ୍ୟରେ ଏପରି ପଚାରିବାରୁ ବ୍ୟାସପୁତ୍ର ଧର୍ମଜ୍ଞ ଭଗବାନ୍ ଶୁକଦେବ ତାଙ୍କୁ ଉତ୍ତର ଦେବାକୁ ଆରମ୍ଭ କଲେ ।।୪୦।।

# ଦ୍ୱିତୀୟ ସ୍କନ୍ଧ

## ପ୍ରଥମ ଅଧ୍ୟାୟ

## ଭଗବାନଙ୍କ ବିରାଟ ରୂପର ବର୍ଣ୍ଣନା

ଶ୍ରୀ ଶୁକଦେବ କହିଲେ, ରାଜା, ତୁମେ ଲୋକହିତକର ଉତ୍ତମ ପ୍ରଶ୍ନ ପଚାରିଲ । ମନୁଷ୍ୟମାନଙ୍କ ପକ୍ଷରେ ଯେତେ ଯାହା ଶୁଣିବାର ଓ ଜାଣିବାର କଥା, ତାହା ମଧ୍ୟରେ ଏହା ସର୍ବୋତ୍କୃଷ୍ଟ ଏବଂ ଆତ୍ମଜ୍ଞାନୀମାନେ ମଧ୍ୟ ଏହାକୁ ଅନୁମୋଦନ କରନ୍ତି ॥୧॥ ରାଜେନ୍ଦ୍ର, ଗୃହ ଜଞ୍ଜାଳରେ ବ୍ୟସ୍ତ ସଂସାରୀ ଲୋକ ବହୁତ ଅଛନ୍ତି, ଯେଉଁମାନେ ଆତ୍ମତତ୍ତ୍ୱ ବା ନିଜର ସ୍ୱରୂପ ସମ୍ପର୍କରେ ସମ୍ପୂର୍ଣ୍ଣ ଅନଭିଜ୍ଞ । ସେମାନଙ୍କୁ ତ ହଜାର କଥା ଶୁଣିବାର ଅଛି । ସେମାନଙ୍କ ରାତ୍ରି ନିଦ୍ରାରେ ଓ ସ୍ତ୍ରୀସମ୍ଭୋଗରେ କଟେ; ଦିନ ଅର୍ଥ ଉପାର୍ଜନରେ ବା କୁଟୁମ୍ବପୋଷଣରେ ବିତିଯାଏ । ଏହିପରି ସେମାନଙ୍କ ବୟସ କ୍ଷୟ ପାଇଯାଏ ॥୨-୩॥ ନିଜର ଦେହ, ସ୍ତ୍ରୀ, ସନ୍ତାନସନ୍ତତି ଆଦିଙ୍କଠାରେ ଲୋକ ଆସକ୍ତ ହୋଇଯାଏ । ସେ ମନେକରେ ଯେପରିକି ସେମାନେ ତାର ସହାୟକ ସେନା । କିନ୍ତୁ ସେମାନେ ଅସତ୍; ସେମାନେ ତା'ର ଆଖି ଆଗରେ ମରି ଟଳିପଡୁଥିବା ଦେଖି ମଧ୍ୟ ସେ ନ ଦେଖିବା ପରି ବ୍ୟବହାର କରେ ॥୪॥ ଭଗବାନ ଶ୍ରୀହରି ସମସ୍ତ ଆତ୍ମାରେ ବିରାଜମାନ । ତେଣୁ ହେ ଭାରତ, ଅଭୟପଦ ପାଇବାକୁ ଇଚ୍ଛୁକ ବ୍ୟକ୍ତି ସେହି ସର୍ବାନ୍ତର୍ଯାମୀ ଭଗବାନ, ହରି ଓ ଈଶ୍ୱରଙ୍କ ବିଷୟରେ ଶୁଣିବା, ତାଙ୍କ ଗୁଣକୀର୍ତ୍ତନ କରିବା ଓ ତାଙ୍କୁ ସ୍ମରଣ କରିବା ଉଚିତ ॥୫॥ ମନୁଷ୍ୟଜନ୍ମର ଏତିକି ଲାଭ ହେଉଛି, ସାଂଖ୍ୟଦ୍ୱାରା ହେଉ, ଯୋଗଦ୍ୱାରା ହେଉ କିମ୍ବା ନିଷ୍ଠାର ସହିତ ସ୍ୱଧର୍ମ ଆଚରଣ କରି ହେଉ, ମନୁଷ୍ୟ ତାର ଅନ୍ତିମ ସମୟରେ ଯେପରି ନାରାୟଣଙ୍କୁ ସ୍ମରଣ କରିପାରିବ ॥୬॥

ଯେଉଁମାନେ ସାଧାରଣ ବିଧିନିଷେଧର ଉର୍ଦ୍ଧ୍ୱରେ ନିର୍ଗୁଣ ବ୍ରହ୍ମରେ ସ୍ଥିତ, ସେହି ମୁନିଋଷିମାନେ ପ୍ରାୟ ଶ୍ରୀହରିଙ୍କର ଗୁଣକୀର୍ତ୍ତନ କରିବାରେ ଆନନ୍ଦ ଅନୁଭବ କରନ୍ତି ॥୭॥ ସମସ୍ତ ବେଦ ସହିତ ତୁଳନୀୟ ଭାଗବତ ନାମକ ପୁରାଣକୁ ଦ୍ୱାପର ଯୁଗର ଶେଷ ସମୟରେ ମୋର ପିତା କୃଷ୍ଣଦ୍ୱୈପାୟନ (ବ୍ୟାସ)ଙ୍କଠାରୁ ମୁଁ ଅଧ୍ୟୟନ କରିଥିଲି ॥୮॥ ରାଜର୍ଷି, ନିର୍ଗୁଣ ବ୍ରହ୍ମଙ୍କ ପ୍ରତି ମୋର ଦୃଢ଼ ନିଷ୍ଠା ଥିଲେ ମଧ୍ୟ ଉତ୍ତମଶ୍ଳୋକ ଶ୍ରୀକୃଷ୍ଣଙ୍କ ମଧୁରଲୀଳାରେ ଆକୃଷ୍ଟ ହୋଇ ମୁଁ ଏହି ଆଖ୍ୟାନ ଅଧ୍ୟୟନ କଲି ॥୯॥ ତୁମେ ସେହି ମହାପୁରୁଷଙ୍କର ଭକ୍ତ । ତେଣୁ ମୁଁ ତୁମକୁ ଏହା ଶୁଣାଇବି । ଯେଉଁମାନେ ତୁମ ପରି ଭକ୍ତଙ୍କଠାରେ ଶ୍ରଦ୍ଧା କରନ୍ତି, ସେମାନଙ୍କର ମୁକୁନ୍ଦଙ୍କଠାରେ ଅହୈତୁକୀ ମତି ହୋଇଯାଏ ॥୧୦॥ ରାଜା, ଯେଉଁମାନେ ବିଷୟଭୋଗ ଚାହାନ୍ତି, ମୋକ୍ଷ ଚାହାନ୍ତି ବା ଯେଉଁମାନେ ଯୋଗୀ, ସେମାନଙ୍କପାଇଁ ଏଇ ଅକୁତୋଭୟ ହରିନାମକୀର୍ତ୍ତନ ଏକମାତ୍ର ସାଧନ ବୋଲି ନିର୍ଣ୍ଣୟ କରାଯାଇଛି ॥୧୧॥ ବିଷୟଭୋଗରେ ମଜ୍ଜିଥିବା ବ୍ୟକ୍ତିର ଅଲକ୍ଷିତ ବର୍ଷ ବର୍ଷ ଧରି ଆୟୁରେ କି ଲାଭ ? ବରଂ ଆୟୁ ବୃଥା ଚାଲିଯାଉଛି ଜାଣି ମୁହୂର୍ତ୍ତକପାଇଁ ଈଶ୍ୱରଙ୍କ ଚିନ୍ତା କରିବା ଶ୍ରେୟସ୍କର ॥୧୨॥ ଖଟ୍ୱାଙ୍ଗ ନାମରେ ଜଣେ ରାଜର୍ଷି ଥିଲେ । ସେ ଯେତେବେଳେ ଶୁଣିଲେ ଯେ ତାଙ୍କର ଆୟୁଷ ଶେଷ ହେବାକୁ ବସିଲାଣି, ସଙ୍ଗେ ସଙ୍ଗେ ସମସ୍ତ ବିଷୟଭୋଗ ତ୍ୟାଗ କରି ସେ ଶ୍ରୀହରିଙ୍କର ଅଭୟପାଦରେ ଆଶ୍ରୟ ନେଲେ ॥୧୩॥ ଏବେ ହେ କୁରୁବଂଶୀୟ, ତୁମର ପରମାୟୁ ଗୋଟିଏ ସପ୍ତାହ ମାତ୍ର ବାକି ଅଛି, ପରଲୋକ ପାଇଁ ଯାହା ତୁମର କରିବାର କଥା, ସେ ସବୁ କରିଯାଅ ॥୧୪॥ ଅନ୍ତକାଳ ଉପସ୍ଥିତ ହେଲେ ମୃତ୍ୟୁକୁ ଭୟ ନକରି ମନୁଷ୍ୟ ତାର ସମସ୍ତ ସୁଖ କାମନାକୁ ଦେହରେ ଏବଂ ଦେହାନୁଗତ ସ୍ତ୍ରୀପୁତ୍ରାଦିଙ୍କଠାରେ ବୈରାଗ୍ୟରୂପକ ଖଡ୍ଗଦ୍ୱାରା

ଛେଦନ କରିବା ଉଚିତ ॥୧୫॥ ସେତେବେଳେ ବିଜ୍ଞବ୍ୟକ୍ତି ସଂଯମପାଇଁ ନିଜର ଗୃହ ତ୍ୟାଗ କରି ଏବଂ ନିୟମପାଇଁ ପବିତ୍ର ତୀର୍ଥଜଳରେ ସ୍ନାନପୂର୍ବକ ଶୁଚି ଏବଂ ନିର୍ଜନ ସ୍ଥାନରେ ବିଧିବତ୍ ଆସନ ବାନ୍ଧି ବସିଯିବା ଉଚିତ ॥୧୬॥ ଅ,ଉ,ମ -- ଏହି ତିନୋଟି ଅକ୍ଷରଯୁକ୍ତ ଶୁଦ୍ଧ ଓଁକାର ପରଂବ୍ରହ୍ମଙ୍କୁ ଅବିରତ ମନଦ୍ୱାରା ଜପ କରି ପ୍ରାଣାୟାମଦ୍ୱାରା ବ୍ରହ୍ମବୀଜ ପ୍ରଣବକୁ ବିସ୍ମରଣ ନ କରି ମନକୁ ଦମନ କରିବା ଆବଶ୍ୟକ ॥୧୭॥ ମନକୁ ବଶ କରିସାରିବା ପରେ ବୁଦ୍ଧି ସାହାଯ୍ୟରେ ସେହି ମନଦ୍ୱାରା ଇନ୍ଦ୍ରିୟମାନଙ୍କୁ ବିଷୟମାନଙ୍କରୁ ପ୍ରତ୍ୟାହାର କରିବା ଉଚିତ । ପୁନଶ୍ଚ କର୍ମଚଞ୍ଚଳ ମନକୁ ବୁଦ୍ଧିଦ୍ୱାରା ମଙ୍ଗଳମୟ ଈଶ୍ୱରଙ୍କଠାରେ ଧାରଣା କରିବ ॥୧୮॥ ଏହାପରେ ଭଗବାନଙ୍କ ସମ୍ପୂର୍ଣ୍ଣ ରୂପରୁ ଅବିଯୁକ୍ତ ଚିତ୍ତଦ୍ୱାରା ଗୋଟିଏ ଗୋଟିଏ ଅବୟବକୁ ଧ୍ୟାନ କରିବ । ମନ ବିଷୟମୁକ୍ତ ହେଲେ ତାହାକୁ ସମାହିତ କରି ଅନ୍ୟ କିଛି ଚିନ୍ତା କରିବ ନାହିଁ । ଏହା ସମାଧି, ଚିତ୍ତର ଆନନ୍ଦଦାୟକ ବିଷ୍ଣୁଙ୍କର ସେହି ପରମପଦ ପ୍ରାପ୍ତିର ଚିନ୍ତା ॥୧୯॥ ରଜ ଓ ତମୋଗୁଣଦ୍ୱାରା ମନ ଚଞ୍ଚଳ ଓ ମୋହଗ୍ରସ୍ତ ହୁଏ । ତେଣୁ ଧାରଣାଦ୍ୱାରା ଧୀର ବ୍ୟକ୍ତିମାନେ ଏହି ଦୁଇଟି ଗୁଣର ଦୋଷକୁ ଦୂର କରିଥାନ୍ତି ॥୨୦॥ ଧାରଣା ସ୍ଥିର ହେବାପରେ ଯୋଗୀ ଯେତେବେଳେ ତାର ଆଶ୍ରୟସ୍ଥଳ ସେହି ପରମମଙ୍ଗଳମୟଙ୍କୁ ଦର୍ଶନ କରେ, ସେତେବେଳେ ତାର ଭକ୍ତିଲକ୍ଷଣ ଯୋଗ ସିଦ୍ଧ ହୁଏ ॥୨୧॥

ରାଜା ପଚାରିଲେ, ହେ ବ୍ରହ୍ମନ୍ ଧାରଣା କିପରି ? ମନର ମଳିନତା ଦୂର କରିବାପାଇଁ ତାହା କିପରି କରାଯାଏ ଏବଂ କେଉଁଠାରେ କରାଯାଏ, ତାହା ମୋତେ ବୁଝାଇ କହନ୍ତୁ ॥୨୨॥ ଶୁକଦେବ କହିଲେ, ବିଷୟସଙ୍ଗ ତ୍ୟାଗ କରି ଆସନ, ପ୍ରାଣାୟାମ ଓ ଇନ୍ଦ୍ରିୟଜୟପୂର୍ବକ ବୁଦ୍ଧିଦ୍ୱାରା ଭଗବାନଙ୍କ ସ୍ଥୂଳରୂପରେ ମନ ଲଗାଇବା ଦରକାର । ଭଗବାନଙ୍କର ସେହି ଅତି ସ୍ଥୂଳରୁ ସ୍ଥୂଳତର ବିରାଟ ରୂପରେ ସମସ୍ତ ବିଶ୍ୱ ତାର ଅତୀତ, ବର୍ତ୍ତମାନ ଓ ଭବିଷ୍ୟତ ସହ ଦୃଶ୍ୟମାନ ହୁଏ । ପୃଥିବୀ, ଜଳ, ଅଗ୍ନି, ବାୟୁ, ଆକାଶ, ଅହଂକାର ଓ ମହତ୍ତତ୍ତ୍ୱ -ଏହି ସାତୋଟି ଆବରଣଦ୍ୱାରା ବେଷ୍ଟିତ ହୋଇ ବ୍ରହ୍ମାଣ୍ଡ ଶରୀରରେ ଯେଉଁ ବିରାଟ ପୁରୁଷ ରହିଛନ୍ତି, ସେ ହେଉଛନ୍ତି ଭକ୍ତର ଧାରଣାର ବସ୍ତୁ ॥୨୩-୨୫॥ ତତ୍ତ୍ୱଜ୍ଞମାନେ ସେହି ବିରାଟ ପୁରୁଷଙ୍କର ଏହିପରି ବର୍ଣ୍ଣନା କରିଛନ୍ତି - ପାତାଳ ତାଙ୍କର ତଳିପା, ରସାତଳ ତାଙ୍କ ପାଦର ଗୋଇଠି ଓ ପଞ୍ଝା, ପାଦଗଣ୍ଠି ମହାତଳ, ଜଂଘା ତଳାତଳ, ଜାନୁଦ୍ୱୟ ସୁତଳ, ଉରୁଦ୍ୱୟ ବିତଳ ଓ ଅତଳ, କଟିଦେଶ ମହୀତଳ ଓ ନାଭିର ଆବର୍ତ୍ତ ହେଉଛି ନଭସ୍ତଳ ବା ଭୁବର୍ଲୋକ ॥୨୬-୨୭॥ ସେହି ସହସ୍ରଶୀର୍ଷା ଆଦିପୁରୁଷଙ୍କର ବକ୍ଷସ୍ଥଳ ହେଉଛି ସ୍ୱର୍ଗ, ଗ୍ରୀବା ମହର୍ଲୋକ, ମୁଖ ଜନଲୋକ, ଲଲାଟ ତପୋଲୋକ ଏବଂ ମସ୍ତକ ସତ୍ୟଲୋକ । ଇନ୍ଦ୍ରାଦି ଦେବଗଣ ତାଙ୍କ ବାହୁ, ଦଶଦିଗ ତାଙ୍କ କର୍ଣ୍ଣ, ଅଶ୍ୱିନୀକୁମାରଦ୍ୱୟ ତାଙ୍କ ଦୁଇ ନାସାପୁଟ, ଗନ୍ଧ ତାଙ୍କ ଘ୍ରାଣଶକ୍ତି ଏବଂ ଦୀପ୍ତ ଅଗ୍ନି ତାଙ୍କର ମୁଖ । ଅନ୍ତରୀକ୍ଷ ସେହି ବିଷ୍ଣୁଙ୍କର ଦୁଇ ନେତ୍ର ଗୋଲକ ଏବଂ ସୂର୍ଯ୍ୟ ତାଙ୍କ ଦୃଷ୍ଟିଶକ୍ତି । ତାଙ୍କ ନେତ୍ରଲୋମ ଦୁଇଟିଯାକ ଦିନ ଓ ରାତି ଏବଂ ଭ୍ରୂକୁଟି ହେଉଛି ବ୍ରହ୍ମଲୋକ । ତାଲୁ ହେଉଚି ଜଳ ଏବଂ ଜିହ୍ୱା ହେଉଚି ରସର ସ୍ୱରୂପ ॥୨୮-୩୦॥ ବେଦ ହେଉଛି ସେହି ଅନନ୍ତଙ୍କର ବ୍ରହ୍ମରନ୍ଧ୍ର, ମାଢ଼ି ହେଉଛି ଯମ, ଦନ୍ତପଙ୍‌କ୍ତି ସମସ୍ତ ପ୍ରକାର ସ୍ନେହ, ହସ ହେଉଛି ଲୋକଙ୍କର ଉନ୍ମାଦକାରୀ ତାଙ୍କ ମାୟା ଏବଂ ତାଙ୍କର କଟାକ୍ଷପାତ ହେଉଛି ଏହି ସୃଷ୍ଟି, ଯାହାର କି କେହି ଅନ୍ତ ପାଆନ୍ତି ନାହିଁ । ଲଜ୍ଜା ହେଉଛି ତାଙ୍କ ଓଷ୍ଠ, ଅଧର ହେଉଛି ଲୋଭ, ସ୍ତନ ହେଉଛି ଧର୍ମ, ପୃଷ୍ଠଭାଗ (ପିଠି) ଅଧର୍ମର ପଥ, ବ୍ରହ୍ମା ତାଙ୍କର ଲିଙ୍ଗ, ମିତ୍ର ଓ ବରୁଣ ତାଙ୍କର ଦୁଇ ଅଣ୍ଡକୋଷ ଏବଂ ଉଦର ସମୁଦ୍ର । ମହାରାଜ, ସେହି ବିଶ୍ୱରୂପଙ୍କର ନାଡ଼ି ହେଉଛନ୍ତି ନଦୀମାନେ, ପର୍ବତଯାକ ଅସ୍ଥିସମୂହ, ବୃକ୍ଷମାନେ ତାଙ୍କ ଶରୀରର ରୋମାବଳୀ, ପ୍ରବଳ ବାୟୁ ତାଙ୍କ ଶ୍ୱାସ, କାଳ ତାଙ୍କର ଗତି ଏବଂ ଗୁଣମୟ ସଂସାର ହିଁ ତାଙ୍କର କର୍ମ ॥୩୧-୩୩॥ ହେ କୁରୁଶ୍ରେଷ୍ଠ, ମେଘମାନେ ସେହି ଈଶ୍ୱରଙ୍କର କେଶ ବୋଲି ଜାଣ । ସନ୍ଧ୍ୟା ତାଙ୍କର ବସ୍ତ୍ର, ପ୍ରକୃତି ତାଙ୍କର ହୃଦୟ, ଚନ୍ଦ୍ରମା ତାଙ୍କର ମନ । ମହତ୍‌ତତ୍ତ୍ୱ ହେଉଛି ସେହି ସର୍ବାନ୍ତର୍ଯାମୀଙ୍କର ଚିତ୍ତ ଏବଂ ରୁଦ୍ର ହେଉଛନ୍ତି ତାଙ୍କ ଅହଂକାର । ଘୋଡ଼ା, ଖଚର, ଓଟ ଓ ହାତୀମାନେ ତାଙ୍କ ନଖସ୍ୱରୂପ ଏବଂ ଯେତେ ମୃଗପଶୁ ଅଛନ୍ତି ସମସ୍ତେ ତାଙ୍କ ନିତମ୍ବ ପ୍ରଦେଶରେ ବିଚରଣ କରନ୍ତି ॥୩୪-୩୫॥ ପକ୍ଷୀମାନେ

ତାଙ୍କର ବିଚିତ୍ର କଳାକୌଶଳ । ସ୍ୱାୟଂଭୁବ ମନୁ ତାଙ୍କ ମନୀଷା ଏବଂ ମନୁଷ୍ୟ ତାଙ୍କ ନିବାସସ୍ଥଳ । ଗନ୍ଧର୍ବ, ବିଦ୍ୟାଧର, ଚାରଣ ଓ ଅପ୍ସରାମାନେ ତାଙ୍କର ସ୍ୱରସ୍ମୃତି ଓ ଅସୁରମାନେ ତାଙ୍କର ବୀର୍ଯ୍ୟସ୍ୱରୂପ ॥୩୬॥ ବ୍ରାହ୍ମଣମାନେ ସେହି ବିରାଟ ପୁରୁଷଙ୍କର ମୁଖ, କ୍ଷତ୍ରିୟମାନେ ଭୁଜ, ବୈଶ୍ୟମାନେ ତାଙ୍କର ଉରୁ ଏବଂ ଶୂଦ୍ରମାନେ ତାଙ୍କ ପାଦରେ ଆଶ୍ରିତ । ନାନା ନାମଧାରୀ ଦେବତାଙ୍କଦ୍ୱାରା ଯେଉଁ ଦ୍ରବ୍ୟମୟ ଯଜ୍ଞ ପ୍ରୟୋଗ କରାଯାଏ, ତାହା ହିଁ ତାଙ୍କର କର୍ମ ॥୩୭॥ ରାଜା, ମୁଁ ତୁମକୁ ବିରାଟ ଭଗବାନଙ୍କ ସ୍ଥୂଳ ଶରୀରର ଓ ତାଙ୍କ ବିଭିନ୍ନ ଅଙ୍ଗପ୍ରତ୍ୟଙ୍ଗର ଏହି ସ୍ୱରୂପ ବର୍ଣ୍ଣନା କରି ଶୁଣାଇଲି । ମୁକ୍ତିକାମୀ ବ୍ୟକ୍ତି ବୁଦ୍ଧିଦ୍ୱାରା ସେଇ ସ୍ଥୂଳ ଶରୀରରେ ଚିତ୍ତ ସ୍ଥିର ରଖିବା ଉଚିତ; ଏହାଛଡ଼ା ସେଥିରେ ଅନ୍ୟ କିଛି ନାହିଁ ॥୩୮॥ ସ୍ୱପ୍ନାବସ୍ଥାରେ ଲୋକ ଯେପରି ଏକ ହୋଇ ଅନେକ ଲୋକଙ୍କୁ ଦେଖେ, ସେହିପରି ସବୁ ଲୋକଙ୍କ ବୁଦ୍ଧିଦ୍ୱାରା ସର୍ବାନ୍ତର୍ଯାମୀ ଭଗବାନଙ୍କର ସବୁ ଅନୁଭବ ହୁଏ । କିନ୍ତୁ ସେ ନିଜେ ଏକ ଓ ଅଭିନ୍ନ । ସତ୍ୟର ସ୍ୱରୂପ ଓ ଆନନ୍ଦର ଭଣ୍ଡାର ସେହି ଭଗବାନଙ୍କୁ ଭଜନ କରିବା ଉଚିତ । ଅନ୍ୟ ବିଷୟରେ ଆସକ୍ତ ହେବା ଅନୁଚିତ ଯଦ୍ଦ୍ୱାରା କେବଳ ଆତ୍ମାର ପତନ ହୁଏ ॥୩୯॥

## ଦ୍ୱିତୀୟ ଅଧ୍ୟାୟ

# କ୍ରମ ମୁକ୍ତି ଓ ସଦ୍ୟ ମୁକ୍ତି

ପ୍ରଳୟକାଳରେ ବ୍ରହ୍ମା ଧାରଣାଦ୍ୱାରା ସେହି ବିରାଟ ପୁରୁଷଙ୍କୁ ସନ୍ତୁଷ୍ଟ କରି ସୃଷ୍ଟିବିଷୟକ ତାଙ୍କ ନିଜର ଲୁପ୍ତ ସ୍ମୃତିକୁ ଜାଗରିତ କଲେ । ପ୍ରଳୟପୂର୍ବରୁ ଏହି ସୃଷ୍ଟି କିପରି ଥିଲା, ତାହା ସେ ଭଲଭାବରେ ଦେଖିପାରିଲେ ଏବଂ ବୁଦ୍ଧିଦ୍ୱାରା ପ୍ରେରିତ ହୋଇ ସେ ସେହିପରି ଏକ ସୃଷ୍ଟି ରଚନା କଲେ ॥୧॥ ଶବ୍ଦବ୍ରହ୍ମ ରୂପରେ ବେଦ ଏହି ମାୟାମୟ ସଂସାରରେ ଲୋକଙ୍କୁ ସମସ୍ତପ୍ରକାର ସୁଖଲାଭପାଇଁ ବହୁ କର୍ମରେ ପ୍ରବୃତ୍ତ କରାଏ । କିନ୍ତୁ ସୁଖ-ସ୍ୱପ୍ନ ଦେଖିବା ପରି ଲୋକ ବୃଥା ଏଥିରେ ଭ୍ରମିତ ହୁଏ ॥୨॥ ଏଣୁ ବୁଦ୍ଧିମାନ୍ ବିଦ୍ୱାନ୍ ବ୍ୟକ୍ତି ବିଭିନ୍ନ ନାମର ବସ୍ତୁମଧ୍ୟରେ ଯେତିକି ନିଜର ଏକାନ୍ତ ପ୍ରୟୋଜନ, ସେତିକି ବ୍ୟବହାର କରିବା ଆବଶ୍ୟକ । ଅନାବଶ୍ୟକ ବସ୍ତୁପାଇଁ ବୃଥା ପରିଶ୍ରମ କରିବା ଉଚିତ ନୁହେଁ ॥୩॥ ଯଦି ଭୂଇଁ ଉପରେ ଶୋଇଲେ ଚଳିଯିବ, ତା'ହେଲେ ଖଟପଲଙ୍କର କ'ଣ ଆବଶ୍ୟକତା ଅଛି ? ଯଦି ଭଗବାନ ବାହୁ ଦେଇଛନ୍ତି, ତା'ହେଲେ ତକିଆ କ'ଣ ଦରକାର ? ଯଦି ଆଞ୍ଜୁଳାଦ୍ୱାରା ଖାଦ୍ୟପଦାର୍ଥ ଗ୍ରହଣ କରିହେବ, ତା'ହେଲେ ବିଭିନ୍ନ ବାସନକୁସନର କି ଆବଶ୍ୟକତା ରହିଛି ? ଯଦି ବଲ୍‌କଳ ଅଛି, ତା'ହେଲେ ଦୁକୂଳରେ କି ପ୍ରୟୋଜନ ? ॥୪॥ ରାସ୍ତାରେ କ'ଣ ପିନ୍ଧିବାପାଇଁ ପୁରୁଣା ଚିରା କନା ଖୋଜିଲେ ମିଳିବ ନାହିଁ ? ଫଳଫୁଲରୂପକ ଭିକ୍ଷା ଦେବାପାଇଁ କ'ଣ ପର ପାଇଁ ଜୀବନ ଧାରଣ କରିଥିବା ବୃକ୍ଷମାନେ ନାହାନ୍ତି ? ତୃଷା ମେଣ୍ଟାଇବାପାଇଁ କ'ଣ ନଦୀମାନେ ନାହାନ୍ତି ? ସେମାନେ କ'ଣ ଶୁଷ୍କ ହୋଇଗଲେ ? ରହିବାପାଇଁ କ'ଣ ପାହାଡ଼ର ଗୁମ୍ଫାସବୁ ବନ୍ଦ ହୋଇଗଲାଣି ? ଶରଣାଗତ ମଣିଷକୁ ରକ୍ଷା କରିବାପାଇଁ କ'ଣ ଭଗବାନ ନାହାନ୍ତି ? ତେଣୁ କାହିଁକି ବିଦ୍ୱାନ୍‌ମାନେ ଧନଗର୍ବରେ ଅନ୍ଧ ଲୋକମାନଙ୍କର ଚାଟୁକାର ହୁଅନ୍ତି ? ॥୫॥ ଏହିପରି ନିଜର ହୃଦୟରେ ସ୍ୱୟଂସିଦ୍ଧ ଆତ୍ମାସ୍ୱରୂପ ପରମପ୍ରିୟ ପରମାର୍ଥ ଭଗବାନ ଅନନ୍ତଙ୍କୁ ଭଜନ କରିବ । ସୁଖୀ ହୋଇ ଏବଂ ସେ ମୂଳ ବୋଲି ଭାବି ତାଙ୍କୁ ଭଜନ କଲେ ସଂସାରର ହେତୁ ଅବିଦ୍ୟାର ନାଶ ହୁଏ ॥୬॥ ପଶୁମାନଙ୍କୁ ଛାଡ଼ି ଏପରି ଲୋକ କିଏ ଅଛି, ସଂସାରରୂପ ତପ୍ତ ବୈତରଣୀରେ ପଡ଼ି ଜୀବମାନେ ନିଜର କର୍ମଜନିତ ଦୁଃଖମାନଙ୍କୁ ଭୋଗ କରୁଥିବା ଦେଖି, ସେହି ଆତ୍ମସ୍ୱରୂପ ଭଗବାନଙ୍କ ଚିନ୍ତାକୁ ଅନାଦର କରିବ ଏବଂ ଅସ୍ଥାୟୀ ସଂସାରର ଚିନ୍ତା କରିବ ? ॥୭॥ କେହି କେହି ସାଧକ ଅଛନ୍ତି, ଯେଉଁମାନେ ନିଜ ଦେହର ଅନ୍ତର୍ଗତ

ହୃଦୟ ଆକାଶରେ ଚାଖଣ୍ଡ ପରିମାଣ ବିରାଜମାନ ଏବଂ ଶଙ୍ଖ, ଚକ୍ର, ଗଦା ଓ ପଦ୍ମଧାରୀ ସେହି ଚତୁର୍ଭୁଜ ପୁରୁଷଙ୍କୁ ଧାରଣାଦ୍ୱାରା ସ୍ମରଣ କରନ୍ତି ॥୮॥ କମଳ ପରି ଆୟତ ନୟନ ସେହି ପୁରୁଷଙ୍କର ମୁଖମଣ୍ଡଳ ପ୍ରସନ୍ନ ଦିଶୁଥାଏ । କଦମ୍ବକେଶର ପରି ପୀତରଙ୍ଗର ବସ୍ତ୍ର ସେ ପିନ୍ଧିଥା'ନ୍ତି । ତାଙ୍କ ଦେହରେ ସୁବର୍ଣ୍ଣର ବାଜୁବନ୍ଧ ଏବଂ ମହାରତ୍ନଖଚିତ କିରୀଟ ଓ କୁଣ୍ଡଳ ଶୋଭା ପାଉଥାଏ ॥୯॥ ନିଦ୍ରା ଓ ଅଜ୍ଞତାବିଦୂରିତ ଯୋଗୀମାନଙ୍କର ହୃତ୍‌ପଦ୍ମରେ ତାଙ୍କର ପାଦପଲ୍ଲବ ଅବସ୍ଥିତ । ଶ୍ରୀବତ୍ସଲାଞ୍ଛନଙ୍କର ଗ୍ରୀବାଦେଶରେ କୌସ୍ତୁଭମଣି ଏବଂ ସଦା ସତେଜ ବନଫୁଲର ମାଳା ଶୋଭା ପାଉଥାଏ ॥୧୦॥ କଟିଦେଶରେ ଚନ୍ଦ୍ରହାର, ଅଙ୍ଗୁଳିରେ ବହୁମୂଲ୍ୟ ଅଙ୍ଗୁରୀୟ, ପାଦରେ ନୂପୁର ଓ ହସ୍ତରେ କଙ୍କଣ ଆଦି ଅଳଙ୍କାର ସେ ଧାରଣ କରିଥାଆନ୍ତି । ଅତି ଚିକ୍କଣ, ନିର୍ମଳ କୁଞ୍ଚିତ ନୀଳକେଶରାଶି ଏବଂ ହାସ୍ୟଯୁକ୍ତ ମୁଖ ଅତି ସୁନ୍ଦର ଦେଖାଯାଉଥାଏ ॥୧୧॥ ସେହି ଲୀଳାମୟ ଉଦାର ହାସ୍ୟଯୁକ୍ତ ଦୃଷ୍ଟି ଏବଂ ଉଲ୍ଲସିତ ଭ୍ରୂଭଙ୍ଗୀଦ୍ୱାରା ସେ ଭକ୍ତମାନଙ୍କପ୍ରତି ତାଙ୍କ ଭୂରିଭୂରି ଅନୁଗ୍ରହର ସୂଚନା ଦେଇଥାଆନ୍ତି । ଧାରଣାରେ ନିଜର ମନ ସ୍ଥିର ହେବାପର୍ଯ୍ୟନ୍ତ ସେହି ଚିନ୍ତାମଣି ଈଶ୍ୱରଙ୍କର ରୂପକୁ ବାରମ୍ବାର ଧ୍ୟାନ କରିବା ଉଚିତ ॥୧୨॥ ସେହି ଗଦାଧରଙ୍କର ପାଦଠାରୁ ଆରମ୍ଭକରି ସହାସ୍ୟ ମୁଖମଣ୍ଡଳ ପର୍ଯ୍ୟନ୍ତ ଗୋଟି ଗୋଟି କରି ପ୍ରତ୍ୟେକ ଅଙ୍ଗକୁ ଚିନ୍ତା କରିବ, ଯେଉଁ ପ୍ରକାରେ ବୁଦ୍ଧି ଶୁଦ୍ଧ ଓ ଚିତ୍ତ ସ୍ଥିର ହେବ । ତା'ପରେ ସେହି ଅଙ୍ଗକୁ ଛାଡ଼ି ଅନ୍ୟ ଅଙ୍ଗକୁ ଧାରଣା କରିବ ॥୧୩॥ ସେହି ପରାତ୍ପର ସର୍ବଦ୍ରଷ୍ଟା ବିଶ୍ୱେଶ୍ୱରଙ୍କଠାରେ ଯେପର୍ଯ୍ୟନ୍ତ ଭକ୍ତିଯୋଗ ନ ଜନ୍ମିଛି, ସେ ପର୍ଯ୍ୟନ୍ତ ନିଜର ଦୈନନ୍ଦିନ କର୍ମ ଶେଷ କରିବା ପରେ ଶ୍ରଦ୍ଧାର ସହିତ ତାଙ୍କର ସ୍ଥୂଳ ରୂପକୁ ସ୍ମରଣ କରିବ ॥୧୪॥ ରାଜା ! ଯେତେବେଳେ ଯତି ନିଜର ଏହି ଦେହ ତ୍ୟାଗ କରିବାପାଇଁ ଇଚ୍ଛା କରିବ, ସେତେବେଳେ ସ୍ଥାନ ବା କାଳକୁ ଅପେକ୍ଷା ନ କରି ଏବଂ ପ୍ରାଣବାୟୁକୁ ଜିଣି ସୁଖାସନରେ ସ୍ଥିର ହୋଇ ବସି ମନଦ୍ୱାରା ଇନ୍ଦ୍ରିୟମାନଙ୍କୁ ସଂଯତ କରିବ ॥୧୫॥ ଏହାପରେ ନିର୍ମଳ ବୁଦ୍ଧିଦ୍ୱାରା ମନକୁ ନିୟନ୍ତ୍ରିତ କରି ବୁଦ୍ଧିକୁ ଜୀବାତ୍ମାଠାରେ ନିବନ୍ଧ କରିବ । ପୁଣି ଜୀବାତ୍ମାକୁ ପରମାତ୍ମାଙ୍କଠାରେ ନିବିଷ୍ଟ କରି ବିଜ୍ଞ ସାଧକ ପରମ ଶାନ୍ତି ଲାଭ କରିବ ଏବଂ ତା ପାଇଁ କୌଣସି କର୍ମର ଶେଷ ରହିବ ନାହିଁ ॥୧୬॥

ଏହିପରି ଅବସ୍ଥାରେ ଭକ୍ତ ସାଧକ ଉପରେ କାଳର କୌଣସି ପ୍ରଭାବ ରହେ ନାହିଁ ଯେଉଁ କାଳ ହେଉଛି ଦେବତାମାନଙ୍କର ପ୍ରଭୁ । ତେଣୁ ଜୀବଙ୍କ ପ୍ରଭୁ ଦେବତାମାନେ ତା'ଉପରେ ନିଜର ପ୍ରଭୁତ୍ୱ ବିସ୍ତାର କରିବାର ପ୍ରଶ୍ନ ଉଠୁଛି କେଉଁଠି ? ଏହି ତ୍ରିଗୁଣାତୀତ ଅବସ୍ଥାରେ ସତ୍ତ୍ୱ, ରଜ ଓ ତମ ଗୁଣ ନ ଥାଏ । କୌଣସି ବିକାର ନ ଥାଏ । ଅହଙ୍କାର, ମହତ୍ ତତ୍ତ୍ୱ ଏବଂ ପ୍ରକୃତି ମଧ୍ୟ ରହେ ନାହିଁ ॥୧୭॥ ବିଷ୍ଣୁଙ୍କର ସେଇ ପରମପଦକୁ ଧ୍ୟାନ କରୁଥିବା ଯୋଗୀ ତଦ୍‌ଭିନ୍ନ ଅନ୍ୟ ସମସ୍ତବସ୍ତୁକୁ ବେଦ ବଚନଅନୁସାରେ ନେତି ନେତି ବୋଲି କହି ପରିତ୍ୟାଗ କରିବାକୁ ଚାହାନ୍ତି ଏବଂ ଅନନ୍ୟ ସୌହାର୍ଦ୍ଦ୍ୟପୂର୍ବକ ଅହଙ୍କାର ଛାଡ଼ି ପଦେ ପଦେ ବିଷ୍ଣୁଙ୍କର ସେହି ଅର୍ଚ୍ଚନୀୟ ପଦର ଆଲିଙ୍ଗନ ସୁଖ ଅନୁଭବ କରନ୍ତି ॥୧୮॥ ଜ୍ଞାନଦୃଷ୍ଟିବଳରେ ସମସ୍ତ ବିଷୟବାସନାକୁ ଦଗ୍ଧକରି ବା ଏହିପରି ଭାବରେ ବ୍ୟବସ୍ଥିତ ହୋଇ ମୁନି ଶରୀର ତ୍ୟାଗ କରିବା ଉଚିତ । ପ୍ରଥମେ ବ୍ରହ୍ମାସନରେ ବସି ଗୋଇଠିରେ ନିଜର ମଳଦ୍ୱାରକୁ ଦବାଇ ଅକ୍ଳାନ୍ତ ଚିତ୍ତରେ ପ୍ରାଣବାୟୁକୁ ଷଡ଼ଚକ୍ରଭେଦକ୍ରମରେ ତଳୁ ଉପରକୁ ନେଇଯିବ ॥୧୯॥ ମନସ୍ୱୀ ଯୋଗୀ ନାଭିଦେଶସ୍ଥ ମଣିପୂର ଚକ୍ରରେ ସ୍ଥିତ ପ୍ରାଣବାୟୁକୁ ହୃଦୟସ୍ଥ ଅନାହତ ଚକ୍ରରେ ଆରୋପଣ କରି ଉଦାନବାୟୁଦ୍ୱାରା ଉରଃସ୍ଥଳରେ ଥିବା ବିଶୁଦ୍ଧଚକ୍ରକୁ ନେବ । ତହୁଁ ମୁନି ବୁଦ୍ଧିଦ୍ୱାରା ନିରୂପଣ କରି ଧୀରେ ଧୀରେ ତାହାକୁ ତାଳୁମୂଳପର୍ଯ୍ୟନ୍ତ ନେବ ॥୨୦॥ ଏହାପରେ ଦୁଇ ଚକ୍ଷୁ, ଦୁଇ କାନ, ଦୁଇ ନାକପୁଡ଼ା ଏବଂ ମୁହଁ--ଏହିପରି ଶ୍ୱାସର ସାତଟି ଛିଦ୍ରକୁ ରୁଦ୍ଧ କରି ବିଷୟମୁକ୍ତ ଯୋଗୀ ଦୁଇ ଭ୍ରୂଲତାର ମଝିରେ ଥିବା ଆଜ୍ଞାଚକ୍ରରେ ଅର୍ଦ୍ଧକ୍ଷଣମାତ୍ର ପ୍ରାଣବାୟୁକୁ ସ୍ଥିର ରଖିବ ଓ ତା'ପରେ ସହସ୍ରାରଚକ୍ରକୁ ନେବ ଏବଂ ବ୍ରହ୍ମରନ୍ଧ୍ର ଭେଦ କରି ଶରୀର ତ୍ୟାଗ କରିବ ॥୨୧॥

ହେ ରାଜା, ଯଦି ସେ ବ୍ରହ୍ମଲୋକକୁ ଯିବାପାଇଁ ଇଚ୍ଛା କରନ୍ତି, ଅଥବା ଅଷ୍ଟସିଦ୍ଧିପ୍ରାପ୍ତ ଗଗନଚାରୀ ସିଦ୍ଧମାନଙ୍କ ସହିତ ତ୍ରିଗୁଣମୟ ଏହି ବ୍ରହ୍ମାଣ୍ଡର ଯେ କୌଣସି ପ୍ରଦେଶରେ ବିଚରଣ କରିବାକୁ ଚାହାନ୍ତି, ତା'ହେଲେ ସେ ମନ ଓ ଇନ୍ଦ୍ରିୟକୁ ସାଙ୍ଗରେ ନେଇଯିବେ ॥୨୨॥ ଯୋଗସିଦ୍ଧ ବ୍ୟକ୍ତିମାନେ ବାୟୁପରି ସୂକ୍ଷ୍ମଶରୀର ଧାରଣ କରନ୍ତି । ସେମାନେ ତ୍ରିଲୋକ ଭିତରେ ଏବଂ ବାହାରେ ବିଚରଣ କରିପାରନ୍ତି । ବିଦ୍ୟା, ତପ, ଯୋଗ ଓ ସମାଧିଦ୍ୱାରା ସେମାନେ ଏହି ଅଧିକାର ଲାଭ କରିଥାନ୍ତି । ସକାମ କର୍ମଦ୍ୱାରା କେହି ସେହି ଗତି ଲାଭ କରନ୍ତି ନାହିଁ ॥୨୩॥ ହେ ରାଜା, ହୃଦୟରେ ଯେଉଁ ଜ୍ୟୋତିର୍ମୟ ସୁଷୁମ୍ନାନାଡ଼ୀ ଅଛି, ଯାହାକି ବ୍ରହ୍ମଲୋକକୁ ଯିବାର ରାସ୍ତା, ଯୋଗୀ ସେହି ବାଟରେ ଆକାଶମାର୍ଗ ଦେଇ ଅଗ୍ନିଲୋକରେ ପ୍ରବେଶ କରେ । ସେଠାରେ ତା'ର ପାପରୂପକ ମଳ ଯାହା କିଛି ବାକି ଥାଏ, ତାହା ଧ୍ୱଂସ ହୋଇଯାଏ । ଏହାପରେ ସେ ଶ୍ରୀହରିଙ୍କର ଶିଶୁମାର ଚକ୍ରରେ ପହଞ୍ଚିଯାଏ ॥୨୪॥ ଏହି ଶିଶୁମାର ଚକ୍ର ହେଉଛି ବିଷ୍ଣୁଙ୍କର ସ୍ଥାନ ଏବଂ ସମସ୍ତ ବିଶ୍ୱର ନାଭି । ଏହାକୁ ଯୋଗୀ ନିର୍ମଳ ସୂକ୍ଷ୍ମ ଲିଙ୍ଗଶରୀରରେ ଏକାକୀ ଅତିକ୍ରମ କରି ମହର୍ଲୋକରେ ପ୍ରବେଶ କରେ; ବ୍ରହ୍ମବେତ୍ତାମାନଙ୍କ ବନ୍ଦିତ ଯେଉଁ ଲୋକରେ କଳ୍ପାୟୁ ଦେବତାମାନେ ରମଣ କରନ୍ତି ॥୨୫॥ ତା'ପରେ ଭଗବାନ ଅନନ୍ତଙ୍କର ପ୍ରଳୟକାଳୀନ ମୁଖାନଳରେ ସମସ୍ତ ବିଶ୍ୱ ଦଗ୍ଧ ହେଉଥିବା ଦେଖି ସେଠାରୁ ସେ ବ୍ରହ୍ମଲୋକକୁ ଯାତ୍ରା କରେ, ଯାହା ସିଦ୍ଧେଶ୍ୱରମାନଙ୍କ ସେବିତ ସ୍ଥାନ, ଯେଉଁଠାର ଆୟୁ ଦୁଇ ପରାର୍ଦ୍ଧ, ଏବଂ ତାହା ହିଁ ବ୍ରହ୍ମାଙ୍କର ଆୟୁ ଅଟେ ॥୨୬॥ ଯେଉଁଠି କୌଣସିଆଡ଼ୁ ଶୋକ ନ ଥାଏ; ଜରା ଓ ମୃତ୍ୟୁ ନ ଥାଏ ଏବଂ କୌଣସି ଉଦ୍‌ବେଗ ବା ଭୟ ନ ଥାଏ । ଯଦି କିଛି ଦୁଃଖ ଥାଏ, ତାହା ହେଉଛି ଭଗବାନଙ୍କଠାରେ ଏପ୍ରକାର ଧ୍ୟାନ ଧାରଣା ଜାଣି ନ ଥିବା ପ୍ରାଣୀମାନଙ୍କର ଅନ୍ତହୀନ ଦୁଃଖରୂପକ ସଂସାରକୁ ଦେଖି ଦେଖି ସେମାନଙ୍କର କୃପାବିଷ୍ଟ ମନରେ ଯେଉଁ ଦୁଃଖ ଜାତ ହୁଏ, ସେତିକିମାତ୍ର ॥୨୭॥ ଏଠାରୁ ଯୋଗୀ ନିର୍ଭୟ ହୋଇ ଅର୍ଥାତ୍ କିପରି ଯିବ ବୋଲି ଶଙ୍କାଶୂନ୍ୟ ହୋଇ ଜ୍ୟୋତିସ୍ୱରୂପ ଲିଙ୍ଗଦେହ ବହନ କରି କ୍ଷିତି, ଅପ, ତେଜ ଓ ମରୁତ ରୂପକୁ କ୍ରମାନ୍ୱୟରେ ଗ୍ରହଣ କରି ବିପୁଳ ଆତ୍ମଲିଙ୍ଗ ଆକାଶ ଦେହରେ ମିଶିଯାଏ ॥୨୮॥ ଏହିପରି ପଞ୍ଚମହାଭୂତରୂପ ସ୍ଥୁଳ ଆବରଣମାନଙ୍କ ମଧ୍ୟରେ ଗତି କଲାବେଳେ ସେମାନଙ୍କ ସୂକ୍ଷ୍ମ ଆବରଣମାନଙ୍କୁ ମଧ୍ୟ ଅତିକ୍ରମ କରେ; ଯଥା ଘ୍ରାଣଦ୍ୱାରା ଗନ୍ଧକୁ, ରସନାଦ୍ୱାରା ରସକୁ, ଦର୍ଶନଦ୍ୱାରା ରୂପକୁ, ଚର୍ମଦ୍ୱାରା ସ୍ପର୍ଶକୁ, ଶ୍ରବଣଦ୍ୱାରା ଶବ୍ଦକୁ ଏବଂ ପ୍ରାଣ (କର୍ମେନ୍ଦ୍ରିୟ)ଦ୍ୱାରା କର୍ମେନ୍ଦ୍ରିୟଙ୍କ କ୍ରିୟାକୁ ॥୨୯॥ ଏହିପରି ଯୋଗବଳରେ ପଞ୍ଚଭୂତଙ୍କର ସ୍ଥୁଳ ଓ ସୂକ୍ଷ୍ମ ଆବରଣ ଭେଦ କରି ଯୋଗୀ ଅହଙ୍କାରରେ ପ୍ରବେଶ କରେ । ଏହା ହେଉଛି ଇନ୍ଦ୍ରିୟମାନଙ୍କ ଅହଙ୍କାର, ଯାହାକି ରଜୋଗୁଣର ଏବଂ ମନୋମୟ ଅହଙ୍କାର ଯାହାକି ସତ୍ତ୍ୱଗୁଣର । ଇନ୍ଦ୍ରିୟମାନଙ୍କ ଅଧିଷ୍ଠାତା ଦେବତାମାନଙ୍କୁ ଘେନି ଦେବମୟ ଅହଂକାର ହେଉଛି ସତ୍ତ୍ୱଗୁଣର ଅହଙ୍କାର । ଏହିସବୁ ଅହଙ୍କାର ସହିତ ଯୋଗୀ ବିଜ୍ଞାନତତ୍ତ୍ୱ ବା ମହତ୍‌ତତ୍ତ୍ୱରେ ମିଳିତ ହୁଏ ଏବଂ ତା'ପରେ ଗୁଣମାନଙ୍କ ଲୟସ୍ଥାନ ପ୍ରକୃତିରେ ଯାଇ ମିଳିତ ହୁଏ ॥୩୦॥ ହେ ପରିକ୍ଷିତ, ଏହିପରି ସମସ୍ତ ଉପାଧିରୁ ମୁକ୍ତ ହୋଇ ନିରାବରଣ ରୂପରେ ସେହି ଆନନ୍ଦମୟ ଯୋଗୀ ଶାନ୍ତ ପରମାତ୍ମାଙ୍କୁ ଲାଭ କରେ । ଏହି ଭଗବତ୍‌ଗତି ପ୍ରାପ୍ତ ହେବାପରେ କେହି ସଂସାରକୁ ଆଉ ଫେରେ ନାହିଁ ॥୩୧॥ ହେ ରାଜା, ତୁମେ ଯାହା ପଚାରିଥିଲ, ତା'ର ଉତ୍ତରରେ ଦୁଇଟି ବେଦୋକ୍ତ ସନାତନ ପନ୍ଥା--ସଦ୍ୟମୁକ୍ତି ଏବଂ କ୍ରମମୁକ୍ତି କଥା ମୁଁ ତୁମକୁ ବୁଝାଇ କହିଲି । ପୂର୍ବେ ଭଗବାନ ବାସୁଦେବଙ୍କୁ ପୂଜା କରି ବ୍ରହ୍ମା ତାଙ୍କୁ ଏହି ପ୍ରଶ୍ନ ପଚାରିଥିଲେ ଏବଂ ସେ ତାଙ୍କୁ ଏହି ଦୁଇଟି ଉତ୍ତର ଦେଇଥିଲେ ; ଯଦ୍ୱାରା ଭଗବାନ ବାସୁଦେବଙ୍କଠାରେ ଏକାନ୍ତ ଭକ୍ତି ଜାତ ହୁଏ, ତାହାଛଡ଼ା ସଂସାରୀ ଜୀବପକ୍ଷରେ ଅନ୍ୟ କୌଣସି ମଙ୍ଗଳମୟ ପନ୍ଥା ନାହିଁ ॥୩୨-୩୩॥ ବ୍ରହ୍ମା ଏକାଗ୍ର ଚିତ୍ତରେ ସମସ୍ତ ବେଦକୁ ତ୍ରିବାର ଅନୁଶୀଳନ କରି ବିଚାରବୁଦ୍ଧିଦ୍ୱାରା ସେହି ସିଦ୍ଧାନ୍ତରେ ଉପନୀତ ହୋଇଛନ୍ତି, ଯାହାଦ୍ୱାରା ଗୋବିନ୍ଦଙ୍କଠାରେ ପ୍ରୀତି ଜାତ ହୁଏ ॥୩୪॥ ଭଗବାନ ସମସ୍ତ ଜୀବଙ୍କ ମଧ୍ୟରେ ଅନ୍ତର୍ଯାମୀରୂପେ ଅଛନ୍ତି । ବିଭିନ୍ନ ଅନୁମାନଦ୍ୱାରା, ଲକ୍ଷଣଦ୍ୱାରା ଏବଂ ବୁଦ୍ଧ୍ୟାଦ୍ୱାରା ଶ୍ରୀହରି ନିଜେ ଦ୍ରଷ୍ଟା ରୂପେ ରହିଛନ୍ତି ବୋଲି ସିଦ୍ଧ ହୋଇଛି ॥୩୫॥ ସେଥିପାଇଁ ହେ ରାଜା, ଭଗବାନ

ଶ୍ରୀହରି ସର୍ବାତ୍ମଭାବରେ ମନୁଷ୍ୟମାନଙ୍କର ସର୍ବଦା ସର୍ବତ୍ର ଶ୍ରବଣୀୟ, କୀର୍ତ୍ତନୀୟ ଏବଂ ସ୍ମରଣୀୟ ॥୩୬॥ ଯେଉଁମାନେ ଭକ୍ତମାନଙ୍କର ଆତ୍ମସ୍ୱରୂପ ଶ୍ରୀ ଭଗବାନଙ୍କର କଥାମୃତକୁ ନିଜର କର୍ଣ୍ଣପୁଟରେ ପାନ କରନ୍ତି, ସେମାନଙ୍କର ବିଷୟଦୂଷିତ ଅନ୍ତଃକରଣ ଶୁଦ୍ଧ ହୁଏ ଏବଂ ସେମାନେ ଭଗବାନଙ୍କ ପଦାରବିନ୍ଦ ନିକଟରେ ସ୍ଥାନ ଲାଭ କରନ୍ତି ॥୩୭॥

## ତୃତୀୟ ଅଧ୍ୟାୟ

# ସକାମ ଉପାସନା ଓ ନିଷ୍କାମ ଭକ୍ତି

ଶ୍ରୀ ଶୁକଦେବ କହିଲେ, ରାଜା, ମନୁଷ୍ୟମାନଙ୍କ ମଧ୍ୟରେ ମନୀଷୀ ବା ବୁଦ୍ଧିମାନ୍ ବ୍ୟକ୍ତିମାନେ ମୃତ୍ୟୁ ସମୟରେ କ'ଣ କରିବା ଉଚିତ ବୋଲି ତୁମେ ମୋତେ ଯେଉଁ ପ୍ରଶ୍ନ କରିଥିଲ ମୁଁ ତା'ର ଏହିପରି ଉତ୍ତର ଦେଇଦେଲି ॥୧॥ ଯେ ବ୍ରହ୍ମତେଜ ଇଚ୍ଛା କରିବ, ସେ ବେଦପତି ବ୍ରହ୍ମାଙ୍କର ଆରାଧନା କରିବା ଉଚିତ । ଯେ ଇନ୍ଦ୍ରିୟଶକ୍ତି କାମନା କରିବ, ସେ ଇନ୍ଦ୍ରଙ୍କୁ ଏବଂ ଯେ ସନ୍ତାନ କାମନା କରିବ ସେ ଦକ୍ଷାଦି ପ୍ରଜାପତିମାନଙ୍କୁ ଆରାଧନା କରିବ ॥୨॥ ଯେ ଶ୍ରୀବୃଦ୍ଧି କାମନା କରିବ, ସେ ଦେବୀ ଦୁର୍ଗାଙ୍କୁ ଓ ତେଜ କାମନା କରୁଥିବା ବ୍ୟକ୍ତି ଅଗ୍ନିଙ୍କୁ, ରତ୍ନାଦି ଧନଲାଭପାଇଁ ବସୁମାନଙ୍କୁ ଏବଂ ବୀର୍ଯ୍ୟପାଇଁ ରୁଦ୍ରମାନଙ୍କୁ ଆରାଧନା କରିବ ॥୩॥ ଭକ୍ଷ୍ୟ ଓ ଭୋଜ୍ୟପାଇଁ ଅଦିତିଙ୍କୁ, ସ୍ୱର୍ଗସୁଖପାଇଁ ଆଦିତ୍ୟଗଣଙ୍କୁ, ରାଜ୍ୟକାମୀ ବିଶ୍ୱେଦେବାମାନଙ୍କୁ ଏବଂ ପ୍ରଜାଙ୍କ ବଶ୍ୟତାପାଇଁ ସାଧ୍ୟଗଣଙ୍କୁ ଆରାଧନା କରିବ ॥୪॥ ଆୟୁଷଲାଭପାଇଁ ଅଶ୍ୱିନୀକୁମାରଦ୍ୱୟଙ୍କୁ, ଶରୀରର ପୁଷ୍ଟିପାଇଁ ଇଳାଙ୍କୁ ଓ ପ୍ରତିଷ୍ଠା ଲାଭପାଇଁ ଲୋକମାତା ଦ୍ୟାବାପୃଥିବୀଙ୍କୁ ପୂଜା କରିବ ॥୫॥ ସୁନ୍ଦରରୂପପାଇଁ ଗନ୍ଧର୍ବମାନଙ୍କୁ, ଉତ୍ତମ ସ୍ତ୍ରୀ ପାଇଁ ଉର୍ବଶୀ ଅପ୍‌ସରାଙ୍କୁ ଏବଂ ସମସ୍ତଙ୍କ ଉପରେ ଆଧିପତ୍ୟଲାଭ ପାଇଁ ପରମେଷ୍ଠୀ ବ୍ରହ୍ମାଙ୍କୁ ଆରାଧନା କରିବ ॥୬॥ ଯଶପାଇଁ ଯଜ୍ଞୋପାଧି ବିଷ୍ଣୁଙ୍କୁ, ଧନଭଣ୍ଡାର ବଢ଼ାଇବାକୁ ହେଲେ ବରୁଣଙ୍କୁ, ବିଦ୍ୟାଲାଭ ପାଇଁ ଶିବଙ୍କୁ ଏବଂ ସୁଖମୟ ଦାମ୍ପତ୍ୟପାଇଁ ଦେବୀ ପାର୍ବତୀଙ୍କୁ ଉପାସନା କରିବ ॥୭॥ ଧର୍ମ ଉପାର୍ଜନପାଇଁ ଉତ୍ତମଶ୍ଲୋକ ବିଷ୍ଣୁଙ୍କୁ, ସନ୍ତାନବୃଦ୍ଧିପାଇଁ ପିତୃଗଣଙ୍କୁ, ସମସ୍ତ ବାଧାରୁ ରକ୍ଷା ପାଇବାପାଇଁ ଯକ୍ଷମାନଙ୍କୁ ଓ ବଳବାନ୍ ହେବାପାଇଁ ମରୁତ୍‌ଗଣଙ୍କୁ ଅର୍ଚ୍ଚନା କରିବ ॥୮॥ ରାଜତ୍ୱକାମନା କଲେ ମନ୍ୱନ୍ତରାଧିପତି ଦେବମାନଙ୍କୁ, ଶତ୍ରୁମାରଣପାଇଁ ନିର୍ଋତି ରାକ୍ଷସଙ୍କୁ, ଭୋଗକାମନାରେ ଚନ୍ଦ୍ରଙ୍କୁ ଓ ନିଷ୍କାମ ହେବାପାଇଁ ପରମ ପୁରୁଷଙ୍କୁ ଭଜନ କରିବ ॥୯॥ ନିଷ୍କାମ, ସର୍ବକାମନାଯୁକ୍ତ କିମ୍ବା ମୋକ୍ଷକାମୀ ଉଦାରବୁଦ୍ଧି ବ୍ୟକ୍ତି ତୀବ୍ର ଭକ୍ତିଯୋଗଦ୍ୱାରା ପରମାତ୍ମାଙ୍କୁ ଆରାଧନା କରିବ ॥୧୦॥ ବିଭିନ୍ନ ଦେବତାଙ୍କ ଉପାସନାରତ ବ୍ୟକ୍ତିମାନେ ଭଗବତ୍ ଭକ୍ତଙ୍କର ସଂଯୋଗରୁ ଭଗବାନଙ୍କଠାରେ ଯେଉଁ ଅଚଳା ଭକ୍ତି ରଖନ୍ତି, ସେତିକିମାତ୍ର ସେମାନଙ୍କର ପରମ ପୁରୁଷାର୍ଥ ॥୧୧॥ଯେଉଁ କଥାମାନଙ୍କରେ ରାଗଦ୍ୱେଷାଦି ଗୁଣସମୂହକୁ ନିବୃତ୍ତ କରୁଥିବା ଜ୍ଞାନ ଥାଏ, ଯେଉଁ ଜ୍ଞାନରୁ ଆତ୍ମାକୁ (ମନକୁ) ଆନନ୍ଦ ମିଳେ ଏବଂ ବିଷୟ ପ୍ରତି ବୈରାଗ୍ୟ ହୁଏ, ପୁନଶ୍ଚ ଯେଉଁ କଥାମାନଙ୍କରେ କୈବଲ୍ୟ ମୋକ୍ଷର ସର୍ବସମ୍ମତ ପନ୍ଥା ଭକ୍ତିଯୋଗ ଥାଏ, କଥାଶ୍ରବଣରେ ସୁଖୀ କେଉଁ ବ୍ୟକ୍ତି ସେଇ ହରିକଥା ରସରେ ଆସକ୍ତ ନ ହେବ ! ॥୧୨॥

ଶୌନକ କହିଲେ, ସୂତ, ଭରତବଂଶର ଶ୍ରେଷ୍ଠ ରାଜା ପରିକ୍ଷିତ ବ୍ୟାସପୁତ୍ର ବ୍ରହ୍ମଜ୍ଞାନୀ ଶୁକଦେବଙ୍କ ଠାରୁ ଏହିପରି କଥା ଶୁଣିସାରି ଆଉ କ'ଣ ପଚାରିଲେ ? ॥୧୩॥ ହେ ବିଦ୍ୱାନ୍ ସୂତ, ସନ୍ଥମାନଙ୍କ ସଭାରେ ଯେଉଁ କଥାମାନ ହୁଏ, ତାହା ନିଶ୍ଚିତ ରୂପେ ହରିକଥାରେ ପରିଣତ ହୁଏ । ଆମର ଏହା ଶୁଣିବାକୁ ଇଚ୍ଛା ଅଛି । ଆପଣ ଆମକୁ କହିବା ହୁଅନ୍ତୁ ॥୧୪॥ ପାଣ୍ଡବମାନଙ୍କ ନାତି ମହାବୀର ରାଜା ପରିକ୍ଷିତ ଭଗବାନଙ୍କର ପରମ ଭକ୍ତ । ଏପରିକି ବାଲ୍ୟାବସ୍ଥାରେ ସେ ପିଲାଙ୍କ କଣ୍ଢେଇମାନଙ୍କ

ସାହାଯ୍ୟରେ ଖେଳୁଥିବାବେଳେ କୃଷ୍ଣଲୀଳାକୁ ଅଭିନୟ କରୁଥିଲେ ॥୧୫॥ ବ୍ୟାସପୁତ୍ର ତେଜସ୍ୱୀ ଶୁକଦେବ ମଧ୍ୟ କୃଷ୍ଣପରାୟଣ । ସନ୍ଥମାନଙ୍କ ସମାଗମରେ ଭଗବାନଙ୍କ ମଙ୍ଗଳମୟ କଥାବଳୀର ନିଶ୍ଚୟ ଚର୍ଚ୍ଚା ହୋଇଥିବ ॥୧୬॥ ସୂର୍ଯ୍ୟ ଉଦୟ ଏବଂ ଅସ୍ତ ହୋଇ ଲୋକମାନଙ୍କର ଆୟୁ ହରଣ କରି ନିଅନ୍ତି, ଉତ୍ତମଶ୍ଳୋକ ଭଗବାନଙ୍କ କଥାରେ ଯେଉଁ କ୍ଷଣକ ସମୟ କଟିଯାଏ, ତାହା ହିଁ ବ୍ୟର୍ଥ ହୁଏ ନାହିଁ ॥୧୭॥ ବୃକ୍ଷମାନେ ବଞ୍ଚୁ ନାହାନ୍ତି ନା କୁମ୍ଭାରର ଭାତି ନିଃଶ୍ୱାସ ନେଉ ନାହିଁ ? ଗ୍ରାମ୍ୟ ପଶୁମାନେ କଣ ଆହାର ଓ ମୈଥୁନ କରୁ ନାହାନ୍ତି ? ॥୧୮॥ ଯେଉଁ ବ୍ୟକ୍ତିର କର୍ଣ୍ଣପଥରେ କୃଷ୍ଣ କେବେହେଲେ ପ୍ରବେଶ କରି ନାହାନ୍ତି, ସେ କୁକୁର, ଘୁଷୁରି, ଓଟ ଓ ଗଧଙ୍କ ସହିତ ସମାନ ନରାକାର ପଶୁ ଅଟେ ॥୧୯॥ ହେ ସୂତ, ଭଗବାନ ଉରୁକ୍ରମଙ୍କର ପରାକ୍ରମମାନଙ୍କୁ, ଯାହାର କର୍ଣ୍ଣପୁଟଦ୍ୱୟ ଶ୍ରବଣ କରି ନାହିଁ, ତାହାର ସେହି କର୍ଣ୍ଣପୁଟ ଦୁଇଟି ଦୁଇଟି ଗର୍ତ୍ତ ସହିତ ସମାନ । ଯେଉଁ ଜିହ୍ୱା ଭଗବାନଙ୍କ ଗାଥାମାନ ଗାନ କରି ନାହିଁ, ତାହା ଭେକର ଜିହ୍ୱା ସଙ୍ଗେ ସମାନ ॥୨୦॥ ମୁକୁନ୍ଦଙ୍କ ପାଖରେ ଯେଉଁ ମୁଣ୍ଡ ନଇଁ ନାହିଁ, ପାଟଲୁଗାର ପଗଡ଼ି ଓ ମୁକୁଟ ପିନ୍ଧିଥିଲେ ମଧ୍ୟ ସେହି ମୁଣ୍ଡ କେବଳ ଭାରମାତ୍ର । ଯେଉଁ ହାତଦୁଇଟି ଶ୍ରୀହରିଙ୍କ ପୂଜା କରି ନାହିଁ, ଝକ୍‌ମକ୍ କରୁଥିବା ସୁନାର କଙ୍କଣ ପିନ୍ଧିଥିଲେ ମଧ୍ୟ ସେ ଦୁଇଟି ଶବର ହାତ ସହିତ ସମାନ ॥୨୧॥ ଯେଉଁ ଆଖି ଦୁଇଟି ଭଗବାନଙ୍କର ମୂର୍ତ୍ତିମାନଙ୍କୁ ଦେଖି ନାହିଁ, ସେ ଦୁଇଟି ମୟୂରପଙ୍ଖାରେ ଥିବା ଚିତ୍ର-ଆଖି ସଙ୍ଗେ ସମାନ ଏବଂ ଯେଉଁ ପାଦଦ୍ୱୟ ଶ୍ରୀହରିଙ୍କ ବିଭିନ୍ନ ଲୀଳାଯୁକ୍ତ ତୀର୍ଥକ୍ଷେତ୍ରମାନ ଭ୍ରମଣ କରି ନାହିଁ, ତାହା ପାଦ ନ କହି ପାଦନ କହିଲେ ଠିକ୍ ହେବ ॥୨୨॥ ଯେଉଁ ମରଣଶୀଳ ବ୍ୟକ୍ତି ଭଗବତ୍ ଭକ୍ତଙ୍କର ପାଦଧୂଳି ମୁଣ୍ଡରେ ନେଇ ନାହିଁ, ସେ ବଞ୍ଚିଥିଲେ ମଧ୍ୟ ମୁର୍ଦାର ସହିତ ତୁଳନୀୟ । ଶ୍ରୀବିଷ୍ଣୁଙ୍କ ପାଦରେ ଲାଗିଥିବା ତୁଳସୀର ଗନ୍ଧକୁ ଯେ ଆଘ୍ରାଣଦ୍ୱାରା ଅଭିନନ୍ଦନ କରି ନାହିଁ, ସେ ଶ୍ୱାସପ୍ରଶ୍ୱାସ ନେଉଥିଲେ ମଧ୍ୟ ଶବ ସାଙ୍ଗରେ ସମାନ ॥୨୩॥ ହରିନାମ ଗ୍ରହଣ କରୁଥିଲେ ମଧ୍ୟ ଯାହା ହୃଦୟରେ ବିକାର ହୁଏ ନାହିଁ ଏବଂ ବିକାର ହେଲେ ମଧ୍ୟ ଯାହାର ରୋମୋଦ୍‌ଗମ ହୁଏ ନାହିଁ କି ଚକ୍ଷୁରେ ଅଶ୍ରୁଜଳ ଭରେ ନାହିଁ, ସେପରି ବ୍ୟକ୍ତିର ହୃଦୟ ପାଷାଣ ଭଳି କଠିନ ॥୨୪॥ ହେ ସୂତ, ତୁମେ ଆମର ମନ ଅନୁକୂଳ କଥା ସବୁ କହୁଚ । ଏଣୁ ଭଗବାନଙ୍କର ପ୍ରଧାନଭକ୍ତ ଆତ୍ମବିଦ୍ୟାବିଶାରଦ ବ୍ୟାସପୁତ୍ର ଶୁକଦେବ ସମସ୍ତ ପ୍ରଶ୍ନର ଉତ୍ତର ଦେଇ ରାଜା ପରିକ୍ଷିତଙ୍କୁ ଯାହା କହିଥିଲେ ତାହା ଆମକୁ ଶୁଣାଇବା ହୁଅନ୍ତୁ ॥୨୫॥

## ଚତୁର୍ଥ ଅଧ୍ୟାୟ

# ଭଗବାନଙ୍କ ଗୁଣବର୍ଣ୍ଣନ

ଉତ୍ତରାଙ୍କ ପୁତ୍ର ପରିକ୍ଷିତ ବ୍ୟାସପୁତ୍ର ଶୁକଦେବଙ୍କର ଆତ୍ମତତ୍ତ୍ୱନିର୍ଣ୍ଣାୟକ କଥା ସବୁ ଶୁଣି କୃଷ୍ଣଙ୍କ ଠାରେ ନିଜର ଚିତ୍ତ ଦୃଢ଼ କଲେ ॥୧॥ ମହାମନା ରାଜା ଦେହ, ସ୍ତ୍ରୀ, ପୁତ୍ର, ଘରଦ୍ୱାର, ଅଶ୍ୱଗଜାଦି ପଶୁ, ଧନରତ୍ନ, ବନ୍ଧୁବାନ୍ଧବ ଏବଂ ଅଖଣ୍ଡ ରାଜ୍ୟ ପ୍ରତି ନିଜର ଯେଉଁ ସୁଦୃଢ଼ ମମତା ରହିଥିଲା, ତାକୁ ତ୍ୟାଗ କଲେ । ସେ କୃଷ୍ଣଙ୍କ ପ୍ରଭାବ ଶୁଣିବାପାଇଁ ଶ୍ରଦ୍ଧା କରି ଏଇ ବିଷୟକ ପ୍ରଶ୍ନ ହିଁ କରିଥିଲେ ଯାହାକୁ ହେ ଋଷିମାନେ, ଆପଣମାନେ ମୋତେ ପଚାରୁଛନ୍ତି ॥୨-୩॥ ମୃତ୍ୟୁ ଆସନ୍ନ ଜାଣି ଏବଂ ଧର୍ମ ଅର୍ଥ ଓ କାମ ବିଷୟକ ସମସ୍ତ କର୍ମ ଛାଡ଼ି ଭଗବାନ ବାସୁଦେବଙ୍କଠାରେ ଦୃଢ଼ଭାବେ ସମର୍ପିତାତ୍ମା ରାଜା ଶୁକଦେବଙ୍କୁ ପଚାରିଲେ - ହେ ବ୍ରହ୍ମନ୍, ହେ ନିଷ୍ପାପ, ଆପଣ ସର୍ବଜ୍ଞ । ଆପଣ ଯାହା କହିଲେ ତାହା ସମୀଚୀନ । ଆପଣ ହରିଙ୍କର କଥା କହୁ କହୁ ମୋର ଅଜ୍ଞତା କ୍ଷୀଣ ହୋଇ ହୋଇ ଯାଉଛି ॥୪-୫॥ ଭଗବାନ ଆତ୍ମମାୟାରେ ଯେପରି ଏହି

ବିଶ୍ୱକୁ ସୃଷ୍ଟି କଲେ, ଯାହା ବ୍ରହ୍ମାଦି ଦେବତାମାନଙ୍କ ପକ୍ଷେ ଅବର୍ଣ୍ଣନୀୟ, ସେହି ବିଷୟ ମୁଁ ପୁଣି ଜାଣିବାକୁ ଇଚ୍ଛା କରୁଛି ।।୬।। ସର୍ବଶକ୍ତିମାନ୍ ପରମେଶ୍ୱର ଯେଉଁ ଯେଉଁ ଶକ୍ତିକୁ ଆଶ୍ରୟ କରି ଯେପରି ଏହାକୁ ପାଳନ ଓ ସଂହାର କରନ୍ତି, ନିଜକୁ ଏକ ଖେଳନା ଭଳି କରି ଏହିପରି ଖେଳନ୍ତି ।।୭।। ହେ ବ୍ରହ୍ମନ୍, ମୋତେ ଲାଗୁଛି ସତେ ଯେପରି ଅଦ୍ଭୁତକର୍ମା ଭଗବାନ ଶ୍ରୀହରିଙ୍କର ଲୀଳାକୁ କ୍ରାନ୍ତଦର୍ଶୀ ପୁରୁଷମାନେ ମଧ୍ୟ ବୁଝିପାରନ୍ତି ନାହିଁ ।।୮।। ଈଶ୍ୱର ହେଉଛନ୍ତି ଏକ । ସେ ପୁରୁଷରୂପେ ପ୍ରକୃତିର ଗୁଣମାନଙ୍କୁ ଏକସଙ୍ଗେ ଧାରଣ କରନ୍ତି କିମ୍ବା ବିଭିନ୍ନ ଅବତାରଦ୍ୱାରା ବାରମ୍ବାର କର୍ମମାନ କଲାବେଳେ କ୍ରମଶଃ ଧାରଣ କରନ୍ତି ? ।।୯।। ସେ ସମ୍ପର୍କରେ ମୋର ସନ୍ଦେହ ହେଉଛି । ଆପଣ ଶବ୍ଦବ୍ରହ୍ମ ବେଦକୁ ବିଚାରଦ୍ୱାରା ପାର କରିଛନ୍ତି । ପରବ୍ରହ୍ମଙ୍କୁ ମଧ୍ୟ ଅନୁଭବଦ୍ୱାରା ପାର କରିଛନ୍ତି । ତେଣୁ ଏହାକୁ ଆପଣ ମୋତେ ବୁଝାଇ କହନ୍ତୁ ।।୧୦।।

ସୂତ କହିଲେ - ଏହିପରି ଶ୍ରୀହରିଙ୍କର ଗୁଣବର୍ଣ୍ଣନା କରିବାପାଇଁ ରାଜାଙ୍କଦ୍ୱାରା ପ୍ରାର୍ଥିତ ହୋଇ ଶ୍ରୀ ଶୁକଦେବ ହୃଷୀକେଶ ଭଗବାନଙ୍କୁ ସ୍ମରଣ କରି ଉତ୍ତର ଦେବାକୁ ଆରମ୍ଭ କଲେ ।।୧୧।। ଶୁକଦେବ କହିଲେ, ସେହି ଅପରିମିତ ମହିମାର ଅଧିକାରୀ ସର୍ବଶ୍ରେଷ୍ଠ ପୁରୁଷଙ୍କୁ ମୁଁ ନମସ୍କାର କରୁଛି । ଯେ ସୃଷ୍ଟି, ସ୍ଥିତି ଓ ଲୟ ରୂପକ ଲୀଳା ରଚନା କରିବାପାଇଁ ସତ୍ତ୍ୱ, ରଜ ଓ ତମ -ଏହି ତିନି ଗୁଣର ଶକ୍ତି ଗ୍ରହଣ କରନ୍ତି, ଅର୍ଥାତ୍ ବ୍ରହ୍ମା, ବିଷ୍ଣୁ ଓ ଶିବ ରୂପରେ ବିରାଜମାନ ହୁଅନ୍ତି, ଯେ ସମସ୍ତ ଚରାଚର ପ୍ରାଣୀମାନଙ୍କର ଅନ୍ତରରେ ପୁରୁଷରୂପେ ବିଦ୍ୟମାନ, ଯାହାଙ୍କ ମାର୍ଗ ଲକ୍ଷ୍ୟ କରିବା ସମ୍ଭବ ନୁହେଁ, ଯେ ସାଧୁଲୋକମାନଙ୍କ କ୍ଳେଶ ହରଣ କରନ୍ତି, ଅସାଧୁମାନଙ୍କର ବିନାଶପାଇଁ ଅବତାରମାନ ଗ୍ରହଣ କରନ୍ତି, ପରମହଂସ ଆଶ୍ରମରେ ସାଧନାରତ ଭକ୍ତମାନଙ୍କୁ ଯେ ସେମାନଙ୍କ ଅନୁସନ୍ଧେୟ ଆତ୍ମତତ୍ତ୍ୱ ପ୍ରଦାନ କରନ୍ତି, ସେହି ପରମେଶ୍ୱରଙ୍କୁ ମୁଁ ବାରମ୍ବାର ପ୍ରଣାମ କରୁଛି ।।୧୨-୧୩।। ଯେ ରକ୍ଷକରୂପେ ଭକ୍ତମାନଙ୍କର ନିକଟରେ ଥାଆନ୍ତି ଓ ଭକ୍ତିହୀନମାନଙ୍କଠାରୁ ବହୁ ଦୂରରେ ରହନ୍ତି ଏବଂ ଅତୁଳନୀୟ ଐଶ୍ୱର୍ଯ୍ୟର ଅଧିକାରୀ ହୋଇ ବ୍ରହ୍ମସ୍ୱରୂପ ସ୍ୱଧାମରେ ରମଣ କରନ୍ତି, ମୁଁ ତାଙ୍କୁ ବାରମ୍ବାର ନମସ୍କାର କରୁଛି ।।୧୪।। ଯାହାଙ୍କର କୀର୍ତ୍ତନ, ସ୍ମରଣ, ଦର୍ଶନ, ବନ୍ଦନ, ଶ୍ରବଣ ଓ ପୂଜନ କଲେ ସଙ୍ଗେସଙ୍ଗେ ଲୋକମାନଙ୍କର ସମସ୍ତ କଲ୍ମଷ ଧୋଇ ହୋଇଯାଏ, ସେହି ମଙ୍ଗଳଯଶା ଶ୍ରୀହରିଙ୍କୁ ମୁଁ ବାରମ୍ବାର ନମସ୍କାର କରୁଛି ।।୧୫।। ବିବେକୀମାନେ ଯାହାଙ୍କର ଚରଣ ଭଜନପୂର୍ବକ ଇହଲୋକ ଓ ପରଲୋକରେ ମନର ଭୋଗବାସନା ଛାଡ଼ି ଅକ୍ଳେଶରେ ବ୍ରହ୍ମଗତି ଲାଭ କରନ୍ତି, ସେହି ମଙ୍ଗଳମୟଙ୍କୁ ମୁଁ ବାରମ୍ବାର ନମସ୍କାର କରୁଛି ।।୧୬।। ତପସ୍ୱୀମାନେ, ଦାନୀମାନେ, ଯଶସ୍ୱୀମାନେ, ମନସ୍ୱୀମାନେ ଏବଂ ମନ୍ତ୍ରଜ୍ଞ ଓ ସଦାଚାରୀମାନେ ଯାହାଙ୍କ ପାଖରେ ନିଜର ପୁଣ୍ୟକର୍ମକୁ ସମର୍ପଣ ନ କଲେ ନିଜର ମଙ୍ଗଳ ହୁଏ ନାହିଁ, ସେହି ମଙ୍ଗଳମୟଙ୍କୁ ମୁଁ ବାରମ୍ବାର ନମସ୍କାର କରୁଛି ।।୧୭।। କିରାତ, ହୂଣ, ଆନ୍ଧ୍ର, ପୁଳିନ୍ଦ, ପୁଲ୍‌କସ, ଆଭୀର, କଙ୍କ, ଯବନ, ଖସ ଆଦି ନୀଚ ଶ୍ରେଣୀର ଲୋକମାନେ ଓ ପାପାଚରଣ କରୁଥିବା ଅନ୍ୟ ବ୍ୟକ୍ତିମାନେ ଯାହାଙ୍କ ଭକ୍ତମାନଙ୍କର ଆଶ୍ରୟ ନେଲେ ଶୁଦ୍ଧ ହୋଇଯା'ନ୍ତି, ସେହି ପ୍ରଭୁତ୍ୱସମ୍ପନ୍ନ ବିଷ୍ଣୁଙ୍କୁ ମୋର ନମସ୍କାର ।।୧୮।। ଜ୍ଞାନୀଙ୍କର ଆତ୍ମା, ସମସ୍ତଙ୍କର ଈଶ୍ୱର, ଋକ୍‌ଯଜୁସାମରୂପୀ ବେଦର ସ୍ୱରୂପ, ଧର୍ମମୟ,ତପୋମୟ ଏବଂ ବ୍ରହ୍ମା,. ଶଙ୍କରାଦି ନିଷ୍କପଟ ଭକ୍ତମାନଙ୍କ ଧ୍ୟାନମୂର୍ତ୍ତି ସେହି ଭଗବାନ ମୋର ମଙ୍ଗଳ କରନ୍ତୁ ।।୧୯।। ଯେ ଶ୍ରୀପତି, ଯଜ୍ଞପତି, ପ୍ରଜାପତି, ଧୀପତି, ଲୋକପତି ଓ ପୃଥ୍ୱୀପତି ଏବଂ ଅନ୍ଧକ, ବୃଷ୍ଣି ଆଦି ଯାଦବମାନଙ୍କର ପତି ଓ ଗତି, ସନ୍ଥମାନଙ୍କର ରକ୍ଷକ ସେହି ଭଗବାନ୍ ଶ୍ରୀକୃଷ୍ଣ ମୋ ପ୍ରତି ପ୍ରସନ୍ନ ହୁଅନ୍ତୁ ।।୨୦।। ଜ୍ଞାନୀବ୍ୟକ୍ତିମାନେ ଯାହାଙ୍କ ପାଦପଦ୍ମର ଧ୍ୟାନପୂର୍ବକ ସମାଧିଦ୍ୱାରା ନିଜର ବୁଦ୍ଧିକୁ ଶୁଦ୍ଧ କରି ଆତ୍ମତତ୍ତ୍ୱ ଦର୍ଶନ କରନ୍ତି ଏବଂ ରୁଚି ଅନୁସାରେ ତାହା ବର୍ଣ୍ଣନା କରନ୍ତି, ସେହି ଭଗବାନ ମୁକୁନ୍ଦ ମୋ ପ୍ରତି ପ୍ରସନ୍ନ ହୁଅନ୍ତୁ ।।୨୧।। ସୃଷ୍ଟିର ଆରମ୍ଭରେ ବ୍ରହ୍ମାଙ୍କ ପୂର୍ବ କଳ୍ପର ସ୍ମୃତି ଜାଗରିତ କରିବାପାଇଁ ଯେ ସରସ୍ୱତୀଙ୍କୁ ନିୟୋଜିତ କରିଥିଲେ ଏବଂ ସରସ୍ୱତୀ ନିଜର ଅଙ୍ଗମାନଙ୍କ ସହିତ ବେଦରୂପରେ ବ୍ରହ୍ମାଙ୍କ ମୁଖରୁ ପ୍ରାଦୁର୍ଭୂତ ହେଲେ, ଋଷିମାନଙ୍କ ମଧ୍ୟରେ ଶ୍ରେଷ୍ଠ ସେହି ଭଗବାନ୍ ମୋ ପ୍ରତି ପ୍ରସନ୍ନ ହୁଅନ୍ତୁ ।।୨୨।। ପଞ୍ଚମହାଭୂତ ଦ୍ୱାରା ଏହି ଶରୀରକୁ ନିର୍ମାଣ କରି ଯେଉଁ ଭଗବାନ୍

ଅନ୍ତର୍ଯାମୀ ପୁରୁଷ ରୂପେ ତାହା ମଧ୍ୟରେ ଶୟନ କରିଛନ୍ତି ଏବଂ ପାଞ୍ଚ କର୍ମେନ୍ଦ୍ରିୟ, ପାଞ୍ଚ ଜ୍ଞାନେନ୍ଦ୍ରିୟ, ପାଞ୍ଚ ପ୍ରାଣ ଏବଂ ଏକମନ - ଏ ପ୍ରକାର ଷୋଳଗୁଣର ଅଧିକାରୀ ହୋଇ ଏହି ଗୁଣମାନଙ୍କଦ୍ୱାରା ଷୋ'ଳ ବିଷୟକୁ ଭୋଗ କରନ୍ତି, ସେହି ଭଗବାନ ମୋର ବାଣୀକୁ ଅଳଙ୍କୃତ କରନ୍ତୁ ॥୨୩॥ ଯାହାଙ୍କ ମୁଖପଦ୍ମରୁ ଝରୁଥିବା ଜ୍ଞାନମୟ ମକରନ୍ଦକୁ ଭକ୍ତମାନେ ପାନ କରନ୍ତି, ସେହି ବିଶାଳବୁଦ୍ଧି ବ୍ୟାସରୂପୀ ଭଗବାନ କୃଷ୍ଣଙ୍କୁ ମୁଁ ନମସ୍କାର କରୁଛି ॥୨୪॥ ହେ ରାଜା, ବେଦଗର୍ଭ ବ୍ରହ୍ମା ନିଜେ ସାକ୍ଷାତ୍ ଶ୍ରୀହରିଙ୍କଠାରୁ ଯାହା ଶୁଣିଥିଲେ, ନାରଦଙ୍କ ପ୍ରଶ୍ନର ଉତ୍ତରରେ ସେ ତାଙ୍କୁ ଏହା ହିଁ କହିଥିଲେ ॥୨୫॥

## ପଞ୍ଚମ ଅଧ୍ୟାୟ

# ସୃଷ୍ଟିବର୍ଣ୍ଣନ

ନାରଦ କହିଲେ, ହେ ଦେବଦେବ ! ହେ ସମସ୍ତଙ୍କର ଜନକ, ସମସ୍ତଙ୍କର ପୂର୍ବଜ ! ଯେଉଁ ଜ୍ଞାନଦ୍ୱାରା ଆତ୍ମତତ୍ତ୍ୱ ଭଲଭାବେ ଦୃଶ୍ୟ ହୁଏ, ଆପଣ ତାହା ମୋତେ ବୁଝାଇ କହନ୍ତୁ ॥୧॥ ଏହି ସଂସାରର ପ୍ରକାଶକ କିଏ, ଆଧାର କ'ଣ, କାହାଠାରୁ ଏହା ସୃଷ୍ଟ, କାହାଠାରେ ଏହା ଲୀନ ହୁଏ, କାହାର ଅଧୀନରେ ରହେ, ଏହାର ସ୍ୱରୂପ କଣ ଯଥାର୍ଥରେ ଏହି ତତ୍ତ୍ୱ ମୋତେ କହନ୍ତୁ ॥୨॥ ଆପଣ ଏ ସମସ୍ତ ବିଷୟ ଜାଣନ୍ତି; କାରଣ ଯାହାକିଛି ହୋଇଛି, ହେଉଛି ବା ହେବ, ଆପଣ ତା'ର ସ୍ୱାମୀ । ହାତମୁଠାରେ ଥିବା ଅଁଳା ଫଳ ପରି ଏହି ସମସ୍ତ ବିଶ୍ୱକୁ ବିଜ୍ଞାନଦ୍ୱାରା ଆପଣ ହିଁ ଜାଣନ୍ତି ॥୩॥ କେଉଁଠୁ ଆପଣ ଏହି ଜ୍ଞାନ ଲାଭ କଲେ, ଆପଣଙ୍କର ଆଶ୍ରୟ କିଏ, କାହାର ଆପଣ ଅଧୀନ, ଆପଣଙ୍କ ସ୍ୱରୂପ କଣ ? କିମ୍ବା ନିଜେ ଆପଣ ନିଜ ମାୟାଦ୍ୱାରା ଏକାକୀ ପଞ୍ଚଭୂତମାନଙ୍କ କର୍ତ୍ତୃକ ପ୍ରଣୀମାନଙ୍କୁ ସୃଷ୍ଟି କରିଛନ୍ତି ? ॥୪॥ ବୁଢ଼ିଆଣୀ ଯେପରି ନିଜ ଶକ୍ତିକୁ ଆଶ୍ରୟ କରି ଅକ୍ଳାନ୍ତ ଭାବରେ ଜାଲ ସୃଷ୍ଟି କରେ, ଆପଣ ସେହିପରି ନିଜ ଶକ୍ତିକୁ ଆଶ୍ରୟ କରି ପ୍ରାଣୀମାନଙ୍କୁ ରଚନା କରିଛନ୍ତି କି ? ॥୫॥ ହେ ଭଗବାନ୍, ଏ ବିଶ୍ୱରେ ନାମ, ରୂପ ଓ ଗୁଣଦ୍ୱାରା ସତ୍, ଅସତ୍, ଉତ୍ତମ, ମଧ୍ୟମ, ଅଧମ ଓ ସମରୂପେ ମୁଁ କୌଣସି ଛୋଟବଡ଼ ବସ୍ତୁ ଦେଖୁ ନାହିଁ, ଯାହାକି ଆପଣଙ୍କ ଛଡ଼ା ଅନ୍ୟ କେହି ସୃଷ୍ଟି କରିଛି ॥୬॥ ଏହାସତ୍ତ୍ୱେ ଆପଣ ଏକାଗ୍ରଚିତ୍ତ ହୋଇ ଯେଉଁ ଘୋର ତପସ୍ୟା କଲେ, ତଦ୍ୱାରା ଆପଣ ମୋତେ ମୋହିତ କରୁଛନ୍ତି ଏବଂ ମୋ ମନ ଭିତରେ ଆଶଙ୍କା ସୃଷ୍ଟି କରୁଛନ୍ତି ଯେ, ଆପଣଙ୍କ ଛଡ଼ା ଆଉ ଜଣେ ଈଶ୍ୱର ଅଛନ୍ତି ॥୭॥ ହେ ସର୍ବଜ୍ଞ, ହେ ସମସ୍ତଙ୍କ ପ୍ରଭୁ ! ତେଣୁ ମୁଁ ଯାହା ସବୁ ପଚାରିଲି, ଆପଣ ମୋତେ ବୁଝାଇ କହନ୍ତୁ, ଯେପରିକି ମୁଁ ଆପଣଙ୍କଦ୍ୱାରା ଅନୁଶାସିତ ହୋଇ ଏହା ବୁଝିପାରିବି ॥୮॥

ବ୍ରହ୍ମା କହିଲେ, ବତ୍ସ, ହେ ସୌମ୍ୟ ନାରଦ ! ତୁମର ଏଇ ସନ୍ଦେହପୂର୍ବକ ପ୍ରଶ୍ନଟି ଯଥାର୍ଥ । ଜୀବମାନଙ୍କ ଉପରେ କରୁଣା କରି ଏହା ପଚାରିଛ । କାରଣ ଏହାଦ୍ୱାରା ଭଗବାନଙ୍କର ଗୁଣଗାନ କରିବା ପାଇଁ ମୋତେ ପ୍ରେରଣା ମିଳିଗଲା ॥୯॥ ତୁମେ ମୋ ବିଷୟରେ ଯାହା କହିଲ, ତାହା ଅସତ୍ୟ ନୁହେଁ । କାରଣ ମୋ'ଠାରୁ ବଡ଼ ଯେଉଁ ଈଶ୍ୱର ଅଛନ୍ତି, ତାଙ୍କୁ ନ ଜାଣିଲେ ମୋ ବିଷୟରେ ଏପରି ଧାରଣା ହେବା ସ୍ୱାଭାବିକ ॥୧୦॥ ସୂର୍ଯ୍ୟ, ଚନ୍ଦ୍ର, ଅଗ୍ନି, ଗ୍ରହ, ନକ୍ଷତ୍ର ଓ ତାରାମାନେ ଯାହାଙ୍କର ତେଜରେ ତେଜୀୟାନ୍ ହୋଇ ଏହି ବିଶ୍ୱକୁ ଆଲୋକିତ କରନ୍ତି, ମୁଁ ମଧ୍ୟ ଯେଉଁ ସ୍ୱୟଂପ୍ରକାଶ ପରମ ଈଶ୍ୱରଙ୍କଦ୍ୱାରା ପ୍ରକାଶିତ ଏହି ବିଶ୍ୱକୁ ସର୍ଜନାକରି ପ୍ରକାଶିତ କରୁଛି ॥୧୧॥ ଯାହାଙ୍କର ଦୁର୍ଜୟମାୟା ଦ୍ୱାରା ମୋହିତ ହୋଇ ଲୋକେ ମୋତେ ଜଗଦ୍‌ଗୁରୁ ବୋଲି ଅଭିହିତ କରନ୍ତି, ସେହି ଭଗବାନ ବାସୁଦେବଙ୍କୁ ମୁଁ ଧ୍ୟାନ ଓ ନମସ୍କାର କରୁଛି ॥୧୨॥ ଯାହାଙ୍କ ଦୃଷ୍ଟିପଥରେ ରହିବାପାଇଁ ମାୟା ଲଜ୍ଜା କରେ, ସେହି ଦୁର୍ଜୟ ମାୟାଦ୍ୱାରା ମୋହିତ ହୋଇ ଦୁର୍ବୁଦ୍ଧି ଲୋକମାନେ 'ମୁଁ ସବୁ, ସବୁ ମୋର' ବୋଲି ନିଜର ବଡ଼ିମା କରନ୍ତି ॥୧୩॥ ହେ

ନାରଦ ! ତାତ୍ତ୍ୱିକ ଦୃଷ୍ଟିରୁ ବିଚାର କଲେ ଦ୍ରବ୍ୟ, କର୍ମ, କାଳ, ସ୍ୱଭାବ, ଜୀବ ଏବଂ ଅନ୍ୟ ଯେ କୌଣସି ପଦାର୍ଥ ମଧ୍ୟ ଭଗବାନ ବାସୁଦେବଙ୍କ ଠାରୁ ଭିନ୍ନ ନୁହନ୍ତି ॥୧୪॥ ନାରାୟଣ ହିଁ ବେଦମାନଙ୍କର କାରଣ; ଦେବତାମାନେ ତାଙ୍କ ଅଙ୍ଗରୁ ଜାତ । ନାରାୟଣ ହିଁ ସମସ୍ତ ଯଜ୍ଞର ଫଳଦାତା । ଭୂଲୋକ ଏବଂ ସ୍ୱର୍ଗଲୋକାଦି ସମସ୍ତ ଲୋକ ସେହି ନାରାୟଣଙ୍କଦ୍ୱାରା କଳ୍ପିତ ॥୧୫॥ ନାରାୟଣ ସମସ୍ତ ଯୋଗ, ତପ, ଜ୍ଞାନ ଓ ଗତିସ୍ୱରୂପ ॥୧୬॥ ସେ ସମସ୍ତଙ୍କର ଆତ୍ମା, ପ୍ରଭୁ, ଦ୍ରଷ୍ଟା ଓ ନିର୍ବିକାର । ମୋତେ ସେ ସୃଷ୍ଟି କରିଛନ୍ତି । ତାଙ୍କର ଇଙ୍ଗିତରେ ପ୍ରେରିତ ହୋଇ ମୁଁ ତାଙ୍କ ସୃଷ୍ଟିକୁ ରଚନା କରୁଛି ॥୧୭॥ ସେହି ପରମେଶ୍ୱର ନିଜେ ନିର୍ଗୁଣ ହେଲେ ମଧ୍ୟ ନିଜର ମାୟାଦ୍ୱାରା ସୃଷ୍ଟି, ସ୍ଥିତି ଓ ଲୟପାଇଁ ସତ୍ତ୍ୱ, ରଜ ଓ ତମ – ଏହି ତିନି ଗୁଣକୁ ଗ୍ରହଣ କରିଛନ୍ତି ॥୧୮॥ କାର୍ଯ୍ୟ, କାରଣ ଓ କର୍ତ୍ତୃତ୍ୱର ଯୋଗରେ ଦ୍ରବ୍ୟ, ଜ୍ଞାନ ଓ କ୍ରିୟାକୁ ଆଶ୍ରୟ କରିଥିବା ଏହି ତିନୋଟିଯାକ ଗୁଣ ବସ୍ତୁତଃ ନିତ୍ୟ ମୁକ୍ତ ମାୟାଜଡ଼ିତ ଜୀବକୁ ବାନ୍ଧି ଦିଅନ୍ତି ॥୧୯॥ ହେ ନାରଦ ! ଏଇ ତିନୋଟି ଜୀବୋପାଧି ଗୁଣଦ୍ୱାରା ସେହି ଭଗବାନ ଅଧକ୍ଷୋଜ ଅଲକ୍ଷିତ ତତ୍ତ୍ୱ ଭାବରେ ମୋ ସମେତ ସମସ୍ତଙ୍କୁ ନିୟନ୍ତ୍ରଣ କରନ୍ତି ॥୨୦॥ ମାୟାପତି ଭଗବାନ ନିଜ ମାୟାଦ୍ୱାରା ଏକରୁ ଅନେକ ହେବାପାଇଁ ଇଚ୍ଛା କରି ନିଜଠାରେ ଯଦୃଚ୍ଛାପ୍ରାପ୍ତ କାଳ, କର୍ମ ଓ ସ୍ୱଭାବକୁ ସୃଷ୍ଟି ପାଇଁ ଗ୍ରହଣ କଲେ ॥୨୧॥ ପୁରୁଷଙ୍କଦ୍ୱାରା ଅଧିଷ୍ଠିତ କାଳରୁ ସତ୍ତ୍ୱ, ରଜ ଓ ତମ-ଏହି ତିନି ଗୁଣ ମଧ୍ୟରେ କ୍ଷୋଭ ଜାତ ହେଲା, ସ୍ୱଭାବଯୋଗୁଁ ସେମାନଙ୍କର ରୂପାନ୍ତର ଘଟିଲା ଓ କର୍ମଯୋଗୁଁ ମହତ୍ତତ୍ତ୍ୱର ଜନ୍ମ ହେଲା ॥୨୨॥ ରଜୋଗୁଣ ଓ ସତ୍ତ୍ୱଗୁଣଦ୍ୱାରା ପ୍ରଧାନ ମହତ୍ତତ୍ତ୍ୱର ବିକାରରୁ ତମୋଗୁଣପ୍ରଧାନ ଜ୍ଞାନ, କ୍ରିୟା ଓ ଦ୍ରବ୍ୟମୂଳକ ବିକାର ଜନ୍ମିଲା । ଏହାକୁ ଅହଙ୍କାର କୁହାଗଲା । ଏହି ଅହଙ୍କାର ବିକୃତ ହେବାରୁ ସାତ୍ତ୍ୱିକ, ରାଜସିକ ଓ ତାମସିକ--ଏହି ତିନି ପ୍ରକାରେ ବିଭକ୍ତ ହୋଇ କ୍ରମଶଃ ଜ୍ଞାନଶକ୍ତି, କ୍ରିୟାଶକ୍ତି ଓ ଦ୍ରବ୍ୟଶକ୍ତିରେ ପରିଣତ ହେଲା ॥୨୩-୨୪॥

ପଞ୍ଚମହାଭୂତଙ୍କର କାରଣ ଏହି ତାମସ ଅହଙ୍କାରର ବିକାରରୁ ଆକାଶର ସୃଷ୍ଟି; ଏହି ଆକାଶର ସୂକ୍ଷ୍ମ ରୂପ ବା ଏହାର ଗୁଣ ହେଉଛି ଶବ୍ଦ ଯାହା ଦ୍ରଷ୍ଟା ଏବଂ ଦୃଶ୍ୟ ଉଭୟର ଲିଙ୍ଗ ବା ସୂଚକ ॥୨୫॥ ବିକୃତ ହେବାରୁ ଆକାଶରୁ ସ୍ପର୍ଶଗୁଣବିଶିଷ୍ଟ ବାୟୁର ସୃଷ୍ଟି ହେଲା । ଆକାଶର ସମ୍ବନ୍ଧରୁ ବାୟୁ ଶବ୍ଦଯୁକ୍ତ ହେଲା ଏବଂ ସେ ବାୟୁ ହେଉଛି ଜୀବର ପ୍ରାଣସ୍ୱରୂପ ଏବଂ ତାର ଓଜ, ସ୍ଫୂର୍ତ୍ତି ଓ ବଳ । କାଳ,କର୍ମ ଏବଂ ସ୍ୱଭାବବଶରୁ ଏହି ବାୟୁ ବିକୃତ ହୋଇ ତେଜ ବା ଅଗ୍ନି ଉତ୍ପନ୍ନ ହେଲା । ତେଜର ଗୁଣ ହେଉଛି ରୂପ ଏବଂ ତେଜ ମଧ୍ୟ ବାୟୁର ଗୁଣ ସ୍ପର୍ଶକୁ ଓ ଆକାଶର ଗୁଣ ଶବ୍ଦକୁ ଗ୍ରହଣ କଲା । ପୁଣି ତେଜ ରୂପାନ୍ତରିତ ହେଲା ଜଳରେ । ଜଳର ଗୁଣ ହେଉଛି ରସ ଏବଂ ସେହି ଜଳ ଅନ୍ୟ ତିନି ମହାଭୂତଙ୍କ ସମ୍ବନ୍ଧରୁ ରୂପ, ସ୍ପର୍ଶ ଓ ଶବ୍ଦକୁ ଗ୍ରହଣ କଲା । ଜଳର ବିକୃତିରୁ ପୃଥିବୀ ହେଲା । ପୃଥିବୀର ଗୁଣ, ଗନ୍ଧ ଏବଂ ସେଇ ପୃଥିବୀ କ୍ରମାନ୍ୱୟରେ ଅନ୍ୟ ମହାଭୂତମାନଙ୍କ ସମ୍ବନ୍ଧରୁ ରସ, ରୂପ ସ୍ପର୍ଶ ଓ ଶବ୍ଦକୁ ଗ୍ରହଣ କଲା ॥୨୬-୨୯॥ ସାତ୍ତ୍ୱିକ ଅହଙ୍କାରରୁ ମନ ଏବଂ ପଞ୍ଚ ଜ୍ଞାନେନ୍ଦ୍ରିୟ ଓ ପଞ୍ଚ କର୍ମେନ୍ଦ୍ରିୟ - ଏହି ଦଶଟି ଇନ୍ଦ୍ରିୟର ଅଧିଷ୍ଠାତ୍ରୀ ଦେବତା ଦିଗ, ବାୟୁ, ସୂର୍ଯ୍ୟ, ବରୁଣ, ଅଶ୍ୱିନୀକୁମାର, ଅଗ୍ନି, ଇନ୍ଦ୍ର, ବିଷ୍ଣୁ, ମିତ୍ର ଏବଂ ପ୍ରଜାପତିଙ୍କର ଜନ୍ମ ହେଲା ॥୩୦॥ ରାଜସିକ ଅହଙ୍କାରର ବିକୃତିରୁ ଜ୍ଞାନଶକ୍ତିରୂପ ବୁଦ୍ଧି ଓ କ୍ରିୟାଶକ୍ତିରୂପ ପ୍ରାଣ ଏବଂ ଏହା ସହିତ ଚକ୍ଷୁ, କର୍ଣ୍ଣ, ନାସିକା, ଜିହ୍ୱା ଓ ଚର୍ମ - ଏହି ପଞ୍ଚ ଜ୍ଞାନେନ୍ଦ୍ରିୟ ଏବଂ ବାକ୍, ପାଣି, ପାଦ, ଲିଙ୍ଗ ଓ ଗୁହ୍ୟଦ୍ୱାର --ଏହି ପାଞ୍ଚ କର୍ମେନ୍ଦ୍ରିୟଙ୍କର ଜନ୍ମ ହେଲା ॥୩୧॥ ହେ ଶ୍ରେଷ୍ଠ ବ୍ରହ୍ମଜ୍ଞ, ନାରଦ ! ଏହି ଭୂତ, ଇନ୍ଦ୍ରିୟ ଓ ମନ ଏବଂ ତମ, ରଜ ଓ ସତ୍ତ୍ୱ ଗୁଣ ପରସ୍ପର ଅଲଗା ହୋଇଥିବାଯୋଗୁଁ ଯେତେବେଳେ ଶରୀର ନିର୍ମାଣ କରିପାରିଲେ ନାହିଁ, ସେତେବେଳେ ଭଗବତ୍‌ଶକ୍ତିରେ ପ୍ରେରିତ ହୋଇ ସେମାନେ ପରସ୍ପର ମିଳିତ ହେଲେ ଏବଂ ମୁଖ୍ୟ ଓ ଗୌଣ ଭାବକୁ ସ୍ୱୀକାର କରି ସମଷ୍ଟି ଓ ବ୍ୟଷ୍ଟିରୂପକ ଶରୀରକୁ ସୃଷ୍ଟି କଲେ ॥୩୨-୩୩॥ ସହସ୍ର ସହସ୍ର ବର୍ଷ ପରେ ଜଳରେ ଭାସମାନ ସେଇ ଅଚେତନ ଅଣ୍ଡାକୁ କାଳ, କର୍ମ ଓ ସ୍ୱଭାବର ଅଧିଷ୍ଠାତା ପରମାତ୍ମା ଚେତନ କଲେ ॥୩୪॥ ସେହି ପୁରୁଷ ଏହି ଅଣ୍ଡାକୁ ଭେଦ କରି ସେଥିରୁ ବାହାରି ଆସିଲେ । ତାଙ୍କର ସହସ୍ର ଊରୁ, ସହସ୍ର ପାଦ, ସହସ୍ର ବାହୁ, ସହସ୍ର ଚକ୍ଷୁ, ସହସ୍ର ମୁଖ ଓ ସହସ୍ର ଶିର; ଯାହାଙ୍କ ଅବୟବମାନଙ୍କଦ୍ୱାରା

ମନୀଷୀମାନେ ସମସ୍ତ ଲୋକର କଳ୍ପନା କରିଥାନ୍ତି । ଏହାଙ୍କର ଅଣ୍ଟାରୁ ତଳକୁ ଥିବା ଅଙ୍ଗମାନଙ୍କଦ୍ୱାରା ସପ୍ତ ଅଧଃଲୋକର ଏବଂ ଜଘନର ଉପରିସ୍ଥ ସପ୍ତ ଅଙ୍ଗଦ୍ୱାରା ସପ୍ତ ଉର୍ଦ୍ଧ୍ୱଲୋକର କଳ୍ପନା କରାଯାଏ ।।୩୫-୩୬।। ବ୍ରାହ୍ମଣ ଏହି ପୁରୁଷଙ୍କର ମୁଖ ଓ କ୍ଷତ୍ରିୟ ତାଙ୍କର ବାହୁ । ବୈଶ୍ୟ ତାଙ୍କ ଉରୁ ଓ ଶୂଦ୍ର ତାଙ୍କ ପାଦରୁ ଉତ୍ପନ୍ନ ହେଲେ ।।୩୭।। ତାଙ୍କ ପାଦଦ୍ୱୟରେ ଭୂର୍ଲୋକ, ନାଭିରେ ଭୁବର୍ଲୋକ, ହୃଦୟରେ ସ୍ୱର୍ଗଲୋକ ଏବଂ ଉରଃସ୍ଥଳରେ ମହର୍ଲୋକର କଳ୍ପନା କରାଯାଏ ।।୩୮।। ଗ୍ରୀବାରେ ଜନଲୋକ, ସ୍ତନଦ୍ୱୟରେ ତପୋଲୋକ ଓ ମସ୍ତକରେ ସତ୍ୟଲୋକ କଳ୍ପିତ । କିନ୍ତୁ ବୈକୁଣ୍ଠ ହେଉଛି ସନାତନ ବ୍ରହ୍ମଲୋକ ।।୩୯।। ଏହି ବିରାଟ ପୁରୁଷଙ୍କର କଟିଦେଶରେ ଅତଳ, ଉରୁଦ୍ୱୟରେ ବିତଳ, ଜାନୁଦ୍ୱୟରେ ପବିତ୍ର ସୁତଳ ଓ ଜଙ୍ଘ ଦ୍ୱୟରେ ତଳାତଳ କଳ୍ପିତ । ଦୁଇ ଗଣ୍ଠିରେ ମହାତଳ, ପଂଝାରେ ରସାତଳ ଏବଂ ପାଦତଳରେ ପାତାଳ --ଏହିପରି ବିରାଟ ପୁରୁଷ ସର୍ବଲୋକମୟ ଅଟେ । ଅଥବା କେହି କେହି ଏହି ପୁରୁଷଙ୍କର ପାଦଦ୍ୱୟରେ ଭୂର୍ଲୋକ, ନାଭିସ୍ଥଳରେ ଭୁବର୍ଲୋକ ଏବଂ ମସ୍ତକରେ ସ୍ୱର୍ଗଲୋକର କଳ୍ପନା କରିଥାନ୍ତି ।।୪୦-୪୨।।

## ଷଷ୍ଠ ଅଧ୍ୟାୟ

# ବିରାଟ ପୁରୁଷଙ୍କର ବିଭୂତି ବର୍ଣ୍ଣନା

ବ୍ରହ୍ମା କହିଲେ, ତାଙ୍କର ମୁଖ ହେଉଛି ଆମ୍ଭମାନଙ୍କ ବାକ୍ ଇନ୍ଦ୍ରିୟମାନଙ୍କର ଓ ସେମାନଙ୍କ ଅଧିଷ୍ଠାତା ଅଗ୍ନିଙ୍କର ଉତ୍ପତ୍ତିସ୍ଥଳ । ତାଙ୍କ ତ୍ୱକ୍ ଆଦି ସାତ ଧାତୁ ଗାୟତ୍ରୀ ଅନୁଷ୍ଟୁପ୍ ଆଦି ସପ୍ତ ଛନ୍ଦର କ୍ଷେତ୍ର । ତାଙ୍କ ଜିହ୍ୱା ଦେବ, ପିତୃ ଓ ମନୁଷ୍ୟମାନଙ୍କ ଅନ୍ନର ଏବଂ ଷଡ଼ରସର କ୍ଷେତ୍ର ।।୧।। ତାଙ୍କ ନାସାରନ୍ଧ୍ର ଦ୍ୱୟ ସମସ୍ତ ପ୍ରାଣୀଙ୍କ ପ୍ରାଣ (ପ୍ରାଣ, ଅପାନ, ବ୍ୟାନ, ଉଦାନ ଓ ସମାନ --ଏହି ପଞ୍ଚପ୍ରାଣ)ର ଓ ବାୟୁର ଉତ୍ତମ କ୍ଷେତ୍ର ଏବଂ ତାଙ୍କର ଘ୍ରାଣ ଇନ୍ଦ୍ରିୟ ଅଶ୍ୱିନୀକୁମାର ଦୁହିଁଙ୍କର, ଔଷଧିମାନଙ୍କର ଏବଂ ସାମାନ୍ୟ ଓ ବିଶେଷ ଗନ୍ଧର କ୍ଷେତ୍ର ।।୨।। ତାଙ୍କର ଚକ୍ଷୁ ସମସ୍ତ ରୂପ ଓ ତେଜର ଜନ୍ମସ୍ଥାନ ଏବଂ ଆଖି ଦୁଇଟି ସୂର୍ଯ୍ୟ ଓ ସ୍ୱର୍ଗର ଜନ୍ମସ୍ଥାନ । କର୍ଣ୍ଣଦ୍ୱୟ ସମସ୍ତ ଦିଗର ଓ ତୀର୍ଥମାନଙ୍କର ଜନ୍ମସ୍ଥଳୀ ଏବଂ ଶ୍ରବଣେନ୍ଦ୍ରିୟ ଆକାଶ ଓ ଶବ୍ଦର ଜନ୍ମସ୍ଥାନ । ତାଙ୍କର ଗାତ୍ର ହେଉଛି ବସ୍ତୁମାନଙ୍କ ସାର ଓ ସୌନ୍ଦର୍ଯ୍ୟର ପାତ୍ର ।।୩।। ତାଙ୍କର ଚର୍ମ ସ୍ପର୍ଶର, ବାୟୁର ଓ ସମସ୍ତ ଯଜ୍ଞର କ୍ଷେତ୍ର । ତାଙ୍କର ରୋମମାନ ଉଦ୍ଭିଦମାନଙ୍କର ଅଥବା ଯଜ୍ଞସାଧନ ବୃକ୍ଷମାନଙ୍କର ଉତ୍ପତ୍ତି ସ୍ଥାନ ।।୪।।

ତାଙ୍କ କେଶ, ଶ୍ମଶ୍ରୁ ଓ ନଖ ପାଷାଣ, ଲୌହ, ମେଘ ଓ ବିଜୁଳିର ଜନ୍ମସ୍ଥାନ; ତାଙ୍କ ବାହୁମାନ ପାଳନକାରୀ ଲୋକପାଳମାନଙ୍କ ଉତ୍ପତ୍ତିସ୍ଥାନ ।।୫।। ତାଙ୍କ ପାଦ-ସଞ୍ଚାଳନ ଭୂଃ ଭୁବଃ ଓ ସ୍ୱଃ -ଏହି ତିନିଲୋକର ଆଶ୍ରୟ; ଚରଣ କମଳ ପ୍ରାପ୍ତବସ୍ତୁ ଓ ଭୟରୁ ରକ୍ଷାକରେ; ତାଙ୍କ ଚରଣକମଳ ସମସ୍ତ କାମନା ପୂର୍ଣ୍ଣ କରେ ।।୬।। ଏହି ବିରାଟ ପୁରୁଷଙ୍କର ଲିଙ୍ଗ ହେଉଛି ଜଳର, ବୀର୍ଯ୍ୟର, ପର୍ଜନ୍ୟ (ବର୍ଷୁକ ମେଘ)ର, ସୃଷ୍ଟିନିର୍ମାଣର ଓ ପ୍ରଜାପତିଙ୍କର ଉତ୍ପତ୍ତିସ୍ଥଳ ଏବଂ ତାଙ୍କ ଜନନେନ୍ଦ୍ରିୟ ସନ୍ତାନାର୍ଥ ସମ୍ଭୋଗଜନିତ ଆନନ୍ଦର କ୍ଷେତ୍ର ।।୭।। ହେ ନାରଦ, ଏହାଙ୍କର ପାୟୁ ଇନ୍ଦ୍ରିୟ, ଯମ, ମିତ୍ର ଓ ମଳତ୍ୟାଗର କ୍ଷେତ୍ର ଏବଂ ମଳଦ୍ୱାର ହେଉଛି ହିଂସା, ଅଲକ୍ଷ୍ମୀ, ମୃତ୍ୟୁ ଓ ନରକର ଆଧାର ।।୮।। ସେହି ବିରାଟ ପୁରୁଷଙ୍କର ପିଠି ପରାଜୟର, ଅଧର୍ମର ଏବଂ ଅଜ୍ଞାନର କ୍ଷେତ୍ର; ତାଙ୍କ ନାଡ଼ିମାନ ନଦନଦୀମାନଙ୍କର ଏବଂ ଅସ୍ଥିଖଣ୍ଡ ପର୍ବତମାନଙ୍କର ଜନ୍ମସ୍ଥାନ ।।୯।। ଏହାଙ୍କର ଉଦର ହେଉଛି ଅନ୍ନ ଆଦି ରସର, ସମୁଦ୍ରମାନଙ୍କର ଓ ପ୍ରାଣୀମାନଙ୍କ ନିଧନର କ୍ଷେତ୍ର ଏବଂ ହୃଦୟ ହେଉଛି ମନର ଜନ୍ମଭୂମି ।।୧୦।। ହେ ନାରଦ ! ମୋର, ତୁମର, ଧର୍ମର, ସନକାଦି କୁମାରମାନଙ୍କର, ରୁଦ୍ରଙ୍କର, ବିଜ୍ଞାନର ଓ ଅନ୍ତଃକରଣର ତାଙ୍କ ଚିତ୍ତ

ହେଉଛି ଆଶ୍ରୟସ୍ଥଳୀ ॥୧୧॥ ମୁଁ, ତୁମେ, ଶଙ୍କର, ସନକାଦି ତୁମର ଅଗ୍ରଜମାନେ, ସୁରାସୁର, ନର, ନାଗ, ମୃଗ, ପକ୍ଷୀ, ସରୀସୃପ, ଗନ୍ଧର୍ବ, ଅପ୍ସରା, ଯକ୍ଷ, ରକ୍ଷ, ଭୂତଗଣ, ସର୍ପ, ପଶୁ, ପିତୃଗଣ, ସିଦ୍ଧ, ବିଦ୍ୟାଧର, ଚାରଣ ଓ ବୃକ୍ଷମାନେ, ନାନାଜାତିର ଖେଚର, ଭୂଚର ଓ ଜଳଚର ଜୀବ, ଗ୍ରହ, ନକ୍ଷତ୍ର, କେତୁ (ଲାଞ୍ଛିତାରା) ଓ ତାରାଗଣ, ବିଜୁଳି ଓ ଘଡ଼ଘଡ଼ି ପ୍ରଭୃତି ସମସ୍ତ ବସ୍ତୁ ହିଁ ଏହି ବିରାଟ ପୁରୁଷଙ୍କ ରୂପ । ଯାହା ଥିଲା, ଅଛି ବା ହେବ, ଏ ସବୁ ତାଙ୍କଦ୍ୱାରା ଆବୃତ । ଏହି ସମସ୍ତ ବିଶ୍ୱକୁ ସେ ଅତିକ୍ରମ କରି ଅବସ୍ଥିତ । ସୂର୍ଯ୍ୟ ନିଜର ମଣ୍ଡଳକୁ ଆଲୋକିତ କରି ଯେପରି ବାହାର ବ୍ରହ୍ମାଣ୍ଡକୁ ଆଲୋକିତ କରେ, ସେହିପରି ନିଜକୁ ବିରାଟ ପୁରୁଷ ରୂପେ ପ୍ରକାଶପୂର୍ବକ ପରମାତ୍ମା ବ୍ରହ୍ମାଣ୍ଡକୁ ଅନ୍ତର ଓ ବାହାର ପ୍ରକାଶିତ କରନ୍ତି ॥୧୨-୧୬॥

ହେ ବ୍ରହ୍ମନ୍ ନାରଦ, ସେଇ ପୁରୁଷ ଅମୃତ ଅଭୟର ଈଶ୍ୱର । ଯେଣୁ ସେ ମରଣଧର୍ମ(ମର୍ତ୍ତ୍ୟ) କର୍ମଫଳ(ଅନ୍ନ)କୁ ଅତିକ୍ରମ କଲେ, ତେଣୁ ସେ କେବଳ ସର୍ବାତ୍ମକ ନୁହନ୍ତି, ଅମୃତତ୍ୱର ମଧ୍ୟ ଈଶ୍ୱର । ତାଙ୍କର ଏଇ ମହିମା ଅପାର ॥୧୭॥ ଭୂର୍ଭୁବାଦି ଲୋକ ଭଗବାନଙ୍କର ପାଦମାତ୍ର (ଅଂଶମାତ୍ର) ଏବଂ ସେଇ ପାଦମାନଙ୍କରେ ସମସ୍ତ ଜୀବ ବାସ କରନ୍ତି । ଭୂର୍ଲୋକ, ଭୁବର୍ଲୋକ ଏବଂ ସ୍ୱର୍ଲୋକ -ଏହି ତ୍ରିଲୋକର ଉପରେ ମହର୍ଲୋକ ତା' ଉପରେ ଜନଲୋକ, ତପଲୋକ ଓ ସତ୍ୟଲୋକ । ସେଠାରେ ଯଥାକ୍ରମେ ଅମୃତ, କ୍ଷେମ ଓ ଅଭୟ ନିହିତ ॥୧୮॥ ଜନ, ତପ ଓ ସତ୍ୟ ଏହି ତିନି ଲୋକ ବ୍ରହ୍ମଚାରୀ, ବାନପ୍ରସ୍ଥ ଓ ଯତିମାନଙ୍କର ଆଶ୍ରୟସ୍ଥଳ । ଭୂଲୋକ, ଭୁବଲୋକ ଓ ସ୍ୱର୍ଗଲୋକରେ କେବଳ ବ୍ରହ୍ମଚର୍ଯ୍ୟବ୍ରତରହିତ ଗୃହସ୍ଥମାନେ ହିଁ ରହନ୍ତି ॥୧୯॥

ଏହି ସଂସାରରେ ବିଦ୍ୟା ଏବଂ ଅବିଦ୍ୟା ନାମକ ମୋକ୍ଷସାଧକ ଓ ଭୋଗସାଧକ ଦୁଇଟି ଯେଉଁ ମାର୍ଗ ଅଛି, ବିରାଟପୁରୁଷ ସେହି ଉଭୟଙ୍କର ଆଶ୍ରୟସ୍ଥଳ ॥୨୦॥ ଯେପରି ସୂର୍ଯ୍ୟ ନିଜ କିରଣଦ୍ୱାରା ବିଶ୍ୱକୁ ଆଲୋକିତ କରି କରି ଅତିକ୍ରମ କରେ, ସେହିପରି ପରମାତ୍ମା ଅଣ୍ଡ ବା ବ୍ରହ୍ମାଣ୍ଡକୁ ସୃଷ୍ଟି କରି ପଞ୍ଚଭୂତ, ଏକାଦଶ ଇନ୍ଦ୍ରିୟ ଏବଂ ତ୍ରିଗୁଣଯୁକ୍ତ ବିରାଟ ପୁରୁଷଙ୍କୁ ଜନ୍ମ ଦେଲେ ଏବଂ ଏମାନଙ୍କ ଭିତରେ ରହି ମଧ୍ୟ ଏମାନଙ୍କଠାରୁ ଅଲଗା ହେଲେ ॥୨୧॥ ସେହି ମହାତ୍ମାଙ୍କର ନାଭିକମଳରୁ ଯେତେବେଳେ ମୋର ଜନ୍ମ ହେଲା, ସେତେବେଳେ ସେଇ ପୁରୁଷଙ୍କ ଅଙ୍ଗପ୍ରତ୍ୟଙ୍ଗ ଛଡ଼ା ମୋତେ କୌଣସି ଯଜ୍ଞସାମଗ୍ରୀ ଜଣାଗଲା ନାହିଁ ॥୨୨॥ ସେତେବେଳେ ସେହିସବୁ ଯଜ୍ଞସାମଗ୍ରୀ ସଂଗ୍ରହଯୋଗ୍ୟ ହେବାରୁ ଯଜ୍ଞର ପଶୁ, ଯୂପକାଠ, କୁଶ, ଏଇ ଯଜ୍ଞଭୂମି, ବସନ୍ତଋତୁ ଆଦି ବହୁଗୁଣଯୁକ୍ତ ଯଜ୍ଞକାଳ, ଯଜ୍ଞପାତ୍ର ଆଦି ଆବଶ୍ୟକ ବସ୍ତୁ, ତଣ୍ଡୁଳ ଆଦି ଓଷଧି, ଘୃତ ଆଦି ସ୍ନେହ ପଦାର୍ଥ, ମଧୁର ଆଦି ରସ, ସୁବର୍ଣ୍ଣ ଆଦି ଧାତୁ, ମୃତ୍ତିକା, ଜଳ,ହୋତା ଆଦି ଚାରି ଋତ୍ୱିକଙ୍କ କର୍ମ, ଜ୍ୟୋତିଷ୍ଟୋମ ଆଦି ଯଜ୍ଞର ନାମ, ସ୍ୱାହାକାର ଆଦି ମନ୍ତ୍ର, ଦକ୍ଷିଣା, ବ୍ରତ, ଦେବତାମାନଙ୍କର ଉଦ୍ଦେଶ, ବୌଧାୟନାଦି ଯଜ୍ଞଗ୍ରନ୍ଥ, ସଂକଳ୍ପ, ଯଜ୍ଞକାର୍ଯ୍ୟର ପ୍ରଣାଳୀ, ଗତି, ମତି, ଶ୍ରଦ୍ଧା, ପ୍ରାୟଶ୍ଚିତ୍ତ ଏବଂ ସମର୍ପଣ--ଏହି ସମସ୍ତ ଯଜ୍ଞସାମଗ୍ରୀ ମୁଁ ସେହି ପୁରୁଷଙ୍କର ଅଙ୍ଗମାନଙ୍କ ଦ୍ୱାରା ସଂଗ୍ରହ କଲି ॥୨୩-୨୬॥ ଏହିପରି ସେହି ପୁରୁଷଙ୍କର ଅବୟବମାନଙ୍କ ଦ୍ୱାରା ସମସ୍ତ ଯଜ୍ଞସମ୍ଭାର ସଂଗ୍ରହ କରି ତଦ୍ୱାରା ହିଁ ମୁଁ ସେହି ଯଜ୍ଞଙ୍କୁ, ପୁରୁଷଙ୍କୁ ଓ ଈଶ୍ୱରଙ୍କୁ ଅର୍ଚ୍ଚନା କଲି ॥୨୭॥ ତାହାପରେ ତୁମର ଏଇ ନ'ଜଣ ଭାଇ ଯେଉଁମାନେ ପ୍ରଜାପତି, ସେମାନେ ସ୍ଥିରଚିତ୍ତ ହୋଇ ସେହି ବ୍ୟକ୍ତ ଏବଂ ଅବ୍ୟକ୍ତ ପୁରୁଷଙ୍କୁ ଅର୍ଚ୍ଚନା କଲେ ॥୨୮॥ ତା'ପରେ ସମୟାନୁସାରେ ମନୁ, ଋଷି ଓ ପିତୃଗଣ, ଦେବ, ଦୈତ୍ୟ ଓ ମନୁଷ୍ୟମାନେ ବହୁ ଯଜ୍ଞ ଅନୁଷ୍ଠାନଦ୍ୱାରା ସେହି ଭଗବାନଙ୍କର ଆରାଧନା କଲେ ॥୨୯॥

ଭଗବାନ ନାରାୟଣଙ୍କଠାରେ ଏହି ବିଶ୍ୱ ଅଧିଷ୍ଠିତ । ସେ ସ୍ୱୟଂ ଗୁଣାତୀତ ହେଲେ ମଧ୍ୟ ସୃଷ୍ଟିର ପ୍ରଥମ ସମୟରେ ସେ ମାୟାଦ୍ୱାରା ବହୁଗୁଣ ଗ୍ରହଣ କରନ୍ତି ॥୩୦॥ ତାଙ୍କଦ୍ୱାରା ନିଯୁକ୍ତ ହୋଇ ମୁଁ ସୃଷ୍ଟି କରେ, ରୁଦ୍ର ତାଙ୍କ ବଶରେ ରହି ସଂହାର କରନ୍ତି ଏବଂ ସେ ନିଜେ ବିଷ୍ଣୁ ରୂପରେ ଏହି ସଂସାରକୁ ପାଳନ କରନ୍ତି ସତ୍ତ୍ୱ, ରଜ ଓ ତମ ଗୁଣଦ୍ୱାରା ॥୩୧॥ ବତ୍ସ ! ତୁମେ ଯେପରି ପଚାରିଥିଲ, ସେହିପରି ଉତ୍ତର ମୁଁ ତୁମକୁ ଦେଇଦେଲି । ଏହି ସଂସାରରେ କାର୍ଯ୍ୟକାରଣାତ୍ମକ କୌଣସି ସୃଜ୍ୟ ବସ୍ତୁ ନାହିଁ, ଯାହାକି ଭଗବାନଙ୍କଠାରୁ ଭିନ୍ନ ॥୩୨॥ ହେ ନାରଦ ! ମୁଁ ଆବେଗଭରା ହୃଦୟରେ ହରିଙ୍କି ଧରିଥିବାଯୋଗୁଁ, ମୋର

କଥା ଅସତ୍ୟ ହୁଏ ନାହିଁ । କେବେହେଲେ ମୋ ମନ ଅସତ୍ ଆଡ଼କୁ ଯାଏ ନାହିଁ ଏବଂ ମୋର ଇନ୍ଦ୍ରିୟମାନେ ଅସତ୍ ପଥରେ ପଡ଼ନ୍ତି ନାହିଁ ॥୩୩॥ ମୁଁ ସେହି ବ୍ରହ୍ମା, ବେଦମୟ ଓ ତପୋମୟ; ପ୍ରଜାପତିମାନେ ମୋତେ ବନ୍ଦନା କରନ୍ତି ଏବଂ ମୁଁ ସେମାନଙ୍କ ପତି । ନିଷ୍ଠାର ସହିତ ଯୋଗକୁ ଆଶ୍ରା କରି ମଧ୍ୟ ଯାହାଙ୍କଠାରୁ ମୋର ଜନ୍ମ, ତାଙ୍କୁ ମୁଁ ଜାଣିପାରିଲି ନାହିଁ ॥୩୪॥ ଶରଣାଗତମାନଙ୍କର ଭବଖଣ୍ଡନ, ସୁଖକର ଓ ମଙ୍ଗଳମୟ ତାଙ୍କ ଚରଣକୁ ମୁଁ ନମସ୍କାର କରୁଛି । ଆକାଶ ଯେପରି ନିଜର ଅନ୍ତ ପାଏ ନାହିଁ, ସେହିପରି, ଅନ୍ୟମାନଙ୍କ କଥା ଛାଡ଼, ସେ ନିଜେ ମଧ୍ୟ ନିଜ ମାୟାଶକ୍ତିର ବିସ୍ତାର ଜାଣନ୍ତି ନାହିଁ ॥୩୫॥ ଭଗବାନ ଶଙ୍କର, ତୁମେ ଓ ମୁଁ ନିଜେ ମଧ୍ୟ ଯାହାଙ୍କ ସ୍ୱରୂପକୁ ଜାଣିପାରୁ ନାହୁଁ, ତାଙ୍କୁ ଅନ୍ୟ ଦେବତା କିପରି ବା ଜାଣିବେ ! ତାଙ୍କ ମାୟା ଆମ ସମସ୍ତଙ୍କ ବୁଦ୍ଧିକୁ ମୋହିତ କରୁଛି । ତେଣୁ ସେଇ ମାୟାଦ୍ୱାରା ନିର୍ମିତ ଏହି ଜଗତକୁ ନିଜ ନିଜ ଜ୍ଞାନ ଅନୁସାରେ ଆମେ ଦେଖୁଛୁ ॥୩୬॥ ଆମେମାନେ ଯେଉଁ ଭଗବାନଙ୍କ ଅବତାରର ଲୀଳାମାନ ହିଁ ଗାନକରୁ, କିନ୍ତୁ ଯାହାଙ୍କ ତତ୍ତ୍ୱ ସ୍ୱରୂପ ଜାଣୁ ନାହିଁ, ସେହି ଭଗବାନଙ୍କୁ ନମସ୍କାର ॥୩୭॥ ସେ ଏହି ଅଜ ଆଦିପୁରୁଷ ପ୍ରତି କଳ୍ପରେ ନିଜେ ନିଜଦ୍ୱାରା ନିଜ ମଧ୍ୟରେ ନିଜକୁ ସୃଷ୍ଟି କରନ୍ତି, ପାଳନ କରନ୍ତି ଓ ସଂହାର କରନ୍ତି ॥୩୮॥ କେବଳ ଜ୍ଞାନ ହିଁ ତତ୍ତ୍ୱ, ଯେହେତୁ ତାହା ବିଶୁଦ୍ଧ, ସ୍ଥିର, ସର୍ବଗତ, ଯଥାର୍ଥ, ଅନାଦି, ଅନନ୍ତ, ନିର୍ଗୁଣ, ନିତ୍ୟ ଓ ଅଦ୍ୱୈତ । ହେ ନାରଦ, ନିଜର ଶରୀର, ମନ ଓ ଇନ୍ଦ୍ରିୟମାନଙ୍କୁ ଶାନ୍ତ କରିପାରିଲେ ମୁନିମାନେ ତାଙ୍କୁ ଜାଣିପାରନ୍ତି । ଅସାଧୁ ବ୍ୟକ୍ତିମାନଙ୍କର ତର୍କ ଜାଲ ବିସ୍ତାରରେ ସେ ତିରୋହିତ ହୋଇଯାଆନ୍ତି ॥୩୯-୪୦॥

ପରମାତ୍ମାଙ୍କର ପ୍ରଥମ ଅବତାର ହେଉଛି ବିରାଟ ପୁରୁଷ । କାଳ, ସ୍ୱଭାବ, କାର୍ଯ୍ୟ ଓ କାରଣରୂପା ପ୍ରକୃତି, ମନ ବା ମହତ୍ତତ୍ତ୍ୱ, ଦ୍ରବ୍ୟ ବା ପଞ୍ଚମହାଭୂତ, ବିକାର ବା ଅହଙ୍କାର, ସତ୍ତ୍ୱ, ରଜ ଓ ତମ -ଏହି ତିନି ଗୁଣ, ଇନ୍ଦ୍ରିୟଗଣ, ବିରାଟ (ସମଷ୍ଟିଶରୀର), ସ୍ୱରାଟ୍ (ତତ୍ରତ୍ୟ ପୁରୁଷ), ସ୍ଥାବର ଓ ଜଙ୍ଗମ ରୂପ ବ୍ୟଷ୍ଟିଶରୀର, ମୁଁ, ଶଙ୍କର, ଯଜ୍ଞରୂପ ବିଷ୍ଣୁ, ଦକ୍ଷାଦି ଏଇ ପ୍ରଜାପତିଗଣ, ତୁମପରି ଋଷିଗଣ, ସ୍ୱର୍ଗଲୋକର, ପକ୍ଷୀଲୋକର, ନରଲୋକର ଓ ତଳଲୋକର ପାଳକଗଣ, ଗନ୍ଧର୍ବ, ବିଦ୍ୟାଧର ଓ ଚାରଣମାନଙ୍କର ଅଧିପତିଗଣ, ଯକ୍ଷ, ରକ୍ଷ, ଉରଗ (ସର୍ପ) ଏବଂ ନାଗମାନଙ୍କର ସ୍ୱାମୀମାନେ, ଋଷି ଓ ପିତୃମାନଙ୍କ ମଧ୍ୟରେ ଯେଉଁମାନେ ଶ୍ରେଷ୍ଠ, ଦୈତ୍ୟ, ଦାନବ ଓ ସିଦ୍ଧମାନଙ୍କର ଅଧୀଶ୍ୱରଗଣ, ପ୍ରେତ, ପିଶାଚ, ଭୂତ, କୁଷ୍ମାଣ୍ଡ, ଜଳଚର ଜୀବ, ସ୍ଥଳଚର ପଶୁ ଓ ଆକାଶଚର ପକ୍ଷୀମାନଙ୍କର ଅଧୀଶ୍ୱରଗଣ ଏବଂ ଲୋକରେ ଐଶ୍ୱର୍ଯ୍ୟ, ତେଜ, ଓଜ, ସହ, ବଳ ଓ କ୍ଷମାଯୁକ୍ତ ଯାହା କିଛି ଅଛି; ଶ୍ରୀ (ଶୋଭା), ଲଜ୍ଜା, ବୁଦ୍ଧି ଓ ବିଭୂତିଯୁକ୍ତ ଯାହା ଅଛି; ଆଶ୍ଚର୍ଯ୍ୟ ବର୍ଣ୍ଣ, ରୂପଯୁକ୍ତ ବା ଅରୂପ ଯାହା ଅଛି, ତାହା ସବୁ ପରମତତ୍ତ୍ୱ ଅର୍ଥାତ୍ ତାଙ୍କ ବିଭୂତି ମାତ୍ର ॥୪୧-୪୪॥ ହେ ନାରଦ; ବର୍ତ୍ତମାନ ମୁଁ ପରମାତ୍ମା ପୁରୁଷଙ୍କର ପ୍ରଧାନ ଲୀଳାବତାରମାନ କ୍ରମାନ୍ୱୟରେ କୀର୍ତ୍ତନ କରିବି । ଭଗବତ୍‌ପୁରୁଷମାନେ ଯାହା ଗାୟନ କରନ୍ତି ଏବଂ ତାହା ଶୁଣିବାଦ୍ୱାରା କର୍ଣ୍ଣର ସମସ୍ତ ଦୋଷ ଦୂର ହୋଇଯାଏ ॥୪୫॥

## ସପ୍ତମ ଅଧ୍ୟାୟ

# ଭଗବାନଙ୍କର ଲୀଳାବତାର

ବ୍ରହ୍ମା କହିଲେ, ଅନନ୍ତ ଭଗବାନ୍ ପ୍ରଳୟଜଳରେ ନିମଗ୍ନ ପୃଥିବୀକୁ ଉଦ୍ଧାର କରିବାପାଇଁ ସକଳଯଜ୍ଞମୟ ବରାହଶରୀରକୁ ଧାରଣ କଲେ । ବିଶ୍ୱରେ ଜନ୍ମିଥିବା ସର୍ବପ୍ରଥମ ଦୈତ୍ୟ ହିରଣ୍ୟାକ୍ଷ ତାଙ୍କ ସହିତ ଲଢ଼ିବାକୁ ଆସିବାରୁ ବଜ୍ରଧାରୀ ଇନ୍ଦ୍ର ପର୍ବତମାନଙ୍କୁ ବିଦାରଣ କରିବା ପରି ସେ ଦନ୍ତରେ ତାକୁ ଖଣ୍ଡ ଖଣ୍ଡ କରିଦେଲେ ॥୧॥ ଏହାପରେ ଭଗବାନ ରୁଚିନାମକ

ପ୍ରଜାପତିଙ୍କ ପତ୍ନୀ ଆକୂତିଙ୍କ ଗର୍ଭରୁ ସୁଯଜ୍ଞ ନାମରେ ଅବତୀର୍ଣ୍ଣ ହେଲେ । ତାଙ୍କର ପତ୍ନୀ ହେଲେ ଦକ୍ଷିଣା । ତାଙ୍କ ଗର୍ଭରୁ ସୁଯମ ନାମକ ଦେବମାନେ ଉତ୍ପନ୍ନ ହେଲେ । ତିନିଲୋକର ଆର୍ତ୍ତି ହରଣ କରିଥିବାଯୋଗୁଁ ସ୍ୱାୟମ୍ଭୁବ ମନୁ ତାଙ୍କୁ 'ହରି' ନାମରେ ଡାକିଲେ ॥୨॥ ହେ ନାରଦ, କର୍ଦ୍ଦମଙ୍କ ଗୃହରେ ଦେବହୂତିଙ୍କ ଗର୍ଭରୁ ନଅ ଭଉଣୀଙ୍କ ସହ ଭଗବାନ କପିଳ ରୂପରେ ଜନ୍ମ ହେଲେ । ସେ ନିଜ ମାତାଙ୍କୁ ଆତ୍ମଜ୍ଞାନର ଉପଦେଶ ଦେଇଥିଲେ, ଯାହାଫଳରେ କି ଦେବହୂତି ସେହି ଜନ୍ମରେ ତାଙ୍କ ହୃଦୟରୁ ତ୍ରିଗୁଣ ଦୋଷରୂପ ପଙ୍କକୁ ପ୍ରକ୍ଷାଳନ କରି କପିଳଙ୍କ ଗତି ବା ମୁକ୍ତି ଲାଭ କରିଥିଲେ ॥୩॥

ମହର୍ଷି ଅତ୍ରି ଭଗବାନଙ୍କ ପାଖରେ ପୁତ୍ରକାମନା କରିବାରୁ ସେ ସନ୍ତୁଷ୍ଟ ହୋଇ କହିଲେ, ମୁଁ ନିଜକୁ ତୁମକୁ ପୁତ୍ରରୂପେ ଅର୍ପଣ କରୁଛି । ଏହିପରି ନିଜକୁ ଦତ୍ତ କରିଥିବା ହେତୁ ତାଙ୍କର ସେଇ ଅବତାରର ନାମ ହେଲା ଦତ୍ତାତ୍ରେୟ । ତାଙ୍କରି ପାଦପଦ୍ମରଜରେ ନିଜର ଶରୀରକୁ ପବିତ୍ର କରି ଯଦୁ ଓ ହୈହୟ ଆଦି ରାଜାମାନେ ଯୋଗଦ୍ୱାରା ଉଭୟ ଭୋଗ ଓ ମୋକ୍ଷ ଲାଭ କରିଥିଲେ ॥୪॥ ବିବିଧ ଲୋକ ସୃଷ୍ଟି କରିବା ଇଚ୍ଛାରେ ମୁଁ ପ୍ରଥମେ କଠୋର ତପଶ୍ଚର୍ଯ୍ୟା କରିଥିଲି । ମୋର ସେହି ତପସ୍ୟାରୁ ଭଗବାନ ଚାରୋଟି ସନଯୁକ୍ତ ନାମରେ ଆବିର୍ଭୂତ ହେଲେ । ଯଥା-ସନକ, ସନାତନ, ସନନ୍ଦନ ଓ ସନତ୍କୁମାର । ଯେଉଁ ଆତ୍ମଜ୍ଞାନ ପୂର୍ବକଳ୍ପରେ ଥିଲା, ମାତ୍ର ପ୍ରଳୟବେଳେ ବିସ୍ମୃତ ହୋଇଯାଇଥିଲା, ଏହି ମୁନିମାନେ ତାହା ବିଶଦରୂପେ ଦାନ କରିବାରୁ ଶୁଣୁଥିବା ଋଷିମାନଙ୍କ ମନରେ ତାହା ସଙ୍ଗେ ସଙ୍ଗେ ପୁନର୍ଜାଗରିତ ହେଲା ॥୫॥ ଧର୍ମଙ୍କ ପତ୍ନୀ ଦକ୍ଷକନ୍ୟା ମୂର୍ତ୍ତିଙ୍କ ଗର୍ଭରୁ ନର ଓ ନାରାୟଣ ରୂପରେ ସେ ପରବର୍ତ୍ତୀ ଅବତାର ଗ୍ରହଣ କଲେ । ତାଙ୍କର ପ୍ରଚଣ୍ଡ ତପ ପ୍ରଭାବରେ ଇନ୍ଦ୍ରପ୍ରେରିତ ଅନଙ୍ଗର ସେନା ଅପ୍ସରାଗଣ ନିଷ୍ପ୍ରଭ ହୋଇଗଲେ ଏବଂ ତାଙ୍କ ତପସ୍ୟାରେ ବିଘ୍ନ ଘଟାଇପାରିଲେ ନାହିଁ ॥୬॥ ଯୋଗୀମାନେ ରୋଷଦୃଷ୍ଟିରେ କାମକୁ ଦହନ କରିପାରନ୍ତି । ମାତ୍ର ଯେଉଁ ଅସହ୍ୟ କ୍ରୋଧ ସେମାନଙ୍କୁ ଦହନ କରେ, ତାକୁ ଦହନ କରିପାରନ୍ତି ନାହିଁ । କେବଳ ଭଗବାନଙ୍କ ହୃଦୟରେ ଏହି କ୍ରୋଧ ପ୍ରବେଶ କରିବାକୁ ଭୟ କରେ । ତେଣୁ କାମ କିପରି ତାଙ୍କ ମନକୁ ପ୍ରବେଶ କରିବ ? ॥୭॥

ରାଜା ଉତ୍ତାନପାଦଙ୍କ ଆଗରେ ସାବତ ମା' ସୁରୁଚିଙ୍କ ଅସହ୍ୟ ବାକ୍ୟବାଣରେ ବିଦ୍ଧ ହୋଇ ଧ୍ରୁବ ବାଳକ ହେଲେ ହେଁ ତପସ୍ୟାପାଇଁ ବନ ମଧ୍ୟରେ ପ୍ରବେଶ କଲେ । ଧ୍ରୁବଙ୍କର ସ୍ତବରେ ସନ୍ତୁଷ୍ଟ ହୋଇ ଭଗବାନ ତାଙ୍କୁ ଧ୍ରୁବଲୋକ ଦାନ କଲେ । ଏହି ଧ୍ରୁବଲୋକର ତଳେ ଏବଂ ଉପରେ ଥିବା ମୁନିମାନେ ଏବେ ମଧ୍ୟ ଧ୍ରୁବଙ୍କର ଗୁଣଗାନ କରନ୍ତି ॥୮॥ ଯେତେବେଳେ ରାଜା ବେଣ ବିପଥଗାମୀ ହୋଇଗଲେ, କ୍ରୁଦ୍ଧ ଋଷିମାନଙ୍କର ବାକ୍ୟ ବଜ୍ରପରି ହୋଇ ତାଙ୍କର ସମସ୍ତ ପୌରୁଷ ଓ ଐଶ୍ୱର୍ଯ୍ୟ ନଷ୍ଟ କରିଦେଲା ଏବଂ ସେ ନରକଗାମୀ ହେବାକୁ ଲାଗିଲେ, ସେତେବେଳେ ଦୟାର୍ଦ୍ର ଋଷିମାନେ ପ୍ରାର୍ଥନା କରିବାରୁ ଭଗବାନ ପୃଥୁରୂପେ ଜନ୍ମି ତାଙ୍କୁ ଉଦ୍ଧାର କରି 'ପୁତ୍ର' ପଦକୁ ଲାଭ କଲେ ଏବଂ ଗାଭୀରୂପୀ ପୃଥ୍ୱୀକୁ ଦୋହନ କରି ପ୍ରଚୁର ଧନରତ୍ନ, ଅନ୍ନ ଏବଂ ଓଷଧି ଆଦି ଆହରଣ କଲେ ॥୯॥

ରାଜା ନାଭିଙ୍କ ପତ୍ନୀ ସୁଦେବୀଙ୍କ ଗର୍ଭରୁ ଭଗବାନ ଋଷଭଦେବ ନାମରେ ଜନ୍ମ ଗ୍ରହଣ କଲେ । ଏହି ଅବତାରରେ ଭଗବାନ ସମସ୍ତ ବିଷୟାସକ୍ତିରୁ ଦୂରରେ ରହି ଏବଂ ଇନ୍ଦ୍ରିୟ ଓ ମନକୁ ଆୟତ୍ତ କରି ଜଡ଼ବତ୍ ଯୋଗ ଆଚରଣ କରିବାକୁ ଲାଗିଲେ । ନିଜ ସ୍ୱରୂପରେ ସ୍ଥିତ ଏହି ଅବସ୍ଥାକୁ ଋଷିମାନେ ପରମହଂସପଦ ବୋଲି ଅଭିହିତ କରନ୍ତି ॥୧୦॥ ମୋର ଯଜ୍ଞରେ ଭଗବାନ ହୟଗ୍ରୀବରୂପରେ ଅବତୀର୍ଣ୍ଣ ହେଲେ । ସ୍ୱର୍ଣ୍ଣକାନ୍ତି ଏହି ଯଜ୍ଞପୁରୁଷଙ୍କର ବିଗ୍ରହ ଥିଲା ବେଦମୟ, ଯଜ୍ଞମୟ ଏବଂ ସର୍ବଦେବଙ୍କ ଆତ୍ମା । ତାଙ୍କର ନାସିକାରୁ ଶ୍ୱାସରୂପରେ କମନୀୟ ବେଦବାଣୀ ନିର୍ଗତ ହେଲା ॥୧୧॥ ଯୁଗର ଶେଷରେ ମନୁ ଭଗବାନଙ୍କୁ ମତ୍ସ୍ୟରୂପରେ ଦେଖିଥିଲେ । ସେ ଥିଲେ ନୌକାରୂପୀ ପୃଥିବୀର ଆଶ୍ରୟ ଏବଂ ତେଣୁ ସମସ୍ତ ଜୀବଙ୍କର ଆଶ୍ରୟସ୍ଥଳ । ପ୍ରଳୟଜଳରେ ମୋ ମୁହଁରୁ ଗଳିପଡ଼ିଥିବା ବେଦମାନଙ୍କୁ ସେ ଉଦ୍ଧାର କରି ବିହାର କରିଥିଲେ ॥୧୨॥ ମୁଖ୍ୟ ମୁଖ୍ୟ ଦେବତା

ଓ ଦାନବମାନେ ଅମୃତଲାଭ ଆଶାରେ ଯେତେବେଳେ କ୍ଷୀରସମୁଦ୍ରର ମନ୍ଥନପାଇଁ ବାହାରିଲେ, ଭଗବାନ ସେତେବେଳେ କଚ୍ଛପରୂପ ଧାରଣ କରି ମନ୍ଥନଦଣ୍ଡରୂପେ ମନ୍ଦର ଗିରିକୁ ବହନ କରିଥିଲେ ଏବଂ ଏହି ଗିରି ଘର୍ଷଣରେ କୁଣ୍ଡେଇ ହେଉଥିବା ତାଙ୍କର ପିଠିକୁ ଟିକିଏ ଭଲ ଲାଗିବାରୁ ସେ କିଛି ସମୟ ଆରାମରେ ନିଦ୍ରା ଯାଇଥିଲେ ॥୧୩॥

ସେ ଦେବତାମାନଙ୍କର ମହାଭୟ ନିବାରଣକାରୀ ନୃସିଂହରୂପ ଧାରଣ କଲେ । ଚଳମାନ ଭ୍ରୂକୁଟି ଓ ତୀକ୍ଷ୍ଣଦନ୍ତଯୋଗୁଁ ତାଙ୍କର ମୁଖ ଅତ୍ୟନ୍ତ ଭୟଙ୍କର ଦେଖାଯାଉଥିଲା । ଦୈତ୍ୟରାଜ ହିରଣ୍ୟକଶିପୁ ଗଦା ଧରି ତାଙ୍କ ସହିତ ଲଢ଼ିବାକୁ ଆସୁ ଆସୁ ସେ ତତ୍‌କ୍ଷଣାତ୍ ତାକୁ ଧରି ନିଜର ଉରୁ ଉପରେ ପକାଇ ନଖରେ ବିଦାରଣ କଲେ ॥୧୪॥ ସରୋବର ମଧ୍ୟରେ ଅତି ବଳବାନ୍ କୁମ୍ଭୀର ଗଜେନ୍ଦ୍ରର ପାଦକୁ ଧରି ତାକୁ ଟାଣିବାକୁ ଲାଗିବାରୁ ଶୋକାର୍ତ୍ତ ଗଜେନ୍ଦ୍ର ତା'ର ଶୁଣ୍ଢରେ ଏକ ପଦ୍ମଫୁଲ ଧରି ଭଗବାନଙ୍କୁ ପ୍ରାର୍ଥନା କରିବାକୁ ଲାଗିଲା--ହେ ଆଦିପୁରୁଷ, ହେ ଅଖିଳ ବିଶ୍ୱର ପ୍ରଭୁ, ଆପଣଙ୍କ ଗୁଣକୀର୍ତ୍ତନ ହିଁ ତୀର୍ଥସ୍ୱରୂପ--ଆପଣଙ୍କ ନାମ ଶ୍ରବଣମାତ୍ରେ ମଙ୍ଗଳପ୍ରଦ । ସେଇ ଶରଣାର୍ଥୀର କାତରପ୍ରାର୍ଥନା ଶୁଣି ଅପ୍ରମିତ ବଳ ସମ୍ପନ୍ନ ଚକ୍ରଧର ଶ୍ରୀହରି ବିହଙ୍ଗରାଜ ଗରୁଡ଼ଙ୍କ ପିଠିରେ ବସି ଚକ୍ରଦ୍ୱାରା ନକ୍ରର ଶିରଚ୍ଛେଦନ ପୂର୍ବକ ସ୍ନେହରେ ଗଜେନ୍ଦ୍ରର ଶୁଣ୍ଢ ଧରି ତାକୁ ଉଦ୍ଧାର କଲେ ॥୧୫-୧୬॥ ଭଗବାନ୍ ବାମନ ଅବତାରରେ ଅଦିତିଙ୍କର କନିଷ୍ଠପୁତ୍ରରୂପେ ଜନ୍ମ ହୋଇଥିଲେ । କିନ୍ତୁ ଗୁଣରେ ଅଦିତିଙ୍କର ପୁତ୍ରମାନଙ୍କ (ଆଦିତ୍ୟଗଣ) ମଧ୍ୟରେ ସେ ବରିଷ୍ଠ ଥିଲେ, କାରଣ ଯଜ୍ଞପୁରୁଷ ଭଗବାନ୍ ବଳିଙ୍କ ପ୍ରତିଶ୍ରୁତି ପରେ ସମସ୍ତ ଲୋକକୁ ପାଦରେ ମାପି ସାରିଥିଲେ । ବାମନ ରୂପରେ ତିନି ପାଦ ଭୂମି ମାଗିବା ଛଳରେ ସେ ବଳିଙ୍କର ଶାସିତ ସମସ୍ତ ପୃଥିବୀକୁ ହରଣ କରିଥିଲେ । ଧର୍ମସମ୍ମତ ଯାଚଞ୍ଚା ବିନା ସତ୍‌ପଥରେ ଚାଲୁଥିବା ବ୍ୟକ୍ତିକୁ ସ୍ଥାନଭ୍ରଷ୍ଟ କରାଯାଇ ପାରେ ନାହିଁ ॥୧୭॥ ହେ ନାରଦ, ତ୍ରିବିକ୍ରମ ବାମନଙ୍କର ପାଦଧୌତ ଜଳକୁ ଶିରରେ ଧାରଣ କରି ବଳିରାଜା ଇନ୍ଦ୍ରପଦକୁ ମଧ୍ୟ ତୁଚ୍ଛ ମନେ କରିଥିଲେ । ସେ ବାମନ ଭଗବାନଙ୍କୁ ଯେଉଁ ପ୍ରତିଶ୍ରୁତି ଦେଇଥିଲେ ତାହା ଅନ୍ୟଥା (ଗୁରୁ ଶୁକ୍ରାଚାର୍ଯ୍ୟଙ୍କ ବାରଣସତ୍ତ୍ୱେ) କଲେ ନାହିଁ; ଏପରିକି ନିଜକୁ ମଧ୍ୟ ଦାନ ଦେଇଦେଲେ, (ବାମନଙ୍କ ତୃତୀୟ ପାଦପାଇଁ ନିଜର ମୁଣ୍ଡ ଦେଖାଇଦେଲେ) ॥୧୮॥

ହେ ନାରଦ, ତୁମର ଭକ୍ତିରେ ଅତିଶୟ ସନ୍ତୁଷ୍ଟ ହୋଇ ଭଗବାନ ହଂସ ଅବତାରରେ ତୁମକୁ ଯୋଗଶିକ୍ଷା ଦେଇଥିଲେ ଏବଂ ଆତ୍ମତତ୍ତ୍ୱର ପ୍ରଦୀପସ୍ୱରୂପ ଭାଗବତ ଜ୍ଞାନ କହିଥିଲେ । ଯେଉଁମାନେ ବାସୁଦେବଙ୍କ ଠାରେ ନିଜକୁ ସମର୍ପଣ କରିଥାନ୍ତି, ସେମାନେ କେବଳ ଏହାକୁ ସହଜରେ ଜାଣନ୍ତି ॥୧୯॥ ବିଭିନ୍ନ ଯୁଗରେ (ମନ୍ୱନ୍ତର ମାନଙ୍କରେ) ମନୁ ବଂଶର ପାଳକ ହୋଇ ସେ ସମସ୍ତ ମେଦିନୀ (ଦଶଦିଗ)ରେ ନିଜ ଅପ୍ରତିହତ ପ୍ରଭାବ ଧାରଣ କରନ୍ତି ଏବଂ ତ୍ରିଲୋକ ଉପରେ ଥିବା ସତ୍ୟଲୋକରେ ତାଙ୍କ କମନୀୟ କୀର୍ତ୍ତି ବିସ୍ତାରପୂର୍ବକ ଦୁଷ୍ଟ ରାଜାମାନଙ୍କୁ ଦମନ କରନ୍ତି ॥୨୦॥ ଧନ୍ୱନ୍ତରିରୂପୀ ଭଗବାନ ସ୍ୱନାମଧନ୍ୟ । ତାଙ୍କରି ନାମରେ ହିଁ ସେ ମହାରୋଗୀମାନଙ୍କର ରୋଗକୁ ଶୀଘ୍ର ଭଲ କରନ୍ତି । ସେ ନିଜେ ହିଁ କୀର୍ତ୍ତି; ସେ ଅସୁରକବଳିତ ଯଜ୍ଞଭାଗ ପାଇ ଅମୃତାୟୁ ହୋଇଛନ୍ତି ଏବଂ ସଂସାରରେ ଅବତୀର୍ଣ୍ଣ ହୋଇ ଆୟୁର୍ବେଦ ଶାସ୍ତ୍ର ପ୍ରଦାନ କରିଛନ୍ତି ॥୨୧॥ ଯେତେବେଳେ ବିପଥଗାମୀ ବ୍ରାହ୍ମଣଦ୍ରୋହୀ କ୍ଷତ୍ରିୟମାନେ ନିଜର ବିନାଶପାଇଁ ନାରକୀୟ କାର୍ଯ୍ୟରେ ଲିପ୍ତ ରହନ୍ତି ଓ ପୃଥିବୀର କଣ୍ଟକସ୍ୱରୂପ ହୋଇଯାନ୍ତି, ସେତେବେଳେ ଉଗ୍ରବୀର୍ଯ୍ୟ ସେଇ ଭଗବାନ ପରଶୁରାମରୂପରେ ତାଙ୍କ ତୀକ୍ଷ୍ଣ ପରଶୁର ଧାରରେ ସେମାନଙ୍କୁ ଏକୋଇଶବାର ସଂହାର କରନ୍ତି ॥୨୨॥ (ଆମମାନଙ୍କ ପ୍ରାର୍ଥନା ଶୁଣି) ଆମକୁ ସନ୍ତୁଷ୍ଟ କରିବାକୁ ଏବଂ ମାୟାର ଈଶ୍ୱର ଭଗବାନ୍ ରାମାବତାରରେ ଭରତାଦିଙ୍କ ସହ ଇକ୍ଷ୍ୱାକୁ ବଂଶରେ ଜନ୍ମ ଗ୍ରହଣ କରି ପିତାଙ୍କ ନିର୍ଦ୍ଦେଶରେ ନିଜର ଜାୟା ଓ ଅନୁଜଙ୍କ ସହିତ ବନବାସ କଲେ, ଦଶଗ୍ରୀବ ରାବଣ ତାଙ୍କଠାରେ ବିରୋଧୀ ହୋଇ ନାଶ ଗଲା ॥୨୩॥ ମହାଦେବ ତ୍ରିପୁର ବିମାନକୁ ପୋଡ଼ିବା ପରି ଶତ୍ରୁର ନଗରୀ ଲଙ୍କାପୁରକୁ ଶୀଘ୍ର ଧ୍ୱଂସ କରିବାପାଇଁ ପତ୍ନୀ ବିରହ ବିଧୁର ରାମଚନ୍ଦ୍ରଙ୍କ ରୋଷକଷାୟିତ ଦୃଷ୍ଟିପାତରେ ସମୁଦ୍ରରେ ଥିବା ସର୍ପ, ମଗର ଓ କୁମ୍ଭୀର ଜଳିଯିବା ପରି ହେଲେ ଓ ଭୟରେ କମ୍ପି କମ୍ପି ସମୁଦ୍ର ତାଙ୍କୁ ବାଟ ଛାଡ଼ିଦେଲା ॥୨୪॥ ଇନ୍ଦ୍ରଙ୍କ ସହିତ

ଯୁଦ୍ଧରେ ରାବଣର ବକ୍ଷସ୍ଥଳକୁ ଆଘାତ କରିବାକୁ ଯାଇ ଐରାବତର ଦାନ୍ତ ଚୂର୍ଣ୍ଣ ବିଚୂର୍ଣ୍ଣ ହୋଇ ଦିଗମାନଙ୍କୁ ଧବଳିତ କରିଥିଲା ଏବଂ ସେଠାରେ ରାବଣ ବିଜୟ ଗର୍ବରେ ଅଟ୍ଟହାସ କରିଥିଲା । ଉଭୟ ସୈନ୍ୟଙ୍କ ମଧ୍ୟରେ ନିର୍ଭୟରେ ବିଚରଣ କରୁଥିବା ସୀତା-ହରଣକାରୀ ସେହି ରାବଣର ଅଟ୍ଟହାସକୁ ଧନୁଷ୍ଟଙ୍କାରଦ୍ୱାରା ତା' ପ୍ରାଣସହିତ ସେ ଶୀଘ୍ର ହରଣ କରିଥିଲେ ॥୨୫॥

ଯେତେବେଳେ ଅସୁର ରାଜାମାନେ ନିଜ ସୈନ୍ୟସାମନ୍ତଙ୍କ ଭାରରେ ଏଇ ପୃଥିବୀକୁ ମଥିତ କରିବେ, ସେତେବେଳେ ଭଗବାନ୍ ପୃଥିବୀର କ୍ଲେଶ ନାଶ କରିବାପାଇଁ ବଳରାମଙ୍କ ସହ ଅବତୀର୍ଣ୍ଣ ହେବେ । ତାଙ୍କ ଶୁକ୍ଳକେଶ ବଳରାମଙ୍କର ଓ କୃଷ୍ଣକେଶ ଶ୍ରୀକୃଷ୍ଣଙ୍କର ବର୍ଣ୍ଣସୂଚକ । ସେ ଏପରି ଅତିମାନୁଷ ମହିମାମୟ କର୍ମମାନ କରିବେ, ଯାହାର ରହସ୍ୟ ସାଧାରଣ ଲୋକେ ବୁଝିପାରିବେ ନାହିଁ ॥୨୬॥ ଶୈଶବରେ ପୂତନାର ପ୍ରାଣହରଣ, ତିନି ମାସ ବୟସରେ ଶକଟର ବିନାଶ ଅଥବା ଆଣ୍ଠୋଇ ଆଣ୍ଠୋଇ ଚାଲୁଥିବା ଅବସ୍ଥାରେ ନଭଶ୍ଚୁମ୍ବୀ ଯାମଳାର୍ଜ୍ଜୁନ ବୃକ୍ଷଦୁଇଟିର ଉତ୍ପାଟନ, ତାଙ୍କ ଛଡ଼ା ଅନ୍ୟ କେହି କରିପାରେ ନାହିଁ ॥୨୭॥ ଯମୁନାର ବିଷାକ୍ତ ଜଳ ପାନ କରି ବ୍ରଜର ଗୋପାଳ, ଧେନୁ ଓ ବତ୍ସମାନେ ପ୍ରାଣ ହରାଇବେ । ସେତେବେଳେ ଭଗବାନ୍ ଶ୍ରୀକୃଷ୍ଣ ତାଙ୍କର କୃପାଦୃଷ୍ଟି ବୃଷ୍ଟି କରି ସେ ସମସ୍ତଙ୍କୁ ବଞ୍ଚାଇ ଦେବେ ଏବଂ ଯମୁନାରେ ବିହାର କରି ଜଳର ଶୁଦ୍ଧିପାଇଁ ବିଷଗର୍ବରେ ଜିହ୍ୱା ଲହଲହ କରୁଥିବା କାଳିୟ ନାଗକୁ କାଳିନ୍ଦୀରୁ ବିତାଡ଼ିତ କରିବେ ॥୨୮॥ ସେହିଦିନ ରାତିରେ ଯମୁନାତୀରରେ ବ୍ରଜବାସୀମାନେ ନିଶ୍ଚିନ୍ତରେ ଶୋଇଥିବା ବେଳେ ପାଖରେ ଥିବା ମୁଞ୍ଜ ଘାସ ବନରୁ ପ୍ରବଳ ଦାବାଗ୍ନି ମାଡ଼ିଆସିବ । ବଳରାମଙ୍କ ସହିତ ବ୍ରଜବାସୀଙ୍କ ଆଖି ବନ୍ଦ କରାଇ ସେମାନଙ୍କୁ ନିଶ୍ଚିତ ମରଣରୁ ରକ୍ଷା କରିବେ । କାରଣ ତାଙ୍କ ବୀର୍ଯ୍ୟ ଦୁର୍ଜ୍ଞେୟ ॥୨୯॥ (କୃଷ୍ଣ ଦୁଷ୍ଟ ହେଉଥିବାରୁ) ତାଙ୍କର ମା' ତାଙ୍କୁ ବାନ୍ଧିବାପାଇଁ ଯାହା ଯାହା ଦଉଡ଼ି ଆଣିବେ, ତାହା ତାହା ତାଙ୍କ ବନ୍ଧନପାଇଁ ଯଥେଷ୍ଟ ହେବ ନାହିଁ ଏବଂ କୃଷ୍ଣ ହାଇମାରୁଥିବା ବେଳେ ତାଙ୍କ ପାଟିଭିତରେ ସମସ୍ତ ବ୍ରହ୍ମାଣ୍ଡ ଦର୍ଶନ କରି ଶଙ୍କିତା ଯଶୋଦା ପୁତ୍ରର ପରିଚୟ ପାଇ ପ୍ରକୃତିସ୍ଥ ହେବେ ॥୩୦॥ ବରୁଣ ପାଶଜନିତ ଭୟରୁ ସେ ପିତା ନନ୍ଦଙ୍କୁ ମୁକ୍ତ କରିବେ । ମୟଦାନବର ପୁତ୍ର ବ୍ୟୋମାସୁର ଦ୍ୱାରା ଗୁମ୍ଫାମାନଙ୍କରେ ବନ୍ଦି କରା ହୋଇଥିବା ଗୋପବାଳକମାନଙ୍କୁ ଉଦ୍ଧାର କରିବେ । ଗୋକୁଳବାସୀ ଦିନରେ ଅତି ପରିଶ୍ରମ କରି ରାତିରେ ଶୋଇଥିବାବେଳେ ସେମାନଙ୍କୁ ସେ ବୈକୁଣ୍ଠ ଲୋକକୁ ନେଇଯିବେ ॥୩୧॥ ତାଙ୍କ ନିର୍ଦ୍ଦେଶରେ ଗୋପମାନେ ଇନ୍ଦ୍ରପୂଜା ବନ୍ଦ କରିବାରୁ, କ୍ରୁଦ୍ଧ ଇନ୍ଦ୍ର ଗୋପପୁରର ବିନାଶପାଇଁ ପ୍ରବଳ ବୃଷ୍ଟିପାତ କରାଇବ । କିନ୍ତୁ କୃପାପୂର୍ବକ ପଶୁମାନଙ୍କୁ ରକ୍ଷା କରିବାକୁ ଇଚ୍ଛୁକ ସପ୍ତବର୍ଷୀୟ କୃଷ୍ଣ କ୍ରୀଡ଼ା କଲାପରି ସାତଦିନଧରି ଗିରିଗୋବର୍ଦ୍ଧନଙ୍କୁ ଗୋଟିଏ ହାତରେ ଛତ୍ରପରି ଧରି ରଖିବେ ॥୩୨॥ ଜ୍ୟୋତ୍ସ୍ନା ଧବଳିତ ରାତ୍ରିରେ ବନରେ ରାସକ୍ରୀଡ଼ା କରିବାପାଇଁ ଶ୍ରୀକୃଷ୍ଣ ତାଙ୍କର ମଧୁର ବଂଶୀସ୍ୱନଦ୍ୱାରା ବ୍ରଜବଧୂମାନଙ୍କ କାମଭାବକୁ ଉଦ୍ଦୀପିତ କରିବେ ଏବଂ ସେମାନେ ଆସୁଥିବା ବେଳେ ଧନପତି କୁବେରଙ୍କର ଅନୁଗାମୀ ଶଙ୍ଖଚୂଡ଼ ସେମାନଙ୍କୁ ହରଣ କରିବ; ସେତେବେଳେ ଶ୍ରୀକୃଷ୍ଣ ତା'ର ଶିରଶ୍ଛେଦନ କରିବେ ॥୩୩॥

ପ୍ରଲମ୍ବ, ଧେନୁକ, ବକ, କେଶୀ, ଅରିଷ୍ଟ, ଚାଣୂର, ମୁଷ୍ଟିକ, କୁବଳୟାପୀଡ଼, କଂସ, କାଳଯବନ, ଦ୍ୱିବିଦ, ପୌଣ୍ଡ୍ରକ ବାସୁଦେବ, ଶାଲ୍ୱ, ନରକାସୁର, ବଲ୍ୱଳ, ଦନ୍ତବକ୍ର, ସପ୍ତୋକ୍ଷ, ଶମ୍ବର, ବିଦୂରଥ ଓ ରୁକ୍ମୀ ପ୍ରଭୃତି ଦୁଷ୍ଟମାନେ ତାଙ୍କଦ୍ୱାରା ନିହତ ହେବେ । କାମ୍ବୋଜ, ମତ୍ସ୍ୟ, କୁରୁ, ସୃଂଜୟ, କେକୟାଦି ରଣରଙ୍ଗ ଧନୁର୍ଦ୍ଧାରୀ ବୀରମାନଙ୍କୁ ସେ ବଳରାମ, ଭୀମ, ଅର୍ଜ୍ଜୁନ ଆଦିଙ୍କଦ୍ୱାରା ବଧ କରାଇ ବୈକୁଣ୍ଠଧାମକୁ ପଠାଇଦେବେ ॥୩୪-୩୫॥ ଏହିପରି କାଳଦ୍ୱାରା ଯେତେବେଳେ ଲୋକମାନଙ୍କର ବୁଦ୍ଧିବୃତ୍ତି ସଂକୁଚିତ ହେବ ଓ ଆୟୁଷ କ୍ଷୀଣ ହୋଇପଡ଼ିବ ଏବଂ ସେମାନେ ତାଙ୍କ ନିଜକୃତ ବେଦବାଣୀକୁ ଆଉ ବୁଝିପାରିବେ ନାହିଁ, ସେତେବେଳେ ସେ ତାହା ବିଚାର କରି ଯୁଗକୁ ଯୁଗ ସତ୍ୟବତୀଙ୍କର ଗର୍ଭରୁ ବ୍ୟାସରୂପେ ଆବିର୍ଭୂତ ହୋଇ ବେଦବୃକ୍ଷକୁ ତା'ର ଶାଖାପ୍ରଶାଖାରେ ବିଭାଜିତ କରିବେ ॥୩୬॥ ଦେବଦ୍ୱେଷୀମାନେ ଯେତେବେଳେ ବେଦମାର୍ଗର ସହାୟତା ନେଇ ମୟଦାନବ ନିର୍ମିତ ଅଦୃଶ୍ୟଗାମୀ ଯାନମାନଙ୍କଦ୍ୱାରା ଲୋକସଂହାରରେ ପ୍ରବୃତ୍ତ ହୁଅନ୍ତି, ସେତେବେଳେ

ଭଗବାନ୍ ସେମାନଙ୍କର ମତିକୁ ମୋହିତ ଓ ପ୍ରଲୁବ୍ଧ କରୁଥିବା ପାଷଣ୍ଡ ବେଶ ଧାରଣ କରି ବହୁ ଉପଧର୍ମର ପ୍ରଚାର କରିବେ ।।୩୭।। କଳିଯୁଗର ଅନ୍ତିମ ସମୟରେ, ଯେତେବେଳେ ସାଧୁଲୋକମାନଙ୍କର ଘରେ ମଧ୍ୟ ହରିକଥା ହେବ ନାହିଁ; ବ୍ରାହ୍ମଣ, କ୍ଷତ୍ରିୟ ଓ ବୈଶ୍ୟମାନେ ପାଷଣ୍ଡୀ ହୋଇଯିବେ, ଶୂଦ୍ରମାନେ ରାଜା ହେବେ; ସ୍ୱାହା, ସ୍ୱଧା ଓ ବଷଟ୍‌କାର ଶୁଣାଯିବ ନାହିଁ, ସେତେବେଳେ ଦୁଷ୍ଟମାନଙ୍କୁ ଶାସନ କରିବାପାଇଁ ଭଗବାନ୍ କଳ୍କି ଅବତାର ହେବେ ।।୩୮।।

ସୃଷ୍ଟିବେଳେ ତପସ୍ୟା, ଋଷିଗଣ, ନ'ସଂଖ୍ୟକ ପ୍ରଜାପତି ଓ ମୁଁ ରହିଥାଉ । ସ୍ଥିତି ବା ସୃଷ୍ଟିର ପାଳନ ବେଳେ ଧର୍ମ, ବିଷ୍ଣୁ, ମନୁଗଣ, ଦେବଗଣ ଏବଂ ରାଜନ୍ୟବୃନ୍ଦ ରହନ୍ତି ଏବଂ ସଂହାର ସମୟରେ ଅଧର୍ମ, ରୁଦ୍ରଦେବ, କ୍ରୋଧବଶ ନାମକ ସର୍ପ ଏବଂ ହିଂସ୍ର ଅସୁରମାନେ ରହିଥାଆନ୍ତି । ବହୁଶକ୍ତିଧାରୀ ଭଗବାନଙ୍କର ଏଗୁଡ଼ିକ ମାୟାବିଭୂତି ।।୩୯।। ବିଷ୍ଣୁଙ୍କର ଶକ୍ତିକୁ କିଏ କଳନା କରିପାରିବ ? ଯେଉଁ ବିଜ୍ଞାନୀ ପୃଥିବୀର ଧୂଳିମାନଙ୍କୁ ଗଣିଦେବ, ସେ ମଧ୍ୟ ତାଙ୍କର ଶକ୍ତିକୁ ମାପିପାରିବ ନାହିଁ । ଯେତେବେଳେ ବାମନାବତାରରେ ତ୍ରିବିକ୍ରମ ରୂପରେ ସେ ତିନି ଲୋକକୁ ଧରିଥିଲେ, ସେତେବେଳେ ତାଙ୍କର ପାଦ ବେଗଦ୍ୱାରା ପ୍ରକୃତିଠାରୁ ଆରମ୍ଭ କରି ସତ୍ୟଲୋକ ପର୍ଯ୍ୟନ୍ତ ସମସ୍ତ ଲୋକ ପ୍ରକମ୍ପିତ ହେଲା । ତେଣୁ ନିଜ ଶକ୍ତିରେ ସେ ତା'ର ସ୍ଥିରତା ଆଣିଥିଲେ ।।୪୦।। ହେ ନାରଦ, ମୁଁ ଏବଂ ତୁମର ଅଗ୍ରଜ ଏଇ ମୁନିମାନେ ସେହି ପୁରୁଷଙ୍କ ମାୟାର ଅନ୍ତ ପାଇ ନାହୁଁ । ଅନ୍ୟମାନେ କୁଆଡୁ ଜାଣିବେ ? ଆଦିଦେବ ସହସ୍ରମୁଖ ଶେଷ ଆଦ୍ୟକାଳରୁ ଗୁଣଗାନ କରି କରି ମଧ୍ୟ ଆଜିପର୍ଯ୍ୟନ୍ତ ତାଙ୍କର ଅନ୍ତ ପାଇ ନାହାନ୍ତି ।।୪୧।। ଯାହାଙ୍କ ପ୍ରତି ସେହି ଭଗବାନ ଅନନ୍ତ ଦୟା କରନ୍ତି, ସେମାନେ ଯଦି ନିଷ୍କପଟ ଭାବରେ ସର୍ବାନ୍ତଃକରଣରେ ତାଙ୍କର ଚରଣାଶ୍ରିତ ହୁଅନ୍ତି, ତେବେ ସେମାନେ ସେହି ଦୁସ୍ତର ଦେବମାୟାକୁ ଅତିକ୍ରମ କରନ୍ତି । ଏମାନଙ୍କର ଶ୍ୱାନ, ଶୃଗାଳର ଭକ୍ଷ୍ୟ ଦେହ ପ୍ରତି 'ମୁଁ ଓ ମୋର' —ଏହି ବୁଦ୍ଧି ରହେ ନାହିଁ ।।୪୨।।

ହେ ନାରଦ, ପରମ ପୁରୁଷଙ୍କର ଯୋଗମାୟାକୁ ମୁଁ ଜାଣିଛି, ତଥା ସନକାଦି ତୁମେମାନେ, ଭଗବାନ ଶଙ୍କର, ଦୈତ୍ୟଶ୍ରେଷ୍ଠ ପ୍ରହ୍ଲାଦ, ସ୍ୱାୟଂଭୁବ ମନୁ, ତାଙ୍କ ପତ୍ନୀ ଶତରୂପା, ତାଙ୍କ ପୁତ୍ର ପ୍ରିୟବ୍ରତ ଓ ଉତ୍ତାନପାଦ, ତାଙ୍କ କନ୍ୟା ଆକୂତି, ଦେବହୂତି ଓ ପ୍ରସୂତି, ପ୍ରାଚୀନବର୍ହି, ଋଭୁ, ଅଙ୍ଗ ଏବଂ ଧ୍ରୁବ ମଧ୍ୟ ଜାଣନ୍ତି । ଏମାନଙ୍କ ଛଡ଼ା ଇକ୍ଷ୍ୱାକୁ, ପୁରୂରବା, ମୁଚୁକୁନ୍ଦ , ଜନକ, ଗାଧି, ରଘୁ, ଅମ୍ବରୀଷ, ସଗର, ଗୟ, ନହୁଷ ଆଦି, ତଥା ମାନ୍ଧାତା, ଅଳର୍କ, ଶତଧନୁ, ଅନୁ, ରନ୍ତିଦେବ, ଭୀଷ୍ମ, ବଳି, ଅମୂର୍ତ୍ତରୟ, ଦିଲୀପ, ସୌଭରି, ଉତଙ୍କ, ଶିବି, ଦେବଳ, ପିପ୍ପଳାଦ, ସାରସ୍ୱତ, ଉଦ୍ଧବ, ପରାଶର, ଭୂରିଷେଣ ଓ ଅନ୍ୟମାନଙ୍କ ମଧ୍ୟରେ ବିଭୀଷଣ, ହନୁମାନ, ଶୁକ, ଅର୍ଜୁନ, ଆର୍ଷ୍ଟିଷେଣ, ବିଦୁର, ଶ୍ରୁତଦେବ ଆଦି ମହାତ୍ମାମାନେ ମଧ୍ୟ ଜାଣନ୍ତି । ସ୍ତ୍ରୀଜାତି, ହୂଣ, ଶବର, ଶୂଦ୍ର ଓ ଯେଉଁମାନେ ପାପଜୀବୀ, ଏପରିକି ମନୁଷ୍ୟେତର ଜୀବମାନେ ମଧ୍ୟ ଯଦି ଅଦ୍ଭୁତକର୍ମୀ ହରିଙ୍କର ଭକ୍ତମାନଙ୍କ ଆଚରଣ ବିଷୟରେ ଶିକ୍ଷା ଲାଭ କରନ୍ତି, ତା'ହେଲେ ସେମାନେ ମଧ୍ୟ ତାଙ୍କ ମାୟାକୁ ଜାଣିପାରି ସଂସାର ସାଗର ପାର ହୋଇଯାଆନ୍ତି । ଆଉ ଯେଉଁମାନେ ବୈଦିକ ସଦାଚାର ପାଳନ କରନ୍ତି, ସେମାନଙ୍କ ବିଷୟରେ କିଛି କହିବାର ନାହିଁ ।।୪୩-୪୬।। ସେହି ପରମାତ୍ମାଙ୍କ ତତ୍ତ୍ୱ ସଦା ପ୍ରଶାନ୍ତ, ଶୋକଶୂନ୍ୟ, ଅଭୟ, ଏକମାତ୍ର ଜ୍ଞାନସ୍ୱରୂପ, ଶୁଦ୍ଧ, ସମଦର୍ଶୀ ; ସତ୍, ଅସତ୍ ଏବଂ କାମନାଯୁକ୍ତ କ୍ରିୟା କର୍ମର ଊର୍ଦ୍ଧ୍ୱରେ, ଯେଉଁଠି ଶବ୍ଦ ପହଞ୍ଚି ପାରେ ନାହିଁ, ଏବଂ ଯାହାଙ୍କ ସମ୍ମୁଖରେ ଠିଆ ହେବାପାଇଁ ମାୟା ଲଜ୍ଜା କରି ଦୂରକୁ ପଳାଏ ସେହି ପରମ ପୁରୁଷ ଭଗବାନଙ୍କର ସେହି ପଦକୁ ମୁନିମାନେ 'ବ୍ରହ୍ମ' ବୋଲି ଜାଣନ୍ତି । ଯେପରି ବୃଷ୍ଟିନାଗ ଇନ୍ଦ୍ରଙ୍କର କୂଅ ଖୋଳିବାର ଖଣତି ଆବଶ୍ୟକ ହୁଏ ନାହିଁ, ସେହିପରି ସଂଯତମନା ଯତିମାନଙ୍କର ଭେଦଯୁକ୍ତ ସାଧନ ଆବଶ୍ୟକ ହୁଏ ନାହିଁ ।।୪୭-୪୮।। ସେହି ଫଳଦାତା ବିଭୁ ଭଗବାନ ପ୍ରାଣୀମାନଙ୍କ ସମସ୍ତ ଶୁଭ କର୍ମର ପ୍ରବର୍ତ୍ତକ । ଶରୀରରୁ ପଞ୍ଚଭୂତ ପୃଥକ୍ ହୋଇଯିବା ପରେ ଶରୀର ନଷ୍ଟ ହୋଇଯାଏ; କିନ୍ତୁ ସେଥିରେ ଥିବା ସେହି ଅଜନ୍ମା ପୁରୁଷ ନଷ୍ଟ ହୁଅନ୍ତି ନାହିଁ; ସେ ଆକାଶ ପରି ବିରାଜମାନ ରହନ୍ତି ।।୪୯।। ହେ ବତ୍ସ ! ମୁଁ ସଂକ୍ଷେପରେ ସେହି ବିଶ୍ୱଭାବନ ଭଗବାନଙ୍କର ବିଷୟ ତୁମ ଆଗରେ ବର୍ଣ୍ଣନା କଲି । ସେହି

ଶ୍ରୀହରିଙ୍କ ଛଡ଼ା ଅନ୍ୟ କାର୍ଯ୍ୟ ଓ କାରଣ ନାହିଁ । କିନ୍ତୁ କାରଣଭୂତ ହରି କାର୍ଯ୍ୟରୁ ଭିନ୍ନ ଅଟନ୍ତି ॥୫୦॥ ସର୍ବାନ୍ତର୍ଯାମୀ ଅଖିଳ ବିଶ୍ୱର ଆଧାର ଶ୍ରୀହରି ଭଗବାନଙ୍କଠାରେ ଲୋକମାନଙ୍କର ଯେପରି ଭକ୍ତି ଜାତ ହେବ, ସେହି ସଂକଳ୍ପରେ ତୁମେ ଏହାକୁ ବର୍ଣ୍ଣନା କର । ଏହି ସେହି ଭାଗବତ ଯାହା ଭଗବାନ୍ ମୋତେ କହିଥିଲେ । ଏହା ବିଭୂତିମାନଙ୍କ ସଂଗ୍ରହ । ତୁମେ ଏହାକୁ ବିସ୍ତାର କର । ସେହି ଭଗବାନଙ୍କର ମାୟାରୂପ ଲୀଳାକୁ ଯେ ବର୍ଣ୍ଣନା କରେ, ଅନୁମୋଦନ କରେ ବା ପ୍ରତ୍ୟହ ଶ୍ରଦ୍ଧାର ସହିତ ଶ୍ରବଣ କରେ, ତା'ର ଆତ୍ମା କେବେହେଲେ ମାୟାଦ୍ୱାରା ମୋହଗ୍ରସ୍ତ ହୁଏ ନାହିଁ ॥୫୧-୫୨॥

## ଅଷ୍ଟମ ଅଧ୍ୟାୟ

# ପରିକ୍ଷିତଙ୍କ ପ୍ରଶ୍ନବାଣ

ରାଜା ପରିକ୍ଷିତ ଶୁକଦେବଙ୍କୁ ପଚାରିଲେ, ହେ ବେଦଜ୍ଞଶ୍ରେଷ୍ଠ ବ୍ରହ୍ମନ୍, ନିର୍ଗୁଣ ପରମେଶ୍ୱରଙ୍କ ଗୁଣ ବର୍ଣ୍ଣନା କରିବାପାଇଁ ବ୍ରହ୍ମାଙ୍କଦ୍ୱାରା ଉତ୍ସାହିତ ଦେବର୍ଷି ନାରଦ କାହାକୁ କାହାକୁ କିପରି ଉପଦେଶ ଦେଲେ, ସେହି ତତ୍ତ୍ୱ ମୁଁ ଜାଣିବାକୁ ଇଚ୍ଛା କରୁଛି । ସେହି ଅଦ୍ଭୁତକର୍ମା ଶ୍ରୀହରିଙ୍କର କଥା ସମସ୍ତ ଲୋକର ମଙ୍ଗଳଦାୟକ ଅଟେ ॥୧-୨॥ ହେ ମହାଭାଗ, ଆପଣ ମୋତେ ସେ ସବୁ କଥା କହନ୍ତୁ, ଯେପରିକି ନିଖିଳ ଜଗତର ଆତ୍ମା କୃଷ୍ଣଙ୍କଠାରେ ମୋର ଅନାସକ୍ତ ମନକୁ ନିବେଶ କରି ମୁଁ ତନୁତ୍ୟାଗ କରିବି ॥୩॥ ପ୍ରତିଦିନ ଶ୍ରଦ୍ଧାର ସହିତ ଭଗବାନଙ୍କ ଲୀଳାକୁ ଶୁଣୁଥିବା ଏବଂ ତାଙ୍କ କଥା ଗୁଣୁଥିବା ବ୍ୟକ୍ତିର ହୃଦୟ ମଧ୍ୟରେ ଭଗବାନ୍ ଅତିଶୀଘ୍ର ପ୍ରବେଶ କରନ୍ତି ॥୪॥ ଶରତ୍‌କାଳ ଯେପରି ନଦୀ ପୁଷ୍କରିଣୀର ଜଳକୁ ନିର୍ମଳ କରେ, ଭଗବାନ ଶ୍ରୀକୃଷ୍ଣ ସେହିପରି ନିଜ ଭକ୍ତମାନଙ୍କ କର୍ଣ୍ଣକୁହରଦ୍ୱାରା ସେମାନଙ୍କ ହୃଦପଦ୍ମରେ ପ୍ରବେଶ କରି ସେମାନଙ୍କ ମଳିନତା ଦୂର କରିଦିଅନ୍ତି ॥୫॥ ଯାହାର ଆତ୍ମା ନିର୍ମଳ ହୁଏ, ସେଇ ପୁରୁଷ କୃଷ୍ଣଙ୍କର ପାଦମୂଳକୁ ଛାଡ଼ିପାରେ ନାହିଁ; ଯେପରିକି (ପଥଶ୍ରାନ୍ତ) ପଥିକ ନିଜର ଗୃହକୁ ଫେରିଆସି ସମସ୍ତ ପଥ କ୍ଳେଶରୁ ମୁକ୍ତ ହୋଇ ନିଜ ଗୃହକୁ ଛାଡ଼ିପାରେନାହିଁ ॥୬॥ ଜୀବାତ୍ମାର ପଞ୍ଚଭୂତ ସହିତ କୌଣସି ସମ୍ପର୍କ ନାହିଁ, କିନ୍ତୁ ତା'ର ଶରୀର ପଞ୍ଚଭୂତରେ ହିଁ ଗଢ଼ା ହୁଏ । ଏହା କ'ଣ ବିନା କାରଣରେ ହୋଇଥାଏ ନା କର୍ମାଦି କାରଣବଶରୁ ହୋଇଥାଏ ? ହେ ବ୍ରହ୍ମବେତ୍ତା, ଆପଣ ତାହା ଭଲଭାବରେ ଜାଣନ୍ତି ॥୭॥ ଭଗବାନଙ୍କ ନାଭିରୁ ଲୋକସୃଷ୍ଟିରୂପକ କମଳ ଜାତ ହୋଇଛି ଏବଂ ତଦନୁଯାୟୀ ଏକ ସାଧାରଣ ପୁରୁଷର ପରିମିତ ଅବୟବମାନଙ୍କପରି, ସେଇ ଅସାଧାରଣ ପୁରୁଷଙ୍କର ସମାନ ପରିମିତ ଅବୟବମାନଙ୍କର ଆପଣ ବର୍ଣ୍ଣନା କରିଛନ୍ତି । ତେଣୁ ଉଭୟଙ୍କ ମଧ୍ୟରେ କ'ଣ ପାର୍ଥକ୍ୟ ଅଛି ? ॥୮॥ ଯାହାଙ୍କର ଅନୁଗ୍ରହରୁ ଅଜନ୍ମା ସର୍ବଭୂତାତ୍ମା ବ୍ରହ୍ମା ତାଙ୍କ ନାଭିପଦ୍ମରୁ ଜନ୍ମ ହୋଇ ପ୍ରାଣୀମାନଙ୍କୁ ସୃଷ୍ଟି କରନ୍ତି ଏବଂ ବିଶ୍ୱର ସୃଷ୍ଟି, ସ୍ଥିତି ଓ ପ୍ରଳୟର କାରଣ ସେହି ପୁରୁଷଙ୍କ ରୂପକୁ ଦର୍ଶନ କରନ୍ତି ସେହି ସର୍ବାନ୍ତର୍ଯାମୀ ମାୟାଧୀଶ ପୁରୁଷ ନିଜ ମାୟାକୁ ଛାଡ଼ି କେଉଁଠାରେ ଶୟନ କରିଛନ୍ତି ? ॥୯-୧୦॥

ମୁଁ ଶୁଣିଛି ଯେ ସେହି ପୁରୁଷଙ୍କର ଅଙ୍ଗପ୍ରତ୍ୟଙ୍ଗମାନଙ୍କଦ୍ୱାରା ସମସ୍ତ ଲୋକ ଓ ଲୋକପାଳ କଳ୍ପିତ ହୋଇଛନ୍ତି ଏବଂ ପୁଣି ସମସ୍ତ ଲୋକ ଓ ଲୋକପାଳଙ୍କଦ୍ୱାରା ତାଙ୍କର ଅଙ୍ଗପ୍ରତ୍ୟଙ୍ଗମାନ କଳ୍ପିତ ହୋଇଛି, ଏହି ଦୁଇପ୍ରକାର କଥାର ତାତ୍ପର୍ଯ୍ୟ କ'ଣ ? ॥୧୧॥ କଳ୍ପ ଓ ବିକଳ୍ପମାନଙ୍କର ଭୂତ, ବର୍ତ୍ତମାନ ଏବଂ ଭବିଷ୍ୟତ୍ କାଳ କିପରି ନିରୂପିତ ହୋଇଚି । ସ୍ଥୂଳଦେହାଭିମାନୀ ମନୁଷ୍ୟ, ପିତୃ ଓ ଦେବାଦିଙ୍କ ଆୟୁ ପରିମାଣ କଣ ? ॥୧୨॥ ହେ ଦ୍ୱିଜୋତ୍ତମ ! କାଳର ସୂକ୍ଷ୍ମ ଓ ସ୍ଥୂଳ ଗତି କିପରି ସ୍ଥିର କରାଯାଇଛି ଏବଂ କେଉଁ କେଉଁ କର୍ମ ପ୍ରଭାବରେ ଜୀବମାନେ କେଉଁ କେଉଁ ଗତି ଲାଭ କରନ୍ତି ? ॥୧୩॥ ସତ୍ତ୍ୱ, ରଜ ଓ ତମ

--ଏହି ଗୁଣମାନଙ୍କ ପରିଣାମରୂପକ ଦେହଧାରୀ ଜୀବମାନଙ୍କ ମଧ୍ୟରେ କେଉଁ କର୍ମଦ୍ୱାରା କିପରି ଦେହ ମିଳେ ? ॥୧୪॥ ପୃଥିବୀ, ପାତାଳ, ଦିଗ୍‌ବିଦିଗ, ଆକାଶ, ଗ୍ରହ, ନକ୍ଷତ୍ର, ପର୍ବତ, ନଦନଦୀ, ସମୁଦ୍ର ଓ ଦ୍ୱୀପମାନଙ୍କର ଏବଂ ଏହିସ୍ଥାନବାସୀ ଜୀବମାନଙ୍କର ଉତ୍ପତ୍ତି କିପରି ହୋଇଛି ? ॥୧୫॥ ବ୍ରହ୍ମାଣ୍ଡରୂପକ ଅଣ୍ଡକୋଷର ଭିତର ଏବଂ ବାହାରର ପରିମାଣ, ମହାପୁରୁଷମାନଙ୍କର ଚରିତ୍ର ଏବଂ ବର୍ଣ୍ଣାଶ୍ରମମାନଙ୍କର ନିର୍ଧାରଣ, ବିଭିନ୍ନ ଯୁଗ ଏବଂ ଯୁଗମାନଙ୍କ ପରିମାଣ, ଯୁଗେ ଯୁଗେ ଧର୍ମ ଏବଂ ଭଗବାନ ହରିଙ୍କର ଆଶ୍ଚର୍ଯ୍ୟ ଅବତାର -ଲୀଳାମାନ କଣ ? ॥୧୬-୧୭॥ ମନୁଷ୍ୟମାନଙ୍କର ସାଧାରଣ ଧର୍ମ ଓ ବର୍ଣ୍ଣାଶ୍ରମ (ବିଶେଷ) ଧର୍ମ କିପରି; ବିଭିନ୍ନ ବ୍ୟବସାୟୀଙ୍କର, ରାଜର୍ଷିମାନଙ୍କର ଏବଂ ବିପତ୍ତି ସମୟରେ ଲୋକମାନଙ୍କର ଧର୍ମ କଣ ? ॥୧୮॥ ପ୍ରକୃତି ଆଦି ତତ୍ତ୍ୱମାନଙ୍କର ସଂଖ୍ୟା କେତେ, ଏମାନଙ୍କର ସ୍ୱରୂପ ଏବଂ ଲକ୍ଷଣ କଣ ? ଭଗବାନଙ୍କର ଆରାଧନା ବିଧି ଏବଂ ଆଧ୍ୟାତ୍ମିକ ଯୋଗର ବିଧି କଣ ? ॥୧୯॥ ଯୋଗେଶ୍ୱରଙ୍କର କେଉଁ କେଉଁ ଐଶ୍ୱର୍ଯ୍ୟଲାଭଦ୍ୱାରା କଣ କଣ ଗତି ହୁଏ, ଯୋଗୀମାନେ ଯେପରି ଲିଙ୍ଗଶରୀରକୁ ଲୀନ କରନ୍ତି ? ବେଦ, ଉପବେଦ, ଧର୍ମଶାସ୍ତ୍ର, ଇତିହାସ ଓ ପୁରାଣମାନଙ୍କର ସ୍ୱରୂପ କଣ ? ॥୨୦॥ ସବୁ ପ୍ରାଣୀଙ୍କର ସୃଷ୍ଟି, ସ୍ଥିତି ଓ ଲୟ କିପରି ହୁଏ, ଇଷ୍ଟ(ବୈଦିକ କର୍ମ), ପୂର୍ତ୍ତ (ସ୍ମାର୍ତ୍ତକର୍ମ) ଓ ଅଗ୍ନିହୋତ୍ରାଦି କାମ୍ୟ କର୍ମ ଏବଂ ଧର୍ମାର୍ଥକାମ -ଏହି ତ୍ରିବର୍ଗର ସାଧନ ବିଧି କଣ ? ॥୨୧॥ ପ୍ରଳୟ ସମୟରେ ପ୍ରକୃତିରେ ଲୀନ ହୋଇଥିବା ଜୀବମାନଙ୍କର ଉତ୍ପତ୍ତି, ପାଷଣ୍ଡ ଧର୍ମର ଉତ୍ପତ୍ତି, ଜୀବର ବନ୍ଧନ ଓ ମୋକ୍ଷର ସ୍ୱରୂପ ଏବଂ ଜୀବ ସ୍ୱରୂପରେ କିପରି ଅବସ୍ଥାନ କରେ ? ॥୨୨॥ କିପରି ପରମ ସ୍ୱତନ୍ତ୍ର ଭଗବାନ ଆତ୍ମମାୟା ଦ୍ୱାରା ଲୀଳା ରଚନା କରନ୍ତି, ଅଥବା ପ୍ରଳୟସମୟରେ ମାୟାକୁ ତ୍ୟାଗ କରି ସାକ୍ଷୀସ୍ୱରୂପ ରହନ୍ତି ? ॥୨୩॥ ହେ ମହାମୁନି ! ଯାହାକିଛି ଆପଣଙ୍କୁ ପଚାରିଲି ଏବଂ ପଚାରି ପାରି ନାହିଁ, ତାତ୍ତ୍ୱିକ ଦୃଷ୍ଟିରୁ ତାହା ସବୁ ଯଥାକ୍ରମେ ମୋତେ ବୁଝାଇ ଦିଅନ୍ତୁ ; କାରଣ ମୁଁ ଆପଣଙ୍କର ଶରଣାଗତ ॥୨୪॥ ପରମେଷ୍ଠୀ ବ୍ରହ୍ମାଙ୍କ ପରି ଏହିସବୁ ତତ୍ତ୍ୱ ଜାଣିଥିବା ବ୍ୟକ୍ତି ହେଉଛନ୍ତି ଆପଣ, ଆପଣ ହିଁ ପ୍ରତ୍ୟକ୍ଷ ପ୍ରମାଣ । ଅନ୍ୟମାନେ ପୂର୍ବସୂରି ଓ ପୂର୍ବ ପରମ୍ପରାକୁ ଅନୁସରଣ କରିଛନ୍ତି ॥୨୫॥ ହେ ବ୍ରହ୍ମନ୍, ଆପଣଙ୍କ ବଚନ-ସମୁଦ୍ରରୁ ଯେଉଁ କୃଷ୍ଣକଥାମୃତ ଝରିଆସୁଛି ତାକୁ ପାନ କରି ଆଉ ଅନଶନ କଷ୍ଟ ମୋର ପ୍ରାଣକୁ ଆଦୌ ବାଧୁ ନାହିଁ ॥୨୬॥ ସୂତ କହିଲେ, ବିଷ୍ଣୁରାତ ରାଜା ପରିକ୍ଷିତ ଭଗବାନଙ୍କ କଥା ଶୁଣାଇବାପାଇଁ ବ୍ରହ୍ମର୍ଷି ଶୁକଦେବଙ୍କୁ ସଭାରେ ଏପରି ଅନୁରୋଧ କରିବାରୁ ସେ ଅତ୍ୟନ୍ତ ପ୍ରୀତ ହୋଇ ବ୍ରହ୍ମକଳ୍ପର ଆରମ୍ଭରେ ଶ୍ରୀଭଗବାନ୍ ବ୍ରହ୍ମାଙ୍କୁ ଯାହା କହିଥିଲେ, ସେହି ବେଦତୁଲ୍ୟ ଭାଗବତ ନାମକ ପୁରାଣକୁ ବର୍ଣ୍ଣନା କଲେ ॥୨୭-୨୮॥ ପାଣ୍ଡୁବଂଶର ଶ୍ରେଷ୍ଠ ରାଜା ପରିକ୍ଷିତ ଯାହା ଯାହା ପଚାରିଲେ, ତାହା ସବୁ ଶ୍ରୀ ଶୁକଦେବ କ୍ରମାନୁସାରେ କହିବାକୁ ଆରମ୍ଭ କଲେ ॥୨୯॥

## ନବମ ଅଧ୍ୟାୟ

# ଚତୁଃଶ୍ଳୋକୀ ଭାଗବତ

ଶୁକ କହିଲେ, ହେ ରାଜା, ସ୍ୱପ୍ନଦ୍ରଷ୍ଟାର ଯେପରି ସ୍ୱପ୍ନରେ ଦେଖାଯାଉଥିବା ବସ୍ତୁ ସହିତ କୌଣସି ସମ୍ବନ୍ଧ ନ ଥାଏ, ସେହିପରି ଦେହାତୀତ ଓ କେବଳ ଅନୁଭବସ୍ୱରୂପ ଆତ୍ମାର ଦୃଶ୍ୟମାନ ବସ୍ତୁମାନଙ୍କ ସହିତ ତତ୍ତ୍ୱତଃ ସମ୍ପର୍କ ନ ଥାଏ ॥୧॥ ବହୁରୂପୀ ମାୟାଦ୍ୱାରା ଜୀବ ବହୁରୂପ ଭଳି ଜଣାଯାଏ ଏବଂ ଏହି ମାୟା ସତ୍ତ୍ୱ, ରଜ ଓ ତମ ଗୁଣମାନଙ୍କରେ ରମଣ କରି ସେ ସବୁକୁ 'ମୋର ଏବଂ ମୁଁ' ବୋଲି ମନେ କରେ ॥୨॥ ସେ ଯେତେବେଳେ ନିଜର କାଳାତୀତ ଏବଂ ମାୟାତୀତ ମହିମାରେ ହିଁ ରମଣ କରେ, ସେତେବେଳେ ସେ ସଂମୋହମୁକ୍ତ ହୋଇ 'ମୁଁ ଓ ମୋର' ଏହି ଉଭୟ ଭାବ ଛାଡ଼ି ପରିପୂର୍ଣ୍ଣ ସ୍ୱରୂପରେ

ରହେ ॥୩॥ ବ୍ରହ୍ମାଙ୍କର ଅକପଟ ତପଦ୍ୱାରା ସେବିତ ଭଗବାନ ତାଙ୍କୁ ଚିଦ୍‌ଘନ ରୂପ ଦେଖାଇଥିଲେ ଓ ଜୀବର ଆତ୍ମଜ୍ଞାନ ସମ୍ପର୍କରେ ତାଙ୍କୁ କହିଥିଲେ ॥୪॥ ତିନିଲୋକର ପରମଗୁରୁ ଆଦିଦେବ ବ୍ରହ୍ମା ନିଜ ପଦ୍ମାସନରେ ବସି ସୃଷ୍ଟି ରଚନାପାଇଁ ଚିନ୍ତା କଲେ, କିନ୍ତୁ ଯେଉଁ ପ୍ରଜ୍ଞାଦ୍ୱାରା ସୃଷ୍ଟିର ନିର୍ମାଣବିଧି ସମ୍ଭବ ତାହା ସେ ଜାଣିପାରିଲେ ନାହିଁ ॥୫॥

ହେ ରାଜା, ଦିନେ ପ୍ରଳୟ ଜଳରେ ତାହା ଚିନ୍ତା କରୁଥିବାବେଳେ ଦୁଇଟି ଅକ୍ଷର ଶୁଣିବାକୁ ପାଇଲେ । ସେ ଦୁଇଟି ହେଉଛି ବ୍ୟଞ୍ଜନ ବର୍ଣ୍ଣମଧ୍ୟରେ ଷୋହଳ ଓ ଏକୋଇଶ ଅକ୍ଷର; ଅର୍ଥାତ୍ 'ତପ' । ଯାହାକି ନିଷ୍କାମ ତ୍ୟାଗୀମାନଙ୍କର ଏକମାତ୍ର ଧନ ॥୬॥ ତାହା ଶୁଣି କିଏ ତାହା କହିଲେ, ତାଙ୍କୁ ଦେଖିବା ଇଚ୍ଛାରେ ସେ ଚାରିଆଡ଼କୁ ଚାହିଁ, କାହାରିକୁ ଦେଖିପାରିଲେ ନାହିଁ । ତେଣୁ ତପସ୍ୟା କରିବାପାଇଁ ତାଙ୍କୁ ଆଦେଶ ମିଳିଛି ବୋଲି ବିଚାର କରି ସେ ନିଜର ପଦ୍ମାସନରେ ବସି ତପସ୍ୟାରେ ମନୋନିବେଶ କଲେ ॥୭॥ ତପସ୍ୱୀମାନଙ୍କ ମଧ୍ୟରେ ଶ୍ରେଷ୍ଠ ଅମୋଘଦ୍ରଷ୍ଟା ବ୍ରହ୍ମା ଏକ ସହସ୍ର ଦିବ୍ୟବର୍ଷ ଏକାଗ୍ର ଚିତ୍ତରେ ନିଜର ପ୍ରାଣ, ମନ, କର୍ମେନ୍ଦ୍ରିୟ ଓ ଜ୍ଞାନେନ୍ଦ୍ରିୟକୁ ବଶୀଭୂତ କରି ତପସ୍ୟା କଲେ ଯଦ୍ୱାରା ସକଳ ଲୋକ ପ୍ରକାଶିତ ହେଲା ॥୮॥

ବ୍ରହ୍ମାଙ୍କଦ୍ୱାରା ସନ୍ତୁଷ୍ଟ ହୋଇ ଭଗବାନ ତାଙ୍କୁ ନିଜ ଲୋକ ଦେଖାଇଲେ, ଯାହା ହେଉଚି ଶ୍ରେଷ୍ଠ ଲୋକ ଓ ତା'ଠାରୁ ବଳି ଅନ୍ୟ କୌଣସି ଲୋକ ନାହିଁ । ସେହି ଲୋକରେ କ୍ଳେଶ, ମୋହ ଏବଂ (ଜନ୍ମମୃତ୍ୟୁର) ଭୟ ନ ଥାଏ । ଆତ୍ମଦର୍ଶୀ ଦେବଗଣ ତାର ସ୍ତୁତିଗାନ କରନ୍ତି ॥୯॥ ସେଠାରେ ରଜଗୁଣ, ତମଗୁଣ କିମ୍ବା ସେ ଦୁଇଟି ଦ୍ୱାରା ମିଶ୍ରିତ ସତ୍ତ୍ୱଗୁଣ ନ ଥାଏ, ସେଠାରେ କାଳର ପ୍ରଭାବ ନାହିଁ ଏବଂ ମାୟାର ପ୍ରଭାବ ନାହିଁ । ତେଣୁ ଅନ୍ୟ ମାୟାଜାତ ବସ୍ତୁମାନଙ୍କର ପ୍ରଶ୍ନ ଉଠୁ ନାହିଁ । ଏଠାରେ କେବଳ ସୁରାସୁରପୂଜିତ ଶ୍ରୀହରିଙ୍କ ପାରିଷଦମାନେ ରହିଥାନ୍ତି ॥୧୦॥ ଏମାନଙ୍କର ଶ୍ୟାମଳ ଓ ଉଜ୍ଜ୍ୱଳ ଅଙ୍ଗକାନ୍ତି, ପଦ୍ମପତ୍ର ପରି ଚକ୍ଷୁ, ପୀତବସ୍ତ୍ର; ଚତୁର୍ଭୁଜଯୁକ୍ତ ଖୁବ୍ ସୁଲଭ ଦେହରେ ମଣିଯୁକ୍ତ ଅଳଙ୍କାରମାନ ଶୋଭାପାଉଥିଲା । ସେହି ମାଳା କୁଣ୍ଡଳ ମୁକୁଟଧାରୀ ଦିବ୍ୟ ପୁରୁଷମାନେ ପ୍ରବାଳ ବୈଦୂର୍ଯ୍ୟ ଓ ମୃଣାଳର ଆଭା ହରଣ କରୁଥିଲେ ॥୧୧॥ ଆକାଶ ବିଦ୍ୟୁତ୍‌ଯୁକ୍ତ ମେଘମାଳାଦ୍ୱାରା ଯେପରି ଶୋଭା ପାଏ, ସେହି ଲୋକ ସେହିପରି ସୁନ୍ଦରୀ ରମଣୀମାନଙ୍କ ଉଜ୍ଜ୍ୱଳ କାନ୍ତିଦ୍ୱାରା ଏବଂ ମହାତ୍ମାମାନଙ୍କର ସୁନ୍ଦର ବିମାନସମୂହ ଦ୍ୱାରା ଶୋଭାପାଉଥାଏ ॥୧୨॥ ସେହି ଲୋକରେ ଐଶ୍ୱର୍ଯ୍ୟର ମୂର୍ତ୍ତିମତୀ ଲକ୍ଷ୍ମୀ ସମସ୍ତ ବିଭୂତିଦ୍ୱାରା ବହୁଭାବରେ ଶ୍ରୀହରିଙ୍କ ପଦଯୁଗଳର ପୂଜା କରନ୍ତି । ଦୋଳାରେ ଥାଇ ଲକ୍ଷ୍ମୀ ପ୍ରିୟତମଙ୍କର ଲୀଳା ଗାଉଥିବାବେଳେ ବସନ୍ତର ଅନୁଚର ଭ୍ରମରମାନେ ପାଖରେ ଗୁଣୁଗୁଣୁ ହୋଇ ଲକ୍ଷ୍ମୀଙ୍କର ଗୁଣଗାନ କରୁଥାନ୍ତି ॥୧୩॥ ବ୍ରହ୍ମା ଦେଖିଲେ, ଅଖିଳ ଭକ୍ତଜନଙ୍କର ପତି, ଶ୍ରୀପତି, ଯଜ୍ଞପତି ଓ ଜଗତ୍‌ପତିଙ୍କୁ ସେଠାରେ ବିଦ୍ୟମାନ ସୁନନ୍ଦ, ନନ୍ଦ, ପ୍ରବଳ, ଅର୍ହଣ ଆଦି ତାଙ୍କ ମୁଖ୍ୟ ପାରିଷଦମାନେ ଚାରିଆଡ଼ୁ ବେଢ଼ି ସେବା କରୁଛନ୍ତି ॥୧୪॥ ତାଙ୍କର ଦୃଷ୍ଟି ଆସବ ଭଳି ସମସ୍ତଙ୍କୁ ମୁଗ୍ଧ କରୁଛି । ଭୃତ୍ୟମାନଙ୍କର ପ୍ରସାଦପାଇଁ ସେ ସେମାନଙ୍କୁ ସ୍ନେହରେ ଚାହିଁଛନ୍ତି । ତାଙ୍କ ମୁଖମଣ୍ଡଳ ପ୍ରସନ୍ନ ସ୍ମିତହାସ୍ୟଯୁକ୍ତ ଓ ଚକ୍ଷୁଦ୍ୱୟ ଈଷତ ଅରୁଣବର୍ଣ୍ଣ; ସେ କିରୀଟ, କୁଣ୍ଡଳ, ପୀତବସ୍ତ୍ର ପରିଧାନ କରି ଚତୁର୍ଭୁଜରୂପେ ବିଦ୍ୟମାନ । ତାଙ୍କ ବକ୍ଷସ୍ଥଳରେ ଲକ୍ଷ୍ମୀ ଶୋଭା ପାଉଛନ୍ତି ॥୧୫॥ ପୁଣି ସେ ଶ୍ରେଷ୍ଠ ସିଂହାସନରେ ବସିଛନ୍ତି । ତାଙ୍କୁ ଘେରି ରହିଛନ୍ତି ପୁରୁଷ, ପ୍ରକୃତି, ମହତତ୍ତ୍ୱ ଓ ଅହଙ୍କାର; ପୁଣି ମନ, ଦଶ ଇନ୍ଦ୍ରିୟ, ପଞ୍ଚ ମହାଭୂତ ଏବଂ ଶବ୍ଦ ଆଦି ପାଞ୍ଚ ତନ୍ମାତ୍ର-ଏହିପରି ତାଙ୍କର ପଚିଶଟି ଶକ୍ତି । ଯେଉଁସବୁ ଐଶ୍ୱର୍ଯ୍ୟ ଅନ୍ୟମାନଙ୍କପାଇଁ ଅଲଭ୍ୟ, ମାତ୍ର ତାଙ୍କପାଇଁ ସ୍ୱାଭାବିକ, ସେଇ ଐଶ୍ୱର୍ଯ୍ୟରେ ସେ ଯୁକ୍ତହୋଇ ନିଜ ଧାମରେ ହିଁ ରମଣ କରୁଛନ୍ତି ॥୧୬॥ ତାଙ୍କୁ ଦେଖିବାମାତ୍ରେ ବ୍ରହ୍ମାଙ୍କ ଅନ୍ତର ଆନନ୍ଦରେ ପରିପୂର୍ଣ୍ଣ ହୋଇଗଲା; ଶରୀର ପୁଲକିତ ହେଲା । ଚକ୍ଷୁରେ ପ୍ରେମାଶ୍ରୁ ଭରିଗଲା । ପରମହଂସମାନଙ୍କ ମାର୍ଗଦ୍ୱାରା ଯାହା ପ୍ରାପ୍ତ ହୁଏ, ସେହି ପାଦପଦ୍ମକୁ ବ୍ରହ୍ମା ପ୍ରଣାମ କଲେ ॥୧୭॥ ପ୍ରଜାସୃଷ୍ଟିପାଇଁ ନିଜ ଆଜ୍ଞାପାଳନରେ ସମର୍ଥ ପ୍ରିୟ ବ୍ରହ୍ମାଙ୍କୁ ନିଜ ସମ୍ମୁଖରେ ଉପସ୍ଥିତ ଦେଖି ଏବଂ ପ୍ରସନ୍ନତାର ସହିତ ତାଙ୍କ ସହିତ ହାତ ମିଳାଇ ମନ୍ଦହାସଯୁକ୍ତ ମଧୁର ବାଣୀରେ ଭଗବାନ ତାଙ୍କୁ କହିବା ଆରମ୍ଭ କଲେ ॥୧୮॥ ଶ୍ରୀ ଭଗବାନ କହିଲେ, ହେ ବ୍ରହ୍ମା ! ତୁମର ଗର୍ଭରେ ବେଦ

ବିଦ୍ୟମାନ । କପଟଯୋଗୀମାନେ ମୋତେ କେବେ ସନ୍ତୁଷ୍ଟ କରିପାରନ୍ତି ନାହିଁ । ମାତ୍ର ସୃଷ୍ଟି କରିବା ଇଚ୍ଛାରେ ଦୀର୍ଘକାଳସଞ୍ଚିତ ତପସ୍ୟାଦ୍ୱାରା ମୋତେ ତୁମେ ସନ୍ତୁଷ୍ଟ କରିଛ ॥୧୯॥ ହେ ବ୍ରହ୍ମା, ତୁମର ମଙ୍ଗଳ ହେଉ । ମୁଁ ସମସ୍ତ ବରର ଇଷ୍ଟ । ତୁମର ଯାହା ଇଚ୍ଛା ହେଉଛି, ସେଇ ବର ମୋତେ ମାଗିନିଅ । ଜୀବର ମଙ୍ଗଳପାଇଁ ସମସ୍ତ ସାଧନାର ଶେଷ ମୋର ଦର୍ଶନରେ ହିଁ ହୋଇଥାଏ ॥୨୦॥ ତୁମେ ଶୂନ୍ୟ ଜଳରେ 'ତପ' 'ତପ' ବୋଲି କେବଳ ମୋ ଠାରୁ ଶୁଣି ଯେଉଁ ଏତେବଡ଼ ତପସ୍ୟା କଲ, ତେଣୁ ମୋ' ଇଚ୍ଛାରେ ମୋର ପରମଧାମ ଦର୍ଶନ କଲ ॥୨୧॥ ସୃଷ୍ଟି ଆରମ୍ଭ କରିବାରେ ତୁମେ କିଂକର୍ତ୍ତବ୍ୟବିମୂଢ଼ ହେବାରୁ ମୁଁ ତୁମକୁ ତପସ୍ୟା କରିବାପାଇଁ ଉପଦେଶ ଦେଇଥିଲି । ହେ ବ୍ରହ୍ମା ! ତପସ୍ୟା ହେଉଛି ମୋର ହୃଦୟ (ଶକ୍ତି) ଏବଂ ମୁଁ ହେଉଛି ତପସ୍ୟାର ସ୍ୱରୂପ ॥୨୨॥ ତପସ୍ୟାଦ୍ୱାରା ହିଁ ମୁଁ ଏହି ସଂସାରକୁ ସୃଷ୍ଟି କରେ; ପୁଣି ତପସ୍ୟାଦ୍ୱାରା ଗ୍ରାସ କରେ । ତପସ୍ୟାଦ୍ୱାରା ମୁଁ ବିଶ୍ୱକୁ ପାଳନ କରେ; ଦୁଷ୍କର ତପସ୍ୟା ହିଁ ମୋର ଶକ୍ତି ॥୨୩॥

ବ୍ରହ୍ମା କହିଲେ, ହେ ଭଗବାନ୍! ଆପଣ ସମସ୍ତ ପ୍ରାଣୀଙ୍କର ହୃଦୟରେ ସାକ୍ଷୀ ସ୍ୱରୂପ ବିଦ୍ୟମାନ । ତେଣୁ ଆପଣ ନିଜ ଅବ୍ୟର୍ଥ ଜ୍ଞାନଦ୍ୱାରା ପ୍ରାଣୀ କ'ଣ କରିବାକୁ ଚାହୁଁଛି, ତାହା ଜାଣନ୍ତି ॥୨୪॥ ତଥାପି ହେ ନାଥ, ମୁଁ ମାଗୁଛି, ମୋତେ ମୋ ଯାଚିତ ବସ୍ତୁ ଦାନ କରନ୍ତୁ -- ଆପଣ କହନ୍ତୁ ଆପଣ ଅରୂପ ହେଲେ ମଧ୍ୟ ଆପଣଙ୍କର ସୂକ୍ଷ୍ମ ଓ ସ୍ଥୂଳ ରୂପକୁ ମୁଁ ଯେପରି ଜାଣିପାରିବି ॥୨୫॥ ଆତ୍ମମାୟାଦ୍ୱାରା ନାନାଶକ୍ତିଯୁକ୍ତ ବିଶ୍ୱକୁ ଆପଣ ନିଜେ ବ୍ରହ୍ମାଦି ରୂପ ଧରି ସୃଷ୍ଟି, ପାଳନ ଓ ସଂହାର କରନ୍ତି ॥୨୬॥ ଆପଣ ସିଦ୍ଧସଂକଳ୍ପ; ବୁଢ଼ିଆଣୀ ଯେପରି ନିଜ ମୁହଁରୁ ଜାଲ ବୁଣି ସେଥିରେ କ୍ରୀଡ଼ା କରେ, ସେହିପରି ଆପଣ ନିଜେ ନିଜ ସୃଷ୍ଟିଦ୍ୱାରା କ୍ରୀଡ଼ା କରିଥାନ୍ତି । ହେ ମାଧବ ! ମୁଁ ଏହାର ତତ୍ତ୍ୱ ଜାଣିବାକୁ ଚାହେଁ, ମୋତେ ସେହି ଜ୍ଞାନ କୌଶଳ ପ୍ରଦାନ କରନ୍ତୁ ॥୨୭॥ ମୁଁ ଆପଣଙ୍କ ଆଜ୍ଞାକୁ ନିରଳସ ଭାବରେ ପାଳନ କରିବି ଏବଂ ଆପଣଙ୍କ ଅନୁଗ୍ରହରୁ ପ୍ରଜାସୃଷ୍ଟି କଲେହେଁ ଅହଙ୍କାର ଦ୍ୱାରା ମୁଁ ବନ୍ଧ ହେବି ନାହିଁ ॥୨୮॥ ହେ ପ୍ରଭୁ! ବନ୍ଧୁ ବନ୍ଧୁକୁ ଗ୍ରହଣକଲା ଭଳି ଆପଣ ମୋ' ହାତ ଧରି ମୋତେ ସମ୍ମାନିତ କରିଛନ୍ତି; ପ୍ରଜାସୃଷ୍ଟିରୂପକ ଆପଣଙ୍କ ସେବାରେ ମୁଁ ଅବିଚଳିତ ରହିବି ଓ ଜୀବମାନଙ୍କୁ ଭାଗ ଭାଗ କରିବି । ସେପର୍ଯ୍ୟନ୍ତ 'ମୁଁ ଅଜ ବା ସ୍ୱତନ୍ତ୍ର' ବୋଲି ଅଭିମାନଜନିତ ଉତ୍କଟ ଗର୍ବ ଯେପରି ମୋ ମନରେ ନ ରହେ ॥୨୯॥

ଶ୍ରୀ ଭଗବାନ କହିଲେ, ହେ ବ୍ରହ୍ମା ! ଯେଉଁ ଜ୍ଞାନ ଅନୁଭବସିଦ୍ଧ ଓ ଭକ୍ତିଯୁକ୍ତ ତାହା ପରମ ଗୋପନୀୟ ହେଲେ ମଧ୍ୟ ମୁଁ କହୁଛି, ଗ୍ରହଣ କର ॥୩୦॥ ମୁଁ କ'ଣ, କ'ଣ ମୋର ସତ୍ତା ଏବଂ ମୋର ରୂପ, ଗୁଣ ଓ କର୍ମମାନ କଣ, ସେ ସବୁ କଥା ମୋ ଅନୁଗ୍ରହରୁ ତୁମେ ଜାଣିପାରିବ ॥୩୧॥ ସୃଷ୍ଟିର ପୂର୍ବରୁ ମୁଁ ହିଁ କେବଳ ଥିଲି । ମୋ ଛଡ଼ା ଯାହା ସ୍ଥୂଳ, ସୂକ୍ଷ୍ମ ଏବଂ ସେ ଦୁହିଁଙ୍କ କାରଣ (ପ୍ରକୃତି)- କିଛି ବି ନ ଥିଲା । ସୃଷ୍ଟିପରେ ମଧ୍ୟ ମୁଁ ଅଛି ଏବଂ ପ୍ରଳୟକାଳରେ ଯାହା ରହିବ ତାହା ହେଉଚି ମୁଁ ॥୩୨॥ ଯାହା ନ ଥାଇ କରି ଅଛି ବୋଲି ଦେଖାଯାଏ ଏବଂ ଯାହା ଥାଇକରି ନାହିଁ ବୋଲି ମନେ ହୁଏ, ତାହା କେବଳ ମୋର ମାୟା ବୋଲି ଜାଣିବା ଉଚିତ । ଯଥା--ଜଳମଧ୍ୟରେ ଚନ୍ଦ୍ର ନ ଥିଲେ ମଧ୍ୟ ପ୍ରତିବିମ୍ବଯୋଗୁଁ ତାହା ଥିବାପରି ମନେହୁଏ ଏବଂ ଗ୍ରହମଣ୍ଡଳରେ (ତମୋରୂପୀ) ରାହୁ ଥିଲେ ମଧ୍ୟ ନ ଥିବାପରି ଜଣାଯାଏ ॥୩୩॥

ପଞ୍ଚମହାଭୂତଦ୍ୱାରା ସମସ୍ତ ଜୀବର ଶରୀର ଗଠିତ । ସେମାନେ ସୃଷ୍ଟିପରେ ଏହି ଦେହରେ ଥିଲେ ମଧ୍ୟ ସୃଷ୍ଟିପୂର୍ବରୁ ଦେହରେ ନ ଥାନ୍ତି । ସେହିପରି ମୁଁ ସୃଷ୍ଟିପରେ ସମସ୍ତ ଜୀବ ମଧ୍ୟରେ (ଆତ୍ମାରୂପରେ) ଥାଏ ମାତ୍ର ପୂର୍ବରୁ ନ ଥାଏ ॥୩୪॥ ଯେ ଆତ୍ମତତ୍ତ୍ୱ ଜାଣିବାପାଇଁ ଚାହେ, ତା'ର ଏହା ହିଁ ଜିଜ୍ଞାସାର ବିଷୟ । କାର୍ଯ୍ୟ ଥିଲେ ଯେପରି ତା'ର କାରଣ ଥାଏ ଏବଂ କାର୍ଯ୍ୟର ବିନାଶ ହେଲେ ମଧ୍ୟ କାରଣର ବିନାଶ ହୁଏ ନାହିଁ, ସେହିପରି ଉଭୟ ଅବସ୍ଥାରେ ମୁଁ ସର୍ବଦା ଏବଂ ସର୍ବତ୍ର ବିଦ୍ୟମାନ । ତତ୍ତ୍ୱଜିଜ୍ଞାସୁମାନଙ୍କର ଏହା ଜାଣିବା ଆବଶ୍ୟକ ॥୩୫॥ ବ୍ରହ୍ମା, ତୁମେ ଏକାଗ୍ରଚିତ୍ତରେ ମୋର ଏହି ସିଦ୍ଧାନ୍ତ ପ୍ରତି ସମ୍ପୂର୍ଣ୍ଣ ନିଷ୍ଠାବାନ୍ ହୁଅ । କଳ୍ପ ପରେ କଳ୍ପ ଚାଲିଗଲେ ମଧ୍ୟ ତୁମର କେବେହେଲେ ବୁଦ୍ଧିଭ୍ରମ (ସୃଷ୍ଟିରଚନାର ଅହଙ୍କାର) ହେବ ନାହିଁ ॥୩୬॥

ଶ୍ରୀ ଶୁକଦେବ କହିଲେ, ଏହିପରି ଲୋକମାନଙ୍କର ପିତାମହ ବ୍ରହ୍ମାଙ୍କୁ ଭଲ ଭାବରେ ଉପଦେଶ ଦେଇ ଅଜନ୍ମା ଭଗବାନ ବ୍ରହ୍ମା ଦେଖୁ ଦେଖୁ ଅନ୍ତର୍ହିତ ହୋଇଗଲେ ॥୩୭॥ ଭଗବାନ ଶ୍ରୀହରି ନିଜର ପ୍ରତ୍ୟକ୍ଷ (ଇନ୍ଦ୍ରିୟଗୋଚର) ରୂପକୁ ଅନ୍ତର୍ହିତ କରିବାରୁ ସର୍ବଭୂତସ୍ୱରୂପ ବ୍ରହ୍ମା ତାଙ୍କ ଉଦ୍ଦେଶ୍ୟରେ ଯୋଡ଼ହସ୍ତରେ ପ୍ରଣିପାତ କରି ପୂର୍ବପରି ବିଶ୍ୱର ସୃଷ୍ଟିରେ ଲାଗିଗଲେ ॥୩୮॥ ପ୍ରଜାପତି ଧର୍ମରକ୍ଷକ ବ୍ରହ୍ମା ପ୍ରଜାମାନଙ୍କ ମଙ୍ଗଳକାମନାରେ ବିଧିପୂର୍ବକ ଯମ, ନିୟମ ଆଦି ପାଳନ କଲେ ॥୩୯॥ ହେ ରାଜା, ବ୍ରହ୍ମାଙ୍କର ପ୍ରିୟତମ ପୁତ୍ର ଭଗବାନଙ୍କର ପରମଭକ୍ତ ନାରଦ ମାୟାଧର ବିଷ୍ଣୁଙ୍କର ମାୟାର ତତ୍ତ୍ୱ ଜାଣିବାପାଇଁ ଅତିଶୟ ସଂଯମ, ବିନୟ ଓ ସତ୍‌ସ୍ୱଭାବ ଦ୍ୱାରା ବ୍ରହ୍ମାଙ୍କର ସେବା କରି ତାଙ୍କୁ ପ୍ରସନ୍ନ କରାଇ ପାରିଥିଲେ ॥୪୦-୪୧॥ ତୁମେ ମୋତେ ଯେଉଁ ସବୁ ପ୍ରଶ୍ନ ପଚାରୁଛ, ଦେବର୍ଷି ନାରଦ ଲୋକମାନଙ୍କର ପ୍ରପିତାମହ ନିଜର ପିତା ବ୍ରହ୍ମାଙ୍କୁ ସନ୍ତୁଷ୍ଟ କରି ସେହି ସବୁ ପ୍ରଶ୍ନ ପଚାରିଥିଲେ ॥୪୨॥ ସୃଷ୍ଟିକର୍ତ୍ତା ବ୍ରହ୍ମା ନିଜର ପୁତ୍ରଙ୍କଠାରେ ପ୍ରସନ୍ନ ହୋଇ ଦଶଲକ୍ଷଣଯୁକ୍ତ ଏହି ଭାଗବତ ପୁରାଣ ତାଙ୍କୁ କହିଥିଲେ ॥୪୩॥ ନାରଦ ସରସ୍ୱତୀ କୂଳରେ ପରମବ୍ରହ୍ମଙ୍କ ଠାରେ ଧ୍ୟାନରତ ଅମିତତେଜା ବ୍ୟାସଦେବଙ୍କୁ ତାହା କହିଥିଲେ ॥୪୪॥ ବିରାଟ ପୁରୁଷଙ୍କଠାରୁ ଏହି ଜଗତ କିପରି ଉତ୍ପନ୍ନ ହୋଇଛି ସେହି ପ୍ରଶ୍ନ ତୁମେ ମୋତେ ପଚାରିଛ । ମୁଁ ଏହି ଭାଗବତ ପୁରାଣର ବର୍ଣ୍ଣନାଦ୍ୱାରା ସେହି ପ୍ରଶ୍ନର ଓ ତୁମ ଅନ୍ୟସବୁ ପ୍ରଶ୍ନର ଉତ୍ତର ଦେଉଛି ॥୪୫॥

## ଦଶମ ଅଧ୍ୟାୟ

# ଭାଗବତର ଲକ୍ଷଣ

ଶ୍ରୀ ଶୁକଦେବ କହିଲେ, ଏହି ଭାଗବତ ପୁରାଣରେ ସର୍ଗ, ବିସର୍ଗ, ସ୍ଥାନ, ପୋଷଣ, ଊତି, ମନ୍ୱନ୍ତର, ଈଶାନୁକଥା, ନିରୋଧ, ମୁକ୍ତି ଏବଂ ଆଶ୍ରୟ-- ଏହି ଦଶଟି ଲକ୍ଷଣର ବର୍ଣ୍ଣନା ଅଛି ॥୧॥ ଏହା ମଧ୍ୟରେ ଯେଉଁ ଦଶମ ଲକ୍ଷଣ 'ଆଶ୍ରୟ' ତତ୍ତ୍ୱ ଅଛି ତାହାକୁ ଭଲଭାବରେ ଜାଣିବାପାଇଁ ମହାତ୍ମାମାନେ କେବେ ବେଦଦ୍ୱାରା, କେବେ ଯୁକ୍ତିଦ୍ୱାରା ଏବଂ କେବେ ଅନୁଭବଦ୍ୱାରା ଅନ୍ୟ ନ'ଟି ତତ୍ତ୍ୱର ବ୍ୟାଖ୍ୟା କରିଛନ୍ତି ॥୨॥ ଆକାଶ ଆଦି ପଞ୍ଚ ମହାଭୂତ, ଶବ୍ଦ ଆଦି ପଞ୍ଚ ତନ୍ମାତ୍ର, ଦଶ ଇନ୍ଦ୍ରିୟ, ମହତତ୍ତ୍ୱ ଏବଂ ଅହଂକାର-- ଈଶ୍ୱରଙ୍କ ଇଚ୍ଛାରେ ଏହି ବାଇଶ ତତ୍ତ୍ୱର ଜନ୍ମ ହୁଏ । ଏହାକୁ ସର୍ଗ କୁହାଯାଏ । ଏହାପରେ ବିରାଟ ପୁରୁଷଙ୍କଠାରୁ ଉତ୍ପନ୍ନ ହୋଇ ବ୍ରହ୍ମା ସତ୍ତ୍ୱ, ରଜ ଓ ତମ -ଏହି ତିନି ଗୁଣର ରୂପାନ୍ତରରେ ଯେଉଁ ପ୍ରାଣୀମାନଙ୍କର ନିର୍ମାଣ କରନ୍ତି, ତା'ର ନାମ ହେଲା ବିସର୍ଗ ॥୩॥ ଏହି ସୃଷ୍ଟ ବସ୍ତୁମାନଙ୍କୁ ଭଗବାନ୍ ନିଜ ନିଜ ମର୍ଯ୍ୟାଦାରେ ସ୍ଥିର ରଖିବାଦ୍ୱାରା ତାଙ୍କର ଯେଉଁ ଶ୍ରେଷ୍ଠତ୍ୱ, ତାହା ହେଉଚି ସ୍ଥାନ ବା ସ୍ଥିତି । ସୃଷ୍ଟିରେ ସେ କୃପାପୂର୍ବକ ନିଜ ଭକ୍ତଙ୍କୁ ଅନୁଗ୍ରହ କରନ୍ତି । ଏହାର ନାମ ହେଉଛି ପୋଷଣ । କାଳକ୍ରମରେ ସଦ୍ଧର୍ମର ପାଳନକୁ ମନ୍ୱନ୍ତର କୁହାଯାଏ । କର୍ମବାସନାର ନାମ ହେଉଛି ଊତି ॥୪॥ ଭଗବାନଙ୍କର ବିଭିନ୍ନ ଅବତାର ଏବଂ ତାଙ୍କ ଭକ୍ତମାନଙ୍କଦ୍ୱାରା ତାଙ୍କର ଲୀଳାବର୍ଣ୍ଣନର ନାମ ହେଉଛି ଈଶାନୁକଥା ॥୫॥ ଭଗବାନ ପ୍ରଳୟ କାଳରେ ଯୋଗ ନିଦ୍ରାରେ ଶୟନ କରିବାବେଳେ ସମସ୍ତ କର୍ମ ବାସନା ସହ ପ୍ରାଣୀମାନେ ତାଙ୍କଠାରେ ଲୀନ ହୁଅନ୍ତି-- ଏହାର ନାମ ନିରୋଧ । ଅବିଦ୍ୟାରୂପ ଅହଙ୍କାର ତ୍ୟାଗ କରି ନିଜ ବ୍ରହ୍ମସ୍ୱରୂପରେ ରହିବା ହେଉଛି ମୁକ୍ତି ॥୬॥ ଯାହାଙ୍କଠାରୁ ସୃଷ୍ଟି, ଯାହାଙ୍କଦ୍ୱାରା ପାଳନ ଓ ଯାହାଙ୍କଠାରେ ସୃଷ୍ଟିର ଲୟ ହୁଏ, ସେହି ପରଂବ୍ରହ୍ମ ପରମାତ୍ମାଙ୍କର ନାମ ହେଉଛି ଆଶ୍ରୟ ॥୭॥ ପୁରୁଷ ବା ଜୀବ ତିନୋଟି ରୂପରେ ବିଦ୍ୟମାନ--ଆଧ୍ୟାତ୍ମିକ, ଆଧିଦୈବିକ ଏବଂ ଆଧିଭୌତିକ । ତା'ମଧ୍ୟରେ ଅବସ୍ଥିତ ଆତ୍ମା ସବୁ କିଛି ଦେଖୁଥିବା ଗୁଣରୁ ସେ ଆଧ୍ୟାତ୍ମିକ ହୋଇଥାଏ । ବିଭିନ୍ନ ଇନ୍ଦ୍ରିୟ ଯେଉଁ ଦୈବ ଶକ୍ତିଦ୍ୱାରା ପରିଚାଳିତ ହୁଅନ୍ତି ଯଥା--ସୂର୍ଯ୍ୟ

ଦ୍ୱାରା ଚକ୍ଷୁ -- ତାକୁ ଆଧିଦୈବିକ କୁହାଯାଏ ଏବଂ ଏହି ଉଭୟଠାରୁ ପୃଥକ ରହୁଥିବା ଦେହ ହେଉଚି ଆଧିଭୌତିକ ॥୮॥ ଏହି ତିନୋଟି ମଧ୍ୟରୁ ଯଦି ଗୋଟିକର ଅଭାବ ହୁଏ, ତେବେ ଅନ୍ୟ ଦୁଇଟିର ଉପଲବ୍ଧି ସମ୍ଭବ ହୁଏ ନାହିଁ । ତେଣୁ ଏ ତିନିଙ୍କୁ ଯେ ଜାଣିଛି, ସେ ହିଁ ପରମାତ୍ମା । ସେ ହିଁ ସମସ୍ତଙ୍କର ଆଶ୍ରୟ, ଯାହାକୁ କି ଆଶ୍ରୟତତ୍ତ୍ୱ ବୋଲି କୁହାଯାଏ । ସେ ହିଁ ନିଜେ ତାଙ୍କର ଆଶ୍ରୟ ॥୯॥

ଯେତେବେଳେ ବିରାଟ ପୁରୁଷ ବ୍ରହ୍ମାଣ୍ଡରୂପକ ଅଣ୍ଡାକୁ ଫଟାଇ ବାହାରି ଆସିଲେ, ସେତେବେଳେ ସେ ନିଜର ବାସସ୍ଥାନ ଅନ୍ୱେଷଣ କଲେ ଏବଂ ଶୁଦ୍ଧସଂକଳ୍ପଦ୍ୱାରା ପବିତ୍ର ଜଳକୁ ସୃଷ୍ଟି କଲେ । ସେ ନିଜସୃଷ୍ଟ ଏହି ଜଳରେ ଏକ ସହସ୍ର ବର୍ଷ ଧରି ଅବସ୍ଥାନ କଲେ ॥୧୦॥ ତାଙ୍କଠାରୁ (ଏହି ବିରାଟ ପୁରୁଷରୂପ ନରଙ୍କଠାରୁ) ଉତ୍ପନ୍ନ ଜଳର ଅନ୍ୟ ନାମ ହେଲା 'ନାର' ଏବଂ ତାହା ଯାହାଙ୍କର ବାସଭୂମି, ସେ 'ନାରାୟଣ' ନାମରେ ଅଭିହିତ ହେଲେ ॥୧୧॥ ଦ୍ରବ୍ୟ, କର୍ମ, କାଳ, ସ୍ୱଭାବ ଏବଂ ଜୀବ ତାଙ୍କ ଅନୁଗ୍ରହରୁ ହିଁ ରହିଥାନ୍ତି । ତାଙ୍କର ଅନୁଗ୍ରହ ବିନା ସେମାନେ ରହିପାରନ୍ତି ନାହିଁ ॥୧୨॥ ଏକରୁ ଅନେକ ହେବାପାଇଁ ଇଚ୍ଛା କରି ସେ ଯୋଗନିଦ୍ରାରୁ ଉଠିଲେ ଏବଂ ମାୟାଦ୍ୱାରା ନିଜର ସ୍ୱର୍ଣ୍ଣମୟ ବୀର୍ଯ୍ୟକୁ ତିନି ଭାଗରେ ବିଭକ୍ତ କଲେ । ଏହି ତିନି ଭାଗ ହେଉଛି--ଅଧିଦେବ, ଅଧ୍ୟାତ୍ମ ଓ ଅଧିଭୂତ । ହେ ରାଜା, ଏହିପରି ସେହି ପୁରୁଷଙ୍କର ସେହି ଏକ ବୀର୍ଯ୍ୟ ତିନି ଭାଗରେ ବିଭକ୍ତ ହେଲା ॥୧୩-୧୪॥ ସେହି ବିରାଟ ପୁରୁଷ ହଲଚଲ ହେବାରୁ ତାଙ୍କ ଶରୀରସ୍ଥ ଆକାଶରୁ ଓଜ, ସହ ଓ ବଳ(ଇନ୍ଦ୍ରିୟ, ମନ ଓ ଶରୀରର ବଳ)ର ଜନ୍ମ ହେଲା ଏବଂ ସେମାନଙ୍କଠାରୁ ମୁଖ୍ୟ ପ୍ରାଣର ଉତ୍ପତ୍ତି ହେଲା ॥୧୫॥ ରାଜାଙ୍କୁ ଯେପରି ତାଙ୍କ ଅନୁଚରମାନେ ମାନି ଚଳନ୍ତି, ସେହିପରି ସମସ୍ତ ଜୀବଙ୍କଠାରେ ଥିବା ଇନ୍ଦ୍ରିୟମାନେ ପ୍ରାଣଦ୍ୱାରା ହିଁ ପରିଚାଳିତ ହୁଅନ୍ତି ॥୧୬॥ ପ୍ରାଣର ଚାଳନାପାଇଁ ଈଶ୍ୱରଙ୍କର କ୍ଷୁଧା ଓ ପିପାସା ଜାତ ହେଲା ଏବଂ ଏହି କ୍ଷୁଧା ଓ ପିପାସା ନିବାରଣପାଇଁ ମୁଖର ସୃଷ୍ଟି ହେଲା ॥୧୭॥ ମୁଖରୁ ତାଳୁ ଓ ତାଳୁରେ ଜିହ୍ୱାର ଜନ୍ମ ଏବଂ ସେଥିରୁ ନାନା ରସର ଜନ୍ମ ହେଲା, ଯାହାକି ଜିହ୍ୱା ହିଁ ଆସ୍ୱାଦନ କରି ପାରିବ ॥୧୮॥

ସେ କଥା କହିବାପାଇଁ ଇଚ୍ଛା ପ୍ରକାଶ କରିବାରୁ ବାକ୍‌ଇନ୍ଦ୍ରିୟ, ତାର ଦେବତା ଅଗ୍ନି ଏବଂ ବଚନର ସୃଷ୍ଟି ହେଲା । ଏହାପରେ ବହୁକାଳ ଧରି ସେହି ବିରାଟ ପୁରୁଷ ଜଳରେ ହିଁ ରହିଲେ ॥୧୯॥ ତାଙ୍କର ଆଘ୍ରାଣ ଇଚ୍ଛା ହେବାରୁ ନାକ ଆସିଗଲା ଏବଂ ଶ୍ୱାସର ବେଗରେ ନାକପୁଡ଼ାର ସୃଷ୍ଟି ହେଲା ଏବଂ ତା'ପରେ ଘ୍ରାଣେନ୍ଦ୍ରିୟ ଓ ବାୟୁଦେବଙ୍କର ସୃଷ୍ଟି ହେଲା ॥୨୦॥ ଅନ୍ଧକାର ମଧ୍ୟରେ ସେ ନିଜର ଦେହକୁ ଓ ଅନ୍ୟ ବସ୍ତୁମାନଙ୍କୁ ଦେଖିବାକୁ ଇଚ୍ଛା କରିବାରୁ, ଦୁଇଟି ଚକ୍ଷୁ, ଦୃଷ୍ଟିଶକ୍ତି ଏବଂ ତା'ର ଦେବତା ସୂର୍ଯ୍ୟ ପ୍ରକାଶିତ ହେଲେ ଏବଂ ସମସ୍ତ ରୂପ ତାଙ୍କର ଦୃଷ୍ଟିଗୋଚର ହେଲା ॥୨୧॥ ବେଦରେ ଋଷିମାନଙ୍କଦ୍ୱାରା ନିଜର ଜୟଗାନ ଶୁଣିବା ପାଇଁ ସେ ଇଚ୍ଛା କରିବାରୁ ତାଙ୍କର ଦୁଇ କାନ, ଶ୍ରବଣେନ୍ଦ୍ରିୟ ଏବଂ ଏହାର ଦେବତା ଦିଗମାନଙ୍କର ଜନ୍ମ ହେଲା ଏବଂ ସେ ସମସ୍ତ ଶବ୍ଦ ଶୁଣିପାରିଲେ ॥୨୨॥ ବିଭିନ୍ନ ବସ୍ତୁ କୋମଳ ନା କଠିନ, ଗୁରୁ ନା ଲଘୁ, ଶୀତଳ ନା ଉଷ୍ଣ -ଏହା ଅନୁମାନ କରିବାପାଇଁ ସେ ଇଚ୍ଛା କରିବାରୁ ଚର୍ମ, ବାୟୁଦେବତା, ସ୍ପର୍ଶେନ୍ଦ୍ରିୟ, ରୋମାବଳୀ ଏବଂ ତା'ର ଦେବତା ବୃକ୍ଷସମୂହ ଜାତ ହେଲେ । ଦେହକୁ ଚର୍ମରେ ଆବରଣ କରି ତା'ର ଭିତରେ ଓ ବାହାରେ ବାୟୁ ସଞ୍ଚାଳନ ହେଉଥିବାଯୋଗୁଁ ସେ ସମସ୍ତ ବସ୍ତୁର ସ୍ପର୍ଶ ଅନୁଭବ କଲେ ॥୨୩॥ ସେ ନାନା କର୍ମ କରିବାକୁ ଇଚ୍ଛା କରିବାରୁ ହସ୍ତଦ୍ୱୟ, ତା'ର ବଳସ୍ୱରୂପ ଇନ୍ଦ୍ରଦେବତା ଏବଂ ଉଭୟଙ୍କ ସଂଯୋଗରେ କର୍ମ ସୃଷ୍ଟି ହେଲା ॥୨୪॥ ଅଭିଳଷିତ ସ୍ଥାନମାନଙ୍କୁ ଯିବାକୁ ଇଚ୍ଛା ହେବାରୁ ତାଙ୍କର ପାଦଦ୍ୱୟ, ଚଳନଶକ୍ତି ଏବଂ ତା'ର ଅଧିଷ୍ଠାତା ଦେବତା ଯଜ୍ଞପୁରୁଷ ବିଷ୍ଣୁ ଆବିର୍ଭୂତ ହେଲେ, ଯଦ୍ଦ୍ୱାରା କି ମନୁଷ୍ୟମାନେ ତାଙ୍କ ପୂଜାକର୍ମ ସମ୍ପାଦନ କରିପାରିଲେ ॥୨୫॥

ସନ୍ତାନ, ରତିସୁଖ ଓ ସ୍ୱର୍ଗର ଆନନ୍ଦ ଅନୁଭବ କରିବାପାଇଁ ଇଚ୍ଛା ହେବାରୁ ତାଙ୍କ ଶରୀରରେ ଅଧିଷ୍ଠାନରୂପୀ ଲିଙ୍ଗର ଏବଂ ଇନ୍ଦ୍ରିୟରୂପୀ ଉପସ୍ଥର ସୃଷ୍ଟି ହେଲା, ତା'ର ଦେବତା ପ୍ରଜାପତି ଏବଂ ଉଭୟଙ୍କ ଯୋଗରେ ଯେଉଁ କାମସୁଖ ମିଳେ,

ତାର ଜନ୍ମ ହେଲା ॥୨୬॥ ତାଙ୍କର ମଳତ୍ୟାଗର ଇଚ୍ଛା ହେବାରୁ ମଳଦ୍ୱାର, ସେଥିରୁ ପାୟୁ ଓ ତାର ଦେବତା ମିତ୍ର ଏବଂ ଉଭୟଙ୍କ ଯୋଗରେ ମଳତ୍ୟାଗ ପ୍ରକ୍ରିୟାର ଜନ୍ମ ହେଲା ॥୨୭॥ ଏକ ଦେହରୁ ଅନ୍ୟ ଦେହକୁ ଯିବାପାଇଁ ଇଚ୍ଛା ହେବାରୁ ନାଭିଦ୍ୱାର, ସେଥିରୁ ଅପାନ ଓ ମୃତ୍ୟୁଦେବତା ପ୍ରକଟିତ ହେଲେ । ଏହି ଉଭୟଙ୍କ ଆଶ୍ରୟରେ ବିଚ୍ଛେଦ ଅର୍ଥାତ୍ ମୃତ୍ୟୁ ହୁଏ ॥୨୮॥

ଖାଦ୍ୟ ଓ ପାନୀୟର ଇଚ୍ଛାରୁ ଉଦର, ଅନ୍ତ ଓ ନାଡ଼ିମାନଙ୍କର ସୃଷ୍ଟି ହେଲା । ସେମାନଙ୍କ ଦେବତା ହେଲେ ନଦୀ ଓ ସମୁଦ୍ରମାନେ ଏବଂ ତାହାଙ୍କ ଆଶ୍ରୟରେ ତୁଷ୍ଟି ଓ ପୁଷ୍ଟିର ସମ୍ଭବ ହେଲା ॥୨୯॥ ଆତ୍ମମାୟାକୁ ଜାଣିବାର ଇଚ୍ଛାରେ ହୃଦୟର ସମ୍ଭବ ହେଲା । ସେଥିରୁ ମନ ଓ ତା'ର ଦେବତା ଚନ୍ଦ୍ର ଏବଂ ସଂକଳ୍ପ ଓ କାମନା ଜାତ ହେଲା ॥୩୦॥ ସ୍ଥୁଳ ଓ ସୂକ୍ଷ୍ମ ଚର୍ମ, ମାଂସ, ରକ୍ତ, ମେଦ, ମଜ୍ଜା ଓ ଅସ୍ଥି -ଏଇ ସପ୍ତ ଧାତୁ ଭୂମି, ଜଳ ଓ ତେଜରୁ ସମ୍ଭୂତ ହୁଅନ୍ତି । ଆକାଶ, ଜଳ ଏବଂ ବାୟୁରୁ ପ୍ରାଣ ଜାତ ହୁଏ ॥୩୧॥ ଇନ୍ଦ୍ରିୟମାନେ ଗୁଣାତ୍ମକ ଏବଂ ଅହଙ୍କାରରୁ ଶବ୍ଦାଦି ଗୁଣମାନଙ୍କର ଜନ୍ମ । ମନ ହେଉଛି ସମସ୍ତ ବିକାରର ଉତ୍ପତ୍ତିସ୍ଥଳ ଏବଂ ବୁଦ୍ଧିଦ୍ୱାରା ଇନ୍ଦ୍ରିୟଭୋଗ୍ୟ ପଦାର୍ଥକୁ ଜାଣିହୁଏ ॥୩୨॥ ଏହିପରି ତୁମପାଇଁ ମୁଁ ଭଗବାନଙ୍କ ସ୍ଥୁଳ ରୂପର ବର୍ଣ୍ଣନା କଲି; ଯାହାକୁ କି ବାହାରୁ ପୃଥ୍ୱୀ, ଜଳ, ତେଜ, ବାୟୁ, ଆକାଶ, ଅହଙ୍କାର, ମହତତ୍ତ୍ୱ ଓ ପ୍ରକୃତି -ଏହି ଆଠଟି ଆବରଣ ଘୋଡ଼ାଇ ରଖିଛି ॥୩୩॥ ଏହାପରେ ଭଗବାନଙ୍କର ଅତ୍ୟନ୍ତ ସୂକ୍ଷ୍ମରୂପ ଅଛି; ଯାହାକି ଇନ୍ଦ୍ରିୟାତୀତ ଏବଂ ଯାହାର କିଛି ବିଶେଷଣ ନାହିଁ-- ସୃଷ୍ଟି, ସ୍ଥିତି ଓ ଲୟ ସହିତ ସେହି ନିତ୍ୟ ରୂପକୁ ବାଣୀ ବା ମନଦ୍ୱାରା କଳନା କରାଯାଇ ପାରିବ ନାହିଁ ॥୩୪॥ ଏହିପରି ତୁମକୁ ମୁଁ ଭଗବାନଙ୍କର ସ୍ଥୁଳ ଓ ସୂକ୍ଷ୍ମ ଏହି ଦୁଇଟିଯାକ ରୂପର ବର୍ଣ୍ଣନା ଶୁଣାଇଲି । ଦୁଇଟିଯାକ ତାଙ୍କ ମାୟାଦ୍ୱାରା ରଚିତ ହୋଇଥିବାଯୋଗୁଁ ଜ୍ଞାନୀମାନେ ତାହା ଗ୍ରହଣ କରନ୍ତି ନାହିଁ ॥୩୫॥

ଭଗବାନ୍ ବାସ୍ତବରେ କୌଣସି କର୍ମ କରନ୍ତି ନାହିଁ । ନିଜର ମାୟାଦ୍ୱାରା ହିଁ ସେ ବିଭିନ୍ନ ନାମ (ବାଚକ) ରୂପ ଓ କ୍ରିୟା (ବାଚ୍ୟ) ଧାରଣ କରନ୍ତି ॥୩୬॥ ପ୍ରଜାପତି ଓ ମନୁମାନେ, ଦେବତା ଓ ଋଷିମାନେ, ପିତୃଗଣ, ସିଦ୍ଧ, ଚାରଣ, ବିଦ୍ୟାଧର, ଅସୁର, ଗୁହ୍ୟକ, କିନ୍ନର, ଅପ୍ସରା, ନାଗ, ସର୍ପ, କିଂପୁରୁଷ ଓ ଉରଗ ମାନେ, ମାତୃଗଣ, ଯକ୍ଷ, ପିଶାଚ, ଭୂତ, ପ୍ରେତ, ବିନାୟକ, କୁଷ୍ମାଣ୍ଡ, ଉନ୍ମାଦ, ବେତାଳ, ଯାତୁଧାନ, ଗ୍ରହ, ମୃଗ, ପକ୍ଷୀ, ପଶୁ, ବୃକ୍ଷ, ପର୍ବତ, ସରୀସୃପ--ଏହିପରି ଚରାଚର ଭେଦରେ ଦୁଇ ପ୍ରକାର ଏବଂ ଜରାୟୁଜ, ଅଣ୍ଡଜ, ସ୍ୱେଦଜ ଏବଂ ଉଦ୍ଭିଜ ଭେଦରେ ଚାରିପ୍ରକାର ଯେତେ ଜଳଚର, ସ୍ଥଳଚର, ନଭଶ୍ଚର ପ୍ରାଣୀ ଅଛନ୍ତି, ସେମାନେ ସମସ୍ତେ ଭଗବାନଙ୍କର ନାମରୂପ ଏବଂ ସମସ୍ତେ ଭଲ ମନ୍ଦ ଓ ମିଶ୍ର କର୍ମ ଫଳରେ ଏହି ସବୁ ଗତି ଲାଭ କରନ୍ତି ॥୩୭-୪୦॥ ହେ ରାଜା ! ସତ୍ତ୍ୱ, ରଜ ଓ ତମ ଗୁଣ ଅନୁସାରେ ଯଥାକ୍ରମେ ଦେବତା, ମନୁଷ୍ୟ ଓ ନାରକୀୟ ଜୀବମାନଙ୍କର ଜନ୍ମ ହୁଏ । ଏମାନଙ୍କ ମଧ୍ୟରେ ଗୋଟିଏ ଗୁଣ ଯଦି ଅନ୍ୟ ଦୁଇଗୁଣଙ୍କଦ୍ୱାରା ପ୍ରଭାବିତ ହୁଏ, ତାହାହେଲେ ସେହି ଗୁଣକୁ ପୁଣି ତିନି ଭାଗରେ ବିଭକ୍ତ କରାଯାଏ ଏବଂ ତିନୋଟି ଗୁଣର ସ୍ୱଭାବକୁ ଜୀବ ଗ୍ରହଣ କରିଥାଏ ॥୪୧॥ ଦେବତା, ମନୁଷ୍ୟ, ପଶୁପକ୍ଷୀ ଆଦିଙ୍କୁ ଏହିରୂପେ ନିଜର ସତ୍ତାରୁ ସୃଷ୍ଟି କରି ଜଗତକୁ ଧାରଣ କରିଥିବା ଭଗବାନ ଧର୍ମରୂପରେ ଏହି ବିଶ୍ୱର ପାଳନ, ପୋଷଣ କରନ୍ତି ॥୪୨॥ ବାୟୁବେଗରେ ମେଘମାନେ ଉଭେଇଯିବା ପରି, ପ୍ରଳୟସମୟ ଆସିଲେ ଭଗବାନ ରୁଦ୍ରରୂପରେ ଏହି ସୃଷ୍ଟିକୁ ସଂହାର କରନ୍ତି ॥୪୩॥ ପରିକ୍ଷିତ, ଏହିପରି ଐଶ୍ୱର୍ଯ୍ୟରେ ମଣ୍ଡିତ ଭଗବାନଙ୍କର ବର୍ଣ୍ଣନା କରାଯାଇଛି । କିନ୍ତୁ ତତ୍ତ୍ୱଜ୍ଞମାନେ ଏପରିଭାବରେ ଭଗବାନଙ୍କୁ ଦର୍ଶନ କରନ୍ତି ନାହିଁ । ସୃଷ୍ଟି ଆଦି କର୍ମରେ ସେ କର୍ତ୍ତା ବୋଲି ବର୍ଣ୍ଣନା କରାଗଲେ ମଧ୍ୟ ପ୍ରକୃତରେ ସେ କର୍ତ୍ତା ନୁହନ୍ତି । କେବଳ ମାୟାଯୋଗୁଁ ତାଙ୍କଠାରେ ଏହି କର୍ତ୍ତାପଣର ଆରୋପ କରାଯାଏ ॥୪୪-୪୫॥ ଏହିପରି ବ୍ରହ୍ମାଙ୍କ କଳ୍ପ ଓ ବିକଳ୍ପର ଉଦାହରଣ ଦିଆଗଲା । କଳ୍ପରେ ବା ମହାକଳ୍ପରେ ମହତ୍ ଆଦି ତତ୍ତ୍ୱର ସୃଷ୍ଟି ହୁଏ । ବିକଳ୍ପରେ ବା ଅବାନ୍ତର କଳ୍ପରେ ଚରାଚର ଜଗତର ସୃଷ୍ଟି ହୁଏ । ସମସ୍ତ କଳ୍ପରେ ଏହା ହିଁ ହେଉଛି

ସାଧାରଣ ନିୟମ ॥୪୬॥ କାଳର ପରିମାଣ ଏବଂ କଳ୍ପର ରୂପ ଓ ଲକ୍ଷଣ, ପରେ ମୁଁ ବର୍ଣ୍ଣନା କରିବି । ବର୍ତ୍ତମାନ ପଦ୍ମକଳ୍ପର କଥା କହୁଛି, ଶୁଣ ॥୪୭॥

ଶୌନକ କହିଲେ, ହେ ସୂତ, ଯେଉଁ ଆତ୍ମୀୟସ୍ୱଜନମାନଙ୍କୁ କେହି ସହଜରେ ଛାଡ଼ିପାରନ୍ତି ନାହିଁ, ଭକ୍ତଶ୍ରେଷ୍ଠ ବିଦୁର ସେମାନଙ୍କୁ ଛାଡ଼ି ପୃଥିବୀର ବିଭିନ୍ନ ତୀର୍ଥ ପର୍ଯ୍ୟଟନ କରିଥିଲେ ବୋଲି ଆପଣ ଆମମାନଙ୍କୁ କହିଥିଲେ ॥୪୮॥ ଏହି ଯାତ୍ରାରେ ମୈତ୍ରେୟ ଋଷିଙ୍କ ସହିତ ତାଙ୍କର କ'ଣ ଆଧ୍ୟାତ୍ମିକ ଚର୍ଚ୍ଚା ହୋଇଥିଲା ଏବଂ ମୈତ୍ରେୟ ଋଷି ତାଙ୍କ କି କି ପ୍ରଶ୍ନର କ'ଣ କ'ଣ ଉତ୍ତର ଦେଇଥିଲେ ତାହା ଆମକୁ କହନ୍ତୁ ॥୪୯॥ ହେ ସୌମ୍ୟ ! ବିଦୁର କେଉଁ କାରଣରୁ ତାଙ୍କର ସ୍ୱଜନ ଓ ବନ୍ଧୁମାନଙ୍କୁ ତ୍ୟାଗ କଲେ ଏବଂ ତୀର୍ଥଯାତ୍ରାରେ ଯାଇ ପୁଣି ଫେରି ଆସିଲେ, ଏହି ସମସ୍ତ ବିଷୟ ବର୍ଣ୍ଣନା କରନ୍ତୁ ॥୫୦॥ ସୂତ କହିଲେ, ରାଜା ପରିକ୍ଷିତ ମଧ୍ୟ ମହାମୁନି ଶୁକଦେବଙ୍କୁ ଏହି କଥା ପଚାରିଥିଲେ ଏବଂ ଶୁକଦେବ ଗୋଟିକ ପରେ ଗୋଟିଏ ତାଙ୍କ ପ୍ରଶ୍ନର ଯେଉଁ ଉତ୍ତର ଦେଇଥିଲେ ତାହା ମୁଁ ଆପଣମାନଙ୍କୁ କହୁଛି, ଧ୍ୟାନ ଦେଇ ଶୁଣନ୍ତୁ ॥୫୧॥

# ତୃତୀୟ ସ୍କନ୍ଧ

## ପ୍ରଥମ ଅଧ୍ୟାୟ

## ବିଦୁର-ଉଦ୍ଧବ ମିଳନ

ଶୁକଦେବ କହିଲେ; ହେ ରାଜା, ତୁମେ ଯାହା ସବୁ ପଚାରିଲ, ପୂର୍ବେ ନିଜର ସୁଖସମୃଦ୍ଧିପୂର୍ଣ୍ଣ ଗୃହ ତ୍ୟାଗ କରି ବନଗମନ କରିଥିବା ବିଦୁର ମଧ୍ୟ ମୈତ୍ରେୟ ଋଷିଙ୍କୁ ତାହା ପଚାରିଥିଲେ ।।୧।। ଦିନେ, ଅଖିଳେଶ ଭଗବାନ କୃଷ୍ଣ ପାଣ୍ଡବମାନଙ୍କର ଦୂତରୂପେ ହସ୍ତିନା ଯାଇ କୁରୁରାଜାଙ୍କ ପ୍ରାସାଦରେ ଅତିଥି ହେବାର ନିମନ୍ତ୍ରଣ ପ୍ରତ୍ୟାଖ୍ୟାନ କରିଥିଲେ ଏବଂ ଭକ୍ତ ବିଦୁରଙ୍କ ଘରକୁ ନିଜ ଘର ଭାବି ବିନା ନିମନ୍ତ୍ରଣରେ ସେଠାରେ ଆସି ରହିଥିଲେ ।।୨।। ରାଜା କହିଲେ, କେଉଁଠାରେ ଓ କେତେବେଳେ ମୈତ୍ରେୟ ଋଷିଙ୍କ ସହିତ ବିଦୁରଙ୍କର ସାକ୍ଷାତ ଆଲୋଚନା ହେଲା ତାହା ବର୍ଣ୍ଣନା କରନ୍ତୁ ।।୩।। ବିଶୁଦ୍ଧାତ୍ମା ବିଦୁର ମୈତ୍ରେୟ ଋଷିଙ୍କୁ କେବେହେଲେ ସାଧାରଣ ପ୍ରଶ୍ନ ପଚାରି ନ ଥିବେ । ସେ ବରେଣ୍ୟ ଋଷିଙ୍କୁ ମହତ୍ତ୍ୱପୂର୍ଣ୍ଣ ପ୍ରଶ୍ନ ପଚାରିଥିବେ ।।୪।। ସୂତ କହିଲେ, ରାଜା ପରିକ୍ଷିତ ମହାଜ୍ଞାନୀ ଋଷିବରଙ୍କୁ ଏହା ପଚାରିବାରୁ ସେ ପ୍ରସନ୍ନ ହୋଇ ଉତ୍ତର ଦେଲେ -- ତା'ହେଲେ ମୁଁ କହୁଛି ଶୁଣ ।।୫।।

ଶ୍ରୀ ଶୁକଦେବ କହିଲେ, ଯେତେବେଳେ ଅନ୍ଧରାଜା ଧୃତରାଷ୍ଟ୍ର ନିଜର ଅସାଧୁ ପୁତ୍ରମାନଙ୍କୁ ପାଳନ ପୋଷଣ କରି ନିଜ କନିଷ୍ଠ ଭ୍ରାତା ପାଣ୍ଡୁଙ୍କର ଅନାଥ ପୁତ୍ରମାନଙ୍କୁ ଜତୁଗୃହକୁ ପଠାଇଦେଇ ସେଥିରେ ନିଆଁ ଲଗାଇଦେଲେ ।।୬।। ଯେତେବେଳେ କୁରୁସଭାରେ ପାଣ୍ଡବ ମହିଷୀଙ୍କର କେଶ ଆକର୍ଷଣ କରାଗଲା ଏବଂ ଦ୍ରୌପଦୀଙ୍କ ନେତ୍ରଯୁଗଳରୁ ଅଶ୍ରୁଧାରା ବହି ତାଙ୍କ ବକ୍ଷସ୍ଥଳର କୁଙ୍କୁମ ଧୋଇ ଦେଇଥିଲା, ସେତେବେଳେ ରାଜା ଧୃତରାଷ୍ଟ୍ର ଏହି ଗର୍ହିତ କର୍ମରୁ ପୁତ୍ରମାନଙ୍କୁ ନିବାରଣ କରି ନ ଥିଲେ ।।୭।। କପଟପାଶାରେ ସତ୍ୟପରାୟଣ ଯୁଧିଷ୍ଠିରଙ୍କୁ ହରାଇ ଦିଆଗଲା ଏବଂ ସତ୍ୟରକ୍ଷାପାଇଁ ସେ ବନବାସ କଲେ । ବନବାସରୁ ଫେରିଆସିବା ପରେ ଯେତେବେଳେ ସେ ନିଜର ନ୍ୟାୟୋଚିତ ପୈତୃକ ରାଜ୍ୟ ଫେରାଇଦେବାପାଇଁ ମାଗିଲେ, ଅଜାତଶତ୍ରୁ ଯୁଧିଷ୍ଠିରଙ୍କୁ ମୋହଗ୍ରସ୍ତ ଧୃତରାଷ୍ଟ୍ର ତାହା ଫେରାଇଲେ ନାହିଁ ।।୮।। ଯେତେବେଳେ ଜଗଦ୍‌ଗୁରୁ କୃଷ୍ଣ କୁନ୍ତୀପୁତ୍ରଙ୍କର ଦୂତଭାବରେ କୁରୁସଭାକୁ ଯାଇ ମଧୁର, ହିତ ବଚନମାନ କହିଲେ, ସେତେବେଳେ ରାଜା ଧୃତରାଷ୍ଟ୍ର ତାହା ଆଦୌ ମାନିଲେ ନାହିଁ । କାରଣ ତାଙ୍କର ପୁଣ୍ୟ ଶେଷ ହୋଇ ଆସିଥିଲା ।।୯।।

ମନ୍ତ୍ରିଶ୍ରେଷ୍ଠ ବିଦୁରଙ୍କୁ ଯେତେବେଳେ ଅଗ୍ରଜ ରାଜା ଧୃତରାଷ୍ଟ୍ର ପରାମର୍ଶ ଦେବାପାଇଁ ଡାକିଲେ, ସେତେବେଳେ ବିଦୁର ରାଜଭବନକୁ ଯାଇ ରାଜାଙ୍କୁ ଯେଉଁ ପରାମର୍ଶ ଦେଇଥିଲେ, ଏବେ ମଧ୍ୟ ତାହା ବିଦୁରନୀତିରୂପେ ଖ୍ୟାତ ।।୧୦।। ବିଦୁର କହିଲେ, ମହାରାଜ, ଅଜାତଶତ୍ରୁ ଯୁଧିଷ୍ଠିରଙ୍କୁ ତାଙ୍କର ଭାଗ ଦେଇ ଦିଅନ୍ତୁ । ଆପଣଙ୍କର ଅସହ୍ୟ ଅପରାଧକୁ ସେ ସହି ଚାଲିଛନ୍ତି । କାଳସର୍ପସ୍ୱରୂପ ଯେଉଁ ଭୀମକୁ ଆପଣ ଭୟ କରନ୍ତି, ସେ ତା'ର ସାନ ଭାଇମାନଙ୍କ ସହିତ ପ୍ରତିଶୋଧ ନେବା ପାଇଁ ବ୍ୟଗ୍ର । ତାର ନିଃଶ୍ୱାସରୂପ ଫୁତ୍‌କାରରେ କେବଳ କ୍ରୋଧାନଳ ବର୍ଷା ହେଉଛି ।।୧୧।। ଭଗବାନ ମୁକୁନ୍ଦ କୁନ୍ତୀପୁତ୍ରମାନଙ୍କୁ ନିଜର ବୋଲି ଗ୍ରହଣ କରିନେଇଛନ୍ତି । ସମସ୍ତ ଦେବତା ଓ ବ୍ରାହ୍ମଣ ତାଙ୍କ ସହିତ ରହିଛନ୍ତି । ଅସଂଖ୍ୟ ନୃପତିଙ୍କୁ ଜୟ କରି

ଯଦୁପତି ନିଜ ଦ୍ୱାରକାପୁରୀରେ ଅବସ୍ଥାନ କରୁଛନ୍ତି । ସ୍ୱୟଂ ଦୋଷ ମୂର୍ତ୍ତିମନ୍ତ ହୋଇ ତୁମ ଗୃହରେ ପ୍ରବେଶ କରିଛି; ସେ ହେଉଛି କୃଷ୍ଣଦ୍ୱେଷୀ ଦୁର୍ଯ୍ୟୋଧନ ॥୧୨॥ ଯାହାକୁ ତୁମେ ପୁତ୍ରରୂପେ ପାଳନ ପୋଷଣ କରୁଛ, କୃଷ୍ଣ-ବିମୁଖ ହେବାରୁ ତୁମେ ଶ୍ରୀହୀନ ହୋଇପଡ଼ିଛ । ଏବେ ଯଦି କୁଳର ମଙ୍ଗଳ ଚାହ, ତା'ହେଲେ ସେହି ଅମଙ୍ଗଳକୁ ଶୀଘ୍ର ପରିତ୍ୟାଗ କର ॥୧୩-୧୪॥

ସଜ୍ଜନମାନେ ବିଦୁରଙ୍କ ସ୍ୱଭାବର ପ୍ରଶଂସା କରନ୍ତି । ମାତ୍ର କର୍ଣ୍ଣ, ଦୁଃଶାସନ, ଶକୁନିଙ୍କ ମେଳରେ ରହି ଦୁର୍ଯ୍ୟୋଧନ ଯେତେବେଳେ ବିଦୁରଙ୍କ କଥା ଶୁଣିଲା, ସେତେବେଳେ ପ୍ରବଳ କ୍ରୋଧରେ ତାର ଅଧର କମ୍ପିବାକୁ ଲାଗିଲା । ସେ ବିଦୁରଙ୍କୁ ଅପମାନ କରି କହିଲା, ଏହି କୁଟିଳ ଦାସୀପୁତ୍ରକୁ କିଏ ଏଠିକି ଡାକିଲା ? ଏ ଯାହାର ଅନ୍ନରେ ପାଳିତ, ତାର ଶତ୍ରୁତା କରି ଶତ୍ରୁଙ୍କ ସହିତ ରହିଛି । ଏହାକୁ ଏହି ମୁହୂର୍ତ୍ତରେ ରାଜ୍ୟରୁ ନିର୍ବାସିତ କରାଯିବା ଆବଶ୍ୟକ ॥୧୫॥ ଏହିପରି ଅତ୍ୟନ୍ତ କଠୋର ବାକ୍ୟବାଣରେ ମର୍ମାହତ ହୋଇ ବିଦୁର ନିଜର ଧନୁକୁ ରାଜଦ୍ୱାରରେ ରଖିଦେଇ ହସ୍ତିନା ପରିତ୍ୟାଗ କଲେ ॥୧୬॥ ପୁଣ୍ୟବଳରେ କୌରବମାନେ ବିଦୁରଙ୍କ ପରି ବ୍ୟକ୍ତିଙ୍କୁ ପାଇଥିଲେ । ମାତ୍ର ସେମାନେ ତାଙ୍କୁ ରଖିପାରିଲେ ନାହିଁ । ସେ ହସ୍ତିନା ଛାଡ଼ି ପୁଣ୍ୟ କରିବା ଇଚ୍ଛାରେ ବହୁ ତୀର୍ଥ ଭ୍ରମଣ କଲେ । ଏହି ସବୁ ତୀର୍ଥ ଭଗବାନଙ୍କ ପାଦସ୍ୱରୂପ ଏବଂ ଏ ତୀର୍ଥମାନଙ୍କରେ ଭଗବାନ ବ୍ରହ୍ମା, ବିଷ୍ଣୁ, ଶିବ ଆଦି ଅନେକ ମୂର୍ତ୍ତି ରୂପରେ ଅଧିଷ୍ଠିତ ଥିଲେ ॥୧୭॥ କାଶୀ, ଅଯୋଧ୍ୟା, ମଥୁରା ଆଦି ନଗରୀ, କୁଞ୍ଜବନ, ଉପବନ, ପର୍ବତ, ନିର୍ମଳ ଜଳାଶୟ, ନଦୀ, ସରୋବର ଆଦି ଯେଉଁସବୁ ସ୍ଥାନ ଭଗବାନଙ୍କ ପ୍ରତିମାଦ୍ୱାରା ଶୋଭା ପାଉଥିଲା ନିଷ୍ପାପ ବିଦୁର ସେ ସବୁ ସ୍ଥାନ ପର୍ଯ୍ୟଟନ କଲେ ॥୧୮॥

ସେ ପୃଥିବୀ ଭ୍ରମଣ କଲାବେଳେ ତାଙ୍କୁ ଯେପରି ନିଜଲୋକ କେହି ଚିହ୍ନି ପାରିବେ ନାହିଁ, ସେହିପରି ଅବଧୂତ ବେଶରେ ବୁଲୁଥିଲେ । ଯେତେବେଳେ ଯାହା ମିଳୁଥିଲା ଖାଉଥିଲେ । ଭୂମିରେ ଶୟନ କରୁଥିଲେ; ସ୍ନାନାଦି କରି ନିଜକୁ ପବିତ୍ର ରଖୁଥିଲେ । ଶ୍ରୀହରିଙ୍କ ସନ୍ତୋଷ ବିଧାନପାଇଁ ସେ ବିଭିନ୍ନ ବ୍ରତାଚରଣ କରୁଥିଲେ ॥୧୯॥ ଏହିପରି ଭାରତବର୍ଷ ଭ୍ରମଣ କରି ସେ ଯେତେବେଳେ ପ୍ରଭାସ କ୍ଷେତ୍ରରେ ପହଞ୍ଚିଲେ, ସେତେବେଳେ ଭଗବାନ ଶ୍ରୀକୃଷ୍ଣଙ୍କ ସହାୟତାରେ ରାଜା ଯୁଧିଷ୍ଠିର ଏକାଙ୍ଗଚକ୍ରବର୍ତ୍ତୀ ରୂପେ ପୃଥିବୀକୁ ଶାସନ କରୁଥିଲେ ॥୨୦॥ ସେଠାରେ ସେ ଶୁଣିବାକୁ ପାଇଲେ ଯେ, ତାଙ୍କର ସମସ୍ତ ସୁହୃଦ୍ ସ୍ୱଜନଙ୍କର ବିନାଶ ଘଟିଛି । ଯେପରି ବାଉଁଶ ଗଛମାନଙ୍କର ପରସ୍ପର ସଂଘର୍ଷରୁ ଅଗ୍ନି ଜାତ ହୋଇ ସମସ୍ତ ବନକୁ ଜାଳିଦିଏ, ସେହିପରି ପରସ୍ପର କଳହଜନିତ ଯୁଦ୍ଧରେ ସେମାନେ ନିହତ ହୋଇଛନ୍ତି । ଏହା ଶୁଣି ଶୋକାକୁଳ ଚିତ୍ତରେ ନୀରବରେ ସେ ସରସ୍ୱତୀ ନଦୀକୂଳକୁ ଯାତ୍ରାକଲେ ॥୨୧-୨୨॥ ସେଠାରେ ଏକାଦଶଟି ତୀର୍ଥସ୍ଥାନ ଥିଲା--ତ୍ରିତ, ଉଶନା, ମନୁ, ପୃଥୁ, ଅଗ୍ନି, ଅସିତ, ବାୟୁ, ସୁଦାସ, ଗୌ, ଗୁହ ଏବଂ ଶ୍ରାଦ୍ଧଦେବ । ବିଦୁର ଏହି ସମସ୍ତ ତୀର୍ଥ କରି ସାରିବାପରେ ଦେବଦ୍ୱିଜସେବିତ ବିଷ୍ଣୁମନ୍ଦିରମାନ ଦର୍ଶନ କଲେ । ଏହି ମନ୍ଦିରମାନଙ୍କର ଚୂଡ଼ାରେ ଥିବା ଚକ୍ରଚିହ୍ନ କୃଷ୍ଣଙ୍କୁ ସ୍ମରଣ କରାଇ ଦେଉଥିଲା ॥୨୩॥ ସେସବୁ ଅତିକ୍ରମ କରି ସେ ସମୃଦ୍ଧ ସୌରାଷ୍ଟ୍ର ରାଜ୍ୟ, ସୌବୀର, ମତ୍ସ୍ୟ ଓ କୁରୁଜାଙ୍ଗଳ ରାଜ୍ୟ ଦେଇ କିଛିକାଳପରେ ଯମୁନାକୂଳରେ ପହଞ୍ଚିଲେ ଏବଂ ସେଠାରେ ପରମ ଭାଗବତ ଉଦ୍ଧବଙ୍କର ସହ ତାଙ୍କର ଭେଟ ହେଲା ॥୨୪॥

ଶାନ୍ତସ୍ୱଭାବାପନ୍ନ ଉଦ୍ଧବ କୃଷ୍ଣଙ୍କର ଏକାନ୍ତ ଅନୁଗତ ଥିଲେ । ପୂର୍ବରୁ ସେ ମଧ୍ୟ ବୃହସ୍ପତିଙ୍କର ଶିଷ୍ୟ ଥିଲେ । ତାଙ୍କୁ ଦେଖିବାମାତ୍ରେ ବିଦୁର ଗାଢ଼ ଆଲିଙ୍ଗନପୂର୍ବକ କୃଷ୍ଣ ଓ ତାଙ୍କର ସ୍ୱଜନମାନଙ୍କର କୁଶଳବାର୍ତ୍ତା ପଚାରିଲେ ॥୨୫॥ ବିଦୁର ପଚାରିଲେ, ନିଜ ନାଭିପଦ୍ମରୁ ଜାତ ବ୍ରହ୍ମାଙ୍କ ଅନୁରୋଧରୁ ଯେ ସଂସାରରେ କୃଷ୍ଣ ଓ ବଳରାମ ରୂପରେ ଅବତୀର୍ଣ୍ଣ ହୋଇ ସମସ୍ତଙ୍କର ମଙ୍ଗଳ କରିଥିଲେ, ବସୁଦେବଙ୍କ ଗୃହରେ ତାଙ୍କର ସବୁ କୁଶଳ ତ ? ॥୨୬॥ ଉଦ୍ଧବ, କୁରୁବଂଶର ପ୍ରିୟ ସୁହୃଦ୍, ଆମମାନଙ୍କର ଶାଳକ ବସୁଦେବ କୁଶଳରେ ଅଛନ୍ତି ତ ! କୁନ୍ତୀ ଆଦି ତାଙ୍କର ଭଗିନୀମାନେ ତାଙ୍କୁ ପିତାସମାନ ଦେଖୁଥିଲେ । କାରଣ ସବୁବେଳେ ସେ ସେମାନଙ୍କୁ ନିଜ ସ୍ୱାମୀମାନଙ୍କ ସନ୍ତୋଷବିଧାୟକ ମନଲାଖି ବସ୍ତୁମାନ ଅକୁଣ୍ଠଚିତ୍ତରେ ଉପହାର

ଦେଉଥିଲେ ॥୨୭॥ ଯାଦବମାନଙ୍କର ସେନାପତି ବୀର ପ୍ରଦ୍ୟୁମ୍ନ କିପରି ଅଛନ୍ତି ? ତାଙ୍କର ମାତା ରୁକ୍ମିଣୀ ବ୍ରାହ୍ମଣମାନଙ୍କୁ ଆରାଧନା କରି ସ୍ୱୟଂ କନ୍ଦର୍ପଙ୍କୁ ଭଗବାନଙ୍କଠାରୁ ପ୍ରଦ୍ୟୁମ୍ନରୂପରେ ଲାଭ କରିଥିଲେ ॥୨୮॥ ସାତ୍ୱତ, ବୃଷ୍ଣି, ଭୋଜ ଓ ଦାଶାର୍ହବଂଶୀୟ ଯାଦବମାନଙ୍କର ରାଜା ଉଗ୍ରସେନଙ୍କର ସବୁ ଭଲ ତ ? ସେ ରାଜ୍ୟ ଫେରିପାଇବାର ଆଶା ସମ୍ପୂର୍ଣ୍ଣ ତ୍ୟାଗ କରି ଦେଇଥିଲେ; କିନ୍ତୁ କମଳନୟନ କୃଷ୍ଣ ତାଙ୍କୁ ପୁଣି ରାଜସିଂହାସନରେ ଆଣି ବସାଇଲେ ॥୨୯॥ ସୌମ୍ୟ, ରଥୀମାନଙ୍କର ଅଗ୍ରଣୀ ନିଜ ପିତା କୃଷ୍ଣଙ୍କ ସମାନ ଯୋଦ୍ଧା ଶାମ୍ବ କିପରି ଅଛନ୍ତି ? ପୂର୍ବଜନ୍ମରେ ସେ ପାର୍ବତୀଙ୍କ ଗର୍ଭରୁ କାର୍ତ୍ତିକେୟ ରୂପେ ଜନ୍ମ ହୋଇଥିଲେ ଏବଂ ବହୁ ବ୍ରତ କରି ଜାମ୍ବବତୀ ତାଙ୍କୁ ଲାଭ କରିଥିଲେ ॥୩୦॥ ଅର୍ଜୁନଙ୍କଠାରୁ ଧନୁର୍ବିଦ୍ୟା ଶିକ୍ଷା କରିଥିବା ସାତ୍ୟକିଙ୍କର ସବୁ କୁଶଳ ତ ? ସେ କୃଷ୍ଣଙ୍କ ସେବାରେ ନିଯୁକ୍ତ ରହି ଯତିମାନଙ୍କର ଦୁର୍ଲଭ ସ୍ଥାନ ଲାଭ କରିଛନ୍ତି ॥୩୧॥ ଭଗବାନଙ୍କର ଶରଣାଗତ ଭକ୍ତ ବିଦ୍ୱାନ୍ ଅକ୍ରୂରଙ୍କର ସବୁ କୁଶଳ ତ ? ସେ, ଦିନେ କୃଷ୍ଣଙ୍କର ଚରଣଚିହ୍ନ ପଡ଼ିଥିବା ବ୍ରଜଦାଣ୍ଡଧୂଳିରେ ପ୍ରେମରେ ଅଧୀର ହୋଇ ଗଡ଼ିଯାଇଥିଲେ ॥୩୨॥ ଭୋଜବଂଶୀୟ ଦେବକଙ୍କର କନ୍ୟା କୃଷ୍ଣଙ୍କୁ ଜନ୍ମଦେଇଥିବା ଦେବମାତା ଦେବକୀ ମଙ୍ଗଳରେ ଅଛନ୍ତି ତ ? ଯେପରି ବେଦତ୍ରୟ (ଋକ୍, ଯଜୁଃ ଓ ସାମ) ଯଜ୍ଞବିସ୍ତାରପାଇଁ ମନ୍ତ୍ରମାନ ଧାରଣ କରିଥାନ୍ତି, ସେହିପରି ସେ ନିଜ ଗର୍ଭରେ ଶ୍ରୀକୃଷ୍ଣଙ୍କୁ ଧାରଣ କରିଥିଲେ ॥୩୩॥ ଭକ୍ତମାନଙ୍କର କାମଧେନୁସ୍ୱରୂପ ଭଗବାନ ଅନିରୁଦ୍ଧ ସୁଖରେ ଅଛନ୍ତି ତ ? ସେ ବେଦମାନଙ୍କର ଆଦିମୂଳ । ମନୋମୟ ଆତ୍ମାର ସ୍ୱରୂପ ବାସୁଦେବ-ସଙ୍କର୍ଷଣ-ପ୍ରଦ୍ୟୁମ୍ନ-ଅନିରୁଦ୍ଧ ଏହି କ୍ରମରେ ବିଷ୍ଣୁତତ୍ତ୍ୱ ଅନୁଯାୟୀ ସେ ତାଙ୍କ ଚତୁର୍ଥ ଅଂଶ ରୂପେ ପରିଗଣିତ ହୁଅନ୍ତି ॥୩୪॥ ହେ ସୌମ୍ୟ ! ଯେ ନିଜ ହୃଦୟର ଈଶ୍ୱର ଭଗବାନ ଶ୍ରୀକୃଷ୍ଣଙ୍କୁ ଅନନ୍ୟ ନିଷ୍ଠାର ସହିତ ଅନୁସରଣ କରନ୍ତି, ସେହି ହୃଦୀକ, ସତ୍ୟଭାମାଙ୍କର ପୁତ୍ର ଚାରୁଦେଷ୍ଣ ଏବଂ ଗଦ ଆଦି ଭଗବାନଙ୍କର ଅନ୍ୟ ପୁତ୍ରମାନେ କୁଶଳରେ ଅଛନ୍ତି ତ ? ॥୩୫॥

କୃଷ୍ଣାର୍ଜୁନଙ୍କ ବାହୁବଳରେ ସୁରକ୍ଷିତ ହୋଇ ରାଜା ଯୁଧିଷ୍ଠିର ନ୍ୟାୟମାର୍ଗରେ ଧର୍ମର ମର୍ଯ୍ୟାଦାରକ୍ଷା କରୁଛନ୍ତି ତ ? ରାଜସୂୟ ଯଜ୍ଞର ସଭାରେ ଅର୍ଜୁନଙ୍କଦ୍ୱାରା ବିଜିତ ଯୁଧିଷ୍ଠିରଙ୍କ ସାମ୍ରାଜ୍ୟ ଲକ୍ଷ୍ମୀ ଦେଖି ଦୁର୍ଯ୍ୟୋଧନ ଈର୍ଷାରେ ଜଳି ଯାଇଥିଲେ ॥୩୬॥ ଅପରାଧୀମାନଙ୍କ ପ୍ରତି ଅସହିଷ୍ଣୁ ହୋଇ ଯେ ସେମାନଙ୍କୁ ଶାସ୍ତି ଦେବାପାଇଁ କ୍ଷଣେମାତ୍ର ଅପେକ୍ଷା କରୁ ନ ଥିଲେ, ସେଇ ଭୀମସେନ ସର୍ପବତ୍ ତାଙ୍କର ଦୀର୍ଘକାଳର କ୍ରୋଧକୁ ଶାନ୍ତ କଲେଣି ତ ? ଗଦାଧାରୀ ଭୀମ ବିଚିତ୍ର ଗତିରେ ଗମନ କଲେ ରଣଭୂମି ତାଙ୍କ ପଦାଘାତକୁ ସହିପାରେ ନାହିଁ ॥୩୭॥ ମାୟାକିରାତବେଶଧାରୀ ଭଗବାନ ଶଙ୍କରଙ୍କୁ ଶରଜାଳରେ ଆଚ୍ଛନ୍ନ କରି ଯେ ସନ୍ତୁଷ୍ଟ କରିପାରିଥିଲେ, ରଥୀ ଓ ଯୂଥପତିମାନଙ୍କ ମଧ୍ୟରେ ଯଶସ୍ୱୀ ଶତ୍ରୁଞ୍ଜୟ ଗାଣ୍ଡୀବଧନ୍ୱା ଅର୍ଜୁନ କୁଶଳରେ ଅଛନ୍ତି ତ ? ॥୩୮॥ ମାଦ୍ରୀଙ୍କର ଯାଆଁଳା ପୁଅ ନକୁଳ ଓ ସହଦେବଙ୍କୁ କୁନ୍ତୀ ନିଜ ପୁତ୍ର ପରି ପାଳନ କରିଥିଲେ । ତେଣୁ ଆଖିପତା ଆଖିକୁ ରକ୍ଷାକରିବା ପରି କୁନ୍ତୀଙ୍କର ତିନିପୁତ୍ର ଏମାନଙ୍କୁ ରକ୍ଷା କରୁଥିଲେ । ଗରୁଡ଼ ଯେପରି ଇନ୍ଦ୍ରଙ୍କ ମୁହଁରୁ ଅମୃତ ଛଡ଼ାଇ ଆଣିଥିଲେ, ସେ ଦୁଇଭାଇ ସେହିପରି ଯୁଦ୍ଧରେ ଦୁର୍ଯ୍ୟୋଧନଠାରୁ ନିଜର ରାଜ୍ୟ ଛଡ଼ାଇ ଆଣିଲେ । ସେ ଦି'ଭାଇ କିପରି ଅଛନ୍ତି ? ॥୩୯॥ ରଥିଶ୍ରେଷ୍ଠ ରାଜର୍ଷି ପାଣ୍ଡୁ ଏପରି ବୀର ଥିଲେ ଯେ କେବଳ ଗୋଟିଏ ଧନୁ ଧରି ସେ ଚତୁର୍ଦିଗ ଜୟ କରିଥିଲେ । ତାଙ୍କ ବିନା ବଞ୍ଚିବା ଅସମ୍ଭବ ହେଲେ ମଧ୍ୟ ନିଜର ପୁତ୍ରମାନଙ୍କପାଇଁ ଯେ ବଞ୍ଚି ରହିଲେ, ଆହା, ସେ କୁନ୍ତୀଙ୍କ କଥା ମୁଁ କ'ଣ ବା ପଚାରିବି ? ॥୪୦॥ ସୌମ୍ୟ, ପାଣ୍ଡୁ ମରିଯିବାପରେ ତାଙ୍କ ପୁତ୍ରମାନଙ୍କ ସହିତ ଯେ ଦ୍ରୋହ ଆଚରଣ କଲେ ଏବଂ ନିଜପୁତ୍ରମାନଙ୍କ କଥାରେ ପଡ଼ି ମୋ'ପରି ବନ୍ଧୁକୁ ଘରୁ ବାହାର କରିଦେଲେ, ସେହି ଧୃତରାଷ୍ଟ୍ରଙ୍କର ଅଧଃପତନ କଥା ଚିନ୍ତା କରି ମୋତେ ସବୁବେଳେ ଦୁଃଖ ଲାଗୁଛି ॥୪୧॥ କିନ୍ତୁ ଭାଇ, ମୁଁ ଏଥିରେ ଆଶ୍ଚର୍ଯ୍ୟ ହେଉ ନାହିଁ । ଏହିପରି ଭଗବାନ ମର୍ତ୍ତ୍ୟଲୋକରେ ଅବତୀର୍ଣ୍ଣ ହୋଇ ତାଙ୍କ ଲୀଳାରେ ମନୁଷ୍ୟମାନଙ୍କୁ ଚାଳିତ କରୁଛନ୍ତି । ତାହା ମୁଁ ଦେଖିପାରି ସମସ୍ତଙ୍କ ଅଲକ୍ଷ୍ୟରେ ପୃଥିବୀରେ ବିଚରଣ କରୁଛି ॥୪୨॥ କୌରବମାନେ ତାଙ୍କ ଭାଇମାନଙ୍କ (ପାଣ୍ଡବମାନଙ୍କ) ବହୁ ଦୁଃଖର କାରଣ ଏବଂ ତାଙ୍କ ନିଜ

ଅପମାନର ବି କାରଣ ହୋଇଥିଲେ ମଧ୍ୟ ସେ ସେମାନଙ୍କୁ ଉପେକ୍ଷା କରିଥିଲେ; କାରଣ, ଯେଉଁ ରାଜାମାନେ ଧନ, ବଳ ଓ କୁଳର ଗର୍ବରେ ମଦମତ୍ତ ହୋଇ ନିଜ ସେନା ଚାଳନା କରି ପୃଥିବୀକୁ ଥରହର କରୁଥିଲେ, ଏକସାଙ୍ଗରେ ସମସ୍ତଙ୍କୁ ସେ ଶାସ୍ତି ଦେବାକୁ ଚାହିଥିଲେ ॥୪୩॥ ବିପଥଗାମୀ ଦୁଷ୍ଟମାନଙ୍କୁ ବିନାଶ କରିବାପାଇଁ ଜନ୍ମକର୍ମରହିତ ଭଗବାନ ସଂସାରରେ ଜନ୍ମ ଗ୍ରହଣ କରନ୍ତି ଏବଂ କର୍ମଦ୍ୱାରା ଲୋକମାନଙ୍କର କର୍ତ୍ତବ୍ୟ ନିର୍ଦ୍ଧାରଣ କରନ୍ତି । ତା' ନ ହେଲେ ଗୁଣାତୀତ ଭଗବାନ ଏ ସଂସାରରେ ଦେହ ଧାରଣ କରି କର୍ମରେ ପ୍ରବୃତ୍ତ ହୁଅନ୍ତେ ନାହିଁ ॥୪୪॥ ହେ ସଖା ଉଦ୍ଧବ ! ଯେ ନିଜେ ଜନ୍ମରହିତ ହେଲେ ମଧ୍ୟ ଶରଣାଗତ ସମସ୍ତ ଲୋକପାଳ ଓ ଭକ୍ତମାନଙ୍କର ପ୍ରିୟ କାର୍ଯ୍ୟ ସାଧନ କରିବା ପାଇଁ ଯଦୁବଂଶରେ ଜନ୍ମଗ୍ରହଣ କରିଥିଲେ, ଯାହାଙ୍କ କୀର୍ତ୍ତି ହିଁ ତୀର୍ଥ, ସେହି ପୁଣ୍ୟଶ୍ଳୋକ ଶ୍ରୀହରିଙ୍କର ଗାଥା ମୋ ଆଗରେ ବର୍ଣ୍ଣନା କରନ୍ତୁ ॥୪୫॥

## ଦ୍ୱିତୀୟ ଅଧ୍ୟାୟ

# ଉଦ୍ଧବଙ୍କଦ୍ୱାରା ଶ୍ରୀକୃଷ୍ଣଙ୍କର ବାଳଲୀଳା ବର୍ଣ୍ଣନ

ଶୁକ କହିଲେ, ବିଦୁର ଭଗବାନଙ୍କ ପରମଭକ୍ତ ଉଦ୍ଧବଙ୍କୁ ତାଙ୍କ ପ୍ରିୟ ଗୋବିନ୍ଦଙ୍କ ବିଷୟରେ ପଚାରିବାରୁ କୃଷ୍ଣଙ୍କ କଥା ସ୍ମରଣ କରି ତାଙ୍କ ବାକ୍ ରୁଦ୍ଧ ହୋଇଗଲା । ସେ କିଛି କହିପାରିଲେ ନାହିଁ ॥୧॥ ଉଦ୍ଧବଙ୍କର ପାଞ୍ଚବର୍ଷ ବୟସ ବେଳେ ସେ ବାଳକ୍ରୀଡ଼ା ଛଳରେ କୃଷ୍ଣଙ୍କର ମୂର୍ତ୍ତି ନିର୍ମାଣ କରି ତା'ରି ସେବାପୂଜାରେ ଏପରି ମଜ୍ଜି ଯାଉଥିଲେ ଯେ, ମା' ମାଖନ ଖାଇବାପାଇଁ ଡାକିଲେ ମଧ୍ୟ ସେ ଖେଳ ଛାଡ଼ି ଯାଉ ନ ଥିଲେ ॥୨॥ କୃଷ୍ଣଙ୍କ ସେବା କରି କରି ସେ ବୃଦ୍ଧ ହେଲେ । ତେଣୁ ବିଦୁର ପଚାରିବା ମାତ୍ରେ ତାଙ୍କ ପ୍ରିୟ ଗୋବିନ୍ଦଙ୍କ ପାଦପଦ୍ମର ସ୍ମୃତି ଜାଗରିତ ହେଲା ଏବଂ ସେ କ'ଣ ଉତ୍ତର ଦେବେ ଭାବିପାରିଲେ ନାହିଁ ॥୩॥ ସେହି ମୁହୂର୍ତ୍ତରେ ଶ୍ରୀକୃଷ୍ଣଙ୍କ ପାଦପଦ୍ମ ସୁଧାରସ ପାନ କରି ପ୍ରବଳ ଭକ୍ତିଯୋଗଦ୍ୱାରା ସେ ତୁନି ହୋଇ ବସିପଡ଼ିଲେ ॥୪॥ ତନୁ ପୁଲକିତ ହେଲା । ଚକ୍ଷୁ ମୁଦ୍ରିତ ହୋଇ ପ୍ରେମାଶ୍ରୁଧାର ବହିବାକୁ ଲାଗିଲା । ଉଦ୍ଧବଙ୍କୁ ଏପରି କୃଷ୍ଣ ପ୍ରେମାନନ୍ଦରେ ପ୍ଲାବିତ ହେବାର ଦେଖି ବିଦୁର ନିଜକୁ ଧନ୍ୟ ମନେ କଲେ ॥୫॥ ଧୀରେ ଧୀରେ ଭଗବତ୍ ଲୋକରୁ ସେ ଭୂଲୋକକୁ ଫେରିଆସିଲେ ଏବଂ ଆଖିଲୁହ ପୋଛି କୃଷ୍ଣସ୍ମୃତିରେ ବିଭୋର ଉଦ୍ଧବ ବିଦୁରଙ୍କୁ ଉତ୍ତର ଦେଲେ ॥୬॥

କୃଷ୍ଣରୂପ ସୂର୍ଯ୍ୟ ଅସ୍ତ ହୋଇଯିବା ପରେ ପାପରୂପ ଅଜଗର ଆମକୁ ଗିଳି ସାରିଲାଣି, ଏଣୁ ଆମର ସେହି ଶ୍ରୀହୀନ ଗୃହର କେଉଁ କୁଶଳବାର୍ତ୍ତା ମୁଁ ତୁମକୁ କହିବି ? ॥୭॥ ଏ ସଂସାରର ଦୁର୍ଭାଗ୍ୟ ଏବଂ ସବୁଠାରୁ ବେଶି ଦୁର୍ଭାଗ୍ୟ ହେଉଛି ଯାଦବମାନଙ୍କର ଯେ, (କ୍ଷୀରସାଗରରେ ଥିବାବେଳେ) ଚନ୍ଦ୍ରକୁ ଯେପରି ମୀନମାନେ ଚିହ୍ନି ପାରି ନ ଥିଲେ, ସେହିପରି ତାଙ୍କ ସଙ୍ଗରେ ସବୁବେଳେ ରହି ମଧ୍ୟ ଯାଦବମାନେ କୃଷ୍ଣଙ୍କୁ ଚିହ୍ନି ପାରିଲେ ନାହିଁ ॥୮॥ ଇଙ୍ଗିତମାତ୍ରକେ ଯାଦବମାନେ ସବୁ ବୁଝିପାରୁଥିଲେ । ସେମାନେ ଅଭିଜ୍ଞ ଓ ନିପୁଣ ଥିଲେ । ଗୋଟିଏ ସ୍ଥାନରେ ରହି କୃଷ୍ଣଙ୍କର ଲୀଳାର ସାଥୀ ଥିଲେ । କିନ୍ତୁ ସମସ୍ତ ବିଶ୍ୱର ଆଶ୍ରୟ ସର୍ବାନ୍ତର୍ଯାମୀ ଶ୍ରୀକୃଷ୍ଣଙ୍କୁ ସେମାନେ ଜଣେ ଯାଦବମୁଖ୍ୟ ବୋଲି ଧରି ନେଇଥିଲେ ॥୯॥ ଯାଦବମାନେ ଦେବମାୟାରେ ମୋହିତ ହୋଇ ଏପରି ଭାବୁଥିଲେ । ଶିଶୁପାଳ ପରି ଅନ୍ୟ ଦୁଷ୍ଟ ଯାଦବମାନେ ତାଙ୍କର ନିନ୍ଦା ରଚନା କରୁଥିଲେ; କିନ୍ତୁ ଏଥିରେ କେବେ ମୋ ପରି ଲୋକର ଚିତ୍ତବିକ୍ଷେପ ବା ବୁଦ୍ଧିଭ୍ରମ ହେଉ ନ ଥିଲା ॥୧୦॥

ଯେଉଁମାନେ ତାଙ୍କୁ ଦେଖିବାପାଇଁ କେବେହେଲେ ତପ ଆଚରଣ କରି ନ ଥଲେ, ସେମାନଙ୍କୁ ଏତେଦିନ ପର୍ଯ୍ୟନ୍ତ ଦର୍ଶନ ଦେଇ ସେ ଅନ୍ତର୍ହିତ ହୋଇଗଲେ । କିନ୍ତୁ ତାଙ୍କୁ ଯେତେ ଦେଖିଲେ ମଧ୍ୟ ଲୋକଙ୍କର ତୃପ୍ତି ହେଉ ନ ଥିଲା । ବର୍ତ୍ତମାନ

ଲୋକମାନଙ୍କ ନେତ୍ରସ୍ୱରୂପ ସେହି ଭୁବନମୋହନ ଶ୍ରୀକୃଷ୍ଣଙ୍କର ଛବି ଆଉ ଦେଖିବାକୁ ମିଳିବ ନାହିଁ ॥୧୧॥ ନିଜର ଯୋଗମାୟାବଳ ଦେଖାଇବାପାଇଁ ସେ ସଂସାରଲୀଳାର ଉପଯୋଗୀ ଯେଉଁ ବିସ୍ମୟକର ଦିବ୍ୟ ସୁନ୍ଦର ରୂପ ଧାରଣ କରିଥିଲେ, ସେଥିରେ ତାଙ୍କ ଅଙ୍ଗରେ ଥିବା ଅଳଙ୍କାରମାନେ ମଧ୍ୟ ନିଜକୁ ଅଳଙ୍କୃତ ମନେ କରୁଥିଲେ ॥୧୨॥ ସେ ଧର୍ମନନ୍ଦନ ଯୁଧିଷ୍ଠିରଙ୍କ ରାଜସୂୟ ଯଜ୍ଞକୁ ଆହୂତ ହୋଇ ଯିବାବେଳେ ତାଙ୍କ ଦୃଷ୍ଟିବିମୋହନ ରୂପକୁ ନିରୀକ୍ଷଣ କରି ତ୍ରିଲୋକରେ ସମସ୍ତେ ଭାବୁଥିଲେ, ଏହି ରୂପନିର୍ମାଣରେ ବିଧାତାଙ୍କର ସମସ୍ତ ଚାତୁରୀ ଶେଷ ହୋଇଯାଇଛି ॥୧୩॥ ତାଙ୍କ ପ୍ରେମପ୍ଲାବିତ ହାସ୍ୟ ଏବଂ ମଧୁର ରାସଲୀଳାଦ୍ୱାରା ସେ ଗୋପବଧୂମାନଙ୍କୁ ମୋହିତ କରିଥିଲେ ଏବଂ ସେ ଯେପରି ସେମାନଙ୍କ ଦୃଷ୍ଟିପଥରୁ ଅନ୍ତର ନ ହୁଅନ୍ତି, ସେଥିପାଇଁ ସେମାନେ ନିଜର ଗୃହକର୍ମ ଛାଡ଼ିଦେଇ ଜଡ଼ବତ୍ ତାଙ୍କୁ ଚାହିଁରହୁଥିଲେ ॥୧୪॥ ସମସ୍ତ ଭୌତିକ ଓ ଆଧ୍ୟାତ୍ମିକ ଶକ୍ତିର ଆଧାର ହେଉଛନ୍ତି ଭଗବାନ। ନିଜର ଭକ୍ତମାନେ ପୀଡ଼ିତ ହେବାର ଦେଖିଲେ, କାଷ୍ଠରୁ ଅଗ୍ନି ଜାତ ହେବା ପରି ସେହି ପରମ କାରୁଣିକ ଈଶ୍ୱର ନିଜ ଅଂଶ ବଳରାମଙ୍କ ସହିତ ଜନ୍ମ ଗ୍ରହଣ କରନ୍ତି ॥୧୫॥

ଜନ୍ମରହିତ ହେଲେ ମଧ୍ୟ ସେ କିପରି ବସୁଦେବଙ୍କ ଗୃହରେ ଜନ୍ମ ହେଲେ, ବ୍ରଜରେ ବାସ କଲେ, ଅନନ୍ତବୀର୍ଯ୍ୟ ହୋଇ ମଧ୍ୟ ଶତ୍ରୁଭୟରେ ମଥୁରା ଛାଡ଼ି ପଳାଇଲେ ଏସବୁ ଭାବିଲେ ମୋତେ ଆଶ୍ଚର୍ଯ୍ୟ ଲାଗୁଛି ଏବଂ ଦୁଃଖ ଲାଗୁଛି ॥୧୬॥ କୃଷ୍ଣ ତାଙ୍କର ପିତାମାତା (ଦେବକୀ ଓ ବସୁଦେବ)ଙ୍କ ଚରଣ ବନ୍ଦନା କରି କହିଲେ, ହେ ପିତା, ହେ ମାତା, ତୁମେ ପ୍ରସନ୍ନ ହୁଅ। କଂସର ଭୟରୁ ତୁମ ଦୁହିଁଙ୍କର ଆମେ ସେବା କରିପାରିଲୁ ନାହିଁ। ଏହା ଭାବିଲାବେଳେ ମୋର ହୃଦୟରେ ବହୁତ ଦୁଃଖ ହେଉଛି ॥୧୭॥ ତାଙ୍କର କେବଳ ଭ୍ରୂକୁଞ୍ଚନ କୃତାନ୍ତ ସ୍ୱରୂପ ହୋଇ ଏହି ସଂସାରର ଭାରକୁ ହରଣ କରେ। ଯେ ତାଙ୍କର ପଦ୍ମପାଦର ରଜକୁ ଥରେ ମାତ୍ର ସେବା କରିଛି, ସେ କେବେହେଁ ତାଙ୍କୁ ଭୁଲି ପାରିବନାହିଁ ॥୧୮॥ ରାଜସୂୟ ଯଜ୍ଞରେ ଆପଣ ସ୍ୱୟଂ ଦେଖିଥିବେ, ଶ୍ରୀକୃଷ୍ଣଙ୍କୁ ଦ୍ୱେଷ କରି ଚେଦିରାଜ ଶିଶୁପାଳ କିପରି ଯୋଗୀମାନଙ୍କ ଈପ୍ସିତ ପରମଗତି ପ୍ରାପ୍ତ ହେଲା। ତାଙ୍କର ବିରହ କିଏ ସହିପାରିବ ? ॥୧୯॥ ସେହିପରି ମର୍ତ୍ତ୍ୟଲୋକର ଆଉ ଆଉ ବୀର ଯୋଦ୍ଧାମାନେ ସେହି ଗତି ପ୍ରାପ୍ତ ହୋଇଥିଲେ। ସେମାନେ ଅର୍ଜୁନଙ୍କ ଶସ୍ତ୍ରାଘାତରେ ପବିତ୍ରିତ ହୋଇ ନିଜର ଚକ୍ଷୁଦ୍ୱୟଦ୍ୱାରା ନୟନାଭିରାମ ଶ୍ରୀକୃଷ୍ଣଙ୍କର ମୁଖାରବିନ୍ଦ ରସକୁ ପାନ କରିଥିଲେ ॥୨୦॥ ସେ ତ୍ରିଲୋକର ଅଧୀଶ୍ୱର। ତାଙ୍କ ସମକକ୍ଷ କେହି ନାହାନ୍ତି। ତେଣୁ ତାଙ୍କୁ କେହି ବଳି ଯିବାର ପ୍ରଶ୍ନ ଉଠୁ ନାହିଁ। ସେ ସ୍ୱତନ୍ତ୍ର ଏବଂ ସମସ୍ତ ଐଶ୍ୱର୍ଯ୍ୟ ଓ କାମନା ତାଙ୍କଠାରେ ପୂର୍ଣ୍ଣତା ଲାଭ କରିଛି। ଇନ୍ଦ୍ରାଦି ଲୋକପାଳମାନେ ବହୁ ଉପହାର ଆଣି ତାଙ୍କର ପଦବନ୍ଦନା କଲାବେଳେ, ସେମାନଙ୍କ ମସ୍ତକର କିରୀଟମାନ ତାଙ୍କର ପାଦାସନକୁ ସ୍ପର୍ଶ କରୁଥାଏ ॥୨୧॥ ବିଦୁର, ରାଜସିଂହାସନରେ ଆସୀନ ଉଗ୍ରସେନଙ୍କ ଆଗରେ ଠିଆହୋଇ 'ଭୋ ଦେବ, ଆପଣ ଆଜ୍ଞା ଦିଅନ୍ତୁ' ବୋଲି ଯେତେବେଳେ ସେ କହୁଥିଲେ ତାଙ୍କର ସେହି ସେବାଭାବକୁ ସ୍ମରଣ କରି ମୋ ପରି ସେବକର ଚିତ୍ତ ଦୁଃଖରେ ଭରି ଯାଉଛି ॥୨୨॥ ଯେତେବେଳେ ପୂତନା ଅସୁରୀ ତାଙ୍କୁ ମାରିବାପାଇଁ ଇଚ୍ଛା କରି ତା'ର ସ୍ତନରେ କାଳକୂଟ ବିଷ ବୋଳି ତାଙ୍କୁ ଦୁଧ ପିଆଇଥିଲା, ସେତେବେଳେ ତା'ପରି ପାପିନୀ ମଧ୍ୟ ଧାଈର ଯୋଗ୍ୟ ପରମଗତି ଲାଭ କରିଥିଲା। କୃଷ୍ଣଙ୍କଠାରୁ ଆଉ ଅଧିକ ଦୟାଳୁ କିଏ ହୋଇପାରେ ? ଆଉ କାହାକୁ ଆମେ ଶରଣ ମାଗିପାରିବା ? ॥୨୩॥ ଅସୁରମାନଙ୍କୁ ମୁଁ ଭଗବାନଙ୍କର ଭକ୍ତ ବୋଲି ମନେ କରେ। କାରଣ କ୍ରୋଧବଶତଃ ତାଙ୍କରି ଚିନ୍ତା ହିଁ ସେମାନଙ୍କୁ ଘାରୁଥାଏ। ରଣକ୍ଷେତ୍ରରେ ଗରୁଡ଼ପୃଷ୍ଠରେ ଆରୂଢ଼ ସେହି ଚକ୍ରଧାରୀ ଭଗବାନଙ୍କର ଦୁର୍ଲଭ ଦର୍ଶନ ସେମାନେ ଲାଭ କରିପାରନ୍ତି ॥୨୪॥ ବ୍ରହ୍ମାଙ୍କ ପ୍ରାର୍ଥନାରେ ଏହି ସଂସାରର ମଙ୍ଗଳ କରିବାପାଇଁ ଭଗବାନ କଂସର କାରାଗାରରେ ବସୁଦେବ ଓ ଦେବକୀଙ୍କ ଔରସରେ ଜନ୍ମଗ୍ରହଣ କରିଥିଲେ ॥୨୫॥ ଜନ୍ମପରେ କଂସଭୟରେ ତାଙ୍କୁ ପିତା ବସୁଦେବ ବ୍ରଜପୁରରେ ନନ୍ଦଙ୍କ ଘରେ ନେଇ ରଖାଇଲେ। ସେଠାରେ ବଳରାମଙ୍କ ସହ ଏଗାର ବର୍ଷ କାଳ ସେ ଏପରି ଗୋପନରେ ରହିଲେ ଯେ ତାଙ୍କ ତେଜର ପ୍ରଭାବ ବାହାରକୁ ଜଣା ପଡ଼ିଲା

ନାହିଁ ॥୨୬॥ ବ୍ରଜରେ ଗୋପାଳବାଳକମାନଙ୍କ ମେଳରେ କୃଷ୍ଣ ଭଗବାନ ବାଛୁରୀ ଚରାଉଥିଲେ ଓ ପକ୍ଷୀମାନଙ୍କ କୂଜନରେ ମୁଖରିତ ନାନା ବୃକ୍ଷରେ ପରିପୂର୍ଣ୍ଣ ଯମୁନାର ଉପବନରେ ବିହାର କରୁଥିଲେ ॥୨୭॥ ବ୍ରଜବାସୀମାନଙ୍କୁ ତାଙ୍କ ବାଲ୍ୟଲୀଳା ଦେଖାଇବାପାଇଁ କେତେବେଳେ କାନ୍ଦୁଥିଲେ, କେତେବେଳେ ହସୁଥିଲେ, କେତେବେଳେ ବା ସିଂହଶାବକ ପରି ମୁଗ୍ଧ ଦୃଷ୍ଟିରେ ଚାହୁଁଥିଲେ ॥୨୮॥ ବଡ଼ ହେବା ପରେ ମଧ୍ୟ ଗୋପର ଲକ୍ଷ୍ମୀସ୍ୱରୂପ ଧବଳବର୍ଣ୍ଣର ଧେନୁ ଓ ବୃଷଭମାନଙ୍କୁ ସେ ଚରାଇବାକୁ ଲାଗିଲେ ଏବଂ ସୁମଧୁର ବଂଶୀସ୍ୱନରେ ସାଥି ଗୋପାଳବାଳକମାନଙ୍କୁ ଆମୋଦିତ କଲେ ॥୨୯॥ ସେତେବେଳେ ତାଙ୍କୁ ମାରିବାପାଇଁ ଭୋଜରାଜ କଂସ ମାୟାବୀ ଓ ଇଚ୍ଛାରୂପୀ ରାକ୍ଷସମାନଙ୍କୁ ପଠାଇଲା । ଖେଳରେ ପିଲାମାନେ ଯେପରି ଖେଳନା ସବୁ ଭାଙ୍ଗି ଦିଅନ୍ତି, ସେହିପରି ସେମାନଙ୍କୁ ସେ ଖେଳରେ ଖେଳରେ ନିହତ କଲେ ॥୩୦॥ ବିଷାକ୍ତ ଯମୁନାର ଜଳ ପାନ କରି ଯେତେବେଳେ ଧେନୁ ଓ ଗୋପାଳବାଳକମାନଙ୍କ ଜୀବନ ବିପନ୍ନ ହେଲା, ସେତେବେଳେ ସେ କାଳିୟ ନାଗକୁ ଦମନ କରି ସେଠାରୁ ତାକୁ ବିତାଡ଼ିତ କଲେ ଏବଂ କାଳିନ୍ଦୀର ନିର୍ମଳ ଜଳ ସମସ୍ତେ ପାନ କରିବାକୁ ଲାଗିଲେ ॥୩୧॥ ଯେତେବେଳେ ଗୋପର ସମ୍ପଦ ବଢ଼ିବାକୁ ଲାଗିଲା, ସେତେବେଳେ ତା'ର ସଦ୍‌ବ୍ୟୟ କରିବା ନିମନ୍ତେ ସେ ଶ୍ରେଷ୍ଠ ବ୍ରାହ୍ମଣମାନଙ୍କୁ ନେଇ ନନ୍ଦରାଜାଙ୍କ ଦ୍ୱାରା ଗୋବର୍ଦ୍ଧନପୂଜା କରାଇଲେ ॥୩୨॥ ଭଦ୍ର ବିଦୁର, ଏଥିରେ ଇନ୍ଦ୍ରପୂଜା ଭଗ୍ନ ହେବାର ଦେଖି ଅତି କ୍ରୋଧରେ ଇନ୍ଦ୍ର ବ୍ରଜର ବିନାଶପାଇଁ ଘୋର ବର୍ଷା କଲେ । କିନ୍ତୁ ଭଗବାନ କୃଷ୍ଣ ଗୋବର୍ଦ୍ଧନ ପର୍ବତକୁ ଛତ୍ରରୂପରେ ଧାରଣ କରି ତାଙ୍କ ଅନୁଗୃହୀତ ବ୍ରଜବାସୀମାନଙ୍କୁ ରକ୍ଷାକଲେ ॥୩୩॥ ଯେତେବେଳେ ଶାରଦୀୟ ଚନ୍ଦ୍ରଜ୍ୟୋତ୍ସ୍ନା ଚାରିଆଡ଼େ ବିଚ୍ଛୁରିତ ହୋଇ ରଜନୀର ଶୋଭାବର୍ଦ୍ଧନ କରୁଥିଲା, ସେତେବେଳେ ତା'ର ସମ୍ମାନରେ ସେ ମଧୁର ଗାନଦ୍ୱାରା ବ୍ରଜବାସୀମାନଙ୍କର ପ୍ରଧାନ ଆକର୍ଷଣ ହୋଇ ସେମାନଙ୍କ ସହିତ ରାସକ୍ରୀଡ଼ା କରୁଥିଲେ ॥୩୪॥

## ତୃତୀୟ ଅଧ୍ୟାୟ

# ଭଗବାନଙ୍କର ଅନ୍ୟ ଲୀଳା

ଉଦ୍ଧବ କହିଲେ, ତାଙ୍କ ପିତାମାତାଙ୍କୁ ଆନନ୍ଦ ଦେବାପାଇଁ, ବଳରାମଙ୍କ ସହିତ ସେ ମଥୁରାପୁରୀକୁ ଆସି ଉଚ୍ଚ ମଞ୍ଚ ଉପରେ ବସିଥିବା ତାଙ୍କ ପ୍ରଧାନ ଶତ୍ରୁ କଂସକୁ ନିପାତ କଲେ ଏବଂ ତାର ମୃତ ଶରୀରକୁ ତଳକୁ ଘୋଷାଡ଼ି ଆଣିଲେ ॥୧॥ ଶିକ୍ଷାପାଇଁ ମୁନି ସାନ୍ଦୀପନିଙ୍କ ଆଶ୍ରମକୁ ଯାଇ ଥରେ ଯାହା ଶୁଣୁଥିଲେ, ମନେ ରଖି ନେଉଥିଲେ । ଏହିପରି ସେ ସମସ୍ତ ବେଦବେଦାଙ୍ଗାଦି ଶାସ୍ତ୍ର ଅଧ୍ୟୟନ କଲେ । ଗୁରୁଙ୍କୁ ଦକ୍ଷିଣାସ୍ୱରୂପ ପଞ୍ଚଜନ ନାମକ ରାକ୍ଷସର ଉଦରରୁ ତାଙ୍କର ମୃତ ପୁତ୍ରକୁ ଉଦ୍ଧାର କରି ଫେରାଇ ଦେଇଥିଲେ ॥୨॥ ଭୀଷ୍ମକଙ୍କ କନ୍ୟା ରୁକ୍ମିଣୀ ଲକ୍ଷ୍ମୀସ୍ୱରୂପିଣୀ ଥିଲେ । ବିଷ୍ଣୁସ୍ୱରୂପ କୃଷ୍ଣଙ୍କର ସେ ନିତ୍ୟସଙ୍ଗିନୀ । ରୁକ୍ମିଣୀଙ୍କର ଭାଇ ରୁକ୍ମୀଙ୍କ ଦ୍ୱାରା ନିମନ୍ତ୍ରିତ ହୋଇ ତାଙ୍କର ପାଣିଗ୍ରହଣ କରିବାପାଇଁ ଜରାସନ୍ଧ ଆଦି ରାଜାମାନଙ୍କ ସହିତ ଶିଶୁପାଳ ସେଠାରେ ଉପସ୍ଥିତ ଥିଲେ । ଶ୍ରୀକୃଷ୍ଣ ସେମାନଙ୍କ ମସ୍ତକରେ ପାଦ ରଖି ଗାନ୍ଧର୍ବ ବିବାହ ରୀତିରେ ସେମାନଙ୍କ ସମ୍ମୁଖରୁ ରୁକ୍ମିଣୀଙ୍କୁ ହରଣ କରିନେଲେ, ଯେପରି ଗରୁଡ଼ ଅମୃତ ହରଣ କରିଥିଲେ ॥୩॥ ନାକଫୋଡ଼ା ନ ହୋଇଥିବା ବୃଷଭମାନଙ୍କୁ ଦମନ କରି ସେ ସ୍ୱୟଂବରରେ ନାଗ୍ନଜିତୀ (ସତ୍ୟା)ଙ୍କୁ ବିବାହ କରିଥିଲେ । ଏଥିରେ ଭଗ୍ନମନୋରଥ ରାଜାମାନେ ତାଙ୍କ ବିରୋଧରେ ଅସ୍ତ୍ର ଧାରଣ କରିବାରୁ ନିଜେ ଅକ୍ଷତ ଅବସ୍ଥାରେ ରହି ଅସ୍ତ୍ରଦ୍ୱାରା ସେମାନଙ୍କୁ ନିହତ କରିଥିଲେ ॥୪॥ ଗାଉଁଲି ଲୋକ ନିଜର ସ୍ତ୍ରୀକୁ ସନ୍ତୁଷ୍ଟ କରିବା ପରି କୃଷ୍ଣ ନିଜର ପ୍ରେୟସୀ ସତ୍ୟଭାମାଙ୍କର ସନ୍ତୋଷପାଇଁ ସ୍ୱର୍ଗରୁ ପାରିଜାତ ବୃକ୍ଷକୁ ଉପାଡ଼ି

ଆଣିଥିଲେ । ଏଥିରେ ନିଜ ସ୍ତ୍ରୀମାନଙ୍କ ବୁଦ୍ଧିରେ ପରିଚାଳିତ ସ୍ତ୍ରୈଣ ଇନ୍ଦ୍ର କ୍ରୋଧାନ୍ଧ ହୋଇ ସସୈନ୍ୟ ତାଙ୍କ ଉପରେ ଆକ୍ରମଣ କଲେ ॥୫॥ ନିଜର ବିଶାଳ ଶରୀରଦ୍ୱାରା ଆକାଶକୁ ଗ୍ରାସ କରୁଥିବା ନରକାସୁରକୁ ସେ ଚକ୍ରଦ୍ୱାରା ବଧ କରିବାରୁ ତାର ମାତା ଧରିତ୍ରୀ ପ୍ରାର୍ଥନା କରିବାରୁ ସେ ନରକର ପୁତ୍ର ଭଗଦତ୍ତଙ୍କୁ ଅବଶିଷ୍ଟ ରାଜ୍ୟରେ ରାଜା କରାଇଲେ ଏବଂ ନରକାସୁରର ଅନ୍ତଃପୁରରେ ପ୍ରବେଶ କଲେ ॥୬॥ ସେଠାରେ ନରକାସୁରଦ୍ୱାରା ଅପହୃତ ହୋଇ ରହିଥିବା ରାଜକନ୍ୟାମାନେ ଆର୍ତ୍ତତ୍ରାଣ ହରିଙ୍କୁ ଦର୍ଶନ କରି ଆନନ୍ଦରେ ଉତ୍‌ଫୁଲ୍ଲିତ ହୋଇଗଲେ । ଲଜ୍ଜାରେ ମୁହଁ ପୋତି ପ୍ରେମପୂର୍ଣ୍ଣ କଟାକ୍ଷଦ୍ୱାରା ତାଙ୍କୁ ପତିରୂପରେ ବରଣ କଲେ ॥୭॥ ସେମାନଙ୍କୁ ଆଣି ସେ ବିଭିନ୍ନ ଗୃହରେ ରଖାଇଲେ ଏବଂ ମାୟାବଳରେ ପ୍ରତ୍ୟେକ କନ୍ୟାର ଅନୁରୂପ ଏକ ଏକ ରୂପ ଗ୍ରହଣ କରି ଏକସଙ୍ଗରେ ବିଧିବଦ୍ଧ ଭାବରେ ସେମାନଙ୍କର ପାଣି ଗ୍ରହଣ କଲେ ॥୮॥ ଏହାପରେ ତାଙ୍କରି ଔରସରେ ପ୍ରତ୍ୟେକଙ୍କ ଗର୍ଭରୁ ତାଙ୍କ ତୁଲ୍ୟ ଦଶ ଦଶଟି ପୁତ୍ର ଜନ୍ମ ହେଲେ, ଯେଉଁମାନେ କି ତାଙ୍କର ଲୀଳା ବିସ୍ତାର କରିଥିଲେ ॥୯॥

କାଳଯବନ, ଜରାସନ୍ଧ ଓ ଶାଲ୍ୱ ଆଦି ବହୁ ସୈନ୍ୟସାମନ୍ତ ଧରି ମଥୁରା ଓ ଦ୍ୱାରକାକୁ ଅବରୋଧ କରିବାରୁ ସେ ନିଜର ଅଲୌକିକ ଶକ୍ତିବଳରେ ନିଜ ଲୋକଙ୍କୁ ଶକ୍ତିଶାଳୀ କରି ସେମାନଙ୍କଦ୍ୱାରା ହିଁ ଏହି ଦୈତ୍ୟମାନଙ୍କୁ ବଧ କରିଥିଲେ ॥୧୦॥ ଶମ୍ବରାସୁର, ମୁରାସୁର, ବାଣାସୁର, ଦ୍ୱିବିଦ ବାନର, ବଲ୍ୱଳ, ଦନ୍ତବକ୍ର ଆଦି ଶତ୍ରୁମାନଙ୍କୁ ସେ ନିଜେ ମାରିଥିଲେ ବା ଅନ୍ୟମାନଙ୍କଦ୍ୱାରା ମରାଇଥିଲେ ॥୧୧॥ ଏହାପରେ ହେ ବିଦୁର, ତୁମର ପୁତୁରା ପାଣ୍ଡବ ଓ କୌରବମାନଙ୍କ ପକ୍ଷରେ କୁରୁକ୍ଷେତ୍ରଯୁଦ୍ଧରେ ଯେଉଁ ରାଜାମାନେ ଆସି ଯୋଗ ଦେଇଥିଲେ ଏବଂ ଯାହାଙ୍କ ସୈନ୍ୟମାନଙ୍କର ପଦାଘାତରେ ଧରା କମ୍ପିତ ହେଉଥିଲା, ସେମାନଙ୍କୁ ସେ ପରସ୍ପର ବିରୋଧରେ ଲଢ଼ାଇ ନିହତ କରିଥିଲେ ॥୧୨॥ କର୍ଣ୍ଣ, ଦୁଃଶାସନ ଓ ଶକୁନିଙ୍କର କୁମନ୍ତ୍ରଣାରେ ହତଶ୍ରୀ ଏବଂ ଗତାୟୁଷ ଦୁର୍ଯ୍ୟୋଧନ ଭୀମର ଗଦାଘାତରେ ଭଗ୍ନଜାନୁ ହୋଇ ନିଜର ଅନୁଚରମାନଙ୍କ ସହିତ ଭୂମିରେ ଶୟନ କରିଥିବା ଘଟଣାରେ ସେ ସନ୍ତୁଷ୍ଟ ହୋଇ ନ ଥିଲେ ॥୧୩॥ ଭୀଷ୍ମ, ଦ୍ରୋଣ, ଅର୍ଜୁନ ଓ ଭୀମଙ୍କୁ ଧରି ସେ ପୃଥିବୀର ଗୁରୁଭାର ଉଶ୍ୱାସ କଲେ । କିନ୍ତୁ ମନେ ମନେ ଭାବିଲେ, ଅଠର ଅକ୍ଷୌହିଣୀ ସେନା ବିଶିଷ୍ଟ ମୋର ଅଂଶରୁ ଜାତ ଯଦୁବଳ ଜୀବିତ ଅଛନ୍ତି । ପୃଥିବୀ ପକ୍ଷରେ ଏମାନଙ୍କର ଭାର ସହିବା କଷ୍ଟକର ହେବ ॥୧୪-୧୫॥ ଯେତେବେଳେ ଅତ୍ୟଧିକ ମଦ ପାନ କରି ଏମାନଙ୍କ ମଧ୍ୟରେ ବିବାଦ ହେବ, କ୍ରୋଧରେ ସେମାନଙ୍କ ଚକ୍ଷୁ ତାମ୍ରବର୍ଣ୍ଣ ଦେଖାଯିବ, ସେତେବେଳେ ସେମାନେ ପରସ୍ପର ବିରୋଧରେ ଲଢ଼ି ଶେଷ ହୋଇଯିବେ । ସେମାନଙ୍କ ବିନାଶର ଅନ୍ୟ ଉପାୟ ନାହିଁ । କେବଳ ମୋର ସଂକଳ୍ପରୁ ତାହା ସମ୍ଭବ ହେବ ॥୧୬॥ ଉତ୍ତରା ତାଙ୍କ ଗର୍ଭରେ କୁରୁବଂଶର ରକ୍ଷକ ଅଭିମନ୍ୟୁଙ୍କର ପୁତ୍ରକୁ ଧାରଣ କରିଥିଲେ । ଅଶ୍ୱତ୍‌ଥାମାର ବ୍ରହ୍ମାସ୍ତ୍ରରେ ନଷ୍ଟପ୍ରାୟ ସେହି ଗର୍ଭସ୍ଥ ଶିଶୁକୁ ସେ (କୃଷ୍ଣ) ରକ୍ଷା କରିଥିଲେ ॥୧୭॥ ଧର୍ମରାଜ ଯୁଧିଷ୍ଠିରଙ୍କଦ୍ୱାରା ସେ ତିନୋଟି ଅଶ୍ୱମେଧ ଯଜ୍ଞ କରାଇଲେ । କୃଷ୍ଣଙ୍କର ଅନୁଗାମୀ ରାଜା ଯୁଧିଷ୍ଠିର ତାଙ୍କ ସାନଭାଇମାନଙ୍କ ସହ ପୃଥିବୀକୁ ପାଳନ କରି ଆନନ୍ଦରେ ରହିଲେ ॥୧୮॥ ବିଶ୍ୱାତ୍ମା ଭଗବାନ କୃଷ୍ଣ ମଧ୍ୟ ଲୋକ ଓ ବେଦଦ୍ୱାରା ଅନୁମୋଦିତ ମାର୍ଗ ଅନୁସରଣ କରି ନିଜର ଦ୍ୱାରକା ନଗରୀରେ ରହି ଭୋଗ୍ୟ ବସ୍ତୁମାନଙ୍କୁ ଉପଭୋଗ କଲେ । କିନ୍ତୁ ସାଂଖ୍ୟଦର୍ଶନଦ୍ୱାରା ଚାଳିତ ହୋଇ କୌଣସି ବିଷୟ ପ୍ରତି ଆସକ୍ତ ହେଲେ ନାହିଁ ॥୧୯-୨୦॥

ସ୍ମିତହାସ୍ୟ, ସ୍ନେହପୂର୍ଣ୍ଣ ଦୃଷ୍ଟି, ଅମୃତତୁଲ୍ୟ ବଚନ, ଅନିନ୍ଦ୍ୟ ଚରିତ୍ର ଓ ନିଜ ଶ୍ରୀଅଙ୍ଗର ଶୋଭାଦ୍ୱାରା ସେ ଇହଲୋକ, ପରଲୋକ ଓ ଯାଦବମାନଙ୍କର ଆନନ୍ଦବର୍ଦ୍ଧନ କଲେ ଏବଂ ରାତ୍ରିରେ ନିଜ ସ୍ତ୍ରୀମାନଙ୍କ ସହିତ ବିହାର କରି ସେମାନଙ୍କୁ ରତିସୁଖ ପ୍ରଦାନ କଲେ ॥୨୧-୨୨॥ ଏହିପରି ସାଂସାରିକ ଭୋଗରେ ରହି ବହୁବର୍ଷ ଅତୀତ ହୋଇଯିବା ପରେ ଗୃହସ୍ଥ ଜୀବନ ପ୍ରତି ତାଙ୍କର ବିରାଗ ଜାତ ହେଲା । ସମସ୍ତ ଭୋଗ୍ୟବସ୍ତୁ ଈଶ୍ୱରଙ୍କର ଅଧୀନ ଏବଂ ମନୁଷ୍ୟ ମଧ୍ୟ ତାଙ୍କର ଅଧୀନ । ତେଣୁ ଯେଉଁମାନେ ସେହି ଯୋଗେଶ୍ୱରଙ୍କଠାରେ ଭକ୍ତିଯୁକ୍ତ ହୋଇ ତାଙ୍କୁ ଅନୁସରଣ କରନ୍ତି, ସେମାନେ କେବେହେଲେ ଭୋଗରେ

ବିଶ୍ୱାସ ରଖିପାରନ୍ତି ନାହିଁ । (ସେ ନିଜେ ଭୋଗ୍ୟ ବସ୍ତୁମାନଙ୍କୁ ପରିହାର କରିଥିଲେ) ॥୨୩॥ ଦିନେ କ୍ରୀଡ଼ାରତ ଯଦୁ ଓ ଭୋଜବଂଶୀୟ କୁମାରମାନଙ୍କ ଆଚରଣରେ କ୍ରୁଦ୍ଧ ହୋଇ ମୁନିମାନେ ସେମାନଙ୍କୁ ଅଭିଶାପ ଦେଲେ; ଯାହାକି ଭଗବାନଙ୍କର ଅଭିପ୍ରେତ ଥିଲା ॥୨୪॥ ଏହାର କେତେକ ମାସ ପରେ ବୃଷ୍ଣି, ଭୋଜ ଓ ଅନ୍ଧକବଂଶୀୟ ଯାଦବମାନେ ଦୈବମାୟାରେ ବିମୋହିତ ହୋଇ ଅତି ଆନନ୍ଦରେ ପ୍ରଭାସତୀର୍ଥକୁ ରଥରେ ବସି ଯାତ୍ରା କଲେ ॥୨୫॥ ସେଠାରେ ସେମାନେ ସ୍ନାନ କରି ଦେବତା, ଋଷି ଓ ପିତୃଗଣଙ୍କୁ ତୀର୍ଥଜଳରେ ତର୍ପଣ କରି ବ୍ରାହ୍ମଣମାନଙ୍କୁ ବହୁ ଦୁଗ୍ଧବତୀ ଧେନୁ ଦାନ କଲେ ॥୨୬॥ ସେମାନେ ସୁବର୍ଣ୍ଣ, ରୌପ୍ୟ, ଶଯ୍ୟା, ବସ୍ତ୍ର, ମୃଗଚର୍ମ, କମ୍ବଳ, ଯାନ, ରଥ, ହସ୍ତୀ, କନ୍ୟା, ଭୂମି ଆଦି ପର୍ଯ୍ୟାପ୍ତ ଜୀବିକା, ସରସ ଅନ୍ନ ଆଦି ଭଗବତ୍ ଅର୍ପଣପୂର୍ବକ ବ୍ରାହ୍ମଣମାନଙ୍କୁ ଦାନ କଲେ । ଗୋବ୍ରାହ୍ମଣଙ୍କ ମଙ୍ଗଳପାଇଁ ପ୍ରାଣ ଧାରଣ କରିଥିବା ସେହି ବୀରମାନେ ଭୂଇଁରେ ମୁଣ୍ଡ ଲଗାଇ ସେମାନଙ୍କୁ ପ୍ରଣାମ କଲେ ॥୨୭॥

## ଚତୁର୍ଥ ଅଧ୍ୟାୟ

# ଗଙ୍ଗାକୂଳରେ ମୈତ୍ରେୟ ଋଷିଙ୍କର ସାକ୍ଷାତ୍

ଉଦ୍ଧବ କହିଲେ, ଏହାପରେ ବ୍ରାହ୍ମଣମାନଙ୍କ ଅନୁମତି ନେଇ ସେମାନେ ଭୋଜନ କଲେ ଏବଂ ବାରୁଣୀ ମଦିରାପାନ କଲେ । ସେଥିରେ ଜ୍ଞାନ ହରାଇ ମର୍ମଭେଦୀ କୁବାକ୍ୟମାନ ପ୍ରୟୋଗ କରି ପରସ୍ପର ଗାଳିଗୁଲଜ କରିବାକୁ ଲାଗିଲେ ॥୧॥ ବାଉଁଶ ବାଉଁଶ ଘଷି ହୋଇ ଯେପରି ବାଉଁଶବଣରେ ନିଆଁ ଲାଗିଯାଏ, ସେହିପରି ମଦ୍ୟପାନ ଦୋଷରୁ ହିତାହିତଜ୍ଞାନଶୂନ୍ୟ ହେବାରୁ ସୂର୍ଯ୍ୟାସ୍ତ ବେଳକୁ ସେମାନଙ୍କ ନିଜ ଭିତରେ ସଂଘର୍ଷ ଆରମ୍ଭ ହୋଇଗଲା ॥୨-୩॥

ଭଗବାନ ଶ୍ରୀକୃଷ୍ଣ ନିଜ ମାୟାଦ୍ୱାରା ସୃଷ୍ଟ (ଯାଦବମାନଙ୍କର) ଏହି ଦଶାକୁ ଦେଖି ସରସ୍ୱତୀ ନଦୀକୂଳକୁ ଚାଲିଗଲେ ଏବଂ ଜଳରେ ଆଚମନ କରି ଏକ ବୃକ୍ଷମୂଳରେ ବିଶ୍ରାମ ନେଲେ । ସେତେବେଳେ ସେ ନିଜ ବଂଶର ସମ୍ପୂର୍ଣ୍ଣ ଧ୍ୱଂସ ଇଚ୍ଛା କରୁଥିଲେ । ଏହାପୂର୍ବରୁ ଶରଣରକ୍ଷଣ ଆର୍ତ୍ତତ୍ରାଣ ଭଗବାନ କେବଳ ମୋତେ ଡାକି କହିଥିଲେ -- ଉଦ୍ଧବ, ତୁମେ ବଦରିକାଶ୍ରମକୁ ଚାଲିଯାଅ ॥୪॥ ବିଦୁର, ତାଙ୍କ ଅଭିପ୍ରାୟ ଜାଣି ମଧ୍ୟ ତାଙ୍କ ପାଦପଦ୍ମଠାରୁ ନିଜକୁ ଦୂରରେ ରଖିବାପାଇଁ ଅକ୍ଷମ ହୋଇ ମୁଁ ତାଙ୍କର ଅନୁଗମନ କରିଥିଲି ॥୫॥ ମୋର ପ୍ରିୟ, ମୋର ପ୍ରଭୁ ଏକାକୀ ସରସ୍ୱତୀକୂଳରେ ଚିନ୍ତିତ ହୋଇ ବସିଥିବାର ଦେଖିଲି । ସ୍ୱୟଂ ଲକ୍ଷ୍ମୀଙ୍କର ଯେ ଆଶ୍ରୟଦାତା, ସେ ପୁଣି ଏକ ବୃକ୍ଷମୂଳକୁ ଆଶ୍ରୟ କରି ବସିଛନ୍ତି ॥୬॥ ନୀଳାଞ୍ଜନ କାନ୍ତି, ନିର୍ମଳ ପ୍ରଶାନ୍ତ ମୁଖମଣ୍ଡଳରେ ଅରୁଣବର୍ଣ୍ଣ ଚକ୍ଷୁଦ୍ୱୟ, ଚତୁର୍ଭୁଜ ଓ ତାଙ୍କର ପରିଧେୟ ପୀତବସ୍ତ୍ରକୁ ଦେଖି ମୁଁ ତାଙ୍କୁ ଦୂରରୁ ଚିହ୍ନିନେଲି ॥୭॥ ସେ ଏକ କୋମଳ ଅଶ୍ୱତ୍ଥଗଛକୁ ପିଠି କରି ବାମ ଜଙ୍ଘ ଉପରେ ଦକ୍ଷିଣପାଦକୁ ରଖି ବସିଥିଲେ । ଖିଆପିଆ ଛାଡ଼ି ଦେଇ ମଧ୍ୟ ସେ ପ୍ରଫୁଲ୍ଲ ଦେଖାଯାଉଥିଲେ ॥୮॥ ସେହି ସମୟରେ ଭଗବାନଙ୍କ ପରମ ଭକ୍ତ ବ୍ୟାସଦେବଙ୍କର ପ୍ରିୟ ସୁହୃଦ୍ ସିଦ୍ଧଋଷି ମୈତ୍ରେୟ ସ୍ୱଚ୍ଛନ୍ଦରେ ବୁଲି ବୁଲି ସେଠାରେ ଆସି ପହଞ୍ଚିଗଲେ ॥୯॥ ଭଗବାନଙ୍କର ଅନୁରକ୍ତ ମୈତ୍ରେୟ ପ୍ରେମ ଓ ଭକ୍ତିରେ ମୁଣ୍ଡ ନୁଆଁଇ ତାଙ୍କ ଉପଦେଶ ଶୁଣିବାକୁ ଅପେକ୍ଷା କରିଥିବା ବେଳେ ଶ୍ରୀମୁକୁନ୍ଦ ସ୍ନେହରେ ମୋ ଆଡ଼କୁ ଚାହିଁ ଅଳ୍ପ ହସି ମୋତେ ବସିବାପାଇଁ ଅନୁମତି ଦେଲେ ଏବଂ କହିବା ଆରମ୍ଭ କଲେ ॥୧୦॥ ଶ୍ରୀ ଭଗବାନ କହିଲେ, ଉଦ୍ଧବ, ତୁମେ ମନ ଭିତରେ କ'ଣ ଇଚ୍ଛା କରୁଚ, ମୁଁ ଜାଣି ପାରୁଚି । ସେଥିପାଇଁ ତୁମକୁ ଏପରି ଏକ ବସ୍ତୁ ଦାନ କରୁଚି, ଯାହାକି ଅନ୍ୟମାନଙ୍କ ପକ୍ଷରେ ଦୁର୍ଲଭ । ପୂର୍ବକାଳରେ ସୃଷ୍ଟିରଚନା କରିବା ନିମନ୍ତେ ପ୍ରଜାପତି ଓ ବସୁମାନଙ୍କ ମଧ୍ୟରେ ଅନ୍ୟତମ ବସୁ ଭାବରେ ତୁମେ ମୋତେ

ପାଇବାପାଇଁ ଆରଧନା କରିଥିଲ ॥୧୧॥ ମୋର ଅନୁଗ୍ରହ ଲାଭ କରିଥିବାଯୋଗୁଁ ଏହା ହିଁ ହେଉଚି ତୁମର ଅନ୍ତିମ ଜନ୍ମ । ବର୍ତ୍ତମାନ ମୁଁ ଏହି ମର୍ତ୍ତ୍ୟଲୋକ ତ୍ୟାଗ କରୁଥିବାବେଳେ ବିଶୁଦ୍ଧ ଭକ୍ତିବଳରେ ତୁମେ ମୋତେ ଏକାନ୍ତରେ ଏଠାରେ ଦେଖିବାକୁ ପାଉଛ ॥୧୨॥ ପୂର୍ବେ ପଦ୍ମକଳ୍ପ ସମୟରେ ମୁଁ ଯେତେବେଳେ ସୃଷ୍ଟି ଆରମ୍ଭ କଲି, ମୋର ନାଭିପଦ୍ମସ୍ଥିତ ବ୍ରହ୍ମାଙ୍କୁ ମୋର ମହିମା ସମ୍ପର୍କରେ ଉପଦେଶ ଦେଇଥିଲି । ଏବେ ମହାତ୍ମାମାନେ ତାକୁ ଭାଗବତ ରୂପେ ବର୍ଣ୍ଣନା କରୁଛନ୍ତି ॥୧୩-୧୪॥ ମୋତେ ସର୍ବଦା ଅନୁଗୃହୀତ କରିଥିବା ସେହି ପରମପୁରୁଷ ଯେତେବେଳେ ସ୍ନେହରେ ଏପରି କହିଲେ, ମୋର ଶରୀରରେ ପୁଲକ ଜାତ ହେଲା । ଚକ୍ଷୁରୁ ଅଶ୍ରୁଧାରା ବହିବାକୁ ଲାଗିଲା । ମୁଁ କୃତାଞ୍ଜଳି ହୋଇ କହିଲି, ହେ ମୋର ପ୍ରଭୁ । ଆପଣଙ୍କ ପାଦପଦ୍ମରେ ଯେଉଁମାନେ ଭକ୍ତି ରଖିଥାଆନ୍ତି, ଏ ସଂସାରରେ ଧର୍ମ ଅର୍ଥ କାମ ମୋକ୍ଷ -- ଏହି ଅତିଶୟ ଦୁର୍ଲଭ ଚତୁର୍ବର୍ଗ ସେମାନଙ୍କୁ ମିଳିଥାଏ । କିନ୍ତୁ ପ୍ରଭୁ, ମୁଁ କେବଳ ଆପଣଙ୍କର ପାଦପଦ୍ମ ସେବା କରିବାକୁ ଚାହେ (ଅନ୍ୟ କିଛି ଚାହେ ନାହିଁ) ॥୧୫॥ ଆପଣ ନିଃସ୍ପୃହ ହୋଇ ମଧ୍ୟ କର୍ମ କରନ୍ତି; ଜନ୍ମରହିତ ହୋଇ ମଧ୍ୟ ଜନ୍ମଗ୍ରହଣ କରନ୍ତି; କାଳସ୍ୱରୂପ ହୋଇ ମଧ୍ୟ ଶତ୍ରୁ ଦେଖିଲେ ପଳାୟନ କରନ୍ତି ଏବଂ ଦୁର୍ଗ (ଦ୍ୱାରକା) ରଚନା କରି ଲୁଚି ରହନ୍ତି; ଆତ୍ମାରାମ ହୋଇ ମଧ୍ୟ ଷୋଳ ହଜାର ରମଣୀଙ୍କ ସହିତ ରମଣ କରନ୍ତି । ଏହା ବିଚାର କଲାବେଳେ ବିଦ୍ୱାନ୍‌ମାନଙ୍କର ବୁଦ୍ଧି ହଜିଯାଏ ॥୧୬॥ ଆପଣଙ୍କର ଆତ୍ମଜ୍ଞାନ, ବୋଧଶକ୍ତି ଅସୀମ, ସେ ସମ୍ପର୍କରେ କାହାରି ସଂଶୟ ନାହିଁ । ଆପଣ କେବେହେଲେ ବିଚଳିତ ହୁଅନ୍ତି ନାହିଁ । ତଥାପି ଅଜ୍ଞ ଲୋକ ଡାକି ପଚାରିବା ପରି ଆପଣ ମୋତେ ଡାକନ୍ତି ଓ ମୋର ପରାମର୍ଶ ଲୋଡ଼ନ୍ତି, ଏହା ଭାବିବାବେଳେ ମୋତେ ଆଶ୍ଚର୍ଯ୍ୟ ହେବାକୁ ପଡ଼େ ॥୧୭॥ ଆପଣଙ୍କ ସ୍ୱରୂପର ଗୂଢ଼ ରହସ୍ୟ ଜାଣିବାପାଇଁ ଆପଣ ବ୍ରହ୍ମାଙ୍କୁ ଯେଉଁ ସର୍ବଶ୍ରେଷ୍ଠ ଜ୍ଞାନ ଦାନ କରିଥିଲେ; ତାହା ଜାଣିବାପାଇଁ ଯଦି ମୁଁ ଯୋଗ୍ୟ ହୋଇଥାଏ, ତେବେ ମୋତେ ସେହି ସମୁଦାୟ ଜ୍ଞାନ ସବିସ୍ତର ଉପଦେଶ ଦିଅନ୍ତୁ, ଯେପରିକି ମୁଁ ଏ ସଂସାରଦୁଃଖକୁ ସହଜରେ ତରିଯାଇପାରିବି ॥୧୮॥

ମୁଁ ଯେତେବେଳେ ଏହିପରି ମୋର ହୃଦୟର କଥା ନିବେଦନ କଲି, ସେତେବେଳେ କମଳନୟନ ପରମାତ୍ମା ଭଗବାନ ତାଙ୍କ ଆତ୍ମସ୍ୱରୂପ ଜ୍ଞାନ ମୋତେ ଉପଦେଶ ଦେଲେ ॥୧୯॥ ମୋର ଗୁରୁ ଶ୍ରୀକୃଷ୍ଣଙ୍କ ପାଦବନ୍ଦନା କରି ତାଙ୍କଠାରୁ ଏହିପରି ମୁଁ ଆତ୍ମତତ୍ତ୍ୱର ପରମ ଜ୍ଞାନ ଲାଭକଲି । ମୁଁ ତାଙ୍କ ପାଦରେ ପ୍ରଣାମ କରି ତାଙ୍କୁ ପ୍ରଦକ୍ଷିଣପୂର୍ବକ ତାଙ୍କୁ ଛାଡ଼ି ଏବେ ଏଠାକୁ ଚାଲିଆସିଚି । ତାଙ୍କ ବିରହରେ ମୋର ଆତ୍ମା ବ୍ୟାକୁଳ ହୋଇଉଠୁଚି ॥୨୦-୨୧॥ ହେ ବିଦୁର, ତାଙ୍କ ଦର୍ଶନରେ ଆହ୍ଲାଦିତ ଏବଂ ବିୟୋଗରେ ଦୁଃଖିତ ହୋଇ ତାଙ୍କ ପ୍ରିୟ ବଦରିକାଶ୍ରମକୁ ମୁଁ ଯାତ୍ରା କରୁଚି । ସେଠାରେ ଲୋକଙ୍କର ମଙ୍ଗଳକାମୀ ଭଗବାନ ନରନାରାୟଣ ରୂପରେ ବିନା ବାଧାରେ ଦୀର୍ଘକାଳ ଧରି କଠୋର ତପସ୍ୟା କରୁଛନ୍ତି ॥୨୨॥ ଶ୍ରୀ ଶୁକଦେବ କହିଲେ, ଉଦ୍ଧବଙ୍କଠାରୁ ଏହିପରି ବନ୍ଧୁମାନଙ୍କ ନିଧନର ଦୁଃସହ ସଂବାଦ ଶୁଣି ଜ୍ଞାନୀ ବିଦୁର ଶୋକାକୁଳ ହେଲେ ମଧ୍ୟ ନିଜର ଜ୍ଞାନଦ୍ୱାରା ଶାନ୍ତ ହୋଇଗଲେ ॥୨୩॥ କୃଷ୍ଣଙ୍କର ମୁଖ୍ୟସେବକ ଓ ପରମଭକ୍ତ ଉଦ୍ଧବ ବଦରିକା ଚାଲିଯାଉଥିବା ଦେଖି କୁରୁଶ୍ରେଷ୍ଠ ବିଦୁର ତାଙ୍କୁ ବିଶ୍ୱାସରେ ଏହିପରି ପଚାରିଲେ ॥୨୪॥ ବିଦୁର କହିଲେ, ବିଷ୍ଣୁଙ୍କର ସେବକ ଭକ୍ତମାନେ ତାଙ୍କ ସେବକମାନଙ୍କ କାର୍ଯ୍ୟସିଦ୍ଧିପାଇଁ ବିଚରଣ କରନ୍ତି । ତେଣୁ ହେ ଉଦ୍ଧବ, ଯୋଗେଶ୍ୱର କୃଷ୍ଣ ଭଗବାନ ତାଙ୍କ ସ୍ୱରୂପର ଗୂଢ଼ ରହସ୍ୟ ସମ୍ପର୍କରେ ଆପଣଙ୍କୁ ଯେଉଁ ପରମ ଜ୍ଞାନ ପ୍ରଦାନ କରିଛନ୍ତି ତାହା ମୋତେ କହିବା ହୁଅନ୍ତୁ ॥୨୫॥ ଉଦ୍ଧବ କହିଲେ, ଏହି ତତ୍ତ୍ୱଜ୍ଞାନଲାଭପାଇଁ ମୈତ୍ରେୟ- ଋଷିଙ୍କୁ ଆପଣ ଆରାଧନା କରନ୍ତୁ । ଏହି ମର୍ତ୍ତ୍ୟଲୋକକୁ ଛାଡ଼ିବାବେଳେ ମୋ ସମକ୍ଷରେ ସ୍ୱୟଂ ଭଗବାନ ଆପଣଙ୍କୁ ତତ୍ତ୍ୱଜ୍ଞାନ ଦେବାପାଇଁ ମୈତ୍ରେୟଙ୍କୁ ଆଦେଶ ଦେଇଛନ୍ତି ॥୨୬॥ ଶ୍ରୀ ଶୁକଦେବ କହିଲେ, ଏହିପରି ବିଦୁରଙ୍କ ସହିତ ବିଶ୍ୱମୂର୍ତ୍ତି ଶ୍ରୀକୃଷ୍ଣଙ୍କ ଅମୃତମୟ ଗୁଣାବଳୀ ଚର୍ଚ୍ଚା କରି ଉଦ୍ଧବଙ୍କର କୃଷ୍ଣବିରହ ଦୁଃଖର ଲାଘବ ହେଲା । ଯମୁନା ପୁଳିନରେ ତାଙ୍କର ସେହିରାତି କ୍ଷଣକ ପରି କଟିଗଲା । ପ୍ରଭାତ ହେବାରୁ ସେ ସେଠାରୁ ଚାଲିଗଲେ ॥୨୭॥

ରାଜା ପରିକ୍ଷିତ ପଚାରିଲେ, ଯେତେବେଳେ ବୃଷ୍ଣି ଓ ଭୋଜବଂଶୀ ଯାଦବ ରଥୀ ଓ ସେନାପତି ସମସ୍ତଙ୍କର ବିନାଶ ଘଟିଲା, ଏପରିକି ତ୍ରିଲୋକର ଅଧିପତି ଶ୍ରୀହରିଙ୍କୁ ମଧ୍ୟ ଦେହତ୍ୟାଗ କରିବାକୁ ପଡ଼ିଲା, ଏକା ଯାଦବମୁଖ୍ୟ ଉଦ୍ଧବ କିପରି ବର୍ତ୍ତିଗଲେ ? ॥୨୮॥ ଶୁକଦେବ କହିଲେ, ବ୍ରହ୍ମଶାପ ଏକ ବାହାନା ମାତ୍ର । କାଳସ୍ୱରୂପ ହରି ତାଙ୍କର ଅବ୍ୟର୍ଥ ଇଚ୍ଛାରେ ବହୁତ ବଢ଼ି ଯାଇଥିବା ଯଦୁକୁଳକୁ ସଂହାର କରି ନିଜେ ଦେହ ତ୍ୟାଗ କରିବାପାଇଁ ସ୍ଥିର କରିଥିଲେ ॥୨୯॥ ସେତେବେଳେ ସେ ନିଜେ କହିଥିଲେ, ମୁଁ ଏହି ମର୍ତ୍ତ୍ୟଲୋକରୁ ଚାଲିଯିବା ପରେ ମୋତେ ଆଶ୍ରିତ ଜ୍ଞାନ ବର୍ତ୍ତମାନ ମୋର ଶ୍ରେଷ୍ଠ ଭକ୍ତ ଉଦ୍ଧବଙ୍କର ହିଁ ପ୍ରାପ୍ୟ । ସେ ମୋ'ଠାରୁ ଅଣୁମାତ୍ର ନ୍ୟୂନ ନୁହନ୍ତି ॥୩୦॥ ସେ ଆତ୍ମଜୟୀ ଓ ବିଷୟାବିଷ ତାଙ୍କୁ ଘାରେ ନାହିଁ । ମୋ'ପରେ ମୋର ତତ୍ତ୍ୱଜ୍ଞାନ ଲୋକମାନଙ୍କୁ ଶିକ୍ଷା ଦେବାପାଇଁ ସେ ଏଠାରେ ବଞ୍ଚି ରହନ୍ତୁ ॥୩୧॥ ଏହିପରି ବେଦର ଆଦିମୂଳ, ତ୍ରିଲୋକର ଗୁରୁ ଭଗବାନ୍ ଶ୍ରୀକୃଷ୍ଣଙ୍କ ଦ୍ୱାରା ଆଦିଷ୍ଟ ହୋଇ ଉଦ୍ଧବ ବଦରିକାଶ୍ରମ ଗଲେ ଏବଂ ସେଠାରେ ସମାଧିସ୍ଥ ରହି ଶ୍ରୀହରିଙ୍କର ଆରାଧନା କରିବାକୁ ଲାଗିଲେ ॥୩୨-୩୪॥

ପରମାତ୍ମା ଶ୍ରୀକୃଷ୍ଣ ଲୀଳା ରଚନା କରିବାପାଇଁ ସଂସାରରେ ଦେହ ଧାରଣ କରିଥିଲେ । ବିଦୁର ସେହି ଲୀଳାମୟଙ୍କର ପ୍ରଶଂସନୀୟ ଲୀଳାମାନ ଉଦ୍ଧବଙ୍କଠାରୁ ଶୁଣିଲେ । ଶ୍ରୀକୃଷ୍ଣଙ୍କର ଦେହତ୍ୟାଗ ଧୀର ପୁରୁଷମାନଙ୍କର ଉତ୍ସାହ ବଢ଼ାଇଦିଏ । ପଶୁପରି ଅନ୍ୟ ବିକାରଗ୍ରସ୍ତ ଲୋକଙ୍କପାଇଁ ତାହା ବୁଝିବା କଷ୍ଟକର ହୁଏ । ହେ ରାଜା, ପରମ ଭାଗବତ ଉଦ୍ଧବ ଚାଲିଯିବା ପରେ ବିଦୁରଙ୍କର ସେହି ବିଷୟ ମନେ ପଡ଼ିଲା, କିପରି ଶ୍ରୀକୃଷ୍ଣ (ଦେହ ତ୍ୟାଗପୂର୍ବରୁ) ତାଙ୍କ କଥା ମନେ ପକାଉଥିଲେ । ତାହା ଚିନ୍ତାକରି କୃଷ୍ଣପ୍ରେମରେ ଗଦ୍‌ଗଦ ବିଦୁର ରୋଦନ କରିବାକୁ ଲାଗିଲେ । ହେ ଭରତଶ୍ରେଷ୍ଠ, ଯମୁନାକୂଳରେ କିଛିଦିନ କଟାଇବା ପରେ ସିଦ୍ଧପୁରୁଷ ବିଦୁର ଯାଇ ମୈତ୍ରେୟ ଋଷି ରହୁଥିବା ଗଙ୍ଗାକୂଳରେ ପହଞ୍ଚିଲେ ॥୩୫॥

ପଞ୍ଚମ ଅଧ୍ୟାୟ

## ସୃଷ୍ଟିର ବର୍ଣ୍ଣନା

ଅଗାଧ ଜ୍ଞାନର ଭଣ୍ଡାର ମୈତ୍ରେୟ ଋଷି ହରିଦ୍ୱାରରେ ଗଙ୍ଗାକୂଳରେ ଯେଉଁଠି ବସିଥିଲେ, ଭଗବତ୍ ଭକ୍ତିରେ ଶୁଦ୍ଧଚିତ୍ତ, କୁରୁଶ୍ରେଷ୍ଠ ବିଦୁର ସେଇଠି ଯାଇ ଉପସ୍ଥିତ ହେଲେ ଏବଂ ମୁନିଙ୍କର ସତ୍‌ସ୍ୱଭାବଯୁକ୍ତ ଗୁଣାବଳୀରେ ତୃପ୍ତ ହୋଇ ତାଙ୍କୁ ଏହିପରି ପଚାରିଲେ ॥୧॥ ସଂସାରରେ ଲୋକ ସୁଖପାଇଁ କର୍ମ କରୁଚି । କିନ୍ତୁ ଏହି ସବୁ କର୍ମଦ୍ୱାରା ସୁଖ ମିଳୁ ନାହିଁ କି ଦୁଃଖର ଉପଶମ ହେଉ ନାହିଁ । ବରଂ ଦୁଃଖ ବହୁ ପରିମାଣରେ ବଢ଼ି ବଢ଼ି ଯାଉଚି । ତେଣୁ ଏ ବିଷୟରେ କ'ଣ କଲେ ଠିକ୍ ହେବ, ହେ ମହାତ୍ମା, ଆପଣ ଆମକୁ ଉପଦେଶ ଦିଅନ୍ତୁ ॥୨॥

ଦୈବବଶତଃ କୃଷ୍ଣଙ୍କପ୍ରତି ବିମୁଖ ହୋଇ ଅଧର୍ମ ସ୍ୱଭାବର ଲୋକମାନେ ବହୁ ଦୁଃଖକଷ୍ଟ ଭୋଗ କରୁଛନ୍ତି । ତେଣୁ ସେମାନଙ୍କ ପ୍ରତି ଭଗବାନଙ୍କର ଅନୁଗ୍ରହ ନିମନ୍ତେ ବହୁ ସାଧୁଲୋକ ଏହି ସଂସାରରେ ବିଚରଣ କରୁଛନ୍ତି ॥୩॥ ସାଧୁଶ୍ରେଷ୍ଠ, ଆମ୍ଭମାନଙ୍କୁ ଏପରି ମଙ୍ଗଳମୟ ମାର୍ଗ ପ୍ରଦର୍ଶନ କରାନ୍ତୁ, ଯେପରିକି ଲୋକମାନେ ଭଗବାନଙ୍କୁ ସମ୍ୟକ୍ ଆରାଧନା କରିପାରିବେ ଓ ସେମାନଙ୍କ ଭକ୍ତିପୂତ ହୃଦୟରେ ରହି ଭଗବାନ ସେହି ସନାତନ ଜ୍ଞାନର ତତ୍ତ୍ୱ ସେମାନଙ୍କୁ ଦାନ କରିପାରିବେ ॥୪-୫॥ ତ୍ରିଲୋକର ଅଧୀଶ୍ୱର ଭଗବାନ ସ୍ୱତନ୍ତ୍ର ହୋଇ ମଧ୍ୟ ଅବତାର ଗ୍ରହଣ କରି ବିଭିନ୍ନ କର୍ମମାନ କରନ୍ତି, ଯେପରିକି ନିଃସ୍ପୃହ ରହି ବି ସେ ଏହି ସୃଷ୍ଟିର ରଚନା ଓ ପାଳନ କରିଥାନ୍ତି ଏବଂ ଜଗତର ପ୍ରାଣୀମାନଙ୍କପାଇଁ ବିଭିନ୍ନ ବୃତ୍ତି ଖଞ୍ଜିଦେଇଥାନ୍ତି । ଯେପରି ସେ ପୁଣି ନିଜ ହୃଦୟାକାଶ ମଧ୍ୟରେ ଏହି ଜଗତକୁ ସ୍ଥାପନ କରି ସମସ୍ତ ବିଷୟରୁ ନିବୃତ୍ତ ରହି ଯୋଗମାୟାରେ

ଶୟନ କରନ୍ତି ଏବଂ ସେହି ଯୋଗେଶ୍ୱରାଧୀଶ୍ୱର ଏକ ହୋଇ ମଧ୍ୟ ଅନେକ ରୂପରେ ଏହି ବ୍ରହ୍ମାଣ୍ଡରେ ପ୍ରବେଶ କରନ୍ତି, ସେଇ ରହସ୍ୟ ଆପଣ ଫିଟାଇ କହନ୍ତୁ ।।୬।। ଗୋ-ବ୍ରାହ୍ମଣ-ଦେବତାମାନଙ୍କ କଲ୍ୟାଣପାଇଁ ଯେ ବିଭିନ୍ନ ଅବତାର ଭେଦରେ ନାନା ଲୀଳା ରଚନା କରନ୍ତି, ସେହି ପୁଣ୍ୟଶ୍ଳୋକ- ଶିରୋମଣି ଭଗବାନ ଶ୍ରୀହରିଙ୍କର ଅମୃତ ଚରିତାବଳୀ ଯେତେ ଶୁଣିଲେ ମଧ୍ୟ ଆମର ମନ ତୃପ୍ତ ହୁଏ ନାହିଁ ।।୭।।

ଏହା ମଧ୍ୟ କହନ୍ତୁ, କେଉଁ ତତ୍ତ୍ୱକୁ ଆଶ୍ରୟ କରି ସେହି ରାଜାଧିରାଜ ଭଗବାନ ଶ୍ରୀହରି ବିଭିନ୍ନ ଲୋକ (ଭୂଲୋକ ଦ୍ୟୁଲୋକ ଆଦି), ଜୀବଶୂନ୍ୟ ବିଭିନ୍ନ ଗ୍ରହ ଉପଗ୍ରହ (ଆଲୋକ) ଏବଂ ନିଜର ସ୍ୱଭାବ ଓ କର୍ମ ଅନୁସାରେ ଭିନ୍ନ ଭିନ୍ନ ପ୍ରତୀତ ହେଉଥିବା ଜୀବମାନଙ୍କୁ ଓ ସେମାନଙ୍କ ପାଳକମାନଙ୍କୁ ସୃଷ୍ଟି କରିଥିଲେ ।।୮।। ବିପ୍ରଶ୍ରେଷ୍ଠ, ଏହି ବିଶ୍ୱସ୍ରଷ୍ଟା, ସ୍ୱୟଂଭୂ ନାରାୟଣ କିପରି ପ୍ରାଣୀମାନଙ୍କର ସ୍ୱଭାବ, କର୍ମ, ନାମ, ରୂପାଦିର ଭେଦ ରଚନା କଲେ ? ।।୯।। ମୁଁ ତ ବ୍ୟାସଦେବଙ୍କ ମୁହଁରୁ ଉଚ୍ଚ ଓ ନୀଚ ବର୍ଣ୍ଣମାନଙ୍କର ଧର୍ମ କଣ ତାହା ବାରମ୍ବାର ଶୁଣିଚି । ତାହା ସନ୍ତୋଷଜନକ ହେଲେ ମଧ୍ୟ କୃଷ୍ଣକଥାରୂପ ଅମୃତପ୍ରବାହ ବିନା ତାହା ଅଳ୍ପସୁଖଦାୟୀ ।।୧୦।। ଯାହାଙ୍କ ଚରଣରେ ସମସ୍ତ ତୀର୍ଥ ବିଦ୍ୟମାନ, ସତ୍‌ସଙ୍ଗଦ୍ୱାରା ମହାତ୍ମାମାନେ ଯାହାଙ୍କର ଅର୍ଚ୍ଚନା କରନ୍ତି, ତାଙ୍କର ଗୁଣକୀର୍ତ୍ତନ ବିନା କିଏ ତୃପ୍ତି ଲାଭ କରିବ ? ଯଦି ତାଙ୍କର ଗୁଣାବଳୀ ମନୁଷ୍ୟର କର୍ଣ୍ଣକୁହରରେ ପ୍ରବେଶ କରେ, ତେବେ ତାହା ଭବବନ୍ଧନରୂପ ବିଷୟଭୋଗକୁ ସଙ୍ଗେ ସଙ୍ଗେ ତୁଚ୍ଛ କରିଦିଏ ।।୧୧।। ମୁନି କୃଷ୍ଣଦ୍ୱୈପାୟନ (ବ୍ୟାସଦେବ) ଆପଣଙ୍କର ସଖା । ସେ ମହାଭାରତ ରଚନା କଲେ, ଯାହା ମଧ୍ୟରେ ସାଂସାରିକ ସୁଖର ବର୍ଣ୍ଣନା ଥିଲେ ମଧ୍ୟ କୃଷ୍ଣକଥା ପ୍ରତି ଲୋକଙ୍କର ମନକୁ ଆକୃଷ୍ଟ କରାଯାଇଚି ।।୧୨।। କୃଷ୍ଣକଥା ପ୍ରତି ଶ୍ରଦ୍ଧାଶୀଳ ବ୍ୟକ୍ତିର ଅନ୍ୟ ସମସ୍ତ କଥାପ୍ରତି ବିରକ୍ତି ଜାତ ହୁଏ ଓ ତାହା ବଢ଼ିବାକୁ ଲାଗେ । ଶ୍ରୀହରିଙ୍କ ପାଦପଦ୍ମ ସ୍ମରଣ କରୁଥିବା ବ୍ୟକ୍ତିର ସମସ୍ତ ଦୁଃଖ ଶୀଘ୍ର ନଷ୍ଟ ହୋଇଯାଏ ।।୧୩।। ଏ କଥା ଜାଣି ମଧ୍ୟ ଅନେକ କୃଷ୍ଣକଥା ପ୍ରତି ବିମୁଖ ହୁଅନ୍ତି । ଅନ୍ୟମାନେ ଅଜ୍ଞତା ଦୋଷରୁ ବିମୁଖ ହୁଅନ୍ତି । ଏହି ଉଭୟଙ୍କ କଥା ଭାବି ମୋର ଦୁଃଖ ଜାତ ହୁଏ । ସେମାନେ ସ୍ମୃତିକଥିତ ନାନା ବାଦବିବାଦଯୁକ୍ତ କ୍ରିୟାକର୍ମରେ ଲିପ୍ତ ରହନ୍ତି । କାୟମନୋବାକ୍ୟରେ ସେଥିରେ ହିଁ ମାତିଥାନ୍ତି । ଏହିପରି କାଳବଶରେ ସେମାନଙ୍କର ଆୟୁଷ କ୍ଷୀଣ ହେବାରେ ଲାଗିଥାଏ ।।୧୪।। ହେ ମୈତ୍ରେୟ, ଆପଣ ଆର୍ତ୍ତମାନଙ୍କର ବନ୍ଧୁ, ସବୁ କଥା ମଧ୍ୟରେ ସାର ହରିକଥା ଆମକୁ ଶୁଣାଇବା ହୁଅନ୍ତୁ । ଯେପରି ଅନ୍ୟମାନଙ୍କ ଉପକାରପାଇଁ ମଧୁମକ୍ଷିକା ପୁଷ୍ପମାନଙ୍କରୁ ମଧୁସଂଗ୍ରହ କରେ, ସେହିପରି ଆପଣ ଆମ୍ଭମାନଙ୍କ ମଙ୍ଗଳପାଇଁ ସବୁ ତୀର୍ଥମାନଙ୍କର ଅଭୀଷ୍ଟ ଭଗବାନଙ୍କର ଗୁଣାବଳୀ କୀର୍ତ୍ତନ କରନ୍ତୁ ।।୧୫।। ସେ ଏହି ବିଶ୍ୱର ଜନ୍ମ, ସ୍ଥିତି ଓ ସଂହାରପାଇଁ ନିଜ ମାୟାବଳରେ ବହୁ ଅବତାର ଗ୍ରହଣ କରି ଯେଉଁ ଅତିମାନୁଷ ଲୀଳାମାନ ରଚନା କରିଥିଲେ; ତାହା ଆପଣ ମୋ ଆଗରେ କୀର୍ତ୍ତନ କରନ୍ତୁ ।।୧୬-୧୭।।

ବିଦୁର ମହାତ୍ମା ମୈତ୍ରେୟ ମୁନିଙ୍କୁ ଏହିପରି ପଚାରିବାରୁ ଲୋକମାନଙ୍କର କଲ୍ୟାଣପାଇଁ ସେ ବିଦୁରଙ୍କୁ ବହୁ ମାନ୍ୟତା ଦେଇ କହିଲେ - ସାଧୁ ବିଦୁର, ସମସ୍ତ ଜୀବଙ୍କ ପ୍ରତି ତୁମର ଏକାନ୍ତ ଅନୁଗ୍ରହ ଯୋଗୁଁ ତୁମେ ଉତ୍ତମ ପ୍ରଶ୍ନ ପଚାରିଚ । ଭଗବାନଙ୍କ ଠାରେ ତୁମର ଚିତ୍ତ ଲାଗି ରହିଥିବାରୁ ସଂସାରରେ ତୁମର କୀର୍ତ୍ତି ବିସ୍ତାର ଲାଭ କରିଚି ।।୧୮।। ବିଦୁର, ତୁମେ ବ୍ୟାସଦେବଙ୍କ ଔରସରେ ଜାତ । ତେଣୁ ଅନନ୍ୟଭାବରେ ଭଗବାନଙ୍କ ଆଶ୍ରିତ ହୋଇ ରହିବାରେ ତୁମର ଆଦୌ ବିଚିତ୍ରତା ନାହିଁ ।।୧୯।। ତୁମେ ହେଉଚ, ପ୍ରାଣୀମାନଙ୍କର ଦଣ୍ଡଦାତା ଭଗବାନ ଯମ ଯେ କି ମାଣ୍ଡବ ଋଷିଙ୍କ ଅଭିଶାପରେ ବ୍ୟାସଦେବଙ୍କ ଔରସରୁ ତାଙ୍କର ଭାଇ ବିଚିତ୍ରବୀର୍ଯ୍ୟଙ୍କ ଦାସୀଗର୍ଭରୁ ବିଦୁର ରୂପେ ଜନ୍ମ ନେଇଚ ।।୨୦।। ଭଗବାନ କୃଷ୍ଣ ତାଙ୍କ ଭକ୍ତମାନଙ୍କ ସହିତ ରହିଥାଆନ୍ତି । ଆପଣ ତାଙ୍କର ନିତ୍ୟସଙ୍ଗୀ । ସେ ଇହଧାମ ଛାଡ଼ି ତାଙ୍କ ନିଜ ଧାମକୁ ଯିବାବେଳେ ଆପଣଙ୍କୁ ଜ୍ଞାନୋପଦେଶ ଦେବାପାଇଁ ମୋତେ ଆଦେଶ ଦେଇଥିଲେ ।।୨୧।। ଯୋଗମାୟାଦ୍ୱାରା ଆବୃତ ସୃଷ୍ଟିସ୍ଥିତି-ସଂହାର ସ୍ୱରୂପ ଭଗବାନଙ୍କର ଲୀଳା ପୂର୍ବାନୁକ୍ରମରେ ମୁଁ ବର୍ଣ୍ଣନା କରିବାକୁ ଯାଉଚି ।।୨୨।।

ସୃଷ୍ଟିର ଆଗେ ସମସ୍ତ ଜୀବଙ୍କ ଆତ୍ମାସ୍ୱରୂପ ସର୍ବଶକ୍ତିମାନ୍ ଭଗବାନ ଏକ ଓ ଅଦ୍ୱିତୀୟ ଭାବରେ ରହିଥିଲେ । ପରେ ତାଙ୍କ ଇଚ୍ଛାରେ ସ୍ୱମାୟାଦ୍ୱାରା ନାନା ରୂପରେ ସେ ପ୍ରତିଭାତ ହେଲେ ॥୨୩॥ ସେ କେବଳ ଏକେଶ୍ୱର ଏବଂ ଏକମାତ୍ର ଦ୍ରଷ୍ଟା ଥିଲେ । ତାଙ୍କର ଦେଖିବାପାଇଁ ଅନ୍ୟ କୌଣସି ବସ୍ତୁ ନ ଥିଲା । ତେଣୁ ସେ ଯେପରି ନିଜେ ନାହାନ୍ତି, ସେହିପରି ଅନୁଭବ କଲେ । ସେ ନିଜେ ଜାଗ୍ରତ ଥିଲେ ମଧ୍ୟ ତାଙ୍କର ସମସ୍ତ ଶକ୍ତି ସୁପ୍ତ ରହିଥିଲା ॥୨୪॥ ଏକମାତ୍ର ଦ୍ରଷ୍ଟା ଭଗବାନଙ୍କର ସେହି ଶକ୍ତିର ନାମ ମାୟା, ଯାହାକି ଦୃଶ୍ୟ ଓ ଅଦୃଶ୍ୟର କାରଣ । ହେ ମହାଭାଗ ବିଦୁର, ସେହି ମାୟାବଳରେ ଭଗବାନ ଏହି ବିଶ୍ୱକୁ ନିର୍ମାଣ କଲେ ॥୨୫॥ କାଳକ୍ରମେ ପରମାତ୍ମା ବୀର୍ଯ୍ୟବାନ୍ ପୁରୁଷରୂପରେ ନିଜର ତ୍ରିଗୁଣାତ୍ମକ ମାୟାରୂପ ପ୍ରକୃତିରେ ଚେତନାରୂପ ବୀର୍ଯ୍ୟ ସ୍ଥାପନ କଲେ ॥୨୬॥ କାଳର ପ୍ରେରଣାରେ ସେହି ମାୟାରୁ ମହତ୍ତତ୍ତ୍ୱର ଜନ୍ମ ହେଲା । ତାହା ଚେତନ ଶକ୍ତିଯୁକ୍ତ । ସେ ନିଜ ଦେହରୁ ବିଶ୍ୱକୁ ପ୍ରକାଶ କରି ତମୋରୂପ ଅନ୍ଧକାରକୁ ଦୂରକରେ ॥୨୭॥ ଏହି ମହତ୍ତତ୍ତ୍ୱ ମଧ୍ୟରେ ଚେତନା, ଗୁଣ ଓ କାଳ ରହିଥିବାରୁ ଭଗବାନ ତାହା ଉପରେ ଦୃଷ୍ଟିପାତ କଲେ ଏବଂ ବିଶ୍ୱସୃଷ୍ଟିପାଇଁ ତାହା ଆପଣାଛାଏଁ ରୂପାନ୍ତରିତ ହୋଇଗଲା ॥୨୮॥ ଏହିପରି ମହତ୍ ତତ୍ତ୍ୱ ରୂପାନ୍ତରିତ ହେବାରୁ, ସେଥିରୁ ଅହଙ୍କାର ତତ୍ତ୍ୱର ଜନ୍ମ ହେଲା । ସେ ହେଉଚି ସମସ୍ତ କାର୍ଯ୍ୟ, କାରଣ ଓ କର୍ତ୍ତା (ଆଧିଭୌତିକ, ଆଧିଦୈବିକ ଓ ଆଧ୍ୟାତ୍ମିକ) । ଭୂତ (ଶରୀର) ଇନ୍ଦ୍ରିୟ ଏବଂ ମନ ତାହାରିଠାରୁ ଉତ୍ପନ୍ନ ହୁଅନ୍ତି ॥୨୯॥ ଏହି ଅହଙ୍କାର ତିନି ପ୍ରକାର । ବୈକାରିକ ବା ସାତ୍ତ୍ୱିକ, ତୈଜସ ବା ରାଜସିକ ଏବଂ ତାମସ । ସାତ୍ତ୍ୱିକ ଅହଙ୍କାରରୁ ମନ ଏବଂ ଇନ୍ଦ୍ରିୟମାନଙ୍କର ଅଧିଷ୍ଠାତା ଦେବତାମାନଙ୍କର ଜନ୍ମ ହୁଏ ॥୩୦॥ ରାଜସିକ ଅହଙ୍କାରରୁ ଜ୍ଞାନେନ୍ଦ୍ରିୟ ଓ କର୍ମେନ୍ଦ୍ରିୟମାନେ । ତାମସ ଅହଙ୍କାରରୁ ସୂକ୍ଷ୍ମ ଶବ୍ଦ ଓ ସେଥିରୁ ବ୍ରହ୍ମଙ୍କର ଶରୀରରୂପୀ ଆକାଶ ଉତ୍ପନ୍ନ ହୁଏ ॥୩୧॥ ଏହି ଆକାଶ ଉପରେ ଈଶ୍ୱରଙ୍କ ଦୃଷ୍ଟି ପଡ଼ିବାରୁ କାଳ ଏବଂ ମାୟାଯୋଗରେ ସେଥିରୁ ସ୍ପର୍ଶ ଜାତ ହେଲା ଏବଂ ସ୍ପର୍ଶର ବିକାରରୁ ବାୟୁର ଜନ୍ମ ହେଲା ॥୩୨॥ ଆକାଶ ସହିତ ମିଶିବାରୁ ପ୍ରବଳ ବଳବାନ୍ ବାୟୁ ରୂପକୁ ସୃଷ୍ଟି କଲା ଏବଂ ରୂପରୁ ବିଶ୍ୱର ଆଲୋକସ୍ୱରୂପ ଜ୍ୟୋତିର ଜନ୍ମ ହେଲା ॥୩୩॥ ପୁଣି ପରମାତ୍ମାଙ୍କ ଦୃଷ୍ଟି ପଡ଼ିବାରୁ କାଳ ଓ ମାୟା ବଳରେ ବାୟୁଯୁକ୍ତ ଜ୍ୟୋତିରୁ ରସମୟ ଜଳର ସୃଷ୍ଟି ହେଲା ॥୩୪॥

ତେଜଯୁକ୍ତ ଜଳରେ ପୁଣି ତାଙ୍କର ଦୃଷ୍ଟି ପଡ଼ିବାରୁ କାଳ ଓ ମାୟା ବଶରେ ସେଥିରୁ ଗନ୍ଧ ଓ ଗନ୍ଧଗୁଣର ଆଧାର ପୃଥିବୀର ସୃଷ୍ଟି ହେଲା ॥୩୫॥ ହେ ଭବ୍ୟ ବିଦୁର, ଆକାଶ ଆଦି ପଞ୍ଚଭୂତମାନେ ଆଗପଛ କ୍ରମ ଅନୁସାରେ ଯଥାଯୋଗ୍ୟ ଗୁଣମାନ ଧାରଣ କଲେ । (ଯଥା- ଆକାଶର ଶବ୍ଦଗୁଣ, ବାୟୁର ଶବ୍ଦ ଓ ସ୍ପର୍ଶଗୁଣ, ତେଜର ଶବ୍ଦ, ସ୍ପର୍ଶ ଓ ରୂପଗୁଣ, ଜଳର ଏହି ଦିବ୍ୟଗୁଣମାନଙ୍କ ସହିତ ଅଧିକ ରସଗୁଣ ଓ ପୃଥିବୀର ପୂର୍ବୋକ୍ତ ଚାରି ଗୁଣ ସହିତ ମିଶି ଅଧିକ ଗନ୍ଧଗୁଣ ଅର୍ଥାତ୍ ପାଞ୍ଚଟିଯାକ ଗୁଣ) ॥୩୬॥ ମହତ୍ ଆଦି ଦେବତାମାନେ ବିଷ୍ଣୁକଳାରୁ ସୃଷ୍ଟ । ସେମାନେ କାଳ, ମାୟା ଓ ଅଂଶ (ବିକାର, ବିକ୍ଷେପ ଓ ଚେତନା) ସ୍ୱରୂପ । ସେମାନେ ଯେତେ ଚେଷ୍ଟା କଲେ ମଧ୍ୟ ବିଶ୍ୱ ସୃଷ୍ଟି କରିପାରିଲେ ନାହିଁ । ସେମାନେ ହାତ ଯୋଡ଼ି ସେହି ସର୍ବଶକ୍ତିମୟ ଭଗବାନଙ୍କୁ ପ୍ରାର୍ଥନା କଲେ ॥୩୭॥ ଦେବତାମାନେ କହିଲେ, ଦେବ, ଆପଣଙ୍କ ପଦାରବିନ୍ଦରେ ଆମେ ପ୍ରଣାମ କରୁଚୁ । ଆପଣ ଶରଣାଗତମାନଙ୍କର ତାପହାରକ ଛତ୍ରସ୍ୱରୂପ । ଆପଣଙ୍କର ପାଦମୂଳକୁ ଆଶ୍ରୟ କରି ଯତିମାନେ ସଂସାରଦୁଃଖକୁ ଦୂରକୁ ଫିଙ୍ଗି ଦେଇଥାନ୍ତି ॥୩୮॥ ହେ ଜଗତକର୍ତ୍ତା ପରମେଶ୍ୱର, ଏହି ସଂସାରରେ ତ୍ରିତାପରେ ପୀଡ଼ିତ ଜୀବମାନଙ୍କୁ ଟିକିଏ ହେଲେ ଶାନ୍ତି ମିଳେ ନାହିଁ । ତେଣୁ ଆପଣଙ୍କ ପାଦତଳର ଜ୍ଞାନମୟ ଛାୟାରେ ଆମେ ଆଶ୍ରୟ ନେବାକୁ ଚାହୁ ॥୩୯॥ ଆପଣଙ୍କ ମୁଖପଦ୍ମ ବେଦରୂପକ ପକ୍ଷୀମାନଙ୍କର ନୀଡ଼ ସ୍ୱରୂପ । ସେମାନଙ୍କ ସାହାଯ୍ୟ ନେଇ ଋଷିମାନେ ଏକାନ୍ତରେ ଆପଣଙ୍କ ପାଦପଦ୍ମକୁ ଖୋଜୁଥାଆନ୍ତି ଏବଂ ପାପନାଶିନୀ ନଦୀଶ୍ରେଷ୍ଠ ଗଙ୍ଗା ସେହି ପାଦରୁ ଜନ୍ମ ନେଇଛନ୍ତି । ତେଣୁ ସମସ୍ତ ତୀର୍ଥର ସ୍ୱରୂପ ସେହି ପାଦରେ ଆମେ ଶରଣ ନେଉଚୁ ॥୪୦॥ ଶ୍ରଦ୍ଧାର ସହିତ ଶୁଣି ଓ ଭକ୍ତିର ସହିତ ନିଜର ହୃଦୟକୁ ମାର୍ଜିତ କରି ଯେଉଁମାନେ ଆପଣଙ୍କ ପାଦପଦ୍ମକୁ ଧ୍ୟାନ କରନ୍ତି, ସେମାନଙ୍କର

ବିଶୁଦ୍ଧ ଜ୍ଞାନ ଓ ବୈରାଗ୍ୟ ଜାତ ହୁଏ । ତେଣୁ ସେହି ପ୍ରଶାନ୍ତଚିତ୍ତ ମହାତ୍ମାମାନଙ୍କର ଅଭୀଷ୍ଟ ଆପଣଙ୍କ ଚରଣକମଳପୀଠରେ ଆମେ ଆଶ୍ରୟ ଭିକ୍ଷା କରୁଚୁ ।।୪୧।। ଭଗବାନ, ବିଶ୍ୱର ସୃଷ୍ଟି, ସ୍ଥିତି ଓ ସଂହାରପାଇଁ ଆପଣ ଅବତାର ଗ୍ରହଣ କରନ୍ତି । ସ୍ମରଣମାତ୍ରେ ଆପଣଙ୍କର ଯେଉଁ ପାଦପଦ୍ମ ଭକ୍ତମାନଙ୍କୁ ଅଭୟ ଦାନ କରେ, ଆମେମାନେ ସେଠାରେ ଆଶ୍ରୟ ଭିକ୍ଷା କରୁଚୁ ।।୪୨।। ଲୋକମାନେ ଏ ମୋର ଦେହ, ଏ ମୋର ଗୃହ, ମୋର ଏମାନେ ସମ୍ପର୍କୀୟ ବା ମୋର ଏ ସବୁ ବସ୍ତୁ ବୋଲି ଭାବି ତୁଚ୍ଛ ଅହଙ୍କାର ଓ ମମତା ଦ୍ୱାରା ଚାଳିତ ହୁଅନ୍ତି ଏବଂ ନିଜ ହୃଦୟରେ ଥିବା ଅନ୍ତର୍ଯାମୀ ପୁରୁଷଙ୍କୁ ଦେଖି ନ ପାରି ସେ ବହୁ ଦୂରରେ ଅଛନ୍ତି ବୋଲି ମନେ କରନ୍ତି । ଆମେ ସେହି ଅନ୍ତର୍ଯାମୀଙ୍କର ପାଦପଦ୍ମକୁ ଭଜନ କରୁଚୁ ।।୪୩।।

ପରମେଶ୍ୱର, ଅସଦାଚାରୀ ଇନ୍ଦ୍ରିୟମାନଙ୍କଦ୍ୱାରା ଚାଳିତ ହୋଇ ସେମାନଙ୍କର ଅନ୍ତରସ୍ଥ ମନ ବାହାରକୁ ଚାଲିଯାଇଥାଏ । ତେଣୁ ସେମାନେ ଆପଣଙ୍କୁ ଦେଖିପାରନ୍ତି ନାହିଁ କି ଆପଣଙ୍କର ଭକ୍ତମାନଙ୍କର ସଙ୍ଗ ଲାଭ କରିପାରନ୍ତି ନାହିଁ । କିନ୍ତୁ ଆପଣଙ୍କର ଭକ୍ତମାନେ ଆପଣଙ୍କ ପଦଚାରଣର ଶୋଭାଦର୍ଶନରେ ବିହ୍ୱଳ ହୁଅନ୍ତି ।।୪୪।। ଦେବ, ଆପଣଙ୍କର କଥାମୃତ ପାନ କରି ଯେଉଁମାନଙ୍କର ପ୍ରବଳ ଭକ୍ତିଭାବ ଜାତ ହୁଏ, ଅନ୍ତଃକରଣ ନିର୍ମଳ ହୋଇଯାଏ, ସେମାନେ ବୈରାଗ୍ୟର ସାରମର୍ମ ହୃଦୟଙ୍ଗମ କରି ଶୀଘ୍ର ବୈକୁଣ୍ଠଧାମ ପ୍ରାପ୍ତ ହୁଅନ୍ତି ।।୪୫।। ଅନ୍ୟ ବିଜ୍ଞ ବ୍ୟକ୍ତିଗଣ ନିଜକୁ ସମାଧିସ୍ଥ କରି ବଳିଷ୍ଠ ବାହ୍ୟ ପ୍ରକୃତିକୁ ଯୋଗବଳରେ ଜୟ କରିବାଦ୍ୱାରା ଆପଣଙ୍କୁ ଲାଭ କରନ୍ତି । ସେମାନଙ୍କୁ ବହୁ ଶ୍ରମ କରିବାକୁ ପଡ଼େ । କିନ୍ତୁ ଆପଣଙ୍କୁ ସେବା କଲେ ତାହା କରିବାକୁ ପଡ଼େ ନାହିଁ ।।୪୬।। ଆଦିମୂଳ, ଆମେ ହିଁ ଆପଣଙ୍କର । କାରଣ ଏହି ସଂସାର ସୃଷ୍ଟି କରିବାପାଇଁ ଆପଣ ସତ୍ତ୍ୱ, ରଜ ଓ ତମ – ଏହି ତିନି ଗୁଣରୁ ଆମକୁ ସୃଷ୍ଟି କରିଛନ୍ତି । କିନ୍ତୁ ଏହି ଗୁଣମାନଙ୍କ ସ୍ୱଭାବଯୋଗୁଁ ଆମେ ପରସ୍ପରଠାରୁ ଅଲଗା ହୋଇ ରହିଚୁ ଏବଂ ଆପଣଙ୍କର କ୍ରୀଡ଼ନକ ରୂପ ବିଶ୍ୱକୁ ରଚନା କରି ଆପଣଙ୍କୁ ଉପହାର ଦେଇପାରୁ ନାହୁଁ ।।୪୭।। ହେ ଅଜନ୍ମା, ଆମେମାନେ ଆପଣଙ୍କପାଇଁ ଯେପରି ଭୋଗ ବାଢ଼ି ପାରିବୁ, ନିଜେ ଅନ୍ନ ଗ୍ରହଣ କରିପାରିବୁ, ଲୋକମାନେ ଆପଣଙ୍କପାଇଁ ଓ ଆମପାଇଁ ନିର୍ବିଘ୍ନରେ ଭୋଜ୍ୟ ବସ୍ତୁ ପ୍ରଦାନ କରିପାରିବେ ଏବଂ ନିଜେ ଭୋଜନ କରିପାରିବେ, ଆପଣ ତାର ବ୍ୟବସ୍ଥା କରନ୍ତୁ ।।୪୮।। ହେ ଦେବ, ଆପଣ କୂଟସ୍ଥ, ଆଦ୍ୟ ଏବଂ ପୁରାଣ ପୁରୁଷ । କ୍ରମାନୁଯାୟୀ ଆମେ ଦେବତାମାନେ ଆପଣଙ୍କଦ୍ୱାରା ସୃଷ୍ଟ । ଆପଣ ଅଜନ୍ମା ହେଲେ ମଧ୍ୟ ଗୁଣକର୍ମର ଜନନୀ ଆପଣଙ୍କ ମାୟାଠାରେ ଚେତନସ୍ୱରୂପ ଆପଣଙ୍କ ବୀର୍ଯ୍ୟକୁ ନିବେଶ କରିଛନ୍ତି ।।୪୯।। ପରମାତ୍ମନ୍, ମହତ୍ତତ୍ତ୍ୱପ୍ରମୁଖ ଆମେ ଦେବତାମାନେ କାହିଁକି ଉତ୍ପନ୍ନ ହେଲୁ, ଆମେ କଣ କରିବୁ, ତାହା ଆପଣ ଆମକୁ ଅନୁଗ୍ରହକରି କହନ୍ତୁ, ଯେପରିକି ଆପଣଙ୍କ ସଂସାରରଚନା କାର୍ଯ୍ୟରେ ଆମେ ଲାଗିପାରିବୁ ।।୫୦।।

## ଷଷ୍ଠ ଅଧ୍ୟାୟ

# ବିଦୁରଙ୍କ ପ୍ରଶ୍ନ ଓ ମୈତ୍ରେୟଙ୍କ ଉତ୍ତର

ମୈତ୍ରେୟ କହିଲେ, ଯେତେବେଳେ ଈଶ୍ୱର ଦେଖିଲେ ଯେ ନିଜ ଶକ୍ତିରୁ ଜାତ ମହତ୍ତତ୍ତ୍ୱ ଆଦି ଏକାଠି ହୋଇପାରୁ ନ ଥିବାରୁ ବିଶ୍ୱର ରଚନା ହୋଇପାରୁ ନାହିଁ, ସେତେବେଳେ ସେହି ସର୍ବଶକ୍ତିମାନ୍ ପୁରୁଷ କାଳରୂପିଣୀ ଦେବୀ ପ୍ରକୃତିଙ୍କ ସହିତ ତ୍ରୟୋବିଂଶ ତତ୍ତ୍ୱ (ମହତ୍ତତ୍ତ୍ୱ, ଅହଙ୍କାର, ପଞ୍ଚଭୂତ, ପଞ୍ଚତନ୍ମାତ୍ର ଏବଂ ମନ ସହିତ ଏଗାର ଇନ୍ଦ୍ରିୟ)ଙ୍କ ମଧ୍ୟରେ ପ୍ରବେଶ କଲେ ।।୧-୨।। ପ୍ରବେଶ କରି ଭଗବାନ ନିଜର ଚେଷ୍ଟା ବା କ୍ରିୟାଶକ୍ତି ଦ୍ୱାରା ପୃଥକ୍ ପୃଥକ୍ ହୋଇ ସୁପ୍ତଭାବରେ ରହିଥିବା ଏହି ତତ୍ତ୍ୱମାନଙ୍କୁ କର୍ମ କରିବା ପାଇଁ ଜାଗରିତ କଲେ ।।୩।। ଏହିପରି ଈଶ୍ୱରଙ୍କ କର୍ତ୍ତୃକ କର୍ମ କରିବାପାଇଁ ଉଦ୍‌ବୁଦ୍ଧ ହୋଇ ଏହି

ତ୍ରୟୋବିଂଶ ତତ୍ତ୍ୱ ନିଜ ନିଜ ଅଂଶଦ୍ୱାରା ବିରାଟ ପୁରୁଷଙ୍କୁ ଉତ୍ପନ୍ନ କଲେ ॥୪॥ ଯେତେବେଳେ ଭଗବାନ ନିଜ ଅଂଶଦ୍ୱାରା ସେମାନଙ୍କ ମଧ୍ୟରେ ପ୍ରବେଶ କଲେ, ସେତେବେଳେ ଏହି ବିଶ୍ୱସ୍ରଷ୍ଟାଗଣ ପରସ୍ପର ମିଳିତ ହୋଇ ବିରାଟ ପୁରୁଷରେ ରୂପାନ୍ତରିତ ହେଲେ, ଯାହାଙ୍କ ମଧ୍ୟରେ ସମସ୍ତ ଚରାଚର ବିଦ୍ୟମାନ ଥିଲା ॥୫॥

ଏହି ହିରଣ୍ମୟ ପୁରୁଷ ଜଳମଧ୍ୟରେ ସ୍ଥିତ ବ୍ରହ୍ମାଣ୍ଡରୂପକ ଅଣ୍ଡକୋଷରେ ସମସ୍ତ ଜୀବଙ୍କୁ ଧରି ଏକହଜାର ଦିବ୍ୟ ବର୍ଷ ଅବସ୍ଥାନ କଲେ ॥୬॥ ବିଶ୍ୱରଚନାକାରୀ ଏହି ତତ୍ତ୍ୱମାନଙ୍କ ଗର୍ଭଭୂତ ସେହି ବିରାଟ ପୁରୁଷ ଜ୍ଞାନ, କ୍ରିୟା ଏବଂ ଆତ୍ମଶକ୍ତିସମ୍ପନ୍ନ ଥିଲେ । ଏହି ଶକ୍ତିମାନଙ୍କ ପରି ସେ ନିଜେ ନିଜକୁ ଏକ ରୂପ (ହୃଦୟରୂପ) ଦଶରୂପ (ପ୍ରାଣରୂପ) ଏବଂ ତିନି ରୂପ (ଆଧିଭୌତିକ, ଆଧିଦୈବିକ ଓ ଆଧ୍ୟାତ୍ମିକ)ରେ ବିଭକ୍ତ କଲେ ॥୭॥ ଅଶେଷ ଜୀବଙ୍କର ଆତ୍ମାସ୍ୱରୂପ ପରମାତ୍ମାଙ୍କର ଏହି ଅଂଶ, ଯାହାଙ୍କୁ ବିରାଟ ପୁରୁଷ ବୋଲି କୁହାଯାଏ, ସେ ହେଉଛନ୍ତି ତାଙ୍କର ପ୍ରଥମ ଅବତାର ଏବଂ ତାହାଙ୍କଠାରୁ ଏହି ସମ୍ପୂର୍ଣ୍ଣ ବିଶ୍ୱ ଓ ଜୀବମାନେ ପ୍ରକଟିତ ହୁଅନ୍ତି ॥୮॥ ଏହି ବିରାଟ ପୁରୁଷ ଅଧ୍ୟାତ୍ମ, ଅଧିଭୂତ ଓ ଅଧିଦେବ -- ଏହିରୂପେ ତିନି ପ୍ରକାର ଏବଂ ପ୍ରାଣରୂପରେ ଦଶ ପ୍ରକାର ଏବଂ ହୃଦୟରୂପରେ ଏକପ୍ରକାର ଅଟନ୍ତି ॥୯॥ ବିଶ୍ୱରଚନାକାରୀ ତତ୍ତ୍ୱମାନଙ୍କର ଅଧୀଶ୍ୱର ଭଗବାନ ସେମାନଙ୍କ ପ୍ରାର୍ଥନା ସ୍ମରଣ କରି ନିଜର ଚିତ୍‌ଶକ୍ତି ଦ୍ୱାରା ବିବିଧ କର୍ମପାଇଁ ସେମାନଙ୍କୁ ଜାଗରିତ କରିବାକୁ ଇଚ୍ଛା କରି ବିରାଟ ପୁରୁଷରୂପେ ପ୍ରକଟିତ ହେଲେ ॥୧୦-୧୧॥

ପ୍ରଥମେ ତାଙ୍କର ମୁଖ ପ୍ରକଟିତ ହେଲା; ଯାହା ମଧ୍ୟରେ ଲୋକପାଳ ଅଗ୍ନି ତାଙ୍କର ଅଂଶ ବାକ୍‌ଇନ୍ଦ୍ରିୟ ସହିତ ପ୍ରବେଶ କଲେ, ଯଦ୍ୱାରା କହିବା ସମ୍ଭବ ହେଲା ॥୧୨॥ ତା'ପରେ ବିରାଟ ପୁରୁଷଙ୍କର ତାଳୁ ସୃଷ୍ଟି ହେଲା, ଯା'ମଧ୍ୟରେ ଲୋକପାଳ ବରୁଣ ତାଙ୍କର ଅଂଶ ଜିହ୍ୱା ସହିତ ପ୍ରବେଶ କଲେ, ଯଦ୍ୱାରା କି ରସଗ୍ରହଣ ସମ୍ଭବ ହେଲା ॥୧୩॥ ତା'ପରେ ହେଲା ବିରାଟ ପୁରୁଷଙ୍କର ଦୁଇଟି ନାକପୁଡ଼ାର ସୃଷ୍ଟି, ଯା'ମଧ୍ୟରେ ଅଶ୍ୱିନୀକୁମାରଦ୍ୱୟ ତାଙ୍କ ଅଂଶ ଘ୍ରାଣଇନ୍ଦ୍ରିୟ ସହିତ ପ୍ରବେଶ କଲେ; ଯଦ୍ୱାରା ଗନ୍ଧର ଗ୍ରହଣ ସମ୍ଭବ ହେଲା ॥୧୪॥ ତା'ପରେ ବିରାଟ ଭଗବାନଙ୍କର ଆଖି ଦୁଇଟିର ସୃଷ୍ଟି, ଯା'ମଧ୍ୟରେ ଲୋକପାଳ ସୂର୍ଯ୍ୟ ନିଜର ଅଂଶ ଚକ୍ଷୁ ସହିତ ପ୍ରବେଶ କଲେ, ଯଦ୍ୱାରା କି ବିବିଧ ରୂପର ଗ୍ରହଣ ସମ୍ଭବ ହେଲା ॥୧୫॥ ତା'ପରେ ତାଙ୍କର ଚର୍ମ ଜାତ ହେଲା ଓ ତା'ମଧ୍ୟରେ ଲୋକପାଳ ବାୟୁ ନିଜର ଅଂଶ ତ୍ୱକ୍ ସହିତ ପ୍ରବେଶ କଲେ, ଯଦ୍ୱାରା କି ସ୍ପର୍ଶ ଗ୍ରହଣ ସମ୍ଭବ ହେଲା ॥୧୬॥ ତା'ପରେ ତାଙ୍କର କର୍ଣ୍ଣ ଦୁଇଟି ଜାତ ହେଲା, ଯା'ମଧ୍ୟରେ ଦିଗପାଳମାନେ ତାଙ୍କ ଅଂଶ ଶ୍ରବଣେନ୍ଦ୍ରିୟ ସହିତ ପ୍ରବେଶ କଲେ ଏବଂ ଏଥିରୁ ଶ୍ରବଣ ଶକ୍ତି ଉତ୍ପନ୍ନ ହେଲା ॥୧୭॥ ତା'ପରେ ତାଙ୍କର ତ୍ୱଚା ଉତ୍ପନ୍ନ ହେଲା, ତା'ମଧ୍ୟରେ ଔଷଧିମାନେ ନିଜର ଅଂଶ ରୋମାବଳିଙ୍କ ସହିତ ପ୍ରବେଶ କଲେ, ଯା'ମଧ୍ୟରେ ଜୀବର କୁଣ୍ଢେଇହେବାର ଅନୁଭବ ଜାତ ହେଲା ॥୧୮॥ ତା'ପରେ ତାଙ୍କର ଲିଙ୍ଗ ଉତ୍ପନ୍ନ ହେଲା, ତା'ମଧ୍ୟରେ ବ୍ରହ୍ମା ନିଜର ଅଂଶ ବୀର୍ଯ୍ୟର ସହିତ ପ୍ରବେଶ କଲେ, ଯଦ୍ୱାରା କି ଜୀବ ଆନନ୍ଦ ଅନୁଭବ କଲା ॥୧୯॥ ଏହାପରେ ଗୁହ୍ୟଦ୍ୱାର ପ୍ରକଟ ହେଲା, ଯା'ମଧ୍ୟରେ ଲୋକପାଳ ଯମ ନିଜର ଅଂଶ ପାୟୁଇନ୍ଦ୍ରିୟ ସହିତ ପ୍ରବେଶ କଲେ, ଯଦ୍ୱାରା ଜୀବ ମଳତ୍ୟାଗ ଅନୁଭବ କଲା ॥୨୦॥

ଏହାପରେ ତାଙ୍କର ହସ୍ତଦ୍ୱୟ ଜାତ ହେଲା, ତାହା ମଧ୍ୟରେ ସୁରପତି ଇନ୍ଦ୍ର ତାଙ୍କର ଗ୍ରହଣ ଓ ବର୍ଜନ ଶକ୍ତି ସହିତ ପ୍ରବେଶ କଲେ, ଯଦ୍ୱାରା କି ଲୋକ ନିଜର ଜୀବିକାନିର୍ବାହ ଅନୁଭବ କଲା ॥୨୧॥ ପୁଣି ତାଙ୍କର ପାଦଦ୍ୱୟ ଉତ୍ପନ୍ନ ହେଲା ଏବଂ ସେଥିରେ ଲୋକପାଳ ବିଷ୍ଣୁ ଶକ୍ତି ଓ ଗତିର ସହିତ ପ୍ରବେଶ କଲେ । ଏହାଫଳରେ ଜୀବ ନିଜର ଗନ୍ତବ୍ୟ ସ୍ଥାନରେ ପହଞ୍ଚିବା ଅନୁଭବ କଲା ॥୨୨॥ ଏହାପରେ ତାଙ୍କର ବୁଦ୍ଧି ଉତ୍ପନ୍ନ ହେଲା ଏବଂ ବୋଧଶକ୍ତି ସହିତ ବାଚସ୍ପତି ବ୍ରହ୍ମା ତାହା ମଧ୍ୟରେ ପ୍ରବେଶ କଲେ । ଏହି ବୋଧଶକ୍ତିଦ୍ୱାରା ଜୀବ ତା'ର ସବୁ ଜ୍ଞାତବ୍ୟ ବିଷୟ ଜାଣିପାରିଲା ॥୨୩॥ ପୁଣି ହେଲା ତାଙ୍କ ହୃଦୟର ଜନ୍ମ; ସେଥିରେ ନିଜର ଅଂଶ ମନକୁ ଘେନି ଚନ୍ଦ୍ରମା ପ୍ରବେଶ କଲେ । ଏହି ମନର ଶକ୍ତିରେ ହିଁ ଜୀବ ସଂକଳ୍ପ-ବିକଳ୍ପ ଆଦି କରିପାରିଲା ॥୨୪॥ ତା'ପରେ

ଏହି ବିରାଟ ପୁରୁଷଙ୍କର ଅହଙ୍କାର ଜାତ ହେଲା ଏବଂ ଅହଙ୍କାର ନିଜର ଅଂଶ କର୍ମ ସହିତ ସେଥିରେ ପ୍ରବେଶ କଲା; ତଦ୍ଦ୍ୱାରା ଜୀବ ନିଜର କର୍ତ୍ତବ୍ୟ ନିରୂପଣ କଲା ॥୨୫॥ ପୁଣି ତାଙ୍କର ଚିତ୍ତ ଜାତ ହେଲା । ଚିତ୍‌ଶକ୍ତି ସହିତ ସେଥିରେ ମହତତ୍ତ୍ୱ ପ୍ରବେଶ କଲେ, ଯଦ୍ଦ୍ୱାରା କି ଜୀବର ବିଜ୍ଞାନ ଓ ଚୈତନ୍ୟ ସମ୍ଭବ ହେଲା ॥୨୬॥ ଏହି ବିରାଟପୁରୁଷଙ୍କର ମସ୍ତକରୁ ସ୍ୱର୍ଗ, ପାଦରୁ ପୃଥିବୀ ଓ ନାଭିରୁ ଅନ୍ତରୀକ୍ଷର ସୃଷ୍ଟି ହେଲା । ଏଥିରେ କ୍ରମେ ସତ୍ତ୍ୱ, ରଜ ଓ ତମ ଗୁଣର ପରିଣାମସ୍ୱରୂପ ଦେବତା ମନୁଷ୍ୟ ଆଦି ଦେଖାଯାନ୍ତି ॥୨୭-୨୮॥ ସତ୍ତ୍ୱଗୁଣ ଅଧିକ ଥିବାରୁ ଦେବତାମାନେ ସ୍ୱର୍ଗଲୋକରେ ବାସ କରନ୍ତି । ରଜୋଗୁଣ ଅଧିକ ଥିବାରୁ ମନୁଷ୍ୟ ଏବଂ ତାର ଆବଶ୍ୟକ ଗୋମହିଷାଦି ପଶୁମାନେ ପୃଥିବୀରେ ବାସ କରନ୍ତି । ତମୋଗୁଣର ଆଧିକ୍ୟ ଯୋଗେ ପୃଥିବୀ ଓ ସ୍ୱର୍ଗ ମଧ୍ୟରେ ଥିବା ଭଗବାନଙ୍କ ନାଭିସ୍ୱରୂପ ନଭଃସ୍ଥଳରେ ରୁଦ୍ରଙ୍କର ପାର୍ଷଦ ଭୂତଗଣ ବାସ କରନ୍ତି ॥୨୯॥

ହେ ବିଦୁର, ସେହି ବିରାଟପୁରୁଷଙ୍କ ମୁହଁରୁ ବେଦ ଜାତ ହେଲା ଏବଂ ତା ସହିତ ସମସ୍ତ ବର୍ଣ୍ଣମଧ୍ୟରେ ଶ୍ରେଷ୍ଠ ବ୍ରାହ୍ମଣଙ୍କର ଜନ୍ମ ହେଲା ॥୩୦॥ ତାହାଙ୍କ ବାହୁରୁ କ୍ଷାତ୍ରବୃତ୍ତି ଓ ତା'ସହିତ ସେହି ବୃତ୍ତି ଅବଲମ୍ବନ କରିବା ପାଇଁ କ୍ଷତ୍ରିୟଙ୍କର ଜନ୍ମ ହେଲା । କ୍ଷତ୍ରିୟ ବିଷ୍ଣୁଙ୍କର ଅଂଶ ହୋଇଥିବାରୁ ଅନ୍ୟ ତିନି ବର୍ଣ୍ଣଙ୍କୁ ଆପଦବିପଦରୁ ରକ୍ଷା କରେ ॥୩୧॥ ତାଙ୍କ ଊରୁରୁ ବ୍ୟବସାୟ ବୃତ୍ତି ଏବଂ ତାହାକୁ ଅବଲମ୍ବନ କରୁଥିବା ବୈଶ୍ୟଙ୍କର ଜନ୍ମ ହେଲା । ବୈଶ୍ୟ ନିଜର ବୃତ୍ତିଦ୍ୱାରା ସମସ୍ତଙ୍କୁ ପୋଷଣ କରେ ॥୩୨॥ ଭଗବାନଙ୍କ ପାଦରୁ ସେବାବୃତ୍ତି ଜାତ ହେଲା ଏବଂ ତାହାକୁ ଆଶ୍ରୟ କରୁଥିବା ଶୂଦ୍ର, ଯାହାର ବୃତ୍ତି ସେବାରେ ସ୍ୱୟଂ ଭଗବାନ୍ ସନ୍ତୁଷ୍ଟ ହୁଅନ୍ତି ॥୩୩॥ ଏହି ଚାରୋଟିଯାକ ବର୍ଣ୍ଣ ନିଜ ନିଜର ବୃତ୍ତି ଓ କର୍ତ୍ତବ୍ୟରେ ରତ ହୋଇ ଆତ୍ମଶୁଦ୍ଧିପାଇଁ ଶ୍ରଦ୍ଧାର ସହିତ ସେମାନଙ୍କର ଗୁରୁ ଏବଂ ଜନକ ଶ୍ରୀହରିଙ୍କୁ ଅର୍ଚ୍ଚନା କରନ୍ତି ॥୩୪॥ ବିଦୁର ! ଏହିପରି ଯୋଗମାୟାବଳରେ ଦୈବକର୍ମ (କାଳ, କର୍ମ ଓ ସ୍ୱଭାବ ଶକ୍ତି) ଯୁକ୍ତ ଭଗବାନ ବିରାଟପୁରୁଷଙ୍କର ସ୍ୱରୂପ ବର୍ଣ୍ଣନା କରିବାପାଇଁ କିଏ ସାହସ କରିବ ? ॥୩୫॥ ତଥାପି ବିଦୁର, ମୋର ଶକ୍ତି ଅନୁସାରେ ମୁଁ ଯାହା ଶୁଣିଛି, ଅନ୍ୟଚର୍ଚ୍ଚାଦ୍ୱାରା ଅଶୁଦ୍ଧ ହୋଇଥିବା ମୋର ବାଣୀକୁ ବିଶୁଦ୍ଧ କରିବାପାଇଁ ଶ୍ରୀହରିଙ୍କର ଯଶ କୀର୍ତ୍ତନ କରିବି ॥୩୬॥ ପୁଣ୍ୟଶ୍ଳୋକମାନଙ୍କର ମୌଳିମଣ୍ଡନ ଭଗବାନଙ୍କର ଗୁଣଗାନଦ୍ୱାରା ଲୋକମାନଙ୍କର ଏକାନ୍ତ ଲାଭ ହୁଏ । ବିଦ୍ୱାନ୍‌ମାନଙ୍କ ମୁହଁରୁ ତାଙ୍କର କଥାମୃତ ଶୁଣିଲେ କର୍ଣ୍ଣ ପବିତ୍ର ହୁଏ ॥୩୭॥ ବତ୍ସ ବିଦୁର, ବ୍ରହ୍ମା ଏକହଜାର ବର୍ଷ ଯୋଗରେ ବସି ନିଜର ପରିପକ୍ୱ ବୁଦ୍ଧିରେ ମଧ୍ୟ ଶ୍ରୀହରିଙ୍କର ମହିମା ଜାଣି ପାରନ୍ତି ନାହିଁ ॥୩୮॥ ଏଣୁ ଭଗବାନଙ୍କର ମାୟା ମାୟାବୀମାନଙ୍କୁ ମଧ୍ୟ ମୋହିତ କରେ । ସ୍ୱୟଂ ଭଗବାନ ନିଜ ମାୟାର ଗତି ମଧ୍ୟ ଜାଣିପାରନ୍ତି ନାହିଁ । ଅନ୍ୟମାନଙ୍କର କଥା କ'ଣ କହିବା ? ॥୩୯॥ ଯାହାଙ୍କୁ ପାଇବାପାଇଁ ବ୍ୟର୍ଥ ହୋଇ ମନ ସହିତ ବଚନ ଫେରିଆସେ ଏବଂ ଯାହାଙ୍କୁ ଅହଙ୍କାର ଯୁକ୍ତ ଦେବତା ଓ ଅନ୍ୟମାନେ ମଧ୍ୟ ଜାଣିପାରନ୍ତି ନାହିଁ, ସେହି ଭଗବାନଙ୍କୁ ମୁଁ ନମସ୍କାର କରୁଛି ॥୪୦॥

## ସପ୍ତମ ଅଧ୍ୟାୟ

# ବିଦୁରଙ୍କ ପ୍ରଶ୍ନ

ଶୁକଦେବ କହିଲେ; ମୈତ୍ରେୟଙ୍କ ଠାରୁ ଏହିପରି କହିବା ଶୁଣି ବ୍ୟାସଙ୍କର ପୁତ୍ର ବିଜ୍ଞ ବିଦୁର ପ୍ରୀତିପୂର୍ଣ୍ଣ ବାକ୍ୟରେ ତାଙ୍କୁ ନିବେଦନ କଲେ । ବିଦୁର କହିଲେ, ହେ ବ୍ରହ୍ମନ୍, ଯେତେବେଳେ ଭଗବାନ ଚୈତନ୍ୟସ୍ୱରୂପ ନିର୍ବିକାର ଓ ନିର୍ଗୁଣ, ସେ କିପରି ଲୀଳାଦ୍ୱାରା ଗୁଣ ଓ କ୍ରିୟାଯୁକ୍ତ ହେଲେ ? ॥୧-୨॥ ବାଳକ ନିଜେ ଖେଳେ ଓ ଅନ୍ୟ ବାଳକମାନଙ୍କ ସହିତ ଖେଳିବାକୁ ଇଚ୍ଛା କରେ । କିନ୍ତୁ ଯେ ସ୍ୱତଃ ତୃପ୍ତ ଓ ଅନାସକ୍ତ, ସେ କାହିଁକି ଲୀଳାରଚନାର ଇଚ୍ଛା କରନ୍ତି ? ॥୩॥ ନିଜର ତ୍ରିଗୁଣଯୁକ୍ତ ଆତ୍ମମାୟାଦ୍ୱାରା ଭଗବାନ ଏହି ବିଶ୍ୱକୁ ସୃଷ୍ଟି କରନ୍ତି । ସେହି ମାୟାଦ୍ୱାରା ପାଳନ କରନ୍ତି । ପୁଣି ସେହି ମାୟାବଳରେ ବିଶ୍ୱକୁ

ସଂହାର କରନ୍ତି ॥୪॥ ଚୈତନ୍ୟସ୍ୱରୂପ ଯେଉଁ ଭଗବାନଙ୍କର ବୋଧଶକ୍ତି କାଳ ଓ ପାତ୍ର ଦ୍ୱାରା କିମ୍ବା ସ୍ୱତଃ ବା ଅନ୍ୟତଃ କେବେହେଲେ ଲୁପ୍ତ ହୁଏ ନାହିଁ, ସେ ପୁଣି କିପରି ମୋହଯୁକ୍ତ ହୁଅନ୍ତି ? ॥୫॥ ଏକ ଭଗବାନ ସମସ୍ତଙ୍କ ମଧ୍ୟରେ ସର୍ବାନ୍ତର୍ଯାମୀ ରୂପେ ଅବସ୍ଥିତ । ତା'ହେଲେ କାହିଁକି ଜୀବ ତା'ର କର୍ମଦ୍ୱାରା ଦୁଃଖଲାଭ କରେ, ଦୁର୍ଭାଗ୍ୟର ବଶବର୍ତ୍ତୀ ହୁଏ ? ॥୬॥ ବିଦ୍ୱାନ୍ ମୈତ୍ରେୟ, ଏହିପରି ଅଜ୍ଞାନସଂକଟରେ ମୋର ମନ ଖିନ୍ନ ହେଉଛି; ତେଣୁ ଆପଣ ଦୟା କରି ମୋର ମନର ଏହି ମହାମୋହକୁ ଦୂର କରନ୍ତୁ ॥୭॥

ଏହିପରି ତତ୍ତ୍ୱଜିଜ୍ଞାସୁ ବିଦୁରଙ୍କ ଅନୁରୋଧରେ ମୁନି ମୈତ୍ରେୟ ଭଗବାନଙ୍କଠାରେ ଲକ୍ଷ୍ୟ ରଖି ଅକୁଣ୍ଠିତ ଚିତ୍ତରେ ଉତ୍ତର ଦେଲେ ॥୮॥ ମୈତ୍ରେୟ କହିଲେ, ଭଗବାନଙ୍କର ଏହି ହେଉଛି ମାୟା --ସେ ନିଜେ ବିମୁକ୍ତ ହେଲେ ମଧ୍ୟ ଦୁଃଖ ଏବଂ ମୋହର ବନ୍ଧନରେ ପଡ଼ନ୍ତି, ଯାହାକି ପରସ୍ପର ବିରୋଧୀ ବୋଲି ମନେ ହୁଏ ॥୯॥ ଯେପରି ସ୍ୱପ୍ନରେ ନିଜର ଶିରଚ୍ଛେଦ ଦେଖି ମୁଣ୍ଡ ଠିକ୍ ଥିବା ଲୋକର ମତିଭ୍ରମ ହୁଏ, ଜଳରେ ଚନ୍ଦ୍ରର ପ୍ରତିବିମ୍ବ ଦେଖି, ଯେପରି ଚନ୍ଦ୍ର ହଲୁଛି ବୋଲି ଭ୍ରମ ସୃଷ୍ଟି ହୁଏ, ସେହିପରି ମୋହଗ୍ରସ୍ତ ଜୀବ ଦୁଃଖାଦିର ବଶବର୍ତ୍ତୀ ହୁଏ । ମାତ୍ର ଆତ୍ମସ୍ୱରୂପ ଭଗବାନଙ୍କର ଏହି ଦେହାଭିମାନ ନ ଥିବାଯୋଗୁଁ ଏପରି ବିକାର ଜାତ ହୁଏ ନାହିଁ ॥୧୦-୧୧॥ ସେହି ବାସୁଦେବଙ୍କର ଅନୁକମ୍ପା ଲାଭ କଲେ, ଭଗବତ୍ ଭକ୍ତିଯୋଗଦ୍ୱାରା ମନୁଷ୍ୟ ଅନାସକ୍ତ ରହିଲେ ଏହି ଭ୍ରମ ଆସ୍ତେ ଆସ୍ତେ ଦୂର ହୋଇଯାଏ ॥୧୨॥ ଗାଢ଼ ନିଦ୍ରାରେ ଶୋଇଥିବା ଲୋକର ଯେପରି କଷ୍ଟ-ଅନୁଭୂତି ଦୂର ହୋଇଯାଏ, ସେହିପରି ଇନ୍ଦ୍ରିୟମାନଙ୍କ ବିଷୟରୁ ନିବୃତ୍ତ ରହି ଯେ ନିଜର ଆତ୍ମାରେ ଥିବା ପରମାତ୍ମାଙ୍କୁ ଅନୁଭବ କରିପାରେ, ତାହାର ସମସ୍ତ ଦୁଃଖ ଦୂର ହୋଇଯାଏ ॥୧୩॥ ମୁରାରିଙ୍କର ଗୁଣକୀର୍ତ୍ତନ ଓ ଶ୍ରବଣଦ୍ୱାରା ଜୀବର ଅଶେଷ କ୍ଳେଶ ଦୂର ହୁଏ । ପୁଣି ଯେଉଁମାନଙ୍କ ହୃଦୟରେ ତାଙ୍କ ପଦ୍ମପାଦରଜକୁ ସେବା କରିବାର ପ୍ରେମ ଜାତ ହୁଏ, ସେମାନଙ୍କର ଲାଭ କଳନା କରାଯାଇ ନ ପାରେ ॥୧୪॥

ବିଦୁର କହିଲେ, ଭଗବାନ ମୈତ୍ରେୟ ! ଆପଣଙ୍କର ସଦୁକ୍ତି ରୂପକ ଖଡ୍ଗ ଦ୍ୱାରା ମୋର ସଂଶୟ ଛିନ୍ନ ହୋଇଯାଇଛି । ବର୍ତ୍ତମାନ ବଦ୍ଧଜୀବ ଓ ମୁକ୍ତପୁରୁଷ, ଏହି ଉଭୟ ବିଷୟମଧ୍ୟରେ ମୋର ମନ ପ୍ରବେଶ କରିପାରିଛି ॥୧୫॥ ବିଦ୍ୱାନ୍ ! ଆପଣ ଠିକ୍ କହିଛନ୍ତି ଯେ, ଜୀବର ଯେଉଁ ସାଂସାରିକ କ୍ଳେଶାଦି ଦେଖାଯାଏ, ତା'ହେଉଛି ଶ୍ରୀହରିଙ୍କର ମାୟା । ଏହାର କୌଣସି ଅସ୍ତିତ୍ୱ ନାହିଁ । ମୂଳ ନାହିଁ । କାରଣ, ଏହା ବିଶ୍ୱର ମୂଳ କାରଣ ମାୟା ଛଡ଼ା କିଛି ନୁହେଁ ॥୧୬॥ ଏହି ସଂସାରରେ ଦୁଇ ଶ୍ରେଣୀର ଲୋକ ଅଛନ୍ତି । ଯେଉଁମାନେ ଅତିଶୟ ମୂଢ଼ ଏବଂ ଯେଉଁମାନେ ବୁଦ୍ଧିର ଅତୀତ ପରମେଶ୍ୱରଙ୍କୁ ଲାଭ କରିଛନ୍ତି । ଏହି ଉଭୟ ଶ୍ରେଣୀର ଲୋକ ବାସ୍ତବରେ ସୁଖୀ । ଏମାନଙ୍କ ମଝିରେ ଯେଉଁମାନେ ଥା'ନ୍ତି ସେହି ସନ୍ଦେହୀ ଲୋକମାନେ ଦୁଃଖ ଭୋଗ କରନ୍ତି ॥୧୭॥ ବର୍ତ୍ତମାନ ମୁଁ ନିଶ୍ଚିତ ଭାବରେ ଜାଣିପାରିଲି ଯେ ଆତ୍ମା ନ ଥାଇ କାହାରି ଅସ୍ତିତ୍ୱ ନାହିଁ । କେବଳ ଅଛି ବୋଲି ତାହା ପ୍ରତୀୟମାନ ହୁଏ । ଆପଣଙ୍କ ଚରଣସେବାଦ୍ୱାରା ସେ ଭାବନାକୁ ମୁଁ ଦୂର କରିଦେଇ ପାରିବି ॥୧୮॥ ଆପଣଙ୍କର ପଦସେବା ଦ୍ୱାରା ଅନ୍ତର୍ଯାମୀ ଭଗବାନ ମଧୁସୂଦନଙ୍କ ପ୍ରତି ପ୍ରେମଭାବ ତୀବ୍ର ହୋଇଉଠେ ଏବଂ ସମସ୍ତ କ୍ଳେଶ ନଷ୍ଟ ହୁଏ ॥୧୯॥ ମହାତ୍ମା ଲୋକମାନେ ବୈକୁଣ୍ଠ ମାର୍ଗର ଯାତ୍ରୀ । ସେମାନଙ୍କ ସ୍ଥାନରେ ଦେବଦେବ ଜନାର୍ଦ୍ଦନଙ୍କର ନିତ୍ୟ ଗୁଣଗାନ ହେଉଥାଏ । ଅଳ୍ପ ପୁଣ୍ୟ ଲୋକମାନଙ୍କ ପକ୍ଷରେ ସେମାନଙ୍କ ସେବା ଦୁର୍ଲଭ ॥୨୦॥ ଆପଣ କହିଛନ୍ତି, ସୃଷ୍ଟିର ଆରମ୍ଭରେ ମହତ୍ ଆଦି ତତ୍ତ୍ୱ ଏବଂ ସେମାନଙ୍କ ବିକାର ଆଦିର ଜନ୍ମ ହେଲା ॥୨୧॥ ଏବଂ ସେମାନଙ୍କ ଅଂଶରୁ ବିରାଟ ପୁରୁଷଙ୍କର ଉଦ୍ଭବ ହେଲା ଏବଂ ସେଥିରେ ବିରାଟପୁରୁଷ ସ୍ୱୟଂ ପ୍ରବେଶ କଲେ । ତାଙ୍କୁ ଆଦିପୁରୁଷ ବୋଲି କୁହାଯାଏ । ସେ ସହସ୍ରପାଦ, ସହସ୍ର ଜାନୁ ଓ ସହସ୍ରବାହୁବିଶିଷ୍ଟ ଏବଂ ତାଙ୍କଠାରେ ଏହି ବିଶ୍ୱ ବିସ୍ତୃତଭାବରେ ରହିଛି ॥୨୨॥ ସେହି ବିରାଟ ପୁରୁଷଙ୍କଠାରେ ଇନ୍ଦ୍ରିୟଗଣ, ଇନ୍ଦ୍ରିୟମାନଙ୍କର ବିଷୟ ଓ ଇନ୍ଦ୍ରିୟାଭିମାନୀ ଦେବତାଙ୍କ ସହିତ ଦଶ ପ୍ରକାର ପ୍ରାଣ ଅବସ୍ଥିତ ଏବଂ ତାହା ପୁଣି ଇନ୍ଦ୍ରିୟ, ମନ

ଏବଂ ଶରୀର-ଏହି ତିନି ପ୍ରକାର ବଳଯୁକ୍ତ । ସେହି ବିରାଟ ପୁରୁଷଙ୍କଠାରୁ ବ୍ରାହ୍ମଣାଦି ବର୍ଣ୍ଣମାନେ ଜାତ ହେଲେ ବୋଲି ଆପଣ କହିଛନ୍ତି । ବର୍ତ୍ତମାନ ତାଙ୍କର ବ୍ରହ୍ମାଦି ବିଭୂତିମାନଙ୍କ ଶକ୍ତି ବିଷୟ ବର୍ଣ୍ଣନା କରନ୍ତୁ, ଯଦ୍ଦ୍ୱାରା କି ତାଙ୍କର ପୁତ୍ର, ପୌତ୍ର, ନାତି (ଝିଅର ପୁଅ) କୁଟୁମ୍ବାଦି ସହିତ ବହୁବିଧ ପ୍ରଜାଙ୍କଦ୍ୱାରା ଏହି ସଂସାର ଭରିଗଲା ॥୨୩-୨୪॥ ବ୍ରହ୍ମାଦି ପ୍ରଜାପତିମାନଙ୍କର ପ୍ରଭୁ ସେହି ବିରାଟପୁରୁଷ କେଉଁକେଉଁ ପ୍ରଜାପତିମାନଙ୍କୁ ସୃଷ୍ଟି କଲେ ? ପୁରୁଷାନୁକ୍ରମେ କେଉଁ ବିଭିନ୍ନ ଯୁଗ, ଅନୁଯୁଗ, ମନ୍ୱନ୍ତର ଏବଂ ତା'ର ଅଧିପତି ମନୁମାନଙ୍କୁ ଜାତ କଲେ ? ॥୨୫॥

ବିଦୁର ପୁଣି ପଚାରିଲେ, ମୈତ୍ରେୟ, ଏହି ମନୁମାନଙ୍କର ବଂଶ ଓ ବଂଶଧରମାନଙ୍କର ଚରିତ, ଭୂଲୋକର ଉପରେ ଓ ତଳେ ଥିବା ଲୋକମାନ ଏବଂ ଏହି ପୃଥିବୀର ବିସ୍ତାର ଓ ସ୍ଥିତି ବିଷୟ ବର୍ଣ୍ଣନା କରନ୍ତୁ । ଏଥିସହିତ ତିର୍ଯ୍ୟକ୍, ମନୁଷ୍ୟ, ଦେବତା, ସରୀସୃପ ଏବଂ ପକ୍ଷୀଗଣ ତଥା ଜରାୟୁଜ, ସ୍ୱେଦଜ, ଅଣ୍ଡଜ ଏବଂ ଉଦ୍ଭିଜ୍ଜ-ଏହି ଚାରି ପ୍ରାଣୀଙ୍କର କିପରି ଜନ୍ମହେଲା, ତାହା ମଧ୍ୟ ବର୍ଣ୍ଣନା କରନ୍ତୁ ॥୨୬-୨୭॥ ଶ୍ରୀନିବାସ ଭଗବାନ ନିଜର ତ୍ରିଗୁଣାତ୍ମକ ଅବତାରରୂପରେ ଯଥା ବ୍ରହ୍ମା, ବିଷ୍ଣୁ ଓ ଶିବ ରୂପରେ ଏହି ବିଶ୍ୱର ସୃଷ୍ଟି, ସ୍ଥିତି ଏବଂ ସଂହାରପାଇଁ କେଉଁ ବିପୁଳ କର୍ମମାନ ସଂପାଦନ କରିଥିଲେ, ତାହା ବର୍ଣ୍ଣନା କରନ୍ତୁ ॥୨୮॥ ଆଚରଣ, ରୂପ ଓ ସ୍ୱଭାବ ଭେଦରେ ଯେଉଁ ଚାରୋଟି ବର୍ଣ୍ଣାଶ୍ରମ ବିଭାଗ କରାଗଲା, ତାହା ସହିତ ଋଷିମାନଙ୍କର ଜନ୍ମ ଓ କର୍ମ ଏବଂ ବେଦର ବିଭାଗ, ଯଜ୍ଞମାନଙ୍କର ପ୍ରସାର, ଯୋଗର ମାର୍ଗ, ଜ୍ଞାନମାର୍ଗ ଓ ତା'ର ସାଧନ ସାଂଖ୍ୟଦର୍ଶନ, ଶ୍ରୀ ଭଗବାନଙ୍କ କଥିତ ସ୍ମୃତିଶାସ୍ତ୍ର ପ୍ରଭୃତିର ମାର୍ଗ ଏବଂ ତା'ର ବିକାର, ପ୍ରତିଲୋମଦ୍ୱାରା ସନ୍ତାନ ଉତ୍ପାଦନ, ବିଭିନ୍ନ ଗୁଣକର୍ମଦ୍ୱାରା ଜୀବମାନଙ୍କର ଗତି --ଏହି ସମସ୍ତ ବିଷୟ ଆପଣ ମୋତେ ଶୁଣାନ୍ତୁ ॥୨୯-୩୧॥ ଧର୍ମ, ଅର୍ଥ, କାମ ଓ ମୋକ୍ଷ ପ୍ରାପ୍ତିପାଇଁ ପରସ୍ପର ବିରୁଦ୍ଧ ନ ହୋଇଥିବା ଉପାୟମାନ, ବ୍ୟବସାୟ-ବାଣିଜ୍ୟ, ଦଣ୍ଡନୀତି, ଶାସ୍ତ୍ରୋକ୍ତ ବିଧିବିଧାନ, ଶ୍ରାଦ୍ଧର ବିଧି, ପିତୃମାନଙ୍କର ସୃଷ୍ଟି ଏବଂ କାଳଚକ୍ରରେ ବିଭିନ୍ନ ଗ୍ରହନକ୍ଷତ୍ରଙ୍କର ସ୍ଥିତି --ଏ ସମସ୍ତ ବିଷୟ କ୍ରମାନୁଯାୟୀ ବର୍ଣ୍ଣନା କରନ୍ତୁ । ଏହାଛଡ଼ା ଦାନ, ତପ ଏବଂ ଇଷ୍ଟଲାଭପାଇଁ ବିଭିନ୍ନ କର୍ମର ଫଳ, ପ୍ରବାସରେ ଥିବା ବ୍ୟକ୍ତିର ତଥା ବିପଦରେ ପଡ଼ିଥିବା ବ୍ୟକ୍ତିର ଧର୍ମ ଆଦି ମୋତେ କହିବା ହୁଅନ୍ତୁ ॥୩୨-୩୪॥ ନିଷ୍ପାପ ମୈତ୍ରେୟ, ଧର୍ମର ମୂଳ କାରଣ ଭଗବାନ ଜନାର୍ଦ୍ଦନ କିପରି ସନ୍ତୁଷ୍ଟ ହୁଅନ୍ତି ଏବଂ କେଉଁମାନଙ୍କୁ ସେ ଅନୁଗ୍ରହ ପ୍ରଦର୍ଶନ କରନ୍ତି, ତାହା ମୋତେ କହନ୍ତୁ ॥୩୫॥ ଦ୍ୱିଜଶ୍ରେଷ୍ଠ, ପୁତ୍ରବତ୍ସଳ ଓ ଶିଷ୍ୟବତ୍ସଳ ଗୁରୁମାନେ ସେମାନଙ୍କୁ ପଚରା ନ ଗଲେ ମଧ୍ୟ ନିଜର ଅନୁଗତ ଶିଷ୍ୟ ଓ ପୁତ୍ରମାନଙ୍କୁ ଉପଦେଶ ଦିଅନ୍ତି ॥୩୬॥ ଭଗବନ୍, ମହତ୍ ଆଦି ତତ୍ତ୍ୱମାନଙ୍କର ପ୍ରଳୟ କେତେ ପ୍ରକାରର ଏବଂ କେଉଁ ତତ୍ତ୍ୱମାନେ ଯୋଗନିଦ୍ରାରେ ନିଦ୍ରିତ ଭଗବାନଙ୍କର ସେବା କରନ୍ତି ଏବଂ କେଉଁମାନେ ତାଙ୍କଠାରେ ଲୀନ ହୋଇଯାଆନ୍ତି ? ॥୩୭॥ ଜୀବର ତତ୍ତ୍ୱ, ପରମେଶ୍ୱରଙ୍କ ସ୍ୱରୂପ, ଉପନିଷଦ୍‌ମାନଙ୍କରେ ଦର୍ଶିତ ଜ୍ଞାନ, ଗୁରୁ-ଶିଷ୍ୟଙ୍କ ପରସ୍ପର ପ୍ରୟୋଜନ କ'ଣ ତାହା ବୁଝାଇ କହନ୍ତୁ ॥୩୮॥ ହେ ନିଷ୍ପାପ, ଏ ଜ୍ଞାନଲାଭପାଇଁ ମହାତ୍ମାମାନେ କେଉଁ କେଉଁ ଉପାୟର ଉପଦେଶ ଦେଇଛନ୍ତି, ତାହା ମୋତେ କହନ୍ତୁ, କାରଣ ଆପଣାଛାଏଁ କୌଣସି ବ୍ୟକ୍ତିର ଜ୍ଞାନ, ଭକ୍ତି ବା ବୈରାଗ୍ୟ ଜାତ ହୁଏ ନାହିଁ ॥୩୯॥ ମୁଁ ଅଜ୍ଞ । ମୋହଗ୍ରସ୍ତ ହୋଇ ମୋର ଜ୍ଞାନଚକ୍ଷୁ ହରାଇଛି । ମୁଁ ଶ୍ରୀହରିଙ୍କର ଲୀଳା ଜାଣିବାପାଇଁ ଇଚ୍ଛୁକ, ଆପଣ ମୋର ମିତ୍ର ହୋଇଥିବାରୁ ମୁଁ ଯେଉଁସବୁ ପ୍ରଶ୍ନ କଲି, ତାହାର ଉତ୍ତର ଦିଅନ୍ତୁ ॥୪୦॥ ସାଧୁ ମୈତ୍ରେୟ, ଆପଣଙ୍କର ଉତ୍ତରଦ୍ୱାରା ଜୀବମାନଙ୍କୁ ଯେଉଁ ଅଭୟ ମିଳିବ, ସମସ୍ତ ବେଦ, ଯଜ୍ଞ, ତପ ଓ ଦାନାଦି ତା'ର ଗୋଟିଏ କଣସହିତ ମଧ୍ୟ ସମାନ ହେବେ ନାହିଁ ॥୪୧॥ ଶୁକଦେବ କହିଲେ, ରାଜା ! କୁରୁଶ୍ରେଷ୍ଠ ବିଦୁର, ପୁରାଣରେ ପ୍ରକାଶିତ ଅର୍ଥକୁ ବୁଝିବା ଇଚ୍ଛାରେ ମୁନିବର ମୈତ୍ରେୟଙ୍କୁ ଏହିପରି ପଚାରିବାରୁ, ଭଗବତ୍ ଲୀଳା କୀର୍ତ୍ତନ କରିବାପାଇଁ ମୈତ୍ରେୟଙ୍କର ଉତ୍ସାହ ବଢ଼ିଲା ଏବଂ ସେ ଅଳ୍ପ ହସି କହିବାକୁ ଆରମ୍ଭ କଲେ ॥୪୨॥

## ଅଷ୍ଟମ ଅଧ୍ୟାୟ

# ବିଷ୍ଣୁଙ୍କ ନାଭିକମଳରୁ ବ୍ରହ୍ମାଙ୍କ ଉତ୍ପତ୍ତି

ମୈତ୍ରେୟ କହିଲେ, ବିଦୁର ! ଆପଣଙ୍କ ପରି ଭକ୍ତଶ୍ରେଷ୍ଠ, ଧର୍ମରାଜ ଜନ୍ମଗ୍ରହଣ କରିଥିବାଯୋଗୁଁ କୁରୁବଂଶ ଆଜି ଧନ୍ୟ ହୋଇଛି; ସାଧୁମାନଙ୍କ ସେବାର ଯୋଗ୍ୟ ହୋଇଛି । ଆପଣ ପ୍ରତି ମୁହୂର୍ତ୍ତରେ ନୂଆ ନୂଆ ରୂପରେ ଭଗବାନଙ୍କର କୀର୍ତ୍ତିରାଜିକୁ ଉପସ୍ଥାପିତ କରୁଛନ୍ତି ॥୧॥ ଅଳ୍ପସୁଖପାଇଁ ମନୁଷ୍ୟମାନେ ଘୋର ଦୁଃଖକୁ ବରଣ କରି ନିଅନ୍ତି । ସେହି ଦୁଃଖର ନିବୃତ୍ତିପାଇଁ ସାକ୍ଷାତ୍ ଭଗବାନ୍ ଜନକାଦି ଋଷିମାନଙ୍କୁ ଯାହା କହିଥିଲେ, ସେହି ଭାଗବତ ପୁରାଣ ବର୍ତ୍ତମାନ ମୁଁ ବର୍ଣ୍ଣନା କରିବାକୁ ଯାଉଛି ॥୨॥ ଅନନ୍ତଜ୍ଞାନସମ୍ପନ୍ନ ଆଦିଦେବ ଭଗବାନ ସଙ୍କର୍ଷଣ ପାତାଳଲୋକରେ ଥିବାବେଳେ ସନତ୍‌କୁମାର ପ୍ରମୁଖ ଋଷିମାନେ ବସି ପରମେଶ୍ୱରଙ୍କର ସ୍ୱରୂପ ଜାଣିବାପାଇଁ ତାଙ୍କୁ ପ୍ରଶ୍ନ ପଚାରିଥିଲେ ॥୩॥ ସେତେବେଳକୁ ସେ ତାଙ୍କର ଆଶ୍ରୟ ବାସୁଦେବସଂଜ୍ଞକ ଭଗବାନଙ୍କର ପରମରୂପକୁ ଆଖିବୁଜି ଧ୍ୟାନ କରୁଥିଲେ । ଋଷିମାନଙ୍କର ପ୍ରଶ୍ନ ଶୁଣି ସେମାନଙ୍କର ସନ୍ତୋଷପାଇଁ ସେ ନିଜର ଆଖି ଅଳ୍ପ ଖୋଲି ଚାହିଁଲେ ॥୪॥ ବରପ୍ରାପ୍ତି ଆଶାରେ ନାନା ପୂଜାଦ୍ରବ୍ୟ ଧରି ନାଗକନ୍ୟାମାନେ ତାଙ୍କର ଯେଉଁ ପାଦପଦ୍ମକୁ ପୂଜା କରନ୍ତି, ସନତ୍‌କୁମାର ଆଦି ଋଷିମାନେ ମନ୍ଦାକିନୀ-ଜଳରେ ଓଦା ହୋଇଯାଇଥିବା ସେମାନଙ୍କର ଜଟାଜୂଟଯୁକ୍ତ ମସ୍ତକ ଲଗାଇ ସେହି ପାଦପଦ୍ମକୁ ପ୍ରଣାମ କଲେ ॥୫॥ ସଙ୍କର୍ଷଣଙ୍କୁ ଭଲ ରୂପେ ଜାଣିଥିବା ଏହି ଋଷିମାନେ ଭକ୍ତି ଗଦ୍‌ଗଦ ଚିତ୍ତରେ ତାଙ୍କ ଲୀଳାମାନ ଗାନ କରୁଥିବାବେଳେ ତାଙ୍କ ସହସ୍ର ଫଣାରେ ମଣିଯୁକ୍ତ କିରୀଟ ବିରାଜିତ ହେଉଥିଲା ॥୬॥

ହେ ବିଦୁର ! ସେମାନଙ୍କ ପ୍ରଶ୍ନର ଉତ୍ତର ଦେଇ ସନ୍ନ୍ୟାସ ଧର୍ମ ଗ୍ରହଣ କରିଥିବା ସନତ୍‌କୁମାରଙ୍କୁ ଭଗବାନ ସଙ୍କର୍ଷଣ ଏହି ଭାଗବତ ଗ୍ରନ୍ଥ ଶୁଣାଇଥିଲେ ଏବଂ ସନତ୍‌କୁମାରଙ୍କୁ ପ୍ରଶ୍ନ କରି ସନ୍ନ୍ୟାସବ୍ରତଧାରୀ ସାଂଖ୍ୟାୟନ ମୁନି ଏହି ଭାଗବତ ଶୁଣିଥିଲେ ॥୭॥ ପରମହଂସମାନଙ୍କ ମଧ୍ୟରେ ପ୍ରଧାନ ସାଂଖ୍ୟାୟନ ଋଷି ଭଗବାନଙ୍କର ସେହି ସବୁ ବିଭୂତି ବର୍ଣ୍ଣନା କରିବାକୁ ଇଚ୍ଛା କରି ତାଙ୍କର ଅନୁଗତ ଶିଷ୍ୟ ଓ ମୋର ଗୁରୁ ପରାଶରଙ୍କୁ ଓ ବୃହସ୍ପତିଙ୍କୁ ମଧ୍ୟ ଏହା ଶୁଣାଇଥିଲେ ॥୮॥ ଏହାପରେ ପୁଲସ୍ତ୍ୟ ଋଷିଙ୍କ ପରାମର୍ଶରେ ପରମଦୟାଳୁ ମୁନି ପରାଶର ଏହି ଆଦିପୁରାଣ ଭାଗବତକୁ ମୋ ଆଗରେ କହିଥିଲେ । ବତ୍ସ ବିଦୁର ! ତୁମେ ଶ୍ରଦ୍ଧାବାନ୍ ଓ ମୋର ଅନୁଗତ ହୋଇଥିବାରୁ ମୁଁ ତୁମକୁ ତାହା ଶୁଣାଉଛି ॥୯॥ ସୃଷ୍ଟିପୂର୍ବରୁ ଏହି ସମ୍ପୂର୍ଣ୍ଣ ବିଶ୍ୱ ଜଳମୟ ଥିଲା । ଯାହାଙ୍କର ବୋଧଶକ୍ତି ସବୁବେଳେ ଜାଗ୍ରତ ଥାଏ, ସେହି ଭଗବାନ ଯେତେବେଳେ ଯୋଗନିଦ୍ରାରେ ଅନନ୍ତ ଶୟନ କରିଥିଲେ, ସେତେବେଳେ ସେ ସୃଷ୍ଟିକାର୍ଯ୍ୟରୁ ବିରତ ହୋଇ ନିଜ ଆତ୍ମାନନ୍ଦରେ ମଗ୍ନ ଥିଲେ ॥୧୦॥ ଯେପରି ଅଗ୍ନିର ଦାହିକା ଶକ୍ତି କାଷ୍ଠମଧ୍ୟରେ ଛପି ରହିଥାଏ, ସେହିପରି ଭଗବାନ ପ୍ରାଣୀମାନଙ୍କର ସୂକ୍ଷ୍ମ ଶରୀରକୁ ନିଜ ଦେହରେ ଲୀନ କରି ଦେଇଥିଲେ ଏବଂ ସମୟାନୁଯାୟୀ ସୃଷ୍ଟିରଚନାର ଶକ୍ତି ଧାରଣ କରି ଜଳଶଯ୍ୟାରେ ଶୟନ କରିଥିଲେ ॥୧୧॥ ଏହିପରି ନିଜର ସୃଷ୍ଟିଶକ୍ତି ସହିତ ଏକ ସହସ୍ର ଚତୁର୍ଯୁଗ ପର୍ଯ୍ୟନ୍ତ ସେ ଜଳରେ ଶୟନ କରିଥିଲେ । ତା'ପରେ ତାଙ୍କଦ୍ୱାରା ନିଯୁକ୍ତ ତାଙ୍କ କାଳଶକ୍ତି ଏହି ଜୀବମାନଙ୍କୁ ନିଜ ନିଜ କର୍ମରେ ନିୟୋଜିତ କରିବାପାଇଁ ପ୍ରବର୍ତ୍ତିତ କଲା; ସେତେବେଳେ ସେ ନିଜ ଦେହରେ ଲୀନ ହୋଇଥିବା ଅନନ୍ତ ଲୋକକୁ ଦେଖିପାରିଲେ ॥୧୨॥

ଭଗବାନଙ୍କର ଦୃଷ୍ଟି ତାଙ୍କ ମଧ୍ୟରେ ଥିବା ସୂକ୍ଷ୍ମ ତତ୍ତ୍ୱମାନଙ୍କ ଉପରେ ନିବିଷ୍ଟ ହେଲାବେଳେ ରଜୋଗୁଣଦ୍ୱାରା ଚାଳିତ ହୋଇ ସେହି ସୂକ୍ଷ୍ମତତ୍ତ୍ୱ ତାଙ୍କ ନାଭି ଦେଶକୁ ଭେଦ କରି ସୃଷ୍ଟିରଚନା ପାଇଁ ବାହାରି ଆସିଲା ॥୧୩॥ କର୍ମଶକ୍ତିକୁ ଜାଗରିତ କରୁଥିବା କାଳଶକ୍ତିଦ୍ୱାରା ସେହି ସୂକ୍ଷ୍ମତତ୍ତ୍ୱ ପଦ୍ମକୋଶ ରୂପରେ (ଭଗବାନଙ୍କ ନାଭିରୁ) ହଠାତ୍ ଉଦ୍‌ଗତ ହେଲା । ସୂର୍ଯ୍ୟପରି

ତା'ର ତେଜରେ ସେହି ବିଶାଳ ଜଳରାଶି ଆଲୋକିତ ହୋଇଉଠିଲା ॥୧୪॥ ବିଶ୍ୱସୃଷ୍ଟିର ସମସ୍ତ ଗୁଣରେ ଯୁକ୍ତ ସେହି ପଦ୍ମରେ ବିଷ୍ଣୁ ଭଗବାନ ପ୍ରବେଶ କଲେ ଓ ତା' ମଧ୍ୟରୁ ସ୍ୱୟଂଭୂ ବୋଲି ଯାହାଙ୍କୁ କୁହାଯାଏ, ସେହି ବେଦମୟ ବ୍ରହ୍ମା ପ୍ରକଟ ହେଲେ ॥୧୫॥ ଏହି ପଦ୍ମକୋଶରେ ରହି ବ୍ରହ୍ମା କୌଣସି ଲୋକକୁ ଦେଖିପାରିଲେ ନାହିଁ । ଆଖି ଖୋଲି କିଛି ଦେଖିବା ପାଇଁ ଆକାଶର ଚାରିଆଡ଼କୁ ମୁହଁ ବୁଲାଇ ଦେଖିବାକୁ ଲାଗିଲେ । ଚାରିଆଡ଼କୁ ଦେଖୁଥିବା ହେତୁ ସେ ଚତୁର୍ମୁଖ ହେଲେ ॥୧୬॥ ସେତେବେଳେ ପ୍ରଳୟକାଳର ପବନଯୋଗୁଁ ଜଳରେ ତରଙ୍ଗମାନ ଉଠୁଥିଲା । ସେହି ଜଳରାଶିରୁ ଉଠିଥିବା ପଦ୍ମଉପରେ ବସି ଆଦିଦେବ ବ୍ରହ୍ମା ନିଜ ସୃଷ୍ଟିତତ୍ତ୍ୱର କିମ୍ବା ନିଜେ ବସିଥିବା ପଦ୍ମର ରହସ୍ୟ ଜାଣିପାରିଲେ ନାହିଁ ॥୧୭॥ ସେ ଭାବିବାକୁ ଲାଗିଲେ, ଏହି ପଦ୍ମକୋଶ ଉପରେ ବସିରହିଥିବା ମୁଁ କିଏ ? କୌଣସି ଆଧାର ନ ଥାଇ ଏହି ଜଳମଧ୍ୟରୁ କିପରି ଏ ପଦ୍ମଫୁଲ ଜାତ ହେଲା ? ଏହାର ତଳେ ନିଶ୍ଚୟ କିଛି ଅଛି, ଯାହାକୁ ଆଧାର କରି ଏହା ରହିଛି ॥୧୮॥ ଏହିପରି ଚିନ୍ତାକରି ସେ ଏହି ପଦ୍ମନାଡ଼ର ଭିତରକୁ ପଶିବାକୁ ଲାଗିଲେ । କିନ୍ତୁ ସେହି ଆଧାର ଖୋଜିବାପାଇଁ ନାଡ଼ର ଭିତରେ ଯାଇ ନାଭିଦେଶ ପାଖରେ ପହଞ୍ଚି ମଧ୍ୟ ତାହା ସେ ପାଇ ପାରିଲେ ନାହିଁ ॥୧୯॥

ବିଦୁର, ସେହି ଅପାର ଅନ୍ଧକାରମଧ୍ୟରେ ନିଜର ଉତ୍ପତ୍ତି ସ୍ଥାନକୁ ଖୋଜି ଖୋଜି ବ୍ରହ୍ମାଙ୍କର ବହୁକାଳ ଗତ ହୋଇଗଲା । ଏହି କାଳ ହେଉଛି ଭଗବାନଙ୍କର ଚକ୍ର । ଏହା ଦେହଧାରୀମାନଙ୍କର ଆୟୁକ୍ଷୟ କରି ସେମାନଙ୍କ ଭୟର କାରଣ ହୋଇଥାଏ ॥୨୦॥ ଶେଷରେ ବିଫଳମନୋରଥ ହୋଇ ସେ ଫେରିଆସିଲେ ଏବଂ କମଳକୋଶରୂପୀ ନିଜ ଆସନରେ ବସି ନିଜର ପ୍ରାଣବାୟୁକୁ ଧୀରେ ଧୀରେ ଜୟ କରି ଅନାସକ୍ତ ଭାବରେ ସମାଧି ଯୋଗରେ ଧ୍ୟାନସ୍ଥ ହେଲେ ॥୨୧॥ ଏହିପରି ଅଜନ୍ମା ବ୍ରହ୍ମା ପୁରୁଷର ପରିମିତ ଆୟୁ ଶହେବର୍ଷ ପର୍ଯ୍ୟନ୍ତ ଯୋଗାଭ୍ୟାସ କରି ଯେଉଁ ଜ୍ଞାନଲାଭ କଲେ, ତଦ୍ୱାରା ଯାହାଙ୍କୁ ସେ ପୂର୍ବରୁ ଖୋଜିଖୋଜି ପାଉନଥିଲେ, ତାଙ୍କୁ ନିଜ ହୃଦୟମଧ୍ୟରେ ପ୍ରତିଭାତ ହେବାର ଦେଖିପାରିଲେ ॥୨୨॥ ବ୍ରହ୍ମା ଦେଖିଲେ, ମୃଣାଳରଙ୍ଗ ପରି ଗୌରବର୍ଣ୍ଣ ବିଶାଳ ଶେଷନାଗଙ୍କର ଦେହକୁ ଶଯ୍ୟା କରି ଜଣେ ପୁରୁଷ ଏକାକୀ ଶୋଇଛନ୍ତି ଏବଂ ଏହି ଶେଷନାଗଙ୍କର ଫଣା ତାଙ୍କର ଛତ୍ରସ୍ୱରୂପ ଶୋଭା ପାଉଛି । ସେହି ଫଣାରେ ଥିବା ରତ୍ନମାନଙ୍କ ଦ୍ୟୁତିଦ୍ୱାରା ଅନ୍ଧକାର ଦୂର ହୋଇ ମହାପ୍ରଳୟର ଜଳ ଆଲୋକିତ ହୋଇଉଠୁଛି ॥୨୩॥ ତାଙ୍କ ଶରୀରର ରଙ୍ଗ ମରକତ ମଣିମୟ ପର୍ବତର ରଙ୍ଗକୁ ଧିକ୍‌କାର କରୁଛି । ଶ୍ୟାମବର୍ଣ୍ଣ ଦେହରେ ସେ ଯେଉଁ ପୀତାମ୍ବର ପରିଧାନ କରିଛନ୍ତି ତାହା ସନ୍ଧ୍ୟାକାଶକୁ ମଳିନ କରିଦେଉଛି । ତାଙ୍କର ମସ୍ତକରେ ଶୋଭିତ ସୁବର୍ଣ୍ଣମୁକୁଟ ହେମମୟ ପର୍ବତର ଶିଖରକୁ ନିସ୍ତେଜ କରିଦେଉଛି । ସେ ଯେଉଁ ବନମାଳା ପରିଧାନ କରିଛନ୍ତି, ତାହା ପର୍ବତରେ ଥିବା ସମସ୍ତ ରତ୍ନ, ପ୍ରପାତ, ଓଷଧି ଏବଂ ପୁଷ୍ପର ଶୋଭାକୁ ହରଣ କରିନେଉଛି । ତାଙ୍କର ଭୁଜ ବେଣୁଦଣ୍ଡକୁ ଓ ଚରଣଦ୍ୱୟ ବୃକ୍ଷମାନଙ୍କର ସୌନ୍ଦର୍ଯ୍ୟକୁ ତିରସ୍କାର କରୁଛି ॥୨୪॥ ତାଙ୍କ ବିରାଟ ଦେହର ଆୟତନ ତ୍ରିଭୁବନକୁ ବିସ୍ତାର କରିଛି । ବିଚିତ୍ର, ଦିବ୍ୟ ଅଳଙ୍କାର ଓ ପଟ୍ଟବସ୍ତ୍ର ସବୁ ନିଜର ସୌନ୍ଦର୍ଯ୍ୟବୃଦ୍ଧିପାଇଁ ତାଙ୍କ ଦେହରେ ଆଶ୍ରୟ ନେଇଛନ୍ତି ॥୨୫॥ ନିଜ ନିଜର ମନସ୍କାମନା ପୂର୍ଣ୍ଣ କରିବାପାଇଁ ଯେଉଁମାନେ ବିଭିନ୍ନ ବେଦୋକ୍ତ ମାର୍ଗରେ ତାଙ୍କୁ ପୂଜା କରନ୍ତି, ସେମାନଙ୍କୁ କୃପାପୂର୍ବକ ସେ କାମଧେନୁତୁଲ୍ୟ ତାଙ୍କ ପାଦପଦ୍ମ ଦର୍ଶନ ଦେଉଛନ୍ତି । ତାଙ୍କ ପଦାଙ୍ଗୁଳିର ନଖସବୁ ଚନ୍ଦ୍ରକିରଣ ପରି ଝଟକୁଛି ॥୨୬॥ ତେଜୀୟାନ୍ କୁଣ୍ଡଳମଣ୍ଡିତ ତାଙ୍କ ମୁଖର ସ୍ମିତହାସ୍ୟ ଲୋକମାନଙ୍କ ଦୁଃଖ ହରଣ କରେ । ନିଜର ସୁନ୍ଦର ନାସିକା, ଭ୍ରୂଲତା, ବିମ୍ବଫଳର ବର୍ଣ୍ଣ ପରି ରକ୍ତବର୍ଣ୍ଣ ଅଧରଦ୍ୱାରା ସେ ସେମାନଙ୍କୁ ଅଭିନନ୍ଦନ କରୁଛନ୍ତି ॥୨୭॥

ବତ୍ସ ବିଦୁର ! କଦମ୍ବ-କେଶରର ବର୍ଣ୍ଣପରି ପୀତବସ୍ତ୍ର ଓ ଅଳଙ୍କୃତ ମେଖଳାଦ୍ୱାରା ତାଙ୍କର ନିତମ୍ବ ଦେଶ ଶୋଭା ପାଉଥିଲା । ଶ୍ରୀବତ୍ସଲାଞ୍ଛିତ ତାଙ୍କ ବକ୍ଷସ୍ଥଳରେ ଏକ ବହୁମୂଲ୍ୟବାନ୍ ହାର ଶୋଭାପାଉଥିଲା ॥୨୮॥ ଏକ ବିରାଟ ଚନ୍ଦନବୃକ୍ଷ ବିଶାଳ ସର୍ପ ବେଷ୍ଟିତ ହୋଇ ଯେପରି ଦେଖାଯାଏ, ସେହିପରି ଭଗବାନଙ୍କର ମହାର୍ଘ କେୟୂର ଓ ମଣିଯୁକ୍ତ ଭୁଜମାନ ବୃକ୍ଷର

ସହସ୍ର ଶାଖାପରି ପ୍ରତିଭାତ ହେଉଛି ଏବଂ ତାଙ୍କ ସ୍କନ୍ଧଦେଶକୁ ଶେଷନାଗଙ୍କର ଫଣାମାନ ବେଷ୍ଟନ କରିଛି ॥୨୯॥ ନାଗରାଜ ଅନନ୍ତଙ୍କର ବନ୍ଧୁ ଭଗବାନ୍ ଜଳଘେରରେ ରହିଥିବା ଏକ ବିଶାଳ ପର୍ବତ ପରି ଦେଖାଯାଉଥିଲେ । ପର୍ବତ ଯେପରି କିଛି ସ୍ଥାବରଜଙ୍ଗମଙ୍କୁ ଆଶ୍ରୟ ଦେଇଥାଏ, ସେ ହେଉଛନ୍ତି ସେପରି ଚରାଚରର ଆଶ୍ରୟସ୍ଥଳ । ପର୍ବତର ହିରଣ୍ମୟ ଶୃଙ୍ଗମାନଙ୍କ ପରି ତାଙ୍କ ରତ୍ନଖଚିତ କିରୀଟମାନ ଶୋଭା ପାଉଥିଲା । ରତ୍ନଗର୍ଭ ପର୍ବତ ପରି ସେ ତାଙ୍କ ହୃଦୟରେ କୌସ୍ତୁଭ ମଣିକୁ ଧାରଣ କରିଥିଲେ ॥୩୦॥ ତାଙ୍କ କଣ୍ଠଦେଶରେ ଯେଉଁ ବନମାଳା ଶୋଭାପାଉଥିଲା, ସେଥିରେ ବେଦରୂପକ ଭ୍ରମରମାନେ ରହି ତାଙ୍କର ଯଶୋଗାଥାକୁ ଗୁଞ୍ଜରଣ କରୁଥିଲେ । ସୂର୍ଯ୍ୟ, ଚନ୍ଦ୍ର, ବାୟୁ ଏବଂ ଅଗ୍ନିଙ୍କର ଅଗମ୍ୟ, ସୁଦର୍ଶନ ଆଦି ଯେଉଁ ଅସ୍ତ୍ରମାନେ ତ୍ରିଲୋକର ରକ୍ଷାପାଇଁ ପରିକ୍ରମା କରନ୍ତି, ସେମାନଙ୍କୁ ମଧ୍ୟ ଦୁର୍ଲଭ ତାଙ୍କର ସେହି ରୂପକୁ ବ୍ରହ୍ମା ଦେଖିପାରିଲେ ॥୩୧॥ ବିଶ୍ୱସୃଷ୍ଟି କରିବାପାଇଁ ଇଚ୍ଛା କରୁଥିବା ବ୍ରହ୍ମା ତାଙ୍କ ନାଭି-ସରୋବରରୁ ଜାତ ଏହି ପଦ୍ମଫୁଲ, ଜଳ, ବାୟୁ, ଆକାଶ ଏବଂ ନିଜର ଶରୀରକୁ କେବଳ ଦେଖୁଥିଲେ । ଅନ୍ୟକିଛି ତାଙ୍କୁ ଦୃଶ୍ୟ ହେଉ ନ ଥିଲା ॥୩୨॥ ରଜୋଗୁଣଯୁକ୍ତ ବ୍ରହ୍ମା ପ୍ରଜାସୃଷ୍ଟି କରିବାପାଇଁ ଇଚ୍ଛା କରୁଥିଲେ । ମାତ୍ର ଏହି ପାଞ୍ଚଟି ବସ୍ତୁକୁ ଦେଖି ସେ କିପରି ସୃଷ୍ଟି ରଚନା କରିବେ, ସେଥିପାଇଁ ଭଗବାନଙ୍କୁ ପ୍ରାର୍ଥନା କରିବାକୁ ଲାଗିଲେ ଯେ ସେ ତାଙ୍କୁ ବାଟ ଦେଖାଇଦିଅନ୍ତୁ ॥୩୩॥

## ନବମ ଅଧ୍ୟାୟ

# ବ୍ରହ୍ମାଙ୍କର ସ୍ତୁତି

ବ୍ରହ୍ମା କହିଲେ, ପ୍ରଭୁ ! ବହୁକାଳ ପରେ ମୁଁ ଆଜି ଆପଣଙ୍କୁ ଜାଣିପାରିଲି । ଦେହଧାରୀମାନଙ୍କର ଦୋଷ ହେଉଛି ଯେ ସେମାନେ ଆପଣଙ୍କର ସ୍ୱରୂପ ଜାଣନ୍ତି ନାହିଁ । ଭଗବାନ୍ ! ଆପଣଙ୍କ ଛଡ଼ା ଅନ୍ୟ କୌଣସି ବସ୍ତୁ ନାହିଁ, ଯାହା କିଛି ଅଛି ବୋଲି ଜଣାଯାଉଛି, ତାହା ପ୍ରକୃତରେ ସତ୍ୟ ନୁହେଁ । କାରଣ ମାୟାଗୁଣଦ୍ୱାରା ହିଁ ଆପଣ ଅନେକ ରୂପରେ ଦେଖାଯାଉଛନ୍ତି ॥୧॥ ଚିତ୍‌ଶକ୍ତିର ପ୍ରକାଶଯୋଗୁଁ ଅଜ୍ଞାନ-ଅନ୍ଧକାର ସବୁବେଳେ ଆପଣଙ୍କଠାରୁ ଦୂରରେ ରହିଥାଏ । ଯେଉଁ ରୂପର ନାଭିକମଳରୁ ମୋର ସମ୍ଭବ ହୋଇଚି, ଆପଣଙ୍କର ସେହି ରୂପ ହେଉଛି ଶହ ଶହ ଅବତାରର କାରଣସ୍ୱରୂପ । ସାଧୁମାନଙ୍କ ପ୍ରତି ସଦୟ ହୋଇ ଆପଣ ସେହି ରୂପ ପ୍ରକାଶ କରନ୍ତି ॥୨॥ ହେ ପରମ ! ଆପଣଙ୍କର ଯେଉଁ ଆନନ୍ଦମୟ, ଅଦ୍ୱିତୀୟ, ଅଖଣ୍ଡ ତେଜୋପୂର୍ଣ୍ଣ ସ୍ୱରୂପ ଅଛି, ମୁଁ ତାହାଠାରୁ ଭିନ୍ନ ନୁହେଁ । ହେ ପରମାତ୍ମା ! ଏ ବିଶ୍ୱକୁ ରଚନା କରିବାକୁ ଯାଇ ମଧ୍ୟ ମୁଁ ଆପଣଙ୍କର ଏହି ବିଶ୍ୱାତୀତ ଏକ ଏବଂ ଅଦ୍ୱିତୀୟ ରୂପର ଆଶ୍ରୟ ନେଇଛି । ସମସ୍ତ ଭୂତ ଏବଂ ଇନ୍ଦ୍ରିୟମାନଙ୍କର ଆତ୍ମା ମଧ୍ୟ ଆପଣଙ୍କଠାରେ ଅବସ୍ଥିତ ॥୩॥ ହେ ବିଶ୍ୱର ମଙ୍ଗଳବିଧାୟକ, ମୋ'ପରି ଉପାସକର ମଙ୍ଗଳନିମନ୍ତେ ଧ୍ୟାନରେ ମୋତେ ଆପଣ ଏହି ରୂପ ଦେଖାଇଛନ୍ତି । କେବଳ ନରକଗାମୀ ଅସାଧୁ ବ୍ୟକ୍ତିମାନେ ଆପଣଙ୍କର ଏହି ରୂପକୁ ଅନାଦର କରନ୍ତି । ମୁଁ ଆପଣଙ୍କର ସେହି ରୂପକୁ ବାରମ୍ବାର ନମସ୍କାର କରୁଛି ॥୪॥

ହେ ନାଥ ! ଯେଉଁମାନେ ବେଦରୂପ ବାୟୁଦ୍ୱାରା ଆନୀତ ଆପଣଙ୍କର ପାଦପଦ୍ମର ଗନ୍ଧକୁ ନିଜର କର୍ଣ୍ଣପୁଟରେ ଗ୍ରହଣ କରନ୍ତି, ଆପଣ ସେହି ଭକ୍ତମାନଙ୍କର ହୃଦପଦ୍ମରୁ ଦୂରରେ ରହନ୍ତି ନାହିଁ । କାରଣ ଦୃଢ଼ ଭକ୍ତିରୂପ ଡୋରିରେ ସେମାନେ ଆପଣଙ୍କୁ ବାନ୍ଧି ରଖନ୍ତି ॥୫॥ ଯେପର୍ଯ୍ୟନ୍ତ ଲୋକ ଆପଣଙ୍କ ଅଭୟ ଚରଣକମଳକୁ ଆଶ୍ରୟ କରେ ନାହିଁ, ସେପର୍ଯ୍ୟନ୍ତ ତା'ର ଧନ, ଗୃହ, ସ୍ୱଜନମାନଙ୍କପାଇଁ ଭୟ, ଶୋକ, ହୀନଭାବ, ବିପୁଳ ଲୋଭ ଓ ମୋହ ଆଦି ତାକୁ କଷ୍ଟ ଦେଉଥାଆନ୍ତି ଏବଂ ତାହା

ହିଁ ତା' ଦୁଃଖର କାରଣ ହୋଇଥାଏ ।।୬।। ଆପଣଙ୍କ ପ୍ରସଙ୍ଗଦ୍ୱାରା ସମସ୍ତପ୍ରକାର ଅମଙ୍ଗଳ ଦୂର ହୁଏ । ମାତ୍ର ସେଥିପ୍ରତି ବିମୁଖ ଲୋକମାନେ ସାମାନ୍ୟମାତ୍ର ବିଷୟସୁଖପାଇଁ ଲୋଭାଭିଭୂତ ହୋଇ ସବୁବେଳେ ଦୁଷ୍କର୍ମରେ ଲାଗି ରହିଥାନ୍ତି । ଦୈବବଶତଃ ଏହି ଦୀନ ହତବୁଦ୍ଧି ଲୋକମାନଙ୍କର ଏହି ଅବସ୍ଥା ହୋଇଥାଏ ।।୭।। ହେ ମହାଶକ୍ତିମାନ୍ ! ଲୋକମାନେ କ୍ଷୁଧା ପିପାସାଦ୍ୱାରା, (ଶରୀରଗଠନର ମୌଳିକ) ବାତ, ପିତ୍ତ ଓ କଫ ଏହି ତିନୋଟି ଧାତୁଦ୍ୱାରା, ଗ୍ରୀଷ୍ମ, ଶୀତ, ବର୍ଷା ଆଦି ଜଳବାୟୁଦ୍ୱାରା, ପରସ୍ପର ବାଦବିବାଦଦ୍ୱାରା ଏବଂ ଅତିଶୟ କ୍ରୋଧଦ୍ୱାରା ପୀଡ଼ିତ ହେଉଥିବାର ଦେଖି ମୋ ମନରେ କଷ୍ଟ ଜାତ ହେଉଛି ।।୮।। ହେ ପ୍ରଭୁ ! ଯେପର୍ଯ୍ୟନ୍ତ ମନୁଷ୍ୟ ଇନ୍ଦ୍ରିୟ ଓ ବିଷୟଭୋଗରୂପ ମାୟାଦ୍ୱାରା ନିଜକୁ ଆପଣଙ୍କଠାରୁ ଭିନ୍ନ ଦେଖୁଥାଏ, ସେପର୍ଯ୍ୟନ୍ତ ତା'ର ସଂସାର ଦୁଃଖର ଶେଷ ହୁଏ ନାହିଁ । ଯେଉଁ କାର୍ଯ୍ୟରେ ପରମାର୍ଥ ନାହିଁ, ତାହା ଜାଣି ସୁଦ୍ଧା ସେ ସେହି ଦୁଃଖାବହ କ୍ରିୟାକଳାପରେ ଲାଗିରହିଥାଏ ।।୯।। ଦେବ ! ଆପଣଙ୍କ ପ୍ରସଙ୍ଗ ପ୍ରତି ବିମୁଖ ଋଷିମାନେ ମଧ୍ୟ ଏହି ସଂସାର ଚକ୍ରରେ ଘୂରି ବୁଲନ୍ତି । ଦିନରେ ଅନେକ ଦୁଃଖଦାୟକ କାର୍ଯ୍ୟରେ ନିଯୁକ୍ତ ରୁହନ୍ତି । ରାତିରେ ଶୋଇବାବେଳେ ମଧ୍ୟ ଭଲ ନିଦ ହୁଏ ନାହିଁ । କାରଣ ନାନାପ୍ରକାର ଚିନ୍ତା ମନ ମଧ୍ୟରେ ରହିଥିବାରୁ ବାରମ୍ବାର ନିଦ ଭାଙ୍ଗିଯାଏ ଏବଂ ଯେଉଁସବୁ କାମର ଯୋଜନା କରିଥାନ୍ତି, ଦୈବବଶତଃ ତାହା ସଫଳ ହୁଏ ନାହିଁ ।।୧୦।। ନାଥ ! ଆପଣଙ୍କ ପ୍ରସଙ୍ଗ ଶ୍ରବଣ କରିବାଦ୍ୱାରା ଲୋକମାନଙ୍କୁ ଆପଣଙ୍କୁ ପାଇବାର ବାଟ ଦେଖାଯାଇଥାଏ । ଭକ୍ତିଯୁକ୍ତ ଲୋକଙ୍କର ଶୁଦ୍ଧ ହୃଦପଦ୍ମରେ ଆପଣ ବିରାଜମାନ ହୁଅନ୍ତି । ଯେଉଁମାନେ ଧ୍ୟାନରେ ଆପଣଙ୍କର ଯେଉଁ ଯେଉଁ ଗୌରବମୟ ରୂପମାନଙ୍କୁ ଚିନ୍ତା କରନ୍ତି, ଆପଣ ସେମାନଙ୍କୁ ସ୍ନେହରେ ଅନୁଗୃହୀତ କରିବା ପାଇଁ ସେହି ସେହି ରୂପ ଧାରଣ କରନ୍ତି ।।୧୧।। ମନରେ ନାନା କାମନା ରଖି ବହୁ ଆଡ଼ମ୍ବର ଓ ପ୍ରଚାର ଦ୍ୱାରା ଦେବତାମାନେ ଆପଣଙ୍କୁ ପୂଜା କଲେ ଆପଣ ସେଥିରେ ବିଶେଷ ଆନନ୍ଦିତ ହୁଅନ୍ତି ନାହିଁ । କିନ୍ତୁ ସମସ୍ତ ପ୍ରାଣୀଙ୍କୁ ଦୟା ଦେଖାଇବାପାଇଁ ହିତକାରୀ ବନ୍ଧୁରୂପେ ସେମାନଙ୍କ ଅନ୍ତରାତ୍ମାରେ ଆପଣ ଏକ ଓ ଅଦ୍ୱିତୀୟ ବସ୍ତୁ ରୂପେ ବିରାଜମାନ ଥାଆନ୍ତି । କିନ୍ତୁ ଯେଉଁମାନେ ଅସତ୍‌ମାର୍ଗରେ ଯାଆନ୍ତି, ସେମାନେ ଆପଣଙ୍କ ଦୟାଭାଜନ ହୋଇପାରନ୍ତି ନାହିଁ ।।୧୨।।

ଯେଉଁ କର୍ମ ଆପଣଙ୍କୁ ଅର୍ପଣ କରାଯାଏ, ତାର ବିନାଶ ନାହିଁ । ବେଦୋକ୍ତ ଯଜ୍ଞ, ଦାନ, ପ୍ରଚଣ୍ଡ ତପସ୍ୟା, ବ୍ରତାଦି ପାଳନ ଦ୍ୱାରା ଆପଣଙ୍କ ସନ୍ତୋଷପାଇଁ ଯେଉଁ ସବୁ ଧର୍ମକାର୍ଯ୍ୟ କରାଯାଏ, ତାହା ବୃଥା ଯାଏ ନାହିଁ ।।୧୩।। ଆପଣ ସର୍ବଦା ନିଜର ସ୍ୱରୂପ ପ୍ରକାଶ କରି ପ୍ରାଣୀମାନଙ୍କର ଭେଦ-ଭ୍ରମରୂପ ମୋହକୁ ବିନାଶ କରନ୍ତି । ଆପଣ ଜ୍ଞାନ ଓ ଚେତନାର ଆଧାର । ହେ ପରମପୁରୁଷ ! ମୁଁ ଆପଣଙ୍କୁ ନମସ୍କାର କରୁଛି । ବିଶ୍ୱର ସୃଷ୍ଟି, ସ୍ଥିତି ଏବଂ ସଂହାରପାଇଁ ଆପଣ ଏହି ସଂସାରରେ ବିଭିନ୍ନ ଲୀଳା ରଚନା କରି କ୍ରୀଡ଼ା କରନ୍ତି । ହେ ଈଶ୍ୱର ! ମୁଁ ଆପଣଙ୍କୁ ପ୍ରଣାମ କରୁଛି ।।୧୪।। ବିଭିନ୍ନ ଅବତାରରେ ନାନା ଗୁଣ ଏବଂ କର୍ମଦ୍ୱାରା ଆପଣ ଯେଉଁସବୁ ନାମରେ ପରିଚିତ, ପ୍ରାଣତ୍ୟାଗବେଳେ କାତର ହୋଇ ଜୀବ ଯଦି ଆପଣଙ୍କର ସେହିସବୁ ନାମ ସ୍ମରଣ କରେ, ତେବେ ତାହାର ଅନେକ ଜନ୍ମର ପାପ ସଙ୍ଗେ ସଙ୍ଗେ ଦୂର ହୋଇଯାଏ ଏବଂ ସେ ବିଶୁଦ୍ଧ ବ୍ରହ୍ମପଦ ଲାଭକରେ । ହେ ଅଜନ୍ମା ! ମୁଁ ଆପଣଙ୍କର ଶରଣ ନେଉଛି ।।୧୫।। ଆପଣ ହେଉଛନ୍ତି ଭୁବନରୂପକ ଦ୍ରୁମ । ସେହି ଆଦିମୂଳ ବୃକ୍ଷ ତିନୋଟି ଶାଖାରେ ବିଭକ୍ତ । ସେହି ତିନୋଟି ଶାଖାରୂପେ ଆମେ ତିନି ଜଣ ମୁଁ, ବିଷ୍ଣୁ ଏବଂ ଶିବ ସୃଷ୍ଟି କରୁ, ପାଳନ କରୁ ଏବଂ ସଂହାର କରୁ । ସେହି ଭୁବନଦ୍ରୁମ ରୂପ ଆପଣଙ୍କୁ ମୁଁ ନମସ୍କାର କରୁଛି ।।୧୬।।

ଆପଣଙ୍କର ଆରାଧନାପାଇଁ କେଉଁ କର୍ମ କରିବା ଉଚିତ, ଆପଣ ତାହା କହିଥିଲେ ମଧ୍ୟ ତାହା ଭୁଲି ଯାଇ ଲୋକ ଅପକର୍ମରେ ମାତିଥାଏ । ସେ ଜାଣେ ନାହିଁ, କେତେବେଳେ ବଳବାନ୍ କାଳ ଆସି ତା' ଜୀବନର ଆଶାକୁ ଛେଦନ କରିଦେବ । ସେହି କାଳସ୍ୱରୂପ ଆପଣଙ୍କୁ ମୁଁ ନମସ୍କାର କରୁଛି ।।୧୭।। ଯଦିବା ମୁଁ ସମସ୍ତ ଲୋକଙ୍କର ବନ୍ଦନୀୟ ହୋଇ ଦୁଇ ପରାର୍ଦ୍ଧ (୩୦ କୋଟି ୯ ଲକ୍ଷ ୬୦ ହଜାର ସୌରବର୍ଷ) ପର୍ଯ୍ୟନ୍ତ ରହେ, ତଥାପି ମୁଁ ଆପଣଙ୍କୁ ଭୟକରେ । ଆପଣଙ୍କୁ ଲାଭ କରିବାପାଇଁ ମୁଁ

କେତେ ଯେ ତପସ୍ୟା କରିଛି, ଅଧିଯଜ୍ଞ ରୂପେ ଆପଣ ହିଁ ତା'ର ସାକ୍ଷୀ । ମୁଁ ଆପଣଙ୍କୁ ନମସ୍କାର କରୁଛି ॥୧୮॥ ଆପଣଙ୍କର କୌଣସି ବିଷୟସୁଖପାଇଁ ଇଚ୍ଛା ନ ଥାଏ -- ଆପଣ ସ୍ୱୟଂ ଆନନ୍ଦମୟ । ତଥାପି ଆପଣ ନିଜେ ସୃଷ୍ଟି କରିଥିବା ଧର୍ମର ମର୍ଯ୍ୟାଦାରକ୍ଷାପାଇଁ ପଶୁ, ପକ୍ଷୀ, ମନୁଷ୍ୟ, ଦେବତା ଆଦି ଜୀବଯୋନିରେ ସ୍ୱେଚ୍ଛାରେ ଦେହ ଧରି ଅନେକ ଲୀଳା କରନ୍ତି । ହେ ପୁରୁଷୋତ୍ତମ ଭଗବାନ, ମୁଁ ଆପଣଙ୍କୁ ନମସ୍କାର କରୁଛି ॥୧୯॥

ଆପଣ ଅବିଦ୍ୟା, ଅସ୍ମିତା, ରାଗ, ଦ୍ୱେଷ ଓ ଅଭିନିବେଶ ଏହି ପାଞ୍ଚଟି ମଧ୍ୟରୁ କାହାରିଦ୍ୱାରା ବଶୀଭୂତ ନୁହନ୍ତି । ଆପଣଙ୍କ ଉଦରରେ ସମସ୍ତ ଲୋକ ଲୀନ ହୋଇ ରହିଛନ୍ତି । ଭୟଙ୍କର ଉର୍ମିମାଳାରେ ବିକ୍ଷୁବ୍ଧ ପ୍ରଳୟଜଳ ମଧ୍ୟରେ ଆପଣ ଶେଷନାଗଙ୍କ କୋମଳ ଶଯ୍ୟାରେ ଆନନ୍ଦରେ ଶୋଇଛନ୍ତି । ଏଇଥିପାଇଁ ଯେ, ପୂର୍ବ କଳ୍ପରେ ବହୁ କଷ୍ଟ ଭୋଗ କରିଥିବା ଜୀବମାନେ ଆପଣଙ୍କ ଗର୍ଭରେ ବିଶ୍ରାମ ନିଅନ୍ତୁ । ମୁଁ ଆପଣଙ୍କୁ ନମସ୍କାର କରୁଛି ॥୨୦॥ ହେ ପୂଜନୀୟ ! ଆପଣଙ୍କ ନାଭିପଦ୍ମ ରୂପ ଭବନରେ ମୋର ଜନ୍ମ ହୋଇଛି । ଆପଣ ଅନୁଗ୍ରହ ଦେଖାଇ ତ୍ରିଲୋକର ସୃଷ୍ଟିପାଇଁ ମୋତେ ନିୟୋଜିତ କରିଛନ୍ତି । ଆପଣଙ୍କ ଉଦରରେ ସମସ୍ତ ବିଶ୍ୱ ଆଶ୍ରୟ ନେଇଛି । ଯୋଗନିଦ୍ରାର ଅବସାନ ପରେ ଆପଣଙ୍କ ନୟନକମଳ ଉନ୍ମୋଚିତ ହୋଇଛି । ଆପଣଙ୍କୁ ମୋର ନମସ୍କାର ॥୨୧॥

ଆପଣ ସମସ୍ତ ଜଗତର ଆତ୍ମା; ସମସ୍ତ ଜଗତର ଏକମାତ୍ର ବନ୍ଧୁ । ଭକ୍ତମାନଙ୍କର ପ୍ରିୟ; ଜ୍ଞାନ ଓ ଐଶ୍ୱର୍ଯ୍ୟଦ୍ୱାରା ଜଗତକୁ ଆନନ୍ଦିତ କରନ୍ତି । ମୁଁ ବର୍ତ୍ତମାନ ପ୍ରାର୍ଥନା କରୁଛି, ମୋତେ ପ୍ରଜ୍ଞାଶକ୍ତି ଦିଅନ୍ତୁ, ଯେପରି କି ମୁଁ ପୂର୍ବବତ୍ ଏହି ସୃଷ୍ଟିକୁ ରଚନା କରିପାରିବି ॥୨୨॥ ଆପଣ ଶରଣାଗତମାନଙ୍କର ବରଦାତା । ଆପଣ ନିଜ ଶକ୍ତିରେ ଯୁକ୍ତ ହୋଇ ଓ ନାନା ଗୁଣରେ ଅବତାର ଗ୍ରହଣ କରି ଅଦ୍ଭୁତ ଲୀଳାମାନ କରିବେ । ମୋର ଏହି ସୃଷ୍ଟିରଚନା ତା' ମଧ୍ୟରୁ ଅନ୍ୟତମ । ବର୍ତ୍ତମାନ ସେହି ସୃଷ୍ଟିରଚନାପାଇଁ ଆପଣ ମୋର ଚିତ୍ତକୁ ଏପରି ଚାଳିତ କରନ୍ତୁ ଯେପରିକି ଏହି ସୃଷ୍ଟିକର୍ମରେ ମୋର ଅଭିମାନ ରହିବ ନାହିଁ ॥୨୩॥ ପ୍ରଭୁ ! ପ୍ରଳୟଜଳରେ ଆପଣ ଶୟନ କରିଥିବାବେଳେ ଆପଣଙ୍କ ନାଭିପଦ୍ମରୁ ମୋର ଜନ୍ମ ହୋଇଛି । ଆପଣ ଅନନ୍ତ ଶକ୍ତିସମ୍ପନ୍ନ । ମୁଁ କେବଳ ହେଉଛି ଆପଣଙ୍କ ବିଜ୍ଞାନର ଶକ୍ତି । ଆପଣଙ୍କର ଏହି ବିଚିତ୍ର ରୂପ ବର୍ଣ୍ଣନା କରିବାପାଇଁ ମୁଁ ଯେଉଁ ବେଦବାଣୀ ସବୁ ଉଚ୍ଚାରଣ କରୁଛି, ମୋର ପ୍ରାର୍ଥନା ତା'ର ଲୋପ ନ ହେଉ ॥୨୪॥ ଆପଣ ହେଉଛନ୍ତି ପୁରାଣପୁରୁଷ; ଅପାର କରୁଣାମୟ । ବର୍ତ୍ତମାନ ନେତ୍ରପଦ୍ମ ଖୋଲି ଶେଷଶଯ୍ୟାରୁ ଉଠନ୍ତୁ । ଆପଣଙ୍କର ପରମ ପ୍ରେମମୟ ମନ୍ଦହାସ ମୁଁ ଦେଖିବାକୁ ଚାହେ, ବିଶ୍ୱସୃଷ୍ଟିପାଇଁ କୌଣସି ବାଟ ନ ପାଇ ମୋ ମନରେ ଯେଉଁ ବିଷାଦ ଜାତ ହୋଇଛି, ତାହାକୁ ମଧୁର ବାକ୍ୟଯୁକ୍ତ ଉପଦେଶ ଦ୍ୱାରା ଆପଣ ଦୂର କରନ୍ତୁ ॥୨୫॥ ମୈତ୍ରେୟ କହିଲେ, ଯାହାଙ୍କଠାରୁ ତାଙ୍କର ଜନ୍ମ ହୋଇଛି, ତପସ୍ୟା, ଜ୍ଞାନ ଓ ଧ୍ୟାନ ବଳରେ ତାଙ୍କୁ ଏହିପରି ଦେଖି ବ୍ରହ୍ମା ମନୋବାକ୍ୟରେ ଯେତେପ୍ରକାର ସ୍ତୁତି କରିବାର କଥା କରି ଥକି ପଡ଼ିଲେ ଓ ଚୁପ୍ ହୋଇ ରହିଗଲେ ॥୨୬-୨୭॥ ଭୟଙ୍କର ପ୍ରଳୟଜଳରେ ସୃଷ୍ଟିରଚନାପାଇଁ କୌଣସି ବାସ ନ ପାଇ ବ୍ରହ୍ମାଙ୍କୁ ଏପରି ବିବ୍ରତ ଓ ବିଷଣ୍ଣ ଅବସ୍ଥାରେ ଦେଖି ଭଗବାନ ମଧୁସୂଦନ ତାଙ୍କ ଦୁଃଖ ଦୂର କରିବାପାଇଁ ଗମ୍ଭୀର ଭାବରେ କହିଲେ ॥୨୮॥ ବ୍ରହ୍ମା ! ତୁମର ଗର୍ଭରେ ଜ୍ଞାନରୂପକ ବେଦମାନେ ରହିଛନ୍ତି । ତୁମେ ଏପରି ଆଳସ୍ୟର ବଶୀଭୂତ ହୁଅ ନାହିଁ । ସୃଷ୍ଟିରଚନାରେ ଲାଗିଯାଅ । ଯାହା ବର୍ତ୍ତମାନ ତୁମେ ମୋ ଠାରୁ ଚାହୁଁଛ, ମୁଁ ତ ତାହା ପ୍ରଥମରୁ କରିଦେଇଛି ॥୨୯॥ ତୁମେ ଆଉଥରେ ତପସ୍ୟା କର । ଭଗବଦ୍‌ଭକ୍ତିର ଆଶ୍ରୟ ନିଅ । ତାହାଦ୍ୱାରା ତୁମ ଅନ୍ତରଭିତରେ ସମସ୍ତ ଜଗତକୁ ତୁମେ ସ୍ପଷ୍ଟ ଭାବରେ ଦେଖିପାରିବ ॥୩୦॥ ଭକ୍ତିଯୁକ୍ତ ହୋଇ ତୁମେ ଧ୍ୟାନବଳରେ ଦେଖିପାରିବ - ସମସ୍ତ ଜଗତ ଓ ତୁମ ଭିତରେ ମୁଁ ବ୍ୟାପ୍ତ ହୋଇ ରହିଛି ଏବଂ ମୋ ଭିତରେ ସମ୍ପୂର୍ଣ୍ଣ ଜଗତ ଓ ତୁମେ ମଧ୍ୟ ରହିଛ ॥୩୧॥ ଦାରୁଭିତରେ ଯେପରି ଅଗ୍ନି ରହିଥାଏ, ସେହିପରି ସମସ୍ତ ଲୋକମଧ୍ୟରେ ମୁଁ ରହିଛି । ଏହା ଯେ ଦେଖିପାରେ ତାହାର

ସମସ୍ତ ଅଜ୍ଞାନରୂପକ ମୋହ ନଷ୍ଟ ହୁଏ ॥୩୨॥ ନିଜକୁ ପଞ୍ଚଭୂତ, ଇନ୍ଦ୍ରିୟ, ଗୁଣ ଓ ଅନ୍ତଃକରଣଠାରୁ ଅଲଗା ବୋଲି ଭାବିଲେ ଏବଂ ସ୍ୱରୂପତଃ ମୋଠାରୁ ଅଲଗା ନୁହେଁ ବୋଲି ଅନୁଭବ କଲେ ସେ ମୋକ୍ଷ ପ୍ରାପ୍ତ ହୁଏ ॥୩୩॥

ହେ ବର୍ଷୀୟାନ୍ ବ୍ରହ୍ମା ! ଅନେକପ୍ରକାର କର୍ମଯୋଗରେ ବହୁ ପ୍ରଜାଙ୍କୁ ତୁମେ ସୃଷ୍ଟି କରିବାକୁ ଇଚ୍ଛା କରିବ । କିନ୍ତୁ ମୋର ଅନୁଗ୍ରହଯୋଗୁଁ ତୁମର କୌଣସି ଅବସାଦ ହେବ ନାହିଁ ॥୩୪॥ ତୁମେ ଆଦ୍ୟ ଋଷି । ମୋଠାରେ ମନୋନିବେଶ କରି ତୁମେ ପ୍ରଜାସୃଷ୍ଟି କରିଯିବ । ପାପଯୁକ୍ତ ରଜୋଗୁଣ ତୁମର ବନ୍ଧନ ହେବ ନାହିଁ ॥୩୫॥ ଦେହଧାରୀ ଜୀବମାନେ ମୋତେ ସହଜରେ ଜାଣିପାରନ୍ତି ନାହିଁ । ପଞ୍ଚଭୂତ, ଇନ୍ଦ୍ରିୟ ଓ ଅନ୍ତଃକରଣରହିତ ମୋତେ ତୁମେ ହିଁ ଜାଣିଛ ॥୩୬॥ ତୁମେ ଯେଉଁ ପଦ୍ମନାଡ଼ରେ ବସିଛ, ତାହା କେଉଁଠୁଁ ଆସିଛି, ତାହାର ମୂଳ ଖୋଜିବାପାଇଁ ତୁମେ ଯେତେବେଳେ ପଦ୍ମନାଡ଼ ଭିତରେ ପଶି କିଛି ଜାଣିପାରିଲ ନାହିଁ, ତୁମ ଅନ୍ତଃକରଣରେ ମୋର ସ୍ୱରୂପକୁ ମୁଁ ଦେଖାଇଥିଲି ॥୩୭॥ ଶ୍ରଦ୍ଧେୟ ! ମୋ ଲୀଳାର ଗୌରବକୁ ତୁମେ ଯେପରି ସ୍ତୁତି କଲ ଏବଂ ଯେପରି ନିଷ୍ଠାର ସହିତ ତପସ୍ୟା କଲ, ତାହା ତୁମ ପ୍ରତି ମୋ ଅନୁଗ୍ରହର ଫଳ ॥୩୮॥ ଲୋକସୃଷ୍ଟିପାଇଁ ତୁମରି ଇଚ୍ଛାରେ ମୁଁ ସନ୍ତୁଷ୍ଟ ହୋଇଛି । ତୁମର ମଙ୍ଗଳ ହେଉ ।

ମୁଁ ଗୁଣମୟ ହେଲେ ମଧ୍ୟ ନିର୍ଗୁଣ ବୋଲି ବର୍ଣ୍ଣନା କରି ତୁମେ ଯାହା ମୋର ସ୍ତୁତି କରିଛ, ତାହା ଯଥାର୍ଥ ॥୩୯॥ ଯେଉଁ ବ୍ୟକ୍ତି ଏହିପରି ସ୍ତୁତି କରି ମୋର ଭଜନ କରେ, ମୁଁ ତାହା ପ୍ରତି ପ୍ରସନ୍ନ ହୁଏ । କାରଣ ମୁଁ ସମସ୍ତ ମନୋବାଞ୍ଛା ପୂରଣ କରିବାପାଇଁ ସମର୍ଥ ॥୪୦॥ ତତ୍ତ୍ୱଜ୍ଞମାନଙ୍କର ମତ ହେଉଛି- କ୍ରିୟାକର୍ମ, ତପ, ଯଜ୍ଞ, ଦାନ, ଯୋଗ ଏବଂ ସମାଧି ଆଦି ସାଧନାଦ୍ୱାରା ମୋତେ ଆରାଧନା କରି ଲୋକେ ଯେଉଁ ପରମ କଲ୍ୟାଣ ଲାଭ କରନ୍ତି, ତାହା ମୋ ସନ୍ତୋଷର ଫଳ ॥୪୧॥ ବିଧାତା ! ମୁଁ ଆତ୍ମାମାନଙ୍କର ଆତ୍ମା । ପ୍ରିୟମାନଙ୍କର ପ୍ରିୟ । ମୋ ପାଇଁ ମଧ୍ୟ ଦେହ ଆଦି ବସ୍ତୁ ପ୍ରିୟ ହୋଇଥାଏ । ତେଣୁ ମୋତେ ହିଁ ପ୍ରେମ କରିବା ବାଞ୍ଛନୀୟ ॥୪୨॥ ବ୍ରହ୍ମା ! ସମସ୍ତ ବେଦର ତୁମେ ଆତ୍ମା ବା ଆଧାର ଏବଂ ମୁଁ ହେଉଛି ତୁମର ଆତ୍ମା । ମୋ ଭିତରେ ଯେଉଁ ସୃଷ୍ଟି ଶୋଇରହିଛି, ପୂର୍ବପରି ତାହା ତୁମେ ରଚନା କର ॥୪୩॥ ମୈତ୍ରେୟ କହିଲେ, ଏହିପରି ପୁରୁଷପ୍ରଧାନ ଭଗବାନ ଜଗତ୍‌ସ୍ରଷ୍ଟା ବ୍ରହ୍ମାଙ୍କୁ ସୃଷ୍ଟିରଚନାପାଇଁ ଉପଦେଶ ଦେଇ ନିଜର ପଦ୍ମନାଭ ରୂପରୁ ଅନ୍ତର୍ଦ୍ଧାନ ହୋଇଗଲେ ॥୪୪॥

## ଦଶମ ଅଧ୍ୟାୟ

# ସୃଷ୍ଟିର ବର୍ଣ୍ଣନା

ବିଦୁର କହିଲେ, ମହାଭାଗ ! ଲୋକମାନଙ୍କର ପିତାମହ ବ୍ରହ୍ମା, ଭଗବାନ ଅନ୍ତର୍ହିତ ହୋଇଯିବା ପରେ ନିଜ ଦେହରୁ ଓ ମନରୁ କେତେପ୍ରକାର ପ୍ରଜା ସୃଷ୍ଟିକଲେ ? ଆପଣ ମହାଜ୍ଞାନୀ । ବର୍ତ୍ତମାନ ଏବଂ ପୂର୍ବରୁ ଆପଣଙ୍କୁ ଯାହା ସବୁ ମୁଁ ପଚାରିଛି, ଆପଣ ତାହା ବୁଝାଇ କହନ୍ତୁ ଏବଂ ମୋର ସମସ୍ତ ସଂଶୟ ଦୂର କରନ୍ତୁ ॥୧-୨॥ ସୂତ କହିଲେ, ଶୌନକ, ଏହିପରି ବିଦୁରଙ୍କ ଅନୁରୋଧରେ ମୈତ୍ରେୟ ମୁନି ପ୍ରୀତ ହୋଇ ହୃଦୟସ୍ଥ ତାଙ୍କ ସମସ୍ତ ପ୍ରଶ୍ନର ଉତ୍ତର ଦେଲେ ॥୩॥ ମୈତ୍ରେୟ କହିଲେ, ଏହାପରେ ବ୍ରହ୍ମା, ଅଜନ୍ମା ଭଗବାନ୍ ତାଙ୍କୁ ଯେପରି କହିଥିଲେ, ସେହିପରି ନିଜର ଚିତ୍ତକୁ ଭଗବାନଙ୍କ ଠାରେ ଲଗାଇ ଶହେ ଦିବ୍ୟବର୍ଷ ପର୍ଯ୍ୟନ୍ତ ତପସ୍ୟା କଲେ ॥୪॥ ବ୍ରହ୍ମା ଦେଖିଲେ ଯେ ପ୍ରଳୟକାଳୀନ ବାୟୁପ୍ରବାହଦ୍ୱାରା ସେ ବସିଥିବା ପଦ୍ମପୁଷ୍ପ ଓ ସମଗ୍ର ଜଳରାଶି କମ୍ପିତ ହେଉଛି ॥୫॥ ସେତେବେଳେ କଠୋର ତପସ୍ୟାଦ୍ୱାରା ଏବଂ ନିଜ ହୃଦୟସ୍ଥିତ ଆତ୍ମଜ୍ଞାନଦ୍ୱାରା ତାଙ୍କ

ବିଜ୍ଞାନବଳ ବଢ଼ିଯାଇଥିଲା ଏବଂ ସେହି ବଳରେ ସେ ଜଳସହିତ ବାୟୁକୁ ପାନ କରିଦେଲେ ।।୬।। ବ୍ରହ୍ମା ଦେଖିଲେ, ସେ ଯେଉଁ ପଦ୍ମଫୁଲରେ ବସିଛନ୍ତି, ତାହା ସମସ୍ତ ଆକାଶକୁ ବ୍ୟାପି ଯାଇଛି । ଏହାରିଦ୍ୱାରା ସୃଷ୍ଟିକାର୍ଯ୍ୟରେ ନିଯୁକ୍ତ ବ୍ରହ୍ମା ସେହି ବିଶ୍ୱବ୍ୟାପୀ ପଦ୍ମକୋଷମଧ୍ୟରେ ପ୍ରବେଶ କଲେ ଏବଂ ତାକୁ ତିନୋଟି ବଡ଼ବଡ଼ ଭାଗ (ଭୂଃ, ଭୁବଃ, ସ୍ୱଃ)ରେ ବିଭକ୍ତ କଲେ ।।୭-୮।। ଏହାରି ତିନି ଭାଗରେ ଲୋକରଚନାର ରହସ୍ୟ ହେଉଛି, ଏଥିରେ ଜୀବମାନେ ନିଜ କାମ୍ୟ କର୍ମର ଫଳ ଭୋଗ କରନ୍ତି । ନିଷ୍କାମ ଧର୍ମର ଫଳ କେବଳ ବ୍ରହ୍ମଲୋକରେ ହିଁ ମିଳିଥାଏ ।।୯।।

ବିଦୁର କହିଲେ, ପ୍ରଭୁ ! ଅଦ୍ଭୁତକର୍ମା ଶ୍ରୀହରିଙ୍କର ରୂପ, ଯାହାକୁ ଆପଣ 'କାଳ' ନାମରେ ନାମିତ କରିଛନ୍ତି ତା'ର ଲକ୍ଷଣମାନ ବର୍ଣ୍ଣନା କରନ୍ତୁ ।।୧୦।। ମୈତ୍ରେୟ କହିଲେ, ଗୁଣମାନଙ୍କ ଦ୍ୱାରା କାଳ ରୂପାନ୍ତରିତ ହୁଏ, ତାହାର ନିଜର କୌଣସି ରୂପ ନାହିଁ, ତାହା ହେଉଛି ଅନାଦି ଏବଂ ଅନନ୍ତ । ବିଭିନ୍ନ ଲୀଳାରଚନା ପାଇଁ ଭଗବାନ ଏହି କାଳକୁ ଉପାଦାନ ରୂପେ ବ୍ୟବହାର କରନ୍ତି ।।୧୧।। ବିଷ୍ଣୁମାୟାଦ୍ୱାରା ଏ ବିଶ୍ୱର ସଂହାର ହେଲେ ତାହା ବ୍ରହ୍ମରୂପରେ ବା ଭଗବାନଙ୍କ ଠାରେ ଲୀନ ହୋଇ ରହିଥାଏ । ଅବ୍ୟକ୍ତମୂର୍ତ୍ତି ଭଗବାନ କାଳଦ୍ୱାରା ପୁଣି ଏହାକୁ ପୃଥକ୍ ଭାବରେ ସୃଷ୍ଟି କରନ୍ତି ।।୧୨।। ବର୍ତ୍ତମାନ ଯେପରି ଏହି ବିଶ୍ୱର ସୃଷ୍ଟି ହୋଇଛି, ସେହିପରି ଅତୀତରେ ହୋଇଥିଲା ଏବଂ ଭବିଷ୍ୟତରେ ହେବ । ସୃଷ୍ଟି ନଅ ପ୍ରକାରର । ପ୍ରାକୃତ ଓ ବୈକୃତ ଏବଂ ଏହି ଦୁହିଁଙ୍କର ଯୋଗରେ ଆହୁରି ଗୋଟିଏ ଦଶମ ସୃଷ୍ଟି ଅଛି । ଏହି ସୃଷ୍ଟି କାଳ, ଦ୍ରବ୍ୟ ଏବଂ ଗୁଣ ଦ୍ୱାରା ତିନି ପ୍ରକାର ହୁଏ । ପ୍ରଥମ ହେଉଛି ମହତ୍ତତ୍ତ୍ୱର ସୃଷ୍ଟି; ଯାହାକି ଈଶ୍ୱରଙ୍କ ପ୍ରେରଣାରେ ସତ୍ତ୍ୱାଦିଗୁଣମାନଙ୍କର ବୈଷମ୍ୟଯୋଗୁଁ ହୋଇଥାଏ । ଦ୍ୱିତୀୟର ନାମ ଅହଙ୍କାର; ସେଥିରୁ ଦ୍ରବ୍ୟ, ଜ୍ଞାନ, କ୍ରିୟା (ପଞ୍ଚଭୂତ, ଜ୍ଞାନେନ୍ଦ୍ରିୟ ଓ କର୍ମେନ୍ଦ୍ରିୟ)ର ଉତ୍ପତ୍ତି ହୋଇଥାଏ । ତୃତୀୟ ସୃଷ୍ଟି ହେଉଛି ଭୂତବର୍ଗ, ଯେଉଁଥିରେ ପଞ୍ଚମହାଭୂତମାନଙ୍କୁ ଉତ୍ପନ୍ନ କରିବା ପାଇଁ ସୂକ୍ଷ୍ମଶକ୍ତିଯୁକ୍ତ ତନ୍ମାତ୍ରମାନ ରହିଥାନ୍ତି । ଚତୁର୍ଥ ହେଉଛି ଜ୍ଞାନ ଓ କ୍ରିୟାତ୍ମକ ଇନ୍ଦ୍ରିୟମାନଙ୍କର ସୃଷ୍ଟି । ପଞ୍ଚମ ହେଉଛି ସାତ୍ତ୍ୱିକ ଗୁଣର ବିକାରରୁ ମନର ସୃଷ୍ଟି ଓ ଦେବତାମାନଙ୍କର ସୃଷ୍ଟି । ଷଷ୍ଠ ତମୋଗୁଣ ଯୋଗରେ ଅବିଦ୍ୟା ବା ଅଜ୍ଞାନର ସୃଷ୍ଟି ଯାହାକି, ଜୀବର ବୁଦ୍ଧିକୁ ଘୋଡ଼ାଇରଖେ । ଏହିପରି ଛ ପ୍ରକାର ପ୍ରାକୃତ ସୃଷ୍ଟି ।

ବର୍ତ୍ତମାନ ବୈକୃତ ସୃଷ୍ଟି ବିଷୟରେ କହୁଛି ଶୁଣ ।।୧୩-୧୭।। ଏହା ହେଉଛି ସଂସାରର ଦୁଃଖ ହରଣକାରୀ ଭଗବାନଙ୍କର ରଜୋଗୁଣଯୁକ୍ତ ଲୀଳା । ସପ୍ତମ ସୃଷ୍ଟି ହେଉଛି ଛ' ପ୍ରକାର ସ୍ଥାବର--ଯଥା, ବନସ୍ପତି, ଓଷଧି, ଲତା, ତ୍ୱକ୍‌ସାର (ବାଉଁଶଗଛ ଆଦି), ବିରୁଧ (ଯାହା ଲତାପରି ଆଶ୍ରୟ ଦରକାର କରେ ନାହିଁ) ଏବଂ ଦ୍ରୁମ (ଫୁଲଫଳ ଦେଉଥିବା ଗଛ) । ଏମାନଙ୍କର ବିଶେଷତ୍ୱ ହେଉଛି ତଳୁ ଉପରଯାଏ ଆହାର ସଞ୍ଚୟ କରବା । ଏମାନଙ୍କର ବୋଧଶକ୍ତି ପ୍ରକାଶ ପାଏ ନାହିଁ, କିନ୍ତୁ ଏମାନେ ନିଜ ମଧ୍ୟରେ ସ୍ପର୍ଶ ଅନୁଭବ କରନ୍ତି ।।୧୮-୧୯।। ଅଷ୍ଟମ ହେଉଛି ତିର୍ଯ୍ୟକ୍ ଯୋନି -- ପଶୁପକ୍ଷୀମାନଙ୍କର ସୃଷ୍ଟି । ଏମାନେ ଅଠାଇଶ ପ୍ରକାରର । ତମୋଗୁଣ ଅଧିକ ଥିବାହେତୁ ଏମାନେ ଅଜ୍ଞାନ । ଏମାନେ ଖାଇବା, ପିଇବା, ମୈଥୁନ କରିବା, ଶୋଇବା ଆଦି ଜାଣନ୍ତି । ଘ୍ରାଣଦ୍ୱାରା ହିଁ ଏମାନେ ବିଭିନ୍ନ ବସ୍ତୁକୁ ଜାଣିପାରନ୍ତି । ଏମାନଙ୍କର ହୃଦୟରେ ବିଚାରଶକ୍ତି କମ୍ ଥାଏ ।।୨୦।। ହେ ସାଧୁ ବିଦୁର ! ଏହି ତିର୍ଯ୍ୟକ୍ ଯୋନିରେ ହେଲେ ଗୋରୁ, ଛେଳି, ମଇଁଷି, କୃଷ୍ଣମୃଗ, ଘୁଷୁରି, ନୀଳଗାଇ, ରୁରୁ ନାମକ ମୃଗ, ମେଣ୍ଢା ଏବଂ ଓଟ -- ଏମାନଙ୍କର ଖୁରା ଦୁଇଭାଗରେ ବିଭକ୍ତ ହୋଇଥାଏ । ଗଧ, ଘୋଡ଼ା, ଖଚର, ଗୟଳ ଓ ଚମରୀ -- ଏମାନଙ୍କର ଖୁରା ମୋଟା ଥାଏ । ଏବେ ପାଞ୍ଚ ନଖ ଥିବା ପଶୁପକ୍ଷୀମାନଙ୍କର ନାମ ଶୁଣ । କୁକୁର, ବିଲୁଆ, ହେଟା, ବାଘ, ବିଲେଇ, ଠେକୁଆ, ଶଲ୍ଲକ, ସିଂହ, ମାଙ୍କଡ଼, ହାତୀ, କଇଁଛ, ଗୋଧି ଓ କୁମ୍ଭୀର ଆଦି ପଶୁ । ବଗ, ଶାଗୁଣା, ଛଞ୍ଚାଣ, ବାଜ, ଭାସ, ଭଲ୍ଲୁକ, ମୟୂର, ହଂସ, ସାରସ, ଚକୁଆ, କୁଆ ଓ ପେଚା ଆଦି ଉଡୁଥିବା ଜୀବମାନଙ୍କୁ ପକ୍ଷୀ କୁହାଯାଏ ।।୨୧-୨୪।।

ବିଦୁର ! ନବମ ହେଉଛି ମନୁଷ୍ୟର ସୃଷ୍ଟି । ଏହା ହେଉଛି ଏକ ପ୍ରକାରର । ଏହା ଉପରୁ ତଳକୁ ଖାଦ୍ୟ ଗ୍ରହଣ କରେ । ରଜୋଗୁଣପ୍ରଧାନ, କର୍ମପରାୟଣ ଓ ଦୁଃଖକୁ ସୁଖ ବୋଲି ମନେ କରେ ॥୨୫॥ ବିଦୁର ! ସ୍ଥାବର, ପଶୁପକ୍ଷୀ ଓ ମନୁଷ୍ୟ - ଏହିପରି ତିନି ପ୍ରକାରର ବୈକୃତ ସୃଷ୍ଟି । ମହତ୍ତତ୍ତ୍ୱାଦି ବିକାରରେ ଦେବତାମାନଙ୍କର ସୃଷ୍ଟିକୁ ପ୍ରାକୃତ ସୃଷ୍ଟିରେ ଗଣନା କରଯାଇଛି । ଏହାଛଡ଼ା ପ୍ରାକୃତ ଏବଂ ବୈକୃତ ଏହି ଉଭୟଙ୍କୁ ନେଇ ସନତ୍‌କୁମାର ଆଦିଙ୍କର ସୃଷ୍ଟି, ଯାହାର ନାମ ହେଉଛି କୌମାର ସର୍ଗ ॥୨୬॥ ଦେବସର୍ଗ ହେଉଛି ଆଠ ପ୍ରକାର । ଯଥା - ଦେବତା, ପିତୃ, ଅସୁର, ଗନ୍ଧର୍ବ-ଅପ୍‌ସରା, ଯକ୍ଷ-ରାକ୍ଷସ, ସିଦ୍ଧ-ଚାରଣ-ବିଦ୍ୟାଧର, ଭୂତ-ପ୍ରେତ-ପିଶାଚ ଏବଂ କିନ୍ନର ଆଦି । ବିଦୁର, ଏହିପରି ବ୍ରହ୍ମାଙ୍କ ରଚିତ ଦଶ ପ୍ରକାର ସୃଷ୍ଟିର କଥା ମୁଁ ତୁମକୁ କହିଲି ॥୨୭-୨୮॥ ଏହାପରେ ମୁଁ ବଂଶ ଓ ମନ୍ୱନ୍ତର ଆଦିର ବର୍ଣ୍ଣନା କରିବି । ସୃଷ୍ଟିରଚନା କରିବାପାଇଁ ଅଟଳସଂକଳ୍ପ ଭଗବାନ ଶ୍ରୀହରି ବ୍ରହ୍ମାଙ୍କ ରୂପରେ ରଜୋଗୁଣକୁ ଆଶ୍ରୟ କରି ନିଜକୁ ହିଁ ଜଗତ ରୂପରେ ସୃଷ୍ଟି କରିଥାନ୍ତି ॥୨୯॥

## ଏକାଦଶ ଅଧ୍ୟାୟ

# ମନ୍ୱନ୍ତର ଆଦି କାଳର ବିଭାଗ

ମୈତ୍ରେୟ କହିଲେ; ସୃଷ୍ଟ ବସ୍ତୁର ସୂକ୍ଷ୍ମତମ ଅଂଶର ନାମ ହେଉଛି ପରମାଣୁ, ଯାହାର ଆଉ ବିଭାଗ କରାଯାଇପାରିବ ନାହିଁ ଏବଂ ଯାହା କାର୍ଯ୍ୟକାରୀ ଅବସ୍ଥାକୁ ଆସେ ନାହିଁ । ବହୁ ପରମାଣୁ ଏକାଠି ହେଲେ ମଧ୍ୟ ତାହା ପୃଥକ୍ ପୃଥକ୍ ରହେ, କିନ୍ତୁ ମନୁଷ୍ୟ ତାକୁ ଏକ ବୋଲି ମନେକରେ ॥୧॥ ଏହି ପରମାଣୁ ଅନ୍ୟ ପରମାଣୁ ସହିତ ନ ମିଶି ସ୍ୱରୂପରେ ରହିଲେ ତାହାକୁ ପରମ ମହାନ୍ ବୋଲି କୁହାଯାଏ । ତାହା ସମ୍ପୂର୍ଣ୍ଣ ବିଭାଜନରହିତ ଓ ଭେଦରହିତ ହୋଇଥାଏ ॥୨॥ ସାଧୁ ବିଦୁର ! ଏହିପରି ଏହି ବସ୍ତୁର ସୂକ୍ଷ୍ମ ଓ ସ୍ଥୂଳ ରୂପର ବିଚାର କରାଯାଇଛି । ସେହିପରି କାଳର ମଧ୍ୟ ବିଚାର କରାଯାଇପାରେ । ଯେପରି ଅଦୃଶ୍ୟ ପରମାଣୁ ପଦାର୍ଥ ରୂପରେ ଦୃଶ୍ୟ ଅବସ୍ଥାକୁ ପ୍ରାପ୍ତ ହୁଏ, ସେହିପରି କାଳରୂପୀ ଅବ୍ୟକ୍ତ ଭଗବାନ୍ ଶ୍ରୀହରି ଦୃଶ୍ୟ ରୂପରେ ଏହି ଜଗତକୁ ସୃଷ୍ଟି କରି ଉପଭୋଗ କରନ୍ତି । ସୃଷ୍ଟିରୁ ଆରମ୍ଭ କରି ପ୍ରଳୟପର୍ଯ୍ୟନ୍ତ ଯେଉଁ କାଳ ସବୁ ଅବସ୍ଥାକୁ ଭୋଗ କରେ, ସେ ହେଉଚି ପରମ ମହାନ୍ ॥୩-୪॥ ଦୁଇଟି ପରମାଣୁ ମିଶିଲେ ଗୋଟିଏ ଅଣୁ ହୁଏ । ତିନୋଟି ଅଣୁ ମିଶିଲେ ଗୋଟିଏ ତ୍ରସରେଣୁ ହୁଏ, ଯାହାକି ଝରକାରେ ସୂର୍ଯ୍ୟକିରଣ ପଶିଲେ ଆକାଶକୁ ଉଡୁଥିବାର ଦେଖାଯାଏ ॥୫॥ ତିନୋଟି ତ୍ରସରେଣୁ ମିଳିତ ହେବାପାଇଁ ଯେଉଁ ସମୟ ଲାଗେ, ତାହାକୁ ତ୍ରୁଟି ବୋଲି କୁହାଯାଏ, ଏହାର ଶହେଗୁଣ କାଳକୁ ବେଧ କୁହାଯାଏ ଏବଂ ତିନୋଟି ବେଧରେ ଗୋଟିଏ ଲବ ହୁଏ ॥୬॥ ତିନୋଟି ଲବରେ ଗୋଟିଏ ନିମେଷ, ତିନି ନିମେଷରେ ଏକ କ୍ଷଣ, ପାଞ୍ଚ କ୍ଷଣରେ ଏକ କାଷ୍ଠା ଏବଂ ପନ୍ଦର କାଷ୍ଠାରେ ଗୋଟିଏ ଲଘୁ ହୁଏ ॥୭॥ ପନ୍ଦର ଲଘୁରେ ଏକ ନାଡ଼ିକା (ଦଣ୍ଡ), ଦୁଇ ନାଡ଼ିକାରେ ଗୋଟିଏ ମୁହୂର୍ତ୍ତ ଏବଂ ଦିନ ବଡ଼ ବା ଛୋଟ ଅନୁଯାୟୀ ଛ ବା ସାତ ଦଣ୍ଡରେ ଗୋଟିଏ ପ୍ରହର ହୁଏ । ଏହାକୁ ଦିନ ବା ରାତିର ଏକ ଚତୁର୍ଥାଂଶ ବା ଯାମ ବୋଲି କୁହାଯାଏ ॥୮॥

ଏହି ନାଡ଼ିକା ବା ଦଣ୍ଡକୁ ଜାଣିବାକୁ ହେଲେ ଛ ପଳ ଓଜନର (୧୪ ଆଉନ୍ସ) ଏକ ତାମ୍ରପାତ୍ର ନିର୍ମାଣ କରିବାକୁ ହେବ ଏବଂ ଚାରି ଆଙ୍ଗୁଳ ଲମ୍ବା ଓ ଚାରି ମଷା ଓଜନର ଏକ ସୁନାର କାଠିଦ୍ୱାରା ସେଥିରେ ଏକ ଛିଦ୍ର କରିବାକୁ ହେବ । ସେହି ପାତ୍ରକୁ ପାଣିରେ ରଖିଲେ ତାହା ପୂର୍ଣ୍ଣ ହେବା ପାଇଁ ଯେତିକି ସମୟ ଲାଗିବ, ତାହା ହେଉଛି ଏକ ଦଣ୍ଡ ॥୯॥ ରାତି ଏବଂ ଦିନ ଉଭୟକୁ ଚାରି ଚାରି ଯାମରେ ବିଭକ୍ତ କରାଯାଏ । ପନ୍ଦର ଦିନରେ ଗୋଟିଏ ପକ୍ଷ ହୁଏ, ଶୁକ୍ଳ ପକ୍ଷ ଓ କୃଷ୍ଣ ପକ୍ଷ ॥୧୦॥ ଦୁଇଟି

ପକ୍ଷରେ ଗୋଟିଏ ମାସ । ତାହା ପିତୃମାନଙ୍କର ଗୋଟିଏ ଦିନ ଓ ଗୋଟିଏ ରାତି ସହିତ ସମାନ । ଏହିପରି ଦୁଇ ମାସରେ ଗୋଟିଏ ଋତୁ ଏବଂ ଛ ମାସରେ ଗୋଟିଏ ଅୟନ । ସୂର୍ଯ୍ୟଙ୍କର ଗତି ଅନୁଯାୟୀ ଏହା ଦକ୍ଷିଣାୟନ ଓ ଉତ୍ତରାୟଣ ରୂପେ କଥିତ ହୁଏ ॥୧୧॥ ଏହିପରି ଦୁଇଟି ଅୟନ ମିଶି ଦେବତାଙ୍କର ଗୋଟିଏ ଅହୋରାତ୍ର ଏବଂ ମନୁଷ୍ୟମାନଙ୍କର ଗୋଟିଏ ବର୍ଷ ହୁଏ । ଏହି ବର୍ଷକ ହେଉଛି ବାର ମାସ । ମନୁଷ୍ୟମାନଙ୍କର ପରମାୟୁ ଶହେବର୍ଷ ବୋଲି ନିରୂପଣ କରାଯାଇଛି ॥୧୨॥ ଗ୍ରହ, ଉପଗ୍ରହ ଓ ଜ୍ୟୋତିଷମାନଙ୍କୁ ନେଇ ଯେଉଁ ଗ୍ରହଚକ୍ର ହୋଇଛି ସେହି ଚକ୍ରର ଅଧୀଶ୍ୱର ହେଉଛନ୍ତି କାଳର ଆତ୍ମାସ୍ୱରୂପ ସୂର୍ଯ୍ୟ । ସେ ପରମାଣୁରୁ ଆରମ୍ଭ କରି ସମ୍ବତ୍ସର ପର୍ଯ୍ୟନ୍ତ ସବୁବେଳେ ଏହି ଜଗତକୁ ପରିକ୍ରମା କରୁଥା'ନ୍ତି ॥୧୩॥ ସୌରମାଣ ଓ ଚାନ୍ଦ୍ରମାଣ ବର୍ଷଭେଦରେ ବା ରାଶି, ନକ୍ଷତ୍ର ଯୋଗରେ ବର୍ଷକୁ ସମ୍ବତ୍ସର, ପରିବତ୍ସର, ଇଡ଼ାବତ୍ସର, ଅନୁବତ୍ସର ଏବଂ ବତ୍ସର କୁହାଯାଏ ॥୧୪॥ ବିଦୁର ! ଏହି ପାଞ୍ଚ ପ୍ରକାର ବର୍ଷକୁ ଯେ ପ୍ରବର୍ତ୍ତନ କରନ୍ତି, ସେହି ସୂର୍ଯ୍ୟଙ୍କୁ ତୁମେ ଉପହାର ଆଦି ଦେଇ ପୂଜା କର । ସେ ନିଜର ଶକ୍ତିଦ୍ୱାରା ଅଙ୍କୁରୋଦ୍ଗମ ଆଦି ସୃଷ୍ଟିଶକ୍ତିକୁ ପ୍ରେରଣା ଦିଅନ୍ତି; ସେ ପଞ୍ଚଭୂତର ସ୍ୱରୂପ; ସେ ଲୋକମାନଙ୍କର ମୋହ ନାଶ କରିବାପାଇଁ ଆକାଶରେ ବିଚରଣ କରନ୍ତି ଏବଂ କାଳ ନାମରେ ଖ୍ୟାତ । ସେହି ଗୁଣମୟ ସୂର୍ଯ୍ୟ ସକାମ ଯଜ୍ଞର ଫଳମାନ ବିସ୍ତାର କରନ୍ତି ॥୧୫॥

ବିଦୁର କହିଲେ, ମୈତ୍ରେୟ ! ଆପଣ ପିତୃ ଦେବତା ଓ ମନୁଷ୍ୟମାନଙ୍କର ପରମାୟୁର ବର୍ଣ୍ଣନା କଲେ । କଳ୍ପପରେ ମଧ୍ୟ ଯେଉଁ ଜ୍ଞାନୀମାନେ ରହିଥାନ୍ତି, ସେମାନଙ୍କର ପରମାୟୁ ବର୍ଣ୍ଣନା କରନ୍ତୁ ॥୧୬॥ ଆପଣ ଭଗବତ୍‌ସ୍ୱରୂପ । କାଳର ଗତି ଭଲ ଭାବରେ ଜାଣନ୍ତି, କାରଣ ଜ୍ଞାନୀ ଲୋକମାନେ ନିଜର ଯୋଗସିଦ୍ଧ ଚକ୍ଷୁଦ୍ୱାରା ସମସ୍ତ ବିଶ୍ୱକୁ ଦେଖିପାରନ୍ତି ॥୧୭॥ ମୈତ୍ରେୟ କହିଲେ, ବିଦୁର ! ସତ୍ୟ, ତ୍ରେତା, ଦ୍ୱାପର ଓ କଳି-ଏହି ଚାରି ଯୁଗକୁ ଦେବତାମାନଙ୍କର ବାର ହଜାର ବର୍ଷ ସହିତ ସମାନ ବୋଲି ଧରାଯାଇଛି ॥୧୮॥ ଯୁଗକ୍ରମରେ ସତ୍ୟ ଯୁଗ ହେଉଛି ଦେବତାମାନଙ୍କର ଚାରି ହଜାର ଆଠଶହ ବର୍ଷ ସହିତ ସମାନ । ତ୍ରେତା ତିନିହଜାର ଛ'ଶହ ବର୍ଷ, ଦ୍ୱାପର ଦୁଇହଜାର ଚାରିଶହ ବର୍ଷ ଓ କଳି ଏକହଜାର ଦୁଇଶହ ବର୍ଷ ॥୧୯॥ ଯୁଗ ଆରମ୍ଭ ହେବା ପୂର୍ବରୁ ଏବଂ ଯୁଗ ଶେଷ ହେବା ପରେ ଯେଉଁ ସମୟ ତାହାକୁ ଯଥାକ୍ରମେ ଯୁଗସନ୍ଧି ଓ ଯୁଗସନ୍ଧିର ଅଂଶ ବୋଲି କୁହାଯାଏ । ହଜାର ବର୍ଷ ସଂଖ୍ୟାରେ ଯୁଗର ସମୟକୁ ଗଣାଯାଏ, କିନ୍ତୁ ଏହି ଯୁଗସନ୍ଧିକୁ ଶହେବର୍ଷ ସଂଖ୍ୟାରେ ଗଣାଯାଏ । ପ୍ରତ୍ୟେକ ଯୁଗରେ ଗୋଟିଏ ଗୋଟିଏ ଧର୍ମର ବିଧାନ ଅଛି, ଯାହାକୁ ଯୁଗଧର୍ମ କୁହାଯାଏ ॥୨୦॥

ସତ୍ୟଯୁଗରେ ମନୁଷ୍ୟମାନଙ୍କର ଧର୍ମ ଚାରିପାଦ, ତା'ପରେ ପ୍ରତ୍ୟେକ ଯୁଗରେ ଅଧର୍ମର ବୃଦ୍ଧିଯୋଗୁଁ ଗୋଟିଏ ଗୋଟିଏ ପାଦ ହ୍ରାସ ପାଇଯାଏ ॥୨୧॥ ବତ୍ସ ବିଦୁର ! ଏହିପରି ଏକହଜାର ଚତୁର୍ଯୁଗ ହେଲେ ତ୍ରିଲୋକର ବାହାରେ ମହର୍ଲୋକରୁ ବ୍ରହ୍ମଲୋକ ପର୍ଯ୍ୟନ୍ତ ତାହାକୁ ଗୋଟିଏ ଦିନ ବୋଲି ଗଣାଯାଏ । ସେହିପରି ମଧ୍ୟ ଗୋଟିଏ ରାତି, ଯେତେବେଳେ କି ବିଶ୍ୱସ୍ରଷ୍ଟା ବ୍ରହ୍ମା ଶୟନ କରନ୍ତି ॥୨୨॥ ବ୍ରହ୍ମାଙ୍କର ରାତି ଶେଷ ହେଲେ ପୁଣି ସଂସାରର କଳ୍ପ ଆରମ୍ଭ ହୁଏ । ବ୍ରହ୍ମାଙ୍କର ଗୋଟିଏ ଦିନ ହେଉଛି ଗୋଟିଏ କଳ୍ପ ଏବଂ ଗୋଟିଏ କଳ୍ପକୁ ଚତୁର୍ଦ୍ଦଶ ମନୁ ଭୋଗ କରନ୍ତି ॥୨୩॥ ପ୍ରତ୍ୟେକ ମନୁ ଏକସ୍ତରିସଂଖ୍ୟକ ଚତୁର୍ଯୁଗରୁ କିଛି ଅଧିକ କାଳ ଭୋଗ କରନ୍ତି । ପ୍ରତି ମନ୍ୱନ୍ତରରେ ମନୁଙ୍କର ବଂଶୀୟ ରାଜାମାନେ, ଋଷିମାନେ, ଦେବତାମାନେ, ଇନ୍ଦ୍ର ଏବଂ ତାଙ୍କର ଅନୁଗତମାନେ ନିଜ ନିଜର ଅଧିକାର ଭୋଗ କରନ୍ତି ॥୨୪॥ ଏହିପରି ବ୍ରହ୍ମାଙ୍କର ଦୈନନ୍ଦିନ କର୍ମ ହୁଏ ତ୍ରିଲୋକର ସୃଷ୍ଟି, ଯେଉଁ କର୍ମଫଳରେ ପଶୁ, ପକ୍ଷୀ, ମନୁଷ୍ୟ, ପିତୃ ଓ ଦେବତାମାନେ ଉତ୍ପନ୍ନ ହୁଅନ୍ତି ॥୨୫॥ ମନ୍ୱନ୍ତରରେ ଭଗବାନ୍ ସତ୍ତ୍ୱଗୁଣର ଆଶ୍ରୟରେ ମନୁ ଆଦିଙ୍କର ରୂପ ଗ୍ରହଣ କରି ପୁରୁଷକାର ଦ୍ୱାରା ଏହି ବିଶ୍ୱକୁ ପାଳନ କରନ୍ତି ॥୨୬॥ କାଳକ୍ରମେ ବ୍ରହ୍ମାଙ୍କର ଦିନ ଶେଷ ହୋଇଗଲେ, ଭଗବାନ ତମୋଗୁଣକୁ ଆଶ୍ରୟ କରି ଆଉ ନିଜର ପୌରୁଷକୁ ପ୍ରକଟ କରନ୍ତି ନାହିଁ ଏବଂ ତୁନି ହୋଇ ରହନ୍ତି ॥୨୭॥ ରାତି ଆସିଗଲେ ସୂର୍ଯ୍ୟ ଓ ଚନ୍ଦ୍ର ନ ଥାନ୍ତି, ସେତେବେଳେ ପୃଥିବୀ ଆଦି ତିନିଲୋକ ତାଙ୍କ ଶରୀରରେ ଲୀନ ହୋଇଯାଆନ୍ତି ॥୨୮॥

ଭଗବାନଙ୍କର ଶକ୍ତିରୂପେ ସଙ୍କର୍ଷଣଙ୍କ ମୁଖରୁ ଯେଉଁ ଅଗ୍ନି ଜାତ ହୁଏ, ତଦ୍ଦ୍ୱାରା ତିନିଲୋକ ଦଗ୍ଧ ହେବାକୁ ଲାଗେ ଏବଂ ତାହାର ଜ୍ୱାଳାରେ ବ୍ୟାକୁଳ ହୋଇ ଭୃଗୁ ଆଦି ଋଷିମାନେ ମହର୍ଲୋକରୁ ଜନଲୋକକୁ ଚାଲିଆସନ୍ତି ।।୨୯।। ଏହି ସମୟରେ ସମୁଦ୍ର ଗର୍ଜନ କରି ମାଡ଼ିଆସେ ଏବଂ ପ୍ରଳୟକାଳୀନ ପ୍ରଚଣ୍ଡ ପବନରେ ଏହାର ଉତ୍ତାଳ ତରଙ୍ଗମାଳା ତ୍ରିଭୁବନକୁ ମଗ୍ନ କରିଦିଏ ।।୩୦।। ସେହି ପ୍ରଳୟଜଳରେ ଶେଷଶଯ୍ୟାରେ ଭଗବାନ ଶ୍ରୀହରି ଆଖି ବୁଜି ଯୋଗନିଦ୍ରାରେ ଶୋଇ ଯାଆନ୍ତି ଏବଂ ଜନଲୋକରେ ଥିବା ମୁନିମାନେ ତାଙ୍କୁ ସ୍ତବ କରିବାକୁ ଲାଗନ୍ତି ।।୩୧।। ଏକହଜାର ଚତୁର୍ଯୁଗରେ ବ୍ରହ୍ମାଙ୍କର ଗୋଟିଏ ଦିନ । ପୁଣି ସେହି ପରିମାଣରେ ବ୍ରହ୍ମାଙ୍କର ଗୋଟିଏ ରାତି । ଏହିପରି ଦିନରାତି ମିଶି ବ୍ରହ୍ମାଙ୍କର ଶହେବର୍ଷ ହୋଇଗଲେ ତାଙ୍କ ପରମାୟୁ ଶେଷ ହୋଇଯାଏ ।।୩୨।। ବ୍ରହ୍ମାଙ୍କ ଆୟୁଷର ଅର୍ଦ୍ଧେକ ଭାଗର ନାମ ହେଉଛି ପରାର୍ଦ୍ଧ । ବର୍ତ୍ତମାନ ପ୍ରଥମ ପରାର୍ଦ୍ଧ ଶେଷ ହୋଇ ଦ୍ୱିତୀୟ ପରାର୍ଦ୍ଧ ଚାଲୁଛି ।।୩୩।। ପୂର୍ବପରାର୍ଦ୍ଧର ଆରମ୍ଭରେ ଏକ ମହାନ୍ କଳ୍ପ ଭୋଗ ହୁଏ । ତାହା ବ୍ରାହ୍ମକଳ୍ପ । ଏହି କଳ୍ପରେ ବ୍ରହ୍ମାଙ୍କର ଜନ୍ମ । ବ୍ରହ୍ମାଙ୍କୁ ମଧ୍ୟ ଶବ୍ଦବ୍ରହ୍ମ ବୋଲି କୁହାଯାଏ ।।୩୪।। ଏହାପରେ ଯେଉଁ କଳ୍ପ ଭୋଗ ହୁଏ, ତାର ନାମ ପଦ୍ମକଳ୍ପ । କାରଣ ଏହି କଳ୍ପରେ ଭଗବାନଙ୍କ ନାଭିସରୋବରରୁ ଲୋକସୃଷ୍ଟିକାରୀ ପଦ୍ମପୁଷ୍ପ ପ୍ରକଟିତ ହୋଇଥିଲା ।।୩୫।। ବର୍ତ୍ତମାନ ଦ୍ୱିତୀୟ ପରାର୍ଦ୍ଧ ଆରମ୍ଭରେ ଯେଉଁ କଳ୍ପ ଚାଲିଚି, ତାର ନାମ ବାରାହ କଳ୍ପ । କାରଣ ଏହି କଳ୍ପରେ ଭଗବାନ ଶ୍ରୀହରି ଶୂକର ରୂପ ଧାରଣ କରିଥିଲେ ।।୩୬।।

ଏହି ଦୁଇପରାର୍ଦ୍ଧ କାଳ ଅବ୍ୟକ୍ତ, ଅନାଦି, ଅନନ୍ତ ସେହି ବିଶ୍ୱାତ୍ମା ଭଗବାନଙ୍କର ଏକ ନିମେଷ (ଏକ ସେକେଣ୍ଡରୁ କମ୍) ସହିତ ମଧ୍ୟ ସମାନ ନୁହେଁ ।।୩୭।। ପରମାଣୁରୁ ଆରମ୍ଭ କରି ଦୁଇପରାର୍ଦ୍ଧ ପର୍ଯ୍ୟନ୍ତ କାଳ ସର୍ବନିୟନ୍ତା ହେଲେ ମଧ୍ୟ ସର୍ବଶକ୍ତିମାନ୍ ଭଗବାନଙ୍କୁ ଏହା ନିୟନ୍ତ୍ରିତ କରିପାରେ ନାହିଁ । ଏହା କେବଳ ଦେହାଭିମାନୀ ଜୀବମାନଙ୍କ ଉପରେ ପ୍ରଭୁତ୍ୱ ବିସ୍ତାର କରେ ।।୩୮।। ଆଠ ପ୍ରକୃତି ଏବଂ ଷୋଳ ବିକାର । ଏମାନଙ୍କର ମିଳନରେ ଯେଉଁ ବ୍ରହ୍ମାଣ୍ଡର ସୃଷ୍ଟି, ତାହା ଭିତରର ବିସ୍ତୃତି ହେଉଚି, ପଚାଶ କୋଟି ଯୋଜନ । ପୁଣି ତା'ର ବାହାରେ ଯେଉଁ ଆବରଣ ରହିଚି, ତାହା ପୁଣି ଏହାର ଦଶ ଦଶ ଗୁଣ । କିନ୍ତୁ ଶ୍ରୀ ଭଗବାନଙ୍କର ବିରାଟ କାୟା ମଧ୍ୟରେ ଏହି ଆବରଣଯୁକ୍ତ ବ୍ରହ୍ମାଣ୍ଡ ଏକ ପରମାଣୁ ପରି ରହିଥାଏ । ଏହିପରି କୋଟି କୋଟି ବ୍ରହ୍ମାଣ୍ଡ ତାଙ୍କଠାରେ ଆଶ୍ରୟ ନେଇଥା'ନ୍ତି, ଯେଣୁ ସେ ହେଉଛନ୍ତି ଅକ୍ଷରବ୍ରହ୍ମ, ସମସ୍ତ କାରଣର କାରଣ ଏବଂ ଏହା ହିଁ ସେହି ପରମପୁରୁଷ ପରମାତ୍ମା ବିଷ୍ଣୁଙ୍କର ଶ୍ରେଷ୍ଠ ଧାମ ବା ସ୍ୱରୂପ ।।୩୯-୪୧।।

## ଦ୍ୱାଦଶ ଅଧ୍ୟାୟ

# ସୃଷ୍ଟିର ବିସ୍ତାର

ମୈତ୍ରେୟ କହିଲେ, ବିଦୁର, ଏ ପର୍ଯ୍ୟନ୍ତ ମୁଁ ତୁମକୁ ପରମାତ୍ମାଙ୍କର କାଳସ୍ୱରୂପ ମହିମା ବର୍ଣ୍ଣନା କଲି । ଏବେ କିପରି ବ୍ରହ୍ମା ସୃଷ୍ଟି ରଚନା କଲେ ତାହା ଶୁଣ ।।୧।। ପ୍ରଥମେ ସେ ପାଞ୍ଚ ପ୍ରକାର ଅଜ୍ଞାନକୁ ସୃଷ୍ଟିକଲେ -- ତମ, (ଅବିଦ୍ୟା), ମୋହ (ଅସ୍ମିତା), ମହାମୋହ (ରାଗ), ତାମିସ୍ର (ଦ୍ୱେଷ) ଏବଂ ଅନ୍ଧତାମିସ୍ର (ଅଭିନିବେଶ) ।।୨।। କିନ୍ତୁ ଏହି ପାପପୂର୍ଣ୍ଣ ସୃଷ୍ଟିକୁ ଦେଖି ତାଙ୍କର ସନ୍ତୋଷ ହେଲା ନାହିଁ । ଭଗବାନଙ୍କୁ ଧ୍ୟାନ କରି ପବିତ୍ରମନରେ ସେ ଅନ୍ୟ ସୃଷ୍ଟି ରଚନା କଲେ ।।୩।। ସନକ, ସନନ୍ଦ, ସନାତନ ଓ ସନତ୍‌କୁମାର - ଏହି ଚାରି ଜଣ ନିଷ୍କ୍ରିୟ ଊର୍ଦ୍ଧ୍ୱରେତା କୁମାରଙ୍କୁ ସେ ସୃଷ୍ଟିକଲେ ।।୪।। ନିଜଠାରୁ ଜାତ ସେହି ପୁତ୍ରମାନଙ୍କୁ ସେ କହିଲେ, ହେ ମୋର ପ୍ରିୟ ପୁତ୍ରଗଣ, ତୁମେ ଏବେ ପ୍ରଜା ସୃଷ୍ଟିକର । କିନ୍ତୁ ସେମାନେ ଜନ୍ମରୁ ଭଗବାନ

ବାସୁଦେବଙ୍କଠାରେ ଅନୁରକ୍ତ ଥାଇ ମୋକ୍ଷମାର୍ଗକୁ ଅନୁସରଣ କରୁଥିଲେ । (ସେମାନେ ବ୍ରହ୍ମାଙ୍କର ଉପଦେଶ ଗ୍ରହଣ କଲେ ନାହିଁ) ॥୫॥ ବ୍ରହ୍ମା ଦେଖିଲେ, ତାଙ୍କ ପୁତ୍ରମାନେ ତାଙ୍କ ଆଦେଶକୁ ପ୍ରତ୍ୟାଖ୍ୟାନ କରି ତାଙ୍କୁ ଅବଜ୍ଞା କରୁଛନ୍ତି, ତେଣୁ ତାଙ୍କର ଦୁଃସହ କ୍ରୋଧ ଜାତ ହେଲା । କୌଣସିମତେ ତାକୁ ସମ୍ଭାଳିନେବାପାଇଁ ସେ ଚେଷ୍ଟାକଲେ ॥୬॥ ମାତ୍ର ବୁଦ୍ଧିଦ୍ୱାରା ଯେତେ ସମ୍ଭାଳିବାକୁ ଚେଷ୍ଟା କଲେ ମଧ୍ୟ ସେହି କ୍ରୋଧ ବ୍ରହ୍ମାଙ୍କର ଦୁଇ ଭ୍ରୂଲତାର ମଧ୍ୟରୁ ଏକ ନୀଳଲୋହିତବର୍ଣ୍ଣର ବାଳକରୂପରେ ଜନ୍ମ ନେଲା ॥୭॥ ସେ ହେଲେ ଦେବମାନଙ୍କର ପୂର୍ବଜ ଭଗବାନ ଭବ ବା ରୁଦ୍ର । ସେ ରୋଦନ କରି କହିଲେ, ଜଗତ୍‌ଗୁରୁ ବିଧାତା, ବର୍ତ୍ତମାନ ମୋର ନାମ ଦିଅନ୍ତୁ, ଏବଂ କେଉଁଠି ମୁଁ ରହିବି ତାହା ବତାଇ ଦିଅନ୍ତୁ । ପଦ୍ମଯୋନି ବ୍ରହ୍ମା କୁମାରଙ୍କର ଏହି ଅନୁରୋଧ ରକ୍ଷା କରି ମଧୁର ବାକ୍ୟରେ କହିଲେ, ତୁମେ ରୋଦନ କର ନାହିଁ । ମୁଁ ତୁମର ଇଚ୍ଛା ପୂରଣ କରୁଚି । ଦେବଶ୍ରେଷ୍ଠ, ତୁମେ ଜନ୍ମ ହେବାମାତ୍ରେ ବାଳକ ପରି ବିକଳ ହୋଇ ରୋଦନ କରୁଥିବା ଯୋଗୁଁ ଲୋକମାନେ ତୁମକୁ ରୁଦ୍ର ବୋଲି ଡାକିବେ । ଆଗରୁ ମୁଁ ତୁମପାଇଁ ରହିବାର ସ୍ଥାନ ଠିକ୍ କରି ଦେଇଚି । ତାହା ହେଲା - ହୃଦୟ, ଇନ୍ଦ୍ରିୟଗଣ, ପ୍ରାଣ, ଆକାଶ, ବାୟୁ, ଅଗ୍ନି, ଜଳ, ପୃଥ୍ୱୀ, ସୂର୍ଯ୍ୟ, ଚନ୍ଦ୍ର ଏବଂ ତପ ॥୮-୧୧॥ ତୁମର ନାମ ହେବ ମନ୍ୟୁ, ମନୁ, ମହିନସ, ମହାନ୍, ଶିବ, ଋତଧ୍ୱଜ, ଉଗ୍ରରେତା, ଭବ, କାଳ, ବାମଦେବ ଏବଂ ଧୃତବ୍ରତ । ହେ ରୁଦ୍ର ! ଧୀ, ବୃତ୍ତି, ଉଶନା, ଉମା, ନିୟୁତ୍, ସର୍ପି, ଇଳା, ଅମ୍ବିକା, ଇରାବତୀ, ସୁଧା ଏବଂ ଦୀକ୍ଷା - ଏହି ଏକାଦଶ ରୁଦ୍ରାଣୀ ତୁମର ସ୍ତ୍ରୀ ହେବେ ॥୧୨-୧୩॥ ତୁମେ ପ୍ରଜାପତି; ତେଣୁ ଏହି ସବୁ ନାମ, ସ୍ଥାନ ଓ ସ୍ତ୍ରୀମାନଙ୍କୁ ଗ୍ରହଣ କର ଏବଂ ଏମାନଙ୍କୁ ଧରି ବହୁ ପ୍ରଜା ସୃଷ୍ଟି କର ॥୧୪॥

ଭଗବାନ ନୀଳଲୋହିତ ଏହିପରି ବ୍ରହ୍ମାଙ୍କର ଆଦେଶରୁ ବଳ, ଆକାର ଓ ସ୍ୱଭାବରେ ତାଙ୍କ ତୁଲ୍ୟ ପ୍ରଜାମାନଙ୍କୁ ଉତ୍ପାଦନ କଲେ ॥୧୫॥ ରୁଦ୍ରଙ୍କ ଦ୍ୱାରା ସୃଷ୍ଟ ଅସଂଖ୍ୟ ରୁଦ୍ରଗଣ ଦଳ ଦଳ ହୋଇ ଜଗତକୁ ଗ୍ରାସ କରୁଥିବା ଦେଖି ପ୍ରଜାପତି ବ୍ରହ୍ମା ଭୟଭୀତ ହୋଇଗଲେ ॥୧୬॥ ସେ ରୁଦ୍ରଙ୍କୁ କହିଲେ, ସୁରୋତ୍ତମ ! ତୁମେ ଆଉ ଏପରି ପ୍ରଜାଙ୍କୁ ସୃଷ୍ଟି କର ନାହିଁ । ସେମାନଙ୍କ ଆଖିରୁ ଯେଉଁ ନିଆଁ ବାହାରୁଚି ସେଥିରେ ମୋ ସହିତ ଏ ସଂସାର ଜଳିଯିବାକୁ ବସିଲାଣି ॥୧୭॥ କଲ୍ୟାଣୀୟ, ସମସ୍ତ ପ୍ରାଣୀଙ୍କ ସନ୍ତୋଷପାଇଁ ବର୍ତ୍ତମାନ ତୁମେ ତପସ୍ୟା କର । ତପସ୍ୟାର ବଳରେ ତୁମେ ପୂର୍ବପରି ଏହି ବିଶ୍ୱକୁ ସୃଷ୍ଟି କରିପାରିବ । ତପସ୍ୟାଦ୍ୱାରା ହିଁ ପୁରୁଷ ଇନ୍ଦ୍ରିୟର ଅତୀତ, ସର୍ବାନ୍ତର୍ଯାମୀ ଜ୍ୟୋତିର୍ମୟ ଭଗବାନଙ୍କୁ ସହଜରେ ଲାଭ କରିପାରିବ ॥୧୮-୧୯॥ ମୈତ୍ରେୟ କହିଲେ, ଏହିପରି ସ୍ୱୟଂଭୂ ବ୍ରହ୍ମାଙ୍କ ଦ୍ୱାରା ଆଦିଷ୍ଟ ହୋଇ ରୁଦ୍ରଦେବ ଠିକ୍ କଥା ବୋଲି କହି ବ୍ରହ୍ମାଙ୍କୁ ପରିକ୍ରମାପୂର୍ବକ ତପସ୍ୟା କରିବାପାଇଁ ବନକୁ ଚାଲିଗଲେ ॥୨୦॥

ଭଗବତ୍‌ଶକ୍ତିଯୁକ୍ତ ବ୍ରହ୍ମା ସୃଷ୍ଟିରଚନାପାଇଁ ଚିନ୍ତା କରିବାରୁ ପୁଣି ତାଙ୍କର ଦଶ ଜଣ ପୁତ୍ର ଉତ୍ପନ୍ନ ହେଲେ ॥୨୧॥ ଏହି ଦଶପୁତ୍ର ହେଲେ - ମରୀଚି, ଅତ୍ରି, ଅଙ୍ଗିରା, ପୁଲସ୍ତ୍ୟ, ପୁଲହ, କ୍ରତୁ, ଭୃଗୁ, ବଶିଷ୍ଠ, ଦକ୍ଷ ଏବଂ ଦଶମ ପୁତ୍ର ନାରଦ ॥୨୨॥ ବ୍ରହ୍ମାଙ୍କ କୋଳରୁ ନାରଦ, ବୁଢ଼ା ଆଙ୍ଗୁଠିରୁ ଦକ୍ଷ, ନିଃଶ୍ୱାସରୁ ବଶିଷ୍ଠ, ଚର୍ମରୁ ଭୃଗୁ, ହସ୍ତରୁ କ୍ରତୁ, ନାଭିରୁ ପୁଲହ, କର୍ଣ୍ଣରୁ ପୁଲସ୍ତ୍ୟ, ମୁଖରୁ ଅଙ୍ଗିରା, ଆଖିରୁ ଅତ୍ରି ଓ ମନରୁ ମରୀଚି ଜନ୍ମ ହେଲେ ॥୨୩-୨୪॥ ଧର୍ମ ବ୍ରହ୍ମାଙ୍କର ଦକ୍ଷିଣ ସ୍ତନରୁ ଜାତ ହେଲେ, ଯାହା ହେଉଚି ସ୍ୱୟଂ ନାରାୟଣଙ୍କ ଆସ୍ଥାନ । ପିଠିରୁ ଅଧର୍ମ ଜନ୍ମିଲା ଯେଉଁଠୁ ଭୟଙ୍କର ମୃତ୍ୟୁଲୋକର ଜନ୍ମ ହେଲା ॥୨୫॥ ଏହିପରି ବ୍ରହ୍ମାଙ୍କର ହୃଦୟରୁ କାମ, ଭ୍ରୂଲତାରୁ କ୍ରୋଧ, ଅଧର ଓ ଓଷ୍ଠ ମଧ୍ୟରୁ ଲୋଭ, ବଦନରୁ ବାକ୍‌ଶକ୍ତି, ଲିଙ୍ଗରୁ ସମୁଦ୍ର, ପାୟୁରୁ ପାପର ଆଶ୍ରୟସ୍ଥଳ ନିର୍ଋତିର ସୃଷ୍ଟି ॥୨୬॥ ଛାୟାରୁ ଦେବହୂତିଙ୍କର ପତି କର୍ଦ୍ଦମ ଋଷି ଜନ୍ମ ହେଲେ । ଏହିପରି ବିଶ୍ୱସ୍ରଷ୍ଟାଙ୍କର ଦେହ ଓ ମନରୁ ଜଗତ୍‌ର ସୃଷ୍ଟି ହେଲା ॥୨୭॥ ବିଦୁର, ଆମେ ଶୁଣିଛୁ ଯେ ବ୍ରହ୍ମାଙ୍କର ଦୁହିତା ସରସ୍ୱତୀଙ୍କର କୌଣସି କାମନା ନ ଥିଲେ ମଧ୍ୟ ବ୍ରହ୍ମା ତାଙ୍କ ସୌନ୍ଦର୍ଯ୍ୟରେ ମୋହିତ ହୋଇ ତାଙ୍କ ପ୍ରତି କାମାସକ୍ତ ହୋଇପଡ଼ିଲେ ॥୨୮॥ ନିଜର ପିତାଙ୍କୁ ଏହିପରି ଅଧର୍ମରେ ମନ ବଳାଇଥିବାର ଦେଖି ମରୀଚି ଆଦି ଋଷିମାନେ ସମସ୍ତ ବିନୟର ସହିତ ତାଙ୍କୁ

କହିଲେ, ଆପଣ ଜଗତ୍‌ର ପ୍ରଭୁ, ଆପଣ ନିଜ କନ୍ୟା ଗମନ କରିବାର କାମବାସନାକୁ ନିୟନ୍ତ୍ରଣ କରିପାରୁ ନାହାନ୍ତି । ଆପଣଙ୍କ ପୂର୍ବରୁ କୌଣସି ବ୍ରହ୍ମା ଏପରି ନ ଥିଲେ କି ଭବିଷ୍ୟତ୍‌ରେ ହେବେ ନାହିଁ ॥୨୯-୩୦॥ ଜଗତ୍‌ଗୁରୁ ! ଆପଣଙ୍କ ପରି ତେଜସ୍ୱୀ ପୁରୁଷଙ୍କ ପକ୍ଷରେ ଏହା ଶୋଭନୀୟ ନୁହେଁ । କାରଣ ଆପଣଙ୍କର ଆଚରଣ ଏହି ସଂସାରର ମଙ୍ଗଳପାଇଁ କଳ୍ପିତ । ଆପଣ ଯାହା କରିବେ, ଲୋକେ ତାହା ଅନୁସରଣ କରିବେ ॥୩୧॥ ସେହି ଭଗବାନଙ୍କୁ ନମସ୍କାର, ଯେ ନିଜର ତେଜଦ୍ୱାରା ନିଜ ଭିତରେ ଥିବା ଏହି ସଂସାରକୁ ସୃଷ୍ଟି କରିଛନ୍ତି । ହେ ଜଗତ୍‌ଗୁରୁ ! ସେ ହିଁ ଧର୍ମକୁ ରକ୍ଷା କରିପାରିବେ ॥୩୨॥

ତାଙ୍କ ଆଗରେ ପୁତ୍ର ପ୍ରଜାପତିମାନେ ଏହିପରି କହୁଥିବାର ଦେଖି ପ୍ରଜାପତିମାନଙ୍କର ପତି ବ୍ରହ୍ମା ନିଜକୁ ଲଜ୍ଜିତ ଅନୁଭବ କରି ତତ୍‌କ୍ଷଣାତ୍ ଦେହତ୍ୟାଗ କଲେ । ଦିଗମାନେ ତାଙ୍କର ଦେହକୁ ନେଇଗଲେ ଏବଂ ଚାରିଆଡ଼େ ଘନ କୁହୁଡ଼ି ଘୋଟିଗଲା, ଯାହାକୁ ଅନ୍ଧାର ବୋଲି କୁହାଯାଏ ॥୩୩॥ ଥରେ ବ୍ରହ୍ମା ଚିନ୍ତା କଲେ, ଯେପରି ସେ ପୂର୍ବରୁ ସମସ୍ତ ଲୋକ ସୃଷ୍ଟି କରିଥିଲେ, ବର୍ତ୍ତମାନ ତାହା କିପରି କରିବେ । ସେତେବେଳେ ତାଙ୍କ ଚତୁର୍ମୁଖରୁ ଚତୁର୍ବେଦ ଜାତ ହେଲା ॥୩୪॥ ପୁଣି ତାଙ୍କ ମୁହଁରୁ ଜନ୍ମିଲେ ଚତୁର୍ବିଧ ଯାଜ୍ଞିକ -- ହୋତା, ଉଦ୍‌ଗାତା, ଅଧ୍ୱର୍ଯୁ ଓ ବ୍ରହ୍ମା; କର୍ମକାଣ୍ଡ, ଉପବେଦ, ନ୍ୟାୟଶାସ୍ତ୍ର ଏବଂ ଏଥିସହ ଧର୍ମର ଚାରିପାଦ, ଚାରିବର୍ଣ୍ଣାଶ୍ରମ ଏବଂ ସେମାନଙ୍କ କର୍ତ୍ତବ୍ୟ ଆଦିର ଜନ୍ମ ହେଲା ॥୩୫॥ ବିଦୁର ପଚାରିଲେ, ତପୋଧନ ! ବିଶ୍ୱସ୍ରଷ୍ଟା ପ୍ରଜାପତିମାନଙ୍କ ଈଶ୍ୱର ବ୍ରହ୍ମା ନିଜ ମୁଖରୁ ଯେତେବେଳେ ବେଦାଦିଙ୍କୁ ସୃଷ୍ଟି କଲେ, ସେତେବେଳେ ସେ ନିଜର କେଉଁ କେଉଁ ମୁହଁରୁ କ'ଣ କ'ଣ ସୃଷ୍ଟି କଲେ ତାହା ମୋତେ କହନ୍ତୁ ॥୩୬॥ ମୈତ୍ରେୟ କହିଲେ, ବ୍ରହ୍ମା ତାଙ୍କ ପୂର୍ବ, ଦକ୍ଷିଣ, ପଶ୍ଚିମ ଓ ଉତ୍ତର ମୁଖମାନଙ୍କରୁ ଯଥାକ୍ରମେ ଋକ୍, ଯଜୁଃ, ସାମ ଏବଂ ଅଥର୍ବ ବେଦ ଉତ୍ପନ୍ନ କଲେ । ଏହି କ୍ରମରେ ଶସ୍ତ୍ର, ଇଜ୍ୟା, ସ୍ତୁତିସ୍ତୋମ ଏବଂ ପ୍ରାୟଶ୍ଚିତ୍ତ - ଏହି ଚାରୋଟି ବୈଦିକ କର୍ମ ରଚନା କଲେ ॥୩୭॥ ଏହିପରି ବ୍ରହ୍ମା ଆୟୁର୍ବେଦ, ଧନୁର୍ବିଦ୍ୟା, ଗାନ୍ଧର୍ବବିଦ୍ୟା (ସଙ୍ଗୀତ ଶାସ୍ତ୍ର) ଓ ସ୍ଥାପତ୍ୟ ବିଦ୍ୟା ମଧ୍ୟ ପୂର୍ବାଦି ମୁଖମାନଙ୍କରୁ କ୍ରମାନୁସାରେ ସୃଷ୍ଟି କଲେ ॥୩୮॥ ପୁଣି ସର୍ବଦ୍ରଷ୍ଟା ବ୍ରହ୍ମା ତାଙ୍କ ସମସ୍ତ ମୁଖରୁ ପଞ୍ଚମ ବେଦରୂପେ କଥିତ ଇତିହାସ ଓ ପୁରାଣମାନଙ୍କୁ ସୃଷ୍ଟି କଲେ ॥୩୯॥ ଏହିକ୍ରମରେ ନିଜର ପୂର୍ବାଦି ମୁଖରୁ ବିଭିନ୍ନ ଯଜ୍ଞ ସୃଷ୍ଟି କଲେ । ଯଥା- ଷୋଡ଼ଶୀ ଓ ଉକ୍‌ଥ, ଚୟନ ଓ ଅଗ୍ନିଷ୍ଟୋମ, ଆପ୍ତୋର୍ଯାମ ଓ ଅତିରାତ୍ର ଏବଂ ବାଜପେୟ ଓ ଗୋସବ ॥୪୦॥ ଏହି କ୍ରମରେ ବିଦ୍ୟା, ଦାନ, ତପ ଓ ସତ୍ୟ --ଧର୍ମର ଏହି ଚାରି ପାଦ, ଚାରୋଟି ଆଶ୍ରମ ଏବଂ ତା'ର ବୃତ୍ତିମାନଙ୍କୁ ସର୍ଜନା କଲେ ॥୪୧॥

ସାବିତ୍ର, ପ୍ରାଜାପତ୍ୟ, ବ୍ରାହ୍ମ ଓ ବୃହତ୍ - ଏହି ଚାରି ବୃତ୍ତି ବ୍ରହ୍ମଚାରୀମାନଙ୍କର, ଏବଂ ବାର୍ତ୍ତା, ସଞ୍ଚୟ, ଶାଳୀନ ଓ ଶିଳୋଞ୍ଛ - ଏହି ଚାରିବୃତ୍ତି ହେଉଛି ଗୃହସ୍ଥମାନଙ୍କର ॥୪୨॥ ଏହିପରି ବାନପ୍ରସ୍ଥମାନଙ୍କୁ ଉତ୍ପନ୍ନ କରି ବୃତ୍ତିଭେଦରେ ସେ ଚାରି ଭାଗରେ ବିଭକ୍ତ କଲେ -- ବୈଖାନସ, ବାଳଖିଲ୍ୟ, ଔଦୁମ୍ବର ଓ ଫେନପ । ପୁଣି କୁଟୀଚକ, ବହୂଦକ, ହଂସ ଏବଂ ନିଷ୍କ୍ରିୟ -- ଏହି ଭେଦରେ ଚାରି ଶ୍ରେଣୀର ସନ୍ୟାସୀ ହେଲେ ॥୪୩॥ ସେହିପରି ପୂର୍ବମୁଖାଦି କ୍ରମରେ ସେ ଆନ୍ୱୀକ୍ଷିକୀ, ତ୍ରୟୀ, ବାର୍ତ୍ତା ଓ ଦଣ୍ଡନୀତି -- ଏହି ଚାରି ବିଦ୍ୟା ଏବଂ ତା'ସହିତ ଚାରି ବ୍ୟାହୃତି (ଶ୍ରୁତି, ଭୂଃ, ଭୁବଃ, ସ୍ୱଃ) ଏବଂ ହୃଦୟରୁ ପ୍ରଣବ (ଓଁକାର) ରଚନା କଲେ ॥୪୪॥ ପ୍ରଜାପତି ବ୍ରହ୍ମାଙ୍କର ଲୋମମାନଙ୍କରୁ ଉଷ୍ଣିକ୍ (ବୈଦିକ ଛନ୍ଦ), ଚର୍ମରୁ ଗାୟତ୍ରୀ, ମାଂସରୁ ତ୍ରିଷ୍ଟୁପ୍, ସ୍ନାୟୁରୁ ଅନୁଷ୍ଟୁପ୍ ଓ ଅସ୍ଥିରୁ ଜଗତୀ (କାବ୍ୟର ଛନ୍ଦମାନ)ଙ୍କର ସୃଷ୍ଟି ହେଲା ॥୪୫॥ ତାଙ୍କ ମଜ୍ଜାରୁ ପଂକ୍ତି ଏବଂ ପ୍ରାଣରୁ ବୃହତୀଛନ୍ଦ ଉତ୍ପନ୍ନ ହେଲା । ବ୍ରହ୍ମାଙ୍କର ଜୀବ ବା ଆତ୍ମା ହେଲା ସ୍ପର୍ଶ ବର୍ଣ୍ଣ (କବର୍ଗାଦି), ଏବଂ ଦେହ ହେଲା ସ୍ୱରବର୍ଣ୍ଣ (ଅକାରାଦି) ॥୪୬॥ ତାଙ୍କ ଇନ୍ଦ୍ରିୟମାନଙ୍କୁ ଉଷ୍ମବର୍ଣ୍ଣ (ଶ ଷ ସ ହ) ଏବଂ ବଳକୁ ଅନ୍ତଃସ୍ଥ (ଯ ର ଲ ବ) ବର୍ଣ୍ଣ କୁହାଯାଏ । ସେହିପରି ପ୍ରଜାପତି ବ୍ରହ୍ମାଙ୍କର କ୍ରୀଡ଼ାରୁ ସପ୍ତସ୍ୱର (ନିଷାଦ, ଋଷଭ, ଗାନ୍ଧାର, ଷଡ୍‌ଜ, ମଧ୍ୟମ, ଧୈବତ ଓ ପଞ୍ଚମ) ଜାତ ହେଲା ॥୪୭॥

ବିଦୁର ! ପରମାତ୍ମା ହେଉଛନ୍ତି ପରିପୂର୍ଣ୍ଣ ବ୍ରହ୍ମ । ବ୍ରହ୍ମା ତାଙ୍କର ଶବ୍ଦବ୍ରହ୍ମ ସ୍ୱରୂପ । ବ୍ରହ୍ମରୂପରେ ସେ ଅବ୍ୟକ୍ତ ଏବଂ ବହୁଶକ୍ତିଯୁକ୍ତ ଇନ୍ଦ୍ରାଦି ରୂପରେ ସେ ବ୍ୟକ୍ତ ଅଟନ୍ତି ॥୪୮॥ ବିଦୁର ! ବ୍ରହ୍ମା ତାଙ୍କ ପ୍ରଥମ କାମାସକ୍ତ ଶରୀରକୁ ତ୍ୟାଗ କରି ଅନ୍ୟ ଶରୀର ଧାରଣପୂର୍ବକ ବିଶ୍ୱରଚନାପାଇଁ ମନସ୍ଥ କଲେ । ସେ ଦେଖିଲେ ଯେ ବହୁବୀର୍ଯ୍ୟବାନ୍ ମରୀଚି ଆଦି ଋଷିମାନଙ୍କଦ୍ୱାରା ସୃଷ୍ଟିର ବିସ୍ତାର ସମ୍ଭବ ହେଲା ନାହିଁ ॥୪୯॥ ତେଣୁ ସେ ପୁଣି ଚିନ୍ତାକଲେ, 'ଅହୋ, ଆଶ୍ଚର୍ଯ୍ୟର କଥା, ସୃଷ୍ଟିର ବିସ୍ତାରପାଇଁ ମୁଁ ସବୁବେଳେ ଚେଷ୍ଟା କରୁଥିଲେ ମଧ୍ୟ ପ୍ରଜାମାନଙ୍କର ବୃଦ୍ଧି ହେଉ ନାହିଁ । ମନେ ହେଉଛି ଏଥିରେ ଦୈବ କିଛି ବିଘ୍ନ ସୃଷ୍ଟି କରୁଛି' । ଯଥୋଚିତ କର୍ମ କରିବାପାଇଁ ବ୍ରହ୍ମା ଦୈବ ବିଷୟ ଚିନ୍ତା କରୁଥିଲାବେଳେ, ତାଙ୍କର ('କ'ରୂପ ବ୍ରହ୍ମାଙ୍କର) କାୟା ଦୁଇ ଭାଗରେ ବିଭକ୍ତ ହୋଇଗଲା ॥୫୦-୫୨॥ ପୁରୁଷ ହେଲେ ରାଜା ସ୍ୱାୟଂଭୁବ ମନୁ ଏବଂ ସ୍ତ୍ରୀ ହେଲେ ସେହି ମହାତ୍ମା ମନୁଙ୍କର ମହିଷୀ ଶତରୂପା ॥୫୩॥ ଉଭୟଙ୍କ ମୈଥୁନଦ୍ୱାରା ପ୍ରଜାମାନଙ୍କର ବୃଦ୍ଧି ହେବାକୁ ଲାଗିଲା । ସ୍ୱାୟମ୍ଭୁବ ମନୁ ଓ ଶତରୂପାଙ୍କ ଔରସରୁ ପାଞ୍ଚଟି ସନ୍ତାନ ଜାତ ହେଲେ । ହେ ସାଧୁ ବିଦୁର ! ସେମାନଙ୍କ ମଧ୍ୟରୁ ପ୍ରିୟବ୍ରତ ଓ ଉତ୍ତାନପାଦ ନାମକ ଦୁଇ ଜଣ ହେଲେ ପୁତ୍ର ଓ ତିନି ଜଣ ହେଲେ କନ୍ୟା - ଆକୂତି, ଦେବହୂତି ଓ ପ୍ରସୂତି ॥୫୪-୫୫॥ ସ୍ୱାୟଂଭୁବ ମନୁ ଆକୂତିଙ୍କୁ ରୁଚି ପ୍ରଜାପତିଙ୍କୁ, ମଧ୍ୟମା ଦେବହୂତିଙ୍କୁ କର୍ଦ୍ଦମ ଋଷିଙ୍କୁ ଓ ପ୍ରସୂତିଙ୍କୁ ଦକ୍ଷପ୍ରଜାପତିଙ୍କୁ ପ୍ରଦାନ କଲେ । ଏମାନଙ୍କ ସନ୍ତାନସନ୍ତତିଦ୍ୱାରା ଜଗତ୍ ପୂର୍ଣ୍ଣ ହୋଇଗଲା ॥୫୬॥

## ତ୍ରୟୋଦଶ ଅଧ୍ୟାୟ

# ବରାହ ଅବତାର

ଶୁକଦେବ କହିଲେ, ରାଜା ! ମୁନି ମୈତ୍ରେୟଙ୍କଠାରୁ ଏପରି ପୁଣ୍ୟମୟ କୃଷ୍ଣକଥାମାନ ଶୁଣି ବିଦୁର ତନ୍ମୟ ହୋଇପଡ଼ିଥିଲେ । ସେ ପୁଣି ପଚାରିଲେ, ସ୍ୱୟମ୍ଭୂ ବ୍ରହ୍ମାଙ୍କର ପ୍ରିୟ ପୁତ୍ର ରାଜା ସ୍ୱାୟଂଭୁବ ମନୁ ନିଜର ପ୍ରିୟ ପତ୍ନୀଙ୍କୁ ଲାଭ କରି ତା'ପରେ କ'ଣ କ'ଣ କଲେ ? ॥୨॥ ମୁନିଶ୍ରେଷ୍ଠ ! ପୃଥିବୀର ଆଦି ରାଜା ସେହି ରାଜର୍ଷି ଭଗବାନଙ୍କର ଆଶ୍ରିତ ହୋଇଥିବା ଯୋଗୁଁ ତାଙ୍କ ବିଷୟ ଶ୍ରଦ୍ଧାର ସହିତ ଶୁଣିବା ପାଇଁ ମୁଁ ଇଚ୍ଛା କରୁଛି । ଆପଣ ତାହା ମୋତେ ବର୍ଣ୍ଣନା କରନ୍ତୁ ॥୩॥ ଯେଉଁମାନେ ମୁକୁନ୍ଦଙ୍କର ପାଦପଦ୍ମକୁ ହୃଦୟରେ ଧାରଣ କରିଥାନ୍ତି, ସେହି ଭକ୍ତମାନଙ୍କର ଗୁଣାବଳୀ ଶ୍ରବଣ କରିବା ବହୁ ପରିଶ୍ରମପୂର୍ବକ ଶାସ୍ତ୍ରପାଠର ଫଳ ବୋଲି ବିଦ୍ୱାନମାନେ କହିଥାନ୍ତି ॥୪॥ ଶୁକଦେବ କହିଲେ, ରାଜା ! ବିଦୁର ଥିଲେ ସହସ୍ରଶୀର୍ଷା ଭଗବାନଙ୍କର ଚରଣାଶ୍ରିତ ଭକ୍ତ । ସେ ଅତି ବିନୀତ ଭାବରେ ଏହିପରି କହିବାରୁ ଭଗବତ୍ କଥାରେ ମଜ୍ଜିତ ମୁନି ମୈତ୍ରେୟଙ୍କର ରୋମ ଟାଙ୍କୁରି ଉଠିଲା ॥୫॥ ସେ କହିଲେ, ସ୍ୱାୟଂଭୁବ ମନୁ ନିଜ ଭାର୍ଯ୍ୟାଙ୍କ ସହିତ ଜନ୍ମ ହୋଇଥିଲେ । ସେ କୃତାଞ୍ଜଳିପୂର୍ବକ ପ୍ରୀତ ହୋଇ ବ୍ରହ୍ମାଙ୍କୁ କହିଲେ, ଆପଣ ହେଉଛନ୍ତି ସମସ୍ତ ପ୍ରାଣୀଙ୍କର ଏକମାତ୍ର ଜନକ, ବୃତ୍ତିଦାତା ଓ ପିତା । ତଥାପି ଆପଣଙ୍କର ସନ୍ତାନ ଭାବରେ ଆମେମାନେ କିପରି ଆପଣଙ୍କୁ ସେବା କରିପାରିବୁ ତାହା ଆଦେଶ କରନ୍ତୁ ॥୬-୭॥ ପୂଜ୍ୟ ପିତା ! ଆପଣଙ୍କୁ ନମସ୍କାର, ଆମ ନିଜ ଶକ୍ତି ଅନୁସାରେ ଯେଉଁ କାର୍ଯ୍ୟ କଲେ ଇହଲୋକରେ ଚାରିଆଡ଼େ ଆମର ଯଶବିସ୍ତାର ହେବ ଓ ପରଲୋକରେ ସଦ୍‌ଗତି ହେବ, ତାହା କରିବାପାଇଁ ଆମକୁ ଆଜ୍ଞା ଦିଅନ୍ତୁ ॥୮॥ ବ୍ରହ୍ମା କହିଲେ, କ୍ଷିତିପତି ବତ୍ସ ମନୁ, ତୁମେ ଏବଂ ତୁମର ସ୍ତ୍ରୀ - ଉଭୟଙ୍କର ମଙ୍ଗଳ ହେଉ । ମୁଁ ତୁମ ପ୍ରତି ପ୍ରସନ୍ନ ହୋଇଛି । କାରଣ ତୁମେ ନିଷ୍କପଟ ହୃଦୟରେ 'ମୋତେ ଆଜ୍ଞା ଦିଅନ୍ତୁ' ବୋଲି କହି ମୋଠାରେ ନିଜକୁ ସମର୍ପଣ କରିଛ ॥୯॥ ବୀର, ପିତାଙ୍କ ପ୍ରତି ପୁତ୍ରର ଏହିପରି ଆଚରଣ ହେବା

ଉଚିତ । ଗୁରୁଜନଙ୍କ ଠାରେ ଏହିପରି ଶ୍ରଦ୍ଧା ବାଞ୍ଛନୀୟ । ନିଜର ଶକ୍ତି ଅନୁସାରେ ଅବିଚଳିତ ଶ୍ରଦ୍ଧାର ସହିତ ତାଙ୍କର ଆଦେଶ ପାଳନ କରିବା ଉଚିତ ଏବଂ କାହାରି ପ୍ରତି ଅଶ୍ରଦ୍ଧା ଭାବ ରହିବା ଉଚିତ ନୁହେଁ ॥୧୦॥ ତୁମେ ତୁମ ପତ୍ନୀଙ୍କଠାରୁ ତୁମ ତୁଲ୍ୟ ଗୁଣବନ୍ତ ସନ୍ତାନମାନଙ୍କୁ ଉତ୍ପାଦନ କର । ଧର୍ମରେ ପୃଥିବୀକୁ ଶାସନ କର ଏବଂ ଯଜ୍ଞମାନଙ୍କ ଦ୍ୱାରା ଶ୍ରୀହରିଙ୍କୁ ଆରାଧନା କର ॥୧୧॥ ରାଜା, ପ୍ରଜାମାନଙ୍କୁ ପାଳନ କରିବାଦ୍ୱାରା ତୁମେ ମୋର ଶ୍ରେଷ୍ଠ ସେବା କରିପାରିବ ଏବଂ ପ୍ରଜାମାନଙ୍କୁ ପାଳନ କଲେ ଭଗବାନ ହୃଷୀକେଶ ମଧ୍ୟ ତୁମ ଉପରେ ସନ୍ତୁଷ୍ଟ ହେବେ ॥୧୨॥ ଯଜ୍ଞସ୍ୱରୂପ ଜନାର୍ଦ୍ଦନ ଯେଉଁମାନଙ୍କ ଉପରେ ସନ୍ତୁଷ୍ଟ ନ ହୁଅନ୍ତି, ସେମାନଙ୍କର ସମସ୍ତ ଶ୍ରମ ବୃଥା ହୁଏ ଏବଂ ଏପରି ବ୍ୟକ୍ତି ନିଜର ଅନାଦର କରିଥାନ୍ତି ॥୧୩॥

ମନୁ କହିଲେ, ଆପଣ ସମସ୍ତ ପାପନାଶନକାରୀ । ମୁଁ ଆପଣଙ୍କର ଆଜ୍ଞା ପାଳନ କରିବି । କିନ୍ତୁ ହେ ପ୍ରଭୁ ! ମୁଁ ଏବଂ ମୋର ପ୍ରଜାମାନେ ଯେଉଁଠି ରହିବୁ, ସେ ସ୍ଥାନ ଆପଣ ସ୍ଥିର କରିଦିଅନ୍ତୁ । ଦେବ, ସମସ୍ତ ଜୀବଙ୍କର ଆବାସସ୍ଥଳ ପୃଥ୍ୱୀଦେବୀ ଏବେ ପ୍ରଳୟଜଳରେ ମଗ୍ନ । ଆପଣ ତାଙ୍କୁ ଉଦ୍ଧାର କରିବାର ବ୍ୟବସ୍ଥା କରନ୍ତୁ ॥୧୪-୧୫॥ ମୈତ୍ରେୟ କହିଲେ, ପରମେଷ୍ଠୀ ବ୍ରହ୍ମା ଜଳମଧ୍ୟରେ ପୃଥିବୀ ଏହିପରି ବୁଡ଼ିରହିଥିବା ଦେଖି, 'ଏହାକୁ କିପରି ଉପରକୁ ଉଠାଇବି' ବୋଲି ବହୁ ସମୟ ଧରି ମନେ ମନେ ଚିନ୍ତା କରିବାକୁ ଲାଗିଲେ ॥୧୬॥ ମୁଁ ସୃଷ୍ଟିରଚନା କରିବାକୁ ଯାଉଛି; ଏତିକିବେଳେ ପୃଥିବୀ ଜଳମଗ୍ନ ହୋଇ ରସାତଳକୁ ଚାଲିଗଲାଣି । ମୋତେ ଏହି ସୃଷ୍ଟିକାର୍ଯ୍ୟରେ ନିୟୋଜିତ କରାଯାଇଛି । ବର୍ତ୍ତମାନ ମୋର କର୍ତ୍ତବ୍ୟ କ'ଣ ? ଯାହାଙ୍କ ସଂକଳ୍ପରୁ ଜନ୍ମ ହୋଇ ମୁଁ ଏହି ସୃଷ୍ଟିକାର୍ଯ୍ୟରେ ନିୟୋଜିତ ହୋଇଛି, ସେହି ସର୍ବଶକ୍ତିମାନ୍ ଭଗବାନ କ'ଣ କରିବାକୁ ହେବ, ମୋତେ ନିର୍ଦ୍ଦେଶ ଦିଅନ୍ତୁ ॥୧୭॥ ନିଷ୍ପାପ ବିଦୁର, ବ୍ରହ୍ମା ଏହିପରି ଚିନ୍ତା କରୁଥିବାବେଳେ ତାଙ୍କ ନାସାରନ୍ଧ୍ରରୁ ବୁଢ଼ାଆଙ୍ଗୁଠି ପରିମାଣରେ ଏକ ବରାହଶିଶୁ ବାହାରିପଡ଼ିଲା ॥୧୮॥ ଆଶ୍ଚର୍ଯ୍ୟର କଥା ବିଦୁର, ବ୍ରହ୍ମା ଦେଖୁ ଦେଖୁ କ୍ଷଣକମଧ୍ୟରେ ଏହି ବରାହଶିଶୁ ଆକାଶକୁ ଉଠିଗଲା ଏବଂ ବଢ଼ିଯାଇ ହାତୀପରି ହୋଇଗଲା ॥୧୯॥ ମରୀଚି ପ୍ରମୁଖ ମୁନି, ସନକ ଆଦି କୁମାର ଓ ସ୍ୱାୟଂଭୁବ ମନୁଙ୍କ ସହ ବ୍ରହ୍ମା ଏହି ବିଚିତ୍ର ଶୂକର ରୂପକୁ ଦେଖି ମନେ ମନେ ବିଚାର କରିବାକୁ ଲାଗିଲେ ॥୨୦॥ କି ଆଶ୍ଚର୍ଯ୍ୟ ! କେଉଁ ଦିବ୍ୟାତ୍ମା ଶୂକର ରୂପରେ ମୋର ନାସାରୁ ନିର୍ଗତ ହୋଇଛନ୍ତି ? ॥୨୧॥ ପ୍ରଥମେ ବୁଢ଼ା ଆଙ୍ଗୁଠିର ଅଗ ଆକାରରେ ବାହାରି ମୁହୂର୍ତ୍ତମଧ୍ୟରେ ସେ ଏକ ବିରାଟ ଶୂକରରୂପ ଧାରଣ କରିଛନ୍ତି । ଯଜ୍ଞସ୍ୱରୂପ ଭଗବାନ ଏହିପରି ରୂପ ଧରି ଆମ ମନକୁ ଭ୍ରମିତ କରୁ ନାହାନ୍ତି ତ ? ॥୨୨॥

ବ୍ରହ୍ମା ଏହିପରି ଭାବରେ ନିଜ ପୁତ୍ରମାନଙ୍କ ସହିତ ଚିନ୍ତା କରୁଥିବା ବେଳେ ଯଜ୍ଞପୁରୁଷ ଭଗବାନ ବିଶାଳ ପର୍ବତ ଆକାରରେ ଗର୍ଜନ କରିବାକୁ ଲାଗିଲେ । ଗର୍ଜନରେ ଦିଗବିଦିଗ ପ୍ରତିଧ୍ୱନିତ କରି ଭଗବାନ ଶ୍ରୀହରି ବ୍ରହ୍ମାଙ୍କୁ ଓ ତାଙ୍କର ପୁତ୍ରମାନଙ୍କୁ ଆନନ୍ଦିତ କଲେ ॥୨୩-୨୪॥ ମାୟାମୟ ବରାହରୂପୀ ଭଗବାନଙ୍କର ଏହି ଶୋକଖଣ୍ଡନକାରୀ ଘୋର ଘର୍ଘର ନାଦ ଶୁଣି ଜନ, ସତ୍ୟ ଓ ତପ - ଏହି ତିନିଲୋକର ଅଧିବାସୀ ମୁନିମାନେ ତିନି ବେଦର ପବିତ୍ର ମନ୍ତ୍ରମାନଙ୍କଦ୍ୱାରା ତାଙ୍କୁ ସ୍ତୁତି କରିବାକୁ ଲାଗିଲେ ॥୨୫॥ ବେଦ ଯେଉଁ ଭଗବାନଙ୍କ ସ୍ୱରୂପ ବର୍ଣ୍ଣନାରେ ମୁଖରିତ ହୋଇଛି, ମୁନିମାନଙ୍କ ଉଚ୍ଚାରିତ ତାଙ୍କ ଗୁଣାବଳୀବ୍ୟଞ୍ଜକ ସେଇ ବେଦକୁ ଶ୍ରବଣ କରି ଶ୍ରୀହରି ଅତିଶୟ ପ୍ରୀତ ହୋଇ ପୁଣି ଥରେ ଗର୍ଜନ କଲେ ଏବଂ ଗଜରାଜ କ୍ରୀଡ଼ା କରିବା ପରି ଜଳମଧ୍ୟରେ ପଶିଗଲେ ॥୨୬॥ ପୃଥିବୀକୁ ଧାରଣ କରିବାକୁ ଯାଉଥିବା ବରାହରୂପୀ ଭଗବାନ ତାଙ୍କ ଲାଞ୍ଜ ଉଠାଇ ଖୁବ୍ ବେଗରେ ଆକାଶକୁ ଉଠିବାବେଳେ ତାଙ୍କ ବେକଷଣ୍ଢାର ବାଳ ଝାଡ଼ିହୋଇଯାଉଥିଲା । ତାଙ୍କ ଖୁରାଘାତରେ ମେଘମାନେ ଛିନ୍ନଭିନ୍ନ ହୋଇଗଲେ । ତାଙ୍କ ଶରୀର ଅତ୍ୟନ୍ତ କଠୋର ହେଲା ଏବଂ ଚମ ଉପରେ ଥିବା ଟାଆଁସା ରୋମମାନ ଠିଆ ହୋଇଗଲା । ଧଳା ଦାନ୍ତ ଓ ଆଖିର ଜ୍ୟୋତିରେ ସେ ଝଲସି ଉଠୁଥିଲେ ॥୨୭॥

ଭଗବାନ୍ ନିଜେ ଯଜ୍ଞପୁରୁଷ (ସର୍ବଜ୍ଞାତା) । ସେ ଶୂକର ରୂପ ଧାରଣ କରିଥିବାହେତୁ ପୃଥିବୀ କେଉଁଠି ଅଛି ଜାଣିବାପାଇଁ ସେ ଶୁଂଘିବାକୁ ଲାଗିଲେ । ତାଙ୍କ ଦାନ୍ତ ଭୟଙ୍କର ଥିଲା । କିନ୍ତୁ ତାଙ୍କୁ ସ୍ତୁତି କରୁଥିବା ଋଷିମାନଙ୍କୁ ସେ ସୌମ୍ୟ ଦୃଷ୍ଟିରେ ଚାହିଁ ପୁଣି ଜଳମଧ୍ୟରେ ପ୍ରବେଶ କଲେ ॥୨୮॥ ବଜ୍ରପରି କଠୋର ତାଙ୍କ ଦେହ ତୀବ୍ର ବେଗରେ ଜଳରେ ପ୍ରବେଶ କରି ସମୁଦ୍ରକୁ ଦୁଇ ଭାଗରେ ବିଭକ୍ତ କରିଦେଲା । ଉତ୍ତାଳ ତରଙ୍ଗରୂପ ବାହୁମାନ ଉଠାଇ ସମୁଦ୍ର ଯେପରି ଆର୍ତ୍ତ ସ୍ୱରରେ ଚିତ୍କାର କରିବାକୁ ଲାଗିଲା-- ଯଜ୍ଞେଶ୍ୱର, ମୋତେ ରକ୍ଷା କର ॥୨୯॥ ଯଜ୍ଞବରାହ କ୍ଷୁରପରି ତୀକ୍ଷ୍ଣ ନିଜର ଖୁରାଦ୍ୱାରା ଜଳରାଶିକୁ ବିଦାରଣ କରି ଅପାର ସମୁଦ୍ରର ଶେଷଭାଗ ରସାତଳରେ ପୃଥିବୀକୁ ପଡ଼ି ରହିଥିବାର ଦେଖିଲେ । ସମସ୍ତ ପ୍ରାଣୀଙ୍କର ଆଶ୍ରୟସ୍ଥଳ ଏହି ପୃଥିବୀ ସୃଷ୍ଟିର ଆଗରୁ ସ୍ୱୟଂ ଭଗବାନଙ୍କ ଜଠରରେ ଆଶ୍ରୟ ନେଇଥାଏ ॥୩୦॥ ଜଳମଗ୍ନ ପୃଥିବୀକୁ ନିଜର ଦାନ୍ତରେ ଉଦ୍ଧାର କରି ସେ ଉପରକୁ ଉଠି ଆସିବାବେଳେ ଅତି ସୁନ୍ଦର ଦେଖାଯାଉଥିଲେ ।

ଏହି ସମୟରେ ରାକ୍ଷସ ହିରଣ୍ୟାକ୍ଷ ଗଦାରେ ତାଙ୍କୁ ଆକ୍ରମଣ କରିବାପାଇଁ ମାଡ଼ି ଆସି ତାଙ୍କର ପଥରୋଧ କଲା । ମାତ୍ର ବଳବାନ୍ ହାତୀକୁ ସିଂହ ଯେପରି ହତ୍ୟା କରେ ସେହିପରି ଏହି ଅତ୍ୟନ୍ତ ବଳଶାଳୀ ରାକ୍ଷସକୁ ସେ ସହଜରେ ନିହତ କଲେ ଏବଂ ଗଜରାଜ ତାର ଦାନ୍ତରେ ନାଲି ମାଟିକୁ ତାଡ଼ି ଯେପରି ଦେଖାଯାଏ, ତାଙ୍କର ରକ୍ତାକ୍ତ ମୁଖ ଓ ଗଣ୍ଡସ୍ଥଳ ସେହିପରି ଦେଖାଯାଉଥିଲା ॥୩୧-୩୨॥ ସେହି ବରାହ ଭଗବାନଙ୍କର ଅଙ୍ଗକାନ୍ତି ତମାଳବର୍ଣ୍ଣପରି ନୀଳବର୍ଣ୍ଣ ଥିଲା । ହାତୀ ତାର ଦାନ୍ତରେ ପଦ୍ମଫୁଲକୁ ଧରି କ୍ରୀଡ଼ା କରିବାପରି ସେ ତାଙ୍କର ଧବଳ ଦନ୍ତର ଅଗ୍ରଭାଗରେ ପୃଥିବୀକୁ ଉପରକୁ ଉଠାଇ ଆଣିଲେ ।

ବ୍ରହ୍ମା ଓ ତାଙ୍କର ପୁତ୍ରମାନେ ହାତ ଯୋଡ଼ି ବେଦବାକ୍ୟଦ୍ୱାରା ତାଙ୍କୁ ସ୍ତୁତି କରିବାକୁ ଲାଗିଲେ ॥୩୩॥ ହେ ଯଜ୍ଞପୂଜିତ ଅଜିତ, ଆପଣଙ୍କର ଜୟ ହେଲା, ଜୟ ହେଲା । ତ୍ରୟୀବେଦରୂପ ତନୁ ଧାରଣ କରିଥିବା ଆପଣଙ୍କୁ ନମସ୍କାର । ଆପଣଙ୍କ ଲୋମଗର୍ଭରେ ସପ୍ତସିନ୍ଧୁ ଲୀନ ହୋଇଚି, ପୃଥିବୀର ଉଦ୍ଧାରପାଇଁ ଶୂକରରୂପ ଧାରଣ କରିଥିବାରୁ ଆପଣଙ୍କୁ ଆମେ ନମସ୍କାର କରୁଛୁ ॥୩୪॥ ପାପାତ୍ମାମାନେ ଆପଣଙ୍କର ଏ ରୂପକୁ ସହଜରେ ଦେଖିପାରନ୍ତି ନାହିଁ । କାରଣ ଏହା ଯଜ୍ଞସ୍ୱରୂପ । ଛନ୍ଦମାନେ ଏହାର ଚର୍ମରେ ରହିଥାନ୍ତି; ରୋମାବଳୀରେ କୁଶ, ଚକ୍ଷୁରେ ଯଜ୍ଞର ହବି ଏବଂ ଚାରି ପାଦରେ ଚାରି ଋତ୍ୱିକ୍ (ହୋତା, ଅଧ୍ୱର୍ଯ୍ୟୁ, ଉଦ୍‌ଗାତା ଓ ବ୍ରହ୍ମା) ବିଦ୍ୟମାନ ॥୩୫॥ ଈଶ୍ୱର, ଆପଣଙ୍କର ତୁଣ୍ଡ ହେଉଚି ସ୍ରୁକ୍, ନାସାରନ୍ଧ୍ର ସ୍ରୁବ, ଉଦର ଇଡ଼ା, କର୍ଣ୍ଣରନ୍ଧ୍ର ଚମସ, ବଦନ ପ୍ରାଶିତ୍ର ଓ ଗଳାନଳି ଗ୍ରହମାନେ ଏବଂ ଅଗ୍ନିହୋତ୍ର ଯଜ୍ଞ ହେଉଚି ଆପଣଙ୍କର ଚର୍ବଣ ॥୩୬॥ ଆପଣଙ୍କ ଅବତାରଗ୍ରହଣ  ପ୍ରାଣୀମାନଙ୍କ ଆତ୍ମଶୁଦ୍ଧିର ଦୀକ୍ଷା,(ଦୀକ୍ଷଣୀୟ ଇଷ୍ଟି) ଆପଣଙ୍କ ଗ୍ରୀବା ହେଉଚି ତିନି ପ୍ରକାର ଇଷ୍ଟି କର୍ମ । ଦୁଇଟି ଦନ୍ତ ପ୍ରାୟଣୀୟ (ଦୀକ୍ଷାଶେଷ ଇଷ୍ଟି) ଓ ଉଦୟନୀୟ (ସମାପ୍ତି ଇଷ୍ଟି) ଓ ଜିହ୍ୱା ପ୍ରବର୍ଗ୍ୟ (ପ୍ରତି ଉପସଦ ପୂର୍ବରୁ କରାଯାଉଥିବା ମହାବୀର ନାମକ କର୍ମ) କ୍ରତୁରୂପୀ ଆପଣଙ୍କ ଶିର ହେଉଚି ସଭ୍ୟ (ହୋମରହିତ ଅଗ୍ନି) ଓ ଆବସଥ୍ୟ (ଉପାସନା ଅଗ୍ନି) । ପ୍ରାଣ ହେଉଚି ଚିତି (ଇଷ୍ଟକାମାନଙ୍କର ଚୟନ) ॥୩୭॥ ଦେବ, ଆପଣଙ୍କର ବୀର୍ଯ୍ୟ ସୋମରସ; ଅବସ୍ଥାନ ଦିନର ତିନୋଟି ସବନକର୍ମ; ରକ୍ତମାଂସାଦି ସପ୍ତଧାତୁ ଅଗ୍ନିଷ୍ଟୋମ ଆଦି ସପ୍ତଯଜ୍ଞ ସଂସ୍ଥା ଏବଂ ଆପଣଙ୍କର ଶରୀରସ୍ଥ ସନ୍ଧିସବୁ ସକଳ ସତ୍ର ଅଟନ୍ତି । ଏହିପରି ଆପଣ ସମ୍ପୂର୍ଣ୍ଣ ଯଜ୍ଞ (ସୋମରହିତ) ଏବଂ କ୍ରତୁ (ସୋମସହିତ ଯଜ୍ଞ) ସ୍ୱରୂପ । ସମସ୍ତ ଯଜ୍ଞକର୍ମ ଆପଣଙ୍କର ଶରୀରକୁ ବାନ୍ଧି ରଖିଛି ॥୩୮॥ ସମସ୍ତ ମନ୍ତ୍ର, ଦେବତା, ଦ୍ରବ୍ୟ, ସମସ୍ତ ଯଜ୍ଞ ଓ କର୍ମ ହେଉଚି ଆପଣଙ୍କର ସ୍ୱରୂପ । ବୈରାଗ୍ୟଭକ୍ତିଦ୍ୱାରା ମନକୁ ଜୟ କଲେ ଯେଉଁ ଜ୍ଞାନଲାଭ ହୁଏ, ସେହି ଜ୍ଞାନସ୍ୱରୂପ ସକଳବିଦ୍ୟାର ଗୁରୁ ଆପଣଙ୍କୁ ଆମେ ବାରମ୍ବାର ନମସ୍କାର କରୁଛୁ ॥୩୯॥ ହେ ପୃଥିବୀର ଉଦ୍ଧାରକର୍ତ୍ତା, ଗଜରାଜ ପତ୍ରଯୁକ୍ତ ପଦ୍ମପୁଷ୍ପକୁ ଦନ୍ତରେ ଧାରଣ କରି ଜଳମଧ୍ୟରୁ ବାହାରି ଆସିଲେ ଯେପରି ଶୋଭାପାଏ, ଆପଣ ସେହିପରି ଆପଣଙ୍କ ଦନ୍ତର ଅଗ୍ରଭାଗରେ ପର୍ବତଯୁକ୍ତ ଏହି ଭୂମଣ୍ଡଳକୁ ଧାରଣ କରି ଶୋଭା ପାଉଛନ୍ତି ॥୪୦॥ ହିମାଳୟ ତାର ଶୃଙ୍ଗରେ ମେଘମାଳାକୁ ବହନ କରି ଯେପରି ଶୋଭାପାଏ, ଦାନ୍ତରେ ଭୂମଣ୍ଡଳକୁ ଧରି ଆପଣଙ୍କର ବେଦମୟ

ଶୂକର ରୂପ ସେହିପରି ଶୋଭାପାଉଛି ॥୪୧॥ ପ୍ରଭୁ ଆପଣ ସମସ୍ତ ଲୋକର ପିତା । ଏବେ ଏହି ଚରାଚର ଜୀବମାନେ ସୁଖରେ ରହିବାପାଇଁ, ଆପଣ ନିଜ ପତ୍ନୀ ଏହି ପୃଥ୍ୱୀମାତାଙ୍କୁ ଜଳ ଉପରେ ସ୍ଥାପନ କରନ୍ତୁ । ହେ ଜଗତ୍‌ପିତା ! ଅରଣିରେ ଅଗ୍ନିସ୍ଥାପନ ପରି ଆପଣ ଏହାଙ୍କଠାରେ ନିଜ ତେଜ ବା ଧାରଣଶକ୍ତି ସ୍ଥାପନ କରିଛନ୍ତି । ଆମେ ଆପଣଙ୍କ ସହ ଏହାଙ୍କୁ ନମସ୍କାର କରୁଛୁ ॥୪୨॥ ହେ ପ୍ରଭୁ ! ଆପଣଙ୍କ ଛଡ଼ା ଆଉ କିଏ ଅଛି, ଯେ ରସାତଳରୁ ଏହି ପୃଥିବୀକୁ ଉଦ୍ଧାର କରିବାକୁ ସାହସ କରିପାରିଥାଆନ୍ତା !

କିନ୍ତୁ ଏଥିରେ ବିସ୍ମିତ ହେବାର କିଛି ନାହିଁ । କାରଣ ଆପଣ ଏହି ବିଶ୍ୱର ବିସ୍ମୟର ସ୍ୱରୂପ । ନିଜ ମାୟାରେ ଅତି ବିସ୍ମୟକର ଏ ବିଶ୍ୱକୁ ଆପଣ ସର୍ଜନା କରିଛନ୍ତି ॥୪୩॥ (ଜଳରୁ ବାହାରି ଆସି) ଆପଣ ନିଜ ବେଦମୟ ଶରୀରକୁ ଝାଡ଼ି ଦେଉଥିବାବେଳେ ଜନ, ତପ ଓ ସତ୍ୟ ଲୋକରେ ବାସ କରୁଥିବା ଆମେ ମୁନିମାନେ ଆପଣଙ୍କ କେସରମାନଙ୍କ ଅଗ୍ରଭାଗରୁ ଛିଟିକିପଡୁଥିବା ଜଳବିନ୍ଦୁଦ୍ୱାରା ପବିତ୍ର ହୋଇଯାଉଛୁ ॥୪୪॥ ଆପଣ ଅପାରକର୍ମା । ଆପଣଙ୍କ କର୍ମର ପାର ଜାଣିବାପାଇଁ ଯେ ଚେଷ୍ଟାକରେ, ତା'ର ମତିଭ୍ରମ ହୋଇଛି ବୋଲି ଜାଣିବାକୁ ହେବ । କାରଣ ଯୋଗମାୟାବଳରେ ତ୍ରିଗୁଣଯୁକ୍ତ ଏହି ସମସ୍ତ ଜଗତକୁ ଆପଣ ମୋହିତ କରିଛନ୍ତି । ଭଗବାନ ! ଆପଣ ଏହି ଜଗତର ମଙ୍ଗଳକାରକ ॥୪୫॥ ମୈତ୍ରେୟ କହିଲେ; ବ୍ରହ୍ମବାଦୀ ମୁନିମାନେ ଏହିପରି ସ୍ତୁତି କରିବାରୁ ଜଗତର ରକ୍ଷକ ବରାହ ଭଗବାନ୍ ନିଜ ଖୁରାର ବଳରେ ଜଳକୁ ସ୍ତମ୍ଭିତ କରି ସେଥିରେ ପୃଥିବୀକୁ ସ୍ଥାପନ କଲେ ॥୪୬॥ ଏହିପରି ବିଷ୍ୱକ୍‌ସେନ ପ୍ରଜାପତି ଭଗବାନ ଖେଳିବାଭଳି ପୃଥିବୀକୁ ରସାତଳରୁ ଉଠାଇଆଣି ଜଳରେ ସ୍ଥାପନ କରିବା ପରେ ଅନ୍ତର୍ହିତ ହୋଇଗଲେ ॥୪୭॥

ଯେ ଶ୍ରୀହରିଙ୍କ ପ୍ରତି ଭକ୍ତିଯୁକ୍ତ ହୋଇ ତାଙ୍କର ଏହି ମାୟାମୟ ଚରିତକୁ କୀର୍ତ୍ତନ କରେ, ଯେ ତାଙ୍କ ମଙ୍ଗଳମୟ ଚରିତକୁ ଭକ୍ତିରେ ଶୁଣେ ବା ଅନ୍ୟକୁ ଶୁଣାଏ, ଜନାର୍ଦ୍ଦନ ଶୀଘ୍ର ତାର ହୃଦୟରେ ବାସକରି ପ୍ରସନ୍ନ ହୁଅନ୍ତି ॥୪୮॥ ସମସ୍ତ ଆଶୀର୍ବାଦର ମୂଳ ଭଗବାନ ପ୍ରସନ୍ନ ହେଲେ ସଂସାରରେ କିଛି ଦୁର୍ଲଭ ହୁଏ ନାହିଁ । ତେବେ ତୁଚ୍ଛ କାମନାର କ'ଣ ଆବଶ୍ୟକତା ଅଛି ? ଯେ ତାଙ୍କୁ ଅନନ୍ୟ ଭାବରେ ଭଜନ କରେ ସେହି ସର୍ବାନ୍ତର୍ଯାମୀ ପରମେଶ୍ୱର ତାକୁ ପରମପଦ ପ୍ରଦାନ କରନ୍ତି ॥୪୯॥ ନିଜର ଶ୍ରେଷ୍ଠ ପୁରୁଷାର୍ଥ କ'ଣ, ତାହା ଜାଣିଥିବା ଏପରି କିଏ ଲୋକ ଅଛି, ଯେ କି ନିଜର କର୍ଣ୍ଣକୁହରରେ ଭଗବାନଙ୍କର ଅମୃତମୟ ପୁରାତନ ଚରିତକୁ ଥରେ ମାତ୍ର ଶୁଣି ଆଉ ଶୁଣିବାକୁ ଇଚ୍ଛା ନ କରିବ ? କେବଳ ପଶୁ ଛଡ଼ା ଏପରି ଆଉ କେହି ନାହିଁ ॥୫୦॥

## ଚତୁର୍ଦ୍ଦଶ ଅଧ୍ୟାୟ

# ଦିତିଙ୍କ ଗର୍ଭଧାରଣ

ଶୁକଦେବ କହିଲେ, ମୈତ୍ରେୟଙ୍କଠାରୁ ଶୂକରରୂପୀ ଭଗବାନଙ୍କର କଥା ଶ୍ରବଣ କରି ସତ୍ୟବ୍ରତ ବିଦୁର ସମ୍ପୂର୍ଣ୍ଣ ସନ୍ତୁଷ୍ଟ ହେଲେ ନାହିଁ । ସେ କୃତାଞ୍ଜଳି ହୋଇ ପୁଣି ତାଙ୍କୁ ପ୍ରଶ୍ନ କଲେ ॥୧॥ ବିଦୁର କହିଲେ, ମୁନିଶ୍ରେଷ୍ଠ, ଯଜ୍ଞମୂର୍ତ୍ତି ଶ୍ରୀହରି ଆଦିଦୈତ୍ୟ ହିରଣ୍ୟାକ୍ଷକୁ ନିହତ କରିଥିବା କଥା ମୁଁ ଆପଣଙ୍କ ମୁହଁରୁ ଶୁଣିବାକୁ ପାଇଲି ॥୨॥

ବ୍ରହ୍ମନ୍ ! ଅବଲୀଳାକ୍ରମେ ନିଜ ଦନ୍ତର ଅଗ୍ରଭାଗରେ ପୃଥିବୀକୁ ଉଦ୍ଧାର କରିବାବେଳେ କେଉଁ କାରଣରୁ ବରାହଙ୍କର ଦୈତ୍ୟରାଜ ସହିତ ଯୁଦ୍ଧ ହେଲା, ମୁଁ ଆପଣଙ୍କର ଶ୍ରଦ୍ଧାଯୁକ୍ତ ଭକ୍ତ ଭାବରେ ତାହାର ଜନ୍ମ ବୃତ୍ତାନ୍ତ ଶୁଣିବାପାଇଁ ଇଚ୍ଛା କରୁଛି ।

ମୋର ମନ ତୃପ୍ତ ହେଉ ନାହିଁ । ବିଶଦଭାବରେ ଜାଣିବାପାଇଁ ମନରେ କୌତୂହଳ ଜାତ ହେଉଛି ॥୩-୪॥ ମୈତ୍ରେୟ କହିଲେ, ବିଦୁର ! ତୁମେ ଭଲ ପ୍ରଶ୍ନ ପଚାରିଛ । କାରଣ ଭଗବାନ ଶ୍ରୀହରିଙ୍କର ଅବତାରକଥାର ଶ୍ରବଣ ମରଣଶୀଳ ମନୁଷ୍ୟର ମୃତ୍ୟୁପାଶ ଛେଦନ କରେ ॥୫॥ ଉତ୍ତାନପାଦଙ୍କର ପୁତ୍ର ଧ୍ରୁବ ବାଳକ ଥିବାବେଳେ ନାରଦ ମୁନିଙ୍କଠାରୁ ଏହି ହରିକଥା ଶ୍ରବଣ କରି ମୃତ୍ୟୁର ମସ୍ତକରେ ପାଦ ରଖି ଭଗବାନଙ୍କର ପରମପଦ ଆରୋହଣ କରିଥିଲେ ॥୬॥ ପୂର୍ବେ ଦେବତାମାନେ ଦେବଦେବ ବ୍ରହ୍ମାଙ୍କୁ ଏହି ପ୍ରଶ୍ନ ପଚାରିଥିଲେ ଏବଂ ସେମାନଙ୍କ ଆଗରେ ସେ ଯେଉଁ ଇତିହାସ ବର୍ଣ୍ଣନା କରିଥିଲେ; ପରେ ମୁଁ ସେହି ଇତିହାସକୁ ଶ୍ରବଣ କରିଥିଲି ॥୭॥

ବିଦୁର ! ଦକ୍ଷଙ୍କର କନ୍ୟା ଦିତି ମରୀଚି ଋଷିଙ୍କର ପୁତ୍ର କଶ୍ୟପଙ୍କର ପତ୍ନୀ ଥିଲେ । ଦିନେ ସନ୍ଧ୍ୟାରେ ସେ ପୁତ୍ରକାମନାରେ କାମାତୁରା ହୋଇ ପତିଙ୍କୁ ନିଜର ଇଚ୍ଛା ପ୍ରକାଶ କଲେ ॥୮॥ ସେତେବେଳେ ସୂର୍ଯ୍ୟାସ୍ତ ସମୟ । କଶ୍ୟପ ଅଗ୍ନିରେ କ୍ଷୀର ଆହୁତିଦ୍ୱାରା ଯଜ୍ଞପୁରୁଷ ଶ୍ରୀହରିଙ୍କୁ ପୂଜା କରି ଧ୍ୟାନସ୍ଥ ହୋଇ ବସିଥିଲେ ॥୯॥ ଦିତି କହିଲେ, ହେ ବିଦ୍ୱାନ୍ ! ହସ୍ତୀ କଦଳୀ ଗଛକୁ ଆକ୍ରମଣ କରି ତା'ର ଯେଉଁ ଅବସ୍ଥା କରେ, କନ୍ଦର୍ପ ପ୍ରବଳ ହୋଇ ତା'ର ଶରଜ୍ୱାଳାରେ ମୋତେ ସେହିପରି ଅବସ୍ଥା ଦେଉଛି ଏବଂ ସେଥିପାଇଁ ମୁଁ ତୁମ ପାଖକୁ ଆସିଛି ॥୧୦॥ ସନ୍ତାନବତୀ ସପତ୍ନୀମାନଙ୍କର ସମୃଦ୍ଧି ଦେଖି ମୋର ହୃଦୟ ଈର୍ଷାରେ ଜଳିଯାଉଛି । ଆପଣ ମୋ ପ୍ରତି ଅନୁଗ୍ରହ କରନ୍ତୁ । ଆପଣଙ୍କର ମଙ୍ଗଳ ହେଉ ॥୧୧॥ ଯାହାର ଗର୍ଭରୁ ଆପଣଙ୍କପରି ସ୍ୱାମୀ ପୁତ୍ରରୂପେ ଜନ୍ମ ହୁଏ, ସେ ସ୍ତ୍ରୀ ପତିଦ୍ୱାରା ପ୍ରକୃତ ସମ୍ମାନିତ ହୁଏ ଏବଂ ତାର ଯଶ ସଂସାରରେ ବିସ୍ତାରିତ ହୁଏ ॥୧୨॥ ଆମମାନଙ୍କର ପିତା ଦକ୍ଷ ପ୍ରଜାପତି ନିଜର କନ୍ୟାମାନଙ୍କୁ ବହୁତ ସ୍ନେହ କରୁଥିଲେ । 'ତୁମେ କାହାକୁ ପତିରୂପେ ବରଣ କରିବ' ବୋଲି ସେ ଆମକୁ ପୃଥକ୍ ପୃଥକ୍ ଭାବରେ ଡାକି ପଚାରିଥିଲେ ॥୧୩॥ ସନ୍ତାନବତ୍ସଳ ପିତା ନିଜ କନ୍ୟାମାନଙ୍କର ମନୋଭାବ ଜାଣି ଆପଣଙ୍କୁ ତାଙ୍କର ତେରଟି କନ୍ୟାଙ୍କୁ ଦାନ କରିଥିଲେ, ଯେଉଁମାନେ କି ଆପଣଙ୍କ ଗୁଣ ଜାଣି ଆପଣଙ୍କୁ ସେବା କରୁଛନ୍ତି ॥୧୪॥ କମଳଲୋଚନ, ମୋର କାମନାକୁ ପୂର୍ଣ୍ଣ କରି ମୋର ମଙ୍ଗଳ କରନ୍ତୁ । ମହାନୁଭାବ, ଆପଣ ଜାଣନ୍ତି ଯେ, କୌଣସି ଆର୍ତ୍ତ ବ୍ୟକ୍ତି ମହତ୍ ବ୍ୟକ୍ତି ପାଖରେ ପ୍ରାର୍ଥନା କଲେ ତାହା ବୃଥା ଯାଏ ନାହିଁ ॥୧୫॥

ବିଦୁର, ପ୍ରବଳ କାମବାଣରେ ପୀଡ଼ିତ ନିଜର ସ୍ତ୍ରୀ ଦୀନଭାବରେ ଏହିପରି ବହୁ ଅନୁନୟ କରିବାରୁ କଶ୍ୟପ ସୁମଧୁର ବାକ୍ୟରେ ତାଙ୍କୁ ପ୍ରବୋଧନା ଦେଇ କହିଲେ, ସୁନ୍ଦରି ! ତୁମେ ଯାହା ଇଚ୍ଛା କରୁଛ, ତୁମର ପ୍ରିୟବିଧାନପାଇଁ ମୁଁ ନିଶ୍ଚୟ ତାହା କରିବି । ଯେଉଁ ସ୍ତ୍ରୀଦ୍ୱାରା ଧର୍ମ, ଅର୍ଥ ଓ କାମ - ଏହି ତ୍ରିବର୍ଗର ସିଦ୍ଧି ହୁଏ, ତାର କାମନା କିଏ ବା ପୂର୍ଣ୍ଣ ନ କରିବ ? ॥୧୬-୧୭॥ ଜଳଯାନଦ୍ୱାରା ଯେପରି ସମୁଦ୍ରକୁ ପାର କରାଯାଏ, ସେହିପରି ସପତ୍ନୀକ ପୁରୁଷ ସମସ୍ତ ଆଶ୍ରମକୁ ଆଶ୍ରୟ ଦେଉଥିବା ଗୃହସ୍ଥାଶ୍ରମଦ୍ୱାରା ସଂସାରଦୁଃଖରୂପକ ସମୁଦ୍ରକୁ ପାର ହୁଏ ॥୧୮॥ ମାନିନୀ, ଯେଉଁ ସ୍ତ୍ରୀକୁ ପୁରୁଷର ଶ୍ରେୟପାଇଁ ତା'ର ଅର୍ଦ୍ଧାଙ୍ଗିନୀ ବୋଲି କୁହାଯାଏ, ତା' ଉପରେ ଗୃହର ଭାର ଅର୍ପଣ କରି ପୁରୁଷ ନିଶ୍ଚିନ୍ତ ହୋଇ ବିଚରଣ କରେ ॥୧୯॥ ଯେପରି ଦୁର୍ଗପତି ଆକ୍ରମଣକାରୀ ଦସ୍ୟୁମାନଙ୍କୁ ଜୟ କରେ, ସେହିପରି ଦୁର୍ଜ୍ଜୟ ଶତ୍ରୁରୂପୀ ଇନ୍ଦ୍ରିୟମାନଙ୍କୁ ଗୃହସ୍ଥ ବ୍ୟକ୍ତି ନିଜ ସ୍ତ୍ରୀକୁ ଆଶ୍ରୟ କରି ଜୟ କରିଥାଏ; କିନ୍ତୁ ଅନ୍ୟ ଆଶ୍ରମରେ ଥିବା ଲୋକଙ୍କପାଇଁ ତାହା ସହଜ ହୁଏ ନାହିଁ ॥୨୦॥ ଗୃହେଶ୍ୱରୀ, ମୋ ପରି କୌଣସି ଗୁଣଗ୍ରାହୀ ପୁରୁଷ ତୁମପରି ସ୍ତ୍ରୀର ଉପକାରକୁ ଏ ଜନ୍ମରେ କିମ୍ବା ଜନ୍ମାନ୍ତରରେ ଶୁଝିପାରିବ ନାହିଁ ॥୨୧॥ ଏଣୁ ତୁମର ପୁତ୍ରକାମନାକୁ ମୁଁ ନିଶ୍ଚୟ ପୂର୍ଣ୍ଣ କରିବି ।

କିନ୍ତୁ ତୁମେ କ୍ଷଣେମାତ୍ର ଅପେକ୍ଷା କର, ଯେପରିକି ଲୋକେ ମୋତେ ନିନ୍ଦା ନ କରନ୍ତି ॥୨୨॥ କାରଣ ଏହା ଏକ ଭୟଙ୍କର ବେଳ । ଏ ସମୟରେ ରୁଦ୍ରଙ୍କର ଅନୁଚର ଭୀଷଣାକୃତି ଭୂତପ୍ରେତମାନେ ଭ୍ରମଣ କରୁଥାଆନ୍ତି ॥୨୩॥ ସାଧ୍ୱୀ, ଏଇ ସନ୍ଧ୍ୟା ସମୟରେ ପ୍ରାଣୀମାନଙ୍କର ଈଶ୍ୱର ଭୂତଭାବନ ଭଗବାନ ଶିବ ଭୂତପ୍ରେତମାନଙ୍କ ସହ ବୃଷଭ ପିଠିରେ ବସି ବିଚରଣ

କରୁଥାନ୍ତି ॥୨୪॥ ଶ୍ମଶାନରେ ଯେତେବେଳେ ଘୂର୍ଣ୍ଣିବାୟୁ ଆସେ, ସେତେବେଳେ ଶ୍ମଶାନବାସୀ ଶିବଙ୍କର ବିସ୍ତୀର୍ଣ୍ଣ ଜଟାଜୁଟ ଧୂଳିଧୂସରିତ ହୋଇ ଶୋଭାପାଏ । ଭସ୍ମବିଲେପନ ଯୋଗୁଁ ତାଙ୍କ ସୁବର୍ଣ୍ଣ କାନ୍ତିମୟ ଦେହ ଗୌରବର୍ଣ୍ଣ ଦେଖାଯାଏ । ତୁମର ସେହି ଦେବର (ସ୍ୱାମୀଙ୍କର ଭାଇ) ତ୍ରିଲୋଚନ ସୂର୍ଯ୍ୟ, ଚନ୍ଦ୍ର ଓ ଅଗ୍ନିସ୍ୱରୂପ ତାଙ୍କ ତିନୋଟି ଆଖିରେ ଏହି ସଂସାରକୁ ଦେଖୁଛନ୍ତି ॥୨୫॥ ଏହି ସଂସାରରେ କେହି ତାଙ୍କର ନିଜ ବା ପର ନୁହନ୍ତି; କେହି ତାଙ୍କଦ୍ୱାରା ଆଦୃତ ନୁହନ୍ତି ବା ନିନ୍ଦିତ ନୁହନ୍ତି । ଭୋଗ୍ୟବସ୍ତୁମାନଙ୍କୁ ସେ ପାଦରେ ଦୂରକୁ ଠେଲି ଦେଇଛନ୍ତି । ଆମେମାନେ ନାନା ବ୍ରତ କରି ତାଙ୍କର ସେହି ମାୟାରୂପ ତ୍ୟକ୍ତବସ୍ତୁକୁ ଲାଭ ପାଇବାପାଇଁ ଆଶା କରିଛୁ ॥୨୬॥ ଅବିଦ୍ୟାର ଆବରଣ ଭେଦ କରିବାପାଇଁ ମନୀଷୀମାନେ ତାଙ୍କ ଅନବଦ୍ୟ ଚରିତ କୀର୍ତ୍ତନ କରନ୍ତି । ତାଙ୍କଠାରୁ ଅଧିକ ହେବା ଦୂରେ ଥାଉ, ତାଙ୍କ ତୁଲ୍ୟ ପୁରୁଷ କେହି ନାହାନ୍ତି । ସେ ପିଶାଚ ବୃତ୍ତି ଅବଲମ୍ବନ କରୁଥିଲେ ମଧ୍ୟ ସନ୍ଥମାନଙ୍କର କାମ୍ୟ ॥୨୭॥ ଯେଉଁ ଶରୀରକୁ ନିଜର ବୋଲି ମନେ କରି ବସ୍ତ୍ର, ଅଳଙ୍କାର, ମାଳା, ଚନ୍ଦନ ଆଦିଦ୍ୱାରା ଲୋକେ ସଜେଇଥାନ୍ତି, ତାହା ପରେ ଶୃଗାଳ ଓ କୁକୁରମାନଙ୍କର ଭୋଜନରେ ପରିଣତ ହୁଏ । କେବଳ ଦୁର୍ଭାଗାମାନେ ହିଁ ସେହି ଆତ୍ମାରାମ ପରମବୈରାଗୀ ଭଗବାନ ଶଙ୍କରଙ୍କ ଚରିତକୁ ଉପହାସ କରିଥାଆନ୍ତି ॥୨୮॥ ଯାହାଙ୍କ ପ୍ରଦର୍ଶିତ ଧର୍ମର ମାର୍ଗକୁ ବ୍ରହ୍ମାଦି ଲୋକପାଳମାନେ ପାଳନ କରନ୍ତି, ଯେ ହେଉଛନ୍ତି ଏ ବିଶ୍ୱର କାରଣସ୍ୱରୂପ, ମାୟା ଯାହାଙ୍କର ଆଜ୍ଞାକାରିଣୀ, ସମସ୍ତ ଐଶ୍ୱର୍ଯ୍ୟଯୁକ୍ତ ସେଇ ଭଗବାନଙ୍କର ଏହି ପିଶାଚ ଆଚରଣ ବିଡ଼ମ୍ୱନା ପରି ମନେ ହୁଏ ॥୨୯॥

ମୈତ୍ରେୟ କହିଲେ, ସ୍ୱାମୀ ଏପରି ବୁଝାଇ କହିଲେ ମଧ୍ୟ, ଦିତି ଅତିଶୟ କାମାତୁରା ହୋଇ ବ୍ରହ୍ମର୍ଷି କଶ୍ୟପଙ୍କର ବସ୍ତ୍ରକୁ ଭିଡ଼ି ଧରିଲେ ॥୩୦॥ ଏହିପରି ଅପକର୍ମପାଇଁ ନିଜ ଭାର୍ଯ୍ୟାର ଜିଦ୍ ଦେଖି ଅଦୃଷ୍ଟକୁ ନମସ୍କାର କରି କଶ୍ୟପ ତାଙ୍କୁ ଏକାନ୍ତରେ ସମ୍ଭୋଗ କଲେ ॥୩୧॥ ତହୁଁ ଜଳରେ ସ୍ନାନ କରି ପ୍ରାଣ ଓ ବାକ୍‌ସଂଯମଦ୍ୱାରା ବିଶୁଦ୍ଧ ଜ୍ୟୋତିର୍ମୟ ସନାତନ ବ୍ରହ୍ମକୁ ଧ୍ୟାନପୂର୍ବକ ଜପ କରିବାକୁ ଲାଗିଲେ ॥୩୨॥ ଏହିପରି ନିନ୍ଦିତ କର୍ମପାଇଁ ଲଜ୍ଜିତ ଅନୁଭବ କରି ଦିତି ମଧ୍ୟ ବ୍ରହ୍ମର୍ଷି କଶ୍ୟପଙ୍କ ପାଖରେ ଅଧୋମୁଖରେ ଠିଆହୋଇ କହିବାକୁ ଆରମ୍ଭ କଲେ ॥୩୩॥ ଦିତି କହିଲେ; ବ୍ରହ୍ମନ୍ ! ସମସ୍ତ ପ୍ରାଣୀଙ୍କର ସ୍ୱାମୀ ଭଗବାନ ଭୂତପତି ରୁଦ୍ରଙ୍କ ନିକଟରେ ମୁଁ ଯେଉଁ ଅପରାଧ କରିଛି, ସେ ସେଥିପାଇଁ ମୋର ଗର୍ଭକୁ ନଷ୍ଟ ନ କରନ୍ତୁ ॥୩୪॥ ମହେଶ୍ୱରଙ୍କୁ ମୋର ନମସ୍କାର । ଯେ ପ୍ରଚଣ୍ଡ ରୁଦ୍ରରୂପରେ ସକାମ ଭକ୍ତଙ୍କର କାମନା ପୂର୍ଣ୍ଣ କରନ୍ତି ଏବଂ ଶିବ ରୂପରେ ନିଷ୍କାମ ଭକ୍ତଙ୍କର କଲ୍ୟାଣ କରନ୍ତି, ସେ ସତ୍‌ପୁରୁଷଙ୍କପାଇଁ ମଙ୍ଗଳମୟ ଭଗବାନ ଏବଂ ଦୁଷ୍ଟଲୋକଙ୍କପାଇଁ କ୍ରୁଦ୍ଧ ଦଣ୍ଡଦାତା ॥୩୫॥ ସେ ସତୀଙ୍କର ସ୍ୱାମୀ, ମୋର ଭଗିନୀପତି । ନିଷ୍ଠୁର ବ୍ୟାଧ ମଧ୍ୟ ଆମ ସ୍ତ୍ରୀଲୋକଙ୍କ ଉପରେ ଦୟା କରେ । ତେଣୁ ସେହି ଦୟାଶୀଳ ଭଗବାନ ମୋ ପ୍ରତି ପ୍ରସନ୍ନ ହୁଅନ୍ତୁ ॥୩୬॥ ମୈତ୍ରେୟ କହିଲେ, ବିଦୁର ! ନିଜ ଗର୍ଭସ୍ଥ ସନ୍ତାନଙ୍କର ମଙ୍ଗଳ କାମନା କରି ଦିତି ଏହିପରି କହୁଥିବାବେଳେ ଭୟରେ ଥରୁଥିଲେ ।

ତାଙ୍କୁ ଏପରି ଅବସ୍ଥାରେ ଦେଖି ସନ୍ଧ୍ୟାକର୍ମରୁ ନିବୃତ୍ତ ହୋଇ ପ୍ରଜାପତି କଶ୍ୟପ କହିଲେ, ମୁହୂର୍ତ୍ତକର କାମବାସନାର ଦୋଷରେ ତୁମର ମନ ମଳିନ ହୋଇପଡ଼ିଥିଲା ଏବଂ ତୁମେ ମୋର ମନା ନ ମାନି ଦେବତାମାନଙ୍କୁ ଅତିଶୟ ଅବଜ୍ଞା କଲ ॥୩୭-୩୮॥ ତେଣୁ ତୁମର ଏହି ଅଭଦ୍ର କାର୍ଯ୍ୟପାଇଁ ତୁମ ଜଠରରୁ ଦୁଇ ଦୁଷ୍ଟ ଅମଙ୍ଗଳକାରୀ ପୁତ୍ର ଜନ୍ମ ହେବେ । ତାଙ୍କ ଅତ୍ୟାଚାରରେ ସମସ୍ତ ଲୋକ ଏବଂ ଲୋକପାଳ ବାରମ୍ବାର ବିଳାପ କରିବେ ॥୩୯॥ ତାଙ୍କ ହାତରେ ବହୁ ନିରପରାଧ ନିରୀହ ପ୍ରାଣୀ ନିହତ ହେବେ, ସ୍ତ୍ରୀଲୋକ ଅତ୍ୟାଚାରିତ ହେବେ ଏବଂ ମହାତ୍ମାମାନେ କ୍ଷୁବ୍ଧ ହେବାକୁ ଲାଗିବେ ॥୪୦॥ ସେତେବେଳେ ଲୋକରକ୍ଷାପାଇଁ ବିଶ୍ୱେଶ୍ୱର ଭଗବାନ କ୍ରୁଦ୍ଧ ହୋଇ ଅବତାର ଗ୍ରହଣ କରିବେ ଏବଂ ବଜ୍ରଧାରୀ ଇନ୍ଦ୍ର ପର୍ବତମାନଙ୍କ ପକ୍ଷ ଛେଦନ କରିବାପରି ସେଦୁହିଁଙ୍କୁ ହତ୍ୟା କରିବେ ॥୪୧॥ ଦିତି କହିଲେ, ସ୍ୱାମୀ ! ଯଦି ମୋ ପୁତ୍ର ଦୁହିଁଙ୍କର ବଧ ହେବ, ତା'ହେଲେ ସୁଦର୍ଶନଚକ୍ରଧାରୀ ସାକ୍ଷାତ୍ ଭଗବାନଙ୍କ ହାତରେ ତାହା ହେଉ; ବ୍ରାହ୍ମଣମାନଙ୍କ

କ୍ରୋଧବଶରୁ ନ ହେଉ ॥୪୨॥ କାରଣ, ଯେଉଁ ବ୍ୟକ୍ତି ବ୍ରହ୍ମଶାପରେ ଦଗ୍ଧ ହୁଏ, ବା ଅନ୍ୟ ପ୍ରାଣୀଙ୍କୁ ଭୟ ଦେଖାଉଥାଏ, ସେ, ଯେ କୌଣସି ଯୋନିରେ ଜନ୍ମ ହେଉ ନା କାହିଁକି, ନରକଗାମୀ ଜୀବଙ୍କର ମଧ୍ୟ ଦୟାର ପାତ୍ର ହୋଇ ପାରେନା ॥୪୩॥ କଶ୍ୟପ କହିଲେ, କୃତକର୍ମ ପାଇଁ ତୁମର ଶୋକ ଓ ଅନୁତାପଯୋଗୁଁ ଏବେ ତୁମର ଠିକ୍ ଓ ଭୁଲ ବିଚାର କରିବାର ଶକ୍ତିଯୋଗୁଁ ଏବଂ ଭଗବାନ ବିଷ୍ଣୁ, ଶିବ ଓ ମୋ ପ୍ରତି ତୁମର ଶ୍ରଦ୍ଧା ଯୋଗୁଁ, ତୁମ ପୁତ୍ରଦୁହିଁଙ୍କ ମଧ୍ୟରୁ ଜଣକର ଏପରି ଏକ ପୁତ୍ର ଜନ୍ମ ହେବ, ଯାହାର ଶୁଦ୍ଧ ଯଶକୁ ଭକ୍ତମାନେ ଭଗବାନଙ୍କ ଗୁଣାବଳୀ ସହିତ କୀର୍ତ୍ତନ କରିବେ ॥୪୪-୪୫॥ ଯେପରି ଖାଦମିଶା ସୁନାକୁ ବାରମ୍ବାର ଦଗ୍ଧ କରି ଶୁଦ୍ଧ କରାଯାଏ, ସେହିପରି ତାର ସ୍ୱଭାବକୁ ଅନୁସରଣ କରିବାପାଇଁ ସାଧୁମାନେ ଅନ୍ୟମାନଙ୍କ ପ୍ରତି ଶତ୍ରୁତା ଓ ଅସୂୟାଭାବ ନ ରଖି ନିଜ ଅନ୍ତରକୁ ଶୁଦ୍ଧ କରିବେ ॥୪୬॥ ଯାହାଙ୍କ ପ୍ରସାଦରୁ ତାଙ୍କ ଆତ୍ମସ୍ୱରୂପ ଏହି ବିଶ୍ୱ ପ୍ରସନ୍ନ ହୁଏ, ସେହି ସ୍ୱୟଂଦ୍ରଷ୍ଟା ଭଗବାନ ତାର ଅନନ୍ୟ ଭକ୍ତିରେ ସନ୍ତୁଷ୍ଟ ହେବେ ॥୪୭॥ ମହାତ୍ମାମାନଙ୍କ ମଧ୍ୟରେ ଶ୍ରେଷ୍ଠ ସେହି ମହାଭାଗବତ ମହାନୁଭାବ ମହାତ୍ମା ପ୍ରହ୍ଲାଦ ଭକ୍ତିବଳରେ ଭଗବାନଙ୍କୁ ନିଜ ହୃଦୟ ମଧ୍ୟରେ ସ୍ଥାପନ କରି ଇହଧାମ ତ୍ୟାଗ କରିବ ॥୪୮॥ ସେ ଲମ୍ପଟ ହେବ ନାହିଁ, ସୁସ୍ୱଭାବଯୁକ୍ତ ଏବଂ ସମସ୍ତ ଗୁଣର ଆଧାର ହେବ । ଅନ୍ୟମାନଙ୍କ ସମୃଦ୍ଧିରେ ହୃଷ୍ଟ ଏବଂ ଅନ୍ୟମାନଙ୍କ ଦୁଃଖରେ ଦୁଃଖିତ ଅଜାତଶତ୍ରୁ ହେବ । ଚନ୍ଦ୍ର ଯେପରି ନିଦାଘର ତାପ ହରଣ କରେ, ସେ ସେହିପରି ସମସ୍ତ ଜଗତର ଶୋକ ହରଣ କରିବ ॥୪୯॥ ଯେଉଁ କମଳନୟନ ଭଗବାନ ଏହି ସଂସାରର ଭିତରେ ବାହାରେ ସର୍ବତ୍ର ବିଦ୍ୟମାନ, ଯେ ନିଜ ଭକ୍ତମାନଙ୍କର ଇଚ୍ଛା ଅନୁସାରେ ବିଭିନ୍ନ ରୂପ ଧରନ୍ତି, ଯେ ଲକ୍ଷ୍ମୀଙ୍କର ଶୋଭା ବଢ଼ାନ୍ତି, ଯାହାଙ୍କର ମୁଖମଣ୍ଡଳ କୁଣ୍ଡଳାଦି ଅଳଙ୍କାର ଦ୍ୱାରା ଦେଦୀପ୍ୟମାନ, ସେହି ଭଗବାନଙ୍କୁ ପ୍ରହ୍ଲାଦ ପ୍ରତ୍ୟକ୍ଷ ଭାବରେ ଦର୍ଶନ କରିବ ॥୫୦॥ ମୈତ୍ରେୟ କହିଲେ, ତାଙ୍କ ନାତି ଭଗବାନଙ୍କର ପରମ ଭକ୍ତ ହେବ ଏବଂ ପୁତ୍ର ଦୁହେଁ କେବଳ ଭଗବାନଙ୍କ ଦ୍ୱାରା ନିହତ ହେବେ, ଏହା ଜାଣି ଦିତି ମନେ ମନେ ଅତିଶୟ ଆନନ୍ଦିତ ହେଲେ ॥୫୧॥

## ପଞ୍ଚଦଶ ଅଧ୍ୟାୟ

# ଜୟ-ବିଜୟଙ୍କୁ ସନକାଦିଙ୍କ ଅଭିଶାପ

ମୈତ୍ରେୟ କହିଲେ, ପ୍ରଜାପତି କଶ୍ୟପଙ୍କ ତେଜ ଅନ୍ୟମାନଙ୍କ ତେଜକୁ ହରଣ କରେ । ଏହି ତେଜରୁ ଜାତ ତାଙ୍କ ପୁତ୍ରଦୁହେଁ ଦେବତାମାନଙ୍କ ପୀଡ଼ାର କାରଣ ହେବେ, ଏହି ଆଶଙ୍କାରେ ଦିତି ଶହେ ବର୍ଷପର୍ଯ୍ୟନ୍ତ କଶ୍ୟପଙ୍କ ବୀର୍ଯ୍ୟ ବା ତେଜକୁ ଗର୍ଭରେ ଧାରଣ କଲେ ॥୧॥ ଏହି ଗର୍ଭର ତେଜରେ ସଂସାରର ଆଲୋକ କ୍ଷୟ ହେବାକୁ ଲାଗିଲା ଏବଂ ଇନ୍ଦ୍ରାଦି ଲୋକପାଳ ତେଜୋହୀନ ହୋଇଗଲେ । ସେମାନେ ବିଶ୍ୱସ୍ରଷ୍ଟା ବ୍ରହ୍ମାଙ୍କ ପାଖକୁ ଯାଇ ନିବେଦନ କଲେ, ଚାରିଆଡ଼େ ଅନ୍ଧକାର ଘୋଟି ଯାଇ ଆତଙ୍କ ସୃଷ୍ଟି ହେଉଛି ॥୨॥ ଦେବତାମାନେ କହିଲେ, ବିଭୁ ! କାଳ ଆପଣଙ୍କର ଜ୍ଞାନକୁ ସ୍ପର୍ଶ କରିପାରେ ନାହିଁ । ତେଣୁ ଆପଣଙ୍କପାଇଁ କୌଣସି ବସ୍ତୁ ଅଛପା ନୁହେଁ, ବର୍ତ୍ତମାନ ଏହି ଅନ୍ଧକାର କିପରି ଆମର ଭୟ ଓ ଉଦ୍‌ବେଗର କାରଣ ହୋଇଛି, ତାହା ଆପଣ ଜାଣିପାରୁଥିବେ ॥୩॥ ଦେବଦେବ ! ଆପଣ ଜଗତର ବିଧାତା । ସମସ୍ତ ଲୋକପାଳଙ୍କର ଶିରୋମଣି ସ୍ୱରୂପ । ଇହଲୋକ ଓ ପରଲୋକର ସମସ୍ତ ଜୀବଙ୍କ ଭାବ ଆପଣଙ୍କୁ ଅଗୋଚର ନୁହେଁ ॥୪॥ ଆପଣ ବିଜ୍ଞାନବଳସମ୍ପନ୍ନ । ମାୟାରେ ନିଜର ଏହି ରୂପକୁ ଧାରଣ କରିଛନ୍ତି । ରଜୋଗୁଣକୁ ଧାରଣ କରି ପ୍ରାଣୀମାନଙ୍କୁ ସୃଷ୍ଟି କରିଛନ୍ତି । ଆପଣଙ୍କ ଜନ୍ମର କାରଣ କେହି ଜାଣନ୍ତି ନାହିଁ । ଆପଣଙ୍କୁ ଆମେ ନମସ୍କାର କରୁଛୁ ॥୫॥ ଆପଣ ଆତ୍ମଭୂ । କାର୍ଯ୍ୟକାରଣସ୍ୱରୂପ ସମସ୍ତ ଭୁବନକୁ ନିଜ

ମଧ୍ୟରେ ଧାରଣ କରିଛନ୍ତି । ଯେଉଁମାନେ ଅନନ୍ୟ ଭାବରେ ଆପଣଙ୍କୁ ଧ୍ୟାନ କରନ୍ତି, ପ୍ରାଣ ଓ ଇନ୍ଦ୍ରିୟମାନଙ୍କୁ ଜୟ କରିଥିବା ସେହି ସିଦ୍ଧ ଯୋଗୀମାନଙ୍କର କେବେହେଲେ ପରାଭବ ନାହିଁ । କାରଣ ଆପଣଙ୍କର ପ୍ରସାଦ ସେମାନେ ଲାଭ କରିଥାନ୍ତି ॥୬-୭॥ ରଜ୍ଜୁରେ ବନ୍ଧାହୋଇଥିବା ଗୋରୁମାନଙ୍କପରି ଆପଣଙ୍କ ନିର୍ଦ୍ଦେଶରେ ମନୁଷ୍ୟମାନେ ଯନ୍ତ୍ରପରି ଚାଳିତ ହୁଅନ୍ତି ଏବଂ ଆପଣଙ୍କ ଆୟତ୍ତରେ ରହି ଆପଣଙ୍କୁ ପୂଜାର ବଳି ଅର୍ପଣ କରନ୍ତି । ତେଣୁ ହେ ଶ୍ରେଷ୍ଠ, ଆପଣଙ୍କୁ ନମସ୍କାର ॥୮॥ ଭଗବାନ, ଏହି ଅନ୍ଧକାରଯୋଗୁଁ ଆମର ସମସ୍ତ କର୍ମକର୍ମାଣି ଲୁପ୍ତ ହୋଇପଡ଼ିଛି । ଆପଣ ଆମର ମଙ୍ଗଳ ବିଧାନ କରନ୍ତୁ । ଆମେମାନେ ଆପଣଙ୍କର ଶରଣାଗତ । ଅପାର ଦୟା ଦୃଷ୍ଟିରେ ଆମ୍ଭମାନଙ୍କୁ ଦେଖନ୍ତୁ ॥୯॥ ଦେବ ! ଅଗ୍ନି ଇନ୍ଧନଦ୍ୱାରା ଯେପରି ବଢ଼ିଚାଲେ, କଶ୍ୟପଙ୍କର ଦତ୍ତ ତେଜରେ ଦିତିଙ୍କର ଗର୍ଭ ସେହିପରି ଚାରିଆଡ଼କୁ ଅନ୍ଧକାର କରି ବଢ଼ିଚାଲିଛି ॥୧୦॥

ମୈତ୍ରେୟ କହିଲେ, ମହାବାହୁ ବିଦୁର ! ଭଗବାନ୍ ବ୍ରହ୍ମା ଦେବତାମାନଙ୍କର ପ୍ରାର୍ଥନା ଶୁଣି ଟିକିଏ ହସି ଉତ୍ତର ଦେଲେ । ଦେବତାମାନଙ୍କୁ ପ୍ରୀତିପୂର୍ଣ୍ଣ ମଧୁର ବାକ୍ୟରେ କହିଲେ, ତୁମର ପୂର୍ବ ପୁରୁଷ ସନକାଦି କୁମାରମାନେ ମୋର ମାନସପୁତ୍ର ଥିଲେ । ସେମାନେ ବୀତସ୍ପୃହ ହୋଇ ଆକାଶମାର୍ଗରେ ସମସ୍ତ ଲୋକରେ ବିଚରଣ କରୁଥିଲେ ॥୧୧-୧୨॥ ସେମାନେ ଏକସମୟରେ ବିମଳାତ୍ମା ଭଗବାନ ବିଷ୍ଣୁଙ୍କର ସର୍ବଲୋକପୂଜ୍ୟ ବୈକୁଣ୍ଠଧାମରେ ପହଞ୍ଚିଲେ ॥୧୩॥ ସେଠାରେ ଯେଉଁମାନେ ରହୁଥିଲେ, ସେମାନେ ରୂପରେ ଭଗବାନ ବିଷ୍ଣୁଙ୍କ ପରି । ସେମାନେ ଅନାସକ୍ତ ଧର୍ମରେ ଶ୍ରୀହରିଙ୍କୁ ଆରାଧନା କରନ୍ତି ॥୧୪॥ ସେଠାରେ ଭକ୍ତମାନଙ୍କର ପ୍ରାର୍ଥନାଲଭ୍ୟ ନିର୍ମଳ ସତ୍ତ୍ୱଗୁଣସ୍ୱରୂପ ଭଗବାନ ଶ୍ରୀହରି ବୈକୁଣ୍ଠବାସୀଙ୍କୁ ଆନନ୍ଦିତ କରି ଅବସ୍ଥାନ କରନ୍ତି ॥୧୫॥ ସେଠାରେ ନିଃଶ୍ରେୟସ ନାମକ ବନରେ ସମସ୍ତପ୍ରକାର କାମନା ପୂର୍ଣ୍ଣ କରୁଥିବା କଳ୍ପଦ୍ରୁମ ସବୁ ରହିଥା'ନ୍ତି । ସମସ୍ତ ଋତୁରେ ଶୋଭାମୟ ସେହି ବନ ହେଉଛି କୈବଲ୍ୟର ମୂର୍ତ୍ତିମନ୍ତ ପ୍ରତୀକ ॥୧୬॥ ସେଠାରେ ଶ୍ରୀହରିଙ୍କ ପାର୍ଷଦମାନେ ନିଜନିଜର ଲଳନାମାନଙ୍କ ସହିତ ବିମାନରେ ବସି ପ୍ରଭୁଙ୍କର ପାପକ୍ଷୟକାରୀ ପବିତ୍ର ଲୀଳାମାନ ଗାନ କରୁଥାନ୍ତି । ସେତେବେଳେ ଜଳରେ ପ୍ରସ୍ଫୁଟିତ ମଧୁମୟ ମାଧବୀଲତାମାନଙ୍କର ସୁଗନ୍ଧ ପବନରେ ଭାସିଆସି ଚିତ୍ତବିଭ୍ରମ କଲେ ମଧ୍ୟ ସେମାନେ ସେଥିରେ ବିଚଳିତ ହୁଅନ୍ତି ନାହିଁ ॥୧୭॥ ସେଠାରେ ଭୃଙ୍ଗରାଜମାନେ ଉଚ୍ଚ ଗୁଞ୍ଜରଣଦ୍ୱାରା ହରିକଥା ଗାନ କଲାବେଳେ ପାରା, ପିକ, ସାରସ, ଚକ୍ରବାକ, କାଠହଣା, ହଂସ, ଶୁକ, ତିତିରି ଏବଂ ମୟୂରାଦି ପକ୍ଷୀମାନଙ୍କର କୋଳାହଳ ବନ୍ଦ ହୋଇଯାଏ ॥୧୮॥ ମନ୍ଦାର, କୁନ୍ଦ, କୁରୁବକ, ନୀଳପଦ୍ମ, ଚମ୍ପକ, ପୁନ୍ନାଗ, ଅର୍ଣ୍ଣ, ନାଗେଶ୍ୱର, ବକୁଳ, ପଦ୍ମ ଏବଂ ପାରିଜାତ ଆଦି ପୁଷ୍ପ ସୁଗନ୍ଧଯୁକ୍ତ ହେଲେ ମଧ୍ୟ ଭଗବାନଙ୍କର ଶ୍ରୀଅଙ୍ଗକୁ ଆନନ୍ଦିତ କରୁଥିବା ତୁଳସୀର ତପସ୍ୟାକୁ ସେ ଅଧିକ ମାନ୍ୟତା ଦିଅନ୍ତି ॥୧୯॥ ବୈଦୂର୍ଯ୍ୟ, ମରକତ ମଣି ଓ ସୁବର୍ଣ୍ଣମୟ ବିମାନମାନଙ୍କରେ ସେହି ଧାମ ପୂରି ରହିଥାଏ । କେବଳ ଶ୍ରୀହରିଙ୍କର ପାଦପ୍ରଣତିଯୋଗୁଁ ତାହା ସବୁ ଦୃଶ୍ୟ ହୋଇଥାଏ । ସେହି କୃଷ୍ଣତଦ୍‌ଗତପ୍ରାଣ ପୁରୁଷମାନଙ୍କୁ ପରିହାସାଦିଦ୍ୱାରା ଚାରୁନିତମ୍ବିନୀ ସ୍ମିତହାସିନୀ ଲଳନାମାନେ ବିଚଳିତ କରିପାରନ୍ତି ନାହିଁ ॥୨୦॥

ସେହି ଶ୍ରୀହରିଙ୍କର ଧାମରେ ଶ୍ରୀରୂପିଣୀ ଲକ୍ଷ୍ମୀଦେବୀ ନିଜର ଚଞ୍ଚଳତା ଦୋଷରୁ ମୁକ୍ତ ହୋଇ (ସ୍ଥିର ହୋଇ) ହସ୍ତରେ ଲୀଳାପଦ୍ମ ଧରି ବୁଲୁଥାନ୍ତି । ସେତେବେଳେ ତାଙ୍କର ନୂପୁର ନିକ୍ୱଣରେ ସେହି ଧାମ ଧ୍ୱନିତ ହେଉଥାଏ । ଯେଉଁ ଲକ୍ଷ୍ମୀଙ୍କର ଅନୁଗ୍ରହପାଇଁ ବ୍ରହ୍ମାଦି ଦେବତାମାନେ ସର୍ବଦା ଚେଷ୍ଟିତ, ସେ ତାଙ୍କ ହସ୍ତରେ ଏହି ଲୀଳାପଦ୍ମକୁ ଧାରଣ କରିଥିବାବେଳେ ସୁବର୍ଣ୍ଣଖଚିତ ସ୍ଫଟିକର କାନ୍ଥମାନଙ୍କୁ ସେଥିରେ ମାର୍ଜନା କରୁଥିବା ପରି ଜଣାଯାଏ ॥୨୧॥ ପ୍ରିୟ ଦେବଗଣ, ନିଜ ପରିଚାରିକାମାନଙ୍କୁ ସାଙ୍ଗରେ ଧରି ଲକ୍ଷ୍ମୀଦେବୀ ନିଜର ଉଦ୍ୟାନରେ ତୁଳସୀଦଳ ଦ୍ୱାରା ବିଷ୍ଣୁଙ୍କୁ ଅର୍ଚ୍ଚନା କଲାବେଳେ ପଦ୍ମରାଗମଣି ନିର୍ମିତ ସରୋବରର ଜଳରେ ତାଙ୍କର ସୁନ୍ଦର କେଶ ଓ ଉନ୍ନତ ନାସାଯୁକ୍ତ ମୁଖ ପ୍ରତିବିମ୍ବିତ ହୁଏ । ଭଗବାନ ତାଙ୍କର ସେହି ମୁଖଶ୍ରୀକୁ ଚୁମ୍ବନ କରୁଥିବା ଜାଣି ନିଜକୁ ସେ ସୌଭାଗ୍ୟଶାଳିନୀ ମନେ କରନ୍ତି ॥୨୨॥ ଯେଉଁମାନେ ଭଗବାନଙ୍କର ସର୍ବପାପହର

ଲୀଳାମାନ ନ ଶୁଣି ବୁଦ୍ଧି ନାଶ କରୁଥିବା ଅନ୍ୟବିଷୟକ କୁକଥାମାନ ଶୁଣନ୍ତି, ସେମାନେ ତ ବୈକୁଣ୍ଠକୁ ଯାଇ ପାରନ୍ତି ନାହିଁ, ଏହି ଅସାର କଥାମାନ ଶୁଣି ଆଶ୍ରୟହୀନ ଘୋର ନରକରେ ପତିତ ହୁଅନ୍ତି ।।୨୩।। ଯେଉଁ ମନୁଷ୍ୟଜନ୍ମଦ୍ୱାରା ଧର୍ମ ସହ ତତ୍ତ୍ୱଜ୍ଞାନ ହୋଇଥାଏ ଏବଂ ଯେଉଁ ମାନବଜନ୍ମ ଦେବତାମାନଙ୍କର ମଧ୍ୟ କାମ୍ୟ, ଆଶ୍ଚର୍ଯ୍ୟର କଥା, ସେହି ଜନ୍ମଲାଭ କରି ଯେ ଭଗବାନଙ୍କର ଆରାଧନା କରେନା, ସେ ପ୍ରକୃତରେ ତାଙ୍କ ସର୍ବବ୍ୟାପୀ ମାୟାର ମୋହରେ ପଡ଼ିଯାଏ ।।୨୪।। ଯେଉଁମାନେ ସର୍ବଦା ଦେବାଧିଦେବ ଶ୍ରୀହରିଙ୍କର ଗୁଣକୀର୍ତ୍ତନ କରନ୍ତି, ସେମାନେ ସମସ୍ତ ଲୋକର ଉପରେ ଥିବା ବୈକୁଣ୍ଠଧାମକୁ ଲାଭ କରିଥାନ୍ତି । ଯମ ଏମାନଙ୍କଠାରୁ ଦୂରରେ ରହେ । ଯଶୋମୟ ହରିକଥା କୀର୍ତ୍ତନ କଲାବେଳେ ଭକ୍ତିବିହ୍ୱଳ ହୋଇ ଏମାନଙ୍କ ଆଖିରୁ ଲୁହ ଝରୁଥାଏ ଏବଂ ଅଙ୍ଗ ପୁଲକିତ ହୋଇଉଠେ । ଏମାନଙ୍କର ଏହି ସ୍ୱଭାବ ଆମମାନଙ୍କୁ ସ୍ପୃହଣୀୟ ହୋଇଥାଏ ।।୨୫।।

ନିଜ ଯୋଗମାୟା ବଳରେ ସନକାଦି ମୁନିମାନେ ସମସ୍ତ ଭୁବନରେ ବନ୍ଦନୀୟ ବିଶ୍ୱଗୁରୁ ଶ୍ରୀହରିଙ୍କର ସ୍ୱଧାମ ବୈକୁଣ୍ଠରେ ପହଞ୍ଚି ଅପୂର୍ବ ଆନନ୍ଦ ଅନୁଭବ କଲେ । ସେମାନେ ଦେଖିଲେ, ପରମଭକ୍ତମାନେ ବସିଥିବା ବିଚିତ୍ର ବିମାନମାନଙ୍କଦ୍ୱାରା ସେହି ଦିବ୍ୟଧାମ ଉଦ୍‌ଭାସିତ ହୋଇଉଠୁଛି ।।୨୬।। ସେହି ମୁନିମାନେ ଏହି ସବୁକୁ ଉପେକ୍ଷା କରି ଛ'ଟି ଦ୍ୱାର ପରେ ସପ୍ତମ ଦ୍ୱାରରେ ପହଞ୍ଚି କେୟୂର କୁଣ୍ଡଳ ଓ କିରୀଟଯୁକ୍ତ ଦୁଇ ଜଣ ଗଦାଧାରୀ ଦେବତାଙ୍କୁ ସେଠାରେ ଦେଖିଲେ । ସେ ଦୁହେଁ ସମବୟସ୍କ ଜଣାଯାଉଥିଲେ ।।୨୭।। ସେ ଥିଲେ ଶ୍ୟାମବର୍ଣ୍ଣ, ଚତୁର୍ଭୁଜଯୁକ୍ତ । ତାଙ୍କ ଗଳାରେ ଲମ୍ବିଥିବା ବନମାଳା ଭ୍ରମରମାନଙ୍କୁ ମତୁଆଲା କରିଦେଉଥିଲା । ତାଙ୍କର ଭ୍ରୂଲତା କୁଟିଳ ଏବଂ ଚକ୍ଷୁ ରକ୍ତବର୍ଣ୍ଣ ଥିଲା । ଏହିସବୁ ସହିତ ନାକପୁଡ଼ା ଫୁଲି ରହିଥିବାରୁ ଦୁହେଁ କୋପନସ୍ୱଭାବର ବୋଲି ଜଣାଯାଉଥିଲେ ।।୨୮।। ଏହି ମୁନିମାନେ ତାଙ୍କୁ କିଛି ନ ପଚାରି ସପ୍ତମ ଦ୍ୱାରକୁ ଠେଲିଦେଇ ଭିତରକୁ ପଶିଗଲେ । ପୂର୍ବରୁ ସେମାନେ ଏହିପରି ଛଅଟି ଯାକ ଦ୍ୱାରରେ ସୁବର୍ଣ୍ଣମୟ ବଜ୍ରକବାଟକୁ ଠେଲି ଭିତରକୁ ପଶିଥିଲେ । କାରଣ ସେମାନେ ଅବାଧରେ, ବିନା ଭୟରେ ଓ ଅବିଚଳିତଭାବରେ ସର୍ବତ୍ର ବିଚରଣ କରୁଥିଲେ ।।୨୯।। ଏହି ଚାରି ଜଣ ମୁନି ପରମ ତତ୍ତ୍ୱଜ୍ଞ ଥିଲେ । ବୟସରେ ବୃଦ୍ଧ ହେଲେ ମଧ୍ୟ ପାଞ୍ଚ ବର୍ଷର ବାଳକ ପରି ଦେଖାଯାଉଥିଲେ ଏବଂ ଦିଗମ୍ବର ବୃତ୍ତିଯୋଗୁଁ କୌଣସି ବସ୍ତ୍ର ପିନ୍ଧି ନ ଥିଲେ । ସେମାନଙ୍କୁ ଏପରି ମାଡ଼ିଯାଉଥିବାର ଦେଖି ଦ୍ୱାରପାଳ ଦୁଇ ଜଣ ବେତ ହଲାଇ ତାଙ୍କୁ ବାଧା ଦେଲେ । ସେମାନଙ୍କ ତେଜକୁ ଉପହାସ କରି ଏପରି ଦୁର୍ବ୍ୟବହାର କରିବା ଭଗବତ୍ ସ୍ୱଭାବର ସମ୍ପୂର୍ଣ୍ଣ ବିପରୀତ ଥିଲା ।।୩୦।।

ଏହି ମୁନିମାନେ ନିଜ ପରମମିତ୍ର ଭଗବାନଙ୍କୁ ଦେଖିବାକୁ ଯାଉଥିବାବେଳେ ସବୁଦେବତାଙ୍କ ଆଗରେ ସେମାନଙ୍କୁ ଯେପରି ବାଧା ଦିଆଗଲା, ସେଥିରେ ସେମାନଙ୍କର ଆଖି ରାଗରେ ଲାଲ୍ ପଡ଼ିଗଲା । ସେମାନେ କହିଲେ, ଭଗବାନଙ୍କୁ ସର୍ବାଧିକ ସେବାକରି ଯେଉଁ ସମଦର୍ଶୀମାନେ ଏଠାରେ ବାସ କରନ୍ତି, ସେମାନଙ୍କ ମଧ୍ୟରେ ଏ ଦୁଇଜଣ କିଏ, ଯାହାଙ୍କର ଏପରି ବିଷମ ସ୍ୱଭାବ ଦେଖାଯାଉଛି ? ଭଗବାନ ନିଜେ ପ୍ରଶାନ୍ତ ପୁରୁଷ । ତାଙ୍କର କେହି ଶତ୍ରୁ ନାହାନ୍ତି । ଏଠାରେ ଅନ୍ୟମାନଙ୍କୁ ସନ୍ଦେହ କରୁଥିବା ଏପରି ଦୁଇଟା ଦୁଷ୍ଟ ଆସି କିପରି ରହିଗଲେ ? ଯାହାଙ୍କ ଉଦରରେ ସମସ୍ତ ବ୍ରହ୍ମାଣ୍ଡ ଅବସ୍ଥିତ, ସେହି ଭଗବାନଙ୍କଠାରୁ ଏଠାରେ ରହୁଥିବା ଆତ୍ମଜ୍ଞାନୀମାନେ ନିଜକୁ ଭିନ୍ନ ଦେଖନ୍ତି ନାହିଁ । ମହାକାଶ ମଧ୍ୟରେ ଘଟାକାଶ ଥିବାପରି ସେମାନେ ଭଗବାନଙ୍କ ଅନ୍ତରରେ ଅଛନ୍ତି ବୋଲି ଅନୁଭବ କରନ୍ତି । ଭୟ ଓ ବିଭେଦ ସୃଷ୍ଟି କରୁଥିବା ତୁମେ ଦୁଇ ଜଣ କିଏ, ଦେବତାଙ୍କ ରୂପରେ ଏଠାରେ ରହିଛ ? ।।୩୧-୩୩।। ସେହି ବୈକୁଣ୍ଠନାଥଙ୍କର ଏହି ପରମଧାମରେ ରହୁଥିବା ମନ୍ଦବୁଦ୍ଧି ତୁମ ଦୁଇଜଣଙ୍କ ପାଇଁ ପ୍ରକୃଷ୍ଟ ବିଧାନ ହେଉଛି ତୁମେ ଦୁହେଁ ଭେଦବୁଦ୍ଧି ହେତୁ ବୈକୁଣ୍ଠ ଛାଡ଼ି ଅନ୍ୟ ପାପପୂର୍ଣ୍ଣ ଲୋକରେ ଜନ୍ମ ହୁଅ, ଯେଉଁଠି କାମ, କ୍ରୋଧ ଓ ଲୋଭ ରୂପେ ପ୍ରାଣୀମାନଙ୍କର ତିନୋଟିଯାକ ଶତ୍ରୁ ରହିଛନ୍ତି ।।୩୪।।

ବ୍ରହ୍ମଶାପକୁ ନିବାରଣ କରିବାପାଇଁ କୌଣସି ଅସ୍ତ୍ର ନାହିଁ । ତେଣୁ ମୁନିମାନଙ୍କର ଏହି କଠୋର ଭାଷା ଶୁଣି ଶ୍ରୀହରିଙ୍କର ଅନୁଚର ଏହି ଦ୍ୱାରପାଳ ଦୁଇ ଜଣ ଭୟଭୀତ ହୋଇପଡ଼ିଲେ ଏବଂ ଅତ୍ୟନ୍ତ କାତର ହୋଇ ସେମାନଙ୍କର ପାଦ ଧରି ପଡ଼ିଗଲେ ।।୩୫।। ମୁନିବର୍ଯ୍ୟ, ଆପଣମାନେ ଆମଦୁହିଁଙ୍କ ପ୍ରତି ଯଥୋଚିତ ଦଣ୍ଡବିଧାନ କରିଛନ୍ତି । ଈଶ୍ୱରଙ୍କ ଆଜ୍ଞା ଅବଜ୍ଞା କରି ଆମେ ଯେଉଁ ଅପରାଧ କରିଛୁ, ତାହା ବହୁତ ବଡ଼ ଅପରାଧ । ଆମେ ଅନୁତପ୍ତ ହୋଇ ଆପଣମାନଙ୍କର କୃପାଭିକ୍ଷା କରୁଛୁ । ଆମେ ତଳକୁ ତଳ ଗଲାବେଳେ ମୋହବଶତଃ ଆମର ପ୍ରଭୁ ଭଗବାନଙ୍କୁ ଯେପରି ଭୁଲି ନ ଯାଉ ।।୩୬।। ସେହି ସମୟରେ ଭକ୍ତମାନଙ୍କର ପରମପ୍ରିୟ ପଦ୍ମନାଭ ଭଗବାନ ନିଜ ଦ୍ୱାରପାଳଙ୍କ ଦ୍ୱାରା ମୁନିମାନଙ୍କର ଅବଜ୍ଞା କରାଯାଇଛି ବୋଲି ଜାଣିପାରି ଲକ୍ଷ୍ମୀଙ୍କ ସହିତ ସେଠାରେ ପହଞ୍ଚିଲେ । ତାଙ୍କର ସେହି ପାଦଚାଳନା ହିଁ ଥିଲା ପରମହଂସ ମହାମୁନିମାନଙ୍କର କାମ୍ୟ ବସ୍ତୁ ।।୩୭।। ସନକାଦି ମୁନିମାନେ ନିଜ ସାଧନା ଓ ସିଦ୍ଧିର ଫଳସ୍ୱରୂପ ସ୍ୱୟଂ ଭଗବାନ ଛତ୍ରଚାମର ଆଦି ଧରିଥିବା ତାଙ୍କ ନିଜ ଲୋକଙ୍କ ଗହଣରେ ସେଠାକୁ ଆସୁଥିବାର ଦେଖିପାରିଲେ ।

ତାଙ୍କ ଦୁଇ ପାର୍ଶ୍ୱରେ ଚାମରଚାଳିତ ଶୀତଳ ପବନଦ୍ୱାରା ତାଙ୍କ ଉପରେ ଥିବା ଶ୍ୱେତ ଛତ୍ରର ଝାଲରସବୁ ହଲିହଲି ଚନ୍ଦ୍ରକିରଣରେ ଶିଶିରବିନ୍ଦୁ ଝଡ଼ିପଡ଼ିବାର ଭ୍ରମ ସୃଷ୍ଟି କରୁଥିଲା ।।୩୮।। ତାଙ୍କ ସୁନ୍ଦର ମୁଖମଣ୍ଡଳ ସମସ୍ତ ଦୁଃଖ ଦୂର କରେ ଏବଂ ତାହା ସମସ୍ତ ଶ୍ରେୟର ଆଧାର । ସେ ସ୍ନେହରେ ଚାହିଁ ଦେଖିବାମାତ୍ରେ ତାହା ହୃଦୟକୁ ସ୍ପର୍ଶ କରେ । ତାଙ୍କ ପ୍ରଶସ୍ତ ଶ୍ୟାମବର୍ଣ୍ଣ ବକ୍ଷସ୍ଥଳ ଲକ୍ଷ୍ମୀଙ୍କଦ୍ୱାରା ଶୋଭିତ ହୋଇ ସ୍ୱର୍ଗଲୋକର ଚୂଡ଼ାମଣି ବୈକୁଣ୍ଠର ଶୋଭାବର୍ଦ୍ଧନ କରୁଥିଲା ।।୩୯।। ପୀତାମ୍ବରପରିହିତ ତାଙ୍କ ବିଶାଳ ନିତମ୍ବ ଉପରେ ଏକ ସୁନ୍ଦର ମେଖଳା ଶୋଭା ପାଉଥିଲା । ବକ୍ଷରେ ବନମାଳା, ଯାହାଉପରେ ଭ୍ରମରମାନେ ବସି ଗୁଞ୍ଜନ କରୁଥିଲେ; କଚଟିରେ ସୁନାର କଙ୍କଣ, ଗୋଟିଏ ହାତ ଗରୁଡ଼ଙ୍କ ଉପରେ, ଏବଂ ଅନ୍ୟ ହାତରେ ପଦ୍ମଫୁଲଟିଏ ଧରି ସେ ଘୂରାଉଥିଲେ ।।୪୦।। ବିଦ୍ୟୁତ୍‌ନିନ୍ଦୀ ମକରକୁଣ୍ଡଳ ତାଙ୍କ ଗଣ୍ଡସ୍ଥଳକୁ ଅଳଙ୍କୃତ କରୁଥିଲା । ଉନ୍ନତ ନାସାଯୁକ୍ତ ମୁଖ । ମସ୍ତକରେ ମଣିମୟ କିରୀଟ । ତାଙ୍କ ବଳିଷ୍ଠ ଚତୁର୍ଭୁଜ ମଧ୍ୟରେ ଏକ ମହାର୍ଘ ହାର ଏବଂ ବେକରେ କୌସ୍ତୁଭ ମଣି ଶୋଭା ପାଉଥିଲା ।।୪୧।। ଭଗବାନଙ୍କ ଶରୀରର ସୌନ୍ଦର୍ଯ୍ୟ ନିକଟରେ ସ୍ୱୟଂ ଲକ୍ଷ୍ମୀଙ୍କର ସୌନ୍ଦର୍ଯ୍ୟ ମଧ୍ୟ ମଳିନ ପଡ଼ିଯାଏ ବୋଲି ଭକ୍ତମାନେ ବର୍ଣ୍ଣନା କରନ୍ତି । ବ୍ରହ୍ମା କହିଲେ, ଦେବତାମାନେ ! ମୋ'ପାଇଁ, ଶିବଙ୍କପାଇଁ ଓ ତୁମମାନଙ୍କପାଇଁ ସେ ଏପରି ସୁନ୍ଦର କଳେବର ଧାରଣ କରିଛନ୍ତି । ତାଙ୍କୁ ଦେଖି କୁମାରମାନେ ଆନନ୍ଦରେ ପ୍ରଣାମ କଲେ ଏବଂ ଯେତେ ଦେଖିଲେ ମଧ୍ୟ ସେମାନଙ୍କର ମନ ସନ୍ତୁଷ୍ଟ ହେଲା ନାହିଁ ।।୪୨।।

କମଳନୟନ ଭଗବାନଙ୍କର ପଦକମଳରେ ତୁଳସୀଦଳ ଚଢ଼ାଯାଇଥିବାଯୋଗୁଁ ତାହା ଏକ ଅପୂର୍ବ ସୁଗନ୍ଧ ସୃଷ୍ଟି କରୁଥିଲା । ଏହି ସୁଗନ୍ଧ ପବନ ମୁନିମାନଙ୍କର ନାସାରନ୍ଧ୍ର ଦେଇ ଅନ୍ତଃକରଣରେ ପ୍ରବେଶ କଲା । ଯଦିଓ ମୁନିମାନେ ସର୍ବଦା ବ୍ରହ୍ମାନନ୍ଦରେ ଭୋଳ ଥିଲେ, ତଥାପି ଏହି ସୁଗନ୍ଧର ଆନନ୍ଦ ସେମାନଙ୍କ ଚିତ୍ତକୁ ବିଚଳିତ କରିଦେଲା ।।୪୩।। ନୀଳକମଳର କୋରକ ପରି ଭଗବାନଙ୍କର ମୁଖମଣ୍ଡଳ; ସେଥିରେ ତାଙ୍କ ସୁନ୍ଦର ଅଧରରେ କୁନ୍ଦକଳିତୁଲ୍ୟ ମଧୁର ସ୍ମିତହାସ୍ୟ କମନୀୟ ଶୋଭା ସୃଷ୍ଟି କରୁଥିଲା । ତାହା ଦେଖି ମୁନିମାନଙ୍କର ମନୋରଥ ପୂର୍ଣ୍ଣ ହୋଇଗଲା । ସେମାନେ ତଳକୁ ଚାହିଁ ଲାଲ୍‌ରଙ୍ଗର ମଣିମାନଙ୍କପରି ରକ୍ତାରୁଣ ନଖଯୁକ୍ତ ତାଙ୍କ ପାଦପଦ୍ମକୁ ଆଖିରେ ଦେଖିଲେ ମଧ୍ୟ ବାରମ୍ବାର ମନରେ ଧ୍ୟାନ କରୁଥିଲେ ।।୪୪।। ଯୋଗମାର୍ଗରେ ଯାଇ ଯେଉଁ ନୟନାଭିରାମ ରୂପକୁ ଯୋଗୀମାନେ ଦେଖିବାପାଇଁ ବ୍ୟାକୁଳ ଭାବରେ ଖୋଜନ୍ତି, କୌଣସି ବାଟରେ ତାଙ୍କୁ ଦେଖିବା ସମ୍ଭବ ହୁଏ ନାହିଁ, ଅଷ୍ଟଐଶ୍ୱର୍ଯ୍ୟଯୁକ୍ତ ସେହି ମନୋରମ ଶରୀରରେ ଭଗବାନ ଆବିର୍ଭୂତ ହେବାର ଦେଖି ମୁନିମାନେ ତାଙ୍କୁ ସ୍ତୁତି କରିବାକୁ ଲାଗିଲେ ।।୪୫।।

ମୁନିମାନେ କହିଲେ, ସମସ୍ତଙ୍କ ହୃଦୟରେ ଆପଣ ଥାଆନ୍ତି, କିନ୍ତୁ ଦୁରାତ୍ମାମାନେ ଆପଣଙ୍କୁ ଦେଖିପାରନ୍ତି ନାହିଁ । କିନ୍ତୁ ହେ ଅନନ୍ତ ! ଆଜି ଆପଣ ଆମ ଦୃଷ୍ଟିପଥରେ ସ୍ୱୟଂ ବିରାଜମାନ ହୋଇଛନ୍ତି । ଆପଣଙ୍କ ପାଇଁ ଓ ଆପଣଙ୍କଠାରୁ ଜନ୍ମ ହୋଇ ଆମର ପିତା ବ୍ରହ୍ମା ଆପଣଙ୍କ ରହସ୍ୟ ଆମକୁ ବର୍ଣ୍ଣନା କରିଥିଲେ । ତାହା ଆମେ କାନରେ ଶୁଣିଛୁ, କିନ୍ତୁ ଆଜି ଆମେ ଆଖିରେ ଦେଖିଲୁ ॥୪୬॥ ଭଗବାନ ! ତତ୍ତ୍ୱସ୍ୱରୂପ ପରମାତ୍ମା ବୋଲି ଆପଣଙ୍କୁ ଆମେ ଜାଣିଛୁ । କିନ୍ତୁ ଆଜି ଆମମାନଙ୍କ ପରି ଭକ୍ତମାନଙ୍କର ଆନନ୍ଦବର୍ଦ୍ଧନପାଇଁ ବିଶୁଦ୍ଧ ସତ୍ୟସ୍ୱରୂପ ଏହି ସୁନ୍ଦର ମୂର୍ତ୍ତିକୁ ଆପଣ ଧାରଣ କରିଛନ୍ତି । ଦୃଢ଼ଭକ୍ତିଯୋଗରେ ବୀତରାଗ ମୁନିମାନେ କେବଳ ଆପଣଙ୍କ କୃପାରୁ ଆପଣଙ୍କର ଏହି ସ୍ୱରୂପକୁ ହୃଦୟରେ ଅନୁଭବ କରିପାରନ୍ତି ॥୪୭॥ ଆପଣଙ୍କ ଚରଣାଶ୍ରିତ ଭକ୍ତମାନେ ଆପଣଙ୍କ ଯଶୋମୟୀ ଲୀଳା କୀର୍ତ୍ତନ କରି କରି ସେଥିରୁ ଯେଉଁ ରସାସ୍ୱାଦନ କରନ୍ତି, ତାହା ତୁଳନାରେ ଆପଣଙ୍କ ପ୍ରସାଦରୁ ମୋକ୍ଷଲାଭକୁ ମଧ୍ୟ ସେମାନେ ପସନ୍ଦ କରନ୍ତି ନାହିଁ । ବାକି ଆପଣଙ୍କର ଭ୍ରୂଭଙ୍ଗରେ ପ୍ରାପ୍ତ ଇନ୍ଦ୍ରପଦ ସେମାନଙ୍କପାଇଁ କିଛି ନୁହେଁ ॥୪୮॥ ଭଗବାନ ! ଯଦି ଆମର ଚିତ୍ତ ଭ୍ରମରପରି ଆପଣଙ୍କ ପାଦରେ ରମଣ କରିପାରେ, ଯଦି ତୁଳସୀ ଦଳ ପରି ଆମର ବାଣୀ ଆପଣଙ୍କ ପାଦରେ ମଜ୍ଜି ରହେ, ଯଦି ଆମର କର୍ଣ୍ଣ ଆପଣଙ୍କ ଯଶୋଗାନରେ ପରିପୂର୍ଣ୍ଣ ହୁଏ, ତାହାହେଲେ ନିଜ କର୍ମଦୋଷରୁ ନିମ୍ନ ଯୋନିରେ ଜନ୍ମ ହେଲେ ମଧ୍ୟ ଆମର କୌଣସି ଦୁଃଖ ନାହିଁ ॥୪୯॥ ବିପୁଳଯଶା ପ୍ରଭୁ ! ଇନ୍ଦ୍ରିୟକୁ ଜୟ କରି ନ ଥିବା ବ୍ୟକ୍ତିମାନଙ୍କ ପକ୍ଷରେ ଯାହା ଅଗୋଚର, ଆପଣ ଆଜି ସେହି ସ୍ୱରୂପରେ ଆମମାନଙ୍କ ସନ୍ତୋଷ ପାଇଁ ଆମ ଦୃଷ୍ଟିପଥରେ ବିରାଜିତ ହୋଇଛନ୍ତି । ସେଥିପାଇଁ ସାକ୍ଷାତ୍ ଭଗବାନଙ୍କୁ ଦର୍ଶନ କରିଥିବାରୁ ଆମେ ଆପଣଙ୍କୁ ନମସ୍କାର କରୁଅଛୁ ॥୫୦॥

## ଷୋଡ଼ଶ ଅଧ୍ୟାୟ

# ଜୟବିଜୟଙ୍କ ପତନ

ଯୋଗନିଷ୍ଠ ମୁନିମାନେ ଏହିପରି ପ୍ରାର୍ଥନା କରିବାରୁ ବୈକୁଣ୍ଠବାସୀ ପ୍ରଭୁ ସେମାନଙ୍କୁ ପ୍ରଶଂସା କରି ଏହିପରି କହିଲେ ॥୧॥ ଭଗବାନ କହିଲେ, ଏହି ଜୟ, ବିଜୟ ଦୁଇ ଜଣ ମୋର ପାର୍ଷଦ । ମୋର ଆଦେଶକୁ କଦର୍ଥ କରି ଏ ଦୁହେଁ ଆପଣଙ୍କ ନିକଟରେ ଘୋର ଅପରାଧ କରିଛନ୍ତି ॥୨॥ ମୁନିଗଣ, ଆପଣମାନେ ମୋର ଅନୁଗତ ଭକ୍ତ । ଆପଣଙ୍କୁ ଅବଜ୍ଞା କରିଥିବା ହେତୁ ଯେଉଁ ଦଣ୍ଡ ତାଙ୍କୁ ଦେଇଛନ୍ତି, ତାହା ମୁଁ ଅନୁମୋଦନ କରୁଛି ॥୩॥ ମୋର ନିଜ ଲୋକ ଆପଣଙ୍କ ପ୍ରତି ଯେଉଁ ଅବଜ୍ଞା ଦେଖାଇଛନ୍ତି, ତାହା ମୁଁ ନିଜକୃତ ଅପରାଧ ବୋଲି ମନେ କରୁଛି । ବ୍ରହ୍ମର୍ଷିମାନଙ୍କୁ ମୁଁ ଦେବତାଙ୍କଠାରୁ ଅଧିକ ଜ୍ଞାନ କରେ । ସେଥିପାଇଁ ମୁଁ କ୍ଷମା ଭିକ୍ଷା କରୁଛି ॥୪॥ ଭୃତ୍ୟ ତା'ର ଦୋଷପାଇଁ ସ୍ୱାମୀର ନାଁ ପକାଏ । ଯେପରି ଚର୍ମରୋଗ ଚର୍ମକୁ ଦୂଷିତ କରେ, ସେହିପରି ଏହି ଅପଯଶଦ୍ୱାରା ସ୍ୱାମୀର ସୁନାମ ନଷ୍ଟ ହୋଇଯାଏ ॥୫॥ ଶ୍ରବଣଦ୍ୱାରା ଯାହାର ନିର୍ମଳ ଯଶ-ସୁଧାରେ ଅବଗାହନ କରି ଚଣ୍ଡାଳ ପର୍ଯ୍ୟନ୍ତ ସମସ୍ତ ଜଗତ ପବିତ୍ରିତ ହୁଏ ସେଥିପାଇଁ ମୋତେ ବିକୁଣ୍ଠ କୁହାଯାଏ । କିନ୍ତୁ ମୁଁ ଆପଣଙ୍କଠାରୁ ହିଁ ସେହି ଯଶ ଲାଭ କରିଛି । ସେଥିପାଇଁ ଆପଣଙ୍କ ବିରୁଦ୍ଧାଚରଣ କରୁଥିବା ବ୍ୟକ୍ତିକୁ, ଏପରିକି ନିଜର ହାତକୁ ମଧ୍ୟ ମୁଁ କାଟି ପକାଇବି ॥୬॥ ଆପଣଙ୍କ ସେବାଯୋଗୁଁ ମୋର ପାଦଧୂଳି ଏପରି ପବିତ୍ର ଯେ, ତାହା ସମସ୍ତ ପାପତାପକୁ ସଙ୍ଗେସଙ୍ଗେ ନଷ୍ଟ କରିଦିଏ ଏବଂ ମୋର ସ୍ୱଭାବ ଏପରି ସୁନ୍ଦର ଯେ, ମୁଁ ଉଦାସୀନ ରହିଲେ ମଧ୍ୟ ଲକ୍ଷ୍ମୀ ମୋତେ କ୍ଷଣକପାଇଁ ଛାଡ଼ି ଯାଆନ୍ତି ନାହିଁ । ଅଥଚ ତାଙ୍କରି ଟିକିଏ କୃପାକଟାକ୍ଷ ଲାଭ କରିବାପାଇଁ ବ୍ରହ୍ମାଦି ଦେବତାମାନେ ବହୁ ତପସ୍ୟା କରନ୍ତି ॥୭॥ ଯେଉଁ ବ୍ରାହ୍ମଣ

ନିଜର ସମସ୍ତ କର୍ମଫଳ ମୋତେ ଅର୍ପଣ କରି ସନ୍ତୁଷ୍ଟ ରହନ୍ତି, ସେପରି ବ୍ରାହ୍ମଣଙ୍କର ନିଜେ ଆନନ୍ଦରେ ଭୋଜନ କରୁଥିବା ଘୃତମିଶ୍ରିତ ଅନ୍ନଦ୍ୱାରା ମୁଁ ଯେପରି ତୃପ୍ତି ଲାଭ କରେ, ଯଜ୍ଞରେ ଅଗ୍ନିମୁହଁରେ ଆହୁତି ଦିଆଯାଉଥିବା ଘୃତମିଶ୍ରିତ ଚରୁ ମୋତେ ସେପରି ତୃପ୍ତି ଦିଏ ନାହିଁ ॥୮॥ ସଂସାରର ସମସ୍ତ ଅଖଣ୍ଡ ଓ ବିପୁଳ ଐଶ୍ୱର୍ଯ୍ୟ ମୁଁ ମୋର ଯୋଗମାୟାଦ୍ୱାରା ସୃଷ୍ଟି କରିଛି । ମୋର ପାଦୋଦକରୁ ଉତ୍ପନ୍ନ ଗଙ୍ଗା ଚନ୍ଦ୍ରମୌଳି ମହାଦେବଙ୍କ ସମେତ ସମସ୍ତ ଲୋକକୁ ପବିତ୍ରିତ କରେ । ତଥାପି ବ୍ରାହ୍ମଣମାନଙ୍କ ପବିତ୍ର ପଦରଜକୁ ମୁଁ ମୋର କିରୀଟରେ ଧାରଣ କରେ । ତେଣୁ ବ୍ରାହ୍ମଣମାନଙ୍କ କଥା ସହିନେବା ଉଚିତ ॥୯॥

ହେ ବ୍ରହ୍ମର୍ଷିଗଣ, ଦୁଗ୍ଧବତୀ ଗାଭୀ ଓ ଅଶରଣ ପ୍ରାଣୀମାନେ ମୋର ଶରୀରସ୍ୱରୂପ । ଏମାନଙ୍କୁ ଯେଉଁମାନେ ଭିନ୍ନଦୃଷ୍ଟିରେ ଦେଖନ୍ତି, ସେହି ପାପୀମାନଙ୍କର ବିଚାରବୁଦ୍ଧି ନଷ୍ଟ ହୋଇଯାଇଥାଏ । ମୋ ଦ୍ୱାରା ନିଯୁକ୍ତ ପାପୀଙ୍କର ଦଣ୍ଡଦାତା ଯମରାଜଙ୍କ ଦୂତମାନେ ସାପପରି କ୍ରୁଦ୍ଧ ହୋଇ ଗୃଧ୍ରଆକାରରେ ଆସି ନିଜର ଚଞ୍ଚୁଦ୍ୱାରା ସେମାନଙ୍କୁ ଖଣ୍ଡବିଖଣ୍ଡ କରିଦିଅନ୍ତି ॥୧୦॥ ବ୍ରାହ୍ମଣଙ୍କଠାରୁ ଗାଳି ଖାଇଲେ ମଧ୍ୟ ମୋ'ଠାରେ ଲୟ ରଖିଥିବା ଲୋକଙ୍କ ମୁହଁରେ କେବଳ ପ୍ରସନ୍ନତା ହିଁ ଦେଖାଯାଏ । ରାଗିଥିବା ବାପକୁ ପୁଅ ବୋଧ କରିବା ପରି ଏବଂ ଆପଣମାନଙ୍କୁ ମୁଁ ଯେପରି ମନାଉଛି, ସେହିପରି ନିଜର ମୁଖପଦ୍ମରୁ ଝରି ପଡୁଥିବା ଅମୃତମୟୀ ବାଣୀଦ୍ୱାରା ସେମାନେ ତାହାଙ୍କର ସନ୍ତୋଷ ବିଧାନ କରନ୍ତି ଏବଂ ତଦ୍ଦ୍ୱାରା ମୁଁ ତାଙ୍କର ବଶୀଭୂତ ହୋଇଥାଏ ॥୧୧॥ ମୋର ଏହି ସେବକମାନେ ମୋର ଅଭିପ୍ରାୟକୁ ଜାଣି ନ ପାରି ଆପଣମାନଙ୍କୁ ଯେପରି ଅନାଦର କଲେ, ସେମାନେ ତା'ର ପ୍ରତିଫଳ ସଙ୍ଗେ ସଙ୍ଗେ ଭୋଗ କରିବା ଉଚିତ । କେବଳ ଆପଣମାନେ ଏତିକି ଅନୁଗ୍ରହ କରନ୍ତୁ, ଏମାନଙ୍କ ନିର୍ବାସନର ସମୟ ଶେଷ ହୋଇଯିବା ପରେ ଯେପରି ଏମାନେ ଶୀଘ୍ର ମୋ ପାଖକୁ ଫେରିଆସିବେ ॥୧୨॥

ବ୍ରହ୍ମା କହିଲେ, ଦେବଗଣ ! ପବିତ୍ର ସରସ୍ୱତୀ ନଦୀ ତା'ର ଦୁଇ କୂଳରେ ଥିବା ଋଷିମାନଙ୍କୁ ଆନନ୍ଦ ପ୍ରଦାନ କରି ପ୍ରବାହିତ ହୁଏ; ସେହିପରି ଋଷିକୁଳର ଯୋଗ୍ୟ ଭଗବାନଙ୍କର ଏହି ମଧୁର ମନୋହର ବାଣୀର ପ୍ରବାହ ତଥାପି କ୍ରୋଧରୂପୀ ବିଷର ଆବେଶରେ ଥିବା ମୁନିମାନଙ୍କର ଆତ୍ମାକୁ ତୃପ୍ତ କରିପାରିଲା ନାହିଁ ॥୧୩॥ ଭଗବାନ ଅତି ସୁନ୍ଦର ଭାବରେ ଅଳ୍ପ କଥା କହିଲେ । କିନ୍ତୁ ତାହା ବଡ଼ ଗୁରୁତ୍ୱପୂର୍ଣ୍ଣ ଥିଲା । ମୁନିମାନେ ମନ ଦେଇ ଶୁଣି ମଧ୍ୟ ସେହି ଗଭୀର ଅର୍ଥପୂର୍ଣ୍ଣ ସାରଯୁକ୍ତ କଥାର ଅଭିପ୍ରାୟ କ'ଣ ତାହା ବୁଝିପାରିଲେ ନାହିଁ ॥୧୪॥ ପରମେଷ୍ଠୀ ଭଗବାନ ଯୋଗମାୟାଦ୍ୱାରା ତାଙ୍କର ଯେଉଁ ବିଶାଳ ଐଶ୍ୱର୍ଯ୍ୟ ଦେଖାଇଲେ, ସେଥିରେ ଅଭିଭୂତ ହୋଇ ଆଗରୁ କ୍ଷୁବ୍ଧ ଥିବା ମୁନିମାନଙ୍କର ଦେହ ରୋମାଞ୍ଚିତ ହେଲା ଏବଂ ସେମାନେ ପରମ ଆନନ୍ଦରେ କୃତାଞ୍ଜଳି ହୋଇ କହିବା ଆରମ୍ଭ କଲେ ॥୧୫॥ ଭଗବନ୍, ଆପଣ ସମସ୍ତଙ୍କର ଈଶ୍ୱର ହୋଇ 'ମୋତେ ଅନୁଗ୍ରହ କର' ବୋଲି ଯେଉଁ କଥା କହିଲେ, ସେଥିରୁ ଆପଣଙ୍କର ଉଦ୍ଦେଶ୍ୟ କ'ଣ ଆମ୍ଭେମାନେ ଜାଣି ପାରୁ ନାହୁଁ ॥୧୬॥ ପ୍ରଭୁ, ଆପଣ ବ୍ରାହ୍ମଣମାନଙ୍କର ହିତକାରୀ । ସେମାନେ ଆପଣଙ୍କର ଓ ଦେବତାମାନଙ୍କର ଦେବତା । ଆପଣ ମଧ୍ୟ ସେମାନଙ୍କର ଦେବତା ଓ ଆତ୍ମାସ୍ୱରୂପ । ଆପଣ ବ୍ରାହ୍ମଣମାନଙ୍କର ହିତକାରୀ ହୋଇଥିବା ହେତୁ କେବଳ ଲୋକଶିକ୍ଷାପାଇଁ ସେମାନେ ଆପଣଙ୍କର ଆରାଧ୍ୟ ବୋଲି ଆପଣ କହିଲେ ॥୧୭॥ ଆପଣଙ୍କଠାରୁ ଏହି ସନାତନ ଧର୍ମର ଉତ୍ପତ୍ତି । ବିଭିନ୍ନ ଅବତାର ଗ୍ରହଣ କରି ଆପଣ ଏହି ଧର୍ମକୁ ରକ୍ଷା କରନ୍ତି । କିନ୍ତୁ ନିର୍ବିକାର ରୂପରେ ଓ ଧର୍ମର ଗୂଢ଼ ରହସ୍ୟ ଭାବରେ ଆପଣ ବିବେଚିତ ॥୧୮॥ ଆପଣଙ୍କ ଅନୁଗ୍ରହଯୋଗୁଁ ନିବୃତ୍ତିପରାୟଣ ଯୋଗୀମାନେ ମୃତ୍ୟୁକୁ ପାର ହୋଇପାରନ୍ତି; ତେଣୁ ଆପଣଙ୍କୁ ଅନୁଗ୍ରହ କରିବାପାଇଁ ଆଉ କିଏ ଥାଇପାରେ ? ॥୧୯॥

ପ୍ରଭୁ, ଅର୍ଥାର୍ଥୀ ଲୋକମାନେ ଯାହାଙ୍କର ପାଦଧୂଳି ସର୍ବଦା ମସ୍ତକରେ ଧାରଣ କରନ୍ତି, ସେହି ଐଶ୍ୱର୍ଯ୍ୟସ୍ୱରୂପିଣୀ ଲକ୍ଷ୍ମୀଦେବୀ ଅନୁଦିନ ଆପଣଙ୍କର ସେବାରେ ଲାଗିଥାନ୍ତି । ଭାଗ୍ୟବାନ୍ ଭକ୍ତମାନେ ଆପଣଙ୍କ ଯେଉଁ ପାଦରେ ସଜ ତୁଳସୀମାଳସବୁ

ଦେଇଥାନ୍ତି, ସେଥିରେ ଗୁଞ୍ଜନ କରୁଥିବା ଭ୍ରମରମାନଙ୍କ ପରି ଲକ୍ଷ୍ମୀଦେବୀ ମଧ୍ୟ ତାହାକୁ ନିଜର ଆବାସସ୍ଥଳୀ ରୂପେ ବରଣ କରି ନିଅନ୍ତି ।।୨୦।। ଯେଉଁ ଲକ୍ଷ୍ମୀ ନିଷ୍ଠାର ସହିତ ଆପଣଙ୍କର ପରିଚର୍ଯ୍ୟା କରନ୍ତି ତାଙ୍କୁ ଆପଣ ଏତେ ଆଦର କରନ୍ତି ନାହିଁ, ଯେତେ ପରମଭକ୍ତମାନଙ୍କୁ କରନ୍ତି । ଆପଣ ସମସ୍ତ ଭଜନୀୟ ଗୁଣମାନଙ୍କର ଆଶ୍ରୟସ୍ଥଳ । ଏପରି ପରମଶୁଦ୍ଧ ହୋଇଥିବାବେଳେ ବାଟରେ ଏଣେତେଣେ ବୁଲୁଥିବା ବ୍ରାହ୍ମଣଙ୍କ ପଦରଜ ଏବଂ ଜଣେ ବ୍ରାହ୍ମଣର ପାଦଚିହ୍ନ (ଶ୍ରୀବତ୍ସଲାଞ୍ଛନ) ଆପଣଙ୍କୁ କିପରି ପବିତ୍ର କରୁଛି ? ।।୨୧।। ଆପଣ ସାକ୍ଷାତ୍ ଧର୍ମ; ସତ୍ୟ, ତ୍ରେତା ଓ ଦ୍ୱାପର--ଏହି ତିନି ଯୁଗରେ ଦେବତା ଓ ବ୍ରାହ୍ମଣମାନଙ୍କପାଇଁ ଏହି ବିଶ୍ୱଚରାଚରକୁ ତପ, ଶୌଚ ଓ ଦୟା - ଏହି ତିନୋଟି ପାଦଦ୍ୱାରା ଆପଣ ରକ୍ଷା କରନ୍ତି । ବର୍ତ୍ତମାନ ଆପଣ ଶୁଦ୍ଧସତ୍ତ୍ୱ ବରଦ ମୂର୍ତ୍ତିରେ ବିଦ୍ୟମାନ । ତାହାର ବିରୋଧୀ ଆମର ଏହି ରଜ ଓ ତମ ଗୁଣକୁ ଦୂର କରନ୍ତୁ ।।୨୨।। ଏହି ବ୍ରାହ୍ମଣକୁଳ ଆପଣଙ୍କର ରକ୍ଷଣୀୟ । ଯଦି ଧର୍ମସ୍ୱରୂପ ହୋଇ ଆପଣ ସୁମିଷ୍ଟ ଭାଷା ଓ ପୂଜାଦ୍ୱାରା ତାହାକୁ ରକ୍ଷା ନ କରିବେ, ତା'ହେଲେ ହେ ଦେବ, ଆପଣଙ୍କ ଦର୍ଶିତ କଲ୍ୟାଣର ମାର୍ଗ ନଷ୍ଟ ହୋଇଯିବ । କାରଣ ଶ୍ରେଷ୍ଠ ପୁରୁଷଙ୍କ ଆଚରଣକୁ ଲୋକେ ପ୍ରମାଣ ରୂପେ ଗ୍ରହଣ କରନ୍ତି ।।୨୩।।

ଆପଣ ସତ୍ତ୍ୱନିଧି (ସମସ୍ତ ସଦ୍‌ଗୁଣମାନଙ୍କର ଆଧାର) । ଲୋକସମୂହର ମଙ୍ଗଳବିଧାନ ଆପଣଙ୍କର ଇଚ୍ଛା । ନିଜ ଶକ୍ତିଦ୍ୱାରା ଆପଣ ଧର୍ମର ଶତ୍ରୁମାନଙ୍କୁ ବିନାଶ କରନ୍ତି । ତେଣୁ ବ୍ରାହ୍ମଣମାନଙ୍କ ନିକଟରେ ଆନତ ହୋଇ ଆପଣ ଯେପରି କହିଲେ, ତଦ୍ଦ୍ୱାରା ହେ ତ୍ରିଲୋକର ଈଶ୍ୱର, ବିଶ୍ୱର ପାଳନକର୍ତ୍ତା, ଆପଣଙ୍କର ଟିକିଏ ହେଲେ ତେଜୋହାନି ହୋଇ ନାହିଁ; ଏହା ଆପଣଙ୍କର ଲୀଳାମାତ୍ର ।।୨୪।। ପ୍ରଭୁ, ଏହି ଦ୍ୱାରପାଳ ଦୁହିଁଙ୍କୁ ଆପଣ ଯାହା ଠିକ୍ ଭାବୁଛନ୍ତି, ସେହି ଦଣ୍ଡ ଦିଅନ୍ତୁ । କିମ୍ବା ତାଙ୍କର ବୃତ୍ତି ବଢାଇ ଦେଇ ପୁରସ୍କୃତ କରନ୍ତୁ । ଆମେ ନିଷ୍କପଟଭାବରେ ତାହା ସ୍ୱୀକାର କରିବୁ । କିମ୍ବା ଆପଣ ଯଦି ଭାବୁଛନ୍ତି, ଏମାନେ ନିର୍ଦ୍ଦୋଷ, ଏମାନଙ୍କୁ ଆମେ ଶାପ ଦେଇ ଭୁଲ କରିଛୁ, ତା'ହେଲେ ଆମକୁ ମଧ୍ୟ ଉଚିତ ଦଣ୍ଡ ଦିଅନ୍ତୁ । ଆମେ ତାହା ଗ୍ରହଣ କରିବୁ ।।୨୫।।

ଶ୍ରୀ ଭଗବାନ କହିଲେ, ମୁନିଗଣ, ଆପଣମାନେ ଜାଣନ୍ତୁ, ଏ ଦୁହିଁଙ୍କୁ ଯେଉଁ ଅଭିଶାପ ମିଳିଛି, ତାହା ମୋ ଦ୍ୱାରା ପ୍ରେରିତ । ଏ ଦୁହେଁ ଅସୁରକୁଳରେ ଜନ୍ମ ହୋଇ ମୋ ପ୍ରତି କ୍ରୋଧ ଆଚରଣ କରିବେ ଏବଂ ତାଙ୍କ କ୍ରୋଧ ଏପରି ବଢ଼ିଯିବ ଯେ କେବଳ ମୋ'ଛଡ଼ା ତାଙ୍କର ଅନ୍ୟ ଚିନ୍ତା ରହିବ ନାହିଁ ଏବଂ ଏହିପରି ଏକାଗ୍ର ଯୋଗଯୁକ୍ତ ହୃଦୟରେ ସେ ଦୁହେଁ ମୋ'ପାଖକୁ ଶୀଘ୍ର ଫେରିଆସିବେ ।।୨୬।। ଏହାପରେ ମୁନିମାନେ ନୟନାଭିରାମ ଭଗବାନ ବିଷ୍ଣୁଙ୍କୁ, ଏବଂ ତାଙ୍କ ତେଜରେ ଆଲୋକିତ ବୈକୁଣ୍ଠଧାମକୁ ଦର୍ଶନ କରି ଫେରିଯିବା ପାଇଁ ଭଗବାନଙ୍କର ଅନୁମତି ଭିକ୍ଷା କଲେ ଏବଂ ଭଗବାନଙ୍କୁ ପରିକ୍ରମା କରି ବୈକୁଣ୍ଠଧାମର ଐଶ୍ୱର୍ଯ୍ୟ ବର୍ଣ୍ଣନାପୂର୍ବକ ଆନନ୍ଦରେ ଫେରିଗଲେ ।।୨୭-୨୮।।

ଭଗବାନ ତାଙ୍କ ଅନୁଚର ଦୁଇ ଜଣଙ୍କୁ ଡାକି କହିଲେ ଯାଅ, ଭୟ କର ନାହିଁ । ତୁମର ମଙ୍ଗଳ ହେବ । ମୁଁ ସବୁ କିଛି କରିବାପାଇଁ ସମର୍ଥ । ତଥାପି ଇଚ୍ଛାକରି ବ୍ରହ୍ମତେଜକୁ ନିବାରଣ କଲି ନାହିଁ ।।୨୯।। ପୂର୍ବେ ମୁଁ ଯୋଗନିଦ୍ରାରେ ଶୋଇଥିବା ଅବସ୍ଥାରେ ଲକ୍ଷ୍ମୀଦେବୀ ପଶିଆସୁଥିବାବେଳେ ତୁମେ ତାଙ୍କୁ ଦ୍ୱାରରୁ ନିବାରଣ କରିଥିଲ ଏବଂ ସେ କ୍ରୁଦ୍ଧ ହୋଇ ତୁମକୁ ଏହି ଅଭିଶାପ ଦେଇଥିଲେ ।।୩୦।। ଅସୁରକୁଳରେ ଜନ୍ମ ହୋଇ ମୋ ପ୍ରତି କ୍ରୋଧବଶରୁ ତୁମେ ମୋତେ ହିଁ ସବୁବେଳେ ଚିନ୍ତା କରିବ, ଯାହା ଫଳରେ ବ୍ରହ୍ମଶାପରୁ ମୁକ୍ତ ହୋଇ ଶୀଘ୍ର ମୋ ନିକଟକୁ ଫେରିଆସିବ ।।୩୧।। ଏହିପରି ଦ୍ୱାରପାଳ ଦୁହିଁଙ୍କୁ କହି ଶ୍ରୀ ଭଗବାନ ସୁନ୍ଦର ବିମାନଶ୍ରେଣୀରେ ଶୋଭିତ ଓ ସମସ୍ତ ଐଶ୍ୱର୍ଯ୍ୟରେ ମଣ୍ଡିତ ନିଜର ଭୁବନକୁ ଫେରିଆସିଲେ ।।୩୨।। ଦେବତାମାନଙ୍କ ମଧ୍ୟରେ ଏହି ପାର୍ଷଦ ଦୁଇ ଜଣ ଷଣ୍ଢପରି ବୁଲୁଥିଲେ । ମାତ୍ର ଦୁସ୍ତର ବ୍ରହ୍ମଶାପଯୋଗୁଁ ତାଙ୍କର ଏପରି ଅବସ୍ଥା

ହେଲା ଯେ ଦୁହେଁ ଶ୍ରୀହୀନ ହୋଇଗଲେ । ତାଙ୍କର ସମସ୍ତ ଗର୍ବ ଚୂର୍ଣ୍ଣ ହୋଇଗଲା ॥୩୩॥ ବୈକୁଣ୍ଠପୁରରୁ ଦୁହେଁ ଖସି ପଡ଼ିବାବେଳେ ବିମାନରେ ବସିଥିବା ବୈକୁଣ୍ଠବାସୀଙ୍କ ମଧ୍ୟରେ ହାହାକାର ଖେଳିଗଲା ॥୩୪॥

ବ୍ରହ୍ମା କହିଲେ, ଦେବଗଣ ! ସେହି ଶ୍ରୀହରିଙ୍କର ଦୁଇ ପାର୍ଷଦ ବର୍ତ୍ତମାନ କଶ୍ୟପଙ୍କ ବୀର୍ଯ୍ୟରେ ଦିତିଙ୍କ ଗର୍ଭସ୍ଥ ସନ୍ତାନ ହୋଇଛନ୍ତି ॥୩୫॥ ଏହି ଦୁଇ ଅସୁରଙ୍କ ତେଜରେ ତୁମ ସମସ୍ତଙ୍କର ତେଜ କ୍ଷୀଣ ହୋଇପଡୁଛି । ବର୍ତ୍ତମାନ ଏହା ହିଁ ଭଗବାନଙ୍କର ବିଧାନ ॥୩୬॥ ଯେଉଁ ଆଦିପୁରୁଷ ବିଶ୍ୱର ସୃଷ୍ଟି, ସ୍ଥିତି ଏବଂ ଲୟର କାରଣ, ଯୋଗୀଶ୍ୱରମାନେ ଯାହାଙ୍କ ଯୋଗର ପାର ପାଆନ୍ତି ନାହିଁ, ସେହି ତ୍ରିଲୋକର ଅଧୀଶ୍ୱର ଭଗବାନ ଆମମାନଙ୍କର ନିଶ୍ଚୟ ମଙ୍ଗଳବିଧାନ କରିବେ, ଏ ବିଷୟରେ ଆମର ବିଶେଷ ଚିନ୍ତିତ ହେବାର କାରଣ ନାହିଁ ॥୩୭॥

## ସପ୍ତଦଶ ଅଧ୍ୟାୟ

# ହିରଣ୍ୟାକ୍ଷର ଦିଗ୍‌ବିଜୟ

ମୈତ୍ରେୟ କହିଲେ, ବ୍ରହ୍ମାଙ୍କଠାରୁ ଅନ୍ଧକାରର କାରଣ ଶୁଣି ଦେବତାମାନଙ୍କର ସନ୍ଦେହ ଦୂର ହୋଇଗଲା ଏବଂ ସେମାନେ ସ୍ୱର୍ଗଲୋକକୁ ଫେରି ଆସିଲେ ॥୧॥

ଏଣେ ଦିତି ସ୍ୱାମୀଙ୍କ କହିବା ଅନୁସାରେ ଅତି ଶଙ୍କିତ ଅବସ୍ଥାରେ ରହିଥିଲେ । ଏଥିପାଇଁ ଶହେ ବର୍ଷ ପୂରିବା ପରେ ସେ ଦୁଇଟି ଯାଆଁଳା ପୁଅଙ୍କୁ ଜନ୍ମ ଦେଲେ ॥୨॥ ସେମାନେ ଜନ୍ମହେବା କ୍ଷଣି ସ୍ୱର୍ଗ, ମର୍ତ୍ତ୍ୟ ଓ ଆକାଶରେ ଲୋକଙ୍କର ଭୟଉତ୍ପାଦକ ନାନା ଉତ୍ପାତ ଦେଖାଗଲା ॥୩॥ ପର୍ବତମାନଙ୍କ ସହିତ ପୃଥିବୀ କମ୍ପିବାକୁ ଲାଗିଲା । ଦିଗମାନେ ଜଳିବାକୁ ଲାଗିଲେ । ଭୟାନକ ବଜ୍ରପାତ ଓ ଉଲ୍‌କାପାତ ହେଲା । ଆକାଶରେ ଭୟଙ୍କର ଲଞ୍ଜାତାରାମାନେ ଦେଖାଗଲେ ॥୪॥ ଅସହ୍ୟ ବେଗରେ ସାଇଁ ସାଇଁ ଶବ୍ଦରେ ପବନ ବହିବାକୁ ଲାଗିଲା । ବାତ୍ୟାରେ ବଡ଼ ବଡ଼ ଗଛ ଉପୁଡ଼ି ପଡ଼ିଲା ଓ ଚାରିଆଡ଼ ଧୂଳିପଟଳରେ ଆଚ୍ଛାଦିତ ହୋଇଗଲା ॥୫॥ ବିଜୁଳିରେ ଝଟକୁଥିବା ମେଘମାନଙ୍କଦ୍ୱାରା ଆକାଶରେ ଜ୍ୟୋତିଷମାନେ ଲୁଚିଗଲେ । ଅନ୍ଧକାର ମଧ୍ୟରେ କିଛି ଦେଖାଗଲା ନାହିଁ ॥୬॥ ସମୁଦ୍ରର ଜଳ ଫୁଲି ଉଠି ଉତ୍ତାଳ ତରଙ୍ଗମାଳାରେ ଗର୍ଜି ଉଠିଲା ଓ ଏହାର ଗର୍ଭସ୍ଥ ଜୀବସବୁ ଉତ୍‌ପୀଡ଼ିତ ହେଲେ । ଜଣାଗଲା ଯେପରିକି ସମୁଦ୍ର ଶୋକାକୁଳ । କୂପ, ପୁଷ୍କରିଣୀ, ନଦୀ ଆଦି ଜଳାଶୟମାନଙ୍କରେ ଜଳ ଫୁଲିଉଠିଲା । ପଦ୍ମଫୁଲ ସବୁ ଶୁଷ୍କ ହୋଇଗଲେ ॥୭॥ ବାରମ୍ବାର ରାହୁଗ୍ରସ୍ତ ଓ କେତୁଗ୍ରସ୍ତ ହୋଇ ସୂର୍ଯ୍ୟ ଓ ଚନ୍ଦ୍ରମଣ୍ଡଳ ଅତିଶୟ ମଳିନ ଦେଖାଗଲା । ବିନା ମେଘରେ ବଜ୍ରପାତ ହେଲା ଏବଂ ପର୍ବତଗୁହାମାନଙ୍କରୁ ରଥଚକ୍ରର ଘର୍ଘର ନାଦ ଶୁଣାଗଲା ॥୮॥ ଗାଁମାନଙ୍କରେ ପେଚା ଓ ବିଲୁଆମାନଙ୍କର ଭୟଙ୍କର ରାବ ସହ ମାଈ ବିଲୁଆମାନେ ପାଟିରୁ ନିଆଁହୁଲାସବୁ ବାହାରକରି ଭୟାବହ ବୋବାଳି ଛାଡ଼ିବାକୁ ଲାଗିଲେ ॥୯॥ କୌଣସି କୌଣସି ସ୍ଥାନରେ ବେକ ଉପରକୁ ଉଠାଇ କୁକୁର ବୋବାଇଲେ । ତାହା ଶୋଇଥିବାବେଳେ କାନ୍ଦିବା ଭଳି ବା ବେଳେ ବେଳେ ଗାଇବାଭଳି ଶୁଣାଯାଉଥିଲା ॥୧୦॥ ହେ ବିଦୁର ! ଗର୍ଦ୍ଦଭମାନେ ମତ୍ତ ହୋଇ କର୍କଶ ଖୁରାଘାତରେ ଧରାତଳକୁ କ୍ଷତ ବିକ୍ଷତ କଲେ ଏବଂ ପ୍ରବଳ ହ୍ରେଷାରବରେ ଦଳ ଦଳ ହୋଇ ଏଣେ ତେଣେ ଦୌଡ଼ିବାକୁ ଲାଗିଲେ ॥୧୧॥ ସେମାନଙ୍କ ଚିତ୍କାର ଶୁଣି ଭୟରେ ପକ୍ଷୀମାନେ ନିଜ ବସାରୁ ଉଡ଼ିଗଲେ ଏବଂ ଗୁହାଳରେ ଗୋରୁମାନେ ଓ ଅରଣ୍ୟରେ ଅନ୍ୟ ପଶୁମାନେ ମଳମୂତ୍ର ତ୍ୟାଗ କଲେ ॥୧୨॥ ଗାଈମାନେ ଡରିଯାଇଥିବାରୁ ତାଙ୍କ ପହ୍ନାରୁ ଦୁଧ ନ ବାହାରି ରକ୍ତ ବାହାରିଲା । ମେଘମାନେ ପୂଯ ବର୍ଷାକଲେ । ଦେବମୂର୍ତ୍ତିମାନଙ୍କର ଆଖିରୁ ଲୁହ ଝରିବାକୁ ଲାଗିଲା । ବିନା

ପବନରେ ଗଛସବୁ ଉପୁଡ଼ି ପଡ଼ିଲା ॥୧୩॥ କେତେକ ଅଶୁଭ ଗ୍ରହ ଓ ଜ୍ୟୋତିଷ୍କ ବକ୍ରଗତିରେ ଯାଇ ଶୁଭଗ୍ରହମାନଙ୍କର ଗତିପଥକୁ ଲଂଘନ କରିବାକୁ ଚେଷ୍ଟା କଲାବେଳେ ସେମାନଙ୍କର ପରସ୍ପର ସଂଘର୍ଷ ଜାତ ହେଲା ॥୧୪॥

ଏହିପରି ମହା ମହା ଉତ୍ପାତମାନ ଦେଖି ସନକାଦି ବ୍ରହ୍ମାଙ୍କର ପୁତ୍ରମାନଙ୍କୁ ଛାଡ଼ିଦେଲେ ଏହାର କାରଣ ନ ଜାଣିଥିବା ଅନ୍ୟ ପ୍ରଜାମାନେ ଭୟଭୀତ ହୋଇଗଲେ ଏବଂ ବିଶ୍ୱରେ ପ୍ରଳୟ ଆସିଗଲା ବୋଲି ମନେକଲେ ॥୧୫॥ ପୃଥିବୀର ଏହି ପ୍ରଥମ ଦୁଇ ଜଣ ଦୈତ୍ୟ ଜନ୍ମହେବା ମାତ୍ରେ ଶୀଘ୍ର ବଢ଼ିବାକୁ ଲାଗିଲେ । ତାଙ୍କ ଶରୀର ଲୁହାପରି କଠିନ ଓ ଆକାର ମହାପର୍ବତପରି ହୋଇଗଲା । ତାଙ୍କ ପୂର୍ବ ବଳବିକ୍ରମ ଫେରି ଆସିଲା ॥୧୬॥ ସେ ଦୁହେଁ ଏପରି ଦୀର୍ଘକାୟ ଥିଲେ ଯେ ତାଙ୍କ ସୁବର୍ଣ୍ଣମୟ କିରୀଟର ଅଗ୍ରଭାଗମାନ ସ୍ୱର୍ଗକୁ ସ୍ପର୍ଶ କରୁଥିଲା । ତାଙ୍କ ବିଶାଳ ଶରୀର ଚତୁର୍ଦ୍ଦିଗକୁ ଆବଦ୍ଧ କରୁଥିଲା । ବାହୁରେ ସୁନାର ବାହୁବନ୍ଧ ଝକ୍ ଝକ୍ ହେଉଥିଲା । ପ୍ରତି ପଦାଘାତରେ ପୃଥିବୀ କମ୍ପି ଉଠୁଥିଲା । ଠିଆ ହେବାବେଳେ କଟିର ଅଳଙ୍କାରଦ୍ୱାରା ସୂର୍ଯ୍ୟତେଜ ମଳିନ ଦେଖାଯାଉଥିଲା ॥୧୭॥ କଶ୍ୟପ ତାଙ୍କ ଦୁଇ ଯମଜ ପୁତ୍ରଙ୍କର ନାମକରଣ କଲେ । ଦୁହିଁଙ୍କ ମଧ୍ୟରୁ ତାଙ୍କର ବୀର୍ଯ୍ୟ ଦିତିଙ୍କ ଗର୍ଭରେ ପ୍ରଥମେ ସ୍ଥାପିତ ହେବାରୁ ଯେ ଗର୍ଭସ୍ଥ ହୋଇଥିଲା, ତାର ନାମ ହିରଣ୍ୟକଶିପୁ ହେଲା । ଯେ ପ୍ରଥମେ ଜନ୍ମ ହେଲା, ତାର ନାମ ହେଲା ହିରଣ୍ୟାକ୍ଷ ॥୧୮॥ ହିରଣ୍ୟକଶିପୁ ବ୍ରହ୍ମାଙ୍କ ବରରେ ମୃତ୍ୟୁଭୟରୁ ମୁକ୍ତ ହୋଇ ଅତିଶୟ ଉଦ୍ଧତ ହୋଇପଡ଼ିଲା । ଲୋକପାଳମାନଙ୍କ ସହିତ ତିନିଲୋକଯାକ ତାର ବଶୀଭୂତ ହେଲେ ॥୧୯॥ ଅନୁଜ ହିରଣ୍ୟାକ୍ଷ ବଡ଼ଭାଇର ପ୍ରିୟ ଥିଲା ଏବଂ ବଡ଼ଭାଇର ପ୍ରିୟ କାର୍ଯ୍ୟ କରିବାପାଇଁ ସର୍ବଦା ତତ୍ପର ଥିଲା । ସେ ଯୁଦ୍ଧ କରିବାପାଇଁ ଏତେ ବ୍ୟାକୁଳ ଥିଲା ଯେ ଖୋଜି ଖୋଜି ଗଦାହସ୍ତରେ ସ୍ୱର୍ଗଲୋକରେ ଯାଇ ପହଞ୍ଚିଲା ॥୨୦॥ ସେ ଦୁଃସହ ବେଗରେ ବୁଲୁଥିବାବେଳେ ତାର ପାଦର ସ୍ୱର୍ଣ୍ଣନୂପୁର ଝଣଝଣ ହେଉଥିଲା । ସେ ଗଳାରେ ଏକ ବୈଜୟନ୍ତୀ ମାଳା ଓ ହାତରେ ବିଶାଳ ଗଦା ଧାରଣ କରିଥିଲା ॥୨୧॥ ଗରୁଡ଼କୁ ଦେଖିଲେ ସର୍ପମାନେ ଯେପରି ଭୟରେ ଲୁଚିଯାଆନ୍ତି, ସେହିପରି ଶୌର୍ଯ୍ୟ, ବୀର୍ଯ୍ୟ ଓ ବ୍ରହ୍ମାଙ୍କ ବରରେ ବଳୀୟାନ୍, ନିରଙ୍କୁଶ ଓ ନିର୍ଭୟଭାବରେ ବୁଲୁଥିବା ରାକ୍ଷସକୁ ଦେଖି ଦେବତାମାନେ ଭୟରେ ଲୁଚିଗଲେ ॥୨୨॥ ତାର ତେଜରେ ଇନ୍ଦ୍ରାଦି ଦେବଗଣ କାପୁରୁଷପରି ଲୁଚିଯିବାର ଦେଖି ଦୈତ୍ୟରାଜ (ବିଜୟଗର୍ବରେ) ଭୟଙ୍କର ଗର୍ଜନ କରିବାକୁ ଲାଗିଲା ॥୨୩॥ ସେଠାରୁ ଫେରି ସେହି ମହାବଳୀ ଦୈତ୍ୟ ଦେଖିଲା ଯେ ସମୁଦ୍ର ସତେ ଯେପରି ଗର୍ଜନ କରି ତାକୁ ଆହ୍ୱାନ କରୁଚି । ଜଳକ୍ରୀଡ଼ା କରିବାପାଇଁ ମତ୍ତହସ୍ତୀ ଯେପରି ଜଳରେ ପଶିଯାଏ, ସେହିପରି ସେ ଗଭୀର ସମୁଦ୍ର ମଧ୍ୟରେ ଧସି ପଶିଗଲା ॥୨୪॥ ସେ ଏପରି ପଶିଯିବାରୁ ବରୁଣଙ୍କର ଜଳଚର ପ୍ରାଣୀମାନେ ହତବୁଦ୍ଧି ହୋଇଗଲେ ଏବଂ କୌଣସି ଆଘାତ ନ ପାଇଲେ ମଧ୍ୟ ରାକ୍ଷସର ତେଜରେ ପୀଡ଼ିତ ହୋଇ ଭୟରେ ଦୂର ଦୂରକୁ ପଳାଇଲେ ॥୨୫॥

ମହାବଳୀ ରାକ୍ଷସ ବର୍ଷ ବର୍ଷ ଧରି ସମୁଦ୍ର ମଧ୍ୟରେ ବିଚରଣ କଲା ଏବଂ କାହାରିକୁ ନ ପାଇ ପବନବେଗରେ ଉଠୁଥିବା ଉତ୍ତାଳ ତରଙ୍ଗମାନଙ୍କୁ ତାର ଲୌହମୟ ଗଦାରେ ପ୍ରହାର କରିବାକୁ ଲାଗିଲା । ଏହିପରି ବୁଲୁ ବୁଲୁ ସେ ବରୁଣଙ୍କ ରାଜଧାନୀ ବିଭାବରୀପୁରରେ ପହଞ୍ଚିଲା ॥୨୬॥ ସେଠାରେ ପାତାଳଲୋକ (ଅସୁରଲୋକ)ର ସ୍ୱାମୀ, ଜଳଚରମାନଙ୍କ ଅଧିପତି ବରୁଣଙ୍କୁ ଦେଖି ନୀଚଲୋକ ଉପହାସ କରି ପ୍ରଣାମ କଲା ଭଳି ତାଙ୍କୁ ପ୍ରଣାମପୂର୍ବକ ହସି ହସି କହିଲା, ହେ ରାଜା, ମୋତେ ଯୁଦ୍ଧଭିକ୍ଷା ଦିଅ ॥୨୭॥ ରାକ୍ଷସ କହିଲା, ପ୍ରଭୁ, ଆପଣ ଲୋକପାଳଙ୍କ ରାଜା, ଯଶସ୍ୱୀ । ଯେଉଁମାନେ ନିଜକୁ ବୀର ବୋଲି ଅଭିମାନ କରନ୍ତି, ସେହି ଦୁର୍ଦ୍ଦାନ୍ତମାନଙ୍କର ବଳକୁ ଆପଣ ବିନାଶ କରନ୍ତି । ସମସ୍ତ ଦୈତ୍ୟଦାନବଙ୍କୁ ଜୟ କରି ଆପଣ ପୂର୍ବେ କୁଆଡ଼େ ଥରେ ରାଜସୂୟ ଯଜ୍ଞ କରିଥିଲେ ॥୨୮॥ ଏହିପରି ମଦମତ୍ତ ରାକ୍ଷସ ଶତ୍ରୁତାପୂର୍ବକ ତାଙ୍କୁ ବହୁତ ଉପହାସ କରିବାରୁ ଭଗବାନ ବରୁଣ ରାଗରେ ଉଠିପଡ଼ିଲେ । ମାତ୍ର ଶାନ୍ତବୁଦ୍ଧିରେ ନିଜର କ୍ରୋଧ ସମ୍ବରଣ କରି କହିଲେ, ଶୁଣ ବତ୍ସ, ଯୁଦ୍ଧ

କରିବାର ବୟସ ଆମର ଚାଲିଗଲାଣି ॥୨୯॥ ପୁରାଣପୁରୁଷ ଶ୍ରୀହରିଙ୍କ ଛଡ଼ା ମୁଁ କାହାରିକୁ ଦେଖୁ ନାହିଁ, ଯେ କି ତୁମପରି ରଣକୁଶଳ ବୀରକୁ ଯୁଦ୍ଧରେ ସନ୍ତୁଷ୍ଟ କରିପାରିବ । ତେଣୁ ହେ ଦୈତ୍ୟରାଜ, ତୁମେ ତାଙ୍କ ପାଖକୁ ଯାଅ । ତୁମପରି ବୀରମାନେ ତ ତାଙ୍କୁ ପ୍ରଶଂସା କରନ୍ତି ॥୩୦॥ ତାଙ୍କପରି ବୀରଙ୍କ ପାଖରେ ପହଞ୍ଚିଲେ ତୁମର ଏ ଗର୍ବ ଚୂର୍ଣ୍ଣ ହୋଇଯିବ ଓ ଶ୍ୱାନମାନଙ୍କ ଘେରରେ ତୁମେ ବୀରଶଯ୍ୟାରେ ଶୋଇ ରହିବ । ସନ୍ଥଲୋକଙ୍କୁ ପାଳନ କରିବାପାଇଁ ଓ ତୁମପରି ଦୁଷ୍ଟଲୋକଙ୍କୁ ସଂହାର କରିବାପାଇଁ ସେ ଅନେକପ୍ରକାର ରୂପ ଧାରଣ କରନ୍ତି ॥୩୧॥

## ଅଷ୍ଟାଦଶ ଅଧ୍ୟାୟ

# ବରାହ-ହିରଣ୍ୟାକ୍ଷ ଯୁଦ୍ଧ

ମୈତ୍ରେୟ କହିଲେ, ବିଦୁର, ବରୁଣଙ୍କ କଥା ଶୁଣି ଉଦ୍ଧତ ରାକ୍ଷସ ଖାତିର କଲା ନାହିଁ । କିନ୍ତୁ ଶ୍ରୀହରି କେଉଁଠି ଅଛନ୍ତି ନାରଦଙ୍କଠାରୁ ସେ ଖବର ପାଇ ଅବିଳମ୍ବେ ରସାତଳରେ ପ୍ରବେଶ କଲା ॥୧॥ ସେଠାରେ ପୃଥିବୀକୁ ଧାରଣ କରିଥିବା ବିଶ୍ୱବିଜୟୀ ବରାହ ଭଗବାନଙ୍କୁ ଦେଖିଲା । ଦନ୍ତର ଅଗ୍ରଭାଗରେ ସେ ପୃଥିବୀକୁ ଜଳରୁ ଉପରକୁ ଉଠାଇଆଣୁଥିଲେ । ତାଙ୍କ ରକ୍ତାରୁଣ ଚକ୍ଷୁର ତେଜରେ ରାକ୍ଷସର ତେଜ ମଳିନ ପଡ଼ିଯାଉଥିଲା । ରାକ୍ଷସ ତାଙ୍କୁ ଦେଖି ହସିବାକୁ ଲାଗିଲା । ସେ କହିଲା, ଏହି ବନଚର ଜୀବ ଏ ଜଳମଧ୍ୟକୁ କିପରି ଆସିଲା ? ॥୨॥ ସେ କହିଲା, ମୂର୍ଖ, ପୃଥିବୀକୁ ଛାଡ଼ିଦେଇ ମୋ ସାଙ୍ଗରେ ଆସି ଯୁଦ୍ଧ କର । ବିଶ୍ୱସ୍ରଷ୍ଟା ବ୍ରହ୍ମା ଆମ ରସାତଳବାସୀଙ୍କ ହାତରେ ପୃଥିବୀକୁ ଅର୍ପଣ କରିଛନ୍ତି । ସୁରାଧମ, ଏ ଶୂକର ରୂପ ଧାରଣ କରି ମୋ ସାମନାରେ ତୁ ଏହାକୁ ଧରି ଭଲରେ ଭଲରେ ଯାଇପାରିବୁ ନାହିଁ ॥୩॥ ତୁ ମାୟାବଳରେ ଲୁଚି ଛପି ଅସୁରମାନଙ୍କୁ ଜୟ କରି ହତ୍ୟା କରୁ । ତୋର ଯୋଗମାୟାବଳ ବେଶୀ । ପୁରୁଷକାର ଅଳ୍ପ । ଆମର ଶତ୍ରୁମାନେ ହିଁ ତୋତେ ପାଳନପୋଷଣ କରନ୍ତି । ମୂଢ଼, ତୋତେ ଶେଷ କରି ଆଜି ବନ୍ଧୁମାନଙ୍କର ମୁଁ ଶୋକ ଦୂର କରିବି ॥୪॥ ମୋ ହାତରୁ ଯାଇ ଏ ଗଦା ଯେତେବେଳେ ତୋର ମୁଣ୍ଡ ଖଣ୍ଡ ଖଣ୍ଡ କରିଦେବ ଏବଂ ତୁ ମରିପଡ଼ିବୁ, ସେତେବେଳେ ତୋତେ ପୂଜା କରୁଥିବା ଋଷି ଓ ଦେବତାମାନେ ଚେରକଟା ଗଛପରି ଆପେ ଆପେ ନଷ୍ଟ ହୋଇଯିବେ ॥୫॥

ଶତ୍ରୁର ଗାଳିପୂର୍ଣ୍ଣ ବାକ୍ୟବାଣରେ ବିଦ୍ଧ ହେଲେ ମଧ୍ୟ ତାହାକୁ ସହି ସହି ଭଗବାନ ଭୟଭୀତା ପୃଥିବୀକୁ ନିଜ ଦନ୍ତାଗ୍ରରେ ଧରି ଜଳମଧ୍ୟରୁ ବାହାରି ଆସିଲେ, ଯେପରି କୁମ୍ଭୀରଦ୍ୱାରା ଆକ୍ରାନ୍ତ ହୋଇ ଗଜରାଜ ହସ୍ତିନୀ ସହିତ ଜଳରୁ ବାହାରିଆସେ ॥୬॥ ନିଜର ଭୟଙ୍କର ଦାନ୍ତ ଦେଖାଇ ଜଳରୁ ବାହାରି ଆସୁଥିବା ହାତୀକୁ ଯେପରି କୁମ୍ଭୀର ଗୋଡ଼ାଇ ଆସେ, ସେହିପରି ଜଳମଧ୍ୟରୁ ଉଠିଆସୁଥିବା ଭଗବାନଙ୍କ ପଛରେ ହିରଣ୍ୟବର୍ଣ୍ଣ କେଶଯୁକ୍ତ ରାକ୍ଷସ ଗୋଡ଼ାଇ ଯାଇ ବଜ୍ରଗମ୍ଭୀର ସ୍ୱରରେ କହିଲା, କେବଳ ନୀଚଲୋକଙ୍କ ପକ୍ଷରେ ଏପରି ନିର୍ଲଜ୍ଜ ଆଚରଣ ଶୋଭାପାଏ ॥୭॥ ଯୁଦ୍ଧକାମୀ ହିରଣ୍ୟାକ୍ଷ ଦେଖୁଥିଲା, ଭଗବାନ ପୃଥିବୀକୁ ନିଜର ଆଧାରଶକ୍ତି ଦାନ କରି ଜଳ ଉପରେ ଯଥାଯୋଗ୍ୟ ସ୍ଥାନରେ ତାକୁ ସ୍ଥାପନ କଲେ । ବିଶ୍ୱସ୍ରଷ୍ଟା ବ୍ରହ୍ମା ତାଙ୍କର ସ୍ତୁତି କରିବାକୁ ଲାଗିଲେ ଓ ଦେବତାମାନେ ତାଙ୍କ ଉପରେ ପୁଷ୍ପବୃଷ୍ଟି କଲେ ॥୮॥ ଭଗବାନ ଦେଖିଲେ, ଶତ୍ରୁ ତାଙ୍କ ପଛକୁ ଲାଗି ଆସିଲାଣି । ସେ ସୁବର୍ଣ୍ଣମୟ କବଚ ଓ ସ୍ୱର୍ଣ୍ଣ ଅଳଙ୍କାରମାନ ପିନ୍ଧି ଏକ ବିଶାଳ ଗଦାକୁ ଧାରଣ କରିଛି ଏବଂ ଅନବରତ ମର୍ମଭେଦୀ ଦୁର୍ବାକ୍ୟମାନ ପ୍ରୟୋଗ କରିବାରେ ଲାଗିଛି । ପ୍ରଚଣ୍ଡ କ୍ରୋଧରେ ସେ ହସି ହସି କହିବା ଆରମ୍ଭ କଲେ ॥୯॥

ଶ୍ରୀଭଗବାନ କହିଲେ, ଠିକ୍ କଥା, ଆମେ ବନଚର ଜୀବ । କିନ୍ତୁ ତୋପରି ଗ୍ରାମସିଂହ (କୁକୁର) ମାନଙ୍କୁ ଖୋଜି ଖୋଜି ମାରିବା ପାଇଁ ଆମେ ବୁଲୁ । ଅଭଦ୍ର, ମୃତ୍ୟୁର ପାଶରେ ତୁ ବନ୍ଧା ହୋଇ ସାରିଛୁ । ତେଣୁ ବୀରପୁରୁଷମାନେ ତୋପରି ଛୋଟଲୋକର କଥାକୁ ଗୁରୁତ୍ୱ ଦିଅନ୍ତି ନାହିଁ ॥୧୦॥ ରସାତଳବାସୀଙ୍କ ନ୍ୟାସ ସଂପତ୍ତିକୁ ଆମେ ପୁଣି ଚୋରାଇ ନେଉଚୁ ! ଆମର ଲଜ୍ଜା ନାହିଁ ! ତୋର ଗଦାଭୟରେ ଆମେ ଏଠିକି ପଳାଇ ଆସିଚୁ ! ତୋ ସହିତ ଯୁଦ୍ଧ କରି ଆମେ କୁଆଡ଼େ ତିଷ୍ଠି ପାରିବୁ ନା ଶତ୍ରୁତା କରି ରହିପାରିବୁ ! ॥୧୧॥ ତୁ ତ ପଦାତିକ ବୀରଙ୍କର ମୁଖ୍ୟ । ଏତେ ବାକ୍‌ବିତଣ୍ଡା କାହିଁକି କରୁଚୁ ? ଆମକୁ ହରାଇବାପାଇଁ ଚେଷ୍ଟା କରି ଏବଂ ଆମକୁ ମାରି ତୋ'ର ନିଜ ଲୋକଙ୍କ ଆଖିର ଲୁହ ପୋଛିଦେ । ଯେ ନିଜର ପ୍ରତିଜ୍ଞା ପାଳନ କରେ ନା, ସେହି ଅସତ୍ୟ ବ୍ୟକ୍ତିର ସଭ୍ୟ ଜଗତରେ ସ୍ଥାନ ନାହିଁ ॥୧୨॥

ଅହିରାଜ ସର୍ପକୁ ଧରି ଖେଳାଇଲେ ସେ ଯେପରି ରାଗରେ ଫଣା ଟେକି ଉଠେ, ସେହିପରି କ୍ରୁଦ୍ଧ ଭଗବାନ ଦୈତ୍ୟକୁ ଅତିଶୟ ତିରସ୍କାର ଓ ଉପହାସ କରିବାରୁ ସେ ରାଗରେ ଜଳିଉଠିଲା । ତାର ଇନ୍ଦ୍ରିୟମାନେ ବିଚଳିତ ହୋଇଗଲେ । ସେ କ୍ରୋଧରେ ଦୀର୍ଘଶ୍ୱାସ ଛାଡ଼ି ଦୌଡ଼ି ଆସି ଶ୍ରୀହରିଙ୍କୁ ଗଦା ପ୍ରହାର କଲା ॥୧୩-୧୪॥ ମାତ୍ର ଯୋଗରେ ବସି ଯୋଗୀ ଯେପରି ମୃତ୍ୟୁକୁ ଏଡ଼ାଇଦିଏ, ସେହିପରି ଭଗବାନ ଟିକିଏ ଘୁଞ୍ଚିଯାଇ ତାଙ୍କ ବକ୍ଷସ୍ଥଳକୁ ଲକ୍ଷ୍ୟ କରାଯାଇଥିବା ଗଦାପ୍ରହାରକୁ ଏଡ଼ାଇଦେଲେ । ପୁଣି ଯେତେବେଳେ ରାଗରେ ଓଠ କାମୁଡ଼ି ରାକ୍ଷସ ତାର ଗଦାକୁ ବାରମ୍ବାର ବୁଲାଇଲା, କ୍ରୁଦ୍ଧ ଭଗବାନ ତା ଆଡ଼କୁ ଦୌଡ଼ିଗଲେ ଓ ଶତ୍ରୁର ଦକ୍ଷିଣ ଭୁଜଲତାକୁ ଲକ୍ଷ୍ୟ କରି ଗଦାପ୍ରହାର କଲେ । କିନ୍ତୁ ବିଦୁର, ଗଦାଯୁଦ୍ଧରେ କୁଶଳୀ ଦୈତ୍ୟ ନିଜ ଗଦାଦ୍ୱାରା ତାହା ସମ୍ଭାଳି ନେଲା ॥୧୫-୧୭॥ ଏହିପରି ଶ୍ରୀହରି ଓ ହିରଣ୍ୟାକ୍ଷ ଉଭୟ କ୍ରୁଦ୍ଧ ହୋଇ ବିଜୟ ଇଚ୍ଛାରେ ବିଶାଳ ଗଦାଦ୍ୱାରା ପରସ୍ପରକୁ ପ୍ରହାର କରିବାକୁ ଲାଗିଲେ ॥୧୮॥ ସୁତୀକ୍ଷଣ ଗଦାମାନ ଧରି ପରସ୍ପରକୁ ପ୍ରହାର କରିବା ଫଳରେ ଉଭୟଙ୍କ ଶରୀର ରକ୍ତାକ୍ତ ହୋଇଗଲା । କିନ୍ତୁ ଏହି ରକ୍ତର ଗନ୍ଧ ଉଭୟଙ୍କ କ୍ରୋଧକୁ ଏପରି ବଢ଼ାଇଦେଲା ଯେ ଗୋଟାଏ ଗାଭୀପାଇଁ (ଅନ୍ୟ ଅର୍ଥରେ ପୃଥିବୀ ପାଇଁ) ଦୁଇ ଜଣ ବୃଷଭ ଲଢ଼ିବାପରି ଦୁହେଁ ବିଚିତ୍ର ଗତିରେ ପ୍ରବଳ ଗଦାଯୁଦ୍ଧରେ ପ୍ରବୃତ୍ତ ହେଲେ ॥୧୯॥ ବିଦୁର, ଏହି ଦୁଇ ଶତ୍ରୁ--ମାୟାରେ ବରାହରୂପ ଧାରଣ କରିଥିବା ଯଜ୍ଞସ୍ୱରୂପ ଭଗବାନ ଓ ଦୈତ୍ୟ ହିରଣ୍ୟାକ୍ଷ ପୃଥିବୀପାଇଁ ପରସ୍ପର ମଧ୍ୟରେ ଯୁଦ୍ଧ କଲାବେଳେ ତାହା ଦେଖିବାପାଇଁ ବ୍ରହ୍ମା ଋଷିମାନଙ୍କ ସହ ସେଠାରେ ଉପସ୍ଥିତ ହେଲେ ॥୨୦॥ ସହସ୍ର ଋଷିଙ୍କ ଗହଣରେ ଆସିଥିବା ବ୍ରହ୍ମା ଦେଖିଲେ ଯେ ରାକ୍ଷସର ବଳ ବହୁତ ବଢ଼ିଯାଇଚି, ତାର ଟିକିଏ ହେଲେ ଭୟ ନାହିଁ । ଯୁଦ୍ଧ ପାଇଁ ସେ ସର୍ବଦା ପ୍ରସ୍ତୁତ ଏବଂ ତାର ଶକ୍ତିର ପ୍ରତିକାର ନାହିଁ । ଆଦିବରାହ ନାରାୟଣଙ୍କୁ ବ୍ରହ୍ମା କହିଲେ, ମୋ ବରରେ ଏହି ଦୁଷ୍ଟ ଦୈତ୍ୟ ଆଜି ବଳୀୟାନ୍ ହୋଇଚି । ଆପଣଙ୍କ ପଦାଶ୍ରିତ ଗୋ ବ୍ରାହ୍ମଣ ଦେବତା ଓ ଅନ୍ୟ ନିରପରାଧ ପ୍ରାଣୀମାନଙ୍କର ବିରୁଦ୍ଧାଚରଣ କରି ସେମାନଙ୍କ ଦୁଃଖ ଓ ଭୟର କାରଣ ହୋଇଚି । ସଂସାରର କଣ୍ଟକସ୍ୱରୂପ ଏହି ବରପ୍ରାପ୍ତ ଅସୁର ନିଜର ସମାନ ପ୍ରତିଦ୍ୱନ୍ଦ୍ୱୀ ନ ଦେଖି ଏହିପରି ଜଣକୁ ପାଇବାପାଇଁ ଖୋଜି ବୁଲିଚି ॥୨୧-୨୩॥ ବାଳକ ଉତ୍‌କ୍ଷିପ୍ତ ବିଷଧର ସର୍ପ ସହିତ କ୍ରୀଡ଼ା କରିବା ପରି ଆପଣ ବଳଗର୍ବରେ ଉନ୍ମତ୍ତ ଏହି ନିରଙ୍କୁଶ ଦୁଷ୍ଟ ମାୟାବୀ ରାକ୍ଷସ ସହିତ ଖେଳନ୍ତୁ ନାହିଁ ॥୨୪॥ ବ୍ରହ୍ମା ପୁଣି କହିଲେ, ଅଚ୍ୟୁତ, ଏହି ଦାରୁଣ ଦୈତ୍ୟର ଆହୁରି ବଳବୃଦ୍ଧିର ବେଳା ଆସିବା ପୂର୍ବରୁ ନିଜର ଦେବମାୟା ବଳରେ ଏହି ପାପୀକୁ ଶୀଘ୍ର ବଧ କରନ୍ତୁ ॥୨୫॥ ପ୍ରଭୁ, ଲୋକଙ୍କର ବିନାଶକାରୀ ଭୟାନକ ସନ୍ଧ୍ୟା ସମୟ ଆସିଯାଉଚି । ସର୍ବାନ୍ତର୍ଯାମୀ, ଏହା ପୂର୍ବରୁ ଏହି ଦୈତ୍ୟର ବିନାଶ କରି ଦେବତାମାନଙ୍କୁ ବିଜୟ ପ୍ରଦାନ କରନ୍ତୁ ॥୨୬॥ ବର୍ତ୍ତମାନ ଅଭିଜିତ୍ ନାମକ ଏକ ଶୁଭ ମୁହୂର୍ତ୍ତର ଯୋଗ ଆସିଗଲାଣି । ଏହି ସମୟରେ ପ୍ରଭୁ, ଦୁସ୍ତର ଦୁଃଖରୁ ଆପଣଙ୍କ ବନ୍ଧୁମାନଙ୍କୁ ନିସ୍ତାର କରି ସେମାନଙ୍କର ମଙ୍ଗଳ କରନ୍ତୁ ॥୨୭॥ ଆପଣଙ୍କ ହାତରେ ତାର ମୃତ୍ୟୁ ନିର୍ଦ୍ଧାରିତ ହୋଇଚି । ତେଣୁ ଆପେ ଆପେ ସେ ମୃତ୍ୟୁରୂପୀ ଆପଣଙ୍କ ପାଖରେ ଆସି ପହଞ୍ଚିଚି । ନିଜର ବିକ୍ରମଦ୍ୱାରା ଏହାକୁ ନିହତ କରି ଆପଣ ସଂସାରର ସୁଖ ବିଧାନ କରନ୍ତୁ ॥୨୮॥

## ଊନବିଂଶ ଅଧ୍ୟାୟ

# ବରାହକୃତ ହିରଣ୍ୟାକ୍ଷ ବଧ

ମୈତ୍ରେୟ କହିଲେ, ବ୍ରହ୍ମାଙ୍କର କପଟଶୂନ୍ୟ, ଅମୃତମୟ ବଚନ ଶ୍ରବଣ କରି ଭଗବାନ୍ ସ୍ମିତହାସପୂର୍ବକ ପ୍ରେମପୂର୍ଣ୍ଣ କଟାକ୍ଷରେ ତାଙ୍କୁ ଚାହିଁ ତାଙ୍କ ପ୍ରାର୍ଥନା ଗ୍ରହଣ କଲେ ॥୧॥ ବ୍ରହ୍ମାଙ୍କ ନାସାରନ୍ଧ୍ରରୁ ଜାତ ବରାହ ଭଗବାନ୍ ନିଜ ସମ୍ମୁଖରେ ନିର୍ଭୟରେ ବୁଲୁଥିବା ଶତ୍ରୁର ହନୁକୁ ଲକ୍ଷ୍ୟ କରି ଗଦାଘାତ କଲେ । କିନ୍ତୁ ରାକ୍ଷସର ଗଦାଘାତରେ ତାଙ୍କ ଗଦା ହାତରୁ ଖସିଯାଇ ଘୂରି ଘୂରି ଭୂମି ଉପରେ ପଡ଼ିଲା । ତାହା ଅଦ୍ଭୁତ ଜଣାଗଲା ॥୨-୩॥ କିନ୍ତୁ ଏପରି ଅବସର ପାଇ ମଧ୍ୟ ହିରଣ୍ୟାକ୍ଷ ଯୁଦ୍ଧର ଧର୍ମକୁ ସ୍ୱୀକାର କରି ନିରସ୍ତ୍ର ଭଗବାନଙ୍କୁ ପ୍ରହାର କଲା ନାହିଁ । ଅବଶ୍ୟ ଏହାଦ୍ୱାରା ତାଙ୍କ କ୍ରୋଧ ବଢ଼ିବାକୁ ଲାଗିଲା । ଗଦା ପଡ଼ିଯିବାପରେ ଓ ହାହାକାର ବନ୍ଦ ହୋଇଯିବାପରେ ପ୍ରଭୁ ରାକ୍ଷସର ଧର୍ମବୁଦ୍ଧିକୁ ପ୍ରଶଂସା କରି ସୁଦର୍ଶନ ଚକ୍ରକୁ ସ୍ମରଣ କଲେ ॥୪-୫॥ ଚକ୍ର ଭଗବାନଙ୍କ ହାତକୁ ଆସି ଘୂରିବାକୁ ଲାଗିଲା । ମାତ୍ର ପୂର୍ବରୁ ଥିବା ନିଜର ମୁଖ୍ୟ ପାର୍ଶ୍ୱଚର ଏବଂ ଏବେ ଦିତିଙ୍କର ଏହି ଅଧମପୁତ୍ର ସହିତ ସେ ଖେଳିବାକୁ ଲାଗିଲେ । ଚକ୍ରର ପ୍ରଭାବ ନ ଜାଣିଥିବା ବ୍ୟୋମଚାରୀ ଦେବତା ଓ ଋଷିମାନେ ସୁମଧୁର ବାକ୍ୟରେ କହିବାକୁ ଲାଗିଲେ--'ପ୍ରଭୁ, ଆପଣଙ୍କର ଜୟ ହେଉ, ଏହାକୁ ଆଉ ଖେଳାନ୍ତୁ ନାହିଁ । ଶୀଘ୍ର ବଧ କରନ୍ତୁ' ॥୬॥

ହିରଣ୍ୟାକ୍ଷ ଯେତେବେଳେ ପଦ୍ମପତ୍ରାକ୍ଷ ଭଗବାନ ଚକ୍ର ଧରି ଆଗରେ ଠିଆ ହୋଇଥିବାର ଦେଖିଲା, କ୍ରୋଧରେ ତା'ର ଇନ୍ଦ୍ରିୟ ସବୁ ବିବଶ ହୋଇ ପଡ଼ିଲେ ଏବଂ ଘନ ଘନ ଦୀର୍ଘଶ୍ୱାସ ଛାଡ଼ି ସେ ରାଗରେ ଓଠ କାମୁଡ଼ିବାକୁ ଲାଗିଲା ॥୭॥ ରାକ୍ଷସର ଦନ୍ତସବୁ ଭୟଙ୍କର ଓ ଚକ୍ଷୁଦ୍ୱୟ କ୍ରୋଧରେ ଏପରି ଜଳୁଥିଲା ଯେ ମନେ ହେଉଥିଲା ସେ ଭଗବାନଙ୍କୁ ଭସ୍ମ କରିଦେବ । 'ତୋର ମୃତ୍ୟୁ ହେଲା' ବୋଲି କହି ସେ ଶ୍ରୀହରିଙ୍କୁ ଗଦାଘାତ କଲା ॥୮॥ ବିଦୁର, ଚାହୁଁ ଚାହୁଁ ଯଜ୍ଞବରାହ ଭଗବାନ ଖେଳିଲା ପରି ହୋଇ ତୀବ୍ର ବେଗରେ ଆସୁଥିବା ସେହି ଗଦାକୁ ବାମପାଦରେ ଭୂପାତିତ କଲେ ॥୯॥ ଭଗବାନ କହିଲେ, ଯଦି ଜିତିବାକୁ ଇଚ୍ଛା କରୁଛୁ, ତା'ହେଲେ ତୋର ଆୟୁଧକୁ ତଳୁ ଉଠାଇ ନେଇ ଆଉଥରେ ଚେଷ୍ଟା କର ।' ଏହିପରି ଆହୂତ ହୋଇ ରାକ୍ଷସ ତାର ଗଦାରେ ପୁଣି ତାଙ୍କୁ ପ୍ରହାର କରି ଜୋରରେ ଗର୍ଜନ କଲା ॥୧୦॥ ଗରୁଡ଼ ସାପକୁ ଧରି ନେବାପରି ନିଜ ସ୍ଥାନରେ ଠିଆ ହୋଇ ରହି ଭଗବାନ ସେହି ଗଦାକୁ ସହଜରେ ଧରିନେଲେ ॥୧୧॥ ନିଜର ଶକ୍ତି ବିଫଳ ଓ ସମ୍ମାନ କ୍ଷୁଣ୍ଣ ହେବାର ଦେଖି ହୀନତେଜା ମହାଦୈତ୍ୟ ଭଗବାନ କହିଲେ ମଧ୍ୟ ତାର ଗଦାକୁ ଆଉ ନେବାକୁ ଇଚ୍ଛା କଲା ନାହିଁ ॥୧୨॥ କୌଣସି ବ୍ରାହ୍ମଣ ପ୍ରତି ମାରଣାଦି ନିଷ୍ଫଳ ଅଭିଚାର ପ୍ରୟୋଗ କରିବା ପରି ଯଜ୍ଞବରାହରୂପୀ ଭଗବାନଙ୍କ ଉଦ୍ଦେଶ୍ୟରେ ସେ ଏକ ଜ୍ୱଳନ୍ତ ତ୍ରିଶୂଳ ଗ୍ରହଣ କଲା ॥୧୩॥ ମହାଯୋଦ୍ଧା ଦୈତ୍ୟ ସେହି ତ୍ରିଶୂଳକୁ ପ୍ରେରଣ କରିବାରୁ ଆକାଶ ତେଜୋଦୀପ୍ତ ହୋଇଗଲା । ମାତ୍ର ଗରୁଡ଼ଙ୍କର ଏକ ପକ୍ଷ ବଜ୍ରଦ୍ୱାରା କର୍ତ୍ତିତ ହେବାପରି ଭଗବାନ ତୀକ୍ଷ୍ଣଧାର ଚକ୍ରଦ୍ୱାରା ସେହି ତ୍ରିଶୂଳକୁ ଛେଦନ କଲେ ॥୧୪॥ ଶ୍ରୀହରିଙ୍କ ଚକ୍ରଦ୍ୱାରା ନିଜର ତ୍ରିଶୂଳ ଖଣ୍ଡ ଖଣ୍ଡ ହେବାର ଦେଖି ଅସୁର ପ୍ରଚଣ୍ଡ କ୍ରୋଧରେ ଶ୍ରୀସମ୍ପନ୍ନ ଭଗବାନଙ୍କ ପ୍ରଶସ୍ତ ବକ୍ଷ ଉପରେ ମୁଷ୍ଟିଦ୍ୱାରା ଏକ ନିର୍ଘାତ ମାଡ଼ ମାରି ଅନ୍ତର୍ହିତ ହୋଇଗଲା ॥୧୫॥

ବିଦୁର, ହାତୀକୁ ଫୁଲମାଳ ପରି ଭଗବାନ ଆଦିଶୂକରଙ୍କୁ ଏ ମାଡ଼ କିଛି ହେଲେ ଲାଗିଲା ନାହିଁ । ସେ ଟିକିଏ ହେଲେ ହଲଚଲ ହେଲେ ନାହିଁ ॥୧୬॥ ଯେ ସ୍ୱୟଂ ଯୋଗମାୟାର ଈଶ୍ୱର, ତାଙ୍କ ପ୍ରତି ଦୈତ୍ୟ ନାନାପ୍ରକାର ମାୟା ପ୍ରୟୋଗ କଲା ।

ତାହା ଦେଖି ପ୍ରଜାମାନେ ବହୁତ ଡରିଗଲେ ଏବଂ ପ୍ରଳୟକାଳ ଆସିଗଲା ବୋଲି ମନେ କଲେ ॥୧୭॥ ପ୍ରଚଣ୍ଡ ବେଗରେ ପବନ ବହିବାକୁ ଲାଗିଲା । ଧୂଳିଝଡ଼ରେ ଚାରିଆଡ଼ ଅନ୍ଧକାର ହୋଇଗଲା । କମାଣରୁ ଗୋଳା ବୃଷ୍ଟି ହେବାପରି ପଥର ବୃଷ୍ଟି ହେବାକୁ ଲାଗିଲା ॥୧୮॥ ବଜ୍ରବିଦ୍ୟୁତ୍‌ଯୁକ୍ତ ମେଘମାଳାଦ୍ୱାରା ଆକାଶ ଆଚ୍ଛନ୍ନ ହେବାରୁ ସୂର୍ଯ୍ୟାଦି ଜ୍ୟୋତିଷ୍କମାନେ ଲୁଚିଗଲେ । ଆକାଶରୁ ପୂଯ, ରକ୍ତ, ବାଳ, ଅସ୍ଥି, ମଳ, ମୂତ୍ରାଦି ବୃଷ୍ଟି ହେଲା ॥୧୯॥ ନିଷ୍ପାପ ବିଦୁର, ନାନାପ୍ରକାର ଅସ୍ତ୍ରଶସ୍ତ୍ର ବୃଷ୍ଟି କରୁଥିବା ପର୍ବତମାନ ଦେଖାଗଲେ । ଶୂଳହସ୍ତ ଉଲଗ୍ନ ରାକ୍ଷସୀମାନେ ବାଳ ମୁକୁଳା କରି ବୁଲିବାକୁ ଲାଗିଲେ ॥୨୦॥ ପଦାତିକ, ଅଶ୍ୱାରୋହୀ, ଗଜାରୋହୀ ସେନାସହିତ ଆତତାୟୀ ଯକ୍ଷ ରାକ୍ଷସଙ୍କର ମାର, ମାର, ହାଣ, କାଟ ଆଦି ଉଗ୍ର ହିଂସ୍ର ଶବ୍ଦମାନ ଶୁଣାଗଲା ॥୨୧॥ ଏହିପରି ଦେଖାଯାଉଥିବା ଆସୁରୀ ମାୟାକୁ ବିନାଶ କରିବା ନିମନ୍ତେ ଯଜ୍ଞପୁରୁଷ ଭଗବାନ ନିଜର ପ୍ରିୟ ସୁଦର୍ଶନ ଚକ୍ରକୁ କ୍ଷେପଣ କଲେ ॥୨୨॥ ଏହି ସମୟରେ ହଠାତ୍ ଦିତିଙ୍କ ହୃଦୟରେ କମ୍ପନ ଜାତ ହେଲା । ସେ ନିଜର ସ୍ୱାମୀ କହିଥିବା କଥା ସ୍ମରଣ କଲେ । ତାଙ୍କର ସ୍ତନରୁ ରକ୍ତ ବହିବାକୁ ଲାଗିଲା ॥୨୩॥ ନିଜର ମାୟା ନଷ୍ଟ ହୋଇଯିବାରୁ ରାକ୍ଷସ ଭଗବାନଙ୍କ ନିକଟକୁ ଆସି ତାଙ୍କୁ ରାଗରେ ନିଜ ବାହୁମଧ୍ୟରେ ଚିପି ଦେବାପାଇଁ ବସିଲା । କିନ୍ତୁ ଦେଖିଲା ଯେ ଭଗବାନ୍ (ତାର ବାହୁବଳୟ ମଧ୍ୟରେ ନାହାନ୍ତି) ବାହାରେ ଠିଆ ହୋଇଛନ୍ତି ॥୨୪॥ ବଜ୍ରପରି କଠିନ ତାର ମୁଷ୍ଟିଘାତକୁ ଅବଜ୍ଞା କରି ଭଗବାନ ରାକ୍ଷସର କାନମୁଣ୍ଡାକୁ ଏକ ଶକ୍ତ ଚାପଡ଼ା ମାରିଲେ, ଯେପରିକି ବୃତ୍ରାସୁରକୁ ଇନ୍ଦ୍ର ମାରିଥିଲେ ॥୨୫॥ ବିଶ୍ୱଜିତ୍ ଭଗବାନ ଅବଜ୍ଞାରେ ତାକୁ ଯେଉଁ ମାଡ଼ ମାରିଲେ, ସେଥିରେ ସେ ଘିରଘିର୍ ହୋଇ ବୁଲିଗଲା; ତାର ଆଖି ଦି'ଟା ବାହାରିପଡ଼ିଲା; ଗୋଡ଼, ହାତ ଭାଙ୍ଗି ପଡ଼ିଲା; ମୁଣ୍ଡବାଳ ଉପୁଡ଼ିଗଲା; ବାତ୍ୟାରେ ଏକ ବିଶାଳବୃକ୍ଷ ଉପୁଡ଼ି ପଡ଼ିବା ପରି ତଳେ ପଡ଼ିଯାଇ ତାର ପ୍ରାଣବାୟୁ ଉଡ଼ିଗଲା ॥୨୬॥ ଭୂତଳଶାୟୀ ରାକ୍ଷସର ତେଜ ତେବେ ମଧ୍ୟ ମଳିନ ପଡ଼ି ନ ଥିଲା । ତାର ଭୟଙ୍କର ଦାନ୍ତରେ ସେ ଓଠ କାମୁଡ଼ି ପଡ଼ିଗଲା । ବ୍ରହ୍ମାଦି ଦେବତାମାନେ ତାକୁ ଦେଖି ପ୍ରଶଂସା କରି କହିଲେ, ଏପରି ମୃତ୍ୟୁ କାହା ଭାଗ୍ୟରେ ମିଳେ !॥୨୭॥ ଏହି ଅସ୍ଥାୟୀ ଦେହରୁ ମୁକ୍ତି ପାଇବାପାଇଁ ଯୋଗୀମାନେ ସମାଧିସ୍ଥ ହୋଇ ଏକାନ୍ତରେ ଯାହାଙ୍କୁ ଧ୍ୟାନ କରନ୍ତି, ତାଙ୍କଦ୍ୱାରା ପଦାହତ ହୋଇ ଏହି ଦୈତ୍ୟଶ୍ରେଷ୍ଠ ତାଙ୍କ ମୁହଁକୁ ଚାହିଁ ଚାହିଁ ତନୁ ତ୍ୟାଗ କଲା ॥୨୮॥ ଏହି ଦୁଇ ଜଣ (ହିରଣ୍ୟାକ୍ଷ ଓ ହିରଣ୍ୟକଶିପୁ) ଭଗବାନଙ୍କର ପାର୍ଶ୍ୱଚର ଥିଲେ । ଶାପବଶରୁ ତାଙ୍କର ଏ ଅଧୋଗତି ହୋଇଚି । କେତେକ ଜନ୍ମପରେ ପୁଣି ସେ ଦୁହେଁ ନିଜ ସ୍ଥାନକୁ ଫେରିଯିବେ ॥୨୯॥

ଦେବତାମାନେ ଭଗବାନଙ୍କୁ ଏହିପରି ସ୍ତୁତି କରିବାକୁ ଲାଗିଲେ-- ଆପଣ ସମସ୍ତ ଯଜ୍ଞର ଫଳସ୍ୱରୂପ ଏବଂ ଏହି ସଂସାରର ପାଳନକର୍ତ୍ତା । ସେଥିପାଇଁ ଏହି ଶୁଦ୍ଧ ସତ୍ତ୍ୱମୟ ବିଗ୍ରହକୁ ଧାରଣ କରିଛନ୍ତି । ଆପଣଙ୍କୁ ବାରମ୍ବାର ନମସ୍କାର । ଜଗତକୁ ବହୁ କଷ୍ଟ ଦେଉଥିବା ଏହି ରାକ୍ଷସ ନିହତ ହୋଇଚି । ଆପଣଙ୍କ ପାଦରେ ଭକ୍ତି ରଖିଥିବାଯୋଗୁଁ ଆମକୁ ଆଜି ଏହି ସୁଖଶାନ୍ତି ମିଳିପାରିଚି ॥୩୦॥ ମୈତ୍ରେୟ କହିଲେ, ଏହିପରି ପ୍ରବଳପରାକ୍ରମୀ ହିରଣ୍ୟାକ୍ଷକୁ ବଧ କରି ଭଗବାନ ଆଦିବରାହ ପଦ୍ମାସୀନ ବ୍ରହ୍ମା ଓ ଦେବତାମାନଙ୍କଦ୍ୱାରା ପୂଜିତ ହୋଇ ଅଖଣ୍ଡ ଆନନ୍ଦରେ ନିଜ ଧାମକୁ ଫେରିଗଲେ ॥୩୧॥ ମିତ୍ର ବିଦୁର, ଭଗବାନ ଅବତାର ଗ୍ରହଣ କରି ଯେପରି ଲୀଳା ରଚନା କରନ୍ତି, ଯେପରି ସେ ପ୍ରବଳ ପରାକ୍ରମୀ ହିରଣ୍ୟାକ୍ଷକୁ ମହାଯୁଦ୍ଧରେ କ୍ରୀଡ଼ନକ ପରି କରି ନିହତ କଲେ, ତାହା ମୁଁ ଗୁରୁଙ୍କ ମୁହଁରୁ ଯେପରି ଶୁଣିଥିଲି, ତୁମ ଆଗରେ ସେପରି ପ୍ରକାଶ କଲି ॥୩୨॥ ସୂତ କହିଲେ, ଶୌନକ, ମୈତ୍ରେୟଙ୍କଠାରୁ ଏହିପରି ଭଗବତ୍ ଲୀଳା କଥା ଶ୍ରବଣ କରି ମହାଭାଗବତ ବିଦୁର ଅତିଶୟ ଆନନ୍ଦ ଲାଭ କଲେ ॥୩୩॥ ଅନ୍ୟାନ୍ୟ ପୁଣ୍ୟଶ୍ଳୋକ ମହାଯଶା ମହାପୁରୁଷଙ୍କର ଚରିତ ଶ୍ରବଣ କରି ଯଦି ମନରେ ଆନନ୍ଦ ଜାତ ହେଉଚି, ତା'ହେଲେ ଶ୍ରୀବତ୍ସଲାଞ୍ଛନ ଶ୍ରୀହରିଙ୍କ ଲୀଳା ଶ୍ରବଣ କଲେ କଣ ନ ହେବ ? ॥୩୪॥ କୁମ୍ଭୀରର ଗ୍ରାସରେ ପଡ଼ି ଗଜେନ୍ଦ୍ର ଯେତେବେଳେ ତାଙ୍କ ପାଦପଦ୍ମକୁ ଧ୍ୟାନ କଲା, ହସ୍ତିନୀମାନେ କ୍ରନ୍ଦନ କରିବାକୁ ଲାଗିଲେ, ସେ ସଙ୍ଗେ ସଙ୍ଗେ

ସେମାନଙ୍କର ଦୁଃଖ ମୋଚନ କଲେ । ତାଙ୍କର ଏକାନ୍ତ ଶରଣାଗତ ପ୍ରାଣୀମାନଙ୍କର ସେ ସହଜରେ ଆରାଧ୍ୟ, ସହଜରେ ଲଭ୍ୟ, କିନ୍ତୁ ଦୁଷ୍ଟମାନଙ୍କପାଇଁ ନୁହନ୍ତି । ତେଣୁ କୃତଜ୍ଞ ମନୁଷ୍ୟ ତାଙ୍କର କାହିଁକି ବା ସେବା ନ କରିବ ? ।।୩୫।। ଦ୍ୱିଜଗଣ, ପୃଥିବୀର ଉଦ୍ଧାରପାଇଁ ଶୂକର ରୂପ ଧାରଣ କରିଥିବା ଭଗବାନଙ୍କର ହିରଣ୍ୟାକ୍ଷ ବଧ ରୂପକ ଅତି ଅଦ୍ଭୁତ ଲୀଳା ଯେ ଶ୍ରବଣ କରେ, ଗାନ କରେ ବା ଅନ୍ତରରେ ଗ୍ରହଣ କରେ, ବ୍ରହ୍ମହତ୍ୟାପରି ପାତକରୁ ମଧ୍ୟ ସେ ମୁକ୍ତ ହୋଇଯାଏ ।।୩୬-୩୭।। ମହାପୁଣ୍ୟଦାୟକ ଏହି ପରମ ପବିତ୍ର ଲୀଳା ମନୁଷ୍ୟଙ୍କୁ ଧନ, ଯଶ, ପଦ, ଆୟୁ ଏବଂ ଆଶିଷ ପ୍ରଦାନ କରେ । ଯୁଦ୍ଧ ସମୟରେ ମନୁଷ୍ୟର ପ୍ରାଣ ଓ ଇନ୍ଦ୍ରିୟର ଶକ୍ତି ବର୍ଦ୍ଧନ କରେ । ବିଦୁର, ଯେ ଏହା ଶ୍ରବଣ କରେ, ସେ ଅନ୍ତକାଳରେ ନାରାୟଣଙ୍କୁ ପ୍ରାପ୍ତ ହୁଏ ।।୩୮।।

## ବିଂଶ ଅଧ୍ୟାୟ

# ସୃଷ୍ଟି ବର୍ଣ୍ଣନା

ଶୌନକ ପଚାରିଲେ, ସୂତ, ପୃଥିବୀ ପ୍ରତିଷ୍ଠିତ ହେବାପରେ ସ୍ୱାୟମ୍ଭୁବ ମନୁ ଭଗବାନଙ୍କଠାରେ ଲୀନ ପ୍ରାଣୀମାନଙ୍କର ଜନ୍ମପାଇଁ କି କି ଉପାୟ ଅବଲମ୍ବନ କଲେ ? ।।୧।। ପରମ ଭାଗବତ ବିଦୁର କୃଷ୍ଣଙ୍କର ଏକାନ୍ତ ସୁହୃଦ୍ ଥିଲେ । ଅଗ୍ରଜ ଧୃତରାଷ୍ଟ୍ର ନିଜର ପୁତ୍ରମାନଙ୍କ ସହିତ ମିଶି କୃଷ୍ଣଙ୍କଠାରେ ଦ୍ରୋହ କରିବାରୁ ସେ ତାଙ୍କୁ ଛାଡ଼ି ଚାଲିଆସିଲେ ।।୨।। ବିଦୁର ବ୍ୟାସଙ୍କର ଔରସ ପୁତ୍ର । କିନ୍ତୁ ମହତ୍ତ୍ୱ ଗୁଣରେ ସେ ବ୍ୟାସଙ୍କଠାରୁ କିଛି କମ୍ ନ ଥିଲେ । ସର୍ବତୋଭାବରେ ସେ କୃଷ୍ଣଙ୍କର ଆଶ୍ରିତ ଥିଲେ ଏବଂ କୃଷ୍ଣଭକ୍ତମାନଙ୍କୁ ଅନୁସରଣ କରୁଥିଲେ ।।୩।। ତୀର୍ଥାଟନଦ୍ୱାରା ବିଦୁରଙ୍କର ଚିତ୍ତ ଆହୁରି ପବିତ୍ରିତ ହୋଇଗଲା । ସେ କୁଶାବର୍ତ୍ତକ୍ଷେତ୍ର ହରିଦ୍ୱାରରେ ତତ୍ତ୍ୱଜ୍ଞମାନଙ୍କ ମଧ୍ୟରେ ଶ୍ରେଷ୍ଠ ମୈତ୍ରେୟ ଋଷିଙ୍କ ପାଖକୁ ଯାଇ ତାଙ୍କୁ ଆଉ କଣ ସବୁ ପଚାରିଲେ ? ।।୪।। ସେ ଦୁହିଁଙ୍କ ବାର୍ତ୍ତାଳାପରୁ ଶ୍ରୀହରିଙ୍କ ପାଦପଦ୍ମକୁ ଆଧାର କରି ଯେଉଁ ପବିତ୍ର କଥା ବାହାରିଥିବ, ତାହା ତାଙ୍କର ପାଦନିଃସୃତ ଗଙ୍ଗାଜଳ ପରି ସମସ୍ତ ପାପ ହରଣ କରିପାରିବ ।।୫।। ସୂତ ! ତୁମର ମଙ୍ଗଳ ହେଉ । ସେହି ଉଦାରଚରିତ ଭଗବାନଙ୍କର କଥା ଆମ ଆଗରେ କୀର୍ତ୍ତନ କର । ଏପରି କିଏ ରସିକ ଅଛି, ଶ୍ରୀହରିଙ୍କ ଲୀଳାମୃତ ଯେତେ ପାନ କଲେ ମଧ୍ୟ ସନ୍ତୁଷ୍ଟ ହୋଇପାରିବ ! ।।୬।।

ନୈମିଷାରଣ୍ୟରେ ଥିବା ଋଷିମାନେ ଏହିପରି ପଚାରିବାରୁ ଭଗବାନ୍‌ଙ୍କଠାରେ ନିଜର ଆତ୍ମାକୁ ଅର୍ପଣ କରିଥିବା ସୂତ ମୁନି କହିଲେ, 'ତା ହେଲେ କହୁଚି ଶୁଣ' ।।୭।। ନିଜ ମାୟାରେ ଶୂକର ରୂପ ଧାରଣ କରି ଭଗବାନ୍ ଶ୍ରୀହରି ରସାତଳରୁ ପୃଥିବୀକୁ ଉଦ୍ଧାର କଲେ । ହିରଣ୍ୟାକ୍ଷକୁ ଅବଜ୍ଞାପୂର୍ବକ ନିହତ କଲେ । ତାଙ୍କର ଏହି ଲୀଳା ଶ୍ରବଣ କରି ବିଦୁର ଅତିଶୟ ଆନନ୍ଦିତ ହେଲେ । ସେ ମୈତ୍ରେୟଙ୍କୁ ଏହିପରି ପଚାରିଲେ ।।୮।। ବିଦୁର ପଚାରିଲେ, ବ୍ରହ୍ମନ୍, ଆପଣ ସମସ୍ତ ଅବ୍ୟକ୍ତ ବିଷୟକୁ ଜାଣନ୍ତି । ବ୍ରହ୍ମା ପ୍ରଜାସୃଷ୍ଟିପାଇଁ ପ୍ରଜାପତିମାନଙ୍କୁ ଜନ୍ମ ଦେଲେ । ତାପରେ ସେ କିପରି ଏହି ସୃଷ୍ଟି କାର୍ଯ୍ୟ ଆରମ୍ଭ କଲେ ? ।।୯।। ପ୍ରଜାପତିମାନେ ହେଲେ -- ମରୀଚି ଆଦି ଋଷି ଓ ସ୍ୱାୟମ୍ଭୁବ ମନୁ । ସେମାନେ ବ୍ରହ୍ମାଙ୍କ ଆଦେଶରେ କିପରି ଏହି ବିଶ୍ୱକୁ ସୃଷ୍ଟି କଲେ ? ପତ୍ନୀମାନଙ୍କ ସହିତ ମିଶି କଲେ କିମ୍ବା ସ୍ୱତନ୍ତ୍ର କର୍ମଦ୍ୱାରା କଲେ କିମ୍ବା ଏକାଠି ମିଶି କଲେ ? ।।୧୦-୧୧।। ବିଦୁର, ତିନୋଟି ଶକ୍ତି ହେଉଛନ୍ତି ସୃଷ୍ଟିର କାରଣ । ପ୍ରଥମ ଦୈବ ବା ଅଦୃଷ୍ଟ, ଯାହାକୁ ତର୍କଦ୍ୱାରା ଜାଣିବା କଷ୍ଟକର । ଦ୍ୱିତୀୟ ପ୍ରକୃତିକୁ ନିୟନ୍ତ୍ରଣ କରୁଥିବା ପୁରୁଷ । ତୃତୀୟ କାଳ । ଏହି ତିନି କାରଣରୁ ତ୍ରିଗୁଣମୟୀ ପ୍ରକୃତିରେ କ୍ଷୋଭ ଜାତ ହେଲା ଏବଂ ସେଥିରୁ

ମହତ୍ ତତ୍ତ୍ୱ ଉତ୍ପନ୍ନ ହେଲା ॥୧୨॥ ଦୈବର ପ୍ରେରଣାରେ ରଜଃପ୍ରଧାନ ମହତ୍ତତ୍ତ୍ୱରୁ ତିନି ପ୍ରକାର ଅହଂକାରର ସୃଷ୍ଟି ହେଲା (ସାତ୍ତ୍ୱିକ, ରାଜସିକ ଓ ତାମସିକ) । ସେମାନେ ଆକାଶ ଆଦି ପାଞ୍ଚ ପାଞ୍ଚ ସଂଖ୍ୟକ ଭୂତବର୍ଗ ସୃଷ୍ଟି କଲେ ॥୧୩॥ ସେମାନେ ଏକା ବା ଅଲଗା ଅଲଗା ହୋଇ ଭୌତିକ ବିଶ୍ୱକୁ ସୃଷ୍ଟି କରିବାପାଇଁ ସମର୍ଥ ହେଲେ ନାହିଁ । ତେଣୁ ଦୈବଯୋଗରେ ଏକାଠି ହୋଇ ଏକ ସୁବର୍ଣ୍ଣବର୍ଣ୍ଣ ଅଣ୍ଡାକୁ ସୃଷ୍ଟି କଲେ ॥୧୪॥ ସେହି ଅଚେତନ ଅଣ୍ଡକୋଷ କାରଣସମୁଦ୍ରର ଜଳରେ ଏକହଜାର ବର୍ଷରୁ ଅଧିକ କାଳ ପଡ଼ି ରହିଲା । ତା'ପରେ ଭଗବାନ ତାହା ମଧ୍ୟରେ ପ୍ରବେଶ କଲେ ॥୧୫॥

ତାଙ୍କର ନାଭିରୁ ଏକ ପଦ୍ମ ଜାତ ହେଲା -- ଯାହାର ତେଜ ସହସ୍ର ସୂର୍ଯ୍ୟର ତେଜକୁ ବଳି ଯାଉଥିଲା । ସମସ୍ତ ଜୀବଙ୍କର ଆଶ୍ରୟସ୍ଥଳ ସେହି ପଦ୍ମରୁ ସ୍ୱୟଂ ବ୍ରହ୍ମା ଆବିର୍ଭୂତ ହେଲେ ॥୧୬॥ ବ୍ରହ୍ମାଣ୍ଡର ଗର୍ଭସ୍ୱରୂପ ସେହି ଜଳରେ ଶୟନ କରିଥିବା ଭଗବାନ ବ୍ରହ୍ମାଙ୍କ ହୃଦୟରେ ପ୍ରବେଶ କରିବାରୁ ସେ ପୂର୍ବପରି ନିଜ ବୁଦ୍ଧିରୁ ଲୋକସମୂହ ନିର୍ମାଣ କଲେ ॥୧୭॥ ସେ ପ୍ରଥମେ ତାଙ୍କ ମାୟାରୁ ପାଞ୍ଚ ପ୍ରକାର ଅବିଦ୍ୟା ସୃଷ୍ଟି କଲେ -- ତାମିସ୍ର, ଅନ୍ଧତାମିସ୍ର, ତମ, ମୋହ ଓ ମହାତମ ॥୧୮॥ ବ୍ରହ୍ମାଙ୍କୁ ଭଲ ନ ଲାଗିବାରୁ ସେ ନିଜର ତମୋମୟ ଶରୀରକୁ ପରିତ୍ୟାଗ କଲେ । କ୍ଷୁଧାତୃଷା ଜନକ ସେହି ରାତ୍ରିରୂପ ଶରୀରକୁ ଯକ୍ଷ ରାକ୍ଷସମାନେ ଧରିନେଲେ ॥୧୯॥ କ୍ଷୁଧା ତୃଷାରେ ଅଧୀର ହୋଇ ସେହି ଯକ୍ଷ ରାକ୍ଷସମାନେ ବ୍ରହ୍ମାଙ୍କୁ ଖାଇଯିବାପାଇଁ ତାଙ୍କ ଆଡ଼କୁ ଦୌଡ଼ି ଆସିଲେ । ସେମାନେ ଚାରିଆଡୁ ପାଟି କରିବାକୁ ଲାଗିଲେ, 'ଏହାଙ୍କୁ ଖାଇଯାଅ, ଛାଡ଼ ନାହିଁ' ॥୨୦॥ ବ୍ରହ୍ମା ବ୍ୟସ୍ତ ହୋଇ ସେମାନଙ୍କୁ କହିଲେ, ମୋତେ ଖାଅ ନାହିଁ (ମା ଜକ୍ଷତ), ରକ୍ଷା କର (ରକ୍ଷତ) । ଏଥିପାଇଁ ଯକ୍ଷ ଓ ରାକ୍ଷସରୂପେ ତୁମେ ମୋଠାରୁ ଜନ୍ମ ହୋଇଚ ॥୨୧॥ ତା'ପରେ ସାତ୍ତ୍ୱିକ ପ୍ରଭାଯୁକ୍ତ ବ୍ରହ୍ମା ମୁଖ୍ୟ ମୁଖ୍ୟ ଦେବତାମାନଙ୍କୁ ସୃଷ୍ଟି କଲେ ଏବଂ ସେ ଛାଡ଼ିଦେଇଥିବା ଦିନରୂପ ପ୍ରଭାମୟ ଶରୀରକୁ ଦେବତାମାନେ କ୍ରୀଡ଼ାଛଳରେ ଗ୍ରହଣ କରିନେଲେ ॥୨୨॥ ତହୁଁ ବ୍ରହ୍ମା ତାଙ୍କର ଜଙ୍ଘରୁ ଅତିଲୋଲୁପ ଅସୁରମାନଙ୍କୁ ସୃଷ୍ଟି କଲେ । କାମାସକ୍ତ ହୋଇଥିବାଯୋଗୁଁ ସେମାନେ ମୈଥୁନପାଇଁ ବ୍ରହ୍ମାଙ୍କ ପାଖରେ ପହଞ୍ଚିଲେ । ବ୍ରହ୍ମା ହସିଲେ । କିନ୍ତୁ ଏହି ନିର୍ଲଜ୍ଜ ଅସୁରମାନେ ତାଙ୍କ ପିଛା ଧରିବାରୁ ଭୟ ଓ କ୍ରୋଧରେ ସେ ଦଉଡ଼ି ପଳାଇଲେ ॥୨୩-୨୪॥

ବରଦାତା ଭଗବାନ ଶ୍ରୀହରି ଶରଣାଗତଙ୍କର ଦୁଃଖ ହରଣ କରନ୍ତି । ଭକ୍ତମାନେ ଯେଉଁ ରୂପରେ ତାଙ୍କୁ ଦେଖିବାକୁ ଚାହାନ୍ତି, ସେହି ରୂପରେ ଦର୍ଶନ ଦେଇ ସେ ସେମାନଙ୍କୁ ଅନୁଗୃହୀତ କରନ୍ତି । ତାଙ୍କ ପାଖରେ ବ୍ରହ୍ମା ଯାଇ ପହଞ୍ଚି ପ୍ରାର୍ଥନା କଲେ । ପ୍ରଭୁ, ପରମାତ୍ମା, ମୋତେ ରକ୍ଷା କରନ୍ତୁ । ଆପଣଙ୍କ ଆଦେଶରେ ମୁଁ ପ୍ରଜା ସୃଷ୍ଟି କରୁଚି । କିନ୍ତୁ ଏହି ପାପୀମାନେ ତାଙ୍କର ମୈଥୁନ ଓ ଧର୍ଷଣ ଇଚ୍ଛା ମୁଁ ପୂର୍ଣ୍ଣ କରୁ ନାହିଁ ବୋଲି ମୋତେ ଆକ୍ରମଣ କରୁଛନ୍ତି । ଆପଣ ହିଁ କେବଳ ଦୁଃଖୀ ଲୋକଙ୍କର ଦୁଃଖ ନାଶ କରିପାରିବେ ଓ ଆପଣଙ୍କ ଅଶରଣ ବ୍ୟକ୍ତିଙ୍କୁ କ୍ଲେଶ ଦେଇପାରିବେ ॥୨୫-୨୭॥ ପ୍ରଭୁ ତ ସମସ୍ତଙ୍କ ଅନ୍ତରାତ୍ମା କଥା ଜାଣିପାରନ୍ତି । ସେ ବ୍ରହ୍ମାଙ୍କର ବିଷାଦ ଅନୁଭବ କରି ତାଙ୍କୁ କହିଲେ, ତୁମର ଏହି ଅପବିତ୍ର ଦେହକୁ ଶୀଘ୍ର ତ୍ୟାଗ କର । ବ୍ରହ୍ମା ତାହା ହିଁ କଲେ ॥୨୮॥ ବ୍ରହ୍ମା ଛାଡ଼ିଦେଇଥିବା ଶରୀର ଏକ ସୁନ୍ଦରୀ ସ୍ତ୍ରୀର ରୂପ ଧାରଣ କଲା --ସନ୍ଧ୍ୟା ସୁନ୍ଦରୀ । ଏହି ସ୍ତ୍ରୀର ପାଦପଦ୍ମରେ ନୂପୁର ନିକ୍ୱଣ । ମଦବିହ୍ୱଳ ଆଖି । କଟିଦେଶ ଓ ନିତମ୍ବ ସୁନ୍ଦର ଅଳଙ୍କାର ଓ ଝୀନ ପଟ୍ଟବସ୍ତ୍ର ଦ୍ୱାରା ଶୋଭା ପାଉଥିଲା ॥୨୯॥ ଉତ୍ତୁଙ୍ଗ ସ୍ତନଯୁଗଳ ପରସ୍ପର ଲାଗି ଯାଇଥିଲା । ସୁନ୍ଦର ନାସିକା । ସୁନ୍ଦର ଦନ୍ତପଙ୍କ୍ତିରେ ସ୍ନେହପୂର୍ଣ୍ଣ ହସ ଏବଂ ଲୀଳାମୟ ଚକ୍ଷୁ । କୃଷ୍ଣକବରୀଯୁକ୍ତ ସେହି ସୁନ୍ଦରୀ ଲଜ୍ଜାରେ ଯେପରି ନିଜକୁ ଘୋଡ଼ାଇ ଦେଉଥିଲା । ବିଦୁର, ସେ ସ୍ତ୍ରୀକୁ ଦେଖି ଅସୁରମାନେ ସମସ୍ତେ ମୋହିତ ହୋଇଗଲେ । ସେମାନେ କହିବାକୁ ଲାଗିଲେ, କି ସୁନ୍ଦର ଏହାରରୂପ, ଚମତ୍କାର ଧୈର୍ଯ୍ୟ । ଆମପରି କାମାସକ୍ତମାନଙ୍କ ମଧ୍ୟରେ ଏହି ନବବୟସୀ ସତେ ଯେପରି ନିଷ୍କାମ ଭାବରେ ବିଚରଣ କରୁଚି ॥୩୦-୩୨॥

ଦୁଷ୍ଟବୁଦ୍ଧି ଅସୁରମାନେ ନବବୟସୀ ସନ୍ଧ୍ୟା ସମ୍ପର୍କରେ ଏହିପରି ନାନା ତର୍କବିତର୍କ କରି ଆଦରରେ ପଚାରିଲେ, ଚାରୁନିତମ୍ବିନୀ, ତୁମେ କିଏ ? କାହାର ସ୍ତ୍ରୀ, କାହାର କନ୍ୟା ? ଭାମିନୀ, ପଣ୍ୟଦ୍ରବ୍ୟ ରୂପେ ତୁମ ରୂପର ଧନକୁ ଦେଖାଇ ଆମକୁ କାହିଁକି ଏପରି ହଇରାଣ କରୁଚ ? ଅବଳା, ତୁମେ ଯେ କେହି ହୁଅନା କାହିଁକି, ଭାଗ୍ୟକୁ ତୁମର ଦର୍ଶନ ମିଳିଲା । କନ୍ଦୁକ କ୍ରୀଡ଼ାଦ୍ୱାରା ତୁମେ ଦର୍ଶକମାନଙ୍କ ମନକୁ ମନ୍ଥି ଦେଉଚ ।।୩୩-୩୫।। ସୁନ୍ଦରି ! ତୁମେ କନ୍ଦୁକକୁ ଉପରକୁ ଫିଙ୍ଗି ବାରମ୍ବାର ହାତରେ ଧରିବାକୁ ଯିବାବେଳେ ତୁମର ପାଦପଦ୍ମ ଗୋଟିଏ ସ୍ଥାନରେ ସ୍ଥିର ରହୁ ନାହିଁ । ବଡ଼ ବଡ଼ ସ୍ତନର ଭାରରେ ତୁମ କଟିଦେଶକୁ କଷ୍ଟ ଲାଗିବା ପରି ମନେହେଉଚି । କିନ୍ତୁ ଦୃଷ୍ଟି ତୁମର ଶାନ୍ତ ଏବଂ କେଶରାଶି କି ସୁନ୍ଦର ଦେଖାଯାଉଚି ! ।।୩୬।। ଏହିପରି ସାୟନ୍ତନ ସନ୍ଧ୍ୟା ସ୍ତ୍ରୀରୂପ ଧାରଣ କରି ସେମାନଙ୍କୁ କାମାତୁର କରିଦେଲା ଏବଂ ମୂଢ଼ମତି ରାକ୍ଷସମାନେ ତାକୁ ସ୍ତ୍ରୀ ବୋଲି ଗ୍ରହଣ କରିନେଲେ ।।୩୭।।

ବ୍ରହ୍ମା ଗମ୍ଭୀର ଭାବରେ ନିଜ ରୂପକୁ ନିଜେ ଦେଖି ହସିଦେଲେ । ତା'ପରେ ସେହି ରୂପର ସୌନ୍ଦର୍ଯ୍ୟରେ ଗନ୍ଧର୍ବ ଓ ଅପ୍ସରାଙ୍କୁ ସୃଷ୍ଟି କଲେ ।।୩୮।। ତହୁଁ ତାଙ୍କ ଜ୍ୟୋସ୍ନାରୂପ ସୌନ୍ଦର୍ଯ୍ୟମୟ ଶରୀରକୁ ସେ ତ୍ୟାଗକଲେ । ବିଶ୍ୱାବସୁ ପ୍ରମୁଖ ଗନ୍ଧର୍ବମାନେ ଆନନ୍ଦରେ ସେହି ଶରୀରକୁ ଆଦରିନେଲେ ।।୩୯।। ଏହାପରେ ବ୍ରହ୍ମା ନିଜ ଆଳସ୍ୟମଧ୍ୟରୁ ଭୂତପିଶାଚମାନଙ୍କୁ ସୃଷ୍ଟି କଲେ । ସେମାନେ ଉଲଗ୍ନ ହୋଇ ବାଳ ମୁକୁଳା କରିଥିବାର ଦେଖି ସେ ଆଖି ବୁଜିଦେଲେ ।।୪୦।। ତାଙ୍କ ହାଇରୂପକ ଶରୀରକୁ ବ୍ରହ୍ମା ତ୍ୟାଗ କରିବାରୁ ଭୂତପିଶାଚମାନେ ତାକୁ ନେଇଗଲେ । ଏହାକୁ ନିଦ୍ରା ବୋଲି ମଧ୍ୟ କୁହାଯାଏ--ଯଦ୍ୱାରା ଇନ୍ଦ୍ରିୟମାନଙ୍କର ଶିଥିଳତା ଦେଖାଯାଏ । ଯଦି ଅଇଁଠା ମୁହଁରେ କେହି ଶୋଇଯାଏ, ତା'ହେଲେ ଭୂତପିଶାଚମାନେ ତାକୁ ଆକ୍ରମଣ କରନ୍ତି, ଯଦ୍ୱାରା ଉନ୍ମାଦ ଅବସ୍ଥା ସୃଷ୍ଟି ହୁଏ ।।୪୧।। ଭଗବାନ ବ୍ରହ୍ମା ମନେକଲେ, ସେ ନିଜେ ତେଜୋମୟ ଏବଂ ତାଙ୍କ ଅଦୃଶ୍ୟ ରୂପରୁ ସେ ସାଧ୍ୟଗଣ ଓ ପିତୃଗଣଙ୍କୁ ସୃଷ୍ଟି କଲେ ।।୪୨।। ପିତୃମାନେ ନିଜ ସୃଷ୍ଟିର କାରଣସ୍ୱରୂପ ସେହି ଅଦୃଶ୍ୟ କାୟାକୁ ଗ୍ରହଣ କଲେ । ଏହାକୁ ଲକ୍ଷ୍ୟ କରି କର୍ମକାଣ୍ଡ ଜାଣିଥିବା ବିଦ୍ୱାନ୍‌ମାନେ ସାଧ୍ୟଗଣ ଓ ପିତୃଗଣଙ୍କୁ ହବ୍ୟ ଓ କବ୍ୟ(ପିଣ୍ଡ) ଦାନ କରନ୍ତି ।।୪୩।।

ବ୍ରହ୍ମା ନିଜର ଅଦୃଶ୍ୟ ଶକ୍ତି ଦ୍ୱାରା ସିଦ୍ଧ ଓ ବିଦ୍ୟାଧରମାନଙ୍କୁ ସୃଷ୍ଟି କଲେ ଏବଂ ଅନ୍ତର୍ଦ୍ଧାନ ନାମକ ନିଜର ଅଦ୍ଭୁତ ଶରୀର ତାଙ୍କୁ ଦାନ କଲେ ।।୪୪।। ଦିନେ ବ୍ରହ୍ମା ନିଜ ପ୍ରତିବିମ୍ବର ସୌନ୍ଦର୍ଯ୍ୟରେ ମୁଗ୍ଧ ହୋଇ ସେଥିରେ କିନ୍ନର ଓ କିଂପୁରୁଷମାନଙ୍କୁ ଉତ୍ପନ୍ନ କଲେ ।।୪୫।। ବ୍ରହ୍ମାଙ୍କଦ୍ୱାରା ପରିତ୍ୟକ୍ତ ତାଙ୍କ ଛାୟାରୂପକୁ ଗ୍ରହଣ କରି ଏମାନେ ନିଜ ନିଜ ସ୍ତ୍ରୀମାନଙ୍କ ସହିତ ଉଷାକାଳରେ ବ୍ରହ୍ମାଙ୍କର କର୍ମାବଳୀ ଓ ଗୁଣ ଆଦି ଗାନ କରନ୍ତି ।।୪୬।। ଦିନେ ବ୍ରହ୍ମା ସୃଷ୍ଟିର ବୃଦ୍ଧି ନ ହେଉଥିବାଯୋଗୁଁ ଅତିଶୟ ଚିନ୍ତିତ ହୋଇ ହାତଗୋଡ଼ ଲମ୍ବାଇ ଶୋଇଥିବାବେଳେ ତାଙ୍କର କ୍ରୋଧ ଜାତ ହେଲା ଏବଂ ସେ ତାଙ୍କ ଭୋଗମୟ ଶରୀରକୁ ପରିତ୍ୟାଗ କଲେ ।।୪୭।। ବିଦୁର, ସେଥିରୁ ଯେଉଁ ଲୋମ ସବୁ ଝଡ଼ିପଡିଲା, ସେସବୁ ଅହି (ବଡ଼ ବଡ଼ ସାପ) ହୋଇଗଲେ । ନିଜର ହସ୍ତପଦ କୁଞ୍ଚିତ ହୋଇ ଦେହ ଯେତେବେଳେ ଗଡ଼ି ଚାଲିଲା, ସେଥିରୁ ଭୟଙ୍କର ସର୍ପ ଓ ଫଣା ଟେକୁଥିବା ନାଗମାନଙ୍କର ଜନ୍ମ ହେଲା ।।୪୮।। ବ୍ରହ୍ମା ଏ ସବୁ କରି ନିଜକୁ କୃତକୃତ୍ୟ ମନେ କଲେ । ଶେଷରେ ସେ ନିଜ ମନରୁ ମନୁମାନଙ୍କୁ ସୃଷ୍ଟି କଲେ, ଯେପରିକି ସେମାନେ ପ୍ରଜାମାନଙ୍କୁ ବୃଦ୍ଧି କରିପାରିବେ ।।୪୯।। ଏହାପରେ ବ୍ରହ୍ମା ସ୍ଥିର ବୁଦ୍ଧିରେ ସେମାନଙ୍କପାଇଁ ନିଜ ପୁରୁଷକାର ଶରୀରକୁ ତ୍ୟାଗ କଲେ । ତାହା ଦେଖି ପୂର୍ବସୃଷ୍ଟ ଦେବତା ଗନ୍ଧର୍ବ ବିଦ୍ୟାଧର ପ୍ରଭୃତି ସମସ୍ତେ ପ୍ରଜାପତି ବ୍ରହ୍ମାଙ୍କୁ ପ୍ରଶଂସା କଲେ ।।୫୦।। ସେମାନେ କହିଲେ, ବିଶ୍ୱସ୍ରଷ୍ଟା, ଆପଣ ମନୁମାନଙ୍କ ସୃଷ୍ଟିପାଇଁ ଯାହା କରିଛନ୍ତି, ତାହା ଠିକ୍ କରିଛନ୍ତି । ଏହାଦ୍ୱାରା ସମସ୍ତ ଯଜ୍ଞ କର୍ମ ସୁପ୍ରତିଷ୍ଠିତ ହେବ ଏବଂ ଆମେମାନେ ଆମର ଅନ୍ନ (ହବିର୍ଭାଗ) ଲାଭ କରିପାରିବୁ ।।୫୧।। ତା'ପରେ ଆଦି ଋଷି ବ୍ରହ୍ମା ଇନ୍ଦ୍ରିୟକୁ ବଶ କରି ତପ, ବିଦ୍ୟା, ଯୋଗ ଓ ସମାଧିଦ୍ୱାରା ଯୁକ୍ତ ହୋଇ ନିଜର ପ୍ରିୟ ସନ୍ତାନ ଋଷିମାନଙ୍କୁ ସର୍ଜ୍ଜନା କଲେ ଏବଂ ଏମାନଙ୍କ ମଧ୍ୟରୁ ପ୍ରତ୍ୟେକଙ୍କୁ ନିଜ ପୁଣ୍ୟର ଫଳ -- ତପ, ବିଦ୍ୟା, ଯୋଗ, ସମାଧି ଓ ବୈରାଗ୍ୟ ଆଦି ଦାନ କଲେ ।।୫୨।।

## ଏକବିଂଶ ଅଧ୍ୟାୟ

# କର୍ଦ୍ଦମଙ୍କ ତପସ୍ୟା

ବିଦୁର କହିଲେ, ମୈତ୍ରେୟ, ସ୍ୱାୟମ୍ଭୁବ ମନୁଙ୍କର ପରମ ସମ୍ମାନିତ ବଂଶକଥା ମୋତେ କହନ୍ତୁ । ମୈଥୁନ ଧର୍ମରେ ସେମାନେ କିପରି ପ୍ରଜା ସୃଷ୍ଟି କରିଥିଲେ ॥୧॥ ବ୍ରହ୍ମନ୍ ! ସ୍ୱାୟମ୍ଭୁବଙ୍କର ଦୁଇ ପୁତ୍ର ପ୍ରିୟବ୍ରତ ଓ ଉତ୍ତାନପାଦ । ସେ ଦୁହେଁ ଧର୍ମାନୁସାରେ ସପ୍ତଦ୍ୱୀପା ପୃଥିବୀକୁ ପାଳନ କରିଥିଲେ । ଦୁହିତା ଦେବହୂତି କର୍ଦ୍ଦମ ପ୍ରଜାପତିଙ୍କର ପତ୍ନୀ ଥିଲେ ଓ ତାଙ୍କର ନାମ ପ୍ରସିଦ୍ଧ ହୋଇଥିଲା । ନିଷ୍ପାପ ମୈତ୍ରେୟ, ଆପଣ ଏ କଥା ପୂର୍ବରୁ ମୋତେ କହିଛନ୍ତି । ମହାଯୋଗୀ କର୍ଦ୍ଦମ ଯୋଗଲକ୍ଷଣଯୁକ୍ତା ଦେବହୂତିଙ୍କ ଗର୍ଭରୁ କେତୋଟି ସନ୍ତାନ ଉତ୍ପନ୍ନ କରିଥିଲେ, ତାହା କହନ୍ତୁ; ମୁଁ ଶୁଣିବାକୁ ଇଚ୍ଛା କରୁଚି ॥୨-୪॥ ବ୍ରହ୍ମନ୍, ବ୍ରହ୍ମାଙ୍କର ପୁତ୍ର ଦକ୍ଷ ଓ ରୁଚି ମନୁଙ୍କର ଦୁଇ କନ୍ୟାକୁ ଭାର୍ଯ୍ୟାରୂପେ ଲାଭ କରି କେଉଁ କେଉଁ ସନ୍ତାନ ଉତ୍ପାଦନ କଲେ ତାହା ମଧ୍ୟ କହନ୍ତୁ ॥୫॥

ମୈତ୍ରେୟ କହିଲେ, ବିଦୁର, ବ୍ରହ୍ମା କର୍ଦ୍ଦମଙ୍କୁ 'ପ୍ରଜା ସୃଷ୍ଟି କର' ବୋଲି କହନ୍ତେ, ସେ ସରସ୍ୱତୀ ନଦୀକୂଳରେ ଦଶହଜାର ବର୍ଷ ଧରି ତପସ୍ୟା କଲେ ॥୬॥ ଏକନିଷ୍ଠ ଧ୍ୟାନ ଓ ପୂଜା-ଆରାଧନା ଦ୍ୱାରା ଭକ୍ତିପୂର୍ବକ ସେ ଶରଣାଗତଙ୍କର ବରଦାତା ଭଗବାନ୍ ଶ୍ରୀହରିଙ୍କ ସେବା କରିବାକୁ ଲାଗିଲେ ॥୭॥ ବିଦୁର, ସମ୍ମୁଖରେ ଶ୍ରୀହରି ଭଗବାନ ତାଙ୍କ ଉପରେ ପ୍ରସନ୍ନ ହୋଇ ଶବ୍ଦବ୍ରହ୍ମରୂପରେ ତାଙ୍କୁ ଦର୍ଶନ ଦେଲେ ॥୮॥ ସୂର୍ଯ୍ୟପରି ଭଗବାନଙ୍କ ମୂର୍ତ୍ତି ଥିଲା ତେଜୋମୟ । ତାଙ୍କ ଗଳାରେ ଥିଲା ଶ୍ୱେତପଦ୍ମ ଓ କୁମୁଦର ମାଳା । ତାଙ୍କ ମୁଖମଣ୍ଡଳରେ ଚିକ୍କଣ କୃଷ୍ଣ କେଶରାଶି ଓ ଅଙ୍ଗରେ ନିର୍ମଳ ବସ୍ତ୍ର ଶୋଭା ପାଉଥିଲା । ସେ କିରୀଟ କୁଣ୍ଡଳ ପିନ୍ଧିଥିଲେ ଓ ଶଙ୍ଖ, ଚକ୍ର ଓ ଗଦା ଧାରଣ କରିଥିଲେ । ଏକ ଶ୍ୱେତପଦ୍ମକୁ ଖେଳିବାପରି ହାତରେ ଧରିଥିଲେ ଓ ଅଳ୍ପ ହସିବାପରି ତାଙ୍କର ଚାହାଣି ମନକୁ ଛୁଇଁ ନେଉଥିଲା ॥୯-୧୦॥ ଗରୁଡ଼ଙ୍କ କାନ୍ଧରେ ତାଙ୍କ ପାଦପଦ୍ମ, ବକ୍ଷସ୍ଥଳରେ ଲକ୍ଷ୍ମୀ ଓ କଣ୍ଠରେ କୌସ୍ତୁଭମଣି ବିରାଜିତ ଥିଲା । ଆକାଶରେ ସ୍ଥିତ ଶ୍ରୀହରିଙ୍କ ସେହି ସୁନ୍ଦର ରୂପ ଦର୍ଶନ କରି କର୍ଦ୍ଦମଙ୍କର ପରମ ହର୍ଷ ଜାତ ହେଲା । ମନସ୍କାମନା ପୂର୍ଣ୍ଣ ହେଲା ବୋଲି ଭାବି ଭୂମି ଉପରେ ଶିର ରଖି ସେ ତାଙ୍କୁ ସାଷ୍ଟାଙ୍ଗ ପ୍ରଣିପାତ କଲେ ଏବଂ ପରମ ଶ୍ରଦ୍ଧାର ସହିତ କୃତାଞ୍ଜଳି ହୋଇ ତାଙ୍କର ସ୍ତବ କରିବାକୁ ଲାଗିଲେ ॥୧୧-୧୨॥

ବନ୍ଦନୀୟ, ଆପଣ ସମସ୍ତ ସଦ୍‌ଗୁଣର ଆଧାର । ସ୍ୱଚକ୍ଷୁରେ ଆପଣଙ୍କ ଦର୍ଶନ ଲାଭ କରି ମୋର ନେତ୍ର ପବିତ୍ର ଓ କୃତାର୍ଥ ହୋଇଗଲା । ଆପଣଙ୍କର ଏତିକି ଟିକିଏ ଦର୍ଶନପାଇଁ ଯୋଗାରୂଢ଼ ଯୋଗୀମାନେ ଜନ୍ମ ଜନ୍ମ ଧରି ଆଶା କରି ରହିଥାନ୍ତି ॥୧୩॥ ଆପଣଙ୍କ ପାଦପଦ୍ମ ଭବସିନ୍ଧୁ ପାର ହେବାର ନୌକାସ୍ୱରୂପ । ତଥାପି ପ୍ରଭୁ, ଆପଣଙ୍କ ମାୟାରେ ଯେଉଁମାନଙ୍କ ବୁଦ୍ଧି ନଷ୍ଟ ହୋଇଯାଉଚି, ଯିଏ ସାମାନ୍ୟ କାମନାର ବଶରେ ଆପଣଙ୍କୁ ଉପାସନା କରନ୍ତି, ସେମାନେ ଯାହା ମାଗନ୍ତି, ଆପଣ ତାହା ଦେଇଦିଅନ୍ତି ॥୧୪॥ ପ୍ରଭୁ, ଆପଣ ବାଞ୍ଛାକଳ୍ପତରୁ, ଆପଣଙ୍କ ଚରଣକୁ ଆଶ୍ରୟ କଲେ ସମସ୍ତ ମନୋରଥ ପୂର୍ଣ୍ଣ ହୁଏ । ମୁଁ ମନ୍ଦବୁଦ୍ଧି । ଏକ ସମଧର୍ମିଣୀ, ଅନୁରୂପ ସ୍ୱଭାବବତୀ ନାରୀକୁ ମୁଁ ବିବାହ କରିବାକୁ ଚାହେଁ, ଯେ କି ମୋର ଗାର୍ହସ୍ଥ୍ୟ ଜୀବନକୁ ସଫଳ କରିପାରିବ । ତେଣୁ ଆପଣଙ୍କ ପାଦତଳେ ମୁଁ ଆଶ୍ରୟ ଭିକ୍ଷା କରୁଚି ॥୧୫॥ ହେ ସମସ୍ତ ଲୋକର ଅଧୀଶ୍ୱର ! ଆପଣଙ୍କ ବଚନରଜ୍ଜୁରେ ଏହି ସଂସାର ନାନା କାମନାବାସନାଦ୍ୱାରା ଆବଦ୍ଧ ହୋଇଚି । ଧର୍ମାତ୍ମା, ମୁଁ ମଧ୍ୟ ଏହାକୁ (ଲୋକାନୁଗତ ଧର୍ମକୁ) ଅନୁସରଣ କରିବାକୁ ଯାଇ ମହାକାଳସ୍ୱରୂପ ଆପଣଙ୍କୁ ପୂଜା ଉପହାର ଆଦି ଅର୍ପଣ କରୁଚି ॥୧୬॥ ଏହିପରି

ବିଷୟାସକ୍ତଲୋକଙ୍କୁ ଏବଂ ସେମାନଙ୍କ ଅନୁସୃତ ପଶୁଧର୍ମକୁ ଆପଣଙ୍କର ଭକ୍ତମାନେ ପରିତ୍ୟାଗ କରି ଆପଣଙ୍କ ପାଦର ଛତ୍ରଛାୟାତଳେ ଆଶ୍ରୟ ନିଅନ୍ତି ଏବଂ ଆପଣଙ୍କ ଗୁଣଚର୍ଯ୍ୟାରୂପକ ଅମୃତରସ ପାନ କରି କ୍ଷୁଧାପିପାସାଦି ଦେହଧର୍ମକୁ ନିବାରଣ କରନ୍ତି । ହେ ପ୍ରଭୁ ! ଆପଣଙ୍କର ଯେଉଁ କାଳଚକ୍ର ଜଗତକୁ ଓଟାରି ଅବିରତ ଧାଉଁଛି, ତାହା ଆପଣଙ୍କର ଭକ୍ତମାନଙ୍କ ଆୟୁ ଘେନି ଧାଇଁବାକୁ ସମର୍ଥ ନୁହେଁ । ବ୍ରହ୍ମ (ଅଜର) ହେଉଛି ସେ ଚକ୍ରର ଅକ୍ଷ ଯେ କି ସେଥିରେ ସର୍ବଦା ଭ୍ରମଣ କରୁଚି । ଅଧିମାସକୁ ମିଶାଇ ତେର ମାସ ତାହାର ଅର; ତିନିଶହ ଷାଠିଏରୁ ଅଧିକ ଅହୋରାତ୍ର ତାହାର ପର୍ବ । ତହିଁରେ ଛ' ଋତୁ ନେମି ପ୍ରାୟ ଗତାଗତ ହୁଅନ୍ତି । ତହିଁରେ ଅନନ୍ତ କ୍ଷଣ, ଲବ ଓ ନିମେଷ ଆଦି କାଳମାନ ପତ୍ରଆକାରରେ ଧାରା ହୋଇ ରହିଛନ୍ତି । ତହିଁରେ ତିନୋଟି ଚାତୁର୍ମାସ୍ୟ ନାଭି (ଆଧାରଭୂତ ବଳୟ) ରୂପେ ଅଛନ୍ତି । ଏହି ଚକ୍ରର ବେଗ ଅତି ତୀବ୍ର (କରାଳସ୍ରୋତର) ଏବଂ ଏହା ସଂବତ୍ସରରୂପେ ଖ୍ୟାତ ॥୧୭॥ ହେ ପ୍ରଭୁ ! ଆପଣ ଏକ ହୋଇ ରହନ୍ତି । କିନ୍ତୁ ଜଗତକୁ ସୃଷ୍ଟି କରିବା ପାଇଁ ଆନଣ ଆତ୍ମାରୁ ଯେଉଁ ମାୟାକୁ ଜାତ କରନ୍ତି ତାହା ଦ୍ୱିତୀୟରୂପେ ବିଦିତ । ସେଇ ମାୟାଦ୍ୱାରା ଆପଣ ସତ୍ତ୍ୱ ଆଦି ଶକ୍ତିମାନଙ୍କୁ ନେଇ ସୃଷ୍ଟି, ପାଳନ ଓ ସଂହାର କରନ୍ତି । ଯେପରି ବୁଢ଼ିଆଣୀ ନିଜ ଠାରୁ ଜାଲକୁ ସୃଷ୍ଟି କରେ, ପାଳନ କରେ ଏବଂ ସଂହାର କରେ ସେହିପରି ଆପଣ ଏସବୁ କରିଥା'ନ୍ତି ॥୧୮॥ ପ୍ରଭୁ, ଆପଣ ମାୟାରେ ଆପଣଙ୍କ ଭକ୍ତମାନଙ୍କପାଇଁ ଯେଉଁ ବିଷୟ ଗୁଣର ବିସ୍ତାର କରନ୍ତି, ତାହା ଆପଣଙ୍କର ଅଭିଳଷିତ ନୁହେ । ସ୍ଥୂଳ, ସୂକ୍ଷ୍ମ ବିଭିନ୍ନ ଭୋଗ୍ୟ ବସ୍ତୁକୁ ଆପଣ ମାୟାଦ୍ୱାରା ସୃଷ୍ଟି କରନ୍ତି । କିନ୍ତୁ ଏହିସବୁ ବସ୍ତୁ ଆପଣଙ୍କ ଭକ୍ତମାନଙ୍କ ପାଇଁ ଈପ୍ସିତ ନୁହେ । ମୁଁ ମଧ୍ୟ ତୁଳସୀମାଳଯୁକ୍ତ ଆପଣଙ୍କର ଯେଉଁ ସଗୁଣ ପ୍ରଭାମୟ ଶରୀରକୁ ଦେଖୁଚି, ତାହା ମଧ୍ୟ ମାୟାଯୁକ୍ତ । ତେଣୁ ହେ ପ୍ରଭୁ, ଆପଣଙ୍କର ସଗୁଣ ଶରୀର ନ ଥିଲେ ମଧ୍ୟ ଏହି ଭୋଗ୍ୟ ବସ୍ତୁଦ୍ୱାରା ମୋତେ ଅନୁଗୃହୀତ କରନ୍ତୁ ॥୧୯-୨୦॥ ଆପଣ ସ୍ୱଭାବତଃ ନିଷ୍କ୍ରିୟ ହେଲେ ମଧ୍ୟ ଏହି ସଂସାରକୁ ମାୟାଦ୍ୱାରା ପରିଚାଳିତ କରୁଛନ୍ତି । ଆପଣଙ୍କୁ ଅଳ୍ପ ସେବା କଲେ ମଧ୍ୟ ଅଭିଳଷିତ ବସ୍ତୁ ସବୁ ବର୍ଷା ହୋଇଯାଏ । ମୁଁ ଆପଣଙ୍କ ବନ୍ଦନୀୟ ପାଦପଦ୍ମକୁ ବାରମ୍ବାର ନମସ୍କାର କରୁଚି ॥୨୧॥ ମୈତ୍ରେୟ କହିଲେ, ଏହିପରି କର୍ଦ୍ଦମ ନିଷ୍କପଟ ଭାବରେ ସ୍ତୁତି କରିବାରୁ ଗରୁଡ଼ାସୀନ ଭଗବାନ ପଦ୍ମନାଭ ଈଷତ୍ ହାସ୍ୟ ଓ ପ୍ରେମପୂର୍ଣ୍ଣ କଟାକ୍ଷରେ ଚାହିଁ ଅମୃତମୟ ବାକ୍ୟରେ ତାଙ୍କୁ କହିବାକୁ ଲାଗିଲେ ॥୨୨॥

ଭଗବାନ କହିଲେ, ଯେଉଁ ଉଦ୍ଦେଶ୍ୟରେ ତୁମେ ଆତ୍ମସଂଯମ ଦ୍ୱାରା ମୋର ସମାର୍ଚ୍ଚନ କରୁଚ, ମୁଁ ତୁମର ସେହି ଅନ୍ତରର ଭାବନାକୁ ଜାଣି ପୂର୍ବରୁ ବ୍ୟବସ୍ଥା କରି ସାରିଚି ॥୨୩॥ ପ୍ରଜାପତି, ମୋର ଉପାସନା କେବେହେଲେ ବୃଥା ଯାଏ ନାହିଁ । ବିଶେଷତଃ ମୋଠାରେ ନିଜକୁ ସମ୍ପୂର୍ଣ୍ଣ ସମର୍ପଣ କରିଥିବା ତୁମପରି ବ୍ୟକ୍ତିମାନଙ୍କ କ୍ଷେତ୍ରରେ ॥୨୪॥ ପ୍ରଜାଙ୍କର ମଙ୍ଗଳ ପାଇଁ ବିଖ୍ୟାତ ହୋଇଥିବା ବ୍ରହ୍ମାଙ୍କର ପୁତ୍ର ସମ୍ରାଟ୍ ମନୁ ବର୍ତ୍ତମାନ ବ୍ରହ୍ମାବର୍ତ୍ତରେ ରହି ସପ୍ତସମୁଦ୍ରଯୁକ୍ତ ପୃଥିବୀକୁ ଶାସନ କରୁଛନ୍ତି ॥୨୫॥ ବିପ୍ର, ଏହି ରାଜର୍ଷି ଧର୍ମଜ୍ଞ ମନୁ ନିଜର ମହିଷୀ ଶତରୂପାଙ୍କ ସହିତ କାଲି ତୁମକୁ ସାକ୍ଷାତ୍ କରିବାକୁ ଆସିବେ ॥୨୬॥ ଏହାଙ୍କର ଏକ ରୂପଯୌବନସମ୍ପନ୍ନା ସର୍ବଗୁଣାଳଂକୃତା କନ୍ୟା ଅଛି, ଯାହାପାଇଁ ଉପଯୁକ୍ତ ପାତ୍ର ଖୋଜି ସେ ତୁମକୁ ପାଇଛନ୍ତି । ପ୍ରିୟ କର୍ଦ୍ଦମ, ସେହି କନ୍ୟାକୁ ସେ ତୁମକୁ ଦାନ କରିବେ ॥୨୭॥ ବ୍ରହ୍ମନ୍, ଏତେ ବର୍ଷ ଧରି ତୁମେ ମନେ ମନେ ଯେପରି କନ୍ୟା ଚିନ୍ତା କରୁଥିଲ, ଏହି ରାଜକନ୍ୟା ହେଉଚି ତୁମର ସେହିପରି ଉପଯୁକ୍ତ ଭାର୍ଯ୍ୟା, ଯେ କି ତୁମର ସମସ୍ତ କାମନା ପୂର୍ଣ୍ଣ କରିବ ॥୨୮॥ ସେ ତୁମର ବୀର୍ଯ୍ୟରୁ ନଅଟି କନ୍ୟା ଗର୍ଭରେ ଧାରଣ କରି ଜନ୍ମ ଦେବ ଏବଂ ସେହି କନ୍ୟାମାନଙ୍କଠାରୁ ଋଷିମାନେ ବିଧିବତ୍ ପୁତ୍ର ଉତ୍ପାଦନ କରିବେ ॥୨୯॥ ତୁମେ ଶୁଦ୍ଧ ଅନ୍ତଃକରଣରେ ମୋର ନିର୍ଦ୍ଦେଶକୁ ଭଲଭାବେ ପାଳନ କରି ଏବଂ ତତ୍ ସଙ୍ଗେ ସଙ୍ଗେ ତୁମ ସମସ୍ତ କର୍ମର ଫଳ ମୋତେ ଅର୍ପଣ କରି ଶେଷରେ ମୋତେ ଲାଭ କରିପାରିବ ॥୩୦॥ ଜୀବେ ଦୟା ଓ ଅଭୟ ପ୍ରଦାନ କରି ଆତ୍ମଜ୍ଞାନୀ ଭାବରେ ନିଜ ସହିତ ସମ୍ପୂର୍ଣ୍ଣ ଜଗତକୁ ମୋଠାରେ ଏବଂ ମୋତେ ତୁମ ମଧ୍ୟରେ

ଦେଖିପାରିବ ॥୩୧॥ ମହାମୁନି, ମୁଁ ମଧ୍ୟ ମୋର ଅଂଶକଳା ରୂପରେ ତୁମ ଔରସରୁ ଦେବହୂତିଙ୍କ ଗର୍ଭରେ ଜନ୍ମଲାଭ କରି ତତ୍ତ୍ୱସଂହିତା ବା ସାଂଖ୍ୟଦର୍ଶନ ପ୍ରଣୟନ କରିବି ॥୩୨॥ ମୈତ୍ରେୟ କହିଲେ, ପ୍ରତ୍ୟକ୍ଷଭୂତ ସ୍ୱୟଂ ଭଗବାନ କର୍ଦ୍ଦମଙ୍କୁ ଏହିପରି ସମ୍ଭାଷଣ କରି ସରସ୍ୱତୀ ନଦୀଦ୍ୱାରା ପରିବେଷ୍ଟିତ ବିନ୍ଦୁ ସରୋବରରୁ ଅନ୍ତର୍ହିତ ହୋଇଗଲେ ॥୩୩॥ କର୍ଦ୍ଦମଋଷି ଦେଖୁ ଦେଖୁ ସିଦ୍ଧଯୋଗୀମାନେ ସ୍ତୁତି କରୁଥିବା ସିଦ୍ଧମାର୍ଗ (ବୈକୁଣ୍ଠ ମାର୍ଗ)ରେ ଭଗବାନ ଚାଲିଗଲେ । ଗରୁଡ଼ ପକ୍ଷ ସଞ୍ଚାଳନ କରି ଉଡ଼ିଯାଉଥିବାବେଳେ ତାଙ୍କ ପକ୍ଷରୁ ବାହାରି ଆସୁଥିବା ସାମବେଦର ମନ୍ତ୍ରଗାନ ସେ ଶୁଣିପାରୁଥିଲେ ॥୩୪॥ ଭଗବାନ ଚାଲିଯିବାପରେ ସେ କହିଥିବା ସମୟକୁ ଅପେକ୍ଷା କରି କର୍ଦ୍ଦମ ବିନ୍ଦୁସରୋବର କୂଳରେ ଅବସ୍ଥାନ କଲେ ॥୩୫॥

ମୈତ୍ରେୟ କହିଲେ, ସୁଧନ୍ୱା ବିଦୁର, ସ୍ୱାୟମ୍ଭୁବ ମନୁ ନିଜ ସ୍ତ୍ରୀ ଓ କନ୍ୟା ସହିତ ସୁବର୍ଣ୍ଣଜଡ଼ିତ ରଥରେ ଆରୋହଣ କରି ପୃଥିବୀ ପର୍ଯ୍ୟଟନ ପୂର୍ବକ ଯେଉଁଦିନ ଶାନ୍ତବ୍ରତ କର୍ଦ୍ଦମ ମୁନିଙ୍କ ପବିତ୍ର ଆଶ୍ରମରେ ପହଞ୍ଚିବାପାଇଁ ଭଗବାନ୍ ପୂର୍ବରୁ ତାଙ୍କୁ କହିଥିଲେ, ସେହିଦିନ ସେଠାରେ ଯାଇ ସେ ପହଞ୍ଚିଲେ ॥୩୬-୩୭॥ ଭକ୍ତ କର୍ଦ୍ଦମଙ୍କ ପ୍ରତି କୃପା କରି କରୁଣାମୟ ଭଗବାନଙ୍କ ନେତ୍ରରୁ ଯେଉଁ ଅଶ୍ରୁବିନ୍ଦୁ ଝରି ପଡିଥିଲା, ତହିଁରୁ ଏହାର ନାମ ହେଲା ବିନ୍ଦୁ ସରୋବର । ସରସ୍ୱତୀ ନଦୀର ଜଳରେ ଏହା ପରିପୂର୍ଣ୍ଣ ଥିଲା ଏବଂ ଏହାର ପବିତ୍ର ମଙ୍ଗଳମୟ ଅମୃତସମାନ ଜଳକୁ ମହର୍ଷିମାନେ ସେବା କରୁଥିଲେ ॥୩୮॥ ଏହି ସରୋବର ପବିତ୍ର ବୃକ୍ଷଲତା ସମୂହରେ ଆବୃତ ଥିଲା । ସେଠାରେ ବହୁ ପ୍ରକାରର ପକ୍ଷୀ କୂଜନ କରୁଥିଲେ ଏବଂ ମୃଗପଶୁମାନେ ମଧୁର ଧ୍ୱନି କରୁଥିଲେ । ସମସ୍ତ ଋତୁର ଫଳପୁଷ୍ପରେ ଭରା ସୁନ୍ଦର ବନରାଜିଦ୍ୱାରା ଏହା ଶୋଭା ପାଉଥିଲା ॥୩୯-୪୦॥ ଏଠାରେ ଦଳଦଳ ହୋଇ ଉଡ଼ିବୁଲୁଥିବା ମତୁଆଲା ପକ୍ଷୀମାନଙ୍କର କୋଳାହଳ ଶୁଣା ଯାଉଥିଲା । ମତ୍ତ ଭ୍ରମରମାନେ ଗୁଞ୍ଜନ କରୁଥିଲେ । ମୟୂରମାନେ ମତ୍ତହୋଇ ନିଜର ପୁଚ୍ଛ ବିସ୍ତାର କରି ନୃତ୍ୟ କରୁଥିଲେ । ଉନ୍ମତ୍ତ କୋକିଳମାନେ କୁହୁ କୁହୁ ଧ୍ୱନିରେ ପରସ୍ପରକୁ ଡାକୁଥିଲେ ॥୪୧॥ କଦମ୍ବ, ଚମ୍ପକ, ଅଶୋକ, କରଞ୍ଜ, ବକୁଳ, ଅସନ, କୁନ୍ଦ, ମନ୍ଦାର, ମଲ୍ଲୀ ଓ ନବ ନବ ଆମ୍ରବୃକ୍ଷଦ୍ୱାରା ଏହା ଶୋଭା ପାଉଥିଲା ॥୪୨॥ ପାଣିକୁଆ, ବତକ, ହଂସ, ପାତିହଂସ, ପାଣିକୁକୁଡ଼ା, ସାରସ, ଚକ୍ରବାକ, ଚକୋର ଆଦି କଳରବ କରୁଥିଲେ ॥୪୩॥ ହରିଣ, ବାର୍‌ହା, ଝିଙ୍କ, ମାଙ୍କଡ଼, ଗୋଲାଙ୍ଗୁଳ ମର୍କଟ, ନୀଳଗାଈ, ହାତୀ, ସିଂହ, ନେଉଳ, କସ୍ତୂରୀ ମୃଗ ଆଦି ବହୁ ଜାତିର ପଶୁ ବିଚରଣ କରୁଥିଲେ ॥୪୪॥

ପୃଥିବୀର ସର୍ବପ୍ରଥମ ରାଜା ସ୍ୱାୟମ୍ଭୁବ ମନୁ ନିଜର କନ୍ୟା ସହ ସେହି ଶ୍ରେଷ୍ଠ ତୀର୍ଥରେ ପ୍ରବେଶ କରି ଦେଖିଲେ ଯେ କର୍ଦ୍ଦମ ମୁନି ହୋମକାର୍ଯ୍ୟ ଶେଷ କରି ସେଠାରେ ବସିଛନ୍ତି ॥୪୫॥ ଦୀର୍ଘକାଳ ଉଗ୍ର ତପସ୍ୟା କରିବା ଫଳରେ ତାଙ୍କ ଶରୀରର ତେଜ ଫୁଟି ବାହାରୁଥିଲା । ତାଙ୍କର ଦେହ କିନ୍ତୁ ବିଶେଷ କ୍ଷୀଣ ହୋଇ ନ ଥିଲା । କାରଣ ଭଗବାନ ତାଙ୍କୁ ସ୍ନେହପୂର୍ଣ୍ଣ କଟାକ୍ଷରେ ଚାହିଁଥିଲେ ଓ ତାଙ୍କ ଅମୃତମୟ ଉପଦେଶ ଶୁଣାଇଥିଲେ ॥୪୬॥ କର୍ଦ୍ଦମ ଦୀର୍ଘକାୟ ଥିଲେ । ତାଙ୍କର ଆଖି ପଦ୍ମପତ୍ର ପରି ବିଶାଳ ଥିଲା । ମୁଣ୍ଡରେ ଜଟାଜୁଟ । ପିନ୍ଧିଥିବା ବସ୍ତ୍ର ପୁରୁଣା ହୋଇଯାଇଥିଲା । ସଫା କରାଯାଇ ନ ଥିବା ମହାମୂଲ୍ୟ ମଣି ଯେପରି ଦେଖାଯାଏ, ପାଖରୁ ଦେଖିଲେ ସେ ସେହିପରି ଦେଖାଯାଉଥିଲେ ॥୪୭॥ ପ୍ରଣତ ଭାବରେ ରାଜା ତାଙ୍କ ଆଶ୍ରମକୁ ଆସିଥିବାର ଦେଖି ମୁନି ତାଙ୍କୁ ଆଶୀର୍ବାଦପୂର୍ବକ ଅଭ୍ୟର୍ଥନା କରି ରାଜୋଚିତ ସତ୍‌କାର କଲେ ॥୪୮॥ ଅଭିନନ୍ଦନରେ ପ୍ରୀତ ରାଜା ଆସନ ଗ୍ରହଣ କରି ସ୍ଥିର ହୋଇ ବସିବାରୁ ଭଗବାନଙ୍କ ଆଦେଶକୁ ସ୍ମରଣ କରି ମୁନି ତାଙ୍କୁ ମଧୁର ସ୍ୱରରେ ଏହିପରି ପଚାରିଲେ ॥୪୯॥ ଦେବ, ଆପଣ ଭଗବାନ ଶ୍ରୀହରିଙ୍କର ପାଳନ-ଶକ୍ତି ଧାରଣ କରିଛନ୍ତି । ତାହା ସାଧୁମାନଙ୍କ ରକ୍ଷାପାଇଁ ଏବଂ ଅସାଧୁମାନଙ୍କ ସଂହାରପାଇଁ । ସେହି ଉଦ୍ଦେଶ୍ୟରେ ଆପଣ ଏପରି ଭ୍ରମଣ କରୁଛନ୍ତି ॥୫୦॥ ଆପଣ ଆବଶ୍ୟକସ୍ଥଳେ ସୂର୍ଯ୍ୟ, ଚନ୍ଦ୍ର, ଅଗ୍ନି, ଇନ୍ଦ୍ର, ବାୟୁ, ଯମ, ଧର୍ମ ଓ ବରୁଣ ରୂପରେ କାର୍ଯ୍ୟ କରନ୍ତି । ତେଣୁ ବିଷ୍ଣୁରୂପୀ ଆପଣଙ୍କୁ ମୁଁ ନମସ୍କାର କରୁଚି ॥୫୧॥ ଆପଣ ଯଦି ମଣିଜଡ଼ିତ ବିଜୟରଥରେ ବସି ନିଜର ପ୍ରଚଣ୍ଡ ଧନୁଷ୍ଟଙ୍କାର ଓ ରଥର ଘର୍ଘର ଶବ୍ଦରେ ପାପୀମାନଙ୍କୁ

ଭୟଭୀତ ନ କରିବେ ଏବଂ ସୈନ୍ୟମାନଙ୍କ ପଦାଘାତରେ ଭୂମଣ୍ଡଳକୁ କମ୍ପାଇ ବିଶାଳ ସେନାସହ ସୂର୍ଯ୍ୟପରି ବିଚରଣ ନ କରିବେ, ତା'ହେଲେ ଭଗବାନଙ୍କଦ୍ୱାରା ରଚିତ ବର୍ଣ୍ଣାଶ୍ରମ ନିୟମରେ ଚାଳିତ ସମସ୍ତ ଶୃଙ୍ଖଳାକୁ ଦସ୍ୟୁମାନେ ନଷ୍ଟ କରିଦେବେ ଏବଂ ବିନା ବାଧାରେ ଲୋଲୁପ ବ୍ୟକ୍ତିମାନଙ୍କଦ୍ୱାରା ଅଧର୍ମ ବଢ଼ିଚାଲିବ । ମହାରାଜ, ଆପଣ ଶୋଇପଡ଼ିଲେ ଏ ସଂସାର ଦସ୍ୟୁଗ୍ରସ୍ତ ହୋଇ ନଷ୍ଟ ହୋଇଯିବ ॥୫୨-୫୫॥ ବୀର, ଆପଣ ଏଠାକୁ କେଉଁ କାରଣରୁ ଆସିଛନ୍ତି, ମୁଁ ପଚାରୁଚି । ଆପଣ ଆଜ୍ଞା ଦେଲେ ନିଷ୍କପଟ ହୃଦୟରେ ଆମେ ପାଳନ କରିବୁ ॥୫୬॥

## ଦ୍ୱାବିଂଶ ଅଧ୍ୟାୟ

# ଦେବହୂତି ଓ କର୍ଦ୍ଦମଙ୍କ ବିବାହ

ମୈତ୍ରେୟ କହିଲେ, କର୍ଦ୍ଦମ ମୁନି ତାଙ୍କର ଅଶେଷ ଗୁଣଗ୍ରାମ ବର୍ଣ୍ଣନା କରିବାପରେ ସମ୍ରାଟ୍ ସ୍ୱାୟମ୍ଭୁବ ମନୁ ସଂକୋଚପୂର୍ବକ ସଂସାର ବିଷୟରୁ ମୁକ୍ତ ସେହି ମୁନିଙ୍କୁ ଉତ୍ତର ଦେଇ କହିଲେ ॥୧॥ ବ୍ରହ୍ମା ପ୍ରଜାମାନଙ୍କ ବୃଦ୍ଧିପାଇଁ ଓ ବେଦର ପ୍ରସାରପାଇଁ ଆପଣମାନଙ୍କ ପରି ତପୋବିଦ୍ୟାଯୋଗଯୁକ୍ତ ଚରିତ୍ରବାନ୍ ବ୍ରାହ୍ମଣମାନଙ୍କୁ ନିଜ ମୁହଁରୁ ସୃଷ୍ଟି କଲେ । ସହସ୍ରପାଦ ବିରାଟପୁରୁଷ ଭଗବାନ ଆପଣମାନଙ୍କୁ ରକ୍ଷା କରିବାପାଇଁ ନିଜ ସହସ୍ରବାହୁରୁ ଆମମାନଙ୍କ ପରି କ୍ଷତ୍ରିୟମାନଙ୍କୁ ସୃଷ୍ଟି କଲେ । ବ୍ରାହ୍ମଣମାନେ ତାଙ୍କ ହୃଦୟ ଓ କ୍ଷତ୍ରିୟମାନେ ତାଙ୍କ ଦେହ ସ୍ୱରୂପ ହେଲେ ॥୨-୩॥ ଏହିପରି ପରସ୍ପର ଆତ୍ମାସ୍ୱରୂପ ବ୍ରାହ୍ମଣ ଓ କ୍ଷତ୍ରିୟମାନେ ପରସ୍ପରକୁ ରକ୍ଷା କରୁଥିବାବେଳେ ସମସ୍ତଙ୍କ ଆତ୍ମାସ୍ୱରୂପ ଭଗବାନ ଶ୍ରୀହରି ଉଭୟଙ୍କୁ ରକ୍ଷା କରନ୍ତି ॥୪॥ ଆପଣଙ୍କୁ ଦେଖି ସାରିବାପରେ ମୋର ସମସ୍ତ ସନ୍ଦେହ ଦୂର ହୋଇଯାଇଚି । କାରଣ ଧର୍ମରକ୍ଷା କରିବାକୁ ଇଚ୍ଛୁକ ରାଜାର କର୍ତ୍ତବ୍ୟ କ'ଣ ଆପଣ ସ୍ୱୟଂ ବର୍ଣ୍ଣନା କରିଛନ୍ତି ॥୫॥ ଭଗବନ୍, ଆପଣଙ୍କ ଦର୍ଶନ ସହଜ ନୁହେଁ । ଯେଉଁମାନେ ଚିତ୍ତକୁ ବଶ କରିଥାନ୍ତି, ସେହିମାନେ ହିଁ ଆପଣଙ୍କ ଦର୍ଶନ ଲାଭ କରନ୍ତି । ମୋର ସୌଭାଗ୍ୟ, ମୁଁ ଆପଣଙ୍କୁ ଦର୍ଶନ କଲି ଏବଂ ଆପଣଙ୍କ ପାଦଧୂଳି ମୁଣ୍ଡରେ ଲଗାଇଲି ॥୬॥ ମୋର ସୌଭାଗ୍ୟ, ଆପଣ ମୋତେ ସଦୁପଦେଶ ଦେଇ ଅନୁଗୃହୀତ କରିଛନ୍ତି । ମୋର ସୁକୃତ ଯୋଗୁଁ ଆପଣଙ୍କ ପବିତ୍ର ବାଣୀ ମୋର କର୍ଣ୍ଣକୁହରରେ ଧ୍ୱନିତ ହେଲା ॥୭॥

ମୁନି, ଏହି କନ୍ୟାର ସ୍ନେହବଶରୁ ମୋର ଚିତ୍ତ ବିଚଳିତ ହେଉଚି । ଏହି ଦୀନର ପ୍ରାର୍ଥନା ଆପଣ ଦୟା କରି ଶୁଣନ୍ତୁ ॥୮॥ ଏ ମୋର କନ୍ୟା ହେଉଚି ପ୍ରିୟବ୍ରତ ଓ ଉତ୍ତାନପାଦଙ୍କର ଭଉଣୀ । ବୟସ, ସ୍ୱଭାବ ଓ ଗୁଣାଦି ଦୃଷ୍ଟିରୁ ଏ ନିଜର ଉପଯୁକ୍ତ ପତି ଖୋଜି ବାହାର କରିଚି ॥୯॥ ଯେଉଁଦିନୁ ସେ ନାରଦଙ୍କଠାରୁ ଆପଣଙ୍କ ସ୍ୱଭାବ, ଚରିତ୍ର, ରୂପ, ଗୁଣ, ବିଦ୍ୟା ଓ ବୟସ ବିଷୟରେ ଶୁଣିଚି, ସେହିଦିନଠାରୁ ଆପଣଙ୍କୁ ପତିରୂପେ ଲାଭ କରିବାପାଇଁ ସେ ସଂକଳ୍ପ କରିଚି ॥୧୦॥ ଦ୍ୱିଜୋତ୍ତମ, ଶ୍ରଦ୍ଧାରେ ମୁଁ ଏହି କନ୍ୟାକୁ ଆପଣଙ୍କୁ ଉପହାର ଦେଉଚି । ଆପଣ ଏହାକୁ ଗ୍ରହଣ କରନ୍ତୁ । ସମସ୍ତ ଦୃଷ୍ଟିରୁ ସେ ଆପଣଙ୍କର ଭାର୍ଯ୍ୟା ହେବାପାଇଁ ଉପଯୁକ୍ତ । ଆପଣଙ୍କର ଯେତେ ଗୃହକାର୍ଯ୍ୟ ସେ ସବୁ ତୁଲାଇ ପାରିବ ॥୧୧॥ ଯେଉଁ ଭୋଗ୍ୟ ବିଷୟ ଆପେ ଆପେ ମିଳିଯାଏ, ଆସକ୍ତ ପୁରୁଷଙ୍କ କଥା ଛାଡ଼, ନିର୍ମୁକ୍ତ ପୁରୁଷମାନେ ମଧ୍ୟ ତାହା ଛାଡ଼ିବା ଉଚିତ ନୁହେ ॥୧୨॥ ପ୍ରାପ୍ତବସ୍ତୁକୁ ଅନାଦର କରି ଯଦି କେହି କୃପଣ ବ୍ୟକ୍ତିକୁ ହାତ ପତାଏ, ତେବେ ତାର ତ ଯଶ କ୍ଷୟ ହୁଏ, ଖାଲି ଗାଳି ଶୁଣି ତାର ମାନସମ୍ମାନ ମଧ୍ୟ ନଷ୍ଟ ହୁଏ ॥୧୩॥ ତେଣୁ ହେ ବିଦ୍ୱାନ୍, ମୋର ପ୍ରଦତ୍ତ କନ୍ୟାକୁ ଆପଣ ଗ୍ରହଣ କରନ୍ତୁ । ମୁଁ ଶୁଣିଚି ଆପଣ ବିବାହ କରିବାପାଇଁ ଉଦ୍ୟତ ଏବଂ ଚିର ବ୍ରହ୍ମଚାରୀ ହୋଇ ରହିବା ଚାହାନ୍ତି ନାହିଁ ॥୧୪॥

କର୍ଦ୍ଦମ କହିଲେ, ହଁ ଠିକ୍ କଥା । ମୁଁ ବିବାହ କରିବାକୁ ଚାହେ । ଆପଣଙ୍କ କନ୍ୟା ଅନୂଢ଼ା ଏବଂ ଅନ୍ୟ କାହାରି ସହିତ ତାଙ୍କର ସମ୍ବନ୍ଧ ଲାଗି ନାହିଁ । ତେଣୁ ଉପଯୁକ୍ତ ବିଧି ଅନୁଯାୟୀ ଆମ ଦୁହିଁଙ୍କର ବିବାହ ହୋଇଯିବା ଉଚିତ ।।୧୫।। ମହାରାଜ, ବୈଦିକ ବିବାହ ବିଧିଦ୍ୱାରା ତୁମ କନ୍ୟାର କାମନା ପୂର୍ଣ୍ଣ ହେଉ । ଯେ ନିଜର ଅଙ୍ଗକାନ୍ତିଦ୍ୱାରା ସମସ୍ତ ଅଳଙ୍କାରର ଶୋଭାକୁ ଧିକ୍କାର କରୁଚି, କିଏ ବା ତୁମର ଏହି କନ୍ୟାକୁ ଆଦର ନ କରିବ ? ।।୧୬।। ଥରେ ସେ ହର୍ମ୍ୟ ଉପରେ କନ୍ଦୁକ କ୍ରୀଡ଼ା କରୁଥିବାବେଳେ ତା'ର ପାଦର ନୂପୁର ଶବ୍ଦ ଓ ଚଞ୍ଚଳ ରମ୍ୟ ଦୃଷ୍ଟି ଅତିଶୟ ମୋହକ ଥିଲା । ସେତେବେଳେ ତାକୁ ଦେଖି ବିଶ୍ୱାବସୁ ଗନ୍ଧର୍ବ ଏପରି ବିମୋହିତ ହୋଇଗଲା ଯେ ନିଜ ବିମାନରୁ ତଳକୁ ଖସି ପଡିଲା ।।୧୭।। ଲକ୍ଷ୍ମୀଙ୍କର ପାଦସେବା କରି ନ ଥିବା ବ୍ୟକ୍ତି ପକ୍ଷରେ ଯାହାର ଦର୍ଶନ ଦୁର୍ଲଭ, ସେହି ସୁନ୍ଦରୀଶିରୋମଣି ସ୍ୱୟଂ ଆସି ଯେତେବେଳେ ବିବାହର ପ୍ରାର୍ଥିନୀ, ଯେ ମହାରାଜ ମନୁଙ୍କର କନ୍ୟା ଓ ଉତ୍ତାନପାଦଙ୍କର ଭଗିନୀ, ସେହି ଉଚ୍ଚବଂଶଜାତା କନ୍ୟାକୁ କେଉଁ ବିଜ୍ଞବ୍ୟକ୍ତି ଅନାଦର କରିପାରିବ ? ।।୧୮।। ତେଣୁ ମୁଁ ଏହି ବିବାହ ପ୍ରସ୍ତାବକୁ ଗ୍ରହଣ କରୁଚି, କେବଳ ଗୋଟିଏ ସର୍ତ୍ତରେ ଯେ ମୋର ତେଜବୀର୍ଯ୍ୟରୁ ଏହି କନ୍ୟାର ଗର୍ଭରୁ ସନ୍ତାନ ଜନ୍ମ ହେବାପରେ ଭଗବତ୍‌କଥିତ ଶ୍ରେଷ୍ଠ ପରମହଂସମାନଙ୍କର ହିଂସାରହିତ ସନ୍ନ୍ୟାସ ଧର୍ମକୁ ମୁଁ ଆଚରଣ କରିବି ।।୧୯।। ଯାହାଙ୍କଠାରୁ ଏହି ବିଚିତ୍ର ବିଶ୍ୱର ଉତ୍ପତ୍ତି, ଯାହାଙ୍କଠାରେ ଏହାର ସ୍ଥିତି ଏବଂ ଯେ କି ଏହାର ସଂହାରକର୍ତ୍ତା ସେହି ଭଗବାନ ଅନନ୍ତଙ୍କୁ ହିଁ ମୁଁ ଶ୍ରେଷ୍ଠ ପ୍ରମାଣ ବୋଲି ଗ୍ରହଣ କରିଚି ।।୨୦।।

ମୈତ୍ରେୟ କହିଲେ, ଧନୁର୍ଦ୍ଧର ବିଦୁର, ଭଗବାନ ଶ୍ରୀହରିଙ୍କ ଚିନ୍ତାରେ ମଗ୍ନ କର୍ଦ୍ଦମ ମୁନି ଏତିକି କହି ତୁନି ହୋଇଗଲେ । ତାଙ୍କର ହସହସ ମୁଖମଣ୍ଡଳ ଦେବହୂତିଙ୍କର ଚିତ୍ତକୁ କିଣି ନେଲା ।।୨୧।। ମହାରାଜ ମନୁ ମହିଷୀ ଶତରୂପା ଓ କନ୍ୟା ଦେବହୂତିଙ୍କର ସ୍ପଷ୍ଟ ମତ ଜାଣିପାରି ସେହି ଗୁଣିଗଣାଗ୍ରଗଣ୍ୟ କର୍ଦ୍ଦମଙ୍କୁ ତତ୍ତୁଲ୍ୟ ଗୁଣଯୁକ୍ତା ନିଜର କନ୍ୟାକୁ ପ୍ରଦାନ କଲେ ।।୨୨।। ମହାରାଣୀ ଶତରୂପା ସ୍ନେହରେ ଯୌତୁକସ୍ୱରୂପ ବରକନ୍ୟାଙ୍କୁ ବହୁମୂଲ୍ୟ ବସ୍ତ୍ର, ଅଳଂକାର ଓ ଗୃହ-ଉପକରଣମାନ ଦାନ କଲେ ।।୨୩।। ଉପଯୁକ୍ତ ବର ହସ୍ତରେ କନ୍ୟା ପ୍ରଦାନ କରି ସମ୍ରାଟ୍ ମନୁଙ୍କର ଚିନ୍ତା ଦୂର ହେଲା । କିନ୍ତୁ କନ୍ୟାର ବିରହ ସେ ସମ୍ଭାଳି ପାରିଲେ ନାହିଁ । ଦୁଇ ବାହୁରେ ସେ ଦେବହୂତିଙ୍କୁ ଭିଡ଼ି ଧରି ହେ ବତ୍ସା, ହେ ଅମ୍ବ ବୋଲି କହି ରୋଦନ କରିବାକୁ ଲାଗିଲେ ଏବଂ ତାଙ୍କ ଆଖିରୁ ଝରୁଥିବା ଲୁହରେ ଦେବହୂତିଙ୍କ ମୁଣ୍ଡର ବାଳ ଓଦା ହୋଇଗଲା ।।୨୪-୨୫।।

କିଛି ସମୟପରେ ସେ ମୁନିଙ୍କଠାରୁ ଅନୁମତି ନେଇ ସସ୍ତ୍ରୀକ ନିଜ ଅନୁଚରମାନଙ୍କ ସହିତ ରଥରେ ବସି ନିଜର ରାଜଧାନୀକୁ ପ୍ରସ୍ଥାନ କଲେ ।।୨୬।। ଗଲାବେଳେ ଋଷିଗଣସେବିତ ସରସ୍ୱତୀ ନଦୀର ଉଭୟ କୂଳରେ ମୁନିମାନଙ୍କ ପବିତ୍ର ଆଶ୍ରମଗୁଡ଼ିକର ଶୋଭା ସେ ଦେଖି ଦେଖି ଗଲେ ।।୨୭।। ଆମ ରାଜା ଆସୁଥିବାର ଜାଣି ବ୍ରହ୍ମାବର୍ତ୍ତର ପ୍ରଜାମାନେ ଅତିଶୟ ଆନନ୍ଦରେ ଗୀତବାଦ୍ୟ ସ୍ତୁତିଦ୍ୱାରା ରାଜାଙ୍କୁ ଅଭିନନ୍ଦନ ଜଣାଇ ରାଜଧାନୀରୁ ବାହାରି ଆସିଲେ ।।୨୮।। ସମସ୍ତ ସଂପଦରେ ପରିପୂର୍ଣ୍ଣ ବର୍ହିଷ୍ମତୀ ନଗରୀ ଥିଲା ମନୁଙ୍କର ରାଜଧାନୀ । ଯଜ୍ଞବରାହ ନିଜର ଅଙ୍ଗ ଝାଡ଼ିଦେବା ଫଳରେ ତାଙ୍କରି ରୋମସବୁ ସେଠାରେ ପଡ଼ି ଚିରସବୁଜ କୁଶ ଓ କାଶ ଘାସରେ ପରିଣତ ହେଲା । ଋଷିମାନେ ଯଜ୍ଞନାଶକାରୀ ରାକ୍ଷସମାନଙ୍କୁ ପରାଭବ ଦେଇ ସେଠାରେ ଯଜ୍ଞପୁରୁଷ ଭଗବାନଙ୍କୁ ଅର୍ଚ୍ଚନା କରନ୍ତି ।।୨୯-୩୦।। ଯାହାଙ୍କ କୃପାରୁ ଏହି ପୃଥିବୀକୁ ସେ ଲାଭ କରିଛନ୍ତି, ସେହି ଯଜ୍ଞପୁରୁଷ ଭଗବାନଙ୍କୁ ଏକ କୁଶକାଶମୟ ଆସନରେ ବସି ମହରାଜ ମନୁ ପୂଜା କରୁଥିଲେ ।।୩୧।। ନିଜର ନିବାସସ୍ଥଳ ବର୍ହିଷ୍ମତୀ ନଗରୀରେ ପ୍ରବେଶ କରି ମହାରାଜ ମନୁ ନିଜ ପ୍ରାସାଦକୁ ଯାଇ ଅବସ୍ଥାନ କଲେ । ତାଙ୍କର ଏହି ଭବନ ଥିଲା ତ୍ରିତାପହାରକ ।।୩୨।। ସେଠାରେ ନିଜର ଭାର୍ଯ୍ୟା ଓ ସନ୍ତାନମାନଙ୍କ ସହିତ ଧର୍ମାନୁମୋଦିତ ସମସ୍ତ କାମ୍ୟବସ୍ତୁ ସେ ଉପଭୋଗ କରୁଥିଲେ । ଗନ୍ଧର୍ବମାନେ ନିଜ ସ୍ତ୍ରୀମାନଙ୍କ ସହିତ ପ୍ରତ୍ୟହ ପ୍ରତ୍ୟୁଷରେ ମନୁଙ୍କର ଯଶୋଗାନ କରୁଥିଲେ । କିନ୍ତୁ ତଦ୍ଦ୍ୱାରା ପ୍ରଭାବିତ ନ ହୋଇ ସେ ଧ୍ୟାନପୂର୍ବକ ହରିକଥା ହିଁ ଶ୍ରବଣ କରୁଥିଲେ ।।୩୩।। ରାଜର୍ଷି ସ୍ୱାୟମ୍ଭୁବ ମନୁ ଯଥେଷ୍ଟ ବିଷୟଭୋଗ

କରୁଥିଲେ । କିନ୍ତୁ ଏହି ଭୋଗଦ୍ୱାରା ପରମେଶ୍ୱରଙ୍କ ପ୍ରତି ତାଙ୍କ ନିଷ୍ଠାରେ ଟିକିଏ ହେଲେ ଅଭାବ ଦେଖାଯାଉ ନ ଥିଲା ॥୩୪॥ ସ୍ୱାୟମ୍ଭୁବ ମନୁ ମନ୍ୱନ୍ତର ବୋଲି କୁହାଯାଉଥିବା ତାଙ୍କ ସମସ୍ତ ସମୟ ମଧ୍ୟରେ ଗୋଟିଏ ମୁହୂର୍ତ୍ତ ମଧ୍ୟ ବୃଥାରେ କଟାଇ ନାହାନ୍ତି । କାରଣ ସେ ସବୁବେଳେ ହରିକଥା ଶୁଣୁଥିଲେ । ଶ୍ରୀହରିଙ୍କୁ ଧ୍ୟାନ କରୁଥିଲେ । ବିଷ୍ଣୁଭାବନାରେ ସମସ୍ତ କାର୍ଯ୍ୟ କରୁଥିଲେ ଏବଂ ସବୁ କଥା କହୁଥିଲେ ॥୩୫॥ ସେ ଏହିପରି ବାସୁଦେବଙ୍କ ପ୍ରସଙ୍ଗରେ ରତ ଥାଇ ସତ୍ତ୍ୱ ଆଦି ତିନି ଗୁଣକୁ ବା ଜାଗ୍ରତ୍ ଆଦି ତିନି ଅବସ୍ଥାକୁ ଆୟତ୍ତ କରି ଏକସ୍ତରିଟି ଚତୁର୍ଯୁଗ ବା ନିଜର ସମ୍ପୂର୍ଣ୍ଣ ମନ୍ୱନ୍ତରଟି କଟାଇ ଦେଲେ ॥୩୬॥ ବିଦୁର, ଯେଉଁ ବ୍ୟକ୍ତି ଶ୍ରୀହରିଙ୍କ ଆଶ୍ରିତ ହୋଇ ଚାଲେ, ତାକୁ ଶାରୀରିକ, ମାନସିକ, ଦୈବିକ, ଭୌତିକ କିମ୍ବା ମନୁଷ୍ୟକୃତ କୌଣସି କ୍ଳେଶ କଷ୍ଟ ଦେଇପାରେନା ॥୩୭॥ ସ୍ୱାୟମ୍ଭୁବ ମନୁଙ୍କୁ ମୁନିମାନେ ଯେଉଁସବୁ ପ୍ରଶ୍ନ ପଚାରିଥିଲେ, ସମସ୍ତ ପ୍ରାଣୀଙ୍କର ମଙ୍ଗଳ ଉଦ୍ଦେଶ୍ୟରେ ସେ ସମସ୍ତ ପ୍ରଶ୍ନର ଉତ୍ତର ଦେଇ ବର୍ଣ୍ଣାଶ୍ରମ ଧର୍ମର ପ୍ରଚାର କଲେ, ଯାହାକି ପରେ ମନୁସଂହିତା ନାମରେ ଖ୍ୟାତ ହେଲା ॥୩୮॥ ଏହା ହେଉଚି ପୃଥିବୀର ପ୍ରଥମ ରାଜା ମନୁଙ୍କର ଅଦ୍ଭୁତ ଚରିତ, ଯାହାକି ବର୍ଣ୍ଣନାର ଯୋଗ୍ୟ ଓ ମୁଁ ତାହା ବର୍ଣ୍ଣନା କଲି । ବର୍ତ୍ତମାନ ତାଙ୍କରି କନ୍ୟା ଦେବହୂତିଙ୍କର ଯଶୋଗୁଣ ମୁଁ ବର୍ଣ୍ଣନା କରୁଚି ॥୩୯॥

## ତ୍ରୟୋବିଂଶ ଅଧ୍ୟାୟ

# କର୍ଦ୍ଦମ ଓ ଦେବହୂତିଙ୍କର ବିହାର

ପିତାମାତା ଚାଲିଯିବାପରେ ପତିଙ୍କ ମନର କଥା ଜାଣି ସାଧ୍ୱୀ ଦେବହୂତି ପାର୍ବତୀ ଶିବଙ୍କୁ ସେବା କରିବାପରି ପ୍ରେମପୂର୍ବକ କର୍ଦ୍ଦମଙ୍କର ସେବା କରିବାକୁ ଲାଗିଲେ ॥୧॥ ମୈତ୍ରେୟ କହିଲେ, ବିଦୁର, ସେ କାମବାସନା, ଦମ୍ଭ, ଦ୍ୱେଷ, ଲୋଭ, ଅସଦାଚାର, ଅହଂକାର ଆଦି ତ୍ୟାଗ କରି ନିଷ୍ଠା, ଆତ୍ମଶୁଚି, ଗୁରୁଗୌରବ, ସଂଯମ, ସେବା, ସତ୍ୟ ଓ ମଧୁରବାକ୍ୟ ଦ୍ୱାରା ତେଜସ୍ୱୀ ସ୍ୱାମୀଙ୍କୁ ନିଜ ସେବାରେ ସନ୍ତୁଷ୍ଟ କରୁଥିଲେ ॥୨-୩॥ ଏକ ବଡ଼ ଆଶୀର୍ବାଦ ଲାଭ କରିବା ଆଶାରେ ମନୁପୁତ୍ରୀ ଦେବହୂତି ନିଜ ପତିଦେବଙ୍କୁ ସନ୍ତୁଷ୍ଟ କରିବାପାଇଁ ସେବାବ୍ରତାଦି ଫଳରେ ଦିନୁଁଦିନ କ୍ଷୀଣ ଓ ଦୁର୍ବଳ ହୋଇପଡ଼ିଲେ । ତାହା ଦେଖି ଦେବର୍ଷିଶ୍ରେଷ୍ଠ କର୍ଦ୍ଦମ କୃପାପରବଶ ହୋଇ ପ୍ରେମଗଦ୍‌ଗଦ ସ୍ୱରରେ କହିଲେ, ହେ ମନୁନନ୍ଦିନୀ, ତୁମେ ମୋତେ ବହୁତ ସମ୍ମାନ ଦେଇଚ । ଅତିଶୟ ଭକ୍ତିରେ ମୋର ସବୁ ସେବା ଶୁଶ୍ରୂଷା କରୁଚ । ମୁଁ ଏଥିରେ ସନ୍ତୁଷ୍ଟ । ଦେହଧାରୀ ବ୍ୟକ୍ତିପକ୍ଷରେ ଦେହ ହେଉଚି ପ୍ରିୟ । କିନ୍ତୁ ମୋ ପାଇଁ ଖଟି ଖଟି ତୁମ ଦେହକୁ ତୁମେ ସମ୍ପୂର୍ଣ୍ଣ ଅବହେଳା କରିଚ । ମୁଁ ସ୍ୱଧର୍ମନିରତ ରହି ତପସ୍ୟା, ସମାଧି, ବିଦ୍ୟା ଓ ଆତ୍ମଯୋଗଦ୍ୱାରା ଯେଉଁ ଭଗବତ୍‌ପ୍ରସାଦ ଲାଭ କରିଚି, ତୁମେ ଦେଖ, ମୁଁ ସେହି ଶୋକରହିତ ଅଭୟ ବିଭୂତିକୁ ତୁମକୁ ବିତରଣ କରୁଚି ॥୪-୭॥ ମହାପରାକ୍ରମୀ ଭଗବାନଙ୍କ ଭ୍ରୂଭଙ୍ଗମାତ୍ରେ ଯେଉଁସବୁ ବୈଷୟିକ ଭୋଗ ଶେଷ ହୋଇଯାଏ, ସେଥିରେ କ'ଣ ବା ଅଛି ? ତୁମେ ପତିବ୍ରତା-ଧର୍ମ ପାଳନ କରି ସିଦ୍ଧିଲାଭ କରିଚ । ତେଣୁ ତହିଁରୁ ଅର୍ଜିତ ଯେଉଁ ଦିବ୍ୟବିଭୂତି, ତାକୁ ଭୋଗ କର । ଅନ୍ୟମାନଙ୍କ କଥା ଛାଡ଼, କୌଣସି ଦାମ୍ଭିକ ରାଜା ପକ୍ଷରେ ମଧ୍ୟ ତାହା ସୁଦୁର୍ଲଭ ॥୮॥

ସକଳ ବିଦ୍ୟାରେ ବିଚକ୍ଷଣ ନିଜ ସ୍ୱାମୀଙ୍କଠାରୁ ଏହିପରି ଶୁଣି ଦେବହୂତି ଅଭିଭୂତ ହୋଇଗଲେ । ସେ ପ୍ରେମରେ ଗଦ୍‌ଗଦ ଏବଂ ଲଜ୍ଜା ଓ ଆନନ୍ଦରେ ଅଧୋମୁଖ ହୋଇ ବିନୀତ ଭାବରେ କହିବାକୁ ଲାଗିଲେ ॥୯॥ ଦ୍ୱିଜଶ୍ରେଷ୍ଠ, ହେ ସ୍ୱାମୀ, ଆପଣଙ୍କ ସିଦ୍ଧି ବିଷୟ ମୁଁ ଜାଣିଚି । ସମସ୍ତ ବିଦ୍ୟାରେ ଆପଣ ଅଧୀଶ୍ୱର । କିନ୍ତୁ ପୂର୍ବରୁ ଆପଣ ଯାହା କହିଥିଲେ, ତାହାର ପୂରଣ

ହେବା ଉଚିତ । ଆପଣଙ୍କ ସଂସର୍ଗରେ ସନ୍ତାନପ୍ରସବ, ଯାହାକି ଉପଯୁକ୍ତ ସ୍ୱାମୀଠାରୁ ସତୀ ସ୍ତ୍ରୀ ଆଶା କରେ, ତାହା ଆପଣ ପୂରଣ କରନ୍ତୁ ॥୧୦॥ ସ୍ୱାମୀ, ଏଥିପାଇଁ (କାମଶାସ୍ତ୍ର ଅନୁସାରେ) ଯାହା କିଛି କରିବାର କଥା, ଆପଣ ତାର ବ୍ୟବସ୍ଥା କରନ୍ତୁ । ଆପଣଙ୍କ ସହିତ ମିଳନ ଇଚ୍ଛାରେ ମୋର ଶରୀର ଅତିଶୟ କ୍ଷୀଣ ଓ ଦୁର୍ବଳ ହୋଇଯାଇଚି । ତେଣୁ ମୋର ଏହି କାମଦଗ୍ଧ ଦୁର୍ବଳ ଶରୀରକୁ ରମଣଯୋଗ୍ୟ କରିବାପାଇଁ ଯାହା କିଛି କରିବାର କଥା କରନ୍ତୁ ଏବଂ ଏଥିପାଇଁ ଏକ ଉପଯୁକ୍ତ ଭବନର ବ୍ୟବସ୍ଥା କରନ୍ତୁ ॥୧୧॥ ବିଦୁର, ନିଜ ପ୍ରିୟାର ପ୍ରିୟ କାମନା କରୁଥିବା କର୍ଦ୍ଦମ ଋଷି ଯୋଗସ୍ଥ ହୋଇ ସଙ୍ଗେ ସଙ୍ଗେ ଏକ ବିମାନ ରଚନା କଲେ, ଯାହାକି ଇଚ୍ଛା ଅନୁସାରେ ଗତି କରିପାରିବ ॥୧୨॥ ସମସ୍ତ ରତ୍ନଖଚିତ ଏହା ଏକ ଦିବ୍ୟ ସୁନ୍ଦର ବିମାନ ଥିଲା । ସମସ୍ତ କାମନାର ସିଦ୍ଧିପାଇଁ ଏବଂ ସମସ୍ତ ଐଶ୍ୱର୍ଯ୍ୟର ଉପଭୋଗବୃଦ୍ଧିପାଇଁ ଏହା ଉଦ୍ଦିଷ୍ଟ ଥିଲା ଏବଂ ମଣିମୟ ଖମ୍ବମାନଙ୍କ ଦ୍ୱାରା ଶୋଭାପାଉଥିଲା ॥୧୩॥ ଏହି ବିଶାଳ ଭବନ ସମସ୍ତ ଋତୁପାଇଁ ସୁଖଦାୟକ ଥିଲା । ଏଥିରେ ସବୁପ୍ରକାର ଦିବ୍ୟ ସାମଗ୍ରୀ ରଖାଯାଇଥିଲା ଏବଂ ବହୁ ଚିତ୍ର ବିଚିତ୍ର ପତାକାଦ୍ୱାରା ଏହା ଶୋଭା ପାଉଥିଲା ॥୧୪॥ ଏଥିରେ ନାନା ରଙ୍ଗର ସୁନ୍ଦର ଫୁଲମାଳ ସବୁ ଝୁଲୁଥିଲା ଏବଂ ସେଥିରେ ଭ୍ରମରମାନେ ବସି ଗୁଞ୍ଜନ କରୁଥିଲେ । ଅନେକପ୍ରକାର ସୂତାର ବସ୍ତ୍ର ଓ ସୂକ୍ଷ୍ମ ପଟ୍ଟବସ୍ତ୍ରମାନ ରହିଥିଲା ॥୧୫॥ ଏହା ଏକ ବହୁତଳ ପ୍ରାସାଦ ଥିଲା । ଏହାର ପ୍ରତ୍ୟେକ ତଳରେ ପୃଥକ୍ ପୃଥକ୍ କୋଠରିମାନଙ୍କରେ ପଲଙ୍କ, ପଙ୍ଖା ଓ ଆସନମାନ ପଡ଼ିଥିଲା ॥୧୬॥ ସ୍ଥାନେ ସ୍ଥାନେ କାନ୍ଥମାନଙ୍କରେ କାରୁକାର୍ଯ୍ୟ ଶୋଭା ପାଉଥିଲା ଏବଂ ମରକତ ମଣିର ଚଟାଣ ଉପରେ ପୋହଳା ବେଣୀମାନ ଶୋଭାପାଉଥିଲା ॥୧୭॥ ପୋହଳାର ଦ୍ୱାରବନ୍ଧରେ ହୀରାର କବାଟ ଥିଲା ଓ ଇନ୍ଦ୍ରନୀଳମଣିର ଶିଖରରେ ସୁନାର କଳସ ବସିଥିଲା ॥୧୮॥ ଏହାର ହୀରକମୟ କାନ୍ଥରେ ପଦ୍ମରାଗ ମଣି ସବୁ ବସିଥିଲା, ଯାହା ଗୋଟିଏ ଗୋଟିଏ ଆଖିଭଳି ଦେଖାଯାଉଥିଲା । ବହୁତ ରଙ୍ଗ ବେରଙ୍ଗ ଚାନ୍ଦୁଆ ବହୁମୂଲ୍ୟ ସୁବର୍ଣ୍ଣର ତୋରଣମାଳରେ ଝୁଲୁଥିଲା ॥୧୯॥ ଏହି ପ୍ରାସାଦରେ ଏଠି ସେଠି ହଂସ ଓ ପାରାଦଳ ବସି କଳରବ କରୁଥିଲେ । ଯେଉଁସବୁ କୃତ୍ରିମ ହଂସ ଓ ପାରାମାନଙ୍କୁ ନିର୍ମାଣ କରାଯାଇଥିଲା, ସେ ସବୁକୁ ସଜୀବ ବୋଲି ଭାବି ସଜୀବମାନେ ନିର୍ଜୀବମାନଙ୍କ ପାଖକୁ ଉଡ଼ିଯାଇ ଏହିପରି ଧ୍ୱନି କରୁଥିଲେ ॥୨୦॥

ଏଥିରେ ବିହାରସ୍ଥଳୀ, ବୈଠକ ଘର, ଶୟନ କକ୍ଷ, ଅଗଣା ଓ ଚୌକି ଆଦି କରାଯାଇଥିଲା ଏବଂ ଏହାକୁ ଦେଖି ସ୍ୱୟଂ କର୍ଦ୍ଦମ ବିସ୍ମିତ ହୋଇଯାଇଥିଲେ ॥୨୧॥ କିନ୍ତୁ ସମସ୍ତ ପ୍ରାଣୀଙ୍କ ଅନ୍ତରର କଥା କର୍ଦ୍ଦମ ଋଷି ଜାଣିପାରନ୍ତି ॥୨୨॥ ଦେବହୂତି ସେ ଗୃହକୁ ଦେଖି ବିଶେଷ ସନ୍ତୁଷ୍ଟ ନୁହନ୍ତି ବୋଲି ଜାଣିପାରି ସେ କହିଲେ, ସୁନ୍ଦରି ! ତୁମେ ଏହି ହ୍ରଦରେ ସ୍ନାନ କରି ବିମାନ ଆରୋହଣ କର । ଏହି ତୀର୍ଥକୁ ସ୍ୱୟଂ ଭଗବାନ ବିଷ୍ଣୁ ସୃଷ୍ଟି କରିଛନ୍ତି ଏବଂ ଏହା ମନୁଷ୍ୟଙ୍କର ଯାଚଞ୍ଚା ପୂର୍ଣ୍ଣ କରେ ॥୨୩॥ କମଳନୟନା ଦେବହୂତି ସ୍ୱାମୀଙ୍କର କଥାକୁ ଗ୍ରହଣ କରି ସରସ୍ୱତୀ ନଦୀର ସେହି ପବିତ୍ର ସରୋବରରେ ପ୍ରବେଶ କଲେ । ସେତେବେଳେ ତାଙ୍କର ବସ୍ତ୍ର ମଳିନ, କେଶ ଜଟାଯୁକ୍ତ, ସ୍ତନ ବିବର୍ଣ୍ଣ ଓ ଦେହରେ ମଳି ଜମିଯାଇଥିଲା ॥୨୪-୨୫॥ ଦେବହୂତି ଦେଖିଲେ, ସେହି ସରୋବର ମଧ୍ୟରେ ଏକ ହର୍ମ୍ୟ ଅଛି, ଯେଉଁଠି ଏକହଜାର କିଶୋର-ବୟସୀ କନ୍ୟା ରହିଛନ୍ତି । ସେମାନଙ୍କ ଦେହରୁ ପଦ୍ମଗନ୍ଧ ବାହାରି ଚତୁର୍ଦ୍ଦିଗ ଆମୋଦିତ କରୁଥିଲା ॥୨୬॥ ତାଙ୍କୁ ଦେଖି ସେହି କିଶୋରୀମାନେ ହଠାତ୍ ଉଠିପଡ଼ି କୃତାଞ୍ଜଳି ହୋଇ କହିଲେ, ଆମେ ସବୁ ଆପଣଙ୍କର ଦାସୀ । ଆମେ କି ସେବା କରିବୁ, ଆଦେଶ ଦିଅନ୍ତୁ ॥୨୭॥ ସ୍ନାନପାଇଁ ଆବଶ୍ୟକ ବହୁମୂଲ୍ୟ ତୈଳ ଆଦି ସାମଗ୍ରୀଦ୍ୱାରା ସେମାନେ ବହୁତ ଆଦରର ସହିତ ମନସ୍ୱିନୀ ଦେବହୂତିଙ୍କୁ ଗାଧୋଇ ଦେଇ ଦୁଇଟି ନୂତନ ପଟ୍ଟବସ୍ତ୍ର ପିନ୍ଧିବାକୁ ଦେଲେ ॥୨୮॥ ଜକ୍ ଜକ୍ କରୁଥିବା ବହୁମୂଲ୍ୟ ଅଳଙ୍କାର, ସାରବାନ୍ ସ୍ୱାଦିଷ୍ଟ ଖାଦ୍ୟ ଏବଂ ମାଦକ ଅମୃତ ତୁଲ୍ୟ ପାନୀୟ ତାଙ୍କୁ ପ୍ରଦାନ କଲେ ॥୨୯॥ ଏହାପରେ ଦେବହୂତି ଦର୍ପଣରେ ନିଜକୁ ଦେଖିଲେ । ତାଙ୍କ ଶରୀର ନିର୍ମଳ ଦେଖାଯାଉଚି । ପୁଷ୍ପମାଲ୍ୟ ଓ ନିର୍ମଳ ବସ୍ତ୍ର ସେ ପରିଧାନ କରିଛନ୍ତି । କନ୍ୟାମାନେ ଅତି ଆଦରର ସହିତ ମଙ୍ଗଳ

ତିଳକର ଚିତା ତାଙ୍କୁ ଲଗାଇ ଦେଇଛନ୍ତି ।।୩୦।। ମୁଣ୍ଡ ଧୋଇ ଗାଧୋଇ ସାରିବାପରେ ସେ ସମସ୍ତ ଅଳଙ୍କାରରେ ମଣ୍ଡିତ ହୋଇଛନ୍ତି । ତାଙ୍କର ବେକରେ ସୁନାର ହାର ଶୋଭା ପାଉଚି । ହାତରେ କଙ୍କଣ ଓ ପାଦରେ ସୁବର୍ଣ୍ଣ ନୂପୁରର ଧ୍ୱନି ।।୩୧।। ଅଣ୍ଟାରେ ରତ୍ନଜଡ଼ିତ ଚନ୍ଦ୍ରହାର; ପୁଣି ବହୁମୂଲ୍ୟ ହାର ଓ ଚନ୍ଦନ କୁଙ୍କୁମ ଆଦି ଦ୍ୱାରା ସେ ଅତି ସୁନ୍ଦର ଦେଖାଯାଉଛନ୍ତି ।।୩୨।। ସୁନ୍ଦର ଦନ୍ତପଙ୍କ୍ତି, କମନୀୟ ଭ୍ରୂଲତା, ସୌନ୍ଦର୍ଯ୍ୟରେ ପଦ୍ମକଢ଼ିକୁ ନିନ୍ଦା କରୁଥିବା ଢଳଢଳ ଆଖି ଏବଂ ଗାଢ଼ ନୀଳବର୍ଣ୍ଣର କେଶରାଶିଯୋଗୁଁ ତାଙ୍କର ମୁଖମଣ୍ଡଳ ଅତି ସୁନ୍ଦର ଦେଖାଯାଉଛି ।।୩୩।। ସେତେବେଳେ ଦେବହୂତି ଋଷିଶ୍ରେଷ୍ଠ ନିଜ ପ୍ରିୟ ପତିଙ୍କର କଥା ଚିନ୍ତା କରି ପ୍ରଜାପତି କର୍ଦ୍ଦମ ଯେଉଁଠାରେ ବସିଥିଲେ, କିଶୋରୀମାନଙ୍କ ସହିତ ସେଠାରେ ଯାଇ ପହଞ୍ଚିଲେ ।।୩୪।। ସ୍ୱାମୀଙ୍କ ସମ୍ମୁଖରେ ସହସ୍ର ସ୍ତ୍ରୀଙ୍କଦ୍ୱାରା ବେଷ୍ଟିତା ଦେବହୂତି ସ୍ୱାମୀଙ୍କର ଯୋଗଶକ୍ତି ବିଷୟ ଚିନ୍ତା କରି ବିସ୍ମିତ ହେଲେ ।।୩୫।।

ଶତ୍ରୁଜୟୀ ବିଦୁର, କର୍ଦ୍ଦମ ଦେଖିଲେ ଯେ ସ୍ନାନପରେ ତାଙ୍କ ପତ୍ନୀ ନିର୍ମଳ ଦେଖାଯାଉଛନ୍ତି ଓ ବିବାହପୂର୍ବର ତାଙ୍କ ସୁନ୍ଦର ରୂପ ଫେରି ଆସିଚି । ବକ୍ଷସ୍ଥଳ ଆବୃତ ହୋଇ ସୁନ୍ଦର ଦେଖାଯାଉଚି ଏବଂ ସେ ଏକ ମନୋରମ ପଞ୍ଚବସ୍ତ୍ର ପରିଧାନ କରିଛନ୍ତି । ଏକ ସହସ୍ର ବିଦ୍ୟାଧରୀ ତାଙ୍କ ସେବାରେ ଲାଗିଛନ୍ତି । ସେ ଅତିସ୍ନେହରେ ଦେବହୂତିଙ୍କୁ ନେଇ ବିମାନ ଆରୋହଣ କଲେ ।।୩୬-୩୭।। ପ୍ରିୟାଙ୍କ ପ୍ରତି ଅନୁରକ୍ତ ଥିଲେ ମଧ୍ୟ କର୍ଦ୍ଦମ ଋଷିଙ୍କର ଯୋଗଶକ୍ତି କିଛି କମି ନ ଥିଲା । ବିମାନମଧ୍ୟରେ ବିଦ୍ୟାଧରୀମାନେ ତାଙ୍କ ସେବା କରୁଥିଲେ । କଇଁଫୁଲମାନଙ୍କୁ ଫୁଟାଇ ଆକାଶରେ ଚନ୍ଦ୍ରମା ଯେପରି ତାରାମାନଙ୍କଦ୍ୱାରା ବେଷ୍ଟିତ ହୋଇ ଶୋଭାପାଏ, ସେହିପରି ବିଦ୍ୟାଧରୀମାନଙ୍କଦ୍ୱାରା ବେଷ୍ଟିତ କର୍ଦ୍ଦମ ଶୋଭା ପାଉଥିଲେ ।।୩୮।। ଅଷ୍ଟଲୋକପାଳଙ୍କ ବିହାରସ୍ଥଳ ଅଷ୍ଟ କୁଳପର୍ବତ ମଧ୍ୟରେ ଶ୍ରେଷ୍ଠ ହେଉଚି ମେରୁ ପର୍ବତ । ଏହି ପର୍ବତର ଉଚ୍ଚ ଉପତ୍ୟକାମାନଙ୍କରେ କାମୋଦ୍ଦୀପକ ମନ୍ଦ ମନ୍ଦ ବାୟୁ ପ୍ରବାହିତ ହୁଏ । ପ୍ରପାତ ଆକାରରେ ଶିଖର ଦେଶରୁ ତଳକୁ ଗଡ଼ି କୁଳୁ କୁଳୁ ଧ୍ୱନିରେ ଗଙ୍ଗା ବହିଯାଏ । ଏହି ସବୁ ସ୍ଥଳୀରେ କୁବେରଙ୍କ ପରି ସେ ବହୁକାଳ ଧରି ବିହାର କଲେ । ବିଦ୍ୟାଧରଲଳନାମାନେ ତାଙ୍କୁ ସେବା କରୁଥିଲେ ଓ ସିଦ୍ଧଚାରଣମାନେ ତାଙ୍କ ସ୍ତୁତିଗାନ କରୁଥିଲେ ।।୩୯।। ଏହିପରି ବୈଶ୍ରମ୍ଭକ, ସୁରସନ, ନନ୍ଦନ, ପୁଷ୍ପଭଦ୍ର, ମାନସ ଓ ଚୈତ୍ରରଥ ନାମକ ପ୍ରମୋଦ ଉଦ୍ୟାନମାନଙ୍କରେ ସେ ନିଜର ପ୍ରିୟାଙ୍କ ସହିତ ବିହାର କଲେ ।।୪୦।। ଇଚ୍ଛା ଅନୁସାରେ ଗତି କରୁଥିବା ଏହି ଚମତ୍କାର ବିଶାଳ ବିମାନରେ ବସି ସେ ବାୟୁପରି ବିଭିନ୍ନ ଲୋକରେ ବିଚରଣ କଲେ ଓ ବିମାନଚାରୀ ଦେବତାମାନଙ୍କୁ ଟପିଗଲେ ।।୪୧।। ଯେଉଁ ଧୀରପୁରୁଷମାନେ ଭବଭୟହାରୀ ଶ୍ରୀବିଷ୍ଣୁଙ୍କର ପାଦକୁ ଆଶ୍ରୟ କରି ରହିଥାନ୍ତି, ସେମାନଙ୍କ ପାଇଁ କୌଣସି ବସ୍ତୁ ଅଲଭ୍ୟ ନୁହେଁ ।।୪୨।। ବହୁ ଦ୍ୱୀପ ଓ ବର୍ଷ ଆଦି ଯୁକ୍ତ ଏହି ଭୂମଣ୍ଡଳରେ ବହୁ ବିଚିତ୍ର ଆଶ୍ଚର୍ଯ୍ୟଜନକ ଦର୍ଶନୀୟ ବସ୍ତୁ ରହିଚି । ମହାଯୋଗୀ କର୍ଦ୍ଦମ ନିଜ ପତ୍ନୀଙ୍କୁ ସେ ସବୁ ଦେଖାଇ ନିଜ ଆଶ୍ରମକୁ ଫେରି ଆସିଲେ ।।୪୩।।

ନିଜକୁ ନଅଟି ରୂପରେ ବିଭକ୍ତ କରି ରତିସୁଖପାଇଁ ଉତ୍ସୁକ ମନୁଙ୍କର କନ୍ୟା ଦେବହୂତିଙ୍କୁ ରମଣ ଦ୍ୱାରା ସେ ବହୁ ଆନନ୍ଦ ଦାନ କଲେ । ଅନେକ ବର୍ଷ ଗୋଟିଏ ମୁହୂର୍ତ୍ତ ପରି କଟିଗଲା ।।୪୪।। ସେହି ବିମାନରେ ରତିକ୍ରିୟାପାଇଁ ଉଦ୍ଦିଷ୍ଟ ଉତ୍କୃଷ୍ଟ ଶଯ୍ୟା ବ୍ୟବହାର କରି ଦେବହୂତି ନିଜର ପରମ ରୂପବାନ୍ ସ୍ୱାମୀଙ୍କ ସହିତ ଯେଉଁ ସମୟ କଟାଇଲେ, ତାହା ଆଦୌ ଜଣାପଡ଼ିଲା ନାହିଁ ।।୪୫।। କାମଲାଳସା ଚରିତାର୍ଥ କରିବାପାଇଁ ରମଣରତ ଏହି ଦମ୍ପତିଙ୍କର ଯୋଗକୁ ଶହେଟି ଶରତ୍ କଟିଗଲା, କିନ୍ତୁ ସମୟ ଜଣାପଡ଼ିଲା ନାହିଁ ।।୪୬।। ଆତ୍ମଜ୍ଞାନୀ କର୍ଦ୍ଦମ ସମସ୍ତଙ୍କ ମନର ସଂକଳ୍ପ ଜାଣି ପାରୁଥିଲେ । ତେଣୁ ସନ୍ତାନବତୀ ହେବାପାଇଁ ନିଜ ଅର୍ଦ୍ଧାଙ୍ଗିନୀଙ୍କର ଆଗ୍ରହ ଜାଣି ସେ ତାଙ୍କଠି ନ'ଭାଗରେ ତାଙ୍କ ବୀର୍ଯ୍ୟକୁ ସ୍ଥାପନ କଲେ ।।୪୭।। କିଛିକାଳ ପରେ ଦେବହୂତିଙ୍କ ଗର୍ଭରୁ ନ'ଟି କନ୍ୟାସନ୍ତାନଙ୍କର ଜନ୍ମ ହେଲା । ସେମାନେ ସର୍ବାଙ୍ଗରେ ରୂପବତୀ ଥିଲେ ଓ ତାଙ୍କ ଦେହରୁ ରକ୍ତପଦ୍ମର ମହକ ଛୁଟୁଥିଲା ।।୪୮।।

ସୁନ୍ଦରୀ ଦେବହୂତି ଦେଖିଲେ, ତାଙ୍କ ସ୍ୱାମୀ ଗୃହତ୍ୟାଗପାଇଁ ପ୍ରସ୍ତୁତ ହେଉଛନ୍ତି । ମୁହଁରେ ହସ ଥିଲେ ମଧ୍ୟ ହୃଦୟ ତାଙ୍କର ଦୁଃଖରେ ଭାଙ୍ଗି ପଡ଼ିଲା । ସେ ଅଧୋମୁଖୀ ହୋଇ ମଣିତୁଲ୍ୟ ନିଜର ନଖରେ ଗାର ପକାଇ ବାଷ୍ପରୁଦ୍ଧ କଣ୍ଠରେ ମଧୁର

ସ୍ୱରରେ କହିଲେ, ଦେବ, ଆପଣ ମୋତେ ଦେଇଥିବା ପ୍ରତିଶ୍ରୁତି ପାଳନ କରିଛନ୍ତି । ତଥାପି ମୁଁ ଶରଣାପନ୍ନ । ମୋତେ ଅଭୟ ଦାନ କରନ୍ତୁ ॥୪୯-୫୧॥ ବ୍ରହ୍ମନ୍, ଆପଣଙ୍କର କନ୍ୟାମାନେ ନିଜ ନିଜର ଉପଯୁକ୍ତ ବର ବାଛିନେବେ । କିନ୍ତୁ ଆପଣ ବନକୁ ଚାଲିଯିବାପରେ ମୋର ଶୋକ ସନ୍ତାପ ଦୂର କରିବାପାଇଁ ମୋର ହୋଇ କିଏ ରହିବ ? ॥୫୨॥ ପ୍ରଭୁ, ଏତେକାଳ ତ ପରମାତ୍ମାଙ୍କୁ ଛାଡ଼ି ଇନ୍ଦ୍ରିୟସୁଖ ଚରିତାର୍ଥ କରିବାରେ କଟିଗଲା ॥୫୩॥ ଆପଣଙ୍କର ପରମାର୍ଥ ଭାବ ଜାଣି ନ ପାରି ଇନ୍ଦ୍ରିୟସୁଖପାଇଁ ମୁଁ ଆପଣଙ୍କ ପ୍ରତି ଆସକ୍ତ ହୋଇଗଲି । ଏବେ ଏହି ସଂସାରଭୟରୁ ମୋତେ ଉଦ୍ଧାର କରନ୍ତୁ ॥୫୪॥ ଅଜ୍ଞତାବଶତଃ ଅସତ୍‌ପୁରୁଷ ସହିତ ସଙ୍ଗ କରାଗଲେ ତାହା ସଂସାର-ବନ୍ଧନର କାରଣ ହୁଏ । ସତ୍‌ପୁରୁଷ ସହିତ ସଂଯୋଗ କଲେ ସଂସାରପ୍ରତି ଆସକ୍ତି ରହେ ନାହିଁ ॥୫୫॥ ଏହି ସଂସାରରେ ଯେଉଁ ବ୍ୟକ୍ତିର କାର୍ଯ୍ୟ ଧର୍ମପାଇଁ, ବୈରାଗ୍ୟପାଇଁ କିମ୍ବା ଭଗବତ୍‌ସେବାପାଇଁ ଉଦ୍ଦିଷ୍ଟ ନୁହେ, ସେପରି ବ୍ୟକ୍ତି ଜିଇଥିଲେ ମଧ୍ୟ ମରିଯିବା ସଙ୍ଗେ ସମାନ ॥୫୬॥ ମାୟାରେ ପଡ଼ି ମୁଁ ସେହିପରି ଏକ ବଞ୍ଚିତ ବ୍ୟକ୍ତି ହୋଇ ଆପଣଙ୍କ ପରି ମୁକ୍ତିଦାତା ସ୍ୱାମୀଙ୍କୁ ପାଇ ଏହି ସଂସାର ବନ୍ଧନରୁ ମୁକ୍ତ ହେବାପାଇଁ ଇଚ୍ଛା କରି ନାହିଁ ॥୫୭॥

## ଚତୁର୍ବିଂଶ ଅଧ୍ୟାୟ

# ଭଗବାନ କପିଳଙ୍କର ଜନ୍ମ

ସତ୍‌ସ୍ୱଭାବଯୁକ୍ତ ମନୁଙ୍କର କନ୍ୟା ଦେବହୂତି ଏହିପରି ନିର୍ବେଦ ଭାବରେ କହିବାରୁ ଦୟାଳୁ କର୍ଦମ ପୂର୍ବେ ବିଷ୍ଣୁ ଯାହା ତାଙ୍କୁ କହିଥିଲେ, ତାହା ଚିନ୍ତା କରି ତାଙ୍କୁ ଏହିପରି ଉତ୍ତର ଦେଲେ ॥୧॥ ରାଜନନ୍ଦିନି ! ନିଜକୁ ନିନ୍ଦା କରି ଏପରି ଆଉ ଦୁଃଖ କର ନାହିଁ । ଖୁବ୍ ଶୀଘ୍ର ଅକ୍ଷୟଯଶା ଭଗବାନ୍ ବିଷ୍ଣୁ ତୁମ ଗର୍ଭରେ ପ୍ରବେଶ କରିବେ ॥୨॥ ତୁମର ମଙ୍ଗଳ ହେଉ । ତୁମେ ବହୁତ ବ୍ରତ ପାଳନ କରିଚ । ବର୍ତ୍ତମାନ ତୁମେ ସଂଯମ, ନିୟମ, ତପ ଓ ଧନାଦି ଦାନଦ୍ୱାରା ଶ୍ରଦ୍ଧାର ସହିତ ଈଶ୍ୱରଙ୍କୁ ଭଜନ କର ॥୩॥ ଏହିପରି ଆରାଧନା କଲେ ଭଗବାନ ବିଷ୍ଣୁ ତୁମ ଗର୍ଭରୁ ଉତ୍ପନ୍ନ ହୋଇ ମୋର ଯଶ ବିସ୍ତାର କରିବେ ଏବଂ ବ୍ରହ୍ମଜ୍ଞାନ ଉପଦେଶ ଦେଇ ତୁମ ହୃଦୟର ଅଜ୍ଞତାରୂପ ଗ୍ରନ୍ଥିକୁ ଛେଦନ କରିବେ ॥୪॥ ପ୍ରଜାପତି କର୍ଦମଙ୍କର ଉପଦେଶକୁ ଅତିଶୟ ଶ୍ରଦ୍ଧା ଓ ସମ୍ମାନର ସହିତ ଗ୍ରହଣ କରି ଦେବହୂତି ହୃଦୟସ୍ଥ ସେହି ଶ୍ରେଷ୍ଠ ପୁରୁଷ ଭଗବାନ ବିଷ୍ଣୁଙ୍କୁ ଭଜନ କଲେ ॥୫॥

ବହୁ କାଳ ବିତିଯିବା ପରେ କାଷ୍ଠରୁ ଅଗ୍ନି ଉତ୍ପନ୍ନ ହେବାପରି କର୍ଦମଙ୍କ ବୀର୍ଯ୍ୟରୁ ଭଗବାନ ମଧୁସୂଦନ ଜନ୍ମ ହେଲେ ॥୬॥ ଆକାଶରେ ଘନ ଘନ ବାଦ୍ୟ ବାଜିବାକୁ ଲାଗିଲା । ଗନ୍ଧର୍ବମାନେ ଗାନ କରିବାକୁ ଲାଗିଲେ ଓ ଅପ୍ସରାମାନେ ଆନନ୍ଦରେ ନୃତ୍ୟ କଲେ ॥୭॥ ଦେବତାମାନେ ଆକାଶରୁ ପୁଷ୍ପବୃଷ୍ଟି କଲେ । ଜଳ ସ୍ଥଳ ଚତୁର୍ଦିଗ ଓ ସମସ୍ତଙ୍କର ମନ ପ୍ରସନ୍ନ ହେଲା ॥୮॥ ସରସ୍ୱତୀ ନଦୀ ପରିବେଷ୍ଟିତ କର୍ଦମଙ୍କର ସେହି ଆଶ୍ରମକୁ ମରୀଚି ଆଦି ଋଷିମାନଙ୍କ ସହ ବ୍ରହ୍ମା ଆସି ପହଞ୍ଚିଲେ ॥୯॥ ଶତ୍ରୁହନ୍ତା ବିଦୁର, ବ୍ରହ୍ମା ଅଜନ୍ମା, ସ୍ୱତନ୍ତ୍ର ଓ ସମସ୍ତ ବିଷୟରେ ଜ୍ଞାତା ଥିଲେ । ସେ ଜାଣିପାରିଥିଲେ ଯେ ଭଗବାନ ବିଷ୍ଣୁ ସାଂଖ୍ୟଶାସ୍ତ୍ରକୁ ଉପଦେଶ ଦେବାପାଇଁ ନିଜର ବିଶୁଦ୍ଧ ଅଂଶକଳା ନେଇ ଜନ୍ମ ଗ୍ରହଣ କରିଛନ୍ତି ॥୧୦॥ ତେଣୁ ସେ ନିର୍ମଳ ହୃଦୟରେ ଭଗବାନଙ୍କର ଏହି କଳ୍ପିତ କାର୍ଯ୍ୟକୁ ଅନୁମୋଦନ କରି ପ୍ରାଣଭରା ସନ୍ତୋଷରେ କର୍ଦମଙ୍କୁ କହିବା ଆରମ୍ଭ କଲେ ॥୧୧॥

ବ୍ରହ୍ମା କହିଲେ, ବତ୍ସ କର୍ଦମ, ତୁମେ ମୋର ଉପଦେଶକୁ ନିଷ୍କପଟଭାବରେ ଗ୍ରହଣ କରି ଏବଂ ତାକୁ ଯଥେଷ୍ଟ ମାନ୍ୟତା ଦେଇ ମୋର ଯଥାର୍ଥ ପୂଜା କରିଚ ॥୧୨॥ ଏହିପରି ଭାବରେ ପୁତ୍ର ପିତାର ସେବା କରିବା ଉଚିତ । 'ଯେ ଆଜ୍ଞା' କହି ଅତି ଶ୍ରଦ୍ଧାର ସହିତ ପିତାର ଆଦେଶକୁ ପୁତ୍ର ପାଳନ କରିବା ଉଚିତ ॥୧୩॥ ତୁମର ଏହି କନ୍ୟାମାନେ ସଚ୍ଚରିତ୍ରା ଏବଂ ସୁନ୍ଦରୀ ।

ଏମାନଙ୍କର ସନ୍ତାନମାନଙ୍କଦ୍ୱାରା ଏହି ସୃଷ୍ଟିର ଆହୁରି ଅନେକପ୍ରକାର ଅଭିବୃଦ୍ଧି ହେବ ॥୧୪॥ ତେଣୁ ଆଜି ତୁମେ ଏହି ଋଷିମୁଖ୍ୟମାନଙ୍କୁ ନିଜ ସ୍ୱଭାବ ଓ ରୁଚି ଅନୁଯାୟୀ ନିଜ କନ୍ୟାମାନଙ୍କୁ ଦାନ କର ଏବଂ ସଂସାରରେ ଯଶ ବିସ୍ତାର କର ॥୧୫॥ ମୁନି, ମୁଁ ଜାଣେ ଯେ ଆଦିପୁରୁଷ ଭଗବାନ ପ୍ରାଣୀମାନଙ୍କର ସମସ୍ତ ଅଭୀଷ୍ଟ ପୂରଣ କରିବାପାଇଁ କପିଳରୂପରେ ଦେହଧାରଣ କରି ଅବତୀର୍ଣ୍ଣ ହୋଇଛନ୍ତି ॥୧୬॥ ବ୍ରହ୍ମା ଦେବହୂତିଙ୍କୁ କହିଲେ, ମନୁପୁତ୍ରୀ, ତୁମ ଗର୍ଭରେ କୈଟଭଦୈତ୍ୟହନ୍ତା ଭଗବାନ ବିଷ୍ଣୁ ଅବତୀର୍ଣ୍ଣ ହୋଇଛନ୍ତି । ସ୍ୱର୍ଣ୍ଣକେଶ, ପଦ୍ମନେତ୍ର, ପଦ୍ମଚିହ୍ନିତ ପଦ୍ମପାଦ; ଏ ହେଉଛନ୍ତି ସେହି ଭଗବାନ । ପ୍ରତ୍ୟକ୍ଷ ଓ ପରୋକ୍ଷ ଜ୍ଞାନଯୋଗଦ୍ୱାରା କର୍ମବାସନାର ମୂଳ ଅଜ୍ଞାନ ଓ ସଂଶୟର ଗ୍ରନ୍ଥିକୁ ଛେଦନ କରି ସେ ଏହି ପୃଥିବୀରେ ବିଚରଣ କରିବେ । ସେ ସିଦ୍ଧପୁରୁଷମାନଙ୍କ ମୁଖ୍ୟଭାବରେ ସାଂଖ୍ୟାଚାର୍ଯ୍ୟମାନଙ୍କଦ୍ୱାରା ପୂଜିତ ହୋଇ ସଂସାରରେ କପିଳ ନାମରେ ବିଖ୍ୟାତ ହେବେ ଏବଂ ତୁମର କୀର୍ତ୍ତି ବିସ୍ତାର କରିବେ ॥୧୭-୧୯॥

ମୈତ୍ରେୟ କହିଲେ, ଜଗତ୍‌ସ୍ରଷ୍ଟା ବ୍ରହ୍ମା ଏହିପରି ସେହି ଦୁଇ ଜଣଙ୍କୁ ଆଶୀର୍ବାଦ କରି ନାରଦଙ୍କୁ ଧରି ସନତ୍‌କୁମାର ଆଦି ଋଷିମାନଙ୍କ ସହିତ ହଂସଯାନରେ ବସି ନିଜର ପରମ ଧାମକୁ ଯାତ୍ରା କଲେ ॥୨୦॥ ବିଦୁର, ବ୍ରହ୍ମା ଚାଲିଯିବା ପରେ ତାଙ୍କ ଆଦେଶକୁ ମାନି କର୍ଦ୍ଦମ ମୁନି ନିଜ କନ୍ୟାମାନଙ୍କୁ ବିଶ୍ୱସ୍ରଷ୍ଟା ଋଷିମାନଙ୍କୁ ପ୍ରଦାନ କଲେ ॥୨୧॥ ମରୀଚିଙ୍କୁ କଳା, ଅତ୍ରିଙ୍କୁ ଅନସୂୟା, ଅଙ୍ଗିରାଙ୍କୁ ଶ୍ରଦ୍ଧା, ପୁଲସ୍ତ୍ୟଙ୍କୁ ହବିର୍ଭୂ, ପୁଲହଙ୍କୁ ଗତି, କ୍ରତୁଙ୍କୁ କ୍ରିୟା, ଭୃଗୁଙ୍କୁ ଖ୍ୟାତି ଓ ବଶିଷ୍ଠଙ୍କୁ ଅରୁନ୍ଧତୀ -- ଏହିପରି ଆଠ ଜଣ କନ୍ୟାଙ୍କୁ ଆଠ ଜଣ ଋଷିଶ୍ରେଷ୍ଠଙ୍କୁ ପ୍ରଦାନ କଲେ ॥୨୨-୨୩॥ ନବମ କନ୍ୟା ଶାନ୍ତିଙ୍କୁ ଅଥର୍ବା ଋଷିଙ୍କୁ ପ୍ରଦାନ କଲେ, ଯାହାଦ୍ୱାରା ଯଜ୍ଞର ବିସ୍ତାର ହୋଇପାରିବ । କନ୍ୟାମାନଙ୍କୁ ବିବାହ ଦେଇ ଏହି ଋଷିମାନଙ୍କୁ ତାଙ୍କ ପତ୍ନୀମାନଙ୍କ ସହିତ ସେ ବହୁ ସତ୍କାର କଲେ ॥୨୪॥ ବିଦୁର, ତା'ପରେ ଏହି ବିବାହିତ ଦମ୍ପତିମାନେ କର୍ଦ୍ଦମଙ୍କର ଅନୁମତି ନେଇ ଆନନ୍ଦରେ ସସ୍ତ୍ରୀକ ନିଜ ନିଜର ଆଶ୍ରମମଣ୍ଡଳକୁ ପ୍ରସ୍ଥାନ କଲେ ॥୨୫॥

ଦେବାଧିରାଜ ବିଷ୍ଣୁ ସ୍ୱୟଂ ତାଙ୍କ ଗୃହରେ ଅବତୀର୍ଣ୍ଣ ହୋଇଥିବା ଜାଣି କର୍ଦ୍ଦମ ଏକାନ୍ତରେ ତାଙ୍କ ପାଖକୁ ଯାଇ ପ୍ରଣାମପୂର୍ବକ କହିଲେ, ସଂସାରରେ ନିଜ ପାପରେ ଦଗ୍ଧ ହେଉଥିବା ଲୋକମାନଙ୍କପ୍ରତି ବହୁକାଳ ପରେ ଦେବତାମାନେ ପ୍ରସନ୍ନ ହୁଅନ୍ତି ॥୨୬-୨୭॥ ଜନ୍ମଜନ୍ମାନ୍ତରର ସିଦ୍ଧି, ଯୋଗ ଓ ସମାଧିଦ୍ୱାରା ଭକ୍ତ ଯୋଗୀମାନେ ଯାହାଙ୍କ ପାଦପଦ୍ମକୁ ଏକାନ୍ତରେ ଦେଖିବାକୁ ଚେଷ୍ଟା କରନ୍ତି, ଭକ୍ତପକ୍ଷପାତୀ ସେହି ଭଗବାନ୍ ଆମର କୌଣସି ଦୋଷ ନ ଧରି ଆମମାନଙ୍କପରି ଏକ ସାଧାରଣ ଗୃହରେ ଜନ୍ମଗ୍ରହଣ କରିଛନ୍ତି ॥୨୮-୨୯॥ ହେ ମାନଦ, ଆପଣ ନିଜ ଅମୃତମୟ ବଚନକୁ ସତ୍ୟ କରିବାପାଇଁ ଜ୍ଞାନର ବିସ୍ତାର ନିମନ୍ତେ ମୋ ଗୃହରେ ଅବତୀର୍ଣ୍ଣ ହୋଇଛନ୍ତି ॥୩୦॥ ଭଗବାନ, ଆପଣ ନିଜେ ଅରୂପ । କିନ୍ତୁ ଯେଉଁ ଯେଉଁ ରୂପ ଭକ୍ତମାନଙ୍କୁ ଭଲ ଲାଗିବ, ଆପଣ ସେହି ସେହି ରୂପ ଧାରଣ କରନ୍ତି ॥୩୧॥ ସତ୍ୟଲାଭ ଆଶାରେ ପଣ୍ଡିତମାନେ ସର୍ବଦା ଆପଣଙ୍କ ପାଦପଦ୍ମକୁ ବନ୍ଦନା କରନ୍ତି । ଆପଣ ଐଶ୍ୱର୍ଯ୍ୟ, ବୈରାଗ୍ୟ, ଯଶ, ଜ୍ଞାନ, ବଳବୀର୍ଯ୍ୟ ଓ ସୌନ୍ଦର୍ଯ୍ୟର ଆଧାର । ମୁଁ ଆପଣଙ୍କ ଶରଣାଗତ ॥୩୨॥ ଆପଣ ସ୍ୱୟଂ ପରମେଶ୍ୱର, ପ୍ରକୃତି ଓ ପୁରୁଷର ସ୍ୱରୂପ, ମହତ୍ତତ୍ତ୍ୱ, କାଳ, ସର୍ବଜ୍ଞ, ତ୍ରିବିଧ ଅହଙ୍କାର ଏବଂ ଲୋକାତ୍ମକ ଓ କାଳାତ୍ମକ ରୂପରେ ନିଜ ଶକ୍ତିଦ୍ୱାରା ନିଜ ମଧ୍ୟରେ ଏହି ପ୍ରପଞ୍ଚକୁ ଲୀନ କରି ଦିଅନ୍ତି । ସେହି ସ୍ୱାଧୀନ ଶକ୍ତିର ଅଧିକାରୀ ଭଗବାନ କପିଳଙ୍କର ମୁଁ ଶରଣାଗତ ॥୩୩॥ ପ୍ରଭୁ, ଆପଣଙ୍କ କରୁଣାରୁ ମୁଁ ସମସ୍ତ ଋଣରୁ ମୁକ୍ତ । ମୋର ସମସ୍ତ ମନୋରଥ ପୂର୍ଣ୍ଣ ହୋଇଛି । ବର୍ତ୍ତମାନ ମୁଁ ନିଶ୍ଚିନ୍ତ ହୋଇ ଆପଣଙ୍କ ନାମକୁ ହୃଦୟରେ ଧରି ଯେପରି ଚାରିଆଡ଼େ ବିଚରଣ କରିପାରିବି, ମୋତେ ସେହି ଆଜ୍ଞା ହେଉ ॥୩୪॥

ଶ୍ରୀ ଭଗବାନ କହିଲେ, ବୈଦିକ ହେଉ ବା ଲୌକିକ ହେଉ, ସମସ୍ତ କ୍ଷେତ୍ରରେ ମୋର ଉକ୍ତି ହିଁ ପ୍ରମାଣ ବୋଲି ଧରାଯାଏ । ମୁନି, ତୁମକୁ ମୁଁ କହିଥିବାମତେ ତୁମର ପୁତ୍ର ହୋଇ ଜନ୍ମ ହେଲି ॥୩୫॥ ଯେଉଁମାନେ ବିଷୟବାସନାରୁ ମୁକ୍ତି

କାମନା କରନ୍ତି, ସେହିମାନଙ୍କପାଇଁ ମୁଁ ଏ ସଂସାରରେ ଜନ୍ମଗ୍ରହଣ କରିଚି । ସେହିମାନଙ୍କର ଆତ୍ମସାକ୍ଷାତ୍‌କାର ପାଇଁ ମୁଁ ସାଂଖ୍ୟଦର୍ଶନର ତତ୍ତ୍ୱସବୁ ବ୍ୟାଖ୍ୟା କରିବି ॥୩୬॥ ଆତ୍ମଦର୍ଶନର ପ୍ରକୃଷ୍ଟ ମାର୍ଗ ଚର୍ଚ୍ଚାର ଅଭାବରୁ କାଳକ୍ରମେ ନଷ୍ଟ ହୋଇ ଯାଇଚି । ତାକୁ ପୁଣି ଥରେ ପ୍ରବର୍ତ୍ତିତ କରିବାପାଇଁ ମୁଁ ଏହି ଦେହଧାରଣ କରିଚି ବୋଲି ତୁମେ ଜାଣି ରଖ ॥୩୭॥ ମୁଁ ତୁମକୁ ଅନୁମତି ଦେଉଚି, ତୁମେ ନିଜ ଇଚ୍ଛା ଅନୁସାରେ ଯାଅ ଏବଂ ତୁମର ସମସ୍ତ କର୍ମ ମୋତେ ଅର୍ପଣ କର । ଦୁର୍ଜୟ ମୃତ୍ୟୁକୁ ଜୟ କରି ଆତ୍ମତତ୍ତ୍ୱ ଲାଭ କରିବାପାଇଁ ମୋତେ ହିଁ ଭଜନ କର ॥୩୮॥ ସର୍ବାନ୍ତର୍ଯାମୀ ରୂପେ ସମସ୍ତ ପ୍ରାଣୀଙ୍କ ଅନ୍ତରରେ ମୁଁ ଅବସ୍ଥିତ । ମୁଁ ସ୍ୱୟଂ ପ୍ରକାଶମାନ । ନିଜ ଆତ୍ମାରେ ହିଁ ମୋତେ ଦର୍ଶନ କର ଏବଂ ଶୋକଶୂନ୍ୟ ହୋଇ ଅଭୟପଦ ଲାଭ କର ॥୩୯॥ ସମସ୍ତ କର୍ମବନ୍ଧନରୁ ମୁକ୍ତିପାଇଁ ମାତା ଦେବହୂତିଙ୍କୁ ମୁଁ ଆଧ୍ୟାତ୍ମିକ ବିଦ୍ୟା ପ୍ରଦାନ କରିବି, ଯାହାଦ୍ୱାରା ସେ ସଂସାର ଭୟକୁ ତରିଯିବେ ॥୪୦॥

ମୈତ୍ରେୟ କହିଲେ, ଏହିପରି କପିଳ ଭଗବାନ ପ୍ରଜାପତି କର୍ଦ୍ଦମଙ୍କୁ ସମ୍ବୋଧିତ କରି ଆନନ୍ଦିତ କଲେ । କପିଳଙ୍କୁ ସେ ପ୍ରଦକ୍ଷିଣ କରି ଆନନ୍ଦରେ ବନକୁ ଚାଲିଗଲେ ॥୪୧॥ ଏହି ସର୍ବତ୍ୟାଗୀ ସନ୍ନ୍ୟାସୀଙ୍କର ଚୁଲି ଓ ଚାଳ ମଧ୍ୟ ରହିଲା ନାହିଁ । ସେ ଏକାନ୍ତ ନିଃସଙ୍ଗ ଭାବରେ ଭଗବାନଙ୍କୁ ଆଶ୍ରୟ କରି ମୌନବ୍ରତ ଅବଲମ୍ବନପୂର୍ବକ ପୃଥିବୀରେ ଭ୍ରମଣ କରିବାକୁ ଲାଗିଲେ ॥୪୨॥ ଯେ ସତ୍ ଓ ଅସତ୍‌ର ଈଶ୍ୱରେ, ଯେ ନିର୍ଗୁଣ ହେଲେ ମଧ୍ୟ ସତ୍ତ୍ୱାଦି ଗୁଣର ପ୍ରକାଶକ, ଅନନ୍ୟ ଭକ୍ତିଦ୍ୱାରା ଯେ ପ୍ରସନ୍ନ ହୁଅନ୍ତି, ସେହି ପରଂବ୍ରହ୍ମଙ୍କ ଠାରେ ସେ ନିଜର ଚିତ୍ତକୁ ନିୟୋଜିତ କଲେ ॥୪୩॥ ତରଙ୍ଗହୀନ ସମୁଦ୍ର ପରି କର୍ଦମ ଋଷି ଅତିଶୟ ଶାନ୍ତ ଦେଖାଯାଉଥିଲେ । ତାଙ୍କର କୌଣସି ଅହଙ୍କାର ନ ଥିଲା । ବିଷୟଭୋଗ ପ୍ରତି ମମତା ନ ଥିଲା; ସୁଖ ଦୁଃଖାଦି ଦ୍ୱନ୍ଦ୍ୱରୁ ସେ ମୁକ୍ତ ଥିଲେ । ସମଦର୍ଶୀ ହୋଇ ସେ ସମସ୍ତଙ୍କ ମଧ୍ୟରେ ନିଜର ଆତ୍ମାକୁ ଦର୍ଶନ କଲେ । ସେହି ଧୀର ଶାନ୍ତ ମୁନି ସର୍ବାନ୍ତର୍ଯାମୀ ପରମାତ୍ମା ବାସୁଦେବଙ୍କଠାରେ ଚିତ୍ତ ସ୍ଥିର ରଖି ସମସ୍ତ ବନ୍ଧନରୁ ମୁକ୍ତ ହୋଇଗଲେ । ସେ ସମସ୍ତ ପ୍ରାଣୀଙ୍କ ମଧ୍ୟରେ ଆତ୍ମସ୍ୱରୂପ ଭଗବାନଙ୍କୁ ଏବଂ ଭଗବାନଙ୍କ ଠାରେ ସମସ୍ତ ପ୍ରାଣୀଙ୍କୁ ଦେଖିପାରିଲେ ॥୪୪-୪୬॥ ଏହିପରି ଇଚ୍ଛା ଓ ଦ୍ୱେଷ ରହିତ ହୋଇ ଏବଂ ସର୍ବତ୍ର ସମଚେତା ଓ ଭଗବତ୍‌ଭକ୍ତିଯୁକ୍ତ ହୋଇ କର୍ଦମ ଋଷି ପରମ ଗତିକୁ ପ୍ରାପ୍ତ ହେଲେ ॥୪୭॥

### ପଞ୍ଚବିଂଶ ଅଧ୍ୟାୟ

## ମାତାଙ୍କୁ ଭକ୍ତିଯୋଗର ମହିମାବର୍ଣ୍ଣନ

ଶୌନକ କହିଲେ, ସାଂଖ୍ୟଦର୍ଶନର ପ୍ରବକ୍ତା କପିଳ ଭଗବାନ ସ୍ୱୟଂ ଅଜନ୍ମା ହେଲେ ମଧ୍ୟ ସାକ୍ଷାତ୍‌ରେ ଲୋକମାନଙ୍କୁ ଆତ୍ମଜ୍ଞାନ ଉପଦେଶ ଦେବାପାଇଁ ନିଜ ମାୟାରେ ଜନ୍ମ ଗ୍ରହଣ କଲେ ॥୧॥ ଭଗବାନଙ୍କର ବହୁତ ଚରିତ ମୁଁ ଶୁଣିଛି, କିନ୍ତୁ ଯୋଗୀମାନଙ୍କ ମଧ୍ୟରେ ବରିଷ୍ଠ ଏହି ପୁରୁଷଶ୍ରେଷ୍ଠ କପିଳଙ୍କ ସମ୍ପର୍କରେ ଯେତେ ଶୁଣିଲେ ମଧ୍ୟ ମୋର ପ୍ରାଣ ତୃପ୍ତ ହୁଏ ନାହିଁ ॥୨॥ ଭଗବାନ ଭକ୍ତମାନଙ୍କର ଇଚ୍ଛା ପୂରଣ କରିବାପାଇଁ ଯୋଗମାୟା ବଳରେ ଭିନ୍ନ ଭିନ୍ନ ଶରୀର ଧାରଣ କରନ୍ତି । ଶ୍ରଦ୍ଧାର ସହିତ ମୁଁ ତାଙ୍କର ସେହି ସବୁ ଲୀଳା ଶୁଣିବାକୁ ଇଚ୍ଛା କରୁଛି । ଆପଣ ତାହା ବର୍ଣ୍ଣନା କରନ୍ତୁ ॥୩॥ ସୂତ କହିଲେ, ଆପଣମାନେ ମୋତେ ଯେପରି ପଚାରୁଛନ୍ତି, ବିଦୁର ସେହିପରି ପ୍ରଶ୍ନ କରିଥିଲେ ଏବଂ ସେଥିରେ ସନ୍ତୁଷ୍ଟ ହୋଇ ବ୍ୟାସଦେବଙ୍କ ସଖା ମୈତ୍ରେୟ ଆତ୍ମଜ୍ଞାନ ବିଷୟରେ ଏହିପରି ଉତ୍ତର ଦେଇଥିଲେ ॥୪॥

ମୈତ୍ରେୟ କହିଲେ, ପିତା କର୍ଦ୍ଦମ ଅରଣ୍ୟକୁ ପ୍ରସ୍ଥାନ କରିବାପରେ, ମାତାଙ୍କର ପ୍ରିୟ କାମନା କରି ଭଗବାନ କପିଳ ସେହି ବିନ୍ଦୁ ସରୋବର ତୀର୍ଥରେ ଅବସ୍ଥାନ କରିଥିଲେ ॥୫॥ ନୂତନ ତତ୍ତ୍ୱଜ୍ଞାନର (ସାଂଖ୍ୟଦର୍ଶନ) ପ୍ରବକ୍ତା ଭଗବାନ କପିଳ କୌଣସି କର୍ମ ନ କରି କେବଳ ବସିଥିବାବେଳେ ମାତା ଦେବହୂତିଙ୍କର ବ୍ରହ୍ମା କହିଥିବା କଥା (ମନୁପୁତ୍ରୀ ! ତୁମ ଗର୍ଭରେ କୈଟଭାରି ଭଗବାନ ପ୍ରବେଶ କରିଛନ୍ତି) ମନେ ପଡ଼ିଲା ॥୬॥ ଦେବହୂତି କହିଲେ, ହେ ସର୍ବଜ୍ଞ, ହେ ପ୍ରଭୁ ! ବିଷୟ ବାସନାରେ ମୁଁ ସମ୍ପୂର୍ଣ୍ଣ କ୍ଳାନ୍ତଶ୍ରାନ୍ତ ହୋଇପଡ଼ିଛି ଏବଂ ଏହି ବାସନାର ପୂରଣପାଇଁ ତମୋରୂପ ଅଜ୍ଞାନ ଅନ୍ଧକାର ମଧ୍ୟକୁ ମୁଁ ଠେଲି ହୋଇ ଯାଇଛି ॥୭॥ ଯେଉଁ ଅନ୍ଧକାରକୁ ପାର ହେବା ସହଜ ନୁହେଁ; ତାହା ପାର ହେବାପାଇଁ ଆପଣଙ୍କ ଅନୁଗ୍ରହରୁ ଦିବ୍ୟଦୃଷ୍ଟି ମୁଁ ଲାଭ କରିଛି ॥୮॥ ଆପଣ ସମସ୍ତ ପ୍ରାଣୀଙ୍କର ଈଶ୍ୱର ଆଦିପୁରୁଷ ଭଗବାନ । ତମସାଚ୍ଛନ୍ନ ଏହି ଲୋକର ଚକ୍ଷୁସ୍ୱରୂପ ସୂର୍ଯ୍ୟରୂପେ ଉଦିତ ହୋଇଛନ୍ତି ॥୯॥ ଦେବ ! ମୋର ଏହି ମହାମୋହ ଆପଣ ହିଁ ଦୂର କରିପାରିବେ । କାରଣ 'ମୁଁ ଓ ମୋର' ବୋଲି ଯେଉଁ ଦୁର୍ଭାବନା ମୋତେ ଗ୍ରାସ କରିଛି, ତାହା ହିଁ ଆପଣଙ୍କର ମାୟା ॥୧୦॥ ନିଜ ଭକ୍ତମାନଙ୍କ ନିମନ୍ତେ ଏହି ସଂସାର ଜଞ୍ଜାଳରୂପକ ବିଷବୃକ୍ଷକୁ ଛେଦନ କରିବାପାଇଁ ଆପଣ କୁଠାରସ୍ୱରୂପ । ଆପଣଙ୍କୁ ଶରଣବତ୍ସଳ ଜାଣି ପ୍ରକୃତି ଓ ପୁରୁଷ ସମ୍ପର୍କର ଜ୍ଞାନ ଲାଭ ନିମନ୍ତେ ମୁଁ ଆପଣଙ୍କର ଶରଣାଗତ ହୋଇଛି । ସତ୍ ଧର୍ମଜ୍ଞମାନଙ୍କ ମଧ୍ୟରେ ଆପଣ ଶ୍ରେଷ୍ଠ । ଆପଣଙ୍କୁ ମୁଁ ନମସ୍କାର କରୁଛି ॥୧୧॥ ମୈତ୍ରେୟ କହିଲେ, ଏହିପରି ନିଜର ମାତା ଯେଉଁ ଅଭିଳାଷ ବ୍ୟକ୍ତ କଲେ, ସମସ୍ତ ଲୋକଙ୍କ ମୋକ୍ଷମାର୍ଗର ସହାୟକ ସେହି ପ୍ରଶ୍ନକୁ ମନେ ମନେ ପ୍ରଶଂସା କରି ସତ୍‌ପୁରୁଷମାନଙ୍କର ଏକମାତ୍ର ଗତି ଭଗବାନ କପିଳ ଅଳ୍ପ ଅଳ୍ପ ହସି ତାଙ୍କୁ ଏହିପରି ଉତ୍ତର ଦେଲେ ॥୧୨॥

ଶ୍ରୀ ଭଗବାନ କହିଲେ, ମାତା, ମୋ' ମତରେ ଲୋକମାନଙ୍କ ମଙ୍ଗଳପାଇଁ ଆଧ୍ୟାତ୍ମିକ ଯୋଗ ହିଁ ଏକମାତ୍ର ପନ୍ଥା ଯଦ୍ଦ୍ୱାରା ଦୁଃଖ ଏବଂ ସୁଖ ଉଭୟରୁ ନିଷ୍କୃତି ମିଳିଥାଏ ॥୧୩॥ ସାଧ୍ୱୀ ! ପୂର୍ବେ ଏ ବିଷୟରେ ଶୁଣିବାପାଇଁ ଇଚ୍ଛା କରି ଯେଉଁ ଋଷିମାନେ ମୋ ପାଖକୁ ଆସିଥିଲେ, ସେମାନଙ୍କୁ ହିଁ ସର୍ବାଙ୍ଗସମ୍ପନ୍ନ ଯୋଗ ବିଷୟରେ ଯାହା ମୁଁ କହିଥିଲି, ବର୍ତ୍ତମାନ ତୁମକୁ ତାହା କହୁଛି ॥୧୪॥ ପ୍ରଥମ ହେଉଛି ମନ, ଯେ ହେଉଛି ଜୀବର ଆସକ୍ତି ଓ ମୁକ୍ତିପାଇଁ ଦାୟୀ । ବିଷୟରେ ଆସକ୍ତ ହେଲେ ମନ ଜୀବର ବନ୍ଧନର କାରଣ ହୁଏ । ପରମାତ୍ମାଙ୍କଠାରେ ଅନୁରକ୍ତ ହେଲେ ତାହା ମୋକ୍ଷର ସହାୟକ ହୋଇଥାଏ ॥୧୫॥ 'ମୁଁ' ଏବଂ 'ମୋର' ଏହି ଅଭିମାନ ଫଳରେ ଯେଉଁ କାମ ଲୋଭ ଆଦି ଦୋଷ ଜାତ ହୁଏ, ସେଥିରୁ ମୁକ୍ତ ହେଲେ ମନ ସୁଖ ଓ ଦୁଃଖରେ ଅବିଚଳିତ ରହି ଶୁଦ୍ଧ ଓ ନିର୍ମଳ ହୁଏ ॥୧୬॥ ସେତେବେଳେ ଜୀବ ଜ୍ଞାନ, ବୈରାଗ୍ୟ ଓ ଭକ୍ତିଯୁକ୍ତ ହୋଇ ସର୍ବଦା ନିଜକୁ ଅଣୁପରି ସୂକ୍ଷ୍ମ ଓ ଅଖଣ୍ଡ ଆତ୍ମଜ୍ୟୋତିରେ ଆଲୋକିତ ହେବାର ଦେଖେ ଏବଂ ଉଦାସୀନ ଭାବରେ ପ୍ରକୃତିର ସମସ୍ତ ଶକ୍ତି ନଷ୍ଟ ହୋଇଥିବାର ଅନୁଭବ କରେ ॥୧୭-୧୮॥ ସମସ୍ତ ଜଗତର ଆତ୍ମାସ୍ୱରୂପ ଭଗବାନଙ୍କ ଠାରେ ଭକ୍ତିଯୁକ୍ତ ହେବା ପରେ ବ୍ରହ୍ମପ୍ରାପ୍ତି ନିମନ୍ତେ ଯୋଗୀମାନଙ୍କପାଇଁ ଏହାଠାରୁ ଉତ୍କୃଷ୍ଟତର ଅନ୍ୟ କୌଣସି ମଙ୍ଗଳମୟ ପନ୍ଥା ଅଛି ବୋଲି ସେ ଅନୁଭବ କରେ ନାହିଁ ॥୧୯॥

ବିବେକୀ ଲୋକମାନେ କହନ୍ତି, ଆସକ୍ତି ହିଁ ଆତ୍ମାକୁ ବାନ୍ଧି ରଖେ, ତାହା ଛିଣ୍ଡେ ନାହିଁ । କିନ୍ତୁ ଏହି ଆସକ୍ତି ଯଦି ସାଧୁମହାତ୍ମାମାନଙ୍କଠାରେ ହୁଏ, ତା'ହେଲେ ତାହା ମୋକ୍ଷର ଦ୍ୱାର ଖୋଲିଦିଏ ॥୨୦॥ ଯେଉଁ ବ୍ୟକ୍ତି ସହିଷ୍ଣୁ, ଦୟାଳୁ, ସମସ୍ତ ପ୍ରାଣୀଙ୍କର ବନ୍ଧୁ, ଅଜାତଶତ୍ରୁ, ଶାନ୍ତ, ନିଜେ ସାଧୁଭାବରେ ଚଳେ, ସାଧୁମାନଙ୍କୁ ସମ୍ମାନ ଦିଏ ଏବଂ ଅନନ୍ୟଭାବରେ ମୋତେ ଭକ୍ତି କରେ, ମୋ'ପାଇଁ ସମସ୍ତ କର୍ମକୁ, ଏପରିକି ବନ୍ଧୁ ସ୍ୱଜନମାନଙ୍କୁ ମଧ୍ୟ ତ୍ୟାଗ କରିପାରେ ଏବଂ ମୋର ଆଶ୍ରିତ ହୋଇ ମୋର ପବିତ୍ର ମଧୁର ଚରିତକୁ ଶ୍ରବଣ ଓ କୀର୍ତ୍ତନ କରେ, ସେହିପରି ମୋଠାରେ ଅନୁରକ୍ତ ବ୍ୟକ୍ତିକୁ ସଂସାରର କୌଣସିପ୍ରକାର ତାପ କଷ୍ଟ ଦେଇପାରେ ନାହିଁ ॥୨୧-୨୩॥ ସାଧ୍ୱୀ ! ସମସ୍ତ ଆସକ୍ତି ରହିତ ଏହି ସାଧୁ ପୁରୁଷମାନଙ୍କର ସଙ୍ଗ ତୁମର ପ୍ରାର୍ଥନୀୟ । କାରଣ ଏଥିରେ ସଙ୍ଗଦୋଷ ରହେ ନାହିଁ ॥୨୪॥ ସତ୍‌ସଙ୍ଗଦ୍ୱାରା ମୋର ବୀର୍ଯ୍ୟବୋଧଜନକ ବିଭିନ୍ନ ଲୀଳା ହୃଦୟ

ଓ କର୍ଣ୍ଣପାଇଁ ରସାୟନ ହୋଇଥାଏ ଏବଂ ତାହାର ସେବନଦ୍ୱାରା ଶୀଘ୍ର ମୋକ୍ଷମାର୍ଗରେ କ୍ରମଶଃ ଶ୍ରଦ୍ଧା, ରତି ଏବଂ ଭକ୍ତିର କାରଣ ହୁଏ ।।୨୫।। ମୋର ସୃଷ୍ଟି ଆଦି ଲୀଳା ଚିନ୍ତା କରିବାଦ୍ୱାରା ଯେଉଁ ଭକ୍ତି ଜାତ ହୁଏ, ତା'ଫଳରେ ଇନ୍ଦ୍ରିୟସୁଖ ପ୍ରତି ବିରାଗ ଜନ୍ମେ । ଏହି ବିରାଗଦ୍ୱାରା ମୋ'ଠାରେ ଚିତ୍ତ ସ୍ଥିର ରହେ ଏବଂ ଯୋଗମାର୍ଗରେ ମନୁଷ୍ୟର ସାଧନା ସହଜ ହୋଇଯାଏ ।।୨୬।। ପ୍ରକୃତିଜାତ ଗୁଣ (ବିଷୟାଦି) ମାନଙ୍କଠାରୁ ଦୂରରେ ରହି ବୈରାଗ୍ୟଯୁକ୍ତ ଜ୍ଞାନଦ୍ୱାରା, ଯୋଗଦ୍ୱାରା ଏବଂ ଭକ୍ତିଦ୍ୱାରା ଜୀବ ଏହି ଶରୀରମଧ୍ୟରେ ଅନ୍ତରାତ୍ମାସ୍ୱରୂପ ମୋତେ ଲାଭ କରିପାରେ ।।୨୭।। ଦେବହୂତି କହିଲେ, ଭଗବାନ, ଆପଣଙ୍କପ୍ରତି ମୋର କିପରି ଭକ୍ତି ରହିବା ଉଚିତ, ଯାହା କି ମୋ ପକ୍ଷରେ ସମ୍ଭବ ହୋଇପାରିବ ଏବଂ ଯଦ୍ଦ୍ୱାରା ମୁଁ ଆପଣଙ୍କର ମୋକ୍ଷପଦ ସହଜରେ ଲାଭ କରିପାରିବି ? ।।୨୮।। ଆପଣ ସ୍ୱୟଂ ନିର୍ବାଣସ୍ୱରୂପ । ଆପଣଙ୍କ କଥିତ କେଉଁ ଯୋଗମାର୍ଗରେ ଏହି ପଦ ପ୍ରାପ୍ତ ହୋଇପାରିବ ଏବଂ ସେହି ଯୋଗରେ କେତୋଟି ଅଙ୍ଗ ଅଛି ? ।।୨୯।। ହେ ଶ୍ରୀହରି, ମୋ ପରି ଅଳ୍ପବୁଦ୍ଧି ବ୍ୟକ୍ତି କିପରି ଏହି ଦୁର୍ବୋଧ୍ୟ ବିଷୟକୁ ସହଜରେ ବୁଝିପାରିବ, ଅନୁଗ୍ରହପୂର୍ବକ ମୋତେ ତାହା ବୁଝାଇ ଦିଅନ୍ତୁ ।।୩୦।।

ମୈତ୍ରେୟ କହିଲେ, ଗର୍ଭଧାରିଣୀ ମାତାଙ୍କର ଅଭିପ୍ରାୟ ଜାଣି କପିଳଙ୍କର ହୃଦୟ ସ୍ନେହରେ ଭରିଗଲା । ସାଂଖ୍ୟ ନାମରେ ଖ୍ୟାତ ଭକ୍ତିବିସ୍ତାରକାରୀ ଯୋଗଶାସ୍ତ୍ରର ତତ୍ତ୍ୱମାନଙ୍କୁ ସେ ଉପଦେଶ ଦେବା ଆରମ୍ଭ କଲେ ।।୩୧।। ଭଗବାନ କପିଳ କହିଲେ, ମାତା ! ଇନ୍ଦ୍ରିୟମାନଙ୍କର ଧର୍ମ ହେଉଛି, ସ୍ୱ ସ୍ୱ ଅଧିଷ୍ଠାତ୍ରୀ ଦେବତାମାନଙ୍କଦ୍ୱାରା ପ୍ରେରିତ ହୋଇ କାର୍ଯ୍ୟ କରିବା । କିନ୍ତୁ ଏହି ସ୍ୱାଭାବିକ ବୃତ୍ତି ଯଦି ନିଷ୍କାମ ହୁଏ ଏବଂ ଭଗବାନଙ୍କପ୍ରତି ଅନନ୍ୟ ନିଷ୍ଠାରେ କରାଯାଏ, ତା'ହେଲେ ଖାଦ୍ୟ ବସ୍ତୁକୁ ଯେପରି ଜଠରାନଳ ଦଗ୍ଧ କରିଦିଏ, ସେହିପରି ଭଗବତ୍‌ଭକ୍ତିଦ୍ୱାରା ଏହି ବିଷୟଯୁକ୍ତ ଶରୀରର କୌଣସି ସତ୍ତା ରହେ ନାହିଁ ।।୩୨-୩୩।। ମୋର ଆଉ କିଛି ଭକ୍ତ ଅଛନ୍ତି ଯେଉଁମାନେ ଅନ୍ୟମାନଙ୍କ ସହିତ ମିଶି ମୋର ଗୌରବାବହ ଲୀଳାମାନଙ୍କୁ କୀର୍ତ୍ତନ କରନ୍ତି, ସେମାନେ ମୋ ସହିତ ଲୀନ ହୋଇ ମୋକ୍ଷର (ସାଯୁଜ୍ୟ ମୋକ୍ଷ) ମଧ୍ୟ ଇଚ୍ଛା କରନ୍ତି ନାହିଁ ।।୩୪।। ମାତା ! ସେହି ଭକ୍ତମାନେ ସୁନ୍ଦର ଅରୁଣନୟନଯୁକ୍ତ ମୋର ପ୍ରସନ୍ନ ମୁଖକୁ ଏବଂ ବରଦାୟକ ଦିବ୍ୟରୂପକୁ ଦର୍ଶନ କରନ୍ତି ଏବଂ ମୋ ସହିତ ଆନନ୍ଦରେ ବାର୍ତ୍ତାଳାପ କରନ୍ତି ।।୩୫।। ମୋର ଦର୍ଶନୀୟ ଅବୟବ, ଉଦାର ହାସ୍ୟବିଳାସ, ମନୋହର କଟାକ୍ଷ ଓ ସୁମଧୁର ବାଣୀ ସେମାନଙ୍କୁ ଏପରି ଆକୃଷ୍ଟ କରେ ଯେ ମୋଠାରେ ସେମାନେ ତାଙ୍କର ମନଃପ୍ରାଣ ଢାଳି ଦିଅନ୍ତି । ସେମାନେ ଇଚ୍ଛା କରୁ ନ ଥିଲେ ମଧ୍ୟ ମୁଁ ସେମାନଙ୍କୁ ଭକ୍ତି ଓ ମୁକ୍ତି (ପରମଗତି) ପ୍ରଦାନ କରେ ।।୩୬।। ସେମାନଙ୍କର ଅବିଦ୍ୟା ଦୂର ହେବାପରେ ସତ୍ୟଲୋକର ବିଭବ, ଅଷ୍ଟସିଦ୍ଧି, ନବନିଧି, ଏପରିକି ବୈକୁଣ୍ଠର ଐଶ୍ୱର୍ଯ୍ୟକୁ ମଧ୍ୟ ସେମାନେ ଇଚ୍ଛା କରନ୍ତି ନାହିଁ । କିନ୍ତୁ ମୋ ଧାମକୁ ଆସିବା ପରେ ସେମାନଙ୍କୁ ଏହା ସବୁ ପ୍ରାପ୍ତ ହୁଏ ।।୩୭।। ଶାନ୍ତରୂପା ମାତା, ଯେଉଁମାନେ ମୋର ଆଶ୍ରିତ, ମୁଁ ତାଙ୍କର ପ୍ରିୟ ଆତ୍ମା, ସୁତ, ସଖା, ଗୁରୁ, ସୁହୃଦ୍ ଓ ଇଷ୍ଟଦେବ ବୋଲି ସେମାନେ ମନେକରନ୍ତି; ସେମାନଙ୍କର କେବେହେଲେ ବିନାଶ ହୁଏ ନାହିଁ କିମ୍ବା କାଳଚକ୍ର ତାଙ୍କୁ ଗ୍ରାସ କରିପାରେ ନାହିଁ ।।୩୮।।

ଏହି ଶରୀର ଏବଂ ଇହଲୋକ ଓ ପରଲୋକରେ ଏହାର ସମସ୍ତ ଭୋଗବାସନା--ସ୍ତ୍ରୀ, ପୁତ୍ର, ଧନ, ପଶୁ, ଗୃହ ଆଦି ପରିତ୍ୟାଗ କରି ଯେ ମୋତେ ବିଶ୍ୱତୋମୁଖ ଭାବରେ ଅନନ୍ୟ ଭକ୍ତିର ସହ ଭଜନ କରେ, ମୁଁ ତାକୁ ଜନ୍ମମୃତ୍ୟୁରୂପ ସଂସାରରୁ ପାରି କରିଦିଏ ।।୩୯-୪୦।। ମୁଁ ହେଉଚି ସର୍ବଶକ୍ତିମାନ୍ ପୁରୁଷୋତ୍ତମ ଭଗବାନ । ମୁଁ ସମସ୍ତ ପ୍ରାଣୀଙ୍କର ଆତ୍ମା । ମୋତେ ଛାଡ଼ି ଅନ୍ୟ କାହାରିକୁ ଆଶ୍ରୟ କଲେ ତୀବ୍ର ମୃତ୍ୟୁଭୟରୁ ନିସ୍ତାର ମିଳେ ନାହିଁ ।।୪୧।। ମୋ' ଭୟରେ ଏହି ପବନ ବହେ, ସୂର୍ଯ୍ୟ ଉତ୍ତାପ ଦାନ କରେ, ଇନ୍ଦ୍ର ବର୍ଷା କରେ, ଅଗ୍ନି ଦହନ କରେ ଏବଂ ମୃତ୍ୟୁ ବିଚରଣ କରେ ।।୪୨।। ଯୋଗୀମାନେ ଜ୍ଞାନବୈରାଗ୍ୟଯୁକ୍ତ ଭକ୍ତିଦ୍ୱାରା ଶାନ୍ତିଲାଭପାଇଁ ମୋର ଅଭୟ ପାଦମୂଳକୁ ଆଶ୍ରୟ କରନ୍ତି ।।୪୩।। ଏହିପରି ଏହି ସଂସାରରେ ମନୁଷ୍ୟପାଇଁ ସବୁଠାରୁ କଲ୍ୟାଣକର କାର୍ଯ୍ୟ ହେଉଚି ତୀବ୍ର ଭକ୍ତିଯୋଗଦ୍ୱାରା ମୋ'ଠାରେ ନିଜକୁ ଅର୍ପଣ କରି ମନ ସ୍ଥିର ରଖିବା ।।୪୪।।

## ଷଡ୍‌ବିଂଶ ଅଧ୍ୟାୟ

# ବିଭିନ୍ନ ତତ୍ତ୍ୱର ଉତ୍ପତ୍ତି

ମାତା, ବର୍ତ୍ତମାନ ପ୍ରକୃତି ଆଦି ସମସ୍ତ ତତ୍ତ୍ୱର ପୃଥକ୍ ଲକ୍ଷଣମାନ ମୁଁ ବର୍ଣ୍ଣନା କରୁଚି, ଯଦ୍ଦ୍ୱାରା ପ୍ରକୃତିଜାତ ଗୁଣର ପ୍ରଭାବରୁ ମନୁଷ୍ୟ ମୁକ୍ତି ଲାଭ କରିପାରିବ ॥୧॥ ମନୁଷ୍ୟର ମୋକ୍ଷପ୍ରାପ୍ତିପାଇଁ ଆତ୍ମଦର୍ଶନରୂପ ଜ୍ଞାନ ହୃଦୟର ଅହଙ୍କାରରୂପ ଗ୍ରନ୍ଥିକୁ ଛେଦନ କରେ । ସେହି ଜ୍ଞାନ କ'ଣ ବର୍ତ୍ତମାନ ମୁଁ ତୁମକୁ ବର୍ଣ୍ଣନା କରୁଚି ॥୨॥ ଏହି ବିଶ୍ୱ ଯାହାଙ୍କ ଦ୍ୱାରା ପ୍ରକାଶିତ, ସେହି ସ୍ୱୟଂ ପ୍ରକାଶମାନ ଆତ୍ମାରୂପୀ ପୁରୁଷ ହେଉଛନ୍ତି ଅନାଦି, ନିର୍ଗୁଣ ଓ ପ୍ରକୃତିଠାରୁ ଭିନ୍ନ ॥୩॥ ପ୍ରକୃତି ତ୍ରିଗୁଣାତ୍ମିକା, ଅବ୍ୟକ୍ତ ଏବଂ ବିଷ୍ଣୁଙ୍କର ଶକ୍ତିସ୍ୱରୂପିଣୀ । ସେ ଲୀଳାପୂର୍ବକ ଆସିଯିବାରୁ ସର୍ବବ୍ୟାପୀ ପୁରୁଷ ତାଙ୍କୁ ସ୍ୱେଚ୍ଛାରେ ଗ୍ରହଣ କରନ୍ତି ॥୪॥ ସତ୍ତ୍ୱାଦି ଗୁଣଯୁକ୍ତା ଲୀଳାମୟୀ ପ୍ରକୃତି ନିଜର ଗୁଣ ଅନୁଯାୟୀ ପ୍ରଜା ସୃଷ୍ଟି କରୁଥିବାର ଦେଖି ତାର ଶକ୍ତିରେ ପୁରୁଷର ଜ୍ଞାନ ଘୋଡ଼ାଇ ହୋଇଯାଏ ଏବଂ ସେ ନିଜର ସ୍ୱରୂପକୁ ଭୁଲିଯାଏ ॥୫॥ ଏହିପରି ନିଜଠାରୁ ଭିନ୍ନ ପ୍ରକୃତି ତାର ଗୁଣଦ୍ୱାରା ଯେଉଁସବୁ କର୍ମ କରିଯାଏ, ପୁରୁଷ ନିଜକୁ ତାର କର୍ତ୍ତା ବୋଲି ମନେ କରେ ଏବଂ ତା'ଫଳରେ ନିଜେ ଅକର୍ତ୍ତା, ସ୍ୱାଧୀନ, ଅନାସକ୍ତ ହୋଇ ମଧ୍ୟ ଏହି କର୍ମର ସାକ୍ଷୀଭାବରେ ସେ ତାର ସ୍ୱତନ୍ତ୍ରତା ହରାଇ ବସେ ॥୬-୭॥ କାର୍ଯ୍ୟ, କାରଣ ଓ କର୍ତ୍ତୃତ୍ୱର ଭେଦରେ ପ୍ରକୃତି ହେଉଚି କାରଣ । କିନ୍ତୁ ପ୍ରକୃତିଠାରୁ ଭିନ୍ନ ହେଲେ ମଧ୍ୟ (ଏହି କର୍ତ୍ତୃତ୍ୱର ଅଭିମାନ ଯୋଗୁଁ) ପୁରୁଷକୁ ସୁଖ ଦୁଃଖ ସବୁ ଭୋଗିବାକୁ ପଡ଼େ ॥୮॥ ଦେବହୂତି କହିଲେ, ପୁରୁଷୋତ୍ତମ, ଏହି ବିଶ୍ୱର ସୂକ୍ଷ୍ମ ଓ ସ୍ଥୂଳ ସମସ୍ତ କର୍ମର କାରଣସ୍ୱରୂପ ପ୍ରକୃତି ଓ ପୁରୁଷର ଲକ୍ଷଣ କଣ, ତାହା ମୋତେ କହନ୍ତୁ ॥୯॥ ପ୍ରକୃତିର ଲକ୍ଷଣ ବର୍ଣ୍ଣନା କରିବାକୁ ଯାଇ ଶ୍ରୀଭଗବାନ କହିଲେ, ପ୍ରକୃତି ତ୍ରିଗୁଣାତ୍ମକ, ଅବ୍ୟକ୍ତ, ନିତ୍ୟ, କାର୍ଯ୍ୟକାରଣସ୍ୱରୂପ ଏବଂ କୌଣସି ବିଶେଷତା ନ ଥାଇ ମଧ୍ୟ ସମସ୍ତ ବୈଶିଷ୍ଟ୍ୟରେ ଯୁକ୍ତ ॥୧୦॥

ପ୍ରକୃତି ହେଉଚି ଚବିଶତତ୍ତ୍ୱ ପ୍ରଧାନ -- ପଞ୍ଚ ମହାଭୂତ, ପଞ୍ଚ ତନ୍ମାତ୍ର, ଚାରି ଅନ୍ତରେନ୍ଦ୍ରିୟ ଓ ଦଶ ଇନ୍ଦ୍ରିୟ । ପଞ୍ଚ ମହାଭୂତ ହେଲେ କ୍ଷିତି, ଜଳ, ତେଜ, ବାୟୁ ଓ ଆକାଶ । ପଞ୍ଚ ତନ୍ମାତ୍ର ହେଲେ ଗନ୍ଧ, ରସ, ରୂପ, ସ୍ପର୍ଶ ଓ ଶବ୍ଦ । ଦଶ ଇନ୍ଦ୍ରିୟ ହେଲେ କର୍ଣ୍ଣ, ତ୍ୱକ୍, ଚକ୍ଷୁ, ଜିହ୍ୱା, ନାସା, ବାକ୍, ହସ୍ତ, ପାଦ, ଲିଙ୍ଗ ଓ ପାୟୁ । ଅନ୍ତରସ୍ଥ ଇନ୍ଦ୍ରିୟ ହେଲେ ମନ, ବୁଦ୍ଧି, ଅହଂକାର ଏବଂ ଚିତ୍ତ । ଏହି ଚତୁର୍ଦ୍ଧା ଇନ୍ଦ୍ରିୟର ବୃତ୍ତିଭେଦରେ ଚାରି ପ୍ରକାର ଲକ୍ଷଣ ଦେଖାଯାଏ । ଯଥା - ସଂକଳ୍ପ, ନିଶ୍ଚୟ, ଅଭିମାନ ଓ ଚିନ୍ତା ॥୧୧-୧୪॥ ସଗୁଣ ବ୍ରହ୍ମରଏହି ଚବିଶଟି ତତ୍ତ୍ୱ ଛଡ଼ା ଆହୁରି ଗୋଟିଏ ତତ୍ତ୍ୱ ଅଛି । ପୂର୍ବରୁ ମୁଁ କହିଚି -- ସେହି ପଞ୍ଚବିଂଶତିତମ ତତ୍ତ୍ୱ ହେଉଚି କାଳ ॥୧୫॥ କାଳରୂପୀ ଏହି ପଞ୍ଚବିଂଶ ତତ୍ତ୍ୱ ପୁରୁଷଠାରୁ ଭିନ୍ନ ନ ହୋଇ ପୁରୁଷର (ଈଶ୍ୱରଙ୍କର) ପ୍ରଭାବ ବୋଲି ମଧ୍ୟ ଗୃହୀତ ହୁଏ, କାରଣ କାଳର ବା ଈଶ୍ୱରଙ୍କର ସଂହାରିଣୀ ଶକ୍ତି ପ୍ରକୃତି ସହିତ ଯୁକ୍ତ ହୋଇ ଜୀବକୁ ଅହଙ୍କାରଦ୍ୱାରା ମୋହିତ କରାଇ କର୍ମର ଭୟ ଜାତ କରାଏ ॥୧୬॥ ମନୁକନ୍ୟା ମାତା, ଯାହାଙ୍କ ଚେଷ୍ଟାରେ ସାଧାରଣ ପ୍ରକୃତିରେ ଥିବା ନିଶ୍ଚଳ ଗୁଣ ଚଞ୍ଚଳ ହୋଇ ଉଠେ, ସେ ହେଉଛନ୍ତି କାଳସ୍ୱରୂପ ଭଗବାନ ॥୧୭॥ ଏହିପରି ନିଜ ମାୟାଦ୍ୱାରା ସେହି ଭଗବାନ ସମସ୍ତ ପ୍ରାଣୀଙ୍କ ଅନ୍ତରରେ ଅନ୍ତର୍ଯାମୀ ପୁରୁଷ ରୂପେ ଏବଂ ବାହାରେ କାଳରୂପେ ବିଦ୍ୟମାନ ॥୧୮॥ ଦୈବବଶତଃ ପ୍ରକୃତିର ଗୁଣମାନଙ୍କରେ କ୍ଷୋଭ ବା ଚଞ୍ଚଳତା ଜାତ ହେବାବେଳେ ସ୍ୱମାୟାସୃଷ୍ଟ ପ୍ରକୃତିର ଗର୍ଭରେ ସେ ନିଜର ଚିତ୍‌ଶକ୍ତି ରୂପ ବୀଜକୁ ସ୍ଥାପନ କଲେ ଏବଂ ସେଥିରୁ ତେଜୋମୟ ମହତ୍ ତତ୍ତ୍ୱର ଜନ୍ମ ହେଲା ॥୧୯॥ ଏହି ମହତ୍ତତ୍ତ୍ୱର ଲୟ ନାହିଁ କି ପରିବର୍ତ୍ତନ ନାହିଁ । ଏ ହେଉଚି ସମସ୍ତ ଜଗତର ଅଙ୍କୁରସ୍ୱରୂପ । ନିଜ ମଧ୍ୟରେ ସୂକ୍ଷ୍ମରୂପରେ ରହିଥିବା ଅହଙ୍କାର ଆଦିଙ୍କୁ ପ୍ରକଟ କରିବାକୁ ଯାଇ ତାକୁ ଘୋଡ଼ାଇ ରଖିଥିବା ପ୍ରଳୟକାଳୀନ ଅନ୍ଧକାରକୁ ସେ ନିଜ ତେଜଦ୍ୱାରା ସମ୍ପୂର୍ଣ୍ଣ ନଷ୍ଟ କରିଦିଏ ॥୨୦॥

ଚିତ୍ତ ହେଉଚି ସତ୍ତ୍ୱଗୁଣଯୁକ୍ତ, ଶାନ୍ତ ଏବଂ ନିର୍ମଳ । ଭଗବାନଙ୍କୁ ଲାଭ କରିବାର ସ୍ଥାନ । ସେଥିପାଇଁ ଏହି ଚିତ୍ତକୁ ସ୍ୱୟଂ ବାସୁଦେବ ଆଖ୍ୟା ଦିଆଯାଏ । ଭୌତିକ ଦୃଷ୍ଟିରୁ ମଧ୍ୟ ଏହାକୁ ମହାନ୍ (ମହତତ୍ତ୍ୱ) ବୋଲି କୁହାଯାଏ ॥୨୧॥ ଜଳ ଯେପରି ତାର ସ୍ୱାଭାବିକ ଅବସ୍ଥାରେ ସ୍ୱଚ୍ଛ ବିକାରଶୂନ୍ୟ ଓ ସ୍ଥିର ରହିଥାଏ, ଚିତ୍ତବୃତ୍ତି ସେହିପରି ସ୍ୱଭାବତଃ ନିର୍ମଳ, ନିର୍ବିକାର ଓ ଶାନ୍ତ ଅଟେ ॥୨୨॥ ଭଗବତ୍ ବୀର୍ଯ୍ୟରୁ ଜାତ ମହତତ୍ତ୍ୱର ବିକାର ଘଟିଲେ ସେଥିରୁ କ୍ରିୟାଶକ୍ତିପ୍ରଧାନ ଅହଙ୍କାର ଉତ୍ପନ୍ନ ହୁଏ । ଏହି ଅହଙ୍କାର ପୁଣି ତ୍ରିବିଧ । ବୈକାରିକ, ତୈଜସ ଓ ତାମସ । ସେଥିରୁ ମନ, ଇନ୍ଦ୍ରିୟ ଓ ମହାଭୂତମାନେ ଉତ୍ପନ୍ନ ହୁଅନ୍ତି ॥୨୩-୨୪॥ ଏହି ଭୂତ, ଇନ୍ଦ୍ରିୟ ଓ ମନୋମୟ ଅହଙ୍କାରକୁ ପୁଣି ସହସ୍ରଶିର ଅନନ୍ତରୂପୀ ସଙ୍କର୍ଷଣ ବୋଲି କୁହାଯାଏ ॥୨୫॥ କର୍ତ୍ତା, କରଣ ଓ କାର୍ଯ୍ୟ ରୂପରେ ଏହାର ଲକ୍ଷଣ ନିର୍ଣ୍ଣୟ କରାଯାଏ । ଅଥବା ଅହଙ୍କାର ସତ୍ତ୍ୱଗୁଣରେ ଶାନ୍ତ, ରଜୋଗୁଣରେ ଘୋର ଏବଂ ତମୋଗୁଣରେ ମୂଢ଼ ହୋଇଥାଏ ॥୨୬॥ ବୈକାରିକ ଅହଙ୍କାରର ବିକୃତି ଫଳରେ ମନସ୍ତତ୍ତ୍ୱର ଜନ୍ମ ହୁଏ ଏବଂ ଏଥିରୁ ସଂକଳ୍ପବିକଳ୍ପ ରୂପ କାମନା ଜାତ ହୁଏ । ମନସ୍ତତ୍ତ୍ୱକୁ ଇନ୍ଦ୍ରିୟମାନଙ୍କର ଅଧୀଶ୍ୱର ଅନିରୁଦ୍ଧ ବୋଲି କୁହାଯାଏ । ଯୋଗୀମାନେ ଶରତ୍କାଳୀନ ନୀଳପଦ୍ମପରି ଶ୍ୟାମବର୍ଣ୍ଣ ଏହି ମନସ୍ତତ୍ତ୍ୱ ରୂପ ଅନିରୁଦ୍ଧଙ୍କୁ ଆରାଧନା କରନ୍ତି ॥୨୭-୨୮॥

ସାଧ୍ୱୀ, ତୈଜସ ଅହଙ୍କାରର ବିକାରରୁ ବୁଦ୍ଧି ତତ୍ତ୍ୱର ଜନ୍ମ ହୁଏ । ଏହାଦ୍ୱାରା ଦ୍ରବ୍ୟମାନଙ୍କ ସ୍ଫୁରଣ ସମ୍ପର୍କରେ ବିଶେଷ ଜ୍ଞାନ ହୁଏ । ଇନ୍ଦ୍ରିୟମାନଙ୍କ ସହାୟକରୂପେ ବୁଦ୍ଧି କାର୍ଯ୍ୟକାରୀ ହୁଏ ॥୨୯॥ ବୁଦ୍ଧିର ଲକ୍ଷଣ ହେଉଚି ବୃତ୍ତିଭେଦରେ ସଂଶୟ, ମିଥ୍ୟା ଜ୍ଞାନ, ସ୍ମୃତି ଓ ନିଦ୍ରା । ଏହି ତୈଜସ ଅହଙ୍କାରରୁ ଇନ୍ଦ୍ରିୟମାନେ ଜନ୍ମ ହୋଇଛନ୍ତି । ସେମାନଙ୍କୁ କ୍ରିୟା (କର୍ମ) ଓ ଜ୍ଞାନ ଦୁଇଭାଗରେ ବିଭକ୍ତ କରାଯାଏ । ପ୍ରାଣର କ୍ରିୟାଶକ୍ତି (କର୍ମେନ୍ଦ୍ରିୟ) ଓ ବୁଦ୍ଧିର ଜ୍ଞାନଶକ୍ତି (ଜ୍ଞାନେନ୍ଦ୍ରିୟ) ॥୩୦-୩୧॥ ଭଗବତ୍ ଶକ୍ତିଦ୍ୱାରା ପ୍ରେରିତ ତାମସ ଅହଙ୍କାରର ବିକାରରୁ ଶବ୍ଦ ତନ୍ମାତ୍ରର ସୃଷ୍ଟି । ସେଥିରୁ ଆକାଶର ଏବଂ ଶବ୍ଦକୁ ଗ୍ରହଣ କରିବାପାଇଁ ଶ୍ରବଣେନ୍ଦ୍ରିୟର ଜନ୍ମ ହୁଏ । ବିଦ୍ୱାନ୍‌ମାନଙ୍କ ମତରେ ଶବ୍ଦର ଲକ୍ଷଣ ହେଉଚି, ଏହା ଅର୍ଥକୁ ବ୍ୟକ୍ତ କରେ, ବକ୍ତାର ସ୍ୱରକୁ ଚିହ୍ନାଇ ଦିଏ ଏବଂ ଆକାଶର ସୂକ୍ଷ୍ମରୂପ (ଶବ୍ଦ ତରଙ୍ଗ)କୁ ଗ୍ରହଣ କରେ ॥୩୨-୩୩॥

ଆକାଶର ଲକ୍ଷଣ ହେଉଚି ପ୍ରାଣୀମାନଙ୍କର ବାହାର ଓ ଅନ୍ତରରେ ଥିବା ଭେଦକୁ ପ୍ରକାଶ କରିବା ଏବଂ ପ୍ରାଣ, ଇନ୍ଦ୍ରିୟ ଓ ମନର ଆଶ୍ରୟ ହେବା ॥୩୪॥ କାଳକ୍ରମେ ଶବ୍ଦ ତନ୍ମାତ୍ରରୁ ଆକାଶର ବିକାର ହୋଇ ସ୍ପର୍ଶର ଜନ୍ମ ହେଲା ଏବଂ ଏଥିରୁ ବାୟୁ ଓ ସ୍ପର୍ଶକୁ ଗ୍ରହଣ କରୁଥିବା ତ୍ୱକ୍ ଇନ୍ଦ୍ରିୟ ଜାତ ହେଲା ॥୩୫॥ କୋମଳତା, କଠିନତା, ଶୀତଳତା, ଉଷ୍ଣତା - ଏହା ହେଉଚି ସ୍ପର୍ଶର ଲକ୍ଷଣ ଓ ବାୟୁର ତନ୍ମାତ୍ରର ସ୍ୱରୂପ ॥୩୬॥ ବୃକ୍ଷଶାଖାମାନଙ୍କୁ ଚାଳନ କରିବା, ତୃଣାଦି ବସ୍ତୁକୁ ବିଭିନ୍ନ ସ୍ଥାନକୁ ଉଡ଼ାଇ ନେବା, ଦ୍ରବ୍ୟମାନଙ୍କର ଗନ୍ଧକୁ ନାକ ପାଖକୁ ନେବା, ଦୂରସ୍ଥ ଶବ୍ଦକୁ କର୍ଣ୍ଣପଥକୁ ନେଇ ଆସିବା, ସମସ୍ତ ଇନ୍ଦ୍ରିୟମାନଙ୍କୁ ଆତ୍ମବଳ ଦେବା କାର୍ଯ୍ୟ ହେଉଚି ବାୟୁର ଲକ୍ଷଣ ॥୩୭॥ ଏହାପରେ ଦୈବର ପ୍ରେରଣାରେ ବାୟୁର ସ୍ପର୍ଶ ତନ୍ମାତ୍ରରୁ ରୂପତନ୍ମାତ୍ର ହୁଏ ଓ ଚକ୍ଷୁ ଇନ୍ଦ୍ରିୟର ଉତ୍ପତ୍ତି ହୁଏ ॥୩୮॥ ସାଧ୍ୱୀ, ଦ୍ରବ୍ୟକୁ ଆକାର ଦେବା, ଦ୍ରବ୍ୟର ଅଙ୍ଗରୂପେ ଓ ତା'ର ଆକାର ପ୍ରକାର ଓ ପରିମାଣରୂପରେ ପ୍ରତୀତ ହେବା ଏବଂ ତେଜର ସ୍ୱରୂପ ହେବା ହେଉଚି ରୂପ ତନ୍ମାତ୍ରର ଲକ୍ଷଣ ॥୩୯॥ ଆଲୋକିତ କରିବା, ପାକ କରିବା, ଶୀତକୁ ଦୂର କରିବା, ଭୋକ, ଶୋଷ, ଶୋଷଣ ଓ ଖାଇବା ପିଇବା ହେଉଚି ତେଜର ବୃତ୍ତି ॥୪୦॥

ଦୈବର ପ୍ରେରଣାରେ ରୂପତନ୍ମାତ୍ରମୟ ତେଜର ବିକାର ଘଟେ ଏବଂ ସେଥିରୁ ରସତନ୍ମାତ୍ର ଜାତ ହୋଇ ରସରୁ ଜଳ ଏବଂ ରସଗ୍ରହଣ କରୁଥିବା ଜିହ୍ୱାର ଜନ୍ମ ହୁଏ ॥୪୧॥ ରସ ଶୁଦ୍ଧରୂପରେ ଏକ ହେଲେ ମଧ୍ୟ ବିଭିନ୍ନ ବସ୍ତୁର ବିକାରଦ୍ୱାରା ଏହା କଟୁ, ତିକ୍ତ, କଷା, ଅମ୍ଳ, ମଧୁର ଆଦି ଅନେକ ରୂପରେ ବିଭକ୍ତ ହୁଏ ॥୪୨॥ ଓଦା କରିବା, (ମାଟି ଆଦିକୁ ଚକଟି) ପିଣ୍ଡାକାର କରିବା, ସନ୍ତୋଷ ଦେବା, ଜୀବନ ବଞ୍ଚାଇବା, ଶୋଷ ମେଣ୍ଟାଇବା, ଜିନିଷକୁ ନରମ କରିବା, ତାପ ଦୂର କରିବା, କୂପାଦି ଜଳାଶୟ ଖାଲି ହେଲେ ତାହାକୁ ପୁଣି ଭରିଦେବା ହେଉଚି ଜଳର ବୃତ୍ତି ॥୪୩॥ ପୁଣି ଦୈବର ପ୍ରେରଣାରେ ରସସ୍ୱରୂପ ଜଳର

ବିକାରରୁ ଗନ୍ଧତନ୍ମାତ୍ରର ଜନ୍ମ । ସେଥିରୁ ପୃଥ୍ୱୀ, ଗନ୍ଧ ଓ ଗନ୍ଧକୁ ଗ୍ରହଣ କରୁଥିବା ଘ୍ରାଣେନ୍ଦ୍ରିୟର ସୃଷ୍ଟି ହେଲା ॥୪୪॥ ଗନ୍ଧ ଏକ । କିନ୍ତୁ ବିଭିନ୍ନ ଦ୍ରବ୍ୟର ଅଙ୍ଗ-ବୈଷମ୍ୟରୁ ଏହା ଦୁର୍ଗନ୍ଧ, ସୁଗନ୍ଧ, ମୃଦୁଗନ୍ଧ, ତୀବ୍ର, ଅମ୍ଳ ଓ ମିଶ୍ର ଗନ୍ଧ ରୂପରେ ପ୍ରକାଶ ପାଏ ॥୪୫॥

ପ୍ରତିମାଦି ରୂପରେ ବ୍ରହ୍ମକୁ ସାକାର କରିବା, ବିନାଶ୍ରୟରେ ସ୍ଥିର ରହିବା, ଜଳରାଶି ଆଦି ଧାରଣ କରିବା, ଆକାଶ ଆଦିର ଆଚ୍ଛାଦକ ହେବା, ସମସ୍ତ ପ୍ରାଣୀଙ୍କର ଗୁଣକୁ ପ୍ରକଟ କରିବା ହେଉଚି ପୃଥିବୀର କାର୍ଯ୍ୟରୂପୀ ଲକ୍ଷଣ ॥୪୬॥ ଆକାଶର ବିଶେଷ ଗୁଣ ଶବ୍ଦ, ଯାହାର ବିଷୟ ଶ୍ରବଣେନ୍ଦ୍ରିୟ । ବାୟୁର ବିଶେଷ ଗୁଣ ସ୍ପର୍ଶ, ଯାହାର ବିଷୟ ତ୍ୱକ୍‌ଇନ୍ଦ୍ରିୟ ॥୪୭॥ ତେଜର ବିଶେଷ ଗୁଣ ରୂପ ଯାହାର ବିଷୟ ନେତ୍ରେନ୍ଦ୍ରିୟ । ଜଳର ବିଶେଷ ଗୁଣ ରସ ଯାହାର ବିଷୟ ରସନେନ୍ଦ୍ରିୟ । ପୃଥିବୀର ବିଶେଷ ଗୁଣ ଗନ୍ଧ ଯାହାର ବିଷୟ ଘ୍ରାଣେନ୍ଦ୍ରିୟ ॥୪୮॥ ଆକାଶ କାରଣ ତତ୍ତ୍ୱ । ବାୟୁ ଆଦି କାର୍ଯ୍ୟ ତତ୍ତ୍ୱ । କାରଣ ତତ୍ତ୍ୱ କାର୍ଯ୍ୟ ତତ୍ତ୍ୱରେ ରହିବାରୁ ତାର ସମନ୍ୱୟରେ ପଞ୍ଚମହାଭୂତଙ୍କର ଯେଉଁ ଗୁଣମାନ ଅର୍ଥାତ୍ ଶବ୍ଦ, ସ୍ପର୍ଶ, ରୂପ, ରସ ଓ ଗନ୍ଧ – ସେସବୁ କେବଳ ପୃଥିବୀରେ ହିଁ ମିଳିଥାଏ ॥୪୯॥

ଯେତେବେଳେ ମହତ୍ ଆଦି ସାତଟି ତତ୍ତ୍ୱ (ମହତ୍ ଅହଙ୍କାର ଓ ପଞ୍ଚତନ୍ମାତ୍ର) ଅସଂହତ ବା ପୃଥକ୍ ପୃଥକ୍ ହୋଇ ରହିଥାନ୍ତି, ସେତେବେଳେ କାଳ, କର୍ମ (ଅଦୃଷ୍ଟ) ଓ ସତ୍ତ୍ୱାଦି ଗୁଣଯୁକ୍ତ ହୋଇ ଜଗତର ଆଦିକାରଣ ନାରାୟଣ ସେମାନଙ୍କ ମଧ୍ୟରେ ପ୍ରବେଶ କରନ୍ତି ॥୫୦॥ ପରମାତ୍ମାଙ୍କ ପ୍ରବେଶ ପରେ ଏହି ସବୁ ତତ୍ତ୍ୱ କ୍ଷୋଭିତ ହୋଇ ଓ ପରସ୍ପର ମିଳିତ ହୋଇ ଏକ ଅଚେତନ ଅଣ୍ଡକୁ ସୃଷ୍ଟି କଲେ ଏବଂ ଏହି ଅଣ୍ଡରୁ ବିରାଟ ପୁରୁଷଙ୍କର ଉତ୍ଥାନ ହେଲା ॥୫୧॥ ଏହି ଅଣ୍ଡର ନାମ ହେଉଚି ବିଶେଷ । ଶ୍ରୀହରିଙ୍କ ସ୍ୱରୂପ ଏଇ ସମସ୍ତ ଭୌତିକ ଜଗତ ବା ଚତୁର୍ଦ୍ଦଶ ଭୁବନ ଏହା ମଧ୍ୟରେ ବିସ୍ତାର ଲାଭ କରିଚି ଏବଂ ଏହାକୁ ପ୍ରଧାନ ଦ୍ୱାରା ଘେରି ରହିଚି ଦଶଗୁଣ ଜଳ, ତାର ଦଶଗୁଣ ଅଗ୍ନି ଏବଂ ତାର ଦଶଗୁଣ ବାୟୁ, ଏବଂ ଏହିପରି କ୍ରମରେ ଦଶ ଦଶ ଗୁଣ ଆକାଶ, ଅହଙ୍କାର ଓ ମହତ୍ ତତ୍ତ୍ୱ ॥୫୨॥ ଜଳଶାୟୀ ଏହି ସୁବର୍ଣ୍ଣମୟ ଅଣ୍ଡକୋଷରୁ ଉଠି ଭଗବାନ ଶ୍ରୀହରି ପୁଣି ତାହା ମଧ୍ୟରେ ପ୍ରବେଶ କଲେ ଓ ସେଥିରେ ବହୁଧା ଛିଦ୍ର ସୃଷ୍ଟି କଲେ ॥୫୩॥ ପ୍ରଥମେ (ସେହି ବିରାଟ ପୁରୁଷଙ୍କର) ମୁଖ ପ୍ରକାଶିତ ହେଲା ଏବଂ ମୁଖରୁ ବାକ୍ ଇନ୍ଦ୍ରିୟ । ସେଥିରୁ ଅଗ୍ନି ଉତ୍ପନ୍ନ ହେଲା । ତା'ପରେ ଦୁଇଟି ନାକପୁଡ଼ା ଓ ସେଥିରୁ ପ୍ରାଣ ସହ ଘ୍ରାଣେନ୍ଦ୍ରିୟର ସୃଷ୍ଟି ॥୫୪॥ ଘ୍ରାଣରୁ ବାୟୁ ହେଲା; ତା'ପରେ ନେତ୍ରଯୁଗଳ ଉତ୍ପନ୍ନ ହେଲା । ସେଥିରୁ ଚକ୍ଷୁ ଇନ୍ଦ୍ରିୟର ଓ ତହିଁରୁ ତାର ଅଧିଷ୍ଠାତା ସୂର୍ଯ୍ୟଙ୍କର ସୃଷ୍ଟି ହେଲା । ତା'ପରେ କର୍ଣ୍ଣକୁହର ଏବଂ ସେଥିରୁ ଶ୍ରବଣେନ୍ଦ୍ରିୟ ଓ ତାର ଅଧିଷ୍ଠାତା ଦିଗମାନେ ଜନ୍ମ ହେଲେ ॥୫୫॥ ତା'ପରେ ବିରାଟ ପୁରୁଷଙ୍କର ତ୍ୱକ୍ (ଚର୍ମ) ଜାତ ହେଲା ଏବଂ ସେଥି ସହିତ ରୋମ ଓ ଶ୍ମଶ୍ରୁ ଦେଖାଗଲା । ତ୍ୱକ୍‌ର ଅଧିଷ୍ଠାତା ଓଷଧିମାନେ (ଉଦ୍ଭିଦ ଓ ଶସ୍ୟ ଆଦି) ଜନ୍ମ ନେଲେ ।

ତାହାପରେ ଲିଙ୍ଗ ଜାତ ହେଲା । ସେଥିରୁ ବୀର୍ଯ୍ୟ ଓ ତାର ଅଧିଷ୍ଠାତା ଆପଃ (ଜଳ)ର ଜନ୍ମ ହେଲା । ତା'ପରେ ମଳଦ୍ୱାର ଓ ଅପାନବାୟୁ ଏବଂ ଅପାନବାୟୁର ଅଧିଷ୍ଠାତା ସମସ୍ତ ଲୋକଙ୍କର ଭୟପ୍ରଦ ମୃତ୍ୟୁ ଜାତ ହେଲା ॥୫୬॥ ଏହାପରେ ହସ୍ତ ଉତ୍ପନ୍ନ ହେଲା । ହସ୍ତରୁ ବଳ ଏବଂ ହସ୍ତଦ୍ୱୟର ଅଧିଷ୍ଠାତା ଇନ୍ଦ୍ରଙ୍କର ଉତ୍ପତ୍ତି ହେଲା । ତା'ପରେ ପାଦଦ୍ୱୟର ଜନ୍ମ ହେଲା ଏବଂ ସେଥିରୁ ଗତି ଓ ପାଦ ଇନ୍ଦ୍ରିୟର ଅଧିଷ୍ଠାତା ଶ୍ରୀହରି ଉତ୍ପନ୍ନ ହେଲେ ॥୫୭-୫୮॥ ପୁଣି ବିରାଟ ପୁରୁଷଙ୍କର ନାଡ଼ିସବୁ ଜାତ ହେଲା । ସେଥିରୁ ରୁଧିର ଜନ୍ମିଲା ଏବଂ ରୁଧିରରୁ ନଦୀମାନେ ଉତ୍ପନ୍ନ ହେଲେ । ତା'ପରେ ବିରାଟ ପୁରୁଷଙ୍କର ଉଦର ସୃଷ୍ଟି ହେଲା । ତାହା ମଧ୍ୟରୁ କ୍ଷୁଧା ଓ ପିପାସା ଏବଂ ଉଦରର ଅଧିଷ୍ଠାତା ସମୁଦ୍ର ଜାତ ହେଲା । ତା'ପରେ ତାଙ୍କର ହୃଦୟ ହେଲା ଏବଂ ହୃଦୟରୁ ମନ ଏବଂ ମନର ଦେବତା ଚନ୍ଦ୍ର ଜନ୍ମ ନେଲେ । ପୁଣି ହୃଦୟରୁ ବୁଦ୍ଧି ଓ ବୁଦ୍ଧିର ଦେବତା ବ୍ରହ୍ମା ହେଲେ । ପୁଣି ସେଥିରୁ ହେଲା ଅହଙ୍କାରର ଜନ୍ମ ଓ ଏହାର ଅଧିଷ୍ଠାତା ଦେବତା ହେଲେ ରୁଦ୍ର । ପୁଣି ହୃଦୟରୁ ଚିତ୍ତର ଜନ୍ମ ହେଲା ଏବଂ ଚିତ୍ତର ଦେବତା ହେଲେ ଚୈତ୍ୟ ବା କ୍ଷେତ୍ରଜ୍ଞ ପୁରୁଷ ॥୫୯-୬୧॥ ଏହିପରି ଆବିର୍ଭୂତ ଦେବତାମାନେ

ଯେତେବେଳେ ବିରାଟ ପୁରୁଷଙ୍କୁ ଉଠାଇବାରେ ଅସମର୍ଥ ହେଲେ, ସେତେବେଳେ ସେମାନେ ନିଜ ନିଜର ଉପଭିସ୍ଥଳ ଇନ୍ଦ୍ରିୟମାନଙ୍କ ମଧ୍ୟରେ କ୍ରମାନ୍ୱୟରେ ପ୍ରବେଶ କଲେ ॥୬୨॥

ଅଗ୍ନି ବାଣୀର ସହିତ ମୁଖରେ ପ୍ରବେଶ କଲେ । କିନ୍ତୁ ବିରାଟ ପୁରୁଷ ଉଠିଲେ ନାହିଁ । ବାୟୁ ଘ୍ରାଣଶକ୍ତି ସହିତ ନାସାରେ ପ୍ରବେଶ କଲେ । କିନ୍ତୁ ବିରାଟ ପୁରୁଷ ଉଠିଲେ ନାହିଁ । ସୂର୍ଯ୍ୟ ଦୃଷ୍ଟି ଶକ୍ତି ସହିତ ନେତ୍ରଯୁଗଳରେ ପ୍ରବେଶ କଲେ । ମାତ୍ର ବିରାଟ ପୁରୁଷ ଉଠିଲେ ନାହିଁ । ଦିଗମାନେ ଶ୍ରବଣେନ୍ଦ୍ରିୟ ସହିତ କର୍ଣ୍ଣଦ୍ୱୟରେ ପ୍ରବେଶ କଲେ । ତଥାପି ବିରାଟ ପୁରୁଷ ଉଠିଲେ ନାହିଁ । ଓଷଧିମାନେ ରୋମ ସହିତ ଚର୍ମରେ ପ୍ରବେଶ କଲେ । ମାତ୍ର ବିରାଟ ପୁରୁଷ ଉଠିଲେ ନାହିଁ । ଆପଃ (ଜଳ) ବୀର୍ଯ୍ୟର ସହିତ ଲିଙ୍ଗରେ ପ୍ରବେଶ କଲେ । ମାତ୍ର ବିରାଟପୁରୁଷ ଉଠିଲେ ନାହିଁ ॥୬୩-୬୫॥ ମୃତ୍ୟୁ ଅପାନ ସହିତ ଗୁହ୍ୟଦ୍ୱାରରେ ପ୍ରବେଶ କଲେ । ତେବେ ବି ବିରାଟ ପୁରୁଷ ଉଠିଲେ ନାହିଁ । ଇନ୍ଦ୍ର ବଳ ସହିତ ହସ୍ତଦ୍ୱୟରେ ପ୍ରବେଶ କଲେ । ତେବେ ବି ବିରାଟ ପୁରୁଷ ଉଠିଲେ ନାହିଁ । ବିଷ୍ଣୁ ଗତି ସହିତ ପାଦଦ୍ୱୟରେ ପ୍ରବେଶ କଲେ ମଧ୍ୟ ବିରାଟ ପୁରୁଷ ଉଠିଲେ ନାହିଁ । ନଦୀମାନେ ରୁଧିର ସହିତ ନାଡ଼ୀମାନଙ୍କରେ ପ୍ରବେଶ କଲେ ବି ବିରାଟ ପୁରୁଷ ଉଠିଲେ ନାହିଁ ॥୬୬-୬୭॥ ସମୁଦ୍ର କ୍ଷୁଧାପିପାସାର ସହିତ ଉଦରରେ ପ୍ରବେଶ କଲେ । ତଥାପି ବିରାଟ ପୁରୁଷ ଉଠିଲେ ନାହିଁ । ଚନ୍ଦ୍ରମା ମନର ସହିତ ହୃଦୟରେ ପ୍ରବେଶ କଲେ । ତେବେ ବି ବିରାଟ ପୁରୁଷ ଉଠିଲେ ନାହିଁ ॥୬୮॥ ବ୍ରହ୍ମା ବୁଦ୍ଧିର ସହିତ ହୃଦୟରେ ପ୍ରବେଶ କଲେ । ତଥାପି ବିରାଟ ପୁରୁଷ ଉଠିଲେ ନାହିଁ । ରୁଦ୍ର ଅହଙ୍କାର ସହିତ ସେହି ହୃଦୟରେ ପ୍ରବେଶ କଲେ । ତଥାପି ବିରାଟ ପୁରୁଷ ଉଠିଲେ ନାହିଁ ॥୬୯॥ କିନ୍ତୁ ଯେତେବେଳେ ଚିତ୍ତର ଦେବତା କ୍ଷେତ୍ରଜ୍ଞ ପୁରୁଷ ଚିତ୍ତର ସହିତ ହୃଦୟରେ ପ୍ରବେଶ କଲେ, ସେତେବେଳେ ବିରାଟ ପୁରୁଷ ଜଳରୁ ଉଠି ଠିଆ ହେଲେ ॥୭୦॥ ଚିତ୍ତସ୍ଥ କ୍ଷେତ୍ରଜ୍ଞ ପୁରୁଷଙ୍କ ବିନା ଯେପରି ପ୍ରାଣ, ଇନ୍ଦ୍ରିୟ, ମନ ଓ ବୁଦ୍ଧି ନିଜ ବଳରେ ସୁପ୍ତ ବ୍ୟକ୍ତିକୁ ଉଠାଇ ପାରନ୍ତି ନାହିଁ, ସେହିପରି କ୍ଷେତ୍ରଜ୍ଞ ପରମାତ୍ମାଙ୍କ ବିନା ବିରାଟ ପୁରୁଷଙ୍କୁ ଏମାନେ ଉଠାଇପାରିଲେ ନାହିଁ ॥୭୧॥ ତେଣୁ ଯୋଗପ୍ରବୃତ୍ତ ବୁଦ୍ଧିଦ୍ୱାରା ଏବଂ ଭକ୍ତି, ବୈରାଗ୍ୟ ଓ ଜ୍ଞାନଦ୍ୱାରା ସେହି ଅନ୍ତରାତ୍ମାସ୍ୱରୂପ କ୍ଷେତ୍ରଜ୍ଞ ପୁରୁଷଙ୍କୁ ଏଇ ଦେହରେ ବିବେଚନା କରି ଧ୍ୟାନ କରିବା ଆବଶ୍ୟକ ॥୭୨॥

### ସପ୍ତବିଂଶ ଅଧ୍ୟାୟ

## ମୋକ୍ଷଲାଭର ବର୍ଣ୍ଣନା

ଶ୍ରୀ ଭଗବାନ କହିଲେ, ଯେପରି ଜଳରେ ପ୍ରତିବିମ୍ବିତ ସୂର୍ଯ୍ୟ ସହିତ ଜଳର ଗୁଣ (ଶୀତଳତା, ଚଞ୍ଚଳତା ଆଦି)ର ସମ୍ପର୍କ ନ ଥାଏ, ସେହିପରି ପ୍ରକୃତିସ୍ଥ ପୁରୁଷ ବା ଶରୀରସ୍ଥ ଆତ୍ମା ପ୍ରକୃତିର ଗୁଣ (ସତ୍ତ୍ୱ, ରଜ ଓ ତମ) ଦ୍ୱାରା ଲିପ୍ତ ହୁଏ ନାହିଁ । କାରଣ ସେ ନିର୍ବିକାର, ଅକର୍ତ୍ତା, ନିର୍ଗୁଣ ॥୧॥ କିନ୍ତୁ ପ୍ରକୃତିର ଗୁଣରେ ଯେତେବେଳେ ସେ ଜଡ଼ିତ ହୋଇଯାଏ, ସେତେବେଳେ ଅହଙ୍କାରଦ୍ୱାରା ମୋହିତ ହୋଇ ମୁଁ କର୍ତ୍ତା ବୋଲି ମନେ କରେ ॥୨॥ ଏହିପରି ଅସହାୟ ଭାବରେ ସେ ସଂସାରରେ ଆସକ୍ତ ହୋଇପଡ଼େ ଏବଂ ବିଭିନ୍ନ କର୍ମଦୋଷ ପ୍ରସଙ୍ଗରୁ ସେ ଉଚ୍ଚ, ନୀଚ ଓ ମିଶ୍ର ଯୋନିରେ ଜନ୍ମଗ୍ରହଣ କରେ ॥୩॥ ସ୍ୱପ୍ନରେ ଦେଖିଥିବା ବସ୍ତୁର ଯେପରି କୌଣସି ଅର୍ଥ ନ ଥାଏ, ଅଥଚ ତାହା ଚିନ୍ତା କରି ଲୋକ ବିଚଳିତ ହୁଏ, ସେହିପରି ସଂସାରର କୌଣସି ବିଷୟଭୋଗ ନ ଥାଇ ମଧ୍ୟ ତାହାକୁ ଧ୍ୟାନ କରିବାଦ୍ୱାରା ଏ ସଂସାରଚକ୍ରରୁ ଜୀବ କେବେ ମୁକ୍ତ ହୁଏ ନାହିଁ ॥୪॥ ଅତଏବ ଅସତ୍ ପଥରେ ଆସକ୍ତ ଚିତ୍ତକୁ ତୀବ୍ର ଭକ୍ତିଯୋଗ ଓ ବୈରାଗ୍ୟ ଦ୍ୱାରା ନିଜର ଆୟତ୍ତକୁ ଅଣାଯିବା ଦରକାର ॥୫॥

ସଂଯମ ଆଦି ଯୋଗମାର୍ଗରେ ଚିତ୍ତକୁ ଏକାଗ୍ର ରଖି ମୋ ପ୍ରତି ନିଷ୍କପଟ ପ୍ରେମ ଓ ଶ୍ରଦ୍ଧାଯୁକ୍ତ ହୋଇ ମୋର ଲୀଳାଦି ଶ୍ରବଣ କରିବା ଆବଶ୍ୟକ ॥୬॥ ସମସ୍ତ ପ୍ରାଣୀଙ୍କୁ ସମଦୃଷ୍ଟିରେ ଦେଖି, କାହାରି ପ୍ରତି ଶତ୍ରୁଭାବ ନ ରଖି ଅନାସକ୍ତ ଭାବରେ ବ୍ରହ୍ମଚର୍ଯ୍ୟ, ମୌନବ୍ରତାଦି ଅବଲମ୍ବନପୂର୍ବକ ନିଷ୍ଠାର ସହିତ ସ୍ୱଧର୍ମପାଳନ ଆବଶ୍ୟକ ॥୭॥ ଯେତିକି ମିଳିଲା ସେତିକିରେ ସନ୍ତୁଷ୍ଟ ରହି ଏବଂ ପରିମିତ ଭୋଜନ କରି, ଆତ୍ମଜ୍ଞ ଶାନ୍ତସ୍ୱଭାବ ମୁନି ଏକାନ୍ତରେ ରହିବାକୁ ଇଚ୍ଛା କରେ ଏବଂ ଜୀବେ ଦୟା ରଖି ସମସ୍ତଙ୍କୁ ମିତ୍ର ବୋଲି ମନେ କରେ ॥୮॥

ପ୍ରକୃତି ଓ ପୁରୁଷର ସ୍ୱରୂପ ବିଚାର କଲେ ଯେଉଁ ଜ୍ଞାନ ଲାଭ ହୁଏ, ସେଥିରେ ଏହି ଦେହର ସବୁ ସଂପର୍କ (ପୁତ୍ର ଦାରାଦି) କିପରି ଅସ୍ଥାୟୀ, ତାହା ଜଣାଯାଏ ॥୯॥ ଏହିପରି ଅନାସକ୍ତ ବୁଦ୍ଧି ଆସିଗଲେ ପରମାତ୍ମାଙ୍କ ଛଡ଼ା ଆଉ କେହି ଦେଖାଯା'ନ୍ତି ନାହିଁ; ସ୍ୱଚକ୍ଷୁରେ ସୂର୍ଯ୍ୟଙ୍କୁ ସ୍ପଷ୍ଟ ଦେଖିବାପରି ଆତ୍ମଦର୍ଶୀ ମୁନି ଅହଙ୍କାରାଚ୍ଛନ୍ନ ଆତ୍ମାଦ୍ୱାରା ଶୁଦ୍ଧ ଆତ୍ମାକୁ ଦେଖନ୍ତି ଏବଂ ଦେହାଭିମାନରୁ ମୁକ୍ତ, ଅସତ୍ୟ ବସ୍ତୁମାନଙ୍କ ମଧ୍ୟରେ ସର୍ବଦା ସତ୍ୟରୂପେ ଉଦ୍‌ଭାସିତ, ପ୍ରକୃତିର ଅଧିଷ୍ଠାନ, କାର୍ଯ୍ୟର ପ୍ରକାଶକ, କାର୍ଯ୍ୟକାରଣରୂପୀ ସମସ୍ତ ପଦାର୍ଥରେ ଅନୁଗତ ସେହି ଅଦ୍ୱିତୀୟ ବ୍ରହ୍ମଙ୍କୁ ଲାଭ କରନ୍ତି ॥୧୦-୧୧॥ ଯେପରି ସୂର୍ଯ୍ୟର ପ୍ରତିବିମ୍ବ ଜଳରେ ପଡ଼ି ସ୍ଥଳରେ ବା ଗୃହର କାନ୍ଥରେ ପ୍ରତିବିମ୍ବିତ ହୁଏ ଏବଂ ସୂର୍ଯ୍ୟର ସତ୍ତା ଗୃହକୋଣସ୍ଥ ବ୍ୟକ୍ତିକୁ ଜଣାଇ ଦିଏ, ସେହିପରି ଭୂତ-ଇନ୍ଦ୍ରିୟ-ମନ ଏହି ତ୍ରିବିଧ ଅହଙ୍କାରଦ୍ୱାରା ପରମାତ୍ମାଙ୍କ ପ୍ରତିବିମ୍ବଯୁକ୍ତ ସ୍ୱରୂପର ଆଭାସ ମିଳେ ॥୧୨-୧୩॥ ନିଦ୍ରା ସମୟରେ ଜୀବାତ୍ମା ଭୂତ, ସୂକ୍ଷ୍ମ, ଇନ୍ଦ୍ରିୟ, ମନ ଓ ବୁଦ୍ଧି ଆଦି (ପଞ୍ଚଭୂତ, ପଞ୍ଚତନ୍ମାତ୍ର, ଦଶ ଇନ୍ଦ୍ରିୟ ଓ ଚାରି ଅନ୍ତଃକରଣକୁ ନେଇ ଶରୀର ଗଠିତ) ରେ ଲୀନ ହୋଇଯିବାପରି ଲାଗିଲେ ମଧ୍ୟ ପ୍ରକୃତରେ ସେ ଜାଗ୍ରତ ଓ ଅହଙ୍କାରଶୂନ୍ୟ ହୋଇ ରହେ ॥୧୪॥ ମନୁଷ୍ୟର ଧନ ନଷ୍ଟ ହୋଇଗଲେ, ସେ ଯେପରି ନିଜେ ନାଶ ହୋଇଗଲା ବୋଲି ବ୍ୟାକୁଳ ହୁଏ, ସେହିପରି ସୁଷୁପ୍ତି ସମୟରେ ନିଜର ଅହଙ୍କାର ଆଦି ନାଶ ଯିବାର ଦେଖି ଜୀବାତ୍ମା ମିଛରେ ନିଜକୁ ନଷ୍ଟବତ୍ ମନେକରେ ॥୧୫॥ ଏହିପରି ଭଲଭାବରେ ଚିନ୍ତା କଲେ ବିବେକୀ ବ୍ୟକ୍ତି ଆତ୍ମାର ସ୍ୱତନ୍ତ୍ର ସତ୍ତାକୁ ଅନୁଭବ କରିପାରିବ ଏବଂ ଏହା ମଧ୍ୟ ଜାଣିପାରିବ ଯେ ଏହି ଆତ୍ମା ଅହଙ୍କାରଯୁକ୍ତ ସମସ୍ତ ଦ୍ରବ୍ୟର ଅଧିଷ୍ଠାନ ଓ ପ୍ରକାଶକ ॥୧୬॥

ଦେବହୂତି କହିଲେ, ପ୍ରଭୁ, ପୁରୁଷ ପ୍ରକୃତିକୁ କିପରି ଛାଡ଼ିପାରିବ ? କାରଣ ଉଭୟ ନିତ୍ୟ ଓ ଉଭୟ ପରସ୍ପରକୁ ଆଶ୍ରୟ କରି ରହିଥାନ୍ତି ॥୧୭॥ ଯେପରି ଗନ୍ଧ ଓ ମୃତ୍ତିକା, ରସ ଓ ଜଳ ପରସ୍ପରଠାରୁ ଅଲଗା ରହିପାରିବେ ନାହିଁ, ସେହିପରି ପ୍ରକୃତି ଓ ପୁରୁଷ ପରସ୍ପରଠାରୁ ଅଲଗା ହୋଇପାରିବେ ନାହିଁ ॥୧୮॥ ପୁରୁଷ ନିଜେ କର୍ତ୍ତା ନ ହେଲେ ମଧ୍ୟ ପ୍ରକୃତିର ଆଶ୍ରୟରେ ତାର କର୍ମବନ୍ଧନ ଯୋଗ ହୁଏ । ଏପରି ପ୍ରକୃତିର ଗୁଣରେ ବାନ୍ଧି ହୋଇଥିବା ପୁରୁଷର ମୁକ୍ତି କିପରି ସମ୍ଭବ ? ॥୧୯॥ କେବେ କେବେ ତତ୍ତ୍ୱଚିନ୍ତନଦ୍ୱାରା ସଂସାରରୂପ ମହାମାୟାରୁ ନିବୃତ୍ତି ମିଳିଲେ ମଧ୍ୟ, ଏହାର କାରଣ ପ୍ରକୃତିର ଗୁଣରୁ ମୁକ୍ତ ନ ହେବା ଯୋଗୁଁ ପୁଣି ଏହି ଭୟ ଦେଖାଦିଏ ॥୨୦॥

ଶ୍ରୀଭଗବାନ କହିଲେ, ମାତା, କୌଣସି ଫଳ ଆଶା ବିନା ସ୍ୱଧର୍ମପାଳନ, ଚିତ୍ତ ଶୁଦ୍ଧ ରଖି ଭଗବାନଙ୍କଠାରେ ଦୃଢ଼ ଭକ୍ତି ସ୍ଥାପନ, ବହୁ ସମୟ ଧରି ଭଗବତ୍‌କଥା ଶ୍ରବଣ, ତତ୍ତ୍ୱଦର୍ଶନଲବ୍ଧ ଜ୍ଞାନ, ପ୍ରବଳ ବୈରାଗ୍ୟ ଏବଂ ତପୋଯୁକ୍ତ ଯୋଗଦ୍ୱାରା, ତୀବ୍ର ଏକାଗ୍ରତା ବଳରେ ଅରଣିଜାତ ଅଗ୍ନି ଯେପରି ଅରଣିକୁ ଭସ୍ମ କରିପାରେ, ସେହିପରି ପୁରୁଷର ପ୍ରକୃତି ରାତି ଦିନ କ୍ଷୀଣ ହୋଇ ହୋଇ ଧୀରେ ଧୀରେ ଲୁପ୍ତ ହୋଇଯାଏ ॥୨୧-୨୩॥ ପୁଣି ଭୋଗ କରି ଛାଡ଼ି ଦେଇଥିବା ପ୍ରକୃତିର ଦୋଷ ପ୍ରତିଦିନ ବଢ଼ି ଗଲେ ତାହା ସ୍ୱରୂପରେ ସ୍ଥିତ ସ୍ୱତନ୍ତ୍ର ପୁରୁଷର କୌଣସି ଅମଙ୍ଗଳ କରିପାରେ ନାହିଁ ॥୨୪॥ ଯେପରି ଶୋଇ ରହିଥିବା ବ୍ୟକ୍ତି ସ୍ୱପ୍ନରେ ବହୁ ଅନର୍ଥ ଦେଖେ, ମାତ୍ର ଉଠି ପଡ଼ିବାପରେ ତାହାର କୌଣସି ପ୍ରଭାବ ରହେ ନାହିଁ, ସେହିପରି ମୋଠାରେ ଚିତ୍ତ ରଖିଥିବା ତତ୍ତ୍ୱଜ୍ଞ, ଆତ୍ମାରାମ ବ୍ୟକ୍ତିର ପ୍ରକୃତି କୌଣସି ଅପକାର କରିପାରେ ନାହିଁ ॥୨୬॥ ଯଦି ବହୁଜନ୍ମଧରି ଦୀର୍ଘକାଳ

ପର୍ଯ୍ୟନ୍ତ ବ୍ୟକ୍ତି ଅଧ୍ୟାତ୍ମତତ୍ତ୍ୱରେ ନିମଗ୍ନ ରହେ, ତା'ହେଲେ ବ୍ରହ୍ମଲୋକପର୍ଯ୍ୟନ୍ତ ସମସ୍ତପ୍ରକାର ଭୋଗ ପ୍ରତି ତାର ବୈରାଗ୍ୟ ଜାତ ହୁଏ ॥୨୭॥ ଆତ୍ମଜ୍ଞାନଲାଭ କରିଥିବା ମୋର ଭକ୍ତ ମୋ ପ୍ରସାଦରୁ ମୋ' ଆଶ୍ରିତ ନନ୍ଦପ୍ରଦ କୈବଲ୍ୟନାମକ ସ୍ଥାନ (ଦେହାଦିବ୍ୟତିରିକ୍ତ ସ୍ୱରୂପ) ଲାଭ କରେ। ସଂଶୟମୁକ୍ତ ହୋଇ ସହଜରେ ସେହି ବ୍ୟକ୍ତି ଯେଉଁ ପଦ ଲାଭ କରେ, ତାହା ପାଇବାପରେ କୌଣସି ଦେହତ୍ୟାଗୀ ଯୋଗୀ ପୁଣି ସଂସାରକୁ ଫେରେ ନାହିଁ ॥୨୮-୨୯॥ ମାତା, ଯୋଗଦ୍ୱାରା ସମୃଦ୍ଧ-ଚିତ୍ତ ବ୍ୟକ୍ତି ଯେବେ ଯୋଗସାଧନ ସମୟରେ ମିଳୁଥିବା ଅଣିମା ଲଘିମା ଆଦି ମାୟାମୟ ସିଦ୍ଧିଦ୍ୱାରା ବିଚଳିତ ନ ହୁଏ, ତାହେଲେ ସେ ମୋର ପରମପଦ ପ୍ରାପ୍ତ ହୁଏ, ଯାହାର କି ମୃତ୍ୟୁ କିଛି କ୍ଷତି କରିପାରେ ନାହିଁ ॥୩୦॥

## ଅଷ୍ଟାବିଂଶ ଅଧ୍ୟାୟ

# ଅଷ୍ଟାଙ୍ଗଯୋଗର ନିୟମ

ଭଗବାନ କହିଲେ, ମାତା, ବର୍ତ୍ତମାନ ସବୀଜ (ସ୍ୱାବଲମ୍ବନ) ଯୋଗର ଲକ୍ଷଣ ମୁଁ ବର୍ଣ୍ଣନା କରିବାକୁ ଯାଉଚି, ଯଦ୍ଦ୍ୱାରା ମନ ପ୍ରସନ୍ନ ହୋଇ ସତ୍‌ପଥରେ ପ୍ରବୃତ୍ତ ହୁଏ ॥୧॥ ତାହା ହେଉଚି, ଯଥାଶକ୍ତି ଶାସ୍ତ୍ରୋକ୍ତ ସ୍ୱଧର୍ମ ପାଳନ କରିବା, ଶାସ୍ତ୍ରବିରୁଦ୍ଧ ଆଚରଣରୁ ନିବୃତ୍ତ ହେବା, ଈଶ୍ୱରଙ୍କ କୃପାରୁ ଯାହା ମିଳିଲା, ସେଥିରେ ସନ୍ତୁଷ୍ଟ ରହିବା ଓ ଆତ୍ମଜ୍ଞାନୀ ସାଧୁଙ୍କର ପାଦବନ୍ଦନା କରିବା ॥୨॥ ପାରମ୍ପରିକ (ବିଷୟବାସନାଯୁକ୍ତ) ଧର୍ମାଚରଣରୁ ନିବୃତ୍ତ ରହିବା, ମୋକ୍ଷଧର୍ମ ପ୍ରତି ଆକୃଷ୍ଟ ହେବା, ମିତଭୋଜୀ ହେବା ଏବଂ ସର୍ବଦା ନିର୍ଜନ ଓ ଶାନ୍ତିମୟ ସ୍ଥାନରେ ବାସ କରିବା ॥୩॥ କାୟମନୋବାକ୍ୟରେ ହିଂସା ନ କରିବା, ଚୋରି ନ କରିବା, ସତ୍ୟରେ ରହିବା, ଯେତିକି ଆବଶ୍ୟକ ସେତିକି ଅର୍ଥ ସଂଗ୍ରହ କରିବା, ବ୍ରହ୍ମଚର୍ଯ୍ୟ ପାଳନ କରିବା, ତପସ୍ୟା କରିବା, ଦେହ ଓ ମନରେ ଶୁଦ୍ଧ ରହିବା, ଶାସ୍ତ୍ର ଅଧ୍ୟୟନ କରିବା ଓ ଭଗବାନଙ୍କର ଅର୍ଚ୍ଚନା କରିବା ॥୪॥ ମୌନ ବା ବାକ୍ ସଂଯମ ଅଭ୍ୟାସ କରିବା, ଉତ୍ତମ ଆସନ ଓ ପ୍ରାଣାୟାମ ଦ୍ୱାରା ଧୀରେ ଧୀରେ ଶ୍ୱାସପ୍ରଶ୍ୱାସକୁ ଜୟ କରିବା, ମନଦ୍ୱାରା ଇନ୍ଦ୍ରିୟମାନଙ୍କୁ ବିଷୟଭୋଗରୁ ନିବୃତ୍ତ କରି ହୃଦୟରେ ନିବଦ୍ଧ କରିବା ॥୫॥

ମୂଳାଧାର ଆଦି ଷଡ଼ଚକ୍ର ମଧ୍ୟରୁ ଗୋଟିଏ ଚକ୍ରରେ ମନ ସହିତ ପ୍ରାଣକୁ ସ୍ଥିର ରଖିବା ଏବଂ ସର୍ବଦା ଭଗବାନଙ୍କର ଲୀଳା କୀର୍ତ୍ତନ କରି ମନକୁ ଆତ୍ମାରେ ନିବିଷ୍ଟ କରିବା ॥୬॥ ଏହାଦ୍ୱାରା ହେଉ, କିମ୍ବା ଅନ୍ୟ ଯେ କୌଣସି ସାଧନାମାର୍ଗ ଦ୍ୱାରା ହେଉ, ଶ୍ୱାସକୁ ଜୟ କରି ନିରଳସ ଭାବରେ ସର୍ବଦା କୁପଥଗାମୀ ଦୁଷ୍ଟମନକୁ ବୁଦ୍ଧିଦ୍ୱାରା ସଂଯତ କରିବାକୁ ହେବ ॥୭॥ ଯୋଗାସନକୁ ଦୁରସ୍ତ କରି ଏକ ପବିତ୍ର ସ୍ଥାନରେ ଆସନ ବିଛାଇବ ଏବଂ ସିଧାରେ ଓ ସହଜରେ ବସି ପ୍ରାଣାୟାମ ଅଭ୍ୟାସ କରିବ ॥୮॥ ପୂରକ, କୁମ୍ଭକ ଓ ରେଚକ ଏହି କ୍ରମରେ କିମ୍ବା ଏହାର ବିପରୀତ ରେଚକ, କୁମ୍ଭକ ଓ ପୂରକଦ୍ୱାରା ଚିତ୍ତକୁ ଅଚଞ୍ଚଳ ଓ ସ୍ଥିର ରଖି ଶ୍ୱାସପ୍ରଶ୍ୱାସକୁ ଶୁଦ୍ଧ କରିବ ॥୯॥ ନିଆଁରେ ପକାଇ ପବନ ଦ୍ୱାରା ତତାଇ ତତାଇ ଯେପରି ସୁନାର ମଇଳାକୁ ଛଡ଼ାଇ ଦିଆଯାଏ, ସେହିପରି ଶ୍ୱାସକୁ ଜୟ କରିଥିବା ଯୋଗୀର ମନର ମଳ ଶୀଘ୍ର ଦୂର ହୋଇଯାଏ ॥୧୦॥ ଏହିପରି ଯୋଗୀ ପ୍ରାଣାୟାମଦ୍ୱାରା ଦେହର ଦୋଷ (ବାତପିତ୍ତକଫ ଜନିତ)କୁ, ଧାରଣା ଦ୍ୱାରା ପାପକୁ, ପ୍ରତ୍ୟାହାରଦ୍ୱାରା ବିଷୟ ପ୍ରତି ଆସକ୍ତିକୁ ଏବଂ ଧ୍ୟାନ ଦ୍ୱାରା ଭଗବତ୍‌ବିରୋଧୀ ଦୁର୍ଗୁଣମାନଙ୍କୁ ଦୂର କରେ ॥୧୧॥ ଯୋଗାଭ୍ୟାସ ଦ୍ୱାରା ମନ ନିର୍ମଳ ଓ ଏକାଗ୍ର ହେଲେ ନାସାଗ୍ରରେ ଦୃଷ୍ଟି ରଖି ଭଗବାନଙ୍କ ମୂର୍ତ୍ତିକୁ ଏହିପରି ଧ୍ୟାନ କରିବ ॥୧୨॥

ଭଗବାନଙ୍କ ମୁଖପଦ୍ମ ପ୍ରସନ୍ନ, ପଦ୍ମକୋଷପରି ତାଙ୍କର ଚକ୍ଷୁ ଅରୁଣବର୍ଣ୍ଣ, ନୀଳ ପଦ୍ମର ପାଖୁଡ଼ା ପରି ଅଙ୍ଗକାନ୍ତି ଶ୍ୟାମଳ ଏବଂ ସେ ଶଙ୍ଖଚକ୍ରଗଦା ଧାରଣ କରିଛନ୍ତି ॥୧୩॥ ପଦ୍ମକେଶରର ରଙ୍ଗପରି ପୀତପଟ୍ଟବସ୍ତ୍ର ତାଙ୍କ ଦେହରେ ଶୋଭାପାଉଛି ॥୧୪॥ ବକ୍ଷରେ ଶ୍ରୀବତ୍ସଲାଞ୍ଛନ ଓ ଗଳାରେ କୌସ୍ତୁଭ ମଣି ଝଟକୁଛି । ସେ ଯେଉଁ ବନମାଳା ପିନ୍ଧିଛନ୍ତି, ମତ୍ତଭ୍ରମରମାନେ ତା ଉପରେ ବସି ଗୁଞ୍ଜରଣ କରୁଛନ୍ତି । ଶ୍ରୀଅଙ୍ଗରେ ବହୁମୂଲ୍ୟ ହାର, କଙ୍କଣ, କିରୀଟ, ବାଜୁବନ୍ଧ ଓ ନୂପୁରମାନ ସେ ପିନ୍ଧିଛନ୍ତି ॥୧୫॥ କଟିରେ ପିନ୍ଧିଥିବା ମେଖଳା କଟିର ସୌନ୍ଦର୍ଯ୍ୟ ବଢ଼ାଇ ଦେଉଛି । ଭକ୍ତମାନଙ୍କର ହୃଦପଦ୍ମରେ ତାଙ୍କର ଆସନ ବିରାଜମାନ । ତାଙ୍କର ସବୁଠାରୁ ଦର୍ଶନୀୟ ଶାନ୍ତରୂପ ମନ -ନୟନକୁ ହରଣ କରୁଛି ॥୧୬॥ ଭକ୍ତମାନଙ୍କୁ ଅନୁଗ୍ରହ କରିବାପାଇଁ ବ୍ୟାକୁଳ ହୋଇ ସେ ଅତି କମନୀୟ କିଶୋର ବୟସରେ ଆବିର୍ଭୂତ ହୋଇଛନ୍ତି । ତାଙ୍କର ସେ ବିଶ୍ୱବନ୍ଦନୀୟ ରୂପ ସମସ୍ତଙ୍କୁ ସର୍ବଦା ମୋହିତ କରୁଛି ॥୧୭॥ ତାଙ୍କ ପବିତ୍ର ଯଶ ସଦା କୀର୍ତ୍ତନୀୟ । ପୁଣ୍ୟଶ୍ଳୋକ ବଳିରାଜା ପ୍ରଭୃତି ଭକ୍ତମାନଙ୍କର ସେ ଯଶୋବର୍ଦ୍ଧନ କରିଛନ୍ତି । ଯେ ପର୍ଯ୍ୟନ୍ତ ମନ ସ୍ଥିର ଓ ଅବିଚଳିତ ନ ହୋଇଛି, ସେ ପର୍ଯ୍ୟନ୍ତ ତାଙ୍କର ସମସ୍ତ ଅଙ୍ଗପ୍ରତ୍ୟଙ୍ଗକୁ ଧ୍ୟାନ କରିବା ବାଞ୍ଛନୀୟ ॥୧୮॥

ଭଗବାନଙ୍କର ଲୀଳାଦର୍ଶନପାଇଁ ସବୁବେଳେ ଇଚ୍ଛା ଜନ୍ମିବା ଆବଶ୍ୟକ । ସେଥିପାଇଁ ଠିଆହେବା, ବସିବା ବା ଶୋଇରହିଥିବା ଅବସ୍ଥାରେ ହେଉ କିମ୍ବା ଅନ୍ତର୍ଯାମୀ ଭାବରେ ହେଉ, ତାଙ୍କର ବିଭିନ୍ନ ରୂପକୁ ବିଶୁଦ୍ଧ ଚିତ୍ତରେ ଚିନ୍ତା କରିବା ଆବଶ୍ୟକ ॥୧୯॥ ଯୋଗୀ ଏହିପରି ଭଗବାନଙ୍କ ସର୍ବାଙ୍ଗରେ ନିଜର ଚିତ୍ତ ଲାଗିଥିବାର ଅନୁମାନ କଲେ ସର୍ବାଙ୍ଗରୁ ଚିତ୍ତକୁ ଫେରାଇ ଆଣି ତାଙ୍କରି ଗୋଟିଏ ଗୋଟିଏ ଅଙ୍ଗରେ ଆବଦ୍ଧ କରିବେ ॥୨୦॥ ବଜ୍ର, ଅଙ୍କୁଶ, ଧ୍ୱଜା ଓ ପଦ୍ମ-ଚିହ୍ନିତ ତାଙ୍କ ଚରଣାରବିନ୍ଦକୁ ଧ୍ୟାନ କରିବା ଉଚିତ । କାରଣ ତାଙ୍କ ରକ୍ତାଭ ଚନ୍ଦ୍ରମଣ୍ଡଳତୁଲ୍ୟ ନଖମାନଙ୍କର ଜ୍ୟୋତିରେ ଭକ୍ତର ହୃଦୟରେ ଥିବା ଅଜ୍ଞତାର ଘୋର ଅନ୍ଧକାର ଦୂର ହୋଇଯାଏ ॥୨୧॥ ତାଙ୍କ ପାଦ ଧୌତ କରିବାପାଇଁ ନଖରୁ ଗଙ୍ଗାଦେବୀ ପ୍ରବାହିତ ହେଲେ ଏବଂ ତାର ପବିତ୍ର ଜଳକୁ ନିଜର ମସ୍ତକରେ ଧାରଣ କରି ଭଗବାନ ଶଙ୍କର ଶିବ ବା ମଙ୍ଗଳମୟ ହୋଇଗଲେ । ତାଙ୍କର ସେହି ପାଦପଦ୍ମକୁ ସର୍ବଦା ଧ୍ୟାନ କରିବା ଉଚିତ । କାରଣ ଧ୍ୟାନକାରୀ ଭକ୍ତର ମନରେ ଯେଉଁ ପାପର ପାହାଡ଼ ଠିଆ ହୋଇଛି, ସେହି ପାଦ ବଜ୍ରପରି ହୋଇ ତାକୁ ଖଣ୍ଡ ଖଣ୍ଡ କରିଦେବ ॥୨୨॥ ଶ୍ରୀଭଗବାନ ଅଜନ୍ମା । ମାତ୍ର ସେ ବିଧାତାଙ୍କର ଜନକ । ତେଣୁ ଲକ୍ଷ୍ମୀଦେବୀ ବ୍ରହ୍ମାଙ୍କର ମାତୃସ୍ୱରୂପିଣୀ । ବ୍ରହ୍ମାଙ୍କର ଜନନୀ କମଳନୟନା ସୁରବନ୍ଦିତା ଲକ୍ଷ୍ମୀଦେବୀ ଶ୍ରୀ ଭଗବାନଙ୍କ ଜାନୁଦ୍ୱୟକୁ ନିଜ ଊରୁ ଉପରେ ରଖି କରପଲ୍ଲବରେ ଯତ୍ନର ସହିତ ଘଷି ଦେଉଥାନ୍ତି । ତେଣୁ ଶ୍ରୀହରିଙ୍କ ପାଦପଦ୍ମକୁ ଭକ୍ତ ହୃଦୟରେ ଧ୍ୟାନ କରିବା ଉଚିତ ॥୨୩॥

ପୁଣି ଗରୁଡ଼ ପିଠିରେ ବସିଥିବା ଭଗବାନଙ୍କର ଊରୁଦ୍ୱୟ ଗରୁଡ଼ଙ୍କର ଦୁଇଟି ପକ୍ଷ ଉପରେ ଶୋଭା ପାଉଥାଏ । ସେହି ଊରୁଦ୍ୱୟ ଅତସୀଫୁଲପରି ଶ୍ୟାମବର୍ଣ୍ଣ, ସମସ୍ତ ବଳର ଆଧାର ଓ ଲମ୍ବମାନ ପୀତାମ୍ବର ଦ୍ୱାରା ଆଚ୍ଛାଦିତ । ଏହା ଉପରେ ସୁବର୍ଣ୍ଣର କଟି ମେଖଳା (ଚନ୍ଦ୍ରହାର) ତାଙ୍କ ନିତମ୍ବକୁ ଆଲିଙ୍ଗନ କରୁଥାଏ । ଏହିପରି ଭଗବାନଙ୍କ ଊରୁଦ୍ୱୟକୁ ଭକ୍ତ ଧ୍ୟାନ କରିବା ବାଞ୍ଛନୀୟ ॥୨୪॥ ସମସ୍ତ ଲୋକର ଆଶ୍ରୟସ୍ଥଳ ଭଗବାନଙ୍କର ନାଭିସରୋବରକୁ ଏହାପରେ ଧ୍ୟାନ କରିବ । ଏଥିରୁ ଉତ୍ଥିତ ପଦ୍ମ ହେଉଛି ସକଳଲୋକର ଆଧାର ଓ ବ୍ରହ୍ମାଙ୍କର ବାସସ୍ଥାନ । ତା'ପରେ ଶ୍ରେଷ୍ଠ ମରକତ ମଣିତୁଲ୍ୟ ଭଗବାନଙ୍କର ସ୍ତନଦ୍ୱୟକୁ ଧ୍ୟାନ କରିବ ଯାହାକି ତାହା ଉପରେ ପଡ଼ିଥିବା ଶୁଭ୍ର ହାରର ଜ୍ୟୋତିରେ ଗୌରବର୍ଣ୍ଣ ଦେଖାଯାଉଛି ॥୨୫॥ ତା'ପରେ ମହାଲକ୍ଷ୍ମୀଙ୍କର ବାସସ୍ଥାନ ଶ୍ରୀପୁରୁଷୋତ୍ତମଙ୍କର ବକ୍ଷସ୍ଥଳକୁ ଧ୍ୟାନ କରିବ । ତାହା ଲୋକଙ୍କର ନୟନ ମନକୁ ଆହ୍ଲାଦିତ କରେ । ପୁଣି ସମସ୍ତ ଲୋକର ବନ୍ଦନୀୟ ଶ୍ରୀଭଗବାନଙ୍କର ଗଳାକୁ ଚିନ୍ତା କରିବା ଆବଶ୍ୟକ – ସେହି ଗଳା ସତେଯେପରି ଅଳଂକାରରୂପେ କୌସ୍ତୁଭମଣିକୁ ଧାରଣ କରିବାପାଇଁ ହୋଇଛି ॥୨୬॥

ପରେ ପରେ ତାଙ୍କର ଚତୁର୍ଭୁଜକୁ ଧ୍ୟାନ କରିବ । ତାଙ୍କର ଏହି ଭୁଜମାନଙ୍କରେ ଲୋକମାନେ ଆଶ୍ରୟ ଗ୍ରହଣ କରିଥାନ୍ତି । ସମୁଦ୍ରମନ୍ଥନ ସମୟରେ ମନ୍ଦର ପର୍ବତକୁ ସେ ମନ୍ଥନଦଣ୍ଡ ଭାବରେ ବ୍ୟବହାର କଲାବେଳେ ତାଙ୍କର ଭୁଜସ୍ଥିତ କଙ୍କଣ କେୟୂର ଆଦି ଅଳଙ୍କାରମାନ ସେଥିରେ ରଗଡ଼ି ହୋଇ ଅଧିକ ଉଜ୍ଜ୍ୱଳ ହୋଇଯାଇଛନ୍ତି । ଏକ ହସ୍ତରେ ସେ ଅସହ୍ୟ ତେଜୋମୟ ସହସ୍ରଧାର ସୁଦର୍ଶନ ଚକ୍ରକୁ ଧାରଣ କରିଛନ୍ତି । ଅନ୍ୟ ଏକ କରକମଳରେ ଅଛି ଶଙ୍ଖ, ଯେ କି ପଦ୍ମଲୋଭୀ ରାଜହଂସ ପରି ଜଣାଯାଉଚି ॥୨୭॥ ଏହାପରେ ଶତ୍ରୁସେନାର ରକ୍ତରେ ଲିପ୍ତ ଭଗବାନଙ୍କର ପ୍ରିୟ କୌମୋଦକୀ ଗଦାକୁ ସ୍ମରଣ କରିବ । ପୁଣି ତାଙ୍କର ମାଳାକୁ, ଯାହାଉପରେ ମଧୁପମାନେ ବସି ଗୁଞ୍ଜନ କରୁଛନ୍ତି । ତା'ପରେ ତାଙ୍କ କଣ୍ଠରେ ଥିବା କୌସ୍ତୁଭମଣିକୁ ଧ୍ୟାନ କରିବ, ଯେକି ଜୀବାତ୍ମାର ବିଶୁଦ୍ଧ ରୂପେ ବିରାଜମାନ ॥୨୮॥

ଭକ୍ତମାନଙ୍କ ପ୍ରତି ଅଶେଷ କରୁଣାରୁ ସାକାର ରୂପ ଧରିଥିବା ଶ୍ରୀଭଗବାନଙ୍କର ମୁଖପଦ୍ମକୁ ସମ୍ୟକ୍ ଧ୍ୟାନ କରିବ । ତାଙ୍କ କର୍ଣ୍ଣଦ୍ୱୟରେ ଝୁଲୁଥିବା ମକରକୁଣ୍ଡଳ ଦ୍ୱାରା ମନୋରମ ଗଣ୍ଡଦେଶ ଆହୁରି ଝଟକି ଉଠୁଚି ॥୨୯॥ ଯାହାଙ୍କର ଚୂର୍ଣ୍ଣକୁନ୍ତଳଯୁକ୍ତ ମୁଖପଦ୍ମର ଶୋଭା ଭ୍ରମରସେବିତ ପଦ୍ମକେଶରର ସୌନ୍ଦର୍ଯ୍ୟକୁ ଭର୍ତ୍ସନା କରେ, ଯାହାଙ୍କର ବଦନକମଳରେ ନୟନଯୁଗଳ ପଦ୍ମକୁ ଆଶ୍ରୟ କରିଥିବା ଦୁଇଟି ମୀନପରି ଶୋଭାପାଉଥାଏ, ସେହି ଚଞ୍ଚଳ ଭ୍ରୂଲତାଯୁକ୍ତ କମଳନୟନ ଭଗବାନଙ୍କର ମୁଖପଦ୍ମକୁ ଧ୍ୟାନ କରିବ ॥୩୦॥ ତ୍ରିତାପର ଘୋର ଯନ୍ତ୍ରଣାରେ ପୀଡ଼ିତ ମନୁଷ୍ୟ ତାହାର ଉପଶମପାଇଁ ଭଗବାନଙ୍କର କୃପାକଟାକ୍ଷକୁ ସବୁବେଳେ ଅନ୍ତରମଧ୍ୟରେ ଧ୍ୟାନ କରିବା ଉଚିତ । କାରଣ ତାଙ୍କର ପ୍ରେମପୂର୍ଣ୍ଣ ମନ୍ଦ ହାସ ଏବଂ କୃପାଦୃଷ୍ଟି ଭକ୍ତକୁ ବିପୁଳ ଆନନ୍ଦ ଦେବାପାଇଁ ଉଦ୍ଦିଷ୍ଟ ଥାଏ ॥୩୧॥ ଭଗବାନଙ୍କର ସେହି ମଧୁର ହସ ଉଦାରତାରେ ପୂର୍ଣ୍ଣ ଓ ପ୍ରଣତ ବ୍ୟକ୍ତିର ଶୋକାଶ୍ରୁ ସାଗରକୁ ଶୋଷଣ କରିଦେଇପାରେ । ମୁନିମାନଙ୍କର ମଙ୍ଗଳପାଇଁ କନ୍ଦର୍ପକୁ ମୋହିତ କରିବା ନିମନ୍ତେ ସେ ତାଙ୍କର ଭ୍ରୂଲତା ଦ୍ୱୟକୁ ରଚନା କରିଛନ୍ତି । ତାହାକୁ ଧ୍ୟାନ କରିବା ଉଚିତ ॥୩୨॥ ପୁଣି ଧ୍ୟାନର ବିଷୟ ହେଉଛି ତାଙ୍କର ଉଚ୍ଚ ହାସ୍ୟ ଯଦ୍ଦ୍ୱାରା କୁନ୍ଦପୁଷ୍ପ ପରି ତାଙ୍କର ଦନ୍ତପଙ୍‌କ୍ତି ରକ୍ତାଧର ଓ ଓଷ୍ଠ ମଧ୍ୟରେ ଉଦ୍‌ଭାସିତ ହୋଇଉଠେ ।

ଏହି ପ୍ରକାର ଭକ୍ତିଭାବରେ ପ୍ରେମାର୍ଦ୍ର ଚିତ୍ତରେ ନିଜ ହୃଦୟକନ୍ଦରରେ ଅବସ୍ଥିତ ଶ୍ରୀବିଷ୍ଣୁଙ୍କୁ ଧ୍ୟାନ କରିବା ଉଚିତ -- ଆଉ କାହାରିକୁ ନୁହେଁ ॥୩୩॥ ଏତାଦୃଶ ଧ୍ୟାନମାର୍ଗରେ ଭଗବାନ ଶ୍ରୀହରିଙ୍କ ପ୍ରତି ପ୍ରେମ ଜାତ ହୁଏ । ଭକ୍ତିରେ ହୃଦୟ ଦ୍ରବୀଭୂତ ହୋଇଯାଏ ଓ ଶରୀରରେ ପୁଲକ ଜାତ ହୁଏ । ଅତିଶୟ ଭାବାବେଶରେ ଧାର ଧାର ଅଶ୍ରୁ ବହି ଦେହକୁ ସିକ୍ତ କରିଦିଏ । ବନିଶୀ ଖାଡ଼ି ସାହାଯ୍ୟରେ ମାଛକୁ ଧରିବା ପରି ଥରେ ନିଜ ଆଡ଼କୁ ଶ୍ରୀ ଭଗବାନଙ୍କୁ ଟାଣି ଆଣିବାପରେ ମନ ଅନ୍ୟ ବିଷୟବସ୍ତୁରୁ ଆପେ ଆପେ ଓହରି ଯାଏ ॥୩୪॥ ଯେପରି ତେଲ ଶେଷ ହୋଇଗଲେ ଦୀପଶିଖା ଶାନ୍ତ ପଡ଼ିଯାଏ, ସେହିପରି କୌଣସି ଚିନ୍ତାକୁ ଆଶ୍ରୟ ନକରି ବିଷୟବାସନାରୁ ବିରତ ରହି ଅନାସକ୍ତ ମନ ସହସା ଶାନ୍ତ ଅବସ୍ଥା ପ୍ରାପ୍ତ ହୁଏ । ଏହି ଅବସ୍ଥାରେ ବ୍ୟକ୍ତି ନିଜକୁ ଏକ ଦେହଧାରୀ ଜୀବରୂପେ ବିଚାର ନ କରି ଅଖଣ୍ଡ ପରମାତ୍ମାଙ୍କ ଅବିଚ୍ଛିନ୍ନ ଅଂଶ ରୂପେ ଦେଖିପାରେ ॥୩୫॥ ଏହିପରି ମନର ଚରମନିବୃତ୍ତି ଫଳରେ ସେ ସୁଖଦୁଃଖର ଉର୍ଦ୍ଧ୍ୱରେ ନିଜକୁ ପରମାନନ୍ଦସ୍ୱରୂପ ମହିମାରେ ଅବସ୍ଥିତ ବୋଲି ଅନୁଭବ କରେ । ପୂର୍ବରୁ ସେ ଅଜ୍ଞାନତା ଯୋଗୁଁ ନିଜକୁ ସୁଖଦୁଃଖର କର୍ତ୍ତା ବୋଲି ମନେ କରୁଥାଏ । ବର୍ତ୍ତମାନ ଅହଙ୍କାର ହିଁ ତା'ର କାରଣ ବୋଲି ସେ ଅନୁଭବ କରେ ॥୩୬॥ ମଦନିଶାରେ ଜ୍ଞାନଶୂନ୍ୟ ବ୍ୟକ୍ତି ଯେପରି ନିଜ ଦେହରେ ବସ୍ତ୍ର ଅଛି କି ନାହିଁ ଜାଣିପାରେ ନାହିଁ, ସେହିପରି ଚରମ ଅବସ୍ଥା ପ୍ରାପ୍ତ ସିଦ୍ଧ ପୁରୁଷ ନିଜର ବସିବା, ଉଠିବା, ଯିବା ଆସିବା ଆଦି ଦେହର କାର୍ଯ୍ୟ ସମ୍ପର୍କରେ ସଚେତନ ନ'ଥାଏ ॥୩୭॥ ପୂର୍ବସଂସ୍କାରବଶରୁ ଇନ୍ଦ୍ରିୟଯୁକ୍ତ ଦେହ ତା'ର ପ୍ରାରବ୍ଧ କର୍ମ ଶେଷ ହେବା ପର୍ଯ୍ୟନ୍ତ ସଂସାରରେ ତିଷ୍ଠିରହେ । କିନ୍ତୁ ଯୋଗଦ୍ୱାରା ସମାଧିସ୍ଥ ହୋଇ ଯେ ଆତ୍ମତତ୍ତ୍ୱ ଲାଭ କରିଛି, ସେ ସ୍ତ୍ରୀପୁତ୍ରାଦିଙ୍କ ସମେତ ନିଜର ଦେହକୁ ସ୍ୱପ୍ନରେ ଦେଖିବା ଭଳି ମନେ କରେ । ଅର୍ଥାତ୍ ତା'ର ସମସ୍ତ ଅହମିକା ଓ ମମତାଦି ଦୂର ହୋଇଯାଏ ॥୩୮॥ ଯେପରି ଅତି ସ୍ନେହବଶରୁ ପୁତ୍ର ଓ ଧନକୁ ନିଜର ବୋଲି ମନେ କରୁଥିବା ବ୍ୟକ୍ତି ଟିକିଏ ଚିନ୍ତା କଲେ ସେ

ସବୁ ତା'ଠାରୁ କିପରି ପୃଥକ୍, ତାହା ଅନୁଭବ କରେ, ସେହିପରି ଆତ୍ମଜ୍ଞ ବ୍ୟକ୍ତି ଦେହଠାରୁ ଆତ୍ମପୁରୁଷକୁ ପୃଥକ୍ ବୋଲି ଦେଖିଥାଏ ॥୩୯॥ ଯେପରି ଜଳନ୍ତା କାଠ ଓ ସେଥିରୁ ବାହାରୁଥିବା ନିଆଁଝୁଲ ବା ଧୂଆଁ ପ୍ରକୃତ ନିଆଁଠାରୁ ଅଲଗା, ସେହିପରି ପଞ୍ଚଭୂତ, ଇନ୍ଦ୍ରିୟ ଓ ଅନ୍ତଃକରଣଠାରୁ ଆତ୍ମା ହେଉଛି ପୃଥକ୍ ଏବଂ ସେହିପରି ଜୀବାତ୍ମାଠାରୁ ତା'ର ଦ୍ରଷ୍ଟାସ୍ୱରୂପ ପରମାତ୍ମା ପୃଥକ୍ ॥୪୦-୪୧॥ କେବଳ ଆତ୍ମଜ୍ଞ ଯୋଗୀ ନିଜକୁ ସମସ୍ତ ପ୍ରାଣୀଙ୍କଠାରୁ ଓ ସମସ୍ତ ପ୍ରାଣୀଙ୍କୁ ନିଜଠାରୁ ଅଭିନ୍ନ ଦେଖିଥାଏ । ଯେପରି ଅଗ୍ନି ଭିନ୍ନ ଭିନ୍ନ ବସ୍ତୁର ଆଶ୍ରୟରେ ଭିନ୍ନ ଭିନ୍ନ ଆକାର ଗ୍ରହଣ କରେ, ସେହିପରି ଏକ ଆତ୍ମା ଭିନ୍ନ ଭିନ୍ନ ପ୍ରକୃତିର ବ୍ୟକ୍ତିଙ୍କ ମଧ୍ୟରେ ରହି ଭିନ୍ନ ଭିନ୍ନ ଜଣାପଡ଼େ । ତେଣୁ ଭଗବାନଙ୍କର ଅଚିନ୍ତ୍ୟ ମାୟାଶକ୍ତିରୁ ଜାତ ନିଜର ସତ୍ ଓ ଅସତ୍ ରୂପ ପ୍ରକୃତିକୁ ଜୟ କରି ଯୋଗୀ ନିଜର ସ୍ୱରୂପରେ ବା ବ୍ରହ୍ମରୂପରେ ଅବସ୍ଥାନ କରେ ॥୪୨-୪୪॥

## ଊନତ୍ରିଂଶ ଅଧ୍ୟାୟ

# ଭକ୍ତିଯୋଗ ଓ କାଳର ମହିମା

ଦେବହୂତି କହିଲେ, ପ୍ରଭୁ ! ମହତ ଆଦି ତତ୍ତ୍ୱମାନଙ୍କର ଲକ୍ଷଣ, ପ୍ରକୃତି ଏବଂ ପୁରୁଷର ସ୍ୱରୂପ ଯାହା ସାଂଖ୍ୟ ଶାସ୍ତ୍ରରେ କୁହାଯାଇଛି, ଏବଂ ଯାହା ଭକ୍ତିଯୋଗର ମୂଳ କଥା, ତାହା ପୃଥକ୍ ପୃଥକ୍ ଭାବରେ ଆପଣ ମୋତେ ବୁଝାଇ କହିଛନ୍ତି । ବର୍ତ୍ତମାନ ଭକ୍ତିଯୋଗର ମାର୍ଗ ବିସ୍ତାରିତ ଭାବରେ ବର୍ଣ୍ଣନା କରନ୍ତୁ ॥୧-୨॥ ଭଗବନ୍ ! ସଂସାରରେ ମୋର ତଥା ସମସ୍ତ ଜୀବଙ୍କର ଜନ୍ମମରଣରୂପୀ ବହୁବିଧ ଗତି ରହିଚି; ତାହାର ବର୍ଣ୍ଣନା ସହିତ ସବୁଆଡୁ କିପରି ବୈରାଗ୍ୟ ଜନ୍ମିବ ତାହା ମଧ୍ୟ ବର୍ଣ୍ଣନା କରନ୍ତୁ ॥୩॥ ଈଶ୍ୱରରୂପୀ କାଳ ଯେ ସମସ୍ତଙ୍କ ମଧ୍ୟରେ ବଳୀୟାନ୍ ଏବଂ ଯାହା ହେତୁ ଲୋକେ ପୁଣ୍ୟ କାର୍ଯ୍ୟ କରନ୍ତି, ତା'ର ସ୍ୱରୂପ ମଧ୍ୟ ବର୍ଣ୍ଣନା କରନ୍ତୁ ॥୪॥ ମିଥ୍ୟା ଅହଙ୍କାରରେ ଅନ୍ଧ ଲୋକ ଆଶ୍ରୟ ନ ପାଇ ଚିରଦିନ ଅନ୍ଧକାରରେ ଶୋଇରହେ । ବିଷୟାସକ୍ତ ବୁଦ୍ଧିଯୋଗୁଁ ସେ କ୍ଲାନ୍ତ, ଶ୍ରାନ୍ତ ହୋଇପଡ଼େ । ତାହାକୁ ଉଠାଇବାପାଇଁ ଆପଣ ଯୋଗରୂପକ ସୂର୍ଯ୍ୟରୂପେ ଉଦିତ ହୋଇଛନ୍ତି ॥୫॥ ମୈତ୍ରେୟ କହିଲେ, କୁରୁଶ୍ରେଷ୍ଠ ବିଦୁର ! ମାତାଙ୍କର ମନୋହାର ବଚନ ଶୁଣି ମହାମୁନି କପିଳ ତାଙ୍କୁ ପ୍ରଶଂସା କଲେ ଓ ଅତିଶୟ ଦୟାର୍ଦ୍ର ଚିତ୍ତରେ ପ୍ରସନ୍ନତାପୂର୍ବକ କହିବା ଆରମ୍ଭ କଲେ ॥୬॥

ଭଗବାନ କହିଲେ, ମାତା ! ଭକ୍ତିଯୋଗ ବହୁପ୍ରକାର । ସାଧକର ସ୍ୱଭାବ ଏବଂ ଗୁଣ ଅନୁସାରେ ଏହା ଭିନ୍ନ ଭିନ୍ନ ରୂପରେ ପ୍ରକାଶ ପାଏ ॥୭॥ ଯେଉଁ କ୍ରୁଦ୍ଧ ବ୍ୟକ୍ତି ହିଂସା, ଦମ୍ଭ ବା ମାତ୍ସର୍ଯ୍ୟ ରୂପକ ଭେଦବୁଦ୍ଧି ରଖି ମୋ ପ୍ରତି ଭକ୍ତିଭାବ ରଖେ, ସେ ହେଉଛି ତାମସ ଭକ୍ତ ॥୮॥ ଯେଉଁ ବ୍ୟକ୍ତି ବିଷୟ, ଯଶ ବା ଐଶ୍ୱର୍ଯ୍ୟ କାମନା କରି ଭେଦବୁଦ୍ଧିରେ ପ୍ରତିମା ଆଦି ରୂପରେ ମୋତେ ପୂଜା କରେ ସେ ହେଉଛି ମୋର ରାଜସ ଭକ୍ତ ॥୯॥ ଯେଉଁ ବ୍ୟକ୍ତି ପାପକ୍ଷୟପାଇଁ ପରମେଶ୍ୱରଙ୍କଠାରେ ସମସ୍ତ କର୍ମର ଅର୍ପଣକରେ ଏବଂ ମୋତେ ଏକମାତ୍ର ଅର୍ଚ୍ଚନୀୟ ଭାବି ମୋର ପୂଜା କରେ ସେ ହିଁ ସାତ୍ତ୍ୱିକ ଭକ୍ତ ॥୧୦॥

ଯେପରି ଗଙ୍ଗା ସମୁଦ୍ରରେ ମିଶିବାପାଇଁ ଅବିଚ୍ଛିନ୍ନ ଭାବରେ ପ୍ରବାହିତ ହୁଏ, ସେହିପରି ମୋର ଗୁଣ ଶ୍ରବଣମାତ୍ରେ ସର୍ବାନ୍ତର୍ଯାମୀ ସ୍ୱରୂପ ମୋଠାରେ ମିଶିଯିବାପାଇଁ ଭକ୍ତମନର ଗତି ଅବିଚ୍ଛିନ୍ନ ଭାବରେ ଧାବିତ ହୁଏ; ତାହା ନିର୍ଗୁଣା ଭକ୍ତି । ଫଳଲାଭ ଆଶା ନ କରି ବିନା ଭେଦବୁଦ୍ଧିରେ ଶ୍ରୀ ପୁରୁଷୋତ୍ତମଙ୍କଠାରେ ଯେଉଁ ନିଷ୍ଠଳା ଭକ୍ତି ରଖାଯାଏ, ତାହା ହିଁ ନିର୍ଗୁଣା ଭକ୍ତିର ଲକ୍ଷଣ ॥୧୧-୧୨॥ ଏହିପରି ନିଷ୍କାମ ଭକ୍ତମାନେ ମୋର ସେବାକୁ ଛାଡ଼ି କୌଣସି ବସ୍ତୁ ଗ୍ରହଣ କରନ୍ତି ନାହିଁ । ଏପରିକି, ସାଲୋକ୍ୟ (ସମାନ ଲୋକରେ ବାସ), ସାର୍ଷ୍ଟି (ସମାନ ଐଶ୍ୱର୍ଯ୍ୟଲାଭ), ସାମୀପ୍ୟ (ଅତି ନିକଟରେ ରହିବା)

ସାରୂପ୍ୟ (ସମାନରୂପ ପ୍ରାପ୍ତ ହେବା), ଏକତ୍ୱ ବା ସାଯୁଜ୍ୟ (ଏକାକାର ହୋଇଯିବା) --ଏହିପରି ମୋକ୍ଷଲାଭକୁ ମଧ୍ୟ ଗ୍ରହଣ କରନ୍ତି ନାହିଁ ॥୧୩॥ ଏହି ଏକାନ୍ତ ଭକ୍ତିଯୋଗର ମୁଁ ଉଦାହରଣ ଦେଲି, ଯଦ୍ୱାରା ପୁରୁଷ ତିନି ଗୁଣକୁ ତ୍ୟାଗ କରି ମୋର ଭାବ ବା ବ୍ରହ୍ମତ୍ୱ ଲାଭ କରେ ॥୧୪॥

ହିଂସା ତ୍ୟାଗ କରି ଶ୍ରଦ୍ଧାପୂର୍ବକ ନିଷ୍କାମଭାବରେ ନିଜର ନିତ୍ୟନୈମିତ୍ତିକ କର୍ତ୍ତବ୍ୟ ପାଳନପୂର୍ବକ କ୍ରିୟାଯୋଗ (ପଞ୍ଚରାତ୍ରାଦିରେ ଉକ୍ତ ପୂଜାବିଧି) କରିବା, ମୋ' ପ୍ରତିମାର ଦର୍ଶନ, ସ୍ପର୍ଶ, ପୂଜା, ସ୍ତୁତି ଓ ବନ୍ଦନା କରିବା, ସମସ୍ତ ପ୍ରାଣୀଙ୍କ ଠାରେ ମୋର ଭାବନା ରଖିବା, ଅନାସକ୍ତ ରହି ଧୈର୍ଯ୍ୟ ଧରିବା, ସାଧୁମାନଙ୍କୁ ସମ୍ମାନ ଦେବା, ଦୀନ ଦୁଃଖୀଙ୍କୁ ଦୟା ଦେଖାଇବା, ସମସ୍ତଙ୍କୁ ଆତ୍ମତୁଲ୍ୟ ବନ୍ଧୁଭାବରେ ଦେଖିବା, ଯମ ନିୟମାଦି ପାଳନପୂର୍ବକ ଆଧ୍ୟାତ୍ମଶାସ୍ତ୍ର ଶ୍ରବଣ କରିବା ଏବଂ ନାମସଂକୀର୍ତ୍ତନ, ମନର ସରଳତା, ସତ୍‌ସଙ୍ଗ ଓ ନିରହଙ୍କାର ଭାବଦ୍ୱାରା ମୋର ଧର୍ମକୁ (ଭଗବତ୍‌ଧର୍ମ) ପାଳନ କରୁଥିବା ପୁରୁଷର ଆତ୍ମଶୁଦ୍ଧି ହୁଏ ଏବଂ ସେ ସହଜରେ ମୋର ଗୁଣ ଶ୍ରବଣ ମାତ୍ରେ ମୋଠାରେ ଯୁକ୍ତ ହୋଇଯାଏ ॥୧୫-୧୯॥ ଯେପରି ପୁଷ୍ପର ସୁଗନ୍ଧ ବାୟୁଦ୍ୱାରା ଚାଳିତ ହୋଇ ଘ୍ରାଣେନ୍ଦ୍ରିୟ ପାଖରେ ପହଞ୍ଚିଯାଏ, ଠିକ୍ ସେହିପରି ରାଗଦ୍ୱେଷବର୍ଜ୍ଜିତ ଚିତ୍ତ ଭକ୍ତିଯୋଗଦ୍ୱାରା ପରମାତ୍ମାଙ୍କ ସହିତ ମିଳିତ ହୁଏ ॥୨୦॥ ମୁଁ ସମସ୍ତ ପ୍ରାଣୀମାନଙ୍କ ମଧ୍ୟରେ ଆତ୍ମାରୂପେ ଅବସ୍ଥିତ । ଯେଉଁ ବ୍ୟକ୍ତି ମୋତେ ଅନାଦର କରି ପ୍ରତିମା ପୂଜା କରେ, ତା'ର ସେହି ପୂଜା ବିଡ଼ମ୍ବନା ମାତ୍ର ॥୨୧॥ ମୁଁ ସମସ୍ତ ପ୍ରାଣୀମଧ୍ୟରେ ଥିବା ଆତ୍ମା ସ୍ୱରୂପ ଭଗବାନ । କିନ୍ତୁ ମୋହବଶତଃ ଯେ ଆତ୍ମାରୂପୀ ମୋତେ ଛାଡ଼ି କେବଳ ପ୍ରତିମା ପୂଜାରେ ଲାଗିଯାଏ, ତା'ର ସେହି ପୂଜା ପାଉଁଶ ଉପରେ ଆହୁତି ଦେବା ସଙ୍ଗେ ସମାନ ॥୨୨॥ ଯେଉଁ ଦ୍ୱେଷଯୁକ୍ତ ଅଭିମାନୀ ବ୍ୟକ୍ତି ଅନ୍ୟମାନଙ୍କ ଶରୀରରେ ଥିବା ମୋତେ ନିଜଠାରୁ ଭିନ୍ନ ଦୃଷ୍ଟିରେ ଦେଖେ ଏବଂ ପ୍ରାଣୀମାନଙ୍କପ୍ରତି ମନରେ ବଦ୍ଧମୂଳ ଶତ୍ରୁତା ରଖିଥାଏ, ସେ କେବେହେଲେ ଶାନ୍ତି ପାଇପାରେ ନାହିଁ ॥୨୩॥ ମାତା! ପ୍ରାଣୀମାନଙ୍କୁ ଅବଜ୍ଞା କରି ଯେ ବିଭିନ୍ନ ଦ୍ରବ୍ୟ ଓ ପ୍ରକ୍ରିୟାରେ ମୋତେ ସନ୍ତୁଷ୍ଟ କରିବା ପାଇଁ ପୂଜା ଅର୍ଚ୍ଚନା କରେ, ମୁଁ ସେଥିରେ ସନ୍ତୁଷ୍ଟ ହୁଏ ନାହିଁ ॥୨୪॥ ଯେପର୍ଯ୍ୟନ୍ତ ବ୍ୟକ୍ତି ନିଜ ହୃଦୟରେ ଓ ସମସ୍ତ ପ୍ରାଣୀ ମଧ୍ୟରେ ମୋର ଅବସ୍ଥିତିକୁ ଅନୁଭବ ନ କରିଥାଏ, ସେପର୍ଯ୍ୟନ୍ତ ସ୍ୱଧର୍ମ ପାଳନ କରି ମୋତେ ପ୍ରତିମା ଆଦିରେ ପୂଜା କରିବାକୁ ଲାଗିଥାଏ ॥୨୫॥ ଯେଉଁ ବ୍ୟକ୍ତି ନିଜ ଓ ପର ମଧ୍ୟରେ ଅନ୍ତର ଅଛି ବୋଲି ମଧ୍ୟ ମନେ କରେ, ମୃତ୍ୟୁ ରୂପରେ ସେହି ଭେଦଦର୍ଶୀ ବ୍ୟକ୍ତିର ମୁଁ ମହାଭୟ ଉତ୍ପାଦନ କରେ ॥୨୬॥ ଏଣୁ ସମସ୍ତ ପ୍ରାଣୀଙ୍କ ମଧ୍ୟରେ ମୁଁ ଜୀବାତ୍ମା ରୂପେ ଅବସ୍ଥାନ କରୁଛି ବୋଲି ଅନୁଭବ କରି ଦାନ, ମାନ, ମିତ୍ରତା ଓ ସମଦୃଷ୍ଟିଦ୍ୱାରା ମୋର ପୂଜା କରାଯିବା ଉଚିତ ॥୨୭॥

ପାଷାଣ ଆଦି ଅଚେତନ ପଦାର୍ଥଙ୍କ ଅପେକ୍ଷା ଜୀବନଥିବା ବୃକ୍ଷାଦି ଶ୍ରେଷ୍ଠ ॥୨୮-୨୯॥ ସେମାନଙ୍କଠାରୁ ନିଃଶ୍ୱାସ ପ୍ରଶ୍ୱାସ ନେଉଥିବା ଜୀବ ଶ୍ରେଷ୍ଠ । ଏମାନଙ୍କ ମଧ୍ୟରେ ଚିତ୍ତଯୁକ୍ତ ପ୍ରାଣୀ ଶ୍ରେଷ୍ଠ ଏବଂ ସେମାନଙ୍କ ମଧ୍ୟରେ ଇନ୍ଦ୍ରିୟବୃତ୍ତି ଦ୍ୱାରା ଚାଳିତ ଜୀବ ଉତ୍କୃଷ୍ଟତର । ସେମାନଙ୍କ ମଧ୍ୟରେ କେବଳ ସ୍ପର୍ଶକୁ ହିଁ ଗ୍ରହଣ କରୁଥିବା ବ୍ୟକ୍ତିଙ୍କଠାରୁ ରସ ଗ୍ରହଣ କରୁଥିବା ପ୍ରାଣୀ (ମତ୍ସ୍ୟ ଆଦି) ଉତ୍କୃଷ୍ଟତର । ତାଙ୍କଠାରୁ ଗନ୍ଧ ଅନୁଭବ କରୁଥିବା ଜୀବ (ଭ୍ରମର ଆଦି) ଶ୍ରେଷ୍ଠ ଏବଂ ଗନ୍ଧ ଗ୍ରହଣ କରୁଥିବା ଜୀବଙ୍କ ଅପେକ୍ଷା ଶବ୍ଦଗ୍ରାହୀ ଜୀବ (ସର୍ପ) ଉତ୍କୃଷ୍ଟତର । ତାଙ୍କଠାରୁ ରୂପର ଭେଦକୁ ଅନୁଭବ କରୁଥିବା ଜୀବ (କାକ ଆଦି) ଶ୍ରେଷ୍ଠ । ସେମାନଙ୍କଠାରୁ ଉପର ଓ ତଳ ପାଟିରେ ଦାନ୍ତ ଥିବା ପ୍ରାଣୀ ଶ୍ରେଷ୍ଠ । ତାଙ୍କ ମଧ୍ୟରେ ପାଦ ନ ଥିବା ଜୀବଙ୍କଠାରୁ ବହୁପାଦ ଶ୍ରେଷ୍ଠ ଏବଂ ବହୁପାଦଙ୍କଠାରୁ ଚତୁଷ୍ପଦ (ପଶୁ) ଓ ଚତୁଷ୍ପଦଙ୍କ ଠାରୁ ଦ୍ୱିପଦ (ମନୁଷ୍ୟ) ଶ୍ରେଷ୍ଠ ॥୩୦॥

ମନୁଷ୍ୟମାନଙ୍କ ମଧ୍ୟରେ ଚାରି ବର୍ଣ୍ଣ ହେଉଛନ୍ତି ଶ୍ରେଷ୍ଠ । ଚାରି ବର୍ଣ୍ଣଙ୍କ ମଧ୍ୟରେ ବ୍ରାହ୍ମଣ ଶ୍ରେଷ୍ଠ । ବ୍ରାହ୍ମଣମାନଙ୍କ ମଧ୍ୟରେ ବେଦଜ୍ଞ ଉତ୍କୃଷ୍ଟ ଏବଂ ବେଦଜ୍ଞଠାରୁ ବେଦର ଅର୍ଥ ଜାଣିଥିବା ବ୍ରାହ୍ମଣ ଶ୍ରେଷ୍ଠ ॥୩୧॥ ଅର୍ଥଜ୍ଞଙ୍କଠାରୁ ସଂଶୟ ନିବାରଣ କରିପାରୁଥିବା ବ୍ୟକ୍ତି ଶ୍ରେଷ୍ଠ ଏବଂ ତାଙ୍କଠାରୁ ନିଜର ବର୍ଣ୍ଣାଶ୍ରମ କର୍ମ କରୁଥିବା ବ୍ୟକ୍ତି ଶ୍ରେଷ୍ଠ ଏବଂ ତାଙ୍କଠାରୁ ସମସ୍ତ ଆସକ୍ତିକୁ ତ୍ୟାଗ କରି ନିଷ୍କାମଭାବରେ ସ୍ୱଧର୍ମ ପାଳନ କରୁଥିବା ବ୍ୟକ୍ତି ଶ୍ରେଷ୍ଠ ॥୩୨॥ ତା'ଠାରୁ ଯେ ତା'ର ସମସ୍ତ କର୍ମ, କର୍ମଫଳ ଓ

ଦେହକୁ ମଧ୍ୟ ମୋ'ଠାରେ ଅର୍ପଣ କରିଥାଏ, ସେହିପରି ନିଷ୍କାମ ସମଦର୍ଶୀ ବ୍ୟକ୍ତିଠାରୁ ମୁଁ ଅନ୍ୟ କାହାରିକୁ ଶ୍ରେଷ୍ଠ ବୋଲି ଦେଖେ ନାହିଁ ।।୩୩।। ସେ ମନରେ ଗ୍ରହଣ କରିନେଇଥାଏ ଯେ, ସମସ୍ତଙ୍କ ମଧ୍ୟରେ ଯେଉଁ ଜୀବାତ୍ମା ବିଦ୍ୟମାନ ସେ ଈଶ୍ୱର, ସେ ହିଁ ଭଗବାନ । ତେଣୁ ସେ ସମସ୍ତ ପ୍ରାଣୀଙ୍କୁ ବହୁମାନ୍ୟପୂର୍ବକ ପ୍ରଣାମ କରେ ।।୩୪।। ମାତା ! ଏହିପରି ମୁଁ ତୁମ ଆଗରେ ଭକ୍ତିଯୋଗ ଓ ଅଷ୍ଟାଙ୍ଗଯୋଗ ବର୍ଣ୍ଣନା କଲି । ଏହା ମଧ୍ୟରୁ ଗୋଟିଏ ସାଧନା କରିପାରିଲେ ପୁରୁଷ ପୁରୁଷୋତ୍ତମଙ୍କୁ ଲାଭ କରିପାରେ ।।୩୫।। ପରମାତ୍ମା ପରଂବ୍ରହ୍ମ ଭଗବାନଙ୍କର ଏହା ହିଁ ସ୍ୱରୂପ । ସେ ହିଁ ଶ୍ରେଷ୍ଠ, ପୁରୁଷୋତ୍ତମ, ଅଦ୍ଭୁତକର୍ମା ଓ ଦୈବରୂପରେ କଥିତ ।।୩୬।। ନାନା ବୈଚିତ୍ର୍ୟର ହେତୁ ସେହି ଦିବ୍ୟ ପୁରୁଷ କାଳ ରୂପରେ ଅଭିହିତ ଏବଂ ମହତ୍ ତତ୍ତ୍ୱାଦିର ପ୍ରଭାବରେ ଭେଦଦର୍ଶୀ ପ୍ରାଣୀମାନଙ୍କ ଭୟର କାରଣ ।।୩୭।।

ଯେ ସମସ୍ତଙ୍କର ଆଶ୍ରୟରୂପେ ଅନ୍ତଃକରଣରେ ପ୍ରବେଶ କରି ପ୍ରାଣୀମାନଙ୍କ ଦ୍ୱାରା ପ୍ରାଣୀମାନଙ୍କୁ ସଂହାର କରନ୍ତି, ତାଙ୍କୁ କଳନାକାରୀମାନଙ୍କ ଦୃଷ୍ଟିରେ କାଳ କୁହାଯାଏ ଏବଂ ଯଜ୍ଞଫଳଦାତା ବିଷ୍ଣୁରୂପେ ଅଭିହିତ କରାଯାଏ ।।୩୮।। ତାଙ୍କର କେହି ପ୍ରିୟ ନ ଥାନ୍ତି । ମିତ୍ର ନ ଥାନ୍ତି କି ଶତ୍ରୁ ନ ଥାନ୍ତି । ସେ ସର୍ବଦା ଅପ୍ରମତ୍ତ ବା ସଜାଗ ରହି ପ୍ରମତ୍ତ ବ୍ୟକ୍ତିମାନଙ୍କୁ ସଂହାର କରନ୍ତି ।।୩୯।। ତାଙ୍କ ଭୟରେ ପବନ ବହେ । ସୂର୍ଯ୍ୟ ତାପ ଦାନ କରେ । ଇନ୍ଦ୍ର ବର୍ଷା କରେ ଏବଂ ଆକାଶରେ ଜ୍ୟୋତିଷ୍କମାନେ ପ୍ରଭା ବିସ୍ତାର କରନ୍ତି ।।୪୦।। ତାଙ୍କ ଭୟରେ ଲତା ଓ ଓଷଧିମାନଙ୍କ ସହିତ ବନସ୍ପତିମାନେ ଠିକ୍ ଠିକ୍ ସମୟରେ ପୁଷ୍ପିତ ଓ ଫଳବତୀ ହୁଅନ୍ତି । ତାଙ୍କ ଭୟରେ ନଦୀମାନେ ପ୍ରବାହିତ ହୁଅନ୍ତି, ସମୁଦ୍ର କୂଳ ଲଂଘନ କରେ ନାହିଁ; ଅଗ୍ନି ପ୍ରଜ୍ୱଳିତ ହୁଏ ଏବଂ ପର୍ବତମାନଙ୍କ ସହିତ ପୃଥିବୀ ଜଳମଗ୍ନ ନ ହୋଇ ଠିକ୍ ଭାବରେ ରହିଥାଏ ।।୪୧-୪୨।। ତାଙ୍କ ନିୟନ୍ତ୍ରଣରେ ରହି ଆକାଶ ଜୀବନ୍ତ ପ୍ରାଣୀମାନଙ୍କୁ ଶ୍ୱାସ ପ୍ରଶ୍ୱାସର ସୁଯୋଗ ଦିଏ, ମହତ୍ ତତ୍ତ୍ୱ ସପ୍ତ ଆବରଣଦ୍ୱାରା ଆବୃତ ହୋଇ ନିଜର ଦେହକୁ ବ୍ରହ୍ମାଣ୍ଡ ରୂପରେ ବିସ୍ତାର କରେ । ତାଙ୍କରି ଭୟରେ ବିଭିନ୍ନ ଗୁଣକୁ ଆଶ୍ରୟ କରିଥିବା ବ୍ରହ୍ମାଦି ଦେବତାମାନେ ସୃଷ୍ଟି କାର୍ଯ୍ୟରେ ଯୁଗେ ଯୁଗେ ନିଜକୁ ନିୟୋଜିତ କରିଥା'ନ୍ତି ଏବଂ ତାଙ୍କ ବଶରେ ସମସ୍ତ ଚରାଚରକୁ ରଖିଥା'ନ୍ତି । ସମସ୍ତଙ୍କ ଅନ୍ତକାରୀ କାଳସ୍ୱରୂପ ସେ ସ୍ୱୟଂ ଅନନ୍ତ । ଆଦ୍ୟସୃଷ୍ଟିର ରଚନାକାରୀ ହେଲେ ମଧ୍ୟ ସେ ହେଉଛନ୍ତି ଅନାଦି । ତାଙ୍କର କ୍ଷୟ ନାହିଁ । ସେ ଲୋକଙ୍କ ଦ୍ୱାରା ଏହି ଲୋକଙ୍କୁ ସୃଷ୍ଟି କରନ୍ତି ଏବଂ ସଂହାର କରନ୍ତି । ଏପରିକି ମୃତ୍ୟୁର ଦେବତା ଯମ ମଧ୍ୟ ବର୍ତ୍ତିପାରେ ନାହିଁ ।।୪୩-୪୫।।

### ତ୍ରିଂଶ ଅଧ୍ୟାୟ

## ଦେହାସକ୍ତ ଲୋକଙ୍କ ଅଧୋଗତି

ବାୟୁ ମେଘମାନଙ୍କୁ ଉଡ଼ାଇନିଏ । କିନ୍ତୁ ମେଘମାନେ ମୋର ବଳକୁ ଜାଣିପାରନ୍ତି ନାହିଁ । ସେହିପରି ମନୁଷ୍ୟ କାଳବଶରେ ପରିଚାଳିତ ହୋଇ ମଧ୍ୟ କାଳର ପ୍ରବଳ ପରାକ୍ରମକୁ ଜାଣିପାରେ ନାହିଁ ।।୧।। ସୁଖଲାଭ ଆଶାରେ ବଡ଼ କଷ୍ଟରେ ସେ ଯେଉଁ ଧନ ଆହରଣ କରେ, କାଳରୂପୀ ଭଗବାନ୍ ତାହା ନଷ୍ଟ କରିଦିଅନ୍ତି ଓ ଏଇଥିପାଇଁ ସେ ଶୋକ କରେ ।।୨।। ମନ୍ଦମତି ଜୀବ ନିଜର ଅନିତ୍ୟ ଶରୀର ଏବଂ ତା'ସହିତ ଯୁକ୍ତ ନିଜର ସ୍ତ୍ରୀ, ସନ୍ତାନ, ଘର, ବିଷୟବାଡ଼ି ଏବଂ ଧନ ଆଦିକୁ ମୋହବଶତଃ ନିତ୍ୟ ବୋଲି ମନେକରେ ।।୩।। ଏହି ଭବସଂସାରରେ ଜୀବ ଯେଉଁ ଯେଉଁ ଯୋନିରେ ଜନ୍ମଗ୍ରହଣ କରେ, ସେଥିରେ ସେ ଆସକ୍ତ ହୋଇ ରହେ । ସଂସାର ପ୍ରତି ତା'ର ବିରକ୍ତି ଜନ୍ମେ ନାହିଁ ।।୪।। ଏପରିକି ନରକରେ ରହିଲେ ମଧ୍ୟ ପୁରୁଷ ଦେହପ୍ରତି ଥିବା ତା'ର ଆସକ୍ତିକୁ ଛାଡ଼ିବାକୁ ଇଚ୍ଛା କରେ ନାହିଁ । ଦେବମାୟାରେ ମୋହିତ ହୋଇ ନରକଭୋଗରୁ ସେ ନିବୃତ୍ତ ହୁଏ ନାହିଁ ।।୫।।

ନିଜର ସ୍ତ୍ରୀ, ପୁତ୍ର, ଗୃହ, ପଶୁ, ଧନ ଓ ବନ୍ଧୁବାନ୍ଧବଙ୍କ ପ୍ରତି ତା'ର ଆସକ୍ତି ଏପରି ବଦ୍ଧମୂଳ ହୋଇଥାଏ ଯେ, ସେମାନଙ୍କୁ ଧରି ସେ ନିଜକୁ ବଡ଼ ମନେ କରେ ।।୬।। ସେମାନଙ୍କ ପୋଷଣ ଚିନ୍ତାରେ ସର୍ବାଙ୍ଗ ଜଳୁଥିଲେ ମଧ୍ୟ ସେହି ମୂର୍ଖ ମନ୍ଦମତି ଅବିରତ ପାପକାର୍ଯ୍ୟ କରିଚାଲିଥାଏ ।।୭।। କୁଳଟା ସ୍ତ୍ରୀର କପଟପୂର୍ଣ୍ଣ ପ୍ରେମ ତାକୁ ଘାରୁଥାଏ । ଶିଶୁମାନଙ୍କର ମଧୁର ଦରୋଟି କଥାରେ ସେ ମୋହିତ ହୋଇଯାଏ ।।୮।। ଏହିପରି ଅବିଶ୍ରାନ୍ତ ଭାବରେ ଦୁଃଖାବହ, କପଟପୂର୍ଣ୍ଣ ଗୃହକର୍ମରେ ସେ ଲିପ୍ତ ରହିଥାଏ । ଏହି ଗୃହସ୍ଥ (ପ୍ରକୃତ ସୁଖଲାଭକୁ ନୁହେ)ଦୁଃଖର ପ୍ରତିକାରକୁ ହିଁ ସୁଖ ବୋଲି ମନେକରେ ।।୯।।

ଗୁରୁତର ହିଂସାଦ୍ୱାରା ଇତସ୍ତତଃ ସେ ଯେଉଁ ଅର୍ଥ ଉପାର୍ଜନ କରେ, ସେଥିରେ ସେ ତା'ର କୁଟୁମ୍ବଙ୍କୁ ପୋଷେ ଏବଂ ସେମାନଙ୍କ ଠାରୁ ଯାହା କିଛି ବଳେ, ତାହା ସେ ଖାଇପିଇ ଚଳେ ଏବଂ ନିଜପାଇଁ ନରକର ବାଟ ଫିଟାଇଦିଏ ।।୧୦।। ବାରମ୍ବାର ଚେଷ୍ଟା କରି ମଧ୍ୟ କୌଣସି ଜୀବିକାରେ ସଫଳ ନ ହେଲେ ଲୋଭବଶତଃ ପରଧନ ପ୍ରତି ଆକୃଷ୍ଟ ହୋଇପଡ଼େ ।।୧୧।। ସ୍ୱଜୀବିକାରେ ନିଷ୍ଫଳ ଓ କୁଟୁମ୍ବପୋଷଣରେ ଅସମର୍ଥ ସେହି ମନ୍ଦଭାଗ୍ୟ ବ୍ୟକ୍ତି ଅତି ଦୀନହୀନ ଭାବରେ ସବୁବେଳେ ଚିନ୍ତାତୁର ହୋଇ ଦୀର୍ଘ ନିଃଶ୍ୱାସ ଛାଡୁଥାଏ ।।୧୨।। ଯେପରି ବୁଢ଼ା ବଳଦକୁ ଚାଷୀ ପଚାରେ ନାହିଁ, ସେହିପରି କୁଟୁମ୍ବ ପୋଷଣରେ ଅସମର୍ଥ ଏହି ବ୍ୟକ୍ତିକୁ ତାର ସ୍ତ୍ରୀପୁତ୍ରାଦି ସ୍ୱଜନମାନେ ପୂର୍ବପରି ଆଦର କରନ୍ତି ନାହିଁ ।।୧୩।। ତଥାପି ତାର ବୈରାଗ୍ୟ ଜାତ ହୁଏ ନାହିଁ । ଯେଉଁମାନଙ୍କୁ ଦିନେ ସେ ପୋଷୁଥିଲା, ସେମାନେ ତାକୁ ପୋଷନ୍ତି, ବିରୂପ ଓ ଜରାଗ୍ରସ୍ତ ହୋଇ ସେ ନିଜ ଘରେ ମୃତ୍ୟୁକୁ ଅପେକ୍ଷା କରି ରହେ ।।୧୪।। ଅଗ୍ନିମାନ୍ଦ୍ୟ ଆଦି ରୋଗ ତାକୁ ଗ୍ରାସ କରେ । ସେ କୌଣସି କାମ କରିପାରେ ନାହିଁ । ଗୃହପାଳିତ କୁକୁରକୁ ଖାଇବାକୁ କିଛି ଫୋପାଡ଼ି ଦେବା ପରି ତୁଚ୍ଛ ଜ୍ଞାନରେ ତାକୁ ଅଳ୍ପ ଗଣ୍ଡାଏ ଯାହା ଖାଇବାକୁ ଦିଅନ୍ତି, ତାହାକୁ ଖାଇ ପଡ଼ିଥାଏ ।।୧୫।। ଶରୀରରେ ବାୟୁ ଉପରକୁ ଉଠି ଆଖି ସବୁ ଢେଗା ଢେଗା ଦିଶେ । ଶ୍ୱାସନଳିରେ କଫ ବଢ଼ିଯାଏ । ସବୁବେଳେ କାଶୁଥାଏ ଓ ତାର ଗଳା ଘୁଡୁ ଘୁଡୁ ହେଉଥାଏ ।।୧୬।। ମୃତ୍ୟୁଶଯ୍ୟାରେ ତାର ଚାରିପଟେ ଶୋକାକୁଳ ପରିବାର ତାକୁ ଘେରି ରହିଥାନ୍ତି ଏବଂ ମୃତ୍ୟୁରୂପକ କାଳପାଶରେ ପଡ଼ିଥିବାଯୋଗୁଁ ତାକୁ ଯେତେ ଡାକିଲେ ମଧ୍ୟ ସେ ଉତ୍ତର ଦେଇପାରେ ନାହିଁ ।।୧୭।।

ଇନ୍ଦ୍ରିୟକୁ ଜୟ କରିନଥିବା ଏହିପରି ବୁଦ୍ଧିହୀନ ବ୍ୟକ୍ତି କେବଳ ନିଜର କୁଟୁମ୍ବପୋଷଣରେ ଲାଗି ରହି ଶେଷରେ ଘୋର କଷ୍ଟ ପାଇ ମରେ । ତାର ଅଚେତ ଶରୀର ପାଖରେ ଆତ୍ମୀୟସ୍ୱଜନ ସବୁ କାନ୍ଦୁଥା'ନ୍ତି ।।୧୮।। ତାକୁ ନେବାକୁ ଆସିଥିବା ଏବଂ କ୍ରୋଧରେ ଲାଲ୍ ଲାଲ୍ ଆଖି କରିଥିବା ଅତି ଭୟଙ୍କର ଯମଦୂତମାନଙ୍କୁ ଦେଖି ସେ ଭୟରେ ମଳମୂତ୍ର ତ୍ୟାଗ କରେ ।।୧୯।। ଯେପରି ରାଜାଙ୍କ ସିପାହୀମାନେ ଅପରାଧୀକୁ ଦଣ୍ଡ ଦେବାପାଇଁ ବାନ୍ଧି ନିଅନ୍ତି, ସେହିପରି ଯମଦୂତମାନେ ଯାତନା ଦେହରେ ତାର ସୂକ୍ଷ୍ମ ଶରୀରକୁ ଘୋଡ଼ାଇ ତାର ଗଳାରେ ଦଉଡ଼ି ବାନ୍ଧି ବଳପୂର୍ବକ ଯମଲୋକର ଲମ୍ବା ରାସ୍ତାରେ ତାକୁ ଟାଣି ନେଇଯା'ନ୍ତି ।।୨୦।। ସେମାନଙ୍କ ଗର୍ଜନ ତର୍ଜନଦ୍ୱାରା ତାର କଲିଜା ଫାଟିପଡ଼େ, ଦେହ ଥରିଉଠେ, ବାଟରେ କୁକୁରମାନେ ତାକୁ ଟାଣି ଖାଉଥା'ନ୍ତି ଏବଂ ନିଜକୃତ ପାପର କଥା ଚିନ୍ତା କରି ସେ ବ୍ୟାକୁଳ ହୋଇଉଠେ ।।୨୧।। କ୍ଷୁଧା ତୃଷାରେ ସେ ପୀଡ଼ିତ ହୋଇ ପଡ଼େ; ପ୍ରଖର ସୂର୍ଯ୍ୟକିରଣ ଓ ବନାଗ୍ନିର ଝଞ୍ଜାପବନ ତା ଦେହକୁ ପୋଡ଼ି ଦେଉଥାଏ; ତତଲା ବାଲିରେ ଚାଲି ସେ କଳବଳ ହେଉଥାଏ । ତଥାପି ଚାଲି ନ ପାରିଲେ ତା ପିଠିରେ କୋରଡ଼ା ମାଡ଼ ପଡୁଥାଏ । ବାଟରେ ଆଶ୍ରୟ ନ ଥାଏ କି ପାଣି ନ ଥାଏ ।।୨୨।। ଯିବା ସମୟରେ କେତେବେଳେ ଥକିଯାଇ ତଳେ ପଡ଼ି ମୂର୍ଚ୍ଛା ହୋଇଗଲେ ପୁଣି ଉଠାଇ ନିଷ୍ଠୁର ଯମଦୂତମାନେ ଶୀଘ୍ର ତାକୁ ଯମପୁରକୁ ଚଲାଇ ନିଅନ୍ତି ।।୨୩।।

ଯମପୁରର ରାସ୍ତା ହେଉଚି ଅନେଶତ ହଜାର ଯୋଜନ । ଏହି ଦୀର୍ଘପଥକୁ ଦୁଇ ତିନି ମୁହୂର୍ତ୍ତରେ ପାର ହୋଇ ସେ ଯମପୁରରେ ବହୁ ନରକ ଯନ୍ତଣା ଭୋଗ କରେ ।।୨୪।। ସେଠାରେ ଜଳନ୍ତା କାଠଭିତରେ ତାର ଶରୀରକୁ ରଖି ଦଗ୍ଧ କରାଯାଏ । ଅନ୍ୟମାନଙ୍କ ଦ୍ୱାରା ବା ତା'ଦ୍ୱାରା ତା ଦେହର ମାଂସକୁ କଟାଯାଇ ତାକୁ ଖାଇବାକୁ ଦିଆଯାଏ ।।୨୫।। ଯମପୁରୀର ଶ୍ୱାନ

ଶାଗୁଣାମାନେ ତାର ଅନ୍ତବୁଜୁଳାକୁ ଟାଣି ନିଅନ୍ତି; ସାପ, ବିଛା, ଡାଉଁଶ ଆଦି ଦଂଶନ କରି ତା ଶରୀରକୁ ବହୁ କଷ୍ଟ ଦିଅନ୍ତି ॥୨୬॥ ତାର ଶରୀରକୁ କାଟି ଖଣ୍ଡ ଖଣ୍ଡ କରାଯାଏ । ଦନ୍ତାହାତୀ ଆଦି ତାର ଦେହକୁ ଚିରି ପକାନ୍ତି । ପର୍ବତଶୃଙ୍ଗରୁ ତାକୁ ତଳକୁ ପକାଇ ଦିଆଯାଏ ଓ ଗଭୀର କୂପ ଭିତରେ ତାକୁ ବୁଡାଇ ଦିଆଯାଏ ॥୨୭॥ ପାପସଂସର୍ଗ ଦୋଷରୁ ସ୍ତ୍ରୀପୁରୁଷ ଏହିପରି ତାମିସ୍ର, ଅନ୍ଧତାମିସ୍ର, ରୌରବ ଆଦି ନରକରେ ବହୁ ଯନ୍ତ୍ରଣା ଭୋଗ କରନ୍ତି ॥୨୮॥

ମାତା, କେହି କେହି କହନ୍ତି ଏହି ଜଗତ୍‌ରେ ନରକ ଅଛି ଓ ସ୍ୱର୍ଗ ଅଛି, କାରଣ ଯାହା ସବୁ ନରକର ଯନ୍ତ୍ରଣା, ତାହାସବୁ ଏଠାରେ ମଧ୍ୟ ଦେଖାଯାଏ ॥୨୯॥ ମନୁଷ୍ୟ ଅତି ଦୁଃଖରେ ନିଜ ପେଟ ପୋଷି ବା କୁଟୁମ୍ବକୁ ପୋଷି ମଲାବେଳେ ଏହି ଶରୀରକୁ ଓ କୁଟୁମ୍ବଙ୍କୁ ଛାଡ଼ି ଚାଲିଯାଏ ଏବଂ ମଲାପରେ ଏହିପରି ତାର ପାପର ଫଳ ଭୋଗ କରେ ॥୩୦॥ ମନୁଷ୍ୟ ଇହଲୋକରେ ନିଜର ଶରୀରକୁ ଛାଡ଼ି ପ୍ରାଣୀମାନଙ୍କ ପ୍ରତି ଦ୍ରୋହାଚରଣ କରି ଯେଉଁ ପାପ ଅର୍ଜନ କରିଥାଏ, ତାହାକୁ ପାଥେୟ କରି ଅନ୍ଧନରକ ମଧ୍ୟକୁ ଯାତ୍ରା କରେ ॥୩୧॥ ସେ ନିଜର କୁଟୁମ୍ବପୋଷଣ କରିବା ପାଇଁ ଯେଉଁସବୁ ଅନ୍ୟାୟ କରିଥାଏ, ଦୈବବିହିତ ତାର କୁଫଳ ସେ ନରକରେ ଭୋଗ କରେ ଏବଂ ସେଠାରେ ମଧ୍ୟ ନିଜର ସବୁ କିଛି ଚାଲିଗଲା ବୋଲି ଭାବି ବ୍ୟାକୁଳ ହୋଇପଡ଼େ ॥୩୨॥ ଯେ କେବଳ ଅଧର୍ମରେ ନିଜ କୁଟୁମ୍ବକୁ ପୋଷିବାରେ ବ୍ୟସ୍ତ ରହେ, ସେ ଚରମ ଯନ୍ତ୍ରଣାର ସ୍ଥଳ ଅନ୍ଧତାମିସ୍ର ନାମକ ନରକକୁ ଗମନ କରେ ॥୩୩॥ ମନୁଷ୍ୟ ଜନ୍ମ ଲାଭ କରିବା ପୂର୍ବରୁ କ୍ରମାନୁସାରେ ନୀଚ ଯୋନିମାନଙ୍କରେ ସମସ୍ତ ଯାତନା ଭୋଗ କରି ଶୁଦ୍ଧ ହେବାପରେ ପୁନରାୟ ସେ ମନୁଷ୍ୟ ଜନ୍ମ ଲାଭ କରେ ॥୩୪॥

## ଏକତ୍ରିଂଶ ଅଧ୍ୟାୟ

## ମନୁଷ୍ୟ ଜନ୍ମ

ମାତ୍ର ପୂର୍ବ କର୍ମ ଅନୁସାରେ ଈଶ୍ୱରଙ୍କ ଦୃଷ୍ଟିପଥରେ ରହି ଜୀବ ମନୁଷ୍ୟ ଶରୀରରେ ଜନ୍ମ ନିଏ । ଏହା ସମ୍ଭବ ହୁଏ, ଯେତେବେଳେ ପୁରୁଷର ବୀର୍ଯ୍ୟକଣାକୁ ଆଶ୍ରୟ କରି ସେ ସ୍ତ୍ରୀଗର୍ଭରେ ପ୍ରବେଶ କରେ ॥୧॥ ପ୍ରଥମ ରାତ୍ରିରେ ପୁରୁଷର ବୀର୍ଯ୍ୟକଣା ସ୍ତ୍ରୀର ରଜ ସହିତ ମିଶ୍ରିତ ହୁଏ । ପଞ୍ଚମରାତ୍ରିରେ ଏହା ବୁଦ୍‌ବୁଦ ଆକାର ଧାରଣ କରେ ଏବଂ ଦଶଦିନରେ ଏହା କୋଳିପରି ହୋଇ ଟାଣ ପଦାର୍ଥରେ ପରିଣତ ହୁଏ । ତା'ପରେ ଏହା ଏକ ମାଂସପିଣ୍ଡୁଳା ବା ଅଣ୍ଡାପରି ହୋଇଯାଏ ॥୨॥ ମାସକରେ ଏହାର ମୁଣ୍ଡ ବାହାରିପଡ଼େ । ଦୁଇ ମାସରେ ହାତ ଓ ପାଦ ଆଦି ଅଙ୍ଗ ଜାତ ହୁଏ ଓ ତିନି ମାସରେ ନଖ, ଲୋମ, ଅସ୍ଥି, ଚର୍ମ, ସ୍ତ୍ରୀର ବା ପୁରୁଷର ଲିଙ୍ଗ ଓ ଅନ୍ୟ ଛିଦ୍ର ଉତ୍ପନ୍ନ ହୁଏ ॥୩॥ ଚାରି ମାସରେ ମାଂସ ମେଦ ଆଦି ସପ୍ତଧାତୁ ଓ ପାଞ୍ଚ ମାସରେ କ୍ଷୁଧା ପିପାସାର ଉଦ୍‌ଭବ ହୁଏ । ଛ'ମାସରେ ଜରାୟୁଦ୍ୱାରା ଆବୃତ ହୋଇ ସେ ଡାହାଣ କୁକ୍ଷିରେ ଭ୍ରମଣ କରେ ॥୪॥ ଏହି ସମୟରେ ମା ଖାଉଥିବା ଅନ୍ନଜଳ ଦ୍ୱାରା ଏହାର ଧାତୁ ସବୁ ପୁଷ୍ଟ ହେବାରେ ଲାଗନ୍ତି ଏବଂ ଜୀବ କୃମି ଆଦି କୀଟଙ୍କର ଜନ୍ମସ୍ଥାନ ଏହି ମଳମୂତ୍ରଗର୍ଭରେ ପଡ଼ିରହେ ॥୫॥ ତାର ସୁକୁମାର ସର୍ବାଙ୍ଗ ଦେହକୁ କୃମିମାନେ ଖାଇ କ୍ଷତ ବିକ୍ଷତ କରିଦିଅନ୍ତି । ସେ ସେହି କଷ୍ଟ ଓ କ୍ଷୁଧାରେ ବିବଶ ହୋଇ ବାରମ୍ବାର ମୂର୍ଚ୍ଛା ହୋଇଯାଏ ॥୬॥ ମା ଯେଉଁସବୁ ଖାଦ୍ୟ ଖାଏ--ରାଗ, ପିତା, ଗରମ, ଲୁଣିଆ, ଆମ୍ବିଳ, ଟାଣ--ସେସବୁର ସ୍ପର୍ଶରେ ତାର ସର୍ବାଙ୍ଗରେ ବହୁତ କଷ୍ଟ ହୁଏ ॥୭॥ ଜୀବ ମାତାର ଜରାୟୁ ମଧ୍ୟରେ ଅନ୍ତନାଡ଼ୀଦ୍ୱାରା ଗୁଡ଼େଇ ହୋଇ ପଡ଼ି ରହିଥାଏ; ମୁଣ୍ଡ ତାର ତଳିପେଟ ଆଡ଼କୁ ଥାଏ ଏବଂ ପିଠି ଓ ବେକ ବକ୍ରାକାରରେ ମୋଡ଼ି ହୋଇଥାଏ ॥୮॥

ପିଞ୍ଜରାରେ ଆବଦ୍ଧ ପକ୍ଷୀପରି ସେ ନିଜର ଅଙ୍ଗପ୍ରତ୍ୟଙ୍ଗ ଚାଳନାରେ ଅସମର୍ଥ ହୋଇ ପଡ଼ିରହିଥାଏ । ଦୈବବଶତଃ ତାର ଶହେ ଜନ୍ମର ସ୍ମୃତି ଜାଗ୍ରତ ହୁଅନ୍ତେ ସେସବୁ ଜନ୍ମରେ ସେ ଯାହାକିଛି କରିଥାଏ, ତା'ର ମନେପଡ଼େ, ଏବଂ ସେ ଦୀର୍ଘଶ୍ୱାସ ପକାଇବାକୁ ଲାଗେ । ତେଣୁ ସେଇ ଅବସ୍ଥାରେ ତା'ମନରେ ଶାନ୍ତିର ନାମଗନ୍ଧ ନ ଥାଏ ॥୯॥ ସାତମାସ ଆସିଗଲେ ତାର ବୋଧଶକ୍ତିର ଉଦୟ ହୁଏ । ପ୍ରସୂତିବାୟୁର ଚଳାଚଳଯୋଗୁଁ ସେହି ଉଦରରୁ ଜାତ ବିଷ୍ଠାର କୀଟଙ୍କ ପରି ସେ ଏକ ସ୍ଥାନରେ ରହିପାରେ ନାହିଁ ॥୧୦॥ ସପ୍ତଧାତୁମୟ ସ୍ଥୂଳଦେହରେ ଆବଦ୍ଧ ଏହି ଆତ୍ମଦର୍ଶୀ ଜୀବ ଭୟଭୀତ ହୋଇ କୃତାଞ୍ଜଳିପୁଟରେ ବ୍ୟାକୁଳ ପ୍ରାର୍ଥନା କରେ ସେହି ପରମାତ୍ମାଙ୍କୁ ଯେ କି ମାତୃଗର୍ଭକୁ ତାକୁ ପଠାଇଥା'ନ୍ତି ॥୧୧॥ ଜୀବ ପ୍ରାର୍ଥନା କରେ, ମୋ'ପରି ଅଧମପାଇଁ ଭଗବାନ ଯେଉଁ ଗର୍ଭବାସଜନିତ ଗତି ଦର୍ଶାଇଛନ୍ତି, ତାହା ମୋର ଯଥାଯୋଗ୍ୟ ହୋଇଚି । ତାଙ୍କ ଶରଣାଗତ ଏହି ଜଗତକୁ ରକ୍ଷା କରିବାପାଇଁ ସେ ଅନେକ ରୂପ ଧାରଣ କରି ଏହି ସଂସାରରେ ବିଚରଣ କରନ୍ତି । ମୁଁ ତାଙ୍କର ଅଭୟ ଚରଣତଳେ ଶରଣଭିକ୍ଷା କରୁଚି ॥୧୨॥ ଏହି ମାତୃଗର୍ଭରେ ଦେହ, ଇନ୍ଦ୍ରିୟ ଓ ଅନ୍ତଃକରଣ ରୂପ ମାୟାକୁ ଅବଲମ୍ବନ କରି ଯେ କର୍ମରେ ଆବୃତ ବଦ୍ଧଜୀବ ପରି ଅବସ୍ଥାନ କରୁଛନ୍ତି, ସେ କିନ୍ତୁ ବିଶୁଦ୍ଧ, ନିର୍ବିକାର ଓ ପୂର୍ଣ୍ଣଚୈତନ୍ୟ ସ୍ୱରୂପ । ମୋର ସନ୍ତପ୍ତ ହୃଦୟରେ ବାସ କରୁଥିବା ସେହି ପରମାତ୍ମାଙ୍କୁ ମୁଁ ନମସ୍କାର କରୁଚି ॥୧୩॥

ଶରୀର-ରହିତ ହେଲେ ମଧ୍ୟ ପଞ୍ଚଭୂତରଚିତ ମାୟାଶରୀର ମଧ୍ୟରେ ମୁଁ ଆଚ୍ଛନ୍ନ ହୋଇ ପଡ଼ିଚି ଏବଂ ଇନ୍ଦ୍ରିୟ, ଗୁଣ, ତାର ଶବ୍ଦାଦି ବିଷୟ ଏବଂ ଅହଙ୍କାର ରୂପରେ ପ୍ରତୀତ ହେଉଚି । ଏହି ଶରୀରରୂପ ଆବରଣ ଯାହାଙ୍କର ମହିମାକୁ ଲୁଚାଇପାରେନା, ସେହି ପ୍ରକୃତିପୁରୁଷର ନିୟନ୍ତା ପରମପୁରୁଷଙ୍କୁ ମୁଁ ବନ୍ଦନା କରୁଚି ॥୧୪॥ ଯାହାଙ୍କ ମାୟାରେ ନିଜର ପୂର୍ବସ୍ମୃତି ନଷ୍ଟ ହୋଇଯିବା ଫଳରେ ଜୀବ ସଂସାରପଥରେ ଚାଲିଚାଲି ଶ୍ରାନ୍ତ ହୋଇପଡ଼େ, ପୁଣି ତାଙ୍କରି କୃପା ନ ହେଲେ କେଉଁ ଯୁକ୍ତିବଳରେ ସେ ନିଜର ସ୍ୱରୂପକୁ ଜାଣିପାରିବ ? ॥୧୫॥ ତ୍ରିକାଳବିଷୟକ ଜ୍ଞାନ ସେହିଁ କେବଳ ଦେବାପାଇଁ ସମର୍ଥ । ନିଜର ଅଂଶସ୍ୱରୂପ ଚରାଚର ଜୀବମାନଙ୍କ ମଧ୍ୟରେ ସେ ଅନ୍ତର୍ଯାମୀ ରୂପେ ବିଦ୍ୟମାନ । ଜୀବମାନଙ୍କୁ ବିଭିନ୍ନ କର୍ମ ମଧ୍ୟରେ ପ୍ରବର୍ତ୍ତିତ କରିଥିବା ସେହି ପରମାତ୍ମାଙ୍କୁ ତ୍ରିବିଧତାପର ଉପଶମପାଇଁ ଆମେ ଭଜନ କରୁଚୁ ॥୧୬॥

ଏହି ଦେହଧାରୀ ଜୀବ ଅନ୍ୟ ଦେହର ଉଦର (ମାତୃଗର୍ଭ)- ଭିତରେ ମଳମୂତ୍ରରକ୍ତକୂପ ମଧ୍ୟରେ ପଡ଼ିରହି ଜଠରାଗ୍ନିରେ ଅତିଶୟ ତପ୍ତ ହୋଇ କେବେ ସେଥିରୁ ବାହାରି ଆସିବ, ସେଥିପାଇଁ ମାସ ଗଣିବାକୁ ଲାଗେ ଏବଂ କହେ ଭଗବାନ୍, ଏହି ଦୀନକୁ ଏଥିରୁ କେବେ ବାହାର କରିବା ହେବେ ? ॥୧୭॥ ପ୍ରଭୁ, ଆପଣଙ୍କର ଅପାର ଦୟାରୁ ଏହି ଦଶମାସର ଜୀବ ଏପରି ଜ୍ଞାନ ଲାଭ କରିଚି । ହେ ଦୀନନାଥ, ଆପଣ କରିଥିବା ଉପକାରରୁ ହିଁ ଆପଣ ସନ୍ତୋଷ ଲାଭ କରନ୍ତୁ । କେବଳ ଆପଣଙ୍କୁ ହାତ ଯୋଡ଼ିବା ଛଡ଼ା ମୁଁ ଏ ଉପକାର ବଦଳରେ କଣ କରିପାରିବି ? ॥୧୮॥ ସପ୍ତଧାତୁରେ ଗଠିତ ପଶୁପକ୍ଷୀ ଆଦି ଅନ୍ୟ ଜୀବମାନେ ମୂଢ଼ ବୁଦ୍ଧିରେ ନିଜ ଦେହର ସୁଖଦୁଃଖକୁ କେବଳ ଅନୁଭବ କରନ୍ତି । କିନ୍ତୁ ଆପଣ ମୋତେ ଶମ ଦମ ଆଦି ସାଧନ ପାଇଁ ଉପଯୁକ୍ତ ଶରୀର ଦେଇଛନ୍ତି । ତେଣୁ ମୁଁ ବିବେକ ବୁଦ୍ଧିରେ ପୁରାଣପୁରୁଷରୂପେ ଆପଣଙ୍କୁ ଦେଖିପାରୁଚି, ଯେ କି ଏହି ଶରୀରର ବାହାରେ ଏବଂ ଭିତରେ ଉପଭୋକ୍ତା ରୂପେ ପ୍ରତୀୟମାନ ॥୧୯॥ ପ୍ରଭୁ, ବହୁ ଦୁଃଖରେ ମୁଁ ଏହି ମାତୃଗର୍ଭରେ ରହୁଥିଲେ ମଧ୍ୟ ଏଥିରୁ ବାହାରି ସଂସାରରୂପ ଅନ୍ଧକୂପରେ ପଡ଼ିବାକୁ ମୋତେ ଇଚ୍ଛା କରୁ ନାହିଁ । କାରଣ ସେଠାକୁ ଗଲେ ଆପଣଙ୍କ ମାୟା ମୋତେ ଘେରିନେବ ଏବଂ ଅହଂବୁଦ୍ଧିରେ ଚାଳିତ ହୋଇ ସଂସାରଚକ୍ରରେ ମୁଁ ପଡ଼ି ରହିଥିବି ॥୨୦॥ ତେଣୁ ମୁଁ ଆଉ ବ୍ୟାକୁଳ ହେଉ ନାହିଁ । ଶ୍ରୀବିଷ୍ଣୁଙ୍କର ପାଦକୁ ହୃଦୟରେ ସ୍ଥାପନ କରି ଆତ୍ମାରୂପ ବନ୍ଧୁର ସାହାଯ୍ୟରେ ମୁଁ ଶୀଘ୍ର ଏହି ଅନ୍ଧକାରରୁ ଉଦ୍ଧାର ପାଇବି, ଯେପରିକି ଗର୍ଭରେ ପୁଣି ମୋତେ ଆଉ ପଶିବାକୁ ହେବ ନାହିଁ ॥୨୧॥ ମାତା, ଅଧୋମୁଖ ହୋଇ ଦଶମମାସରେ ଜୀବ ଏହିପରି ମାତୃଗର୍ଭରେ ସ୍ତୁତି କରୁଥିବା ବେଳେ, ପ୍ରସବକାଳୀନ ବାୟୁ ତାକୁ ଶୀଘ୍ର ବାହାରକୁ ଆଣିବାପାଇଁ ଠେଲିବାରେ

ଲାଗେ ॥୨୨॥ ଏହିପରି ପ୍ରସୂତିବାୟୁଦ୍ୱାରା ସହସା ଠେଲି ହୋଇ ମୁଣ୍ଡ ତଳକୁ କରି ସେ ବହୁ କଷ୍ଟରେ ଗର୍ଭରୁ ବାହାରି ଆସେ ଏବଂ ତାର ଶ୍ୱାସ ରୁଦ୍ଧ ହୋଇଯାଏ ଓ ପୂର୍ବ ସ୍ମୃତି ହଜିଯାଏ ॥୨୩॥

ମାଆର ରକ୍ତ ଓ ନାଳରେ ବୋଳି ହୋଇ ବିଷ୍ଠାର କୀଟପରି ସେ ତଳେ ପଡ଼ି ଛଟପଟ ହୁଏ । ଗର୍ଭବାସର ସମସ୍ତ ଜ୍ଞାନ ତାର ନଷ୍ଟ ହୋଇଯାଏ ଏବଂ ସଂସାରର ମାୟାରେ ବଶୀଭୂତ ହୋଇ ସେ କ୍ରନ୍ଦନ କରିବାକୁ ଲାଗେ ॥୨୪॥ ଯେଉଁମାନେ ଏହାର ଅଭିପ୍ରାୟ ବୁଝନ୍ତି ନାହିଁ, ସେମାନଙ୍କଦ୍ୱାରା ଲାଳିତ ପାଳିତ ହୁଏ; ସେମାନଙ୍କଦ୍ୱାରା ତାର ଇଚ୍ଛା ବିରୋଧରେ କୌଣସି କାର୍ଯ୍ୟ ହେଲେ, ମନା କରିବାର ଶକ୍ତି ତାର ନ ଥାଏ ॥୨୫॥ ଝାଳରୁ ଜନ୍ମ ହୋଇଥିବା ଜୀବାଣୁମାନଙ୍କଦ୍ୱାରା ଦୂଷିତ ମଇଳା ଶେଯରେ ତାକୁ ଶୁଆଇ ଦିଅନ୍ତି । ତା'ର ଦେହ କୁଣ୍ଡାଇ ହେଲେ ଉଠିବାକୁ ବା କଡ଼ ଲେଉଟେଇବାକୁ ତାର ଶକ୍ତି ନ ଥାଏ; ଛୋଟ ପୋକକୁ ବଡ଼ ପୋକ କାମୁଡ଼ିବା ପରି ତାର କଅଁଳ ଚମ ଦେଖି ମଶା, ଡାଉଁଶ, ଓଡ଼ଶ ଆଦି ତାକୁ କାମୁଡ଼ି ପକାନ୍ତି । ସେ କାନ୍ଦି କାନ୍ଦି ବେହୋସ ହୋଇଯାଏ ॥୨୬-୨୭॥

ଏହିପରି ଦୁଃଖରେ ଶୈଶବାବସ୍ଥା କଟାଇ ସେ ପୌଗଣ୍ଡ ଅବସ୍ଥା ଭୋଗ କରେ । ଯଦି ଇଚ୍ଛା କରୁଥିବା ବସ୍ତୁ ତାକୁ ନ ମିଳେ, ତା'ହେଲେ ତାର କ୍ରୋଧ ବଢ଼ିଚାଲେ ଓ କ୍ରୋଧରୁ ଶୋକ ଜାତ ହୁଏ ॥୨୮॥ ଦେହର ସହିତ ନିଜର ଅଭିମାନ କ୍ରୋଧ ବଢ଼ିଯିବା କାରଣରୁ ଜୀବ କାମପରବଶ ହୋଇ ଅନ୍ୟ କାମୀ ବ୍ୟକ୍ତି ସହିତ ଶତ୍ରୁତା କରେ, ଯାହାକି ତାର ବିନାଶର କାରଣ ହୁଏ ॥୨୯॥ ହୀନବୁଦ୍ଧି ବ୍ୟକ୍ତି ପଞ୍ଚଭୂତରେ ଗଢ଼ା ଏହି ଦେହକୁ ଅଜ୍ଞାନବଶତଃ ମୁଁ ଓ ମୋର ବୋଲି କହି ଅଭିମାନ କରେ ॥୩୦॥ ଯେଉଁ ଦେହପାଇଁ ସେ କର୍ମ କରେ ଏବଂ ତାହା ପଛରେ ଗୋଡ଼ାଇଥାଏ, ସେହି ଦେହ ତାର ଅଜ୍ଞାନ ଓ କର୍ମବନ୍ଧନର କାରଣ ହୋଇ ତାକୁ ଘୋର ଦୁଃଖ ଦେଇଥାଏ ଏବଂ ବଦ୍ଧଜୀବ ବାରମ୍ବାର ସଂସାରଚକ୍ରରେ ପଡ଼ି ଘୂରୁଥାଏ ॥୩୧॥ ନିଜର ଉଦର ଓ କାମେନ୍ଦ୍ରିୟକୁ ଚରିତାର୍ଥ କରିବାପାଇଁ ଅସତ୍‌ଲୋକେ ଯେଉଁ ବାଟରେ ଯା'ନ୍ତି, ସେବାଟେ ଯଦି ସେ ମଜ୍ଜିଯାଏ, ତା'ହେଲେ ପୂର୍ବପରି (ଯାତନା ଦେହ ପାଇ) ତାକୁ ନରକ ଭୋଗ କରିବାକୁ ହୁଏ ॥୩୨॥ ଯାହାଙ୍କ ସାଙ୍ଗରେ ମିଶିଲେ ସତ୍ୟ, ଶୌଚ, ଦୟା, ମୌନ, ବୁଦ୍ଧି, ଶ୍ରୀ, ଲଜ୍ଜା, କ୍ଷମା, ଯଶ, ଶାନ୍ତି, ସଂଯମ, ସୌଭାଗ୍ୟ ଆଦି ସଦ୍‌ଗୁଣ ସବୁ ନଷ୍ଟ ହୋଇଯାଏ, ସେହିପରି ମୂଢ଼ବୁଦ୍ଧି, ଅଶାନ୍ତଚିତ୍ତ ସ୍ତ୍ରୀଲୋକଙ୍କ ଖେଳଣା-ପଶୁପରି ଶୋଚନୀୟ ବ୍ୟକ୍ତିଙ୍କ ସଙ୍ଗ କେବେହେଲେ କରିବା ଉଚିତ ନୁହେ ॥୩୩-୩୪॥

ସ୍ତ୍ରୀସଂଗ ବା ସ୍ତ୍ରୀସଙ୍ଗରେ ଥିବା ପୁରୁଷମାନଙ୍କ ସଙ୍ଗ କଲେ ଯେଉଁ ମୋହ ଓ ବନ୍ଧନ ହୁଏ, ଅନ୍ୟ ପ୍ରସଙ୍ଗରେ ତାହା ହୁଏ ନାହିଁ ॥୩୫॥ ବ୍ରହ୍ମା ନିଜର କନ୍ୟାକୁ ଦେଖି ତାର ରୂପଲାବଣ୍ୟରେ ଏପରି ମୋହିତ ହୋଇଗଲେ ଯେ ସେ କନ୍ୟା ଏକ ମୃଗୀରୂପ ଧରି ପଳାଇବାବେଳେ ନିର୍ଲଜ୍ଜଭାବରେ ସେ ତା' ପଛରେ ମୃଗ ହୋଇ ଗୋଡ଼ାଇଗଲେ ॥୩୬॥ କେବଳ ନାରାୟଣ ଋଷିଙ୍କୁ ଛାଡ଼ିଦେଲେ ବ୍ରହ୍ମାଙ୍କର ସୃଷ୍ଟିରେ ଆଉ କେଉଁ ପୁରୁଷ ଅଛି, ଯାହାର ବୁଦ୍ଧି ସ୍ତ୍ରୀରୂପିଣୀ ମାୟାରେ ମୋହିତ ନ ହୁଏ ? ॥୩୭॥ ମୋ' ସ୍ତ୍ରୀରୂପିଣୀ ମାୟାର ଶକ୍ତିକୁ ଦେଖ, କିପରି ତାର ଭ୍ରୂକୁଟିବିଳାସମାତ୍ରେ ଦିଗ୍‌ବିଜୟୀ ବୀରମାନେ ତାର ପଦାନତ ହୋଇ ଯାଉଛନ୍ତି ॥୩୮॥ ତେଣୁ ଯୋଗର ଶ୍ରେଷ୍ଠ ସୋପାନକୁ ଯେଉଁମାନେ ଆରୋହଣ କରିବାକୁ ଚାହାନ୍ତି, ସେମାନେ କେବେ ଲଳନାର ସଙ୍ଗ କରିବା ଉଚିତ ନୁହେ । ମୋର ସେବାଦ୍ୱାରା ଯେଉଁମାନେ ଆତ୍ମଜ୍ଞାନ ଲାଭ କରିଛନ୍ତି, ସେମାନେ କହିଛନ୍ତି, ଲଳନାର ସଙ୍ଗ ହେଉଚି ନରକର ଦ୍ୱାରସ୍ୱରୂପ ॥୩୯॥ ସ୍ତ୍ରୀରୂପରେ ରଚିତ ମାୟା ଧୀରେ ଧୀରେ ଆସି ପହଞ୍ଚିଗଲେ ତାକୁ ଘାସରେ ଆବୃତ କୂପପରି ଧରିନେବା ଉଚିତ ॥୪୦॥ ସ୍ତ୍ରୀଠାରେ ଆସକ୍ତ ରହିବା ଦ୍ୱାରା ବା ଅନ୍ତକାଳରେ ସ୍ତ୍ରୀର ଚିନ୍ତା କରିବାଦ୍ୱାରା ଜୀବ ସ୍ତ୍ରୀ ହୋଇ ଜନ୍ମ ହୁଏ । ସେହି ସ୍ତ୍ରୀ ମୋର ମାୟାରୂପ ପୁରୁଷକୁ ମଧ୍ୟ ଧନ ପୁତ୍ର ଗୃହ ଆଦି ପ୍ରଦାନ କରୁଥିବା ନିଜର ପତି

ବୋଲି ଗ୍ରହଣ କରିଚାଲେ । କିନ୍ତୁ ସନ୍ତାନ, ଗୃହଆଦିର ମୂଳ ସେହି ପତିରୂପିଣୀ ମାୟା ଅନ୍ୟ କିଛି ନୁହେ; ତାହା ହେଉଚି ମୃଗୟା କରିବାକୁ ଯାଇଥିବା ଶିକାରୀର ମଧୁରଗାନ ପରି ମୃଗର ଦୈବପ୍ରେରିତ ମୃତ୍ୟୁ ॥୪୧-୪୨॥

ପ୍ରାଣୀ ଏହି ଜୀବଦେହରେ ଏକ ଲୋକରୁ ଅନ୍ୟ ଲୋକକୁ ଯାତ୍ରା କରେ ଏବଂ ନିଜର ପ୍ରାରବ୍ଧ କର୍ମ ଭୋଗ କରି ଅନ୍ୟ ଦେହ ପାଇବାପାଇଁ ନୂଆ ନୂଆ କର୍ମ କରିଚାଲେ ॥୪୩॥ ଲିଙ୍ଗ ଦେହ ଜୀବର ମୋକ୍ଷ ପର୍ଯ୍ୟନ୍ତ ତା' ସହିତ ରହିଥାଏ । ଭୂତ, ଇନ୍ଦ୍ରିୟ ଓ ମନ ଏହି ସ୍ଥୁଳ ଦେହକୁ କେନ୍ଦ୍ର କରି କାର୍ଯ୍ୟ କରନ୍ତି । ମୋକ୍ଷ ହେବା ପର୍ଯ୍ୟନ୍ତ ଜୀବକୁ ଦେହଧାରଣ କରିବାକୁ ହୋଇଥାଏ । ଲିଙ୍ଗ ଦେହ ଓ ସ୍ଥୁଳ ଦେହର କ୍ଷୟ ହେଲେ ମୃତ୍ୟୁ ଘଟେ, ଏବଂ ପୁଣି ଉଭୟ ଦେହର ଆବିର୍ଭାବ ହେଲେ ତାହାକୁ ଜନ୍ମ କୁହାଯାଏ ॥୪୪॥ ବିଭିନ୍ନ ଦ୍ରବ୍ୟ ଉପଲବ୍ଧି କରିବାର ସ୍ଥାନ ହେଉଚି ଶରୀର । ଯଦି ଏହି ସ୍ଥୁଳ ଶରୀରର ସେହି ଶକ୍ତି ନଷ୍ଟ ହୋଇଯାଏ, ତା'ହେଲେ ତାର ମୃତ୍ୟୁ ହୁଏ; ପୁଣି ଯେତେବେଳେ 'ମୁଁ ଏହି ସ୍ଥୁଳ ଶରୀର' ବୋଲି ଜୀବ ଅନୁଭବ କରେ, ସେତେବେଳେ ତାର ଜନ୍ମ ହୁଏ ॥୪୫॥ ଯଦି ନେତ୍ରଗୋଳକ କାମଳାଦି ଦୋଷଯୋଗୁଁ କୌଣସି ବସ୍ତୁକୁ ଦେଖିବାରେ ଅସମର୍ଥ ହୁଏ, ତେବେ ଦର୍ଶନେନ୍ଦ୍ରିୟ ତାର ଶକ୍ତି ହରାଇବସେ । ଏହି ଦୁହିଁଙ୍କର ଅସାମର୍ଥ୍ୟଯୋଗୁଁ, ଜୀବର ସାମର୍ଥ୍ୟ (ଦୃଷ୍ଟିଶକ୍ତିର) ମଧ୍ୟ ନଷ୍ଟ ହୋଇଯାଏ ॥୪୬॥ ତେଣୁ ମୁମୁକ୍ଷୁ ବ୍ୟକ୍ତି ମୃତ୍ୟୁକୁ ଭୟ ନ କରି ମୋହମାୟା ଆଦି ପରିତ୍ୟାଗପୂର୍ବକ ଅନାସକ୍ତ ଭାବରେ ସଂସାରରେ ବିଚରଣ କରିବା ଉଚିତ । ଯେଉଁ ବୁଦ୍ଧି ଯୋଗବୈରାଗ୍ୟଯୁକ୍ତ, ତେଣୁ ଜ୍ଞାନମୟ, ସେହି ବୁଦ୍ଧିରେ ପରିଚାଳିତ ହୋଇ ଏହି ମାୟାମୟ ସଂସାରରେ ଶରୀରକୁ ଧରି ଚାଲିବା ଉଚିତ ॥୪୭॥

## ଦ୍ୱାତ୍ରିଂଶ ଅଧ୍ୟାୟ

# ଭକ୍ତିଯୋଗର ସ୍ୱରୂପ

କପିଳ କହିଲେ ମାତା ! ଯେଉଁ ବ୍ୟକ୍ତି ଗୃହରେ ରହି ଗୃହସ୍ଥ ଧର୍ମ ପାଳନ କରେ ଏବଂ ଅର୍ଥଲାଭ ଓ କାମନା ଚରିତାର୍ଥ କରିବାପାଇଁ ବହୁ ଅନୁଷ୍ଠାନ କରୁଥାଏ, ସେ ସେଥିରେ ଏପରି ମୋହିତ ହୋଇଯାଏ ଯେ, ଭଗବତ୍ ଧର୍ମ ପ୍ରତି ସେ ବିମୁଖ ହୋଇପଡ଼େ ଏବଂ ନିଜର ପିତୃ ଓ ଦେବତାମାନଙ୍କୁ ସନ୍ତୁଷ୍ଟ କରିବାପାଇଁ ଶ୍ରଦ୍ଧାର ସହିତ ସେ ବିଭିନ୍ନ ଯଜ୍ଞ କର୍ମରେ ଲାଗିଥାଏ ॥୧-୨॥ ପିତୃ ଓ ଦେବତାମାନଙ୍କୁ ସନ୍ତୁଷ୍ଟ କରିବାପାଇଁ ଏହିପରି ଶ୍ରଦ୍ଧାର ସହିତ ଲାଗିଥିବା ବ୍ୟକ୍ତି ମୃତ୍ୟୁ ପରେ ଚନ୍ଦ୍ରଲୋକକୁ ଗମନ କରେ । ସେଠାରେ ସୋମପାନପୂର୍ବକ ଅବସ୍ଥାନ କରି ପୁଣ୍ୟ କ୍ଷୟ ହୋଇଗଲେ ପୁଣି ଇହଲୋକକୁ ଫେରିଆସେ ॥୩॥ ପ୍ରଳୟ କାଳ ଉପସ୍ଥିତ ହେଲେ ଭଗବାନ ଶ୍ରୀହରି ସର୍ପରାଜ ଶେଷନାଗଙ୍କୁ ଶଯ୍ୟା କରି ଅନନ୍ତ ଶୟନ କରନ୍ତି । ସେତେବେଳେ ସମସ୍ତେ ତାଙ୍କଠାରେ ଲୀନ ହେବା ସଙ୍ଗେ ସଙ୍ଗେ ଏହି ଗୃହଧର୍ମୀମାନେ ମଧ୍ୟ ଲୀନ ହୋଇଯା'ନ୍ତି ॥୪॥ ଯେଉଁ ବିଜ୍ଞ ବ୍ୟକ୍ତିମାନେ କାମନା ଓ ଅର୍ଥଲାଭପାଇଁ ସ୍ୱଧର୍ମକୁ ବିନିଯୋଗ କରନ୍ତି ନାହିଁ, ସେମାନେ ଅନାସକ୍ତଭାବରେ ଭଗବାନଙ୍କଠାରେ ନିଜର ସମସ୍ତ କର୍ମ ନ୍ୟସ୍ତ କରି ପବିତ୍ର ହୃଦୟରେ ଓ ପରମଶାନ୍ତିରେ ବାସ କରନ୍ତି । ସେମାନେ ଅହଙ୍କାରଶୂନ୍ୟ ହୋଇ ଅଧର୍ମରୁ ନିବୃତ୍ତ ରହନ୍ତି । କୌଣସି ବସ୍ତୁ ପ୍ରତି ତାଙ୍କର ମମତା ନ ଥାଏ । ସତ୍ତ୍ୱଗୁଣସମ୍ପନ୍ନ ହୋଇ ପରିଶୁଦ୍ଧ ଚିତ୍ତରେ ଏହିପରି ନିଜର ସ୍ୱଧର୍ମରେ ସେମାନେ ଅବସ୍ଥାନ କରନ୍ତି ॥୫-୬॥ ମୃତ୍ୟୁପରେ ସେମାନେ ସୂର୍ଯ୍ୟପଥରେ ପୂର୍ଣ୍ଣ ପୁରୁଷ ଭଗବାନ ଶ୍ରୀହରିଙ୍କୁ ଲାଭ କରନ୍ତି, ଯେ କି କାର୍ଯ୍ୟକାରଣ ରୂପ ଏହି ଭୌତିକ ଓ ଆଧ୍ୟାତ୍ମିକ ଜଗତର ନିୟନ୍ତା ଏବଂ ଏହାର ଉତ୍ପତ୍ତି ଓ ବିଳୟର କାରଣ ॥୭॥

ଯେଉଁମାନେ ପରମାତ୍ମା ଈଶ୍ୱରଙ୍କ ହିରଣ୍ୟଗର୍ଭ ରୂପର ଉପାସନା କରନ୍ତି, ସେମାନେ ଦୁଇ ପରାର୍ଦ୍ଧର ଅବସାନ ପର୍ଯ୍ୟନ୍ତ ବା ବ୍ରହ୍ମାଙ୍କର ପ୍ରଳୟକାଳ ପର୍ଯ୍ୟନ୍ତ ସତ୍ୟଲୋକରେ ଅବସ୍ଥାନ କରନ୍ତି ॥୮॥ ଦେବତାମାନଙ୍କ ମଧ୍ୟରେ ଶ୍ରେଷ୍ଠ ବ୍ରହ୍ମା ନିଜର ଦୁଇ ପରାର୍ଦ୍ଧ ସମୟର ଅଧିକାର ଭୋଗ କରି ପୃଥିବୀ, ଜଳ, ତେଜ, ବାୟୁ, ଆକାଶ, ମନ, ଇନ୍ଦ୍ରିୟ, ଇନ୍ଦ୍ରିୟର ବିଷୟ ଏବଂ ଅହଙ୍କାର ଦ୍ୱାରା ଆବୃତ ହୋଇଥିବା ଏହି ବିଶ୍ୱବ୍ରହ୍ମାଣ୍ଡକୁ ସଂହାର କରିବାକୁ ଇଚ୍ଛା କରିବା ମାତ୍ରେ ନିଜର ତ୍ରିଗୁଣାତ୍ମକ ପ୍ରକୃତି ସହିତ ପରମାତ୍ମାଙ୍କ ଠାରେ ଲୀନ ହୁଅନ୍ତି । ସେତେବେଳେ ମନ ଓ ପ୍ରାଣ (ଶ୍ୱାସ ପ୍ରକ୍ରିୟା)କୁ ଜୟ କରିଥିବା ବିରାଗଯୁକ୍ତ ଯୋଗୀମାନେ ନିଜର ଦେହ ତ୍ୟାଗ କରି ବ୍ରହ୍ମାଙ୍କ ମଧ୍ୟରେ ପ୍ରବେଶ କରନ୍ତି ଏବଂ ତାଙ୍କ ସହିତ ପରମାନନ୍ଦ ସ୍ୱରୂପ ପରଂବ୍ରହ୍ମ ପୁରାଣପୁରୁଷଙ୍କଠାରେ ମିଶିଯାଆନ୍ତି । କିନ୍ତୁ ତାହା ପୂର୍ବରୁ ନୁହେଁ, କାରଣ ସେ ପର୍ଯ୍ୟନ୍ତ ତାଙ୍କର ଅହଙ୍କାର ବା ଆତ୍ମାଭିମାନ ଦୂର ହୋଇ ନ ଥାଏ ॥୯-୧୦॥ ମୁଁ ପରମାତ୍ମାଙ୍କ ସମ୍ପର୍କରେ ସବୁ କିଛି କହିଗଲି । ଏଣୁ ହେ ମାତା ! ସମସ୍ତ ପ୍ରାଣୀଙ୍କର ହୃଦପଦ୍ମରେ ଅବସ୍ଥାନ କରିଥିବା ଶ୍ରୀହରିଙ୍କର ଶରଣ ଯାଅ ॥୧୧॥ ସ୍ଥାବରଜଙ୍ଗମରୂପ ଏହି ସମସ୍ତ ଜଗତର ଆଦିମୂଳ ବେଦମୂର୍ତ୍ତି ବ୍ରହ୍ମା ମରୀଚି ଆଦି ଋଷି ଏବଂ ସନତ୍‌କୁମାର ଆଦି ଯୋଗପ୍ରବର୍ତ୍ତକ ସିଦ୍ଧ ଯୋଗୀମାନଙ୍କ ସହ ନିଷ୍କାମ କର୍ମଦ୍ୱାରା ପୁରୁଷଶ୍ରେଷ୍ଠ ସଗୁଣ ବ୍ରହ୍ମଙ୍କଠାରେ ମିଳିତ ହେଲେ ମଧ୍ୟ ତାଙ୍କଠାରେ ଭେଦଦୃଷ୍ଟି ଓ କର୍ତ୍ତୃତ୍ୱ ଅଭିମାନ ରହିଥାଏ । ସେହି କାରଣରୁ ପୁଣି ଈଶ୍ୱରଙ୍କ ଇଚ୍ଛାରେ ତ୍ରିଗୁଣାତ୍ମକ ସୃଷ୍ଟିର ସମୟ ଉପସ୍ଥିତ ହେଲେ ସେମାନେ ପୂର୍ବଭଳି ଜନ୍ମ ଗ୍ରହଣ କରନ୍ତି । ସେହିପରି ପୂର୍ବୋକ୍ତ ଋଷିଗଣ ସ୍ୱଧର୍ମଦ୍ୱାରା ଅର୍ଜିତ ବ୍ରହ୍ମଲୋକର ଐଶ୍ୱର୍ଯ୍ୟ ଭୋଗ କରି ତ୍ରିଗୁଣାତ୍ମ ପ୍ରକୃତିର ବଶରୁ ପୁଣି ସୃଷ୍ଟି ଆରମ୍ଭ ହେଲେ ଫେରି ଆସନ୍ତି ॥୧୨-୧୫॥

ଯେଉଁମାନଙ୍କର ମନ ଇହଲୋକ ପ୍ରତି ଆସକ୍ତ, ସେମାନେ ବେଦୋକ୍ତ ନିତ୍ୟକର୍ମମାନ ଶ୍ରଦ୍ଧାର ସହିତ କରିବାରେ ଲାଗିପଡ଼ନ୍ତି ॥୧୬॥ ସେମାନେ ଇନ୍ଦ୍ରିୟକୁ ଜୟ କରି ନ ଥା'ନ୍ତି । ରଜୋଗୁଣଯୋଗୁଁ ସବୁବେଳେ କାମବାସନାରେ ଉଦ୍‌ବିଗ୍ନ ହୋଇ ରହନ୍ତି । ଗୃହପ୍ରତି ଆସକ୍ତ ରହି ଅନୁକ୍ଷଣ ପିତୃପୁରୁଷଙ୍କର ଉପାସନା କରନ୍ତି । ତେଣୁ ଧର୍ମ (ଗୃହସ୍ଥ ଧର୍ମ) ଅର୍ଥ ଓ କାମଯୁକ୍ତ ଏହି ପୁରୁଷମାନଙ୍କଠାରେ ମହାପରାକ୍ରମଶାଳୀ ଭଗବାନ ଶ୍ରୀହରିଙ୍କର ପରମକୀର୍ତ୍ତନୀୟ କଥା ପ୍ରତି ରୁଚି ଜାତ ହୁଏ ନାହିଁ ॥୧୭-୧୮॥ ଏହି ଦୈବହତ ପୁରୁଷମାନେ ଶ୍ରୀଅଚ୍ୟୁତଙ୍କର କଥାକୁ ଛାଡ଼ି ଅସତ୍ କଥା ସବୁ ଶୁଣିବାକୁ ଭଲ ପାଆନ୍ତି ଯେପରି ବିଷ୍ଠାଭୋଜୀ ଜନ୍ତୁ ଅମୃତକୁ ଛାଡ଼ି ବିଷ୍ଠା ଭୋଜନ କରନ୍ତି ॥୧୯॥ ଜାତକର୍ମରୁ ଅନ୍ତ୍ୟେଷ୍ଟିକ୍ରିୟାପର୍ଯ୍ୟନ୍ତ ବିବିଧ ଗୃହସ୍ଥକର୍ମରେ ଲାଗିଥିବା ଲୋକମାନେ ସୂର୍ଯ୍ୟଙ୍କର ଦକ୍ଷିଣାୟନ ସମୟରେ ପିତୃଲୋକକୁ ଯାତ୍ରା କରନ୍ତି ଏବଂ ସେଠାରେ ରହି ତାଙ୍କର ସୁକୃତ ଶେଷ ହୋଇଗଲେ ଦେବତାମାନେ ତାଙ୍କ ଐଶ୍ୱର୍ଯ୍ୟକୁ ଛଡ଼େଇ ନିଅନ୍ତି ଏବଂ ବିବଶ ହୋଇ ସେମାନେ ପୁଣି ଏହି ସଂସାରକୁ ଖସିପଡ଼ନ୍ତି ॥୨୦-୨୧॥

ଏଥିପାଇଁ ମାତା, ତୁମେ ସର୍ବତୋଭାବେ ପରମାତ୍ମାଙ୍କୁ ଭଜନ କର । ତାଙ୍କରି ଗୁଣାବଳୀକୁ ଆଶ୍ରୟ କରି ଭକ୍ତିଭାବରେ ତାଙ୍କ ପାଦପଦ୍ମକୁ ଅର୍ଚ୍ଚନା କର ॥୨୨॥ ଭଗବାନ୍ ବାସୁଦେବଙ୍କପ୍ରତି ନିୟୋଜିତ ଭକ୍ତିଯୋଗ ଦ୍ୱାରା ଶୀଘ୍ର ବୈରାଗ୍ୟ ଓ ବ୍ରହ୍ମଦର୍ଶନରୂପ ଜ୍ଞାନ ଜାତ ହୁଏ ॥୨୩॥ ଏହିପରି ଭଗବତ୍‌ଭାବଯୁକ୍ତ ନିଶ୍ଚଳ ଚିତ୍ତରେ କୌଣସି ବସ୍ତୁ ପ୍ରିୟ ବା କୌଣସି ବସ୍ତୁ ଅପ୍ରିୟ --ଏପରି ବୈଷମ୍ୟ ଦେଖାଯାଏ ନାହିଁ । ସେତେବେଳେ ସେ ହେୟ ଅବା ଉପାଦେୟ - ଏହି ଧାରଣାରହିତ ସମଦର୍ଶୀ ଅନାସକ୍ତ ପରମାନନ୍ଦରେ ଆରୂଢ଼ ନିଜ ଆତ୍ମାର ସ୍ୱରୂପକୁ ଦେଖିପାରେ ॥୨୪-୨୫॥ ଭଗବାନ୍ ହେଉଛନ୍ତି ସାକ୍ଷାତ୍ ଜ୍ଞାନସ୍ୱରୂପ ପରଂବ୍ରହ୍ମ, ପରମାତ୍ମା, ଈଶ୍ୱର ଏବଂ ପୁରୁଷ । ସେହି ଏକ ଭଗବାନ୍ ପୃଥକ୍ ପୃଥକ୍ ଭାବରେ ଦୃଶ୍ୟ ହୁଅନ୍ତି ॥୨୬॥

ଯୋଗୀର ସମସ୍ତ ଯୋଗସାଧନାର ଏକମାତ୍ର ଲକ୍ଷ୍ୟ ହେଉଛି ସଂସାର ପ୍ରତି ଅନାସକ୍ତି ॥୨୭॥ ବ୍ରହ୍ମ ଏକ । ସେ ଜ୍ଞାନସ୍ୱରୂପ ଓ ନିର୍ଗୁଣ । ତଥାପି ଏଥିପ୍ରତି ବିମୁଖ ବାହ୍ୟ ଇନ୍ଦ୍ରିୟମାନଙ୍କଦ୍ୱାରା ଚାଳିତ ଭ୍ରାନ୍ତ ବ୍ୟକ୍ତି ଆଗରେ ସେ ଶବ୍ଦସ୍ପର୍ଶାଦିଯୁକ୍ତ ବିଭିନ୍ନ ବସ୍ତୁ ରୂପରେ ପ୍ରତିଭାତ ହୁଅନ୍ତି ॥୨୮॥ କାରଣ ଏହି ସମସ୍ତ ପଦାର୍ଥ ବ୍ରହ୍ମରୁ ହିଁ ଜାତ । ମହତ୍ ତତ୍ତ୍ୱ, ସତ୍ତ୍ୱ, ରଜ ଓ ତମ ଏଇ ତିନି

ଗୁଣକୁ ନେଇ ତିନି ପ୍ରକାରର ଅହଙ୍କାର, ପଞ୍ଚମହାଭୂତ ଏବଂ ଏଗାର ଇନ୍ଦ୍ରିୟ । ଏମାନଙ୍କ ସଂଯୋଗରେ ଜୀବର ରୂପ ଏବଂ ଏହି ଜୀବର ଶରୀର ରୂପରେ ହିଁ ବ୍ରହ୍ମାଣ୍ଡ ବିଦ୍ୟମାନ । ଏହି ସମସ୍ତକୁ ହିଁ ବ୍ରହ୍ମ କୁହାଯାଏ । କାରଣ ବ୍ରହ୍ମରୁ ହିଁ ଏ ସବୁର ଉତ୍ପତ୍ତି । କିନ୍ତୁ ଏହା କେବଳ ସେହି ଭକ୍ତ ଦେଖିପାରେ ଯେ ଶ୍ରଦ୍ଧାର ସହିତ ପ୍ରତ୍ୟହ ଯୋଗାଭ୍ୟାସଦ୍ୱାରା ଏକାଗ୍ରଚିତ୍ତ ଓ ଅନାସକ୍ତ ରହେ ଓ ସଂସାର ପ୍ରତି ଯାହାର ବୈରାଗ୍ୟ ଜାତ ହୁଏ ।।୨୯-୩୦।। ମାନନୀୟା ମାତା, ବ୍ରହ୍ମସାକ୍ଷାତ୍କାରର ସାଧନସ୍ୱରୂପ ଜ୍ଞାନ ବିଷୟରେ ମୁଁ ତୁମକୁ ଶୁଣାଇଲି । ଏହାଦ୍ୱାରା ପ୍ରକୃତି ଓ ପୁରୁଷର ତତ୍ତ୍ୱ ଭଲରୂପେ ହୃଦୟଙ୍ଗମ କରିହୁଏ ।।୩୧।। ମାତା, ନିର୍ଗୁଣ ବ୍ରହ୍ମ ବିଷୟକ ଜ୍ଞାନଯୋଗ ଏବଂ ମୋଠାରେ ଏକାନ୍ତ ନିଷ୍ଠା ରଖୁଥିବା ଭକ୍ତିଯୋଗ -- ଏହି ଉଭୟ ମାର୍ଗର ଫଳ ହେଉଛି ଏକ ଭଗବତ୍ପ୍ରାପ୍ତି ।।୩୨।। ଯେପରି ଏକବସ୍ତୁ ରୂପ, ରସ ଆଦି ବିଭିନ୍ନ ଗୁଣର ଆଶ୍ରୟରେ ଇନ୍ଦ୍ରିୟମାନଙ୍କଦ୍ୱାରା ବିଭିନ୍ନ ରୂପରେ ଦେଖାଯାଏ, (ଆଖିରେ ଧଳାକଳା ଆଦି, ରସରେ ମଧୁର ଆଦି, ସ୍ପର୍ଶରେ ଶୀତଳ ଆଦି) ସେହିପରି ଏକ ଭଗବାନ ଶାସ୍ତ୍ରକଥିତ ବିଭିନ୍ନ ମାର୍ଗଦ୍ୱାରା ଭିନ୍ନ ଭିନ୍ନ ରୂପରେ ପ୍ରତୀତ ହୁଅନ୍ତି ।।୩୩।। ବିଭିନ୍ନପ୍ରକାର କର୍ମ, ଯଜ୍ଞ, ଦାନ, ତପ, ସ୍ୱାଧ୍ୟାୟ, ବେଦର ବିଚାର, ମନ ଓ ଇନ୍ଦ୍ରିୟର ସଂଯମ, କର୍ମ - ସନ୍ନ୍ୟାସ, ବିଭିନ୍ନ ଅଙ୍ଗଯୁକ୍ତ ଯୋଗ (ଅଷ୍ଟାଙ୍ଗ ଯୋଗ), ଭକ୍ତି ଯୋଗ, ନିବୃତ୍ତି ଓ ପ୍ରବୃତ୍ତିରୂପ ନିଷ୍କାମ ଓ ସକାମ ଧର୍ମ, ଆତ୍ମତତ୍ତ୍ୱର ଜ୍ଞାନ ଏବଂ ଦୃଢ଼ ବୈରାଗ୍ୟଦ୍ୱାରା ସଗୁଣ ଓ ନିର୍ଗୁଣରୂପ ସ୍ୱୟଂପ୍ରକାଶ ଭଗବାନଙ୍କୁ ଲାଭ କରାଯାଇପାରେ ।।୩୪-୩୬।।

ମାତା ! ଚାରିପ୍ରକାର ଭକ୍ତିଯୋଗର ସ୍ୱରୂପ (ସାତ୍ତ୍ୱିକ, ରାଜସ, ତାମସ ଓ ନିର୍ଗୁଣ) ମୁଁ ତୁମକୁ ବର୍ଣ୍ଣନା କଲି । ଯେଉଁ କାଳର ଗତି ଅବ୍ୟକ୍ତ ସେହି କାଳ ବିଷୟରେ ମଧ୍ୟ ମୁଁ ତୁମକୁ ଅବଗତ କରାଇଲି ।।୩୭।। ମାତା ! ଅବିଦ୍ୟାଜନିତ କର୍ମଯୋଗୁଁ ଜୀବର ଏହି ସଂସାରରେ ଅନେକପ୍ରକାର ଗତି ହୁଏ । ସେଥିପାଇଁ ସେ ନିଜର ସ୍ୱରୂପକୁ ଜାଣିପାରେ ନାହିଁ ।।୩୮।। ମାତା ! ମୁଁ ତୁମକୁ ଯେଉଁ ଜ୍ଞାନୋପଦେଶ ଦେଲି, ତାହା ଦୁଷ୍ଟ, ଦୁର୍ବିନୀତ, ମୂଢ଼, ଦୁରାଚାରୀ ଓ ଧର୍ମଧ୍ୱଜୀମାନଙ୍କୁ ଶୁଣାଇବା ଉଚିତ ନୁହେଁ । ବିଷୟଲୋଲୁପ, ଗୃହପ୍ରତି ଆସକ୍ତ, ଭକ୍ତିହୀନ ଏବଂ ମୋର ଭକ୍ତମାନଙ୍କୁ ଦ୍ୱେଷ କରୁଥିବା ବ୍ୟକ୍ତିଙ୍କୁ ଏହି ଉପଦେଶ କେବେହେଁ ଦିଆଯିବା ଉଚିତ ନୁହେଁ ।।୩୯-୪୦।। ଯେଉଁ ବ୍ୟକ୍ତି ଶ୍ରଦ୍ଧାଳୁ, ଭକ୍ତ, ବିନୀତ, ଅସୂୟାଶୂନ୍ୟ, ସମସ୍ତ ପ୍ରାଣୀଙ୍କୁ ମିତ୍ରରୂପେ ଦେଖେ, ସାଧୁମାନଙ୍କର ସେବା କରେ, ଶାନ୍ତଚିତ୍ତ, ଈର୍ଷାହୀନ, ନିର୍ମଳମନା, ଯେ ମୋତେ ପ୍ରିୟମାନଙ୍କ ମଧ୍ୟରେ ପ୍ରିୟତମ ବୋଲି ମନେ କରେ, ବାହ୍ୟ ବିଷୟ ପ୍ରତି ବୈରାଗ୍ୟ ଜନ୍ମିଥିବା ସେହି ବ୍ୟକ୍ତିକୁ ମୋର ଏହି ଉପଦେଶ ଦିଆଯିବା ଉଚିତ ।।୪୧-୪୨।। ମାତା ! ଯେଉଁ ବ୍ୟକ୍ତି ମୋଠାରେ ଚିତ୍ତ ଲଗାଇ ଶ୍ରଦ୍ଧାରେ ଥରେ ଏହା ଶୁଣିବ ବା କହିବ, ସେ ମୋର ପରମପଦକୁ ଲାଭ କରିବ ।।୪୩।।

### ତ୍ରୟସ୍ତ୍ରିଂଶ ଅଧ୍ୟାୟ

## ଦେବହୂତିଙ୍କ ମୋକ୍ଷ

ମୈତ୍ରେୟ କହିଲେ; ପୁତ୍ର କପିଳଙ୍କର ବଚନ ଶୁଣି କର୍ଦ୍ଦମ ଋଷିଙ୍କର ପ୍ରିୟ ପତ୍ନୀ ଜନନୀ ଦେବହୂତିଙ୍କର ମୋହର ପରଦା ଫାଟିଗଲା । ସାଂଖ୍ୟ ଶାସ୍ତ୍ରର ପ୍ରବର୍ତ୍ତକ ଓ ତା'ର ଆଧାରଭୂମି ଭଗବାନ କପିଳଙ୍କୁ ପ୍ରଣାମ କରି ସେ ତାଙ୍କୁ ସ୍ତୁତି କରିବାକୁ ଲାଗିଲେ ।।୧।। ଦେବହୂତି କହିଲେ, ପ୍ରଳୟ ଜଳରେ ଆପଣ ଶୟନ କରିଥିବାବେଳେ ଆପଣଙ୍କ ନାଭିପଦ୍ମରୁ ବ୍ରହ୍ମା ଜନ୍ମ ହୋଇଥିଲେ । ସେ ପଞ୍ଚଭୂତ, ଦଶ ଇନ୍ଦ୍ରିୟ, ଶବ୍ଦାଦି ବିଷୟ ଓ ମନୋମୟ ବିଗ୍ରହ, ସତ୍ତ୍ୱ ଆଦି ଗୁଣଯୁକ୍ତ, ସତ୍ ସ୍ୱରୂପ ଓ

କାର୍ଯ୍ୟକାରଣର ମୂଳ ଆପଣଙ୍କୁ ଧ୍ୟାନ କରିଥିଲେ । (ମୁଁ ଆଶ୍ଚର୍ଯ୍ୟ ହେଉଛି କିପରି ଆପଣଙ୍କୁ ଜଠରରେ ଧାରଣ କରିଥିଲି) ॥୨॥ ଆପଣ ଅନନ୍ତ ଶକ୍ତିସମ୍ପନ୍ନ । ମାତ୍ର ନିଷ୍କ୍ରିୟ । ଆପଣଙ୍କର ସତ୍ୟ ସଂକଳ୍ପଯୋଗୁଁ ସେହି ଅନନ୍ତ ଶକ୍ତି ଗୁଣବିଶେଷରେ ବହୁଧା ବିଭକ୍ତ ହୋଇ (ବ୍ରହ୍ମା, ବିଷ୍ଣୁ ଓ ଶିବ ରୂପରେ) ଏହି ବିଶ୍ୱବ୍ରହ୍ମାଣ୍ଡକୁ ରଚନା କରିଛି । ଆପଣ ଜୀବମାନଙ୍କର ଈଶ୍ୱର ଏବଂ ଆପଣଙ୍କର ଶକ୍ତି ତର୍କ ବିତର୍କର ବାହାରେ ॥୩॥ ପ୍ରଭୁ ! ଏହି ବିଶ୍ୱବ୍ରହ୍ମାଣ୍ଡକୁ ଉଦରରେ ଧାରଣ କରିଥିବା ଆପଣଙ୍କୁ ମୁଁ ବା କିପରି ମୋର ଗର୍ଭରେ ଧାରଣ କଲି ! କାରଣ ଯୁଗର ଶେଷରେ ପ୍ରଳୟ କାଳରେ ଆପଣ ଏକ ଶିଶୁ ହୋଇ ବଟ ପତ୍ରରେ ଶୟନ କରି ନିଜ ପାଦର ବୁଢ଼ାଆଙ୍ଗୁଠିକୁ ଚୁମ୍ବନ କରୁଥିଲେ । ତେଣୁ ଆପଣଙ୍କ ମାୟାରେ ସବୁ ହିଁ ସମ୍ଭବ ॥୪॥

ବିଭୁ ! ଜ୍ଞାନମାର୍ଗ ପ୍ରଦର୍ଶନ କରିବାପାଇଁ ଏବେ ଯେ କେବଳ ଆପଣ ଅବତୀର୍ଣ୍ଣ ହୋଇଛନ୍ତି, ତାହା ନୁହେଁ । ପାପୀମାନଙ୍କର ବିନାଶ ପାଇଁ ଏବଂ ଭକ୍ତମାନଙ୍କର କଲ୍ୟାଣପାଇଁ ଆପଣ ବରାହାଦି ବିଭିନ୍ନ ଅବତାର ଗ୍ରହଣ କରିଛନ୍ତି ॥୫॥ ଭଗବାନ ! ଆପଣଙ୍କର ନାମ କେବେ କେବେ କୀର୍ତ୍ତନ, ଶ୍ରବଣ, ବନ୍ଦନ ଓ ସ୍ମରଣ କରିବା ଦ୍ୱାରା କୁକୁର ମାଂସ ଖାଉଥିବା ଚଣ୍ଡାଳ ମଧ୍ୟ ସୋମପାୟୀ ବ୍ରାହ୍ମଣ ପରି ପବିତ୍ର ହୋଇଯାଏ । ପୁଣି ଆପଣଙ୍କର ଦର୍ଶନଦ୍ୱାରା କ'ଣ ସମ୍ଭବ ନ ହୁଏ ! ॥୬॥ ଏଣୁ ଯେଉଁ ପ୍ରାଣୀର ଜିଭ ଆଗରେ ଆପଣଙ୍କ ନାମ ଥାଏ, ସେ ଚଣ୍ଡାଳ ହେଲେ ହେଁ ଗରିଷ୍ଠ । ଯେଉଁମାନେ ଆପଣଙ୍କ ନାମକୁ ଗୁଣି ହୁଅନ୍ତି, ସେମାନେ ପୂର୍ବରୁ ତପସ୍ୟା, ହୋମ, ତୀର୍ଥସ୍ନାନ, ବେଦାଧ୍ୟୟନାଦି କରିଥାଆନ୍ତି ! ॥୭॥ ବିଷ୍ଣୁରୂପୀ କପିଳ ! ସମସ୍ତ ବିଷୟରୁ ମୋର ମନକୁ ପ୍ରତ୍ୟାହାରପୂର୍ବକ ଆପଣଙ୍କର ପରଂବ୍ରହ୍ମ ସ୍ୱରୂପକୁ ଚିନ୍ତାକରି ମୁଁ ଆପଣଙ୍କୁ ପ୍ରଣାମ କରୁଛି । ଆପଣଙ୍କ ଗର୍ଭରେ ସମସ୍ତ ବେଦଜ୍ଞାନ ନିହିତ ଅଛି । ଆପଣଙ୍କ ନିଜ ତେଜରେ ଗୁଣରୂପୀ ମାୟାର ପ୍ରବାହ ପ୍ରତିହତ ହୋଇଥାଏ ॥୮-୯॥

ମାତା ଏହିପରି ସ୍ତୁତି କରିବାରୁ ମୈତ୍ରେୟ କହିଲେ, ପରମ ପୁରୁଷ ମାତୃବତ୍ସଳ ଭଗବାନ କପିଳ ଭାବଗମ୍ଭୀର ସ୍ୱରରେ ଏହିପରି କହିଲେ - ମାତା ! ମୋର ଉପଦିଷ୍ଟ ସୁଗମ ମାର୍ଗକୁ ଅବଲମ୍ବନ କଲେ ଶୀଘ୍ର ତୁମେ ପରମ ପଦ ଲାଭ କରିବ ॥୧୦॥ ମୋର ଏହି ମତକୁ ତୁମେ ଶ୍ରଦ୍ଧାର ସହିତ ଗ୍ରହଣ କର । ବ୍ରହ୍ମବାଦୀମାନେ ଏହି ମତ ଅନୁସରଣ କରନ୍ତି । ଏହା ଦ୍ୱାରା ତୁମେ ମୋର ଅଭୟ ପଦକୁ ଲାଭ କରିବ । ଯେଉଁମାନେ ଏହା ଗ୍ରହଣ କରନ୍ତି ନାହିଁ, ସେମାନେ ଜନ୍ମମୃତ୍ୟୁ-- ରୂପ ସଂସାରଚକ୍ରରେ ପଡ଼ିଯାଆନ୍ତି ॥୧୧॥ ମୈତ୍ରେୟ କହିଲେ, ଏହିପରି ଭଗବାନ କପିଳ ଆତ୍ମଜ୍ଞାନ ଉପଦେଶ ଦେଇ ବ୍ରହ୍ମବାଦିନୀ ମାତାଙ୍କର ଅନୁମତି ନେଇ ତାଙ୍କଠାରୁ ବିଦାୟ ନେଲେ ॥୧୨॥ ଦେବହୂତି ମଧ୍ୟ ସରସ୍ୱତୀ ନଦୀର ପୁଷ୍ପିତ ମୁକୁଟସମ ତାଙ୍କ ଆଶ୍ରମରେ ପୁତ୍ରଦ୍ୱାରା ଉପଦିଷ୍ଟ ମାର୍ଗରେ ଯୋଗ ସାଧନ କରି ସମାଧିସ୍ଥ ହେଲେ ॥୧୩॥ ଏହିପରି ନିଷ୍କଳ ଯୋଗ ସାଧନ ଯୋଗୁଁ ତ୍ରିକାଳ ସ୍ନାନ ନ କରିବାରୁ ତାଙ୍କର କୁଞ୍ଚିତ କୁନ୍ତଳ ଜଟା ହୋଇଗଲା ଓ ପିଙ୍ଗଳବର୍ଣ୍ଣ ଧାରଣ କଲା । ବସନ ଜୀର୍ଣ୍ଣ ଓ ଶରୀର ଶୀର୍ଣ୍ଣ ହୋଇଗଲା । ତପ ଏବଂ ଯୋଗ ବଳରେ ରଚିତ ପ୍ରଜାପତି କର୍ଦ୍ଦମଙ୍କର ଅନୁପମ ଗୃହସ୍ଥ ଜୀବନର ସୁଖ ବ୍ୟୋମଚାରୀ ଦେବତାମାନଙ୍କପାଇଁ ମଧ୍ୟ କାମ୍ୟବସ୍ତୁ ଥିଲା ॥୧୪-୧୫॥ ଦୁଗ୍ଧଫେନନିଭ ହାତୀଦାନ୍ତ ପଲଙ୍କର ଶଯ୍ୟା, ସ୍ୱର୍ଣ୍ଣଜରିଯୁକ୍ତ କୋମଳ ଆସ୍ତରଣ ଏବଂ ସୁବର୍ଣ୍ଣର ଆସନମାନ ତାଙ୍କ ଗୃହରେ ଶୋଭା ପାଉଥିଲା । ଧବଳ ସ୍ଫଟିକରେ ଉତ୍‌କୀର୍ଣ୍ଣ ମର୍କତମଣିଯୁକ୍ତ କାନ୍ଥମାନଙ୍କରେ ସୁନ୍ଦରୀ ପରୀ ମୂର୍ତ୍ତିରେ ଗଢ଼ା ହୋଇଥିବା ରତ୍ନ ପ୍ରଦୀପମାନ ଜଳୁଥିଲା । ପୁଷ୍ପିତ ପାରିଜାତବୃକ୍ଷମାନଙ୍କ ଦ୍ୱାରା ମଣ୍ଡିତ ହୋଇ ଗୃହର ଉଦ୍ୟାନ ଶୋଭା ପାଉଥିଲା । ସେଥିରେ ପକ୍ଷୀମାନଙ୍କର କୂଜନ ଓ ମତ୍ତ ଭ୍ରମରମାନଙ୍କର ଗୁଞ୍ଜନ ଶୁଣା ଯାଉଥିଲା । କର୍ଦ୍ଦମଙ୍କ ସହିତ ବିହାର କରିବାପାଇଁ ପଦ୍ମଗନ୍ଧଯୁକ୍ତ ଜଳାଶୟରେ ଯେତେବେଳେ ଦେବହୂତି ପ୍ରବେଶ କରୁଥିଲେ ସେତେବେଳେ ବନ୍ଦୀମାନେ ତାଙ୍କର ଗୁଣଗାନ କରୁଥିଲେ । କିନ୍ତୁ ପୁତ୍ରବିରହ ଦୁଃଖରେ ତାଙ୍କର ବଦନ ଉଦାସ ଦେଖାଯାଉଥିଲା ॥୧୬-୨୦॥ ଗାଈକୁ ଛାଡ଼ି ବାଛୁରୀ ଚାଲିଗଲେ ଗାଈର ଯେପରି ଅବସ୍ଥା ହୁଏ, ପତି ଚାଲିଯିବା ପରେ କେବଳ ପୁତ୍ରସ୍ନେହରେ ବଞ୍ଚିଥିବା ଦେବହୂତିଙ୍କର ପୁତ୍ର ବିରହରେ ସେହିପରି ଅବସ୍ଥା ହେଲା ॥୨୧॥

ବିଦୁର ! ନିଜର ପୁତ୍ର ଭଗବାନ କପିଳଙ୍କ କଥା ଚିନ୍ତା କରି ଗୃହପ୍ରତି ତାଙ୍କର ଟିକିଏ ହେଲେ ସ୍ପୃହା ରହିଲା ନାହିଁ ॥୨୨॥ ନିଜ ପୁତ୍ରଙ୍କର କହିବାମତେ, ପ୍ରସନ୍ନବଦନ ଭଗବାନଙ୍କର ରୂପକୁ ପ୍ରଥମେ ଏକ ଏକ ଅଙ୍ଗରେ ଓ ପରେ ସମସ୍ତ ଶରୀର ରୂପରେ ସେ ଧ୍ୟାନ କରିବାକୁ ଲାଗିଲେ ॥୨୩॥ ଅବିରତ ଭଗବତ୍ ଭକ୍ତି, ପ୍ରବଳ ବୈରାଗ୍ୟ ଓ ବ୍ରହ୍ମଲାଭପାଇଁ ଯଥୋଚିତ କର୍ମାନୁଷ୍ଠାନ-ଲବ୍ଧ ଜ୍ଞାନଦ୍ୱାରା ସେ ତାଙ୍କର ଚିତ୍ତକୁ ବିଶୁଦ୍ଧ କଲେ । ସର୍ବବ୍ୟାପୀ ପରମାତ୍ମାଙ୍କୁ ନିଜର ହୃଦୟ ମଧ୍ୟରେ ଅନୁଭବ କରିବାଦ୍ୱାରା ତାଙ୍କର ମାୟାରୂପକ ଆବରଣ ତିରୋହିତ ହୋଇଗଲା ॥୨୪-୨୫॥ ଏହିପରି ଜୀବମାନଙ୍କର ଆଶ୍ରୟସ୍ଥଳ ପରଂବ୍ରହ୍ମ ଭଗବାନଙ୍କ ଠାରେ ନିଜର ମତି ସ୍ଥିର ରଖି ସାଂସାରିକ ଜୀବଭାବର ସମସ୍ତ କ୍ଲେଶରୁ ମୁକ୍ତିଲାଭ କରି ସେ ପରମାନନ୍ଦ ଲାଭ କଲେ ॥୨୬॥ ଅବିଚଳିତ ଭାବରେ ନିରନ୍ତର ଧ୍ୟାନସ୍ଥ ରହିବା ଦ୍ୱାରା ଗୁଣଯୁକ୍ତ ଏହି ସଂସାରର ଭ୍ରମ ତାଙ୍କର ଦୂର ହୋଇଗଲା । ବ୍ୟକ୍ତି ନିଦରୁ ଉଠିଲେ ସ୍ୱପ୍ନରେ ଦେଖିଥିବା ବିଷୟ ଯେପରି ଭୁଲିଯାଏ, ସେହିପରି ସେ ନିଜ ଦେହକୁ ମଧ୍ୟ ଭୁଲିଗଲେ ॥୨୭॥ ଅନ୍ୟମାନେ (କର୍ଦମଙ୍କ ସୃଷ୍ଟ ବିଦ୍ୟାଧରୀମାନେ) ତାଙ୍କ ଶରୀର ପୋଷଣ କରୁଥିଲେ । କୌଣସି ପ୍ରକାର ମାନସିକ ଦୁଃଖ ନ ଥିବାରୁ ଦେବହୂତିଙ୍କର ଶରୀର କୃଶ ହୋଇନଥିଲା ଏବଂ ମଳିଯୁକ୍ତ ହେଲେ ମଧ୍ୟ ଧୂଆଁ ଭିତରେ ଥିବା ନିଆଁପରି ସେ ନିଜ ତେଜରେ ଶୋଭା ପାଉଥିଲେ ॥୨୮॥ ବାଳ ମୁକୁଳା ଥିଲା । ବସ୍ତ୍ର ଗଳି ପଡ଼ିଥିଲା । ଶ୍ରୀ ବାସୁଦେବଙ୍କ ଠାରେ ହିଁ ଚିତ୍ତ ନିବିଷ୍ଟ ଥିଲା । କେବଳ ପ୍ରାରବ୍ଧ ଯୋଗୁଁ ଶରୀରଟିର ରକ୍ଷା ହୋଇଥିଲା, ଯେଉଁ ଶରୀର ବିଷୟରେ କି ତାଙ୍କର କୌଣସି ଜ୍ଞାନ ନ ଥିଲା ॥୨୯॥ ଏହିପରି ସେ କପିଳଙ୍କ ପ୍ରଦର୍ଶିତ ମାର୍ଗରେ ଗତି କରି ନିତ୍ୟମୁକ୍ତ ବ୍ରହ୍ମ ବା ଆତ୍ମସ୍ୱରୂପ ଶ୍ରୀଭଗବାନଙ୍କୁ ଲାଭ କଲେ ॥୩୦॥

ବିଦୁର ! ଯେଉଁ ପବିତ୍ରତମ କ୍ଷେତ୍ରରେ ସେ ସାଧନା କରି ପରମ ସିଦ୍ଧି ଲାଭ କରିଥିଲେ, ତାହା ସିଦ୍ଧପଦ ନାମରେ ତିନି ଲୋକରେ ବିଖ୍ୟାତ ହୋଇଗଲା ॥୩୧॥ ସୌମ୍ୟ, ଯୋଗରେ ବିଲୀନ ହୋଇଯାଇଥିବା ତାଙ୍କ ମରଣଶୀଳ ଶରୀର ଏକ ନଦୀରେ ପରିଣତ ହୋଇଗଲା ଏବଂ ସ୍ରୋତମାନଙ୍କ ମଧ୍ୟରେ ଶ୍ରେଷ୍ଠ ଏହି ନଦୀ ହେଲା ସିଦ୍ଧମାନଙ୍କର ସେବିତ ଓ ସିଦ୍ଧିପ୍ରଦ ॥୩୨॥ ମହାଯୋଗୀ ଭଗବାନ କପିଳ ମଧ୍ୟ ମାତାଙ୍କର ଅନୁମତି ନେଇ ପିତାଙ୍କ ଆଶ୍ରମର ପଶ୍ଚିମ ଦିଗକୁ ଯାତ୍ରା କଲେ ॥୩୩॥ ସମୁଦ୍ର ତାଙ୍କୁ ପୂଜା କରି ସ୍ଥାନ ଦେଲେ । ସିଦ୍ଧ, ଚାରଣ, ଗନ୍ଧର୍ବ, ମୁନି ଓ ଅପ୍‌ସରାମାନେ ତାଙ୍କୁ ସ୍ତୁତି କରିବାକୁ ଲାଗିଲେ । ତ୍ରିଲୋକର ଶାନ୍ତିପାଇଁ ଯୋଗରେ ସମାଧିସ୍ଥ ହୋଇ ଏବେ ମଧ୍ୟ ସେଠାରେ ସେ ରହିଛନ୍ତି ଏବଂ ସାଂଖ୍ୟାଚାର୍ଯ୍ୟମାନେ ତାଙ୍କର ସ୍ତୁତି କରୁଛନ୍ତି ॥୩୪-୩୫॥ ହେ ନିଷ୍ପାପ ! ହେ ପ୍ରିୟ ବିଦୁର ! ତୁମେ ପଚାରିବାରୁ କପିଳ ଓ ଦେବହୂତିଙ୍କର ଏହି ପବିତ୍ର ଗାଥା ମୁଁ ବର୍ଣ୍ଣନା କଲି ॥୩୬॥ କପିଳଙ୍କ ମତରେ ଏହି ଗୂଢ଼ ବିଷୟ ଯେଉଁ ବ୍ୟକ୍ତି ଶ୍ରବଣ କରେ ଓ ଯେ କୀର୍ତ୍ତନ କରେ, ସେ ଭଗବାନ ଗରୁଡ଼ଧ୍ୱଜଙ୍କଠାରେ ଚିତ୍ତ ନିବେଶ କରି ଭଗବତ୍ ଚରଣାରବିନ୍ଦକୁ ଲାଭ କରେ ॥୩୭॥

# ଚତୁର୍ଥ ସ୍କନ୍ଧ

## ପ୍ରଥମ ଅଧ୍ୟାୟ

## ସ୍ୱାୟମ୍ଭୁବ ମନୁଙ୍କ କନ୍ୟାମାନଙ୍କର ବଂଶାବଳୀ

ସ୍ୱାୟମ୍ଭୁବ ମନୁ ଓ ତାଙ୍କ ରାଣୀ ଶତରୂପାଙ୍କ ଔରସରୁ ତିନି କନ୍ୟା ଜନ୍ମ ହୋଇଥିଲେ । ସେମାନେ ଆକୂତି, ଦେବହୂତି ଓ ପ୍ରସୂତି ନାମରେ ବିଖ୍ୟାତ ହୋଇଥିଲେ ॥୧॥ ଆକୂତିଙ୍କର ନିଜ ଭାଇ ଥିଲେ ମଧ୍ୟ, ରାଜା ମନୁ ଶତରୂପାଙ୍କ ଅନୁମୋଦନକ୍ରମେ ବହୁ ପୁତ୍ର କାମନା ହେତୁ ପୁତ୍ରିକାଧର୍ମ (ଏହି ଧର୍ମ ଅନୁଯାୟୀ କନ୍ୟାର ପ୍ରଥମ ପୁତ୍ରକୁ କନ୍ୟାପିତା ନେଇଯାଆନ୍ତି) ଅନୁସାରେ ନିଜ କନ୍ୟାକୁ ରୁଚି ପ୍ରଜାପତିଙ୍କ ସହିତ ବିବାହ ଦେଇଥିଲେ ॥୨॥ ପ୍ରଜାପତି ରୁଚି ଭଗବାନଙ୍କ ଠାରେ ଏକାନ୍ତ ନିଷ୍ଠା ରଖିଥିବା ଯୋଗୁଁ ବ୍ରହ୍ମତେଜରେ ତେଜସ୍ୱୀ ଥିଲେ । ସେ ଆକୂତିଙ୍କ ଗର୍ଭରେ ଜାଆଁଳା ସନ୍ତାନ ଉତ୍ପାଦନ କରିଥିଲେ ॥୩॥ ଏହାଙ୍କ ମଧ୍ୟରୁ ପୁତ୍ରସନ୍ତାନ ଥିଲେ ଯଜ୍ଞପୁରୁଷ ସ୍ୱୟଂ ବିଷ୍ଣୁ ଏବଂ କନ୍ୟା ଥିଲେ ଦକ୍ଷିଣା, ଯେକି ଭଗବାନଙ୍କର ଅନନ୍ୟ ସଙ୍ଗିନୀ ଲକ୍ଷ୍ମୀଙ୍କର ଅଂଶସ୍ୱରୂପା ॥୪॥ ସ୍ୱାୟମ୍ଭୁବ ମନୁ ଆନନ୍ଦରେ ଆକୂତିଙ୍କର ଏହି ପରମ ତେଜସ୍ୱୀ ପୁତ୍ରକୁ ନିଜ ଗୃହକୁ ନେଇ ଆସିଲେ ଏବଂ କନ୍ୟା ଦକ୍ଷିଣା ରୁଚିଙ୍କ ସହିତ ରହିଲେ ॥୫॥ ବୟଃପ୍ରାପ୍ତ ହେବାପରେ ଦକ୍ଷିଣା ଯଜ୍ଞପତି ଭଗବାନଙ୍କୁ ପତିରୂପେ କାମନା କରିବାରୁ ସେ ତାଙ୍କୁ ବିବାହ କଲେ ଏବଂ ତାଙ୍କ ପ୍ରତି ପ୍ରସନ୍ନ ହୋଇ ତାଙ୍କ ଗର୍ଭରୁ ବାରଟି ପୁତ୍ର ଉତ୍ପାଦନ କଲେ ॥୬॥ ସେମାନଙ୍କର ନାମ ହେଲା--ତୋଷ, ପ୍ରତୋଷ, ସନ୍ତୋଷ, ଭଦ୍ର, ଶାନ୍ତି, ଇଡସ୍ପତି, ଇଧ୍ମ, କବି, ବିଭୁ, ସ୍ୱହ୍ନ, ସୁଦେବ ଓ ରୋଚନ ॥୮-୯॥ ସ୍ୱାୟଂଭୁବ ମନ୍ୱନ୍ତରରେ ଏମାନେ ତୁଷିତ ନାମକ ଦେବତା ହେଲେ । ଏହି ମନ୍ୱନ୍ତରରେ ମରୀଚି ଆଦି ସାତ ଜଣ ପ୍ରସିଦ୍ଧ ଋଷି ଥିଲେ । ଯଜ୍ଞ ଭଗବାନ ଥିଲେ ଦେବେଶ୍ୱର ଇନ୍ଦ୍ର, ପ୍ରିୟବ୍ରତ ଓ ଉତ୍ତାନପାଦ ମନୁପୁତ୍ର ଥିଲେ ଏବଂ ତାଙ୍କ ପୁତ୍ର ପୌତ୍ର ଓ ନାତିମାନଙ୍କ ବଂଶ ପୃଥିବୀକୁ ବ୍ୟାପିଥିଲା ॥୧୦॥

ବିଦୁର, ମନୁ ନିଜର କନ୍ୟା ଦେବହୂତିଙ୍କୁ କର୍ଦମ ପ୍ରଜାପତିଙ୍କୁ ପ୍ରଦାନ କଲେ ଏବଂ ମୁଁ ପୂର୍ବରୁ ତାଙ୍କ ସମ୍ପର୍କରେ ସବୁ କଥା ତୁମକୁ କହିଛି ॥୧୧॥ ବ୍ରହ୍ମାଙ୍କର ପୁତ୍ର ଦକ୍ଷପ୍ରଜାପତିଙ୍କ ସହ ମନୁ ତାଙ୍କ ତୃତୀୟ କନ୍ୟା ପ୍ରସୂତିଙ୍କୁ ବିବାହ ଦେଲେ । ଏହାଙ୍କର ପୁତ୍ର, କନ୍ୟା ଓ ସେମାନଙ୍କ ବଂଶଧରମାନଙ୍କଦ୍ୱାରା ତିନି ଲୋକ ଛାଇ ହୋଇଗଲା ॥୧୨॥ କର୍ଦମଙ୍କର ନ'କନ୍ୟା ଓ ସେମାନଙ୍କର ବ୍ରହ୍ମର୍ଷି ପତିମାନଙ୍କ ବିଷୟରେ ମୁଁ ପୂର୍ବରୁ ବର୍ଣ୍ଣନା କରିଛି । ତାଙ୍କ ବଂଶାନୁଚରିତ ବର୍ତ୍ତମାନ ମୁଁ କହୁଛି, ଶୁଣ ॥୧୩॥

କର୍ଦମଙ୍କର କନ୍ୟା କଳା ଋଷି ମରୀଚିଙ୍କର ପତ୍ନୀ ହେଲେ । ତାଙ୍କ ଗର୍ଭରୁ କଶ୍ୟପ ଓ ପୂର୍ଣ୍ଣିମା ନାମରେ ଦୁଇ ପୁତ୍ର ଜନ୍ମ ନେଲେ । ସେ ଦୁହିଁଙ୍କ ବଂଶ ସାରା ଜଗତରେ ବ୍ୟାପିଗଲା ॥୧୪॥ ପରଂତପ ବିଦୁର, ପୂର୍ଣ୍ଣିମାଙ୍କର ଦୁଇ ପୁତ୍ର ହେଲେ ବିରଜ ଓ ବିଶ୍ୱଗ । କନ୍ୟା ଦେବକୁଲ୍ୟା, ଯେ କି ପରଜନ୍ମରେ ଭଗବାନ ଶ୍ରୀହରିଙ୍କ ପାଦଧୌତ କରିବା ଦ୍ୱାରା ପବିତ୍ରିତା ହୋଇ ସୁରନଦୀ ଗଙ୍ଗାରୂପରେ ପ୍ରକଟ ହେଲେ ॥୧୫॥ ଅତ୍ରିଙ୍କ ପତ୍ନୀ ଅନସୂୟା ତିନିଜଣ ଯଶସ୍ୱୀ ପୁତ୍ରଙ୍କୁ ଜନ୍ମ ଦେଲେ- ଦତ୍ତ(ଦତ୍ତାତ୍ରେୟ), ଦୁର୍ବାସା ଓ ଚନ୍ଦ୍ରମା, ଯେଉଁମାନେ କ୍ରମଶଃ ବିଷ୍ଣୁ, ଶିବ ଓ ବ୍ରହ୍ମାଙ୍କର ଅଂଶଭୂତ ହେଲେ ॥୧୬॥ ବିଦୁର କହିଲେ, ଗୁରୁଦେବ, ଜଗତ୍‌ର ସ୍ଥିତି, ଉତ୍ପତ୍ତି ଓ ବିନାଶର କାରଣ ଏହି ଶ୍ରେଷ୍ଠ ଦେବତାତ୍ରୟ କ'ଣ କରିବା ଇଚ୍ଛାରେ

ଅତ୍ରିଙ୍କର ଗୃହରେ ଜନ୍ମଗ୍ରହଣ କରିଥିଲେ, ଦୟାପୂର୍ବକ ବର୍ଣ୍ଣନା କରନ୍ତୁ ।।୧୭।। ମୈତ୍ରେୟ କହିଲେ, ବ୍ରହ୍ମଜ୍ଞାନୀଙ୍କ ମଧ୍ୟରେ ଶ୍ରେଷ୍ଠ ଅତ୍ରି ଋଷିଙ୍କୁ ବ୍ରହ୍ମା ସୃଷ୍ଟି କରିବାକୁ ଆଦେଶ ଦେବାରୁ ସେ ସସ୍ତ୍ରୀକ ଋକ୍ଷ ନାମକ କୁଳପର୍ବତକୁ ତପସ୍ୟା କରିବାକୁ ଗଲେ ।।୧୮।। ସେଠାରେ ପୁଷ୍ପିତ ଅଶୋକ ଓ ପଳାଶର ଏକ ବିଶାଳ ଅରଣ୍ୟ ଥିଲା ଏବଂ ଜଳପ୍ରବାହରେ ପୂର୍ଣ୍ଣ ନିର୍ବିନ୍ଧ୍ୟା ନାମକ ନଦୀ କଳ କଳ ଧ୍ୱନିରେ ପ୍ରବାହିତ ହେଉଥିଲା ।।୧୯।। ସେହି ବନରେ ଋଷି ଚିତ୍ତକୁ ସ୍ଥିର ରଖି ଏକଶହ ବର୍ଷ ଧରି ତପସ୍ୟା କଲେ । ଖରା, ବର୍ଷା, ଶୀତକୁ ଭ୍ରୂକ୍ଷେପ ନ କରି କେବଳ ବାୟୁପାନପୂର୍ବକ ଗୋଟିଏ ପାଦରେ ଠିଆ ହୋଇ ସେ ତପସ୍ୟା କରିବାକୁ ଲାଗିଲେ ।।୨୦।। ସେ ପ୍ରାର୍ଥନା କଲେ, ହେ ଜଗଦୀଶ୍ୱର, ମୁଁ ତୁମର ଶରଣାପନ୍ନ ହେଉଛି । ତୁମ ତୁଲ୍ୟ ମୋତେ ଗୋଟିଏ ପୁତ୍ରସନ୍ତାନ ଦାନ କର ।।୨୧-୨୨।।

ଅତ୍ରିଙ୍କର ପ୍ରାଣାୟାମରୂପୀ ଇନ୍ଧନ ଦ୍ୱାରା ମସ୍ତିଷ୍କରୁ ଯେଉଁ ଅଗ୍ନି ଜାତ ହେଲା, ସେଥିରେ ତ୍ରିଭୁବନ ତପ୍ତ ହେବାକୁ ଲାଗିଲା । ତାହା ଦେଖି ବ୍ରହ୍ମା, ବିଷ୍ଣୁ ଓ ମହେଶ୍ୱର ମୁନିଙ୍କ ଆଶ୍ରମରେ ଆସି ପହଞ୍ଚିଲେ । ସେତେବେଳେ ଅପ୍ସରା, ମୁନି, ଗନ୍ଧର୍ବ, ସିଦ୍ଧ, ବିଦ୍ୟାଧର ଓ ନାଗମାନେ ତାଙ୍କର ଯଶୋଗାନ କରୁଥିଲେ ।।୨୩-୨୪।। ତିନି ଜଣଙ୍କୁ ଏକାଠି ଆବିର୍ଭୂତ ହୋଇଥିବାର ଦେଖି ଅତ୍ରି ମୁନିଙ୍କର ମନ ପ୍ରଫୁଲ୍ଲ ହୋଇ ଉଠିଲା । ସେ ଗୋଟିଏ ପାଦରେ ଠିଆ ହୋଇଥିବା ବେଳେ ଏହି ଦେବଶ୍ରେଷ୍ଠଙ୍କୁ ଦର୍ଶନ କଲେ । ତତ୍‌କ୍ଷଣାତ୍ ଭୂମିରେ ଦଣ୍ଡପ୍ରଣାମପୂର୍ବକ କୃତାଞ୍ଜଳି ହୋଇ ବୃଷବାହନ ଶିବ, ହଂସବାହନ ବ୍ରହ୍ମା ଓ ଗରୁଡ଼ବାହନ ବିଷ୍ଣୁଙ୍କୁ ଅର୍ଚ୍ଚନା କଲେ । ସେମାନେ ନିଜ ନିଜର ଚିହ୍ନ କମଣ୍ଡଳୁ, ତ୍ରିଶୂଳ ଓ ଚକ୍ର ଧାରଣ କରିଥିଲେ ।।୨୫।। ସେମାନଙ୍କର କୃପାପୂର୍ଣ୍ଣ ଦୃଷ୍ଟି ଓ ହସ ହସ ମୁହଁରୁ ଯେଉଁ ତେଜ ନିର୍ଗତ ହେଉଥିଲା ତାକୁ ସମ୍ଭାଳି ନ ପାରି ଅତ୍ରିମୁନି ଆଖି ବୁଜିଦେଲେ ।।୨୬।। ସମସ୍ତଲୋକର ଶ୍ରେଷ୍ଠ ସେହି ଦେବତାଙ୍କୁ ନିଜର ହୃଦୟ ଅର୍ପଣପୂର୍ବକ କୃତାଞ୍ଜଳି ହୋଇ ସୁମଧୁର ସ୍ୱରରେ ସେ ସ୍ତୁତି କରିବାକୁ ଲାଗିଲେ ।।୨୭।। ଅତ୍ରି ସ୍ତୁତି କଲେ, ଭଗବାନ, ଯୁଗେ ଯୁଗେ ସୃଷ୍ଟି, ସ୍ଥିତି ଓ ପ୍ରଳୟପାଇଁ ସତ୍ତ୍ୱ, ରଜ ଓ ତମ--ମାୟାର ଏହି ତିନି ଗୁଣଦ୍ୱାରା ବିଭକ୍ତ ହୋଇ ଆପଣ ବ୍ରହ୍ମା, ବିଷ୍ଣୁ ଓ ମହେଶ୍ୱର ଏହି ତିନି ରୂପ ଧାରଣ କରନ୍ତି । ମୁଁ ଏହି ତ୍ରିମୂର୍ତ୍ତିଙ୍କୁ ପ୍ରଣାମ କରୁଛି । ଏବେ କହନ୍ତୁ ମୁଁ ଯାହାଙ୍କୁ ଡାକୁଥିଲି ଆପଣମାନଙ୍କ ମଧ୍ୟରୁ ସେ କିଏ ? ।।୨୮।। ସନ୍ତାନପ୍ରାପ୍ତି ଇଚ୍ଛାରେ ମୁଁ ଏକ ଶୂରଶ୍ରେଷ୍ଠ ଭଗବାନଙ୍କୁ ପ୍ରାର୍ଥନା କରୁଥିଲି । ଏବେ ଆପଣ ତିନି ଜଣଯାକ ଏଠାକୁ ଆସିଗଲେଣି । କୌଣସି ଦେହଧାରୀ ଆପଣଙ୍କ ପର୍ଯ୍ୟନ୍ତ ଚିନ୍ତାରେ ମଧ୍ୟ ଯାଇପାରିବ ନାହିଁ । ଏଥିପାଇଁ ମୋତେ ବଡ଼ ଆଶ୍ଚର୍ଯ୍ୟ ଲାଗୁଛି । ଏହାର କାରଣ ମୋତେ ଖୋଲି କହିବା ହୁଅନ୍ତୁ ।।୨୯-୩୧।।

ମୈତ୍ରେୟ କହିଲେ, ବିଦୁର, ଏହିପରି କଥା ଶୁଣି ସେଇ ଦେବଶ୍ରେଷ୍ଠମାନେ ଅଳ୍ପ ହସି ମଧୁର ବାକ୍ୟରେ ତାଙ୍କୁ ଉତ୍ତର ଦେଲେ, ବ୍ରହ୍ମନ୍, ଆପଣଙ୍କ ଯଥାର୍ଥ ସଙ୍କଳ୍ପ କେବେ ଅନ୍ୟଥା ହେବାର ନୁହେଁ । ଆପଣ ସତ୍‌ସଂକଳ୍ପ ଯୁକ୍ତ ହୋଇ ଯେଉଁ ଭଗବାନଙ୍କ ଚିନ୍ତା କରୁଥିଲେ, ଆମେ ତିନିଜଣ ତାଙ୍କରି ସ୍ୱରୂପ । ମହର୍ଷି, ଆପଣଙ୍କର ମଙ୍ଗଳ ହେଉ । ଆମର ଅଂଶରୁ ଆପଣଙ୍କର ତିନିଜଣ ବିଶ୍ୱବିଶ୍ରୁତ ପୁତ୍ର ଜାତ ହୋଇ ଆପଣଙ୍କ ଯଶ ବିସ୍ତାର କରିବେ ।।୩୨।। ଏହିପରି ସେହି ଦେବଶ୍ରେଷ୍ଠମାନେ ମୁନିଙ୍କୁ ତାଙ୍କ ଅଭୀଷ୍ଟ ବର ଦାନ କଲେ ଏବଂ ସ୍ୱାମୀ ସ୍ତ୍ରୀ ଉଭୟଙ୍କଦ୍ୱାରା ବିଶେଷ ଭାବରେ ଅର୍ଚ୍ଚିତ ହୋଇ ସ୍ୱସ୍ଥାନକୁ ପ୍ରସ୍ଥାନ କଲେ ।।୩୩।। ବ୍ରହ୍ମାଙ୍କ ଅଂଶରେ ଚନ୍ଦ୍ର, ବିଷ୍ଣୁଙ୍କ ଅଂଶରେ ଯୋଗବିଦ୍ ଦତ୍ତାତ୍ରେୟ ଓ ମହେଶ୍ୱରଙ୍କ ଅଂଶରେ ଦୁର୍ବାସା ଅତ୍ରିଙ୍କର ପୁତ୍ରରୂପେ ଜନ୍ମଗ୍ରହଣ କଲେ । ଏବେ ଅଙ୍ଗିରା ଋଷିଙ୍କ ସନ୍ତାନମାନଙ୍କର ବର୍ଣ୍ଣନା କରୁଛି ଶୁଣ ।।୩୪-୩୫।।

ଅଙ୍ଗିରା ଋଷିଙ୍କର ପତ୍ନୀ ଶ୍ରଦ୍ଧା ଚାରୋଟି କନ୍ୟାଙ୍କୁ ଜନ୍ମ ଦେଲେ – ସିନୀବାଲୀ, କୁହୂ, ରାକା ଓ ଅନୁମତି । ଏହାଛଡ଼ା ତାଙ୍କର ଦୁଇଟି ପୁତ୍ର ହେଲେ ଉତଥ୍ୟ ଓ ବୃହସ୍ପତି । ଉତଥ୍ୟ ଥିଲେ ସାକ୍ଷାତ୍ ଭଗବାନ ଓ ବୃହସ୍ପତି ବ୍ରହ୍ମନିଷ୍ଠ ହୋଇଥିଲେ । ସ୍ୱାରୋଚିଷ ନାମକ ମନ୍ୱନ୍ତରରେ ସେମାନେ ବିଖ୍ୟାତ ହୋଇଥିଲେ ।।୩୬।। ପୁଲସ୍ତ୍ୟ ଓ ତାଙ୍କର ପତ୍ନୀ ହବିର୍ଭୂକଂଠାରୁ ଦୁଇପୁତ୍ର

ଜନ୍ମ ହେଲେ । ମହର୍ଷି ଅଗସ୍ତ୍ୟ ଓ ମହାତପା ବିଶ୍ରବା । ଏହି ଅଗସ୍ତ୍ୟ ଅନ୍ୟ ଜନ୍ମରେ ତାଙ୍କ ଜଠରାଗ୍ନି ପାଇଁ ପ୍ରସିଦ୍ଧ ହୋଇଥିଲେ ।।୩୬।। ବିଶ୍ରବା ମୁନି ଓ ଇଡ଼ବିଡ଼ାଙ୍କ ଔରସରୁ ଯକ୍ଷମାନଙ୍କର ରାଜା କୁବେରଙ୍କର ଜନ୍ମ ହେଲା । ବିଶ୍ରବାଙ୍କର ଅନ୍ୟ ପତ୍ନୀ କେଶିନୀଙ୍କର ଗର୍ଭରୁ ରାବଣ, କୁମ୍ଭକର୍ଣ୍ଣ ଓ ବିଭୀଷଣ ଜନ୍ମ ହେଲେ ।।୩୮।। ମହାମତି ବିଦୁର, ପୁଲହ ଋଷିଙ୍କର ସ୍ତ୍ରୀ, ଯାହାଙ୍କର ନାମ ଗତି, ସେହି ସାଧ୍ୱୀଙ୍କ ଠାରୁ କର୍ମଶ୍ରେଷ୍ଠ, ବରୀୟାନ୍ ଓ ସହିଷ୍ଣୁ ଏହି ତିନି ପୁତ୍ର ଜନ୍ମ ହେଲେ ।।୩୯।। କ୍ରତୁଙ୍କର ଭାର୍ଯ୍ୟା କ୍ରିୟା । ବ୍ରହ୍ମତେଜରେ ଜଳୁଥିବା ବାଲଖିଲ୍ୟ ଆଦି ଷାଠିଏ ହଜାର ପୁତ୍ରଙ୍କୁ ସେ ଜନ୍ମ ଦେଲେ ।।୪୦-୪୧।। ପରନ୍ତପ ବିଦୁର, ବଶିଷ୍ଠଙ୍କର ପତ୍ନୀ ଊର୍ଜାଙ୍କ ଗର୍ଭରୁ ମୁଖ୍ୟ ଚିତ୍ରକେତୁଙ୍କ ସମେତ ସାତ ଜଣ ପବିତ୍ରହୃଦୟ ବ୍ରହ୍ମର୍ଷିଙ୍କର ଜନ୍ମ ହେଲା । ଏହି ସାତ ଜଣ ହେଲେ ଚିତ୍ରକେତୁ, ସୁରୋଚି, ବିରଜା, ମିତ୍ର, ଉଲ୍ୱଣ, ବସୁଭୃଦ୍ୟାନ ଓ ଦ୍ୟୁମାନ୍ । ଅନ୍ୟ ପତ୍ନୀଙ୍କ ଗର୍ଭରୁ ଶକ୍ତି ଆଦି ପୁତ୍ରମାନେ ଜନ୍ମ ହୋଇଥିଲେ ।।୪୨।। ଅଥର୍ବା ମୁନିଙ୍କର ପତ୍ନୀ ଚିତ୍ତିଙ୍କ ଗର୍ଭରୁ ଦଧୀଚିଙ୍କର ଜନ୍ମ ହେଲା । ତପୋନିଷ୍ଠ ଦଧୀଚିଙ୍କର ଅନ୍ୟ ନାମ ଅଶ୍ୱଶିରା ଥିଲା ।

ଏବେ ଭୃଗୁବଂଶର ବର୍ଣ୍ଣନା ଶୁଣ ।।୪୩-୪୪।। ମହାଭାଗ ଭୃଗୁ ଋଷିଙ୍କର ପତ୍ନୀ ଖ୍ୟାତିଙ୍କ ଗର୍ଭରୁ ଧାତା ଓ ବିଧାତା ନାମରେ ଦୁଇପୁତ୍ର ଏବଂ ଶ୍ରୀ ନାମ୍ନୀ ଭଗବତ୍‌ପରାୟଣା ଏକ କନ୍ୟା ଜନ୍ମ ଗ୍ରହଣ କରିଥିଲେ । ମେରୁ ଋଷି ଆୟତି ଓ ନିୟତି ନାମକ ନିଜର କନ୍ୟାଦ୍ୱୟଙ୍କୁ ଯଥାକ୍ରମେ ଧାତା ଓ ବିଧାତାଙ୍କୁ ପ୍ରଦାନ କରିଥିଲେ । ସେମାନଙ୍କ ଗର୍ଭରୁ ମୃକଣ୍ଡ ଓ ପ୍ରାଣ ନାମକ ପୁତ୍ର ଜନ୍ମ ହେଲେ ।।୪୫।। ମୃକଣ୍ଡଙ୍କର ପୁତ୍ର ହେଲେ ମାର୍କଣ୍ଡେୟ । ପ୍ରାଣଙ୍କର ପୁତ୍ର ମୁନି ବେଦଶିରା । ଭୃଗୁଙ୍କର ଅନ୍ୟ ଏକ ପୁତ୍ରଙ୍କ ନାମ କବି ଥିଲା ଏବଂ ତାଙ୍କର ପୁତ୍ର ଭଗବାନ୍ ଉଶନା ହେଲେ ।।୪୬।। ବିଦୁର, ଏହି ମୁନିମାନେ ନିଜର ସନ୍ତାନସନ୍ତତିମାନଙ୍କଦ୍ୱାରା ସୃଷ୍ଟିର ବିସ୍ତାର କଲେ । ଏହିପରି କର୍ଦମ ଋଷିଙ୍କ କନ୍ୟାଙ୍କ ଠାରୁ ଜାତ ସନ୍ତାନମାନଙ୍କର ବର୍ଣ୍ଣନା କଲି । ଏହାକୁ ଯେ ଶ୍ରଦ୍ଧାର ସହିତ ଶ୍ରବଣ କରେ, ତାର ତତ୍‌କ୍ଷଣାତ୍ ପାପ ଦୂର ହୋଇଯାଏ ।।୪୭।।

ବ୍ରହ୍ମାଙ୍କର ପୁତ୍ର ଦକ୍ଷପ୍ରଜାପତି ସ୍ୱାୟମ୍ଭୁବ ମନୁଙ୍କର କନ୍ୟା ପ୍ରସୂତିଙ୍କୁ ବିବାହ କଲେ । ତାଙ୍କଠାରୁ ତାଙ୍କର ଷୋଳଟି ସୁଲୋଚନା କନ୍ୟାଙ୍କର ଜନ୍ମ ହେଲା । ଏମାନଙ୍କ ମଧ୍ୟରୁ ତେରଜଣଙ୍କୁ ସେ ଧର୍ମଙ୍କୁ, ଜଣକୁ ଅଗ୍ନିଙ୍କୁ, ଜଣକୁ ପିତୃଗଣଙ୍କୁ ଏବଂ ଅନ୍ୟକୁ ଜନ୍ମମୃତ୍ୟୁ ଛେଦନକାରୀ ଭଗବାନ ଶଙ୍କରଙ୍କୁ ପ୍ରଦାନ କଲେ ।।୪୯।। ଶ୍ରଦ୍ଧା, ମୈତ୍ରୀ, ଦୟା, ଶାନ୍ତି, ତୁଷ୍ଟି, ପୁଷ୍ଟି, କ୍ରିୟା, ଉନ୍ନତି, ବୁଦ୍ଧି, ମେଧା, ତିତିକ୍ଷା, ହ୍ରୀ ଏବଂ ମୂର୍ତ୍ତି --ଏମାନେ ତେର ଜଣ ହେଲେ ଧର୍ମଙ୍କର ପତ୍ନୀ ।।୫୦।। ଏମାନଙ୍କ ମଧ୍ୟରୁ ଶ୍ରଦ୍ଧା ଶୁଭଙ୍କୁ, ମୈତ୍ରୀ ପ୍ରସାଦଙ୍କୁ, ଦୟା ଅଭୟଙ୍କୁ, ଶାନ୍ତି ସୁଖଙ୍କୁ, ତୁଷ୍ଟି ମୁଦଙ୍କୁ ଏବଂ ପୁଷ୍ଟି ସ୍ମୟଙ୍କୁ ଜନ୍ମ ଦେଲେ ।।୫୧।। କ୍ରିୟା ଯୋଗଙ୍କୁ, ଉନ୍ନତି ଦର୍ପଙ୍କୁ, ବୁଦ୍ଧି ଅର୍ଥଙ୍କୁ, ମେଧା ସ୍ମୃତିଙ୍କୁ, ତିତିକ୍ଷା (ସହନ କରିବାର ଇଚ୍ଛା) କ୍ଷେମ (ମଙ୍ଗଳ)ଙ୍କୁ ଏବଂ ହ୍ରୀ (ଲଜ୍ଜା) ପ୍ରଶ୍ରୟ ନାମକ ପୁତ୍ରଙ୍କୁ ଜନ୍ମ ଦେଲେ ।।୫୨।।

ସମସ୍ତ ଗୁଣର ଆଧାର ମୂର୍ତ୍ତିଦେବୀଙ୍କଠାରୁ ନରନାରାୟଣ ଋଷି ଦୁହେଁ ଜନ୍ମ ହେଲେ ।।୫୩-୫୫।। ତାଙ୍କ ଜନ୍ମରେ ସମସ୍ତ ବିଶ୍ୱ ପ୍ରଫୁଲ୍ଲିତ ହୋଇ ତାଙ୍କୁ ଅଭିନନ୍ଦନ କଲା । ଲୋକଙ୍କର ମନ, ଦିଗ୍‌ବିଦିଗ, ନଦୀ, ପର୍ବତ, ବାୟୁ ଆଦିରେ ପ୍ରସନ୍ନତା ଦେଖାଗଲା । ସ୍ୱର୍ଗରୁ ମାଙ୍ଗଳିକ ବାଦ୍ୟମାନ ବାଜିଉଠିଲା । ଦେବତାମାନେ ପୁଷ୍ପବୃଷ୍ଟି କଲେ । ମୁନିମାନେ ସନ୍ତୋଷରେ ସ୍ତୁତି କଲେ । ଗନ୍ଧର୍ବ କିନ୍ନରମାନେ ଗାନ କଲେ । ଦେବାଙ୍ଗନା (ଅପ୍‌ସରା)ମାନେ ନୃତ୍ୟ କଲେ । ଚାରିଆଡ଼େ ଶୁଭସୂଚନା ଦେଖାଗଲା । ବ୍ରହ୍ମାଦି ଦେବତାମାନେ ସମସ୍ତେ ସୁନ୍ଦର ସ୍ତୋତ୍ରଦ୍ୱାରା ତାଙ୍କର ସ୍ତୁତି କରିବାକୁ ଲାଗିଲେ ।।୫୬।। ଦେବତାମାନେ କହିଲେ, ଆକାଶରେ ନାନା ରଙ୍ଗରୂପ ଦେଖାଯିବା ପରି ନିଜ ମାୟାଦ୍ୱାରା ଯେଉଁ ସ୍ୱରୂପ ମଧ୍ୟରେ ସେ ଏହି ବିଚିତ୍ର ସଂସାରକୁ ରଚନା କରିଛନ୍ତି ଏବେ ସେଇ ସ୍ୱରୂପ ପ୍ରକାଶ ପାଇଁ ଋଷିମୂର୍ତ୍ତି ଗ୍ରହଣ କରି ସେ ଧର୍ମଙ୍କ ଗୃହରେ ନିଜକୁ ପ୍ରକଟ କରିଛନ୍ତି । ଆମେ ସେହି ପରମାତ୍ମାଙ୍କୁ ନମସ୍କାର କରୁଛୁ ।।୫୭।। ତତ୍ତ୍ୱଶାସ୍ତ୍ର ଦ୍ୱାରା ତାଙ୍କୁ କେବଳ ଅନୁମାନ କରାଯାଏ; ପ୍ରତ୍ୟକ୍ଷ କରାଯାଏ ନାହିଁ । ସୃଷ୍ଟିର

ଅମର୍ଯ୍ୟାଦା ନ ହେଉ, ସେଥିପାଇଁ ସେ ସତ୍ତ୍ୱଗୁଣଦ୍ୱାରା ଦେବତାମାନଙ୍କୁ ସୃଷ୍ଟି କରିଛନ୍ତି । ଲକ୍ଷ୍ମୀଙ୍କ ନିବାସସ୍ଥଳ ଅମଳକମଳକୁ ନିନ୍ଦୁଥିବା ତାଙ୍କର କୃପାକଟାକ୍ଷରେ ସେ ଆମକୁ ଚାହିଁବା ହୁଅନ୍ତୁ ॥୫୮॥

ବିଦୁର, ଏହିପରି ଦେବତାମାନେ ଭଗବାନ ନରନାରାୟଣଙ୍କର ସାକ୍ଷାତ୍ ଦର୍ଶନ ଲାଭ କରି ଦୁହିଁଙ୍କୁ ସ୍ତୁତି କରିବାକୁ ଲାଗିଲେ । ଏହାପରେ ସେ ଦୁଇ ଜଣ ଗନ୍ଧମାଦନ ପର୍ବତକୁ ଚାଲିଗଲେ ॥୫୯॥ ସେହି ନର ନାରାୟଣ ଦୁହେଁ ଏବେ ପୃଥିବୀର ଭାର ଉଶ୍ୱାସ କରିବାପାଇଁ କୃଷ୍ଣନାମ ଧାରଣ କରି ଯଦୁକୁଳଭୂଷଣ କୃଷ୍ଣ ଓ କୁରୁକୁଳମଣ୍ଡନ ଅର୍ଜୁନ ରୂପେ ଅବତୀର୍ଣ୍ଣ ହୋଇଛନ୍ତି ॥୬୦॥ ଅଗ୍ନିଙ୍କର ପତ୍ନୀ ସ୍ୱହା ତାଙ୍କର (ଅଗ୍ନିଙ୍କର) ତିନି ଜଣ ଅଭିମାନୀ ପୁତ୍ରଙ୍କୁ ଜନ୍ମ ଦେଲେ -- ପାବକ, ପବମାନ ଓ ଶୁଚି । ଏ ତିନି ଜଣ ହବନ କରାଯାଇଥିବା ପଦାର୍ଥ ଭୋଜନ କରନ୍ତି ॥୬୧॥ ଏହି ତିନି ଜଣଙ୍କଠାରୁ ପଞ୍ଚାଳିଶ ଜଣ ଅଗ୍ନିଙ୍କର ଜନ୍ମ ହେଲା । ତିନି ଜଣ ପିତା ଓ ଜଣେ ପିତାମହଙ୍କୁ ମିଶାଇ ଏମାନେ ହେଲେ ଅଣଚାଶ ଅଗ୍ନି ॥୬୨॥ ବ୍ରହ୍ମବିତ୍‌ମାନେ ଯଜ୍ଞକର୍ମରେ ଯେଉଁ ଅଣଚାଶ ଅଗ୍ନିଙ୍କୁ ଆବାହନ କରି ଆଗ୍ନେୟୀ ଇଷ୍ଟି (ଅଭିଳଷିତ ଅଗ୍ନିପୂଜା) କରନ୍ତି, ଏମାନେ ହେଉଛନ୍ତି ସେଇମାନେ ॥୬୩॥ ଅଗ୍ନିଷ୍ୱାତ୍ତ, ବର୍ହିଷଦ, ସୋମପ ଓ ଆଜ୍ୟପ - ଏମାନେ ପିତୃ । ଏମାନଙ୍କ ମଧ୍ୟରେ ଉଭୟ ସାଗ୍ନିକ ଓ ନିରଗ୍ନିକ ଅଛନ୍ତି । ଏମାନଙ୍କର ପତ୍ନୀ ହେଲେ ଦକ୍ଷଙ୍କର କନ୍ୟା ସ୍ୱଧା ॥୬୪॥ ବୟୁନା ଓ ଧାରିଣୀ ନାମରେ ପିତୃ ଓ ସ୍ୱଧାଙ୍କ ଔରସରୁ ଦୁଇଟି କନ୍ୟା ଜନ୍ମ ହେଲେ । ଉଭୟ ବ୍ରହ୍ମବାଦିନୀ ଓ ଜ୍ଞାନ ବିଜ୍ଞାନରେ ପାରଙ୍ଗମ ॥୬୫॥ ଶିବଙ୍କର ପତ୍ନୀ ହେଲେ ସତୀ । ସେ ନିଜ ପତିଦେବଙ୍କ ସେବାକୁ ହିଁ ବ୍ରତରୂପେ ଗ୍ରହଣ କରିଥିଲେ । କିନ୍ତୁ ନିଜର ଗୁଣ ଓ ସ୍ୱଭାବ ଅନୁରୂପ ତାଙ୍କର କୌଣସି ପୁତ୍ରସନ୍ତାନ ନ ଥିଲେ ॥୬୬॥ ଶିବଙ୍କର କୌଣସି ଦୋଷ ନ ଥାଇ ସତୀଙ୍କର ପିତା ଦକ୍ଷପ୍ରଜାପତି ତାଙ୍କ ପ୍ରତି ପ୍ରତିକୂଳ ଆଚରଣ କରୁଥିଲେ, ଯେଉଁଥିପାଇଁ କ୍ରୋଧରେ ସତୀ ଯୁବାବସ୍ଥାରେ ଯୋଗଦ୍ୱାରା ନିଜେ ନିଜର ଦେହ ତ୍ୟାଗ କରିଥିଲେ ॥୬୭॥

## ଦ୍ୱିତୀୟ ଅଧ୍ୟାୟ

# ଦକ୍ଷ ଓ ଶିବଙ୍କ ମଧ୍ୟରେ ବିବାଦ

ବିଦୁର କହିଲେ, ବ୍ରହ୍ମନ୍ ! କନ୍ୟାବତ୍ସଳ ଦକ୍ଷ ପ୍ରଜାପତି ନିଜର କନ୍ୟା ସତୀଙ୍କୁ ଅନାଦର କରି ସଦାଚାରୀଙ୍କ ମଧ୍ୟରେ ଶ୍ରେଷ୍ଠ ଭଗବାନ୍ ଶିବଙ୍କ ପ୍ରତି କାହିଁକି ବିଦ୍ୱେଷ କଲେ ? ମହାଦେବ, ସମସ୍ତ ଚରାଚରଙ୍କର ଗୁରୁ । ଶାନ୍ତମୂର୍ତ୍ତି, ଆତ୍ମାନନ୍ଦ ଓ ଶତ୍ରୁହୀନ । ସମସ୍ତ ଜଗତର ଆରାଧ୍ୟତମ ଦେବତା । ତାଙ୍କୁ ପୁଣି କିଏ ଦ୍ୱେଷ କରିବ ? ଶ୍ୱଶୁରଙ୍କର ଜାମାତାଙ୍କ ପ୍ରତି ଏ ବିଦ୍ୱେଷ ସମ୍ପର୍କରେ ମୋତେ କହନ୍ତୁ, ଯେଉଁ କାରଣରୁ ସତୀଙ୍କୁ ତାଙ୍କ ଜୀବନ ତ୍ୟାଗ କରିବାକୁ ପଡ଼ିଲା ॥୧-୩॥

ମୈତ୍ରେୟ କହିଲେ, ପୂର୍ବକାଳରେ ବିଶ୍ୱସୃକ୍‌ମାନଙ୍କ ସତ୍ରରେ ପ୍ରଧାନ ପ୍ରଧାନ ଋଷି, ମୁନି, ଅଗ୍ନି ଦେବତା ଏବଂ ଅନ୍ୟ ଦେବଗଣ ନିଜ ନିଜର ଅନୁଗାମୀମାନଙ୍କ ସହିତ ଏକତ୍ର ହୋଇଥିଲେ । ଏହି ସମୟରେ ଦକ୍ଷ ପ୍ରଜାପତି ସଭାଗୃହରେ ପ୍ରବେଶ କଲେ । ସେ ନିଜ ତେଜରେ ସୂର୍ଯ୍ୟଙ୍କ ପରି ତେଜୀୟାନ୍ ଥିଲେ ଏବଂ ତାଙ୍କ ତେଜରେ ସେହି ମହାସଭା ଆଲୋକିତ ହୋଇଉଠିଲା । ଅଗ୍ନିଙ୍କ ସମେତ ସମସ୍ତ ସଭାସଦ୍ ତାଙ୍କ ତେଜରେ ପ୍ରଭାବିତ ହୋଇ ସେମାନଙ୍କ ଆସନରୁ ଉଠି ଠିଆହୋଇଗଲେ । କେବଳ ବ୍ରହ୍ମା ଓ ଶିବ ଉଠିଲେ ନାହିଁ । ସଭାସଦ୍‌ମାନଙ୍କ ଦ୍ୱାରା ଏହିପରି ସମ୍ମାନିତ ହୋଇ ଦକ୍ଷ ପ୍ରଜାପତି ଲୋକପିତା ବ୍ରହ୍ମାଙ୍କୁ ପ୍ରଣାମ କଲେ ଏବଂ ତାଙ୍କ ଅନୁମତି ନେଇ ନିଜର ଆସନ ଗ୍ରହଣ କଲେ ॥୪-୭॥

ମହାଦେବ ନିଜ ଆସନରୁ ନ ଉଠିବା ଫଳରେ ତାଙ୍କୁ ଅନାଦର କଲେ ବୋଲି ଭାବି କ୍ରୋଧରେ ଦକ୍ଷଙ୍କର ଚକ୍ଷୁଦ୍ୱୟ ଜଳିଉଠିଲା । କ୍ରୋଧପୂର୍ଣ୍ଣ ଦୃଷ୍ଟିରେ ସେ ଶିବଙ୍କ ଆଡ଼କୁ ଚାହିଁ କହିଲେ, ଅଗ୍ନିଙ୍କ ସହ ଏଠାରେ ଉପସ୍ଥିତ ବ୍ରହ୍ମର୍ଷି ଓ ଦେବତାମାନେ ସମସ୍ତେ ଶୁଣନ୍ତୁ । ଶିଷ୍ଟାଚାର କ'ଣ ମୁଁ ଆପଣମାନଙ୍କୁ କହୁଛି । ଅଜ୍ଞାନ ବା ଦ୍ୱେଷବଶରୁ ନୁହେଁ । ଏହି ନିର୍ଲଜ୍ଜ ଶିବଯୋଗୁଁ ଲୋକପାଳଙ୍କ ଯଶ ନାଶ ହୋଇଗଲା । ଏହାର ଅନୁଚିତ କାର୍ଯ୍ୟଯୋଗୁଁ ସାଧୁମାନଙ୍କର ଆଶ୍ରିତ ପନ୍ଥା ଦୂଷିତ ହେଲା । ମୋର କନ୍ୟାର ପାଣି ଗ୍ରହଣ କରିଥିବାଯୋଗୁଁ ଏ ମୋର ପୁତ୍ର ପରି । ବ୍ରାହ୍ମଣ ଓ ଅଗ୍ନିଙ୍କୁ ସାକ୍ଷୀ ରଖି ସାବିତ୍ରୀପରି କନ୍ୟାକୁ ମୁଁ ପ୍ରଦାନ କରିଥିଲି । ଅତ୍ୟନ୍ତ ଅନୁଚିତ କଥା ଯେ, ଏହି ମର୍କଟଚକ୍ଷୁ ମହାଦେବ ମୋର ମୃଗନୟନୀ କନ୍ୟାର ପାଣିଗ୍ରହଣ କରି ଏବେ ଠିଆ ହୋଇ ମୋତେ ଅଭିବାଦନ କରିବା ଦୂରେ ଥାଉ, ଭଲ କଥା ପଦେ ମଧ୍ୟ କହିଲା ନାହିଁ । ଶୂଦ୍ରକୁ ବେଦ ପଢ଼ାଇବାପରି ନିଜର ଅନିଚ୍ଛାସତ୍ତ୍ୱେ ଏପରି ଏକ କ୍ରିୟାହୀନ, ଅପବିତ୍ର, ଅଧର୍ମୀ, ଆତ୍ମାଭିମାନୀ ବ୍ୟକ୍ତିକୁ ମୁଁ ମୋର ସୁକୁମାରୀ କନ୍ୟାକୁ ଦାନ କରିଛି । ଭୂତ, ପ୍ରେତମାନଙ୍କ ସହିତ ଇଏ ଭୟଙ୍କର ଶ୍ମଶାନରେ ବାସ କରେ । ପାଗଳ ପରି ଲଙ୍ଗଳା ହୋଇ କେତେବେଳେ ହସେ, କେତେବେଳେ କାନ୍ଦେ ଓ ବାଳ ମୁକୁଳା କରି ବୁଲୁଥାଏ । ଏହାର ସ୍ନାନ ହେଉଛି ଦେହରେ ଚିତାଭସ୍ମ ବୋଳିହେବା । ପ୍ରେତ ମନୁଷ୍ୟଙ୍କ ମୁଣ୍ଡକୁ ମାଳ କରି ଏବଂ ହାଡ଼କୁ ଅଳଙ୍କାର କରି ଏ ଦେହରେ ପକାଇଥାଏ । ନାମରେ ଶିବ ହେଲେ ମଧ୍ୟ ଏ ଅତ୍ୟନ୍ତ ଅଶିବ । ଏ ନିଜେ ପାଗଳ ହୋଇଥିବାଯୋଗୁଁ ପାଗଳମାନଙ୍କର ପ୍ରିୟ ହୋଇଥାଏ । ଭୂତ, ପ୍ରମଥ ଆଦି ତମୋଗୁଣପ୍ରଧାନ ବ୍ୟକ୍ତିମାନଙ୍କର ଇଏ ପତି । କେବଳ ବ୍ରହ୍ମାଙ୍କ କଥାରେ ପଡ଼ି ପାଗଳମାନଙ୍କର ସର୍ଦ୍ଦାର ଏପରି ଏକ ଅପବିତ୍ର ଦୁଷ୍ଟକୁ ମୁଁ ମୋର ସୁକୁମାରୀ କନ୍ୟାକୁ ଦାନ କଲି ॥୮-୧୬॥

ମୈତ୍ରେୟ କହିଲେ, ବିଦୁର ! ମହାଦେବଙ୍କୁ ଏହିପରି ବହୁତ କିଛି ନିନ୍ଦା କଲେ ମଧ୍ୟ ସେ କୌଣସି ପ୍ରତିକ୍ରିୟା ପ୍ରକାଶ ନ କରି ନିଶ୍ଚଳ ଭାବରେ ବସି ରହିଲେ । ଦକ୍ଷ ଅତିଶୟ କ୍ରୋଧରେ ଉଠିପଡ଼ି ହାତରେ ଜଳ ଆଣି ସ୍ପର୍ଶପୂର୍ବକ ଶିବଙ୍କୁ ଅଭିଶାପ ଦେବାପାଇଁ ଆରମ୍ଭ କଲେ । ଦେବଗଣଙ୍କ ମଧ୍ୟରେ ଇନ୍ଦ୍ର, ବିଷ୍ଣୁ ଆଦିଙ୍କ ସହ ଏହି ଅଧମକୁ ମିଳୁଥିବା ଯଜ୍ଞଭାଗ ଏବେ ଆଉ ନ ମିଳୁ । ଉପସ୍ଥିତ ପ୍ରଧାନ ପ୍ରଧାନ ସଭାସଦ୍‌ମାନେ ଯେତେ ମନା କଲେ ମଧ୍ୟ ଦକ୍ଷ ଶିବଙ୍କୁ ଶାପ ଦେଇ ଅତିଶୟ କ୍ରୋଧରେ ସେ ସ୍ଥାନ ତ୍ୟାଗ କରି ନିଜ ଗୃହକୁ ପ୍ରସ୍ଥାନ କଲେ ॥୧୭-୧୯॥ ଦକ୍ଷଙ୍କର ଅଭିଶାପ କଥା ଜାଣି ଶିବଙ୍କର ମୁଖ୍ୟ ଅନୁଗାମୀ ନନ୍ଦୀଶ୍ୱରଙ୍କର ଚକ୍ଷୁ କ୍ରୋଧରେ ରକ୍ତବର୍ଣ୍ଣ ହୋଇଗଲା । ସେ ଦକ୍ଷ ଏବଂ ତାଙ୍କ କଥାକୁ ଅନୁମୋଦନ କରିଥିବା ବ୍ରାହ୍ମଣମାନଙ୍କୁ ଭୟଙ୍କର ଅଭିଶାପ ଦେଇ କହିଲେ, ଏହି ମରଣଶୀଳ ଶରୀରପ୍ରତି ଅଭିମାନ କରି କାହାରିଠାରେ ଦ୍ରୋହ କରୁ ନ ଥିବା ଭଗବାନ ଶଙ୍କରଙ୍କପ୍ରତି ଯେ ଏପରି ଦ୍ରୋହ ଆଚରଣ କରିଛି, ସେହି ଅଜ୍ଞ ପରମତତ୍ତ୍ୱ ପ୍ରତି ବିମୁଖ ହୋଇ ରହୁ । ଗ୍ରାମ୍ୟ ସୁଖକୁ ଇଚ୍ଛା କରି ଗୃହର କପଟଧର୍ମରେ ଲିପ୍ତ ସାମାନ୍ୟ ବିଷୟସୁଖପାଇଁ ଏହି ଭ୍ରଷ୍ଟବୁଦ୍ଧି ଦକ୍ଷ ନାନା କର୍ମକାଣ୍ଡରେ ବିଶ୍ୱାସ କରେ । ଦେହବୁଦ୍ଧିରେ ଏ ନିଜର ଆତ୍ମସ୍ୱରୂପକୁ ଭୁଲି ଯାଇଛି । ଅତିଶୟ ସ୍ତ୍ରୀଲମ୍ପଟ ଏହି ଦକ୍ଷ ପଶୁପରି ଆଚରଣ କରୁଥିବାଯୋଗୁଁ ଏହାର ମୁଖ ଛାଗଳର ମୁଖପରି ହୋଇଯାଉ । କର୍ମମୟୀ ଅବିଦ୍ୟାରେ ମଜ୍ଜିତ ହୋଇ ଯେ ତାକୁ ଆତ୍ମବିଦ୍ୟା ମନେକରେ, ସେହି ମୂର୍ଖ ଏବଂ ଶିବଙ୍କୁ ଅବମାନନା କରିଥିବା ସେହି ମୂର୍ଖର ଅନୁଗାମୀମାନେ ଏହି ସଂସାର ଚକ୍ରରେ ପଡ଼ି ଘାଣ୍ଟି ହୁଅନ୍ତୁ ॥୨୦-୨୪॥ ବେଦର ପୁଷ୍ପିତ ବାଣୀ ଫଳଶ୍ରୁତିରୂପକ ମୋହକ ଗନ୍ଧରେ ପରିପୂର୍ଣ୍ଣ ହୋଇଥାଏ । ଏଥିରେ ମୋହିତ ହୋଇ ଯେଉଁମାନଙ୍କର ଚିତ୍ତ ଉଚ୍ଚାଟ ହୁଏ, ଶିବଙ୍କର ସେହି ଶତ୍ରୁମାନେ ମନମୋହକ କର୍ମଜାଲରେ ବାନ୍ଧି ହୋଇ ରହନ୍ତୁ । ଯେଉଁ ବ୍ରାହ୍ମଣମାନେ ଭକ୍ଷ୍ୟ -ଅଭକ୍ଷ୍ୟ ବିଚାର କରନ୍ତି ନାହିଁ, ନିଜ ଶରୀରର ପୋଷଣପାଇଁ ବିଦ୍ୟା, ଜପ, ବ୍ରତ ଆଦି କରୁଥା'ନ୍ତି; ଧନ ଏବଂ ଇନ୍ଦ୍ରିୟର ସୁଖକୁ ଶ୍ରେୟ ମନେକରନ୍ତି, ସେମାନେ ଏହି ସଂସାରରେ ଭିକ ମାଗି ବୁଲନ୍ତୁ ॥୨୫-୨୬॥

ନନ୍ଦୀ ବ୍ରାହ୍ମଣକୁଳକୁ ଏହିପରି ଶାପ ଦେବାର ଶୁଣି ଏହାର ପ୍ରତିକ୍ରିୟାରେ ଭୃଗୁ ଋଷି ଦୁସ୍ତର ପ୍ରତିଶାପ ରୂପକ ବ୍ରହ୍ମଦଣ୍ଡ ପ୍ରଦାନ କଲେ । ସେ କହିଲେ, ଯେଉଁମାନେ ଶିବଙ୍କର ବ୍ରତ ଧାରଣ କରନ୍ତି (ଶିବଭକ୍ତ) ଏବଂ ଯିଏ ସେମାନଙ୍କର ଅନୁଗାମୀ, ସେମାନେ ପାଷଣ୍ଡୀ ଏବଂ ସତ୍‌ଶାସ୍ତ୍ରର ବିରୋଧୀ ହୁଅନ୍ତୁ ॥୨୭-୨୮॥ ସେମାନେ ଅପବିତ୍ର, ମୂଢ଼ବୁଦ୍ଧି ହୁଅନ୍ତୁ ଏବଂ ଜଟା, ଭସ୍ମ ଓ ହାଡ଼ମାଳ ଧାରଣ କରନ୍ତୁ । ଶୈବ ଦୀକ୍ଷାରେ ଦୀକ୍ଷିତ ହୋଇ ନାନାପ୍ରକାର ମଦ୍ୟକୁ ସେମାନେ ଦେବଭୋଗ୍ୟରୂପେ ଲାଭ କରନ୍ତୁ ॥୨୯॥ ବର୍ଣ୍ଣାଶ୍ରମରୂପ ଧର୍ମର ମର୍ଯ୍ୟାଦାକୁ ରକ୍ଷା କରୁଥିବା ବେଦ ଓ ବ୍ରାହ୍ମଣମାନଙ୍କୁ ନିନ୍ଦା କରୁଥିବାରୁ ତୁମେମାନେ ଏବେ ପାଷଣ୍ଡଙ୍କର ଭାବକୁ ଆଶ୍ରୟ ନେଇଛ । ଏହି ବେଦମାର୍ଗ ହେଉଛି ଲୋକମାନଙ୍କର ମଙ୍ଗଳକାରୀ ସନାତନ ପନ୍ଥା । ପୂର୍ବରୁ ହିଁ ଲୋକେ ଏହାକୁ ଅନୁସରଣ କରି ଚାଲିଛନ୍ତି । ଏହାର ପ୍ରମାଣ ହେଉଛନ୍ତି ସ୍ୱୟଂ ଜନାର୍ଦ୍ଦନ ॥୩୦-୩୧॥ ସତ୍ ପୁରୁଷମାନଙ୍କର ଏହି ପରମ ଶୁଦ୍ଧ ସନାତନ ବେଦମାର୍ଗକୁ ନିନ୍ଦା କରୁଥିବାଯୋଗୁଁ ତୁମେ ପାଷଣ୍ଡତ୍ୱ ପ୍ରାପ୍ତ ହେବ, ଯେଉଁଠି ଭୂତମାନଙ୍କର ରାଜା ଶିବ ଅବସ୍ଥାନ କରନ୍ତି ॥୩୨॥ ମୈତ୍ରେୟ କହିଲେ, ଭୃଗୁ ଏହିପରି ଶାପ ଦେବାରୁ ଭଗବାନ ଶଙ୍କର ଏଥିରେ କିଞ୍ଚିତ କ୍ଷୁବ୍ଧ ହୋଇ ନିଜର ଅନୁଗାମୀମାନଙ୍କ ସହିତ ସେ ସ୍ଥାନ ପରିତ୍ୟାଗ କଲେ ॥୩୩॥ ବିଦୁର ! ପୁରୁଷୋତ୍ତମ ଶ୍ରୀହରିଙ୍କର ଉପାସନାପାଇଁ ହେଉଥିବା ସହସ୍ର ବର୍ଷବ୍ୟାପୀ ଏହି ଯଜ୍ଞର ଶେଷରେ ପ୍ରଜାପତିମାନେ ଗଙ୍ଗା ଯମୁନାରେ ସ୍ନାନପୂର୍ବକ ନିଜ ନିଜ ଧାମକୁ ପ୍ରସ୍ଥାନ କଲେ ॥୩୪॥

## ତୃତୀୟ ଅଧ୍ୟାୟ

# ଦକ୍ଷଯଜ୍ଞକୁ ଯିବାପାଇଁ ସତୀଙ୍କର ଇଚ୍ଛା

ବିଦୁର ! ଜାମାତା ଓ ଶ୍ୱଶୁରଙ୍କ ମଧ୍ୟରେ ଏହି ବିବାଦ ବହୁକାଳ ଧରି ଲାଗି ରହିଲା । ଇତିମଧ୍ୟରେ ପରମେଷ୍ଠୀ ବ୍ରହ୍ମା ଦକ୍ଷଙ୍କୁ ସମସ୍ତ ପ୍ରଜାପତିଙ୍କର ଅଧିପତି ରୂପେ ନିଯୁକ୍ତ କରିବାରୁ ତାଙ୍କର ଗର୍ବ ବଢ଼ିଗଲା । ପ୍ରଥମେ ସେ ବ୍ରହ୍ମନିଷ୍ଠ ଶଙ୍କରଙ୍କୁ ଅବଜ୍ଞା କରି ବାଜପେୟ ଯଜ୍ଞ କଲେ ଏବଂ ପରେ ପରେ ବୃହସ୍ପତିସବ ନାମକ ଏକ ମହାଯଜ୍ଞ ଆରମ୍ଭ କଲେ । ସେହି ଯଜ୍ଞରେ ସମସ୍ତ ବ୍ରହ୍ମର୍ଷି, ଦେବର୍ଷି, ପିତୃ ଓ ଦେବତାମାନେ ନିଜ ନିଜ ପତ୍ନୀମାନଙ୍କ ସହିତ ଯୋଗ ଦେଇ ମାଙ୍ଗଳିକ କାର୍ଯ୍ୟ ଶେଷ କଲେ ଏବଂ ଦକ୍ଷଙ୍କଦ୍ୱାରା ଅଭ୍ୟର୍ଥିତ ହେଲେ ॥୧-୫॥ ଆକାଶମାର୍ଗରେ ଯାଉଥିବା ଦେବତାମାନେ ଦକ୍ଷଙ୍କ ଯଜ୍ଞ ମହୋତ୍ସବ ସମ୍ପର୍କରେ କଥାବାର୍ତ୍ତା କରୁଥିବାର ଦକ୍ଷକନ୍ୟା ସତୀ ଦେବୀ ଶୁଣିପାରିଲେ । ନିଜର ଗୃହକୋଣର ପର୍ବତ ଦେଇ ଚାରିଆଡୁ ଚଞ୍ଚଳନେତ୍ରୀ ଯକ୍ଷ ସ୍ତ୍ରୀ ଓ ଗନ୍ଧର୍ବ ସ୍ତ୍ରୀମାନେ ନିଜର ସ୍ୱାମୀମାନଙ୍କ ସହ ଯାତ୍ରା କରୁଥିଲେ । ସେମାନେ ଉତ୍ତମ ବସ୍ତ୍ର ଓ ଚକ୍‌ଚକ୍ କରୁଥିବା ହାର ଓ କୁଣ୍ଡଳମାନ ପରିଧାନ କରି ବେଶ୍ ବେଶଭୂଷା ହୋଇ ଯାଉଥିଲେ । ସତୀ ଆଗ୍ରହ ଓ ଉତ୍କଣ୍ଠାରେ ନିଜର ପତି ଭୂତନାଥ ଶଙ୍କରଙ୍କୁ କହିଲେ, ଆପଣଙ୍କ ଶ୍ୱଶୁର ଦକ୍ଷ ପ୍ରଜାପତି ଏକ ମହାଯଜ୍ଞ କରୁଥିବାର ଶୁଣାଯାଏ । ଏହି ଦେବତାମାନେ ସେହି ଯଜ୍ଞକୁ ଯାଉଛନ୍ତି । ଯଦି ଆପଣ ଇଚ୍ଛା କରନ୍ତି ତା'ହେଲେ ଆମେ ମଧ୍ୟ ସେଠାକୁ ଯିବା ॥୬-୮॥ ନିଜର ବନ୍ଧୁବାନ୍ଧବଙ୍କୁ ଦେଖିବାପାଇଁ ସ୍ୱାମୀମାନଙ୍କ ସହିତ ମୋର ଭଉଣୀମାନେ ସେଠାକୁ ନିଶ୍ଚୟ ଯାଉଛନ୍ତି । ଆପଣଙ୍କ ସହିତ ମୁଁ ମଧ୍ୟ ସେଠାକୁ ଯିବାକୁ ଚାହେ ଏବଂ ପିତୃଦତ୍ତ ବସ୍ତ୍ର, ଅଳଙ୍କାର ଆଦି ଗ୍ରହଣ କରିବାକୁ ଚାହେ । ସେଠାରେ ମୁଁ ସ୍ୱାମୀମାନଙ୍କ ସମେତ ଭଉଣୀମାନଙ୍କୁ ଦେଖିପାରିବି । ମାଉସୀମାନଙ୍କୁ ଦେଖିପାରିବି ଏବଂ ମୋର ସ୍ନେହମୟୀ ମା'କୁ ମଧ୍ୟ ବହୁଦିନ ହେଲା ଦେଖିବାକୁ ଇଚ୍ଛା ହେଉଛି । ହେ ମୃଡ଼, ମଙ୍ଗଳମୟ ମହର୍ଷିମାନଙ୍କଦ୍ୱାରା ସମ୍ପନ୍ନ ହେବାକୁ ଯାଉଥିବା ସେହି ମହାନ୍ ଯଜ୍ଞକୁ

ମଧ୍ୟ ମୋତେ ଦେଖିବାକୁ ମିଳିବ ॥୯-୧୦॥ ଅଜନ୍ମା ପୁରୁଷ, ଏହି ଆଶ୍ଚର୍ଯ୍ୟଜନକ ତ୍ରିଗୁଣାତ୍ମକ ବିଶ୍ୱସଂସାର ଆପଣଙ୍କ ମାୟାରେ ହିଁ ରଚିତ ହୋଇଛି । ତଥାପି ସ୍ତ୍ରୀସ୍ୱଭାବଯୋଗୁଁ ଏ ସବୁ ତତ୍ତ୍ୱ ନ ବୁଝି ନିଜର ଜନ୍ମଭୂମିକୁ ଦେଖିବାପାଇଁ ମୁଁ ଦୀନ ଭାବରେ ପ୍ରାର୍ଥନା କରୁଛି । ହେ ଅଜନ୍ମା, ହେ ଶିତିକଣ୍ଠ ! ଦେଖନ୍ତୁ; ଦକ୍ଷଗୃହ ସହିତ କୌଣସି ସମ୍ବନ୍ଧ ନ ଥାଇ ଅନେକ ସ୍ତ୍ରୀ ବେଶଭୂଷାରେ ସଜ୍ଜିତ ହୋଇ ନିଜ ନିଜ ସ୍ୱାମୀଙ୍କ ସହିତ ସେଠାକୁ ଯାଉଛନ୍ତି । ଉଡ଼ିଯାଉଥିବା ଏକ କଳହଂସଦଳ ପରି ଏମାନଙ୍କୁ ଧରି ଯାଉଥିବା ବିମାନମାନ ଆକାଶର ଶୋଭାବର୍ଦ୍ଧନ କରୁଛନ୍ତି ॥୧୧-୧୨॥ ଦେବଶ୍ରେଷ୍ଠ ! ଏପରି ଅବସ୍ଥାରେ ନିଜ ବାପଘରେ ଉତ୍ସବ ହେଉଥିବାର ଶୁଣି ସେଥିରେ ମିଳିତ ହେବାପାଇଁ କେଉଁ ଝିଅର ଇଚ୍ଛା ନ ହେବ ? ନିଜର ବନ୍ଧୁ, ସ୍ୱାମୀ, ଗୁରୁ ଓ ପିତାମାତାଙ୍କ ଘରକୁ ବିନା ଡାକରାରେ ଯିବାରେ ଅସୁବିଧା ନାହିଁ ॥୧୩॥ ଦେବ ! ଆପଣ ଦୟାମୟ । ତେଣୁ ପ୍ରସନ୍ନ ହୋଇ ମୋର ଅଭିଳାଷକୁ ପୂର୍ଣ୍ଣ କରନ୍ତୁ । ଆପଣ ପରମଜ୍ଞାନୀ ହୋଇ ମଧ୍ୟ ମୋତେ ଅର୍ଦ୍ଧାଙ୍ଗ ଶରୀରରେ ଗ୍ରହଣ କରିଛନ୍ତି । ଏଣୁ ମୋର ପ୍ରାର୍ଥନାକୁ ଶୁଣି ମୋତେ ଅନୁଗୃହୀତ କରନ୍ତୁ ॥୧୪॥

ମୈତ୍ରେୟ କହିଲେ; ସୁହୃଦ୍‌ଙ୍କର ପ୍ରିୟ ଭଗବାନ ଗିରିଶ ପ୍ରିୟାଙ୍କର କଥା ଶୁଣି ଟିକିଏ ହସିଦେଲେ । ବ୍ରହ୍ମାଙ୍କର ସମ୍ମୁଖରେ ଦକ୍ଷ ତାଙ୍କୁ ଯେଉଁ ମର୍ମଭେଦୀ କୁବାକ୍ୟମାନ କହିଥିଲେ, ତାହା ତାଙ୍କର ମନେ ପଡ଼ିଗଲା ॥୧୫॥ ସେ ସତୀଙ୍କୁ କହିଲେ, ଭଦ୍ରେ ! ତୁମେ ଯାହା କହିଲ, ତାହା ଯଥାର୍ଥ । ନିମନ୍ତ୍ରିତ ନ ହୋଇ ମଧ୍ୟ ବିନା ଡାକରାରେ ଜଣେ ନିଜର ବନ୍ଧୁଗୃହକୁ ଯାଇପାରେ । କିନ୍ତୁ କେତେବେଳେ ? ଯେତେବେଳେ ପ୍ରବଳ ଆତ୍ମଗର୍ବ ଓ କ୍ରୋଧରେ ବନ୍ଧୁର ଦୃଷ୍ଟି ଦୂଷିତ ହୋଇ ନ ଥାଏ ॥୧୬॥ ବିଦ୍ୟା, ତପ, ଧନ, ବପୁ, ବୟସ ଏବଂ କୁଳ -- ଏହି ଛ'ଟି ହେଉଛି ସତ୍‌ପୁରୁଷଙ୍କର ଗୁଣ । କିନ୍ତୁ ଏହା ନୀଚ ପୁରୁଷଙ୍କଠାରେ ଥିଲେ ଅବଗୁଣ ହୋଇଯାଏ । ତଦ୍ୱାରା ସେମାନଙ୍କର ଅଭିମାନ ବଢ଼େ । ସେମାନେ ବିବେକ ହରାଇ ଦିଅନ୍ତି । ଅନ୍ୟମାନଙ୍କର ଦୋଷଦର୍ଶୀ ହୁଅନ୍ତି ଏବଂ ମହତ୍ ଲୋକମାନଙ୍କୁ ସହିପାରନ୍ତି ନାହିଁ ॥୧୭॥ ନିଜ ଗୃହକୁ ଆସିଥିବା ଅତିଥିଙ୍କୁ ଯେଉଁମାନେ ଏପରି ଖଳବୁଦ୍ଧିରେ ଦେଖନ୍ତି ଏବଂ କ୍ରୋଧରେ ଭ୍ରୂକୁଞ୍ଚନ କରନ୍ତି, ସେପରି ଅବ୍ୟବସ୍ଥିତ ଚିତ୍ତ ଲୋକଙ୍କୁ ବନ୍ଧୁ ବୋଲି ମନେକରି ସେମାନଙ୍କ ଗୃହକୁ ଯିବା ଉଚିତ ନୁହେଁ । ଯଦି ଖଳବୁଦ୍ଧି ଲୋକ ନିଜର ହୋଇ ମନଭେଦୀ କୁବାକ୍ୟ ପ୍ରୟୋଗ କରେ, ତେବେ ତାହା ଅହର୍ନିଶ ଯେପରି ହୃଦୟକୁ କଷ୍ଟ ଦିଏ, ନିଜର ଦେହକୁ ବିଦ୍ଧ କରିଥିବା ଶତ୍ରୁର ଶର ମଧ୍ୟ ସେପରି କଷ୍ଟ ଦିଏ ନାହିଁ ॥୧୮-୧୯॥

ସୁନୟନା ! ମୁଁ ମାନୁଛି ଯେ, ଐଶ୍ୱର୍ଯ୍ୟବନ୍ତ ଦକ୍ଷ ପ୍ରଜାପତିଙ୍କର ପ୍ରିୟ କନ୍ୟାମାନଙ୍କ ମଧ୍ୟରେ ତୁମେ ତାଙ୍କର ସବୁଠାରୁ ପ୍ରିୟ । ତଥାପି ତୁମେ ତୁମ ପିତାଙ୍କର ସ୍ନେହ ଶ୍ରଦ୍ଧା ପାଇବ ନାହିଁ, କାରଣ ତୁମେ ମୋର ଆଶ୍ରୟରେ ରହିଛ ଏବଂ ମୋ ପ୍ରତି ସେ ଈର୍ଷାରେ ଜଳୁଛନ୍ତି ॥୨୦॥ ନିରହଙ୍କାର ପୁରୁଷମାନଙ୍କ ସମୃଦ୍ଧି ଦେଖି ଅଳ୍ପବୁଦ୍ଧି ପୁରୁଷଙ୍କର ହୃଦୟ ଜଳିଯାଏ । ମନ ବ୍ୟାକୁଳ ହୋଇଉଠେ । କାରଣ ସେ ସ୍ଥାନରେ ସେମାନେ ପହଞ୍ଚି ପାରିବା ସମ୍ଭବ ନୁହେଁ ବୋଲି ଜାଣି ଅସୁରମାନେ ଶ୍ରୀହରିଙ୍କପ୍ରତି ଦ୍ୱେଷ ଆଚରଣ କଲାପରି ସେମାନେ ଦ୍ୱେଷ କରନ୍ତି ॥୨୧॥ ସୁମଧ୍ୟମା ! ସ୍ୱସ୍ଥାନରୁ ଠିଆ ହୋଇ ଅଭିବାଦନ ଏବଂ ପ୍ରଣାମ ନିଜ ହୃଦୟରେ ଅବସ୍ଥିତ ଅନ୍ତର୍ଯାମୀ ପୁରୁଷଙ୍କ ପ୍ରତି କରାଯାଏ । କିନ୍ତୁ ପ୍ରାଜ୍ଞ ବ୍ୟକ୍ତିମାନେ ଦେହାଭିମାନୀ ଲୋକଙ୍କୁ ତୋଷାମଦ କରନ୍ତି ନାହିଁ ॥୨୨॥ ବିଶୁଦ୍ଧ ସତ୍ତ୍ୱଗୁଣର ନାମ ହେଉଛି ବସୁଦେବ । ସେଇ ଶୁଦ୍ଧସତ୍ତ୍ୱ ଅନ୍ତଃକରଣରେ ହିଁ ଭଗବାନ ପ୍ରକାଶିତ ହୁଅନ୍ତି । ତେଣୁ ସେହି ଇନ୍ଦ୍ରିୟାତୀତ ବାସୁଦେବ । ଭଗବାନଙ୍କୁ ହିଁ ମୁଁ ନମସ୍କାର କରେ ॥୨୩॥ ବରାଙ୍ଗୀ ! ଯେଉଁ ଦକ୍ଷ ବ୍ରହ୍ମାଙ୍କର ଯଜ୍ଞରେ କୌଣସି କାରଣ ନ ଥାଇ ମୋ ପ୍ରତି କଟୁବାକ୍ୟ ପ୍ରୟୋଗ କରି ମୋତେ ତିରସ୍କାର କରିଛନ୍ତି, ସେ ତୁମର ପିତା ଓ ତୁମର ଜନକ ହେଲେ ମଧ୍ୟ ତାଙ୍କୁ ବା ତାଙ୍କର ଅନୁଗାମୀମାନଙ୍କୁ ଦେଖିବାକୁ ଯିବା ଉଚିତ ନୁହେଁ ॥୨୪॥ ଯଦି ମୋ କଥା ନ ମାନି ତୁମେ ସେଠାକୁ ଯାଅ, ତା'ହେଲେ ତୁମର କେବେହେଲେ ମଙ୍ଗଳ ହେବ ନାହିଁ । କାରଣ ପ୍ରତିଷ୍ଠିତ ବ୍ୟକ୍ତିଙ୍କ ପକ୍ଷରେ ସ୍ୱଜନଙ୍କ କୃତ ଅପମାନ ମୃତ୍ୟୁସାଙ୍ଗରେ ସମାନ ବୋଲି ଧରାଯାଏ ॥୨୫॥

## ଚତୁର୍ଥ ଅଧ୍ୟାୟ

# ସତୀଙ୍କର ଅଗ୍ନିପ୍ରବେଶ

ମୈତ୍ରେୟ କହିଲେ, ଏହିପରି କହି ଭଗବାନ ଶଙ୍କର ମୌନ ହୋଇଗଲେ । ସେ ଦେଖିଲେ ଯେ, ଗଲେ କିମ୍ବା ନ ଗଲେ ଉଭୟ କ୍ଷେତ୍ରରେ ତାଙ୍କର ପତ୍ନୀଙ୍କର ପ୍ରାଣନାଶର ସମ୍ଭାବନା ଅଛି । ଏକ ଦିଗରେ ନିଜର ସ୍ୱଜନଙ୍କୁ ଦେଖିବାର ଇଚ୍ଛା, ଅନ୍ୟ ଦିଗରେ ଶିବଙ୍କୁ ଅସନ୍ତୁଷ୍ଟ କରିବାର ଆଶଙ୍କା-- ଏହି ଦ୍ୱିଧାରେ ପଡ଼ି ସତୀ ଯାଇପାରିଲେ ନାହିଁ କି ରହିପାରିଲେ ନାହିଁ ॥୧॥ ସ୍ୱଜନଙ୍କୁ ଦେଖିବାରେ ବାଧା ସୃଷ୍ଟିଯୋଗୁଁ ତାଙ୍କ ମନରେ ଦୁଃଖ ହେଲା । ସେମାନଙ୍କ ସ୍ନେହବଶରୁ ସେ କାନ୍ଦିବାକୁ ଲାଗିଲେ ଓ ତାଙ୍କ ଆଖିରେ ଲୁହ ଭରିଗଲା । ସେ କମ୍ପିତ ଶରୀର ଏବଂ ରୋଷପୂର୍ଣ୍ଣ କଟାକ୍ଷରେ ଅପ୍ରତିମ ପୁରୁଷ ଭଗବାନ ଶଙ୍କରଙ୍କୁ ଜାଳିଲା ପରି ଚାହିଁବାକୁ ଲାଗିଲେ ॥୨॥ ତା'ପରେ ଦୀର୍ଘଶ୍ୱାସ ପକାଇ କ୍ରୋଧରେ, ଶୋକରେ, ଦୁଃଖପୂର୍ଣ୍ଣ ହୃଦୟରେ ନିଜର ପିତୃଗୃହକୁ ପ୍ରସ୍ଥାନ କଲେ । ସ୍ତ୍ରୀବୁଦ୍ଧି ଯୋଗୁଁ ତାଙ୍କର ହିତାହିତ ଜ୍ଞାନ ରହିଲା ନାହିଁ । ସ୍ନେହରେ ନିଜ ଦେହରୁ ଅର୍ଦ୍ଧାଙ୍ଗ ଦାନ କରିଥିବା ସତ୍‌ପୁରୁଷଙ୍କ ପ୍ରିୟ ନିଜର ସ୍ୱାମୀଙ୍କୁ ସେ ଛାଡ଼ି ଚାଲିଗଲେ ॥୩॥ ସତୀ ଏକାକିନୀ ଖୁବ୍ ଦ୍ରୁତ ବେଗରେ ଚାଲିଯାଉଥିବାର ଦେଖି ଶିବଙ୍କର ମଣିମାନ୍ ଓ ମଦ ଆଦି ସହସ୍ରସଂଖ୍ୟକ ସେବକ ଓ ଅନୁଗାମୀ ନିଜର ପାର୍ଷଦ ଓ ଯକ୍ଷମାନଙ୍କୁ ଧରି ଶିବବାହନ ବୃଷଭଙ୍କୁ ଆଗରେ ରଖି ନିର୍ଭୟରେ ତାଙ୍କ ପଛେ ପଛେ ଚାଲିବାକୁ ଲାଗିଲେ ॥୪॥ ସେମାନେ ସତୀଙ୍କୁ ବୃଷଭେନ୍ଦ୍ରଙ୍କ ପିଠିରେ ବସାଇ ଦେଲେ । ତାଙ୍କର ପୋଷା ଶାରି, ଖେଳନାର କନ୍ଦୁକ, ଦର୍ପଣ, ପଦ୍ମଫୁଲ, ଶ୍ୱେତଛତ୍ର, ଚାମର ଆଦି ସାଙ୍ଗରେ ଧରି ଏବଂ ଦୁନ୍ଦୁଭି, ଶଙ୍ଖ ଓ ବାଦ୍ୟ ଆଦିଦ୍ୱାରା ସୁସଜ୍ଜିତ ହୋଇ ସତୀଙ୍କ ସାଙ୍ଗରେ ଯାତ୍ରା କଲେ ॥୫॥ ସତୀ ଦକ୍ଷଙ୍କର ଯଜ୍ଞଶାଳାରେ ପ୍ରବେଶ କଲାବେଳେ ବ୍ରାହ୍ମଣମାନେ ଉଚ୍ଚସ୍ୱରରେ ବେଦପାଠ କରୁଥିଲେ । ବ୍ରହ୍ମର୍ଷି ଓ ଦେବତାଙ୍କ ସମାଗମ ହୋଇଥିଲା । ଯଜ୍ଞପାଇଁ ମୃତ୍ତିକା, କାଷ୍ଠ, ସୁବର୍ଣ୍ଣ, କୁଶ ଓ ଚର୍ମ ନିର୍ମିତ ପାତ୍ରମାନ ସେଠାରେ ରଖା ଯାଇଥିଲା ॥୬॥ ସେଠାରେ ପହଞ୍ଚିବା ପରେ ସତୀଙ୍କ ପ୍ରତି ତାଙ୍କର ପିତା ଅବଜ୍ଞା ଭାବ ଦେଖାଇଲେ ଏବଂ ଦକ୍ଷଙ୍କ ଭୟରେ ଜଣେ ହେଲେ କେହି ତାଙ୍କୁ ଆଦର କଲେ ନାହିଁ । କେବଳ ତାଙ୍କର ମା' ଓ ଭଉଣୀମାନେ ଆଦରରେ ତାଙ୍କୁ କୁଶଳ ସମ୍ବାଦ ପଚାରି ବହୁ ଉପହାର, ଆସନ ଆଦି ଦାନ କଲେ ମଧ୍ୟ ପିତାଙ୍କର ଅନାଦରଯୋଗୁଁ ସତୀ ତାହା ଗ୍ରହଣ କଲେ ନାହିଁ ॥୭-୮॥ ଯଜ୍ଞସ୍ଥଳରେ କେବଳ ଯେ ତାଙ୍କୁ ଅନାଦର କରାଯାଇଛି, ସେତିକି ନୁହେଁ, ସେଠାରେ ଭଗବାନ ଶଙ୍କରଙ୍କୁ ତାଙ୍କର ଯଜ୍ଞଭାଗ ଦିଆଯାଇ ନାହିଁ ଏବଂ ଦକ୍ଷଙ୍କଦ୍ୱାରା ଶିବଙ୍କର ଘୋର ଅପମାନ କରାଯାଉଛି ଦେଖି ସର୍ବଲୋକେଶ୍ୱରୀ ଦେବୀ ସତୀଙ୍କର କ୍ରୋଧ ବଢ଼ିବାକୁ ଲାଗିଲା । ଜଣାଗଲା, ଯେପରିକି କ୍ରୋଧରେ ସମଗ୍ର ସଂସାରକୁ ସେ ଭସ୍ମ କରିଦେବେ ॥୯॥ ରୋଷପୂର୍ଣ୍ଣ ଭାଷାରେ ସତୀ ଶିବଦ୍ୱେଷୀ ଦକ୍ଷଙ୍କୁ ନିନ୍ଦା କରିବାକୁ ଲାଗିଲେ । କର୍ମକାଣ୍ଡରେ ଲିପ୍ତ ଉଦ୍ଧତ ଦକ୍ଷଙ୍କୁ ଉଚିତ ଶିକ୍ଷା ଦେବାପାଇଁ ଯେତେବେଳେ ସତୀଙ୍କ ସହିତ ଆସିଥିବା ଭୂତମାନେ ଉଠିପଡ଼ିଲେ, ସେ ସେମାନଙ୍କୁ ନିଜର ତେଜଦ୍ୱାରା ନିବାରଣ କରି ସମସ୍ତଙ୍କୁ ଶୁଣାଇ କହିଲେ, ହେ ପିତା, ଯାହାଙ୍କଠାରୁ ଏହି ସଂସାରରେ କେହି ବଡ଼ ନୁହନ୍ତି, ଯେ ସମସ୍ତ ଦେହଧାରୀଙ୍କ ପ୍ରିୟ ଆତ୍ମସ୍ୱରୂପ, ଯାହାଙ୍କର କେହି ପ୍ରିୟ ବା ଅପ୍ରିୟ ନାହାନ୍ତି, ସର୍ବବ୍ୟାପୀ ସେହି ଶିବଙ୍କ ପ୍ରତି ଆପଣଙ୍କ ଛଡ଼ା ଆଉ କିଏ ଅଛି, ଯେ ଶତ୍ରୁତା ଆଚରଣ କରିବ ? ॥୧୦-୧୧॥

ହେ ବ୍ରାହ୍ମଣ, ଅନ୍ୟମାନଙ୍କ ଗୁଣାବଳିକୁ ଦୋଷ ବୋଲି ଦର୍ଶାଉଥିବା ଆପଣଙ୍କପରି ଲୋକ ଖୁବ୍ କମ୍ ଅଛନ୍ତି । ସାଧୁମାନେ କେବେ ଏହା କରନ୍ତି ନାହିଁ । ମହତ୍ ଲୋକମାନେ ଅନ୍ୟର ସାମାନ୍ୟ ଗୁଣକୁ ବହୁତ ବଡ଼ କରି ପ୍ରକାଶ କରନ୍ତି । ତେଣୁ ଦୁଃଖର

କଥା, ଆପଣ ସେହି ମହାପୁରୁଷଙ୍କଠାରେ ଦୋଷ ଦର୍ଶାଇ ଚାଲିଛନ୍ତି ॥୧୨॥ ଯେଉଁ ଜଡ଼ବାଦୀମାନେ ଏହି ଶରୀରକୁ ଆତ୍ମା ବୋଲି ମାନନ୍ତି, ସେହି ଈର୍ଷାପର ଅସାଧୁ ବ୍ୟକ୍ତିମାନେ ମହାପୁରୁଷମାନଙ୍କର ନିନ୍ଦା କରିବାରେ କିଛି ଆଶ୍ଚର୍ଯ୍ୟ ହେବାର ନାହିଁ । ମହାପୁରୁଷମାନଙ୍କରତ ଏଥିରେ କିଛି ଯାଏ ଆସେ ନାହିଁ --କିନ୍ତୁ ତାଙ୍କରି ଅସହ୍ୟ ପାଦଧୂଳିରେ ଏହି ନିନ୍ଦୁକମାନଙ୍କର ତେଜ ନଷ୍ଟ ହୋଇଯାଏ ଓ ତାହାହିଁ ତାଙ୍କର ଶୋଭା ବୋଲି ସେମାନେ ମନେକରନ୍ତି ॥୧୩॥ ଯାହାଙ୍କର ଦୁଇଟି ଅକ୍ଷରଯୁକ୍ତ ନାମ (ଶିବ) ଲୋକଙ୍କ ମୁହଁରୁ ନିର୍ଗତ ହେବାମାତ୍ରେ ସେମାନଙ୍କ ସମସ୍ତ ପାପ ଦୂର ହୋଇଯାଏ, ଯାହାଙ୍କର ଆଜ୍ଞାକୁ କେହି ଲଂଘନ କରିବାପାଇଁ ସାହସ କରନ୍ତି ନାହିଁ, ସେହି ପୁଣ୍ୟଶ୍ଳୋକ ମଙ୍ଗଳମୟଙ୍କପ୍ରତି ଅମଙ୍ଗଳ ରୂପରେ ଆପଣ ଶତ୍ରୁତା ଆଚରଣ କରୁଛନ୍ତି ॥୧୪॥ ବ୍ରହ୍ମାନନ୍ଦ ରସ ପାନ କରିବାପାଇଁ ସତ୍‌ପୁରୁଷମାନଙ୍କର ମନରୂପୀ ଭ୍ରମର ଯାହାଙ୍କର ପାଦପଦ୍ମକୁ ସେବା କରେ, ଆଶାୟୀ ଲୋକମାନଙ୍କପାଇଁ ଯାହାଙ୍କର ଆଶୀର୍ବାଦ ବର୍ଷା ହେଉଥାଏ, ସେହି ବିଶ୍ୱବନ୍ଧୁ ଶଙ୍କରଙ୍କ ପ୍ରତି ଆପଣ ଦ୍ରୋହ ଆଚରଣ କରିଛନ୍ତି ॥୧୫॥

ତାଙ୍କର ନାମ ଶିବ ହେଲେ ମଧ୍ୟ ସେ ଅଶିବ -ଏକଥା ଆପଣଙ୍କ ଛଡ଼ା ଅନ୍ୟ କେହି କହିବାର ଶୁଣା ନାହିଁ । ସେ ପିଶାଚମାନଙ୍କ ସହିତ ଶ୍ମଶାନରେ ବାସ କରନ୍ତି, ଜଟା ଧାରଣ କରିଛନ୍ତି, ନରକପାଳକୁ ମାଳାରୂପେ ପିନ୍ଧିଛନ୍ତି, ତଥାପି ବ୍ରହ୍ମାଦି ଦେବତାମାନେ ତାଙ୍କର ପଦରଜକୁ ନିର୍ମାଲ୍ୟରୂପେ ଶିରୋଧାର୍ଯ୍ୟ କରନ୍ତି ॥୧୬॥ ଯଦି କେହି ନିରଙ୍କୁଶ ବ୍ୟକ୍ତି ଧର୍ମମର୍ଯ୍ୟାଦା ରକ୍ଷାକାରୀ ନିଜର ସ୍ୱାମୀଙ୍କୁ ନିନ୍ଦା କରୁଥାଏ ଏବଂ ଯଦି ତା'ର ତାକୁ ଦଣ୍ଡ ଦେବାର ଶକ୍ତି ନ ଥାଏ, ତା'ହେଲେ କାନ ବନ୍ଦ କରି ସେଠାରୁ ଶୀଘ୍ର ଚାଲିଯିବା ଉଚିତ । ଯଦି ଶକ୍ତି ଥାଏ, ତା'ହେଲେ ସେହି ଦୁଷ୍ଟ ନିନ୍ଦୁକର ଜିହ୍ୱାକୁ ବଳପୂର୍ବକ ଧରି କାଟିଦେବା ଉଚିତ । ଦରକାର ପଡ଼ିଲେ ନିଜର ପ୍ରାଣ ଦେଇଦେବା ଉଚିତ -- କାରଣ ତାହା ହିଁ ଧର୍ମ ॥୧୭॥ ଆପଣ ଭଗବାନ ନୀଳକଣ୍ଠଙ୍କର ନିନ୍ଦୁକ । ଏଣୁ ମୁଁ ଆପଣଙ୍କଠାରୁ ଜନ୍ମିତ ଏହି ଶରୀରକୁ ମୁହୂର୍ତ୍ତେ ମଧ୍ୟ ଧାରଣ କରିବାକୁ ଚାହେ ନାହିଁ । କାରଣ ଭୁଲରେ କୌଣସି ଅଶୁଦ୍ଧ ଖାଦ୍ୟକୁ ଖାଇ ଦେଇଥିଲେ କେବଳ ବାନ୍ତିକରି ତାକୁ ବାହାର କରିବା ଦ୍ୱାରା ହିଁ ଶରୀର ଶୁଦ୍ଧ ହୋଇଥାଏ ॥୧୮॥ ଯେଉଁ ମହାମୁନି ନିଜର ସ୍ୱରୂପରେ ରମଣ କରନ୍ତି, ସେ ବେଦକଥିତ ବିଧିନିଷେଧମୟ ମାର୍ଗରେ ପରିଚାଳିତ ହୁଅନ୍ତି ନାହିଁ । ଏରୂପେ ଆତ୍ମାରାମ ଜ୍ଞାନୀ ଓ ସାଧାରଣ ମନୁଷ୍ୟମାନଙ୍କ ମଧ୍ୟରେ ପାର୍ଥକ୍ୟ ଦେଖାଯାଏ । ସେଥିପାଇଁ ସ୍ୱଧର୍ମରେ ଥିବା ବ୍ୟକ୍ତି ଅନ୍ୟକୁ ନିନ୍ଦା କରିବା ଉଚିତ ନୁହେଁ ॥୧୯॥ ଏହା ସତ୍ୟ ଯେ, ପ୍ରବୃତ୍ତି ଓ ନିବୃତ୍ତି ଏହି ଦୁଇ ପ୍ରକାର କର୍ମ ଅଛି । ବେଦରେ ଉଭୟ ଆସକ୍ତ ଓ ଅନାସକ୍ତ ଦୁଇ ପ୍ରକାର ଲୋକଙ୍କର ବିଚାର କରାଯାଇଛି । ଉଭୟ ପରସ୍ପର ବିରୋଧୀ ହୋଇଥିବାଯୋଗୁଁ ଜଣେ ଲୋକ ଏକସଙ୍ଗରେ ଏହି ଦୁଇଟିଯାକ କର୍ମ କରିପାରିବ ନାହିଁ । କିନ୍ତୁ ଯେ ପରଂବ୍ରହ୍ମ, ତାଙ୍କପାଇଁ କୌଣସି କର୍ମର ଆବଶ୍ୟକତା ନାହିଁ । ଭଗବାନ ସଦାଶିବ ସ୍ୱୟଂ ପରଂବ୍ରହ୍ମ ॥୨୦॥

ପିତା! ମୋ ପାଖରେ ଯେଉଁ ଐଶ୍ୱର୍ଯ୍ୟ ଅଛି, ଆପଣଙ୍କ ପାଖରେ ତାହା ନାହିଁ । ଆତ୍ମଜ୍ଞାନୀଙ୍କଦ୍ୱାରା ସେବିତ ମୋର ସେହି ଅବ୍ୟକ୍ତ ଐଶ୍ୱର୍ଯ୍ୟକୁ ଏଠାର ଯଜ୍ଞଶାଳାରେ ଧୂଆଁ ମଧ୍ୟରେ ବସି ଯଜ୍ଞର ଅନ୍ନରେ ପ୍ରତିପାଳିତ ହେଉଥିବା ଆପଣଙ୍କର ସ୍ତୁତିକାରୀମାନେ ବୁଝି ପାରିବେନାହିଁ ॥୨୧॥ ଶିବଙ୍କ ଠାରେ ଅପରାଧ କରିଥିବା ଆପଣଙ୍କ ଶରୀରରୁ ଜନ୍ମ ହୋଇ ମୁଁ କାହିଁକି ଏ ନିନ୍ଦନୀୟ ଦେହକୁ ଧାରଣ କରିବି ? ମୋର ଜନ୍ମ ହିଁ ମନ୍ଦ । ଆପଣଙ୍କ ପରି ଦୁର୍ଜନ ସହିତ ମୋର ସମ୍ପର୍କ ଥିବାହେତୁ ମୁଁ ଲଜ୍ଜା ଅନୁଭବ କରୁଛି । ମହତ୍‌ଲୋକର ନିନ୍ଦାକାରୀଠାରୁ ମୋର ଯେଉଁ ଜନ୍ମ ହୋଇଛି, ତାକୁ ମୁଁ ଧିକ୍‌କାର କରୁଛି ॥୨୨॥ ବୃଷଧ୍ୱଜ ଭଗବାନ ଶଙ୍କର ବିନୋଦରେ ମୋତେ ଦାକ୍ଷାୟଣୀ ବୋଲି ଡାକିଦେଲେ, ଆପଣଙ୍କଠାରୁ ମୋର ଜନ୍ମ ବୋଲି ଜାଣି ମୋତେ ଲଜ୍ଜା ଲାଗିବ ଏବଂ ମୋର ମନର ଦୁଃଖ ବଢ଼ିଯିବ । ମୋର ସେ ସ୍ୱଭାବସୁଲଭ ପ୍ରସନ୍ନତା ରହିବ ନାହିଁ । ଆପଣଙ୍କଠାରୁ ଉତ୍ପନ୍ନ ଏହି ଜଡ଼ ଶରୀରକୁ ଉତ୍ସର୍ଗ କରିଦେବା ପାଇଁ ମୁଁ ସ୍ଥିର କଲି ॥୨୩॥

ମୈତ୍ରେୟ କହିଲେ, ଶତ୍ରୁହନ୍ତା ବିଦୁର, ଏହିପରି ଯଜ୍ଞସ୍ଥଳରେ ଦକ୍ଷଙ୍କୁ ନିନ୍ଦା କରି ସତୀ ଶାନ୍ତ ହୋଇ ଉତ୍ତର ଦିଗକୁ ମୁହଁ କରି ବସିପଡ଼ିଲେ । ପୀତବସ୍ତ୍ରପରିହିତା ଦେବୀ ଜଳସ୍ପର୍ଶପୂର୍ବକ ଦେହତ୍ୟାଗ ନିମନ୍ତେ ସମାଧିସ୍ଥ ହେଲେ ॥୨୪॥ ଠିକ୍ ଆସନରେ ସ୍ଥିର ରହି ପ୍ରାଣାୟାମ ଦ୍ୱାରା ପ୍ରାଣ ଏବଂ ଅପାନ ବାୟୁକୁ ଏକ କରି ନାଭିଚକ୍ରରେ ସ୍ଥାପନ କଲେ । ତା'ପରେ ନାଭିଚକ୍ରରୁ ଉପରକୁ ଉଠାଇ ଧୀରେ ଧୀରେ ବୁଦ୍ଧିସହିତ ହୃଦୟରେ ସ୍ଥାପନ କଲେ । ତା'ପରେ ଏହି ହୃଦସ୍ଥିତ ବାୟୁକୁ ଅନିନ୍ଦିତା ଦେବୀ କଣ୍ଠମାର୍ଗରେ ଆଣି ଦୁଇ ଭ୍ରୂ ମଧ୍ୟରେ ସ୍ଥାପନ କଲେ ॥୨୫॥ ସ୍ୱଜନବନ୍ଦିତ ଭଗବାନ ଶଙ୍କର ଯେଉଁ ଦେହକୁ ଆଦରରେ ନିଜ କୋଳରେ ବସାଉଥିଲେ, ଦକ୍ଷଙ୍କ ଉପରେ କୋପ କରି ସେହି ଦେହକୁ ତ୍ୟାଗ କରିବାକୁ ମନସ୍ୱିନୀ ସତୀ ନିଜର ସମସ୍ତ ଅଙ୍ଗରେ ବାୟୁ ଓ ଅଗ୍ନିକୁ ଧାରଣ କଲେ ॥୨୬॥ ଅନ୍ୟ କିଛି ଚିନ୍ତା ନ କରି ନିଜର ଭର୍ତ୍ତା ଜଗତ୍‌ଗୁରୁ ଭଗବାନ ଶଙ୍କରଙ୍କର ଚରଣକମଳ ମକରନ୍ଦକୁ ସେ ଚିନ୍ତା କରିବାକୁ ଲାଗିଲେ । ତାଙ୍କ ଦେହରୁ ସମସ୍ତ କଳ୍ମଷ ଦୂର ହୋଇଗଲା ଏବଂ ଯୋଗସମାଧି ଜାତ ଅଗ୍ନିରେ ତାଙ୍କର ଶରୀର ଜଳିଉଠିଲା ॥୨୭॥ ସତୀଙ୍କ ଦେହତ୍ୟାଗର ସେହି ଆଶ୍ଚର୍ଯ୍ୟ ଦୃଶ୍ୟ ଦେଖି ସେଠାରେ ଉପସ୍ଥିତ ଥିବା ଦେବତାମାନେ ହାହାକାର କରିବାକୁ ଲାଗିଲେ ଏବଂ ଭୟଙ୍କର କୋଳାହଳ ଆକାଶ ପୃଥିବୀ ଚାରିଆଡ଼େ ଖେଳିଗଲା । ଚାରିଆଡୁ ଶୁଣାଗଲା, ହାୟ ହାୟ ! ଦକ୍ଷଙ୍କର ଆଚରଣରେ କ୍ରୁଦ୍ଧା ଦେବାଧିଦେବ ଶଙ୍କରଙ୍କର ପ୍ରିୟ ପତ୍ନୀ ସତୀଦେବୀ ନିଜର ପ୍ରାଣ ବିସର୍ଜନ କଲେ । ସମସ୍ତ ଚରାଚର ଜୀବ ଏହି ଦକ୍ଷ ପ୍ରଜାପତିଙ୍କର ସନ୍ତାନ ହେଲେ ମଧ୍ୟ ଏ ନିଜର ମାନଯୋଗ୍ୟା ମନସ୍ୱିନୀ କନ୍ୟାଙ୍କପ୍ରତି ଚରମ ଦୁର୍ବ୍ୟବହାର କରି ତାଙ୍କୁ ଯେଉଁ ଅବଜ୍ଞା କଲେ, ସେଥିପାଇଁ ଏହି ଅସହିଷ୍ଣୁ ବ୍ରହ୍ମଦ୍ରୋହୀ ସଂସାରରେ ଘୋର ଅପକୀର୍ତ୍ତି ଅର୍ଜନ କରିବେ । ଏହି ଶିବଦ୍ରୋହୀ ବ୍ୟକ୍ତିଙ୍କର ଅପରାଧଯୋଗୁଁ ତାଙ୍କ କନ୍ୟା ପ୍ରାଣ ବିସର୍ଜନ କଲେ । କିନ୍ତୁ ସେ ତାଙ୍କୁ ନିବାରଣ କରିପାରିଲେ ନାହିଁ ॥୨୮-୩୦॥

ସତୀଙ୍କର ଅଦ୍ଭୁତ ପ୍ରାଣତ୍ୟାଗ ଦେଖି ଲୋକେ ଏପରି କୁହାକୁହି ହେବାବେଳେ, ସତୀଙ୍କ ସହିତ ଆସିଥିବା ପାର୍ଶ୍ୱଚରମାନେ ଅସ୍ତ୍ରଶସ୍ତ୍ର ଉଠାଇ ଦକ୍ଷଙ୍କୁ ମାରିବାପାଇଁ ଉଠିଗଲେ । ସେମାନେ ଏପରି ଆକ୍ରମଣ କରିବାକୁ ଦଉଡ଼ି ଆସୁଥିବାର ଦେଖି ଯଜ୍ଞର ବିଘ୍ନନାଶପାଇଁ ଦକ୍ଷିଣାଗ୍ନିରେ ଯଜ୍ଞର ଅଧ୍ୱର୍ଯ୍ୟୁ ଭୃଗୁ ଆହୁତି ଦେବା ଫଳରେ ଋଭୁ ନାମରେ ଏକସହସ୍ର ତେଜସ୍ୱୀ ଦେବତା ଉତ୍ପନ୍ନ ହେଲେ । ସେମାନେ ନିଜ ନିଜର ତପସ୍ୟାବଳରେ ଚନ୍ଦ୍ରଲୋକ ପ୍ରାପ୍ତ ହୋଇଥିଲେ । ଅଧାପୋଡ଼ା ଜଳନ୍ତା କାଠଖଣ୍ଡମାନ ଧରି ବ୍ରହ୍ମତେଜବଳରେ ବଳୀୟାନ୍ ଋଭୁମାନେ ଆକ୍ରମଣ କରନ୍ତେ ସତୀଙ୍କର ଅନୁଚର ପ୍ରମଥ ଓ ଗୁହ୍ୟକମାନେ ଚତୁର୍ଦ୍ଦିଗକୁ ପଳାୟନ କଲେ ॥୩୧-୩୪॥

## ପଞ୍ଚମ ଅଧ୍ୟାୟ

# ଦକ୍ଷଯଜ୍ଞ ଭଙ୍ଗ

ମୈତ୍ରେୟ କହିଲେ, ନାରଦଙ୍କଠାରୁ ଦକ୍ଷ ପ୍ରଜାପତିଙ୍କଦ୍ୱାରା ଅପମାନିତା ସତୀଙ୍କର ନିଧନ ସମ୍ବାଦ ଶୁଣି ଏବଂ ଯଜ୍ଞରୁ ଜାତ ଋଭୁମାନଙ୍କଦ୍ୱାରା ତାଙ୍କର ପାର୍ଶ୍ୱଚର ସୈନ୍ୟମାନେ ବିତାଡ଼ିତ ହେବାର ଜାଣିପାରି ଭଗବାନ ଶଙ୍କରଙ୍କର କ୍ରୋଧର ସୀମା ରହିଲା ନାହିଁ ॥୧॥ ସେ ରାଗରେ ନିଜର ଦାନ୍ତ ଏବଂ ଓଠକୁ କାମୁଡ଼ି ପକାଇଲେ । ଧୂର୍ଜଟି ରୁଦ୍ର ନିଜର ଜଟାକୁ ଉପାଡ଼ି ବିଦ୍ୟୁତ୍ ଅଗ୍ନିପରି ଜଳୁଥିବା ସେହି ଜଟାକୁ ଗମ୍ଭୀର ନାଦରେ ଅଟ୍ଟହାସପୂର୍ବକ ଭୂମିରେ ନିକ୍ଷେପ କଲେ । ସେଥିରୁ ଯେଉଁ ଅତିକାୟ ପୁରୁଷ ଉତ୍ପନ୍ନ ହେଲା, ତାହାର ଶିର ଆକାଶକୁ ସ୍ପର୍ଶ କରୁଥିଲା । ସହସ୍ରବାହୁଯୁକ୍ତ ସେହି ଶ୍ୟାମକାନ୍ତି ପୁରୁଷର ତିନି ଆଖି

ସୂର୍ଯ୍ୟପରି ଜଳୁଥିଲା । ଦାନ୍ତ ଭୟଙ୍କର । ଜ୍ୱଳନ୍ତ ଅଗ୍ନିପରି ଜଟା । ସେ ଭୂତନାଥଙ୍କୁ କୃତାଞ୍ଜଳି ହୋଇ ପଚାରିଲା, ମୁଁ କ'ଣ କରିବି, ଆଦେଶ ଦିଅନ୍ତୁ । ଶିବ କହିଲେ, ରୁଦ୍ର, ତୁମେ ହେଉଚ ମୋର ସୈନ୍ୟମାନଙ୍କର ସେନାପତି । ମୋର ଅଂଶବିଶେଷ । ଶୀଘ୍ର ଯାଇ ଦକ୍ଷ ଏବଂ ତା'ର ଯଜ୍ଞକୁ ନଷ୍ଟ କରିଦିଅ ॥୨-୪॥

ବିଦୁର, ଏହିପରି କୁପିତ ଶିବଙ୍କର ଆଜ୍ଞା ପାଇ ସେ (ବୀରଭଦ୍ର) ଦେବଦେବ ମହାଦେବଙ୍କୁ ପ୍ରଦକ୍ଷିଣ କଲେ । ସେତେବେଳେ ତାଙ୍କର ମନେହେଲା, ସଂସାରରେ କେହି ନାହିଁ, ଯେ କି ମୋ ଶକ୍ତିର ସମ୍ମୁଖୀନ ହୋଇପାରିବ ଏବଂ ସବୁଠାରୁ ଶୂରବୀରଙ୍କର ଶକ୍ତିର ମୁଁ ସମ୍ମୁଖୀନ ହୋଇପାରିବି ॥୫॥ ଭୟଙ୍କର ଗର୍ଜନ କରି ତ୍ରିଶୂଳଧାରଣପୂର୍ବକ ସେ ଦକ୍ଷଙ୍କର ଯଜ୍ଞମଣ୍ଡପ ଆଡ଼କୁ ଦଉଡ଼ିଲେ । ତାଙ୍କର ଏହି ତ୍ରିଶୂଳ ଏପରି ଅମୋଘ ଥିଲା ଯେ, ଜଗତର ସଂହାରକାରୀ ମୃତ୍ୟୁକୁ ମଧ୍ୟ ସଂହାର କରିପାରିବ । ରୁଦ୍ରଙ୍କର ପାର୍ଷଦମାନେ ତାଙ୍କ ପଛେ ପଛେ ଗର୍ଜନ କରି ଦଉଡୁଥିଲେ । ବୀରଭଦ୍ର ଯିବାବେଳେ ତାଙ୍କ ପାଦରେ ନୂପୁରାଦି ଅଳଙ୍କାର ଝନତ୍‌କାର କରୁଥିଲା ॥୬॥ ଏଣେ ଯଜ୍ଞଶାଳାରେ ବସିଥିବା ଋତ୍ୱିକ୍‌ମାନେ, ସ୍ୱୟଂ ଯଜମାନ ଦକ୍ଷ ଏବଂ ଅନ୍ୟ ସଭାସଦ୍ ବ୍ରାହ୍ମଣ ଓ ବ୍ରାହ୍ମଣପତ୍ନୀମାନେ ଉତ୍ତର ଦିଗରେ ପ୍ରବଳ ଧୂଳି ଉଡୁଥିବାର ଦେଖିପାରିଲେ । କୁଆଡୁ ଏ ଧୂଳି ଓ ଅନ୍ଧକାର ଆସୁଛି ବୋଲି ସେମାନେ ଆଶ୍ଚର୍ଯ୍ୟ ହୋଇ ଦେଖିବାକୁ ଲାଗିଲେ ॥୭॥ ଜୋରରେ ତ ପବନ ବହୁ ନାହିଁ । ଦସ୍ୟୁମାନେ ମଧ୍ୟ ନାହାନ୍ତି । ଉଦ୍ଦଣ୍ଡଶାସକ ରାଜା ପ୍ରାଚୀନବର୍ହି ଏବେ ଜୀବିତ ଅଛନ୍ତି । ଗୋରୁଗୋଠ ମଧ୍ୟ ଏବେ ଆସିବାର ବେଳ ହୋଇ ନାହିଁ । କୁଆଡୁ ସେ ଧୂଳିପଟଳ ଓ ଅନ୍ଧାର ଘୋଟି ଆସୁଛି ? ବର୍ତ୍ତମାନ କ'ଣ ପ୍ରଳୟ ସମୟ ଆସିଗଲା କି ? ସେମାନେ ଏହିପରି କଳ୍ପନା ଜଳ୍ପନା କରିବାକୁ ଲାଗିଲେ ॥୮॥ ଦକ୍ଷଙ୍କ ପତ୍ନୀ ପ୍ରସୂତିଙ୍କ ସମେତ ଅନ୍ୟ ସ୍ତ୍ରୀଲୋକମାନେ ବ୍ୟାକୁଳ ଭାବରେ କହିବାକୁ ଲାଗିଲେ, ଦକ୍ଷ ପ୍ରଜାପତି ନିଜ କନ୍ୟାମାନଙ୍କର ଆଖିଆଗରେ ତାଙ୍କ ନିରପରାଧା କନ୍ୟା ସତୀଙ୍କୁ ଯେପରି ଅପମାନ କଲେ, ସେହି ପାପର ଫଳ ବର୍ତ୍ତମାନ ଫଳିବାକୁ ଯାଉଛି ॥୯॥

ପ୍ରଳୟକାଳ ଉପସ୍ଥିତ ହେଲେ ରୁଦ୍ର ତାଙ୍କ ଜଟାଜୂଟକୁ ଖୋଲିଦେଇ ଏବଂ ଅସ୍ତ୍ରଶସ୍ତ୍ରରେ ସଜ୍ଜିତ ପତାକାସ୍ୱରୂପ ନିଜର ଭୁଜମାନଙ୍କୁ ବିସ୍ତାର କରି ତାଣ୍ଡବନୃତ୍ୟ କରନ୍ତି । ତାଙ୍କର ତ୍ରିଶୂଳ ଦିଗବିଦିଗକୁ ବିଦ୍ଧ କରେ ଏବଂ ମେଘଗର୍ଜନ ପରି ତାଙ୍କର ଭୟାନକ ଅଟ୍ଟହାସ ଚତୁର୍ଦ୍ଦିଗରେ ଶୁଣାଯାଏ ॥୧୦॥ ସେତେବେଳେ କ୍ରୁଦ୍ଧ ରୁଦ୍ରଙ୍କର ତେଜ ଅସହ୍ୟ ହୋଇଉଠେ । ତାଙ୍କ ଭ୍ରୂକୁଟୀକୁଟିଳ ରୂପକୁ ଚାହିଁ ହୁଏ ନାହିଁ । ତାଙ୍କ କରାଳ ମୁଖବ୍ୟାଦାନ ଦ୍ୱାରା ଆକାଶରେ ଥିବା ଗ୍ରହନକ୍ଷତ୍ର ଅସ୍ତବ୍ୟସ୍ତ ହୋଇପଡ଼ନ୍ତି । ଏପରି ରୁଦ୍ରଙ୍କୁ ବାରମ୍ବାର କୁପିତ କରି ସ୍ୱୟଂ ବିଧାତାଙ୍କର ମଧ୍ୟ ମଙ୍ଗଳ ହେବ ନାହିଁ ॥୧୧॥ ଦକ୍ଷ ପ୍ରଜାପତିଙ୍କ ଯଜ୍ଞରେ ଉପସ୍ଥିତ ଲୋକମାନେ ବ୍ୟାକୁଳ ଦୃଷ୍ଟିରେ ଏହିପରି କଥା ହେଉଥିବାବେଳେ ଚାରିଆଡ଼େ ଆକାଶ ଓ ପୃଥିବୀରେ ମହାଭୟଙ୍କର ଉତ୍ପାତମାନ ଦେଖାଗଲା ॥୧୨॥ ବିଦୁର ! ରୁଦ୍ରଙ୍କର ଅନୁଚରଗଣ ଦକ୍ଷଙ୍କର ମହାଯଜ୍ଞଶାଳାକୁ ଘେରିଗଲେ । ସେମାନଙ୍କ ମଧ୍ୟରେ କେହି କୃଷ୍ଣକାୟ, କେହି ଖର୍ବାକୃତି ଏବଂ କେହି ପିଙ୍ଗଳବର୍ଣ୍ଣ ବା ପୀତବର୍ଣ୍ଣ ଥିଲେ । କାହାର ଉଦର ବା କାହାର ମୁଖ ମଗର ପରି ଥିଲା ॥୧୩॥ ସେମାନଙ୍କ ମଧ୍ୟରେ କେତେକ ଯଜ୍ଞମଣ୍ଡପର ସ୍ତମ୍ଭ ସବୁ ଭାଙ୍ଗିଦେଲେ । ଅନ୍ୟମାନେ ଯଜ୍ଞଶାଳାର ଅନ୍ୟପଟେ ନିର୍ମିତ ପତ୍ନୀଶାଳା, ଋତ୍ୱିକ୍ ଓ ଆଚାର୍ଯ୍ୟଙ୍କର ନିବାସସ୍ଥଳ ଓ ପାକଶାଳାକୁ ଧ୍ୱଂସ କରିଦେଲେ ॥୧୪॥ ସେମାନେ ଯଜ୍ଞପାତ୍ର ସବୁ ଭାଙ୍ଗିଦେଲେ । ହୋମାଗ୍ନିକୁ ନିଭାଇଦେଲେ । ଯଜ୍ଞକୁଣ୍ଡରେ ମୂତ୍ର ତ୍ୟାଗ କଲେ ଏବଂ ଯଜ୍ଞବେଦୀକୁ ଘେରିଥିବା ପ୍ରାଚୀରକୁ ଧୂଳିସାତ୍ କରିଦେଲେ ॥୧୫॥ କେତେକ ପଳାଉଥିବା ମୁନିମାନଙ୍କ ପାଖକୁ ଯାଇ ସେମାନଙ୍କ ବାଟ ଓଗାଳି ଦେଲେ । କେତେକ ସ୍ତ୍ରୀମାନଙ୍କୁ ଧମକାଇଲେ ଏବଂ ଯେଉଁ ଦେବତାମାନେ ପଳାଉଥିଲେ, ସେମାନଙ୍କୁ ଜୋରରେ ଧରିନେଲେ ॥୧୬॥ ମଣିମାନ୍ ଭୃଗୁଋଷିଙ୍କୁ ବାନ୍ଧି ପକାଇଲେ ଓ ବୀରଭଦ୍ର ଦକ୍ଷ ପ୍ରଜାପତିଙ୍କୁ, ଚଣ୍ଡୀଶ ପୂଷାଙ୍କୁ ଓ ନନ୍ଦୀଶ୍ୱର ଭଗଙ୍କୁ ବନ୍ଦୀ କଲେ ॥୧୭॥

ଏପରି ଅବସ୍ଥା ଦେଖି ସେଠାରେ ଉପସ୍ଥିତ ଦେବତାମାନେ, ଋତ୍ୱିକ୍ ଓ ସଭାସଦ୍‌ମାନେ ରୁଦ୍ରଗଣଙ୍କ ପଥରମାଡ଼ରେ ଆହତ ହୋଇ ପ୍ରାଣଭୟରେ ପଳାୟନ କଲେ ॥୧୮॥ ଭୃଗୁଋଷି ହାତରେ ସ୍ରୁବ ଧରି ହବନ କରୁଥିଲେ । ସେ ଦାଢ଼ି ହଲାଇ

ଭଗବାନ ଶଙ୍କରଙ୍କୁ ଉପହାସ କରିଥିବାହେତୁ ବୀରଭଦ୍ର ସମସ୍ତଙ୍କ ଆଗରେ ତାଙ୍କ ଦାଢ଼ି ଉପାଡ଼ି ଦେଲେ ।।୧୯।। ସେ କ୍ରୋଧରେ ଭଗଦେବଙ୍କୁ ତଳେ ପକାଇଦେଇ ତାଙ୍କ ଆଖି ଉପାଡ଼ି ଦେଲେ । କାରଣ ଦକ୍ଷ ଶିବଙ୍କୁ ଗାଳି ଦେଉଥିବା ବେଳେ ଭଗ ସେଠାରେ ଥାଇ ତାଙ୍କୁ ଉତ୍ସାହିତ କରୁଥିଲେ ।।୨୦।। ଯେପରି ଅନିରୁଦ୍ଧଙ୍କ ବିବାହ ସମୟରେ ବଳରାମ କଳିଙ୍ଗରାଜାଙ୍କର ଦାନ୍ତ ଉପାଡ଼ି ଦେଇଥିଲେ, ସେହିପରି ସେ ପୂଷାଙ୍କର ଦାନ୍ତ ଭାଙ୍ଗିଦେଲେ । କାରଣ ଦକ୍ଷ ଶିବଙ୍କୁ ଗାଳି ଦେଉଥିବା ବେଳେ ପୂଷା ଦାନ୍ତ ଦେଖାଇ ହସୁଥିଲେ ।।୨୧।। ତା'ପରେ ଦକ୍ଷଙ୍କୁ ଆକ୍ରମଣ କରି ସେ ତାଙ୍କ ଛାତି ଉପରେ ବସିଗଲେ । ତୀକ୍ଷ୍ଣଧାର ଖଡ଼୍‌ଗଦ୍ୱାରା ତାଙ୍କ ଶିରଚ୍ଛେଦ କରିବାକୁ ଗଲେ । କିନ୍ତୁ ବହୁ ଚେଷ୍ଟା କଲେ ମଧ୍ୟ ତାଙ୍କ ମୁଣ୍ଡ ଦେହରୁ ଅଲଗା ହେଲା ନାହିଁ ।।୨୨।। ଯେତେବେଳେ କୌଣସି ଅସ୍ତ୍ରଶସ୍ତ୍ରରେ ଦକ୍ଷଙ୍କର ଚମ କଟିଲା ନାହିଁ, ବୀରଭଦ୍ର ଆଶ୍ଚର୍ଯ୍ୟ ହୋଇ ଚିନ୍ତା କରିବାକୁ ଲାଗିଲେ ।।୨୩।। ଯଜ୍ଞସ୍ଥଳରେ ପଶୁମାନଙ୍କୁ ଅଣନିଃଶ୍ୱାସୀ କରି ଯେପରି ମରାଯାଏ ତାହା ଲକ୍ଷ୍ୟ କରି ସେ ଯଜ୍ଞପଶୁରୂପ ଦକ୍ଷଙ୍କର ଶରୀରକୁ ତାଙ୍କ ଦେହରୁ ଅଲଗା କରିଦେଲେ ।।୨୪।। ଏହା ଦେଖୁଥିବା ଭୂତ,ପ୍ରେତ ଓ ପିଶାଚମାନେ ତାଙ୍କ କାର୍ଯ୍ୟର ସାଧୁବାଦ କରିବାକୁ ଲାଗିଲେ ଏବଂ ଦକ୍ଷଙ୍କର ଲୋକମାନେ ହାହାକାର କଲେ ।।୨୫।। କ୍ରୁଦ୍ଧ ବୀରଭଦ୍ର ଦକ୍ଷଙ୍କର ଶିରକୁ ଯଜ୍ଞର ଦକ୍ଷିଣଭାଗ ଅଗ୍ନିରେ ନିକ୍ଷେପ କଲେ ଏବଂ ନିଆଁ ଲଗାଇ ଯଜ୍ଞଶାଳାକୁ ଧ୍ୱଂସ କରିସାରିବା ପରେ କୈଳାସକୁ ଫେରିଗଲେ ।।୨୬।।

## ଷଷ୍ଠ ଅଧ୍ୟାୟ

# ବ୍ରହ୍ମାଦି ଦେବଗଣଙ୍କର କୈଳାସ ଯାତ୍ରା

ମୈତ୍ରେୟ କହିଲେ, ବିଦୁର ! ସମସ୍ତ ଦେବତା ରୁଦ୍ରସେନାଦ୍ୱାରା ପରାଜିତ ଓ ସର୍ବାଙ୍ଗରେ ଶୂଳ, ପଟ୍ଟିଶ, ଖଡ୍ଗ, ଗଦା, ପରିଘ, ମୁଦ୍‌ଗର ଆଦି ଅସ୍ତ୍ରଶସ୍ତ୍ରଦ୍ୱାରା କ୍ଷତବିକ୍ଷତ ହୋଇ ଯଜ୍ଞର ଋତ୍ୱିକ ଓ ସଦସ୍ୟମାନଙ୍କ ସହିତ ଭୟାକୁଳ ଚିତ୍ତରେ ବ୍ରହ୍ମାଙ୍କ ପାଖରେ ପହଞ୍ଚିଲେ ଏବଂ ସ୍ୱୟଂଭୂଙ୍କୁ ନମସ୍କାର କରି ସାରା ବୃତ୍ତାନ୍ତ ବର୍ଣ୍ଣନା କଲେ ।।୧-୨।। ଉଭୟ ପଦ୍ମସମ୍ଭବ ଭଗବାନ ବ୍ରହ୍ମା ଓ ବିଶ୍ୱର ଆତ୍ମାସ୍ୱରୂପ ନାରାୟଣ ଦକ୍ଷଙ୍କ ଯଜ୍ଞରେ ଏପରି ଘଟିବ ବୋଲି ପୂର୍ବରୁ ଜାଣି ସେ ଯଜ୍ଞକୁ ଯାଇ ନ ଥିଲେ ।।୩।। ଦେବତାମାନଙ୍କ ମୁହଁରୁ ସବୁ କଥା ଶୁଣି ବ୍ରହ୍ମା କହିଲେ, ପରମ ସମର୍ଥ ତେଜସ୍ୱୀ ପୁରୁଷଙ୍କଠାରେ ଅପରାଧ କରି କେହି କେବେ ଭଲରେ ରହିପାରେ ନା ।।୪।। ଯଜ୍ଞରେ ଶିବଙ୍କୁ ତାଙ୍କର ପ୍ରାପ୍ୟଭାଗ ନ ଦେଇ ତୁମେ ବହୁତ ବଡ଼ ଅପରାଧ କରିଛ । ଶିବ ଆଶୁତୋଷ । ସେ ଶୀଘ୍ର ପ୍ରସନ୍ନ ହୁଅନ୍ତି । ତେଣୁ ନିର୍ମଳ ହୃଦୟରେ ତୁମେ ତାଙ୍କ ପାଦପଦ୍ମକୁ ଧରି କ୍ଷମା ଭିକ୍ଷା କର ।।୫।। ଶିବ କୋପ କଲେ ଲୋକପାଳଙ୍କ ସହିତ ଏ ସମସ୍ତ ଲୋକ ଧ୍ୱଂସ ହୋଇଯିବ । ପ୍ରଥମେ ଦକ୍ଷ କୁବାକ୍ୟ ପ୍ରୟୋଗ କରି ତାଙ୍କ ହୃଦୟକୁ ବିଦ୍ଧ କରିଥିଲେ । ତା'ପରେ ତାଙ୍କ ପ୍ରିୟ ପତ୍ନୀ ସତୀଙ୍କର ବିରହ । ଏଥିରୁ ତାଙ୍କ ଦୁଃଖ ଓ କ୍ରୋଧ ଅନୁମେୟ । ତେଣୁ ତୁମେମାନେ ଯଦି ଏ ଯଜ୍ଞକୁ ପୁଣି ଥରେ ଆରମ୍ଭ କରି ସମ୍ପୂର୍ଣ୍ଣ କରିବାକୁ ଚାହ, ତାହେଲେ ତାଙ୍କୁ ଶରଣାପନ୍ନ ହୋଇ କ୍ଷମା ଭିକ୍ଷା କର ।।୬।। ଭଗବାନ ଶଙ୍କର ସ୍ୱୟଂସମ୍ପୂର୍ଣ୍ଣ, ତାଙ୍କ ବଳବୀର୍ଯ୍ୟ ଓ ତତ୍ତ୍ୱଜ୍ଞାନ କାହାରି ନାହିଁ । ନା ତୁମମାନଙ୍କଠାରେ, ନା ଇନ୍ଦ୍ରଙ୍କଠାରେ,ନା ଦେହଧାରୀ ମୁନିମାନଙ୍କଠାରେ, ନା ମୋଠାରେ ଅଛି । ଏ ପରିସ୍ଥିତିରେ କି ଉପାୟରେ ତାଙ୍କୁ ଶାନ୍ତ କରାଯାଇପାରିବ ? ।।୭।। ଏହିପରି ଦେବତାମାନଙ୍କୁ ପରାମର୍ଶ ଦେଇ ସେମାନଙ୍କୁ, ପିତୃମାନଙ୍କୁ ଓ ପ୍ରଜାପତିଗଣଙ୍କୁ ସାଙ୍ଗରେ ଧରି ବ୍ରହ୍ମା ନିଜ ଲୋକରୁ ଶିବଙ୍କର ପରମ ଧାମ ପର୍ବତଶ୍ରେଷ୍ଠ କୈଳାସକୁ ଯାତ୍ରା କଲେ ।।୮।।

ସେହି କୈଳାସ ପର୍ବତରେ ଔଷଧ, ତପ, ମନ୍ତ୍ର ଓ ଯୋଗଦ୍ୱାରା ସିଦ୍ଧ ଏବଂ ଜନ୍ମରୁ ସିଦ୍ଧ ଦେବତାମାନେ ନିତ୍ୟବାସ କରନ୍ତି । ତା'ଛଡ଼ା କିନ୍ନର, ଅପ୍‌ସରା ଓ ଗନ୍ଧର୍ବମାନେ ସେଠାରେ ବିହାର କରୁଥାନ୍ତି । ତା'ର ମଣିମୟ ଶିଖରରେ ବିଚିତ୍ରବର୍ଣ୍ଣର ନାନା ଧାତୁ ଶୋଭା ପାଉଥାଏ । ନାନା ଦ୍ରୁମ, ଲତା, ଗୁଳ୍ମ ଓ ବହୁପ୍ରକାର ମୃଗପଶୁ ସେଠାରେ ବିଚରଣ କରନ୍ତି । ପର୍ବତର ସାନୁଦେଶରେ ବହୁ ସୁନ୍ଦର ଗୁହା ଦେଖାଯାଏ । ନିର୍ମଳ ଝରଣାମାନ ବହିଯାଉଥା'ନ୍ତି । ମୟୂରମାନଙ୍କ ରବ, ମଦାନ୍ଧ ଭ୍ରମରମାନଙ୍କ ଗୁଞ୍ଜନ, କୋକିଳମାନଙ୍କ କୁହୁ ସ୍ୱନ ଓ ପକ୍ଷୀମାନଙ୍କ କଳଧ୍ୱନିରେ ତାହା ମୁଖରିତ ରହୁଥାଏ । ବଡ଼ ବଡ଼ କଳ୍ପବୃକ୍ଷ ନିଜ ଶାଖାପ୍ରଶାଖା ଦ୍ୱାରା ପକ୍ଷୀମାନଙ୍କୁ ଆହ୍ୱାନ କରୁଥିବା ପରି ଜଣାଯାଉଥାଏ । ହାତୀମାନଙ୍କ ଚାଲିରେ କୈଳାସ ପର୍ବତ ଚାଲୁଥିବାର ଏବଂ ଝରଣାମାନଙ୍କର ଝରଝର ସ୍ୱରରେ କଥା କହୁଥିବା ପରି ମନେ ହେଉଥାଏ ।।୯-୧୩।। ମନ୍ଦାର, ପାରିଜାତ, ସରଳ, ତମାଳ, ତାଳ, ଶାଳ, ରକ୍ତକାଞ୍ଚନ, ଅସନ ଓ ଅର୍ଜୁନ ବୃକ୍ଷମାନଙ୍କ ଦ୍ୱାରା ତାହା ଶୋଭା ପାଉଥାଏ । ଆମ୍ବ, କଦମ୍ବ, କେଳିକଦମ୍ବ, ପୋଲାଙ୍ଗ, ନାଗବଲ୍ଲୀ, ଚମ୍ପକ, ପାଟଳ, ଅଶୋକ, ବକୁଳ, କୁନ୍ଦ, କୁରୁବକ, ସ୍ୱର୍ଣ୍ଣବର୍ଣ୍ଣର ଶତଦଳ କମଳ, ଅଳେଇଚ ଏବଂ ମାଳତୀ , ଉଟଜ, ମଲ୍ଲୀ, ମାଧବୀ ଆଦି ସୁନ୍ଦର ଫୁଲମାନେ ଏହି ପର୍ବତକୁ ମଣ୍ଡନ କରୁଥା'ନ୍ତି । ପଣସ, ଉଦୁମ୍ବର, ଅଶ୍ୱତ୍ଥ, ପ୍ଲକ୍ଷ, ବର, ହିଙ୍ଗୁ, ରାଜଗୁବାକ, ଜାମୁ, ଖଜୁରି, ଭୂର୍ଜପତ୍ର, ଓଷଧି ବୃକ୍ଷ, ଆମ୍ବଡ଼ା, ଆମ୍ବ, ପିଆଳ, ମହୁଲ, ଇଙ୍ଗୁଦୀ ଆଦି ବୃକ୍ଷ ଏବଂ ବିଭିନ୍ନପ୍ରକାର ବେଣୁ ଓ ବଂଶ ବୃକ୍ଷଦ୍ୱାରା ତାହା ଶୋଭା ପାଉଥାଏ । ପୁଷ୍କରିଣୀମାନଙ୍କରେ କୁମୁଦ, ଉତ୍ପଳ, କଲ୍ହାର ଏବଂ ଶତଦଳ ପଦ୍ମମାନ ଶୋଭାପାଉଥାଏ । ପକ୍ଷୀମାନେ ଦଳ ଦଳ ହୋଇ କଳଧ୍ୱନି କରୁଥା'ନ୍ତି । ମୃଗ, ମର୍କଟ, ବରାହ, ସିଂହ, ଭଲ୍ଲୁକ, ଝିଙ୍କ, ଗୟଳ, ଶରଭ, ବାଘ, କୃଷ୍ଣମୃଗ, ଅରଣା ମଇଁଷି, କର୍ଣ୍ଣାନ୍ତ୍ର, ଏକପଦ, ଅଶ୍ୱମୁଖ, କସ୍ତୁରୀମୃଗ ଆଦି ଭ୍ରମଣ କରୁଥାନ୍ତି । ବହୁ ପଦ୍ମପୋଖରୀ ଏବଂ ତା'ର କୂଳରେ କଦଳୀବନ ସବୁ ଏହି ପର୍ବତର ଶୋଭାବର୍ଦ୍ଧନ କରୁଥାନ୍ତି । ସତୀଙ୍କ ସ୍ନାନଦ୍ୱାରା ଅଧିକ ପବିତ୍ରିତ ହୋଇ ପୁଣ୍ୟତୋୟା ଗଙ୍ଗା ଏହାର ଚାରିଦିଗକୁ ଘେରି ପ୍ରବାହିତ ହେଉଥାଏ । ଏହିପରି ଶିବଙ୍କର ନିବାସସ୍ଥଳ କୈଳାସ ପର୍ବତକୁ ଦର୍ଶନ କରି ଦେବତାମାନେ ବିସ୍ମିତ ହୋଇଗଲେ ।।୧୪-୨୨।।

ସେଠାରେ ସେମାନେ ରମ୍ୟ ଅଳକାପୁରୀ ଦର୍ଶନ କଲେ । ସୁଗନ୍ଧିଯୁକ୍ତ ପଦ୍ମଫୁଲମାନ ଫୁଟୁଥିବା ସୌଗନ୍ଧିକ ବନକୁ ମଧ୍ୟ ଦର୍ଶନ କଲେ ।।୨୩।। ଶ୍ରୀହରିଙ୍କର ପଦାମ୍ବୁଜ ବହନ କରି ପବିତ୍ର ହୋଇଥିବା ନନ୍ଦା ଓ ଅଳକାନନ୍ଦା ନାମରେ ଦୁଇଟି ପ୍ରସିଦ୍ଧ ନଦୀ ଅଳକାପୁରୀର ବାହାରେ ପ୍ରବାହିତ ହେଉଛନ୍ତି ।।୨୪।। ବିଦୁର ! କାମବିଦ୍ଧ ଦେବସ୍ତ୍ରୀମାନେ ନିଜ ନିଜର ଧାମରୁ ବାହାରିଆସି ଏହି ନଦୀମାନଙ୍କରେ ସ୍ନାନ କରନ୍ତି । ନିଜ ନିଜର ପୁରୁଷମାନଙ୍କ ଉପରେ ପାଣି ପକାଇ ଜଳକ୍ରୀଡ଼ା କରନ୍ତି ।।୨୫।। ଏମାନେ ସାଙ୍ଗେ ସାଙ୍ଗେ ଲଗେଇଥିବା କୁଙ୍କୁମ ସବୁ ଗାଧୋଇବା ବେଳେ ଦେହରୁ ଧୋଇ ହୋଇଯାଇ ନଦୀଜଳକୁ ହଳଦିଆ କରିଦିଏ । ଜଳକ୍ରୀଡ଼ାରତ ହସ୍ତୀମାନେ ଏହାଦ୍ୱାରା ଆକୃଷ୍ଟ ହୋଇ ଶୋଷ ନ ଲାଗୁଥିଲେ ମଧ୍ୟ ସେହି ଜଳକୁ ପିଅନ୍ତି ଓ ହସ୍ତିନୀମାନଙ୍କୁ ପିଆନ୍ତି ।।୨୬।। ସୁନା, ଚାନ୍ଦି ଓ ବହୁମୂଲ୍ୟ ମଣିମାଣିକ୍ୟଯୁକ୍ତ ଶତ ଶତ ସଂଖ୍ୟକ ବିମାନ ଯକ୍ଷପତ୍ନୀମାନଙ୍କୁ ଘେନି ଏହି ଅଳକାପୁରୀକୁ ମଣ୍ଡନ କରୁଥିଲା । ବିଜୁଳି ଓ ମେଘମାଳାଯୁକ୍ତ ଆକାଶପରି ଏସବୁ ଅଳକାପୁରୀର ଶୋଭାବର୍ଦ୍ଧନ କରୁଥିଲେ ।।୨୭।।

କୁବେରଙ୍କ ଅଳକାପୁରୀ ଛାଡ଼ି ଦେବତାମାନେ ସୌଗନ୍ଧିକ ବନରେ ପହଞ୍ଚିଲେ । ଏହି ବନ ବିଭିନ୍ନ ରଙ୍ଗବେରଙ୍ଗ ଫୁଲ ଓ ପତ୍ର ଥିବା କଳ୍ପବୃକ୍ଷମାନଙ୍କଦ୍ୱାରା ଆଚ୍ଛାଦିତ ଥିଲା । ଏଠି କୋକିଳ ଆଦି ପକ୍ଷୀମାନଙ୍କର କୂଜନ ଓ ଭ୍ରମରଙ୍କର ଗୁଞ୍ଜନ ଶୁଣାଯାଉଥିଲା ଏବଂ କଳହଂସମାନଙ୍କର ପ୍ରିୟ ପଦ୍ମଫୁଲରେ ଜଳାଶୟମାନ ସୁଶୋଭିତ ଥିଲା ।।୨୮-୨୯।। ବନ୍ୟହସ୍ତୀମାନେ ଚନ୍ଦନବୃକ୍ଷରେ ଘଷି ହେଉଥିବା ହେତୁ ଚନ୍ଦନର ସୁବାସ ବାୟୁଦ୍ୱାରା ପ୍ରବାହିତ ହୋଇ ଯକ୍ଷପତ୍ନୀମାନଙ୍କର ଚିତ୍ତକୁ ବିମୋହିତ କରୁଥିଲା ।।୩୦।। ପୁଷ୍କରିଣୀମାନଙ୍କର ପାହାଚଗୁଡ଼ିକ ବୈଦୂର୍ଯ୍ୟ ମଣିରେ ନିର୍ମିତ ହୋଇଥିଲା ଏବଂ ପଦ୍ମଫୁଲ ସବୁ ଫୁଟି ପବନରେ ଖେଳୁଥିଲେ । ତାହା ଥିଲା କିଂପୁରୁଷମାନଙ୍କର ବିହାରସ୍ଥଳ । ଏହିପରି ଦେଖି ଦେଖି ଯାଉଥିବା ଦେବତାମାନେ ନିକଟରେ ଏକ

ବିଶାଳ ବଟବୃକ୍ଷ ଦେଖିବାକୁ ପାଇଲେ ।।୩୧।। ଶହେ ଯୋଜନ ଉଚ୍ଚତାର ଏହି ବଟବୃକ୍ଷ ଶାଖାପ୍ରଶାଖା ମେଲାଇ ମୂଳରୁ ଚତୁର୍ଦ୍ଦିଗରେ ପଞ୍ଚସ୍ତରି ଯୋଜନ ପର୍ଯ୍ୟନ୍ତ ବିସ୍ତାର ଲାଭ କରିଥିଲା । ପକ୍ଷୀମାନେ ଏଥିରେ ବସା ବାନ୍ଧୁ ନ ଥିଲେ । ଏହାର ସୁଶୀତଳ ଛାୟାଯୋଗୁଁ ସୂର୍ଯ୍ୟତାପ ଅନୁଭୂତ ହେଉ ନ ଥିଲା ।।୩୨।।

ସେଠାରେ ଦେବତାମାନେ ଦେଖିଲେ ଯେ, ମୁକ୍ତିକାମୀମାନଙ୍କର ଶରଣ୍ୟ ମହାଯୋଗୀ ଶିବ କ୍ରୋଧହୀନ କାଳାନ୍ତକ ପରି ଉପବେଶନ କରିଛନ୍ତି । ଶାନ୍ତଭାବରେ ବସିରହି ଭଗବାନ ଶିବଙ୍କୁ ସନକ, ସନନ୍ଦନ ଆଦି ପରମ ସିଦ୍ଧ ଶାନ୍ତଚେତା ଋଷିମାନେ ତଥା ଯକ୍ଷ ରକ୍ଷମାନଙ୍କର ରାଜା କୁବେର ଅତ୍ୟନ୍ତ ଶ୍ରଦ୍ଧାରେ ଉପାସନା କରୁଛନ୍ତି ।।୩୩-୩୪।। ଜଗତର ଅଧୀଶ୍ୱର, ବିଶ୍ୱର ବନ୍ଧୁ ମହାଦେବ ଅପାର ସ୍ନେହବଶରୁ ଲୋକଙ୍କ କଲ୍ୟାଣସାଧନକୁ ବ୍ରତରୂପେ ଗ୍ରହଣ କରି ବିଦ୍ୟା, ତପ ଏବଂ ଯୋଗ ଆଦିରେ ପ୍ରବୃତ୍ତ ଅଛନ୍ତି ।।୩୫।। ସଂଧ୍ୟାକାଳୀନ ଆକାଶତୁଲ୍ୟ ତାଙ୍କ ରକ୍ତାଭ ଦେହରେ ସେ ତପସ୍ୱୀମାନଙ୍କର ଅଭୀଷ୍ଟ ଭସ୍ମ ବିଲେପନ କରିଥିଲେ । ଦଣ୍ଡ, ଜଟା ଓ ମୃଗଚର୍ମ ଧାରଣ କରିଥିଲେ । ତାଙ୍କ ମସ୍ତକରେ ଚନ୍ଦ୍ରକଳା ଶୋଭା ପାଉଥିଲା ।।୩୬।। ଏକ କୁଶାସନରେ ଉପବେଶନ କରି ନାରଦଙ୍କ ପ୍ରଶ୍ନମତେ ସେ ସାଧୁମାନଙ୍କୁ ସନାତନ ବ୍ରହ୍ମ ବିଷୟରେ ପ୍ରବଚନ ଦେଉଥିଲେ ।।୩୭।। ସେ ବାମପାଦକୁ ଡାହାଣ ଜଙ୍ଘ ଉପରେ ରଖିଥିଲେ । ତାଙ୍କ ବାମହସ୍ତ ବାମ ଜାନୁ ଉପରେ ଥିଲା । ଦକ୍ଷିଣବାହୁର ମଣିବନ୍ଧରେ ରୁଦ୍ରାକ୍ଷମାଳା ଶୋଭା ପାଉଥିଲା । ତର୍ଜନୀ ଓ ବୃଦ୍ଧାଙ୍ଗୁଠି ଉପରେ ଅନ୍ୟ ସବୁ ଅଙ୍ଗୁଳି ରଖି ସେ ତର୍କମୁଦ୍ରାରେ ବସି ପ୍ରବଚନ ଦେଉଥିଲେ ।।୩୮।। ଯୋଗରେ ବସି ବାମଜାନୁକୁ ଦୃଢ଼ ରଖିବାପାଇଁ ସେ ଏକ ପିଢ଼ାର ଆଶ୍ରୟ ନେଇଥିଲେ ଏବଂ ଏକାଗ୍ର ଚିତ୍ତରେ ବ୍ରହ୍ମାନନ୍ଦ ସୁଖ ଅନୁଭବ କରୁଥିଲେ ।

ଲୋକପାଳଙ୍କ ସହିତ ମୁନିମାନେ ଜ୍ଞାନୀମାନଙ୍କ ଅଗ୍ରଗଣ୍ୟ ଦେବଦେବଙ୍କୁ କୃତାଞ୍ଜଳିପୁଟରେ ପ୍ରଣାମ କଲେ ।।୩୯।। ମହାତ୍ମାମାନଙ୍କ ମଧ୍ୟରେ ଶ୍ରେଷ୍ଠ ହେଲେ ମଧ୍ୟ ବିଷ୍ଣୁ ଭଗବାନ ବାମନ ଅବତାରରେ କଶ୍ୟପଙ୍କୁ ଯେପରି ଅଭିବାଦନ କରିଥିଲେ, ସେହିପରି ଦେବଦାନବବନ୍ଦିତ ଶଙ୍କର ଭଗବାନ ବ୍ରହ୍ମାଙ୍କୁ ଦେଖି ସଙ୍ଗେ ସଙ୍ଗେ ଉଠିପଡ଼ିଲେ ଓ ମୁଣ୍ଡ ନୁଆଁଇ ପ୍ରଣିପାତ କଲେ ।।୪୦।। ଏହାପରେ ନୀଳଲୋହିତ ଶ୍ରୀଶଙ୍କରଙ୍କର ଚାରିପଟେ ଥିବା ମହର୍ଷି ଓ ସିଦ୍ଧମାନେ ଉଠି ବ୍ରହ୍ମାଙ୍କୁ ପ୍ରଣାମ କଲେ । ଏହିପରି ସମସ୍ତଙ୍କଦ୍ୱାରା ଅଭିନନ୍ଦିତ ହୋଇ ବ୍ରହ୍ମା ଚନ୍ଦ୍ରମୌଳିଙ୍କୁ ହସି ହସି କହିଲେ, ଆପଣ ବିଶ୍ୱ ଜଗତର ଈଶ୍ୱର, ଏହି ଜଗତର ବୀଜ ଓ ଯୋନି ସ୍ୱରୂପ ଶିବଶକ୍ତିର କାରଣ ଏବଂ ନିର୍ବିକାର ବ୍ରହ୍ମସ୍ୱରୂପ ।।୪୧-୪୨।। ଭଗବନ୍ ! ବୁଢ଼ିଆଣୀ ଆପଣା ଦେହରୁ ଜାଲ ବିସ୍ତାର କରି କ୍ରୀଡ଼ା କରିବା ପରି ଆପଣ ଶିବଶକ୍ତି ସ୍ୱରୂପରେ ଏହି ବିଶ୍ୱକୁ ସୃଷ୍ଟି କରନ୍ତି, ପାଳନ କରନ୍ତି ଓ ବିନାଶ କରନ୍ତି ।।୪୩।। ଧର୍ମ ଓ ଅର୍ଥଲାଭର କାରଣଭୂତ ବେଦର ସୁରକ୍ଷାପାଇଁ ଆପଣ ଦକ୍ଷ ପ୍ରଜାପତିଙ୍କ ଜରିଆରେ ଯଜ୍ଞ କରାଉଥିଲେ । ଆପଣଙ୍କଦ୍ୱାରା ଏହି ସଂସାରରେ ବର୍ଣ୍ଣାଶ୍ରମ ଧର୍ମର ସୃଷ୍ଟି ଏବଂ ବ୍ରତନିଷ୍ଠ ବ୍ରାହ୍ମଣମାନେ ଶ୍ରଦ୍ଧାପୂର୍ବକ ତାହା ପାଳନ କରନ୍ତି ।।୪୪।। ମଙ୍ଗଳମୟ ! ଶୁଭକର୍ମ କରୁଥିବା ଲୋକଙ୍କୁ ଆପଣ ସ୍ୱର୍ଗଲୋକ ବା ମୋକ୍ଷପଦ ପ୍ରଦାନ କରନ୍ତି ଏବଂ ପାପକର୍ମ କରୁଥିବା ଲୋକଙ୍କୁ ଆପଣ ଘୋର ନରକରେ ପକାନ୍ତି । କାହାରି କାହାରି କ୍ଷେତ୍ରରେ ଏହାର ଓଲଟା ଫଳ କାହିଁକି ହୁଏ ? ।।୪୫।। ଯେଉଁ ସତ୍‌ପୁରୁଷମାନେ ଆପଣଙ୍କ ପାଦପଦ୍ମରେ ନିଜକୁ ସମର୍ପଣ କରିଦେଇଥା'ନ୍ତି, ସର୍ବଭୂତରେ ଆପଣଙ୍କୁ ଦର୍ଶନ କରନ୍ତି, ଅନ୍ୟମାନଙ୍କୁ ନିଜଠାରୁ ପୃଥକ୍ ଦୃଷ୍ଟିରେ ଦେଖନ୍ତି ନାହିଁ, ସେମାନେ କେବେ ପଶୁପରି କ୍ରୋଧର ଅଧୀନ ହୁଅନ୍ତି ନାହିଁ ।।୪୬।। ଯେଉଁମାନଙ୍କ ଉଦ୍ଦେଶ୍ୟ ମନ୍ଦ, ଯେଉଁମାନେ ଭେଦବୁଦ୍ଧିରେ ନାନା କର୍ମରେ ଲିପ୍ତ ରହନ୍ତି, ଅନ୍ୟର ଉନ୍ନତି ଦେଖି ଯାହାଙ୍କର ହୃଦୟ ଦିନରାତି ଈର୍ଷାରେ ଜଳୁଥାଏ, ଦୈବବଶରୁ ତ ସେମାନେ ନଷ୍ଟ ହୋଇ ଯାଇଥାନ୍ତି । ତେଣୁ ଆପଣଙ୍କ ପରି ମହାପୁରୁଷ ତାଙ୍କୁ ମାରିବା ଉଚିତ ନୁହେଁ ।।୪୭।। ଭଗବାନ ! ପଦ୍ମନାଭଙ୍କର ପ୍ରବଳ ମାୟାରେ ମୋହିତ ହୋଇ ଯଦି କେହି ଭେଦଦର୍ଶୀ ଦୁଷ୍ଟ ବୁଦ୍ଧିର ଲୋକ ମନ୍ଦ କର୍ମ କରେ, ତଥାପି ସାଧୁ ପୁରୁଷମାନେ ନିଜର ସ୍ୱଭାବସିଦ୍ଧ ଅନୁକମ୍ପା ଯୋଗୁଁ ତାହା ପ୍ରତି କୃପା ପ୍ରଦର୍ଶନ କରନ୍ତି । ଦୈବବଶରୁ ଘଟୁଥିବା କାର୍ଯ୍ୟକୁ ବଳପୂର୍ବକ ନିବାରଣ କରନ୍ତି ନାହିଁ ।।୪୮।। ପ୍ରଭୁ ! ଆପଣ ସର୍ବଦର୍ଶୀ ।

ପରମପୁରୁଷଙ୍କର ପ୍ରବଳ ମାୟା ଆପଣଙ୍କୁ ସ୍ପର୍ଶ କରି ପାରେନା । କିନ୍ତୁ ସେହି ମାୟା ଦ୍ୱାରା ଚିତ୍ତ ବିଚଳିତ ହେବା ଫଳରେ ଯଦି କେହି ଅନୁଚିତ କର୍ମ କରେ, ତେବେ ଆପଣ ତାହା ପ୍ରତି ଦୟା ପ୍ରଦର୍ଶନ କରିବା ଉଚିତ ॥୪୯॥

ହେ ମଙ୍ଗଳମୟ ! ଯେଉଁ ଯଜ୍ଞରେ ଦୁଷ୍ଟ ଯାଜ୍ଞିକମାନେ ଆପଣଙ୍କୁ ଯଥୋଚିତ ଯଜ୍ଞଭାଗ ଦେଲେ ନାହିଁ, ନିହତ ଦକ୍ଷ ପ୍ରଜାପତିଙ୍କର ସେହି ଅସମାପ୍ତ ଯଜ୍ଞକୁ ଆପଣ ପୁନରୁଦ୍ଧାର କରନ୍ତୁ । ଆପଣହିଁ ସମସ୍ତ ଯଜ୍ଞର ଫଳଦାତା । ଯଜମାନ ଦକ୍ଷ ପୁନର୍ଜୀବିତ ହୁଅନ୍ତୁ । ଭଗ ତାଙ୍କର ଆଖି ଦୁଇଟି ଫେରିପାଆନ୍ତୁ । ଭୃଗୁ ଋଷିଙ୍କର ଦାଢ଼ି, ନିଶ ପୁଣି କଅଁଳିଉଠୁ ଏବଂ ପୂଷା ନାଙ୍କର ଦାନ୍ତସବୁ ଫେରିପାଆନ୍ତୁ । ଢେଲାମାଡ଼ ଓ ଅସ୍ତ୍ରାଘାତରେ ତାଡ଼ିତ ଦେବତାମାନଙ୍କର ହାଡ଼ଗୋଡ଼ ଭାଙ୍ଗିଯାଇଛି । ଭଗବାନ, ଆପଣଙ୍କ ଅନୁଗ୍ରହରେ ସେମାନେ ଭଲ ହୋଇଯାଆନ୍ତୁ । ହେ ଯଜ୍ଞହନ୍ତା ରୁଦ୍ର ! ଆପଣ ନିଜର ଯଜ୍ଞଭାଗ ନେଇ ଏହି ଅସଂପୂର୍ଣ୍ଣ ଯଜ୍ଞକୁ ଆଜି ପୂର୍ଣ୍ଣ କରନ୍ତୁ । ଯଜ୍ଞର ଅବଶିଷ୍ଟ ସାମଗ୍ରୀ ହିଁ ଆପଣଙ୍କର ଭାଗ ହେବ ॥୫୦-୫୩॥

## ସପ୍ତମ ଅଧ୍ୟାୟ

# ଦକ୍ଷଯଜ୍ଞ ପୂର୍ଣ୍ଣ ହେଲା

ମୈତ୍ରେୟ କହିଲେ, ମହାବାହୁ ବିଦୁର, ବ୍ରହ୍ମା ଏହିପରି ଅନୁନୟ ବିନୟ କରି କହିବା ପରେ ଶିବ ପ୍ରସନ୍ନ ହୋଇ କହିଲେ, ଶୁଣନ୍ତୁ ॥୧॥ ପ୍ରଜାପତି, ଦୈବମାୟାବଶ ହୋଇ ଦକ୍ଷ ବାଳକପରି ଯେଉଁସବୁ ଅପରାଧ କଲେ, ତାକୁ ମୁଁ ବର୍ଣ୍ଣନା କରୁ ନାହିଁ ବା ସେ ବିଷୟରେ ଚିନ୍ତା କରୁ ନାହିଁ । ମୁଁ କେବଳ ସାବଧାନ କରିବାପାଇଁ ତାଙ୍କୁ ଯାହା କିଛି ଦଣ୍ଡ ଦେଇଛି ॥୨॥ ଦକ୍ଷ ପ୍ରଜାପତିଙ୍କର ଶିର ଅଗ୍ନିରେ ଜଳିଯାଇଛି । ତେଣୁ ଛାଗଳର ଶିର ସେଥିରେ ଲଗେଇ ଦିଆଯାଉ । ଭଗଙ୍କର ଚକ୍ଷୁ ନ ଥିବାରୁ ସେ ମିତ୍ର ଦେବତାଙ୍କର ଚକ୍ଷୁଦ୍ୱାରା ତାଙ୍କର ଯଜ୍ଞଭାଗ ଗ୍ରହଣ କରନ୍ତୁ । ନିଜର ଦାନ୍ତ ଚାଲିଯାଇଥିବା ପୂଷା ଯେକି ପିଠା ହିଁ ଖାଆନ୍ତି, ସେ ଯଜମାନଙ୍କର ଦାନ୍ତରେ ହିଁ ନିଜର ଖାଦ୍ୟ ଖାଆନ୍ତୁ । ଦେବତାମାନେ ମୋତେ ଯଜ୍ଞର ଅବଶିଷ୍ଟ ଭାଗ ଦାନ କରିଥିବାଯୋଗୁଁ ସେମାନଙ୍କର ଅଙ୍ଗପ୍ରତ୍ୟଙ୍ଗ ଠିକ୍ ହୋଇଯାଉ । ଯେଉଁ ଯାଜ୍ଞିକମାନଙ୍କର ବାହୁ ଭାଙ୍ଗିଯାଇଛି, ସେମାନେ ଅଶ୍ୱିନୀକୁମାରଙ୍କ ବାହୁଦ୍ୱାରା ଏବଂ ଯେଉଁମାନଙ୍କର ହାତ ନଷ୍ଟ ହୋଇଯାଇଛି ସେମାନେ ପୂଷାଙ୍କର ହାତଦ୍ୱାରା କର୍ମ କରନ୍ତୁ ଏବଂ ଭୃଗୁ ଋଷିଙ୍କର ଦାଢ଼ି ନ ଥିବାରୁ ତାଙ୍କର ଛେଳିଦାଢ଼ି ପରି ଦାଢ଼ି ହୋଇଯାଉ ॥୩-୫॥

ମୈତ୍ରେୟ କହିଲେ, ବିଦୁର, ସେଠାରେ ଥିବା ସମସ୍ତ ଲୋକ ତାହା ଶୁଣି ଅନୁମୋଦନ କଲେ ଓ ଆନନ୍ଦରେ 'ସାଧୁ ସାଧୁ' ବୋଲି କହିଲେ ॥୬॥ ଏହାପରେ ଦେବତା ଓ ଋଷିମାନେ ଯଜ୍ଞକୁ ଯିବାପାଇଁ ଭଗବାନ ଶଙ୍କରଙ୍କୁ ନିମନ୍ତ୍ରଣ କରି ତାଙ୍କୁ ଓ ବ୍ରହ୍ମାଙ୍କୁ ସାଙ୍ଗରେ ନେଇ ଯଜ୍ଞସ୍ଥଳକୁ ଗଲେ ॥୭॥ ଭଗବାନ ଶିବ ଯେପରି କହିଥିଲେ ସେହିପରି ଦେବତାମାନେ ସବୁ କରିସାରିବା ପରେ ଦକ୍ଷଙ୍କର ଦେହରେ ଯଜ୍ଞପଶୁ ଛାଗଳର ଶିରକୁ ଯୋଡ଼ିଦେଲେ । ମୁଣ୍ଡ ଯୋଡ଼ିହେବା ପରେ ଶିବଙ୍କର ଆଖି ପଡ଼ିବା ମାତ୍ରେ ନିଦରୁ ଉଠିବାପରି ଦକ୍ଷ ଉଠିପଡ଼ି ତାଙ୍କ ସମ୍ମୁଖରେ ଶିବଙ୍କୁ ଦେଖିଲେ ॥୮-୯॥ ବୃଷଧ୍ୱଜଙ୍କ ପ୍ରତି ଦ୍ୱେଷ ହେତୁ ତାଙ୍କ ହୃଦୟରେ ଯେଉଁ କାଳିମା ଲାଗିଥିଲା, ଶିବଙ୍କୁ ଦେଖିବା ପରେ ତାହା ଦୂର ହେବାରୁ ସେ ଶରତ୍‌କାଳୀନ ହ୍ରଦ ପରି ସ୍ୱଚ୍ଛ ହୋଇଗଲେ ॥୧୦॥ ସେ ଶିବଙ୍କୁ ସ୍ତୁତି କରିବାପାଇଁ ଇଚ୍ଛା କଲେ, କିନ୍ତୁ କରିପାରିଲେ ନାହିଁ । କାରଣ ନିଜର ପ୍ରିୟ କନ୍ୟା ମୃତା ସତୀଙ୍କର କଥା ସ୍ମରଣ କରି ତାଙ୍କ କଣ୍ଠ ବାଷ୍ପରୁଦ୍ଧ ଓ ଚକ୍ଷୁ ଅଶ୍ରୁପୂର୍ଣ୍ଣ ହୋଇଗଲା ॥୧୧॥ ବହୁ କଷ୍ଟରେ ନିଜର ମନକୁ ସମ୍ଭାଳି ନେଇ ଧୀମାନ୍ ଦକ୍ଷ ଭାବବିହ୍ୱଳ ହୋଇପଡ଼ିଲେ । ଶିବଙ୍କ ପ୍ରତି ତାଙ୍କର ଭାବନା ଶୁଦ୍ଧ ହୋଇଗଲା । ସେ ତାଙ୍କର ସ୍ତୁତି ଗାନ କରିବାକୁ ଲାଗିଲେ ॥୧୨॥

ଦକ୍ଷ କହିଲେ, ଆପଣଙ୍କ ପାଖରେ ମୁଁ ଅପରାଧ କରିଥିବାଯୋଗୁଁ ଆପଣ ମୋତେ ଯଥାର୍ଥ ଦଣ୍ଡ ଦେଇ ଅନୁଗୃହୀତ କରିଛନ୍ତି । ଆଚାରହୀନ ହେଲେ ମଧ୍ୟ ଆପଣ ଏବଂ ଶ୍ରୀହରି କୌଣସି ବ୍ରାହ୍ମଣଙ୍କୁ ଅବଜ୍ଞା କରନ୍ତି ନାହିଁ ଏବଂ ଆମପରି ବ୍ରତଧାରୀ (ଯଜ୍ଞକାରୀ) ବ୍ୟକ୍ତିଙ୍କୁ କାହିଁକି ବା ଉପେକ୍ଷା କରିବେ ? ॥୧୩॥ ହେ ପରମ, ଆପଣ ବ୍ରହ୍ମା ହୋଇ ଆତ୍ମବିଦ୍ୟା ରକ୍ଷା କରିବାପାଇଁ ପ୍ରଥମେ ବିଦ୍ୟା, ତପ ଓ ବ୍ରତ ଧାରଣ କରିଥିବା ବ୍ରାହ୍ମଣମାନଙ୍କୁ ମୁଖରୁ ସୃଷ୍ଟି କରିଥିଲେ । ଗବାଦି ପଶୁଙ୍କର ପାଳକ ଦଣ୍ଡ ଧରି ପଶୁମାନଙ୍କୁ ରକ୍ଷା କରେ । ସେହିପରି ବ୍ରାହ୍ମଣମାନଙ୍କୁ ଆପଣ ସମସ୍ତ ବିପଦରୁ ରକ୍ଷା କରନ୍ତି ॥୧୪॥ ମୁଁ ଆପଣଙ୍କର ତତ୍ତ୍ୱ ନ ଜାଣି ସଭାସ୍ଥଳରେ କଠୋର ବାକ୍ୟବାଣରେ ଆପଣଙ୍କୁ ବିଦ୍ଧ କରିଥିଲି । କିନ୍ତୁ ଆପଣ ଏଥିରେ ବିବ୍ରତ ହୋଇ ନ ଥିଲେ । ପୂଜ୍ୟତମ ବ୍ୟକ୍ତିଙ୍କ ପ୍ରତି ଅପରାଧ କରିଥିବାରୁ ମୁଁ ଯେଉଁ ଅତି ନିମ୍ନ ସ୍ତରକୁ ଚାଲି ଯାଇଥିଲି, ଆପଣ ନିଜର କୃପା ଦୃଷ୍ଟିରେ ମୋତେ ସେଥିରୁ ଉଦ୍ଧାର କଲେ । ମୁଁ କ'ଣ କହି ଆପଣଙ୍କୁ ସନ୍ତୁଷ୍ଟ କରିବି ? ଆପଣ ନିଜର ଉଦାରତା ଗୁଣରେ ମୋ ପ୍ରତି ପ୍ରସନ୍ନ ହୁଅନ୍ତୁ ॥୧୫॥ ମୈତ୍ରେୟ କହିଲେ, ଏହିପରି ଶଙ୍କରଙ୍କଠାରୁ କ୍ଷମାଭିକ୍ଷା କରି ବ୍ରହ୍ମାଙ୍କର ଆଦେଶ ମତେ ଆଚାର୍ଯ୍ୟ ଓ ଋତ୍ୱିକମାନଙ୍କ ସହିତ ଦକ୍ଷ ଯଜ୍ଞକାର୍ଯ୍ୟ ଆରମ୍ଭ କଲେ ॥୧୬॥ ଯଜ୍ଞସମ୍ପାଦନ ନିମନ୍ତେ ଭୂତମାନଙ୍କର ସଂସର୍ଗ ଦୋଷରୁ ଶୁଦ୍ଧ ହେବାପାଇଁ ବ୍ରାହ୍ମଣମାନେ ବିଷ୍ଣୁଙ୍କ ଉଦ୍ଦେଶ୍ୟରେ ପୁରୋଡାଶ ନାମରେ ଚରୁକୁ ତିନୋଟି ପାତ୍ରରେ ପ୍ରସ୍ତୁତ କରି ହବନ କଲେ ॥୧୭॥ ବିଦୁର, ଆଚାର୍ଯ୍ୟମାନଙ୍କ ସହିତ ଯଜମାନ ଦକ୍ଷ ବିଶୁଦ୍ଧ ହୃଦୟରେ ଭଗବାନଙ୍କୁ ଚିନ୍ତା କରି ହବି ପ୍ରଦାନ କରିବାରୁ ଭଗବାନ ଶ୍ରୀହରି ସେଠାରେ ଆବିର୍ଭୂତ ହେଲେ ॥୧୮॥ 'ବୃହତ୍' ଓ 'ରଥନ୍ତର' ନାମକ ଦୁଇ ସୋମସ୍ତୋତ୍ର ହେଉଚି ଯେଉଁ ଗରୁଡ଼ଙ୍କର ଦୁଇଟି ପକ୍ଷ, ସେହି ଗରୁଡ଼ଙ୍କର ପିଠିରେ ବସି ଭଗବାନ ଶ୍ରୀହରି ସେଠାରେ ପହଞ୍ଚିବାକ୍ଷଣି ତାଙ୍କରି ତେଜରେ ଦଶଦିଗ ଆଲୋକିତ ହୋଇଉଠିଲା ଏବଂ ସେଠାରେ ଉପସ୍ଥିତ ଅନ୍ୟମାନଙ୍କର ତେଜ ନିଷ୍ପ୍ରଭ ହୋଇଗଲା ॥୧୯-୨୦॥ ଶ୍ୟାମବର୍ଣ୍ଣର ଦେହରେ ପୀତବସ୍ତ୍ର ଓ ସୁବର୍ଣ୍ଣର କଟିମେଖଳା ଶୋଭାପାଉଥିଲା । ସୂର୍ଯ୍ୟଙ୍କ ତେଜପରି ତେଜୀୟାନ୍ କିରୀଟ ସେ ପରିଧାନ କରିଥିଲେ । କଳା ଭ୍ରମର ପରି କୃଷ୍ଣକେଶ ଓ କୁଣ୍ଡଳଦ୍ୱୟ ତାଙ୍କ ମୁଖକମଳକୁ ମଣ୍ଡନ କରିଥିଲା । ସୁବର୍ଣ୍ଣ ଅଳଙ୍କାରରେ ମଣ୍ଡିତ ତାଙ୍କର ଆଠଟିଯାକ ଭୁଜ ଭକ୍ତଙ୍କର ରକ୍ଷାପାଇଁ ଉଦ୍ୟତ ଥିଲା । ସେ ଏହି ଭୁଜମାନଙ୍କରେ ଶଙ୍ଖ, ଚକ୍ର, ପଦ୍ମ, ଧନୁ, ବାଣ, ଗଦା, ଖଡ୍ଗ ଓ ଢାଲ ଧାରଣ କରିଥିଲେ । ଏହାସବୁ ଧାରଣ କରି ସେ ପୁଷ୍ପିତ କନିଅର ବୃକ୍ଷପରି ଶୋଭା ପାଉଥିଲେ । ଲକ୍ଷ୍ମୀଦେବୀ ତାଙ୍କର ବକ୍ଷସ୍ଥଳକୁ ଅଳଙ୍କୃତ କରୁଥିଲେ ଏବଂ ବକ୍ଷରେ ଏକ ସୁନ୍ଦର ବନମାଳା ଶୋଭା ପାଉଥିଲା । ତାଙ୍କ ପ୍ରଫୁଲ୍ଲ ହାସ ଓ ଲୀଳାମୟ କଟାକ୍ଷଦ୍ୱାରା ସେ ସମସ୍ତ ବିଶ୍ୱକୁ ମୋହିତ କରୁଥିଲେ । ପାର୍ଷଦମାନେ ତାଙ୍କ ପାଖରେ ରାଜହଂସ ପରି ଶୁଭ୍ର ପଙ୍ଖା ଓ ଚାମର ଚାଳନ କରୁଥିଲେ । ତାଙ୍କ ମସ୍ତକ ଉପରେ ଚନ୍ଦ୍ରମାପରି ଶୁଭ୍ର ଚାନ୍ଦୁଆ ଶୋଭା ପାଉଥିଲା ॥୨୧॥

ଭଗବାନ ଶ୍ରୀହରିଙ୍କୁ ଆସିବାର ଦେଖି ଶିବ, ବ୍ରହ୍ମା, ଇନ୍ଦ୍ର ଆଦି ଦେବତାମାନେ ଓ ଅନ୍ୟ ସମସ୍ତେ ନିଜନିଜ ସ୍ଥାନରୁ ଉଠିପଡ଼ି ତାଙ୍କୁ ପ୍ରଣାମ କଲେ । ତାଙ୍କ ତେଜରେ ଅନ୍ୟ ସମସ୍ତଙ୍କର ତେଜ ନିଷ୍ପ୍ରଭ ହୋଇଗଲା । ଭଗବାନଙ୍କର ମହିମାମୁଗ୍ଧ ଦେବଗଣ କୃତାଞ୍ଜଳି ହୋଇ ମୁଣ୍ଡ ନୁଆଁଇ ଗଦ୍‌ଗଦ କଣ୍ଠରେ ଅଧୋକ୍ଷଜ (ହରି)ଙ୍କର ସ୍ତୁତି କରିବାକୁ ଲାଗିଲେ ॥୨୨-୨୩॥ ଯାହାଙ୍କର ମହିମାଗାନ କରିବାପାଇଁ ବାକ୍ୟ ସ୍ଫୁରେ ନାହିଁ, ଯେ ସେମାନଙ୍କ ପ୍ରତି ଅନୁଗ୍ରହ କରି ସେଠାରେ ଦିବ୍ୟ ମୂର୍ତ୍ତିରେ ଆବିର୍ଭୂତ ହୋଇଛନ୍ତି, ସେହି ଶ୍ରୀହରିଙ୍କୁ ସେମାନେ ସ୍ୱ ସ୍ୱ ଭାବାବେଗରେ ପ୍ରାର୍ଥନା କଲେ ॥୨୪॥ ପ୍ରଜାପତି ଦକ୍ଷ ଏକ ଉତ୍ତମ ପାତ୍ରରେ ପୂଜାସାମଗ୍ରୀମାନ ଧରି ନନ୍ଦ, ସୁନନ୍ଦ ଆଦି ଅନୁଗାମୀଙ୍କ ସହ ବିଶ୍ୱସ୍ରଷ୍ଟା ଯଜ୍ଞେଶ୍ୱର ପରମଗୁରୁ ଶ୍ରୀହରିଙ୍କୁ ପ୍ରସନ୍ନ ଚିତ୍ତରେ ପୂଜା କଲେ ଏବଂ କୃତାଞ୍ଜଳି ହୋଇ ତାଙ୍କର ଶରଣାପନ୍ନ ହେଲେ ॥୨୫॥

ଦକ୍ଷ କହିଲେ, ଆପଣ ସ୍ୱରୂପରେ ଶୁଦ୍ଧ, ଭେଦବୁଦ୍ଧିରହିତ, ଚୈତନ୍ୟମୟ ଏବଂ ଭୟଶୂନ୍ୟ; ଆପଣ ସ୍ୱତନ୍ତ୍ରରୂପେ ମାୟାକୁ ନିବାରଣ କରି ଅବସ୍ଥାନ କରନ୍ତି । କିନ୍ତୁ ସେହି ମାୟାଦ୍ୱାରା ଜୀବଭାବକୁ ସ୍ୱୀକାର କରି ଅବତାର ଗ୍ରହଣ କଲେ ଆପଣ ଅପରିଶୁଦ୍ଧ, ବା ମାୟାରେ ଆଚ୍ଛନ୍ନ ହେବାପରି ଜଣାଯାଆନ୍ତି ॥୨୬॥ ଋତ୍ୱିକ୍‌ମାନେ କହିଲେ, ହେ ଶୁଦ୍ଧ, ହେ ପବିତ୍ର ! ଆପଣ

ରୁଦ୍ରାଦି ଦେବତାଙ୍କର ସ୍ୱରୂପ ହେଲେ ମଧ୍ୟ ନନ୍ଦୀଶ୍ୱରଙ୍କର ଶାପରୁ ଆମ୍ଭେମାନେ ଘୋର କର୍ମକାଣ୍ଡରେ ଲିପ୍ତ ରହି ଆପଣଙ୍କ ତତ୍ତ୍ୱକୁ ଜାଣିପାରିଲୁ ନାହିଁ । ତିନି ବେଦର ବିଧାନ ଅନୁଯାୟୀ ଭିନ୍ନ ଭିନ୍ନ ଦେବତାଙ୍କୁ ଭିନ୍ନ ଭିନ୍ନ କର୍ମପାଇଁ ଅଧିଷ୍ଠିତ କରାଯାଇ ଯେଉଁ ଯଜ୍ଞ କରାଯାଏ, ଧର୍ମଲକ୍ଷଣର ପ୍ରତିପାଦକ ସେହି ଯଜ୍ଞକୁ ହିଁ ଆପଣଙ୍କର ସ୍ୱରୂପବୋଲି ଆମେ ମନେକରୁ ॥୨୭॥ ଯଜ୍ଞର ସଦସ୍ୟମାନେ କହିଲେ, ହେ ଶରଣଦ, ହେ ଆଶ୍ରୟଦାତା ! ଏହି କ୍ଳେଶପୂର୍ଣ୍ଣ ଦୁର୍ଗମ ସଂସାରମଧ୍ୟରେ କୌଣସି ଆଶ୍ରୟସ୍ଥଳ ନାହିଁ; କାଳରୂପକ ଭୟଙ୍କର ସର୍ପ ସେଠାରେ ଅପେକ୍ଷା କରି ରହିଛି । ସୁଖଦୁଃଖରୂପକ ଗର୍ତ୍ତମାନ ସେଠାରେ ପୂରି ରହିଛି । ଭୟଙ୍କର ଜଙ୍ଗଲୀ ଜୀବମାନଙ୍କ ପରି ଦୁର୍ଜନଙ୍କର ଭୟ ସେଠାରେ ଲାଗି ରହିଛି । ଶୋକରୂପକ ଦାବାନଳ ସମସ୍ତଙ୍କୁ ଦଗ୍ଧ କରୁଛି । କାମନାଦ୍ୱାରା ପୀଡିତ ହୋଇ ଅହଙ୍କାରୀ ଜୀବ ଦେହ ଓ ପରିବାରର ଗୁରୁଭାର ବହନ କରିଚାଲିଚି; କେବେ ଆପଣଙ୍କର ଚରଣ କମଳରେ ଶରଣ ନେବ ॥୨୮॥

ରୁଦ୍ର କହିଲେ, ଯାହା ସକାମ ଲୋକଙ୍କୁ ପୂର୍ଣ୍ଣ ପୁରୁଷାର୍ଥ ପ୍ରଦାନ କରେ, ଏବଂ ନିଷ୍କାମ ମୁନିମାନେ ଭକ୍ତିଭରେ ଯାହାକୁ ପୂଜା କରନ୍ତି, ଆପଣଙ୍କର ସେହି ପାଦପଦ୍ମରେ ମୋର ଚିତ୍ତ ଲାଗି ରହିଛି । ସେଥିପାଇଁ ଯଦି କୌଣସି ଅଜ୍ଞାନୀ ବ୍ୟକ୍ତି ମୋତେ ଆଚାରଭ୍ରଷ୍ଟ ବୋଲି କହେ, ମୁଁ ତାହା ଗଣନା କରେ ନାହିଁ, କାରଣ ଆପଣଙ୍କର ପୂର୍ଣ୍ଣ ଅନୁଗ୍ରହ ମୋ ପ୍ରତି ରହିଛି ॥୨୯॥ ଭୃଗୁ କହିଲେ, ଆପଣଙ୍କର ଗହନମାୟାରେ ଆତ୍ମଜ୍ଞାନ ହରାଇଥିବା ବ୍ରହ୍ମାଦି ଦେହଧାରୀମାନେ ଅଜ୍ଞାନରୂପ ନିଦ୍ରାରେ ଶୋଇ ରହିଛନ୍ତି । ଏବେ ମଧ୍ୟ ଆପଣଙ୍କର ତତ୍ତ୍ୱ ସେମାନେ ବୁଝି ନାହାନ୍ତି । ତଥାପି ଆପଣ ଶରଣାଗତ ଭକ୍ତମାନଙ୍କର ବନ୍ଧୁ । ମୁଁ ଆପଣଙ୍କୁ ପ୍ରାର୍ଥନା କରୁଛି, ଆପଣ ମୋ ପ୍ରତି ପ୍ରସନ୍ନ ହୁଅନ୍ତୁ ॥୩୦॥

ବ୍ରହ୍ମା କହିଲେ, ହେ ପ୍ରଭୁ ! ଇନ୍ଦ୍ରିୟମାନଙ୍କଦ୍ୱାରା ମନୁଷ୍ୟ ଯେଉଁ ସବୁ ପୃଥକ୍ ପୃଥକ୍ ପଦାର୍ଥ ଜାଣିପାରେ ବା ଦେଖିପାରେ, ତାହା ଆପଣଙ୍କର ସ୍ୱରୂପ ନୁହେଁ; କାରଣ ଆପଣ ଜ୍ଞାନର, ଶବ୍ଦାଦି ବିଷୟର ଏବଂ ଇନ୍ଦ୍ରିୟମାନଙ୍କର ଆଶ୍ରୟସ୍ଥଳ । ଏହି ମାୟାମୟ ସଂସାରଠାରୁ ଆପଣ ସମ୍ପୂର୍ଣ୍ଣ ଭିନ୍ନ ॥୩୧॥ ଇନ୍ଦ୍ର କହିଲେ, ଅଚ୍ୟୁତ ! ବିଶ୍ୱର କଲ୍ୟାଣପାଇଁ ଆପଣ ଏହି ମନୋହର ଆନନ୍ଦପ୍ରଦ ଶରୀର ଧାରଣ କରିଛନ୍ତି । ଦେବତାଙ୍କର ଶତ୍ରୁମାନଙ୍କୁ ବିନାଶ କରିବାପାଇଁ ଆପଣଙ୍କର ଅଷ୍ଟ ଭୁଜଦଣ୍ଡରେ ଆପଣ ଅସ୍ତ୍ରମାନ ଧାରଣ କରିଛନ୍ତି ॥୩୨॥ ଋତ୍ୱିକମାନଙ୍କର ପତ୍ନୀଗଣ କହିଲେ, ଆପଣଙ୍କର ପୂଜାପାଇଁ ବ୍ରହ୍ମା ଏହି ଯଜ୍ଞ ସୃଷ୍ଟି କରିଥିଲେ; କିନ୍ତୁ ଦକ୍ଷଙ୍କ ପ୍ରତି କ୍ରୁଦ୍ଧ ହୋଇ ପଶୁପତି ଶିବ ଏହାକୁ ନଷ୍ଟ କରିଦେଇଥିଲେ । ଉତ୍ସବମୟ ଯଜ୍ଞସ୍ଥଳ ଏକ ନିର୍ଜନ ଶ୍ମଶାନଭୂମିରେ ପରିଣତ ହୋଇଥିଲା । ଏବେ ଆପଣ କମଳନୟନରେ ଏହାକୁ ଟିକେ ଚାହାଁନ୍ତୁ ଏବଂ ଆପଣଙ୍କ ଦୃଷ୍ଟିପାତରେ ଏହି ଯଜ୍ଞଭୂମି ପବିତ୍ର ହୋଇଯାଉ ॥୩୩॥

ଋଷିମାନେ କହିଲେ, ଭଗବାନ, ଆପଣଙ୍କ ଲୀଳା ବଡ଼ ବିଚିତ୍ର । ଆପଣ କର୍ମ କଲେ ମଧ୍ୟ ସେଥିରେ ଲିପ୍ତ ହୁଅନ୍ତି ନାହିଁ । ଲୋକମାନେ ନିଜର ଐଶ୍ୱର୍ଯ୍ୟପାଇଁ ଯେଉଁ ମହାଲକ୍ଷ୍ମୀଙ୍କୁ ଉପାସନା କରନ୍ତି, ସେ ଆପଣଙ୍କର ସେବାରେ ନିରତ ରହିଥା'ନ୍ତି । କିନ୍ତୁ ଆପଣଙ୍କର ସେଥିପ୍ରତି କୌଣସି ଆସକ୍ତି ନ ଥାଏ ॥୩୪॥ ସିଦ୍ଧମାନେ କହିଲେ, ବନାଗ୍ନିରେ ପୋଡ଼ି ହୋଇ ଓ ତୃଷାରେ ଆତୁର ହୋଇ ହାତୀ ଯେପରି ନିକଟସ୍ଥ ନଦୀରେ ପଶିଯାଇ ତୃଷାନିବାରଣ କରେ ଓ ସେଥିରେ ବୁଡ଼ିରହି ବାହାରକୁ ଆସେ ନାହିଁ, ବର୍ତ୍ତମାନ ସେହିପରି ଆମର ଅବସ୍ଥା ହୋଇଛି । ସଂସାରକ୍ଳେଶରେ ଦଗ୍ଧ ହୋଇ ଆମର ତୃଷିତ ମନ ଆପଣଙ୍କ କଥାମୃତଧାରାରେ ବୁଡ଼ି ରହିଛି ଏବଂ ବ୍ରହ୍ମାନନ୍ଦରେ ମଗ୍ନ ହୋଇ ଆଉ ସେଥିରୁ ବାହାରିବାକୁ ଚାହୁଁ ନାହିଁ ॥୩୫॥

ଦକ୍ଷପତ୍ନୀ କହିଲେ, ହେ ଈଶ, ଶ୍ରୀନିବାସ, ମୁଁ ଆପଣଙ୍କୁ ସ୍ୱାଗତ କରି ନମସ୍କାର କରୁଛି; ଆପଣ ଆପଣଙ୍କ ପ୍ରିୟକାନ୍ତା ଲକ୍ଷ୍ମୀଙ୍କ ସହିତ ଆସି ଆମକୁ ରକ୍ଷା କରନ୍ତୁ । ଅଧୀଶ୍ୱର, ଯେପରି ଅନ୍ୟ ଅଙ୍ଗପ୍ରତ୍ୟଙ୍ଗ ଥିଲେ ମଧ୍ୟ ଶିରହୀନ ପୁରୁଷ କବନ୍ଧ ହୋଇଯାଏ, ସେହିପରି ଅନ୍ୟ ସମସ୍ତ ବସ୍ତୁରେ ପୂର୍ଣ୍ଣ ହେଲେ ମଧ୍ୟ ଆପଣଙ୍କ ବିନା ଯଜ୍ଞ ଶୋଭା ପାଏ ନାହିଁ ॥୩୬॥ ଲୋକପାଳମାନେ କହିଲେ, ମହିମାମୟ ! ଆପଣ ସମସ୍ତଙ୍କ ଅନ୍ତଃକରଣରେ ରହି ସାରା ଜଗତ୍‌କୁ ଦେଖିପାରନ୍ତି; ମାୟାସୃଷ୍ଟ

ପଦାର୍ଥମାନଙ୍କୁ ଦେଖୁଥିବା ଆମର ଚକ୍ଷୁ କ'ଣ ସତରେ ଏବେ ସେହି ଅନ୍ତର୍ଯାମୀ ପୁରୁଷଙ୍କୁ ଦେଖିପାରୁଛି ! ପଞ୍ଚଭୂତଠାରୁ ପୃଥକ୍ ହୋଇ ମଧ୍ୟ ପଞ୍ଚଭୂତଯୁକ୍ତ ଯେଉଁ ଶରୀରରେ ଆପଣ ଶୋଭା ପାଉଛନ୍ତି, ତାହା କେବଳ ଆପଣଙ୍କର ମାୟା ଛଡ଼ା ଆଉ କିଛି ନୁହେଁ ।।୩୭।।

ଯୋଗେଶ୍ୱରମାନେ କହିଲେ, ହେ ପ୍ରଭୁ, ହେ ବିଶ୍ୱାତ୍ମା ! ଯେ ନିଜଠାରୁ ଆପଣଙ୍କୁ ପୃଥକ୍ ବୋଲି ବିଚାର ନ କରେ; ଆପଣଙ୍କଠାରୁ ପୃଥକ୍ ରୂପେ କୌଣସି ପଦାର୍ଥକୁ ଦେଖେ ନାହିଁ; ତା'ଠାରୁ ଆପଣଙ୍କର କେହି ପ୍ରିୟତର ନାହାନ୍ତି । ତଥାପି ହେ ସ୍ୱାମୀ, ହେ ଭକ୍ତବତ୍ସଳ ! ଆପଣଙ୍କୁ ଯେ ଅନନ୍ୟ ଭକ୍ତିରେ ଉପାସନା କରେ, ଆପଣ ତା'ପ୍ରତି କୃପା ପ୍ରଦର୍ଶନ କରନ୍ତି ।।୩୮।। ବହୁ ଭେଦଗୁଣଯୁକ୍ତ ଆପଣଙ୍କର ଆତ୍ମମାୟାଦ୍ୱାରା ଏହି ଜଗତ୍‌ର ସୃଷ୍ଟି, ସ୍ଥିତି ଓ ପ୍ରଳୟ ଘଟିଥାଏ । ଆପଣଙ୍କ ମାୟାରେ ସୃଷ୍ଟ ବ୍ରହ୍ମାଦି ସମସ୍ତେ ଭିନ୍ନ ଭିନ୍ନ ଦେଖା ଯାଆନ୍ତି; କିନ୍ତୁ ଆପଣ କେବଳ ସ୍ୱରୂପରେ ଥିବାବେଳେ ଏହି ଭେଦଭ୍ରମରୁ ଓ ସତ୍ତ୍ୱାଦି ଗୁଣସବୁରୁ ନିବୃତ୍ତ ହୋଇ ରହିଥାଆନ୍ତି । ଆପଣଙ୍କୁ ଆମେ ନମସ୍କାର କରୁଛୁ ।।୩୯।। ବେଦ ବା ଶବ୍ଦବ୍ରହ୍ମ କହିଲେ, ଆପଣ ସମସ୍ତ ଧର୍ମକର୍ମର ଫଳଦାତା, ଆପଣ ନିର୍ଗୁଣ ହେଲେ ମଧ୍ୟ ସତ୍ତ୍ୱଗୁଣକୁ ହିଁ ଆଶ୍ରୟ ଦିଅନ୍ତି । ଆପଣଙ୍କ ତତ୍ତ୍ୱକୁ ମୁଁ ଜାଣି ନାହିଁ, ଏବଂ ବ୍ରହ୍ମା ବା ଅନ୍ୟ କେହି ଜାଣି ନାହାନ୍ତି । ଆପଣଙ୍କୁ ମୋର ନମସ୍କାର ।।୪୦।।

ଅଗ୍ନି କହିଲେ, ଭଗବାନ, ଆପଣଙ୍କ ତେଜରେ ହିଁ ମୁଁ ତେଜୋଦୀପ୍ତ ଶ୍ରେଷ୍ଠ ଯଜ୍ଞରେ ଘୃତମିଶ୍ରିତ ହବି ବହନ କରେ । ଆପଣ ସ୍ୱୟଂ ଯଜ୍ଞପୁରୁଷ ଏବଂ ଯଜ୍ଞର ରକ୍ଷାକର୍ତ୍ତା । ପାଞ୍ଚ ପ୍ରକାର ଯଜ୍ଞରେ ପାଞ୍ଚ ପ୍ରକାର ଯଜୁର୍ବେଦମନ୍ତ୍ରରେ ଆପଣଙ୍କର ପୂଜା କରାଯାଏ । ମୁଁ ଆପଣଙ୍କୁ ପ୍ରଣାମ କରୁଛି ।।୪୧।। ଦେବତାମାନେ କହିଲେ, ପୂର୍ବେ କଳ୍ପାନ୍ତକାଳରେ ଏବଂ ପ୍ରଳୟସମୟରେ ନିଜକୃତ ତେଜକୁ ଉଦରମଧ୍ୟରେ ଲୀନ କରି ପ୍ରଳୟଜଳରେ ଶେଷନାଗଙ୍କର ଶଯ୍ୟାରେ ଆପଣ ଶୟନ କରିଥିଲେ । ସିଦ୍ଧମାନେ ନିଜର ହୃଦୟରେ ଆପଣଙ୍କର ଆଧ୍ୟାତ୍ମିକ ତତ୍ତ୍ୱକୁ ଧ୍ୟାନ କରୁଥିଲେ । ଆପଣ ସେହି ଆଦି ପୁରୁଷ ଯେ କି ଆମ ନେତ୍ରପଥରେ ବିଚରଣ କରୁଛନ୍ତି ଓ ଆପଣଙ୍କର ଭକ୍ତମାନଙ୍କୁ ରକ୍ଷା କରୁଛନ୍ତି ।।୪୨।। ଗନ୍ଧର୍ବମାନେ କହିଲେ, ଦେବ ! ମରୀଚି ଆଦି ଋଷିଗଣ ଏବଂ ରୁଦ୍ରଙ୍କ ସମେତ ବ୍ରହ୍ମା, ଇନ୍ଦ୍ର ଆଦି ଦେବତାଗଣ ଆପଣଙ୍କର ଅଂଶର ଅଂଶ ମାତ୍ର । ହେ ମହତ୍ତମ ! ହେ ସ୍ୱାମୀ ! ଏହି ବିଶ୍ୱବ୍ରହ୍ମାଣ୍ଡ ଆପଣଙ୍କର ନିତ୍ୟକ୍ରୀଡ଼ାସ୍ଥଳୀ । ଆମେ ଆପଣଙ୍କୁ ନମସ୍କାର କରୁଛୁ ।।୪୩।। ବିଦ୍ୟାଧରମାନେ କହିଲେ, ପ୍ରଭୁ ! ପୁରୁଷାର୍ଥ ଲାଭର ସାଧନସ୍ୱରୂପ ମାନବଦେହ ଲାଭ କରି ଯାହାକୁ ଲୋକ ନିଜର ବୋଲି କହେ, ସେମାନଙ୍କ ଦ୍ୱାରା ତାଡ଼ିତ ହେଲେ ମଧ୍ୟ ତାର ବିଷୟ ଲାଳସା ଲାଗିରହିଥାଏ । କିନ୍ତୁ ସେ ଯେତେବେଳେ ଆପଣଙ୍କର କଥାମୃତ ସେବନ କରେ, ସେତେବେଳେ ତାକୁ ଘାରିଥିବା ଏହି ମୋହ ତୁଟିଯାଏ ।।୪୪।।

ବ୍ରାହ୍ମଣମାନେ କହିଲେ, ଭଗବାନ ! ଆପଣ ହିଁ ହେଉଛନ୍ତି ଯଜ୍ଞ । ଆପଣ ହବି, ଆପଣ ହୁତାଶନ, ଆପଣ ନିଜେ ହିଁ ମନ୍ତ୍ର, ସମିଧ ଏବଂ କୁଶପାତ୍ର । ଆପଣ ଯଜ୍ଞର ସଦସ୍ୟ, ଋତ୍ୱିକ ଏବଂ ଯଜମାନଦମ୍ପତି । ଆପଣ ଦେବତା, ଅଗ୍ନିହୋତ୍ର, ସ୍ୱଧା, ସୋମ, ଯଜ୍ଞର ଘୃତ ଏବଂ ଯଜ୍ଞପଶୁ । ଗଜେନ୍ଦ୍ର ପଦ୍ମଫୁଲକୁ ତୋଳିଦେବା ପରି ଆପଣ ପୂର୍ବକାଳରେ ମହାବରାହ ରୂପରେ ଅବଲୀଳାକ୍ରମେ ଏହି ପୃଥିବୀକୁ ରସାତଳରୁ ଉଦ୍ଧାର କରିଥିଲେ । ସେତେବେଳେ ଆପଣଙ୍କର ଧୀର ଗର୍ଜନ ଶୁଣି ଯୋଗୀମାନେ ଆପଣଙ୍କ ସ୍ତୁତିଗାନ କରିଥିଲେ । ବେଦମୂର୍ତ୍ତି ! ଆପଣ ହିଁ ନିଜେ ଯଜ୍ଞ ଏବଂ ଯଜ୍ଞର ସଂକଳ୍ପ । ଆପଣଙ୍କର ନାମ କୀର୍ତ୍ତନ କରିବା ମାତ୍ରେ ଯଜ୍ଞର ସମସ୍ତ ବିଘ୍ନ କ୍ଷୟ ହୋଇଯାଏ । ଆମ୍ଭେମାନେ ଯଜ୍ଞକର୍ମରୁ ଭ୍ରଷ୍ଟ ହୋଇଯାଇଥିଲୁ ଏବଂ ଆପଣଙ୍କର ଦର୍ଶନପାଇଁ ଉଦ୍‌ବିଗ୍ନ ଥିଲୁ । ହେ ଯଜ୍ଞେଶ୍ୱର ! ଆପଣଙ୍କୁ ଆମେ ନମସ୍କାର କରୁଛୁ । ଆପଣ ଆମପ୍ରତି ପ୍ରସନ୍ନ ହୁଅନ୍ତୁ ।।୪୫-୪୭।।

ମୈତ୍ରେୟ କହିଲେ, ବିଦୁର ! ଏହିପରି ଯଜ୍ଞେଶ୍ୱର ଭଗବାନ ହୃଷୀକେଶଙ୍କୁ ସମସ୍ତେ ସ୍ତୁତି କରିବା ପରେ ପ୍ରକୃତିସ୍ଥ ଦକ୍ଷ ପ୍ରଜାପତି ବୀରଭଦ୍ରଙ୍କ ଦ୍ୱାରା ନଷ୍ଟ ହୋଇଥିବା ଯଜ୍ଞକୁ ପୁନରାୟ ଆରମ୍ଭ କଲେ ।।୪୮।। ଭଗବାନ ସର୍ବାନ୍ତର୍ଯାମୀ, ସମସ୍ତଙ୍କ ଯଜ୍ଞଭାଗର ଭୋକ୍ତା । ତଥାପି ନିଜ ଯଜ୍ଞଭାଗରେ ସନ୍ତୁଷ୍ଟ ହୋଇ ସେ ଦକ୍ଷଙ୍କୁ ଉତ୍ତର ଦେଲେ ।

ଶ୍ରୀ ଭଗବାନ କହିଲେ, ମୁଁ ହେଉଛି ବ୍ରହ୍ମା ଏବଂ ଶଙ୍କର, ମୁଁ ସମସ୍ତ ଜଗତର ମୁଖ୍ୟ କାରଣ । ମୁଁ ଜଗତର ଆତ୍ମା, ଈଶ୍ୱର, ସାକ୍ଷୀ, ଜଗତର ପ୍ରକାଶସ୍ୱରୂପ ଏବଂ ଉପାଧିରହିତ । ହେ ଦକ୍ଷ, ଆତ୍ମମାୟାଦ୍ୱାରା ମୁଁ ଏହି ତ୍ରିଗୁଣାତ୍ମକ ବିଶ୍ୱକୁ ସୃଷ୍ଟି କରେ, ରକ୍ଷା କରେ ଓ ହରଣ କରେ ଏବଂ ଏହି କ୍ରିୟାଯୋଗୁଁ ମୁଁ ଯଥାକ୍ରମେ ବ୍ରହ୍ମା, ବିଷ୍ଣୁ ଓ ଶିବଙ୍କର ନାମ ଧାରଣ କରେ । ସେହି ପରମାତ୍ମା ଅଦ୍ୱିତୀୟ ବ୍ରହ୍ମକୁ ଅଜ୍ଞ ବ୍ୟକ୍ତି ଭେଦବୁଦ୍ଧିରେ ବ୍ରହ୍ମା, ରୁଦ୍ର ଓ ଅନ୍ୟ ଦେବତାଙ୍କ ରୂପରେ ଦେଖିଥାଏ ॥୪୯-୫୨॥ ଯେପରି ପୁରୁଷ ନିଜ ଶରୀରରେ ଥିବା ହସ୍ତ, ପଦ ଓ ଶିର ଆଦିକୁ ନିଜଠାରୁ ଭିନ୍ନ ବୋଲି ବିଚାର କରେ ନାହିଁ, ସେହିପରି ମୋର ଭକ୍ତମାନେ ସର୍ବଭୂତରେ ମୋତେ ହିଁ ଦର୍ଶନ କରନ୍ତି ॥୫୩॥ ବ୍ରହ୍ମନ୍ ! ଏକ ପରମେଶ୍ୱରଙ୍କ ରୂପ ବ୍ରହ୍ମା, ବିଷ୍ଣୁ ଏବଂ ଶିବଙ୍କୁ ଯେ ଭିନ୍ନ ଭିନ୍ନ ନ ଦେଖେ ଏବଂ ସମସ୍ତ ଆତ୍ମାରେ ଏକ ଈଶ୍ୱର ବିଦ୍ୟମାନ ବୋଲି ଯେ ଅନୁଭବ କରେ, ସେ ପରମ ଶାନ୍ତି ଲାଭ କରେ ॥୫୪॥

ମୈତ୍ରେୟ କହିଲେ, ବିଦୁର ! ଏହିପରି ଭଗବାନଙ୍କଦ୍ୱାରା ଆଦିଷ୍ଟ ହୋଇ ପ୍ରଜାପତିମାନଙ୍କର ନେତା ଦକ୍ଷ ପ୍ରଜାପତି ଯଥୋଚିତ ଯଜ୍ଞଦ୍ୱାରା ଶ୍ରୀହରିଙ୍କୁ ଅର୍ଚ୍ଚନା କଲେ ଏବଂ ପ୍ରଧାନ ଓ ଅଙ୍ଗ ଉଭୟରୂପେ ରୁଦ୍ରଙ୍କୁ ଓ ଅନ୍ୟଦେବତାଙ୍କୁ ପୂଜା କଲେ । ଏକାଗ୍ର ଚିତ୍ତରେ ସେ ରୁଦ୍ରଙ୍କୁ ପୂଜାକରି ତାଙ୍କୁ ତାଙ୍କ ଯଜ୍ଞଭାଗ ଦେଇ ସନ୍ତୁଷ୍ଟ କଲେ ଏବଂ ଯଜ୍ଞଶେଷରେ କରାଯାଉଥିବା ଉଦବସାନ ନାମକ କର୍ମଦ୍ୱାରା ସୋମପାୟୀ ଓ ଅନ୍ୟ ଦେବତାଙ୍କୁ ସନ୍ତୁଷ୍ଟ କଲେ । ଶେଷରେ ସେ ଋତ୍ୱିକ୍‌ମାନଙ୍କ ସହିତ ଅବଭୃଥନାମକ ମନ୍ତ୍ରସ୍ନାନ କଲେ ॥୫୫-୫୬॥ ନିଷ୍ଠାର ସହିତ ଯଜ୍ଞକରି ସିଦ୍ଧିଲାଭ କରିଥିବା ଦକ୍ଷ ପ୍ରଜାପତିଙ୍କୁ 'ଧର୍ମରେ ସର୍ବଦା ତୁମର ମତି ରହିଥାଉ' ବୋଲି ଆଶୀର୍ବାଦ କରି ଦେବତାମାନେ ସ୍ୱର୍ଗକୁ ଫେରିଗଲେ ॥୫୭॥

ମୈତ୍ରେୟ କହିଲେ, ବିଦୁର ! ମୁଁ ଶୁଣିଛି ଯେ, ଦକ୍ଷକନ୍ୟା ସତୀ ନିଜର ପୂର୍ବଦେହ ତ୍ୟାଗ କରିବାପରେ ହିମାଳୟଙ୍କ ପତ୍ନୀ ମେନାଙ୍କ ଗର୍ଭରେ ଜନ୍ମ ଗ୍ରହଣ କଲେ ॥୫୮॥ ପ୍ରଳୟକାଳରେ ସୁପ୍ତ ହୋଇଥିବା ଶକ୍ତି ସୃଷ୍ଟିର ଆରମ୍ଭରେ ପୁରୁଷଙ୍କୁ ଯେପରି ଆଶ୍ରୟ କରେ, ସେହିପରି ଅନନ୍ୟପରାୟଣା ଅମ୍ବିକା ନିଜର ପରମପ୍ରିୟ ଭଗବାନ ଶଙ୍କରଙ୍କୁ ପତିରୂପେ ବରଣ କଲେ ॥୫୯॥ ଦକ୍ଷଯଜ୍ଞ ଧ୍ୱଂସକାରୀ ଭଗବାନ ଶଙ୍କରଙ୍କର ଏହି ଚରିତ ମୁଁ ବୃହସ୍ପତିଙ୍କର ଶିଷ୍ୟ ପରମ ଭାଗବତ ଉଦ୍ଧବଙ୍କଠାରୁ ଶୁଣିଥିଲି ॥୬୦॥ କୁରୁନନ୍ଦନ ! ଶିବ ପରମେଶ୍ୱରଙ୍କର ଏହି ପବିତ୍ର ଚରିତ୍ର ଶ୍ରବଣ କଲେ ଯଶ ଓ ଆୟୁଷର ବୃଦ୍ଧି ହୁଏ । ଯେଉଁ ବ୍ୟକ୍ତି ପ୍ରତିଦିନ ଭକ୍ତିଭାବରେ ଏହାକୁ ଶୁଣେ ଏବଂ କୀର୍ତ୍ତନ କରେ, ତା'ର ପାପ ଧୋଇ ହୋଇଯାଏ ॥୬୧॥

## ଅଷ୍ଟମ ଅଧ୍ୟାୟ

# ଧ୍ରୁବଙ୍କ ବନଗମନ

ମୈତ୍ରେୟ କହିଲେ, ଶତ୍ରୁସୂଦନ ବିଦୁର ! ସନକାଦି କୁମାରଗଣ, ନାରଦ, ଋଭୁ, ହଂସ, ଅରୁଣି ଓ ଯତି – ବ୍ରହ୍ମାଙ୍କର ଏହି ପୁତ୍ରମାନେ ଊର୍ଦ୍ଧ୍ୱରେତା (ନୈଷ୍ଠିକ ବ୍ରହ୍ମଚାରୀ) ହୋଇ ଗୃହସ୍ଥାଶ୍ରମରେ ପ୍ରବେଶ କଲେ ନାହିଁ । ବ୍ରହ୍ମାଙ୍କର ଅନ୍ୟ ଏକ ପୁତ୍ର ହେଲେ ଅଧର୍ମ, ତାଙ୍କ ସ୍ତ୍ରୀଙ୍କର ନାମ ମୃଷା । ଏହି ଦୁହିଁଙ୍କ ଔରସରୁ ଦମ୍ଭ ନାମକ ପୁତ୍ର ଓ ମାୟା ନାମକ କନ୍ୟାଙ୍କର ଜନ୍ମ ହେଲା । ନିର୍ଋତିଙ୍କର କୌଣସି ସନ୍ତାନ ନଥିବାରୁ ସେ ଦୁହିଁଙ୍କୁ ସେ ନେଇଗଲେ ॥୧-୨॥ ଦମ୍ଭ ଏବଂ ମାୟାଙ୍କ ଠାରୁ ଲୋଭ ଏବଂ ଶଠତା ଜନ୍ମ ହେଲେ ଏବଂ ସେ ଦୁହିଁଙ୍କ ଠାରୁ କ୍ରୋଧ ଓ ହିଂସା ଜନ୍ମହେଲେ । କ୍ରୋଧ ଓ ହିଂସାଙ୍କଠାରୁ କଳି ଏବଂ ତା'ର ଭଉଣୀ ଦୁରୁକ୍ତି (ନିନ୍ଦା) ଜନ୍ମ ନେଲେ ॥୩॥ ସାଧୁଶ୍ରେଷ୍ଠ, ଏ ଦୁହିଁଙ୍କ ଔରସରୁ ଭୟ ଓ ମୃତ୍ୟୁର ଜନ୍ମ ଏବଂ ସେ ଦୁହିଁଙ୍କଠାରୁ ଯାତନା ଓ ନିରୟ

(ନରକ) ନାମକ ଯମଜ ସନ୍ତାନଙ୍କ ଜନ୍ମ ।।୪।। ନିଷ୍ପାପ ବିଦୁର, ଏହିପରି ମୁଁ ତୁମକୁ ପ୍ରଳୟର କାରଣସ୍ୱରୂପ ଅଧର୍ମ ବଂଶର ବର୍ଣ୍ଣନା କଲି । ଏହି ଅଧର୍ମକୁ ବର୍ଜନ କଲେ ହିଁ ପୁଣ୍ୟ ହୁଏ ଏବଂ ଏହି ବର୍ଣ୍ଣନାକୁ ତିନିଥର ଶୁଣିଲେ ଆତ୍ମାର ମଳିନତା ଦୂର ହୋଇଯାଏ ।।୫।। କୁରୁଶ୍ରେଷ୍ଠ, ବର୍ତ୍ତମାନ ଶ୍ରୀହରିଙ୍କ ଅଂଶ(ବ୍ରହ୍ମା)ରୁ ଅଂଶରୂପେ ଜନ୍ମ ହୋଇଥିବା ପୁଣ୍ୟଶ୍ଳୋକ ସ୍ୱାୟମ୍ଭୁବ ମନୁଙ୍କର ପୁତ୍ରଙ୍କ ବଂଶର ବର୍ଣ୍ଣନା କରିବି ।।୬।।

ମନୁ ଓ ଶତରୂପାଙ୍କ ଠାରୁ ପ୍ରିୟବ୍ରତ ଏବଂ ଉତ୍ତାନପାଦ - ଏହି ଦୁଇ ପୁତ୍ରଙ୍କର ଜନ୍ମ ହୋଇଥିଲା । ବାସୁଦେବଙ୍କ କଳାରୁ ଉତ୍ପନ୍ନ ହୋଇଥିବା ଯୋଗୁ ଏଦୁହେଁ ସଂସାରରକ୍ଷାପାଇଁ ନିଯୁକ୍ତ ଥିଲେ ।।୭।। ଉତ୍ତାନପାଦଙ୍କର ଦୁଇ ପତ୍ନୀ ସୁନୀତି ଓ ସୁରୁଚି । ଦୁହିଁଙ୍କ ମଧ୍ୟରୁ ସୁରୁଚିଙ୍କୁ ସେ ଅଧିକ ଭଲ ପାଉଥିଲେ । ଯେଉଁ ସୁନୀତିଙ୍କର ପୁତ୍ର ଧ୍ରୁବ, ରାଜା ତାଙ୍କୁ ଏତେ ଭଲ ପାଉନଥିଲେ । ଦିନେ ରାଜା ଉତ୍ତାନପାଦ ସୁରୁଚିଙ୍କର ପୁତ୍ର ଉତ୍ତମଙ୍କୁ କୋଳରେ ବସାଇ ଗେଲ କରୁଥିବା ବେଳେ ଧ୍ରୁବ ତାଙ୍କ କୋଳରେ ବସିବାକୁ ଯିବାରୁ ରାଜା ତାଙ୍କୁ ବସିବାକୁ ଦେଲେ ନାହିଁ ।।୮-୯।। ସୁରୁଚି ଅତିଶୟ ଗର୍ବିଣୀ ଥିଲେ । ନିଜ ସଉତୁଣୀର ପୁଅ ରାଜାଙ୍କ କୋଳରେ ବସିବାକୁ ଯାଉଥିବାର ଦେଖି ଈର୍ଷାରେ ଜଳିଯାଇ ସୁରୁଚି ରାଜାଙ୍କୁ ଶୁଣାଇ ଧ୍ରୁବଙ୍କୁ କହିଲେ, ବତ୍ସ ! ତୁ ରାଜାଙ୍କର ଆସନରେ ବସିବାପାଇଁ ଯୋଗ୍ୟ ନୁହଁ । ତୁ ରାଜାଙ୍କର ପୁଅ ହେଲେ ମଧ୍ୟ ମୋ ଗର୍ଭରୁ ଜନ୍ମ ହୋଇନାହୁଁ ।।୧୦-୧୧।। ତୁ ପିଲା ଲୋକ । ଅନ୍ୟ ସ୍ତ୍ରୀଗର୍ଭରୁ ଜନ୍ମ ହୋଇଛୁ ବୋଲି ଜାଣି ନାହୁଁ । ତେଣୁ ଏପରି ଦୁର୍ଲଭ ପଦାର୍ଥକୁ ଇଚ୍ଛା କରୁଛୁ । ଯଦି ରାଜାର ଆସନକୁ ଇଚ୍ଛା କରୁଛୁ, ତା'ହେଲେ ତପସ୍ୟା କରି ପରମପୁରୁଷ ଶ୍ରୀହରିଙ୍କୁ ସନ୍ତୁଷ୍ଟ କର ଏବଂ ତାଙ୍କ କୃପାରୁ ମୋ ଗର୍ଭରେ ଆସି ଜନ୍ମ ହୁଅ ।।୧୨-୧୩।।

ମୈତ୍ରେୟ କହିଲେ, ବିଦୁର ! ଯେପରି ଯଷ୍ଟିଦ୍ୱାରା ଆହତ ହୋଇ ସାପ ରାଗରେ ଫଁ ଫଁ ହୁଏ, ସେହିପରି ନିଜର ସଉତୁଣୀ ମା'ର କଠୋର ବାକ୍ୟରେ ବିଦ୍ଧ ହୋଇ ଧ୍ରୁବ କ୍ରୋଧରେ ଦୀର୍ଘଶ୍ୱାସ ପକାଇବାକୁ ଲାଗିଲେ । ସବୁ ଶୁଣି ପିତା ଚୁପ୍ ହୋଇ ବସିଥିବାର ଦେଖି ଧ୍ରୁବ ସେଠାରୁ କାନ୍ଦି କାନ୍ଦି ନିଜ ମା'ଙ୍କ ପାଖରେ ଆସି ପହଞ୍ଚିଲେ ।।୧୪-୧୫।। ସଇଁ ସଇଁ ହୋଇ କାନ୍ଦି ତାଙ୍କର ଅଧର ଓ ଓଷ୍ଠ ଫୁଲି ଉଠିଥିଲା । ସେ ଦୀର୍ଘ ଶ୍ୱାସ ଛାଡୁଥିଲେ । ସୁନୀତି ପୁଅକୁ ନିଜର କୋଳରେ ବସାଇ ଅତିଶୟ ବ୍ୟଥିତ ହେଲେ । ରାଜମହଲ ଲୋକଙ୍କଠାରୁ ନିଜର ସଉତୁଣୀ ଯାହା କିଛି କହିଛନ୍ତି, ସେ ସବୁ କଥା ଶୁଣିଥିଲେ । ତାଙ୍କର ଧୈର୍ଯ୍ୟ ତୁଟିଗଲା । ଦାବାଗ୍ନିରେ ଜଳି ଯାଉଥିବା ଏକ ଲତା ପରି ସେ ଶୋକରେ ବିଳାପ କରିବାକୁ ଲାଗିଲେ । ତାଙ୍କର କମଳନୟନରୁ ଅଶ୍ରୁଧାର ବହିବାକୁ ଲାଗିଲା ।।୧୬।। ଏହି ଦୁଃଖଦାୟକ ସ୍ଥିତିର କିପରି ଅବସାନ ହେବ ତାହା ସେ ଦେଖି ପାରୁ ନଥିଲେ । ଦୀର୍ଘଶ୍ୱାସ ପକାଇ ପୁତ୍ର ଧ୍ରୁବଙ୍କୁ କହିଲେ, ବତ୍ସ ! ଅନ୍ୟମାନଙ୍କର କୌଣସିପ୍ରକାର ଅମଙ୍ଗଳ ଚିନ୍ତା କରିବା ଉଚିତ ନୁହେଁ । ଯେ ଅନ୍ୟକୁ ଦୁଃଖ ଦିଏ, ତାକୁ ଦିନେ ସେହି ଦୁଃଖର ପରିଣାମ ଭୋଗିବାକୁ ପଡ଼େ ।।୧୭।। ରାଜା ମୋତେ ସ୍ତ୍ରୀ ବୋଲି ଗ୍ରହଣ କରିବାକୁ ଲଜ୍ଜାବୋଧ କରନ୍ତି । ତେଣୁ ସୁରୁଚି ଯାହା କହିଛି, ତାହା ଠିକ୍ କଥା । ତୋର ଦୁର୍ଭାଗ୍ୟ ଯେ, ତୁ ମୋ ପେଟରୁ ଜନ୍ମ ହୋଇଛୁ । ତୁ ମୋର ସ୍ତନ୍ୟ ପାନ କରି ବଢ଼ିଛୁ ।।୧୮।। ଯେଉଁ ଆସନରେ ଆଜି ଉତ୍ତମ ବସିଛି, ଯଦି ତୁ' ସେହି ଆସନ ଇଚ୍ଛା କରୁଥାଉ, ତା'ହେଲେ, ତୋ'ର ସଉତୁଣୀ ମା ଯାହା ଯାହା କହିଛି, ମନରେ କୌଣସି ଦ୍ୱେଷଭାବ ନରଖି ତାହା ଠିକ୍‌ଠିକ୍ ପାଳନ କର । ଶ୍ରୀବିଷ୍ଣୁଙ୍କର ପାଦପଦ୍ମକୁ ଆରାଧନା କର ।।୧୯।। ମୁନିମାନେ ପ୍ରାଣାୟାମଦ୍ୱାରା ମନକୁ ଜୟ କରି ତାଙ୍କରି ପାଦପଦ୍ମକୁ ବନ୍ଦନା କରନ୍ତି । ଏହି ବିଶ୍ୱସଂସାରକୁ ସୃଷ୍ଟି କରିବା ଉଦ୍ଦେଶ୍ୟରେ ବ୍ରହ୍ମା ସେହି ପାଦପଦ୍ମ ସେବା କରି ପରମେଷ୍ଠୀ ପଦ ଲାଭ କରିଛନ୍ତି ।।୨୦।। ତୋ'ର ପିତାମହ ମହାରାଜ ମନୁ ଯଜ୍ଞରେ ବହୁ ଦାନ ଦକ୍ଷିଣା ଦେଇ ଏକାଗ୍ରଭାବରେ ସେହି ଭଗବାନଙ୍କୁ ପୂଜା କରୁଥିଲେ ଏବଂ ସେଥିପାଇଁ ଯେଉଁ ଐହିକ ଓ ପାରଲୌକିକ ଉଭୟ ସୁଖ ସହଜରେ ମିଳେ ନାହିଁ, ସେ ସେହି ସୁଖ ଓ ମୋକ୍ଷ ଲାଭ କରିଥିଲେ ।।୨୧।। ତେଣୁ ହେ ବତ୍ସ ! ସେହି ଭକ୍ତବତ୍ସଳ ଭଗବାନଙ୍କୁ ଆଶ୍ରୟ କର । ଯେଉଁମାନେ

ସଂସାରଦୁଃଖରୁ ମୁକ୍ତି ପାଇବା ପାଇଁ ଇଚ୍ଛା କରନ୍ତି, ସେମାନେ ତାଙ୍କରି ପାଦପଦ୍ମକୁ ଲାଭ କରିବାର ଉପାୟ ଖୋଜି ବୁଲନ୍ତି । ତୁ ସ୍ୱଧର୍ମରେ ରହି ଅନନ୍ୟ ଭାବରେ ସେହି ପାଦପଦ୍ମକୁ ମନରେ ସ୍ଥାପନ କରି ପରମପୁରୁଷଙ୍କୁ ଭଜନ କର ॥୨୨॥ ସେହି ପଦ୍ମଲୋଚନଙ୍କ ଛଡ଼ା ଅନ୍ୟ କେହି ଯେ ତୋର ଦୁଃଖ ମୋଚନ କରିବେ, ତାହାଙ୍କୁ ମୁଁ ଦେଖି ପାରୁ ନାହିଁ । ବତ୍ସ ! ଯେଉଁ ଲକ୍ଷ୍ମୀଙ୍କୁ ପ୍ରସନ କରିବା ପାଇଁ ଦେବତାମାନେ ଖୋଜୁଥାନ୍ତି, ସେହି ଲକ୍ଷ୍ମୀ ମଧ୍ୟ ହାତରେ ପଦ୍ମପୁଷ୍ପ ଧରି ବିଷ୍ଣୁଙ୍କୁ ପୂଜା କରିବାପାଇଁ ଅନୁସରଣ କରୁଥା'ନ୍ତି ॥୨୩॥

ମୈତ୍ରେୟ କହିଲେ, ଏହିପରି ମାତାଙ୍କର ମୂଲ୍ୟବାନ୍ ଉପଦେଶ ଶୁଣି ଧ୍ରୁବ କ'ଣ କରିବେ ମନରେ ସ୍ଥିର କରିନେଲେ ଏବଂ ପିତୃଗୃହ ଛାଡ଼ି ଚାଲିଗଲେ । ଏହା ସବୁ ଶୁଣି ଏବଂ ଧ୍ରୁବ କ'ଣ କରିବାକୁ ଯାଉଛନ୍ତି ତାହା ଜାଣି ବିସ୍ମିତ ନାରଦ ଋଷି ସେଠାରେ ଉପସ୍ଥିତ ହେଲେ, ଏବଂ ନିଜର ପାପନାଶକ ହସ୍ତକୁ ଧ୍ରୁବଙ୍କ ମସ୍ତକରେ ସ୍ଥାପନ କରି କହିଲେ, କ୍ଷତ୍ରିୟମାନଙ୍କର ତେଜ ଦେଖ । ସାମାନ୍ୟ ମାନହାନି ମଧ୍ୟ ସେମାନେ ସହି ପାରନ୍ତି ନାହିଁ । ଛୋଟ ପିଲାଟା ହେଲେ ମଧ୍ୟ ସଉତୁଣୀମା'ର କଥାକୁ ମନରେ ଧରିଛି ॥୨୪-୨୬॥ ନାରଦ ଧ୍ରୁବଙ୍କୁ କହିଲେ, ପୁଅ ! ତୁ ଏବେ ପିଲା । ଖେଳିବା ଆଦିରେ ତୋର ମନ ଲାଗିବା କଥା । ଏହି ପିଲା ବୟସରେ ତୋତେ କିଏ କ'ଣ କହିଲା ଯେ, ସେଥିରେ ତୋର ମାନ ଅପମାନ ହେବ ! ହେଲା, ତୋ ମନରେ ଯଦି ଏପରି ମାନ ଅପମାନର ବିଚାର ଆସୁଛି, ମନେରଖ, ମନୁଷ୍ୟର ମୋହମମତା ହେଉଛି ତା'ର ଅସନ୍ତୋଷର କାରଣ । ନିଜ କର୍ମଫଳ ଯୋଗୁ ତାକୁ ମାନ, ଅପମାନ ଓ ସୁଖଦୁଃଖ ଭୋଗ କରିବାକୁ ହୁଏ ॥୨୭-୨୮॥ ତେଣୁ ବତ୍ସ ଈଶ୍ୱରଙ୍କ ଅନୁଗ୍ରହ ବିନା କୌଣସି ଉଦ୍ୟମ ସଫଳ ହୁଏ ନାହିଁ । ଏହା ଜାଣି ମନୁଷ୍ୟ ସବୁ ପରିସ୍ଥିତିରେ ସନ୍ତୁଷ୍ଟ ରହିବା ଉଚିତ ॥୨୯॥ ମାତାଙ୍କ ଉପଦେଶ ଅନୁସାରେ ଯୋଗସାଧନାଦ୍ୱାରା ତୁ ଯାହାଙ୍କର କୃପା ଲାଭ କରିବାପାଇଁ ଯାଉଛୁ, ମୋର ବିଚାରରେ ସାଧାରଣ ଲୋକଙ୍କପାଇଁ ତାହା ଅତି କଷ୍ଟସାଧ୍ୟ ॥୩୦॥ ଜନ୍ମ ଜନ୍ମ ଧରି ଅନାସକ୍ତ ରହି କଠୋର ଯୋଗସାଧନ ଦ୍ୱାରା ମୁନିମାନେ ମଧ୍ୟ ତାଙ୍କୁ ଲାଭ କରିବାର ବାଟ ପାଆନ୍ତି ନାହିଁ ॥୩୧॥ ଅତଏବ, ଏପରି ଜିଦ୍ ଧରି ତୋର କୌଣସି ଲାଭ ହେବ ନାହିଁ । ସମୟ ଆସିଲେ, ଈଶ୍ୱରଙ୍କ କୃପାରୁ ତୁ ଶ୍ରେଷ୍ଠତ୍ୱଲାଭପାଇଁ ଚେଷ୍ଟା କରିବୁ ॥୩୨॥ ବିଧିର ବିଧାନ ଅନୁସାରେ ସୁଖ ଆସୁ ବା ଦୁଃଖ ଆସୁ, ସେଥିରେ ସନ୍ତୁଷ୍ଟ ରହି ମନୁଷ୍ୟ ମୋହମାୟା ସଂସାରରୁ ପାର ହୋଇପାରିବ ॥୩୩॥ ନିଜଠାରୁ ଅଧିକ ଗୁଣବାନ୍ ବ୍ୟକ୍ତି ଦେଖିଲେ ତାଙ୍କଠାରୁ ପ୍ରୀତି ଚାହିବ । କମ୍ ଗୁଣବାନ୍ ବ୍ୟକ୍ତି ଦେଖିଲେ ତାଙ୍କ ପ୍ରତି ଦୟାଶୀଳ ହେବ ଏବଂ ସମାନ ଗୁଣବାନ୍ ବ୍ୟକ୍ତିଙ୍କ ସହିତ ବନ୍ଧୁତା ସ୍ଥାପନ କରିବ । ଏପରି କଲେ ସେ କେବେହେଲେ ଦୁଃଖଦ୍ୱାରା ଅଭିଭୂତ ହେବ ନାହିଁ ॥୩୪॥

ଧ୍ରୁବ କହିଲେ, ଭଗବାନ୍, ସୁଖଦୁଃଖରେ ବିଚଳିତ ହେଉଥିବା ଲୋକମାନଙ୍କପାଇଁ ଆପଣ କୃପା କରି ଯେଉଁ ଶାନ୍ତିର ଉପାୟ ବତାଇଲେ, ମୋ ପରି ଅଜ୍ଞାନୀ ପାଇଁ ତାହା ବୋଧଗମ୍ୟ ହେଉ ନାହିଁ । ମୋତେ ଭୟଙ୍କର କ୍ଷତ୍ରିୟସ୍ୱଭାବ ମିଳିଛି, ମୋ ପାଖରେ ବିନୟର ଅଭାବ ରହିଛି । ଏଣୁ କଟୂବାକ୍ୟବାଣରେ ସୁରୁଚି ମୋର ଯେଉଁ ହୃଦୟକୁ ବିଦୀର୍ଣ୍ଣ କରିଛି, ଆପଣଙ୍କର ଉପଦେଶ ମୋର ସେଇ ହୃଦୟକୁ ଛୁଇଁପାରୁ ନାହିଁ ॥୩୫-୩୬॥ ବ୍ରହ୍ମନ୍ ! ଯେଉଁ ପଦରେ ମୋର ପିତୃପୁରୁଷ କେହି ଅଧିଷ୍ଠିତ ହୋଇ ନାହାନ୍ତି, ମୁଁ ତ୍ରିଭୁବନରେ ଶ୍ରେଷ୍ଠ ସେହି ପଦ ଅଧିକାର କରିବାପାଇଁ ଇଚ୍ଛା କରୁଛି । ଆପଣ ଭଗବାନ ବ୍ରହ୍ମାଙ୍କର ପୁତ୍ର ଏବଂ ଜଗତର କଲ୍ୟାଣପାଇଁ ବୀଣାବାଦନ କରି କରି ସୂର୍ଯ୍ୟଙ୍କ ପରି ଘୂରି ବୁଲୁଛନ୍ତି । ତେଣୁ ଦୟାପୂର୍ବକ ତାହାର ଉପାୟ ବତାଇ ଦିଅନ୍ତୁ ॥୩୭-୩୮॥ ମୈତ୍ରେୟ କହିଲେ, ଧ୍ରୁବଙ୍କର କଥା ଶୁଣି ଭଗବାନ ନାରଦ ଅତିଶୟ ପ୍ରୀତ ହୋଇ କୃପାପୂର୍ବକ ତାଙ୍କୁ ସଦୁପଦେଶ ଦେବାକୁ ଲାଗିଲେ ॥୩୯॥

ନାରଦ କହିଲେ, ବତ୍ସ ! ତୋର ମାତା ତୋତେ ଯାହା କିଛି ଉପଦେଶ ଦେଇଛନ୍ତି, ତାହା ତୋର ମଙ୍ଗଳପାଇଁ । ଏଣୁ ତୁ ମନ ଲଗାଇ ଭଗବାନ ବାସୁଦେବଙ୍କୁ ଭଜନ କର ॥୪୦॥ ନିଜର ମଙ୍ଗଳପାଇଁ ଅର୍ଥାତ୍ ଧର୍ମ, ଅର୍ଥ, କାମ ଓ ମୋକ୍ଷ -- ଏହି

ଚତୁର୍ବର୍ଗ ଫଳଲାଭ ପାଇଁ ଏକମାତ୍ର ପନ୍ଥା ହେଉଛି, ଶ୍ରୀହରିଙ୍କର ପାଦସେବା ॥୪୧॥ ତେଣୁ ପୁତ୍ର ! ଯମୁନାକୂଳକୁ ଯାଅ । ତୋର ମଙ୍ଗଳ ହେବ । ସେଠାରେ ମଧୁବନ ନାମକ ଏକ ପବିତ୍ର ଅରଣ୍ୟ ରହିଛି । ତାହା ଶ୍ରୀହରିଙ୍କର ନିତ୍ୟବାସସ୍ଥଳୀ ॥୪୨॥ ସେଠାରେ ପ୍ରତ୍ୟହ ପୁଣ୍ୟତୋୟା କାଳିନ୍ଦୀର ଜଳରେ ତ୍ରିବାର ସ୍ନାନ କରି ଯଥାବିଧି ଆସନରେ ସ୍ଥିର ଭାବରେ ବସିବୁ ଏବଂ ରେଚକ, ପୂରକ ଓ କୁମ୍ଭକ - ଏହି ତିନିପ୍ରକାର ପ୍ରାଣାୟାମ ଦ୍ୱାରା ଧୀରେ ଧୀରେ ପ୍ରାଣ, ଇନ୍ଦ୍ରିୟ ଓ ମନର ମଳିନତା ଦୂର କରି ଏକାଗ୍ର ଚିତ୍ତରେ ପରମଗୁରୁ ଶ୍ରୀହରିଙ୍କୁ ଧ୍ୟାନ କରିବୁ ॥୪୩-୪୪॥ ଭଗବାନଙ୍କର ମୁଖମଣ୍ଡଳ ଓ ନେତ୍ରଦ୍ୱୟ ସର୍ବଦା ପ୍ରସନ୍ନ ଦେଖାଯାଏ, ଯେପରି କି ଭକ୍ତମାନଙ୍କୁ ବରଦେବାପାଇଁ ତାହା ଉଦ୍ୟତ । ତାଙ୍କ ନାସା, ଭ୍ରୂଲତା ଓ କପାଳ ଅତିଶୟ ରମଣୀୟ, ଏବଂ ସୌନ୍ଦର୍ଯ୍ୟରେ ଦେବତାମାନଙ୍କ ମଧ୍ୟରେ ସେ ହିଁ ଶ୍ରେଷ୍ଠ ॥୪୫॥ ତାଙ୍କ ଅଙ୍ଗରେ ତାରୁଣ୍ୟର ରମଣୀୟତା, ତାଙ୍କର ଓଷ୍ଠ, ଅଧର ଓ ଚକ୍ଷୁ ଅରୁଣ ବର୍ଣ୍ଣ । ସେ ଭକ୍ତମାନଙ୍କର ଆଶ୍ରୟଦାତା । ସମସ୍ତ ପୁରୁଷାର୍ଥର ଆଧାର, ଶରଣବତ୍ସଳ ଓ କରୁଣାର ସିନ୍ଧୁ । ଶ୍ରୀବତ୍ସଲାଞ୍ଛନ, ଘନଶ୍ୟାମ ଓ ବନମାଳୀ । ଚତୁର୍ଭୁଜରେ ଶଙ୍ଖ, ଚକ୍ର, ଗଦା ଓ ପଦ୍ମ ଶୋଭା ପାଉଥାଏ । କିରୀଟ କୁଣ୍ଡଳ, ବାହୁବନ୍ଧ, କଙ୍କଣ ଆଦି ଅଳଙ୍କାରରେ ସେ ସୁଶୋଭିତ । ଗ୍ରୀବାରେ କୌସ୍ତୁଭର ମଣି । ଅଙ୍ଗରେ ପୀତ ପଟ୍ଟବସ୍ତ୍ର । କଟି ଦେଶରେ ସୁବର୍ଣ୍ଣର ମେଖଳା ଓ ପାଦରେ ସୁବର୍ଣ୍ଣର ନୂପୁର । ତାଙ୍କର ସେହି ଅତିଶୟ କମନୀୟ ଶାନ୍ତ ରୂପ ନୟନମାନଙ୍କୁ ମୋହିତ କରେ ॥୪୬-୪୯॥ ପ୍ରଭୁଙ୍କର ପଦାରବିନ୍ଦରେ ମଣିପରି ସୁନ୍ଦର ନଖଗୁଡ଼ିକ ଝଟକୁଥାଏ । ଯେଉଁ ଭକ୍ତମାନେ ପ୍ରଭୁଙ୍କୁ ମନମଧ୍ୟରେ ସ୍ଥାପନା କରି ପୂଜା କରନ୍ତି, ସେମାନେ ନିଜ ହୃଦପଦ୍ମରେ ପ୍ରଭୁଙ୍କର ସେହି ପାଦପଦ୍ମକୁ ଧାରଣ କରିଥାଆନ୍ତି ॥୫୦॥ ଏହି ଧାରଣାରେ ମନ ସ୍ଥିର ଓ ଏକାଗ୍ର ହୋଇଗଲେ ପ୍ରଭୁଙ୍କର ବରଦ ମୂର୍ତ୍ତିକୁ ଏପରି ଧ୍ୟାନ କରିବୁ, ଯେପରିକି ସେ ଅନୁରାଗଭରା ଦୃଷ୍ଟିରେ ତୋତେ ଚାହିଁ ଅଳ୍ପ ଅଳ୍ପ ହସୁଛନ୍ତି ॥୫୧॥ ଭଗବାନଙ୍କର ମଙ୍ଗଳମୟ ରୂପକୁ ଏହିପରି ଧ୍ୟାନ କରିବା ଦ୍ୱାରା ମନ ବିଷୟବିଷରୁ ନିବୃତ୍ତ ହୋଇ ଶୀଘ୍ର ତାଙ୍କରି ପରମପଦ ଲାଭ କରେ ଏବଂ ଆଉ ପୁଣି ସଂସାରକୁ ଫେରେ ନାହିଁ ॥୫୨॥

ହେ ରାଜକୁମାର ! ବର୍ତ୍ତମାନ ମୁଁ ତୋତେ ଏକ ପରମ ଗୋପନୀୟ ମନ୍ତ୍ର ପ୍ରଦାନ କରୁଛି, ଯାହାକି ତୁ ଜପ କରିବୁ । ଏହି ମନ୍ତ୍ରକୁ ସାତରାତି ଜପ କଲେ ବ୍ୟୋମଚାରୀ ସିଦ୍ଧମାନଙ୍କୁ ତୁ ଦେଖିପାରିବୁ ॥୫୩॥ ଏହି ମନ୍ତ୍ର ହେଉଛି 'ଓଁ ନମୋ ଭଗବତେ ବାସୁଦେବାୟ' । ଦେଶ ଏବଂ କାଳ ବିଚାରରେ କେଉଁ କେଉଁ ବସ୍ତୁମାନଙ୍କ ଦ୍ୱାରା ଭଗବାନଙ୍କର ପୂଜା କରାଯିବା ଆବଶ୍ୟକ, ତାହା ବୁଦ୍ଧିମାନ୍ ବ୍ୟକ୍ତି ସ୍ଥିର କରେ ॥୫୪॥ ପ୍ରଭୁଙ୍କର ପୂଜା ପବିତ୍ର ଜଳ, ପୁଷ୍ପମାଲ୍ୟ, ବନ୍ୟ ଫଳମୂଳ,ଦୂର୍ବାଦଳ, ବଳ୍କଳ ବସ୍ତ୍ର ଏବଂ ତାଙ୍କର ପ୍ରିୟ ତୁଳସୀପତ୍ର ଦ୍ୱାରା କରାଯାଏ ॥୫୫॥ ପାଷାଣନିର୍ମିତ ଭଗବାନଙ୍କ ମୂର୍ତ୍ତିର ପୂଜା କରାଯାଇପାରେ । ନଚେତ୍ ମୃତ୍ତିକା ବା ଜଳରେ ତାଙ୍କୁ ପୂଜା କରାଯାଇପାରେ । ପୂଜାବେଳେ ସଂଯତ ଓ ଶାନ୍ତଚିତ୍ତ ମୁନି ସର୍ବଦା ମୌନ ରହିବ ଏବଂ ସାମାନ୍ୟ ବନ୍ୟ ଫଳମୂଳ ଖାଇ ମିତାହାରୀ ହେବ ॥୫୬॥ ଏହା ଛଡ଼ା ପୁଣ୍ୟଶ୍ଳୋକ ଶ୍ରୀହରି ସ୍ୱେଚ୍ଛାରେ ସଂସାରରେ ବାରମ୍ବାର ଅବତୀର୍ଣ୍ଣ ହୋଇ ନିଜ ଅଚିନ୍ତନୀୟ ମାୟାଦ୍ୱାରା ଯେଉଁସବୁ ଲୀଳା ରଚନା କରିଛନ୍ତି, ତାହାକୁ ହୃଦୟଙ୍ଗମ କରି ମନମଧ୍ୟରେ ଧ୍ୟାନ କରିବ ॥୫୭॥ ଭଗବାନଙ୍କର ପୂଜାପାଇଁ ଯେଉଁସବୁ ଉପଚାରର ବିଧାନ କରାଯାଇଛି, ତାହା ମନ୍ତ୍ରମୂର୍ତ୍ତି ଶ୍ରୀହରିଙ୍କୁ ତାଙ୍କରି ଦ୍ୱାଦଶାକ୍ଷର ମନ୍ତ୍ର ଦ୍ୱାରା ହିଁ ଅର୍ପଣ କରାଯାଏ ॥୫୮॥ ହୃଦୟସ୍ଥିତ ଭଗବାନଙ୍କୁ କାୟମନୋବାକ୍ୟରେ ଭକ୍ତିଭାବରେ ଏପରି ଅର୍ଚ୍ଚନା କଲେ ଭଜନ କରୁଥିବା ସେହି ଅମାୟିକ ଭକ୍ତଙ୍କୁ ଭାବଗ୍ରାହୀ ପ୍ରଭୁ ସମସ୍ତପ୍ରକାର ଶ୍ରେୟ ପ୍ରଦାନ କରନ୍ତି । ଧର୍ମ, ଅର୍ଥ, କାମ ଓ ମୋକ୍ଷ --ଯାହାକିଛି ଭକ୍ତର କାମ୍ୟ, ତାହା ସେ ଦାନ କରନ୍ତି ॥୫୯-୬୦॥ ଭଗବତ୍‌ଭକ୍ତି ପ୍ରବଳ ହେଲେ ପୁରୁଷର ଇନ୍ଦ୍ରିୟଭୋଗ୍ୟ ବସ୍ତୁ ପ୍ରତି ବିରକ୍ତି ଆସିଥାଏ ଏବଂ ସେ ମୋକ୍ଷପ୍ରାପ୍ତିପାଇଁ ନିରନ୍ତର ପ୍ରଭୁଙ୍କୁ ଭଜନ କରେ ॥୬୧॥ ନାରଦଙ୍କଠାରୁ ଏହିପରି ଉପଦେଶ ଲାଭ କରି ରାଜକୁମାର ଧ୍ରୁବ ତାଙ୍କୁ ପରିକ୍ରମା କରି ପ୍ରଣାମ କଲେ ଏବଂ ଶ୍ରୀହରିଙ୍କ ପାଦରେଣୁରେ ପବିତ୍ରିତ ମଧୁବନକୁ ଯାତ୍ରା କଲେ ॥୬୨॥

ଧ୍ରୁବ ତପୋବନକୁ ଯିବା ପରେ ନାରଦ ଉତ୍ତାନପାଦଙ୍କର ଅନ୍ତଃପୁରରେ ପ୍ରବେଶ କଲେ । ରାଜା ତାଙ୍କୁ ଯଥାଯୋଗ୍ୟ ପୂଜା କରିବା ପରେ ସେ ପ୍ରସନ୍ନଭାବରେ ବସି ରାଜାଙ୍କୁ ପଚାରିଲେ, ରାଜା, ତୁମର ମୁହଁ କାହିଁକି ଶୁଖି ଯାଇଛି ? ତୁମେ ବହୁ ସମୟ ଧରି ଚିନ୍ତିତ ଥିବାର ଦେଖାଯାଉଛ । ତୁମର ତ ଧର୍ମ, ଅର୍ଥ ଓ କାମ ସବୁ କିଛି ଅଛି । ଆଉ କ'ଣ ବା ତୁମେ ଇଚ୍ଛା କରୁଛ ? ।।୬୩-୬୪।। ରାଜା କହିଲେ, ବ୍ରହ୍ମନ୍, ମୁଁ ବଡ଼ ନିର୍ଦ୍ଦୟ ଓ ସ୍ତ୍ରୈଣ । ପାଞ୍ଚ ବର୍ଷର ଅତି ବୁଦ୍ଧିମାନ୍ ବାଳୁତ ପୁତ୍ରକୁ ତାର ମାତାସହିତ ଘରୁ ବାହାର କରିଦେଇଛି ।।୬୫।। ବ୍ରହ୍ମନ୍ ! ସେ ବନରେ ଅନାଥ ଭାବରେ ରହୁଥିବ, ତା'ର ମୁଖପଦ୍ମ ଶୁଖି ଯାଇଥିବ, କ୍ଷୁଧାରେ ଥକି ପଡ଼ି କେଉଁଠି ଶୋଇଯାଇଥିଲେ ତାକୁ ବାଘ କିମ୍ବା ଅନ୍ୟ ହିଂସ୍ର ଜନ୍ତୁ ଖାଇ ଯାଇଥିବେ । ମୁଁ ସ୍ତ୍ରୀବଶ ହୋଇ କି ଦୁର୍ବୁଦ୍ଧି ନ କଲି ! ସେ ଅତି ସ୍ନେହରେ ମୋ କୋଳରେ ବସିବାକୁ ଚାହୁଁଥିଲା, କିନ୍ତୁ ମୁଁ ନିର୍ଦ୍ଦୟ ତାକୁ ଟିକିଏ ସ୍ନେହ କଲି ନାହିଁ ।।୬୬-୬୭।।

ନାରଦ କହିଲେ, ରାଜା, ଶୋକ କର ନାହିଁ । ତୁମର ପୁତ୍ର ଶ୍ରୀହରିଙ୍କ ଦ୍ୱାରା ସୁରକ୍ଷିତ । ତୁମେ ତା'ର ପ୍ରଭାବ ଜାଣ ନାହିଁ । ସାରା ଜଗତରେ ତା'ର ଯଶ ଖେଳି ଗଲାଣି ।।୬୮।। ବଡ଼ ବଡ଼ ଲୋକପାଳ ଯାହା କରିପାରିନାହାନ୍ତି, ସେହିପରି ଅତି ଦୁଷ୍କର କର୍ମ କରିବାରେ ସେ ସମର୍ଥ ହେବ । ତୁମର ବିପୁଳ ଯଶ ବୃଦ୍ଧି କରି ସେ ଏଠାକୁ ଫେରି ଆସିବ ।।୬୯।। ମୈତ୍ରେୟ କହିଲେ, ନାରଦଙ୍କଠାରୁ ଏହିପରି ଶୁଣି ରାଜାଙ୍କୁ ଆଉ ରାଜକାର୍ଯ୍ୟ ସୁଖ ଲାଗିଲା ନାହିଁ । ସେ ରାଜଲକ୍ଷ୍ମୀଙ୍କୁ ଅନାଦର କରି କେବଳ ପୁତ୍ରଚିନ୍ତାରେ ମଗ୍ନ ହେଲେ ।।୭୦।।

ଏପଟେ ଧ୍ରୁବ ନାରଦଙ୍କ ଉପଦେଶ ଅନୁଯାୟୀ ମଧୁବନରେ ପହଞ୍ଚିଲେ । ଯମୁନାରେ ସ୍ନାନ କରି ଉପବାସପୂର୍ବକ ଏକାଗ୍ରଚିତ୍ତରେ ପରମପୁରୁଷଙ୍କୁ ଅର୍ଚ୍ଚନା କଲେ ।।୭୧।। ତିନି ରାତି ପରେ ବା ତିନି ଦିନପରେ ନିଜର ଶରୀରକୁ ରକ୍ଷାକରିବାପାଇଁ ସେ ଥରେ ମାତ୍ର କଇଥ ଓ ବରକୋଳି ଫଳ ଖାଇ ପ୍ରଭୁ ଶ୍ରୀହରିଙ୍କର ଉପାସନା କଲେ ।।୭୨।। ଏହିପରି ଗୋଟିଏ ମାସ ବିତିଗଲା । ତା'ପରେ ଛ'ଦିନରେ ଥରେ ଲେଖାଏଁ ଘାସପତ୍ର ମାତ୍ର ଆହାର କରି ବିଭୁଙ୍କର ଅର୍ଚ୍ଚନା କଲେ । ଏହିପରି ଦ୍ୱିତୀୟ ମାସଟି କଟିଗଲା ।।୭୩।। ତୃତୀୟ ମାସରେ ନ'ଦିନରେ ଥରେ ଲେଖାଏଁ କେବଳ ଜଳପାନପୂର୍ବକ ସମାଧିଯୋଗଦ୍ୱାରା ବିଭୁଙ୍କର ଆରାଧନା କଲେ ।।୭୪।। ଚତୁର୍ଥ ମାସରେ ନିଜର ଶ୍ୱାସକୁ ସମ୍ପୂର୍ଣ୍ଣ ନିୟନ୍ତ୍ରଣ କରି ବାର ଦିନରେ ଥରେ ସେ ବାୟୁପାନ ଦ୍ୱାରା ପରମପୁରୁଷଙ୍କର ଧ୍ୟାନ ଓ ଆରାଧନା କଲେ ।।୭୫।। ପ୍ରାଣ ପବନକୁ ଜୟ କରିଥିବା ରାଜକୁମାର ଧ୍ରୁବ ପଞ୍ଚମ ମାସ ହେବାମାତ୍ରେ ପରଂବ୍ରହ୍ମଙ୍କୁ ଚିନ୍ତାକରି ଗୋଟିଏ ପାଦରେ ଖମ୍ବଭଳି ନିଶ୍ଚଳଭାବରେ ଠିଆ ହୋଇ ରହିଲେ ।।୭୬।। ଶବ୍ଦାଦି ପଞ୍ଚ ତନ୍ମାତ୍ର ଓ ଇନ୍ଦ୍ରିୟମାନଙ୍କ ଅଧିଷ୍ଠାନ ମନକୁ ସବୁଆଡୁ ଟାଣିଆଣି ସେ କେବଳ ଭଗବାନଙ୍କ ରୂପକୁ ଧ୍ୟାନ କରିବାକୁ ଲାଗିଲେ । ଅନ୍ୟ କୌଣସି ବିଷୟ ଚିନ୍ତା କଲେ ନାହିଁ ।।୭୭।। ଯେତେବେଳେ ସେ ମହତ୍ ଆଦି ତତ୍ତ୍ୱର ଆଧାର ଏବଂ ପ୍ରକୃତି ଓ ପୁରୁଷର ଅଧୀଶ୍ୱର ବ୍ରହ୍ମଙ୍କ ସ୍ୱରୂପକୁ ହୃଦୟରେ ଧାରଣ କଲେ, ସେତେବେଳେ ତିନି ଲୋକ କମ୍ପିଉଠିଲା ।।୭୮।। କୁମାର ଧ୍ରୁବ ଏକ ପାଦରେ ଠିଆ ହୋଇ ରହିଥିଲା ବେଳେ ତାଙ୍କ ବୁଢ଼ାଆଙ୍ଗୁଠିରେ ଅଧେ ପୃଥିବୀ ଦବି ଯାଇ ହଲିବାକୁ ଲାଗିଲା, ଯେପରି ଏକ ବିଶାଳ ହସ୍ତୀ ଚଢ଼ିଗଲେ ନୌକା ହଲି ଏପଟସେପଟ ହେଉଥାଏ ।।୭୯।। ନିଜର ପ୍ରାଣ ଓ ଇନ୍ଦ୍ରିୟଦ୍ୱାରକୁ ନିରୋଧ କରି ଅନନ୍ୟ ବୁଦ୍ଧିରେ ଧ୍ରୁବ ବିଶ୍ୱର ପରମେଶ୍ୱରଙ୍କୁ ଧ୍ୟାନ କରୁଥିବାବେଳେ ସମସ୍ତ ଜୀବଙ୍କର ଶ୍ୱାସପ୍ରଶ୍ୱାସ ରୁଦ୍ଧ ହୋଇଗଲା ।

ସମସ୍ତ ଲୋକ ଓ ଲୋକପାଳ ଅତିଶୟ କଷ୍ଟ ଭୋଗ କରି ଶ୍ରୀହରିଙ୍କର ଶରଣାଗତ ହେଲେ ।।୮୦।। ଦେବତାମାନେ କହିଲେ, ଭଗବାନ, ଆମେ ଜାଣିପାରୁ ନାହୁଁ କାହିଁକି ସ୍ଥାବର ଓ ଜଙ୍ଗମ ସମସ୍ତ ଜୀବଙ୍କର ଏକସମୟରେ ଶ୍ୱାସ ରୁଦ୍ଧ ହୋଇ ଯାଇଛି । ଆପଣ ଜଗତକୁ ଧାରଣ କରିଛନ୍ତି । ବର୍ତ୍ତମାନ ଏହି ବିପଦରୁ ରକ୍ଷା କରନ୍ତୁ । ହେ ଶରଣ-ପଞ୍ଜର, ଆମେ ଆପଣଙ୍କର ଶରଣାଗତ ।।୮୧।। ଶ୍ରୀ ଭଗବାନ କହିଲେ, ତୁମେମାନେ ଭୟ କରନାହିଁ । ଉତ୍ତାନପାଦଙ୍କର ପୁତ୍ର ବାଳକ ଧ୍ରୁବ ତାଙ୍କର ଚିତ୍ତକୁ

ଦୁସ୍ତର ତପସ୍ୟାଦ୍ୱାରା ମୋଠାରେ ଲୀନ କରିଦେଇଛନ୍ତି । ମୁଁ ବିଶ୍ୱର ଆତ୍ମାସ୍ୱରୂପ ହୋଇଥିବାରୁ ତୁମ ସମସ୍ତଙ୍କର ଶ୍ୱାସ ରୋଧ ଘଟିଛି । ବର୍ତ୍ତମାନ ତୁମେମାନେ ନିଜ ନିଜର ସ୍ଥାନକୁ ଫେରିଯାଅ । ମୁଁ ଏହି ବାଳକକୁ ତା'ର ଦୁସ୍ତର ତପସ୍ୟାରୁ ନିବୃତ୍ତ କରିବି ॥୮୨॥

## ନବମ ଅଧ୍ୟାୟ

# ଧ୍ରୁବଙ୍କ ବରଲାଭ

ମୈତ୍ରେୟ କହିଲେ, ବିଦୁର, ଭଗବାନ ଶ୍ରୀହରିଙ୍କର ଆଶ୍ୱାସନା ପାଇ ଦେବତାମାନଙ୍କ ଭୟ ଦୂର ହୋଇଗଲା ଏବଂ ସେମାନେ ତାଙ୍କୁ ନମସ୍କାର କରି ସ୍ୱର୍ଗଲୋକକୁ ପ୍ରସ୍ଥାନ କଲେ । ଏହାପରେ ସହସ୍ରଶୀର୍ଷା ହରି ଗରୁଡ଼ ବାହନରେ ନିଜ ଭକ୍ତକୁ ଦେଖିବାପାଇଁ ମଧୁବନ ଗଲେ ॥୧॥ କଠୋର ଯୋଗ ଅଭ୍ୟାସଦ୍ୱାରା ଏକାଗ୍ର ବୁଦ୍ଧିରେ ଧ୍ରୁବ ନିଜ ହୃଦୟପଦ୍ମ ମଧ୍ୟରେ ବିଦ୍ୟୁତ୍‌ପରି ପ୍ରକାଶମାନ ଯେଉଁ ଶ୍ରୀହରିଙ୍କ ରୂପକୁ ଦେଖୁଥିଲେ, ହଠାତ୍ ତାହା ତିରୋହିତ ହୋଇ ଯିବାରୁ, ସେ ଆଖି ଖୋଲି ଦେଖନ୍ତି ତ, ତାଙ୍କ ଆଗରେ ସେହି ମୂର୍ତ୍ତି ହିଁ ବିରାଜମାନ ହୋଇଛନ୍ତି ॥୨॥ ଦେଖିବାମାତ୍ରେ ବାଳକ ଧ୍ରୁବଙ୍କ କୌତୂହଳ ବଢ଼ିଗଲା । ସେ ସାଷ୍ଟାଙ୍ଗ ଦଣ୍ଡବତ କରି ତାଙ୍କୁ ଏପରି ଦେଖିବାକୁ ଲାଗିଲେ ଯେପରିକି ଦୃଷ୍ଟିଦ୍ୱାରା ସେ ତାଙ୍କୁ ପିଉଥିବେ, ମୁଖଦ୍ୱାରା ତାଙ୍କୁ ଚୁମ୍ବନ କରୁଥିବେ ଏବଂ ଭୁଜଦ୍ୱାରା ତାଙ୍କୁ ଆଲିଙ୍ଗନ କରୁଥିବେ ॥୩॥ ସେ କୃତାଞ୍ଜଳି ପୂର୍ବକ ପ୍ରଭୁଙ୍କ ଆଗରେ ଠିଆ ହୋଇ ସ୍ତୁତି କରିବାକୁ ଇଚ୍ଛା କଲେ । ମାତ୍ର କିପରି ସ୍ତୁତି କରିବାକୁ ହୁଏ, ଜାଣିପାରିଲେ ନାହିଁ । ଦୟାଳୁ ଶ୍ରୀହରି ତାଙ୍କର ଜ୍ଞାନମୟ ଶଙ୍ଖଦ୍ୱାରା ଧ୍ରୁବଙ୍କର କପୋଳକୁ ସ୍ପର୍ଶ କଲେ ॥୪॥ ଏହାଫଳରେ ଧ୍ରୁବ ଦିବ୍ୟବାଣୀସମ୍ପନ୍ନ ହୋଇଗଲେ । ଜୀବ ଓ ବ୍ରହ୍ମର ସ୍ୱରୂପଜ୍ଞାନ ତାଙ୍କର ଆସିଗଲା । ସେ ଅତ୍ୟନ୍ତ ଭକ୍ତିଭାବରେ ଧୈର୍ଯ୍ୟ ଧାରଣ କରି ବିଶ୍ୱବିଶ୍ରୁତ ଭଗବାନଙ୍କର ସ୍ତୁତି କରିବାକୁ ଲାଗିଲେ ॥୫॥ ଧ୍ରୁବ କହିଲେ, ପ୍ରଭୁ, ଆପଣ ସର୍ବଶକ୍ତିସଂପନ୍ନ । ଆପଣ ମୋର ଅନ୍ତଃକରଣରେ ପ୍ରବେଶ କରି ନିଜ ଶକ୍ତିଦ୍ୱାରା ମୋର ସୁପ୍ତ ବାକ୍‌ଶକ୍ତିକୁ ଜାଗରିତ କଲେ ଏବଂ ମୋର ହସ୍ତ ପାଦ କର୍ଣ୍ଣ ଚର୍ମ ଓ ପ୍ରାଣ ଆଦି ଅନ୍ୟ ଶକ୍ତିକୁ ମଧ୍ୟ ସଞ୍ଜୀବିତ କଲେ । ପୁରୁଷୋତ୍ତମ ଭଗବାନ, ଆପଣଙ୍କୁ ମୁଁ ନମସ୍କାର କରୁଚି ॥୬॥ ଭଗବାନ, ଆପଣ ଏକ । କିନ୍ତୁ ଆପଣଙ୍କ ଅନନ୍ତ ଆତ୍ମଶକ୍ତି ବଳରେ ମାୟାରୂପୀ ଗୁଣମାନଙ୍କ ଦ୍ୱାରା ମହତ୍ ଆଦି ଏହି ସମ୍ପୂର୍ଣ୍ଣ ଜୀବ ଜଗତକୁ ଆପଣ ସୃଷ୍ଟି କରିଛନ୍ତି ଏବଂ ଅସତ୍ ଗୁଣ ଇନ୍ଦ୍ରିୟାଦି ଓ ତା'ର ଅଧିଷ୍ଠାତା ଦେବତାମାନଙ୍କ ରୂପରେ ଜୀବମାନଙ୍କ ମଧ୍ୟରେ ପ୍ରବେଶ କରିଛନ୍ତି । ତେଣୁ ଅଗ୍ନିସଂଯୋଗ ଦ୍ୱାରା ଭିନ୍ନ ଭିନ୍ନ ଦାରୁ ଯେପରି ଭିନ୍ନ ଭିନ୍ନ ରୂପ ଗ୍ରହଣ କରେ, ଆପଣ ସେହିପରି ଅନେକ ରୂପରେ ପ୍ରକାଶିତ ହୁଅନ୍ତି ॥୭॥ ପ୍ରଭୁ! ସୃଷ୍ଟିର ଆରମ୍ଭରେ ବ୍ରହ୍ମା ସୁପ୍ତ ଥିଲେ । ଆପଣଙ୍କ ଶରଣାପନ୍ନ ହେବାରୁ ଆପଣଙ୍କ ଦତ୍ତ ଜ୍ଞାନଦ୍ୱାରା ତାଙ୍କର ବୋଧଶକ୍ତି ଜାଗରିତ ହୁଅନ୍ତେ ସେ ଏହି ବିଶ୍ୱକୁ ଦେଖପାରିଥିଲେ । ଆପଣଙ୍କର ଯେଉଁ ପାଦମୂଳ ମୁକ୍ତ ପୁରୁଷମାନଙ୍କ ଶରଣର ସ୍ଥଳ, ତାହା କୌଣସି କୃତଜ୍ଞ ପୁରୁଷର ଭୁଲିବାର ନୁହେଁ ॥୮॥ ଆପଣ ଜନ୍ମମରଣ ବନ୍ଧନରୁ ମୋକ୍ଷ କରି ପାରନ୍ତି, କିନ୍ତୁ ଆପଣଙ୍କ ମାୟାରେ ବଶୀଭୂତ ହୋଇ ଶବପରି ଏହି ଅସାର ଦେହର ସୁଖଭୋଗ ପାଇଁ ଯେଉଁମାନେ ଆପଣଙ୍କୁ ଉପାସନା କରନ୍ତି, ଆପଣଙ୍କ ମାୟାରେ ନିଶ୍ଚୟ ତାଙ୍କର ବୁଦ୍ଧିଭ୍ରଂଶ ଘଟିଥାଏ ॥୯॥ ପ୍ରଭୁ, ଆପଣଙ୍କ ପାଦପଦ୍ମକୁ ଧ୍ୟାନ କଲେ ଅଥବା ଆପଣଙ୍କ ଭକ୍ତମାନଙ୍କର ଚରିତ ଶୁଣିଲେ ଯେଉଁ ଆନନ୍ଦ ମିଳିଥାଏ, ନିଜର ସ୍ୱମହିମାରୂପକ ବ୍ରହ୍ମରେ ମଧ୍ୟ ସେ ଆନନ୍ଦ ମିଳେ ନାହିଁ । ବାକୀ ଅନ୍ୟ ସୁଖ କଥା କ'ଣ କହିବି ? ବିମାନରେ ଉଡ଼ିବୁଲୁଥିବା ବ୍ୟକ୍ତି ତଳକୁ ଖସି ପଡ଼ିଲେ ତା'ର ଯେପରି ଅବସ୍ଥା ହୁଏ, ବିଷୟ ବାସନାରେ ପ୍ରମତ୍ତ ଏବଂ କାଳର ତରବାରିରେ ନିହତ ବ୍ୟକ୍ତି ସେହି ଅବସ୍ଥା ଭୋଗ କରେ ॥୧୦॥

ହେ ଅନନ୍ତ, ହେ ପରମାତ୍ମା! ମୋତେ ବାରମ୍ବାର ଆପଣଙ୍କର ସେହି ବିଶୁଦ୍ଧହୃଦୟ ଭକ୍ତମାନଙ୍କର ସଙ୍ଗ ପ୍ରଦାନ କରନ୍ତୁ, ଯଦ୍‌ଦ୍ୱାରା ଆପଣଙ୍କ ଗୁଣ ଓ ଲୀଳାମୟ କଥାମୃତ ପାନ କରି ମୁଁ ମତ୍ତ ହୋଇଯିବି ଏବଂ ଦୁଃଖରେ ପୂର୍ଣ୍ଣ ଏହି ଭୟଙ୍କର ଭବସାଗରକୁ ସହଜରେ ପାରହୋଇଯିବି ॥୧୧॥ ପଦ୍ମନାଭ, ଆପଣଙ୍କର ପାଦପଦ୍ମର ସୁଗନ୍ଧିରେ ଲୁବ୍ଧ ହୋଇଥିବା ଭକ୍ତମାନଙ୍କର ଯେଉଁମାନେ ସଙ୍ଗଲାଭ କରନ୍ତି, ସେମାନେ ଅତିଶୟ ପ୍ରିୟ ହେଲେ ମଧ୍ୟ ଏହି ମରଣଶୀଳ ଶରୀରକୁ ଏବଂ ତା'ର ଅନୁଗାମୀ ସ୍ତ୍ରୀ, ପୁତ୍ର, ବନ୍ଧୁ, ଗୃହ ଓ ଧନସମ୍ପତ୍ତିକୁ କେବେ ମନେ ପକାନ୍ତି ନାହିଁ ॥୧୨॥ ଅଜନ୍ମା ପରମେଶ୍ୱର, ପଶୁ ପକ୍ଷୀ, ଗଛ ବୃଛ, ପର୍ବତ ସରୀସୃପ, ଦେବ ଦୈତ୍ୟ ଏବଂ ମନୁଷ୍ୟ ଆଦିରେ ପରିବ୍ୟାପ୍ତ ମୁଁ ଆପଣଙ୍କର ସ୍ଥୂଳ ରୂପକୁ ଦେଖିପାରୁଛି । ଆପଣଙ୍କର ସତ୍ ଅସଦ୍ ରୂପକ ଅନେକ ଏହି ବିଶ୍ୱରୂପ ମହତ୍‌ଆଦି । ଏହାଛଡ଼ା ବାକ୍ୟର ଗୋଚର ନ ହେଉଥିବା (ଅବାଙ୍‌ମାନସଗୋଚର) ଆପଣଙ୍କର ଅନ୍ୟ (ବ୍ରହ୍ମ) ରୂପ ମୁଁ ଜାଣେ ନାହିଁ ॥୧୩॥ ଭଗବାନ୍, କଳ୍ପଶେଷରେ ଅଖିଳ ବିଶ୍ୱକୁ ନିଜ ଜଠରରେ ଲୀନ କରି ଆପଣ ଅନନ୍ତନାଗଙ୍କ ସାହାଯ୍ୟରେ ତାଙ୍କର କ୍ରୋଡ଼ରେ (ଯୋଗ ନିଦ୍ରାରେ) ଶୟନ କରନ୍ତି । ଆପଣଙ୍କ ନାଭିରୂପ ସମୁଦ୍ରରୁ ଏକ କାଞ୍ଚନବର୍ଣ୍ଣର ପଦ୍ମଫୁଲ ଫୁଟିଉଠେ ଏବଂ ତାହାର ଗର୍ଭରେ ତେଜୋମୟ ବ୍ରହ୍ମା ପ୍ରକଟିତ ହୁଅନ୍ତି; ହେ ପରମେଶ୍ୱର ! ଆପଣଙ୍କୁ ମୁଁ ନମସ୍କାର କରୁଛି ॥୧୪॥ ଆପଣ ପରମେଶ୍ୱର । ଆପଣ ନିତ୍ୟ ମୁକ୍ତ, ଶୁଦ୍ଧ, ସର୍ବଜ୍ଞ, ନିର୍ବିକାର, ଆଦିପୁରୁଷ, ସମସ୍ତ ଐଶ୍ୱର୍ଯ୍ୟରେ ପରିପୂର୍ଣ୍ଣ ଏବଂ ତିନି ଗୁଣର ଅଧୀଶ୍ୱର । ଆପଣ ଜୀବଠାରୁ ଭିନ୍ନ । ନିଜ ଅଖଣ୍ଡିତ ଚେତନ ଶକ୍ତିଦ୍ୱାରା ଏହି ବୁଦ୍ଧିର ସାକ୍ଷୀ ଭାବରେ ବିଦ୍ୟମାନ ହୋଇ ଯଜ୍ଞପୁରୁଷ ବିଷ୍ଣୁ ରୂପରେ ଆପଣ ଏହି ସଂସାରକୁ ପାଳନ କରନ୍ତି ॥୧୫॥ ଆପଣଙ୍କଠାରେ ବିଦ୍ୟା ଏବଂ ଅବିଦ୍ୟା ଆଦିର ବିରୋଧାଭାସଯୋଗୁଁ ଅନେକ ପ୍ରକାର ଶକ୍ତି ଧାରାବାହିକ ଭାବରେ ଉତ୍ପନ୍ନ ହେଉଥିବାର ଦେଖାଯାଏ । ଆପଣ ହିଁ ବିଶ୍ୱର କାରଣ । ଆପଣ ଏକ, ଅନନ୍ତ, ଅନାଦି, ଆନନ୍ଦମୟ, ନିର୍ବିକାର ବ୍ରହ୍ମସ୍ୱରୂପ । ମୁଁ ଆପଣଙ୍କୁ ପ୍ରଣାମ କରୁଛି ॥୧୬॥ ଆପଣ ସମସ୍ତ ପୁରୁଷାର୍ଥର ମୂର୍ତ୍ତି, ଆପଣଙ୍କର ପାଦପଦ୍ମକୁ ଯେ ପରମପୁରୁଷାର୍ଥ ମନେ କରି ସର୍ବଦା ଭଜନ କରେ, ଆପଣ ବହୁଭାବରେ ତାକୁ ଆଶୀର୍ବାଦ କରନ୍ତି । ଆର୍ଯ୍ୟ, ଧେନୁ ଯେପରି ତାର ବତ୍ସାକୁ କ୍ଷୀରପାନାଦି ଦେଇ ରକ୍ଷାକରେ, ସେହିପରି ଭକ୍ତମାନଙ୍କୁ ଅନୁଗ୍ରହ କରିବାକୁ ସର୍ବଦା ବ୍ୟାକୁଳ ଆପଣ ମୋ ପରି ଦୀନମାନଙ୍କୁ ରକ୍ଷା କରନ୍ତୁ ॥୧୭॥

ସତ୍ ସଙ୍କଳ୍ପ କରିଥିବା ବୁଦ୍ଧିମାନ୍ ଧ୍ରୁବ ଏହିପରି ସ୍ତୁତି କରିବାରୁ ଭକ୍ତବତ୍ସଳ ଭଗବାନ ତାଙ୍କୁ ପ୍ରଶଂସା କରି କହିଲେ, ରାଜକୁମାର ! ମୁଁ ତୁମର ମନର ସଂକଳ୍ପ କଥା ଜାଣିଛି । ସେଥିପାଇଁ ତୁମେ କଠୋର ବ୍ରତ ଧାରଣ କରିଛ, ତୁମର ମଙ୍ଗଳ ହେଉ । ମୁଁ ତୁମକୁ ସେହି ଦୁର୍ଲଭ ପଦାର୍ଥ ଦାନ କରୁଛି ॥୧୮-୧୯॥ ଭଦ୍ର, ଯେଉଁ ତେଜୋମୟ ଅବିନାଶୀ ଲୋକକୁ କେହି ଲାଭ କରି ନାହାନ୍ତି, ଯାହାର ଚାରି ପଟରେ (ବେଙ୍ଗଳା ପକାଇବା ବେଳେ) ମେରି ଖୁଣ୍ଟରେ ଯୋଚା ହୋଇଥିବା ଗୋରୁମାନଙ୍କପରି ଗ୍ରହ, ନକ୍ଷତ୍ର, ତାରା ଆଦି ଜ୍ୟୋତିଷମାନେ ଘୂରି ବୁଲୁଥାଆନ୍ତି, ସେହି ଧ୍ରୁବଲୋକ ମୁଁ ତୁମକୁ ଦାନ କରୁଛି । କଳ୍ପାନ୍ତରେ ସମସ୍ତଙ୍କର ବିନାଶ ହେଲେ ମଧ୍ୟ ଏହି ଧ୍ରୁବଲୋକ ସେହିପରି ରହିଥାଏ । ତାରାମାନଙ୍କ ସହିତ ଧର୍ମ, ଅଗ୍ନି, କଶ୍ୟପ, ଶୁକ୍ର ଏବଂ ସପ୍ତର୍ଷିମାନେ ଏହାକୁ ପ୍ରଦକ୍ଷିଣ କରି ଭ୍ରମଣ କରୁଥାଆନ୍ତି ॥୨୦-୨୧॥ ତୁମର ପିତା ତୁମକୁ ରାଜ୍ୟଭାର ଦେଇ ବନକୁ ଚାଲିଗଲେ ଛତିଶ ହଜାର ବର୍ଷ ପର୍ଯ୍ୟନ୍ତ ତୁମେ ଧର୍ମରେ ରାଜ୍ୟଶାସନ କରିବ ଓ ତୁମର ଇନ୍ଦ୍ରିୟଶକ୍ତି ଅବ୍ୟାହତ ରହିବ ॥୨୨॥ ଏହାପରେ ତୁମର ଭାଇ ମୃଗୟାରେ ମତ୍ତ ହୋଇ ବନକୁ ଯାଉଥିବା ବେଳେ ତା'ର ମୃତ୍ୟୁ ହେବ ଏବଂ ତାକୁ ଖୋଜିବାକୁ ଯାଇ ପୁତ୍ରବତ୍ସଳା ତା'ର ମାତା ସୁରୁଚି ଦାବାଗ୍ନିରେ ପ୍ରବେଶ କରିବ ॥୨୩॥

ଯଜ୍ଞ ହେଉଛି ମୋର ହୃଦୟସ୍ୱରୂପ । ବହୁ ଯଜ୍ଞ କରି ତୁମେ ମୋର ପୂଜା କରିବ । ପ୍ରଚୁର ଦକ୍ଷିଣା ଦେବ । ତା'ର ଆଶୀର୍ବାଦ ଫଳସ୍ୱରୂପ ଇହଲୋକରେ ଐଶ୍ୱର୍ଯ୍ୟ ଭୋଗ କରି ଅନ୍ତକାଳରେ ମୋତେ ସ୍ମରଣ କରିବ ॥୨୪॥ ଶେଷରେ ସମସ୍ତ ଲୋକର ପୂଜନୀୟ ସପ୍ତର୍ଷିମଣ୍ଡଳର ଉପରେ ଥିବା ମୋର ନିଜ ଧାମକୁ ଯିବ, ଯେଉଁଠି ପହଞ୍ଚିବା ପରେ ଆଉ କେହି ସଂସାରକୁ

ଫେରନ୍ତି ନାହିଁ ॥୨୫॥ ଏହିପରି ଧ୍ରୁବଙ୍କଦ୍ୱାରା ଅର୍ଚ୍ଚିତ ହୋଇ ଓ ତାହାଙ୍କୁ ନିଜ ପଦ ପ୍ରଦାନ କରି ଭଗବାନ ଗରୁଡ଼ଧ୍ୱଜ ବାଳକ ଧ୍ରୁବ ଦେଖୁଦେଖୁ ନିଜ ଧାମକୁ ପ୍ରସ୍ଥାନ କଲେ ॥୨୬॥ ବିଷ୍ଣୁଙ୍କ ପାଦସେବାର ପ୍ରସାଦରୁ ନିଜର ସଙ୍କଳ୍ପିତ ବସ୍ତୁ ଲାଭ କରିବା ପରେ ଧ୍ରୁବ ନିଜ ପ୍ରଚେଷ୍ଟାରୁ ନିବୃତ୍ତ ହେଲେ । ଭଗବାନ ତାଙ୍କୁ ଛାଡ଼ିଯିବା ପରେ ତାଙ୍କ ମନରେ ସେତେ ସୁଖ ନ ଥିଲା । ସେ ରାଜନବରକୁ ଫେରିଆସିଲେ ॥୨୭॥

ବିଦୁର କହିଲେ, ଯେଉଁ ମାୟାମୟ ଶ୍ରୀହରିଙ୍କର ପରମପଦ ପ୍ରାପ୍ତି ଅତିଶୟ ଦୁର୍ଲଭ, ତାଙ୍କର ଚରଣ କମଳକୁ ଅର୍ଚ୍ଚନା କରି ଧ୍ରୁବ ତାହା ପାଇଥିଲେ । ଜନ୍ମଜନ୍ମରେ ଯାହା ମିଳେ ନାହିଁ, ତାହା ଗୋଟିଏ ଜନ୍ମରେ ଲାଭ କଲାପରେ, ଧ୍ରୁବ କାହିଁକି ଭାବିଲେ ଯେ ସେ ସଫଳ ହେଲେ ନାହିଁ ? ॥୨୮॥ ମୈତ୍ରେୟ କହିଲେ, ନିଜ ସଉତୁଣୀ ମା'ଙ୍କର ବାକ୍ୟବାଣ ସବୁବେଳେ ଧ୍ରୁବଙ୍କ ହୃଦୟକୁ ବିଦ୍ଧ କରୁଥିଲା । ତେଣୁ ତାହା ମନେ ପକାଇ ସେ ମୁକ୍ତିପତି ଶ୍ରୀହରିଙ୍କ ଠାରୁ ମୋକ୍ଷ ମାଗି ପାରିଲେ ନାହିଁ । କିନ୍ତୁ ତା'ପରେ ତାଙ୍କର ପଶ୍ଚାତ୍ତାପ ହେଲା ॥୨୯॥ ଧ୍ରୁବ କହିଲେ, ସନନ୍ଦ ଆଦି ଊର୍ଦ୍ଧ୍ୱରେତା ସିଦ୍ଧମାନେ ଯୋଗସମାଧିଦ୍ୱାରା ଅନେକ ଜନ୍ମପରେ ଯେଉଁ ପଦ ଲାଭ କରିଥିଲେ, ମାତ୍ର ଛଅମାସ ପରେ ମୁଁ ସେହି ପାଦର ଆଶ୍ରାଲାଭ କରି ମନରେ ଅନ୍ୟଭାବନା ଥିବା ଯୋଗୁଁ ତାହାଠାରୁ ଦୂରେଇଗଲି ॥୩୦॥ ଆହା! ମୋର ଭାଗ୍ୟ କେଡ଼େ ମନ୍ଦ! ନିଜର ମୂର୍ଖତାଯୋଗୁଁ ସଂସାରବନ୍ଧନର ଛେଦନକାରୀ ଭଗବାନଙ୍କର ପଦପ୍ରାନ୍ତକୁ ଯାଇ ମଧ୍ୟ ମୁଁ ଅସ୍ଥାୟୀ ନାଶଶୀଳ ବସ୍ତୁକୁ ପ୍ରାର୍ଥନା କଲି ! ॥୩୧॥ ମୁଁ ମୂର୍ଖ, ନାରଦଙ୍କର ଉପଦେଶ ଗ୍ରହଣ କଲି ନାହିଁ । ସ୍ୱର୍ଗ ଭୋଗପରେ ଦେବତାମାନଙ୍କର ମଧ୍ୟ ମର୍ତ୍ତ୍ୟକୁ ପତନ ହୁଏ । ସେମାନେ ଅସହିଷ୍ଣୁ ହୋଇ ମୋର ମତିକୁ ବିଭ୍ରାନ୍ତ କରିଦେଲେ । ସଂସାରରେ ଆତ୍ମାଛଡ଼ା ଦ୍ୱିତୀୟ କିଛି ନାହିଁ । ତଥାପି ସୁପ୍ତ ବ୍ୟକ୍ତି ସ୍ୱପ୍ନରେ ବିଭିନ୍ନ ଦୃଶ୍ୟ ଦେଖି ନିଜକୁ କଷ୍ଟ ଦିଏ । ମୁଁ ସେହିପରି ଦୈବୀ ମାୟାରେ ମୋହିତ ହୋଇଗଲି । ଭାଇଠାରେ ଶତ୍ରୁତା ରଖି ଅଯଥାରେ ମୋତେ ଦୁଃଖ ଭୋଗିବାକୁ ହେଲା ॥୩୨-୩୩॥ ଯାହାଙ୍କୁ ସନ୍ତୁଷ୍ଟ କରିବା ଅତିଶୟ କଷ୍ଟସାଧ୍ୟ, ଜଗତ୍‌ର ଆତ୍ମାସ୍ୱରୂପ ସେହି ଭଗବାନଙ୍କୁ ତପସ୍ୟା ଦ୍ୱାରା ସନ୍ତୁଷ୍ଟ କରି ମୁଁ ଯାହା ମାଗିଲି, ତାହା ଅର୍ଥହୀନ ହୋଇଗଲା । ଆୟୁଷ ଚାଲିଯିବାପରେ ଚିକିତ୍ସାର କଥା ଚିନ୍ତା କଲା ପରି ମୋପରି ଭାଗ୍ୟହୀନ ଭବଖଣ୍ଡନ ଭଗବାନଙ୍କୁ ପୁଣି ଏହି ଦୁଃଖମୟ ସଂସାରକୁ ମାଗି ବସିଲା ॥୩୪॥ ଚକ୍ରବର୍ତ୍ତୀ ସମ୍ରାଟଙ୍କ ପାଖରୁ ଦରିଦ୍ର ଚଷୁମିଶା ଚାଉଳଗଣ୍ଡାଏ ମାଗିବା ପରି ପୁଣ୍ୟହୀନ ମୁଁ ମୋକ୍ଷଦାୟକ ଭଗବାନଙ୍କ ଠାରୁ ମୂଢ଼ତାବଶତଃ ଉଚ୍ଚପଦବୀ ମାତ୍ର ମାଗିବସିଲି ॥୩୫॥

ମୈତ୍ରେୟ କହିଲେ, ବିଦୁର, ତୁମପରି ଯେଉଁ ଲୋକମାନେ ଶ୍ରୀ ମୁକୁନ୍ଦଙ୍କର ପଦ୍ମପାଦରଜକୁ ସେବା କରନ୍ତି, ସେମାନେ ଦୈବାତ୍ ଯାହା ପାଆନ୍ତି ତଦ୍ୱାରା ସେମାନଙ୍କ ମନ ଆନନ୍ଦ ରହିଥାଏ, ସେମାନେ ଭଗବାନଙ୍କୁ ତାଙ୍କର ସେବା ଛଡ଼ା ଅନ୍ୟ କିଛି ପଦାର୍ଥ ମାଗନ୍ତି ନାହିଁ ॥୩୬॥ ରାଜା ଉତ୍ତାନପାଦ ଯେତେବେଳେ ଶୁଣିଲେ ଯେ, ପୁତ୍ର ଧ୍ରୁବ ଫେରିଆସିଛି, କୌଣସି ବ୍ୟକ୍ତିର ଯମଲୋକରୁ ଫେରିବା ଯେପରି ବିଶ୍ୱାସଯୋଗ୍ୟ ହୁଏ ନାହିଁ, ତାଙ୍କୁ ସେହିପରି ବିଶ୍ୱାସ ଲାଗିଲା ନାହିଁ । ସେ ଭାବିଲେ ମୋ ପରି ଭାଗ୍ୟହୀନର କ'ଣ ସତେ ଭାଗ୍ୟ ଫେରିଲା ! କିନ୍ତୁ ଦେବର୍ଷି ନାରଦଙ୍କର କଥା ମନେ ପକାଇ ସେ ଆନନ୍ଦରେ ଅଧୀର ହୋଇପଡ଼ିଲେ । ସେ ଅତିଶୟ ସନ୍ତୁଷ୍ଟ ହୋଇ ଏହି ସମାଚାର ଆଣିଥିବା ବ୍ୟକ୍ତିକୁ ଏକ ବହୁମୂଲ୍ୟ ହାର ପ୍ରଦାନ କଲେ ॥୩୮-୩୯॥ ନିଜ ପୁତ୍ରକୁ ଦେଖିବାପାଇଁ ବ୍ୟାକୁଳ ହୋଇ ସେ ବ୍ରାହ୍ମଣ, କୁଳବୃଦ୍ଧ ଲୋକ, ମନ୍ତ୍ରୀ ଓ ବନ୍ଧୁମାନଙ୍କୁ ସାଙ୍ଗରେ ନେଇ ଅଶ୍ୱଯୁକ୍ତ ସୁବର୍ଣ୍ଣମଣ୍ଡିତ ରଥରେ ଆରୋହଣ କରି ନଗରରୁ ବାହାରିଗଲେ । ଶଙ୍ଖ, ଦୁନ୍ଦୁଭି, ବଂଶୀ ଆଦି ବାଦ୍ୟ ବାଜିଉଠିଲା । ବ୍ରାହ୍ମଣମାନେ ବେଦଧ୍ୱନି କଲେ ॥୪୦॥ ଦୁଇ ରାଣୀ ସୁନୀତି ଓ ସୁରୁଚି ସୁନା ଅଳଙ୍କାର ପିନ୍ଧି ରାଜକୁମାର ଉତ୍ତମଙ୍କ ସହିତ ଶିବିକା ଉପରେ ବସି ଯାତ୍ରା କଲେ । ଉପବନ ନିକଟରେ ଧ୍ରୁବ ପହଞ୍ଚିଯିବାର ଦେଖି ରାଜା ଉତ୍ତାନପାଦ ସଙ୍ଗେସଙ୍ଗେ ରଥରୁ ଓହ୍ଲାଇ ପଡ଼ିଲେ । ଭାବବିହ୍ୱଳ ହୋଇ କିଛି କହି ପାରିଲେ ନାହିଁ । ଉତ୍କଣ୍ଠାବଶରୁ ଦୀର୍ଘଶ୍ୱାସ ପକାଇ ଦୁଇ ବାହୁରେ ପୁତ୍ରକୁ ଆଲିଙ୍ଗନ କଲେ ।

ସେ ପୁତ୍ର ବର୍ତ୍ତମାନ ଭିନ୍ନ । ଭଗବାନଙ୍କ ପବିତ୍ର ପାଦସ୍ପର୍ଶରେ ତାଙ୍କର ସମସ୍ତ ବନ୍ଧନ କଟିଯାଇଛି । ରାଜାଙ୍କର ମନୋରଥ ପୂର୍ଣ୍ଣ ହୋଇଗଲା । ପ୍ରେମାଶ୍ରୁର ଶୀତଳ ଜଳରେ ସେ ପୁତ୍ରକୁ ଗାଧୋଇ ଦେଲେ ॥୪୧-୪୪॥ ସଜ୍ଜନଙ୍କ ମଧ୍ୟରେ ଅଗ୍ରଗଣ୍ୟ ରାଜକୁମାର ଧ୍ରୁବ ପିତାଙ୍କର ପାଦବନ୍ଦନା କରି ତାଙ୍କ ଆଶୀର୍ବାଦ ଓ ଆଦର ସମ୍ଭାଷଣ ଲାଭ କଲେ । ମାତା ଦୁହିଁଙ୍କୁ ମୁଣ୍ଡ ଲଗାଇ ପ୍ରଣାମ କଲେ । ତାଙ୍କ ପାଦତଳେ ମୁଣ୍ଡ ନୁଆଁଇ ପ୍ରଣାମ କରୁଥିବା ଧ୍ରୁବଙ୍କୁ ସୁରୁଚି ଉଠାଇ ନେଇ ଆଲିଙ୍ଗନପୂର୍ବକ ବାଷ୍ପଗଦ୍‌ଗଦ ସ୍ୱରରେ କହିଲେ 'ଚିରଞ୍ଜୀବୀ ହୁଅ' ॥୪୫-୪୬॥ ଜଳ ଯେପରି ସ୍ୱତଃ ନିମ୍ନାଭିମୁଖରେ ଗତି କରେ, ସେହିପରି ପ୍ରେମ ଓ ମୈତ୍ରୀ ଆଦି ଗୁଣଦ୍ୱାରା ଭଗବାନଙ୍କୁ ସନ୍ତୁଷ୍ଟ କରିଥିବା ବ୍ୟକ୍ତି ଆଗରେ ସମସ୍ତେ ନଇଁ ଯାଆନ୍ତି ॥୪୭॥ ସ୍ନେହରେ ବିହ୍ୱଳ ହୋଇ ଉତ୍ତମ ଓ ଧ୍ରୁବ ପରସ୍ପରକୁ ଆଲିଙ୍ଗନ କଲେ । ଦୁହିଁଙ୍କର ଶରୀର ରୋମାଞ୍ଚିତ ହେଲା ଓ ମୁହୁର୍ମୁହୁଃ ଅଶ୍ରୁଧାର ବହିବାକୁ ଲାଗିଲା ॥୪୮॥ ମାତା ସୁନୀତି ନିଜ ପ୍ରାଣଠାରୁ ପ୍ରିୟ ପୁତ୍ରକୁ ଛାତିରେ ଭିଡ଼ିଧରି ତାଙ୍କର ସମସ୍ତ ଦୁଃଖ ଭୁଲିଗଲେ ॥୪୯॥ ବିଦୁର ! ପୁତ୍ରର ମଙ୍ଗଳକାମୀ ବୀରମାତା ସୁନୀତିଙ୍କର ଆଖିରୁ ଲୁହ ଝରି ତାଙ୍କ ସ୍ତନଦ୍ୱୟ ଓଦା ହୋଇଗଲା ଓ ସେଥିରୁ ବାରମ୍ବାର କ୍ଷୀର ଝରିବାକୁ ଲାଗିଲା ॥୫୦॥

ପୁରବାସୀମାନେ ସୁନୀତିଙ୍କୁ ପ୍ରଶଂସା କରି କହିଲେ, ରାଣୀ, ବହୁଦିନ ହେଲା ତୁମ ପୁଅକୁ ଆମେ ଦେଖି ନ ଥିଲୁ । ବର୍ତ୍ତମାନ ସେ ଫେରି ଆସିଛନ୍ତି । ସେ ଆମର ଦୁଃଖ ହରଣ କରିବେ ଏବଂ ବହୁଦିନ ଯାଏ ଏ ମହୀମଣ୍ଡଳକୁ ରକ୍ଷା କରିବେ ॥୫୧॥ ଅବଶ୍ୟ ଆପଣ ଶରଣାଗତଙ୍କ ଦୁଃଖହରଣକାରୀ ଭଗବାନଙ୍କର ବହୁ ପୂଜା କରିଛନ୍ତି । ତାଙ୍କୁ ସର୍ବଦା ଧ୍ୟାନ କରୁଥିବା ବୀର ପୁରୁଷମାନେ ଦୁର୍ଜୟ ମୃତ୍ୟୁକୁ ଜୟ କରିପାରନ୍ତି ॥୫୨॥ ଲୋକମାନେ ଧ୍ରୁବଙ୍କୁ ଏହିପରି ସ୍ନେହ ଓ ଆଦର କରିବାରେ ଲାଗିଥିଲେ । ରାଜା ଉତ୍ତାନପାଦ ଭାଇ ଦୁହିଁଙ୍କୁ ହାତୀରେ ବସାଇ ହୃଷ୍ଟ ଚିତ୍ତରେ ରାଜପ୍ରାସାଦକୁ ଫେରିବା ବେଳେ ଲୋକମାନେ ତାଙ୍କୁ ପ୍ରଶଂସା କରିବାକୁ ଲାଗିଲେ ॥୫୩॥ ସ୍ଥାନେ ସ୍ଥାନେ ନଗରରେ ମକର ଆକୃତିର ସୁନ୍ଦର ତୋରଣମାନ ଖଞ୍ଜା ଯାଇ ସେଥିରେ ଭଣ୍ଡା ପକାଇଥିବା କଦଳୀଗଛ ଓ ଗୁଆଗଛମାନ ସଜା ଯାଇଥିଲା । ପ୍ରତି ଦ୍ୱାରରେ ଆମ୍ରପତ୍ର, ବସ୍ତ୍ର, ଫୁଲମାଳ ଓ ମୁକ୍ତାମାଳା ଲମ୍ବିଥିଲା । ଦୀପମାନଙ୍କ ସହିତ ଜଳପୂର୍ଣ୍ଣ କଳସ ସବୁ ଶୋଭା ପାଉଥିଲା ॥୫୪-୫୫॥ ପ୍ରାଚୀର ଓ ଗୃହମାନଙ୍କର ଉପରିଭାଗ ସ୍ୱର୍ଣ୍ଣମୟ ବସ୍ତ୍ରମାନଙ୍କଦ୍ୱାରା ସଜା ଯାଇଥିଲା । ବିମାନର ଶିଖରମାନଙ୍କ ପରି ତାହା ଶୋଭାପାଉଥିଲା । ନଗରର ଅଗଣା, ରାଜପଥ, ଅଟ୍ଟାଳିକା ଓ ବେଦୀମାନଙ୍କୁ ସଫା କରାଯାଇ ସେଥିରେ ଚନ୍ଦନପାଣି ଛିଞ୍ଚା ଯାଇଥିଲା । ଲିଆ, ଅରୁଆ ଚାଉଳ, ଫୁଲ, ଫଳ ଓ ବିଭିନ୍ନ ପୂଜାସାମଗ୍ରୀ ସବୁ ସଜାଇ ରଖା ଯାଇଥିଲା ॥୫୬-୫୭॥ ରାଜମାର୍ଗରେ ଯାଉଥିବାବେଳେ ଧ୍ରୁବଙ୍କୁ ଦେଖିବାପାଇଁ ପୁରସ୍ତ୍ରୀମାନେ ସ୍ଥାନେ ସ୍ଥାନେ ଏକତ୍ର ହୋଇ ପୁତ୍ରସ୍ନେହରେ ତାଙ୍କୁ ଆଶୀର୍ବାଦ କରୁଥିଲେ ଏବଂ ଧଳା ସୋରିଷ, ଅରୁଆ ଚାଉଳ, ଦହି, ଜଳ, ଦୂର୍ବାଦଳ, ପୁଷ୍ପ ଓ ଫଳାଦି ବର୍ଷା କରୁଥିଲେ । ସେମାନେ ଗାନ କରୁଥିବା ସୁନ୍ଦର ଗୀତମାନ ଶୁଣିଶୁଣି ଧ୍ରୁବ ପିତୃଭବନରେ ପ୍ରବେଶ କଲେ ॥୫୮-୫୯॥

ବହୁମୂଲ୍ୟ ମଣିମାନଙ୍କଦ୍ୱାରା ଶୋଭିତ ସେହି ଶ୍ରେଷ୍ଠଭବନରେ ପିତାଙ୍କଦ୍ୱାରା ଲାଳିତପାଳିତ ହୋଇ ସ୍ୱର୍ଗରେ ଦେବତାମାନେ ରହୁଥିବା ପରି ସେ ପରମ ଆନନ୍ଦରେ ବାସ କଲେ ॥୬୦॥ ସେଠାରେ ଦୁଗ୍ଧଫେନନିଭ ଶଯ୍ୟା, ହାତୀଦାନ୍ତର ପଲଙ୍କ, ସୁନାଜରିଯୁକ୍ତ ପରଦା, ମହାର୍ଘ ଆସନ, ସୁନାଖଡ଼ିକାର ଝାଡୁସବୁ ରଖାଯାଇଥିଲା ॥୬୧॥ ସ୍ଫଟିକ ଓ ମହାମରକତ ମଣିରେ ତିଆରି ସ୍ତମ୍ଭମାନଙ୍କ ଉପରେ ରତ୍ନଖଚିତ ସ୍ତ୍ରୀମୂର୍ତ୍ତିମାନଙ୍କ ହସ୍ତରେ ମଣିମୟ ଦୀପମାନ ଝଟକି ଉଠୁଥିଲା ॥୬୨॥ ଭବନର ଚାରିପଟେ ଦିବ୍ୟସୁନ୍ଦର ବୃକ୍ଷରେ ଶୋଭିତ ଉଦ୍ୟାନମାନ ରହିଥିଲା । ସେଥିରେ ବିହଙ୍ଗମିଥୁନ ଓ ମତ୍ତଭ୍ରମରମାନେ କଳରବ କରୁଥିଲେ ॥୬୩॥ ପୁଷ୍କରିଣୀମାନଙ୍କରେ ବୈଦୂର୍ଯ୍ୟମଣିର ପାହାଚସବୁ ଥିଲା ଏବଂ ସେଠାରେ ନାଲି ନୀଳ ପଦ୍ମ ଓ କଇଁ ଫୁଲସବୁ ଶୋଭା ପାଉଥିଲା । ହଂସ, କାରଣ୍ଡବ, ଚକ୍ରବାକ, ସାରସ ଆଦି ପକ୍ଷୀ କ୍ରୀଡ଼ା କରୁଥିଲେ ॥୬୪॥

ରାଜର୍ଷି ଉତ୍ତାନପାଦ ନିଜ ପୁତ୍ରର ଅଦ୍ଭୁତ ପ୍ରଭାବବିଷୟ ଦେବର୍ଷି ନାରଦଙ୍କଠାରୁ ପ୍ରଥମରୁ ଶୁଣିଥିଲେ, ଏବେ ପ୍ରତ୍ୟକ୍ଷରେ ଦେଖି ଆଶ୍ଚର୍ଯ୍ୟ ହୋଇଗଲେ ॥୬୫॥ ଧ୍ରୁବଙ୍କର ଯୌବନ ଅବସ୍ଥା ଆସିଯିବା ପରେ ରାଜା ଦେଖିଲେ ଯେ, ମନ୍ତ୍ରୀମାନେ ତାଙ୍କୁ ଆଦର କରୁଛନ୍ତି । ପ୍ରଜାମାନେ ମଧ୍ୟ ତାଙ୍କ ପ୍ରତି ଅନୁରକ୍ତ । ତେଣୁ ସେ ତାଙ୍କୁ ସମଗ୍ର ରାଜ୍ୟର ରାଜପଦରେ ଅଭିଷିକ୍ତ କରିଦେଲେ ॥୬୬॥ ନିଜର ବୃଦ୍ଧାବସ୍ଥା ଭୋଗ କରି ସଂସାର ପ୍ରତି ତାଙ୍କର ବିରାଗ ଆସିଗଲା । ଆତ୍ମସ୍ୱରୂପ ଶ୍ରୀହରିଙ୍କର ଚିନ୍ତା କରି ସେ ବନକୁ ପ୍ରସ୍ଥାନ କଲେ ॥୬୭॥

## ଦଶମ ଅଧ୍ୟାୟ

# ଯକ୍ଷମାନଙ୍କ ସହିତ ଯୁଦ୍ଧ

ମୈତ୍ରେୟ କହିଲେ, ବିଦୁର, ରାଜା ଧ୍ରୁବ ପ୍ରଜାପତି ଶିଶୁମାରଙ୍କର କନ୍ୟା ଭ୍ରମିଙ୍କୁ ବିବାହ କଲେ । ତାଙ୍କର ଦୁଇଟି ପୁତ୍ର ସନ୍ତାନ ହେଲେ -- କଳ୍ପ ଓ ବତ୍ସର । ତାଙ୍କର ଦ୍ୱିତୀୟ ଭାର୍ଯ୍ୟା ହେଲେ ଇଳା । ସେ ବାୟୁଙ୍କର କନ୍ୟା । ମହାବଳୀ ଧ୍ରୁବଙ୍କର ଏହି ଦ୍ୱିତୀୟ ସ୍ତ୍ରୀଙ୍କଠାରୁ ଉତ୍କଳ ନାମକ ପୁତ୍ର ଏବଂ ଏକ କନ୍ୟାରତ୍ନଙ୍କର ଜନ୍ମ ହେଲା ॥୧-୨॥ ଉତ୍ତମ ବିବାହ କରି ନ ଥିଲେ । ସେ ମୃଗୟା କରିବାକୁ ହିମାଳୟ ପର୍ବତକୁ ଯାଇଥିବାବେଳେ ସେଠାରେ ଏକ ବଳବାନ ଯକ୍ଷଦ୍ୱାରା ନିହତ ହେଲେ । ତାହା ଶ୍ରବଣ କରି ତାଙ୍କ ମାତାଙ୍କର ମଧ୍ୟ ପୁତ୍ରର ଗତି ହେଲା ॥୩॥ ଭ୍ରାତୃବଧ ସମ୍ବାଦ ପାଇ ଧ୍ରୁବ କ୍ରୋଧ ଓ ଶୋକରେ ପ୍ରତିଶୋଧପାଇଁ ବ୍ୟାକୁଳ ହୋଇ ଉଠିଲେ ଏବଂ ଏକ ବିଜୟୀ ରଥରେ ଆରୋହଣପୂର୍ବକ ଯକ୍ଷମାନଙ୍କର ଦେଶକୁ ଯାତ୍ରା କଲେ ॥୪॥

ରାଜା ଉତ୍ତର ଦିଗକୁ ଯାଇ ହିମାଳୟ ଘାଟିରେ ପୂରିରହିଥିବା ଯକ୍ଷମାନଙ୍କ ଅଳକାପୁରୀକୁ ଦର୍ଶନ କଲେ । ସେଠାରେ ଶିବଙ୍କର ଅନୁଚର ଭୂତଗଣ ମଧ୍ୟ ରହିଥିଲେ ॥୫॥ ମହାବାହୁ ଧ୍ରୁବ ସମସ୍ତ ଆକାଶ, ପୃଥିବୀ ଓ ସମସ୍ତ ଦିଗ୍‌ବିଦିଗ୍‌କୁ ନିନାଦିତ କରି ଶଙ୍ଖଧ୍ୱନି କଲେ । ଏହି ଶଙ୍ଖନାଦରେ ଯକ୍ଷପତ୍ନୀମାନଙ୍କର ମହାଭୟ ଜାତ ହେଲା । ସେମାନେ ବ୍ୟାକୁଳ ହୋଇ ଚାରିଆଡ଼କୁ ଚାହିଁବାକୁ ଲାଗିଲେ ॥୬॥ ବିଦୁର ! ଯକ୍ଷବୀରମାନେ ଏହା ସହିପାରିଲେ ନାହିଁ । ବିଭିନ୍ନ ଆୟୁଧରେ ସଜ୍ଜିତ ହୋଇ ମହାବଳବାନ୍ ଯକ୍ଷମାନେ ନଗରବାହାରକୁ ଆସି ଧ୍ରୁବଙ୍କୁ ଆକ୍ରମଣ କଲେ ॥୭॥ କିନ୍ତୁ ଧ୍ରୁବ ଥିଲେ ମହାରଥୀ ଓ ପ୍ରଚଣ୍ଡ ଧନୁର୍ଦ୍ଧର । ସେ ଏକ ସମୟରେ ତିନି ତିନଟି ବାଣରେ ପ୍ରତ୍ୟେକ ଯକ୍ଷକୁ ବିଦ୍ଧ କଲେ ॥୮॥ ଏହିପରି ଲଲାଟରେ ଶରବିଦ୍ଧ ଯକ୍ଷମାନେ ନିରସ୍ତ ହେବାରୁ ଧ୍ରୁବଙ୍କ ଅଦ୍ଭୁତ ବିକ୍ରମର ପ୍ରଶଂସା କରିବାକୁ ଲାଗିଲେ ॥୯॥ ତଥାପି ପାଦସ୍ପର୍ଶରେ ସର୍ପ ଯେପରି ଫଣା ଟେକି ଉଠେ ସେମାନେ ସେହିପରି କ୍ରୋଧାନ୍ୱିତ ହୋଇ ଏକସଙ୍ଗରେ ତାଙ୍କପ୍ରତି ଦ୍ୱିଗୁଣସଂଖ୍ୟକ ଶର ପ୍ରୟୋଗ କଲେ ॥୧୦॥ ଯକ୍ଷମାନଙ୍କର ସଂଖ୍ୟା ତେର ଅୟୁତ (୧୩,୦୦୦୦) ଥିଲା । ସେମାନେ ପ୍ରତିଶୋଧ ଇଚ୍ଛାରେ ଅତିଶୟ କ୍ରୁଦ୍ଧ ହୋଇ ରଥ ଓ ସାରଥିଙ୍କ ସହିତ ଧ୍ରୁବଙ୍କ ଉପରେ ପରିଘ, ଖଡ୍ଗ, ପ୍ରାସ, ତ୍ରିଶୂଳ, ଫାର୍ସା, ଶକ୍ତି, ଋଷ୍ଟି, ଭୁଶୁଣ୍ଡି ଆଦି ବିଭିନ୍ନ ଚିତ୍ରବିଚିତ୍ର ଅସ୍ତ୍ରଶସ୍ତ୍ରମାନ ବର୍ଷା କରିବାକୁ ଲାଗିଲେ । ପ୍ରବଳ ବର୍ଷା ହେଲେ ପର୍ବତ ଯେପରି ଦେଖାଯାଏ ନାହିଁ, ସେହିପରି ଏହି ଶସ୍ତ୍ରବୃଷ୍ଟି ମଧ୍ୟରେ ଧ୍ରୁବ ଦେଖାଗଲେ ନାହିଁ ॥୧୧-୧୩॥

ଆକାଶରେ ଏହି ଯୁଦ୍ଧ ଦେଖୁଥିବା ସିଦ୍ଧମାନେ ହାହାକାର କରିବାକୁ ଲାଗିଲେ । ସେମାନେ କହିବାକୁ ଲାଗିଲେ, ଯକ୍ଷସେନାରୂପୀ ସମୁଦ୍ରରେ ବୁଡ଼ିଯାଇ ଏହି ମାନବସୂର୍ଯ୍ୟ ଅସ୍ତମିତ ହୋଇଗଲେ ॥୧୪॥ 'ଜୟ ହେଲା ଜୟ ହେଲା' ବୋଲି ଯକ୍ଷମାନେ ସିଂହନାଦ କରୁଥିବାବେଳେ କୁହୁଡ଼ିଭିତରୁ ସୂର୍ଯ୍ୟ ବାହାରି ଆସିବା ପରି ଧ୍ରୁବଙ୍କର ରଥ ପୁଣି ଦୃଷ୍ଟିଗୋଚର ହେଲା ॥୧୫॥

ପବଳ ପବନରେ ଯେପରି ମେଘସବୁ ଉଡ଼ିଯାଏ, ସେହିପରି ଧ୍ରୁବଙ୍କର ପ୍ରଚଣ୍ଡ ଧନୁଷ୍ଟଙ୍କାର ଓ ବାଣବର୍ଷା ଦ୍ୱାରା ଶତ୍ରୁସେନାର ଅସ୍ତ୍ରଶକ୍ତି ଚୂର୍ଣ୍ଣ ହୋଇଗଲା ।।୧୬।। ତାଙ୍କ ଧନୁରୁ ନିକ୍ଷିପ୍ତ ଶରମାନ ଯକ୍ଷରାକ୍ଷସମାନଙ୍କର କବଚକୁ ଭେଦ କରି ଶରୀରମଧ୍ୟରେ ପ୍ରବେଶ କଲା, ଯେପରି ଇନ୍ଦ୍ରଙ୍କର ବଜ୍ର ପର୍ବତମଧ୍ୟରେ ପ୍ରବେଶ କରେ ।।୧୭।। ବିଦୁର, ଧ୍ରୁବଙ୍କର ଭଲ୍ଲାସ୍ତ୍ରଦ୍ୱାରା ଯକ୍ଷମାନଙ୍କର ସୁନ୍ଦର କୁଣ୍ଡଳମଣ୍ଡିତ ମସ୍ତକ, ସ୍ୱର୍ଣ୍ଣାଭ ତାଳବୃକ୍ଷ ସମାନ ଜଙ୍ଘ, କଙ୍କଣଭୂଷିତ ବାହୁ, ହାର, ବାଜୁବନ୍ଧ, ମୁକୁଟ ଓ ବହୁମୂଲ୍ୟ ଶିରସ୍ତ୍ରାଣମାନଙ୍କ ଦ୍ୱାରା ଆଚ୍ଛନ୍ନ ହୋଇ ରଣଭୂମି ବୀରମାନଙ୍କ ପାଇଁ ଅତି ସୁନ୍ଦର ଓ ଲୋଭନୀୟ ଦେଖାଯାଉଥିଲା ।।୧୮-୧୯।। ଯେଉଁ ଯକ୍ଷମାନେ ବଞ୍ଚିଗଲେ, କ୍ଷତ୍ରିୟପ୍ରବର ଧ୍ରୁବଙ୍କର ବାଣରେ ସେମାନଙ୍କର ଅଙ୍ଗପ୍ରତ୍ୟଙ୍ଗ ଛିନ୍ନଭିନ୍ନ ହୋଇଯାଇଥିଲା । ସିଂହଦ୍ୱାରା ପୀଡ଼ିତ ହସ୍ତିଯୂଥ ପରି ସେମାନେ ରଣଭୂମି ଛାଡ଼ି ପଳାୟନ କଲେ ।।୨୦।।

ମାନବୋତ୍ତମ ଧ୍ରୁବ ଦେଖିଲେ ଯେ, ସେହି ବିସ୍ତୀର୍ଣ୍ଣ ଭୂମିରେ ଜଣେ ହେଲେ ଆତତାୟୀ ଶତ୍ରୁ ଦେଖାଯାଉନାହିଁ । ସେ ଅଳକାପୁରୀକୁ ଦେଖିବାକୁ ଇଚ୍ଛା କଲେ ମଧ୍ୟ ଭିତରକୁ ଗଲେ ନାହିଁ । ଏହି ମାୟାବୀ ଶତ୍ରୁମାନେ କ'ଣ କରିବାକୁ ଚାହାନ୍ତି, ତାହା କାହାରିକୁ ଜଣା ନାହିଁ--ତାଙ୍କ ସାରଥିକୁ ଏହିପରି କହି ସେମାନଙ୍କ ପ୍ରତିଆକ୍ରମଣ ଆଶଙ୍କାରେ ସେ ରଥରେ ବସି ରହିଲେ । ଏହି ସମୟରେ ସମୁଦ୍ରଗର୍ଜନ ପରି ଶବ୍ଦ ଶୁଣାଗଲା । ଚତୁର୍ଦିଗରେ ପ୍ରଚଣ୍ଡ ଓ ପ୍ରବଳ ଧୂଳିଝଡ଼ ଦେଖାଗଲା । କ୍ଷଣକମଧ୍ୟରେ ଘନମେଘମାଳା ଆକାଶକୁ ଆଚ୍ଛନ୍ନ କଲା । ଚତୁର୍ଦିଗରେ ଭୟଙ୍କର ଘଡଘଡ଼ି ସହିତ ବିଜୁଳି ମାରିବାକୁ ଲାଗିଲା ।।୨୧-୨୩।। ବିଦୁର ! ମେଘଦେହରୁ ରୁଧିର ସହିତ କଫ, ପୂଜ, ମଳ, ମୂତ୍ର ଓ ମେଦ ଆଦି ବର୍ଷା ହେଲା ଏବଂ ତାଙ୍କ ଆଖି ଆଗରେ ଆକାଶରୁ କବନ୍ଧମାନେ ପଡ଼ିବାକୁ ଲାଗିଲେ ।।୨୪।। ପୁଣି ଆକାଶରେ ଏକ ପର୍ବତ ଦେଖାଗଲା ଏବଂ ଚାରିଆଡ଼େ ଗଦା, ପରିଘ, ଖଡ୍ଗ ଓ ମୂଷଳାଦି ଅସ୍ତ୍ରଶସ୍ତ୍ରମାନ ବୃଷ୍ଟି ହେବାକୁ ଲାଗିଲା । ସର୍ପମାନେ ବଜ୍ରପାତର ଶବ୍ଦପରି ଘନଘନ ଫୁତ୍କାର କଲେ ଓ ସେମାନଙ୍କର ରୋଷପୂର୍ଣ୍ଣ ଚକ୍ଷୁରୁ ଅଗ୍ନିବର୍ଷା ହେଉଥିଲା । ସେମାନଙ୍କ ସହିତ ମତ୍ତଗଜ, ସିଂହ, ବ୍ୟାଘ୍ରଯୂଥ ସବୁ ମାଡ଼ିଆସିଲେ ।।୨୫-୨୬।। ପ୍ରଳୟକାଳପରି ତାର ଉତ୍ତାଳ ତରଙ୍ଗମାଳାରେ ଚାରିଆଡ଼କୁ ବୁଡ଼ାଇ ଦେଇ ସମୁଦ୍ର ଭୟଙ୍କର ଗର୍ଜନକରି ମାଡ଼ିଆସିଲା ।।୨୭।। କ୍ରୂରସ୍ୱଭାବ ଅସୁରମାନେ ନିଜର ଆସୁରୀମାୟାରେ ଏହିପରି ବହୁ ଭୟ ଦେଖାଇଲେ, ଯଦ୍ଦ୍ୱାରାକି ଦୁର୍ବଳମନା ଲୋକ ଭୟଭୀତ ହୋଇ ପଡ଼ିବେ । ଅସୁରମାନେ ଧ୍ରୁବଙ୍କପ୍ରତି ଏହିପରି ଅତି ଦୁସ୍ତର ମାୟା ପ୍ରୟୋଗ କରିବାରୁ ମୁନିମାନେ ସେଠାରେ ଉପସ୍ଥିତ ହୋଇ ତାଙ୍କର ମଙ୍ଗଳ ପ୍ରାର୍ଥନା କଲେ ।।୨୮-୨୯।।

ମୁନିମାନେ କହିଲେ, ହେ ଉତ୍ତାନପାଦନନ୍ଦନ ଧ୍ରୁବ! ଯାହାଙ୍କର ଶ୍ରବଣ ଓ କୀର୍ତ୍ତନ କରିବାମାତ୍ରେ ଲୋକ ଦୁସ୍ତର ମୃତ୍ୟୁକୁ ଅତି ସହଜରେ ପାର ହୋଇଯାଏ, ସେହି ଶାର୍ଙ୍ଗଧନ୍ୱା ଭଗବାନ ନାରାୟଣ ତୁମର ଶତ୍ରୁମାନଙ୍କୁ ବିନାଶ କରନ୍ତୁ ।।୩୦।।

## ଏକାଦଶ ଅଧ୍ୟାୟ

# ଧ୍ରୁବଙ୍କ କ୍ରୋଧ ଶାନ୍ତ ହେଲା

ମୈତ୍ରେୟ କହିଲେ, ବିଦୁର ! ଋଷିମାନଙ୍କ ବଚନ ଶୁଣି ଧ୍ରୁବ ଆଚମନପୂର୍ବକ ନାରାୟଣଙ୍କ ନିର୍ମିତ ନାରାୟଣାସ୍ତ୍ର ନିଜ ଧନୁରେ ଚଢ଼ାଇଲେ । ଚଢ଼ାଇବା ମାତ୍ରେ ଜ୍ଞାନାଲୋକଦ୍ୱାରା ଯେପରି ଅଜ୍ଞାନରଂକ୍ଲେଶ ନଷ୍ଟ ହୋଇଯାଏ, ଯକ୍ଷମାନଙ୍କର ରଚିତ ମାୟା ସେହିପରି ନଷ୍ଟ ହୋଇଗଲା ।।୧-୨।। ଧନୁରେ ନାରାୟଣାସ୍ତ୍ର ଖଞ୍ଜାଯିବା ସଙ୍ଗେ ସଙ୍ଗେ ସେଥିରୁ ରାଜହଂସର ପକ୍ଷପରି ସୁବର୍ଣ୍ଣ ପୁଙ୍ଖଯୁକ୍ତ ବାଣମାନ ନିର୍ଗତ ହେଲା । ଅରଣ୍ୟରେ ମୟୂରମାନେ କେକାରବ କରି ଘୂରି ବୁଲିବାପରି ଏହିସବୁ ବାଣ ସାଇଁ

ସାଇଁ ଶବ୍ଦରେ ଶତ୍ରୁସେନା ମଧ୍ୟରେ ପ୍ରବେଶ କଲା ॥୩॥ ଏହି ତୀକ୍ଷ୍ଣଧାର ଶରମାନଙ୍କଦ୍ୱାରା ପୀଡ଼ିତ ହୋଇ ଯକ୍ଷମାନେ ଅସ୍ତବ୍ୟସ୍ତ ହେବାକୁ ଲାଗିଲେ । ଫଣା ଉଠାଇ ସାପମାନେ ଗରୁଡ଼ଙ୍କ ଆଡକୁ ଆସିବାପରି କ୍ରୁଦ୍ଧ ଯକ୍ଷମାନେ ଅସ୍ତ୍ରଶସ୍ତ୍ର ଉଠାଇ ଧ୍ରୁବଙ୍କ ଆଡ଼କୁ ମାଡ଼ିଆସିଲେ ॥୪॥ ଧ୍ରୁବ ବାଣଦ୍ୱାରା ସେମାନଙ୍କର ବାହୁ, ଜଂଘ, କାନ୍ଧ, ଉଦର ଆଦି ଅଙ୍ଗ ପ୍ରତ୍ୟଙ୍ଗକୁ ଛେଦନ କରି ସେମାନଙ୍କୁ ସେହିଲୋକକୁ ପଠାଇଦେଲେ' ଊର୍ଦ୍ଧ୍ୱରେତା ମୁନିମାନେ ସୂର୍ଯ୍ୟମଣ୍ଡଳ ଭେଦକରି ଯେଉଁଠାକୁ ଯାଇଥାନ୍ତି ॥୫॥ ଧ୍ରୁବଙ୍କର ପିତାମହ ସ୍ୱାୟମ୍ଭୁବ ମନୁ ଦେଖିଲେ ଯେ, ବିଚିତ୍ର ରଥ ଉପରେ ବସି ଧ୍ରୁବ ନିରପରାଧ ଯକ୍ଷମାନଙ୍କୁ ମାରିବାରେ ଲାଗିଛନ୍ତି । ସେମାନଙ୍କ ପ୍ରତି ତାଙ୍କର ଦୟା ହେଲା । ସେ ଋଷିମାନଙ୍କ ସହିତ ସେଠାରେ ଉପସ୍ଥିତ ହୋଇ ପୌତ୍ର ଧ୍ରୁବଙ୍କୁ ବୁଝାଇବାକୁ ଲାଗିଲେ ॥୬॥

ମନୁ କହିଲେ, ପାପର କାରଣ ଓ ନରକର ଦ୍ୱାରସ୍ୱରୂପ ଅତି କ୍ରୋଧର ବଶବର୍ତ୍ତୀ ହୋଇ ତୁମେ ନିରପରାଧ ଯକ୍ଷମାନଙ୍କୁ ବଧ କରୁଛ । ତାହା ଆଦୌ ଉଚିତ ହେଉ ନାହିଁ । ବତ୍ସ ! ନିରପରାଧ ଯକ୍ଷମାନଙ୍କୁ ତୁମର ଏହି ମାରିବା କାର୍ଯ୍ୟ ସାଧୁମାନଙ୍କ ଦ୍ୱାରା ନିନ୍ଦିତ ଏବଂ ଆମ୍ଭର କୁଳୋଚିତ କାର୍ଯ୍ୟ ନୁହେଁ ॥୭-୮॥ ବତ୍ସ ଧ୍ରୁବ ! ତୁମେ ଭ୍ରାତୃବତ୍ସଳ । ଭାଇର ମୃତ୍ୟୁରେ ତୁମକୁ ବହୁତ ଦୁଃଖ ହୋଇଛି । କିନ୍ତୁ ଜଣକର ଅପରାଧ ଯୋଗୁ ତୁମେ ବହୁ ଯକ୍ଷଙ୍କୁ ହତ୍ୟା କଲଣି । ଏହି ଜଡ଼ ଶରୀରକୁ ଆତ୍ମା ବୋଲି ବିଚାର କରି ପଶୁପରି ପ୍ରାଣୀମାନଙ୍କୁ ହିଂସା କରିବା ଭଗବତ୍‌ସେବୀ ସାଧୁମାନଙ୍କର ମାର୍ଗ ନୁହେଁ ॥୯-୧୦॥ ତୁମେ ପୂର୍ବେ ସମସ୍ତ ପ୍ରାଣୀଙ୍କର ଆଶ୍ରୟସ୍ଥଳ ସର୍ବଭୂତାତ୍ମା ଭଗବାନ ଶ୍ରୀହରିଙ୍କୁ ଆରାଧନା କରିଛ ଏବଂ ଏହି କଷ୍ଟସାଧ୍ୟ କାର୍ଯ୍ୟ କରି ବିଷ୍ଣୁଙ୍କର ପରମପଦକୁ ଲାଭ କରିଛ । ଶ୍ରୀହରି ତୁମକୁ ତାଙ୍କ ପ୍ରିୟଭକ୍ତ ବୋଲି ମାନି ନେଇଛନ୍ତି । ସାଧୁମାନେ ତୁମଠାରୁ ଶିକ୍ଷାଲାଭ କରିବାର କଥା । ଏପରିସ୍ଥଳେ ତୁମେ କାହିଁକି ଏପରି ନିନ୍ଦନୀୟ କାର୍ଯ୍ୟ କରୁଛ ? ॥୧୧-୧୨॥ ସମସ୍ତ ପ୍ରାଣୀଙ୍କଠାରେ ମୈତ୍ରୀ, କରୁଣା, ତ୍ୟାଗ ଓ ସମଦୃଷ୍ଟି ରଖିବାଦ୍ୱାରା ସର୍ବାନ୍ତର୍ଯାମୀ ଭଗବାନ ପ୍ରସନ୍ନ ହୁଅନ୍ତି ॥୧୩॥ ଭଗବାନ ପ୍ରସନ୍ନ ହେଲେ ପ୍ରକୃତିର ଗୁଣ ଓ ତା'ର କାର୍ଯ୍ୟସ୍ୱରୂପ ଲିଙ୍ଗ ଶରୀରରୁ ମୁକ୍ତ ହୋଇ ପୁରୁଷ ବ୍ରହ୍ମନିର୍ବାଣ ଲାଭ କରେ ॥୧୪॥ ପଞ୍ଚଭୂତଦ୍ୱାରା ଗଠିତ ଏହି ଶରୀରରେ ପୁରୁଷ ହୁଅନ୍ତି ଓ ସ୍ତ୍ରୀ ମଧ୍ୟ ହୁଅନ୍ତି, ଏବଂ ସେମାନଙ୍କର ସଙ୍ଗମରେ ଅନ୍ୟ ସ୍ତ୍ରୀପୁରୁଷଙ୍କର ଜନ୍ମ ହୁଏ ॥୧୫॥

ରାଜା ! ସେହିପରି ପରମାତ୍ମାଙ୍କର ମାୟାରେ ବିଭିନ୍ନଗୁଣର ବ୍ୟତିକ୍ରମରୁ ସଂସାରର ସୃଷ୍ଟି, ସ୍ଥିତି, ଓ ଲୟ ଘଟିଥାଏ ॥୧୬॥ ଶ୍ରେଷ୍ଠ ପୁରୁଷ ପରମାତ୍ମା ନିର୍ଗୁଣ । ଚୁମ୍ବକର ଯୋଗରେ ଯେପରି ଲୁହା ଘୁରି ବୁଲୁଥାଏ, ସେହିପରି ତାଙ୍କର ନିମିତ୍ତମାତ୍ର ହୋଇ କାର୍ଯ୍ୟକାରଣ ସ୍ୱରୂପ ଏହି ବିଶ୍ୱଚରାଚର ଚାଲିଛି ॥୧୭॥ କାଳବଶରୁ କ୍ରମେ ସତ୍ତ୍ୱାଦିଗୁଣସବୁ ଚଞ୍ଚଳ ହୋଇ ଉଠିଲେ ଭଗବାନଙ୍କର ଶକ୍ତି ସୃଷ୍ଟି, ସ୍ଥିତି, ଲୟ ଆଦି ରୂପରେ ବିଭକ୍ତ ହୋଇଯାଏ । ତେଣୁ ସେ ଅକର୍ତ୍ତା ହୋଇ ମଧ୍ୟ ସବୁକିଛି କରନ୍ତି । ବିନାଶକାରୀ ନ ହୋଇ ମଧ୍ୟ ସଂହାର କରନ୍ତି । ତେଣୁ ତାଙ୍କର ଅନନ୍ତଲୀଳାକୁ ଚିନ୍ତା କରାଯାଇପାରିବ ନାହିଁ ॥୧୮॥ ସେ ଉଭୟ ଅନନ୍ତ ଓ ଅନ୍ତକାରୀ କାଳ । ଅନାଦି ଏବଂ ଏହି ଜଗତର ଆଦିକାରଣ । ତାଙ୍କ ଶକ୍ତିର କ୍ଷୟ ହୁଏ ନାହିଁ । ଜୀବଦ୍ୱାରା ଜୀବକୁ ଜନ୍ମ ଦେଇ ମୃତ୍ୟୁଦ୍ୱାରା ସଂହାରକାରୀକୁ ମଧ୍ୟ ସେ ସଂହାର କରନ୍ତି ॥୧୯॥ କାଳସ୍ୱରୂପ ସେହି ପରମେଶ୍ୱର ସମସ୍ତ ପ୍ରାଣୀଙ୍କ ମଧ୍ୟରେ ସମାନଭାବରେ ପ୍ରବେଶ କରିଛନ୍ତି । ତାଙ୍କର କେହି ସପକ୍ଷ ନାହାନ୍ତି କି ବିପକ୍ଷ ନାହାନ୍ତି । ପବନ ସାଙ୍ଗରେ ଯେପରି ଧୂଳି ସବୁ ଉଡ଼ିଯାଏ, ସେହିପରି ସମସ୍ତ ଜୀବ କର୍ମସହିତ ଜଡ଼ିତ ହୋଇ କାଳର ଅନୁସରଣ କରନ୍ତି ॥୨୦॥ ଭଗବାନ ସର୍ବଶକ୍ତିମାନ୍ । ତାଙ୍କରି ଇଚ୍ଛାରେ କାହାରି କାହାରି ଆୟୁଷର କ୍ଷୟ ଓ କାହାରି କାହାରି ଆୟୁଷର ବୃଦ୍ଧି ଘଟେ । କିନ୍ତୁ ସେ ନିଜେ କ୍ଷୟ ଓ ବୃଦ୍ଧି ଉଭୟରୁ ମୁକ୍ତ ॥୨୧॥ ରାଜା, କେହି କେହି ତାଙ୍କୁ କର୍ମ ବୋଲିକହନ୍ତି, କେହି କେହି ସ୍ୱଭାବ, କେହି କେହି କାଳ, ଓ ଆଉ କେତେକ ତାଙ୍କୁ ଦୈବ କହନ୍ତି ଏବଂ ଅନ୍ୟମାନେ ତାଙ୍କୁ କାମପୁରୁଷ ବୋଲି କହିଥାଆନ୍ତି ॥୨୨॥

ସେ ଅବ୍ୟକ୍ତ, ଅପ୍ରମେୟ ଓ ବିଭିନ୍ନ ଶକ୍ତିର ଉତ୍ସ । ସେ କ'ଣ କରିବାକୁ ଇଚ୍ଛା କରନ୍ତି, ତାହା କେହି ଜାଣନ୍ତି ନାହିଁ । ତେଣୁ ସେ ସ୍ୱୟଂଭୂ ପ୍ରଭୁଙ୍କୁ କିଏ ବା ବୁଝିପାରିବ ? ॥୨୩॥ ପୁତ୍ର ! କୁବେରଙ୍କର ଅନୁଚରମାନେ ତୁମ ଭାଇଙ୍କର ହତ୍ୟାକାରୀ ନୁହନ୍ତି । ଦୈବ ହିଁ ପୁରୁଷର ଜନ୍ମମୃତ୍ୟୁର କାରଣ । ସେ ହିଁ ବିଶ୍ୱକୁ ସୃଷ୍ଟି କରନ୍ତି, ପାଳନ କରନ୍ତି ଓ ଏହାକୁ ସଂହାର କରନ୍ତି । ତଥାପି ନିରହଙ୍କାର ହୋଇଥିବା ଯୋଗୁଁ ସେ ଗୁଣ ଓ କର୍ମରେ ଲିପ୍ତ ହୁଅନ୍ତି ନାହିଁ ॥୨୪-୨୫॥ ସେ ପ୍ରାଣୀମାନଙ୍କ ରୂପରେ, ସେମାନଙ୍କ ଆତ୍ମା ରୂପରେ ଏବଂ ସେମାନଙ୍କ ପ୍ରଭୁ ଓ ରକ୍ଷାକର୍ତ୍ତା ଭାବରେ ମାୟାଶକ୍ତିଯୋଗେ ଏହି ସଂସାରକୁ ସୃଷ୍ଟି କରନ୍ତି, ପାଳନ କରନ୍ତି ଓ ସଂହାର କରନ୍ତି ॥୨୬॥ ବତ୍ସ ! ସେହି ପରମାତ୍ମା ହେଉଛନ୍ତି ଉଭୟ ମୃତ୍ୟୁ ଓ ଅମୃତର ସ୍ୱରୂପ । ସମସ୍ତ ଜଗତର ଆଶ୍ରୟସ୍ଥଳ । ଯେପରି ନାକରେ ଦଉଡ଼ି ଲଗା ହୋଇଥିବା ବଳଦ ନିଜ ମାଲିକର ବୋଝ ବୋହି ଚାଲେ, ସେହିପରି ବିଶ୍ୱକୁ ରଚନା କରିଥିବା ବ୍ରହ୍ମା ମଧ୍ୟ ତାଙ୍କଦ୍ୱାରା ନିୟନ୍ତ୍ରିତ ହୋଇ ତାଙ୍କରି କର୍ମ କରୁଥାଆନ୍ତି । ତୁମେ ସର୍ବତୋଭାବରେ ସେହି ପରମାତ୍ମାଙ୍କର ଶରଣାପନ୍ନ ହୁଅ ॥୨୭॥ ପାଞ୍ଚ ବର୍ଷ ବୟସରେ ତୁମେ ନିଜର ସଉତୁଣୀ ମା' କଥାରେ ମର୍ମାହତ ହୋଇ ନିଜ ମା'କୁ ଛାଡ଼ି ବନକୁ ଚାଲି ଯାଇଥିଲ । ସେଠାରେ ତପସ୍ୟାଦ୍ୱାରା ଭଗବାନଙ୍କୁ ଆରାଧନା କରି ତିନିଲୋକର ଉପରେ ଧ୍ରୁବପଦ ଲାଭ କଲ ॥୨୮॥

ବତ୍ସ ! ସେହି ନିର୍ଗୁଣ ଅଦ୍ୱିତୀୟ, ତୁମର ପ୍ରତ୍ୟକ୍ଷୀଭୂତ ପରମାତ୍ମାଙ୍କୁ ନିଜ ଅନ୍ତଃକରଣରେ ଅନୁସରଣ କର । ଆତ୍ମଦର୍ଶୀ ହେଲେ ତାଙ୍କଠାରେ କୌଣସି ଭେଦ ଥିବା ଦେଖିପାରିବ ନାହିଁ । ସେହି ଅନନ୍ତ ଆନନ୍ଦସ୍ୱରୂପ ସମସ୍ତ ଶକ୍ତିସମ୍ପନ୍ନଙ୍କୁ ନିଜ ମଧ୍ୟରେ ଦର୍ଶନ କଲେ ଏକାନ୍ତ ଭକ୍ତି ଜାତ ହେବ ଏବଂ ତାହାର ପ୍ରଭାବରେ 'ମୁଁ ଓ ମୋର' ବୋଲି ପ୍ରବଳ ଅହଙ୍କାରର ଯେଉଁ ଶକ୍ତ ଗ୍ରନ୍ଥି ରହିଛି, ତାକୁ ଛେଦନ କରିପାରିବ ॥୨୯-୩୦॥ ରାଜା ! ତୁମର ମଙ୍ଗଳ ହେଉ । ଔଷଧରେ ରୋଗକୁ ଭଲ କରାଯିବାପରି ମୁଁ ଯାହା ସବୁ କହିଲି, ଭଲ ଭାବରେ ବିଚାର କର । କ୍ରୋଧକୁ ସମ୍ବରଣ କର ॥୩୧॥ କ୍ରୁଦ୍ଧ ପୁରୁଷ ସମସ୍ତଙ୍କ ଉଦ୍‌ବେଗର କାରଣ ହୁଏ । ତେଣୁ ବିଜ୍ଞବ୍ୟକ୍ତି କେବେ କ୍ରୋଧର ବଶୀଭୂତ ହୁଏ ନାହିଁ । ସେ ନିଜେ ଭୟଭୀତ ହୁଏ ନାହିଁ ବା ଅନ୍ୟକୁ ଭୟଭୀତ କରେ ନାହିଁ ॥୩୨॥ 'ମୋର ଭାଇକୁ ମାରିଛନ୍ତି' ବୋଲି ମନେ କରି ତୁମେ ଯକ୍ଷମାନଙ୍କୁ ଯେପରି ଭାବରେ ହତ୍ୟା କଲ, ତଦ୍ଦ୍ୱାରା ଭଗବାନ ଶିବଙ୍କର ସଖା କୁବେରଙ୍କ ପାଖରେ ତୁମେ ଅପରାଧ କରିଛ ॥୩୩॥ କ୍ଷମାପ୍ରାର୍ଥନା ଓ ବିନୟପୂର୍ବକ ତୁମେ ଶୀଘ୍ର ତାଙ୍କୁ ପ୍ରସନ୍ନ କର । ନଚେତ୍ ତାଙ୍କ ମହାତେଜ ଆମର କୁଳକୁ ଆକ୍ରାନ୍ତ କରିବ ॥୩୪॥ ସ୍ୱାୟମ୍ଭୁବ ମନୁ ନିଜର ନାତି ଧ୍ରୁବଙ୍କୁ ଏହିପରି ତିଆରି କହିବା ପରେ ନାତିଙ୍କଦ୍ୱାରା ଅଭ୍ୟର୍ଥିତ ହୋଇ ଋଷିମାନଙ୍କ ସହ ନିଜ ଧାମକୁ ପ୍ରସ୍ଥାନ କଲେ ॥୩୫॥

## ଦ୍ୱାଦଶ ଅଧ୍ୟାୟ

# କୁବେରଙ୍କ ବରଦାନ

ମୈତ୍ରେୟ କହିଲେ, କୁବେର ଯେତେବେଳେ ଜାଣିଲେ ଯେ ଧ୍ରୁବଙ୍କର କ୍ରୋଧ ଶାନ୍ତ ହୋଇ ଯାଇଚି ଓ ସେ ଯକ୍ଷମାନଙ୍କ ବଧରୁ ନିବୃତ୍ତ ହୋଇଛନ୍ତି, ସେ ତାଙ୍କ ପାଖରେ ଯାଇ ପହଞ୍ଚିଲେ । ଯକ୍ଷ, କିନ୍ନର ଓ ଚାରଣମାନେ କୁବେରଙ୍କ ସ୍ତୁତିଗାନ କରୁଥିଲେ । ତାଙ୍କୁ ଆଗରେ ଦେଖି ଧ୍ରୁବ ହାତ ଯୋଡ଼ି ଠିଆହୋଇଗଲେ ॥୧॥ କୁବେର କହିଲେ, ହେ ନିଷ୍ପାପ କ୍ଷତ୍ରିୟକୁମାର, ତୁମେ ତୁମ ପିତାମହଙ୍କ ଉପଦେଶ ମାନି ଦୁସ୍ତ୍ୟଜ ଶତ୍ରୁତାକୁ ତ୍ୟାଗ କରିପାରିଚ, ସେଥିପାଇଁ ମୁଁ ତୁମ ଉପରେ ସନ୍ତୁଷ୍ଟ ହୋଇଚି ॥୨॥ ତୁମେ ଯକ୍ଷମାନଙ୍କୁ ମାରି ନାହଁ କିମ୍ବା ଯକ୍ଷମାନେ ତୁମର ଭାଇକୁ ମାରି ନାହାନ୍ତି । କାଳ ହେଉଚି ସମସ୍ତ

ଜୀବଙ୍କର ପ୍ରଭୁ ଓ ସେମାନଙ୍କ ଜନ୍ମମୃତ୍ୟୁର କାରଣ ॥୩॥ ବୁଦ୍ଧିର ଅଜ୍ଞାନତା ବଶରୁ ଶରୀରକୁ ଆତ୍ମା ବୋଲି ଭାବି ଜୀବର 'ମୁଁ-ତୁ' ଏହି ଭ୍ରାନ୍ତ ଧାରଣା ସୃଷ୍ଟି ହୋଇଥାଏ । ସ୍ୱପ୍ନତୁଲ୍ୟ ଏହି ମିଥ୍ୟା ଧାରଣାଯୋଗୁଁ ମନୁଷ୍ୟଙ୍କୁ ସଂସାରବନ୍ଧନରେ ଓ ଦୁଃଖରେ ପଡ଼ିବାକୁ ହୋଇଥାଏ ॥୪॥ ଧ୍ରୁବ, ଯାଅ, ତୁମର ମଙ୍ଗଳ ହେଉ । ସମସ୍ତ ଜୀବଙ୍କପ୍ରତି ସମଦୃଷ୍ଟି ରଖି ସର୍ବାନ୍ତର୍ଯାମୀ ଭଗବାନ ଶ୍ରୀ ନାରାୟଣଙ୍କୁ ଭଜନ କର ॥୫॥ ପୂର୍ବଜନ୍ମରୁ ମୁକ୍ତି ପାଇବା ପାଇଁ ସେହି ଭବଭଞ୍ଜନ ବନ୍ଦନୀୟ ପାଦପଦ୍ମକୁ ଭଜନ କର । ଏହି ସଂସାରର ଉତ୍ପତ୍ତିପାଇଁ ସେ ନିଜର ତ୍ରିଗୁଣମୟୀ ମାୟା ଶକ୍ତିରେ ଯୁକ୍ତ ହୋଇ ମଧ୍ୟ ପ୍ରକୃତରେ ସେଥିରୁ ବିରତ ହୋଇଥାନ୍ତି ॥୬॥ ଉତ୍ତାନପାଦଙ୍କପୁତ୍ର ହେ ପ୍ରିୟ ରାଜା, ତୁମେ ଭଗବାନ ପଦ୍ମନାଭଙ୍କର ପାଦପଦ୍ମକୁ ଧ୍ୟାନ କରି ସବୁବେଳେ ମତ୍ତ ହୋଇ ରହିଥାଅ; ଏଣୁ ତୁମେ ଆମର ବର ପାଇବାପାଇଁ ଯୋଗ୍ୟ । ଯାହା ମନରେ ଭାବୁଚ, ନିର୍ଭୟରେ ସେହି ବର ମାଗିନିଅ ॥୭॥

ମୈତ୍ରେୟ କହିଲେ, ବିଦୁର, ରାଜରାଜ କୁବେର ବର ମାଗିବାକୁ କହିବାରୁ ଭଗବାନଙ୍କର ପରମଭକ୍ତ ମହାମନା ଧ୍ରୁବ କହିଲେ, ଏହି ଦୁସ୍ତର ସଂସାରସାଗରରୁ ଅନାୟାସରେ ତରିଯିବାପାଇଁ ଭଗବାନ ଶ୍ରୀହରିଙ୍କଠାରେ ମୋର ସର୍ବଦା ଭକ୍ତି ରହିଥାଉ--ମୋତେ ଏହି ବର ଦିଅନ୍ତୁ ॥୮॥ କୁବେର ପ୍ରୀତ ହୋଇ ଧ୍ରୁବଙ୍କୁ ସେହି ବର ଦାନପୂର୍ବକ ଦେଖୁ ଦେଖୁ ଅନ୍ତର୍ଦ୍ଧାନ ହୋଇଗଲେ । ଧ୍ରୁବ ମଧ୍ୟ ନିଜ ରାଜଧାନୀକୁ ଫେରି ଆସିଲେ ॥୯॥ ସେଠାରେ ସେ ବହୁ ଯଜ୍ଞ କରି ଓ ଭୂରି ଭୂରି ଦକ୍ଷିଣା ଦେଇ ଯଜ୍ଞେଶ୍ୱର ଶ୍ରୀହରିଙ୍କୁ ଆରଧନା କଲେ । କାରଣ ଶ୍ରୀ ଭଗବାନ ହେଉଛନ୍ତି ଯଜ୍ଞସ୍ୱରୂପ--ଯଜ୍ଞରେ ବ୍ୟବହୃତ ସମସ୍ତ ଦ୍ରବ୍ୟ, ସମସ୍ତ କ୍ରିୟା ଓ ଦେବତାମାନଙ୍କ ସମ୍ବନ୍ଧୀ ସମସ୍ତ କର୍ମ ସେ ହିଁ ଅଟନ୍ତି ॥୧୦॥ ସର୍ବାନ୍ତର୍ଯାମୀ ଅଚ୍ୟୁତଙ୍କଠାରେ ପ୍ରବଳ ଅସରନ୍ତି ଭକ୍ତିର ଆବେଗରୁ ଧ୍ରୁବ ଦେଖିଲେ ଯେ ତାଙ୍କ ଅନ୍ତରାତ୍ମାରେ ଯେଉଁ ପ୍ରଭୁ ବିରାଜମାନ, ସେ ସମସ୍ତ ଜୀବଙ୍କ ଆତ୍ମାରେ ମଧ୍ୟ ବିଦ୍ୟମାନ ॥୧୧॥ ସଦାଚାରୀ ଧ୍ରୁବ ଥିଲେ ବ୍ରାହ୍ମଣମାନଙ୍କ ଭକ୍ତ, ଦୀନଜନଙ୍କ ବନ୍ଧୁ ଓ ଧର୍ମ-ମର୍ଯ୍ୟାଦାର ରକ୍ଷକ । ପ୍ରଜାମାନେ ତାଙ୍କୁ ପିତୃତୁଲ୍ୟ ମାନୁଥିଲେ ॥୧୨॥ ଛତିଶ ହଜାର ବର୍ଷ ସେ ଏହି ମହୀମଣ୍ଡଳକୁ ଭୋଗ କରି ଶାସନ କରିଥିଲେ । ମାତ୍ର ଐଶ୍ୱର୍ଯ୍ୟ ଭୋଗଦ୍ୱାରା ପୁଣ୍ୟକ୍ଷୟ ହେବା ଜାଣି ସେ ଅନାସକ୍ତ ରହି ପାପର କ୍ଷୟ କରାଉଥିଲେ ॥୧୩॥ ଏହିପରି ଜିତେନ୍ଦ୍ରିୟ ଧ୍ରୁବ ବହୁକାଳ ପର୍ଯ୍ୟନ୍ତ ଧର୍ମାନୁଷ୍ଠାନପୂର୍ବକ ଧର୍ମାନୁମୋଦିତ ଅର୍ଥ ଓ କାମ ଉପଭୋଗ କରି ଶେଷରେ ନିଜ ପୁତ୍ରକୁ ରାଜସିଂହାସନ ପ୍ରଦାନ କଲେ ॥୧୪॥ ସେ ନିଜର ସ୍ତ୍ରୀ, ପୁତ୍ର, ବନ୍ଧୁ, ସ୍ୱଜନ, ସେନା, ସମୃଦ୍ଧ ରାଜକୋଷ, ଅନ୍ତଃପୁର ଏବଂ ରମଣୀୟ ବିହାରସ୍ଥଳୀପୂର୍ଣ୍ଣ ଏହି ସସାଗରା ଧରାକୁ ତ୍ୟାଗ କଲେ ଏବଂ ବଦରିକାଶ୍ରମକୁ ପ୍ରସ୍ଥାନ କଲେ ॥୧୫-୧୬॥

ସେଠାରେ ସେ ପବିତ୍ରଜଳରେ ସ୍ନାନ କରି ଶୁଦ୍ଧ ଅନ୍ତଃକରଣରେ ଆସନରେ ସ୍ଥିର ଭାବରେ ବସିଲେ ଏବଂ ପ୍ରାଣାୟାମଦ୍ୱାରା ପ୍ରାଣବାୟୁକୁ ବଶ କଲେ । ମନଦ୍ୱାରା ଇନ୍ଦ୍ରିୟମାନଙ୍କୁ ବାହ୍ୟବନ୍ଧନରୁ ହଟାଇ ଭଗବାନଙ୍କ ସ୍ଥୂଳ ବିରାଟ ସ୍ୱରୂପରେ ନିବଦ୍ଧ କଲେ ଏବଂ ସେହି ରୂପକୁ ଧ୍ୟାନ କରି କରି ନିର୍ବିକଳ୍ପ ସମାଧିରେ ପ୍ରବେଶ କଲେ ॥୧୭॥ ଭଗବାନ ଶ୍ରୀହରିଙ୍କଠାରେ ଭକ୍ତିର ଅବିରତ ପ୍ରବାହଯୋଗୁଁ ଅଜସ୍ର ଆନନ୍ଦାଶ୍ରୁଧାରାରେ ସେ ପ୍ଲାବିତ ହୋଇଗଲେ । ହୃଦୟ ଦ୍ରବୀଭୂତ ହେଲା । ଶରୀରରେ ପୁଲକ ଜାତ ହେଲା । ନିଜର ସ୍ଥିତି ସେ ଭୁଲିଗଲେ ଏବଂ ଦେହବନ୍ଧନରୁ ମୁକ୍ତ ହୋଇଗଲେ ॥୧୮॥ ସେ ଦେଖିଲେ ଯେ ଆକାଶରୁ ଏକ ବିମାନ ଅବତରଣ କଲା । ଚନ୍ଦ୍ରମା ଉଦିତ ହେଲେ ଦଶଦିଗ ଯେପରି ଆଲୋକିତ ହୋଇଯାଏ, ସେହିପରି ଚତୁର୍ଦ୍ଦିଗ ଆଲୋକିତ ହୋଇଗଲା ॥୧୯॥ ଦୁଇ ଜଣ ଶ୍ରେଷ୍ଠ ଦେବତାଙ୍କୁ ସେ ସେହି ରଥରେ ଥିବାର ଦେଖି ପାରିଲେ । ସେଦୁହେଁ ଚତୁର୍ଭୁଜ, ଶ୍ୟାମବର୍ଣ୍ଣ, କିଶୋରବୟସ୍କ; ଚକ୍ଷୁଦ୍ୱୟ ରକ୍ତପଦ୍ମପରି । ହସ୍ତରେ ଗଦାଧାରଣ କରିଛନ୍ତି; ସୁନ୍ଦର ବସ୍ତ୍ର, କିରୀଟ, ହାର, କଙ୍କଣ ଓ କୁଣ୍ଡଳ ପରିଧାନ କରିଛନ୍ତି ॥୨୦॥ ସେ ଦୁହିଁଙ୍କୁ ପୁଣ୍ୟଶ୍ଳୋକ ଶ୍ରୀହରିଙ୍କର ସେବକ ବୋଲି ମନେ କରି ସେ ତରବରରେ ଉଠିପଡ଼ିଲେ ଏବଂ ତାଙ୍କୁ କିପରିଭାବରେ ଅଭ୍ୟର୍ଥନା କରିବେ ଭୁଲିଗଲେ । ପରେ ସେ ଶ୍ରୀ ମଧୁସୂଦନଙ୍କର ନାମ କୀର୍ତ୍ତନପୂର୍ବକ ତାଙ୍କର ଏହି ପ୍ରଧାନ ପାର୍ଷଦ ଦୁଇ ଜଣଙ୍କୁ କୃତାଞ୍ଜଳି ହୋଇ ନମସ୍କାର କଲେ ॥୨୧॥ ଶ୍ରୀ ଭଗବାନଙ୍କ ପାଦରେ ମନୋନିବେଶ

କରି ଧ୍ରୁବ ହାତ ଯୋଡ଼ି ମୁଣ୍ଡ ନୁଆଁଇ ଠିଆ ହେବାରୁ, ନନ୍ଦ ଓ ସୁନନ୍ଦ ନାମକ ଶ୍ରୀହରିଙ୍କର ଏହି ପାର୍ଷଦ ଦୁହେଁ ତାଙ୍କ ପାଖକୁ ଆସି ଅଳ୍ପ ହସି କହିଲେ, ହେ ରାଜା, ଆପଣଙ୍କ ମଙ୍ଗଳ ହେଉ । ସାବଧାନ ହୋଇ ଆପଣ ଆମ କଥା ଶୁଣନ୍ତୁ । ପାଞ୍ଚ ବର୍ଷ ବୟସରେ ତପସ୍ୟା କରି ଆପଣ ଯେଉଁ ଶ୍ରୀହରିଙ୍କୁ ସନ୍ତୁଷ୍ଟ କରିଥିଲେ, ଆମେ ସେହି ଜଗଦୀଶ୍ୱର ଶାର୍ଙ୍ଗପାଣିଙ୍କର ସେବକ । ଏଠାକୁ ଆସିଚୁ, ଆପଣଙ୍କୁ ତାଙ୍କରି ପରମଧାମକୁ ନେଇଯିବାପାଇଁ ॥୨୨-୨୪॥

ଦୁର୍ଲଭ ବିଷ୍ଣୁଲୋକ ମହାଜ୍ଞାନୀ ଋଷିମାନଙ୍କର ମଧ୍ୟ ଅଲଭ୍ୟ । ସେମାନେ ତଳେଥାଇ କେବଳ ଉପରକୁ ଚାହିଁ ସେହି ଲୋକକୁ ଦେଖନ୍ତି । ସୂର୍ଯ୍ୟ ଚନ୍ଦ୍ର ତାରା ଆଦି ଗ୍ରହ ନକ୍ଷତ୍ରମାନେ ସର୍ବଦା ତାକୁ ପରିକ୍ରମା କରୁଥାଆନ୍ତି । ଆପଣ ନିଜର ଶକ୍ତିବଳରେ ସେହି ଦୁର୍ଜୟ ବିଷ୍ଣୁଲୋକକୁ ଜୟ କରି ପାରିଛନ୍ତି । ଆସନ୍ତୁ, ସେଠାରେ ଅବସ୍ଥାନ କରିବେ ॥୨୫॥ ପ୍ରିୟବର, ଆପଣଙ୍କ ପୂର୍ବପୁରୁଷ ବା ଅନ୍ୟକେହି କେବେ ସେହି ପରମଧାମରେ ପହଞ୍ଚି ପାରି ନାହାନ୍ତି । ଜଗତର ବନ୍ଦନୀୟ ବିଷ୍ଣୁଙ୍କର ସେହି ପରମଧାମକୁ ଯାଇ ଆପଣ ଅବସ୍ଥାନ କରନ୍ତୁ ॥୨୬॥ ଆୟୁଷ୍ମାନ୍ !ଏହି ଶ୍ରେଷ୍ଠ ବିମାନ ପୁଣ୍ୟଶ୍ଳୋକମାନଙ୍କର ଶିରୋମଣି ଭଗବାନ ଶ୍ରୀହରି ଆପଣଙ୍କପାଇଁ ପଠାଇଛନ୍ତି । ଆପଣ ଏଥିରେ ଆରୋହଣ କରନ୍ତୁ ॥୨୭॥

ମୈତ୍ରେୟ କହିଲେ, ଭଗବାନଙ୍କର ମୁଖ୍ୟ ପାର୍ଷଦ ଦୁହିଁଙ୍କର ଏହି ମଧୁମୟ ବାକ୍ୟ ଶ୍ରବଣ କରି ଶ୍ରୀହରିଙ୍କର ଏକାନ୍ତ ପ୍ରିୟ ରାଜା ସ୍ନାନ ବନ୍ଦନାଦି ନିତ୍ୟକର୍ମ ଶେଷ କଲେ ଓ ବଦରିକାଶ୍ରମର ମୁନିମାନଙ୍କୁ ପ୍ରଣାମ କରି ସେମାନଙ୍କ ଆଶୀର୍ବାଦ ଗ୍ରହଣ କଲେ ॥୨୮॥ ଏହାପରେ ସେ ସେହି ଶ୍ରେଷ୍ଠବିମାନକୁ ପରିକ୍ରମାପୂର୍ବକ ଅଭିବାଦନ କଲେ । ବିଷ୍ଣୁଙ୍କର ପାର୍ଷଦ ଦୁହିଁଙ୍କୁ ବନ୍ଦନା କଲେ ଏବଂ ଦିବ୍ୟ ସ୍ୱର୍ଣ୍ଣକାନ୍ତିରୂପ ଧାରଣ କରି ବିମାନ ଆରୋହଣ ପାଇଁ ଉଦ୍ୟତ ହେଲେ ॥୨୯॥ ଏହି ସମୟରେ ଉତ୍ତାନପାଦଙ୍କର ପୁତ୍ର ଦେଖିଲେ ଯେ ମୂର୍ତ୍ତିମନ୍ତ କାଳ ତାଙ୍କ ସମ୍ମୁଖରେ ଠିଆ ହୋଇଛନ୍ତି । କାଳ ଯେପରି କହୁଛନ୍ତି, ମୋତେ ଆପଣ ସ୍ୱୀକାର କରନ୍ତୁ । ସେ ମୃତ୍ୟୁର ଶିର ଉପରେ ପାଦ ରଖି ସେହି ଅଦ୍ଭୁତ ବିମାନ ଆରୋହଣ କଲେ ॥୩୦॥ ସେହି ସମୟରେ ଆକାଶରେ ଦୁନ୍ଦୁଭି, ମୃଦଙ୍ଗ, ଢୋଲ ଆଦି ବାଦ୍ୟ ବାଜିବାକୁ ଲାଗିଲା । ଗନ୍ଧର୍ବମୁଖ୍ୟମାନେ ଗୀତ ଗାଇବାକୁ ଆରମ୍ଭ କରିଦେଲେ ଓ ପୁଷ୍ପବୃଷ୍ଟି ହେଲା । ସେ ସ୍ୱର୍ଗଲୋକକୁ ଯିବାକୁ ବସିଛନ୍ତି, ଏହି ସମୟରେ ତାଙ୍କର ମା' ସୁନୀତିଙ୍କର କଥା ମନେ ପଡ଼ିଲା । ସେ ଭାବିବାକୁ ଲାଗିଲେ, ମୁଁ ମୋ ମା'କୁ ଛାଡ଼ିଦେଇ କିପରି ଦୁର୍ଲଭ ବୈକୁଣ୍ଠ ଧାମକୁ ଯାତ୍ରା କରିବି ? ॥୩୧-୩୨॥

ତାଙ୍କ ମନର କଥା ଜାଣି ସୁରୋତ୍ତମ ନନ୍ଦ ଓ ସୁନନ୍ଦ ତାଙ୍କୁ ଦେଖାଇଦେଲେ ଯେ ମାତା ସୁନୀତି ଆଗରେ ଅନ୍ୟ ଏକ ଯାନରେ ଯାତ୍ରା କରୁଛନ୍ତି ॥୩୩॥ ଯାତ୍ରାପଥରେ ବିମାନଚାରୀ ଦେବତାମାନେ ତାଙ୍କର ପ୍ରଶଂସା କରି ପୁଷ୍ପବୃଷ୍ଟି କରୁଥିବାର ସେ ଦେଖିପାରିଲେ ଏବଂ କ୍ରମେ ସୂର୍ଯ୍ୟ ଆଦି ଗ୍ରହମାନେ ତାଙ୍କର ଦୃଷ୍ଟିଗୋଚର ହେଲେ ॥୩୪॥ ଏହି ଦେବଯାନରେ ବସି ସେ ତିନିଲୋକ ଓ ସପ୍ତର୍ଷି ମଣ୍ଡଳ ଅତିକ୍ରମ କରି ଭଗବାନ ବିଷ୍ଣୁଙ୍କର ନିତ୍ୟଧାମରେ ପହଞ୍ଚିଲେ । ଏହିପରି ସେ ସ୍ଥାୟୀ ଭାବରେ ଧ୍ରୁବଗତି ଲାଭ କଲେ ॥୩୫॥

ସେହି ଦିବ୍ୟଧାମ ନିଜ ଜ୍ୟୋତିରେ ଉଦ୍‌ଭାସିତ ହେଉଥାଏ ଏବଂ ତା'ର ଜ୍ୟୋତିରେ ତ୍ରିଲୋକ ଆଲୋକିତ ହୁଏ । ଯାହାଙ୍କର ଜୀବମାନଙ୍କ ପ୍ରତି ଦୟା ନଥାଏ ସେମାନେ ସେଠାକୁ ଯାଇପାରନ୍ତି ନାହିଁ । ଯେଉଁମାନେ ଜୀବମାନଙ୍କର ସର୍ବଦା ମଙ୍ଗଳ କରନ୍ତି, ସେହିମାନେ ସେଠାକୁ ଯାଇପାରନ୍ତି ॥୩୬॥ ଯେଉଁମାନେ ଶାନ୍ତ, ସମଦର୍ଶୀ, ଶୁଦ୍ଧ ଏବଂ ସମସ୍ତ ଜୀବଙ୍କୁ ଶ୍ରଦ୍ଧା କରନ୍ତି, ସେମାନେ ଭଗବାନ ଅଚ୍ୟୁତଙ୍କର ପ୍ରିୟ ବନ୍ଧୁଭାବରେ ତାଙ୍କର ପରମପଦକୁ ଲାଭ କରନ୍ତି ॥୩୭॥ ଏହିପରି ଉତ୍ତାନପାଦଙ୍କର ପୁତ୍ର କୃଷ୍ଣଭକ୍ତିପରାୟଣ ଧ୍ରୁବ ତିନିଲୋକର ଚୂଡ଼ାମଣିରୂପେ ବିରାଜମାନ ହେଲେ ॥୩୮॥ ବିଦୁର ! ମେଢ଼ି ଚାରିପାଖରେ ବଳଦମାନେ ବୁଲିବାପରି ବିଶ୍ୱଜଗତର ଜ୍ୟୋତିଷ୍କମାନେ ନିରଳସ ଭାବରେ ଏହି ଧ୍ରୁବଲୋକକୁ ପରିକ୍ରମା କରି ଦ୍ରୁତବେଗରେ ବୁଲୁଥାନ୍ତି ॥୩୯॥ ଏହି ଧ୍ରୁବଲୋକର ମହିମା ଦେଖି ଭଗବାନ ନାରଦ ଋଷି ପ୍ରଚେତାମାନଙ୍କର ଯଜ୍ଞସ୍ଥଳରେ ଏହାର ପ୍ରଶସ୍ତିପାଇଁ ଶ୍ଳୋକମାନ ରଚନା କରି ବୀଣା ବାଦନ କରିଥିଲେ ॥୪୦॥

ନାରଦ ଗାଇଥିଲେ ଯେ ପତିପରାୟଣା ସୁନୀତିଙ୍କର ପୁତ୍ର ଧ୍ରୁବ ନିଜର ତପ ପ୍ରଭାବରେ ଅଦ୍‌ଭୁତ ଶକ୍ତି ସଞ୍ଚୟ କରି ଯେଉଁ ପଦ ଲାଭ କଲେ, ସାଧାରଣ ଲୋକଙ୍କ ଛଡ଼ା ବେଦବାଦୀ ମୁନିମାନେ ମଧ୍ୟ ସେହି ପଦ ଲାଭ କରିପାରିବେ ନାହିଁ ॥୪୧॥ ଧ୍ରୁବ ପାଞ୍ଚ ବର୍ଷ ବୟସରେ ନିଜ ବିମାତାଙ୍କର ମର୍ମଭେଦୀ ବାକ୍ୟବାଣରେ ପୀଡ଼ିତ ହୋଇ ବନକୁ ଚାଲିଯାଇଥିଲେ ଏବଂ ମୋର ଉପଦେଶ ଅନୁସାରେ ସାଧନା କରି କେବଳ ଭକ୍ତିଗୁଣରେ ବଶୀଭୂତ ସେହି ଅଜେୟ ଶ୍ରୀହରିଙ୍କୁ ଜୟ କରି ପାରିଥିଲେ ॥୪୨॥ ପାଞ୍ଚ ଛ' ବର୍ଷ ବୟସରେ ଅଳ୍ପକିଛି ଦିନର ତପସ୍ୟାଦ୍ୱାରା ଧ୍ରୁବ ଭଗବାନଙ୍କୁ ସନ୍ତୁଷ୍ଟ କରି ତାଙ୍କର ଯେଉଁ ପରମପଦ ଲାଭ କଲେ, ଏ ମହୀମଣ୍ଡଳରେ ଅନ୍ୟ କୌଣସି କ୍ଷତ୍ରିୟ ବର୍ଷ ବର୍ଷ ଧରି ତପସ୍ୟା କରି ମଧ୍ୟ ସେହି ପଦ ଲାଭ କରିପାରିବ ନାହିଁ ॥୪୩॥

ମୈତ୍ରେୟ କହିଲେ, ବିଦୁର ! ତୁମେ ଯାହା ପଚାରିଥିଲ, ସାଧୁମାନଙ୍କର ପ୍ରଶଂସିତ ଧ୍ରୁବଙ୍କର ସେହି ଚରିତ ମୁଁ ତୁମକୁ ବିସ୍ତାରିତ ଭାବରେ ଶୁଣାଇଲି ॥୪୪॥ ଏହା ଧନ, ଯଶ ଓ ଆୟୁଷ ବୃଦ୍ଧି କରେ । ଏହା ପରମ ପବିତ୍ର ଓ ମଙ୍ଗଳମୟ । ପାପନାଶକାରୀ ଏହି ପ୍ରଶଂସନୀୟ ମନୋହର ଚରିତର ଶ୍ରବଣ ଓ କୀର୍ତ୍ତନ ଦ୍ୱାରା ସ୍ୱର୍ଗଲୋକ ଏପରିକି ଧ୍ରୁବଲୋକ ମଧ୍ୟ ପ୍ରାପ୍ତ ହୋଇପାରେ ॥୪୫॥ ଅଚ୍ୟୁତଙ୍କର ପ୍ରିୟ ଭକ୍ତ ଧ୍ରୁବଙ୍କର ଏହି ଚରିତ ଶ୍ରଦ୍ଧାର ସହିତ ବାରମ୍ବାର ଶ୍ରବଣ କଲେ ଭଗବାନଙ୍କ ଠାରେ ଭକ୍ତି ଜାତ ହୁଏ ଏବଂ ସକଳ କ୍ଲେଶ କ୍ଷୟ ପାଇଯାଏ ॥୪୬॥ ତାହା ଶ୍ରବଣ କଲେ ବ୍ୟକ୍ତି ସତ୍‌ସ୍ୱଭାବଆଦି ଗୁଣ ଲାଭ କରେ । ମହତ୍ତ୍ୱ ଇଚ୍ଛା କରୁଥିବା ଲୋକକୁ ମହତ୍ତ୍ୱ ମିଳିଥାଏ । ତେଜ ଇଚ୍ଛା କରୁଥିବା ଲୋକକୁ ତେଜ ମିଳିଥାଏ ଓ ମନସ୍ୱୀମାନଙ୍କର ମାନବୃଦ୍ଧି ହୁଏ ॥୪୭॥ ପ୍ରାତଃ କାଳରେ ଓ ସନ୍ଧ୍ୟା ସମୟରେ ବ୍ରାହ୍ମଣ ଓ ସାଧୁମାନଙ୍କ ସମାଜରେ ପୁଣ୍ୟଶ୍ଳୋକ ଧ୍ରୁବଙ୍କର ଏହି ଚରିତକୁ ଏକାଗ୍ର ଚିତ୍ତରେ କୀର୍ତ୍ତନ କରାଯିବା ଉଚିତ ॥୪୮॥ ଭଗବାନଙ୍କର ଚରଣାଶ୍ରିତ ହୋଇ ଶ୍ରଦ୍ଧାର ସହିତ ଯେଉଁ ବ୍ୟକ୍ତି ପୂର୍ଣ୍ଣିମା, ଚତୁର୍ଦ୍ଦଶୀଯୁକ୍ତ ଅମାବାସ୍ୟା, ଦ୍ୱାଦଶୀ, ଶ୍ରବଣାନକ୍ଷତ୍ର, ତିଥିକ୍ଷୟ, ବ୍ୟତୀପାତ ସଂକ୍ରାନ୍ତି କିମ୍ବା ରବିବାର ଦିନ ଶ୍ରଦ୍ଧାଳୁ ପୁରୁଷମାନଙ୍କୁ ଏହା ଶୁଣାଏ, ସେ ନିଜେ ଆତ୍ମସନ୍ତୋଷ ସହିତ ସିଦ୍ଧିଲାଭ କରିଥାଏ ॥୪୯-୫୦॥ ତତ୍ତ୍ୱଜ୍ଞାନ ନ ଥିବା ଅଜ୍ଞ ବ୍ୟକ୍ତିମାନଙ୍କୁ ସତ୍‌ପଥକୁ ଆଣିବାପାଇଁ ଯେ ଏହି ଜ୍ଞାନାମୃତ ଦାନ କରେ, ସେହି ଦୀନଜନବତ୍ସଳ ଦୟାଳୁ ବ୍ୟକ୍ତି ଦେବତାମାନଙ୍କର ଅନୁଗ୍ରହ ଲାଭ କରେ ॥୫୧॥ ବାଲ୍ୟକାଳରେ ଯେଉଁ ପୁତ୍ର ମାତୃଗୃହ ଓ କ୍ରୀଡନକମାନ ପରିତ୍ୟାଗ କରି ବିଷ୍ଣୁଙ୍କର ଶରଣାଗତ ହୋଇଥିଲେ, ସେହି ଧ୍ରୁବଙ୍କର ପବିତ୍ର ନିର୍ମଳ ଚରିତ ମୁଁ ତୁମକୁ ଶୁଣାଇଲି ॥୫୨॥

## ତ୍ରୟୋଦଶ ଅଧ୍ୟାୟ

# ଧ୍ରୁବ ବଂଶାନୁଚରିତ

ସୂତ କହିଲେ; ଶୌନକ ! ମୈତ୍ରେୟଙ୍କ ଠାରୁ ଧ୍ରୁବଙ୍କର ବିଷ୍ଣୁପଦ ଆରୋହଣର ବୃତ୍ତାନ୍ତ ଶ୍ରବଣ କରି ବିଦୁରଙ୍କର ହୃଦୟରେ ଭଗବାନ ଶ୍ରୀହରିଙ୍କଠାରେ ପ୍ରଗାଢ଼ ଭକ୍ତିଭାବ ଜାତ ହେଲା । ସେ ପୁଣି ମୈତ୍ରେୟଙ୍କୁ ପଚାରିବାକୁ ଆରମ୍ଭ କଲେ ॥୧॥ ବିଦୁର କହିଲେ, ସୁବ୍ରତ ମୈତ୍ରେୟ ! ଏ ପ୍ରଚେତାମାନେ କିଏ ? ସେମାନେ ସବୁ କାହାର ପୁତ୍ର ? କେଉଁ ବଂଶରେ ଜନ୍ମ ହୋଇ ସେମାନେ ପ୍ରସିଦ୍ଧ ହୋଇଥିଲେ ଏବଂ କେଉଁଠି ସେମାନେ ଯଜ୍ଞ କରିଥିଲେ ? ॥୨॥ ଭଗବାନଙ୍କ ଦର୍ଶନରେ ଧନ୍ୟ ମହର୍ଷି ନାରଦ ପରମ ଭାଗବତ ରୂପେ ଶ୍ରୀହରିଙ୍କର ପୂଜାପଦ୍ଧତିରୂପ କ୍ରିୟାଯୋଗର ଉପଦେଶ ଦେଇଛନ୍ତି ॥୩॥ ଯେଉଁସମୟରେ ପ୍ରଚେତାମାନେ ସ୍ୱଧର୍ମ ଆଚରଣ କରି ଯଜ୍ଞପୁରୁଷ ଭଗବାନଙ୍କର ଅର୍ଚ୍ଚନା କରୁଥିଲେ, ସେତେବେଳେ ପରମଭକ୍ତ ନାରଦ

ଧ୍ରୁବଙ୍କର ଗୁଣମାନ ବର୍ଣ୍ଣନା କରିଥିଲେ ॥୪॥ ବ୍ରହ୍ମନ୍ ! ଦେବର୍ଷି ନାରଦ ଯାହା ଯାହା ଭଗବତ୍‌କଥା ସେଠାରେ ବର୍ଣ୍ଣନା କରିଥିଲେ, ତା'ସବୁ ବିସ୍ତାରପୂର୍ବକ ଆପଣ ମୋତେ କହିବା ହୁଅନ୍ତୁ । ଶୁଣିବାପାଇଁ ମୋର ବହୁତ ଇଚ୍ଛା ହେଉଛି ॥୫॥

ମୈତ୍ରେୟ କହିଲେ, ଧ୍ରୁବଙ୍କର ପୁତ୍ର ହେଲେ ଉତ୍କଳ । ପିତା ବନକୁ ପ୍ରସ୍ଥାନ କରିବାପରେ ସେ ପିତାଙ୍କର ଏହି ବିଶାଳ ସାମ୍ରାଜ୍ୟ ଓ ଐଶ୍ୱର୍ଯ୍ୟ ଭୋଗ କରିବାକୁ ଇଚ୍ଛା କଲେ ନାହିଁ ॥୬॥ ସେ ଜନ୍ମରୁ ଅତିଶୟ ଶାନ୍ତ, ଅନାସକ୍ତ ଓ ସମଦର୍ଶୀ ଥିଲେ ଏବଂ ସମସ୍ତ ଲୋକଙ୍କୁ ନିଜ ଆତ୍ମାମଧ୍ୟରେ ଏବଂ ନିଜ ଆତ୍ମାକୁ ସମସ୍ତ ଲୋକଙ୍କଠାରେ ଥିବାର ଦେଖିପାରୁଥିଲେ ॥୭॥ ଭିନ୍ନାଭିନ୍ନ ନଥାଇ ଆତ୍ମସ୍ୱରୂପବୋଧଯୋଗୁଁ ସେ ନିଜ ଆତ୍ମା ମଧ୍ୟରେ ଶାନ୍ତସ୍ୱରୂପ ସର୍ବବ୍ୟାପୀ ଆନନ୍ଦମୟ ବ୍ରହ୍ମକୁ ଦର୍ଶନ କରୁଥିଲେ । ତାଙ୍କ ଅନ୍ତଃକରଣର ବାସନାରୂପ ମଳିନତା ଯୋଗାଗ୍ନିଦ୍ୱାରା ଦଗ୍ଧ ହୋଇ ସାରିଥିଲା ॥୮-୯॥ ଅଜ୍ଞଲୋକମାନେ ତାଙ୍କୁ ବାଟରେ ଦେଖି ଭାବୁଥିଲେ ସେ ଜଣେ ନିର୍ବୁଦ୍ଧିଆ, ମୂର୍ଖ, ଅନ୍ଧ, ବଧିର, ପାଗଳ ଓ ନିଭିଯାଇଥିବା ନିଆଁପରି ତେଜହୀନ ॥୧୦॥ କୁଳବୃଦ୍ଧ ମନ୍ତ୍ରୀମାନେ ତାଙ୍କୁ ଜଡ଼ ଓ ପାଗଳ ବୋଲି ମନେକରି ତାଙ୍କ ସାନଭାଇ ଭ୍ରମିଙ୍କର ପୁତ୍ର ବତ୍ସରଙ୍କୁ ରାଜା କରାଇଲେ ॥୧୧॥ ବତ୍ସରଙ୍କର ପ୍ରିୟ ଭାର୍ଯ୍ୟା ସ୍ୱର୍ବୀଥୀଙ୍କ ଗର୍ଭରୁ ଛ'ଟି ପୁତ୍ରସନ୍ତାନ ଜନ୍ମ ହେଲେ । ସେମାନେ ହେଲେ ପୁଷ୍ପାର୍ଣ୍ଣ, ତିଗ୍ମକେତୁ, ଈଶ, ଊର୍ଜ୍ଜ, ବସୁ ଏବଂ ଜୟ । ପୁଷ୍ପାର୍ଣ୍ଣଙ୍କର ଦୁଇଜଣ ଭାର୍ଯ୍ୟା ପ୍ରଭା ଓ ଦୋଷା । ପ୍ରଭାଙ୍କର ପ୍ରାତଃ, ମଧ୍ୟନ୍ଦିନ ଓ ସାୟଂ ନାମରେ ତିନୋଟି ପୁତ୍ର ହେଲେ ଏବଂ ଦୋଷାଙ୍କର ତିନି ପୁତ୍ର ହେଲେ - ପ୍ରଦୋଷ, ନିଶୀଥ ଓ ବ୍ୟୁଷ୍ଟ । ବ୍ୟୁଷ୍ଟଙ୍କର ଭାର୍ଯ୍ୟା ପୁଷ୍କରିଣୀଙ୍କର ଗର୍ଭରୁ ସର୍ବତେଜା ନାମକ ପୁତ୍ର ଜନ୍ମ ହେଲେ ॥୧୨-୧୪॥ ତାଙ୍କର ପତ୍ନୀ ଆକୂତିଙ୍କଠାରୁ ଚକ୍ଷୁ ନାମକ ପୁତ୍ର ଜନ୍ମ ହେଲେ । ଚାକ୍ଷୁଷ ମନ୍ୱନ୍ତରରେ ସେ ମନୁ ହୋଇଥିଲେ । ଚକ୍ଷୁ-ମନୁଙ୍କର ସ୍ତ୍ରୀ ନଡ୍‌ୱଳାଙ୍କ ଗର୍ଭରୁ ପୁରୁ, କୁତ୍ସ, ତ୍ରିତ, ଦ୍ୟୁମ୍ନ, ସତ୍ୟବାନ୍, ଋତ, ବ୍ରତ, ଅଗ୍ନିଷ୍ଟୋମ, ଅତୀରାତ୍ର, ପ୍ରଦ୍ୟୁମ୍ନ, ଶିବି ଏବଂ ଉଲ୍ମୁକ-ଏହି ବାର ଜଣ ସତ୍ତ୍ୱଗୁଣସମ୍ପନ୍ନ ପୁତ୍ର ଜନ୍ମ ହେଲେ ॥୧୫-୧୬॥ ସେମାନଙ୍କ ମଧ୍ୟରୁ ଉଲ୍ମୁକଙ୍କର ପତ୍ନୀ ପୁଷ୍କରିଣୀଙ୍କ ଗର୍ଭରୁ ଅଙ୍ଗ, ସୁମନା, ଖ୍ୟାତି କ୍ରତୁ, ଅଙ୍ଗିରା ଏବଂ ଗୟ -- ଏହି ଛ'ଜଣ ଯୋଗ୍ୟପୁତ୍ର ଜନ୍ମହେଲେ ॥୧୭॥

ଅଙ୍ଗଙ୍କର ପତ୍ନୀ ଥିଲେ ସୁନୀଥା । ସେ କ୍ରୂରସ୍ୱଭାବ ବେଣଙ୍କୁ ଜନ୍ମ ଦେଲେ । ତାଙ୍କ ଦୁଷ୍ଟ ସ୍ୱଭାବରୁ ବିରକ୍ତ ହୋଇ ରାଜର୍ଷି ଅଙ୍ଗ ନଗର ତ୍ୟାଗ କରି ଚାଲିଗଲେ ॥୧୮॥ ବତ୍ସ ବିଦୁର ! ମୁନିମାନଙ୍କର ବାକ୍ୟ ବଜ୍ରପରି ଅମୋଘ । ସେମାନେ କ୍ରୁଦ୍ଧ ହୋଇ ବେଣଙ୍କୁ ଶାପ ଦେଲେ । ସେ ମରିଯିବାପରେ ତାଙ୍କ ରାଜ୍ୟ ଅରାଜକ ହୋଇଗଲା । ଚୋର, ଡକାୟତମାନଙ୍କର ପୀଡ଼ାରେ ଲୋକେ ଅସ୍ଥିର ହୋଇପଡ଼ିଲେ । ତାହା ଦେଖି ମୁନିମାନେ ବେଣଙ୍କର ଦକ୍ଷିଣ ହସ୍ତକୁ ମନ୍ଥନ କରିବା ଫଳରେ ଭଗବାନ ବିଷ୍ଣୁଙ୍କର ଅଂଶାବତାର ସ୍ୱରୂପ ଆଦିରାଜା ପୃଥୁଙ୍କର ଜନ୍ମ ହେଲା ॥୧୯-୨୦॥ ବିଦୁର କହିଲେ, ମୈତ୍ରେୟ ! ରାଜା ଅଙ୍ଗ ସାଧୁ, ମହାତ୍ମା, ବ୍ରାହ୍ମଣମାନଙ୍କର ଭକ୍ତ ଓ ସଦାଚାରୀ ଥିଲେ । ତାଙ୍କର ବେଣ ପରି କିପରି ଏକ ଦୁଷ୍ଟ ପୁତ୍ର ଜନ୍ମ ହେଲା, 'ଯାହାଫଳରେ ସେ ମନ ଦୁଃଖରେ ଘର ଛାଡ଼ି ଚାଲିଗଲେ ॥୨୧॥ ରାଜଦଣ୍ଡଧାରୀ ବେଣଙ୍କର କି ଦୋଷ ଥିଲା ଯେଉଁଥିପାଇଁ ଧର୍ମଜ୍ଞ ମୁନିମାନେ ତାଙ୍କୁ ବ୍ରହ୍ମଦଣ୍ଡସ୍ୱରୂପ ଅଭିଶାପ ଦେଲେ ? ॥୨୨॥ ଅନିଷ୍ଟ କଲେ ମଧ୍ୟ ରାଜା ପ୍ରଜାମାନଙ୍କର ବଧ୍ୟ ନୁହେଁ । କାରଣ ସେ ଲୋକପାଳମାନଙ୍କ ତେଜରେ ତେଜୀୟାନ୍ ହୋଇଥାଏ ॥୨୩॥ ବ୍ରହ୍ମନ୍ ! ଆପଣ ଭୂତ, ଭବିଷ୍ୟତ ଜାଣିଥିବା ବ୍ୟକ୍ତିଙ୍କ ମଧ୍ୟରେ ଶ୍ରେଷ୍ଠ । ମୁଁ ଆପଣଙ୍କର ଶ୍ରଦ୍ଧାଳୁ ଭକ୍ତ । ତେଣୁ ମୋତେ ଆପଣ ସୁନୀଥାଙ୍କର ପୁତ୍ର ବେଣଙ୍କର କର୍ମସବୁ ଶୁଣାଇବା ହୁଅନ୍ତୁ ॥୨୪॥

ମୈତ୍ରେୟ କହିଲେ, ବିଦୁର ! ରାଜର୍ଷି ଅଙ୍ଗ ଏକ ବିଶାଳ ଅଶ୍ୱମେଧ ଯଜ୍ଞ କରିଥିଲେ । ବେଦବାଦୀ ବ୍ରାହ୍ମଣମାନଙ୍କର ଆବାହନ ସତ୍ତ୍ୱେ ନିଜର ଯଜ୍ଞଭାଗ ନେବାପାଇଁ ଦେବତାମାନେ ସେଠାକୁ ଆସିଲେ ନାହିଁ ॥୨୫॥ ତେଣୁ ଋତ୍ୱିକମାନେ ବିସ୍ମିତ ହୋଇ ଯଜମାନ ଅଙ୍ଗଙ୍କୁ କହିଲେ, ରାଜା ! ଆମେ ଦେବତାଙ୍କ ଉଦ୍ଦେଶ୍ୟରେ ଯେଉଁ ଘୃତାହୁତି ଦେଉଛୁ, ତାହା ସେମାନେ

ଗ୍ରହଣ କରୁ ନାହାନ୍ତି ॥୨୬॥ ଆପଣ ଶ୍ରଦ୍ଧାର ସହିତ ଯଜ୍ଞପାଇଁ ଯେଉଁ ଘୃତାଦି ହୋମସାମଗ୍ରୀ ସଂଗ୍ରହ କରିଛନ୍ତି ତାହା ଦୂଷିତ ହୋଇନାହିଁ । ଆମେ ଯେଉଁ ବେଦମନ୍ତ୍ର ଗାନ କରୁଛୁ ତାହା ବଳହୀନ ନୁହେଁ । ଯେଉଁ ଯାଜକମାନଙ୍କୁ ଆପଣ ନିଯୁକ୍ତ କରିଛନ୍ତି, ସେମାନେ ମଧ୍ୟ ବ୍ରତଧାରୀ ଯୋଗ୍ୟ ବ୍ୟକ୍ତି । ଏ ଯଜ୍ଞରେ ଦେବତାମାନଙ୍କ ପ୍ରତି ଅଣୁମାତ୍ର ହେଳା କରାଯାଇଥିବା ଆମେ ଦେଖୁ ନାହୁଁ । ଯଜ୍ଞକର୍ମର ଅଧ୍ୟକ୍ଷ ଦେବତାମାନେ ତାଙ୍କର ଯଜ୍ଞଭାଗ ନେବାପାଇଁ କାହିଁକି ଆସୁନାହାନ୍ତି, ଆମେ ଜାଣିନାହୁଁ ॥୨୭-୨୮॥ ମୈତ୍ରେୟ କହିଲେ, ଋତ୍ୱିକମାନଙ୍କର କଥା ଶୁଣି ଯଜମାନ ଅଙ୍ଗଙ୍କ ମନରେ ବହୁତଦୁଃଖ ହେଲା ଏବଂ ସେ ଯାଜକମାନଙ୍କର ଅନୁମତି ନେଇ ସେମାନଙ୍କୁ ପଚାରିଲେ ॥୨୯॥ ସଦସ୍ୟଗଣ, ଆବାହନ କଲେ ମଧ୍ୟ ଦେବତାମାନେ ଆସୁ ନାହାନ୍ତି କି ସେମାନଙ୍କର ଯଜ୍ଞଭାଗ ଗ୍ରହଣ କରୁ ନାହାନ୍ତି । ମୋର କି ଅପରାଧ ହୋଇଛି, ଆପଣମାନେ କହନ୍ତୁ ॥୩୦॥ ଯାଜକମାନେ କହିଲେ, ରାଜା, ଏ ଜୀବନରେ ଆପଣ ସାମାନ୍ୟ ଅପରାଧ ବି କରି ନାହାନ୍ତି । କିନ୍ତୁ ପୂର୍ବଜନ୍ମର କୌଣସି ଏକ ଅପରାଧବଶରୁ ଆପଣଙ୍କର ସମସ୍ତ ଗୁଣ ଥିଲେ ମଧ୍ୟ ଏ ଜନ୍ମରେ ଆପଣ ଅପୁତ୍ରିକ ହୋଇ ରହିଛନ୍ତି ॥୩୧॥

ରାଜା ! ଆପଣଙ୍କର ମଙ୍ଗଳ ହେଉ । ଏକ ଉତ୍ତମ ପୁତ୍ରଲାଭ ପାଇଁ ଆପଣ ଏକ ପୁତ୍ରେଷ୍ଟି ଯଜ୍ଞ କରନ୍ତୁ । ଭଗବାନ ଯଜ୍ଞେଶ୍ୱର ଆପଣଙ୍କୁ ଏକ ପୁତ୍ର ଦାନ କରିବେ ॥୩୨॥ ଆପଣଙ୍କ ପୁତ୍ରଲାଭପାଇଁ ଯଜ୍ଞପୁରୁଷ ଶ୍ରୀହରିଙ୍କୁ ଆବାହନ କରାଗଲେ ଦେବତାମାନେ ନିଜ ନିଜର ଯଜ୍ଞଭାଗ ଗ୍ରହଣ କରିବେ ॥୩୩॥ ଭକ୍ତ ଯାହା ଯାହା କାମନା କରେ, ଭଗବାନ ଶ୍ରୀହରି ତାହାସବୁ ଦାନ କରିଥା'ନ୍ତି । ତାଙ୍କୁ ଯେପରି ଆରାଧନା କରାଯାଏ, ଆରାଧନାକାରୀଙ୍କୁ ସେହିପରି ଫଳ ମିଳେ ॥୩୪॥ ଏଣୁ ରାଜାଙ୍କର ପୁତ୍ରଲାଭପାଇଁ ଏକ ଯଜ୍ଞ କରାଗଲା ଏବଂ ଯାଜକମାନେ ଭଗବାନ ବିଷ୍ଣୁଙ୍କୁ ପୁରୋଡାଶ ନାମକ ଚରୁ ସମର୍ପଣ କଲେ ॥୩୫॥ ଯଜ୍ଞରୁ ଶୁକ୍ଳାମ୍ବରଧାରୀ ସୁବର୍ଣ୍ଣର ମାଳା ପିନ୍ଧିଥିବା ଏକ ପୁରୁଷଙ୍କର ଆବିର୍ଭାବ ହେଲା; ସେ ପାୟସ ଥିବା ଏକ ସୁବର୍ଣ୍ଣର ପାତ୍ର ଧରିଥିଲେ ॥୩୬॥ ଉଦାରମନା ରାଜା ଅଙ୍ଗ ଯାଜକମାନଙ୍କର ଅନୁମତି ନେଇ କୃତାଞ୍ଜଳିପୁଟରେ ସେହି ପାୟସକୁ ଗ୍ରହଣ କଲେ ଓ ତାହାକୁ ଆଘ୍ରାଣ କରି ଆନନ୍ଦରେ ପତ୍ନୀଙ୍କୁ ପ୍ରଦାନ କଲେ ॥୩୭॥ ପୁତ୍ରହୀନା ରାଣୀ ପତିଙ୍କଠାରୁ ସେହି ପୁତ୍ରପ୍ରଦାୟକ ପାୟସକୁ ସେବନ କଲେ ଏବଂ ପତିଙ୍କର ସହବାସରେ ଗର୍ଭଧାରଣ କଲେ । ଠିକ୍ ସମୟରେ ତାଙ୍କର ଏକ ପୁତ୍ର ଜାତ ହେଲା ॥୩୮॥

ସେହି ବାଳକ ଅଧର୍ମଙ୍କ ଅଂଶରେ ଜନ୍ମ ହୋଇ ନିଜର ମାତାମହ ମୃତ୍ୟୁଙ୍କର ଅନୁଗାମୀ ଭାବରେ ବାଲ୍ୟକାଳରୁ ହିଁ ଅଧାର୍ମିକ ଥିଲା ॥୩୯॥ ସେହି ବାଳକ ହେଉଛି ବେଣ । ସେହି ଦୁଷ୍ଟ ବାଳକ ଶରାସନ ସହ ମୃଗୟାପାଇଁ ବଣକୁ ଯାଇ ନିରୀହ ମୃଗମାନଙ୍କୁ ମାରିପକାଉଥିଲା । ତେଣୁ ପୁରବାସୀ ଲୋକ ତାକୁ ଦେଖି କହୁଥିଲେ, 'ବେଣ ଆସିଲା ରେ ବେଣ ଆସିଲା' ॥୪୦॥ ସେ ଏପରି ନିଷ୍ଠୁର ଥିଲା ଯେ, ତା'ସହିତ ଖେଳୁଥିବା ସମବୟସ୍କ ବାଳକମାନଙ୍କୁ କ୍ରୀଡ଼ା ସ୍ଥଳରେ ନିର୍ଦ୍ଦୟ ଭାବରେ ପଶୁପରି ମାରିପକାଉଥିଲା ॥୪୧॥ ପୁତ୍ରର ଏହି ଦୁଷ୍ଟ ସ୍ୱଭାବକୁ ଦେଖି ରାଜା ତାକୁ ବହୁ ବାଟରେ ଶାସନ କରିବାକୁ ଚେଷ୍ଟା କଲେ ମଧ୍ୟ ପାରିଲେ ନାହିଁ । ତେଣୁ ସେ ଅତି ଦୁଃଖରେ କାଳଯାପନ କରୁଥିଲେ ॥୪୨॥ ଯେଉଁ ଗୃହସ୍ଥର ପୁତ୍ର ନାହିଁ, ସେ ପୂର୍ବ ଜନ୍ମରେ ନିଶ୍ଚୟ ଭଗବାନ ଶ୍ରୀହରିଙ୍କର ଅର୍ଚ୍ଚନା କରିଥିବ । କାରଣ କୁପୁତ୍ର ଯୋଗୁଁ ତାକୁ ଅସହ୍ୟ ଦୁଃଖ ଭୋଗ କରିବାକୁ ହୁଏ ନାହିଁ ॥୪୩॥ କୁପୁତ୍ରଯୋଗୁଁ ଯଶ ନଷ୍ଟ ହୋଇ ମହାପାପ ଓ ଅଧର୍ମ ହୋଇଥାଏ । ସମସ୍ତଙ୍କର ବିରୋଧ ଓ ଅସୀମ ମନସ୍ତାପ ସହିବାକୁ ପଡ଼େ ॥୪୪॥ ଯେଉଁ ପୁତ୍ରଯୋଗୁଁ ଗୃହ ସବୁବେଳେ ଦୁଃଖମୟ ହୁଏ, ସେପରି ଏକ ନାମମାତ୍ର ପୁତ୍ରସନ୍ତାନ ପାଇଁ ମୋହଗ୍ରସ୍ତ ହେବା କେଉଁ ବିଜ୍ଞବ୍ୟକ୍ତି ବା' ଇଚ୍ଛା କରିବ ? ॥୪୫॥ ମୁଁ କିନ୍ତୁ ସତ୍‌ପୁତ୍ର ଅପେକ୍ଷା କୁପୁତ୍ରକୁ ଭଲ ମନେ କରେ, କାରଣ ସତ୍‌ପୁତ୍ରପାଇଁ ଗୃହପ୍ରତି ମମତା ଜାତ ହୁଏ, ମାତ୍ର କୁପୁତ୍ର ଏପରି ଦୁଃଖ ଦିଏ ଯେ, ଦୁଃଖପୂର୍ଣ୍ଣ ଗୃହ ଛାଡ଼ି ଚାଲିଯିବା ସହଜ

ହୋଇଯାଏ ॥୪୬॥ ଏହା ଚିନ୍ତା କରି କରି ରାଜାଙ୍କୁ ରାତିରେ ନିଦ୍ରା ହେଲା ନାହିଁ । ଦିନେ ନିଶାର୍ଦ୍ଧ ସମୟରେ ଉଠିପଡ଼ି ଗଭୀର ନିଦ୍ରାରେ ଶୋଇଥିବା ବେଣଙ୍କର ମାତାଙ୍କୁ ଏବଂ ଐଶ୍ୱର୍ଯ୍ୟମୟ ରାଜପ୍ରାସାଦକୁ ତ୍ୟାଗ କରି ସମସ୍ତଙ୍କ ଅଲକ୍ଷ୍ୟରେ ସେ ବନକୁ ପଳାଇଗଲେ ॥୪୭॥ ରାଜା ବିରକ୍ତ ହୋଇ ଘର ଛାଡ଼ି ଚାଲିଯାଇଛନ୍ତି ଏହା ଜାଣି ପ୍ରଜା, ପୁରୋହିତ, ମନ୍ତ୍ରୀ ଏବଂ ସୁହୃଦ୍‌ମାନେ ଅତିଶୟ ଶୋକବିହ୍ୱଳ ହୋଇପଡ଼ିଲେ । ମନ୍ଦଯୋଗୀ ଯେପରି ନିଜର ଆତ୍ମାମଧ୍ୟରେ ଥିବା ଗୂଢ଼ପୁରୁଷଙ୍କୁ ବାହାରେ ଖୋଜିଲେ ପାଏ ନାହିଁ, ସେମାନେ ସେହିପରି ପୃଥିବୀସାରା ରାଜାଙ୍କୁ ଖୋଜିଖୋଜି ପାଇଲେ ନାହିଁ ॥୪୮॥ କୌଣସିଠାରେ ନ ପାଇବାରୁ, ସେମାନେ ନିରାଶ ହୋଇ ନଗରକୁ ଫେରିଆସିଲେ ଏବଂ ସେଠାରେ ଏକତ୍ର ହୋଇଥିବା ଋଷିମାନଙ୍କୁ ସାଶ୍ରୁ ନୟନରେ ଅଭିନନ୍ଦନ କରି ରାଜାଙ୍କର ସନ୍ଧାନ ନ ପାଇବା ବିଷୟ ଜଣାଇଲେ ॥୪୯॥

## ଚତୁର୍ଦ୍ଦଶ ଅଧ୍ୟାୟ

## ବେଣଙ୍କର କଥା

ଲୋକଙ୍କର ମଙ୍ଗଳକାମୀ ଭୃଗୁ ଆଦି ଋଷି ଦେଖିଲେ ଯେ ଅଙ୍ଗ ଚାଲିଯିବାପରେ ପୃଥିବୀକୁ ରକ୍ଷା କରିବାପାଇଁ କେହି ନାହାନ୍ତି ଏବଂ ଲୋକମାନେ ପଶୁତୁଲ୍ୟ ବିଶୃଙ୍ଖଳ ହୋଇ ପଡ଼ିଲେଣି ॥୧॥ ବିଦୁର, ମନ୍ତ୍ରୀମାନଙ୍କର ଅସମ୍ମତି ଥିଲେ ମଧ୍ୟ ଏହି ବ୍ରହ୍ମବାଦୀମାନେ ମାତା ସୁନୀଥାଙ୍କୁ ପଚାରି ବେଣଙ୍କୁ ଭୂମଣ୍ଡଳର ରାଜା ପଦରେ ଅଭିଷିକ୍ତ କଲେ ॥୨॥ ଉଗ୍ରସ୍ୱଭାବ ବେଣ ରାଜସିଂହାସନରେ ବସିବାର ଶୁଣି ଚୋର ଡକାୟତମାନେ ସାପଙ୍କ ଡରରେ ମୂଷାମାନେ ଗାତରେ ପଶିଯିବା ପରି କିଏ କୁଆଡ଼େ ଲୁଚିଗଲେ ॥୩॥ ରାଜସିଂହାସନ ପାଇବାପରେ ବେଣ ଅଷ୍ଟୈଶ୍ୱର୍ଯ୍ୟର ଅଧିକାରୀ ହୋଇ ଗର୍ବରେ ଫାଟି ପଡ଼ିଲେ ଏବଂ ମହାତ୍ମାମାନଙ୍କୁ ଅବଜ୍ଞା କରିବାକୁ ଲାଗିଲେ ॥୪॥ ଗର୍ବରେ ଅନ୍ଧ ହୋଇ ଅଙ୍କୁଶହୀନ ହାତୀପରି ରଥାରୋହଣ ପୂର୍ବକ ସେ ଆକାଶ-ପୃଥିବୀକୁ କମ୍ପମାନ କରି ଚତୁର୍ଦ୍ଦିଗରେ ବିଚରଣ କଲେ ॥୫॥ କେହି ବ୍ରାହ୍ମଣ ଯଜ୍ଞ କରିପାରିବେ ନାହିଁ, ଦାନ କରିପାରିବେ ନାହିଁ, ସେବା କରିପାରିବେ ନାହିଁ ବୋଲି ଡେଙ୍ଗୁରା ପିଟି ଚାରିଆଡ଼େ ଏହା ଘୋଷଣା କରାଇଲେ ଏବଂ ରାଜ୍ୟରେ ସମସ୍ତ ଧର୍ମ କର୍ମ ବନ୍ଦ ହୋଇଗଲା ॥୬॥ ଦୁର୍ବୃତ୍ତ ବେଣଙ୍କର ଦୁଷ୍କର୍ମ ସବୁ ଦେଖି ମୁନିଋଷିମାନେ ଏକତ୍ର ହେଲେ ଏବଂ ଲୋକଙ୍କ ଦୁଃଖ ଦେଖି ଦୟାପରବଶ ହୋଇ କହିଲେ ॥୭॥ ଅହୋ, ଲୋକମାନେ ମହାସଙ୍କଟରେ ପଡ଼ିଗଲେ । ଦୁଇ ମୁହଁରେ ଜଳୁଥିବା କାଠର ମଝିରେ ଥିବା କୀଟମାନଙ୍କର ଯେଉଁ ଦଶା ହୁଏ, ବର୍ତ୍ତମାନ ପ୍ରଜାମାନଙ୍କର ସେହି ଦଶା । ଗୋଟିଏ ପଟରେ ରାଜା, ଅନ୍ୟପଟରେ ଚୋର ଡକାୟତମାନେ ॥୮॥ ରାଜପଦ ପାଇଁ ଅଯୋଗ୍ୟ ହେଲେ ମଧ୍ୟ ଅରାଜକତା ଭୟରୁ ବେଣଙ୍କୁ ରାଜା କରାଯାଇଥିଲା । କିନ୍ତୁ ବେଣଙ୍କପ୍ରତି ପ୍ରଜାଙ୍କର ଭୟ ବଢ଼ିଗଲାଣି । ଏଥିରେ କିପରି ସେମାନଙ୍କର ମଙ୍ଗଳ ହେବ ? ॥୯॥ ସୁନୀଥାଙ୍କ ଗର୍ଭରୁ ଜାତ ଏହି ବେଣ ସ୍ୱଭାବରେ ଦୁଷ୍ଟ । ସେଥିରେ ପୁଣି ସାପକୁ କ୍ଷୀର ଦେଇ ପାଳିଲେ ସେ ଯେପରି ପାଳକର ଅନିଷ୍ଟ କରେ, ସେହିପରି ବେଣକୁ ରାଜା କରି ଆମକୁ ତାର ଫଳ ଭୋଗିବାକୁ ପଡୁଚି ॥୧୦॥ ପ୍ରଜାପାଳନପାଇଁ ତାକୁ ନିଯୁକ୍ତ କରାଯାଇଥିଲା । ବର୍ତ୍ତମାନ ସେ ପ୍ରଜାଙ୍କୁ ବିନାଶ କରିବାରେ ଲାଗିଯାଇଚି । ତଥାପି ତାକୁ ବୁଝାଇବା ଉଚିତ ଯେପରିକି ତା'ର ପାପ ଆମକୁ ସ୍ପର୍ଶ ନ କରେ ॥୧୧॥ ସବୁକଥା ଜାଣି ମଧ୍ୟ ଆମେ ବେଣକୁ ରାଜା କରାଇଲେ । ଏବେ ତ ଲୋକନିନ୍ଦାରେ ସେ ଜଳିଗଲାଣି । ଯଦି ସେ ଅଧର୍ମୀ ଆମର ଉପଦେଶ ନ ମାନେ, ତା'ହେଲେ ନିଜ ତେଜରେ ତାକୁ ଭସ୍ମ କରିଦେବା ॥୧୨॥

ଏହିପରି ସ୍ଥିର କରି ମୁନିମାନେ ବେଣପାଖକୁ ଗଲେ ଏବଂ ନିଜର କ୍ରୋଧକୁ ମନରେ ଚାପି ରଖି ମଧୁରବାକ୍ୟରେ ତାଙ୍କୁ ବୁଝାଇବାପାଇଁ ଚେଷ୍ଟା କଲେ ।।୧୩।। ମୁନିମାନେ କହିଲେ, ନୃପଶ୍ରେଷ୍ଠ, ଆମେ ଯାହା କହିବାକୁ ଆସିଚୁ ଆପଣ ତାହା ହୃଦୟଙ୍ଗମ କରନ୍ତୁ । ଏହାଦ୍ୱାରା ଆପଣଙ୍କର ଆୟୁ, ଐଶ୍ୱର୍ଯ୍ୟ, ବଳ ଏବଂ କୀର୍ତ୍ତିର ବୃଦ୍ଧି ହେବ ।।୧୪।। ଯଦି ମନୁଷ୍ୟ କାୟମନୋବାକ୍ୟରେ ଓ ବୁଦ୍ଧିଦ୍ୱାରା ଧର୍ମାଚରଣ କରେ, ତା'ହେଲେ ସେ ସ୍ୱର୍ଗ ଆଦି ଲୋକ ପ୍ରାପ୍ତ ହୁଏ । ନିଷ୍କାମ ଭାବରେ କଲେ ଏହା ତାକୁ ଅନନ୍ତ ମୋକ୍ଷପଦ ପ୍ରଦାନ କରେ ।।୧୫।। ବୀର, ଆପଣଙ୍କ ପାଇଁ ପ୍ରଜାମାନଙ୍କ ମଙ୍ଗଳକାରକ ଏହି ଧର୍ମର ବିନାଶ ନ ହେଉ । ଧର୍ମ ନଷ୍ଟ ହେଲେ ରାଜା ମଧ୍ୟ ତା'ର ଐଶ୍ୱର୍ଯ୍ୟରୁ ତଳକୁ ଖସି ପଡ଼ିବ ।।୧୬।। ରାଜନ୍, ଯେଉଁ ରାଜା ଅସାଧୁ ମନ୍ତ୍ରୀ ଓ ଚୋର ଆଦିଙ୍କ ଠାରୁ ପ୍ରଜାମାନଙ୍କୁ ରକ୍ଷା କରେ ଏବଂ ନ୍ୟାୟୋଚିତ ରାଜସ୍ୱ ଗ୍ରହଣ କରେ, ସେ ଇହଲୋକ ଓ ପରଲୋକରେ ସୁଖ ଭୋଗ କରେ ।।୧୭।। ମହାଭାଗ, ରାଜ୍ୟ ଓ ନଗରରେ ବର୍ଣ୍ଣାଶ୍ରମଧର୍ମ ପାଳନ କରି ଲୋକେ ସ୍ୱଧର୍ମରେ ଭଗବାନ ଯଜ୍ଞପୁରୁଷଙ୍କୁ ଆରାଧନା କରନ୍ତି । ଭଗବତ୍ ଅନୁଶାସନରେ ରହୁଥିବା ସେହି ରାଜ୍ୟର ରାଜାପ୍ରତି ସର୍ବାନ୍ତର୍ଯାମୀ ଭଗବାନ୍ ପ୍ରସନ୍ନ ହୁଅନ୍ତି ।।୧୮-୧୯।। ସେହି ଜଗଦୀଶ୍ୱର ପ୍ରସନ୍ନ ହେଲେ କୌଣସି ବସ୍ତୁ ଅଲଭ୍ୟ ରହେ ନାହିଁ । ଇନ୍ଦ୍ରାଦି ଲୋକପାଳଙ୍କ ସହିତ ସମସ୍ତ ଲୋକ ଆଦରରେ ତାଙ୍କୁ ପୂଜୋପହାର ଅର୍ପଣ କରନ୍ତି ।।୨୦।।

ରାଜା ! ଭଗବାନ୍ ହେଉଛନ୍ତି ସମସ୍ତ ଲୋକ, ଲୋକପାଳ ଓ ଯଜ୍ଞର ନିୟନ୍ତା । ସେ ତିନି ବେଦର ସ୍ୱରୂପ । ଦ୍ରବ୍ୟମୟ ଓ ତପୋମୟ । ତେଣୁ ଆପଣଙ୍କର ରାଜ୍ୟବାସୀ ପ୍ରଜାମାନେ ଆପଣଙ୍କର ମଙ୍ଗଳପାଇଁ ବିଭିନ୍ନପ୍ରକାର ଯଜ୍ଞଦ୍ୱାରା ଭଗବାନଙ୍କୁ ଆରାଧନା କରନ୍ତି । ଆପଣଙ୍କ ବାକ୍ୟ ସେମାନଙ୍କ ପ୍ରତି ଅନୁକୂଳ ହେବା ଉଚିତ ।।୨୧।। ବୀର ! ଆପଣଙ୍କ ରାଜ୍ୟରେ ବ୍ରାହ୍ମଣମାନେ ଯଜ୍ଞଦ୍ୱାରା ଶ୍ରୀହରିଙ୍କ ଅଂଶସ୍ୱରୂପ ଦେବତାମାନଙ୍କୁ ଭଲ ଭାବରେ ପୂଜା କରି ସନ୍ତୁଷ୍ଟ କଲେ ସେମାନେ ବାଞ୍ଛିତ ଫଳ ଦାନ କରିବେ । ତେଣୁ ଯଜ୍ଞାଦି ଧର୍ମକାର୍ଯ୍ୟ ବନ୍ଦ କରି ଦେବତାମାନଙ୍କୁ ଅବଜ୍ଞା କରିବା ଉଚିତ ହେବ ନାହିଁ ।।୨୨।। ବେଣ କହିଲେ, ତୁମେମାନେ ଅଜ୍ଞ । ନିଜ ପତିକୁ ଛାଡ଼ି ସ୍ତ୍ରୀ ଜାରପୁରୁଷ ପଛରେ ପଡ଼ିବାପରି ମୁଁ ତୁମର ପୋଷଣକର୍ତ୍ତା ହେଲେ ମଧ୍ୟ ତୁମେ ସବୁ ମୋତେ ଛାଡ଼ି ଅଧର୍ମକୁ ଧର୍ମ ବୋଲି ମନେ କରୁଛ ।।୨୩।। ଯେଉଁ ମୂର୍ଖ ଲୋକମାନେ ରାଜାରୂପୀ ଈଶ୍ୱରଙ୍କୁ ଅବଜ୍ଞା କରନ୍ତି, ଇହଲୋକରେ କିମ୍ବା ପରଲୋକରେ ସେମାନଙ୍କର କେବେ ମଙ୍ଗଳ ହୁଏ ନାହିଁ ।।୨୪।। ଯାହାଙ୍କଠାରେ ତୁମର ଏତେ ଭକ୍ତି, ସେ ଯଜ୍ଞପୁରୁଷ କିଏ ? ନିଜ ସ୍ୱାମୀର ସ୍ନେହକୁ ଦୂରେଇ ଦେଇ କୁଳଟା ସ୍ତ୍ରୀମାନେ ଜାରପୁରୁଷ ପ୍ରତି ଆକୃଷ୍ଟ ହେବାପରି ତୁମର ଅବସ୍ଥା ହୋଇଛି ।।୨୫।। ବ୍ରହ୍ମା, ବିଷ୍ଣୁ, ମହେଶ୍ୱର, ଇନ୍ଦ୍ର, ବାୟୁ, ଯମ, ସୂର୍ଯ୍ୟ, ପର୍ଜନ୍ୟ(ମେଘର ଦେବତା), କୁବେର, ଚନ୍ଦ୍ର, ପୃଥିବୀ, ଅଗ୍ନି, ବରୁଣ ଏବଂ ଏମାନଙ୍କ ଛଡ଼ା ଅନ୍ୟ ଯେଉଁସବୁ ଦେବତା ଅଛନ୍ତି ସମସ୍ତେ ବର ଦେଇ ପାରନ୍ତି, ଶାପ ବି ଦେଇପାରନ୍ତି । ଏମାନେ ସମସ୍ତେ ରାଜାର ଦେହରେ ହିଁ ରହିଥା'ନ୍ତି । ତେଣୁ ରାଜା ହେଉଛି ସର୍ବଦେବମୟ ।।୨୬-୨୭।। ଋଷିଗଣ, ଈର୍ଷାପରାୟଣ ନହୋଇ ମୋତେ ପୂଜା କର । ପୂଜାର ସମସ୍ତ ଉପହାରଦ୍ରବ୍ୟ ମୋତେ ଅର୍ପଣ କର । ମୋ ଛଡ଼ା କିଏ ଅଗ୍ରପୂଜାର ଅଧିକାରୀ ହୋଇପାରିବ ? ।।୨୮।।

ମୈତ୍ରେୟ କହିଲେ, ବେଣର ବୁଦ୍ଧିବିପର୍ଯ୍ୟୟ ଘଟିଥିଲା । ତେଣୁ ନିଜର ମଙ୍ଗଳ କ'ଣ ଜାଣି ପାରୁନଥିବା ଏହି ଭ୍ରଷ୍ଟ, ବିପଥଗାମୀ ରାଜା ମୁନିମାନଙ୍କର ଅନୁନୟ - ବିନୟକୁ ଗ୍ରହଣ କଲା ନାହିଁ ।।୨୯।। ବିଦୁର ! ଏହିପରି ନିଜକୁ ପଣ୍ଡିତ ବୋଲି ମନେ କରୁଥିବା ରାଜାଦ୍ୱାରା ଅପମାନିତ ହୋଇ ଏବଂ ସେମାନଙ୍କ ସଦୁପଦେଶ ବ୍ୟର୍ଥ ହେବାର ଦେଖି ମୁନିମାନେ ଅତିଶୟ କ୍ରୁଦ୍ଧ ହୋଇପଡ଼ିଲେ ।।୩୦।। ସେମାନେ ଚିତ୍କାର କଲେ, ଏହି ନିଷ୍ଠୁର ପାପୀକୁ ହତ୍ୟା କର, କାରଣ ଜୀବିତ ରହିଲେ ଏ ସଂସାରକୁ ଭସ୍ମସାତ୍ କରିଦେବ ।।୩୧।। ଏହି ନିର୍ଲ୍ଲଜ ଯଜ୍ଞାଧିପତି ବିଷ୍ଣୁଙ୍କର ନିନ୍ଦା କରୁଛି । ଏ ଦୁଷ୍ଟ ରାଜସିଂହାସନରେ ବସିବାର ଯୋଗ୍ୟ ନୁହେଁ ।।୩୨।। ଯାହାଙ୍କ ଅନୁଗ୍ରହରୁ ସେ ଏପରି ଐଶ୍ୱର୍ଯ୍ୟ ଲାଭ କରିଚି, ଏହି ଅଶୁଭ ବ୍ୟକ୍ତି ଛଡ଼ା ଆଉ କିଏ ତାଙ୍କୁ ନିନ୍ଦା

କରି ପାରିବ ? ।।୩୩।। ବେଣକୁ ମାରିବା ପାଇଁ ମୁନିମାନେ ସ୍ଥିର କରିନେଲେ । ଭଗବାନଙ୍କୁ ନିନ୍ଦା କରିବାଯୋଗୁଁ ସେ ତ ପୂର୍ବରୁ ମରିସାରିଥିଲା । କେବଳ ହୁଙ୍କାରଗର୍ଜନ ଦ୍ୱାରା ଏମାନେ ତାକୁ ପୂରା ଶେଷ କରିଦେଲେ ।।୩୪।। ଋଷିମାନେ ନିଜନିଜ ଆଶ୍ରମକୁ ଚାଲିଯିବା ପରେ ବେଣର ଶୋକାର୍ତ୍ତା ମାତା ସୁନୀଥା ପୁତ୍ରର ମୃତଦେହକୁ ନେଇ ମନ୍ତ୍ରଯୋଗେ ଏବଂ ଅନ୍ୟ ଉପାୟରେ ରକ୍ଷା କଲେ ।।୩୫।।

ଦିନେ ମୁନିମାନେ ସରସ୍ୱତୀ -ଜଳରେ ସ୍ନାନ କରି ଅଗ୍ନିରେ ଆହୁତି ଦେଇ ନଦୀକୂଳରେ ଭଗବତ୍ କଥା ଚର୍ଚ୍ଚା କରୁଥିଲେ ।।୩୬।। ସେଇ ସମୟରେ ଭୟଙ୍କର ଉତ୍ପାତଯୋଗୁଁ ଚାରିଆଡ଼େ ଲୋକଙ୍କ ମଧ୍ୟରେ ଆତଙ୍କ ଖେଳି ଯାଇଥିବାର ଦେଖି ଋଷିମାନେ ବିଚାର କଲେ, ଲୋକମାନଙ୍କର କେହି ରକ୍ଷକ ନଥିବା ଯୋଗୁ ଚୋର, ଡକାୟତ ଆଦି ଅପରାଧୀଙ୍କଦ୍ୱାରା ଏପରି ଅମଙ୍ଗଳ ସୃଷ୍ଟି ହେଉ ନାହିଁ ତ ? ।।୩୭।। ଋଷିମାନେ ଏହିପରି ଆଲୋଚନା କରୁଥିବା ବେଳେ ଚୋର, ଡକାୟତଙ୍କ ଆକ୍ରମଣରେ ଚାରିଆଡ଼େ ପ୍ରବଳ ଧୂଳି ଉଠୁଥିବାର ସେମାନେ ଦେଖିପାରିଲେ ।।୩୮।। ସେମାନେ ଜାଣିପାରିଲେ ଯେ, ରାଜା ବେଣ ଚାଲିଯିବା ପରେ ଲୋକଙ୍କର ଆଉ କେହି ରକ୍ଷାକର୍ତ୍ତା ନାହାନ୍ତି । ଲୋକମାନେ ପରସ୍ପର ହଣାକଟା ହେଉଛନ୍ତି । ପରସ୍ପର ଧନ ଲୁଟପାଟ କରୁଛନ୍ତି । ଚୋର, ଡକାୟତମାନେ ଚାରିଆଡ଼େ ମାତିଗଲେଣି । ରାଜ୍ୟ ଶକ୍ତିହୀନ ଓ ଅରାଜକ ହୋଇଗଲାଣି । ଯେଉଁମାନେ ଏହାକୁ ନିବାରଣ କରିପାରନ୍ତେ, ସେମାନେ ପରସ୍ପରର ଦୋଷ ଦର୍ଶାଇବାରେ ଲାଗିଛନ୍ତି ।।୩୯-୪୦।। ବ୍ରାହ୍ମଣମାନେ ଶାନ୍ତ ଓ ସମଦର୍ଶୀ; ତଥାପି ଯଦି ସେମାନେ ଦୁଃଖିଲୋକଙ୍କୁ ଉପେକ୍ଷା କରନ୍ତି, ତା'ହେଲେ ପାଣିମାଠିଆରୁ ପାଣି ବହିଯିବା ପରି ସେମାନଙ୍କ ବ୍ରହ୍ମଶକ୍ତି ନଷ୍ଟ ହୋଇଯାଏ ।।୪୧।। ରାଜର୍ଷି ଅଙ୍ଗଙ୍କର ବଂଶ ନାଶ ହେବା ଉଚିତ ନୁହେଁ । କାରଣ ସେହି ବଂଶରେ ଅମୋଘଶକ୍ତିସମ୍ପନ୍ନ ଭଗବତ୍‌ପରାୟଣ ରାଜା ଜନ୍ମ ଗ୍ରହଣ କରିଛନ୍ତି ।।୪୨।। ଏହା ନିଶ୍ଚିତ କରି ଋଷିମାନେ ମୃତରାଜା ବେଣଙ୍କର ଉରୁକୁ ଜୋର୍‌ରେ ମନ୍ଥନ କଲେ ଏବଂ ସେଥିରୁ ଏକ ବାମନ ପୁରୁଷ ଜନ୍ମ ନେଲା ।।୪୩।। ସେହି ବାମନର ବର୍ଣ୍ଣ କାକର ବର୍ଣ୍ଣ ପରି କଳା, ଶରୀର ଖର୍ବ । ହସ୍ତ, ପାଦ କ୍ଷୁଦ୍ର; ହନୁ ବଡ଼ । ନାକ ଚେପଟା, ଆଖି ରକ୍ତବର୍ଣ୍ଣ ଓ ବାଳ ତାମ୍ର ବର୍ଣ୍ଣ ।।୪୪।। କ'ଣ କରିବି ବୋଲି, ଅତି ବିନୟରେ କହୁଥିବା ସେହି ବାମନଟିକୁ 'ନିଷୀଦ' ଅର୍ଥାତ୍ ବସିପଡ଼, ବୋଲି ସେମାନେ କହିବାରୁ ସେ ନିଷାଦ ହୋଇଗଲା ।।୪୫।। ଜନ୍ମହେବା ମାତ୍ରେ ସେ ବେଣଙ୍କର ଭୟାନକ ପାପକୁ ନିଜ ଦେହକୁ ନେଇଗଲା । ତା'ର ବଂଶଜମାନେ ଅରଣ୍ୟ ପର୍ବତମାନଙ୍କରେ ବାସ କଲେ ।।୪୬।।

## ପଞ୍ଚଦଶ ଅଧ୍ୟାୟ

# ରାଜା ପୃଥୁ

ମୈତ୍ରେୟ କହିଲେ, ଏହାପରେ ମୁନିମାନେ ଅପୁତ୍ରିକ ବେଣଙ୍କର ବାହୁଦ୍ୱୟକୁ ମନ୍ଥନ କଲେ । ସେଥିରୁ ଯାଆଁଳା ପୁଅଝିଅ ଦୁଇଟି ଜନ୍ମ ହେଲେ । ବେଦଜ୍ଞ ଋଷିମାନେ ତାହା ଦେଖି ଦୁହିଁଙ୍କଠାରେ ଭଗବାନଙ୍କର କଳା ଅଛି ବୋଲି ଜାଣିପାରିଲେ ଏବଂ ବହୁତ ଖୁସି ହୋଇଗଲେ ।।୧-୨।। ଋଷିମାନେ କହିଲେ, ଏହି ପୁରୁଷ ଭଗବାନ ବିଷ୍ଣୁଙ୍କର ଭୁବନପାଳିନୀ କଳା ଏବଂ ଏହି କନ୍ୟା ବିଷ୍ଣୁଙ୍କ ଠାରୁ ବିଚ୍ଛେଦ ନ ହେଉଥିବା (ଅନପାୟିନୀ) ଲକ୍ଷ୍ମୀଙ୍କ କଳା ।।୩।। ଏହି ପୁରୁଷ ରାଜାମାନଙ୍କ ମଧ୍ୟରେ ଶ୍ରେଷ୍ଠ ହୋଇ ଚତୁର୍ଦିଗରେ ତାଙ୍କର ଯଶ ବିସ୍ତାର କରିବେ । ଏହି ମହାଯଶାଙ୍କର ନାମ ହେବ ମହାରାଜ ପୃଥୁ ।।୪।। ଏହି ସୁଦର୍ଶନା ଦେବୀ ସମସ୍ତଗୁଣରୂପକ ଅଳଙ୍କାରରେ ଭୂଷିତା ହୋଇ ଅର୍ଚ୍ଚି ନାମ ବହନ କରି ପୃଥୁଙ୍କୁ ନିଜ ପତିରୂପେ ବରଣ

କରିବେ ॥୫॥ ସଂସାରକୁ ରକ୍ଷା କରିବା ପାଇଁ ସାକ୍ଷାତ୍ ଶ୍ରୀହରିଙ୍କ ଅଂଶରେ ପୃଥୁନାମରେ ଏ ଅବତାର ନେଇଛନ୍ତି; ଏହି ନାରୀ ତାଙ୍କର ଏକାନ୍ତ ଅନୁରାଗିଣୀ ଓ ନିରନ୍ତର ସହଚରୀ ଶ୍ରୀ ଲକ୍ଷ୍ମୀଙ୍କ କଳାରେ ହିଁ ଜନ୍ମ ହୋଇଛନ୍ତି ॥୬॥ ମୈତ୍ରେୟ କହିଲେ, ବିଦୁର ! ଏହି ସମୟରେ ମୁନିମାନେ ତାଙ୍କର ସ୍ତୁତି କଲେ । ଶ୍ରେଷ୍ଠ ଗନ୍ଧର୍ବମାନେ ତାଙ୍କର ଗୁଣଗାନ କଲେ । ସିଦ୍ଧମାନେ ପୁଷ୍ପବୃଷ୍ଟି କଲେ ଏବଂ ସ୍ୱର୍ଗର ଅପ୍‌ସରାମାନେ ନାଚିବାକୁ ଲାଗିଲେ ॥୭॥ ପୃଥିବୀରେ ଶଙ୍ଖ, ତୂରୀ, ମୃଦଙ୍ଗ, ଦୁନ୍ଦୁଭି ଆଦି ବାଦ୍ୟମାନ ବାଜିବାକୁ ଲାଗିଲା । ଦେବତା, ଋଷି ଓ ପିତୃଗଣ ନିଜ ନିଜ ଧାମରୁ ଆସି ସେଠାରେ ପହଞ୍ଚିଲେ ॥୮॥ ଜଗଦ୍‌ଗୁରୁ ବ୍ରହ୍ମା ଦେବତା ଓ ଦେବେଶ୍ୱରମାନଙ୍କ ସହିତ ସେଠାରେ ଉପସ୍ଥିତ ହେଲେ । ବେଣଙ୍କ ପୁତ୍ର ପୃଥୁଙ୍କର ଡାହାଣ ହାତରେ ଭଗବାନ ବିଷ୍ଣୁଙ୍କର ହସ୍ତରେଖା ଏବଂ ପାଦରେ ପଦ୍ମର ଚିହ୍ନ ଦେଖି ସେ ଜାଣି ପାରିଲେ ଯେ, ଏ ହେଉଛନ୍ତି ଭଗବାନଙ୍କର ଅଂଶ । ତାଙ୍କର ପାପୁଲିରେ ମଧ୍ୟ ଅନ୍ୟ ରେଖାମାନଙ୍କଦ୍ୱାରା କଟା ନ ହୋଇଥିବା ଚକ୍ରଚିହ୍ନକୁ ସେ ଦେଖିପାରିଲେ ॥୯-୧୦॥

ବେଦଜ୍ଞ ବ୍ରାହ୍ମଣମାନେ ତାଙ୍କ ଅଭିଷେକର ଆୟୋଜନ କଲେ । ସବୁଆଡ଼େ ଲୋକମାନେ ତାଙ୍କର ଅଭିଷେକପାଇଁ ଆବଶ୍ୟକ ଦ୍ରବ୍ୟମାନ ସଂଗ୍ରହ କରିବାକୁ ଲାଗିଲେ ॥୧୧॥ ସେ ସମୟରେ ନଦୀ, ସମୁଦ୍ର, ପର୍ବତ, ସର୍ପ, ଗାଈ, ପକ୍ଷୀ, ପଶୁ, ସ୍ୱର୍ଗ, ପୃଥିବୀ ଆଦି ସବୁ ତାଙ୍କୁ ବିଭିନ୍ନପ୍ରକାର ଉପହାର ପ୍ରଦାନ କଲେ ॥୧୨॥ ସୁନ୍ଦର ବସ୍ତ୍ର ଓ ଅଳଙ୍କାରରେ ଅଳଂକୃତ ମହାରାଜ ପୃଥୁଙ୍କର ଅଭିଷେକ ହୋଇଗଲା । ସେ ତାଙ୍କ ପତ୍ନୀ ଅର୍ଚ୍ଚିଙ୍କ ସହିତ ବିରାଜମାନ ହୋଇ ଅଗ୍ନି ଦେବତାଙ୍କପରି ତେଜୀୟାନ୍ ଦେଖାଗଲେ ॥୧୩॥ ବିଦୁର, କୁବେର ତାଙ୍କୁ ସୁବର୍ଣ୍ଣର ଏକ ସୁନ୍ଦର ସିଂହାସନ ଦାନ କଲେ । ବରୁଣ ଦେଲେ ଚନ୍ଦ୍ରମାଙ୍କପରି ଏକ ପ୍ରଭାମୟ ଶ୍ୱେତଛତ୍ର, ଯେଉଁଥିରୁ ଜଳ ଝରି ପଡୁଥିଲା । ବାୟୁ ଦୁଇଟି ଚାମର, ଧର୍ମ ଯଶବର୍ଦ୍ଧନ କରୁଥିବା ଏକ ମାଳା, ଇନ୍ଦ୍ର ଉତ୍କୃଷ୍ଟ କିରୀଟ ଏବଂ ଯମ ତାଙ୍କୁ ଶାସନଦଣ୍ଡ ଦାନ କଲେ ॥୧୪-୧୫॥

ବ୍ରହ୍ମା ଏକ ବ୍ରହ୍ମମୟ କବଚ, ସରସ୍ୱତୀ ଏକ ଉତ୍ତମ ହାର, ଭଗବାନ ଶ୍ରୀହରି ସୁଦର୍ଶନ ଚକ୍ର ଏବଂ ତାଙ୍କର ପତ୍ନୀ ଲକ୍ଷ୍ମୀଦେବୀ ଅଚଳା ସମ୍ପତ୍ତି ଦାନ କଲେ ॥୧୬॥ ରୁଦ୍ର ଦେଲେ ନଅଟି ଚନ୍ଦ୍ରରେ ଅଙ୍କିତ ଖଡ୍ଗ ଏବଂ ଅମ୍ବିକା ଦେଲେ ଶତଚନ୍ଦ୍ରାଙ୍କିତ ଢାଲ, ଚନ୍ଦ୍ର ଅମୃତମୟ ଅଶ୍ୱମାନ ଦାନକଲେ ଏବଂ ବିଶ୍ୱକର୍ମା ଏକ ସୁନ୍ଦର ରଥ ପ୍ରଦାନ କଲେ ॥୧୭॥ ଅଗ୍ନି ଦେଲେ ଛାଗ ଓ ଗୋ ଶୃଙ୍ଗର ନିର୍ମିତ ଧନୁ, ସୂର୍ଯ୍ୟ ତେଜୋମୟ ବାଣମାନଙ୍କୁ ଏବଂ ପୃଥିବୀ ଦୁଇଟି ଯୋଗମୟୀ (ପାଦସ୍ପର୍ଶମାତ୍ରେ ଯାହା ଅଭୀଷ୍ଟ ସ୍ଥାନକୁ ଯାତ୍ରା କରିପାରିବ) ପାଦୁକା । ଅନ୍ତରୀକ୍ଷରୁ ମିଳିଲା ନିତ୍ୟନୂତନ ପୁଷ୍ପମାଳା ॥୧୮॥ ବ୍ୟୋମଚାରୀ ସିଦ୍ଧ ଗନ୍ଧର୍ବମାନେ ନୃତ୍ୟ, ଗୀତ, ବାଦ୍ୟ ଏବଂ ଅନ୍ତର୍ଦ୍ଧାନ ହେବାର ଶକ୍ତି ଦେଲେ । ଋଷିମାନେ ଦେଲେ ତାଙ୍କ ଅମୋଘ ଆଶିଷ ଏବଂ ସମୁଦ୍ର ନିଜର ଗର୍ଭଜାତ ଶଙ୍ଖ ॥୧୯॥ ସପ୍ତସିନ୍ଧୁ ପର୍ବତ ଓ ନଦୀମାନେ ମହାରାଜ ପୃଥୁଙ୍କ ରଥର ମାର୍ଗ ପ୍ରସ୍ତୁତ କରିଦେଲେ ।

ସୂତ, ମାଗଧ ଓ ବନ୍ଦୀମାନେ ତାଙ୍କର ସ୍ତୁତି କରିବା ପାଇଁ ଉପସ୍ଥିତ ହୋଇଗଲେ ॥୨୦॥ ବେଣଙ୍କର ପ୍ରତାପୀ ପୁତ୍ର ପୃଥୁ ସେହି ସ୍ତାବକମାନଙ୍କ ଉଦ୍ଦେଶ୍ୟରେ ମେଘଗମ୍ଭୀର ସ୍ୱରରେ ହସିହସି କହିଲେ, ହେ ସୂତ, ମାଗଧ ଓ ବନ୍ଦୀଗଣ ! ଏ ପର୍ଯ୍ୟନ୍ତ ଲୋକମାନଙ୍କ ମଧ୍ୟରେ ମୋର ଗୁଣାବଳୀ ଅସ୍ପଷ୍ଟ ହୋଇ ରହିଛି । ତେଣୁ ମୋର କେଉଁ ଗୁଣକୁ ଧରି ତୁମେ ସ୍ତବ କରିବ ? ମୋ ସମ୍ପର୍କରେ ତୁମେ ଯାହା କହିବ, ତାହା ଅନ୍ୟଥା ହେବା ଉଚିତ ନୁହେଁ । ତେଣୁ ତୁମେ ମୋ ଛଡ଼ା ଅନ୍ୟର ସ୍ତୁତିଗାନ କରିପାର ॥୨୧-୨୨॥ ମଧୁରଭାଷୀ ସ୍ତାବକଗଣ, ସମୟ ଆସିଲେ ମୋର ଖ୍ୟାତି ପ୍ରସାରିତ ହେବାବେଳେ ଆପଣମାନେ ମଧୁର, ମନୋହର ବାକ୍ୟରେ ମୋର ସ୍ତୁତି କରିବେ । ପୁଣ୍ୟଶ୍ଳୋକ ଶ୍ରୀହରିଙ୍କର ଗୁଣଗାନକାରୀ ଶିଷ୍ଟ ବ୍ୟକ୍ତିମାନେ ତୁଚ୍ଛ ମନୁଷ୍ୟର ସ୍ତୁତି କରନ୍ତି ନାହିଁ ॥୨୩॥ ମହତ୍‌ଗୁଣମାନଙ୍କୁ ଧାରଣ କରିବାପାଇଁ ସମର୍ଥ ହେଲେ ମଧ୍ୟ କେଉଁ ବୁଦ୍ଧିମାନ୍ ପୁରୁଷ ସେହି ଗୁଣମାନ ପ୍ରକାଶିତ ହେବା ପୂର୍ବରୁ କେବଳ ସେସବୁର ସମ୍ଭାବନାଦ୍ୱାରା ସ୍ତାବକମାନଙ୍କୁ ଡାକି ନିଜର ଗୁଣଗାନ କରାଇବ ? ମନ୍ଦବୁଦ୍ଧି ଲୋକ ଏହା ବୁଝିପାରନ୍ତି ନାହିଁ ଯେ ସମ୍ଭାବିତ ଗୁଣମାନଙ୍କର ପ୍ରଶସ୍ତି କରିବାଦ୍ୱାରା ଲୋକେ ଉପହାସ କରିଥା'ନ୍ତି ॥୨୪॥ ଅତି ଉଦାର, ଲଜ୍ଜାବନ୍ତ ଓ ବିଖ୍ୟାତ ପ୍ରଭୁମାନେ ପରକୃତ ନିଜ ସ୍ତୁତିକୁ ବା ନିଜ ନିନ୍ଦିତ ପୌରୁଷର

(ବ୍ରାହ୍ମଣବଧ ଆଦି) ଅତିସ୍ତୁତିକୁ ସହନ୍ତି ନାହିଁ ॥୨୫॥ ସଂସାରରେ ତ ଏବେ ଆମକୁ କେହି ଜାଣନ୍ତି ନାହିଁ । ଏପରି କାମ ଆମେ କରି ନାହୁଁ ଯାହାର ପ୍ରଶଂସା କରାଯାଇପାରିବ । ତେଣୁ ହେ ସ୍ତାବକଗଣ ! କେଉଁ କର୍ମପାଇଁ ଆପଣମାନଙ୍କଦ୍ୱାରା ମୋର ସ୍ତୁତି ଗାନ କରାଇବି ? ॥୨୬॥

## ଷୋଡ଼ଶ ଅଧ୍ୟାୟ

# ପୃଥୁଙ୍କ ପ୍ରଶଂସା

ମୈତ୍ରେୟ କହିଲେ, ରାଜା ପୃଥୁଙ୍କର ଅମୃତମୟ ବାଣୀ ଶ୍ରବଣ କରି ବନ୍ଦୀମାନେ ଆନନ୍ଦିତ ହେଲେ । କିନ୍ତୁ ମୁନିମାନଙ୍କଦ୍ୱାରା ଉତ୍ସାହିତ ହୋଇ ସେମାନେ ରାଜାଙ୍କର ସ୍ତୁତି କରିବାକୁ ଲାଗିଲେ ॥୧॥ ଆପଣ ଶ୍ରୀହରିଙ୍କର ସ୍ୱରୂପ, ନିଜ ମାୟାରେ ଅବତୀର୍ଣ୍ଣ ହୋଇଛନ୍ତି । ଆପଣଙ୍କର ମହିମା ବର୍ଣ୍ଣନା କରିବାକୁ ଆମେ ଯୋଗ୍ୟ ନୋହୁ । ରାଜା ବେଣଙ୍କର ମୃତ ଶରୀରରୁ ଆପଣ ଜାତ ହୋଇଥିଲେ ମଧ୍ୟ ଆପଣଙ୍କର ପୁରୁଷକାର ଓ ଗୁଣାବଳୀ ବ୍ରହ୍ମାଦି ଦେବତାମାନେ ମଧ୍ୟ ବୁଝିବାକୁ ସମର୍ଥ ନୁହନ୍ତି । ତଥାପି ଶ୍ରୀହରିଙ୍କ କଳାରେ ଅବତାର ଗ୍ରହଣ କରିଥିବା ପୁଣ୍ୟଯଶା ଆପଣଙ୍କର ପରମ ବନ୍ଦନୀୟ କଥାମୃତ ଆମେ ଗାନ କରିବାକୁ ଚାହୁଁଛୁ । କାରଣ ମୁନିମାନେ ଆପଣଙ୍କର ଏହି ପ୍ରଶଂସନୀୟ କର୍ମାବଳୀ ବିସ୍ତାରିତ ଭାବରେ ବର୍ଣ୍ଣନା କରିବାପାଇଁ ଆମକୁ ଉତ୍ସାହିତ କରିଛନ୍ତି ॥୨-୩॥ ରାଜା ପୃଥୁ ହେଉଛନ୍ତି ଧାର୍ମିକମାନଙ୍କ ମଧ୍ୟରେ ଶ୍ରେଷ୍ଠ । ପୃଥିବୀକୁ ଧର୍ମମାର୍ଗରେ ପରିଚାଳିତ କରିବା ପାଇଁ ଧର୍ମ ମର୍ଯ୍ୟାଦା ରକ୍ଷା କରି ଧର୍ମବିରୋଧୀମାନଙ୍କୁ ସେ ଶାସନ କରିବେ । ସେ ଗୋଟିଏ ଶରୀରରେ ଭିନ୍ନ ଭିନ୍ନ ସମୟରେ ଭିନ୍ନ ଭିନ୍ନ ଲୋକପାଳଙ୍କର ଗୁଣକୁ ଧାରଣ କରି ପ୍ରଜାଙ୍କର ପାଳନ, ପୋଷଣ ଓ ଅନୁରଞ୍ଜନ କାର୍ଯ୍ୟ କରିବେ । ଯଜ୍ଞ ଓ ପୁଣ୍ୟ କର୍ମାଦି ଦ୍ୱାରା ଇହଲୋକ ଓ ପରଲୋକର ମଙ୍ଗଳ ସାଧନ କରିବେ ॥୪-୫॥ ଯେପରି ସୂର୍ଯ୍ୟ ସମସ୍ତ ପ୍ରାଣୀଙ୍କୁ ସମାନ ଭାବରେ ତାଙ୍କର କିରଣ ଦାନ କରନ୍ତି ଏବଂ ବାଷ୍ପ ଆକାରରେ ସଞ୍ଚିତ ଜଳକୁ ବର୍ଷା କରାନ୍ତି, ସେହିପରି ସେ ସମଦର୍ଶୀ ହୋଇ ଧନସଞ୍ଚୟପୂର୍ବକ ଯଥାସମୟ ତାହା ବିତରଣ କରିବେ ॥୬॥

ସେ ପୃଥିବୀ ପରି ସର୍ବଦା ସହିଷ୍ଣୁ ହେବେ । ଯଦି କେହି ଆର୍ତ୍ତ ବ୍ୟକ୍ତି ଅଧୈର୍ଯ୍ୟ ହୋଇ ତାଙ୍କ ମସ୍ତିଷ୍କରେ ପାଦ ରଖିଦିଏ, ତା'ହେଲେ ସେ କ୍ଷମାଗୁଣରେ ତାକୁ ସହିନେବେ ॥୭॥ ଯଦି କେବେ ବର୍ଷା ନ ହୁଏ, ପ୍ରଜାଙ୍କର ପ୍ରାଣସଙ୍କଟ ଉପସ୍ଥିତ ହୁଏ, ତା'ହେଲେ ରାଜାର ରୂପ ଧାରଣ କରିଥିବା ଏହି ନାରାୟଣ ଇନ୍ଦ୍ରଙ୍କ ପରି ବର୍ଷା କରି ପ୍ରଜାମାନଙ୍କୁ ଅନାୟାସରେ ରକ୍ଷା କରିବେ ॥୮॥ ତାଙ୍କ ଅମୃତତୁଲ୍ୟ ମନୋରମ ମୂର୍ତ୍ତି, ସୁନ୍ଦର ସ୍ମିତହାସ ଓ ସ୍ନେହପୂର୍ଣ୍ଣ ଦୃଷ୍ଟିଦ୍ୱାରା ସେ ସମସ୍ତଙ୍କୁ ଆପ୍ୟାୟିତ କରି ରଖିବେ ॥୯॥ ତାଙ୍କର ଗତିକୁ କେହି ଜାଣି ପାରିବେ ନାହିଁ । ତାଙ୍କ ନିଷ୍ପତ୍ତିକୁ ସେ ଗୋପନୀୟ ରଖିବେ ଓ ଧୀର, ଗମ୍ଭୀର ଭାବରେ କାର୍ଯ୍ୟ କରିବେ । ତାଙ୍କର ଧନ ସୁରକ୍ଷିତ ହେବ ଏବଂ ଅସୀମ ମାହାତ୍ମ୍ୟ ଓ ଗୁଣର ଅଧିକାରୀ ହୋଇ ବରୁଣଙ୍କପରି ସେ ସଂଯତାତ୍ମା ହେବେ ॥୧୦॥ ଦଣ୍ଡର ଯୋଗ୍ୟ ନ ହେଲେ ନିଜ ଶତ୍ରୁର ପୁତ୍ରକୁ ମଧ୍ୟ ସେ ଦଣ୍ଡ ଦେବେ ନାହିଁ, ଏବଂ ନିଜର ପୁତ୍ର ହୋଇ ମଧ୍ୟ ଯଦି ସେ ଦଣ୍ଡନୀୟ ହୁଏ, ତେବେ ସେ ତାକୁ ଦଣ୍ଡିତ କରିବେ । ଏହିପରି ସେ ସର୍ବଦା ଧର୍ମମାର୍ଗରେ ରହିଥିବେ ॥୧୩॥

ମାନସପର୍ବତ ପର୍ଯ୍ୟନ୍ତ ଯେତେ ଦୂର ସୂର୍ଯ୍ୟକିରଣ ପଡୁଥିବ, ସେ ସମସ୍ତ ସସାଗରା ଧରା ତାଙ୍କର ନିଷ୍କଣ୍ଟକ ରାଜ୍ୟ ହେବ ॥୧୪॥ ନିଜର କାର୍ଯ୍ୟଦ୍ୱାରା ପ୍ରଜାରଞ୍ଜନ କରୁଥିବାଯୋଗୁଁ ପ୍ରଜାମାନେ ତାଙ୍କର ଏହି କାର୍ଯ୍ୟପାଇଁ ତାଙ୍କୁ ରାଜା ଆଖ୍ୟା ଦେବେ ॥୧୫॥ ସେ ସଂକଳ୍ପରେ ଦୃଢ଼ ରହିବେ । ସତ୍ୟସନ୍ଧ ହେବେ । ବ୍ରାହ୍ମଣ ଓ ବୃଦ୍ଧମାନଙ୍କର ସେବକ ହେବେ । ଦୀନମାନଙ୍କର ବନ୍ଧୁ ଓ ଶରଣବତ୍ସଳ ହୋଇ ସମସ୍ତ ପ୍ରାଣୀଙ୍କର ମାନଭଞ୍ଜନ କରିବେ ॥୧୬॥ ନିଜର ମା'ପରି ପରସ୍ତ୍ରୀଙ୍କୁ ଭକ୍ତି କରିବେ ।

ପତ୍ନୀଙ୍କୁ ନିଜର ଅର୍ଦ୍ଧାଙ୍ଗିନୀ ବୋଲି ମନେ କରିବେ । ପ୍ରଜାଙ୍କୁ ପୁତ୍ର ପରି ସ୍ନେହ କରିବେ ଓ ବ୍ରହ୍ମବାଦୀମାନଙ୍କର ସେବକ ହେବେ ॥୧୭॥ ନିଜର ଶରୀର ଯେପରି ସମସ୍ତଙ୍କୁ ପ୍ରିୟ, ରାଜା ସେହିପରି ସମସ୍ତଙ୍କର ପ୍ରିୟ ହେବେ । ନିଜ ବନ୍ଧୁମାନଙ୍କର ଆନନ୍ଦ ବୃଦ୍ଧି କରି ବୈରାଗୀ ପୁରୁଷଙ୍କର ସଙ୍ଗ ଇଚ୍ଛା କରିବେ ଏବଂ ଅସାଧୁପୁରୁଷଙ୍କର ଯମ ପରି ହୋଇ ସେମାନଙ୍କୁ ଦଣ୍ଡିତ କରିବେ ॥୧୮॥

ତ୍ରିଗୁଣର ଈଶ୍ୱର ଗୂଢ଼ାତ୍ମା ସାକ୍ଷାତ୍ ଭଗବାନଙ୍କର କଳାରେ ସେ ଅବତୀର୍ଣ୍ଣ ହୋଇଛନ୍ତି । ତାଙ୍କଠାରେ ଯେଉଁ ନାନାତ୍ୱ (ବିଭିନ୍ନ ଗୁଣଯୋଗୁ ବିଭିନ୍ନତା) ଦେଖାଯାଏ ବୋଲି କେହି ମନେକରନ୍ତି--ତାହା କେବଳ ସେମାନଙ୍କ ଅଜ୍ଞତାପ୍ରସୂତ ନିରର୍ଥକ ଧାରଣା ॥୧୯॥ ଏହି ରାଜା ଅଦ୍ୱିତୀୟ ବୀର ଓ ଏକଛତ୍ର ସମ୍ରାଟଭାବରେ ଉଦୟାଚଳପର୍ଯ୍ୟନ୍ତ ଏହି ସମଗ୍ର ଭୂମଣ୍ଡଳକୁ ରକ୍ଷା କରିବେ ଏବଂ ଧନୁଧାରଣପୂର୍ବକ ନିଜର ବିଜୟରଥରେ ଆରୋହଣ କରି ସୂର୍ଯ୍ୟଙ୍କ ପରି ଏହି ପୃଥିବୀକୁ ପ୍ରଦକ୍ଷିଣ କରିବେ ॥୨୦॥ ସ୍ଥାନେ ସ୍ଥାନେ ରାଜା ଓ ଲୋକପାଳମାନେ ତାଙ୍କୁ ବିଭିନ୍ନପ୍ରକାର ଭେଟି ଉପହାର ଦେବେ । ସେମାନଙ୍କର ସ୍ତ୍ରୀମାନେ ଏହି ଆଦିରାଜାଙ୍କୁ ସାକ୍ଷାତ୍ ଚକ୍ରଧାରୀ ବିଷ୍ଣୁ ବୋଲି ମନେକରି ତାଙ୍କର ଯଶୋଗାନ କରିବେ ॥୨୧॥ ଏହି ରାଜାଧିରାଜ ପ୍ରଜାମାନଙ୍କ ରକ୍ଷା ଓ ଜୀବିକାନିର୍ବାହପାଇଁ ଧେନୁପରି ଏହି ପୃଥିବୀକୁ ଦୋହନ କରିବେ ଏବଂ ଇନ୍ଦ୍ରଙ୍କ ପରି ନିଜର ଶରାସନଦ୍ୱାରା ପର୍ବତସବୁ ଚାଡ଼ିତାଡ଼ି ପୃଥିବୀକୁ ସମତଳ କରିବେ ॥୨୨॥ ସିଂହ ଲାଙ୍ଗୁଡ଼ ଟେକି ଜଙ୍ଗଲରେ ବିଚରଣ କରିବା ପରି ସେ ଯେତେବେଳେ ନିଜର ଆଜଗବ (ଗୋରୁ ଓ ଛାଗଳ ଶିଙ୍ଘ ନିର୍ମିତ) ଧନୁର ଟଙ୍କାର କରି ପୃଥିବୀପୃଷ୍ଠରେ ବିଚରଣ କରିବେ, ସେତେବେଳେ ସମସ୍ତ ଅସାଧୁ ବ୍ୟକ୍ତି ଲୁଚିଯିବେ ॥୨୩॥

ସରସ୍ୱତୀ ନଦୀର ଉତ୍ପତ୍ତିସ୍ଥଳରେ ସେ ଶହେଟି ଅଶ୍ୱମେଧ ଯଜ୍ଞ କରିବେ । ଶେଷ ଯଜ୍ଞ ଚାଲିଥିବାବେଳେ ଇନ୍ଦ୍ର ତାଙ୍କର ଅଶ୍ୱକୁ ହରଣ କରିନେବେ । ସେ ନିଜ ପ୍ରାସାଦର ଉପବନରେ ଭଗବାନ୍ ସନତ୍କୁମାରଙ୍କୁ ଥରେ ସାକ୍ଷାତ୍ କରିବେ ଏବଂ ଭକ୍ତିପୂର୍ବକ ତାଙ୍କର ପୂଜା ଆରାଧନା କରି ଏପରି ବିମଳ ଜ୍ଞାନ ଲାଭ କରିବେ, ଯଦ୍ଦ୍ୱାରା ତାଙ୍କୁ ପରବ୍ରହ୍ମ ପଦର ପ୍ରାପ୍ତି ହେବ ॥୨୪-୨୫॥ ଏହିପରି ମହାପରାକ୍ରମୀ ରାଜା ପୃଥୁ ଚାରିଆଡ଼େ ଲୋକେ ତାଙ୍କ ପରାକ୍ରମର ଗାଥା ବର୍ଣ୍ଣନା କରୁଥିବାର ଶୁଣିପାରିବେ ॥୨୬॥ ଚତୁର୍ଦ୍ଦିଗରେ ତାଙ୍କରବିଜୟଯାତ୍ରାର କେହି ପ୍ରତିରୋଧ କରିପାରିବେ ନାହିଁ । ନିଜ ତେଜରେ ସେ ଲୋକଙ୍କର ସମସ୍ତ ଦୁଃଖ ଓ ବିଘ୍ନ ଦୂର କରିବେ । ଦେବତା ଓ ଅସୁରମାନେ, ଏପରିକି ଇନ୍ଦ୍ର ମଧ୍ୟ ତାଙ୍କର ଯଶୋଗାନ କରିବାକୁ ଲାଗିବେ । ଏହିପରି ଏ ମହାନୁଭାବ ଏ ଭୂମଣ୍ଡଳର ଭର୍ତ୍ତା ହୋଇ ରହିବେ ॥୨୭॥

## ସପ୍ତଦଶ ଅଧ୍ୟାୟ

# ପୃଥିବୀ ଉପରେ ପୃଥୁଙ୍କର କୋପ

ଏହିପରି ବନ୍ଦିମାନେ ରାଜା ପୃଥୁଙ୍କର ଗୁଣ ଓ କର୍ମମାନ ବୟାନ କରି ତାଙ୍କର ପ୍ରଶଂସା କରିବାରୁ ରାଜା ସେମାନଙ୍କୁ ପ୍ରତ୍ୟଭିବାଦନ କଲେ ଏବଂ ସେମାନଙ୍କ କାମ୍ୟ ବସ୍ତୁମାନ ପ୍ରଦାନ କଲେ ॥୧॥ ସେ ବ୍ରାହ୍ମଣ ପ୍ରମୁଖ ଚାରି ବର୍ଣ୍ଣ, ଭୃତ୍ୟ, ଅମାତ୍ୟ, ପୁରୋହିତ, ନଗରବାସୀ ଓ ଜନପଦବାସୀ ଏବଂ ଭିନ୍ନ ଭିନ୍ନ ଶ୍ରେଣୀର ବ୍ୟବସାୟୀ ଓ ସେବାକାରୀଙ୍କୁ ସନ୍ତୁଷ୍ଟ କଲେ ॥୨॥ ବିଦୁର କହିଲେ, ବ୍ରହ୍ମନ୍, ଧରିତ୍ରୀ ବହୁରୂପା । କିନ୍ତୁ କାହିଁକି ସେ ଏକ ଗୋରୂପ ଧାରଣ କଲେ ? ଏବଂ ଯେତେବେଳେ ମହାରାଜ ପୃଥୁ ତାଙ୍କୁ ଦୋହନ କଲେ, ସେତେବେଳେ ବାଛୁରୀ ହେଲା କିଏ ଏବଂ କିଏ ହେଲା କ୍ଷୀର

ଦୁହିଁବାର ପାତ୍ର ? ॥୩॥ ପୃଥିବୀ ସ୍ୱଭାବତଃ ଖାଲଢିପ । ତାଙ୍କୁ ରାଜା କିପରି ସମତଳ କଲେ ଏବଂ ଇନ୍ଦ୍ର ତାଙ୍କର ଯଜ୍ଞ-ଅଶ୍ୱକୁ କାହିଁକି ଅପହରଣ କରିନେଲେ ? ॥୪॥ ଉତ୍ତମ ବ୍ରହ୍ମଜ୍ଞ ଭଗବାନ ସନତ୍‌କୁମାରଙ୍କ ଠାରୁ ସମସ୍ତ ଜ୍ଞାନ ବିଜ୍ଞାନ ଲାଭ କରି ରାଜର୍ଷି ପୃଥୁଙ୍କର କେଉଁ ଗତି ହେଲା ? ॥୫॥ ପୃଥୁ ଥିଲେ ଭଗବାନ ଶ୍ରୀକୃଷ୍ଣଙ୍କର ଅବତାର । ସେହି ମହାଯଶାଙ୍କ ପୂର୍ବ ଅବତାରର ପବିତ୍ର ଯଶକୀର୍ତ୍ତିସବୁ ଆପଣ ବର୍ଣ୍ଣନା କରନ୍ତୁ । ମୁଁ ତ ଆପଣଙ୍କର ଏବଂ ଭଗବାନ ଶ୍ରୀକୃଷ୍ଣଙ୍କର ଅନୁରକ୍ତ ଭକ୍ତ । ତେଣୁ ବେଣଙ୍କର ପୁତ୍ର ପୃଥୁରୂପରେ ସେ କିପରି ଏ ପୃଥ୍ୱୀକୁ ଦୋହନ କରିଥିଲେ, ତାହା ମୋତେ ଶୁଣାଇବା ହୁଅନ୍ତୁ ॥୬-୭॥

ସୂତ କହିଲେ, ଶ୍ରୀ ବାସୁଦେବଙ୍କ କଥା ଶୁଣାଇବାପାଇଁ ବିଦୁର ଏହିପରି ମୁନି ମୈତ୍ରେୟଙ୍କୁ ଉତ୍ସାହିତ କରିବାରୁ ସେ ବିଦୁରଙ୍କୁ ପ୍ରଶଂସା କରି ସନ୍ତୋଷ ମନରେ ଉତ୍ତର ଦେଲେ ॥୮॥ **ମୈତ୍ରେୟ କହିଲେ, ବତ୍ସ ବିଦୁର, ଜନତାର ପାଳନକର୍ତ୍ତା ରାଜା ପୃଥୁ ମୁନିମାନଙ୍କଦ୍ୱାରା ଆମନ୍ତ୍ରିତ ହୋଇ ଯେତେବେଳେ ଅଭିଷିକ୍ତ ହେଲେ, ସେତେବେଳେ ପୃଥିବୀ ଥିଲା ନିରନ୍ନ । ପ୍ରଜାମାନେ କ୍ଷୁଧାଜର୍ଜର ଦେହରେ ରାଜାଙ୍କୁ ସମ୍ବୋଧନ କରି କହିଲେ ॥୯॥ ରାଜା, ବୃକ୍ଷର କୋଟରରେ ଥିବା ଅଗ୍ନି ଯେପରି ତାକୁ ଦଗ୍ଧ କରୁଥାଏ, ସେହିପରି ଆମ ଉଦର ଜ୍ୱାଳାରେ ଆମେ ଦଗ୍ଧ ହେବାକୁ ବସିଛୁ । ଆପଣ ଆମମାନଙ୍କର ସ୍ୱାମୀ । ଆମମାନଙ୍କର ଅନ୍ନଦାତା । ଶରଣବତ୍ସଳ । ତେଣୁ ଆମେ ଆପଣଙ୍କର ଶରଣ ଭିକ୍ଷା କରୁଛୁ ॥୧୦॥** ରାଜା, ଆପଣ ସମସ୍ତ ଲୋକର ରକ୍ଷକ । ସମସ୍ତଙ୍କୁ ଜୀବିକା ପ୍ରଦାନ କରନ୍ତି । ତେଣୁ ଏହି କ୍ଷୁଧାତୁରମାନଙ୍କୁ ଅନ୍ନଦାନ କରିବାର ବ୍ୟବସ୍ଥା କରନ୍ତୁ, ଅନ୍ନ ମିଳିବା ପୂର୍ବରୁ ଆମର ଯେପରି ମୃତ୍ୟୁ ନ ଘଟେ ॥୧୧॥ ମୈତ୍ରେୟ କହିଲେ, କୁରୁଶ୍ରେଷ୍ଠ ବିଦୁର ! ପ୍ରଜାଙ୍କର କରୁଣ କ୍ରନ୍ଦନ ଶୁଣି ରାଜା ପୃଥୁ ବହୁସମୟ ଧରି ଚିନ୍ତା କଲେ ଏବଂ ଏହାର କାରଣ କ'ଣ ଜାଣି ପାରିଲେ ॥୧୨॥ ଏହିପରି ସିଦ୍ଧାନ୍ତରେ ପହଞ୍ଚି (ପୃଥିବୀ ଅନ୍ନ ଓ ଓଷଧି ଆଦି ନିଜ ଭିତରେ ଲୁଚାଇ ରଖିଛି) ତ୍ରିପୁରାରି ମହାଦେବଙ୍କ ପରି କ୍ରୁଦ୍ଧ ହୋଇ ଶରାସନ ଗ୍ରହଣପୂର୍ବକ ପୃଥିବୀକୁ ଲକ୍ଷ୍ୟ ରଖି ନିଜର ଧନୁରେ ବାଣ ଚଢ଼ାଇଲେ ॥୧୩॥

ରାଜାଙ୍କୁ ଏପରି ଶସ୍ତ୍ର ଉଠାଇବା ଦେଖି ଧରଣୀ କମ୍ପିଉଠିଲା ଏବଂ ବ୍ୟାଧକୁ ଡରି ଯେପରି ହରିଣୀ ପଳାଇଯାଏ, ସେହିପରି ଗୋଟିଏ ଗାଈରୂପ ଧାରଣ କରି ଦଉଡ଼ି ପଳାଇଲା ॥୧୪॥ ପୃଥୁଙ୍କର ଚକ୍ଷୁ ରାଗରେ ନାଲି ପଡ଼ିଗଲା । ଯୁଆଡ଼େ ଯୁଆଡ଼େ ସେ ପଳାଉଥିଲା, ଧନୁରେ ଶର ଯୋଖି ସେହିଆଡ଼କୁ ସେ ଅନୁଧାବନ କଲେ ॥୧୫॥ ଦିଗ୍‌ବିଦିଗ, ଆକାଶ, ପୃଥିବୀ ଯେଉଁଆଡ଼େ ଧେନୁରୂପୀ ପୃଥ୍ୱୀ ଦଉଡ଼ି ଦଉଡ଼ି ଯାଉଥିଲା, ସେଇ ଆଡ଼େ ତା'ପଛରେ ଧନୁର୍ବାଣଧାରୀ ରାଜାଙ୍କୁ ସେ ଦେଖିପାରିଲା ॥୧୬॥ ଯେପରି ମନୁଷ୍ୟକୁ ମୃତ୍ୟୁରୁ କେହି ବଞ୍ଚାଇପାରନ୍ତି ନାହିଁ, ସେହିପରି ତିନି ଲୋକରେ ପୃଥୁଙ୍କଠାରୁ ତାକୁ ବଞ୍ଚାଇବା ପାଇଁ କେହି ଦେଖାଗଲେ ନାହିଁ । ତ୍ରସ୍ତ ପୃଥିବୀ ଦୁଃଖିତ ହୃଦୟରେ ପଛକୁ ଫେରି ଆସିଲା । ପୃଥୁଙ୍କୁ ସେ କହିଲା, ମହାରାଜ, ଆପଣ ପ୍ରାଣୀମାନଙ୍କୁ ପାଳନ କରିବାପାଇଁ ରହିଛନ୍ତି । ହେ ଧର୍ମଜ୍ଞ, ଶରଣବତ୍ସଳ ! ଆପଣ ମୋତେ ରକ୍ଷା କରନ୍ତୁ ॥୧୭-୧୮॥ ମୁଁ ଦୀନା, ନିରପରାଧା । କାହିଁକି ଆପଣ ମୋତେ ମାରିବାକୁ ଚାହୁଁଛନ୍ତି ? ଧର୍ମଜ୍ଞ ହୋଇ ମୋ'ପରି ସ୍ତ୍ରୀଲୋକକୁ ଆପଣ କିପରି ହତ୍ୟା କରିବେ ? ॥୧୯॥ ଅପରାଧ କଲେ ମଧ୍ୟ ସ୍ତ୍ରୀଲୋକଙ୍କୁ କେହି ପ୍ରହାର କରନ୍ତି ନାହିଁ । ରାଜା ! ଆପଣ ଦୟାଶୀଳ, ଦୀନବତ୍ସଳ । ଆପଣଙ୍କ ପରି ବ୍ୟକ୍ତି କ'ଣ କରିବାକୁ ଯାଉଛନ୍ତି ? ॥୨୦॥ ଜଳ ଉପରେ ଏକ ସୁଦୃଢ଼ ନୌକାପରି ମୁଁ ରହିଛି ଏବଂ ମୋ ଉପରେ ସମସ୍ତ ବିଶ୍ୱ ଅବସ୍ଥିତ । ମୋତେ ଖଣ୍ଡ ଖଣ୍ଡ କରି ଦେଇ ଆପଣ କିପରି ନିଜକୁ ଏବଂ ଆପଣଙ୍କ ପ୍ରଜାମାନଙ୍କୁ ଏହି ଜଳଉପରେ ଧାରଣ କରି ରଖି ପାରିବେ ? ॥୨୧॥

ପୃଥୁ କହିଲେ, ବସୁଧା ! ମୋର ଶାସନକୁ ବିରୋଧ କରୁଥିବାଯୋଗୁଁ ମୁଁ ନିଶ୍ଚୟ ତୋତେ ବଧ କରିବି । ଯଜ୍ଞରେ ଅନ୍ୟଦେବତାଙ୍କ ପରି ତୁ ତୋର ଭାଗ ନେଉଛୁ, କିନ୍ତୁ ତୋର ଧନ ଧାନ୍ୟାଦି ଯାହା ଦେବା କଥା, ତାହା ଦେଉ ନାହୁଁ ॥୨୨॥

ତୁ ତ ପ୍ରତିଦିନ ସବୁଜ ଘାସ ସବୁ ଖାଇ ଯାଉଛୁ । କିନ୍ତୁ ନିଜର ସ୍ତନ୍ୟ ଦାନ କରି ଯାହା କ୍ଷୀର ଦେବାର କଥା ଦେଉ ନାହୁଁ । ତେଣୁ ତୋର ଏହି ଦୁଷ୍ଟଗୁଣଯୋଗୁଁ ତୋତେ ଦଣ୍ଡ ନ ଦେବା କଥା କେହି କହିବେ ନାହିଁ ॥୨୩॥ ତୁ ମନ୍ଦମତି । ବ୍ରହ୍ମା ଯେଉଁ ଅନ୍ନ ଓ ଔଷଧି ଆଦି ସୃଷ୍ଟି କରିଥିଲେ, ତୁ ତାକୁ ନିଜେ ନିଜ ଭିତରେ ରଖିନେଲୁ । ମୋତେ ଅବଜ୍ଞା କରି ତୁ ତାକୁ ବାହାର କରୁ ନାହୁଁ ॥୨୪॥ ଏବେ ମୁଁ ମୋର ବାଣରେ ତୋତେ ହତ୍ୟା କରି ତୋର ମାଂସରେ ମୋର କ୍ଷୁଧାର୍ତ୍ତ ଦୀନ ପ୍ରଜାମାନଙ୍କୁ ସନ୍ତୁଷ୍ଟ କରାଇ ସେମାନଙ୍କ କରୁଣ କ୍ରନ୍ଦନ ଦୂର କରିବି ॥୨୫॥ ପୁରୁଷ ହେଉ, ସ୍ତ୍ରୀ ହେଉ ବା ନପୁଂସକ ହେଉ, ଯଦି କେହି ଅଧମ ବ୍ୟକ୍ତି ନିଜର ପୋଷଣରେ ବ୍ୟସ୍ତ ରହି ଅନ୍ୟ ପ୍ରାଣୀମାନଙ୍କ ପ୍ରତି ନିର୍ଦ୍ଦୟ ହୁଏ, ତା'ହେଲେ ତାକୁ ମାରିବାରେ ଦୋଷ ନାହିଁ । କାରଣ ତାକୁ ହତ୍ୟା ବୋଲି ଧରାଯିବ ନାହିଁ ॥୨୬॥

ତୋର ଗର୍ବ ବଢ଼ିଯାଇଛି ଓ ତୁ ମଦମତ୍ତ ହୋଇ ମାୟାରେ ଏପରି ଏକ ଗାଈର ରୂପ ଧାରଣ କରିଛୁ । ମୁଁ ମୋର ଶରମାନଙ୍କଦ୍ୱାରା ତୋତେ ଖଣ୍ଡ ଖଣ୍ଡ କରି ନିଜର ଯୋଗବଳରେ ପ୍ରଜାମାନଙ୍କୁ ଧାରଣ କରିବି ॥୨୭॥ ମୈତ୍ରେୟ କହିଲେ, ସାକ୍ଷାତ ଯମପରି ରାଜାଙ୍କର ଏହି କ୍ରୋଧମୂର୍ତ୍ତି ଦେଖି ପୃଥିବୀ ଭୟରେ କମ୍ପିବାକୁ ଲାଗିଲା ଏବଂ କୃତାଞ୍ଜଳି ପୁଟରେ ପ୍ରଣାମ କରି ରାଜାଙ୍କୁ କହିଲା, ଆପଣ ଗୁଣମୟ, ପରମପୁରୁଷ, ମାୟାରେ ନାନା ଶରୀର ଧାରଣ କରିଥା'ନ୍ତି । ନିଜର ସ୍ୱରୂପ ଅନୁଭବ କରି ଦ୍ରବ୍ୟ, କ୍ରିୟା ଓ କର୍ମରୂପ ଅହଙ୍କାରଠାରୁ ସର୍ବଦା ଦୂରରେ ରହିଥାଆନ୍ତି । ମୁଁ ଆପଣଙ୍କୁ ନମସ୍କାର କରୁଛି ॥୨୮-୨୯॥ ବିଧାତା ରୂପେ ଯେ ଏହି ତ୍ରିଗୁଣାତ୍ମକ ଜଗତ ସୃଷ୍ଟି କରିଛନ୍ତି, ଜୀବମାନଙ୍କର ଆଶ୍ରୟସ୍ଥଳ ରୂପେ ମୋତେ ମଧ୍ୟ ସେ ନିର୍ମାଣ କରିଛନ୍ତି । ସେ ଯଦି ମୋତେ ମାରିବା ପାଇଁ ଏଠାରେ ଅସ୍ତ୍ରଶସ୍ତ୍ର ଧରି ଉପସ୍ଥିତ ହୁଅନ୍ତି, ତା'ହେଲେ ଅନ୍ୟ କାହା ପାଖରେ ମୁଁ ଶରଣ ପଶିବି ? ॥୩୦॥ ସେ ତାଙ୍କର ଆଶ୍ରିତ ନିଜ ଅନିର୍ବଚନୀୟ ମାୟାଶକ୍ତି ଦ୍ୱାରା ଏହି ଚରାଚର ଜଗତ୍‌କୁ ସୃଷ୍ଟି କରିଛନ୍ତି । ବର୍ତ୍ତମାନ ସେହି ମାୟାଶକ୍ତିଦ୍ୱାରା ସେ ଏହି ଜଗତ୍‌କୁ ପାଳନ କରିବାକୁ ଉଦ୍ୟତ । ବର୍ତ୍ତମାନ ସେହି ଧାର୍ମିକ ପ୍ରବର ମୋତେ କ'ଣପାଇଁ ହତ୍ୟା କରିବାକୁ ଇଚ୍ଛା କରୁଛନ୍ତି ? ॥୩୧॥

ଆପଣ ଏକ ହେଲେ ମଧ୍ୟ ନିଜର ମାୟାବଶରୁ ଅନେକ ହୋଇପାରନ୍ତି । ଆପଣ ବ୍ରହ୍ମାଙ୍କୁ ସୃଷ୍ଟିକରି ତାଙ୍କଦ୍ୱାରା ଏହି ସଂସାରକୁ ରଚନା କରାଇଛନ୍ତି । ତେଣୁ ଯେଉଁମାନେ ଇନ୍ଦ୍ରିୟକୁ ଜୟ କରି ନାହାନ୍ତି, ସେମାନେ ଆପଣଙ୍କର ଲୀଳାମାନଙ୍କୁ ବୁଝିପାରିବେ ନାହିଁ । ଆପଣ ସର୍ବଶକ୍ତିମାନ୍ । ଆପଣଙ୍କ ଦୁର୍ଜୟ ମାୟା ସେମାନଙ୍କୁ ବିଚଳିତ କରିଦେଉଚି ॥୩୨॥ ଆପଣ ନିଜେ ଦ୍ରବ୍ୟ, କ୍ରିୟା, ଚେତନା କାରକ ଓ ଆତ୍ମାରୂପେ ପଞ୍ଚଭୂତ, ଇନ୍ଦ୍ରିୟ, ଅର୍ଥାତ୍ ଇନ୍ଦ୍ରିୟ-ଅଧିଷ୍ଠାତ୍ରୀ ଦେବତା, ବୁଦ୍ଧି ଓ ଅହଙ୍କାର ରୂପ ନିଜର ଶକ୍ତିଦ୍ୱାରା ଆପଣ ଜଗତର ଉତ୍ପତ୍ତି, ସ୍ଥିତି ଓ ପ୍ରଳୟର କାରଣ । ଏହି ସବୁ କାର୍ଯ୍ୟପାଇଁ କେତେବେଳେ ଆପଣଙ୍କର ଶକ୍ତି ଜାଗରୂକ ହୁଏ ଓ ବେଳେବେଳେ ନିରୁଦ୍ଧ ହୋଇ ରହେ । ଆପଣ ପରମ ପୁରୁଷ, ଜଗତର ବିଧାତା । ମୁଁ ଆପଣଙ୍କୁ ନମସ୍କାର କରୁଛି ॥୩୩-୩୪॥ ହେ ଅଜନ୍ମା । ଆପଣ ହେଉଛନ୍ତି ସେହି ଧରାଧର (ଦନ୍ତରେ ଧରାକୁ ଧାରଣ କରଥିବା ଯୋଗୁଁ) ଯେ କି ଜଗତର ସଂସ୍ଥାପନପାଇଁ ମୋତେ ରସାତଳକୁ ଆଦିଶୂକର ରୂପେ ଉଦ୍ଧାର କରିଥିଲେ, କିନ୍ତୁ ଏବେ ପୃଥୁରୂପେ ଜନ୍ମ ହୋଇଛନ୍ତି । ମୁଁ ସମସ୍ତ ଜୀବ ଜଗତକୁ ଧରି ଜଳ ଉପରେ ନୌକା ସ୍ୱରୂପ ରହିଛି । କିନ୍ତୁ ପ୍ରଜାମାନଙ୍କୁ ରକ୍ଷା କରିବାପାଇଁ ଦୁଗ୍ଧ ନ ଦେବା ଅପରାଧରେ ମୋତେ ମାରିବାକୁ ପୁଣି ଆପଣ ଧନୁରେ ଶର ଚଢ଼ାଇ ସାରିଲେଣି ॥୩୫॥ ମାୟାଦ୍ୱାରା ଆପଣ ଏହି ତ୍ରିଗୁଣାତ୍ମକ ସୃଷ୍ଟି ରଚନା କରିଛନ୍ତି । ମୋ ପରି ମୋହଗ୍ରସ୍ତ ସାଧାରଣ ଜୀବ ଆପଣଙ୍କର ରହସ୍ୟ ବୁଝିବା କଷ୍ଟକର । ଆପଣଙ୍କ କଥା ଦୂରେ ଥାଉ, ଆପଣଙ୍କ ଭକ୍ତମାନଙ୍କର କାର୍ଯ୍ୟ ମଧ୍ୟ ଆମର ବୋଧଗମ୍ୟ ନୁହେଁ । ତେଣୁ ଜିତେନ୍ଦ୍ରିୟମାନଙ୍କ ଯଶବର୍ଦ୍ଧନ କରୁଥିବା ଆପଣଙ୍କ ଭକ୍ତମାନଙ୍କୁ ମଧ୍ୟ ନମସ୍କାର ॥୩୬॥

## ଅଷ୍ଟାଦଶ ଅଧ୍ୟାୟ

# ପୃଥ୍ୱୀ-ଦୋହନ

ମୈତ୍ରେୟ କହିଲେ, କ୍ରୋଧରେ ପୃଥୁଙ୍କର ଅଧର କମ୍ପି ଉଠୁଥିଲା । ଏହିପରି ସ୍ତୁତି କରି ପୃଥିବୀ ନିଜର ମନକୁ ସ୍ଥିର କଲେ ମଧ୍ୟ ତାଙ୍କର ଭୟ ଦୂର ହେଉ ନଥିଲା । ସେ ରାଜାଙ୍କୁ ପୁଣି କହିଲେ, ପ୍ରଭୁ, ଆପଣ କ୍ରୋଧ ସମ୍ବରଣ କରି ଅଭୟ ଦାନ କରନ୍ତୁ । ମୋର ପ୍ରାର୍ଥନାକୁ ବିଚାର କରନ୍ତୁ । ବୁଦ୍ଧିମାନ୍ ପୁରୁଷ ଭ୍ରମରପରି ସବୁଠାରୁ ସାର ସଂଗ୍ରହ କରିନିଏ ॥୧-୨॥ ଇହଲୋକ ଓ ପରଲୋକରେ ଲୋକମାନଙ୍କର ମଙ୍ଗଳପାଇଁ ତତ୍ତ୍ୱଦର୍ଶୀ ମୁନିମାନେ କୃଷି ଓ ଅଗ୍ନିହୋତ୍ର ଆଦି ଅନେକ ଉପାୟ ବାହାର କରିଛନ୍ତି ଓ ତାର ମଧ୍ୟ ଯଥାର୍ଥ ପ୍ରୟୋଗ କରିଛନ୍ତି ॥୩॥ ପୂର୍ବଦର୍ଶିତ ଏହି ସବୁ ଉପାୟକୁ ଶ୍ରଦ୍ଧାର ସହିତ ଭଲଭାବରେ କାର୍ଯ୍ୟକାରୀ କଲେ ଏବେ ମଧ୍ୟ ପୁରୁଷ ସହଜରେ ଅଭୀଷ୍ଟଫଳ ଲାଭ କରିପାରେ ॥୪॥ ଯେଉଁ ବ୍ୟକ୍ତି ଏହାର ଅନାଦର କରେ ଓ ପଣ୍ଡିତ ନ ହୋଇ ନାନା ତର୍କବିତର୍କ ଆରମ୍ଭ କରିଦିଏ, ସେ ବାରମ୍ବାର ଯାହା କଲେ ମଧ୍ୟ ତାର କୌଣସି କାର୍ଯ୍ୟ ସଫଳ ହୁଏ ନାହିଁ ॥୫॥ ରାଜା ! ପୂର୍ବକାଳରେ ବ୍ରହ୍ମା ଯେଉଁ ଶସ୍ୟ, ବନସ୍ପତି ଆଦି ସୃଷ୍ଟି କରିଥିଲେ, ମୁଁ ଦେଖିଲି, ଏବେ ଦୁରାଚାରୀ ଲୋକମାନେ କୌଣସି ବ୍ରତ ନିୟମ ଆଦି ପାଳନ ନକରି ତାହା ସବୁ ଖାଇ ଯାଉଛନ୍ତି ॥୬॥ ଆପଣଙ୍କ ବଂଶର ରାଜାମାନେ ମୋର ଅନାଦର କଲେ । ମୋତେ ପାଳନ କଲେ ନାହିଁ । ଲୋକମାନେ ଚୋର ହୋଇଗଲେ । ଯଜ୍ଞକର୍ମର ରକ୍ଷାପାଇଁ ମୁଁ ଯଜ୍ଞର ସାମଗ୍ରୀମାନ ଉଦରସ୍ଥ କରିଦେଲି ॥୭॥ ବହୁକାଳ ବିତିଯିବାପରେ ସେହି ଶସ୍ୟ ଓ ଓଷଧିମାନ କ୍ଷୟ ହୋଇଗଲାଣି । ପୂର୍ବାଚାର୍ଯ୍ୟମାନେ ଯେଉଁ ପନ୍ଥା ବତାଇଛନ୍ତି, ତାହା ଅନୁସରଣ କରି ଆପଣ ଏସବୁ ପଦାର୍ଥ ସଂଗ୍ରହ କରନ୍ତୁ ॥୮॥

ହେ ବୀର, ପ୍ରାଣୀଙ୍କର ମଙ୍ଗଳକାମୀ ! ହେ ଭଗବାନ୍, ଯଦି ଆପଣ ସେମାନଙ୍କର ଅଭୀଷ୍ଟ ବଳପ୍ରଦ ଅନ୍ନ ମୋ ଠାରୁ ଉଦ୍ଧାର କରିବାକୁ ଚାହାନ୍ତି, ତା'ହେଲେ ବତ୍ସ, ଦୋହନପାତ୍ର ଓ ଦୁହିଁବାର ଲୋକ ଠିକ୍ କରିଦିଅନ୍ତୁ, ଯେପରିକି ମୁଁ ସେହି ବତ୍ସର ସ୍ନେହରେ ଅଭିଳଷିତ ଦୁଗ୍ଧରୂପକ ବସ୍ତୁ ସବୁ ପ୍ରଦାନ କରିପାରିବି ॥୯-୧୦॥ ରାଜା, ମୋତେ ସମତଳ କରିଦିଅନ୍ତୁ । ଯେପରିକି ବର୍ଷା ହେଲେ ସେହି ବୃଷ୍ଟିଜଳ ବର୍ଷାଋତୁପରେ ମଧ୍ୟ ମୋ ଉପରେ ରହିବ ଓ ମୋତେ ସର୍ବଦା ଆର୍ଦ୍ର ରଖିବ । ସମସ୍ତ ଐଶ୍ୱର୍ଯ୍ୟର ଅଧିକାରୀ ବୀର, ତୁମର ମଙ୍ଗଳ ହେଉ ॥୧୧॥

ଏହିପରି ପୃଥିବୀଙ୍କର ପ୍ରିୟ ଓ ହିତବାକ୍ୟ ଶୁଣି ରାଜା ସ୍ୱାୟମ୍ଭୁବ ମନୁଙ୍କୁ ବତ୍ସ କଲେ ଓ ନିଜ ହାତରେ ସକଳ ଶସ୍ୟ ଓ ଓଷଧି ଆଦି ଦ୍ରବ୍ୟ ଦୋହନ କଲେ ॥୧୨॥ ଯେପରି ପୃଥୁ ଓ ତାଙ୍କୁ ଅନୁସରଣ କରି ଅନ୍ୟ ବିଜ୍ଞ ରାଜାମାନେ ସର୍ବତ୍ର ସାର ଆହରଣ କଲେ, ସେହିପରି ଋଷିପ୍ରମୁଖ ଅନ୍ୟ ସାଧାରଣ ବ୍ୟକ୍ତି ମଧ୍ୟ ପୃଥୁଙ୍କର ବଶୀଭୂତ ପୃଥିବୀକୁ ଦୋହନ କରିଥିଲେ ॥୧୩॥ ଋଷିମାନେ ପୃଥ୍ୱୀ ଦେବୀଙ୍କୁ ଦୋହନକଲେ । ସେମାନେ ବୃହସ୍ପତିଙ୍କୁ ବତ୍ସ କରି ଇନ୍ଦ୍ରିୟ (ବାକ୍ ମନ ଓ ଶ୍ରବଣ) ରୂପ ପାତ୍ରରେ ବେଦରୂପ ପବିତ୍ର ଦୁଗ୍ଧ ଦୋହନ କରିଥିଲେ ॥୧୪॥ ଦେବତାମାନେ ଇନ୍ଦ୍ରଙ୍କୁ ବତ୍ସ କରି ସୁବର୍ଣ୍ଣମୟ ପାତ୍ରରେ ଅମୃତ, ବୀର୍ଯ୍ୟ, ଓଜଃ ଓ ବଳ (ମନୋବଳ, ଇନ୍ଦ୍ରିୟବଳ ଓ ଶରୀରବଳରୂପକ) ଦୁଗ୍ଧ ଦୋହନ କଲେ ॥୧୫॥ ଦୈତ୍ୟ ଓ ଦାନବମାନେ ଅସୁରଶ୍ରେଷ୍ଠ ପ୍ରହ୍ଲାଦଙ୍କୁ ବତ୍ସ କରି ଲୌହପାତ୍ରରେ ମଦିରା ଓ ଆସବ ଆଦି ନାନାବିଧ ମଦ୍ୟସ୍ୱରୂପ ଦୁଗ୍ଧ ଦୋହନ କଲେ ॥୧୬॥ ଗନ୍ଧର୍ବ ଓ ଅପ୍‌ସରାଗଣ ବିଶ୍ୱାବସୁଙ୍କୁ ବତ୍ସ କରି ସୌନ୍ଦର୍ଯ୍ୟ, ସୌରଭ, ସଙ୍ଗୀତ ଓ ମାଧୁର୍ଯ୍ୟ ରୂପକ ଦୁଗ୍ଧ ଦୋହନ କଲେ ॥୧୭॥

ଶ୍ରାଦ୍ଧର ଅଧିଷ୍ଠାତା ପିତୃଗଣ ଅର୍ଯ୍ୟମାଙ୍କୁ ବତ୍ସ କରି କଞ୍ଚା ମାଟିର ପାତ୍ରରେ ଶ୍ରଦ୍ଧାପୂର୍ବକ କବ୍ୟ ରୂପକ ଦୁଗ୍ଧ ଦୋହନ କଲେ ॥୧୮॥ ସିଦ୍ଧମାନେ କପିଳଙ୍କୁ ବତ୍ସରୂପେ କଳ୍ପନା କରି ଆକାଶରୂପ ପାତ୍ରରେ ଅଣିମାଦି ଅଷ୍ଟସିଦ୍ଧି ରୂପକ ଦୁଗ୍ଧ ଦୋହନ

କଲେ ଏବଂ ବିଦ୍ୟାଧରମାନେ ମଧ୍ୟ ସେହି କପିଳଙ୍କୁ ବତ୍ସ କରି ଆକାଶରୂପ ପାତ୍ରରେ ଶୂନ୍ୟଗମନ ବିଦ୍ୟାରୂପକ ଦୁଗ୍ଧ ଦୋହନ କଲେ ॥୧୯॥ କିଂପୁରୁଷ ଓ ଅନ୍ୟ ମାୟାବୀମାନେ ମୟଦାନବଙ୍କୁ ବତ୍ସ କରି ଅନ୍ତର୍ଦ୍ଧାନ, ବିଚିତ୍ର ରୂପଧାରଣ ଓ ଇଚ୍ଛାମାତ୍ରକେ ପ୍ରକଟ ହେବା ଆଦି ମାୟାରୂପକ ଦୁଗ୍ଧ ଦୋହନ କଲେ ॥୨୦॥ ଯକ୍ଷ, ରାକ୍ଷସ, ଭୂତ, ପିଶାଚାଦି ମାଂସାହାରୀଗଣ ରୁଦ୍ରଙ୍କୁ ବତ୍ସ କରି କପାଳରୂପକ ପାତ୍ରରେ ରୁଧିରରୂପକ ଦୁଗ୍ଧ ଦୋହନ କଲେ ॥୨୧॥ ଫଣା ନଥିବା ଓ ଫଣା ଥିବା ସାପ, ନାଗ ଓ ବିଛା ଆଦି ବିଷାକ୍ତ ଜନ୍ତୁମାନେ ତକ୍ଷକଙ୍କୁ ବତ୍ସ କରି ଅରଣ୍ୟରୂପକ ପାତ୍ରରେ ବିଷରୂପକ ଦୁଗ୍ଧ ଦୋହନ କଲେ ॥୨୨॥ ପଶୁମାନେ ଭଗବାନ ରୁଦ୍ରଙ୍କର ବାହନ ବୃଷଭଙ୍କୁ ବତ୍ସ କରି ଅରଣ୍ୟରୂପକ ପାତ୍ରରେ ତୃଣାଦିରୂପକ ଦୁଗ୍ଧ ଦୋହନ କଲେ ଏବଂ ବଡ଼ବଡ଼ ଦାନ୍ତଥିବା ମାଂସାଶୀ ଜୀବମାନେ ସିଂହଙ୍କୁ ବତ୍ସ କରି ନିଜର ଶରୀରରୂପ ପାତ୍ରରେ କଞ୍ଚା ମାଂସ ରୂପ ଦୁଗ୍ଧ ଦୋହନ କଲେ । ଗରୁଡ଼ଙ୍କୁ ବତ୍ସ କରି ପକ୍ଷୀମାନେ ଚରଣଶୀଳ କୀଟ, ପତଙ୍ଗ ଓ ଅଚଳ ଫଳ ଆଦିକୁ ଦୁଗ୍ଧ ରୂପେ ଦୋହନ କଲେ ॥୨୩-୨୪॥ ବୃକ୍ଷମାନେ ବଟବୃକ୍ଷକୁ ବତ୍ସ କରି ବିଭିନ୍ନପ୍ରକାର ରସରୂପକ ଦୁଗ୍ଧ ଦୋହନ କଲେ ଏବଂ ପର୍ବତମାନେ ହିମାଳୟରୂପ ବତ୍ସ ଦ୍ୱାରା ନିଜର ଶିଖରରୂପ ପାତ୍ରମାନଙ୍କରେ ଅନେକପ୍ରକାର ଧାତବ ଦ୍ରବ୍ୟକୁ ଦୁଗ୍ଧରୂପେ ଦୋହନ କଲେ । ॥୨୫॥

ପୃଥିବୀ ସମସ୍ତପ୍ରକାର ଅଭୀଷ୍ଟ ବସ୍ତୁ ଦାନ କରୁଥିଲା ଏବଂ ସେ ସମୟରେ ପୃଥୁଙ୍କର ଅଧୀନ ଥିଲା । ଏହି ପୃଥିବୀଠାରୁ ସମସ୍ତେ ନିଜ ନିଜ ଜାତିର ମୁଖ୍ୟମାନଙ୍କୁ ବତ୍ସ କରି ଭିନ୍ନ ଭିନ୍ନ ପାତ୍ରରେ ବିଭିନ୍ନ ବସ୍ତୁକୁ ଦୁଗ୍ଧରୂପେ ଦୋହନ କରିଥିଲେ ॥୨୬॥ କୁରୁଶ୍ରେଷ୍ଠ ବିଦୁର, ଏହିପରି ପୃଥୁପ୍ରମୁଖ ଅନ୍ନଭୋଜୀମାନେ ଭିନ୍ନ ଭିନ୍ନ ଦୋହନପାତ୍ର ଓ ବତ୍ସମାନଙ୍କଦ୍ୱାରା ନିଜର ବିଭିନ୍ନ ଅନ୍ନରୂପକ ଦୁଗ୍ଧକୁ ପୃଥିବୀଠାରୁ ଦୋହନ କଲେ ॥୨୭॥ ଏହାଦ୍ୱାରା ମହାରାଜ ପୃଥୁ ସନ୍ତୁଷ୍ଟ ହୋଇ ସର୍ବକାମଧେନୁ ପୃଥିବୀକୁ ଅତିଶୟ ବାତ୍ସଲ୍ୟରେ ନିଜର କନ୍ୟାରୂପେ ଗ୍ରହଣ କଲେ ॥୨୮॥ ରାଜାଧିରାଜ ପୃଥୁ ଧନୁର ଅଗ୍ରଭାଗରେ ପର୍ବତର ଶୃଙ୍ଗମାନଙ୍କୁ ଚୂର୍ଣ୍ଣ କରି ସମସ୍ତ ଭୂମଣ୍ଡଳକୁ ପ୍ରାୟ ସମତଳ କରିଦେଲେ ॥୨୯॥ ପ୍ରଜାପାଳକ ପିତୃତୁଲ୍ୟ ମହାରାଜ ପୃଥୁ ପ୍ରଜାମାନଙ୍କ ପାଇଁ ସେମାନଙ୍କର ଯଥାଯୋଗ୍ୟ ନିବାସସ୍ଥଳ ସ୍ଥିର କରିଦେଲେ ॥୩୦॥ ଗ୍ରାମ, ପୁର, ନଗର, ଦୁର୍ଗ, ଗୋପାଳଙ୍କ ଗ୍ରାମ, ପଶୁଙ୍କ ରହିବା ସ୍ଥାନ, ଶିବିର, ଖଣି, କୃଷକମାନଙ୍କ ଗ୍ରାମ ଓ ପାର୍ବତ୍ୟ ଗ୍ରାମମାନଙ୍କୁ ସେ ନିର୍ଦ୍ଦିଷ୍ଟ ସ୍ଥାନମାନଙ୍କରେ ବସାଇଲେ ॥୩୧॥ ପୃଥୁଙ୍କ ପୂର୍ବରୁ ଏହିପରି ପୁର ଓ ଗ୍ରାମ ଆଦି ବିଭାଗ ନ ଥିଲା । ବର୍ତ୍ତମାନ ନିଜ ନିଜର ସୁବିଧା ଅନୁସାରେ ଅବସ୍ଥାନପୂର୍ବକ ଲୋକମାନେ ନିର୍ଭୟରେ ଓ ସୁଖରେ ବାସ କଲେ ॥୩୨॥

## ଊନବିଂଶ ଅଧ୍ୟାୟ

# ପୃଥୁଙ୍କର ଅଶ୍ୱମେଧ ଯଜ୍ଞ

ଶ୍ରୀ ମୈତ୍ରେୟ କହିଲେ, ମହାରାଜ ମନୁଙ୍କର ବ୍ରହ୍ମାବର୍ତ୍ତ କ୍ଷେତ୍ର, ଯେଉଁଠି ସରସ୍ୱତୀ ନଦୀ ପୂର୍ବାଭିମୁଖୀ ହୋଇ ପ୍ରବାହିତ ହେଉଛି, ରାଜା ପୃଥୁ ସେଠାରେ ଶହେ ଅଶ୍ୱମେଧ ଯଜ୍ଞ କରିବାର ଦୀକ୍ଷା ଗ୍ରହଣ କଲେ ॥୧॥ ଇନ୍ଦ୍ର ଦେଖିଲେ ଯେ, ଏହିପରି ଯଜ୍ଞ କଲେ ପୃଥୁଙ୍କର କାର୍ଯ୍ୟ ତାଙ୍କ କାର୍ଯ୍ୟଠାରୁ ଉତ୍କୃଷ୍ଟ ହୋଇଯିବ । ତେଣୁ ସେ ତାଙ୍କର ଯଜ୍ଞୋତ୍ସବକୁ ସହି ପାରିଲେ ନାହିଁ ॥୨॥ ଏହି ଯଜ୍ଞରେ ଯଜ୍ଞେଶ୍ୱର ରୂପେ ସର୍ବଶକ୍ତିମାନ୍ ଭଗବାନ ଶ୍ରୀହରି ଦର୍ଶନ ଦେଉଥିଲେ ॥୩॥ ତାଙ୍କ ସହିତ ବ୍ରହ୍ମା, ଶିବ ଓ ନିଜ ନିଜ ଅନୁଚରମାନଙ୍କ ସହିତ ଲୋକପାଳମାନେ ମଧ୍ୟ ଉପସ୍ଥିତ ଥିଲେ । ସେ ସମୟରେ ଗନ୍ଧର୍ବ, ମୁନି ଓ ଅପ୍ସରାମାନେ

ଭଗବାନଙ୍କର କୀର୍ତ୍ତିଗାନ କରୁଥିଲେ ॥୪॥ ସିଦ୍ଧ, ବିଦ୍ୟାଧର, ଦୈତ୍ୟ, ଦାନବ, ଯକ୍ଷ, ସୁନନ୍ଦ, ନନ୍ଦ ଆଦି ଭଗବାନଙ୍କର ପ୍ରମୁଖ ପାର୍ଷଦ ଏବଂ ଭଗବାନଙ୍କ ସେବାପାଇଁ ସଦା ଉତ୍ସୁକ କପିଳ, ନାରଦ, ଦତ୍ତାତ୍ରେୟ ଓ ସନକ ଆଦି ଯୋଗେଶ୍ୱରମାନେ ମଧ୍ୟ ସେଠାକୁ ଆସିଥିଲେ ॥୫-୬॥

ବିଦୁର, ଏହି ଯଜ୍ଞରେ ଯଜ୍ଞସାମଗ୍ରୀ ସବୁ ଦେଉଥିବା ଭୂମି କାମଧେନୁପରି ହୋଇ ଯଜମାନଙ୍କର ସମସ୍ତ ଇଚ୍ଛା ପୂର୍ଣ୍ଣ କରୁଥିଲେ ॥୭॥ ନଦୀମାନେ ଦ୍ରାକ୍ଷା ଓ ଇକ୍ଷୁ ଆଦି ସମସ୍ତପ୍ରକାର ରସ ବହନ କରି ଆଣୁଥିଲେ । ବଡ଼ବଡ଼ ବୃକ୍ଷମାନେ ଦୁଧ, ଦହି, ଅନ୍ନ ଓ ଘୃତ ଆଦି ବିଭିନ୍ନ ସାମଗ୍ରୀ ଅର୍ପଣ କରୁଥିଲେ ॥୮॥ ସମୁଦ୍ର ସବୁ ନାନାପ୍ରକାର ରତ୍ନ ଦେଉଥିଲେ; ପର୍ବତମାନେ ଚର୍ବ୍ୟ, ଚୋଷ୍ୟ, ଲେହ୍ୟ ଓ ପେୟ -- ଏହି ଚାରି ପ୍ରକାରର ସମସ୍ତ ଖାଦ୍ୟ ଓ ପାନୀୟ ଦେଉଥିଲେ ଏବଂ ଲୋକପାଳମାନଙ୍କ ସହିତ ସମସ୍ତ ଲୋକ ବିଭିନ୍ନ ପ୍ରକାର ଉପହାର ଆଣି ସେଠାରେ ପହଞ୍ଚାଇ ଦେଉଥିଲେ ॥୯॥ ମହରାଜ ପୃଥୁ ଏକମାତ୍ର ଶ୍ରୀହରିଙ୍କୁ ହିଁ ନିଜର ପ୍ରଭୁ ବୋଲି ମାନୁଥିଲେ ।

ଭଗବାନଙ୍କ କୃପାରୁ ଏହିପରି ଐଶ୍ୱର୍ଯ୍ୟବୃଦ୍ଧି ହେଉଥିବା ଦେଖି ଇନ୍ଦ୍ରଙ୍କର ଅସୂୟା ବଢ଼ିଗଲା । ସେ ବହୁ ପ୍ରକାର ବିଘ୍ନ ସୃଷ୍ଟି କରିବାକୁ ଚେଷ୍ଟା କଲେ ॥୧୦॥ ମହାରାଜ ପୃଥୁ ଶେଷ ଯଜ୍ଞଦ୍ୱାରା ଯଜ୍ଞପତି ଭଗବାନଙ୍କୁ ଆରାଧନା କରୁଥିବାବେଳେ, ଈର୍ଷାପର ଇନ୍ଦ୍ର ଛଦ୍ମବେଶରେ ଯାଇ ସେଠାରୁ ଯଜ୍ଞର ଅଶ୍ୱକୁ ହରଣ କରିନେଲେ ॥୧୧॥ ଭଗବାନ ଅତ୍ରି ଇନ୍ଦ୍ରଙ୍କୁ ଆକାଶମାର୍ଗରେ ଦ୍ରୁତବେଗରେ ପଳାଇ ଯାଉଥିବାର ଦେଖିଲେ । ଇନ୍ଦ୍ର ଏକ ପାଖଣ୍ଡର ଛଦ୍ମବେଶ ଧାରଣ କରିଥିଲେ, ଯେଉଁ ବେଶରେ କି ଅଧର୍ମୀ ଲୋକ ଧାର୍ମିକ ବୋଲି ଜଣାଯିବ ॥୧୨॥

ଅତ୍ରିଙ୍କ ଆଦେଶରେ ପୃଥୁଙ୍କର ମହାବୀର ପୁତ୍ର ଇନ୍ଦ୍ରଙ୍କୁ ମାରିବାପାଇଁ ତାଙ୍କ ପଛରେ ଦୌଡ଼ି ଦୌଡ଼ି କ୍ରୋଧରେ କହିଲେ, 'ଆରେ ହେ ରହ, ରହ' । ଇନ୍ଦ୍ର ମସ୍ତକରେ ଜଟା ଓ ଶରୀରରେ ଭସ୍ମ ଧାରଣ କରିଥିଲେ । ତାଙ୍କୁ ଦେଖି ପୃଥୁକୁମାର ଭାବିଲେ, ଏ ହେଉଛନ୍ତି ମୂର୍ତ୍ତିମନ୍ତ ଧର୍ମ । ତେଣୁ ତାଙ୍କୁ ଆଉ ବାଣ ମାରିଲେ ନାହିଁ । ଇନ୍ଦ୍ରଙ୍କୁ ନ ମାରି ଫେରି ଆସୁଥିବାର ଦେଖି ଇନ୍ଦ୍ରଙ୍କୁ ମାରିବାପାଇଁ ଅତ୍ରି ପୁଣି ଥରେ ଆଦେଶ ଦେଇ କହିଲେ, ବତ୍ସ, ଦେବତାମାନଙ୍କ ମଧ୍ୟରେ ଅଧମ ଏହି ଇନ୍ଦ୍ର ତୁମ ଯଜ୍ଞକୁ ନଷ୍ଟ କରିବାକୁ ଯାଉଚି । ତାହାକୁ ତୁରନ୍ତ ହତ୍ୟା କର ॥୧୩-୧୫॥ ମୁନିଙ୍କଦ୍ୱାରା ପ୍ରେରିତ ହୋଇ ପୃଥୁକୁମାର ଜଟାୟୁ ରାବଣକୁ ଅନୁଧାବନ କରିବାପରି ବେଗରେ ପଳାଉଥିବା ଇନ୍ଦ୍ରଙ୍କର ଅନୁଧାବନ କଲେ । ଏହା ଦେଖି ସ୍ୱର୍ଗର ରାଜା ନିଜର ଛଦ୍ମବେଶକୁ ଓ ଅଶ୍ୱକୁ ପରିତ୍ୟାଗ କରି ଅନ୍ତର୍ହିତ ହୋଇଗଲେ ଏବଂ ବୀର କୁମାର ନିଜର ଯଜ୍ଞ- ଅଶ୍ୱକୁ ଧରି ପିତାଙ୍କ ଯଜ୍ଞଶାଳାକୁ ଫେରି ଆସିଲେ ॥୧୬-୧୭॥ ବିଦୁର, ତାଙ୍କର ଏହି ଅଦ୍‌ଭୁତ କର୍ମ ଦେଖି ଋଷିମାନେ ତାଙ୍କୁ ବିଜିତାଶ୍ୱ ନାମରେ ଅଭିହିତ କଲେ ॥୧୮॥ ଯୂପକାଠ ଓ ତାର ଅଗ୍ରଭାଗରେ ଥିବା ବର୍ତ୍ତୁଳାକାର କାଠ (ଚଷାଳ)ରେ ଅଶ୍ୱକୁ ବାନ୍ଧି ଦିଆଯାଇଥିଲା । ଏହି ସମୟରେ ଏକ ଘୋର ଅନ୍ଧକାର ସୃଷ୍ଟି କରି ବଳଶାଳୀ ଇନ୍ଦ୍ର ସେଠାକୁ ଛପି ଛପି ଆସି ସୁନାର ଜଞ୍ଜିର ସହିତ ଅଶ୍ୱକୁ ପୁଣି ନେଇଗଲେ ॥୧୯॥ ଅତ୍ରି ମୁନି ଦେଖିଲେ ଯେ ଇନ୍ଦ୍ର ଆକାଶମାର୍ଗରେ ପୁଣି ତୀବ୍ର ବେଗରେ ପଳାୟମାନ । କିନ୍ତୁ ସେ କପାଳ ଓ ଖଟ୍ୱାଙ୍ଗ ଧରିଥିବାର ଦେଖି ପୃଥୁକୁମାର ଆଉ ତାଙ୍କୁ ବାଧା ଦେଲେ ନାହିଁ । ମାତ୍ର ପୁଣି ଥରେ ଅତ୍ରିଙ୍କର ପ୍ରୋତ୍ସାହନ ପାଇ ସେ କ୍ରୋଧରେ ଶର ସନ୍ଧାନ କଲେ । ତାହା ଦେଖି ଇନ୍ଦ୍ର ଅଶ୍ୱକୁ ଓ ଛଦ୍ମବେଶକୁ ପରିତ୍ୟାଗ କରି ଅନ୍ତର୍ହିତ ହୋଇଗଲେ ॥୨୦-୨୧॥ ବୀର କୁମାର ସେହି ଅଶ୍ୱକୁ ଧରି ପିତାଙ୍କ ଯଜ୍ଞଶାଳାକୁ ଫେରିଆସିଲେ । ସେହି ଦିନଠାରୁ ଏହି ନିନ୍ଦନୀୟ ପାଖଣ୍ଡ ରୂପକୁ ମନ୍ଦବୁଦ୍ଧି ଲୋକମାନେ ଗ୍ରହଣ କରିନେଲେ ॥୨୨॥ ଅଶ୍ୱକୁ ଅପହରଣ କରିବା ଇଚ୍ଛାରେ ଇନ୍ଦ୍ର ଯେଉଁ ଯେଉଁ ରୂପ ଧାରଣ କରିଥିଲେ, ତାହା ପାପର ଖଣ୍ଡ ଅର୍ଥାତ୍ ଚିହ୍ନ ହୋଇଥିବାଯୋଗୁଁ ତାକୁ ପାଖଣ୍ଡ କୁହାଗଲା ॥୨୩॥

ପୃଥୁଙ୍କର ଯଜ୍ଞକୁ ଧ୍ୱଂସ କରିବାପାଇଁ ଯଜ୍ଞାଶ୍ୱକୁ ହରଣ କରିବାବେଳେ ଇନ୍ଦ୍ର ଯେଉଁ ସବୁ ରୂପ ଧାରଣ କରି ତ୍ୟାଗ କରିଥିଲେ, ସେହି ସବୁ ରୂପପ୍ରତି ଲୋକେ ଆକୃଷ୍ଟ ହୋଇପଡ଼ନ୍ତି ॥୨୪॥ ନଗ୍ନ ହୋଇ ବା ନାଲିରଙ୍ଗର ବସ୍ତ୍ର ପରିଧାନ କରି

(ନଙ୍ଗା ସାଧୁ ବା କାପାଳିକ ଆଦି) ଅତି ସୁନ୍ଦର ଭାଷଣମାନ ଦେଇ ଲୋକଙ୍କୁ ବିଭ୍ରାନ୍ତ କରନ୍ତି ଓ ଧର୍ମ ନାମରେ ଅପଧର୍ମର ପ୍ରଚାର କରନ୍ତି ॥୨୫॥ ପ୍ରବଳପ୍ରତାପୀ ଭଗବାନ ପୃଥୁ ତାହା ଜାଣିପାରି ଧନୁରେ ବାଣ ଯୋଖି ଇନ୍ଦ୍ରକୁ ମାରିବା ପାଇଁ ଉଦ୍ୟତ ହେଲେ ॥୨୬॥ ଇନ୍ଦ୍ରବଧ ଇଚ୍ଛାରେ ଶରସନ୍ଧାନ କରିବାକୁ ଯାଉଥିବା କ୍ରୁଦ୍ଧରାଜାଙ୍କୁ ଚାହିଁ ହେଉ ନ ଥିଲା । ଋତ୍ୱିକମାନେ କଷ୍ଟରେ ତାଙ୍କୁ ସେଥିରୁ ନିବାରଣ କରି କହିଲେ, ମହାରାଜ, ଆପଣ ବୁଦ୍ଧିମାନ୍ । ଯଜ୍ଞପାଇଁ ଉଦ୍ଦିଷ୍ଟ ପଶୁ ଛଡ଼ା ଯଜ୍ଞରେ ଅନ୍ୟ କାହାରିକୁ ବଧ କରିବା ଆପଣଙ୍କ ପକ୍ଷରେ ଉଚିତ ହେବ ନାହିଁ । ଆମ ଉପରେ ଛାଡ଼ିଦିଅନ୍ତୁ, ଆମେ ଆପଣଙ୍କ କୀର୍ତ୍ତିଦ୍ୱାରା ହତବୀର୍ଯ୍ୟ ଯଜ୍ଞନାଶକ ଇନ୍ଦ୍ରକୁ ଅମୋଘ ଆବାହକ ମନ୍ତ୍ରମାନଙ୍କଦ୍ୱାରା ଡକାଇ ଆଣିବୁ ଏବଂ ଏହି ଅମଙ୍ଗଳକାରୀକୁ ବଳପୂର୍ବକ ଅଗ୍ନିରେ ଆହୁତି ଦେଇଦେବୁ ॥୨୭-୨୮॥ ଯଜମାନଙ୍କୁ ଏହିପରି ଆଶ୍ୱସନା ଦେଇ କ୍ରୁଦ୍ଧ ଋତ୍ୱିକମାନେ ଇନ୍ଦ୍ରଙ୍କୁ ଆହ୍ୱାନ କଲେ । ସ୍ରୁବ ଦ୍ୱାରା ସେମାନେ ଆହୁତି ଦେବାକୁ ଯାଉଛନ୍ତି, ଏହି ସମୟରେ ବ୍ରହ୍ମା ସେଠାରେ ପହଞ୍ଚିଯାଇ ସେମାନଙ୍କୁ ସେଥିରୁ ବାରଣ କରି କହିଲେ, ଋତ୍ୱିକ୍‌ଗଣ, ଇନ୍ଦ୍ର ଆପଣମାନଙ୍କ ବଧର ଯୋଗ୍ୟ ନୁହନ୍ତି । କାରଣ ତାଙ୍କର ଅନ୍ୟ ନାମ ଯଜ୍ଞ ଏବଂ ସେ ଭଗବାନଙ୍କର ତନୁ । ଯେଉଁ ଦେବତାଙ୍କୁ ଆପଣ ଆରାଧନା କରୁଛନ୍ତି, ସେମାନେ ମଧ୍ୟ ଇନ୍ଦ୍ରଙ୍କର ଦେହସ୍ୱରୂପ । ତେଣୁ ଆପଣମାନେ କିପରି ତାଙ୍କୁ ଯଜ୍ଞରେ ମାରିବାକୁ ଇଚ୍ଛା କରୁଛନ୍ତି ? ॥୨୯-୩୦॥ ଦ୍ୱିଜଗଣ, ଆପଣମାନେ ଦେଖୁଛନ୍ତି ଯେ ପୃଥୁଙ୍କର ଯଜ୍ଞରେ ବିଘ୍ନ କରିବାକୁ ଯାଇ ଇନ୍ଦ୍ର କିପରି ଧର୍ମନାଶକ ପାଖଣ୍ଡ ମାର୍ଗ ଅବଲମ୍ବନ କରିଛନ୍ତି । ବିଶାଳଯଶା ରାଜା ପୃଥୁ, ଆପଣ ଅନେକଶତ ଯଜ୍ଞ କରି ଇନ୍ଦ୍ରକୁ ବଳି ଯାଇଛନ୍ତି । ଆପଣ ମୋକ୍ଷଧର୍ମ କଣ ଜାଣନ୍ତି । ତେଣୁ ଆପଣଙ୍କର ଆଉ ଯଜ୍ଞ କରିବାର ଆବଶ୍ୟକତା ନାହିଁ ॥୩୧-୩୨॥ ଆପଣ ଓ ଇନ୍ଦ୍ର ଉଭୟ ହେଉଛନ୍ତି ପୁଣ୍ୟଶ୍ଳୋକ ଭଗବାନଙ୍କ ବିଗ୍ରହସ୍ୱରୂପ । ତେଣୁ ଆପଣ ନିଜର ଅନ୍ୟତମ ରୂପ ଇନ୍ଦ୍ରଙ୍କ ପ୍ରତି କ୍ରୋଧ କରିବା ଉଚିତ ନୁହେଁ । ଆପଣଙ୍କର ମଙ୍ଗଳ ହେଉ । ଯଜ୍ଞ ସମ୍ପୂର୍ଣ୍ଣ ହେଲା ନାହିଁ ବୋଲି ଚିନ୍ତା କରନ୍ତୁ ନାହିଁ । ଶ୍ରଦ୍ଧା ପୂର୍ବକ ମୋ'କଥା ଶୁଣନ୍ତୁ । ଦୈବବଶତଃ ନଷ୍ଟ ହୋଇଥିବା କାର୍ଯ୍ୟକୁ ଯେ ପୁନରାୟ କରିବାକୁ ଚିନ୍ତା କରେ, ଅତିଶୟ କ୍ରୋଧରେ ଚତୁର୍ଦ୍ଦିଗ ତାକୁ ଅନ୍ଧକାର ଦେଖାଯାଏ । ଅତଏବ ଆପଣଙ୍କର ଯଜ୍ଞ ଏହିଠାରେ ଶେଷ ହେଉ । କାରଣ ଯଜ୍ଞର କାରଣରୁ ହିଁ ଇନ୍ଦ୍ର ଧର୍ମନାଶକାରୀ ଏହି ପାଖଣ୍ଡ ମାର୍ଗଦ୍ୱାରା ଲୋକଙ୍କୁ ବିଭ୍ରାନ୍ତ କରୁଛନ୍ତି । ଦେବତାମାନଙ୍କର ମଧ୍ୟ ଆଗ୍ରହ ଜନ୍ମୁ ନାହିଁ । ଦେଖନ୍ତୁ, ଆପଣଙ୍କ ଅଶ୍ୱକୁ ଚୋରାଇବାକୁ ଯାଇ ଇନ୍ଦ୍ର ଏହି ଅଧାର୍ମିକ ପାଖଣ୍ଡ ମାର୍ଗ ସବୁ ଚଳାଇଲେ, ଯାହା ଫଳରେ ଲୋକଙ୍କର ଚିତ୍ତ ମୋହିତ ହେଲା । ଲୋକଙ୍କ ସମାଚରିତ ଧର୍ମର ପରିତ୍ରାଣପାଇଁ ଆପଣ ଅବତୀର୍ଣ୍ଣ ହୋଇଛନ୍ତି । ବେଣଙ୍କ ଅତ୍ୟାଚାରରେ ଏହି ଧର୍ମ ଲୁପ୍ତ ହେବାକୁ ବସିଥିଲା । ବିଷ୍ଣୁକଳାରେ ଆପଣ ତାଙ୍କ ଶରୀରରୁ ଉତ୍ପନ୍ନ ହେଲେ । ପ୍ରଜାପତି, ବିଶ୍ୱର ସୃଷ୍ଟିକୁ ବିଚାରକରି, ଯେଉଁ ବିଶ୍ୱସ୍ରଷ୍ଟା ଆପଣଙ୍କୁ ଜନ୍ମ ଦେଇଛନ୍ତି ଆପଣ ତାଙ୍କରି ସଙ୍କଳ୍ପ ପୂର୍ଣ୍ଣ କରନ୍ତୁ ଏବଂ ଏହି ପ୍ରଚଣ୍ଡ ପାଖଣ୍ଡମାୟାକୁ ନଷ୍ଟ କରିଦିଅନ୍ତୁ ॥୩୩-୩୮॥

ମୈତ୍ରେୟ କହିଲେ, ଲୋକଗୁରୁ ବ୍ରହ୍ମା ଏହିପରି ଉପଦେଶ ଦେବାରୁ ପ୍ରବଳପ୍ରତାପୀ ରାଜା ପୃଥୁ ତଦନୁସାରେ କାର୍ଯ୍ୟ କଲେ ଓ ଇନ୍ଦ୍ରଙ୍କ ପ୍ରତି ସ୍ନେହଶୀଳ ହୋଇ ତାଙ୍କ ସହିତ ସନ୍ଧି ସ୍ଥାପନ କଲେ । ଏହା ପରେ ସେ ଯଜ୍ଞାନ୍ତ ସ୍ନାନ ଶେଷ କଲେ । ଦେବତାମାନେ ଯଜ୍ଞରେ ତୃପ୍ତ ହୋଇ ମହାଯଶା ରାଜାଙ୍କୁ ତାଙ୍କର ଅଭୀଷ୍ଟ ବରମାନ ପ୍ରଦାନ କଲେ ॥୩୯-୪୦॥ ବିଦୁର ! ଆଦିରାଜ ପୃଥୁ ଶ୍ରଦ୍ଧାପୂର୍ବକ ବ୍ରାହ୍ମଣମାନଙ୍କୁ ସତ୍କାର କରି ଭୂରି ଦକ୍ଷିଣା ଦେବାରୁ ସେମାନେ ତାଙ୍କ ସତ୍କାରରେ ସନ୍ତୁଷ୍ଟ ହୋଇ ତାଙ୍କୁ ଅମୋଘ ଆଶୀର୍ବାଦ ପ୍ରଦାନ କଲେ ॥୪୧॥ ସେମାନେ କହିଲେ, ମହାବାହୁ ! ଆପଣଙ୍କଦ୍ୱାରା ଆହୂତ ହୋଇ ଏଠାରେ ସମବେତ ହୋଇଥିବା ପିତୃ, ଦେବତା, ଋଷି ଓ ଜନଗଣ ସମସ୍ତେ ଯଥୋଚିତ ସମ୍ମାନ ଓ ଉପହାର ଦ୍ୱାରା ଆପ୍ୟାୟିତ ହୋଇଛନ୍ତି ॥୪୨॥

## ବିଂଶ ଅଧ୍ୟାୟ

# ପୃଥୁଙ୍କର ବିଷ୍ଣୁଦର୍ଶନ

ମୈତ୍ରେୟ କହିଲେ, ବିଦୁର! ଯଜ୍ଞେଶ୍ୱର, ଯଜ୍ଞଭୋକ୍ତା ଭଗବାନ ବିଷ୍ଣୁ ପୃଥୁଙ୍କ ଯଜ୍ଞରେ ସନ୍ତୁଷ୍ଟ ହୋଇ ଇନ୍ଦ୍ରଙ୍କ ସହିତ ସେଠାରେ ଆସି ପହଞ୍ଚିଲେ ଏବଂ ରାଜାଙ୍କୁ ସମ୍ବୋଧିତ କଲେ ॥୧॥ ଶ୍ରୀ ଭଗବାନ କହିଲେ, ରାଜା, ତୁମେ ଶହେ-ଅଶ୍ୱମେଧ ଯଜ୍ଞ ସମ୍ପୂର୍ଣ୍ଣ କରିବ ବୋଲି ସଙ୍କଳ୍ପ କରିଥିଲ। ଇନ୍ଦ୍ର ସେଥିରେ ବିଘ୍ନ ସୃଷ୍ଟି କରିଥିଲେ। ଏବେ ସେ ତୁମଠାରୁ କ୍ଷମା ଚାହାନ୍ତି। ତାଙ୍କୁ କ୍ଷମା କରିଦିଅ ॥୨॥ ନରଦେବ, ଏହି ସଂସାରରେ ଯେଉଁ ସାଧୁ ବିଜ୍ଞ ବ୍ୟକ୍ତି ଅନ୍ୟକୁ ଦ୍ରୋହ କରନ୍ତି ନାହିଁ, ସେମାନେ ମନୁଷ୍ୟଙ୍କ ମଧ୍ୟରେ ଶ୍ରେଷ୍ଠ। କାରଣ ସେମାନେ ଜାଣନ୍ତି ଯେ ଶରୀର କେବେ ଆତ୍ମା ନୁହେଁ ॥୩॥ ପୁରୁଷମାନେ ଯଦି ସେହିପରି ଦୈବୀ ମାୟାରେ ମୋହିତ ହୁଅନ୍ତି, ତେବେ ଦୀର୍ଘକାଳ ଧରି ବୃଦ୍ଧସେବାରେ କେବଳ ଶ୍ରମ ହିଁ ସାର ହୁଏ ॥୪॥

ପଣ୍ଡିତ ବ୍ୟକ୍ତି ଏହି ଶରୀରକୁ ଅବିଦ୍ୟା, ବାସନା ଏବଂ କର୍ମର ପିତୁଳା ବୋଲି ଗ୍ରହଣ କରି ଏଥିରେ ଆସକ୍ତ ହୁଅନ୍ତି ନାହିଁ ॥୫॥ ଶରୀର ପ୍ରତି ଅନାସକ୍ତ ବିଦ୍ୱାନ୍ ବ୍ୟକ୍ତି ଏହାଦ୍ୱାରା ଉତ୍ପନ୍ନ ଗୃହ, ପୁତ୍ର ଓ ଧନ ଆଦିରେ କାହିଁକି ମମତା ରଖିବ ? ॥୬॥ ଏହି ଆତ୍ମା ହେଉଚି ଏକ ଶୁଦ୍ଧ, ସ୍ୱୟଂପ୍ରକାଶ, ନିର୍ଗୁଣ ଅଥଚ ସମସ୍ତ ଗୁଣର ଆଶ୍ରୟସ୍ଥଳ, ସର୍ବବ୍ୟାପୀ, ଅନାବୃତ, ସବୁର ସାକ୍ଷୀ ଅନ୍ୟ ଆତ୍ମାରୁ ରହିତ, ତେଣୁ ଶରୀରଠାରୁ ଭିନ୍ନ ॥୭॥ ଯେଉଁ ପୁରୁଷ ଦେହସ୍ଥିତ ଆତ୍ମାକୁ ଏହିପରି ଶରୀରଠାରୁ ଭିନ୍ନ ବୋଲି ଜାଣିଛି, ସେ ବିଷୟରେ ଜଡ଼ିତ ହେଲେ ମଧ୍ୟ ବିଷୟର ଗୁଣ (ବିଷୟବିଷ) ଦ୍ୱାରା ପ୍ରଭାବିତ ହୁଏ ନାହିଁ। କାରଣ ମୋଠାରେ ହିଁ ତାର ଚିତ୍ତ ରହିଥାଏ ॥୮॥ ରାଜା! ଯେ, ସ୍ୱଧର୍ମ (ବର୍ଣ୍ଣାଶ୍ରମ)ରେ ରହି କୌଣସି ବାସନାଦ୍ୱାରା ପରିଚାଳିତ ହୁଏ ନାହିଁ ଏବଂ ଶ୍ରଦ୍ଧାର ସହିତ ମୋର ଆରାଧନା କରେ, ଧୀରେ ଧୀରେ ତାର ଚିତ୍ତ ପ୍ରସନ୍ନ ହୋଇଉଠେ ॥୯॥ ବିଷୟବାସନାକୁ ପରିତ୍ୟାଗ କରି ଯେ ସମଦର୍ଶୀ ଓ ଶୁଦ୍ଧଚିତ୍ତ ହୁଏ, ସେ ମୋର ସମ୍ପୂର୍ଣ୍ଣ ଉଦାସୀନ ଭାବକୁ ଅର୍ଥାତ୍ ମୋର ବ୍ରହ୍ମସ୍ୱରୂପକୁ ଅନୁଭବ କରେ ଓ ସଂସାର ବନ୍ଧନରୁ ମୁକ୍ତ ହୋଇ ପରମ ଶାନ୍ତି ଲାଭ କରେ ॥୧୦॥

ଯେଉଁ ବ୍ୟକ୍ତି ଜାଣେ ଯେ, ଆତ୍ମା ଶରୀର, ଜ୍ଞାନେନ୍ଦ୍ରିୟ, କର୍ମେନ୍ଦ୍ରିୟ ଓ ମନର ଅଧ୍ୟକ୍ଷ ଏବଂ ଏହି ଶରୀର ମଧ୍ୟରେ ସାକ୍ଷୀ ସ୍ୱରୂପ ଥାଇ ସେଥିରେ ଲିପ୍ତ ନୁହେଁ, ସେ କଲ୍ୟାଣମୟ ମୋକ୍ଷପଦ ଲାଭ କରେ ॥୧୧॥ ଆତ୍ମା ଠାରୁ ଭିନ୍ନ ପଞ୍ଚଭୂତ, ଇନ୍ଦ୍ରିୟ, ଇନ୍ଦ୍ରିୟମାନଙ୍କର ଅଧିଦେବତା, ବୁଦ୍ଧି ଏବଂ ଅହଙ୍କାର ରୂପ ଲିଙ୍ଗ ଶରୀର ହିଁ ସଂସାରରେ ବାରମ୍ବାର ଜନ୍ମ ହୋଇଥାଏ। ଏହାଦ୍ୱାରା ଏହାର ସାକ୍ଷୀ ସ୍ୱରୂପ ଆତ୍ମା ପ୍ରଭାବିତ ହୁଏ ନାହିଁ। ମୋଠାରେ ଦୃଢ଼ ଅନୁରାଗ ରଖିଥିବା ବିଜ୍ଞ ବ୍ୟକ୍ତି ସମ୍ପଦରେ ବା ବିପଦରେ କେବେହେଲେ ବିଚଳିତ ହୁଏ ନାହିଁ ॥୧୨॥ ବୀର, ତୁମେ ଉତ୍ତମ, ମଧ୍ୟମ ଏବଂ ଅଧମ--ଏହି ସବୁ ଶ୍ରେଣୀର ଲୋକଙ୍କଠାରେ ସମଭାବ ରଖି ସୁଖ ଓ ଦୁଃଖକୁ ସମାନ ଭାବରେ ଗ୍ରହଣ କର। ଇନ୍ଦ୍ରିୟ ଓ ମନକୁ ଜୟ କରି ଓ ମୋଦ୍ୱାରା ପରିକଳ୍ପିତ ପାତ୍ରମନ୍ତ୍ରୀମାନଙ୍କୁ ଧରି ଏହି ସମସ୍ତ ଲୋକସମାଜକୁ ରକ୍ଷା କର ॥୧୩॥ ରାଜାର ଶ୍ରେୟ ହେଉଚି ପ୍ରଜାମାନଙ୍କୁ ପାଳନ କରିବା। ତଦ୍ୱାରା ରାଜାକୁ ପ୍ରଜାମାନଙ୍କ ସୁକୃତର ଏକ ଷଷ୍ଠାଂଶ ପରଲୋକରେ ମିଳିଥାଏ। ଅନ୍ୟଥା ପ୍ରଜାମାନଙ୍କଠାରୁ କର ଆଦାୟ କରି ସେମାନଙ୍କୁ ରକ୍ଷା ନ କଲେ ରାଜାର ପୁଣ୍ୟକୁ ପ୍ରଜାମାନେ ହରଣ କରିନିଅନ୍ତି ଓ ରାଜା ପ୍ରଜାଙ୍କର ପାପକୁ ଭୋଗ କରେ ॥୧୪॥ ଏହିପରି ବ୍ରାହ୍ମଣମାନଙ୍କ ସମ୍ମତ ପରମ୍ପରାଗତ ଧର୍ମମାର୍ଗରେ ରହି ଅନାସକ୍ତ ଭାବରେ ନ୍ୟାୟପୂର୍ବକ ପ୍ରଜାମାନଙ୍କୁ ପାଳନ କଲେ ଘରେ ବସି ତୁମେ ଅଳ୍ପକାଳ ମଧ୍ୟରେ ସନକାଦି ସିଦ୍ଧମାନଙ୍କର ଦର୍ଶନ ପାଇ ପାରିବ ॥୧୫॥ ମାନବେନ୍ଦ୍ର, ତୁମର ଗୁଣ ଓ ଶୀଳଦ୍ୱାରା ମୁଁ ବଶୀଭୂତ। ତୁମେ ଇଚ୍ଛାନୁସାରେ ମୋଠାରୁ ବର ମାଗି ନିଅ। ଗୁଣ ଓ ଶୀଳରହିତ

ବ୍ୟକ୍ତିମାନେ ଯେତେ ଯଜ୍ଞ, ତପ ବା ଯୋଗ କଲେ ମଧ୍ୟ ମୋତେ ସହଜରେ ପାଇ ପାରନ୍ତି ନାହିଁ, କିନ୍ତୁ ସମଦର୍ଶୀ ଲୋକଙ୍କ ଚିତ୍ତରେ ମୁଁ ସର୍ବଦା ରହିଥାଏ ॥୧୬॥

ମୈତ୍ରେୟ କହିଲେ, ବିଦୁର, ଏହିପରି ସମସ୍ତ ଲୋକଙ୍କ ଗୁରୁ ବିଷ୍ୱକ୍‌ସେନ ଭଗବାନ ଶ୍ରୀହରିଙ୍କ ଆଦେଶକୁ ବିଶ୍ୱବିଜୟୀ ରାଜା ଶିରୋଧାର୍ଯ୍ୟ କଲେ । ଦେବରାଜ ଇନ୍ଦ୍ର ନିଜର କର୍ମପାଇଁ ଲଜ୍ଜିତ ହୋଇ ତାଙ୍କ ପାଦ ଛୁଇଁବାକୁ ଯିବାରୁ ସେ ସବୁ ଶତ୍ରୁତା ଭୁଲିଯାଇ ତାଙ୍କୁ ସ୍ନେହରେ ଆଲିଙ୍ଗନ କରିନେଲେ ॥୧୭-୧୮॥ ପରେ ପରେ ରାଜା ପୃଥୁ ନିଜର କ୍ରମବର୍ଦ୍ଧିଷ୍ଣୁ ଭକ୍ତିଭାବରେ ବିହ୍ୱଳ ହୋଇ ଭଗବାନଙ୍କ ପାଦପଦ୍ମକୁ ଧାରଣ କରି ପୂଜା କରିବାକୁ ଲାଗିଲେ । ପଦ୍ମପଲାଶନେତ୍ର ଭଗବାନ ଶ୍ରୀହରି ମଧ୍ୟ ଯିବାକୁ ଇଚ୍ଛା କରି ମଧ୍ୟ ଶୀଘ୍ର ଯାଇପାରିଲେ ନାହିଁ । ସ୍ନେହପୂର୍ଣ୍ଣ ଦୃଷ୍ଟିରେ ରାଜାଙ୍କ ଆଡ଼କୁ ଚାହିଁ ରହିଲେ ॥୧୯-୨୦॥ ରାଜା ପୃଥୁଙ୍କର କଣ୍ଠ ବାଷ୍ପରୁଦ୍ଧ ହୋଇଗଲା ଓ ଚକ୍ଷୁରେ ଅଶ୍ରୁ ଭରିଗଲା । ସେ ଭଗବାନଙ୍କ ଆଡ଼କୁ ଚାହିଁ ପାରିଲେ ନାହିଁ କି କିଛି କହି ପାରିଲେ ନାହିଁ । କୃତାଞ୍ଜଳିପୁଟରେ କେବଳ ତାଙ୍କୁ ହୃଦୟମଧ୍ୟରେ ଧରି ରଖିଲେ ॥୨୧॥ ଭଗବାନଙ୍କର ପାଦ ଭୂମିକୁ ସ୍ପର୍ଶ କରୁଥିଲା । ସେ ହସ୍ତର ଅଗ୍ରଭାଗରେ ଗରୁଡ଼ଙ୍କର ଉଚ୍ଚ କାନ୍ଧକୁ ଧରିଥିଲେ । ତାଙ୍କୁ ବାରମ୍ବାର ଦେଖିଲେ ମଧ୍ୟ ରାଜାଙ୍କର ଦୃଷ୍ଟି ତୃପ୍ତ ହେଉ ନଥିଲା । ସେ ଆଖିର ଲୁହ ପୋଛି କହିବାକୁ ଲାଗିଲେ ॥୨୨॥

ବରଦ ବିଭୁ, କେଉଁ ବିଜ୍ଞ ବ୍ୟକ୍ତି ଦେହାଭିମାନର ଭୋଗ୍ୟ ବସ୍ତୁ ଆପଣଙ୍କୁ ମାଗି ପାରିବ ? ନରକରେ ଥିବା ଜୀବମାନଙ୍କୁ ମଧ୍ୟ ଏହି ବସ୍ତୁସବୁ ମିଳିଥାଏ । ଆପଣ ମୁକ୍ତିପଦଦାତା । ଆପଣଙ୍କୁ ସେ ସବୁ ତୁଚ୍ଛ ବର ମୁଁ ମାଗୁନାହିଁ ॥୨୩॥ ମୁଁ ମଧ୍ୟ ସେ ମୋକ୍ଷପଦ ଚାହୁଁ ନାହିଁ, ଯେଉଁଠିକି ଆପଣଙ୍କ ପଦାମ୍ବୁଜର ମକରନ୍ଦ ମୋତେ ମିଳିବ ନାହିଁ, କାରଣ ତାହା କେବଳ ମହାତ୍ମାମାନଙ୍କ ହୃଦ୍‌ଗତ ଓ ମୁଖନିଃସୃତ ଆପଣଙ୍କ କୀର୍ତ୍ତିଗାଥାର ଶ୍ରବଣରୁ ହିଁ ମିଳିଥାଏ । ତେଣୁ ପ୍ରଭୁ, ମୋତେ ଏହି ବର ଦିଅନ୍ତୁ, ମୁଁ ଦଶ ହଜାର କାନରେ ଆପଣଙ୍କ କୀର୍ତ୍ତିଗାଥା ଶ୍ରବଣ କରୁଥିବି ॥୨୪॥ ପୁଣ୍ୟଶ୍ଳୋକ, ମହାପୁରୁଷମାନଙ୍କ ମୁହଁରୁ ଆପଣଙ୍କ ଚରଣକମଳର ଅମୃତ କଥାସବୁ ବାହାରିବା ଦ୍ୱାରା ଆପଣଙ୍କ ତତ୍ତ୍ୱ ଭୁଲିଯାଇଥିବା ଯୋଗଭ୍ରଷ୍ଟ ବ୍ୟକ୍ତିମାନଙ୍କର ପୂର୍ବସ୍ମୃତି ଜାଗରୂକ ହୁଏ ଓ ସେମାନେ ଠିକଣା ବାଟକୁ ଫେରି ଆସନ୍ତି । ତେଣୁ ଅନ୍ୟ ବର ମୋର ଆବଶ୍ୟକ ନୁହେଁ ॥୨୫॥ କୀର୍ତ୍ତିମୟ, ସାଧୁ ସଙ୍ଗତରେ ଆପଣଙ୍କ ମଙ୍ଗଳମୟ ଯଶୋଗାଥା ଥରେ ମାତ୍ର ଶୁଣିଲେ ପଶୁ ଛଡ଼ା କେଉଁ ଗୁଣଜ୍ଞ ବ୍ୟକ୍ତି ତାହା ଛାଡ଼ି ଯାଇପାରିବ ? ସମସ୍ତ ପ୍ରକାର ପୁରୁଷାର୍ଥର ସିଦ୍ଧିପାଇଁ ସ୍ୱୟଂ ଲକ୍ଷ୍ମୀ ମଧ୍ୟ ଆପଣଙ୍କ ଯଶୋଗାଥା ଶୁଣିବାକୁ ଚାହାନ୍ତି ॥୨୬॥ ହେ ସକଳଗୁଣର ନିଧାନ ପୁରୁଷୋତ୍ତମ, ଲକ୍ଷ୍ମୀଙ୍କ ପରି ସେବାର ଲାଳସାରେ ମୁଁ ଆପଣଙ୍କୁ ଭଜନ କରୁଚି । କିନ୍ତୁ ଏକମନରେ ଜଣେ ପତିର ପଦସେବା କରିବାକୁ ଇଚ୍ଛା କରୁଥିବା ଆମ ଦୁଇ ଜଣଙ୍କ ମଧ୍ୟରେ କଳି ଲାଗି ନ ଯାଉ ॥୨୭॥ ଜଗଦୀଶ, ଜଗଜ୍ଜନନୀ ବିରୋଧ କଲେ ମଧ୍ୟ, ସେ ଯେପରି ଆପଣଙ୍କର ସେବାକାର୍ଯ୍ୟରେ ଲାଗି ରହିଛନ୍ତି, ମୁଁ ମଧ୍ୟ ସେହିପରି ଲାଗି ରହିବି । ଆପଣ ଦୀନ ଜନଙ୍କୁ ସ୍ନେହ କରନ୍ତି । ସେମାନଙ୍କ ତୁଚ୍ଛ କର୍ମକୁ ହିଁ ଆପଣ ସବୁବେଳେ ବଡ଼ କରି ଥୁଅନ୍ତି । ଆପଣ ତ ନିଜ ସ୍ୱରୂପରେ ରମଣ କରନ୍ତି । ଲକ୍ଷ୍ମୀଙ୍କ ଉପରେ ଆପଣଙ୍କର କଣ ବା ନିର୍ଭର କରିବାର ଅଛି ? ॥୨୮॥

ଆପଣ ଦୀନବନ୍ଧୁ ହୋଇଥିବାଯୋଗୁଁ ସାଧୁମାନେ କୌଣସି କାମନା ନ ଥାଇ ଆପଣଙ୍କୁ ଭଜନ କରନ୍ତି । କୌଣସି ମାୟାର ଗୁଣ ଆପଣଙ୍କୁ ସ୍ପର୍ଶ କରିପାରେ ନାହିଁ । ଆପଣଙ୍କ ପାଦପଦ୍ମକୁ ସର୍ବଦା ଧ୍ୟାନ କରିବା ଛଡ଼ା ସାଧୁମାନଙ୍କର ଅନ୍ୟ କୌଣସି ପ୍ରୟୋଜନ ମୁଁ ଦେଖେ ନାହିଁ ॥୨୯॥ 'ବର ମାଗ' ବୋଲି ଆପଣ ଯାହା କହିଲେ, ତାହା ଜଗତକୁ ମୋହଗ୍ରସ୍ତ କରିବାପାଇଁ ଉଦ୍ଦିଷ୍ଟ ବୋଲି ମୁଁ ମନେ କରେ । କାରଣ ମୁଁ ତ ନିଷ୍କାମ ଭାବରେ ଆପଣଙ୍କୁ ଭଜନ କରୁଚି । ଆପଣଙ୍କ ବେଦବାଣୀରୂପକ ରଜ୍ଜୁଦ୍ୱାରା ଲୋକେ ବନ୍ଧା ନ ହୋଇଥିଲେ କାମନାଯୁକ୍ତ କର୍ମରେ କାହିଁକି ଲାଗି ପଡ଼ିଥାନ୍ତେ ? ॥୩୦॥ ପ୍ରଭୁ, ଆପଣଙ୍କ ମାୟାଦ୍ୱାରା ଆବଦ୍ଧ ଜୀବ ଆପଣଙ୍କ ସ୍ୱରୂପ ବିଷୟରେ ଅଜ୍ଞ ରହି ସ୍ତ୍ରୀ, ପୁତ୍ର, ଧନ ଆଦି କାମନା କରେ । କିନ୍ତୁ ଆପଣ ଆମ୍ଭମାନଙ୍କର ପିତା । କ'ଣ କଲେ ପୁତ୍ରର ମଙ୍ଗଳ ହେବ, ତାହା ଯେପରି ପିତା ଛାଏଁ କରି ଚାଲେ, ସେହିପରି ଆପଣ ଆମର କଲ୍ୟାଣ କରିବା ହୁଅନ୍ତୁ ॥୩୧॥

ମୈତ୍ରେୟ କହିଲେ, ଆଦିରାଜା ପୃଥୁଙ୍କ ଦ୍ୱାରା ଏହିପରି ପ୍ରାର୍ଥିତ ହୋଇ ବିଶ୍ୱଦ୍ରଷ୍ଟା ଭଗବାନ ତାଙ୍କୁ କହିଲେ, ରାଜା, ମୋ'ଠାରେ ସର୍ବଦା ତୁମର ଭକ୍ତି ରହିଥାଉ । ସୌଭାଗ୍ୟର ବିଷୟ, ତୁମର ମୋ ପ୍ରତି ଯେଉଁ ଏକାଗ୍ର ଭକ୍ତି ରହିଚି, ତଦ୍ୱାରା ମୋର ଦୁସ୍ତର ମାୟାରୁ ଲୋକ ସହଜରେ ତରିଯାଇ ପାରିବ ॥୩୨॥ ପ୍ରଜାପତି, ମୁଁ ତୁମକୁ ଯେଉଁ ଆଦେଶ ଦେଲି, ସେହି ଅନୁସାରେ ଅବିଚଳିତ ଭାବରେ କାର୍ଯ୍ୟ କରିଯାଅ । ମୋ' ଆଦେଶ ଯେ ପାଳନ କରେ, ସର୍ବତ୍ର ତାର କଲ୍ୟାଣ ହୁଏ ॥୩୩॥ ମୈତ୍ରେୟ କହିଲେ, ଏହିପରି ଭଗବାନ ଶ୍ରୀ ଅଚ୍ୟୁତ ବେଣପୁତ୍ର ରାଜର୍ଷି ପୃଥୁଙ୍କୁ ଅର୍ଥପୂର୍ଣ୍ଣ ବଚନରେ ଆନନ୍ଦିତ ଓ ଅନୁଗୃହୀତ କରି ଏବଂ ତାଙ୍କଦ୍ୱାରା ପୂଜିତ ହୋଇ ଯିବାପାଇଁ ଉଦ୍ୟତ ହେଲେ ॥୩୪॥ ମହାରାଜ ପୃଥୁ ସେଠାକୁ ଆସିଥିବା ଦେବତା, ଋଷି, ପିତୃ, ଗନ୍ଧର୍ବ, ସିଦ୍ଧ, ଚାରଣ, ନାଗ, କିନ୍ନର, ଅପ୍ସରା, ମନୁଷ୍ୟ, ପକ୍ଷୀ ଆଦି ବହୁପ୍ରକାର ପ୍ରାଣୀଙ୍କୁ ଓ ଭଗବାନଙ୍କର ପାର୍ଷଦମାନଙ୍କୁ ହାତ ଯୋଡ଼ି ଭକ୍ତିପୂର୍ଣ୍ଣ ବଚନ ଓ ଧନ ଦ୍ୱାରା ସନ୍ତୁଷ୍ଟ କଲେ । ସେମାନେ ସମସ୍ତେ ରାଜାଙ୍କଠାରୁ ବିଦାୟ ନେଇ ସ୍ୱ ସ୍ୱ ଧାମକୁ ଫେରିଗଲେ ॥୩୫-୩୬॥ ଭଗବାନ ଅଚ୍ୟୁତ ମଧ୍ୟ ରାଜର୍ଷି ପୃଥୁ ଓ ତାଙ୍କ ଯାଜକମାନଙ୍କର ଚିତ୍ତ ହରଣ କରି ନିଜ ଧାମକୁ ଚାଲିଗଲେ ॥୩୭॥ ଯେଉଁ ଅବ୍ୟକ୍ତପୁରୁଷ କାହାର ନେତ୍ରଗୋଚର ହୁଅନ୍ତି ନାହିଁ, ସେ ରାଜାଙ୍କୁ ଦର୍ଶନ ଦେଇ ଅନ୍ତର୍ହିତ ହେବାରୁ ରାଜା ସେହି ଦେବାଧିଦେବଙ୍କ ଉଦ୍ଦେଶ୍ୟରେ ନମସ୍କାର କରି ନିଜ ରାଜଧାନୀକୁ ଫେରିଗଲେ ॥୩୮॥

## ଏକବିଂଶ ଅଧ୍ୟାୟ

# ପ୍ରଜାମାନଙ୍କୁ ପୃଥୁଙ୍କର ଭଗବଦ୍‌ଧର୍ମ ଉପଦେଶ

ମୈତ୍ରେୟ କହିଲେ, ବିଦୁର, ରାଜା ପୃଥୁଙ୍କ ନଗରର ଚାରିଆଡ଼ ମୋତିମାଳ, ଫୁଲମାଳ, ବିଭିନ୍ନ ରଙ୍ଗର ପଟ୍ଟବସ୍ତ୍ର, ସୁବର୍ଣ୍ଣର ତୋରଣ ଓ ସୁବାସିତ ଧୂପ ଆଦିଦ୍ୱାରା ଶୋଭା ପାଉଥିଲା । ନଗରର ପ୍ରଧାନ ପ୍ରଧାନ ଛକ, ରାସ୍ତା ଓ ଗଳିମାନଙ୍କରେ ଚନ୍ଦନର ଜଳ ଛିଞ୍ଚାଯାଇଥିଲା ଏବଂ ଫୁଲ, ଫଳ ଓ କାନ୍ଧି ପଡ଼ିଥିବା କଦଳୀ ଗଛ, ଛୋଟ ଛୋଟ ଗୁଆ ଗଛ ଓ ଆମ୍ରପତ୍ରମାଳାରେ ତୋରଣମାନ ସୁନ୍ଦର ଦେଖାଯାଉଥିଲା । ରାଜା ପୃଥୁ ନଗରମଧ୍ୟରେ ପ୍ରବେଶ କରିବା କ୍ଷଣି ମନୋହର କୁଣ୍ଡଳଯୁକ୍ତ ସୁନ୍ଦରୀ ଲଳନାମାନେ ଅନ୍ୟ ପ୍ରଜାମାନଙ୍କ ସହିତ ଦୀପ ଓ ମାଙ୍ଗଳିକ ଦ୍ରବ୍ୟମାନଙ୍କ ଦ୍ୱାରା ତାଙ୍କୁ ବନ୍ଦାପନା କଲେ । ଶଙ୍ଖ, ଦୁନ୍ଦୁଭିମାନଙ୍କର ନାଦ, ଋତ୍ୱିକମାନଙ୍କର ବେଦଧ୍ୱନି ଏବଂ ବନ୍ଦୀମାନଙ୍କର ସ୍ତୁତିଗାନ ମଧ୍ୟରେ ବୀର ପୃଥୁ ନିଜ ଭବନରେ ପ୍ରବେଶ କଲେ । ଏହି ଅଭ୍ୟର୍ଥନାଦ୍ୱାରା ତାଙ୍କ ମନକୁ କୌଣସି ଅହଙ୍କାର ଛୁଇଁ ନ ଥିଲା ॥୧-୫॥ ରାସ୍ତାରେ ଏଠି ସେଠି ନଗରବାସୀ ଓ ଜନପଦବାସୀ ତାଙ୍କୁ ଯେଉଁ ପୂଜା କରୁଥିଲେ, ସେଥିରେ ପ୍ରସନ୍ନ ହୋଇ ମହାଯଶା ରାଜା ସେମାନଙ୍କୁ ଅଭୀଷ୍ଟ ବସ୍ତୁମାନ ପ୍ରଦାନ କରି ସନ୍ତୁଷ୍ଟ କରୁଥିଲେ ॥୬॥ ରାଜା ପୃଥୁ ମହତ୍‌ଲୋକଙ୍କ ମଧ୍ୟରେ ଅଗ୍ରପୂଜ୍ୟ ଥିଲେ । ଅନେକ ପ୍ରଶଂସନୀୟ ଜନମଙ୍ଗଳ କାର୍ଯ୍ୟ କରି ପୃଥିବୀକୁ ଶାସନ କରିଥିଲେ ଏବଂ ଶେଷରେ ବିପୁଳ ଯଶର ଅଧିକାରୀ ହୋଇ ଭଗବାନଙ୍କର ପରମପଦ ପ୍ରାପ୍ତ ହେଲେ ॥୭॥

ସୂତ କହିଲେ, ଶୌନକ, ଅଶେଷ ଗୁଣାବଳୀରେ ପୂର୍ଣ୍ଣ ଗୁଣୀମାନଙ୍କଦ୍ୱାରା ପ୍ରଶଂସିତ ଆଦିରାଜ ପୃଥୁଙ୍କର ଯଶୋଗାଥା ଶୁଣି ବିଦୁର ତାହାକୁ ବୟାନ କରୁଥିବା ଋଷି ମୈତ୍ରେୟଙ୍କୁ ଅଭିବାଦନପୂର୍ବକ ଏହିପରି କହିଲେ --॥୮॥ ବିଦୁର କହିଲେ, ବ୍ରାହ୍ମଣମାନେ ପୃଥୁଙ୍କର ଅଭିଷେକ କଲେ । ଦେବତାମାନେ ତାଙ୍କୁ ଅନେକ ପ୍ରକାର ଉପହାର ଦେଲେ । ସେ ନିଜର ଭୁଜରେ ବୈଷ୍ଣବ ତେଜ ଧାରଣ କରି ପୃଥିବୀକୁ ଦୋହନ କଲେ । ସେହି ବିକ୍ରମୀ ରାଜାଙ୍କ ଦୋହନର ଉଚ୍ଛିଷ୍ଟସ୍ୱରୂପ ଏହି ପୃଥିବୀକୁ ଅନ୍ୟ ରାଜା, ଲୋକ ଓ ଲୋକପାଳ ଏବେ ସୁଦ୍ଧା ଉପଭୋଗ କରୁଛନ୍ତି । କେଉଁ ବୁଦ୍ଧିମାନ୍ ବ୍ୟକ୍ତି ତାଙ୍କର ଏହି କୀର୍ତ୍ତି

ଶୁଣିବାକୁ ଇଚ୍ଛା ନ କରିବ ? ତେଣୁ ତାଙ୍କର ପବିତ୍ର ଚରିତ୍ର ପୁଣି କିଛି ମୁଁ ଶୁଣିବାକୁ ଇଚ୍ଛା କରୁଚି । ଆପଣ ମୋତେ ତାହା କହିବା ହୁଅନ୍ତୁ ॥୯-୧୦॥

ମୈତ୍ରେୟ କହିଲେ , ବିଦୁର, ରାଜା ପୃଥୁ ଗଙ୍ଗା ଓ ଯମୁନା ନଦୀର ଦୋଆବରେ ଅବସ୍ଥାନ କରୁଥିଲେ । ସେ ପୁଣ୍ୟକ୍ଷୟ ଉଦ୍ଦେଶ୍ୟରେ ପ୍ରାରବ୍ଧରୁ ମିଳିଥିବା ଭୋଗକୁ ହିଁ ଭୋଗ କରୁଥିଲେ ॥୧୧॥ ସପ୍ତଦ୍ୱୀପର ଏକମାତ୍ର ସମ୍ରାଟ ଭାବରେ ବ୍ରାହ୍ମଣ ଓ ବୈଷ୍ଣବ (ଅଚ୍ୟୁତଗୋତ୍ର)ମାନଙ୍କୁ ଛାଡ଼ିଦେଲେ ଅନ୍ୟ ସମସ୍ତଙ୍କ ଉପରେ ତାଙ୍କର ଅଖଣ୍ଡ ଶାସନ ପ୍ରବର୍ତ୍ତିତ ଥିଲା ॥୧୨॥ ଏକଦା ସେ ଏକ ମହାଯଜ୍ଞର ଦୀକ୍ଷା ନେଲେ । ସେତେବେଳେ ସେଠାରେ ଦେବତା, ବ୍ରହ୍ମର୍ଷି ଓ ରାଜର୍ଷିମାନେ ଠୁଳ ହୋଇଥିଲେ ॥୧୩॥ ଏହି ସମସ୍ତ ପୂଜନୀୟ ଅତିଥିମାନଙ୍କର ଯଥାଯୋଗ୍ୟ ପୂଜା କରି ରାଜା ସଭାମଧ୍ୟରେ ଠିଆହୋଇ ପଡ଼ିଲେ, ଯେପରି ଆକାଶରେ ତାରାମାନଙ୍କ ମଧ୍ୟରେ ଚନ୍ଦ୍ର ଉଠି ଦେଖାଯା'ନ୍ତି ॥୧୪॥ ସେ ଗୌରବର୍ଣ୍ଣ ଓ ଦୀର୍ଘକାୟ ଥିଲେ; ତାଙ୍କର ସୁଗୋଲ ସୁଠାମ ବାହୁ, ପଦ୍ମପରି ସୁନ୍ଦର ଅରୁଣବର୍ଣ୍ଣ ଚକ୍ଷୁ, ସୁନ୍ଦର ନାସିକା ଓ ମୁଖମଣ୍ଡଳ, ସୌମ୍ୟ ରୂପ, ସ୍ଥୁଳ ସ୍କନ୍ଧ ଏବଂ ରୁଚିର ଦନ୍ତପଙ୍‌କ୍ତିରେ ସ୍ମିତହାସ ଶୋଭା ପାଉଥିଲା ॥୧୫॥ ଛାତି ଚଉଡ଼ା, ଅଣ୍ଟାର ପଛପଟ ସ୍ଥୁଳ, ଅଶ୍ୱତ୍ଥପତ୍ରପରି ସୁନ୍ଦର ଉଦରରେ ବଳିରେଖା, ଆବର୍ତ୍ତ ନାଭି, ଓଜସ୍ୱୀ ଦେହ, ସୁବର୍ଣ୍ଣପରି ଝଟକୁଥିବା ଉରୁଦ୍ୱୟ ଓ ଉପରକୁ ଉଠିଆସିଥିବା ପାଦର ଅଗ୍ରଭାଗ, ଚିକ୍କଣ ଓ କୁଞ୍ଚିତ କୃଷ୍ଣବର୍ଣ୍ଣର କେଶରାଶି, ଶଙ୍ଖତୁଲ୍ୟ ଗ୍ରୀବା, ପିନ୍ଧିଥିବା ମୂଲ୍ୟବାନ ପଟ୍ଟବସ୍ତ୍ର ଓ ଉତ୍ତରୀୟ ଆଦି ସବୁ ତାଙ୍କର ଶୋଭା ବର୍ଦ୍ଧନ କରୁଥିଲା ॥୧୬-୧୭॥

ଯଜ୍ଞୋଚିତ କର୍ମର ନିୟମ ଅନୁସାରେ ସେ ଶରୀରର ସମସ୍ତ ବସ୍ତ୍ରଅଳଙ୍କାର ଆଦି ବାହାର କରି ଦେଇ ମୃଗଚର୍ମ ପରିଧାନ କଲେ ଓ ହସ୍ତରେ କୁଶବଟୁ ଧାରଣ କଲେ । ଏଥିରେ ତାଙ୍କ ଶରୀରର ସ୍ୱାଭାବିକ ସୌନ୍ଦର୍ଯ୍ୟ ପୂର୍ବପରି ରହିଥିଲା ॥୧୮॥ ତାଙ୍କ ଆଖିର ତାରା ଶୀତଳ ଓ ସ୍ନିଗ୍ଧ ଦେଖାଯାଉଥିଲା । ରାଜା ଚାରିଆଡ଼କୁ ଚାହିଁ ସମସ୍ତଙ୍କୁ ଆନନ୍ଦିତ କରି କହିବାକୁ ଆରମ୍ଭ କଲେ ॥୧୯॥ ତାଙ୍କର ଭାଷା ଥିଲା ସ୍ପଷ୍ଟ, ମଧୁର, ଭାବଗମ୍ଭୀର ଓ ବିଚିତ୍ର ପଦଯୁକ୍ତ । ସମସ୍ତଙ୍କର ଉପକାର ପାଇଁ ନିଜର ଅନୁଭୂତିକୁ ସେ ଭାଷାରେ ପ୍ରକାଶ କରୁଥିଲେ ॥୨୦॥ ରାଜା କହିଲେ, ଏଠାକୁ ଆସିଥିବା ସଭାସ୍ଥ ସଜ୍ଜନଗଣ, ଆପଣମାନଙ୍କର ମଙ୍ଗଳ ହେଉ । ଆପଣମାନେ ଶୁଣିବା ହୁଅନ୍ତୁ । ଜିଜ୍ଞାସୁ ସାଧୁ ପୁରୁଷମାନେ ଯାହା ମନରେ ଚିନ୍ତା କରୁଛନ୍ତି, ତାହା ପ୍ରକାଶ କରିବା ଉଚିତ ହେବ ॥୨୧॥ ପ୍ରଜାମାନଙ୍କୁ ନିଜ ନିଜ ମର୍ଯ୍ୟାଦା ମଧ୍ୟରେ ରଖିବାପାଇଁ ମୋତେ ରାଜାରୂପେ ନିଯୁକ୍ତ କରାଯାଇଚି ॥୨୨॥ ତେଣୁ ପ୍ରଜାମାନଙ୍କ ରକ୍ଷଣାଦି କାର୍ଯ୍ୟପାଇଁ ବେଦବାଦୀମାନେ ଯେଉଁ ସବୁ କର୍ମ କରିବା କଥା କରିଛନ୍ତି, ଯଦ୍ୱାରା କି କର୍ମର ସାକ୍ଷୀ ଭଗବାନ ଶ୍ରୀହରି ସନ୍ତୁଷ୍ଟ ହେବେ, ମୁଁ ତାହା ହିଁ କରିବାକୁ ଯାଉଚି ॥୨୩॥ ଯେଉଁ ରାଜା ପ୍ରଜାମାନଙ୍କୁ ଧର୍ମମାର୍ଗ ଶିକ୍ଷା ନ ଦେଇ କେବଳ ତାଙ୍କଠାରୁ କର ଆଦାୟ କରୁଥାଏ, ସେ ପ୍ରଜାମାନଙ୍କ ପାପରେ ଭାଗୀ ହୁଏ ଏବଂ ତାର ସମସ୍ତ ଐଶ୍ୱର୍ଯ୍ୟ ନଷ୍ଟ ହୋଇଯାଏ ॥୨୪॥

ତେଣୁ ପ୍ରଜାଗଣ, ଆପଣମାନଙ୍କ ସ୍ୱାମୀ ଏହି ରାଜାର ପରଲୋକରେ ମଙ୍ଗଳପାଇଁ ଏବଂ ଆପଣମାନଙ୍କ ନିଜର ମଙ୍ଗଳପାଇଁ ପରସ୍ପର ଅସୂୟା ତ୍ୟାଗପୂର୍ବକ ଭଗବାନଙ୍କଠାରେ ଚିତ୍ତ ନିବେଶ କରନ୍ତୁ ଓ ନିଜର କର୍ତ୍ତବ୍ୟ କର୍ମ କରିଯାନ୍ତୁ । ଏହାଦ୍ୱାରା ମୋ'ପ୍ରତି ଆପଣମାନଙ୍କର ବହୁତ ବଡ଼ ଅନୁଗ୍ରହ ହେବ ॥୨୫॥ ଶୁଦ୍ଧଚିତ୍ତ ପିତୃ ଦେବତା ଓ ଋଷିଗଣ, ଆପଣମାନେ ମୋର ପ୍ରାର୍ଥନାକୁ ଅନୁମୋଦନ କରନ୍ତୁ । ଯାହା କିଛି କର୍ମ ହେଉ, ମରିବାପରେ ତାର କର୍ତ୍ତା, ଉପଦେଷ୍ଟା ଓ ସମର୍ଥକ -ସମସ୍ତଙ୍କୁ ସମାନ ଫଳ ମିଳିଥାଏ ॥୨୬॥ ପୂଜ୍ୟପାଦଗଣ, କେତେକଙ୍କ ମତରେ ଯଜ୍ଞପତି ନାମକ ପରମେଶ୍ୱର ହିଁ ଯଜ୍ଞକର୍ମର ଫଳଦାତା । କାରଣ କେତେକ ସ୍ଥଳରେ ଏହି ଭୋଗଭୂମିରୂପ ଶରୀର (ତାଙ୍କ କୃପାରୁ) ତେଜୋମୟ ଦେଖାଯାଏ ॥୨୭॥ ମନୁ, ଉତ୍ତାନପାଦ, ମହାରାଜ ଧ୍ରୁବ, ରାଜର୍ଷି ପ୍ରିୟବ୍ରତ, ମୋର ପିତାମହ ଅଙ୍ଗ ତଥା ବ୍ରହ୍ମା, ଶିବ, ପ୍ରହ୍ଲାଦ, ବଳି ଓ ସେହି ଶ୍ରେଣୀର ଅନ୍ୟ

ମହାନୁଭାବମାନଙ୍କ ମତରେ ଭଗବାନ ଶ୍ରୀହରି ହିଁ କର୍ମଫଳଦାତା । କେବଳ ଯମଙ୍କର ନାତି ବେଣ ଆଦି ଧର୍ମବିମୁଖ ରାଜାମାନେ ଅନ୍ୟମତ ପୋଷଣ କରନ୍ତି । (ଏହି ନାସ୍ତିକମାନଙ୍କର ମତ ଗ୍ରହଣୀୟ ନୁହେ) । ଧର୍ମର ଫଳସ୍ୱରୂପ ସ୍ୱର୍ଗ ମିଳେ । ତେଣୁ ଧର୍ମ ଅର୍ଥ କାମ ଏହି ତ୍ରିବର୍ଗ ଏବଂ ଅପବର୍ଗ (ମୋକ୍ଷ)- ଏହାର ଏକମାତ୍ର ନିୟାମକ ହେଉଛନ୍ତି ଭଗବାନ ଶ୍ରୀହରି ॥୨୮-୩୦॥ ତାଙ୍କର ପାଦସେବାପାଇଁ ତପସ୍ୱୀମାନଙ୍କର ଅଭିରୁଚି ଦିନକୁ ଦିନ ବୃଦ୍ଧି ପାଇବା ଫଳରେ ସେମାନଙ୍କର ଅଶେଷ ଜନ୍ମରୁ ସଞ୍ଚିତ ମନର ମଳ ଶୀଘ୍ର ଦୂର ହୋଇଯାଏ । ପାଦ ଦୂରେ ଥାଉ, ତାଙ୍କ ପଦାଙ୍ଗୁଳିରୁ ନିଃସୃତ ଗଙ୍ଗାଜଳ ମଧ୍ୟ ସମସ୍ତ ପାପ ଧୋଇଦିଏ ॥୩୧॥

ଏହିପରି ଅଶେଷଜନ୍ମରୁ ବଢ଼ିଚାଲୁଥିବା ମନର ମଳ ଦୂର ହେବା ଫଳରେ ଲୋକର ବୈରାଗ୍ୟ ଓ ତତ୍ତ୍ୱଜ୍ଞାନ ଜନିତ ବଳ ବଢ଼ିଯାଏ ଏବଂ ସେ ଭଗବାନଙ୍କ ପାଦମୂଳକୁ ଆଶ୍ରୟକରି ପୁଣି ଏହି କ୍ଳେଶପୂର୍ଣ୍ଣ ସଂସାରଚକ୍ରରେ ପଡ଼େ ନାହିଁ ॥୩୨॥ ତେଣୁ ନିଜ ନିଜ ବୃତ୍ତିରେ ରହି କର୍ମ କରି କାୟମନୋବାକ୍ୟରେ ସର୍ବକାମପ୍ରଦ ସେହି ଭଗବାନଙ୍କ ପାଦପଦ୍ମକୁ ନିଷ୍କପଟ ଭାବରେ ଭଜନ କରନ୍ତୁ ॥୩୩॥ ଭଗବାନ ନିର୍ଗୁଣ, ଶୁଦ୍ଧତତ୍ତ୍ୱଜ୍ଞାନ ସ୍ୱରୂପ । କିନ୍ତୁ ଯଜ୍ଞାଦି କର୍ମମାର୍ଗରେ ବିରି, ଅରୁଆ ଚାଉଳ ଆଦି ବିଭିନ୍ନ ଦ୍ରବ୍ୟ, ଶୁକ୍ଳ ଆଦି ଗୁଣ, ହବନାଦି କ୍ରିୟା, ମନ୍ତ୍ରଆଦି -ପଠନ ଅର୍ଥ, ଆଶୟ (ସଂକଳ୍ପ) ଲିଙ୍ଗ (ପଦାର୍ଥ-ଶକ୍ତି) ତଥା ଜ୍ୟୋତିଷ୍ଟୋମାଦି ନାମରେ ସମ୍ପନ୍ନ ହେଉଥିବା ଅନେକ-ଗୁଣବିଶିଷ୍ଟ ଯଜ୍ଞରୂପରେ ସେ ପ୍ରକଟିତ ହୁଅନ୍ତି ॥୩୪॥ ଅଗ୍ନି ଏକ ହେଲେ ମଧ୍ୟ ଭିନ୍ନ ଭିନ୍ନ କାଠର ସଂଯୋଗରେ ତାର ଯେପରି ଆକାର ଓ ରଙ୍ଗ ଭିନ୍ନ ଭିନ୍ନ ଦେଖାଯାଏ, ସେହିପରି ଏହି ଶରୀରରେ ପରମାନନ୍ଦସ୍ୱରୂପ ଭଗବାନ ପ୍ରକୃତି, କାଳ, କାମନା ବାସନା ଓ ଶୁଭାଶୁଭ କର୍ମ ଦ୍ୱାରା ନିର୍ମିତ ଅଦୃଷ୍ଟ--ଏ ସମସ୍ତେ ମିଶି ଶରୀରକୁ ଜନ୍ମ ଦିଅନ୍ତି ଏବଂ ବିଭିନ୍ନ ଶରୀର ଓ ବିଭିନ୍ନ ବିଷୟବୁଦ୍ଧିରେ ଅବସ୍ଥିତ ହୋଇ ଯଜ୍ଞ ଆଦି କ୍ରିୟା ଓ ତାର ଫଳ ରୂପେ ଭିନ୍ନ ଭିନ୍ନ ରୂପରେ ଜଣା ପଡ଼ନ୍ତି ॥୩୫॥ ଏହି ଧରାତଳରେ ମୋର ଯେଉଁ ପ୍ରଜାମାନେ ନିରନ୍ତର ନିଷ୍ଠାର ସହିତ ସ୍ୱଧର୍ମପାଳନରେ ରତ ରହି ଯଜ୍ଞଭୋକ୍ତାମାନଙ୍କ ଅଧୀଶ୍ୱର ଓ ଗୁରୁ ଶ୍ରୀହରିଙ୍କୁ ପୂଜା କରୁଛନ୍ତି, ସେମାନେ ମୋତେ ହିଁ ଅନୁଗୃହୀତ କରୁଛନ୍ତି ॥୩୬॥ ତ୍ୟାଗ, ତପସ୍ୟା ଓ ବିଦ୍ୟା ଏହି ମହତ୍ ବିଭୂତିମାନଙ୍କଦ୍ୱାରା ବ୍ରାହ୍ମଣ ଓ ବୈଷ୍ଣବମାନଙ୍କର କୁଳ ସର୍ବଦା ଦେଦୀପ୍ୟମାନ ଥାଏ । ରାଜକୁଳର ତେଜ ସେମାନଙ୍କ ଉପରେ ପ୍ରଭାବ ବିସ୍ତାର ନ କରୁ ॥୩୭॥

ମହାପୁରୁଷ (ବ୍ରହ୍ମାଦି ଦେବତା)ମାନଙ୍କ ମଧ୍ୟରେ ଅଗ୍ରଗଣ୍ୟ ପୁରାଣପୁରୁଷ ଭଗବାନ ଶ୍ରୀହରି ସ୍ୱୟଂ ବ୍ରାହ୍ମଣପ୍ରିୟ । ସେ ନିତ୍ୟ ସେମାନଙ୍କ ଚରଣବନ୍ଦନା କରି ଏହି ଜଗତରେ ଅଚଳା ଲକ୍ଷ୍ମୀ (ଏଠାରେ ଚଞ୍ଚଳା ନୁହନ୍ତି)ଙ୍କୁ ଓ ଜଗତ୍ ପବିତ୍ରକର ଯଶକୁ ଅର୍ଜନ କରିଛନ୍ତି ॥୩୮॥ ସେମାନଙ୍କର ସେବା କଲେ ସର୍ବାନ୍ତର୍ଯାମୀ ସ୍ୱୟଂସିଦ୍ଧ ଈଶ୍ୱର ନିଜେ ବିପ୍ରପ୍ରିୟ ହେଉଥିବା ଯୋଗୁଁ ବିଶେଷ ପ୍ରସନ୍ନ ହୁଅନ୍ତି । ତେଣୁ ଭଗବାନ ଶ୍ରୀହରିଙ୍କର ଏହି ଲୋକସଂଗ୍ରହ ରୂପ ଧର୍ମକୁ ଅନୁସରଣ କରି ବିନୟର ସହିତ ସର୍ବାନ୍ତଃକରଣରେ ବ୍ରାହ୍ମଣକୁଳର ସେବା କରିବା ବାଞ୍ଛନୀୟ ॥୩୯॥ ନିତ୍ୟ ସେମାନଙ୍କର ସେବା କରିବାଦ୍ୱାରା ଶୀଘ୍ର ଚିତ୍ତ ଶୁଦ୍ଧ ହୁଏ ଏବଂ ଜ୍ଞାନାଭ୍ୟାସ ବିନା ବ୍ୟକ୍ତି ସ୍ୱୟଂ ପରମଶାନ୍ତି ରୂପକ ମୋକ୍ଷ ଲାଭ କରେ । ବ୍ରାହ୍ମଣଙ୍କ ଛଡ଼ା ଅନ୍ୟ କେହି ନାହିଁ ଯେ କି ହବିର୍ଭୋଜୀ ଦେବତାଙ୍କର ମୁଖ ହୋଇପାରିବ । (ବ୍ରାହ୍ମଣଙ୍କ ସେବାଦ୍ୱାରା ସମ୍ପୂର୍ଣ୍ଣ ଯଜ୍ଞଫଳ ମିଳିପାରିବ) ॥୪୦॥ ଇନ୍ଦ୍ରାଦି ପୂଜ୍ୟ ଦେବତାଙ୍କ ନାମରେ ଘୃତାହୁତି ଦିଆଯାଏ । ତତ୍ତ୍ୱଜ୍ଞମାନେ ଜାଣନ୍ତି ଯେ ଭଗବାନ ଅନନ୍ତ ସର୍ବଦେବମୟ ଚୈତନ୍ୟସ୍ୱରୂପ । ତେଣୁ ଶ୍ରଦ୍ଧାର ସହିତ ଇନ୍ଦ୍ରାଦି ଦେବତାଙ୍କ ନାମରେ ବ୍ରାହ୍ମଣଙ୍କ ମୁହଁରେ ଯଦି ଘୃତାଦି ପଡ଼େ, ସେଥିରେ ଜ୍ଞାନରୂପୀ ସର୍ବାନ୍ତର୍ଯାମୀ ପ୍ରକୃତ ସନ୍ତୋଷ ଲାଭ କରନ୍ତି । ଚେତନାବିହୀନ ଅଗ୍ନିରେ ଘୃତାହୁତି ଦେଲେ ତାହା ତାଙ୍କୁ ସେପରି ସନ୍ତୋଷ ଦିଏ ନାହିଁ ॥୪୧॥

ଦର୍ପଣରେ ଯେପରି କୌଣସି ବସ୍ତୁର ପ୍ରତିବିମ୍ବ ଦେଖାଯାଏ, ସେହିପରି ନିତ୍ୟ, ଶୁଦ୍ଧ ଓ ସନାତନ ବେଦରେ ସମସ୍ତ ତତ୍ତ୍ୱର ଜ୍ଞାନ, ସମସ୍ତ ବିଶ୍ୱ ଭାସି ଉଠେ । ଯେଉଁମାନେ ଶ୍ରଦ୍ଧା, ତପ, ମଙ୍ଗଳମୟ ଆଚରଣ, ମୌନବ୍ରତ, ସ୍ୱାଧ୍ୟାୟ, ସଂଯମ ଓ ସ୍ଥିରଚିତ୍ତରେ ଏହି ବେଦକୁ ଧାରଣ କରନ୍ତି, ସେହି ବ୍ରାହ୍ମଣମାନଙ୍କ ପାଦପଦ୍ମର ଧୂଳିକୁ ଶିରୋଧାର୍ଯ୍ୟ କରି ଜୀବନସାରା ମୁଁ

ମୋର କିରୀଟରେ ବହନ କରିବି । କାରଣ ଏହାଦ୍ୱାରା ସର୍ବପାପ ନଷ୍ଟ ହେବ ଏବଂ ସମସ୍ତଗୁଣ ଏହାଙ୍କ ସେବାରେ ନିୟୋଜିତ ହେବ ॥୪୨-୪୩॥ ଗୁଣବାନ୍, ଶୀଳସମ୍ପନ୍ନ, କୃତଜ୍ଞ ଓ ଗୁରୁଜନଙ୍କୁ ସେବା କରୁଥିବା ପୁରୁଷକୁ ସମସ୍ତ ସମ୍ପଦ ଆପେ ଆପେ ବରଣ କରନ୍ତି । ତେଣୁ ମୋର ଅଭିଳାଷ ହେଉଚି, ବ୍ରାହ୍ମଣକୁଳ, ଗୋବଂଶ ଓ ଭକ୍ତମାନଙ୍କ ସହିତ ଭଗବାନ ସର୍ବଦା ମୋ'ପ୍ରତି ପ୍ରସନ୍ନ ହୁଅନ୍ତୁ ॥୪୪॥

ମୈତ୍ରେୟ କହିଲେ, ନୃପତିଙ୍କର ବଚନ ଶୁଣି ପିତୃ, ଦେବତା ଓ ବ୍ରାହ୍ମଣ ଆଦି ସମସ୍ତଙ୍କର ସନ୍ତୋଷ ହେଲା ଏବଂ ସେମାନେ ଆନନ୍ଦ ମନରେ ତାଙ୍କର ସାଧୁବାଦ କରିବାକୁ ଲାଗିଲେ ॥୪୫॥ ସେମାନେ କହିଲେ, ପୁତ୍ରଦ୍ୱାରା ପିତା ପୁଣ୍ୟଲୋକ ଲାଭ କରେ, ଏହି ବେଦବାକ୍ୟ ହେଉଚି ସତ୍ୟ । ପାପୀ ବେଣ ବ୍ରାହ୍ମଣମାନଙ୍କ ଅଭିଶାପରୁ ନିହତ ହୋଇଥିଲା । କିନ୍ତୁ ପୁତ୍ର ପୃଥୁଙ୍କ ପୁଣ୍ୟବଳରେ ସେ ନରକରୁ ଉଦ୍ଧାର ପାଇଗଲା ॥୪୬॥ ଏହିପରି ହିରଣ୍ୟକଶିପୁ ଭଗବାନଙ୍କୁ ନିନ୍ଦା କରି ନରକ ଭୋଗ କରୁଥିଲା, କିନ୍ତୁ ପୁତ୍ର ପ୍ରହ୍ଲାଦଙ୍କ ପ୍ରଭାବରେ ସେଥିରୁ ମୁକ୍ତ ହୋଇଗଲା ॥୪୭॥ ବୀରଶ୍ରେଷ୍ଠ, ସମସ୍ତ ଲୋକର ଏକମାତ୍ର ସ୍ୱାମୀ ଭଗବାନ ଅଚ୍ୟୁତଙ୍କଠାରେ ଆପଣଙ୍କର ଏପରି ଭକ୍ତି ଥିବାଯୋଗୁଁ ଆପଣ ପୃଥିବୀରେ ଚିରକାଳ ଜୀବିତ ରହନ୍ତୁ ॥୪୮॥ ଆପଣଙ୍କର କୀର୍ତ୍ତି ଅତିଶୟ ପବିତ୍ର । ପୁଣ୍ୟଶ୍ଳୋକ ବ୍ରହ୍ମଣ୍ୟଦେବ ଭଗବାନ ବିଷ୍ଣୁଙ୍କର କଥା ଆପଣ ପ୍ରଚାର କରୁଛନ୍ତି । ଆମର ଆଜି ସୌଭାଗ୍ୟ, ଆପଣଙ୍କୁ ସ୍ୱାମୀ ଭାବରେ ପାଇ ଶ୍ରୀ ମୁକୁନ୍ଦଙ୍କୁ ଆମେ ସ୍ୱାମୀରୂପେ ପାଇବାପରି ଅନୁଭବ କରୁଛୁ ॥୪୯॥ ସ୍ୱାମି ! ଆଶ୍ରିତମାନଙ୍କୁ ଏପରି ମହତ୍ ଉପଦେଶ ଦେବା ଆପଣଙ୍କ ପକ୍ଷରେ ଅତି ଆଶ୍ଚର୍ଯ୍ୟର ବିଷୟ ନୁହେ । କାରଣ ପ୍ରଜାମାନଙ୍କ ପ୍ରତି ଅନୁରାଗ କରୁଣାମୟ ମହାପୁରୁଷମାନଙ୍କର ସ୍ୱଭାବସିଦ୍ଧ ଗୁଣ ॥୫୦॥ ପ୍ରାରବ୍ଧବଶରୁ ଆମେ ସଂସାର ଚକ୍ରରେ ଘୂରି ବୁଲୁଛୁ । ଆମ୍ଭମାନଙ୍କର ଅନ୍ତର୍ଦୃଷ୍ଟି ନଷ୍ଟ ହୋଇଯାଇଚି । ପ୍ରଭୁ, ଆପଣ ଆମକୁ ଆଜି ଅଜ୍ଞାନ ଅନ୍ଧକାରରୁ ପାର କରିନେଲେ ॥୫୧॥ ଆପଣ ଶୁଦ୍ଧ ସତ୍ତ୍ୱମୟ ପରମ ପୁରୁଷ । ବ୍ରାହ୍ମଣ ଓ କ୍ଷତ୍ରିୟମାନଙ୍କ ମଧ୍ୟରେ ପ୍ରବେଶ କରି ନିଜ ତେଜରେ ସାରା ଜଗତ୍‌କୁ ରକ୍ଷା କରୁଛନ୍ତି । ଆପଣଙ୍କୁ ଆମର ନମସ୍କାର ॥୫୨॥

## ଦ୍ୱାବିଂଶ ଅଧ୍ୟାୟ

# ପୃଥୁଙ୍କୁ ଉପଦେଶ

ମୈତ୍ରେୟ କହିଲେ, ପରମ ପରାକ୍ରମୀ ରାଜା ପୃଥୁଙ୍କୁ ପ୍ରଜାମାନେ ଏହିପରି ନିବେଦନ କରୁଥିବା ସମୟରେ ସୂର୍ଯ୍ୟଙ୍କ ପରି ତେଜସ୍ୱୀ ଚାରିଜଣ ମୁନି ସେଠାରେ ଆସି ପହଞ୍ଚିଲେ ॥୧॥ ନିଜର ଅନୁଗାମୀମାନଙ୍କ ସହିତ ରାଜା ପୃଥୁ ସେମାନଙ୍କୁ ସିଦ୍ଧେଶ୍ୱର ବୋଲି ଚିହ୍ନିପାରିଲେ । ନିଜର ଦିବ୍ୟ ତେଜରେ ସମସ୍ତ ଲୋକଙ୍କୁ ପାପମୁକ୍ତ କରି ସେମାନେ ଆକାଶରୁ ଓହ୍ଲାଇ ଆସୁଛନ୍ତି ॥୨॥ ବିଷୟାସକ୍ତ ଜୀବ କୌଣସି ଭୋଗ ବସ୍ତୁପ୍ରତି ଯେପରି ଉତ୍ସୁକ ହୋଇଉଠେ, ସେହିପରି ସନକାଦି ମୁନିମାନଙ୍କୁ ଦେଖି ରାଜାଙ୍କ ପ୍ରାଣର ଉତ୍କଣ୍ଠା ବଢ଼ିଗଲା । ସେ ସମବେତ ଲୋକଙ୍କ ସହିତ ଠିଆ ହୋଇ ପଡ଼ିଲେ ॥୩॥ ମୁନିମାନେ ଅର୍ଘ୍ୟ ସ୍ୱୀକାର କରି ଆସନ ଗ୍ରହଣ କଲେ । ପୃଥୁ ସେମାନଙ୍କ ସାମ୍ନାରେ ସବିନୟ ମଥା ନତ କରି ବିଧିପୂର୍ବକ ପୂଜା କଲେ ॥୪॥ ସେମାନଙ୍କର ପାଦ ଧୋଇ ଦେଇ ସେହି ଜଳକୁ ନିଜର କେଶରାଶି ଉପରେ ଛିଞ୍ଚି ଶିଷ୍ଟଜନୋଚିତ ଆଚରଣ ପ୍ରଦର୍ଶନ କରିଥିଲେ ॥୫॥ ସୁବର୍ଣ୍ଣନିର୍ମିତ ଆସନମାନଙ୍କରେ ବସି ନିଜତେଜରେ ସେମାନେ ଅଗ୍ନିପରି ତେଜୀୟାନ୍ ଦେଖାଯାଉଥିଲେ । ଶ୍ରଦ୍ଧା ଓ ସଂଯମର ସହିତ ପ୍ରୀତିପୂର୍ବକ ରାଜା ସେମାନଙ୍କୁ ସମ୍ବୋଧନ କଲେ ॥୬॥

ପୃଥୁ କହିଲେ, ମଙ୍ଗଳମୟ ମୁନିଗଣ, ଆପଣମାନଙ୍କ ଦର୍ଶନ ଯୋଗୀମାନଙ୍କ ପକ୍ଷରେ ମଧ୍ୟ ଦୁର୍ଲଭ । ମୋର କଣ ଏପରି ପୁଣ୍ୟହେଲା ମୁଁ ଆପଣମାନଙ୍କ ଦର୍ଶନ ଲାଭ କଲି ॥୭॥ ନିଜର ଅନୁଗାମୀଙ୍କ ସହିତ ଭଗବାନ ଶିବ, ଭଗବାନ ବିଷ୍ଣୁ ଓ ବ୍ରାହ୍ମଣମାନେ ଯାହାଙ୍କପ୍ରତି ପ୍ରସନ୍ନ ଥା'ନ୍ତି, ତାଙ୍କର ଏ ଜଗତରେ ବା ପରଲୋକରେ ଦୁର୍ଲଭ ବସ୍ତୁ କଣ ବା ଥାଇପାରେ ? ॥୮॥ ସର୍ବଦର୍ଶୀ ଆତ୍ମାକୁ ଯେପରି ସମସ୍ତେ ଦେଖିପାରନ୍ତି ନାହିଁ, ସେହିପରି ଆତ୍ମଦର୍ଶନହେତୁ ଆପଣମାନେ ବିଶ୍ୱରେ ସର୍ବତ୍ର ବିଚରଣ କରୁଥିଲେ ମଧ୍ୟ ଆପଣମାନଙ୍କୁ କେହି ଦେଖିପାରନ୍ତି ନାହିଁ ॥୯॥ ସେହି ସାଧୁ ଗୃହସ୍ଥମାନେ ନିର୍ଦ୍ଧନ ହେଲେ ମଧ୍ୟ ଧନ୍ୟ, ଯାହାଙ୍କ ଗୃହରେ ଆପଣଙ୍କ ପରି ବରେଣ୍ୟ ମୁନିଗଣ ପାଦ ଦେଇ ଜଳ, ତୃଣ, ଭୂମି ଏବଂ ଗୃହସ୍ୱାମୀଙ୍କର ବା ତାଙ୍କ ସେବକମାନଙ୍କର ସେବା ଗ୍ରହଣ କରନ୍ତି ॥୧୦॥ ଯେଉଁଗୃହରେ ଭଗବତ୍‌ଭକ୍ତଙ୍କ ପାଦୋଦକର କଣାଏ ମଧ୍ୟ ପଡ଼ିନାହିଁ, ସେ ଗୃହ ସମସ୍ତ ଧନ-ସଂପଦରେ ପରିପୂର୍ଣ୍ଣ ହେଲେ ମଧ୍ୟ ସର୍ପ ବାସକରୁଥିବା ବୃକ୍ଷକୋଟର ସହିତ ସମାନ ॥୧୧॥ ଦ୍ୱିଜଶ୍ରେଷ୍ଠ, ଆପଣମାନଙ୍କୁ ସ୍ୱାଗତ । ବାଳକତୁଲ୍ୟ ଦେଖାଗଲେ ମଧ୍ୟ ଆପଣମାନେ ମହାପ୍ରାଜ୍ଞ ମୁକ୍ତିକାମୀମାନଙ୍କ ପଥ ଅନୁସରଣ କରି ପ୍ରଜ୍ଞାର ସହିତ ବ୍ରହ୍ମଚର୍ଯ୍ୟାଦି ମହତ୍ ବ୍ରତ ପାଳନ କରି ଆସୁଛନ୍ତି ॥୧୨॥ ପ୍ରଭୁ, ଆମେ ଇନ୍ଦ୍ରିୟ ସୁଖଭୋଗକୁ ପରମ ପୁରୁଷାର୍ଥ ମନେ କରି ନିଜ ନିଜ କର୍ମବଳରେ ଏହି ବିପଦପୂର୍ଣ୍ଣ ସଂସାରମଧ୍ୟରେ ପଡି ରହିଛୁ । ଆମପାଇଁ କିଛି ଭଲ ହେବାର ବାଟ ନାହିଁ ? ॥୧୩॥ ଆପଣମାନେ ଆତ୍ମାରାମ । ଆପଣମାନଙ୍କ ମନଭିତରେ କୁଶଳ ଅକୁଶଳ ବୋଲି କିଛି ନଥାଏ । ତେଣୁ କୁଶଳ ପ୍ରଶ୍ନ ଆପଣଙ୍କୁ କଣ ଆମେ ପଚାରିବୁ ? ॥୧୪॥ ଆପଣମାନେ ସଂସାରରେ ସନ୍ତାପିତ ଜୀବମାନଙ୍କର ସୁହୃଦ୍ । ତେଣୁ ଆପଣମାନଙ୍କୁ ମୁଁ ବିଶ୍ୱାସରେ ପଚାରୁଚି, କଣ କଲେ ଏହି ସଂସାରରେ ସହଜରେ ଲୋକର ମଙ୍ଗଳ ହୋଇ ପାରିବ ॥୧୫॥ ଆତ୍ମବାନ୍ ବା ଧୀର ପୁରୁଷମାନଙ୍କ ମଧ୍ୟରେ ଆତ୍ମାରୂପେ ବିଦ୍ୟମାନ ଆତ୍ମଭାବନ ଭଗବାନ ନିଜ ଭକ୍ତମାନଙ୍କୁ ଅନୁଗ୍ରହ କରିବାପାଇଁ ଆପଣମାନଙ୍କପରି ସିଦ୍ଧେଶ୍ୱର ରୂପରେ ଏହି ସଂସାରରେ ବିଚରଣ କରୁଛନ୍ତି ॥୧୬॥

ମୈତ୍ରେୟ କହିଲେ, ପୃଥୁଙ୍କର ଏହି ସୁନ୍ଦର, ସାର, ମଧୁର ଓ ମିତଭାଷା ଶୁଣି ମୁନି ସନତ୍‌କୁମାର ପରମ ସନ୍ତୋଷରେ ଉତ୍ତର ଦେଲେ ॥୧୭॥ ସନତ୍ କୁମାର କହିଲେ, ମହାରାଜ, ଆପଣ ବିଦ୍ୱାନ୍ । ସବୁ କିଛି ଜାଣି ମଧ୍ୟ ସମସ୍ତ ପ୍ରାଣୀଙ୍କ ମଙ୍ଗଳ କାମନାରେ ଆପଣ ଯେଉଁ ପ୍ରଶ୍ନ ପଚାରିଲେ, ତାହା ଯଥାର୍ଥ ହୋଇଚି । ସାଧୁପୁରୁଷମାନଙ୍କର ମତି ସତରେ ଏହିପରି ହୋଇଥାଏ ॥୧୮॥ ବକ୍ତା ଶ୍ରୋତା ଉଭୟଙ୍କ ସମ୍ମତିରେ ସାଧୁମାନଙ୍କର ସମାଗମ ହୋଇଥାଏ । ସେମାନଙ୍କ ପ୍ରଶ୍ନୋତ୍ତର ସମସ୍ତଙ୍କର ମଙ୍ଗଳ କରେ ॥୧୯॥ ରାଜା, ଭଗବାନ ଶ୍ରୀମଧୁସୂଦନଙ୍କ ପଦାରବିନ୍ଦର ଗୁଣଗାନ କରିବାରେ ଆପଣଙ୍କର ନିଷ୍ଠା ଓ ଅନୁରାଗ ରହିଚି । ଏପରି ଅନୁରାଗ ଦୁଷ୍ପ୍ରାପ୍ୟ । ଏହା କାମବାସନାରୂପ ହୃଦୟ ଭିତରେ ମଳକୁ ନଷ୍ଟ କରିଦିଏ ॥୨୦॥ ଶାସ୍ତ୍ରମାନଙ୍କରେ ସମ୍ୟକ୍ ଭାବରେ ବିଚାର କରାଯାଇ ଲୋକମାନଙ୍କ କଲ୍ୟାଣର ନିଶ୍ଚିତ ହେତୁ ଦେଖାଇ ଦିଆଯାଇଚି । ତାହା ହେଉଛି ଆତ୍ମାର ଅତିରିକ୍ତ ଦେହପ୍ରତି ଅନାସକ୍ତି ଓ ନିର୍ଗୁଣ ବ୍ରହ୍ମସ୍ୱରୂପ ଆତ୍ମାପ୍ରତି ଦୃଢ଼ ଅନୁରାଗ ॥୨୧॥ ଶାସ୍ତ୍ରରେ ଆହୁରି ମଧ୍ୟ କୁହାଯାଇଚି, ଭକ୍ତିଦ୍ୱାରା, ଭଗବତ୍‌ଧର୍ମ ଆଚରଣ ଦ୍ୱାରା, ତତ୍ତ୍ୱଜିଜ୍ଞାସାଦ୍ୱାରା, ଆଧ୍ୟାତ୍ମିକ ଯୋଗରେ ନିଷ୍ଠାଦ୍ୱାରା, ଯୋଗେଶ୍ୱର ଶ୍ରୀହରିଙ୍କ ଉପାସନାଦ୍ୱାରା ଏବଂ ସେହି ପୁଣ୍ୟଶ୍ଳୋକଙ୍କର ପବିତ୍ର କଥା ଶୁଣିବାଦ୍ୱାରା ମନୁଷ୍ୟର ଅଶେଷ କଲ୍ୟାଣ ସାଧିତ ହୁଏ । ଧନ ଓ ଇନ୍ଦ୍ରିୟାସକ୍ତ ଲୋକମାନଙ୍କ ଗୋଷ୍ଠୀତ୍ୟାଗ ଏବଂ ସେମାନଙ୍କ ବାଞ୍ଛିତ ଦ୍ରବ୍ୟ ସଂଗ୍ରହ ନ କରିବା ଦ୍ୱାରା କଲ୍ୟାଣ ହୁଏ । ହରିଗୁଣାମୃତ ପାନ ବିନା ଲାଭ ନାହିଁ -- ଏହା ମନେରଖି ନିର୍ଜନତାପାଇଁ ରୁଚି, ଅହିଂସା, ନିବୃତ୍ତିମାର୍ଗରେ ନିଷ୍ଠା, ଆତ୍ମହିତ ଅନୁସନ୍ଧାନ, ଶ୍ରୀମୁକୁନ୍ଦଙ୍କର ପବିତ୍ର ଚରିତରୂପ ଅମୃତର ଆସ୍ୱାଦନ ଓ ତାର ସ୍ମୃତିସୁଖ, ନିଷ୍କାମଭାବରେ ଯମ ନିୟମାଦିର ପାଳନ, ପରନିନ୍ଦାବର୍ଜ୍ଜନ, ଯୋଗକ୍ଷେମର ଅନାଦର, ଶୀତୋଷ୍ଣ ଆଦି ଦ୍ୱନ୍ଦ୍ୱର ସହନ, ଭକ୍ତମାନଙ୍କର କର୍ଣ୍ଣସୁଖକର ହରିଗୁଣର ବାରମ୍ବାର କୀର୍ତ୍ତନ ଓ ତଦ୍ୱାରା ନିଜ ଭକ୍ତିଭାବର ଅଭିବୃଦ୍ଧି ଏବଂ କାର୍ଯ୍ୟକାରଣରୂପ ଜଡ଼ ଶରୀର ପ୍ରତି ଅନାସକ୍ତି--ଏ ସମସ୍ତ ଆଚରଣଦ୍ୱାରା ନିର୍ଗୁଣ ବ୍ରହ୍ମଙ୍କପ୍ରତି ସହଜରେ ଅନୁରାଗ ଜାତ ହୁଏ ॥୨୨-୨୫॥

ପରଂବ୍ରହ୍ମଙ୍କଠାରେ ଦୃଢ଼ ଅନୁରାଗ ଜନ୍ମିଲେ ଲୋକ ସଦ୍‌ଗୁରୁଙ୍କର ଶରଣ ନିଏ । ଅରଣିରୁ ଉତ୍ପିତ ଅଗ୍ନି ଯେପରି ଅରଣିକୁ ଜାଳିଦିଏ, ସେହିପରି ଶରଣାଗତ ବ୍ୟକ୍ତିର ଜ୍ଞାନ ଓ ବୈରାଗ୍ୟର ଅଗ୍ନି ତା'ର ପଞ୍ଚାତ୍ମକ (ଅବିଦ୍ୟା, ଅସ୍ମିତା, ରାଗ, ଦ୍ୱେଷ ଓ ଅଭିନିବେଶ) ଜୀବକୋଷକୁ ଆବୋରିବା ଅହଂକାରକୁ ନିର୍ବଳ କରି ପ୍ରବଳ ବେଗରେ ଭସ୍ମସାତ୍ କରିଦିଏ ॥୨୬॥ ଅହଙ୍କାର ନଷ୍ଟ ହୋଇଗଲେ ସମସ୍ତ କର୍ତ୍ତୃତ୍ୱରୁ ମୁକ୍ତି ହୋଇ ବାହାର ଶରୀର ଓ ଭିତରର ସୁଖ ଦୁଃଖାଦି ସମ୍ପର୍କରେ ତାର କୌଣସି ଅନୁଭବ ରହେ ନାହିଁ, ଯେପରିକି ସ୍ୱପ୍ନରେ ଦେଖିଥିବା ବସ୍ତୁ ସ୍ୱପ୍ନଶେଷରେ ଦେଖାଯାଏ ନାହିଁ । ଏହି ଅବସ୍ଥାରେ ଜୀବାତ୍ମା ଓ ପରମାତ୍ମାଙ୍କ ମଧ୍ୟରେ ଥିବା ବ୍ୟବଧାନ ଦୂର ହୋଇଯାଏ ॥୨୬॥ ଆତ୍ମା ଦ୍ରଷ୍ଟା । ଇନ୍ଦ୍ରିୟ ଓ ବିଷୟ ହେଉଚି ଦୃଶ୍ୟ । ଅହଂକାର ହେଉଚି ଏ ଦୁହିଁଙ୍କ ମଧ୍ୟରେ ସମ୍ବନ୍ଧର ହେତୁ, ସୁଷୁପ୍ତି । ଅହଙ୍କାରର ବିନାଶ ଘଟିଲେ ଏହି ସୁଷୁପ୍ତି ବା ସ୍ୱପ୍ନାବସ୍ଥାର ବିନାଶ ଘଟେ ॥୨୮॥ ଦୃଷ୍ଟାନ୍ତସ୍ୱରୂପ ବାହ୍ୟ ଜଗତରେ ଜଳ ଓ ଦର୍ପଣ ଆଦିଯୋଗୁଁ ନିଜର ବିମ୍ବ ଓ ପ୍ରତିବିମ୍ବ ମଧ୍ୟରେ ଭେଦ ଦେଖାଯାଏ । ଅନ୍ୟଥା ନୁହେ ॥୨୯॥ ବିଷୟଭୋଗର ଚିନ୍ତାରେ ଯେ ଲାଗିରହେ, ଇନ୍ଦ୍ରିୟମାନେ ସେଥିପ୍ରତି ଆକୃଷ୍ଟ ହୋଇ ମନକୁ ସବୁବେଳେ ସେ ଆଡ଼କୁ ଟାଣି ନିଅନ୍ତି । କୂଳରେ ଥିବା କୁଶଘାସ ଆଦି ଉଦ୍‌ଭିଦ ଯେପରି ଜଳାଶୟର ଜଳକୁ ଚେରଦ୍ୱାରା ଶୋଷି ନିଅନ୍ତି, ସେହିପରି ଇନ୍ଦ୍ରିୟାସକ୍ତ ମନ ବିଚାରବୁଦ୍ଧିକୁ ହରଣ କରିନିଏ ॥୩୦॥ ବିଚାରଶକ୍ତି ନଷ୍ଟ ହେବା ଦ୍ୱାରା ପୂର୍ବାପର ସ୍ମୃତି ନଷ୍ଟ ହୋଇଯାଏ ଏବଂ ସ୍ମୃତି ନଷ୍ଟ ହେଲେ ଜ୍ଞାନଭ୍ରଂଶ ହୁଏ । ଏହାକୁ ପଣ୍ଡିତମାନେ 'ନିଜେ ନିଜକୁ ନାଶ କରିବା' ବୋଲି କହିଥାନ୍ତି ॥୩୧॥

ଯାହାପାଇଁ ଅନ୍ୟସବୁ ପଦାର୍ଥର ପ୍ରିୟତା ଅନୁଭୂତ ହୁଏ, ନିଜଦ୍ୱାରା ସେହି ଆତ୍ମାର ବିନାଶ ହେଲେ ଇହ ଲୋକରେ ଏହାଠାରୁ ବଳି ଅଧିକ ସ୍ୱାର୍ଥହାନି କଣ ହୋଇପାରେ ? ॥୩୨॥ ଇନ୍ଦ୍ରିୟ ଓ ଅର୍ଥଚିନ୍ତା ପୁରୁଷର ସମସ୍ତ ପୁରୁଷାର୍ଥ ନଷ୍ଟ କରିଦିଏ । ଏହି ଚିନ୍ତାରେ ସେ ଜ୍ଞାନ- ବିଜ୍ଞାନରୁ ଭ୍ରଷ୍ଟ ହୋଇ ବୃକ୍ଷାଦି ସ୍ଥାବର ଯୋନିରେ ଜନ୍ମ ଗ୍ରହଣ କରେ ॥୩୩॥ ଏହି ଦୁଃଖମୟ ସଂସାରରୁ ଯେ ପାରିହେବାକୁ ଇଚ୍ଛାକରେ, ଧର୍ମ ଅର୍ଥ କାମ ମୋକ୍ଷ ଏହି ଚତୁର୍ବର୍ଗର ବାଧକ କୌଣସି ବିଷୟରେ ତାର ଆସକ୍ତି ରଖିବା ଉଚିତ ନୁହେ ॥୩୪॥ ଏହି ଚତୁର୍ବର୍ଗ ମଧ୍ୟରେ ମୋକ୍ଷ ହିଁ ସର୍ବଶ୍ରେଷ୍ଠ ବୋଲି ଗଣାଯାଏ । ଅନ୍ୟ ତିନୋଟି ବର୍ଗ ବା ପୁରୁଷାର୍ଥକୁ କାଳର ଭୟ ଲାଗି ରହିଥାଏ ॥୩୫॥ ବ୍ରହ୍ମାଦି ଦେବତା ଓ ଅନ୍ୟ ପ୍ରାଣୀମାନେ ପ୍ରକୃତିର ଗୁଣକ୍ଷୋଭଯୋଗୁଁ ଉତ୍ପନ୍ନ ହୋଇଛନ୍ତି । କାଳରୂପୀ ଭଗବାନଙ୍କଦ୍ୱାରା ଏହି ପୁରୁଷାର୍ଥସବୁ ଧ୍ୱଂସ ହେବାପରେ କେହି କୁଶଳରେ ରହିପାରନ୍ତି ନାହିଁ ॥୩୬॥

ତେଣୁ ରାଜା, ଦେହ-ଇନ୍ଦ୍ରିୟହେତୁ ଭ୍ରାନ୍ତ ବୁଦ୍ଧିଦ୍ୱାରା ଆବୃତ ସମସ୍ତ ସ୍ଥାବର ଜଙ୍ଗମ ପ୍ରାଣୀଙ୍କ ହୃଦୟରେ ଯେଉଁ ଅନ୍ତର୍ଯାମୀ ପୁରୁଷ ଜୀବର ନିୟାମକ ଆତ୍ମାରୂପେ ବିଦ୍ୟମାନ, ସେହି ଭଗବାନଙ୍କୁ 'ମୁଁ ହେଉଚି ସେହି' ଏହି ଭାବରେ ହିଁ ଜାଣି ରଖ ॥୩୭॥ ବିବେକବୁଦ୍ଧି ନ ଥିଲେ ମାଳା ଯେପରି ସର୍ପପରି ପ୍ରତିଭାତ ହୁଏ, ସେହିପରି ଈଶ୍ୱରଙ୍କ ମାୟାରେ ଏହି ବିଶ୍ୱ ସଂସାର ସତ୍ ଓ ଅସତ୍ ରୂପେ ପ୍ରତିଭାତ ହୁଏ । କିନ୍ତୁ ଭଗବାନ ନିଜେ ହେଉଛନ୍ତି ନିତ୍ୟମୁକ୍ତ । ବିଶୁଦ୍ଧ ଓ ସତ୍ୟସ୍ୱରୂପ । କର୍ମଦ୍ୱାରା ମଳିନ ପ୍ରକୃତିକୁ ସେ ନିଜ ବଶରେ ରଖିଥା'ନ୍ତି । ତୁମେ ସେହି ସତ୍ୟସ୍ୱରୂପ ଭଗବାନଙ୍କର ଶରଣାଗତ ହୁଅ ॥୩୮॥ ଶ୍ରୀ ବାସୁଦେବଙ୍କ ପଦ୍ମପାଦର ଅଙ୍ଗୁଳିମାନଙ୍କ ଶୋଭାକୁ ଧ୍ୟାନ କରି ସାଧୁ ଭକ୍ତମାନେ ଯେପରି ସହଜରେ କର୍ମଦ୍ୱାରା ଗୃହୀତ ଅହଙ୍କାରରୂପୀ ହୃଦୟଗ୍ରନ୍ଥିକୁ ଛେଦନ କରି ପାରନ୍ତି, ଇନ୍ଦ୍ରିୟକୁ ନିରୁଦ୍ଧ କରିଥିବା, ବିଷୟରୁ ବିରକ୍ତ ଯତିମାନେ ତାହା ପାରନ୍ତି ନାହିଁ । ତେଣୁ ସେହି ବାସୁଦେବଙ୍କର ଶରଣାପନ୍ନ ହୁଅ ॥୩୯॥ ଏହି କ୍ଳେଶପୂର୍ଣ୍ଣ ସଂସାରସାଗରକୁ ପାରିହେବା ଅତୀବ କଷ୍ଟକର । କାମକ୍ରୋଧ ଆଦି ଷଡ଼ରିପୁ ଏଥିରେ କୁମ୍ଭୀରରୂପେ ବିଚରଣ କରୁଛନ୍ତି । ତେଣୁ ଭଗବାନ ଶ୍ରୀହରିଙ୍କର ଭଜନୀୟ ପାଦପଦ୍ମକୁ ନୌକା କରି ଏହି ଦୁସ୍ତର ସଂସାରସାଗରକୁ ପାର ହୋଇଯାଅ ॥୪୦॥

ମୈତ୍ରେୟ କହିଲେ, ବ୍ରହ୍ମାଙ୍କର ପୁତ୍ର ଆତ୍ମଜ୍ଞାନୀ ସନତ୍‌କୁମାରଙ୍କଠାରୁ ଆତ୍ମତତ୍ତ୍ୱର ଉପଦେଶ ପାଇ ରାଜା ପୃଥୁ ତାଙ୍କୁ ପ୍ରଶଂସା କରି କହିଲେ, ପୂର୍ବେ ଦୀନଦୟାଳୁ ଭଗବାନ ଶ୍ରୀହରି ମୋତେ ଅନୁଗ୍ରହ କରିଥିଲେ । ବ୍ରହ୍ମନ୍ ! ତାହାକୁ ସମ୍ପୂର୍ଣ୍ଣ କରିବାପାଇଁ ଆପଣମାନେ ଏଠାକୁ ଆସିଛନ୍ତି ॥୪୧॥ ଆପଣମାନେ ବହୁତ ଦୟାଳୁ । ଉତ୍ତମରୂପେ ନିଜ କାର୍ଯ୍ୟ ସଂପାଦନ କରିଛନ୍ତି । ମୁଁ ବା ଆପଣମାନଙ୍କୁ କଣ ଦେଇପାରିବି ! ମୋତେ ମିଶାଇ ମୋର ଯାହା କିଛି ଅଛି, ତାହା ମହାପୁରୁଷମାନଙ୍କର ପ୍ରସାଦ (ଉଚ୍ଛିଷ୍ଟ) ମାତ୍ର ॥୪୩॥ ବ୍ରହ୍ମନ୍, ନିଜର ପ୍ରାଣ, ସ୍ତ୍ରୀ, ପୁତ୍ର, ସମସ୍ତ ଭୋଗ୍ୟବସ୍ତୁ ସହ ଏହି ରାଜ୍ୟ, ଚତୁରଙ୍ଗ ସେନା, ଭୂମି, ରାଜକୋଷ ଆଦି ସବୁକିଛି ଆପଣମାନଙ୍କୁ ଅର୍ପଣ କରୁଚି ॥୪୪॥ ସେନାପତିତ୍ୱ, ରାଜ୍ୟ, ଶାସନଦଣ୍ଡ ଓ ତା'ର ନେତୃତ୍ୱ ଏବଂ ସମସ୍ତ ଲୋକଙ୍କ ଉପରେ ଆଧିପତ୍ୟ ବେଦଶାସ୍ତ୍ରଜ୍ଞ ବ୍ରାହ୍ମଣମାନଙ୍କ ଉପରେ ନ୍ୟସ୍ତ । ବ୍ରାହ୍ମଣମାନେ ନିଜ ନିଜର ଅନ୍ନ ଭୋଜନ କରନ୍ତି, ବସ୍ତ୍ର ପରିଧାନ କରନ୍ତି ଓ ନିଜର ଅର୍ଥ ଦାନ କରନ୍ତି । ସେମାନଙ୍କ ଅନୁଗ୍ରହରୁ କ୍ଷତ୍ରିୟାଦି ଅନ୍ୟମାନେ ଅନ୍ନ ଭୋଜନ କରନ୍ତି ॥୪୫-୪୬॥ ଆପଣମାନେ ବେଦଜ୍ଞ । ଅଧ୍ୟାତ୍ମ ତତ୍ତ୍ୱ ବିଚାରରେ କିପରି ଭଗବାନଙ୍କୁ ଏକାନ୍ତ ଭାବରେ ଲାଭ କରାଯାଇପାରିବ, ତାହା ଆପଣମାନେ ପ୍ରତିପାଦନ କରିଛନ୍ତି । ଅପାର କରୁଣାଦ୍ୱାରା ଦରିଦ୍ରମାନଙ୍କୁ ଉଦ୍ଧାର କରି ଆପଣମାନେ ନିଜ କାର୍ଯ୍ୟରେ ସନ୍ତୁଷ୍ଟ ହୁଅନ୍ତି । ଆପଣମାନଙ୍କ ପ୍ରତ୍ୟୁପକାର କଥା କହି ମୁଁ କେବଳ ଉପହାସର ପାତ୍ର ହେବି ॥୪୭॥ ମୈତ୍ରେୟ କହିଲେ, ଆଦିରାଜ ପୃଥୁଙ୍କ ଦ୍ୱାରା ପୂଜିତ ହୋଇ ସେହି ଆତ୍ମଯୋଗନିଷ୍ଠ ମୁନୀଶ୍ୱରମାନେ ପୃଥୁଙ୍କ ଚରିତ୍ରକୁ ପ୍ରଶଂସା କରି କରି ସମସ୍ତ ଲୋକଙ୍କ ସମକ୍ଷରେ ଆକାଶପଥରେ ଅନ୍ତର୍ଦ୍ଧାନ ହୋଇଗଲେ ॥୪୮॥ ମହାତ୍ମାମାନଙ୍କ ଅଗ୍ରଗଣ୍ୟ ମହାରାଜ ପୃଥୁ ଏକାଗ୍ରଚିତ୍ତରେ ସ୍ଥିର ହୋଇ ରହି ଅଧ୍ୟାତ୍ମ ଶିକ୍ଷାଲାଭଦ୍ୱାରା ତାଙ୍କର କାମନା ସିଦ୍ଧ ହେଲା ବୋଲି ମନେକଲେ ॥୪୯॥ ସେ ବ୍ରହ୍ମାର୍ପଣପୂର୍ବକ ଯଥାଶକ୍ତି ଠିକ୍ ସମୟରେ ଓ ସ୍ଥାନରେ ଆବଶ୍ୟକ ଧନାଦି ବ୍ୟବହାର କରି କର୍ମ କରୁଥିଲେ ॥୫୦॥ ସେ ଆତ୍ମାକୁ ପ୍ରକୃତିଠାରୁ ଭିନ୍ନ ଓ ସାକ୍ଷୀରୂପେ ସମସ୍ତ କର୍ମପ୍ରତି ଉଦାସୀନ ବୋଲି ମନେ କରୁଥିଲେ । କର୍ମର ଫଳକୁ ପରମାତ୍ମାଙ୍କୁ ଅର୍ପଣ କରି ଏକାଗ୍ର ଚିତ୍ତରେ ଅନାସକ୍ତ ଭାବରେ କର୍ମ କରିଯାଉଥିଲେ ॥୫୧॥ ବିଶାଳ ସାମ୍ରାଜ୍ୟର ଅଧିକାରୀ ଭାବରେ ଗୃହସ୍ଥକର୍ମରେ ଥାଇ ମଧ୍ୟ ଇନ୍ଦ୍ରିୟମାନଙ୍କ ପ୍ରତି ଆସକ୍ତ ହେଉ ନ ଥିଲେ । ସୂର୍ଯ୍ୟ ସମସ୍ତପ୍ରକାର ବସ୍ତୁକୁ ପ୍ରକାଶିତ କଲେ ମଧ୍ୟ ବସ୍ତୁମାନଙ୍କ ଗୁଣଦ୍ୱାରା ପ୍ରଭାବିତ ହୁଅନ୍ତିନାହିଁ । ରାଜା ପୃଥୁ ସେହିପରି ନିରହଙ୍କାର ଓ ଉଦାସୀନ ଥିଲେ ॥୫୨॥

ଏହିପରି ଆଧ୍ୟାତ୍ମିକ ଭାବରେ କର୍ମ କରିଯାଇ ନିଜ ସ୍ତ୍ରୀ ଅର୍ଚିଙ୍କ ଗର୍ଭରୁ ନିଜପରି ପାଞ୍ଚଟି ପୁତ୍ର ଉତ୍ପାଦନ କଲେ । ସେମାନେ ହେଲେ ବିଜିତାଶ୍ୱ, ଧୂମ୍ରକେଶ, ହର୍ଯ୍ୟକ୍ଷ, ଦ୍ରବିଣ ଓ ବୃକ । ରାଜା ପୃଥୁ ସମସ୍ତ ଲୋକପାଳଙ୍କର ଗୁଣ ଏକାଧାରରେ ଧାରଣ କରିଥିଲେ ॥୫୩-୫୪॥ ସୌମ୍ୟ ଗୁଣଦ୍ୱାରା ମନ, ବାକ୍ୟ ଓ କାର୍ଯ୍ୟରେ ସେ ପ୍ରଜାରଞ୍ଜନ କରି ଦ୍ୱିତୀୟ ଚନ୍ଦ୍ରପରି ରାଜା (ରଞ୍ଜନ ବା ପ୍ରଜାରଞ୍ଜନ କରୁଥିବା ଯୋଗୁଁ) ନାମ ସାର୍ଥକ କରିଥିଲେ । ସୂର୍ଯ୍ୟ ଯେପରି ଜଳକୁ ଶୋଷଣ କରି ମେଘଦ୍ୱାରା ପୃଥିବୀରେ ବର୍ଷା କରାନ୍ତି ଓ କିରଣଦ୍ୱାରା ପୃଥିବୀକୁ ତାପିତ କରନ୍ତି, ରାଜା ସେହିପରି ପ୍ରଜାଙ୍କଠାରୁ କର ସଂଗ୍ରହ କରି ଆବଶ୍ୟକବେଳେ ମୁକ୍ତହସ୍ତରେ ପ୍ରଜାଙ୍କ କଲ୍ୟାଣପାଇଁ ବ୍ୟୟ କରୁଥିଲେ ଓ ଦୃଢ଼ଭାବରେ ଶାସନ କରୁଥିଲେ ॥୫୫-୫୬॥ ଅଗ୍ନିପରି ସେ ତେଜରେ ଦୁର୍ଦ୍ଧର୍ଷ ଥିଲେ । ଇନ୍ଦ୍ରଙ୍କ ପରି ଦୁର୍ଜୟ ଓ ପୃଥିବୀପରି ସହିଷ୍ଣୁ ଥିଲେ । ସ୍ୱର୍ଗପରି ଲୋକମାନଙ୍କର ଅଭୀଷ୍ଟ ପୂରଣ କରୁଥିଲେ । ମେଘ ବର୍ଷା କରିବାପରି ପ୍ରଜାମାନଙ୍କ ସନ୍ତୋଷପାଇଁ ଯଥେଷ୍ଟ ଅର୍ଥ ବ୍ୟୟ କରୁଥିଲେ । ସମୁଦ୍ରପରି ଗମ୍ଭୀର ଓ ମେରୁପରି ଅଟଳ ଥିଲେ ॥୫୭-୫୮॥ ମହାରାଜ ପୃଥୁ ଦୁଷ୍ଟଙ୍କୁ ଶାସ୍ତି ଦେବାରେ ଧର୍ମରାଜ ଯମଙ୍କ ପରି, ଆଶ୍ଚର୍ଯ୍ୟଜନକ ବସ୍ତୁମାନଙ୍କରେ ହିମାଳୟ ପରି, ରାଜକୋଷ ବଢ଼ାଇବାରେ କୁବେରଙ୍କ ପରି ଏବଂ ଧନକୁ ଗୁପ୍ତ ଓ ସୁରକ୍ଷିତ ରଖିବାରେ ବରୁଣଙ୍କପରି ଥିଲେ ॥୫୯॥ ବାୟୁ ଦେବତାଙ୍କପରି ତାଙ୍କର ବଳ ଓ ସର୍ବତ୍ର ପହଞ୍ଚିପାରିବାର ଶକ୍ତି ଅନୁସୃତ ହେଉଥିଲା ଏବଂ ଭଗବାନ ରୁଦ୍ରଙ୍କ ପରି ତାଙ୍କର ତେଜ ଅସହନୀୟ ଥିଲା । ସୌନ୍ଦର୍ଯ୍ୟରେ କନ୍ଦର୍ପଙ୍କ ପରି, ଉତ୍ସାହରେ ସିଂହପରି ଓ ପ୍ରଭୁତ୍ୱରେ ସେ ବ୍ରହ୍ମାଙ୍କ ପରି ଥିଲେ ॥୬୦-୬୧॥ ବ୍ରହ୍ମତତ୍ତ୍ୱ ବିଚାରରେ ସେ ବୃହସ୍ପତିଙ୍କପରି ପଣ୍ଡିତ ଥିଲେ । ସ୍ୱୟଂ ଭଗବାନଙ୍କପରି ସେ

ଇନ୍ଦ୍ରିୟକୁ ଜୟ କରିଥିଲେ । ଗୋ, ବ୍ରାହ୍ମଣ ଓ ଭଗବତ୍‌ଭକ୍ତମାନଙ୍କ ପ୍ରତି ତାଙ୍କର ଅଚଳା ଭକ୍ତି ରହିଥିଲା, ଏବଂ ଲଜ୍ଜା, ବିନୟ, ଆଚାର ଓ ପରୋପକାର ଆଦି ଗୁଣରେ ସେ ନିଜ ସହିତ ହିଁ କେବଳ ତୁଳନୀୟ ଥିଲେ ଅର୍ଥାତ୍ ତାଙ୍କର ତୁଳନା ନ ଥିଲା ॥୬୨॥ ସର୍ବତ୍ର ତ୍ରିଲୋକରେ ଲୋକମାନେ ଉଚ୍ଚସ୍ୱରରେ ତାଙ୍କର କୀର୍ତ୍ତିଗାନ କରୁଥିଲେ । ସତ୍‌ପୁରୁଷମାନଙ୍କ ମଧ୍ୟରେ ଭଗବାନ ଶ୍ରୀରାମ ଯେପରି କୀର୍ତ୍ତିତ, ସେହିପରି ଅନ୍ତଃପୁରର ସ୍ତ୍ରୀ ଲୋକମାନଙ୍କ କର୍ଣ୍ଣକୁହରରେ ମଧ୍ୟ ତାଙ୍କ ନାମ ପ୍ରବେଶ କରିଥିଲା ॥୬୩॥

## ତ୍ରୟୋବିଂଶ ଅଧ୍ୟାୟ

# ପୃଥୁଙ୍କ ପରଲୋକ

ଆତ୍ମଜ୍ଞ ପ୍ରଜାପତି ପୃଥୁ ଦେଖିଲେ ଯେ ତାଙ୍କର ବୃଦ୍ଧାବସ୍ଥା ଆସିଗଲାଣି । ମନୁଙ୍କ ସମୟରେ ଯେଉଁ ନଗର ଗ୍ରାମ ଆଦିର ଆରମ୍ଭ ହୋଇଥିଲା, ତାହାକୁ ସେ ବହୁତ ବଢ଼ାଇ ଦେଇଛନ୍ତି । ସ୍ଥାବର ଜଙ୍ଗମ ସମସ୍ତ ପ୍ରାଣୀଙ୍କପାଇଁ ସେ ଜୀବିକାର ବ୍ୟବସ୍ଥା କରି ସାରିଛନ୍ତି । ସାଧୁମାନଙ୍କୁ ଧର୍ମରକ୍ଷାରେ ସହାୟତା କରଛନ୍ତି । (ଏଣିକି ତପୋବନ ଯିବାର ସମୟ) ସେ ନିଜର କନ୍ୟାସ୍ୱରୂପ ପୃଥିବୀକୁ ନିଜର ପୁତ୍ରମାନଙ୍କ ହାତରେ ନ୍ୟସ୍ତ କରି ପତ୍ନୀଙ୍କ ସହିତ ତପୋବନକୁ ଚାଲିଗଲେ । ସେତେବେଳେ ଚିନ୍ତାତୁର ପ୍ରଜାମାନଙ୍କୁ ଦେଖିଲେ ମନେ ହେଉଥିଲା, ପୃଥୁଙ୍କର ବିରହରେ ପୃଥିବୀ ରୋଦନ କରୁଚି ॥୧-୩॥ ପୂର୍ବେ ଯେପରି ଦିଗ୍‌ବିଜୟପାଇଁ ସେ ଅଦମ୍ୟ ଉଦ୍ୟମ କରିଥିଲେ, ଏବେ ସେହିପରି ବାନପ୍ରସ୍ଥ ଧର୍ମ ଅନୁଯାୟୀ କଠୋର ତପସ୍ୟା ଆରମ୍ଭ କରିଦେଲେ ॥୪॥ କେତେଦିନ ଧରି ସେ କନ୍ଦମୂଳ ଓ ଅନ୍ୟ ଫଳ ଆଦି ଆହାର କଲେ । କିଛିଦିନ ଶୁଖିଲା ପତ୍ର ଖାଇ, କିଛି ପକ୍ଷ ଜଳପାନ କରି ଓ ଶେଷରେ ବାୟୁ ଭକ୍ଷଣ କରି ସେ କାଳାତିପାତ କଲେ ॥୫॥ ଗ୍ରୀଷ୍ମରେ ପଞ୍ଚାଗ୍ନି (ଚାରିପଟେ ନିଆଁ ଓ ଉପରେ ସୂର୍ଯ୍ୟତାପ), ବର୍ଷାରେ ବୃଷ୍ଟିଧାର ଓ ଶୀତଋତୁରେ ଆକଣ୍ଠ ଜଳରେ ରହୁଥିଲେ ଏବଂ ଭୂମିରେ ଶୟନ କରୁଥିଲେ ॥୬॥ ମନ ଓ ବାକ୍ୟ ସଂଯମ କରି ବ୍ରହ୍ମଚର୍ଯ୍ୟ ବ୍ରତ ପାଳନପୂର୍ବକ ସେ ପ୍ରାଣବାୟୁକୁ ଜୟ କଲେ । ଭଗବାନ୍ ଶ୍ରୀକୃଷ୍ଣଙ୍କୁ ଆରାଧନା କରି ଏହିପରି କଠୋର ତପସ୍ୟା କରିବାକୁ ଲାଗିଲେ ॥୭॥ କ୍ରମେ ସିଦ୍ଧିଲାଭଦ୍ୱାରା କୃତକର୍ମର ପ୍ରଭାବ ନଷ୍ଟ ହୋଇ ଚିତ୍ତ ନିର୍ମଳ ହେଲା । ପ୍ରାଣାୟାମଦ୍ୱାରା ପଞ୍ଚେନ୍ଦ୍ରିୟ ଓ ମନକୁ ନିରୁଦ୍ଧ କରିବାରୁ ତାଙ୍କର ସମସ୍ତପ୍ରକାର ବନ୍ଧନ ଛିନ୍ନ ହୋଇଗଲା ॥୮॥

ଭଗବାନ ସନତ୍‌କୁମାର ତାଙ୍କୁ ଯେଉଁ ଶ୍ରେଷ୍ଠ ଆଧ୍ୟାତ୍ମିକ ଯୋଗର ଉପଦେଶ ଦେଇଥିଲେ ତଦ୍ୱାରା ପୁରୁଷଶ୍ରେଷ୍ଠ ପୃଥୁ ଶ୍ରୀପୁରୁଷୋତ୍ତମଙ୍କୁ ଭଜନ କଲେ ॥୯॥ ଭଗବତ୍ ଧର୍ମରେ ରହି ନିରନ୍ତର ଉଦାରତା ଓ ସାଧନାଦ୍ୱାରା ପରଂବ୍ରହ୍ମ ଭଗବାନ୍‌ଙ୍କଠାରେ ତାଙ୍କର ଅନନ୍ୟଭକ୍ତି ଜାତ ହେଲା ॥୧୦॥ ଭଗବତ୍ ଉପାସନାରେ ନିଜର ଅନ୍ତଃକରଣ ଶୁଦ୍ଧ, ସାତ୍ତ୍ୱିକ ହେବାପରେ ସର୍ବଦା ଭଗବାନଙ୍କୁ ଧ୍ୟାନ ଓ ଚିନ୍ତନ କରିବାଦ୍ୱାରା ଅନନ୍ୟ ଭକ୍ତି ଜାତ ହୁଏ ଏବଂ ଏହି ଭକ୍ତିରୁ ବୈରାଗ୍ୟସହିତ ଜ୍ଞାନ ଲାଭ ହୁଏ । ସେହି ଜ୍ଞାନର ତୀକ୍ଷ୍ଣ ଧାର ସମସ୍ତ ସଂଶୟର ମୂଳ ନିଜର ଜୀବକୋଷରେ ଥିବା ଅହଙ୍କାରକୁ କାଟିଦିଏ ॥୧୧॥ ଯୋଗସାଧନା ଦ୍ୱାରା ଶ୍ରୀକୃଷ୍ଣଙ୍କ କଥା ପ୍ରତି ଅନୁରାଗ ଜନ୍ମିବା ପର୍ଯ୍ୟନ୍ତ କେବଳ ଯୋଗସାଧନାରେ ମୋହ ଦୂର ହୁଏ ନାହିଁ । ରାଜା ପୃଥୁଙ୍କର ଭକ୍ତିଭାବ ଜାତ ହେବାରୁ ତାଙ୍କର ଦେହରେ ଆତ୍ମାର ବୁଦ୍ଧି ଛିନ୍ନ ହେଲା । କୌଣସି ସିଦ୍ଧିପ୍ରାପ୍ତିପ୍ରତି ତାଙ୍କର ସ୍ପୃହା ଜନ୍ମିଲା ନାହିଁ । ଯେଉଁ ଜ୍ଞାନମାର୍ଗଦ୍ୱାରା ସେ ସଂଶୟକୁ ଛେଦନ କରିଥିଲେ, ସେ ମାର୍ଗକୁ ମଧ୍ୟ ସେ ଛାଡ଼ିଦେଲେ ॥୧୨॥ ଏହିପରି ବୀରଶ୍ରେଷ୍ଠ ପୃଥୁ ଅନ୍ତକାଳରେ ନିଜର ଚିତ୍ତକୁ ପରମାତ୍ମାଙ୍କଠାରେ ଦୃଢ଼ଭାବରେ ନିବିଷ୍ଟ କରି ନିଜର ଶରୀରକୁ ତ୍ୟାଗ କଲେ ଏବଂ ବ୍ରହ୍ମରେ ମିଶିଗଲେ ॥୧୩॥

ସେ ଗୋଇଠିରେ ପାୟୁ (ମଳଦ୍ୱାର)କୁ ଚାପିରଖି ପ୍ରାଣବାୟୁକୁ ଧୀରେ ଧୀରେ ମୂଳାଧାରର ଉପରକୁ ଉଠାଇଲେ ଏବଂ କ୍ରମେ ନାଭି, ହୃଦୟ ବକ୍ଷସ୍ଥଳ, କଣ୍ଠ ଓ ଭ୍ରୂଦ୍ୱୟ ମଧ୍ୟରେ ସ୍ଥାପନ କଲେ । ପୁଣି ପ୍ରାଣବାୟୁକୁ ଉପରକୁ ଉଠାଇ ମସ୍ତକରେ ବ୍ରହ୍ମରନ୍ଧ୍ରରେ ସ୍ଥାପନ କଲେ । ସେଠାରୁ ସମସ୍ତ ସ୍ପୃହାର ଦୂରରେ ରହି ପ୍ରାଣବାୟୁକୁ ବାୟୁରେ, ପାର୍ଥିବ ଶରୀରକୁ ପୃଥିବୀରେ ଏବଂ ଶରୀରସ୍ଥ ତେଜକୁ ତେଜରେ ଲୀନ କରିଦେଲେ ॥୧୪॥ ଯଥାସ୍ଥାନ ବିଭାଗଦ୍ୱାରା ଇନ୍ଦ୍ରିୟଛିଦ୍ରମାନଙ୍କରେ ଥିବା ଆକାଶକୁ ମହାକାଶରେ ଏବଂ ଶରୀରଗତ ରୁଧିରାଦି ଜଳୀୟ ଅଂଶକୁ ଜଳରେ ଲୀନ କଲେ । ଏହିପରି ସେ ପୁଣି ପୃଥିବୀକୁ ଜଳରେ, ଜଳକୁ ତେଜରେ, ତେଜକୁ ବାୟୁରେ ଏବଂ ବାୟୁକୁ ଆକାଶରେ ଲୀନ କରିଦେଲେ ॥୧୬॥ ତା'ପରେ ସେ ଇନ୍ଦ୍ରିୟାଧୀନ ମନକୁ ଇନ୍ଦ୍ରିୟମାନଙ୍କରେ ଏବଂ ଇନ୍ଦ୍ରିୟମାନଙ୍କୁ ତାଙ୍କ କାରଣସ୍ୱରୂପ ତନ୍ମାତ୍ରରେ ଏବଂ ତନ୍ମାତ୍ରମାନଙ୍କୁ ଅହଙ୍କାରରେ ଏବଂ ଏ ଅହଙ୍କାରାଦି ସମସ୍ତଙ୍କୁ ମହତ୍ତତ୍ତ୍ୱରେ ସମ୍ପୂର୍ଣ୍ଣ ମିଳାଇଦେଲେ ॥୧୭॥ ସମସ୍ତ ଗୁଣର ବିକାଶ କରୁଥିବା ଏହି ମହତ୍ତତ୍ତ୍ୱକୁ ମାୟାମୟ ଜୀବମଧ୍ୟରେ ନ୍ୟସ୍ତ କଲେ । ତା'ପରେ ବ୍ରହ୍ମରେ ସ୍ଥିତ ହୋଇ ଏହି ମାୟାମୟ ଜୀବୋପାଧିକୁ ସେ ତ୍ୟାଗ କରିଦେଲେ ॥୧୮॥

ପୃଥୁଙ୍କର ପତ୍ନୀ ମହାରାଣୀ ଅର୍ଚି ନିଜର ପତିଙ୍କ ସହିତ ବନଗମନ କରିଥିଲେ । ସେ ଏପରି ସୁକୁମାରୀ ଥିଲେ ଯେ, ପାଦରେ ଚାଲିବା ମଧ୍ୟ ତାଙ୍କ ପକ୍ଷରେ କଷ୍ଟକର ଥିଲା । ତଥାପି ସେ ସ୍ୱାମୀଙ୍କର ଆଚରିତ ବ୍ରତକୁ ନିଷ୍ଠାର ସହିତ ପାଳନ କରି ତାଙ୍କର ବହୁ ସେବା ଶୁଶ୍ରୂଷା କରିଥିଲେ ଏବଂ ମୁନିବ୍ରତ ଅନୁସାରେ କନ୍ଦମୂଳାଦି ଆହାର କରି ଜୀବନ ଧାରଣ କରିଥିଲେ । ଏଥିରେ ତାଙ୍କର ଦେହ ଦୁର୍ବଳ ଓ କ୍ଷୀଣ ହୋଇଯାଉଥିଲେ ମଧ୍ୟ ସେ ସ୍ୱାମୀଙ୍କର କରସ୍ପର୍ଶଲାଭଦ୍ୱାରା ଯେଉଁ ଆନନ୍ଦ ପାଉଥିଲେ, ତଦ୍ଦ୍ୱାରା ତାଙ୍କୁ କୌଣସି କଷ୍ଟ ଲାଗୁନଥିଲା ॥୧୯-୨୦॥ ପୃଥିବୀର ପ୍ରିୟତମ ନିଜର ପତି ମହାରାଜ ପୃଥୁଙ୍କର ଦେହ ଚେତନାଶୂନ୍ୟ ଓ ନିର୍ଜୀବ ହେବାର ଦେଖି ସେ କିଛିକାଳ ବିଳାପ କଲେ ଏବଂ ପର୍ବତର ସାନୁଦେଶରେ ଚିତା ରଚନା କରି ସେଥିରେ ତାଙ୍କୁ ସ୍ଥାପନା କଲେ । ଏହାପରେ ସେ ସମସ୍ତ କୃତ୍ୟ ଶେଷ କରି ହ୍ରଦଜଳରେ ସ୍ନାନପୂର୍ବକ ଉଦାରକର୍ମା ମୃତପତିଙ୍କ ଉଦ୍ଦେଶ୍ୟରେ ଜଳଦାନ କଲେ । ସ୍ୱର୍ଗସ୍ଥ ଦେବତାମାନଙ୍କୁ ବନ୍ଦନା କରି ଏବଂ ତିନିବାର ଚିତାକୁ ପରିକ୍ରମା କରି ସେଥିରେ ଅଗ୍ନିସ୍ଥାପନାପୂର୍ବକ ସ୍ୱାମୀଙ୍କର ପାଦକୁ ଧ୍ୟାନ କଲେ ଏବଂ ଚିତାଗ୍ନିରେ ପ୍ରବେଶ କଲେ ॥୨୧-୨୨॥

ସାଧ୍ୱୀ ଅର୍ଚି ନିଜର ପତି ବୀରବର ପୃଥୁଙ୍କୁ ଏହିପରି ଅନୁଗମନ କରୁଥିବା ଦେଖି ସହସ୍ରସଂଖ୍ୟାରେ ବରଦାୟିନୀ ଦେବୀ ନିଜର ସ୍ୱାମୀମାନଙ୍କ ସହିତ ସତୀଙ୍କର ସ୍ତୁତି କରିବାକୁ ଲାଗିଲେ ॥୨୩॥ ସେତେବେଳେ ଦେବତାମାନଙ୍କର ତୂର୍ଯ୍ୟନାଦ ଶୁଣାଗଲା ଏବଂ ପର୍ବତର ସେହି ସାନୁଦେଶରେ ଦେବାଙ୍ଗନାମାନେ ପୁଷ୍ପବୃଷ୍ଟି କରି ପରସ୍ପର କୁହାକୁହି ହେଲେ-- ॥୨୪॥ ଦେବୀମାନେ କହିଲେ, ଅହୋ ! ଏହି ସ୍ତ୍ରୀ ଧନ୍ୟ । ଯଜ୍ଞେଶ୍ୱର ଭଗବାନଙ୍କ ପତ୍ନୀ ଲକ୍ଷ୍ମୀଙ୍କ ପରି ନିଜ ରାଜରାଜେଶ୍ୱର ସ୍ୱାମୀଙ୍କୁ ସେ ସେବା କରୁଥିଲେ । ନିଶ୍ଚୟ ଏହି ସତୀ ଅର୍ଚି ନିଜର ଅଚିନ୍ତନୀୟ କର୍ମପ୍ରଭାବରେ ଆମକୁ ଅତିକ୍ରମ କରି ନିଜର ସ୍ୱାମୀ ପୃଥୁଙ୍କ ସହିତ ଉଚ୍ଚତର ଲୋକକୁ ଯାତ୍ରା କରୁଛନ୍ତି ॥୨୫-୨୬॥ ମର୍ତ୍ତ୍ୟରେ ଯେଉଁମାନେ ଅଳ୍ପ ଆୟୁଷ ମଧ୍ୟରେ ନିଷ୍କାମ ଜ୍ଞାନସାଧନଦ୍ୱାରା ଭଗବତ୍ ପଦ ଲାଭ କରନ୍ତି, ସେମାନଙ୍କ ପକ୍ଷରେ କୌଣସି ପଦାର୍ଥ ଦୁର୍ଲଭ ନୁହେଁ ॥୨୭॥ ଅତଏବ ଯେଉଁ ବ୍ୟକ୍ତି ବଡ଼ କଷ୍ଟରେ ଏହି ମର୍ତ୍ତ୍ୟରେ ମୋକ୍ଷର ସାଧନସ୍ୱରୂପ ମନୁଷ୍ୟଶରୀର ଲାଭକରି ବିଷୟରେ ଆସକ୍ତ ହୋଇଯାଏ, ସେହି ଆତ୍ମଘାତୀ ବ୍ୟକ୍ତି ଜୀବନରେ ପ୍ରବଞ୍ଚିତ ହୁଏ ॥୨୮॥

ମୈତ୍ରେୟ କହିଲେ, ବିଦୁର, ଦେବାଙ୍ଗନାମାନେ ଏହିପରି ସ୍ତୁତି କରୁଥିବା ବେଳେ ଆତ୍ମଜ୍ଞାନୀଙ୍କ ମଧ୍ୟରେ ଧୁରୀଣ ମହାରାଜ ପୃଥୁ ଭଗବାନଙ୍କର ପରମଧାମକୁ ଯାଇସାରିଥିଲେ । ମହାରାଣୀ ଅର୍ଚି ମଧ୍ୟ ସେହି ପତିଲୋକ ପ୍ରାପ୍ତ ହେଲେ ॥୨୯॥ ଏହିପରି ମହାପରାକ୍ରମୀ ପରମଭାଗବତ ପୃଥୁଙ୍କର ଉଦାରଚରିତ ମୁଁ ତୁମଆଗରେ ବର୍ଣ୍ଣନା କଲି ॥୩୦॥ ଯେଉଁବ୍ୟକ୍ତି ଶ୍ରଦ୍ଧାର

ସହିତ ଏହି ପରମପବିତ୍ର ଚରିତକୁ ଅବହିତ ହୋଇ ପାଠକରେ, ଶ୍ରବଣ କରେ କିମ୍ବା ଅନ୍ୟମାନଙ୍କୁ ଶୁଣାଏ, ସେ ପୃଥୁଙ୍କ ପରି ଭଗବାନଙ୍କର ପରମଧାମ ଲାଭ କରେ ।।୩୧।। ଏହାକୁ ସକାମ ଭାବରେ ପାଠ କରିବାଦ୍ୱାରା ବ୍ରାହ୍ମଣ ବ୍ରହ୍ମତେଜ ଲାଭ କରେ, କ୍ଷତ୍ରିୟ ଜଗତ୍‌ପତି ହୁଏ, ବୈଶ୍ୟ ବ୍ୟବସାୟୀଙ୍କ ମଧ୍ୟରେ ଶ୍ରେଷ୍ଠ ହୁଏ ଓ ଶୂଦ୍ର ସତ୍‌ପୁରୁଷ ହୁଏ ।।୩୨।। ସ୍ତ୍ରୀ ହେଉ ବା ପୁରୁଷ ହେଉ, ଯେ ତିନିଥର ଶ୍ରଦ୍ଧାରେ ଏହାକୁ ଶୁଣେ, ସେ ନିଃସନ୍ତାନ ଥିଲେ ସନ୍ତାନ ଲାଭ କରେ, ଧନହୀନ ଥିଲେ ମହାଧନୀ ହୁଏ, କୀର୍ତ୍ତିହୀନ ହୋଇଥିଲେ ଯଶସ୍ୱୀ ହୁଏ ଏବଂ ମୂର୍ଖ ଥିଲେ ପଣ୍ଡିତ ହୋଇଯାଏ । ଏହା ପୁରୁଷମାନଙ୍କର ଅମଙ୍ଗଳ ନିବାରଣ କରେ ଓ କଲ୍ୟାଣ ପ୍ରଦାନ କରେ ।।୩୩-୩୪।। ଏହା ଧନ, ଯଶ, ଆୟୁ ଓ ସ୍ୱର୍ଗସୁଖ ଦାନ କରିବା ସଙ୍ଗେ ସଙ୍ଗେ କଳିଯୁଗର ସମସ୍ତ ଦୋଷ ହରଣ କରେ । ଧର୍ମ ଅର୍ଥ, କାମ ଓ ମୋକ୍ଷ -ଏଇ ଚତୁର୍ବର୍ଗ ଲାଭ କରିବାପାଇଁ ଯେଉଁମାନେ ଇଚ୍ଛା କରନ୍ତି, ସେମାନେ ଶ୍ରଦ୍ଧାର ସହିତ ଏହା ଶ୍ରବଣ କରି ଥାଆନ୍ତି, ଅନ୍ୟରାଜାମାନେ ଆପେ ଆପେ ଆସି ଆନୁଗତ୍ୟ ସ୍ୱୀକାର କରି ତାଙ୍କୁ ଭେଟି ଦେଇଯାଆନ୍ତି, ଯେପରିକି ମହାରାଜ ପୃଥୁଙ୍କୁ ସେମାନେ ଦାନ କରୁଥିଲେ ।।୩୫।। ସମସ୍ତପ୍ରକାର ଆସକ୍ତି ତ୍ୟାଗ କରି ଏବଂ ଭଗବାନଙ୍କ ଠାରେ ଅଚଳା ଭକ୍ତି ରଖି ମହାରାଜ ପୃଥୁଙ୍କର ଏହି ପବିତ୍ର ଚରିତ ସମସ୍ତେ ପଢ଼ିବା, ଶୁଣିବା ଓ ଶୁଣାଇବା ଉଚିତ ।।୩୭।। ବିଦୁର, ଭଗବାନଙ୍କ ମାହାତ୍ମ୍ୟର ସୂଚନା ଦେଉଥିବା ଏହି ପୃଥୁଚରିତ ମୁଁ ତୁମକୁ ଶୁଣାଇଲି । ଏଥିରେ ଯାହାର ଶ୍ରଦ୍ଧା ହେବ, ସେ ମହାରାଜ ପୃଥୁଙ୍କ ପରି ପରମଗତି ଲାଭ କରିବ ।।୩୮।। ପ୍ରତିଦିନ ଅନାସକ୍ତ ଭାବରେ ଆଦରରେ ଏହି ପୃଥୁଚରିତ ଶ୍ରବଣ ଓ କୀର୍ତ୍ତନ କଲେ ଶ୍ରୀହରିଙ୍କଠାରେ ଦୃଢ଼ ଅନୁରାଗ ଜାତ ହୁଏ ଏବଂ ତା'ପକ୍ଷେ ଶ୍ରୀଭଗବାନଙ୍କ ଚରଣ ଭବସିନ୍ଧୁ ପାରହେବାପାଇଁ ନୌକାସ୍ୱରୂପ ହୋଇଥାଏ ।।୩୯।।

## ଚତୁର୍ବିଂଶ ଅଧ୍ୟାୟ

# ପୃଥୁଙ୍କ ବଂଶପରମ୍ପରା

ମୈତ୍ରେୟ କହିଲେ, ବିଦୁର, ପୃଥୁଙ୍କ ପରେ ତାଙ୍କର ପୃଥୁଳଯଶା ପୁତ୍ର ବିଜିତାଶ୍ୱ ରାଜା ହେଲେ । ଭ୍ରାତୃବତ୍ସଳ ରାଜା ବିଜିତାଶ୍ୱ ନିଜର ଛୋଟ ଭାଇମାନଙ୍କୁ ଗୋଟିଏ ଗୋଟିଏ ଦିଗର ଅଧିକାର ଦେଲେ ।।୧।। ଚାରିଭାଇଙ୍କ ମଧ୍ୟରୁ ହର୍ଯ୍ୟକ୍ଷଙ୍କୁ ପୂର୍ବ, ଧୂମ୍ରକେଶଙ୍କୁ ଦକ୍ଷିଣ, ବୃକଙ୍କୁ ପଶ୍ଚିମ ଏବଂ ଦ୍ରବିଣଙ୍କୁ ଉତ୍ତର ଦିଗର ରାଜ୍ୟ ଦାନ କଲେ ।।୨।। ବିଜିତାଶ୍ୱ ଇନ୍ଦ୍ରଙ୍କଠାରୁ ଅନ୍ତର୍ଦ୍ଧାନ ହେବାର ଶକ୍ତି ଲାଭ କରିଥିଲେ । ତେଣୁ ଅନ୍ତର୍ଦ୍ଧାନ ନାମରେ ମଧ୍ୟ ସେ ଅଭିହିତ ଥିଲେ । ତାଙ୍କର ପତ୍ନୀ ଶିଖଣ୍ଡିନୀଙ୍କ ଠାରୁ ତିନୋଟି ସୁଯୋଗ୍ୟ ପୁତ୍ର ଜନ୍ମ ହୋଇଥିଲେ ।।୩।। ସେମାନେ ହେଲେ ପାବକ, ପବମାନ ଏବଂ ଶୁଚି । ବଶିଷ୍ଠଙ୍କ ଶାପରେ ଅଗ୍ନି ଏହିମାନଙ୍କ ରୂପରେ ଜନ୍ମଗ୍ରହଣ କରିଥିଲେ । ପରେ ଯୋଗମାର୍ଗରେ ଯାଇ ସେମାନେ ପୁଣି ଅଗ୍ନିରୂପ ଧାରଣ କଲେ ।।୪।। ଅନ୍ତର୍ଦ୍ଧାନଙ୍କର ଅନ୍ୟ ଏକ ପତ୍ନୀ ଥିଲେ ନଭସ୍ୱତୀ । ତାଙ୍କଠାରୁ ହବିର୍ଧାନ ନାମକ ଅନ୍ୟଏକ ପୁତ୍ର ହୋଇଥିଲେ । ଯେତେବେଳେ ଇନ୍ଦ୍ର ତାଙ୍କ ପିତାଙ୍କର ଯଜ୍ଞ -ଅଶ୍ୱକୁ ହରଣକରି ନେଇଯାଇଥିଲେ, ସେତେବେଳେ ତାହା ଜାଣିପାରି ମଧ୍ୟ ସେ ତାଙ୍କୁ ବଧ କରି ନ ଥିଲେ ।।୫।। ଏହିପରି (କ୍ଷମାଶୀଳ) ରାଜା ଅନ୍ତର୍ଦ୍ଧାନ କର ଆଦାୟ କରିବା, ଦଣ୍ଡଦେବା, ଜୋରିମାନା ଅସୁଲ କରିବା ଆଦି ଅତି କଠୋର କାର୍ଯ୍ୟ ବୋଲି ମନେକରି ଏକ ଦୀର୍ଘକାଳୀନ ଯଜ୍ଞ କରିବା ଛଳରେ ରାଜକାର୍ଯ୍ୟ ଛାଡ଼ିଦେଲେ ।।୬।। ଯଜ୍ଞକାର୍ଯ୍ୟରେ ଥାଇ ମଧ୍ୟ ଆତ୍ମଦର୍ଶୀ ରାଜା ଭକ୍ତମାନଙ୍କର କ୍ଲେଶହରଣକାରୀ ଧର୍ମପୁରୁଷ ପରମାତ୍ମାଙ୍କୁ ଉପାସନା କରି ଦୃଢ଼ ସମାଧି ଦ୍ୱାରା ଭଗବାନଙ୍କ ଦିବ୍ୟଲୋକ ପ୍ରାପ୍ତ ହେଲେ ।।୭।।

ହବିର୍ଧାନଙ୍କର ସ୍ତ୍ରୀ ହେଲେ ହବିର୍ଧାନୀ । ବିଦୁର, ତାଙ୍କ ଗର୍ଭରୁ ଛ'ଟି ପୁତ୍ର ଜନ୍ମ ହେଲେ --ବର୍ହିଷଦ୍, ଗୟ, ଶୁକ୍ଳ, କୃଷ୍ଣ, ସତ୍ୟ, ଜିତବ୍ରତ ॥୮॥ କୁରୁଶ୍ରେଷ୍ଠ, ହବିର୍ଧାନଙ୍କର ପୁତ୍ର ମହାଭାଗ ବର୍ହିଷଦ ଯୋଗାଭ୍ୟାସ ଓ କର୍ମକାଣ୍ଡରେ ନିପୁଣ ହୋଇ ପ୍ରଜାପତି ପଦ ଲାଭ କଲେ ॥୯॥ ସେ ଏକାଦିକ୍ରମେ ଏତେ ସଂଖ୍ୟାରେ ବିଭିନ୍ନ ଯଜ୍ଞ କଲେ ଯେ, ସମଗ୍ର ଧରାତଳ ପୂର୍ବମୁଖୀ କୁଶାଗ୍ରରେ ପୂର୍ଣ୍ଣ ହୋଇଗଲା (ଏଥିପାଇଁ ପରେ ସେ ପ୍ରାଚୀନବର୍ହି ନାମରେ ଖ୍ୟାତ ହେଲେ) ॥୧୦॥ ରାଜା ପ୍ରାଚୀନବର୍ହି ବ୍ରହ୍ମାଙ୍କର କହିବା ଅନୁସାରେ ସମୁଦ୍ରଙ୍କର କନ୍ୟା ଶତଦ୍ରୁତିଙ୍କୁ ବିବାହ କଲେ । ସର୍ବାଙ୍ଗସୁନ୍ଦରୀ କିଶୋରୀ ଶତଦ୍ରୁତି ନାନାଳଙ୍କାରରେ ଭୂଷିତ ହୋଇ ବିବାହମଣ୍ଡପରେ ଯେତେବେଳେ ଅଗ୍ନିଙ୍କୁ ପ୍ରଦକ୍ଷିଣ କଲେ, ସେତେବେଳେ ଅଗ୍ନି ତାଙ୍କ ରୂପରେ ମୋହିତ ହୋଇଗଲେ । ସପ୍ତର୍ଷିଙ୍କ ଯଜ୍ଞରେ ତାଙ୍କର ପତ୍ନୀ ଶୁକୀଙ୍କୁ ଦେଖି ଅଗ୍ନି ମଧ୍ୟ ଏହିପରି ଥରେ କାମାର୍ତ୍ତ ହୋଇ ପଡ଼ିଥିଲେ । ନବବିବାହିତା ଶତଦ୍ରୁତି ତାଙ୍କର ନୂପୁର ନିକ୍ୱଣରେ ଦିଗବିଦିଗରେ ଥିବା ଦେବାସୁର, ନରନାଗ, ସିଦ୍ଧଗନ୍ଧର୍ବ ଓ ମୁନିମାନଙ୍କୁ ମଧ୍ୟ ମୋହିତ କରିଦେଇଥିଲେ ॥୧୧-୧୨॥

ଶତଦ୍ରୁତିଙ୍କ ଠାରୁ ପ୍ରାଚୀନବର୍ହିଙ୍କର ଦଶଟି ପୁତ୍ର ଜନ୍ମହେଲେ । ସେମାନେ ସମସ୍ତେ ଧର୍ମପରାୟଣ ଥିଲେ ଏବଂ ଏକପ୍ରକାର ଆଚରଣଯୋଗୁଁ ସେମାନଙ୍କୁ 'ପ୍ରଚେତା'--ଏହି ଗୋଟିଏ ନାମରେ ଅଭିହିତ କରାଗଲା ।୧୩॥ ପିତା ସେମାନଙ୍କୁ ସନ୍ତାନଉତ୍ପାଦନ ପାଇଁ ଆଦେଶ ଦେବାରୁ ସେମାନେ ତପସ୍ୟା କରିବା ପାଇଁ ସମୁଦ୍ରଗର୍ଭରେ ପ୍ରବେଶ କଲେ । ସେଠାରେ ଦଶ ହଜାର ବର୍ଷ ତପସ୍ୟା କରି ତପସ୍ୟାର ଫଳଦାତା ଭଗବାନ ଶ୍ରୀହରିଙ୍କର ଆରାଧନା କଲେ ॥୧୪॥ ତପସ୍ୟା କରିବାକୁ ଯାଉଥିବାବେଳେ ବାଟରେ ମହାଦେବ ସେମାନଙ୍କପ୍ରତି ପ୍ରସନ୍ନ ହୋଇ ସେମାନଙ୍କୁ ଯେଉଁ ଉପଦେଶ ଦେଇଥିଲେ, ସେହି ଅନୁସାରେ ସଂଯତ ଚିତ୍ତରେ ସେମାନେ ଧ୍ୟାନ, ଜପ ଓ ପୂଜା କରିବାକୁ ଲାଗିଲେ ॥୧୫॥ ବିଦୁର ପଚାରିଲେ, ବ୍ରହ୍ମନ୍, ପ୍ରଚେତାମାନଙ୍କର ମହାଦେବଙ୍କ ସହିତ କିପରି ବାଟରେ ଦେଖାହେଲା ଏବଂ ସେମାନଙ୍କପ୍ରତି ପ୍ରସନ୍ନ ମହାଦେବ କ'ଣ ଉପଦେଶ ଦେଲେ, ତାହା ଆପଣ ମୋତେ କହିବା ହୁଅନ୍ତୁ ॥୧୬॥ ବ୍ରହ୍ମର୍ଷି, ଦେହଧାରୀମାନଙ୍କ ପକ୍ଷରେ ଶିବଙ୍କ ସହିତ ସାକ୍ଷାତ ହେବା ଅତିଶୟ କଠିନ । ଅନାସକ୍ତ ମୁନିମାନେ ନିରନ୍ତର ତାଙ୍କୁ ଧ୍ୟାନ କରୁଥିଲେ ମଧ୍ୟ ସହଜରେ ତାଙ୍କ ଦର୍ଶନ ପାଆନ୍ତି ନାହିଁ । ଭଗବାନ ଶଙ୍କର ଆତ୍ମାରାମ, ତାଙ୍କର କିଛି କରିବାର ବା ପାଇବାର ନ ଥାଏ । କିନ୍ତୁ ସୃଷ୍ଟିରକ୍ଷା ନିମନ୍ତେ ଭଗବାନ ଶିବ ନିଜର ଘୋରରୂପା (ଶିବାନୀ) ଶକ୍ତିଙ୍କ ସହିତ ସର୍ବତ୍ର ବିଚରଣ କରୁଥା'ନ୍ତି ॥୧୭-୧୮॥

ମୈତ୍ରେୟ କହିଲେ, ସାଧୁସ୍ୱଭାବ ପ୍ରଚେତାମାନେ ପିତୃବାକ୍ୟକୁ ଶିରୋଧାର୍ଯ୍ୟ କରି ତପସ୍ୟା କରିବା ପାଇଁ ଏକଲୟରେ ପଶ୍ଚିମ ଦିଗକୁ ଯାତ୍ରା କଲେ ॥୧୯॥ ବାଟରେ ସେମାନେ ସମୁଦ୍ରପରି ଏକ ବିଶାଳ ସରୋବର ଦେଖିବାକୁ ପାଇଲେ । ମହାତ୍ମାମାନଙ୍କର ମନପରି ଏହା ନିର୍ମଳ ଥିଲା ଏବଂ ଏଥିରେ ଯେଉଁ ଜଳଜୀବମାନେ ରହୁଥିଲେ, ସେମାନେ ଅତି ପ୍ରସନ୍ନ ଦେଖାଯାଉଥିଲେ ॥୨୦॥ ସେଥିରେ ନୀଳବର୍ଣ୍ଣ ଓ ରକ୍ତବର୍ଣ୍ଣର ପଦ୍ମ ଏବଂ ନୀଳକଇଁ ଆଦି ବହୁ ପଦ୍ମ ଓ କୁମୁଦ ଜାତୀୟ ପୁଷ୍ପ ପ୍ରସ୍ଫୁଟିତ ହେଉଥିଲା । ସାରସ, ଚକ୍ରବାକ ଓ କାରଣ୍ଡବ ଆଦି ଜଳପକ୍ଷୀ କଳରବ କରୁଥିଲେ ॥୨୧॥ ଚତୁର୍ଦ୍ଦିଗରେ ବିଭିନ୍ନପ୍ରକାର ବୃକ୍ଷ ଏବଂ ଲତା ଉପରେ ମତ୍ତ ଭ୍ରମରମାନେ ଗୁଞ୍ଜନ କରୁଥିଲେ । ଜଣାପଡୁଥିଲା, ଯେପରି ଭ୍ରମରମାନଙ୍କ ଗୁଞ୍ଜନର ଆନନ୍ଦରେ ସେମାନଙ୍କର ପୁଲକ ଜାତ ହେଉଛି ଏବଂ ପଦ୍ମକେଶରର ପରାଗକୁ ଚାରିଆଡ଼େ ଉଡ଼ାଇ ପବନ ଏକ ମହୋତ୍ସବ କରୁଛି ॥୨୨॥ ସେଠାରେ ମୃଦଙ୍ଗ, ପଣବ ଆଦି ବାଦ୍ୟର ସହିତ ଦିବ୍ୟ ରାଗରାଗିଣୀଯୁକ୍ତ ଗାନର ମଧୁର ଧ୍ୱନି ଶୁଣି ରାଜକୁମାରମାନେ ବଡ଼ ଆଶ୍ଚର୍ଯ୍ୟ ହୋଇଗଲେ । ସେଠାରେ ସେମାନେ ଦେଖିଲେ, ଦେବାଧିଦେବ ଭଗବାନ ଶଙ୍କର ନିଜର ଅନୁଚରମାନଙ୍କ ସହିତ ସେହି ସରୋବରମଧ୍ୟରୁ ବାହାରି ଆସୁଛନ୍ତି ॥୨୩-୨୪॥ ଦେହ ତପ୍ତକାଞ୍ଚନ ବର୍ଣ୍ଣ । କଣ୍ଠ ନୀଳବର୍ଣ୍ଣ ଏବଂ ଦୁଇଟି ଚକ୍ଷୁ ଛଡ଼ା ଲଲାଟରେ ଏକ ତୃତୀୟ ଚକ୍ଷୁ ଶୋଭା ପାଉଥିଲା । ସେ ଭକ୍ତମାନଙ୍କୁ ଅନୁଗ୍ରହ କରିବାକୁ ଉଦ୍ୟତ ଥିଲେ । ଏହା ଦେଖି

ପ୍ରଚେତାମାନଙ୍କର କୌତୂହଳ ଜାତ ହେଲା ଏବଂ ସେମାନେ ଭଗବାନ ଶିବଙ୍କ ଚରଣରେ ପ୍ରଣାମ କଲେ ।।୨୫।। ଶରଣାଗତଙ୍କର ଦୁଃଖହରଣକାରୀ ଧର୍ମବତ୍ସଳ ଭଗବାନ ଶିବ ସେମାନଙ୍କ ଧର୍ମଜ୍ଞାନ ଓ ଶିଷ୍ଟ ସ୍ୱଭାବରେ ପ୍ରସନ୍ନ ହୋଇ ସେମାନଙ୍କୁ ଏହିପରି କହିଲେ ।।୨୬।। ଶ୍ରୀ ରୁଦ୍ର କହିଲେ, ତୁମେମାନେ ରାଜା ପ୍ରାଚୀନବର୍ହିଙ୍କର ପୁତ୍ର । ତୁମର ମଙ୍ଗଳ ହେଉ । ତୁମେ ଯାହା କରିବାକୁ ଚାହୁଁଛ, ମୁଁ ତାହା ଜାଣେ । ତୁମକୁ ଅନୁଗ୍ରହ କରିବା ପାଇଁ ମୁଁ ତୁମକୁ ଦର୍ଶନ ଦେଇଛି ।।୨୭।। ଭଗବାନ ବାସୁଦେବ ହେଉଛନ୍ତି ସାକ୍ଷାତ୍ ତ୍ରିଗୁଣାତ୍ମିକା ପ୍ରକୃତି ଓ ଜୀବସଂଜ୍ଞକ ପୁରୁଷ ଓ ଏ ଦୁହିଁଙ୍କର ନିୟନ୍ତା । ତାଙ୍କର ଯେ ଶରାଣାଗତ ହୁଏ, ସେ ମୋର ଅତୀବ ପ୍ରିୟ ।।୨୮।। ସ୍ୱଧର୍ମ (ବର୍ଣ୍ଣାଶ୍ରମ ଧର୍ମ)କୁ ନିଷ୍ଠାର ସହିତ ପାଳନ କରୁଥିବା ବ୍ୟକ୍ତି ଶହେ ଜନ୍ମ ପରେ ବ୍ରହ୍ମାପଦ ପ୍ରାପ୍ତ ହୁଏ । ତା'ପରେ ଅଧିକ ପୁଣ୍ୟାର୍ଜନ କରି ମୋତେ ଲାଭ କରେ । କିନ୍ତୁ ଯେ ଭଗବାନଙ୍କର ଅନନ୍ୟ ଭକ୍ତ ସେ ସମସ୍ତ ଜନ୍ମାତୀତ ବୈଷ୍ଣବପଦ ପ୍ରାପ୍ତ ହୁଏ, ଯାହାକି ମୁଁ ଏବଂ ଅନ୍ୟଦେବତା ନିଜନିଜର ଅଧିକାର ଶେଷରେ ପ୍ରାପ୍ତ ହୋଇଥାଉ ।।୨୯।। ତୁମେମାନେ ଭଗବାନଙ୍କର ଭକ୍ତ । ତେଣୁ ମୋର ଭଗବାନ ଯେପରି ପ୍ରିୟ, ତୁମେମାନେ ମଧ୍ୟ ସେହିପରି ପ୍ରିୟ ଏବଂ ଭଗବତ୍ ଭକ୍ତମାନଙ୍କର ମଧ୍ୟ ମୋ ଛଡ଼ା ଅଧିକ କେହି ପ୍ରିୟ ହୋଇ ନ ପାରେ ।।୩୦।। ବର୍ତ୍ତମାନ ମୁଁ ତୁମମାନଙ୍କୁ ଜପ କରିବାପାଇଁ ଏକ ଅତ୍ୟନ୍ତ ଉଦାର, ପବିତ୍ର, ମଙ୍ଗଳମୟ ଓ କଲ୍ୟାଣକାରୀ ସ୍ତୋତ୍ର ଶୁଣାଇବାକୁ ଯାଉଛି । ଏବେ ସାବଧାନ ହୋଇ ଶୁଣ ।।୩୧।।

ମୈତ୍ରେୟ କହିଲେ, ଏହିପରି ନାରାୟଣପରାୟଣ ସହୃଦୟ ଭଗବାନ ଶିବ ଯୋଡ଼ହସ୍ତରେ ଥିବା ରାଜପୁତ୍ରମାନଙ୍କୁ ଏହି ସ୍ତୋତ୍ର ଶୁଣାଇଲେ ।।୩୨।। ଶ୍ରୀ ରୁଦ୍ର ନାରାୟଣଙ୍କୁ ସ୍ତୁତିକରି କହିଲେ, ଆପଣ ଆତ୍ମସ୍ୱରୂପ ଓ ସର୍ବାନ୍ତର୍ଯାମୀ । ଆପଣ ଅପର୍ଯ୍ୟାପ୍ତ ପରମ ଆନନ୍ଦ ରୂପରେ ସର୍ବଦା ରହିଥା'ନ୍ତି । ଶ୍ରେଷ୍ଠ ଆତ୍ମଜ୍ଞାନୀମାନଙ୍କର ଆନନ୍ଦ ଲାଭ ପାଇଁ ଏବଂ ମୋର ମଙ୍ଗଳ ହେଉଚି ଆପଣଙ୍କର ଗୌରବ । ମୁଁ ଆପଣଙ୍କୁ ନମସ୍କାର କରୁଛି ।।୩୩।। ହେ ପଦ୍ମନାଭ ! ଭୂତସୂକ୍ଷ୍ମ (ଇନ୍ଦ୍ରିୟବିଷୟ) ଓ ଇନ୍ଦ୍ରିୟମାନଙ୍କର ନିୟନ୍ତା, ହେ ଶାନ୍ତ, ବାସୁଦେବ, ନିର୍ବିକାର, ସ୍ୱତେଜରେ ତେଜୀୟାନ, ଆପଣଙ୍କୁ ମୋର ନମସ୍କାର ।।୩୪।। ଆପଣ ଅବ୍ୟକ୍ତ, ଅନନ୍ତ ଏବଂ ଏ ସଂସାରର ଅନ୍ତକାରୀ ସଙ୍କର୍ଷଣ ରୂପରେ ଅହଙ୍କାରର ଅଧିଷ୍ଠାତା । ବିଶ୍ୱକୁ ପ୍ରବୁଦ୍ଧ (ଜ୍ଞାନାଲୋକିତ) କରୁଥିବା ଯୋଗୁ ଆପଣ ପ୍ରଦ୍ୟୁମ୍ନ, ସ୍ୱୟଂ ଅନ୍ତରାତ୍ମା । ଆପଣଙ୍କୁ ନମସ୍କାର ।।୩୫।। ଆପଣ ଅନିରୁଦ୍ଧ, ହୃଷୀକେଶ, ଇନ୍ଦ୍ରିୟମାନଙ୍କର ନିୟନ୍ତା । ସୂର୍ଯ୍ୟସ୍ୱରୂପ, ସମସ୍ତ ଐଶ୍ୱର୍ଯ୍ୟରେ ପୂର୍ଣ୍ଣ, କିନ୍ତୁ ଭୌତିକ ସୃଷ୍ଟିଠାରୁ ପୃଥକ୍ । ମୁଁ ଆପଣଙ୍କୁ ନମସ୍କାର କରୁଛି ।।୩୬।। ଆପଣ ସ୍ୱର୍ଗ ଓ ମୋକ୍ଷର ଦ୍ୱାର ଏବଂ ସର୍ବଦା ପବିତ୍ର ହୃଦୟରେ ବାସ କରନ୍ତି । ଆପଣ ସୁବର୍ଣ୍ଣବୀର୍ଯ୍ୟ, ଚାତୁର୍ହୋତ୍ର କର୍ମର ପ୍ରବର୍ତ୍ତକ ଓ ବିସ୍ତାରକ ସ୍ୱୟଂ ଅଗ୍ନିଦେବ ।।୩୭।। ଆପଣ ପିତୃ ଓ ଦେବତାମାନଙ୍କର ପୋଷକ ସୋମ ଏବଂ ତିନି ବେଦର ଅଧିଷ୍ଠାତା; ଆପଣ ସମସ୍ତ ପ୍ରାଣୀଙ୍କର ତୃପ୍ତିକାରୀ ଜଳ (ସର୍ବରସ) ସ୍ୱରୂପ, ମୁଁ ଆପଣଙ୍କୁ ନମସ୍କାର କରୁଛି ।।୩୮।। ଆପଣ ସମସ୍ତ ପ୍ରାଣୀଙ୍କର ଆତ୍ମା ଓ ଦେହରୂପେ ବିଦ୍ୟମାନ । ସ୍ୱୟଂ ପୃଥିବୀ ଓ ବିରାଟସ୍ୱରୂପ; ତ୍ରିଲୋକର ପାଳନକର୍ତ୍ତା; ମନ, ଇନ୍ଦ୍ରିୟ ଓ ଶରୀରର ଶାନ୍ତିସ୍ୱରୂପ ବାୟୁ ଅଟନ୍ତି । ଆପଣଙ୍କୁ ନମସ୍କାର ।।୩୯।।

ଆପଣ ଅନ୍ତରାତ୍ମା ଏବଂ ବହିରାତ୍ମା । ଆପଣ ଶବ୍ଦଗୁଣଦ୍ୱାରା ସମସ୍ତ ପଦାର୍ଥକୁ ପ୍ରକାଶ କରୁଥିବା ଆକାଶ ଏବଂ ସ୍ୱର୍ଗ ଓ ବୈକୁଣ୍ଠ ଆଦି ଜ୍ୟୋତିର୍ମୟ ପୁଣ୍ୟଲୋକ । ଆପଣଙ୍କୁ ମୋର ନମସ୍କାର ।।୪୦।। ଆପଣ ପ୍ରବୃତ୍ତିମୂଳକ କର୍ମଦ୍ୱାରା ପିତୃଲୋକ ପ୍ରାପ୍ତ କରାନ୍ତି । ନିବୃତ୍ତିମୂଳକ କର୍ମଦ୍ୱାରା ଦେବଲୋକ ଦାନ କରନ୍ତି ଏବଂ ଅଧର୍ମର ଫଳସ୍ୱରୂପ ଦୁଃଖଦ ମୃତ୍ୟୁ ହୋଇ ଆସନ୍ତି । ଆପଣଙ୍କୁ ମୁଁ ନମସ୍କାର କରୁଛି ।।୪୧।। ଆପଣ ସର୍ବକର୍ମର ଫଳଦାତା, ସର୍ବଜ୍ଞ, ସମସ୍ତ କାରଣର କାରଣ, ମହାନ ଧର୍ମସ୍ୱରୂପ, ଅନନ୍ତ ଜ୍ଞାନସ୍ୱରୂପ ସାଂଖ୍ୟ ଓ ଯୋଗର ଅଧୀଶ୍ୱର, ପୁରାଣପୁରୁଷ ଭଗବାନ୍ ଶ୍ରୀକୃଷ୍ଣ । ମୁଁ ଆପଣଙ୍କୁ ନମସ୍କାର କରୁଛି ।।୪୨।। ଆପଣ କର୍ତ୍ତା, କରଣ ଓ କର୍ମ--ଏହି ତିନୋଟି ଶକ୍ତିର ଆଧାର । ଆପଣ ରୁଦ୍ରରୂପୀ ଅହଙ୍କାର । ଆପଣ ଜ୍ଞାନ ଓ କ୍ରିୟାରୂପ ହୋଇ ବିବିଧ ବେଦବାଣୀ ପ୍ରକଟ କରୁଛନ୍ତି । ଆପଣଙ୍କୁ ନମସ୍କାର ।।୪୩।। ପ୍ରଭୁ ! ଆମେମାନେ ଆପଣଙ୍କ ଦର୍ଶନର ଅଭିଳାଷୀ ।

ଆପଣ ଆମକୁ ଦର୍ଶନ ଦିଅନ୍ତୁ । ଭକ୍ତମାନଙ୍କର ଅର୍ଚ୍ଚିତ ଆପଣଙ୍କର ଯେଉଁ ପ୍ରିୟତମ ରୂପ ତା'ର ଗୁଣଦ୍ୱାରା ସମସ୍ତ ଇନ୍ଦ୍ରିୟଙ୍କୁ ତୃପ୍ତ କରିପାରେ, ଆମକୁ ସେହି ଅନୁପମ ରୂପ ଦର୍ଶନ କରାନ୍ତୁ ।।୪୪।। ବର୍ଷାକାଳୀନ ମେଘପରି ସମସ୍ତ ସୌନ୍ଦର୍ଯ୍ୟ ସଂଗ୍ରହ କରିଥିବା ଆପଣଙ୍କର ସେହି ଶ୍ୟାମଳ କୋମଳ ରୂପ, ଆପଣଙ୍କର ମନୋହର ଆୟତ ଚାରୋଟି ବାହୁ, ସୁନ୍ଦର ଶରୀରର ଯଥୋଚିତ ମୁଖକାନ୍ତି, ପଦ୍ମପତ୍ର ପରି ଚକ୍ଷୁଯୁଗଳରେ ସୁନ୍ଦର ଭ୍ରୂଲତା, ମନୋରମ ନାସିକା, ଶୁଭ୍ରସୁନ୍ଦର ଦନ୍ତପଙ୍‌କ୍ତି, ସୁକପୋଳଯୁକ୍ତ ମୁଖମଣ୍ଡଳରେ ଦୁଇଟି କର୍ଣ୍ଣର ଶୋଭା ଅତ୍ୟନ୍ତ ମନୋହର ଦେଖାଯାଏ ।।୪୫-୪୬।। ଆପଣଙ୍କର ପ୍ରୀତିପୂର୍ଣ୍ଣ ହାସ୍ୟଯୁକ୍ତ ଦୃଷ୍ଟି, ଘନକୃଷ୍ଣ କେଶରାଶି, ପଦ୍ମକେଶରପରି ଝଟକୁଥିବା ପୀତବସ୍ତ୍ର, ଝଲମଲ କରୁଥିବା କୁଣ୍ଡଳ, ଚମକି ଉଠୁଥିବା କିରୀଟ, କଙ୍କଣ, ହାର, ନୂପୁର ଏବଂ ମେଖଳା, ଶଙ୍ଖ, ଚକ୍ର, ଗଦା, ପଦ୍ମ, ବନମାଳା ଏବଂ ବକ୍ଷରେ ଥିବା କୌସ୍ତୁଭମଣି ଆପଣଙ୍କୁ ଅପୂର୍ବ ଶୋଭାମୟ କରିଛି ।।୪୭-୪୮।। ସିଂହସ୍କନ୍ଧପରି ଆପଣଙ୍କର ବଳିଷ୍ଠ ସ୍କନ୍ଧରେ କୌସ୍ତୁଭର ଶୋଭା, ଗ୍ରୀବାଦେଶରେ କୌସ୍ତୁଭ ମଣି, ଶ୍ରୀବତ୍ସଲାଞ୍ଛନ ଓ ଶ୍ୟାମଳ ବକ୍ଷସ୍ଥଳରେ ଲକ୍ଷ୍ମୀ ସର୍ବଦା ବାସ କରୁଥିବାରୁ କଷଟି ପଥରରେ ସୁନାର ଝଲକ ପରି ତାହା ଝଟକି ଉଠୁଛି ।।୪୯।।

ତ୍ରିବଳୀରେ ଶୋଭିତ ଅଶ୍ୱତ୍‌ଥପତ୍ର ପରି ସୁନ୍ଦର ଉଦରରେ ନାଭିର ଆବର୍ତ୍ତ, ଯା'ର ଗଭୀରତାରେ ବିଶ୍ୱ ଲୀନହେବା ପରି ଜଣାଯାଉଛି । ଶ୍ୟାମବର୍ଣ୍ଣ ନିତମ୍ବରେ ପୀତବସ୍ତ୍ର ଓ ସୁବର୍ଣ୍ଣର ମେଖଳା ଦୁଇଟିଯାକ ପାଦପଦ୍ମ ଏକ ଅନ୍ୟକୁ ବଳିବା ପରି ସୁନ୍ଦର, ସୁଠାମ ଜଘନଦ୍ୱୟ ଓ ଉରୁଦ୍ୱୟ ଏବଂ ଦୁଇଟି ଅନୁନ୍ନତ ଜାନୁ ଆପଣଙ୍କ ବିଗ୍ରହର ଶୋଭାବର୍ଦ୍ଧନ କରୁଛି ।।୫୦-୫୧।। ଆପଣଙ୍କ ଚରଣକମଳର ଶୋଭା ଶାରଦୀୟ ପଦ୍ମପାଖୁଡ଼ାର ଶୋଭାକୁ ତିରସ୍କାର କରେ । ନଖର ଦ୍ୟୁତି ହୃଦୟରେ ଥିବା ସମସ୍ତ ପାପରୂପ ଅନ୍ଧକାରକୁ ଦୂର କରିଦିଏ । ଭବଭୟହର ଆପଣଙ୍କର ସେହି ସୁନ୍ଦର ପାଦ ଦୁଇଟି ଆମକୁ ଦେଖାଇବା ହୁଅନ୍ତୁ । ଜଗଦ୍‌ଗୁରୁ, ଅଜ୍ଞାନତିମିରରେ ବାଟ ପାଉ ନ ଥିବା ଆମମାନଙ୍କୁ ଆପଣ ଗୁରୁରୂପେ ବାଟ ଦେଖାଇ ଦିଅନ୍ତୁ ।।୫୨।। ଆତ୍ମଶୁଦ୍ଧି ଇଚ୍ଛା କରିଥିବା ବ୍ୟକ୍ତିମାନେ ଆପଣଙ୍କର ଏହି ରୂପକୁ ଧ୍ୟାନ କରିବା ବାଞ୍ଛନୀୟ । ସ୍ୱଧର୍ମପାଳନକାରୀ ବ୍ୟକ୍ତିଙ୍କ ପାଇଁ ଏ ହାହିଁ ହେଉଛି ଅଭୟପ୍ରଦ ଭକ୍ତିଯୋଗ । ସ୍ୱର୍ଗର ଇନ୍ଦ୍ର ମଧ୍ୟ ଆପଣଙ୍କୁ ପାଇବାପାଇଁ ଇଚ୍ଛୁକ । ଆତ୍ମଜ୍ଞାନୀଙ୍କର ଆପଣ ଏକମାତ୍ର ଗତି । କିନ୍ତୁ ସମସ୍ତ ଦେହଧାରୀ ଆପଣଙ୍କୁ ଲାଭ କରିପାରନ୍ତି ନାହିଁ । କେବଳ ଭକ୍ତିମାନ୍ ପୁରୁଷ ହିଁ ଆପଣଙ୍କୁ ଲାଭ କରିପାରେ ।।୫୩-୫୪।।

ଆପଣଙ୍କର ଆରାଧନା ସହଜସାଧ୍ୟ ନୁହେଁ । ସାଧୁମାନେ ଅତି କଷ୍ଟରେ ଆପଣଙ୍କୁ ଆରାଧନା କରନ୍ତି । ଏକାନ୍ତ ଭକ୍ତିରେ ଆପଣଙ୍କ ପାଦପଦ୍ମର ସେବା ଛଡ଼ା ଅନ୍ୟ କିଛି କେହି ଇଚ୍ଛା କରିପାରେ କି ? ।।୫୫।। ଯାହାର ଶୌର୍ଯ୍ୟ, ବୀର୍ଯ୍ୟ ଅଦମ୍ୟ ଓ ଯା'ର ଭ୍ରୂଭଙ୍ଗ ମାତ୍ରେ ସମସ୍ତ ବିଶ୍ୱ ଧ୍ୱଂସ ହୋଇଯାଏ, ସେହି ମୃତ୍ୟୁରୂପୀ କାଳ ଆପଣଙ୍କର ଶରଣାଗତକୁ ଛୁଇଁପାରେ ନାହିଁ ।।୫୬।। ମନୁଷ୍ୟମାନଙ୍କପାଇଁ ଭଗବତ୍ ଭକ୍ତଙ୍କର ସାମାନ୍ୟ ସଙ୍ଗଲାଭ ସହିତ ସ୍ୱର୍ଗ କିମ୍ବା ମୋକ୍ଷ ଆଦୌ ତୁଳନୀୟ ନୁହେଁ ।।୫୭।। ଆପଣଙ୍କ ଯଶଗୌରବ ହେଉଛି, ଆପଣଙ୍କର ଚରଣକମଳ ସମସ୍ତ ପାପ ହରଣ କରେ । ଆପଣଙ୍କ ପାଦରୁ ବାହାରିଥିବା ଗଙ୍ଗାଜଳରେ ସ୍ନାନ କଲେ ଭିତର ଓ ବାହାରର ସମସ୍ତ ପାପ ଦୂର ହୁଏ । ଯେଉଁମାନେ ସତ୍‌ସ୍ୱଭାବଯୁକ୍ତ, ଯେଉଁମାନଙ୍କର ଜୀବେ ଦୟା ଥାଏ, ସେହି ଭକ୍ତମାନଙ୍କର ସଙ୍ଗସୁଖ ଆମକୁ ସବୁବେଳପାଇଁ ମିଳୁ---ଏତିକି ଆପଣ ଅନୁଗ୍ରହ କରନ୍ତୁ ।।୫୮।। ଯାହାର ଚିତ୍ତ ଭକ୍ତିଯୋଗରେ ବିଶୁଦ୍ଧ ହୋଇଥାଏ, କୌଣସି ବାହ୍ୟ ବିଷୟାଦିରେ ବିକ୍ଷିପ୍ତ ହୁଏ ନାହିଁ, ଅଜ୍ଞାନ ଅନ୍ଧକାରରୂପକ ଗୁହାରେ ଲୀନ ହୁଏ ନାହିଁ, ସେଇ ସାଧକ ସହଜରେ ଆପଣଙ୍କ ସ୍ୱରୂପ ଦର୍ଶନ କରେ ।।୫୯।। ଯାହାଙ୍କଠାରେ ଏହି ବିଶ୍ୱ ପ୍ରକାଶିତ ହୋଇଛି ଏବଂ ଯେ ଏହି ବିଶ୍ୱରେ ପ୍ରକାଶମାନ, ଆପଣ ହେଉଛନ୍ତି ଆକାଶପରି ବିସ୍ତୃତ ସେହି ଜ୍ୟୋତିରୂପ ପରଂବ୍ରହ୍ମ ।।୬୦।। ଭଗବାନ, ଆପଣଙ୍କ ବହୁରୂପ ମାୟାଦ୍ୱାରା ଆପଣ ଏ ଜଗତକୁ ସୃଷ୍ଟି କରନ୍ତି, ପାଳନ କରନ୍ତି ଏବଂ ବିନାଶ

କରନ୍ତି । ଏଥିରେ ଆପଣଙ୍କର କୌଣସି ବିକାର ଦେଖାଯାଏ ନାହିଁ । ମାୟାଯୋଗୁଁ ଅନ୍ୟମାନଙ୍କ ମଧ୍ୟରେ ଯେଉଁ ଭେଦବୁଦ୍ଧି ଜାତ ହୁଏ, ସେଥିରେ ଏହି ଅସତ୍ ସଂସାର ସଦ୍‌ବସ୍ତୁ ବୋଲି ମନେ ହୁଏ । କିନ୍ତୁ ଆପଣଙ୍କ ଉପରେ ଏହି ମାୟାର କୌଣସି ପ୍ରଭାବ ପଡ଼େ ନାହିଁ । ତେଣୁ ଆପଣଙ୍କୁ ଆମେ ପରମ ସ୍ୱତନ୍ତ୍ର ବୋଲି ମନେ କରୁ ॥୬୧॥ ଆପଣ ଭେଦରହିତ ବ୍ରହ୍ମ ହେଲେ ମଧ୍ୟ ଆପଣଙ୍କର ସାକାର ସ୍ୱରୂପକୁ ଆରାଧନା କରିବାପାଇଁ ପଞ୍ଚଭୂତ, ଇନ୍ଦ୍ରିୟ ଓ ଅନ୍ତଃକରଣର ନିୟନ୍ତାରୂପେ ଆପଣଙ୍କୁ ଉପଲକ୍ଷ୍ୟ ଦିଆଯାଏ । ଯେଉଁ ଶ୍ରଦ୍ଧାଯୁକ୍ତ କର୍ମଯୋଗୀମାନେ ସିଦ୍ଧିଲାଭପାଇଁ ଆପଣଙ୍କୁ ବିଭିନ୍ନ କ୍ରିୟାକଳାପଦ୍ୱାରା ସାକାର ସ୍ୱରୂପରେ ଅର୍ଚ୍ଚନା କରନ୍ତି, ସେମାନେ ବେଦ ଓ ମନ୍ତ୍ରର ଯଥାର୍ଥ ମର୍ମ ବୁଝିଛନ୍ତି ॥୬୨॥ ପ୍ରଭୁ , ଆପଣ ସେହି ଏକ ଆଦିପୁରୁଷ । ଆପଣ ଲୀଳାପାଇଁ ଆପଣଙ୍କର ଆତ୍ମାରୂପକ ସୁପ୍ତ ଶକ୍ତିକୁ ଜାଗରିତ କରି ସତ୍ତ୍ୱ ରଜ ଓ ତମ ଗୁଣ ଭେଦରେ ଅହଙ୍କାର, ଆକାଶ, ମରୁତ, ଅଗ୍ନି, ଜଳ, ପୃଥିବୀ, ଦେବତା, ଋଷି ଓ ପ୍ରାଣୀମାନଙ୍କ ସମେତ ଏହି ଜଗତକୁ ସୃଷ୍ଟି କଲେ ॥୬୩॥ ପୁଣି ଆପଣଙ୍କର ଏହି ମାୟାରୂପକ ଶକ୍ତିଦ୍ୱାରା ଆପଣ ଚାରି ପ୍ରକାର ପ୍ରାଣୀ (ଜରାୟୁଜ, ଅଣ୍ଡଜ, ସ୍ୱେଦଜ ଏବଂ ଉଦ୍‌ଭିଜ୍ଜ)ଙ୍କୁ ସୃଷ୍ଟିକରି ନିଜର ଅଂଶସ୍ୱରୂପ ସେମାନଙ୍କ ମଧ୍ୟରେ ପ୍ରବେଶ କରିଛନ୍ତି । ମହୁମାଛି ଯେପରି ମହୁ ସଂଗ୍ରହ କରି ତାହାର ସ୍ୱାଦକୁ ଗ୍ରହଣ କରେ, ସେହିପରି ସେମାନଙ୍କ ଶରୀରରେ ଅଂଶରୂପେ ରହି ଆପଣ ଇନ୍ଦ୍ରିୟଦ୍ୱାରା ବିଷୟଭୋଗ କରନ୍ତି । ଆପଣଙ୍କର ଏହି ଅଂଶକୁ ସେମାନଙ୍କ (ପୁର) ମଧ୍ୟରେ ଶୟନ କରିଥିବାଯୋଗୁଁ ପୁରୁଷ ବା ଜୀବ ବୋଲି କୁହାଯାଏ ॥୬୪॥ ଅସହ୍ୟ ବେଗରେ ବାୟୁ ଯେପରି ମେଘମାନଙ୍କୁ ଟାଣିନିଏ, ଆପଣ ସେହିପରି କାଳରୂପକ ଯାନ(ପ୍ରଳୟକାଳରେ) ହୋଇ ଅଲକ୍ଷ୍ୟ ପ୍ରଚଣ୍ଡ ବେଗରେ ପ୍ରାଣୀମାନଙ୍କୁ ଟାଣିନେଇ ସଂହାର କରନ୍ତି ॥୬୫॥ ମୋହମତ୍ତ ଜୀବ ବିଷୟଲାଳସାରେ ଅତିଶୟ ଲୋଭଗ୍ରସ୍ତ ହୋଇ ବିଭିନ୍ନ କାର୍ଯ୍ୟ କରେ । କିନ୍ତୁ କ୍ଷୁଧିତ ସର୍ପ ଯେପରି ତାର ଲେଲିହାନ ଜିହ୍ୱାଦ୍ୱାରା ମୂଷିକକୁ ଗ୍ରାସ କରେ, ଆପଣ ସଜାଗ ରହି ସହସା ସେହିପରି କାଳରୂପରେ ପ୍ରାଣୀମାନଙ୍କୁ ସଂହାର କରନ୍ତି ॥୬୬॥ ଆପଣଙ୍କୁ ଅବମାନନା କଲେ ସାରା ଜୀବନ ବ୍ୟର୍ଥ ହୋଇଯିବ -ଏହା ଜାଣି କେଉଁ ବିଜ୍ଞ ବ୍ୟକ୍ତି ଆପଣଙ୍କର ପାଦପଦ୍ମକୁ ଛାଡ଼ିପାରିବ ? ଆମ୍ଭମାନଙ୍କର ଗୁରୁ ବ୍ରହ୍ମା ମଧ୍ୟ ଚତୁର୍ଦ୍ଦଶ ମନୁଙ୍କ ସହିତ କାଳର ଆଶଙ୍କାରେ ଆପଣଙ୍କ ପଦ୍ମପାଦକୁ ଅର୍ଚ୍ଚନା କରନ୍ତି ॥୬୭॥ ହେ ବ୍ରହ୍ମନ୍, ହେ ପରମାତ୍ମା, ରୁଦ୍ରରୂପ କାଳ ଭୟରେ ସାରା ବିଶ୍ୱ ଆକୁଳିତ । ତେଣୁ ଏହା ଜାଣିଥିବା ବିଜ୍ଞ ଲୋକଙ୍କ ପକ୍ଷରେ ଆପଣ ହିଁ ଏକମାତ୍ର ଗତି; ସମସ୍ତପ୍ରକାର ଭୟଶୂନ୍ୟ ଆଶ୍ରୟସ୍ଥଳ ॥୬୮॥

ମହାଦେବ କହିଲେ, ରାଜପୁତ୍ରଗଣ, ତୁମେମାନେ ବିଶୁଦ୍ଧ ଚିତ୍ତରେ ଏହା ଜପ କର । ନିଜର ସମସ୍ତ ଅଭିଳାଷ ଭଗବାନଙ୍କ ଠାରେ ଅର୍ପଣ କରି ସ୍ୱଧର୍ମ ପାଳନ କର । ତୁମର ମଙ୍ଗଳ ହେବ ॥୬୯॥ ନିଜର ଅନ୍ତର-ମଧ୍ୟରେ ରହିଥିବା ସେହି ସର୍ବାନ୍ତର୍ଯାମୀ ପରମାତ୍ମା ହରିଙ୍କୁ ସର୍ବଦା ତୁମେ ଧ୍ୟାନ, ଭଜନ ଓ ପୂଜା କର ॥୭୦॥ ଯୋଗାଦେଶନାମକ ଏହି ସ୍ତୋତ୍ର ତୁମମାନଙ୍କୁ ମୁଁ ଶୁଣାଇଲି । ମୁନିବ୍ରତ ଧାରଣ କରି ସ୍ଥିରଚିତ୍ତରେ ଶ୍ରଦ୍ଧାର ସହିତ ଏହାର ଜପକୁ ଅଭ୍ୟାସ କର ॥୭୧॥ ପୂର୍ବକାଳରେ ସୃଷ୍ଟିର ବିସ୍ତାର କରିବାପାଇଁ ପ୍ରଜାପତିମାନଙ୍କ ଈଶ୍ୱର ବ୍ରହ୍ମା ମୋତେ ଏବଂ ତାଙ୍କର ଭୃଗୁପ୍ରମୁଖ ପୁତ୍ରମାନଙ୍କୁ ଏହି ସ୍ତୋତ୍ର ଶୁଣାଇଥିଲେ । କାରଣ ସେମାନେ ମଧ୍ୟ ସୃଷ୍ଟିବିସ୍ତାର କରିବାପାଇଁ ଇଚ୍ଛୁକ ଥିଲେ ॥୭୨॥ ଆମେ ପ୍ରଜାପତିଗଣ ପ୍ରଜାସୃଷ୍ଟିପାଇଁ ଆଦିଷ୍ଟ ହେଲାବେଳେ, ଏହି ସ୍ତୋତ୍ରଦ୍ୱାରା ଆମର ଅଜ୍ଞାନ ରୂପ ଅନ୍ଧକାର ଦୂର ହୋଇଯାଇଥିଲା ଏବଂ ଆମେ ନାନାବିଧ ପ୍ରଜା ସୃଷ୍ଟି କରିଥିଲୁ ॥୭୩॥ ଯେଉଁ ଭଗବତ୍‌ପରାୟଣ ବ୍ୟକ୍ତି ଏହାକୁ ଏକାଗ୍ର ଚିତ୍ତରେ ପ୍ରତିଦିନ ଜପ କରିବ, ତା'ର ସଙ୍ଗେ ସଙ୍ଗେ ମଙ୍ଗଳ ହେବ ॥୭୪॥ ଏହି ସଂସାରରେ ନିଜର କଲ୍ୟାଣପାଇଁ ଥିବା ବିଭିନ୍ନ ସାଧନାମଧ୍ୟରେ ଜ୍ଞାନକୁ ପରମ ସାଧନ ରୂପେ ଗ୍ରହଣ କରାଯାଇଚି । ଏହି ଜ୍ଞାନ ନୌକାରେ ଆରୋହଣ କରି ସହଜରେ ବ୍ୟକ୍ତି ସଂସାର--ସାଗର ପାରହୋଇଯିବ ॥୭୫॥

ଶ୍ରୀହରିଙ୍କ ଆରାଧନା ଦୁଃସାଧ୍ୟ ହେଲେ ମଧ୍ୟ ମୋ ଦ୍ୱାରା କଥିତ ଭଗବାନଙ୍କର ଏହି ସ୍ତୋତ୍ରକୁ ଯେ ଶ୍ରଦ୍ଧାର ସହିତ ପାଠ କରିବ, ସେ ସହଜରେ ତାଙ୍କୁ ଆରାଧନା କରିପାରିବ ।।୭୬।। ଯେଉଁ ପୁରୁଷ ସ୍ଥିର ହୋଇ ମୋ କଥିତ ଶ୍ରୀହରିଙ୍କର ଏହି ସ୍ତୋତ୍ରକୁ ଗାନ କରିବ, ସେ ଭଗବାନଙ୍କୁ ପ୍ରସନ୍ନ କରିବାଦ୍ୱାରା ଯାହା ଇଚ୍ଛା କରିବ, ତାହା ପାଇ ପାରିବ ।।୭୭।। ଯେଉଁ ବ୍ୟକ୍ତି ସକାଳୁ ଶଯ୍ୟାରୁ ଉଠି ଶ୍ରଦ୍ଧାର ସହିତ କୃତାଞ୍ଜଳି ହୋଇ ଏହି ସ୍ତୋତ୍ରକୁ ଶୁଣେ ଓ ଶୁଣାଏ ସେ ସମସ୍ତ କର୍ମବନ୍ଧନରୁ ମୁକ୍ତ ହେବ ।।୭୮।। ରାଜକୁମାରଗଣ, ପରମପୁରୁଷ ପରମାତ୍ମାଙ୍କର ଏହି ସ୍ତବ ମୁଁ ତୁମମାନଙ୍କୁ ଶୁଣାଇଲି । ଏହାକୁ ଏକାଗ୍ର ଚିତ୍ତରେ ଜପ କରି ତୁମେମାନେ ଘୋର ତପସ୍ୟାରେ ରତ ହୁଅ । ଶେଷରେ ତୁମେ ତୁମର ଅଭୀଷ୍ଟ ଫଳ ଲାଭ କରିବ ।।୭୯।।

## ପଞ୍ଚବିଂଶ ଅଧ୍ୟାୟ

# ପୁରଞ୍ଜନ ଉପାଖ୍ୟାନ

ମୈତ୍ରେୟ କହିଲେ, ବିଦୁର, ଏହିପରି ଭଗବାନ ଶିବ ପ୍ରଚେତାମାନଙ୍କୁ ଉପଦେଶ ଦେଲେ । ସେମାନେ ତାଙ୍କୁ ଭକ୍ତିଭାବରେ ପୂଜା କଲେ । ଏହାପରେ ସେମାନେ ଦେଖୁଦେଖୁ ଭଗବାନ ଶଙ୍କର ଅନ୍ତର୍ଦ୍ଧାନ ହୋଇଗଲେ ।।୧।। ରୁଦ୍ରଙ୍କ ଦ୍ୱାରା କଥିତ ଭଗବାନଙ୍କର ଏହି ସ୍ତୋତ୍ର ସମସ୍ତ ପ୍ରଚେତା ଜପକରି ଜଳମଧ୍ୟରେ ଅୟୁତବର୍ଷ (ଦଶହଜାର) ପର୍ଯ୍ୟନ୍ତ ତପସ୍ୟା କଲେ ।।୨।। ଏହି ସମୟରେ ରାଜା ପ୍ରାଚୀନବର୍ହି କର୍ମକାଣ୍ଡରେ ବହୁତ ଆସକ୍ତ ହୋଇପଡ଼ିଥିଲେ । ଅଧ୍ୟାତ୍ମତତ୍ତ୍ୱବିଶାରଦ ନାରଦ କୃପାପରବଶ ହୋଇ ତାଙ୍କୁ ଉପଦେଶ ଦେଇ କହିଲେ, ରାଜା ଏହିପରି କର୍ମ କରିବା ଦ୍ୱାରାତୁମର ମଙ୍ଗଳ ହେବ ବୋଲି ତୁମେ ଭାବୁଛ ? ଦୁଃଖହାନି ଓ ସୁଖର ଲାଭରେ ହିଁ ପ୍ରକୃତ ମଙ୍ଗଳ ହୁଏ । କିନ୍ତୁ ଏ ବାଟରେ ତାହା ମିଳେ ନାହିଁ ।।୩-୪।। ରାଜା କହିଲେ, ମହାଭାଗ, ମୋର ବୁଦ୍ଧି କର୍ମରେ ଲିପ୍ତ ହୋଇଯାଇଛି । ତେଣୁ କ'ଣ କରିବା ଦ୍ୱାରା ବିଶୁଦ୍ଧ ଜ୍ଞାନଲାଭ ହେବ ଏବଂ ମୁଁ କର୍ମବନ୍ଧନରୁ ମୁକ୍ତି ପାଇ ପାରିବି, ଆପଣ ତାହା ଉପଦେଶ ଦିଅନ୍ତୁ ।।୫।। କପଟଧର୍ମଯୁକ୍ତ ଗୃହସ୍ଥାଶ୍ରମରେ ରହି ପୁତ୍ର, ଦାରା, ଧନକୁ ହିଁ ମୂଢ଼ ବ୍ୟକ୍ତି ପରମପୁରୁଷାର୍ଥ ବୋଲି ମନେ କରେ ଓ ସଂସାରଚକ୍ରରେ ଘୂରି ବୁଲୁଥାଏ । ମୋକ୍ଷ କ'ଣ ତାହା ଜାଣେ ନାହିଁ ।।୬।। ନାରଦ କହିଲେ, ହେ ରାଜା , ହେ ପ୍ରଜାପତି, ହଜାର ହଜାର ସଂଖ୍ୟାରେ ଯେଉଁ ପଶୁଙ୍କୁ ନିଷ୍ଠୁର ଭାବରେ ତୁମେ ଯଜ୍ଞରେ ବଳି ଦେଇଥିଲ, ସେମାନଙ୍କୁ ଏବେ ଆକାଶରେ ଦେଖ ।।୭-।। ତୁମେ ତାଙ୍କୁ ଯେଉଁ କଷ୍ଟ ଦେଇଛ, ତାହା ସ୍ମରଣ କରି ସେମାନେ କିପରି ପ୍ରତିଶୋଧ ନେବା ଅପେକ୍ଷାରେ ରହିଛନ୍ତି । ମୃତ୍ୟୁପରେ ତୁମେ ଯେବେ ପରଲୋକକୁ ଯିବ ତେବେ ଏ କ୍ରୁଦ୍ଧ ପଶୁମାନେ ସେମାନଙ୍କର ଲୁହାପରି ଶିଙ୍ଗରେ ତୁମକୁ ଖଣ୍ଡଖଣ୍ଡ କରିବେ ।।୮।। ଏବେ ମୁଁ ତୁମକୁ ଏକ ପୁରାତନ ଇତିହାସର କଥା କହୁଛି - ପୁରଞ୍ଜନଙ୍କର ଚରିତ । ତୁମେ ତାହା ଧ୍ୟାନ ଦେଇ ଶୁଣ ।।୯।।

ପୁରଞ୍ଜନ ନାମରେ ଜଣେ ମହାଯଶା ରାଜା ଥିଲେ । ଅବିଜ୍ଞାତ ନାମରେ ତାଙ୍କର ଜଣେ ସଖା ଥିଲେ । ସେ କେତେବେଳେ କ'ଣ କରିବାକୁ ଚାହୁଁଥିଲେ, ତାହା କେହି ଜାଣିପାରୁ ନ ଥିଲେ ।।୧୦।। ରାଜା ପୁରଞ୍ଜନ ସାରା ପୃଥିବୀରେ ନିଜର ରହିବାପାଇଁ ଏକ ସ୍ଥାନ ଖୋଜି ବୁଲିଲେ । କିନ୍ତୁ ତାଙ୍କୁ ଯେତେବେଳେ ଏପରି ଏକ ସ୍ଥାନ ମିଳିଲା ନାହିଁ, ସେତେବେଳେ ତାଙ୍କର ମନ ଉଦାସ ହୋଇଗଲା ।।୧୧।। ଭୋଗଲାଳସୀ ରାଜା ତାଙ୍କର ବହୁବିଧ ଭୋଗଲାଳସାକୁ ଚରିତାର୍ଥ କରିବାପାଇଁ ପୃଥିବୀରେ ବୁଲି ବୁଲି ଯେତେ ନଗରୀ ଦେଖିଲେ, ତା ମଧ୍ୟରୁ ଗୋଟିଏ ହେଲେ ତାଙ୍କର ମନୋନୀତ ହେଲା ନାହିଁ ।।୧୨।। ଏକଦା ହିମାଳୟର ଦକ୍ଷିଣ ପଟ ସାନୁଦେଶରେ ସେ ଏକ ନବଦ୍ୱାରବିଶିଷ୍ଟ ନଗରୀ ଦେଖିଲେ, ଯାହାକି ସମସ୍ତ ସୁଲକ୍ଷଣରେ ପୂର୍ଣ୍ଣ ଥିଲା ।।୧୩।।

ପ୍ରାଚୀର, ଉପବନ, ଅଟ୍ଟାଳିକା, ପରିଖା, ତୋରଣ ଏବଂ ସ୍ୱର୍ଣ୍ଣରୌପ୍ୟ ଓ ଲୌହ ନିର୍ମିତ ଶିଖରଯୁକ୍ତ ସୌଧମାଳାରେ ତାହା ସୁଶୋଭିତ ଥିଲା ॥୧୪॥ ନୀଲମ୍, ସ୍ଫଟିକ, ବୈଦୂର୍ଯ୍ୟ, ମୁକ୍ତା, ମରକତ ଓ ମାଣିକ୍ୟ ଦ୍ୱାରା ରଚିତ ହର୍ମ୍ୟମାନଙ୍କଯୋଗୁଁ ଏହା ଦୀପ୍ତି ଓ ସୌନ୍ଦର୍ଯ୍ୟରେ ପାତାଳପୁରୀର ରାଜଧାନୀ ଭୋଗବତୀର ସମକକ୍ଷ ଥିଲା ॥୧୫॥ ସଭାଗୃହ, ଚତ୍ୱର, ରାଜମାର୍ଗ, ରଙ୍ଗସ୍ଥଳୀ, ବଜାର ଆଦି ସ୍ଥାନ ଏବଂ ଧ୍ୱଜପତାକାଯୁକ୍ତ ପ୍ରବାଳ ବେଦିମାନଙ୍କ ଦ୍ୱାରା ଏହା ଶୋଭା ପାଉଥିଲା ॥୧୬॥ ଏହି ନଗରର ବାହାରେ ଦିବ୍ୟବୃକ୍ଷଲତାପୂର୍ଣ୍ଣ ଏକ ସୁନ୍ଦର ଉପବନ ଥିଲା ଏବଂ ତା'ମଧ୍ୟରେ ଏକ ସରୋବର ଭ୍ରମରମାନଙ୍କ ଗୁଞ୍ଜନ ଓ ପକ୍ଷୀମାନଙ୍କ କୋଳାହଳରେ ପୂର୍ଣ୍ଣ ଥିଲା ॥୧୭॥ ଶାଖାପ୍ରଶାଖାଯୁକ୍ତ ବୃକ୍ଷମାନ ବସନ୍ତ ପବନରେ ଦୋଳାୟିତ ହୋଇ ସରୋବର କୂଳର ଶୋଭା ବଢ଼ାଉଥିଲା । ଶୀତଳ ଝରଣାର ଜଳକଣା ସବୁ ଏହି ପବନରେ ଭାସି ଆସୁଥିଲା ॥୧୮॥ ସେଠାରେ ବନ୍ୟପଶୁମାନେ ହିଂସା କରୁ ନ ଥିବାରୁ ମୁନିବ୍ରତ ପାଳନ କରିବାପରି ଜଣାଯାଉଥିଲା । ମନେ ହେଉଥିଲା ପଥଶ୍ରାନ୍ତ ପଥିକମାନଙ୍କୁ ବିଶ୍ରାମ ଦେବାପାଇଁ ସେହି ଉପବନ ଯେପରି କୋକିଳର କୂଜନଛଳରେ ଆହ୍ୱାନ କରୁଚି ॥୧୯॥

ରାଜା ପୁରଞ୍ଜନ ଦେଖିଲେ ଯେ ସେଠାରେ ଜଣେ ଅତିଶୟ ସୁନ୍ଦରୀ ସ୍ତ୍ରୀ ମନଇଚ୍ଛା ବୁଲୁଚି । ତା'ସହିତ ଦଶ ଜଣ ପରିଚର ଅଛନ୍ତି, ଯେଉଁମାନେ ପ୍ରତ୍ୟେକେ ଶହେ ଶହେ ନାୟିକାଙ୍କର ସ୍ୱାମୀ ॥୨୦॥ ଏହି ଷୋଡ଼ଶବର୍ଷୀୟା କାମିନୀ ଏକ ଉପଯୁକ୍ତ ସ୍ୱାମୀର ଅନୁସରଣରେ ଥିଲା ଏବଂ ଏକ ପଞ୍ଚଫଣାବିଶିଷ୍ଟ ସର୍ପ ତାର ଦ୍ୱାରପାଳ ହୋଇ ସବୁ ଦିଗରୁ ତାକୁ ରକ୍ଷା କରୁଥିଲା ॥୨୧॥ ତା'ର ସୁନ୍ଦର ନାସା, ସୁନ୍ଦର ଦନ୍ତପନ୍ତି, ସୁନ୍ଦର କପୋଳଯୋଗୁଁ ମୁହଁ ଅତିଶୟ ସୁନ୍ଦର ଦେଖାଯାଉଥିଲା । ତାର କାନରେ ସମାନ ଭାବରେ ଗଢ଼ା ହୋଇଥିବା କୁଣ୍ଡଳ ଦୁଇଟି ଝଲସି ଉଠୁଥିଲା ॥୨୨॥ ସ୍ୱର୍ଣ୍ଣବର୍ଣ୍ଣର କାନ୍ତିବିଶିଷ୍ଟ ତା'ର ଅଙ୍ଗରେ ପୀତବସ୍ତ୍ର ଓ ସୁବର୍ଣ୍ଣର ମେଖଳା ଶୋଭା ପାଉଥିଲା । ତାର ମନୋରମ ନୀବିବନ୍ଧ ଓ ଚାଲିଲାବେଳେ ପାଦରେ ନୂପୁରର ନିକ୍ୱଣରୁ ସତେ ସେ ଯେପରି ଏକ ଦେବୀପ୍ରତିମାବୋଲି ମନେ ହେଉଥିଲା ॥୨୩॥ ଗଜଗାମିନୀ କିଶୋରୀ ପ୍ରସ୍ଫୁଟିତ ଯୌବନର ଚିହ୍ନସ୍ୱରୂପ ତାର ଗୋଲ ଗୋଲ, ଘଞ୍ଚ ସ୍ତନଦ୍ୱୟକୁ ଲଜ୍ଜାବଶତଃ ବାରମ୍ବାର ଅଞ୍ଚଳରେ ଘୋଡ଼ାଇ ଦେବାକୁ ଚେଷ୍ଟା କରୁଥିଲା ॥୨୪॥

ପୁରଞ୍ଜନ ତାର ପ୍ରେମପୂର୍ଣ୍ଣ କଟାକ୍ଷ ଓ ଢଳଢଳ ଯୌବନର ରୂପବାଣରେ ବିଦ୍ଧ ହେଲେ । ସଲଜ୍ଜ ସ୍ମିତହାସଯୋଗୁଁ ସେ ଅଧିକ ସୁନ୍ଦର ଦେଖାଯାଉଥିଲା । ରାଜା ତାକୁ ମଧୁର ସ୍ୱରରେ ପଚାରିଲେ, ହେ ପଦ୍ମପତ୍ରବିଶାଳାକ୍ଷି, ତୁମେ କିଏ, କାହାର କନ୍ୟା ! ସତୀ, ତୁମେ ଏଠିକି କିପରି ଆସିଲ ଏବଂ କଣ କରିବାକୁ ଇଚ୍ଛା କରୁଚ ? ହେ ସୁନ୍ଦରୀ, ମୋତେ ସବୁ କଥା ବୁଝାଇ କହ । ତୁମର ଅନୁସରଣ କରୁଥିବା ଏହି ମହାବୀରମାନେ କିଏ ? ଏ ଲଳନାମାନେ କିଏ ? ହେ ସୁନୟନା, ତୁମର ଆଗେ ଆଗେ ଚାଲୁଥିବା ଏହି ସର୍ପ ବା କିଏ ? ତୁମେ କଣ ସାକ୍ଷାତ୍ ଲଜ୍ଜାଦେବୀ, ଭବାନୀ ନା ସରସ୍ୱତୀ ? ମୁନିଙ୍କ ପରି ଏକାନ୍ତରେ ଏହି ବନରେ ବାସ କରି ନିଜ ପତିଙ୍କର ଅନ୍ୱେଷଣ କରୁଚ ? ତୁମେ ତାଙ୍କର ଚରଣସେବା ଇଚ୍ଛା କରୁଚ ? ଏତିକିରେ ତୁମ ପତିଙ୍କର ସମସ୍ତ କାମନା ପୂର୍ଣ୍ଣ ହୋଇ ସାରିଥିବ । ତୁମେ ତା'ହେଲେ କଣ ଲକ୍ଷ୍ମୀଦେବୀ ? ତୁମ ହାତରୁ ଲୀଳାପଦ୍ମଟି ଖସି ଯାଇଚି ? ॥୨୫-୨୮॥ ସୁନ୍ଦରି ! ତୁମେ ଏମାନଙ୍କ ମଧ୍ୟରୁ କେହି ନୁହଁ । କାରଣ ତୁମର ପାଦ ଭୂମିକୁ ସ୍ପର୍ଶ କରୁଚି । ଦେଖ, ମୁଁ ବୀରମାନଙ୍କ ମଧ୍ୟରେ ଶ୍ରେଷ୍ଠ । ତୁମେ ଯଦି ମାନବୀ ହୋଇଥାଅ, ତା'ହେଲେ ଲକ୍ଷ୍ମୀ ଯଜ୍ଞପୁରୁଷ ବିଷ୍ଣୁଙ୍କୁ ବରଣ କରି ବୈକୁଣ୍ଠର ଶୋଭା ବର୍ଦ୍ଧନ କରୁଥିବା ପରି ତୁମେ ମୋତେ ବରଣ କରି ଏହି ନଗରୀକୁ ଅଳଂକୃତ କର ॥୨୯॥ ତୁମ କଟାକ୍ଷର ବାଣରେ ମୋର ମନ ଓ ଇନ୍ଦ୍ରିୟ ବ୍ୟାକୁଳିତ । କାମନାରେ ଭରା ତୁମର ସଲଜ୍ଜ ସ୍ମିତହାସ ଓ ଭ୍ରୂଦ୍ୱୟ ସାହାଯ୍ୟରେ କାମଦେବ ମୋତେ ବହୁତ ବାଧା ଦେଉଛନ୍ତି । ହେ ସୁନ୍ଦରୀ, ମୋତେ ଅନୁଗ୍ରହ କର ॥୩୦॥ ତୁମ ସୁନ୍ଦର ଭ୍ରୂଲତା ଓ ଢଳ ଢଳ ଆଖି ସହିତ ଲମ୍ବି ଆସିଥିବା କୃଷ୍ଣକେଶ ତୁମ ମୁଖମଣ୍ଡଳର ଶୋଭା ବଢ଼ାଇ ଦେଉଚି । ମନ୍ଦହାସିନୀ, ତୁମ ମଧୁର କଥା ମୁଁ ଟିକିଏ ଶୁଣେ । ଲଜ୍ଜାରେ ମୋ ଆଡ଼କୁ ଚାହୁଁନାହିଁ । ମୁହଁ ଟିକିଏ ଉପରକୁ ଉଠାଇଲେ ସିନା ମୁଁ ଦେଖିପାରିବି ॥୩୧॥

ନାରଦ କହିଲେ, ବୀର ପୁରଞ୍ଜନଙ୍କ ପ୍ରତି ମଧ୍ୟ ସେ କନ୍ୟା ମୋହିତ ହୋଇ ଯାଇଥିଲେ । ତେଣୁ ରାଜା ଅଧୀର ଆବେଗରେ ଏହିପରି ଯାଚନା କରନ୍ତେ, ସେ ହସି ହସି ତାଙ୍କୁ ଅଭିନନ୍ଦନ କରି କହିଲେ, ପୁରୁଷଶ୍ରେଷ୍ଠ, ଆମର ମାତା ପିତା କିଏ ଆମେ ଜାଣୁନାହିଁ । ନିଜର ବା ଅନ୍ୟମାନଙ୍କର ନାମ ବା ଗୋତ୍ର ଜାଣୁ ନାହିଁ ॥୩୨-୩୩॥ ବୀର, ଏଠି ଆମେ ଆଜି ଅଛୁ , ଏହାଛଡ଼ା ଅନ୍ୟକିଛି ଆମକୁ ଜଣା ନାହିଁ । ଏହା ମଧ୍ୟ ଆମେ ଜାଣୁନା, ଆମର ରହିବାପାଇଁ ନଗରୀ କିଏ ନିର୍ମାଣ କରିଚି ॥୩୪॥ ମାନବ, ଏହି ପୁରୁଷମାନେ ମୋର ସଖା ଏବଂ ନାରୀମାନେ ମୋର ସହଚରୀ । ମୁଁ ଶୋଇପଡ଼ିଲେ ଏହି ନାଗ ଜାଗ୍ରତ ରହି ପୁରୀକୁ ରକ୍ଷା କରେ ॥୩୫॥ ଅରିନ୍ଦମ, ଆପଣଙ୍କର ମଙ୍ଗଳ ହେଉ । ଆମର ସୌଭାଗ୍ୟ, ଆପଣ ଏଠିକି ଆସିଛନ୍ତି । ଇନ୍ଦ୍ରିୟଭୋଗ କରିବାପାଇଁ ଆପଣ ଇଚ୍ଛା କରୁଛନ୍ତି । ମୁଁ ମୋର ବନ୍ଧୁମାନଙ୍କ ସହିତ ଆପଣଙ୍କର ସମସ୍ତ ଇପ୍ସିତ ଦ୍ରବ୍ୟ ପୂରଣ କରିବି ॥୩୬॥ ଏହି ନବଦ୍ୱାର ପୁରୀରେ ଆପଣ ଅବସ୍ଥାନ କରନ୍ତୁ । ଶହେ ବର୍ଷ ରହି ମୋ'ଦ୍ୱାରା ଉପସ୍ଥାପିତ ସମସ୍ତ କାମ୍ୟବସ୍ତୁ ଉପଭୋଗ କରନ୍ତୁ ॥୩୭॥ ମୁଁ ଆପଣଙ୍କ ବ୍ୟତୀତ ଅନ୍ୟ କାହାରି ସହିତ ରମଣ କରିବି ନାହିଁ । ରତିସୁଖ ଯେଉଁମାନେ ବୁଝନ୍ତି ନାହିଁ, ଭୋଗ୍ୟ ବସ୍ତୁ ଭୋଗ କରନ୍ତି ନାହିଁ, ସେମାନଙ୍କର ପରଲୋକ ଚିନ୍ତା ନ ଥାଏ; କାଲି କଣ ହେବ ସେ ଭାବନା ନ ଥାଏ । ସେପରି ଲୋକମାନେ ପଶୁଙ୍କ ସାଙ୍ଗରେ ସମାନ ॥୩୮॥ ଏହି ସଂସାରରେ ଗୃହସ୍ଥାଶ୍ରମରେ ଧର୍ମ, ଅର୍ଥ, କାମ, ସନ୍ତାନସୁଖ, ମୋକ୍ଷ, ଯଶ ଏବଂ ଦିବ୍ୟ ସ୍ୱର୍ଗଲୋକର ପ୍ରାପ୍ତିସବୁ କିଛି ମିଳିପାରେ । ସଂସାରତ୍ୟାଗୀ ଯତିମାନେ ଏହା କେବେ କଳ୍ପନା କରିପାରିବେ ନାହିଁ ॥୩୯॥ ମହାପୁରୁଷମାନେ କହନ୍ତି ଯେ ଗୃହସ୍ଥାଶ୍ରମ ହେଉଚି ପିତୃ, ଦେବତା, ଋଷି, ମନୁଷ୍ୟ ଓ ସମସ୍ତ ପ୍ରାଣୀଙ୍କର ମଙ୍ଗଳମୟ ଆଶ୍ରୟସ୍ଥଳ ॥୪୦॥ ବୀର, ଆପଣ ବିଖ୍ୟାତ, ବଦାନ୍ୟ ଓ ପ୍ରିୟଦର୍ଶନ । ଏହିପରି ପ୍ରିୟ ବ୍ୟକ୍ତିଙ୍କୁ ଲାଭ କଲେ ମୋ ପରି ସ୍ତ୍ରୀ ଆଉ କେଉଁ ପତିକୁ ବରଣ କରିବ ? ॥୪୧॥ ମହାବାହୁ, ସର୍ପପରି ଗୋଲାକାର ଆପଣଙ୍କର ଭୁଜଯୁଗଳରେ ସ୍ଥାନ ପାଇବା ପାଇଁ ଏ ପୃଥିବୀରେ କେଉଁ ସ୍ତ୍ରୀ ଲୋଭ ନ କରିବ ? ଆପଣ ନିଜର ସଦୟ ସ୍ମିତହାସଯୁକ୍ତ ଦୃଷ୍ଟିରେ ମୋ ପରି ଅନାଥ ଲଳନାମାନଙ୍କର ମାନସିକ ସନ୍ତାପକୁ ଦୂର କରିବା ପାଇଁ ଏହି ପୃଥିବୀରେ ବିଚରଣ କରୁଛନ୍ତି ॥୪୨॥

ନାରଦ କହିଲେ, ରାଜା, ଏହିପରି ସେ ଦୁଇଜଣ ପରସ୍ପରକୁ ସ୍ୱାମୀ ସ୍ତ୍ରୀ ରୂପେ ଗ୍ରହଣ କରି ସେହି ନଗରୀରେ ପ୍ରବେଶ କଲେ ଓ ଶହେ ବର୍ଷ ପର୍ଯ୍ୟନ୍ତ ଦାମ୍ପତ୍ୟ ଜୀବନ ଉପଭୋଗ କଲେ ॥୪୩॥ ସେଠାରେ ଚାରଣମାନେ ରହି ରାଜା ପୁରଞ୍ଜନଙ୍କର କୀର୍ତ୍ତିଗାନ କରୁଥିଲେ । ଗ୍ରୀଷ୍ମକାଳ ଆସିଗଲେ, ବହୁ ଲଳନାଙ୍କଦ୍ୱାରା ପରିବେଷ୍ଟିତ ହୋଇ ସେ ସରୋବର ମଧ୍ୟରେ ଜଳକ୍ରୀଡ଼ା କରୁଥିଲେ ॥୪୪॥ ନଗରୀର ନବଦ୍ୱାର ମଧ୍ୟରୁ ସାତୋଟି ଉପରେ ଓ ଦୁଇଟି ତଳେ ରହିଥିଲା । ସେଠାରେ ଯେ ରାଜା ହେବ ସେ ପୃଥକ୍ ପୃଥକ୍ ଦେଶକୁ ଯିବାପାଇଁ ଏହି ଦ୍ୱାରମାନ ବ୍ୟବହାର କରିବ । ରାଜା, ଏଥିରୁ ପାଞ୍ଚଟି ଦ୍ୱାର ପୂର୍ବକୁ, ଗୋଟିଏ ଦକ୍ଷିଣକୁ, ଗୋଟିଏ ଉତ୍ତର ଦିଗକୁ ଓ ଅନ୍ୟ ଦୁଇଟି ପଶ୍ଚିମକୁ ମୁହଁ କରିଥିଲା । ଏହି ସବୁ ଦ୍ୱାରର ନାମ ବର୍ତ୍ତମାନ ମୁଁ ତୁମକୁ କହୁଛି ॥୪୫-୪୭॥

ଖଦ୍ୟୋତା ଓ ଆବିର୍ମୁଖୀ ନାମକ ଦୁଇଟି ଦ୍ୱାର ପୂର୍ବ ଦିଗକୁ ମୁହଁ କରି ଏକସ୍ଥାନରେ ନିର୍ମିତ ହୋଇଥିଲା । ଏହି ଦ୍ୱାର ବାଟଦେଇ ରାଜା ପୁରଞ୍ଜନ ନିଜର ମିତ୍ର ଦ୍ୟୁମାନ୍‌ଙ୍କ ସହିତ ବିଭ୍ରାଜିତ ନାମକ ଦେଶକୁ ଯାତ୍ରା କରୁଥିଲେ ॥୪୮॥ ସେହି ପୂର୍ବଦିଗକୁ ମୁହଁ କରି ପୁଣି ନଳିନୀ ଓ ନାଳିନୀ ନାମକ ଦୁଇଟି ଦ୍ୱାର ଏକତ୍ର ନିର୍ମିତ ହୋଇଥିଲା । ସେଠାରେ ଅବଧୂତ ନାମକ ମିତ୍ରଙ୍କ ସହିତ ସେ ସୌରଭ ନାମକ ଦେଶକୁ ଯାତ୍ରା କରୁଥିଲେ ॥୪୯॥ ପୂର୍ବଦିଗକୁ ମୁଖ୍ୟା ନାମକ ଯେଉଁ ପଞ୍ଚମ ଦ୍ୱାରଟି ଥିଲା, ସେ ବାଟରେ ରାଜା ରସଜ୍ଞ ଏବଂ ବିପଣଙ୍କ ସହିତ ଯଥାକ୍ରମେ ବହୂଦନ ଓ ଆପଣ ନାମକ ଦେଶକୁ ଯାତାୟାତ କରୁଥିଲେ । ରାଜା ! ନଗରର ଦକ୍ଷିଣ ଦିଗରେ ପିତୃହୂ ନାମକ ଯେଉଁ ଦ୍ୱାର ଥିଲା, ସେ ବାଟରେ ରାଜା ପୁରଞ୍ଜନ ଶ୍ରୁତଧରଙ୍କ ସହିତ

ଦକ୍ଷିଣପଞ୍ଚାଳ ଦେଶକୁ ଯାଉଥିଲେ ॥୫୦॥ ଉତ୍ତର ଦିଗରେ ଦେବହୂ ନାମକ ଯେଉଁ ଦ୍ୱାର ଥିଲା ସେ ବାଟରେ ଶ୍ରୁତଧରଙ୍କ ସହିତ ସେ ଉତ୍ତରପାଞ୍ଚାଳ ଦେଶକୁ ଯାତ୍ରା କରୁଥିଲେ ॥୫୧॥ ପଶ୍ଚିମ ଦିଗରେ ଆସୁରୀ ନାମକ ଦ୍ୱାର ଥିଲା । ସେ ବାଟରେ ରାଜା ଦୁର୍ମଦଙ୍କ ସହିତ ଗ୍ରାମକ ନାମକ ଦେଶକୁ ଯାତ୍ରା କରୁଥିଲେ ॥୫୨॥ ସେହିପରି ନିର୍ଋତି ନାମକ ପଶ୍ଚିମ ଦିଗରେ ଥିବା ଅନ୍ୟ ଦ୍ୱାରଯୋଗେ ସେ ଲୁବ୍ଧକଙ୍କ ସହିତ ବୈଶସ ନାମକ ଦେଶକୁ ଯାଉଥିଲେ ॥୫୩॥ ନଗରବାସୀଙ୍କ ମଧ୍ୟରେ ନିର୍ବାକ ଓ ପେଶସ୍କୃତ୍ ନାମକ ଦୁଇ ଜଣ ଅନ୍ଧ ନାଗରିକ ଥିଲେ । ପୁରଞ୍ଜନ ଆଖିଥିବା ନାଗରିକମାନଙ୍କର ରାଜା ହେଲେ ମଧ୍ୟ ଏହି ଦୁଇ ଜଣଙ୍କର ସହାୟତାରେ ଯେଉଁଆଡ଼େ ଯିବାର କଥା ଯାଉଥିଲେ ଏବଂ ଯାହା କରିବାର କଥା କରୁଥିଲେ ॥୫୪॥

ରାଜା ନିଜର ମୁଖ୍ୟ ସେବକ ବିଷୂଚୀନଙ୍କ ସହିତ ଅନ୍ତଃପୁରକୁ ଗଲେ ନିଜର ସ୍ତ୍ରୀ ପୁତ୍ରଙ୍କ ସମ୍ପର୍କ ଯୋଗୁଁ ତାଙ୍କର ମୋହ, ସନ୍ତୋଷ ଓ ଆନନ୍ଦ ଜାତ ହେଉଥିଲା ॥୫୫॥ ଏହିପରି ବିଭିନ୍ନ କାର୍ଯ୍ୟରେ ଲାଗିଥିବା କାମାସକ୍ତ ରାଜା ମୂଢ଼ବୁଦ୍ଧି ଯୋଗୁ ପ୍ରତାରିତ ହେଉଥିଲେ । ରାଣୀ ଯାହା ଯାହା କହୁଥିଲେ, ସେ ତାହା ସବୁ କରୁଥିଲେ ॥୫୬॥ ସ୍ତ୍ରୀ ମଦ୍ୟପାନ କଲେ ଏ ମଦ୍ୟପାନ କରି ଉନ୍ମତ୍ତ ହେଉଥିଲେ । ସେ ଖାଇ ବସିବା ବେଳେ, ଏ ଖାଉଥିଲେ । ସେ କୌଣସି ବସ୍ତୁକୁ ଚୋବାଉଥିଲେ, ଏ ମଧ୍ୟ ତାକୁ ଚୋବାଉଥିଲେ । ଏହିପରି ସେ ଗାନ କରୁଥିଲା ବେଳେ ଏ ଗାନ କରୁଥିଲେ; କାନ୍ଦିଲାବେଳେ କାନ୍ଦୁଥିଲେ; ହସିଲାବେଳେ ହସୁଥିଲେ; କିଛି କହିବାବେଳେ କହିବାକୁ ଲାଗୁଥିଲେ ॥୫୭-୫୮॥ ସେ ଧାଇଁଲାବେଳେ ଏ ଧାଇଁ ଯାଉଥିଲେ । ସେ ଠିଆହେଲାବେଳେ ଏ ଠିଆ ହୋଇପଡୁଥିଲେ । ସେ ଶୋଇଲାବେଳେ ଏ ତାଙ୍କ ସହିତ ଶୋଇ ଯାଉଥିଲେ ଏବଂ ବସିଲା ବେଳେ ମଧ୍ୟ ବସିଯାଉଥିଲେ ॥୫୯॥ ସେ କିଛି ଶୁଣିଲା ବେଳେ ଏ ମଧ୍ୟ ଶୁଣୁଥିଲେ; ଦେଖିଲା ବେଳେ ଦେଖୁଥିଲେ; ଶୁଙ୍ଘିଲାବେଳେ ଶୁଙ୍ଘୁଥିଲେ ଏବଂ କୌଣସି ବସ୍ତୁକୁ ସେ ଛୁଇଁଲାବେଳେ ଏ ମଧ୍ୟ ଛୁଉଁଥିଲେ ॥୬୦॥ କେବେ କେବେ ତାଙ୍କର ସ୍ତ୍ରୀ ଶୋକ କରୁଥିଲା ବେଳେ ରାଜା ଅତିଶୟ ଦୀନ ଭାବରେ ଶୋକ କରୁଥିଲେ ଏବଂ ତାଙ୍କର ଆନନ୍ଦ ହେଲେ ଏ ମଧ୍ୟ ଆନନ୍ଦିତ ହେଉଥିଲେ । ତାଙ୍କର ସନ୍ତୋଷରେ ଯାଙ୍କର ସନ୍ତୋଷ ହେଉଥିଲା ॥୬୧॥ ଏହିପରି ନିଜର ପ୍ରିୟ ରାଣୀଙ୍କଦ୍ୱାରା ବଶୀଭୂତ ହୋଇ ରାଜା ତାଙ୍କର ହିତାହିତ ଜ୍ଞାନ ହରାଇଲେ । ଇଚ୍ଛା ନଥିଲେ ମଧ୍ୟ ଗୃହପାଳିତ ମୂର୍ଖ ବାନର ପରି ସେ ନିଜର ସ୍ତ୍ରୀଙ୍କୁ ଅନୁକରଣ କରିବାକୁ ଲାଗିଲେ ॥୬୨॥

## ଷଡ୍‌ବିଂଶ ଅଧ୍ୟାୟ

# ପୁରଞ୍ଜନଙ୍କ ରାଣୀଙ୍କର କୋପ

ନାରଦ କହିଲେ, ଦିନେ ଧନୁର୍ଦ୍ଧର ରାଜା ପୁରଞ୍ଜନ ରଥରେ ବସି ପଞ୍ଚପ୍ରସ୍ଥ ନାମକ ବନକୁ ମୃଗୟା କରିବାକୁ ଗଲେ । ସେହି ଦ୍ରୁତଗାମୀ ରଥରେ ପାଞ୍ଚୋଟି ଘୋଡ଼ା ଯୋଚା ହୋଇଥିଲେ । ଏହି ରଥରେ ଦୁଇଟି ଈଷ, ଦୁଇଟି ଚକ, ଗୋଟିଏ ଅଖ, ତିନୋଟି ପତାକା, ତିନୋଟି ଧ୍ୱଜାଦଣ୍ଡ, ପାଞ୍ଚୋଟି ଆୟୁଧ ଓ ସାତଟି ଆବରଣ ଥିଲା । ପାଞ୍ଚ ପ୍ରକାର ଗତିରେ ଏ ରଥ ଚାଲୁଥିଲା । ସୁବର୍ଣ୍ଣର ସାଜସଜ୍ଜାରେ ରଥ ସଜ୍ଜିତ ହୋଇଥିଲା । ରାଜା ନିଜର ବିଶାଳ ଧନୁ, ଅକ୍ଷୟ ତୂଣୀର ଓ ସୁବର୍ଣ୍ଣର କବଚ ଧାରଣ କରିଥିଲେ ଏବଂ ତାଙ୍କ ସହିତ ଏଗାର ଜଣ ସେନାପତି ଥିଲେ ॥୧-୩॥ ରାଜା ରାଣୀଙ୍କୁ କେତେବେଳେ ଛାଡ଼ି ପାରୁନଥିଲେ । କିନ୍ତୁ ଏଥର ମୃଗୟାର ଆସକ୍ତି ଯୋଗୁ ସେ ରାଣୀଙ୍କୁ ଛାଡ଼ିଦେଇ ଧନୁଶର ଧାରଣ ପୂର୍ବକ ପ୍ରମତ୍ତଭାବରେ

ବିଚରଣ କରିବାକୁ ଲାଗିଲେ । ଆସୁରୀ ବୃତ୍ତିର ବଶବର୍ତ୍ତୀ ହୋଇ ଭୟଙ୍କର ନିଷ୍ଠୁରତାର ସହିତ ତୀକ୍ଷ୍ଣ ବାଣାଘାତରେ ସେ ବହୁ ନିରୀହ ବନ୍ୟ ପଶୁଙ୍କୁ ବଧ କରିବାକୁ ଲାଗିଲେ ॥୪-୫॥ ମାଂସପ୍ରତି ଆସକ୍ତି ଜନ୍ମିଲେ ଜଣେ ରାଜା କେବଳ ଶାସ୍ତ୍ରାନୁମୋଦିତ ଶିକାର ପାଇଁ ବଣକୁ ଯାଇ ସେହି ପଶୁମାନଙ୍କୁ ମାରି ପାରିବ, ଯାହାଙ୍କୁ ଭକ୍ଷଣ ପାଇଁ ନିଷିଦ୍ଧ କରାଯାଇ ନାହିଁ । ଅନ୍ୟଥା ପଶୁହିଂସା ନିନ୍ଦନୀୟ ॥୬॥ ରାଜେନ୍ଦ୍ର, ଯେଉଁ ବିଜ୍ଞ ବ୍ୟକ୍ତି ଏହିପରି ଶାସ୍ତ୍ରସଙ୍ଗତ କାର୍ଯ୍ୟ କରେ ତା'ର ଏହି ଜ୍ଞାନଯୋଗୁଁ ସେ କର୍ମରେ ଲିପ୍ତ ହୁଏ ନାହିଁ ॥୭॥ ନଚେତ୍ ଅଭିମାନୀ ବ୍ୟକ୍ତି ଏହି ନିୟମକୁ ଲଙ୍ଘନ କରି କର୍ମବନ୍ଧନରେ ବାନ୍ଧି ହୋଇଯାଏ ଏବଂ ପ୍ରଜ୍ଞା ନଷ୍ଟ ହେବାରୁ ସଂସାରଚକ୍ରରେ ପଡ଼ି ତା'ର ଅଧୋଗତି ହୁଏ ॥୮॥ ପୁରଞ୍ଜନଙ୍କର ପକ୍ଷଯୁକ୍ତ ବିଭିନ୍ନପ୍ରକାର ବାଣଦ୍ୱାରା ଛିନ୍ନଭିନ୍ନ ହୋଇ ବନ୍ୟଜୀବମାନେ ଅତି କଷ୍ଟରେ ପ୍ରାଣ ହରାଇଲେ । ତାଙ୍କର ସେହି ନିଷ୍ଠୁର ଜୀବସଂହାରକୁ ଦେଖି ଦୟାର୍ଦ୍ର ବ୍ୟକ୍ତିମାନେ ବ୍ୟଥିତ ହେବାକୁ ଲାଗିଲେ ॥୯॥ ଏହିପରି ଠେକୁଆ, ବାର୍ହା, ଅରଣା ମଇଁଷି, ଗୟଳ, କୃଷ୍ଣସାର, ଝିଙ୍କ ଆଦି ବହୁପ୍ରକାର ରକ୍ଷଣଯୋଗ୍ୟ ପଶୁଙ୍କୁ ବଧ କରି କରି ରାଜା ପୁରଞ୍ଜନ ଥକିଗଲେ ॥୧୦॥

କ୍ଷୁଧା, ତୃଷାରେ ପୀଡ଼ିତ ରାଜା ଶିକାରରୁ ଘରକୁ ଫେରି ଆସି ସ୍ନାନ ଆହାରାଦି ଶେଷ କରି ବିଶ୍ରାମ କଲେ ଏବଂ ଶ୍ରମକଷ୍ଟ ଦୂର ହେବା ପରେ ସୁବର୍ଣ୍ଣ ଦ୍ରବ୍ୟ ଓ ଚନ୍ଦନାଦି ଲେପନ କରି, ମାଳା ଓ ଅଳଙ୍କାରାଦି ପିନ୍ଧି ପ୍ରିୟ ରାଣୀଙ୍କ ପାଖକୁ ଯିବା ପାଇଁ ମନସ୍ଥ କଲେ ॥୧୧-୧୨॥ ସେ ଅତିଶୟ ତୃପ୍ତ ଓ ପ୍ରଫୁଲ୍ଲ ଦେଖାଯାଉଥିଲେ । କନ୍ଦର୍ପରେ ଘାରି ହୋଇ ସେ ନିଜର ସୁନ୍ଦରୀ ଭାର୍ଯ୍ୟାଙ୍କୁ ଖୋଜିବାକୁ ଲାଗିଲେ । କିନ୍ତୁ ତାଙ୍କର ଗୃହିଣୀଙ୍କୁ ସେ କେଉଁଠାରେ ଦେଖିବାକୁ ପାଇଲେ ନାହିଁ ॥୧୩॥ ବିମର୍ଷ ହୋଇ ସେ ଅନ୍ତଃପୁରର ସ୍ତ୍ରୀମାନଙ୍କୁ ପଚାରିଲେ, ସୁନ୍ଦରୀମାନେ, ତୁମର ସ୍ୱାମୀମାନଙ୍କ ସହିତ ତୁମେ ସବୁ କୁଶଳରେ ଅଛ ତ ? ପୂର୍ବପରି ମୋତେ ଏହି ସବୁ ଗୃହସମ୍ପଦ ସୁଖ ଲାଗୁ ନାହିଁ । ଯଦି ଗୃହରେ ମା' ନ ଥାଏ, କି ପତିବ୍ରତା ସ୍ତ୍ରୀ ନ ଥାଏ, ତେବେ ଚକ ନଥିବା ରଥପରି ସେ ଘର ମୂଲ୍ୟହୀନ ହୋଇଯାଏ । କେଉଁ ବିଜ୍ଞବ୍ୟକ୍ତି ଦୀନହୀନ ଭାବରେ ସେ ଗୃହରେ ରହିବାକୁ ଇଚ୍ଛା କରିବ ?॥୧୪-୧୫॥ ପ୍ରଜ୍ଞାର ପ୍ରଦୀପ ଜାଳି ବ୍ୟସନରୂପକ ସମୁଦ୍ରରେ ବୁଡ଼ିଗଲାବେଳେ ମୋତେ ଯେ ପଦେ ପଦେ ଉଦ୍ଧାର କରୁଥିଲେ, ସେ ଲଳନା କେଉଁଠି ଅଛନ୍ତି ? ॥୧୬॥ ଅନ୍ତଃପୁରର ଲଳନାମାନେ କହିଲେ, ନରନାଥ, ଆପଣଙ୍କ ପ୍ରିୟାଙ୍କର ଅଭିଳାଷ କ'ଣ ଆମେ ଜାଣି ପାରୁନାହୁଁ । ଶତ୍ରୁହନ୍ତା, ଆପଣ ଦେଖନ୍ତୁ, କିପରି ସେ ବିନା ଶଯ୍ୟାରେ ଭୂଇଁରେ ଶୋଇ ରହିଛନ୍ତି ॥୧୭॥

ନାରଦ କହିଲେ, ପ୍ରାଚୀନବର୍ହି, ସହଜରେ ରାଜା ପୁରଞ୍ଜନଙ୍କର ତ ବିବେକଜ୍ଞାନ ନଷ୍ଟ ହୋଇଯାଇଥିଲା; ଏବେ ସ୍ତ୍ରୀଙ୍କୁ ଅବଧୂତ ଭଳି ଭୂଇଁରେ ଶୋଇରହିଥିବା ଦେଖି ସେ ଅତିଶୟ ବ୍ୟସ୍ତ ହୋଇପଡ଼ିଲେ ॥୧୮॥ ଦୁଃଖିତ ହୃଦୟରେ ସ୍ନେହପୂର୍ଣ୍ଣ ବାକ୍ୟ ଦ୍ୱାରା ସେ ତାଙ୍କୁ ବହୁତ ବୁଝାଇଲେ, କିନ୍ତୁ ପ୍ରେୟସୀଙ୍କର ତାଙ୍କପ୍ରତି ପ୍ରଣୟ-ଭାବର କୌଣସି ଚିହ୍ନ ଦେଖିପାରିଲେ ନାହିଁ ॥୧୯॥ ଅନୁନୟ ବିନୟ କରିବାରେ ରାଜା ତ ଧୁରୀଣ ଥିଲେ । ସେ ଧୀରେ ଧୀରେ ତାଙ୍କୁ ବୁଝାଇବା ପାଇଁ ଚେଷ୍ଟା କଲେ । ପ୍ରଥମେ ରାଣୀଙ୍କର ପାଦଯୁଗଳକୁ ସ୍ପର୍ଶ କରି ତାଙ୍କୁ କୋଳକୁ ଆଣି ସ୍ନେହରେ ବସାଇଲେ । ତା'ପରେ ପ୍ରେମପୂର୍ଣ୍ଣ ସ୍ୱରରେ କହିବାକୁ ଲାଗିଲେ, ସୁନ୍ଦରୀ, ଅପରାଧ କଲେ ମଧ୍ୟ ଯେଉଁ ଭୃତ୍ୟମାନଙ୍କୁ ସ୍ୱାମୀ ନିଜର ବୋଲି ଭାବି ଉଚିତ ଶିକ୍ଷାପାଇଁ ଦଣ୍ଡ ଦିଅନ୍ତି ନାହିଁ, ସେମାନେ ପ୍ରକୃତରେ ଭାଗ୍ୟହୀନ । ଭୃତ୍ୟକୁ ଦଣ୍ଡଦେବା ଭୃତ୍ୟ ପ୍ରତି ପ୍ରଭୁର ଅନୁଗ୍ରହ । କେବଳ ଭୃତ୍ୟ ତା'ର ମୂର୍ଖତାଯୋଗୁ ପ୍ରଭୁର ଏହି ଉପକାରକୁ ବୁଝିପାରେ ନାହିଁ ॥୨୦-୨୨॥ ମନସ୍ୱିନୀ ! ତୁମର ମନୋହର ଦନ୍ତପଙ୍‌କ୍ତି, ସୁନ୍ଦର ଭ୍ରୂଲତା, ଅନୁରାଗପୂର୍ଣ୍ଣ ସ୍ମିତହାସ୍ୟ ଓ ସଲଜ୍ଜ କଟାକ୍ଷ, ନୀଳଭ୍ରମରନିନ୍ଦୀ ଶଙ୍କାକଳୀ ଏବଂ ଉନ୍ନତ ନାସିକାଯୁକ୍ତ ମୁଖମଣ୍ଡଳକୁ ଉଠାଇ ମୋ ଆଡ଼କୁ ଟିକିଏ ଚାହଁ ଏବଂ ପଦେ ମଧୁର କଥା କହ ॥୨୩॥ ବୀରପତ୍ନୀ ! ଯଦି କେହି ତୁମ ପାଖରେ କିଛି ଅପରାଧ କରିଛି, ତେବେ କହ; ଯଦି ସେହି ଅପରାଧୀ ବ୍ରାହ୍ମଣକୁଳର ହୋଇ ନ ଥାଏ, ତା'ହେଲେ ମୁଁ ତାକୁ ସଙ୍ଗେ ସଙ୍ଗେ

ଦଣ୍ଡିତ କରିବି । ଭଗବାନଙ୍କ ଭକ୍ତ ବ୍ୟତୀତ ତ୍ରିଲୋକରେ କିମ୍ବା ଏହାର ବାହାରେ ଏପରି କୌଣସି ବ୍ୟକ୍ତି ନାହିଁ ଯେ କି ତୁମ ପ୍ରତି ଅପରାଧ କରି ନିର୍ଭୟରେ ବା ଆନନ୍ଦରେ ରହିପାରିବ ॥୨୪॥ ମୁଁ କେବେହେଲେ ତୁମ ମୁହଁରେ ତିଳକ ଲାଗି ନ ଥିବା ଦେଖି ନ ଥିଲି । ତୁମର ମୁଖମଣ୍ଡଳ ମଳିନ, ଉଦାସ, କ୍ରୋଧପୂର୍ଣ୍ଣ, ନିସ୍ତେଜ ବା ସ୍ନେହଶୂନ୍ୟ ହେବାର ଦେଖି ନାହିଁ । ତୁମର ସୁଗଠିତ ସ୍ତନଯୁଗଳ ଶୋକାଶ୍ରୁରେ ସିକ୍ତ ହେବା କିମ୍ବା ତୁମର ବିମ୍ବାଧର କୁଙ୍କୁମରେ ରଞ୍ଜିତ ନ ହେବା ଦେଖି ନାହିଁ ॥୨୫॥ ସୁନ୍ଦରି ! ମୃଗୟାଲାଳସାରେ ଆତୁର ହୋଇ ମୁଁ ଏକାକୀ ଚାଲି ଯାଇଥିଲି, ମୁଁ ତୁମ ପାଖରେ ଅପରାଧ କରିଛି । ବର୍ତ୍ତମାନ କାମାବେଗରେ ମୋର ଧୈର୍ଯ୍ୟଚ୍ୟୁତି ଘଟିଲାଣି । କେଉଁ କାନ୍ତା ନିଜର ଶରଣାଗତ କାନ୍ତକୁ ଏପରି ଅବସ୍ଥାରେ ଗ୍ରହଣ ନକରେ ? ହେ ସୁନ୍ଦରି ! ମୁଁ ତୁମର ସୁହୃଦ୍, ମୋ ପ୍ରତି ପ୍ରସନ୍ନ ହୁଅ ॥୨୬॥

## ସପ୍ତବିଂଶ ଅଧ୍ୟାୟ

## ଚଣ୍ଡବେଗ ଓ କାଳକନ୍ୟା

ନାରଦ କହିଲେ, ମହାରାଜ, ଏହିପରି ପୁରଞ୍ଜନଙ୍କର ରାଣୀ ରାଜାଙ୍କୁ ସମ୍ପୂର୍ଣ୍ଣ ଭାବରେ ନିଜର ବଶକୁ ଆଣି ନାନା ବିଳାସକଳାରେ ସ୍ୱାମୀଙ୍କ ମନକୁ ଭୁଲାଇ ତାଙ୍କ ସହିତ ରମଣ କରିବାକୁ ଲାଗିଲେ ॥୧॥ ସୁନ୍ଦରୀ ରାଜମହିଷୀ ଭଲ ଭାବରେ ସ୍ନାନକରି ବସ୍ତ୍ରଅଳଙ୍କାରାଦି ପରିଧାନପୂର୍ବକ ହୃଷ୍ଟ ଚିତ୍ତରେ ରାଜାଙ୍କ ପାଖରେ ଉପସ୍ଥିତ ହେଲେ ଏବଂ ରାଜା ତାଙ୍କୁ ଆଦରରେ ଅଭିନନ୍ଦନ କଲେ ॥୨॥ ରାଣୀ ପୁରଞ୍ଜନୀ ରାଜାଙ୍କୁ ଆଲିଙ୍ଗନ କଲେ ଏବଂ ରାଜା ମଧ୍ୟ ତାଙ୍କୁ ବକ୍ଷସ୍ଥଳରେ ଭିଡ଼ି ଧରିଲେ । ରାଣୀଙ୍କ ସହିତ ଏକାନ୍ତରେ ପ୍ରେମାଳାପ କରି ରାଜା ଏପରି ମୋହିତ ହୋଇଗଲେ ଯେ, ତାଙ୍କର ବିବେକ ଜ୍ଞାନ ରହିଲା ନାହିଁ । ଦିନରାତିର ଭେଦ ବା ଦୁରନ୍ତ କାଳର ଗତିକୁ ସେ ଜାଣି ପାରିଲେ ନାହିଁ ॥୩॥ ମଦମତ୍ତ ରାଜା ରାଣୀଙ୍କର ବାହୁରେ ମୁଣ୍ଡ ରଖି ମହାର୍ଘ ଶଯ୍ୟାରେ ଶୋଇ ରହୁଥିଲେ । ପୁରଞ୍ଜନ ପ୍ରେୟସୀଙ୍କୁ ହିଁ ଜୀବନର ପରମଧର୍ମ ବୋଲି ମନେ କରୁଥିଲେ । ତାଙ୍କୁ ଆତ୍ମାପରମାତ୍ମା କିଛି ଦେଖାଗଲା ନାହିଁ ॥୪॥ ରାଜେନ୍ଦ୍ର ! ଏହିପରି ରମଣୀର ପ୍ରେମପାଶରେ ପଡ଼ି କାମାସକ୍ତ ରାଜାଙ୍କର ନବଯୌବନ କ୍ଷଣାର୍ଦ୍ଧ ପରି ଚାଲିଗଲା । ପୁରଞ୍ଜନୀଙ୍କ ଗର୍ଭରେ ପୁରଞ୍ଜନଙ୍କର ଏଗାରଶହ ପୁତ୍ର ଏବଂ ଏକଶହ ଦଶ କନ୍ୟା ଜାତ ହେଲେ ॥୫-୬॥ ପ୍ରଜାପତି ! ସୁସ୍ୱଭାବ ଓ ଉଦାରତାଗୁଣରେ ପୁରଞ୍ଜନଙ୍କର ଏହି କନ୍ୟାମାନେ ପିତାମାତାଙ୍କର ଯଶବୃଦ୍ଧି କଲେ । ଏହିପରି ରାଜାଙ୍କର ଦୀର୍ଘ ଆୟୁଷର ଅଧେ ସମୟ ଅତିବାହିତ ହୋଇଗଲା ॥୭॥ ପାଞ୍ଚାଳରାଜ ପୁରଞ୍ଜନ ପିତୃବଂଶର ବୃଦ୍ଧିପାଇଁ ପୁତ୍ରମାନଙ୍କୁ ଉପଯୁକ୍ତ ବଧୂମାନଙ୍କ ସହିତ ଏବଂ କନ୍ୟାମାନଙ୍କୁ ଉପଯୁକ୍ତ ବରମାନଙ୍କ ସହିତ ବିବାହ କରାଇଲେ ॥୮॥ ପୁତ୍ରମାନଙ୍କ ମଧ୍ୟରୁ ପ୍ରତ୍ୟେକଙ୍କର ଶହେ ଶହେ ପୁତ୍ର ଜାତ ହେଲେ । ଏମାନଙ୍କର ବଂଶବୃଦ୍ଧି ଫଳରେ ସାରା ପାଞ୍ଚାଳ ଦେଶରେ ପୁରଞ୍ଜନଙ୍କର ବଂଶଧରମାନେ ବ୍ୟାପିଗଲେ ॥୯॥ ପୁଅ, ନାତି, ଘର, ରାଜକୋଷ, ମନ୍ତ୍ରୀ, କର୍ମଚାରୀ ଆଦି ସମସ୍ତଙ୍କ ପ୍ରତି ରାଜା ପୁରଞ୍ଜନଙ୍କର ପ୍ରଗାଢ଼ ମମତାଯୋଗୁଁ ସେ ବିଷୟବାସନାରେ ବାନ୍ଧି ହୋଇଗଲେ ॥୧୦॥ ରାଜା ! ତୁମପରି କାମନାବାସନାକୁ ଚରିତାର୍ଥ କରିବାପାଇଁ ସେ ପଶୁବଧରୂପ ଭୟଙ୍କର ଯଜ୍ଞମାନଙ୍କରେ ଦୀକ୍ଷା ନେଇଥିଲେ ଏବଂ ତଦ୍ୱାରା ଦେବତା, ପିତୃ ଓ ଭୂତପତିମାନଙ୍କର ଆରାଧନା କରୁଥିଲେ ॥୧୧॥ ଏହିପରି ସେ ସାରା ଜୀବନ ଆତ୍ମାର କଲ୍ୟାଣକାରୀ

କର୍ମମାନଙ୍କପ୍ରତି ଅସାବଧାନ ହୋଇ ନିଜର କୁଟୁମ୍ବପାଳନରେ ହିଁ ଅତିଶୟ ବ୍ୟସ୍ତ ରହୁଥିଲେ । ଶେଷରେ ସ୍ତ୍ରୀ -ଲମ୍ପଟ ପୁରୁଷମାନଙ୍କର ଅପ୍ରିୟ ବୃଦ୍ଧାବସ୍ଥା ଆସି ପହଞ୍ଚିଲା ॥୧୨॥

ଚଣ୍ଡବେଗ ନାମରେ ଜଣେ ଗନ୍ଧର୍ବରାଜ ଥିଲେ । ତାଙ୍କ ଅଧୀନରେ ତିନିଶହ ଷାଠିଏ ଜଣ ମହାବଳବାନ୍ ଗନ୍ଧର୍ବ ରହୁଥିଲେ । ସେତିକି ସଂଖ୍ୟକ ଶ୍ୱେତ ଓ କୃଷ୍ଣ ବର୍ଣ୍ଣର ଗନ୍ଧର୍ବନାରୀଙ୍କ ସହିତ ସେମାନେ ସ୍ତ୍ରୀପୁରୁଷ ଭାବରେ ବସବାସ କରୁଥିଲେ । ଏମାନେ ସମସ୍ତପ୍ରକାର ଭୋଗ ବିଳାସପାଇଁ ଚାରିଆଡ଼େ ବୁଲି ନଗରମାନଙ୍କୁ ଲୁଣ୍ଠନ କରୁଥିଲେ ॥୧୩-୧୪॥ ଯେତେବେଳେ ଚଣ୍ଡବେଗଙ୍କର ଅନୁଚରମାନେ ପୁରଞ୍ଜନଙ୍କର ନଗରୀକୁ ଲୁଣ୍ଠନ କରିବାକୁ ଆରମ୍ଭ କଲେ, ସେତେବେଳେ ପାଞ୍ଚଫଣାବିଶିଷ୍ଟ ସାପ ପ୍ରଜାଗର ତାର ବିରୋଧ କଲା ॥୧୫॥ ପୁରଞ୍ଜନପୁରୀକୁ ରକ୍ଷା କରୁଥିବା ଏହି ମହାବଳୀ ସର୍ପ ଶହେ ବର୍ଷପର୍ଯ୍ୟନ୍ତ ଏକାକୀ ଶହଶହ ଗନ୍ଧର୍ବଙ୍କ ସହିତ ଯୁଦ୍ଧ କରୁଥିଲା ॥୧୬॥ ବହୁବୀରଙ୍କ ସହିତ ଏକାକୀ ଦୀର୍ଘକାଳ ଲଢ଼ିବା ପରେ ପ୍ରଜାଗର କ୍ଷୀଣବଳ ହୋଇଗଲା । ଏହା ଦେଖି ବନ୍ଧୁବାନ୍ଧବ ରାଷ୍ଟ୍ର ଓ ପୁରବାସୀଙ୍କ ସହିତ ରାଜା ପୁରଞ୍ଜନଙ୍କର ଚିନ୍ତା ବଢ଼ିଗଲା ॥୧୭॥ ନିଜର ପାର୍ଷଦମାନେ ପାଞ୍ଚାଳଦେଶରେ ଯେଉଁସବୁ କର ସଂଗ୍ରହ କରୁଥିଲେ ପୁରଞ୍ଜନ ନିଜର ରାଜଧାନୀରେ ରହି ତାହା ସାହାଯ୍ୟରେ ବିଷୟଭୋଗରେ ଲିପ୍ତ ରହୁଥିଲେ । ଦିନେ ଯେ ଏପରି ଭୟ ଉପସ୍ଥିତ ହେବ, ସ୍ତ୍ରୈଣ ରାଜା ତାହା ଭାବିପାରୁନଥିଲେ ॥୧୮॥ ପ୍ରାଚୀନବର୍ହି, ଏହି ସମୟରେ କାଳର ଏକ କନ୍ୟା ବର ଅନ୍ୱେଷଣରେ ତିନିଲୋକରେ ଭ୍ରମଣ କରୁଥିଲା । ମାତ୍ର କାହାରିକୁ ବାଛିପାରୁ ନ ଥିଲା ॥୧୯॥ ତାର ଦୁର୍ଭାଗ୍ୟଯୋଗୁଁ ଏହି କାଳକନ୍ୟା ଜରାକୁ ଦୁର୍ଭଗା ବୋଲି କୁହାଯାଉଥିଲା । ପୂର୍ବେ (ଯଯାତିଙ୍କ ପୁତ୍ର) ରାଜର୍ଷି ପୁରୁ ଥରେ ଏହାକୁ ବରଣ କରିଥିଲେ । ଏଥିରେ ସନ୍ତୁଷ୍ଟ ହୋଇ ସେ ତାଙ୍କୁ ରାଜ୍ୟପ୍ରାପ୍ତିର ବରଦାନ କରିଥିଲା ॥୨୦॥

ଦିନେ ସେ ବ୍ରହ୍ମଲୋକରୁ ପୃଥିବୀକୁ ଆସୁଥିବା ବେଳେ ମୋ ସହିତ ଦେଖା ହୋଇଗଲା । ମୋତେ ଜଣେ ନୈଷ୍ଠିକ ବ୍ରହ୍ମଚାରୀ ବୋଲି ଜାଣି ମଧ୍ୟ କାମାତୁରା ହୋଇ ମୋତେ ବରଣ କରିବାପାଇଁ ଇଚ୍ଛା କଲା ॥୨୧॥ ମୁଁ ତାହା ସ୍ୱୀକାର ନ କରିବାରୁ ମୋତେ ସେ ଅତ୍ୟନ୍ତ ଦୁଃସହ ଶାପ ଦେଇ କହିଲା, ମୁନି, 'ତୁମେ ମୋର ପ୍ରାର୍ଥନା ପ୍ରତି ବିମୁଖ ହୋଇଥିବାଯୋଗୁ ତୁମେ ଏକ ସ୍ଥାନରେ ବେଶୀ ସମୟ ରହିପାରିବ ନାହିଁ' ॥୨୨॥ ତା'ପରେ ମୁଁ ସେହି ଅପୂର୍ଣ୍ଣ-ଅଭିଳାଷା କନ୍ୟାକୁ କହିଲି, ଆଧିବ୍ୟାଧିମାନଙ୍କର ଈଶ୍ୱର ଭୟ ନାମକ ବିଧର୍ମୀକୁ ପତିରୂପେ ବରଣ କର । ମୋ ଉପଦେଶ ଅନୁସାରେ ସେ ସେହି ଯବନେଶ୍ୱର ପାଖକୁ ଯାଇ କହିଲା, ବୀର, ଆପଣ ଯବନ (ବିଧର୍ମୀ)ମାନଙ୍କ ମଧ୍ୟରେ ଶ୍ରେଷ୍ଠ । ମୋର ଇଚ୍ଛା ମୁତାବକ ପତିରୂପେ ମୁଁ ଆପଣଙ୍କୁ ବରଣ କରିବାକୁ ଚାହେ । ଜୀବମାନେ ଆପଣଙ୍କ ନିକଟରେ ଯେଉଁ ପ୍ରାର୍ଥନା କରନ୍ତି, ତାହା କେବେ ବିଫଳ ହୁଏ ନାହିଁ ॥୨୩-୨୪॥ ଲୋକନୀତି ଓ ବେଦଶାସ୍ତ୍ର ଦୃଷ୍ଟିରୁ ଯେଉଁ ବ୍ୟକ୍ତି ଦାତବ୍ୟ ବସ୍ତୁକୁ ଦାନ କରେ ନାହିଁ ଏବଂ ଯେ ଦାନଗ୍ରହଣର ଯୋଗ୍ୟ ହୋଇ ମଧ୍ୟ ତାହା ଗ୍ରହଣ କରେ ନାହିଁ, ସେ ଦୁଇ ଜଣ ହେଉଛନ୍ତି ମୂଢ଼ ଓ ପରେ ଦୁହେଁ ଅନୁତାପ କରନ୍ତି ॥୨୫॥ ଭଦ୍ର, ମୁଁ ତୁମକୁ ଇଚ୍ଛା କରୁଥିବାରୁ ମୋତେ ତୁମେ ଦୟାକରି ଗ୍ରହଣ କର । ଆର୍ତ୍ତମାନଙ୍କ ପ୍ରତି ଅନୁକମ୍ପା ହେଉଚି ପ୍ରକୃତ ପୁରୁଷକାର ଓ ପ୍ରକୃତ ଧର୍ମ ॥୨୬॥ ଯବନେଶ୍ୱର କାଳକନ୍ୟାର କଥା ଶୁଣି ବିଧାତାଙ୍କର ଏକ ଗୁପ୍ତ କାର୍ଯ୍ୟ କରିବା ପାଇଁ ଅଳ୍ପ ହସି ତାଙ୍କୁ କହିଲେ, ମୁଁ ଯୋଗରେ ବସି ତୋପାଇଁ ଜଣେ ବର ସ୍ଥିର କରିଛି । ତୁ ଅମଙ୍ଗଳକାରିଣୀ । ଏଥିପାଇଁ ତୋତେ କେହି ପସନ୍ଦ କରନ୍ତି ନାହିଁ ଏବଂ ତୁ କାହାରିଦ୍ୱାରା ଗ୍ରହଣୀୟା ନୁହଁ ॥୨୭॥ ତେଣୁ କର୍ମରେ ଆସକ୍ତ ବ୍ୟକ୍ତିମାନଙ୍କୁ ତୁ ଅଲକ୍ଷିତ ଭାବରେ ଯାଇ ବଳପୂର୍ବକ ଭୋଗ କର । ତୁ ମୋର ସୈନ୍ୟମାନଙ୍କୁ ନେଇ ପ୍ରଜାନାଶ କାର୍ଯ୍ୟରେ ଲାଗିଯା' । ତୋତେ କେହି ବାଧା ଦେଇ ପାରିବେ ନାହିଁ ॥୨୮-୨୯॥ ପ୍ରଜ୍ୱାର ନାମକ ମୋର ଜଣେ ଭାଇ ଅଛି । ତୁ ମୋର ଭଉଣୀ ହୋଇଯା' । ମୁଁ ତୁମ ଦୁହିଁଙ୍କ ସହିତ ମୋର ଭୟଙ୍କର ସୈନିକମାନଙ୍କୁ ଧରି ସାରା ସଂସାରରେ ବିଚରଣ କରିବି ॥୩୦॥

## ଅଷ୍ଟାବିଂଶ ଅଧ୍ୟାୟ

# ପୁରଞ୍ଜନଙ୍କ ମୁକ୍ତି

ପ୍ରାଚୀନବର୍ହି, ଭୟ ନାମକ ଯବନର ଆଜ୍ଞାକାରୀ ସୈନିକମାନେ ପ୍ରଜ୍ୱାର ଓ କାଳକନ୍ୟା ସହିତ ପୃଥିବୀରେ ବିଚରଣ କରିବାକୁ ଲାଗିଲେ ।।୧।। ଏକ ସମୟରେ ସେମାନେ ପୁରଞ୍ଜନପୁରୀ ନିକଟକୁ ଆସି ଦେଖିଲେ ଯେ ଏହା ବହୁ ପାର୍ଥିବ ଭୋଗ୍ୟବସ୍ତୁରେ ପୂର୍ଣ୍ଣ ହୋଇଚି । ମାତ୍ର ଏକ ବୃଦ୍ଧ କ୍ଷୀଣବଳ ସର୍ପ ତାକୁ ରକ୍ଷା କରୁଚି । ସେମାନେ ଶୀଘ୍ର ଏହାକୁ ଅବରୋଧ କଲେ ଏବଂ କାଳକନ୍ୟା ବଳପୂର୍ବକ ପୁରଞ୍ଜନପୁରକୁ ଭୋଗ କରିବାକୁ ଲାଗିଲା । କାଳକନ୍ୟାର ପ୍ରଭାବରେ ଅଭିଭୂତ ଯେ କୌଣସି ପୁରୁଷ ଅନ୍ତଃସାରଶୂନ୍ୟ ହୋଇଯାଏ । ଏଣୁ ତାହାଦ୍ୱାରା ଉପଭୁକ୍ତ ନଗରୀକୁ ଯବନ ସୈନ୍ୟମାନେ ଚତୁର୍ଦ୍ଦିଗରେ ପ୍ରବେଶ କରି ଧ୍ୱଂସ କରିବାକୁ ଲାଗିଲେ ।।୨-୪।। ଅଭିମାନୀ ରାଜା ପୁରଞ୍ଜନ ବହୁକୁଟୁମ୍ବୀ ଥିଲେ ଓ ନିଜର ବଂଶପ୍ରତି ତାଙ୍କର ପ୍ରଗାଢ଼ ମମତା ରହିଥିଲା । ଏହିପରି ନିଜର ନଗରୀ ପ୍ରପୀଡ଼ିତ ହେବାର ଦେଖି ତାଙ୍କ ମନରେ ଦାରୁଣ ଦୁଃଖ ଜାତ ହେଲା ।।୫।। କାଳକନ୍ୟାର ଆଲିଙ୍ଗନରେ ତାଙ୍କର ଶ୍ରୀ ନଷ୍ଟ ହୋଇଗଲା । ବିବେକବୁଦ୍ଧି ହୁଡ଼ି ଯାଇଥିବା ବିଷୟାସକ୍ତ ରାଜା ଅତି ଦୀନହୀନ ଅବସ୍ଥାକୁ ଆସିଗଲେ ।।୬।। ସ୍ୱନଗରୀ ନଷ୍ଟଭ୍ରଷ୍ଟ ହୋଇଗଲା । ପୁତ୍ର, ପୌତ୍ର, ଅମାତ୍ୟ, ଅନୁଚରମାନେ ଅନାଦର କରିବାକୁ ଲାଗିଲେ । ପତ୍ନୀଙ୍କର ପୂର୍ବ ସ୍ନେହ ରହିଲା ନାହିଁ । ସେ ନିଜେ କାଳକନ୍ୟାଦ୍ୱାରା କବଳିତ । ଦେଶ ଶତ୍ରୁମାନଙ୍କଦ୍ୱାରା ପୀଡ଼ିତ । ଏହା ସବୁ ଦେଖି ରାଜା ଅତିଶୟ ଚିନ୍ତାଗ୍ରସ୍ତ ହୋଇ ପଡ଼ିଲେ ଓ ପ୍ରତିକାରର କୌଣସି ଉପାୟ ତାଙ୍କୁ ଦେଖାଗଲା ନାହିଁ ।।୭-୮।।

କାଳକନ୍ୟା ଭୋଗ କରିଥିବା ଅସାର ଭୋଗ୍ୟବସ୍ତୁ ପାଇଁ ତଥାପି ତାଙ୍କର ଲାଳସା ତୁଟି ନଥିଲା ଏବଂ ଅତି ଦୀନଭାବରେ ସେ ତାହା ଇଚ୍ଛା କରୁଥିଲେ । ପାରଲୌକିକ ଗତି ଓ ଆତ୍ମୀୟମାନଙ୍କ ସ୍ନେହରୁ ବଞ୍ଚିତ ହୋଇ ସ୍ତ୍ରୀପୁତ୍ରଙ୍କ ଲାଳନପାଳନରେ ତଥାପି ତାଙ୍କର ମନ ଲାଗି ରହିଥିଲା ।।୯।। କାଳକନ୍ୟାଦ୍ୱାରା ମର୍ଦ୍ଦିତ ଓ ଗନ୍ଧର୍ବମାନଙ୍କଦ୍ୱାରା ଆକ୍ରାନ୍ତ ନିଜର ନଗରୀକୁ ବର୍ତ୍ତମାନ ଅନିଚ୍ଛାସତ୍ତ୍ୱେ ତାଙ୍କୁ ଛାଡ଼ିବାକୁ ହେଲା ।।୧୦।। ଏହି ସମୟରେ ଯବନରାଜ ଭୟଙ୍କ ବଡ଼ ଭାଇ ପ୍ରଜ୍ୱାର ନିଜର ଭାଇଙ୍କ ପ୍ରିୟସାଧନ କରିବାପାଇଁ ପୁରଞ୍ଜନ ପୁରରେ ନିଆଁ ଲଗାଇଦେଲା ।।୧୧।। ନଗରୀ ଜଳିଯିବାକୁ ଲାଗନ୍ତେ, ପୁରବାସୀ, ସେବକବୃନ୍ଦ, ସନ୍ତାନବର୍ଗ ଓ ଗୃହିଣୀମାନଙ୍କ ସହିତ କୁଟୁମ୍ବପ୍ରିୟ ରାଜାଙ୍କର ଦୁଃଖର ସୀମା ରହିଲା ନାହିଁ ।।୧୨।। ନଗରୀ କାଳକନ୍ୟାଦ୍ୱାରା କବଳିତ ହେବାର ଦେଖି ନଗରରକ୍ଷକ ସର୍ପ ବହୁତ ପୀଡ଼ା ଅନୁଭବ କଲା । ତାର ନିବାସସ୍ଥାନ ମଧ୍ୟ ଯବନମାନେ ଅଧିକାର କରିନେଇଥିଲେ ଏବଂ ପ୍ରଜ୍ୱାର ତାହା ଉପରେ ଆକ୍ରମଣ ଆରମ୍ଭ କରିଦେଇଥିଲେ ।।୧୩।। ଯେତେବେଳେ ସେ ନଗରକୁ ରକ୍ଷା କରିପାରିଲା ନାହିଁ, ଗଛରେ ନିଆଁ ଲାଗିଗଲେ ଗଛର କୋରଡ଼ରେ ଥିବା ସାପ ଯେପରି ବାହାରି ପଳାଇଯାଏ, ସେହିପରି ସେ ଥରି ଥରି ସେଠାରୁ ପଳାଇଯିବାକୁ ଇଚ୍ଛାକଲା ।।୧୪।। ତାର ଅଙ୍ଗପ୍ରତ୍ୟଙ୍ଗ ଅଧିକ ଶିଥିଳ ପଡ଼ିଯାଇଥିଲା ଓ ଗନ୍ଧର୍ବମାନଙ୍କ ଦ୍ୱାରା ସେ ବଳହୀନ ହୋଇ ଯାଇଥିଲା । ତେଣୁ ସେ ଚାଲିଯାଉଥିବାର ଦେଖି ଶତ୍ରୁ ଯବନମାନେ ତାକୁ ବାଧା ଦେଲେ ଏବଂ ସେ କାତରଭାବରେ କ୍ରନ୍ଦନ କରିବାକୁ ଲାଗିଲା ।।୧୫।।

'ମୁଁ ଓ ମୋର' ଏହି ମମତାରେ ଆବଦ୍ଧ ସ୍ତ୍ରୈଣ ପୁରଞ୍ଜନଙ୍କର ବୁଦ୍ଧିଭ୍ରଂଶ ଦେଖାଗଲା । ସେ ନିଜର ପୁତ୍ର, କନ୍ୟା, ପୁତ୍ରବଧୂ, ଅନୁଚର, ଗୃହ ଆଦି ଯାହା କିଛି ବାକିଥିଲା ସେ ସବୁ ଧନସମ୍ପତ୍ତି ଓ ପୋଷାକ ପରିଚ୍ଛଦ ଛାଡ଼ିଯିବାର ସମୟ ଉପସ୍ଥିତ ହେବାର ଦେଖି ଚିନ୍ତାରେ ଘାରି ହୋଇ ପଡ଼ିଲେ ।।୧୬-୧୭।। ସେ ଭାବିଲେ, ମୋର ପରଲୋକ ହୋଇଗଲେ ମୋର ସ୍ତ୍ରୀ ଅନାଥା ହୋଇଯିବ ଏବଂ ପୁତ୍ରକନ୍ୟାଙ୍କର ଚିନ୍ତାରେ ସେ କେମିତି ବଞ୍ଚି ପାରିବ ? ମୁଁ ସ୍ନାନ ନ କଲେ ସେ କରେ ନାହିଁ; ମୁଁ ନ

ଖାଇଲେ ସେ ଖାଏ ନାହିଁ; ମୋ'ପ୍ରତି ହିଁ ଏକାନ୍ତ ଅନୁରକ୍ତ ହୋଇ ରହିଥାଏ । ମୁଁ ରାଗିଗଲେ ସେ ଭୟଭୀତ ହୋଇପଡ଼େ । ମୁଁ ଭର୍ତ୍ସନା କଲେ ସେ ଭୟରେ ଚୁପ୍ ହୋଇଯାଏ । ମୋର ଭୁଲ ହୋଇଗଲେ, ମୋତେ ବୋଧ ଦିଏ । ମୁଁ ବିଦେଶ ଚାଲିଗଲେ ଶୋକରେ ତାର ଶରୀର ଶୁଖି କଣ୍ଟା ହୋଇଯାଏ । ବୀରପ୍ରସବିନୀ ହେଲେ ମଧ୍ୟ ମୋ'ପରେ ସେ କଣ ଗୃହସ୍ଥାଶ୍ରମର କାର୍ଯ୍ୟ ଚଳାଇ ପାରିବ ? ମୁଁ ଚାଲିଯିବାପରେ ମୋ ଉପରେ ନିର୍ଭର କରୁଥିବା ମୋର ଅନାଥ ପୁତ୍ରକନ୍ୟାମାନେ କିପରି ଜୀବନ ଧାରଣ କରିବେ ? ସମୁଦ୍ରରେ ଜାହାଜ ବୁଡ଼ିଗଲେ ଯାତ୍ରୀମାନଙ୍କର ଅବସ୍ଥା ପରି ଏମାନଙ୍କର ଅବସ୍ଥା ହେବ ॥୧୮-୨୧॥

ଜ୍ଞାନୀ ବ୍ୟକ୍ତି ପକ୍ଷରେ ଏପରି ଚିନ୍ତା ଅନୁଚିତ ହେଲେ ମଧ୍ୟ ଅଜ୍ଞାନବୁଦ୍ଧିରେ ରାଜା ଏହିପରି ଶୋକ କରିବାକୁ ଲାଗିଲେ । ଏତିକିବେଳେ ତାଙ୍କୁ ବାନ୍ଧି ନେବାପାଇଁ ଯବନରାଜ ଭୟ ଉପସ୍ଥିତ ହେଲେ ॥୨୨॥ ପଶୁକୁ ବାନ୍ଧି ନେବାପରି ଯବନମାନେ ତାଙ୍କୁ ନିଜ ସ୍ଥାନକୁ ବାନ୍ଧି ନେଉଥିବାବେଳେ ଶୋକାକୁଳ ଅନୁଚରଗଣ ତାଙ୍କ ପଛେ ପଛେ ଚାଲିବାକୁ ଲାଗିଲେ ॥୨୩॥ ଯବନମାନଙ୍କଦ୍ୱାରା ଅବରୁଦ୍ଧ ସର୍ପ ନଗର ଛାଡ଼ି ସେମାନଙ୍କ ସହିତ ଚାଲିଗଲା ଏବଂ ବିଧ୍ୱସ୍ତ ନଗରୀର ମଧ୍ୟ ଆଉ ଚିହ୍ନବର୍ଣ୍ଣ ରହିଲା ନାହିଁ ॥୨୪॥ ବଳବାନ୍ ଯବନ ରାଜା ତାଙ୍କୁ ବଳପୂର୍ବକ ଟାଣି ନେଉଥିବା ବେଳେ ମଧ୍ୟ ପୁରଞ୍ଜନ ତାଙ୍କର ପୂର୍ବ ସଖା ଅବିଜ୍ଞାତଙ୍କୁ ସ୍ମରଣ କରିପାରିଲେ ନାହିଁ ॥୨୫॥ ସେ ପୂର୍ବରୁ ଅତି ନିର୍ଦୟ ହୋଇ ଯେଉଁ ଯଜ୍ଞପଶୁମାନଙ୍କୁ ବଳି ଦେଇଥିଲେ, ସେହି କ୍ରୁଦ୍ଧ ପଶୁମାନେ ନିଜର କଷ୍ଟକୁ ସ୍ମରଣ କରି ତାଙ୍କୁ କୁଠାରଦ୍ୱାରା ହାଣି ପକାଇବାକୁ ଲାଗିଲେ ॥୨୬॥ ସ୍ତ୍ରୀ-ସଂଗ ଦୋଷରୁ ନଷ୍ଟ ହୋଇଥିବା ରାଜା ଅନନ୍ତ ଅନ୍ଧକାରରେ ମଗ୍ନ ହୋଇ ନିଜର ସ୍ମୃତି ହରାଇ ବସିଲେ ଏବଂ ବହୁକାଳ ଧରି କଷ୍ଟଭୋଗ କଲେ ॥୨୭॥

ଅନ୍ତକାଳରେ ମଧ୍ୟ ସେ ନିଜର ସ୍ତ୍ରୀକଥା ଚିନ୍ତା କରୁଥିଲେ । ତେଣୁ ପରଜନ୍ମରେ ସେ ବିଦର୍ଭ ରାଜାଙ୍କର ଗୃହରେ ଏକ ସୁନ୍ଦରୀ କନ୍ୟାରୂପେ ଜନ୍ମଗ୍ରହଣ କଲେ ॥୨୮॥ ପଣ ରଖାଗଲା ଯେ ସର୍ବଶ୍ରେଷ୍ଠ ବୀର ହିଁ କେବଳ ବିଦର୍ଭରାଜକନ୍ୟାଙ୍କୁ ବିବାହ କରିବ । ତଦନୁଯାୟୀ ପାଣ୍ଡ୍ୟରାଜା ମଳୟଧ୍ୱଜ ସବୁ ରାଜାଙ୍କୁ ଯୁଦ୍ଧରେ ପରାସ୍ତ କରି ତାଙ୍କର ପାଣିଗ୍ରହଣ କଲେ ॥୨୯॥ ମଳୟଧ୍ୱଜଙ୍କ ଔରସରେ ତାଙ୍କଠାରୁ ଜଣେ ଶ୍ୟାମଲୋଚନା କନ୍ୟା ଓ ସାତ ଜଣ ପୁତ୍ର ଜନ୍ମହେଲେ । କନ୍ୟା ବଡ଼ ଥିଲେ । ଏହି ପୁତ୍ରମାନେ ସାତଟି ଦ୍ରାବିଡ଼ ଦେଶର ରାଜା ହେଲେ ॥୩୦॥ ରାଜା, ପୁଣି ଏହି ପୁତ୍ରମାନଙ୍କଦ୍ୱାରା ଅସଂଖ୍ୟ ପୁତ୍ର ଉତ୍ପନ୍ନ ହେଲେ । ସେମାନଙ୍କ ବଂଶଧରମାନେ ମନ୍ୱନ୍ତରପର୍ଯ୍ୟନ୍ତ ଓ ତାହାପରେ ମଧ୍ୟ ପୃଥିବୀକୁ ଭୋଗ କଲେ ॥୩୧॥ ମଳୟଧ୍ୱଜଙ୍କର କନ୍ୟା ବ୍ରତନିଷ୍ଠ ଥିଲେ । ଅଗସ୍ତ୍ୟ ଋଷିଙ୍କ ସହିତ ତାଙ୍କର ବିବାହ ହେଲା । ତାଙ୍କର ପୁତ୍ର ହେଲେ ଦୃଢ଼ଚ୍ୟୁତ ଏବଂ ଦୃଢ଼ଚ୍ୟୁତଙ୍କର ପୁତ୍ର ଇଧ୍ମବାହ ॥୩୨॥

ରାଜର୍ଷି ମଳୟଧ୍ୱଜ ପୁତ୍ରମାନଙ୍କ ମଧ୍ୟରେ ରାଜ୍ୟକୁ ଭାଗ କରିଦେଇ ଶ୍ରୀକୃଷ୍ଣଙ୍କ ଆରାଧନାପାଇଁ ମଳୟାଚଳକୁ ଚାଲିଗଲେ ॥୩୩॥ ଗୃହ, ପୁତ୍ର, ଭୋଗବିଳାସ ସବୁ କିଛି ତ୍ୟାଗ କରି ତାଙ୍କ ପଛେ ପଛେ ଚନ୍ଦ୍ରସହିତ ଚନ୍ଦ୍ରିକା ପରି ପତ୍ନୀ ବୈଦର୍ଭୀ ମଧ୍ୟ ଚାଲିଗଲେ ॥୩୪॥ ସେଠାରେ ପ୍ରବାହିତ ଚନ୍ଦ୍ରବସା, ତାମ୍ରପର୍ଣ୍ଣୀ ଓ ବଟୋଦକା ନାମକ ତିନୋଟି ନଦୀର ପବିତ୍ର ଜଳରେ ସ୍ନାନ କରି ରାଜା ପ୍ରତିଦିନ ନିଜ ଶରୀରର ଅନ୍ତର ଓ ବାହାରର ମଳିନତା ସଫା କରୁଥିଲେ ॥୩୫॥ ସେଠାରେ ରହି କନ୍ଦମୂଳ, ବୀଜଜାତୀୟ ଫଳ, ପୁଷ୍ପ, ପତ୍ର ତୃଣ, ଜଳ ଆଦିଦ୍ୱାରା ପ୍ରାଣ ଧାରଣ କରି ମଳୟଧ୍ୱଜ ଅତି କଠୋର ତପସ୍ୟା କରିବାକୁ ଲାଗିଲେ ॥୩୬॥ ସମଦର୍ଶୀ ରାଜା ଶୀତ, ଖରା, ବର୍ଷା, ବାୟୁ, କ୍ଷୁଧା, ତୃଷା, ପ୍ରିୟ ଅପ୍ରିୟ, ସୁଖ ଦୁଃଖ ଆଦି ସବୁକୁ ସମାନଭାବରେ ଗ୍ରହଣ କରି ଏ ସମସ୍ତ ଦ୍ୱନ୍ଦ୍ୱକୁ ଜୟ କଲେ ॥୩୭॥ ତପସ୍ୟା ଓ ଉପାସନାଦ୍ୱାରା କାମବାସନାକୁ ସେ ଦଗ୍ଧ କଲେ ଏବଂ ଯମ ନିୟମାଦିଦ୍ୱାରା ଇନ୍ଦ୍ରିୟ, ପ୍ରାଣ ଓ ଚିତ୍ତକୁ ବଶ କରି ଆତ୍ମାକୁ ବ୍ରହ୍ମଙ୍କଠାରେ ନିୟୋଜିତ କଲେ ॥୩୮॥

ଏହିପରି ଦିବ୍ୟ ଏକଶତବର୍ଷ ସେ ସ୍ଥାଣୁପରି ସ୍ଥିର ହୋଇ ରହିଲେ ଏବଂ ବାସୁଦେବଙ୍କପ୍ରତି ଏକାନ୍ତ ପ୍ରେମଭାବ ଯୋଗୁଁ ନିଜ ଶରୀରର ସତ୍ତା ଭୁଲିଗଲେ ।।୩୯।। ରାଜା, ଗୁରୁସ୍ୱରୂପ ସାକ୍ଷାତ୍ ଭଗବାନ ଶ୍ରୀହରିଙ୍କ ଉପଦେଶର ଓ ନିଜ ଅନ୍ତଃକରଣରେ ଜାଗରିତ ଜ୍ଞାନର ପ୍ରଦୀପଦ୍ୱାରା ସେ ଦେଖିଲେ ଯେ ସ୍ୱପ୍ନାବସ୍ଥାପରି ଏହି ଆତ୍ମା ଦେହ ଆଦିରେ ସର୍ବତ୍ର ବ୍ୟାପ୍ତ ଏବଂ ପୁଣି ଦେହ ଆଦିରୁ ପୃଥକ୍ । ଏହା ଅନୁଭବ କରି ସମସ୍ତ କର୍ମରୁ ସେ ସମ୍ପୂର୍ଣ୍ଣ ନିବୃତ୍ତ ହୋଇଗଲେ ।।୪୦-୪୧।। ପରଂବ୍ରହ୍ମଙ୍କଠାରେ ନିଜର ଆତ୍ମାକୁ ଓ ନିଜର ଆତ୍ମାରେ ପରଂବ୍ରହ୍ମଙ୍କୁ ଦର୍ଶନ କରି ସଂସାରରୁ ବିରତ ରାଜା ମଳୟଧ୍ୱଜଙ୍କର ଏହି ଆତ୍ମା-ପରମାତ୍ମାରୂପ ଭେଦଦୃଷ୍ଟି ମଧ୍ୟ ରହିଲା ନାହିଁ ।।୪୨।। ପତିପରାୟଣା ବୈଦର୍ଭୀ ସମସ୍ତ ଭୋଗ ତ୍ୟାଗ କରି ଅତି ପ୍ରେମରେ ନିଜ ପରମ ଧର୍ମଜ୍ଞ ପତିଙ୍କର ସେବା କରୁଥିଲେ ।।୪୩।। ସେ ବଳ୍କଳ ବସ୍ତ୍ର ପରିଧାନ କରୁଥିଲେ । ବ୍ରତ ଉପବାସାଦିଯୋଗୁଁ ତାଙ୍କର ଶରୀର କ୍ଷୀଣ ହୋଇ ଯାଇଥିଲା ଏବଂ ମୁଣ୍ଡର ବାଳ ଜଟା ହୋଇଯାଇଥିଲା । ସେ ନିଜ ସ୍ୱାମୀଙ୍କ ନିକଟରେ ଧୂମହୀନ ଶୁଦ୍ଧ ଅଗ୍ନିର ଶାନ୍ତ ଶିଖା ପରି ଶୋଭା ପାଉଥିଲେ ।।୪୪।। ସ୍ୱାମୀ ପରଲୋକଗତ ହେଲେ ମଧ୍ୟ ପୂର୍ବପରି ସ୍ଥିର ଆସନରେ ବସି ରହିଥିଲେ । ମାତ୍ର ସେ ତାହା ଜାଣି ନପାରି ପୂର୍ବଭଳି ତାଙ୍କ ପାଖରେ ରହି ସେବା କରିବାକୁ ଲାଗିଲେ ।।୪୫।।

କିନ୍ତୁ ପଦସେବା କଲାବେଳେ ପାଦର ଉଷ୍ଣତା ଅନୁଭବ ନ କରିବାରୁ, ମୃଗଯୂଥରୁ ଏକୁଟିଆ ହୋଇ ଯାଇଥିବା ମୃଗୁଣୀ ପରି ତାଙ୍କର ଚିତ୍ତ ବ୍ୟାକୁଳ ହେବାକୁ ଲାଗିଲା ।।୪୬।। ନିର୍ଜନ ବନରେ ନିଜକୁ ଅସହାୟା, ଏକାକିନୀ ଦେଖି ସେ ରୋଦନ କରିବାକୁ ଲାଗିଲେ ଏବଂ ଅଶ୍ରୁଧାରରେ ତାଙ୍କର ସ୍ତନଯୁଗଳ ସିକ୍ତ ହୋଇଗଲା ।।୪୭।। ସେ ରୋଦନ କରି କହିଲେ, ରାଜର୍ଷି, ଉଠନ୍ତୁ, ଉଠନ୍ତୁ; ଏହି ସସାଗରା ଧରାକୁ ଦସ୍ୟୁ ଓ ଅଧାର୍ମିକ କ୍ଷତ୍ରିୟ ରାଜାମାନେ ଭୟଭୀତ କରି ରଖିଛନ୍ତି । ଆପଣ ତାକୁ ରକ୍ଷା କରନ୍ତୁ ।।୪୮।। ପତିଙ୍କ ଅନୁଗମନ କରି ଅରଣ୍ୟକୁ ଯାଇଥିବା ସେହି ନାରୀ ଏହିପରି ବିଳାପ କରି କରି ସ୍ୱାମୀଙ୍କର ପାଦତଳେ ପଡ଼ିଗଲେ ଏବଂ କାନ୍ଦି କାନ୍ଦି ତାଙ୍କର ନେତ୍ରରୁ ଅଶ୍ରୁଧାର ବହିବାକୁ ଲାଗିଲା ।।୪୯।। କାଠରେ ଏକ ଚିତା ସଜାଡ଼ି ତାହା ଉପରେ ସେ ପତିଙ୍କର ଶବକୁ ସ୍ଥାପନ କଲେ ଏବଂ କାନ୍ଦି କାନ୍ଦି ପତିଙ୍କ ଚିତାଗ୍ନିରେ ସହମରଣପାଇଁ ମନସ୍ଥ କଲେ ।।୫୦।।

ରାଜା, ଏହି ସମୟରେ ତାଙ୍କର କେହି ଜଣେ ପୁରାତନ ମିତ୍ର ଆତ୍ମଜ୍ଞାନୀ ବ୍ରାହ୍ମଣ ସେଠାରେ ପହଞ୍ଚିଗଲେ ଏବଂ କ୍ରନ୍ଦନରତା ନାରୀଙ୍କୁ ସାନ୍ତ୍ୱନା ଦେଇ ମଧୁର ଭାଷାରେ କହିଲେ, ଶୋଇ ରହିଥିବା ଏ ବ୍ୟକ୍ତି କିଏ ? ତୁମେ କିଏ ? କାହାର କନ୍ୟା ? କାହାପାଇଁ ତୁମେ ଶୋକ କରୁଚ ? ମୋତେ ଚିହ୍ନିପାରୁଚ କି ନାହିଁ ? ଦିନେ ମୁଁ ତୁମର ମିତ୍ର ଥିଲି ଏବଂ ମୋ ସହିତ ତୁମେ ଏକତ୍ର ବିଚରଣ କରୁଥିଲ ।।୫୧-୫୨।। ସଖା, ଅବିଜ୍ଞାତ ନାମକ ତୁମର ଏହି ବନ୍ଧୁକୁ ମନେ ପକାଅ । ତୁମେ ପୃଥିବୀକୁ ଭୋଗ କରିବା ପାଇଁ ଯେତେବେଳେ ଏକ ନିବାସସ୍ଥଳ ଖୋଜୁଥିଲ, ମୋତେ ସେତେବେଳେ ଛାଡ଼ି ଚାଲିଯାଇଥିଲ ।।୫୩।। ଆର୍ଯ୍ୟ, ମୁଁ ଏବଂ ତୁମେ ପରସ୍ପର ବନ୍ଧୁ ଏବଂ ମାନସ ସରୋବରବାସୀ ଦୁଇଟି ହଂସ ଥିଲେ । ଏକ ହଜାର ବର୍ଷ ଧରି କୌଣସି ନିର୍ଦ୍ଦିଷ୍ଟ ବାସସ୍ଥାନ ନପାଇ ଆମେ ରହୁଥିଲେ ।।୫୪।। କିନ୍ତୁ ବନ୍ଧୁ, ସାଂସାରିକ ସୁଖଭୋଗ ଇଚ୍ଛାରେ ତୁମେ ମୋତେ ଛାଡ଼ିଦେଇ ପୃଥିବୀକୁ ଚାଲି ଆସିଲ ଏବଂ ବୁଲି ବୁଲି ଶେଷରେ ସ୍ତ୍ରୀଦ୍ୱାରା ନିର୍ମିତ ଏକ ସ୍ଥାନ ଆସି ଦେଖିଲ ।।୫୫।। ସେଥିରେ ପାଞ୍ଚଟି ଉଦ୍ୟାନ, ନବଦ୍ୱାର, ଜଣେ ରକ୍ଷକ, ତିନୋଟି ପ୍ରକୋଷ୍ଠ, ଛଟି ଜାତି ଓ ପାଞ୍ଚଟି ବଜାର ରହିଥିଲା । ପାଞ୍ଚ ଉପାଦାନରେ ଏହା ନିର୍ମିତ ହୋଇଥିଲା । ଜଣେ ସ୍ତ୍ରୀ ଏହାର ମାଲିକ ଥିଲା ।।୫୬।। ମହାରାଜ, ପଞ୍ଚେନ୍ଦ୍ରିୟଙ୍କର ପାଞ୍ଚଭୋଗ୍ୟ ବିଷୟ ଥିଲା ଏହାର ବଗିଚା; ନବଦ୍ୱାର ଏହାର ପ୍ରାଣ (ଇନ୍ଦ୍ରିୟଛିଦ୍ରସବୁ), ତେଜ, ଜଳ ଓ ଅନ୍ନ ଏହାର ତିନୋଟି ପ୍ରକୋଷ୍ଠ, ମନ ଓ ପଞ୍ଚେନ୍ଦ୍ରିୟ ଏହାର ଷଟ୍ କୁଳ (ବୈଶ୍ୟାଦି) ଥିଲେ । ଏହାର ବିପଣୀ ହୋଇଥିଲା କର୍ମେନ୍ଦ୍ରିୟମାନଙ୍କର କ୍ରିୟାଶକ୍ତି । ପଞ୍ଚଭୂତ ଏହାର ଅବ୍ୟୟ ପ୍ରକୃତି । ଏହାର ଅଧୀଶ୍ୱରୀ ହେଉଚି ବୁଦ୍ଧିଶକ୍ତି ଏବଂ ଏହି ନଗରୀମଧ୍ୟରେ କୌଣସି ପୁରୁଷ ପ୍ରବେଶ କଲେ ତାର ବୋଧଶକ୍ତି ହଜିଯାଏ । ସେଠାରେ ତୁମେ ସେହି ରମଣୀଙ୍କ ସମ୍ପର୍କରେ ଆସି ଏବଂ ତାଙ୍କ ସହିତ ରମଣରେ ମାତି ନିଜର ସ୍ୱରୂପକୁ ଭୁଲିଗଲ,

ସେହି ସଙ୍ଗଦୋଷରୁ ତୁମର ଆଜି ଏହି ଦୁର୍ଦ୍ଦଶା ଘଟିଚି ।।୫୭-୫୯।। ତୁମେ ବିଦର୍ଭରାଜାଙ୍କର କନ୍ୟା ନୁହଁ, ଏହି ବୀର ତୁମର ସ୍ୱାମୀ ନୁହନ୍ତି । ଯେଉଁ ପୁରଞ୍ଜନୀ ତୁମକୁ ତାର ନବଦ୍ୱାର ନଗରୀରେ ଆବଦ୍ଧ କରି ରଖିଥିଲା, ତୁମେ ମଧ୍ୟ ତାର ପତି ନୁହ ।।୬୦।। ଏହା ଏକ ମାୟା, ଯାହାକି ମୁଁ ସୃଷ୍ଟି କରିଥିଲି । ବାସ୍ତବରେ ତୁମେ ପୁରୁଷ ନୁହ କି ଶ୍ରେଷ୍ଠ ସ୍ତ୍ରୀ ନୁହ । ମନେରଖ, ଆମେ ଦୁହେଁଯାକ ହଂସ । ଆମ ଉଭୟଙ୍କର ସ୍ୱରୂପ ସମାନ ।।୬୧।। ତୁମେ ଏବଂ ମୁଁ ଭିନ୍ନ ନୁହଁ । ଦୁହେଁ ଏକ ବୋଲି ଦେଖ । ଜ୍ଞାନୀ ବ୍ୟକ୍ତିମାନେ ତୁମ ଓ ମୋ ମଧ୍ୟରେ (ଜୀବ ଏବଂ ପରମ) ମଧ୍ୟରେ କୌଣସି ଭେଦଭାବ ଦେଖନ୍ତି ନାହିଁ ।।୬୨।। ଦର୍ପଣରେ ପୁରୁଷର ପ୍ରତିବିମ୍ୱକୁ ଓ ଖାଲି ଆଖିରେ ତାକୁ ଦେଖିଲେ ଯାହା ପାର୍ଥକ୍ୟ, ତୁମ ଓ ମୋ ଭିତରେ ତାହା ହିଁ ପାର୍ଥକ୍ୟ । (ଅର୍ଥାତ୍ ପାର୍ଥକ୍ୟ ନାହିଁ) ।।୬୩।। ମାନସର ହଂସ (ଜୀବାତ୍ମା) ହଂସ (ପରମାତ୍ମା)ଙ୍କ ଦ୍ୱାରା ଏହିପରି ଉପଦିଷ୍ଟ ହେବାରୁ ସୁସ୍ଥ ହୋଇ (ନିଜ ସ୍ୱରୂପକୁ ବୁଝିପାରି) ସେ ତାଙ୍କଠାରୁ ବିଚ୍ଛେଦଯୋଗୁଁ ନଷ୍ଟ ହୋଇଥିବା ଆତ୍ମଜ୍ଞାନକୁ ଫେରି ପାଇଲେ ।।୬୪।। ପ୍ରାଚୀନବର୍ହି, ମୁଁ ପରୋକ୍ଷରେ ତୁମକୁ ଏହି ଅଧ୍ୟାତ୍ମବିଦ୍ୟାର ଦର୍ଶନ କରାଇଲି । କାରଣ ସର୍ବାନ୍ତର୍ଯାମୀ ଶ୍ରୀ ଭଗବାନ ପରୋକ୍ଷବର୍ଣ୍ଣନପ୍ରିୟ ।।୬୫।।

ଊନତ୍ରିଂଶ ଅଧ୍ୟାୟ

# ପୁରଞ୍ଜନ-ଉପାଖ୍ୟାନର ତାତ୍ପର୍ଯ୍ୟ

ପ୍ରାଚୀନବର୍ହି କହିଲେ, ଭଗବାନ୍, ଆପଣଙ୍କ କଥା ମୋର ବୋଧଗମ୍ୟ ହେଉ ନାହିଁ । ଆତ୍ମଜ୍ଞାନୀମାନେ ତାହା କେବଳ ଜାଣନ୍ତି । ଆମପରି କର୍ମମୋହିତ ଜୀବ ନୁହଁ ।।୧।। ନାରଦ କହିଲେ, ପୁରଞ୍ଜନ ଏକ ପୁରଷ ବା ଜୀବ । ଜୀବ ନିଜ କର୍ମଦ୍ୱାରା ନିଜର ଶରୀରରୂପ ପୁରକୁ ଜନନ ବା ନିର୍ମାଣ କରେ । ତାହା ଏକପଦ, ଦ୍ୱିପଦ, ତ୍ରିପଦ, ଚତୁଷ୍ପଦ ବା ବହୁପଦ ବିଶିଷ୍ଟ ହୋଇପାରେ, କିମ୍ବା ଅପାଦ (ବିନାପାଦରେ) ବି ହୋଇପାରେ ।।୨।। ଏହି ପୁରୁଷର ସଖା ହେଉଛନ୍ତି ଈଶ୍ୱର, ଯାହାଙ୍କୁ ଅବିଜ୍ଞାତ ବୋଲି କୁହାଯାଇଚି । କୌଣସି ନାମ, ଗୁଣ ବା କର୍ମଦ୍ୱାରା ତାଙ୍କୁ କେହି ଜାଣିପାରେ ନାହିଁ ।।୩।। ଜୀବ ଯେତେବେଳେ ସୁଖଦୁଃଖରୂପୀ ସମସ୍ତ ପ୍ରାକୃତ ବିଷୟକୁ ଉପଭୋଗ କରିବାକୁ ଇଚ୍ଛା କଲା, ସେତେବେଳେ ସେ ନବଦ୍ୱାର, ଦୁଇ ପାଦ ଓ ଦୁଇ ହସ୍ତ ବିଶିଷ୍ଟ ଏହି ଶରୀରକୁ ପସନ୍ଦ କଲା ।।୪।। ବୁଦ୍ଧି ବା ଅବିଦ୍ୟା ହେଉଚି ସେହି ନାରୀ (ପୁରଞ୍ଜନୀ) ଯାହାଯୋଗୁଁ 'ମୁଁ ଓ ମୋର' ଭାବ ଦେହ ଓ ଇନ୍ଦ୍ରିୟ ମଧ୍ୟରେ ଉତ୍ପନ୍ନ ହୁଏ ଏବଂ ପ୍ରାଣ-ଅପାନ-ବ୍ୟାନ-ଉଦାନ-ସମାନ ରୂପ ପାଞ୍ଚବୃତ୍ତିବିଶିଷ୍ଟ ପ୍ରାଣବାୟୁ ହେଉଚି ଏହି ଦେହରୂପ ନଗରୀର ରକ୍ଷକ ସେହି ପଞ୍ଚଫଣାବିଶିଷ୍ଟ ସର୍ପ ।।୫।।

ଦୁଇ ପ୍ରକାର (ପାଞ୍ଚ ଜ୍ଞାନ ଓ ପାଞ୍ଚ କର୍ମ) ଇନ୍ଦ୍ରିୟଙ୍କର ନାୟକ ମନ ହେଉଚି ଏକାଦଶ ମହାବଳୀ ଯୋଦ୍ଧା । ଶବ୍ଦ ଆଦି ପାଞ୍ଚ ବିଷୟ ହେଉଚି ପାଞ୍ଚାଳ ଦେଶ, ଯାହାମଧ୍ୟରେ ଏହି ନବଦ୍ୱାରବିଶିଷ୍ଟ ନଗରୀ ଅବସ୍ଥିତ ।।୬-୭।। ଏହି ନଗରୀରେ ବାହାରକୁ ଯିବାପାଇଁ ଏକ ଏକ ସ୍ଥାନରେ ଯେଉଁ ଦୁଇଟି ଦ୍ୱାରର କଥା କୁହାଯାଉଚି, ସେମାନେ ହେଲେ - ଦୁଇଟି ଆଖି, ଦୁଇଟି ନାକପୁଡ଼ା, ଦୁଇଟି କାନ ଏବଂ ତାହା ଛଡ଼ା ମୁହଁ । ଲିଙ୍ଗ ଓ ମଳଦ୍ୱାର-- ଏହି ଗୋଟିଏ ଗୋଟିଏ ଦ୍ୱାର ମିଶାଇ ନବଦ୍ୱାର ହୋଇଚି । ଇନ୍ଦ୍ରିୟମାନଙ୍କ ସହିତ ଏମାନଙ୍କ ବାଟରେ ଜୀବ ବାହାର ବିଷୟ ଆଡ଼କୁ ଚାଲିଯାଏ ।।୮।। ଦୁଇ ଆଖି, ଦୁଇ ନାକପୁଡ଼ା ଏବଂ ଏକ ମୁହଁ -- ଏହି ପାଞ୍ଚ ହେଲେ ପୂର୍ବଦ୍ୱାର । ଡାହାଣ କାନ ଦକ୍ଷିଣ ଦ୍ୱାର ଓ ବାମ କାନ ହେଲା ଉତ୍ତର ଦ୍ୱାର । ତଳେ ରହିଥିବା ଲିଙ୍ଗ ଓ ମଳଦ୍ୱାର ହେଲେ ପଶ୍ଚିମ ଦ୍ୱାର । ଖଦ୍ୟୋତା ଓ ଆବିର୍ମୁଖୀ ନାମକ ଯେଉଁ ଦୁଇଟି ଦ୍ୱାର ଏକତ୍ର ନିର୍ମିତ

ହୋଇଚି ବୋଲି କୁହାଯାଇଚି, ତାହା ହେଉଚି ଆଖିର ଦୁଇଟି ଗୋଲକ । ରୂପ ହେଉଚି ବିଭ୍ରାଜିତ ନାମକ ଦେଶ । ସେ ଦୁହିଁଙ୍କ ସାହାଯ୍ୟରେ ଜୀବ ରୂପକୁ ଦର୍ଶନ କରେ ॥୯-୧୦॥ ଦୁଇଟି ନାକପୁଡ଼ା ହେଉଛନ୍ତି ନଳିନୀ ଓ ନାଳିନୀ ନାମକ ଦ୍ୱାର । ନାକର ବିଷୟ ଗନ୍ଧ ହେଲା ସୌରଭ ଦେଶ । ଘ୍ରାଣେନ୍ଦ୍ରିୟ ଅବଧୂତ ନାମକ ମିତ୍ର । ମୁଖ ହେଉଚି ମୁଖ୍ୟଦ୍ୱାର । ବାକ୍‌ଇନ୍ଦ୍ରିୟ ହେଉଚି ବିପଣ । ରସନା-ଇନ୍ଦ୍ରିୟ, ଯାହା ସାହାଯ୍ୟରେ ରସ ଗ୍ରହଣ କରାଯାଏ, ସେ ହେଉଚି ରସଜ୍ଞ ନାମକ ବନ୍ଧୁ ॥୧୧॥ ବାଣୀର ବ୍ୟାପାର ହେଉଚି ଆପଣ ଓ ବିଭିନ୍ନ ପ୍ରକାର ଅନ୍ନ ହେଲା ବହୂଦନ । ଡାହାଣ କାନ ହେଲା ପିତୃହୂ ଓ ବାଁ କାନ ହେଲା ଦେବହୂ ॥୧୨॥

ପ୍ରବୃତ୍ତି ଓ ନିବୃତ୍ତି ମାର୍ଗର ଶାସ୍ତ୍ରମାନେ ହେଲେ ଯଥାକ୍ରମେ ଦକ୍ଷିଣ ପାଞ୍ଚାଳ ଓ ଉତ୍ତର ପାଞ୍ଚାଳ । ଶ୍ରବଣେନ୍ଦ୍ରିୟରୂପ ଶ୍ରୁତଧର ସାହାଯ୍ୟରେ ତାହା ସବୁ ଶୁଣି ଜୀବ କ୍ରମେ ପିତୃଯାନ ଓ ଦେବଯାନ ମାର୍ଗରେ ଯାତ୍ରା କରେ ॥୧୩॥ ଲିଙ୍ଗ ହେଉଚି ଆସୁରୀ ନାମକ ପଶ୍ଚିମ ଦ୍ୱାର । ସ୍ତ୍ରୀମାନଙ୍କ ସହିତ ରତିକ୍ରିୟା ହେଉଚି ଗ୍ରାମକ ନାମକ ଦେଶ । ଲିଙ୍ଗରେ ରହୁଥିବା ଉପସ୍ଥ ଇନ୍ଦ୍ରିୟ ଦୁର୍ମଦ ନାମକ ମିତ୍ର ରୂପେ କଥିତ । ମଳଦ୍ୱାର ମଧ୍ୟ ନିର୍ଋତି ନାମକ ଆଉ ଗୋଟିଏ ପଶ୍ଚିମ ଦ୍ୱାର ॥୧୪॥ ନରକ ହେଉଚି ବୈଶସ ନାମକ ଦେଶ ଏବଂ ମଳଦ୍ୱାରରେ ସ୍ଥିତ ପାୟୁଇନ୍ଦ୍ରିୟ ହେଉଚି ଲୁବ୍ଧକ ନାମକ ମିତ୍ର । ଏହା ଛଡ଼ା ଦୁଇଟି ଅନ୍ଧ ପୁରୁଷଙ୍କ କଥା କୁହାଯାଉଚି । ସେମାନେ ହେଲେ ହାତ ଓ ପାଦ । ସେ ଦୁହିଁଙ୍କ ସାହାଯ୍ୟରେ ଜୀବ ସମସ୍ତ କାମ କରେ ଓ ଯୁଆଡ଼େ ଇଚ୍ଛା ସିଆଡ଼େ ଯାଏ ॥୧୫॥ ହୃଦୟ ହେଉଚି ଅନ୍ତଃପୁର ଏବଂ ସେଥିରେ ରହୁଥିବା ମନ ହେଉଚି ବିଷୂଚି ନାମକ ପ୍ରଧାନ ସେବକ । ଏହି ମନର ସତ୍ତ୍ୱ ରଜ ତମ ଆଦି ଗୁଣଯୋଗୁଁ ଜୀବ କେତେବେଳେ ଆନନ୍ଦ ଲାଭ କରେ ବା କେତେବେଳେ ମୋହଗ୍ରସ୍ତ ହୁଏ ॥୧୬॥ ବୁଦ୍ଧି (ରାଜମହିଷୀ ପୁରଞ୍ଜନୀ) ସ୍ୱପ୍ନାବସ୍ଥାରେ ବିକାରଗ୍ରସ୍ତ ହୁଏ ଏବଂ ଜାଗ୍ରତ ଅବସ୍ଥାରେ ଇନ୍ଦ୍ରିୟମାନଙ୍କର ବିକାର ସୃଷ୍ଟି କରେ ।

ଆତ୍ମା(ଜୀବ) ନିର୍ବିକାର ସାକ୍ଷୀ ସ୍ୱରୂପ ହେଲେ ମଧ୍ୟ ଗୁଣମାନଙ୍କ ସମ୍ପର୍କରେ ଆସୁଥିବା ଯୋଗୁ ବଳପୂର୍ବକ ବୁଦ୍ଧିର ବୃତ୍ତିମାନଙ୍କୁ ଅନୁକରଣ କରେ ॥୧୭॥ ଦେହ ହେଉଚି ରଥ । ଇନ୍ଦ୍ରିୟମାନେ ଅଶ୍ୱ । ଯଦିଓ ଏହା ବେଗହୀନ, ସମ୍ୱତ୍ସର ରୂପ କାଳ ପରି ଏହାର ବେଗ ଅପ୍ରତିହତ ଦେଖାଯାଏ । ପାପ ଓ ପୁଣ୍ୟ ଏହି ଦୁଇ ପ୍ରକାର କର୍ମ ଏହାର ଚକ, ତିନି ଗୁଣ ଏହାର ପତାକା, ପଞ୍ଚ ପ୍ରାଣ ଏହାର ବନ୍ଧନ ଡୋରି । ମନ ଏହାର ଲଗାମ, ବୁଦ୍ଧି ସାରଥି, ହୃଦୟ ଏହି ରଥର ନୀଡ଼ (ବସିବାର ସ୍ଥାନ) ଏବଂ ସୁଖ ଦୁଃଖ ଏହାର ଜୁଆଳି । ପଞ୍ଚ ଇନ୍ଦ୍ରିୟ ଏହାର ଆୟୁଧ ଏବଂ ଚର୍ମ ଆଦି ସପ୍ତଧାତୁ ଏହାର ଆବରଣ ॥୧୮-୧୯॥ ପଞ୍ଚ କର୍ମେନ୍ଦ୍ରିୟ ଏହାର ପାଞ୍ଚ ପ୍ରକାର ଗତି । ଏହି ରଥ ଉପରେ ଚଢ଼ି ରଥୀରୂପ ଜୀବ ମୃଗତୃଷ୍ଣାତୁଲ୍ୟ ବିଷୟବାସନା ପଛରେ ଧାଇଁଥାଏ । ପଞ୍ଚ ଜ୍ଞାନେନ୍ଦ୍ରିୟ, ପଞ୍ଚ କର୍ମେନ୍ଦ୍ରିୟ ଏବଂ ମନ -- ଏହି ଏଗାର ଜଣ ହେଲେ ଏହାର ସେନାପତି ଏବଂ ଏମାନଙ୍କ ସାହାଯ୍ୟରେ ବିଷୟସେବାରେ ଲିପ୍ତ ହୋଇ ସେ ଆନନ୍ଦ ଲାଭକରେ ॥୨୦॥ ଯାହାଦ୍ୱାରା କାଳଜ୍ଞାନ ହୁଏ, ସେହି ସମ୍ୱତ୍ସର ହିଁ ଚଣ୍ଡବେଗ ନାମକ ଗନ୍ଧର୍ବରାଜ । ଏହାଙ୍କ ଅଧୀନରେ ଯେଉଁ ତିନିଶ ଷାଠିଏ ଗନ୍ଧର୍ବ ଅଛନ୍ତି ବୋଲି କୁହାଯାଇଛି, ସେମାନେ ହେଲେ ଦିନ ଏବଂ ତିନିଶ ଷାଠିଏ ଗନ୍ଧର୍ବୀ ହେଲେ ରାତ୍ରୀ । ଏମାନେ ବାରମ୍ୱାର ପରିକ୍ରମା କରି ମନୁଷ୍ୟର ଆୟୁଷକୁ ହରଣ କରନ୍ତି ॥୨୧॥ କାଳକନ୍ୟା ହେଉଛି ସାକ୍ଷାତ୍ ଜରା ବା ବୃଦ୍ଧାବସ୍ଥା । ତାକୁ କେବେ କୌଣସି ପୁରୁଷ ପସନ୍ଦ କରେ ନାହିଁ । କିନ୍ତୁ ଯବନରାଜ ମୃତ୍ୟୁ ଲୋକସଂହାର କରିବାପାଇଁ ଏହାକୁ ନିଜର ଭଉଣୀ ବୋଲି ଗ୍ରହଣ କରି ନେଇଛି । ଆଧି ଓ ବ୍ୟାଧିମାନେ ହେଉଛନ୍ତି ଯବନରାଜର ପଦାତିକ ସୈନିକ । ପ୍ରାଣୀମାନଙ୍କୁ କଷ୍ଟ ଦେଇ ଶୀଘ୍ର ସେମାନଙ୍କୁ ମୃତ୍ୟୁମୁଖକୁ ନେଇଯିବାପାଇଁ ଶୀତ ଏବଂ ଉଷ୍ଣ ଏହି ଦୁଇ ପ୍ରକାର ଜ୍ୱର ପ୍ରଜ୍ୱାର ନାମରେ ଏହି ଯବନେଶ୍ୱରର ଭାଇ ଭାବରେ କାର୍ଯ୍ୟ କରନ୍ତି ॥୨୨-୨୩॥ ଏହି ଦେହାଭିମାନୀ ଜୀବ ଅଜ୍ଞାନର ଆବରଣରେ ରହି ବହୁ ପ୍ରକାର ଦୁଃଖ (ଆଧିଭୌତିକ, ଆଧ୍ୟାତ୍ମିକ ଓ ଆଧିଦୈବିକ)ରେ ପୀଡ଼ିତ

ହୋଇ ଶହେ ବର୍ଷ ଧରି ମନୁଷ୍ୟ ଶରୀର ଧାରଣ କରିଥାଏ । ବାସ୍ତବରେ ଜୀବ ହେଉଛି ନିର୍ଗୁଣ । କିନ୍ତୁ ପ୍ରାଣ, ଇନ୍ଦ୍ରିୟ ଏବଂ ତାଙ୍କ ଧର୍ମକୁ ଆପଣାର କରି 'ମୁଁ ଏବଂ 'ମୋର' ଏହି ଅହଙ୍କାରରେ ବାନ୍ଧି ହୋଇ ବିଭିନ୍ନପ୍ରକାର କର୍ମ କରେ ॥୨୪-୨୬॥ ଜୀବ ସ୍ୱୟଂପ୍ରକାଶ ହେଲେ ମଧ୍ୟ ଯେପର୍ଯ୍ୟନ୍ତ ପରମଗୁରୁ ଆତ୍ମସ୍ୱରୂପ ଶ୍ରୀ ଭଗବାନଙ୍କୁ ଚିହ୍ନିପାରି ନ ଥାଏ, ସେ ପର୍ଯ୍ୟନ୍ତ ପ୍ରକୃତିର ଗୁଣମାନଙ୍କ ଅଭିମାନରେ ବିବଶ ହୋଇ ସେ କର୍ମ କରୁଥାଏ । ମାତ୍ର ଏହି ଗୁଣମାନଙ୍କ ମଧ୍ୟରୁ ସେ ଯେଉଁ ଗୁଣର ପ୍ରଭାବରେ ସାତ୍ତ୍ୱିକ, ତାମସିକ, ରାଜସିକ କର୍ମ କରିଚାଲେ, ତଦନୁସାରେ ସେହି ଯୋନିରେ ଜନ୍ମଲାଭ କରେ ॥୨୭॥

ସାତ୍ତ୍ୱିକ କର୍ମଦ୍ୱାରା ଦିବ୍ୟ ଜ୍ୟୋତିର୍ମୟ ସ୍ୱର୍ଗ ଲୋକ ପ୍ରାପ୍ତହୁଏ । ରାଜସିକ କର୍ମଦ୍ୱାରା ରଜୋଗୁଣଯୁକ୍ତ ଦୁଃଖମୟ ଲୋକ ଲାଭ କରେ । ତାମସିକ କର୍ମଦ୍ୱାରା ଉତ୍କଟ ଶୋକଯୁକ୍ତ ତମୋମୟ ଯୋନିରେ ଜନ୍ମ ଗ୍ରହଣ କରେ ॥୨୮॥ ଏହିପରି ନିଜର କର୍ମ ଓ ଗୁଣ ଅନୁସାରେ ଦେବଯୋନି, ମନୁଷ୍ୟଯୋନି କିମ୍ବା ପଶୁପକ୍ଷୀପରି ତିର୍ଯ୍ୟକ୍‌ଯୋନିରେ ଜନ୍ମ ଗ୍ରହଣ କରି ଏହି ଅଜ୍ଞାନୀ ଜୀବ କେତେବେଳେ ପୁରୁଷ, କେତେବେଳେ ସ୍ତ୍ରୀ ବା କେତେବେଳେ ନପୁଂସକ ହୁଏ ॥୨୯॥ ଭୋକଶୋଷରେ ବିକଳ ହୋଇ କୁକୁର ଯେପରି ଘର ଘର ବୁଲୁଥାଏ, ସେହିପରି ବାସନାଯୁକ୍ତ ଜୀବ ଉଚ୍ଚ ନୀଚ ମାର୍ଗରେ ଯାତ୍ରା କରି କେବେ ଉପର, କେବେ ମଧ୍ୟମ, କେବେ ନିମ୍ନ ଲୋକଗାମୀ ହୁଏ ଏବଂ କର୍ମ ଅନୁସାରେ ସୁଖଦୁଃଖ ଭୋଗ କରେ ॥୩୦-୩୧॥ ଆଧିଦୈବିକ, ଆଧିଭୌତିକ ଓ ଆଧ୍ୟାତ୍ମିକ ଏହି ତିନି ପ୍ରକାର ଦୁଃଖମଧ୍ୟରୁ ଗୋଟିଏ ହେଲେ ଦୁଃଖରୁ ଜୀବକୁ ନିସ୍ତାର ମିଳେ ନାହିଁ । ଯଦି ମିଳେ, ତାହା ତାତ୍‌କାଳିକ । ସେହି ମୁହୂର୍ତ୍ତପାଇଁ ॥୩୨॥ ଯେପରି ବ୍ୟକ୍ତିବିଶେଷ ମୁଣ୍ଡରେ କିଛି ବଡ଼ ବୋଝ ନେଉଥିବା ସମୟରେ ବେଳେ ବେଳେ ତାହା କାନ୍ଧକୁ ଓହ୍ଲାଇ ଆଣି ଟିକିଏ ଆଶ୍ୱସ୍ତ ହୁଏ, ସେହିପରି ଏସବୁ ଦୁଃଖର ପ୍ରତିକାର ସାମୟିକ ମାତ୍ର ॥୩୩॥

ସହୃଦୟ ରାଜା, କେବଳ କର୍ମଦ୍ୱାରା ଦୁଃଖର ମୂଳ କର୍ମଫଳରୁ ରକ୍ଷା ପାଇବା ସମ୍ଭବ ନୁହେଁ । କାରଣ କର୍ମ ଓ କର୍ମଫଳ ଉଭୟ ଅବିଦ୍ୟାଜନିତ । ଗୋଟିଏ ସ୍ୱପ୍ନଦ୍ୱାରା ଅନ୍ୟ ଗୋଟିଏ ସ୍ୱପ୍ନ ଦୂର ହୁଏ ନାହିଁ ॥୩୪॥ ସ୍ୱପ୍ନାବସ୍ଥାରେ ଜୀବର ପ୍ରକୃତ ଶରୀର ନୁହେଁ, ତମୋମୟ ଲିଙ୍ଗ ଶରୀର ବିଚରଣ କରେ । ସେହିପରି ଆତ୍ମଜ୍ଞାନରୂପ ପୁରୁଷାର୍ଥ ନ ରହିଲେ ଜୀବ ଏହି ସଂସାରର କର୍ମବନ୍ଧନରୁ ମୁକ୍ତି ପାଏ ନାହିଁ ॥୩୫॥ ଯଦିଓ ଆତ୍ମା ହେଉଚି ସେହି ପୁରୁଷାର୍ଥର ସ୍ୱରୂପ, ତଥାପି ଜୀବ ବାରମ୍ବାର ଏହି ଜନ୍ମମରଣରୂପୀ ଅନର୍ଥପରମ୍ପରାରେ ଘାଣ୍ଟିହୁଏ । ତେଣୁ ଏଥିରୁ ମୁକ୍ତିର ଏକମାତ୍ର ଉପାୟ ହେଉଚି ଜୀବର ପରମଗୁରୁ ଶ୍ରୀହରିଙ୍କଠାରେ ଅଚଳା ଭକ୍ତି ରଖିବା ॥୩୬॥ ଭଗବାନ ବାସୁଦେବଙ୍କଠାରେ ଏକାଗ୍ର ନିଷ୍ଠାପୂର୍ବକ ଭକ୍ତିଭାବ ରଖିଲେ ଜ୍ଞାନ ଓ ବୈରାଗ୍ୟର ଉଦୟ ହୋଇଥାଏ ॥୩୭॥ ରାଜର୍ଷି, ଏହି ଭକ୍ତିଭାବ ପୁଣି ଭଗବାନଙ୍କର କଥାଶ୍ରିତ । ତେଣୁ ଯେଉଁ ଶ୍ରଦ୍ଧାବାନ୍ ବ୍ୟକ୍ତି ପ୍ରତିଦିନ ଏହାକୁ ଶ୍ରବଣ କରେ ବା ପାଠ କରେ ତାର ଭକ୍ତିଭାବ ସ୍ୱତଃ ଜାଗ୍ରତ ହୁଏ ॥୩୮॥ ରାଜା, ଯେଉଁଠି ଶୁଦ୍ଧଚିତ୍ତ ଭଗବାନଙ୍କ ଭକ୍ତ ସାଧୁମାନେ ଓ ଭଗବତ୍ ଗୁଣାବଳୀର କୀର୍ତ୍ତନ ଶ୍ରବଣ ପାଇଁ ବ୍ୟାକୁଳ ହୃଦୟରେ ରହିଥା'ନ୍ତି, ସେଠାରେ ଚତୁର୍ଦିଗରେ ମହାତ୍ମାମାନଙ୍କ ମୁଖନିଃସୃତ ଶ୍ରୀମଧୁସୂଦନଙ୍କର କେବଳ ଅମୃତବାହିନୀ କୀର୍ତ୍ତିନଦୀ ପ୍ରବାହିତ ହେଉଥାଏ । ସେହି କୀର୍ତ୍ତିରସକୁ ଯେ ମନ କର୍ଣ୍ଣ ଦେଇ ପାନ କରେ, କ୍ଷୁଧା, ତୃଷା, ଭୟ, ଶୋକ, ମୋହ କିଛି ତାକୁ ସ୍ପର୍ଶ କରିପାରେ ନାହିଁ ॥୩୯-୪୦॥

କିନ୍ତୁ ଭଗବାନଙ୍କର କଥାରୂପକ ଯେଉଁ ଅମୃତର ସିନ୍ଧୁ ରହିଛି, ଜୀବମାନଙ୍କର ସେଥିପ୍ରତି ଶ୍ରଦ୍ଧା ଜାତ ହୁଏ ନାହିଁ । କାରଣ କ୍ଷୁଧା, ତୃଷା ଆଦି ଉପଦ୍ରବର ଘେରରେ ସେମାନେ ପଡ଼ିରହିଥାଆନ୍ତି ॥୪୧॥ ପ୍ରଜାପତିମାନଙ୍କର ପିତା ବ୍ରହ୍ମା, ସାକ୍ଷାତ୍ ଭଗବାନ ଶିବ, ମନୁ, ଦକ୍ଷ ଆଦି ପ୍ରଜାପତି, ସନକାଦି ନୈଷ୍ଠିକ ବ୍ରହ୍ମଚାରୀ, ମରୀଚି, ଅତ୍ରି, ଅଙ୍ଗିରା, ପୁଲହ, ପୁଲସ୍ତ୍ୟ, କ୍ରତୁ, ଭୃଗୁ, ବଶିଷ୍ଠ ଏବଂ ମୋ ସହିତ ଏହି ସମସ୍ତ ବ୍ରହ୍ମବାଦୀ ବାଚସ୍ପତି (ଭାଷାର ଅଧୀଶ୍ୱର) ହେଲେ ମଧ୍ୟ ତପ, ବିଦ୍ୟା, ସମାଧି

ଆଦି ଉପାୟଦ୍ୱାରା ସମସ୍ତଙ୍କୁ ଦେଖିପାରୁଥିବା ସେହି ପରମେଶ୍ୱରଙ୍କୁ ଖୋଜି ଖୋଜି ମଧ୍ୟ ଦେଖିପାରନ୍ତି ନାହିଁ ॥୪୨-୪୪॥ ଶବ୍ଦବ୍ରହ୍ମରୂପକ ବେଦ ଏପରି ବିସ୍ତାରିତ ଯେ, ତାର ପାର ପାଇବା କଷ୍ଟକର । ସେହି ବେଦମନ୍ତ୍ରମାନଙ୍କରେ କଥିତ ଦେବତାମାନଙ୍କ ରୂପରେ ଭଗବାନଙ୍କୁ ଆରାଧନା କରାଗଲେ ମଧ୍ୟ ତାଙ୍କର ସ୍ୱରୂପକୁ ଜାଣିହୁଏ ନାହିଁ । ଯଦି ଏକାନ୍ତ ଚିତ୍ତରେ ଜୀବ ତାଙ୍କୁ ଧ୍ୟାନ କରେ ଏବଂ ସେ ଅନୁଗ୍ରହ କରନ୍ତି, ତେବେ ଏ ସବୁ ଲୌକିକ ଓ ବୈଦିକ କ୍ରିୟାକର୍ମରେ ତା'ର ଆଉ ମନ ଲାଗେ ନାହିଁ ॥୪୫-୪୬॥

ପ୍ରାଚୀନବର୍ହି, ତୁମେ ଏହି କ୍ରିୟାକର୍ମରେ ପରମାର୍ଥ ବୁଦ୍ଧିକୁ ଆରୋପ କର ନାହିଁ । ଏପରି ଶ୍ରୁତିମଧୁର କର୍ମକାଣ୍ଡ ପରମାର୍ଥକୁ ସ୍ପର୍ଶ କରେ ନାହିଁ । ଅଜ୍ଞାନତା ହେତୁ ଏହା ପରମାର୍ଥ ବୋଲି ଜଣାପଡ଼େ ॥୪୭॥ ଯେଉଁମାନଙ୍କର ବୁଦ୍ଧି ମଳିନ ପଡ଼ିଯାଇଥାଏ, ସେମାନେ ପ୍ରକୃତ ବେଦକୁ ଜାଣନ୍ତି ନାହିଁ । ବେଦ କେବଳ କର୍ମକାଣ୍ଡ ବୋଲି ସେମାନେ ମନେ କରନ୍ତି । ନିଜର ଆତ୍ମାଲୋକରେ ଭଗବାନ ଜନାର୍ଦ୍ଦନ ବିରାଜମାନ, ଏହା ସେମାନେ ଜାଣିପାରନ୍ତି ନାହିଁ ॥୪୮॥ ପୂର୍ବମୁଖୀ କୁଶାଗ୍ରଦ୍ୱାରା ତୁମେ ଏହି ମହୀମଣ୍ଡଳକୁ ଆଚ୍ଛାଦନ କରିଦେବାରୁ ଓ ଯଜ୍ଞରେ ପଶୁବଧ କରିବାରୁ ତୁମର ଅଭିମାନ ବଢ଼ି ଯାଇଛି ଏବଂ ଉନ୍ମତ୍ତ ଭାବରେ ତୁମେ ଏହି ସବୁ କର୍ମରେ ଲାଗି ରହିଛ । କିନ୍ତୁ ଯେଉଁ କର୍ମରେ ଶ୍ରୀହରିଙ୍କର ସନ୍ତୋଷ ହୁଏ, ତାହା ହିଁ ପ୍ରକୃତ କର୍ମ ଏବଂ ତାଙ୍କଠାରେ ନିଜର ମତି ସ୍ଥିର ରଖିବା ହିଁ ପ୍ରକୃତ ବିଦ୍ୟା ॥୪୯॥ ଶ୍ରୀହରି ଦେହଧାରୀମାନଙ୍କର ଆତ୍ମା ଏବଂ ସେ ସ୍ୱୟଂ ପ୍ରକୃତି ଓ ତା'ର ନିୟନ୍ତା । ସେ ହିଁ ମନୁଷ୍ୟମାନଙ୍କର ଏକମାତ୍ର ମଙ୍ଗଳମୟ ଆଶ୍ରୟସ୍ଥଳ ॥୫୦॥ ସେ ହେଉଛନ୍ତି ପ୍ରିୟତମ ଆତ୍ମା ଏବଂ ତାଙ୍କର ସେବାକଲେ ଅଣୁମାତ୍ର ଭୟ ରହେ ନାହିଁ । ସେ ହିଁ ଗୁରୁ; ସେ ହିଁ ହରି ॥୫୧॥ ନାରଦ କହିଲେ; ପୁରୁଷଶ୍ରେଷ୍ଠ, ମୁଁ ତୁମର ସମସ୍ତ ପ୍ରଶ୍ନର ଉତ୍ତର ଦେଲି । ବର୍ତ୍ତମାନ ମୁଁ ନିଶ୍ଚୟ କରିଥିବା ଏକ ଗୁପ୍ତ ସାଧନବିଷୟ ତୁମେ ଶୁଣ, ମୁଁ ତାହା କହୁଛି ॥୫୨॥

ଏକ ଫୁଲବନରେ ନିଜର ହରିଣୀ ସହିତ ଆନନ୍ଦରେ ବିହାର କରୁଥିବା ଏକ ହରିଣ ଛୋଟଛୋଟ ଦୂବଆଦି ଅଙ୍କୁର ଚରିବାରେ ଲାଗିଛି । ତା'ର କାନରେ ଭ୍ରମରର ମଧୁର ଗୁଞ୍ଜନ ଲାଗି ରହିଛି । ତା'ର ଆଗରେ ଅନ୍ୟଜୀବଙ୍କୁ ମାରି ଉଦର ପୂରଣ କରୁଥିବା ହିଂସ୍ର ବ୍ୟାଘ୍ର ଠିଆ ହୋଇ ରହିଛି ଏବଂ ପଛରୁ ଶିକାରକୁ ଆସିଥିବା ଜଣେ ବ୍ୟାଧ ତାକୁ ମାରିବାପାଇଁ ଶରସନ୍ଧାନ କରି ସାରିଲାଣି । କିନ୍ତୁ ହରିଣଟି ଅନ୍ୟମନସ୍କ ହୋଇ ରହିଛି । ଏହି ସ୍ଥିତିକୁ ଟିକିଏ ବିଚାର କର ॥୫୩॥ ରାଜା, ଏହି ରୂପକର ଅର୍ଥ ହେଉଛି, ତୁମେ ହେଉଛ ଏହି ଶରବିଦ୍ଧ ହେବାକୁ ଯାଉଥିବା ହରିଣ । ଆପାତତଃ ଲୋଭନୀୟ ସ୍ତ୍ରୀମାନେ ହେଲେ ପୁଷ୍ପ । ଏଠାରେ ତୁମେ ରହି ପୁଷ୍ପର ମଧୁ ଓ ଗନ୍ଧ ପରି କ୍ଷୁଦ୍ରକ୍ଷୁଦ୍ର କର୍ମଦ୍ୱାରା ଜିହ୍ୱା ଏବଂ ଜନନେନ୍ଦ୍ରିୟକୁ ସୁଖ ଲାଗିବାଭଳି ଭୋଜନ ଓ ସ୍ତ୍ରୀସଙ୍ଗରୂପ ଭୋଗରେ ମସ୍ତ ହୋଇ ରହିଛ । ସ୍ତ୍ରୀ-ପୁତ୍ରଙ୍କର ମଧୁର ଭାଷଣ ଭ୍ରମରର ମଧୁର ଗୁଞ୍ଜନ ପରି ତୁମର କର୍ଣ୍ଣଗହ୍ୱରକୁ ଆସକ୍ତ କରୁଛି । ବ୍ୟାଘ୍ର ପରି କାଳ ଦିନଦିନ ରାତିରାତି ଧରି ତୁମର ଆୟୁଷକୁ ହରଣ କରି ଚାଲିଛି । କିନ୍ତୁ ତୁମର ସେଥିପ୍ରତି ଚିନ୍ତା ନାହିଁ । ତୁମେ ତୁମର ଆହାର ବିହାରରେ ମତ୍ତ ହୋଇ ରହିଛ । ତୁମର ପଛରେ ଶିକାରୀ ରୂପକ କୃତାନ୍ତ (ଯମ) ଛପି ରହି ତୁମକୁ ଶରବିଦ୍ଧ କରିବାପାଇଁ ବାହାରିଛି ॥୫୪॥ ମୃଗତୁଲ୍ୟ ତୁମର ସେହି ଅବସ୍ଥାକୁ ତୁମେ ବିଚାର କର । ନିଜର ଚିତ୍ତକୁ ହୃଦୟରେ ନିରୁଦ୍ଧ କର । ନଦୀପରି ଏଣେତେଣେ ଚାଲିଯାଉଥିବା ଶ୍ରବଣେନ୍ଦ୍ରିୟକୁ ଅନ୍ତର୍ମୁଖୀ କର । ଏହା ଗୃହସ୍ଥାଶ୍ରମ ନୁହେଁ ଅଙ୍ଗନାଶ୍ରମ । ଏହାକୁ ଛାଡ଼ି ପରମହଂସମାନଙ୍କର ଆଶ୍ରୟ ଶ୍ରୀହରିଙ୍କୁ ପ୍ରସନ୍ନ କର । କ୍ରମଶଃ ବିଷୟବାସନାରୁ ନିବୃତ୍ତ ହୁଅ ॥୫୫॥

ରାଜା କହିଲେ, ନାରଦ ଭଗବାନ, ଆପଣ ଯାହା କହିଲେ, ମୁଁ ସବୁ ଶୁଣିଲି ଏବଂ ବିଶେଷ ଧ୍ୟାନ ଦେଇ ତାହା ବିଚାର କଲି । ଯେଉଁ ଆଚାର୍ଯ୍ୟମାନେ ବିଭିନ୍ନ କର୍ମ ବିଷୟରେ ମୋତେ ଉପଦେଶ ଦେଉଛନ୍ତି, ସେମାନଙ୍କର ଏବିଷୟରେ ଜ୍ଞାନ ନାହିଁ; ଥିଲେ ସେମାନେ ମୋତେ କାହିଁକି ଏପରି ଉପଦେଶ ଦେଇ ନ ଥାନ୍ତେ ? ॥୫୬॥ ଆଚାର୍ଯ୍ୟମାନେ ଆତ୍ମଜ୍ଞାନ ସମ୍ପର୍କରେ ମୋ

ମନମଧ୍ୟରେ ଯେଉଁ ମହାନ୍ ସଂଶୟ ସୃଷ୍ଟି କରିଥିଲେ, ଆପଣଙ୍କ ଉପଦେଶଦ୍ୱାରା ତାହା ଦୂର ହୋଇଗଲା । ଇନ୍ଦ୍ରିୟବୃତ୍ତିର ଊର୍ଦ୍ଧ୍ୱରେ ଥିବାଯୋଗୁଁ ଏହି ତତ୍ତ୍ୱ ବିଷୟରେ ଋଷିମାନଙ୍କର ମଧ୍ୟ ମୋହ ଜାତ ହୁଏ ।।୫୭।। ବେଦବାଦୀମାନେ ଏହା କହିବା ଶୁଣାଯାଏ ଯେ ପୁରୁଷ ଇହଲୋକରେ ଯେଉଁ ଶରୀରଦ୍ୱାରା କର୍ମ କରିଯାଏ, ସେଇ ଶରୀର ତ୍ୟାଗ କରିବାପରେ ପରଲୋକରେ କର୍ମଦ୍ୱାରା ନିର୍ମିତ ଅନ୍ୟ ଏକ ଶରୀରରେ ତାହାର ଫଳ ଭୋଗ କରେ । ଏହା କଣ କେବେ ହୋଇପାରେ ? ଯେଉଁ କର୍ମ ସବୁ ଇହ ଲୋକରେ କରାଯାଏ, ତାହା ତ ଶେଷ ହେବାପରେ ଅଦୃଶ୍ୟ ହୋଇଯାଏ । ପରଲୋକରେ ଫଳ ଦେବାପାଇଁ ପୁଣି କିପରି ତାହା ପ୍ରକଟ ହୁଏ ? ।।୫୮-୫୯।।

ନାରଦ କହିଲେ, ଯେଉଁ ସ୍ଥୂଳ ଶରୀରଦ୍ୱାରା ମନୁଷ୍ୟ କର୍ମ କରେ, ତାହା ମନ-ବୁଦ୍ଧି ଅହଙ୍କାରରୂପୀ ଲିଙ୍ଗଶରୀରଦ୍ୱାରା ଚାଳିତ ହୁଏ, ସ୍ଥୂଳ ଶରୀର ନଷ୍ଟ ହେଲେ ମଧ୍ୟ ଫଳଭୋଗପାଇଁ ଏହି ଲିଙ୍ଗଶରୀର ରହିଥାଏ ।।୬୦।। ସ୍ୱପ୍ନାବସ୍ଥାରେ ସୁପ୍ତ ଶରୀର ପଡିରହିଥିବାବେଳେ ମନୁଷ୍ୟ ଯେପରି ବିଭିନ୍ନ କର୍ମ କରୁଥିବାର ଦେଖେ, ସେହିପରି ଏହି ଶରୀର ଛାଡ଼ିବା ପରେ ମନୁଷ୍ୟ କର୍ମଫଳଜନିତ ଅନ୍ୟ ଦେହ ଗ୍ରହଣ କରି କୃତକର୍ମର ଫଳ ଭୋଗ କରେ ।।୬୧।। ଏହି ମନଦ୍ୱାରା ଜୀବ ତାର ଦେହକୁ 'ମୁଁ' ଏବଂ ତା'ର ସ୍ତ୍ରୀ ପୁତ୍ର ଧନ ଆଦିକୁ 'ମୋର' ବୋଲି କହୁଥାଏ । ଏହା ଭାବି ସେ ଯେଉଁ ଭଲମନ୍ଦ କର୍ମ କରିଯାଏ, ତାହା ନିଜ ଉପରକୁ ନେଉଥାଏ ଏବଂ ସେଥିପାଇଁ ପୁଣି ସଂସାରରେ ତାକୁ ଏହି ବୃଥା ଜନ୍ମ ନେବାକୁ ପଡ଼େ ।।୬୨।। ଯେପରି ଜ୍ଞାନେନ୍ଦ୍ରିୟ ଓ କର୍ମେନ୍ଦ୍ରିୟ ଏହି ଉଭୟଙ୍କ କାର୍ଯ୍ୟରୁ ସେମାନଙ୍କୁ କାମରେ ଲଗାଉଥିବା ଚିତ୍ତ ସମ୍ପର୍କରେ ଧାରଣା କରାଯାଇପାରେ, ସେହିପରି ଜୀବର ଚିତ୍ତବୃତ୍ତି ଦ୍ୱାରା ପୂର୍ବଜନ୍ମରେ ସେ କଣ କରୁଥିଲା, ତାହା ଜଣାପଡ଼ିଯାଏ ।।୬୩।। ଏହି ଦେହରେ ଅନୁଭୂତ ନ ହୋଇଥିବା ଅଦେଖା ଅଶୁଣା ବସ୍ତୁ ବେଳେ ବେଳେ ସ୍ୱପ୍ନରେ ଦେଖାଯାଏ ।।୬୪।। ତେଣୁ ରାଜା, ତୁମକୁ ମାନିବାକୁ ପଡ଼ିବ ଯେ ଲିଙ୍ଗଦେହରେ ଜୀବ ପୂର୍ବ ଜନ୍ମରେ ତାହା ଅନୁଭବ କରିଥିଲା । କାରଣ ନ ଥିବା ବସ୍ତୁ ମନରୁ କେବେ ସୃଷ୍ଟି ହୋଇପାରିବ ନାହିଁ ।।୬୫।। ରାଜା, ତୁମର ମଙ୍ଗଳପାଇଁ କହୁଚି ଶୁଣ, ମନ ହିଁ ମନୁଷ୍ୟର ପୂର୍ବଜନ୍ମର ରୂପ ଓ ଭବିଷ୍ୟତ୍‌ରେ ତାହା କଣ ହେବ, ତାର ସୂଚନା ସେ ଦେଇଥାଏ । ଯେଉଁମାନଙ୍କର ଭବିଷ୍ୟତ୍ ରୂପ ନାହିଁ, ଅର୍ଥାତ୍ ଯେଉଁମାନେ ଜୀବନ୍ମୁକ୍ତ, ମନରୁ ହିଁ ସେ ସୂଚନା ସେମାନଙ୍କୁ ମିଳିଥାଏ ।।୬୬।।

କେବେ କେବେ ସ୍ୱପ୍ନରେ ଦେଶ କାଳ ଓ କ୍ରିୟା ସମ୍ପର୍କୀୟ ଏପରି ଦୃଶ୍ୟମାନ ଦେଖାଯାଏ, ଯାହା ପୂର୍ବରୁ ଦେଖାଯାଇ ନାହିଁ ବା ଶୁଣାଯାଇ ନାହିଁ (ଯଥା ପର୍ବତ ଶିଖରରେ ସମୁଦ୍ର, ଦିନବେଳେ ତାରା ବା ନିଜର ମୁଣ୍ଡ ଛିଡ଼ି ପଡ଼ିଥିବା ଇତ୍ୟାଦି) । ଏହା ନିଦ୍ରାଦୋଷର କାରଣରୁ ହୋଇଥାଏ ।।୬୭।। ଇନ୍ଦ୍ରିୟଗୋଚର ବିଭିନ୍ନ ପଦାର୍ଥ ମନମଧ୍ୟକୁ ବାରମ୍ବାର ଭୋଗରୂପରେ ଆସେ ଏବଂ ଭୋଗ ଶେଷ ହୋଇଗଲେ ଚାଲିଯାଏ । ଲୋକ ସମସ୍ତେ ହେଉଛନ୍ତି ମନଯୁକ୍ତ ।।୬୮।। କିନ୍ତୁ ଶୁଦ୍ଧ ଏକନିଷ୍ଠ ମନ ଯଦି ଭଗବାନଙ୍କଠାରେ ଲଗ୍ନ ହୋଇଯାଏ, ତା'ହେଲେ (ଦୃଶ୍ୟ ଅଦୃଶ୍ୟ) ସମସ୍ତ ବିଶ୍ୱ ତା'ଆଗରେ ଉଦ୍‌ଭାସିତ ହୋଇଉଠେ, ଯେପରିକି ଅଦୃଶ୍ୟ ରାହୁ ଦୃଶ୍ୟମାନ ଚନ୍ଦ୍ରର ସମ୍ପର୍କରେ ଆସି ସ୍ପଷ୍ଟରୂପେ ପରିଦୃଷ୍ଟ ହୁଏ ।।୬୯।। ଯେ ପର୍ଯ୍ୟନ୍ତ ବୁଦ୍ଧି, ମନ, ଇନ୍ଦ୍ରିୟ, ଇନ୍ଦ୍ରିୟର ବିଷୟ ଏବଂ ରଜ ତମ ଆଦି ଗୁଣ --ଏ ସମସ୍ତଙ୍କୁ ଘେନି ଅନାଦି କାଳରୁ ନିର୍ମିତ ଲିଙ୍ଗ ଶରୀରର ଶେଷ ହୋଇ ନାହିଁ, ସେ ପର୍ଯ୍ୟନ୍ତ 'ମୁଁ' ଏବଂ 'ମୋର' ଏହି ଭାବର ଶେଷ ହେବ ନାହିଁ ।।୭୦।। ଶୋଇବା ସମୟରେ, ମୂର୍ଚ୍ଛା ହେବା ସମୟରେ, ପ୍ରିୟ ବ୍ୟକ୍ତିର ବିଚ୍ଛେଦ ଆଦି ଦୁଃଖସମୟରେ, ଭୟଙ୍କର ଜ୍ୱର ଆଦି ରୋଗ ଏବଂ ମୃତ୍ୟୁ ସମୟରେ 'ମୁଁ ଏବଂ ମୋର' ଏହି ଅହଙ୍କାର ଥମିଯାଏ ସତ୍ୟ, କିନ୍ତୁ ସମ୍ପୂର୍ଣ୍ଣ ଲୋପ ହୁଏ ନାହିଁ ।।୭୧।।

ଯୁବାବସ୍ଥାରେ ଏକାଦଶ ଇନ୍ଦ୍ରିୟଦ୍ୱାରା ଶରୀରର ପୂର୍ଣ୍ଣାଙ୍ଗ ବିକାଶ ଘଟିଥାଏ । ମାତ୍ର ଅମାବାସ୍ୟା ରାତ୍ରିରେ ଚନ୍ଦ୍ର ଥିଲେ ମଧ୍ୟ ଯେପରି ସ୍ପଷ୍ଟ ଦେଖାଯାଏ ନାହିଁ, ସେହିପରି ଗର୍ଭାବସ୍ଥାରେ ଓ ବାଲ୍ୟାବସ୍ଥାରେ ଜୀବର ବିକାଶ ଅସ୍ପଷ୍ଟ ହୋଇଥାଏ ।।୭୨।।

ନିଦ୍ରାରୁ ଉଠିବା ପର୍ଯ୍ୟନ୍ତ ସ୍ୱପ୍ନରେ ଦେଖିଥିବା ବସ୍ତୁର ଯେପରି ଅସ୍ତିତ୍ୱ ରହିଥାଏ, ସେହିପରି ଏହି ସଂସାରଚକ୍ରରୁ ନିଷ୍କୃତି ମିଳିବାପର୍ଯ୍ୟନ୍ତ କାମବାସନାଦିର ଅସ୍ତିତ୍ୱ ରହିଥାଏ ।।୭୩।। ଏହି ଲିଙ୍ଗଶରୀର ହେଉଛି ପଞ୍ଚ ତନ୍ମାତ୍ରରେ ଗଠିତ, ଷୋଡ଼ଶ ବିକାରରେ ବର୍ଦ୍ଧିତ ଏବଂ ତିନି ଗୁଣର ସମାହାର । ଏଥିରେ ଚେତନା ଶକ୍ତି ଯୁକ୍ତ ହେଲେ ଏହାକୁ ଜୀବନାମରେ ଅଭିହିତ କରାଯାଏ ।।୭୪।। ଏହାଦ୍ୱାରା ପୁରୁଷ ନାନା ଦେହ ଗ୍ରହଣ କରେ ଓ ତ୍ୟାଗ କରେ ଏବଂ ହର୍ଷ, ଶୋକ, ଭୟ, ଦୁଃଖ, ସୁଖ ଆଦି ଲାଭ କରେ ।।୭୫।। ଗୋଟିଏ ତୃଣକୁ ଧରି ରହିଥିବା ଜୋକ ଅନ୍ୟ ତୃଣକୁ ଧରିବା ପର୍ଯ୍ୟନ୍ତ ସେଥିରେ ଯେପରି ଲାଖି ରହିଥାଏ, ସେହିପରି ମ୍ରିୟମାଣ ବ୍ୟକ୍ତି ଅନ୍ୟଦେହ ଗ୍ରହଣ କରିବା ପୂର୍ବରୁ ଏ ଦେହର ଅଭିମାନକୁ ଛାଡ଼ିପାରେ ନାହିଁ । ରାଜା, ଜୀବ ଏହି ମନ ପ୍ରଧାନ ଲିଙ୍ଗଜନିତ ଭୋଗାଦି ବିଷୟ ଚିନ୍ତାକଲେ ବାରମ୍ବାର ସେଥିପାଇଁ କର୍ମ କରି ଚାଲିଥାଏ; ସେତେବେଳେ ଅଜ୍ଞାନଯୋଗୁ ସେ ଦେହାଦିର କର୍ମବନ୍ଧନରେ ବାନ୍ଧି ହୋଇ ହୋଇ ଯାଉଥାଏ । ଅତଏବ ଏହି କର୍ମବନ୍ଧନରୁ ମୁକ୍ତି ପାଇବାକୁ ହେଲେ ସର୍ବାନ୍ତରାତ୍ମା ଶ୍ରୀହରିଙ୍କୁ ଭଜନ କର । ବିଶ୍ୱର ଉତ୍ପତ୍ତି, ସ୍ଥିତି ଏବଂ ଲୟ ତାଙ୍କରି ଓ ତାଙ୍କରିଦ୍ୱାରା ହୁଏ ବୋଲି ଅନୁଭବ କର ।।୭୬-୭୯।।

ମୈତ୍ରେୟ କହିଲେ, ବିଦୁର, ଭକ୍ତଶ୍ରେଷ୍ଠ ନାରଦ ରାଜା ପ୍ରାଚୀନବର୍ହିଙ୍କୁ ଜୀବ ଓ ଈଶ୍ୱରଙ୍କର ସ୍ୱରୂପ ବିଷୟରେ ଭଲଭାବରେ ଦର୍ଶାଇ ତାଙ୍କଠାରୁ ବିଦାୟ ନେଲେ ଏବଂ ସିଦ୍ଧ ଲୋକକୁ ଗମନ କଲେ ।।୮୦।। ଏହାପରେ ରାଜର୍ଷି ପ୍ରାଚୀନବର୍ହି ପ୍ରଜାପାଳନର ଭାର ନିଜ ପୁତ୍ରମାନଙ୍କ ଉପରେ ଅର୍ପଣ କରି କପିଳାଶ୍ରମକୁ ତପସ୍ୟା କରିବାପାଇଁ ଚାଲିଗଲେ । ସେଠାରେ ସେ ସମସ୍ତ ବିଷୟର ଆସକ୍ତି ତ୍ୟାଗ କରି ଏକାଗ୍ର ମନରେ ଭକ୍ତିପୂର୍ବକ ଶ୍ରୀ ଗୋବିନ୍ଦଙ୍କର ପଦାମ୍ବୁଜକୁ ଧ୍ୟାନ କରି ସାରୂପ୍ୟ ପଦ ପ୍ରାପ୍ତ ହେଲେ ।।୮୧-୮୨।। ନିର୍ମଳ-ହୃଦୟ ବିଦୁର, ପରୋକ୍ଷରେ ଦେବର୍ଷି ନାରଦଙ୍କର କଥିତ ଏହି ଆତ୍ମଜ୍ଞାନ ବିଷୟ ଯେ ଶୁଣିବ ବା ଶୁଣାଇବ ସେ ଶୀଘ୍ର ଏହି ଲିଙ୍ଗଦେହର ବନ୍ଧନରୁ ମୁକ୍ତ ହୋଇଯିବ ।।୮୩।। ଦେବର୍ଷିଶ୍ରେଷ୍ଠ ନାରଦଙ୍କର ମୁଖନିଃସୃତ ଏହି ଆତ୍ମଜ୍ଞାନ ଶ୍ରୀମୁକୁନ୍ଦଙ୍କର ଯଶରେ ମଣ୍ଡିତ ହୋଇଥିବାଯୋଗୁଁ ତ୍ରିଭୁବନକୁ ପବିତ୍ର କରେ ଏବଂ ଅନ୍ତଃକରଣକୁ ଶୁଦ୍ଧ କରେ । ଏହାକୁ କୀର୍ତ୍ତନ କରୁଥିବା ବ୍ୟକ୍ତି ପରମପଦ ଲାଭ କରି ସମସ୍ତ ବନ୍ଧନରୁ ମୁକ୍ତ ହୋଇଯାଏ ଏବଂ ଆଉ ଏ ସଂସାରଚକ୍ରରେ ଭ୍ରମିତ ହୁଏ ନାହିଁ ।।୮୪।। ଅଧ୍ୟାତ୍ମଜ୍ଞାନ ଅଦ୍ଭୁତ ଓ ପରୋକ୍ଷ ଏବଂ ମୁଁ ଏହା ଲାଭ କରିପାରିଛି । ଏହାକୁ ଆୟତ୍ତ କରିପାରିଲେ ବୁଦ୍ଧିଯୁକ୍ତ ସ୍ତ୍ରୀ-ପୁରୁଷ ପ୍ରତ୍ୟେକ ଜୀବର ଦେହାଭିମାନ ଏବଂ କର୍ମଫଳର ଭୋଗ ବିଷୟକ ସଂଶୟ ଛିନ୍ନ ହୁଏ ।।୮୫।।

## ତ୍ରିଂଶ ଅଧ୍ୟାୟ

# ପ୍ରଚେତାମାନଙ୍କ ବରଲାଭ

ବିଦୁର ପଚାରିଲେ, ବ୍ରହ୍ମନ୍ ! ଆପଣ ରାଜା ପ୍ରାଚୀନବର୍ହିଙ୍କ ପୁତ୍ରମାନଙ୍କର କଥା କହିଲେ । ସେମାନେ ରୁଦ୍ରଗୀତଦ୍ୱାରା ଶ୍ରୀହରିଙ୍କୁ ସନ୍ତୁଷ୍ଟ କରି କେଉଁ ସିଦ୍ଧି ଲାଭ କଲେ ? ।।୧।। ହେ ବୃହସ୍ପତିଙ୍କର ଶିଷ୍ୟ, ମୋକ୍ଷଦାତା ଶ୍ରୀହରିଙ୍କର ଅତିପ୍ରିୟ ସଖା ଶଙ୍କରଙ୍କର ଦୈବାତ୍ ସାନ୍ନିଧ୍ୟ ଲାଭ କରି ପ୍ରଚେତାଗଣ ନିଶ୍ଚୟ ମୁକ୍ତି ପାଇଯାଇଥିଲେ । କିନ୍ତୁ ତା'ପୂର୍ବରୁ ଇହଲୋକରେ ବା ପରଲୋକରେ ସେମାନଙ୍କୁ କ'ଣ ମିଳିଲା, ତାହା ଦୟାକରି କହନ୍ତୁ ।।୨।।

ମୈତ୍ରେୟ କହିଲେ, ବିଦୁର, ପ୍ରଚେତାମାନେ ପିତାଙ୍କ ଆଦେଶ ପାଳନ କରି ସମୁଦ୍ରମଧ୍ୟରେ ଠିଆ ହୋଇ ରୁଦ୍ରଗୀତକୁ ଜପ କଲେ ଏବଂ ଏହି ଜପରୂପୀ ଯଜ୍ଞ ଓ ତପସ୍ୟାଦ୍ୱାରା ଭଗବାନ ଶ୍ରୀହରିଙ୍କୁ ସନ୍ତୁଷ୍ଟ କଲେ ।।୩।। ଏହିପରି ତପସ୍ୟା କରି କରି

ସେମାନଙ୍କର ଦଶ ହଜାର ବର୍ଷ ବିତିଯିବା ପରେ ପୁରାଣପୁରୁଷ ଶ୍ରୀ ନାରାୟଣ ସେଠାରେ ଆବିର୍ଭୂତ ହୋଇ ମନୋହର କାନ୍ତିଦ୍ୱାରା ସେମାନଙ୍କର ତପସ୍ୟାଜନିତ କ୍ଳେଶ ଦୂର କଲେ । ସେ ଗରୁଡ଼ଙ୍କର କାନ୍ଧରେ ଆରୋହଣ କରିଥିଲେ । ମେରୁ ଶୃଙ୍ଗଙ୍କୁ ଆରୋହଣ କରିଥିବା କୃଷ୍ଣମେଘ ପରି ସେ ଦେଖାଯାଉଥିଲେ । ସେ ପୀତବସ୍ତ୍ର ଓ ଗ୍ରୀବାରେ କୌସ୍ତୁଭ ମଣି ପରିଧାନ କରି ନିଜର ତେଜରେ ଦିଗ୍‌ବିଦିଗ୍‌ର ଅନ୍ଧକାର ଦୂର କରିଦେଲେ ।।୪-୫।। ଚକ୍‌ଚକ୍ କରୁଥିବା କିରୀଟ ଓ ସ୍ୱର୍ଣ୍ଣାଳଙ୍କାରଦ୍ୱାରା ତାଙ୍କର କପୋଳ ଓ ମୁଖମଣ୍ଡଳ ଶୋଭା ପାଉଥିଲା । ସେ ଆଠ ପ୍ରକାର ଆୟୁଧ ଧାରଣ କରିଥିଲେ । ସୁରେନ୍ଦ୍ରଙ୍କ ସମେତ ଦେବଗଣ, ମୁନିଗଣ ଓ ତାଙ୍କର ପାର୍ଷଦମାନେ ତାଙ୍କୁ ସେବା କରୁଥିଲେ । ଗରୁଡ଼ଙ୍କ ମୁଖରୁ ତାଙ୍କ କୀର୍ତ୍ତିର ଗୀତି ଶୁଣାଯାଉଥିଲା ।।୬।। ପ୍ରଭୁଙ୍କର ସ୍ଥୂଳ ବର୍ତ୍ତୁଳ ଅଷ୍ଟଭୁଜ ମଧ୍ୟରେ ସେ ଲକ୍ଷ୍ମୀଙ୍କୁ ଧାରଣ କରିଥିଲେ ଏବଂ ବନମାଳା ତାଙ୍କ ବକ୍ଷର ଶୋଭାବର୍ଦ୍ଧନ କରି ଯେପରି ଗର୍ବରେ ଫୁଲିଉଠୁଥିଲା !

ପୁରାଣ ପୁରୁଷ ତାଙ୍କ ଶରଣାପନ୍ନ ପ୍ରାଚୀନବର୍ହିଙ୍କର ପୁତ୍ରମାନଙ୍କୁ ଦିବ୍ୟଦୃଷ୍ଟିରେ ଦେଖି ମେଘଗମ୍ଭୀର ସ୍ୱରରେ କହିଲେ, ରାଜପୁତ୍ରଗଣ ! ତୁମର ମଙ୍ଗଳ ହେଉ । ସୌହାର୍ଦ୍ଦର ସହିତ ତୁମେମାନେ ଏକନିଷ୍ଠ ଭାବରେ ଧର୍ମ ପାଳନ କରୁଛ । ତୁମର ଏହି ସହୃଦୟତାରେ ମୁଁ ସନ୍ତୁଷ୍ଟ । ବର୍ତ୍ତମାନ ତୁମେ କି ବର ମାଗିବ, ମାଗ ।।୭।। ଯେଉଁ ବ୍ୟକ୍ତି ଅନୁଦିନ ସନ୍ଧ୍ୟା ସମୟରେ ତୁମମାନଙ୍କୁ ସ୍ମରଣ କରିବ, ସେ ନିଜର ଭଳି ତାର ଭାଇମାନଙ୍କୁ ଦେଖିବ ଓ ସମସ୍ତ ପ୍ରାଣୀଙ୍କ ପ୍ରତି ତା'ର ବନ୍ଧୁଭାବ ଜାତ ହେବ ।।୯।। ଯେଉଁମାନେ ଏକାଗ୍ରଚିତ୍ତରେ ସକାଳେ ଓ ସନ୍ଧ୍ୟାରେ ରୁଦ୍ରଗୀତଦ୍ୱାରା ମୋର ସ୍ତୁତି କରିବେ ସେମାନଙ୍କୁ ଅଭୀଷ୍ଟ ବର ସହିତ ଶୁଦ୍ଧ ବୁଦ୍ଧି ମୁଁ ପ୍ରଦାନ କରିବି । ତୁମେମାନେ ଅତିଶୟ ଆଗ୍ରହରେ ପିତାଙ୍କର ଆଜ୍ଞା ପାଳନ କରିଛ । ଏଥିପାଇଁ ତୁମର ମହନୀୟ କୀର୍ତ୍ତି ସଂସାରରେ ପରିବ୍ୟାପ୍ତ ହେବ । ତୁମର ଏକ ବିଶ୍ୱବିଶ୍ରୁତ ପୁତ୍ର ଜାତ ହେବ, ଯେ କି ବ୍ରହ୍ମାଙ୍କଠାରୁ ଗୁଣରେ କମ୍ ହେବ ନାହିଁ ଏବଂ ଯେ ନିଜର ସନ୍ତାନସନ୍ତତିଙ୍କଦ୍ୱାରା ତିନିଲୋକକୁ ପୂର୍ଣ୍ଣ କରିଦେବ ।।୧୦-୧୨।।

ରାଜକୁମାରଗଣ ! କଣ୍ଡୁଋଷିଙ୍କର ତପସ୍ୟା ଭାଙ୍ଗିବାପାଇଁ ଇନ୍ଦ୍ର ପ୍ରମ୍ଲୋଚା ନାମକ ଜଣେ ଅପ୍‌ସରାଙ୍କୁ ପଠାଇଥିଲେ । ତାଙ୍କଠାରୁ କଣ୍ଡୁଙ୍କର ଗୋଟିଏ ସୁନ୍ଦରୀ (କମଳନୟନା) କନ୍ୟା ଜନ୍ମହେଲା । ଅପ୍‌ସରା ସେ କନ୍ୟାଟିକୁ ଛାଡ଼ିଦେଇ ଚାଲିଯିବାରୁ ବୃକ୍ଷମାନେ ତାକୁ ପାଳନ କଲେ ।।୧୩।। କ୍ଷୁଧାରେ ଆତୁର ହୋଇ ଯେତେବେଳେ ସେ କନ୍ୟା ରୋଦନ କରିବାକୁ ଲାଗିଲା, ସେତେବେଳେ ବୃକ୍ଷମାନଙ୍କର ରାଜା ସୋମ ଦୟାପରବଶ ହୋଇ ତାଙ୍କ ଅମୃତବର୍ଷୀ ତର୍ଜନୀ ଅଙ୍ଗୁଳିକୁ ତା'ର ମୁହଁରେ ନେଇ ଦେଇଥିଲେ ।।୧୪।। ମୋତେ ସେବା କରୁଥିବା ତୁମର ପିତା ସନ୍ତାନ ସୃଷ୍ଟିପାଇଁ ତୁମକୁ ଆଦେଶ ଦେଇଛନ୍ତି, ତୁମେମାନେ ଶୀଘ୍ର ସେହି ସୁନ୍ଦରୀ କନ୍ୟାକୁ ବିବାହ କର ।।୧୫।। ଧର୍ମାଚରଣ କରିବାରେ ତୁମେମାନେ ଏକ । ତୁମମାନଙ୍କ ମଧ୍ୟରେ କୌଣସି ପାର୍ଥକ୍ୟ ନାହିଁ । ତେଣୁ ଏକ ଧର୍ମ ଆଚରଣ କରୁଥିବା ତୁମ ସମସ୍ତଙ୍କର ସେ ପତ୍ନୀ ହୋଇ ରହିବେ ଏବଂ ତୁମମାନଙ୍କୁ ସମାନ ଭାବରେ ଶ୍ରଦ୍ଧା କରିବେ ।।୧୬।। ତୁମେମାନେ ମୋର ଅନୁଗ୍ରହରୁ ପୂର୍ଣ୍ଣ ବଳବାନ୍ ରହି ପାର୍ଥିବ ଭୋଗ୍ୟ ବସ୍ତୁମାନଙ୍କୁ ସେବା କରିବ ।।୧୭।। ଶେଷରେ ମୋ ପ୍ରତି ଅଚଳା ଭକ୍ତିଯୋଗୁଁ ତୁମ ହୃଦୟର ସମସ୍ତ କାମବାସନା ରୂପକ ମଳ ଦୂର ହୋଇଯିବ ଏବଂ ତୁମେମାନେ ଇହଲୋକ ଓ ପରଲୋକର ସମସ୍ତ ଭୋଗରୁ ବିରତ ହୋଇ ମୋର ପରମଧାମକୁ ଚାଲିଯିବ ।।୧୮।। ଯେଉଁମାନେ ସବୁ ସମୟରେ ମୋର କଥାରେ ମଗ୍ନ ରହି ସତ୍‌କର୍ମ କରିଚାଲିଥା'ନ୍ତି, ଗୃହସ୍ଥାଶ୍ରମରେ ଥିଲେ ମଧ୍ୟ ଗୃହ ସେମାନଙ୍କର ବନ୍ଧନ ହୁଏ ନାହିଁ ।।୧୯।। ଯେଉଁ ବ୍ରହ୍ମବାଦୀମାନେ ନିଜ ହୃଦୟରେ ମୋତେ ନିତ୍ୟନୂତନ ଭାବରେ ଆରାଧନା କରନ୍ତି, ମୋତେ ଲାଭ କରିବା ପରେ ସେମାନଙ୍କର ଦୁଃଖ, ସୁଖ, ମୋହ ଆଦି ରହେ ନାହିଁ ।।୨୦।।

ମୈତ୍ରେୟ କହିଲେ, ଶ୍ରୀ ହରିଙ୍କର ଦର୍ଶନମାତ୍ରେ ତମୋଗୁଣ ଓ ରଜୋଗୁଣଜାତ ମଳିନତାରୁ ଦୂର ହୋଇଯାଇଥିବା ପ୍ରଚେତାମାନେ ସମସ୍ତ ପୁରୁଷାର୍ଥର ଆଧାର ପରମବନ୍ଧୁ ଭଗବାନ ଜନାର୍ଦ୍ଦନଙ୍କର ବାଣୀ ଶୁଣି ହାତ ଯୋଡ଼ି, ଭକ୍ତିଗଦ୍‌ଗଦ

ଚିତ୍ତରେ ସ୍ତୁତି କରିବାକୁ ଆରମ୍ଭ କଲେ ।।୨୧।। ପ୍ରଚେତାମାନେ ସ୍ତୁତିକରି କହିଲେ, ହେ କ୍ଲେଶବିନାଶନ ପ୍ରଭୁ ! ଆପଣଙ୍କୁ ବାରମ୍ବାର ନମସ୍କାର କରୁଛୁ । ବେଦମାନେ ସକଳ କଲ୍ୟାଣର ସାଧନରୂପକ ଆପଣଙ୍କ ଗୁଣକୀର୍ତ୍ତନରେ ମୁଖରିତ । ଆପଣଙ୍କର ବେଗ ମନ ଓ ବାଣୀର ବେଗଠାରୁ ମଧ୍ୟ ଅଧିକ ଏବଂ ଇନ୍ଦ୍ରିୟଗଣ ଆପଣଙ୍କର ସ୍ୱରୂପକୁ ନିର୍ଦ୍ଧାରଣ କରିପାରନ୍ତି ନାହିଁ । ଆପଣଙ୍କୁ ଆମ୍ଭେ ବାରମ୍ବାର ନମସ୍କାର କରୁଛୁ ।।୨୨।। ଆପଣ ନିଜର ସ୍ୱରୂପ ସ୍ଥିତିଦ୍ୱାରା ଶୁଦ୍ଧ ଓ ଶାନ୍ତ । ମନରୂପ କାରଣରୁ ଆପଣଙ୍କଠାରେ ଆମେ ବୃଥା ଦ୍ୱୈତ ଭାବ ଆରୋପ କରୁ । ଆପଣ ନିଜର ମାୟାଗୁଣରେ ସୃଷ୍ଟି, ସ୍ଥିତି ଓ ଲୟପାଇଁ ବ୍ରହ୍ମା, ବିଷ୍ଣୁ ଏବଂ ଶିବଙ୍କର ରୂପ ଧାରଣ କରନ୍ତି । ଆପଣଙ୍କୁ ଆମେ ନମସ୍କାର କରୁଅଛୁ ।।୨୩।। ଆପଣ ବିଶୁଦ୍ଧ ସତ୍ତ୍ୱସ୍ୱରୂପ । ଆପଣଙ୍କୁ ଜାଣିଲେ ଏହି ସଂସାରବନ୍ଧନ ନଷ୍ଟ ହୋଇଯାଏ; ଆପଣ ସମସ୍ତ ଭକ୍ତଙ୍କର ପ୍ରଭୁ ସ୍ୱୟଂ ବାସୁଦେବ କୃଷ୍ଣ । ଆପଣଙ୍କ କଣ୍ଠଦେଶରେ ପଦ୍ମର ମାଳା ଶୋଭା ପାଉଛି । ଆପଣଙ୍କର ପଦଯୁଗଳ ପଦ୍ମପରି କୋମଳ । ହେ ପଦ୍ମଲୋଚନ ପ୍ରଭୁ ! ଆପଣଙ୍କୁ ଆମେ ନମସ୍କାର କରୁଛୁ ।।୨୪-୨୫।। ପଦ୍ମକେଶର ପରି ସ୍ୱଚ୍ଛ ପୀତାମ୍ବର ଆପଣ ପରିଧାନ କରିଛନ୍ତି । ଆପଣ ସମସ୍ତ ପ୍ରାଣୀଙ୍କର ଆଶ୍ରୟସ୍ଥଳ ଏବଂ ସବୁର ସାକ୍ଷୀ । ଆପଣଙ୍କୁ ଆମେ ନମସ୍କାର କରୁଛୁ ।।୨୬।। ଭଗବାନ ! ଆପଣଙ୍କର ଏହି ରୂପ ଅଶେଷ କ୍ଳେଶ ଦୂର କରେ । ଆପଣ ଆମ ଆଗରେ ଆବିର୍ଭୂତ ହୋଇଛନ୍ତି । ଆମମାନଙ୍କ ପ୍ରତି ଏହାଠାରୁ ଆପଣଙ୍କର ଅଧିକ ଅନୁକମ୍ପା କ'ଣ ହୋଇପାରେ ? ।।୨୭।।

ହେ ଦୀନବତ୍ସଳ ପ୍ରଭୁ, ଆପଣ ସମସ୍ତ ଅମଙ୍ଗଳ ଦୂର କରନ୍ତି । ସବୁବେଳେ ଆପଣ ଆମ ପରି ଦୀନଜନଙ୍କୁ ନିଜର ବୋଲି ମନେ କରିବେ- ଏହି ଆମର ପ୍ରାର୍ଥନା ।।୨୮।। ଆପଣଙ୍କର ଏହି କୃପାଦ୍ୱାରା ଆଶ୍ରିତମାନଙ୍କୁ ଶାନ୍ତି ମିଳିବ । ଆପଣ କ୍ଷୁଦ୍ରାଦପି କ୍ଷୁଦ୍ର ପ୍ରାଣୀମାନଙ୍କର ଅନ୍ତରରେ ଅନ୍ତର୍ଯାମୀ ରୂପେ ବିରାଜମାନ । ତେଣୁ ଆପଣଙ୍କର ଉପାସନାରତ ଆମମାନଙ୍କ ହୃଦୟର ଇଚ୍ଛା ଆପଣ କିପରି ଜାଣିପାରୁନାହାନ୍ତି ? ।।୨୯।। ପ୍ରଭୁ, ଆପଣଙ୍କ ଠାରୁ ବରଟିଏ ମାଗୁଛୁ । ଅନନ୍ତବିଭୂତିର ମାଲିକ ହୋଇଥିବା ଯୋଗୁଁ ଆପଣଙ୍କୁ ଅନନ୍ତ ବୋଲି କୁହାଯାଏ । ଯଦି ଭ୍ରମରକୁ ପାରିଜାତ ବୃକ୍ଷ ସହଜରେ ମିଳିଯାଏ, ତା'ହେଲେ ସେ ଅନ୍ୟ କୌଣସି ବୃକ୍ଷର ସେବା କରେ ନାହିଁ । ତେଣୁ ଆପଣଙ୍କ ପାଦମୂଳର ଆଶ୍ରୟ ପାଇବା ପରେ ଆଉ ଆମେ କ'ଣ ବା' ମାଗିବୁ ? ।।୩୦-୩୨।। ଆପଣଙ୍କ ମାୟାରେ ବନ୍ଧା ହୋଇ ଯେତେଦିନ ପର୍ଯ୍ୟନ୍ତ ଆମେ ଇହଲୋକରେ ବିଭିନ୍ନ କର୍ମରେ ଆସକ୍ତ ହୋଇ ଭ୍ରମୁଥିବୁ, ସେ ପର୍ଯ୍ୟନ୍ତ ଜନ୍ମଜନ୍ମାନ୍ତରେ ଆପଣଙ୍କର ଭକ୍ତମାନଙ୍କର ସଙ୍ଗଲାଭ ହେଉଥିବ ।।୩୩।। ଭଗବତ୍ ଭକ୍ତଙ୍କର କ୍ଷଣକପାଇଁ ସଙ୍ଗଲାଭ ସହିତ ସ୍ୱର୍ଗ ବା ମୋକ୍ଷ ତୁଳନୀୟ ନୁହେଁ । ବାକି ଏ ମର୍ତ୍ତ୍ୟର ସୁଖଭୋଗ ତା' ତୁଳନାରେ ଅବା କ'ଣ ହୋଇପାରେ ? ଯେଉଁଠି ଭଗବାନଙ୍କର ପବିତ୍ର ଲୀଳା ଚର୍ଚ୍ଚା ହୁଏ, ସେଠାରେ ଭୋଗତୃଷ୍ଣା ଦୂର ହୋଇ ଶାନ୍ତି ମିଳିଥାଏ । ଯେଉଁଠି ଭକ୍ତସମାଗମରେ ନିଷ୍କାମ ଭାବନାରେ ସନ୍ନ୍ୟାସୀମାନଙ୍କର ଏକମାତ୍ର ଗତି ଭଗବାନ ନାରାୟଣଙ୍କର ବାରମ୍ବାର ଗୁଣଗାନ କରାଯାଇଥାଏ, ସେଠାରେ ପ୍ରାଣୀମାନଙ୍କର କୌଣସି ଶତ୍ରୁତା, ଭୟ ବା ଉଦ୍‌ବେଗ ରହେ ନାହିଁ ।।୩୪-୩୬।। ଆପଣଙ୍କର ଏହି ଭକ୍ତଗଣ ତୀର୍ଥମାନଙ୍କୁ ପବିତ୍ର କରିବାପାଇଁ ପାଦରେ ବୁଲନ୍ତି । ସଂସାରଭୟରେ ଭୀତ ପୁରୁଷମାନଙ୍କୁ ତାହା ନିଶ୍ଚିତ ଆନନ୍ଦ ଦେଇଥାଏ ।।୩୭।। ପ୍ରଭୁ ! ଆପଣଙ୍କର ପ୍ରିୟସଖା ଶଙ୍କରଙ୍କର କ୍ଷଣମାତ୍ର ସଙ୍ଗଲାଭଯୋଗୁଁ ଆପଣଙ୍କୁ ଆମେ ସାକ୍ଷାତ୍ କରି ପାରିଛୁ । ଜନ୍ମମୃତ୍ୟୁ ରୂପକ ଦୁରାରୋଗ୍ୟ ରୋଗର ଆପଣ ହେଉଛନ୍ତି ଶ୍ରେଷ୍ଠ ଚିକିତ୍ସକ । ତେଣୁ ଆପଣ ହିଁ ଆମମାନଙ୍କର ଏକମାତ୍ର ଗତି ।।୩୮।। ପ୍ରଭୁ ! ଯାହା ଆମେ ଉତ୍ତମରୂପେ ଅଧ୍ୟୟନ କରିଛୁ, ସେବା ଓ ସଦାଚାର ଦ୍ୱାରା ଗୁରୁ, ବିପ୍ର ଓ ବୃଦ୍ଧମାନଙ୍କୁ ସନ୍ତୁଷ୍ଟ କରିଛୁ, ବିନା ଅସୂୟାରେ ନମ୍ରତାର ସହିତ ବରେଣ୍ୟ ବ୍ୟକ୍ତି ଭାଇ, ବନ୍ଧୁ ଓ ଅନ୍ୟ ସମସ୍ତ ପ୍ରାଣୀଙ୍କର ସେବା କରୁଛୁ, ଆହାର ବିନା ଦୀର୍ଘକାଳ ଜଳମଧ୍ୟରେ ରହି ତପସ୍ୟା କରିଛୁ, ତାହା ଆପଣଙ୍କ ସନ୍ତୋଷବିଧାନର କାରଣ ହେଉ - ଆମେ ଏହି ବର ଭିକ୍ଷା କରୁଛୁ ।।୩୯-୪୦।।

ପ୍ରଭୁ ! ଆପଣଙ୍କର ଅପାର ମହିମାର ପାର ନ ପାଇ ସ୍ୱାୟମ୍ଭୁବ ମନୁ, ବ୍ରହ୍ମା ଏବଂ ଶିବ, ତଥା ତପ ଏବଂ ଜ୍ଞାନଦ୍ୱାରା ଶୁଦ୍ଧଚିତ୍ତ ଅନ୍ୟାନ୍ୟ ମହାତ୍ମା ସର୍ବଦା ଆପଣଙ୍କର ସ୍ତୁତି କରୁଥା'ନ୍ତି । ତେଣୁ ନିଜର ବୁଦ୍ଧି ଅନୁସାରେ ଆମେ ଆପଣଙ୍କର ଯଶୋଗାନ କରୁଅଛୁ ॥୪୧॥ ଆପଣ ସମଦର୍ଶୀ, ଶୁଦ୍ଧ, ପରମପୁରୁଷ ସତ୍ତ୍ୱମୂର୍ତ୍ତି ଭଗବାନ୍ ବାସୁଦେବ ଅଟନ୍ତି, ଆପଣଙ୍କୁ ଆମେ ନମସ୍କାର କରୁଅଛୁ ॥୪୨॥ ମୈତ୍ରେୟ କହିଲେ; ଏହିପରି ଶରଣବତ୍ସଳ ଭଗବାନ ଶ୍ରୀ ହରି ପ୍ରଚେତାମାନଙ୍କର ସ୍ତୁତିରେ ସନ୍ତୁଷ୍ଟ ହୋଇ ତଥାସ୍ତୁ ବୋଲି କହିଲେ । ତଥାପି ତାଙ୍କୁ ଦର୍ଶନ କରୁଥିବା ପ୍ରଚେତାମାନଙ୍କର ନେତ୍ର ତୃପ୍ତ ହେଉ ନ ଥିଲା । ସେମାନେ ଭଗବାନଙ୍କୁ ଛାଡ଼ିବାକୁ ଚାହୁ ନ ଥିଲେ ମଧ୍ୟ ସେ ନିଜର ପରମଧାମକୁ ଚାଲିଗଲେ ॥୪୩॥

ଏହାପରେ ପ୍ରଚେତାମାନେ ସମୁଦ୍ରରୁ ବାହାରି ଆସି ଦେଖିଲେ ଯେ, ଆକାଶକୁ ଅବରୋଧ କରିଥିବା ବିଶାଳ ଦ୍ରୁମମାନ ପୃଥିବୀକୁ ଆଚ୍ଛାଦିତ କରିଛି । ରାଜା ! ଏହା ଦେଖି ସେମାନେ କ୍ରୁଦ୍ଧ ହେଲେ । ପ୍ରଳୟକାଳର ସମ୍ବର୍ତକ ଅଗ୍ନିପରି ପୃଥିବୀରୁ ଏହି ବୃକ୍ଷମାନଙ୍କୁ ଲୋପ କରିବାପାଇଁ କ୍ରୋଧରେ ସେମାନଙ୍କ ମୁଖରୁ ଅଗ୍ନି ଓ ବାୟୁ ନିର୍ଗତ ହେବାକୁ ଲାଗିଲା ॥୪୪-୪୫॥ ପିତାମହ ବ୍ରହ୍ମା ବୃକ୍ଷମାନେ ଏହିପରି ଭସ୍ମସାତ୍ ହୋଇଯାଉଥିବାର ଦେଖି ପ୍ରାଚୀନବର୍ହିଙ୍କର ପୁତ୍ରମାନଙ୍କୁ ବୁଝାଇସୁଝାଇ ଶାନ୍ତ କଲେ । ଯେଉଁସବୁ ବୃକ୍ଷ ବଞ୍ଚିଯାଇଥିଲେ, ସେମାନେ ଭୟଭୀତ ହୋଇ ବ୍ରହ୍ମାଙ୍କର ପରାମର୍ଶରେ ପ୍ରଚେତାମାନଙ୍କୁ ନିଜର କନ୍ୟା ଦାନ କଲେ ॥୪୬-୪୭॥ ବ୍ରହ୍ମାଙ୍କର ଆଦେଶରେ ମାରିଷା ନାମକ ଏହି କନ୍ୟାଙ୍କୁ ପ୍ରଚେତାମାନେ ବିବାହ କଲେ । ଏହି କନ୍ୟାଙ୍କଠାରୁ ବ୍ରହ୍ମାଙ୍କର ପୁତ୍ର ଦକ୍ଷ (ଶିବଙ୍କୁ ଅବଜ୍ଞା କରି ନିହତ ହୋଇଥିବା)ଙ୍କର ପୁନର୍ଜନ୍ମ ହେଲା ॥୪୮॥ କାଳବଶରୁ ପୂର୍ବ ସୃଷ୍ଟିରେ ଥିବା ପ୍ରଜାମାନଙ୍କର ବିନାଶ ଘଟିଥିଲା । ତେଣୁ ଏହି ଚାକ୍ଷୁଷ ମନ୍ୱନ୍ତରରେ ଦୈବପ୍ରେରିତ ଦକ୍ଷ ପ୍ରଜାପତି ପୁଣି ନୂଆ ନୂଆ ପ୍ରଜା ସୃଷ୍ଟି କଲେ ॥୪୯॥ ଜନ୍ମହେବାମାତ୍ରେ ଦକ୍ଷଙ୍କର ତେଜରେ ଅନ୍ୟ ତେଜସ୍ୱୀମାନେ ନିଷ୍ପ୍ରଭ ହୋଇଗଲେ । ଦକ୍ଷତାର ସହିତ ସେ କର୍ମ କରୁଥିବାଯୋଗୁଁ ତାଙ୍କର ନାମ ଦକ୍ଷ ହେଲା ॥୫୦॥ ବ୍ରହ୍ମା ଦକ୍ଷ ପ୍ରଜାପତିଙ୍କୁ ଅଭିଷିକ୍ତ କରି ସୃଷ୍ଟିକାର୍ଯ୍ୟରେ ନିୟୋଜିତ କଲେ । ଦକ୍ଷ ମଧ୍ୟ ମରୀଚି ଆଦି ଅନ୍ୟ ପ୍ରଜାପତିଙ୍କୁ ସେମାନଙ୍କ ନିଜ ନିଜ କାର୍ଯ୍ୟରେ ନିଯୁକ୍ତ କଲେ ॥୫୧॥

## ଏକତ୍ରିଂଶ ଅଧ୍ୟାୟ

# ନାରଦଙ୍କର ଉପଦେଶ

ମୈତ୍ରେୟ କହିଲେ; ବିଦୁର ! ଦଶଲକ୍ଷବର୍ଷ ବିତିଯିବା ପରେ ପ୍ରଚେତାମାନଙ୍କର ବିବେକଜ୍ଞାନ ଜାତ ହେଲା । ଭଗବାନ ଶ୍ରୀ ହରି ତାଙ୍କୁ ଯାହା କହିଥିଲେ, ତାହା ସ୍ମରଣପୂର୍ବକ ନିଜର ଭାର୍ଯ୍ୟା ମାରିଷାଙ୍କୁ ପୁତ୍ର ଦକ୍ଷଙ୍କ ନିକଟରେ ଛାଡ଼ିଦେଇ ସେମାନେ ଗୃହରୁ ବାହାରିଗଲେ ॥୧॥ ଜାଜଳି ମୁନି ଯେଉଁଠି ସିଦ୍ଧିଲାଭ କରିଥିଲେ, ସେହି ପଶ୍ଚିମ ସମୁଦ୍ରବେଳାରେ ସେମାନେ ପହଞ୍ଚିଲେ । 'ସମସ୍ତ ପ୍ରାଣୀଙ୍କ ମଧ୍ୟରେ ଏକ ଆତ୍ମତତ୍ତ୍ୱ ବିଦ୍ୟମାନ' ଏହି ଆତ୍ମତତ୍ତ୍ୱରୂପ ବ୍ରହ୍ମସତ୍ରର ସଙ୍କଳ୍ପ କରି ସେମାନେ ବସିଗଲେ ॥୨॥ ସେମାନେ ପ୍ରାଣ, ମନ, ବାକ୍ ଓ ଦୃଷ୍ଟିକୁ ବଶୀଭୂତ କଲେ । ଯୋଗାସନମାନଙ୍କଦ୍ୱାରା ଶରୀରକୁ ସ୍ଥିର କଲେ ଏବଂ ଚିତ୍ତକୁ ଶୁଦ୍ଧ ରଖି ପରଂବ୍ରହ୍ମଙ୍କଠାରେ ଲୀନ କଲେ ॥୩॥

ଏହି ସମୟରେ ସେମାନେ ଦେବାସୁରବନ୍ଦିତ ଶ୍ରୀ ନାରଦଙ୍କୁ ଦେଖିପାରିଲେ । ତାଙ୍କୁ ଆସିବାର ଦେଖି ସେମାନେ ଠିଆହୋଇପଡ଼ିଲେ ଏବଂ ତାଙ୍କୁ ପ୍ରଣାମ କରି ଅଭିନନ୍ଦନ ଜଣାଇ ତାଙ୍କର ଯଥାବିଧି ପୂଜା କଲେ ॥୪॥ ନାରଦ ସୁଖରେ ବସିବା ପରେ ସେମାନେ କହିଲେ, ଦେବର୍ଷି ! ଆପଣଙ୍କୁ ସ୍ୱାଗତ । ଆମର ବଡ଼ ଭାଗ୍ୟ, ଆପଣଙ୍କୁ ଆମେ ଆଜି ଦର୍ଶନ କଲୁ । ବ୍ରହ୍ମନ୍ !

ସୂର୍ଯ୍ୟପରି ଆପଣ ସମସ୍ତ ପ୍ରାଣୀଙ୍କୁ ଅଭୟ ଦାନ ପୂର୍ବକ ବିଚରଣ କରନ୍ତି । ପ୍ରଭୁ, ଭଗବାନ ଶିବ ଏବଂ ବିଷ୍ଣୁ ଆମକୁ ଯେଉଁ ଉପଦେଶ ଦେଇଥିଲେ, ଗୃହସଂସାରରେ ଆସକ୍ତ ରହି ଆମେ ତାକୁ ପ୍ରାୟ ଭୁଲି ଯାଇଥିଲୁ । ତେଣୁ ପରମାର୍ଥ ତତ୍ତ୍ୱର ଦର୍ଶନପାଇଁ ଆପଣ ଆମର ଅଧ୍ୟାତ୍ମଜ୍ଞାନକୁ ଜାଗରିତ କରନ୍ତୁ, ଯେପରି ସହଜରେ ଆମେ ଦୁସ୍ତର ଭବସାଗରକୁ ପାର ହୋଇଯିବୁ ॥୫-୭॥

ମୈତ୍ରେୟ କହିଲେ, ପୁଣ୍ୟଶ୍ଳୋକ ଭଗବାନଙ୍କଠାରେ ଦେବର୍ଷି ନାରଦଙ୍କର ଚିତ୍ତ ସର୍ବଦା ଲାଗି ରହିଥାଏ । ପ୍ରଚେତାମାନେ ତାଙ୍କୁ ଏପରି ପଚାରିବାରୁ ସେ ସେମାନଙ୍କୁ ଏହିପରି ଉତ୍ତର ଦେଲେ ॥୮॥

ନାରଦ କହିଲେ, ପ୍ରଚେତାଗଣ ! ଏହି ସଂସାରରେ ମନୁଷ୍ୟମାନଙ୍କର କେବଳ ସେହି ଜନ୍ମ, କର୍ମ, ଆୟୁଷ, ମନ ଓ ବଚନ ସଫଳ ହୁଏ ଯାହାକୁ ବିଶ୍ୱାତ୍ମା ବିଶ୍ୱେଶ୍ୱର ଶ୍ରୀ ହରିଙ୍କର ସେବାରେ ନିୟୋଜିତ କରାଯାଏ ॥୯॥ ଶ୍ରୀ ହରିଙ୍କ କୃପାରୁ ହିଁ ଆତ୍ମଜ୍ଞାନ ଲାଭ ହୁଏ । ତେଣୁ ଶ୍ରୀ ହରିଙ୍କଠାରେ ଚିତ୍ତ ନଥାଇ ଶୁଦ୍ଧଚିତ୍ତ ପିତାମାତାଙ୍କଠାରୁ ଜନ୍ମ ହେବା, ଯଜ୍ଞୋପବୀତ ଧାରଣ କରିବା, ଯଜ୍ଞର ଦୀକ୍ଷା ନେବା, ଦୀର୍ଘ ଆୟୁଷ ଲାଭ କରିବା, ବେଦୋକ୍ତ କର୍ମ, ତପସ୍ୟା, ବାକ୍‌ଚାତୁରୀ, ସ୍ମରଣଶକ୍ତି, ବୁଦ୍ଧି, ଦକ୍ଷତା, ବଳ, ଇନ୍ଦ୍ରିୟମାନଙ୍କ କର୍ମଠତା, ଯୋଗ, ସାଙ୍ଖ୍ୟ, ସନ୍ନ୍ୟାସ, ସ୍ୱାଧ୍ୟାୟ ଆଦିର କିମ୍ବା ଅନ୍ୟ କୌଣସି ଶ୍ରେୟ କାର୍ଯ୍ୟର କୌଣସି ମୂଲ୍ୟ ନ ଥାଏ ॥୧୦-୧୨॥ ସମସ୍ତ ଶ୍ରେୟ କାର୍ଯ୍ୟର ଶେଷ କଥା ହେଉଛି ଆତ୍ମଜ୍ଞାନ, ଏବଂ ସମସ୍ତପ୍ରାଣୀଙ୍କର ପ୍ରିୟ ଓ ଆତ୍ମସ୍ୱରୂପ ଭଗବାନ ଶ୍ରୀ ହରି ହିଁ ଏହି ଆତ୍ମଜ୍ଞାନ ଦାନ କରନ୍ତି ॥୧୩॥ ବୃକ୍ଷମୂଳରେ ଜଳଦାନ କଲେ ଯେପରି ତା'ର ଗଣ୍ଡି, ଶାଖା, ପ୍ରଶାଖା ସବୁ ପାଣି ପାଇଯାଏ, ଭୋଜନଦ୍ୱାରା ଯେପରି ପ୍ରାଣ ତୃପ୍ତ ହେଲେ ସମସ୍ତ ଇନ୍ଦ୍ରିୟ ପରିତୃପ୍ତ ହୁଅନ୍ତି, ସେହିପରି ଭଗବାନ ଅଚ୍ୟୁତଙ୍କର ପୂଜା କଲେ ଆପେ ଆପେ ସବୁ ଦେବତାଙ୍କର ପୂଜା ହୋଇଯାଏ ॥୧୪॥ ଯେପରି ସୂର୍ଯ୍ୟଙ୍କଯୋଗୁଁ ଠିକ୍ ସମୟରେ ମେଘସୃଷ୍ଟି ହୋଇ ବର୍ଷା ହୁଏ ଏବଂ ପୁଣି ଠିକ୍ ସମୟରେ ବାଷ୍ପ ଆକାରରେ ସୂର୍ଯ୍ୟ ଏହି ଜଳକୁ ଟାଣିନିଅନ୍ତି, ଯେପରି ସମସ୍ତ ସ୍ଥାବର ଜଙ୍ଗମ ପ୍ରାଣୀ ପୃଥିବୀରୁ ଜନ୍ମ ହୋଇ ପୁଣି ସେଥିରେ ମିଳାଇ ଯାଆନ୍ତି, ସେହିପରି ଚେତନ ଅଚେତନ ରୂପକ ସମସ୍ତ ପ୍ରପଞ୍ଚ ଶ୍ରୀ ହରିଙ୍କଠାରୁ ଉତ୍ପନ୍ନ ହୋଇ ପୁଣି ତାଙ୍କଠାରେ ଲୀନ ହୋଇଯାଆନ୍ତି ॥୧୫॥ ଯେପରି ସୂର୍ଯ୍ୟର କିରଣ ସୂର୍ଯ୍ୟଠାରୁ ଭିନ୍ନ ନୁହେଁ, ଯେପରି ଜାଗ୍ରତ ଅବସ୍ଥାରେ ଥିବା କ୍ରିୟାଶୀଳ ଇନ୍ଦ୍ରିୟମାନେ ସୁପ୍ତ ଅବସ୍ଥାରେ ଶକ୍ତିହୀନ ହୋଇଯାଇଥିଲେ ମଧ୍ୟ ଭିନ୍ନ ନୁହନ୍ତି, ସେହିପରି ଏହି ଜଗତ ଭଗବାନଙ୍କଠାରୁ ସୃଷ୍ଟ ହୋଇ ପ୍ରଳୟକାଳରେ ତାଙ୍କଠାରେ ଲୀନ ହୋଇଯାଏ । ତେଣୁ ଦ୍ରବ୍ୟ, କ୍ରିୟା ଓ ଜ୍ଞାନ ରୂପକ ତ୍ରିବିଧ ଅହଙ୍କାରର କାର୍ଯ୍ୟ ଓ ଏହାର କାରଣ ମଧ୍ୟରେ ଥିବା ଭେଦଭ୍ରମର ସତ୍ତା ଭଗବାନଙ୍କଠାରେ ନ ଥାଏ ॥୧୬॥

ରାଜାଗଣ ! ଯେପରି ମେଘ, ଅନ୍ଧକାର ଓ ଜ୍ୟୋତି କ୍ରମେ ଆକାଶରୁ ବାହାରି ଆକାଶରେ ଲୀନ ହୋଇଯାଆନ୍ତି, କିନ୍ତୁ ଆକାଶ ସେଥିରେ ଲିପ୍ତ ହୁଏ ନାହିଁ, ସେହିପରି ରଜ, ତମ ଓ ସତ୍ତ୍ୱ ରୂପୀ ଶକ୍ତିସମୂହ ପରଂବ୍ରହ୍ମଙ୍କଠାରୁ ଉତ୍ପନ୍ନ ହୋଇ ପୁଣି ତାଙ୍କ ଦେହରେ ଲୀନ ହୋଇଯାଆନ୍ତି । କିନ୍ତୁ ପରମାତ୍ମା ନିର୍ଲିପ୍ତ ରହି ଥାନ୍ତି । ସେହି ପରମାତ୍ମା ହେଉଛନ୍ତି ସମସ୍ତ ଦେହଧାରୀଙ୍କର ଏକମାତ୍ର ଆତ୍ମା । ସେ ଏହି ଜଗତ୍‌ର କାରଣ ଓ କର୍ତ୍ତା; କାଳସ୍ୱରୂପ ଏହି ତ୍ରିଗୁଣଶକ୍ତିର ପ୍ରବାହକୁ ସେ ନିଜଶକ୍ତିରେ ଧ୍ୱଂସ କରିପାରନ୍ତି । ତେଣୁ ତୁମେ ସେହି ପୁରୁଷୋତ୍ତମ ପରମେଶ୍ୱରଙ୍କୁ ଏକାତ୍ମଭାବରେ ଭଜନ କର ॥୧୭-୧୮॥ ସମସ୍ତ ପ୍ରାଣୀଙ୍କ ପ୍ରତି ଦୟା କରିବା ଓ ଯାହାକିଛି ମିଳୁଛି ସେଥିରେ ସନ୍ତୁଷ୍ଟ ରହିବା ଉଚିତ । ସମସ୍ତ ଇନ୍ଦ୍ରିୟର ବିଷୟରୁ ନିବୃତ୍ତ ହୋଇ ନିଜକୁ ଶାନ୍ତ ରଖିପାରିଲେ, ଭଗବାନ ଜନାର୍ଦ୍ଦନ ଶୀଘ୍ର ପ୍ରସନ୍ନ ହୁଅନ୍ତି ॥୧୯॥ ସମସ୍ତପ୍ରକାର ବାସନା ଦୂର ହୋଇଯିବା ପରେ ଯେଉଁମାନଙ୍କର ଅନ୍ତଃକରଣ ଶୁଦ୍ଧ ହୋଇଯାଏ ଏବଂ ଯେଉଁମାନେ ନିରନ୍ତର ଶ୍ରୀ ହରିଙ୍କୁ ଚିନ୍ତା କରି ତାଙ୍କୁ ହିଁ ଡାକୁଥା'ନ୍ତି, ଭଗବାନ୍ ତାଙ୍କୁ ନିଜଲୋକ ମନେ କରି ସେହି ଭକ୍ତମାନଙ୍କର ବଶବର୍ତ୍ତୀ ହୋଇଯାଆନ୍ତି ଏବଂ ସେମାନଙ୍କର ହୃଦୟାକାଶରୁ ଆଉ ଯାଇପାରନ୍ତି ନାହିଁ ॥୨୦॥ ଯେଉଁମାନେ ବିଦ୍ୟା, ଧନ, କୁଳ ଓ ଯଜ୍ଞକର୍ମାଦିର ଅଭିମାନଦ୍ୱାରା ମତ୍ତ ହୋଇ ନିର୍ଧନ ଭଗବତ

ଭକ୍ତମାନଙ୍କୁ ଅକିଞ୍ଚନ ବୋଲି ଅବଜ୍ଞା କରନ୍ତି, ସେହି ମନ୍ଦମତି ପାପୀମାନଙ୍କର ପୂଜାକୁ ଭଗବାନ ଗ୍ରହଣ କରନ୍ତି ନାହିଁ । ଯେଉଁମାନେ ଦରିଦ୍ର, ସେମାନେ ଭଗବାନଙ୍କୁ ହିଁ ତାଙ୍କର ଧନ ବୋଲି ମନେ କରନ୍ତି; ସେମାନେ ଭକ୍ତରସିକ ଭଗବାନଙ୍କର ପ୍ରିୟ ହୋଇଥାଆନ୍ତି ॥୨୧॥ ଭଗବାନ ଆନନ୍ଦମୟ । ତାଙ୍କରି ସେବାରେ ଲାଗିଥିବା ଲକ୍ଷ୍ମୀଙ୍କୁ ଏବଂ ଯେଉଁ ଅର୍ଥକାମୀ ରାଜା ଓ ଦେବତାମାନେ ଲକ୍ଷ୍ମୀଙ୍କର ଅନୁଗାମୀ, ସେମାନଙ୍କୁ ସେ ଅପେକ୍ଷା କରନ୍ତି ନାହିଁ । କିନ୍ତୁ ସେ ନିଜ ଭକ୍ତମାନଙ୍କଠାରୁ ଅଭିନ୍ନ । ଏପରି କରୁଣାସାଗର ଶ୍ରୀହରିଙ୍କୁ କେଉଁ କୃତଜ୍ଞ ବ୍ୟକ୍ତି ମୁହୂର୍ତ୍ତେମାତ୍ର ଛାଡ଼ିପାରିବ ? ॥୨୨॥

ମୈତ୍ରେୟ କହିଲେ, ବିଦୁର ! ଦେବର୍ଷି ନାରଦ ଏହିପରି ପ୍ରଚେତାମାନଙ୍କୁ ଉପଦେଶ ଦେଇ ଏବଂ ଭଗବାନଙ୍କର ଅନ୍ୟାନ୍ୟ ଲୀଳା ଶୁଣାଇ ବ୍ରହ୍ମଲୋକକୁ ଚାଲିଗଲେ ॥୨୩॥ ପ୍ରଚେତାମାନେ ମଧ୍ୟ ସଂସାରର କଳ୍ମଷହାରୀ ନାରଦଙ୍କ ମୁଖନିଃସୃତ ଭଗବାନଙ୍କର ଏହି ଯଶୋଗାଥା ଶ୍ରବଣ କରି ଶ୍ରୀ ହରିଙ୍କ ପାଦପଦ୍ମକୁ ଧ୍ୟାନ କରିବାକୁ ଲାଗିଲେ ଏବଂ ଶେଷରେ ଭଗବାନଙ୍କର ପରମଧାମ ପ୍ରାପ୍ତ ହେଲେ ॥୨୪॥ ବିଦୁର, ହରିକୀର୍ତ୍ତନରୂପ ନାରଦ ଓ ପ୍ରଚେତାମାନଙ୍କ ସମ୍ବାଦ ଜାଣିବାପାଇଁ ମୋତେ ଯାହା ପଚାରିଥିଲ ମୁଁ ତାହା ତୁମକୁ ଶୁଣାଇଲି ॥୨୫॥ ଶ୍ରୀ ଶୁକଦେବ କହିଲେ, ରାଜା, ଏପର୍ଯ୍ୟନ୍ତ ସ୍ୱାୟମ୍ଭୁବ ମନୁଙ୍କର ପୁତ୍ର ଉତ୍ତାନପାଦଙ୍କର ବଂଶ ବର୍ଣ୍ଣନା କରାଗଲା । ଏବେ ପ୍ରିୟବ୍ରତଙ୍କର ବଂଶର ବିବରଣୀ ମଧ୍ୟ ଶୁଣ ॥୨୬॥

ରାଜା ପ୍ରିୟବ୍ରତ ନାରଦଙ୍କଠାରୁ ଆତ୍ମବିଦ୍ୟା ଲାଭ କରି ପୁଣି ଏହି ପୃଥିବୀକୁ ଭୋଗକଲେ ଏବଂ ଶେଷରେ ପୁତ୍ରମାନଙ୍କ ମଧ୍ୟରେ ରାଜ୍ୟ ଭାଗ ଭାଗ କରିଦେଇ ଭଗବତ୍ ପଦ ପ୍ରାପ୍ତ ହେଲେ ॥୨୭॥ ଅନ୍ୟପଟେ ଶ୍ରୀ ମୈତ୍ରେୟଙ୍କ ମୁହଁରୁ ଭଗବାନଙ୍କ ଗୁଣାନୁବାଦ ରୂପକ ସତ୍‌କଥା ଶ୍ରବଣ କରି ବିଦୁରଙ୍କର ଭାବାବେଶ ହେଲା ଏବଂ ତାଙ୍କର ନେତ୍ରରୁ ପ୍ରେମାଶ୍ରୁ ବିଗଳିତ ହେବାକୁ ଲାଗିଲା । ସେ ହୃଦୟରେ ଶ୍ରୀ ହରିଙ୍କୁ ଏବଂ ମସ୍ତକରେ ମୈତ୍ରେୟଙ୍କର ଚରଣକୁ ଧାରଣ କଲେ ॥୨୮॥ ବିଦୁର କହିଲେ, ହେ କରୁଣାମୟ ମହାଯୋଗି ! ଆପଣ ଆଜି ମୋତେ ଅଜ୍ଞାନ ଅନ୍ଧକାରର ପର ପାରରେ ରହିଥିବା ଅକିଞ୍ଚନମାନଙ୍କ ସର୍ବସ୍ୱ ଭଗବାନ ଶ୍ରୀ ହରିଙ୍କ ପାଖରେ ପହଞ୍ଚାଇ ଦେଲେ ॥୨୯॥ ଶ୍ରୀ ଶୁକଦେବ କହିଲେ, ମୈତ୍ରେୟଙ୍କୁ ନିଜର ଅଶେଷ କୃତଜ୍ଞତା ଜ୍ଞାପନ କରି ପ୍ରଣାମପୂର୍ବକ ବିଦୁର ତାଙ୍କଠାରୁ ବିଦାୟ ନେଲେ । ଏହାପରେ ପ୍ରଶାନ୍ତ ଚିତ୍ତରେ ନିଜର ଜ୍ଞାତିମାନଙ୍କୁ ଦେଖିବାପାଇଁ ସେ ହସ୍ତିନାପୁରକୁ ଫେରିଗଲେ ॥୩୦॥ ରାଜା, ଶ୍ରୀ ହରିଙ୍କ ଶରଣାଗତ ରାଜାମାନଙ୍କର ଏହି ଚରିତ ଯେ ଶ୍ରବଣ କରେ, ସେ ଆୟୁ, ଧନ, ଯଶ, ମଙ୍ଗଳ, ଐଶ୍ୱର୍ଯ୍ୟ ଓ ପରମଗତି ଲାଭ କରେ ॥୩୧॥

# ପଞ୍ଚମ ସ୍କନ୍ଧ

## ପ୍ରଥମ ଅଧ୍ୟାୟ

## ପ୍ରିୟବ୍ରତ ଚରିତ

ରାଜା ପରିକ୍ଷିତ କହିଲେ, ମୁନି ! ରାଜା ପ୍ରିୟବ୍ରତ ଭଗବାନଙ୍କର ଭକ୍ତ ଓ ନିଜେ ଆନନ୍ଦସ୍ୱରୂପ ଥିଲେ । କିନ୍ତୁ ଯେଉଁ ଗୃହସ୍ଥାଶ୍ରମ ହେଉଛି କର୍ମବନ୍ଧନର ମୂଳ ଓ ଯଦ୍ଵାରା ମନୁଷ୍ୟ ନିଜର ସ୍ୱରୂପକୁ ଭୁଲିଯାଏ, ସେଥିରେ ସେ କିପରି ଆସକ୍ତ ହୋଇପଡ଼ିଲେ ? ॥୧॥

ଦ୍ୱିଜଶ୍ରେଷ୍ଠ ! ପ୍ରିୟବ୍ରତଙ୍କପରି ଅନାସକ୍ତ ବ୍ୟକ୍ତିମାନଙ୍କ ପକ୍ଷରେ ଗୃହସ୍ଥାଶ୍ରମ ପ୍ରତି ଏପରି ଅନୁରକ୍ତି ସମ୍ଭବ ନୁହେଁ! ଯେଉଁ ମହତ୍ ବ୍ୟକ୍ତିମାନେ ପୁଣ୍ୟଶ୍ଳୋକ ଭଗବାନଙ୍କର ଶୀତଳ ଚରଣଛାୟାରେ ଆଶ୍ରୟ ନେଇ ଚିତ୍ତ ଶାନ୍ତି ଲାଭ କରୁଥା'ନ୍ତି, ସେମାନଙ୍କର ମନରେ କୁଟୁମ୍ବାଦି ପ୍ରତି ସ୍ପୃହା ଜନ୍ମିବା ସମ୍ଭବ ନୁହେଁ ॥୨-୩॥ ବ୍ରହ୍ମନ୍! ସ୍ତ୍ରୀ, ଗୃହ, ପୁତ୍ର ଆଦିରେ ଆସକ୍ତ ରାଜା ପ୍ରିୟବ୍ରତ କିପରି ସିଦ୍ଧି ଲାଭ କଲେ ଏବଂ ଭଗବାନ ଶ୍ରୀକୃଷ୍ଣଙ୍କ ପ୍ରତି ତାଙ୍କର ଅଚଳାଭକ୍ତି ରହିଲା, ଏ ବିଷୟରେ ମୋର ବଡ଼ ସନ୍ଦେହ ହେଉଛି ॥୪॥

ଶୁକଦେବ କହିଲେ, ରାଜା ! ତୁମେ ଯାହା କହିଲ, ଯଥାର୍ଥ । ଯାହାଙ୍କର ଚିତ୍ତ ପୁଣ୍ୟଶ୍ଳୋକ ଶ୍ରୀ ଭଗବାନଙ୍କର ଚରଣାରବିନ୍ଦ ଗଳିତ ମକରନ୍ଦରସପାନରେ ଅଭିନିବିଷ୍ଟ, ମଝିରେ ମଝିରେ ବାଧା ସୃଷ୍ଟି ହେଲେ ମଧ୍ୟ ସେହି ପରମହଂସ ଭଗବତ୍‌ଭକ୍ତମାନେ ସେମାନଙ୍କ ପରମପ୍ରିୟ ଶ୍ରୀ ବାସୁଦେବଙ୍କର କଥାରୂପକ ପରମ ମଙ୍ଗଳମୟ ମାର୍ଗକୁ କେବେହେଲେ ଛାଡ଼ି ପାରନ୍ତିନାହିଁ ॥୫॥ ରାଜା! ରାଜପୁତ୍ର ପ୍ରିୟବ୍ରତ ପରମ ଭାଗବତ ଥିଲେ ଏବଂ ନାରଦଙ୍କର ପଦସେବା କରି ସହଜରେ ପରମାର୍ଥ ତତ୍ତ୍ୱ ଅବଗତ ହୋଇପାରିଥିଲେ । ସେ ବ୍ରହ୍ମଜ୍ଞାନପାଇଁ ଦୀକ୍ଷା ନେବାକୁ ବିଚାର କରି ସର୍ବଦା ବ୍ରହ୍ମଚିନ୍ତନର ନିୟମ ପାଳନ କରୁଥିଲେ । ରାଜକାର୍ଯ୍ୟପାଇଁ ସମସ୍ତ ଶାସ୍ତ୍ରୋକ୍ତ ଗୁଣରେ ସେ ପରିପୂର୍ଣ୍ଣ ଥିବାଯୋଗୁଁ ତାଙ୍କର ପିତା ସ୍ୱାୟମ୍ଭୁବ ମନୁ ତାଙ୍କୁ ବିଶାଳଭୂଖଣ୍ଡକୁ ଶାସନ କରିବାପାଇଁ ଆଜ୍ଞା ଦେଇଥିଲେ । କିନ୍ତୁ ପ୍ରିୟବ୍ରତ ନିରବଚ୍ଛିନ୍ନ ସମାଧିଯୋଗଦ୍ୱାରା ଇନ୍ଦ୍ରିୟମାନଙ୍କର ସମସ୍ତପ୍ରକାର କ୍ରିୟାକଳାପକୁ ଭଗବାନ ବାସୁଦେବଙ୍କଠାରେ ଅର୍ପଣ କରି ଦେଇଥିଲେ । ଯଦିବା ପିତାଙ୍କର ଆଜ୍ଞା ପ୍ରତ୍ୟାଖ୍ୟାନ କରିବା ଉଚିତ ନୁହେଁ, ତଥାପି ରାଜ୍ୟାଧିକାର ପାଇବାଦ୍ୱାରା ରାଜ୍ୟ ଚିନ୍ତା ଓ ନିଜର ସ୍ୱଜନଙ୍କ ଚିନ୍ତାଦ୍ୱାରା କାଳେ ସେ ଆତ୍ମତତ୍ତ୍ୱ ଭୁଲିଯିବେ, ସେଥିପାଇଁ ସେ ଦାୟିତ୍ୱ ଗ୍ରହଣ କରି ନ ଥିଲେ ॥୬॥ ଏହି ତ୍ରିଗୁଣାତ୍ମକ ସୃଷ୍ଟିର ବୃଦ୍ଧିପାଇଁ ଆଦିଦେବ ଭଗବାନ ବ୍ରହ୍ମା ସର୍ବଦା ଚିନ୍ତିତ ଥିଲେ । ସେ ଜଗତର ସମସ୍ତଙ୍କ ଅଭିପ୍ରାୟ ଜାଣିପାରୁଥିଲେ । ସେ ପ୍ରିୟବ୍ରତଙ୍କର ମନକଥା ଜାଣିପାରି ମୂର୍ତ୍ତିମନ୍ତ ଚାରିବେଦକୁ ଏବଂ ମରୀଚି ଆଦି ପାର୍ଷଦମାନଙ୍କୁ ଧରି ସତ୍ୟଲୋକରୁ ଅବତୀର୍ଣ୍ଣ ହେଲେ ॥୭॥ ଗଗନତଳରେ ଅବତରଣ କଲାବେଳେ ତାରକାବେଷ୍ଟିତ ଚନ୍ଦ୍ରମା ପରି ବିମାନଚାରୀ ଦେବତାମାନଙ୍କଦ୍ୱାରା ବେଷ୍ଟିତ ଓ ପୂଜିତ ହୋଇ ସେ ଶୋଭା ପାଉଥିଲେ ଏବଂ ବାଟେ ବାଟେ ସିଦ୍ଧ, ଗନ୍ଧର୍ବ, ସାଧ୍ୟ, ଚାରଣ ଓ ମୁନିମାନେ ଦଳ ଦଳ ହୋଇ ତାଙ୍କୁ ସ୍ତୁତି କରୁଥିଲେ । ଗନ୍ଧମାଦନ ପର୍ବତର ଯେଉଁ ଗିରିଗୁହାରେ ପ୍ରିୟବ୍ରତ ତପସ୍ୟାକରୁଥିଲେ, ସେହି ସ୍ଥାନକୁ ଆଲୋକିତ କରି କରି ସେଠାରେ ସେ ଆବିର୍ଭୂତ ହେଲେ ॥୮॥

ହଂସଯାନରେ ଆସିଥିବା ପିତା ବ୍ରହ୍ମାଙ୍କୁ ସେଠାରେ ଦର୍ଶନ କରି ସେଠାକୁ ଆସିଥିବା ଦେବର୍ଷି ନାରଦ ସ୍ୱାୟମ୍ଭୁବ ମନୁ ଏବଂ ତାଙ୍କ ପୁତ୍ର ପ୍ରିୟବ୍ରତଙ୍କ ସହିତ ସଙ୍ଗେ ସଙ୍ଗେ ଉଠିପଡ଼ି କୃତାଞ୍ଜଳିପୁଟରେ ତାଙ୍କୁ ପ୍ରଣାମ କଲେ । ପରିକ୍ଷିତ ! ଯଥୋଚିତ ବାକ୍ୟରେ ନାରଦ ବ୍ରହ୍ମାଙ୍କ ଅତିବର୍ଣ୍ଣିତ ଗୁଣାବଳୀ ଓ ସର୍ବୋତ୍କୃଷ୍ଟ ଅବତାରର ପ୍ରଶଂସା କରି ତାଙ୍କୁ ପୂଜାକଲେ । ଆଦିପୁରୁଷ ଭଗବାନ ବ୍ରହ୍ମା ସ୍ମିତହାସପୂର୍ବକ ସ୍ନେହପୂର୍ଣ୍ଣ ଦୃଷ୍ଟିରେ ପ୍ରିୟବ୍ରତଙ୍କୁ ଚାହିଁ କହିବାକୁ ଆରମ୍ଭ କଲେ ॥୯-୧୦॥

ବ୍ରହ୍ମା କହିଲେ, ବତ୍ସ, ମୁଁ ସତ କଥା କହୁଛି, ତୁମେ ମନ ଦେଇ ଶୁଣ । ଅପ୍ରମେୟ ଶ୍ରୀହରିଙ୍କଠାରେ ତୁମେ ଦୋଷାରୋପ କରିବା ଠିକ୍ ହେବ ନାହିଁ । ମୁଁ, ଶ୍ରୀ ଶଙ୍କର, ତୁମର ପିତା ଏବଂ ତୁମର ଗୁରୁ ଏଇ ମହର୍ଷି ନାରଦ ଆମେ ସମସ୍ତେ ଶ୍ରୀ ହରିଙ୍କ ଆଜ୍ଞାପାଳନରେ ସ୍ୱତନ୍ତ୍ର ନୋହୁ ॥୧୧॥ ତାଙ୍କର ବିଧାନକୁ କୌଣସି ଦେହଧାରୀ ଜୀବ ତପସ୍ୟା, ବିଦ୍ୟା, ଯୋଗବଳ, ବୁଦ୍ଧିବଳ, ଅର୍ଥବଳ ଅଥବା ଧର୍ମବଳ କିମ୍ବା ନିଜର ବା ଅନ୍ୟ କାହାରି ବଳରେ ଅନ୍ୟଥା କରିପାରେ ନାହିଁ ॥୧୨॥ ବତ୍ସ, ସେହି ଅବ୍ୟକ୍ତ ଈଶ୍ୱରଙ୍କ ଦତ୍ତ ଏହି ଶରୀରକୁ ଜନ୍ମ, ମରଣ, ଶୋକ, ମୋହ, ସୁଖ, ଦୁଃଖ ଓ ଭୟ ଆଦି ଭୋଗ କରିବା ଓ କର୍ମ କରିବା ପାଇଁ ଜୀବ ଧାରଣ କରିଥାଏ ॥୧୩॥ ବତ୍ସ, ନାକରେ ବନ୍ଧା ହୋଇଥିବା ଚତୁଷ୍ପଦ ବଳଦ ଯେପରି ଦ୍ୱିପଦ ମନୁଷ୍ୟପାଇଁ ଭାର ବୋହୁଥାଏ, ସେହିପରି ଆମେ ସମସ୍ତେ ଶ୍ରୀ ହରିଙ୍କର ବେଦବାଣୀରୂପକ ଦାଉଣିରେ ସତ୍ତ୍ୱାଦି ଗୁଣଯୁକ୍ତ କର୍ମରୂପକ ମଜଭୁତ ଦଉଡ଼ିଦ୍ୱାରା ବାନ୍ଧି ହୋଇ ତାଙ୍କଦ୍ୱାରା ଚାଳିତ ହୋଇ କାର୍ଯ୍ୟ କରୁଛେ ॥୧୪॥ ପ୍ରିୟବ୍ରତ ! ଯେପରି ଅନ୍ଧ ଆଖିଥିବା ବ୍ୟକ୍ତିଦ୍ୱାରା ବାଧ୍ୟହୋଇ ଚାଳିତ ହୁଏ ଏବଂ ସେହିପରି ଗୁଣକର୍ମ ଅନୁସାରେ ଦୁଃଖ ଓ ସୁଖଭୋଗ କରିବାପାଇଁ ପ୍ରଭୁ ଆମକୁ ଦେବତିର୍ଯ୍ୟକ୍ ଆଦି ଦେହ ଦାନ କରିଛନ୍ତି, ଆମେ ସେଥିରେ ରହି ତାହାକୁ ସ୍ୱୀକାର କରିବା ଉଚିତ ॥୧୫॥ ମୁକ୍ତ ପୁରୁଷଙ୍କୁ ମଧ୍ୟ ପ୍ରାରବ୍ଧ କର୍ମ ଭୋଗ କରିବାପାଇଁ ନିଜ ଦେହଧାରଣ କରିବାକୁ ପଡ଼େ । କିନ୍ତୁ ମୁକ୍ତ ହୋଇଥିବାଯୋଗୁଁ ସେ ନିରଭିମାନ ହୁଅନ୍ତି । ନିଦ୍ରା ତୁଟିଯିବା ପରେ ସ୍ୱପ୍ନର ଅନୁଭୂତିକୁ ମନୁଷ୍ୟ ଯେପରି ଭୋଗ କରେ ନାହିଁ, ସେହିପରି ଭୋଗବାସନା କାରଣରୁ ପୁନର୍ଜନ୍ମ ହେଲେ ମଧ୍ୟ ଏହି ସତ୍ତ୍ୱାଦି ଗୁଣ, କର୍ମ, ବାସନାଦି ପ୍ରତି ସେ ଉଦାସୀନ ରହନ୍ତି ॥୧୬॥ ମନୁଷ୍ୟର ଛ'ଟି ଶତ୍ରୁ -- ପଞ୍ଚ ଜ୍ଞାନେନ୍ଦ୍ରିୟ ଏବଂ ମନ । (ଘର ଛାଡ଼ି) ବନରେ ରହିଲେ ମଧ୍ୟ ଏହି ଶତ୍ରୁମାନଙ୍କ ଭୟ ଅଜିତେନ୍ଦ୍ରିୟ ବ୍ୟକ୍ତିକୁ ଲାଗି ରହିଥାଏ । କିନ୍ତୁ ଯେଉଁ ଜ୍ଞାନୀ ବ୍ୟକ୍ତି ଇନ୍ଦ୍ରିୟମାନଙ୍କୁ ଜୟକରି ନିଜର ଆତ୍ମାରେ ରମଣ କରେ, ଗୃହସ୍ଥାଶ୍ରମ ତାର କ'ଣ ବା ଅନିଷ୍ଟ କରିପାରିବ ? ॥୧୭॥ ଯେ ଏହି ଷଡ଼ଶତ୍ରୁଙ୍କୁ ଜିଣିବାପାଇଁ ଇଚ୍ଛା କରେ, ଇନ୍ଦ୍ରିୟ ନିରୋଧପୂର୍ବକ ସେ ସେମାନଙ୍କୁ ଧୀରେ ଧୀରେ ଜୟ କରିବାପାଇଁ ଚେଷ୍ଟା କରିବା ଉଚିତ; ଯେପରିକି ଦୁର୍ଗରେ ଆଶ୍ରୟ ନେଇଥିବା ରାଜା ଶତ୍ରୁମାନଙ୍କୁ ଜୟକରିପାରେ । ଶତ୍ରୁମାନେ ଦୁର୍ବଳ ହୋଇଗଲେ ମନୁଷ୍ୟ ଘରେ ହେଉ ବା ବାହାରେ ହେଉ ନିର୍ଭୟରେ ବିଚରଣ କରିପାରିବ ॥୧୮॥ ତୁମେ ଶ୍ରୀ ହରିଙ୍କ ପାଦପଦ୍ମକୋଷରୂପକ ଦୁର୍ଗରେ ଆଶ୍ରୟ ନେଇଛ । ଏଣୁ ଷଡ଼ରିପୁଙ୍କୁ ଜୟ କରିସାରିଛ । ପ୍ରଥମେ ତୁମେ ଈଶ୍ୱରଙ୍କ ପ୍ରଦତ୍ତ ଭୋଗମାନଙ୍କୁ ଭୋଗ କର । ପରେ ଅନାସକ୍ତ ହୋଇ ନିଜର ଆତ୍ମସ୍ୱରୂପକୁ ଭଜନ କରିବ ॥୧୯॥ ଶ୍ରୀ ଶୁକଦେବ କହିଲେ, ତ୍ରିଲୋକର ଗୁରୁ ଭଗବାନ ବ୍ରହ୍ମା ଏହିପରି କହିବାରୁ ପରମ ଭାଗବତ ପ୍ରିୟବ୍ରତ ନିଜର କ୍ଷୁଦ୍ରତାକୁ ଅନୁଭବ କଲେ ଏବଂ ଶିର ନତକରି ବହୁ ସମ୍ମାନର ସହିତ 'ଯେ, ଆଜ୍ଞା' ବୋଲି କହି ସମ୍ମତି ପ୍ରଦାନ କଲେ ॥୨୦॥ ସ୍ୱାୟମ୍ଭୁବ ମନୁ ବ୍ରହ୍ମାଙ୍କୁ ଆନନ୍ଦରେ ଯଥାବିଧି ପୂଜା କଲେ । ବାଣୀ ଓ ମନର ଅଗୋଚର ସର୍ବବ୍ୟବହାରାତୀତ ପରଂବ୍ରହ୍ମଙ୍କର ସ୍ୱରୂପକୁ ଚିନ୍ତାକରି ବ୍ରହ୍ମା ନିଜ ଧାମକୁ ଫେରିଗଲେ । (ନାରଦଙ୍କର ଶିଷ୍ୟତ୍ୱ ଓ ପ୍ରିୟବ୍ରତଙ୍କର ଯୋଗଭ୍ରଂଶ ହେଲେ ମଧ୍ୟ) ନାରଦ ଓ ପ୍ରିୟବ୍ରତ ଉଭୟ ପ୍ରକୃତିସ୍ଥ ହୋଇ ତାଙ୍କ ଆଡ଼କୁ ଚାହିଁ ରହିଲେ ॥୨୧॥ ବ୍ରହ୍ମାଙ୍କଦ୍ୱାରା ହିଁ ମନୁଙ୍କର ମନୋରଥ ସିଦ୍ଧ ହେଲା । ସେ ନାରଦଙ୍କର ଅନୁମତି ନେଇ ଅଖିଳ ମହୀମଣ୍ଡଳର ପାଳନ ଓ ରକ୍ଷାର ଭାର ପୁତ୍ରଙ୍କ ଉପରେ ନ୍ୟସ୍ତ କରି ସ୍ୱୟଂ ଗୃହସ୍ଥାଶ୍ରମରୁ ବିଦାୟ ନେଲେ । ଏହି ଗୃହସ୍ଥାଶ୍ରମ ତାଙ୍କପାଇଁ ବିଷୟବିଷରେ ପୂର୍ଣ୍ଣ ଏକ ଅତି ବିଷମ ଜଳାଶୟରେ ପରିଣତ ହୋଇଥିଲା ॥୨୨॥

ଏହିପରି ପୃଥିବୀର ରାଜା ହୋଇ ପ୍ରିୟବ୍ରତ ଈଶ୍ୱରଙ୍କ ଇଚ୍ଛାରେ ନିଜଠାରେ ନ୍ୟସ୍ତ ରାଜକାର୍ଯ୍ୟ ସମ୍ପାଦନ କଲେ । ଯେଉଁ ଭଗବାନ ଆଦି ପୁରୁଷ ସାରା ସଂସାରର ବନ୍ଧନକୁ ଧ୍ୱଂସ କରିପାରନ୍ତି, ତାଙ୍କରି ପାଦପଦ୍ମକୁ ସର୍ବଦା ଧ୍ୟାନପୂର୍ବକ ହୃଦୟର ସମସ୍ତ ମଳିନତା ଦଗ୍ଧ କରି ଅତି ଶୁଦ୍ଧଭାବରେ ଏହି ପୃଥିବୀକୁ ସେ ଶାସନ କରିବାକୁ ଲାଗିଲେ ଏବଂ ବ୍ରହ୍ମାଙ୍କର ଆଜ୍ଞାପାଳନଦ୍ୱାରା ନିଜ ମାନବର୍ଦ୍ଧନ କଲେ ॥୨୩॥ ଏହାପରେ ପ୍ରଜାପତି ବିଶ୍ୱକର୍ମାଙ୍କର କନ୍ୟା ବର୍ହିଷ୍ମତୀଙ୍କୁ ସେ ବିବାହ କଲେ ଏବଂ ତାଙ୍କଠାରୁ ତାଙ୍କର ଦଶ ଜଣ ପୁତ୍ର ଜନ୍ମ ହେଲେ । ଏମାନେ ଶୀଳ, ଗୁଣ, ରୂପ କର୍ମ ଓ ପରାକ୍ରମରେ ତାଙ୍କ ସମାନ ଉଦାର ଥିଲେ । ଊର୍ଜସ୍ୱତୀ ନାମକ ତାଙ୍କର ଏକ କନ୍ୟା ଜନ୍ମ ହେଲା । ସେ ସମସ୍ତଙ୍କଠାରୁ କନିଷ୍ଠା ଥିଲା । ପୁତ୍ରମାନଙ୍କର ନାମ ହେଲା ଆଗ୍ନୀଧ୍ର, ଇଧ୍ମଜିହ୍ୱ, ଯଜ୍ଞବାହୁ, ମହାବୀର, ହିରଣ୍ୟରେତା, ଘୃତପୃଷ୍ଠ, ସବନ, ମେଧାତିଥି, ବୀତିହୋତ୍ର ଓ କବି । ଏସବୁ ଅଗ୍ନିଙ୍କର ନାମ ॥୨୪-୨୫॥ ଏମାନଙ୍କ ମଧ୍ୟରୁ କବି, ମହାବୀର ଓ ସବନ -- ଏହି ତିନି ଜଣ ନୈଷ୍ଠିକ ବ୍ରହ୍ମଚାରୀ ଥିଲେ । ବାଲ୍ୟାବସ୍ଥାରୁ ସେମାନେ ଆତ୍ମବିଦ୍ୟାର ଅଭ୍ୟାସ କରି ଶେଷରେ ସନ୍ନ୍ୟାସ-ଆଶ୍ରମକୁ ହିଁ ଗ୍ରହଣ କଲେ ॥୨୬॥ ସେହି ଆଶ୍ରମରେ ରହି ଏହି ନିବୃତ୍ତିଶୀଳ ମହର୍ଷିମାନେ ସମସ୍ତଜୀବଙ୍କର ନିବାସସ୍ଥଳ, ସଂସାରଭୀତ ପୁରୁଷମାନଙ୍କ ଆଶ୍ରୟ ଶ୍ରୀ ଭଗବାନଙ୍କର ଚରଣାରବିନ୍ଦକୁ ନିରନ୍ତର ସ୍ମରଣ କରିବାକୁ ଲାଗିଲେ । ଏହାଫଳରେ ସେମାନଙ୍କର ଅନ୍ତଃକରଣ ଏକାନ୍ତ ଅବିଚଳିତ ଭକ୍ତିଯୋଗଦ୍ୱାରା ଶୁଦ୍ଧ ହୋଇଗଲା ଏବଂ ଦେହାଦିଧାରଣା ଦୂର ହୋଇଯିବା ଫଳରେ ସର୍ବଭୂତଙ୍କର ଆତ୍ମା ଶ୍ରୀଭଗବାନଙ୍କଠାରେ ସେମାନଙ୍କର ଆତ୍ମା ମିଳିତ ହେଲା ॥୨୭॥

ପ୍ରିୟବ୍ରତଙ୍କର ଅନ୍ୟ ସ୍ତ୍ରୀଙ୍କଠାରୁ ଉତ୍ତମ, ତାମସ ଓ ରୈବତ ନାମରେ ତିନି ପୁତ୍ର ହେଲେ । ସେମାନେ ନିଜ ନାମାନୁସାରେ ମନ୍ୱନ୍ତରମାନଙ୍କର ଅଧିପତି ହେଲେ ॥୨୮॥ ଏହିପରି ତିନି ପୁତ୍ରଙ୍କର ସନ୍ନ୍ୟାସ ପରେ ପୃଥିବୀପତି ରାଜା ପ୍ରିୟବ୍ରତ ଏଗାର ଅର୍ବୁଦ ବର୍ଷ ପର୍ଯ୍ୟନ୍ତ ପୃଥିବୀକୁ ଶାସନ କଲେ । ସେ ପୁରୁଷକାର ବଳରୁ ତାଙ୍କ ବଳିଷ୍ଠ ଭୁଜଯୁଗଳରେ ଧନୁଧାରଣ କରି ସେଥିରେ ଗୁଣ ଚଢ଼ାଇବାବେଳେ ତା'ର ଟଙ୍କାରରେ ଧର୍ମଦ୍ରୋହୀମାନେ କିଏ କୁଆଡ଼େ ଲୁଚି ଯାଉଥିଲେ । ଦିନୁଦିନ ପତ୍ନୀ ବର୍ହିଷ୍ମତୀଙ୍କ ସହିତ ତାଙ୍କର ଆମୋଦପ୍ରମୋଦ ବଢ଼ିବାକୁ ଲାଗିଲା । ପ୍ରିୟ ପତ୍ନୀଙ୍କର ପ୍ରେମପୂର୍ଣ୍ଣ ହାବଭାବ, ସଲଜ୍ଜ ଦୃଷ୍ଟି, ସ୍ମିତହାସ ଓ ପରିହାସ ବାକ୍ୟାଦିଦ୍ୱାରା ମାନ, ବିବେକ ହରାଇଥିବା ବ୍ୟକ୍ତିପରି ସେ ସମସ୍ତ ଭୋଗ୍ୟବିଷୟ ଭୋଗ କରିବାକୁ ଲାଗିଲେ । କିନ୍ତୁ ପ୍ରକୃତରେ ସେଥିରେ ତାଙ୍କର ଆସକ୍ତି ନ ଥିଲା ॥୨୯॥ ଥରେ ସେ ମନେକଲେ, ଭଗବାନ ସୂର୍ଯ୍ୟ ସୁମେରୁକୁ ପରିକ୍ରମା କରୁ କରୁ ପୃଥିବୀକୁ ଆଲୋକ ଦାନ କରୁଥିବାବେଳେ ପୃଥିବୀର ଅଧେଭାଗ ଆଲୋକିତ ହେଉଛି ଓ ଆଉ ଅଧେ ଭାଗ ଅନ୍ଧକାରାଚ୍ଛନ୍ନ ରହୁଛି । ସେ ତାହା ପସନ୍ଦ କଲେ ନାହିଁ । ସେ ସୂର୍ଯ୍ୟଙ୍କ ସମାନ ବେଗଗାମୀ ଜ୍ୟୋତିର୍ମୟ ରଥରେ ବସି 'ରାତିକୁ ମୁଁ ଦିନ କରିବି' ବୋଲି ସଙ୍କଳ୍ପ କରି ଦ୍ୱିତୀୟ ସୂର୍ଯ୍ୟଙ୍କପରି ସୂର୍ଯ୍ୟଙ୍କର ପଛେ ପଛେ ପୃଥିବୀକୁ ସାତ ଥର ପରିକ୍ରମା କଲେ । ଭଗବତ୍ ଉପାସନାଯୋଗୁଁ ତାଙ୍କର ଏହି ଅତିମାନବ ପ୍ରଭାବ ବୃଦ୍ଧି ପାଇଥିଲା ॥୩୦॥ ତାଙ୍କ ରଥଚକ୍ରର ଧାରାର ଆଘାତରେ ଯେଉଁ ସାତଟି ଗର୍ତ୍ତ ସୃଷ୍ଟି ହେଲା, ସେମାନେ ସପ୍ତସିନ୍ଧୁ ହେଲେ ଏବଂ ସପ୍ତସିନ୍ଧୁ ମଧ୍ୟରେ ହେଲା ପୃଥିବୀର ସାତୋଟି ଦ୍ୱୀପ ॥୩୧॥ ସେମାନଙ୍କର ନାମ ହେଲା, ଜମ୍ବୁ, ପ୍ଲକ୍ଷ, ଶାଲ୍ମଳି, କୁଶ, କ୍ରୌଞ୍ଚ, ଶାକ ଓ ପୁଷ୍କର । ପରିମାଣରେ ପୂର୍ବ ପୂର୍ବ ଦ୍ୱୀପ ଯେତିକି, ପର ପର ଦ୍ୱୀପ ତା'ର ଦୁଇ ଦୁଇ ଗୁଣ ଥିଲା ଏବଂ ବାହାରେ ଚାରିଆଡୁ ସମୁଦ୍ର ପରିବେଷ୍ଟିତ ହୋଇ ରହିଥିଲା ॥୩୨॥ ସମୁଦ୍ରମାନଙ୍କ ବାହାରେ ଏକ ଏକ ଦ୍ୱୀପ ଏବଂ ଦ୍ୱୀପମାନଙ୍କର ବାହାରେ ଏକ ଏକ ସମୁଦ୍ର । ଦ୍ୱୀପମାନଙ୍କ ପରିଖାପରି ଏହି ସାତ ସମୁଦ୍ର ଯଥାକ୍ରମେ - ଲବଣ, ଆଖୁରସ, ସୁରା, ଘୃତ, କ୍ଷୀର, ଦଧିମଣ୍ଡ ଓ ଶୁଦ୍ଧୋଦକ । ବର୍ହିଷ୍ମତୀପତି ମହାରାଜ ପ୍ରିୟବ୍ରତ ନିଜର ଅନୁଗତ ସାତ ପୁତ୍ରଙ୍କୁ ଯଥା ଆଗ୍ନୀଧ୍ର, ଇଧ୍ମଜିହ୍ୱ, ଯଜ୍ଞବାହୁ, ହିରଣ୍ୟରେତା, ଘୃତପୃଷ୍ଠ, ମେଧାତିଥି ଓ ବୀତିହୋତ୍ରଙ୍କୁ ମଧ୍ୟ ଜମ୍ବୁ ଆଦି ସାତ ଦ୍ୱୀପକୁ ଗୋଟିଏ ଗୋଟିଏ କରି ବାଣ୍ଟି ଦେଇ ସେମାନଙ୍କୁ ସେଥିର ରାଜା କରାଇଲେ ॥୩୩॥

ତା'ପରେ କନ୍ୟା ଉର୍ଜସ୍ୱତୀଙ୍କୁ ଶୁକ୍ରାଚାର୍ଯ୍ୟଙ୍କ ସହିତ ବିବାହ ଦେଲେ ଏବଂ ଶୁକ୍ରଙ୍କର କନ୍ୟା ହେଲେ ଦେବଯାନୀ ।।୩୪।। ରାଜା ପ୍ରିୟବ୍ରତଙ୍କ ପରି ଭଗବତ୍‌ଭକ୍ତମାନଙ୍କ ପକ୍ଷରେ ଏହି ପ୍ରକାର ପୁରୁଷକାର ଅସମ୍ଭବ ନ ଥିଲା । କାରଣ ମହାବୀର୍ଯ୍ୟବାନ୍ ଭଗବାନଙ୍କ ପାଦରଜର ପ୍ରଭାବରେ ସେମାନେ ଷଡିନ୍ଦ୍ରିୟଙ୍କୁ ଜୟ କରିଥିଲେ । ଅନ୍ତ୍ୟଜ ବ୍ୟକ୍ତି ମଧ୍ୟ ଥରେ ମାତ୍ର ଯେଉଁ ଭଗବାନଙ୍କ ନାମ ଉଚ୍ଚାରଣ କଲେ ତତ୍‌କ୍ଷଣାତ୍ ସଂସାର ବନ୍ଧନରୁ ମୁକ୍ତ ହୋଇଯାଏ ।।୩୫।।ଏହି ପରି ପ୍ରବଳ (ଅପ୍ରମିତ) ପରାକ୍ରମୀ ରାଜା ପ୍ରିୟବ୍ରତ ଏକଦା ଦେବର୍ଷି ନାରଦଙ୍କ ପାଦରେ ଶରଣ ନେଇଥିଲେ । ମାତ୍ର ପରେ ଯେଉଁ ତ୍ରିଗୁଣାତ୍ମକ ସଂସାରରେ ସେ ପଡ଼ିଗଲେ, ତାର ସଂସର୍ଗରୁ ନିଜକୁ ଅସନ୍ତୁଷ୍ଟ ମନେ କରି ଉଦାସ ମନରେ କହିବାକୁ ଲାଗିଲେ, ଅହୋ, ମୁଁ ବଡ଼ ଅସାଧୁ କର୍ମ କଲି । ଇନ୍ଦ୍ରିୟମାନଙ୍କଦ୍ୱାରା ମୁଁ ଯେଉଁ ଅଜ୍ଞାନଜନିତ ବିଷମବିଷୟର ଅନ୍ଧକୂପରେ ନିମଜ୍ଜିତ ହେଲି, ତାହା ମୋତେ ଆକ୍ରାନ୍ତ କରିଦେଲାଣି । ମୁଁ ମୋ' ସ୍ତ୍ରୀର ଖେଳଣାର ମୃଗ ହୋଇଗଲି । ମୋତେ ଧିକ୍, ମୋତେ ଧିକ୍ -- ଏହିପରି ସେ ନିଜକୁ ନିନ୍ଦା କରିବାକୁ ଲାଗିଲେ ।।୩୬-୩୭।। କିନ୍ତୁ ଶ୍ରେଷ୍ଠଦେବତା ଶ୍ରୀ ହରିଙ୍କ ପ୍ରସାଦରୁ ତାଙ୍କର ବିବେକବୁଦ୍ଧି ଜାଗରିତ ହେଲା ଏବଂ ନିଜର ଅନୁଗତ ପୁତ୍ରମାନଙ୍କ ମଧ୍ୟରେ ସେ ପୃଥିବୀକୁ ଭାଗ ଭାଗ କରିଦେଲେ ଏବଂ ମୃତ ଦେହକୁ ପରିତ୍ୟାଗ କରିବାପରି ସାମ୍ରାଜ୍ୟ ଲକ୍ଷ୍ମୀ ସହିତ ନିଜ ମହିଷୀଙ୍କୁ ପରିତ୍ୟାଗ କରି ନିଃସଙ୍ଗ ହୃଦୟରେ ଶ୍ରୀ ହରିଙ୍କ ଚିନ୍ତା କରିବାକୁ ଲାଗିଲେ ଏବଂ ମହର୍ଷି ନାରଦଙ୍କ ମାର୍ଗକୁ ଅନୁସରଣ କଲେ ।।୩୮।। ରାଜା ପ୍ରିୟବ୍ରତଙ୍କୁ ଲକ୍ଷ୍ୟ କରି କୁହାଯାଇଚି ଯେ ଈଶ୍ୱରଙ୍କ ବିନା ରାଜା ପ୍ରିୟବ୍ରତ କରିଥିବା କର୍ମ କିଏ ବା କରିପାରିବ ? ଯେ ରାତ୍ରିର ଅନ୍ଧକାରକୁ ଦୂର କରିବାକୁ ଯାଇ ତାଙ୍କ ରଥଚକ୍ରର ପହିଦ୍ୱାରା ସପ୍ତସମୁଦ୍ର ସୃଷ୍ଟି କଲେ । ପ୍ରାଣୀମାନଙ୍କର ମଙ୍ଗଳପାଇଁ ପୃଥିବୀକୁ ବିଭିନ୍ନ ଦ୍ୱୀପଦ୍ୱାରା ଭାଗ ଭାଗ କରି ରଖିଲେ ଏବଂ ନଦୀ ପର୍ବତ ଅରଣ୍ୟାଦିଦ୍ୱାରା ସୀମା ନିର୍ଦ୍ଧାରଣ କଲେ । ସେ କର୍ମ ଓ ଯୋଗଦ୍ୱାରା ପ୍ରାପ୍ତ ସ୍ୱର୍ଗ ମର୍ତ୍ତ୍ୟ ଓ ପାତାଳ -ଏହି ତ୍ରିଲୋକର ଐଶ୍ୱର୍ଯ୍ୟକୁ ନରକତୁଲ୍ୟ ତୁଚ୍ଛ ମନେ କରୁଥିଲେ । ଭଗବାନଙ୍କ ଭକ୍ତମାନେ ହିଁ ତାଙ୍କର ପ୍ରିୟ ଥିଲେ ।।୩୯-୪୧।।

## ଦ୍ୱିତୀୟ ଅଧ୍ୟାୟ

# ଆଗ୍ନୀଧ୍ର ଚରିତ

ଶ୍ରୀ ଶୁକଦେବ କହିଲେ, ଏହିପରି ପିତା ପ୍ରିୟବ୍ରତ ନାରଦଙ୍କ ଉପଦିଷ୍ଟ ମାର୍ଗରେ ପ୍ରବୃତ୍ତ ହେବାରୁ ତାଙ୍କର ଆଜ୍ଞାକାରୀ ପୁତ୍ର ଆଗ୍ନୀଧ୍ର ଧର୍ମାନୁସାରେ ଜମ୍ବୂଦ୍ୱୀପବାସୀ ପ୍ରଜାମାନଙ୍କୁ ପୁତ୍ରପରି ପାଳନ କରିବାକୁ ଲାଗିଲେ ।।୧।। ଥରେ ସେ ପିତୃଲୋକ କାମନାରେ (ସତ୍‌ପୁତ୍ର ଲାଭପାଇଁ) ପୂଜାର ସମସ୍ତ ସାମଗ୍ରୀ ସଂଗ୍ରହ କରି ଦେବାଙ୍ଗନାମାନଙ୍କର କ୍ରୀଡ଼ାସ୍ଥଳ ମନ୍ଦରପର୍ବତର ଏକ ଗୁହାକୁ ଯାଇ ସେଠାରେ ତପସ୍ୟାରେ ବସିଗଲେ ଏବଂ ଏକାଗ୍ରଚିତ୍ତରେ ଭଗବାନ ବ୍ରହ୍ମାଙ୍କ ଆରାଧନାରେ ଲାଗିପଡ଼ିଲେ ।।୨।। ଆଦିପୁରୁଷ ଭଗବାନ ବ୍ରହ୍ମା ତାହା ଜାଣିପାରି ତାଙ୍କ ନିଜ ସଭାର ଗାୟିକା ପୂର୍ବଚିତ୍ତି ନାମକ ଅପ୍ସରାକୁ ତାଙ୍କର ସମ୍ଭୋଗପାଇଁ ସେଠାକୁ ପଠାଇଲେ ।।୩।। ସେଇ ଅପ୍ସରା ଆଗ୍ନୀଧ୍ରଙ୍କର ଆଶ୍ରମ ନିକଟରେ ଥିବା ଏକ ରମଣୀୟ ଉପବନ ମଧ୍ୟରେ ବିଚରଣ କରିବାକୁ ଲାଗିଲା । ସେହି ଆଶ୍ରମରେ ନିଘଞ୍ଚ ଭାବରେ ବଢ଼ିଥିବା ବୃକ୍ଷସବୁର ଶାଖାମାନଙ୍କରେ ସୁବର୍ଣ୍ଣର ଲତାମାନ ମାଡ଼ିଥିଲା । ମୟୂରାଦି ସ୍ଥଳଚର ବିହଙ୍ଗ-ମିଥୁନମାନେ ତା'ଉପରେ ବସି ସୁମଧୁର ସ୍ୱରରେ ଗାନ କରୁଥିଲେ । ସେମାନଙ୍କର ମଧୁର ସ୍ୱର ଶୁଣି ପାଣିକୁକୁଡ଼ା, କାରଣ୍ଡବ ଓ କଳହଂସ ଆଦି ଜଳପକ୍ଷୀମାନେ ବିଚିତ୍ର କୂଜନ କରୁଥିଲେ । ପଦ୍ମବନଶୋଭିତ ନିର୍ମଳ ସରୋବର ଏହିପରି ବିହଙ୍ଗକାକଳୀରେ ପ୍ରତିଧ୍ୱନିତ ହେଉଥିଲା ।।୪।। ପଦେ ପଦେ ସେହି ଅପ୍ସରାର ସୁଲଳିତ ଗତି ଓ

ପଦପାତର ବିଳାସଯୋଗୁଁ ନୂପୁରର ମନୋହର ରଣଝଣ ଶବ୍ଦ ସମାଧିରେ ବସିଥିବା ରାଜକୁମାରଙ୍କର କାନରେ ପଡ଼ିବାରୁ ମୁଦ୍ରିତ ପଦ୍ମକଢ଼ିତୁଲ୍ୟ ନିଜ ଆଖି ଦୁଇଟିକୁ ଅଳ୍ପ କରି ଖୋଲି ସେହି ଅପ୍‌ସରାକୁ ସେ ପାଖରୁ ଦେଖି ପାରିଲେ ॥୫॥

ରାଜକୁମାରଙ୍କର ଅଳ୍ପ ଦୂରରେ ସେ ଅପ୍‌ସରା ଭ୍ରମରୀପରି ଫୁଲ ପରେ ଫୁଲ ସବୁ ଆଘ୍ରାଣ କରୁଥିଲା । ତାହାର ଗତିବିଳାସ, କ୍ରୀଡ଼ାଚାପଲ୍ୟ, ଲଜ୍ଜା ଓ ବିନୟଯୁକ୍ତ ଦୃଷ୍ଟି, ସୁମଧୁର ଭାଷା ଏବଂ ସୁନ୍ଦର ଅଙ୍ଗପ୍ରତ୍ୟଙ୍ଗଦ୍ୱାରା ସେ ଦେବତା ଓ ମନୁଷ୍ୟମାନଙ୍କର ମନ ଓ ନୟନକୁ ଆହ୍ଲାଦିତ କରି ସେମାନଙ୍କ ହୃଦୟରେ କନ୍ଦର୍ପର ଏକ ପ୍ରବେଶଦ୍ୱାର ଖୋଲି ଦେଉଥିଲା । ସେ ହସି ହସି କଥା କହୁଥିବାବେଳେ ମନେ ହେଉଥିଲା, ତା'ର ମୁହଁରୁ ଅମୃତର ମାଦକ ଝରିପଡୁଛି । ତା' ନିଃଶ୍ୱାସର ମଧୁଗନ୍ଧରେ ଆକୃଷ୍ଟ ହୋଇ ମଦାନ୍ଧ ଭ୍ରମରମାନେ ତାର ମୁଖକମଳକୁ ଘେରି ଯାଉଥିଲେ । ସେମାନଙ୍କଠାରୁ ରକ୍ଷା ପାଇବା ପାଇଁ ସେ ଶୀଘ୍ର ଶୀଘ୍ର ଚାଲିଯାଉଥିବାବେଳେ ତା'ର କୁଚକୁମ୍ଭ, କବରୀ ଓ ମେଖଳାରେ ଏପରି ସ୍ପନ୍ଦନ ହେଉଥିଲା ଯେ, ଏହା ସବୁ ଦେଖି କନ୍ଦର୍ପଙ୍କୁ ଆଗ୍ନୀଧ୍ରଙ୍କ ହୃଦୟମଧ୍ୟରେ ପ୍ରବେଶ କରିବାକୁ ସୁଯୋଗ ମିଳିଗଲା ଏବଂ କାମବଶୀଭୂତ ରାଜକୁମାର ଉନ୍ମତ୍ତଙ୍କ ପରି କହିବାକୁ ଲାଗିଲେ ॥୬॥ ମୁନିବର ! ତୁମେ କିଏ ? ଏହି ପର୍ବତରେ ରହି ତୁମେ କ'ଣ କରିବାକୁ ଇଚ୍ଛା କରୁଛ ? ତୁମେ ଭଗବାନ ପରମେଶ୍ୱରଙ୍କର କୌଣସି ମାୟା ନୁହଁ ତ ? ତୁମର ଭ୍ରୂଲତାକୁ ଦେଖିଲେ ଜଣାଯାଉଛି ତୁମେ ଦୁଇଟି ଗୁଣରହିତ ଧନୁ ଧାରଣ କରୁଛ । ସଖା ! ତୁମର କେଉଁ କାମରେ ଏହା ଲାଗୁଛି ? ତୁମେ କଣ ନିଜପାଇଁ ଏହାକୁ ଧରିଛ ? ପ୍ରମତ୍ତ ମୃଗ (ଆମଭଳି ଅଜିତେନ୍ଦ୍ରିୟ ପୁରୁଷ) ମାନଙ୍କୁ ଶିକାର କରିବାପାଇଁ ଖୋଜୁନାହଁ ତ ? ॥୭॥ ଅନୁପମ ସୌନ୍ଦର୍ଯ୍ୟଯୁକ୍ତ ତୁମର ଏହି ବାଣ ଦୁଇଟି (କଟାକ୍ଷ) ଅତିଶୟ ତୀକ୍ଷ୍ଣ । ତୁମର ନେତ୍ରପଦ୍ମ ଏହାର ପତ୍ର । ପୁଙ୍ଖ ନ ଥିଲେ ମଧ୍ୟ ଏହି ସୁନ୍ଦର ବାଣଦ୍ୱାରା କାହାକୁ ବିଦ୍ଧ କରିବାପାଇଁ ତୁମେ ବନରେ ବିଚରଣ କରୁଛ କି ? ତୁମର ବିକ୍ରମ ଦ୍ୱାରା ଆମପରି ଜଡ଼ବୁଦ୍ଧି ବ୍ୟକ୍ତିଙ୍କର ଅମଙ୍ଗଳ ନ ହେଉ ॥୮॥ ତୁମେ ଅସୀମ ଐଶ୍ୱର୍ଯ୍ୟଶାଳୀ । ତୁମର ଏହି ଶିଷ୍ୟମାନେ (ଭ୍ରମରଗଣ) ଚାରିଆଡ଼େ ତୁମକୁ ଘେରିରହି ଅହରହ ରହସ୍ୟ ସହିତ ସାମବେଦକୁ ଉଚ୍ଚାରଣ ଓ ଗାନ କରୁଛନ୍ତି । ଋଷିମାନେ ଯେପରି ବେଦର ବିଭିନ୍ନ ଶାଖାକୁ ଭଜନ କରନ୍ତି, ସେହିପରି ତୁମର ଏହି ଶିଷ୍ୟମାନେ ତୁମର କବରୀରୁ ଗଳିପଡୁଥିବା ଫୁଲମାନଙ୍କର ସେବା କରିବାରେ ଲାଗିଛନ୍ତି ॥୯॥ ବ୍ରହ୍ମନ୍ ! ତିତ୍ତିରି ପକ୍ଷୀର ସ୍ୱରପରି ତୁମ ଚରଣ ନୂପୁରର ମୁଖର ଧ୍ୱନି ଆମେ ଶୁଣିପାରୁଛୁ । କିନ୍ତୁ ଏହି ଧ୍ୱନି କିଏ କରୁଛି, ଆମେ ଜାଣିପାରୁ ନାହୁଁ । ତୁମର ସୁଚାରୁ ନିତମ୍ବମଣ୍ଡଳରେ କଦମ୍ବ କୁସୁମର ଏ ଶୋଭା କିପରି ଆସିଲା ? ତା'ଉପରେ ପୁଣି ଜଳନ୍ତା ଅଙ୍ଗାରପରି ମେଖଳା ! ତୁମର ବଳ୍କଳ କୁଆଡ଼େ ଗଲା ? ॥୧୦॥ ପୂର୍ବଚିତ୍ତିଙ୍କର କୁଙ୍କୁମମଣ୍ଡିତ କୁଚଦ୍ୱୟକୁ ଲକ୍ଷ୍ୟକରି ଆଗ୍ନୀଧ୍ର କହିଲେ, ଦ୍ୱିଜବର ! ତୁମର ଏହି ସୁନ୍ଦର ଶିଙ୍ଗଦୁଇଟି ଭିତରେ କ'ଣ ଭରି ରଖିଛ ? ଏତିକି ମୁଁ ଜାଣୁଛି, ସେଥିରେ କିଛି ଅମୂଲ୍ୟ ରତ୍ନ ରହିଥିବ । ଯେହେତୁ ତୁମର କଟିଦେଶ କୃଶ ହେଲେ ମଧ୍ୟ ତୁମେ କଷ୍ଟରେ ସେଇ ଭାର ବହନ କରୁଛ, ଯେଉଁଥିରେ କି ମୋର ଦୃଷ୍ଟି ଲାଗି ରହିଛି । ହେ ସୁଭଗ ! ଏହି ଶୃଙ୍ଗ ଦୁଇଟି ଉପରେ ତୁମେ ଏପରି କ'ଣ ନାଲି ଲେପ ଲଗାଇଛ, ଯାହାର ସୁଗନ୍ଧିରେ ମୋର ସମଗ୍ର ଆଶ୍ରମ ମହକି ଉଠୁଛି ॥୧୧॥ ପ୍ରିୟତମ ! ଯେଉଁ ସ୍ଥାନର ଅଧିବାସୀ ବକ୍ଷସ୍ଥଳରେ ଏପରି ଅପୂର୍ବ ଅବୟବ ଧାରଣ କରନ୍ତି, ତୁମର ସେହି ମନୋହର ବାସସ୍ଥାନ ମୋତେ ଦେଖାଇଦିଅ । ଏହି ଅବୟବ ଦୁଇଟି ମୋର ଚିତ୍ତକୁ ଚଞ୍ଚଳ କରି ଦେଉଛି । ପୁଣି ତୁମର ମୁଖଭିତରେ ଅଧରାମୃତ, ମଧୁର ଆଳାପ ଓ ସ୍ମିତ ହାସ୍ୟ ଆଦି ବହୁ ଅଦ୍ଭୁତ ହାବ ଭାବ ପ୍ରକାଶ ପାଉଛି ॥୧୨॥ ପ୍ରିୟ ! ଦେହଧାରଣ ପାଇଁ ତୁମେ କ'ଣ ଭୋଜନ କରୁଛ ? କାରଣ ତୁମର ଚର୍ବିତ (ତାମ୍ବୂଳ) ବସ୍ତୁରୁ ଯଜ୍ଞହବି ପରି ପବିତ୍ର ଗନ୍ଧ ବାହାରୁଛି । ତୁମେ କ'ଣ ବିଷ୍ଣୁଙ୍କର କଳା ? କାରଣ ବିଷ୍ଣୁଙ୍କ କର୍ଣ୍ଣ ପରି ତୁମ କର୍ଣ୍ଣରେ ଅପଲକ ମକରକୁଣ୍ଡଳ ଦୁଇଟି ଶୋଭା ପାଉଛି । ତୁମର ମୁଖମଣ୍ଡଳ ସରୋବରର ଶୋଭା ଧାରଣ କରୁଛି । ଚଞ୍ଚଳ ମୀନଯୁଗଳ ପରି ତୁମର ଚକ୍ଷୁଦ୍ୱୟ ଓ ହଂସରାଜିପରି ତୁମର ଶୁଭ୍ର ଦନ୍ତପଙ୍‌କ୍ତି ଏବଂ ତାହାର ନିକଟସ୍ଥ ଭ୍ରମରମଣ୍ଡଳୀପରି ତୁମର କୃଷ୍ଣକେଶଗୁଚ୍ଛ ॥୧୩॥

ତୁମର କ୍ରୀଡ଼ାରତ କରକମଳଦ୍ୱାରା ଆହତ ହୋଇ ଏହି କନ୍ଦୁକଟି ଏଣେ ତେଣେ ଭ୍ରମଣ କରୁଛି ଏବଂ ତାହାକୁ ଦେଖିବାପାଇଁ ମୋର ଆଖି ଦୁଇଟି ଚଞ୍ଚଳ ହୋଇଉଠୁଛି । ତୁମର କୁଞ୍ଚିତ କେଶଜାଳ ମୁକୁଳା ହେଲାଣି ବୋଲି ଲକ୍ଷ୍ୟ କରୁଛ କି ନାହିଁ ? ଏହି ଧୂର୍ତ୍ତ, ଲମ୍ପଟ ପବନ ତୁମର ନୀବୀବନ୍ଧକୁ ଖୋଲିବାରେ ଲାଗିପଡ଼ିଛି ॥୧୪॥ ତପୋଧନ ! କେଉଁ ତପସ୍ୟାର ପ୍ରଭାବରେ ତପସ୍ୱୀମାନଙ୍କ ତପୋଭଙ୍ଗକାରୀ ଏହି ମନୋହର ରୂପକୁ ତୁମେ ଲାଭ କରିଛ ? ମିତ୍ର ! ଏଥିପାଇଁ ତୁମେ ମୋ ସହିତ ତପସ୍ୟା କରିବାପାଇଁ ଯୋଗ୍ୟ । ଅଥବା ସଂସାରବିସ୍ତାରପାଇଁ ବ୍ରହ୍ମା ମୋ ପ୍ରତି ପ୍ରସନ୍ନ ହୋଇ ନାହାନ୍ତି ତ ? ॥୧୫॥ ବ୍ରହ୍ମା ମୋତେ ତୁମକୁ ଦେଇଛନ୍ତି । ହେ ଦୟିତ, ମୁଁ ତୁମକୁ ଛାଡ଼ିବି ନାହିଁ । ମୋର ମନ ଓ ନୟନ ତୁମଠାରେ ଲାଖି ରହିଛି । ତେଣୁ ପୀନସ୍ତନା ! ତୁମେ ମୋତେ ଯେଣିକି ଚାହିବ, ତେଣିକି ନେଇପାର । ମୁଁ ତୁମ ଅଧୀନ । ତୁମର ମଙ୍ଗଳକାରୀ ସଖୀମାନେ ଆମକୁ ଅବଶ୍ୟ ଅନୁସରଣ କରିବେ ॥୧୬॥

ଶ୍ରୀ ଶୁକଦେବ କହିଲେ, ରାଜା, ଏହିପରି ଦେବତୁଲ୍ୟ ବୁଦ୍ଧିମାନ୍ ଏବଂ ସ୍ତ୍ରୀମାନଙ୍କୁ ବଶ କରିବାରେ କୁଶଳ ଆଗ୍ନୀଧ୍ର କାମଚାତୁରୀପୂର୍ଣ୍ଣ ମିଠା ମିଠା କଥାରେ ସେହି ଦେବାଙ୍ଗନାଙ୍କର ମନ କିଣିନେଲେ ॥୧୭॥ ଅପ୍‌ସରା ପୂର୍ବଚିତ୍ତି ବୀରାଗ୍ରଗଣ୍ୟ ଆଗ୍ନୀଧ୍ରଙ୍କର ବୁଦ୍ଧି, ଶୀଳ, ରୂପ, ବିଦ୍ୟା, ବୟସ, ଐଶ୍ୱର୍ଯ୍ୟ ଓ ଉଦାରତା ଦ୍ୱାରା ସମ୍ପୂର୍ଣ୍ଣ ରୂପେ ମୋହିତ ହୋଇ ଅୟୁତ ଅୟୁତ ବର୍ଷ ପର୍ଯ୍ୟନ୍ତ ଜମ୍ବୂଦ୍ୱୀପପତିଙ୍କ ସହିତ ଏହି ମର୍ତ୍ତ୍ୟରେ ରହି ସ୍ୱର୍ଗ ସୁଖ ଭୋଗ କଲେ ॥୧୮॥ ରାଜେନ୍ଦ୍ର ଆଗ୍ନୀଧ୍ର ପୂର୍ବଚିତ୍ତିଙ୍କ ଗର୍ଭରେ ନାଭି, କିଂପୁରୁଷ, ହରିବର୍ଷ, ଇଳାବୃତ, ରମ୍ୟକ, ହିରଣ୍ମୟ, କୁରୁ, ଭଦ୍ରାଶ୍ୱ ଏବଂ କେତୁମାଳ ନାମରେ ନ'ଜଣ ପୁତ୍ର ଉତ୍ପାଦନ କଲେ ॥୧୯॥ ଏହିପରି ନ'ବର୍ଷରେ ପ୍ରତି ବର୍ଷ ଜଣେ ଜଣେ ପୁତ୍ରଙ୍କୁ ଜନ୍ମ ଦେଇ ଏବଂ ସେ ପୁତ୍ରମାନଙ୍କୁ ରାଜଭବନରେ ଛାଡ଼ିଦେଇ ପୂର୍ବଚିତ୍ତି ବ୍ରହ୍ମଲୋକକୁ ପ୍ରସ୍ଥାନ କଲେ ॥୨୦॥ ଆଗ୍ନୀଧ୍ରଙ୍କର ଏହି ପୁତ୍ରମାନେ ମାତାଙ୍କର ଅନୁଗ୍ରହରୁ ସ୍ୱଭାବତଃ ଦୃଢ଼ାଙ୍ଗ ଓ ବଳଶାଳୀ ହୋଇଥିଲେ । ଆଗ୍ନୀଧ୍ର ଜମ୍ବୂଦ୍ୱୀପକୁ ନ'ଟି ବର୍ଷରେ ଭାଗ ଭାଗ କରି ପୁତ୍ରମାନଙ୍କର ନାମାନୁଯାୟୀ ଏକ ଏକ ଭାଗରେ ଜଣେ ଜଣେ ପୁତ୍ରଙ୍କୁ ଅଭିଷିକ୍ତ କଲେ ଏବଂ ସେମାନେ ଏହି ସବୁ ରାଜ୍ୟ ଭୋଗ କରିବାକୁ ଲାଗିଲେ ॥୨୧॥ ରାଜା ଆଗ୍ନୀଧ୍ର ବିଷୟଭୋଗରେ ଅତୃପ୍ତ ହୋଇ ଅନୁଦିନ ସେହି ଅପ୍‌ସରାଙ୍କର କଥା ଅତ୍ୟଧିକ ଚିନ୍ତା କଲେ । ବେଦୋକ୍ତ କର୍ମମାନଙ୍କଦ୍ୱାରା ସେ ଏପରି ଏକ ଲୋକ ଲାଭ କଲେ, ଯେଉଁ ଲୋକରେ କି ପିତୃଗଣ ନିଜର ସୁକୃତ ଅନୁସାରେ ବିଭିନ୍ନ ଭୋଗ୍ୟବସ୍ତୁ ଉପଭୋଗ କରନ୍ତି ॥୨୨॥ ପିତାଙ୍କର ପରଲୋକ ପରେ ଏହି ନ'ଭାଇ ମେରୁଦେବୀ, ପ୍ରତିରୂପା, ଉଗ୍ରଦଂଷ୍ଟ୍ରୀ, ଲତା, ରମ୍ୟା, ଶ୍ୟାମା ନାରୀ, ଭଦ୍ରା ଓ ଦେବବୀତି ନାମକ ନ'ଜଣ କନ୍ୟାଙ୍କୁ ବିବାହ କଲେ । ସେମାନେ ସମସ୍ତେ ମେରୁପର୍ବତଙ୍କର କନ୍ୟା ଥିଲେ ॥୨୩॥

## ତୃତୀୟ ଅଧ୍ୟାୟ

# ରାଜା ନାଭିଙ୍କ ଚରିତ

ଶ୍ରୀ ଶୁକଦେବ କହିଲେ, ଆଗ୍ନୀଧ୍ରଙ୍କର ଜ୍ୟେଷ୍ଠପୁତ୍ର ନାଭି ଅପତ୍ୟ କାମନାରେ ନିଜର ନିଃସନ୍ତାନା ପତ୍ନୀଙ୍କ ସହିତ ଏକାନ୍ତ ହୃଦୟରେ ଭଗବାନ ଯଜ୍ଞପୁରୁଷଙ୍କୁ ଅର୍ଚ୍ଚନା କରିବାକୁ ଲାଗିଲେ ॥୧॥ ମହାରାଜ ନାଭି ଶ୍ରଦ୍ଧାର ସହିତ ବିଶୁଦ୍ଧ ଚିତ୍ତରେ ଭଗବାନଙ୍କର ଆରାଧନା କଲେ । କ୍ରମେ ପ୍ରବର୍ଗ୍ୟ ନାମକ ଯଜ୍ଞକର୍ମମାନ ସଂପାଦନ କଲେ, ଯାହା ହେଉଛି ଦ୍ରବ୍ୟ, ଦେଶ, କାଳ, ମନ୍ତ୍ର, ଋତ୍ୱିକ, ଦକ୍ଷିଣା ଓ ବିଧାନ - ଏହି ସପ୍ତବିଧ କର୍ମଯୁକ୍ତ । ଏହି କଷ୍ଟକର ଯଜ୍ଞ-ସମ୍ପାଦନ ଦ୍ୱାରା ଦୁର୍ଲଭ ହେଲେ ମଧ୍ୟ

ସ୍ୱତନ୍ତ୍ରସ୍ୱରୂପ ଭକ୍ତବତ୍ସଳ ଭଗବାନ ଭକ୍ତର ଅଭିଲକ୍ଷିତ ବସ୍ତୁ-ପ୍ରଦାନପାଇଁ ଆକୃଷ୍ଟ ହୋଇ ନୟନାଭିରାମ, ମନୋରମ ଅବୟବଧାରଣପୂର୍ବକ ଯଜ୍ଞସ୍ଥଳରେ ଆବିର୍ଭୂତ ହେଲେ ॥୨॥ ନିର୍ଦ୍ଧନ ବ୍ୟକ୍ତି ବହୁ ଧନଲାଭଦ୍ୱାରା ଆନନ୍ଦିତ ହେବାପରି ଋତ୍ୱିକ ଓ ସଦସ୍ୟମାନଙ୍କ ସହିତ ଯଜମାନ ନାଭି ପଟ୍ଟପୀତାମ୍ବରଧାରୀ ଶ୍ରୀବତ୍ସଲାଞ୍ଛନ ଶଙ୍ଖ ଚକ୍ର ଗଦା ପଦ୍ମ ଯୁକ୍ତ, ବନମାଳା ଓ କୌସ୍ତୁଭମଣି ଶୋଭିତ, ଉଜ୍ଜ୍ୱଳମଣିମୟ ମୁକୁଟ, କୁଣ୍ଡଳ, ମଣିବନ୍ଧ, ମେଖଳା, ହାର, ବାଜୁବନ୍ଧ ଓ ନୂପୁରାଦିରେ ଅଳଙ୍କୃତ ତେଜୋମୟ ଚତୁର୍ଭୁଜ ପୁରୁଷୋତ୍ତମ ମୂର୍ତ୍ତିକୁ ଦର୍ଶନ କରି ଅତିଶୟ ଆନନ୍ଦିତ ହେଲେ ଏବଂ ବହୁମାନପୂର୍ବକ ଅବନତ ମସ୍ତକରେ ବିଭିନ୍ନ ପୂଜୋପହାରଦ୍ୱାରା ଏହି ଯଜ୍ଞପୁରୁଷଙ୍କର ଅର୍ଚ୍ଚନା କଲେ ॥୩॥

ଋତ୍ୱିକମାନେ କହିଲେ, ପୂଜ୍ୟତମ, ଆମେମାନେ ଆପଣଙ୍କର ଅନୁଗତ ଭୃତ୍ୟ । ଆପଣ ପୂର୍ଣ୍ଣକାମ ହେଲେ ମଧ୍ୟ ଆମର ପୁନଃ ପୁନଃ ପୂଜନୀୟ । ଆମର ଏହି ପୂଜାକୁ ଅଙ୍ଗୀକାର କରନ୍ତୁ । ଆପଣଙ୍କର ସନ୍ତୋଷଜନକ ପୂଜା କରିବାପାଇଁ ଆମେ ଅକ୍ଷମ । କେବଳ 'ନମୋ ନମଃ' ଏତିକି ସ୍ତୁତି କରିବା ପାଇଁ ଆମେ ଉପଯୁକ୍ତ । ସାଧୁମାନଙ୍କଠାରୁ ଆମେ ଏହି ଶିକ୍ଷାଲାଭ କରିଛୁ । ଆପଣ ପରମେଶ୍ୱର; ପ୍ରକୃତିର ଓ ପୁରୁଷର ଊର୍ଦ୍ଧ୍ୱରେ ସ୍ଥିତ ଆପଣଙ୍କର ତତ୍ତ୍ୱ ଜାଣିବାପାଇଁ କେହି ସମର୍ଥ ନୁହନ୍ତି । ଜୀବର ସକଳ କଳୁଷବିନାଶକାରୀ ଆପଣଙ୍କ ମଙ୍ଗଳମୟ ଶ୍ରେଷ୍ଠ ଗୁଣାବଳୀର ସାମାନ୍ୟମାତ୍ର ଅଂଶ କହିବା ଆମ ବୁଦ୍ଧିର ଅତୀତ । ପ୍ରପଞ୍ଚ, ପ୍ରକୃତି ଓ ନାମରୂପଦ୍ୱାରା ଆବଦ୍ଧ କେଉଁ ସଂସାରୀ ବ୍ୟକ୍ତି ଆପଣଙ୍କ ସ୍ୱରୂପ ନିରୂପଣ କରିବାରେ ସମର୍ଥ ହେବ ? ॥୪-୫॥ ପରମେଶ୍ୱର, ସେବକ ଭକ୍ତର ଶ୍ରଦ୍ଧାସମ୍ବଳିତ ଭାବଗଦ୍‌ଗଦ ସ୍ତୁତି ଏବଂ ସାମାନ୍ୟ ଜଳ, ଶୁଦ୍ଧ ତୁଳସୀ ପତ୍ର, ଦୂର୍ବାଦଳ ଓ ଜବାଙ୍କୁରଦ୍ୱାରା ଆପଣଙ୍କର ଯେଉଁ ପୂଜା ସମ୍ପାଦିତ ହୁଏ, ଆପଣ ସେଥିରେ ସନ୍ତୁଷ୍ଟ ହୁଅନ୍ତି ॥୬॥ ଅନୁରାଗ ବ୍ୟତୀତ ଦ୍ରବ୍ୟ, ଦେଶ, କାଳ, ମନ୍ତ୍ର, ଦକ୍ଷିଣା ପ୍ରଭୃତି ବିଭିନ୍ନ ବସ୍ତୁରେ ସମୃଦ୍ଧ ଯଜ୍ଞଦ୍ୱାରା ଆପଣଙ୍କର ଯଥାର୍ଥ ପୂଜା ହୋଇପାରିବ ବୋଲି ଆମେ ଅନୁଭବ କରୁ ନାହୁଁ ॥୭॥ ଆପଣ ଅଶେଷ ପୁରୁଷାର୍ଥର ଫଳ ପରମାନନ୍ଦ ସ୍ୱରୂପ । ଆପଣଙ୍କଠାରୁ ସ୍ୱତଃ ସର୍ବଦା ଏହା ଉଦ୍‌ଭୂତ ହେଉଛି । ତେଣୁ ଏ ପ୍ରକାର ଯଜ୍ଞରେ ଆପଣଙ୍କର କୌଣସି ପ୍ରୟୋଜନ ନ ଥିଲେ ମଧ୍ୟ ଆମପରି ସକାମ ବ୍ୟକ୍ତିମାନଙ୍କର ମନୋରଥସିଦ୍ଧିପାଇଁ ଏହି ଯଜ୍ଞଦ୍ୱାରା ଆମେ ଆପଣଙ୍କୁ ଉପାସନା କରୁଛୁ ॥୮॥ ହେ ଶ୍ରେଷ୍ଠ, ପରମ ପୁରୁଷ ! ଅନାହୂତ ହୋଇ କରୁଣାବଶତଃ ଜ୍ଞାନୀ ବ୍ୟକ୍ତି ଯେପରି ଅଜ୍ଞର ଉଦ୍ଧାରପାଇଁ ତା ନିକଟରେ ଉପସ୍ଥିତ ହୁଏ, ସେହିପରି ଆପଣ ବ୍ରହ୍ମା ଆଦି ଶ୍ରେଷ୍ଠ ପୁରୁଷଙ୍କଠାରୁ ଶ୍ରେଷ୍ଠ ହେଲେ ମଧ୍ୟ ବିନା ପୂଜାରେ ଅତ୍ୟନ୍ତ କରୁଣାବଶତଃ ମୋକ୍ଷରୂପ ନିଜ ଆନନ୍ଦପ୍ରଦାନପାଇଁ ସାଧାରଣ ଯଜ୍ଞଦର୍ଶକଙ୍କପରି ଆମ ନିକଟରେ ଉପସ୍ଥିତ ହୋଇଛନ୍ତି ॥୯॥ ପୂଜ୍ୟତମ ! ବରଦମାନଙ୍କ ମଧ୍ୟରେ ଆପଣ ଶ୍ରେଷ୍ଠ । ରାଜର୍ଷି ନାଭିଙ୍କର ଯଜ୍ଞରେ ଆପଣ ନିଜର ସେବକ ଭକ୍ତମାନଙ୍କର ଚକ୍ଷୁପଥାରୂଢ଼ ହୋଇଛନ୍ତି ଏହା ହିଁ ସେମାନଙ୍କପାଇଁ ଯଥାର୍ଥ ବରଦାନ ॥୧୦॥ ପ୍ରଭୁ ! ଆପଣଙ୍କ ଗୁଣାବଳୀ ଗାନକରିବାଦ୍ୱାରା ଅଶେଷ ମଙ୍ଗଳ ହୋଇଥାଏ । ଅନାସକ୍ତଭାବରେ ଯେଉଁମାନେ ପ୍ରଜ୍ୱଳିତ ଜ୍ଞାନାଗ୍ନିଦ୍ୱାରା ସମସ୍ତ ବାସନାରୂପ ମଳକୁ ଦଗ୍ଧ କରିଦେଇଥାନ୍ତି, ଆପଣଙ୍କପରି ସେହି ଶାନ୍ତସ୍ୱଭାବ ଆତ୍ମାରାମ ମୁନିମାନେ ସର୍ବଦା ଆପଣଙ୍କର ଗୁଣଗାନ ହିଁ କରୁଥାନ୍ତି (ଆପଣଙ୍କ ଦର୍ଶନ ସେମାନଙ୍କପାଇଁ ଦୁର୍ଲଭ) ॥୧୧॥ ଆପଣଙ୍କ ଦର୍ଶନରେ କୃତାର୍ଥ ହୋଇ ଆମେ ଏତିକି ପ୍ରାର୍ଥନା କରୁଛୁ ଯେ, କ୍ଷୁଧାତୁର ଅବସ୍ଥାରେ, ପତନ ବା ସ୍ଖଳନ ସମୟରେ, ଛିଙ୍କିବା ବା ହାଇ ମାରିବାବେଳେ କିମ୍ବା ସଙ୍କଟ ସମୟରେ, ଜ୍ୱର କିମ୍ବା ମରଣଦଶାରେ ଅସମର୍ଥ ହେଲେ ମଧ୍ୟ ଆମେ ଆପଣଙ୍କୁ ଯେପରି ସ୍ମରଣ କରିପାରିବୁ ଏବଂ ଆପଣଙ୍କର ସକଳପାପହାରୀ ଗୁଣ ଓ ନାମକୁ ଉଚ୍ଚାରଣ କରିପାରିବୁ ॥୧୨॥ ଆମର ଆହୁରି ଏକ ପ୍ରାର୍ଥନା ଅଛି । ଆପଣ ସାକ୍ଷାତ୍ ପରମେଶ୍ୱର । ସ୍ୱର୍ଗ ବା ମୋକ୍ଷପରି ଏପରି କୌଣସି ବସ୍ତୁ ନାହିଁ, ଯାହା ଆପଣ ପ୍ରଦାନ କରିପାରିବେ ନାହିଁ । ଏକ ନିର୍ଧନ କାଙ୍ଗାଳ ଧନ ଦାନ କରୁଥିବା ବ୍ୟକ୍ତିପାଖରେ ପହଞ୍ଚି ଯେପରି ତୁଷକଣା ମାତ୍ର ଭିକ୍ଷା କରେ, ସେହିପରି ରାଜର୍ଷି ନାଭି

ପୁତ୍ରଲାଭକୁ ହିଁ ପ୍ରକୃତ ପୁରୁଷାର୍ଥ ମନେକରି ଆପଣଙ୍କ ସମାନ ପୁତ୍ର ପାଇବାପାଇଁ ଆପଣଙ୍କୁ ଆରାଧନା କରୁଛନ୍ତି ॥୧୩॥ (ରାଜର୍ଷିଙ୍କର ଏ ତୁଚ୍ଛ ପ୍ରାର୍ଥନା ବିଚିତ୍ର ନୁହେଁ) । ଏହି ସଂସାରରେ ଆପଣଙ୍କ ଅପରାଜିତା ମାୟାଦ୍ୱାରା କିଏ ବା ବଶୀଭୂତ ନ ହେଉଛି ? ଏହି ମାୟାର ଗତିକୁ କିଏ ବା ବୁଝିବାକୁ ସମର୍ଥ ? ଯେଉଁମାନେ ମହାପୁରୁଷଙ୍କର ଚରଣାଶ୍ରିତ ନୁହନ୍ତି, ସେମାନଙ୍କ ମଧ୍ୟରେ ଏପରି କିଏ ଅଛି ଯେ, ଆପଣଙ୍କ ମାୟାଦ୍ୱାରା ମୋହିତ ନ ହୁଏ ଓ ବିଷୟାବିଷର ପ୍ରଭାବରେ ଯାହାର ସ୍ୱଭାବ ଦୂଷିତ ନ ହୁଏ ? ॥୧୪॥ ଦେବଦେବ ! ଆମେମାନେ ମନ୍ଦବୁଦ୍ଧି । ଆପଣ କୃତକର୍ମା ହୋଇଥିବାରୁ ଏହି କାମନାବଶରୁ ତୁଚ୍ଛ କାର୍ଯ୍ୟପାଇଁ ଆପଣଙ୍କୁ ଆମେ ଆବାହନ କରିଛୁ । ଏହା ଆପଣଙ୍କପ୍ରତି ଅନାଦର । କିନ୍ତୁ ଆପଣ ସମଦର୍ଶୀ ହୋଇଥିବାରୁ ଆମପରି ଅଜ୍ଞମାନଙ୍କର ଏହି ଧୃଷ୍ଟତାକୁ କ୍ଷମା କରିବେ ॥୧୫॥

ଶ୍ରୀ ଶୁକଦେବ କହିଲେ, ରାଜା, ବର୍ଷାଧିପତି ନାଭିଙ୍କର ଋତ୍ୱିକ୍‌ମାନେ ଏହିପରି ସ୍ତୁତିବାକ୍ୟରେ ଭଗବାନଙ୍କର ଚରଣବନ୍ଦନା କରିବାରୁ ସେ ସଦୟ ହୋଇ ଏହିପରି ଉତ୍ତର ଦେଲେ ॥୧୬॥ ଶ୍ରୀ ଭଗବାନ କହିଲେ, ଋଷିଗଣ, ଆପଣମାନେ ସତ୍ୟବାଦୀ । କିନ୍ତୁ ଆଶ୍ଚର୍ଯ୍ୟର ବିଷୟ ହେଉଛି, ରାଜର୍ଷି ନାଭି 'ମୋ ପରି ପୁତ୍ର ହେଉ' ବୋଲି ଯେଉଁ ବର ପ୍ରାର୍ଥନା କରିଛନ୍ତି ତାହା ଅତିଶୟ ଦୁର୍ଲଭ । କାରଣ ମୁଁ ଅଦ୍ୱିତୀୟ । ମୋ ପରି ମୋ ଛଡ଼ା ଅନ୍ୟ କେହି ନାହିଁ । ଏପରି ବର ଦୁର୍ଲଭ ହେଲେ ମଧ୍ୟ ବ୍ରାହ୍ମଣଙ୍କ ବାକ୍ୟ କେବେହେଲେ ମିଥ୍ୟା ହେବାର ନୁହେଁ; କାରଣ ଦ୍ୱିଜକୁଳ ମୋର ମୁଖସ୍ୱରୂପ ॥୧୭॥ ମୋ ସଦୃଶ ଅନ୍ୟ କେହି ନ ଥିବା ଯୋଗୁଁ ମୋ ନିଜ ଅଂଶକଳାରେ ଆଗ୍ନୀଧ୍ରନନ୍ଦନ ନାଭିଙ୍କର ପୁତ୍ରରୂପେ ମୁଁ ଅବତୀର୍ଣ୍ଣ ହେବି ॥୧୮॥ ଶୁକଦେବ କହିଲେ, ଭଗବାନ ଏହିପରି ନାଭିଙ୍କ ସମ୍ମୁଖରେ ତାଙ୍କ ପତ୍ନୀ ମେରୁଦେବୀଙ୍କୁ ଶୁଣାଇ ଅନ୍ତର୍ହିତ ହୋଇଗଲେ ॥୧୯॥

ବିଷ୍ଣୁଦତ୍ତ (ପରିକ୍ଷିତ), ନାଭିଙ୍କ ଯଜ୍ଞରେ ଋଷିମାନେ ଏହିପରି ସ୍ତୁତିବାକ୍ୟଦ୍ୱାରା ଭଗବାନଙ୍କୁ ପ୍ରସନ୍ନ କରିବାରୁ ଭଗବାନ ନାଭିଙ୍କର ପ୍ରୀତି ଉଦ୍ଦେଶ୍ୟରେ ତାଙ୍କ ଅନ୍ତଃପୁରରେ ରାଣୀ ମେରୁଦେବୀଙ୍କ ଗର୍ଭରେ ଦିଗମ୍ବର ସନ୍ନ୍ୟାସୀ ଏବଂ ଊର୍ଦ୍ଧ୍ୱରେତା ମୁନିମାନଙ୍କୁ ଧର୍ମର ମାନ ଦେଖାଇବା ନିମନ୍ତେ ଶୁଦ୍ଧସତ୍ତ୍ୱମୟ ବିଗ୍ରହରେ ଆବିର୍ଭୂତ ହେଲେ ॥୨୦॥

## ଚତୁର୍ଥ ଅଧ୍ୟାୟ

# ଋଷଭଦେବଙ୍କ ଚରିତ

ଶ୍ରୀ ଶୁକଦେବ କହିଲେ, ଜନ୍ମରୁ ସେହି ବାଳକର ଦେହରେ ଧ୍ୱଜ, ବଜ୍ର, ଅଙ୍କୁଶ ଆଦି ଭଗବାନ ବିଷ୍ଣୁଙ୍କର ଚିହ୍ନ ପ୍ରକାଶ ପାଇବାରୁ ଏବଂ ବଢ଼ିବା ସଙ୍ଗେ ସଙ୍ଗେ ପ୍ରତିଦିନ ସାମ୍ୟ, ଶାନ୍ତି, ବୈରାଗ୍ୟ ଓ ଐଶ୍ୱର୍ଯ୍ୟ ଆଦି ମହାବିଭୂତିଦ୍ୱାରା ତାଙ୍କ ପ୍ରଭାବ ବିସ୍ତାରିତ ହେବାରୁ ଅମାତ୍ୟ, ପ୍ରଜା, ବ୍ରାହ୍ମଣ ଓ ଦେବତାମାନେ ସମସ୍ତେ ଇଚ୍ଛା କଲେ ଯେ ଏହି ରାଜପୁତ୍ର ପୃଥିବୀକୁ ପାଳନ କରନ୍ତୁ ॥୧॥ କବିମାନଙ୍କଦ୍ୱାରା ସୁକୀର୍ତ୍ତିତ ତାଙ୍କ ଦେହ, ତେଜ, ବଳ, ସୌନ୍ଦର୍ଯ୍ୟ, ଯଶ, ପରାକ୍ରମ ଓ ଉତ୍ସାହ ଦେଖି ପିତା ନାଭି ତାଙ୍କୁ 'ଶ୍ରେଷ୍ଠ' ବାଚକ ଋଷଭ ନାମରେ ନାମିତ କଲେ ॥୨॥ ଭଗବାନ ଇନ୍ଦ୍ର ଋଷଭଦେବଙ୍କ ପ୍ରଭାବରେ ଅସହିଷ୍ଣୁ ହୋଇ ରାଜ୍ୟରେ ବର୍ଷା କଲେ ନାହିଁ । ଯୋଗବଳରେ ତାହା ଜାଣିପାରି ଭଗବାନ ଋଷଭଦେବ ଇନ୍ଦ୍ରଙ୍କୁ ଉପହାସ କରି ଯୋଗମାୟାବଳରେ ଅଜନାଭ ନାମକ ନିଜ ମଣ୍ଡଳରେ ବହୁ ବର୍ଷା କରାଇଲେ ॥୩॥ ମହାରାଜ ନାଭି ନିଜର ଅଭିଳାଷ ଅନୁରୂପ ସୁପୁତ୍ର ଲାଭ କରି ଅତ୍ୟନ୍ତ ଆନନ୍ଦରେ ବିହ୍ୱଳ ହୋଇପଡ଼ିଲେ ଏବଂ ନିଜ ଇଚ୍ଛାରେ ମନୁଷ୍ୟଶରୀର ଧାରଣ କରିଥିବା ପୁରାଣପୁରୁଷ ଶ୍ରୀ ନାରାୟଣଙ୍କୁ ଅତି ଶ୍ରଦ୍ଧାରେ ଲାଳନ ପାଳନ କରିବାକୁ ଲାଗିଲେ । ଭଗବତ୍ ମାୟାରେ ମୋହିତ ହୋଇ ସେ ସ୍ନେହରେ ପରମପୁରୁଷଙ୍କୁ

'ବତ୍ସ, ତାତ' ବୋଲି ଗଦ୍‌ଗଦ ସ୍ୱରରେ ସମ୍ବୋଧନ କରି ପରମ ସୁଖ ଲାଭ କଲେ ॥୪॥ ଯେତେବେଳେ ରାଜା ନାଭି ଦେଖିଲେ ଯେ, ପୌର, ଅମାତ୍ୟାଦି ସମସ୍ତେ ନିଜ ପୁତ୍ରଙ୍କ ପ୍ରତି ଅନୁରକ୍ତ, ସେ ଧର୍ମମର୍ଯ୍ୟାଦା ରକ୍ଷା କରିବାପାଇଁ ଋଷଭଙ୍କୁ ରାଜ୍ୟାଭିଷିକ୍ତ କରାଇ ବ୍ରାହ୍ମଣମାନଙ୍କ ତତ୍ତ୍ୱାବଧାନରେ ଛାଡ଼ିଦେଲେ ଏବଂ ନିଜେ ପତ୍ନୀ ମେରୁଦେବୀଙ୍କ ସହିତ ବଦରିକାଶ୍ରମ ଯାତ୍ରା କରି ସେଠାରେ ଏକାଗ୍ରଚିତ୍ତରେ ତୀବ୍ର ତପସ୍ୟା ଓ ସମାଧିଯୋଗଦ୍ୱାରା ନରନାରାୟଣରୂପୀ ଭଗବାନ ବାସୁଦେବଙ୍କର ଆରାଧନା କରିବାକୁ ଲାଗିଲେ ଏବଂ ଯଥାକାଳରେ ତାଙ୍କରି ସ୍ୱରୂପରେ ଲୀନ ହୋଇଗଲେ ॥୫॥ ପାଣ୍ଡୁନନ୍ଦନ ! ରାଜା ନାଭିଙ୍କ ସମ୍ପର୍କରେ ଦୁଇଟି ଶ୍ଳୋକରେ ପ୍ରଶସ୍ତି ଅଛି ଯେ, ଯେଉଁ ନାଭିଙ୍କର ଶୁଦ୍ଧ କର୍ମରେ ସନ୍ତୁଷ୍ଟ ହୋଇ ଭଗବାନ ଶ୍ରୀ ହରି ତାଙ୍କର ପୁତ୍ର ରୂପେ ଜନ୍ମିଥିଲେ, ତାଙ୍କ ପରେ ଏପରି କୌଣସି ବ୍ୟକ୍ତି ନାହିଁ ଯେ କି ତାଙ୍କ କର୍ମର ଅନୁକରଣ କରିପାରିବ ॥୬॥ ମହାରାଜ ନାଭିଙ୍କ ପରି ବ୍ରାହ୍ମଣଭକ୍ତ ମଧ୍ୟ କିଏ ହୋଇପାରିବ -- ଯାହାଙ୍କ ଯଜ୍ଞରେ ଦକ୍ଷିଣାଦିଦ୍ୱାରା ସନ୍ତୁଷ୍ଟ ହୋଇ ବ୍ରାହ୍ମଣମାନେ ସେମାନଙ୍କ ମନ୍ତ୍ରବଳରେ ଯଜ୍ଞପୁରୁଷ ଭଗବାନଙ୍କୁ ସାକ୍ଷାତ୍ ଦର୍ଶନ କରିଥିଲେ ॥୭॥ ଭଗବାନ ଋଷଭଦେବ ନିଜ ଦେଶ ଅଜନାଭମଣ୍ଡଳକୁ କର୍ମଭୂମି ବୋଲି ଗ୍ରହଣ କରି ଗୁରୁଗୃହରେ ବିଦ୍ୟାଶିକ୍ଷା ଛଳରେ ବାସ କରିବାକୁ ଲାଗିଲେ । ବିଦ୍ୟାଶିକ୍ଷା ଶେଷ ହେବା ପରେ ଗୁରୁମାନଙ୍କୁ ଉପଯୁକ୍ତ ଗୁରୁ ଦକ୍ଷିଣା ଦେଇ ତାଙ୍କଠାରୁ ଗୃହସ୍ଥାଶ୍ରମ ପ୍ରବେଶ କରିବାର ଅନୁମତି ଲାଭ କରି ଲୋକମାନଙ୍କୁ ଗୃହସ୍ଥଧର୍ମ ଶିକ୍ଷାଦେବାପାଇଁ ଦେବରାଜ ଇନ୍ଦ୍ରଙ୍କର ପ୍ରଦତ୍ତ କନ୍ୟା ଜୟନ୍ତୀଙ୍କୁ ବିବାହ କଲେ ଏବଂ ଶ୍ରୁତି ଓ ସ୍ମୃତିନିର୍ଦ୍ଦିଷ୍ଟ ଉଭୟବିଧ ଧର୍ମକର୍ମର ଅନୁଷ୍ଠାନ କରି ପତ୍ନୀଙ୍କ ଗର୍ଭରେ ନିଜ ସମାନ ଗୁଣସମ୍ପନ୍ନ ଶତପୁତ୍ରଙ୍କୁ ଉତ୍ପନ୍ନ କଲେ ॥୮॥ ଏମାନଙ୍କ ମଧ୍ୟରେ ମହାଯୋଗୀ ଭରତ ଗୁଣ ଓ ବୟସରେ ସମସ୍ତଙ୍କ ଅପେକ୍ଷା ଜ୍ୟେଷ୍ଠ ଓ ଶ୍ରେଷ୍ଠ ଥିଲେ ଏବଂ ତାହାଙ୍କ ନାମରେ ଏହି ଦେଶର ନାମ ଭାରତବର୍ଷ ହେଲା ॥୯॥ ଭରତଙ୍କଠାରୁ ଛୋଟ ନ'ଜଣ ରାଜପୁତ୍ର ହେଲେ କୁଶାବର୍ତ୍ତ, ଇଳାବର୍ତ୍ତ, ବ୍ରହ୍ମାବର୍ତ୍ତ, ମଳୟ, କେତୁ, ଭଦ୍ରସେନ, ଇନ୍ଦ୍ରସ୍ପୃକ୍, ବିଦର୍ଭ ଓ କୀକଟ । ଅବଶିଷ୍ଟ ନବେ ଜଣ ଭାଇଙ୍କ ଅପେକ୍ଷା ଏମାନେ ଶ୍ରେଷ୍ଠ ଥିଲେ ॥୧୦॥ ଏମାନଙ୍କଠାରୁ ଛୋଟ ଅନ୍ୟ ନ'ଜଣ ରାଜପୁତ୍ର - କବି, ହରି, ଅନ୍ତରିକ୍ଷ, ପ୍ରବୁଦ୍ଧ, ପିପ୍ପଳାୟନ, ଆବିର୍ହୋତ୍ର, ଦ୍ରୁମିଳ, ଚମସ ଏବଂ କରଭାଜନ । ଏମାନେ ଭଗବତ୍ ଭକ୍ତଭାବରେ ଭାଗବତ ଧର୍ମକୁ ପ୍ରଚାର କରିଥିଲେ । ସେମାନେ ଭଗବତ୍ ମାହାତ୍ମ୍ୟରେ ମହିମାନ୍ୱିତ ଥିଲେ । ବସୁଦେବ ଓ ନାରଦଙ୍କ କଥୋପକଥନ ପ୍ରସଙ୍ଗରେ ପରମ ଶାନ୍ତିପୂର୍ଣ୍ଣ ତାଙ୍କର ପବିତ୍ର ଚରିତ୍ର ମୁଁ ଆଗକୁ ବର୍ଣ୍ଣନା କରିବି (ଏକାଦଶ ସ୍କନ୍ଧରେ) ॥୧୧-୧୨॥

ଏମାନଙ୍କଠାରୁ କନିଷ୍ଠ ଜୟନ୍ତୀଙ୍କର ଅନ୍ୟ ଏକାଶୀ ଜଣ ପୁତ୍ର ପିତାଙ୍କର ଆଜ୍ଞା ପାଳନକାରୀ, ଅତି ବିନୀତ, ପରମବେଦଜ୍ଞ ଏବଂ ନିରନ୍ତର ଯଜ୍ଞରତ ଥିଲେ । ନିତ୍ୟନୈମିତ୍ତିକ କାର୍ଯ୍ୟରେ ବିଶୁଦ୍ଧ ରହି ସେମାନେ ବ୍ରାହ୍ମଣ (ବ୍ରହ୍ମନିଷ୍ଠ) ହୋଇଗଲେ ॥୧୩॥ ଭଗବାନ ଋଷଭ ଦେବ ନିଜର ଇନ୍ଦ୍ରିୟମାନଙ୍କୁ ବଶୀଭୂତ କରିଥିବାଯୋଗୁଁ ସମସ୍ତପ୍ରକାର ଅନର୍ଥରୁ ଦୂରରେ ରହୁଥିଲେ । ସେ ବିଶୁଦ୍ଧ ଆନନ୍ଦମୟ ଭଗବାନଙ୍କର ସାକ୍ଷାତ୍ ସ୍ୱରୂପ ଥିଲେ । ତଥାପି ସାଧାରଣ ବ୍ୟକ୍ତିପରି କାଳାନୁଯାୟୀ ଧର୍ମ ଆଚରଣପୂର୍ବକ ସେହି ଧର୍ମର ତତ୍ତ୍ୱ ଜାଣି ନ ଥିବା ଲୋକଙ୍କୁ ଶିକ୍ଷା ଦେବାପାଇଁ ସ୍ୱୟଂ ସାମ୍ୟ, ଶାନ୍ତି, ମୈତ୍ରୀ ଓ କରୁଣା ଅବଲମ୍ବନ କରିଥିଲେ ଏବଂ ଧର୍ମ ଅର୍ଥ, ଯଶ, ସନ୍ତାନସୁଖଭୋଗ ଓ ମୋକ୍ଷ ସଂଗ୍ରହଦ୍ୱାରା ଗୃହସ୍ଥାଶ୍ରମର ନିୟମ ଲୋକଙ୍କୁ ଠିକ୍ ଠିକ୍ ପାଳନ କରାଉଥିଲେ ॥୧୪॥ ଶ୍ରେଷ୍ଠ ବ୍ୟକ୍ତିମାନେ ଯେପରି ଆଚରଣ କରନ୍ତି ସାଧାରଣ ଲୋକ ତାହା ହିଁ ଅନୁକରଣ କରନ୍ତି । ଯଦିଓ ରାଜା ଋଷଭଦେବ ସକଳ-ଧର୍ମର ସାରସ୍ୱରୂପ ବେଦର ଗହନ ରହସ୍ୟକୁ ଜାଣିଥିଲେ, ତଥାପି (ଲୋକଶିକ୍ଷାପାଇଁ) ବ୍ରାହ୍ମଣମାନଙ୍କର ପ୍ରଦର୍ଶିତ ମାର୍ଗ ଅବଲମ୍ବନ କରି ସାମ, ଦାନ, ଭେଦ ଓ ଦଣ୍ଡ ଏହି ଚାରୋଟି ଉପାୟଦ୍ୱାରା ପ୍ରଜାମାନଙ୍କୁ ଶାସନ କରୁଥିଲେ ॥୧୫-୧୬॥ ରାଜା ଋଷଭଦେବ ଶାସ୍ତ୍ର ଓ ବ୍ରାହ୍ମଣମାନଙ୍କର ଉପଦେଶ ଅନୁଯାୟୀ ଭିନ୍ନ ଭିନ୍ନ ଦେବତାଙ୍କ ନାମରେ ଦ୍ରବ୍ୟ, ଦେଶ, କାଳ, ଆୟୁ, ଶ୍ରଦ୍ଧା ଓ ଋତ୍ୱିକମାନଙ୍କଦ୍ୱାରା ପରିପୁଷ୍ଟ ସବୁ ଯଜ୍ଞ ଶହ ଶହ ଥର ସମ୍ପାଦନ କରିଥିଲେ ॥୧୭॥ ଭଗବାନ୍ ଋଷଭଦେବଙ୍କ ଶାସନକାଳରେ

କେହି ବ୍ୟକ୍ତି ଏକମାତ୍ର ରାଜାଙ୍କ ପ୍ରତି ନିଜର କ୍ରମବର୍ଦ୍ଧମାନ ପ୍ରୀତି ବ୍ୟତୀତ ଅନ୍ୟ କାହାରି ନିକଟରୁ କେବେହେଲେ କୌଣସି ବସ୍ତୁ ଇଚ୍ଛା କରୁ ନ ଥିଲେ । ଆକାଶକୁସୁମ ପରି ଅନ୍ୟର ବସ୍ତୁ ପ୍ରତି ମଧ୍ୟ ଦୃଷ୍ଟିପାତ କରୁ ନ ଥିଲେ ॥୧୮॥ ଥରେ ଭଗବାନ୍ ଋଷଭଦେବ ବୁଲୁବୁଲୁ ବ୍ରହ୍ମାବର୍ତ୍ତ ଦେଶରେ ପହଞ୍ଚିଲେ । ସେଠାରେ ବଡ଼ବଡ଼ ବ୍ରହ୍ମର୍ଷିମାନଙ୍କର ଏକ ସଭା ହେଉଥିଲା । ସେହି ସଭାରେ ପ୍ରଜାମାନଙ୍କ ସମକ୍ଷରେ ନିଜର ବିନୀତ, ପ୍ରଣୟପୂରିତ ଓ ସଂଯତଚିତ୍ତ ପୁତ୍ରମାନଙ୍କୁ ଶିକ୍ଷାଦେବାପାଇଁ କେତେକ କଥା କହିବାକୁ ଆରମ୍ଭ କଲେ ॥୧୯॥

## ପଞ୍ଚମ ଅଧ୍ୟାୟ

# ଋଷଭଦେବଙ୍କ ଉପଦେଶ

ଋଷଭ କହିଲେ, ପ୍ରିୟ ପୁତ୍ରଗଣ ! ମର୍ତ୍ତ୍ୟଲୋକରେ କାମବାସନାଦି କଷ୍ଟ ଭୋଗ କରିବାପାଇଁ ଏହି ନରଦେହ ମିଳି ନାହିଁ । ବିଷ୍ଠାଭୋଜୀ ଶୂକର ଆଦି ପ୍ରାଣୀମାନେ ମଧ୍ୟ କାମବାସନା ଭୋଗ କରିଥା'ନ୍ତି । ଏହି ଶରୀର ଦିବ୍ୟ ତପସାଧନପାଇଁ ଅଭିପ୍ରେତ; ଯଦ୍ଦ୍ୱାର ଅନ୍ତର ଶୁଦ୍ଧ ହୁଏ ଓ ଅସୀମ ବ୍ରହ୍ମାନନ୍ଦ ମିଳିଥାଏ ॥୧॥ ମନୀଷୀମାନେ ମହତ୍ ବ୍ୟକ୍ତିର ସେବାକୁ ମୁକ୍ତିର ଦ୍ୱାର ଏବଂ ସ୍ତ୍ରୀସଙ୍ଗ କରୁଥିବା ବ୍ୟକ୍ତିର ସଙ୍ଗକୁ ନରକର ଦ୍ୱାର ବୋଲି କହିଥା'ନ୍ତି । ସେହି ହେଉଛି ମହତ୍ ବ୍ୟକ୍ତି ଯେ ସମଚିତ୍ତ, ପ୍ରଶାନ୍ତ, ଅନ୍ୟମାନଙ୍କ ପ୍ରତି କ୍ରୋଧଶୂନ୍ୟ, ସଦାଚାରୀ ଓ ସମସ୍ତଙ୍କର ବନ୍ଧୁ ॥୨॥ ଯେଉଁମାନେ ଈଶ୍ୱରରୂପୀ ମୋ ପ୍ରତି ପ୍ରେମକୁ ପରମ ପୁରୁଷାର୍ଥ ବୋଲି ମନେ କରନ୍ତି, ଶରୀରର ଭରଣପୋଷଣପାଇଁ ବ୍ୟସ୍ତ ଥିବା ବିଷୟାସକ୍ତ ବ୍ୟକ୍ତିମାନଙ୍କ ପ୍ରତି କିମ୍ବା ସ୍ତ୍ରୀ, ପୁତ୍ର ଓ ଧନଯୁକ୍ତ ଗୃହ ପ୍ରତି ଯାହାଙ୍କର ରୁଚି ନ ଥାଏ ଏବଂ ନିଜର ଜୀବିକାପାଇଁ ଯେତିକି ଅର୍ଥ ଆବଶ୍ୟକ ତା'ଅପେକ୍ଷା ଅଧିକ ଅର୍ଥପାଇଁ ଯାହାଙ୍କର ସ୍ପୃହା ନ ଥାଏ, ସେହିମାନେ ହିଁ ପ୍ରକୃତରେ ମହାପୁରୁଷ ॥୩॥ ଯେତେବେଳେ ଇନ୍ଦ୍ରିୟ ତୃପ୍ତିପାଇଁ ମନୁଷ୍ୟ ଲାଗିପଡ଼େ, ସେତେବେଳେ ପ୍ରମାଦବଶତଃ ସେ ଅନେକ କୁକର୍ମ କରିଯାଏ । ତାହାକୁ ସାଧୁ ବୋଲି ମୁଁ ମନେକରେ ନାହିଁ । ଏହି କାରଣରୁ ତାକୁ ଏହି ଅସତ୍ ଓ ଦୁଃଖଦାୟକ ଶରୀର ମିଳିଥାଏ ॥୪॥ ଯେ ପର୍ଯ୍ୟନ୍ତ ଜୀବ ଆତ୍ମତତ୍ତ୍ୱର ଜିଜ୍ଞାସା କରେ ନାହିଁ, ସେ ପର୍ଯ୍ୟନ୍ତ ଅଜ୍ଞାନତାବଶରୁ ଦେହାଦି ଦ୍ୱାରା ତା'ର ସ୍ୱରୂପ ଲୁକ୍କାୟିତ ରହେ । ଯେ ପର୍ଯ୍ୟନ୍ତ ସେ ଏହି ଲୌକିକ ଓ ବୈଦିକ କର୍ମମାନଙ୍କରେ ଲିପ୍ତ ରହେ, ସେ ପର୍ଯ୍ୟନ୍ତ କର୍ମଫଳସ୍ୱରୂପ ଏହି ଶରୀର- ବନ୍ଧନରୁ ସେ ମୁକ୍ତ ହୁଏ ନାହିଁ ॥୫॥ ଯେ ପର୍ଯ୍ୟନ୍ତ ଜୀବ ଅବିଦ୍ୟାରେ ଜଡ଼ିତ ରହେ, ସେ ପର୍ଯ୍ୟନ୍ତ କର୍ମବାସନାରେ ବଶୀଭୂତ ମନ ପୁଣି କର୍ମରେ ନିଜକୁ ନିୟୋଜିତ କରେ । ଯେ ପର୍ଯ୍ୟନ୍ତ ମୋଠାରେ ଅର୍ଥାତ୍ ବାସୁଦେବଙ୍କଠାରେ ପ୍ରୀତି ଜାତ ନ ହୁଏ, ସେ ପର୍ଯ୍ୟନ୍ତ ଦେହବନ୍ଧନରୁ ମୁକ୍ତି ନାହିଁ ॥୬॥ ସ୍ୱାର୍ଥରେ ପ୍ରମତ୍ତ ହୋଇ ଜୀବ ଯେ ପର୍ଯ୍ୟନ୍ତ ଇନ୍ଦ୍ରିୟମାନଙ୍କର ବିଷୟବାସନା ମିଥ୍ୟା ବୋଲି ଜାଣିପାରେ ନାହିଁ ସେ ପର୍ଯ୍ୟନ୍ତ ସେ ଆତ୍ମସ୍ୱରୂପକୁ ଭୁଲିଯାଇ ଅଜ୍ଞାନତାବଶତଃ ଭୌତିକ ସୁଖାଦିପ୍ରଧାନ ଗୃହସଂସାରରେ ଲିପ୍ତ ହୁଏ ଓ ଅସୀମ ଦୁଃଖ ଭୋଗ କରେ ॥୭॥ ପୁରୁଷ ଓ ସ୍ତ୍ରୀର ସମ୍ଭୋଗକକୁ ପରସ୍ପରର ହୃଦୟଗ୍ରନ୍ଥି ରୂପେ ପଣ୍ଡିତମାନେ ବର୍ଣ୍ଣନା କରିଛନ୍ତି ଯେ ଏହି ଦାମ୍ପତ୍ୟସମ୍ଭୋଗରୁ ଲୋକର ଗୃହ, ସ୍ତ୍ରୀ, ସନ୍ତାନ, ବନ୍ଧୁବାନ୍ଧବ ଓ ଧନସମ୍ପତ୍ତି ବିଷୟରେ 'ମୁଁ ଓ ମୋର' ରୂପକ ମହାମୋହ ଜାତ ହୋଇଥାଏ ॥୮॥ ଜୀବର କର୍ମମାନଙ୍କଦ୍ୱାରା ବନ୍ଧା ହୋଇଥିବା ଏହି ମନରୂପକ ଦୃଢ଼ ହୃଦୟଗ୍ରନ୍ଥି ଜ୍ଞାନବୈରାଗ୍ୟାଦି ଅଭ୍ୟାସଦ୍ୱାରା ଶିଥିଳ ହୋଇଗଲେ ଜୀବ ଏହି ମିଥୁନ ଭାବରୁ ନିବୃତ୍ତ ହୋଇ ସଂସାରର ହେତୁସ୍ୱରୂପ ଅହଙ୍କାରକୁ ତ୍ୟାଗ କରି ମୁକ୍ତାବସ୍ଥାରେ ପରମପଦ ଲାଭ କରେ ॥୯॥

ପୁତ୍ରମାନେ, ଯେଉଁ ବୁଦ୍ଧିମାନ୍ ବ୍ୟକ୍ତି ଧୈର୍ଯ୍ୟ, ଉତ୍ସାହ ଓ ବିବେକଯୁକ୍ତ; ସେ ପଚିଶଟି ସାଧନା ସାହାଯ୍ୟରେ ଅହଙ୍କାରସଂଜ୍ଞକ ହେତୁ ଏହି ଲିଙ୍ଗ ଶରୀରର ବିଲୟ ସାଧନ କରିପାରିବ । ଏହି ପଚିଶଟି ସାଧନା ହେଲା ପରମାତ୍ମା ଓ ଗୁରୁ ସ୍ୱରୂପ ମୋ'ପ୍ରତି ଭକ୍ତି ଓ ତତ୍ପରତା ବିଷୟଭୋଗପ୍ରତି ବିତୃଷ୍ଣା, ସୁଖଦୁଃଖାଦି ଦ୍ୱନ୍ଦ୍ୱ ପ୍ରତି ସହିଷ୍ଣୁଭାବ, ଇହଲୋକ ଓ ପରଲୋକ ଉଭୟରେ ଦୁଃଖର ଦର୍ଶନ, ଭକ୍ତ ଓ ଭଗବାନଙ୍କ ବିଷୟରେ ଜିଜ୍ଞାସା, ବ୍ରତାଦି ତପ ଆଚରଣ, ସକାମ କର୍ମ ପରିତ୍ୟାଗ, ମୋ ଉଦ୍ଦେଶ୍ୟରେ କର୍ମ କରିଯିବା, ନିତ୍ୟ ମୋର କଥା ଶ୍ରବଣ, ମୋର ଭକ୍ତମାନଙ୍କ ସଙ୍ଗଲାଭ, ମୋର ଗୁଣ କୀର୍ତ୍ତନ, ଅନ୍ୟ ପ୍ରତି ଦ୍ୱେଷର ଅଭାବ, ସମସ୍ତଙ୍କପ୍ରତି ସମତା ଅର୍ଥାତ୍ ଅନ୍ୟର ସୁଖ ବା ଦୁଃଖପ୍ରତି ସମାନ ଅନୁଭୂତି, କ୍ରୋଧାଦିର ଦୂରୀକରଣ, ଦେହ ଓ ଗୃହପ୍ରତି 'ମୁଁ ଏବଂ ମୋର' ଭାବର ଅବସାନ, ଆଧ୍ୟାତ୍ମିକ ଶାସ୍ତ୍ରର ଅନୁଶୀଳନ, ନିର୍ଜନ ସ୍ଥାନର ଆଶ୍ରୟ, ସମ୍ୟକ୍ ରୂପେ ପ୍ରାଣର, ଇନ୍ଦ୍ରିୟର ଓ ଅନ୍ତଃକରଣର ଜୟ, ସତ୍ପୁରୁଷଙ୍କଠାରେ ଏବଂ ସେମାନଙ୍କ ବଚନରେ ଶ୍ରଦ୍ଧା, ନିରବଚ୍ଛିନ୍ନ ବ୍ରହ୍ମଚର୍ଯ୍ୟ, କର୍ତ୍ତବ୍ୟପରାୟଣତା, ବାକ୍ ସଂଯମ, ସର୍ବତ୍ର ମୋର ସତ୍ତା ଅନୁଭବ କରିବାର ଜ୍ଞାନ ଓ ସମାଧି ॥୧୦-୧୩॥ ସାବଧାନ ହୋଇ ଏହିପରି ଉପଦିଷ୍ଟ ଯୋଗମାର୍ଗକୁ ଗ୍ରହଣ କରି ଓ ଅବିଦ୍ୟାଦ୍ୱାରା ଲାଭ କରିଥିବା ହୃଦୟଗ୍ରନ୍ଥିରୂପ କର୍ମ ବନ୍ଧନକୁ କାଟି ସାରିବା ପରେ ଏହି ସାଧନାରୁ ନିବୃତ୍ତ ହେବା ଦରକାର ॥୧୪॥

ଯେଉଁ ବ୍ୟକ୍ତି ମୋର ଅନୁଗ୍ରହକୁ ପୁରୁଷାର୍ଥ ମନେ କରେ ଏବଂ ମୋର ଲୋକ କାମନା କରେ, ସେ ରାଜା ହେଉ, ଗୁରୁ ହେଉ ବା ପିତା ହେଉ, ତତ୍ତ୍ୱ ବିଷୟରେ ଅଜ୍ଞ ନିଜର ପ୍ରଜା, ଶିଷ୍ୟ ଓ ପୁତ୍ରଙ୍କୁ ଏହିପରି ଉପଦେଶ ପ୍ରଦାନ କରିବା ଉଚିତ । ସେମାନେ ଏହି ଉପଦିଷ୍ଟ ବିଷୟକୁ ପାଳନ ନ କଲେ ମଧ୍ୟ ସେମାନଙ୍କ ପ୍ରତି କ୍ରୁଦ୍ଧ ହେବା ଉଚିତ ନୁହେଁ । ଯେଉଁମାନେ ବିଷୟାଦିକର୍ମରେ ମୋହଯୁକ୍ତ, ସେମାନଙ୍କୁ ସେଥିରେ ନିୟୋଜିତ କରିବା ଠିକ୍ ନୁହେଁ । ଯେଉଁ ବ୍ୟକ୍ତିର ଦୃଷ୍ଟିଶକ୍ତି ନଷ୍ଟ ହୋଇଛି, ତାକୁ ଗର୍ତ୍ତରେ ପକାଇବାଦ୍ୱାରା ମନୁଷ୍ୟର କି ଲାଭ ହୋଇପାରେ ? ॥୧୫॥ ଯେଉଁ ବ୍ୟକ୍ତି ଅଜ୍ଞାନତାଦ୍ୱାରା ଅନ୍ଧ ହୋଇ ନିଜର ଶ୍ରେୟ କ'ଣ ଜାଣିପାରେ ନାହିଁ, ବିଷୟଭୋଗରେ ଅତିଶୟ ଲିପ୍ତ ରହେ, ସାମାନ୍ୟ ସୁଖପାଇଁ ପରସ୍ପର ଶତ୍ରୁତା ଆଚରଣ କରେ, ସେହି ମୂଢ଼ ବ୍ୟକ୍ତି ଜାଣେ ନାହିଁ ଯେ ପରିଣାମରେ ଏହା ତା'ର ଅସୀମ ଦୁଃଖଭୋଗର କାରଣ ହେବ ॥୧୬॥ ସେହି ତତ୍ତ୍ୱ ବିଷୟରେ ସ୍ୱୟଂ ଅଭିଜ୍ଞ ଏବଂ ବିବେକୀ କେଉଁ ସଦୟ ବ୍ୟକ୍ତି ବିପଥଗାମୀ ଏବଂ ଅବିଦ୍ୟାରେ ଅନ୍ଧପରି ଅଜ୍ଞ ସେହି ମନ୍ଦବୁଦ୍ଧି ବ୍ୟକ୍ତିକୁ ପୁଣି ସେହି ଦୁଃଖମୟ କର୍ମରେ ନିୟୋଜିତ କରିବ ? ॥୧୭॥ ଏହି ମରଣପ୍ରାପ୍ତ ବ୍ୟକ୍ତିକୁ ଯେ ମୁକ୍ତିର ଉପାୟ ଦେଇ ନ ପାରେ ସେ ଯଥାର୍ଥ ଗୁରୁ ନୁହେଁ, ସ୍ୱଜନ ନୁହେଁ, ପିତା ନୁହେଁ, ଜନନୀ ନୁହେଁ, ଦେବତା ନୁହେଁ ବା ପତି ନୁହେଁ ॥୧୮॥ ମୋର ଏହି ମନୁଷ୍ୟଶରୀରର ତତ୍ତ୍ୱ ଅଚିନ୍ତନୀୟ । ମୋର ହୃଦୟ ଶୁଦ୍ଧ ସତ୍ତ୍ୱସ୍ୱରୂପ, ଯେଉଁଠାରେ କି ଧର୍ମ ବିରାଜମାନ । ଅଧର୍ମକୁ ମୁଁ ବହୁଦୂରରୁ ପଛକୁ ପକାଇଦେଇଛି । ତେଣୁ ମୋତେ ପଣ୍ଡିତମାନେ ଋଷଭ ବା ଶ୍ରେଷ୍ଠ ଆଖ୍ୟା ଦେଇଛନ୍ତି ॥୧୯॥ ପୁତ୍ରମାନେ, ତୁମେ ସମସ୍ତେ ଶୁଦ୍ଧସତ୍ତ୍ୱମୟ ହୃଦୟ ଧରି ଜନ୍ମଗ୍ରହଣ କରିଛ । ସେଥିପାଇଁ ଦ୍ୱେଷଶୂନ୍ୟ ହୋଇ ଶୁଦ୍ଧ ବୁଦ୍ଧିରେ ତୁମର ବଡ଼ଭାଇ ଭରତଙ୍କୁ ସେବା କର । ତାହାଦ୍ୱାରା ତୁମେମାନେ ମୋର ସେବା ଏବଂ ଯଥାର୍ଥ ପ୍ରଜାପାଳନ କରିପାରିବ ॥୨୦॥ ଚେତନ ଓ ଅଚେତନ ପ୍ରାଣୀଙ୍କ ମଧ୍ୟରେ ସ୍ଥାବର ବା ସ୍ଥିର ହୋଇ ରହିଥିବା ବୃକ୍ଷ ଶ୍ରେଷ୍ଠ; ବୃକ୍ଷଠାରୁ ଜଙ୍ଗମ ବା ଚଳପ୍ରଚଳ ହେଉଥିବା ଜୀବ ଶ୍ରେଷ୍ଠ ଏବଂ ଚଳପ୍ରଚଳ ହେଉଥିବା କୀଟ ପତଙ୍ଗଙ୍କ ଅପେକ୍ଷା ଗବାଶ୍ୱ ଆଦି ଜ୍ଞାନଯୁକ୍ତ ପଶୁ ଶ୍ରେଷ୍ଠ, ସେମାନଙ୍କଠାରୁ ମନୁଷ୍ୟ, ମନୁଷ୍ୟଠାରୁ ଭୂତପ୍ରେତାଦି ପ୍ରମଥ, ପ୍ରମଥମାନଙ୍କଠାରୁ ଗନ୍ଧର୍ବ, ଗନ୍ଧର୍ବଙ୍କଠାରୁ ସିଦ୍ଧ ଏବଂ ସିଦ୍ଧମାନଙ୍କ ଠାରୁ କିନ୍ନର ଆଦି ଶ୍ରେଷ୍ଠ ॥୨୧॥ ସେମାନଙ୍କଠାରୁ ଅସୁର, ଅସୁରଙ୍କଠାରୁ ଦେବତା ଓ ଦେବତାଙ୍କ ମଧ୍ୟରେ ଇନ୍ଦ୍ର ଶ୍ରେଷ୍ଠ । ଇନ୍ଦ୍ରଙ୍କଠାରୁ ବ୍ରହ୍ମାଙ୍କର ପୁତ୍ର ଦକ୍ଷ ଆଦି ପ୍ରଜାପତି ଶ୍ରେଷ୍ଠ । ସେମାନଙ୍କଠାରୁ ବ୍ରହ୍ମାଙ୍କର ପୁତ୍ର ରୁଦ୍ର ଶ୍ରେଷ୍ଠ । ରୁଦ୍ର ବ୍ରହ୍ମାଙ୍କଠାରୁ ଜାତ ହୋଇଥିବାରୁ ବ୍ରହ୍ମା ତାଙ୍କଠାରୁ ଶ୍ରେଷ୍ଠ । ବ୍ରହ୍ମା ମୋ'ଠାରୁ ଉତ୍ପନ୍ନ ଏଥିପାଇଁ ମୁ ତାଙ୍କଠାରୁ ଶ୍ରେଷ୍ଠ । କିନ୍ତୁ ବ୍ରାହ୍ମଣମାନେ ମୋ'ଠାରୁ ଶ୍ରେଷ୍ଠ ।

କାରଣ ମୁଁ ତାଙ୍କୁ ପୂଜ୍ୟ ବୋଲି ମନେକରେ ॥୨୨॥ ବ୍ରାହ୍ମଣଗଣ ! ମୁଁ ଅନ୍ୟ କୌଣସି ପ୍ରାଣୀକୁ ବ୍ରାହ୍ମଣଙ୍କ ସହିତ ତୁଳନୀୟ ମନେକରେ ନାହିଁ । ଏଣୁ ସେମାନଙ୍କଠାରୁ ଅନ୍ୟ କାହାକୁ ଶ୍ରେଷ୍ଠ ବୋଲି ଦେଖେ ନାହିଁ । କାରଣ ବ୍ରାହ୍ମଣମାନଙ୍କୁ ଲୋକେ ଶ୍ରଦ୍ଧାପୂର୍ବକ ଯେଉଁ ଅନ୍ନ ଆଦି ଭୋଜନ କରାନ୍ତି, ମୁଁ ତାହା ସ୍ୱଚ୍ଛନ୍ଦରେ ଭୋଜନ କରି ଯେଉଁ ତୃପ୍ତି ଲାଭ କରେ, ତାହା ଅଗ୍ନିହୋତ୍ର ଯଜ୍ଞରେ ଦିଆଯାଉଥିବା ହୋମସାମଗ୍ରୀଠାରୁ ଅଧିକ ତୃପ୍ତିକର ॥୨୩॥ ବେଦରୂପକ ମୋର ସୁନ୍ଦର ପୁରାତନ ମୂର୍ତ୍ତିକୁ ଯେଉଁ ବ୍ରାହ୍ମଣମାନେ ଇହଲୋକରେ ଧାରଣ କରି ରଖିଥା'ନ୍ତି, ଯେଉଁମାନେ ପରମପବିତ୍ର ସତ୍ତ୍ୱଗୁଣ, ଶମ, ଦମ, ସତ୍ୟ, ଦୟା, ତପ, ତିତିକ୍ଷା ଓ ଅଷ୍ଟଗୁଣ ସମ୍ପନ୍ନ, ସେମାନଙ୍କଠାରୁ ଅଧିକ ଶ୍ରେଷ୍ଠ କିଏ ହୋଇପାରେ ? ॥୨୪॥ ମୁଁ ବ୍ରହ୍ମାଦି ବଡ଼ ବଡ଼ ଦେବତାଙ୍କଠାରୁ ଶ୍ରେଷ୍ଠ ଓ ଅନନ୍ତ । ସ୍ୱର୍ଗ ଓ ମୋକ୍ଷର ପ୍ରଭୁ ଏବଂ ଉତ୍କୃଷ୍ଟଠାରୁ ଉତ୍କୃଷ୍ଟତର । ଏହା ଜାଣି ମଧ୍ୟ ଯେଉଁମାନେ ମୋ'ଠାରୁ କିଛି କାମନା କରନ୍ତି ନାହିଁ, ମୋର ସେହି ଅକିଞ୍ଚନ ଭକ୍ତଙ୍କର କେଉଁ ବସ୍ତୁରେ ବା ପ୍ରୟୋଜନ ଅଛି ? ॥୨୫॥ ପୁତ୍ରଗଣ ! ସମସ୍ତ ଚରାଚର ପ୍ରାଣୀଙ୍କ ମଧ୍ୟରେ ମୁଁ ଅବସ୍ଥାନ କରୁଛି । ଏହା ହୃଦୟଙ୍ଗମ କରି ଶୁଦ୍ଧ ଦୃଷ୍ଟିରେ ପଦେ ପଦେ ତୁମେ ସେମାନଙ୍କର ସେବା କର । ଏତଦ୍ୱାରା ତୁମେ ମୋତେ ପୂଜାକରୁଛ ବୋଲି ଜାଣ ॥୨୬॥ ମନ, ବାକ୍ୟ, ଦୃଷ୍ଟି ତଥା ଅନ୍ୟ ଇନ୍ଦ୍ରିୟମାନଙ୍କ ଚେଷ୍ଟାର ସାକ୍ଷାତ୍ ଫଳ ହେଉଛି ମୋର ଏହିପରି ଆରାଧନା କରିବା; ଏହା ବିନା ଜୀବ ମହାମୋହମୟ କାଳପାଶରୁ ମୁକ୍ତି ପାଇପାରିବ ନାହିଁ ॥୨୭॥

ଶ୍ରୀ ଶୁକଦେବ କହିଲେ, ଋଷଭଦେବଙ୍କର ପୁତ୍ରମାନେ ସ୍ୱୟଂ ସୁଶିକ୍ଷିତ ହେଲେ ମଧ୍ୟ ଲୋକଶିକ୍ଷା ଉଦ୍ଦେଶ୍ୟରେ ମହାନୁଭାବ ପରମସୁହୃଦ୍ ଭଗବାନ ଋଷଭଦେବ ସେମାନଙ୍କୁ ଏହିପରି ଉପଦେଶ ଦେଇ ଶତପୁତ୍ରଙ୍କ ମଧ୍ୟରେ ଶ୍ରେଷ୍ଠ ପରମଭାଗବତ ଭଗବତ୍ ଭକ୍ତମାନଙ୍କର ଅନୁରକ୍ତ ଭରତଙ୍କୁ ପୃଥିବୀ ପାଳନ କରିବାପାଇଁ ଅଭିଷିକ୍ତ କଲେ ଏବଂ ନିଜେ ଶାନ୍ତସ୍ୱଭାବ ଓ ଅନାସକ୍ତ ମହାମୁନିମାନଙ୍କୁ ପରମହଂସୋଚିତ ଭକ୍ତି, ଜ୍ଞାନ ଓ ବୈରାଗ୍ୟ ଧର୍ମ ଶିକ୍ଷା ଦେବା ନିମନ୍ତେ ପ୍ରବ୍ରଜ୍ୟା ଗ୍ରହଣ କଲେ । ନିଜର ଶରୀରଟି ଛଡ଼ା ସେ ଅନ୍ୟ କିଛି ରଖିଲେ ନାହିଁ, ଏପରିକି ବସ୍ତ୍ର ପରିତ୍ୟାଗ କରି ଦିଗମ୍ବର ହୋଇଗଲେ ଏବଂ ଉନ୍ମତ୍ତ ପରି ବାଳ ମୁକୁଳା କରି ଆହବନୀୟ ଅଗ୍ନିକୁ ନିଜ ଆତ୍ମା ମଧ୍ୟରେ ରଖି ବ୍ରହ୍ମାବର୍ତ୍ତ ଦେଶ ଛାଡ଼ି ଚାଲିଗଲେ ॥୨୮॥ ସେ ମୌନବ୍ରତ ଅବଲମ୍ବନ କଲେ । ଜଡ଼, ଅନ୍ଧ, ବଧିର, ମୂକ, ପିଶାଚ ଓ ପାଗଳ ପରି ବ୍ୟବହାର କରି ଯଦୃଚ୍ଛା (ମନ ଇଚ୍ଛା) ବୁଲିବାକୁ ଲାଗିଲେ ଏବଂ କେହି କିଛି ପଚାରିଲେ ତାର ଉତ୍ତର ଦେଉ ନ ଥିଲେ ॥୨୯॥ କେତେବେଳେ ନଗରମାନଙ୍କରେ ବା କେତେବେଳେ ଗ୍ରାମମାନଙ୍କରେ ସେ ବୁଲୁଥିଲେ । ଖଣି, ଖଦାନ, ଚାଷୀଙ୍କର ବସ୍ତି, ଉଦ୍ୟାନ, ପାହାଡ଼ିଆ ଗ୍ରାମ, ସେନାଛାଉଣୀ, ଗାଈଗୋଠ, ଗୋପାଳଙ୍କ ବସ୍ତି ଓ ଯାତ୍ରୀମାନଙ୍କର ବିଶ୍ରାମସ୍ଥଳରେ ସେ ରହିଯାଉଥିଲେ । ପାହାଡ଼, ଜଙ୍ଗଲ ଓ ଆଶ୍ରମ ଆଦିରେ ବିଚରଣ କଲାବେଳେ, ବନସ୍ତରେ ବୁଲୁଥିବା ହାତୀ ଉପରେ ମଶା, ଡାଉଁଶମାନେ ଉପଦ୍ରବ କରିବାପରି ମୂର୍ଖ ଓ ଦୁଷ୍ଟଲୋକମାନେ ତାଙ୍କ ପଛେ ପଛେ ଯାଇ ତାଙ୍କୁ ହୀନସ୍ତା କରୁଥିଲେ । କିଏ ଛେପ ପକାଉଥଲେ, କିଏ ଟେକା ପକାଉଥିଲେ; ଏପରିକି ଲୋକେ ଧୂଳି ଓ ବିଷ୍ଠା ଫିଙ୍ଗୁଥିଲେ । କିଏ ଅଧୋବାୟୁ ଛାଡୁଥିଲା ବା ଆଉ କିଏ ନାନା କଟୂକ୍ତିଦ୍ୱାରା ତାଙ୍କୁ ଗାଳିଗୁଲଜ କରୁଥିଲା । କିନ୍ତୁ ବନ୍ୟ ହସ୍ତୀ ମକ୍ଷିକାମାନଙ୍କୁ ଉପେକ୍ଷା କରିବାପରି ସେ ସେମାନଙ୍କୁ ତୁଚ୍ଛଜ୍ଞାନ କରୁଥିଲେ । କାରଣ ଏହି ମିଥ୍ୟା ଶରୀର ପ୍ରତି ଅହଙ୍କାର ବା ମମତାବୋଧ ତାଙ୍କର ଟିକିଏ ହେଲେ ନ ଥିଲା । ସତ୍ ଓ ଅସତ୍ ଉଭୟର ସ୍ୱରୂପ ଅବଧାରଣ କରି ସେ ସ୍ୱ ମହିମାରେ ଅବସ୍ଥିତ ଥିଲେ ଏବଂ ଅଖଣ୍ଡ ଚିତ୍ତବୃତ୍ତିସହ ଏକାକୀ ସମସ୍ତ ପୃଥିବୀ ପରିଭ୍ରମଣ କରିବାକୁ ଲାଗିଲେ ॥୩୦॥ ତାଙ୍କର କର, ଚରଣ, ବକ୍ଷସ୍ଥଳ, ବିପୁଳ ବାହୁମୂଳଦ୍ୱୟ ଓ ମୁଖମଣ୍ଡଳର ଗଠନ ଅତ୍ୟନ୍ତ ସୁକୁମାର ଥିଲା । ସ୍ୱାଭାବିକ ମନ୍ଦହାସ୍ୟ ତାଙ୍କ ମୁଖର ଶୋଭା ବଢ଼ାଇଦେଉଥିଲା । ନବ ପଦ୍ମପଲାଶ ପରି ତାଙ୍କ ବିଶାଳ ଓ ସୁନ୍ଦର ନେତ୍ରଯୁଗଳର ଅରୁଣବର୍ଣ୍ଣ ତାରକାଦ୍ୱୟ ଅତିଶୟ ତୃପ୍ତିକର ଓ ରମଣୀୟ ଥିଲା । କପୋଳ, କର୍ଣ୍ଣ ଓ ନାସିକା ସୁଷମ ଓ ସୁନ୍ଦର ଥିଲା । ତାଙ୍କର ପ୍ରସନ୍ନ ହାସ୍ୟଯୁକ୍ତ

ମନୋହର ମୁଖପଦ୍ମର ଶୋଭା ପୁରବନିତାଙ୍କ ଚିତ୍ତରେ କାମର ଉଦ୍ରେକ କରୁଥିଲା । କିନ୍ତୁ ତାଙ୍କ ମସ୍ତକର ଅଗ୍ରଭାଗରେ କୁଟିଳଜଟାଯୁକ୍ତ ପିଙ୍ଗଳବର୍ଣ୍ଣର କେଶରାଶି ଲମ୍ବି ଯାଇଥିଲା ଏବଂ ନିଜର ଦେହପ୍ରତି ଅବହେଳାଯୋଗୁଁ ସେ ମଳିନ ଓ ଗ୍ରହଗ୍ରସ୍ତ ବ୍ୟକ୍ତି ପରି ଜଣାଯାଉଥିଲେ ।।୩୧।। ଯେତେବେଳେ ଭଗବାନ ଋଷଭଦେବ ଦେଖିଲେ ଯେ, ଏହି ଜନତା ତାଙ୍କ ଯୋଗସାଧନର ବିଘ୍ନସ୍ୱରୂପ, ସେତେବେଳେ ସେ ବୀଭତ୍ସମାର୍ଗରେ ଗତି କଲେ । ଅଜଗର ବୃତ୍ତି ଧାରଣପୂର୍ବକ ଶୋଇରହି ଖାଇବା ପିଇବା ଓ ମଳମୂତ୍ରାଦି ତ୍ୟାଗ କରିବାକୁ ଲାଗିଲେ । ନିଜ ମଳରେ ନିଜ ଶରୀରକୁ ଲୋଟାଇ ଦେଉଥିଲେ । ତାଙ୍କ ମଳରେ ଦୁର୍ଗନ୍ଧ ନ ଥିଲା । ଏହି ମଳର ସୁଗନ୍ଧକୁ ବହନ କରି ବାୟୁ ଚତୁର୍ଦ୍ଦିଗରେ ଶତଯୋଜନ ପର୍ଯ୍ୟନ୍ତ ସମସ୍ତ ଦେଶକୁ ସୁଗନ୍ଧିତ କରିଦେଉଥିଲା ।।୩୨-୩୩।। ଏହିପରି ଗୋରୁ, ମୃଗ, କାକ ଆଦିଙ୍କର ବୃତ୍ତିକୁ ଗ୍ରହଣ କରି ସେ ଏମାନଙ୍କ ପରି କେତେବେଳେ ଚାଲିଚାଲି, କେତେବେଳେ ଠିଆ ହୋଇ, କେତେବେଳେ ବସି ଯାଇ ବା ଶୋଇ ରହି ଖାଇବା, ପିଇବା ଓ ମଳମୂତ୍ର ତ୍ୟାଗ କରିବାକୁ ଲାଗିଲେ ।।୩୪।। ପରିକ୍ଷିତ, ପରମହଂସମାନଙ୍କୁ ତ୍ୟାଗର ଆଦର୍ଶ ଶିକ୍ଷା ଦେବାପାଇଁ ମୋକ୍ଷପତି ଭଗବାନ ଋଷଭଦେବ ଏହିପରି ନାନା ପ୍ରକାର ଯୋଗଚର୍ଯ୍ୟା କରିବାକୁ ଲାଗିଲେ ଏବଂ ସର୍ବଦା ପରମାନନ୍ଦ ଅନୁଭବ କଲେ । ତାଙ୍କ ଦୃଷ୍ଟିରେ ସମସ୍ତ ପ୍ରାଣୀଙ୍କର ଆତ୍ମସ୍ୱରୂପ ଭଗବାନ ବାସୁଦେବଙ୍କ ମଧ୍ୟରେ ଏବଂ ନିଜ ମଧ୍ୟରେ କୌଣସି ପାର୍ଥକ୍ୟ ରହିଲା ନାହିଁ । ତାଙ୍କର ସମସ୍ତ ପୁରୁଷାର୍ଥ ପୂର୍ଣ୍ଣ ହୋଇ ସାରିଥିଲା । ଆକାଶଗମନ କରିବା, ମନର ଗତି ପରି ଇଚ୍ଛା କରିବାମାତ୍ରେ ଯେ କୌଣସି ସ୍ଥାନରେ ପହଞ୍ଚିବା, ଅନ୍ତର୍ଦ୍ଧାନ ହୋଇଯିବା, ପରକାୟାରେ ପ୍ରବେଶ କରିବା, ଦୂର କଥା ଶୁଣି ପାରିବା, ଦୂର ଦୃଶ୍ୟ ଦେଖିପାରିବା ଆଦି ସମସ୍ତପ୍ରକାର ସିଦ୍ଧି ତାଙ୍କୁ ସେବା କରିବାପାଇଁ ତାଙ୍କ ପାଖରେ ଉପସ୍ଥିତ ହେଲେ । କିନ୍ତୁ ସେ ସେମାନଙ୍କୁ ଆଦୌ ପ୍ରଶ୍ରୟ ଦେଲେ ନାହିଁ ।।୩୫।।

## ଷଷ୍ଠ ଅଧ୍ୟାୟ

# ଋଷଭଦେବଙ୍କ ଦେହତ୍ୟାଗ

ରାଜା ପରିକ୍ଷିତ ପଚାରିଲେ, ଭଗବାନ! ଯେଉଁମାନେ ଆତ୍ମାରାମ, ଯେଉଁମାନେ ଯୋଗରୂପକ ବାୟୁରେ ପ୍ରଜ୍ୱଳିତ ତତ୍ତ୍ୱଜ୍ଞାନଦ୍ୱାରା ରାଗାଦି କର୍ମବୀଜକୁ ଦଗ୍ଧ କରିଦେଇଥା'ନ୍ତି, ଯଦି ଦୈବବଶତଃ ଅଣିମାଦି ଅଷ୍ଟସିଦ୍ଧି ତାଙ୍କୁ ମିଳିଯାଏ, ତେବେ ତାହା ପୁଣି ସେମାନଙ୍କର ରାଗ-ଦ୍ୱେଷ-ଜନିତ କ୍ଳେଶର କାରଣ ହେବା ସମ୍ଭବ ନୁହେଁ । ତେଣୁ ଭଗବାନ ଋଷଭ ଏହି ସବୁ ସିଦ୍ଧିକୁ କାହିଁକି ଗ୍ରହଣ କଲେ ନାହିଁ ? ।।୧।। ଶୁକଦେବ କହିଲେ, ଚତୁର କିରାତ ମୃଗକୁ ପାଶବଦ୍ଧ କଲେ ମଧ୍ୟ ତାକୁ ଯେପରି ବିଶ୍ୱାସ କରେ ନାହିଁ, ସେହିପରି କେତେକ ବୁଦ୍ଧିମାନ୍ ବ୍ୟକ୍ତି ଚଞ୍ଚଳ ମନକୁ କେବେହେଲେ ବିଶ୍ୱାସ କରନ୍ତି ନାହିଁ ।।୨।। ତେଣୁ କୁହାଯାଉଛି ଯେ, ଚଞ୍ଚଳ ଚିତ୍ତସହ କେବେହେଲେ ବନ୍ଧୁତ୍ୱ କରିବ ନାହିଁ, କାରଣ ମନକୁ ବିଶ୍ୱାସ କରିବାଯୋଗୁଁ, ମୋହିନୀରୂପର ମୋହରେ ମହାଦେବଙ୍କର ଚିରକାଳସଞ୍ଚିତ ତପସ୍ୟା କ୍ଷୀଣ ହୋଇଗଲା ।।୩।। ଯେପରି ବ୍ୟଭିଚାରିଣୀ ସ୍ତ୍ରୀ ଜାର ପୁରୁଷକୁ ସୁଯୋଗ ଦେଇ ତା'ଠାରେ ବିଶ୍ୱାସ ରଖିଥିବା ନିଜର ପତିକୁ ହତ୍ୟା କରାଏ, ସେହିପରି ଯେଉଁ ଯୋଗୀ ମନକୁ ବିଶ୍ୱାସ କରିଯାଏ, ତାରି ମିତ୍ରତାଦ୍ୱାରା ମନ କାମ, କ୍ରୋଧ ଆଦି ଶତ୍ରୁମାନଙ୍କୁ ଆକ୍ରମଣ କରିବାର ସୁଯୋଗ ଦେଇ ତାକୁ ନଷ୍ଟଭ୍ରଷ୍ଟ କରିଦିଏ ।।୪।। ଯେଉଁ ମନ ହେଉଛି କାମ, କ୍ରୋଧ, ମଦ, ମୋହ, ଲୋଭ, ଶୋକ, ଭୟ ଏବଂ କର୍ମବନ୍ଧନର ହେତୁ, ତାକୁ କେଉଁ ବିଜ୍ଞ ବ୍ୟକ୍ତି ନିଜର ଅଧୀନ ମନେ କରିପାରେ ? ।।୫।। ଏହପରି ଭଗବାନ୍ ଋଷଭ ସମସ୍ତ ଲୋକପାଳଙ୍କର ଲଲାମସ୍ୱରୂପ

ଥିଲେ ମଧ୍ୟ ଜଡ଼ ଅବଧୂତ ପରି ବିଭିନ୍ନ ବେଶ, ଭାଷା ଓ ଆଚରଣଦ୍ୱାରା ନିଜର ଭଗବତ୍‌ପ୍ରଭାବକୁ ଲୁକ୍କାୟିତ ରଖିଥିଲେ । ଶେଷରେ ଯୋଗୀମାନଙ୍କୁ ଦେହତ୍ୟାଗ ବିଧି ଶିଖାଇବାପାଇଁ ନିଜର ଶରୀର ଛାଡ଼ିବା ସ୍ଥିରକଲେ । ନିଜର ଆତ୍ମାରେ ଥିବା ପରମାତ୍ମାଙ୍କୁ ଆତ୍ମାଠାରୁ ଅଭିନ୍ନ ଦେଖି ସମସ୍ତ ବାସନାରୁ ସମ୍ପୂର୍ଣ୍ଣ ନିବୃତ୍ତ ହୋଇ ଲିଙ୍ଗଦେହର ଅଭିମାନ ପରିତ୍ୟାଗ କଲେ ॥୬॥ ଲିଙ୍ଗଦେହର ଅଭିମାନରୁ ମୁକ୍ତ ହେଲେ ମଧ୍ୟ ତାଙ୍କ ସ୍ଥୂଳ ଦେହ ଏହି ପୃଥିବୀରେ ବିଚରଣ କରିବାକୁ ଲାଗିଲା । ଏ ଦେହ ବୁଲୁଥିଲା ଯୋଗମାୟାର ବାସନା ଏବଂ ଅଭିମାନର ଆଭାସରେ ମାତ୍ର । ଭଗବାନ ଋଷଭ କୋଙ୍କ, ବେଙ୍କ କୁଟକ ଆଦି ଦକ୍ଷିଣକର୍ଣ୍ଣାଟକ ଦେଶରେ ଭ୍ରମଣ କରି କରି କୁଟକାଚଳ ଉପବନରେ ଉପସ୍ଥିତ ହୋଇ ମୁହଁରେ ଖାଦ୍ୟରୂପରେ ଟେକା ଖଣ୍ଡେ ଖଣ୍ଡେ ଧରି ନଗ୍ନ ଓ ମୁକ୍ତକେଶ ଶରୀରରେ ପାଗଳପରି ବୁଲିବାକୁ ଲାଗିଲେ । ଏହି ସମୟରେ ପ୍ରବଳ ଝଞ୍ଜାବାତ ଯୋଗେ ବାଉଁଶ ଗଛସବୁ ଘଷି ହୋଇ ପ୍ରବଳ ଦାବାଗ୍ନି ସୃଷ୍ଟି ହେଲା ଏବଂ ଏହି ଅଗ୍ନି ତାର ଲାଲ ଜିହ୍ୱାରେ ଋଷଭଦେବଙ୍କ ସହିତ ସମଗ୍ର ବନକୁ ଭସ୍ମ କରିଦେଲା ॥୭-୮॥

ରାଜା, କଳିଯୁଗରେ ଅଧର୍ମର ବୃଦ୍ଧି ହେଲେ କୋଙ୍କ, ବେଙ୍କ ଓ କୁଟକ ଦେଶର ଅର୍‌ହତ ନାମକ ଜଣେ ମନ୍ଦମତି ରାଜା ଋଷଭଦେବଙ୍କର ଆଚରଣକୁ ନିଜ ଦେଶବାସୀଙ୍କଠାରୁ ଶୁଣି ତଦ୍ୱାରା ବିମୋହିତ ହେବେ ଏବଂ ନିଜର ଅଭୟପ୍ରଦ ସ୍ୱଧର୍ମକୁ ପରିତ୍ୟାଗ କରି ଦୁର୍ବୁଦ୍ଧି ହେତୁ କୁତ୍ସିତ ପାଖଣ୍ଡ ମାର୍ଗକୁ ଅନୁସରଣ କରିବେ, ଯାହା ଫଳରେ କଳି ଯୁଗରେ ଦେବମାୟାଦ୍ୱାରା ମୋହିତ ଅନେକ ଅଧମ ବ୍ୟକ୍ତି ନିଜ ନିଜ ଇଚ୍ଛାରେ ସ୍ୱଧର୍ମବିହିତ ସ୍ନାନ, ଆଚମନ ଓ ଶୌଚାଚାର ଆଦି ତ୍ୟାଗ କରି କେଶ-ମୁଣ୍ଡନ ଆଦି ଦେବତାଙ୍କର ଅବଜ୍ଞାଜନକ କୁତ୍ସିତ ବ୍ରତ ସବୁ ଅବଲମ୍ବନ କରିବେ ଏବଂ ବେଦ, ବ୍ରାହ୍ମଣ, ସାଧୁ, ସନ୍ଥ ଓ ଯଜ୍ଞପୁରୁଷ ଭଗବାନଙ୍କୁ ନିନ୍ଦା କରିବାକୁ ଲାଗିବେ ॥୯-୧୦॥ ଏହି ନବୀନ ଲୋକଯାତ୍ରାର ବ୍ୟକ୍ତିମାନେ ସ୍ୱେଚ୍ଛାଚାରୀ ଭାବରେ ଅନ୍ଧପରମ୍ପରା ସୃଷ୍ଟି କରି ଘୋର ନରକରେ ନିଜ ନିଜେ ପତିତ ହେବେ ॥୧୧॥ ରଜୋଗୁଣରେ ପ୍ରପୀଡ଼ିତ ଲୋକଙ୍କୁ ମୋକ୍ଷମାର୍ଗ ଦେଖାଇବାପାଇଁ ଭଗବାନଙ୍କର ଏହି ଋଷଭ ଅବତାର ହୋଇଥିଲା ॥୧୨॥ ଏହି ଅବତାରଙ୍କର ଗୁଣ କୀର୍ତ୍ତନ କରି ଲୋକମାନେ କହନ୍ତି, ଅହୋ ! ସାତ ସମୁଦ୍ର ଘେରା ପୃଥିବୀମଧ୍ୟରେ ଯେତେ ଦ୍ୱୀପ ଓ ବର୍ଷ ଅଛି, ତାହା ମଧ୍ୟରେ ସବୁଠାରୁ ପୁଣ୍ୟଭୂମି ହେଉଛି ଭାରତବର୍ଷ, ଯେଉଁଠାରେ କି ଜନଗଣ ଭଗବାନ ଶ୍ରୀ ମୁରାରିଙ୍କର ମଙ୍ଗଳମୟ ଅବତାରର ଗୁଣାବଳୀ କୀର୍ତ୍ତନ କରନ୍ତି ॥୧୩॥ ଅହୋ ! ଯଶୋମଣ୍ଡିତ ପ୍ରିୟବ୍ରତଙ୍କ ବଂଶରେ ସେହି ଆଦ୍ୟ ପୁରାଣପୁରୁଷ ଅବତାର (ଋଷଭ) ଗ୍ରହଣ କରି ମୋକ୍ଷମୂଳ ପରମହଂସ ଧର୍ମର ଆଚରଣ କରିଥିଲେ ॥୧୪॥ ଅଜନ୍ମା ଋଷଭଦେବ ଯେଉଁ ସବୁ ସିଦ୍ଧିକୁ ଅସତ୍ ଓ ତୁଚ୍ଛ ଜ୍ଞାନ କରି ପରିତ୍ୟାଗ କରିଥିଲେ, ସେହି ସିଦ୍ଧିମାନଙ୍କୁ କାମନାରେ ପାଇବାକୁ ମଧ୍ୟ ପ୍ରଯତ୍ନବାନ୍ କେଉଁ ଯୋଗୀ ତାଙ୍କର ପ୍ରଦର୍ଶିତ ପନ୍ଥାକୁ ଅନୁସରଣ କରିପାରିବ ? ॥୧୫॥ ହେ ରାଜା, ସମସ୍ତ ଗୋ, ବ୍ରାହ୍ମଣ, ଦେବତା, ବେଦ ଓ ଲୋକମାନଙ୍କର ପରମ ଗୁରୁ ଭଗବାନ ଋଷଭଦେବଙ୍କର ଏହି ବିଶୁଦ୍ଧ ଚରିତ ମୁଁ ତୁମକୁ ଶୁଣାଇଲି । ଏହା ମନୁଷ୍ୟର ସମସ୍ତ ପାପ ହରଣକରେ । ଯେଉଁ ବ୍ୟକ୍ତି ଏହି ପରମ ମଙ୍ଗଳମୟ ପବିତ୍ର ଚରିତକୁ ଏକାଗ୍ର ଚିତ୍ତରେ ଶ୍ରଦ୍ଧାପୂର୍ବକ ସର୍ବଦା ଶୁଣେ ବା ଶୁଣାଏ ସେ ଭଗବାନ ବାସୁଦେବଙ୍କର ଅନନ୍ୟଭକ୍ତ ପାଲଟିଯାଏ ॥୧୬॥ ପାପତାପମୟ ଏହି ସଂସାରଦୁଃଖରେ ଅବିରତ ତାପିତ ନିଜର ଅନ୍ତଃକରଣକୁ ପଣ୍ଡିତମାନେ ଯେଉଁ ଭକ୍ତିରସରେ ବାରମ୍ବାର ସ୍ନାନ କରାଉଥା'ନ୍ତି ଏବଂ ସେଥିରେ ତାଙ୍କୁ ଯେଉଁ ପରମ ଶାନ୍ତି ପ୍ରାପ୍ତ ହୁଏ, ମୋକ୍ଷରୂପେ ପ୍ରାପ୍ତ ପରମ ପୁରୁଷାର୍ଥ ତାହା ଆଗରେ କିଛି ନୁହେଁ । ଭଗବାନଙ୍କ ନିଜର ଲୋକ ହୋଇଯିବା ପରେ ସମସ୍ତପ୍ରକାର ପ୍ରଲୋଭନର ପରିସମାପ୍ତି ଘଟେ ॥୧୭॥ ରାଜା, ଭଗବାନ ଶ୍ରୀକୃଷ୍ଣ ତୁମ କୁଳର ଏବଂ ଯଦୁକୁଳର ରକ୍ଷକ, ଗୁରୁ, ଇଷ୍ଟଦେବ, ସଖା ଓ କୁଳପତି ଥିଲେ ଏବଂ ବେଳେ ବେଳେ ଏହି ଦୁଇ କୁଳର ସେବକକାର୍ଯ୍ୟ ମଧ୍ୟ କରୁଥିଲେ । ତାହା ହେଲେ ମଧ୍ୟ (ସେ

ପକ୍ଷପାତୀ ନୁହନ୍ତି) ଯେଉଁମାନେ ତାଙ୍କୁ ଭଜନ କରନ୍ତି, ଭଗବାନ ମୁକୁନ୍ଦ ସେମାନଙ୍କୁ ମୁକ୍ତି ଦିଅନ୍ତି । କିନ୍ତୁ ମୁକ୍ତିଠାରୁ ବଡ଼ ଭକ୍ତିଯୋଗକୁ ସେ ସହଜରେ କାହାରିକୁ ଦିଅନ୍ତି ନାହିଁ ॥୧୮॥ ଯେ ସର୍ବଦା ଆତ୍ମସ୍ୱରୂପ ପରମାନନ୍ଦ ଅନୁଭବ କରି ସମସ୍ତ ବିଷୟତୃଷ୍ଣାରୁ ନିବୃତ୍ତ ହୋଇଛନ୍ତି ଏବଂ ନିଜର ଶ୍ରେୟ କ'ଣ ଜାଣି ନ ଥିବା ଚିରସୁପ୍ତ ବ୍ୟକ୍ତିଙ୍କୁ କୃପାପୂର୍ବକ ନିଜର ଅଭୟ ସ୍ୱରୂପପ୍ରାପ୍ତି ନିମନ୍ତେ ଉପଦେଶ ଦେଇଛନ୍ତି, ସେହି ଭଗବାନ ଋଷଭଦେବଙ୍କୁ ମୁଁ ନମସ୍କାର କରୁଛି ॥୧୯॥

## ସପ୍ତମ ଅଧ୍ୟାୟ

# ଭରତ ଚରିତ

ଶୁକଦେବ କହିଲେ, ପରିକ୍ଷିତ, ମହାରାଜ ଭରତ ଅତ୍ୟନ୍ତ ଭଗବତ୍‌ଭକ୍ତ ଥିଲେ । ଭଗବାନ ଋଷଭଦେବ ନିଜର ସଙ୍କଳ୍ପ- ଅନୁଯାୟୀ ତାଙ୍କୁ ପୃଥିବୀ ପରିପାଳନପାଇଁ ନିଯୁକ୍ତ କରିଥିଲେ । ସେ ପିତାଙ୍କ ଆଜ୍ଞା ପାଳନରେ ତତ୍ପର ଥାଇ ବିଶ୍ୱରୂପଙ୍କ କନ୍ୟା ପଞ୍ଚଜନୀଙ୍କୁ ବିବାହ କଲେ ॥୧॥ ଅହଙ୍କାର ଯେପରି ସୂକ୍ଷ୍ମ ଭୂତକୁ, (ପଞ୍ଚତନ୍ମାତ୍ର) ଅର୍ଥାତ୍ ଶବ୍ଦ, ସ୍ପର୍ଶ, ରୂପ, ରସ ଓ ଗନ୍ଧକୁ ଉତ୍ପନ୍ନ କରେ, ସେହିପରି ଭରତ ପଞ୍ଚଜନୀଙ୍କ ଗର୍ଭରେ ନିଜ ଔରସରୁ ନିଜର ଏକାନ୍ତ ଅନୁରୂପ ସୁମତି, ରାଷ୍ଟ୍ରଭୃତ୍, ସୁଦର୍ଶନ, ଆବରଣ ଓ ଧୂମ୍ରକେତୁ ନାମକ ପାଞ୍ଚ ଜଣ ପୁତ୍ର ଉତ୍ପନ୍ନ କଲେ ॥୨॥ ଋଷଭଦେବଙ୍କ ଶାସନବେଳେ ଯେଉଁ ଭୂଖଣ୍ଡର ନାମ ଅଜନାଭ ବର୍ଷ ଥିଲା, ରାଜା ଭରତଙ୍କ ସମୟରୁ ତାହା ଭାରତବର୍ଷ ନାମରେ ଅଭିହିତ ହେଲା ॥୩॥ ରାଜା ଭରତ ବହୁ ବିଷୟରେ ଅଭିଜ୍ଞ ଥିଲେ । ସେ ତାଙ୍କ ପିତୃପିତାମହଙ୍କପରି ଅତ୍ୟନ୍ତ ପ୍ରଜାବତ୍ସଳ ଥିଲେ ଏବଂ ସ୍ୱଧର୍ମରେ ରହି ସ୍ୱଧର୍ମରତ କର୍ତ୍ତବ୍ୟନିଷ୍ଠ ପ୍ରଜାମାନଙ୍କୁ ପାଳନ କରବାକୁ ଲାଗିଲେ ॥୪॥ ରାଜା ଭରତ ବାରମ୍ବାର ଚାତୁର୍ହୋତ୍ରରୂପ ଯଜ୍ଞବିଧି (ହୋତା, ଅଧ୍ୱର୍ଯ୍ୟୁ, ଉଦ୍‌ଗାତା ଓ ବ୍ରହ୍ମାଙ୍କ କର୍ମ) ଅନୁସାରେ ଋତ୍ୱିକଙ୍କଦ୍ୱାରା ଶ୍ରଦ୍ଧାର ସହିତ ପ୍ରକୃତି ଓ ବିକୃତି ଭେଦରେ ଦୁଇ ପ୍ରକାର ଅଗ୍ନିହୋତ୍ର, ଦର୍ଶ, ପୂର୍ଣ୍ଣମାସ, ଚାତୁର୍ମାସ୍ୟ, ପଶୁଯାଗ ଓ ସୋମଯାଗ ନାମରେ ଛୋଟବଡ଼ ଯଜ୍ଞ କରାଇ ଯଜ୍ଞପୁରୁଷ ଭଗବାନଙ୍କୁ ପୂଜା କଲେ ॥୫॥ ବିବିଧ ଅଙ୍ଗକ୍ରିୟାଦ୍ୱାରା ରାଜା ଭରତଙ୍କର ନାନାବିଧ ଯଜ୍ଞ ଅନୁଷ୍ଠିତ ହେବାକୁ ଲାଗିଲା ଏବଂ ଅଧ୍ୱର୍ଯ୍ୟୁ ଆଦି ଋତ୍ୱିକମାନେ ଅଗ୍ନିରେ ଆହୁତି ଦେବାବେଳେ, ସେଥିରୁ 'ଅପୂର୍ବ' ନାମକ ପୁଣ୍ୟଫଳ ଉତ୍ପନ୍ନ ହେଲା । ଯଜମାନ ଭରତ ଯଜ୍ଞପୁରୁଷ ପରମ ଦେବତା ଭଗବାନ ବାସୁଦେବଙ୍କୁ ତାହା ସମର୍ପଣ କରୁଥିଲେ । ବାସ୍ତବରେ ପରଂବ୍ରହ୍ମରୂପୀ ଭଗବାନ ବାସୁଦେବ ସମସ୍ତ ଦେବତାଙ୍କର ଶରୀରସ୍ୱରୂପ । ତାଙ୍କୁ ସମସ୍ତ ଯଜ୍ଞଫଳ ଅର୍ପଣ କରି ରାଜା ନିଜର କର୍ମକୌଶଳ ପ୍ରତିପାଦନ କରିଥିଲେ ଏବଂ ରାଗଦ୍ୱେଷାଦି ଦୋଷକୁ ଦୂର କରି ଯଜ୍ଞରେ ଭାଗୀଦାର ଇନ୍ଦ୍ର ସୂର୍ଯ୍ୟାଦି ଦେବତାମାନଙ୍କୁ ଭଗବାନଙ୍କର ଅଙ୍ଗରୂପରେ ଧ୍ୟାନ କରିବାକୁ ଲାଗିଲେ ॥୬॥ ଏହିପରି କର୍ମଶୁଦ୍ଧିଯୋଗୁଁ ତାଙ୍କର ଅନ୍ତର ଶୁଦ୍ଧ ହୋଇଗଲା ଏବଂ ତାଙ୍କ ହୃଦୟାକାଶରେ ଶ୍ରୀ ବାସୁଦେବ ଶ୍ରୀବତ୍ସ, କୌସ୍ତୁଭ, ବନମାଳା, ଶଙ୍ଖ , ଚକ୍ର ଓ ଶତ୍ରୁଭୀତିପ୍ରଦ ଗଦାଦିଦ୍ୱାରା ଶୋଭିତ ହୋଇ ବିରାଜମାନ ହେଲେ । ଏହି ରୂପରେ ନାରଦ ଆଦି ଭକ୍ତମାନଙ୍କର ହୃଦୟରେ ସେ ଚିତ୍ରପ୍ରତିମା ପରି ରହୁଥିଲେ । ତାଙ୍କ ହୃଦୟରେ ଏହି ଭକ୍ତିର ବେଗ ଅନୁଦିନ ବଢ଼ିବାକୁ ଲାଗିଲା ॥୭॥ ଏହିଭଳି ଅୟୁତ ସହସ୍ର ବର୍ଷ ପର୍ଯ୍ୟନ୍ତ ସେ ରାଜ୍ୟଭୋଗ କଲେ । ରାଜ୍ୟଭୋଗର ପ୍ରାରବ୍ଧ କ୍ଷୀଣ ହେବା ଅନୁଭବ କରି ସେ ପିତୃପିତାମହଙ୍କଭୁକ୍ତ ନିଜ ରାଜ୍ୟକୁ ପୁତ୍ରମାନଙ୍କ ମଧ୍ୟରେ ଭାଗ କରି ଦେଲେ ଏବଂ ସମସ୍ତ ସଂପତ୍ତିର ଆଧାର ନିଜ ଗୃହାସ୍ଥାଶ୍ରମରୁ ବିଦାୟ ନେଇ ପୁଲହ ମୁନିଙ୍କର ଆଶ୍ରମକୁ ଚାଲିଗଲେ ॥୮॥

ସେହି କ୍ଷେତ୍ରରେ ଭଗବାନ ଶ୍ରୀ ହରି ଏବେ ମଧ୍ୟ ସେଠାରେ ରହୁଥିବା ଭକ୍ତମାନଙ୍କପ୍ରତି ବାତ୍ସଲ୍ୟଯୋଗୁଁ ସେମାନଙ୍କର ଇଚ୍ଛାନୁରୂପ ମୂର୍ତ୍ତି ଧାରଣ କରିଥା'ନ୍ତି ॥୯॥ ସେହିସ୍ଥାନର (ବିଦ୍ୟାଧରକୁଣ୍ଡର) ଉପରିଭାଗ ଓ ତଳଭାଗରେ ଚକ୍ରନଦୀ ବା ଗଣ୍ଡକୀ ନାମକ ସୁପ୍ରସିଦ୍ଧ ନଦୀ ପ୍ରବାହିତ ହୋଇ ଚକ୍ରଚିହ୍ନ-ଯୁକ୍ତ ଶାଳଗ୍ରାମ ଶିଳାମାନଙ୍କଦ୍ୱାରା ଋଷିମାନଙ୍କ ଆଶ୍ରମକୁ ପବିତ୍ର କରୁଛି ॥୧୦॥ ସେହି ପୁଲହାଶ୍ରମର ଉପବନରେ ଏକାକୀ ଅବସ୍ଥାନ କରି ଅନେକପ୍ରକାର ପତ୍ର, ପୁଷ୍ପ, ତୁଳସୀ ଦଳ, ଜଳ କନ୍ଦମୂଳ ଓ ଫଳ ଆଦି ଉପହାରଦ୍ୱାରା ସେ ଭଗବାନଙ୍କୁ ଆରାଧନା କରିବାକୁ ଲାଗିଲେ । ତାଙ୍କର ଅନ୍ତଃକରଣ ସମସ୍ତ ବିଷୟବାସନାରୁ ନିବୃତ୍ତ ହୋଇ ଶାନ୍ତ ହୋଇଗଲା ଓ ତଦ୍ଦ୍ୱାରା ସେ ପରମ ଆନନ୍ଦ ଲାଭ କଲେ ॥୧୧॥ ଏହିପରି ଅବିରତଭାବରେ ପୁରୁଷଙ୍କର ପରିଚର୍ଯ୍ୟାଦ୍ୱାରା ଭଗବାନଙ୍କ ପ୍ରତି ତାଙ୍କର ଅନୁରାଗ ବଢ଼ିବାକୁ ଲାଗିଲା । ଚଞ୍ଚଳ ହୃଦୟ ଶିଥିଳ ଓ ସ୍ଥିର ହୋଇଗଲା । ଆନନ୍ଦର ଆବେଗରୁ ଶରୀରରେ ରୋମାଞ୍ଚ ଜାତ ହେଲା । ଉତ୍କଣ୍ଠାଯୋଗୁଁ ଚକ୍ଷୁରୁ ପ୍ରେମାଶ୍ରୁ ଧାରା ବହି ଆଖି ବନ୍ଦ ହୋଇଗଲା । ପ୍ରୀତିପ୍ରଦ ଭଗବାନଙ୍କର ଅରୁଣବର୍ଣ୍ଣ ଚରଣାରବିନ୍ଦ ଯୁଗଳକୁ ସତତ ଧ୍ୟାନ କରିବାଦ୍ୱାରା ଯେଉଁ ଏକାନ୍ତ ଭକ୍ତିଭାବ ଜନ୍ମିଲା, ତଦ୍ଦ୍ୱାରା ପରମ ଆନନ୍ଦର ସାଗରସ୍ୱରୂପ ହୃଦୟର ଗଭୀରତମ ପ୍ରଦେଶରେ ବୁଦ୍ଧି ଲୀନ ହୋଇଗଲା ଏବଂ ସେ ନିୟମପୂର୍ବକ ଯେଉଁ ଭଗବତ୍‌ସେବା କରୁଥିଲେ, ତାର ସ୍ମରଣ ମଧ୍ୟ ରହିଲା ନାହିଁ ॥୧୨॥ ଏହିପରି ମୃଗଚର୍ମ ପରିହିତ ଭଗବତ୍‌ବ୍ରତ ଧାରଣ କରିଥିବା ରାଜା ଭରତଙ୍କର କେଶରାଶି ତ୍ରିସନ୍ଧ୍ୟାସ୍ନାନରେ ବାରମ୍ବାର ଆର୍ଦ୍ର ହୋଇ ପିଙ୍ଗଳବର୍ଣ୍ଣ ଜଟାଜୂଟରେ ପରିଣତ ହେଲା । ତଦ୍‌ଦ୍ୱାରା ଶୋଭମାନ ରାଜା ଉଦୟକାଳୀନ ସୂର୍ଯ୍ୟମଣ୍ଡଳକୁ ଲକ୍ଷ୍ୟ କରି ସୂର୍ଯ୍ୟପ୍ରତିପାଦନ ମନ୍ତ୍ରଦ୍ୱାରା ହିରଣ୍ମୟ ପରମପୁରୁଷ ନାରାୟଣଙ୍କୁ ଏହିପରି ବାକ୍ୟରେ ଉପାସନା କଲେ ॥୧୩॥ ଯେ ରଜୋଗୁଣମୟୀ ପ୍ରକୃତିର ଅତୀତ' ଶୁଦ୍ଧସତ୍ତ୍ୱାତ୍ମକ, ଯେ କର୍ମଫଳପ୍ରଦ, ଯାହାଙ୍କର ସଙ୍କଳ୍ପମାତ୍ରକେ ଏହି ଜଗତ୍‌ର ସୃଷ୍ଟି ହୋଇଛି, ଯେ ଅନ୍ତର୍ଯାମୀ ରୂପେ ଏଥିରେ ପ୍ରବେଶ କରି ନିଜର ଚିତ୍‌ଶକ୍ତିଦ୍ୱାରା ବିଷୟଲୋଲୁପ ଜୀବକୁ ପାଳନ କରନ୍ତି ମୁଁ ସବିତାଙ୍କର ସେହି ତେଜ ସ୍ୱରୂପରେ ଶରଣ ନେଉଛି ॥୧୪॥

## ଅଷ୍ଟମ ଅଧ୍ୟାୟ

# ଭରତଙ୍କର ମୃଗଜନ୍ମ

ଦିନେ ରାଜା ଭରତ ଗଣ୍ଡକୀ ନଦୀରେ ସ୍ନାନ ଓ ନିତ୍ୟନୈମିତ୍ତିକ କ୍ରିୟାକର୍ମ ଶେଷପୂର୍ବକ ନଦୀକୂଳରେ ତିନି ମୁହୂର୍ତ୍ତ ପର୍ଯ୍ୟନ୍ତ ବସି ପ୍ରଣବ ମନ୍ତ୍ର ଜପ କରୁଥିଲେ ॥୧॥ ରାଜା, ଏହି ସମୟରେ ଏକ ତୃଷାର୍ତ୍ତା ହରିଣୀ ଜଳପାନପାଇଁ ସେହି ନଦୀତଟରେ ଆସି ପହଞ୍ଚିଲା ॥୨॥ ଅତି ଆଗ୍ରହରେ ସେ ଜଳପାନ କରୁଥିବାବେଳେ ଅଦୂରରେ ଏକ ଭୟଙ୍କର ସିଂହଗର୍ଜନ ଶୁଣାଗଲା ॥୩॥ ସ୍ୱଭାବତଃ ଭୟବିହ୍ୱଳା, ଚଞ୍ଚଳନୟନା ମୃଗୁଣୀ ତୃଷା ନିବାରଣ ନ କରିଥିଲେ ମଧ୍ୟ ସିଂହଭୟରେ ଚାରି ଆଡ଼କୁ ଚାହିଁ ନଦୀ ଆରପଟକୁ ଡେଇଁ ପଳାଇବାପାଇଁ ଲମ୍ଫ ପ୍ରଦାନ କଲା ॥୪॥ ସେତେବେଳେ ସେ ଗର୍ଭବତୀ ଥିଲା ଏବଂ ଅତି ଭୟରେ ଡେଇଁପଡ଼ିବାବେଳେ ପ୍ରସବଦ୍ୱାରବାଟେ ଜଳସ୍ରୋତ ଉପରେ ତାର ଗର୍ଭପାତ ଘଟିଲା । ଏପରି ଗର୍ଭପାତ, ଭୟ ଓ ବିଷାଦରେ ସେହି କୃଷ୍ଣସାର ମୃଗୀ ଏକ ଗିରିଗୁହାରେ ପଡ଼ିଯାଇ ତତ୍‌କ୍ଷଣାତ୍ ପ୍ରାଣତ୍ୟାଗ କଲା ॥୫॥

ସେହି ମାତୃହରା ମୃଗଶିଶୁଟି ଦୀନ ଅସହାୟ ଭାବରେ ଜଳସ୍ରୋତରେ ଭାସି ଯାଉଥିବା ଦେଖି ରାଜର୍ଷି ଭରତଙ୍କର ଦୟା ଜାତ ହେଲା । ସେ ଜଳରୁ ତାକୁ ଉଠାଇ ଆଣି ଆଶ୍ରମକୁ ନେଇଗଲେ ॥୬-୭॥ ନିଜର ସନ୍ତାନପରି ମୃଗଶାବକ ପ୍ରତି ଭରତଙ୍କର

ମମତା ଦିନୁଦିନ ବଢ଼ିବାକୁ ଲାଗିଲା । ପ୍ରତିଦିନ ଘାସ ଆଣି ତାକୁ ଖାଇବାକୁ ଦେବା, ହିଂସ୍ରଜନ୍ତୁଙ୍କଠାରୁ ରକ୍ଷା କରି ସ୍ନେହରେ ଲାଳନ ପାଳନ କରିବା ଆଦି କାର୍ଯ୍ୟରେ ତାଙ୍କର ସମୟ ବିତିବାକୁ ଲାଗିଲା । କିଛିଦିନ ମଧ୍ୟରେ ଯମ, ନିୟମ ଏବଂ ଭଗବାନଙ୍କୁ ପୂଜା ଓ ପରିଚର୍ଯ୍ୟା କାର୍ଯ୍ୟ ଗୋଟିଗୋଟି କରି ତାଙ୍କର ବନ୍ଦ ହେବାକୁ ଲାଗିଲା । ଶେଷରେ ସମସ୍ତ ସେବା ବନ୍ଦ ହୋଇଗଲା ॥୮॥ ସେ ଭାବିବାକୁ ଲାଗିଲେ, ଆହା ! କି ଦୁଃଖର କଥା ! ଏ ବିଚରା ମୃଗ ଶରଣାଗତ ହୋଇ ମୋତେ ତା'ର ମାତା, ପିତା, ଭାଇ, ବନ୍ଧୁ ଓ ଯୂଥର ସାଥୀ ବୋଲି ମନେ କରୁଛି । ମୋ ଛଡ଼ା ଅନ୍ୟ କାହାରିକୁ ସେ ଜାଣେ ନାହିଁ ଏବଂ ମୋ ଉପରେ ତା'ର ପୂରା ବିଶ୍ୱାସ ରହିଛି । ଶରଣାଗତକୁ ରକ୍ଷା ନ କଲେ ଯେଉଁ ଦୋଷ ହୁଏ, ତାହା ମୁଁ ଜାଣେ । ସେଥିପାଇଁ ମୋର ଆଶ୍ରିତ ଏହି ମୃଗ ଶାବକକୁ ପାଳି, ପୋଷି, ଗେଲ କରି ରକ୍ଷା କରିବାକୁ ହେବ ॥୯॥ ଶାନ୍ତସ୍ୱଭାବ ଦୀନଜନରକ୍ଷକ ପରୋପକାରୀ ସଜ୍ଜନମାନେ ଶରଣାଗତକୁ ରକ୍ଷା କରିବାପାଇଁ ନିଜର ଗୁରୁତର ସ୍ୱାର୍ଥକୁ ମଧ୍ୟ ପରିତ୍ୟାଗ କରିଦିଅନ୍ତି ॥୧୦॥ ଏହିପରି ସେହି ହରିଣଶାବକ ପ୍ରତି ଆସକ୍ତ ରାଜର୍ଷି ଭରତ ଆସନ, ଶୟନ, ଭ୍ରମଣ, ସ୍ନାନ ଓ ଆହାରଆଦି କାର୍ଯ୍ୟରେ ତା'ର ସ୍ନେହ ଛାଡ଼ି ପାରିଲେ ନାହିଁ ଏବଂ ସବୁ ସମୟରେ ତାଙ୍କର ଚିତ୍ତ ଏହି ହରିଣ ଶାବକ ପାଖରେ ବନ୍ଧା ହୋଇ ରହିଲା ॥୧୧॥ ହୋମାଦି କାର୍ଯ୍ୟ ପାଇଁ ସେ କୁଶ, ପୁଷ୍ପ, ସମିଧ, ପତ୍ର, ଫଳ, ମୂଳ ଓ ଜଳ ସଂଗ୍ରହପାଇଁ ବନକୁ ଯିବାକୁ ବାହାରୁଥିବାବେଳେ ବାଘ, ଗଧିଆଦି ହିଂସ୍ର ଜନ୍ତୁଙ୍କ ଭୟରେ ସେ ତାକୁ ଏକୁଟିଆ ନ ଛାଡ଼ି ସାଙ୍ଗରେ ନେଇ ଯାଉଥିଲେ ॥୧୨॥ ବାଟରେ କେଉଁଠି କେଉଁଠି କଅଁଳିଆ ଘାସ ଆଦିର ମୋହରେ ସେ ହରିଣଶାବକଟି ଯଦି ଅଟକି ଯାଉଥିଲା, ଅତି ସ୍ନେହରେ ଭରତ ତାକୁ କାନ୍ଧରେ ବସାଇ ନେଇ ଯାଉଥିଲେ । ଏହିପରି ତାକୁ କୋଳରେ ଓ ଛାତିରେ ଧରି ନାନାପ୍ରକାର ଗେଲ କରି ସେ ଅତିଶୟ ଆନନ୍ଦ ଅନୁଭବ କରୁଥିଲେ ॥୧୩॥ ନିତ୍ୟନୈମିତ୍ତିକ କାର୍ଯ୍ୟ କରିବା ସମୟରେ ରାଜର୍ଷି ଭରତ ମଝି ମଝିରେ ଉଠିଯାଇ ହରିଣଶାବକଟିକୁ ଦେଖିଦେଲେ ତାଙ୍କ ହୃଦୟକୁ ବହୁତ ଶାନ୍ତି ମିଳୁଥିଲା । ସେତେବେଳେ ସେ ତାକୁ ଆଶୀର୍ବାଦ କରି କହୁଥିଲେ, ବତ୍ସ ! ତୋର ସମସ୍ତ ମଙ୍ଗଳ ହେଉ ॥୧୪॥ ଯଦି କେତେବେଳେ ତାକୁ ଦେଖୁ ନ ଥିଲେ, ତେବେ କୃପଣ ବ୍ୟକ୍ତିର ଧନ ହଜିଗଲେ ତାର ଯେପରି ଅବସ୍ଥା ହୁଏ, ତାଙ୍କର ଅବସ୍ଥା ସେହିପରି ଉଦ୍‌ବିଗ୍ନ ହୋଇପଡୁଥିଲା ଏବଂ ହରିଣଶାବକର ବିରହରେ ଆକୁଳ ହୋଇ ଅତି କରୁଣ ଭାବରେ ସେ ଏହିପରି ଶୋକ କରିବାକୁ ଲାଗୁଥିଲେ - ହାୟ ! ହାୟ ! ଏହି ମାତୃହୀନ ମୃଗଶିଶୁଟି ମୋର ଅବହେଳାଯୋଗୁଁ କୁଆଡ଼େ ଚାଲିଗଲା । ଅନାର୍ଯ୍ୟ, ଶଠ ଓ କିରାତତୁଲ୍ୟ ମୋ ପରି ନିଷ୍ଠୁର, ହତଭାଗ୍ୟ ବ୍ୟକ୍ତିର ସମସ୍ତ ଦୋଷକୁ କ୍ଷମା କରି ପୁଣି ବିଶ୍ୱାସରେ ମୋତେ ତା'ର ଆତ୍ମୀୟ ବୋଲି ମନେ କରି ସତେ କ'ଣ ସେ ଫେରି ଆସିବ ? ॥୧୫-୧୬॥ ଆଶ୍ରମ ଉପବନରେ ଦୈବକୃପାରୁ ସୁରକ୍ଷିତ ହୋଇ ସେ ନିର୍ବିଘ୍ନରେ କୋମଳ ତୃଣ ଚରୁଥିବା ମୁଁ କ'ଣ ଆଉ ଦେଖିପାରିବି ! ବଣରେ ବୁଲୁଥିବା ଡାହାଳ କୁକୁରଦଳ କିମ୍ବା ଏକାକୀ ଛପିଥିବା ବାଘ ବା ଅନ୍ୟକୌଣସି ହିଂସ୍ରଜନ୍ତୁ ତାକୁ ଖାଇଯାଇ ନାହାନ୍ତି ତ? ॥୧୭-୧୮॥ ସମସ୍ତ ଜଗତ୍‌ର ମଙ୍ଗଳପାଇଁ ଉଦୟମାନ ଏବଂ ତିନିବେଦର ଆତ୍ମାସ୍ୱରୂପ ଭଗବାନ ଦିବାକର ଅସ୍ତ ହେବାକୁ ବସିଲେଣି । ମୋ ଦାୟିତ୍ୱରେ ଛାଡ଼ି ଯାଇଥିବା ମୃଗୀସନ୍ତାନଟି ଏ ପର୍ଯ୍ୟନ୍ତ ଆସିଲା ନାହିଁ । ନାନାପ୍ରକାର ଶିଶୁସୁଲଭ କ୍ରୀଡ଼ାଦ୍ୱାରା ଶିଶୁ ତା' ସ୍ୱଜନଙ୍କର ଦୁଃଖ ଦୂର କରେ । ଏହି ମୃଗଶିଶୁଟି (ହରିଣ ରାଜକୁମାର) ଏହିପରି ଖେଳି ଖେଳି ମୋ'ପରି ଅଭାଗା ପାଖକୁ ଆଉ କ'ଣ ଫେରି ଆସିବ ? ॥୧୯-୨୦॥ ଯଦି ମୁଁ କେବେ ସ୍ନେହରେ ରାଗିଯାଇ ସମାଧିରେ ବସିବା ପରି ମିଛରେ ଆଖିବୁଜି ବସିଥାଏ, ତେବେ ସେ ଅପରାଧୀ ପରି ମୋର ଚାରିପଟେ ବୁଲି ଜଳବିନ୍ଦୁ ପରି କୋମଳ ତାର ଶିଂଘରେ ମୋତେ ଭୁସିବାକୁ ଲାଗେ ॥୨୧॥ ଯଦି କେବେ କୁଶଗୁଚ୍ଛ ଉପରେ ମୁଁ ହବନସାମଗ୍ରୀ ରଖିଦିଏ ଏବଂ ସେ ଦାନ୍ତରେ ତାକୁ ଭିଡ଼ିନେଇ ଅପବିତ୍ର କରେ, ତେବେ ମୁଁ ରାଗିଯାଇ ତାକୁ ଗାଳି ଦେଲେ ସେ ଭୟରେ ହଠାତ୍ ତା'ର ଖେଳ ଛାଡ଼ି ଦେଇ ଋଷିକୁମାରଙ୍କ ପରି ନିଶ୍ଚଳ ହୋଇ ବସିଯାଏ ॥୨୨॥

ଅହୋ ! ଏହି ସୌଭାଗ୍ୟବତୀ ପୃଥିବୀ ଏପରି କି ତପସ୍ୟା କରିଛି, ଯଦ୍ଦ୍ୱାରା ସେହି ଅତି ବିନୀତସ୍ୱଭାବ କୃଷ୍ଣସାର ମୃଗର ସୂକ୍ଷ୍ମ, ସୁନ୍ଦର ଓ କଲ୍ୟାଣମୟ, କୋମଳ ଖୁରାଯୁକ୍ତ ଚରଣର ଚିହ୍ନମାନଙ୍କୁ ନିଜ ଦେହରେ ଧାରଣ କରିଛି ! ସେହି ହରିଣ ଶିଶୁଟି ମୋର ସର୍ବସ୍ୱ ଥିଲା । ତା'ର ବିରହରେ ମୁଁ କାତର ଏବଂ ମୋର ଏହି ଦୀନ ଅବସ୍ଥା ଘଟିଛି । ତାର ଏହି ସବୁ ପଦଚିହ୍ନ ଦେଖାଇ ତାକୁ ଖୋଜିବାପାଇଁ ସେ ମୋତେ କ'ଣ ବାଟ ଦେଖାଉଛି ? ଏବଂ ନିଜର ଦେହକୁ ଏହାଦ୍ୱାରା ଅଳଙ୍କୃତ କରି ସ୍ୱର୍ଗ ଏବଂ ମୋକ୍ଷକାମୀ ଦ୍ୱିଜମାନଙ୍କପାଇଁ ସେ କଣ ଏହି ସ୍ଥାନକୁ ଏକ ଯଜ୍ଞସ୍ଥଳରେ ପରିଣତ କରୁଛି ? (କୃଷ୍ଣସାର ମୃଗକୁ ଧର୍ମର ପ୍ରତୀକ ବୋଲି ଶାସ୍ତ୍ରରେ କୁହାଯାଏ) ॥୨୩॥ ବୋଧହୁଏ ଦୀନଜନବତ୍ସଳ ଭଗବାନ୍ ନକ୍ଷତ୍ରେଶ ଚନ୍ଦ୍ର ଦୟାପୂର୍ବକ ମାତୃହୀନ ଓ ଆଶ୍ରମଭ୍ରଷ୍ଟ ଏହି ମୃଗଶିଶୁଟିକୁ ସିଂହ ଭୟରୁ (ନିଜ ଲାଞ୍ଛନରୂପେ ଗ୍ରହଣ କରି) ରକ୍ଷା କରୁଛନ୍ତି । ଅଥବା ପୁତ୍ରତୁଲ୍ୟ ମୃଗଶିଶୁର ବିରହତାପରୂପ ଦାବାନଳର ଶିଖା ମୋର ହୃଦୟକମଳକୁ ଦଗ୍ଧ କରିବାରେ ଲାଗିଛି ଏବଂ ତାକୁ ଶାନ୍ତ କରିବା ନିମନ୍ତେ ଚନ୍ଦ୍ରମା ନିଜର ସୁଶୀତଳ ଓ ଶାନ୍ତବଦନରୁ ସଲିଳରୂପ ଅମୃତମୟ କିରଣକୁ ଅନବରତ ବର୍ଷା କରି ମୋତେ ପରମ ସୁଖ ଦାନ କରୁଛନ୍ତି ? ॥୨୪-୨୫॥

ଯୋଗୀ ତପସ୍ୱୀ ରାଜର୍ଷି ଭରତ ନିଜର ଅଭିଳଷିତ ମୃଗଶିଶୁଟିକୁ ଖୋଜି ନ ପାଇ ଅତିଶୟ ବ୍ୟାକୁଳ ହେବାକୁ ଲାଗିଲେ । ନିଜର ପ୍ରାରବ୍ଧ କର୍ମଯୋଗୁଁ ତାଙ୍କ ନିକଟରେ ଏହି ମୃଗଶିଶୁଟି ଉପସ୍ଥିତ ହୋଇଥିଲା, ଯାହାପାଇଁ କି ସେ ଯୋଗାରମ୍ଭ ଓ ଈଶ୍ୱରଙ୍କ ଆରାଧନାରୁ ବିଚ୍ୟୁତ ହୋଇଗଲେ । ପ୍ରାରବ୍ଧ କର୍ମଯୋଗୁଁ ଏହା ନ ହୋଇଥିଲେ, ଯେଉଁ ପୁତ୍ର ପରିଜନମାନଙ୍କୁ ଲୋକ ସହଜରେ ଛାଡ଼ିପାରେ ନାହିଁ, ସେମାନଙ୍କୁ ଛାଡ଼ି ଦେଇ ହୃଦୟର ମଳିନତା ଦୂର କରିଥିଲେ ମଧ୍ୟ ପୁଣି ଏକ ମୃଗଶାବକପ୍ରତି ଏପରି ଉତ୍କଟ ଆସକ୍ତି ସେ ପୋଷଣ କରି ନ ଥାନ୍ତେ । ଏହିପରି ରାଜର୍ଷି ଭରତଙ୍କର ଯୋଗକାର୍ଯ୍ୟରେ ଅତିଶୟ ବିଘ୍ନ ଜାତ ହେଲା । ସେ ମୃଗ-ଶିଶୁର ପାଳନ, ପୋଷଣ, ଲାଳନ ଓ ପ୍ରୀତିସମ୍ପାଦନରେ ଆସକ୍ତ ହୋଇ ଭଗବାନଙ୍କର ଚିନ୍ତାକୁ ଛାଡ଼ିଦେଲେ ଏବଂ ସାପ ମୂଷାଗାତରେ ପଶିଯିବା ପରି ଅଜ୍ଞାତ କାଳ ପ୍ରବଳବେଗରେ ତାଙ୍କଆଡ଼କୁ ମାଡ଼ି ଆସିଲା ॥୨୬॥ ମୃତ୍ୟୁକାଳ ଉପସ୍ଥିତ ହେଲେ ମଧ୍ୟ ସେ ମନେକଲେ, ମୃଗଶାବକଟି ତାଙ୍କ ପାଖରେ ବସି ତାଙ୍କ ପୁତ୍ରପରି ଶୋକ କରୁଛି । କାରଣ ଏହି ମୃଗଶିଶୁଠାରେ ତାଙ୍କର ଚିତ୍ତ ଲାଗି ରହିଥିଲା । ଏହିପରି ମୃଗଚିନ୍ତାରେ ସେ ଶରୀର ତ୍ୟାଗ କଲେ ଏବଂ ମୃତ୍ୟୁକାଳର ଭାବନା ଅନୁସାରେ ସେ ମୃଗଶରୀର ଲାଭ କଲେ । କିନ୍ତୁ ତାଙ୍କ ପୂର୍ବ ଜନ୍ମର ସ୍ମୃତି ନଷ୍ଟ ହେଲା ନାହିଁ । ପୂର୍ବଜନ୍ମର ଭଗବତ୍‌ଭକ୍ତିର ପ୍ରଭାବରେ ସେ ନିଜ ମୃଗଶରୀର ପ୍ରାପ୍ତିର କାରଣ ସ୍ମରଣ କରି ଅତ୍ୟନ୍ତ ଅନୁତପ୍ତ ହୋଇ କହିବାକୁ ଲାଗିଲେ, କି କଷ୍ଟ ! ସଂଯତଚିତ୍ତ ମହାତ୍ମାମାନଙ୍କ ମାର୍ଗରୁ ମୁଁ ଭ୍ରଷ୍ଟ ହୋଇଗଲି । ଅନାସକ୍ତ ଭାବରେ ପବିତ୍ର ନିର୍ଜନ ଅରଣ୍ୟକୁ ଆଶ୍ରୟ କରି ଏବଂ ସମସ୍ତ ପ୍ରାଣୀଙ୍କର ଆତ୍ମସ୍ୱରୂପ ଭଗବାନ ବାସୁଦେବଙ୍କଠାରେ ଚିତ୍ତ ସମର୍ପଣ କରି ତାଙ୍କ ଶ୍ରବଣ, ମନନ, କୀର୍ତ୍ତନ, ଉପାସନା ଓ ସ୍ମରଣଦ୍ୱାରା ତାଙ୍କଠାରେ ଏହି ଚିତ୍ତକୁ ସ୍ଥିର ରଖିବାରେ ସଫଳ ହୋଇଥିଲି । କ'ଣ ହେଲା, ଏକ ଅଜ୍ଞାନୀ ବ୍ୟକ୍ତି ପରି ହଠାତ୍ ଏକ ହରିଣଶିଶୁର ପଛରେ ଦଉଡ଼ି ମୋର ସେହି ଚିତ୍ତର ବିଚ୍ୟୁତି ଘଟିଲା ॥୨୭-୨୯॥ ଏହିପରି ତାଙ୍କ ହୃଦୟରେ ଦୃଢ଼ ବୈରାଗ୍ୟଭାବ ଜାତ ହେବାରୁ ସେ ନିଜର ମୃଗୀ ମାତାକୁ ଓ ଜନ୍ମ ସ୍ଥାନ କାଳଞ୍ଜର ପର୍ବତକୁ ପରିତ୍ୟାଗ କରି ପୁନର୍ବାର ଭଗବାନଙ୍କର କ୍ଷେତ୍ର ଶାନ୍ତସ୍ୱଭାବ ମୁନିମାନଙ୍କର ପ୍ରିୟ ଓ ଶାଳଗ୍ରାମଶିଳାଦ୍ୱାରା ପବିତ୍ରିତ ପୁଲସ୍ତ୍ୟ-ପୁଲହାଶ୍ରମକୁ ଫେରିଗଲେ ॥୩୦॥ ସେଠାରେ ରହି ସେ କାଳର ପ୍ରତୀକ୍ଷା କରିବାକୁ ଲାଗିଲେ । ବିଷୟାସକ୍ତିପ୍ରତି ଅତ୍ୟନ୍ତ ଭୟଭୀତ ହୋଇ ଏକାକୀ ଶୁଖିଲା ଘାସ-ପତ୍ରରେ ଜୀବିକା ନିର୍ବାହପୂର୍ବକ ମୃଗତ୍ୱର କାରଣ ପ୍ରାରବ୍ଧର କ୍ଷୟକୁ ଅପେକ୍ଷା କରି ରହିଲେ ଏବଂ ତୀର୍ଥୋଦକରେ ନିଜ ଶରୀରକୁ ଅର୍ଦ୍ଧମଗ୍ନ କରି ମୃଗଦେହ ପରିତ୍ୟାଗ କଲେ ॥୩୧॥

# ନବମ ଅଧ୍ୟାୟ

## ଭରତଙ୍କର ପୁନର୍ଜନ୍ମ

ଶ୍ରୀ ଶୁକଦେବ କହିଲେ, ରାଜା, ଅଙ୍ଗିରସ ଗୋତ୍ରରେ ଜଣେ ପ୍ରଧାନ ବ୍ରାହ୍ମଣ ଥିଲେ । ସେ ଶମ, ଦମ, ତପ, ବେଦାଧ୍ୟୟନ, ତିତିକ୍ଷା, ତ୍ୟାଗ, ସନ୍ତୋଷ, ବିନୟ, ବିଦ୍ୟା, ଅସୂୟାଶୂନ୍ୟ ଆଚରଣ, ଆତ୍ମଜ୍ଞାନ ଓ ଆନନ୍ଦ ଆଦି ସର୍ବଗୁଣରେ ସମ୍ପନ୍ନ ଥିଲେ । ତାଙ୍କ ସ୍ତ୍ରୀଙ୍କ ଗର୍ଭରେ ନ'ଟି ପୁତ୍ର ଜାତ ହୋଇଥିଲେ, ଯେଉଁମାନେ କି ଶାସ୍ତ୍ରଜ୍ଞାନ, ଚରିତ୍ର, ଆଚରଣ, ରୂପ ଓ ଉଦାରତା ଗୁଣରେ ପିତାଙ୍କର ସଦୃଶ ଥିଲେ । ସେହି ବ୍ରାହ୍ମଣଙ୍କର କନିଷ୍ଠ ଭାର୍ଯ୍ୟାର ଗର୍ଭରେ ଏକ ମିଥୁନ ଜନ୍ମ ହେଲେ; ଅର୍ଥାତ୍ ଜଣେ ପୁତ୍ର ଓ ଜଣେ କନ୍ୟା । ଜ୍ଞାନୀ ବ୍ୟକ୍ତିମାନେ କହନ୍ତି ଯେ, ପରମ ଭାଗବତ ରାଜର୍ଷିପ୍ରବର ଭରତ ମୃଗଶରୀର ତ୍ୟାଗ କରି ତାଙ୍କର ଅନ୍ତିମ ଶରୀରରେ ଏହି ବ୍ରାହ୍ମଣଙ୍କର କନିଷ୍ଠ ପୁତ୍ର ହୋଇ ଜନ୍ମ ହେଲେ ॥୧-୨॥ ଏହି ଜନ୍ମରେ ଭଗବାନଙ୍କ କୃପାରୁ ସେ ତାଙ୍କ ପୂର୍ବ ଜନ୍ମର ପରମ୍ପରାକୁ ସ୍ମରଣ କରିପାରୁଥିଲେ । ସେହି କାରଣରୁ ସ୍ୱଜନ ବା ଅନ୍ୟଜନଙ୍କର ସଙ୍ଗଦୋଷରୁ ପୁଣି କାଳେ ବିଘ୍ନ ଘଟିପାରେ, ସେଥିପାଇଁ ସେ ବହୁତ ଭୟଭୀତ ଥିଲେ । ଭଗବାନଙ୍କର ଯେଉଁ ଯୁଗଳ ଚରଣାରବିନ୍ଦକୁ ଶ୍ରବଣ, କୀର୍ତ୍ତନ ଓ ମନନ କଲେ, ତାହା ସମସ୍ତ କର୍ମବନ୍ଧନକୁ ଛିନ୍ନ କରିଦିଏ, ତାହାକୁ ସର୍ବଦା ଚିତ୍ତରେ ଧ୍ୟାନ କରି ଅନ୍ୟମାନଙ୍କ ଦୃଷ୍ଟିରେ ନିଜକୁ ପାଗଳ, ମୂର୍ଖ, ଅନ୍ଧ ଓ ବଧିର ପରି ଦେଖାଇହେଲେ ॥୩॥ ତାଙ୍କର ପିତା ପୁତ୍ରସ୍ନେହରେ ଆବଦ୍ଧଚିତ୍ତ ହୋଇ ପୁତ୍ର ଜଡ଼ ପ୍ରକୃତିର ହେଲେ ମଧ୍ୟ ଶାସ୍ତ୍ର ଅନୁସାରେ ତାହାର ସମାବର୍ତ୍ତନପର୍ଯ୍ୟନ୍ତ ସମସ୍ତ ସଂସ୍କାର କରିବାପାଇଁ ଆଗ୍ରହୀ ଥିଲେ ଏବଂ ଉପନୟନ କର୍ମ ପରେ ଜଡ଼ତ୍ୱଯୋଗେ ପୁତ୍ରଙ୍କର ଇଚ୍ଛା ନ ଥିଲେ ମଧ୍ୟ ଶୌଚ ଆଚମନ ଆଦି କର୍ମ ନିୟମ ସମ୍ବନ୍ଧରେ ତାଙ୍କୁ ଶିକ୍ଷା ଦେଲେ । କାରଣ ପୁତ୍ର ପିତାଙ୍କ ଠାରୁ ଶିକ୍ଷା ପାଇବା ଉଚିତ ॥୪॥

କିନ୍ତୁ ଭରତ ପିତାଙ୍କ ଆଗରେ ଶାସ୍ତ୍ରବିରୁଦ୍ଧ ଆଚରଣ କରିବାକୁ ଲାଗିଲେ । ମଳ, ମୂତ୍ର ପରିତ୍ୟାଗ ପୂର୍ବରୁ ଶୌଚ, ଆଚମନ ଆଦି ଅସମୀଚୀନ କାର୍ଯ୍ୟ କରୁଥିଲେ । ପିତା ପୁତ୍ରଙ୍କୁ ବେଦାଧ୍ୟାୟନ କରିବାକୁ ଯାଇ ମଧ୍ୟ ଭୂ ର୍ଭୁବଃ ସ୍ୱଃ ଏହି ବ୍ୟାହୃତି, ଏବଂ ଓଁ -ଏହି ପ୍ରଣବ ସହିତ ତ୍ରିପଦା ଗାୟତ୍ରୀ ମନ୍ତ୍ର ଶିକ୍ଷା ଦେବାକୁ ଆରମ୍ଭ କଲେ । ବସନ୍ତ ଓ ଗ୍ରୀଷ୍ମ କାଳର ଚାରି ମାସ ବିତିଗଲା । ପିତାଙ୍କଠାରୁ ସେ କିଛି ଗ୍ରହଣ କରିପାରିଲେ ନାହିଁ । ଏହା ସତ୍ତ୍ୱେ ଆତ୍ମସ୍ୱରୂପ ନିଜ ପୁତ୍ର ପ୍ରତି ତାଙ୍କ ଚିତ୍ତରେ ଗଭୀର ଅନୁରାଗ ଥିଲା । ପୁତ୍ରକୁ ଭଲରୂପେ ଶିକ୍ଷାଦେବା ପିତାର କର୍ତ୍ତବ୍ୟ, ଏହା ମନେକରି ଆଗ୍ରହ ନ ଥିଲେ ମଧ୍ୟ ପୁତ୍ରକୁ ସେ ନିଜେ ଶୌଚ, ଅଧ୍ୟୟନ, ବ୍ରତ, ନିୟମ, ଗୁରୁ ଓ ଅଗ୍ନିର ଶୁଶ୍ରୂଷା ଆଦି ବ୍ରହ୍ମଚାରୀର କର୍ମ ଶିକ୍ଷା ଦେଇ ଇଚ୍ଛାନୁରୂପ କୌଣସି ଫଳ ପାଇଲେ ନାହିଁ । ଏହିପରି ପୁତ୍ରର ଶିକ୍ଷାରେ ଓ ଗୃହଧନ୍ଦାରେ ବ୍ୟସ୍ତ ଥାଇ ଭଗବତ୍ ଭଜନ ରୂପ ମୁଖ୍ୟ କର୍ମରେ ସେ ଅବହେଳା କଲେ । କିନ୍ତୁ ଜାଗ୍ରତ କାଳ ସ୍ୱୟଂ ଆସି ତାଙ୍କୁ ଆକ୍ରମଣ କଲା ଏବଂ ତାଙ୍କର ଭବଲୀଳା ସାଙ୍ଗ ହୋଇଗଲା ॥୫-୬॥ ପତିବ୍ରତା କନିଷ୍ଠା ଭାର୍ଯ୍ୟା ନିଜର ପୁତ୍ର ଓ କନ୍ୟାକୁ ନିଜ ସପତ୍ନୀଙ୍କ ହାତରେ ଛାଡ଼ିଦେଇ ସତୀ ହୋଇ ପତିଙ୍କର ଅନୁଗମନ କଲେ ॥୭॥ ପିତା ଚାଲିଯିବା ପରେ ଭରତଙ୍କ ବୈମାତ୍ରେୟ ଭାଇମାନେ ତାଙ୍କର ପ୍ରକୃତ ପ୍ରଭାବ ଜାଣି ନ ପାରି ଓ ତାଙ୍କୁ ଜଡ଼ବୁଦ୍ଧି ମନେ କରି ଭାଇକୁ ଶିକ୍ଷା ଦେବା ଆଗ୍ରହରୁ ନିବୃତ୍ତହେଲେ । କାରଣ କର୍ମକାଣ୍ଡସର୍ବସ୍ୱ ବିଦ୍ୟାକୁ ସେମାନେ ଶ୍ରେୟ ବୋଲି ଭାବି ବ୍ରହ୍ମଜ୍ଞାନସ୍ୱରୂପ ପରାବିଦ୍ୟା ସମ୍ପର୍କରେ ସମ୍ପୂର୍ଣ୍ଣ ଅନଭିଜ୍ଞ ଥିଲେ ॥୮॥

ପଶୁତୁଲ୍ୟ ସାଧାରଣ ଅନ୍ଧ ମନୁଷ୍ୟ ତାଙ୍କୁ ପାଗଳ, ମୂର୍ଖ ବା ଜଡ଼ ବୋଲି ଭାବି ବ୍ୟବହାର କଲେ ସେ ଠିକ୍ ସେହିପରି ବ୍ୟବହାର କରୁଥିଲେ । କେହି ତାଙ୍କୁ କୌଣସି କାମ କରାଇବାକୁ ଚାହିଲେ, ସେ ତା'ର ଇଚ୍ଛା ଅନୁସାରେ କାମ କରିଦେଉଥିଲେ ।

ତାଙ୍କୁ ବଳପୂର୍ବକ କାମ କରାଇ ଯଦି କେହି ଖାଇବାକୁ ଦେଉଥିଲା, କିମ୍ବା କୌଣସି କାର୍ଯ୍ୟର ମଜୁରିସ୍ୱରୂପ ଯଦି ସେ କିଛି ଖାଇବାକୁ ପାଉଥିଲେ, ମାଗିଲେ କିମ୍ବା ନ ମାଗିଲେ ମଧ୍ୟ ଯଦି ତାଙ୍କୁ ଅଳ୍ପ ବହୁତ କିଛି ଭଲ ବା ମନ୍ଦ ଖାଦ୍ୟ ମିଳୁଥିଲା, ତେବେ ସେ ତାକୁ ଖାଇ ଜୀବିକା ନିର୍ବାହ କରୁଥିଲେ । ତାଙ୍କପାଇଁ ଜିହ୍ୱାସୁଖର ପ୍ରଶ୍ନ ନ ଥିଲା । କୌଣସି କାରଣର ପ୍ରଭାବରୁ ନୁହେଁ, ସେ ସ୍ୱୟଂସିଦ୍ଧ ଥିଲେ ଏବଂ ବିଶୁଦ୍ଧ ଜ୍ଞାନାନନ୍ଦସ୍ୱରୂପ ଆତ୍ମଜ୍ଞାନ ଲାଭ କରି ସେ ସେଥିରୁ ସନ୍ତୋଷ ଲାଭ କରୁଥିଲେ । ଦେହର ଅଭିମାନ ବା ସୁଖ, ଦୁଃଖ, ମାନ, ଅପମାନାଦି ଦ୍ୱନ୍ଦ୍ୱ ତାଙ୍କୁ ସ୍ପର୍ଶ କରିପାରୁ ନ ଥିଲା ॥୯॥ ସେ ଶୀତ, ଗ୍ରୀଷ୍ମ ଓ ଝଡ଼ି ବାର୍ଷାରେ ଷଣ୍ଢପରି ଉଲଗ୍ନ ଦେହରେ ରହୁଥିଲେ । ତାଙ୍କର ଅଙ୍ଗପ୍ରତ୍ୟଙ୍ଗ ହୃଷ୍ଟପୁଷ୍ଟ ଓ ସୁଗଠିତ ଥିଲା । ସେ ଭୂମିଶଯ୍ୟାରେ ଖାଲି ମାଟି ଉପରେ ଶୋଉଥିଲେ । ତେଲ ଲଗାଉ ନ ଥିଲେ କି ଗାଧୋଉ ନ ଥିଲେ । ଦେହରେ ମଇଳା ଜମି ଥିବାରୁ ମାଟିରେ ଢଙ୍କା ହୋଇଥିବା ମୂଲ୍ୟବାନ୍ ମଣି ପରି ତାଙ୍କର ବ୍ରହ୍ମତେଜ ବାହାରେ ଫୁଟି ଦେଖା ଯାଉ ନ ଥିଲା । ସେ ଅଣ୍ଟାରେ ଖଣ୍ଡେ ମଇଳା ଛିଣ୍ଡାଲୁଗା ଗୁଡ଼େଇ ହେଉଥିଲେ । ଦେହରେ ଥିବା ପଇତା ଏତେ ମଇଳା ହୋଇଯାଇଥିଲା ଯେ ନ ଜାଣିଥିଲା ଲୋକ ନୀଚ, ଅଧମ ବ୍ରାହ୍ମଣ ବୋଲି କହି ତାଙ୍କୁ ଗାଳି ଦେଉଥିଲା । କିନ୍ତୁ ସେଥିପ୍ରତି ଧ୍ୟାନ ନ ଦେଇ ସେ ମନଇଚ୍ଛା ବୁଲୁଥିଲେ ॥୧୦॥ ତାଙ୍କୁ ଅନ୍ୟମାନଙ୍କ ଘରେ ମଜୁରି ଲାଗି ପେଟ ପୋଷିବାର ଦେଖି ତାଙ୍କର ଭାଇମାନେ ନିଜ କ୍ଷେତବାଡ଼ି ଠିକ୍ କରାଇବାରେ ତାଙ୍କୁ ଲଗାଉଥିଲେ । ସେଥିରେ ସେ ଲାଗିଗଲେ ସିନା, କିନ୍ତୁ କିଆରିଗୁଡ଼ିକ ସମତଳ ନା ଉଚ୍ଚନୀଚ ନା ଛୋଟବଡ଼ ତାଙ୍କର ସେ ଧାରଣା ନ ଥିଲା । ଭାଇମାନେ ତାଙ୍କୁ ଖୁଦ, ଚଷୁ, ପିଡ଼ିଆ ଭୁସି ଓ ଚୋକଡ଼, ପୋକରା ବିରି ବା ଥାଳିରେ ଲାଗିଥିବା ପୋଡ଼ା ଅନ୍ନ ଯାହା ଦେଲେ ମଧ୍ୟ ସେ ଅମୃତ ପରି ଖାଇଦେଉଥିଲେ ॥୧୧॥

ଥରେ ଜଣେ ଶୂଦ୍ର ଜାତିର ସର୍ଦାର ପୁତ୍ରକାମନାରେ ଭଦ୍ରକାଳୀଙ୍କୁ ଏକ ନରବଳି ଦେବାପାଇଁ ଉଦ୍ୟମ କଲା ॥୧୨॥ ସେ ଯେଉଁ ବ୍ୟକ୍ତିକୁ ବଳି ଦେବାପାଇଁ ଧରି ଆଣିଥିଲା, ସେ ଖସି ପଳାଇବାରୁ ତାକୁ ଖୋଜିବାପାଇଁ ଯାଇ ସର୍ଦାରର ଅନୁଚରମାନେ ଘୋର ଅନ୍ଧକାର ରାତ୍ରିରେ ତାକୁ ପାଇଲେ ନାହିଁ । ଦୈବାତ୍ ସେମାନଙ୍କର ଦୃଷ୍ଟି ସେହି ଆଙ୍ଗିରସ ଗୋତ୍ରୀୟ ବ୍ରାହ୍ମଣ ଭରତଙ୍କ ଉପରେ ପଡ଼ିଲା; ସେତେବେଳେ ସେ ବୀରାସନରେ ବସି ମୃଗ, ବରାହାଦି ଜନ୍ତୁମାନଙ୍କଠାରୁ ଶସ୍ୟକ୍ଷେତ୍ର ରକ୍ଷା କରୁଥିଲେ ॥୧୩॥ ଅନୁଚରଗଣ ତାଙ୍କୁ ଦେଖି ଅତିଶୟ ଖୁସି ହୋଇଗଲେ । ଏହାର ଶରୀରରେ ସମସ୍ତ ସୁଲକ୍ଷଣ ଅଛି ଏବଂ ଏହାଦ୍ୱାରା ଆମ ସର୍ଦାରଙ୍କର କାର୍ଯ୍ୟ ନିଶ୍ଚୟ ସିଦ୍ଧ ହେବ - ଏହା ଭାବି ସେମାନେ ତାଙ୍କୁ ଦଉଡ଼ିରେ ବାନ୍ଧି ଭଦ୍ରକାଳୀଙ୍କ ମନ୍ଦିରକୁ ନେଇଗଲେ ॥୧୪॥ ଏହାପରେ ସେହି ଚୋରମାନେ ସେମାନଙ୍କ ନିଜ ନିୟମ ଅନୁସାରେ ତାଙ୍କୁ ସ୍ନାନ କରାଇ, ନୂଆ ଲୁଗା ପିନ୍ଧାଇ, ଅଳଙ୍କାର, ଚନ୍ଦନ, ମାଳା ଓ ତିଳକ ଆଦିରେ ଭୂଷିତ କରି ଭଲ ଭାବରେ ଖାଇବାକୁ ଦେଲେ ଏବଂ ଖାଇବା ଶେଷହେବା ପରେ ଧୂପ, ଦୀପ, ମାଳା, ଲାଜ (ଖଇ), ପତ୍ର, ଅଙ୍କୁର ଓ ଫଳ ଆଦି ଉପହାର ସାମଗ୍ରୀ ସହିତ ବଳିର ବିଧାନ ଅନୁସରଣ ପୂର୍ବକ ବହୁପ୍ରକାର ଗୀତ ଓ ସ୍ତୁତି କରିବାକୁ ଲାଗିଲେ । ଢୋଲ ଓ ମୃଦଙ୍ଗ ବଜାଇ ଏହି ପୁରୁଷପଶୁଙ୍କୁ ଭଦ୍ରକାଳୀଙ୍କ ଆଗରେ ଅଧୋମୁଖ କରି ବସାଇଦେଲେ ॥୧୫॥ ଏହାପରେ ସେହି ଦସ୍ୟୁରାଜାର ଚୋର-ପୁରୋହିତ ବଳିରୂପେ କଳ୍ପିତ ସେହି ପୁରୁଷ-ପଶୁର ରୁଧିରଦ୍ୱାରା ଦେବୀ ଭଦ୍ରକାଳୀଙ୍କୁ ସନ୍ତୁଷ୍ଟ କରିବାପାଇଁ ତାଙ୍କରି ମନ୍ତ୍ରରେ ଅଭିମନ୍ତ୍ରିତ କରି ଏକ ଅତି ଭୟଙ୍କର ତୀକ୍ଷ୍ଣ ଖଡ୍ଗ ଧାରଣ କଲା ॥୧୬॥ ଏହି ଚୋରମାନେ ରଜୋଗୁଣ ଓ ତମୋଗୁଣରେସମ୍ପନ୍ନ ଥିଲେ । ଧନର ଗର୍ବରେ ସେମାନଙ୍କର ଚିତ୍ତ ଉନ୍ମତ୍ତ ହୋଇଯାଇଥିଲା । ଏହି ସ୍ୱେଚ୍ଛାଚାରୀ ହିଂସ୍ରସ୍ୱଭାବ ଶୂଦ୍ର ଚୋରଗଣ କୁମାର୍ଗଗାମୀ ହୋଇ ଭଗବାନଙ୍କର ଅଂଶସ୍ୱରୂପ ବ୍ରାହ୍ମଣଙ୍କୁ ବଧ କରିବାପାଇଁ କେବଳ ଇଚ୍ଛା ପ୍ରକାଶ କରୁ ନ ଥିଲେ, ସେମାନେ ସାକ୍ଷାତ୍ ବ୍ରହ୍ମସ୍ୱରୂପ ବ୍ରହ୍ମର୍ଷିପୁତ୍ର, ସମସ୍ତ ପ୍ରାଣୀଙ୍କର ବନ୍ଧୁ, ବିପଦକାଳରେ ମଧ୍ୟ ବଧର ଅଯୋଗ୍ୟ ଭରତଙ୍କୁ ଏହିପରି ନିଷ୍ଠୁର ଭାବରେ ହତ୍ୟା କରିବାକୁ ଯାଉଥିବାର ଦେଖି ସ୍ୱୟଂ ଭଦ୍ରକାଳୀ ଅତି ଦୁଃସହ ବ୍ରହ୍ମତେଜରେ ପ୍ରଜ୍ୱଳିତ ହୋଇ ନିଜର ମୂର୍ତ୍ତିମଧ୍ୟରୁ ବାହାରି

ଆସିଲେ ॥୧୭॥ ସେହି ଭଦ୍ରକାଳୀ ଦେବୀ ଏହି ଦୁର୍ବୃତ୍ତମାନଙ୍କର ନିଷ୍ଠୁର ଆଚରଣ ସହି ନ ପାରି ଅତିଶୟ କ୍ରୁଦ୍ଧ ହୋଇ ପଡ଼ିଥିଲେ । କ୍ରୋଧରେ ତାଙ୍କର ଭ୍ରୂ କୁଞ୍ଚିତ ହେଉଥିଲା । ସେ ଅତ୍ୟନ୍ତ କ୍ରୁଦ୍ଧ ହୋଇ ଏପରି ଭୀଷଣ ଅଟ୍ଟହାସ୍ୟ କଲେ ଯେ, ମନେହେଲା ଯେପରି ସମସ୍ତ ଜଗତକୁ ଧ୍ୱଂସ କରିବାପାଇଁ ସେ ଉଦ୍ୟତ । ତା'ପରେ ସେ ଲମ୍ଫପ୍ରଦାନ ପୂର୍ବକ ସେହି ପାପାତ୍ମା ଅପରାଧୀ ବୃଷଳମାନଙ୍କ ଉପରେ କୁଦି ପଡ଼ି ସେହି ଖଡ୍ଗଦ୍ୱାରା ସେମାନଙ୍କର ମସ୍ତକ ସବୁ ଛେଦନ କଲେ ଏବଂ ସେମାନଙ୍କ କଣ୍ଠଦେଶରୁ ଯେଉଁ ଶୋଣିତଧାରା ପ୍ରବାହିତ ହେଲା, ନିଜ ସହଚରୀମାନଙ୍କ ସହ ତାହାକୁ ପାନ କରି ଉନ୍ମତ୍ତ ଭାବରେ ଗାନ ଓ ନୃତ୍ୟ ଆରମ୍ଭ କଲେ ଏବଂ ଛିନ୍ନଶିର ସମୂହକୁ କନ୍ଦୁକ କରି କ୍ରୀଡ଼ା ରଚିବାକୁ ଲାଗିଲେ ॥୧୮॥ ଏହା ସତ୍ୟ ଯେ, ମହତ୍ ବ୍ୟକ୍ତିମାନଙ୍କପ୍ରତି ଅତ୍ୟାଚାରରୂପକ ଅପରାଧ କରାଗଲେ ଅପରାଧୀ ବ୍ୟକ୍ତି ଉପରେ ତା'ର ସମ୍ପୂର୍ଣ୍ଣ ଫଳ ଫଳିଥାଏ ॥୧୯॥ ପରିକ୍ଷିତ ! ଯେଉଁ ଭଗବତ୍ ଭକ୍ତମାନେ ଦେହାଭିମାନ ରୂପ ହୃଦୟଗ୍ରନ୍ଥିକୁ ଛେଦନ କରିଛନ୍ତି, ଯେଉଁମାନେ ସ୍ୱଭାବତଃ ସମସ୍ତ ପ୍ରାଣୀଙ୍କର ବନ୍ଧୁ, ଯାହାଙ୍କର କୌଣସି ବ୍ୟକ୍ତିପ୍ରତି ଶତ୍ରୁତା ନାହିଁ, ଯେଉଁମାନେ ଭଗବାନଙ୍କର ଅଭୟ ପାଦମୂଳରେ ଆଶ୍ରୟ ନେଇଛନ୍ତି ଏବଂ ଯେଉଁମାନଙ୍କୁ ଭଗବାନ ନିଜ ଶ୍ରେଷ୍ଠ ଆୟୁଧର ପ୍ରଭାବରେ ଭଦ୍ରକାଳୀ ଆଦି ରୂପରେ ସର୍ବଦା ରକ୍ଷା କରନ୍ତି, ସେମାନେ ନିଜ ଶିରଚ୍ଛେଦନ ପରି ବିପଦ ଆସି ଉପସ୍ଥିତ ହେଲେ ମଧ୍ୟ ଯେ ଭୟଭୀତ ହୁଅନ୍ତି ନାହିଁ, ଏଥିରେ କିଛି ଆଶ୍ଚର୍ଯ୍ୟ ହେବାର ନାହିଁ ॥୨୦॥

## ଦଶମ ଅଧ୍ୟାୟ

# ରାଜା ରହୂଗଣ

ଶୁକଦେବ କହିଲେ, ରାଜା ! ସିନ୍ଧୁ ଓ ସୌବୀର ଦେଶର ରହୂଗଣ ନାମକ ରାଜା ଯେତେବେଳେ ଇକ୍ଷୁମତୀ ନଦୀର କୂଳ ଦେଇ ଯାଉଥିଲେ, ସେତେବେଳେ ତାଙ୍କ ଶିବିକାବାହକମାନଙ୍କର ସର୍ଦ୍ଦାର (ଆବଶ୍ୟକ ପଡ଼ିବାରୁ) ଆଉ ଜଣେ ଯୋଗ୍ୟ ବାହକଙ୍କୁ ଖୋଜିବାକୁ ଲାଗିଲେ । ଦୈବାତ୍ ସେ ଭରତଙ୍କୁ ଦେଖି ମନେକଲେ, ଏହି ବ୍ୟକ୍ତିଟି ଯୁବକ, ହୃଷ୍ଟପୁଷ୍ଟ ଓ ବେଶ୍ ଟାଣୁଆ । ତେଣୁ ଗୋ-ଗର୍ଦ୍ଦଭ ପରି ସେ ଭାରବହନ କରିବାରେ ସମର୍ଥ ହେବ । ଏହିପରି ଭାବି ପୂର୍ବରୁ ବିନା ମଜୁରିରେ ବଳାତ୍କାରରେ ଗୃହୀତ ଅନ୍ୟ (ଶିବିକା) ବାହକମାନଙ୍କ ସାଙ୍ଗକୁ ତାଙ୍କୁ ମଧ୍ୟ ବଳପୂର୍ବକ ଧରିନେଲେ । ଭରତ ଉଦାର ପ୍ରକୃତିର ଥିଲେ । ତେଣୁ ଉକ୍ତ କାର୍ଯ୍ୟପାଇଁ ଅଯୋଗ୍ୟ ହେଲେ ମଧ୍ୟ ସେ ଚୁପ୍‌ଚାପ୍ ଶିବିକା ବହନ କରିଚାଲିଲେ ॥୧॥ ଭରତଙ୍କ ପାଦରେ ଚକଟି ହୋଇ କୌଣସି ଜୀବ ମରି ନ ଯାଉ, ସେଥିପାଇଁ ଏକ ଶର ନିକ୍ଷେପ କଲେ ଯେତେବାଟ ଯିବ, ସେତିକି ବାଟକୁ ଚାହିଁ ସେ ଚାଲୁଥିଲେ । ଏହାଫଳରେ ଅନ୍ୟ ବାହକମାନଙ୍କ ସାଙ୍ଗରେ ତାଙ୍କ ପାଦର ମେଳ ଖାଉ ନ ଥିଲା । ଶିବିକାଟି ବିଷମ ଭାବରେ ଗତିକରିବାକୁ ଲାଗିବାରୁ, ରାଜା ରହୂଗଣ ବାହକମାନଙ୍କୁ ଆକଟି କହିଲେ; ତୁମେମାନେ ସମାନ ଭାବରେ ଚାଲ । ଏପରି ବଙ୍କାତେଢ଼ା ହୋଇ ଚାଲୁଛ କାହିଁକି ? ॥୨॥ ସ୍ୱାମୀଙ୍କର ଆକ୍ଷେପଯୁକ୍ତ ବାକ୍ୟ ଶୁଣି ବାହକମାନେ ଦଣ୍ଡଭୟରେ ଭୀତ ହୋଇ ରାଜାଙ୍କୁ କହିଲେ. ମହାରାଜ ! ଆମର ଦୋଷ ନାହିଁ, ଆମେ ସାବଧାନ ହୋଇ ଆପଣଙ୍କ ଆଦେଶପାଳନ ପୂର୍ବକ ଶିବିକା ବହନ କରୁଛୁ । କିନ୍ତୁ ଏଇ ଅଳ୍ପ ସମୟ ହେଲା ଯେଉଁ ବ୍ୟକ୍ତିକୁ ବାହକରୂପେ ନିଯୁକ୍ତ କରାଯାଇଛି, ସେ ଶୀଘ୍ର ଯାଇପାରୁ ନାହିଁ, ତେଣୁ ଆମେ ଠିକ୍ ଭାବରେ ଏହା ସାଙ୍ଗରେ ଶିବିକା ବୋହି ପାରୁ ନାହୁଁ ॥୩-୪॥ ରାଜା ରହୂଗଣ ବାହକମାନଙ୍କର କାତରୋକ୍ତି ଶୁଣି ଭାବିଲେ ଯେ, ଏହି ଜଣେ ବ୍ୟକ୍ତିର ଦୋଷପାଇଁ ସଂସର୍ଗଦୋଷରୁ ଅନ୍ୟ ସମସ୍ତଙ୍କୁ ଦୋଷୀ ହେବାକୁ ପଡୁଛି ।

ବୃଦ୍ଧମାନଙ୍କର ସେବା କରୁଥିଲେ ମଧ୍ୟ ରାଜା ସ୍ୱଭାବତଃ ରଜୋଗୁଣ ଯୋଗୁଁ କ୍ରୁଦ୍ଧ ହୋଇ ଉସ୍ମାଚ୍ଛାଦିତ ଅଗ୍ନିପରି ନିଜର ବ୍ରହ୍ମତେଜକୁ ଲୁକ୍‌କାୟିତ କରି ରହିଥିବା ଭରତଙ୍କୁ ଆକ୍ଷେପ କରି କହିବାକୁ ଲାଗିଲେ ।।୫।।

ହାୟ ହାୟ, ଭାଇ ! ତମକୁ ତ ବହୁତ କଷ୍ଟ ଲାଗିବଣି । କାରଣ ବହୁକାଳ ଧରି ତୁମେ ଏକାକୀ ଯେପରି ଏହି ଶିବିକା ବହନ କରି ବହୁ ବାଟ ଚାଲି ଆସିଲଣି ! ଦେଖାଯାଉଛି, ତୁମର ଦେହ ସେପରି ହୃଷ୍ଟପୁଷ୍ଟ ବା ଟାଣୁଆ ନୁହେଁ ! ବୋଧହୁଏ ବାର୍ଦ୍ଧକ୍ୟ ଆସିଗଲାଣି ! ସଖା ! ଏମାନେ ବୋଧହୁଏ ତୁମର ସଙ୍ଗୀ ନୁହନ୍ତି । କାରଣ ତୁମ ସହିତ ଶିବିକା ବୋହିପାରୁ ନାହାନ୍ତି । ସେଥିପାଇଁ ହିଁ ଏତେ କ୍ଳାନ୍ତ, ଶ୍ରାନ୍ତ ଦେଖାଯାଉଛ ! ରାଜାଙ୍କର ଏହି ବ୍ୟଙ୍ଗୋକ୍ତି ଓ ଉପହାସର କୌଣସି ଉତ୍ତର ନ ଦେଇ ଭରତ ପୂର୍ବପରି ଚୁପ୍‌ଚାପ୍ ଶିବିକା ବୋହି ଚାଲିଲେ । ମାୟାଯୋଗୁଁ ଯେଉଁ ଶରୀର ପଞ୍ଚଭୂତ, ଇନ୍ଦ୍ରିୟ ଓ ପାପପୁଣ୍ୟାଦି କର୍ମର ଆଶ୍ରୟ ସ୍ଥଳ ହୋଇଥାଏ, ସେଥିପ୍ରତି ତାଙ୍କର କୌଣସି ଅହମିକା ବା ମମତା ନ ଥିଲା ଏବଂ ସେ ବ୍ରହ୍ମସ୍ୱରୂପରେ ଅବସ୍ଥିତ ଥିଲେ ।।୬।। ଏହାପରେ ପୁଣି ଶିବିକା ପୂର୍ବପରି ବିଷମଗତିରେ ଚାଲିବାରୁ ରାଜା ରହୂଗଣ ଅତିଶୟ କ୍ରୁଦ୍ଧ ହୋଇ କହିବାକୁ ଲାଗିଲେ – ଆରେ ଇଏ କ'ଣ ହେଉଛି ! ତୁ ବଞ୍ଚିଛୁ ନା ମରିଯାଇଛୁ ? ତୁ ମୋତେ ଅବଜ୍ଞା କରି ମୋର ଆଦେଶକୁ ଲଂଘନ କରି ଚାଲିଛୁ । ଜଣାଯାଉଛି, ତୁ ଏହିପରି ଏକ ଦୋଷୀ ସ୍ୱଭାବର ବ୍ୟକ୍ତି । ସାଧାରଣ ଦୋଷୀ ବ୍ୟକ୍ତିକୁ ଯେପରି ଦଣ୍ଡବିଧାନ କରାଯାଏ, ତୋର ଏହି ଅବଜ୍ଞାପାଇଁ ମୋତେ ସେହିପରି କଠୋର ଦଣ୍ଡବିଧାନ କରିବାକୁ ହେବ । ତା'ହେଲେ ତୋର ହୋସ୍ ଆସିବ ଓ ତୁ ଠିକ୍ ହୋଇଯିବୁ ।।୭।। 'ମୁଁ ରାଜା' – ଏହି ଅଭିମାନର ବଶବର୍ତ୍ତୀ ହୋଇ ରହୂଗଣ ଏଣୁତେଣୁ ବହୁ ଅସଙ୍ଗତ କଥା କହିଗଲେ । ରଜୋଗୁଣ ଓ ତମୋଗୁଣ ଗର୍ବରେ ସେ ଭଗବାନଙ୍କର ଅନନ୍ୟଭକ୍ତ ଭରତଙ୍କୁ ଅବଜ୍ଞା କଲେ । ସେ ନିଜକୁ ବଡ଼ ବିଜ୍ଞ ବୋଲି ମିଥ୍ୟା ଅଭିମାନ ପୋଷଣ କରୁଥିଲେ । ଯୋଗେଶ୍ୱରମାନଙ୍କର ଜଡ଼ପରି ବିଚିତ୍ର ଆଚରଣ ସମ୍ପର୍କରେ ତାଙ୍କର କୌଣସି ଅଭିଜ୍ଞତା ନ ଥିଲା । ତେଣୁ ସେ ବ୍ରହ୍ମଜ୍ଞ, ସମସ୍ତ ପ୍ରାଣୀଙ୍କର ସୁହୃଦ୍ ଓ ବ୍ରହ୍ମଭୂତ ବ୍ରାହ୍ମଣ ଭରତଙ୍କୁ ତିରସ୍କାର କଲେ ମଧ୍ୟ ସେ ଟିକିଏ ହେଲେ ବିଚଳିତ ହେଲେ ନାହିଁ ଏବଂ ଅଳ୍ପ ହସି ନିରଭିମାନ ଭାବରେ କହିବାକୁ ଲାଗିଲେ ।।୮।।

ବ୍ରାହ୍ମଣ ଭରତ କହିଲେ, ବୀର ! ତୁମେ ଯାହା କହିଲ, ଯଥାର୍ଥ । ତୁମର କହିବାରେ କୌଣସି ଅସଙ୍ଗତି ନାହିଁ । ଏହି ଦେହ ହିଁ ଭାର ବହନ କରେ । ଦେହ ହିଁ ପ୍ରାପ୍ୟପଥକୁ ଅତିକ୍ରମ କରେ । ଆତ୍ମା ଭାର ବହନ କରେ ନାହିଁ ବା ଦେହର ପ୍ରାପ୍ୟ ପଥକୁ ଅତିକ୍ରମ କରେ ନାହିଁ । ତେଣୁ ତୁମର କଥା ମିଥ୍ୟା ନୁହେଁ । ମୁଁ ମୋଟା ନୁହେଁ ବୋଲି ତୁମେ କହିଛ, ତାହା ମଧ୍ୟ ସତ୍ୟ, କାରଣ ମୁଁ ଆତ୍ମସ୍ୱରୂପ । ତେଣୁ ମୋର ସ୍ଥୂଳତା ବା କୃଶତା ନାହିଁ । ତାହା ଦେହର ଧର୍ମ, ଆତ୍ମାର ନୁହେଁ ।।୯।।ସ୍ଥୂଳତା, କୃଶତା, ଆଧି, ବ୍ୟାଧି, କ୍ଷୁଧା, ତୃଷା, ଭୟ , କଳହ, ଇଚ୍ଛା, ବୃଦ୍ଧାବସ୍ଥା, ନିଦ୍ରା, ରତି, କ୍ରୋଧ, ଅହଙ୍କାର, ଗର୍ବ ଓ ଶୋକ-- ଏ ସମସ୍ତ ଦେହରୁ ଜନ୍ମ । ଏହା ଆତ୍ମାର ଧର୍ମ ନୁହେଁ ।।୧୦।। ରାଜା ! ତୁମେ ମୋତେ 'ବଞ୍ଚିଛୁ ନା ମରିଛୁ' ବୋଲି ଯାହା କହିଲ, ତାହା ମଧ୍ୟ ସଙ୍ଗତ । ଜଗତ୍‌ରେ ଯେତେ ବସ୍ତୁ ଅଛି, ସେ ସବୁ ପ୍ରତି ଏହା ପ୍ରଯୁଜ୍ୟ । କାରଣ ପରିଣାମ ଭୋଗ କରୁଥିବା ସବୁ ପଦାର୍ଥ ଉତ୍ପତ୍ତି ଓ ବିନାଶ ସ୍ୱରୂପ ଜୀବନ ଓ ମରଣର ଅଧୀନ । ( ପ୍ରଭୁର ଆଜ୍ଞା ମୁଁ ପାଳନ କରୁ ନାହିଁ ବୋଲି ତୁମେ କହୁଛ) ଯେଉଁଠି ପ୍ରଭୁ-ଭୃତ୍ୟର ସ୍ଥିର ନିୟମ ରହିଛି, ସେଠାରେ ଏହା ପ୍ରଯୁଜ୍ୟ, ମାତ୍ର ତୁମେ ରାଜା ଏବଂ ମୁଁ ପ୍ରଜା – ଏହି ଭେଦବୁଦ୍ଧିରେ ବିଚାର କରିବା ଛଡ଼ା ପ୍ରଭୁ-ଭୃତ୍ୟର ମୁଁ କୌଣସି ସ୍ଥାୟୀ ସମ୍ପର୍କ ଦେଖିପାରୁ ନାହିଁ । ପରମାର୍ଥ ଦୃଷ୍ଟିରୁ ଦେଖିଲେ କିଏ ସ୍ୱାମୀ ଓ କିଏ ସେବକ ? ତଥାପି ରାଜା, ସ୍ୱାମିତ୍ୱର ଅଭିମାନରେ ତୁମେ ଯଦି ମୋତେ ଭୃତ୍ୟ ବୋଲି ମନେ କରୁଥାଅ, ତା'ହେଲେ କହ, ତୁମର କି କାର୍ଯ୍ୟ ମୁଁ କରିପାରିବି ? ।।୧୧-୧୨।। ବୀର ! ମୁଁ ଉନ୍ମତ୍ତ, ମତ୍ତ ବା ଜଡ଼ପରି ମୃତ ଅବସ୍ଥାରେ ରହିଛି । ତୁମେ ମୋତେ ଦଣ୍ଡ ଦେଲେ ତା'ର କ'ଣ ଫଳ ହେବ ଏବଂ ପ୍ରକୃତରେ ମୁଁ ଯଦି ଜଡ଼ ବା ଉନ୍ମତ୍ତ ହୋଇଥାଏ, ତାହାହେଲେ ମୋତେ ଶିକ୍ଷା ଦେବାର ଅର୍ଥ ହେଉଛି, ପେଷା ହୋଇଥିବା ବସ୍ତୁକୁ ଆଉ ଥରେ ପେଷିବା । ତାହା ଏକ ବ୍ୟର୍ଥଚେଷ୍ଟା ମାତ୍ର ।।୧୩।।

ଶ୍ରୀ ଶୁକଦେବ କହିଲେ, ପରିକ୍ଷିତ ! ଏହିପରି ଯଥାର୍ଥ ତତ୍ତ୍ୱର ଉପଦେଶ ଛଳରେ ଭରତ ମୁନି ରାଜାଙ୍କୁ ଉତ୍ତର ଦେଇ ଚୁପ୍ ହୋଇଗଲେ ଏବଂ ନିଜର ପ୍ରାରବ୍ଧକୁ କ୍ଷୟ କରିବାପାଇଁ ପୂର୍ବପରି ଶିବିକାକୁ କାନ୍ଧରେ ନେଇ ଚାଲିବାକୁ ଲାଗିଲେ ॥୧୪॥ ପରିକ୍ଷିତ ! ସିନ୍ଧୁ-ସୌବୀର ଦେଶର ରାଜା ରହୂଗଣଙ୍କର ତତ୍ତ୍ୱଜିଜ୍ଞାସା ପ୍ରତି ଗଭୀର ଶ୍ରଦ୍ଧା ଥିଲା । ତେଣୁ ବହୁ ଯୋଗଗ୍ରନ୍ଥଦ୍ୱାରା ସମର୍ଥିତ ହୃଦୟଗ୍ରନ୍ଥିର ମୋଚନକାରୀ ସେହି ଦ୍ୱିଜବାକ୍ୟ ଶ୍ରବଣ କରି ସେ ତୁରନ୍ତ ଶିବିକାରୁ ଓହ୍ଲାଇ ପଡ଼ିଲେ । ରାଜାର ଅଭିମାନ ତାଙ୍କର ଦୂର ହୋଇଗଲା ଏବଂ ଭରତଙ୍କ ପାଦଦଳେ ମୁଣ୍ଡ ଲଗାଇ କ୍ଷମା ପ୍ରାର୍ଥନାପୂର୍ବକ ସେ କହିବାକୁ ଲାଗିଲେ--॥୧୫॥ ଭଦ୍ର ! ଆପଣ ବ୍ରାହ୍ମଣ, କ୍ଷତ୍ରିୟ ବା ବୈଶ୍ୟ - କେଉଁ ଜାତିର ? ଏପରି ଗୋପନରେ କାହିଁକି ବିଚରଣ କରୁଛନ୍ତି । ମୁଁ ଦେଖୁଛି ଆପଣଙ୍କ ଦେହରେ ବ୍ରାହ୍ମଣଚିହ୍ନ । ଯଜ୍ଞସୂତ୍ର ଆପଣ ଧାରଣ କରିଛନ୍ତି । କିମ୍ବା ଆପଣ ଦତ୍ତାତ୍ରେୟ ଆଦି ଅବଧୂତମାନଙ୍କ ମଧ୍ୟରୁ କୌଣସି ଜଣେ ହୋଇଥିବେ । ଆପଣ କାହାର ସନ୍ତାନ, କେଉଁ ଦେଶରେ ଆପଣଙ୍କର ଜନ୍ମ ? କ'ଣପାଇଁ ଏଠିକୁ ଆସିଛନ୍ତି ? ଯଦି ମୋର ମଙ୍ଗଳସାଧନ ପାଇଁ ଆପଣ ଏଠାକୁ ଆସିଥା'ନ୍ତି, ତା'ହେଲେ ଆପଣ ସ୍ୱୟଂ କପିଳ ମହର୍ଷି ନୁହନ୍ତି ତ ? ॥୧୬॥ ମୋତେ ଇନ୍ଦ୍ରର ବଜ୍ରକୁ ଡର ନାହିଁ । ମହାଦେବଙ୍କର ତ୍ରିଶୂଳକୁ ଡର ନାହିଁ ଏବଂ ଯମଦଣ୍ଡକୁ ମଧ୍ୟ ମୁଁ ଡରେ ନାହିଁ । ଅଗ୍ନି, ସୂର୍ଯ୍ୟ, ଚନ୍ଦ୍ର, ବାୟୁ ଓ କୁବେରଙ୍କର ଅସ୍ତ୍ର, ଶସ୍ତ୍ରକୁ ମଧ୍ୟ ମୁଁ ଭୟ କରେ ନାହିଁ । କେବଳ ବ୍ରାହ୍ମଣକୁଳର ଅପମାନକୁ ହିଁ ମୁଁ ଭୟ କରେ ॥୧୭॥ ତେଣୁ, ହେ ସାଧୁମହାରାଜ ! ଆପଣଙ୍କର ପରିଚୟ ଦିଅନ୍ତୁ । ଆପଣ ବିଷୟାସକ୍ତି ତ୍ୟାଗ କରି ନିଜର ତତ୍ତ୍ୱଜ୍ଞାନ ଓ ଶକ୍ତିକୁ ଲୁକ୍କାୟିତ ରଖି କାହିଁକି ଜଡ଼ପରି ବ୍ୟବହାର କରୁଛନ୍ତି ? ମୁଁ ତ ଆପଣଙ୍କୁ କଳନା କରିପାରୁନାହିଁ । କ'ଣ ଆପଣ ଯାହା ସବୁ ଉତ୍ତର ଦେଲେ, ତାହା ଯୋଗଶାସ୍ତ୍ରସମ୍ମତ ? ତେଣୁ ମନମଧ୍ୟରେ ଆପଣଙ୍କର ସେହି ବାକ୍ୟଗୁଡ଼ିକ ଆଲୋଚନା କରି ମଧ୍ୟ ମୋର ସନ୍ଦେହ ଦୂର ହେଉ ନାହିଁ ॥୧୮॥ ସାକ୍ଷାତ୍ ଶ୍ରୀହରିଙ୍କର ଜ୍ଞାନରୂପ କଳାରେ ଅବତୀର୍ଣ୍ଣ ମୁନିମାନଙ୍କର ଶ୍ରେଷ୍ଠ ଗୁରୁ ଆତ୍ମତତ୍ତ୍ୱବିତ୍ ଯୋଗେଶ୍ୱର ଭଗବାନ୍ କପିଳଙ୍କୁ ଏହି ସଂସାରରେ କାହାର ଶରଣାଗତ ହେବା ଉଚିତ, ତାହା ମୁଁ ପଚାରିବାକୁ ଯାଉଥିଲି ॥୧୯॥ ଆପଣ କ'ଣ ସେହି କପିଳ ମୁନି, ଯେ କି ନିଜର ସ୍ୱରୂପକୁ ଗୋପନ ରଖି, ଲୋକମାନଙ୍କୁ ଅନୁଧ୍ୟାନ କରିବାପାଇଁ ବିଚରଣ କରୁଛନ୍ତି ? ମନ୍ଦବୁଦ୍ଧି ଗୃହୀ ବ୍ୟକ୍ତି ଯୋଗେଶ୍ୱରମାନଙ୍କର ଗତିବିଧ ଜାଣିବ ବା କିପରି ? ॥୨୦॥ ଶାରୀରିକ କର୍ମ କଲେ ଶ୍ରମ ହୁଏ ବୋଲି ମୁଁ ଜାଣେ । ଭାର ବହନ କରି ରାସ୍ତାରେ ଚାଲୁଥିବାଯୋଗୁଁ ଆପଣଙ୍କର ନିଶ୍ଚୟ ଶ୍ରମ ହୋଇଛି ବୋଲି ମୁଁ ଅନୁମାନ କରୁଛି । ବ୍ୟବହାରମାର୍ଗ ସତ୍ୟ ବୋଲି ମୁଁ ଅନୁଭବ କରେ । କାରଣ ମିଥ୍ୟାଘଟରେ ପାଣି ଆଣିବା କେବେ ସମ୍ଭବ ହୁଏ ନାହିଁ ॥୨୧॥ ନିଆଁର ତାତିରେ ମାଟିହାଣ୍ଡି ରଖିଲେ ସେ ଯେପରି ତାତି ଯାଏ, ହାଣ୍ଡି ତାତିଲେ ସେଥିରେ ଥିବା ପାଣି ଯେପରି ତାତିଯାଏ ଏବଂ ପାଣିର ତାତିରେ ସେଥିରେ ଥିବା ଚାଉଳ ଯେପରି ଫୁଟେ ଓ ଭାତ ହୋଇଯାଏ, ସେହିପରି ଆତ୍ମା ସହିତ ଦେହ, ଇନ୍ଦ୍ରିୟ, ପ୍ରାଣ ଓ ମନ -- ଏମାନଙ୍କର ସମ୍ପର୍କ ଥିବାଯୋଗୁଁ ସେମାନଙ୍କ ଶ୍ରମର ପ୍ରଭାବରୁ ଆତ୍ମା ସର୍ବଥା ମୁକ୍ତ ନୁହେଁ ॥୨୨॥ ଆପଣ, ଦଣ୍ଡ ଦେବା ବ୍ୟର୍ଥ ବୋଲି ଯାହା କହିଲେ ତାହା ଠିକ୍ ନୁହେଁ । କାରଣ ରାଜା ହେଉଛି ପ୍ରଜାମାନଙ୍କର ଦାସ । ସେମାନଙ୍କୁ ଶାସନ ଓ ପାଳନ କରିବାପାଇଁ ସେ ନିଯୁକ୍ତ ହୋଇଛି । ତେଣୁ ପ୍ରଜାମାନଙ୍କ ମଧ୍ୟରୁ କେହି ଯଦି ଉନ୍ମତ୍ତ ହୁଏ, ତେବେ ତାକୁ ଦଣ୍ଡଦେଲେ ପେଷା ଯାଇଥିବା ପଦାର୍ଥକୁ ଆଉ ଥରେ ପେଷା ଗଲା ବୋଲି କୁହାଯାଇ ପାରିବ ନାହିଁ । କାରଣ ସ୍ୱଧର୍ମପାଳନ ହେଉଛି ଭଗବାନଙ୍କର ସେବା ଏବଂ ଏହା ଠିକ୍ ଭାବରେ କରୁଥିବା ବ୍ୟକ୍ତିର ସମସ୍ତ ପାପରାଶି ନଷ୍ଟ ହୋଇଯାଏ ॥୨୩॥ ଆର୍ତ୍ତବନ୍ଧୁ ! ମୁଁ ଅଜ୍ଞାନତାବଶତଃ ରାଜାର ଅଭିମାନ ଓ ଗର୍ବରେ ଆପଣଙ୍କ ପରି ସାଧୁଶ୍ରେଷ୍ଠଙ୍କୁ ଅବଜ୍ଞା କରିଛି । ଆପଣ ମୋ ପ୍ରତି ସଦୟ ହୁଅନ୍ତୁ, ଯେପରି ସାଧୁଙ୍କୁ ଅବଜ୍ଞା କରିଥିବା ଅପରାଧରୁ ମୁଁ ମୁକ୍ତ ହୋଇପାରିବି ॥୨୪॥ ଆପଣ ବିଶ୍ୱର ବନ୍ଧୁ ଶ୍ରୀ ଭଗବାନଙ୍କର ଅନନ୍ୟ ଭକ୍ତ । ଆପଣଙ୍କଠାରେ ଆତ୍ମାଭିମାନ ନାହିଁ । ଆପଣ ସମସ୍ତଙ୍କୁ ସମାନ ଭାବରେ ଦେଖନ୍ତି; ମୋର ତିରସ୍କାରଯୋଗୁଁ ଆପଣଙ୍କର କୌଣସି ପ୍ରତିକ୍ରିୟା ହେଲା ନାହିଁ । ଶୂଳପାଣି ମହାଦେବଙ୍କ ତୁଲ୍ୟ ହୋଇ ମଧ୍ୟ ମୋପରି ବ୍ୟକ୍ତି ନିଜକୃତ ଅପରାଧ ଫଳରେ ନିଶ୍ଚୟ ଅଳ୍ପଦିନ ମଧ୍ୟରେ ନଷ୍ଟ ହୋଇଯିବ ॥୨୫॥

## ଏକାଦଶ ଅଧ୍ୟାୟ

# ରହୂଗଣଙ୍କୁ ଭରତଙ୍କ ଉପଦେଶ

ବ୍ରାହ୍ମଣ ଭରତ କହିଲେ, ରାଜା ! ତତ୍ତ୍ୱବିଷୟରେ ତୁମର ବିଶେଷ ଜ୍ଞାନ ନ ଥିଲେ ମଧ୍ୟ ତତ୍ତ୍ୱଜ୍ଞଙ୍କ ପରି ଯୁକ୍ତି କରି ତୁମେ ଅନେକ କଥା କହିଯାଉଛ । ତେଣୁ ପଣ୍ଡିତଙ୍କ ମଧ୍ୟରେ ତୁମେ ଗଣ୍ୟ ହେବ ବୋଲି ମୁଁ ବିଚାରୁ ନାହିଁ । କାରଣ ଯେଉଁମାନେ ତତ୍ତ୍ୱଦର୍ଶୀ, ସେମାନେ ସ୍ୱାମୀ-ଭୃତ୍ୟ ବ୍ୟବହାରକୁ ତତ୍ତ୍ୱଦୃଷ୍ଟିରୁ ଠିକ୍ ବୋଲି ମନେ କରନ୍ତି ନାହିଁ ॥୧॥ ଗୃହସ୍ଥମାନଙ୍କପାଇଁ କର୍ମଫଳଯୁକ୍ତ ଯଜ୍ଞର ବିସ୍ତାର ବିଷୟରେ ବେଦ ମୁଖର ହୋଇଉଠିଛି । ସେଥିରେ ଶୁଦ୍ଧ ଓ ସାଧୁ ତତ୍ତ୍ୱବାଦ (ହିଂସାଦିଶୂନ୍ୟ ଓ ରାଗାଦିଶୂନ୍ୟ) ଦେଖିବାକୁ ମିଳେ ନାହିଁ ॥୨॥ ଯେଉଁ ବ୍ୟକ୍ତି ବେଦାନ୍ତବାକ୍ୟ ଶ୍ରବଣ କରି ମଧ୍ୟ ଗୃହଧର୍ମର ସୁଖକୁ ସ୍ୱପ୍ନସୁଖ ବୋଲି ହେୟ ମଣିବାରେ ସମର୍ଥ ହୁଏ ନାହିଁ, ସେ ସେଥିରୁ କିପରି ତତ୍ତ୍ୱଜ୍ଞାନ ଆହରଣ କରିପାରିବ ? ଯେପର୍ଯ୍ୟନ୍ତ ପୁରୁଷର ଚିତ୍ତ ସତ୍ତ୍ୱ, ରଜ ବା ତମୋଗୁଣ ଦ୍ୱାରା ବଶୀଭୂତ, ସେପର୍ଯ୍ୟନ୍ତ ସେ ବିନା ବାଧାରେ ଜ୍ଞାନେନ୍ଦ୍ରିୟ ଓ କର୍ମେନ୍ଦ୍ରିୟଦ୍ୱାରା ବିଭିନ୍ନ ଶୁଭାଶୁଭ କର୍ମରେ ଲାଗିରହେ ॥୩-୪॥ ମନ ହେଉଛି ବାସନାମୟ, ବିଷୟାସକ୍ତ, ଗୁଣମାନଙ୍କଦ୍ୱାରା ଅନୁପ୍ରାଣିତ, ବିକାରଯୁକ୍ତ ଏବଂ ଭୂତ ଓ ଇନ୍ଦ୍ରିୟରୂପ ଷୋଳକଳା ମଧ୍ୟରେ ମୁଖ୍ୟ । ଏହି ମନ ଭିନ୍ନ ଭିନ୍ନ ରୂପରେ ଓ ଭିନ୍ନଭିନ୍ନ ନାମରେ ଦେବତା ଏବଂ ମନୁଷ୍ୟ ଆଦି ରୂପ ଧାରଣ କରି ଦେହ- ଭେଦରେ ଉତ୍ତମତ୍ୱ ଓ ଅଧମତ୍ୱର କାରଣ ହୋଇଥାଏ ॥୫॥ ମାୟାମୟ ମନ ଏହି ସମସ୍ତ ସଂସାର ଚକ୍ରର ଛଳନାକାରୀ । ଏ ନିଜ ଦେହାଭିମାନୀ ଜୀବ ସହିତ ମିଶି କାଳକ୍ରମେ ତାକୁ ସୁଖ, ଦୁଃଖ ଓ ମୋହର ଅନିବାର୍ଯ୍ୟ ପରିଣାମ ଭୋଗ କରିବାକୁ ଦିଏ ॥୬॥ ଯେ ପର୍ଯ୍ୟନ୍ତ ମନର ସତ୍ତା ରହିଥାଏ, ସେ ପର୍ଯ୍ୟନ୍ତ ଜୀବର ସ୍ୱପ୍ନ ଓ ଜାଗ୍ରତ୍ ଅବସ୍ଥାର ତାହା ସାକ୍ଷୀ ହୋଇ ରହିଥାଏ । ସେଥିପାଇଁ ପଣ୍ଡିତ ବ୍ୟକ୍ତିମାନେ ମନକୁ ହିଁ ଗୁଣାଗୁଣରୂପ (ତ୍ରିଗୁଣମୟ) ଏହି ସଂସାରର ହେତୁ ଏବଂ ଉତ୍କୃଷ୍ଟ ଓ ନିକୃଷ୍ଟ ପଦର କାରଣ ବୋଲି ମନେ କରିଥା'ନ୍ତି ॥୭॥ ବିଷୟବାସନାପ୍ରତି ଅନୁରକ୍ତ ମନ ଜୀବକୁ ସଂସାଂରରୂପ ବିପଦରେ ପକାଇ ଦିଏ । ମାତ୍ର ନିର୍ଗୁଣ ବା ବିଷୟବାସନାରୁ ମୁକ୍ତ ହୋଇଗଲେ ସେଇ ମନ ଜୀବର ମୋକ୍ଷରୂପ ମଙ୍ଗଳର କାରଣ ହୁଏ । ଦୀପରେ ଘିଅବତି ଜଳୁଥିବା ପର୍ଯ୍ୟନ୍ତ ଏହାର ଧୂଆଁଯୁକ୍ତ ଶିଖା ବାହାରୁଥାଏ, କିନ୍ତୁ ଘିଅବତି ଶେଷ ହୋଇଗଲେ ତାହା ନିଆଁରେ ଲୀନ ହୋଇଯାଏ । ସେହିପରି ମନ ବିଷୟ ଓ କର୍ମରେ ଆସକ୍ତ ଥିବା ପର୍ଯ୍ୟନ୍ତ ଭିନ୍ନଭିନ୍ନ ବୃତ୍ତି ଅବଲମ୍ବନ କରେ । କିନ୍ତୁ ବିଷୟମୁକ୍ତ ହୋଇଗଲେ ଏହା ଆତ୍ମତତ୍ତ୍ୱରେ ଲୀନ ହୋଇଯାଏ ॥୮॥

ବୀର ! ପଞ୍ଚ କର୍ମେନ୍ଦ୍ରିୟ, ପଞ୍ଚ ଜ୍ଞାନେନ୍ଦ୍ରିୟ ଓ ଅହଙ୍କାର - ଏହି ଏଗାରଟି ହେଉଛି ମନର ବୃତ୍ତି; ଏହି ବୃତ୍ତିର ବିଷୟସଂଖ୍ୟା ମଧ୍ୟ ଏଗାର--ଯଥା ଜ୍ଞାନେନ୍ଦ୍ରିୟର ଗନ୍ଧ ଆଦି ପଞ୍ଚ ତନ୍ମାତ୍ର, କର୍ମେନ୍ଦ୍ରିୟର ବିସର୍ଗ ଆଦି ପଞ୍ଚ କର୍ମ ଏବଂ ଦେହାଭିମାନ ହେଉଚି ଅହଙ୍କାରର ବିଷୟ ॥୯॥ ଗନ୍ଧ, ରୂପ, ସ୍ପର୍ଶ, ରସ ଓ ଶବ୍ଦ - ଏମାନେ ହେଉଛନ୍ତି ପାଞ୍ଚୋଟି ଜ୍ଞାନେନ୍ଦ୍ରିୟଙ୍କର ବିଷୟ । ମଳମୂତ୍ରତ୍ୟାଗ, ସମ୍ଭୋଗ, ଗମନ, ଆଳାପ ଓ ଦିଆନିଆ ଆଦି କାମ ଯଥାକ୍ରମେ ପାୟୁ, ଉପସ୍ଥ, ପାଦ, ବାକ୍ ଓ ପାଣି - ଏହି କର୍ମେନ୍ଦ୍ରିୟମାନଙ୍କର ବିଷୟ । ମୁଁ ଏବଂ ମୋର -- ଏହି ଧାରଣା ହେଉଛି ଦେହାଭିମାନର ବିଷୟ । କେହିକେହି ଅହଙ୍କାରକୁ ମନର ଦ୍ୱାଦଶବୃତ୍ତି ଓ ତାର ଆଶ୍ରୟସ୍ଥଳ ଶରୀରକୁ ଦ୍ୱାଦଶ ବିଷୟ ବୋଲି ମନେ କରନ୍ତି ॥୧୦॥ ମନର ଏକାଦଶ ବୃତ୍ତି ଦ୍ରବ୍ୟ, ସ୍ୱଭାବ, ସଂସ୍କାର, ଅଦୃଷ୍ଟ ଓ କାଳର ଯୋଗରେ ଶତ, ସହସ୍ର ବା କୋଟିକୋଟି ଭେଦରେ ଆତ୍ମପ୍ରକାଶ କରେ । କିନ୍ତୁ ଏହା ପରସ୍ପର ବା ସ୍ୱତଃ ବା ଜୀବାତ୍ମାଯୋଗୁଁ ସମ୍ଭବ ହୁଏ ନାହିଁ ॥୧୧॥ ଏହା ହେଲେ ମଧ୍ୟ ମନ ସହିତ କ୍ଷେତ୍ରଜ୍ଞ ବିଶୁଦ୍ଧ ଆତ୍ମାର କୌଣସି ସମ୍ବନ୍ଧ ନ ଥାଏ । କାରଣ ଅବିଶୁଦ୍ଧ ମନ ଅବିଚ୍ଛିନ୍ନ ଭାବରେ ଯେଉଁସବୁ କାର୍ଯ୍ୟ କରିଚାଲିଥାଏ, ଶୁଦ୍ଧ ଆତ୍ମା ସେହି ସବୁ କର୍ମର ଆରମ୍ଭ ଓ ଶେଷ ପର୍ଯ୍ୟନ୍ତ ସାକ୍ଷୀ ରୂପରେ ହିଁ ରହିଥାଏ ॥୧୨॥ ଏହି କ୍ଷେତ୍ରଜ୍ଞ ପରମାତ୍ମା ସର୍ବବ୍ୟାପୀ,

ଜଗତ୍‌ର ଆଦିମୂଳ, ପରିପୂର୍ଣ୍ଣ, ଅପରୋକ୍ଷ, ସ୍ୱପ୍ରକାଶ, ଅଜନ୍ମା ଏବଂ ବ୍ରହ୍ମାଦି ଦେବତାମାନଙ୍କର ନିୟନ୍ତା । ସେହି ଭଗବାନ ନାରାୟଣ ବାସୁଦେବ ନିଜାଧୀନ ମାୟାଦ୍ୱାରା ସମସ୍ତ ପ୍ରାଣୀଙ୍କର ନିୟାମକରୂପେ ଅବସ୍ଥିତ ॥୧୩॥ ବାୟୁ ଯେପରି ପ୍ରାଣବାୟୁ ରୂପରେ ଜଗତର ସମସ୍ତ ସ୍ଥାବର ଜଙ୍ଗମଙ୍କ ମଧ୍ୟରେ ପ୍ରବେଶ କରି ସେମାନଙ୍କୁ ନିୟମିତ କରେ, ସେହିପରି ପରମେଶ୍ୱର ଭଗବାନ ବାସୁଦେବ ଆତ୍ମସ୍ୱରୂପରେ ଏହି ବିଶ୍ୱର ସମସ୍ତ ଜୀବଙ୍କୁ ନିୟନ୍ତ୍ରିତ କରନ୍ତି ॥୧୪॥ ନରେନ୍ଦ୍ର ! ଦେହଧାରୀ ଜୀବ ଜ୍ଞାନୋଦୟଦ୍ୱାରା ଏହି ମାୟାକୁ ପ୍ରତିହତ କରି ଓ ବିଷୟାସକ୍ତିରୁ ଦୂରରେ ରହି କାମକ୍ରୋଧାଦି ଷଡ଼ରିପୁଙ୍କୁ ଜୟ କରିବାଦ୍ୱାରା ଆତ୍ମତତ୍ତ୍ୱକୁ ଜାଣିବା ପର୍ଯ୍ୟନ୍ତ ତା'ର ଏହି ସଂସାର ଚକ୍ରରେ ଘୂରି ବୁଲିବା ହିଁ ସାର ହୁଏ ॥୧୫॥ ଶୋକ, ମୋହ, ରୋଗ, ରାଗ, ଦ୍ୱେଷ, ଲୋଭ ଓ ମମତାର କାରଣ ଆତ୍ମାର ଉପାଧିଭୂତ ଏହି ମନକୁ ଜୀବ ସମସ୍ତ ସଂସାରଦୁଃଖର ଜନ୍ମସ୍ଥାନ ବୋଲି ନିର୍ଣ୍ଣୟ କରିବା ପର୍ଯ୍ୟନ୍ତ ସେ ଏହି ସଂସାରରେ ଭ୍ରମଣ କରୁଥିବ ॥୧୬॥ ଏହି ବଳବାନ୍ ଶତ୍ରୁ ମନକୁ ତୁମେ ଏ ପର୍ଯ୍ୟନ୍ତ ଉପେକ୍ଷା କରି ଆସିଛ । ତଦ୍ୱାରା ତା'ର ଶକ୍ତି ଆହୁରି ବହୁତ ବଢ଼ିଯାଇଛି । ଏହା ସ୍ୱୟଂ ମିଥ୍ୟା ହେଲେ ମଧ୍ୟ ତୁମର ଆତ୍ମସ୍ୱରୂପକୁ ଆଚ୍ଛନ୍ନ କରି ରଖିଛି । ଏବେ ତୁମେ ସାବଧାନ ହୁଅ । ଗୁରୁ ଶ୍ରୀ ହରିଙ୍କ ପାଦପଦ୍ମର ଉପାସନାରୂପକ ଅସ୍ତ୍ରଦ୍ୱାରା ତୁମେ ଏହି ମନରୂପକ ଶତ୍ରୁକୁ ବିନାଶ କର ॥୧୭॥

## ଦ୍ୱାଦଶ ଅଧ୍ୟାୟ

# ରହୂଗଣଙ୍କ ପ୍ରଶ୍ନର ସମାଧାନ

ରାଜା ରହୂଗଣ କହିଲେ, ଅବଧୂତ (ଯୋଗେଶ୍ୱର) ! ମୁଁ ଆପଣଙ୍କୁ ନମସ୍କାର କରୁଛି । ଜଗତ୍‌ର ଉଦ୍ଧାରପାଇଁ ଆପଣ ଏହି ଦେହ ଧାରଣ କରିଛନ୍ତି । ଆପଣ ପରମାନନ୍ଦମୟ ସ୍ୱରୂପକୁ ଅନୁଭବ କରି ଏହି ସ୍ଥୂଳ ଶରୀର ପ୍ରତି ଉଦାସୀନ ରହିଛନ୍ତି ଏବଂ ଜଣେ ନିକୃଷ୍ଟ ବ୍ରାହ୍ମଣର ବେଶ ଗ୍ରହଣ କରି ନିଜର ବ୍ରହ୍ମସ୍ୱରୂପକୁ ଲୋକଙ୍କ ଦୃଷ୍ଟିରୁ ଘୋଡ଼ାଇ ରଖିଛନ୍ତି ॥୧॥ ବ୍ରହ୍ମନ୍ ! ଜ୍ୱରରେ ପୀଡ଼ିତ ବ୍ୟକ୍ତି ଔଷଧଦ୍ୱାରା ଆଶ୍ୱସ୍ତ ହୁଏ; ଗ୍ରୀଷ୍ମତାପରେ ତୃଷାର୍ତ୍ତ ବ୍ୟକ୍ତି ଶୀତଳ ଜଳରେ ତୃଷା ନିବାରଣ କରି ଶାନ୍ତିଲାଭ କରେ; ଏବେ ଯେଉଁ ନିକୃଷ୍ଟ ଦେହ-ଅଭିମାନ ସର୍ପତୁଲ୍ୟ ମୋତେ ଦଂଶନ କରୁଥିଲା, ଆପଣଙ୍କର ଉପଦେଶ-ବାଣୀ ସେଥିରେ ଅମୃତ ଔଷଧ ପରି କାର୍ଯ୍ୟ କରିଛି ॥୨॥ ଅଧ୍ୟାତ୍ମଯୋଗଯୁକ୍ତ ଯେଉଁସବୁ କଥା ଆପଣ ମୋତେ ପୂର୍ବରୁ କହିଛନ୍ତି, ତାହା ମୋତେ ଟିକିଏ ସରଳ ଭାବରେ ବୁଝାଇ ଦିଅନ୍ତୁ । ଜାଣିବାପାଇଁ ମୋର ବହୁତ କୌତୂହଳ ଜାତ ହେଉଛି । ଯାହା ବୁଝି ନ ପାରିବି, ପଛରେ ସଂଶୟମୋଚନପାଇଁ ମୁଁ ଆପଣଙ୍କୁ ପଚାରିବି ॥୩॥ ଯୋଗେଶ୍ୱର ! ଆପଣ କହିଛନ୍ତି ଯେ କ୍ରିୟା ଓ ଫଳ କେବଳ ବ୍ୟବହାରମୂଳକ ଏବଂ ବାସ୍ତବରେ ଏଥିରେ ସତ୍ୟ ନାହିଁ । ତତ୍ତ୍ୱ- ବିଚାର ଆଗରେ ଏହା ତିଷ୍ଠି ପାରିବ ନାହିଁ । ଏହି ବିଷୟରେ ମୋ ମନ ଏ ପର୍ଯ୍ୟନ୍ତ ଭ୍ରମିତ ହେଉଛି । ମୁଁ ଏହାର ମର୍ମ ବୁଝି ପାରୁ ନାହିଁ ॥୪॥

ଜଡ଼ ଭରତ କହିଲେ, ପୃଥ୍ୱୀଶ୍ୱର ! ଏହି ଦେହ ହେଉଛି ପୃଥିବୀର ବିକାର । ପାଷାଣାଦି ପରି ଯିଏ ଅଚଳ, ଜଡ଼ତ୍ୱହେତୁ ତାର ଭାର ନାହିଁ କି ଶ୍ରମ ନାହିଁ, ପାର୍ଥିବ ବ୍ୟକ୍ତି କିନ୍ତୁ ପୃଥିବୀ ଉପରେ ଭାର ଧରି ଚାଲିଲେ ଭାରବାହକ ନାମରେ ପରିଚିତ ହୁଏ । ତା'ର ଦୁଇଟି ପାଦ, ପାଦ ଉପରେ ଦୁଇଟି ଗୁଲ୍‌ଫ, ତା'ଉପରେ ଦୁଇଟି ପଞ୍ଝା, ପଞ୍ଝା ଉପରେ ଆଣ୍ଠୁ, ଆଣ୍ଠୁ ଉପରେ ଉରୁ, ଉରୁ ଉପରେ ଅଣ୍ଟା, ଅଣ୍ଟା ଉପରେ ବକ୍ଷସ୍ଥଳ, ବେକ ଓ କାନ୍ଧ ଆଦି ଅଙ୍ଗ ରହିଛି । ଏହି କାନ୍ଧ ଉପରେ ଯେଉଁ ଦାରୁମୟ ଶିବିକା ଅଛି, ସେଇ ଶିବିକାରେ ସୌବୀରରାଜ ନାମରେ ଜଣେ ପାର୍ଥିବ ଅଭିମାନୀ ବ୍ୟକ୍ତି ବସିଛନ୍ତି ଏବଂ 'ମୁଁ ସିନ୍ଧୁଦେଶର ରାଜା'-ଏହି ଗର୍ବରେ ସେ ଅନ୍ଧ ହୋଇପଡ଼ିଛନ୍ତି ॥୫-୬॥ ରାଜା, ଏଇ ବିଚାରା କଷ୍ଟ ଭୋଗୁଥିବା ଗରିବଲୋକଗୁଡ଼ିକୁ ମଜୁରି

ନ ଦେଇ କାମରେ ଖଟାଇବାଦ୍ୱାରା ତୁମେ ତାଙ୍କୁ ଦଣ୍ଡିତ କରୁଛ ଏବଂ ଅତିଶୟ ନିର୍ଦ୍ଦୟ ବୋଲି ପ୍ରମାଣିତ ହେଉଛ ଏବଂ 'ମୁ ହେଉଛି ଲୋକମାନଙ୍କର ରକ୍ଷକ' ଏହା କହି ଜ୍ଞାନୀମାନଙ୍କ ସଭାରେ ଯେଉଁ ଆତ୍ମଶ୍ଳାଘା ପ୍ରକାଶ କରୁଛ, ତାହା ତୁମ ପକ୍ଷରେ ଶୋଭା ପାଉ ନାହିଁ ॥୭॥ ଆମ ଜାଣିବାରେ ଏହି ପୃଥିବୀରେ ସମସ୍ତ ଚରାଚର ଜୀବଙ୍କର ଜନ୍ମ ହେଉଛି ଏବଂ ବିନାଶ ମଧ୍ୟ ଘଟୁଛି । ଭିନ୍ନ ଭିନ୍ନ କାର୍ଯ୍ୟ କରୁଥିବାଯୋଗୁଁ ସେମାନଙ୍କର ଭିନ୍ନଭିନ୍ନ ନାମକରଣ ହେଉଛି । ତେଣୁ ଏହି ନାମର ବ୍ୟବହାରିକ ମୂଲ୍ୟ ଛଡ଼ା ଅନ୍ୟ କ'ଣ ଅଛି ? ଏପରିକି ଏହି ପୃଥିବୀ ଶବ୍ଦର ବ୍ୟବହାର ମଧ୍ୟ ମିଥ୍ୟା । କାରଣ ଏହି ପୃଥିବୀ ନିଜର ଉପାଦାନ ଅଣୁପରମାଣୁଦ୍ୱାରା ଗଠିତ ଓ ସେଥିରେ ହିଁ ଏହା ଲୀନ ହୋଇଯାଏ ଏବଂ ପୃଥିବୀକୁ ଗଠନ କରିଥିବା ସେହି ଅଣୁପରମାଣୁକୁ କେବଳ ଅଜ୍ଞତାବଶରୁ ମନଦ୍ୱାରା କଳ୍ପନା କରାଯାଇଥାଏ ॥୮-୯॥ ଏହିପରି ଜଗତରେ ଯାହାକିଛି କୃଶ, ସ୍ଥୂଳ, ଅଣୁ, ବୃହତ୍, ସତ୍, ଅସତ୍, ଚେତନ, ଅଚେତନ ଏବଂ ଏହାଛଡ଼ା ଅନ୍ୟ ଯେତେ ଦ୍ୱୈତଯୁକ୍ତ ବସ୍ତୁ ଅଛି, ସେ ସବୁ ଦ୍ରବ୍ୟ, ସ୍ୱଭାବ, ଆଶୟ, କାଳ ଓ କର୍ମ ନାମରେ ମାୟାରୁ ଉତ୍ପନ୍ନ ହୋଇଛି ବୋଲି ଜାଣିବାକୁ ହେବ ॥୧୦॥ ବାହାର ଓ ଭିତର ଭେଦ ନ ଥିବା ବିଶୁଦ୍ଧ ଅଦ୍ୱିତୀୟ ସମ୍ପୂର୍ଣ୍ଣ ପରମାର୍ଥଜ୍ଞାନ ହିଁ ହେଉଛି ସତ୍ୟ । ବିଜ୍ଞାନମୟ ନିର୍ବିକାର ଏହି ସତ୍ୟକୁ ଭଗବାନ ବାସୁଦେବ ନାମରେ ପଣ୍ଡିତମାନେ ଅଭିହିତ କରିଥା'ନ୍ତି ॥୧୧॥ ରହୂଗଣ ! ମହତ୍ ଲୋକଙ୍କର ପାଦଧୂଳିରେ ସ୍ନାନ କରିବାପର୍ଯ୍ୟନ୍ତ ତପସ୍ୟା, ଚାନ୍ଦ୍ରାୟଣ ଆଦି ବ୍ରତ, ଯାଗଯଜ୍ଞ, ଅନ୍ନଦାନ, ଅତିଥିସେବା, ଦୀନଦରିଦ୍ରଙ୍କର ସେବା, ଗାର୍ହସ୍ଥ୍ୟଧର୍ମପାଳନ, ବେଦାଭ୍ୟାସ, ଜଳ, ଅଗ୍ନି ବା ସୂର୍ଯ୍ୟ ଆଦିଙ୍କର ଉପାସନାଦ୍ୱାରା ଏହି ପରମାର୍ଥ ଜ୍ଞାନ ଲାଭ କରାଯାଇପାରେ ନାହିଁ ॥୧୨॥ ଯେଉଁଠି ପୁଣ୍ୟଶ୍ଳୋକ ଭଗବାନଙ୍କର ଗୁଣକୀର୍ତ୍ତନ କରାଯାଏ ସେଠାରେ ନିକୃଷ୍ଟ ଗ୍ରାମ୍ୟବାର୍ତ୍ତାଳାପ ସମ୍ଭବ ନୁହେଁ । ଅନୁଦିନ ଏହି ଗୁଣକୀର୍ତ୍ତନ ଦ୍ୱାରା ମୁମୁକ୍ଷୁ ବ୍ୟକ୍ତିର ଚିତ୍ତ ଶୁଦ୍ଧ ହୋଇ ତାହା ଶ୍ରୀ ବାସୁଦେବଙ୍କଠାରେ ନିବିଷ୍ଟ ହୋଇଯାଏ ॥୧୩॥ ରାଜା ! ମୁଁ ପୂର୍ବେ ଭରତ ନାମରେ ରାଜା ଥିଲି । ଐହିକ ଓ ପାରଲୌକିକ ଦୁଇ ପ୍ରକାର ଆସକ୍ତିରୁ ମୁକ୍ତ ହୋଇ ଭଗବାନଙ୍କ ଆରାଧନାରେ ନିଜକୁ ନିୟୋଜିତ କରିଥିଲି । କିନ୍ତୁ ଗୋଟିଏ ମୃଗର ସଙ୍ଗଦୋଷରୁ ମୋତେ ମୃଗଜନ୍ମ ନେବାକୁ ପଡ଼ିଲା ॥୧୪॥ ବୀର ! କୃଷ୍ଣାର୍ଚ୍ଚନାର ପ୍ରଭାବରୁ ମୃଗଦେହରେ ମଧ୍ୟ ମୋର ପୂର୍ବଜନ୍ମର ସ୍ମୃତି ଲୁପ୍ତ ହୋଇ ନ ଥିଲା । ତେଣୁ, ଏବେ ମୁଁ ଜନସମ୍ପର୍କକୁ ଭୟ କରି ଅନାସକ୍ତ ଭାବରେ ଗୁପ୍ତରେ ବିଚରଣ କରୁଛି ॥୧୫॥ ସେଥିପାଇଁ ମନୁଷ୍ୟ ସଂସାରବିରାଗୀ ସତ୍‌ପୁରୁଷମାନଙ୍କ ସଙ୍ଗଲାଭଦ୍ୱାରା ପ୍ରକୃତ ଜ୍ଞାନ ଲାଭ କରିପାରିବ ଓ ଜ୍ଞାନରୂପକ ଖଡ୍ଗ-ଦ୍ୱାରା ସମସ୍ତ ମୋହବନ୍ଧନକୁ ଛେଦନ କରି ପାରିବ । ଶ୍ରୀ ହରିଙ୍କର ଲୀଳାକୀର୍ତ୍ତନ, ଶ୍ରବଣ ଓ ଭଗବତ୍‌ସ୍ମୃତିର ସତତ ଜାଗରଣ ଫଳରେ ସେ ସଂସାରମାର୍ଗକୁ ସହଜରେ ପାର ହୋଇ ଶ୍ରୀ ହରିଙ୍କୁ ଲାଭ କରିପାରିବ ॥୧୬॥

## ତ୍ରୟୋଦଶ ଅଧ୍ୟାୟ

# ରହୂଗଣଙ୍କ ସଂଶୟମୋଚନ

ଜଡ଼ ଭରତ କହିଲେ, ରାଜା, ଜୀବ ମାୟାଦ୍ୱାରା ଚାଳିତ ହୋଇ ଦୁରତିକ୍ରମ ପ୍ରବୃତ୍ତିମାର୍ଗ ଗ୍ରହଣ କରେ । ରାଜସିକ, ତାମସିକ ଓ ସାତ୍ତ୍ୱିକ କର୍ମ ସବୁକୁ ନିଜର କର୍ତ୍ତବ୍ୟ ବୋଲି ଧାରଣା କରେ । ବଣିକମାନେ ଯେପରି ଧନ ଅର୍ଜ୍ଜନ କରିବାପାଇଁ ଦେଶଦେଶାନ୍ତର ଭ୍ରମଣ କରୁ କରୁ କୌଣସି ବିଷମ ଜଙ୍ଗଲ ମଧ୍ୟରେ ପଡ଼ି ଦୁଃଖ ଭୋଗ କରନ୍ତି, ଜୀବମାନେ ସେହିପରି ସୁଖଲାଭ ଆଶାରେ ଏହି ସବୁ ମାର୍ଗରେ ଭ୍ରମି ଭ୍ରମି ସଂସାରରୂପକ ଜଙ୍ଗଲରେ ପଶି ଆଦୌ ଶାନ୍ତିଲାଭ କରିପାରନ୍ତି ନାହିଁ ॥୧॥ ରାଜା, ଏହି ସଂସାରରୂପକ ଜଙ୍ଗଲରେ ଛ'ଟି ଇନ୍ଦ୍ରିୟରୂପକ ଡାକୁ ଅଛନ୍ତି । ମନ୍ଦନେତାଦ୍ୱାରା ଚାଳିତ ବଣିକଦଳକୁ ଯେପରି

ଦସ୍ୟୁମାନେ ଆକ୍ରମଣ କରି ତାଙ୍କର ସମସ୍ତ ଧନକୁ ବଳପୂର୍ବକ ଲୁଟିନିଅନ୍ତି ଏବଂ ଗଧିଆ ଯେପରି ଅସାବଧାନ ମେଷପଲକୁ ଆକ୍ରମଣ କରେ, ସେହିପରି ଦାରା, ଅପତ୍ୟ ରୂପରେ ଏହି ଇନ୍ଦ୍ରିୟରୂପକ ଶତ୍ରୁମାନେ ଅସାବଧାନ ବ୍ୟକ୍ତିକୁ ଆକ୍ରମଣ କରି ତାର ସମସ୍ତ ଲୁଣ୍ଠନ କରନ୍ତି ॥୨॥ ଏହି ସଂସାରରୂପକ ଜଙ୍ଗଲରେ ବହୁ ଲତା, ଗୁଳ୍ମ ଓ ଘାସ ପୂରିରହିଛି ଏବଂ ତୀବ୍ର ଦଂଶନ କରିବାପାଇଁ ମଶା, ଡାଉଁଶ ଆଦି ଏଥିରେ ରହିଛନ୍ତି । ଜୀବ ଏହା' ଭିତରେ ପଶିଯାଇ କଳ୍ପନାର ସୌଧ ନିର୍ମାଣ କରେ । କିନ୍ତୁ ତା' ଆଖି ଆଗରେ ଅନେକ ସମୟରେ ଉଲ୍କାତୁଲ୍ୟ ତୀବ୍ର ବେଗରେ ଗ୍ରହ ପିଶାଚମାନେ ଆବିର୍ଭୂତ ହୁଅନ୍ତି ॥୩॥ ବଣିକ ଦଳ ଏହି ଜଙ୍ଗଲରେ ପଶି ଭଲ ବାସସ୍ଥାନ, ଜଳ ଓ ଧନରତ୍ନରେ ଆସକ୍ତ ହୋଇ ଏଣେତେଣେ ଘୂରି ବୁଲନ୍ତି । ଧୂଳିଝଡ଼ ଉଠି ଚାରିଆଡ଼କୁ ଘୋଡ଼ାଇ ପକାଏ ଏବଂ ସେମାନଙ୍କ ଆଖିରେ ଧୂଳି ପଶିଯାଏ ତେଣୁ ସେମାନେ ଆଉ ରାସ୍ତା ଦେଖିପାରନ୍ତି ନାହିଁ । (ତାତ୍ପର୍ଯ୍ୟ ହେଉଛି 'ସଂସାରରେ ମୋର ଘର, ମୋର ଧନ, ମୋର ସ୍ତ୍ରୀ, ପୁତ୍ର' ଏହିପରି ଅହଙ୍କାରଯୋଗୁଁ ଲୋକ ଚାରିଆଡ଼େ ବୁଲୁଥାଏ ଏବଂ କାମ ମୋହ ଆଦି ରିପୁମାନେ ତାର ବୁଦ୍ଧିକୁ ଘୋଡ଼ାଇ ଦିଅନ୍ତି) ॥୪॥ ରାଜା, ସେହି ଅରଣ୍ୟରେ ଅଦୃଶ୍ୟ ଝିଙ୍କାରିମାନେ ଯେଉଁ କର୍ଣ୍ଣକଟୁ ଝିଂ ଝିଂ ଶବ୍ଦ କରନ୍ତି, 'ତାହା ସେମାନଙ୍କୁ ପୀଡ଼ିତ କରେ । ପେଚାମାନଙ୍କର ରାବ ସେମାନଙ୍କ ଅନ୍ତରାତ୍ମାକୁ ବ୍ୟଥିତ କରେ । କ୍ଷୁଧାରେ ଆତୁର ହୋଇ ସେମାନେ କେତେକ ଅବାଞ୍ଛିତ ବୃକ୍ଷର ଆଶ୍ରୟ ନିଅନ୍ତି ଏବଂ କେବେ ତୃଷାତୁର ହୋଇ ମୃଗତୃଷ୍ଣା ପଛରେ ଦଉଡ଼ିବାରେ ଲାଗନ୍ତି । ତାତ୍ପର୍ଯ୍ୟ ହେଉଛି ଅଦୃଶ୍ୟ ବା ପରୋକ୍ଷ ଭାବରେ ସଂସାରରେ ଅନେକଙ୍କଠାରୁ କଠୋର ବାକ୍ୟ ଶୁଣିବାକୁ ହୁଏ ଏବଂ କେତେକ ପ୍ରତ୍ୟକ୍ଷ ଭାବରେ ମଧ୍ୟ ଅପ୍ରିୟ ବାକ୍ୟ କହନ୍ତି (ଯେଉଁମାନଙ୍କୁ ଝିଲ୍ଲୀ ଓ ପେଚା ସହିତ ତୁଳନା କରାଯାଇଛି) ॥୫॥ ଅରଣ୍ୟମଧ୍ୟରେ ଜଳ ଆଣିବାକୁ ଯାଇ ସେହି ବଣିକମାନେ ନଦୀ ଦେଖି ସେ ଆଡ଼କୁ ଦୌଡ଼ି ଯାଆନ୍ତି । କିନ୍ତୁ ସେ ନଦୀରେ ପାଣି ନ ଥାଏ । କ୍ଷୁଧାତୁର ଅବସ୍ଥାରେ ପରସ୍ପରକୁ ଖାଇବାକୁ ମାଗନ୍ତି । ବେଳେ ବେଳେ ଦାବାନଳରେ ପଶିଯାଇ ପୋଡ଼ି ହୋଇଯାଆନ୍ତି ଏବଂ କେବେ କେବେ ପ୍ରାଣ ପିପାସୁ ଯକ୍ଷ ରାକ୍ଷସମାନଙ୍କ ହାବୁଡ଼ରେ ପଡ଼ି ନିର୍ବେଦ ଓ ନିରୁପାୟ ହୋଇପଡ଼ନ୍ତି ॥୬॥ କେଉଁ କେଉଁ ସ୍ଥାନରେ ବଳବାନ୍ ବ୍ୟକ୍ତିମାନେ ତାଙ୍କର ସର୍ବସ୍ୱ ହରଣ କରିନିଅନ୍ତି; ତଦ୍ଦ୍ୱାରା, ଅତିଶୟ ବିଷଣ୍ଣ ହୋଇ ଶୋକ ଓ ମୋହରେ ସେମାନେ ଅଚେତା ହୋଇ ଯାଆନ୍ତି ଏବଂ କେବେ କେବେ ନିଜର କଳ୍ପିତ ଗନ୍ଧର୍ବନଗରୀ ବା ସ୍ତ୍ରୀ-ପୁତ୍ର-ରୂପ ପରିବାରରେ ପ୍ରବେଶ କରି ଅଳ୍ପସମୟପାଇଁ ଆନନ୍ଦ ଲାଭ କରନ୍ତି ॥୭॥ କୌଣସି କୌଣସି ସ୍ଥାନରେ ଚାଲିଲାବେଳେ ସେମାନଙ୍କ ପାଦରେ କଣ୍ଟା ଓ କଙ୍କର ପଶିଯାଇ ବହୁ କଷ୍ଟ ଦିଏ । ପର୍ବତ ଚଢ଼ିବାକୁ ଯାଇ ସେମାନେ ହତାଶ ହୋଇପଡ଼ନ୍ତି । କୁଟୁମ୍ବ ବହୁତ ବଢ଼ିଯାଏ ଏବଂ ଜଠରାଗ୍ନିର ତାଡ଼ନାରେ ପୀଡ଼ିତ ହୋଇ ଗୃହର ଲୋକଙ୍କପ୍ରତି କ୍ରୁଦ୍ଧ ହୋଇଉଠନ୍ତି ॥୮॥ କେଉଁ କେଉଁ ସ୍ଥାନରେ କାହାରିକୁ ଅଜଗର ସାପ ଗ୍ରାସ କଲେ ନିଜ ଲୋକମାନେ ତାକୁ ଛାଡ଼ି ଚାଲିଯାଆନ୍ତି । ସେ କିଛି ଜାଣିପାରେ ନାହିଁ । କେବେ କେବେ ଅନ୍ୟ ବିଷାକ୍ତ ଜନ୍ତୁମାନେ ତାକୁ ଦଂଶନ କରନ୍ତି ଏବଂ ସେହି ବିଷଜ୍ୱାଳାରେ ଅନ୍ଧକୂପ-ରୂପ ମୋହଗର୍ତ୍ତରେ ପଡ଼ି ସେ ଘୋର ଦୁଃଖ ଭୋଗ କରେ ॥୯॥ ବେଳେ ବେଳେ ମହୁଲୋଭରେ ମହୁଫେଣା (ପରଦାରାଦି ସୁଖ) ଖୋଜିବା ବେଳେ ମହୁମାଛିମାନେ ତାକୁ ଏପରି ଆକ୍ରମଣ କରନ୍ତି ଯେ, ସେ ତାହା ପାଇପାରେ ନାହିଁ । ଯଦି ବା ବହୁକଷ୍ଟରେ ତାକୁ ମିଳିଯାଏ, ତାହାହେଲେ ଅନ୍ୟଲୋକ ବଳାତ୍କାରରେ ତା'ଠାରୁ ଛଡ଼ାଇ ନିଅନ୍ତି ॥୧୦॥ ବେଳେ ବେଳେ ଶୀତ, ଖରା, ଝଡ଼ ଓ ବର୍ଷାରୁ ସେ ନିଜକୁ ରକ୍ଷା କରିପାରେ ନାହିଁ । ବେଳେ ବେଳେ ପରସ୍ପର ମଧ୍ୟରେ ବ୍ୟବସାୟ କରିବାକୁ ଯାଇ ଅନ୍ୟର ଧନ ସେ ଠକିନେବାକୁ ଚେଷ୍ଟାକରେ ଓ ତଦ୍ଦ୍ୱାରା ସେ ତାର ଶତ୍ରୁତା ଅର୍ଜନ କରେ ॥୧୧॥ ବେଳେ ବେଳେ ନିର୍ଦ୍ଧନ ହୋଇଯିବାରୁ ଶଯ୍ୟା, ଆସନ, ଗୃହ ବା ଯାନ ଆଦି ସବୁ କିଛି ଚାଲିଯାଏ । ତେଣୁ ନିଜର ପ୍ରୟୋଜନପାଇଁ ପରର ବସ୍ତୁ ପ୍ରତି ତା'ର ଲୋଭ ହୁଏ । କିନ୍ତୁ ସେହି ବ୍ୟକ୍ତି ଏହାକୁ ଅବଜ୍ଞାପୂର୍ବକ ଅପମାନିତ କରେ ॥୧୨॥ ପରସ୍ପର ସମ୍ପତ୍ତିପ୍ରତି ଲୋଭଗ୍ରସ୍ତ ହେବାରୁ ଏହିପରି ସେଇ ବଣିକମାନଙ୍କ ମଧ୍ୟରେ ଶତ୍ରୁତା ବୃଦ୍ଧି ପାଏ । ତଥାପି ସେମାନେ ନିଜ ନିଜ

ମଧ୍ୟରେ ବିବାହାଦି ସମ୍ପର୍କ ସ୍ଥାପନ କରନ୍ତି । ମାତ୍ର ଏହି ସଂସାରରୂପ ଅରଣ୍ୟମାର୍ଗରେ ଗଲାବେଳେ ସେମାନେ କେତେ ଯେ ଗୁରୁତର କଷ୍ଟ, ଧନହାନି ଓ ଦୁଃଖ ଭୋଗ ନ କରନ୍ତି ! ଏହା ସେମାନଙ୍କୁ ମୃତବତ୍ ନିଶ୍ଚେଷ୍ଟ କରିଦିଏ ॥୧୩॥ ନିଜ ସାଥିମାନଙ୍କ ମଧ୍ୟରୁ ଯେଉଁମାନେ ଯେଉଁଠି ମରିଯାଆନ୍ତି, ସେମାନଙ୍କୁ ସେହି ସେହି ସ୍ଥାନରେ ଛାଡ଼ି ଦେଇ ନୂଆ ନୂଆ ଓ ଜୀବିତ ସାଥିମାନଙ୍କୁ ସାଙ୍ଗରେ ଧରି ବଣିକ ଦଳ ଆଗେଇ ଚାଲନ୍ତି । ବୀର ! ସେମାନଙ୍କ ମଧ୍ୟରୁ ଜଣେ ହେଲେ କେହି ଏ ପର୍ଯ୍ୟନ୍ତ ଫେରି ଆସି ନାହାନ୍ତି, କିମ୍ବା ଜଣେ କେହି ଏହି ଅରଣ୍ୟମାର୍ଗକୁ ଅତିକ୍ରମ କରି ଯୋଗର ଆନନ୍ଦକୁ ପାଇପାରିନାହାନ୍ତି ॥୧୪॥ ବୀରମାନେ ନିଜ ଶୌର୍ଯ୍ୟରେ ବଡ଼ବଡ଼ ଦିଗପାଳଙ୍କୁ ଜୟ କରି ଏହି ସଂସାରରେ ସବୁ କିଛି ମୋର ବୋଲି ଭାବନ୍ତି । କିନ୍ତୁ ପରସ୍ପର ଶତ୍ରୁତାବୃଦ୍ଧିଦ୍ୱାରା ସେମାନେ ଶେଷରେ ସମରଭୂମିରେ ଶୟନ କରନ୍ତି । କିନ୍ତୁ ନିରହଙ୍କାର ସନ୍ନ୍ୟାସୀମାନେ ବିଷ୍ଣୁଙ୍କର ଯେଉଁ ପରମପଦ ଲାଭ କରନ୍ତି, ତାହା ସେମାନଙ୍କୁ ମିଳେ ନାହିଁ ॥୧୫॥ ସେହି ବଣିକମାନେ କେବେ କେବେ ଲତାମାନଙ୍କର ଶାଖାକୁ ଆଶ୍ରୟ କରି ସେଥିରେ ଆଶ୍ରୟ ନେଇଥିବା କୂଜନରତ ବିହଙ୍ଗମାନଙ୍କପ୍ରତି ଆସକ୍ତ ହୋଇପଡ଼ନ୍ତି । କେବେ କେବେ ସିଂହମାନଙ୍କ ଭୟରେ ବକ, କାକ ଓ ଗୃଧ୍ର ଆଦିଙ୍କ ସହିତ ବନ୍ଧୁତା ସ୍ଥାପନ କରନ୍ତି (ତାତ୍ପର୍ଯ୍ୟ ହେଉଛି ସଂସାରୀ ବ୍ୟକ୍ତି ଲତାପରି ସୁକୁମାରୀ ସ୍ତ୍ରୀମାନଙ୍କର କୋମଳ ଭୁଜକୁ ଆଶ୍ରୟ କରେ ଏବଂ ତାହାର ଆଶ୍ରୟରେ ରହୁଥିବା ଅସ୍ପଷ୍ଟଭାଷୀ ଶିଶୁମାନଙ୍କପ୍ରତି ଆସକ୍ତ ହୋଇପଡ଼ି ପାଷଣ୍ଡ ବ୍ୟକ୍ତିମାନଙ୍କ ସହିତ ବନ୍ଧୁତା ସ୍ଥାପନ କରେ) ॥୧୬॥ ସେମାନଙ୍କଠାରୁ ଧୋକା ଖାଇ ବଣିକଗଣ ହଂସମାନଙ୍କ ମଧ୍ୟରେ ପ୍ରବେଶ କରନ୍ତି । କିନ୍ତୁ ହଂସମାନଙ୍କର ଆଚାର ସେମାନଙ୍କୁ ରୁଚିକର ହୁଏ ନାହିଁ । ହଂସଙ୍କୁ ଛାଡ଼ି ସେମାନେ ବାନର ଯୂଥ ସହିତ ମିଶି ବାନର ଜାତିର ସ୍ୱଭାବକୁ ଅନୁସରଣ କରନ୍ତି ଏବଂ ଦାମ୍ପତ୍ୟସୁଖରେ ରତ ହୋଇ ବିଷୟଭୋଗଦ୍ୱାରା ଇନ୍ଦ୍ରିୟକୁ ତୃପ୍ତ କରନ୍ତି ଏବଂ ପରସ୍ପର ମୁହଁ ଦେଖାଦେଖି ହୋଇ ତାଙ୍କର ଆୟୁ ଶେଷ ହୋଇଯାଏ ॥୧୭॥ ସେଠାରେ ସେହି ଦଳ ବୃକ୍ଷମାନଙ୍କରେ କ୍ରୀଡ଼ା କରିବାକୁ ଯାଇ ପୁତ୍ର ଦାରାଙ୍କର ପ୍ରେମରେ ପଡ଼ିଯାଏ । ସୁରତ କାମନାରେ ଅଧୀର ଓ ନିଜ ବନ୍ଧନ କାଟିବାରେ ବିବଶ ହୋଇ କେବେ କେବେ ଯଦି ଅସାବଧାନତାବଶତଃ ଗିରିଗହ୍ୱର ମଧ୍ୟରେ ପଡ଼ିଯାଏ, ତେବେ ସେ ହାତୀର ଡରରେ କୌଣସି ଲତା ବା ଶାଖାକୁ ଆଶ୍ରୟ କରି ଝୁଲିରହେ ॥୧୮॥ ଅରିନ୍ଦମ ! ସେଇ ବ୍ୟକ୍ତି କୌଣସି ମତେ ସେହି ବିପଦରୁ ମୁକ୍ତ ହୋଇ ପ୍ରବୃତ୍ତିମାର୍ଗ ରୂପକ ଦଳରେ ପୁଣି ପଶିଯାଏ । ଯେଉଁ ବ୍ୟକ୍ତି ମାୟାର ପ୍ରେରଣାଦ୍ୱାରା ଥରେ ଏହି ମାର୍ଗରେ ପଡ଼ିଯାଏ, ସେ ସେଥିରେ ବୁଲିବୁଲି ଶେଷପର୍ଯ୍ୟନ୍ତ ପରମ ପୁରୁଷାର୍ଥକୁ ଜାଣିପାରେ ନାହିଁ ॥୧୯॥

ରହୂଗଣ, ତୁମେ ମଧ୍ୟ ସେହି ବାଟରେ ଚାଲିଛ । ତୁମେ ଶାସନଦଣ୍ଡ ଛାଡ଼ି ସମସ୍ତ ପ୍ରାଣୀଙ୍କର ମିତ୍ର ହୋଇଯାଅ । ବିଷୟରେ ଅନାସକ୍ତ ରହି ଶ୍ରୀ ହରିଙ୍କ ସେବାରେ ଶାଣିତ ଜ୍ଞାନରୂପକ ଖଡ୍ଗ ଗ୍ରହଣ କର ଏବଂ ଏହି ମାର୍ଗକୁ ପାର ହୋଇଯାଅ ॥୨୦॥ ରାଜା ରହୂଗଣ କହିଲେ, ବିପ୍ର, ସମସ୍ତ ଜନ୍ମ ମଧ୍ୟରେ ମନୁଷ୍ୟ ଜନ୍ମ ଉତ୍କୃଷ୍ଟ, କାରଣ ପରଲୋକରେ ଯେଉଁ ଦେବଜନ୍ମକୁ ଉତ୍ତମ ବୋଲି କୁହାଯାଏ, ସେଥିରେ କୌଣସି ଫଳ ନ ଥାଏ । ସେଠାକୁ ଶୁଦ୍ଧ ଅନ୍ତଃକରଣରେ ଶ୍ରୀ ନାରାୟଣଙ୍କର ପବିତ୍ର ଯଶ କୀର୍ତ୍ତନ କରୁଥିବା ଆପଣଙ୍କ ପରି ମହାତ୍ମାମାନଙ୍କର ସମାଗମ ହୁଏ ନାହିଁ ॥୨୧॥ ଆପଣଙ୍କ ପଦଧୂଳି ମାତ୍ରର ସେବାଦ୍ୱାରା ସମସ୍ତ କଳ୍ମଷ ଦୂର ହୋଇଯାଏ ଏବଂ ଭଗବାନଙ୍କଠାରେ ଶୁଦ୍ଧ ଭକ୍ତି ଜାତ ହୁଏ । କ୍ଷଣମାତ୍ର ଆପଣଙ୍କର ସଙ୍ଗଲାଭ ଦ୍ୱାରା ମୋର କୁତର୍କଜନିତ ଅବିବେକ ଯେ ନଷ୍ଟ ହୋଇଯାଇଛି, ଏଥିରେ ଆଶ୍ଚର୍ଯ୍ୟ ହେବାର ନାହିଁ ॥୨୨॥ ଆପଣଙ୍କ ପରି ମହାତ୍ମାମାନଙ୍କୁ ନମସ୍କାର । ସେମାନେ ଶିଶୁ ହୁଅନ୍ତୁ, ଯୁବକ ହୁଅନ୍ତୁ ବା କ୍ରୀଡ଼ାରତ ବାଳକ ହୁଅନ୍ତୁ, ଯେଉଁ ବ୍ରହ୍ମଜ୍ଞାନୀ ବ୍ରାହ୍ମଣମାନେ ଅବଧୂତ ବେଶରେ ପୃଥିବୀରେ ବିଚରଣ କରନ୍ତି, ସେମାନେ ନମସ୍ୟ । ସେମାନଙ୍କଯୋଗୁଁ ଅଜ୍ଞାନୀ ରାଜାମାନଙ୍କର ମଙ୍ଗଳ ହେଉ ॥୨୩॥

ଶ୍ରୀ ଶୁକଦେବ କହିଲେ, ହେ ଉତ୍ତରାଙ୍କର ପୁତ୍ର, ବ୍ରହ୍ମର୍ଷିପୁତ୍ର ଭରତ ତାଙ୍କୁ ଅପମାନ କରିଥିବା ସିନ୍ଧୁସୌବୀରର ରାଜା ରହୂଗଣଙ୍କୁ ଅତ୍ୟନ୍ତ କରୁଣାପୂର୍ବକ ବ୍ରହ୍ମତତ୍ତ୍ୱ ଉପଦେଶ ଦେଲେ । ରାଜା ରହୂଗଣ ଦୀନଭାବରେ ତାଙ୍କର ଚରଣ ବନ୍ଦନା

କଲେ । କିନ୍ତୁ ପରିପୂର୍ଣ୍ଣ ସମୁଦ୍ରପରି ଶାନ୍ତଚିତ୍ତ ଓ ନିଜର ଇନ୍ଦ୍ରିୟମାନଙ୍କୁ ବଶୀଭୂତ କରିଥିବା ଭରତ ପୁଣି ପୃଥିବୀରେ ବିଚରଣ କରିବାକୁ ଲାଗିଲେ ॥୨୪॥ ସୌବୀରରାଜ ରହୂଗଣ ମଧ୍ୟ ଏହି ମହାପୁରୁଷଙ୍କର ସଙ୍ଗଲାଭଦ୍ୱାରା ଯେଉଁ ପରମାର୍ଥ ତତ୍ତ୍ୱ ପ୍ରାପ୍ତ ହେଲେ ସେଥିରେ ଅଜ୍ଞତା- ପ୍ରସୂତ ତାଙ୍କର ଅନ୍ତଃକରଣରେ ଥିବା ଦେହାଭିମାନ ଦୂର ହେଲା । ରାଜା, ଶ୍ରୀ ଭଗବାନଙ୍କୁ ଆଶ୍ରିତ ଭକ୍ତମାନଙ୍କର ସେବା କଲେ ଏହିପରି ପରମାର୍ଥ ଲାଭ ହୁଏ ଓ ଜୀବ କୃତାର୍ଥ ହୋଇଯାଏ ॥୨୫॥ ପରିକ୍ଷିତ କହିଲେ, ହେ ମହାଭାଗବତ, ଆପଣ ପରମ ବିଦ୍ୱାନ୍ । ଆପଣ ରୂପକାଦି ଉଦାହରଣ ଛଳରେ ପରୋକ୍ଷରେ ଏହି ସଂସାରରୂପ ମାର୍ଗର ବର୍ଣ୍ଣନା କରିଛନ୍ତି । ଏହି ବିଷୟର କଳ୍ପନା ବିବେକୀ ପୁରୁଷମାନଙ୍କ ବୁଦ୍ଧିଦ୍ୱାରା କରାଯାଇଛି । ଅଳ୍ପବୁଦ୍ଧି ଲୋକମାନେ ଏହା ସହଜରେ ବୁଝିପାରିବେ ନାହିଁ । ତେଣୁ ଏହି ଦୁର୍ଭେଦ୍ୟ ବିଷୟକୁ ଉଦାହରଣ ଛଳରେ ମୋତେ ସ୍ପଷ୍ଟ ଭାବରେ ବୁଝାଇ ଦିଅନ୍ତୁ ॥୨୬॥

## ଚତୁର୍ଦ୍ଦଶ ଅଧ୍ୟାୟ

## ଭବାରଣ୍ୟ କଣ ?

ଶ୍ରୀ ଶୁକଦେବ କହିଲେ, ରାଜା ! ପୂର୍ବରୁ ମୁଁ ଭବାରଣ୍ୟର କଥା କହିଥିଲି । ଦୁର୍ଗମ କାନ୍ତାର ପରି ଏହା ଦୁରତିକ୍ରମ । ମାୟାବଶରୁ ଦେହକୁ ଯେଉଁମାନେ ଆତ୍ମା ବୋଲି ଭ୍ରମ କରନ୍ତି, ଏହା ହେଉଛି ସେଇମାନଙ୍କର ମାର୍ଗ । ସର୍ବଶକ୍ତିମାନ୍ ଭଗବାନ ବିଷ୍ଣୁଙ୍କର ବଶବର୍ତ୍ତୀ ଏହି ମାୟାଦ୍ୱାରା ଚାଳିତ ହୋଇ ଜୀବ ସତ୍ତ୍ୱ, ରଜ ଓ ତମ – ଏହି ଗୁଣମାନଙ୍କ ଭେଦରେ ଶୁଭ, ମିଶ୍ର ଓ ଅଶୁଭ – ଏହି ତିନି ପ୍ରକାର କର୍ମ କରିଚାଲେ । ଏହି ସବୁ କର୍ମଫଳଦ୍ୱାରା ସେ ସଂସାରରେ ନାନାପ୍ରକାର ଦେହ ନେଇ ଜନ୍ମ ହୁଏ । ଇଷ୍ଟଲାଭ ଓ ଇଷ୍ଟର ବିୟୋଗଜନିତ ଏହି ଅନାଦି ସଂସାର ହିଁ ତାକୁ ବାରମ୍ବାର ପ୍ରାପ୍ତ ହୁଏ । ଏହି ସଂସାରରେ ସୁଖ, ଦୁଃଖ ଅନୁଭବ କରିବାପାଇଁ ଛ'ଟି ଦ୍ୱାରା (ମନ ଏବଂ ପଞ୍ଚେନ୍ଦ୍ରିୟ) ବିବ୍ରତ ହୋଇ ଜୀବ ତା'ର ମାର୍ଗ ଭୁଲି ଭୟଙ୍କର ଅରଣ୍ୟ ମଧ୍ୟରେ ଲୋଭୀ ବଣିକଦଳ ପରି ପ୍ରବେଶ କରେ । ଏହି ଅରଣ୍ୟ ଶ୍ମଶାନ ପରି ଅଶୁଭ ଏବଂ ଏଥିରେ ସ୍ୱକୃତ କର୍ମଫଳ ଭୋଗ କରିବାକୁ ହୁଏ । ନାନା ବିଘ୍ନଯୋଗୁଁ ଏଥିରେ କୌଣସି କାର୍ଯ୍ୟର ସଫଳତା ମିଳେ ନାହିଁ । ତେବେ ମଧ୍ୟ ଶ୍ରୀ ହରିଙ୍କର ଚରଣାରବିନ୍ଦର ରସାସ୍ୱାଦନ କରୁଥିବା ଭ୍ରମରମାନଙ୍କ ସଦୃଶ ଭଗବତ୍ ଭକ୍ତମାନଙ୍କର ଶାନ୍ତିପ୍ରଦାୟକ ପନ୍ଥା ସେ ଅନୁସରଣ କରେ ନାହିଁ, କାରଣ ଷଡ଼ିନ୍ଦ୍ରିୟ ନାମକ ଦସ୍ୟୁମାନଙ୍କ କବଳରେ ସେ ପଡ଼ିଯାଇଥାଏ ॥୧॥ ପୁରୁଷ ବହୁକଷ୍ଟରେ ଯେଉଁ ଧନ ଉପାର୍ଜ୍ଜନ କରେ, ତାହା ଧର୍ମପାଇଁ ବ୍ୟବହୃତ ହେବା ଉଚିତ । ଏହା ଯଦି ପରମପୁରୁଷ ଭଗବାନଙ୍କର ଆରାଧନାର୍ଥ କରାଯାଏ, ତା'ହେଲେ ପରଲୋକରେ ତାହା ଉପକାରରେ ଲାଗେ । କୁବୁଦ୍ଧି ବଣିକମାନେ ଦସ୍ୟୁମାନଙ୍କଦ୍ୱାରା ଲୁଣ୍ଠିତ ହେବାପରି ଅବିବେକୀ ମନୁଷ୍ୟ ଚଞ୍ଚଳମନଦ୍ୱାରା ଚାଳିତ ହୋଇ ଦର୍ଶନ, ସ୍ପର୍ଶନ, ଶ୍ରବଣ, ରସନ, ଆଘ୍ରାଣ, ସଂକଳ୍ପ ଓ ଅଧ୍ୟବସାୟ ଆଦି ଅନ୍ତର ଓ ବାହାର ଇନ୍ଦ୍ରିୟମାନଙ୍କର ଭୋଗପାଇଁ ଏହି କଷ୍ଟାର୍ଜିତ ଧନକୁ ବ୍ୟବହାର କରେ । ଏମାନେ ଗୃହଦସ୍ୟୁ ରୂପେ ସେହି ଧନକୁ ହରଣ କରିନିଅନ୍ତି ॥୨॥ ଯେଉଁ ସ୍ୱଜନଙ୍କୁ ସେ ସ୍ତ୍ରୀ, ସନ୍ତାନାଦି ବୋଲି ମନେକରେ, ସେମାନେ କାର୍ଯ୍ୟରେ ହେଟାବାଘ ଓ ଶୃଗାଳପରି ଆଚରଣ କରନ୍ତି । ସେମାନେ ଲୋଭ ଓ ନିକୃଷ୍ଟ ପ୍ରକୃତିର ବଶବର୍ତ୍ତୀ ହୋଇ କୃପଣ ଗୃହସ୍ଥର ଇଚ୍ଛା ନ ଥିଲେ ମଧ୍ୟ ପାଳିତ ମେଷଶାବକ ପରି ଅତି ଯତ୍ନରେ ରକ୍ଷିତ ତା'ର ଧନକୁ ଅପହରଣ କରନ୍ତି ॥୩॥ ଯଦି କୌଣସି ଶସ୍ୟକ୍ଷେତ୍ରରେ ଘାସ ଆଦିର ମଞ୍ଜିକୁ ଜାଳି ଦିଆ ଯାଇ ନ ଥାଏ, ତା'ହେଲେ ପ୍ରତି ବର୍ଷ ଶସ୍ୟ ବୁଣିବା ସମୟରେ ସେହି କ୍ଷେତ୍ରରେ ଘାସ, ଗୁଳ୍ମ, ଲତା ଆଦି ଜୋରସୋର୍ ଉଠି ଜଙ୍ଗଲ ହୋଇଯାଏ । ସେହିପରି ଗୃହସ୍ଥାଶ୍ରମ, ଯାହାକି ଜୀବର କର୍ମସ୍ଥଳ, ସେଥିରେ କର୍ମବୀଜର ଉଚ୍ଛେଦ ହୁଏ ନାହିଁ । କାରଣ ଏହା

କାମନାର ପେଡ଼ିସ୍ୱରୂପ ॥୪॥ ମଶା ଓ ଡାଉଁଶଙ୍କ ପରି ନୀଚ ପ୍ରକୃତିର ମନୁଷ୍ୟଙ୍କ ଦ୍ୱାରା ଏବଂ ପକ୍ଷୀ, ଝିଣ୍ଟିକା, ମୂଷା, ଚୋର ଓ ଡାକୁମାନଙ୍କର ଉପଦ୍ରବରେ ପୀଡ଼ିତ ହୋଇ ଗୃହସ୍ଥାଶ୍ରମରେ ଆସକ୍ତ ବ୍ୟକ୍ତି ନିର୍ଦ୍ଧନ ହୋଇଯାଏ । ତଥାପି ଅବିଦ୍ୟା ଓ କାମନାଯୁକ୍ତ କର୍ମଦୋଷରୁ ଜୀବ ଏହି ମର୍ତ୍ତ୍ୟଲୋକକୁ ଗନ୍ଧର୍ବନଗରୀ ପରି (ସୁଖସମ୍ପଦର ସ୍ଥାନ) ମନେକରେ । ଏହି ଅଳୀକ ସଂସାର ତାକୁ ସତ୍ୟ ବୋଲି ଜଣାଯାଏ ॥୫॥ ସେଠାରେ ବ୍ୟସନଲୋଲୁପ ବ୍ୟକ୍ତି ପାନ, ଭୋଜନ ଓ ସ୍ତ୍ରୀସଙ୍ଗ ଆଦି ମରୀଚିକାତୁଲ୍ୟ ବିଷୟଭୋଗ ପଛରେ ଦୌଡ଼ିଥାଏ ॥୬॥ ସୁବର୍ଣ୍ଣ ହେଉଚି ଅଗ୍ନିର ବିଷ୍ଠାବିଶେଷ । ତାହା ପଛରେ ମନୁଷ୍ୟ ଦୌଡ଼େ, ଲୋହିତବର୍ଣ୍ଣ ରଜୋଗୁଣ ତା'ର ମତିକୁ ଆଚ୍ଛାଦିତ କରେ । ଶୀତାତୁର ବ୍ୟକ୍ତି ଅରଣ୍ୟରେ ଅଗ୍ନି ଖୋଜିବାକୁ ଯାଇ ଯେପରି ମୁହଁରୁ ଅଗ୍ନି ଉଦ୍‌ଗିରଣ କରୁଥିବା ଇତସ୍ତତଃ ଧାବମାନ ଉଲ୍‌ମୁକ ପିଶାଚ ପଛରେ ଦୌଡ଼ି ବିପଦଗ୍ରସ୍ତ ହୁଏ, ତା'ର ସେହିପରି ଅବସ୍ଥା ଘଟେ ॥୭॥ ଏହିପରି ଭବନ, ଭୋଜନ, ପାନୀୟ, ଧନ ଆଦିକୁ ଉପଜୀବ୍ୟ କରି ମନୁଷ୍ୟ ସଂସାରରୂପ ଅରଣ୍ୟରେ ଇତସ୍ତତଃ ଧାବିତ ହୁଏ ॥୮॥ ଧୂଳିଝଡ଼ ଯେପରି ଆଖିକୁ ଅନ୍ଧ କରିଦିଏ, ସେହିପରି ସୁନ୍ଦରୀ ସ୍ତ୍ରୀର ଅଙ୍କ ଆରୋହଣ କରି କାମାନ୍ଧ ବ୍ୟକ୍ତି ସତ୍‌ପୁରୁଷର ମର୍ଯ୍ୟାଦାକୁ ଅତିକ୍ରମ କରେ । ଅତିରିକ୍ତ ରଜୋଗୁଣ ପ୍ରଭାବରେ ତା'ର ଦୃଷ୍ଟି ଓ ମତି ମଳିନ ପଡ଼ିଯାଇଥାଏ ଏବଂ ସେ ଜାଣିପାରେ ନାହିଁ ଯେ, ଦିଗ୍‌ଦେବତାମାନେ ଅଦୃଶ୍ୟ ଭାବରେ ତା'ର ସମସ୍ତ କାର୍ଯ୍ୟକୁ ଲକ୍ଷ୍ୟ କରୁଛନ୍ତି ॥୯॥ ବେଳେବେଳେ ସେ ନିଜେ ବୁଝିପାରେ ଯେ କ୍ଷଣିକ ସୁଖପାଇଁ ମିଛରେ ସେ ବିଷୟବିଷର ପଛରେ ଦୌଡ଼ୁଛି । ମାତ୍ର ଅନାଦି କାଳରୁ ଦେହରେ ଯେଉଁ ଅହଂବୁଦ୍ଧି ରହିଛି, ତା'ର ପ୍ରଭାବରେ ତାର ବିବେକବୁଦ୍ଧି ନଷ୍ଟ ହୋଇଯାଇଥାଏ । ମରୀଚିକା ପରି ଅସତ୍ୟ ବିଷୟଭୋଗକୁ ସତ୍ୟ ବୋଲି ମନେ କରି ସେ ତା'ର ପଛରେ ଦୌଡ଼ିବାକୁ ଲାଗେ ॥୧୦॥ କେବେ କେବେ ପ୍ରତ୍ୟକ୍ଷରେ ପେଚାର ଓ ପରୋକ୍ଷରେ ଝିଙ୍କାରିର କର୍ଣ୍ଣକଟୁକର ରାବ ପରି ଶତ୍ରୁ ଓ ରାଜକୁଳର ଭର୍ତ୍ସନା ତା'ର କର୍ଣ୍ଣମୂଳ ଓ ହୃଦୟକୁ ବ୍ୟଥିତ କରେ ॥୧୧॥ ସେହି ଗୃହସ୍ଥ ଜୀବର ଯେତେବେଳେ ପୂର୍ବ ସୁକୃତ ଶେଷ ହୋଇଯାଏ, ସେତେବେଳେ ବିଷକେନ୍ଦୁ ଓ ବିଛୁଆତି ଆଦି ବିଷାକ୍ତ ବୃକ୍ଷଲତା ପରି ଓ ବିଷାକ୍ତ ଜଳପୂର୍ଣ୍ଣ କୂପମାନଙ୍କ ସଦୃଶ ତା'ର ସଞ୍ଚିତ ଧନ ଇହଲୋକର ବା ପରଲୋକର କୌଣସି କାମରେ ଆସେ ନାହିଁ । ଜୀଇଥିଲେ ମଧ୍ୟ ମଲାପରି ସେ କୃପଣ ଲୋକମାନଙ୍କ ସାଙ୍ଗରେ ରହିବାକୁ ଭଲ ପାଏ ॥୧୨॥ କେବେକେବେ ଅସତ୍ ଲୋକଙ୍କର ସଙ୍ଗଦୋଷରୁ ତା'ର ବୁଦ୍ଧିଭ୍ରଂଶ ହୁଏ ଏବଂ ଜଳଶୂନ୍ୟ ନଦୀଗର୍ଭରେ ପଡ଼ିବାପରି (ଧନଶୂନ୍ୟ ହୋଇ) ଇହଲୋକ ଓ ପରଲୋକର ଦୁଃଖଦାୟକ ପାଷଣ୍ଡଙ୍କ ହାବୁଡ଼ରେ ପଡ଼ିଯାଏ ॥୧୩॥ ଅନ୍ୟମାନଙ୍କୁ ଦୁଃଖ ଦେବା ଫଳରେ ଯେତେବେଳେ ତାକୁ ଖାଇବାକୁ ମିଳେ ନାହିଁ ଓ ସେ କ୍ଷୁଧା, ପିପାସାରେ ଅତିଶୟ ପୀଡ଼ିତ ହୋଇ ଜ୍ଞାନଶୂନ୍ୟ ହୋଇଯାଏ, ସେତେବେଳେ ଅନ୍ୟ ପିତାପୁତ୍ରଙ୍କର ବା ନିଜ ପିତା ଓ ପୁତ୍ରଙ୍କ ପାଖରେ ଖୁଦକଣା ଦେଖିଲେ ତାକୁ ଛଡ଼ାଇଆଣି ଖାଇବାକୁ ଚେଷ୍ଟା କରେ ॥୧୪॥ କେବେକେବେ ପ୍ରିୟଜନଙ୍କର ଦୁର୍ବ୍ୟବହାରରେ ଦାବାନଳପରି ଦୁଃଖପ୍ରଦ ହୋଇଥିବା ଗୃହମଧ୍ୟରେ ପ୍ରବେଶ କରି ସେ ଘୋର ଶୋକରେ ସନ୍ତାପିତ ହେବାକୁ ଲାଗେ ଏବଂ ତାର କ୍ଷଣିକ ବୈରାଗ୍ୟ ଜାତ ହୁଏ ॥୧୫॥ କେବେକେବେ ରାଜକୁଳ ତାର ପ୍ରତିକୂଳ ହୋଇ ରାକ୍ଷସପରି ତା'ର ପ୍ରାଣପ୍ରିୟ ଧନକୁ ଅପହରଣ କରି ନିଅନ୍ତି । ସେତେବେଳେ ମଲାପରି ତା'ଠାରେ ନିର୍ଜୀବର ଲକ୍ଷଣ ଦେଖାଯାଏ ॥୧୬॥ କେବେକେବେ ନିଜର ଅଭିଳଷିତ ପିତୃପିତାମହଙ୍କର କ୍ଷଣିକ ସଙ୍ଗସୁଖକୁ ସ୍ଥାୟୀ ବୋଲି ମନେ କରି ସେ ସୁଖସ୍ୱପ୍ନ ଦେଖେ ॥୧୭॥ ଗୃହସ୍ଥାଶ୍ରମପାଇଁ ବିସ୍ତାରିତ ଭାବରେ ଯେଉଁସବୁ କର୍ମକାଣ୍ଡର କଥା କୁହାଯାଇଛି, ଅନ୍ୟମାନଙ୍କୁ ଦେଖି ସେହି ସବୁ କର୍ମ କରିବାକୁ ଗଲେ ତାକୁ ପାହାଡ଼ ଚଢ଼ିବା ପରି ଲାଗେ । କଣ୍ଟକମୟ କଙ୍କରିତ ଭୂମି ପ୍ରବେଶ କରିବାକୁ ଯାଇ ଲୋକ ଯେପରି ଅବସନ୍ନ ହୋଇପଡ଼େ, ସାମର୍ଥ୍ୟ ନ ଥିବାରୁ ତା'ର ସେହିପରି ଅବସ୍ଥା ହୁଏ ॥୧୮॥ କେବେକେବେ ଅସହ୍ୟ ଉଦରଜ୍ୱାଳାରେ ଅଧୈର୍ଯ୍ୟ ହୋଇ ନିଜର ପରିବାର ପରିଜନଙ୍କୁ କ୍ରୁଦ୍ଧ ମନରେ ଗାଳିଦେବାକୁ ଲାଗେ ॥୧୯॥ ପୁଣି ଅଜଗର ପରି ନିଦ୍ରାଦେବୀ ତାକୁ ଗ୍ରାସି ଯାଏ; ସେତେବେଳେ ଅଜ୍ଞାନରୂପ ଅନ୍ଧକାରରେ ବୁଡ଼ିବାପରି ଶୂନ୍ୟ

ଅରଣ୍ୟରେ ପରିତ୍ୟକ୍ତ ଶବପରି ସେ ପଡ଼ିରହେ ଓ ତାର କୌଣସି ଜ୍ଞାନ ରହେ ନାହିଁ ।।୨୦।। ନିଜର ଗର୍ବରୂପକ ଦାନ୍ତ ଭାଙ୍ଗିଗଲେ ସର୍ପପରି ଦୁର୍ଜନମାନଙ୍କ ଦଂଶନରେ ତା'ର ନିଦ୍ରା ହୁଏ ନାହିଁ ଏବଂ ମର୍ମବେଦନାରେ ତାର ବିବେକବୁଦ୍ଧି ଦିନୁଦିନ କ୍ଷୟ ହେବାକୁ ଲାଗେ ଏବଂ ସେ ଅଜ୍ଞାନରୂପକ ଅନ୍ଧକୂପରେ ପଡ଼ି ଘୋର କଷ୍ଟ ଭୋଗ କରେ ।।୨୧।। ଯେତେବେଳେ କାମବାସନାରୂପ ମଧୁଲୋଭରେ ପରସ୍ତ୍ରୀ ଓ ପରଦ୍ରବ୍ୟକୁ ହାତ କରିବାକୁ ଚେଷ୍ଟାକରେ, ସେତେବେଳେ ତାହାର ମାଲିକ ବା ରାଜକୂଳଦ୍ୱାରା ଧରାପଡ଼ି ନିହତ ହୁଏ ଓ ଅପାର ନରକର ଯନ୍ତ୍ରଣା ଭୋଗ କରେ ।।୨୨।।

ଏଥିରୁ ଏହା ହିଁ ପ୍ରତିପାଦିତ ହୁଏ ଯେ, ଲୌକିକ ଓ ପାରଲୌକିକ ଉଭୟ କର୍ମଦ୍ୱାରା ମନୁଷ୍ୟ ସଂସାରଚକ୍ରରେ ହିଁ ପତିତ ହୋଇଥାଏ ।।୨୩।। ଯଦି (ପରଦାରା ଓ ପରଧନ ଅପହରଣ ଚେଷ୍ଟାରେ ଧରାପଡ଼ି) କାରାଦଣ୍ଡ ଭୋଗ କରେ, ତା'ହେଲେ ତାର ସ୍ତ୍ରୀ ଓ ଧନକୁ ଦେବଦତ୍ତ ନାମକ ବ୍ୟକ୍ତି ଏବଂ ତା'ଠାରୁ ବିଷ୍ଣୁମିତ୍ର ନାମକ ବ୍ୟକ୍ତି ଅପହରଣ କରି ନେଇଥା'ନ୍ତି । ଧନ ବା ସ୍ତ୍ରୀ କେଉଁଠାରେ ସ୍ଥିର ହୋଇ ରହନ୍ତି ନାହିଁ ।।୨୪।। କେବେ କେବେ ଆଧିଦୈବିକ, ଆଧିଭୌତିକ ଓ ଆଧ୍ୟାତ୍ମିକ ଦୁଃଖଜନିତ ଅବସ୍ଥାକୁ ନିବାରଣ କରି ନ ପାରି ସେ ଦୁରନ୍ତ ଚିନ୍ତାରେ ବିଷଣ୍ଣ ହୋଇପଡ଼େ ।।୨୫।। ବ୍ୟବସାୟସୂତ୍ରରେ ଅନ୍ୟଠାରୁ ଲେଶମାତ୍ର ଧନ ଠକି ନେବା ଫଳରେ ସେ ତାର ବିଦ୍ୱେଷର ପାତ୍ର ହୁଏ ।।୨୬।। ରାଜା, ଏହି ସଂସାରମାର୍ଗରେ ପୂର୍ବକଥିତ ବିଘ୍ନମାନଙ୍କ ଛଡ଼ା ବହୁ ବାଧାବିଘ୍ନ ଦେଖାଯାଏ । ଯଥା -- ସୁଖ, ଦୁଃଖ, ରାଗ, ଦ୍ୱେଷ, ଭୟ, ଅଭିମାନ, ପ୍ରମାଦ, ଉନ୍ମାଦ, ଶୋକ, ମୋହ, ଲୋଭ, ମାତ୍ସର୍ଯ୍ୟ, ଈର୍ଷା, ଅବଜ୍ଞା, କ୍ଷୁଧା, ପିପାସା, ମାନସିକ ଯନ୍ତ୍ରଣା, ବ୍ୟାଧି, ଜନ୍ମ, ଜରା, ମରଣ ଇତ୍ୟାଦି ।।୨୭।। କେବେ କେବେ ଦୈବମାୟାରୂପିଣୀ ସ୍ତ୍ରୀର ବାହୁପାଶର ଆଲିଙ୍ଗନରେ ତାର ବିବେକବୁଦ୍ଧି ହଜିଯାଏ । ତା' ପାଇଁ ବିହାରଗୃହ- ନିର୍ମାଣ ନିମନ୍ତେ ସେ ବ୍ୟସ୍ତ ହୋଇ ଉଠେ । ତାର ଆଶ୍ରୟରେ ଥିବା ପୁତ୍ର, କନ୍ୟା ଓ ଅନ୍ୟାନ୍ୟ ସ୍ତ୍ରୀମାନଙ୍କର ମିଠା ମିଠା କଥା, ଓ ମଧୁର ଚାହାଣିରେ ନିଜକୁ ହଜାଇ ଦେଇ ଇନ୍ଦ୍ରିୟମାନଙ୍କ ଦାସ ହୋଇଯାଏ ଏବଂ ଘୋର ଅନ୍ଧକାରମୟ ନରକକୁ ବାଟ ଫିଟାଇଦିଏ ।।୨୮।।

କାଳ ହେଉଚି ଭଗବାନ ବିଷ୍ଣୁଙ୍କର ଚକ୍ରସ୍ୱରୂପ । ସୃଷ୍ଟିରେ ପରମାଣୁରୁ ଆରମ୍ଭକରି ବ୍ରହ୍ମାଙ୍କର ଆୟୁ (ଦ୍ୱିପରାର୍ଦ୍ଧ) ପର୍ଯ୍ୟନ୍ତ ସମସ୍ତ ଆୟୁ ଏହି କାଳଚକ୍ରର ବଶବର୍ତ୍ତୀ । ଏହା ନିରନ୍ତର ଘୂରୁଥାଏ । ବୟସର ପରିବର୍ତ୍ତନ ଏହାର ବେଗ (ବାଲ୍ୟରୁ ଯୌବନ ଆଦି) ସ୍ୱରୂପ । ଆବ୍ରହ୍ମତୃଣପର୍ଯ୍ୟନ୍ତ ସମସ୍ତଙ୍କୁ ଏହା ସଂହାର କରେ ଏବଂ କେହି ଏହାର ଗତିରୋଧ କରିପାରନ୍ତି ନାହିଁ । କାଳଚକ୍ର ଈଶ୍ୱରଙ୍କର ନିଜ ଆୟୁଧ-- ଏହା ଜାଣି ମଧ୍ୟ ଭୟଭୀତ ପ୍ରାଣୀ ସାକ୍ଷାତ୍ ଭଗବାନ ଯଜ୍ଞପୁରୁଷଙ୍କୁ ଅବଜ୍ଞା କରି ଆର୍ଯ୍ୟ ସିଦ୍ଧାନ୍ତରେ ନିନ୍ଦିତ କଙ୍କ, ଗୃଧ୍ର ଓ କାକପ୍ରାୟ ପାଖଣ୍ଡ ଦେବତାମାନଙ୍କୁ ବେଦବହିର୍ଭୂତ ଶାସ୍ତ୍ରମାନଙ୍କୁ ଧରି ଉପାସନା କରିବାକୁ ଲାଗେ ।।୨୯।। ପାଖଣ୍ଡମାନେ ନିଜେ ଧୋକା ଖାଇଥା'ନ୍ତି; ସେମାନଙ୍କ ଠକାମିରେ ପଡ଼ି ଏହି ବ୍ୟକ୍ତି ଯେତେବେଳେ ଅତିଶୟ ଧୋକା ଖାଏ, ସେତେବେଳେ ବ୍ରାହ୍ମଣମାନଙ୍କର ଆଶ୍ରୟ ଖୋଜେ । ମାତ୍ର ଉପନୟନ ଆଦି ସଂସ୍କାର ଏବଂ ବେଦ ଓ ଧର୍ମଶାସ୍ତ୍ର ବିହିତ କର୍ମାନୁଷ୍ଠାନଦ୍ୱାରା ଭଗବାନ ଯଜ୍ଞପୁରୁଷଙ୍କ ଆରାଧନା ତାକୁ ରୁଚିକର ହୁଏ ନାହିଁ । ସେତେବେଳେ ସେ ଶୂଦ୍ରକୁଳରେ ପ୍ରବେଶ କରି ବେଦ ଓ ସଦାଚାରବର୍ଜିତ ବାନରବୃତ୍ତି ଗ୍ରହଣ କରେ । ଅର୍ଥାତ୍ କୁଟୁମ୍ବପୋଷଣ ଓ ମୈଥୁନ ଆଦି କାର୍ଯ୍ୟରେ ଲିପ୍ତ ରହେ ।।୩୦।। ସେଠି ବିନା ବାଧାରେ ସ୍ୱେଚ୍ଛାଚାରୀ ହୋଇ ବିହାର କରେ, ଏବଂ ଅତିଶୟ ଅଳ୍ପବୁଦ୍ଧିଯୋଗୁଁ ପରସ୍ପର ମୁହଁ ଚାହାଁଚାହିଁ ହୋଇ ଲୋକେ ଯେପରି ଗ୍ରାମ୍ୟସୁଖରେ କାଳାତିପାତ କରନ୍ତି, ସେହିପରି ବିଷୟଭୋଗରେ ରହି ଦିନେ ମୃତ୍ୟୁ ଯେ ଆସିବ, ତାହା ଭୁଲିଯାଏ ।।୩୧।। ବୃକ୍ଷରେ ବାସ କରୁଥିବା ବାନର ପରି ଜୀବ ଐହିକ ସୁଖକୁ ସବୁକିଛି ମନେକରି ନିଜ ଗୃହରେ ପୁତ୍ରଦାରାଙ୍କ ସ୍ନେହରେ ପଡ଼ିରହେ ଏବଂ ମୈଥୁନ ଆଦି ବିଷୟଭୋଗରେ ସମୟ କଟାଇଦିଏ ।।୩୨।। ଏହିପରି ସାଂସାରିକ ମାର୍ଗରେ ନିଜକୁ ଆବଦ୍ଧ ରଖି ଜୀବ ଅନ୍ଧକାରମୟ ଗିରିଗହ୍ୱର ସ୍ୱରୂପ ରୋଗାଦିର ଗର୍ଭରେ ପତିତ ହୁଏ, ଯେଉଁଠାରେ କି ମୃତ୍ୟୁରୂପକ ଗଜର ଭୟ ରହିଥାଏ ।।୩୩।। କେବେ କେବେ ଶୀତବାତାଦିତୁଲ୍ୟ ଅନେକ ଆଧିଦୈବିକ,

ଆଧିଭୌତିକ ଓ ଆଧ୍ୟାତ୍ମିକ ଦୁଃଖକୁ ନିବାରଣ କରିବାରେ ଅସମର୍ଥ ହୋଇ ଦୁରନ୍ତ ବିଷୟବିଷରେ ପଡ଼ି ବିପନ୍ନ ହୋଇ ରହିଥାଏ ॥୩୪॥ କେବେ କେବେ ବ୍ୟବସାୟ କରି ଶଠତା ଆଚରଣଦ୍ୱାରା କିଛି ଧନ ଉପାର୍ଜନ କରିଥାଏ ॥୩୫॥ କେବେ କେବେ ଧନ ନଷ୍ଟ ହୋଇଗଲେ ଖାଦ୍ୟ, ପେୟ, ଶଯ୍ୟା, ଆସନ ଆଦି ଭୋଗରୁ ବଞ୍ଚିତ ହୋଇ ପୁଣି କିପରି ତାହା ମିଳିପାରିବ, ସେଥିପାଇଁ ଚୋରି ଆଦି ମନ୍ଦ ଉପାୟର ଆଶ୍ରୟ ନିଏ ଏବଂ ଅନ୍ୟମାନଙ୍କଦ୍ୱାରା ତାକୁ ବହୁତ ଅପମାନିତ ହେବାକୁ ପଡ଼େ ॥୩୬॥ ଏହିପରି ଧନର ଆସକ୍ତିଯୋଗୁଁ ପରସ୍ପର ବୈରଭାବ ବଢ଼ିଚାଲେ । ତଥାପି ଧନଲୋଭରେ ବିବାହ ସମ୍ବନ୍ଧ ସ୍ଥାପନ କରାଯାଏ ଓ ଛିନ୍ନ ମଧ୍ୟ କରାଯାଏ ॥୩୭॥ ସଂସାରପଥରେ ଜୀବ ନାନା ଦୁଃଖ କଷ୍ଟ ଭୋଗ କରେ । ବାଧାବିଘ୍ନଦ୍ୱାରା ବ୍ୟଥିତ ଓ ବିପନ୍ନ ହୁଏ । କୌଣସି ଆତ୍ମୀୟ ସ୍ୱଜନର ବିୟୋଗ ଘଟିଲେ ତାକୁ ସେଠାରେ ପରିତ୍ୟାଗ କରି ନୂଆ ନୂଆ ଜନ୍ମିତ ସନ୍ତାନଙ୍କର ସଙ୍ଗସୁଖ କାମନା କରେ । କେତେବେଳେ ଶୋକ କରେ, କେତେବେଳେ ଦୁଃଖରେ ମୂର୍ଚ୍ଛା ହୋଇଯାଏ, କେତେବେଳେ ଭୟଭୀତ ହୋଇପଡ଼େ, କେତେବେଳେ କଳହ ବିବାଦରେ ମାତିଯାଏ, କେତେବେଳେ ଦୁଃଖରେ କାନ୍ଦିବାକୁ ଲାଗେ, କେବେକେବେ ଆନନ୍ଦରେ ହସେ ଓ ଗାଇବାକୁ ଲାଗେ । ବେଳେବେଳେ ଅପକର୍ମଯୋଗୁଁ କାରାରୁଦ୍ଧ ହୁଏ । ସାଧୁଲୋକମାନେ ତା'ପାଖକୁ ଆସନ୍ତି ନାହିଁ । ଏହିପରି ମନ୍ଦମାର୍ଗରେ ସେ ନିରନ୍ତର ଯାତ୍ରା କରୁଥାଏ ଏବଂ ଯେଉଁ ମାର୍ଗରେ ଗଲେ ଶେଷରେ ପରମାତ୍ମାଙ୍କୁ ଲାଭ କରାଯାଇପାରିବ, ସେ ତାହା ଭୁଲି ଯାଇଥାଏ ॥୩୮॥ ଯୋଗଶାସ୍ତ୍ରର ନିର୍ଦ୍ଦେଶପାଳନଦ୍ୱାରା ସଂସାରମାର୍ଗର ପ୍ରତିକାର କରାଯାଇପାରେ ନାହିଁ । ଯେଉଁମାନେ ସମସ୍ତପ୍ରକାର ଦଣ୍ଡ (ଶାସନ କ୍ଷମତା)କୁ ତ୍ୟାଗ କରିଛନ୍ତି, ସେହି ନିବୃତ୍ତି-ପରାୟଣ ସଂଯତାତ୍ମା ମୁନିମାନେ ଏହି ସଂସାରମାର୍ଗକୁ ପାର ହୋଇଯାଆନ୍ତି ॥୩୯॥ ଯେଉଁମାନେ ଚତୁର୍ଦ୍ଦିଗରେ ବିଜୟ ହାସଲ କରି ବହୁ ଯଜ୍ଞାନୁଷ୍ଠାନଦ୍ୱାରା ରାଜର୍ଷି ହୋଇଥାନ୍ତି, ସେମାନେ ମଧ୍ୟ ଏହି ମାର୍ଗର ପ୍ରତିକାର କରି ପାରନ୍ତି ନାହିଁ । 'ଏହି ପୃଥିବୀ ମୋର' - ଏହିପରି ଅଭିମାନଦ୍ୱାରା ସେମାନେ ବହୁ ଶତ୍ରୁତା ସୃଷ୍ଟି କରନ୍ତି ଏବଂ କେବଳ ରଣଭୂମିରେ ହିଁ ତାଙ୍କର ଶରୀରତ୍ୟାଗ ସାର୍ଥକ ହୁଏ ॥୪୦॥ କୌଣସି ପୁଣ୍ୟକର୍ମରୂପକ ଲତାକୁ ଅବଲମ୍ବନ କରି ଜୀବ ଯଦି ଏହି ବିପଦପୂର୍ଣ୍ଣ ନରକରୁ ଉଦ୍ଧାର ପାଏ, ତେବେ ସେ ପୁଣି ଏହି ସଂସାରମାର୍ଗକୁ ଫେରି ଆସି ଲୋକଙ୍କ ସହିତ ମିଶିଯାଏ । ସେଥିପାଇଁ ରାଜା, ରାଜର୍ଷି ଭରତଙ୍କ ସମ୍ପର୍କରେ ପଣ୍ଡିତମାନେ ଏହିପରି କହନ୍ତି - - ମକ୍ଷିକା ଯେପରି ଗରୁଡ଼ଙ୍କୁ ଅନୁସରଣ କରିବା ଅସମ୍ଭବ, ସେହିପରି କୌଣସି ରାଜା ଋଷଭପୁତ୍ର ରାଜର୍ଷି ମହାତ୍ମା ଭରତଙ୍କର ପନ୍ଥାକୁ ଅନୁସରଣ କରିବା କଥା ମନରେ ମଧ୍ୟ ଚିନ୍ତା କରିପାରିବ ନାହିଁ ॥୪୧-୪୨॥

ରାଜର୍ଷି ଭରତ ପୁଣ୍ୟଶ୍ଳୋକ ଶ୍ରୀହରିଙ୍କ ପ୍ରତି ଏପରି ଅନୁରକ୍ତ ଥିଲେ ଯେ, ଦାରା, ପୁତ୍ର, ବନ୍ଧୁ, ସ୍ୱଜନ ଓ ରାଜ୍ୟ ଆଦି ସମସ୍ତ ମନୋରମ ବ୍ୟକ୍ତି ଓ ବସ୍ତୁକୁ ଯୁବାବସ୍ଥାରେ ମଧ୍ୟ ବିଷ୍ଠାପରି ତ୍ୟାଗ କରିଦେଇଥିଲେ ॥୪୩॥ ଶ୍ରୀ ମଧୁସୂଦନଙ୍କ ସେବାରେ ଅନୁରକ୍ତ ମହାତ୍ମାମାନେ ଯେପରି ମୋକ୍ଷକୁ ମଧ୍ୟ ତୁଚ୍ଛଜ୍ଞାନ କରନ୍ତି, ସେହିପରି ଦୁସ୍ତ୍ୟଜ ସୁତ, ଦାରା, ସ୍ୱଜନ, ରାଜ୍ୟ ଓ ଐଶ୍ୱର୍ଯ୍ୟକୁ ସେ ତ୍ୟାଗ କରିଥିଲେ ଏବଂ ଦେବତାମାନଙ୍କ ପ୍ରାର୍ଥନୀୟ ଲକ୍ଷ୍ମୀଙ୍କର ସଦୟ ଦୃଷ୍ଟିପାତକୁ ପ୍ରତ୍ୟାଖ୍ୟାନ କରିଥିଲେ । ଏଣୁ ବିଷୟତ୍ୟାଗ ତାଙ୍କ ପକ୍ଷରେ ଉଚିତ ଥିଲା ॥୪୪॥ ମୃଗ ଶରୀର ଛାଡ଼ିବାକୁ ଯାଉଥିବାବେଳେ ଯେ ଉଚ୍ଚସ୍ୱରରେ ଘୋଷଣା କରିଥିଲେ, ଯଜ୍ଞସ୍ୱରୂପ, ଯଜ୍ଞାଦିର ଫଳଦାତା, ଧର୍ମର ଅନୁଷ୍ଠାତା, ଅଷ୍ଟାଙ୍ଗଯୋଗର ସ୍ୱରୂପ, ସାଂଖ୍ୟଦର୍ଶନର ପ୍ରତିପାଦ୍ୟ, ପ୍ରକୃତିର ଈଶ୍ୱର, ନାରାୟଣ ଶ୍ରୀ ହରିଙ୍କୁ ମୁଁ ନମସ୍କାର କରୁଛି ॥୪୫॥ ରାଜା ! ଭଗବତ୍ ଭକ୍ତମାନେ ରାଜର୍ଷି ଭରତଙ୍କର ପବିତ୍ର ଗୁଣକର୍ମକୁ ପ୍ରଶଂସା କରନ୍ତି । ଯେଉଁ ଚରିତ ମନୁଷ୍ୟର କଲ୍ୟାଣ କରେ, ଆୟୁଷ, ଧନ ଓ ଯଶ ବୃଦ୍ଧି କରେ, ସ୍ୱର୍ଗ ଓ ମୋକ୍ଷ ପ୍ରଦାନ କରେ, ଭରତଙ୍କର ସେହି ଚରିତକୁ ଯେଉଁ ଶ୍ରଦ୍ଧାବାନ୍ ବ୍ୟକ୍ତି ଶୁଣେ ବା କହେ କିମ୍ବା ପାଠକରି ଏହାପ୍ରତି ଆଦର ପ୍ରଦର୍ଶନ କରେ, ସେ ସମସ୍ତ ଆଶୀର୍ବାଦ ନିଜଠାରୁ ପ୍ରାପ୍ତ ହୁଏ, ତାକୁ ଅନ୍ୟଠାରୁ କିଛି ମାଗିବାକୁ ପଡ଼େ ନାହିଁ ॥୪୬॥

## ପଞ୍ଚଦଶ ଅଧ୍ୟାୟ

# ଭରତଙ୍କ ବଂଶର ବର୍ଣ୍ଣନା

ଶ୍ରୀ ଶୁକଦେବ କହିଲେ, ରାଜା ! ଭରତଙ୍କର ସୁମତି ନାମରେ ଯେଉଁ ପୁତ୍ର ଥିଲେ, ସେ ଋଷଭଦେବଙ୍କର ପନ୍ଥା ଅନୁସରଣ କରୁଥିଲେ । ତାହା ଦେଖି କେତେକ ପାଖଣ୍ଡ, ଅନାର୍ଯ୍ୟ ନିଜ ପାପବୁଦ୍ଧିର ପ୍ରଭାବରେ ତାଙ୍କୁ କଳିକାଳରେ ବେଦବହିର୍ଭୂତ ଦେବତାରୂପେ କଳ୍ପନା କରୁଥିଲେ । ସୁମତିଙ୍କ ଔରସରୁ (ତାଙ୍କର ପତ୍ନୀ ବୃଦ୍ଧସେନାଙ୍କ ଗର୍ଭରେ) ଦେବତାଜିତ୍ ନାମରେ ଏକ ପୁତ୍ର ଜନ୍ମ ହେଲେ । ଦେବତାଜିତ୍‌ଙ୍କଠାରୁ ଅସୁରୀଙ୍କ ଗର୍ଭରେ ଦେବଦ୍ୟୁମ୍ନ, ଦେବଦ୍ୟୁମ୍ନଙ୍କଠାରୁ ଧେନୁମତୀଙ୍କ ଗର୍ଭରେ ପରମେଷ୍ଠୀ ଓ ପରମେଷ୍ଠୀଙ୍କ ଠାରୁ ସୁବର୍ଚ୍ଚଳାଙ୍କ ଗର୍ଭରେ ପ୍ରତୀହ ନାମକ ପୁତ୍ର ଜାତହେଲେ । ସେ ସ୍ୱୟଂ ଶୁଦ୍ଧ ଚିତ୍ତରେ ଆତ୍ମବିଦ୍ୟାର ଉପଦେଶ ଦେଇ ଶ୍ରୀ ନାରାୟଣଙ୍କୁ ସାକ୍ଷାତ୍ ଅନୁଭବ କରିଥିଲେ ।।୧-୪।। ପ୍ରତୀହଙ୍କ ପତ୍ନୀଙ୍କ ନାମ ମଧ୍ୟ ସୁବର୍ଚ୍ଚଳା ଥିଲା । ତାଙ୍କ ଗର୍ଭରେ ସେ ତିନି ଜଣ ପୁତ୍ର ଉତ୍ପାଦନ କଲେ । ପ୍ରତିହର୍ତ୍ତା, ପ୍ରସ୍ତୋତା ଓ ଉଦ୍‌ଗାତା । ସେମାନେ ଯଜ୍ଞାଦିକର୍ମରେ ନିପୁଣ ଥିଲେ । ପ୍ରତିହର୍ତ୍ତାଙ୍କ ସ୍ତ୍ରୀ ସ୍ତୁତିଙ୍କ ଗର୍ଭରୁ ଅଜ ଓ ଭୂମା ନାମରେ ଦୁଇ ପୁତ୍ର ଜନ୍ମ ହେଲେ ।।୫।। ଭୂମାଙ୍କ ଔରସରୁ ଋଷିକୂଲ୍ୟାଙ୍କଠାରେ ଉଦ୍‌ଗୀଥ ନାମକ ପୁତ୍ର ହେଲେ । ଦେବକୁଲ୍ୟା ନାମକ ତାଙ୍କର ଅନ୍ୟ ପତ୍ନୀଙ୍କ ଗର୍ଭରେ ପ୍ରସ୍ତାବ ନାମକ ପୁତ୍ର ଜନ୍ମ ହେଲେ ଓ ପ୍ରସ୍ତାବଙ୍କ ଔରସରୁ ପତ୍ନୀ ବିରୁସାଙ୍କ ଗର୍ଭରେ ବିଭୁ ନାମକ ପୁତ୍ର ଜନ୍ମ ହେଲେ । ବିଭୁଙ୍କ ଔରସରୁ ରତିଙ୍କ ଗର୍ଭରେ ପୃଥୁଷେଣ ନାମକ ପୁତ୍ର ଓ ପୃଥୁଷେଣଙ୍କ ଔରସରୁ ତାଙ୍କ ପତ୍ନୀ ଆକୂତିଙ୍କ ଗର୍ଭରେ ନକ୍ତ ନାମକ ପୁତ୍ର ଜାତ ହେଲେ । ନକ୍ତଙ୍କ ଔରସରୁ ଦ୍ରୁତିଙ୍କ ଗର୍ଭରେ ଉଦାରକୀର୍ତ୍ତି ରାଜର୍ଷିପ୍ରବର ଗୟ ଜନ୍ମ ଗ୍ରହଣ କଲେ, ଯେ କି ଜଗତକୁ ରକ୍ଷା କରିବା ଇଚ୍ଛାରେ ସାକ୍ଷାତ୍ ଭଗବାନ ବିଷ୍ଣୁଙ୍କର କଳାରେ ମୂର୍ତ୍ତିମନ୍ତ ହୋଇ ନିଜର ଉତ୍ତମ ଗୁଣାବଳୀଦ୍ୱାରା ମହାପୁରୁଷତ୍ୱ ଲାଭ କଲେ ।।୬।। ରାଜର୍ଷି ଗୟ ପ୍ରଜାପାଳନ, ପୋଷଣ, ପ୍ରଜାରଞ୍ଜନ, ଶାସନ ଏବଂ ଯଜ୍ଞାଦି କର୍ମଦ୍ୱାରା ଭଗବାନ ପରଂବ୍ରହ୍ମ ବାସୁଦେବଙ୍କ ଠାରେ ସର୍ବାନ୍ତଃକରଣରେ ସବୁକିଛି ଅର୍ପଣ କରି ପରମାର୍ଥ ଲକ୍ଷଣ ଲାଭକଲେ । ବ୍ରହ୍ମଜ୍ଞ ବ୍ୟକ୍ତିମାନଙ୍କର ପାଦପଦ୍ମସେବା ଦ୍ୱାରା ଅତିଶୟ ଭଗବତ୍‌ଭକ୍ତି ଜାତ ହେବା ଫଳରେ ତାଙ୍କ ଚିତ୍ତ ଶୁଦ୍ଧ ହେଲା । ଦେହାଦିରେ ଆତ୍ମବୁଦ୍ଧି ତ୍ୟାଗ କରି ବ୍ରହ୍ମକୁ ଅନୁଭବ କରିବା ଦ୍ୱାରା ତାଙ୍କର ଚିତ୍ତ କୃତାର୍ଥ ହେଲା ଓ ଲେଶମାତ୍ର ଆତ୍ମାଭିମାନ ରହିଲା ନାହିଁ । ତଥାପି ରାଜାର କର୍ତ୍ତବ୍ୟବୋଧରେ ସେ ପୃଥିବୀକୁ ପାଳନ କଲେ ।।୭।।

ପାଣ୍ଡୁନନ୍ଦନ ପରିକ୍ଷିତ, ପୁରାତତ୍ତ୍ୱବିତ୍‌ମାନେ ରାଜର୍ଷି ଗୟଙ୍କ ବିଷୟରେ ଏହି ତଥ୍ୟ ଗାନ କରିଛନ୍ତି -- ଶ୍ରୀ ଭଗବାନଙ୍କ କଳାରେ ଜାତ ରାଜା ଗୟଙ୍କ ଛଡ଼ା ଏପରି ଅନ୍ୟକିଏ ଯଜ୍ଞକାରୀ, ସତ୍‌କର୍ମ, ବହୁଶାସ୍ତ୍ରଜ୍ଞ, ଧର୍ମରକ୍ଷକ, ଶ୍ରୀସମ୍ପନ୍ନ, ସତ୍‌ପୁରୁଷଙ୍କ ନାୟକ ଓ ସାଧୁମାନଙ୍କ ସେବକ ରାଜା ଅଛି, ଯେକି ତାଙ୍କୁ ଅନୁକରଣ କରିପାରିବ ? ଶ୍ରଦ୍ଧା, ମୈତ୍ରୀ, ଦୟା ଆଦି ସତୀ ଦକ୍ଷକନ୍ୟାମାନେ ଗଙ୍ଗାଦି ନଦୀମାନଙ୍କ ସହିତ ରାଜା ଗୟଙ୍କର ଅଭିଷେକ କରିଥିଲେ । ସେମାନଙ୍କର ଆଶୀର୍ବାଦ କେବେ ଅନ୍ୟଥା ହୁଏ ନାହିଁ । ଗାଈ ବାଛୁରୀକୁ ଦୁଧ ଦେବାପରି ପ୍ରଜାମାନଙ୍କର ମାଗିବାକୁ ଅପେକ୍ଷା ନ କରି ପୃଥିବୀ ପ୍ରଜାମାନଙ୍କୁ ସମସ୍ତ ଅଭୀଷ୍ଟ ପଦାର୍ଥ ଦାନ କରୁଥିଲା ।।୮-୧୦।। କୌଣସି କାମନା ନ ଥାଇ ସେ ବେଦବିହିତ କର୍ମମାନ କରୁଥିଲେ ଏବଂ ଏହି କର୍ମସବୁ ତାଙ୍କୁ ଭୋଗ୍ୟବସ୍ତୁମାନ ଦାନ କରୁଥିଲା । ଯୁଦ୍ଧସ୍ଥଳରେ ବାଣଦ୍ୱାରା ତାଙ୍କ ସତ୍କାର ଲାଭ କରି ରାଜାମାନେ ତାଙ୍କୁ କର ବା ଅନ୍ୟାନ୍ୟ ଭେଟି ସବୁ ଦେଉଥିଲେ ଏବଂ ଦକ୍ଷିଣାଦି ଦାନଧର୍ମଦ୍ୱାରା ସେ ବ୍ରାହ୍ମଣମାନଙ୍କୁ ସନ୍ତୁଷ୍ଟ କରୁଥିବାରୁ ପରଲୋକରେ ପ୍ରାପ୍ୟ ତାଙ୍କ ଧର୍ମଫଳର ଷଷ୍ଠଭାଗ ବ୍ରାହ୍ମଣମାନେ ତାଙ୍କୁ ଦାନ କରୁଥିଲେ ।।୧୧।। ତାଙ୍କ ଯଜ୍ଞରେ ପ୍ରଚୁର ସୋମରସ ମିଳୁଥିବାରୁ

ଇନ୍ଦ୍ର ତାକୁ ପାନ କରି ମତ୍ତ ହେଉଥିଲେ ଏବଂ ଯଜ୍ଞପୁରୁଷ ନାରାୟଣ ତାଙ୍କ ଶ୍ରଦ୍ଧା ଓ ଶୁଦ୍ଧ ଅଚଳା ଭକ୍ତିଦ୍ୱାରା ଆକୃଷ୍ଟ ହୋଇ ସାକ୍ଷାତ୍ ଦର୍ଶନ ଦେଉଥିଲେ ଓ ସମର୍ପିତ ଯଜ୍ଞଫଳକୁ ଗ୍ରହଣ କରୁଥିଲେ ॥୧୨॥ ଭଗବାନ୍ ନିଜେ ତୃପ୍ତ ହେଲେ ବ୍ରହ୍ମାଙ୍କଠାରୁ ଆରମ୍ଭ କରି ଦେବତା, ମନୁଷ୍ୟ, ପଶୁପକ୍ଷୀ, ବୃକ୍ଷଲତା ଏବଂ ତୃଣପର୍ଯ୍ୟନ୍ତ ସମସ୍ତ ଜୀବ ତତ୍‌କ୍ଷଣାତ୍ ତୃପ୍ତ ହୋଇଯାଆନ୍ତି । ସେହି ସର୍ବାନ୍ତର୍ଯାମୀ ଶ୍ରୀ ହରି ସଦା ପ୍ରସନ୍ନ ହେଲେ ମଧ୍ୟ ରାଜର୍ଷି ଗୟଙ୍କର ଯଜ୍ଞରେ ସ୍ୱୟଂ ପ୍ରକଟ ହୋଇ ନିଜର ସନ୍ତୋଷ ପ୍ରକାଶ କରୁଥିଲେ ॥୧୩॥

ଗୟଙ୍କର ଔରସରୁ ପତ୍ନୀ ଗୟନ୍ତୀଙ୍କ ଗର୍ଭରେ ଚିତ୍ରରଥ, ସୁଗତି ଓ ଅବିରୋଧନ ନାମରେ ତିନି ପୁତ୍ର ଜନ୍ମ ହେଲେ । ସେମାନଙ୍କ ମଧ୍ୟରୁ ଚିତ୍ରରଥଙ୍କଠାରୁ ତାଙ୍କର ପତ୍ନୀ ଊର୍ଣ୍ଣାଙ୍କ ଗର୍ଭରେ ସମ୍ରାଟ ନାମକ ପୁତ୍ର ଜନ୍ମ ହେଲେ ॥୧୪॥ ସମ୍ରାଟଙ୍କଠାରୁ ଉତ୍କଳାଙ୍କ ଗର୍ଭରେ ମରୀଚି, ମରୀଚିଙ୍କଠାରୁ ବିନ୍ଦୁମତୀଙ୍କ ଗର୍ଭରେ ବିନ୍ଦୁମାନ, ବିନ୍ଦୁମାନଙ୍କଠାରୁ ସରଘାଙ୍କ ଗର୍ଭରେ ମଧୁ, ମଧୁଙ୍କ ଔରସରୁ ସୁମନାଙ୍କ ଗର୍ଭରେ ବୀରବ୍ରତ, ବୀରବ୍ରତଙ୍କ ଔରସରୁ ଭୋଜାଙ୍କ ଗର୍ଭରେ ମନ୍ଥୁ ଓ ପ୍ରମନ୍ଥୁ ନାମରେ ଦୁଇ ପୁତ୍ର ଜନ୍ମ ହେଲେ । ସେ ଦୁହିଁଙ୍କ ମଧ୍ୟରୁ ମନ୍ଥୁଙ୍କ ଔରସରୁ ସତ୍ୟାଙ୍କ ଗର୍ଭରେ ଭୌବନ, ଭୌବନଙ୍କ ଔରସରୁ ଦୂଷଣାଙ୍କ ଗର୍ଭରେ ତ୍ୱଷ୍ଟା, ତ୍ୱଷ୍ଟାଙ୍କ ଔରସରୁ ବୀରୋଚନାଙ୍କ ଗର୍ଭରେ ବିରଜ ଏବଂ ବିରଜଙ୍କ ଔରସରୁ ବିଷୂଚୀଙ୍କ ଗର୍ଭରେ ଶତଜିତ୍ ଆଦି ଶହେ ପୁଅ ଓ ଜଣେମାତ୍ର କନ୍ୟା ଜନ୍ମ ହେଲେ ॥୧୫॥ ଏ ସମ୍ପର୍କରେ ଯେଉଁ ଶ୍ଲୋକଟି ପ୍ରଚଳିତ ଅଛି, ତାର ଅର୍ଥ ହେଉଛି--ଯେପରି ଭଗବାନ ବିଷ୍ଣୁ ଦେବତାମାନଙ୍କର କୀର୍ତ୍ତିବର୍ଦ୍ଧନ କରନ୍ତି, ସେହିପରି ପ୍ରିୟବ୍ରତବଂଶର ସବାପଛ ରାଜା ବିରଜ ନିଜର କୀର୍ତ୍ତିଦ୍ୱାରା ସେହି ବଂଶକୁ ଅଳଂକୃତ କରିଥିଲେ ॥୧୬॥

## ଷୋଡ଼ଶ ଅଧ୍ୟାୟ

# ଭୂଗୋଳବର୍ଣ୍ଣନ

ରାଜା ପରିକ୍ଷିତ ଶୁକଦେବଙ୍କୁ କହିଲେ, ଯେଉଁ ପର୍ଯ୍ୟନ୍ତ ସୂର୍ଯ୍ୟଙ୍କର କିରଣ ପଡ଼େ ଓ ତାରାମାନଙ୍କ ସହିତ ଚନ୍ଦ୍ରମା ଦେଖାଯାଆନ୍ତି ସେପର୍ଯ୍ୟନ୍ତ ସମସ୍ତ ଭୂମଣ୍ଡଳର ବିସ୍ତାର ଆପଣ ବର୍ଣ୍ଣନା କଲେ ॥୧॥ ପୁଣି ଆପଣ କହିଲେ ଯେ, ସେହି ସୁବିସ୍ତୃତ ଭୂମଣ୍ଡଳରେ ରାଜା ପ୍ରିୟବ୍ରତ ଯେଉଁଆଡ଼େ ଯାଉଥିଲେ ତାଙ୍କ ରଥଚକ୍ରରେ ଗୋଟିଏ ଗୋଟିଏ ଖାତ ହୋଇଯାଉଥିଲା । ଏହିପରି ସପ୍ତ ସମୁଦ୍ର ଓ ସପ୍ତ ଦ୍ୱୀପର ସୃଷ୍ଟି ହେଲା । ସେହି ସପ୍ତସିନ୍ଧୁ ଓ ସପ୍ତଦ୍ୱୀପର ଆକାର ଓ ଲକ୍ଷଣସବୁ ମୁଁ ବିଶେଷ ଭାବରେ ଜାଣିବାକୁ ଇଚ୍ଛାକରେ ॥୨॥ ଯେଉଁ ମନକୁ ଭଗବାନଙ୍କର ଗୁଣମୟ ସ୍ଥୂଳରୂପରେ ନିବେଶ କରାଯାଇପାରେ, ସେହି ମନ ନିର୍ଗୁଣ, ସୂକ୍ଷ୍ମତମ, ଆତ୍ମଜ୍ୟୋତିରୂପୀ ପରଂବ୍ରହ୍ମ ଭଗବାନ ବାସୁଦେବଙ୍କଠାରେ ନିବିଷ୍ଟ ହେବାପାଇଁ ସକ୍ଷମ ହୁଏ । ଅତଏବ ଗୁରୁଦେବ, ଆପଣ ଏହି ସମସ୍ତ ବିଷୟ ମୋ ନିକଟରେ ବିଶେଷ ଭାବରେ ବର୍ଣ୍ଣନା କରନ୍ତୁ ॥୩॥ ଶ୍ରୀ ଶୁକଦେବ କହିଲେ, ମହାରାଜ ! ଭଗବାନଙ୍କ ମାୟାର ଗୁଣମାନ ଏପରି ବିସ୍ତୃତ ଯେ, କୌଣସି ବ୍ୟକ୍ତି ଦେବତାଙ୍କର ଆୟୁ ଲାଭ କଲେ ମଧ୍ୟ ତାର ଅନ୍ତ ପାଇବା ସମ୍ଭବ ନୁହେଁ । ସେଥିପାଇଁ ମୁଁ ବିଶେଷ ଭାବରେ ନାମ, ରୂପ, ପରିମାଣ ଓ ଲକ୍ଷଣମାନଙ୍କଦ୍ୱାରା ଏହି ଭୂମଣ୍ଡଳର ବୈଶିଷ୍ଟ୍ୟକୁ ବର୍ଣ୍ଣନା କରିବି ॥୪॥

ବର୍ତ୍ତମାନ ଜମ୍ବୂଦ୍ୱୀପର କଥା କହୁଛି । ଭୂମଣ୍ଡଳକୁ ଗୋଟିଏ ପଦ୍ମ ସହିତ ତୁଳନା କରାଗଲେ, ସପ୍ତଦ୍ୱୀପ ହେଉଛନ୍ତି ସେହି ପଦ୍ମର କୋଷ ସ୍ୱରୂପ ଏବଂ ଏହି କୋଷର ଅଭ୍ୟନ୍ତର ହେଉଛି ଜମ୍ବୂଦ୍ୱୀପ । ଏହାର ବିସ୍ତାର ହେଉଛି ଏକଲକ୍ଷ ଯୋଜନ

ଏବଂ ଏହା ପଦ୍ମପତ୍ରପରି ବର୍ତ୍ତୁଳାକାର ॥୫॥ ଜମ୍ବୁଦ୍ୱୀପରେ ନ'ଟି ବର୍ଷ ବା ଦେଶ ଅଛି । ପ୍ରତ୍ୟେକ ବର୍ଷ ନଅ ହଜାର ଯୋଜନ ବିସ୍ତୃତ । ଏଥିରେ ଥିବା ଆଠଟି ପର୍ବତ (ଅଷ୍ଟକୁଳାଚଳ) ଦ୍ୱାରା ବର୍ଷମାନଙ୍କର ସୀମାବିଭାଜନ କରାଯାଇଛି ॥୬॥ ଏହି ବର୍ଷମାନଙ୍କ ମଧ୍ୟରେ ଇଳାବୃତନାମରେ ଯେଉଁ ବର୍ଷ ଅଛି, ତାହାର ନାଭିଦେଶରେ କୁଳାଚଳମାନଙ୍କ ମଧ୍ୟରେ ଶ୍ରେଷ୍ଠ ସୁମେରୁ ପର୍ବତ ବିଦ୍ୟମାନ । ଏହାର ସମସ୍ତ ଅଂଶ ସୁବର୍ଣ୍ଣମୟ । ଏହି ଦ୍ୱୀପର ଯେତିକି ବିସ୍ତୃତି (ଏକ ଲକ୍ଷ ଯୋଜନ), ଏହି ପର୍ବତର ଉଚ୍ଚତା ମଧ୍ୟ ସେତିକି । ଏହା ଭୂମଣ୍ଡଳରୂପ ପଦ୍ମପୁଷ୍ପର କର୍ଣ୍ଣିକାସଦୃଶ । ଏହାର ଶିଖର ବତିଶ ହଜାର ଯୋଜନ ପର୍ଯ୍ୟନ୍ତ ବିସ୍ତୃତ । ଏହାର ମୂଳଦେଶ ଷୋଳ ହଜାର ଯୋଜନ ଏବଂ ଭୂଇଁର ତଳେ ଏହା ଆହୁରି ଷୋଳ ହଜାର ଯୋଜନ ପୋତିହୋଇଅଛି । (ଭୂମି ଉପରେ ଏହାର ଉଚ୍ଚତା ହେଲା ୮୪ ହଜାର ଯୋଜନ) ॥୭॥ ଏହି ଇଳାବୃତ ବର୍ଷର ଉତ୍ତରରେ ନୀଳ, ଶ୍ୱେତ ଓ ଶୃଙ୍ଗବାନ ନାମକ ପର୍ବତ ଉତ୍ତରୋତ୍ତର କ୍ରମରେ ଅବସ୍ଥିତ । ନୀଳ ରମ୍ୟକବର୍ଷର, ଶ୍ୱେତ ହିରଣ୍ମୟବର୍ଷର ଓ ଶୃଙ୍ଗବାନ୍ କୁରୁବର୍ଷର ସୀମା ନିରୂପଣ କରୁଛନ୍ତି । ସେମାନଙ୍କ ପୂର୍ବ ଓ ପଶ୍ଚିମ ଉଭୟ ପାର୍ଶ୍ୱରେ ଲବଣସମୁଦ୍ର ବିଦ୍ୟମାନ । ପ୍ରତ୍ୟେକଙ୍କର ପ୍ରସ୍ଥ ଦୁଇ ହଜାର ଯୋଜନ । ଦୈର୍ଘ୍ୟରେ ପ୍ରଥମରୁ ଦ୍ୱିତୀୟ ହେଉଛି ଏକ ଦଶମାଂଶ କମ୍, ଏବଂ ଦ୍ୱିତୀୟଠାରୁ ତୃତୀୟ ଏକଦଶମାଂଶ କମ୍ ॥୮॥

ଇଳାବୃତବର୍ଷର ଦକ୍ଷିଣ ଦିଗରେ ଯଥାକ୍ରମେ ନିଷଧ, ହେମକୂଟ ଓ ହିମାଳୟ ନାମରେ ତିନୋଟି ପର୍ବତ ଅଛି । ପୂର୍ବୋକ୍ତ ତିନୋଟି ପର୍ବତ ପରି ଏମାନେ ମଧ୍ୟ ପୂର୍ବରୁ ପଶ୍ଚିମକୁ ବିସ୍ତୃତ ଏବଂ ଏମାନଙ୍କର ଉଚ୍ଚତା ହେଉଛି ଦଶ ଦଶ ହଜାର ଯୋଜନ । ଏମାନେ ଯଥାକ୍ରମେ ହରିବର୍ଷ, କିଂପୁରୁଷ ବର୍ଷ ଓ ଭାରତବର୍ଷର କୁଳପର୍ବତ ॥୯॥ ଇଳାବୃତର ପୂର୍ବ ଓ ପଶ୍ଚିମ ଦିଗରେ ଗନ୍ଧମାଦନ, ମାଲ୍ୟବାନ ନାମକ ଦୁଇଟି ପର୍ବତ ଅଛି । ଏହି ଦୁଇଟି ପର୍ବତ ଉତ୍ତରରେ ନୀଳ ଓ ଦକ୍ଷିଣରେ ନିଷଧ ପର୍ବତ ପର୍ଯ୍ୟନ୍ତ ବିସ୍ତୃତ । ଏଦୁହିଁଙ୍କର ପ୍ରସ୍ଥ ହେଉଛି ଦୁଇ ଦୁଇ ହଜାର ଯୋଜନ ଏବଂ ଏ ଦୁହେଁ ଭଦ୍ରାଶ୍ୱ ଓ କେତୁମାଳ ନାମକ ଦୁଇ ବର୍ଷର ସୀମା ନିର୍ଦ୍ଧାରଣ କରନ୍ତି ॥୧୦॥ ସୁମେରୁ ପର୍ବତର ଚତୁର୍ଦ୍ଦିଗରେ ତାର ମେଖଳାସ୍ୱରୂପ ମନ୍ଦର, ମେରୁମନ୍ଦର, ସୁପାର୍ଶ୍ୱ ଓ କୁମୁଦ ପର୍ବତମାନ ଅବସ୍ଥିତ । ଏହି ପର୍ବତମାନଙ୍କର ଦୈର୍ଘ୍ୟ ଓ ଉଚ୍ଚତା ହେଉଛି ଦଶ ହଜାର ଯୋଜନ । ଏହି ଚାରୋଟି ପର୍ବତର ପତାକାରୂପେ ଯଥାକ୍ରମେ ଚାରୋଟି ବୃକ୍ଷ ଦଣ୍ଡାୟମାନ । ଆମ୍ବ, ଜାମୁ, କଦମ୍ବ ଓ ବଟ । ଏହି ବୃକ୍ଷମାନଙ୍କର ଗୋଲେଇ ହେଉଛି ଶହେ ଯୋଜନ ଏବଂ ଉଚ୍ଚତା ଏଗାର ଶହ ଯୋଜନ । ଶାଖାମାନେ ଏଗାର ଶହ ଯୋଜନପର୍ଯ୍ୟନ୍ତ ବିସ୍ତାରିତ ॥୧୧॥ ଭରତଶ୍ରେଷ୍ଠ, ଏହି ଚାରୋଟି ପର୍ବତରେ ଗୋଟି ଗୋଟି ହୋଇ ଚାରୋଟି ହ୍ରଦ ଅଛି । ହ୍ରଦମାନେ ଯଥାକ୍ରମେ ଦୁଧ, ମହୁ, ଆଖୁରସ ଓ ନିର୍ମଳ ଜଳରେ ପୂର୍ଣ୍ଣ । ଉପଦେବତାମାନେ (ସିଦ୍ଧ, ଚାରଣ ଓ ଗନ୍ଧର୍ବ) ଏହି ଜଳ ସେବନ କରି ଯୋଗଦ୍ୱାରା ପ୍ରାପ୍ତ ଅଣିମା, ଲଘିମା ଆଦି ଅଷ୍ଟୈଶ୍ୱର୍ଯ୍ୟ ଧାରଣ କରିଥା'ନ୍ତି ॥୧୩॥ ଏହି ଚାରୋଟି ପର୍ବତରେ ଯଥାକ୍ରମେ ନନ୍ଦନ, ଚୈତ୍ରରଥ, ବୈଭ୍ରାଜକ ଓ ସର୍ବତୋଭଦ୍ର ନାମରେ ଚାରୋଟି ଦିବ୍ୟ ଉପବନ ଅଛି ॥୧୪॥ ପ୍ରଧାନ ପ୍ରଧାନ ଦେବତାମାନେ ଦେବାଙ୍ଗନାମାନଙ୍କର ନାୟକରୂପେ ସେମାନଙ୍କ ସହିତ ସେହି ଉପବନମାନଙ୍କରେ ବିହାର କରନ୍ତି ଏବଂ ଯକ୍ଷ, କିନ୍ନର ଓ ଗନ୍ଧର୍ବ ଆଦି ଉପଦେବତାମାନେ ସେମାନଙ୍କ ଯଶୋଗାନ କରୁଥା'ନ୍ତି ॥୧୫॥

ମନ୍ଦର ପର୍ବତ ଯେଉଁ ଆମ୍ବଗଛଟିକୁ କୋଳରେ ଧାରଣ କରିଛି, ତାହା ଦେବତାମାନଙ୍କର ଏବଂ ତାହା ଏଗାରଶହ ଯୋଜନ ଉଚ୍ଚ । ଗିରିଶୃଙ୍ଗପରି ଅମୃତତୁଲ୍ୟ ବଡ଼ବଡ଼ ସ୍ୱାଦଯୁକ୍ତ ଆମ୍ବ ସେଥିରୁ ତଳକୁ ପଡୁଥାଏ । ଏହି ଆମ୍ବଗୁଡ଼ିକ ଫାଟିଗଲାବେଳେ ଏଥିର ସୁଗନ୍ଧିଯୁକ୍ତ ନାଲି ନାଲି ମିଠାରସ ବହିଯାଉଥାଏ । ତାହା ଅରୁଣୋଦା ନାମକ ନଦୀରେ ପରିଣତ ହୁଏ । ମନ୍ଦର ପର୍ବତର ଶିଖରଦେଶରୁ ତଳକୁ ଖସି ସେହି ନଦୀ ଇଳାବୃତ ବର୍ଷର ପୂର୍ବଭାଗକୁ ପ୍ଲାବିତ କରେ ॥୧୬-୧୭॥ଭବାନୀଙ୍କର ଅନୁଚରୀ ଯକ୍ଷବଧୂମାନେ ଏହି ନଦୀର ଜଳକୁ ସେବନ କରୁଥିବାଯୋଗୁଁ ତାଙ୍କ ଅନୁଗ୍ରହରୁ ସେମାନଙ୍କ ଅଙ୍ଗରୁ ଯେଉଁ ସୁଗନ୍ଧ ନିର୍ଗତ ହୁଏ,

ତାହାକୁ ବହନ କରି ବାୟୁ ଚତୁର୍ଦ୍ଦିଗରେ ଦଶଯୋଜନ ପର୍ଯ୍ୟନ୍ତ ଅଞ୍ଚଳକୁ ସୁବାସିତ କରିଦିଏ ॥୧୮॥ ଏହିପରି ପୂର୍ବରୁ କୁହାଯାଇଥିବା ଜାମୁ ଗଛରୁ ହାତୀପରି ବଡ଼ ବଡ଼ ଫଳ ତଳକୁ ପଡ଼ି ଫାଟିଯାଏ । ସେହି ଫଳରେ ମଞ୍ଜି କମ୍ ଓ ରସ ବେଶୀ । ସେହି ରସରେ ଜମ୍ବୂନଦୀ ନାମରେ ଗୋଟିଏ ନଦୀ ପ୍ରବାହିତ ହୁଏ । ଦଶ ହଜାର ଯୋଜନ ଉଚ୍ଚ ମେରୁମନ୍ଦର ପର୍ବତର ଶିଖରରୁ ଏହା ଇଳାବୃତବର୍ଷର ଦକ୍ଷିଣଭାଗକୁ ପ୍ଲାବିତ କରେ ॥୧୯॥ ଏହି ନଦୀର ଦୁଇକୂଳରେ ଥିବା ମାଟି ସେହି ରସରେ ଭିଜି ଯାଇ ବାୟୁ ଓ ସୂର୍ଯ୍ୟଙ୍କର ସଂଯୋଗରେ ଶୁଖିଗଲେ, ତାହା ଦେବତାମାନଙ୍କ ଆଭରଣସ୍ୱରୂପ ଜାମ୍ବୁନଦ ନାମକ ସୁନାରେ ପରିଣତ ହୁଏ । ଏହାକୁ ନେଇ ଦେବତା, ଗନ୍ଧର୍ବ ଓ ତାଙ୍କ ସ୍ତ୍ରୀମାନେ ସେମାନଙ୍କର ମୁକୁଟ, କଙ୍କଣ, ମେଖଳା ଓ କୁଣ୍ଡଳ ଆଦି ଅଳଙ୍କାର ସବୁ ପ୍ରସ୍ତୁତ କରି ଶରୀରର ବିଭିନ୍ନ ଅଙ୍ଗରେ ଧାରଣ କରନ୍ତି ॥୨୦-୨୧॥

ସୁପାର୍ଶ୍ୱ ପର୍ବତ ଉପରେ ଯେଉଁ ବିଶାଳ କଦମ୍ବ ଗଛ ଅଛି, ତାହାର ପାଞ୍ଚୋଟି କୋରଡ଼ରୁ ଯେଉଁ ପାଞ୍ଚୋଟି ମହୁଧାର ନିର୍ଗତ ହୁଏ, ତନ୍ମଧ୍ୟରେ ପ୍ରତ୍ୟେକର ସ୍ଥୂଳତା ହେଉଛି ଏକ ବ୍ୟାମ ବା ଆଠଫୁଟ । ପର୍ବତର ଶିଖରଦେଶରୁ ପଡ଼ି ଇଳାବୃତ ବର୍ଷର ପଶ୍ଚିମଭାଗକୁ ଏହି ମଧୁଧାର ନିଜର ସୁଗନ୍ଧରେ ଆମୋଦିତ କରେ ॥୨୨॥ ଯେଉଁମାନେ ଏହି ମଧୁ ପାନ କରନ୍ତି, ସେମାନଙ୍କର ମୁଖନିଃସୃତ ବାୟୁ ଚତୁର୍ଦ୍ଦିଗରେ ଶହେ ଯୋଜନପର୍ଯ୍ୟନ୍ତ ଅଞ୍ଚଳକୁ ସୁବାସିତ କରେ ॥୨୩॥ ଏହିପରି କୁମୁଦ ପର୍ବତ ଉପରେ ଶତବଲ୍‌ଶ ନାମକ ଯେଉଁ ବରଗଛ ଅଛି, ତାହାର ଓହଳମାନଙ୍କର ତଳକୁ ବହୁ ନଦୀ ବହିଯାଉଥାଏ । ଏହି ନଦୀମାନେ କାମଧେନୁସ୍ୱରୂପ ଦୁଧ, ଦହି, ମହୁ, ଘିଅ, ଗୁଡ଼, ଅନ୍ନ, ବସ୍ତ୍ର, ଶଯ୍ୟା, ଆସନ ଏବଂ ଅଳଙ୍କାରାଦି ସମସ୍ତ ବସ୍ତୁ ପ୍ରଦାନ କରନ୍ତି । କୁମୁଦ ପର୍ବତର ଶିଖରଦେଶରୁ ପ୍ରବାହିତ ହୋଇ ଏହି ନଦୀମାନେ ଇଳାବୃତର ଉତ୍ତର ଭାଗକୁ ପ୍ଲାବିତ କରନ୍ତି ॥୨୪॥ ଏହି ନଦୀମାନେ ଦେଉଥିବା ବିଭିନ୍ନ ପଦାର୍ଥକୁ ଯେଉଁ ପ୍ରଜାମାନେ ଉପଭୋଗ କରନ୍ତି, ସେମାନଙ୍କର ବହୁପ୍ରକାର ରୋଗବ୍ୟାଧି ଦୂର ହୋଇଯାଏ - ଯଥା, ଚମ ଧୁଡୁଧୁଡୁ ହୋଇଯିବା, ବାଳ ପାଚିଯିବା, ଥକିଯିବା, ଦେହରୁ ଝାଳ ଆଦି ଦୁର୍ଗନ୍ଧ ବାହାରିବା, ଜରା, ରୋଗ, ମୃତ୍ୟୁ, ଶୀତ ଏବଂ ଗ୍ରୀଷ୍ମର କଷ୍ଟ, ବିବର୍ଣ୍ଣତା ଓ ବିଭିନ୍ନ ଅଙ୍ଗର ପୀଡ଼ା ଭୋଗିବା । ଏତଦ୍‌ଦ୍ୱାରା ଲୋକମାନେ ମୃତ୍ୟୁପର୍ଯ୍ୟନ୍ତ ଅତିଶୟ ସୁଖରେ ଜୀବନ ଯାପନ କରନ୍ତି ॥୨୫॥ କୁରଙ୍ଗ, କୁରର, କୁସୁମ୍ଭ, ବୈକଙ୍କ, ତ୍ରିକୂଟ, ଶିଶିର, ପତଙ୍ଗ, ରୁଚକ, ନିଷଧ, ଶିନୀବାସ, କପିଳ, ଶଙ୍ଖ, ବୈଦୂର୍ଯ୍ୟ, ଜାରୁଧି, ହଂସ, ଋଷଭ, ନାଗ, କାଳଞ୍ଜର ଏବଂ ନାରଦ ଆଦି କୋଡ଼ିଏଟି ପର୍ବତ ସୁମେରୁରୂପକ ପଦ୍ମକୋଷର କେଶରରୂପେ ତା'ର ପାଦଦେଶରେ ରହିଛନ୍ତି ॥୨୬॥ ଏତଦ୍‌ବ୍ୟତୀତ ମେରୁର ପୂର୍ବଦିଗରେ ଜଠର ଓ ଦେବକୂଟ ନାମରେ ଦୁଇଟି ପର୍ବତ ଅଛି, ଯେ କି ଅଠର ଅଠର ହଜାର ଯୋଜନ ଲମ୍ବ ଓ ଦୁଇ ଦୁଇ ହଜାର ଯୋଜନ ପ୍ରସ୍ଥ ଏବଂ ଉଚ୍ଚ । ଏହିପରି ପଶ୍ଚିମ ଦିଗରେ ପବନ ଓ ପାରିଯାତ୍ର, ଦକ୍ଷିଣ ଦିଗରେ କୈଳାସ ଓ କରବୀର ଏବଂ ଉତ୍ତର ଦିଗରେ ତ୍ରିଶୃଙ୍ଗ ଓ ମକର ନାମକ ପର୍ବତ ଅଛି । ଏହି ଆଠଟି ପର୍ବତଦ୍ୱାରା ଚାରିଆଡ଼ୁ ଘେରା ହୋଇଥିବା ସୁବର୍ଣ୍ଣର ମେରୁପର୍ବତ ଅଗ୍ନିତୁଲ୍ୟ ଝଟକୁଥାଏ ॥୨୭॥

କୁହାଯାଏ ଯେ, ଏହି ମେରୁଶିଖରର ମଧ୍ୟଭାଗରେ ଭଗବାନ ଆତ୍ମଯୋନି (ବ୍ରହ୍ମା)ଙ୍କର ସୁବର୍ଣ୍ଣମୟ ଧାମ ଅବସ୍ଥିତ । ତାହା ଆକାରରେ ସମଚତୁଷ୍କୋଣ ଏବଂ ଏକକୋଟି ଯୋଜନ ବିସ୍ତୃତ ॥୨୮॥ ବ୍ରହ୍ମଧାମର ତଳେ ପୂର୍ବ ଆଦି ଅଷ୍ଟଦିଗ ଓ ଉପଦିଗମାନଙ୍କରେ ଇନ୍ଦ୍ରାଦି ଅଷ୍ଟ ଲୋକପାଳ ଅବସ୍ଥାନ କରନ୍ତି । ସେମାନଙ୍କ ଧାମ ବ୍ରହ୍ମପୁରୀ ପରି ସମଚତୁଷ୍କୋଣ ଓ ତାହାର ଏକ ଚତୁର୍ଥାଂଶ ମାତ୍ର । ଯେଉଁ ଯେଉଁ ଦିଗରେ ଯେଉଁ ଯେଉଁ ଦିଗପାଳ ଅଛନ୍ତି, ସେହି ସେହି ଦିଗରେ ସେମାନଙ୍କର ଧାମ ଅବସ୍ଥିତ । (ବ୍ରହ୍ମପୁରୀର ପୌରାଣିକ ନାମ ମନୋବତୀ, ଇନ୍ଦ୍ରଙ୍କର ଅମରାବତୀ ଓ ସେହି କ୍ରମରେ ଅଗ୍ନିଙ୍କର ତେଜୋବତୀ, ଯମଙ୍କର ସଂଯମନୀ, ନୈର୍ଋତଙ୍କର କୃଷ୍ଣାଙ୍ଗନା, ବରୁଣଙ୍କର ଶ୍ରଦ୍ଧାବତୀ, ବାୟୁଙ୍କର ଗନ୍ଧବତୀ, କୁବେରଙ୍କର ମହୋଦୟା ଓ କୃଶାନୁଙ୍କର ଯଶୋବତୀ) ॥୨୯॥

## ସପ୍ତଦଶ ଅଧ୍ୟାୟ

# ଗଙ୍ଗାଙ୍କର ବର୍ଣ୍ଣନା

ଶ୍ରୀ ଶୁକଦେବ କହିଲେ, ପରିକ୍ଷିତ, ଯେତେବେଳେ ଭଗବାନ ବିଷ୍ଣୁ ବାମନ ଅବତାରରେ ବଳିକୁ ଛଳନା କରି ତ୍ରିବିକ୍ରମ ମୂର୍ତ୍ତି ଧାରଣ କଲେ, ସେତେବେଳେ ତାଙ୍କ ବାମ ପାଦର ବୁଢ଼ାଆଙ୍ଗୁଠିର ନଖଦ୍ୱାରା ବ୍ରହ୍ମାଣ୍ଡରୂପକ କଟାହ ଫାଟିଗଲା ଏବଂ ତଦ୍ୱାରା ଯେଉଁ ବିବର ସୃଷ୍ଟି ହେଲା, ସେଥିରେ ବାହାରର ଜଳଧାରା ଭିତରେ ପ୍ରବାହିତ ହୋଇ ଭଗବାନଙ୍କର ପାଦପଦ୍ମକୁ ପ୍ରକ୍ଷାଳନ କରିବାରୁ ଏହାର ବର୍ଣ୍ଣ ନାଲି ହୋଇଗଲା । ଏହି ନିର୍ମଳ ଧାରାର ସ୍ପର୍ଶରେ ସଂସାରର ସମସ୍ତ ପାପ ରୂପକ ମଳ ନଷ୍ଟ ହୋଇଯାଏ, କିନ୍ତୁ ଏହା କେଭେ ମଳିନ ପଡ଼େ ନାହିଁ । ପ୍ରଥମେ ଏହାକୁ ଅନ୍ୟକୌଣସି ନାମରେ ନ ଡାକି 'ଭଗବତ୍‌ପଦୀ' ବୋଲି କୁହାଯାଉଥିଲା । ଏହି ଧାର ହଜାର ହଜାର ଯୁଗ ବିତିଯିବାପରେ ସ୍ୱର୍ଗର ଶିରୋଭାଗରେ ଥିବା ଧ୍ରୁବଲୋକରେ ଅବତୀର୍ଣ୍ଣ ହେଲା ॥୧॥ ବୀରବ୍ରତ ପରିକ୍ଷିତ ! ଧ୍ରୁବଲୋକରେ ରାଜା ଉତ୍ତାନପାଦଙ୍କର ପୁତ୍ର ପରମଭାଗବତ ରାଜର୍ଷି ଧ୍ରୁବ ଅବସ୍ଥାନ କରନ୍ତି । ଦିନୁଁଦିନ ତାଙ୍କର ଭଗବତ୍‌ଭକ୍ତି ବଢ଼ି ଚାଲିଥାଏ । ସେ ଏହି ନଦୀଜଳକୁ 'ଏହା ଆମ କୁଳଦେବତାଙ୍କର ପାଦୋଦକ' ମନେକରି ବଡ଼ ଶ୍ରଦ୍ଧାରେ ନିଜ ମସ୍ତକରେ ସିଞ୍ଚନ କରନ୍ତି । ପ୍ରବଳ ପ୍ରେମରେ ତାଙ୍କର ହୃଦୟ ଦ୍ରବୀଭୂତ ହୁଏ । ଉଦ୍‌ବେଗରେ ତାଙ୍କ ଅର୍ଦ୍ଧ-ନିମୀଳିତ କମଳତୁଲ୍ୟ ନୟନଯୁଗଳରୁ ନିର୍ମଳ ଅଶ୍ରୁଧାରା ବହିବାକୁ ଲାଗେ ଓ ଶରୀରରେ ରୋମାଞ୍ଚ ଜାତ ହୁଏ ॥୨॥ ଏହାପରେ ସପ୍ତର୍ଷିମାନେ ଏହି ଜଳର ପ୍ରଭାବ ଜାଣିପାରି 'ଏହା ତପସ୍ୟାର ଚରମ ସିଦ୍ଧି' ବୋଲି ମନେକରନ୍ତି । ମୁମୁକ୍ଷୁ ବ୍ୟକ୍ତିମାନେ ମୁକ୍ତିକୁ ଲାଭ କରିବା ପରି ଅପୂର୍ବ ଶ୍ରଦ୍ଧାରେ ଏହାକୁ ଆଜିପର୍ଯ୍ୟନ୍ତ ମଧ୍ୟ ନିଜର ଜଟାରେ ଧାରଣ କରନ୍ତି । ସେହି ଋଷିମାନଙ୍କର କୌଣସି କାମନା ନ ଥାଏ । ଭଗବାନ ବାସୁଦେବଙ୍କପ୍ରତି ନିଶ୍ଚଳ ଭକ୍ତିକୁ ହିଁ ସେମାନେ ଶ୍ରେଷ୍ଠ ଧନ ବୋଲି ବିଚାର କରନ୍ତି ଏବଂ ତାହା ତୁଳନାରେ ଅନ୍ୟପୁରୁଷାର୍ଥକୁ ଓ ଆତ୍ମଜ୍ଞାନକୁ ହିଁ ଉପେକ୍ଷା କରନ୍ତି ॥୩॥

ଏହାପରେ ଏହି ଜଳଧାର ସହସ୍ରକୋଟି ବିମାନପରିବେଷ୍ଟିତ ଆକାଶମାର୍ଗ ଦେଇ ନକ୍ଷତ୍ରମଣ୍ଡଳକୁ ପ୍ଳାବନ କରି ସୁମେରୁ ପର୍ବତ ଶିଖରର ମଧ୍ୟଭାଗରେ ଅବସ୍ଥିତ ବ୍ରହ୍ମପୁରୀରେ ଅବତୀର୍ଣ୍ଣ ହୁଏ । ସେଠାରେ ସେ ସୀତା, ଅଳକନନ୍ଦା, ଚକ୍ଷୁ ଓ ଭଦ୍ରା ନାମରେ ଚାରୋଟି ଧାରରେ ବିଭକ୍ତ ହୋଇ ଚାରି ଦିଗରେ ପ୍ରବାହିତ ହୁଏ ଏବଂ ଶେଷରେ ସବୁ ନଦନଦୀର ଈଶ୍ୱର ସମୁଦ୍ରରେ ମିଳିତ ହୁଏ ॥୪-୫॥ ଏହି ଧାରମଧ୍ୟରୁ ସୀତା ବ୍ରହ୍ମପୁରୀରୁ କେସର ଆଦି ପର୍ବତର ମୁଖ୍ୟ ଶିଖରମାନଙ୍କରୁ ତଳକୁ ପ୍ରବାହିତ ହୁଏ ଏବଂ ଗନ୍ଧମାଦନ ପର୍ବତର ଶିଖରମାନଙ୍କ ଉପରେ ପଡ଼ି ଓ ଭଦ୍ରାଶ୍ୱବର୍ଷକୁ ପ୍ଳାବିତ କରି ପୂର୍ବଦିଗରେ ଲବଣସମୁଦ୍ରରେ ମିଳିତ ହୁଏ ॥୬॥ ଏହିପରି ଚକ୍ଷୁନଦୀ ମାଲ୍ୟବାନଗିରିର ଶିଖରରୁ ନିମ୍ନକୁ ପଡ଼ି କେତୁମାଳବର୍ଷରେ ବେଗକୁ ନ କମାଇ ପ୍ରବାହିତ ହେଉଚି ଏବଂ ପଶ୍ଚିମାଭିମୁଖୀ ହୋଇ ଲବଣସମୁଦ୍ରରେ ମିଳିତ ହେଉଛି ॥୭॥ ଭଦ୍ରା ମେରୁପର୍ବତର ଶିଖରରୁ ଉତ୍ତର ଦିଗରେ ପଡ଼ି ଏକ ଶିଖରରୁ ଅନ୍ୟ ଶିଖରକୁ ଡେଇଁ ଡେଇଁ ଗତି କରୁଛି ଏବଂ ଶେଷରେ ଶୃଙ୍ଗବାନ୍ ପର୍ବତର ଶିଖରରୁ ତଳକୁ ପଡ଼ି ପଡ଼ି ଉତ୍ତରକୁରୁ ଦେଶ ହୋଇ ଉତ୍ତର ଦିଗକୁ ଯାଉଚି ଓ ସମୁଦ୍ରରେ ମିଳିତ ହେଉଚି ॥୮॥ ଅଳକନନ୍ଦା ବ୍ରହ୍ମପୁରୀର ଦକ୍ଷିଣ ଦିଗରେ ପଡ଼ି ଅନେକ ଗିରିଶିଖର ପାର ହୋଇ ହେମକୂଟ ପର୍ବତରେ ପ୍ରବେଶ କରୁଚି । ସେଠାରୁ ଅତି ତୀବ୍ର ବେଗରେ ହିମାଳୟର ଶିଖରମାନଙ୍କୁ କ୍ଷୋଭିତ କରି ଭାରତବର୍ଷରେ ପ୍ରବେଶ କରୁଚି ଓ ଦକ୍ଷିଣରେ ପ୍ରବାହିତ ହୋଇ ସମୁଦ୍ରରେ ମିଶୁଚି । ଏଥିରେ ସ୍ନାନ କରିବାକୁ ଆସୁଥିବା ପୁରୁଷମାନଙ୍କୁ ପଦେ ପଦେ ଅଶ୍ୱମେଧ ଓ ରାଜସୂୟ ଆଦି ଯଜ୍ଞର ଫଳ ଦୁର୍ଲଭ ହୁଏ ନାହିଁ ॥୯॥ ପ୍ରତ୍ୟେକ ବର୍ଷରେ ମେରୁ ଆଦି ପର୍ବତର କନ୍ୟାରୂପେ ଶହ ଶହ ନଦୀ ପ୍ରବାହିତ ହେଉଛନ୍ତି ॥୧୦॥ ସମସ୍ତ ବର୍ଷ

ମଧ୍ୟରେ ଭାରତବର୍ଷ ହିଁ କର୍ମଭୂମି । ସ୍ୱର୍ଗରେ ବାସ କରୁଥିବା ପୁରୁଷମାନଙ୍କର ସ୍ୱର୍ଗଭୋଗରୁ ବଳିଥିବା ଅବଶିଷ୍ଟ ପୁଣ୍ୟର ଭୋଗପାଇଁ ଅନ୍ୟ ଆଠଟି ବର୍ଷ ଉଦ୍ଦିଷ୍ଟ । ଏହି ବର୍ଷମାନଙ୍କୁ ସେଥିପାଇଁ ଭୂଲୋକର ସ୍ୱର୍ଗ ବୋଲି କୁହାଯାଇଚି ॥୧୧॥ ସେଠାରେ ପାର୍ଥିବ ଗଣନା ଅନୁସାରେ ଦେବତୁଲ୍ୟ ମନୁଷ୍ୟମାନଙ୍କର ଆୟୁ ଦଶ ହଜାର ବର୍ଷ । ସେମାନଙ୍କର ଦଶହଜାର ହାତୀର ବଳ ଏବଂ ବଜ୍ରତୁଲ୍ୟ ସୁଦୃଢ଼ ଶରୀରରେ ଯେଉଁ ଶକ୍ତି, ଯୌବନ ଓ ଉତ୍ସାହ ରହେ, ତଦ୍ୱାରା ସେମାନେ ବହୁ ସମୟ ପର୍ଯ୍ୟନ୍ତ ମୈଥୁନ ସୁଖ ଉପଭୋଗ କରିପାରନ୍ତି । ସମ୍ଭୋଗର ଅବସାନରେ ଆୟୁର ଶେଷ ବର୍ଷରେ ସେମାନଙ୍କ ସ୍ତ୍ରୀମାନେ ଗର୍ଭଧାରଣ କରନ୍ତି । ସେଠାରେ ସର୍ବଦା ତ୍ରେତାଯୁଗ ପରି କାଳ ରହିଥାଏ ॥୧୨॥ ଏହି ବର୍ଷମାନଙ୍କରେ ନିଜ ନିଜ ମୁଖ୍ୟସେବକମାନେ ଦେବେଶ୍ୱରମାନଙ୍କର ନାନାପ୍ରକାର ସେବା ସତ୍କାର କରିଥା'ନ୍ତି । ବନ ଓ ଉପବନମାନଙ୍କରେ ସମସ୍ତ ଋତୁରେ ଫୁଟୁଥିବା ପେନ୍ଥା ପେନ୍ଥା ଫୁଲ, ଫଳ ଓ ନୂଆନୂଆ ପତ୍ରରେ ଶୋଭିତ ଏହି ବୃକ୍ଷ, ଲତା ଓ ତାଙ୍କ ଶାଖାମାନେ ଫୁଲ ଫଳ ଭାରରେ ତଳକୁ ନଇଁ ପଡ଼ିଥା'ନ୍ତି । ନିର୍ମଳ ଜଳପୂର୍ଣ୍ଣ ପୁଷ୍କରିଣୀମାନଙ୍କରେ ପ୍ରସ୍ଫୁଟିତ ନାନାପ୍ରକାର ନୂଆ ନୂଆ ପଦ୍ମଫୁଲଦ୍ୱାରା ଆହ୍ଲାଦିତ ହୋଇ ରାଜହଂସ, କଳହଂସ, ପାଣିକୁକୁଡ଼ା, କାରଣ୍ଡବ, ସାରସ ଓ ଚକ୍ରବାକ ଆଦି ପକ୍ଷୀ ସେଠାରେ କୂଜନ କରୁଥାନ୍ତି ଓ ମତ୍ତ ଭ୍ରମରମାନଙ୍କର ଗୁଞ୍ଜନ ଶୁଣାଯାଉଥାଏ । ମୁଗ୍ଧ ଦେବେଶ୍ୱରମାନେ ସୁନ୍ଦରୀ ଦେବାଙ୍ଗନାମାନଙ୍କର କାମୋଦ୍ଦୀପକ ହାସ୍ୟ, ବିଳାସ ଓ ଲୀଳାକଟାକ୍ଷଦ୍ୱାରା ଆକୃଷ୍ଟ ହୋଇ ଏଠାରେ ଆଶ୍ରମ, ଭବନ, ପର୍ବତଘାଟୀ ଓ ପୁଷ୍କରିଣୀମାନଙ୍କରେ ସେମାନଙ୍କ ସହିତ ସ୍ୱଚ୍ଛନ୍ଦ ବିହାର କରନ୍ତି ॥୧୩॥

ଭଗବାନ ନାରାୟଣ ବିଭିନ୍ନ ମୂର୍ତ୍ତିରେ ବିରାଜମାନ ହୋଇ ଏହି ନ'ଟିଯାକ ବର୍ଷର ଅଧିବାସୀମାନଙ୍କୁ ଅନୁଗୃହୀତ କରନ୍ତି । ଇଳାବୃତ ବର୍ଷରେ ଭଗବାନ ଶଙ୍କର ଏକମାତ୍ର ପୁରୁଷ ରୂପେ ଅବସ୍ଥାନ କରନ୍ତି । ପାର୍ବତୀଙ୍କ ଶାପକୁ ଜାଣି ଅନ୍ୟ କୌଣସି ପୁରୁଷ ଏଠାରେ ପ୍ରବେଶ କରେ ନାହିଁ । କାରଣ ଯେ ଯାଏ ସେ ସ୍ତ୍ରୀରୂପ ହୋଇଯାଏ । ପରେ (ନବମସ୍କନ୍ଧରେ) ଏହି ପ୍ରସଙ୍ଗ ମୁଁ ବର୍ଣ୍ଣନା କରିବି ॥୧୪-୧୫॥ ଏହି ଇଳାବୃତରେ ପାର୍ବତୀ ଏବଂ ତାଙ୍କର ଅର୍ବୁଦ ଅର୍ବୁଦ ଦାସୀ ଭଗବାନ୍ ଶଙ୍କରଙ୍କୁ ସେବା କରନ୍ତି । ସ୍ୱୟଂ ଶଙ୍କର ପରମପୁରୁଷ ପରମାତ୍ମାଙ୍କର ବାସୁଦେବ, ପ୍ରଦ୍ୟୁମ୍ନ, ଅନିରୁଦ୍ଧ ଓ ସଙ୍କର୍ଷଣ ନାମକ ଚତୁର୍ଦ୍ଧାରୂପରୁ ସଙ୍କର୍ଷଣମୂର୍ତ୍ତିକୁ ହିଁ ଉପାସନା କରନ୍ତି । କାରଣ ଏହି ମୂର୍ତ୍ତି ପରମାତ୍ମାଙ୍କର ତମୋମୟ ସଂହାରମୂର୍ତ୍ତି । ଭଗବାନ୍ ଶଙ୍କର ଏହି ରୂପକୁ ଧ୍ୟାନରେ ଚିନ୍ତା କରି ମନ୍ତ୍ର ଉଚ୍ଚାରଣରୂପକ ଏଇ ପ୍ରକାର ସ୍ତୁତି କରନ୍ତି-- ॥୧୬॥ ଭଗବାନ ଶଙ୍କର କହନ୍ତି, ଅନନ୍ତ, ଅବ୍ୟକ୍ତ, ସମସ୍ତ ଗୁଣର ଦ୍ୟୋତକ, ଓଁକାରସ୍ୱରୂପ, ପରମପୁରୁଷ ଶ୍ରୀ ଭଗବାନଙ୍କୁ ବାରମ୍ବାର ନମସ୍କାର ॥୧୭॥ ହେ ଭଜନୀୟ ଶରଣପଞ୍ଜର ! ଆପଣଙ୍କର ପାଦପଦ୍ମ ସବୁରି ଶରଣ ଏବଂ ସମସ୍ତ ଐଶ୍ୱର୍ଯ୍ୟର ଶ୍ରେଷ୍ଠ ଆଧାର । ଆପଣ ସଂସାରର ସ୍ରଷ୍ଟା । ଭକ୍ତଭାବନ, ଭବଖଣ୍ଡନ ଓ ସ୍ୱୟଂ ପରମେଶ୍ୱର ! ମୁଁ ଆପଣଙ୍କୁ ଭଜନ କରୁଛି ॥୧୮॥ ମାୟାର ପ୍ରଭାବରେ ପ୍ରାଣୀମାନଙ୍କର ଚିତ୍ତବୃତ୍ତି ଚାଳିତ । ଆପଣ ସେମାନଙ୍କୁ ନିୟନ୍ତ୍ରଣ କରିବାପାଇଁ ସବୁ ଦେଖୁଥିଲେ ମଧ୍ୟ ଆପଣଙ୍କ ଦୃଷ୍ଟି ମାୟାର ଗୁଣ ଓ ଚିତ୍ତବୃତ୍ତିଦ୍ୱାରା ଅଣୁମାତ୍ର ଲିପ୍ତ ହୁଏ ନାହିଁ । କିନ୍ତୁ ଆମେମାନେ କ୍ରୋଧର ବେଗକୁ ଜୟ କରି ପାରି ନ ଥିବାରୁ ଆମ ଦୃଷ୍ଟି ସେଥିରେ ଲିପ୍ତ ହୋଇଯାଏ । ଏଣୁ ଯେଉଁମାନେ ଇନ୍ଦ୍ରିୟଙ୍କୁ ଜୟ କରିବାକୁ ଇଚ୍ଛା କରନ୍ତି, ଆପଣଙ୍କୁ ଶ୍ରଦ୍ଧା ନ କରି ସେମାନେ କିପରି ରହିପାରିବେ ? ॥୧୯॥ ଆପଣଙ୍କ ଚକ୍ଷୁର ଅରୁଣିମାକୁ ଅସତ୍‌ଦୃଷ୍ଟିସମ୍ପନ୍ନ ମୂଢ଼ ବ୍ୟକ୍ତି ମଦ୍ୟପାନଦ୍ୱାରା ଆରକ୍ତ ଓ ଭୟଙ୍କର ବୋଲି ମନେ କରେ । କିନ୍ତୁ ଆପଣଙ୍କ ପାଦାର୍ଚ୍ଚନା ବେଳେ ଚରଣସ୍ପର୍ଶଦ୍ୱାରା ମୁଗ୍ଧ ନାଗବଧୂମାନଙ୍କର ଚିତ୍ତ ବିଚଳିତ ହୋଇଯାଏ ଏବଂ ଭୁଜାଦିର ଅର୍ଚ୍ଚନବେଳେ ଲଜ୍ଜାରେ ସେମାନେ ଆପଣଙ୍କର ସେବା କରିପାରନ୍ତି ନାହିଁ ॥୨୦॥ ଋଷିମାନେ ଯେଉଁ ଭଗବାନଙ୍କୁ ଏହି ବିଶ୍ୱର ସୃଷ୍ଟି, ସ୍ଥିତ ଓ ସଂହାରର କାରଣ ବୋଲି କହିଥା'ନ୍ତି, ମାତ୍ର ଯାହାଙ୍କର ନିଜର ସୃଷ୍ଟି, ସ୍ଥିତି ଓ ସଂହାର ନାହିଁ ଏବଂ ଯାହାଙ୍କୁ ଅନନ୍ତ ବୋଲି କୁହାଯାଇଛି; ତାଙ୍କ ସହସ୍ର ମସ୍ତକର କୌଣସି ଏକ ସ୍ଥାନରେ ସୋରିଷଦାନା ପରି ରହିଥିବା ଭୂମଣ୍ଡଳକୁ ସେ ଜାଣି ପାରନ୍ତି ନାହିଁ ॥୨୧॥ ଭଗବାନଙ୍କର ପ୍ରଥମ ଗୁଣମୟ ବିଗ୍ରହ ଓ ବିଜ୍ଞାନର ଆଶ୍ରୟସ୍ଥଳ ଭଗବାନ

ବ୍ରହ୍ମା ମହତ୍ତତ୍ତ୍ୱ ରୂପେ ଅଭିହିତ ଏବଂ ତାହାଙ୍କଠାରୁ ଅହଙ୍କାର ବା ରୁଦ୍ର ରୂପରେ ମୁଁ ଉତ୍ପନ୍ନ ହୋଇଛି । ସତ୍ତ୍ୱ, ରଜଃ ଓ ତମୋରୂପୀ ନିଜର ତ୍ରିଗୁଣାତ୍ମକ ଶକ୍ତିଦ୍ୱାରା ମୁଁ ସାତ୍ତ୍ୱିକ ଦେବଗଣଙ୍କୁ, ତାମସିକ ଭୂତଗଣଙ୍କୁ ଓ ରାଜସିକ ଇନ୍ଦ୍ରିୟମାନଙ୍କୁ ସୃଷ୍ଟି କରିଛି ॥୨୨॥ ମହତ୍ତତ୍ତ୍ୱ, ଅହଙ୍କାର, ଇନ୍ଦ୍ରିୟାଭିମାନୀ ଦେବତା, ଇନ୍ଦ୍ରିୟମାନେ ଏବଂ ପଞ୍ଚଭୂତ ଆଦି ଆମେ ସମସ୍ତେ ଡୋରିରେ ବନ୍ଧା ହୋଇଥିବା ପକ୍ଷୀପରି ଆପଣଙ୍କର କ୍ରିୟାଶକ୍ତିଦ୍ୱାରା ବଶୀଭୂତ ହୋଇ ଆପଣଙ୍କ କୃପାରୁ ଏହି ଜଗତକୁ ରଚନା କରିଛୁ ॥୨୩॥ ମାୟାମୋହିତ ଜୀବ କର୍ମବନ୍ଧନର ହେତୁସ୍ୱରୂପ ମାୟାକୁ ବେଳେବେଳେ ଜାଣିପାରେ । କିନ୍ତୁ ସେଥିରୁ ମୁକ୍ତ ହେବାର ଉପାୟ ସେ ସହଜରେ ଜାଣିପାରେ ନାହିଁ । ଏହି ଜଗତର ସୃଷ୍ଟି ଓ ସଂହାରରୂପୀ ପରମାତ୍ମାସ୍ୱରୂପ, ଆପଣଙ୍କୁ ମୁଁ ନମସ୍କାର କରୁଛି ॥୨୪॥

## ଅଷ୍ଟାଦଶ ଅଧ୍ୟାୟ

# ଭିନ୍ନ ଭିନ୍ନ ବର୍ଷର ଉପାସନା ବର୍ଣ୍ଣନା

ଶ୍ରୀ ଶୁକଦେବ କହିଲେ, ରାଜା, ଭଦ୍ରାଶ୍ୱବର୍ଷରେ ଧର୍ମପୁତ୍ର ଭଦ୍ରଶ୍ରବା ଏବଂ ତାଙ୍କ ମୁଖିଆ ମୁଖିଆ ଲୋକମାନେ ଭଗବାନ ବାସୁଦେବଙ୍କର ହୟଗ୍ରୀବ ନାମକ ସାକ୍ଷାତ୍ ଧର୍ମମୟ ପ୍ରିୟମୂର୍ତ୍ତିକୁ ନିଜର ହୃଦୟରେ ସ୍ଥାପନ କରି ନିଷ୍ଠାର ସହିତ ଏହି ମନ୍ତ୍ରଜପଦ୍ୱାରା ତାଙ୍କର ସ୍ତୁତି କରନ୍ତି -- ॥୧॥ ଭଦ୍ରଶ୍ରବା ଓ ତାଙ୍କର ମୁଖ୍ୟମାନେ କହନ୍ତି, ଆତ୍ମଶୁଦ୍ଧିପାଇଁ ଓଁକାରସ୍ୱରୂପ ଭଗବାନ ଧର୍ମଙ୍କୁ ନମସ୍କାର ॥୨॥ ଅହୋ, ଭଗବାନଙ୍କ ଲୀଳା କେଡ଼େ ବିଚିତ୍ର ! ହନନକାରୀ ମୃତ୍ୟୁକୁ ଜୀବ ଦେଖି ମଧ୍ୟ ନ ଦେଖିବା ପରି ହେଉଚି । ପାପତୁଲ୍ୟ ତୁଚ୍ଛ ବିଷୟସୁଖ ଭୋଗ କରିବାକୁ ଚିନ୍ତା କରି ନିଜର ପିତାପୁତ୍ରାଦିଙ୍କ ଶବଦାହ ନିଜ ହାତରେ କରି ମଧ୍ୟ ପୁଣି ବଞ୍ଚି ରହିବାକୁ ଇଚ୍ଛା କରୁଚି ॥୩॥ ବିଜ୍ଞ ବ୍ୟକ୍ତିମାନେ ଏହି ବିଶ୍ୱକୁ ନଶ୍ୱର ବୋଲି କହିଥା'ନ୍ତି । ଆତ୍ମଜ୍ଞାନୀ ବିଦ୍ୱାନ୍‌ମାନେ ସୂକ୍ଷ୍ମଦୃଷ୍ଟିରେ ତାହାହିଁ ଦେଖନ୍ତି । ଜନ୍ମରହିତ ପ୍ରଭୁ, ତଥାପି ଆପଣଙ୍କ ମାୟାରେ ଲୋକ ମୋହିତ ହୋଇଯା'ନ୍ତି । ଆପଣଙ୍କର କୃତ୍ୟ ଅତିଶୟ ବିସ୍ମୟଜନକ । ଅନାଦିପୁରୁଷ ସ୍ୱରୂପ ଆପଣଙ୍କୁ ଆମେ ନମସ୍କାର କରୁଚୁ ॥୪॥ ମାୟାଦ୍ୱାରା ଆପଣ ଆବୃତ ନୁହନ୍ତି ଏବଂ କୌଣସି କର୍ମର କର୍ତ୍ତା ନୁହନ୍ତି । ତଥାପି ଏ ବିଶ୍ୱର ସୃଷ୍ଟି, ପାଳନ ଓ ସଂହାର ଆପଣ ହିଁ କରନ୍ତି । ଏଥିରେ ଆଶ୍ଚର୍ଯ୍ୟ ହେବାର କିଛି ନାହିଁ, ଏଥିଯୋଗୁଁ ଯେ ସର୍ବାତ୍ମାସ୍ୱରୂପରେ ଆପଣ ମାୟାଦ୍ୱାରା ସମସ୍ତ କାର୍ଯ୍ୟର କାରଣ ହୁଅନ୍ତି ଏବଂ ମାୟାରହିତ ଶୁଦ୍ଧସ୍ୱରୂପରେ ଆପଣ ସମସ୍ତ କାର୍ଯ୍ୟକାରଣର ଦୂରରେ ରହିଥା'ନ୍ତି ॥୫॥ ପ୍ରଳୟକାଳରେ ତମୋଗୁଣୀ ଦୈତ୍ୟମାନେ ବେଦକୁ ଚୋରାଇ ନେଇଯାଇଥିଲେ । ବ୍ରହ୍ମା ପ୍ରାର୍ଥନା କରିବାରୁ ହୟଗ୍ରୀବ ମୂର୍ତ୍ତି ଧାରଣ କରି ରସାତଳରୁ ଆପଣ ତାହା ଉଦ୍ଧାର କରିଥିଲେ । ସତ୍ୟସଙ୍କଳ୍ପ ପ୍ରଭୁ! ଆପଣଙ୍କୁ ମୁଁ ନମସ୍କାର କରୁଛି ॥୬॥ ହରିବର୍ଷରେ ଶ୍ରୀ ଭଗବାନ ନରସିଂହରୂପରେ ଅବସ୍ଥାନ କରୁଛନ୍ତି । କେଉଁ କାରଣରୁ ସେ ଏହି ରୂପ ଧାରଣ କରିଥିଲେ, ତାହା ମୁଁ ପରେ ବର୍ଣ୍ଣନା କରିବି । ହିରଣ୍ୟକଶିପୁର ପୁତ୍ର ପରମଭାଗବତ ପ୍ରହ୍ଲାଦ ମହାପୁରୁଷୋଚିତ ସମସ୍ତ ଗୁଣରେ ପୂର୍ଣ୍ଣ ଥିଲେ । ସେ ଫଳସଙ୍କଳ୍ପ (ବ୍ୟବଧାନ) ରହିତ ଅନନ୍ୟ ଭକ୍ତିଯୋଗଦ୍ୱାରା ହରିବର୍ଷର ଅନ୍ୟ ପୁରୁଷମାନଙ୍କସହିତ ଭଗବାନଙ୍କୁ ଉପାସନା କରନ୍ତି । ସେ ନିଜର ଶୀଳ ଓ ଆଚରଣଦ୍ୱାରା ଦୈତ୍ୟ ଓ ଦାନବକୁଳକୁ ପବିତ୍ରିତ କରିଥିଲେ । ସେ ଯେଉଁ ମନ୍ତ୍ରରେ ଭଗବାନଙ୍କୁ ଆରାଧନା କରୁଥିଲେ, ତାହା ଏହିପରି -- ॥୭॥ 'ଓଁ ଶ୍ରୀ ଭଗବାନ ନରସିଂହଙ୍କୁ ନମସ୍କାର, ଆପଣ ତେଜର ତେଜସ୍ୱରୂପ, ଆପଣଙ୍କୁ ନମସ୍କାର, ଆପଣ ଆବିର୍ଭୂତ ହୁଅନ୍ତୁ, ଆବିର୍ଭୂତ ହୁଅନ୍ତୁ । ଆପଣଙ୍କ ନଖ ଓ ଦନ୍ତ ବଜ୍ରତୁଲ୍ୟ । ଆପଣ ସମସ୍ତ କର୍ମବାସନାକୁ ଜାଳି ଦିଅନ୍ତୁ, ଜାଳି ଦିଅନ୍ତୁ । ଆମର ଅଜ୍ଞାନ-ଅନ୍ଧକାରକୁ ଗ୍ରାସ କରନ୍ତୁ, ଗ୍ରାସ କରନ୍ତୁ । ଓଁ ସ୍ୱାହା । ଆମର ଆତ୍ମାକୁ ଅଭୟ ଦାନ କରନ୍ତୁ, ଅଭୟ ଦାନ କରନ୍ତୁ । ଆପଣ ପ୍ରକାଶିତ ହୁଅନ୍ତୁ । ଓଁ, କ୍ଷ୍ରୌମ୍' ॥୮॥ 'ପ୍ରଭୁ! ବିଶ୍ୱର କଲ୍ୟାଣ ହେଉ । ଖଳ କ୍ରୂରତା ଛାଡୁ । ସମସ୍ତ ପ୍ରାଣୀଙ୍କ ମଧ୍ୟରେ

ସଦ୍‌ଭାବନା ଜାତ ହେଉ ଏବଂ ସମସ୍ତେ ପରସ୍ପର ମଙ୍ଗଳକାମନା କରନ୍ତୁ । ଆମର ମନ ମଙ୍ଗଳମୟ ହେଉ । ନିଷ୍କାମ ଉପାସନାରେ ଆମର ମତି ଶ୍ରୀହରିଙ୍କଠାରେ ନିବିଷ୍ଟ ରହୁ ।' ॥୯॥ 'ଗୃହ, ପୁତ୍ର, ବିତ୍ତ ଓ ବନ୍ଧୁଙ୍କ ପ୍ରତି ଆମର ଆସକ୍ତି ନ ରହୁ । ଯଦି ଆସକ୍ତି ରହେ, ତେବେ ଭଗବାନଙ୍କ ପ୍ରିୟ ଭକ୍ତଠାରେ ହିଁ ରହୁ । କେବଳ ଜୀବନଧାରଣପାଇଁ ଯେଉଁ ଆତ୍ମଜ୍ଞ ବ୍ୟକ୍ତି ସାମାନ୍ୟ ଅନ୍ନରେ ସନ୍ତୁଷ୍ଟ ରହେ, ସେ ଖୁବ୍ ଶୀଘ୍ର ସିଦ୍ଧିଲାଭ କରେ । ଇନ୍ଦ୍ରିୟପ୍ରିୟ ବ୍ୟକ୍ତିର ତାହା ହୁଏ ନାହିଁ' ॥୧୦॥ 'ଭଗବତ୍ ଭକ୍ତଙ୍କ ସଙ୍ଗଲାଭଦ୍ୱାରା ତୀର୍ଥତୁଲ୍ୟ ପବିତ୍ର ଭଗବାନଙ୍କର ଚରିତ୍ର ଶୁଣିବାକୁ ମିଳେ । ତାହା ତାଙ୍କ ଅସାଧାରଣ ଶକ୍ତି ଓ ପ୍ରଭାବର ସୂଚନା ଦିଏ । ଏହା ବାରମ୍ବାର ଶୁଣିବା ଦ୍ୱାରା କର୍ଣ୍ଣପଥରେ ଭଗବାନ ଅନ୍ତରମଧ୍ୟରେ ପ୍ରବେଶ କରନ୍ତି ଏବଂ ସମସ୍ତପ୍ରକାର ଦୈହିକ ଓ ମାନସିକ ମଳକୁ ନଷ୍ଟ କରିଦିଅନ୍ତି ।' ॥୧୧॥ 'ଭଗବାନଙ୍କଠାରେ ନିଷ୍କାମ ଭକ୍ତି ରଖିଥିବା ପୁରୁଷର ହୃଦୟରେ ଧର୍ମ ଜ୍ଞାନ ଆଦି ସଦ୍‌ଗୁଣମାନଙ୍କ ସହିତ ଦେବତାମାନେ ନିବାସ କରନ୍ତି । କିନ୍ତୁ ଯେ ଭଗବାନଙ୍କର ଭକ୍ତ ନୁହେଁ, ତା'ଠାରେ ଏ ସମସ୍ତ ମହତ୍‌ଗୁଣ କେଉଁଠୁ ଆସିବ ? ତୁଚ୍ଛ ବିଷୟବାସନା ପ୍ରତି ଆକୃଷ୍ଟ ହୋଇ ତା'ର ମନ ସବୁବେଳେ ବାହାରକୁ ଧାଉଁଥାଏ ।' ॥୧୨॥

'ପାଣି ହିଁ ଯେପରି ମାଛମାନଙ୍କର ପ୍ରିୟତମ ଆତ୍ମା, ସେହିପରି ଶରୀରଧାରୀମାନଙ୍କର ଆତ୍ମା ହେଉଛନ୍ତି ସାକ୍ଷାତ୍ ଭଗବାନ ଶ୍ରୀହରି । ବ୍ୟକ୍ତି ଯେତେ ବଡ଼ ହେଉନା କାହିଁକି ସେ ଯଦି ଭଗବାନଙ୍କୁ ଛାଡ଼ି ନିଜ ଘରେ ଆସକ୍ତ ହୋଇଯାଏ, ତେବେ ବୟସରେ ବଢ଼ିଲେ ମଧ୍ୟ ସେ ଜ୍ଞାନାଦି ଗୁଣରେ ବଢ଼େ ନାହିଁ, ସାମାନ୍ୟ ଦମ୍ପତିଙ୍କ ପରି ଜୀବନଯାପନ କରେ । ତେଣୁ ବାସନା, ରାଗ, ବିଷାଦ, କ୍ରୋଧ, ଅଭିମାନ, ଆଗ୍ରହ, ଭୟ, ଦୀନତା ଓ ମାନସିକ ଅଶାନ୍ତିର କାରଣ ଗୃହପ୍ରତି ଆସକ୍ତିକୁ ତ୍ୟାଗ କର । କାରଣ ତାହା ହେଉଛି ଜନ୍ମମରଣରୂପୀ ସଂସାରଚକ୍ରର କାରଣ । ତେଣୁ ସେହି ନୃସିଂହ ଭଗବାନଙ୍କର ଅଭୟ ପାଦପଦ୍ମରେ ଆଶ୍ରୟ ନିଅ' ॥୧୩-୧୪॥

କେତୁମାଳ ବର୍ଷରେ ଭଗବାନ ଲକ୍ଷ୍ମୀଙ୍କର ଏବଂ ସମ୍ବତ୍ସର ନାମକ ପ୍ରଜାପତିଙ୍କ ପୁତ୍ର ଓ କନ୍ୟାମାନଙ୍କର ପ୍ରିୟ କାର୍ଯ୍ୟ କରିବାପାଇଁ କାମଦେବ ରୂପରେ ଅବସ୍ଥାନ କରନ୍ତି । ପ୍ରଜାପତିଙ୍କର କନ୍ୟାମାନେ ରାତ୍ରିର ଦେବତା ଓ ପୁତ୍ରମାନେ ଦିବସର ଦେବତା । ସେମାନେ ହେଲେ ବର୍ଷର ଅଧିପତି । ମନୁଷ୍ୟର ଶହେ ବର୍ଷ ଆୟୁରେ ଯେତିକିଟି ଦିନ ଓ ରାତି ଅଛି, ସେମାନଙ୍କ ସଂଖ୍ୟା ହେଉଛି ସେତିକି ଅର୍ଥାତ୍ ଛତିଶ ହଜାର । ଏହି କନ୍ୟାମାନେ ପରମପୁରୁଷ ନାରାୟଣଙ୍କର ଶ୍ରେଷ୍ଠ ଅସ୍ତ୍ର ସୁଦର୍ଶନ ଚକ୍ରର ତେଜରେ ଭୟଭୀତ ହୋଇପଡ଼ନ୍ତି ଏବଂ ପ୍ରତି ବର୍ଷଶେଷରେ ତାଙ୍କର ଗର୍ଭ ନଷ୍ଟ ହୋଇଯାଏ ॥୧୫॥ କେତୁମାଳ ବର୍ଷରେ ରହୁଥିବା ଭଗବାନ କାମଦେବଙ୍କର ଗମନାଗମନ ଅତିଶୟ ଲଳିତ । ତାଙ୍କ ମନୋରମ, ମଧୁର ସ୍ମିତହାସ, କ୍ରୀଡ଼ାମୟ କଟାକ୍ଷ ଓ କୁଞ୍ଚିତ ସୁନ୍ଦର ଭ୍ରୂଲତା ଦ୍ୱାରା ପଦ୍ମପରି ମୁଖମଣ୍ଡଳର ଶୋଭା ଆହୁରି ବଢ଼ିଯାଏ । ସେ ସୌନ୍ଦର୍ଯ୍ୟର ଦେବୀ ଲକ୍ଷ୍ମୀଙ୍କୁ ସନ୍ତୁଷ୍ଟ କରିବା ସଙ୍ଗେ ସଙ୍ଗେ ନିଜର ଇନ୍ଦ୍ରିୟମାନଙ୍କୁ ମଧ୍ୟ ଆହ୍ଲାଦିତ କରନ୍ତି ॥୧୬॥ ଲକ୍ଷ୍ମୀଦେବୀ ପରମ ସମାଧିଯୋଗରେ ଭଗବାନଙ୍କର ଏହି ମାୟାମୟ ରୂପକୁ ରାତ୍ରିକାଳରେ ପ୍ରଜାପତିଙ୍କ କନ୍ୟାମାନଙ୍କ ସହ ଏବଂ ଦିନବେଳେ ତାଙ୍କ ପୁତ୍ରମାନଙ୍କ ସହ ଏହିପରି ମନ୍ତ୍ର ଉଚ୍ଚାରଣ କରି ସ୍ତୁତି କରନ୍ତି ॥୧୭॥ 'ଓଁ, ହ୍ରାଂ, ହ୍ରୀଂ, ହ୍ରୂଂ, ଓଁ -- ଏହି ବୀଜମନ୍ତ୍ରର ସ୍ୱରୂପ ଭଗବାନ ହୃଷୀକେଶଙ୍କୁ ନମସ୍କାର । ଆପଣ ସମସ୍ତ ଶ୍ରେଷ୍ଠ ଗୁଣର ଆଧାର । କ୍ରିୟା, ଜ୍ଞାନ, ସଙ୍କଳ୍ପ, ଅଧ୍ୟବସାୟ, ଓ ତତ୍‌ସମ୍ପର୍କୀୟ ସମସ୍ତ ବିଷୟର ଆପଣ ଏକମାତ୍ର ଅଧିପତି । ଏକାଦଶ ଇନ୍ଦ୍ରିୟ ଓ ପାଞ୍ଚ ବିଷୟ - ଏହି ଷୋଳକଳାରେ ଆପଣ ଯୁକ୍ତ । ବେଦବିହିତ କର୍ମ ଦ୍ୱାରା ଆପଣଙ୍କୁ ଲାଭ କରାଯାଏ । ଆପଣ ଅନ୍ନମୟ, ଅମୃତମୟ ଏବଂ ସର୍ବମୟ । ଆପଣ ସହଃ(ମନୋବଳ), ଓଜ ଓ ବଳର ଏକମାତ୍ର କାରଣ । ଆପଣ ଭକ୍ତମାନଙ୍କୁ ଭୋଗ୍ୟବସ୍ତୁ ପ୍ରଦାନ କରନ୍ତି ଏବଂ ସାଂସାରିକ କାମନା ମଧ୍ୟ ପୂର୍ଣ୍ଣ କରନ୍ତି । ଇହଲୋକ ଓ ପରଲୋକ ଉଭୟରେ କଲ୍ୟାଣସ୍ୱରୂପ ଆପଣଙ୍କୁ ନମସ୍କାର' ॥୧୮॥ ସ୍ତ୍ରୀମାନେ ସମସ୍ତ ଇନ୍ଦ୍ରିୟର ଫଳଦାତା ଈଶ୍ୱରରୂପରେ କଠୋର ବ୍ରତ ସହକାରେ ଆପଣଙ୍କୁ ଆରାଧନା କରି ନିଜର ଉପଯୁକ୍ତ ସ୍ୱାମୀ ପାଇବାପାଇଁ ପ୍ରାର୍ଥନା କରନ୍ତି; କିନ୍ତୁ ସେମାନଙ୍କର ସ୍ୱାମୀମାନେ ନିଜର ପ୍ରିୟ ସନ୍ତାନ, ଧନ ଓ ଆୟୁଷ ଆଦି ରକ୍ଷା କରିପାରନ୍ତି ନାହିଁ । କାରଣ ସେମାନେ ପରାଧୀନ ॥୧୯॥ ପ୍ରକୃତ ସ୍ୱାମୀ ସେହି

ଯେ ନିଜେ ଅକୁତୋଭୟ ହୋଇ ସବୁଆଡୁ ଭୟାତୁର ଲୋକଙ୍କୁ ରକ୍ଷା କରିପାରେ । ଏହିପରି ଏକମାତ୍ର ପତି ହେଉଛନ୍ତି ଆପଣ । ଅନ୍ୟ କେହି ନୁହେଁ । ଆଉ କାହାରି ପାଖକୁ ଗଲେ ସେ ପରସ୍ପର ଭୟ କରି ରହିଥାଏ । ଏଥିପାଇଁ ପରମାର୍ଥସ୍ୱରୂପ ଆପଣଙ୍କୁ ଲାଭ ବ୍ୟତୀତ ଅନ୍ୟ କୌଣସି ଲାଭ ନାହିଁ ବୋଲି ପଣ୍ଡିତମାନେ କହନ୍ତି ॥୨୦॥ ପ୍ରଭୁ ! ଯେଉଁ ସ୍ତ୍ରୀ ନିଷ୍କାମ ଭାବରେ ସମସ୍ତଗୁଣସମ୍ପନ୍ନ ଆପଣଙ୍କ ପାଦପଦ୍ମରେ ସେବା କାମନା କରେ, ଇଚ୍ଛା ନ କଲେ ମଧ୍ୟ ତା'ର ସମସ୍ତ କାମନା ପୂର୍ଣ୍ଣ ହୋଇଯାଏ । କିନ୍ତୁ ଯେ କୌଣସି ବସ୍ତୁ କାମନା କରି ଆପଣଙ୍କୁ ଅର୍ଚ୍ଚନା କରେ, ଆପଣ ତାକୁ କେବଳ ସେହି ବସ୍ତୁଟି ଦାନ କରନ୍ତି; ମାତ୍ର ଭୋଗ ହେବାପରେ ତାହା ନଷ୍ଟ ହୋଇଯାଏ । ସେଥିପାଇଁ ଜୀବକୁ ବହୁ ଦୁଃଖ ଭୋଗ କରିବାକୁ ହୁଏ ॥୨୧॥ ଅଜିତ ! ମୋତେ ପାଇବାପାଇଁ ବ୍ରହ୍ମା, ଶିବ ଓ ଇନ୍ଦ୍ରାଦି ଦେବଗଣ ତଥା ଅସୁର, ଯକ୍ଷ, ଗନ୍ଧର୍ବ, ମନୁଷ୍ୟ ଆଦି ସମସ୍ତେ ଉଗ୍ର ତପସ୍ୟା କରନ୍ତି । କିନ୍ତୁ ଯେଉଁମାନେ ଆପଣଙ୍କ ପାଦପଦ୍ମରେ ଆଶ୍ରିତ ନୁହନ୍ତି, ସେମାନେ କେହି ମୋତେ ପାଇପାରନ୍ତି ନାହିଁ, କାରଣ ମୋର ହୃଦୟ ଆପଣଙ୍କଠାରେ ହିଁ ଅନୁରକ୍ତ ହୋଇ ରହିଥାଏ ॥୨୨॥ ଅଚ୍ୟୁତ ! ଆପଣ ସଦୟ ହୋଇ ନିଜର ଯେଉଁ କରକମଳକୁ ଭକ୍ତମାନଙ୍କ ମସ୍ତକ ଉପରେ ରଖିଥାଆନ୍ତି, ସେହି ବନ୍ଦନୀୟ ହସ୍ତକୁ ମୋର ମସ୍ତକରେ ରଖନ୍ତୁ । ବରେଣ୍ୟ ! ଭକ୍ତମାନଙ୍କର ଐଶ୍ୱର୍ଯ୍ୟ ଦେଖି ମୁଁ ଯେପରି ଅସୂୟାପରବଶ ନ ହୁଏ, ସେଥିପାଇଁ ଆପଣ ମୋତେ ମାୟାରେ କନକରେଖା ରୂପେ ବକ୍ଷସ୍ଥଳରେ ଧାରଣ କରିଥା'ନ୍ତି । ଆପଣ ସର୍ବସମର୍ଥ । କିନ୍ତୁ ଆପଣଙ୍କ ମାୟାକୃତ ଲୀଳା ବୁଝିବାପାଇଁ କେହି ସମର୍ଥ ନୁହନ୍ତି ॥୨୩॥

ରମ୍ୟକ ନାମକ ବର୍ଷରେ ଭଗବାନ ତାଙ୍କ ପ୍ରିୟତମ ଅବତାର ମତ୍ସ୍ୟରୂପରେ ବିରାଜମାନ । ଏହି ରମ୍ୟକବର୍ଷର ଅଧିପତି ମନୁଙ୍କୁ ଭଗବାନ ପୂର୍ବେ ଏହି ରୂପ ଦେଖାଇଥିଲେ । ଏପର୍ଯ୍ୟନ୍ତ ପରମଭକ୍ତିରେ ସେହି ରୂପକୁ ସେ ଆରାଧନା କରୁଛନ୍ତି ଏବଂ ଏହି ମନ୍ତ୍ର ଜପ କରି ସ୍ତୁତି କରୁଛନ୍ତି - ଓଁ ଶୁଦ୍ଧସତ୍ତ୍ୱସ୍ୱରୂପ, ପ୍ରାଣ, ଓଜ, ସହଃ ଓ ବଳର ଉତ୍ସ ମହାମତ୍ସ୍ୟରୂପୀ ମୁଖ୍ୟତମ ଭଗବାନଙ୍କୁ ମୁଁ ବାରମ୍ବାର ନମସ୍କାର କରୁଛି । ନଟ ଯେପରି ଆଢୁଆଳରେ ରହି କାଠପୁତୁଳିକୁ ନଚାଇଥାଏ, ଆପଣ ସେହିପରି ଅଦୃଶ୍ୟଭାବରେ ବିଭିନ୍ନ ନାମରେ ବିଭକ୍ତ ବିଶ୍ୱକୁ ନିଜ ବଶକୁ ଆଣି ନଚାଉଛନ୍ତି । ବ୍ରହ୍ମାଦି ଲୋକପାଳମାନେ ଆପଣଙ୍କୁ ଦେଖି ପାରୁ ନ ଥିଲେ ମଧ୍ୟ ଆପଣ ସମସ୍ତ ପ୍ରାଣୀଙ୍କ ଭିତରେ ପ୍ରାଣରୂପେ ଓ ବାହାରେ ବାୟୁରୂପରେ ସଞ୍ଚରଣ କରନ୍ତି । ବେଦ ହିଁ ଆପଣଙ୍କର ମୁଖନିଃସୃତ ବାଣୀ ॥୨୪-୨୬॥ ଏହି ସାସାରରେ ଯେଉଁ ଦ୍ୱିପଦ, ଚତୁଷ୍ପଦ, ସ୍ଥାବର ଆଦି ଜୀବ ଦେଖାଯା'ନ୍ତି ଈର୍ଷାଜର୍ଜରିତ ଲୋକପାଳମାନେ ଆପଣଙ୍କୁ ଛାଡ଼ି ମିଳିତ ଭାବରେ ହେଉ, ବା ପୃଥକ୍ ଭାବରେ ହେଉ, ସେମାନଙ୍କୁ ରକ୍ଷା କରିପାରନ୍ତି ନାହିଁ ॥୨୭॥ ପ୍ରଭୁ ! ବୃକ୍ଷ, ଲତା ଓ ଓଷଧିମାନଙ୍କର ଆଶ୍ରୟସ୍ଥଳ ଏହି ପୃଥିବୀ ଯେତେବେଳେ ଉତ୍ତାଳତରଙ୍ଗମୟ ପ୍ରଳୟସମୁଦ୍ରରେ ମଗ୍ନ ଥିଲା, ଆପଣ ସେତେବେଳେ ମୋ ସହିତ ତାହାକୁ ଧାରଣ କରି ବିହାର କରିଥିଲେ । ଆପଣ ସମସ୍ତ ଜଗତ୍ର ପ୍ରାଣୀମାନଙ୍କର ଆତ୍ମାସ୍ୱରୂପ । ଆପଣଙ୍କୁ ବାରମ୍ବାର ନମସ୍କାର କରୁଛି ॥୨୮॥

ହିରଣ୍ମୟବର୍ଷରେ ଭଗବାନ ପୁରୁଷୋତ୍ତମ କୂର୍ମ ରୂପ ଧାରଣ କରି ଅବସ୍ଥାନ କରନ୍ତି । ସେଠାର ଅଧିବାସୀମାନଙ୍କ ସହିତ ପିତୃଗଣଙ୍କର ଅଧିପତି ଅର୍ଯ୍ୟମା ଭଗବାନଙ୍କର ସେହି ପ୍ରିୟତମ ତନୁକୁ ଉପାସନା କରନ୍ତି ଏବଂ ଏହି ମନ୍ତ୍ର ଜପନ୍ତି । ସକଳ ସତ୍ତ୍ୱଗୁଣର ଆଶ୍ରୟସ୍ଥଳ, ଜଳରେ ବିଚରଣ କରୁଥିବାଯୋଗୁଁ ଯାହାଙ୍କର କୌଣସି ନିର୍ଦ୍ଦିଷ୍ଟ ସ୍ଥାନ ନାହିଁ, ଯେ କୌଣସି କାଳଦ୍ୱାରା ମଧ୍ୟ ସୀମିତ ନୁହନ୍ତି, ଯେ ଓଁକାର ରୂପୀ ବିଶ୍ୱାଧାର, ସର୍ବବ୍ୟାପୀ ସେହି କୂର୍ମ ଭଗବାନଙ୍କୁ ବାରମ୍ବାର ନମସ୍କାର ॥୨୯-୩୦॥

ମୁଁ ଏହି ଦୃଶ୍ୟମାନ ଜଗତର ଯେଉଁସବୁ ପଦାର୍ଥ ଦେଖିପାରୁଛି, ତାହା ଭଗବାନଙ୍କ ମାୟାରେ ହିଁ କଳ୍ପିତ । ଭଗବାନ ଏହିପରି ବହୁରୂପରେ ଆତ୍ମପ୍ରକାଶ କରିଥା'ନ୍ତି । ମାୟାର୍ପିତ ଏହି ରୂପମାନଙ୍କର ସଂଖ୍ୟା କେହି ନିରୂପଣ କରି ପାରିବେ ନାହିଁ । ତେଣୁ ହେ ଅନିର୍ବଚନୀୟରୂପୀ ଭଗବାନ, ଆପଣଙ୍କୁ ମୁଁ ନମସ୍କାର କରୁଛି ॥୩୧॥ ପ୍ରଭୁ ! ଜଗତରେ ଜରାୟୁଜ, ସ୍ୱେଦଜ, ଅଣ୍ଡଜ, ଉଦ୍ଭିଜ୍ଜ, ସ୍ଥାବର, ଜଙ୍ଗମ, ଦେବର୍ଷି ଓ ପିତୃଗଣ, ଭୂତଗଣ, ଇନ୍ଦ୍ରିୟବର୍ଗ, ସ୍ୱର୍ଗ, ଆକାଶ, ପୃଥିବୀ, ପର୍ବତ, ନଦୀ,

ଦ୍ୱୀପ, ସମୁଦ୍ର, ଗ୍ରହ, ନକ୍ଷତ୍ର -- ଏହିପରି ଯେଉଁ ସବୁ ନାମ ଦେଖିବାକୁ ମିଳେ, ତାହା କେବଳ ଆପଣଙ୍କର ନାମ ।।୩୨।। 'ଆପଣ ଅସଂଖ୍ୟ ନାମ', ରୂପ ଏବଂ ଆକୃତିରେ ଯୁକ୍ତ । କପିଳାଦି ଋଷିମାନେ ଚତୁର୍ବିଂଶତି ଆଦି ସଂଖ୍ୟା ସମ୍ବଳିତ ସାଂଖ୍ୟଶାସ୍ତ୍ରଦ୍ୱାରା ଆପଣଙ୍କ ସ୍ୱରୂପ କଳ୍ପନା କରିଛନ୍ତି; ଯେଉଁ ତତ୍ତ୍ୱଦୃଷ୍ଟିର ଉଦୟମାତ୍ରେ ସେଇ ସଂଖ୍ୟା ଅପନୀତ ହୋଇଯାଏ, ସାଂଖ୍ୟସିଦ୍ଧାନ୍ତସ୍ୱରୂପ ସେହି ଆପଣଙ୍କୁ ମୁଁ ନମସ୍କାର କରୁଛି ।।୩୩।।

ଯଜ୍ଞପୁରୁଷ ଭଗବାନ୍ ବରାହରୂପ ଧାରଣ କରି ଉତ୍ତରକୁରୁ ବର୍ଷରେ ଅବସ୍ଥାନ କରୁଛନ୍ତି । ସେଠାରେ ଭୂଦେବୀ (ପୃଥିବୀ) ଉତ୍ତରକୁରୁବାସୀଙ୍କ ସହିତ ମିଳିତ ହୋଇ ଅବିଚଳିତ ଭକ୍ତିଯୋଗଦ୍ୱାରା ତାଙ୍କୁ ଆରାଧନା କରନ୍ତି ଏବଂ ଏହି ପରମ ଉପନିଷଦକୁ ବାରମ୍ବାର ଜପ କରନ୍ତି -- ।।୩୪।। ପ୍ରଭୁ ! ମନ୍ତ୍ରତତ୍ତ୍ୱଦ୍ୱାରା ଆପଣଙ୍କର ଯଥାର୍ଥ ସ୍ୱରୂପ ଜଣାପଡ଼େ । ଆପଣ ଯୂପଯୁକ୍ତ ଓ ଯୂପଶୂନ୍ୟ ଉଭୟପ୍ରକାର ଯଜ୍ଞର ସ୍ୱରୂପ । ମହାଯଜ୍ଞମାନେ ଆପଣଙ୍କର ଅବୟବସ୍ୱରୂପ । ଆପଣ ମହାପୁରୁଷ; ମୁଁ ଆପଣଙ୍କୁ ନମସ୍କାର କରୁଛି । ଆପଣ କର୍ମଦ୍ୱାରା ଶୁଦ୍ଧ ଅର୍ଥାତ୍ ଯଜ୍ଞାନୁଷ୍ଠାତା ତ୍ରିଯୁଗ ନାରାୟଣ (ସତ୍ୟଯୁଗରେ ଯଜ୍ଞକ୍ରିୟା ନ ଥାଏ) । ଆପଣଙ୍କୁ ମୋର ନମସ୍କାର ।।୩୫।। ଯେପରି କାଠ ମଧ୍ୟରେ ନିଆଁ ଲୁଚି ରହିଥାଏ ଏବଂ ନିଆଁ ଦେଖିବାକୁ ଚାହୁଁଥିବା ଲୋକେ ଅରଣିଦ୍ୱାରା ଘଷିଲେ ତାହା ପ୍ରକାଶ ପାଏ, ସେହିପରି ପ୍ରବୀଣ ପଣ୍ଡିତମାନେ ବିଚାର ବିବେକ ଦ୍ୱାରା ଦେହାଦି ଇନ୍ଦ୍ରିୟଙ୍କୁ ନିୟନ୍ତ୍ରଣ (ମନ୍ଥନ) କରି ସତ୍‌କର୍ମାଦି କରନ୍ତି ଏବଂ ତାହାର ଫଳ ରୂପେ ଆପଣଙ୍କ ଗୂଢ଼ ରୂପକୁ ଦେଖିବାକୁ ଇଚ୍ଛା କରନ୍ତି । ଏହିପରି ପ୍ରକଟିତ ଆପଣଙ୍କର ସ୍ୱରୂପକୁ ମୁଁ ନମସ୍କାର କରୁଛି ।।୩୬।। ପ୍ରଭୁ ! ଯମନିୟମାଦି ସାଧନ ଦ୍ୱାରା ଯେଉଁମାନେ ନିଜର ବୁଦ୍ଧିକୁ ଶୁଦ୍ଧ କରିଥା'ନ୍ତି, ସେମାନେ ରୂପ, ରସ ଆଦି ବିଷୟ, ଦର୍ଶନ, ଶ୍ରବଣ ଆଦି କ୍ରିୟା ଏବଂ ଏହି କ୍ରିୟାର ହେତୁ ବା ଇନ୍ଦ୍ରିୟମାନଙ୍କର ଅଧିଷ୍ଠାତା ଦେବତା, ଦେହ, କାଳ ଓ ଅହଙ୍କାର--ଏସବୁକୁ ମାୟାର କାର୍ଯ୍ୟ ବୋଲି ଅନୁଭବ କରନ୍ତି । ତେଣୁ ଆପଣଙ୍କର ନିର୍ମାୟ ସ୍ୱରୂପକୁ ବାରମ୍ବାର ନମସ୍କାର କରୁଛି ।।୩୭।। ଯେପରି ଲୁହା ଜଡ଼ ହେଲେ ମଧ୍ୟ ଚୁମ୍ବକ ଲାଗିଲେ ଘୂରିବାକୁ ଆରମ୍ଭ କରେ, ସେହିପରି ଆପଣଙ୍କ ଇଚ୍ଛାରେ ଏହି ଜଡ଼ ପ୍ରକୃତି-ରୂପ ମାୟା କ୍ରିୟାଶୀଳ ହୋଇ ଏହି ବିଶ୍ୱର ସୃଷ୍ଟି, ସ୍ଥିତି ଓ ସଂହାର ରୂପ କାର୍ଯ୍ୟ କରିଥାଏ । ତାହାର ନିଜର କୌଣସି ସ୍ୱାର୍ଥପାଇଁ ନୁହେଁ, ଜୀବଜଗତର ସ୍ୱାର୍ଥପାଇଁ । ମାୟା ଦ୍ୱାରା ଆପଣ ଏହି ସବୁ କାର୍ଯ୍ୟ କରାଇଥା'ନ୍ତି ଏବଂ ଏହିସବୁ କର୍ମର ସାକ୍ଷୀରୂପେ ରହିଥା'ନ୍ତି, ଆପଣଙ୍କୁ ମୋର ନମସ୍କାର ।।୩୮।। ଆପଣ ଆଦିବରାହ ରୂପରେ ଦନ୍ତର ଅଗ୍ରରେ ମୋତେ ଧାରଣ କରି ରସାତଳରୁ ଉଦ୍ଧାର କରିଥିଲେ । ଆପଣଙ୍କ ପ୍ରତିଦ୍ୱନ୍ଦ୍ୱୀ ଗଜତୁଲ୍ୟ ଯୁଦ୍ଧ କରିବାକୁ ଆସିଥିବା ଦୈତ୍ୟ ହିରଣ୍ୟାକ୍ଷକୁ ସତେ ଯେପରି ଆପଣ ଗଜରାଜ ତୁଲ୍ୟ କ୍ରୀଡ଼ା କରୁ କରୁ ନିହତ କରିଥିଲେ ଓ ପ୍ରଳୟସମୁଦ୍ର-ମଧ୍ୟରୁ ଉପରକୁ ଉଠିଆସିଥିଲେ । ପ୍ରଭୁ ! ମୁଁ ଆପଣଙ୍କୁ ପ୍ରଣିପାତ କରୁଛି ।।୩୯।।

## ଊନବିଂଶ ଅଧ୍ୟାୟ

# କିଂପୁରୁଷ ଓ ଭାରତ ବର୍ଷର ବର୍ଣ୍ଣନା

ଶ୍ରୀ ଶୁକଦେବ କହିଲେ, କିଂପୁରୁଷ ବର୍ଷରେ ଲକ୍ଷ୍ମଣଙ୍କ ଅଗ୍ରଜ ସୀତାହୃଦୟାଭିରାମ ଭଗବାନ ଆଦିପୁରୁଷ ଶ୍ରୀରାମଙ୍କ ଚରଣ ସନ୍ନିଧିରେ ରହି ପରମଭାଗବତ ହନୁମାନ କିଂପୁରୁଷମାନଙ୍କ ସହ ଅବିରତ ଭକ୍ତିଯୁକ୍ତ ହୋଇ ତାଙ୍କର ଉପାସନା କରନ୍ତି । କିଂପୁରୁଷ ବର୍ଷର ଅଧିପତି ଆର୍ଷ୍ଟିଷେଣ ଗନ୍ଧର୍ବମାନଙ୍କ ସହିତ ଭର୍ତ୍ତା ଭଗବାନ୍ ଶ୍ରୀରାମଙ୍କର ପରମମଙ୍ଗଳମୟୀ ଲୀଳାମାନ ଗାନ କରନ୍ତି । ଭକ୍ତଶ୍ରେଷ୍ଠ ଶ୍ରୀ ହନୁମାନ ତାହା ଶ୍ରବଣ କରନ୍ତି ଏବଂ ନିଜେ ଏହି ଗାନ କରନ୍ତି ।।୧-୨।।

ଓଁକାର ସ୍ୱରୂପ ଉତ୍ତମଶ୍ଲୋକ ଭଗବାନ ଶ୍ରୀରାମଙ୍କୁ ମୁଁ ନମସ୍କାର କରୁଛି । ଆପଣଙ୍କଠାରେ ସତ୍‌ପୁରୁଷମାନଙ୍କର ଲକ୍ଷଣ (ଧ୍ୱଜ, ବଜ୍ର, ଅଙ୍କୁଶ ଆଦି ଚିହ୍ନ) ଶୀଳ (ଧୀରୋଦାତ୍ତ ଚରିତ୍ର) ଓ ବ୍ରତ (ଧର୍ମପ୍ରତି ନିଷ୍ଠା) ଆଦି ସମସ୍ତ ଗୁଣ ବିଦ୍ୟମାନ । ଆପଣଙ୍କୁ ନମସ୍କାର । ଆପଣ ଲୋକାତୀତ ଗୁଣସମ୍ପନ୍ନ ହୋଇ ମଧ୍ୟ ଲୋକଶିକ୍ଷାପାଇଁ ଗୁରୁ ଓ ବ୍ରାହ୍ମଣମାନଙ୍କ ପାଖରୁ ଶିକ୍ଷାଲାଭ କରିଛନ୍ତି । ଆପଣଙ୍କୁ ନମସ୍କାର । ଆପଣ ସାଧୁତାର କଷଟିପଥର । ଆପଣଙ୍କୁ ନମସ୍କାର । ଦେବ, ବ୍ରାହ୍ମଣଙ୍କର ଭକ୍ତ ମହାପୁରୁଷ ମହାରାଜ ଶ୍ରୀରାମଙ୍କୁ ମୋର ନମସ୍କାର ॥୩॥ ଶୁଦ୍ଧଚିତ୍ତଦ୍ୱାରା ହିଁ ଯାହାଙ୍କୁ ଅନୁଭବ କରାଯାଏ, ଯେ ଅଦ୍ୱିତୀୟ, ଯେ ନିଜର ତେଜରେ ମାୟାର ଶକ୍ତିକୁ ବିଦୂରିତ କରନ୍ତି ଏବଂ ସଦା ଜାଗରୂକ, ଦୃଷ୍ଟିର ଅଗୋଚର, ପ୍ରଶାନ୍ତଚିତ୍ତ ସୁଧୀମାନଙ୍କର ଲଭ୍ୟ, ନାମରୂପବର୍ଜିତ ଏବଂ ନିରହଙ୍କାର । ମୁଁ ଆପଣଙ୍କର ଶରଣ ଭିକ୍ଷା କରୁଛି ॥୪॥ ପ୍ରଭୁ ! କେବଳ ରାକ୍ଷସମାନଙ୍କୁ ବଧ କରିବାପାଇଁ ଆପଣ ମାନବ ଅବତାର ଗ୍ରହଣ କରି ନ ଥିଲେ । ଆପଣଙ୍କର ଅବତାର ଲୋକଶିକ୍ଷାପାଇଁ । ତା'ନ ହୋଇଥିଲେ ଆତ୍ମାରାମ ହୋଇ ମଧ୍ୟ ସୀତାଙ୍କ ବିରହରେ ଆପଣ ଏତେ ଦୁଃଖଭୋଗ କାହିଁକି କରିଥା'ନ୍ତେ ? ॥୫॥ ଆପଣ ଆତ୍ମଜ୍ଞାନୀମାନଙ୍କର ଆତ୍ମାସ୍ୱରୂପ ଓ ସେମାନଙ୍କର ପରମ ବନ୍ଧୁ ଭଗବାନ ବାସୁଦେବ । ଏ ତ୍ରିଭୁବନରେ କୌଣସି ବସ୍ତୁ ନାହିଁ, ଯାହା ଆପଣଙ୍କୁ ଆସକ୍ତ କରିପାରିବ । ତେଣୁ ସ୍ତ୍ରୀର ବିରହରେ ଆପଣଙ୍କୁ କାହିଁକି ଦୁଃଖ ହେବ ଓ କେଉଁ କାରଣରୁ ଆପଣ ଲକ୍ଷ୍ମଣଙ୍କୁ ବର୍ଜନ କରିବେ ? ॥୬॥ ଲକ୍ଷ୍ମଣାଗ୍ରଜ ! ଉଚ୍ଚବଂଶରେ ଜନ୍ମ, ସୌନ୍ଦର୍ଯ୍ୟ, ବାକ୍‌ଚାତୁରୀ, ବୁଦ୍ଧିମତ୍ତା, ଦେହର ଆକୃତି--ଆପଣଙ୍କ ସନ୍ତୋଷର କାରଣ ହୁଏ ନାହିଁ । ତା'ହୋଇଥିଲେ ବନଚାରୀ ବାନରମାନଙ୍କ ସହିତ ଆପଣ କାହିଁକି ବନ୍ଧୁତା ସ୍ଥାପନ କରିଥାନ୍ତେ ? ॥୭॥ ଯେ ଉତ୍ତରକୋଶଳବାସୀ ନିଜର ପ୍ରଜାମାନଙ୍କୁ ସଶରୀରେ ସ୍ୱର୍ଗକୁ ନେଇଥିଲେ, ସେହି ମାନବରୂପୀ ଭକ୍ତବତ୍ସଳ ପୁରୁଷୋତ୍ତମ ରାମଙ୍କୁ ମୁଁ ଭଜନ କରୁଛି । ସୁରାସୁର, ନର, ବାନର ସମସ୍ତଙ୍କର ସର୍ବାନ୍ତଃକରଣରେ ଆପଣ ଭଜନୀୟ ॥୮॥

ଭାରତବର୍ଷରେ ହିଁ ଭଗବାନ ନରନାରାୟଣ କଳ୍ପାନ୍ତକାଳ ପର୍ଯ୍ୟନ୍ତ ତପସ୍ୟା କରନ୍ତି । ଆତ୍ମଜ୍ଞାନୀମାନଙ୍କ ପ୍ରତି ସଦୟ ହୋଇ ସେମାନଙ୍କୁ ଅନୁଗ୍ରହ ଦେଖାଇବାପାଇଁ ତାଙ୍କର ଏହି ତପସ୍ୟା ଉଦ୍ଦିଷ୍ଟ । ଏହି ତପସ୍ୟା ହେଉଛି ଧର୍ମ, ଜ୍ଞାନ, ବୈରାଗ୍ୟ, ଷଡ଼ୈଶ୍ୱର୍ଯ୍ୟ, ଇନ୍ଦ୍ରିୟସଂଯମ ଓ ନିରହଙ୍କାରିତା ଆଦି ଗୁଣମାନଙ୍କୁ ଦୃଢ଼ୀଭୂତ କରି ସହଜରେ ଆତ୍ମାକୁ ଉପଲବ୍ଧି କରିବା ॥୯॥ ନାରଦ ଋଷି ବର୍ଣ୍ଣାଶ୍ରମରେ ଚଳୁଥିବା ଭାରତର ପ୍ରଜାମାନଙ୍କ ସହିତ ପରମଭକ୍ତିଭାବରେ ନରନାରାୟଣଙ୍କର ଉପାସନା କରନ୍ତି । ସାବର୍ଣ୍ଣ ମନୁଙ୍କୁ ପଛେ ଉପଦେଶ ଦେବା ପାଇଁ ସାଂଖ୍ୟ ଏବଂ ଯୋଗଶାସ୍ତ୍ରରେ ଭଗବାନଙ୍କର ଯେଉଁ ମହତ୍ତ୍ୱ ବର୍ଣ୍ଣିତ ହୋଇଛି, ତାହା ସେ ପଞ୍ଚରାତ୍ର ନାମକ ଗ୍ରନ୍ଥରେ ବର୍ଣ୍ଣନା କରିଛନ୍ତି । ଏହିପରି ଭାବରେ ସେ ଭଗବାନଙ୍କର ସ୍ତୁତି କରନ୍ତି --॥୧୦॥ ଓଁକାର ସ୍ୱରୂପ, ଅହଙ୍କାରରହିତ, ଧନହୀନଙ୍କର ଧନ, ପ୍ରଶାନ୍ତଚିତ୍ତ, ଋଷିପ୍ରବର ଭଗବାନ ନାରନାରାୟଣଙ୍କୁ ନମସ୍କାର । ସେ ପରମହଂସମାନଙ୍କର ପରମ ଗୁରୁ । ସେ ଆତ୍ମାରାମମାନଙ୍କର ଅଧିପତି, ତାଙ୍କୁ ବାରମ୍ବାର ନମସ୍କାର ॥୧୧॥ ଯେ ଏହି ବିଶ୍ୱର କର୍ତ୍ତା, ମାତ୍ର କର୍ତ୍ତୃତ୍ୱର ଅଭିମାନ ଯାହାଙ୍କୁ ବାନ୍ଧି ପାରେ ନାହିଁ, ଦେହମଧ୍ୟରେ ରହି ଯେ ଦେହର ଧର୍ମ କ୍ଷୁଧା, ପିପାସା ଆଦିରେ ଅଭିଭୂତ ହୁଅନ୍ତି ନାହିଁ, ଯେ ସମସ୍ତ ବସ୍ତୁର ଦ୍ରଷ୍ଟା ହେଲେ ମଧ୍ୟ ଦେଖୁଥିବା ବସ୍ତୁର ମାୟାଦି ଗୁଣମାନେ ଯାହାଙ୍କୁ ଦୂଷିତ କରିପାରନ୍ତି ନାହିଁ, ସମସ୍ତ ପ୍ରାଣୀଙ୍କର ସାକ୍ଷୀସ୍ୱରୂପ ସେହି ଅନାସକ୍ତ ଭଗବାନ ନରନାରାୟଣଙ୍କୁ ନମସ୍କାର ॥୧୨॥ ଯୋଗେଶ୍ୱର ! ହିରଣ୍ୟଗର୍ଭ ବ୍ରହ୍ମା ଯେଉଁ ଯୋଗକୌଶଳ ଶିକ୍ଷା ଦେଇଛନ୍ତି, ତାହା ହେଉଛି, ଭକ୍ତଯୋଗୀ ଜନ୍ମରୁ ମୃତ୍ୟୁକାଳ- ପର୍ଯ୍ୟନ୍ତ ଦୂଷିତ ଶରୀର ବିଷୟରେ ଅଭିମାନ ଛାଡ଼ି ଭକ୍ତିଭାବରେ ପ୍ରାକୃତ ଗୁଣ ରହିତ ଆପଣଙ୍କ ସ୍ୱରୂପକୁ ଚିନ୍ତା କରିବା ଉଚିତ ॥୧୩॥ ଐହିକ ଓ ପାରଲୌକିକ ସୁଖଲାଭପାଇଁ ବିଷୟାସକ୍ତ ମୂଢ଼ ବ୍ୟକ୍ତି ନିଜର ପୁତ୍ର, କଳତ୍ର ଓ ଧନବିଷୟରେ ଚିନ୍ତା କରୁଥାଏ ଓ ମୃତ୍ୟୁକୁ ଭୟ ପାଏ; କିନ୍ତୁ ବିଦ୍ୱାନ୍‌ବ୍ୟକ୍ତି ଯଦି ଏହି ନିନ୍ଦନୀୟ କଳେବର ତ୍ୟାଗ କରିବାକୁ ଭୟ କରେ, ତା'ହେଲେ ଜ୍ଞାନଲାଭପାଇଁ

ତାର ସମସ୍ତ ପରିଶ୍ରମ ବୃଥା ହୋଇଯାଏ ॥୧୪॥ ଯେତେବେଳେ ବିଦ୍ୱାନ୍‌ମାନଙ୍କର ଏହି ଅବସ୍ଥା, ସେତେବେଳ ହେ ପ୍ରଭୁ, ଏହି ମନ୍ଦଦେହରେ ଆପଣଙ୍କ ମାୟାଜନିତ ଯେଉଁ ମମତା ଅହଙ୍କାର ଆମକୁ ଘାରି ରଖିଛି, ତାକୁ ଆମେ କିପରି ତ୍ୟାଗ କରିବୁ ଓ ଆପଣଙ୍କଠାରେ ଆମର ସ୍ୱାଭାବିକ ଭକ୍ତି କିପରି ଜାତ ହେବ, ତାହାର ଆପଣ ବ୍ୟବସ୍ଥା କରନ୍ତୁ ॥୧୫॥

ରାଜା ! ଏହି ଭାରତବର୍ଷରେ ବହୁ ପର୍ବତ ଓ ନଦୀ ଅଛନ୍ତି--ମଳୟ, ମଙ୍ଗଳପ୍ରସ୍ଥ, ମୈନାକ, ତ୍ରିକୂଟ, ଋଷଭ, କୂଟକ, କୋଲ୍ଲକ, ସହ୍ୟାଦ୍ରି, ଦେବଗିରି, ଋଷ୍ୟମୂକ, ଶ୍ରୀଶୈଳ, ବେଙ୍କଟ, ମହେନ୍ଦ୍ର, ବାରିଧାର, ବିନ୍ଧ୍ୟ, ଶୁକ୍ତିମାନ, ଋକ୍ଷଗିରି, ପାରିଯାତ୍ର, ଦ୍ରୋଣ, ଚିତ୍ରକୂଟ, ଗୋବର୍ଦ୍ଧନ, ରୈବତକ, କକୁଭ, ନୀଳ, ଗୋକାମୁଖ, ଇନ୍ଦ୍ରକୀଳ ଓ କାମଗିରି ଆଦି ଶତସହସ୍ର ପର୍ବତ ଏବଂ ସେମାନଙ୍କ ନିତମ୍ବରୁ ଅଗଣିତ ନଦନଦୀ ପ୍ରବାହିତ ହେଉଛନ୍ତି । ଏହି ସବୁ ନଦୀରେ ଭାରତୀୟ ଜନଗଣ ସ୍ନାନ କରନ୍ତି । କେବଳ ଏହି ନଦୀମାନଙ୍କର ନାମ ହିଁ ତାଙ୍କୁ ପବିତ୍ର କରିଦିଏ ॥୧୬-୧୭॥ ମୁଖ୍ୟମୁଖ୍ୟ ନଦୀମାନେ ହେଲେ ଚନ୍ଦ୍ରବସା, ତାମ୍ରପର୍ଣ୍ଣୀ, ଅବଟୋଦା, କୃତମାଳା, ବୈହାୟସୀ, କାବେରୀ, ବେଣୀ, ପୟସ୍ୱିନୀ, ଶର୍କରାବର୍ତ୍ତା, ତୁଙ୍ଗଭଦ୍ରା, କୃଷ୍ଣା, ବେଣ୍ୟା, ଭୀମରଥୀ, ଗୋଦାବରୀ, ନିର୍ବିନ୍ଧ୍ୟା, ପୟୋଷ୍ଣୀ, ତାପୀ, ରେବା, ସୁରସା, ନର୍ମଦା, ଚର୍ମଣ୍ୱତୀ, ସିନ୍ଧୁ, ଅନ୍ଧ ଓ ଶୋଣ ନାମକ ଦୁଇ ନଦ, ମହାନଦୀ, ବେଦସ୍ମୃତି, ଋଷିକୁଲ୍ୟା, ତ୍ରିସାମା, ଗୋମତୀ, କୌଶିକୀ, ମନ୍ଦାକିନୀ, ଯମୁନା, ସରସ୍ୱତୀ, ଦୃଷଦ୍ୱତୀ, ସରଯୂ, ରୋଧସ୍ୱତୀ, ସପ୍ତବତୀ, ସୁଷୋମା, ଶତଦ୍ରୁ, ଚନ୍ଦ୍ରଭାଗା, ମରୁଦ୍‌ବୃଧା, ବିତସ୍ତା, ଅସିକ୍ନୀ ଓ ବିଶ୍ୱା ॥୧୮॥ ଏହି ଭାରତବର୍ଷରେ ଜନ୍ମ ହୋଇଥିବା ବ୍ୟକ୍ତିମାନଙ୍କୁ ସ୍ୱକୃତ ସାତ୍ତ୍ୱିକ, ରାଜସ ଓ ତାମସ କର୍ମାନୁସାରେ ବହୁବିଧ ଦିବ୍ୟ, ମାନୁଷ ଓ ନାରକୀୟ ଯୋନି ପ୍ରାପ୍ତ ହୁଏ । ଏହି ଭାରତବର୍ଷରେ ପ୍ରତ୍ୟେକଙ୍କପାଇଁ ବିହିତ ବର୍ଣ୍ଣାଶ୍ରମ ଧର୍ମ ପାଳନକରିବାଦ୍ୱାରା ମୋକ୍ଷପର୍ଯ୍ୟନ୍ତ ଲାଭ ହୋଇପାରେ ॥୧୯॥ ପରିକ୍ଷିତ ! ପୁରୁଷୋତ୍ତମ ଶ୍ରୀହରିଙ୍କର ଭକ୍ତମାନଙ୍କ ସଙ୍ଗଲାଭ ହେଲେ ଜୀବାତ୍ମାର ନାନାବିଧ ଅବସ୍ଥାପାଇଁ ଦାୟୀ ଅବିଦ୍ୟାର ଗ୍ରନ୍ଥି ଛିନ୍ନ ହୋଇଯାଏ ଏବଂ ସେ ରାଗାଦିଦୋଷରହିତ, ସମସ୍ତ ପ୍ରାଣୀଙ୍କର ଆତ୍ମସ୍ୱରୂପ, ଅନିର୍ବଚନୀୟ ଓ ଆଧାରଶୂନ୍ୟ ପରମାତ୍ମା ବାସୁଦେବଙ୍କର ଅନନ୍ୟ ଏବଂ ଅହେତୁକ ଭକ୍ତିଭାବ ଲାଭ କରି ମୋକ୍ଷପଦ ପ୍ରାପ୍ତ ହୁଏ ॥୨୦॥

ଭାରତବର୍ଷରେ ମନୁଷ୍ୟଜନ୍ମକୁ ଉତ୍କୃଷ୍ଟ ବୋଲି ଦେବତାମାନେ ଗାନ କରନ୍ତି । ଅହୋ ! ଏହି ମନୁଷ୍ୟମାନେ ଏପରି କି ଉତ୍ତମ କାର୍ଯ୍ୟ କରିଛନ୍ତି କିମ୍ବା ଭଗବାନ ସ୍ୱୟଂ ଏମାନଙ୍କ ଉପରେ କିପରି ପ୍ରସନ୍ନ ହୋଇଛନ୍ତି ଯାହାଫଳରେ ଏମାନେ ଏହି ଭାରତଭୂମିରେ ଶ୍ରୀମୁକୁନ୍ଦଙ୍କର ସେବାଯୋଗ୍ୟ ମନୁଷ୍ୟଜନ୍ମ ଲାଭ କରିପାରିଛନ୍ତି । ଆମେମାନେ (ଦେବତା ହୋଇ ମଧ୍ୟ) ଏଠାରେ ଜନ୍ମ ହେବାପାଇଁ ଇଚ୍ଛା କରୁ ॥୨୧॥ ଆମେମାନ ଦୁଷ୍କର ଯଜ୍ଞ, ତପସ୍ୟା, ବ୍ରତ ଓ ଦାନାଦିଦ୍ୱାରା ଯେଉଁ ସ୍ୱର୍ଗର ଅଧିକାର ପାଇଛୁ, ଏହା କିଛି ନୁହେଁ । କେବଳ ଅତିଶୟ ଇନ୍ଦ୍ରିୟଭୋଗଦ୍ୱାରା ଆମେ ଶ୍ରୀନାରାୟଣଙ୍କ ପାଦପଦ୍ମକୁ ଭୁଲିଯାଇଛୁ ॥୨୨॥ ସ୍ୱର୍ଗ କଣ, ବ୍ରହ୍ମଲୋକରେ ମଧ୍ୟ ଏକଏକ କଳ୍ପ ଆୟୁ ଲାଭ କରି ପୁଣି ସଂସାରକୁ ଫେରିବାକୁ ହୁଏ । କିନ୍ତୁ ଭାରତଭୂମିରେ ଜନ୍ମ ଗ୍ରହଣ କରି ଅଳ୍ପକାଳ ବଞ୍ଚିବା ମଧ୍ୟରେ ଧୀର ବ୍ୟକ୍ତି ନିଜର ମର ଶରୀରରେ କରିଥିବା କର୍ମ ଭଗବାନଙ୍କଠାରେ ଅର୍ପଣ କରିବାଦ୍ୱାରା ତାଙ୍କ ଅଭୟ ପଦ ଲାଭ କରନ୍ତି (ଅର୍ଥାତ୍ ଆଉ ପୁନର୍ଜନ୍ମ ହୁଏ ନାହିଁ) ॥୨୩॥ ଯେଉଁଠାରେ ଭଗବାନଙ୍କ କଥାମୃତର ପ୍ରବାହ ଦେଖିବାକୁ ମିଳେ ନାହିଁ, ଯେଉଁଠି ସେ ପ୍ରବାହକୁ ଆଶ୍ରୟ କରିଥିବା ଭଗବତ୍‌ଭକ୍ତ ସାଧୁମାନଙ୍କୁ ଦେଖିବାକୁ ମିଳେ ନାହିଁ, ଯେଉଁଠି ଭଗବାନ ଯଜ୍ଞପୁରୁଷଙ୍କର ନିର୍ଦ୍ଦେଶରେ ମହୋତ୍ସବମାନ ହୁଏ ନାହିଁ, ତାହା ଇନ୍ଦ୍ରଲୋକ ହେଲେ ମଧ୍ୟ ସେବନୀୟ ନୁହେଁ ॥୨୪॥ ଏଠାରେ ଯେଉଁ ପ୍ରାଣୀମାନେ ନରଜନ୍ମ ଲାଭ କରି ଯଥେଷ୍ଟ ଜ୍ଞାନ, କର୍ମ ସାଧନାସାମଗ୍ରୀ ପାଇ ମଧ୍ୟ କିପରି ପୁନର୍ଜନ୍ମ ନ ହେବ, ସେଥିପାଇଁ ଚେଷ୍ଟା କରନ୍ତି ନାହିଁ, ସେମାନେ ବ୍ୟାଧପାଶରୁ ମୁକ୍ତ ଫଳଲୋଭୀ ବନ୍ୟପକ୍ଷୀଙ୍କ ପରି ପୁଣି ବନ୍ଧନରେ ପଡ଼ିଯାଆନ୍ତି ॥୨୫॥ ଭାରତବାସୀଙ୍କ ଭାଗ୍ୟ, ସେମାନେ ବିଧିପୂର୍ବକ ବେଦୋକ୍ତ ମନ୍ତ୍ରମାନଙ୍କଦ୍ୱାରା ଯଜ୍ଞରେ ଦେବତାମାନଙ୍କୁ ଯେଉଁ ପୃଥକ୍ ପୃଥକ୍ ହବିର୍ଭାଗ ଦାନ କରନ୍ତି, ସ୍ୱୟଂ ଭଗବାନ ତାହା ଆନନ୍ଦରେ ଗ୍ରହଣ କରି

ସମ୍ପୂର୍ଣ୍ଣ ଫଳଦାନ କରିଥାନ୍ତି ॥୨୬॥ ଏହା ସତ୍ୟ ଯେ, ଭଗବାନଙ୍କୁ ମାଗିଲେ ସେ ଈପ୍ସିତ ପଦାର୍ଥ ଦାନ କରିଥାନ୍ତି । କିନ୍ତୁ ଏହାଦ୍ୱାରା ପୁଣି ବିଷୟଲାଳସା ଜାଗ୍ରତ ହେଉଥିବାଯୋଗୁଁ ଏଥିରେ ପ୍ରକୃତ ଶ୍ରେୟ ଲାଭ ହୁଏ ନାହିଁ । ନିଷ୍କାମ ଭାବରେ ଭଗବାନଙ୍କୁ ଆରାଧନା କଲେ ସେ ସମସ୍ତ କାମନା ପୂରଣ କରିପାରୁଥିବା ନିଜର ପାଦପଦ୍ମକୁ ଦେଇ ଦେଇଥା'ନ୍ତି ॥୨୭॥ ଯେଉଁ ସବୁ ଉତ୍ତମ ଯଜ୍ଞ, ପ୍ରବଚନ ଓ ଶୁଭକର୍ମ ଫଳରେ ଆମେମାନେ ସ୍ୱର୍ଗସୁଖ ଭୋଗ କରୁଛୁ, ତାହାର ଅବଶିଷ୍ଟ ପୁଣ୍ୟର ପ୍ରଭାବରେ ଯଦି ଆମକୁ ଭାରତବର୍ଷରେ ଜନ୍ମ ହେବାର ସୁଯୋଗ ମିଳିଯାଏ, ତା'ହେଲେ ଭଗବାନଙ୍କ ସ୍ମୃତିଯୁକ୍ତ ସେହି ପୁଣ୍ୟ-ଭୂମିରେ ତାଙ୍କୁ ଭଜନ କରି ଆମେ ତାଙ୍କର ଆଶୀର୍ବାଦ ଲାଭ କରିପାରିବୁ ॥୨୮॥

ଶ୍ରୀ ଶୁକଦେବ କହିଲେ, ପରିକ୍ଷିତ ! କେହି କେହି କହନ୍ତି, ରାଜା ସଗରଙ୍କର ପୁତ୍ରମାନେ ଯଜ୍ଞାଶ୍ୱର ଅନୁସନ୍ଧାନ କରି ଚତୁର୍ଦ୍ଦିଗରେ ପୃଥିବୀକୁ ଖୋଳିବା ଫଳରେ ଜମ୍ବୁଦ୍ୱୀପର ଆହୁରି ଆଠଟି ଉପଦ୍ୱୀପ ହୋଇଗଲା । ତାହା ହେଉଛି - ସ୍ୱର୍ଣ୍ଣପ୍ରସ୍ଥ, ଚନ୍ଦ୍ରଶୁକ୍ଳ, ଆବର୍ତ୍ତନ, ରମଣକ, ମନ୍ଦରହରିଣ, ପାଞ୍ଚଜନ୍ୟ, ସିଂହଳ ଓ ଲଙ୍କା ॥୨୯-୩୦॥ ଭରତଶ୍ରେଷ୍ଠ ! ଯାହା ମୁଁ ଗୁରୁଙ୍କ ମୁହଁରୁ ଶୁଣିଥିଲି, ତୁମକୁ ଠିକ୍ ଠିକ୍ ଜମ୍ବୁଦ୍ୱୀପର ସେହି ଆଠଟି ବିଭାଗ କଥା ଶୁଣାଇଦେଲି ॥୩୧॥

## ବିଂଶ ଅଧ୍ୟାୟ

# ଅନ୍ୟ ଦ୍ୱୀପ ଓ ଲୋକାଲୋକ ପର୍ବତର ବର୍ଣ୍ଣନା

ଶ୍ରୀ ଶୁକଦେବ କହିଲେ, ମହାରାଜ ! ଏବେ ମୁଁ ପ୍ଲକ୍ଷ ଆଦି ଦ୍ୱୀପମାନଙ୍କର ପରିମାଣ, ଲକ୍ଷଣ ଓ ସ୍ଥିତି ଅନୁଯାୟୀ ବିଭିନ୍ନ ବର୍ଷ- ବିଭାଗର ବର୍ଣ୍ଣନା କରିବି ॥୧॥ ଯେପରି ଜମ୍ବୁଦ୍ୱୀପ ମେରୁ ପର୍ବତକୁ ଘେରି ରହିଛି, ସେହିପରି ଜମ୍ବୁଦ୍ୱୀପର ସମପରିମାଣ ଓ ବିସ୍ତାର ବିଶିଷ୍ଟ ଲବଣସମୁଦ୍ର ଜମ୍ବୁଦ୍ୱୀପକୁ ଘେରି ରହିଛି । ନଗର ବା ପ୍ରାସାଦର ପରିଖାକୁ ଯେପରି ବାହାରର ଉଦ୍ୟାନ ଘେରି ରହିଥାଏ, ସେହିପରି ଲବଣସମୁଦ୍ରକୁ ତା'ର ଦୁଇ ଗୁଣ ପରିମିତ ପ୍ଲକ୍ଷ ଦ୍ୱୀପ ଘେରି ରହିଛି । ଜମ୍ବୁଦ୍ୱୀପରେ ଯେତିକି ବିଶାଳ ଜମ୍ବୁବୃକ୍ଷ ଅଛି, ପ୍ଲକ୍ଷ ଦ୍ୱୀପରେ ସେତିକି ଆକାରର ଏକ ପ୍ଲକ୍ଷ ବୃକ୍ଷ ରହିଚି, ଯାହା ହେଉଛି ସ୍ୱର୍ଣ୍ଣମୟ ଏବଂ ଯାହା ନାମରେ ପ୍ଲକ୍ଷଦ୍ୱୀପ ନାମିତ । ସେହି ପ୍ଲକ୍ଷ ବୃକ୍ଷରେ ସପ୍ତଜିହ୍ୱ ଅଗ୍ନିଦେବ ବିଦ୍ୟମାନ । ଏହି ଦ୍ୱୀପର ଅଧିପତି ପ୍ରିୟବ୍ରତଙ୍କର ପୁତ୍ର ଇଧ୍ମଜିହ୍ୱ ଏହି ଦ୍ୱୀପକୁ ସାତ ବର୍ଷରେ ବିଭକ୍ତ କରି ସେ ସବୁର ସମାନ ନାମଧାରୀ ନିଜର ପୁତ୍ରମାନଙ୍କୁ ତାହା ସମର୍ପଣ କରିଥିଲେ ଏବଂ ଅଧ୍ୟାତ୍ମଯୋଗର ଆଶ୍ରୟ ନେଇ ସବୁକାର୍ଯ୍ୟରୁ ନିବୃତ୍ତ ହୋଇଗଲେ ॥୨॥ ବର୍ଷମାନଙ୍କର ନାମ ହେଲା - ଶିବ, ଯବସ, ସୁଭଦ୍ର, ଶାନ୍ତ, କ୍ଷେମ, ଅମୃତ ଏବଂ ଅଭୟ । ଏଥିରେ ସାତଟି ପ୍ରସିଦ୍ଧ ପର୍ବତ ଓ ନଦୀ ଅଛି ॥୩॥ ପର୍ବତମାନେ ହେଲେ ମଣିକୂଟ, ବଜ୍ରକୂଟ, ଇନ୍ଦ୍ରସେନ, ଜ୍ୟୋତିଷ୍ମାନ, ସୁପର୍ଣ୍ଣ, ହିରଣ୍ୟଷ୍ଠୀବ ଏବଂ ମେଘମାଳ । ଏମାନେ ସେତୁପର୍ବତ ( ବା ସଂପୃକ୍ତ ବର୍ଷର ସୀମାନିର୍ଦ୍ଧାରକ) । ଅରୁଣା, ନୃମ୍ଣା, ଆଙ୍ଗିରସୀ, ସାବିତ୍ରୀ, ସୁପ୍ରଭାତା, ଋତମ୍ଭରା ଓ ସତ୍ୟମ୍ଭରା ନାମକ ସାତଟି ପ୍ରସିଦ୍ଧ ନଦୀ ଅଛନ୍ତି । ହଂସ, ପତଙ୍ଗ, ଉର୍ଦ୍ଧାୟନ ଓ ସତ୍ୟାଙ୍ଗ ନାମରେ ଚାରି ବର୍ଣ୍ଣର ଲୋକ ସେଠାରେ ବାସ କରନ୍ତି । ଏହି ସବୁ ନଦୀଜଳରେ ସ୍ନାନ କରିବାଦ୍ୱାରା ସେମାନଙ୍କର ରଜୋଗୁଣ ଓ ତମୋଗୁଣ କ୍ଷୀଣ ହେବାରେ ଲାଗେ ଏବଂ ସେମାନଙ୍କର ହଜାର ବର୍ଷର ଆୟୁ ହୋଇଯାଏ । ଦେବତାମାନଙ୍କପରି ସେମାନେ ସୁନ୍ଦର ଦେଖାଯାଆନ୍ତି । ସେମାନଙ୍କ ଦେହରୁ ଝାଳ ବାହାରେ ନାହିଁ ଓ ସେମାନଙ୍କ ପରି ସନ୍ତାନ ଉତ୍ପାଦନ କରନ୍ତି । ବେଦବିଦ୍ୟାର ସାହାଯ୍ୟରେ ବେଦବର୍ଣ୍ଣିତ ତଥା ସ୍ୱର୍ଗର ଦ୍ୱାରଭୂତ ଆତ୍ମରୂପୀ ଭଗବାନ ସୂର୍ଯ୍ୟଙ୍କୁ ସେମାନେ ଉପାସନା କରନ୍ତି ॥୪॥

ସେମାନେ କହନ୍ତି, ସତ୍ୟ, ଋତ, ବେଦ ଏବଂ ସମସ୍ତ ଶୁଭାଶୁଭ ଫଳର ଅଧିଷ୍ଠାତା ଭଗବାନ୍ ପୁରାଣ ପୁରୁଷ ବିଷ୍ଣୁସ୍ୱରୂପ ସୂର୍ଯ୍ୟଙ୍କର ଆମେମାନେ ଆଶ୍ରୟ ନେଉଛୁ ॥୫॥ ପ୍ଲକ୍ଷ ଆଦି ପାଞ୍ଚଟି ଦ୍ୱୀପରେ ଯେଉଁମାନେ ଜନ୍ମ ଗ୍ରହଣ କରିଥାଆନ୍ତି, ଆୟୁ, ଇନ୍ଦ୍ରିୟ, ଶାରୀରିକ ଓ ମାନସିକ ଶକ୍ତି, ଇନ୍ଦ୍ରିୟଶକ୍ତି ବୁଦ୍ଧି ଓ ପରାକ୍ରମରେ ସେମାନେ ସମାନଭାବରେ ସିଦ୍ଧି ଲାଭ କରିଥାନ୍ତି ॥୬॥ ପ୍ଲକ୍ଷ ଦ୍ୱୀପ ନିଜର ସମପରିମିତ ଇକ୍ଷୁରସ ସମୁଦ୍ର ଦ୍ୱାରା ବେଷ୍ଟିତ ହୋଇ ରହିଥାଏ; ଏହାର ଆଗରେ ଏହାଠାରୁ ଦୁଇ ଗୁଣ ପରିମିତ ଶାଲ୍ମଳୀ ଦ୍ୱୀପ ଅଛି ଯେ କି ତାର ସମପରିମିତ ମଦିରା ସାଗର ଦ୍ୱାରା ପରିବେଷ୍ଟିତ ॥୭॥ ପ୍ଲକ୍ଷ ଦ୍ୱୀପରେ ଯେଡ଼ିକି ପ୍ଲକ୍ଷ ବୃକ୍ଷ, ଶାଲ୍ମଳୀ ଦ୍ୱୀପରେ ସେତିକି ବିଶାଳ ଶାଲ୍ମଳୀ ତରୁ ବିଦ୍ୟମାନ । ଏହା ପକ୍ଷିରାଜ ଗରୁଡ଼ଙ୍କର ନିବାସସ୍ଥଳ ବୋଲି କୁହାଯାଏ । ଯେଉଁ ଗରୁଡ଼ ନିଜର ବେଦମୟ ପକ୍ଷଦ୍ୱାରା ଭଗବାନଙ୍କର ସ୍ତୁତି କରୁଥା'ନ୍ତି, ଏହି ବୃକ୍ଷର ନାମରେ ଦ୍ୱୀପର ନାମକରଣ କରାଯାଇଛି ॥୮॥ ଏହି ଦ୍ୱୀପର ଅଧିପତି ପ୍ରିୟବ୍ରତଙ୍କର ପୁତ୍ର ଯଜ୍ଞବାହୁ ଏହି ଦ୍ୱୀପକୁ ସାତ ଭାଗ କରି ନିଜର ସାତ ଜଣ ପୁଅଙ୍କ ମଧ୍ୟରେ ବାଣ୍ଟି ଦେଇଥିଲେ । ଏହି ପୁଅମାନେ ହେଲେ-- ସୁରୋଚନ, ସୌମନସ୍ୟ, ରମଣକ, ଦେବବର୍ଷ, ପାରିଭଦ୍ର, ଆପ୍ୟାୟନ ଓ ଅବିଜ୍ଞାତ । ଏହି ପୁତ୍ରମାନଙ୍କର ନାମକରଣ ଦ୍ୱୀପମାନଙ୍କର ନାମାନୁସାରେ କରାଯାଇଛି ॥୯॥ ଏହି ସାତଟି ବର୍ଷରେ ପୁଣି ସାତଟି ପର୍ବତ ଓ ସାତଟି ପ୍ରସିଦ୍ଧ ନଦୀ ରହିଛନ୍ତି । ପର୍ବତମାନେ ହେଲେ-- ସ୍ୱରସ, ଶତଶୃଙ୍ଗ, ବାମଦେବ, କୁନ୍ଦ, ମୁକୁନ୍ଦ, ପୁଷ୍ପବର୍ଷ ଓ ସହସ୍ରଶ୍ରୁତି ଏବଂ ନଦୀମାନେ ହେଲେ ଅନୁମତି, ସିନୀବାଲୀ, ସରସ୍ୱତୀ, କୁହୂ, ରଜନୀ, ନନ୍ଦା ଓ ରାକା ॥୧୦॥ ଏହି ବର୍ଷମାନଙ୍କର ଅଧିବାସୀ ଶ୍ରୁତଧର, ବୀର୍ଯ୍ୟଧର, ବସୁନ୍ଧର ଓ ଇଷନ୍ଧର ନାମରେ ଚାରି ବର୍ଣ୍ଣର । ଏମାନେ ଆତ୍ମସ୍ୱରୂପ, ବେଦମୟ ଭଗବାନ ଚନ୍ଦ୍ରମାଙ୍କୁ ବେଦମନ୍ତ୍ରରେ ଉପାସନା କରନ୍ତି । ସେମାନେ କହନ୍ତି, ଯେଉଁ ଚନ୍ଦ୍ରମା କୃଷ୍ଣପକ୍ଷ ଓ ଶୁକ୍ଳପକ୍ଷରେ ନିଜର କିରଣଦ୍ୱାରା ଭାଗ ଭାଗ କରି ଦେବତା, ପିତୃ ଓ ପ୍ରାଣୀମାନଙ୍କୁ ଅନ୍ନ ଦାନ କରନ୍ତି, ସେହି ଚନ୍ଦ୍ରମା ଆମର ରାଜା ହୁଅନ୍ତୁ ॥୧୧-୧୨॥

ସେହିପରି ମଦିରା ସମୁଦ୍ରର ଆଗରେ ଅଛି ତା'ର ଦୁଇଗଣ ପରିମିତ କୁଶଦ୍ୱୀପ । ପୂର୍ବୋକ୍ତ ଦ୍ୱୀପମାନଙ୍କ ପରି ଏହା ସମପରିମିତ ଘୃତସମୁଦ୍ର ଦ୍ୱାରା ବେଷ୍ଟିତ । ଏଥିରେ ଭଗବାନଙ୍କ ରଚିତ ଏକ କୁଶର ଅରଣ୍ୟ ଥିବା ହେତୁ ସେହି ଅନୁସାରେ ଏହାର ନାମ କୁଶଦ୍ୱୀପ ହୋଇଛି । ଦ୍ୱିତୀୟ ଅଗ୍ନିପରି ନିଜର କୋମଳ ଶିଖାମାନଙ୍କର କାନ୍ତିରେ ଏହା ସୁଶୋଭିତ ॥୧୩॥ ପରିକ୍ଷିତ ! ଏହି ଦ୍ୱୀପର ଅଧିପତି ପ୍ରିୟବ୍ରତଙ୍କର ପୁତ୍ର ହିରଣ୍ୟରେତା ଦ୍ୱୀପକୁ ନିଜର ସାତ ପୁଅଙ୍କ ମଧ୍ୟରେ ସାତ ଭାଗରେ ବାଣ୍ଟିଦେଇ ନିଜେ ତପସ୍ୟା କରିବାକୁ ଚାଲିଗଲେ । ଏହି ସାତ ଭାଗର ନାମ ହେଲା ବସୁ, ବସୁଦାନ, ଦୃଢ଼ରୁଚି, ନାଭିଗୁପ୍ତ, ସ୍ତୁତ୍ୟବ୍ରତ, ବିବିକ୍ତ ଓ ବାମଦେବ ॥୧୪॥ ଏହି ବର୍ଷମାନଙ୍କରେ ସାତଟି ସୀମାପର୍ବତ ଓ ସାତଟି ନଦୀ ବିଦ୍ୟମାନ । ଚକ୍ର, ଚତୁଃଶୃଙ୍ଗ, କପିଳ, ଚିତ୍ରକୂଟ, ଦେବାନୀକ, ଊର୍ଦ୍ଧ୍ୱରୋମା ଓ ଦ୍ରବିଣ--ଏଗୁଡ଼ିକ ପର୍ବତମାନଙ୍କର ନାମ । ନଦୀମାନେ ହେଲେ ରସକୁଲ୍ୟା, ମଧୁକୁଲ୍ୟା, ମିତ୍ରବିନ୍ଦା, ଶ୍ରୁତବିନ୍ଦା, ଦେବଗର୍ଭା, ଘୃତଚ୍ୟୁତା ଓ ମନ୍ତ୍ରମାଳା ॥୧୫॥ ଏହି ସବୁ ନଦୀଜଳରେ ସ୍ନାନ କରି କୁଶଦ୍ୱୀପବାସୀ କୁଶଳ, କୋବିଦ, ଅଭିଯୁକ୍ତ ଓ କୁଳକ -ଏହି ଚାରିବର୍ଣ୍ଣର ପୁରୁଷମାନେ ଅଗ୍ନିସ୍ୱରୂପରେ ଭଗବାନ ଶ୍ରୀ ହରିଙ୍କୁ ଯଜ୍ଞାଦି କର୍ମକୌଶଳଦ୍ୱାରା ପୂଜା କରନ୍ତି ॥୧୬॥ (ସେମାନେ ଏହିପରି ସ୍ତୁତି କରନ୍ତି) 'ଅଗ୍ନିଦେବ ! ଭଗବାନ ବାସୁଦେବଙ୍କ ଉଦ୍ଦେଶ୍ୟରେ ଯଜ୍ଞରେ ଅର୍ପିତ ହବିକୁ ଆପଣ ତାଙ୍କ ପାଖରେ ପହଞ୍ଚାଇ ଦିଅନ୍ତି । ଅତଏବ ଯଜ୍ଞରେ ଭଗବାନଙ୍କ ଅଂଶସ୍ୱରୂପ ଦେବତାମାନଙ୍କର ଯଜନଦ୍ୱାରା ଆପଣ ସେହି ପରମପୁରୁଷଙ୍କର ଅର୍ଚ୍ଚନା କରନ୍ତି' ॥୧୭॥

କୁଶଦ୍ୱୀପ ଯେପରି ଘୃତସମୁଦ୍ରଦ୍ୱାରା ବେଷ୍ଟିତ, ଏହାର ଆଗରେ ଥିବା ଏହାର ଦୁଇଗୁଣ ପରିମିତ କ୍ରୌଞ୍ଚ ଦ୍ୱୀପ । ସେହିପରି ନିଜର ସମପରିମାଣର କ୍ଷୀରସମୁଦ୍ରଦ୍ୱାରା ବେଷ୍ଟିତ । ଏଥିରେ କ୍ରୌଞ୍ଚ ନାମରେ ଏକ ବିଶାଳ ପର୍ବତ ଥିବାରୁ ଏହି ଦ୍ୱୀପର ଏହିପରି ନାମକରଣ କରାଯାଇଛି ॥୧୮॥ ପୂର୍ବକାଳରେ କାର୍ତ୍ତିକେୟଙ୍କର ଶସ୍ତ୍ରପ୍ରହାରରେ କ୍ରୌଞ୍ଚ ପର୍ବତର କଟିଦେଶ ଓ

ଲତାକୁଞ୍ଜ ଆଦି କ୍ଷତବିକ୍ଷତ ହୋଇଯାଇଥିଲା । ମାତ୍ର ସର୍ବଦା କ୍ଷୀରସମୁଦ୍ର ଜଳରେ ଅଭିଷିକ୍ତ ଓ ଜଳଦେବତା ବରୁଣଙ୍କଦ୍ୱାରା ସୁରକ୍ଷିତ ହୋଇ ଏହା ନିର୍ଭୟରେ ଅବସ୍ଥାନ କରୁଛି ॥୧୯॥ ଏହି କ୍ରୌଞ୍ଚ ଦ୍ୱୀପର ଅଧିପତି ଥିଲେ ପ୍ରିୟବ୍ରତଙ୍କର ପୁତ୍ର ମହାରାଜ ଘୃତପୃଷ୍ଠ । ସେ ଏହି ଦ୍ୱୀପକୁ ସାତ ଭାଗ କରି ଉକ୍ତ ଭାଗନାମଧାରୀ ନିଜର ସାତ ପୁଅଙ୍କ ମଧ୍ୟରେ ବାଣ୍ଟି ଦେଇ ସର୍ବଭୂତାତ୍ମା ପୁଣ୍ୟଯଶା, ଭବଭୟହାରୀ ଭଗବାନ ଶ୍ରୀ ହରିଙ୍କର ପାଦପଦ୍ମରେ ଆଶ୍ରୟ ନେଇଥିଲେ ॥୨୦॥ ଆମ, ମଧୁରୁହ, ମେଘପୃଷ୍ଠ, ସୁଧାମା, ଭ୍ରାଜିଷ୍ଠ, ଲୋହିତାର୍ଣ୍ଣ ଓ ବନସ୍ପତି - ଏମାନେ ହେଲେ ଘୃତପୃଷ୍ଠଙ୍କର ପୁତ୍ର । ସେମାନଙ୍କର ସାତ ବର୍ଷରେ ଯେଉଁ ସାତଟି ସୀମାପର୍ବତ ଥିଲା, ତାହା ହେଲା - ଶୁକ୍ଳ, ବର୍ଦ୍ଧମାନ, ଭୋଜନ, ଉପବର୍ହିଣ, ନନ୍ଦ, ନନ୍ଦନ ଓ ସର୍ବତୋଭଦ୍ର । ନଦୀମାନଙ୍କର ନାମ ହେଲା--ଅଭୟା, ଅମୃତୌଘା, ଆର୍ଯକା, ତୀର୍ଥବତୀ, ବୃତ୍ତିରୂପବତୀ, ପବିତ୍ରବତୀ ଓ ଶୁକ୍ଳା ॥୨୧॥ ଏହି ନଦୀମାନଙ୍କର ପବିତ୍ର ଓ ନିର୍ମଳ ଜଳ ସେବନ କରି ଏଠାରେ ଥିବା ପୁରୁଷ, ଋଷଭ, ଦ୍ରବିଣ ଓ ଦେବକ ନାମକ ଚାରି ବର୍ଣ୍ଣର ଲୋକେ କୃତାଞ୍ଜଳି ହୋଇ ଜଳଦେବତାଙ୍କର ଉପାସନା କରନ୍ତି । (ସେମାନେ ଏହିପରି କହନ୍ତି) ' ହେ ଜଳର ଦେବତା ! ତୁମେ ପରମାତ୍ମାଙ୍କଠାରୁ ସାମର୍ଥ୍ୟ ଲାଭ କରିଛ । ତୁମେ ଭୂଃ, ଭୁବଃ ଓ ସ୍ୱଃ - ଏହି ତିନିଲୋକକୁ ପବିତ୍ର କରୁଛ । ତୁମେ ସ୍ୱଭାବତଃ ପାପକୁ ଧୌତ କରୁଥିବାଯୋଗୁଁ ଆମେ ତୁମକୁ ସ୍ପର୍ଶ କରୁଛୁ । ଆମର ଦେହକୁ ପବିତ୍ର କର ॥୨୨-୨୩॥

ଏହିପରି କ୍ଷୀରସମୁଦ୍ରର ଆଗରେ ଏହାର ଚତୁର୍ଦ୍ଦିଗରେ ବତିଶ ଲକ୍ଷ ଯୋଜନ ବିସ୍ତୃତ ଶାକଦ୍ୱୀପ ଅଛି, ଯାହାକୁ କି ତାର ସମପରିମିତ ଦହିର ସମୁଦ୍ର ଘେରି ରହିଛି । ଏହି ଦ୍ୱୀପରେ ଶାକ ନାମକ ଏକ ବିଶାଳ ବୃକ୍ଷ ଅଛି ଓ ତହିଁରୁ ଏହାର ନାମକରଣ ହୋଇଛି । ଏହାର ମନୋହର ସୁଗନ୍ଧି ସମଗ୍ର ଦ୍ୱୀପକୁ ମହକାଇ ଦିଏ ॥୨୪॥ ଏହି ଦ୍ୱୀପର ଅଧିପତି ହେଲେ ରାଜା ପ୍ରିୟବ୍ରତଙ୍କ ପୁତ୍ର ମେଧାତିଥି । ସେ ମଧ୍ୟ ଏହି ଦ୍ୱୀପକୁ ସାତ ଭାଗରେ ବିଭକ୍ତ କରି ସେମାନଙ୍କ ନାମାନୁସାରେ ନିଜର ସାତ ପୁତ୍ରଙ୍କର ମଧ୍ୟରେ ବାଣ୍ଟି ଦେଇଥିଲେ ଏବଂ ସ୍ୱୟଂ ଭଗବାନ ଅନନ୍ତଙ୍କ ଠାରେ ନିଜର ଚିତ୍ତ ସମର୍ପଣ କରି ତପୋବନକୁ ଚାଲି ଯାଇଥିଲେ । ତାଙ୍କ ପୁତ୍ରମାନଙ୍କର ନାମ ହେଲା - ପୁରୋଜବ, ମନୋଜବ, ପବମାନ, ଧୂମ୍ରାନୀକ, ଚିତ୍ରରେଫ, ବହୁରୂପ ଓ ବିଶ୍ୱଧାର ॥୨୫॥ ଏହି ବର୍ଷମାନଙ୍କରେ ମଧ୍ୟ ସାତଟି ସୀମାପର୍ବତ ଓ ସାତଟି ନଦୀ ଅଛି । ପର୍ବତମାନଙ୍କର ନାମ--ଈଶାନ, ଉରୁଶୃଙ୍ଗ, ବଳଭଦ୍ର, ଶତକେସର, ସହସ୍ରସ୍ରୋତ, ଦେବପାଳ ଓ ମହାନସ ଏବଂ ନଦୀମାନେ ହେଲେ ଅନଘା, ଆୟୁର୍ଦା, ଉଭୟସ୍ପୃଷ୍ଟି, ଅପରାଜିତା, ପଞ୍ଚପଦୀ, ସହସ୍ରସ୍ରୁତି ଓ ନିଜଧୃତି ॥୨୬॥ ଋତବ୍ରତ, ସତ୍ୟବ୍ରତ, ଦାନବ୍ରତ ଓ ଅନୁବ୍ରତ ନାମରେ ଏଠାରେ ରହୁଥିବା ଚାରିବର୍ଣ୍ଣର ପୁରୁଷ ପ୍ରାଣାୟାମ ଦ୍ୱାରା ନିଜର ରଜୋଗୁଣ ଓ ତମୋଗୁଣକୁ କ୍ଷୟ କରି ମହାସମାଧିଦ୍ୱାରା ବାୟୁରୂପ ଭଗବାନ ଶ୍ରୀ ହରିଙ୍କୁ ଆରାଧନା କରନ୍ତି ॥୨୭॥

(ସେମାନେ ତାଙ୍କୁ ଏହିପରି ସ୍ତୁତି କରନ୍ତି) 'ଯେଉଁ ବାୟୁରୂପୀ ଭଗବାନ ପ୍ରାଣୀମାନଙ୍କ ଅନ୍ତରରେ ପ୍ରବେଶ କରି ପ୍ରାଣାଦି ବୃତ୍ତି ରୂପ ନିଜ ଧ୍ୱଜାଦ୍ୱାରା ପ୍ରାଣୀମାନଙ୍କୁ ପାଳନ କରନ୍ତି, ଏହି ଦୃଶ୍ୟମାନ ଜଗତ ଯାହାଙ୍କର ଅଧୀନ, ସେହି ସାକ୍ଷାତ୍ ଅନ୍ତର୍ଯାମୀ ବାୟୁ ଭଗବାନ ଆମକୁ ରକ୍ଷା କରନ୍ତୁ' ॥୨୮॥ ଏହିପରି ଦହି ସମୁଦ୍ରର ପରେ ତାର ଚାରି ଦିଗରେ ବିସ୍ତାରିତ ଓ ତା'ର ଦୁଇ ଗୁଣ ପରିମିତ ପୁଷ୍କର ଦ୍ୱୀପ ବିଦ୍ୟମାନ । ଏହି ଦ୍ୱୀପକୁ ତା'ର ଚାରି ଦିଗରୁ ଘେରି ରହିଛି ତା'ର ସମପରିମିତ ମଧୁର ଜଳର ସମୁଦ୍ର । ସେହି ଦ୍ୱୀପରେ ଅଗ୍ନିଶିଖା ପରି ଉଜ୍ଜ୍ୱଳ ଲକ୍ଷ-ସଂଖ୍ୟକ କନକମୟ ପାଖୁଡ଼ାଯୁକ୍ତ ଏକ ବିଶାଳ ପଦ୍ମଫୁଲ (ପୁଷ୍କର) ଅଛି । ତାହା ଭଗବାନ ବ୍ରହ୍ମାଙ୍କର ଆସନରୂପେ ପରିକଳ୍ପିତ ॥୨୯॥ ସେହି ଦ୍ୱୀପର ମଝିରେ ମାନସୋତ୍ତର ନାମରେ ଏକ ପର୍ବତ ଅଛି । ଏହା ହେଉଛି ଅୟୁତ ଯୋଜନ ଉଚ୍ଚ ଓ ବିସ୍ତୃତ । ପୂର୍ବ ଓ ପଶ୍ଚିମରେ ଯେଉଁ ଦୁଇଟି ବର୍ଷ ଅଛନ୍ତି, ଏହା ସେ ଦୁହିଁଙ୍କର ସୀମା ନିର୍ଦ୍ଧାରଣ କରେ । ଏହାର ଚାରିଦିଗରେ ଇନ୍ଦ୍ରାଦି ଲୋକପାଳଙ୍କର ଚାରୋଟି ପୁରୀ । ଏହାର ଉପରେ ମେରୁ ପର୍ବତକୁ ପ୍ରଦକ୍ଷିଣ କରୁଥିବା ସୂର୍ଯ୍ୟଙ୍କ ରଥର ଚକ୍ର ସମ୍ବତ୍ସର ରୂପରେ ଦେବତାମାନଙ୍କର ରାତି ଓ ଦିନ ନିରୂପଣ କରେ । ଅର୍ଥାତ୍

ସୂର୍ଯ୍ୟଙ୍କର ଉତ୍ତରାୟଣ ଓ ଦକ୍ଷିଣାୟନ ହୁଏ ॥୩୦॥ ଏହି ଦ୍ୱୀପର ରାଜା ପ୍ରିୟବ୍ରତପୁତ୍ର ବୀତିହୋତ୍ର ନିଜର ଦୁଇ ପୁତ୍ର ରମଣକ ଓ ଧାତକିଙ୍କ ମଧ୍ୟରେ ଏହି ଦ୍ୱୀପକୁ ଦୁଇ ଭାଗରେ ବାଣ୍ଟିଦେଇ ନିଜର ବଡ଼ଭାଇମାନଙ୍କ ପରି ଭଗବତ୍‌ସେବାରେ ନିଜକୁ ଅର୍ପିତ କରିଥିଲେ ॥୩୧॥ ସେହି ବର୍ଷରେ ବାସ କରୁଥିବା ପୁରୁଷମାନେ ବ୍ରହ୍ମରୂପୀ ଭଗବାନଙ୍କୁ ସକାମକର୍ମ (ବ୍ରହ୍ମସାଲୋକ୍ୟାଦି ଫଳପ୍ରଦ କର୍ମ) ଦ୍ୱାରା ଆରାଧନା କରନ୍ତି ॥୩୨॥

(ସେମାନେ ଏହିପରି କହନ୍ତି) 'ଯାହାର ଏକମାତ୍ର ପରମେଶ୍ୱରଙ୍କଠାରେ ନିଷ୍ଠା ରହିଛି, ଯେ କର୍ମଫଳରୂପ, ଅଦ୍ୱିତୀୟ, ସର୍ବଲୋକପୂଜ୍ୟ, ବ୍ରହ୍ମର ସୂଚକ ବ୍ରହ୍ମମୂର୍ତ୍ତି ଓ ପ୍ରଶାନ୍ତ ସେହି ଭଗବାନଙ୍କୁ ନମସ୍କାର ॥୩୩॥ ମଧୁର ସମୁଦ୍ରପରେ ଲୋକାଲୋକ ନାମକ ପର୍ବତ ଅଛି । ଏହି ପର୍ବତ ସମୁଦ୍ରକୁ ବେଷ୍ଟନ କରି ସୂର୍ଯ୍ୟାଲୋକରେ ଆଲୋକିତ ହେଉଥିବା ଓ ନ ହେଉଥିବା ଦେଶମାନଙ୍କର ସୀମାରୂପେ ଅବସ୍ଥିତ ॥୩୪॥ ଏହି ମଧୁର ସମୁଦ୍ରପରେ ଯେଉଁ ଦେଶ ଅଛି ତାହାର ପରିମାଣ ହେଉଚି ମେରୁପର୍ବତ ଓ ମାନସୋତ୍ତର ପର୍ବତ ମଧ୍ୟରେ ଥିବା ଭୂଖଣ୍ଡ ସହିତ ସମାନ । ସେଠାରେ ଦର୍ପଣତଳପରି ସ୍ୱଚ୍ଛ କାଞ୍ଚନମୟ ଭୂମିରେ କୌଣସି ବସ୍ତୁ ପଡ଼ିଗଲେ ଆଉ ମିଳେ ନାହିଁ । ତେଣୁ ସେଠାରେ କୌଣସି ପ୍ରାଣୀ ଦେଖିବାକୁ ମିଳନ୍ତି ନାହିଁ ॥୩୫॥ ସୂର୍ଯାଦିଦ୍ୱାରା ପ୍ରକାଶିତ ଓ ଅପ୍ରକାଶିତ ଭୂଭାଗମଧ୍ୟରେ ଥିବାଯୋଗୁଁ ଏହି ପର୍ବତର ନାମ ଲୋକାଲୋକ ହୋଇଛି ॥୩୬॥ ଭୂଲୋକ, ଭୁବର୍ଲୋକ ଓ ସ୍ୱର୍ଲୋକ – ଏହି ତିନି ଲୋକର ବହିର୍ଭାଗରେ ସୀମାରୂପେ ପରମେଶ୍ୱରଙ୍କ ଦ୍ୱାରା ଏହି ଲୋକାଲୋକ ପର୍ବତ ଅବସ୍ଥାପିତ ହୋଇଛି । ସୂର୍ଯ୍ୟଠାରୁ ଧ୍ରୁବପର୍ଯ୍ୟନ୍ତ ଜ୍ୟୋତିଷ୍କମାନେ ତିନି ଲୋକକୁ ଆଲୋକିତ କରୁଥିଲେ ମଧ୍ୟ ଏହାର ଉଚ୍ଚତା ଓ ବିସ୍ତାରଯୋଗୁଁ ଅପରପାର୍ଶ୍ୱକୁ ଆଲୋକିତ କରିପାରନ୍ତି ନାହିଁ ॥୩୭॥ ପରିମାଣ, ଲକ୍ଷଣ ଓ ସ୍ଥିତି ଅନୁଯାୟୀ ବିଦ୍ୱାନ୍‌ମାନେ ସମସ୍ତ ଲୋକର ବିସ୍ତାରକୁ ପଚାଶ କୋଟି ଯୋଜନ ବୋଲି ସ୍ଥିର କରିଛନ୍ତି । ଏହାର ଏକ ଚତୁର୍ଥାଂଶ ହେଉଚି ଲୋକାଲୋକ ପର୍ବତ ॥୩୮॥ ଲୋକାଲୋକ ପର୍ବତର ଉପରିଭାଗରେ ଚତୁର୍ଦ୍ଦିଗରେ ଅଖିଳ ଜଗତର ଗୁରୁ ଭଗବାନ ଆତ୍ମଯୋନି (ବ୍ରହ୍ମା) ସମସ୍ତ ଲୋକର ସ୍ଥିତିପାଇଁ ଚାରୋଟି ଗଜରାଜ (ଦିଗ୍‌ଗଜ)ଙ୍କୁ ଅବସ୍ଥାପିତ କରିଛନ୍ତି । ସେମାନେ ହେଲେ ଋଷଭ, ପୁଷ୍କରଚୂଡ଼, ବାମନ ଓ ଅପରାଜିତ ॥୩୯॥

ଏହି ଦିଗ୍‌ଗଜମାନଙ୍କର ଏବଂ ନିଜର ଅଂଶକଳାସ୍ୱରୂପ ଇନ୍ଦ୍ରାଦି ଦିଗପାଳମାନଙ୍କର ବଳବୀର୍ଯ୍ୟ ବୃଦ୍ଧିପାଇଁ ଏବଂ ସମସ୍ତ ଲୋକର କଲ୍ୟାଣପାଇଁ ମହା ଐଶ୍ୱର୍ଯ୍ୟର ଅଧିପତି ପୁରୁଷୋତ୍ତମ ସର୍ବାନ୍ତର୍ଯାମୀ ଶ୍ରୀହରି ବିଷ୍ୱକ୍‌ସେନ ଆଦି ନିଜର ପାର୍ଷଦବର୍ଗଙ୍କ ସହିତ ଏହି ପର୍ବତ ଉପରେ ବିରାଜମାନ । ସେ ହେଉଛନ୍ତି ଧର୍ମ, ଜ୍ଞାନ, ବୈରାଗ୍ୟ, ଐଶ୍ୱର୍ଯ୍ୟ ଆଦି ଅଷ୍ଟ ମହାସିଦ୍ଧିସମ୍ପନ୍ନ ବିଶୁଦ୍ଧ ସତ୍ତ୍ୱର ସ୍ୱରୂପ । ତାଙ୍କ ଭୁଜଦଣ୍ଡରେ ତାଙ୍କ ଶ୍ରେଷ୍ଠ ଆୟୁଧ--ଶଙ୍ଖ, ଚକ୍ର, ଗଦା ଆଦି ଶୋଭା ପାଉଛି ॥୪୦॥ ଏହିପରି ଗୋଟିଏ କଳ୍ପର ଶେଷ ପର୍ଯ୍ୟନ୍ତ ଭଗବାନ୍ ନିଜର ଯୋଗମାୟାବଳରେ ରଚିତ ବିଭିନ୍ନ ଲୋକର ରକ୍ଷାପାଇଁ ଏହି ଲୀଳାମୟ ବେଶରେ ସେଠି ଅବସ୍ଥାନ କରିଥା'ନ୍ତି ॥୪୧॥ ଲୋକାଲୋକ ପର୍ବତର ଏକ ପାର୍ଶ୍ୱରେ ଲୋକ ବର୍ଷ ଓ ଅନ୍ୟ ପାର୍ଶ୍ୱରେ ବା ବହିର୍ଭାଗରେ ଅଲୋକବର୍ଷ ଅବସ୍ଥିତ । ଏହି ଅଲୋକ ବର୍ଷର ବିସ୍ତୃତି (ବାର କୋଟି ପଚାଶ ଲକ୍ଷ ଯୋଜନ) ବିଷୟ ପୂର୍ବରୁ କୁହାଯାଇଚି । ଏହି ବର୍ଷର ପରେ ଯେଉଁ ଅଞ୍ଚଳ ଅଛି, ତାହା ଶ୍ରେଷ୍ଠ ଯୋଗୀମାନଙ୍କର ଗନ୍ତବ୍ୟସ୍ଥଳ ବୋଲି ବିଦ୍ୱାନ୍‌ମାନେ କହନ୍ତି ॥୪୨॥ ବ୍ରହ୍ମାଣ୍ଡର ମଧ୍ୟରେ ସୂର୍ଯ୍ୟ ଅବସ୍ଥିତ । ଦ୍ୟୁଲୋକ ଓ ଭୂଲୋକର ମଧ୍ୟଭାଗକୁ ବ୍ରହ୍ମାଣ୍ଡର ମଧ୍ୟ ବୋଲି କୁହାଯାଏ । ସୂର୍ଯ୍ୟଠାରୁ ବ୍ରହ୍ମାଣ୍ଡ ଗୋଲକର ଦୂରତ୍ୱ ହେଉଚି ପଚିଶ କୋଟି ଯୋଜନ ॥୪୩॥ ସୃଷ୍ଟିକାଳରେ ଏହି ଅଚେତନ (ମୃତ) ଅଣ୍ଡ ମଧ୍ୟରେ ପ୍ରବେଶ କରିବାରୁ ସୂର୍ଯ୍ୟର ନାମ ହେଉଚି ମାର୍ତ୍ତଣ୍ଡ । ତାଙ୍କୁ ମଧ୍ୟ ହିରଣ୍ୟଗର୍ଭ ବୋଲି କୁହାଯାଏ କାରଣ ହିରଣ୍ମୟ ଅଣ୍ଡରୁ ସେ ଉଦ୍‌ଭୂତ ॥୪୪॥ ସୂର୍ଯ୍ୟ ହିଁ ସମସ୍ତ ଦିଗ୍ ବିଦିଗ୍, ଆକାଶ, ଅନ୍ତରୀକ୍ଷ, ଦ୍ୟୁଲୋକ, ଭୂର୍ଲୋକ, ଭୋଗ ମୋକ୍ଷାଦି ଲୋକ, ନରକ, ରସାତଳ ଆଦି ସମସ୍ତ ବିଶ୍ୱକୁ ବିଭାଜନ କରିଛନ୍ତି ॥୪୫॥ ସୂର୍ଯ୍ୟ ଦେବତା, ମନୁଷ୍ୟ, ପଶୁ, ପକ୍ଷୀ, କୀଟ ପତଙ୍ଗ, ସରୀସୃପ, ବୃକ୍ଷ ଲତାଦି ସମସ୍ତ ଜୀବଙ୍କ ଆତ୍ମା ଓ ଦର୍ଶନେନ୍ଦ୍ରିୟର ଅଧିଷ୍ଠାତା ॥୪୬॥

## ଏକବିଂଶ ଅଧ୍ୟାୟ

# ସୂର୍ଯ୍ୟଙ୍କ ରଥ ଓ ତାର ଗତି

ଶ୍ରୀ ଶୁକଦେବ କହିଲେ, ମହାରାଜ ! ପରିମାଣ ଓ ଲକ୍ଷଣ ସହିତ ଏହି ଭୂମଣ୍ଡଳର ଏତିକି ମାତ୍ର ବିସ୍ତାର ମୁଁ ତୁମ ଆଗେ ବର୍ଣ୍ଣନା କଲି । ଏହାଦ୍ୱାରା ସ୍ୱର୍ଗମଣ୍ଡଳ ବିଷୟରେ ଜାଣିଥିବା ବ୍ୟକ୍ତିମାନେ ତା'ର ପରିମାଣ ଓ ବିସ୍ତାର ବର୍ଣ୍ଣନା କରନ୍ତି । ଯେପରି ବୁଟ ଆଦି ଦୁଇଦଳବିଶିଷ୍ଟ ଶସ୍ୟର ଗୋଟିକର ପରିମାଣ ଜାଣିଲେ ଅପରଟିର ପରିମାଣ ଜାଣିହୁଏ, ସେହିପରି ଭୂମଣ୍ଡଳର ପରିମାଣଦ୍ୱାରା ସ୍ୱର୍ଗଲୋକର ପରିମାଣ ମଧ୍ୟ ଜଣାପଡ଼ିଯାଏ । ଭୂଲୋକ ଏବଂ ସ୍ୱର୍ଗଲୋକ ମଧ୍ୟରେ ଅଛି ଅନ୍ତରୀକ୍ଷ ଲୋକ । ଏହା ହେଉଛି ଏହି ଦୁଇ ଲୋକର ସନ୍ଧିସ୍ଥଳ ॥୧-୨॥ ଏହି ଅନ୍ତରୀକ୍ଷର ମଧ୍ୟଭାଗରେ ରହି ସମସ୍ତ ତେଜର ଅଧୀଶ୍ୱର ସୂର୍ଯ୍ୟଦେବ ନିଜର ଉତ୍ତାପଦ୍ୱାରା ତିନିଲୋକୁ ତାପିତ ଓ ଆଲୋକିତ କରନ୍ତି । ସେହି ସୂର୍ଯ୍ୟ ଉତ୍ତରାୟଣ, ଦକ୍ଷିଣାୟନ ଓ ବୈଷୁବତ ନାମରେ ଧୀର, କ୍ଷିପ୍ର ଓ ସମାନ ଗତିଦ୍ୱାରା ଆରୋହଣ, ଅବରୋହଣ ଓ (ଉଭୟର) ସମାନ ସ୍ଥାନରେ ରହି ଠିକ୍‌ସମୟରେ ମକରାଦି ରାଶିରେ ପ୍ରବେଶ କରନ୍ତି ଏବଂ ଏତଦ୍‌ଦ୍ୱାରା ଦିନ ଓ ରାତିକୁ ଛୋଟ, ବଡ଼ ଓ ସମାନ କରନ୍ତି ॥୩॥ ଯେତେବେଳେ ସୂର୍ଯ୍ୟ ମେଷ ବା ତୁଳା ରାଶିକୁ ଆସିଯାଆନ୍ତି, ସେତେବେଳେ ଦିନରାତି ସମାନ ହୋଇଯାଏ । ଯେତେବେଳେ କ୍ରମାନୁସାରେ ବୃଷ ଆଦି ପାଞ୍ଚଟି ରାଶିରେ ଅବସ୍ଥାନ କରନ୍ତି, ସେତେବେଳେ ରାତିରୁ ଘଡ଼ିଏ ଲେଖାଏଁ କମି ଯାଉଥାଏ ଏବଂ ଦିନ ଘଡ଼ିଏ ଲେଖାଏଁ ବଢ଼ିଯାଏ ॥୪॥ ସୂର୍ଯ୍ୟ ଯେତେବେଳେ ବିଛା, ଧନୁ, ମକର, କୁମ୍ଭ ଓ ମୀନ--ଯଥାକ୍ରମେ ଏହି ପାଞ୍ଚଟି ରାଶିରେ ଅବସ୍ଥିତ ହୁଅନ୍ତି, ସେତେବେଳେ ଦିନ ଓ ରାତିର ପରିମାଣ ବିପରୀତ ଦେଖାଯାଏ ( ରାତି ବଢ଼ିଯାଏ ଓ ଦିନ ଛୋଟ ହୋଇ ଆସେ) ॥୫॥ ଦକ୍ଷିଣାୟନପର୍ଯ୍ୟନ୍ତ ଦିନ ବଡ଼ ହେବାକୁ ଲାଗେ ଓ ଉତ୍ତରାୟଣପର୍ଯ୍ୟନ୍ତ ରାତି ବଡ଼ ହୋଇ ହୋଇ ଯାଉଥାଏ ॥୬॥ ଏହିପରି ମେରୁର ଉଭୟ ପାର୍ଶ୍ୱରେ ମାନସୋତ୍ତର ପର୍ବତ ଉପରେ ସୂର୍ଯ୍ୟଙ୍କ ପରିକ୍ରମାର ପଥକୁ ନ'କୋଟି ଏକାବନ ଲକ୍ଷ ଯୋଜନ ବୋଲି କୁହାଯାଏ । ମେରୁର ପୂର୍ବଦିଗରେ ଏହି ପର୍ବତ ଉପରେ ଇନ୍ଦ୍ରଙ୍କର ଦେବଧାନୀ, ଦକ୍ଷିଣଦିଗରେ ଯମଙ୍କର ସଂଯମନୀ, ପଶ୍ଚିମଦିଗରେ ବରୁଣଙ୍କର ନିମ୍ଲୋଚନୀ ଏବଂ ଉତ୍ତରରେ ଚନ୍ଦ୍ରଙ୍କର ବିଭାବରୀ ନାମକ ନଗରୀ ଅଛି । ମେରୁର ଚତୁର୍ଦ୍ଦିଗରେ ଥିବା ଏହି ନଗରୀମାନଙ୍କରେ ସମୟବିଶେଷରେ ସୂର୍ଯ୍ୟୋଦୟ, ମଧ୍ୟାହ୍ନ, ସନ୍ଧ୍ୟା ଓ ନିଶାର୍ଦ୍ଧ ଆଦି ହୋଇଥାଏ । ଯେଉଁ କାରଣରୁ କି ପ୍ରବୃତ୍ତି ବା ନିବୃତ୍ତି ଜାତ ହୁଏ (ଉଦୟକାଳରୁ ଅସ୍ତକାଳ ପର୍ଯ୍ୟନ୍ତ ଲୋକର ପ୍ରବୃତ୍ତି ଓ ଅସ୍ତକାଳପରଠାରୁ ନିବୃତ୍ତି) ॥୭॥ ସୁମେରୁ ଉପରେ ବାସ କରୁଥିବା ଲୋକମାନଙ୍କୁ ମଧ୍ୟାହ୍ନସୂର୍ଯ୍ୟ ସର୍ବଦା ତାପିତ କରେ, ସୂର୍ଯ୍ୟ ତାର ଗତିପଥରେ ସୁମେରୁକୁ ବାମଭାଗରେ ରଖି ଯାତ୍ରା କଲେ ମଧ୍ୟ ସମସ୍ତ ଜ୍ୟୋତିଷ୍‌ଚକ୍ର (ଗ୍ରହନକ୍ଷତ୍ର)କୁ ଘୂରାଉଥିବା ବାୟୁପ୍ରବାହଦ୍ୱାରା ଏହା ସୁମେରୁର ଦକ୍ଷିଣ ପାର୍ଶ୍ୱରେ ଯିବାପରି ମନେହୁଏ; ଏକ ସ୍ଥାନରେ ସୂର୍ଯ୍ୟୋଦୟ ହେଲେ ତା'ର ବିପରୀତ ଅନ୍ୟସ୍ଥାନରେ ସୂର୍ଯ୍ୟାସ୍ତ ହେଉଛି ବୋଲି ମନେହୁଏ । ଏକ ସ୍ଥାନରେ ସୂର୍ଯ୍ୟତାପରେ ଲୋକଙ୍କର ଝାଳ ଗମ୍‌ଗମ୍ ହୋଇ ବାହାରୁଥାଏ, ବିପରୀତ ସ୍ଥାନରେ ଅର୍ଦ୍ଧରାତ୍ରି ଯୋଗୁ ଲୋକେ ସୁଖରେ ନିଦ୍ରା ଯାଇଥା'ନ୍ତି । ଏକ ଦେଶର ଲୋକ ଦିନମଧ୍ୟରେ ସୂର୍ଯ୍ୟଙ୍କୁ ସ୍ପଷ୍ଟ ଦେଖିପାରୁଥିଲେ ମଧ୍ୟ ତା'ର ବିପରୀତ ଦେଶରେ ରାତ୍ରିଯୋଗୁ ଲୋକେ ସୂର୍ଯ୍ୟଙ୍କୁ ଦେଖିପାରନ୍ତି ନାହିଁ ॥୮-୯॥ ସୂର୍ଯ୍ୟ ଇନ୍ଦ୍ରପୁରୀରୁ ଯମପୁରୀକୁ ଯାତ୍ରା କଲାବେଳେ ପନ୍ଦର ଘଡ଼ିରେ ଦୁଇ କୋଟି ସଇଁତିରିଶ ଲକ୍ଷ ପଞ୍ଚସ୍ତରି ହଜାର ଯୋଜନ ପଥ ଅତିକ୍ରମ କରନ୍ତି । ଯମପୁରୀରୁ ସୂର୍ଯ୍ୟ ବରୁଣପୁରୀକୁ ଯାତ୍ରା କରନ୍ତି ଏବଂ ସେଠାରୁ ଚନ୍ଦ୍ରପୁରୀକୁ ଓ ପୁଣି ଚନ୍ଦ୍ରପୁରୀରୁ ଇନ୍ଦ୍ରପୁରୀକୁ । ସେହିପରି ଚନ୍ଦ୍ର ଅନ୍ୟଗ୍ରହ ନକ୍ଷତ୍ରମାନଙ୍କସହିତ ଉଦିତ ଓ ଅସ୍ତ ହେବାର ଦେଖାଯାଏ ॥୧୦-୧୧॥ ଏହିପରି

ଭଗବାନ ସୂର୍ଯ୍ୟଙ୍କର ବେଦମୟ ରଥ ମୁହୂର୍ତ୍ତମଧ୍ୟରେ ଚଉତିରିଶ ଲକ୍ଷ ଆଠ ଶହ ଯୋଜନ ହିସାବରେ ଯାତ୍ରା କରି ଏହି ଚାରି ନଗରୀରେ ଘୂରି ବୁଲୁଥାଏ ॥୧୨॥ ଏହି ରଥର ଗୋଟିଏ ଚକ୍ରର ନାମ ହେଉଛି ସମ୍ବତ୍ସର । ସେଥିରେ ମାସ ନାମରେ ବାରଟି ଅର ଅଛି । ଛ'ଋତୁ ହେଉଛି ଏହାର ନାଲ ବା ପରିଧି ଓ ତିନି ଚତୁର୍ମାସ୍ୟ ଏହାର ମଧ୍ୟଭାଗସ୍ଥ ତୁମ୍ବ । ଏହାର ଅଖଦଣ୍ଡର ଗୋଟିଏ ଭାଗ ମେରୁ ପର୍ବତ ଉପରେ ଓ ଅନ୍ୟଭାଗଟି ମାନସୋତ୍ତର ପର୍ବତ ଉପରେ ଅବସ୍ଥାପିତ । ଏହି ମାନସୋତ୍ତର ପର୍ବତରେ ତେଲଘଣାର ଅଖପରି ଏହା ପରିଭ୍ରମଣ କରୁଥାଏ ॥୧୩॥ ସୂର୍ଯ୍ୟରଥର ଦୁଇଟି ଅଖ ମଧରୁ ପ୍ରଥମ ଅଖ ସୁମେରୁ ଓ ମାନସୋତ୍ତର ପର୍ବତପର୍ଯ୍ୟନ୍ତ ବିସ୍ତୃତ । ଏହାର ଆଉ ଏକ ଅଖ ଅଛି । ଲମ୍ବରେ ଏହା ହେଉଛି ତା'ର ଚାରି ଭାଗରୁ ଭାଗେ । ଏହି ଦ୍ୱିତୀୟ ଅଖର ଶେଷଭାଗ ମୂଳ ଯନ୍ତର ଅଖପରି ଧ୍ରୁବଲୋକ ସହିତ ସଂଲଗ୍ନ ହୋଇଛି । ଏହି ରଥରେ ବସିବାର ସ୍ଥାନ ଛତିଶ ଲକ୍ଷ ଯୋଜନ ଲମ୍ବ ଓ ନ'ଲକ୍ଷ ଯୋଜନ ଓସାର । ଏହାର ଜୁଆଳି ମଧ୍ୟ ଛତିଶ ଲକ୍ଷ ଯୋଜନ ଲମ୍ବ । ଏଥିରେ ଅରୁଣ ନାମକ ସାରଥି ଗାୟତ୍ରୀ ଆଦି ସାତ ଛନ୍ଦର ନାମରେ ସାତଟି ଘୋଡ଼ାକୁ ଯୋଚିଥା'ନ୍ତି । ସେହି ରଥ ଉପରେ ବସି ଭଗବାନ ସୂର୍ଯ୍ୟଙ୍କୁ ସେ ନେଇଯାଆନ୍ତି ॥୧୪-୧୫॥ ସୂର୍ଯ୍ୟଙ୍କ ଆଗରେ ତାଙ୍କ ଆଡ଼କୁ ପଛ କରି ବସି ଅରୁଣ ସୂର୍ଯ୍ୟରଥର ସାରଥିକାର୍ଯ୍ୟ କରନ୍ତି ॥୧୬॥ ସୂର୍ଯ୍ୟଙ୍କ ଆଗରେ ବାଲଖିଲ୍ୟ ଆଦି ଷାଠିଏ ହଜାର ଋଷି ତାଙ୍କର ସ୍ତୁତିବଚନପାଇଁ ନିଯୁକ୍ତ ହୋଇ ତାଙ୍କର ସ୍ତୁତିଗାନ କରନ୍ତି । ସେମାନେ (ଆକାରରେ ଏତେ କ୍ଷୁଦ୍ର ଯେ) ବୁଢ଼ା ଆଙ୍ଗୁଠିର ପବ ସାଙ୍ଗରେ ସମାନ ॥୧୭॥ ଏମାନଙ୍କ ଛଡ଼ା ଅନ୍ୟ ଋଷି, ଗନ୍ଧର୍ବ, ଅପ୍ସରା, ନାଗ, ଯକ୍ଷ, ରାକ୍ଷସ ଏବଂ ଦେବଗଣ ଆତ୍ମସ୍ୱରୂପ ଭଗବାନ ସୂର୍ଯ୍ୟଙ୍କର ଉପାସନା କରନ୍ତି । ଏମାନେ ସଂଖ୍ୟାରେ ଚଉଦ ହେଲେ ମଧ୍ୟ ଯୋଡ଼ିରେ ରହିବାରୁ ସାତ । ଏମାନେ ଭିନ୍ନ ଭିନ୍ନ କର୍ମରେ ପ୍ରତ୍ୟେକ ମାସରେ ଭିନ୍ନ ଭିନ୍ନ ନାମ ଧାରଣ କରି ଉପାସନା କରନ୍ତି ॥୧୮॥ ଏହିପରି ଭଗବାନ ସୂର୍ଯ୍ୟ ଭୂମଣ୍ଡଳର ନବେ କୋଟି ଏକାବନ ଲକ୍ଷ ଯୋଜନ ପରିମିତ ବଳୟରୁ ପ୍ରତି କ୍ଷଣରେ ଦୁଇହଜାର ଦୁଇ ଯୋଜନ ପର୍ଯ୍ୟନ୍ତ ଅତିକ୍ରମ କରିଯା'ନ୍ତି ॥୧୯॥

## ଦ୍ୱାବିଂଶ ଅଧ୍ୟାୟ

# ଗ୍ରହମାନଙ୍କର ସ୍ଥିତି ଓ ଗତି

ରାଜା ପରିକ୍ଷିତ କହିଲେ, ଭଗବନ୍, ଆପଣ ବର୍ଣ୍ଣନା କଲେ ଯେ ସୂର୍ଯ୍ୟ ରାଶିମାନଙ୍କ ଆଡ଼କୁ ଗତି କଲାବେଳେ (ଉଭୟ) ମେରୁ ଓ ଧ୍ରୁବଙ୍କୁ ପ୍ରଦକ୍ଷିଣ କରି ଯିବାପରି ମନେହୁଏ । କିନ୍ତୁ ପ୍ରକୃତରେ ସେ ପ୍ରଦକ୍ଷିଣ କରନ୍ତି ନାହିଁ । ଏ ବିଷୟଟିକୁ ଆମେ କିପରି ଅନୁମାନ କରିପାରିବା ? ॥୧॥ ଶ୍ରୀ ଶୁକଦେବ କହିଲେ, କୁମ୍ଭାରଚକ ବୁଲୁଥିବାବେଳେ ତା ଉପରେ ବସିଥିବା ପିମ୍ପୁଡ଼ି ଆଦିଙ୍କର ଗତି ତାହାଠାରୁ ଭିନ୍ନ ହୁଏ; କାରଣ ଭିନ୍ନ ଭିନ୍ନ ସମୟରେ ଏମାନେ ଚକର ଭିନ୍ନ ଭିନ୍ନ ସ୍ଥାନରେ ଦେଖାଯା'ନ୍ତି । ସେହିପରି ଘୂରୁଥିବା କାଳଚକ୍ରରେ ରହି ସୂର୍ଯ୍ୟାଦି ଗ୍ରହମାନେ ନକ୍ଷତ୍ର ଓ ରାଶିମାନଙ୍କଆଡ଼କୁ ଯିବାବେଳେ ଧ୍ରୁବ ଓ ମେରୁଙ୍କୁ ପ୍ରଦକ୍ଷିଣ କରୁଥିବା ପରି ଜଣାପଡ଼େ । ସେମାନେ କିନ୍ତୁ କାଳଚକ୍ରର ଘୂର୍ଣ୍ଣନ ଅନୁଯାୟୀ ଭିନ୍ନ ଭିନ୍ନ ରାଶିକ୍ଷେତ୍ରରେ ଦେଖାଯା'ନ୍ତି ॥୨॥ ବେଦ ଓ ଋଷିମାନେ ଯେଉଁ ଭଗବାନ୍ ଆଦିପୁରୁଷ ସାକ୍ଷାତ୍ ନାରାୟଣଙ୍କୁ ଜାଣିବାପାଇଁ ବ୍ୟାକୁଳ, ସେ ଲୋକମାନଙ୍କର କଲ୍ୟାଣ ପାଇଁ ଓ କର୍ମର ଶୁଦ୍ଧିନିମନ୍ତେ ବେଦମୟ ନିଜର ଆତ୍ମସ୍ୱରୂପ କାଳକୁ ବାରମାସ ଓ ବସନ୍ତ ଆଦି ଛ'ଋତୁରେ ବିଭକ୍ତ କରି ଶୀତ, ଉଷ୍ଣ ଆଦି ଗୁଣର ବିଧାନ କରିଥା'ନ୍ତି ॥୩॥ ଇହଲୋକରେ ଯେଉଁ ପୁରୁଷମାନେ ବେଦରେ ବିହିତ ବର୍ଣ୍ଣାଶ୍ରମ ଧର୍ମ ଅନୁସରଣ କରନ୍ତି ଓ ଶ୍ରଦ୍ଧାର ସହିତ ସେଥିରେ ପ୍ରତିପାଦିତ ଯାଗ ଯଜ୍ଞ ଆଦି ଛୋଟ ବଡ଼ କର୍ମଦ୍ୱାରା (ଇନ୍ଦ୍ରାଦି ଦେବତା ରୂପରେ) ତାଙ୍କୁ ଅର୍ଚ୍ଚନା କରନ୍ତି କିମ୍ବା ଯୋଗସମାଧି ଦ୍ୱାରା (ଅନ୍ତର୍ଯାମୀ ସ୍ୱରୂପରେ ) ତାଙ୍କର ଆରାଧନା କରନ୍ତି, ସେମାନଙ୍କୁ ସମସ୍ତ ଶ୍ରେୟ

ସହଜରେ ମିଳିଥାଏ ॥୪॥ ସମସ୍ତ ଜଗତର ଆତ୍ମା ଭଗବାନ ସୂର୍ଯ୍ୟ ପୃଥିବୀ ଓ ଦ୍ୟୁଲୋକ ମଧ୍ୟରେ ଯେଉଁ ନଭୋମଣ୍ଡଳ ରହିଚି, ତାହା ଭିତରେ ଥିବା କାଳଚକ୍ରରେ ଅବସ୍ଥାନ କରି ବାର ମାସ ଭୋଗ କରନ୍ତି । ପ୍ରତ୍ୟେକ ମାସ ହେଉଚି ସମ୍ବତ୍ସରର ଗୋଟିଏ ଗୋଟିଏ ଅବୟବ ଏବଂ ମେଷ ଆଦି ରାଶି ନାମରେ ପ୍ରସିଦ୍ଧ । ପ୍ରତ୍ୟେକ ଚାନ୍ଦ୍ର ମାସର ଦୁଇଟି ପକ୍ଷ--କୃଷ୍ଣ ଓ ଶୁକ୍ଳ । ପିତୃପକ୍ଷର ଏହା ଗୋଟିଏ ରାତି ଓ ଗୋଟିଏ ଦିନ ଏବଂ ସୌର ମାସ ହେଉଚି ଦୁଇଟି ନକ୍ଷତ୍ର ଓ ଆଉ ଗୋଟିଏ ନକ୍ଷତ୍ରର ଏକ ଚତୁର୍ଥାଂଶ ସହିତ ସମାନ । ବର୍ଷରେ ସତେଇଶଟି ନକ୍ଷତ୍ର ହିସାବରେ ସୂର୍ଯ୍ୟଦେବ ସମ୍ବତ୍ସରର ଛ ଭାଗରୁ ଯେଉଁ ଏକ ଭାଗ (ଦୁଇ ମାସ) ଭୋଗ କରନ୍ତି, ତାହାକୁ ଋତୁ କୁହାଯାଏ ॥୫॥ ଯେତିକି ସମୟରେ ସେ ଆକାଶମଣ୍ଡଳର ଅର୍ଦ୍ଧ ପଥ ଅତିକ୍ରମ କରନ୍ତି, ସେହି ସମୟକୁ ଏକ ଅୟନ ବୋଲି କୁହାଯାଏ ॥୬॥ ଯେଉଁ ସମୟମଧ୍ୟରେ ସୂର୍ଯ୍ୟଦେବ ତାଙ୍କର ମନ୍ଦ, କ୍ଷିପ୍ର ଓ ସମ ଗତିରେ ସ୍ୱର୍ଗମଣ୍ଡଳ ଓ ପୃଥିବୀମଣ୍ଡଳ ସହିତ ସମଗ୍ର ଆକାଶମଣ୍ଡଳକୁ ଅତିକ୍ରମ କରନ୍ତି, ତାହାକୁ ସେହି କ୍ରମରେ ସମ୍ବତ୍ସର, ପରିବତ୍ସର, ଇଡାବତ୍ସର, ଅନୁବତ୍ସର ବା ବତ୍ସର ବୋଲି କୁହାଯାଏ ॥୭॥ ସୂର୍ଯ୍ୟର ଏକ ଲକ୍ଷ ଯୋଜନ ଉପରେ ଚନ୍ଦ୍ରମା ବିରାଜିତ । ସେ ସୂର୍ଯ୍ୟଠାରୁ କ୍ଷିପ୍ରଗତିରେ ଯାଇ ସୂର୍ଯ୍ୟର ବର୍ଷକର ବାଟକୁ ଏକ ମାସରେ, ମାସକର ବାଟକୁ ଦୁଇ ଦିନ ଓ ଏକ ଦିନର ଚତୁର୍ଥାଂଶରେ ଏବଂ ଏକ ପକ୍ଷର ବାଟକୁ ଏକ ଦିନରେ ଅତିକ୍ରମ କରିଯାଏ ॥୮॥ ଅନ୍ନମୟ ଓ ଅମୃତମୟ ହୋଇଥିବାଯୋଗୁଁ ସମସ୍ତ ଜୀବଙ୍କର ପ୍ରାଣ ଓ ଜୀବନସ୍ୱରୂପ ଚନ୍ଦ୍ରମା ନିଜର କ୍ରମଶଃ ବଢୁଥିବା ଓ ଛିଡୁଥିବା କଳା ଅନୁସାରେ ଶୁକ୍ଳପକ୍ଷ ଓ କୃଷ୍ଣପକ୍ଷର ବିଧାନ କରନ୍ତି ଏବଂ ଦେବଗଣ ଓ ପିତୃଗଣଙ୍କ ଅହୋରାତ୍ର ସମ୍ପାଦନପୂର୍ବକ ତିରିଶ ମୂହୂର୍ତ୍ତରେ ଗୋଟିଏ ଗୋଟିଏ ନକ୍ଷତ୍ରକୁ ଭୋଗ କରନ୍ତି ॥୯॥ ଷୋଳକଳାଯୁକ୍ତ ମନୋମୟ, ଅନ୍ନମୟ ଓ ଅମୃତମୟ ପୁରୁଷସ୍ୱରୂପ ଭଗବାନ ଚନ୍ଦ୍ର ଦେବତା, ଦେବଲୋକ, ପିତୃଲୋକ, ମନୁଷ୍ୟ, ଭୂତ, ପଶୁପକ୍ଷୀ, ସରୀସୃପ, ବୃକ୍ଷଲତା ଆଦି ସମସ୍ତ ପ୍ରାଣୀଙ୍କୁ ପାଳନ କରୁଥିବାଯୋଗୁଁ ତାଙ୍କୁ ସର୍ବମୟ କୁହାଯାଏ ॥୧୦॥

ଚନ୍ଦ୍ରମଣ୍ଡଳର ଦୁଇଲକ୍ଷ ଯୋଜନ ଉପରେ ସୁମେରୁ ପର୍ବତର ଦକ୍ଷିଣ ଦିଗରେ ଈଶ୍ୱରଙ୍କଦ୍ୱାରା କାଳଚକ୍ରରେ ନିଯୁକ୍ତ ଅଭିଜିତ୍ ନାମକ ନକ୍ଷତ୍ର ସହ ଅଠେଇଶଟି ନକ୍ଷତ୍ର ଅଛନ୍ତି ॥୧୧॥ ଏମାନଙ୍କର ଦୁଇ ଲକ୍ଷ ଯୋଜନ ଉପରେ ଶୁକ୍ରଗ୍ରହ ଦେଖାଯାଏ । ଶୁକ୍ରଗ୍ରହ ସୂର୍ଯ୍ୟର କ୍ଷିପ୍ର, ମନ୍ଦ ଓ ସମଗତି ଅନୁଯାୟୀ ସୂର୍ଯ୍ୟପରି କେବେ ଆଗରେ, କେବେ ପଛରେ ଓ କେବେ ସାଙ୍ଗରେ ରହି ଚାଲିଥାଏ । ଶୁକ୍ର ହେଉଛି ବର୍ଷା କରିବା ଗ୍ରହ । ଏଥିପାଇଁ ଲୋକଙ୍କର ଅନୁକୂଳ । ଏହାର ଗତିରୁ ଅନୁମିତ ହୁଏ ଯେ, ଯେଉଁସବୁ ଗ୍ରହ ବୃଷ୍ଟିକୁ ବାଧା ଦିଅନ୍ତି ସେମାନଙ୍କୁ ଏହା ଶାନ୍ତ କରିଦିଏ ॥୧୨॥ ଶୁକ୍ର ସଙ୍ଗେ ସଙ୍ଗେ ବୁଧର ମଧ୍ୟ ବ୍ୟାଖ୍ୟା ହୋଇଗଲା । ଶୁକ୍ରର ଦୁଇ ଲକ୍ଷ ଯୋଜନ ଉପରେ ଚନ୍ଦ୍ରପୁତ୍ର ବୁଧ ଦୃଷ୍ଟିଗୋଚର ହୁଏ ଏବଂ ଏହା ପ୍ରାୟ ଲୋକଙ୍କର ଶୁଭକାରୀ ଗ୍ରହ । କିନ୍ତୁ ଯେତେବେଳେ ବୁଧ ସୂର୍ଯଙ୍କର ଗତିକୁ ଉଲ୍ଲଂଘନ କରିଚାଲେ, ସେତେବେଳେ ଅତି ପ୍ରବଳ ବାୟୁ, ଘୋର ଘନଘଟା ଓ ଅନାବୃଷ୍ଟି ଆଦି ଭୟର ସୂଚନା ଦିଏ ॥୧୩॥ ବୁଧଗ୍ରହର ଦୁଇ ଲକ୍ଷ ଯୋଜନ ଉର୍ଦ୍ଧ୍ୱରେ ମଙ୍ଗଳ ଗ୍ରହ । ଏହି ଗ୍ରହ ଗୋଟିଏ ଗୋଟିଏ ରାଶିକୁ ତିନି ତିନି ପକ୍ଷରେ ଭୋଗ କରି ବାରଟି ରାଶିକୁ ଭୋଗ କରେ । ବକ୍ର ନ ହେଲେ ଏହି ଗ୍ରହ ପ୍ରାୟ ଅଶୁଭ ଫଳ ପ୍ରଦାନ କରିଥାଏ ॥୧୪॥ ଏହାର ଉପରେ ଦୁଇଲକ୍ଷ ଯୋଜନ ଦୂରରେ ଭଗବାନ ବୃହସ୍ପତି ଅବସ୍ଥିତ । ସେ ଏକଏକ ରାଶିକୁ ଗୋଟିଏ ଗୋଟିଏ 'ପରିବତ୍ସର' ବର୍ଷରେ ଭୋଗ କରନ୍ତି ଏବଂ ଯଦି ବକ୍ର ନ ହୁଅନ୍ତି, ତା'ହେଲେ ବ୍ରାହ୍ମଣକୁଳର ଅନୁକୂଳ ହୁଅନ୍ତି ॥୧୫॥ ବୃହସ୍ପତିଙ୍କର ଦୁଇ ଲକ୍ଷ ଯୋଜନ ଉପରେ ଶନି ଗ୍ରହ ଦେଖାଯାଏ । ସେ ତିରିଶ ତିରିଶ ମାସପର୍ଯ୍ୟନ୍ତ ଗୋଟିଏ ଗୋଟିଏ ରାଶିରେ ଅବସ୍ଥାନ କରେ । ତେଣୁ ସବୁ ରାଶିକୁ ପାର ହେବାପାଇଁ ଶନିକୁ ତିରିଶ 'ଅନୁବତ୍ସର' ବର୍ଷ ଲାଗିଯାଏ । ଏହି ଗ୍ରହ ସମସ୍ତଙ୍କପାଇଁ ଅଶାନ୍ତିକର ॥୧୬॥ ଏହାର ଉତ୍ତରକୁ ଏଗାର ଲକ୍ଷ ଯୋଜନ ମଧ୍ୟରେ ସପ୍ତର୍ଷି ମଣ୍ଡଳ ଦେଖାଯାଏ । ଏହି ମଣ୍ଡଳରେ ଥିବା ଋଷିମାନେ ଲୋକମାନଙ୍କର ମଙ୍ଗଳ ଚିନ୍ତା କରି ଭଗବାନ ବିଷ୍ଣୁଙ୍କର ପରମପଦସ୍ୱରୂପ ଧ୍ରୁବଲୋକକୁ ପ୍ରଦକ୍ଷିଣ କରି ଭ୍ରମଣ କରନ୍ତି ॥୧୭॥

## ତ୍ରୟୋବିଂଶ ଅଧ୍ୟାୟ

# ଶିଶୁମାର ଚକ୍ରର ବର୍ଣ୍ଣନା

ଶ୍ରୀ ଶୁକଦେବ କହିଲେ, ରାଜା ! ସପ୍ତର୍ଷିମାନଙ୍କର ତେର ଲକ୍ଷ ଯୋଜନ ଉପରେ ଧ୍ରୁବଲୋକ ବିଦ୍ୟମାନ । ଏହାକୁ ଭଗବାନ ବିଷ୍ଣୁଙ୍କର ପରମ ପଦ ବୋଲି କୁହାଯାଏ । ଏଠାରେ ଉତ୍ତାନପାଦଙ୍କର ପୁତ୍ର ପରମ ଭାଗବତ ଧ୍ରୁବ ଅବସ୍ଥାନ କରନ୍ତି । ଅଗ୍ନି, ଇନ୍ଦ୍ର, ପ୍ରଜାପତି, କଶ୍ୟପ ଓ ଧର୍ମ – ଏମାନେ ସମସ୍ତେ ଅତି ଶ୍ରଦ୍ଧାର ସହିତ ତାଙ୍କୁ ପ୍ରଦକ୍ଷିଣ କରନ୍ତି ॥୧॥ ସୃଷ୍ଟିର ଆରମ୍ଭରୁ ପ୍ରଳୟକାଳପର୍ଯ୍ୟନ୍ତ (କଳ୍ପ) ବଞ୍ଚିଥିବା ସମସ୍ତଙ୍କ ଜୀବନୀଶକ୍ତିର ସେ ଆଧାରସ୍ୱରୂପ । ସଦାସର୍ବଦା ଭଗବାନଙ୍କର ଉପାସନା କରୁଥିବା ମହାନୁଭାବ ଧ୍ରୁବଙ୍କର ଚରିତ ମୁଁ ପୂର୍ବରୁ (ଚତୁର୍ଥ ସ୍କନ୍ଧରେ) ବର୍ଣ୍ଣନା କରିଛି । ଧ୍ରୁବ ନକ୍ଷତ୍ର ସ୍ଥିର । ଗ୍ରହ, ନକ୍ଷତ୍ର ଆଦି ଅନ୍ୟ ସମସ୍ତ ଜ୍ୟୋତିଷ୍କ ଅବ୍ୟକ୍ତଗତି କାଳଦ୍ୱାରା ଚାଳିତ ହୋଇ ଅବିଶ୍ରାନ୍ତ ଭାବରେ ଘୂରି ବୁଲୁଥା'ନ୍ତି । ଈଶ୍ୱରଙ୍କ ଦ୍ୱାରା ଏହି ଧ୍ରୁବଲୋକ ସେମାନଙ୍କର ଆଧାରସ୍ତମ୍ଭ ରୂପେ ଅବସ୍ଥାପିତ ହୋଇଛି ଓ ସର୍ବଦା ଆଲୋକ ବିକୀରଣ କରୁଛି ॥୨॥ ଯେପରି ଧାନ ବେଙ୍ଗଳା ପକାଇବାବେଳେ ପଶୁମାନେ ମେଢ଼ି ଖୁଣ୍ଟରେ ଛୋଟ, ବଡ଼ ଓ ମଧ୍ୟମ ଦଉଡ଼ିଦ୍ୱାରା ବନ୍ଧା ହୋଇ ନିକଟ, ଦୂର ଓ ମଝିରେ ରହି ଖମ୍ଭର ଚାରିପଟେ ବେଙ୍ଗଳା ବୁଲୁଥା'ନ୍ତି, ସେହିପରି ସମସ୍ତ ଗ୍ରହ, ନକ୍ଷତ୍ର ଧ୍ରୁବଲୋକକୁ ସ୍ତମ୍ଭପରି ଆଶ୍ରୟ କରି କାଳଚକ୍ରଦ୍ୱାରା ଘୂରି ବୁଲୁଥା'ନ୍ତି । ମେଘ ଓ ବାଜପକ୍ଷୀ ନିଜର କର୍ମ ଅନୁସାରେ ବାୟୁଦ୍ୱାରା ଚାଳିତ ହୋଇ ଆକାଶରେ ଉଡ଼ି ବୁଲୁଥା'ନ୍ତି । ସେହିପରି ଜ୍ୟୋତିଷ୍କଗଣ ପ୍ରକୃତି ଓ ପୁରୁଷର ସଂଯୋଗରେ ନିଜ ନିଜ କର୍ମ ଅନୁଯାୟୀ ଏହିପରି ଉପରେ ଭ୍ରମଣ କରୁଥା'ନ୍ତି, ପୃଥିବୀ ତଳେ ପଡିଯାଆନ୍ତି ନାହିଁ ॥୩॥ କେହି କେହି ବ୍ୟକ୍ତି ଏହି ଜ୍ୟୋତିଷ୍‌ଚକ୍ରକୁ ଭଗବାନଙ୍କ ଯୋଗଧାରଣାରେ ସ୍ଥିତ ଶିଶୁମାର ସଂସ୍ଥାନ ( ଏକ ଜାତୀୟ ମତ୍ସ୍ୟ ବା 'ଡଲ୍‌ଫିନ୍') ରୂପେ ବର୍ଣ୍ଣନା କରିଛନ୍ତି ॥୪॥ ଏହି ଶିଶୁମାରର ମୁହଁ ତଳକୁ ଓ ଦେହ କୁଣ୍ଡଳୀ ଆକାରରେ ଅବସ୍ଥିତ । ତା'ର ଲାଞ୍ଜର ଅଗରେ ଧ୍ରୁବ ନକ୍ଷତ୍ର । ଲାଞ୍ଜର ମଧ୍ୟରେ ପ୍ରଜାପତି, ଅଗ୍ନି, ଇନ୍ଦ୍ର ଓ ଧର୍ମ । ଲାଞ୍ଜର ମୂଳରେ ଧାତା ଓ ବିଧାତା । କଟିଦେଶରେ ସପ୍ତର୍ଷିମଣ୍ଡଳ । ଏହି ଶିଶୁମାର ଡାହାଣଆଡ଼କୁ ମୋଡ଼ି ହୋଇ କୁଣ୍ଡଳାକାର ଧାରଣ କରିଛି । ଅଭିଜିତ୍‌ଠାରୁ ଆରମ୍ଭ କରି ପୁନର୍ବସୁପର୍ଯ୍ୟନ୍ତ ଉତ୍ତରାୟଣର ଚଉଦଟି ନକ୍ଷତ୍ର ଏହାର ଦକ୍ଷିଣ ଭାଗରେ ଏବଂ ପୁଷ୍ୟାକୁ ନେଇ ଉତ୍ତରାଷାଢ଼ା ପର୍ଯ୍ୟନ୍ତ ଦକ୍ଷିଣାୟନର ଚଉଦଟି ନକ୍ଷତ୍ର ଏହାର ବାମ ଭାଗରେ ବିଦ୍ୟମାନ । କୁଣ୍ଡଳାକାରରେ ଅବସ୍ଥିତ ଏହି ଶିଶୁମାରର ଉଭୟ ପାର୍ଶ୍ୱରେ ସମସଂଖ୍ୟକ ନକ୍ଷତ୍ର ବିଦ୍ୟମାନ । ଏହାର ପୃଷ୍ଠଭାଗରେ ମୂଳା, ପୂର୍ବାଷାଢ଼ା ଓ ଉତ୍ତରାଷାଢ଼ା ନକ୍ଷତ୍ର ଓ କ୍ରୋଡ଼ଦେଶରେ ଆକାଶଗଙ୍ଗା ମନ୍ଦାକିନୀ ॥୫॥ ଏହାର ଦକ୍ଷିଣ ଓ ବାମ ନିତମ୍ବରେ ଯଥାକ୍ରମେ ପୁନର୍ବସୁ ଓ ପୁଷ୍ୟା ନକ୍ଷତ୍ର, ଦକ୍ଷିଣ ଓ ବାମପାଦରେ ଆର୍ଦ୍ରା ଓ ଅଶ୍ଳେଷା, ଦକ୍ଷିଣ ଓ ବାମ ନାସିକାରେ ଅଭିଜିତ୍ ଓ ଉତ୍ତରାଷାଢ଼ା, ଦକ୍ଷିଣ ଓ ବାମ ଚକ୍ଷୁରେ ଶ୍ରବଣା ଓ ପୂର୍ବାଷାଢ଼ା, ଦକ୍ଷିଣ ଓ ବାମ କର୍ଣ୍ଣରେ ଧନିଷ୍ଠା ଓ ମୂଳା, ବାମପାର୍ଶ୍ୱର ପଞ୍ଜରା ହାଡ଼ରେ ମଘାଠାରୁ ଆରମ୍ଭ କରି ଅନୁରାଧାପର୍ଯ୍ୟନ୍ତ ଆଠଟି ଦକ୍ଷିଣାୟନ ନକ୍ଷତ୍ର, ଓ ଦକ୍ଷିଣପାର୍ଶ୍ୱର ପଞ୍ଜରା ହାଡ଼ରେ ମୃଗଶିରାଠାରୁ ଆରମ୍ଭ କରି ପୂର୍ବଭାଦ୍ରପଦା ପର୍ଯ୍ୟନ୍ତ ଆଠଟି ଉତ୍ତରାୟଣ ନକ୍ଷତ୍ର ବିଦ୍ୟମାନ । ଏହାର ଦକ୍ଷିଣ ସ୍କନ୍ଧରେ ଶତଭିଷା ଓ ବାମସ୍କନ୍ଧରେ ଜ୍ୟେଷ୍ଠା ନକ୍ଷତ୍ର ଅବସ୍ଥିତ ॥୬॥ ଏହି ଶିଶୁମାରର ଉପର ହନୁହାଡ଼ରେ ଅଗସ୍ତି, ତଳ ହନୁହାଡ଼ରେ ଯମ, ମୁଖରେ ମଙ୍ଗଳ, ଲିଙ୍ଗସ୍ଥାନରେ ଶନି, ପଛବେକରେ ବୃହସ୍ପତି, ଛାତିରେ ସୂର୍ଯ୍ୟ, ହୃଦୟରେ ନାରାୟଣ, ମନରେ ଚନ୍ଦ୍ର, ନାଭିରେ ଶୁକ୍ର, ସ୍ତନଦ୍ୱୟରେ ଅଶ୍ୱିନୀକୁମାର, ପ୍ରାଣ ଓ ଅପାନରେ ବୁଧ, ଗଳାରେ ରାହୁ, ସମସ୍ତ ଅଙ୍ଗରେ କେତୁ ଓ ରୋମାବଳୀରେ ସମ୍ପୂର୍ଣ୍ଣ ତାରାଗଣ ଅବସ୍ଥିତ ॥୭॥ ରାଜା ! ଯେଉଁ ଶିଶୁମାର ଶରୀରର କଥା ମୁଁ ବର୍ଣ୍ଣନା କଲି, ତାହା ଭଗବାନ ବିଷ୍ଣୁଙ୍କର ସର୍ବଦେବମୟ ରୂପ ।

ପ୍ରତ୍ୟହ ସନ୍ଧ୍ୟା ସମୟରେ ସଂଯତ ଭାବରେ ଅନ୍ୟ କଥାରୁ ବିରତ ହୋଇ, ଏହି ରୂପକୁ ନିରୀକ୍ଷଣ କରି କରି ଏହି ମନ୍ତ୍ରରେ ଭଗବାନଙ୍କୁ ସ୍ତୁତି କରିବା ଆବଶ୍ୟକ । ମନ୍ତ୍ରଟି ହେଉଛି- 'ଜ୍ୟୋତିଷ୍କମାନଙ୍କର ଆଶ୍ରୟ, କାଳଚକ୍ରସ୍ୱରୂପ, ସର୍ବଦେବାଧିପତି, ମହାପୁରୁଷ ପରମାତ୍ମାଙ୍କୁ ଆମେ ନମସ୍କାର କରୁଛୁ' ॥୮॥ ତ୍ରିସନ୍ଧ୍ୟାରେ ଗ୍ରହ, ନକ୍ଷତ୍ର ଓ ତାରାମାନଙ୍କ ରୂପରେ ପ୍ରକାଶିତ ଭଗବାନଙ୍କର ଆଧିଦୈବିକ ରୂପକୁ ପୂର୍ବକଥିତ ମନ୍ତ୍ରଦ୍ୱାରା ଜପ କରୁଥିବା ଲୋକଙ୍କର ସମସ୍ତ ପାପ ନଷ୍ଟ ହୋଇଯାଏ । ଯେ ପ୍ରାତଃ, ମଧ୍ୟାହ୍ନ ଏବଂ ସନ୍ଧ୍ୟା - ଏହି ତିନିସମୟରେ ତାଙ୍କୁ ଚିନ୍ତାକରେ ବା ବନ୍ଦନା କରେ, ସେସମୟରେ କରିଥିବା ତା'ର ସମସ୍ତ ପାପ ତତ୍‌କ୍ଷଣାତ୍ ନଷ୍ଟ ହୋଇଯାଏ ॥୯॥

## ଚତୁର୍ବିଂଶ ଅଧ୍ୟାୟ

# ଅତଳ ଆଦି ସପ୍ତ ଲୋକର ବର୍ଣ୍ଣନା

ଶ୍ରୀ ଶୁକଦେବ କହିଲେ, ତାତ ପରିକ୍ଷିତ, କେତେକଙ୍କ ମତରେ ସୂର୍ଯ୍ୟଙ୍କର ଦଶ ହଜାର ଯୋଜନ ତଳେ ରାହୁ ଗ୍ରହ ନକ୍ଷତ୍ର ପରି ଘୂରି ବୁଲୁଛି । ସିଂହିକାର ପୁତ୍ର ଏହି ରାକ୍ଷସାଧମ କୌଣସି ପଦପାଇଁ ଯୋଗ୍ୟ ନ ହେଲେ ମଧ୍ୟ ଈଶ୍ୱରଙ୍କ କରୁଣାରୁ ଗ୍ରହତ୍ୱ ଓ ଅମରତ୍ୱ ଲାଭ କରିଚି । ଏହାର ଜନ୍ମ ଓ କର୍ମ ବିଷୟରେ ମୁଁ ପରେ କହିବାକୁ ଯାଉଚି ॥୧॥ ଉତ୍ତପ୍ତ ସୂର୍ଯ୍ୟମଣ୍ଡଳର ବିସ୍ତାର ଦଶ ହଜାର ଯୋଜନ । ଚନ୍ଦ୍ରମଣ୍ଡଳର ବିସ୍ତାର ବାରହଜାର ଯୋଜନ ଓ ରାହୁର ବିସ୍ତାର ତେର ହଜାର ଯୋଜନ । ଅମୃତ ବଣ୍ଟନ ସମୟରେ ରାହୁ ଦେବତା ବେଶରେ ଚନ୍ଦ୍ରସୂର୍ଯ୍ୟଙ୍କ ମଧ୍ୟରେ ବସି ବ୍ୟବଧାନ ସୃଷ୍ଟି କରିଥିଲା । ସେ ଦୁହିଁଙ୍କଯୋଗୁଁ ସେ ଚିହ୍ନା ପଡ଼ିଯିବାରୁ ତାଙ୍କ ସହିତ ସେହିଦିନୁଁ ସେ ଶତ୍ରୁତା କରି ଆସୁଛି ଓ ଆକ୍ରମଣ କରିବାପାଇଁ ପଛରେ ଗୋଡ଼ାଇଛି ॥୨॥ ତାହା ଜାଣିପାରି ଉଭୟ ଚନ୍ଦ୍ର ଓ ସୂର୍ଯ୍ୟଙ୍କୁ ରକ୍ଷା କରିବାପାଇଁ ଭଗବାନ ତାଙ୍କ ପ୍ରିୟ ଅସ୍ତ୍ର ସୁଦର୍ଶନ ଚକ୍ରକୁ ନିଯୁକ୍ତ କରିଛନ୍ତି । ସେହି ଅସ୍ତ୍ର ସୂର୍ଯ୍ୟ ଓ ଚନ୍ଦ୍ରଙ୍କ ଚାରିପଟେ ଘୂରୁଥାଏ; ତା'ର ଅସହ୍ୟ ତେଜରେ ଉଦ୍‌ବିଗ୍ନ ଓ ହତଚକିତ ହୋଇ ରାହୁ ପାଖକୁ ଆସି ପୁଣି ଦୂରକୁ ପଳାଇଯାଏ । ରାହୁର ଏହି ସମୟତକ ଅବସ୍ଥିତିକୁ ଉପରାଗ ବୋଲି କୁହାଯାଏ । ସୂର୍ଯ୍ୟକ୍ଷେତ୍ରରେ ଏହାକୁ ସୂର୍ଯ୍ୟୋପରାଗ ଓ ଚନ୍ଦ୍ରକ୍ଷେତ୍ରରେ ଚନ୍ଦ୍ରଗ୍ରହଣ ବୋଲି କୁହାଯାଏ । ରାହୁର ଦଶହଜାର ଯୋଜନ ତଳେ ସିଦ୍ଧ, ଚାରଣ ଓ ବିଦ୍ୟାଧର ଆଦିଙ୍କର ସ୍ଥାନ ॥୪॥ ତା'ର ତଳେ ଯେପର୍ଯ୍ୟନ୍ତ ବାୟୁର ଗତି ରହିଛି ଓ ମେଘମାନେ ଦେଖାଯା'ନ୍ତି, ତାହା ଅନ୍ତରୀକ୍ଷ ଲୋକ । ତାହା ହେଉଛି ଯକ୍ଷ, ରାକ୍ଷସ, ପିଶାଚ, ପ୍ରେତ ଓ ଭୂତଙ୍କର ବିହାରସ୍ଥଳ ॥୫॥ ତାହାର ଶହେ ଯୋଜନ ତଳେ ଏହି ପୃଥିବୀ ଅବସ୍ଥିତ । ଯେତେଦୂର ଉପରକୁ ହଂସ, ଗୃଧ୍ର, ବାଜ ଓ ଛଞ୍ଚାଣ ଆଦି ପକ୍ଷୀମାନେ ଉଡ଼ିପାରନ୍ତି, ସେ ପର୍ଯ୍ୟନ୍ତ ପୃଥିବୀର ସୀମା ରହିଛି ॥୬॥ ପୃଥିବୀର ବିସ୍ତାର ଓ ସ୍ଥିତି ସମ୍ପର୍କରେ ପୂର୍ବରୁ ବର୍ଣ୍ଣନା କରାଯାଇଛି । ଏହି ପୃଥିବୀର ତଳେ ଅତଳ, ବିତଳ, ସୁତଳ, ତଳାତଳ, ମହାତଳ, ରସାତଳ ଓ ପାତାଳ -- ଏଇ ସପ୍ତ ସଂଖ୍ୟକ ଭୂବିବର (ଭୂଗର୍ଭସ୍ଥ ବିଳ ବା ଲୋକ) ବିଦ୍ୟମାନ । ଏମାନେ ଗୋଟିକର ତଳେ ଗୋଟିଏ ଦଶ ହଜାର ଯୋଜନ ଦୂରରେ ଅବସ୍ଥିତ ଏବଂ ପ୍ରତ୍ୟେକଙ୍କର ଲମ୍ବ ଓ ଓସାର ଦଶ ଦଶ ହଜାର ଯୋଜନ ॥୭॥ ଏହି ସବୁ ଭୂବିବରରେ ସ୍ୱର୍ଗଠାରୁ ମଧ୍ୟ ଅଧିକ କାମ, ଭୋଗ, ଐଶ୍ୱର୍ଯ୍ୟ, ଆନନ୍ଦ ଓ ଧନସମ୍ପତ୍ତି ମିଳିଥାଏ । ଏ ସବୁର ସୁସମୃଦ୍ଧ ଭବନ, ଉଦ୍ୟାନ, କ୍ରୀଡ଼ାସ୍ଥଳୀ ଓ ବିହାରସ୍ଥଳୀରେ ଦୈତ୍ୟ, ଦାନବ ଓ ନାଗମାନେ ମାୟାମୟ ଗୃହସ୍ଥଧର୍ମରେ ରହି ନିଜ ନିଜର ସ୍ତ୍ରୀ, ପୁତ୍ର ଓ ବନ୍ଧୁବାନ୍ଧବମାନଙ୍କୁ ପ୍ରତ୍ୟହ ଆନନ୍ଦ ପ୍ରଦାନ ପୂର୍ବକ ଅତିଶୟ ଆନନ୍ଦରେ କାଳଯାପନ କରନ୍ତି । ଇନ୍ଦ୍ରାଦି ଦେବତାମାନେ ମଧ୍ୟ ଏମାନଙ୍କର ଭୋଗବିଳାସରେ ବାଧା ଦେଇ ପାରନ୍ତି ନାହିଁ ॥୮॥ ମହାରାଜ ! ଏହିସବୁ ବିଳ-

ସ୍ୱର୍ଗରେ ମାୟାବୀ ମୟଦାନବଦ୍ୱାରା ନିର୍ମିତ ବହୁ ସୁନ୍ଦର ନଗରୀ ଶୋଭାପାଉଛି । ସେଠାରେ ଶ୍ରେଷ୍ଠ ମଣିମାନଙ୍କରେ ଖଚିତ ବହୁ ଚିତ୍ରବିଚିତ୍ର ଭବନ, ପ୍ରାଚୀର, ନଗରଦ୍ୱାର, ସଭାସଦନ, ସମାଧିସ୍ତୂପ, ଚଉତୁରା ଓ ପ୍ରମୋଦଗୃହଦ୍ୱାରା ତଥା ସସ୍ତ୍ରୀକ ନାଗ ଓ ଅସୁର ଏବଂ ପାରା, ଶୁଆ ଓ ସାରୀ ଆଦି ପକ୍ଷୀମାନଙ୍କଦ୍ୱାରା ଏହି କୃତ୍ରିମ ଭୂମିମାନ ପୂରି ଉଠୁଥାଏ । ବିଳର ଅଧିପତିମାନଙ୍କର ସୁନ୍ଦର ଭବନଦ୍ୱାରା ଅଳଂକୃତ ପୁରମାନ ଶୋଭା ପାଉଥାଏ ॥୯॥ ଏହାର ଉଦ୍ୟାନମାନଙ୍କର ଶୋଭା ଦେବଲୋକରେ ଥିବା ଉଦ୍ୟାନର ଶୋଭାକୁ ପରାସ୍ତ କରେ । ବୃକ୍ଷମାନେ ନବ ପତ୍ର, ପୁଷ୍ପ, ଗୁଚ୍ଛ ଓ ଫଳରେ ପୂର୍ଣ୍ଣ ହୋଇ ତଳକୁ ନଇଁ ପଡ଼ିଥା'ନ୍ତି ଓ ଲତାମାନଙ୍କଦ୍ୱାରା ଆଲିଙ୍ଗିତ ହୋଇ ଅତି ସୁନ୍ଦର ଦେଖାଯାଉଥା'ନ୍ତି । ନିର୍ମଳଜଳପୂର୍ଣ୍ଣ ଜଳାଶୟମାନଙ୍କରେ ପକ୍ଷିମିଥୁନମାନେ କ୍ରୀଡ଼ା କରୁଥା'ନ୍ତି । ମାଛମାନେ ଡିଆଁ ମାରୁଥା'ନ୍ତି । କମଳ, କହ୍ଲାର , କୁମୁଦ, କୁବଳୟ, ନୀଳୋତ୍ପଳ ଓ ରକ୍ତପଦ୍ମବନରେ ବିହାର କରୁଥିବା ଚକ୍ରବାକ ଆଦି ବିଭିନ୍ନ ଜଳପକ୍ଷୀମାନଙ୍କର ମଧୁର କୂଜନରେ ମୁଖରିତ ହୋଇ ଏହା ଦେହ ଓ ମନକୁ ମୋହିତ କରେ ॥୧୦॥ ସୂର୍ଯ୍ୟକିରଣ ପଡୁ ନ ଥିବାଯୋଗୁଁ ଏଠାରେ ଦିନରାତି ଆଦି ସମୟର ବିଭାଗ ଦେଖାଯାଏ ନାହିଁ ॥୧୧॥ ମହାମହା ନାଗମାନଙ୍କ ମସ୍ତକର ମଣିଦ୍ୱାରା ଆଲୋକିତ ହୋଇ ଅନ୍ଧକାର ଲୁଚିଯାଇଥାଏ ॥୧୨॥ ଏହିସବୁ ଲୋକର ଅଧିବାସୀମାନେ ଯେଉଁ ଓଷଧି, ରସ, ରସାୟନ, ଅନ୍ନ, ପାନ ଓ ସ୍ନାନ ଆଦି ସେବନ କରନ୍ତି ସେ ସମସ୍ତ ଦିବ୍ୟ । ଏହି ଦିବ୍ୟବସ୍ତୁମାନଙ୍କର ସେବନଦ୍ୱାରା ସେମାନଙ୍କର କୌଣସି ମାନସିକ ଓ ଶାରୀରିକ ରୋଗ ହୁଏ ନାହିଁ । ଚମ ଝୁଲିପଡ଼ିବା, ବାଳ ପାଚିଯିବା, ବୃଦ୍ଧାବସ୍ଥା ଆସିଯିବା, ଦେହ ବିବର୍ଣ୍ଣ ହୋଇପଡ଼ିବା ତଥା ଦୁର୍ଗନ୍ଧ, ସ୍ୱେଦ, କ୍ଳାନ୍ତି, ଗ୍ଲାନି ଆଦି ବୟସବୃଦ୍ଧିର ବିକାର ସେମାନଙ୍କଠାରେ ଦେଖାଯାଏ ନାହିଁ ॥୧୩॥ ଏହି ପୁଣ୍ୟଜନମାନଙ୍କର ଭଗବାନଙ୍କ ତେଜସ୍ୱରୂପ ସୁଦର୍ଶନଚକ୍ର ଛଡ଼ା ଅନ୍ୟ କୌଣସି କାରଣରୁ ମୃତ୍ୟୁ ହୁଏ ନାହିଁ ॥୧୪॥ ସୁଦର୍ଶନଚକ୍ର ପ୍ରବେଶ କରିବା ମାତ୍ରେ ଅସୁରବଧୂମାନଙ୍କର ଭୟରେ ଗର୍ଭସ୍ରାବ ଓ ଗର୍ଭପାତ ହୋଇଯାଏ ॥୧୫॥ ଅତଳ ଲୋକରେ ମୟପୁତ୍ର ଅସୁର ବଳ ନିବାସ କରେ । ସେ ଛୟାନବେ ପ୍ରକାରର ମାୟା ବ୍ୟବହାର କରେ । ଏବେ ବି କେହି କେହି ମାୟାବୀ ପୁରୁଷ ସେଠାରେ ରହିଛନ୍ତି, ଯେ କି ହାଇ ମାରିବା ମାତ୍ରେ ତାଙ୍କ ମୁହଁରୁ ସ୍ୱୈରିଣୀ (କେବଳ ନିଜ ବର୍ଣ୍ଣର ପୁରୁଷ ସହିତ ରମଣ କରୁଥିବା ସ୍ତ୍ରୀ), କାମିନୀ (ସ୍ୱବର୍ଣ୍ଣ ଓ ଅନ୍ୟ ବର୍ଣ୍ଣର ପୁରୁଷଙ୍କ ସହିତ ମିଶୁଥିବା ସ୍ତ୍ରୀ) ଏବଂ ପୁଂଶ୍ଚଳୀ (ଅତ୍ୟନ୍ତ ଚଞ୍ଚଳ ସ୍ୱଭାବର ସ୍ତ୍ରୀ) -- ତିନି ପ୍ରକାର ସ୍ତ୍ରୀ ଉତ୍ପନ୍ନ ହୁଅନ୍ତି । ଏହି ସ୍ତ୍ରୀମାନେ ବିଳରେ ପ୍ରବେଶ କରୁଥିବା ପୁରୁଷଙ୍କୁ ହାଟକ ନାମକ ରସ ପାନ କରାଇ ସମ୍ଭୋଗଶକ୍ତି ପ୍ରଦାନ କରନ୍ତି ଏବଂ ସେମାନଙ୍କ ବିଳାସପୂର୍ଣ୍ଣ ଦୃଷ୍ଟି, ଅନୁରାଗଯୁକ୍ତ ସ୍ମିତହାସ, ମଧୁର ଆଳାପ ଓ ଆଲିଙ୍ଗନ ଦ୍ୱାରା ସେଇ ପୁରୁଷମାନଙ୍କୁ ଯଥେଚ୍ଛା ରମଣ କରାନ୍ତି । ଏହି ରସପାନଦ୍ୱାରା ପୁରୁଷ ମଦାନ୍ଧ ଗଜପରି ହୋଇଯାଏ । ମୁଁ ଈଶ୍ୱର, ସିଦ୍ଧ ଏବଂ ଦଶହଜାର ମହାଗଜର ବଳ ମୋଠାରେ ନିହିତ ଅଛି ବୋଲି କହିବାକୁ ଲାଗେ ॥୧୬॥ ଅତଳର ତଳେ ବିତଳରେ ଭଗବାନ ହାଟକେଶ୍ୱର ମହାଦେବ ନିଜର ପାର୍ଷଦ, ଭୂତଗଣଙ୍କ ସହିତ ଅବସ୍ଥାନ କରନ୍ତି । ସେ ପ୍ରଜାପତିଙ୍କ ସୃଷ୍ଟିର ବୃଦ୍ଧିପାଇଁ ଭବାନୀଙ୍କସହ ବିହାର କରନ୍ତି । ଏହି ଦୁହିଁଙ୍କର ବୀର୍ଯ୍ୟଦ୍ୱାରା ସେଠାରୁ ହାଟକୀ ନାମକ ଏକ ଶ୍ରେଷ୍ଠ ନଦୀ ନିର୍ଗତ ହୋଇଥାଏ । ବାୟୁଦ୍ୱାରା ପ୍ରଜ୍ୱଳିତ ଅଗ୍ନି ତାହାକୁ ଉତ୍ସାହର ସହ ପାନ କରେ ଏବଂ ଫୁତ୍କାର କରି ପକାଇବାବେଳେ ତାହା ସୁନା (ହାଟକ) ହୋଇଯାଏ । ଏହି ସ୍ୱର୍ଣ୍ଣନିର୍ମିତ ଅଳଙ୍କାରମାନ ଦୈତ୍ୟରାଜଙ୍କର ଅନ୍ତଃପୁରବାସୀ ସ୍ତ୍ରୀ ଓ ପୁରୁଷମାନେ ଧାରଣ କରନ୍ତି ॥୧୭॥ ଏହି ଦୁଇତଳର ତଳେ ଅଛି ସୁତଳ । ଏଠାରେ ଯଶସ୍ୱୀ, ପୁଣ୍ୟଶ୍ଳୋକ ବିରୋଚନପୁତ୍ର ବଳି ଅବସ୍ଥାନ କରନ୍ତି । ଇନ୍ଦ୍ରଙ୍କର ପ୍ରିୟ କାର୍ଯ୍ୟନିମନ୍ତେ ଭଗବାନ ଅଦିତିଙ୍କ ଗର୍ଭରୁ ବଟୁବାମନ ରୂପରେ ଅବତୀର୍ଣ୍ଣ ହୋଇ ବଳିଙ୍କଠାରୁ ତିନିଲୋକକୁ ଛଡ଼ାଇ ନେଇଥିଲେ । ପୁଣି ସେହି ଭଗବାନଙ୍କ କୃପାରେ ବଳି ଏହି ଲୋକରେ ପ୍ରବେଶ କରିଥିଲେ । ଏଠାରେ ତାଙ୍କୁ ଯେଉଁ ବିପୁଳ ଐଶ୍ୱର୍ଯ୍ୟ ମିଳିଛି, ତାହା ଇନ୍ଦ୍ରାଦି ଦେବତାମାନଙ୍କ ପକ୍ଷରେ ମଧ୍ୟ ଦେଖାଯାଏ ନାହିଁ । ଏବେ ମଧ୍ୟ ବଳି ସେଠାରେ ସ୍ୱଧର୍ମ ଆଚରଣଦ୍ୱାରା ନିଜର ବନ୍ଦନୀୟ ପ୍ରଭୁ ଭଗବାନଙ୍କର ଆରାଧନା କରୁଥା'ନ୍ତି ॥୧୮॥

ରାଜା, ସୁତଳ ରାଜ୍ୟରେ ବଳିଙ୍କ ଐଶ୍ୱର୍ଯ୍ୟ କେବଳ ତାଙ୍କ ଭୂମିଦାନର ଫଳ ନୁହେଁ । ସମସ୍ତ ଜୀବଙ୍କର ଜୀବନ ଓ ଆତ୍ମସ୍ୱରୂପ ପରମାତ୍ମା ବାସୁଦେବ ଉପସ୍ଥିତ ହେବା ମାତ୍ରେ ତାଙ୍କୁ ପରମ ପବିତ୍ର ଯୋଗ୍ୟପାତ୍ର ରୂପେ ଅତିଶୟ ଶ୍ରଦ୍ଧାର ସହିତ ସ୍ଥିରଚିତ୍ତ ଓ ଧୀରମତିରେ ବଳି ଯେଉଁ ଭୂମିଦାନ କଲେ, ତାହା ତାଙ୍କ ମୋକ୍ଷର ଦ୍ୱାରସ୍ୱରୂପ ହେଲା ॥୧୯॥ ମୁକ୍ତିକାମୀମାନେ କୃଚ୍ଛ୍ର ସାଧନଦ୍ୱାରା ତାହା ଲାଭ କରନ୍ତି । ମନୁଷ୍ୟ କ୍ଷୁଧାରେ କାତର ହୋଇ ବା ପତନ ସ୍ଖଳନବେଳେ ବିବଶ ହୋଇ ଥରେମାତ୍ର ଭଗବାନଙ୍କ ନାମ ଉଚ୍ଚାରଣ କଲେ ତତ୍‌କ୍ଷଣାତ୍ କର୍ମବନ୍ଧନରୁ ମୁକ୍ତ ହୋଇଯାଏ ॥୨୦॥ ଭଗବାନ ସଂଯମୀ ଭକ୍ତଙ୍କୁ ଓ ଜ୍ଞାନୀମାନଙ୍କୁ ଆତ୍ମଜ୍ଞାନ ପ୍ରଦାନ କରିଥା'ନ୍ତି । ସେ ସମସ୍ତ ଜୀବଙ୍କର ଆତ୍ମଭୂତ ପରମାତ୍ମା । ତେଣୁ ସେହି ବାସୁଦେବଙ୍କୁ ଭୂମିଦାନଦ୍ୱାରା ଯେ ଏହି ଫଳ ମିଳିଲା, ତାହା ନୁହେଁ ॥୨୧॥ ଭଗବାନ ଯେ ବଳିଙ୍କପ୍ରତି ଅନୁଗ୍ରହ ଦେଖାଇଲେ, ତାହା ନୁହେଁ । କାରଣ ସର୍ବସ୍ୱଦାନବଦଳରେ ତାଙ୍କୁ ସେ ଏପରି ମାୟାମୟ ଭୋଗୈଶ୍ୱର୍ଯ୍ୟ ଦାନ କରିଛନ୍ତି, ଯାହା ଫଳରେ ବଳି ତାଙ୍କୁ ଭୁଲିଯାଇପାରିବେ ॥୨୨॥ ଭଗବାନଙ୍କୁ କୌଣସି ଉପାୟ ଦେଖା ନ ଯିବାରୁ, ସେ ମାଗିବା ଛଳରେ କେବଳ ଶରୀର ଛଡ଼ା ବଳିଙ୍କର ସର୍ବସ୍ୱ ହରଣ କରିନେଲେ ଏବଂ ତାଙ୍କୁ ବରୁଣଙ୍କ ଜଳପାଶରେ ଆବଦ୍ଧ କରି ପର୍ବତଗୁହାରେ ନିକ୍ଷେପ କଲେ । ସେତେବେଳେ ବଳି କହିଲେ-- ॥୨୩॥ ଦୁଃଖର ବିଷୟ ସ୍ୱର୍ଗର ଐଶ୍ୱର୍ଯ୍ୟ ଲାଭ କରିଥିବା ଇନ୍ଦ୍ର ସୁରଗୁରୁ ବୃହସ୍ପତିଙ୍କ ସହିତ ଏକାନ୍ତ ମନ୍ତ୍ରଣା କରୁଥିଲେ ମଧ୍ୟ ପୁରୁଷାର୍ଥ ବିଷୟରେ ନିପୁଣ ନୁହନ୍ତି । କାରଣ ସେ ଉପେନ୍ଦ୍ର (ବିଷ୍ଣୁ ଭଗବାନ)ଙ୍କ ପାଖକୁ ଯାଇ ତାଙ୍କ ଦାସ୍ୟ ଭିକ୍ଷା ନ କରି ତାଙ୍କ ଜରିଆରେ ମୋର ଐଶ୍ୱର୍ଯ୍ୟକୁ ମାଗି ନେଇ ଭୋଗ କରିବାକୁ ଚାହିଲେ । ଯେଉଁ ତିନି ଲୋକକୁ ସେ ଭୋଗ କରିବାକୁ ଚାହିଲେ ତାହା କେବଳ ଗୋଟିଏ ମନ୍ୱନ୍ତରପର୍ଯ୍ୟନ୍ତ ସ୍ଥାୟୀ ହେବ -- ଯାହା ହେଉଚି ଅନନ୍ତକାଳର ଏକ ଅତି କ୍ଷୁଦ୍ର ଅଂଶ; ତାହା କେତେ ମାତ୍ର ? ॥୨୪॥ ମୋର ପିତାମହ ପ୍ରହ୍ଲାଦ ନିରନ୍ତର ଭଗବାନଙ୍କର ଦାସ ହୋଇ ରହିବାପାଇଁ ବର ମାଗିଥିଲେ । ତାଙ୍କ ପିତାଙ୍କ (ହିରଣ୍ୟକଶିପୁ) ମୃତ୍ୟୁପରେ ଭଗବାନ ତାଙ୍କୁ ପୈତୃକ ରାଜ୍ୟ, ଏପରିକି ଅକୁତୋଭୟ ମୋକ୍ଷପଦ ଦାନ କଲେ ମଧ୍ୟ ସେ ତାହା ନେଲେ ନାହିଁ ॥୨୫॥ ସେ (ପ୍ରହ୍ଲାଦ) ଅତ୍ୟନ୍ତ ମହାନୁଭାବ ଥିଲେ । ମୋର ତ ରାଗାଦି ଦୋଷ କ୍ଷୀଣ ହୋଇ ନାହିଁ, କି ମୋ ପ୍ରତି ଭଗବାନଙ୍କର ସେପରି ଅନୁଗ୍ରହ ନାହିଁ । ଏଭଳି ଅବସ୍ଥାରେ ମୋ' ପରି କେଉଁ ଭାଗ୍ୟହୀନ ବ୍ୟକ୍ତି ପ୍ରହ୍ଲାଦଙ୍କୁ ଅନୁସରଣ କରିବାର ସାହସ କରିପାରିବ ? ॥୨୬॥

ପରିକ୍ଷିତ ! ସେହି ବଳିଙ୍କର ଚରିତ ପରେ (ଅଷ୍ଟମ ସ୍କନ୍ଧରେ) ମୁଁ ବିସ୍ତାରିତ ଭାବରେ ବର୍ଣ୍ଣନା କରିବି -- କିପରି ଅଖିଳ ଜଗତର ଗୁରୁ ଭକ୍ତଜନପ୍ରତି ସଦା କୃପାମୟ ଭଗବାନ ନାରାୟଣ ସ୍ୱୟଂ ଗଦାହସ୍ତରେ ତାଙ୍କ ଦ୍ୱାରପାଳ ହୋଇ ରହିଥିଲେ ଏବଂ ଦିଗ୍‌ବିଜୟରେ ଆସିଥିବା ଦଶାନନ ରାବଣ ସେଠାରେ ପହଞ୍ଚିଲାବେଳେ ତାକୁ ଗୋଡ଼ ବୁଢ଼ାଆଙ୍ଗୁଠିରେ ଉଠାଇ ଲକ୍ଷଲକ୍ଷ ଯୋଜନ ଦୂରକୁ ଫିଙ୍ଗି ଦେଇଥିଲେ ॥୨୭॥ ସୁତଳର ନିମ୍ନରେ ଅଛି ତଳାତଳ । ସେଠାରେ ତ୍ରିପୁରାଧିପତି ମୟନାମକ ଦାନବେନ୍ଦ୍ର ଅବସ୍ଥାନ କରନ୍ତି । ତିନି ଲୋକର ମଙ୍ଗଳ କାମନା କରି ତ୍ରିପୁରାରି ଭଗବାନ୍ ମହାଦେବ ଥରେ ମାୟାବୀଙ୍କର ଗୁରୁ ସେହି ମୟଦାନବର ତିନିପୁରକୁ ପୋଡ଼ି ଦେଇଥିଲେ । ମାତ୍ର ପରେ ତାଙ୍କପ୍ରତି ଦୟା ଦେଖାଇ ପୁଣି ତାଙ୍କୁ ସେଠାରେ ରଖାଇଲେ । ଶଙ୍କରଙ୍କଦ୍ୱାରା ସୁରକ୍ଷିତ ହେବାରୁ ସୁଦର୍ଶନ ଚକ୍ରଭୟରୁ ମୁକ୍ତ ହୋଇ ସେଠାରେ ସେ ଅବସ୍ଥାନ କରୁଛନ୍ତି ॥୨୮॥ ତଳାତଳର ନିମ୍ନରେ ଅଛି ମହାତଳ । ସେଠାରେ କୁହକ, ତକ୍ଷକ, କାଳିୟ, ସୁଷେଣ ଆଦି ପ୍ରଧାନ ପ୍ରଧାନ ସର୍ପମାନଙ୍କ ସହିତ କଦ୍ରୁପୁତ୍ର କ୍ରୁଦ୍ଧ ନାଗମାନେ ବାସ କରନ୍ତି । ଏହି ମହା ମହା ନାଗମାନେ ବିଷ୍ଣୁଙ୍କର ବାହନ ପକ୍ଷିରାଜ ଗରୁଡ଼ଙ୍କୁ ସର୍ବଦା ଭୟ କରନ୍ତି । ତଥାପି ବେଳେ ବେଳେ ନିଜର ସ୍ତ୍ରୀ, ପୁତ୍ର, ବନ୍ଧୁ ଓ କୁଟୁମ୍ବାଦିଙ୍କ ସହିତ ଅତି ପ୍ରମତ୍ତ ଭାବରେ ବିହାର କରନ୍ତି ॥୨୯॥ ଏହାର ନିମ୍ନ ରସାତଳରେ ପଣି ନାମକ ଦୈତ୍ୟ ଓ ଦାନବମାନେ ଅବସ୍ଥାନ କରନ୍ତି । ଏହି ନିବାତକବଚ, କାଳକେୟ, ହିରଣ୍ୟପୁରବାସୀମାନେ ଦେବତାଙ୍କର ଶତ୍ରୁ ଏବଂ ଜନ୍ମରୁ ମହାପରାକ୍ରମୀ ଓ ଅତ୍ୟନ୍ତ ସାହସୀ । କିନ୍ତୁ ସମସ୍ତଲୋକରେ ପ୍ରଭାବଶାଳୀ ଭଗବାନ୍ ଶ୍ରୀହରିଙ୍କ

ତେଜରେ ସେମାନଙ୍କ ବଳ ଗର୍ବ ଚୂର୍ଣ୍ଣ ହେବାରୁ ଗର୍ତରେ (ପ୍ରବେଶ କରି) ରହିବା ସର୍ପଙ୍କ ପରି ସେମାନେ ଭୟରେ ଲୁଚି ରହିଥା'ନ୍ତି । ପୁଣି ଇନ୍ଦ୍ରଦୂତୀ ସରମାର ମନ୍ତ୍ରରୂପକ ବାଣୀଦ୍ୱାରା ଇନ୍ଦ୍ରଭୟ ସେମାନଙ୍କୁ ଲାଗି ରହିଥାଏ ॥୩୦॥ ରସାତଳର ନିମ୍ନରେ ଅଛି ପାତାଳ । ସେଠାରେ ବାସୁକି ପ୍ରମୁଖ ଶଙ୍ଖ, କୁଳିକ, ମହାଶଙ୍ଖ, ଶ୍ୱେତ, ଧନଞ୍ଜୟ, ଧୃତରାଷ୍ଟ୍ର, ଶଙ୍ଖଚୂଡ଼, କମ୍ବଳ, ଅଶ୍ୱତର ଓ ଦେବଦତ୍ତ ଆଦି ବିଶାଳଫଣାଯୁକ୍ତ ମହାକ୍ରୁଦ୍ଧ ନାଗମାନେ ବାସ କରନ୍ତି । ସେମାନଙ୍କ ମଧ୍ୟରେ ପାଞ୍ଚଫଣା, ସାତଫଣା, ଦଶ ଫଣା, ଶହେ ଫଣା ଓ ହଜାରେ ଫଣା ଥିବା ସାପମାନେ ଅଛନ୍ତି । ସେମାନଙ୍କ ଫଣାମାନଙ୍କରେ ଥିବା ବଡ଼ ବଡ଼ ମଣିମାନଙ୍କ ତେଜରେ ସେମାନେ ପାତାଳ ବିବରର ଅନ୍ଧକାରକୁ ଦୂର କରନ୍ତି ॥୩୧॥

## ପଞ୍ଚବିଂଶ ଅଧ୍ୟାୟ

# ସଂକର୍ଷଣଙ୍କ ସଂସ୍ଥିତି ଓ ସ୍ତୁତି

ଶ୍ରୀ ଶୁକଦେବ କହିଲେ, ରାଜା, ପାତାଳ ମୂଳରୁ ତିରିଶ ହଜାର ଯୋଜନ ଦୂରରେ ଅନନ୍ତ ନାମରେ ବିଖ୍ୟାତ ଭଗବାନଙ୍କର ଏକ ତମୋପ୍ରଧାନ କଳା ଅବସ୍ଥିତ । ସେ ଅହଙ୍କାରସ୍ୱରୂପ ହୋଇଥିବାରୁ ଦ୍ରଷ୍ଟା ଓ ଦୃଶ୍ୟ ଉଭୟଙ୍କୁ ଆକର୍ଷଣ କରି ଏକୀଭୂତ କରି ଦିଅନ୍ତି । ତେଣୁ ବିଷ୍ଣୁଭକ୍ତମାନେ ତାଙ୍କୁ ସଂକର୍ଷଣ ବୋଲି କହିଥା'ନ୍ତି ॥୧॥ ଏହି ଭଗବାନ ଅନନ୍ତମୂର୍ତ୍ତି ତାଙ୍କ ସହସ୍ର ମସ୍ତକ ମଧ୍ୟରୁ ଗୋଟିଏ ମସ୍ତକରେ ଏହି ଭୂମଣ୍ଡଳକୁ ଧାରଣ କରିଛନ୍ତି । ଏହା ତାଙ୍କ ମସ୍ତକ ଉପରେ ଏକ ସୋରିଷ କଣା ପରି ଦେଖାଯାଏ ॥୨॥ ପ୍ରଳୟକାଳ ଉପସ୍ଥିତ ହେଲେ ସେ ଏହି ବିଶ୍ୱକୁ ସଂହାର କରିବାକୁ ଇଚ୍ଛା କରନ୍ତି; ସେତେବେଳେ ତାଙ୍କ ସୁନ୍ଦର ଭ୍ରୂଯୁଗଳ କ୍ରୋଧରେ କୁଞ୍ଚିତ ହୋଇଉଠେ ଏବଂ ତାର ମଧ୍ୟଭାଗରୁ ସଂକର୍ଷଣ ନାମକ ରୁଦ୍ର ପ୍ରକଟ ହୁଅନ୍ତି । ତାଙ୍କର ବ୍ୟୂହ ଏଗାର । ତ୍ରିଲୋଚନ ଓ ତ୍ରିଶିଖାଯୁକ୍ତ ଶୂଳ ଧାରଣ କରି ସେ ଉଠନ୍ତି ॥୩॥ ଭଗବାନ ଅନନ୍ତଙ୍କର ପାଦପଦ୍ମରେ ଯେଉଁ ଗୋଲ ଗୋଲ ଅରୁଣବର୍ଣ୍ଣର ନିର୍ମଳ ନଖମାନ ଅଛି, ତାଙ୍କ (ପାଦବନ୍ଦନ କରୁଥିବା) ଭକ୍ତମାନଙ୍କପାଇଁ ସେଗୁଡ଼ିକ ଦର୍ପଣସ୍ୱରୂପ ହୋଇଥାଏ । ସେଥିରେ ସେମାନଙ୍କ ମୁଖମଣ୍ଡଳ ପ୍ରତିବିମ୍ବିତ ହେଉଥିବା ଦେଖି ସେମାନେ ଅତିଶୟ ଆନନ୍ଦ ଅନୁଭବ କରନ୍ତି । ମୁଖର ଯେଉଁ ଅଂଶଟି ଗଣ୍ଡସ୍ଥଳ, କୁଣ୍ଡଳର ପ୍ରଭାରେ ତାହା ଝଟକି ଉଠୁଥିବାର ଦେଖାଯାଏ ॥୪॥ ନାଗରାଜକୁମାରୀମାନେ ନିଜ ନିଜର ଅଭୀଷ୍ଟ ବସ୍ତୁ ପାଇବାପାଇଁ ଶ୍ରୀ ଅନନ୍ତଙ୍କୁ ସେବା କରନ୍ତି । ତାଙ୍କ ଶ୍ୱେତବର୍ଣ୍ଣ ସୁନ୍ଦର ଶରୀରରେ ଥିବା ବିପୁଳ ଭୁଜଦ୍ୱୟ ରୂପାର ସ୍ତମ୍ଭପରି ଶୋଭାପାଇଥାଏ । ରାଜକୁମାରୀମାନେ ଅଗୁରୁ, ଚନ୍ଦନ ଓ କୁଙ୍କୁମର ଲେପରେ ତାଙ୍କ ଭୁଜକୁ ଲେପନ କରନ୍ତି । ତାଙ୍କ ଅଙ୍ଗସ୍ପର୍ଶଦ୍ୱାରା କାମ ଆବେଗରେ ସେମାନଙ୍କ ହୃଦୟ ମଥିତ ହୁଏ ଏବଂ ସଲଜ୍ଜଦୃଷ୍ଟିରେ ଚାରୁ ଲଳିତ ସ୍ମିତହାସ୍ୟ ପୂର୍ବକ ସେମାନେ ତାଙ୍କ ପ୍ରେମଜରଜର କରୁଣାକଟାକ୍ଷକୁ ଲକ୍ଷ୍ୟ କରୁଥା'ନ୍ତି ॥୫॥ ଅନନ୍ତଗୁଣର ସାଗର ଆଦିଦେବ ଭଗବାନ ଅନନ୍ତ ତାଙ୍କ ଅସହ୍ୟ କ୍ରୋଧର ବେଗକୁ ସମ୍ବରଣ କରି ସମସ୍ତ ଲୋକର ମଙ୍ଗଳପାଇଁ ସେଠାରେ ବିରାଜମାନ ହୋଇଛନ୍ତି ॥୬॥ ସୁର, ଅସୁର, ନାଗ, ସିଦ୍ଧ, ଗନ୍ଧର୍ବ, ବିଦ୍ୟାଧର ଓ ମୁନିମାନେ ଭଗବାନ ଅନନ୍ତଙ୍କୁ ସର୍ବଦା ଧ୍ୟାନ କରୁଥାନ୍ତି । ତାଙ୍କ ନେତ୍ରଯୁଗଳ ପ୍ରେମ ମଦିରାରେ ଆରକ୍ତ, ଢଳ ଢଳ ଚଞ୍ଚଳ ଓ ବେଳେ ବେଳେ ମୁଦିତ ହୋଇପଡ଼େ । ସେ ନିଜର ସୁମଧୁର ବଚନାମୃତରେ ନିଜର ପାର୍ଷଦ ଓ ଦେବଯୂଥପତିମାନଙ୍କୁ ଆହ୍ଲାଦିତ କରନ୍ତି । ସେ ଦେହରେ ନୀଳାମ୍ବର ଓ କର୍ଣ୍ଣରେ ଗୋଟିଏ ମାତ୍ର କୁଣ୍ଡଳ ପିନ୍ଧନ୍ତି, ତାଙ୍କ ସୁନ୍ଦର ସୁଠାମ ହସ୍ତ ହଳର ମୁଠା ଉପରେ ରହିଥାଏ । ଉଦାର ଲୀଳାମୟ ଭଗବାନ ସଂକର୍ଷଣ ଗଳାରେ ବୈଜୟନ୍ତୀ ବନମାଳା ଧାରଣ କରିଥା'ନ୍ତି । ଇନ୍ଦ୍ରଙ୍କ ଐରାବତର ଗଳାରେ ସୁନାର ଶିକୁଳି ପରି ତାହା ଦେଖାଯାଉଥାଏ ।

ତାଙ୍କର ଅଙ୍ଗକାନ୍ତି କେବେହେଲେ ମଳିନ ପଡ଼େ ନାହିଁ । ନବ ନବ ତୁଳସୀଦଳର ଗନ୍ଧରେ ଉନ୍ମତ୍ତ ମଧୁକରମାନେ ମଧୁର ଗୁଞ୍ଜରଣ କରି ତାଙ୍କ ଶୋଭା ବର୍ଦ୍ଧନ କରୁଥାନ୍ତି ॥୭॥ ଏହିପରି ଭାବରେ ଭଗବାନ ଅନନ୍ତଙ୍କ ମାହାତ୍ମ୍ୟ ଶୁଣି ତାଙ୍କୁ ଧ୍ୟାନ କଲେ ମୁକ୍ତିକାମୀ ଭକ୍ତମାନଙ୍କର ହୃଦୟରେ ସେ ଆବିର୍ଭୂତ ହୁଅନ୍ତି ଏବଂ ଅନନ୍ତକାଳରୁ ସଞ୍ଚିତ ସେମାନଙ୍କର କର୍ମବାସନାମୟ, ସତ୍ତ୍ୱରଜ ଓ ତମୋ ଗୁଣରୁ ଜାତ ଅଜ୍ଞାନତାରୂପକ ହୃଦୟଗ୍ରନ୍ଥିକୁ ଛିନ୍ନ କରିଦିଅନ୍ତି । ତାଙ୍କ ଗୁଣାବଳୀକୁ ଥରେ ବ୍ରହ୍ମାଙ୍କର ପୁତ୍ର ନାରଦ ତୁମ୍ବୁରୁଙ୍କ ସହିତ ବ୍ରହ୍ମାଙ୍କ ସଭାରେ ଏହିପରି କୀର୍ତ୍ତନ କରିଥିଲେ -- ॥୮॥ ଯାହାଙ୍କର ଦୃଷ୍ଟିପାତଦ୍ୱାରା ସୃଷ୍ଟି, ସ୍ଥିତି ଓ ଲୟର ହେତୁରୂପେ ସତ୍ତ୍ୱ ଆଦି ପ୍ରକୃତିର ଗୁଣମାନ ନିଜ ନିଜ କାର୍ଯ୍ୟ କରିବାରେ ସମର୍ଥ ହୁଅନ୍ତି; ଯାହାଙ୍କର ସ୍ୱରୂପ ହେଉଚି ଅନନ୍ତ ଓ ଅନାଦି; ଯେ ଏକ ହୋଇ ମଧ୍ୟ ନାନାବିଧ ବସ୍ତୁକୁ ନିଜଠାରେ ଧାରଣ କରିଛନ୍ତି, ସେହି ଭଗବାନ ସଂକର୍ଷଣଙ୍କ ତତ୍ତ୍ୱକୁ କିଏ ବୁଝିପାରିବ ? ॥୯॥ ଯାହାଙ୍କଠାରେ ଏହି ସ୍ଥୂଳ ଓ ସୂକ୍ଷ୍ମ ବିଶ୍ୱ ପ୍ରକାଶମାନ, ସେ ଆମ ଭକ୍ତମାନଙ୍କପାଇଁ କୃପାବଶତଃ ବିଶୁଦ୍ଧ ସତ୍ତ୍ୱମୂର୍ତ୍ତି ଧାରଣ କରିଛନ୍ତି, ସେ ସ୍ୱଜନଙ୍କ ମନକୁ ବଶ କରିବାପାଇଁ ବହୁ ବୀରତ୍ୱପୂର୍ଣ୍ଣ ଉଦାର କର୍ମ କରିଥାନ୍ତି ଏବଂ ମୃଗପତି ସିଂହ ତାଙ୍କର ସେହି ଅନବଦ୍ୟ ଲୀଳାକୁ କିଛିମାତ୍ରାରେ ଶିଖିଥାଏ । (ତେଣୁ ମୁମୁକ୍ଷୁ ଅନ୍ୟ କାହାକୁ ଆଶ୍ରା କରିବ ?) ॥୧୦॥ ଅନ୍ୟଠାରୁ ଶୁଣି ହେଉ, ବା ଅକସ୍ମାତ୍ ହେଉ, ବା ପରିହାସରେ ହେଉ, ଆର୍ତ୍ତ ବା କୌଣସି ମହାପାତକୀ ବ୍ୟକ୍ତି ଯାହାଙ୍କର ନାମ କୀର୍ତ୍ତନ କରିବାଦ୍ୱାରା ଶୁଦ୍ଧ ହୋଇଯାଏ, ମନୁଷ୍ୟମାନଙ୍କର ଅଶେଷ ପାପକୁ ତତ୍କ୍ଷଣାତ୍ ବିନାଶ କରୁଥିବା ସେହି ଭଗବାନ ଶେଷଦେବଙ୍କୁ ଛାଡ଼ି ମୁକ୍ତିକାମୀ ବ୍ୟକ୍ତି ଅନ୍ୟକାହାକୁ ଆଶ୍ରୟ କରିବ ? ॥୧୧॥ ଯେଉଁ ସହସ୍ରଶୀର୍ଷ ଭଗବାନ ଅନନ୍ତ ତାଙ୍କର ଗୋଟିଏ ମସ୍ତକରେ ଗିରି, ନଦୀ, ସମୁଦ୍ର ଓ ପ୍ରାଣିଯୁକ୍ତ ଏହି ଭୂମଣ୍ଡଳକୁ ଏକ ଅଣୁ ପରି ଧାରଣ କରିଛନ୍ତି, ସେହି ଅମିତବିକ୍ରମ ସର୍ବବ୍ୟାପୀ ଭଗବାନଙ୍କର ମାହାତ୍ମ୍ୟକୁ ସହସ୍ର ଜିହ୍ୱାରେ ଯୁକ୍ତ ହେଲେ ମଧ୍ୟ କେଉଁ ବ୍ୟକ୍ତି କୀର୍ତ୍ତନ କରିବାକୁ ସମର୍ଥ ହେବ ? ॥୧୨॥ ଭଗବାନ ଅନନ୍ତଙ୍କ ଶକ୍ତିର ଅନ୍ତ ନାହିଁ ଏବଂ ସେ ପ୍ରଭୂତ ଗୁଣ ଓ ପ୍ରଭାବଯୁକ୍ତ । ସେହି ମହାନୁଭାବ ପୃଥିବୀର ମୂଳଦେଶରେ ସ୍ୱତନ୍ତ୍ର ଭାବରେ ଅବସ୍ଥାନ କରନ୍ତି ଓ ସ୍ଥିତିପାଇଁ ଅନାୟାସରେ ପୃଥିବୀକୁ ଧାରଣ କରି ରହିଥା'ନ୍ତି ॥୧୩॥ ରାଜା ! ମୁଁ ଯେପରି ଗୁରୁଙ୍କ ମୁହଁରୁ ଶୁଣିଥିଲି, (ତୁମକୁ) ସେହିପରି ଏହି ଗତିମାନଙ୍କୁ ଶୁଣାଇଦେଲି । କାମନାଲିପ୍ସୁ ପୁରୁଷମାନେ ନିଜ କର୍ମ ଅନୁସାରେ ନିର୍ମିତ ଏହି ସବୁ ଗତି ଲାଭ କରିବା ଉଚିତ ॥୧୪॥ ନିଜ ନିଜର ପ୍ରବୃତ୍ତି ଅନୁସାରେ ମନୁଷ୍ୟମାନେ ଯେପରି ଧର୍ମାଚରଣ କରନ୍ତି, ତା'ର ପରିଣାମରେ ସେମାନଙ୍କୁ ସେହିପରି ଉଚ୍ଚ ନୀଚ ଗତି ମିଳିଥାଏ । ଏହି ଫଳଭୂତ ଗତିମାନ ସମସ୍ତଙ୍କପାଇଁ ସମାନ ହୁଏ ନାହିଁ । ତୁମେ ଯାହା ପ୍ରଶ୍ନ ପଚାରିଥିଲ, ମୁଁ ତାର ଉତ୍ତର ଦେଲି । ଏବେ ଆଉ କ'ଣ କହିବି, କହ ॥୧୫॥

### ଷଡ଼ବିଂଶ ଅଧ୍ୟାୟ

## ବିଭିନ୍ନ ନରକଗତିର ବର୍ଣ୍ଣନା

ପରିକ୍ଷିତ କହିଲେ, ମହର୍ଷି ! ଲୋକମାନଙ୍କର ଯେଉଁ ଗତି ହୁଏ, ସେଥିରେ ଏପରି ବିଭିନ୍ନତା କାହିଁକି ଦେଖାଦିଏ ? ॥୧॥ ଶ୍ରୀ ଶୁକଦେବ କହିଲେ, ଲୋକଙ୍କ ମଧ୍ୟରେ ସତ୍ତ୍ୱଗୁଣ, ରଜୋଗୁଣ ଓ ତମୋଗୁଣ ବିଶେଷ ଭାବରେ ରହିଥାଏ । ସେମାନେ ସମାନ କର୍ମ କଲେ ମଧ୍ୟ ଶ୍ରଦ୍ଧାଭେଦରେ ଫଳଭେଦ ହୋଇଥାଏ । ତେଣୁ ସମସ୍ତଙ୍କର ଫଳ ପ୍ରାପ୍ତିରେ ସ୍ୱାଭାବିକ ତାରତମ୍ୟ ଦେଖାଦେଇଥାଏ । (ସାତ୍ତ୍ୱିକ ଶ୍ରଦ୍ଧାରେ ସୁଖ, ରାଜସିକ ଶ୍ରଦ୍ଧାରେ ସୁଖ ଓ ଦୁଃଖ ଏବଂ ତାମସିକ ଶ୍ରଦ୍ଧାରେ ଦୁଃଖ ଓ ଅଜ୍ଞତା ମିଳିଥାଏ) ॥୨॥ ଏଣୁ ନିଷିଦ୍ଧ ଲକ୍ଷଣ ଅଧର୍ମକରୁଥିବା ଲୋକର ଶ୍ରଦ୍ଧାର ତାରତମ୍ୟ ଅନୁଯାୟୀ ସମାନ କର୍ମ ଫଳ ମିଳେ ନାହିଁ ।

ଅନାଦିକାଳରୁ ରହିଥିବା ଅବିଦ୍ୟାଦ୍ୱାରାକୃତ କାମନାବାସନାମାନଙ୍କର ପରିଣାମସ୍ୱରୂପ ଯେଉଁ ହଜାର ହଜାର ନରକ ଗତି ଅଛି ସେଗୁଡ଼ିକ ମୁଁ ବିସ୍ତାରିତ ଭାବରେ ବର୍ଣ୍ଣନା କରିବାକୁ ଯାଉଛି ।।୩।। ପରିକ୍ଷିତ ପଚାରିଲେ, ମହର୍ଷି ! ଆପଣ ଯେଉଁ ନରକଗୁଡ଼ିକ ବର୍ଣ୍ଣନା କରିବାକୁ ଯାଉଛନ୍ତି, ସେ ସବୁ ପୃଥିବୀର ବିଭିନ୍ନ ଦେଶ କିମ୍ବା ତିନି ଲୋକର ବାହାରେ ବା ଅନ୍ତରାଳରେ ବିଦ୍ୟମାନ ? ।।୪।।

ଶ୍ରୀ ଶୁକଦେବ କହିଲେ, ନରକଗୁଡ଼ିକ ଏହି ତିନିଲୋକରେ ଭିତରେ, ଦକ୍ଷିଣ ଦିଗରେ, ପୃଥିବୀର ନିମ୍ନରେ ଏବଂ ଜଳ ଉପରେ ଅବସ୍ଥିତ । ସେହି ଦକ୍ଷିଣ ଦିଗରେ ଅଗ୍ନିଷ୍ୱାତ୍ତ ଆଦି ପିତୃଗଣ ରହନ୍ତି ଏମାନେ ଅତ୍ୟନ୍ତ ଏକାଗ୍ରତାପୂର୍ବକ ନିଜ ବଂଶଧରମାନଙ୍କର ଯଥାର୍ଥ ମଙ୍ଗଳମାନ କାମନା କରୁଥା'ନ୍ତି ।।୫।। ସେହି ନରକମାନଙ୍କରେ ପିତୃମାନଙ୍କର ରାଜା ସୂର୍ଯ୍ୟଙ୍କ ପୁତ୍ର ଯମ ନିଜର ଅନୁଚରମାନଙ୍କ ସହିତ ରହନ୍ତି ଏବଂ ଭଗବାନଙ୍କର ଆଜ୍ଞାକୁ ଅବଜ୍ଞା ନ କରି ନିଜ ଦୂତମାନଙ୍କଦ୍ୱାରା ନିଜ ଅଞ୍ଚଳକୁ ଅଣାଯାଇଥିବା ମୃତ ପ୍ରାଣୀମାନଙ୍କୁ ସେମାନଙ୍କ ଦୁଷ୍କର୍ମଜନିତ ଦୋଷ ଅନୁସାରେ ଦୋଷରୂପ ଦଣ୍ଡ ବିଧାନ କରନ୍ତି ।।୬।। ରାଜା! ନରକମାନଙ୍କ ସଂଖ୍ୟା ଏକୋଇଶ ବୋଲି କେହି କେହି ଗଣିଥା'ନ୍ତି । ନାମ, ରୂପ ଓ ଲକ୍ଷଣ ଅନୁସାରେ ମୁଁ ବର୍ତ୍ତମାନ ତୁମ ଆଗରେ ଯଥାକ୍ରମେ ସେମାନଙ୍କର ନାମ କହୁଛି--ତାମିସ୍ର, ଅନ୍ଧତାମିସ୍ର, ରୌରବ, ମହାରୌରବ, କୁମ୍ଭୀପାକ, କାଳସୂତ୍ର, ଅସିପତ୍ରବନ, ସୂକରମୁଖ, ଅନ୍ଧକୂପ, କୃମିଭୋଜନ, ସନ୍ଦଂଶ, ତପ୍ତସୂର୍ମି, ବଜ୍ରକଣ୍ଟକ ଶାଲ୍ମଳୀ, ବୈତରଣୀ, ପୂୟୋଦ, ପ୍ରାଣରୋଧ, ବିଶସନ, ଲାଲାଭକ୍ଷ, ସାରମେୟାଦନ, ଅବୀଚି ଏବଂ ଅୟଃପାନ । ଏହାଛଡା କ୍ଷାରକର୍ଦ୍ଦମ, ରକ୍ଷୋଗଣ-ଭୋଜନ, ଶୂଳପ୍ରୋତ, ଦନ୍ଦଶୂକ, ଅବଟନିରୋଧନ, ପର୍ଯ୍ୟାବର୍ତ୍ତନ ଏବଂ ସୂଚୀମୁଖ । ଏହି ସାତକୁ ମିଶାଇ ଅଠେଇଶଟି ନରକ ରହିଛି ଯେଉଁ ଗୁଡ଼ିକ ବିବିଧ ଯନ୍ତ୍ରଣାଭୋଗର ଭୂମି ।।୭।। ଯେଉଁ ବ୍ୟକ୍ତି ପରର ଧନ, ସନ୍ତାନ ବା ସ୍ତ୍ରୀକୁ ହରଣ କରେ, ଅତ୍ୟନ୍ତ ଭୟାନକ ଯମଦୂତମାନେ ତାହାକୁ କାଳପାଶରେ ବାନ୍ଧି ଆଣି ତାମ୍ରିସ ନାମକ ନରକରେ ବଳପୂର୍ବକ ନିକ୍ଷେପ କରନ୍ତି । ଏହି ଅନ୍ଧକାରମୟ ନରକରେ ତାକୁ ଅନ୍ନ ଜଳ ଦିଆଯାଏ ନାହିଁ । ପ୍ରହାର କରାଯାଏ ଓ ନାନା ପ୍ରକାରେ ଧମକାଇ ଯାତନା ଦିଆଯାଏ । ସେତେବେଳେ ସେହି ତାମିସ୍ର ନରକରେ ସେ ଯନ୍ତ୍ରଣାରେ ବାରମ୍ବାର ମୂର୍ଚ୍ଛା ଯାଉଥାଏ ।।୮।। ସେହିପରି ଯେଉଁ ବ୍ୟକ୍ତି ଅନ୍ୟକୁ ଧୋକା ଦେଇ ତା'ର ସ୍ତ୍ରୀ ଆଦିକୁ ଭୋଗକରେ, ସେ ଅନ୍ଧତାମିସ୍ର ନାମକ ନରକରେ ପଡ଼ିଥାଏ । ସେଠାରେ ତାକୁ ଯେଉଁ ଅତିଶୟ ଯନ୍ତ୍ରଣା ଦିଆଯାଏ, ତଦ୍ୱାରା ଛିନ୍ନମୂଳ ବୃକ୍ଷପରି ତା'ର ବୁଦ୍ଧି ଓ ଦୃଷ୍ଟିଶକ୍ତି ଲୋପ ହୋଇଯାଏ । ସେଥିପାଇଁ ଏହି ନରକକୁ ଅନ୍ଧତାମିସ୍ର କୁହାଯାଏ ।।୯।।

ଯେଉଁ ବ୍ୟକ୍ତି ଇହ ଲୋକରେ (ମୁଁ ଓ ମୋର) ଏହି ଅହଙ୍କାର ଓ ମମତାବଶତଃ ଅନ୍ୟ ପ୍ରାଣୀମାନଙ୍କପ୍ରତି ଦ୍ରୋହ ଆଚରଣ କରି ଅନୁଦିନ ନିଜର କୁଟୁମ୍ବ ପୋଷିବାକୁ ଲାଗିଥାଏ, ଦେହତ୍ୟାଗ କରିବା ପରେ ସେହି ପାପପାଇଁ ସେ ରୌରବ ନରକରେ ପଡ଼ିଥାଏ ।।୧୦।। ଇହଲୋକରେ ଯେଉଁ ବ୍ୟକ୍ତି ଯେଉଁମାନଙ୍କ ପ୍ରତି ହିଂସା ଆଚରଣ କରିଥାଏ, ସେମାନେ ପରଲୋକରେ ସର୍ପଠାରୁ ଅଧିକ କ୍ରୂର ରୁରୁ ନାମକ ହିଂସ୍ର ଜନ୍ତୁରେ ପରିଣତ ହୋଇ ଯମଯାତନା ଭୋଗ କରିବାକୁ ଆସିଥିବା ସେହି ବ୍ୟକ୍ତିକୁ ବହୁ କଷ୍ଟ ଦେଇଥା'ନ୍ତି । ସେଥିପାଇଁ ଏହି ଲୋକର ନାମ ରୌରବ ।।୧୧।। ସେହିପରି ଯେ ନିଜେ କେବଳ ଖାଇ ପିଇ ବଞ୍ଚିରହେ, ନିଜର ପିଲାକୁଟୁମ୍ବକୁ ମଧ୍ୟ ପଚାରେ ନାହିଁ, ସେହି ବ୍ୟକ୍ତି ନିଜ ପାପର ଫଳସ୍ୱରୂପ ଏହି ମହାରୌରବ ନରକରେ ପଡ଼ି କଞ୍ଚାମାଂସ ଖାଉଥିବା କ୍ରବ୍ୟାଦନାମକ ଏହି ରୁରୁମାନଙ୍କର ଖାଦ୍ୟ ହୋଇଯାଏ ।।୧୨।। ଯେଉଁ ଉଗ୍ର ପ୍ରକୃତିର ବ୍ୟକ୍ତି ନିଜର ପ୍ରାଣପୋଷଣପାଇଁ ପଶୁପକ୍ଷୀମାନଙ୍କୁ ମାରି ସେମାନଙ୍କର ମାଂସ ରନ୍ଧନ କରେ, ନରମାଂସଭୋଜୀ ରାକ୍ଷସମାନଙ୍କଠାରୁ ମଧ୍ୟ ନିନ୍ଦନୀୟ ସେହି ନିଷ୍ଠୁର ବ୍ୟକ୍ତିକୁ ପରଲୋକରେ ଯମଦୂତମାନେ କୁମ୍ଭୀପାକ ନରକକୁ ଘେନିଯାଆନ୍ତି ଓ ତପ୍ତ ତୈଳରେ ତାକୁ ରନ୍ଧନ କରନ୍ତି ।।୧୩।।

ଇହକାଳରେ ଯେଉଁ ବ୍ୟକ୍ତି ବ୍ରହ୍ମହତ୍ୟା କରିଥାଏ, ଯମଦୂତମାନେ ତାକୁ କାଳସୂତ୍ର ନାମକ ନରକକୁ ଘେନିଯାଆନ୍ତି । ଏହି ନରକ ଅୟୁତଯୋଜନ ବିସ୍ତୃତ ଓ ତମ୍ବାରେ ଗଢ଼ା ହୋଇଥାଏ । ତଳେ ନିଆଁ ଓ ଉପରେ ସୂର୍ଯ୍ୟତାପରେ ଏହା ଜଳୁଥାଏ । ଏଠାରେ ପହଞ୍ଚିବା ପରେ ପାପୀ ଜୀବ ଭୋକଶୋଷରେ ବ୍ୟାକୁଳ ହୋଇଉଠେ ଏବଂ ତା'ର ଶରୀରର ବାହାର ଓ ଭିତର ଜଳିବାକୁ ଲାଗେ । ସେ ଯନ୍ତ୍ରଣାରେ କେତେବେଳେ ବସିଯାଏ, ତେତେବେଳେ ଗଡ଼ିଯାଏ, କେତେବେଳେ ଛଟପଟ ହୁଏ, ଆଉ କେତେବେଳେ ଏଣେ ତେଣେ ଦଉଡ଼ିବାକୁ ଲାଗେ । ଏହିପରି ଏହି ନରରୂପକ ପଶୁର ଦେହରେ ଯେତିକି ରୋମ ଥାଏ ସେତିକି ହଜାର ବର୍ଷ ତାକୁ ଏହି ଯନ୍ତ୍ରଣା ଭୋଗିବାକୁ ପଡ଼େ ॥୧୪॥

କିଛି ଗୁରୁତର କାରଣ ବା ବିପଦ ନ ଥାଇ ଯଦି କୌଣସି ବ୍ୟକ୍ତି ବୈଦିକ ଧର୍ମକୁ ତ୍ୟାଗ କରେ ଓ ପାଖଣ୍ଡ ଧର୍ମର ଆଶ୍ରୟ ନିଏ, ତେବେ ଯମଦୂତମାନେ ତାକୁ ଅସିପତ୍ରବନ ନାମକ ନରକକୁ ନେଇ କୋରଡ଼ାରେ ପିଟନ୍ତି । ଯଦି ମାଡ଼ରୁ ରକ୍ଷାପାଇଁ ସେ ଏଣେତେଣେ ଦଉଡ଼ିବାକୁ ଲାଗେ, ତେବେ ଚାରିଆଡ଼େ ଘେରି ରହିଥିବା ତାଳବନରେ ସେ ହାବୁଡ଼ିଯାଏ ଏବଂ ସେଠାରେ ତାଳପତ୍ରଯାକ ଖଣ୍ଡାପରି ଅତି ତୀକ୍ଷ୍ଣ ହୋଇଥିବାଯୋଗୁଁ ତା'ର ସର୍ବାଙ୍ଗ କ୍ଷତବିକ୍ଷତ ହୋଇପଡ଼େ ଏବଂ ସେ ଅତିଶୟ ଯନ୍ତ୍ରଣାରେ 'ମରିଗଲି' ବୋଲି ଚିତ୍କାର କରିବାକୁ ଲାଗେ ଓ ଉତ୍କଟ ଯନ୍ତ୍ରଣାରେ ବାରମ୍ବାର ମୂର୍ଚ୍ଛା ଯାଏ । ଏହିପରି ସ୍ୱଧର୍ମ ଛାଡ଼ି ପାଖଣ୍ଡ ଆଚରଣଯୋଗୁଁ ତାର ଫଳସ୍ୱରୂପ ତାକୁ ଏହି ନରକଯନ୍ତ୍ରଣା ଭୋଗ କରିବାକୁ ହୁଏ ॥୧୫॥ ଯଦି ଇହଲୋକରେ କୌଣସି ବ୍ୟକ୍ତି ଦଣ୍ଡକୁ ଅଯୋଗ୍ୟ ନିରପରାଧ ବ୍ୟକ୍ତିକୁ ଦଣ୍ଡ ଦିଏ ଏବଂ ବ୍ରାହ୍ମଣମାନଙ୍କୁ ଶାରୀରିକ ଦଣ୍ଡ ଦିଏ, ତେବେ ସେହି ପାପିଷ୍ଠ ମୃତ୍ୟୁପରେ ଶୂକରମୁଖ ନାମକ ନରକରେ ପତିତ ହୁଏ । ସେଠାରେ ବଳବାନ୍ ଯମଦୂତମାନେ ତାକୁ ଏପରି ଚକଟି ପେଷି ପକାନ୍ତି ଯେ, ଆଖୁ ପେଡ଼ିବାବେଳେ ଯେପରି ଶବ୍ଦ ହୁଏ, ସେହିପରି ଶବ୍ଦରେ ସେ ଆର୍ତ୍ତ ଚିତ୍କାର କରି ବାରମ୍ବାର ମୂର୍ଚ୍ଛା ହୋଇପଡ଼େ । କାରଣ ଇହଲୋକର ନିରପରାଧ ପ୍ରାଣିମାନଙ୍କୁ ସେ ଯନ୍ତ୍ରଣା ଦେବାବେଳେ ସେମାନେ ଏହିପରି ଚିତ୍କାର କରୁଥିଲେ ॥୧୬॥

ମଶା, ଡାଉଁଶ, ଛାରପୋକ, ଉକୁଣି ଆଦି ଜୀବମାନଙ୍କୁ ଜୀବର ରକ୍ତ ପିଇ ବଞ୍ଚିବାପାଇଁ ଭଗବାନ ବ୍ୟବସ୍ଥା କରିଛନ୍ତି । ସେମାନେ ରକ୍ତପାନ କଲାବେଳେ ଅନ୍ୟକୁ କଷ୍ଟ ହେଉଛି ବୋଲି ଜାଣି ପାରନ୍ତି ନାହିଁ । କିନ୍ତୁ ମନୁଷ୍ୟର ବୃତ୍ତିକୁ ଭଗବାନ ବିଧି-ନିଷେଧପୂର୍ବକ ପ୍ରସ୍ତୁତ କରିଛନ୍ତି ଏବଂ ଅନ୍ୟଜୀବଙ୍କୁ ଯେଉଁ କଷ୍ଟ ହୁଏ, ମନୁଷ୍ୟ ମଧ୍ୟ ତାହା ଜାଣିପାରେ । ସେ ଏମାନଙ୍କ ପ୍ରତି ହିଂସା କରିବା ଫଳରେ ଅନ୍ଧକୂପ ନରକରେ ପଡ଼ିଥାଏ ଏବଂ ଯେଉଁ ପଶୁ, ମୃଗ, ପକ୍ଷୀ ଓ ସରୀସୃପମାନଙ୍କୁ ସେ ହିଂସା କରିଥାଏ ସେମାନେ ସମସ୍ତେ ମିଶି ତାକୁ ଚାରିଆଡୁ କାମୁଡ଼ିବାରେ ଲାଗନ୍ତି । ତାକୁ ନିଦ ହୁଏ ନାହିଁ କି ଶାନ୍ତି ମିଳେ ନାହିଁ । ରୋଗଗ୍ରସ୍ତ ଶରୀରରେ ଜୀବ କଷ୍ଟଭୋଗ କରିବାପରି ସେ ତା'ରି ଭିତରେ ପଡ଼ି ଛଟପଟ ହେଉଥାଏ ॥୧୭॥ ଯେଉଁ ବ୍ୟକ୍ତି ଇହଲୋକରେ ପଞ୍ଚ ମହାଯଜ୍ଞ (ପିତୃଯଜ୍ଞ ଓ ଋଷିଯଜ୍ଞ ଆଦି) କରେ ନାହିଁ, ଯାହା କିଛି ମିଳେ, କାହାକୁ ନ ଦେଇ ନିଜେ ଖାଏ, କାକ ସାଙ୍ଗରେ ତାକୁ ସମାନ ବୋଲି ବିଚାର କରାଯାଏ । ପରଲୋକରେ ସେ କୃମିଭୋଜନ ନାମକ ନିକୃଷ୍ଟ ନରକରେ ପଡ଼ିଥାଏ । ଏହା ହେଉଛି ଶତ ସହସ୍ର ଯୋଜନ ବିସ୍ତୃତ କୃମିପୂର୍ଣ୍ଣ ନରକ । ସେଠାରେ ତାକୁ କୃମି ହୋଇ ରହିବାକୁ ପଡ଼େ । ଯେ ପର୍ଯ୍ୟନ୍ତ ତା'ର ପାପର ପ୍ରାୟଶ୍ଚିତ୍ତ ହୋଇ ନ ଥାଏ, ଏବଂ କାହାକୁ ନ ଦେଇ ଓ ହବନ ନ କରି ସେ ଖାଇଥିବାର ଦୋଷକୁ ବୁଝି ନ ଥାଏ, ସେପର୍ଯ୍ୟନ୍ତ ସେ ଏଠାରେ ପଡ଼ି କଷ୍ଟ ଭୋଗ କରେ । ସେଠାରେ କୃମିମାନେ ତାକୁ କାମୁଡ଼ି ଖାଉଥା'ନ୍ତି ଓ ସେ ସେମାନଙ୍କୁ ମଧ୍ୟ ଖାଉଥାଏ ॥୧୮॥ ରାଜା ! ଇହଲୋକରେ ଯେଉଁ ବ୍ୟକ୍ତି ଚୋରିରେ ବା ବଳାତ୍କାରରେ ବ୍ରାହ୍ମଣର କିମ୍ବା କୌଣସି ବିପଦ ଆପଦ ନ ଥାଇ ଅନ୍ୟମାନଙ୍କର ସୁବର୍ଣ୍ଣ ଓ ରତ୍ନ ଆଦି ଧନ ହରଣ କରେ, ମରିବା ପରେ ଯମଦୂତମାନେ ତାକୁ ସନ୍ଦଂଶ ନାମକ ନରକକୁ ନେଇଯାଆନ୍ତି । ସେଠି ସେମାନେ ତପ୍ତ ଲୌହପିଣ୍ଡରେ ତାକୁ

ଲାଉଛନ୍ତି ଏବଂ ସଣ୍ଡୁଆସିରେ ତା'ର ଚମକୁ ଓଟାରି ଛିଣ୍ଡାଉଥା'ନ୍ତି ॥୧୯॥ ଇହଲୋକରେ ଯେଉଁ ପୁରୁଷ ଅଗମ୍ୟା ସ୍ତ୍ରୀଲୋକକୁ ସମ୍ଭୋଗ କରେ, କିମ୍ବା ଯେଉଁ ସ୍ତ୍ରୀ ଅଗମ୍ୟ ପୁରୁଷ ସହିତ ସହବାସ କରେ, ପରଲୋକରେ ଯମଦୂତମାନେ ସେଇ ଉଭୟଙ୍କୁ କଷାଘାତ (କୋରଡ଼ାମାଡ଼) କରନ୍ତି ଏବଂ ତପ୍ତ ଲୌହମୟ ମୂର୍ତ୍ତିକୁ ଆଲିଙ୍ଗନ କରାନ୍ତି । ପୁରୁଷ କ୍ଷେତ୍ରରେ ତାହା ସ୍ତ୍ରୀମୂର୍ତ୍ତି ଓ ସ୍ତ୍ରୀ କ୍ଷେତ୍ରରେ ପୁରୁଷମୂର୍ତ୍ତି ହୋଇଥାଏ ॥୨୦॥ ଯେଉଁ ବ୍ୟକ୍ତି ଇହଲୋକରେ ପଶୁସମେତ ସମସ୍ତଙ୍କ ସହିତ ବ୍ୟଭିଚାର କରେ, ମରିବା ପରେ ଯମଦୂତମାନେ ତାକୁ ବଜ୍ରକଣ୍ଟକଶାଲ୍ମଳୀ ନାମକ ନରକରେ ନେଇ ପକାଇ ଦିଅନ୍ତି । ସେଠାରେ ତାକୁ ବଜ୍ରପରି ଟାଣ ଓ ତୀକ୍ଷ୍ଣ କଣ୍ଟା ଥିବା ଶିମିଳି ଗଛରେ ଚଢ଼ାଇ ପୁଣି ତଳକୁ ଟାଣି ଆଣନ୍ତି ॥୨୧॥

ଯେଉଁ ରାଜା ବା ରାଜପୁରୁଷମାନେ ସତ୍‌କୁଳରେ ଜନ୍ମ ହୋଇ ମଧ୍ୟ ଧର୍ମର ମର୍ଯ୍ୟାଦାକୁ ନଷ୍ଟ କରନ୍ତି, ସେମାନେ ସେହି ଦୋଷରୁ ମୃତ୍ୟୁପରେ ଯମଦ୍ୱାରରେ ଥିବା ବୈତରଣୀ ନାମକ ନଦୀରେ ଯାଇ ପଡ଼ନ୍ତି । ଏହି ନଦୀକୁ ନରକର ଖାଇ ବୋଲି କୁହାଯାଏ । ଏହା ମଳ, ମୂତ୍ର, ପୂଜ, ରକ୍ତ, କେଶ, ନଖ, ହାଡ଼, ମେଦ, ମାଂସ ଓ ମଜ୍ଜା ଆଦି ସମସ୍ତ ଦୁର୍ଗନ୍ଧ ବସ୍ତୁରେ ପୂରି ରହିଥାଏ । ସେଥିରେ ପଡ଼ିବା ପରେ ଏଣେତେଣେ ଥିବା ଜଳଜୀବମାନେ ତାକୁ ଖାଇବାକୁ ଲାଗନ୍ତି । ସେହି ଅବସ୍ଥାରେ ସେ ତା'ର ପାପର ଫଳସ୍ୱରୂପ ସେଇ ଶରୀରକୁ ତ୍ୟାଗ କରିପାରେ ନାହିଁ ଏବଂ ନିଜର କର୍ମଫଳସ୍ୱରୂପ ତାହା ଭୋଗିବାକୁ ହେଉଛି ବୋଲି ଜାଣି ତାକୁ ଅସହ୍ୟ କଷ୍ଟ ଓ ମନସ୍ତାପ ହୁଏ ॥୨୨॥ ଯେଉଁ ଲୋକମାନେ ସଦାଚାରର ନିୟମକୁ ଲଂଘନ କରି ଓ ଲଜ୍ଜାକୁ ଜଳାଞ୍ଜଳି ଦେଇ ଶୂଦ୍ରାମାନଙ୍କ ସହିତ ରତି କରନ୍ତି, ମରିବା ପରେ ସେମାନେ ପୂୟୋଦ ନାମକ ନରକରେ ଥିବା ବିଷ୍ଠା, ପୂଜ, ମୂତ୍ର, କଫ ଓ ଲାଳରେ ପୂର୍ଣ୍ଣ ସମୁଦ୍ରରେ ପଡ଼ି ଅତି ଘୃଣ୍ୟ ବସ୍ତୁ ଭୋଜନ କରନ୍ତି ॥୨୩॥

ଇହ ଲୋକରେ ବ୍ରାହ୍ମଣ ଆଦି ଯେଉଁ ଉଚ୍ଚବର୍ଣ୍ଣର ଲୋକମାନେ କୁକୁର ଓ ଗଧ ପ୍ରଭୃତି ପାଳନ କରି ଶିକାର କରିବାରେ ଲାଗିଥା'ନ୍ତି ଓ କୌଣସି ବିଧିବିଧାନ ନମାନି ପଶୁମାନଙ୍କୁ ବଧ କରନ୍ତି, ମରିବା ପରେ ଯମଦୂତମାନେ ସେମାନଙ୍କୁ ପ୍ରାଣରୋଧ ନାମକ ନରକକୁ ନେଇଯାଆନ୍ତି ଏବଂ ସେମାନଙ୍କୁ ଲକ୍ଷ୍ୟ କରି ବାଣବିଦ୍ଧ କରନ୍ତି ॥୨୪॥ ଇହଲୋକରେ ଯେଉଁ ଦାମ୍ଭିକମାନେ ନିଜର ଦମ୍ଭପାଇଁ ଯଜ୍ଞ କରି ପଶୁବଧ କରନ୍ତି, ପରଲୋକରେ ଯମଦୂତମାନେ ସେମାନଙ୍କୁ ବିଶସନ ନାମକ ନରକରେ ପକାଇ ନାନାପ୍ରକାର ଯନ୍ତ୍ରଣାରେ ଆଘାତ କରନ୍ତି ॥୨୫॥ ଯେଉଁ ଦ୍ୱିଜ କାମାତୁର ହୋଇ ନିଜର ସବର୍ଣ୍ଣା ଭାର୍ଯ୍ୟାକୁ ବୀର୍ଯ୍ୟପାନ କରାଏ, ମରିବାପରେ ତାକୁ ଯମଦୂତମାନେ ବୀର୍ଯ୍ୟର ନଦୀମଧ୍ୟରେ ପକାଇ ବୀର୍ଯ୍ୟପାନ କରାନ୍ତି । ଏହି ନରକର ନାମ ଲାଲାଭକ୍ଷ ॥୨୬॥ ଇହଲୋକରେ ଯେଉଁସବୁ ଦସ୍ୟୁ, ରାଜା ବା ରାଜପୁରୁଷ ଲୋକଙ୍କ ଘରେ ନିଆଁ ଲଗାଇ ଦିଅନ୍ତି କିମ୍ବା ସେମାନଙ୍କୁ ବିଷ ଦେଇ ମାରନ୍ତି, ଅଥବା ଗ୍ରାମ ବା ବଜାରମାନଙ୍କୁ ଧ୍ୱଂସ କରି ଦିଅନ୍ତି, ମରିବା ପରେ ସାରମେୟାଦନ ନାମକ ନରକରେ ବଜ୍ରପରି ତୀକ୍ଷ୍ଣ ଦନ୍ତଯୁକ୍ତ କୁକୁର ହୋଇ ସାତଶହ କୋଡ଼ିଏ ଜଣ ଯମଦୂତ ତୀବ୍ରବେଗରେ ସେମାନଙ୍କୁ ଚର୍ବଣ କରି ଲାଗନ୍ତି ॥୨୭॥ ଇହଲୋକରେ ଯେଉଁ ବ୍ୟକ୍ତି ସାକ୍ଷୀ ଦେବାବେଳେ, ବ୍ୟବସାୟ ବାଣିଜ୍ୟରେ କିମ୍ବା ଦାନ ଦେଲାବେଳେ ମିଥ୍ୟା କହେ, ମରିବା ପରେ ସେ ଅବଲମ୍ବନଶୂନ୍ୟ ଅବୀଚି ନାମକ ନରକରେ ପଡ଼େ । ସେଠାରେ ପାଷାଣମୟ ସ୍ଥଳଭାଗ ଜଳପରି ଜଣାଯାଏ ଓ ସେଥିରେ ପଡ଼ିଲେ ତା'ର ଶରୀର ଖଣ୍ଡ ଖଣ୍ଡ ହୋଇଯାଏ । ତଥାପି ତା'ର ପ୍ରାଣ ଯାଏ ନାହିଁ । ତାକୁ ଉପରକୁ ନେଇ ଶହେଯୋଜନ ଉଚ୍ଚ ପାହାଡ଼ ଶିଖରରୁ ବାରମ୍ବାର ତଳକୁ ଫିଙ୍ଗି ଦିଆଯାଉଥାଏ ॥୨୮॥ ଇହଲୋକରେ ଯେଉଁ ବ୍ରାହ୍ମଣ ବା ତାର ସ୍ତ୍ରୀ ବା ବ୍ରତରେ ରହିଥିବା ଅନ୍ୟ କୌଣସି ବ୍ୟକ୍ତି ପ୍ରମାଦବଶତଃ ମଦ୍ୟପାନ କରେ, କିମ୍ବା ନିଷିଦ୍ଧ ହୋଇଥିଲେ ମଧ୍ୟ ଯେଉଁ କ୍ଷତ୍ରିୟ ବା ବୈଶ୍ୟ ସୋମପାନ କରେ, ଯମଦୂତମାନେ ମୃତ୍ୟୁପରେ ତାକୁ ଅୟଃପାନ ନାମକ ନରକକୁ ନେଇଯାଆନ୍ତି । ସେଠାରେ ସେମାନେ ତା'ର ଛାତି ଉପରେ ପାଦ ରଖି ତା'ର ମୁହଁରେ ତତଲା ତରଳ ଲୁହା ଢାଳନ୍ତି ॥୨୯॥ ଯେଉଁ ବ୍ୟକ୍ତି ଇହଲୋକରେ ଅତି ନିକୃଷ୍ଟ ଶ୍ରେଣୀର ହେଲେ ମଧ୍ୟ ନିଜକୁ ବଡ଼ ବୋଲି ଭାବେ ଏବଂ

ଜନ୍ମ, ତପ, ବିଦ୍ୟା, ଆଚରଣ, ବର୍ଣ୍ଣ ବା ଆଶ୍ରମରେ ତା'ଠାରୁ ଯୋଗ୍ୟତର ବ୍ୟକ୍ତିଙ୍କୁ ସମ୍ମାନ ଦିଏ ନାହିଁ, ସେ ଜିଇଥିଲେ ମଧ୍ୟ ମରିବା ସହିତ ସମାନ । ମୃତ୍ୟୁପରେ ଯମଦୂତମାନେ ତାକୁ କ୍ଷାରକର୍ଦ୍ଦମ ନାମକ ନରକରେ ଅଧୋମୁଖ କରି ପକାଇ ଦିଅନ୍ତି ଏବଂ ସେଠାରେ ତାକୁ ଦୁରନ୍ତ ଯାତନା ଭୋଗ କରିବାକୁ ପଡ଼େ ।।୩୦।। ଯେଉଁ ପୁରୁଷମାନେ ଭୈରବଙ୍କୁ ବା କାଳୀଙ୍କୁ ସନ୍ତୁଷ୍ଟ କରିବାପାଇଁ ନରମେଧ ଯଜ୍ଞ କରି ନରବଳି ଦିଅନ୍ତି ଏବଂ ଯେଉଁ ସ୍ତ୍ରୀ ଲୋକମାନେ ସେଇ ନରମାଂସକୁ ଭୋଜନ କରନ୍ତି, ବଳି ପଡ଼ିଥିବା ସେହି ନରମାନେ ଯମଲୋକରେ ରାକ୍ଷସ ହୋଇ ସେମାନଙ୍କୁ କଂସେଇଭଳି କାତିରେ କାଟି ରକ୍ତ ପିଅନ୍ତି ଏବଂ ବହୁପ୍ରକାର ଯନ୍ତ୍ରଣା ଦିଅନ୍ତି । ରକ୍ଷୋଗଣଭୋଜନ ନାମକ ନରକରେ ସେମାନେ ପଡ଼ନ୍ତି । ନରମାଂସ ଖାଇ ନରଲୋକରେ ସେହି ଲୋକମାନେ ଆନନ୍ଦରେ ଯେପରି ନାଚ ଗୀତ କରୁଥିଲେ, ଏଠି ସେଇ ନରପଶୁମାନେ ସେମାନଙ୍କୁ ସେହିପରି ଯନ୍ତ୍ରଣା ଦେଇ ଆନନ୍ଦରେ ନାଚଗାନ କରନ୍ତି ।।୩୧।। ଇହଲୋକରେ ଯେଉଁମାନେ ବନରେ ବା ଗ୍ରାମରେ ବଞ୍ଚିବାକୁ ଚାହୁଁଥିବା ନିରପରାଧ ଜୀବମାନଙ୍କୁ ନାନା ବିଶ୍ୱାସଜନକ ଉପାୟରେ ବିଶ୍ୱାସ ଜନ୍ମାଇ ଦଉଡ଼ିରେ ବାନ୍ଧି ବା ଶୂଳରେ ବସାଇ କ୍ରୀଡ଼ନକ ପରି ବ୍ୟବହାର କରନ୍ତି ଓ ବହୁ ଯନ୍ତ୍ରଣା ଦିଅନ୍ତି, ମୃତ୍ୟୁପରେ ଯମଦୂତମାନେ ସେମାନଙ୍କୁ ଶୂଳପ୍ରୋତ ନାମକ ନରକକୁ ଆଣି ଶୂଳୀରେ ବସାଇ ଦିଅନ୍ତି । କ୍ଷୁଧା ଓ ତୃଷାରେ ସେମାନେ ଛଟପଟ ହୁଅନ୍ତି ଏବଂ କଙ୍କ ଓ ବକ ଆଦି ପକ୍ଷୀମାନେ ତୀକ୍ଷ୍ଣ ଥଣ୍ଟରେ ସେମାନଙ୍କୁ ଆଘାତ କରିବାରେ ଲାଗନ୍ତି । ଅନବରତ ଏହିପରି କଷ୍ଟ ଭୋଗ କଲାବେଳେ ସେମାନଙ୍କର ପୂର୍ବକୃତ ପାପ ମନେ ପଡ଼ିଯାଏ ।।୩୨।। ରାଜା ! ଇହଲୋକରେ ଯେଉଁ ବ୍ୟକ୍ତି ସର୍ପପରି ଉଗ୍ରସ୍ୱଭାବ ହୋଇ ଅନ୍ୟପ୍ରାଣୀଙ୍କୁ ପୀଡ଼ା ଦିଏ, ମରିବା ପରେ ସେ ଦନ୍ଦଶୂକ ନାମକ ନରକରେ ପଡ଼ିଥାଏ । ସେଠାରେ ପାଞ୍ଚଫଣା, ସପ୍ତଫଣା ବିଶିଷ୍ଟ ସର୍ପମାନେ ତାହା ନିକଟକୁ ଆସି ମୂଷିକକୁ ଧରି ଗ୍ରାସ କରିବା ପରି ତାକୁ ଗ୍ରାସ କରନ୍ତି ।।୩୩।। ଯେଉଁମାନେ ଇହଲୋକରେ ପ୍ରାଣୀମାନଙ୍କୁ ଅନ୍ଧକାରମୟ ଗହ୍ୱରରେ, ଧାନକୋଠିରେ ବା ଗୁହାମଧ୍ୟରେ ଆବଦ୍ଧ କରି କଷ୍ଟ ଦିଅନ୍ତି, ପରଲୋକରେ ଯମଦୂତମାନେ ସେମାନଙ୍କୁ ସେହିପରି ଗହ୍ୱରାଦିରେ ବନ୍ଦକରି ରଖି ବିଷପୂର୍ଣ୍ଣ ନିଆଁର ଧୂଆଁ ଛାଡ଼ି କଷ୍ଟ ଦିଅନ୍ତି । ଏଥିପାଇଁ ଏହି ନରକକୁ ଅବଟ (ଗର୍ତ୍ତ) ନିରୋଧନ କୁହାଯାଏ ।।୩୪।।

ଇହଲୋକରେ ଯେଉଁ ଗୃହସ୍ଥ, ଅତିଥି ଅଭ୍ୟାଗତଙ୍କପ୍ରତି ବାରମ୍ବାର କ୍ରୁଦ୍ଧ ହୋଇ ସେମାନଙ୍କୁ ପୋଡ଼ିଦେବାକୁ ଚାହିଁବା ଭଳି ପାପ ଦୃଷ୍ଟିରେ ଚାହିଁରହେ, ମୃତ୍ୟୁପରେ ପର୍ଯ୍ୟାବର୍ତ୍ତନ ନାମକ ନରକରେ ସେ ପଡ଼ିଥାଏ ଏବଂ ବଜ୍ରପରି ତୀକ୍ଷ୍ଣ ଓ କଠିନ ଥଣ୍ଟ ଥିବା ଗୃଧ୍ର, କଙ୍କ, କାକ ଓ ବକ ଆଦି ପକ୍ଷୀମାନେ ତାକୁ ପ୍ରବଳବେଗରେ ଆକ୍ରମଣ କରି ତା'ର ଆଖିକୁ ଉପାଡ଼ି ନିଅନ୍ତି ।।୩୫।। ଧନଗର୍ବରେ ଏବଂ ବଡ଼ଲୋକୀ ଅଭିମାନରେ ଯେଉଁ ବ୍ୟକ୍ତି ଅନ୍ୟମାନଙ୍କୁ ତେଢ଼ା ଦୃଷ୍ଟିରେ ଦେଖେ, ଧନହରଣର ଆଶଙ୍କାରେ ସମସ୍ତଙ୍କୁ ସନ୍ଦେହ କରେ, ଧନର ବ୍ୟୟ ବା କ୍ଷତି ଚିନ୍ତାରେ ମୁହଁକୁ ଓ ମନକୁ ଶୁଖେଇ ଦିଏ ଏବଂ ଟିକିଏହେଲେ ତାପ ଶାନ୍ତି ନ ପାଇ ଯକ୍ଷପରି ଧନର ଉତ୍ପାଦନ ରକ୍ଷଣ ଓ ବୃଦ୍ଧି ପାଇଁ ପାପକୁ ଗ୍ରହଣ କରେ, ମୃତ୍ୟୁପରେ ସେ ଶୂଚୀମୁଖ ନାମକ ନରକରେ ପଡ଼ିଥାଏ । ଯମଦୂତମାନେ ଦର୍ଜି ସୂତାରେ ସିଲାଇ କରିବା ପରି ସେହି ପାପୀର ସମସ୍ତ ଦେହକୁ ସିଲେଇ କରି ପକାନ୍ତି ।।୩୬।। ଯମାଳୟରେ ଏହିପରି ଶହଶହ ହଜାର ହଜାର ନରକ ଅଛି, ଯେଉଁସବୁ ନରକର କଥା କୁହାଯାଇଛି ବା କୁହାଯାଇ ନାହିଁ । ଅଧାର୍ମିକ ଲୋକମାନେ ପର୍ଯ୍ୟାୟକ୍ରମେ ସେହି ସେହି ନରକରେ ପ୍ରବେଶ କରନ୍ତି । ସେହିପରି ଧାର୍ମିକ ଲୋକମାନେ ସ୍ୱର୍ଗରେ ପ୍ରବେଶ କରନ୍ତି । ଏହିପରି ନରକ ବା ସ୍ୱର୍ଗଭୋଗ ପରେ ଅବଶିଷ୍ଟ ପାପପୁଣ୍ୟର ଫଳଭୋଗପାଇଁ କର୍ମାନୁସାରେ ସେମାନେ ପୁଣି ଏହି ସଂସାରରେ ଜନ୍ମଲାଭ କରନ୍ତି ।।୩୭।। ମୁଁ ପ୍ରଥମରୁ (ଦ୍ୱିତୀୟ ସ୍କନ୍ଧରେ) ନିବୃତ୍ତିମାର୍ଗର ବିଷୟ ବର୍ଣ୍ଣନା କରିଛି । ପୁରାଣମାନଙ୍କରେ ଚଉଦଭୁବନ ରୂପରେ ଯାହାକୁ ବର୍ଣ୍ଣନା କରାଯାଇଛି, ମୁଁ ସେହି ବ୍ରହ୍ମାଣ୍ଡକୋଷର କଥା କହିଗଲି । ଏହି ବ୍ରହ୍ମାଣ୍ଡ ହେଉଛି ପୁରୁଷୋତ୍ତମ ଭଗବାନ ନାରାୟଣଙ୍କର ସ୍ଥୂଳସ୍ୱରୂପ, ଯାହାକୁ ସେ

ମାୟାଗୁଣ ଦ୍ୱାରା ଧାରଣ କରିଥା'ନ୍ତି । ଯେଉଁ ବ୍ୟକ୍ତି ପୂର୍ବବର୍ଣ୍ଣିତ ଭଗବାନଙ୍କର ଏହି ସ୍ୱରୂପ ବିଷୟ ଶ୍ରଦ୍ଧାର ସହିତ ପାଠ କରେ, ଶ୍ରବଣ କରେ ବା ଅନ୍ୟକୁ ଶୁଣାଏ, ଶ୍ରଦ୍ଧା ଓ ଭକ୍ତିଦ୍ୱାରା ତାର ଚିତ୍ତ ଶୁଦ୍ଧ ହୁଏ ଏବଂ ଉପନିଷଦ୍‌ମାନଙ୍କରେ ପ୍ରତିପାଦିତ ଭଗବାନଙ୍କର ସୂକ୍ଷ୍ମରୂପକୁ ସେ ମଧ୍ୟ ଜାଣିପାରେ ।।୩୮।। ଯତି ପକ୍ଷରେ ଭଗବାନଙ୍କର ଏହି ସ୍ଥୁଳ ଓ ସୂକ୍ଷ୍ମ ଦୁଇ ପ୍ରକାର ରୂପବିଷୟ ଶ୍ରବଣ କରି ପ୍ରଥମେ ସ୍ଥୁଳ ରୂପରେ ନିଜର ଚିତ୍ତକୁ ସ୍ଥିର ରଖିବା ଏବଂ ପରେ ଧୀରେ ଧୀରେ ଏହି ସ୍ଥୁଳରୂପରୁ ଚିତ୍ତକୁ ଅପସାରଣ କରି ସୂକ୍ଷ୍ମରୂପରେ ନିବଦ୍ଧ କରିବା ଉଚିତ ।।୩୯।। ପରିକ୍ଷିତ ! ମୁଁ ତୁମକୁ ପୃଥିବୀ ଏବଂ ତା'ର ଅନ୍ତର୍ଗତ ଦ୍ୱୀପ, ବର୍ଷ, ନଦୀ, ପର୍ବତ, ଆକାଶ, ସମୁଦ୍ର, ପାତାଳ, ଦିଗ୍‌ବିଦିଗ୍, ନରକ, ଜ୍ୟୋତିଷ୍କଗଣ ଓ ବିଭିନ୍ନ ଲୋକର ସ୍ଥିତି ସମ୍ପର୍କରେ ବର୍ଣ୍ଣନା କଲି । ଏହା ହେଉଛି ଭଗବାନଙ୍କର ଅଦ୍ଭୁତ ସ୍ଥୁଳ ଶରୀର, ଯାହାକି ସମସ୍ତ ପ୍ରାଣୀଙ୍କର ଆଶ୍ରୟସ୍ଥଳ ।।୪୦।।

# ଷଷ୍ଠ ସ୍କନ୍ଧ

## ପ୍ରଥମ ଅଧ୍ୟାୟ

## ଅଜାମିଳ ଉପାଖ୍ୟାନ

ରାଜା ପରିକ୍ଷିତ କହିଲେ, ବ୍ରହ୍ମନ୍ ଆପଣ ପ୍ରଥମେ (ଦ୍ୱିତୀୟ ସ୍କନ୍ଧରେ) ନିବୃତ୍ତିମାର୍ଗର ବର୍ଣ୍ଣନା କରିଛନ୍ତି । ଏକ କ୍ରମିକ ଯୋଗ ଅନୁଷ୍ଠାନଦ୍ୱାରା ବ୍ରହ୍ମଲୋକ ଲାଭ ଓ ମୋକ୍ଷଲାଭର କଥା ମଧ୍ୟ ଉପଦେଶ ଦେଇଛନ୍ତି ॥୧॥ ଏହାଛଡ଼ା ଆପଣ ପ୍ରବୃତ୍ତିମାର୍ଗର କଥା (ତୃତୀୟ ସ୍କନ୍ଧରେ) ମଧ୍ୟ ବର୍ଣ୍ଣନା କରିଛନ୍ତି । ଯଦ୍ୱାରା ସ୍ୱର୍ଗ ଆଦି ଲୋକର ପ୍ରାପ୍ତି ହୁଏ ଏବଂ ପ୍ରକୃତିର ସମ୍ବନ୍ଧ ଦୂର ନ ହେବାଯୋଗୁଁ ଜୀବ ବାରମ୍ବାର ଜନ୍ମ ଗ୍ରହଣ କରେ ॥୨॥ ଅଧର୍ମର ଫଳସ୍ୱରୂପ ଜୀବକୁ କିପରି ନାନାପ୍ରକାର ନରକ ଭୋଗ କରିବାକୁ ପଡ଼େ, ତାହାକୁ ମଧ୍ୟ ଭଲ ଭାବରେ (ପଞ୍ଚମ ସ୍କନ୍ଧରେ) ବର୍ଣ୍ଣନା କରିଛନ୍ତି । ପ୍ରଥମ ମନ୍ୱନ୍ତରର ସ୍ୱାୟମ୍ଭୁବ ମନୁଙ୍କର ଯେଉଁ ଆଧିପତ୍ୟ, ତାହା ମଧ୍ୟ ଆପଣ (ଚତୁର୍ଥ ସ୍କନ୍ଧରେ) ବର୍ଣ୍ଣନା କରିଛନ୍ତି ॥୩॥ ସ୍ୱାୟମ୍ଭୁବ ମନୁଙ୍କର ଦୁଇ ପୁତ୍ର ପ୍ରିୟବ୍ରତ ଓ ଉତ୍ତାନପାଦଙ୍କ ବଂଶ ଏବଂ ଚରିତ ବର୍ଣ୍ଣନା କରି ଦ୍ୱୀପ, ବର୍ଷ, ସମୁଦ୍ର, ପର୍ବତ, ନଦୀ, ଉଦ୍ୟାନ ଓ ବିଭିନ୍ନ ଦ୍ୱୀପରେ ଥିବା ବୃକ୍ଷମାନଙ୍କର (ଚତୁର୍ଥ ପଞ୍ଚମ ସ୍କନ୍ଧରେ) ମଧ୍ୟ ବର୍ଣ୍ଣନା କରିଛନ୍ତି ॥୪॥ ଭୂମଣ୍ଡଳର ସ୍ଥିତି, ଦ୍ୱୀପ ଓ ବର୍ଷ ଆଦିରେ ତା'ର ବିଭାଗ, ତା'ର ଲକ୍ଷଣ ଓ ପରିମାପ, ଗ୍ରହନକ୍ଷତ୍ରମାନଙ୍କର ସ୍ଥିତି, ବିଭିନ୍ନ ବିବର (ସପ୍ତ ପାତାଳ) ଏବଂ ଏହା ସବୁ ଭଗବାନ କିପରି ସୃଷ୍ଟି କରିଛନ୍ତି ସେ ବିଷୟ ମଧ୍ୟ ଆପଣ ଶୁଣାଇଛନ୍ତି ॥୫॥ ବର୍ତ୍ତମାନ ହେ ମହାଭାଗ ! ମନୁଷ୍ୟକୁ ନାନା ଯନ୍ତ୍ରଣାମୟ ଭୟଙ୍କର ନରକକୁ କିପରି ଯିବାକୁ ହେବ ନାହିଁ, ତାହା ମୋତେ ଉପଦେଶ ଦିଅନ୍ତୁ ॥୬॥

ଶ୍ରୀ ଶୁକଦେବ କହିଲେ, ରାଜା ! ଲୋକ କାୟମନୋବାକ୍ୟରେ ଯେଉଁସବୁ ପାପକର୍ମ କରେ, ଇହଲୋକରେ ଯଦି ତାର ଯଥାର୍ଥ ପ୍ରାୟଶ୍ଚିତ୍ତ ନ କରେ, ତାହେଲେ ନିଶ୍ଚିତଭାବରେ ତାକୁ ମଲାପରେ ଭୟଙ୍କର ନରକମାନଙ୍କରେ ପଡ଼ିବାକୁ ହୁଏ, ଯାହାର ବର୍ଣ୍ଣନା ମୁଁ ପୂର୍ବରୁ ତୁମକୁ ଶୁଣାଇଛି ॥୭॥ ତେଣୁ ଏହି ଜନ୍ମରେ ହିଁ ମୃତ୍ୟୁପୂର୍ବରୁ ଜୀବ ଜରା, ରୋଗ ଆଦି ଦ୍ୱାରା ଅକର୍ମଣ୍ୟ ହେବା ଆଗରୁ ନିଦାନ ଜାଣିଥିବା ଚିକିତ୍ସକ ଯେପରି ରୋଗର ଚିକିତ୍ସା କରେ, ସେହିପରି ପାପକ୍ଷୟପାଇଁ ଉପଯୁକ୍ତ ପ୍ରାୟଶ୍ଚିତ୍ତ କରିବାରେ ଯତ୍ନବାନ ହେବା ଉଚିତ ॥୮॥

ରାଜା ପରିକ୍ଷିତ ପଚାରିଲେ, ପାପ କଲେ ଇହଲୋକରେ ରାଜଦଣ୍ଡ ଆଦି ଭୋଗ ଓ ପରଲୋକରେ ନରକାଦି ଭୋଗ କରିବାକୁ ହୁଏ, ତେଣୁ ପାପ ନିଜର ଅନିଷ୍ଟକାରୀ । ତାହା ଜାଣି ମଧ୍ୟ ଲୋକ ଯଦି ସ୍ୱଭାବଦୋଷରୁ ପ୍ରାୟଶ୍ଚିତ୍ତ ପରେ ପୁଣି ପାପ କରେ, ତେବେ ସେ ପ୍ରାୟଶ୍ଚିତ୍ତର ମୂଲ୍ୟ କ'ଣ ? ॥୯॥ କେବେ କେବେ ପାପ କରିବାରୁ ବିରତ ହୁଏ, ପୁଣି କେବେ କେବେ ସେହି ସବୁ ପାପ କରିବାକୁ ଲାଗେ । ତେଣୁ ହସ୍ତୀ ଯେପରି ସ୍ନାନ କରିବା ପରେ ଦେହରେ ଧୂଳି ବୋଳି ହୁଏ, ସେହିପରି ମନୁଷ୍ୟର ପ୍ରାୟଶ୍ଚିତ୍ତ କରିବା ବୃଥା ହୋଇଯାଏ ॥୧୦॥

ଶ୍ରୀ ଶୁକଦେବ କହିଲେ, ବିଭିନ୍ନ ପ୍ରାୟଶ୍ଚିତ୍ତ କର୍ମଦ୍ୱାରା ପାପ ସମୂଳେ ନଷ୍ଟ ହୁଏ ନାହିଁ । କର୍ମର ଅଧିକାରୀ ଜୀବ ହେଉଛି ଅଜ୍ଞାନରେ ଆଚ୍ଛନ୍ନ । ତେଣୁ ପ୍ରକୃତ ପ୍ରାୟଶ୍ଚିତ୍ତ ହେଉଛି ତତ୍ତ୍ୱଜ୍ଞାନଲାଭ ॥୧୧॥ ଯେଉଁ ବ୍ୟକ୍ତି ପ୍ରତ୍ୟହ ସୁପଥ୍ୟ ଭୋଜନ କରେ,

ରୋଗ ତାକୁ ଆକ୍ରମଣ କରିପାରେ ନାହିଁ । ସେହିପରି ହେ ରାଜା, ଯେଉଁବ୍ୟକ୍ତି ନିୟମ ପାଳନ କରି ଚଳେ, ସେ ତତ୍ତ୍ୱଜ୍ଞାନ ଲାଭ କରିବାକୁ ସମର୍ଥ ହୁଏ ॥୧୨॥ ନିଆଁ ଯେପରି ବାଉଁଶ ବୁଦାକୁ ପୋଡ଼ି ପକାଏ, ସେହିପରି ଧୀର, ଧାର୍ମିକ ପୁରୁଷ ଶ୍ରଦ୍ଧାର ସହିତ ତପସ୍ୟା, ବ୍ରହ୍ମଚର୍ଯ୍ୟ, ଇନ୍ଦ୍ରିୟଦମନ, ମନର ସ୍ଥିରତା, ତ୍ୟାଗ, ସଦାଚାର, ପବିତ୍ରତା, ସଂଯମ ଓ ନିୟମାଦିଦ୍ୱାରା କାୟିକ, ମାନସିକ ଓ ବାଚିକ ସମସ୍ତପ୍ରକାର ପାପକୁ ନଷ୍ଟ କରିପାରେ ॥୧୩-୧୪॥ ସୂର୍ଯ୍ୟକିରଣରେ କାକର, କୁହୁଡ଼ି ଆଦି ନଷ୍ଟ ହୋଇଯିବା ପରି ଭଗବତ୍‌ପରାୟଣ ବ୍ୟକ୍ତି ଶୁଦ୍ଧଭକ୍ତିଦ୍ୱାରା ସମସ୍ତ ପାପରାଶିକୁ ନଷ୍ଟ କରିପାରେ । ମହାରାଜ, ପାପୀ ବ୍ୟକ୍ତି ଭଗବାନଙ୍କଠାରେ ଆତ୍ମସମର୍ପଣ କରେ ଏବଂ ଭଗବତ୍‌ଭକ୍ତମାନଙ୍କୁ ସେବା କରି ଯେଉଁ ପବିତ୍ର ଶାନ୍ତି ଲାଭକରେ, ତପସ୍ୟାଦିଦ୍ୱାରା ତାହା ସମ୍ଭବ ହୁଏ ନାହିଁ ॥୧୫-୧୬॥ ଜଗତରେ ଭକ୍ତିମାର୍ଗ ହିଁ ଶ୍ରେଷ୍ଠ । ଏହି ମଙ୍ଗଳମୟ ମାର୍ଗରେ ଗଲେ କୌଣସି ଭୟ ନ ଥାଏ । କାରଣ ଏହି ମାର୍ଗରେ ଭଗବତ୍‌ପରାୟଣ ସାଧୁ ମହାତ୍ମାମାନେ ବିଚରଣ କରନ୍ତି ॥୧୭॥ ମହାରାଜ ! ଯେପରି ଗଙ୍ଗାଦି ନଦୀମାନେ ସୁରାଭାଣ୍ଡକୁ ପବିତ୍ର କରିପାରନ୍ତି ନାହିଁ, ସେହିପରି ଭକ୍ତିହୀନ ବ୍ୟକ୍ତି ଯେତେ ପ୍ରାୟଶ୍ଚିତ୍ତ କଲେ ମଧ୍ୟ ଶୁଦ୍ଧ ହୋଇପାରେ ନାହିଁ ॥୧୮॥ ଯେଉଁମାନେ ଭଗବାନ ଶ୍ରୀକୃଷ୍ଣଙ୍କ ପଦାରବିନ୍ଦରେ ତାଙ୍କ ଗୁଣାନୁରାଗୀ ନିଜର ଚିତ୍ତକୁ ଥରେ ମାତ୍ର ନିବିଷ୍ଟ କରିଥା'ନ୍ତି, ସେମାନଙ୍କ ସମସ୍ତ ପାପର ପ୍ରାୟଶ୍ଚିତ୍ତ ହୋଇଯାଏ । ଯମଙ୍କୁ କିମ୍ବା ପାଶହସ୍ତ ଯମଦୂତମାନଙ୍କୁ ସ୍ୱପ୍ନରେ ମଧ୍ୟ ସେମାନଙ୍କୁ ଦେଖିବାକୁ ପଡ଼େ ନାହିଁ ॥୧୯॥ ଏ ସମ୍ପର୍କରେ ପୁରାବିତ୍‌ମାନେ ଏଇ ପ୍ରାଚୀନ ଇତିହାସର ଉଦାହରଣ ଦିଅନ୍ତି । ବିଷ୍ଣୁଦୂତ ଓ ଯମଦୂତଙ୍କ ମଧ୍ୟରେ ଘଟିଥିବା ଏହି ଘଟଣାଟି ବର୍ତ୍ତମାନ ମୁଁ ବର୍ଣ୍ଣନା କରିବାକୁ ଯାଉଛି, ଶୁଣ ॥୨୦॥

କାନ୍ୟକୁବ୍‌ଜରେ ଅଜାମିଳ ନାମରେ ଜଣେ ବ୍ରାହ୍ମଣ ଥିଲେ । ଏକ ଦାସୀ ତାଙ୍କର ରକ୍ଷିତା ଥିଲା ଏବଂ ତା'ର ସଂସର୍ଗଦୋଷରୁ ତାଙ୍କର ସମସ୍ତ ସଦାଚାର ନଷ୍ଟ ହୋଇଯାଇଥିଲା ॥୨୧॥ ଏହି ପତିତ ବ୍ରାହ୍ମଣ କେବେ କେବେ କପଟପାଶା (ପଣରଖି ଦ୍ୟୁତକ୍ରୀଡ଼ା କରିବା) କେବେ କେବେ ଚୋରି, ଲୁଟପାଟ, ଠକାମି ଆଦି କୁତ୍ସିତବୃତ୍ତିଦ୍ୱାରା ଅନ୍ୟମାନଙ୍କୁ କଷ୍ଟ ଦେଇ ନିଜର କୁଟୁମ୍ବ ପାଳନ କରୁଥିଲା ॥୨୨॥ ମହାରାଜ ! ଏହିପରି ନିନ୍ଦନୀୟ ଭାବରେ ସେଠାରେ ଅବସ୍ଥାନ କରି ସେ ଦାସୀଗର୍ଭଜାତ ପୁତ୍ରମାନଙ୍କୁ ଲାଳନ ପାଳନ କରୁଥିଲା ଏବଂ ତା'ର ଜୀବନର ଦୀର୍ଘ ଅଠାଶୀ ବର୍ଷ ଅତିବାହିତ ହୋଇଗଲା ॥୨୩॥ ଯେତେବେଳେ ସେ ବୁଢ଼ା ହେଲା, ସେତେବେଳେ ତା'ର ଦଶଟି ପୁତ୍ର ଥିଲେ । ସେମାନଙ୍କ ମଧ୍ୟରେ ସବୁଠାରୁ ସାନ ପୁଅର ନାମ ଥିଲା ନାରାୟଣ । ସେ ପିତାମାତାଙ୍କର ଅତିଶୟ ପ୍ରିୟ ଥିଲା ॥୨୪॥ ବୃଦ୍ଧ ଅଜାମିଳ ଏହି ଶିଶୁପୁତ୍ରର ଦରୋଟି କଥା ଏବଂ ବାଳସୁଲଭ କ୍ରୀଡ଼ା ଦେଖି ଅତିଶୟ ଖୁସି ହୋଇଯାଉଥିଲା ॥୨୫॥ ମୂଢ଼ ଅଜାମିଳ ଯେତେବେଳେ ଯାହା ଖାଉଥିଲା, ପିଉଥିଲା, ଏହି ଶିଶୁପୁତ୍ରକୁ ତାହା ଖୁଆଉଥିଲା ଓ ପିଆଉଥିଲା । ତାକୁ ଜଣା ନ ଥିଲା ଯେ, ମୃତ୍ୟୁ ତା'ର ମୁଣ୍ଡ ଉପରେ ଆସି ଉପସ୍ଥିତ ହେଲାଣି ॥୨୬॥ ମୂଢ଼ ଅଜାମିଳ ଏହିପରି ଜୀବନଯାପନ କରୁଥିବାବେଳେ ତା'ର ମୃତ୍ୟୁ ସମୟ ଉପସ୍ଥିତ ହୋଇଗଲା । ସେତେବେଳେ ସେ ତା'ର ଶିଶୁପୁତ୍ର ନାରାୟଣ ବିଷୟରେ ହିଁ ଚିନ୍ତା କରୁଥିଲା ॥୨୭॥ ଅଜାମିଳ ଦେଖିଲା, ତାକୁ ନେବାପାଇଁ ଅତ୍ୟନ୍ତ ଭୟଙ୍କର ତିନିଜଣ ଯମଦୂତ ଆସିଛନ୍ତି । ସେମାନେ ପାଶହସ୍ତ, ବକ୍ରମୁଖ ଏବଂ ତାଙ୍କ ଦେହରେ ରୋମ ସବୁ ଠିଆ ହୋଇ ରହିଛି ॥୨୮॥ ଏହି ସମୟରେ ଶିଶୁପୁତ୍ର ନାରାୟଣ ଅଳ୍ପଦୂରରେ ଖେଳୁଥିଲା । ଯମଦୂତମାନଙ୍କୁ ଦେଖି ଅତିଶୟ ଭୟରେ ଅଜାମିଳ ଉଚ୍ଚସ୍ୱରରେ ନିଜ ପୁତ୍ରକୁ 'ନାରାୟଣ, ନାରାୟଣ' ବୋଲି ଡାକିବାକୁ ଲାଗିଲା ॥୨୯॥ ମରିବା ସମୟରେ ଲୋକର ମୁହଁରୁ ନାରାୟଣ, ନାରାୟଣ ଶୁଣି ଭଗବାନଙ୍କର ପାର୍ଷଦମାନେ ଭାବିଲେ ଯେ, ସେ ହରିନାମ କୀର୍ତ୍ତନ କରୁଛି । ସେମାନେ ସଙ୍ଗେ ସଙ୍ଗେ ସେଠାରେ ଆସି ପହଞ୍ଚିଗଲେ ॥୩୦॥ ଯମଦୂତମାନେ ରକ୍ଷିତାର ସ୍ୱାମୀ ଅଜାମିଳର ଶରୀରରୁ ତାର ସୂକ୍ଷ୍ମ ଶରୀରକୁ ଟାଣି ବାହାର କରିବାବେଳେ ବିଷ୍ଣୁଦୂତମାନେ ସେମାନଙ୍କୁ ସେଥିରୁ ବଳପୂର୍ବକ ନିବାରଣ କଲେ ॥୩୧॥

ଏହିପରି ବାଧା ପାଇ ଯମରାଜଙ୍କର ଦୂତମାନେ କହିଲେ, ଆରେ ! ଧର୍ମରାଜଙ୍କର ଶାସନକୁ ବାଧା ଦେବାପାଇଁ ତୁମେମାନେ କିଏ ? ॥୩୨॥ ତୁମେମାନେ କାହାର ଦୂତ, କେଉଁଠୁ ଆସିଚ ଏବଂ କେଉଁଥିପାଇଁ ଆମକୁ ବାଧା ଦେଉଚ ?

ତୁମେମାନେ କୌଣସି ଦେବତା, ଉପଦେବତା ନା ସିଦ୍ଧଶ୍ରେଷ୍ଠ ? ।।୩୩।। ତୁମେମାନେ ସମସ୍ତେ ପଦ୍ମପଲାଶନେତ୍ର; ପୀତବର୍ଣ୍ଣ ବସ୍ତ୍ର ପରିଧାନ କରିଚ । ସମସ୍ତଙ୍କ ମସ୍ତକରେ ମୁକୁଟ, କର୍ଣ୍ଣରେ କୁଣ୍ଡଳ ଏବଂ ଗଳାରେ ବନମାଳା ଶୋଭା ପାଉଚି ।।୩୪।। ସମସ୍ତେ ନବୀନବୟସ୍କ, ସୁନ୍ଦର ଚତୁର୍ଭୁଜଯୁକ୍ତ, ସମସ୍ତଙ୍କ ହାତରେ ଧନୁଶର, ତୂଣୀର, ତରବାରି, ଗଦା, ପଦ୍ମ, ଶଙ୍ଖ, ଚକ୍ର ଆଦି ଶୋଭାପାଉଛି ।।୩୫।। ତୁମମାନଙ୍କ ତେଜରେ ଚତୁର୍ଦ୍ଦିଗ ଆଲୋକିତ ହୋଇଉଠୁଚି । ଆମେମାନେ ଧର୍ମରାଜ ଯମଙ୍କର ଦୂତ । ତୁମେମାନେ କାହିଁକି ଆମକୁ ବାରଣ କରୁଚ ? ।।୩୬।।

ଶୁକଦେବ କହିଲେ, ଯମଦୂତମାନେ ଏପରି କହିବାରୁ ବାସୁଦେବଙ୍କର ଆଜ୍ଞାକାରୀମାନେ ହସି ହସି ମେଘଗମ୍ଭୀର ସ୍ୱରରେ ପ୍ରତ୍ୟୁତ୍ତର ଦେଲେ ।।୩୭।। ବିଷ୍ଣୁଦୂତମାନେ କହିଲେ, ଯଦି ତୁମେମାନେ ଧର୍ମରାଜଙ୍କର ଆଜ୍ଞାକାରୀ ହୋଇଥାଅ, ତା'ହେଲେ ଧର୍ମର ଲକ୍ଷଣ କଣ, ଧର୍ମର ତତ୍ତ୍ୱ କ'ଣ ତାହା ଆମକୁ ବୁଝାଅ ।।୩୮।। କିପରିଭାବରେ ଦଣ୍ଡ ଦିଆଯାଇଥାଏ ଏବଂ ଦଣ୍ଡର ଯୋଗ୍ୟ କିଏ ? ଲୋକଙ୍କ ମଧ୍ୟରେ ପାପାଚରଣ କରୁଥିବା ସମସ୍ତେ ଦଣ୍ଡନୀୟ ନା ସେମାନଙ୍କ ମଧ୍ୟରୁ କେତେକ ଦଣ୍ଡନୀୟ ? ।।୩୯।। ଯମଦୂତମାନେ କହିଲେ, ବେଦରେ ଯେଉଁ କର୍ମର ବିଧାନ କରାଯାଇଚି, ତାହା ହେଉଚି ଧର୍ମ, ଯାହା ନିଷେଧ କରାଯାଇଚି, ତାହା ଅଧର୍ମ । ବେଦ ସ୍ୱୟଂ ନାରାୟଣ ଓ ସ୍ୱୟମ୍ଭୂ ବୋଲି ଆମେମାନେ ଶୁଣିଚୁ ।।୪୦।। ସଂସାରର ସମସ୍ତ ସତ୍ତ୍ୱ-ରଜ-ତମୋମୟ ଜୀବ ଏବଂ ବସ୍ତୁ ନିଜର ପରମ ଆଶ୍ରୟ ଭଗବାନଙ୍କଠାରେ ହିଁ ଅବସ୍ଥିତ । ଗୁଣ, ନାମ କ୍ରିୟା ଓ ରୂପ ଭେଦରେ ଏମାନଙ୍କୁ ବିଭାଜନ କରାଯାଇଚି ।।୪୧।। ଜୀବ ଶରୀର ଓ ମନୋବୃତ୍ତିଦ୍ୱାରା ଯେଉଁ ସବୁ କର୍ମ କରେ, ତାର ସାକ୍ଷୀ ହେଲେ — ସୂର୍ଯ୍ୟ, ଅଗ୍ନି, ଆକାଶ, ବାୟୁ, ଇନ୍ଦ୍ରିୟଗଣ, ଚନ୍ଦ୍ରମା, ରାତି, ଦିନ ଏବଂ ତାର ସନ୍ଧିକ୍ଷଣ ସକାଳ ଓ ସନ୍ଧ୍ୟା, ଦିଗ୍ ବିଦ୍ଦିଗ୍, ଜଳ, ପୃଥିବୀ, କାଳ ଓ ଧର୍ମ ।।୪୨।। ଏମାନଙ୍କଦ୍ୱାରା ଅଧର୍ମ ଧରାପଡ଼ିଯାଏ ଏବଂ ଦଣ୍ଡର ପାତ୍ର ନିର୍ଣ୍ଣୀତ ହୁଏ । ପାପ କରୁଥିବା ସମସ୍ତ ବ୍ୟକ୍ତି ନିଜ ନିଜ କର୍ମଅନୁସାରେ ଦଣ୍ଡନୀୟ ହୁଅନ୍ତି ।।୪୩।। ଆପଣମାନେ ନିଷ୍ପାପ । ଦେଖନ୍ତୁ, ଯେଉଁ ପ୍ରାଣୀମାନେ କର୍ମ କରନ୍ତି, ଗୁଣ ସହିତ ସେମାନଙ୍କର ସମ୍ବନ୍ଧ ରହିଥାଏ । ତେଣୁ ପ୍ରତ୍ୟେକଙ୍କର କିଛି ନା କିଛି ପାପ ଓ କିଛି ନା କିଛି ପୁଣ୍ୟ (ଅର୍ଜନ) ହୋଇଥାଏ । ପ୍ରତ୍ୟେକ ଦେହଧାରୀ ବ୍ୟକ୍ତି କର୍ମ ବିନା ରହିପାରେ ନା ।।୪୪।। ଇହଲୋକରେ ମନୁଷ୍ୟ ଯେଉଁ ପରିମାଣରେ ଧର୍ମ ବା ଅଧର୍ମ କରେ, ପରଲୋକରେ ସେ ସେହି ପରିମାଣରେ ଫଳ ଭୋଗ କରେ ।।୪୫।। ହେ ଦେବପ୍ରବର, ଇହଜନ୍ମରେ ଗୁଣଭେଦରେ ତିନି ପ୍ରକାର ଲୋକ ଦେଖାଯା'ନ୍ତି - ଶାନ୍ତ, ଉଗ୍ର ଓ ମୂଢ଼ ; ଧାର୍ମିକ, ଅଧାର୍ମିକ ଓ ଧର୍ମାଧର୍ମଯୁକ୍ତ ; ସୁଖୀ, ଦୁଃଖୀ ଓ ସୁଖଦୁଃଖଯୁକ୍ତ । ସେହିପରି ପରଲୋକରେ ସେମାନଙ୍କର ତିନି ପ୍ରକାର ଭେଦ ଦେଖାଯାଏ ।।୪୬।। ବର୍ତ୍ତମାନ କାଳ (ଯେଉଁ ଋତୁ ଭୋଗ ହେଉଚି) ଯେପରି ଅତୀତର ଅନୁଭୂତି ଓ ଭବିଷ୍ୟତର ସୂଚନା ଦିଏ, ଏ ଜନ୍ମ ସେହପରି ପୂର୍ବଜନ୍ମର ଏବଂ ଆଗାମୀ ଜନ୍ମର ଧର୍ମ ଓ ଅଧର୍ମର ସୂଚନା ଦେଇଥାଏ ।।୪୭।। ଭଗବାନ ଧର୍ମରାଜ ଅଜନ୍ମା । ସେ ସର୍ବଜ୍ଞ ଓ ସମସ୍ତଙ୍କ ଅନ୍ତଃକରଣରେ ବିଦ୍ୟମାନ । ତେଣୁ ସେ ସମସ୍ତ ପ୍ରାଣୀଙ୍କର ପୂର୍ବଜନ୍ମର ପାପପୁଣ୍ୟ ନିଜ ମନମଧ୍ୟରେ ଜାଣି ପାରିଥା'ନ୍ତି ଓ ଭାଗ୍ୟ ଫଳାଫଳ ନିର୍ଦ୍ଧାରଣ କରିପାରନ୍ତି ।।୪୮।। ନିଦ୍ରିତ ବ୍ୟକ୍ତି ଯେପରି ଅଜ୍ଞତାବଶରୁ ନିଜ ସ୍ୱପ୍ନରେ କଳ୍ପିତ ଶରୀରକୁ ପ୍ରକୃତ ଶରୀର ବୋଲି ମନେକରେ ଏବଂ ନିଜର ପ୍ରକୃତ ଶରୀରକୁ ଭୁଲିଯାଏ, ସେହିପରି ଜୀବ ବର୍ତ୍ତମାନ ଛଡ଼ା, ତାର ସମସ୍ତ ପୂର୍ବଜନ୍ମର ସ୍ମୃତିକୁ ଭୁଲିଯାଇଥାଏ ।।୪୯।। ଜୀବ ନିଜର ପଞ୍ଚ କର୍ମେନ୍ଦ୍ରିୟଙ୍କଦ୍ୱାରା ଦେବା ନେବା ବୁଲିବା ଆଦି ବିଭିନ୍ନ କର୍ମ କରେ; ପଞ୍ଚ ଜ୍ଞାନେନ୍ଦ୍ରିୟଙ୍କଦ୍ୱାରା ଶବ୍ଦ ସ୍ପର୍ଶ, ରୂପ, ଗନ୍ଧ ଆଦି ପାଞ୍ଚ ପ୍ରକାର ବିଷୟ ଅନୁଭବ କରେ । (ଜ୍ଞାନେନ୍ଦ୍ରିୟ, କର୍ମେନ୍ଦ୍ରିୟ ଓ ପଞ୍ଚ ଶବ୍ଦାଦି ବିଷୟ ମିଶି ହେଲେ ପନ୍ଦର) ସେମାନଙ୍କ ସହିତ ମନ ମିଶିଲେ ଷୋହଳ ହୁଏ । ଷୋଡ଼ଶ ଉପାଧି ଅନ୍ତର୍ଗତ ହେଲେ ମଧ୍ୟ ଜୀବ ସ୍ୱୟଂ ଏକକ ଏବଂ ଏମାନଙ୍କ ସହିତ ମିଶି ସତର ହୋଇ ଜ୍ଞାନେନ୍ଦ୍ରିୟ, କର୍ମେନ୍ଦ୍ରିୟ ଓ ମନର ସମସ୍ତ ବିଷୟ

ଭୋଗ କରେ ॥୫୦॥ ଏହିପରି ଷୋଳକଳାଯୁକ୍ତ ( ପଞ୍ଚ କର୍ମେନ୍ଦ୍ରିୟ, ପଞ୍ଚ ଜ୍ଞାନେନ୍ଦ୍ରିୟ, ପଞ୍ଚ ତନ୍ମାତ୍ର ଏବଂ ମନ) ଜୀବର ଏହି ଶରୀର ତିନି ଗୁଣ ଅନୁଯାୟୀ ହର୍ଷ, ଶୋକ, ଭୟ ଓ ପୀଡ଼ା ଆଦି ସଂସାରର ଫଳ ଭୋଗ କରିଥାଏ ॥୫୧॥ ଯେଉଁ ବ୍ୟକ୍ତି କାମାଦି ଷଡ଼ରିପୁକୁ ଜୟ କରିପାରେ ନାହିଁ, ନିଜର ଅନିଚ୍ଛାସତ୍ତ୍ୱେ ଶରୀରଦ୍ୱାରା ନାନା କାର୍ଯ୍ୟରେ ଲିପ୍ତ ହୁଏ; ଯେପରି ଟସର ପୋକ ତାର କୋଷ ନିର୍ମାଣ କରି ତା' ମଧ୍ୟରେ ହିଁ ରହିଥାଏ, ଆଉ ବାହାରକୁ ବାହାରି ପାରେ ନାହିଁ; ସେହିପରି ସେହି ବ୍ୟକ୍ତି ନିଜର କର୍ମଜଞ୍ଜାଳମୟ ସଂସାରକୋଷ ମଧ୍ୟରୁ ମୁକ୍ତ ହୋଇପାରେ ନାହିଁ ॥୫୨॥ କୌଣସି ଦେହଧାରୀ ଜୀବ କାମ ନ କରି ମୁହୂର୍ତ୍ତେ ମାତ୍ର ରହିପାରିବ ନାହିଁ । ତା'ର ସ୍ୱାଭାବିକ ଗୁଣ ବଳପୂର୍ବକ ବିବଶ କରି ତାକୁ କାମରେ ଲଗାଇବ ॥୫୩॥ ଜୀବ ନିଜ ସଂସ୍କାର ଅନୁସାରେ ସ୍ୱାଭାବିକ ପ୍ରବଳ ବାସନାଯୋଗୁ କେବେ କେବେ ମାତୃତୁଲ୍ୟ ଓ କେବେ କେବେ ପିତୃତୁଲ୍ୟ ସ୍ତ୍ରୀ ବା ପୁରୁଷର ରୂପ ଗ୍ରହଣ କରେ ॥୫୪॥ ପ୍ରକୃତିର ସଂସର୍ଗଦୋଷରୁ ଜୀବକୁ ଏହିପରି ସାଂସାରିକ ଅବସ୍ଥା ଭୋଗ କରିବାକୁ ପଡ଼େ, କିନ୍ତୁ ଭଗବାନଙ୍କପ୍ରତି ଅନୁରକ୍ତ ହେଲେ, ଅତି ଅଳ୍ପ କାଳ ମଧ୍ୟରେ ଏହି ଅବସ୍ଥାର ଅବସାନ ଘଟେ ॥୫୫॥

ଏହି ଅଜାମିଳ ଶାସ୍ତ୍ରଜ୍ଞ, ସଦାଚାରୀ ଓ ସମସ୍ତ ସଦ୍‌ଗୁଣର ଆଧାର ଥିଲା । ସେ ସଂଯମାଦି ବ୍ରତ ଧାରଣ କରି ବିନୟୀ, ଜିତେନ୍ଦ୍ରିୟ, ସତ୍ୟବାଦୀ ଓ ମନ୍ତ୍ରବେତ୍ତା ଥିଲା ଏବଂ ପବିତ୍ର ଭାବରେ ଜୀବନ କଟାଉଥିଲା ॥୫୬॥ ସେ ଗୁରୁ, ଅଗ୍ନି, ଅତିଥି ଓ ବୃଦ୍ଧ ବ୍ୟକ୍ତିଙ୍କର ସେବା କରୁଥିଲା । ତାର କୌଣସି ଅହଙ୍କାର ନ ଥିଲା । ସମସ୍ତ ପ୍ରାଣୀଙ୍କୁ ବନ୍ଧୁଭାବରେ ଦେଖୁଥିଲା । ସାଧୁ ଓ ମିତଭାଷୀ ଥିଲା । କାହାରି ପ୍ରତି ତାର ଅସୂୟା ନଥିଲା ॥୫୭॥ ଏହି ଦ୍ୱିଜ ଦିନେ ପିତାଙ୍କର ଆଜ୍ଞା ପାଳନ କରି ବନକୁ ଯାଇ ସେଠାରୁ ଫଳ, ପୁଷ୍ପ, ସମିଧ ଓ କୁଶ ଆଦି ଆହରଣପୂର୍ବକ ଘରକୁ ଫେରିଆସୁଥିଲା; ଏହି ସମୟରେ ସେ ବାଟରେ ଦେଖିଲା ଯେ, ଜଣେ କାମାସକ୍ତ ଶୂଦ୍ର ଓ ମଦମତ୍ତା କୁଳଟା ସ୍ତ୍ରୀ ବିହାରରତ । ସମ୍ଭୋଗ ନିଶାରେ ବେଶ୍ୟାର ଆଖି ନାଚିବାରେ ଲାଗିଛି ଓ ତାର ନୀବିବନ୍ଧ ଖୋଲି ଯାଇଛି । ତା'ଆଗରେ ଅତି ନିର୍ଲଜ୍ଜ ଓ ନିର୍ବିକାର ଭାବରେ ସେହି ଶୂଦ୍ର କୁଳଟାକୁ ରମଣ କରିବାରେ ଲାଗିଛି । କେତେବେଳେ ତା'ସହିତ ହସୁଛି ବା ଗୀତ ଗାଉଛି ॥୫୮-୬୦॥ ସେହି କାମୁକ ଶୂଦ୍ର ନିଜ ଦେହରେ କାମୋଦ୍ଦୀପକ ବିଭିନ୍ନ ଅଙ୍ଗରାଗ ଲେପନ କରି ବାହୁବେଷ୍ଟନଦ୍ୱାରା ତାକୁ ନାନା ପ୍ରକାରେ ଆଲିଙ୍ଗନ କରୁଥିଲା । ତାହା ଦେଖି ଅଜାମିଳ ମୋହିତ ହୋଇଗଲା ଓ ତା' ହୃଦୟରେ ଥିବା ସୁପ୍ତ କାମବାସନା ସହସା ଜାଗି ଉଠିଲା ॥୬୧॥ ସେ ଧୈର୍ଯ୍ୟ ଓ ବିବେକବୁଦ୍ଧିରେ ନିଜକୁ ଯେତେ ସଂଯତ କରିବାକୁ ଚେଷ୍ଟା କଲେ ମଧ୍ୟ ତାର କାମକମ୍ପିତ ମନକୁ ନିୟନ୍ତ୍ରିତ କରିପାରିଲା ନାହିଁ ॥୬୨॥ ତା'ର ବିବେକ ଜ୍ଞାନ ହଜିଗଲା । ସେହି ଘଟଣାଟିକୁ କେନ୍ଦ୍ର କରି କାମରୂପକ ଗ୍ରହ ତାକୁ ଗ୍ରାସ କରିଗଲା ଏବଂ ମନେମନେ ସେହି କୁଳଟାକୁ ଚିନ୍ତା କରିବାଦ୍ୱାରା ତା'ର ସ୍ୱଧର୍ମରୁ ସ୍ଖଳନ ଘଟିଲା ॥୬୩॥ ସେହି କୁଳଟା ସ୍ତ୍ରୀ ଯେପରି ସନ୍ତୁଷ୍ଟ ହେବ, ସେଥିପାଇଁ ସେ ବହୁବିଧ ଅଳଙ୍କାର ଆଦି ଗ୍ରାମ୍ୟ ଉପଭୋଗ୍ୟ ବସ୍ତୁ ଓ ନିଜର ପିତୃ- ଅର୍ଜିତ ସମ୍ପତ୍ତି ତାକୁ ଦାନ କରି ଖୁସି କରିବାକୁ ଲାଗିଲା ॥୬୪॥ ପାପାତ୍ମା ଅଜାମିଳ ସେହି ଦୁଶ୍ଚରିତ୍ରାର କଟାକ୍ଷରେ ଏପରି ମୋହିତ ହୋଇଗଲା ଯେ, ନିଜର କୁଳୀନ ନବଯୁବତୀ ପତ୍ନୀକୁ ପରିତ୍ୟାଗ କଲା ॥୬୫॥ ଏହି ମନ୍ଦବୁଦ୍ଧି ଅଜାମିଳ ନ୍ୟାୟରେ ହେଉ ବା ଅନ୍ୟାୟରେ ହେଉ, ଚାରିଆଡୁ ଧନସଂଗ୍ରହ କରି ସେହି କୁଳଟା ଓ ତା'ର କୁଟୁମ୍ବକୁ ପାଳନ କରିବାକୁ ଲାଗିଲା ॥୬୬॥ ଏହି ଦୁରାଚାରୀର ଜୀବନ ଅତିଶୟ ପାପମୟ । ଶାସ୍ତ୍ରର ଆଜ୍ଞାକୁ ଲଂଘନ କରି ଏହି ପାପୀ ସ୍ୱେଚ୍ଛାଚାରୀ ହୋଇଗଲା । ସତ୍‌ପୁରୁଷଙ୍କଦ୍ୱାରା ନିନ୍ଦିତ ମଳତୁଲ୍ୟ କୁଳଟାର ଅପବିତ୍ର ଅନ୍ନକୁ ଭକ୍ଷଣ କରି ସେ ଜୀବନ କଟାଇଛି ଏବଂ ନିଜର ଏହି ପାପର କୌଣସି ପ୍ରାୟଶ୍ଚିତ୍ତ କରି ନାହିଁ । ତେଣୁ ଏହି ପାପିଷ୍ଠକୁ ଦଣ୍ଡପାଣି ଯମରାଜାଙ୍କ ପାଖକୁ ଆମେ ନେଇ ଯାଉଛୁ । ସେଠାରେ ଦଣ୍ଡଭୋଗଦ୍ୱାରା ଶୁଦ୍ଧ ହୋଇ ସେ ନିଷ୍କୃତି ଲାଭ କରିବ ॥୬୭-୬୮॥

## ଦ୍ୱିତୀୟ ଅଧ୍ୟାୟ

# ଅଜାମିଳର ମୁକ୍ତି

ଶ୍ରୀ ଶୁକଦେବ କହିଲେ, ରାଜା, ଭଗବାନଙ୍କ ଦୂତମାନେ ମଧ୍ୟ ଧର୍ମଜ୍ଞ ଓ ନୀତିନିପୁଣ ଥିଲେ । ସେମାନେ ଯମଦୂତମାନଙ୍କର ଅଭିଭାଷଣ ଶୁଣି ସେମାନଙ୍କୁ ଏହିପରି ଉତ୍ତର ଦେଲେ --॥୧॥ ବିଷ୍ଣୁଦୂତମାନେ କହିଲେ, ଧର୍ମଦର୍ଶୀମାନଙ୍କର ସଭାକୁ ଅଧର୍ମ ସ୍ପର୍ଶ କରୁଥିବା ଦେଖି ଆମକୁ କଷ୍ଟ ଲାଗୁଛି । କାରଣ ଏଠାରେ ଯେଉଁମାନେ ଦଣ୍ଡର ଯୋଗ୍ୟ ନୁହନ୍ତି ଏବଂ ନିଷ୍ପାପ, ସେମାନଙ୍କୁ ବୃଥାରେ ଦଣ୍ଡ ଦିଆଯାଉଛି ॥୨॥ ଯେଉଁମାନେ ପ୍ରଜାମାନଙ୍କର ରକ୍ଷକ, ଶାସକ, ସାଧୁ ଓ ସମଦର୍ଶୀ, ସେମାନେ ଯଦି ପ୍ରଜାମାନଙ୍କପ୍ରତି ପକ୍ଷପାତ ବ୍ୟବହାର ଦେଖାନ୍ତି, ତା'ହେଲେ ପ୍ରଜାମାନେ କାହାର ଆଶ୍ରୟ ନେବେ ? ॥୩॥ ସତ୍‌ପୁରୁଷ ଯେଉଁ ଆଚରଣ କରନ୍ତି, ଅନ୍ୟମାନେ ସେହି ଆଚରଣ କରନ୍ତି । ସେ ନିଜର ଆଚରଣଦ୍ୱାରା ଯାହାକୁ ଠିକ୍ ବୋଲି ପ୍ରମାଣ କରନ୍ତି, ଲୋକମାନେ ତାହାକୁ ଅନୁସରଣ କରନ୍ତି ॥୪॥ ପଶୁଙ୍କ ପରି ସାଧାରଣ ଲୋକ ଧର୍ମ ବା ଅଧର୍ମ କିଛି ବିଚାର ନ କରି ଏହି ସତ୍‌ପୁରୁଷମାନଙ୍କ କୋଳରେ ମୁଣ୍ଡ ରଖି ନିଶ୍ଚିନ୍ତରେ ଶୋଇଯାଆନ୍ତି ॥୫॥ ଦୟାଳୁ ସାଧୁବ୍ୟକ୍ତିମାନେ ସମସ୍ତଙ୍କ ବିଶ୍ୱାସର ପାତ୍ର ହୋଇଥାଆନ୍ତି । ନିଜର ହିତକାରୀ ବନ୍ଧୁଭାବରେ ବିଚାର କରି ତାଙ୍କଠାରେ ନିଜକୁ ସମର୍ପଣ କରିଥିବା ବ୍ୟକ୍ତିମାନଙ୍କ ପ୍ରତି ସେ କିପରି ବିଶ୍ୱାସଘାତକତା କରିପାରିବେ ? ॥୬॥ ଏହି ବ୍ୟକ୍ତି (ଅଜାମିଳ) କୋଟିଜନ୍ମର ପାପରାଶିର ପ୍ରାୟଶ୍ଚିତ୍ତ କରିସାରିଛି, କାରଣ ବିବଶ ହୋଇ ମଧ୍ୟ ସେ ଶ୍ରୀ ଭଗବାନଙ୍କର ପରମ କଲ୍ୟାଣମୟ ନାମକୁ ଉଚ୍ଚାରଣ କରିଛି ॥୭॥ କେବଳ 'ନାରାୟଣ' ନାମ ଉଚ୍ଚାରଣ କରିବା ମାତ୍ରେ ଏହି ପାପୀର ସମସ୍ତ ପାପର ପ୍ରାୟଶ୍ଚିତ୍ତ ହୋଇଯାଇଛି ॥୮॥

ଚୋର, ମଦ୍ୟପ, ମିତ୍ରଦ୍ରୋହୀ, ବ୍ରହ୍ମଘାତୀ ଓ ଗୁରୁପତ୍ନୀଗାମୀ, ପୁଣି ଏହିପରି ଲୋକଙ୍କର କୁସଙ୍ଗରେ ଆସିଥିବା ବ୍ୟକ୍ତି, ସ୍ତ୍ରୀ-ରାଜା-ପିତୃହନ୍ତା ଓ ଗୋହତ୍ୟାକାରୀ ଏବଂ ଏହାଛଡ଼ା ଆଉ ଯେତେବଡ଼ ପାପୀ ହେଉନା କାହିଁକି--ସମସ୍ତଙ୍କପାଇଁ ସବୁଠାରୁ ବଡ଼ ପ୍ରାୟଶ୍ଚିତ୍ତ ହେଉଛି ଭଗବାନଙ୍କ ନାମର ଉଚ୍ଚାରଣ, କାରଣ ଏହି ନାମ ଉଚ୍ଚାରଣ କରିବାଦ୍ୱାରା ଭଗବାନଙ୍କର ପ୍ରତି ତା' ମନରେ ଆତ୍ମୀୟତା ଜାତ ହୁଏ ॥୯-୧୦॥ ବ୍ରହ୍ମବାଦୀ ଋଷିମାନେ ପାପର ପ୍ରାୟଶ୍ଚିତ୍ତପାଇଁ ଚାନ୍ଦ୍ରାୟଣ ଆଦି କଠୋର ବ୍ରତମାନଙ୍କର ବିଧାନ କରିଥା'ନ୍ତି । କିନ୍ତୁ ପୁଣ୍ୟଶ୍ଳୋକ ଭଗବାନ ଶ୍ରୀହରିଙ୍କର ନାମ ଉଚ୍ଚାରଣଦ୍ୱାରା ପାପରୁ ଯେଉଁ ନିଷ୍କୃତି ମିଳେ ଓ ଭଗବାନଙ୍କ ପବିତ୍ର ଗୁଣାବଳୀ ଉପଲବ୍ଧ ହୁଏ, ସେହିସବୁ ସାଧନାଦ୍ୱାରା ତାହା ହୁଏ ନାହିଁ ॥୧୧॥ ପ୍ରାୟଶ୍ଚିତ୍ତ କରି ମଧ୍ୟ ମନ ଯଦି ପାପ କରିବାପାଇଁ ପୁଣି କୁମାର୍ଗରେ ଧାବିତ ହୁଏ, ତା'ହେଲେ ପ୍ରାୟଶ୍ଚିତ୍ତର ମୂଲ୍ୟ କ'ଣ ? ତେଣୁ ପାପକର୍ମରୁ ସମ୍ପୂର୍ଣ୍ଣ ନିଷ୍କୃତି ପାଇବାକୁ ହେଲେ ଶ୍ରୀହରିଙ୍କ ଗୁଣକୀର୍ତ୍ତନ ଏକମାତ୍ର ପନ୍ଥା, ଯଦ୍ୱାରା କି ଚିତ୍ତ ଶୁଦ୍ଧ ହୁଏ ॥୧୨॥ ତେଣୁ ଯମଦୂତଗଣ, ତୁମେମାନେ ଏହି ଅଜାମିଳକୁ ନେଇଯାଅ ନାହିଁ, କାରଣ ମରିବା ସମୟରେ ସେ ଶ୍ରୀହରିଙ୍କର ନାମ ସ୍ପଷ୍ଟ ରୂପେ ଉଚ୍ଚାରଣ କରିଛି ॥୧୩॥ ବିଦ୍ୱାନ୍‌ମାନେ କହିଛନ୍ତି ଯେ, ସଙ୍କେତରେ, ପରିହାସରେ, ଗୀତର ପାଳି ଧରିବାରେ, ଅବଜ୍ଞାରେ ବା ଯେ କୌଣସି ଭାବରେ ହେଉନା କାହିଁକି, ଯଦି ଭଗବାନଙ୍କର ପବିତ୍ର ନାମ ନିଆଯାଇଥାଏ, ତା'ହେଲେ ତାହା ଅଶେଷ ପାପ ହରଣ କରେ ॥୧୪॥ ପଡ଼ିଯିବାବେଳେ, ଗୋଡ଼ ଖସିଯିବାବେଳେ, ହାଡ଼ଗୋଡ଼ ଭାଙ୍ଗିଯିବା ସମୟରେ, ସାପ କାମୁଡ଼ିବାବେଳେ, ନିଆଁଲାଗି ପୋଡ଼ିଯିବା ବା ଯେ କୌଣସି ଆଘାତ ଲାଗିବା ସମୟରେ ଯଦି ବିଚଳିତ ହୋଇ ଲୋକ ହରିନାମ ନେଇଥାଏ, ତା'ହେଲେ ସେ ଯମଯନ୍ତ୍ରଣା ଭୋଗ କରେ ନାହିଁ ॥୧୫॥ ମହର୍ଷିମାନେ ପାପର ଗୁରୁତ୍ୱକୁ ବିଚାର କରି ବଡ଼ ପାପପାଇଁ ବଡ଼ ଓ ଛୋଟ ପାପପାଇଁ ଛୋଟ ପ୍ରାୟଶ୍ଚିତ୍ତର ବ୍ୟବସ୍ଥା କରିଥା'ନ୍ତି ॥୧୬॥ ତପସ୍ୟା, ଦାନ, ଜପ ଆଦି ପ୍ରାୟଶ୍ଚିତ୍ତଦ୍ୱାରା ସେ ସବୁ ପାପ ଦୂର ହୁଏ ସତ, ମାତ୍ର

ଅଧର୍ମହେତୁ ମଳିନ ହୋଇଥିବା ହୃଦୟ ସେଥିରେ ଶୁଦ୍ଧ ହୁଏ ନାହିଁ । କେବଳ ଶ୍ରୀହରିଙ୍କର ପାଦପଦ୍ମ ସେବାରେ ହିଁ ତାହା ସମ୍ଭବ ହୋଇଥାଏ ॥୧୭॥ ଅଜାଣତରେ ହେଉ ବା ଜାଣତରେ ହେଉ, ଯେ ପୁଣ୍ୟଶ୍ଳୋକ ଶ୍ରୀହରିଙ୍କର ନାମ କୀର୍ତ୍ତନ କରେ, ଅଗ୍ନିରେ ଇନ୍ଧନ ଭସ୍ମ ହେବା ପରି ତା'ର ସମସ୍ତ ପାପ ଭସ୍ମ ହୋଇଯାଏ ॥୧୮॥ ଯେପରି ରୋଗପାଇଁ ଉପଯୁକ୍ତ ଖୁବ୍ ଶକ୍ତିଶାଳୀ ଔଷଧର ଗୁଣ ନ ଜାଣି ମଧ୍ୟ ତାକୁ ସେବନ କଲେ ରୋଗ ଦୂରହୁଏ, ସେହିପରି ମାହାତ୍ମ୍ୟ ନ ଜାଣି ମଧ୍ୟ କେହି ନାମାତ୍ମକ ମନ୍ତ୍ର ଉଚ୍ଚାରଣ କଲେ ତାକୁ ଆବଶ୍ୟକ ଫଳ ମିଳିଥାଏ ॥୧୯॥

ଶ୍ରୀ ଶୁକଦେବ କହିଲେ, ରାଜା, ଏହିପରି ଭଗବତ୍‌ଧର୍ମର ଯଥାର୍ଥ ପ୍ରମାଣ ଦେଇ ଅଜାମିଳକୁ ବିଷ୍ଣୁଦୂତମାନେ ଯମରାଜାଙ୍କ ମୃତ୍ୟୁରୂପକ କାଳପାଶରୁ ମୁକ୍ତ କରିଦେଲେ ॥୨୦॥ ଶତ୍ରୁଦମନ ରାଜା, ବିଷ୍ଣୁଦୂତଙ୍କର ଏହିପରି ଉତ୍ତର ଶୁଣି ଯମଦୂତମାନେ ଯମରାଜାଙ୍କ ନିକଟକୁ ଯାଇ ଯାହା ଯାହା ଘଟିଗଲା, ସେ ସମସ୍ତ ବୃତ୍ତାନ୍ତ ତାଙ୍କୁ ଶୁଣାଇଦେଲେ ॥୨୧॥ ଏହିପରି ମୃତ୍ୟୁପାଶରୁ ମୁକ୍ତ ହୋଇ ଦ୍ୱିଜ ଅଜାମିଳ ସୁସ୍ଥ ହୋଇଗଲା ଓ ତାର ଭୟ ଚାଲିଗଲା । ବିଷ୍ଣୁଦୂତମାନଙ୍କୁ ଦର୍ଶନ କରି ଆନନ୍ଦରେ ସେମାନଙ୍କୁ ସେ ମୁଣ୍ଡ ନୁଆଁଇ ପ୍ରଣାମ କଲା ॥୨୨॥ ନିଷ୍ପାପ ମହାରାଜ, ଅଜାମିଳ କିଛି କହିବାକୁ ଇଚ୍ଛା କରୁଛି ବୋଲି ଜାଣିପାରି ବିଷ୍ଣୁଦୂତମାନେ ସହସା ଅନ୍ତର୍ହିତ ହୋଇଗଲେ ॥୨୩॥ ଏହି ଅବସରରେ ଅଜାମିଳ ବିଷ୍ଣୁଦୂତମାନଙ୍କଠାରୁ ବିଶୁଦ୍ଧ ଭାଗବତ ଧର୍ମ ଓ ଯମଦୂତମାନଙ୍କ ମୁହଁରୁ ସଗୁଣ ବୈଦିକ ଧର୍ମ ଶୁଣିବାକୁ ପାଇଥିଲା ॥୨୪॥ ସର୍ବପାପହାରୀ ଭଗବାନ ଶ୍ରୀହରିଙ୍କର ମାହାତ୍ମ୍ୟ ଶୁଣି ଅଜାମିଳର ହୃଦୟରେ ଭଗବତ୍‌ଭକ୍ତି ଜାତ ହେଲା ଏବଂ ସେ ଯେଉଁ ଯେଉଁ ପାପ କରିଛି, ତାହା ସବୁ ମନେପଡ଼ିବାରୁ ସେ ପଶ୍ଚାତ୍ତାପ କରିବାକୁ ଲାଗିଲା ॥୨୫॥ ସେ ମନେମନେ ଭାବିବାକୁ ଲାଗିଲା, ମୁଁ ଇନ୍ଦ୍ରିୟମାନଙ୍କର ବଶବର୍ତ୍ତୀ ହୋଇ କି ଭୟଙ୍କର କଷ୍ଟ ଭୋଗ ନ କରିଛି ! ମୁଁ ବ୍ରାହ୍ମଣ ଥିଲି, ତଳକୁ ଖସିପଡ଼ି କୁଳଟାର ଗର୍ଭରେ ସନ୍ତାନ ଉତ୍ପାଦନ କଲି ॥୨୬॥ ଏହି ନିନ୍ଦନୀୟ ଦୁଷ୍କର୍ମ କରିଥିବାହେତୁ ମୋ ପରି କୁଳକଳଙ୍କ ଧିକ୍‌କାରଯୋଗ୍ୟ । ମୁଁ ସତୀ ସ୍ତ୍ରୀକୁ ଛାଡ଼ି ଏକ ଅଗମ୍ୟା, ଅସତୀ, ମଦ୍ୟପୀ ସ୍ତ୍ରୀର ସଂସର୍ଗରେ ମାତିଗଲି ॥୨୭॥ ମୋର ତପସ୍ୱୀ ବୃଦ୍ଧ ପିତାମାତା ଅନାଥ ହୋଇଗଲେ, କାରଣ ତାଙ୍କର ଅନ୍ୟ କୌଣସି ପୁତ୍ରସନ୍ତାନ ନ ଥିଲେ । ମୁଁ ତାଙ୍କୁ ପରିତ୍ୟାଗ କରି କେଡ଼େ ନୀଚ ଓ କୃତଘ୍ନ କାର୍ଯ୍ୟ ନ କରିଛି ? ॥୨୮॥ ଧର୍ମଦ୍ରୋହୀ କାମାସକ୍ତ ବ୍ୟକ୍ତିମାନେ ଯେଉଁ ନିଦାରୁଣ ନରକରେ ପଡ଼ି ଯମଯନ୍ତ୍ରଣା ଭୋଗ କରନ୍ତି, ମୁଁ ସେଥିରେ ପଡ଼ିବା ନିଶ୍ଚିତ ହୋଇଯାଇଥିଲା ॥୨୯॥ ମୁଁ ବର୍ତ୍ତମାନ ଯେଉଁ ଅଦ୍ଭୁତ ଦୃଶ୍ୟ ଦେଖିଲି, ତାହା କ'ଣ ସ୍ୱପ୍ନ ନା ଜାଗ୍ରତ ଅବସ୍ଥାର ପ୍ରତ୍ୟକ୍ଷ ଅନୁଭୂତି ? ଯେଉଁମାନେ ହାତରେ ପାଶ ଧରି ମୋତେ ଟାଣି ନେଉଥିଲେ, ସେମାନେ ସବୁ କୁଆଡ଼େ ଗଲେ ? ॥୩୦॥ ଏମାନେ ମୋତେ ପାଶରେ ବାନ୍ଧି ପୃଥିବୀତଳ (ମୃତ୍ୟୁଲୋକ)କୁ ନେଇଯାଉଥିଲେ । ଯେଉଁ ଚାରି ଜଣ ଅତି ସୁନ୍ଦର ସିଦ୍ଧ ପୁରୁଷ ମୋତେ ସେଥିରୁ ମୁକ୍ତ କରିଦେଲେ, ସେମାନେ କୁଆଡ଼େ ଗଲେ ? ॥୩୧॥ ମୁଁ ଏ ଜନ୍ମରେ ମହାପାପୀ ସତ୍ୟ, କିନ୍ତୁ କିଛି ପୂର୍ବକୃତ ପୁଣ୍ୟରୁ ଏହି ଦେବଶ୍ରେଷ୍ଠମାନଙ୍କ ଦର୍ଶନ ଲାଭ କଲି, ଯଦ୍ଦ୍ୱାରା କି ମୋର ଆତ୍ମା ଆନନ୍ଦରେ ପ୍ରସନ୍ନ ହୋଇ ଉଠୁଛି ॥୩୨॥ ପୂର୍ବପୁଣ୍ୟ ନ ଥିଲେ ମୋ ପରି ଅପବିତ୍ର କୁଳଟାଗାମୀ ବ୍ୟକ୍ତି ଭଗବାନଙ୍କର ମନୋହର ନାମ ଉଚ୍ଚାରଣ କରିପାରି ନ ଥାନ୍ତା ॥୩୩॥ କେଉଁଠି ମୋ ପରି କପଟୀ, ପାପୀ, ନିର୍ଲଜ୍ଜ ଓ ନିଜ ବ୍ରାହ୍ମଣତ୍ୱ ନଷ୍ଟ କରିଥିବା ହୀନବ୍ୟକ୍ତି ଏବଂ କେଉଁଠି ଭଗବାନଙ୍କର ଏହି ପରମ ମଙ୍ଗଳମୟ 'ନାରାୟଣ' ନାମ ! ॥୩୪॥ ବର୍ତ୍ତମାନ ମୁଁ ମୋର ମନ ପ୍ରାଣକୁ ବଶ କରି ଉଦ୍ୟମ କରିବି, ଯେପରିକି ଆଉ ଥରେ ଘୋର ଅନ୍ଧକାରମୟ ନରକରେ ପଡ଼ିବି ନାହିଁ ॥୩୫॥ ଅଜ୍ଞାନତାବଶତଃ ମୁଁ ଶରୀରବନ୍ଧନରେ ପଡ଼ିଗଲି ଏବଂ ବହୁପ୍ରକାର କାମବାସନା ପୂର୍ଣ୍ଣ କରିବାକୁ ଲାଗିପଡ଼ିଲି । ବର୍ତ୍ତମାନ ସେହି ବନ୍ଧନରୁ ମୁକ୍ତ ହୋଇ ସମସ୍ତ ପ୍ରାଣୀଙ୍କର ହିତକାରୀ ବନ୍ଧୁଭାବରେ ଶାନ୍ତି, ମୈତ୍ରୀ ଓ କରୁଣାଦ୍ୱାରା ନିଜକୁ ପରିଚାଳିତ କରିବି ॥୩୬॥ ଭଗବାନଙ୍କର ମାୟା ସ୍ତ୍ରୀ ରୂପ ଧାରଣ କରି ମୋତେ ଗ୍ରାସ କରିଗଲା ଏବଂ କ୍ରୀଡ଼ାମୃଗପରି ମୋତେ ବହୁତ ନଚାଇଲା । ମୁଁ ଅଧମ ତାହା ବୁଝିପାରିଲି ନାହିଁ । ବର୍ତ୍ତମାନ ନିଜକୁ ସେହି

ମାୟାରୁ ମୁକ୍ତ କରିବି ।।୩୬।। 'ମୁଁ ଏବଂ ମୋର' - ଏହି ଦେହାଭିମାନକୁ ତ୍ୟାଗ କରି ମୁଁ ଭଗବାନଙ୍କ ନାମକୀର୍ତ୍ତନଦ୍ୱାରା ମନକୁ ଶୁଦ୍ଧ କରିବି ଏବଂ ତାଙ୍କୁ ହିଁ ସର୍ବଦା ଧ୍ୟାନ କରିବି ।।୩୮।।

ଶ୍ରୀ ଶୁକଦେବ କହିଲେ, ଏହିପରି ଅଳ୍ପକ୍ଷଣପାଇଁ ସାଧୁସଙ୍ଗ ଦ୍ୱାରା ଅଜାମିଳର ସମ୍ପୂର୍ଣ୍ଣ ବୈରାଗ୍ୟ ଜାତ ହେଲା । ସେ ସମସ୍ତ ମୋହ ବନ୍ଧନ ତ୍ୟାଗ କରି ହରିଦ୍ୱାର (ଗଙ୍ଗାଦ୍ୱାର)କୁ ଚାଲିଗଲା ।।୩୯।। ସେହି ଦେବସ୍ଥାନକୁ ଯାଇ ସେ ଯୋଗାସନରେ ବସିଗଲା ଏବଂ ଯୋଗମାର୍ଗକୁ ଆଶ୍ରୟ କରି ସମସ୍ତ ଇନ୍ଦ୍ରିୟକୁ ବିଷୟବାସନାରୁ ହଟାଇ ମନରେ ଲୀନ କଲା ଏବଂ ମନକୁ ଆତ୍ମାରେ ନିୟୋଜିତ କଲା ।।୪୦।। ତା'ପରେ ଦେହ ଓ ଇନ୍ଦ୍ରିୟ ପ୍ରବୃତ୍ତିରୁ ଆତ୍ମାକୁ ସମ୍ପୂର୍ଣ୍ଣ ନିର୍ଲିପ୍ତ ରଖି ଚିତ୍ତର ଏକାଗ୍ରତାଦ୍ୱାରା ଜ୍ଞାନମୟ ପରମବ୍ରହ୍ମ ସ୍ୱରୂପ ଭଗବାନଙ୍କଠାରେ ନିଜର ଆତ୍ମାକୁ ନିବେଶ କଲା ।।୪୧।। ଭଗବାନଙ୍କଠାରେ ନିଜର ଚିତ୍ତକୁ ସମ୍ପୂର୍ଣ୍ଣରୂପେ ନିବିଷ୍ଟ କରି ଅଜାମିଳ ଚାରି ଜଣ ପୁରୁଷ ତା ଆଗରେ ଠିଆ ହୋଇଥିବାର ଦେଖିପାରିଲା ଏବଂ ପୂର୍ବରୁ ଦେଖିଥିବା ଯୋଗୁ ସେମାନଙ୍କୁ ସଙ୍ଗେ ସଙ୍ଗେ ଚିହ୍ନିପାରି ମୁଣ୍ଡ ନୁଆଁଇ ପ୍ରଣାମ କଲା ।।୪୨।। ସେମାନଙ୍କ ଦର୍ଶନମାତ୍ରେ ଗଙ୍ଗାକୂଳରେ ତନୁତ୍ୟାଗ କରି ସେ ଭଗବାନଙ୍କ ପାର୍ଷଦ ରୂପ ଧାରଣ କଲା ।।୪୩।। ଭଗବାନଙ୍କ ପାର୍ଷଦମାନଙ୍କ ସହିତ ସ୍ୱର୍ଣ୍ଣମୟ ବିମାନ ଆରୋହଣ କରି ଯେଉଁଠାରେ ଭଗବାନ ଶ୍ରୀହରି ଅବସ୍ଥାନ କରୁଥିଲେ, ସେ ସେହି ବୈକୁଣ୍ଠକୁ ଚାଲିଗଲା ।।୪୪।। ଏହିପରି ଯେଉଁ ଅଜାମିଳ ଦୁଶ୍ଚରିତ୍ରା ଦାସୀର ପତି ହୋଇ ସମସ୍ତ ଧର୍ମକର୍ମ ତ୍ୟାଗପୂର୍ବକ ଏକ ପତିତ ବ୍ୟକ୍ତି ରୂପେ ଗଣ୍ୟ ହେଉଥିଲା, ସେ ନିନ୍ଦିତକର୍ମା ଓ ବ୍ରତଚ୍ୟୁତ ହୋଇ ମଧ୍ୟ ଭଗବାନଙ୍କର ଗୋଟିଏ ନାମକୁ ଉଚ୍ଚାରଣ କରିବା ସଙ୍ଗେ ସଙ୍ଗେ ମୁକ୍ତ ହୋଇଗଲା ।।୪୫।। ଯେଉଁମାନେ କର୍ମବନ୍ଧନକୁ ଛେଦନ କରି ମୁକ୍ତ ହେବାପାଇଁ ଇଚ୍ଛା କରନ୍ତି, ସେମାନଙ୍କପାଇଁ ଭଗବାନଙ୍କ ନାମଠାରୁ ବଳି ଅନ୍ୟ କୌଣସି ସାଧନ ନାହିଁ । କାରଣ ତାଙ୍କ ଚରଣସ୍ପର୍ଶରେ ଯେକୌଣସି ସ୍ଥାନ ତୀର୍ଥ ହୋଇଯାଏ । ତାଙ୍କ ନାମର ଆଶ୍ରୟ ନେଲେ ମନ ପୁଣି କର୍ମରେ ଆସକ୍ତ ହୁଏ ନାହିଁ, କିନ୍ତୁ ଅନ୍ୟ ଯାହା କିଛି କଲେ, ରଜ ଓ ତମୋଯୁକ୍ତ ଚିତ୍ତର ମଳିନତା ଦୂର ହୁଏ ନାହିଁ ।।୪୬।। ରାଜା ପରିକ୍ଷିତ ! ଏହି ପାପନାଶକ ପରମ ଗୋପନୀୟ ଇତିହାସକୁ ଯେଉଁ ବ୍ୟକ୍ତି ଶ୍ରଦ୍ଧା ଓ ଭକ୍ତିର ସହିତ ଶ୍ରବଣ କରେ ଓ କୀର୍ତ୍ତନ କରେ, ସେ କେବେ ନରକଗାମୀ ହୁଏ ନାହିଁ ଏବଂ ଯମଦୂତମାନେ କେବେହେଁ ତା' ପାଖକୁ ଆସନ୍ତି ନାହିଁ । ସେ ଅତିଶୟ ପାପୀ ହୋଇଥିଲେ ମଧ୍ୟ ବିଷ୍ଣୁଲୋକରେ ପୂଜନୀୟ ହୁଏ ।।୪୭-୪୮।। ଅଜାମିଳ ପରି ପାପୀ ମୃତ୍ୟୁସମୟରେ ପୁତ୍ରକୁ ଡାକିବା ଛଳରେ ହରିନାମ ଉଚ୍ଚାରଣ କରି ବୈକୁଣ୍ଠକୁ ଚାଲିଗଲା । ଅନ୍ୟ କେହି ଶ୍ରଦ୍ଧାରେ ଉଚ୍ଚାରଣ କଲେ ତାର କଥା ଅବା କ'ଣ କହିବା ! (ତାର ବୈକୁଣ୍ଠ ପ୍ରାପ୍ତି ସୁନିଶ୍ଚିତ) ।।୪୯।।

## ତୃତୀୟ ଅଧ୍ୟାୟ

# ଭକ୍ତପାଇଁ ଯମଦଣ୍ଡ ନାହିଁ

ରାଜା ପରିକ୍ଷିତ ପଚାରିଲେ, ବ୍ରହ୍ମନ୍, ମର୍ତ୍ତ୍ୟଲୋକବାସୀ ସମସ୍ତେ ଯମରାଜଙ୍କ ଅଧୀନ । ଯେତେବେଳେ ନିଜ ଦୂତମାନଙ୍କ ମୁହଁରୁ ସେ ଶୁଣିଲେ ଯେ, ତାଙ୍କର ଆଜ୍ଞା ପାଳିତ ହେଲା ନାହିଁ, ଯେହେତୁ ବିଷ୍ଣୁଦୂତମାନେ ତାହା କରାଇଦେଲେ ନାହିଁ, ସେତେବେଳେ ସେ ନିଜର ଦୂତମାନଙ୍କୁ କ'ଣ କହିଲେ ? ।।୧।। ଋଷିଶ୍ରେଷ୍ଠ, ଯମରାଜଙ୍କର ଆଜ୍ଞାଭଙ୍ଗ ହେବା କେବେ ମୁଁ ପୂର୍ବରୁ ଶୁଣି ନାହିଁ । ଏ ସମ୍ପର୍କରେ ଲୋକଙ୍କର ସନ୍ଦେହ ହେବା ସ୍ୱାଭାବିକ । ମୁଁ ନିଶ୍ଚିତ ଯେ, ଆପଣଙ୍କ ଛଡ଼ା ଏହି ସନ୍ଦେହ କେହି ଦୂର କରିପାରିବେ ନାହିଁ ।।୨।। ଶ୍ରୀ ଶୁକଦେବ କହିଲେ, ରାଜା, ଭଗବାନଙ୍କର ପାର୍ଷଦମାନେ ଯମଦୂତମାନଙ୍କର ଉଦ୍ୟମକୁ

ବିଫଳ କରିବାରୁ ସେମାନେ ସଂଯମନୀ ପୁରକୁ ଯାଇ ନିଜର ପ୍ରଭୁ ଯମଙ୍କ ପାଖରେ ସମସ୍ତ ବିଷୟ ନିବେଦନ କଲେ ॥୩॥ ଯମଦୂତମାନେ କହିଲେ, ପ୍ରଭୁ, ମର୍ତ୍ତ୍ୟଲୋକରେ ଜୀବମାନେ ତିନି ପ୍ରକାର କର୍ମ କରନ୍ତି -- ପାପ, ପୁଣ୍ୟ ଓ ଉଭୟର ମିଶ୍ରିତ । ଜୀବମାନଙ୍କୁ ନିଜ କର୍ମଫଳ ଭୋଗ କରିବାକୁ ଦେବାପାଇଁ କେତେଜଣ ଶାସକ ଅଛନ୍ତି ? ॥୪॥ ଯଦି ସଂସାରରେ ଦଣ୍ଡ ଦେବାପାଇଁ ବହୁ ଶାସକ ରହନ୍ତି, ତା'ହେଲେ ସୁଖ ଓ ଦୁଃଖ କାହାକୁ ମିଳିବ ଆଉ କାହାକୁ ନ ମିଳିବ, ତାହାର ଠିକ୍ ବ୍ୟବସ୍ଥା ହୋଇପାରିବ ନାହିଁ ॥୫॥ କର୍ମ କରୁଥିବା ଲୋକଙ୍କର ସଂଖ୍ୟା ଅଧିକ । ଯଦି ଏମାନଙ୍କର ଅଧିକସଂଖ୍ୟକ ଶାସକ ରହନ୍ତି, ତା'ହେଲେ ସେମାନଙ୍କର କର୍ତ୍ତୃତ୍ୱ ନାମମାତ୍ର ହିଁ ରହିବ, ଯେପରିକି ଗୋଟିଏ ରାଜ୍ୟରେ ବହୁ ମଣ୍ଡଳେଶ୍ୱର ରହିଥା'ନ୍ତି ॥୬॥ ପ୍ରଭୁ, ଆପଣ ହିଁ ସମସ୍ତ ପ୍ରାଣୀଙ୍କର ଏବଂ ତାଙ୍କ ମୁଖ୍ୟମାନଙ୍କର ଅଧୀଶ୍ୱର ଓ ଏକମାତ୍ର ଶାସନକର୍ତ୍ତା । ଲୋକମାନଙ୍କର ଶୁଭାଶୁଭ ବିଚାର କରି ଆପଣ ସମୁଚିତ ଦଣ୍ଡବିଧାନ କରନ୍ତି ॥୭॥ କିନ୍ତୁ ଏବେ ଆପଣଙ୍କର ବିହିତ ଦଣ୍ଡ ସଂସାରରେ କାର୍ଯ୍ୟକାରୀ ହେଉ ନାହିଁ । ଚାରିଜଣ ଅଦ୍ଭୁତ ସିଦ୍ଧ ପୁରୁଷ ଆପଣଙ୍କର ଆଜ୍ଞାକୁ ଅବଜ୍ଞା କରିଛନ୍ତି ॥୮॥ ଆପଣଙ୍କର ଆଦେଶ ଅନୁସାରେ ଆମେ ଯେଉଁ ପାପୀକୁ ବାନ୍ଧି ଯାତନାଗୃହକୁ ନେଇ ଆସୁଥିଲୁ, ସେମାନେ ବଳପୂର୍ବକ ଆମ ବନ୍ଧନପାଶକୁ ଛେଦନ କରି ତାକୁ ମୁକ୍ତ କରିଦେଲେ ॥୯॥ ସେହି ପାପୀର ମୁହଁରୁ 'ନାରାୟଣ' - ଏହି ଶବ୍ଦ ବାହାରିବା ମାତ୍ରେ 'ଡର ନାହିଁ, ଡର ନାହିଁ' କହି ତୁରନ୍ତ ସେଠାରେ ଏହି ସିଦ୍ଧ ପୁରୁଷମାନେ ପହଞ୍ଚିଗଲେ । ସେମାନେ କିଏ, ତାହା ଜାଣିବାକୁ ଆମର ଇଚ୍ଛା ହେଉଛି । ଯଦି ଉଚିତ ମନେ କରନ୍ତି, କହନ୍ତୁ ॥୧୦॥

ଶ୍ରୀ ଶୁକଦେବ କହିଲେ, ଦୂତମାନଙ୍କର ଏହି ପ୍ରଶ୍ନ ଶୁଣି ପ୍ରଜାମାନଙ୍କର ଶାସକ ଯମରାଜ ପ୍ରସନ୍ନ ଚିତ୍ତରେ ଶ୍ରୀହରିଙ୍କ ପାଦପଦ୍ମକୁ ସ୍ମରଣ କରି ଉତ୍ତର ଦେଲେ ॥୧୧॥ ଯମରାଜ କହିଲେ, ଦୂତଗଣ, ମୋ ବ୍ୟତୀତ ଅନ୍ୟଜଣେ ଅଛନ୍ତି, ଯେ ହେଉଛନ୍ତି ସମସ୍ତ ଚରାଚର ଜଗତର ସ୍ୱାମୀ । ସୂତାରେ ବସ୍ତ୍ର ବୁଣା ହେବାପରି ସମ୍ପୂର୍ଣ୍ଣ ଜଗତ୍ ତାଙ୍କଠାରେ ଓତପ୍ରୋତ ଭାବରେ ଜଡ଼ିତ । ତାଙ୍କର ଅଂଶ ହେଉଛନ୍ତି ବ୍ରହ୍ମା, ବିଷ୍ଣୁ ଓ ମହେଶ୍ୱର, ଯେ କି ଜଗତର ସୃଷ୍ଟି, ସ୍ଥିତି ଓ ପ୍ରଳୟପାଇଁ ଦାୟୀ । ନାକରେ ବନ୍ଧା ହୋଇଥିବା ବଳଦ ପରି ସମସ୍ତ ବିଶ୍ୱ ତାଙ୍କ ବଶରେ ରହିଛି ॥୧୨॥ ଯେପରି ଲୋକେ ଗୋରୁମାନଙ୍କୁ ଛୋଟ ଛୋଟ ଦଉଡ଼ିରେ ବାନ୍ଧି ସେ ସବୁକୁ ଏକ ବଡ଼ ଦଉଡ଼ିରେ ବାନ୍ଧି ଦିଅନ୍ତି, ସେହିପରି ବ୍ରାହ୍ମଣାଦି ବର୍ଣ୍ଣ ଓ ବ୍ରହ୍ମଚର୍ଯ୍ୟ ଆଦି ଆଶ୍ରମ ରୂପକ ଛୋଟଛୋଟ ଦଉଡ଼ିରେ ଲୋକମାନଙ୍କୁ ବାନ୍ଧି ବେଦବାଣୀ ରୂପକ ବଡ଼ ଦଉଡ଼ିରେ ସେ ସମସ୍ତଙ୍କୁ ଆବଦ୍ଧ କରି ରଖନ୍ତି । ଏହିପରି ନାମ ଓ କର୍ମରୂପ ବନ୍ଧନରେ ବନ୍ଧା ହୋଇ ଲୋକମାନେ ଯାହା ସବୁ କରନ୍ତି, ତାହା ତାଙ୍କ ପ୍ରଭୁତ୍ୱର ହିଁ ପରିଚୟ ଦିଏ ॥୧୩॥ ମୁଁ, ଇନ୍ଦ୍ର, ନିର୍ଋତି, ବରୁଣ, ଚନ୍ଦ୍ର, ଅଗ୍ନି, ଶିବ, ବାୟୁ, ବ୍ରହ୍ମା, ଦ୍ୱାଦଶ ସୂର୍ଯ୍ୟ, ଅଷ୍ଟବସୁ, ସାଧ୍ୟଗଣ, ବିଶ୍ୱେଦେବଗଣ, ସିଦ୍ଧଗଣ, ଏକାଦଶ ରୁଦ୍ର, ବିଶ୍ୱର ସୃଷ୍ଟିକର୍ତ୍ତା ରଜୋଗୁଣ ଓ ତମୋଗୁଣରହିତ ଭୃଗୁ ଆଦି ପ୍ରଜାପତି ଏବଂ ଅନ୍ୟାନ୍ୟ ଦେବତା ସତ୍ତ୍ୱପ୍ରଧାନ ହେଲେ ମଧ୍ୟ ସମସ୍ତେ ଭଗବାନଙ୍କ ମାୟାର ଅଧୀନ ଏବଂ ଭଗବାନ କେବେ କ'ଣ କରିବାକୁ ଚାହାନ୍ତି, ତାହା ସେମାନେ ଜାଣି ପାରନ୍ତି ନାହିଁ, ବାକି ଅନ୍ୟମାନେ ବା କିପରି ଜାଣିବେ ? ॥୧୪-୧୫॥ ଚକ୍ଷୁ ସମସ୍ତ ରୂପର ସାକ୍ଷୀ ହେଲେ ମଧ୍ୟ ଯେପରି ରୂପ ସବୁ ତାହାର କାର୍ଯ୍ୟକୁ ଜାଣି ପାରନ୍ତି ନାହିଁ, ସେହିପରି ଜୀବମାନଙ୍କ ହୃଦୟମଧ୍ୟରେ ସାକ୍ଷୀ ରୂପରେ ବିଦ୍ୟମାନ ସେହି ଅନ୍ତର୍ଯାମୀ ପୁରୁଷଙ୍କୁ ଇନ୍ଦ୍ରିୟ, ମନ, ପ୍ରାଣ, ଚିତ୍ତ, କିମ୍ବା ବାକ୍ୟଦ୍ୱାରା କେହି ଉପଲବ୍ଧି କରିପାରନ୍ତି ନାହିଁ ॥୧୬॥ ସେହି ମହାମହିମ ଈଶ୍ୱର ହେଉଛନ୍ତି ସର୍ବଥା ସ୍ୱତନ୍ତ୍ର ଓ ସମସ୍ତଙ୍କର ସ୍ୱାମୀ । ସେ ମାୟାକୁ ବଶୀଭୂତ କରି ରଖିଛନ୍ତି । ତାଙ୍କପରି ମନୋହର ରୂପ, ଗୁଣ, ଓ ସ୍ୱଭାବ ସମ୍ପନ୍ନ ତାଙ୍କରି ଦୂତମାନେ ଏହି ସଂସାରରେ ସ୍ୱଚ୍ଛନ୍ଦରେ ବିଚରଣ କରନ୍ତି ॥୧୭॥ ବିଷ୍ଣୁଙ୍କର ସେହି ଦୂତମାନେ ଦେବତାମାନଙ୍କର ପୂଜ୍ୟ । ଭକ୍ତିହୀନ ବ୍ୟକ୍ତିମାନେ ତାଙ୍କ ରୂପକୁ ଦେଖିପାରନ୍ତି ନାହିଁ । ମାତ୍ର ସେମାନେ ବିଷ୍ଣୁଭକ୍ତମାନଙ୍କୁ ମୋଠାରୁ, ତାଙ୍କ ଶତ୍ରୁମାନଙ୍କଠାରୁ ଓ ଅନ୍ୟାନ୍ୟ ବିପତ୍ତିରୁ ରକ୍ଷା କରିଥା'ନ୍ତି ॥୧୮॥ ଭଗବାନ ନିଜେ ଧର୍ମର

ମର୍ଯ୍ୟାଦାକୁ ନିର୍ଦ୍ଧାରଣ କରନ୍ତି, ଯାହା ଋଷି, ଦେବତା ଓ ସିଦ୍ଧପୁରୁଷ କେହି ଜାଣନ୍ତି ନାହିଁ । ଅସୁର ଓ ମନୁଷ୍ୟମାନେ ମଧ୍ୟ ସେ ବିଷୟରେ ଅଜ୍ଞ । ତେଣୁ ବିଦ୍ୟାଧର ଓ ଚାରଣ ଆଦି ତାହା କିପରି ବା ଜାଣିବେ ? ॥୧୯॥ ଯେଉଁ ଭଗବତ୍‌ଧର୍ମ ଅତିଶୟ ଦୁର୍ବୋଧ୍ୟ ଓ ଗୋପନୀୟ, ସେହି ବିଶୁଦ୍ଧ ଧର୍ମକୁ ଯେ ଜାଣେ, ସେ କେବଳ ଅମୃତର ଆସ୍ୱାଦନ କରିପାରେ । ଦୂତଗଣ, ତାହା କେବଳ ବାର ଜଣ ବ୍ୟକ୍ତି ଜାଣନ୍ତି - ବ୍ରହ୍ମା, ନାରଦ, ଶଙ୍କର, ସନତ୍‌କୁମାର, କପିଳ, ମନୁ, ପ୍ରହ୍ଲାଦ, ରାଜା ଜନକ, ଭୀଷ୍ମଦେବ, ବଳି, ଶୁକଦେବ ଏବଂ ମୁଁ ॥୨୦-୨୧॥ ଭଗବାନଙ୍କର ନାମକୀର୍ତ୍ତନାଦି ଦ୍ୱାରା ତାଙ୍କ ପ୍ରତି ଯେଉଁ ଭକ୍ତିଭାବ ଜାତ ହୁଏ, ସେହି ଭକ୍ତିଭାବକୁ ହିଁ ଇହଲୋକରେ ପରମଯୋଗ କୁହାଯାଏ ॥୨୨॥

ଦୂତଗଣ, ଭଗବାନଙ୍କର ନାମୋଚ୍ଚାରଣର ମାହାତ୍ମ୍ୟ ତୁମେମାନେ ଦେଖ ! ଅଜାମିଳ ପରି ପାପୀ ସେହି ନାମୋଚ୍ଚାରଣ କରି ମୃତ୍ୟୁପାଶରୁ ମୁକ୍ତ ହୋଇଗଲା ॥୨୩॥ ଭଗବାନଙ୍କର ଗୁଣାବଳୀ ଓ ନାମ କୀର୍ତ୍ତନ କରିବାଦ୍ୱାରା ଲୋକଙ୍କର ଯେ କେବଳ ପାପକ୍ଷୟ ହୁଏ ତାହା ନୁହେଁ, ତଦ୍ଦ୍ୱାରା ମଧ୍ୟ ସଦ୍ୟ ମୁକ୍ତିଲାଭ ହୁଏ, ଯେପରିକି ମରିବା ଅବସ୍ଥାରେ ନିଜ ପୁତ୍ରର ନାମକୁ ଡାକିବାକୁ ଯାଇ ମହାପାପୀ ଅଜାମିଳ 'ନାରାୟଣ' ନାମ ଉଚ୍ଚାରଣଦ୍ୱାରା ମୁକ୍ତିଲାଭ କଲା ॥୨୪॥ ଜୈମିନି ଆଦି ବଡ଼ବଡ଼ ଶାସ୍ତ୍ରକାରଙ୍କର ବୁଦ୍ଧି ଭଗବାନଙ୍କ ମାୟାଶକ୍ତିଦ୍ୱାରା ମୋହିତ ହୋଇଯାଏ । ତେଣୁ ସେମାନେ ମଧୁର ଲୋଭନୀୟ ଫଳ ଦେଉଥିବା ବେଦୋକ୍ତ ଯାଗଯଜ୍ଞାଦି କ୍ରିୟାକର୍ମରେ ମଜ୍ଜିଯାଆନ୍ତି । କିନ୍ତୁ ଅତିଶୟ ଫଳପ୍ରଦ ଭଗବାନଙ୍କ ନାମର ମହିମାକୁ ଜାଣିପାରନ୍ତି ନାହିଁ ॥୨୫॥ ବୁଦ୍ଧିମାନ୍ ବ୍ୟକ୍ତିମାନେ ଏସବୁ ବିଚାର କରି ସର୍ବାନ୍ତଃକରଣରେ ଭଗବାନ ଶ୍ରୀହରିଙ୍କପ୍ରତି ଭକ୍ତିଭାବ ପୋଷଣ କରନ୍ତି । ସେମାନେ ମୋ' ଦଣ୍ଡର ଯୋଗ୍ୟ ନୁହନ୍ତି । ଯଦି ବା କୌଣସି କାରଣରୁ ସେମାନେ କିଛି ପାପକର୍ମ କରିଥା'ନ୍ତି, ଭଗବାନଙ୍କ ନାମକୀର୍ତ୍ତନଦ୍ୱାରା ତାହା ସଙ୍ଗେ ସଙ୍ଗେ ନଷ୍ଟ ହୋଇଯାଏ ॥୨୬॥ ଯେଉଁସବୁ ସାଧୁପୁରୁଷ ସର୍ବତ୍ର ସମସ୍ତଙ୍କୁ ସମଦୃଷ୍ଟିରେ ଦେଖି ଭଗବାନଙ୍କର ଶରଣାପନ୍ନ ହୋଇଥା'ନ୍ତି, ଦେବତା ଓ ସିଦ୍ଧମାନେ ଯେଉଁମାନଙ୍କର ପବିତ୍ରଗାଥା ଗାୟନ କରନ୍ତି, ସେମାନଙ୍କ ନିକଟକୁ ତୁମେମାନେ ଯାଅ ନାହିଁ । କାରଣ ଶ୍ରୀହରିଙ୍କର ଗଦାଦ୍ୱାରା ସେମାନେ ସୁରକ୍ଷିତ । ମୁଁ ବା ଆମମାନଙ୍କର ନିୟନ୍ତା କାଳ ସେମାନଙ୍କୁ ଦଣ୍ଡଦେବାପାଇଁ ଅସମର୍ଥ ॥୨୭॥ ଯେଉଁମାନଙ୍କର ଏକମାତ୍ର ଭଗବାନଙ୍କର ଭୋଗବାସନାଶୂନ୍ୟ ସେବା ବିନା ଅନ୍ୟକିଛି କାମନା ନ ଥାଏ, ସେହି ପରମହଂସ ସାଧୁପୁରୁଷମାନେ ସର୍ବଦା ଭଗବାନଙ୍କ ଚରଣକମଳର ମଧୁ ଆସ୍ୱାଦନ କରୁଥା'ନ୍ତି । ମାତ୍ର ତାଙ୍କ ପାଦପଦ୍ମର ସେବାରୁ ବିରତ ହୋଇ ନରକର ପନ୍ଥାରୂପକ ଗୃହାଦି ପ୍ରତି ଯେଉଁମାନେ ସର୍ବଦା ଆସକ୍ତ, ସେହି ଅସାଧୁ ବ୍ୟକ୍ତିମାନଙ୍କୁ ହିଁ ତୁମେମାନେ ଆଣିବାକୁ ଯାଅ ॥୨୮॥ ଯାହାଙ୍କ ଜିହ୍ୱା କେବେହେଲେ ଭଗବାନଙ୍କ ଗୁଣ ବା ନାମ ଉଚ୍ଚାରଣ କରେ ନାହିଁ ଯାହାଙ୍କ ଚିତ୍ତ ଭଗବାନଙ୍କର ପାଦପଦ୍ମ ସ୍ମରଣ କରେ ନାହିଁ, ଯାହାଙ୍କ ମସ୍ତକ ତାଙ୍କୁ ପ୍ରଣାମ କରିବାକୁ କେବେ ନତ ହୁଏ ନାହିଁ, ଚିରଦିନ ଭଗବାନଙ୍କର ସେବାପରାଙ୍‌ମୁଖ ସେହିପରି ଅସାଧୁ ବ୍ୟକ୍ତିଙ୍କୁ ତୁମେମାନେ ନେଇଆସ ॥୨୯॥ ଆଜି ମୋର ଦୂତମାନେ ବିଷ୍ଣୁଦୂତମାନଙ୍କପ୍ରତି ଯେଉଁ ଅନ୍ୟାୟକାର୍ଯ୍ୟ କରିଛନ୍ତି, ତାହା ନିତ୍ୟପୁରୁଷ ନାରାୟଣ ନିଜ ଗୁଣରେ କ୍ଷମା କରନ୍ତୁ । ଆମେମାନେ ତାଙ୍କର ସ୍ୱଜନ ଏବଂ କୃତାଞ୍ଜଳିପୂର୍ବକ ସର୍ବଦା ତାଙ୍କର ଆଜ୍ଞାବହ । ଆମର ଅପରାଧକୁ ତାଙ୍କ ବିଶାଳ ଉଦାରତାରେ ସେ କ୍ଷମା କରନ୍ତୁ । ମୁଁ ସେହି ପରମପୁରୁଷଙ୍କୁ ନମସ୍କାର କରୁଛି ॥୩୦॥

ଶ୍ରୀ ଶୁକଦେବ କହିଲେ, ପରିକ୍ଷିତ, ବିଷ୍ଣୁଙ୍କର ନାମସଂକୀର୍ତ୍ତନ ଜଗତର ମଙ୍ଗଳପାଇଁ ଉଦ୍ଦିଷ୍ଟ । ଯେତେବଡ଼ ପାପ ହେଲେ ମଧ୍ୟ ତଦ୍ଦ୍ୱାରା ତାହା ସମୂଳେ ନଷ୍ଟ ହୋଇଯାଏ । ଭଗବାନଙ୍କର ସେହି ଉଦ୍ଦାମ ବଳବୀର୍ଯ୍ୟର କଥା ବାରମ୍ବାର ଶ୍ରବଣ ଓ କୀର୍ତ୍ତନ କରିବାଦ୍ୱାରା ତାଙ୍କପ୍ରତି ଯେଉଁ ଭକ୍ତି ଜାତ ହୁଏ ଓ ଭକ୍ତିଦ୍ୱାରା ଯେପରି ଚିତ୍ତଶୁଦ୍ଧି ଘଟେ, ପ୍ରାୟଶ୍ଚିତ୍ତାଦି ବ୍ରତପାଳନଦ୍ୱାରା ତାହା ସେପରି ହୁଏ ନାହିଁ ॥୩୧-୩୨॥ ଯେଉଁ ବ୍ୟକ୍ତିର ଚିତ୍ତ ଭ୍ରମରରୂପେ କୃଷ୍ଣଙ୍କ ପାଦପଦ୍ମର ମଧୁ ଆସ୍ୱାଦନ କରେ, ସେ ମାୟାଜନିତ ବିଷୟବାସନା ପ୍ରତି ଆଉ ଆସକ୍ତ ହୁଏ ନାହିଁ । କିନ୍ତୁ ଯେଉଁ ବ୍ୟକ୍ତି ଏହି ଦିବ୍ୟରସ ପ୍ରତି

ବିମୁଖ, ସେ ନିଜ ପାପକ୍ଷୟପାଇଁ ଯେତେ ପ୍ରାୟଶ୍ଚିତ୍ତ କଲେ ମଧ୍ୟ ତାହା କ୍ଷୟ ନ ପାଇ ଆହୁରି ବଢ଼ିବାରେ ଲାଗେ ।।୩୩।। ମହାରାଜ, ଯମଦୂତମାନେ ନିଜ ସ୍ୱାମୀଙ୍କଦ୍ୱାରା ବର୍ଣ୍ଣିତ ଭଗବାନଙ୍କର ମାହାତ୍ମ୍ୟ ଶୁଣି ଆଶ୍ଚର୍ଯ୍ୟ ହୋଇଗଲେ । ସେହିଦିନଠାରୁ ଭଗବାନଙ୍କ ଆଶ୍ରିତ ଭକ୍ତମାନଙ୍କ ପାଖକୁ ସେମାନେ ଗଲେ ନାହିଁ । ଏପରିକି ସେମାନଙ୍କ ପ୍ରତି ଦୃଷ୍ଟିପାତ କରିବାକୁ ମଧ୍ୟ ଭୟ କଲେ ।।୩୪।। ଦିନେ ମହର୍ଷି ଅଗସ୍ତ୍ୟ ମଳୟ ପର୍ବତରେ ବସି ଭଗବାନଙ୍କୁ ଅର୍ଚ୍ଚନ କରୁଥିବାବେଳେ ଅଜାମିଳର ଏହି ଗୋପନୀୟ ବୃତ୍ତାନ୍ତ ବର୍ଣ୍ଣନା କରିଥିଲେ ।।୩୫।।

## ଚତୁର୍ଥ ଅଧ୍ୟାୟ

## ସୃଷ୍ଟିର ବିସ୍ତାର

ରାଜା ପରିକ୍ଷିତ କହିଲେ, ମହର୍ଷି, ସ୍ୱାୟମ୍ଭୁବ ମନ୍ୱନ୍ତରରେ ଦେବତା, ଅସୁର, ନର, ନାଗ, ପଶୁ, ପକ୍ଷୀ ପ୍ରଭୃତିଙ୍କର କିପରି ସୃଷ୍ଟି ହେଲା, ତାହା ଆପଣ (ତୃତୀୟ ସ୍କନ୍ଧରେ) ସଂକ୍ଷେପରେ ବର୍ଣ୍ଣନା କରିଛନ୍ତି । ବର୍ତ୍ତମାନ ଏହାର ବିସ୍ତାର ନିମନ୍ତେ ଭଗବାନ ବ୍ରହ୍ମା ପ୍ରତ୍ୟେକ ସୃଷ୍ଟିପର୍ଯ୍ୟାୟରେ କେଉଁ ଶକ୍ତି ଓ କେଉଁ ପ୍ରଣାଳୀରେ ଏହି କାର୍ଯ୍ୟ ସମ୍ପନ୍ନ କରିଥାନ୍ତି, ତାହା ଆପଣଙ୍କ ନିକଟରୁ ମୋର ଜାଣିବାର ଇଚ୍ଛା ହେଉଛି ।।୧-୨।। ସୂତ କହିଲେ, ମୁନିଶ୍ରେଷ୍ଠ ମହାଯୋଗୀ ଶୁକଦେବ ରାଜର୍ଷି ପରିକ୍ଷିତଙ୍କର ପ୍ରଶ୍ନ ଶୁଣି ଆନନ୍ଦିତ ହେଲେ ଏବଂ ଏହିପରି ତା'ର ଉତ୍ତର ଦେଲେ ।।୩।। ଶ୍ରୀ ଶୁକଦେବ କହିଲେ, ପ୍ରଚେତା ନାମରେ ରାଜା ପ୍ରାଚୀନବର୍ହିଙ୍କର ଦଶପୁତ୍ର ଥିଲେ । ସେମାନେ ସମୁଦ୍ରରୁ ବାହାରି ଆସି ଦେଖିଲେ ଯେ ସମଗ୍ର ପୃଥିବୀ ବୃକ୍ଷଲତାଦିଦ୍ୱାରା ଆଚ୍ଛନ୍ନ ହୋଇଯାଇଛି । ତପୋବଳରେ ସେମାନଙ୍କର କ୍ରୋଧାନଳ ଏପରି ପ୍ରଚଣ୍ଡ ହୋଇଯାଇଥିଲା ଯେ, ସେମାନେ ତଦ୍ଦ୍ୱାରା ବୃକ୍ଷଲତାମାନଙ୍କୁ ପୋଡ଼ି ଦେବାପାଇଁ ମୁହଁରୁ ବାୟୁ ଓ ଅଗ୍ନି ସୃଷ୍ଟି କଲେ ।।୪-୫।।

ହେ କୁରୁବଂଶର ଯୋଗ୍ୟ ଦାୟାଦ, ପ୍ରଚେତାମାନଙ୍କର ମୁଖଜାତ ଅଗ୍ନି ଓ ବାୟୁଦ୍ୱାରା ବୃକ୍ଷମାନେ ଜଳିଯାଉଥିବାର ଦେଖି ସେମାନଙ୍କର ଅଧୀଶ୍ୱର ସୋମ ପ୍ରଚେତାମାନଙ୍କୁ ଶାନ୍ତ ହେବାପାଇଁ ଅନୁରୋଧ କଲେ ।।୬।। ସେ କହିଲେ, ହେ ମହାଭାଗ, ଏହି ଅସହାୟ ବୃକ୍ଷମାନଙ୍କର ଅନିଷ୍ଟ କରିବା ତୁମ୍ଭ ପକ୍ଷରେ ଉଚିତ ହେଉ ନାହିଁ । କାରଣ ତୁମ୍ଭେମାନେ ପ୍ରଜାପତି । ସମସ୍ତେ ଜାଣନ୍ତି ଯେ, ପ୍ରଜାମାନଙ୍କର ଅଭିବୃଦ୍ଧି ହିଁ ତୁମ୍ଭମାନଙ୍କ କାମ୍ୟ ।।୭।। ହେ ପ୍ରଚେତାଗଣ, ସମସ୍ତ ପ୍ରଜାପତିଙ୍କର ଅଧିପତି ନିତ୍ୟପୁରୁଷ ଭଗବାନ ଶ୍ରୀହରି ବୃକ୍ଷ, ଓଷଧି, ଗହମ ଆଦି ଶସ୍ୟ ଏବଂ ସେଥିରୁ ଜାତ ଅନ୍ନ ଆଦି ଖାଦ୍ୟ ସୃଷ୍ଟି କରିଛନ୍ତି ।।୮।। ଅଚର (ତୃଣ ଆଦି) ପ୍ରାଣୀମାନେ ଚରପ୍ରାଣୀଙ୍କର ଆହାର; ପାଦଚାରୀମାନଙ୍କର ପାଦହୀନ (ବୃକ୍ଷାଦି) ପ୍ରାଣୀମାନେ ଆହାର; ହସ୍ତଯୁକ୍ତ ପ୍ରାଣୀଙ୍କର ହସ୍ତହୀନ (ମତ୍ସ୍ୟାଦି) ପ୍ରାଣୀମାନେ ଆହାର ଏବଂ ଦ୍ୱିପଦମାନଙ୍କର (ମୃଗାଦି) ଚତୁଷ୍ପଦ ପ୍ରାଣୀମାନେ ଆହାର ।।୯।। ଆପଣମାନେ ନିଷ୍ପାପ । ଆପଣଙ୍କର ପିତା ଦେବଦେବ ପ୍ରାଚୀନବର୍ହି ଆପଣମାନଙ୍କୁ ପ୍ରଜାସୃଷ୍ଟିପାଇଁ ଆଦେଶ ଦେଇଥିଲେ । ଏପରି ସ୍ଥଳେ ବୃକ୍ଷମାନଙ୍କୁ ଦଗ୍ଧ କରିବାଦ୍ୱାରା ସେହି ଲକ୍ଷ୍ୟ କିପରି ସାଧିତ ହେବ ? ।।୧୦।। ଆପଣମାନଙ୍କର ପ୍ରଜ୍ୱଳିତ କ୍ରୋଧାନଳ ସମ୍ବରଣ କରନ୍ତୁ । ଆପଣଙ୍କ ପିତା, ପିତାମହ, ପ୍ରପିତାମହ ପ୍ରଭୃତି ଯେପରି ସାଧୁଜନୋଚିତ ପନ୍ଥା ଅବଲମ୍ବନ କରିଥିଲେ, ଆପଣମାନେ ତାହା ଅନୁସରଣ କରନ୍ତୁ ।।୧୧।। ଯେପରି ବାଳକର ବନ୍ଧୁ ହେଉଛନ୍ତି ତାର ପିତାମାତା, ନୟନର ବନ୍ଧୁ ତାର ଭ୍ରୂଲତାଦ୍ୱୟ, ନାରୀର ବନ୍ଧୁ ତାର ପତି, ଭିକ୍ଷୁକର ବନ୍ଧୁ ହେଉଛି ଗୃହସ୍ଥ ଏବଂ ଅଜ୍ଞମାନଙ୍କର ବନ୍ଧୁ ଜ୍ଞାନୀ, ସେହିପରି ପ୍ରଜାପତିମାନେ ହେଉଛନ୍ତି ପ୍ରଜାଙ୍କର ବନ୍ଧୁ ।।୧୨।। ଅନ୍ତର୍ଯାମୀ ରୂପେ ଭଗବାନ ଶ୍ରୀହରି ସମସ୍ତ ପ୍ରାଣୀଙ୍କର ଆତ୍ମାରେ

ଅବସ୍ଥାନ କରନ୍ତି । ତେଣୁ ସମସ୍ତ ପ୍ରାଣୀଙ୍କୁ ଭଗବାନଙ୍କର ନିବାସସ୍ଥାନ ବୋଲି ବିଚାର କର । ଏପରି କଲେ ଭଗବାନ ତୁମ୍ଭମାନଙ୍କ ଉପରେ ସନ୍ତୁଷ୍ଟ ହେବେ ॥୧୩॥ ଯେଉଁ ବ୍ୟକ୍ତି ଶୂନ୍ୟରୁ ଉପ୍ନନ ଆକସ୍ମିକ କ୍ରୋଧକୁ ନିଜର ବିଚାରବୁଦ୍ଧି ଦ୍ୱାରା ଆୟତ୍ତ କରିପାରେ, ସେହି ବ୍ୟକ୍ତି ତ୍ରିଗୁଣାତ୍ମକ ମାୟାକୁ ପରାହତ କରିବାରେ ସକ୍ଷମ ହୁଏ ॥୧୪॥ ଏହି ନିରୀହ ବୃକ୍ଷମାନଙ୍କୁ ଦଗ୍ଧ କର ନାହିଁ । ଯେଉଁସବୁ ବୃକ୍ଷ ରହିଯାଇଛି, ସେଗୁଡ଼ିକୁ ରକ୍ଷା କର । ତଦ୍ୱାରା ସେମାନଙ୍କର ବୃଦ୍ଧି ଓ ତୁମ୍ଭମାନଙ୍କର ମଙ୍ଗଳ ହେବ । ବୃକ୍ଷମାନେ ଏକ ଉତ୍ତମ କନ୍ୟାକୁ ପ୍ରତିପାଳନ କରିଛନ୍ତି । ବାର୍କ୍ଷୀ ନାମକ ସେହି କନ୍ୟାଟିକୁ ପତ୍ନୀ ରୂପେ ଗ୍ରହଣ କର ॥୧୫॥

ରାଜା, ବୃକ୍ଷାଧିପତି ସୋମ ଏହିପରି ପ୍ରଚେତାଗଣଙ୍କୁ ନିବେଦନ କରି ପ୍ରମ୍ଲୋଚା ନାମ୍ନୀ ଅପ୍‌ସରାର ସେହି ସୁନ୍ଦରୀ କନ୍ୟା (ବୃକ୍ଷମାନଙ୍କ ଦ୍ୱାରା ପାଳିତା)କୁ ଦାନ କଲେ ଓ ତତ୍‌କ୍ଷଣାତ ଅନ୍ତର୍ହିତ ହୋଇଗଲେ । ପ୍ରଚେତାମାନେ ଧର୍ମାନୁଯାୟୀ ସେହି କନ୍ୟାକୁ ବିବାହ କଲେ ॥୧୬॥ ପ୍ରଚେତାମାନଙ୍କର ଔରସରୁ ଏହି କନ୍ୟାର ଗର୍ଭରେ ଦକ୍ଷ ପ୍ରଜାପତିଙ୍କର ଜନ୍ମ ହେଲା ଏବଂ ଦକ୍ଷଙ୍କର ପ୍ରଜାସୃଷ୍ଟିରେ ତ୍ରିଭୁବନ ପରିପୂର୍ଣ୍ଣ ହୋଇଗଲା ॥୧୭॥ ପରିକ୍ଷିତ, ଦକ୍ଷ ପ୍ରଜାପତି ନିଜର କନ୍ୟାମାନଙ୍କୁ ଅତିଶୟ ସ୍ନେହ କରୁଥିଲେ । ସେ ଯେପରି ନିଜର ସଂକଳ୍ପ ଓ ବୀର୍ଯ୍ୟଦ୍ୱାରା ବିବିଧ ପ୍ରାଣୀଙ୍କୁ ସୃଷ୍ଟି କଲେ, ତାହା ମୁଁ କହିବାକୁ ଯାଉଛି । ତୁମେ ମନ ଦେଇ ଶୁଣ ॥୧୮॥ ଦକ୍ଷ ପ୍ରଜାପତି ମନରୁ ପ୍ରଥମେ ଦେବତା, ଅସୁର, ମନୁଷ୍ୟ ପ୍ରଭୃତି ସମସ୍ତ ଖେଚର, ଭୂଚର, ଓ ଜଳଚର ଜୀବମାନଙ୍କୁ ସୃଷ୍ଟି କଲେ । କିନ୍ତୁ ତଦ୍ୱାରା ଯେପରି ପ୍ରଜାସୃଷ୍ଟି ବଢ଼ିବାର କଥା ତା ନ ହେଉଥିବାର ଦେଖି ସେ ବିନ୍ଧ୍ୟାଚଳର ନିକଟବର୍ତ୍ତୀ ଏକ ପର୍ବତକୁ ଯାଇ କଠୋର ତପସ୍ୟା କରିବାକୁ ଲାଗିଲେ ॥୧୯-୨୦॥ ସେହି ସ୍ଥାନରେ ଅଘମର୍ଷଣ ନାମକ ଏକ ପ୍ରଧାନ ତୀର୍ଥ ଥିଲା ଏବଂ ତାହା ସମସ୍ତ ପାପକୁ ଧୋଇଦେଉଥିଲା । ପ୍ରଜାପତି ଦକ୍ଷ ଏହି ତୀର୍ଥରେ ତ୍ରିସନ୍ଧ୍ୟାରେ ସ୍ନାନାଦିପୂର୍ବକ ଭଗବାନ ଶ୍ରୀହରିଙ୍କୁ ସନ୍ତୁଷ୍ଟ କରିଥିଲେ ॥୨୧॥ ଦକ୍ଷ ହଂସଗୁହ୍ୟ ନାମକ ସ୍ତବଦ୍ୱାରା କିପରି ଭଗବାନଙ୍କୁ ସ୍ତୁତି କରିଥିଲେ ଏବଂ କିପରି ଭଗବାନ ତାଙ୍କ ପ୍ରତି ସନ୍ତୁଷ୍ଟ ହୋଇଥିଲେ, ସେ ସମସ୍ତ ବିଷୟ ମୁଁ ତୁମ ନିକଟରେ ବର୍ଣ୍ଣନା କରିବାକୁ ଯାଉଛି ॥୨୨॥

ପ୍ରଜାପତି ଦକ୍ଷ ସ୍ତୁତି ଆରମ୍ଭ କରି ଏହିପରି କହିଲେ, ସମସ୍ତ ବିଷୟରେ ଯାହାଙ୍କର ଅନୁଭୂତି ଅଭ୍ରାନ୍ତ, ଯାହାଙ୍କର ଚିତ୍‌ଶକ୍ତି ଅମୋଘ, ସମସ୍ତ ଜୀବ ଓ ମାୟାର ଯେ ନିୟନ୍ତା, ଭ୍ରାନ୍ତ ଜୀବଗଣ ତ୍ରିଗୁଣାତ୍ମକ ସୃଷ୍ଟିକୁ ସତ୍ୟ ମନେ କରି ଯାହାଙ୍କର ସ୍ୱରୂପ ଟିକିଏ ହେଲେ ଅନୁଭବ କରିପାରନ୍ତି ନାହିଁ, ଯେ ଅପରିମେୟ ଓ ସ୍ୱୟଂପ୍ରକାଶ, ସେହି ସର୍ବଶ୍ରେଷ୍ଠ ଭଗବାନଙ୍କୁ ମୁଁ ନମସ୍କାର କରୁଛି ॥୨୩॥ ପ୍ରାଣୀର ସଖାଭାବରେ ଭଗବାନ ତାର ଶରୀରରେ ଅବସ୍ଥାନ କରନ୍ତି । କିନ୍ତୁ ସେ ସେହି ପ୍ରିୟ ସଖାଙ୍କୁ ଜାଣିପାରେ ନାହିଁ, ଯେପରି ରୂପ, ରସାଦି ବିଷୟସମୂହ ସେମାନଙ୍କର ପ୍ରକାଶକ ବନ୍ଧୁ ଚକ୍ଷୁ ଆଦି ଇନ୍ଦ୍ରିୟମାନଙ୍କୁ ଜାଣି ପାରନ୍ତି ନାହିଁ । ଆପଣ ସମସ୍ତ ଜୀବଙ୍କର ନିୟନ୍ତା, ସର୍ବଦ୍ରଷ୍ଟା ଓ ବନ୍ଧୁ । ହେ ମହେଶ୍ୱର, ମୁଁ ଆପଣଙ୍କୁ ନମସ୍କାର କରୁଛି ॥୨୪॥ ଦେହ, ପ୍ରାଣ, ଇନ୍ଦ୍ରିୟ, ଅନ୍ତଃକରଣ, ପଞ୍ଚମହାଭୂତ ଓ ପଞ୍ଚ ତନ୍ମାତ୍ର--ଏମାନେ ସମସ୍ତେ ଜଡ଼ ହୋଇଥିବା ଯୋଗୁଁ ଆତ୍ମାର ସ୍ୱରୂପକୁ ଜାଣି ପାରନ୍ତି ନାହିଁ, କିନ୍ତୁ ଜୀବ ଚେତନ ହୋଇଥିବା ଯୋଗୁଁ ଏହି ସମସ୍ତଙ୍କୁ ଏବଂ ସେମାନଙ୍କର ମୂଳକାରଣ ସତ୍ତ୍ୱ ଆଦି ତିନିଗୁଣଙ୍କୁ ଭଲଭାବରେ ଜାଣିପାରେ । ଏ ସବୁ ଜାଣି ମଧ୍ୟ ତାର ଶରୀରରେ ଥିବା ସର୍ବାନ୍ତର୍ଯାମୀ ଅନନ୍ତଙ୍କୁ ସେ ଅନୁଭବ କରିପାରେ ନାହିଁ । ତେଣୁ ହେ ସର୍ବାନ୍ତର୍ଯାମୀ ପ୍ରଭୁ, ମୁଁ ଅପାଣଙ୍କୁ ନମସ୍କାର କରୁଛି ॥୨୫॥ ନାମ ଓ ରୂପକୁ ଯେଉଁ ମନ କଳ୍ପନା କରିଥାଏ, ତା'ର ସମାଧିକାଳରେ ସେ ଦୁହିଁଙ୍କର ଦର୍ଶନ ଓ ସ୍ମୃତି ଲୋପ ପାଇଯାଏ, ମନ ନିରସ୍ତ ହେଲେ ମଧ୍ୟ ଆପଣ ସଚେତନ ଓ ଜାଗ୍ରତ ରହି କେବଳ ସ୍ୱରୂପ ଜ୍ଞାନଦ୍ୱାରା ପ୍ରକାଶ ପାଉଥାନ୍ତି । ତେଣୁ ସେହି ବିଶୁଦ୍ଧ ଏବଂ ଶୁଦ୍ଧଚିତ୍ତସ୍ଥ ଆପଣଙ୍କୁ ମୁଁ ନମସ୍କାର କରୁଛି ॥୨୬॥

କାଷ୍ଠମଧ୍ୟରେ ଅଗ୍ନି ଲୁକ୍‌କାୟିତ ଥାଏ । କିନ୍ତୁ ଜ୍ଞାନୀମାନେ ସାମିଧେନୀ ନାମକ ପନ୍ଦରଟି ଋକ୍‌ମନ୍ତ୍ରଦ୍ୱାରା ତାହାକୁ ପ୍ରକାଶ କରନ୍ତି । ସେହିପରି ଆପଣ ପ୍ରକୃତି, ପୁରୁଷ, ମହତ୍ତତ୍ତ୍ୱ, ଅହଙ୍କାରତତ୍ତ୍ୱ ଓ ପଞ୍ଚତନ୍ମାତ୍ର--ଏହି ନ'ଟି ଶକ୍ତି, ସତ୍ତ୍ୱ, ରଜ ଓ ତମ ଏହି

ତିନି ଗୁଣ, ଏବଂ ଏକାଦଶ ଇନ୍ଦ୍ରିୟ ଓ ପଞ୍ଚ ମହାଭୂତ-ଏହି ଷୋଳପ୍ରକାର ବିକାରସ୍ୱରୂପ ନିଜର ଶକ୍ତି ସହିତ ଜୀବମାନଙ୍କର ହୃଦୟମଧ୍ୟରେ ଅନ୍ତର୍ଯାମୀ ରୂପେ ପ୍ରଚ୍ଛନ୍ନ ଭାବରେ ଥିଲେ ମଧ୍ୟ ଆପଣଙ୍କର ବୈଚିତ୍ର୍ୟମୟ ମାୟାକୁ ଅତିକ୍ରମ କରି ସର୍ବଦା ପରମାନନ୍ଦ ଅନୁଭବ କରନ୍ତି । ବିଶ୍ୱର ସମସ୍ତ ନାମ ରୂପ ଆପଣଙ୍କଠାରେ ଆରୋପିତ । ଆପଣଙ୍କର ସ୍ୱରୂପଶକ୍ତି ଅନିର୍ବଚନୀୟ । ଭଗବାନ, ଆପଣ ମୋ ପ୍ରତି ପ୍ରସନ୍ନ ହୁଅନ୍ତୁ ॥୨୭-୨୮॥ ପ୍ରଭୁ, ଆପଣଙ୍କର ସ୍ୱରୂପକୁ କଥାରେ କୁହାଯାଇ ପାରିବ ନାହିଁ, ବୁଦ୍ଧିଦ୍ୱାରା ନିରୂପିତ ବା ଇନ୍ଦ୍ରିୟଦ୍ୱାରା ଅନୁଭୂତ ହୋଇପାରିବ ନାହିଁ ବା ମନଦ୍ୱାରା ଚିନ୍ତା କରାଯାଇପାରିବ ନାହିଁ । କାରଣ ବୁଦ୍ଧି, ଇନ୍ଦ୍ରିୟ ଓ ମନ ଆଦି ଗୁଣରୁ ଉତ୍ପନ୍ନ । କିନ୍ତୁ ଆପଣ ହେଉଛନ୍ତି ମାୟାତୀତ ଓ ଗୁଣାତୀତ ଏବଂ ନିତ୍ୟସିଦ୍ଧ ରୂପରେ ପ୍ରକଟିତ ॥୨୯॥ ଭଗବାନ, ଏହି ଜଗତ ଆପଣଙ୍କଠାରେ ଅଧିଷ୍ଠିତ, ଆପଣଙ୍କଠାରୁ ହିଁ ଏହାର ଉତ୍ପତ୍ତି, ଏବଂ କାହାରି ସହାୟତା ବିନା ଆପଣ ଏହାକୁ ନିଜେ ନିଜେ ନିର୍ମାଣ କରିଛନ୍ତି । ଏହା ଆପଣଙ୍କର ଓ ଆପଣଙ୍କପାଇଁ । ଆପଣଙ୍କ ରୂପରେ ଏହି ଜଗତ ନିର୍ମିତ ହୋଇଛି, ଆପଣ ହିଁ ଏହାକୁ କରି କରାଉଥା'ନ୍ତି । ଯେତେବେଳେ କାର୍ଯ୍ୟକାରଣର ଭେଦ ନ ଥିଲା ସେତେବେଳେ ଆପଣ ସ୍ୱୟଂସିଦ୍ଧ ଥାଇ ନିଜର ସ୍ୱରୂପରେ ଅବସ୍ଥିତ ଥିଲେ । ତେଣୁ ଆପଣ ସମସ୍ତଙ୍କର କାରଣ, ନିଜର ଏବଂ ଜୀବଜଗତର ମଧ୍ୟରେ ଥିବା ସମସ୍ତ ଭେଦରହିତ ଏକ ଏବଂ ଅଦ୍ୱିତୀୟ ବ୍ରହ୍ମ । ଆପଣଙ୍କୁ ମୁଁ ନମସ୍କାର କରୁଛି ॥୩୦॥ ପ୍ରଭୁ, ଆପଣଙ୍କର (ମାୟା ଅବିଦ୍ୟା ଆଦି) ଶକ୍ତିସମୂହସମ୍ପର୍କରେ ବାଦୀ ଓ ପ୍ରତିବାଦୀମାନେ କେବେ କେବେ ବିବାଦ କରନ୍ତି ଏବଂ ଏକମତ ମଧ୍ୟ ହୁଅନ୍ତି, ତାହା ସେମାନଙ୍କ ଅନ୍ତଃକରଣରେ ବାରମ୍ବାର ମୋହ ଜାତ କରାଏ । ଅନନ୍ତଗୁଣସମ୍ପନ୍ନ ମହାମହିମମୟ ଆପଣଙ୍କୁ ମୁଁ ନମସ୍କାର କରୁଛି ॥୩୧॥ ଭଗବାନ୍, ଭକ୍ତମାନେ ଆପଣଙ୍କର ସାକାରବିଗ୍ରହ କଥା କହିଥା'ନ୍ତି । ଜ୍ଞାନୀମାନେ ଆପଣଙ୍କୁ ନିରାକାର ବୋଲି କହନ୍ତି । ସେହି ଏକ ବସ୍ତୁର ଦୁଇ ପରସ୍ପର ବିରୋଧୀ ଧର୍ମାବଲମ୍ବୀ ଥିଲେ ମଧ୍ୟ ଉଭୟ ମତର ଲକ୍ଷ୍ୟ ହେଉଛି ଏକ । କାରଣ ଉଭୟ ମତ ହେଉଛି ଭଗବାନଙ୍କର ପ୍ରତିପାଦକ, ଯେହେତୁ ଆପଣ ଆଧାରଭୂତ ଓ ପୁଣି ନିରାଧାର; ପୁଣି ଉଭୟର ଊର୍ଦ୍ଧ୍ୱରେ ଥିବା ପରମ ବ୍ରହ୍ମ ରୂପେ ଉଭୟ ସାଧନାର ଅନୁକୂଳ ଅଟନ୍ତି ॥୩୨॥ ଅନନ୍ତ ବିଭୂତିସମ୍ପନ୍ନ ଭଗବାନ୍ ପ୍ରାକୃତ ନାମରୂପାଦି ରହିତ ହେଲେ ମଧ୍ୟ ନିଜ ଶ୍ରୀପାଦପଦ୍ମର ଉପାସକମାନଙ୍କ ପ୍ରତି ଅନୁଗ୍ରହ ପ୍ରଦର୍ଶନପାଇଁ ଜନ୍ମ ଓ କର୍ମଦ୍ୱାରା ନାନା ରୂପ ଓ ନାମ ଧାରଣ କରିଥାନ୍ତି । ସେହି ପରମପୁରୁଷ ମୋ ପ୍ରତି ପ୍ରସନ୍ନ ହୁଅନ୍ତୁ ॥୩୩॥ ବାୟୁ ଯେପରି ପାର୍ଥିବ ବସ୍ତୁର ଆଶ୍ରୟରେ ତା'ର ଗୁଣ ଗ୍ରହଣ କରି ନାନାବିଧ ଗନ୍ଧଯୁକ୍ତ ଓ ରୂପସମ୍ପନ୍ନ ହୋଇଥାଏ, ସେହିପରି ନିମ୍ନ ସ୍ତରର ସାଧକମାନଙ୍କ କାମନା ଅନୁଯାୟୀ ଭଗବାନ ବିଭିନ୍ନ ଦେବଦେବୀ ମୂର୍ତ୍ତି ଧାରଣ କରି ନାନାରୂପରେ ପ୍ରକଟିତ ହୁଅନ୍ତି । ସେହି ଭଗବାନ ମୋର ଅଭୀଷ୍ଟ ପୂରଣ କରନ୍ତୁ ॥୩୪॥

ଶ୍ରୀ ଶୁକଦେବ କହିଲେ, କୁରୁଶ୍ରେଷ୍ଠ, ଅଘମର୍ଷଣ ନାମକ ତୀର୍ଥରେ ଏହିପରି ଦକ୍ଷଙ୍କ ସ୍ତବଦ୍ୱାରା ସନ୍ତୁଷ୍ଟ ଭକ୍ତବତ୍ସଳ ଭଗବାନ ଶ୍ରୀହରି ଦକ୍ଷଙ୍କ ସମ୍ମୁଖରେ ଆବିର୍ଭୂତ ହେଲେ ॥୩୫॥ ଗରୁଡ଼ଙ୍କ ସ୍କନ୍ଧରେ ତାଙ୍କର ପାଦଦ୍ୱୟ ନ୍ୟସ୍ତ ଥିଲା । ଆଜାନୁଲମ୍ବିତ ତାଙ୍କ ବିଶାଳ ଅଷ୍ଟବାହୁରେ ସେ ଶଙ୍ଖ, ଚକ୍ର, ଗଦା, ଖଡ୍ଗ, ଢାଲ, ଧନୁ, ବାଣ ଓ ପାଶ – ଏହି ଅସ୍ତ୍ରମାନ ଧାରଣ କରିଥିଲେ ॥୩୬॥ ତାଙ୍କ ନବୀନ ମେଘବର୍ଣ୍ଣର ଅଙ୍ଗକାନ୍ତି, ପୀତବସ୍ତ୍ର, ପ୍ରସନ୍ନ ଦୃଷ୍ଟି ଓ ପ୍ରଫୁଲ୍ଲ ମୁଖମଣ୍ଡଳ, ଗଳାରୁ ପାଦପର୍ଯ୍ୟନ୍ତ ଲମ୍ବିତ ବନମାଳା, ବକ୍ଷସ୍ଥଳରେ ଶ୍ରୀବତ୍ସ ଚିହ୍ନ ଓ କୌସ୍ତୁଭମଣି ଅତିଶୟ ଶୋଭାପାଉଥିଲା ॥୩୭॥ ମସ୍ତକରେ ଉତ୍ତମ କିରୀଟ, କଟଟିରେ କଙ୍କଣ, କର୍ଣ୍ଣରେ ମକରକୁଣ୍ଡଳ, କଟିଦେଶରେ ମେଖଳା, ଅଙ୍ଗୁଳିରେ ଅଙ୍ଗୁରୀୟ, ହସ୍ତରେ ବଳୟ, ପାଦରେ ନୂପୁର ଓ ବାହୁରେ ବାଜୁବନ୍ଧ ଶୋଭାପାଉଥିଲା ॥୩୮॥ ତ୍ରିଭୁବନର ଈଶ୍ୱର ଭଗବାନ ତ୍ରୈଲୋକ୍ୟବିମୋହନ ରୂପ ଧାରଣ କରିଥିଲେ । ନାରଦ, ନନ୍ଦ, ସୁନନ୍ଦ ଆଦି ତାଙ୍କ ପାର୍ଷଦମାନେ ଓ ଲୋକପାଳଗଣ ତାଙ୍କୁ ଘେରି ରହିଥିଲେ ଏବଂ ସିଦ୍ଧ, ଗନ୍ଧର୍ବ, ଚାରଣ ଆଦି ତାଙ୍କ ସ୍ତୁତିଗାନ କରୁଥିଲେ । ତାଙ୍କର ସେହି ଅତିଶୟ ଆଶ୍ଚର୍ଯ୍ୟଜନକ ରୂପ ଦର୍ଶନ କରି ପ୍ରଜାପତି ଦକ୍ଷ ବିସ୍ମିତ ହୋଇଗଲେ । ଅତିଶୟ ଆନନ୍ଦରେ ତାଙ୍କ ହୃଦୟ ଭରିଗଲା ଓ ଭୂଲୁଣ୍ଠିତ ମସ୍ତକଦ୍ୱାରା ସେ ତାଙ୍କୁ ଦଣ୍ଡ ପ୍ରଣାମ କଲେ । ଝରଣାର ଜଳରାଶିଦ୍ୱାରା ନଦୀ

ଯେପରି ପୂର୍ଣ୍ଣ ହୋଇଯାଏ, ଆନନ୍ଦାତିଶୟରେ ତାଙ୍କ ମନ ଓ ଇନ୍ଦ୍ରିୟ ସେହିପରି ଭରିଗଲା ଓ ସେ କିଛି କହି ପାରିଲେ ନାହିଁ ॥୩୯-୪୧॥ ପରୀକ୍ଷିତ, ପ୍ରଜା ବାସନାହେତୁ ସେହିପରି ପ୍ରଣତ ଅବସ୍ଥାରେ ରହିଥିବା ଭକ୍ତ ପ୍ରଜାପତିଙ୍କ ମନର କଥା ଜାଣିପାରି ସର୍ବାନ୍ତର୍ଯାମୀ ଭଗବାନ ତାଙ୍କୁ ଏହିପରି କହିଲେ -- ॥୪୨॥

ଶ୍ରୀ ଭଗବାନ କହିଲେ, ହେ ପ୍ରଚେତାମାନଙ୍କ ପୁତ୍ର ମହାଭାଗ ଦକ୍ଷ, ତୁମେ ପ୍ରଗାଢ଼ ଶ୍ରଦ୍ଧାରେ ମୋ'ପ୍ରତି ଯେଉଁ ଭକ୍ତିଭାବ ପୋଷଣ କରିଛ, ତଦ୍ଦ୍ୱାରା ତୁମର ତପସ୍ୟା ସିଦ୍ଧ ହୋଇଛି ॥୪୩॥ ପ୍ରଜାପତି, ସୃଷ୍ଟିର ବୃଦ୍ଧିପାଇଁ ତୁମେ ଯେଉଁ ତପଶ୍ଚରଣ କରିଛ, ସେଥିରେ ମୁଁ ସନ୍ତୁଷ୍ଟ । କାରଣ ପ୍ରାଣୀମାନଙ୍କର ବୃଦ୍ଧି ହେଉ, ସେମାନଙ୍କର ମଙ୍ଗଳ ହେଉ -- ଏହା ହିଁ ମୋର କାମନା ॥୪୪॥ ବ୍ରହ୍ମା, ଶିବ, ତୁମପରି ପ୍ରଜାପତିଗଣ, ସ୍ୱାୟମ୍ଭୁବ ମନୁ ଆଦି ମନୁ ଓ ଦେବତା -- ଯେଉଁମାନେ ପ୍ରାଣୀମାନଙ୍କର ମଙ୍ଗଳପାଇଁ କାର୍ଯ୍ୟ କରନ୍ତି, ସେମାନେ ସମସ୍ତେ ହେଉଛନ୍ତି ମୋର ବିଭୂତିସ୍ୱରୂପ ॥୪୫॥ ବ୍ରହ୍ମନ୍, ତପସ୍ୟା ମୋର ହୃଦୟ, ବିଦ୍ୟା ଶରୀର, କର୍ମ ଆକୃତି, ଯଜ୍ଞ ମୋର ଅଙ୍ଗ, ଧର୍ମ ମୋର ମନ ଓ ଦେବଗଣ ମୋର ପ୍ରାଣ ସ୍ୱରୂପ ॥୪୬॥ ବିଶ୍ୱସୃଷ୍ଟିର ପୂର୍ବରୁ ମୁଁ କେବଳ ଥିଲି । ମୋ ଛଡ଼ା ବାହାରେ ବା ଭିତରେ କେହି ନ ଥିଲେ । ନା ଦ୍ରଷ୍ଟା ଥିଲା, ନା ଦୃଶ୍ୟ । ମୁଁ କେବଳ ଅବ୍ୟକ୍ତ ଜ୍ଞାନସ୍ୱରୂପ ହୋଇ ରହିଥିଲି । ଜାଣିରଖ ଯେ, ଚାରିଆଡ଼ ଯେପରି ସୁଷୁପ୍ତି ବା ନିଦ୍ରାଦ୍ୱାରା ଛାଇହୋଇ ରହିଥିଲା ॥୪୭॥ ପ୍ରିୟ ଦକ୍ଷ, ମୁଁ ଅନନ୍ତ ଏବଂ ଅନନ୍ତଗୁଣର ଆଧାର । ମୋର ମାୟାଦ୍ୱାରା ଯେତେବେଳେ ଏହି ତ୍ରିଗୁଣାତ୍ମକ ବ୍ରହ୍ମାଣ୍ଡ ପ୍ରକାଶିତ ହେଲା, ସେତେବେଳେ ଅଯୋନିଜ ଆଦିପୁରୁଷ ବ୍ରହ୍ମା ମଧ୍ୟ ଆବିର୍ଭୂତ ହେଲେ ॥୪୮॥ ମୋଠାରୁ ଶକ୍ତି ଏବଂ ପ୍ରେରଣା ପାଇ ଯେତେବେଳେ ସେ ସୃଷ୍ଟି କାର୍ଯ୍ୟରେ ଉଦ୍ୟତ ହେଲେ, ସେତେବେଳେ ସେ ନିଜକୁ ସେହି କାର୍ଯ୍ୟପାଇଁ ସମ୍ପୂର୍ଣ୍ଣ ଅସମର୍ଥ ମନେ କଲେ ॥୪୯॥ ସେତେବେଳେ ମୁଁ ତାଙ୍କୁ ତପସ୍ୟା କରିବାପାଇଁ ଆଦେଶ ଦେଲି । ସେ କଠୋର ତପସ୍ୟାରେ ପ୍ରବୃତ୍ତ ହୋଇ ସେହି ତପସ୍ୟାଦ୍ୱାରା ତୁମ ସହିତ ନଅ ଜଣ ପ୍ରଜାପତିଙ୍କୁ ସୃଷ୍ଟି କଲେ ॥୫୦॥ ପ୍ରଜାପତି ଦକ୍ଷ, ପ୍ରଜାପତି ପଞ୍ଚଜନଙ୍କର ଅସିକ୍ନୀ ନାମକ କନ୍ୟା ଏଠାରେ ଅଛନ୍ତି । ତୁମେ ତାଙ୍କୁ ପତ୍ନୀରୂପେ ଗ୍ରହଣ କର ॥୫୧॥ ବର୍ତ୍ତମାନ ଗୃହସ୍ଥୋଚିତ ସ୍ତ୍ରୀସହବାସ ରୂପକ ଧର୍ମକୁ ଗ୍ରହଣ କର । ଅସିକ୍ନୀ ମଧ୍ୟ ସେହି ଧର୍ମ ଗ୍ରହଣ କରିବେ । ତାଙ୍କ ସହିତ ମିଶି ବ୍ରହ୍ମା ଆରମ୍ଭ କରିଥିବା ଲୋକସୃଷ୍ଟି କାର୍ଯ୍ୟକୁ ବହୁ ପରିମାଣରେ ସମ୍ପାଦନ କର ॥୫୨॥ ତୁମ ପରେ ମୋର ମାୟାର ପ୍ରଭାବରୁ ସ୍ତ୍ରୀ-ପୁରୁଷ ସଂଯୋଗଦ୍ୱାରା ପ୍ରଜାମାନେ ଉତ୍ପନ୍ନ ହେବେ ଏବଂ ମୋ ଉଦ୍ଦେଶ୍ୟରେ ପୂଜାର ଉପହାରମାନ ପ୍ରଦାନ କରିବେ ॥୫୩॥

ଶ୍ରୀ ଶୁକଦେବ କହିଲେ, ବିଶ୍ୱସ୍ରଷ୍ଟା ଭଗବାନ ଶ୍ରୀହରି ଏହିପରି କହି ସ୍ୱପ୍ନଦୃଷ୍ଟ ବସ୍ତୁପରି ଦକ୍ଷ ଦେଖୁ ଦେଖୁ ଅନ୍ତର୍ହିତ ହୋଇଗଲେ ॥୫୪॥

## ପଞ୍ଚମ ଅଧ୍ୟାୟ

# ନାରଦଙ୍କ ଶିକ୍ଷାଦ୍ୱାରା ଦକ୍ଷପୁତ୍ରମାନଙ୍କ ବୈରାଗ୍ୟ

ଶ୍ରୀ ଶୁକଦେବ କହିଲେ, ରାଜା, ପ୍ରଜାପତି ଦକ୍ଷ ଭଗବାନଙ୍କ ମାୟାବଶରୁ ପ୍ରଜାସୃଷ୍ଟିପାଇଁ ଅତିଶୟ ଉତ୍ସାହିତ ହେଲେ । ତାଙ୍କ ଔରସରୁ ପଞ୍ଚଜନଙ୍କର କନ୍ୟା ଅସିକ୍ନୀଙ୍କ ଗର୍ଭରେ ହର୍ଯଶ୍ୱ ନାମକ ଦଶ ହଜାର ପୁତ୍ର ଜନ୍ମ ନେଲେ ॥୧॥ ପରିକ୍ଷିତ, ଦକ୍ଷଙ୍କର ପୁତ୍ରମାନେ ଏକ ଆଚାର ଏବଂ ଏକ ସ୍ୱଭାବର ଥିଲେ । ପିତା ଦକ୍ଷ ସେମାନଙ୍କୁ ପୁତ୍ରଉତ୍ପାଦନପାଇଁ ଆଦେଶ ଦିଅନ୍ତେ ସେମାନେ ସମସ୍ତେ (ତପସ୍ୟାପାଇଁ) ପଶ୍ଚିମ ଦିଗକୁ ଯାତ୍ରା କଲେ ॥୨॥ ପଶ୍ଚିମ ଦିଗରେ ସିନ୍ଧୁନଦୀ ଓ ସମୁଦ୍ରର ସଙ୍ଗମ ସ୍ଥଳରେ ନାରାୟଣସର ନାମରେ ଏକ ମହାନ୍ ତୀର୍ଥ ଅଛି । ତାହା ହେଉଛି ବଡ଼ବଡ଼ ମୁନି ଓ ସିଦ୍ଧମାନଙ୍କର ବାସସ୍ଥାନ ॥୩॥ ସେହି

ତୀର୍ଥଜଳ ସ୍ପର୍ଶ କରିବାମାତ୍ରେ ହର୍ଯଶ୍ୱମାନଙ୍କର ଅନ୍ତଃକରଣରୁ ବିଷୟାସକ୍ତି ରୂପକ ମଳ ଦୂର ହୋଇଗଲା ଓ ଆତ୍ମଜ୍ଞାନରୂପକ ମୋକ୍ଷଧର୍ମରେ ସେମାନଙ୍କର ଚିତ୍ତ ଲାଗିଗଲା, କିନ୍ତୁ ପିତାଙ୍କର ଆଦେଶ ମାନି ପ୍ରଜାବୃଦ୍ଧିପାଇଁ ସେମାନେ କଠୋର ତପସ୍ୟାରେ ନିମଗ୍ନ ହେଲେ । ଏହି ସମୟରେ ଦେବର୍ଷି ନାରଦ ସେଠାରେ ଉପସ୍ଥିତ ହୋଇ ସେମାନଙ୍କୁ ଦେଖି କହିଲେ, ହର୍ଯଶ୍ୱଗଣ, ତୁମେମାନେ ପ୍ରଜାପତି ସତ୍ୟ, କିନ୍ତୁ ମୂର୍ଖ । 'ଭୂ'ର ଅନ୍ତକୁ ନ ଜାଣି ତୁମେ କିପରି ପ୍ରଜା ସୃଷ୍ଟି କରିବ ? ॥୪-୬॥ ଦେଖ, ଏପରି ଏକ ଦେଶ ଅଛି, ଯେଉଁଠି ଜଣେ ମାତ୍ର ପୁରୁଷ ଅଛି । ଏପରି ଏକ ଗର୍ତ୍ତ ଅଛି, ଯାହା ଭିତରେ ପଶିଲେ ବାହାରକୁ ଆସିବାର ବାଟ ନାହିଁ । ଏପରି ଏକ ସ୍ତ୍ରୀ ଅଛି ଯେ କି ବହୁରୂପିଣୀ ଏବଂ ଏକ ପୁରୁଷ ଅଛି, ଯେ କି ବହୁ ପୁରୁଷଗାମିନୀ କୁଳଟାର ସ୍ୱାମୀ । ଏପରି ଏକ ନଦୀ ଅଛି ଯେ ଉଭୟ ଦିଗକୁ ପ୍ରବାହିତ ହୁଏ । ଏପରି ଏକ ଅଦ୍ଭୁତ ଘର ଅଛି ଯେ କି ପଚିଶଟି ଜିନିଷରେ ତିଆରି ହୋଇଛି । ଏପରି ଏକ ହଂସ ଅଛି, ଯାହାର କଥା ବଡ଼ ବିଚିତ୍ର । ଏକ ଚକ୍ର ଅଛି ଯେ କ୍ଷୁର ଓ ବଜ୍ରରେ ନିର୍ମିତ ଓ ଯାହା ମନକୁ ମନ ବୁଲୁଛି ॥୭-୮॥ ଆରେ ମୂର୍ଖ ହର୍ଯଶ୍ୱଗଣ, ଯେ ପର୍ଯ୍ୟନ୍ତ ତୁମେ ତୁମ ସର୍ବଜ୍ଞ ପିତାର ଉଚିତ ଆଦେଶକୁ ଭଲ ଭାବରେ ବୁଝିପାରିନାହିଁ, ଏବଂ ଏ ସମସ୍ତ ବସ୍ତୁକୁ ଦେଖି ନାହଁ, ସେ ପର୍ଯ୍ୟନ୍ତ ପିତାର ଆଜ୍ଞାରେ ତୁମେ କିପରି ପ୍ରଜା ସୃଷ୍ଟି କରିବ ? ॥୯॥

ଶ୍ରୀ ଶୁକଦେବ କହିଲେ, ହର୍ଯଶ୍ୱଗଣ ସ୍ୱଭାବତଃ ବୁଦ୍ଧିମାନ୍ ଓ ବିଚାରବନ୍ତ ଥିଲେ ଏବଂ ନାରଦଙ୍କ କଥାର ଗୂଢ଼ ଅର୍ଥ ସେମାନେ ବୁଝି ପାରିଲେ ॥୧୦॥ 'ଭୂ' ଶବ୍ଦର ଅର୍ଥ କ୍ଷେତ୍ର, ଅର୍ଥାତ୍ ଜୀବନାମକ ଲିଙ୍ଗ ଶରୀର । ଅନାଦିକାଳରୁ ଏହା ଜୀବକୁ ବାନ୍ଧି ରଖିଛି । ଏହାର ଅନ୍ତ ବା ନାଶ କିପରି ହେବ, ତାହା ଚିନ୍ତା ନ କରି ଅସତ୍ କର୍ମରେ ଲାଗିଲେ କିଛି ଫଳ ହେବ ନାହିଁ ॥୧୧॥ ଏକ ଈଶ୍ୱର ହେଉଛନ୍ତି ସମସ୍ତଙ୍କର ସାକ୍ଷୀ, ସ୍ୱତନ୍ତ୍ର, ସର୍ବଶକ୍ତିମାନ୍ ଓ ନିତ୍ୟମୁକ୍ତ ଏବଂ ଏହି ବିଚାର ଏକମାତ୍ର ଅବଲମ୍ବନ । (ସଂସାରବନ୍ଧନର ମୋଚନକାରୀ) ସେହି ଭଗବାନଙ୍କୁ ନ ଜାଣି ତାଙ୍କଠାରେ ଅର୍ପଣ କରା ଯାଉ ନ ଥିବା ଅସତ୍‌କର୍ମରେ ଲାଗିଲେ କ'ଣ ଫଳ ହେବ ? ॥୧୨॥ ଯେଉଁ ପରମଧାମ ପ୍ରାପ୍ତ ହେଲେ ଜୀବ ପାତାଳଗତ ବ୍ୟକ୍ତି ପରି ଆଉ ସଂସାରକୁ ଫେରିଆସେ ନାହିଁ, ସେହି ଜ୍ୟୋତିଃରୂପ ବ୍ରହ୍ମକୁ ନ ଜାଣି ଅସତ୍ କର୍ମରେ ଲାଗିବାଦ୍ୱାରା କ'ଣ ଫଳ ମିଳିବ ? ॥୧୩॥ ନିଜର ବୁଦ୍ଧି ହେଉଛି ବହୁରୂପା । ତାମସିକଗୁଣ ଆଦି ଯୁକ୍ତ ବ୍ୟଭିଚାରିଣୀ ସ୍ତ୍ରୀପରି ନାନାବିଧ ରୂପ ଦେଖାଇ ଏହା ପୁରୁଷର ମୋହ ସୃଷ୍ଟି କରେ । ସେହି ବୁଦ୍ଧିର ଅବସାନ ଘଟି ବିବେକର ଉଦୟ ନ ହେଲେ ଖାଲି ଅସତ୍‌କର୍ମ ଦ୍ୱାରା କି ଫଳ ମିଳିବ ? ॥୧୪॥ ତାର ସଂସର୍ଗରେ ଆସି ଜୀବର ସମସ୍ତ ଐଶ୍ୱର୍ଯ୍ୟ ବା ସ୍ୱତନ୍ତ୍ରତା ନଷ୍ଟ ହୋଇଯାଏ ଏବଂ ମାୟାରେ ପରିଚାଳିତ ହୋଇ ସେ ନାନା ସୁଖ, ଦୁଃଖ ଭୋଗ କଲେ ମଧ୍ୟ ତାକୁ ଅନୁସରଣ କରିଚାଲେ । ତାହା ଭଲଭାବରେ ନ ବୁଝି ଅସତ୍ କର୍ମପଥରେ ଯିବାଦ୍ୱାରା କ'ଣ ବା ଲାଭ ହେବ ? ॥୧୫॥ ମାୟା ଦୁଇ ଆଡ଼କୁ ବହୁଥିବା ନଦୀ ପରି । ସେ ସୃଷ୍ଟି ଓ ପ୍ରଳୟ ଉଭୟ କରିଥାଏ । ଯେଉଁ ବ୍ୟକ୍ତି ସେଥିରୁ ଉଦ୍ଧାର ପାଇବାପାଇଁ ତପସ୍ୟା ଓ ଜ୍ଞାନରୂପକ କୂଳର ଆଶ୍ରୟ ନ ନିଏ, ତାହାପାଇଁ ଏହି ନଦୀ ଅତିଶୟ ଖରସ୍ରୋତା ହୋଇଉଠେ । ବିବେକବିଚାରରେ ଅସମର୍ଥ ସେହି ବ୍ୟକ୍ତି ଅସତ୍‌ପଥକୁ ଯିବାଦ୍ୱାରା କି ଫଳ ଲାଭ କରେ ? ॥୧୬॥ ପରମପୁରୁଷ ଭଗବାନ ପ୍ରକୃତି ପୁରୁଷ ଆଦି ପଚିଶଟି ତତ୍ତ୍ୱର ଆଶ୍ରୟସ୍ଥଳ । ଏହି ସଂସାରରେ ସେ ପ୍ରତ୍ୟେକ ଜୀବମଧ୍ୟରେ ଅନ୍ତର୍ଯାମୀ ପୁରୁଷ ରୂପରେ ବିଦ୍ୟମାନ । ତାଙ୍କୁ ଭଲ ଭାବରେ ନ ଜାଣି ଅସତ୍ ପଥରେ ଯିବାଦ୍ୱାରା ଫଳ କ'ଣ ହେବ ? ॥୧୭॥ ଈଶ୍ୱରଙ୍କ ସମ୍ପର୍କୀୟ ଅଧ୍ୟାତ୍ମ ଶାସ୍ତ୍ରମାନଙ୍କରେ ଚେତନ ଓ ଜଡ଼ ଏବଂ ବଂଧନ ଓ ମୋକ୍ଷର ସ୍ୱତନ୍ତ୍ର ବିଚାର କରାଯାଇଛି (ନୀରକ୍ଷୀର ବିବେକ) । ସେହି ସବୁ ଶାସ୍ତ୍ରର ତାତ୍ପର୍ଯ୍ୟ ନବୁଝି କେବଳ ଅସତ୍ କର୍ମ ପଥରେ ଯିବାଦ୍ୱାରା କ'ଣ ଲାଭ ମିଳିବ ? ॥୧୮॥ ତୀବ୍ର କାଳଚକ୍ର ସ୍ୱାଧୀନଭାବରେ ସର୍ବଦା ବୁଲିବାରେ ଲାଗିଛି । ବିନାଶପାଇଁ ସମସ୍ତ ଜୀବଜଗତକୁ ସେ ନିଜଆଡ଼େ ଟାଣିବାରେ ଲାଗିଛି । ତାର ତତ୍ତ୍ୱ ନ ବୁଝି ଅସତ୍‌କର୍ମରେ ଲାଗିଲେ କି ଫଳ ଲାଭ ହେବ ? ॥୧୯॥ ଶାସ୍ତ୍ର ହେଉଛି ନିଜର ପିତାପରି, ତାହା ନିବୃତ୍ତିର ମାର୍ଗ ଦେଖାଇଦିଏ । ସେହି ଶାସ୍ତ୍ରରୂପ ପିତାର ଆଦେଶକୁ ନ ବୁଝି ଗୁଣମୟ ପ୍ରକୃତି ମାର୍ଗରେ ଗତି କଲେ କ'ଣ ଫଳ

ହେବ ? ॥୨୦॥ ପରିକ୍ଷିତ, ହର୍ଯଶ୍ୱମାନେ ନାରଦଙ୍କ ଉକ୍ତିର ଗୂଢ଼ ଅର୍ଥ ହୃଦୟଙ୍ଗମ କରି ତାଙ୍କୁ ପ୍ରଦକ୍ଷିଣ କଲେ ଏବଂ ଏପରି ମାର୍ଗରେ ପ୍ରସ୍ଥାନ କଲେ, ଯେପରି କି ସେମାନେ ଆଉ ଫେରିଆସିବେ ନାହିଁ ॥୨୧॥ ପରେ ପରେ ଦେବର୍ଷି ନାରଦ ସ୍ୱରବ୍ରହ୍ମରୂପ ସଙ୍ଗୀତଲହରୀ ଦ୍ୱାରା ଭଗବାନ ହୃଷୀକେଶଙ୍କର ପାଦପଦ୍ମରେ ଏକାନ୍ତ ଭାବରେ ନିଜର ଚିତ୍ତକୁ ନିବେଶ କରି ଲୋକ ଲୋକାନ୍ତର ପର୍ଯ୍ୟଟନ କରିବାକୁ ଲାଗିଲେ ॥୨୨॥

ପରିକ୍ଷିତ, ଯେତେବେଳେ ଦକ୍ଷପ୍ରଜାପତି ଶୁଣିଲେ ଯେ ତାଙ୍କ ସାଧୁସ୍ୱଭାବ ପୁତ୍ରମାନେ ନାରଦଙ୍କ ଉପଦେଶରେ ଅନିର୍ଦ୍ଦିଷ୍ଟ ହୋଇ ଯାଇଛନ୍ତି, ସେ ଶୋକାକୁଳ ହୃଦୟରେ ଅନୁତାପ କରିବାକୁ ଲାଗିଲେ--ହାୟ, ସୁପୁତ୍ର ଲାଭ କରି ଲାଭ କ'ଣ ? ତାହା ଶୋକର କାରଣ ହୁଏ ॥୨୩॥ ଶୋକାକୁଳ ଦକ୍ଷ ବ୍ରହ୍ମାଙ୍କ ସାନ୍ତ୍ୱନାରେ ଆଶ୍ୱସ୍ତ ହୋଇ ପୁଣି ପ୍ରଜାବୃଦ୍ଧିରେ ଲାଗିଗଲେ । ତାଙ୍କ ଔରସରେ ପାଞ୍ଚଜନୀଙ୍କ ଗର୍ଭରୁ ଶବଲାଶ୍ୱ ନାମକ ଏକ ହଜାର ପୁତ୍ର ଜନ୍ମ ଲାଭ କଲେ ॥୨୪॥ ସେମାନେ ପିତାଙ୍କର ଆଦେଶରେ ପ୍ରଜାସୃଷ୍ଟିପାଇଁ ବ୍ରତଧାରଣ କରି ନାରାୟଣସରୋବରକୁ ପ୍ରସ୍ଥାନ କଲେ, ଯେଉଁଠାରେ କି ତାଙ୍କର ପୂର୍ବଜ ଜ୍ୟେଷ୍ଠଭ୍ରାତାମାନେ ସିଦ୍ଧିଲାଭ କରିଥିଲେ ॥୨୫॥ ଏହି ସରୋବରର ଜଳ ସ୍ପର୍ଶ କରିବା ମାତ୍ରେ ସେମାନଙ୍କର ଚିତ୍ତ ନିର୍ମଳ ହେଲା ଏବଂ ସେମାନେ ପରଂବ୍ରହ୍ମ ସ୍ୱରୂପ ପ୍ରଣବମନ୍ତ୍ର ଜପ କରି ଘୋର ତପସ୍ୟାରେ ପ୍ରବୃତ୍ତ ହେଲେ ॥୨୬॥ କେତେମାସ ଧରି ସେମାନେ କେବଳମାତ୍ର ଜଳପାନ କରି ଓ ଆଉ କେତେମାସ ବାୟୁ ସେବନ କରି ଏହି ମନ୍ତ୍ର ଜପପୂର୍ବକ ମନ୍ତ୍ରାଧିପତି ବିଷ୍ଣୁଙ୍କୁ ଆରାଧନା କରିବାକୁ ଲାଗିଲେ ॥୨୭॥ ସେହି ମନ୍ତ୍ରଟି ହେଉଛି -- 'ଓଁ ନାରାୟଣଙ୍କୁ ନମସ୍କାର । ମହାତ୍ମାପୁରୁଷଙ୍କୁ ନମସ୍କାର । ବିଶୁଦ୍ଧ ସତ୍ତ୍ୱଗୁଣମାନଙ୍କର ଆଶ୍ରୟ ସେହି ପରମହଂସ ସ୍ୱରୂପଙ୍କୁ ଆମେ ପ୍ରଣାମ କରୁଛୁ ଓ ଧ୍ୟାନ କରୁଛୁ ॥୨୮॥ ଶ୍ରୀ ଶୁକଦେବ କହିଲେ, ମହାରାଜ, ଏହି ସମୟରେ ଦେବର୍ଷି ନାରଦ ସେଠାକୁ ଆସି ପ୍ରଜାସୃଷ୍ଟିକାମୀ ଶବଲାଶ୍ୱମାନଙ୍କୁ ପୂର୍ବପରି ଗୂଢ଼ାର୍ଥବୋଧକ ବାକ୍ୟମାନ କହିବାକୁ ଲାଗିଲେ ॥୨୯॥ ନାରଦ କହିଲେ, ଦକ୍ଷପୁତ୍ର ଶବଲାଶ୍ୱଗଣ, ମୁଁ ଯାହା କହୁଛି ଶୁଣ । ତୁମେମାନେ ଭ୍ରାତୃବତ୍ସଳ । ତେଣୁ ତୁମର ଜ୍ୟେଷ୍ଠ ଭ୍ରାତାମାନେ ଯେଉଁବାଟରେ ଯାଇଛନ୍ତି, ତୁମେମାନେ ସେହି ବାଟ ଧରି ଚାଲ ॥୩୦॥ ଯେଉଁ ଧର୍ମଜ୍ଞବ୍ୟକ୍ତି ନିଜ ଧର୍ମପରାୟଣ ଭ୍ରାତାମାନଙ୍କର ପ୍ରକୃଷ୍ଟ ପନ୍ଥା ଅନୁସରଣ କରେ, ସେ ନିଜ ପୁଣ୍ୟବଳରେ ଦେବତାମାନଙ୍କ (ମରୁତ୍‌ଗଣ) ସହିତ ମିଳିତ ହୋଇ ଆନନ୍ଦ ଲାଭକରେ ॥୩୧॥

ଆର୍ଯ୍ୟ ପରିକ୍ଷିତ, ଶବଲାଶ୍ୱମାନଙ୍କୁ ଏହିପରି ଉପଦେଶ ଦେଇ ନାରଦ ସେଠାରୁ ପ୍ରସ୍ଥାନ କଲେ, ଏବଂ ଶବଲାଶ୍ୱମାନେ ମଧ୍ୟ ନିଜ ପୂର୍ବଜ ଭାଇମାନଙ୍କ ମାର୍ଗ ଅନୁସରଣ କଲେ । କାରଣ ନାରଦଙ୍କ ଦର୍ଶନ ଅମୋଘ । ତାହା କେବେ ବ୍ୟର୍ଥ ହୁଏ ନାହିଁ ॥୩୨॥ ଭଗବାନଙ୍କୁ ପାଇବାପାଇଁ ଯାହା ଅତ୍ୟନ୍ତ ଉପଯୋଗୀ, ସମୀଚୀନ ଏବଂ ଇନ୍ଦ୍ରିୟବୃତ୍ତି ଜୟଦ୍ୱାରା ଯାହା ଲଭ୍ୟ, ସେହି ମାର୍ଗକୁ ସେମାନେ ଗଲେ । ବିଗତ ରାତ୍ରିମାନ ଯେପରି ଆଉ ଫେରେ ନାହିଁ, ସେହିପରି ଶବଲାଶ୍ୱଗଣ ନିବୃତ୍ତିମାର୍ଗକୁ ଆଶ୍ରୟ କରି ଯାତ୍ରା କଲେ, ଆଉ ଫେରିଲେ ନାହିଁ ॥୩୩॥ ଏହି ସମୟରେ ଦକ୍ଷ ପ୍ରଜାପତି ନାନାପ୍ରକାର ଉତ୍ପାତ ଦେଖି, ଶୁଣିବାକୁ ପାଇଲେ ଯେ ତାଙ୍କ ପୁତ୍ରମାନେ ପ୍ରଥମ ପୁତ୍ରମାନଙ୍କପରି ନାରଦଙ୍କ ମନ୍ତ୍ରଣାରେ ନିରୁଦ୍ଦିଷ୍ଟ ହୋଇଯାଇଛନ୍ତି ॥୩୪॥ ପୁତ୍ରଶୋକରେ ମୂର୍ଚ୍ଛିତ ଦକ୍ଷ ନାରଦଙ୍କପ୍ରତି ଅତ୍ୟନ୍ତ କ୍ରୁଦ୍ଧ ହୋଇଉଠିଲେ ଏବଂ ନାରଦଙ୍କୁ ଆଗରେ ଦେଖି ରାଗରେ ତାଙ୍କ ଅଧର କମ୍ପିବାକୁ ଲାଗିଲା ॥୩୫॥

ଦକ୍ଷ ନାରଦଙ୍କୁ କହିଲେ, ହେ ଅସାଧୁ ନାରଦ, ତୁମେ ସାଧୁପୁରୁଷର ବେଶ ଧାରଣ କରୁଛ । ମୁଁ କେବେହେଲେ ତୁମ ପ୍ରତି କୌଣସି ଅନ୍ୟାୟ କରି ନାହିଁ, କିନ୍ତୁ ତୁମେ ମୋର ବାଳକ ପୁତ୍ରମାନଙ୍କର ଅତିଶୟ ଅନିଷ୍ଟ କରିଛ ଏବଂ ସେମାନଙ୍କୁ ଭିକ୍ଷୁମାନଙ୍କ ମାର୍ଗରେ ପଠାଇଦେଇଛ ॥୩୬॥ ତିନି ପ୍ରକାର ଋଣ ଶୁଝିବାକୁ ହୁଏ -- ବ୍ରହ୍ମଚର୍ଯ୍ୟଦ୍ୱାରା ଋଷିଋଣ, ଯଜ୍ଞଦ୍ୱାରା ଦେବଋଣ ଓ ପୁତ୍ରୋତ୍ପତ୍ତିଦ୍ୱାରା ପିତୃଋଣ । କିନ୍ତୁ ଏ ସବୁ ଋଣ ଶୁଝିବା ପୂର୍ବରୁ କର୍ମଫଳର ନଶ୍ୱରତା ସମ୍ପର୍କରେ ସେମାନଙ୍କୁ

ତୁମେ ପରାମର୍ଶ ଦେଇଛ । ପାପାତ୍ମା ନାରଦ, ତୁମେ ସେମାନଙ୍କର ଇହକାଳ ଓ ପରକାଳ ଏହି ଦୁଇ କାଳର ମଙ୍ଗଳରେ ବ୍ୟାଘାତ ଘଟାଇଛ ॥୩୭॥ ଅପରିଣତବୁଦ୍ଧି ବାଳକମାନଙ୍କର ମତିଭ୍ରମ ଘଟାଇ ତୁମେ ଅତି ନିର୍ଦ୍ଦୟ ଓ ନିର୍ଲଜ୍ଜ କାର୍ଯ୍ୟ କରିଛ । ଭଗବାନଙ୍କ ପାର୍ଷଦମାନଙ୍କ ମଧ୍ୟରେ ତୁମେ ବିଚରଣ କର । ତୁମଯୋଗୁଁ ସେମାନଙ୍କର ଯଶ ନଷ୍ଟ ହୋଇଛି ॥୩୮॥ ନାରଦ, ଯେଉଁମାନେ କେବେହେଲେ ତୁମପ୍ରତି ଶତ୍ରୁତା କରନ୍ତି ନାହିଁ, ତୁମେ ସେମାନଙ୍କର ଶତ୍ରୁ ହୋଇ ସେମାନଙ୍କର ସଖ୍ୟଭାବକୁ ନଷ୍ଟ କର । ତୁମକୁ ଛାଡ଼ି ଅନ୍ୟ ଭଗବତ୍ ଭକ୍ତମାନେ ଜୀବମାନଙ୍କ ପ୍ରତି ସର୍ବଦା ଅନୁଗ୍ରହ ଦେଖାଇଥା'ନ୍ତି ॥୩୯॥ ତୁମେ ଜଣେ ମିଥ୍ୟାଚାରୀ । ଭଣ୍ଡ ସନ୍ନ୍ୟାସୀର ବେଶ ଧାରଣ କରିଛ । ତୁମେ ଭାବୁଛ ଯେ, ନିବୃତ୍ତିମାର୍ଗ ବିଷୟାସକ୍ତି ରୂପକ ବନ୍ଧନକୁ ଛିନ୍ନ କରିଦିଏ । ଏହାଦ୍ୱାରା ଲୋକର ମତିଭ୍ରମ ଘଟିପାରେ, କିନ୍ତୁ ଯଥାର୍ଥ ବୈରାଗ୍ୟ ଜାତ ହୁଏ ନାହିଁ ॥୪୦॥ ବିଷୟକୁ ଉପଭୋଗ ନ କରିଥିବା ଲୋକ ବିଷୟର ତୀବ୍ରତାକୁ ବୁଝିପାରେ ନାହିଁ । ତେଣୁ ବିଷୟଭୋଗର ତୀବ୍ରତା ରୂପକ ଦୁଃଖ ଯେ ଅନୁଭବ କରିଛି, ତାର ଯେପରି ବୈରାଗ୍ୟ ଜାତ ହୁଏ, ଅନ୍ୟର ଉପଦେଶଦ୍ୱାରା ବୁଦ୍ଧିଭ୍ରମ ଘଟିଲେ ତାହା ହୁଏ ନାହିଁ ॥୪୧॥ ଆମେମାନେ ସଦାଚାରୀ ଗୃହସ୍ଥ । କର୍ମପଥରେ ହିଁ ଧର୍ମର ମର୍ଯ୍ୟାଦା ପାଳନ କରି ଚାଲିଛୁ । ତୁମେ ପ୍ରଥମ ଥର ( ମୋର ପୁତ୍ରମାନଙ୍କୁ ବିଚଳିତ କରି) ଯେଉଁ ଅସହ୍ୟ, ଅପ୍ରିୟ ଆଚରଣ କରିଥିଲ, ମୁଁ ତାହା କ୍ଷମା କରିଥିଲି ॥୪୨॥ କିନ୍ତୁ ମୁଁ ଦେଖୁଛି, ତୁମେ ମୋର ବଂଶକୁ ଉଚ୍ଛେଦ କରିବାପାଇଁ ଲାଗିପଡ଼ିଛ । ହେ ସନ୍ତାନହାରୀ ମୂର୍ଖ, ତୁମେ ବାରମ୍ବାର ମୋର ଯେଉଁ ଅନିଷ୍ଟ କରିଛ, ତାହା ଫଳରେ ତୁମେ ଏଣିକି ଚାରିଆଡ଼େ ବିଚରଣ କରୁଥିବ, କେଉଁଠି ହେଲେ ତୁମକୁ ସ୍ଥାନ ମିଳିବ ନାହିଁ ॥୪୩॥ ଶ୍ରୀ ଶୁକଦେବ କହିଲେ, ସାଧୁମାନଙ୍କର ସମ୍ମାନାସ୍ପଦ ନାରଦ 'ତଥାସ୍ତୁ' ବୋଲି କହି ଦକ୍ଷଙ୍କର ଶାପକୁ ସ୍ୱୀକାର କଲେ । କାରଣ ପ୍ରକୃତ ସାଧୁର ଲକ୍ଷଣ ହେଉଛି, ଶାପର ପ୍ରତିକାର କରିବାକୁ ସମର୍ଥ ହେଲେ ମଧ୍ୟ ସେ ତାହା ସହିନିଏ ॥୪୪॥

## ଷଷ୍ଠ ଅଧ୍ୟାୟ

# ଦକ୍ଷ ପ୍ରଜାପତିଙ୍କ କନ୍ୟାମାନଙ୍କ ବଂଶ ବର୍ଣ୍ଣନା

ଶ୍ରୀ ଶୁକଦେବ କହିଲେ, ପରିକ୍ଷିତ, ଅନନ୍ତର ଦକ୍ଷ ପ୍ରଜାପତି ବ୍ରହ୍ମାଙ୍କର ଅନୁରୋଧ ରକ୍ଷା କରି ପୁଣି ପ୍ରଜାସୃଷ୍ଟିରେ ଲାଗିପଡ଼ିଲେ । ତାଙ୍କର ଔରସରେ ପତ୍ନୀ ଅସକ୍ନୀଙ୍କ ଗର୍ଭରୁ ଷାଠିଏଟି କନ୍ୟା ଜନ୍ମ ହେଲେ । ଏମାନେ ସମସ୍ତେ ପିତାଙ୍କୁ ଅତିଶୟ ଶ୍ରଦ୍ଧା କରୁଥିଲେ ॥୧॥ ଏମାନଙ୍କ ମଧ୍ୟରୁ ଦକ୍ଷପ୍ରଜାପତି ଦଶଟି କନ୍ୟା ଧର୍ମଙ୍କୁ, ତେରଟି କଶ୍ୟପଙ୍କୁ, ସତେଇଶଟି ଚନ୍ଦ୍ରଙ୍କୁ ଏବଂ ଭୂତ, ଅଙ୍ଗିରା ଓ କୃଶାଶ୍ୱ ପ୍ରତ୍ୟେକଙ୍କୁ ଦୁଇଗୋଟି କରି ଦେଲେ ଏବଂ ତାର୍କ୍ଷ୍ୟ ନାମଧାରୀ କଶ୍ୟପଙ୍କୁ ଅବଶିଷ୍ଟ ଚାରିଟି କନ୍ୟାଙ୍କୁ ପ୍ରଦାନ କଲେ ॥୨॥ ଯେଉଁ ଦକ୍ଷକନ୍ୟାମାନଙ୍କର ପୁତ୍ରପୌତ୍ରାଦି ଦ୍ୱାରା ତିନିଲୋକ ପୂର୍ଣ୍ଣ ହୋଇଗଲା, ସେହି ଦକ୍ଷକନ୍ୟା ଏବଂ ସେମାନଙ୍କ ସନ୍ତାନମାନଙ୍କର ନାମ ମୁଁ ପ୍ରଥମେ କହୁଛି, ଶୁଣ ॥୩॥

ଧର୍ମଙ୍କର ଦଶପତ୍ନୀ ହେଲେ -- ଭାନୁ, ଲମ୍ବା, କକୁଭ୍, ଜାମି, ବିଶ୍ୱା, ସାଧ୍ୟା, ମରୁତ୍ୱତୀ , ବସୁ, ମୁହୂର୍ତ୍ତା ଏବଂ ସଂକଳ୍ପା ॥୪॥ ମହାରାଜ, ଭାନୁଙ୍କ ଗର୍ଭରୁ ଦେବଋଷଭ ନାମକ ପୁତ୍ର ଜନ୍ମ ହେଲେ । ତାଙ୍କ ପୁତ୍ର ହେଲେ ଇନ୍ଦ୍ରସେନ । ଲମ୍ବାଙ୍କ ଗର୍ଭରୁ ବିଦ୍ୟୋତ ନାମକ ପୁତ୍ର ଜନ୍ମ ହେଲେ ଏବଂ ତାଙ୍କ ପୁତ୍ର ମେଘଗଣ ॥୫॥ କକୁଭ୍‌ଙ୍କର ପୁତ୍ର ହେଲେ ସଙ୍କଟ, ତାଙ୍କ ପୁତ୍ର କୀକଟ ଏବଂ କୀକଟଙ୍କର ପୁତ୍ର ହେଲେ ପୃଥିବୀର ଦୁର୍ଗାଭିମାନୀ ଦେବଗଣ; ଜାମିଙ୍କ ଗର୍ଭରୁ ସ୍ୱର୍ଗ ନାମକ ପୁତ୍ର ଜନ୍ମ ହେଲେ ଏବଂ ସ୍ୱର୍ଗଙ୍କ ଠାରୁ ନନ୍ଦି ଜନ୍ମ ଗ୍ରହଣ କରିଥିଲେ ॥୬॥ ବିଶ୍ୱାଙ୍କ ଗର୍ଭରୁ ବିଶ୍ୱେଦେବମାନେ ଜନ୍ମ ହେଲେ, ସେମାନେ ନିଃସନ୍ତାନ

ବୋଲି କଥିତ । ସାଧ୍ୟାଙ୍କ ଗର୍ଭରୁ ସାଧ୍ୟଗଣ ଜନ୍ମ ନେଲେ । ସାଧ୍ୟମାନଙ୍କର ପୁତ୍ର ହେଲେ ଅର୍ଥସିଦ୍ଧି ॥୭॥ ମରୁତ୍ୱତୀଙ୍କ ଗର୍ଭରୁ ମରୁତ୍ୱାନ୍ ଓ ଜୟନ୍ତ ନାମରେ ଦୁଇଟି ପୁତ୍ର ହେଲେ । ସେ ଦୁହିଁଙ୍କ ମଧ୍ୟରୁ ଜୟନ୍ତ ବିଷ୍ଣୁଙ୍କ ଅଂଶରେ ଜନ୍ମ ହୋଇଥିଲେ ଏବଂ ସେ ଉପେନ୍ଦ୍ର ନାମରେ ଖ୍ୟାତ ହେଲେ ॥୮॥ ମୁହୂର୍ତ୍ତାଙ୍କ ଗର୍ଭରୁ ମୁହୂର୍ତ୍ତର ଅଭିମାନୀ ଦେବମାନେ ଜନ୍ମ ହେଲେ । ସେମାନେ ପ୍ରାଣୀମାନଙ୍କୁ ଠିକଣା ବେଳରେ (ମୁହୂର୍ତ୍ତରେ) କର୍ମାନୁସାରେ ଫଳଦାନ କଲେ ॥୯॥ ସଙ୍କଳ୍ପାଙ୍କ ଗର୍ଭରୁ ସଙ୍କଳ୍ପ ନାମକ ପୁତ୍ର ଜନ୍ମ ହେଲେ । ସଙ୍କଳ୍ପଙ୍କ ଠାରୁ କାମ ଏବଂ ବସୁଙ୍କ ଗର୍ଭରୁ ଅଷ୍ଟବସୁ ଜନ୍ମ ହେଲେ । ସେହି ଅଷ୍ଟବସୁଙ୍କର ନାମ ମୋ'ଠାରୁ ଶୁଣ ॥୧୦॥ ଦ୍ରୋଣ, ପ୍ରାଣ, ଧ୍ରୁବ, ଅର୍କ, ଅଗ୍ନି, ଦୋଷ, ବସୁ ଏବଂ ବିଭାବସୁ । ଦ୍ରୋଣଙ୍କ ପତ୍ନୀଙ୍କ ନାମ ଅଭିମତି । ତାଙ୍କଠାରୁ ହର୍ଷ, ଶୋକ, ଭୟ ପ୍ରଭୃତି ପୁତ୍ରମାନେ ଜନ୍ମ ହେଲେ ॥୧୧॥ ପ୍ରାଣଙ୍କର ପତ୍ନୀ ଊର୍ଜସ୍ୱତୀଙ୍କ ଗର୍ଭରୁ ସହ, ଆୟୁ ଓ ପୁରୋଜବ ନାମକ ତିନୋଟି ପୁତ୍ର ହେଲେ । ଧ୍ରୁବଙ୍କ ପତ୍ନୀ ଧରଣିଙ୍କଠାରୁ ନାନାବିଧ ପୁରର ଅଧିଷ୍ଠାତୃ ଦେବତା ଜନ୍ମହେଲେ ॥୧୨॥ ଅର୍କ ନାମକ ବସୁଙ୍କର ପତ୍ନୀ ହେଲେ ବାସନା । ତର୍ଷ (ତୃଷ୍ଣା) ଆଦି ତାଙ୍କର ପୁତ୍ର ହେଲେ । ଅଗ୍ନିନାମକ ବସୁଙ୍କର ପତ୍ନୀ ଧାରାଙ୍କ ଗର୍ଭରୁ ଦ୍ରବିଣକ ଆଦି ବହୁପୁତ୍ର ଜନ୍ମ ହେଲେ ॥୧୩॥ କୃତ୍ତିକାପୁତ୍ର ସ୍କନ୍ଦ ମଧ୍ୟ ଅଗ୍ନିଙ୍କଠାରୁ ଜନ୍ମ ହେଲେ । ତାଙ୍କଠାରୁ ବିଶାଖ ଆଦି ଜନ୍ମ ନେଲେ । ଦୋଷଙ୍କ ପତ୍ନୀ ଶର୍ବରୀଙ୍କ ଗର୍ଭରୁ ଶିଶୁମାରଙ୍କ ଜନ୍ମ । ସେ ଭଗବାନଙ୍କର କଳାବତାର ଥିଲେ ॥୧୪॥

ବସୁଙ୍କ ପତ୍ନୀ ଆଙ୍ଗିରସୀଙ୍କଠାରୁ ଶିଳ୍ପାଚାର୍ଯ୍ୟ ବିଶ୍ୱକର୍ମାଙ୍କର ଜନ୍ମ ହେଲା । ବିଶ୍ୱକର୍ମାଙ୍କ ଔରସରେ ତାଙ୍କ ଭାର୍ଯ୍ୟା କୃତୀଙ୍କ ଗର୍ଭରୁ ଚାକ୍ଷୁସ ମନୁଙ୍କର ଜନ୍ମ ହେଲା ଏବଂ ତାଙ୍କ ପୁତ୍ର ହେଲେ ବିଶ୍ୱେଦେବ ଏବଂ ସାଧ୍ୟଗଣ ॥୧୫॥ ବିଭାବସୁଙ୍କ ଔରସରେ ତାଙ୍କ ପତ୍ନୀ ଉଷାଙ୍କ ଗର୍ଭରୁ ତିନି ପୁତ୍ର ହେଲେ -- ବ୍ୟୁଷ୍ଟ, ରୋଚିଷ୍ ଏବଂ ଆତପ । ଏମାନଙ୍କ ମଧ୍ୟରୁ ଆତପଙ୍କର ଗର୍ଭରୁ ପଞ୍ଚଯାମ (ଦିବସ) ନାମକ ପୁତ୍ର ହେଲେ । ତାଙ୍କ ଯୋଗୁ ସମସ୍ତ ଜୀବଜଗତ ନିଜ ନିଜ କର୍ମରେ ପ୍ରବୃତ୍ତ ହୁଅନ୍ତି ॥୧୬॥ ଭୂତଙ୍କର ସରୂପାନାମ୍ନୀ ସ୍ତ୍ରୀ କୋଟି କୋଟି ରୁଦ୍ରଗଣଙ୍କୁ ଜନ୍ମ ଦେଲେ । ରୈବତ, ଅଜ, ଭବ, ଭୀମ, ବାମ, ଉଗ୍ର, ବୃଷାକପି, ଅଜୈକପାଦ, ଅହିର୍ବୁଧ୍ନ୍ୟ, ବହୁରୂପ ଓ ମହାନ୍ - ଏହି ଏକାଦଶ ରୁଦ୍ରଙ୍କର ଅନୁଚର ଭୟଙ୍କର ପ୍ରେତ, ବିନାୟକ ପ୍ରଭୃତି ପୁତ୍ର ଭୂତଙ୍କର ଅନ୍ୟ ପତ୍ନୀଙ୍କ ଗର୍ଭରୁ ଜନ୍ମ ଗ୍ରହଣ କଲେ ॥୧୭-୧୮॥ ପ୍ରଜାପତି ଅଙ୍ଗିରାଙ୍କ ପତ୍ନୀ ସ୍ୱଧା ପିତୃଗଣଙ୍କୁ ପୁତ୍ରରୂପେ ଲାଭ କଲେ ଏବଂ ତାଙ୍କ ଅନ୍ୟ ସ୍ତ୍ରୀ ସତୀ ଅଥର୍ବାଙ୍ଗିରସ ନାମକ ବେଦକୁ ପୁତ୍ରରୂପରେ ଲାଭ କଲେ ॥୧୯॥ କୃଶାଶ୍ୱଙ୍କ ପତ୍ନୀ ଅର୍ଚ୍ଚିଙ୍କଠାରୁ ଧୂମ୍ରକେଶଙ୍କର ଜନ୍ମ ହେଲା ଏବଂ ତାଙ୍କ ଅନ୍ୟ ପତ୍ନୀ ଧିଷଣାଙ୍କର ଚାରି ପୁତ୍ର ହେଲେ -- ବେଦଶିରା, ଦେବଳ, ବୟୁନ ଏବଂ ମନୁ ॥୨୦॥

ତାର୍କ୍ଷ୍ୟ ନାମଧାରୀ କଶ୍ୟପଙ୍କର ଚାରି ଜଣ ସ୍ତ୍ରୀ ଥିଲେ -- ବିନତା, କଦ୍ରୁ, ପତଙ୍ଗୀ ଏବଂ ଯାମିନୀ । ପତଙ୍ଗୀଙ୍କଠାରୁ ପତଙ୍ଗମାନଙ୍କର ଏବଂ ଯାମିନୀଙ୍କ ଠାରୁ ଶଲଭମାନଙ୍କର ଜନ୍ମ ହେଲା ॥୨୧॥ ବିନତାଙ୍କ ପୁତ୍ର ହେଲେ ଗରୁଡ଼, ଯେ ହେଉଛନ୍ତି ଭଗବାନ ବିଷ୍ଣୁଙ୍କର ବାହନ । ବିନତାଙ୍କର ଦ୍ୱିତୀୟ ପୁତ୍ର ଅରୁଣ -- ସୂର୍ଯ୍ୟଙ୍କର ସାରଥି । କଦ୍ରୁଙ୍କଠାରୁ ବହୁସଂଖ୍ୟାରେ ନାଗମାନେ ଜନ୍ମ ନେଲେ ॥୨୨॥ ପରିକ୍ଷିତ, କୃତ୍ତିକା ଆଦି ସତେଇଶ ନକ୍ଷତ୍ର ହେଲେ ଚନ୍ଦ୍ରଙ୍କର ପତ୍ନୀ । କିନ୍ତୁ ଚନ୍ଦ୍ର ରୋହିଣୀଙ୍କୁ ବିଶେଷ ଭାବରେ ପ୍ରେମ କରୁଥିବାଯୋଗୁଁ ସେ ଦକ୍ଷଙ୍କ ଦ୍ୱାରା ଶାପଗ୍ରସ୍ତ ହେଲେ ଓ କ୍ଷୟରୋଗ ଭୋଗ କଲେ । ତାଙ୍କଠାରୁ କୌଣସି ସନ୍ତାନ ଜନ୍ମ ହୋଇ ନ ଥିଲେ ॥୨୩॥ ଚନ୍ଦ୍ର ଦକ୍ଷଙ୍କୁ ସନ୍ତୁଷ୍ଟ କରି କୃଷ୍ଣପକ୍ଷରେ କ୍ଷୀଣ ହେଉଥିବା କଳାମାନ ଶୁକ୍ଳପକ୍ଷରେ ପୂର୍ଣ୍ଣ ହେବାର ବର ଲାଭ କଲେ । କିନ୍ତୁ ନକ୍ଷତ୍ରମାନଙ୍କର କୌଣସି ସନ୍ତାନ ହେଲେ ନାହିଁ । ଏବେ ତୁମେ କଶ୍ୟପଙ୍କ ପତ୍ନୀମାନଙ୍କର ଶୁଭ ନାମ ଶ୍ରବଣ କର । ସେମାନେ ସମସ୍ତେ ଲୋକମାତା । ସେମାନଙ୍କଠାରୁ ସାରା ସୃଷ୍ଟିର ଜନ୍ମ । ସେମାନଙ୍କର ନାମ ହେଲା -- ଅଦିତି , ଦିତି, ଦନୁ, କାଷ୍ଠା, ଅରିଷ୍ଟା, ସୁରସା, ଇଳା, ମୁନି, କ୍ରୋଧବଶା, ତାମ୍ରା, ସୁରଭି, ସରମା ଏବଂ ତିମି । ଏମାନଙ୍କ ମଧ୍ୟରୁ ତିମିଙ୍କର ପୁତ୍ର ହେଉଛନ୍ତି ସମସ୍ତ ଜଳଚର ଜନ୍ତୁ ଏବଂ ସରମାଙ୍କର ସନ୍ତାନ ବ୍ୟାଘ୍ର ଆଦି ସମସ୍ତ ହିଂସ୍ର ଜନ୍ତୁ ॥୨୪-୨୬॥

ଦୁଇ ଖୁରା ବିଶିଷ୍ଟ ଗୋମହିଷାଦି ପଶୁ ହେଲେ ସୁରଭିଙ୍କର ପୁତ୍ର । ତାମ୍ରାଙ୍କର ସନ୍ତାନ ହେଲେ --ଶ୍ୟେନ, ଗୃଧ୍ର ଆଦି ପକ୍ଷୀଗଣ; ମୁନିଙ୍କ ଠାରୁ ଅପ୍‌ସରାମାନେ ଏବଂ କ୍ରୋଧବଶାଙ୍କ ଗର୍ଭରୁ ଦନ୍ଦଶୂକ ଓ ସର୍ପ ଆଦି ବିଷାକ୍ତ ଜୀବ ଜନ୍ମ ହେଲେ । ଇଳାଙ୍କଠାରୁ ବୃକ୍ଷ, ଲତା ଆଦି ବନସ୍ପତି ଏବଂ ସୁରସାଙ୍କଠାରୁ ରାକ୍ଷସମାନଙ୍କ ଜନ୍ମ ହେଲା ।।୨୭-୨୮।। ଅରିଷ୍ଟାଙ୍କଠାରୁ ଗନ୍ଧର୍ବ ଏବଂ କାଷ୍ଠାଙ୍କଠାରୁ ଅଶ୍ୱ ଆଦି ଦୁଇ ଖୁରା ଥିବା ପଶୁମାନେ ଜନ୍ମ ହେଲେ । ଦନୁଙ୍କର ହେଲେ ଏକଷଠି ପୁତ୍ର । ସେମାନଙ୍କ ମଧ୍ୟରେ ଯେଉଁମାନେ ପ୍ରଧାନ ତାଙ୍କ ନାମ ଶୁଣ ।।୨୯।। ଦ୍ୱିମୂର୍ଦ୍ଧା, ଶମ୍ବର, ଅରିଷ୍ଟ, ହୟଗ୍ରୀବ, ବିଭାବସୁ, ଅୟୋମୁଖ, ଶଙ୍କୁଶିରା, ସ୍ୱର୍ଭାନୁ, କପିଳ, ଅରୁଣ, ପୁଲୋମା, ବୃଷପର୍ବା, ଏକଚକ୍ର, ଅନୁତାପନ, ଧୂମ୍ରକେଶ, ବିରୂପାକ୍ଷ, ବିପ୍ରଚିତ୍ତି ଏବଂ ଦୁର୍ଜୟ । ସେମାନଙ୍କ ମଧ୍ୟରେ ସ୍ୱର୍ଭାନୁଙ୍କର କନ୍ୟା ସୁପ୍ରଭାଙ୍କୁ ନମୁଚି ନାମକ ଦୈତ୍ୟ ବିବାହ କରିଥିଲା ।।୩୦-୩୧।। ବୃଷପର୍ବାଙ୍କର କନ୍ୟା ଶର୍ମିଷ୍ଠାଙ୍କୁ ନହୁଷଙ୍କ ପୁତ୍ର ମହାବଳୀ ଯଯାତି ବିବାହ କରିଥିଲେ ଏବଂ ଦନୁଙ୍କ ପୁତ୍ର ବୈଶ୍ୱାନରଙ୍କର ଚାରୋଟି ସୁନ୍ଦରୀ କନ୍ୟା ଥିଲେ-- ଉପଦାନବୀ, ହୟଶିରା, ପୁଲୋମା ଏବଂ କାଳକା । ସେମାନଙ୍କ ମଧ୍ୟରୁ ଉପଦାନବୀଙ୍କୁ ହିରଣ୍ୟାକ୍ଷ ଓ ହୟଶିରାଙ୍କୁ କ୍ରତୁ ବିବାହ କଲେ ।।୩୨-୩୩।। ଏହାପରେ ପ୍ରଜାପତି କଶ୍ୟପ ବ୍ରହ୍ମାଙ୍କର ଉପଦେଶ ଅନୁଯାୟୀ ବୈଶ୍ୱାନରଙ୍କର ପୁଲୋମା ଓ କାଳକା ନାମ୍ନୀ ଦୁଇଟି କନ୍ୟାଙ୍କୁ ବିବାହ କରିଥିଲେ । ସେ ଦୁଇ ଜଣଙ୍କ ଗର୍ଭରୁ ପୌଲମ ଓ କାଳକେୟ ନାମକ ରଣଦୁର୍ମଦ ପୁତ୍ର ଜନ୍ମ ହେଲେ ।।୩୪-୩୫।। ରାଜା, ଏମାନେ ଲୋକମାନଙ୍କର ଯଜ୍ଞ ନଷ୍ଟ କରିବାରୁ ତୁମର ପିତାମହ ଅର୍ଜୁନ ଇନ୍ଦ୍ରଙ୍କର ପ୍ରିୟ କାର୍ଯ୍ୟ କରିବାନିମନ୍ତେ ସ୍ୱର୍ଗକୁ ଯାଇ ଏକାକୀ ସେ ସମସ୍ତ ଦାନବଙ୍କୁ ବଧ କରିଥିଲେ ।।୩୬।। ବିପ୍ରଚିତ୍ତି ନାମକ ରାକ୍ଷସର ଔରସରୁ ପତ୍ନୀ ସିଂହିକାର ଗର୍ଭରୁ ଏକଶହ ଏକ ପୁତ୍ର ଜନ୍ମ ହେଲେ । ଏମାନଙ୍କ ମଧ୍ୟରେ ଜ୍ୟେଷ୍ଠଙ୍କୁ ରାହୁ ଏବଂ ଅବଶିଷ୍ଟ ଶହେ ଜଣଙ୍କୁ କେତୁ ନାମରେ ନବଗ୍ରହ ମଧ୍ୟରେ ଅନ୍ତର୍ଭୁକ୍ତ କରାଯାଏ ।।୩୭।। ପରିକ୍ଷିତ, ବର୍ତ୍ତମାନ ତୁମେ କ୍ରମ ଅନୁଯାୟୀ ଅଦିତିଙ୍କର ବଂଶପରମ୍ପରାକୁ ଶ୍ରବଣ କର । ଏହି ବଂଶରେ ଭଗବାନ୍ ନାରାୟଣ ନିଜ ଅଂଶରେ ଅବତୀର୍ଣ୍ଣ ହୋଇଥିଲେ ।।୩୮।।

ବିବସ୍ୱାନ୍, ଅର୍ଯ୍ୟମା, ପୂଷା, ତ୍ୱଷ୍ଟା, ସବିତା, ଭଗ, ଧାତା, ବିଧାତା, ବରୁଣ, ମିତ୍ର, ଶକ୍ର ଓ ଉରୁକ୍ରମ -- ଏହି ବାର ଜଣ ହେଲେ ଅଦିତିଙ୍କର ପୁତ୍ର ।।୩୯।। ବିବସ୍ୱାନଙ୍କର ସଂଜ୍ଞା ନାମ୍ନୀ ସ୍ତ୍ରୀଙ୍କଠାରୁ ଶ୍ରାଦ୍ଧଦେବ ନାମକ ମନୁ ଜନ୍ମ ହେଲେ । ତାଙ୍କର ଅନ୍ୟ ପତ୍ନୀ ମହାଭାଗା । ତାଙ୍କର ଯମ ନାମରେ ଏକ ପୁତ୍ର ଓ ଯମୁନା ନାମରେ ଏକ କନ୍ୟା, ଯାଆଁଳା ରୂପେ ଜନ୍ମ ହେଲେ । ସେହି ମହାଭାଗା ଘୋଟକୀ ମୂର୍ତ୍ତି ଧାରଣ କରି ମର୍ତ୍ତ୍ୟଲୋକରେ ଥିବା ବେଳେ ଅଶ୍ୱିନୀକୁମାର ଦୁହିଁଙ୍କୁ ପ୍ରସବ କରିଥିଲେ ।।୪୦।। ବିବସ୍ୱାନ୍‌ଙ୍କର ଅନ୍ୟ ପତ୍ନୀଙ୍କ ନାମ ହେଲା ଛାୟା । ତାଙ୍କର ଶନୈଶ୍ଚର ଓ ସାବର୍ଣ୍ଣ ମନୁ ନାମରେ ଦୁଇ ପୁତ୍ର ଓ ତପତୀ ନାମରେ ଏକ କନ୍ୟା ହେଲେ । ତପତୀ ସମ୍ବରଣଙ୍କୁ ପତିରୂପରେ ବରଣ କଲେ ।।୪୧।। ଅର୍ଯ୍ୟମାଙ୍କ ଔରସରେ ତାଙ୍କ ପତ୍ନୀ ମାତୃକାଙ୍କ ଗର୍ଭରୁ ବହୁ ହିତାହିତଜ୍ଞାନସମ୍ପନ୍ନ ପୁତ୍ର ଜନ୍ମ ହେଲେ । ସେମାନଙ୍କୁ ଆଧାର କରି ବ୍ରହ୍ମା ମନୁଷ୍ୟ ଜାତିର କଳ୍ପନା କରିଥିଲେ ।।୪୨।। ଅଦିତିଙ୍କର ପୁତ୍ର ପୂଷାଙ୍କର କୌଣସି ପୁତ୍ର ହେଲେ ନାହିଁ । ଏହି ପୁଷା ପୂର୍ବେ ଦକ୍ଷଙ୍କ ପ୍ରତି କ୍ରୁଦ୍ଧ ମହାଦେବଙ୍କୁ ଦାନ୍ତ ଦେଖାଇ ଉପହାସ କରିଥିଲେ ଯାହାଫଳରେ କି ବୀରଭଦ୍ର ତାଙ୍କ ଦାନ୍ତ ଭାଙ୍ଗି ଦେଇଥିଲେ । ସେହି ଦିନଠାରୁ ସେ ପିଷ୍ଟ (ପିଠା) ଭକ୍ଷଣ କରନ୍ତି ।।୪୩।। ଦୈତ୍ୟକନ୍ୟା ରଚନା ହେଲେ ପ୍ରଜାପତି ତ୍ୱଷ୍ଟାଙ୍କର ପତ୍ନୀ । ସନ୍ନିବେଶ ଓ ବିଶ୍ୱରୂପ ନାମରେ ତାଙ୍କର ଦୁଇଟି ପୁତ୍ର ହେଲେ । ବିଶ୍ୱରୂପ ଅତିଶୟ ପରାକ୍ରମୀ ଥିଲେ ।।୪୪।। ଇନ୍ଦ୍ରଙ୍କଦ୍ୱାରା ଅପମାନିତ ବୃହସ୍ପତି ଯେତେବେଳେ ଦେବତାମାନଙ୍କୁ ପରିତ୍ୟାଗ କରି ଚାଲିଗଲେ, ସେତେବେଳେ ଦୈତ୍ୟମାନଙ୍କର ଭାଗିନେୟ ହୋଇଥିଲେ ମଧ୍ୟ ବିଶ୍ୱରୂପଙ୍କୁ ଦେବତାମାନେ ପୁରୋହିତ ରୂପେ ବରଣ କରିଥିଲେ ।।୪୫।।

## ସପ୍ତମ ଅଧ୍ୟାୟ

# ବୃହସ୍ପତି ଓ ବିଶ୍ୱରୂପ

ରାଜା ପରିକ୍ଷିତ ପଚାରିଲେ, ଶୁକଦେବ, ଦେବଗୁରୁ ବୃହସ୍ପତି ତାଙ୍କର ଶିଷ୍ୟମାନଙ୍କୁ କାହିଁକି ପରିତ୍ୟାଗ କରିଥିଲେ, ଶିଷ୍ୟମାନଙ୍କର ଅପରାଧ କ'ଣ ? ତାହା ମୋତେ ବର୍ଣ୍ଣନା କରନ୍ତୁ ॥୧॥ ମହାରାଜ, ଇନ୍ଦ୍ର ତ୍ରିଭୁବନର ଐଶ୍ୱର୍ଯ୍ୟ ଲାଭ କରି ମଦମତ୍ତ ହୋଇଗଲେ ଏବଂ ଧର୍ମର ମର୍ଯ୍ୟାଦା ଓ ସଦାଚାର କ'ଣ ମାନିଲେ ନାହିଁ । ଦିନକର କଥା । ଇନ୍ଦ୍ର ଦେବସଭାରେ ନିଜର ପତ୍ନୀ ଶଚୀଙ୍କ ସହିତ ଉଚ୍ଚ ସିଂହାସନ ଉପରେ ବସିଥିଲେ । ଅଣଚାଶ ପବନ, ଅଷ୍ଟବସୁ, ଏକାଦଶ ରୁଦ୍ର, ଦ୍ୱାଦଶ ଆଦିତ୍ୟ, ଋଭୁଗଣ, ବିଶ୍ୱେଦେବଗଣ, ସାଧ୍ୟଗଣ, ଅଶ୍ୱିନୀକୁମାର ଦ୍ୱୟ, ସିଦ୍ଧ, ଚାରଣ, ଗନ୍ଧର୍ବ, ବ୍ରହ୍ମବାଦୀ ମୁନି, ବିଦ୍ୟାଧର, ଅପ୍‌ସରା, କିନ୍ନର, ପକ୍ଷୀ ଓ ନାଗମାନେ ଇନ୍ଦ୍ରଙ୍କୁ ଘେରି ରହି ତାଙ୍କର ସେବା ଓ ସ୍ତୁତିଗାନ କରୁଥିଲେ । ଚନ୍ଦ୍ରମଣ୍ଡଳ ପରି ସୁନ୍ଦର ଶ୍ୱେତଛତ୍ର ତାଙ୍କ ମୁଣ୍ଡଉପରେ ଶୋଭାପାଉଥିଲା । ଚାମର, ବ୍ୟଜନ ଆଦି ଅନ୍ୟାନ୍ୟ ରାଜୋଚିତ ସାମଗ୍ରୀ ତାଙ୍କ ସେବାରେ ଲଗା ଯାଇଥିଲା । ଶଚୀଙ୍କ ସହିତ ଇନ୍ଦ୍ର ଅତିଶୟ ଶୋଭାପାଉଥିଲେ ॥୨-୬॥ ଏହି ସମୟରେ ଦେବରାଜ ଇନ୍ଦ୍ର ଓ ସମସ୍ତ ଦେବତାଙ୍କର ପରମଗୁରୁ ଏବଂ ଦେବାସୁର ସମସ୍ତଙ୍କର ବନ୍ଦନୀୟ ଆଚାର୍ଯ୍ୟ ବୃହସ୍ପତି ଆସି ସଭାରେ ପହଞ୍ଚିଲେ । ତାଙ୍କୁ ଆସିବାର ଦେଖି ମଧ୍ୟ ଇନ୍ଦ୍ର ନିଜ ଆସନରୁ ଉଠିଲେ ନାହିଁ କିମ୍ବା ଆସନ ଆଦି ଦେଇ ତାଙ୍କୁ ଅଭିନନ୍ଦନ କଲେ ନାହିଁ ॥୭-୮॥

ତାହା ଦେଖି ମହାପ୍ରାଜ୍ଞ ତେଜସ୍ୱୀ ବୃହସ୍ପତି ବୁଝିପାରିଲେ ଯେ ଐଶ୍ୱର୍ଯ୍ୟଗର୍ବରେ ଇନ୍ଦ୍ରର ଏପରି ଚିତ୍ତବିକାର ଘଟିଛି । ସେ କିଛି ନ କହି ସଙ୍ଗେ ସଙ୍ଗେ ସଭାସ୍ଥଳ ଛାଡ଼ି ନିଜ ଗୃହକୁ ଚାଲିଗଲେ । ତା'ପରେ ଯାଇ ଇନ୍ଦ୍ରଙ୍କର ଚୈତନ୍ୟ ଉଦୟ ହେଲା । ଗୁରୁଙ୍କୁ ଅବଜ୍ଞା କରି ସେ ଯେଉଁ ଅପରାଧ କରିଛନ୍ତି, ତାହା ସ୍ମରଣ କରି ସଭାରେ ନିଜକୁ ନିନ୍ଦା କରିବାକୁ ଲାଗିଲେ ॥୯-୧୦॥ ହାୟ, ମୋର ବୁଦ୍ଧି କେଡ଼େ ମନ୍ଦ ! ଆଜି ମୁଁ କି ଅନ୍ୟାୟ ନ କଲି ! ଐଶ୍ୱର୍ଯ୍ୟମଦରେ ମତ୍ତ ହୋଇ ମୁଁ ସଭାରେ ଗୁରୁଦେବଙ୍କୁ ଅପମାନିତ କଲି ॥୧୧॥ ଦେବତାମାନଙ୍କର ଅଧୀଶ୍ୱର ହୋଇ ଐଶ୍ୱର୍ଯ୍ୟର ମୋହରେ ମୁଁ ଅସୁରପରି ଯେଉଁ ଆଚରଣ କଲି, ତାହା କୌଣସି ଜ୍ଞାନୀ ପସନ୍ଦ କରିବ ନାହିଁ । ରାଜସିଂହାସନରେ ବସିଥିବା ବେଳେ ରାଜା ସିଂହାସନରୁ ଉଠି କାହାକୁ ଅଭିବାଦନ କରିବା ଉଚିତ ନୁହେଁ ବୋଲି ଯେଉଁମାନେ କହନ୍ତି, ସେମାନେ ପ୍ରକୃତ ଧର୍ମତତ୍ତ୍ୱ ଜାଣନ୍ତି ନାହିଁ ॥୧୨-୧୩॥ ପଥରର ଭେଳାରେ ସମୁଦ୍ରକୁ ପାରହେବା ପାଇଁ ଇଚ୍ଛା କରୁଥିବା ଲୋକପରି ଯେଉଁ ବ୍ୟକ୍ତି ଏଭଳି କୁପରାମର୍ଶରେ ଚାଳିତ ହୁଏ ଅପାର ମୋହ ସାଗରରେ ବୁଡ଼ି ତାର ମରିବା ହିଁ ସାର ହୁଏ ॥୧୪॥ ବର୍ତ୍ତମାନ ମୁଁ ଯାଉଛି ସେହି ଅଗାଧ ଜ୍ଞାନସମ୍ପନ୍ନ ଦେବଗୁରୁଙ୍କ ପାଦତଳେ ପଡ଼ି ତାଙ୍କୁ ଯେ କୌଣସି ମତେ ସନ୍ତୁଷ୍ଟ କରିବି ॥୧୫॥ ଇନ୍ଦ୍ର ଏହିପରି ଚିନ୍ତା କରୁଥିବା ବେଳେ ବୃହସ୍ପତି ନିଜ ଘରୁ ବାହାରିଯାଇ ଯୋଗବଳରେ ଅନ୍ତର୍ଦ୍ଧାନ ହୋଇଗଲେ ॥୧୬॥

ଦେବରାଜ ଇନ୍ଦ୍ର ଚାରିଆଡ଼େ ବହୁତ ଖୋଜିଲେ । କିନ୍ତୁ ଗୁରୁଙ୍କର ସନ୍ଧାନ ପାଇଲେ ନାହିଁ । ସେ ଅତିଶୟ ଚିନ୍ତିତ ହୋଇ ଦେବତାମାନଙ୍କ ସହିତ ପରାମର୍ଶ କରିବାକୁ ଲାଗିଲେ । କିନ୍ତୁ ତାଙ୍କୁ କିଛି ବାଟ ଦେଖାଗଲା ନାହିଁ ॥୧୭॥ ଗର୍ବୋନ୍ମତ୍ତ ଅସୁରଗଣ ଇନ୍ଦ୍ରଙ୍କ ଆଚରଣ ଓ ବୃହସ୍ପତିଙ୍କ ଅନ୍ତର୍ଦ୍ଧାନ ହେବାର ସମ୍ବାଦ ଶୁଣି ଗୁରୁ ଶୁକ୍ରାଚାର୍ଯ୍ୟଙ୍କ ସହିତ ମନ୍ତ୍ରଣା କଲେ ଏବଂ ଅସ୍ତ୍ରଧାରଣପୂର୍ବକ ଦେବତାଙ୍କ ବିରୁଦ୍ଧରେ ଯୁଦ୍ଧର ସଜବାଜରେ ଲାଗିଗଲେ ॥୧୮॥ ଅସୁରମାନଙ୍କ ନିକ୍ଷିପ୍ତ ଶରରେ ଦେବତାମାନଙ୍କର ଉରୁ ଓ ବାହୁ ଆଦି ବିଭିନ୍ନ ଅଙ୍ଗ ପ୍ରତ୍ୟଙ୍ଗ ବିଦୀର୍ଣ୍ଣ ହେବାକୁ ଲାଗିଲା । ଏପରି ଅବସ୍ଥାରେ ଇନ୍ଦ୍ରସମେତ ଦେବତାମାନେ ନତମସ୍ତକ ହୋଇ ବ୍ରହ୍ମାଙ୍କ ଶରଣାପନ୍ନ ହେଲେ । ସେମାନଙ୍କର ଏପରି କାତର ଅବସ୍ଥା ଦେଖି ବ୍ରହ୍ମାଙ୍କର ଦୟା ହେଲା । ସେମାନଙ୍କୁ

ସାନ୍ତ୍ୱନା ଦେବା ଛଳରେ ସେ କହିଲେ, ହେ ଦେବତାମାନେ, ଦୁଃଖର ବିଷୟ, ତୁମେମାନେ ଐଶ୍ୱର୍ଯ୍ୟଗର୍ବରେ ମତ୍ତ ହୋଇ ବ୍ରହ୍ମଜ୍ଞାନୀ ଓ ସଂଯମୀ ବ୍ରାହ୍ମଣଙ୍କୁ ଅବଜ୍ଞା କରିଛ । ସେଥିପାଇଁ ଦେବଗଣ, ସମୃଦ୍ଧିଶାଳୀ ହେଲେ ମଧ୍ୟ, ଅନ୍ୟାୟ କାର୍ଯ୍ୟର ଫଳସ୍ୱରୂପ ତୁମେ ଦୁର୍ବଳ ଶତ୍ରୁମାନଙ୍କ ଦ୍ୱାରା ପରାସ୍ତ ହୋଇଛ ॥୧୯-୨୨॥ ଦେବରାଜ ! ତୁମର ଶତ୍ରୁମାନେ ମଧ୍ୟ ପ୍ରଥମେ ନିଜର ଗୁରୁ ଶୁକ୍ରାଚାର୍ଯ୍ୟଙ୍କୁ ଅବମାନନା କରି ଦୁର୍ବଳ ହୋଇପଡ଼ିଥିଲେ ଏବଂ ଭକ୍ତିପୂର୍ବକ ତାଙ୍କୁ ଆରାଧନା କରିବାଦ୍ୱାରା ପୁଣି ସେମାନେ ଧନ, ଜନ, ଐଶ୍ୱର୍ଯ୍ୟରେ ପୂରି ଉଠିଲେ । ସେମାନେ ଶୁକ୍ରାଚାର୍ଯ୍ୟଙ୍କୁ ନିଜର ଇଷ୍ଟଦେବ ମାନି ଏପରି ଭକ୍ତି କରୁଛନ୍ତି ଯେ, ତାହା ବଳରେ ଦିନେ ମୋର ବ୍ରହ୍ମଲୋକକୁ ମଧ୍ୟ ଛଡ଼ାଇନେବେ ॥୨୩॥ ଭୃଗୁବଂଶୀମାନେ ସେମାନଙ୍କୁ ଅର୍ଥଶାସ୍ତ୍ରର ପୂରା ଶିକ୍ଷା ଦେଇଛନ୍ତି । ସେମାନଙ୍କ ମନ୍ତ୍ରଣା ଭେଦ କରିବାର ସାଧ୍ୟ ତୁମର ନାହିଁ । ଗୁରୁଙ୍କ ଉପଦେଶ ବଳରେ ସେମାନେ ସ୍ୱର୍ଗକୁ ନଗଣ୍ୟ ମନେ କରନ୍ତି । ଗୋ-ବ୍ରାହ୍ମଣ ଓ ବିଷ୍ଣୁ ଯାହାଙ୍କପ୍ରତି ସଦୟ, ସେମାନଙ୍କର କେହି ଅମଙ୍ଗଳ କରିପାରିବେ ନାହିଁ ॥୨୪॥ ତେଣୁ ତୁମେମାନେ ତ୍ୱଷ୍ଟାଙ୍କ ପୁତ୍ର ବିଶ୍ୱରୂପଙ୍କୁ ତୁମର ଗୁରୁ ହେବା ପାଇଁ ପ୍ରାର୍ଥନା କର, ସେ ସଚ୍ଚା ବ୍ରାହ୍ମଣ, ତପସ୍ୱୀ ଓ ଉଦାରଚେତା । ଅସୁରଙ୍କପ୍ରତି ତାଙ୍କର ଶ୍ରଦ୍ଧା ଥିବା ତୁମେ ଜାଣିଛ । ସେଥିପାଇଁ କିଛି ମନେ ନକରି ତାଙ୍କୁ ଯଦି ତୁମେ ଅଭ୍ୟର୍ଥନାଦ୍ୱାରା ସନ୍ତୁଷ୍ଟ କରି ପାରିବ, ତା ହେଲେ ସେ ତୁମର କାର୍ଯ୍ୟଟି ସମ୍ପନ୍ନ କରିଦେବେ ॥୨୫॥ ଶ୍ରୀ ଶୁକଦେବ କହିଲେ, ପରିକ୍ଷିତ, ବ୍ରହ୍ମା ଦେବତାମାନଙ୍କୁ ଏହିପରି କହିବାରୁ ସେମାନଙ୍କର ଚିନ୍ତା ଦୂର ହୋଇଗଲା । ସେମାନେ ତ୍ୱଷ୍ଟାଙ୍କ ପୁତ୍ର ବିଶ୍ୱରୂପଙ୍କ ପାଖୁ ଯାଇ ତାଙ୍କୁ ଅଭିନନ୍ଦନ କରି ନିଜର ଇଚ୍ଛା ଜଣାଇଲେ ॥୨୬॥

ଦେବତାମାନେ କହିଲେ, ବତ୍ସ ବିଶ୍ୱରୂପ, ଆମେମାନେ ତୁମର ଆଶ୍ରମକୁ ଅତିଥିଭାବରେ ଆସି ପହଞ୍ଚିଛୁ । ତୁମର ମଙ୍ଗଳ ହେଉ । ଆମେମାନେ ତୁମର ପିତୃତୁଲ୍ୟ । ଆମର ସମୟୋଚିତ ଅଭିଳାଷକୁ ପୂରଣ କର ॥୨୭॥ ବ୍ରହ୍ମନ୍, ଯେଉଁମାନେ ସତ୍‌ପୁତ୍ର, ପୁତ୍ରବାନ୍ ହେଲେ ମଧ୍ୟ ପିତୃଲୋକଙ୍କ ଶୁଶ୍ରୂଷା ହିଁ ସେମାନଙ୍କର ଶ୍ରେଷ୍ଠଧର୍ମ । ଯେଉଁପୁତ୍ର ବ୍ରହ୍ମଚାରୀ, ତାର ଦାୟିତ୍ୱ ତ ଆହୁରି ବେଶୀ । ଆଚାର୍ଯ୍ୟ ହେଉଛନ୍ତି ବେଦର ପ୍ରତିମୂର୍ତ୍ତି । ପିତା ପ୍ରଜାପତିଙ୍କର ମୂର୍ତ୍ତି, ଭ୍ରାତା ଦେବରାଜଙ୍କର ମୂର୍ତ୍ତି ଏବଂ ମାତା ସାକ୍ଷାତ୍ ପୃଥିବୀର ମୂର୍ତ୍ତି । ଭଗିନୀ ଦୟାର ମୂର୍ତ୍ତି, ଅତିଥି ସାକ୍ଷାତ୍ ଧର୍ମର ସ୍ୱରୂପ, ଅଭ୍ୟାଗତ ଅଗ୍ନିଙ୍କର ମୂର୍ତ୍ତି । ସମସ୍ତ ପ୍ରାଣୀ ଶ୍ରୀ ଭଗବାନଙ୍କର ମୂର୍ତ୍ତି ॥୨୮-୩୦॥ ବତ୍ସ ବିଶ୍ୱରୂପ, ସେହି କାରଣରୁ ତୁମେ ନିଜ ତପବଳରେ ଆମ ଶତ୍ରୁପରାଭବଜନିତ ଦୁଃଖ ନିବାରଣ କର । ଆମେ ତୁମର ପିତୃତୁଲ୍ୟ, ଏକାନ୍ତ କାତର ହୋଇ ତୁମ ପାଖକୁ ଆସିଛୁ । ତୁମେ ଆମର କଥା ରକ୍ଷାକର ॥୩୧॥ ତୁମେ ବ୍ରହ୍ମନିଷ୍ଠ ବ୍ରାହ୍ମଣ । ତେଣୁ ଆମର ଗୁରୁ ହେବାପାଇଁ ଯୋଗ୍ୟ । ଆମେ ତୁମକୁ ଆଚାର୍ଯ୍ୟ ରୂପରେ ବରଣ କରୁଛୁ, ଯେପରିକି ତୁମ ପ୍ରଭାବରେ ଆମେ ଅନାୟାସରେ ଶତ୍ରୁମାନଙ୍କୁ ଜିଣି ପାରିବୁ ॥୩୨॥ ବତ୍ସ, ଦରକାର ପଡ଼ିଲେ, ବୟସରେ କନିଷ୍ଠ ବ୍ୟକ୍ତିର ପାଦ ଛୁଇଁବା ନିନ୍ଦନୀୟ ନୁହେଁ । ଯାହାର ବେଦଜ୍ଞାନ ନାହିଁ, ଖାଲି ବୟସ ବେଶୀ ବୋଲି ସେ ଜ୍ୟେଷ୍ଠତ୍ୱର କାରଣ ହୋଇ ନ ପାରେ ॥୩୩॥

ଶ୍ରୀ ଶୁକଦେବ କହିଲେ, ମହାତପା ବିଶ୍ୱରୂପ ପୁରୋହିତ ହେବାପାଇଁ ଦେବତାମାନଙ୍କ ପ୍ରାର୍ଥନାରେ ସନ୍ତୁଷ୍ଟ ହୋଇ ମଧୁର ବାକ୍ୟରେ ସେମାନଙ୍କୁ ଉତ୍ତର ଦେଲେ ॥୩୪॥ ବିଶ୍ୱରୂପ କହିଲେ, ପୁରୋହିତ ହେଲେ ନିଜର ବ୍ରହ୍ମତେଜ କ୍ଷୀଣ ହୋଇଯାଏ । ସେଥିପାଇଁ ଧର୍ମଶୀଳ ମହାତ୍ମାମାନେ ଏହାର ନିନ୍ଦା କରନ୍ତି । କିନ୍ତୁ ଆପଣଙ୍କ ପରି ଲୋକପାଳଗଣ ଯେଉଁ ପ୍ରାର୍ଥନା କରିଛନ୍ତି, ତାହା ମୋ ପକ୍ଷରେ ପ୍ରତ୍ୟାଖ୍ୟାନ କରିବା କ'ଣ ସମ୍ଭବ ? ॥୩୫॥ ଦେବଗଣ, ମୁଁ ଜଣେ ଅକିଞ୍ଚନ । ଧାନକଟା ସରିବା ପରେ ବିଲରେ ଯାହା କିଛି ଧାନଶିସା ପଡ଼ିଥାଏ ତାକୁ ଗୋଟାଇ ସେଥିରୁ ମିଳୁଥିବା ଶସ୍ୟରେ ମୁଁ ଦେବକାର୍ଯ୍ୟ ଓ ପିତୃକାର୍ଯ୍ୟ ସମ୍ପନ୍ନ କରିଥାଏ । ଏହିପରି ଉଞ୍ଛବୃତ୍ତି ଧାରଣ କରିଥିବା ବ୍ୟକ୍ତି ପକ୍ଷରେ ନିନ୍ଦନୀୟ ପୁରୋହିତ-କର୍ମ କ'ଣ ଦରକାର ? ତଥାପି ଆପଣଙ୍କ ପ୍ରାର୍ଥନା ମୁଁ ଉପେକ୍ଷା କରିବି ନାହିଁ । ଏ ତ ଏକ ସାମାନ୍ୟ ପ୍ରାର୍ଥନା ! ଆପଣମାନେ ଯାହା କହିବେ, ମନ, ପ୍ରାଣ ଓ ଧ୍ୟାନ ଦେଇ ତାହା ମୁଁ କାର୍ଯ୍ୟକାରୀ କରିବି ॥୩୬-୩୭॥

ଶ୍ରୀ ଶୁକଦେବ କହିଲେ, ଏହିପରି ଦେବତାମାନଙ୍କୁ ପ୍ରତିଶ୍ରୁତି ଦେଇ ମହାତପା ବିଶ୍ୱରୂପ ଏକାଗ୍ରଚିତ୍ତରେ ସେମାନଙ୍କର ପୁରୋହିତ କର୍ମ କରିବାକୁ ଲାଗିଲେ ।।୩୮।। ଶୁକ୍ରାଚାର୍ଯ୍ୟଙ୍କର ନୀତିବଳରେ ଅସୁରମାନଙ୍କର ସମ୍ପତ୍ତି ସୁରକ୍ଷିତ ଥିଲେ ମଧ୍ୟ ସମର୍ଥ ବିଶ୍ୱରୂପ ବୈଷ୍ଣବୀ ବିଦ୍ୟା ବଳରେ ସେମାନଙ୍କ ଠାରୁ ସେହି ସମ୍ପତ୍ତି ଛଡ଼ାଇ ଆଣି ଇନ୍ଦ୍ରଙ୍କୁ ପ୍ରଦାନ କଲେ ।।୩୯।। ଯେଉଁ ବିଦ୍ୟାବଳରେ ସୁରକ୍ଷିତ ହୋଇ ଇନ୍ଦ୍ର ଅସୁରମାନଙ୍କୁ ଜିଣିଥିଲେ, ସେହି ବୈଷ୍ଣବୀ ବିଦ୍ୟାକୁ ଉଦାରଚେତା ବିଶ୍ୱରୂପ ତାଙ୍କୁ ପ୍ରଦାନ କରିଥିଲେ ।।୪୦।।

## ଅଷ୍ଟମ ଅଧ୍ୟାୟ

# ନାରାୟଣ କବଚ

ରାଜା ପରିକ୍ଷିତ ପଚାରିଲେ, ଇନ୍ଦ୍ର ଯେଉଁ ବୈଷ୍ଣବ ମନ୍ତ୍ରର ପ୍ରଭାବରେ ସୁରକ୍ଷିତ ହୋଇ ଶତ୍ରୁମାନଙ୍କ ଚତୁରଙ୍ଗ ସେନାକୁ ଖେଳି ଖେଳି ଅନାୟାସରେ ଜୟ କଲେ ଏବଂ ତ୍ରିଲୋକର ରାଜଲକ୍ଷ୍ମୀଙ୍କୁ ଭୋଗ କଲେ, ଆପଣ ମୋତେ ସେହି ନାରାୟଣ କବଚକୁ ଶୁଣାଇବା ହୁଅନ୍ତୁ, ଆଉ ମଧ୍ୟ କହନ୍ତୁ ଯେ ଏହାଦ୍ୱାରା ସୁରକ୍ଷିତ ଇନ୍ଦ୍ର କିଭଳି ରଣଭୂମିରେ ସଶସ୍ତ୍ର ଶତ୍ରୁମାନଙ୍କୁ ଜୟ କଲେ ।।୧-୨।। ବ୍ୟାସପୁତ୍ର ଶ୍ରୀ ଶୁକଦେବ କହିଲେ, ପରିକ୍ଷିତ, ତ୍ୱଷ୍ଟାଙ୍କ ପୁତ୍ର ବିଶ୍ୱରୂପଙ୍କୁ ଯେତେବେଳେ ଇନ୍ଦ୍ରାଦି ଦେବତାମାନେ ପୁରୋହିତ ରୂପେ ବରଣ କଲେ, ଏବଂ କିପରି ସେମାନଙ୍କର ମଙ୍ଗଳ ହେବ ବୋଲି ପ୍ରଶ୍ନ କଲେ, ସେତେବେଳେ ବିଶ୍ୱରୂପ ସେମାନଙ୍କୁ ନାରାୟଣ କବଚ ରୂପକ ମନ୍ତ୍ର ଦାନ କରିଥିଲେ । ବର୍ତ୍ତମାନ ଏକାଗ୍ରଚିତ୍ତରେ ମୋହଠାରୁ ତାହା ଶ୍ରବଣ କର ।।୩।। ଦେବତାମାନଙ୍କୁ ବିଶ୍ୱରୂପ କହିଲେ, ବିପଦ ଉପସ୍ଥିତ ହେଲେ ନାରାୟଣ କବଚ ଧାରଣ କରି ନିଜର ଦେହକୁ ରକ୍ଷା କରିବ । ଏହି ମନ୍ତ୍ରର ବିଧି ହେଉଛି, ପ୍ରଥମେ ହାତ ଓ ପାଦ ଧୋଇ ଆଚମନ କରିବ ଏବଂ ହାତରେ ପବିତ୍ର କୁଶ ଧରି ଉତ୍ତରମୁହାଁ ହୋଇ ବସିବ । ଏହାପରେ କବଚ ଧାରଣ ପର୍ଯ୍ୟନ୍ତ ନୀରବ ରହି 'ଓଁ ନମୋ ନାରାୟଣାୟ' ଏବଂ 'ଓଁ ନମୋ ଭଗବତେ ବାସୁଦେବାୟ' -- ଏହି ମନ୍ତ୍ର ଦୁଇଟି ଦ୍ୱାରା ଅଙ୍ଗନ୍ୟାସ ଓ କରନ୍ୟାସ କରିବ । ପ୍ରଥମେ 'ଓଁ ନମୋ ନାରାୟଣାୟ' ଏହି ଅଷ୍ଟାକ୍ଷର ମନ୍ତ୍ରର ଓଁକାର ଆଦି ଗୋଟିଏ ଗୋଟିଏ ଅକ୍ଷର ପାଦରୁ ଆରମ୍ଭ କରି ଜାନୁ, ଉରୁ, ଉଦର, ହୃଦୟ, ବକ୍ଷସ୍ଥଳ, ମୁଖ ଓ ମସ୍ତକ - ଏହି ଆଠଟି ସ୍ଥାନରେ କ୍ରମଶଃ ନ୍ୟାସ କରିବ । ଅଥବା ଏହାର ବିପରୀତରେ ମସ୍ତକରୁ ଆରମ୍ଭ କରି ପାଦପର୍ଯ୍ୟନ୍ତ ଏହି ମନ୍ତ୍ରର ଓଁକାର ଆଦି ଗୋଟିଏ ଗୋଟିଏ ଅକ୍ଷର ନ୍ୟାସ କରିବ ।।୪-୬।। ତାପରେ 'ଓଁ ନମୋ ଭଗବତେ ବାସୁଦେବାୟ' -- ଏହି ଦ୍ୱାଦଶାକ୍ଷର ମନ୍ତ୍ରର ଓଁ ଆଦି ବାରଟି ଅକ୍ଷରକୁ ଦୁଇହାତର ବୁଢ଼ା ଆଙ୍ଗୁଠିକୁ ଛାଡ଼ିଦେଇ ଆଠୋଟି ଅଙ୍ଗୁଳି ଏବଂ ଦୁଇ ବୁଢ଼ା ଆଙ୍ଗୁଠିରେ ମୂଳ ଓ ଅଗ ପବରେ 'ଓଁ'କାରରୁ ଆରମ୍ଭ କରି 'ୟ' କାର ପର୍ଯ୍ୟନ୍ତ କ୍ରମଶଃ ଗୋଟିଏ ଗୋଟିଏ ଅକ୍ଷର ରଖି କରନ୍ୟାସ କରିବ ।।୭।। ଏହାପରେ 'ଓଁ ବିଷ୍ଣବେ ନମଃ' - ଏହି ମନ୍ତ୍ରର ପ୍ରଥମ ଅକ୍ଷର 'ଓଁ'କୁ ବକ୍ଷସ୍ଥଳରେ, 'ବି'କୁ ମସ୍ତକ ଉପରେ 'ଷ୍'କୁ ଦୁଇଭ୍ରୂଲତାର ମଝିରେ, 'ଣ'କୁ କେଶର ଶିଖାରେ, 'ବେ'କୁ ଚକ୍ଷୁଦ୍ୱୟରେ ଏବଂ 'ନ'କୁ ଶରୀରର ସମସ୍ତ ସନ୍ଧିସ୍ଥଳରେ ନ୍ୟାସ କରିବ । ତା'ପରେ 'ଓଁ ମଃ ଅସ୍ତ୍ରାୟ ଫଟ୍' କହି ଚତୁର୍ଦ୍ଦିଗରେ ନ୍ୟାସ କରିବ । ଏହା କରିବା ଫଳରେ ନିଜେ ମନ୍ତ୍ରରୂପୀ ହୋଇଯିବ ।।୮-୧୦।। ଏହାପରେ ସମସ୍ତ ଐଶ୍ୱର୍ଯ୍ୟ, ଧର୍ମ, ଯଶ, ଲକ୍ଷ୍ମୀ, ଜ୍ଞାନ ଓ ବୈରାଗ୍ୟରେ ପରିପୂର୍ଣ୍ଣ ନିଜର ଆତ୍ମସ୍ୱରୂପ ଭଗବାନଙ୍କୁ ଧ୍ୟାନ କରିବ । ତହୁଁ ବିଦ୍ୟା, ତେଜ ଓ ତପସ୍ୟାର ମୂର୍ତ୍ତିମନ୍ତ ଏହି ମନ୍ତ୍ରକୁ ପାଠ କରିବ ।।୧୧।। ଯାହାଙ୍କ ପାଦପଦ୍ମ ପକ୍ଷିରାଜ ଗରୁଡ଼ଙ୍କ ପୃଷ୍ଠଭାଗରେ

ସ୍ଥାପିତ, ଅଣିମାଦି ଅଷ୍ଟସିଦ୍ଧି ଯାହାଙ୍କୁ ସେବା କରନ୍ତି, ଯେ ତାଙ୍କ ଆଠଟି ହାତରେ ଶଙ୍ଖ, ଚକ୍ର, ଢାଲ, ଖଡ୍ଗ, ଗଦା, ବାଣ, ଧନୁ ଓ ପାଶ ଧାରଣ କରିଛନ୍ତି, ସେହି ଓଁକାରସ୍ୱରୂପ ଶ୍ରୀହରିଙ୍କୁ ମୋତେ ସର୍ବତୋଭାବେ ରକ୍ଷା କରିବା ପାଇଁ ମୁଁ ନମସ୍କାର କରୁଛି ॥୧୨॥ ସେହି ମତ୍ସ୍ୟରୂପୀ ଭଗବାନ ମୋତେ ଜଳଜନ୍ତୁମାନଙ୍କଠାରୁ ଓ ବରୁଣଙ୍କ ପାଶରୁ ରକ୍ଷା କରନ୍ତୁ । ସେ ମାୟାବଳରେ ଯେଉଁ ବାମନମୂର୍ତ୍ତି ଧାରଣ କରିଥିଲେ, ସେହି ମୂର୍ତ୍ତିରେ ମୋତେ ସ୍ଥଳଭାଗରେ ରକ୍ଷା କରନ୍ତୁ ଏବଂ ତ୍ରିବିକ୍ରମ ମୂର୍ତ୍ତିରେ ମୋତେ ଆକାଶପଥରେ ରକ୍ଷା କରନ୍ତୁ ॥୧୩॥ ଯାହାଙ୍କ ଅଟ୍ଟହାସରେ ଦିଗ୍‌ବିଦିଗ ପ୍ରତିଧ୍ୱନିତ ହୋଇଥିଲା, ଅସୁର-ସ୍ତ୍ରୀମାନଙ୍କର ଗର୍ଭପାତ ଓ ଦୈତ୍ୟପତି ହିରଣ୍ୟାକ୍ଷର ବିନାଶ ଘଟିଥିଲା, ସେହି ନୃସିଂହରୂପୀ ଭଗବାନ ମୋତେ ଘୋର ଅରଣ୍ୟ ଓ ଯୁଦ୍ଧଭୂମି ଆଦି ସଙ୍କଟମୟ ସ୍ଥାନମାନଙ୍କରେ ରକ୍ଷା କରନ୍ତୁ ॥୧୪॥ ନିଜର ଦନ୍ତରେ ଯେ ଏହି ଧରଣୀକୁ ଧାରଣ କରିଥିଲେ, ସେହି ଯଜ୍ଞପୁରୁଷ ଭଗବାନ ବରାହ ମୋତେ ମାର୍ଗମଧ୍ୟରେ (ଯିବାବେଳେ) ରକ୍ଷା କରନ୍ତୁ । ଗିରିସଙ୍କଟ ସ୍ଥଳରେ ପରଶୁରାମ ଏବଂ ପ୍ରବାସରେ ଭରତଙ୍କ ଅଗ୍ରଜ ଶ୍ରୀରାମ ମୋତେ ଲକ୍ଷ୍ମଣଙ୍କ ସହିତ ରକ୍ଷା କରନ୍ତୁ ॥୧୫॥ ଉଗ୍ରଧର୍ମା ତାନ୍ତ୍ରିକମାନଙ୍କର ମାରଣ, ମୋହନ, ବଶୀକରଣ ଆଦି ଭୟଙ୍କର ପ୍ରୟୋଗମାନଙ୍କରୁ ଓ ସମସ୍ତ ଦୋଷରୁ ଶ୍ରୀ ନାରାୟଣ ମୋତେ ରକ୍ଷା କରନ୍ତୁ । ମୋର ଗର୍ବ, ଯୋଗଭଙ୍ଗ ଓ କର୍ମ ବନ୍ଧନରୁ ଯଥାକ୍ରମେ ନରଋଷି ପରମଯୋଗୀ ଦତ୍ତାତ୍ରେୟ ଓ ସତ୍ତ୍ୱାଦି ଗୁଣମାନଙ୍କୁ ବଶୀଭୂତ କରିଥିବା ଭଗବାନ କପିଳ ମୋତେ ରକ୍ଷା କରନ୍ତୁ ॥୧୬॥ ସନତ୍‌କୁମାର ମୋତେ କାମଦେବଙ୍କ ପ୍ରକୋପରୁ ରକ୍ଷା କରନ୍ତୁ । ବାଟରେ ଯିବାବେଳେ ଯଦି ଦେବଦେବୀଙ୍କୁ ନମସ୍କାର ନକରି ମୁଁ ଅବଜ୍ଞା କରେ, ତେବେ ହୟଗ୍ରୀବରୂପୀ ଭଗବାନ ମୋତେ ସେଥିରୁ ରକ୍ଷା କରନ୍ତୁ । ଭଗବାନଙ୍କ ଅର୍ଚ୍ଚନାରେ ଦୋଷତ୍ରୁଟି ଘଟିଲେ ସେଥିରୁ ଦେବର୍ଷି ନାରଦ ମୋତେ ରକ୍ଷା କରନ୍ତୁ ଏବଂ କୂର୍ମରୂପୀ ଭଗବାନ ଅଗଣିତ ନରକଭୋଗରୁ ମୋତେ ରକ୍ଷା କରନ୍ତୁ ॥୧୭॥ ଭଗବାନ ଧନ୍ୱନ୍ତରି କୁପଥ୍ୟରୁ (ଅନୁଚିତ ଖାଦ୍ୟ), ଜିତେନ୍ଦ୍ରିୟ ଭଗବାନ ଋଷଭଦେବ ସୁଖ ଦୁଃଖ ଆଦି ଦ୍ୱନ୍ଦ୍ୱଜନିତ ଭୟରୁ, ଯଜ୍ଞରୂପୀ ଭଗବାନ ଲୋକାପବାଦରୁ, ଶ୍ରୀବଳରାମ ଲୋକଙ୍କର ଆକ୍ରମଣରୁ ଏବଂ ଶ୍ରୀଶେଷଦେବ କ୍ରୁଦ୍ଧ ସର୍ପମାନଙ୍କର ଦଂଶନ ଆଦି ବିପଦରୁ ରକ୍ଷା କରନ୍ତୁ ॥୧୮॥ ଶ୍ରୀ ବେଦବ୍ୟାସ ଅଜ୍ଞତା ଦୋଷରୁ, ଭଗବାନ ବୁଦ୍ଧଦେବ ପାଷଣ୍ଡମାନଙ୍କ ଉତ୍ପାତରୁ ଏବଂ ଧର୍ମରକ୍ଷାପାଇଁ ମହାନ୍ ଅବତାର ଗ୍ରହଣ କରିଥିବା ଭଗବାନ କଳ୍କି ପାପସଙ୍କୁଳ କଳିକାଳର ଦୋଷରୁ ମୋତେ ରକ୍ଷା କରନ୍ତୁ ॥୧୯॥ ପ୍ରତ୍ୟୁଷରେ ଭଗବାନ କେଶବ ଗଦାଦ୍ୱାରା, ପ୍ରଭାତରେ ଶ୍ରୀଗୋବିନ୍ଦ ବଂଶୀଦ୍ୱାରା, ପୂର୍ବାହ୍ନରେ ମହାଶକ୍ତିମାନ୍ ଶ୍ରୀ ନାରାୟଣ ଶକ୍ତିଦ୍ୱାରା ଏବଂ ମଧ୍ୟାହ୍ନରେ ଭଗବାନ ବିଷ୍ଣୁ ସୁଦର୍ଶନ ଚକ୍ର ଦ୍ୱାରା ମୋତେ ରକ୍ଷା କରନ୍ତୁ ॥୨୦॥ ଅପରାହ୍ଣରେ ଧନୁର୍ଦ୍ଧାରୀ ମଧୁସୂଦନ ପ୍ରଚଣ୍ଡ ଧନୁଦ୍ୱାରା ମୋତେ ରକ୍ଷା କରନ୍ତୁ । ସଂଧ୍ୟା ସମୟରେ ତ୍ରିମୂର୍ତ୍ତିଧାରୀ ମାଧବ, ପ୍ରଦୋଷରେ ହୃଷୀକେଶ ଅର୍ଦ୍ଧରାତ୍ରିର ପୂର୍ବରୁ ଏବଂ ଅର୍ଦ୍ଧରାତ୍ରିରେ ଏକମାତ୍ର ପଦ୍ମନାଭ ମୋତେ ରକ୍ଷା କରନ୍ତୁ ॥୨୧॥ ଅବଶିଷ୍ଟ ରାତ୍ରିରେ ଭଗବାନ ଶ୍ରୀବତ୍ସଲାଞ୍ଛନ, ପ୍ରତ୍ୟୁଷରେ ଅସିଧାରୀ ଜନାର୍ଦ୍ଦନ, ପ୍ରାତଃ ଓ ସାୟଂର ସନ୍ଧିକାଳରେ ଦାମୋଦର ଓ ସୂର୍ଯ୍ୟୋଦୟ ସମୟରେ କାଳରୂପୀ ଭଗବାନ ବିଶ୍ୱେଶ୍ୱର ମୋତେ ରକ୍ଷା କରନ୍ତୁ ॥୨୨॥

ହେ ସୁଦର୍ଶନ ଚକ୍ର, ପ୍ରଳୟକାଳୀନ ଅଗ୍ନିପରି ତୁମର ଧାର ଅତିଶୟ ତୀବ୍ର, ଭଗବାନଙ୍କ ଦ୍ୱାରା ପ୍ରେରିତ ହୋଇ ତୁମେ ସର୍ବଦା ଘୂର୍ଣ୍ଣନଶୀଳ । ବାୟୁର ସହାୟତାରେ ଯେପରି ଅଗ୍ନି ଶୁଷ୍କ ଗୁଳ୍ମଲତା ଆଦିକୁ ଭସ୍ମ କରିଦିଏ, ସେହିପରି ତୁମେ ମୋର ଶତ୍ରୁସେନାକୁ ଶୀଘ୍ର ଭସ୍ମ କରିଦିଅ, ଭସ୍ମ କରିଦିଅ ॥୨୩॥ ହେ କୌମୋଦକୀ ଗଦା, ତୁମଠାରୁ ଯେଉଁ ସ୍ଫୁଲିଙ୍ଗ ଜାତହୁଏ, ତାହାର ସ୍ପର୍ଶ ହେଉଛି ବଜ୍ରପରି ଭୟଙ୍କର । ଅଜେୟ ଭଗବାନଙ୍କର ଅତିଶୟ ପ୍ରିୟ ହେ ଗଦା, କୃଷ୍ମାଣ୍ଡ, ବିନାୟକ, ଯକ୍ଷ, ରାକ୍ଷସ, ଭୂତ, ଦୁଷ୍ଟଗ୍ରହ ଆଦିଙ୍କ ଉପଦ୍ରବମାନଙ୍କୁ ନିପାତ କର; ମୋର ଶତ୍ରୁମାନଙ୍କୁ ଚୂରମାର କରି ଦିଅ, ଚୂରମାର କରିଦିଅ ॥୨୪॥ ହେ ଶଙ୍ଖଶ୍ରେଷ୍ଠ (ପାଞ୍ଚଜନ୍ୟ), କୃଷ୍ଣଙ୍କ ମୁଖଧ୍ୱନିରେ ପୂର୍ଣ୍ଣ ହୋଇ ତୁମେ ଏପରି ଭୟଙ୍କର ନିନାଦ କର,

ଯେପରିକି ମୋର ଶତ୍ରୁମାନଙ୍କର ହୃତ୍‌କମ୍ପ ଜାତ ହେବ ଏବଂ ରାକ୍ଷସ, ପ୍ରମଥ, ପ୍ରେତ, ଡାକିନୀ, ପିଶାଚ, ବ୍ରହ୍ମଦୈତ୍ୟ ଆଦି ଭୟଙ୍କରଦର୍ଶନ ପ୍ରାଣୀମାନଙ୍କୁ ଶୀଘ୍ର ବିଦୂରିତ କର ॥୨୫॥ ହେ ଅସିବର, ତୁମର ଧାର ଅତିଶୟ ତୀକ୍ଷ୍ଣ । ଭଗବାନଙ୍କଦ୍ୱାରା ପ୍ରଯୁକ୍ତ ହୋଇ ତୁମେ ମୋର ଶତ୍ରୁସେନାକୁ ଛିନ୍ନଭିନ୍ନ କର, ଛିନ୍ନଭିନ୍ନ କର । ଭଗବାନଙ୍କର ପ୍ରିୟ ହେ ଢାଲ, ତୁମେ ଶତଚନ୍ଦ୍ରର ଚିହ୍ନରେ ଯୁକ୍ତ । ତୁମେ ଶତ୍ରୁମାନଙ୍କର ପାପଦୃଷ୍ଟିକୁ ଆଚ୍ଛାଦନ କର ଏବଂ ଅନ୍ୟ ମନ୍ଦଦୃଷ୍ଟି ବ୍ୟକ୍ତିଙ୍କର ଦୃଷ୍ଟିଶକ୍ତି ହରଣ କର ॥୨୬॥

ଗ୍ରହ, କେତୁ, ମନୁଷ୍ୟ, ସର୍ପାଦି ସରୀସୃପ, ଦନ୍ତଯୁକ୍ତ ହିଂସ୍ର ପ୍ରାଣୀ, ଭୂତ ଏବଂ ପାପୀଗଣ, ଯେଉଁମାନେ ଆମର ମଙ୍ଗଳର ବିରୋଧୀ, ଭଗବାନଙ୍କର ନାମରୂପ କୀର୍ତ୍ତନ ଦ୍ୱାରା ସେମାନେ ସଙ୍ଗେ ସଙ୍ଗେ ନଷ୍ଟ ହୋଇ ଯାଆନ୍ତୁ ॥୨୭-୨୮॥ ସ୍ତୋତ୍ରମାନଙ୍କଦ୍ୱାରା ଯାହାଙ୍କୁ ସ୍ତୁତି କରାଯାଏ ଏବଂ ସମସ୍ତ ବେଦର ଯେ ହେଉଛନ୍ତି ମୂର୍ତ୍ତିମନ୍ତ ସ୍ୱରୂପ, ସେହି ବିଷ୍ୱକ୍‌ସେନ ଭଗବାନ ଗରୁଡ଼ ନିଜର ନାମମାନଙ୍କଦ୍ୱାରା ଆମମାନଙ୍କୁ ସମସ୍ତ ଦୁଃଖ ଯାତନାରୁ ରକ୍ଷା କରନ୍ତୁ ॥୨୯॥ ଶ୍ରୀହରିଙ୍କ ନାମ, ରୂପ, ବାହନ, ଆୟୁଧ ଏବଂ ତାଙ୍କ ଶ୍ରେଷ୍ଠ ପାରିଷଦ୍‌ବର୍ଗ ସମସ୍ତପ୍ରକାର ବିପତ୍ତିରୁ ଆମର ବୁଦ୍ଧି, ଇନ୍ଦ୍ରିୟ, ମନ ଓ ପ୍ରାଣକୁ ରକ୍ଷା କରନ୍ତୁ ॥୩୦॥ ମୂର୍ତ୍ତ ଓ ଅମୂର୍ତ୍ତ ଏହି ସମସ୍ତ ଜଗତ ଏକମାତ୍ର ଭଗବାନଙ୍କର ସ୍ୱରୂପ - ଏହି ସତ୍ୟ ବଳରେ ଆମ ସମସ୍ତ ବିଘ୍ନର ବିନାଶ ହେଉ ॥୩୧॥ ଏକ ଆତ୍ମା ଭାବରେ ଯେଉଁମାନେ ଭଗବାନ୍‌ଙ୍କୁ ଅନୁଧ୍ୟାନ କରନ୍ତି, ସେମାନଙ୍କ ଦୃଷ୍ଟିରେ ଭଗବାନ୍ ସ୍ୱୟଂ ଭେଦରହିତ ଏବଂ ନିଜର ମାୟାଦ୍ୱାରା ସେ ବିଭିନ୍ନ ଅଳଙ୍କାର (କୌସ୍ତୁଭ ଆଦି), ବିଭିନ୍ନ ଆୟୁଧ (ଅସ୍ତ୍ରଶସ୍ତ୍ର) ଓ ବିଭିନ୍ନ ଲିଙ୍ଗ ନାମରେ ଶକ୍ତିମାନଙ୍କୁ ଧାରଣ କରନ୍ତି ॥୩୨॥ ସେହି ସତ୍ୟସ୍ୱରୂପ ସର୍ବଜ୍ଞ ଓ ସର୍ବବ୍ୟାପୀ ଭଗବାନ ଶ୍ରୀହରି ତାଙ୍କର ସେହିସବୁ ସ୍ୱରୂପମାନଙ୍କଦ୍ୱାରା ଆମମାନଙ୍କୁ ସବୁସ୍ଥାନରେ ସବୁବେଳେ ରକ୍ଷା କରନ୍ତୁ ॥୩୩॥ ଯାହାଙ୍କର ଗର୍ଜନ ଲୋକଙ୍କର ଭୟ ଛଡ଼ାଇଦିଏ, ଯାହାଙ୍କର ତେଜ ସମସ୍ତ ତେଜକୁ ଗ୍ରାସ କରିଯାଏ, ସେହି ଭଗବାନ ନରସିଂହ ଦିଗ୍‌ବିଦିଗରେ, ଉପରେ ତଳେ ଓ ଅନ୍ତରେ ବାହାରେ ସର୍ବତ୍ର ଆମମାନଙ୍କୁ ରକ୍ଷା କରନ୍ତୁ ॥୩୪॥

ବିଶ୍ୱରୂପ କହିଲେ, ଇନ୍ଦ୍ର, ତୁମ ଆଗରେ ମୁଁ ଏହି 'ନାରାୟଣ କବଚକୁ' ବ୍ୟାଖ୍ୟାନ କଲି । ଏହି କବଚର ଶକ୍ତିରେ ଯୁକ୍ତ ହୋଇ ତୁମେ ଏବେ ସହଜରେ ଅସୁର-ଯୂଥପତିମାନଙ୍କୁ ଜୟ କରିପାରିବ ॥୩୫॥ ଏହି କବଚକୁ ଧାରଣ କରି ଯେଉଁ ବ୍ୟକ୍ତି ଯାହାଆଡ଼କୁ ଚାହିଁବ ଏବଂ ପାଦଦ୍ୱାରା ଯାହାକୁ ଛୁଇଁଦେବ, ସଙ୍ଗେ ସଙ୍ଗେ ତା'ର ଭୟ ଦୂର ହୋଇଯିବ ॥୩୬॥ ଏହି କବଚଧାରୀ ବ୍ୟକ୍ତିକୁ କୌଣସି ରାଜା ବା ରାଜପୁରୁଷ, ଚୋର, ଡାକୁ, ପ୍ରେତ, ପିଶାଚ, କିମ୍ବା ବ୍ୟାଘ୍ର, ସିଂହ ଆଦି ହିଂସ୍ର ଜନ୍ତୁ କୌଣସି ପ୍ରକାରେ ଡରେଇ ପାରନ୍ତି ନାହିଁ ॥୩୭॥ ଇନ୍ଦ୍ର, ପୂର୍ବେ କୌଶିକ ନାମରେ ଜଣେ ବ୍ରାହ୍ମଣ ଏହି କବଚ ଧାରଣ କରିଥିଲେ । ସେ ଏକ ମରୁଭୂମିମଧ୍ୟରେ ଯୋଗଦ୍ୱାରା ନିଜର ଦେହ ତ୍ୟାଗ କଲେ ॥୩୮॥ ଯେଉଁଠାରେ ସେ ଦେହତ୍ୟାଗ କରିଥିଲେ, ତା'ଉପରେ ଆକାଶମାର୍ଗରେ ଗଂଧର୍ବରାଜ ଚିତ୍ରରଥ ନିଜ ସ୍ତ୍ରୀମାନଙ୍କ ସହିତ ବିମାନରେ ଯାତ୍ରା କରୁଥିଲେ । ସଙ୍ଗେ ସଙ୍ଗେ ବିମାନ ସହିତ ଅଧୋମୁଖ ହୋଇ ସେ ଆକାଶରୁ ତଳକୁ ପଡ଼ିଗଲେ; ସେଥିରେ ସେ ଆଶ୍ଚର୍ଯ୍ୟ ହୋଇଗଲେ । ବାଲଖିଲ୍ୟ ମୁନିମାନେ ତାଙ୍କୁ ପରାମର୍ଶ ଦେଲେ ଯେ, କୌଶିକଙ୍କର ଅସ୍ଥିସବୁ ନେଇ ପୂର୍ବଦିଗରେ ପ୍ରବାହିତ ସରସ୍ୱତୀ ନଦୀରେ ପକାଇଦିଅ । ସେ ତାହା ହିଁ କଲେ ଓ ନଦୀରେ ସ୍ନାନ କରି ସ୍ୱଗୃହକୁ ଫେରିଲେ ॥୩୯-୪୦॥ ଶ୍ରୀ ଶୁକଦେବ କହିଲେ, ଯେଉଁ ବ୍ୟକ୍ତି ଯଥୋଚିତ ସମୟରେ ଏହି କବଚକୁ ଶ୍ରଦ୍ଧାର ସହିତ ଶ୍ରବଣ ଓ ଧାରଣ କରେ, ସମସ୍ତ ପ୍ରାଣୀ ତାହା ଆଡ଼କୁ ଆକୃଷ୍ଟ ହୋଇ ନମସ୍କାର କରନ୍ତି ଏବଂ ସମସ୍ତପ୍ରକାର ଭୟରୁ ସେ ମୁକ୍ତ ହୋଇଯାଏ ॥୪୧॥ ଶତକ୍ରତୁ ଇନ୍ଦ୍ର ବିଶ୍ୱରୂପଙ୍କଠାରୁ ଏହି ବିଦ୍ୟା ଲାଭ କରି ଯୁଦ୍ଧରେ ଅସୁରମାନଙ୍କୁ ନିପାତ ପୂର୍ବକ ତିନିଲୋକର ବିଭବ ଭୋଗ କରିଥିଲେ ।

## ନବମ ଅଧ୍ୟାୟ

# ବୃତ୍ରାସୁର

ଶ୍ରୀ ଶୁକଦେବ କହିଲେ, ପରିକ୍ଷିତ, ମୁଁ ଶୁଣିଛି ଯେ, ବିଶ୍ୱରୂପଙ୍କର ତିନୋଟି ମୁହଁ ଥିଲା । ସେ ଗୋଟିଏ ମୁହଁରେ ସୋମରସ, ଦ୍ୱିତୀୟ ମୁହଁରେ ସୁରା ପାନ କରୁଥିଲେ ଏବଂ ତୃତୀୟ ମୁହଁରେ ଅନ୍ନଭୋଜନ କରୁଥିଲେ ॥୧॥ ଯଜ୍ଞସମୟରେ ବିଶ୍ୱରୂପ ନିଜର ପିତୃସ୍ଥାନୀୟ ଦେବତାମାନଙ୍କୁ ଯେଉଁ ଯଜ୍ଞଭାଗ ଦେଉଥିଲେ ତାହାକୁ ସେ ସମସ୍ତଙ୍କ ସମକ୍ଷରେ ବିନୀତ ଭାବରେ ଦେବତାମାନଙ୍କର ନାମ ଉଚ୍ଚାରଣ କରି ଦେଉଥିଲେ ॥୨॥ ଏଥିସହିତ ମାତୃସ୍ନେହବଶରୁ ସେ ଅସୁରମାନଙ୍କୁ ମଧ୍ୟ ଯଜ୍ଞଭାଗ ଦେଉଥିଲେ । ଦେବତାମାନଙ୍କ ଅଲକ୍ଷ୍ୟରେ ସେ ତାହାକୁ ଅସୁରମାନଙ୍କ ପାଖରେ ପହଞ୍ଚାଇ ଦେଉଥିଲେ ॥୩॥ ଦେବରାଜ ଇନ୍ଦ୍ର ଦେଖିଲେ ଯେ, ବିଶ୍ୱରୂପ କପଟଧର୍ମ ଆଚରଣ କରି ଦେବତାମାନଙ୍କପ୍ରତି ଏହିପରି ଅବହେଳା ପ୍ରଦର୍ଶନ କରୁଛନ୍ତି । ତେଣୁ ସେ ଭୟଭୀତ ହୋଇ ସଙ୍ଗେ ସଙ୍ଗେ ବିଶ୍ୱରୂପଙ୍କର ତିନୋଟିଯାକ ମସ୍ତକ ଛେଦନ କଲେ ॥୪॥ ଏହି ତିନୋଟି ମଧ୍ୟରୁ ସୋମରସ ପିଉଥିବା ମସ୍ତକଟି କପିଞ୍ଜଳ ପକ୍ଷୀ ହୋଇଗଲା, ସୁରାପାନକାରୀ ମସ୍ତକଟି କଳବିଙ୍କ ପକ୍ଷୀ ଓ ଅନ୍ନଭୋଜୀ ମସ୍ତକଟି ତିତ୍ତିରି ପକ୍ଷୀ ହୋଇଗଲା ॥୫॥ ଇନ୍ଦ୍ର ଇଚ୍ଛା କରିଥିଲେ ବିଶ୍ୱରୂପଙ୍କୁ ବଧ କରିବାଦ୍ୱାରା ତାଙ୍କର ଯେଉଁ ବ୍ରହ୍ମହତ୍ୟା ହେଲା, ତାହା ଦୂର ହୋଇପାରିଥା'ନ୍ତା । କିନ୍ତୁ ସେ ତାହା ନ କରି କୃତାଞ୍ଜଳି ହୋଇ ତାହାକୁ ସ୍ୱୀକାର କଲେ ଏବଂ ବର୍ଷେ ପର୍ଯ୍ୟନ୍ତ ଏଥିରୁ ମୁକ୍ତ ହେବାର କୌଣସି ଉପାୟ କଲେ ନାହିଁ । ଲୋକଙ୍କ ମଧ୍ୟରେ ଏହି ବ୍ରହ୍ମହତ୍ୟା ପାପର ଅପବାଦ ଦୂର କରିବାପାଇଁ ସେ ଏହାକୁ ଚାରିଭାଗରେ ବିଭକ୍ତ କରି ଭୂମି, ବୃକ୍ଷ, ସ୍ତ୍ରୀ ଓ ଜଳ ମଧ୍ୟରେ ବାଣ୍ଟିଦେଲେ । ଭୂମିକୁ ବରଦେଲେ ଯେ, ତାର ଖାତ ସବୁ ଆପେ ଆପେ ପୂରିଯିବ, ଖାତସବୁ ପୂରିଗଲା । କିନ୍ତୁ ବ୍ରହ୍ମହତ୍ୟା ପାପର ଚିହ୍ନସ୍ୱରୂପ ଊଷର ଭୂମି ଦେଖିବାକୁ ମିଳିଲା । ବୃକ୍ଷକୁ ବରଦିଆଗଲା ଯେ, ତା'ର କୌଣସି ଅଂଶକୁ କାଟିଲେ ତାହା ପୁଣି ଅଙ୍କୁରିତ ହୋଇଉଠିବ, ଏହି ବର ପାଇ ବୃକ୍ଷ ପାପର ଏକ ଚତୁର୍ଥାଂଶ ଗ୍ରହଣ କଲା । ମାତ୍ର ପାପର ଚିହ୍ନସ୍ୱରୂପ ତାହାଦେହରେ ଅଠା ଦେଖିବାକୁ ମିଳିଲା । ସ୍ତ୍ରୀମାନଙ୍କୁ ବର ଦିଆଗଲା ଯେ, ସେମାନଙ୍କର ସମ୍ଭୋଗଶକ୍ତି ଅକ୍ଷୁଣ୍ଣ ରହିବ; ଏହି ବର ପାଇ ସେମାନେ ଏହି ପାପର ଏକ ଚତୁର୍ଥାଂଶ ଗ୍ରହଣ କଲେ, ମାତ୍ର ପାପର ଚିହ୍ନସ୍ୱରୂପ ମାସକୁ ମାସ ସେମାନଙ୍କୁ ରଜସ୍ୱଳା ହେବାକୁ ପଡ଼ିଲା । ଜଳକୁ ବରଦିଆଗଲା ଯେ, ସେ ଯାହା ସହିତ ମିଶିବ, ତାର ବୃଦ୍ଧି ଘଟିବ; ଏହି ବର ନେଇ ଜଳ ଉକ୍ତ ପାପର ଏକଚତୁର୍ଥାଂଶ ଗ୍ରହଣ କଲା । ମାତ୍ର ପାପର ଚିହ୍ନସ୍ୱରୂପ ଜଳମଧ୍ୟରେ ଫେଣ ଓ ପାଣିଫୋଟକା ଦେଖାଗଲା ॥୬-୯॥ ଯେଉଁ ବ୍ୟକ୍ତି ସେହି ଫେଣ ଓ ପାଣିଫୋଟକା ଆଦିକୁ ହଟାଇ ପାଣିକୁ ବ୍ୟବହାର କରେ, ସେ ସେହି ପାପକୁ କ୍ଷୟ କରେ ॥୧୦॥ ବିଶ୍ୱରୂପଙ୍କର ପିତା ତ୍ୱଷ୍ଟା ଇନ୍ଦ୍ରଦ୍ୱାରା ନିଜର ପୁତ୍ର ନିହତ ହେବାର ଜାଣି ଇନ୍ଦ୍ରଙ୍କୁ ବଧ କରିବାପାଇଁ ତାଙ୍କ ଶତ୍ରୁସୃଷ୍ଟିରେ ଲାଗିଗଲେ । 'ହେ ଇନ୍ଦ୍ରଶତ୍ରୁ, ତୁମର ବୃଦ୍ଧି ହେଉ, ତୁମେ ତୁମର ଶତ୍ରୁକୁ ଶୀଘ୍ର ବିନାଶ କର'- ଏହିପରି ପ୍ରାର୍ଥନା କରି ଅଗ୍ନିରେ ଆହୁତି ଦେଲେ । ପରେ ପରେ ପ୍ରଳୟକାଳୀନ ଯମପରି ଏକ ଭୟଙ୍କରଦର୍ଶନ ପୁରୁଷ ଦକ୍ଷିଣାଗ୍ନିରୁ ଆବିର୍ଭୂତ ହେଲା ॥୧୧-୧୨॥ ଶର ନିକ୍ଷେପ କରିବା ପରି ଚତୁର୍ଦିଗକୁ ପରିବ୍ୟାପ୍ତ ହୋଇ ସେ ଦିନୁଦିନ ବଢ଼ିବାକୁ ଲାଗିଲା । ଦଗ୍ଧ ପର୍ବତପରି ତାର ବର୍ଣ୍ଣ କୃଷ୍ଣ ଓ ତାର ଦୀପ୍ତି ସନ୍ଧ୍ୟାକାଳୀନ ମେଘପରି, ତାର ମୁଣ୍ଡବାଳ ଓ ଦାଢ଼ି ତାତିଲା ତମ୍ବାପରି ପିଙ୍ଗଳ ବର୍ଣ୍ଣ । ଚକ୍ଷୁଦ୍ୱୟ ମଧ୍ୟାହ୍ନସୂର୍ଯ୍ୟପରି ପ୍ରଚଣ୍ଡ ତେଜରେ ଜଳୁଥିଲା । ଏକ ତେଜୋମୟ ତ୍ରିଶୂଳକୁ ଧରି ସେ ଯେତେବେଳେ ନାଚୁଥିଲା, ଚାଲୁଥିଲା, ଓ ବୁଲୁଥିଲା, ସେତେବେଳେ ପୃଥିବୀ କମ୍ପି ଉଠୁଥିଲା ଏବଂ ଜଣାଯାଉଥିଲା ସତେ ଯେପରି ସେହି ତ୍ରିଶୂଳର ଅଗ୍ରଭାଗରେ ସେ ପୃଥିବୀ ଓ ଅନ୍ତରୀକ୍ଷକୁ ଧାରଣ କରିଛି ॥୧୩-୧୫॥ ସେ ବାରମ୍ବାର ହାଇ ମାରୁଥିଲା । ତଦ୍ୱାରା

ଯେତେବେଳେ ଗିରିଗହ୍ୱର ପରି ତା'ର ଗମ୍ଭୀର ମୁହଁ ଖୋଲି ଯାଉଥିଲା, ଜଣା ଯାଉଥିଲା ଯେପରିକି ସେ ସାରା ଆକାଶକୁ ପିଇଯିବ; ଜିଭଦ୍ୱାରା ସମସ୍ତ ନକ୍ଷତ୍ରଙ୍କୁ ଚାଟିଦେବ ଏବଂ ନିଜର ବିଶାଳ ଓ ବିକଟାଳ ଦନ୍ତଯୁକ୍ତ ମୁହଁରେ ତ୍ରିଲୋକକୁ ଗିଳିଯିବ । ତା'ର ସେହି ଭୟଙ୍କର ରୂପକୁ ଦେଖି ଲୋକମାନେ ଭୟରେ ଚତୁର୍ଦ୍ଦିଗକୁ ପଳାୟନ କଲେ ॥୧୬-୧୭॥ ପରିକ୍ଷିତ, ତ୍ୱଷ୍ଟାଙ୍କର ଏହି ତମୋଗୁଣସମ୍ପନ୍ନ ପୁତ୍ର ସମସ୍ତ ଲୋକକୁ ଘେରି ରଖିଥିଲା । ସେଥିପାଇଁ ଏହି ପାପୀ ଓ ଅତିଶୟ ନିଷ୍ଠୁର ବ୍ୟକ୍ତିର ନାମ ହେଲା ବୃତ୍ର ॥୧୮॥ ପ୍ରଧାନ ପ୍ରଧାନ ଦେବତାମାନେ ସଦଳବଳେ ତାକୁ ଆକ୍ରମଣ କଲେ ଏବଂ ନିଜ ନିଜର ଦିବ୍ୟ ଅସ୍ତ୍ରଶସ୍ତ୍ରମାନଙ୍କଦ୍ୱାରା ପ୍ରହାର କରିବାକୁ ଲାଗିଲେ । କିନ୍ତୁ ବୃତ୍ରାସୁର ସେମାନଙ୍କର ସମସ୍ତ ଅସ୍ତ୍ରଶସ୍ତ୍ରକୁ ଗିଳିଦେଲା ॥୧୯॥ ଏହା ଦେଖି ଦେବତାମାନେ ଅତିଶୟ ଆଶ୍ଚର୍ଯ୍ୟ ହୋଇଗଲେ । ସେମାନଙ୍କର ତେଜ ମଳିନ ପଡ଼ିଗଲା ଏବଂ ଅତିଶୟ ବିଷଣ୍ଣ ହୋଇ ସେମାନେ ଭଗବାନ ନାରାୟଣଙ୍କର ଶରଣ ପଶିଲେ । ଦୀନହୀନ ଅବସ୍ଥାରେ ଦେବତାମାନେ ଏକାଗ୍ର ଚିତ୍ତରେ ସେହି ଆଦିପୁରୁଷଙ୍କୁ ସ୍ତୁତି କରିବାକୁ ଲାଗିଲେ ॥୨୦॥

ଦେବତାମାନେ ପ୍ରାର୍ଥନା କଲେ, ବାୟୁ, ଆକାଶ, ଅଗ୍ନି, ଜଳ ଏବଂ ପୃଥିବୀ -- ଏହି ପଞ୍ଚମହାଭୂତ' ସେମାନଙ୍କଦ୍ୱାରା ନିର୍ମିତ ଏହି ତିନିଲୋକ ଏବଂ ତାର ଅଧିପତି ବ୍ରହ୍ମାଦି ଆମେ ସମସ୍ତ ଦେବତା ଯେଉଁ କାଳକୁ ଭୟ କରି ବିଭିନ୍ନ ପୂଜାଦ୍ରବ୍ୟ ଭେଟି ଦେଇଥାଉ, ସେହି କାଳ ଭଗବାନଙ୍କୁ ହିଁ ଭୟକରି ରହିଥାଏ ॥୨୧॥ ପ୍ରଭୁ, ଆପଣଙ୍କପାଇଁ ଆଶ୍ଚର୍ଯ୍ୟ ହେବାର କିଛି ନାହିଁ । ଆପଣ ଆତ୍ମସ୍ୱରୂପରେ ସର୍ବଦା ପରିତୃପ୍ତ, ଶାନ୍ତିର ଆଳୟ ଆପଣଙ୍କୁ ଛାଡ଼ି ଯେ ଅନ୍ୟର ଆଶ୍ରୟ ନିଏ, ସେଇ ମୂର୍ଖ କୁକୁରଲାଙ୍ଗୁଡ଼ ଧରି ସମୁଦ୍ର ପାରି ହେବାପାଇଁ ବସିଥାଏ ॥୨୨॥ ପ୍ରଳୟକାଳରେ ଯାହାଙ୍କ ବିଶାଳ ଶିଂଘରେ (ମତ୍ସ୍ୟ ଅବତାରରେ) ପୃଥିବୀରୂପକ ନୌକାକୁ ବାନ୍ଧି ବୈବସ୍ୱତ ମନୁ ପ୍ରଳୟସଙ୍କଟରୁ ସହଜରେ ଉତ୍ତୀର୍ଣ୍ଣ ହୋଇଥିଲେ, ଆମପରି ଶରଣାଗତମାନଙ୍କୁ ସେହି ମତ୍ସ୍ୟରୂପୀ ଭଗବାନ ବିଷମ ବୃତ୍ର ଭୟରୁ ନିଶ୍ଚୟ ରକ୍ଷା କରିବେ ॥୨୩॥ ସୃଷ୍ଟିର ଆରମ୍ଭରେ ଭୟାନକ ପ୍ରଳୟଜଳରେ ପ୍ରବଳ ବାୟୁରାଶିଦ୍ୱାରା ଉତ୍ତାଳ ତରଙ୍ଗମାନ ଉଠୁଥିଲା । ସେତେବେଳେ ଭଗବାନଙ୍କ ନାଭିପଦ୍ମରୁ ବ୍ରହ୍ମା ଏହି ଜଳମଧ୍ୟରେ ପଡ଼ିଯାଉଥିଲେ । ଯାହାଙ୍କ କରୁଣାରୁ ସେ ଏହି ସଙ୍କଟରୁ ରକ୍ଷା ପାଇଥିଲେ, ସେହି ଭଗବାନ ଆମକୁ ଏହି ମହା ବିପଦସାଗରରୁ ଉଦ୍ଧାର କରନ୍ତୁ ॥୨୪॥ ଯେଉଁ ଏକ ଭଗବାନ ନିଜ ମାୟାଦ୍ୱାରା ଆମକୁ ସୃଷ୍ଟି କରିଛନ୍ତି, ଏବଂ ଯାହାଙ୍କ ଶକ୍ତିରେ ଆମେ ଏହି ବିଶ୍ୱକୁ ସୃଷ୍ଟି କରିଛୁ, ଆମେ ନିଜ ସମ୍ମୁଖରେ ତାଙ୍କରି ସେହି ସମସ୍ତ କର୍ମ ଦେଖିବା ସତ୍ତ୍ୱେ ଆତ୍ମାଭିମାନବଶତଃ ନିଜେ ସବୁ କରିଛୁ ବୋଲି ବିଚାର କରି ତାଙ୍କ ସ୍ୱରୂପକୁ ଦେଖିପାରୁ ନାହୁଁ ॥୨୫॥ ଆମେ ଶତ୍ରୁମାନଙ୍କଦ୍ୱାରା ଅତିଶୟ ପୀଡ଼ିତ ହେଲେ, ପ୍ରଭୁ ନିଜେ ନିର୍ବିକାର ହୋଇ ମଧ୍ୟ ନିଜ ମାୟାବଳରେ ଦେବତା, ଋଷି, ପଶୁ, ପକ୍ଷୀ ଓ ମନୁଷ୍ୟଙ୍କ ମଧ୍ୟରେ ଅବତାର ଗ୍ରହଣ କରନ୍ତି ଏବଂ ଯୁଗେ ଯୁଗେ ଆପଣାର ବୋଲି ଭାବି ଆମକୁ ରକ୍ଷା କରିଥା'ନ୍ତି ॥୨୬॥ ସମସ୍ତଙ୍କର ଆତ୍ମାସ୍ୱରୂପ ସେହି ଭଗବାନ ଶ୍ରୀହରିଙ୍କ ପାଖରେ ଆମେ ଶରଣାପନ୍ନ ହେଉଛୁ । ଯେ ପ୍ରକୃତି ଓ ପୁରୁଷରୂପରେ ଏହି ବିଶ୍ୱକୁ ସୃଷ୍ଟି କରି ମଧ୍ୟ ଏହି ବିଶ୍ୱଠାରୁ ଭିନ୍ନ, ସେହି ଶରଣରକ୍ଷକ ପ୍ରଭୁ ଆମକୁ ତାଙ୍କ ନିଜଲୋକ ଭାବି ନିଶ୍ଚୟ ଆମର ମଙ୍ଗଳ ବିଧାନ କରିବେ ॥୨୭॥

ଶ୍ରୀ ଶୁକଦେବ କହିଲେ, ମହାରାଜ, ଦେବତାମାନେ ଏହିପରି ସ୍ତୁତି କରୁଥିବା ସମୟରେ ଶଙ୍ଖ-ଚକ୍ର-ଗଦାଧାରୀ ଭଗବାନ ଶ୍ରୀହରି ଆବିର୍ଭୂତ ହେଲେ ॥୨୮॥ ସେହି ଭଗବାନଙ୍କ ତୁଲ୍ୟ ରୂପଧାରୀ ଷୋଳ ଜଣ ଅନୁଚର ସେଠାରେ ଠିଆହୋଇ ତାଙ୍କୁ ସ୍ତୁତି କରୁଥିଲେ । କେବଳ ସେମାନଙ୍କ ବକ୍ଷରେ ଶ୍ରୀବତ୍ସ ଚିହ୍ନ ଓ ଗଳାରେ କୌସ୍ତୁଭମଣି ନ ଥିଲା ॥୨୯॥ ପରିକ୍ଷିତ, ଭଗବାନଙ୍କ ଦର୍ଶନ ପାଇ ଦେବତାମାନେ ଆନନ୍ଦରେ ବିହ୍ୱଳ ହୋଇପଡ଼ିଲେ । ସେମାନେ ସଙ୍ଗେ ସଙ୍ଗେ ତଳେ ପଡ଼ିଯାଇ ତାଙ୍କୁ ସାଷ୍ଟାଙ୍ଗ ପ୍ରଣାମ କଲେ ଏବଂ ଧୀରେ ଧୀରେ ଉଠି ଠିଆହୋଇ ସ୍ତୁତି କରିବାକୁ ଲାଗିଲେ ॥୩୦॥

ଦେବତାମାନେ କହିଲେ, ଆପଣ ଯଜ୍ଞରୂପରେ ସ୍ୱର୍ଗାଦି ଫଳ ଦାନ କରିପାରନ୍ତି ଏବଂ ସମୟ ସରିଗଲେ କାଳରୂପରେ ତାହାକୁ ହରଣ କରି ନିଅନ୍ତି । ଯଜ୍ଞବିଘ୍ନକାରୀ ରାକ୍ଷସମାନଙ୍କୁ ଆପଣ ଚକ୍ରଦ୍ୱାରା ଛେଦନ କରନ୍ତି । ତେଣୁ ଆପଣଙ୍କ ଉତ୍ତମ ନାମ ଓ ଗୁଣର ସୀମା ନାହିଁ । ଆପଣଙ୍କୁ ଆମେ ବାରମ୍ୱାର ନମସ୍କାର କରୁଛୁ ।।୩୧।। ହେ ବିଧାତା, ସତ୍ତ୍ୱ, ରଜ ଓ ତମ--ଏହି ତିନି ଗୁଣ ଅନୁସାରେ ଯେ ଯେଉଁ ଫଳ ପାଇବାର କଥା, ଆପଣ ତା'ର ନିୟନ୍ତା । କୌଣସି ଅର୍ବାଚୀନ ବ୍ୟକ୍ତି ଆପଣଙ୍କର ସେହି ଗୁଣାତୀତ ପରମ ସ୍ୱରୂପକୁ ବୁଝିବାକୁ ସକ୍ଷମ ନୁହେଁ ।।୩୨।। ହେ ଭଗବାନ୍, ନାରାୟଣ, ବାସୁଦେବ, ଆଦିପୁରୁଷ ଏବଂ ମହାପୁରୁଷ । ହେ ମହାନୁଭାବ, ମଙ୍ଗଳମୟ, ପରମକଲ୍ୟାଣକାରୀ, ପରମକାରୁଣିକ, ହେ ସମସ୍ତ ଜଗତର ଆଧାର, ସମସ୍ତ ଲୋକର ନାଥ ! ହେ ସର୍ବେଶ୍ୱର, ଲକ୍ଷ୍ମୀପତି, ଆତ୍ମଜ୍ଞାନୀ ସନ୍ନ୍ୟାସୀମାନେ ଏକାଗ୍ର ଚିତ୍ତରେ ସମାଧିସ୍ଥ ହୋଇ ଯେତେବେଳେ ଆପଣଙ୍କୁ ଚିନ୍ତା କରନ୍ତି, ସେତେବେଳେ ସେମାନଙ୍କ ହୃଦୟର ମୋହରୂପକ ରୁଦ୍ଧଦ୍ୱାର ଖୋଲିଯାଏ ଏବଂ ଆପଣଙ୍କ ସ୍ୱରୂପର ଅନୁଭୂତି ଲାଭ କରି ସେମାନେ ପରମାନନ୍ଦରେ ମଗ୍ନ ହୋଇଯା'ନ୍ତି, ସେହି ଓଁକାରରୂପୀ ଆପଣଙ୍କୁ ଆମେ ବାରମ୍ୱାର ନମସ୍କାର କରୁଛୁ ।।୩୩।। ପ୍ରଭୁ, ଆପଣଙ୍କ ଲୀଳାର ରହସ୍ୟ ଜାଣିବା କଷ୍ଟକର । କାହାର ଆଶ୍ରୟ ନ ନେଇ, ବା ପ୍ରାକୃତ ଶରୀର ଗ୍ରହଣ ନ କରି, ସମ୍ପୂର୍ଣ୍ଣ ନିର୍ଗୁଣ ହୋଇ ମଧ୍ୟ ଆପଣ ସଗୁଣ ବିଶ୍ୱକୁ ସୃଷ୍ଟି କରନ୍ତି, ରକ୍ଷା କରନ୍ତି ଓ ସଂହାର କରନ୍ତି ।।୩୪।। ଭଗବାନ୍, ଦେବଦତ୍ତ ଆଦି ଯେ କୌଣସି ସାଧାରଣ ଲୋକପରି ଆପଣ ଏହି ଜଗତରେ ଜୀବରୂପରେ ଜନ୍ମ ହୁଅନ୍ତି ଏବଂ କର୍ମର ଅଧୀନ ହୋଇ ନିଜକୃତ ଭଲମନ୍ଦ କର୍ମର ଫଳ ଭୋଗ କରନ୍ତି, କିମ୍ବା ଆତ୍ମାରାମ, ପ୍ରଶାନ୍ତ ଏବଂ ସବୁଥିରୁ ଉଦାସୀନ ଭାବେ ସମଦର୍ଶୀ ଓ ସାକ୍ଷୀମାତ୍ର ହୋଇ ରହନ୍ତି -- ଯାହା ଆମ ପକ୍ଷରେ ବୁଝିବା ଅତିଶୟ କଷ୍ଟକର ।।୩୫।। ସାଧାରଣ ଲୋକପରି ଶୁଭାଶୁଭ କର୍ମଫଳ ଭୋଗ କରିବା ଏବଂ ଉଦାସୀନ ଭାବରେ ରହିବା -- ଏହା ପରସ୍ପରବିରୋଧୀବୋଲି ପୂର୍ବରୁ ଯାହା କୁହାଯାଇଛି, ପ୍ରକୃତରେ ତାହା ଯଥାର୍ଥ ନୁହେଁ । କାରଣ ଆପଣ ଭଗବାନ, ସ୍ୱାଧୀନ । ଆପଣ ଅପରିମିତ ଗୁଣରାଶିର ଅଧିକାରୀ, ଆପଣଙ୍କର ମହିମା ଅଗାଧ ଓ ଅଚିନ୍ତନୀୟ । ଆପଣ ସର୍ବଶକ୍ତିମୟ । ଲୋକେ ଆପଣଙ୍କୁ ନେଇ ନାନା ବିବାଦର ଅବତାରଣା କରି ହୃଦୟକୁ ବ୍ୟାକୁଳ ଓ ଦୂଷିତ କରନ୍ତି । ଆପଣ କିନ୍ତୁ ଏହି ବାଦବିବାଦର ଊର୍ଦ୍ଧ୍ୱରେ ଥାଆନ୍ତି । ମାୟାତୀତ, ମାୟା ଆପଣଙ୍କୁ ବଶୀଭୂତ କରିପାରେ ନାହିଁ । କିନ୍ତୁ ନିଜ ମାୟାର ପ୍ରଭାବରେ ଆପଣ କ'ଣ ସମ୍ଭବ କରି ନ ପାରନ୍ତି ! ଆପଣ ମାୟାମୁକ୍ତ, ଅନ୍ୟମାନଙ୍କପରି କର୍ତ୍ତା ଓ ଭର୍ତ୍ତା ନୁହନ୍ତି, ତେଣୁ ଉଦାସୀନ । କିନ୍ତୁ ମାୟା ଶକ୍ତିଦ୍ୱାରା ଆପଣ ନିଜକୁ କର୍ତ୍ତା ଓ ଭର୍ତ୍ତା କରିପାରନ୍ତି, ତେଣୁ ଉଦାସୀନ ନୁହନ୍ତି, ଏଣୁ ଆପଣଙ୍କ ପକ୍ଷରେ ସବୁ ସମ୍ଭବ ।।୩୬।। ରଜ୍ଜୁରେ ଯାହାର ସର୍ପର ଧାରଣା ହୁଏ, ସେ ରଜ୍ଜୁକୁ ସର୍ପ ପରି ଦେଖେ । ସେହିପରି ଆପଣଙ୍କପ୍ରତି ଯାହାର ଯେପରି ଧାରଣା, ଆପଣ ସେହି ଅନୁସାରେ ତାର ବୋଧଗମ୍ୟ ହୁଅନ୍ତି ।।୩୭।। ବିଚାରପୂର୍ବକ ଦେଖିଲେ ଆପଣ ସମସ୍ତ ବସ୍ତୁରେ ବସ୍ତୁସ୍ୱରୂପରେ ବିଦ୍ୟମାନ । ଆପଣ ସମସ୍ତଙ୍କର ସ୍ୱାମୀ ଓ ସମସ୍ତ ଜଗତର କାରଣରୂପୀ ବ୍ରହ୍ମା ଏବଂ ପ୍ରକୃତିର ମଧ୍ୟ ଆପଣ ହିଁ କାରଣ । ଆପଣ ଅନ୍ତର୍ଯାମୀରୂପେ ସମସ୍ତଙ୍କ ଅନ୍ତରରେ ବିଦ୍ୟମାନ, ତେଣୁ ବିଭିନ୍ନ ଗୁଣଯୁକ୍ତ ସମସ୍ତ ପ୍ରକାଶମାନ ପଦାର୍ଥ ଆପଣଙ୍କଯୋଗୁଁ ହିଁ ସମ୍ଭବ ହେଉଛି । ତେଣୁ ଯେଉଁମାନେ ସମସ୍ତ ସାଂସାରିକ ବସ୍ତୁକୁ 'ନେତି ନେତି' ବୋଲି କହନ୍ତି, ସେମାନେ ଶେଷରେ ଆପଣଙ୍କର ସତ୍ତାକୁ ହିଁ ସ୍ୱୀକାର କରନ୍ତି ।।୩୮।।

ହେ ମଧୁସୂଦନ, ଆପଣଙ୍କର ଯେଉଁ ପରମଭାଗବତ ସାଧୁ ଭକ୍ତମାନେ ଆପଣଙ୍କ ମହିମାରୂପକ ଅମୃତ ରସର ସମୁଦ୍ର ମଧ୍ୟରୁ ବିନ୍ଦୁଏ ମାତ୍ର ଆସ୍ୱାଦନ କରିଛନ୍ତି, ସେମାନେ ହୃଦୟମଧ୍ୟରେ ସର୍ବଦା ସୁଖ ଏବଂ ଆନନ୍ଦ ଅନୁଭବ କରନ୍ତି । ସେମାନେ ଚକ୍ଷୁ, କର୍ଣ୍ଣ ପ୍ରଭୃତି ଇନ୍ଦ୍ରିୟ ଜନିତ ତୁଚ୍ଛ ବିଷୟସୁଖକୁ ଖୁବ୍ ଶୀଘ୍ର ଭୁଲିଯାଆନ୍ତି । ସମସ୍ତ ପ୍ରାଣୀଙ୍କର ପ୍ରିୟ ବନ୍ଧୁ ସର୍ବାନ୍ତର୍ଯାମୀ ଶ୍ରୀ ଭଗବାନଙ୍କ ପ୍ରତି ଏକାନ୍ତ ଅନୁରାଗବଶତଃ ପ୍ରକୃତ ପୁରୁଷାର୍ଥ କ'ଣ, ତାହା ସେମାନେ ବୁଝିପାରନ୍ତି ଏବଂ ଏକମାତ୍ର ଆପଣଙ୍କୁ ହିଁ ନିଜର ପ୍ରିୟ ସୁହୃଦ୍ ରୂପେ ଗ୍ରହଣ କରି ମନରେ ଅପାର ଶାନ୍ତି ଅନୁଭବ କରନ୍ତି । ତେଣୁ ଆପଣଙ୍କ ପାଦପଦ୍ମର ସେବା,

ଯଦ୍ଵାରା କି ପୁଣି ସଂସାରକୁ ଆସିବାକୁ ପଡ଼େ ନାହିଁ, ତାହା ସେମାନେ କିପରି ଛାଡ଼ିପାରିବେ ? ॥୩୯॥ ହେ ଭଗବାନ୍, ଆପଣ ହେଉଛନ୍ତି ଏହି ତ୍ରିଭୁବନର ଆତ୍ମା ଓ ଆଶ୍ରୟସ୍ଵରୂପ । ତ୍ରିବିକ୍ରମ (ବାମନ ଅବତାର) ରୂପେ ଆପଣଙ୍କର ତିନିପାଦ ତ୍ରିଭୁବନକୁ ବ୍ୟାପ୍ତ ହୋଇଥିଲା । ଆପଣ ତ୍ରିନୟନ, ଅର୍ଥାତ ସୃଷ୍ଟି, ସ୍ଥିତି ଓ ବିନାଶର କର୍ତ୍ତା; ଆପଣଙ୍କର ମହିମା ତ୍ରିଲୋକର ମନକୁ ହରଣ କରେ । ଦୈତ୍ୟ, ଦାନବ ପ୍ରଭୃତି ଅସୁରଗଣ ଆପଣଙ୍କ ବିଭୂତିରେ ବଳୀୟାନ୍ ହେଲେ ମଧ୍ୟ, ହେ ଦଣ୍ଡଦାତା ପ୍ରଭୁ, ବର୍ତ୍ତମାନ ସେମାନଙ୍କୁ ଦଣ୍ଡ ଦେବାର ସମୟ ଆସଛି । କାରଣ ସେମାନଙ୍କ ଅପରାଧକୁ ଚାହିଁ ଦଣ୍ଡଦେବାକୁ ଆପଣ ନିଜ ମାୟାର ପ୍ରଭାବରେ ଦେବତା (ବାମନ), ମନୁଷ୍ୟ (ରାମ), ପଶୁ (ବରାହ), ମିଶ୍ରିତ ନରପଶୁ (ନୃସିଂହ) ଏବଂ ଜଳଚର (ମତ୍ସ୍ୟ) ରୂପ ଧାରଣ କରିଥା'ନ୍ତି । ବର୍ତ୍ତମାନ ଆପଣ ଉପଯୁକ୍ତ ସମୟକୁ ବିବେଚନା କରି ତ୍ଵଷ୍ଟାପୁତ୍ର ବୃତ୍ରାସୁରକୁ ବଧ କରନ୍ତୁ ॥୪୦॥ ପାପନାଶନ ପ୍ରଭୁ, ଆପଣ ଆମର ପିତୃପିତାମହ ସ୍ଵରୂପ । ଶ୍ରୀହରି, ଆପଣଙ୍କର ପାଦପଦ୍ମଯୁଗଳକୁ ଧ୍ୟାନ କରିକରି ଆମର ହୃଦୟ ସେଥିରେ ନିବଦ୍ଧ ହୋଇଗଲାଣି । ଆପଣ ନିଜର ରୂପ ପ୍ରକାଶ କରି ଆମକୁ ନିଜର କରିନେଇଛନ୍ତି । ତେଣୁ ଆମେ ହେଉଛୁ ଆପଣଙ୍କର । ଆପଣ କୃପାଭରା, ନିର୍ମଳ, ସୁନ୍ଦର, ସ୍ନେହପୂର୍ଣ୍ଣ ଓ ମୃଦୁହାସ୍ୟଯୁକ୍ତ ଦୃଷ୍ଟିରେ ଏବଂ ଆପଣଙ୍କର ସୁଧାମୟ ମଧୁର ବାକ୍ୟରେ ଆମର ମନସ୍ତାପ ଦୂର କରନ୍ତୁ, ଏତିକି ଆମର ପ୍ରାର୍ଥନା ॥୪୧॥ ପରମେଶ୍ଵର, ସମଗ୍ର ବିଶ୍ଵର ସୃଷ୍ଟି, ସ୍ଥିତି ଓ ଲୟକାରିଣୀ ଆପଣଙ୍କର ଯେଉଁ ଅପୂର୍ବ ମାୟାଶକ୍ତି ଅଛି, ତାକୁ ଘେନି ଆପଣ ବିଭିନ୍ନ ଲୀଳାଖେଳା କରନ୍ତି । ସମସ୍ତ ପ୍ରାଣୀଙ୍କର ଅନ୍ତଃକରଣରେ ଆପଣ ବ୍ରହ୍ମ ଓ ଅନ୍ତର୍ଯାମୀରୂପେ ବିଦ୍ୟମାନ ଏବଂ ବହିର୍ଜଗତରେ ଆପଣ ପ୍ରକୃତି ରୂପରେ ବିରାଜମାନ । ଦେଶ, କାଳ ଓ ପାତ୍ର ଅନୁଯାୟୀ ଆପଣ ସମସ୍ତ ବସ୍ତୁର କାରଣ ଓ ପ୍ରକାଶକରୂପେ ସବୁକିଛି ଅନୁଭବ କରିଥା'ନ୍ତି । ଆପଣ ସମସ୍ତ ବୁଦ୍ଧିବୃତ୍ତିର ସାକ୍ଷୀ ସ୍ଵରୂପ । ଆପଣ ଆକାଶ ପରି ଏକାନ୍ତ ନିର୍ଲିପ୍ତ ସାକ୍ଷାତ୍ ପରଂବ୍ରହ୍ମ ଓ ପରମାତ୍ମା । ଅଗ୍ନିର ସ୍ଫୁଲିଙ୍ଗ ସବୁ ଯେପରି ଅଗ୍ନିକୁ ସୃଷ୍ଟି କରିପାରନ୍ତି ନାହିଁ, ସେହିପରି ଆପଣଙ୍କ ନିକଟରେ ଆମେ ନିଜର ପ୍ରାର୍ଥିତ ବସ୍ତୁ ପ୍ରକାଶ କରିପାରୁ ନାହୁଁ ॥୪୨॥ ଆପଣ ସର୍ବାନ୍ତର୍ଯାମୀ, ସର୍ବଜ୍ଞ । ଯେଉଁ ଫଳଲାଭର ଆଶାରେ ଆମେ ଆପଣଙ୍କ ପାଖକୁ ଆସିଛୁ, ଆପଣ ତାହା ପୂର୍ଣ୍ଣ କରନ୍ତୁ । ଆପଣ ଅଚିନ୍ତ୍ୟ ଐଶ୍ଵର୍ଯ୍ୟର ଅଧିକାରୀ । ଆପଣଙ୍କ ପାଦପଦ୍ମର ଛାୟାରେ ସଂସାରର ସମସ୍ତ ପାପଜନିତ ସନ୍ତାପ ଦୂର ହୋଇଯାଏ । ଆମେ ଆପଣଙ୍କର ସେହି ଚରଣଛାୟାରେ ଆଶ୍ରୟ ନେଇଛୁ ॥୪୩॥ ଜଗଦୀଶ୍ଵର, ତ୍ରିଭୁବନ ଗ୍ରାସ କରିବାକୁ ଯାଉଥିବା ସେହି ତ୍ଵଷ୍ଟାନନ୍ଦନ ବୃତ୍ରାସୁରକୁ ଆପଣ ଶୀଘ୍ର ବିନାଶ କରନ୍ତୁ । ସେ ଆମର ଅସ୍ତ୍ର, ଶସ୍ତ୍ର, ତେଜ ଆଦି ସବୁ ଗ୍ରାସ କରି ନେଇଛି ॥୪୪॥ ଆପଣ ଭକ୍ତମାନଙ୍କର ନିର୍ମଳ ହୃଦୟାକାଶରେ ବାସ କରନ୍ତି । ଆପଣ ସମସ୍ତ ବସ୍ତୁର ସାକ୍ଷୀ ଅନାଦି, ଅନନ୍ତ, ବିମଳକୀର୍ତ୍ତି । କେବଳ ଭକ୍ତ ସତ୍‌ପୁରୁଷଗଣ ହିଁ ଆପଣଙ୍କର ସେବା କରିପାରନ୍ତି । ସଂସାରପଥର ପଥିକମାନଙ୍କ ମଧ୍ୟରୁ ଯେଉଁମାନେ ଆପଣଙ୍କର ଶରଣାଗତ, ସେମାନଙ୍କପାଇଁ ଅନ୍ତକାଳରେ ଆପଣ ଉତ୍ତମ ଗତିର ବ୍ୟବସ୍ଥା କରିଥା'ନ୍ତି । ସେହି ସର୍ବଦୁଃଖହାରୀ ଭଗବାନଙ୍କୁ ଆମେ ନମସ୍କାର କରୁଛୁ ॥୪୫॥

ଶ୍ରୀ ଶୁକଦେବ କହିଲେ, ପରିକ୍ଷିତ, ଦେବତାମାନଙ୍କର ସ୍ତୁତିବାକ୍ୟ ଶ୍ରବଣ କରି ଭଗବାନ ଶ୍ରୀହରି ସନ୍ତୁଷ୍ଟ ହୋଇ ସେମାନଙ୍କୁ ଏହିପରି କହିଲେ -- ॥୪୬॥ ଭଗବାନ କହିଲେ, ସୁରଶ୍ରେଷ୍ଠଗଣ, ତୁମର ସ୍ତୁତିଯୁକ୍ତ ଜ୍ଞାନଦ୍ଵାରା ମୁଁ ସନ୍ତୋଷ ଲାଭ କରିଛି; ଏହାଦ୍ଵାରା ହିଁ ଲୋକମାନେ ମୋର ଐଶ୍ଵର୍ଯ୍ୟକୁ ସ୍ମରଣ କରନ୍ତି ଏବଂ ମୋ ପ୍ରତି ସେମାନଙ୍କର ଭକ୍ତି ଜାତ ହୁଏ ॥୪୭॥ ଦେବଗଣ, ମୁଁ ପ୍ରସନ୍ନ ହେଲେ କୌଣସି ବସ୍ତୁ ଦୁଷ୍ପ୍ରାପ୍ୟ ହୁଏ ନାହିଁ । ତଥାପି ମୋର ଅନନ୍ୟ ତତ୍ତ୍ଵଜ୍ଞ ଭକ୍ତମାନେ ମୋ ଛଡ଼ା ଆଉ କିଛି ମାଗନ୍ତି ନାହିଁ ॥୪୮॥ ଯେଉଁବ୍ୟକ୍ତି ବିଷୟଭୋଗକୁ ପରମାର୍ଥ ବୋଲି ମନେକରେ, ସେହି ଅଜ୍ଞ ତା'ର ହିତଚିନ୍ତା କରେ ନାହିଁ; କେବଳ ବିଷୟ ପଛରେ ହିଁ ଦଉଡ଼ିଥାଏ । କିନ୍ତୁ କୌଣସି ଦାତା ଯଦି ତା'ର ଇପ୍ସିତ ବିଷୟକୁ ଦାନ କରେ, ତା'ହେଲେ ସେ ମଧ୍ୟ ଅଜ୍ଞ ବୋଲି ଧରିବାକୁ ହେବ ॥୪୯॥ ପରମପୁରୁଷାର୍ଥ କ'ଣ, ଯେଉଁ ବ୍ୟକ୍ତି ଜାଣିଛି, ସେ

କେଭେ ଅଜ୍ଞ ପ୍ରାର୍ଥୀକୁ ପବୃତ୍ତିମାର୍ଗର ଉପଦେଶ ଦେବ ନାହିଁ । ରୋଗୀ ଇଚ୍ଛା କଲେ ମଧ୍ୟ ଉତ୍ତମ ଚିକିତ୍ସକ କେଭେ ତାକୁ କୁପଥ୍ୟ ପ୍ରଦାନ କରେ ନାହିଁ ॥୫୦॥

ଦେବରାଜ ଇନ୍ଦ୍ର, ତୁମର ମଙ୍ଗଳ ହେଉ । ଦଧୀଚିଙ୍କ ପାଖକୁ ଯାଇ ତୁମେ ତାଙ୍କ ଦେହକୁ ଭିକ୍ଷା କର । ବିଦ୍ୟା, ବ୍ରତ ଓ ତପସ୍ୟାଦ୍ୱାରା ତାଙ୍କ ଦେହ ଅତିଶୟ ଶକ୍ତ ହୋଇଛି । ଦଧୀଚି ମୁନି ବିଶୁଦ୍ଧ ବ୍ରହ୍ମଜ୍ଞାନ ଲାଭ କରିଛନ୍ତି । ତାହା ସେ ଅଶ୍ୱଶିରଦ୍ୱାରା ଅଶ୍ୱିନୀକୁମାରଦ୍ୱୟଙ୍କୁ ଦାନ କରିଥିଲେ । ସେଥିପାଇଁ ଏହି ବ୍ରହ୍ମବିଦ୍ୟାର ଅନ୍ୟ ଏକ ନାମ ହେଉଛି 'ଅଶ୍ୱଶିରା' । ଏହି ବ୍ରହ୍ମଜ୍ଞାନର ପ୍ରଭାବରେ ଅଶ୍ୱିନୀକୁମାରଦ୍ୱୟ ଜୀବନ୍ମୁକ୍ତ ହୋଇଯାଇଥିଲେ ॥୫୧-୫୨॥ ଅଥର୍ବବେଦୀ ଦଧୀଚି ଋଷି ମୋର ଆତ୍ମସ୍ୱରୂପ ଅମୋଘ ନାରାୟଣକବଚ ଲାଭକରି ତ୍ୱଷ୍ଟାଙ୍କୁ ଉପଦେଶ ଦେଇଥିଲେ । ତ୍ୱଷ୍ଟା ତାଙ୍କ ପୁତ୍ର ବିଶ୍ୱରୂପଙ୍କୁ ତାହା ଦେଲେ ଏବଂ ବିଶ୍ୱରୂପଙ୍କ ଠାରୁ ତୁମେ ତାହା ଲାଭ କରିଥିଲ । ସେହି ଦଧୀଚି ଋଷି ପରମଧର୍ମଜ୍ଞ । ଅଶ୍ୱିନୀକୁମାର ଦ୍ୱୟ ତାଙ୍କୁ ଯାଇ ପ୍ରାର୍ଥନା କଲେ ସେ ତୁମମାନଙ୍କୁ ନିଶ୍ଚୟ ନିଜର ଅଙ୍ଗ (ଅସ୍ଥି) ଦାନ କରିବେ । ବିଶ୍ୱକର୍ମା ସେହି ଅଙ୍ଗଦ୍ୱାରା ଶ୍ରେଷ୍ଠ ଅସ୍ତ୍ର ବଜ୍ରକୁ ନିର୍ମାଣ କରିବେ ଏବଂ ତୁମେ ମୋର ତେଜ ଲାଭ କରି ସେହି ବଜ୍ରଦ୍ୱାରା ବୃତ୍ରାସୁରର ଶିରଚ୍ଛେଦନ କରିବ ॥୫୩-୫୪॥ ଦେବଗଣ, ବୃତ୍ରାସୁରର ନିଧନ ପରେ ତୁମମାନଙ୍କର ତେଜ, ବୀର୍ଯ୍ୟ, ଅସ୍ତ୍ରଶସ୍ତ୍ର ଏବଂ ଐଶ୍ୱର୍ଯ୍ୟ ପୁଣି ଫେରିଆସିବ । ତୁମର ନିଶ୍ଚୟ ମଙ୍ଗଳ ହେବ । କାରଣ ମୋର ଶରଣାଗତକୁ କେହି କେବେ କଷ୍ଟ ଦେଇ ପାରେନା ॥୫୫॥

## ଦଶମ ଅଧ୍ୟାୟ

# ଦଧୀଚି

ଶୁକଦେବ କହିଲେ, ପରିକ୍ଷିତ ! ଜଗତ୍‌କର୍ତ୍ତା ଭଗବାନ ଶ୍ରୀହରି ଇନ୍ଦ୍ରଙ୍କୁ ଏହିପରି ଉପଦେଶ ଦେଇ ଦେବତାମାନଙ୍କ ସମକ୍ଷରେ ଅନ୍ତର୍ହିତ ହୋଇଗଲେ ॥୧॥ ଦେବତାମାନେ ଅଥର୍ବବେଦୀ ଋଷି ଦଧୀଚିଙ୍କ ପାଖରେ ପହଞ୍ଚି ତାଙ୍କ ଅସ୍ଥି ଭିକ୍ଷା କରନ୍ତେ, ଋଷି ଆନନ୍ଦରେ ହସି ହସି କହିଲେ, ଦେବଗଣ, ତୁମେ କ'ଣ ଜାଣି ନାହଁ, ମରିବାବେଳେ ପ୍ରାଣୀମାନଙ୍କୁ କେତେ କଷ୍ଟ ହୁଏ । ଚେତା ଥିବାବେଳେ ସେମାନଙ୍କୁ ଅସହ୍ୟ କଷ୍ଟ ଭୋଗିବାକୁ ପଡ଼େ ଏବଂ ଶେଷରେ ସେମାନଙ୍କର ଚେତା ବୁଡ଼ିଯାଏ ॥୨-୩॥ ସଂସାରରେ ବଞ୍ଚି ରହିବାକୁ ଇଚ୍ଛା କରୁଥିବା ଜୀବମାନଙ୍କପାଇଁ ଶରୀର ହେଉଛି ପ୍ରିୟତମ ଅଭୀଷ୍ଟ ବସ୍ତୁ । ସ୍ୱୟଂ ଭଗବାନ ବିଷ୍ଣୁ ମାଗିଲେ ମଧ୍ୟ ନିଜ ଶରୀର ଦାନ କରିବାପାଇଁ କିଏ ଉତ୍ସାହିତ ହେବ ? ॥୪॥ ଦେବତାମାନେ କହିଲେ, ବ୍ରହ୍ମନ୍, ପୁଣ୍ୟଶ୍ଳୋକ ବ୍ୟକ୍ତିମାନେ ଯାହାଙ୍କ କାର୍ଯ୍ୟକୁ ପ୍ରଶଂସା କରିଥାଆନ୍ତି, ସମସ୍ତ ଜୀବଙ୍କପ୍ରତି ସଦୟ ଆପଣଙ୍କପରି ସେହି ମହାପୁରୁଷଙ୍କ ପକ୍ଷରେ ଏପରି କୌଣସି ବସ୍ତୁ ନାହିଁ, ଯାହାକୁ ତ୍ୟାଗ କରାଯାଇ ନ ପାରେ ॥୫॥ ସ୍ୱାର୍ଥପର ଲୋକ ଅନ୍ୟର ସଙ୍କଟ ବୁଝିପାରେ ନାହିଁ । ଦାତାର ସୁବିଧା ଅସୁବିଧା ବିଚାର କରିବାର ବୁଦ୍ଧି ତା'ର ନ ଥାଏ । ଯଦି ତା'ର ସେ ବୁଦ୍ଧି ଥାଆନ୍ତା, ତା'ହେଲେ ସେ ମାଗନ୍ତା କାହିଁକି ? ସେହିପରି ଦାତା ମଧ୍ୟ ମାଗିବା ଲୋକର ବିପତ୍ତିକୁ ଜାଣିପାରେ ନାହିଁ । କାରଣ ଜାଣିଲେ ସେ କେବେ ମନା କରିପାରିବ ନାହିଁ ॥୬॥ ଦଧୀଚି କହିଲେ, ଦେବଗଣ, ମୁଁ ତୁମମାନଙ୍କ ମୁହଁରୁ ଧର୍ମକଥା ଶୁଣିବା ଇଚ୍ଛାରେ ଏପରି ଉପେକ୍ଷା ବାକ୍ୟ କହିଥିଲି । କିନ୍ତୁ, ଦେହ ଯେତେ ପ୍ରିୟ ହେଲେ ମଧ୍ୟ ଦିନେ ନା ଦିନେ ସେ ମୋତେ ଛାଡ଼ି ଚାଲିଯିବ । ତେଣୁ ଆପଣମାନଙ୍କପାଇଁ ବର୍ତ୍ତମାନ ମୁଁ ମୋର ଶରୀର ତ୍ୟାଗ କରିବା ପାଇଁ ପ୍ରସ୍ତୁତ ଅଛି ॥୭॥ ଦେବଗଣ, ଯେଉଁ ବ୍ୟକ୍ତି ଜୀବମାନଙ୍କପ୍ରତି ଦୟାପରବଶ ହୋଇ ତା'ର ନଶ୍ୱର ଦେହଦ୍ୱାରା ଧର୍ମ ଓ ଯଶ ଅର୍ଜନ କରିବାକୁ ଚେଷ୍ଟା ନ କରେ, ବୃକ୍ଷ, ଲତା ପରି ଜଡ଼

ଜୀବଙ୍କର ମଧ୍ୟ ସେ ଶୋଚନାର ପାତ୍ର ହୋଇଯାଏ ॥୮॥ ଯେଉଁ ବ୍ୟକ୍ତି ପ୍ରାଣୀମାନଙ୍କ ଶୋକରେ ଶୋକ ଓ ଆନନ୍ଦରେ ଆନନ୍ଦ ଅନୁଭବ କରେ, ତାର ସେହି ସମବେଦନାଶୀଳ ଧର୍ମ ଅକ୍ଷୟପୁଣ୍ୟର କାରଣ ହୁଏ ଏବଂ ପୁଣ୍ୟଶ୍ଳୋକ ବ୍ୟକ୍ତିମାନେ ମଧ୍ୟ ସେହି ଧର୍ମର ଉପାସନା କରନ୍ତି ॥୯॥ ଜଗତ୍‌ରେ ଧନ, ଜନ ଓ ଦେହାଦି ବସ୍ତୁ କ୍ଷଣଭଙ୍ଗୁର । ତାହା ନିଜର ପ୍ରକୃତ ସ୍ୱାର୍ଥରେ ଲାଗେ ନାହିଁ; ଶୃଗାଳ କୁକୁର ଆଦି ଅନ୍ୟମାନେ ତାହା ଭୋଗ କରନ୍ତି । ଦୁଃଖ ଓ ପରିତାପର ବିଷୟ ଏହି ଯେ ମରଣଶୀଳ ବ୍ୟକ୍ତି ଏସବୁ ବସ୍ତୁକୁ ପରୋପକାରରେ ଲଗାଏ ନାହିଁ ॥୧୦॥ ଶ୍ରୀ ଶୁକଦେବ କହିଲେ, ଅଥର୍ବବେଦୀ ଦଧୀଚି ଋଷି ଏହିପରି କୃତସଂକଳ୍ପ ହୋଇ ପରଂବ୍ରହ୍ମ ଶ୍ରୀ ଭଗବାନଙ୍କ ସହିତ ଆତ୍ମାର ମିଳନପାଇଁ ନିଜର ସ୍ଥୂଳ ଶରୀରକୁ ତ୍ୟାଗ କଲେ ॥୧୧॥

ତାଙ୍କ ଇନ୍ଦ୍ରିୟ, ପ୍ରାଣ, ମନ ଓ ବୁଦ୍ଧି ସଂଯତ ଥିଲା । ସେ ତତ୍ତ୍ୱଦର୍ଶୀ ଥିଲେ ଏବଂ ନିଜର ସମସ୍ତ ସଂସାର ବନ୍ଧନକୁ ଛିନ୍ନ କରିଦେଇଥିଲେ । ତେଣୁ ପରମସମାଧିରେ ବସିଥିବା ବେଳେ ତାଙ୍କ ଦେହ କେତେବେଳେ ଚାଲିଗଲା, ସେ ଜାଣିପାରିଲେ ନାହିଁ ॥୧୨॥ ଦଧୀଚି ମୁନିଙ୍କର ଅସ୍ଥିଦ୍ୱାରା ବିଶ୍ୱକର୍ମା ବଜ୍ର ନିର୍ମାଣ କଲେ । ଦଧୀଚିଙ୍କ ଅସ୍ଥିଯୁକ୍ତ ସେହି ବଜ୍ର ଧାରଣ କରି ଓ ଭଗବାନଙ୍କ ତେଜରେ ତେଜୀୟାନ୍ ହୋଇ ଇନ୍ଦ୍ର ସଗର୍ବ ଐରାବତ ହସ୍ତୀ ଆରୋହଣ କଲେ । ତାଙ୍କ ସହିତ ଅନ୍ୟଦେବତାମାନେ ପ୍ରସ୍ତୁତ ହୋଇଗଲେ । ଋଷିମୁନିମାନେ ଦେବରାଜଙ୍କର ସ୍ତୁତି ଗାନ କରିବାକୁ ଲାଗିଲେ । ତ୍ରିଲୋକକୁ ହର୍ଷିତ କରି ଇନ୍ଦ୍ର ଯେତେବେଳେ ସମସ୍ତ ଶକ୍ତି ଖଟାଇ ବୃତ୍ରାସୁରକୁ ବଧ କରିବାପାଇଁ ଧାବିତ ହେଲେ, ସେତେବେଳେ ସେ ଅନ୍ଧକାସୁରର ବିନାଶ ପାଇଁ କ୍ରୁଦ୍ଧ ରୁଦ୍ରଙ୍କ ପରି ଦେଖାଯାଉଥିଲେ । ବହୁସଂଖ୍ୟକ ଅସୁର ସେନାପତିଙ୍କ ସହ ବୃତ୍ର ମଧ୍ୟ ଯୁଦ୍ଧପାଇଁ ପ୍ରସ୍ତୁତ ହୋଇ ରହିଥିଲା ॥୧୩-୧୫॥ ସେତେବେଳେ ସତ୍ୟଯୁଗର ଶେଷ ହୋଇ ତ୍ରେତା ଯୁଗର ଆରମ୍ଭ ହେବାକୁ ଯାଉଥିଲା । ନର୍ମଦା ନଦୀର କୂଳରେ ଦେବାସୁରଙ୍କ ମଧ୍ୟରେ ଭୟାବହ ଯୁଦ୍ଧ ସଂଘଟିତ ହେଲା । ମହାରାଜ ପରିକ୍ଷିତ, ଯୁଦ୍ଧକ୍ଷେତ୍ରରେ ରୁଦ୍ରଗଣ, ବସୁଗଣ, ଆଦିତ୍ୟଗଣ, ଅଶ୍ୱିନୀକୁମାରଦ୍ୱୟ, ପିତୃଗଣ, ଅଗ୍ନି ଓ ମରୁତ୍‌ଗଣ, ଋଭୁଗଣ, ସାଧ୍ୟଗଣ ଓ ବିଶ୍ୱେଦେବ ଆଦିଙ୍କଦ୍ୱାରା ପରିବେଷ୍ଟିତ ହୋଇ ବଜ୍ରଧାରୀ ଇନ୍ଦ୍ର ଅତିଶୟ ଶୋଭାପାଉଥିଲେ । ବୃତ୍ର ପ୍ରଭୃତି ଅସୁରଗଣ ସେମାନଙ୍କୁ ଆଗରେ ଦେଖି ସହ୍ୟ କରିପାରିଲେ ନାହିଁ ॥୧୬-୧୮॥ ନମୁଚି, ଶମ୍ବର, ଅନର୍ବା, ଦ୍ୱିମୂର୍ଦ୍ଧା, ଋଷଭ, ଅସୁର, ହୟଗ୍ରୀବ,ଶଙ୍କୁଶିରା, ବିପ୍ରଚିତ୍ତି, ଅୟୋମୁଖ, ପୁଲୋମା, ବୃଷପର୍ବା, ପ୍ରହେତି, ହେତି, ଉତ୍କଳ, ସୁମାଳୀ, ମାଳୀ ପ୍ରଭୃତି ଦୈତ୍ୟ, ଦାନବ, ଯକ୍ଷ, ରାକ୍ଷସ ସ୍ୱର୍ଣ୍ଣମୟ ସାଂଜୁରେ ସଜ୍ଜିତ ହୋଇ ସିଂହନାଦ କଲେ ଏବଂ ଗଦା, ପରିଘ, ବାଣ, ପ୍ରାସ, ମୁଦ୍‌ଗର ଓ ତୋମର ଦ୍ୱାରା ଇନ୍ଦ୍ରସେନାକୁ ପୀଡ଼ିତ କରିବାକୁ ଲାଗିଲେ । କିନ୍ତୁ ଦେବସେନା ସେତେବେଳକୁ ମୃତ୍ୟୁର ମଧ୍ୟ ଅଜେୟ ଥିଲା ॥୧୯-୨୨॥ ଶୂଳ, ପରଶୁ, ଖଡ୍ଗ, ଶତଘ୍ନୀ ଓ ଭୁଶୁଣ୍ଡି ପ୍ରଭୃତି ନାନାପ୍ରକାର ଅସ୍ତ୍ରଶସ୍ତ୍ର ଦ୍ୱାରା ଅସୁରମାନେ ଦେବତାମାନଙ୍କୁ ଚତୁର୍ଦ୍ଦିଗରୁ ଆଛନ୍ନ କରିଦେଲେ । ଏହି ସବୁ ବାଣ ଗୋଟାକ ପରେ ଗୋଟାଏ ହୋଇ ଏତେ ସଂଖ୍ୟାରେ ଆସୁଥିଲା ଯେ, ମେଘାଛନ୍ନ ଆକାଶରେ ସୂର୍ଯ୍ୟ, ଚନ୍ଦ୍ର ଅଦୃଶ୍ୟ ହେବା ପରି ଦେବତାମାନେ ଅସ୍ତ୍ରଜାଲରେ ଅଦୃଶ୍ୟ ହୋଇଗଲେ ॥୨୩-୨୪॥ କିନ୍ତୁ ଅସୁରମାନଙ୍କର ନିକ୍ଷିପ୍ତ ଏହି ସବୁ ଅସ୍ତ୍ରଶସ୍ତ୍ର ଦେବତାମାନଙ୍କର ଗାତ୍ର ସ୍ପର୍ଶ କରିପାରିଲା ନାହିଁ । କାରଣ କ୍ଷିପ୍ର ହସ୍ତରେ ଦେବତାମାନେ ଆକାଶପଥରେ ହିଁ ସେସବୁକୁ ଖଣ୍ଡବିଖଣ୍ଡିତ କରିଦେଲେ ॥୨୫॥ ଅସୁରମାନେ ସେମାନଙ୍କ ଅସ୍ତ୍ରଶସ୍ତ୍ର ଶେଷ ହେବାର ଦେଖି ଦେବତାଙ୍କ ଉପରେ ପର୍ବତ ଶୃଙ୍ଗ, ବୃକ୍ଷ ଓ ଶିଳାମାନଙ୍କୁ ବର୍ଷଣ କରି ଲାଗିଲେ ଏବଂ ଦେବତାମାନେ ପୂର୍ବପରି ମଧ୍ୟ ସେସବୁକୁ ଖଣ୍ଡଖଣ୍ଡ କରିଦେଲେ ॥୨୬॥ ଏହାପରେ ବୃତ୍ରାସୁରର ଅନୁଚରମାନେ ଦେଖିଲେ ଯେ, ସେମାନଙ୍କର ସମସ୍ତ ଅସ୍ତ୍ରଶସ୍ତ୍ର ଏବଂ ବୃକ୍ଷ, ପାଷାଣ, ପର୍ବତଶୃଙ୍ଗ ଆଦି ଆୟୁଧ ଦେବତାମାନଙ୍କର କୌଣସି କ୍ଷତି କରିପାରୁ ନାହିଁ ଓ ସେମାନେ ଅକ୍ଷତ ଶରୀରରେ ରହିଛନ୍ତି । ତେଣୁ ସେମାନଙ୍କ ମଧ୍ୟରେ ଭୟର ସଞ୍ଚାର ହେଲା ॥୨୭॥

କୃଷ୍ଣଭକ୍ତ ମହାପୁରୁଷଙ୍କ ପ୍ରତି କ୍ଷୁଦ୍ର ବ୍ୟକ୍ତିଙ୍କର ରୂକ୍ଷ ବାକ୍ୟ ଯେପରି କୌଣସି ଫଳ ଦିଏ ନାହିଁ, ସେହିପରି ଦେବତାମାନଙ୍କ ପ୍ରତି ଅସୁରମାନଙ୍କର ବାରମ୍ବାର ଆକ୍ରମଣ କୌଣସି ଫଳ ଦେଲା ନାହିଁ ॥୨୮॥ ଶ୍ରୀହରିଙ୍କ ପ୍ରତି ଭକ୍ତିରହିତ ସେହି ଯୁଦ୍ଧ-ଦୁର୍ମଦ ଅସୁରମାନଙ୍କର ଦର୍ପ ଚୂର୍ଣ୍ଣ ହୋଇଗଲା । ସେମାନଙ୍କର ସମସ୍ତ ଚେଷ୍ଟା ବିଫଳ ହେବାର ଦେଖି ସାହସ ହରାଇ ସେମାନେ ବୃତ୍ରାସୁରକୁ ପରିତ୍ୟାଗପୂର୍ବକ ପଳାୟନ କରିବାକୁ ଲାଗିଲେ ॥୨୯॥ ନିଜର ସୈନ୍ୟମାନେ ଛିନ୍ନଭିନ୍ନ ହେଉଥିବା ଓ ଅନୁଗାମୀମାନେ ମହାଭୟରେ ପଳାୟନ କରୁଥିବା ଦେଖି ମନସ୍ୱୀ ବୀର ବୃତ୍ରାସୁର ସେମାନଙ୍କୁ ବୀରୋଚିତ ବାକ୍ୟରେ ସମ୍ବୋଧନ କରି କହିଲା, ବିପ୍ରଚିତ୍ତି, ନମୁଚି, ପୁଲୋମା, ମୟ, ଅନର୍ବା, ଶମ୍ବର, ତୁମେମାନେ ପଳାଅ ନାହିଁ, ମୁଁ ଯାହା କହୁଛି ଶୁଣ ॥୩୦-୩୧॥ ଯେ ଜନ୍ମ ହୋଇଛି, ଦିନେ ନା ଦିନେ ତାକୁ ନିଶ୍ଚୟ ମରିବାକୁ ହେବ । ବିଧାତା ମୃତ୍ୟୁର କୌଣସି ପ୍ରତିକାର ଦେଇ ନାହିଁ । ଏପରି ଅବସ୍ଥାରେ ଯଦି ମୃତ୍ୟୁଦ୍ୱାରା ଯଶ ଓ ସ୍ୱର୍ଗଲାଭ ହୁଏ, ତେବେ ଏପରି ଉତ୍ତମ ମୃତ୍ୟୁକୁ କିଏ ବା ବରଣ ନ କରିବ ? ॥୩୨॥ ସଂସାରରେ ଦୁଇ ପ୍ରକାର ମୃତ୍ୟୁ ଅଛି, ଯାହା ହେଉଛି ଶ୍ରେଷ୍ଠ ଓ ଦୁର୍ଲ୍ଲଭ । ଏକ ହେଉଛି ପ୍ରାଣାଦି ବାୟୁକୁ ଜୟକରି ଯୋଗମାର୍ଗ ଅବଲମ୍ବନପୂର୍ବକ ପରଂବ୍ରହ୍ମଙ୍କଠାରେ ଚିତ୍ତ ରଖି ଦେହ ତ୍ୟାଗ କରିବା ଏବଂ ଅନ୍ୟଟି ହେଉଛି ଯୁଦ୍ଧକ୍ଷେତ୍ରରେ ପଛଘୁଞ୍ଚା ନ ଦେଇ ଯୁଦ୍ଧ କରି ମୃତ୍ୟୁ ବରଣ କରିବା ॥୩୩॥

## ଏକାଦଶ ଅଧ୍ୟାୟ

# ବୃତ୍ରର ବୀରଗତି ଲାଭ

ରାଜା ପରିକ୍ଷିତ, ଅସୁରସେନା ଏପରି ଭୟଭୀତ ହୋଇଯାଇଥିଲେ ଯେ, ସେମାନେ ନିଜ ସ୍ୱାମୀ ବୃତ୍ରର ଧର୍ମୋପଦେଶ ନ ଶୁଣି ପଳାୟନ କଲେ ॥୧॥ ବୃତ୍ରାସୁର ଦେଖିଲା ଯେ, ସେନାପତି ନ ଥିଲେ ସୈନ୍ୟମାନଙ୍କର ଯେପରି ଅବସ୍ଥା ହୁଏ, ଅସୁରସେନା ସେହିପରି ଛିନ୍ନଭିନ୍ନ ହେବାରେ ଲାଗିଛନ୍ତି ॥୨॥ ରାଜା, ଇନ୍ଦ୍ରଶତ୍ରୁ ବୃତ୍ରାସୁର ଅତିଶୟ କ୍ରୁଦ୍ଧ ହୋଇ ବଳପୂର୍ବକ ଦେବତାମାନଙ୍କୁ ପ୍ରତିରୋଧ କରି ନାନାପ୍ରକାରେ ତିରସ୍କାର କରିବାକୁ ଲାଗିଲା ॥୩॥ ଯୁଦ୍ଧଭୂମିରୁ ପଳାୟନରତ ଅସୁରମାନେ ନିଜ ମାତାପିତାଙ୍କର ପୁତ୍ର ନୁହନ୍ତି । ସେମାନେ ବିଷ୍ଠାତୁଲ୍ୟ । ଯୁଦ୍ଧରେ ପୃଷ୍ଠଭଙ୍ଗ ଦେଉଥିବା ଭୀତ ବ୍ୟକ୍ତିମାନଙ୍କୁ ପ୍ରହାର କରିବାରେ କି ପୌରୁଷ ଅଛି ? ଯେଉଁମାନେ ବୀରତ୍ୱର ଅଭିମାନ କରନ୍ତି, ସେମାନେ ଏମାନଙ୍କୁ ଗୋଡ଼ାଇ ମାରିବା କେବେହେଲେ ପ୍ରଶଂସାର ବିଷୟ ହୋଇ ନ ପାରେ ଏବଂ ଏଥିରେ ତୁମେ କି ସ୍ୱର୍ଗଭୋଗ କରିବ ? ॥୪॥ ହେ ନୀଚ ଦେବଗଣ, ଯୁଦ୍ଧପାଇଁ ଯଦି ତୁମର ଶକ୍ତି ଅଛି ଓ ମନରେ ଉତ୍ସାହ ଅଛି, ନଚେତ୍ ଯଦି ଜୀବିତ ରହି ଲୌକିକ ସୁଖଭୋଗ କରିବାର ସ୍ପୃହା ନାହିଁ, ତା'ହେଲେ କ୍ଷଣମାତ୍ର ମୋ ସମ୍ମୁଖରେ ଠିଆ ହୋଇ ଯୁଦ୍ଧ କର ॥୫॥

ପ୍ରଚଣ୍ଡ ବଳଶାଳୀ ବୃତ୍ରାସୁରର ଶାରୀରିକ ପରାକ୍ରମ ଦେଖି ଦେବତାମାନଙ୍କ ମଧ୍ୟରେ ଭୟର ସଞ୍ଚାର ହେଲା । ସେ କ୍ରୋଧରେ ଏପରି ଗର୍ଜନ କରି ଲାଗିଲା ଯେ, ତାହା ଶୁଣି ଅନେକେ ମୂର୍ଚ୍ଛା ହୋଇଗଲେ ॥୬॥ ଏପରି ହେଲା, ବୃତ୍ରାସୁରର ଭୟଙ୍କର ଗର୍ଜନରେ ଦେବଗଣ ବଜ୍ରାହତ ହେବାପରି ମୂର୍ଚ୍ଛିତ ହୋଇ ଭୂମିରେ ପଡ଼ିଗଲେ ॥୭॥ ରଣରଙ୍ଗରେ ଦୁର୍ମଦ ବୃତ୍ରାସୁର ଯେତେବେଳେ ହସ୍ତରେ ଶୂଳ ଉତ୍ତୋଳନ କରି ପ୍ରବଳବେଗରେ ଧାବିତ ହେଲା ତା'ର ପଦଭାରରେ ପୃଥିବୀ କମ୍ପିବାକୁ ଲାଗିଲା । ମଦମତ୍ତ ହସ୍ତୀ ଯେପରି ନଳବନକୁ ମର୍ଦ୍ଦିତ କରେ, ଭୂତଳରେ ପତିତ ଅଚେତନ ଦେବସୈନ୍ୟଙ୍କୁ ସେ ସେହିପରି ମର୍ଦ୍ଦନ କରିବାକୁ ଲାଗିଲା ॥୮॥ ଏହା ଦେଖି ବଜ୍ରଧାରୀ ଇନ୍ଦ୍ର ଅତିଶୟ କ୍ରୁଦ୍ଧ ହୋଇ ବୃତ୍ରାସୁରକୁ ମାରିବାପାଇଁ ଦଉଡ଼ି ଆସିଲେ

ଏବଂ ତା'ପ୍ରତି ଏକ ମହାଗଦା ନିକ୍ଷେପ କଲେ । ବୃତ୍ରାସୁର ତାହା ଆଡ଼କୁ ଆସୁଥିବା ସେହି ଭୟାନକ ଗଦାକୁ ବାମହସ୍ତରେ ଅବଲୀଳାକ୍ରମେ ଧରିନେଲା ଏବଂ ଅତିଶୟ କ୍ରୁଦ୍ଧ ହୋଇ ସିଂହନାଦପୂର୍ବକ ଇନ୍ଦ୍ରଙ୍କ ବାହନ ଐରାବତ ହସ୍ତୀର ମସ୍ତକରେ ଜୋର୍‌ରେ ପ୍ରହାର କଲା । ଯୁଦ୍ଧକ୍ଷେତ୍ରରେ ତାହାର ଏହି କାର୍ଯ୍ୟକୁ ସମସ୍ତେ ପ୍ରଶଂସା କରିବାକୁ ଲାଗିଲେ ॥୯-୧୦॥ ବୃତ୍ରାସୁରର ଗଦାଘାତରେ ଐରାବତ ହସ୍ତୀ ବଜ୍ରାହତ ପର୍ବତ ପରି ଘୂରିବାକୁ ଲାଗିଲା ଏବଂ ତା'ର ମୁଖମଣ୍ଡଳ ବିଦୀର୍ଣ୍ଣ ହେବାରୁ ରକ୍ତ ବାନ୍ତି କରି କରି ସେ ଅଠେଇଶ ହାତ ପଛକୁ ହଟିଗଲା ॥୧୧॥ ଇନ୍ଦ୍ରଙ୍କ ବାହନର ଏପରି ବିକଳ ଅବସ୍ଥା ଦେଖି ଓ ଇନ୍ଦ୍ରଙ୍କୁ ବିଷାଦଗ୍ରସ୍ତ ଦେଖି ଉଦାରଚେତା ବୃତ୍ରାସୁର ଆଉ ଗଦାନିକ୍ଷେପ କଲା ନାହିଁ । ଏହି ସୁଯୋଗରେ ଇନ୍ଦ୍ର ନିଜର ଅମୃତ ହସ୍ତର ସ୍ପର୍ଶରେ ଆହତ ଐରାବତର ବ୍ୟଥା ଦୂର କରି ପୁଣି ଯୁଦ୍ଧପାଇଁ ପ୍ରସ୍ତୁତ ହୋଇଗଲେ ॥୧୨॥

ମହାରାଜ ପରୀକ୍ଷିତ, ନିଜର ଭ୍ରାତା ବିଶ୍ୱରୂପଙ୍କୁ ବଧ କରିଥିବା ଶତ୍ରୁ ଇନ୍ଦ୍ରର ସମସ୍ତ ନୃଶଂସ ପାପକାର୍ଯ୍ୟକୁ ସ୍ମରଣ କରି ଏବଂ ପୁଣି ତାକୁ ଯୁଦ୍ଧ-ଇଚ୍ଛାରେ ବଜ୍ରହସ୍ତରେ ଫେରି ଆସୁଥିବାର ଦେଖି ଶୋକମୋହଗ୍ରସ୍ତ ବୃତ୍ର ଅଟ୍ଟହାସପୂର୍ବକ ଏହିପରି କହିବାକୁ ଲାଗିଲା-- ॥୧୩॥ ବୃତ୍ରାସୁର କହିଲା, ରେ ଇନ୍ଦ୍ର, ତୁ ବ୍ରହ୍ମହନ୍ତା, ଗୁରୁହନ୍ତା ଏବଂ ମୋ' ଭ୍ରାତାର ଘାତକ । ଆଜି ସେହି ଶତ୍ରୁକୁ ସମ୍ମୁଖରେ ଦେଖି ମୁଁ ଆନନ୍ଦିତ । ରେ ପାପିଷ୍ଠ, ଆଜି ମୋର ଶୂଳଦ୍ୱାରା ତୋର ପାଷାଣତୁଲ୍ୟ ହୃଦୟକୁ ବିଦୀର୍ଣ୍ଣ କରି ଅବିଳମ୍ବେ ଭ୍ରାତୃଋଣ ପରିଶୋଧ କରିବାର ଗୌରବ ଅର୍ଜନ କରିବି ॥୧୪॥ ମୋର ଅଗ୍ରଜ ବିଶ୍ୱରୂପ ଆତ୍ମଜ୍ଞାନୀ, ସଦ୍‌ବିପ୍ର ଥିଲେ । ତୁମେମାନେ ତାଙ୍କୁ ଗୁରୁରୂପେ ବରଣ କରିଥିଲ । ତୁମମାନଙ୍କ କାର୍ଯ୍ୟସାଧନ ହିଁ ତାଙ୍କର ବ୍ରତ ଥିଲା ଓ ତାଙ୍କର କୌଣସି ଅପରାଧ ନଥିଲା । ନିଜେ ସ୍ୱର୍ଗଭୋଗ କରିବାପାଇଁ ପ୍ରଥମେ ତାଙ୍କଠାରେ ବିଶ୍ୱାସ ଜନ୍ମାଇ ପରେ ଅତି ନିର୍ଦ୍ଦୟ ଭାବରେ ତୁ ତାଙ୍କର ତିନୋଟି ଯାକ ଶିର ଛେଦନ କଲୁ ॥୧୫॥ ତୋର ଦୟା ନାହିଁ, ଲଜ୍ଜା ନାହିଁ, ତୋର କୀର୍ତ୍ତି ମଳିନ ଓ ତୁ ଲକ୍ଷ୍ମୀଛଡ଼ା ହୋଇଯାଇଛୁ । ତୁ ଏପରି ନୀଚ କାର୍ଯ୍ୟ କରିଛୁ ଯେ, ତା'ର ନିନ୍ଦା ମନୁଷ୍ୟ କ'ଣ, ରାକ୍ଷସ ମଧ୍ୟ କରୁଛନ୍ତି । ଆଜି ଶୂଳଦ୍ୱାରା ମୁଁ ତୋର ଶରୀର ଖଣ୍ଡ ଖଣ୍ଡ କରିଦେବି । ଅତି କଷ୍ଟରେ ତୋର ମୃତ୍ୟୁ ହେବ । ତୋ ପରି ପାପୀର ଦେହକୁ ଅଗ୍ନି ମଧ୍ୟ ସ୍ପର୍ଶ କରିବ ନାହିଁ, ଏବଂ ଶାଗୁଣାମାନେ ତୋର ଦେହକୁ ଛିଣ୍ଡାଇ ଖାଇବେ । ଏହି ମୂର୍ଖ ଦେବତାମାନେ ତୋ ପରି ମୂର୍ଖ ଓ କ୍ରୂରକର୍ମ ବ୍ୟକ୍ତିର ଅନୁଗାମୀ ହୋଇ ଯଦି ମୋ ଉପରେ ଆକ୍ରମଣ କରିବାକୁ ଆସିବେ, ତା'ହେଲେ ମୁଁ ମୋର ତୀକ୍ଷ୍ଣ ତ୍ରିଶୂଳ ଦ୍ୱାରା ସେମାନଙ୍କ ଗଳା କାଟି ଭୈରବାଦି ଭୂତନାଥମାନଙ୍କୁ ବଳି ଚଢ଼ାଇବି ॥୧୬-୧୭।

ବୀର ଇନ୍ଦ୍ର, ଯଦି ସମ୍ଭବ, ତୋ ବଜ୍ରଦ୍ୱାରା ମୋର ଶିରଶ୍ଛେଦନ କର । ତା'ହେଲେ ମୋର ଶରୀରକୁ ମୁଁ ଶୃଗାଳ, କୁକ୍କୁରାଦିଙ୍କୁ ଉପହାର ଦେଇ ଭକ୍ତମାନଙ୍କ ପଦଧୂଳି ଲାଭ କରିବି ଓ କର୍ମବନ୍ଧନରୁ ମୁକ୍ତ ହୋଇଯିବି ॥୧୮॥ ଦେବରାଜ, ମୁଁ ତୋର ଶତ୍ରୁ, ତୋର ସମ୍ମୁଖରେ ଠିଆ ହୋଇଛି । ତୁ କାହିଁକି ତୋର ଅମୋଘ ବଜ୍ରକୁ ପ୍ରହାର କରୁ ନାହୁଁ ? ଏହା ନିଃସନ୍ଦେହ ଯେ, ତୋ ଗଦା ଯେପରି ନିଷ୍ଫଳ ହୋଇଥିଲା, କୃପଣ ପୁରୁଷକୁ ଧନ ମାଗିବା ଯେପରି ନିଷ୍ଫଳ ହୁଏ, ସେହିପରି ତୋର ବଜ୍ର ମଧ୍ୟ ନିଷ୍ଫଳ ହେବ ॥୧୯॥ ରେ ଇନ୍ଦ୍ର, ତୋର ବଜ୍ର ଶ୍ରୀହରିଙ୍କ ତେଜ ଓ ଦଧୀଚି ମୁନିଙ୍କ ତପସ୍ୟାର ବଳରେ ଅତିଶୟ ଶକ୍ତିଶାଳୀ ଓ ତେଜୀୟାନ୍ ହୋଇଛି । ମୋତେ ମାରିବାପାଇଁ ଭଗବାନ୍ ବିଷ୍ଣୁ ମଧ୍ୟ ତୋତେ ପଠାଇଛନ୍ତି । ତେଣୁ ତୁ ଏହି ବଜ୍ରଦ୍ୱାରା ମୋତେ ବଧ କର । ଯେଉଁ ପକ୍ଷରେ ଭଗବାନ ଶ୍ରୀହରି, ସେ ପକ୍ଷରେ ବିଜୟ, ସମ୍ପଦ ଓ ସମସ୍ତ ଗୁଣାବଳୀ ନିବାସ କରନ୍ତି । ମୋର ପ୍ରଭୁ ସଙ୍କର୍ଷଣ ମୋତେ ଯେପରି ଉପଦେଶ ଦେଇଛନ୍ତି, ତଦନୁଯାୟୀ ତାଙ୍କ ପାଦପଦ୍ମରେ ମୁଁ ମୋର ମନକୁ ନିବେଶ କରିବି । ତୋର ବଜ୍ରପ୍ରହାର ଦ୍ୱାରା ବିଷୟବାସନାରୂପକ ମୋର ବନ୍ଧନ ଛିନ୍ନ ହୋଇଯିବ, ଏବଂ ଦେହତ୍ୟାଗପୂର୍ବକ ମୁଁ ଅଚିରେ ମୁନିଜନୋଚିତ ଗତି ଲାଭ କରିବି ॥୨୦-୨୧॥ ଯେଉଁମାନେ ଭଗବାନଙ୍କର ଅନନ୍ୟ ଭକ୍ତ, ସେମାନଙ୍କୁ ସେ ସ୍ୱର୍ଗ, ମର୍ତ୍ତ୍ୟ ଓ ରସାତଳର ସଂପତ୍ତି ଦାନ କରନ୍ତି ନାହିଁ । କାରଣ ଏସବୁ ସଂପଦ ଦ୍ୱାରା ଦ୍ୱେଷ, ଉଦ୍‌ବେଗ, ମାନସିକ ପୀଡ଼ା,

ଅଭିମାନ, କଳହ ଓ ବିପଦ ଆଦି ଦୁଃଖ ଜାତ ହୁଏ ॥୨୨॥ ଇନ୍ଦ୍ର, ଆମ ପ୍ରଭୁ ସଂକର୍ଷଣ ନିଜ ଭକ୍ତମାନଙ୍କର ଧର୍ମ, କାମ ଆଦି ସମସ୍ତପ୍ରକାର ପ୍ରୟାସକୁ ଅନ୍ତ କରି ଦିଅନ୍ତି ଏବଂ ତଦ୍ୱାରା ସେ କିପରି କୃପା ବିତରଣ କରନ୍ତି ତାହା ଅନୁମାନ କରାଯାଇପାରେ । ଅକିଞ୍ଚନ, ଦୀନହୀନ ଭକ୍ତମାନେ ସହଜରେ ତାଙ୍କ କୃପାଲାଭ କରନ୍ତି, ଯାହାକି ଅନ୍ୟମାନଙ୍କ ପକ୍ଷରେ ଅତିଶୟ ଦୁର୍ଲଭ ॥୨୩॥

(ବର୍ତ୍ତମାନ ବୃତ୍ର ଭଗବାନଙ୍କ ଉଦ୍ଦେଶ୍ୟରେ କହିବାକୁ ଆରମ୍ଭ କଲା) ହେ ଶ୍ରୀହରି, ଆପଣଙ୍କ ପାଦମୂଳରେ ମୁଁ କିପରି ଦାସାନୁଦାସ ହୋଇ ରହିପାରିବି, ତାହା ହିଁ ମୋର ପ୍ରାର୍ଥନା । ହେ ପ୍ରାଣେଶ୍ୱର, ମୋର ମନ ଯେପରି ଆପଣଙ୍କ ଗୁଣରାଶିକୁ ସ୍ମରଣ କରେ, ବାକ୍ୟ ଯେପରି ଆପଣଙ୍କ ଗୁଣାବଳୀ କୀର୍ତ୍ତନ କରେ ଏବଂ ଶରୀର ଯେପରି ଆପଣଙ୍କ ସେବା କାର୍ଯ୍ୟରେ ନିଯୁକ୍ତ ହୁଏ ! ॥୨୪॥ ହେ ନିଖିଳ ସୌଭାଗ୍ୟର ନିଧି, ଆପଣଙ୍କୁ ଛାଡ଼ି ମୁଁ ସ୍ୱର୍ଗଲୋକ, ବ୍ରହ୍ମାଙ୍କପଦ, ପୃଥିବୀର ଆଧିପତ୍ୟ, ପାତାଳଲୋକର ପ୍ରଭୁତ୍ୱ, ଯୋଗଲଭ୍ୟ ଅଷ୍ଟାଦଶସିଦ୍ଧି, ଏପରିକି ମୋକ୍ଷ--ଏ ସବୁ କିଛି କାମନା କରେ ନାହିଁ ॥୨୫॥ ହେ କମଳନୟନ, ଯେପରି ପକ୍ଷହୀନ ପକ୍ଷି ଶାବକମାନେ କ୍ଷୁଧାର୍ତ୍ତ ହୋଇ ମା'ର ବାଟକୁ ଚାହିଁ ରହିଥା'ନ୍ତି, ବାଛୁରୀମାନେ ମା'ର ସ୍ତନ୍ୟପାନକୁ ଆଶା କରି ରହନ୍ତି ଏବଂ ବିଷଣ୍ଣା ପ୍ରିୟା ନିଜର ପ୍ରବାସୀ ପ୍ରିୟତମ ସହିତ ମିଳିତ ହେବାପାଇଁ ବ୍ୟଗ୍ର ହୋଇ ରହେ, ସେହିପରି ମୋର ମନ ଆପଣଙ୍କୁ ଦେଖିବା ପାଇଁ ଉତ୍ସୁକ ହେଉଛି ॥୨୬॥ ପ୍ରଭୁ, ମୋର ପୂର୍ବ କର୍ମ ଅନୁସାରେ ମୁଁ ଆପଣଙ୍କ ମାୟାରେ ବାରମ୍ବାର ଜନ୍ମ ମୃତ୍ୟୁର ଚକ୍ରରେ ଘୂରି ବୁଲୁଛି । ମୋର ପ୍ରାର୍ଥନା, ମୁଁ ଯେଉଁ ଜନ୍ମ ଲାଭ କରେ ନା କାହିଁକି, ଆପଣଙ୍କ ପ୍ରିୟ ଭକ୍ତମାନଙ୍କ ସହ ମୋର ଯେପରି ସଖ୍ୟଭାବ ରହେ ଏବଂ ଦେହ, ସ୍ତ୍ରୀ ପୁତ୍ରାଦିଙ୍କ ପ୍ରତି ଆସକ୍ତ ବ୍ୟକ୍ତିଙ୍କ ସହ ମୋର କୌଣସି ସମ୍ବନ୍ଧ ନ ରହେ ॥୨୭॥

ଦ୍ୱାଦଶ ଅଧ୍ୟାୟ

# ବୃତ୍ରର ମୁକ୍ତି

ଶ୍ରୀ ଶୁକଦେବ କହିଲେ, ମହାରାଜ, ବୃତ୍ରାସୁର ଯୁଦ୍ଧଭୂମିରେ ଦେହତ୍ୟାଗ କରିବାକୁ ଇଚ୍ଛା କରୁଥିଲା । କାରଣ ଇନ୍ଦ୍ରକୁ ଜୟ କରି ସ୍ୱର୍ଗପାଇବା ଅପେକ୍ଷା ମୃତ୍ୟୁ ବରଣ କରି ଭଗବାନଙ୍କୁ ଲାଭ କରିବାକୁ ସେ ଶ୍ରେୟସ୍କର ମନେ କରୁଥିଲା । ଏଥିପାଇଁ ପ୍ରଳୟଜଳରେ ଯେପରି କୈଟଭ ନାମକ ଅସୁର ଭଗବାନ ବିଷ୍ଣୁଙ୍କୁ ମାରିବା ପାଇଁ ଦଉଡ଼ି ଆସିଥିଲା, ସେହିପରି ସେ ଶୂଳହସ୍ତରେ ଇନ୍ଦ୍ରଙ୍କୁ ଆକ୍ରମଣ କଲା ॥୧॥ ବୀର ବୃତ୍ରାସୁର ପ୍ରଳୟକାଳୀନ ଅଗ୍ନିପରି ତୀକ୍ଷ୍ଣଧାରଯୁକ୍ତ ତ୍ରିଶୂଳକୁ ବୁଲାଇ ବୁଲାଇ ଜୋରରେ ଇନ୍ଦ୍ରଙ୍କ ଉପରକୁ ଛାଡ଼ିଦେଇ କ୍ରୁଦ୍ଧ ସ୍ୱରରେ ଗର୍ଜନ କରି କହିଲା, ପାପିଷ୍ଠ ଇନ୍ଦ୍ର, ଏବେ ତୋର କାଳ ପୂରିଗଲା ॥୨॥ ଇନ୍ଦ୍ର ସେହି ତ୍ରିଶୂଳକୁ ଦେଖି ବିଚଳିତ ହେଲେ ନାହିଁ । ଉଲ୍କା ପରି ଦୁଃସହ ତେଜରେ ତାହା ଘୂରିଘୂରି ଆସୁଥିଲା । ସେ ଶତଗ୍ରନ୍ଥି ଯୁକ୍ତ ନିଜର ଅମୋଘ ବଜ୍ରାସ୍ତ୍ର ଦ୍ୱାରା ସେହି ଶୂଳଟିକୁ କାଟି ଦେଲେ ଏବଂ ତାହା ସହିତ ସର୍ପରାଜ ବାସୁକିଙ୍କ ପରି ବୃତ୍ରର ବିଶାଳ ବାହୁକୁ ମଧ୍ୟ କାଟି ପକାଇଲେ ॥୩॥ ଗୋଟିଏ ବାହୁ ବଜ୍ରଦ୍ୱାରା ଛିନ୍ନ ହେବାର ଦେଖି କ୍ରୁଦ୍ଧ ବୃତ୍ରାସୁର ବଜ୍ରଧାରୀ ଇନ୍ଦ୍ରଙ୍କ ନିକଟକୁ ଦଉଡ଼ିଯାଇ ପରିଘଦ୍ୱାରା ତାଙ୍କର ଓ ଐରାବତର ହନୁହାଡ଼ ଉପରେ ଏପରି ଆଘାତ କଲା ଯେ, ଇନ୍ଦ୍ରଙ୍କ ହାତରୁ ବଜ୍ର ଖସିପଡ଼ିଲା ॥୪॥ ଦେବତା, ଅସୁର, ଚାରଣ ଓ ସିଦ୍ଧ ଆଦି ଦର୍ଶକବୃନ୍ଦ ବୃତ୍ରର ସେହି ଅତ୍ୟାଶ୍ଚର୍ଯ୍ୟ କାର୍ଯ୍ୟକୁ ପ୍ରଶଂସା କରି ଲାଗିଲେ ଏବଂ ସଂଗେ ସଂଗେ ଇନ୍ଦ୍ରଙ୍କର ସେହି ସଙ୍କଟକୁ ଦେଖି ହାହାକାର କଲେ ॥୫॥

ପରିକ୍ଷିତ, ସେହି ବଜ୍ର ଇନ୍ଦ୍ରଙ୍କ ହାତରୁ ଖସି ବୃତ୍ରାସୁରର ପାଖରେ ପଡ଼ିଲା । ଏଥିରେ ଇନ୍ଦ୍ର ଲଜ୍ଜିତ ହୋଇ ଆଉ ସେ ଅସ୍ତ୍ରକୁ ଉଠାଇଲେ ନାହିଁ । ସେତେବେଳେ ବୃତ୍ରାସୁର କହିଲା, ଇନ୍ଦ୍ର, ବର୍ତ୍ତମାନ ବିଷାଦର ସମୟ ନୁହେଁ, ବଜ୍ରକୁ ଉଠାଇ ତୋର ଶତ୍ରୁକୁ ବଧ କର ॥୬॥ ସୃଷ୍ଟି, ସ୍ଥିତି ଓ ପ୍ରଳୟର କର୍ତ୍ତା ସନାତନ ଆଦିପୁରୁଷ ସର୍ବଜ୍ଞ ଭଗବାନଙ୍କୁ ଛାଡ଼ିଦେଲେ ଯୁଦ୍ଧାଭିମାନୀ ଅସ୍ତ୍ରଧାରୀଙ୍କ ମଧ୍ୟରୁ ସବୁବେଳେ କାହାରି ଜୟଲାଭ ହୁଏ ନାହିଁ । ସେମାନେ କେବେକେବେ ଜିଣନ୍ତି ତ କେବେକେବେ ହାରନ୍ତି ॥୭॥ ପାଶବଦ୍ଧ ପକ୍ଷୀମାନଙ୍କ ପରି ଲୋକପାଳଙ୍କ ସମେତ ସବୁ ଜୀବ ସ୍ୱତନ୍ତ୍ର ନୁହନ୍ତି, ସେମାନେ ପରାଧୀନ । ଜୟ-ପରାଜୟର କାରଣ ହେଉଛନ୍ତି ଏକମାତ୍ର କାଳରୂପୀ ଭଗବାନ୍ ॥୮॥ ତେଜ, ସାହସ, ବଳ, ପ୍ରାଣ, ଅମରତ୍ୱ ଏବଂ ମୃତ୍ୟୁ-ଏହି ସବୁ ବ୍ୟାପାର ଯେଉଁ କାଳରୂପୀ ଭଗବାନଙ୍କଯୋଗୁଁ ଘଟିଥାଏ, ତାଙ୍କୁ ନ ବୁଝି ଲୋକେ ଜଡ଼ ଦେହକୁ ହିଁ କାରଣ ବୋଲି ମନେ କରନ୍ତି ॥୯॥

ହେ ଇନ୍ଦ୍ର, ଯେପରି ଦାରୁମୟୀ ମୂର୍ତ୍ତି ଓ ଯନ୍ତ୍ରମୟ ମୃଗର କୌଣସି ସ୍ୱତନ୍ତ୍ରତା ନଥାଏ, ସେହିପରି ପ୍ରାଣୀମାନଙ୍କର ମଧ୍ୟ କିଛି ସ୍ୱତନ୍ତ୍ରତା ନ ଥାଏ । ସମସ୍ତେ ସେହି ଭଗବାନଙ୍କ ଅଧୀନ ବୋଲି ଜାଣ ॥୧୦॥ ପୁରୁଷ, ପ୍ରକୃତି, ମହତ୍ତତ୍ତ୍ୱ, ଅହଙ୍କାର, ପଞ୍ଚଭୂତ, ଇନ୍ଦ୍ରିୟଗଣ ଓ ମନ -- ଏମାନେ ଭଗବାନଙ୍କ ଅନୁଗ୍ରହ ବିନା କୌଣସି ବସ୍ତୁ ସୃଷ୍ଟି କରିବାପାଇଁ ସମର୍ଥ ନୁହନ୍ତି । ସୃଷ୍ଟିତତ୍ତ୍ୱ ସମ୍ପର୍କରେ ଅନଭିଜ୍ଞ ବ୍ୟକ୍ତି ଈଶ୍ୱରଙ୍କଠାରୁ ଜୀବକୁ ସ୍ୱତନ୍ତ୍ର ବୋଲି ମନେ କରେ । କିନ୍ତୁ ଈଶ୍ୱର ସମସ୍ତଙ୍କୁ ନିୟନ୍ତ୍ରଣ କରନ୍ତି । ଜୀବଦ୍ୱାରା ଜୀବକୁ ସୃଷ୍ଟି କରନ୍ତି ଏବଂ ସେହି ଜୀବ ଦ୍ୱାରା ଜୀବର ବିନାଶ ଘଟାନ୍ତି ॥୧୧-୧୨॥ ସମୟ ଅନୁକୂଳ ହେଲେ ମନୁଷ୍ୟ ଇଚ୍ଛା ନକରୁଥିଲେ ମଧ୍ୟ ତାକୁ ଆୟୁ, ଲକ୍ଷ୍ମୀ, ଯଶ ଓ ଐଶ୍ୱର୍ଯ୍ୟ ଆଦି ସବୁ କିଛି ମିଳିଯାଏ । ସେହିପରି ସମୟ ପ୍ରତିକୂଳ ହେଲେ ମୃତ୍ୟୁ ଓ ଅପଯଶ ଆଦି ଅମଙ୍ଗଳ ଆସି ପହଞ୍ଚିଯାଏ ॥୧୩॥ ସେଥିପାଇଁ ଯଶ-ଅପଯଶ, ଜୟ-ପରାଜୟ, ସୁଖ-ଦୁଃଖ, ଜୀବନ-ମରଣ ଆଦି ସକଳ ଅବସ୍ଥାରେ ସମଭାବ ରଖିବା ଉଚିତ ଅର୍ଥାତ୍ ଆନନ୍ଦିତ ବା ବିଷଣ୍ଣ ହେବା ଉଚିତ ନୁହେଁ ॥୧୪॥ ସତ୍ତ୍ୱ, ରଜ, ଓ ତମ -- ଏଗୁଡ଼ିକ ହେଉଛି ପ୍ରକୃତିର ଗୁଣ, ଆତ୍ମାର ନୁହେଁ । ଯେଉଁ ବ୍ୟକ୍ତି ଆତ୍ମାକୁ ତାହାର ସାକ୍ଷୀମାତ୍ର ବୋଲି ଜାଣେ, ସେ କେବେହେଲେ ବନ୍ଧନରେ ପଡ଼େ ନାହିଁ ॥୧୫॥ ଇନ୍ଦ୍ର, ଦେଖ, ତୁମର ଶତ୍ରୁ ନିରସ୍ତ୍ର, ଛିନ୍ନବାହୁ ଓ ପରାଜିତପ୍ରାୟ । ତଥାପି ତୁମକୁ ପ୍ରାଣରେ ମାରିବାପାଇଁ ସେ ଉଦ୍ୟତ ॥୧୬॥ ଦେଖ, ଯୁଦ୍ଧ ହେଉଛି ପଶାଖେଳ ପରି । ଏଥିରେ ପ୍ରାଣ ହେଉଛି ପଣ, ବାଣସବୁ ପଶାକାଠି ଏବଂ ହସ୍ତୀ, ଅଶ୍ୱ ଆଦି ବାହନମାନେ ହେଉଛନ୍ତି ଏହାର ଗୋଟି । ତେଣୁ ଏହି ଯୁଦ୍ଧରୂପ ପଶାଖେଳରେ କିଏ ଜିତିବ, କିଏ ହାରିବ-ତାହା ଜଣାପଡ଼େ ନାହିଁ ॥୧୭॥

ଶ୍ରୀ ଶୁକଦେବ କହିଲେ, ଇନ୍ଦ୍ର ବୃତ୍ରାସୁରର ଅକପଟ ବାକ୍ୟ ଶୁଣି ବିସ୍ମୟାଭୂତ ହୋଇ ତାକୁ ପ୍ରଶଂସା କରି ଲାଗିଲେ ଏବଂ ହସି ହସି ନିଜର ବଜ୍ର ଅସ୍ତ୍ରକୁ ଗ୍ରହଣ କଲେ ॥୧୮॥ ଇନ୍ଦ୍ର କହିଲେ, ଦାନବ, ତୁମେ ପ୍ରକୃତରେ ସିଦ୍ଧ ପୁରୁଷ । ତା'ନହେଲେ ତୁମର ଏପରି ଉତ୍ତମ ବୁଦ୍ଧି ହୋଇ ନ ଥାନ୍ତା । ତୁମେ ସମସ୍ତ ପ୍ରାଣୀଙ୍କର ପ୍ରିୟ ବନ୍ଧୁ ଏବଂ ଅନ୍ତର୍ଯାମୀ ଭଗବାନଙ୍କର ଅନନ୍ୟ ଭକ୍ତ ॥୧୯॥ ଭଗବାନଙ୍କର ମୋହିନୀ ମାୟାକୁ ତୁମେ ନିଶ୍ଚୟ ଅତିକ୍ରମ କରି ପାରିଛ ଏବଂ ଅସୁରଭାବକୁ ତ୍ୟାଗ କରି ମହାପୁରୁଷତ୍ୱ ଲାଭ କରିଛ ॥୨୦॥ ଆଶ୍ଚର୍ଯ୍ୟର କଥା ଯେ, ତୁମେ ରଜୋଗୁଣ ପ୍ରକୃତିର ହେଲେ ମଧ୍ୟ ବିଶୁଦ୍ଧ ସତ୍ତ୍ୱ ସ୍ୱରୂପ ଭଗବାନ ଶ୍ରୀହରିଙ୍କଠାରେ ତୁମର ଅଚଳା ଭକ୍ତି ରହିଛି ॥୨୧॥ ମଙ୍ଗଳମୟ ଭଗବାନ ଶ୍ରୀହରିଙ୍କଠାରେ ଯାହାର ଭକ୍ତି ଅଛି, ସେ ଅମୃତ ସାଗରରେ କ୍ରୀଡ଼ା କରିବାର ଲୋକ । ସ୍ୱର୍ଗ ଆଦି ସାମାନ୍ୟ ଖାତର ଜଳରେ ତା'ର କି ପ୍ରୟୋଜନ ? ॥୨୨॥

ଶ୍ରୀ ଶୁକଦେବ କହିଲେ, ଏହିପରି ଯୋଦ୍ଧାଙ୍କ ମଧ୍ୟରେ ଅଗ୍ରଗଣ୍ୟ ମହାବଳୀ ଇନ୍ଦ୍ର ଏବଂ ବୃତ୍ର ଧର୍ମବୁଦ୍ଧିରେ କଥୋପକଥନ କରି ପୁଣି ପରସ୍ପର ଯୁଦ୍ଧରେ ପ୍ରବୃତ୍ତ ହେଲେ ॥୨୩॥ ଶତ୍ରୁଦମନକାରୀ ବୃତ୍ରାସୁର କୃଷ୍ଣବର୍ଣ୍ଣ ଲୌହନିର୍ମିତ ଭୟଙ୍କର ପରିଘକୁ ବାମ ହାତରେ ଘୂରାଇ ପୁଣି ଇନ୍ଦ୍ରଙ୍କପ୍ରତି ନିକ୍ଷେପ କଲା ॥୨୪॥ ଦେବରାଜ ଇନ୍ଦ୍ର ଶତଗ୍ରନ୍ଥି ଯୁକ୍ତ ବଜ୍ରଦ୍ୱାରା ବୃତ୍ରର ସେହି

ପରିଘକୁ ଓ ପରିଘାକାର ତାର ହାତକୁ କାଟି ପକାଇଲେ ॥୨୫॥ ବାହୁର ମୂଳରୁ ବୃତ୍ରର ଦୁଇଟିଯାକ ହାତ କଟିଯିବାରୁ ତା'ର ବାଁ ଡାହାଣ କାନ୍ଧରୁ ଅଜସ୍ର ରକ୍ତଧାର ବହିବାକୁ ଲାଗିଲା । ପୂର୍ବେ ଇନ୍ଦ୍ର ବଜ୍ରଦ୍ୱାରା ଛିନ୍ନପକ୍ଷ ପର୍ବତ ଆକାଶରୁ ଭୂପତିତ ହେବାପରି ବୃତ୍ରାସୁର ଦେଖାଗଲା ॥୨୬॥ ସେତେବେଳେ ପାଦଚାରୀ ପର୍ବତରାଜଙ୍କ ପରି ଅତିଶୟ ବିଶାଳ ଦୀର୍ଘକାୟ ବୃତ୍ରାସୁରର ଦେହ ଅତି ଭୟାନକ ଦେଖାଗଲା । ସେ ଆଁ କଲାବେଳେ ତାର ଓଠ ପୃଥିବୀକୁ ଓ ଅଧର ସ୍ୱର୍ଗକୁ ଲାଗିଗଲା । ଜଣାଗଲା, ଆକାଶପରି ତାର ଗଭୀର ମୁଁହମଧ୍ୟରେ କରାଳ ଦନ୍ତପଙ୍‌କ୍ତିଦ୍ୱାରା ଓ ସାପପରି ଭୟଙ୍କର ଜିଭଦ୍ୱାରା ସେ ତ୍ରିଭୁବନକୁ ଚୋବାଇ ଗ୍ରାସ କରିଦେବ । ତାର ଅସାଧାରଣ ଶକ୍ତିରେ ପର୍ବତ ସବୁ କମ୍ପିବାକୁ ଲାଗିଲା । ମନେହେଲା, ଯେପରି ହିମାଳୟ ପର୍ବତ ସ୍ୱୟଂ ପଦଚାରଣା କରୁଛନ୍ତି । ହଠାତ୍ ବୃତ୍ରାସୁର ସର୍ପପରି ନିଜର ଜିହ୍ୱାଦ୍ୱାରା ଐରାବତ ହସ୍ତୀ ସହ ଇନ୍ଦ୍ରଙ୍କୁ ଆକର୍ଷଣ କରି ଆକାଶ ତୁଲ୍ୟ ତାର ଅତି ବିସ୍ତୃତ ମୁଖଗହ୍ୱର ମଧ୍ୟରେ ଗ୍ରାସ କରିନେଲା । ଯେପରି ଏକ ମହାପରାକ୍ରମୀ, ମହାବଳୀ ସର୍ପ ଏକ ହାତୀକୁ ଗିଳିଦିଏ, ସେହିପରି ବୃତ୍ରାସୁର ଇନ୍ଦ୍ରଙ୍କୁ ଗିଳିଦେବାର ଦେଖି ପ୍ରଜାପତି ଓ ମହର୍ଷିମାନଙ୍କ ସହିତ ଦେବତାମାନେ ଅତିଶୟ ବିଷଣ୍ଣ ହୋଇ 'ହାୟ ହାୟ କ'ଣ ହୋଇଗଲା' ବୋଲି ବିଳାପ କରିବାକୁ ଲାଗିଲେ ॥୨୭-୩୦॥ ଇନ୍ଦ୍ର ଦୈତ୍ୟରାଜର ଉଦରସ୍ଥ ହେଲେ ମଧ୍ୟ ମଲେ ନାହିଁ । କାରଣ ଦେହସୁରକ୍ଷାପାଇଁ ତାଙ୍କ ପାଖରେ ଥିଲା ସ୍ୱୟଂ ନାରାୟଣଙ୍କର କବଚ ଓ ଯୋଗମାୟାଙ୍କର ଶକ୍ତି ॥୩୧॥ ବଜ୍ରଦ୍ୱାରା ବୃତ୍ରର ଉଦରକୁ ବିଦାରଣ କରି ସେ ବାହାରି ଆସିଲେ ଏବଂ ପର୍ବତଶିଖର ତୁଲ୍ୟ ଶତ୍ରୁର ମସ୍ତକକୁ ବଳପୂର୍ବକ ଛେଦନ କଲେ ॥୩୨॥ ଇନ୍ଦ୍ରଙ୍କର ବଜ୍ର ବେଗଗାମୀ ଥିଲା ଏବଂ ତାହା ଘୂରି ଘୂରି ବୃତ୍ରର ଗଳାକୁ କାଟୁଥିଲା । ସୂର୍ଯ୍ୟଙ୍କର ଉତ୍ତରାୟଣରୁ ଦକ୍ଷିଣାୟନପର୍ଯ୍ୟନ୍ତ ସମ୍ପୂର୍ଣ୍ଣ ଗୋଟିଏ ବର୍ଷ (ତିନିଶ' ଛ'ଷଠି ଦିନ) ପୂରିବା ପରେ ବଜ୍ର ତାର ଛିନ୍ନ ଗଳାକୁ ଭୂଇଁରେ ପକାଇଲା ॥୩୩॥ ସେତେବେଳେ ଆକାଶରେ ଦୁନ୍ଦୁଭିମାନ ବାଜି ଉଠିଲା । ମହର୍ଷିମାନଙ୍କ ସହିତ ସିଦ୍ଧ ଓ ଗନ୍ଧର୍ବଗଣ ବୃତ୍ରହନ୍ତା ଇନ୍ଦ୍ରଙ୍କ ବଳବୀର୍ଯ୍ୟର ସୂଚନା ଦେଉଥିବା ମନ୍ତ୍ରଦ୍ୱାରା ତାଙ୍କୁ ସ୍ତୁତି କରିବାକୁ ଲାଗିଲେ ଏବଂ ଆନନ୍ଦରେ ପୁଷ୍ପବୃଷ୍ଟିଦ୍ୱାରା ତାଙ୍କୁ ଅଭିନନ୍ଦନ ଜଣାଇଲେ ॥୩୪॥ ଅରିନ୍ଦମ ପରିକ୍ଷିତ, ଦେବତାମାନେ ଦେଖୁ ଦେଖୁ ବୃତ୍ରର ଦେହରୁ ତା'ର ଆତ୍ମା ଜ୍ୟୋତିସ୍ୱରୂପରେ ବାହାରିଯାଇ ସମସ୍ତ ଲୋକର ଊର୍ଦ୍ଧ୍ୱରେ ଥିବା ଭଗବାନଙ୍କ ସ୍ୱରୂପରେ ମିଶିଗଲା ॥୩୫॥

## ତ୍ରୟୋଦଶ ଅଧ୍ୟାୟ

# ଇନ୍ଦ୍ରଙ୍କ ବ୍ରହ୍ମହତ୍ୟା ଦୋଷ

ଶ୍ରୀ ଶୁକଦେବ କହିଲେ, ମହାଦାନୀ ପରିକ୍ଷିତ, ବୃତ୍ର ନିହତ ହେବାରୁ ଇନ୍ଦ୍ରଭିନ୍ନ ଲୋକପାଳଙ୍କର ଓ ତିନିଲୋକର ସନ୍ତାପ ଦୂର ହେଲା । ସେମାନେ ନିଶ୍ଚିନ୍ତ ହୋଇଗଲେ ॥୧॥ ଦେବତା, ଋଷି, ପିତୃ, ଭୂତ ଓ ଦୈତ୍ୟ ଏବଂ ଦେବତାଙ୍କ ଅନୁଚରମାନେ ଇଚ୍ଛା ଅନୁସାରେ ନିଜ ନିଜ ସ୍ଥାନକୁ ଚାଲିଗଲେ । ସେମାନଙ୍କ ପଛେ ପଛେ ବ୍ରହ୍ମା, ଶଙ୍କର, ଇନ୍ଦ୍ର ଆଦି ମଧ୍ୟ ଚାଲିଗଲେ ॥୨॥

ରାଜା ପରିକ୍ଷିତ ପଚାରିଲେ, ବ୍ରହ୍ମନ୍ ! ବୃତ୍ରର ନିଧନପରେ ସମସ୍ତ ଦେବତା ତ ସୁଖୀ ହେଲେ । ଇନ୍ଦ୍ର କାହିଁକି ସୁଖୀ ହେଲେ ନାହିଁ ? ତାଙ୍କ ଦୁଃଖର କାରଣ କଣ ? ॥୩॥ ବୃତ୍ରର ବିକ୍ରମରେ ଉଦ୍‌ବିଗ୍ନ ହୋଇ ଦେବତା ଓ ଋଷିମାନେ ତାର ବଧପାଇଁ ଇନ୍ଦ୍ରଙ୍କୁ ପ୍ରାର୍ଥନା କରିଥିଲେ । ମାତ୍ର ଇନ୍ଦ୍ର ବ୍ରହ୍ମହତ୍ୟା ଭୟରେ ତାହା କରିବାପାଇଁ ଇଚ୍ଛୁକ ନ ଥିଲେ ॥୪॥ ଇନ୍ଦ୍ର କହିଲେ, ବିଶ୍ୱରୂପଙ୍କୁ ବଧ କରି ମୋତେ ଯେଉଁ ବ୍ରହ୍ମହତ୍ୟା ପାପ ଲାଗିଥିଲା, ତାହା ସ୍ତ୍ରୀ, ପୃଥିବୀ, ଜଳ ଓ ବୃକ୍ଷ କୃପା କରି ବାଣ୍ଟି

ନେଇଥିଲେ । ଏବେ ବୃତ୍ରହତ୍ୟା ପାପରୁ କିପରି ରକ୍ଷା ମିଳିବ ? ॥୫॥ ଶ୍ରୀ ଶୁକଦେବ କହିଲେ, ତାହା ଜାଣି ଋଷିମାନେ ଇନ୍ଦ୍ରଙ୍କୁ କହିଲେ, ଆପଣଙ୍କଦ୍ୱାରା ଆମେ ଅଶ୍ୱମେଧ ଯଜ୍ଞ କରାଇବୁ । ଆପଣଙ୍କ ଭୟର କାରଣ ନାହିଁ । ଅଶ୍ୱମେଧ ଯଜ୍ଞଦ୍ୱାରା ପରମପୁରୁଷ ପରମାତ୍ମା ପରମେଶ୍ୱରଙ୍କୁ ଆରାଧନା କରାଯିବ । ତଦ୍ଦ୍ୱାରା ସମସ୍ତ ଜଗତ୍‌ବଧରୁ ମଧ୍ୟ ତୁମେ ମୁକ୍ତ ହୋଇପାରିବେ ॥୬-୭॥ ବ୍ରହ୍ମଘାତକ, ଗୁରୁଘାତକ, ପିତୃହନ୍ତା, ମାତୃହନ୍ତା, ଗୋହନ୍ତା, କୁକୁରଭୋଜୀ ଅଧମ ଚଣ୍ଡାଳ ପର୍ଯ୍ୟନ୍ତ (ଯେ କୌଣସି ମହାପାପୀ) ଭଗବାନଙ୍କ ନାମକୀର୍ତ୍ତନଦ୍ୱାରା ଶୁଦ୍ଧ ହୋଇଯାଏ ॥୮॥ ଆମ୍ଭ ଦ୍ୱାରା ଅନୁଷ୍ଠିତ ଅଶ୍ୱମେଧରୂପକ ମହାଯଜ୍ଞରେ ଆପଣ ଶ୍ରଦ୍ଧାପୂର୍ବକ ଭଗବାନଙ୍କୁ ଆରାଧନା କଲେ ବ୍ରହ୍ମାଙ୍କ ସମେତ ସମସ୍ତ ଚରାଚର ଜଗତକୁ ସଂହାର କରିଦେଲେ ମଧ୍ୟ ଆପଣଙ୍କୁ କୌଣସି ଦୋଷ ଲାଗିବ ନାହିଁ । ଏହି ନିଷ୍ଠୁର ବୃତ୍ରାସୁରକୁ ମାରିଛନ୍ତି ବୋଲି କାହିଁକି ଡରୁଛନ୍ତି ? ॥୯॥ ଶ୍ରୀ ଶୁକଦେବ କହିଲେ, ଋଷିମାନଙ୍କଦ୍ୱାରା ପ୍ରଣୋଦିତ ହୋଇ ଇନ୍ଦ୍ର ନିଜର ଶତ୍ରୁ ବୃତ୍ରକୁ ବଧ କଲେ ସତ, ମାତ୍ର ତାହା ପରେ ପରେ ବ୍ରହ୍ମହତ୍ୟାପାପ ଇନ୍ଦ୍ରଙ୍କୁ ଗ୍ରାସ କରିଗଲା ॥୧୦॥ ସେଥିପାଇଁ ଇନ୍ଦ୍ରଙ୍କୁ ବହୁ ମନସ୍ତାପ ଓ କଷ୍ଟ ସହିବାକୁ ହେଲା । ସେ ଆଦୌ ଶାନ୍ତି ପାଇଲେ ନାହିଁ । ଲଜ୍ଜାଶୀଳ ସଜ୍ଜନ ବ୍ୟକ୍ତିଙ୍କୁ କୌଣସି କଳଙ୍କ ଲାଗିଲେ, ତାର ଯେତେ ଧୈର୍ଯ୍ୟ ଥାଉ ନା କାହିଁକି, କୌଣସି ଗୁଣରେ ସେ ସୁଖୀ ହୋଇପାରେ ନାହିଁ ॥୧୧॥ ଇନ୍ଦ୍ର ଦେଖିଲେ ଯେ ସାକ୍ଷାତ୍ ଚାଣ୍ଡାଳୀ ରୂପରେ ବ୍ରହ୍ମହତ୍ୟା ତାଙ୍କ ପଛେ ପଛେ ଦୌଡ଼ିବାରେ ଲାଗିଚି । ବାର୍ଦ୍ଧକ୍ୟରେ ତାର ଦେହ ଥର ଥର ହେଉଚି । ଯକ୍ଷ୍ମାରୋଗରେ ସେ ଯନ୍ତ୍ରଣା ଭୋଗ କରୁଚି । ତାର ବସ୍ତ୍ରସାରା ରକ୍ତରେ ଜୁବୁବୁବୁ ହୋଇଚି ॥୧୨॥ ସେ ନିଜର ଶୁକ୍ଳକେଶକୁ ଆଲୁଳାୟିତ କରି 'ରହିଯାଅ, ରହିଯାଅ' ଚିତ୍କାର କରିବାରେ ଲାଗିଚି ଏବଂ ତାର ନିଃଶ୍ୱାସରୁ ଯେଉଁ ମତ୍ସ୍ୟଗନ୍ଧ ନିର୍ଗତ ହେଉଚି, ସେଥିରେ ସମସ୍ତ ବାଟ ଘାଟ ଦୁର୍ଗନ୍ଧମୟ ହୋଇଉଠୁଚି ॥୧୩॥ ମହାରାଜ, ଦେବରାଜ ଇନ୍ଦ୍ର ତା'ଭୟରେ ଆକାଶ ଓ ଦଶଦିଗ-ଚାରିଆଡ଼େ ଦୌଡ଼ିବାକୁ ଲାଗିଲେ, ମାତ୍ର ସେହି ଚାଣ୍ଡାଳୀ ମୂର୍ତ୍ତି ତାଙ୍କ ପିଛା ଛାଡ଼ିଲା ନାହିଁ । ଶେଷରେ ସେ ଦୌଡ଼ିଯାଇ ଐଶାନ୍ୟ କୋଣରେ ଥିବା ମାନସ ସରୋବରରେ ପଶିଗଲେ ॥୧୪॥ ତାହା ମଧ୍ୟରେ ଏକ ପଦ୍ମନାଡ଼ର ତନ୍ତୁଭିତରେ ସେ ହଜାରେ ବର୍ଷ କାଳ ଲୁଚି ରହିଲେ । କିପରି ବ୍ରହ୍ମହତ୍ୟାପାପରୁ ମୁକ୍ତ ହେବେ, ଏହି ଚିନ୍ତା ତାଙ୍କୁ ଘାରୁଥିଲା । ତାଙ୍କୁ ଅନାହାରରେ ରହିବାକୁ ପଡୁଥିଲା । କାରଣ, ଯେଉଁ ଅଗ୍ନି ଦେବତାଙ୍କ ମୁହଁରୁ ତାଙ୍କୁ ଭୋଜନ ମିଳେ, ସେ ତାହା ମଧ୍ୟରେ ପ୍ରବେଶ କରିପାରୁନଥିଲେ ॥୧୫॥

ଇନ୍ଦ୍ର ଏପରି ଲୁଚି ରହିଥିବା ପର୍ଯ୍ୟନ୍ତ ବିଦ୍ୟା, ତପସ୍ୟା ଓ ଯୋଗବଳର ପ୍ରଭାବରେ ରାଜା ନହୁଷ ସ୍ୱର୍ଗକୁ ଶାସନ କଲେ । କିନ୍ତୁ ସେ ଯେତେବେଳେ ସ୍ୱର୍ଗର ସଂପଦ ଓ ଐଶ୍ୱର୍ଯ୍ୟରେ ଅନ୍ଧ ହୋଇ ଇନ୍ଦ୍ରପତ୍ନୀ ଶଚୀଙ୍କୁ ଉପଭୋଗ କରିବାକୁ ଇଚ୍ଛାକଲେ, ସେତେବେଳେ ସେ ଶଚୀଙ୍କ ପ୍ରରୋଚନାରେ ଋଷିମାନଙ୍କୁ ନିଜର ବାହନ କରି ଭାର ବୁହାଇ ଶାପଗ୍ରସ୍ତ ହେଲେ ଏବଂ ସର୍ପଯୋନିରେ ଜନ୍ମନେଲେ ॥୧୬॥ ସତ୍ୟର ରକ୍ଷକ ଭଗବାନଙ୍କୁ ଧ୍ୟାନ କରି କରି ଇନ୍ଦ୍ରଙ୍କର ପାପ ଦୂର ହୋଇଗଲା ଏବଂ ଋଷିମାନଙ୍କ ଆହ୍ୱାନରେ ସେ ସ୍ୱର୍ଗଲୋକକୁ ଫେରି ଆସିଲେ । କମଳବନବାସିନୀ ବିଷ୍ଣୁପତ୍ନୀ ଲକ୍ଷ୍ମୀ ତାଙ୍କୁ ମାନସ ସରୋବରରେ ରକ୍ଷା କରିଥିଲେ ଏବଂ ଐଶାନ୍ୟ କୋଣର ଅଧିପତି ଭଗବାନ ଶଙ୍କର ତାଙ୍କ ପାପକୁ ନିସ୍ତେଜ କରି ଦେଇଥିଲେ, ଯଦ୍‌ଦ୍ୱାରା ସେ ପାପ ଇନ୍ଦ୍ରଙ୍କୁ ଆକ୍ରମଣ କରି ପାରିଲା ନାହିଁ ॥୧୭॥ ପରିକ୍ଷିତ, ଏହାପରେ ବ୍ରହ୍ମର୍ଷିଗଣ ଇନ୍ଦ୍ରଙ୍କଦ୍ୱାରା ଅଶ୍ୱମେଧ ଯଜ୍ଞ କରାଇ ତାଙ୍କୁ ଭଗବାନଙ୍କ ଆରାଧନାରେ ନିୟୋଜିତ କଲେ ॥୧୮॥ ଦେବରାଜ ଇନ୍ଦ୍ର ଏହି ଯଜ୍ଞଦ୍ୱାରା ସର୍ବଦେବମୟ ପୁରୁଷୋତ୍ତମଙ୍କୁ ଆରଧନା କଲେ ଏବଂ ତା'ର ପ୍ରଭାବରେ ସୂର୍ଯ୍ୟୋଦୟରେ କୁହୁଡ଼ି ନଷ୍ଟ ହୋଇଯିବା ପରି ତାଙ୍କର ପାପରାଶି ନଷ୍ଟ ହୋଇଗଲା ॥୧୯-୨୦॥ ମରୀଚି ପ୍ରଭୃତି ମହର୍ଷିକର୍ତ୍ତୃକ ଅନୁଷ୍ଠିତ ଅଶ୍ୱମେଧ ଯଜ୍ଞଦ୍ୱାରା ପୁରାଣପୁରୁଷ ଯଜ୍ଞେଶ୍ୱର ଭଗବାନ ଶ୍ରୀହରିଙ୍କୁ ଆରାଧନା କରି ଇନ୍ଦ୍ର ସମସ୍ତ ପାପରୁ ମୁକ୍ତ ହେଲେ ଏବଂ ପୂର୍ବପରି ମହାନ୍ ହୋଇଗଲେ ॥୨୧॥ ପରିକ୍ଷିତ, ଏହି ଶ୍ରେଷ୍ଠ ଆଖ୍ୟାନରେ ଇନ୍ଦ୍ରଙ୍କର ବିଜୟ ଓ ପାପମୁକ୍ତି ତଥା ଭଗବାନଙ୍କ ପ୍ରିୟ ଭକ୍ତ ବୃତ୍ରାସୁରର ସଦ୍‌ଗତି ବର୍ଣ୍ଣନା କରାଯାଇଚି ।

ଏଥିରେ ସମସ୍ତ ତୀର୍ଥର ଆଧାର ଭଗବାନଙ୍କ ଗୁଣାବଳୀ କୀର୍ତ୍ତିତ ହୋଇଚି । ଏହା ସମସ୍ତ ପାପ କ୍ଷାଳନପୂର୍ବକ ଭଗବତ୍ ଭକ୍ତିଭାବ ବୃଦ୍ଧି କରେ ॥୨୨॥ ସେଥିପାଇଁ ସୁଧୀବର୍ଗ ଇନ୍ଦ୍ରସଂପୃକ୍ତ ଏହି ଆଖ୍ୟାନକୁ ସର୍ବଦା ପଠନ ଓ ଶ୍ରବଣ କରିବା ବାଞ୍ଛନୀୟ । ବିଶେଷତଃ ପର୍ବଦିନରେ ଏହାକୁ ନିଶ୍ଚିତଭାବରେ ପଢ଼ିବା ଓ ଶୁଣିବା ଉଚିତ । ଏହାଦ୍ୱାରା ଧନ ଓ ଯଶର ବୃଦ୍ଧି, ସମସ୍ତ ପାପରୁ ମୁକ୍ତି, ଶତ୍ରୁଜୟ, ଆୟୁବୃଦ୍ଧି, ବଳବୃଦ୍ଧି ଓ ସର୍ବବିଧ ମଙ୍ଗଳ ସାଧିତ ହୁଏ ॥୨୩॥

## ଚତୁର୍ଦ୍ଦଶ ଅଧ୍ୟାୟ

# ବୃତ୍ରାସୁରର ପୂର୍ବ ଚରିତ

ରାଜା ପରିକ୍ଷିତ କହିଲେ--ରଜୋଗୁଣ ଓ ତମୋଗୁଣ ସମ୍ପନ୍ନ ବୃତ୍ରାସୁର ଦେବତାମାନଙ୍କୁ କଷ୍ଟ ଦେଇ ବହୁପାପ କରିଥିଲା । ଭଗବାନ ନାରାୟଣଙ୍କ ପ୍ରତି ତାର କିପରି ଦୃଢ଼ ଭକ୍ତି ଜାତ ହେଲା ? ॥୧॥ ଶୁଦ୍ଧସତ୍ତ୍ୱ ଦେବତା ଓ ପବିତ୍ରହୃଦୟ ଋଷିମାନଙ୍କର ଅନେକ ସମୟରେ ଭଗବାନ ମୁକୁନ୍ଦଙ୍କ ପାଦପଦ୍ମ ପ୍ରତି ଭକ୍ତି ଜାତ ହୁଏ ନାହିଁ ॥୨॥ ଏ ସଂସାରରେ ଧୂଳିକଣା ପରି ଅସଂଖ୍ୟ ଜୀବ ଅଛନ୍ତି । କିନ୍ତୁ ସେମାନଙ୍କ ମଧ୍ୟରେ ମନୁଷ୍ୟ ଆଦି ଅଳ୍ପ କେତେକ ଶ୍ରେଷ୍ଠ ଜୀବ ଅଛନ୍ତି, ଯେଉଁମାନେ କି ନିଜର ମଙ୍ଗଳ କାମନା କରନ୍ତି ॥୩॥ ସେମାନଙ୍କ ମଧ୍ୟରେ ଖୁବ୍ କମ୍ ଅଛନ୍ତି, ଯେଉଁମାନେ ମୁକ୍ତିକାମନା କରନ୍ତି ଏବଂ ମୁକ୍ତିକାମୀଙ୍କ ମଧ୍ୟରୁ ହଜାରରେ ଜଣେ ଦୁଇ ଜଣ ବାହାରିବେ, ଯେଉଁମାନେ ସାଧନାଦ୍ୱାରା ସିଦ୍ଧି ଲାଭ କରନ୍ତି ॥୪॥ ମହାମୁନି, କୋଟିଏ ମୁକ୍ତ ଓ ସିଦ୍ଧ ପୁରୁଷଙ୍କ ମଧ୍ୟରେ ଗୋଟିଏ ପାଇବା କଷ୍ଟକର, ଯେ କି ନାରାୟଣଙ୍କର ଏକାନ୍ତ ଭକ୍ତ ଓ ଶାନ୍ତଚିତ୍ତ ମହାପୁରୁଷ ହୋଇଥିବ ॥୫॥ ଏପରି ଅବସ୍ଥାରେ ଯେଉଁ ବୃତ୍ରାସୁର ସମସ୍ତ ଲୋକଙ୍କୁ କଷ୍ଟ ଦେଇଥିଲା, ସେହି ପାପୀ କିପରି ଭୟଙ୍କର ଯୁଦ୍ଧ ସମୟରେ କୃଷ୍ଣଙ୍କଠାରେ ନିଜର ଚିତ୍ତ ବୃତ୍ତିକୁ ଦୃଢ଼ ରଖିପାରିଥିଲା ? ॥୬॥ ପ୍ରଭୁ, ଏ ବିଷୟରେ ମୋର ବହୁତ ସନ୍ଦେହ ଓ ଶୁଣିବା ପାଇଁ ପ୍ରବଳ କୌତୂହଳ ହେଉଚି । ବୃତ୍ରାସୁର କମ୍ ବୀର ନ ଥିଲା, ଯେ କି ନିଜର ପୌରୁଷଦ୍ୱାରା ଇନ୍ଦ୍ରଙ୍କୁ ମଧ୍ୟ ସନ୍ତୁଷ୍ଟ କରିପାରିଥିଲା ॥୭॥

ସୂତ କହିଲେ, ଋଷିଗଣ, ଭଗବାନ ଶୁକଦେବ ପରିକ୍ଷିତଙ୍କ ମୁହଁରୁ ଏପରି ଉପାଦେୟ ପ୍ରଶ୍ନ ଶୁଣି ତାଙ୍କ ଶ୍ରଦ୍ଧାକୁ ବହୁତ ପ୍ରଶଂସା କରି ଉତ୍ତର ଦେବାକୁ ଲାଗିଲେ ॥୮॥ ଶ୍ରୀ ଶୁକଦେବ କହିଲେ, ମହାରାଜ, ବ୍ୟାସ, ନାରଦ ଓ ଦେବଳ ପ୍ରଭୃତିଙ୍କଠାରୁ ବୃତ୍ରର ଯେଉଁ ପୂର୍ବ ଇତିହାସ ମୁଁ ଶୁଣିଛି, ତାହା ବୟାନ କରୁଚି, ଶୁଣନ୍ତୁ ॥୯॥ ପ୍ରାଚୀନ କାଳରେ ଶୂରସେନ ଦେଶରେ ଚିତ୍ରକେତୁ ନାମରେ ଜଣେ ବିଖ୍ୟାତ ସମ୍ରାଟ ଥିଲେ । ପୃଥିବୀ ସ୍ୱୟଂ ତାଙ୍କୁ ତାଙ୍କ ଅଭିଳଷିତ ଫଳ ପ୍ରଦାନ କରୁଥିଲା ॥୧୦॥ ତାଙ୍କର କୋଟିଏ ରାଣୀ ଥିଲେ । ସେ ନିଜେ ସନ୍ତାନ ଉତ୍ପାଦନପାଇଁ ସକ୍ଷମ ଥିଲେ ମଧ୍ୟ ତାଙ୍କର କୌଣସି ସନ୍ତାନ ହେଉ ନ ଥିଲେ ॥୧୧॥ ସେ ରୂପ, ଉଦାରତା, ଯୌବନ, ବଂଶଗୌରବ, ବିଦ୍ୟା, ପ୍ରଭୁତ୍ୱ, ସମ୍ପଦ ଆଦି ସର୍ବଗୁଣାଲଂକୃତ ହେଲେ ମଧ୍ୟ, ସ୍ତ୍ରୀମାନଙ୍କର ବନ୍ଧ୍ୟାଦୋଷରୁ ସର୍ବଦା ଚିନ୍ତାରେ ଘାରି ହୋଇ ରହୁଥିଲେ ॥୧୨॥ ସମ୍ରାଟଙ୍କର ସମସ୍ତ ସଂପଦ, ସୁନ୍ଦରୀ ସ୍ତ୍ରୀ ଓ ବିଶାଳ ରାଜ୍ୟ ଥାଇ ମଧ୍ୟ ତାଙ୍କୁ ଏସବୁ କିଛି ସୁଖ ଲାଗୁ ନ ଥିଲା ॥୧୩॥ ଏହି ସମୟରେ ଦିନେ ଅଙ୍ଗିରା ଋଷି ମର୍ତ୍ତ୍ୟଲୋକ ପରିଭ୍ରମଣ କରୁକରୁ ଚିତ୍ରକେତୁଙ୍କ ପ୍ରାସାଦରେ ଆସି ପହଞ୍ଚିଲେ ॥୧୪॥ ଚିତ୍ରକେତୁ ସିଂହାସନରୁ ଉଠିପଡ଼ି ପାଦ୍ୟ ଅର୍ଘ୍ୟାଦିଦ୍ୱାରା ତାଙ୍କୁ ଯଥୋଚିତ ଅର୍ଚ୍ଚନା କଲେ ଏବଂ ଯଥାବିଧି ଅତିଥିସତ୍କାରପୂର୍ବକ ତାଙ୍କୁ ଉପଯୁକ୍ତ ଆସନରେ ବସିବାକୁ ଦେଲେ ଏବଂ ନିଜେ ଯାଇ ତାଙ୍କ ପାଖରେ ଶାନ୍ତ ଭାବରେ ବସିରହିଲେ ॥୧୫॥ ମହାରାଜ ପରିକ୍ଷିତ, ଭୂତଳରେ ବସିଥିବା ବିନୟୀ ରାଜାଙ୍କୁ ମହର୍ଷି ଅଙ୍ଗିରା ପ୍ରତ୍ୟଭିବାଦନ କରି ସ୍ନେହରେ ପଚାରିବାକୁ ଲାଗିଲେ -- ॥୧୬॥

ଅଙ୍ଗିରା ପଚାରିଲେ, ରାଜା, ତୁମ ନିଜର ଓ ପ୍ରଜାମାନଙ୍କର କୁଶଳ ତ ? ପୁରୁଷ ଯେପରି ମହତତ୍ତ୍ୱ ଆଦି ସପ୍ତ ପ୍ରକୃତି (ମହତ୍, ଅହଙ୍କାର. ରୂପ, ରସ, ଗନ୍ଧ, ସ୍ୱର୍ଶ ଓ ଶବ୍ଦ) ଦ୍ୱାରା ସୁରକ୍ଷିତ ଥାଏ, ସେହିପରି ରାଜା ମଧ୍ୟ ଗୁରୁ, ମନ୍ତ୍ରୀ, ଜନପଦ, ଦୁର୍ଗ, ଧନ, ଦଣ୍ଡ ଓ ମିତ୍ର--ଏହି ସପ୍ତପ୍ରକୃତି ଦ୍ୱାରା ସୁରକ୍ଷିତ ଥାଏ ॥୧୭॥ ନରେନ୍ଦ୍ର, ଯେପରି ଏହି ସପ୍ତପ୍ରକୃତି ରାଜାର ଅନୁକୂଳ ରହିଲେ ସେ ସୁଖରେ ରାଜ୍ୟଭୋଗ କରିପାରେ, ସେହିପରି ଏହି ପ୍ରକୃତିମାନେ ମଧ୍ୟ ନିଜର ରକ୍ଷାଭାରକୁ ରାଜାଙ୍କ ଉପରେ ନ୍ୟସ୍ତ କରି ସୁଖ, ସମୃଦ୍ଧି ଲାଭ କରନ୍ତି ॥୧୮॥ ତୁମର ପତ୍ନୀ, ପ୍ରଜା, ଅମାତ୍ୟ, ଭୃତ୍ୟ, ବଣିକ୍‌ଗୋଷ୍ଠି, ସଚିବ, ପୁରବାସୀ ଓ ଜନପଦବାସୀ, ସାମନ୍ତ ରାଜା ଓ ପୁତ୍ରମାନେ ତୁମ ବଶରେ ରହିଛନ୍ତି ତ ? ॥୧୯॥ ପ୍ରକୃତ କଥା ହେଉଚି, ଯଦି ବ୍ୟକ୍ତି ନିଜର ମନକୁ ବଶୀଭୂତ କରିପାରେ, ତା'ହେଲେ ସମସ୍ତେ ତାର ବଶୀଭୂତ ହୋଇ ରହନ୍ତି । ସମସ୍ତ ଲୋକ ଓ ଲୋକପାଳ ଉପହାର ପ୍ରଦାନପୂର୍ବକ ରାଜାର ପ୍ରୀତିଭାଜନ ହେବାପାଇଁ ଇଚ୍ଛା କରନ୍ତି ॥୨୦॥ ମୁଁ କିନ୍ତୁ ଦେଖୁଛି ଯେ ତୁମେ ନିଜେ ସନ୍ତୁଷ୍ଟ ଜଣାଯାଉ ନାହଁ । ତୁମର କୌଣସି ଇଚ୍ଛା ଅପୂର୍ଣ୍ଣ ରହିଯାଇଛି । ତୁମ ମୁହଁରେ ମୁଁ ଦେଖୁଚି ଏକ ଚିନ୍ତାର ଛାୟା । କିଏ ଏହି ଅସନ୍ତୋଷର କାରଣ, ତୁମେ ନିଜେ ନା ଆଉ କେହି ? ॥୨୧॥ ପରୀକ୍ଷିତ, ଅଙ୍ଗିରା ଋଷି ସବୁ କିଛି ଜାଣିଥିଲେ । ତଥାପି ସନ୍ଦେହ ପ୍ରକାଶ କରି ରାଜାଙ୍କୁ ଏହିପରି ପଚାରିବାରୁ ପୁତ୍ରକାମୀ ରାଜା ବିନୀତଭାବରେ ତାଙ୍କୁ ଉତ୍ତର ଦେଲେ ॥୨୨॥

ଚିତ୍ରକେତୁ କହିଲେ, ଯେଉଁ ନିଷ୍ପାପ ଯୋଗୀମାନେ ତପସ୍ୟା, ଜ୍ଞାନ ଓ ସମାଧିବଳରେ ସିଦ୍ଧି ଲାଭ କରିଥାନ୍ତି, ପ୍ରାଣୀର ଭିତରେ ଓ ବାହାରେ ଏପରି କଣ କଥା ଅଛି, ଯାହା ସେମାନଙ୍କୁ ଅଜଣା ରହିପାରେ ? ॥୨୩॥ ତଥାପି, ମହର୍ଷି, ସବୁ କଥା ଜାଣିଥିଲେ ମଧ୍ୟ, ଆପଣ ପଚାରିବାରୁ ଆପଣଙ୍କର ଆଜ୍ଞା ନେଇ ମୋ' ମନର ଚିନ୍ତା ପ୍ରକାଶ କରୁଚି ॥୨୪॥ କ୍ଷୁଧା ତୃଷାରେ ପୀଡ଼ିତ ବ୍ୟକ୍ତିକୁ ଅନ୍ନଜଳ ଛଡ଼ା ଆଉ କିଛି ଭଲ ଲାଗେ ନାହିଁ, ସେହିପରି ମୋ ପରି ଅପୁତ୍ରିକ ବ୍ୟକ୍ତିକୁ ଲୋକପାଳମାନଙ୍କ କାମ୍ୟ ଏ ସାମ୍ରାଜ୍ୟ, ଐଶ୍ୱର୍ଯ୍ୟ, ସମ୍ପଦ କିଛି ହେଲେ ସୁଖ ଲାଗୁ ନାହିଁ ॥୨୫॥ ମହାଭାଗ, ତେଣୁ ଆପଣ ମୋତେ ରକ୍ଷା କରନ୍ତୁ । ଅପୁତ୍ରିକ ଦୋଷରୁ ପୂର୍ବପୁରୁଷଙ୍କ ସହିତ ମୋର ଯେଉଁ ଅପାର ନରକଗତି ହେବାକୁ ଯାଉଚି, ସେଥିରୁ ଉଦ୍ଧାରପାଇଁ ଆପଣ ଦୟାପୂର୍ବକ ଉପାୟ ବିଧାନ କରନ୍ତୁ ॥୨୬॥ ଶ୍ରୀ ଶୁକଦେବ କହିଲେ, ପରିକ୍ଷିତ, ଚିତ୍ରକେତୁ ଏହିପରି ପ୍ରାର୍ଥନା କରିବାରୁ ବ୍ରହ୍ମାଙ୍କ ପୁତ୍ର ପରମଦୟାଳୁ ଅଙ୍ଗିରା ଋଷି ତ୍ୱଷ୍ଟାଙ୍କ ଯୋଗ୍ୟ ଚରୁ ପ୍ରସ୍ତୁତକରି ତାଙ୍କ ଉଦେଶ୍ୟରେ ଏକ ଯଜ୍ଞ କରାଇଲେ ॥୨୭॥ ବଡ଼ରାଣୀ କୃତଦ୍ୟୁତି ଥିଲେ ରାଣୀମାନଙ୍କ ମଧ୍ୟରେ ସବୁଠାରୁ ଯୋଗ୍ୟା ଓ ଗୁଣବତୀ । ମହର୍ଷି ଅଙ୍ଗିରା ଯଜ୍ଞ ଶେଷ କରି ହୋମାବଶେଷ ଚରୁ ତାଙ୍କୁ ପ୍ରଦାନ କଲେ ॥୨୮॥ ଋଷି ଚିତ୍ରକେତୁଙ୍କୁ କହିଲେ, ରାଜା, ତୁମ ରାଣୀଙ୍କ ଗର୍ଭରୁ ଗୋଟିଏ ପୁତ୍ର ସନ୍ତାନ ହେବ । ସେ ତୁମକୁ ଉଭୟ ଆନନ୍ଦ ଓ ଦୁଃଖ ଦେବ । ଏହା କହି ମହର୍ଷି ଅଙ୍ଗିରା ସେଠାରୁ ଚାଲିଗଲେ ॥୨୯॥ ସେହି ଯଜ୍ଞଚରୁ ଖାଇବା ପରେ ମହାରାଣୀ କୃତଦ୍ୟୁତି ମହାରାଜ ଚିତ୍ରକେତୁଙ୍କ ଦ୍ୱାରା ଗର୍ଭ ଧାରଣ କଲେ, ଯେପରିକି କୃତ୍ତିକାମାନେ ଅଗ୍ନିପୁତ୍ରଙ୍କୁ ଗର୍ଭରେ ଧାରଣ କରିଥିଲେ ॥୩୦॥ ମହାରାଜ ପରିକ୍ଷିତ, ଶୂରସେନ ରାଜା (ଚିତ୍ରକେତୁ)ଙ୍କ ଔରସରେ କୃତଦ୍ୟୁତି ଯେଉଁ ଗର୍ଭଧାରଣ କରିଥିଲେ, ତାହା ଶୁକ୍ଳପକ୍ଷର ଚନ୍ଦ୍ରପରି ଅନୁଦିନ ବଢ଼ିବାକୁ ଲାଗିଲା ॥୩୧॥

ଶୂରସେନଙ୍କ ଆନନ୍ଦ ବର୍ଦ୍ଧନ କରି ଯଥାକାଳ ଏକ ପୁତ୍ର ସନ୍ତାନ ଜନ୍ମ ହେଲା ॥୩୨॥ ରାଜା ଚିତ୍ରକେତୁ ହୃଷ୍ଟଚିତ୍ତରେ ସ୍ନାନାଦି କର୍ମ ଶେଷ କରି ବସ୍ତ୍ର ଅଳଙ୍କାର ଆଦିରେ ସଜ୍ଜିତ ହୋଇ ବ୍ରାହ୍ମଣମାନଙ୍କ ଦ୍ୱାରା ଆଶୀର୍ବାଦ ଓ ସ୍ୱସ୍ତିବାଚନ ପୂର୍ବକ ପୁତ୍ରର ଜାତକର୍ମ ସମ୍ପାଦନ କଲେ ॥୩୩॥ ରାଜା ସେହି ବ୍ରାହ୍ମଣମାନଙ୍କୁ ସୁନା, ରୂପା, ବସ୍ତ୍ର, ଅଳଙ୍କାର, ଗ୍ରାମ, ଘୋଡ଼ା, ହାତୀ ଏବଂ ଛ' ଅର୍ବୁଦ ଗାଈ ଦାନ କଲେ ॥୩୪॥ ମେଘ ବର୍ଷା କରି ସମସ୍ତ ଜୀବଙ୍କ ଇଚ୍ଛା ପୂର୍ଣ୍ଣ କରିବା ପରି ଉଦାରହୃଦୟ ରାଜା ଚିତ୍ରକେତୁ ପୁତ୍ରର ଆୟୁ, ଯଶ ଓ ଧନ ବୃଦ୍ଧି ପାଇଁ ପ୍ରଜାମାନଙ୍କୁ ସେମାନଙ୍କ ଇଚ୍ଛା ଅନୁଯାୟୀ ବିଭିନ୍ନ ବସ୍ତୁ ଦାନ କଲେ ॥୩୫॥ ପରିକ୍ଷିତ, କୌଣସି କାଙ୍ଗାଳକୁ ବହୁ କଷ୍ଟରେ କିଛି ଧନ ମିଳିଗଲେ ତାହା ପ୍ରତି ଯେପରି ତାର ମମତା ବଢ଼ିଯାଏ, ସେହିପରି

କଷ୍ଟଲବ୍ଧ ପୁତ୍ରଟି ପ୍ରତି ରାଜା ଚିତ୍ରକେତୁଙ୍କର ଅନୁଦିନ ସ୍ନେହ ବଢ଼ିବାକୁ ଲାଗିଲା ॥୩୬॥ ମାତା କୃତଦ୍ୟୁତିଙ୍କର ପୁତ୍ର ପ୍ରତି ଅଗାଧ ସ୍ନେହ ଓ ମମତା ଦେଖି ତାଙ୍କ ସଉତୁଣୀମାନେ ପୁତ୍ରକାମନାରେ ସନ୍ତାପିତ ହେଲେ ॥୩୭॥ ଶିଶୁପୁତ୍ରର ଲାଳନପାଳନଯୋଗୁଁ ପୁତ୍ରବତୀ ଭାର୍ଯ୍ୟା ପ୍ରତି ରାଜା ଚିତ୍ରକେତୁଙ୍କର ଯେପରି ଅତିଶୟ ପ୍ରୀତି ଜାତ ହେଲା, ଅନ୍ୟ ରାଣୀମାନଙ୍କ ପ୍ରତି ସେପରି ହେଲା ନାହିଁ ॥୩୮॥ ନିଃସନ୍ତାନ ହେବାର ଦୁଃଖ ଏବଂ ରାଜାଙ୍କର ଅନାଦରଯୋଗୁଁ ସପତ୍ନୀ ପ୍ରତି ଈର୍ଷାନ୍ୱିତା ରାଣୀମାନେ ନିଜକୁ ଧିକ୍‌କାର କରିବାକୁ ଲାଗିଲେ ॥୩୯॥ ସେମାନେ ନିଜ ନିଜ ମଧ୍ୟରେ କହିବାକୁ ଲାଗିଲେ, ପାପ ନ କରିଥିଲେ କୌଣସି ସ୍ତ୍ରୀ ପୁତ୍ରହୀନା ହୋଇ ଏପରି ଅଭାଗିନୀ ହୁଏ ନାହିଁ । ସ୍ୱାମୀ ତାକୁ ଅନାଦର କରେ ଏବଂ ପୁତ୍ରବତୀ ସପତ୍ନୀ ତାକୁ ଦାସୀ ଜ୍ଞାନରେ ଅବଜ୍ଞା କରେ । ତେଣୁ ସେପରି ସ୍ତ୍ରୀର ଜୀବନ ଧିକ୍‌କାରଯୋଗ୍ୟ ॥୪୦॥ ଦାସୀ ହେବାରେ କିଛି ଦୁଃଖ ନାହିଁ । ସ୍ୱାମୀର ସେବାଦ୍ୱାରା ସେମାନଙ୍କୁ ସବୁବେଳେ ସମ୍ମାନ ମିଳେ । କିନ୍ତୁ ଆମେମାନେ ତ ଦାସୀର ଦାସୀ । ଆମପରି ଅଭାଗିନୀ କିଏ ଅଛି ? ॥୪୧॥ ଏହିପରି ରାଣୀମାନେ ସଉତୁଣୀର କୋଳରେ ତାର ସନ୍ତାନସୁଖ ଦେଖି ଈର୍ଷାରେ ଜଳିବାକୁ ଲାଗିଲେ ଏବଂ ରାଜା ମଧ୍ୟ ସେମାନଙ୍କ ପ୍ରତି ଉଦାସୀନ ହେଲେ । ଏହା ଫଳରେ କୃତଦ୍ୟୁତିଙ୍କପ୍ରତି ସେମାନଙ୍କର ଈର୍ଷା ବଢ଼ିବାକୁ ଲାଗିଲା ॥୪୨॥ ଈର୍ଷା ଦୋଷରୁ ସେମାନଙ୍କର ବୁଦ୍ଧି କଳୁଷିତ ଓ ହୃଦୟ ନିଷ୍ଠୁର ହୋଇଗଲା । ସେମାନେ ସ୍ୱାମୀଙ୍କର ପୁତ୍ରସୌଭାଗ୍ୟ ସହି ନ ପାରି ସପତ୍ନୀର ସେହି ଶିଶୁ ପୁତ୍ରକୁ ବିଷ ପ୍ରଦାନ କଲେ ॥୪୩॥ କୃତଦ୍ୟୁତି ସପତ୍ନୀମାନଙ୍କର ଏହି ମହାପାପକର୍ମ ବିଷୟରେ କିଛି ଜାଣି ପାରିଲେ ନାହିଁ, ଦୂରରୁ ପୁଅ ନିଦରେ ଶୋଇଛି ବୋଲି ଦେଖି ସେ ଅନ୍ୟ କାର୍ଯ୍ୟରେ ଲାଗିଗଲେ ॥୪୪॥ ବହୁ ସମୟ ପର୍ଯ୍ୟନ୍ତ ପୁଅ ଶୋଇରହିଥିବା ଦେଖି ବୁଦ୍ଧିମତୀ ରାଣୀ ଧାଈକୁ କହିଲେ, କଲ୍ୟାଣି ! ପୁଅକୁ ମୋ ପାଖକୁ ନେଇଆ ॥୪୫॥ ଯେଉଁଠାରେ ଶିଶୁଟି ଶୋଇଥିଲା, ଧାଈ ସେଠାରେ ଯାଇ ଦେଖିଲା, ଶିଶୁର ଆଖିର ତାରା ଓଲଟି ପଡ଼ିଛି । ପ୍ରାଣବାୟୁ ଓ ଇନ୍ଦ୍ରିୟ ଶିଥିଳ । ଜୀବ ଆଉ ନାହିଁ । ଏହା ଦେଖି ଧାଈ 'ହାୟ ହାୟ କ'ଣ ହେଲା, ମୁଁ ମଲି ନାହିଁ' କହି ଭୂମିରେ ଗଡ଼ିବାକୁ ଲାଗିଲା ॥୪୬॥ ଧାଈକୁ ଏପରି କାତର ଭାବରେ ଛାତିରେ ହାତ ବାଡ଼େଇ ଉଚ୍ଚସ୍ୱରରେ କାନ୍ଦୁଥିବାର ଦେଖି ରାଣୀ ଦ୍ରୁତ ବେଗରେ ଗୃହମଧ୍ୟରେ ପ୍ରବେଶ କରି ଦେଖିଲେ, ପୁଅ ଆଉ ନାହିଁ, ହଠାତ୍ ମରିଯାଇଛି ॥୪୭॥ ରାଣୀ କୃତଦ୍ୟୁତି ଘୋର ଶୋକରେ ଭୂମି ଉପରେ ପଡ଼ି ମୂର୍ଚ୍ଛା ହୋଇଗଲେ ଏବଂ ତାଙ୍କ କେଶବାସ ଅସମ୍ଭାଳ ହୋଇପଡ଼ିଥିଲା ॥୪୮॥ ମହାରାଣୀଙ୍କର କ୍ରନ୍ଦନ ଶୁଣି ଅନ୍ତଃପୁରରେ ଥିବା ସ୍ତ୍ରୀପୁରୁଷମାନେ ସେଠାକୁ ଆସି ତାଙ୍କ ଦୁଃଖରେ ସମଦୁଃଖୀ ହୋଇ ରୋଦନ କରିବାକୁ ଲାଗିଲେ ଏବଂ ସେମାନଙ୍କ ମଧ୍ୟରେ କୃତଦ୍ୟୁତିଙ୍କର ସପତ୍ନୀମାନେ ମଧ୍ୟ ଆସି କପଟରୋଦନ କରୁଥିଲେ ॥୪୯॥

ଯେବେ ରାଜା ଚିତ୍ରକେତୁ ଶୁଣିଲେ ଯେ ଅକାରଣରେ ତାଙ୍କ ପୁତ୍ରର ମୃତ୍ୟୁ ଘଟିଛି, ତେବେ ପୁତ୍ରସ୍ନେହବଶତଃ ତାଙ୍କୁ ଚାରିଆଡ଼ ଅନ୍ଧାର ଦେଖାଗଲା । ପୁତ୍ରକୁ ଦେଖିବାପାଇଁ ସେ ମନ୍ତ୍ରୀ ଓ ବ୍ରାହ୍ମଣମାନଙ୍କ ସହ ଆସୁ ଆସୁ ବାଟରେ ପଡ଼ିଯାଉଥିଲେ ଏବଂ ମୃତ ଶିଶୁର ପାଖରେ ପହଞ୍ଚି ତାର ଗୋଡ଼ପାଖରେ ମୂର୍ଚ୍ଛା ହୋଇ ପଡ଼ିଗଲେ । ତାଙ୍କ କେଶବାସର କିଛି ଠିକଣା ରହିଲା ନାହିଁ । ସେ ଦୀର୍ଘଶ୍ୱାସ ଛାଡ଼ିବାକୁ ଲାଗିଲେ ॥୫୦-୫୧॥ ଅଶ୍ରୁଧାର ବହିଚାଲିଲା, ଶ୍ୱାସ ରୁଦ୍ଧ ହୋଇଗଲା ଏବଂ ସେ କଥା କହି ପାରିଲେ ନାହିଁ । ପତିବ୍ରତା ରାଣୀ କୃତଦ୍ୟୁତି ଶୋକାକୁଳ ପତି ଓ ମୃତ ଶିଶୁକୁ ବାରମ୍ବାର ଚାହିଁ ନାନାପ୍ରକାର ବିଳାପ କରିବାକୁ ଲାଗିଲେ । ତାଙ୍କର ଦୁଃଖ ଦେଖି ମନ୍ତ୍ରୀ ଓ ଉପସ୍ଥିତ ଅନ୍ୟ ଲୋକଙ୍କର ଅତିଶୟ ଦୁଃଖ ହେଲା ॥୫୨॥ କୁଙ୍କୁମମଣ୍ଡିତ ସ୍ତନଦ୍ୱୟ କଜ୍ଜଳଯୁକ୍ତ ନେତ୍ରର ବାରିଧାରାଦ୍ୱାରା ସିକ୍ତ ହେଉଥିଲା । କେଶପାଶ ଆଲୁଳାୟିତ, ଏବଂ ସେଥିରେ ଥିବା ଫୁଲମାନ ତଳକୁ ଖସି ପଡୁଥିଲା । ସେ ମୃତ ପୁତ୍ରକୁ ଚାହିଁ ଉଚ୍ଚ ସ୍ୱରରେ କୁରରୀ ପକ୍ଷୀ ପରି ବିଳାପ କରୁଥିଲେ ॥୫୩॥ ରାଣୀ କ୍ରନ୍ଦନ କରି କହୁଥିଲେ, ହେ ବିଧାତା, ବୃଦ୍ଧ ବ୍ୟକ୍ତି ବଞ୍ଚି ରହି ବାଳକର ମୃତ୍ୟୁ ଘଟିବା ତୁମ ସୃଷ୍ଟିର ଏକ ପ୍ରତିକୂଳ ଆଚରଣ । ଏହି ଘଟଣାରୁ ହିଁ ତୁମର ମୂର୍ଖତା ପ୍ରକାଶ ପାଉଛି । ନିଜ ସୃଷ୍ଟିକାର୍ଯ୍ୟର ଏପରି ବିପରୀତ ଆଚରଣ କରୁଥିବା ହେତୁ ତୁମେ ଆମର ଶତ୍ରୁ ଛଡ଼ା କିଛି ହୋଇ

ନ ପାର ॥୫୪॥ ଏହି ସଂସାରରେ ଜୀବନ-ମରଣର ଯଦି କୌଣସି କ୍ରମ ନ ରହେ, ତା'ହେଲେ ଜୀବମାନେ ନିଜ ନିଜର ପ୍ରାରବ୍ଧ ଅନୁସାରେ ଜନ୍ମ ହେବେ ଏବଂ ମରିବେ, ଆଉ ତୁମର ଆବଶ୍ୟକତା କ'ଣ ରହିବ ? ନିଜର ସୃଷ୍ଟିବିସ୍ତାରପାଇଁ ତୁମେ ଜୀବମାନଙ୍କ ମଧ୍ୟରେ ସ୍ନେହବନ୍ଧନ ସୃଷ୍ଟି କରିଛ । କିନ୍ତୁ ଏହିପରି ଶିଶୁକୁ ମାରି ତୁମେ ନିଜର ନୀତିବିରୁଦ୍ଧ କାର୍ଯ୍ୟ କରି ନାହଁ କି ? ॥୫୫॥ ତା'ପରେ ରାଣୀ ନିଜର ଶିଶୁପୁତ୍ର ଆଡ଼କୁ ଚାହିଁ, ବିଳାପ କରି କହିଲେ, ବତ୍ସ, ମୁଁ ଅତିଶୟ କାତର ଓ ଅନାଥ ହୋଇପଡ଼ିଛି । ତୁ ମୋତେ ଛାଡ଼ି ଯାଆ ନାହିଁ । ଦେଖ, ତୋର ପିତା କିପରି ଶୋକରେ ଭାଙ୍ଗି ପଡ଼ିଲେଣି । ନିର୍ଦ୍ଦୟ ଯମ ସାଙ୍ଗରେ ତୁ ଦୂରକୁ ଚାଲି ଯାଆନାହିଁ । ପୁତ୍ରହୀନ ବ୍ୟକ୍ତି ପକ୍ଷରେ ନରକରୁ ଉଦ୍ଧାର ପାଇବା କଷ୍ଟକର । ତୋ'ଦ୍ୱାରା ଉଦ୍ଧାର ପାଇବାପାଇଁ ଆମେ ଆଶା କରି ରହିଥିଲୁ ॥୫୬॥ ପୁତ୍ର ! ଉଠ୍ । ରାଜପୁତ୍ର, ତୋର ସମବୟସ୍କ ସାଙ୍ଗ ପିଲାମାନେ ତୋତେ ଖେଳିବା ପାଇଁ ଡାକୁଛନ୍ତି । ବହୁ ସମୟ ଧରି ତୁ ଶୋଇଗଲୁଣି । ବହୁତ ଭୋକ ହେବଣି । କିଛି ଖାଆ ଏବଂ ମୋର ସ୍ତନପାନ କରି ତୋର ଭୋକ ଓ ଆମର ଶୋକ ଦୂର କର ॥୫୭॥ ପ୍ରିୟ ପୁତ୍ର, ମୁଁ ଅତି ଅଭାଗିନୀ । ତୋର ମୁଖପଦ୍ମରେ ମୁଁ ସେ ସୁନ୍ଦର ହସ ଟିକକ ଆଉ ଦେଖୁ ନାହିଁ, ସେ ସୁନ୍ଦର ଆଖି ଦୁଇଟି ବନ୍ଦ ହୋଇଯାଇଛି । ତୋର ମଧୁର ମନୋହର କଥା ମଧ୍ୟ ଶୁଣିବାକୁ ପାଉନାହିଁ । ତା'ହେଲେ କ'ଣ ନିଷ୍ଠୁର ଯମ ତୋତେ ଏପରି କୌଣସି ଲୋକକୁ ନେଇଯାଇଛି, ଯେଉଁଠୁ କି ଆଉ ଫେରିବାର ନାହିଁ ? ॥୫୮॥ ଶ୍ରୀ ଶୁକଦେବ କହିଲେ, ରାଣୀ କୃତଦ୍ୟୁତି ମୃତପୁତ୍ରପାଇଁ ଏହିପରି ତୁହାକୁ ତୁହା ବିଳାପ କରୁଥିବାର ଦେଖି ରାଜା ଚିତ୍ରକେତୁ ଅତିଶୟ ଶୋକାତୁର ହୋଇ ଉଚ୍ଚ ସ୍ୱରରେ କାନ୍ଦିବାକୁ ଲାଗିଲେ ॥୫୯॥ ରାଜା-ରାଣୀଙ୍କୁ ଏହିପରି ବିଳାପ କରିବାର ଦେଖି ସେମାନଙ୍କର ଅନୁଗତ ସମସ୍ତ ସ୍ତ୍ରୀ-ପୁରୁଷ ଦୁଃଖରେ କାନ୍ଦିବାକୁ ଲାଗିଲେ । ଏହିପରି ସାରା ନଗର ମୂର୍ଚ୍ଛିତ ହୋଇଗଲା ॥୬୦॥ ଶୋକାଭିଭୂତ ରାଜା ସଂଜ୍ଞାହୀନ, ଏବଂ ତାଙ୍କୁ ସାନ୍ତ୍ୱନା ଦେବାପାଇଁ କେହି ନାହିଁ, ଏହା ଦେଖି ମହର୍ଷି ଅଙ୍ଗିରା ଦେବର୍ଷି ନାରଦଙ୍କୁ ସଂଗରେ ଆଣି ସେଠାରେ ଉପସ୍ଥିତ ହେଲେ ॥୬୧॥

### ପଞ୍ଚଦଶ ଅଧ୍ୟାୟ

## ଅଙ୍ଗିରା ଓ ନାରଦଙ୍କ ଉପଦେଶ

ଶ୍ରୀ ଶୁକଦେବ କହିଲେ, ପୁତ୍ରର ଶବ ପାଖରେ ଶବପରି ପଡ଼ିରହିଥିବା ଶୋକାକୁଳ ରାଜାଙ୍କୁ ମହର୍ଷି ଅଙ୍ଗିରା ଓ ନାରଦ ନାନା ସଦୁକ୍ତି ଦ୍ୱାରା ବୋଧ ଦେବାକୁ ଚେଷ୍ଟା କଲେ । ସେ ଦୁହେଁ କହିଲେ, ମହାରାଜ ! ଯାହାପାଇଁ ତୁମେ ଶୋକ କରୁଛ, ସେ ବାଳକ ଏ ଜନ୍ମରେ ଏବଂ ପୂର୍ବଜନ୍ମରେ ତୁମର କ'ଣ ଥିଲା ? ତୁମେ ମଧ୍ୟ ତାର କ'ଣ ଥିଲ ? ଆଗାମୀ ଜନ୍ମରେ ଏହା ସହିତ ତୁମର କି ସମ୍ପର୍କ ରହିବ ? ॥୧-୨॥ ଯେପରି ସ୍ରୋତବେଗରେ ଗଡ଼ି ଯାଉଥିବା ବାଲି ସବୁ କେଉଁଠୁ ଆସି କେଉଁଠି ମିଶନ୍ତି, ସେହିପରି ସମୟ (କାଳ) ସ୍ରୋତରେ ଜୀବମାନେ କୁଆଡ଼ୁ ଆସି ଏକାଠି ମିଶନ୍ତି ଏବଂ ପୁଣି କୁଆଡ଼େ ପରସ୍ପର ଛଡ଼ାଛଡ଼ି ହୋଇ ଚାଲିଯାଆନ୍ତି ॥୩॥ ଯେପରି କୌଣସି କୌଣସି ବିହନରୁ ଧାନ ହୁଏ ଏବଂ କୌଣସି କୌଣସିରୁ ହୁଏ ନାହିଁ, ସେହିପରି ଜୀବମାନଙ୍କ ମଧ୍ୟରେ କାହାରି କାହାରି ସନ୍ତାନ ହୁଅନ୍ତି, କାହାରି କାହାରି ହୁଅନ୍ତି ନାହିଁ । କାରଣ ଜୀବମାନେ ଭଗବାନଙ୍କ ମାୟାର ବଶବର୍ତ୍ତୀ ॥୪॥ ରାଜା, ଆମେ, ତୁମେ ଏବଂ ଆମ ସହିତ ଯେତେ ଚରାଚର ପ୍ରାଣୀ ଅଛନ୍ତି, ସେମାନେ ସମସ୍ତେ ନିଜ ନିଜର ଜନ୍ମପୂର୍ବରୁ ନଥିଲେ, କି ମୃତ୍ୟୁପରେ ରହିବେ ନାହିଁ । ଏଥିରୁ ପ୍ରମାଣିତ ହେଉଛି ଯେ ବର୍ତ୍ତମାନ ମଧ୍ୟ ସେମାନେ ଅସ୍ତିତ୍ୱହୀନ । (ତେଣୁ କାହାପାଇଁ ତୁମେ ଶୋକ କରୁଛ ?) ॥୫॥ ଭଗବାନ୍ ପ୍ରାଣୀମାନଙ୍କର

ଅଧିପତି । ସେ କାହାରିକୁ ଅପେକ୍ଷା କରନ୍ତି ନାହିଁ ବା କାହାରି ଇଚ୍ଛାଧୀନ ନୁହନ୍ତି । କିନ୍ତୁ ପ୍ରାଣୀମାନେ ତାଙ୍କରି ଅଧୀନ । ସେ ସେମାନଙ୍କୁ ସୃଷ୍ଟି କରନ୍ତି ଓ ସେମାନଙ୍କ ଦ୍ୱାରା ଅନ୍ୟ ପ୍ରାଣୀମାନଙ୍କର ସୃଷ୍ଟି, ସ୍ଥିତି ଓ ବିନାଶ ସାଧନ କରନ୍ତି । ତାଙ୍କପାଇଁ ଏହା ବାଳକର ଖେଳତୁଲ୍ୟ ॥୬॥ ପରିକ୍ଷିତ, ଯେପରି ମାଟିରେ ଗୋଟିଏ ମଞ୍ଜିରୁ ଅନ୍ୟ ମଞ୍ଜିଟିର ଜନ୍ମ ହୁଏ, ସେହିପରି ପିତାର ଦେହଦ୍ୱାରା ମାତାର ଦେହରୁ ସନ୍ତାନର ଜନ୍ମ । ପିତା, ମାତା ଏବଂ ପୁତ୍ର ଜୀବରୂପରେ ଦେହୀ, କିନ୍ତୁ ବାହ୍ୟ ଦୃଷ୍ଟିରେ ସେମାନେ ଶରୀରମାତ୍ର ॥୭॥ ଯେପରି ଗୋଟିଏ ବସ୍ତୁକୁ ତାର ବିଶେଷତା ଦୃଷ୍ଟିରୁ ଏକକ ଭାବରେ ଏବଂ ସମୂହ ଭାବରେ ବିଭକ୍ତ କରାଯାଇଥାଏ, ସେହିପରି ଦେହୀ (ଜୀବାତ୍ମା) ଓ ଦେହର ବିଭାଗ ଅନାଦିକାଳରୁ ଅଜ୍ଞତାବଶତଃ ଚାଲିଆସିଛି । (ମୃତ୍ତିକା ଏକ, ମାତ୍ର ଆମେ ତାକୁ ଘଟ ରୂପରେ ଭିନ୍ନ ଭାବରେ ଦେଖୁ) ॥୮॥ ଶ୍ରୀ ଶୁକଦେବ କହିଲେ, ଅଙ୍ଗିରା ଓ ନାରଦ ମୁନିଙ୍କର ଉପଦେଶବାଣୀରେ ରାଜା ଚିତ୍ରକେତୁ ସାନ୍ତ୍ୱନା ଲାଭ କଲେ ଏବଂ ଶୋକରେ ମଳିନ ହୋଇଥିବା ତାଙ୍କର ମୁହଁକୁ ପୋଛି କହିବାକୁ ଆରମ୍ଭ କଲେ ॥୯॥ ଚିତ୍ରକେତୁ କହିଲେ, ଆପଣ ଦୁଇଜଣ ଅବଧୂତର ଛଦ୍ମବେଶ ଧାରଣ କରି ଏଠାକୁ ଆସିଛନ୍ତି । ଆପଣ ଦୁହେଁ ମହାଜ୍ଞାନୀ ଓ ମହାତ୍ମାମାନଙ୍କ ମଧ୍ୟରେ ଶ୍ରେଷ୍ଠ ବୋଲି ଜଣାଯାଉଛନ୍ତି । ପ୍ରକୃତରେ ଆପଣ କିଏ ? ମୋ ପରି ଅଳ୍ପବୁଦ୍ଧିସମ୍ପନ୍ନ ବ୍ୟକ୍ତିମାନଙ୍କୁ ଜ୍ଞାନର ଉପଦେଶ ଦେବାପାଇଁ ଏହିପରି ବେଶରେ ଭଗବାନଙ୍କର ଭକ୍ତ ବ୍ରହ୍ମଜ୍ଞାନୀମାନେ ଏହି ପୃଥିବୀରେ ସ୍ୱଚ୍ଛନ୍ଦରେ ଭ୍ରମଣ କରନ୍ତି ॥୧୦-୧୧॥

ସନତ୍‌କୁମାର, ନାରଦ, ଋଭୁ, ଅଙ୍ଗିରା, ଦେବଳ, ଅସିତ, ତମୋଗୁଣବର୍ଜିତ ବ୍ୟାସ, ମାର୍କଣ୍ଡେୟ, ଗୌତମ, ବଶିଷ୍ଠ, ଭଗବାନ ପରଶୁରାମ, କପିଳ, ଶୁକଦେବ, ଦୁର୍ବାସା, ଯାଜ୍ଞବଲ୍କ୍ୟ, ଜାତୂକର୍ଣ୍ଣ୍ୟ, ଆରୁଣି, ରୋମଶ, ଚ୍ୟବନ, ଦତ୍ତାତ୍ରେୟ, ଆସୁରି, ପତଞ୍ଜଳି, ବେଦଶିରା, ବୋଧ୍ୟମୁନି, ପଞ୍ଚଶିରା ମୁନି, ହିରଣ୍ୟନାଭ, କୌଶଲ୍ୟ, ଶ୍ରୁତଦେବ, ଓ ଋତୁଧ୍ୱଜ -- ଏମାନେ ଏବଂ ଆହୁରି ଅନେକ ତପଃସିଦ୍ଧ ମହାତ୍ମା ଲୋକଙ୍କ ମଧ୍ୟରେ ଜ୍ଞାନ ବିସ୍ତାର କରିବାପାଇଁ ଏହିପରି ବିଚରଣ କରନ୍ତି ॥୧୨-୧୫॥ ସେଥିପାଇଁ ଆପଣ ଗ୍ରାମ୍ୟପଶୁ ତୁଲ୍ୟ ଅଜ୍ଞାନ-ଅନ୍ଧକାରରେ ବୁଡ଼ିରହିଥିବା ମୋ'ପରି ମୂଢ଼ବୁଦ୍ଧି ବ୍ୟକ୍ତିକୁ ଜ୍ଞାନର ପ୍ରଦୀପ ଦ୍ୱାରା ଆଲୋକିତ କରନ୍ତୁ ॥୧୬॥

ମହର୍ଷି ଅଙ୍ଗିରା କହିଲେ, ରାଜା, ମୁଁ ହେଉଛି ଅଙ୍ଗିରା । ଯେବେ ତୁମେ ପୁତ୍ରକାମନା କରୁଥିଲ, ତେବେ ମୁଁ ତୁମକୁ ଏକ ପୁତ୍ର ଦାନ କରିଥିଲି ଏବଂ ଏ ହେଉଛନ୍ତି ବ୍ରହ୍ମାଙ୍କର ପୁତ୍ର ମହର୍ଷି ନାରଦ, ଯେ କି ତୁମ ସମ୍ମୁଖରେ ଉପସ୍ଥିତ ॥୧୭॥ ଆମେ ଦେଖିଲୁ ଯେ ତୁମେ ପୁତ୍ରର ମୃତ୍ୟୁରେ ଘୋର ଶୋକସାଗରରେ ନିମଗ୍ନ, ତେଣୁ ଆମେ ଅନୁଭବ କଲୁ, ଭଗବାନଙ୍କର ଭକ୍ତ ହୋଇ ଏପରି ଶୋକାକୁଳ ହେବା ତୁମପକ୍ଷରେ ଉଚିତ ନୁହେଁ ଏବଂ ଆମେ ତୁମକୁ ସାନ୍ତ୍ୱନା ଦେବାପାଇଁ ଆସିଛୁ । ତୁମେ ଭଗବତ୍‌ଭକ୍ତ; ପୁଣି ବ୍ରାହ୍ମଣମାନଙ୍କର ସେବକ । ଅତଏବ ତୁମର ଏପରି ବିଷଣ୍ଣ ହେବା ଉଚିତ ନୁହେଁ ॥୧୮-୧୯॥ ମୁଁ ଯେତେବେଳେ ତୁମ ଘରକୁ ଆସିଥିଲି, ସେତେବେଳେ ତୁମକୁ ପରମଜ୍ଞାନ ଦେଇ ପାରିଥା'ନ୍ତି । କିନ୍ତୁ ପୁତ୍ରଲାଭପାଇଁ ତୁମର ଉତ୍କଟ ଇଚ୍ଛାକୁ ଦେଖି ଜ୍ଞାନୋପଦେଶ ନ ଦେଇ ତୁମକୁ ପୁତ୍ର ଦାନ କଲି ॥୨୦॥ ପୁତ୍ରବାନ୍ ଲୋକର କି ଦୁଃଖ ହୁଏ, ବର୍ତ୍ତମାନ ତୁମେ ତାହା ଅନୁଭବ କରିପାରୁଛ । ସେହିପରି ଧନ, ଦାରା, ଗୃହ, ସମସ୍ତପ୍ରକାର ଐଶ୍ୱର୍ଯ୍ୟ ଓ ସମ୍ପତ୍ତି ଏବଂ ଶବ୍ଦ, ସ୍ପର୍ଶ, ରୂପ, ରସ ଓ ଗନ୍ଧ ଜନିତ ସମସ୍ତପ୍ରକାର ଭୋଗ, ବିଶାଳ ସାମ୍ରାଜ୍ୟ ଓ ସେନା, ବିପୁଳ ରାଜକୋଷ, ଭୃତ୍ୟ, ମନ୍ତ୍ରୀ, ସଖା ଓ ସ୍ୱଜନ-ଏମାନେ ସମସ୍ତେ ଅନିତ୍ୟ । ଗଂଧର୍ବନଗରୀ ପରି ଉଭା ହୁଅନ୍ତି ଓ ପୁଣି ଉଭେଇ ଯାଆନ୍ତି । ସ୍ୱପ୍ନ ବା ଇନ୍ଦ୍ରଜାଲପରି କିମ୍ବା ନିଜର କଳ୍ପନାବିଳାସ ପରି ଏମାନେ ସମସ୍ତେ ମିଥ୍ୟା । କେବଳ ସେମାନେ ତୁମ ଶୋକ, ମୋହ, ଭୟ ଓ ଦୁଃଖର କାରଣ ହୁଅନ୍ତି ॥୨୧-୨୩॥ ବାସ୍ତବ ସତ୍ତା ରହିତ ଯାହାକୁ କେବଳ ମନମଧ୍ୟରେ କଳ୍ପନା କରାଯାଏ, ତାହା କେବେ ଦୃଶ୍ୟମାନ ହୁଏ ନାହିଁ ଏବଂ କେବଳ ଅଦୃଷ୍ଟବଶତଃ ଲୋକ ନାନାପ୍ରକାର କର୍ମ କରିବାପାଇଁ ଚିନ୍ତା କରେ ॥୨୪॥ ଦ୍ରବ୍ୟ, ଜ୍ଞାନ ଓ କ୍ରିୟାତ୍ମକ ଦେହାଭିମାନୀ ଜୀବର ଏହି ଦେହ

ନାନାପ୍ରକାର ଦୁଃଖ ଓ ସନ୍ତାପର କାରଣ ହୋଇଥାଏ ॥୨୫॥ ଏଣୁ ଏକାଗ୍ର ଚିତ୍ତରେ ଆତ୍ମତତ୍ତ୍ୱ ଚିନ୍ତା କରିବା ବାଞ୍ଛନୀୟ । ଅହଙ୍କାର ଯୋଗୁ କାହାକୁ ଚିରସ୍ଥାୟୀ ବୋଲି ଯେପରି ବିଶ୍ୱାସ କରାଯାଏ, ସେପରି ବିଶ୍ୱାସ ତ୍ୟାଗ କରିବାକୁ ହେବ । ତା'ହେଲେ ଯାଇ ଶୋକର ଉପଶମ ହୋଇପାରିବ ॥୨୬॥ ମହର୍ଷି ନାରଦ କହିଲେ, ଏବେ ମୁଁ ତୁମକୁ ଏକ ମନ୍ତ୍ର ଦେଉଛି, ଯାହାକୁ ଧାରଣ କଲେ ସାତରାତି ମଧ୍ୟରେ ତୁମେ ଭଗବାନ ସଙ୍କର୍ଷଣଙ୍କର ଦର୍ଶନ ପାଇପାରିବ । ସଂଯତ ଚିତ୍ତରେ ତାହା ଗ୍ରହଣ କର ॥୨୭॥ ନରେନ୍ଦ୍ର, ଯାହାଙ୍କ ପାଦମୂଳକୁ ଆଶ୍ରୟ କରି ପୂର୍ବେ ମହାଦେବ ଆଦି ଦେବତାମାନେ ଯେପରି ଅହଙ୍କାର ଆଦି ଦ୍ୱୈତଭ୍ରମକୁ ପରିତ୍ୟାଗ କରି (ଅର୍ଥାତ୍ ସେ ଅନନ୍ୟ ଓ ଅଦ୍ୱୈତ ବୋଲି ଅନୁଭବ କରି) ଭଗବାନଙ୍କର ଅତୁଳନୀୟ ମହିମାର କୃପାପାତ୍ର ହୋଇଥିଲେ, ତୁମେ ସେହିପରି ଶୀଘ୍ର ତାଙ୍କରି କୃପାରୁ ସେହି ପରମପଦ ପାଇପାରିବ ॥୨୮॥

## ଷୋଡ଼ଶ ଅଧ୍ୟାୟ

# ଚିତ୍ରକେତୁଙ୍କର ବୈରାଗ୍ୟ

ଶ୍ରୀ ଶୁକଦେବ କହିଲେ, ପରିକ୍ଷିତ, ଏହାପରେ ଦେବର୍ଷି ନାରଦ ମୃତ ରାଜପୁତ୍ରର ଜୀବାତ୍ମାକୁ ଡକାଇ ଶୋକାକୁଳ ଜ୍ଞାତିମାନଙ୍କ ସମ୍ମୁଖରେ ଏହିପରି ପଚାରିଲେ ॥୧॥ ନାରଦ କହିଲେ, ଜୀବାତ୍ମା, ତୁମର ମଙ୍ଗଳ ହେଉ । ତୁମର ପିତା ଓ ମାତାଙ୍କୁ ଦର୍ଶନ କର, ତୁମର ବନ୍ଧୁବାନ୍ଧବମାନେ ତୁମପାଇଁ ବହୁତ ଶୋକ କରୁଛନ୍ତି । ତୁମର ଆହୁରି ଆୟୁଷ ଅଛି । ତୁମେ ନିଜର ଦେହମଧ୍ୟକୁ ଆସିଯାଅ ଏବଂ ବନ୍ଧୁବାନ୍ଧବଙ୍କ ଦ୍ୱାରା ପରିବେଷ୍ଟିତ ହୋଇ ପିତୃଦତ୍ତ ଭୋଗ୍ୟ ବିଷୟମାନଙ୍କୁ ଭୋଗ କର ଏବଂ ରାଜସିଂହାସନରେ ଅଧିଷ୍ଠିତ ହୁଅ ॥୨-୩॥ ଜୀବ କହିଲା, ଦେବର୍ଷି ! ମୁଁ ମୋର ପୂର୍ବ କର୍ମ ଅନୁସାରେ ଦେବତା, ପଶୁପକ୍ଷୀ ଏବଂ ମନୁଷ୍ୟ ଆଦି ଯୋନିରେ କେତେ ଜନ୍ମ ଧରି ଯେ ଭ୍ରମଣ କରି ଚାଲିଛି, ତାର ଇୟତ୍ତା ନାହିଁ । କେଉଁ ଜନ୍ମରେ ଏମାନେ ମୋର ମାତା ପିତା ଥିଲେ ? ॥୪॥ ଭିନ୍ନ ଭିନ୍ନ ଜନ୍ମରେ ସମସ୍ତେ ପରସ୍ପର ଭାଇ, ବନ୍ଧୁ, ଶତ୍ରୁ, ମିତ୍ର, ମଧ୍ୟସ୍ଥ, ଉଦାସୀନ ଓ ଦ୍ୱେଷୀ ହୋଇଥା'ନ୍ତି ॥୫॥ ଯେପରି ସୁବର୍ଣ୍ଣ ଆଦି ପଣ୍ୟଦ୍ରବ୍ୟ ଜଣେ ବେପାରୀଠାରୁ ଅନ୍ୟଜଣକୁ ଓ ତା'ପରେ ଅନ୍ୟ ଜଣକ ପାଖକୁ —ଏହିପରି ହାତକୁ ହାତ ହୋଇ ଘୂରି ବୁଲୁଥାଏ, ସେହିପରି ଜୀବ ଭିନ୍ନ ଭିନ୍ନ ଯୋନିରେ ଜନ୍ମ ହୋଇ ଘୂରିବୁଲେ ॥୬॥ ଲୋକଙ୍କ ମଧ୍ୟରେ ଦେଖାଯାଏ, ସେମାନେ ଅସ୍ଥାୟୀ ବସ୍ତୁର ସମ୍ପର୍କରେ ଆସି ତାହାକୁ ଚିରସ୍ଥାୟୀ ବୋଲି ମନେ କରନ୍ତି, ଏବଂ ଯେତେଦିନ ଯାଏ ସେଇ ବସ୍ତୁ ସହିତ ତାଙ୍କ ସମ୍ପର୍କ ରହେ, ସେତେଦିନଯାଏ ତାହାପ୍ରତି ତାଙ୍କର ଅତିଶୟ ମୋହ ଜାତ ହୁଏ ॥୭॥ ଜୀବ ନିତ୍ୟ, ଅହଙ୍କାରରହିତ । ମାତୃଗର୍ଭରୁ ଆସି ଯେଉଁ ଶରୀର ଧାରଣ କରି ଯେତେଦିନ ପର୍ଯ୍ୟନ୍ତ ଏ ଜୀବ ରହେ, ସେତେ ଦିନ ପର୍ଯ୍ୟନ୍ତ ତାହା ପ୍ରତି ତାର ମମତା ରହିଥାଏ ॥୮॥ ଏହି ଜୀବ ନିତ୍ୟ, ଅବିନଶ୍ୱର, ଜନ୍ମାଦିରହିତ ଏବଂ ଚୈତନ୍ୟମୟ; ସମସ୍ତଙ୍କର ଆଶ୍ରୟ ଓ ସ୍ୱୟଂପ୍ରକାଶ । ମାତ୍ର ଆତ୍ମାରୂପେ ଏହା ନିଜର ତ୍ରିଗୁଣାତ୍ମିକ ମାୟା ଦ୍ୱାରା ନିଜକୁ ବିଶ୍ୱରୂପରେ ପ୍ରକଟିତ କରେ ॥୯॥ ଜୀବାତ୍ମା କାହାରି ସହିତ ଲିପ୍ତ ନୁହେଁ । ଏହାର କେହି ମିତ୍ର ନୁହନ୍ତି କି ଶତ୍ରୁ ନୁହନ୍ତି । କାରଣ ଗୁଣଦୋଷଯୁକ୍ତ ବୁଦ୍ଧି ଥିବା ସମସ୍ତ ଲୋକଙ୍କର ଏହା ସାକ୍ଷୀସ୍ୱରୂପ । ତେଣୁ ଏହାର ପ୍ରିୟ ବା ଅପ୍ରିୟ କେହି ନ ଥାନ୍ତି ॥୧୦॥ ଜୀବାତ୍ମାର କୌଣସି ଗୁଣ ନଥାଏ କି ଦୋଷ ନଥାଏ । ଏହା ଶରୀର ଆଦିର କର୍ମଫଳକୁ ଗ୍ରହଣ କରେ ନାହିଁ । କାର୍ଯ୍ୟ-କାରଣ ଆଦିର ସାକ୍ଷୀ ଭାବରେ ଏହା ଉଦାସୀନ ହୋଇ ଅବସ୍ଥାନ କରେ ॥୧୧॥

ଶ୍ରୀ ଶୁକଦେବ କହିଲେ, ପରିକ୍ଷିତ, ସେହି ଜୀବାତ୍ମା ଏହିପରି କହି ଚାଲିଗଲା । ତା'ର ବନ୍ଧୁ ସ୍ୱଜନମାନେ ତାହା ଶୁଣି ବିସ୍ମିତ ହେଲେ ଏବଂ ନିଜ ନିଜର ସ୍ନେହବନ୍ଧନ ଛିନ୍ନ କରି ଶୋକ ତ୍ୟାଗ କଲେ ॥୧୨॥ ଜ୍ଞାତିମାନେ ରାଜକୁମାରର ଦେହକୁ ସ୍ଥାନାନ୍ତରିତ କରି ସମୁଚିତ ସଂସ୍କାର ଆଦି କଲେ ଏବଂ ଯେଉଁ ସ୍ନେହ ଓ ମମତା ସେମାନଙ୍କ ଶୋକ, ମୋହ, ଭୟ ଓ ଦୁଃଖର କାରଣ ହୋଇଥିଲା, ତାହାକୁ ପରିତ୍ୟାଗ କଲେ ॥୧୩॥ ମହାରାଜ ପରିକ୍ଷିତ, କୃତଦ୍ୟୁତିଙ୍କର ଶିଶୁପୁତ୍ରକୁ ହତ୍ୟା କରିଥିବା ସପତ୍ନୀମାନେ ଅତିଶୟ ନିଷ୍ପ୍ରଭ ଓ ଲଜ୍ଜିତ ହୋଇଥିଲେ । ସେମାନେ ନାରଦ ଓ ଅଙ୍ଗିରାଙ୍କ ଉପଦେଶ ବାକ୍ୟ ଶ୍ରବଣ କରି ତାଙ୍କରି ସିଦ୍ଧାନ୍ତ ଅନୁଯାୟୀ ଶିଶୁହତ୍ୟାଜନିତ ପାପର ପ୍ରାୟଶ୍ଚିତ୍ତସ୍ୱରୂପ ଯମୁନାକୂଳକୁ ଯାଇ ବ୍ରତାଦି ଅନୁଷ୍ଠାନ କଲେ ॥୧୪॥ ପରିକ୍ଷିତ, ଏହିପରି ଅଙ୍ଗିରା ଏବଂ ନାରଦଙ୍କ ଉପଦେଶ ଦ୍ୱାରା ରାଜା ଚିତ୍ରକେତୁଙ୍କର ବିବେକ ବୁଦ୍ଧି ଜାଗରିତ ହେବାରୁ ସେ ଗୃହର ମମତାରୂପକ ଅନ୍ଧକୂପରୁ ବାହାରି ଆସିଲେ, ଯେପରି କର୍ଦ୍ଦମାକ୍ତ ପୁଷ୍କରିଣୀ ମଧ୍ୟକୁ ପଶିଥିବା ହସ୍ତୀ ସେଥିରୁ ବାହାରିଆସେ ॥୧୫॥ ସେ ଯମୁନା ଜଳରେ ଯଥାବିଧି ସ୍ନାନ କରି ତର୍ପଣାଦି ଜଳକ୍ରିୟା ସମାପନ ପୂର୍ବକ ମୌନବ୍ରତ ଅବଲମ୍ବନ କଲେ ଏବଂ ସଂଯତ ଚିତ୍ତରେ ନାରଦ ଓ ଅଙ୍ଗିରାଙ୍କ ପାଦବନ୍ଦନା କଲେ ॥୧୬॥ ମହର୍ଷି ନାରଦ ଶରଣାଗତ ଓ ସଂଯତଚିତ୍ତ ଚିତ୍ରକେତୁଙ୍କ ଉପରେ ସନ୍ତୁଷ୍ଟ ହୋଇ ତାଙ୍କୁ ଏହିପରି ମନ୍ତ୍ରୋପଦେଶ ପ୍ରଦାନ କଲେ ॥୧୭॥ ଓଁକାର ସ୍ୱରୂପ ଭଗବାନ ! ଆପଣ ବାସୁଦେବ, ପ୍ରଦ୍ୟୁମ୍ନ, ଅନିରୁଦ୍ଧ ଏବଂ ସଙ୍କର୍ଷଣ ରୂପରେ ଯଥାକ୍ରମେ ଚିତ୍ତ, ବୁଦ୍ଧି, ମନ ଏବଂ ଅହଙ୍କାରର ଅଧିଷ୍ଠାତା । ମୁଁ ଆପଣଙ୍କର ଏହି ଚତୁର୍ବ୍ୟୂହରୂପକୁ ବାରମ୍ବାର ନମସ୍କାର କରୁଛି ॥୧୮॥ ଆପଣ ଚୈତନ୍ୟସ୍ୱରୂପ, ପରମାନନ୍ଦମୂର୍ତ୍ତି, ଆତ୍ମାରାମ ଏବଂ ଶାନ୍ତ । କୌଣସି ଭେଦବୁଦ୍ଧି ଆପଣଙ୍କୁ ଛୁଇଁ ପାରେ ନାହିଁ । ମୁଁ ଆପଣଙ୍କୁ ନମସ୍କାର କରୁଛି ॥୧୯॥ ଆପଣ ନିଜ ସ୍ୱରୂପର ଆନନ୍ଦ-ଅନୁଭୂତି ଦ୍ୱାରା ମାୟାଜନିତ ରାଗ, ଦ୍ୱେଷ ଆଦି ଦୋଷକୁ ନିରାକରଣ କରନ୍ତି । ଆପଣ ସର୍ବବ୍ୟାପୀ, ବିଶ୍ୱରୂପ ଓ ସମସ୍ତ ଇନ୍ଦ୍ରିୟଙ୍କର ଅଧିପତି । ମୁଁ ଆପଣଙ୍କୁ ନମସ୍କାର କରୁଛି ॥୨୦॥ ବାକ୍ ପ୍ରଭୃତି ଇନ୍ଦ୍ରିୟ ଓ ମନଦ୍ୱାରା ଯାହାଙ୍କୁ ଲାଭ କରାଯାଇ ପାରେନା, ସେମାନେ ଚେଷ୍ଟା କରି ନିରସ୍ତ ହେବା ପରେ ଯେ ସ୍ୱୟଂ ନିଜକୁ ପ୍ରକାଶ କରନ୍ତି, ଯାହାଙ୍କର କୌଣସି ନାମ, ରୂପ ବା ଉପାଧି ନାହିଁ, ଯେ କାର୍ଯ୍ୟକାରଣରୂପ ଏହି ବିଶ୍ୱର କାରଣ, ସେହି ଚୈତନ୍ୟସ୍ୱରୂପ ଭଗବାନ ଆମକୁ ରକ୍ଷା କରନ୍ତୁ ॥୨୧॥ ଏହି ବିଶ୍ୱ ଯାହାଙ୍କଠାରେ ଅବସ୍ଥାନ କରେ ଓ ବିଲୀନ ହୁଏ ଏବଂ ଯାହାଙ୍କଠାରୁ ଏହାର ସୃଷ୍ଟି; ମୃତ୍ତିକାନିର୍ମିତ ବସ୍ତୁ ସହିତ ମୃତ୍ତିକାର ସମ୍ପର୍କ ପରି ବିଶ୍ୱର ସମସ୍ତ ବସ୍ତୁ ସହିତ ଯାହାଙ୍କର ସମ୍ବନ୍ଧ; ସେହି ପରଂବ୍ରହ୍ମ ସ୍ୱରୂପ ଭଗବାନଙ୍କୁ ମୁଁ ନମସ୍କାର କରୁଛି ॥୨୨॥ ଯେ ଆକାଶ ପରି ଅନ୍ତରରେ ଓ ବାହାରେ ବ୍ୟାପି ରହିଛନ୍ତି; ମନ, ବୁଦ୍ଧି, ଇନ୍ଦ୍ରିୟ ଓ ଜ୍ଞାନଶକ୍ତି ଆଦି ଦ୍ୱାରା ଯାହାଙ୍କୁ ଜାଣିବା ସମ୍ଭବ ନୁହେଁ ଏବଂ ପ୍ରାଣାଦି ବାୟୁ, ସମସ୍ତ କର୍ମେନ୍ଦ୍ରିୟ ଓ କ୍ରିୟାଶକ୍ତିଦ୍ୱାରା ଯାହାଙ୍କୁ ସ୍ପର୍ଶ କରି ହୁଏନାହିଁ, ସେହି ପରଂବ୍ରହ୍ମଙ୍କୁ ମୁଁ ନମସ୍କାର କରୁଛି ॥୨୩॥ ଯାହାଙ୍କ ଚେତନା-ଶକ୍ତିଦ୍ୱାରା ପ୍ରେରିତ ହୋଇ ଦେହ, ଇନ୍ଦ୍ରିୟ, ପ୍ରାଣ, ମନ ଓ ବୁଦ୍ଧି ଜାଗ୍ରତ ଅବସ୍ଥାରେ କାର୍ଯ୍ୟକରନ୍ତି ଏବଂ ନିଜ ନିଜର ବିଷୟବସ୍ତୁକୁ ଗ୍ରହଣ କରନ୍ତି, କିନ୍ତୁ ସୁପ୍ତ ଅବସ୍ଥାରେ ତାଙ୍କ ଚେତନା-ଶକ୍ତିର ପ୍ରେରଣା ବିନା ଅସମର୍ଥ ହୋଇ ପଡ଼ିରହନ୍ତି, ଲୌହରେ ଅଗ୍ନିପରି (ଅଗ୍ନି ଦ୍ୱାରା ତପ୍ତ ହେଲେ ଲୁହା ଜଳିଉଠେ) ଜାଜ୍ୱଲ୍ୟମାନ ସେହି ଏକମାତ୍ର କର୍ତ୍ତାପୁରୁଷଙ୍କୁ ମୁଁ ନମସ୍କାର କରୁଛି ॥୨୪॥ ହେ ପୁରୁଷୋତ୍ତମ ! ଶ୍ରେଷ୍ଠ ଭକ୍ତଗଣ ହସ୍ତରୂପ ପଦ୍ମକୋରକଦ୍ୱାରା ଆପଣଙ୍କ ଯୁଗଳ ଚରଣାରବିନ୍ଦର ସେବା କରନ୍ତି, ହେ ମହାପୁରୁଷ, ହେ ସର୍ବଶ୍ରେଷ୍ଠ, ହେ ଓଁକାରସ୍ୱରୂପ ମହାବିଭୂତିସମ୍ପନ୍ନ ଭଗବାନ, ଆପଣଙ୍କୁ ମୁଁ ବାରମ୍ବାର ନମସ୍କାର କରୁଛି ॥୨୫॥

ଶ୍ରୀ ଶୁକଦେବ କହିଲେ, ପରିକ୍ଷିତ, ଦେବର୍ଷି ନାରଦ ଶରଣାଗତ ଭକ୍ତ ରାଜା ଚିତ୍ରକେତୁଙ୍କୁ ଏହିପରି ବିଦ୍ୟାର ଉପଦେଶ ଦେଇ ମହର୍ଷି ଅଙ୍ଗିରାଙ୍କ ସହିତ ବ୍ରହ୍ମଲୋକକୁ ପ୍ରସ୍ଥାନ କଲେ ॥୨୬॥ ନାରଦ ଯେଉଁ ମନ୍ତ୍ର ଉପଦେଶ ଦେଇଥିଲେ, ଚିତ୍ରକେତୁ ସାତଦିନ କେବଳ ଜଳ ସେବନ କରି ନିଷ୍ଠାର ସହିତ ସେହି ମନ୍ତ୍ରକୁ ଧାରଣ କଲେ ॥୨୭॥ ସାତରାତିଶେଷରେ ରାଜା ତାଙ୍କ

ମନ୍ତ୍ରଧାରଣା ଦ୍ୱାରା ବିଦ୍ୟାଧରମାନଙ୍କର ଅଖଣ୍ଡ ଆଧିପତ୍ୟ ଲାଭ କଲେ ॥୨୮॥ ଏହାପରେ କିଛିଦିନ ଉତ୍ତାରୁ ରାଜାଙ୍କର ମନ ଆହୁରି ବିଶୁଦ୍ଧ ହୋଇଗଲା, ସେ ଦେବାଧିଦେବ ଭଗବାନ ଶେଷଦେବଙ୍କ ଚରଣାରବିନ୍ଦ ସମୀପରେ ପହଞ୍ଚିଗଲେ ॥୨୯॥ ସେ ଦେଖିଲେ, ସିଦ୍ଧେଶ୍ୱରମାନଙ୍କ ମଣ୍ଡଳରେ ଶେଷ ଭଗବାନ ବିରାଜମାନ । ମୃଣାଳପରି ତାଙ୍କ ଗୌରବର୍ଣ୍ଣ ଶରୀରରେ ନୀଳାମ୍ବର ଫରଫର ହେଉଥିଲା । ମସ୍ତକରେ କିରୀଟ, ବାହୁରେ ବାଜୁବନ୍ଧ, କଟିରେ ମେଖଳା ଓ କରରେ କଙ୍କଣ । ପ୍ରଫୁଲ୍ଲ ମୁଖମଣ୍ଡଳରେ ଅରୁଣବର୍ଣ୍ଣର ଚକ୍ଷୁଦ୍ୱୟ ଶୋଭାପାଉଥିଲା ॥୩୦॥ ତାଙ୍କୁ ଦେଖିବାମାତ୍ରେ ଚିତ୍ରକେତୁଙ୍କର ସମସ୍ତ ପାପ ନଷ୍ଟ ହୋଇଗଲା । ଅନ୍ତଃକରଣ ସ୍ୱଚ୍ଛ ଓ ନିର୍ମଳ ହେଲା । ହୃଦୟରେ ଭକ୍ତିଭାବ ବଢ଼ିଗଲା । ଚକ୍ଷୁଦ୍ୱୟ ପ୍ରେମାଶ୍ରୁରେ ଭରିଗଲା । ଶରୀରର ରୋମାବଳୀ ପୁଲକିତ ହୋଇଉଠିଲା । ସେ ଆଦିପୁରୁଷ ଭଗବାନ ଶେଷଙ୍କୁ ନମସ୍କାର କଲେ ॥୩୧॥ ଚକ୍ଷୁଦ୍ୱୟରୁ ପ୍ରେମପୂର୍ଣ୍ଣ ଲୋତକଧାରା ବହିଯାଇ ଭଗବାନଙ୍କ ପାଦ ରଖିବାର ଆସ୍ଥାନକୁ ଧୋଇଦେଲା । ପ୍ରବଳ ପ୍ରେମବଶତଃ ମୁହଁରୁ ବାକ୍ୟ ସ୍ଫୁରିଲା ନାହିଁ । ସେ ବହୁ ସମୟ ଧରି ଭଗବାନଙ୍କୁ ସ୍ତୁତି କରିପାରିଲେନାହିଁ ॥୩୨॥ କିଛି ସମୟପରେ ବହୁ କଷ୍ଟରେ ମନକୁ ବୁଦ୍ଧିଦ୍ୱାରା ସଂଯତ କରି ସେ କିଛି କହିବାପାଇଁ ଶକ୍ତି ସଞ୍ଚୟ କଲେ । ସମସ୍ତ ଇନ୍ଦ୍ରିୟ ଓ ବାହ୍ୟ ପ୍ରବୃତ୍ତିଙ୍କୁ ନିରୋଧ କରି ଭକ୍ତିଶାସ୍ତ୍ରରେ ବର୍ଣ୍ଣିତ ଅବିକଳରୂପ ସାକ୍ଷାତ୍ ଜଗତ୍‌ଗୁରୁ ଶେଷଦେବଙ୍କୁ ସ୍ତୁତି କରିବାକୁ ଲାଗିଲେ ॥୩୩॥

ଚିତ୍ରକେତୁ ସ୍ତୁତି କରି କହିଲେ, ହେ ଅଜିତ, ଜିତେନ୍ଦ୍ରିୟ ଓ ସମଦର୍ଶୀ ସାଧୁମାନେ ଆପଣଙ୍କ ହୃଦୟକୁ ଜୟ କରିଛନ୍ତି । ଯେଉଁମାନେ ନିଷ୍କାମ ଭାବରେ ଆପଣଙ୍କୁ ଆରାଧନା କରନ୍ତି, ଆପଣ ଅତିଶୟ କରୁଣାବଶରୁ ନିଜକୁ ସେମାନଙ୍କ ପାଖରେ ସମର୍ପଣ କରନ୍ତି ॥୩୪॥ ଜଗତର ସୃଷ୍ଟି, ସ୍ଥିତି ଓ ଲୟ ହେଉଚି ଆପଣଙ୍କର ବିଭୂତି । ବିଶ୍ୱନିର୍ମାତା ବ୍ରହ୍ମା ଆଦି ଲୋକପତି ଆପଣଙ୍କର ଅଂଶାନୁଅଂଶ । ତଥାପି ସେମାନେ ନିଜକୁ ଜଗତ୍‌କର୍ତ୍ତା ମନେ କରି ବୃଥା ସ୍ପର୍ଦ୍ଧାରେ ମାତିଥା'ନ୍ତି ॥୩୫॥ ଜଗତର ମୂଳକାରଣ କ୍ଷୁଦ୍ରାତିକ୍ଷୁଦ୍ର ପରମାଣୁଠାରୁ ଆରମ୍ଭ କରି ବୃହତ୍ତମ ମହତ୍ ପର୍ଯ୍ୟନ୍ତ ଆପଣ ସମସ୍ତ ବସ୍ତୁର ଆଦି, ଅନ୍ତ ଓ ମଧ୍ୟରେ ବିଦ୍ୟମାନ । ତେଣୁ ଆପଣ ଧ୍ରୁବ । ଆପଣଙ୍କର ଆଦି, ଅନ୍ତ ଓ ମଧ୍ୟ ନାହିଁ । କାର୍ଯ୍ୟମାନଙ୍କର ଆଦିରେ ଓ ଅନ୍ତରେ ଥିବାଯୋଗୁଁ ଅନ୍ତରାଳରେ ମଧ୍ୟ ଆପଣ ଧ୍ରୁବରୂପେ ରହିଥା'ନ୍ତି ॥୩୬॥ ଏହି ବ୍ରହ୍ମାଣ୍ଡକୁ ଏହାର ଦଶ ଦଶଗୁଣ ଅଧିକ ପୃଥିବୀ ଆଦି ସାତ ଲୋକ ଘେରି ରହିଚି । ଏହିପରି କୋଟିକୋଟି ବ୍ରହ୍ମାଣ୍ଡ ରହିଚି । ତେଣୁ ସେମାନଙ୍କ ସହିତ ଏକ ପରମାଣୁତୁଲ୍ୟ ଏହି ବ୍ରହ୍ମାଣ୍ଡ ଆପଣଙ୍କ ମଧ୍ୟରେ ଘୂରି ବୁଲୁଚି । ଆପଣଙ୍କୁ କିଏ କଳନା କରି ପାରିବ ? ଆପଣ ସ୍ୱୟଂ ଅନନ୍ତ ॥୩୭॥ ବିଷୟତୃଷ୍ଣାରେ ବ୍ୟାକୁଳ ନରପଶୁମାନେ ଆପଣଙ୍କୁ ଉପାସନା ନ କରି ଆପଣଙ୍କ ବିଭୂତି ସ୍ୱରୂପ ଇନ୍ଦ୍ରାଦି ଦେବତାମାନଙ୍କୁ ପୂଜା କରିଥା'ନ୍ତି । ରାଜକୁଳ ନଷ୍ଟ ହେଲେ ତାହା ଉପରେ ନିର୍ଭରଶୀଳ ଭୃତ୍ୟ ଓ ଅନୁଚରଙ୍କ ଜୀବିକା ନଷ୍ଟ ହୋଇଯାଏ । ସେହିପରି ଏହି ଉପାସ୍ୟ ଦେବତାଙ୍କ ପ୍ରଭାବ କ୍ଷୀଣ ହୋଇଗଲେ, ସେମାନଙ୍କ ପ୍ରଦତ୍ତ ଭୋଗ୍ୟବସ୍ତୁ ମଧ୍ୟ ନଷ୍ଟ ହୋଇଯା'ନ୍ତି ॥୩୮॥

ହେ ପରମାତ୍ମା, ଆପଣ ନିର୍ଗୁଣ ଓ ଜ୍ଞାନସ୍ୱରୂପ ତେଣୁ ସତ୍ତ୍ୱ, ରଜ ଓ ତମ ଗୁଣଦ୍ୱାରା ଚାଳିତ ସକାମ ବ୍ୟକ୍ତି ଆପଣଙ୍କୁ ଏକାଗ୍ର ଭାବରେ ଆରାଧନା କଲେ ତାହା କ୍ରମେ ନିଷ୍କାମ ଭକ୍ତିରେ ପରିଣତ ହୁଏ ଏବଂ ତାର ପୁନର୍ଜନ୍ମ ହୁଏ ନାହିଁ; ଯେପରିକି ଭଜା ହୋଇଥିବା ମଞ୍ଜି ଲଗାଇଲେ ସେଥିରୁ ଗଛ ହୁଏ ନାହିଁ ॥୩୯॥ ହେ ଅଜିତ, ଯେତେବେଳେ ଆପଣ ଅନିନ୍ଦ୍ୟ ଭାଗବତ ଧର୍ମର ଉପଦେଶ ଦେଇଥିଲେ, ସେତେବେଳେ ଆପଣ ସମସ୍ତଙ୍କୁ ଜୟ କରିଥିଲେ । କାରଣ ଅକିଞ୍ଚନ ଆତ୍ମାରାମ ମୁନିମାନେ ମୋକ୍ଷଲାଭପାଇଁ ସେହି ଭାଗବତ ଧର୍ମର ଉପାସନା କରନ୍ତି ॥୪୦॥ ଅନ୍ୟ ଧର୍ମରେ 'ମୁଁ ମୋର' କିମ୍ବା 'ତୁ ତୋର' ଏପରି ଅହମିକାପୂର୍ଣ୍ଣ ବୁଦ୍ଧିକୁ ପ୍ରଶ୍ରୟ ଦିଆଯାଏ । କିନ୍ତୁ ଭାଗବତ ଧର୍ମରେ ତାହା ନ ଥାଏ । ଯାହା ବିଷମବୁଦ୍ଧିକୁ ଉତ୍ସାହିତ କରିଥାଏ, ତାହା ହେଉଚି ଅଶୁଦ୍ଧ, କ୍ଷୟିଷ୍ଣୁ ଏବଂ ଅଧର୍ମପୂର୍ଣ୍ଣ ॥୪୧॥ ସେହି ସକାମ ଧର୍ମ ହେଉଚି ନିଜର ଓ ପରର ଅନିଷ୍ଟକାରୀ । ସେଥିରେ କାହାରି ମଙ୍ଗଳ ହୁଏ ନାହିଁ । ନିଜର ଅପକାର ଘଟିବାରୁ କ୍ରୋଧ ଜାତ ହୁଏ ଏବଂ ଅନ୍ୟାକୁ ପୀଡ଼ା ଦେବା ଦ୍ୱାରା କେବଳ ପାପ

ଓ ପାପରୁ କ୍ରୋଧ ଜାତ ହୁଏ ॥୪୨॥ ସ୍ଥାବର ଓ ଜଙ୍ଗମ ସମସ୍ତଙ୍କପ୍ରତି ସମଦର୍ଶୀ ସାଧୁମାନେ ଯେଉଁ ଭାଗବତଧର୍ମର ଉପାସନା କରନ୍ତି, ଆପଣ ନିଜ ଦୃଷ୍ଟିବଳରେ ତାହା କୀର୍ତ୍ତନ କରିଥିଲେ । ଆପଣଙ୍କର ଦୃଷ୍ଟି ପରମାର୍ଥରୁ କେବେ ବିଚଳିତ ହୁଏ ନାହିଁ ॥୪୩॥ ପ୍ରଭୁ, ଆପଣଙ୍କ ଦର୍ଶନମାତ୍ରେ ସବୁ ପାପ କ୍ଷୟ ହୋଇଯାଏ । ଏହା କିଛି ଅଘଟଣ କଥା ନୁହେଁ; କାରଣ ଆପଣଙ୍କ ନାମ ଥରେ ମାତ୍ର ଶୁଣିଲେ, ଅଧମ ଚାଣ୍ଡାଳ ମଧ୍ୟ ସଂସାରରୁ ତରିଯାଏ ॥୪୪॥ ପ୍ରଭୁ, ଆପଣଙ୍କର ସାକ୍ଷାତ୍‌ଲାଭ ଦ୍ୱାରା ମୋ' ଚିତ୍ତର ସମସ୍ତ ମଳିନତା ଦୂର ହୋଇଯାଇଚି । ଦେବର୍ଷି ନାରଦ ଆପଣଙ୍କର ଅନନ୍ୟଭକ୍ତ । ସେ ଯାହା କହିଥିଲେ, ତାହା କେବେ ଅନ୍ୟଥା ହେବାର ନୁହେଁ ॥୪୫॥ ଅନନ୍ତ, ଆପଣ ସମସ୍ତ ଜଗତର ଆତ୍ମା । ତେଣୁ ଲୋକମାନେ ଯାହା କରନ୍ତି, ତାହା ସବୁ ଆପଣ ଜାଣନ୍ତି । ସୂର୍ଯ୍ୟ ଆଗରେ ଜୁଳୁଜୁଳିଆ ପୋକର ଅବସ୍ଥା ଯାହା, ହେ ପରମଗୁରୁ, ଆପଣଙ୍କ ଆଗରେ ମୋର ଅବସ୍ଥା ସେଇଆ --ମୁଁ କଣ ବା ପ୍ରକାଶ କରିପାରିବି ? ॥୪୬॥ ଆପଣ ସମସ୍ତ ଜଗତର ହର୍ତ୍ତା, କର୍ତ୍ତା ଓ ବିଧାତା । ମନ୍ଦଯୋଗୀମାନେ ଭେଦବୁଦ୍ଧିଯୋଗୁଁ ଆପଣଙ୍କ ସ୍ୱରୂପ ଜାଣି ପାରନ୍ତିନାହିଁ । ଆପଣ ପରମହଂସରୂପୀ ନାରାୟଣ । ଆପଣଙ୍କୁ ମୋର ନମସ୍କାର ॥୪୭॥ ଯେ କର୍ମରତ ହେଲେ ବ୍ରହ୍ମାଆଦି ଲୋକପାଳ କର୍ମ କରିବାକୁ ସମର୍ଥ ହୁଅନ୍ତି, ଯେ ଦୃଷ୍ଟି ପକାଇଲେ ଜ୍ଞାନେନ୍ଦ୍ରିୟଗଣ ନିଜ ନିଜ ବିଷୟଗ୍ରହଣରେ ସମର୍ଥ ହୁଅନ୍ତି, ସାମାନ୍ୟ ସୋରିଷ କଣା ତୁଲ୍ୟ ଯେ ଏହି ଭୂମଣ୍ଡଳକୁ ଶିରରେ ଧାରଣ କରିଛନ୍ତି, ସେହି ସମସ୍ତଶୀର୍ଷ ଆପଣଙ୍କୁ ମୁଁ ନମସ୍କାର କରୁଚି ॥୪୮॥

ଶ୍ରୀ ଶୁକଦେବ କହିଲେ, କୁରୁଶ୍ରେଷ୍ଠ ପରିକ୍ଷିତ, ବିଦ୍ୟାଧରଙ୍କ ଅଧିପତି ଚିତ୍ରକେତୁଙ୍କ ସ୍ତୁତିରେ ପ୍ରସନ୍ନ ହୋଇ ଭଗବାନ ଅନନ୍ତ ଏହିପରି କହିଲେ ॥୪୯॥ ଭଗବାନ ଅନନ୍ତ କହିଲେ, ନାରଦ ଓ ଅଙ୍ଗିରା ମୋ ବିଷୟରେ ତୁମକୁ ଯେଉଁ ଉପଦେଶ ଦେଇଥିଲେ, ତାହାକୁ ଗ୍ରହଣ କରି ଏବଂ ନାରଦ ଦେଇଥିବା ମନ୍ତ୍ରବିଦ୍ୟାକୁ ଅଭ୍ୟାସ କରି ତୁମେ ମୋର ଦର୍ଶନ ଲାଭ କରିଛ । ବର୍ତ୍ତମାନ ତୁମେ ସମ୍ପୂର୍ଣ୍ଣ ସିଦ୍ଧ ॥୫୦॥ ମୁଁ ସମସ୍ତ ପ୍ରାଣୀଙ୍କ ରୂପରେ ବିଦ୍ୟମାନ; ମୁଁ ପ୍ରାଣୀମାନଙ୍କ ଆତ୍ମା ଓ ପାଳନକର୍ତ୍ତା । ଶବ୍ଦବ୍ରହ୍ମ (ବେଦ) ଓ ପରଂବ୍ରହ୍ମ (ସଚ୍ଚିଦାନନ୍ଦ ଭଗବାନ) -- ଏହି ଉଭୟ ହେଉଛି ମୋର ସନାତନ ସ୍ୱରୂପ ॥୫୧॥ ବିଶ୍ୱସୃଷ୍ଟିରେ ଜୀବ ହେଉଛି ଭୋକ୍ତା ଏବଂ ବିଶ୍ୱ ପ୍ରପଞ୍ଚ ହେଉଛି ତାହାର ଭୋଗ୍ୟ । ଏହି ଉଭୟଙ୍କ ମଧ୍ୟରେ ମୁଁ ପରିବ୍ୟାପ୍ତ ହୋଇ ରହିଛି । ଉଭୟ ମୋଠାରେ ପ୍ରତିଷ୍ଠିତ ହେବା ପାଇଁ କଳ୍ପିତ ହୋଇଛନ୍ତି ॥୫୨॥ ସୁଷୁପ୍ତ ବ୍ୟକ୍ତି ସ୍ୱପ୍ନରେ ସମ୍ପୂର୍ଣ୍ଣ ଜଗତକୁ ଦେଖେ ଏବଂ ସ୍ୱପ୍ନ ଶେଷ ହୋଇଗଲେ ନିଦରୁ ଉଠି ସଂସାରର ଗୋଟିଏ କୋଣରେ ରହିଛି ବୋଲି ଜାଣେ -- ଏହି ଉଭୟ ଅବସ୍ଥା (ସ୍ୱପ୍ନ ଓ ଜାଗରଣ) ହେଉଛି ପରମେଶ୍ୱରଙ୍କ ମାୟା । ଏହା ଜାଣି ପରମେଶ୍ୱରଙ୍କୁ ସ୍ମରଣ କରିବା ଉଚିତ ॥୫୩-୫୪॥ ଲୋକ ସୁପ୍ତ ଅବସ୍ଥାରେ ଯାହା ସାହାଯ୍ୟରେ ନିଜର ନିଦ୍ରା ଏବଂ ଅତୀନ୍ଦ୍ରିୟ ସୁଖ ଅନୁଭବ କରେ, ମୋତେ ସେହି ବ୍ରହ୍ମସ୍ୱରୂପ ଆତ୍ମା ବୋଲି ମନେ କର ॥୫୫॥ ବ୍ୟକ୍ତି ନିଦ୍ରା ଓ ଜାଗରଣ, ଉଭୟ ଅବସ୍ଥାକୁ ଅନୁଭବ କରେ । ସେ ଏହି ଉଭୟ ଅବସ୍ଥାର ଅନୁଗତ ହେଲେ ମଧ୍ୟ ଉଭୟଠାରୁ ପୃଥକ୍ । ଏହି ଜ୍ଞାନ ହିଁ ହେଉଛି ପରଂବ୍ରହ୍ମ ॥୫୬॥ ଅନାଦି କାଳ ଧରି ରହିଥିବା ଅବିଦ୍ୟାବଶରୁ ଜୀବ ଯଦି ମୋର ଏହି ବ୍ରହ୍ମ ସ୍ୱରୂପକୁ ଭୁଲିଯାଏ ଏବଂ ନିଜଠାରୁ ତାହାକୁ ଭିନ୍ନ ବୋଲି ଦେଖେ, ତା'ହେଲେ ସଂସାରଚକ୍ରରେ ଘୂରି ତାକୁ ବାରମ୍ବାର ଜନ୍ମମୃତ୍ୟୁ ଭୋଗ କରିବାକୁ ପଡ଼େ ॥୫୭॥ ମନୁଷ୍ୟଜନ୍ମରେ ଶାସ୍ତ୍ରର ଜ୍ଞାନ ଓ ପ୍ରତ୍ୟକ୍ଷ ଜ୍ଞାନ -- ଉଭୟ ସମ୍ଭବ । ମନୁଷ୍ୟଜନ୍ମ ଲାଭ କରି ସଂସାରରେ ଯେଉଁ ବ୍ୟକ୍ତି ଆତ୍ମତତ୍ତ୍ୱକୁ ବୁଝିପାରେ ନାହିଁ, ତାକୁ କେବେହେଲେ ଶାନ୍ତି ମିଳେ ନାହିଁ ॥୫୮॥ ପ୍ରବୃତ୍ତିମାର୍ଗରେ ଅତିଶୟ ଦୁଃଖ ଭୋଗ କରିବାକୁ ହୁଏ ଓ କଷ୍ଟ କଲେ ମଧ୍ୟ ବିପରୀତ ଫଳ ଘଟେ; ତାହା ଚିନ୍ତାକରି ବିଜ୍ଞବ୍ୟକ୍ତି ସକାମ କର୍ମରୁ ନିବୃତ୍ତ ହେବା ଉଚିତ ॥୫୯॥ ସୁଖଲାଭ ଓ ଦୁଃଖର ନିବୃତ୍ତି ପାଇଁ ସ୍ୱାମୀ-ସ୍ତ୍ରୀ ଉଭୟଙ୍କୁ ବହୁପ୍ରକାର କର୍ମାନୁଷ୍ଠାନ କରିବାକୁ ପଡ଼େ । କିନ୍ତୁ ତଦ୍ଦ୍ୱାରା ସୁଖଲାଭ ହୁଏ ନାହିଁ ବା ଦୁଃଖରୁ ନିବୃତ୍ତି ମିଳେ ନାହିଁ ॥୬୦॥ ପଣ୍ଡିତମ୍ମନ୍ୟ ବ୍ୟକ୍ତିମାନେ ବିପରୀତ ଫଳ ଲାଭ କରନ୍ତି । କିନ୍ତୁ ଆତ୍ମାର ସୂକ୍ଷ୍ମ ସ୍ୱରୂପ ଓ ତୁରୀୟ ଗତି ଯାହା ସୁଷୁପ୍ତି, ସ୍ୱପ୍ନ ଓ ଜାଗରଣରୁ ପୃଥକ୍ ତାହା

ସମ୍ପର୍କରେ ଅବଗତ ହୋଇ ଯେ ନିଜର ବିବେକ ବଳରେ ଇହଲୋକ ଓ ପରଲୋକର କର୍ମଫଳ ଲବ୍ଧ ବିଷୟବାସନାରେ ଆସକ୍ତି ରଖେ ନାହିଁ ଏବଂ ଜ୍ଞାନ ଓ ବିଜ୍ଞାନଦ୍ୱାରା ଯାହାର ଚିତ୍ତ ନିର୍ମଳ ଓ ତୃପ୍ତ ସେ ମୋର ଭକ୍ତ ହୋଇଯାଏ ।।୬୧-୬୨।। ଯୋଗୀଗଣ ଜୀବାତ୍ମା ଓ ପରମାତ୍ମାଙ୍କୁ ଏକ ବୋଲି ବୁଝି ତାହା ହିଁ ତାଙ୍କର ପରମ ପୁରୁଷାର୍ଥ ବୋଲି ସର୍ବତୋଭାବେ ହୃଦୟଙ୍ଗମ କରିବା ଉଚିତ ।।୬୩।। ରାଜା, ତୁମେ ମନୋଯୋଗପୂର୍ବକ ଶ୍ରଦ୍ଧାସହକାରେ ମୋର ଉପଦେଶକୁ ମନେ ରଖିଲେ ଶୀଘ୍ର ଜ୍ଞାନବିଜ୍ଞାନସମ୍ପନ୍ନ ହୋଇ ସିଦ୍ଧି ଲାଭ କରିପାରିବ ।।୬୪।। ଶ୍ରୀ ଶୁକଦେବ କହିଲେ, ଏହିପରି ଜଗଦ୍‌ଗୁରୁ ଭଗବାନ ଅନନ୍ତ ଚିତ୍ରକେତୁଙ୍କୁ ଆଶ୍ୱାସନା ଦେଇ ଦେଖୁ ଦେଖୁ ସେଠାରୁ ଅନ୍ତର୍ଦ୍ଧାନ ହୋଇଗଲେ ।।୬୫।।

## ସପ୍ତଦଶ ଅଧ୍ୟାୟ

# ଚିତ୍ରକେତୁଙ୍କୁ ପାର୍ବତୀଙ୍କର ଅଭିଶାପ

ଶ୍ରୀ ଶୁକଦେବ କହିଲେ, ପରିକ୍ଷିତ, ବିଦ୍ୟାଧର ଚିତ୍ରକେତୁ ଭଗବାନ ସଙ୍କର୍ଷଣ ଯେଉଁ ଦିଗରେ ଅନ୍ତର୍ହିତ ହୋଇଗଲେ, ସେହି ଦିଗକୁ ନମସ୍କାର କରି ଆକାଶମାର୍ଗରେ ଭ୍ରମଣ କରିବାକୁ ଲାଗିଲେ ।।୧।। ରାଜା ଚିତ୍ରକେତୁଙ୍କ ଶରୀରର ବଳ ଓ ଇନ୍ଦ୍ରିୟର ଶକ୍ତି ଅବ୍ୟାହତ ଥିଲା ଏବଂ ସେ ଯୋଗସାଧନାରେ ଦକ୍ଷତା ଅର୍ଜନ କରିଥିଲେ । ସିଦ୍ଧ, ଚାରଣ ଓ ମୁନିମାନେ ସର୍ବଦା ତାଙ୍କୁ ସ୍ତୁତି କରୁଥିଲେ । ଅଷ୍ଟ କୁଳାଚଳମାନଙ୍କ ମଧ୍ୟରେ ଶ୍ରେଷ୍ଠ ସୁମେରୁ ପର୍ବତର ଗୁହାମାନଙ୍କରେ ସେ ବହୁ ଲକ୍ଷ ବର୍ଷ ବିହାର କରି ଭଗବାନ ଶ୍ରୀହରିଙ୍କର ଲୀଳା ଓ ଗୁଣଗାନ କରିବାପାଇଁ ବିଦ୍ୟାଧରମାନଙ୍କୁ ଉତ୍ସାହିତ କରିଥିଲେ ।।୨-୩।। ଥରେ ଚିତ୍ରକେତୁ ଭଗବାନ ବିଷ୍ଣୁଙ୍କ ପ୍ରଦତ୍ତ ଏକ ପ୍ରଭାମୟ ରଥ ଆରୋହଣ କରି ଆକାଶମାର୍ଗରେ ଯାଉ ଯାଉ ଦେଖିଲେ ଯେ ବଡ଼ବଡ଼ ମୁନିମାନଙ୍କର ଏକ ସଭାରେ ଭଗବାନ୍ ଶଙ୍କର ସିଦ୍ଧ ଓ ଚାରଣମାନଙ୍କଦ୍ୱାରା ପରିବେଷ୍ଟିତ ହୋଇ ନିଜ କୋଳରେ ପାର୍ବତୀଙ୍କୁ ଧରି ବସିଛନ୍ତି ଏବଂ ଗୋଟିଏ ହାତରେ ତାଙ୍କୁ ଆଲିଙ୍ଗନ କରିଛନ୍ତି । ଚିତ୍ରକେତୁ ତାଙ୍କ ପାଖପର୍ଯ୍ୟନ୍ତ ଯାଇ ପାର୍ବତୀ ଯେପରି ଶୁଣିପାରିବେ, ଉଚ୍ଚ ସ୍ୱରରେ ପରିହାସ କରି ସେହିପରି କହିଲେ -- ।।୪-୫।। ଚିତ୍ରକେତୁ କହିଲେ, ଇଏ ଲୋକମାନଙ୍କର ସାକ୍ଷାତ୍ ଗୁରୁ ଏବଂ ଜୀବମାନଙ୍କ ଧର୍ମର ପ୍ରବକ୍ତା ମଧ୍ୟରେ ଶ୍ରେଷ୍ଠହୋଇ ନିଜ ସ୍ତ୍ରୀକୁ ସାଙ୍ଗରେ ଧରି ଏହିପରି ଆଲିଙ୍ଗନ କରି ବସିଛନ୍ତି ।।୬।। ଏ ହେଉଛନ୍ତି ଜଟାଧାରୀ, ମହାଯୋଗୀ, ଧର୍ମର ଉପଦେଷ୍ଟା ଏବଂ ଏହି ସଭାର ନେତା; ଅଥଚ ନିର୍ଲ୍ଲଜ ଭାବରେ ସ୍ତ୍ରୀକୁ କୋଳରେ ଧରି ନୀଚ ଲୋକପରି ଆଚରଣ କରୁଛନ୍ତି ।।୭।। ନୀଚ ଲୋକମାନେ ତ ନିଜର ସ୍ତ୍ରୀମାନଙ୍କୁ ଅନ୍ତରାଳରେ ରଖନ୍ତି, କିନ୍ତୁ ଏହି ମହାବ୍ରତଧାରୀ ଯୋଗୀ ପୁରୁଷ ସଭାରେ ନିଜର ସ୍ତ୍ରୀକୁ କୋଳ କରି ବସିଛନ୍ତି ।।୮।।

ଶ୍ରୀ ଶୁକଦେବ କହିଲେ, ରାଜା ପରିକ୍ଷିତ, ଅଗାଧବୁଦ୍ଧିସମ୍ପନ୍ନ ଭଗବାନ ଶଙ୍କର ଚିତ୍ରକେତୁଙ୍କର ଏହି ପରିହାସ ବାକ୍ୟ ଶୁଣି ଅଳ୍ପ ହସି ନୀରବରେ ରହିଗଲେ ଏବଂ ସଭାରେ ବସିଥିବା ତାଙ୍କ ଅନୁଗାମୀ ସଦସ୍ୟମାନେ ମଧ୍ୟ ଚୁପ୍ ହୋଇ ରହିଲେ ।।୯।। ଭଗବାନ ଶଙ୍କରଙ୍କର ପ୍ରଭାବ କ'ଣ ତାହା ଚିତ୍ରକେତୁ ଜାଣି ନ ଥିଲେ । 'ମୁଁ ଜିତେନ୍ଦ୍ରିୟ' ବୋଲି ତାଙ୍କର ଅଭିମାନ ବଢ଼ି ଯାଇଥିଲା ଏବଂ ସେ ଅତିଶୟ ପ୍ରଗଳ୍ଭ ହୋଇପଡ଼ିଥିଲେ । ତେଣୁ ତାଙ୍କର ସେହି ଅଶାଳୀନ ମନ୍ତବ୍ୟ ଶୁଣି ଓ ଧୃଷ୍ଟତା ଦେଖି ଦେବୀ ପାର୍ବତୀ କ୍ରୁଦ୍ଧ ହୋଇ କହିଲେ ।।୧୦।। ଆମେ ସବୁ ଦୁଷ୍ଟ ଓ ନିର୍ଲଜ୍ଜ ! ଆମକୁ ତିରସ୍କାର କରିବାପାଇଁ ଶାସନଦଣ୍ଡ ଧରି ତା'ହେଲେ ଇଏ ଆସିଯାଇଛନ୍ତି ! ।।୧୧।। ପଦ୍ମଯୋନି ବ୍ରହ୍ମା, ଭୃଗୁ, ନାରଦ ଆଦି ବ୍ରହ୍ମାଙ୍କର ପୁତ୍ର, ସନତ୍‌କୁମାର, କପିଳ ଓ ମନୁ -- ସେମାନେ କେହି ଧର୍ମର ରହସ୍ୟ ଜାଣନ୍ତି ନାହିଁ ! କାରଣ ସେମାନେ କେବେ ଭଗବାନ ଶଙ୍କରଙ୍କୁ ଧର୍ମମର୍ଯ୍ୟାଦା

ଲଂଘନ କରୁଛନ୍ତି ବୋଲି କହି ନିଷେଧ କରି ନାହାନ୍ତି ॥୧୨॥ ଯାହାଙ୍କର ପାଦପଦ୍ମ ଦ୍ୱୟକୁ ବ୍ରହ୍ମାଦି ଦେବତାମାନେ ଧ୍ୟାନ କରନ୍ତି, ଯେ ଜଗଦ୍‌ଗୁରୁ, ଜଗତ୍‌ପୂଜ୍ୟ ଓ ମଙ୍ଗଳମୟ ଧର୍ମର ସାକ୍ଷାତ୍ ସ୍ୱରୂପ, ଏହି କ୍ଷତ୍ରିୟାଧମ ତାହାଙ୍କୁ ତିରସ୍କାର କରି ସଭାସଦମାନଙ୍କୁ ଅପମାନିତ କରଛି । ତେଣୁ ଏହି ଧୃଷ୍ଟ ନିଶ୍ଚିତ ଭାବରେ ଦଣ୍ଡନୀୟ ॥୧୩॥ ନିଜକୁ ବଡ଼ ବୋଲି ଭାବି ଏହାର ଗର୍ବ ବଢ଼ିଯାଇଛି । ଏହି ମୂର୍ଖ ଭଗବାନଙ୍କର ଚରଣକମଳ ପାଖରେ ରହିବାପାଇଁ ଯୋଗ୍ୟ ନୁହେଁ । କାରଣ ଶ୍ରେଷ୍ଠ ସତ୍‌ପୁରୁଷମାନେ ସେହି ପାଦପଦ୍ମଯୁଗଳର ଉପାସନା କରନ୍ତି ॥୧୪॥ ରେ ଦୁର୍ମତି ! ତୁ ପାପମୟ ଅସୁର ଯୋନିରେ ଜନ୍ମ ହୁଅ । ତଦ୍ୱାରା ପୁତ୍ର, ତୁ କୌଣସି ମହାପୁରୁଷଙ୍କପ୍ରତି ଆଉ ଅପରାଧ କରିବୁ ନାହିଁ ॥୧୫॥ ଶ୍ରୀ ଶୁକଦେବ କହିଲେ, ପରିକ୍ଷିତ, ଅଭିଶପ୍ତ ଚିତ୍ରକେତୁ ବିମାନରୁ ଓହ୍ଲାଇପଡ଼ି ମୁଣ୍ଡ ନୁଆଁଇ ପାର୍ବତୀଙ୍କୁ ସନ୍ତୁଷ୍ଟ କରିବାକୁ ଲାଗିଲେ ॥୧୬॥

ଚିତ୍ରକେତୁ କହିଲେ, ମାତା, ଆପଣଙ୍କ ଅଭିଶାପକୁ ମୁଁ କୃତାଞ୍ଜଳି ହୋଇ ଗ୍ରହଣ କରୁଛି । ଦେବତାମାନେ ମନୁଷ୍ୟମାନଙ୍କୁ ଯାହା କହନ୍ତି, ତାହା ମନୁଷ୍ୟଙ୍କ ପୂର୍ବକର୍ମାର୍ଜିତ ଫଳର ସୂଚନା ଦିଏ ॥୧୭॥ ଅଜ୍ଞାନଦ୍ୱାରା ମୋହିତ ଜୀବ ସଂସାରଚକ୍ରରେ ଘୂରି ଘୂରି ସବୁବେଳେ ସବୁସ୍ଥାନରେ ସୁଖ ଓ ଦୁଃଖ ଭୋଗ କରିଥାଏ ॥୧୮॥ ନିଜର ଆତ୍ମା ବା ଅନ୍ୟ କେହି ଏହି ସୁଖଦୁଃଖର କର୍ତ୍ତା ନୁହେଁ । କେବଳ ଅଜ୍ଞବ୍ୟକ୍ତି ନିଜକୁ ବା ଅନ୍ୟକୁ ସୁଖଦୁଃଖର କର୍ତ୍ତା ବୋଲି ମନେ କରେ ॥୧୯॥ ଏହି ଜଗତ ହେଉଛି ସତ୍ତ୍ୱ, ରଜ ଓ ତମୋଗୁଣର ସ୍ୱାଭାବିକ ପ୍ରବାହ । ଏ ସଂସାରରେ ଅଛି ଅଭିଶାପ କିମ୍ବା ଅନୁଗ୍ରହ; ସୁଖ କିମ୍ବା ଦୁଃଖର କ'ଣ ମାନେ ଅଛି ? ॥୨୦॥ ସଂସାର-ବନ୍ଧନ ଓ ମୋକ୍ଷରୁ ଅତୀତ ଭଗବାନ ନିଜର ମାୟାବଳରେ ପ୍ରାଣୀମାନଙ୍କ ବନ୍ଧନ, ମୋକ୍ଷ, ସୁଖ ଓ ଦୁଃଖର କର୍ତ୍ତା ହୋଇଥାନ୍ତି ॥୨୧॥ ସମସ୍ତ ପ୍ରାଣୀଙ୍କ ପ୍ରତି ସମଦର୍ଶୀ ଭଗବାନଙ୍କର କେହି ପ୍ରିୟ-ଅପ୍ରିୟ, ଜ୍ଞାତି-ବନ୍ଧୁ, ନିଜ-ପର ନ ଥାନ୍ତି । ସୁଖ ପ୍ରତି ଅନାସକ୍ତ ସେହି ନିର୍ଲିପ୍ତ ପୁରୁଷଙ୍କର କାହିଁକି କ୍ରୋଧ ଜାତ ହେବ ? ॥୨୨॥ ତଥାପି ଭଗବାନଙ୍କର ମାୟାଶକ୍ତିଯୋଗୁଁ ପାପ-ପୁଣ୍ୟର ଫଳସ୍ୱରୂପ ପ୍ରାଣୀମାନଙ୍କର ସୁଖ, ଦୁଃଖ, ହିତ, ଅହିତ, ବନ୍ଧନ, ମୋକ୍ଷ, ଜନ୍ମ, ମୃତ୍ୟୁ ଓ ସଂସାରଭୋଗ ଆଦି ସମ୍ଭବ ହୋଇଥାଏ ॥୨୩॥ ପତିବ୍ରତା ଦେବୀ ! ମୁଁ ଶାପରୁ ମୁକ୍ତ ହେବାପାଇଁ ଆପଣଙ୍କୁ ପ୍ରସନ୍ନ କରୁ ନାହିଁ । ମୋର ଉକ୍ତିକୁ ଆପଣ ଅନ୍ୟାୟ ଓ ଅନୁଚିତ ମନେକରିଥିବାଯୋଗୁଁ ମୁଁ ଆପଣଙ୍କୁ କ୍ଷମା ମାଗୁଚି ॥୨୪॥ ଶ୍ରୀ ଶୁକଦେବ କହିଲେ, ପରିକ୍ଷିତ, ଏହିପରି ମହାଦେବ ଓ ପାର୍ବତୀଙ୍କୁ ସନ୍ତୁଷ୍ଟ କରି ଶତ୍ରୁହନ୍ତା ଚିତ୍ରକେତୁ ନିଜର ରଥରେ ବସି ସେଠାରୁ ପ୍ରସ୍ଥାନ କଲେ । ମହାଦେବ ଓ ପାର୍ବତୀ ଆଶ୍ଚର୍ଯ୍ୟ ହୋଇ ଚାହିଁ ରହିଲେ ॥୨୫॥ ଏହାପରେ ଭଗବାନ ଶଙ୍କର ଦେବତା, ଋଷି, ଦୈତ୍ୟ, ସିଦ୍ଧ ଓ ନିଜର ପାର୍ଷଦମାନଙ୍କ ଆଗରେ ଦେବୀ ପାର୍ବତୀଙ୍କୁ ଏହିପରି କହିଲେ -- ॥୨୬॥

ଭଗବାନ ଶଙ୍କର କହିଲେ, ସୁନ୍ଦରୀ! ଯେଉଁମାନେ ଅଦ୍ଭୁତକର୍ମା ଭଗବାନ ଶ୍ରୀହରିଙ୍କର ଦାସାନୁଦାସ, ସେମାନେ ମହାତ୍ମା । ସେମାନଙ୍କର କୌଣସି ବସ୍ତୁରେ ସ୍ପୃହା ନ ଥାଏ । ଏବେ ତୁମେ ତାଙ୍କର ପ୍ରଭାବ ଦେଖିଲ ତ ! ॥୨୭॥ ଯେଉଁମାନେ ଭଗବାନଙ୍କର ଶରଣାଗତ, ତାଙ୍କର କାହାରିକୁ କୌଣସି ଭୟ ନଥାଏ । ସେମାନେ ସମଦର୍ଶୀ । ସ୍ୱର୍ଗ, ମୋକ୍ଷ, ନରକ ଆଦି ସବୁ କିଛି ସେମାନଙ୍କପାଇଁ ସମାନ ॥୨୮॥ ଈଶ୍ୱରଙ୍କ ଲୀଳାରୁ ଜୀବମାନେ ଦେହ ଧାରଣ କରନ୍ତି ଏବଂ ସେଥିପାଇଁ ସେମାନେ ସୁଖ, ଦୁଃଖ, ଜନ୍ମ, ମୃତ୍ୟୁ, ଶାପ ଓ ଅନୁଗ୍ରହ ଆଦି ଦ୍ୱନ୍ଦ୍ୱ ଭୋଗ କରନ୍ତି ॥୨୯॥ ଅବିବେକୀ ବ୍ୟକ୍ତିର ଗୁଣ-ଦୋଷାଦିର ଭେଦବୁଦ୍ଧି ଥାଏ । ତେଣୁ ସେ ସ୍ୱପ୍ନରେ ଯାହା ଦେଖେ, ସେଥିରେ ତା'ର ସୁଖ-ଦୁଃଖର ଭ୍ରମ ଜାତହୁଏ ଏବଂ ଜାଗ୍ରତ ଅବସ୍ଥାରେ ମାଳାକୁ ଦେଖି କେତେବେଳେ ସେ ସର୍ପ ବା କେତେବେଳେ ରଜ୍ଜୁ ବୋଲି ଭ୍ରମ କରିଥାଏ ॥୩୦॥ ଭଗବାନ ବାସୁଦେବଙ୍କ ପ୍ରତି ଯେଉଁମାନଙ୍କର ଅଚଳା ଭକ୍ତି ରହିଥାଏ, ସେମାନେ ସ୍ୱତଃ ଜ୍ଞାନ ଓ ବୈରାଗ୍ୟର ବଳ ଲାଭ କରିଥା'ନ୍ତି । ସେମାନେ ଅନ୍ୟ କାହାରିକୁ ଆଶ୍ରୟ କରିବାର ଆବଶ୍ୟକତା ଅନୁଭବ କରନ୍ତି ନାହିଁ ॥୩୧॥ ମୁଁ, ବ୍ରହ୍ମା, ସନତ୍‌କୁମାର, ନାରଦ, ବ୍ରହ୍ମାଙ୍କର ପୁତ୍ର ମରୀଚି ପ୍ରଭୃତି ମହର୍ଷି ଓ ପ୍ରଧାନ ପ୍ରଧାନ ଦେବତା -- ଯେଉଁମାନେ ଭଗବାନଙ୍କର ଅଂଶ ବା ଅଂଶର ଅଂଶ, ସେଇ ଆମେମାନେ

ତାଙ୍କର ଅଭିପ୍ରାୟ ବୁଝିପାରୁ ନାହିଁ । ଯେଉଁମାନେ ପୃଥକ୍ ପୃଥକ୍ ଈଶ୍ୱର ଥିବାରେ ବିଶ୍ୱାସ କରନ୍ତି, ସେମାନଙ୍କ ପକ୍ଷରେ ଭଗବାନଙ୍କର ସ୍ୱରୂପ ବୁଝିବା କଷ୍ଟକର ॥୩୨॥ ଭଗବାନଙ୍କର ପ୍ରିୟ, ଅପ୍ରିୟ ଆତ୍ମୀୟ ବା ପରକୀୟ କେହି ନ ଥାନ୍ତି । ସେ ସମସ୍ତ ପ୍ରାଣୀଙ୍କ ଅନ୍ତରରେ ଆତ୍ମା ସ୍ୱରୂପ ଅବସ୍ଥିତ । ତେଣୁ ଭଗବାନ ଶ୍ରୀହରି ସମସ୍ତ ପ୍ରାଣୀଙ୍କର ପ୍ରିୟ ॥୩୩॥ ଏହି ଚିତ୍ରକେତୁ ସମଦର୍ଶୀ, ଶାନ୍ତ ଓ ଶ୍ରୀହରିଙ୍କର ପ୍ରିୟ ଭକ୍ତ ରୂପେ ମହାଭାଗ୍ୟବାନ୍ ଅଟନ୍ତି । ମୁଁ ମଧ୍ୟ ସେହି ଶ୍ରୀହରିଙ୍କର ପ୍ରିୟପାତ୍ର । (ତେଣୁ ତାଙ୍କଠାରେ ମୋର କ୍ରୋଧ ହେଲା ନାହିଁ) ॥୩୪॥ ତେଣୁ ଏପରି ଶାନ୍ତ, ସମଦର୍ଶୀ, ଭଗବାନଙ୍କର ଭକ୍ତ ଏବଂ ମହାତ୍ମାଙ୍କ ଆଚରଣରେ ବିସ୍ମିତ ହେବାର କିଛି ନାହିଁ ॥୩୫॥ ଶ୍ରୀ ଶୁକଦେବ କହିଲେ, ଭଗବାନ ଶଙ୍କରଙ୍କଠାରୁ ଏହିପରି ଶୁଣି ଦେବୀ ପାର୍ବତୀଙ୍କର ଚିତ୍ତ ବିସ୍ମୟଶୂନ୍ୟ ହେଲା ଏବଂ ବୁଦ୍ଧି ଶାନ୍ତ ହୋଇଗଲା ॥୩୬॥

ଭଗବାନଙ୍କର ଭକ୍ତ ଚିତ୍ରକେତୁ ପ୍ରତି-ଅଭିଶାପ ଦେବାପାଇଁ ସମର୍ଥ ଥିଲେ ମଧ୍ୟ ଦେବୀଙ୍କର ଶାପକୁ ମୁଣ୍ଡ ନୁଆଁଇ ଗ୍ରହଣ କରିବାଦ୍ୱାରା ନିଜ ସାଧୁତାର ପରିଚୟ ଦେଲେ ॥୩୭॥ ସେ ଦାନବଯୋନି ପ୍ରାପ୍ତ ହୋଇ ତ୍ୱଷ୍ଟାଙ୍କ ଯଜ୍ଞରେ ଦକ୍ଷିଣାଗ୍ନିରୁ ଜାତ ହେଲେ । ଜ୍ଞାନବିଜ୍ଞାନସମ୍ପନ୍ନ ହୋଇ ସେ ବୃତ୍ର ନାମରେ ବିଖ୍ୟାତ ହେଲେ ॥୩୮॥ ଶ୍ରୀ ଶୁକଦେବ କହିଲେ, ପରିକ୍ଷିତ, ତୁମେ ଯାହା ମୋତେ ପଚାରିଥିଲ, ମୁଁ ସେ ସବୁର ଉତ୍ତର ଦେଇଦେଲି । ବୃତ୍ର ଅସୁର ହୋଇ ଜନ୍ମ ହେବାର କାରଣ ଏବଂ ସେ କାହିଁକି ଭଗବାନଙ୍କର ଭକ୍ତ ଥିଲା, ତାହା ସବୁ ମୁଁ ତୁମକୁ ଶୁଣାଇଲି ॥୩୯॥ ମହାତ୍ମା ଚିତ୍ରକେତୁଙ୍କର ଏହି ପବିତ୍ର ଇତିହାସରୂପ ବିଷ୍ଣୁଭକ୍ତଙ୍କ ମାହାତ୍ମ୍ୟ ଶ୍ରବଣ କଲେ ସଂସାରବନ୍ଧନରୁ ମୁକ୍ତି ମିଳେ ॥୪୦॥ ଯେଉଁ ବ୍ୟକ୍ତି ପ୍ରାତଃକାଳରୁ ଉଠି ବାକ୍‌ସଂଯମ ପୂର୍ବକ ଶ୍ରଦ୍ଧାର ସହିତ ଏହି ଇତିହାସ ପାଠ କରେ ସେ ଶ୍ରୀହରିଙ୍କ ପରମପଦ ଲାଭ କରେ ॥୪୧॥

## ଅଷ୍ଟାଦଶ ଅଧ୍ୟାୟ

# ଅଦିତି, ଦିତି ଓ ମରୁଦ୍‌ଗଣ

ଶ୍ରୀ ଶୁକଦେବ କହିଲେ, ସବିତାଙ୍କ ଔରସରେ ତାଙ୍କ ପତ୍ନୀ ପୃଶ୍ନିଙ୍କ ଗର୍ଭରୁ ଆଠଟି ସନ୍ତାନ ଜନ୍ମ ହେଲେ -- ସାବିତ୍ରୀ, ବ୍ୟାହୃତି, ତ୍ରୟୀ, ଅଗ୍ନିହୋତ୍ର, ପଶୁ, ସୋମ, ଚାତୁର୍ମାସ୍ୟ ଓ ପଞ୍ଚ ଯଜ୍ଞ ॥୧॥ ପରିକ୍ଷିତ, ଭଗଙ୍କର ପତ୍ନୀ ସିଦ୍ଧିଙ୍କ ଠାରୁ ମହିମା, ବିଭୁ ଓ ପ୍ରଭୁ ନାମକ ତିନୋଟି ପୁତ୍ର ଏବଂ 'ଆଶୀଷ୍' ନାମରେ ଏକ ଉତ୍ତମ କନ୍ୟା ଜନ୍ମଲାଭ କଲେ । ସେହି କନ୍ୟା ସୁନ୍ଦରୀ ଓ ସଦାଚାରିଣୀ ଥିଲେ ॥୨॥ ଧାତାଙ୍କର ଚାରିଜଣ ପତ୍ନୀ ହେଲେ - କୁହୂ, ସିନୀବାଲୀ, ରାକା ଓ ଅନୁମତି । କୁହୂଙ୍କର ସାୟଂ, ସିନୀବାଲୀଙ୍କର ଦର୍ଶ, ରାକାଙ୍କର ପ୍ରାତଃ ଏବଂ ଅନୁମତିଙ୍କର ପୂର୍ଣ୍ଣମାସ ପୁତ୍ର ହେଲେ ॥୩॥ ଧାତାଙ୍କ ପରେ ଅଦିତିଙ୍କ ଅଷ୍ଟମପୁତ୍ର ହେଲେ ବିଧାତା । ବିଧାତାଙ୍କର ଭାର୍ଯ୍ୟା ହେଲେ କ୍ରିୟା । ତାଙ୍କ ଔରସରେ କ୍ରିୟାଙ୍କ ଗର୍ଭରୁ ପୁରୀଷ୍ୟ ନାମକ ପଞ୍ଚବିଧ ଅଗ୍ନିଙ୍କର ଜନ୍ମ ହେଲା । ବରୁଣଙ୍କ ପତ୍ନୀଙ୍କର ନାମ ଚର୍ଷଣୀ । ତାଙ୍କ ଗର୍ଭରୁ ଭୃଗୁ ମୁନି ପୁଣି ଜନ୍ମଗ୍ରହଣ କଲେ । ସେ ପୂର୍ବକଳ୍ପରେ ବ୍ରହ୍ମାଙ୍କର ପୁତ୍ର ଥିଲେ ॥୪॥ ମହାଯୋଗୀ ବାଲ୍ମୀକି ବଲ୍ମୀକ (ଉଇହୁଙ୍କା)ରୁ ବାହାରିଥିଲେ । ସେ ଥିଲେ ବରୁଣଙ୍କର ପୁତ୍ର । ଅଗସ୍ତ୍ୟ ଓ ବସିଷ୍ଠ ଋଷି ଥିଲେ ଉଭୟ ମିତ୍ର ଓ ବରୁଣଙ୍କ ପୁତ୍ର ॥୫॥ ଉର୍ବଶୀଙ୍କୁ ଦେଖି ମିତ୍ର ଓ ବରୁଣଙ୍କର ବୀର୍ଯ୍ୟ ସ୍ଖଳିତ ହେଲା । ସେ ଦୁହେଁ ତାହାକୁ ଗୋଟିଏ କୁମ୍ଭ ମଧ୍ୟରେ ନିକ୍ଷେପ କରିଥିଲେ । ସେଥିରୁ ଅଗସ୍ତ୍ୟ ଓ ବସିଷ୍ଠ ଋଷିଙ୍କର ଜନ୍ମ ହେଲା । ମିତ୍ର ତାଙ୍କ ପତ୍ନୀ ରେବତୀଙ୍କ ଗର୍ଭରେ ଉତ୍ସର୍ଗ,. ଅରିଷ୍ଟ ଓ ପିପ୍ପଳ ନାମରେ ତିନୋଟି ପୁତ୍ର ଉତ୍ପନ୍ନ କରିଥିଲେ ॥୬॥ ପରିକ୍ଷିତ, ଆମେ ଶୁଣିଛୁ ଯେ ଦେବରାଜ ଇନ୍ଦ୍ରଙ୍କ ଔରସରେ ଶଚୀ ଦେବୀଙ୍କ ଗର୍ଭରୁ ଜୟନ୍ତ, ଋଷଭ ଏବଂ ମୀଢୁଷ ନାମରେ ତିନୋଟି ପୁତ୍ର ଜନ୍ମ

ହୋଇଥିଲେ ॥୭॥ ବୃହତ୍‌ଶ୍ଳୋକ ହେଲେ ମାୟା ବାମନରୂପଧାରୀ ତ୍ରିବିକ୍ରମଙ୍କ ଔରସରୁ ତାଙ୍କ ପତ୍ନୀ କୀର୍ତ୍ତିଙ୍କ ଗର୍ଭଜାତ ପୁତ୍ର । ସେ ପୁଣି ସୌଭଗ ଆଦି ସନ୍ତାନମାନଙ୍କର ଜନକ ହେଲେ ॥୮॥ କଶ୍ୟପଙ୍କର ପୁତ୍ର ସେହି ମହାତ୍ମା ଉରୁକ୍ରମ ଅଦିତିଙ୍କ ଗର୍ଭରୁ ବାମନରୂପରେ ଅବତୀର୍ଣ୍ଣ ହୋଇଥିଲେ । ତାଙ୍କ କର୍ମ, ଗୁଣ ଓ ବୀରତ୍ୱର ଗାଥା ମୁଁ ପରେ ବର୍ଣ୍ଣନା କରିବି ॥୯॥

ପରିକ୍ଷିତ, କଶ୍ୟପଙ୍କ ପତ୍ନୀ ଦିତିଙ୍କର ସନ୍ତାନ ଓ ବଂଶଧରଙ୍କ ସମ୍ପର୍କରେ ମୁଁ କହିବାକୁ ଯାଉଚି । ସେମାନଙ୍କ ମଧ୍ୟରେ ପ୍ରହ୍ଲାଦ ଓ ବଳି ଭଗବାନ ଶ୍ରୀହରିଙ୍କର ପରମ ଭକ୍ତ ଥିଲେ ॥୧୦॥ ଦିତିଙ୍କର ଦୁଇ ଜଣ ବିଖ୍ୟାତ ପୁତ୍ର ଥିଲେ- ଦୈତ୍ୟ ଓ ଦାନବମାନଙ୍କ ବନ୍ଦିତ ହିରଣ୍ୟକଶିପୁ ଓ ହିରଣ୍ୟାକ୍ଷ । ସଂକ୍ଷେପରେ ସେ ଦୁହିଁଙ୍କ କଥା ମୁଁ ପୂର୍ବରୁ ତୁମକୁ ଶୁଣାଇଛି ॥୧୧॥ ଜମ୍ଭାସୁରର କନ୍ୟା କୟାଧୁ ନାମକ ଦାନବୀ ହିରଣ୍ୟକଶିପୁଙ୍କର ଭାର୍ଯ୍ୟା ହେଲେ । ସେ ଚାରୋଟି ପୁତ୍ର ପ୍ରସବ କରିଥିଲେ ॥୧୨॥ ସେମାନେ ହେଲେ ସଂହ୍ଲାଦ, ଅନୁହ୍ଲାଦ, ହ୍ଲାଦ ଓ ପ୍ରହ୍ଲାଦ । ସେମାନଙ୍କର ଭଉଣୀ ସିଂହିକା ବିପ୍ରଚିତ୍‌ଙ୍କୁ ବିବାହ କଲେ ଏବଂ ସେ ଦୁହିଙ୍କ ଔରସରୁ ରାହୁଙ୍କର ଜନ୍ମ ହେଲା ॥୧୩॥ ଭଗବାନ ଶ୍ରୀହରି ଅମୃତ ପିଉଥିବା ରାହୁର ମସ୍ତକକୁ ଚକ୍ରଦ୍ୱାରା ଛେଦନ କରିଥିଲେ । ଏହାପରେ ସଂହ୍ଲାଦଙ୍କର ପତ୍ନୀ କୃତି (ସତୀ) ପଞ୍ଚଜନ ନାମକ ପୁତ୍ରକୁ ଜନ୍ମ ଦେଇଥିଲେ ॥୧୪॥ ହ୍ଲାଦଙ୍କର ଭାର୍ଯ୍ୟା ଧମନି ବାତାପି ଓ ଇଲ୍ୱଳ ନାମକ ଦୁଇ ପୁତ୍ରଙ୍କୁ ଜନ୍ମ ଦେଇଥିଲେ । ସେହି ଇଲ୍ୱଳ ତାଙ୍କ ଅତିଥି ହୋଇ ଆସିଥିବା ଅଗସ୍ତ୍ୟ ଋଷିଙ୍କୁ (ମେଷରୂପଧାରୀ) ନିଜର ଭାଇ ବାତାପିକୁ ରନ୍ଧନ କରି ଖାଇବାକୁ ଦେଇଥିଲେ ॥୧୫॥ ଅନୁହ୍ଲାଦଙ୍କର ପତ୍ନୀ ସୂର୍ମ୍ୟାଙ୍କ ଗର୍ଭରୁ ବାଷ୍କଳ ଓ ମହିଷାସୁରଙ୍କର ଜନ୍ମ ହେଲା । ପ୍ରହ୍ଲାଦଙ୍କ ପୁତ୍ର ହେଲେ ବିରୋଚନ । ତାଙ୍କ ପତ୍ନୀ ଦେବୀଙ୍କ ଗର୍ଭରୁ ଦୈତ୍ୟରାଜ ବଳିଙ୍କର ଜନ୍ମ ହେଲା ॥୧୬॥ ବଳିଙ୍କର ଭାର୍ଯ୍ୟା ଅଶନା । ତାଙ୍କ ଗର୍ଭରୁ ଜ୍ୟେଷ୍ଠ ବାଣାସୁର ପ୍ରମୁଖ ଶତପୁତ୍ର ଜନ୍ମ ହେଲେ । ସେହି ବଳିଙ୍କର ସ୍ତୁତିଯୋଗ୍ୟ କୀର୍ତ୍ତିଗାଥା ମୁଁ ପରେ ବର୍ଣ୍ଣନା କରିବି ॥୧୭॥ ବାଣାସୁର ଭଗବାନ ଶଙ୍କରଙ୍କୁ ଆରାଧନା କରି ଶିବଗଣଙ୍କର ମୁଖ୍ୟପଦ ଲାଭ କଲେ । ବାଣଙ୍କର ପୁରକୁ ରକ୍ଷା କରିବା ପାଇଁ ଭଗବାନ୍ ଶଙ୍କର ଏବେ ମଧ୍ୟ ତାଙ୍କରି ପାଖେ ପାଖେ ରହିଛନ୍ତି ॥୧୮॥ ଦିତିଙ୍କର ଅନ୍ୟ ପୁତ୍ର ହେଲେ ମରୁଦ୍‌ଗଣ । ସେମାନଙ୍କର ସଂଖ୍ୟା ହେଲା ଅଣଚାଶ । ଦେବରାଜ ଇନ୍ଦ୍ରଙ୍କଦ୍ୱାରା ସେମାନେ ସମାନରୂପତା (ଦେବତ୍ୱ) ଲାଭ କରିଥିଲେ । କିନ୍ତୁ ସେମାନେ ସମସ୍ତେ ନିଃସନ୍ତାନ ଥିଲେ ॥୧୯॥ ରାଜା ପରିକ୍ଷିତ ପଚାରିଲେ, ଗୁରୁଦେବ, ମରୁଦ୍‌ଗଣ ଅସୁର ହୋଇ ଜନ୍ମ ହୋଇଥିଲେ । ସେମାନଙ୍କ ଆସୁରଭାବକୁ ଦୂର କରି ଇନ୍ଦ୍ର କି କାରଣରୁ ସେମାନଙ୍କୁ ଦେବତା କରିଦେଲେ ? ସେମାନେ କିଛି ସତ୍‌କାର୍ଯ୍ୟ କରିଥିଲେ କି ? ॥୨୦॥ ବ୍ରହ୍ମନ୍, ମୋ ସମେତ ଉପସ୍ଥିତ ଏଇ ଋଷିମାନେ ସେ ସମସ୍ତ ଜାଣିବା ପାଇଁ ଆଗ୍ରହୀ । ଭଗବନ୍ ଆପଣ ଆମ ନିକଟରେ ତାହା ବର୍ଣ୍ଣନା କରନ୍ତୁ ॥୨୧॥

ସୂତ କହିଲେ, ଶୌନକ ! ପରିକ୍ଷିତ ଅତି ଆଗ୍ରହରେ ଅଳ୍ପାକ୍ଷର ଅଥଚ ବହୁଅର୍ଥଯୁକ୍ତ ସେଇ ପ୍ରଶ୍ନଟି ପଚାରିବାରୁ, ବ୍ୟାସନନ୍ଦନ ସର୍ବଜ୍ଞ ଶୁକଦେବ ତାହାକୁ ପ୍ରଶଂସା କରି ଏହିପରି ଉତ୍ତର ଦେବାକୁ ଆରମ୍ଭ କଲେ ॥୨୨॥ ଇନ୍ଦ୍ରଙ୍କ ପୃଷ୍ଠ-ସହାୟକ ବିଷ୍ଣୁ ଦିତିଙ୍କ ପୁତ୍ରଦ୍ୱୟ (ହିରଣ୍ୟକଶିପୁ ଓ ହିରଣ୍ୟାକ୍ଷ)ଙ୍କୁ ହତ୍ୟା କରିଥିବା ଯୋଗୁଁ ପୁତ୍ରହୀନା ଦିତି ଶୋକଦୀପ୍ତ କ୍ରୋଧରେ ଜଳିବାକୁ ଲାଗିଲେ । ସେ ଚିନ୍ତାକଲେ, ଇନ୍ଦ୍ରିୟପରାୟଣ, କୁଟିଳ, ପାପୀ ଓ ନିଷ୍ଠୁରଚିତ୍ତ ଇନ୍ଦ୍ର ହିଁ ତାର ଭାଇମାନଙ୍କ ହତ୍ୟାପାଇଁ ଦାୟୀ । ତେଣୁ କେବେ ତାକୁ ହତ୍ୟା କରାଇ ମୁଁ ସୁଖରେ ଶୟନ କରିବି ॥୨୩-୨୪॥ ଦେହସର୍ବସ୍ୱ ବ୍ୟକ୍ତି ବୁଝିପାରେ ନାହିଁ ଯେ 'ପ୍ରଭୁ' ବୋଲି କଥିତ ବ୍ୟକ୍ତିର ମଧ୍ୟ ମୃତ୍ୟୁପରେ ତାର ଦେହ କୃମି, ବିଷ୍ଠା ବା ଭସ୍ମରେ ପରିଣତ ହୁଏ । ସେହି ଦେହପାଇଁ ଯେଉଁ ବ୍ୟକ୍ତି ଅନ୍ୟକୁ ହତ୍ୟା କରେ, ସେ ଯେହେତୁ ନରକ ଭୋଗେ, ତେଣୁ ସେ କ'ଣ ସ୍ୱାର୍ଥ ଜାଣେ ? (ଅର୍ଥାତ୍ ଜାଣେ ନାହିଁ) ଏହି ଅସ୍ଥାୟୀ ଦେହକୁ ସ୍ଥାୟୀ ବୋଲି ମନେ କରୁଥିବା ଇନ୍ଦ୍ର ବହୁତ ଉଚ୍ଛୃଙ୍ଖଳ ହୋଇପଡ଼ିଚି । ତାର ଗର୍ବ ନଷ୍ଟ କରିବା ପାଇଁ ମୋର ଏକ ପୁତ୍ର ଦରକାର -- ଏହା ମନେ ମନେ ଚିନ୍ତା କରି ଦିତି ନିଜର ସ୍ୱାମୀ କଶ୍ୟପଙ୍କର ପ୍ରିୟ ଆଚରଣ କଲେ ।

ସେଥିପାଇଁ ଦିତି ଶୁଶ୍ରୂଷା, ଅନୁରାଗ ବିନୟ ଓ ପ୍ରେମପୂର୍ଣ୍ଣ ସଂଯତ ଚିତ୍ତରେ ବାରମ୍ବାର ତାଙ୍କୁ ସନ୍ତୁଷ୍ଟ କରିବାପାଇଁ ଚେଷ୍ଟା କଲେ ।।୨୫-୨୭।। ପରୀକ୍ଷିତ, ସ୍ୱାମୀଙ୍କର ମନୋଭାବ ଜାଣି କାର୍ଯ୍ୟ କରିବାରେ ଦିତି ନିପୁଣା ଥିଲେ । ସେ ପରମ ଭକ୍ତି, ସୁମଧୁର ବାକ୍ୟ, ମୃଦୁ ହାସ୍ୟ ଓ କଟାକ୍ଷପାତ ଆଦି ଦ୍ୱାରା କଶ୍ୟପଙ୍କର ମନକୁ ଆକୃଷ୍ଟ କଲେ ।।୨୮।। କଶ୍ୟପ ବିଜ୍ଞ । ତଥାପି ନିଜର ଚତୁରୀ ସ୍ତ୍ରୀ ଦ୍ୱାରା ବଶୀଭୂତ ହୋଇ କହିଲେ, 'ମୁଁ ତୁମର ପ୍ରାର୍ଥନା ପୂର୍ଣ୍ଣ କରିବି' । ସ୍ତ୍ରୀବଶରେ ବାଧ୍ୟ ହୋଇ ଏପରି ଅଙ୍ଗୀକାର କରିବା ବିଚିତ୍ର ନୁହେଁ ।।୨୯।। ସୃଷ୍ଟିର ଆରମ୍ଭରେ ପ୍ରଜାପତି ବ୍ରହ୍ମା ଦେଖିଲେ ଯେ ପ୍ରାଣୀମାନେ ଅନାସକ୍ତ ରହୁଛନ୍ତି । ତେଣୁ (ପ୍ରାଣୀମାନଙ୍କ ବଂଶବୃଦ୍ଧି ଇଚ୍ଛାରେ) ସେ ନିଜ ଦେହର ଅର୍ଦ୍ଧାଂଶକୁ ସ୍ତ୍ରୀ କଲେ, ଯାହାଦ୍ୱାରା ପୁରୁଷମାନଙ୍କର ମତି ଅପହୃତ ହେଲା ।।୩୦।।

ପରିକ୍ଷିତ, ଭାର୍ଯ୍ୟା ଦିତିଙ୍କ ସେବାରେ ଅତିଶୟ ସନ୍ତୁଷ୍ଟ ହୋଇ କଶ୍ୟପ ହସି ହସି ତାଙ୍କୁ ପ୍ରଶଂସା କରି କହିଲେ, ସୁନ୍ଦରୀ, ମୁଁ ତୁମର ସେବାରେ ସନ୍ତୁଷ୍ଟ । ତୁମେ ବର ମାଗ । ସ୍ୱାମୀ ସନ୍ତୁଷ୍ଟ ହେଲେ ସ୍ତ୍ରୀପାଇଁ ଇହ-ପର ଲୋକରେ ଅଲଭ୍ୟ କଣ ଅଛି ? ।।୩୧-୩୨।। ସ୍ୱାମୀ ହିଁ ସ୍ତ୍ରୀମାନଙ୍କର ପରମ ଦେବତା ବୋଲି କଥିତ ଅଛି । ଲକ୍ଷ୍ମୀଙ୍କ ପତି ଶ୍ରୀହରି ସମସ୍ତ ପ୍ରାଣୀଙ୍କ ହୃଦୟରେ ଅନ୍ତର୍ଯାମୀ ରୂପେ ଅବସ୍ଥିତ । ପୁରୁଷମାନେ ତାଙ୍କୁ ନାନା ରୂପରେ ଓ ନାମରେ କଳ୍ପନା କରି ଦେବମୂର୍ତ୍ତି ରୂପେ ପୂଜା କରିଥାନ୍ତି । ସ୍ତ୍ରୀମାନେ ମଧ୍ୟ ତାଙ୍କୁ ପତିରୂପରେ ପୂଜା କରନ୍ତି ।।୩୩-୩୪।। ତେଣୁ ହେ ସୁନ୍ଦରି ! ନିଜ ମଙ୍ଗଳ କାମନା କରୁଥିବା ପତିବ୍ରତା ସ୍ତ୍ରୀମାନେ ପତିଙ୍କୁ ଅନନ୍ୟଭାବରେ ଆତ୍ମା ଓ ଈଶ୍ୱର ରୂପରେ ପୂଜା କରିଥା'ନ୍ତି ।।୩୫।। କଲ୍ୟାଣୀ, ତୁମେ ଏଭଳି ଭକ୍ତିଭାବରେ ମୋର ସେବାପୂଜା କରିଛ, ତେଣୁ ନିଶ୍ଚୟ ମୁଁ ତୁମର କାମନାକୁ ପୂର୍ଣ୍ଣ କରିବି । ଅସତୀ ସ୍ତ୍ରୀଙ୍କପକ୍ଷରେ ଯାହା ଅତି ଦୁର୍ଲଭ, ତୁମ ପକ୍ଷରେ ତାହା ସୁଲଭ ହେବ ।।୩୬।।

ଦିତି କହିଲେ, ବ୍ରହ୍ମନ୍, ବର୍ତ୍ତମାନ ମୁଁ ପୁତ୍ରହୀନା । ଯେଉଁ ଇନ୍ଦ୍ରଦ୍ୱାରା ମୋର ପୁତ୍ର ଦୁଇଜଣ ନିହତ ହୋଇଛନ୍ତି, ଆପଣ ଯଦି ମୋତେ ବର ଦେବାକୁ ଚାହାନ୍ତି, ତେବେ ଯେ ସେଇ ଇନ୍ଦ୍ରକୁ ହତ୍ୟା କରିବ ମୁଁ ସେଇ ଅମର ପୁତ୍ର ମାଗୁଛି ।।୩୭।। ଦିତିଙ୍କର କଥା ଶୁଣି ବିଷଣ୍ଣ କଶ୍ୟପ ଅନୁତାପ କରିବାକୁ ଲାଗିଲେ । ହାୟ ! ଘୋର ଅଧର୍ମ ଆସି ଉପସ୍ଥିତ ହେଲା । ବିଷୟ ଓ ଇନ୍ଦ୍ରିୟସୁଖରେ ରତ ହୋଇ ମୁଁ ସ୍ତ୍ରୀର ମାୟାରେ ପଡ଼ିଗଲି । ମୋର ବିବେକବୁଦ୍ଧି ହଜିଗଲା । ନିଶ୍ଚୟ ନରକରେ ପଡ଼ିବା ମୋର ସାର ହେବ ।।୩୮-୩୯।। ଦିତିର ବା ଅପରାଧ କ'ଣ ? ସେ ତ ସ୍ତ୍ରୀଜନୋଚିତ ସ୍ୱଭାବକୁ ଅନୁସରଣ କରିଚି । ମୋତେ ଧିକ୍ । ମୁଁ ଇନ୍ଦ୍ରିୟକୁ ଜୟ କରି ନାହିଁ । ନିଜର ପରମାର୍ଥ କଣ ଜାଣି ପାରିଲି ନାହିଁ ।।୪୦।। ଶରତ୍‌କାଳୀନ ପଦ୍ମପରି ସୁନ୍ଦର ମୁଖମଣ୍ଡଳ । ଅମୃତ ପରି ଶ୍ରୁତିମଧୁର କଥା । କିନ୍ତୁ ସ୍ତ୍ରୀଙ୍କ ହୃଦୟ ହେଉଚି କ୍ଷୁରଧାର ସମାନ । ତେଣୁ ସ୍ତ୍ରୀଲୋକଙ୍କ ଇଚ୍ଛାକୁ କିଏ ବୁଝିପାରିବ ? ।।୪୧।। ନିଜର ସ୍ୱାର୍ଥପାଇଁ ପତି, ପୁତ୍ର, ଭାଇ କେହି ତାଙ୍କର ପ୍ରିୟ ନୁହନ୍ତି । ଦରକାର ପଡ଼ିଲେ ସେମାନେ ସେମାନଙ୍କୁ ନିଜେ ହତ୍ୟା କରିବେ ବା ଅନ୍ୟ କାହାରିଦ୍ୱାରା କରାଇବେ ।।୪୨।। ଯାହା ମୁଁ ବର ଦେବି ବୋଲି ପ୍ରତିଶ୍ରୁତି ଦେଇଚି, ତାହା ତ ମୋତେ ପାଳନ କରିବାକୁ ହେବ । ତାହା କେବେ ମିଥ୍ୟା ହେବ ନାହିଁ । କିନ୍ତୁ ଇନ୍ଦ୍ରର ବଧ ଯେପରି ନ ହେବ, ତାହା ହିଁ ଚିନ୍ତା କରିବାର ବିଷୟ ।।୪୩।। ପରିକ୍ଷିତ, ଏହା ଚିନ୍ତା କରି ଭଗବାନ କଶ୍ୟପ ମନେ ମନେ ନିଜକୁ ଭର୍ତ୍ସନା କରି କ୍ରୋଧରେ ଦିତିଙ୍କୁ ଏହିପରି କହିଲେ ।।୪୪।। କଶ୍ୟପ କହିଲେ, କଲ୍ୟାଣି ! ମୁଁ ତୁମକୁ ଯାହା କହିବି, ଏକ ବର୍ଷପାଇଁ ବିଧିପୂର୍ବକ ତାହାକୁ ବ୍ରତ ରୂପେ ଧାରଣ କଲେ, ଇନ୍ଦ୍ରକୁ ବଧ କରିବାପାଇଁ ତୁମର ଏକ ପୁତ୍ର ଜାତ ହେବ । କିନ୍ତୁ ବ୍ରତରେ ତ୍ରୁଟି ହେଲେ ସେହି ପୁତ୍ର ଦେବତାମାନଙ୍କ ବନ୍ଧୁ ହୋଇଯିବ ।।୪୫।।

ଦିତି କହିଲେ, ବ୍ରହ୍ମନ୍, ମୁଁ ବ୍ରତ ଧାରଣ କରିବି । ମୋତେ କହନ୍ତୁ, ମୋତେ କଣ କଣ କରିବାକୁ ହେବ ଏବଂ କଣ କଣ କରିବାକୁ ହେବ ନାହିଁ, ଯେପରିକି ମୋର ବ୍ରତଭଙ୍ଗ ନ ହୁଏ ।।୪୬।। କଶ୍ୟପ କହିଲେ, ଦିତି, ଏହି ବ୍ରତରେ କୌଣସି

ପ୍ରାଣୀଙ୍କୁ କାୟମନୋବାକ୍ୟରେ ହିଂସା କରିବାକୁ ହେବ ନାହିଁ । କାହାରିକୁ ଶାପ ବା ଗାଳି ଦେବାକୁ ହେବ ନାହିଁ । ମିଛ କହିବ ନାହିଁ । ଦେହର ନଖ ବା ବାଳ କାଟିବାକୁ ହେବ ନାହିଁ । କିମ୍ବା କୌଣସି ଅଶୁଭ ବସ୍ତୁକୁ ଛୁଇଁବାକୁ ହେବ ନାହିଁ ।।୪୭।। ପାଣିରେ ପଶି ଗାଧୋଇବ ନାହିଁ, ରାଗିବ ନାହିଁ, ଦୁଷ୍ଟଲୋକ ସହିତ କଥାଭାଷା କରିବ ନାହିଁ, ଧୁଆ ନ ହୋଇଥିବା ଲୁଗାକୁ ପିନ୍ଧିବ ନାହିଁ, ପୂର୍ବରୁ ପିନ୍ଧିଥିବା ମାଳାକୁ ଆଉ ଥରେ ପିନ୍ଧିବ ନାହିଁ ।।୪୮।। ଅଇଁଠା, ଚଣ୍ଡୀଙ୍କ ପ୍ରସାଦ ବା ପିମ୍ପୁଡ଼ି ଲାଗିଥିବା ଖାଦ୍ୟ, ଆମିଷ , ଶୂଦ୍ରଦ୍ୱାରା ଅଣାଯାଇଥିବା ଖାଦ୍ୟ ଏବଂ ରଜସ୍ୱଳା ସ୍ତ୍ରୀର ଦୃଷ୍ଟି ପଡିଥିବା ଖାଦ୍ୟ ଖାଇବ ନାହିଁ । ଆଞ୍ଜୁଳାରେ ପାଣି ପିଇବ ନାହିଁ ।।୪୯।। ଅଇଁଠା ମୁହଁରେ ବାହାରକୁ ଯିବ ନାହିଁ । ଆଚମନ ନ କରି, ସନ୍ଧ୍ୟା ସମୟରେ ବାଳମୁକୁଳା କରି କିମ୍ବା ଅଳଙ୍କାର ନ ପିନ୍ଧି, ବାକ୍ୟରେ ସଂଯମ ନ ରଖି କିମ୍ବା ଦେହରେ ଚଦର ନ ପକାଇ ବାହାରକୁ ଯିବ ନାହିଁ ।।୫୦।। ପାଦ ନ ଧୋଇ ବା ଅସଂଯତ ହୋଇ, ଓଦା ପାଦ ହୋଇ, ଉତ୍ତର ବା ପଶ୍ଚିମକୁ ମୁଣ୍ଡ କରି, ଉଲଗ୍ନ ହୋଇ ବା ପରପୁରୁଷକୁ ଧରି ସକାଳେ କିମ୍ବା ସଂଧ୍ୟାବେଳେ ନିଦ୍ରା ଯିବ ନାହିଁ ।।୫୧।। ପ୍ରତିଦିନ ପ୍ରାତଃଭୋଜନ ପୂର୍ବରୁ ଧୁଆ ହୋଇଥିବା ସଫା ଲୁଗା ପିନ୍ଧି, ପବିତ୍ରଭାବରେ ବିଭିନ୍ନ ମାଙ୍ଗଳିକ ଦ୍ରବ୍ୟ ନେଇ ଗୋ, ବ୍ରାହ୍ମଣ, ଲକ୍ଷ୍ମୀ ଓ ବିଷ୍ଣୁଙ୍କୁ ପୂଜା କରିବ ।।୫୨।। ସଧବା ସ୍ତ୍ରୀଙ୍କୁ ମାଳା, ଗନ୍ଧ, ଚନ୍ଦନ, ଅଳଙ୍କାର ଓ ଉପହାର ଦ୍ୱାରା ଅର୍ଚ୍ଚନା କରିବ ଏବଂ ପତିଙ୍କୁ ପୂଜା କରି ତାଙ୍କ ସେବାରେ ରହି କଳ୍ପନା କରିବ -- ସେ ହିଁ ସନ୍ତାନରୂପେ ମୋ ଗର୍ଭରେ ପ୍ରବେଶ କରିଛନ୍ତି ।।୫୩।। ଏହି ପୁଂସବନ ନାମକ ବ୍ରତକୁ ଯଦି ନିଷ୍ଠା ନିୟମ ସହିତ ଏକ ବର୍ଷ ଧରି ପାଳନ କରିବ, ତା'ହେଲେ ତୁମ ଗର୍ଭରୁ ଯେଉଁ ପୁତ୍ର ଜାତ ହବ, ସେ ଇନ୍ଦ୍ରକୁ ବିନାଶ କରିପାରିବ ।।୫୪।। ପରିକ୍ଷିତ, ତୃପ୍ତମନା ଦିତି 'ମୁଁ ନିଶ୍ଚୟ ଏହା ପାଳନ କରିବି', ବୋଲି କହି ପତିଙ୍କର ଉପଦେଶ ଗ୍ରହଣ କଲେ ଏବଂ ପତିଙ୍କଠାରୁ ଗର୍ଭ ଧାରଣ କରି ଯଥାବିଧି ବ୍ରତପାଳନ କରିବାକୁ ଲାଗିଲେ ।।୫୫।।

ହେ ମାନଦ, ଏହାପରେ ବିଚକ୍ଷଣ ଇନ୍ଦ୍ର ନିଜର ବ୍ରତଧାରିଣୀ ମାଉସୀ ଦିତିଙ୍କର ଅଭିପ୍ରାୟ ଜାଣିପାରି ତାଙ୍କ ଆଶ୍ରମରେ ରହି ତାଙ୍କ ସେବା ଶୁଶ୍ରୂଷା କରିବାକୁ ଲାଗିଲେ ।।୫୬।। ଇନ୍ଦ୍ର ପ୍ରତିଦିନ ଦିତିଙ୍କପାଇଁ ବନରୁ ଫୁଲ, ଫଳ, କନ୍ଦମୂଳ, ସମିଧ, କୁଶ, ପତ୍ର ଦୂବ, ମାଟି ଓ ଜଳ ଆଣି ତାଙ୍କ ସେବାରେ ସମର୍ପଣ କରୁଥିଲେ । ପରିକ୍ଷିତ ! ମୃଗକୁ ମାରିବାପାଇଁ କୁଟିଳ ବ୍ୟାଧ ଯେପରି ମୃଗବେଶ ପିନ୍ଧି ମୃଗପାଖକୁ ଯାଏ, ସେହିପରି ଇନ୍ଦ୍ର ବ୍ରତଚାରିଣୀ ଦିତିଙ୍କର ବ୍ରତପାଳନରେ ଦୋଷତ୍ରୁଟି ଧରିବାପାଇଁ ତାଙ୍କରି ସେବା କରିବାରେ ଲାଗିଗଲେ ।।୫୭-୫୮।। ମହାରାଜ ! ଇନ୍ଦ୍ର ଯେତେ ତତ୍ପର ହୋଇ ଲାଗିଲେ ମଧ୍ୟ ଦିତିଙ୍କ ବ୍ରତରେ କୌଣସି ପ୍ରକାର ତ୍ରୁଟି ଦେଖିପାରିଲେ ନାହିଁ । ତହୁଁ ଇନ୍ଦ୍ରଙ୍କର ଚିନ୍ତା ବଢ଼ିଗଲା । ସେ ଭାବିବାକୁ ଲାଗିଲେ -- ମୁଁ କି ଉପାୟ କରିବି, ଯଦ୍ୱାରା ମୋର ମଙ୍ଗଳ ସାଧିତ ହୋଇ ପାରିବ ।।୫୯।। ଇତି ମଧ୍ୟରେ ଦିନେ ବ୍ରତରେ କ୍ଳାନ୍ତ ହୋଇପଡ଼ିଥିବା ଦିତି ଦୈବବଶତଃ ଠିକ୍ ସମୟରେ ଅଇଁଠାମୁହଁ ଓ ପାଦ ଧୋଇବାକୁ ଭୁଲିଯାଇ ଶୋଇପଡ଼ିଲେ ।।୬୦।। ସେହି ଅବସରରେ ଯୋଗସିଦ୍ଧ ଇନ୍ଦ୍ର ନିଜ ଯୋଗମାୟାର ପ୍ରଭାବରେ ଅଚେତନା ହୋଇ ଶୋଇଥିବା ଦିତିଙ୍କର ଗର୍ଭରେ ପ୍ରବେଶ କଲେ ।।୬୧।। ସେଠାକୁ ଯାଇ ସୁବର୍ଣ୍ଣପରି ଉଜ୍ଜ୍ୱଳ ଗର୍ଭକୁ ସେ ବଜ୍ରଦ୍ୱାରା ସାତ ଖଣ୍ଡ କରି କାଟିଦେଲେ । ତହୁଁ ତତ୍ରତ୍ୟ ସନ୍ତାନମାନେ କାନ୍ଦିବାକୁ ଲାଗିବାରୁ ଇନ୍ଦ୍ର 'କାନ୍ଦ ନାହିଁ' ବୋଲି ସାନ୍ତ୍ୱନା ଦେଇ ପୁଣି ପ୍ରତ୍ୟେକ ଖଣ୍ଡକୁ ସାତ ଖଣ୍ଡ କରି କାଟିଦେଲେ ।।୬୨।। ରାଜା ! ଇନ୍ଦ୍ର ଏହିପରି ଗର୍ଭଛେଦନରେ ଲାଗିବାରୁ ସେହି ସବୁ ଗର୍ଭଖଣ୍ଡ ହାତ ଯୋଡ଼ି କହିଲେ, ହେ ଇନ୍ଦ୍ର, ଆମେ ତୁମର ଭାଇ ମରୁତ୍‌ଗଣ । ତୁମେ କାହିଁକି ଆମକୁ ମାରିବାକୁ ଇଚ୍ଛା କରୁଛ ? ।।୬୩।। ଇନ୍ଦ୍ର କହିଲେ, ଭୟ କର ନାହିଁ । ତୁମେମାନେ ମୋର ଭାଇ । ତୁମ ପ୍ରତି ମୋର ହିଂସାଭାବ ନାହିଁ । ତୁମେସବୁ ମୋର ପାର୍ଷଦ ହୋଇ ରହିବ ।।୬୪।। ପରିକ୍ଷିତ, ତୁମେ ଗର୍ଭରେ ଥିବାବେଳେ ଶ୍ରୀହରିଙ୍କ ଅନୁକମ୍ପାଯୋଗୁ ଅଶ୍ୱତ୍‌ଥାମାର ଅସ୍ତ୍ର ତୁମକୁ ଯେପରି ମାରି ପାରି ନ ଥିଲା, ସେହିପରି ଇନ୍ଦ୍ରବଜ୍ରରେ ଦିତିଙ୍କର ଗର୍ଭ ଖଣ୍ଡ ଖଣ୍ଡ ହୋଇଯାଇଥିଲେ ମଧ୍ୟ କୌଣସି ଖଣ୍ଡର ମୃତ୍ୟୁ ହେଲା ନାହିଁ ।।୬୫।। ଥରେ ମାତ୍ର ପୁରୁଷ ଭଗବାନ ଶ୍ରୀହରିଙ୍କୁ

ଆରାଧନା କଲେ ତାଙ୍କ ନିଜର ପ୍ରିୟପାତ୍ର ହୋଇଯାଏ । ଦିତି ତ ବର୍ଷେକାଳ ଭଗବାନଙ୍କୁ ଆରାଧନା କରିଥିଲେ ॥୬୬॥ ସେହି ଅଣଚାଶ ଜଣ ମରୁତ୍ ଇନ୍ଦ୍ରଙ୍କ ସହିତ ମିଶି ପଚାଶ ଜଣ ଦେବତା ହୋଇ ଦିତିଙ୍କ ଗର୍ଭରୁ ବାହାରି ଆସିଲେ । ଦିତିଙ୍କ ପୁତ୍ର ହେବାଯୋଗୁଁ ସେମାନଙ୍କର ଯେଉଁ ଦୈତ୍ୟ ଦୋଷ ଥିଲା, ଇନ୍ଦ୍ର ତାହା ଦୂର କରି ସେମାନଙ୍କୁ ସୋମପାୟୀ ଦେବତା କରିଦେଲେ ॥୬୭॥ ଅନିନ୍ଦିତା ଦେବୀ ଦିତି ନିଦ୍ରାରୁ ଉଠି ଦେଖିଲେ ଯେ, ତାଙ୍କର ଅଗ୍ନିତୁଲ୍ୟ ତେଜସ୍ୱୀ ପୁତ୍ରମାନେ ଇନ୍ଦ୍ରଙ୍କ ସହିତ ଠିଆ ହୋଇଛନ୍ତି । ଏଥିରେ ଦିତିଙ୍କର ବହୁତ ସନ୍ତୋଷ ହେଲା । ସେ ଇନ୍ଦ୍ରଙ୍କୁ କହିଲେ ବତ୍ସ, ମୁଁ ଅଦିତିର ପୁତ୍ର ଦେବତାମାନଙ୍କ ଭୟ-ଉତ୍ପାଦକ ଏକ ପୁତ୍ର କାମନାରେ ଏହି ଦୁଷ୍କର ବ୍ରତ ଆଚରଣ କରୁଥିଲି ॥୬୮-୬୯॥ ଗୋଟିଏ ପୁତ୍ରପାଇଁ ତ ମୋର ସଙ୍କଳ୍ପ ଥିଲା, ଏବେ ଅଣଚାଶଟି ପୁତ୍ର ହେଲେ କିପରି ? ରେ ପୁତ୍ର ଇନ୍ଦ୍ର ! ଯଦି ତୁ କିଛି ଜାଣିଛୁ, ତା'ହେଲେ ମୋତେ ସତକଥା କହ, ମିଛ କହ ନାହିଁ ॥୭୦॥

ଇନ୍ଦ୍ର କହିଲେ, ମାତା, ମୁଁ ତୁମର ଅଭିଳଷିତ ବ୍ରତ ଜାଣିପାରି ନିଜ ସ୍ୱାର୍ଥଦୃଷ୍ଟିରୁ ତୁମ ନିକଟକୁ ଆସିଥିଲି । ମୋ' ମନରେ ଟିକିଏ ହେଲେ ଧର୍ମର ଭାବନା ନ ଥିଲା ଏବଂ ଠିକ୍ ଅବସର ଦେଖି (ବ୍ରତରେ ତ୍ରୁଟି ଦେଖି) ମୁଁ ତୁମ ଗର୍ଭରେ ପ୍ରବେଶ କରି ଗର୍ଭସ୍ଥ ସନ୍ତାନକୁ ଖଣ୍ଡଖଣ୍ଡ କରିଦେଇଛି ॥୭୧॥ ପ୍ରଥମେ ଏହି ଗର୍ଭକୁ ସାତ ଖଣ୍ଡରେ କାଟି ସାତଟି ପୁତ୍ରଙ୍କୁ ଦେଖିଲି ଏବଂ ପୁଣି ପ୍ରତ୍ୟେକଙ୍କୁ ସାତ ସାତ ଖଣ୍ଡ କରି କାଟିଦେଲି । ତଥାପି ସେମାନେ ମଲେ ନାହିଁ ॥୭୨॥ ଏହା ଦେଖି ମୁଁ ଅତିଶୟ ଆଶ୍ଚର୍ଯ୍ୟ ହୋଇପଡ଼ିଲି ଏବଂ ପରେ ବୁଝିପାରିଲି ଯେ ପୁରୁଷୋତ୍ତମ ଶ୍ରୀହରିଙ୍କ ପୂଜାଦ୍ୱାରା ତୁମେ ଯେଉଁ ସିଦ୍ଧି ଲାଭ କରିଛ, ଏହାହିଁ ତା'ର ଆନୁଷଙ୍ଗିକ ଫଳ ॥୭୩॥ ଅନ୍ୟକାମନା ନ କରି ଯେ ଭଗବାନଙ୍କୁ ଆରାଧନା କରେ, ଏପରିକି ମୋକ୍ଷ ମଧ୍ୟ ଇଚ୍ଛାକରେ ନାହିଁ, ସେ ପ୍ରକୃତ ନିଜର ସ୍ୱାର୍ଥ କ'ଣ ଜାଣେ ॥୭୪॥ ଯେଉଁ ଅନ୍ତର୍ଯାମୀ ଜଗଦୀଶ୍ୱର ଆତ୍ମଜ୍ଞାନ ପ୍ରଦାନ କରନ୍ତି, ତାଙ୍କୁ ଆରାଧନା କରି କେଉଁ ବିଜ୍ଞ ବ୍ୟକ୍ତି ବିଷୟଭୋଗ ଇଚ୍ଛା କରିବ ? କାରଣ ବିଷୟଭୋଗ ତ ନରକରେ ମଧ୍ୟ ମିଳିପାରେ ॥୭୫॥ ତେଣୁ ହେ ମହୀୟସୀ ଜନନୀ, ମୁଁ ଅଜ୍ଞ । ମୂର୍ଖତାବଶତଃ ମୁଁ ଯେଉଁ ଦୁର୍ଜନୋଚିତ ଅପରାଧ କରିଛି, ମୋର ସେଇ ଅପରାଧକୁ କ୍ଷମା କର । ଭାଗ୍ୟବଶତଃ ତୁମର ଗର୍ଭସ୍ଥ ସନ୍ତାନମାନେ ମରି ମଧ୍ୟ ବଞ୍ଚି ଉଠିଛନ୍ତି ॥୭୬॥

ଶ୍ରୀ ଶୁକଦେବ କହିଲେ, ପରିକ୍ଷିତ, ଦିତି ଦେବରାଜ ଇନ୍ଦ୍ରଙ୍କର ଶୁଦ୍ଧ ସେବାଦ୍ୱାରା ସନ୍ତୁଷ୍ଟ ହୋଇଥିଲେ । ଇନ୍ଦ୍ର ଦିତିଙ୍କୁ ପ୍ରଣାମ କରି ତାଙ୍କ ଅନୁମତି ନେଇ ମରୁତ୍‌ଗଣଙ୍କ ସହିତ ନିଜ ସ୍ୱର୍ଗଧାମକୁ ପ୍ରସ୍ଥାନ କଲେ ॥୭୭॥ ରାଜା, ମରୁତ୍‌ଗଣଙ୍କ ଜନ୍ମବୃତ୍ତାନ୍ତ ଅତ୍ୟନ୍ତ ମଙ୍ଗଳମୟ । ତୁମେ ମୋତେ ଏ ବିଷୟରେ ଯାହା ପଚାରିଥିଲ, ତାହା ମୁଁ ପ୍ରକାଶ କଲି । ଏବେ ତୁମେ ଆଉ କ'ଣ ଶୁଣିବାକୁ ଚାହୁଁଛ, କହ ।

## ଊନବିଂଶ ଅଧ୍ୟାୟ

# ପୁଂସବନ ବ୍ରତର ବିଧି

ପରିକ୍ଷିତ କହିଲେ, ବ୍ରହ୍ମନ୍, ଭଗବାନ ବିଷ୍ଣୁଙ୍କ ତୋଷଣକାରୀ ଯେଉଁ ପୁଂସବନ ବ୍ରତର କଥା ଆପଣ କହିଲେ, ତାହା ମୁଁ ବିଶେଷ ଭାବରେ ଜାଣିବାକୁ ଚାହୁଁଛି ॥୧॥ ଶ୍ରୀ ଶୁକଦେବ କହିଲେ, ଏହି ପୁଂସବନ ବ୍ରତଦ୍ୱାରା ସମସ୍ତପ୍ରକାର କାମନା ପୂର୍ଣ୍ଣ ହୁଏ । ମାର୍ଗଶିର ଶୁକ୍ଳ ପକ୍ଷ ପ୍ରତିପଦାରୁ ସ୍ତ୍ରୀ ନିଜ ସ୍ୱାମୀର ଅନୁମତି ନେଇ ଏହି ବ୍ରତକୁ ଆରମ୍ଭ କରିବ ॥୨॥ ପ୍ରାତଃ କାଳରେ ଦନ୍ତମାର୍ଜନ ଓ ସ୍ନାନାଦି ନିତ୍ୟକର୍ମ ଶେଷ କରି ଉତ୍ତରୀୟ ସହ ଏକ ଶୁକ୍ଳ ବସ୍ତ୍ର ପରିଧାନ କରିବ । ତା'ପରେ ଅଳଙ୍କାରାଦି

ବେଷଭୂଷା ଧାରଣ କରି ବ୍ରାହ୍ମଣମାନଙ୍କ ଅନୁମତି ନେଇ ମରୁତ୍‌ଗଣଙ୍କ ଜନ୍ମବୃତ୍ତାନ୍ତ ଶ୍ରବଣ କରିବ ଏବଂ କିଛି ଖାଇବା ପୂର୍ବରୁ ଲକ୍ଷ୍ମୀନାରାୟଣଙ୍କୁ ପୂଜା କରିବ ।।୩।। (ଏହିପରି ପ୍ରାର୍ଥନା କରିବ) ପ୍ରଭୁ ! ଆପଣ ପୂର୍ଣ୍ଣକାମ । ଆପଣଙ୍କୁ ଅଲଭ୍ୟ ବସ୍ତୁ କିଛି ନାହିଁ । ଆପଣ ନିରପେକ୍ଷ; ସମସ୍ତ ଐଶ୍ୱର୍ଯ୍ୟ ଓ ଅଣିମାଦି ଅଷ୍ଟସିଦ୍ଧିର ଅଧିକାରୀ । ଆପଣଙ୍କୁ ନମସ୍କାର କରୁଛି ।।୪।। ଜଗଦୀଶ୍ୱର, ଆପଣ କୃପା, ବିଭବ, ତେଜ, ମହିମା, ବଳ ବୀର୍ଯ୍ୟ ଆଦି ସମସ୍ତପ୍ରକାର ଗୁଣରେ ଅଳଙ୍କୃତ । ତେଣୁ ଆପଣ ସମସ୍ତଙ୍କର ପ୍ରଭୁ, ସମସ୍ତଙ୍କର ଭଗବାନ ।।୫।। ହେ ବିଷ୍ଣୁପତ୍ନୀ ମହାମାୟା, ଭଗବାନଙ୍କର ସମସ୍ତ ଲକ୍ଷଣ ଆପଣଙ୍କଠାରେ ମଧ୍ୟ ବିଦ୍ୟମାନ, ଆପଣ ପ୍ରସନ୍ନ ହୁଅନ୍ତୁ । ହେ ମହାସୌଭାଗ୍ୟଶାଳିନୀ, ଲୋକମାତା ଲକ୍ଷ୍ମୀ, ମୋ ପ୍ରତି ପ୍ରସନ୍ନ ହୁଅନ୍ତୁ ।।୬।। ଓଁକାରସ୍ୱରୂପ ମହାପ୍ରଭାବଶାଳୀ, ଅତୁଳନୀୟ ଐଶ୍ୱର୍ଯ୍ୟର ଅଧିକାରୀ ଭଗବାନ ପୁରୁଷୋତ୍ତମଙ୍କୁ ମୁଁ ନମସ୍କାର କରୁଛି ଏବଂ ତାଙ୍କରି ମହାପ୍ରସାଦ ସ୍ୱରୂପ ପୂଜାର ସକଳ ଉପହାରସାମଗ୍ରୀ ତାଙ୍କୁ ଅର୍ପଣ କରୁଛି । ଏହି ମନ୍ତ୍ରଦ୍ୱାରା ପ୍ରତିଦିନ ଏକାଗ୍ର ଚିତ୍ତରେ ବିଷ୍ଣୁଙ୍କୁ ଆବାହନ କରିବ ଏବଂ ପାଦ୍ୟ, ଅର୍ଘ୍ୟ, ଆଚମନୀୟ, ସ୍ନାନ, ବସ୍ତ୍ର, ଯଜ୍ଞୋପବୀତ, ଆଭୂଷଣ, ଚନ୍ଦନାଦି ଗନ୍ଧ, ପୁଷ୍ପ, ଧୂପ, ଦୀପ, ନୈବେଦ୍ୟ ପ୍ରଭୃତି ଉପଚାର ପ୍ରଦାନ କରିବ ।।୭।। ଯେଉଁ ନୈବେଦ୍ୟ ବାକୀ ରହିଥିବ, ତଦ୍ୱାରା 'ଓଁ ନମୋ ଭଗବତେ ମହାପୁରୁଷାୟ ମହାବିଭୂତିପତୟେ ସ୍ୱାହା' । 'ମହାନ ଐଶ୍ୱର୍ଯ୍ୟର ଅଧୀଶ୍ୱର ଭଗବାନ ପୁରୁଷୋତ୍ତମଙ୍କୁ ନମସ୍କାର, ମୁଁ ତାଙ୍କପାଇଁ ଏହି ହବିଷ୍ୟକୁ ହବନ କରୁଛି' -- ଏହି ମନ୍ତ୍ର ଉଚ୍ଚାରଣ କରି ଅଗ୍ନିରେ ବାରୋଟି ଆହୁତି ଦେବ ।।୮।। ରାଜା, ଯଦି କେହି ସମସ୍ତପ୍ରକାର ସମ୍ପଦ ଲାଭ କରିବାକୁ ଇଚ୍ଛା କରେ, ତା'ହେଲେ ସେ ପ୍ରତିଦିନ ଭକ୍ତିଭାବରେ ଲକ୍ଷ୍ମୀନାରାୟଣଙ୍କୁ ପୂଜା କରିବ । କାରଣ ସେ ଦୁହେଁ ସମସ୍ତ ଅଭିଳାଷକୁ ପୂରଣ କରିପାରନ୍ତି ଏବଂ ସର୍ବଶ୍ରେଷ୍ଠ ବରଦାତା ଅଟନ୍ତି ।।୯।। ଏହାପରେ ଭକ୍ତି-ବିହ୍ୱଳ ଚିତ୍ତରେ ସାଷ୍ଟାଙ୍ଗ ପ୍ରଣିପାତ କରି ଦଶ ବାର ମନ୍ତ୍ରଜପ କରିବ ଏବଂ ତାହାପରେ ସ୍ତୋତ୍ର ପାଠ କରିବ -- ।।୧୦।। (ସ୍ତୋତ୍ରଟି ଏହିପରି) ଆପଣ ଦୁଇ ଜଣ ବିଶ୍ୱବ୍ୟାପୀ ଏବଂ ସମଗ୍ର ଚରାଚର ଜଗତର ପ୍ରଧାନ କାରଣ । ଆପଣଙ୍କର କେହି କାରଣ ନୁହନ୍ତି । ଦୁରନ୍ତ ମାୟାଶକ୍ତିରୂପିଣୀ ଲକ୍ଷ୍ମୀଦେବୀ ହେଉଛନ୍ତି ସୂକ୍ଷ୍ମ ପ୍ରକୃତିସ୍ୱରୂପା ।।୧୧।। ପ୍ରଭୁ ! ଆପଣ ଏହି ମାୟାଶକ୍ତିର ଅଧୀଶ୍ୱର ସାକ୍ଷାତ୍ ପରମପୁରୁଷ । ଆପଣ ସମସ୍ତ ଯଜ୍ଞସ୍ୱରୂପ ଏବଂ ଏ ହେଉଛନ୍ତି ସମସ୍ତ ଯଜ୍ଞର ଅଧିଷ୍ଠାତ୍ରୀ, ଆପଣ ଫଳଭୋକ୍ତା ଏବଂ ଏ ହେଉଛନ୍ତି ଫଳଲାଭର କ୍ରିୟାସ୍ୱରୂପା ।।୧୨।। ଏହି ଲକ୍ଷ୍ମୀଦେବୀ ସତ୍ତ୍ୱ, ରଜ ଓ ତମ -- ଏହି ତିନିଗୁଣର ଅଭିବ୍ୟକ୍ତି ଏବଂ ଆପଣ ସେହି ଗୁଣମାନଙ୍କର ଭୋକ୍ତା । ଆପଣ ସମସ୍ତ ପ୍ରାଣୀଙ୍କର ଆତ୍ମା ଏବଂ ଲକ୍ଷ୍ମୀ ହେଉଛନ୍ତି ସମସ୍ତଙ୍କ ଶରୀର, ଇନ୍ଦ୍ରିୟ ଓ ଅନ୍ତଃକରଣ । ଭଗବତୀ ହେଉଛନ୍ତି ନାମ ଓ ରୂପ, ଏବଂ ଆପଣ ନାମ-ରୂପ ଉଭୟର ଆଧାର ।।୧୩।। ଆପଣ ଦୁଇ ଜଣଯାକ ତ୍ରିଲୋକର ବରଦାତା ଓ ପରମେଷ୍ଠୀ । ଏଣୁ ହେ ପୁଣ୍ୟଶ୍ଲୋକ, ଆପଣଙ୍କ ମହତ୍ ଆଶିଷଦ୍ୱାରା ମୋର ମନୋରଥ ପୂର୍ଣ୍ଣ ହେଉ ।।୧୪।। ଲକ୍ଷ୍ମୀଙ୍କ ସହ ବରଦାତା ଭଗବାନ ଶ୍ରୀହରିଙ୍କୁ ଏହିପରି ସ୍ତୁତି କରି ସେଠାରୁ ନୈବେଦ୍ୟ ଉଠାଇଆଣିବ ଏବଂ ଆଚମନୀୟ ପ୍ରଦାନ କରି ପୁଣି ପୂଜା କରିବ ।।୧୫।। ଏହାପରେ ଭକ୍ତିବିହ୍ୱଳ ଚିତ୍ତରେ ପୂର୍ବୋକ୍ତ ସ୍ତୋତ୍ର ପାଠ କରିବ ଏବଂ ଯଜ୍ଞାବଶେଷ ହବ୍ୟକୁ ଆଘ୍ରାଣ କରି ଭଗବାନଙ୍କୁ ପୂଜା କରିବ ।।୧୬।। ଭଗବାନଙ୍କ ପୂଜା ସାରିବା ପରେ ନିଜ ସ୍ୱାମୀଙ୍କୁ ସାକ୍ଷାତ୍ ଭଗବାନ ମନେକରି ଶ୍ରଦ୍ଧାର ସହିତ ତାଙ୍କ ପ୍ରିୟବସ୍ତୁ ଯାକ ତାଙ୍କୁ ଦେଇ ସାରି ଛୋଟବଡ଼ ସମସ୍ତ କାମରେ ତାଙ୍କୁ ସାହାଯ୍ୟ କରିବ ।।୧୭।। ଏହି ବ୍ରତ ସ୍ୱାମୀ ଓ ସ୍ତ୍ରୀ ଉଭୟଙ୍କ ମଧ୍ୟରୁ ଯେ କେହି ଜଣେ କଲେ ଉଭୟଙ୍କର ଫଳଲାଭ ହୁଏ । ଏଥିପାଇଁ ଯଦି କୌଣସି କାରଣରୁ ପତ୍ନୀ ଏହା କରିବାପାଇଁ ଅସମର୍ଥା ହୁଏ, ତା'ହେଲେ ତାହାକୁ ପତି ଏକାଗ୍ର ଚିତ୍ତରେ ପାଳନ କରିବ ।।୧୮।। ବିଷ୍ଣୁଙ୍କର ଏହି ବ୍ରତକୁ ଧାରଣ କଲେ କେବେହେଲେ ଭଙ୍ଗ କରିବ ନାହିଁ । ପ୍ରତିଦିନ ମାଳା, ଚନ୍ଦନ, ବସ୍ତ୍ର ଓ ଅଳଙ୍କାର ଆଦି ଉପଚାର ଦ୍ୱାରା ବ୍ରାହ୍ମଣଙ୍କୁ ଓ ସୌଭାଗ୍ୟବତୀ ସ୍ତ୍ରୀମାନଙ୍କୁ ପୂଜା କରିବ ଏବଂ ବିଧିପୂର୍ବକ ଭଗବାନ ବିଷ୍ଣୁଙ୍କୁ ଅର୍ଚ୍ଚନା କରିବ ।।୧୯।। ଏହାଉତ୍ତାରୁ ଭଗବାନଙ୍କୁ ସ୍ୱଧାମକୁ ଯିବାପାଇଁ ବିସର୍ଜନ ଦେବ ଏବଂ ଆତ୍ମଶୁଦ୍ଧି ନିମନ୍ତେ ଓ ସମସ୍ତ ଅଭିଳଷିତ ଫଳପ୍ରାପ୍ତି ପାଇଁ

କିଛି ନୈବେଦ୍ୟ ପ୍ରସାଦରୂପେ ଗ୍ରହଣ କରିବ ॥୨୦॥ ଏହିପରି ସାଧ୍ୱୀ ସ୍ତ୍ରୀ ପୂଜାବିଧି ଅନୁସାରେ ବାରମାସ (ମଳମାସକୁ ଛାଡ଼ି) ଏହି ବ୍ରତକୁ ଧାରଣ କରି କାର୍ତ୍ତିକ ମାସର ଶେଷଦିନ ଉପବାସପୂର୍ବକ ବ୍ରତ ଉଦ୍‌ଯାପନ କରିବ ॥୨୧॥ ପରଦିନ ପ୍ରାତଃକାଳରେ ବ୍ରତଚାରିଣୀ ସ୍ତ୍ରୀ ସ୍ନାନସାରି ପୂର୍ବପରି ଶ୍ରୀ ବିଷ୍ଣୁଙ୍କୁ ପୂଜା କରିବ ଏବଂ ତାଙ୍କ ପତି ପାକଯଜ୍ଞର ବିଧିଅନୁସାରେ ଘୃତମିଶ୍ରିତ କ୍ଷୀରକୁ ବାରଥର ଅଗ୍ନିରେ ଆହୁତି ଦେବ । ଏହାପରେ ବ୍ରାହ୍ମଣ ପ୍ରସନ୍ନ ହୋଇ ଆଶୀର୍ବାଦ କଲେ ଶ୍ରଦ୍ଧାରେ ମଥା ନତ କରି ତାହା ଗ୍ରହଣ କରିବ ଏବଂ ଭକ୍ତିଭାବରେ ତାଙ୍କୁ ପ୍ରଣାମ ଜଣାଇ ତାଙ୍କ ଅନୁମତି ନେଇ ଭୋଜନ କରିବ ॥୨୨-୨୩॥ ପ୍ରଥମେ ପୁରୋହିତଙ୍କୁ ଭୋଜନ କରାଇ ତାପରେ ମୌନ ହୋଇ ଭାଇବଂଧୁଙ୍କ ସହିତ ନିଜେ ଭୋଜନ କରିବ । ଏହାପରେ ହବନରୁ ଯେଉଁ ଘୃତମିଶ୍ରିତ କ୍ଷୀର ରହିଯାଇଥିବ, ତାହାକୁ ପୁତ୍ରବତୀ ଓ ସୌଭାଗ୍ୟବତୀ ହେବାପାଇଁ ନିଜ ସ୍ତ୍ରୀଙ୍କୁ ଦାନ କରିବ ॥୨୪॥

ପରିକ୍ଷିତ, ଏହିପରି ବିଧିପୂର୍ବକ ବ୍ରତ ଆଚରଣ କରିଥିବା ବ୍ୟକ୍ତି ସମସ୍ତ ଈପ୍‌ସିତ ଫଳ ଲାଭ କରେ । ବ୍ରତଚାରିଣୀ ସ୍ତ୍ରୀ ସୌଭାଗ୍ୟ, ସମ୍ପତ୍ତି, ସନ୍ତାନ, ଯଶ ଓ ଉତ୍ତମ ଗୃହ ଲାଭ କରି ଚିରସଧବା ହୋଇରହେ ॥୨୫॥ ଯଦି ଅବିବାହିତା କନ୍ୟା ଏହି ବ୍ରତ ଆଚରଣ କରେ, ତେବେ ସେ ସର୍ବଗୁଣସମ୍ପନ୍ନ ପତି ଲାଭ କରେ ଏବଂ ନିଃସନ୍ତାନ ବିଧବା ଏହି ବ୍ରତଦ୍ୱାରା ସମସ୍ତ ପାପରୁ ମୁକ୍ତ ହୋଇ ଦିବ୍ୟଗତି ପାଏ । ସନ୍ତାନ ମରି ଯାଇଥିଲେ ସ୍ତ୍ରୀ ଏହି ବ୍ରତର ପ୍ରଭାବରେ ଦୀର୍ଘାୟୁ ପୁତ୍ର ଲାଭ କରେ, ଧନବତୀ କିନ୍ତୁ ଅଭାଗିନୀ ସ୍ତ୍ରୀ ସୌଭାଗ୍ୟବତୀ ହୁଏ, କୁରୂପା ସୁନ୍ଦରୀ ହୋଇଯାଏ, ରୁଗ୍‌ଣ ବ୍ୟକ୍ତି ଏହି ବ୍ରତପ୍ରଭାବରେ ରୋଗମୁକ୍ତ ହୋଇ ଇନ୍ଦ୍ରିୟଶକ୍ତି ସହିତ ବଳିଷ୍ଠ ଶରୀର ଧାରଣ କରେ ॥୨୬॥ କୌଣସି ମାଙ୍ଗଳିକ ଶ୍ରାଦ୍ଧରେ ଏହାକୁ ପାଠ କଲେ ପିତୃ ଓ ଦେବତାମାନେ ଅନନ୍ତ ତୃପ୍ତି ଲାଭ କରନ୍ତି ଏବଂ ହୋମ ସମାପ୍ତି ପରେ ଏମାନେ ସନ୍ତୁଷ୍ଟ ହେବା ସହିତ ଲକ୍ଷ୍ମୀନାରାୟଣ ମଧ୍ୟ ସନ୍ତୁଷ୍ଟ ହୋଇ ବ୍ରତଧାରୀର ସମସ୍ତ ଅଭିଳାଷ ପୂର୍ଣ୍ଣ କରନ୍ତି ॥୨୭॥ ରାଜା ପରିକ୍ଷିତ, ମରୁତ୍‌ଗଣଙ୍କର ପବିତ୍ର ଜନ୍ମବୃତ୍ତାନ୍ତ ଏବଂ ଦିତିଙ୍କର ସେହି ମହତ୍ ପୁଂସବନ ବ୍ରତ ମୁଁ ତୁମକୁ ବିଶଦ ଭାବରେ ଶୁଣାଇଲି ॥୨୮॥

# ସପ୍ତମ ସ୍କନ୍ଧ

## ପ୍ରଥମ ଅଧ୍ୟାୟ

## ଜୟବିଜୟ ବୃତ୍ତାନ୍ତ

ରାଜା ପରିକ୍ଷିତ କହିଲେ, ବ୍ରହ୍ମନ୍, ଭଗବାନଙ୍କ ପକ୍ଷରେ ସମସ୍ତ ପ୍ରାଣୀ ସମାନ । ସେ ସମସ୍ତଙ୍କର ପ୍ରିୟ, ସମସ୍ତଙ୍କର ସୁହୃଦ୍ । ତେଣୁ ସାଧାରଣ ଲୋକପରି ଇନ୍ଦ୍ରଙ୍କପାଇଁ ଦୈତ୍ୟମାନଙ୍କୁ ବଧ କରି ସେ କିପରି ବିଷମ ଆଚରଣ କଲେ ? ॥୧॥ ସେ ତ ସ୍ୱୟଂ ପରମାନନ୍ଦ । ଦେବତାମାନଙ୍କଠାରେ ତାଙ୍କର କି ପ୍ରୟୋଜନ ଅଛି ? ଏବଂ ସେ ନିଜେ ନିର୍ଗୁଣ ହୋଇଥିବାରୁ ତାଙ୍କର କାହାରିକୁ କୌଣସି ଭୟ ନାହିଁ । ତେଣୁ ସେ ଦୈତ୍ୟମାନଙ୍କ ପ୍ରତି କିପରି ବିଦ୍ୱେଷ କଲେ ? ॥୨॥ ମହାଭାଗ ! ଶ୍ରୀ ନାରାୟଣଙ୍କର ସମତ୍ୱ ଆଦି ଗୁଣାବଳୀ ପ୍ରତି ମୋର ବଡ଼ ସନ୍ଦେହ ଜାତ ହେଉଛି, ଆପଣ ତାହା ମୋଚନ କରନ୍ତୁ ॥୩॥

ଶ୍ରୀ ଶୁକଦେବ କହିଲେ, ମହାରାଜ, ତୁମେ ମୋତେ ଯେଉଁ ପ୍ରଶ୍ନ ପଚାରିଛ, ତାହା ଯଥାର୍ଥ । ଶ୍ରହରିଙ୍କ ଚରିତ ହେଉଛି ଅଦ୍ଭୁତ । ତାଙ୍କ ଭକ୍ତମାନଙ୍କର ମାହାତ୍ମ୍ୟ ଶ୍ରବଣ କଲେ ଭଗବାନଙ୍କପ୍ରତି ଭକ୍ତି ବଢ଼ିଯାଏ ॥୪॥ ନାରଦାଦି ଋଷିମାନେ ତାଙ୍କ ପବିତ୍ର ଚରିତ ଗାୟନ କରିଛନ୍ତି । ବର୍ତ୍ତମାନ ମୁଁ ମୋର ପିତା କୃଷ୍ଣଦ୍ୱୈପାୟନ ମୁନିଙ୍କୁ ପ୍ରଣାମ କରି ସେହି ଭଗବାନଙ୍କର ଲୀଳା ବର୍ଣ୍ଣନା କରିବାକୁ ଯାଉଛି ॥୫॥ ମହାରାଜ, ଭଗବାନ ବିଷ୍ଣୁ ନିର୍ଗୁଣ, ଅଜନ୍ମା, ଅବ୍ୟକ୍ତ ଏବଂ ପ୍ରକୃତିର ଊର୍ଦ୍ଧ୍ୱରେ, କିନ୍ତୁ ପ୍ରକୃତିରୂପକ ନିଜ ମାୟାଗୁଣକୁ ସ୍ୱୀକାର କରି ସେ କେତେକ ବାଧ୍ୟବାଧକତାର ବଶବର୍ତ୍ତୀ ହୁଅନ୍ତି ॥୬॥ ପରିକ୍ଷିତ, ସତ୍ତ୍ୱ, ରଜ ଓ ତମ ହେଉଛି ପ୍ରକୃତିର ଗୁଣ, ଆତ୍ମାର ନୁହେଁ । ଏହି ଗୁଣଗୁଡ଼ିକର ହ୍ରାସ ବା ବୃଦ୍ଧି ଏକ ସମୟରେ ହୁଏ ନାହିଁ ॥୭॥ ସମୟ ସମୟରେ ଭଗବାନ ଗୋଟିଏ ଗୋଟିଏ ଗୁଣକୁ ଧାରଣ କରନ୍ତି । ସତ୍ତ୍ୱଗୁଣ ପ୍ରବଳ ହେଲେ ଦେବତା ଓ ଋଷିମାନଙ୍କୁ, ରଜୋଗୁଣ ପ୍ରବଳ ହେଲେ ଅସୁରମାନଙ୍କୁ ଏବଂ ତମୋଗୁଣ ପ୍ରବଳ ହେଲେ ଯକ୍ଷ ଓ ରାକ୍ଷସମାନଙ୍କୁ ଆପଣାର କରି ବଢ଼ାଇବାରେ ସେ ସାହାଯ୍ୟ କରନ୍ତି ॥୮॥ ଯେପରି କାଷ୍ଠାଦି ଭିନ୍ନ ବସ୍ତୁରେ ଅଗ୍ନି ଥାଏ, କିନ୍ତୁ ସେଥିରୁ ତାହା ଭିନ୍ନ ବୋଲି ଜଣାପଡ଼େ ନାହିଁ, ମାତ୍ର ମନ୍ଥନ କଲାପରେ ତାହା ପ୍ରକାଶ ପାଏ, ସେହିପରି ପରମାତ୍ମା ସମସ୍ତଙ୍କ ଶରୀରରେ ଥାନ୍ତି । ମାତ୍ର ଶରୀରରୁ ପୃଥକ୍ ବୋଲି ଜଣାଯାଆନ୍ତି ନାହିଁ, କିନ୍ତୁ ବିଦ୍ୱାନ୍ ବ୍ୟକ୍ତି ନିଜର ଚିତ୍ତ ମନ୍ଥନ କରି ଅନ୍ୟ ସବୁକୁ ବାଦ୍ ଦେଇ କେବଳ ପରମାତ୍ମାଙ୍କୁ ହୃଦୟଙ୍ଗମ କରିପାରନ୍ତି ॥୯॥ ଭଗବାନ ବିଷ୍ଣୁ ଜୀବର ଭୋଗପାଇଁ ଦେହ ସୃଷ୍ଟି କରିବାକୁ ଇଚ୍ଛା କଲେ ନିଜ ମାୟାପ୍ରଭାବରେ ରଜୋଗୁଣକୁ ସୃଷ୍ଟି କରିଆଥାନ୍ତି । ସେ ବିବିଧ ଦେହାଦିରେ ରମଣ କରିବାକୁ ଇଚ୍ଛା କଲେ ପୃଥକ୍ ଭାବରେ ସତ୍ତ୍ୱଗୁଣକୁ ସୃଷ୍ଟି କରନ୍ତି ଏବଂ ଶୟନକରିବାକୁ ଇଚ୍ଛା କଲେ ତମୋଗୁଣକୁ ସୃଷ୍ଟି କରିଥାଆନ୍ତି ॥୧୦॥ ରାଜା, ଭଗବାନ ସତ୍ୟସଂକଳ୍ପ ଅଟନ୍ତି । ପ୍ରକୃତି ଓ ପୁରୁଷକୁ ନିମିତ୍ତ କରି ସେ କାଳକୁ ସୃଷ୍ଟି କରନ୍ତି । କାଳସ୍ୱରୂପ ଭଗବାନ୍ ସତ୍ତ୍ୱଗୁଣର ବୃଦ୍ଧି କଲେ ସତ୍ତ୍ୱଗୁଣସମ୍ପନ୍ନ ଦେବତାମାନଙ୍କର ବଳକୁ ବଢ଼ାଇଦିଅନ୍ତି ଏବଂ ମହାଯଶା ପରମେଶ୍ୱର ଦେବତାମାନଙ୍କ ପ୍ରୀତି ଉତ୍ପାଦନପାଇଁ ରଜୋଗୁଣ ଓ ତମୋଗୁଣପ୍ରଧାନ ଦୈତ୍ୟମାନଙ୍କୁ ସଂହାର କରନ୍ତି ॥୧୧॥

ପରିକ୍ଷିତ, ପୂର୍ବେ ରାଜସୂୟ ଯଜ୍ଞର ଅନୁଷ୍ଠାନ କାଳରେ ଅଜାତଶତ୍ରୁ ରାଜା ଯୁଧିଷ୍ଠିର ଏ ବିଷୟରେ ଏକ ପ୍ରଶ୍ନ କରିଥିଲେ ଏବଂ ଦେବର୍ଷି ନାରଦ ସନ୍ତୁଷ୍ଟ ହୋଇ ତାଙ୍କୁ ଏକ ଇତିହାସର ଆଖ୍ୟାନ ଶୁଣାଇଥିଲେ ॥୧୨॥ ଏହି ବିଶାଳ ରାଜସୂୟ ଯଜ୍ଞରେ

ରାଜା ଯୁଧିଷ୍ଠିର ଏକ ଅଦ୍ଭୁତ ଘଟଣା ଦେଖିଥିଲେ । ସମସ୍ତଙ୍କ ଆଖି ଆଗରେ ଚେଦିରାଜ ଶିଶୁପାଳ ଭଗବାନ ଶ୍ରୀକୃଷ୍ଣଙ୍କ ଦେହରେ ଲୀନ ହୋଇଗଲେ ॥୧୩॥ ଏହି ଘଟଣାରେ ଆଶ୍ଚର୍ଯ୍ୟଚକିତ ହୋଇ ରାଜା ଯୁଧିଷ୍ଠିର ଅନ୍ୟ ଋଷିମାନଙ୍କ ସହ ଯଜ୍ଞସ୍ଥଳରେ ବସିଥିବା ଦେବର୍ଷି ନାରଦଙ୍କୁ ପଚାରିଲେ ॥୧୪॥ ଯୁଧିଷ୍ଠିର କହିଲେ, ଏହା ଅତିଶୟ ଅଦ୍ଭୁତ ବିଷୟ ଯେ ପରମତତ୍ତ୍ୱ ଭଗବାନ ବାସୁଦେବଙ୍କଠାରେ ଲୀନ ହେବା ତାଙ୍କ ଏକାନ୍ତ ଭକ୍ତମାନଙ୍କ ପକ୍ଷରେ ଦୁର୍ଲଭ ହେଲେ ମଧ୍ୟ ତାଙ୍କର ଚିରଦ୍ୱେଷୀ ଚେଦିରାଜ ଶିଶୁପାଳ ପକ୍ଷରେ କିପରି ସମ୍ଭବ ହେଲା ? ॥୧୫॥ ମହର୍ଷି ନାରଦ, ଏହାର ରହସ୍ୟ କଣ ଆମେ ଜାଣିବାକୁ ଚାହୁଁ । ପୂର୍ବେ ଭଗବାନଙ୍କୁ ନିନ୍ଦା କରୁଥିବାଯୋଗୁଁ ରାଜା ବେଣଙ୍କୁ ଋଷିମାନେ ନରକରେ ପକାଇ ଦେଇଥିଲେ ॥୧୬॥ ଦମଘୋଷଙ୍କ ପୁତ୍ର ଏହି ପାପୀ ଶିଶୁପାଳ ଓ ଦୁର୍ମତି ଦନ୍ତବକ୍ର ଦରୋଟି କଥା କହିବାଦିନଠାରୁ ଏ ପର୍ଯ୍ୟନ୍ତ ଗୋବିନ୍ଦଙ୍କ ପ୍ରତି ବିଦ୍ୱେଷ ଆଚରଣ କରି ଆସିଛନ୍ତି ॥୧୭॥ ପରାତ୍ପର ଅବିନଶ୍ୱର ବ୍ରହ୍ମସ୍ୱରୂପ ଶ୍ରୀକୃଷ୍ଣଙ୍କୁ ଯେଉଁ ଶିଶୁପାଳ ଓ ଦନ୍ତବକ୍ର ସବୁବେଳେ ଗାଳି ଦେଉଥିଲେ, ଆଶ୍ଚର୍ଯ୍ୟର କଥା ସେ ଦୁହିଁଙ୍କ ଜିଭରେ କୁଷ୍ଠ ହେଲା ନାହିଁ କିମ୍ବା ସେ ଦୁହେଁ ଘୋର ଅନ୍ଧକାରମୟ ନରକରେ ପଡ଼ିଲେ ନାହିଁ ॥୧୮॥ ଅଥଚ ସମସ୍ତେ ଦେଖୁ ଦେଖୁ ଭଗବାନଙ୍କର ଦୁର୍ଲଭଧାମକୁ ସେ ଦୁହେଁଯାକ ସହଜରେ ଚାଲିଗଲେ ॥୧୯॥ ପବନରେ ଦୀପଶିଖା ଯେପରି ବିଚଳିତ ହୁଏ, ସେହିପରି ଏହି ଘଟଣାରେ ମୋର ବୁଦ୍ଧି ବିଚଳିତ ହେଉଛି । ହେ ସର୍ବଜ୍ଞ, ଆପଣ ଏହି ଅଦ୍ଭୁତ ଘଟଣାର ରହସ୍ୟ ମୋତେ ବୁଝାଇ ଦିଅନ୍ତୁ ॥୨୦॥

ଶୁକଦେବ କହିଲେ, ରାଜାଙ୍କର କଥା ଶୁଣି ଭଗବାନ ନାରଦ ଋଷି ପ୍ରସନ୍ନ ହୋଇ ସଭାସ୍ଥ ଲୋକମାନଙ୍କ ସମକ୍ଷରେ ଏହିପରି ଉତ୍ତର ଦେଲେ -- ॥୨୧॥ ନାରଦ କହିଲେ, ନିନ୍ଦା ଓ ସ୍ତୁତି ଏବଂ ସତ୍‌କାର ଓ ତିରସ୍କାର -- ଏସବୁ ସହିବାପାଇଁ ପ୍ରକୃତି ଓ ପୁରୁଷ ମିଶି ଏହି ଅବିବେକୀ ଶରୀରକୁ ନିର୍ମାଣ କରିଛନ୍ତି ॥୨୨॥ ଏହି ଶରୀରକୁ ଆତ୍ମା ବୋଲି ଧରିନେବାଯୋଗୁଁ 'ମୁଁ ଏବଂ ମୋର' ଭାବନା ସୃଷ୍ଟି ହେଉଚି । ପୁଣି ଏହି ଭେଦବୁଦ୍ଧିଯୋଗୁଁ କେହି ନିନ୍ଦା ବା ହିଂସା କଲେ, ତାକୁ ଦୁଃଖଭୋଗ କରିବାକୁ ପଡୁଚି ॥୨୩॥ ଏହି ଦେହାଭିମାନଯୋଗୁଁ ଦେହର ବିନାଶକୁ ପ୍ରାଣୀର ବିନାଶ ବୋଲି ଧରାଯାଏ । କିନ୍ତୁ ମୁକ୍ତିଦାତା ଅଦ୍ୱିତୀୟ ସର୍ବାନ୍ତର୍ଯାମୀ ଭଗବାନଙ୍କର ଦେହାଭିମାନ ନ ଥାଏ । ତେବେ ସେ ଯେ ଦୈତ୍ୟମାନଙ୍କୁ ଦଣ୍ଡ ଦିଅନ୍ତି, ତାହା ସେମାନଙ୍କର ମଙ୍ଗଳପାଇଁ; ସେଥିରେ ହିଂସାଭାବ ନ ଥାଏ ॥୨୪॥ ସେ ଦୃଷ୍ଟିରୁ ବୈରଭାବରେ ହେଉ କିମ୍ବା ବୈରହୀନ ଭକ୍ତିଭାବରେ ହେଉ, ଭୟରେ ହେଉ କିମ୍ବା ସ୍ନେହରେ ହେଉ, ଅଥବା କାମନାରେ ହେଉ -- ଯେଉଁ ଭାବରେ ହେଉନା କାହିଁକି, ଭଗବାନଙ୍କଠାରେ ନିଜର ଚିତ୍ତକୁ ଲଗାଇ ଦେବା ଦରକାର । ତାଙ୍କ ଦୃଷ୍ଟିରେ ଏହି ସବୁ ଭାବମଧ୍ୟରେ କୌଣସି ପାର୍ଥକ୍ୟ ନାହିଁ ॥୨୫॥ ମୁଁ ତ ଦୃଢ଼ନିଶ୍ଚିତ ଯେ ଶତ୍ରୁଭାବନାରେ ଜୀବ ଭଗବାନଙ୍କପ୍ରତି ଯେପରି ତନ୍ମୟ ହୋଇଯାଏ, ଭକ୍ତିଭାବରେ ସେପରି ହୋଇପାରେ ନାହିଁ ॥୨୬॥ ଏକପ୍ରକାର ଭ୍ରମର ଅଛନ୍ତି, ଯେଉଁମାନେ ଏକଜାତୀୟ କୀଟକୁ ଆଣି କାନ୍ଥରେ ଥିବା ତାଙ୍କ ଗାତ ଭିତରେ ବନ୍ଦ କରି ଦିଅନ୍ତି; ସେହି କୀଟ ଉକ୍ତ ଭ୍ରମର ପ୍ରତି ଭୟ ଓ ଦ୍ୱେଷରେ ତାହା ବିଷୟରେ ଭାବି ଭାବି ଶେଷରେ ସେହି ଭ୍ରମରର ରୂପ ଧାରଣ କରେ ॥୨୭॥ ସେହିପରି ମାୟାମନୁଷ୍ୟ-ରୂପଧାରୀ ଭଗବାନ କୃଷ୍ଣଙ୍କଠାରେ ବୈର ଆଚରଣ କରି କେବଳ ତାଙ୍କୁ ହିଁ ସବୁବେଳେ ଚିନ୍ତା କରିବା ଦ୍ୱାରା ପାପରହିତ ହୋଇ ଜୀବ ତାଙ୍କୁ ହିଁ ଲାଭ କରିଥାଏ ॥୨୮-୨୯॥ ଯେପରି ଭକ୍ତିରେ ଭଗବାନଙ୍କଠାରେ ଲୟ ରହେ, ସେହିପରି କାମନା, ଦ୍ୱେଷ, ଭୟ ଓ ସ୍ନେହଦ୍ୱାରା ତାଙ୍କଠାରେ ଲୟ (ମନୋନିବେଶ) ରଖି ଅନେକେ ନିଜର ପାତକ ଦୂର କରି ତାଙ୍କୁ ପାଇଥିବାର ଦୃଷ୍ଟାନ୍ତ ରହିଚି । ଯୁଧିଷ୍ଠିର, ଗୋପୀମାନେ କାମବଶରେ, କଂସ ଭୟରେ, ଶିଶୁପାଳ ଆଦି ରାଜାମାନେ ଦ୍ୱେଷରେ, ବୃଷ୍ଣିମାନେ ପାରିବାରିକ ସମ୍ବନ୍ଧରେ, ତୁମେମାନେ (ପାଣ୍ଡବମାନେ) ପ୍ରୀତିରେ ଏବଂ ଆମେ ଭକ୍ତିରେ ତାଙ୍କୁ ଲାଭ କରିଚୁ ॥୩୦॥ ଭକ୍ତମାନଙ୍କୁ ଛାଡ଼ି ଭଗବାନଙ୍କୁ ଚିନ୍ତା କରୁଥିବା ଏହି ପାଞ୍ଚ ପ୍ରକାର ବ୍ୟକ୍ତିଙ୍କ

ମଧ୍ୟରେ ରାଜା ବେଣଙ୍କୁ ଗଣାଯାଏ ନାହିଁ, କାରଣ ସେ କୌଣସି ପ୍ରକାରେ ଭଗବାନଙ୍କୁ ଚିନ୍ତା କରୁ ନ ଥିଲେ (ତେଣୁ ସେ ନରକଗାମୀ ହେଲେ) । ଅତଏବ ଯେକୌଣସି ଉପାୟରେ ଭଗବାନ ବାସୁଦେବଙ୍କଠାରେ ମନୋନିବେଶ କରିବାକୁ ହେବ ॥୩୧॥ ପାଣ୍ଡୁନନ୍ଦନ, ତୁମର ମାଉସୀପୁଅ ଭାଇ ଶିଶୁପାଳ ଓ ଦନ୍ତବକ୍ର ବୈକୁଣ୍ଠରେ ବିଷ୍ଣୁଙ୍କର ଶ୍ରେଷ୍ଠ ପାର୍ଷଦଭାବରେ ରହିଥିଲେ । ବ୍ରାହ୍ମଣଙ୍କ ଶାପରେ ସେମାନଙ୍କୁ ପଦଚ୍ୟୁତ ହେବାକୁ ପଡ଼ିଥିଲା ॥୩୨॥

ଯୁଧିଷ୍ଠିର ପଚାରିଲେ, ଦେବର୍ଷି, ଭଗବାନ ବିଷ୍ଣୁଙ୍କର ପାର୍ଷଦଙ୍କୁ ପ୍ରଭାବିତ କରିବା ପରି ଶାପ କ'ଣ ହୋଇପାରେ ଏବଂ ଏ ଶାପ କିଏ ଦେଇଥିଲେ ? ଯେଉଁମାନେ ଭଗବାନଙ୍କର ଏକାନ୍ତ ଭକ୍ତ, ସେମାନେ ପୁଣି ଜନ୍ମ ହେବା ଆଦୌ ବିଶ୍ୱାସଯୋଗ୍ୟ ନୁହେଁ ॥୩୩॥ ଯେଉଁମାନେ ବୈକୁଣ୍ଠରେ ବାସ କରନ୍ତି ସେମାନଙ୍କର ପ୍ରାକୃତ ଦେହ, ଇନ୍ଦ୍ରିୟ ଓ ପ୍ରାକୃତ ପ୍ରାଣ ନ ଥାଏ । ତେଣୁ ପ୍ରାକୃତ ଦେହ ସହିତ ସେମାନେ କିପରି ସମ୍ବନ୍ଧ ସ୍ଥାପନ କଲେ, ଆପଣ ତାହା ମୋତେ ବୁଝାଇଦିଅନ୍ତୁ ॥୩୪॥ ମହର୍ଷି ନାରଦ କହିଲେ, ଏକଦା ବ୍ରହ୍ମାଙ୍କର ପୁତ୍ର ସନକାଦି ଋଷିମାନେ ଇଚ୍ଛା ଅନୁସାରେ ତ୍ରିଭୁବନ ଭ୍ରମଣ କରି ବୈକୁଣ୍ଠରେ ପହଞ୍ଚିଲେ । ସେମାନେ ବୟସରେ ପ୍ରାଚୀନ ହେଲେ ମଧ୍ୟ ପାଞ୍ଚ ଛ'ବର୍ଷର ବାଳକଙ୍କ ପରି ଦେଖାଯାଉଥିଲେ । ଏଣୁ ଏମାନଙ୍କୁ ସାଧାରଣ ପିଲା ବୋଲି ମନେ କରି ଦ୍ୱାରପାଳମାନେ ଭିତରକୁ ଯିବାପାଇଁ ବାରଣ କଲେ ॥୩୫-୩୬॥ ଏହାଫଳରେ ସେମାନେ କ୍ରୁଦ୍ଧ ହୋଇ ଦ୍ୱାରପାଳ ଦୁହିଁଙ୍କୁ ଅଭିଶାପ ଦେଲେ - ହେ ମୂର୍ଖ ! ତୁମେ ଦୁଇ ଜଣ ରଜୋଗୁଣ ଓ ତମୋଗୁଣ ଶୂନ୍ୟ ଭଗବାନ ମଧୁସୂଦନଙ୍କର ପାଦତଳେ ରହିବା ପାଇଁ ଯୋଗ୍ୟ ନୁହଁ, ତେଣୁ ଖୁବ୍ ଶୀଘ୍ର ତୁମେ ପାପପୂର୍ଣ୍ଣ ଅସୁର ଯୋନିରେ ଜନ୍ମ ହୁଅ ॥୩୭॥ ଅଭିଶପ୍ତ ଦ୍ୱାରପାଳଦ୍ୱୟ ବୈକୁଣ୍ଠରୁ ଖସିପଡୁଥିବାର ଦେଖି ଦୁହିଁଙ୍କ ପ୍ରତି ଋଷିମାନେ ଦୟାପରବଶ ହୋଇ କହିଲେ -- ତିନି ଜନ୍ମରେ ଏହି ଶାପ ଭୋଗ କରି ତୁମେ ପୁଣି ବୈକୁଣ୍ଠକୁ ଫେରିଆସିବ ॥୩୮॥ ଯୁଧିଷ୍ଠିର, ଏହି ଦୁଇ ଜଣ ଦିତିଙ୍କର ପୁତ୍ର ହୋଇ ଜନ୍ମ ହେଲେ । ବଡ଼ଭାଇ ହିରଣ୍ୟକଶିପୁ ଓ ସାନ ହିରଣ୍ୟାକ୍ଷ । ସେ ଦୁହେଁ ଦୈତ୍ୟ ଓ ଦାନବ ସମାଜଦ୍ୱାରା ବନ୍ଦିତ ହେଲେ । ଭଗବାନ ବିଷ୍ଣୁ ନୃସିଂହ ରୂପ ଧାରଣ କରି ହିରଣ୍ୟକଶିପୁକୁ ବଧ କଲେ ଏବଂ ପୃଥିବୀକୁ ଉଦ୍ଧାର କରିବାପାଇଁ ବରାହାବତାର ଧାରଣ କରି ହିରଣ୍ୟାକ୍ଷକୁ ବଧ କଲେ ॥୩୯-୪୦॥ ହିରଣ୍ୟକଶିପୁର ପୁତ୍ର ପ୍ରହ୍ଲାଦ ବିଷ୍ଣୁଙ୍କର ପ୍ରିୟ ଭକ୍ତ ଥିଲେ । ତାଙ୍କୁ ମାରିବାପାଇଁ ହିରଣ୍ୟକଶିପୁ ତାଙ୍କୁ ବହୁତ କିଛି ଯନ୍ତ୍ରଣା ଦେବାକୁ ଲାଗିଲା ॥୪୧॥ କିନ୍ତୁ ପରମଭକ୍ତ ପ୍ରହ୍ଲାଦ ସମସ୍ତ ପ୍ରାଣୀଙ୍କ ମଧ୍ୟରେ ପରମାତ୍ମାଙ୍କୁ ଦେଖିପାରୁଥିଲେ । ସେ ଶାନ୍ତ, ସମଦର୍ଶୀ ଏବଂ ଭଗବାନଙ୍କ ପ୍ରଭାବଦ୍ୱାରା ସୁରକ୍ଷିତ ଥିଲେ । ତେଣୁ ତାଙ୍କୁ ମାରିବାର ସମସ୍ତ ଚେଷ୍ଟା ବିଫଳ ହେଲା ॥୪୨॥ ପରଜନ୍ମରେ ଏ ଦୁଇ ଜଣ କେଶିନୀଙ୍କ ଗର୍ଭରେ ବିଶ୍ରବାଋଷିଙ୍କ ଔରସରୁ ରାବଣ ଓ କୁମ୍ଭକର୍ଣ୍ଣ ରୂପରେ ଜନ୍ମ ହେଲେ ଏବଂ ରାକ୍ଷସ ହୋଇ ତିନି ଲୋକରେ ବହୁ ଉପଦ୍ରବ ଘଟାଇଲେ ॥୪୩॥ ସେ ଦୁହିଁଙ୍କୁ ଶାପରୁ ମୁକ୍ତ କରିବାପାଇଁ ଭଗବାନ ରଘୁକୁଳରେ ରାମଚନ୍ଦ୍ର ରୂପରେ ଅବତୀର୍ଣ୍ଣ ହୋଇ ବଧ କରିଥିଲେ । ଯୁଧିଷ୍ଠିର, ମାର୍କଣ୍ଡେୟ ମୁନିଙ୍କ ମୁହଁରୁ ଭଗବାନ ଶ୍ରୀରାମଙ୍କର ବୀରତ୍ୱପୂର୍ଣ୍ଣ ଚରିତ ବିଷୟ ଶ୍ରବଣ କରିବ ॥୪୪॥ ସେହି ଜୟ ବିଜୟ ଦ୍ୱାରପାଳ ଦୁଇ ଜଣ ଏହି ଜନ୍ମରେ ତୁମ ମାଉସୀଙ୍କର ପୁଅ ହୋଇ ଶିଶୁପାଳ ଓ ଦନ୍ତବକ୍ର ରୂପରେ କ୍ଷତ୍ରିୟ କୁଳରେ ଜନ୍ମ ହୋଇଥିଲେ । ଭଗବାନ୍ ଶ୍ରୀକୃଷ୍ଣଙ୍କ ଚକ୍ରରେ ନିହତ ହୋଇ ଦୁହେଁ ଶାପମୁକ୍ତ ହୋଇଗଲେ ॥୪୫॥ ତୀବ୍ର ବୈରଭାବ ଘେନି ଦୁହେଁ ସର୍ବଦା ଭଗବାନ୍ କୃଷ୍ଣଙ୍କୁ ଚିନ୍ତା କରୁଥିଲେ ଏବଂ ଚିନ୍ତାର ହିଁ ତନ୍ମୟତା ହେତୁ ଭଗବାନଙ୍କୁ ଲାଭ କରି ପୁଣି ପାର୍ଷଦରୂପେ ତାଙ୍କ ପାଖକୁ ଚାଲିଗଲେ ॥୪୬॥

ଯୁଧିଷ୍ଠିର ପଚାରିଲେ, ମହର୍ଷି, ନିଜର ସ୍ନେହମୟ ପୁତ୍ର ମହାତ୍ମା ପ୍ରହ୍ଲାଦଙ୍କ ପ୍ରତି ହିରଣ୍ୟକଶିପୁର କାହିଁକି ଦ୍ୱେଷ ଜାତ ହେଲା ଏବଂ ଦୈତ୍ୟପୁତ୍ର ହୋଇ ପ୍ରହ୍ଲାଦ ଭଗବାନଙ୍କପ୍ରତି କିପରି ଅନୁରକ୍ତ ହେଲେ ? ॥୪୭॥

## ଦ୍ୱିତୀୟ ଅଧ୍ୟାୟ

# ହିରଣ୍ୟକଶିପୁ

ନାରଦ କହିଲେ, ଯୁଧିଷ୍ଠିର, ଭଗବାନ ବରାହରୂପ ଧାରଣ କରି ଭାଇ ହିରଣ୍ୟାକ୍ଷକୁ ବଧ କରିବାର ଶୁଣି ହିରଣ୍ୟକଶିପୁ କ୍ରୋଧରେ ଜଳିଗଲା ଓ ଶୋକାକୁଳ ହୋଇପଡ଼ିଲା ॥୧॥ କ୍ରୋଧରେ କମ୍ପିଉଠି ସେ ବାରମ୍ବାର ନିଜର ଓଠକୁ କାମୁଡ଼ିବାକୁ ଲାଗିଲା । କ୍ରୋଧପୂର୍ଣ୍ଣ ଚକ୍ଷୁରୁ ନିର୍ଗତ ଅଗ୍ନିର ଧୂମରେ ଧୂମାୟିତ ଆକାଶକୁ ଚାହିଁ କହିବାକୁ ଲାଗିଲା ॥୨॥ ତାର ଭୟଙ୍କର ଦନ୍ତ, ଉଗ୍ରଦୃଷ୍ଟି, ଭ୍ରୂକୁଟିକୁଟିଳ ମୁଖମଣ୍ଡଳକୁ ଚାହିଁ ହେଉ ନ ଥିଲା । ସେ ସଭାସ୍ଥଳରେ ଏକ ଶୂଳ ଧାରଣ କରି କହିଲା, 'ହେ ଦୈତ୍ୟ ଓ ଦାନବଗଣ, ହେ ଦ୍ୱିମୂର୍ଦ୍ଧା, ତ୍ର୍ୟକ୍ଷ, ଶମ୍ବର, ଶତବାହୁ, ହୟଗ୍ରୀବ, ନମୁଚି, ପାକ, ଇଲ୍ୱଳ, ବିପ୍ରଚିତ୍ତି, ପୁଲୋମା ଓ ଶକୁନ ଆଦି ଦାନବବୃନ୍ଦ ! ମୁଁ ଯାହା କହୁଛି ଶୁଣ ଏବଂ ଏହାପରେ ଯାହା ତୁମର କର୍ତ୍ତବ୍ୟ ତାହା ଅବିଳମ୍ବେ ପାଳନ କର' ॥୩-୫॥ ତୁମେମାନେ ଜାଣିଥିବ ଯେ, ମୋର ଅତି ପ୍ରିୟ ଓ ସୁହୃଦ୍ ଭାଇକୁ ମୋର କ୍ଷୁଦ୍ରବୁଦ୍ଧି ଶତ୍ରୁମାନେ ବିଷ୍ଣୁକୁ ଲଗାଇ ହତ୍ୟା କରିଛନ୍ତି । ବିଷ୍ଣୁ ଦେବ ଓ ଦାନବ ଉଭୟଙ୍କ ପ୍ରତି ସମଭାବାପନ୍ନ ହେଲେ ମଧ୍ୟ ଦେବତାମାନଙ୍କ ଧାଁ ଧଉଡ଼ ଓ ଅନୁନୟ ବିନୟଦ୍ୱାରା ତାଙ୍କରି ପକ୍ଷ ଗ୍ରହଣ କରିଛି ॥୬॥ ଏହି ବିଷ୍ଣୁ ପ୍ରଥମେ ଶୁଦ୍ଧ ଏବଂ ନିରପେକ୍ଷ ଥିଲା, କିନ୍ତୁ ପରେ ମାୟାବରାହ ରୂପ ଗ୍ରହଣ କରି ନିଜର ନିରପେକ୍ଷ ସ୍ୱଭାବକୁ ଛାଡ଼ିଦେଇଛି । ବାଳକ ପରି ଯେ ତାକୁ ସେବା କଲା ବା ପ୍ରଶଂସା କଲା, ତାର ପକ୍ଷ ସେ ଗ୍ରହଣ କରୁଛି । ଏହାର ଚିତ୍ତ ସ୍ଥିର ନୁହେଁ ॥୭॥ ବର୍ତ୍ତମାନ ଏହି ଶୂଳଦ୍ୱାରା ମୁଁ ତା'ର ଗଳାକୁ ଛେଦନ କରିବି ଏବଂ ସେଥିରୁ ଯେଉଁ ପ୍ରଚୁର ରକ୍ତସ୍ରାବ ହେବ ତଦ୍ୱାରା ମୋର ରୁଧିରପ୍ରେମୀ ଭାଇର ତର୍ପଣ କରିବି ॥୮॥ ଏହି ମାୟାବୀ ଶତ୍ରୁ ନଷ୍ଟ ହୋଇଗଲେ ମୂଳ ନଷ୍ଟ ହେବା ପରେ ଶାଖାମାନେ ଯେପରି ଶୁଖି ଯାଆନ୍ତି, ବିଷ୍ଣୁପ୍ରାଣ ଦେବତାମାନଙ୍କର ଠିକ୍ ସେହିପରି ଅବସ୍ଥା ହେବ ॥୯॥ ସେଥିପାଇଁ ତୁମେମାନେ ବ୍ରାହ୍ମଣ ଓ କ୍ଷତ୍ରିୟପୂର୍ଣ୍ଣ ଏହି ପୃଥିବୀକୁ ଯାଅ । ସେଠାରେ ତପ, ଯଜ୍ଞ, ସ୍ୱାଧ୍ୟାୟ, ବ୍ରତ ଓ ଦାନ କରୁଥିବା ବ୍ୟକ୍ତିମାନଙ୍କୁ ବଧ କର ॥୧୦॥ ଯଜ୍ଞ ଓ ଧର୍ମ ହେଉଛି ବିଷ୍ଣୁର ସ୍ୱରୂପ । ଦେବତା, ଋଷି, ପିତୃ ଓ ପ୍ରାଣୀମାନଙ୍କର ଏବଂ ଧର୍ମର ସେ ଏକମାତ୍ର ଆଶ୍ରୟ ସ୍ଥଳ । ବ୍ରାହ୍ମଣମାନଙ୍କଦ୍ୱାରା ହିଁ ଏହି ସବୁ ଯଜ୍ଞ କରାଯାଏ ॥୧୧॥ ତେଣୁ ହେ ଦାନବଗଣ, ଯେଉଁ ଯେଉଁ ସ୍ଥାନରେ ଗୋ, ବ୍ରାହ୍ମଣ ଥିବେ ଏବଂ ବେଦୋକ୍ତ ବର୍ଣ୍ଣାଶ୍ରମ ଆଦି ଧର୍ମ କର୍ମ ହେଉଥିବ, ସେ ସବୁ ସ୍ଥାନକୁ ଯାଇ ଜଳାଇ ଦିଅ ଓ ଧ୍ୱଂସ କରିଦିଅ ॥୧୨॥ ଦାନବମାନେ ସ୍ୱଭାବତଃ ଅନ୍ୟକୁ କଷ୍ଟ ଦିଅନ୍ତି । ବର୍ତ୍ତମାନ ସେମାନେ ପ୍ରଭୁର ଆଜ୍ଞା ଶିରୋଧାର୍ଯ୍ୟ କରି ପ୍ରଜାମାନଙ୍କପ୍ରତି ଅତ୍ୟାଚାର କରିବାକୁ ଲାଗିଲେ ॥୧୩॥ ସେମାନେ ନଗର, ଗ୍ରାମ, ଗାଈଗୋଠ, ବଗିଚା, କ୍ଷେତ, ଆରାମସ୍ଥଳ, ଋଷିଙ୍କର ଆଶ୍ରମ, ରତ୍ନଖଣି, ଚାଷୀଙ୍କ ବସ୍ତି, ପାହାଡ଼ିଆ ଗାଁ, ଗୋପାଳଙ୍କ ବସ୍ତି ଓ ବ୍ୟବସାୟ କେନ୍ଦ୍ର ଥିବା ବଡ଼ବଡ଼ ସହରମାନଙ୍କୁ ଜଳାଇଦେଲେ ॥୧୪॥ କେହି କେହି ଦୈତ୍ୟ ଖଣତିଦ୍ୱାରା ବଡ଼ବଡ଼ ପୋଲ, ପାଚେରୀ ଓ ନଗରର ଫାଟକମାନଙ୍କୁ ଫୁଟାଇ ଭାଙ୍ଗିଦେଲେ ଏବଂ ଅନ୍ୟମାନେ କୁରାଢ଼ିଦ୍ୱାରା ଫଳ, ଫୁଲ ଧରିଥିବା ଗଛମାନଙ୍କୁ କାଟି ପକାଇଲେ । ଆଉ କେହି କେହି ଜଳନ୍ତା କାଠ ନେଇ ଲୋକମାନଙ୍କ ଘରେ ନିଆଁ ଲଗାଇଦେଲେ ॥୧୫॥ ଏହିପରି ହିରଣ୍ୟକଶିପୁର ଅନୁଚରମାନେ ପୃଥିବୀରେ ବହୁ ଉପଦ୍ରବ କରି ଲାଗିଲେ । ଦେବତାମାନେ ଏହି ସମୟରେ ସ୍ୱର୍ଗ ଛାଡ଼ିଦେଇ ଅଲକ୍ଷିତ ଭାବରେ ଏଣେ ତେଣେ ବୁଲିବାକୁ ଲାଗିଲେ ॥୧୬॥ ଶୋକାର୍ତ୍ତ ହିରଣ୍ୟକଶିପୁ ମୃତ ଭାଇର ଉଦ୍ଦେଶ୍ୟରେ ତର୍ପଣାଦି କରି ଭାଇର ପୁଅମାନଙ୍କୁ ସାନ୍ତ୍ୱନା ଦେବାକୁ ଲାଗିଲା ॥୧୭॥ ଦୈତ୍ୟରାଜ ହିରଣ୍ୟକଶିପୁର ଦେଶକାଳ ସମ୍ପର୍କରେ ବେଶ୍ ଜ୍ଞାନ ଥିଲା । ସେ ଶକୁନି, ଶମ୍ବର, ଧୃଷ୍ଟ, ଭୂତସନ୍ତାପନ, ବୃକ, କାଳନାଭ, ମହାନାଭ, ହରିଶ୍ମଶ୍ରୁ ଓ ଉତ୍କଚ -- ନିଜର ଏହି

ପୁତ୍ରରାମାନଙ୍କୁ ଏବଂ ସେମାନଙ୍କର ମା' ନିଜର ଭାଇବୋହୂ ଭାନୁକୁ ଏବଂ ନିଜର ମାତା ଦିତିଙ୍କୁ ମଧୁର ବାକ୍ୟରେ ସାନ୍ତ୍ୱନା ଦେଇ କହିଲା -- ॥୧୮-୧୯॥ ମାତା, ବୋହୂ ଓ ପୁତ୍ରଗଣ, ବୀର ହିରଣ୍ୟାକ୍ଷପାଇଁ ଶୋକ କରିବା ଉଚିତ ନୁହେଁ । ବୀର ଯୋଦ୍ଧା ଯଦି ଶତ୍ରୁ ସହିତ ସମ୍ମୁଖଯୁଦ୍ଧରେ ନିହତ ହୁଏ, ତେବେ ତାହା ପକ୍ଷରେ ସେହି ମୃତ୍ୟୁ ଯଥାର୍ଥ ଓ ପ୍ରଶଂସନୀୟ ॥୨୦॥ ଦେବୀ, ଦୈବବଶତଃ ଏହି ସଂସାରରେ ପ୍ରାଣୀମାନଙ୍କର ମିଳନ ହୁଏ ଏବଂ ପ୍ରାକ୍ତନକର୍ମଯୋଗୁଁ ସେମାନଙ୍କର ବିଚ୍ଛେଦ ମଧ୍ୟ ଘଟେ ଠିକ୍ ଯେପରି ଯାତ୍ରୀମାନେ କିଏ କୁଆଡୁ ଆସି ପଥପ୍ରାନ୍ତରେ ଥିବା ପାନୀୟଶାଳା (ପାନ୍ଥଶାଳା)ରେ ଏକତ୍ର ହୋଇଥା'ନ୍ତି ଓ ପୁଣି ନିଜ ନିଜର ଗନ୍ତବ୍ୟ ପଥରେ ଚାଲିଯାଆନ୍ତି ॥୨୧॥ ଆତ୍ମାର ଜନ୍ମ ନାହିଁ କି ମୃତ୍ୟୁ ନାହିଁ । ତାହା ଶୁଦ୍ଧ, ସର୍ବବ୍ୟାପୀ, ସର୍ବଜ୍ଞ ଏବଂ ଦେହ ଓ ଇନ୍ଦ୍ରିୟ ଆଦିରୁ ପୃଥକ୍, କିନ୍ତୁ ନିଜର ମାୟାରେ ସେ ବିଭିନ୍ନ ଗୁଣକୁ ସ୍ୱୀକାର କରି ସଂସାରରେ ଲିଙ୍ଗଶରୀର ଧାରଣ କରେ ॥୨୨॥ କଲ୍ୟାଣି, ଯେପରି ଚଳମାନ ଜଳସ୍ରୋତରେ ପ୍ରତିବିମ୍ବିତ ବୃକ୍ଷସବୁ ହଲିଲାପରି ଜଣାଯାଏ, ଏବଂ ଆଖିକୁ ଚାରିଆଡ଼େ ବୁଲାଇଲେ ଚାରିଆଡ ବୁଲିଲାପରି ଦେଖାଯାଏ, ସେହିପରି ବିଷୟବାସନାପାଇଁ ଭ୍ରମୁଥିବା ମନଯୋଗୁଁ ନିର୍ବିକାର ଆତ୍ମା ଦେହାଦି ଗୁଣଯୁକ୍ତ ବୋଲି ମନେହୁଏ ॥୨୩-୨୪॥ ଦେହରହିତ ଆତ୍ମାକୁ ଦେହ ଜ୍ଞାନ କରିବା ହେଉଛି ଅଜ୍ଞାନ, ତଦ୍ଦ୍ୱାରା ପ୍ରିୟ ବା ଅପ୍ରିୟ ବସ୍ତୁ ସହିତ ମିଳନ ବା ବିଚ୍ଛେଦ ଘଟେ । କର୍ମର ସଂଯୋଗଯୋଗୁଁ ସଂସାରଚକ୍ରରେ ପଡ଼ିବାକୁ ହୁଏ । ତାହାଫଳରେ ଜନ୍ମ, ମୃତ୍ୟୁ, ବହୁବିଧ ଶୋକ, ଅବିବେକିତା, ଚିନ୍ତା ଓ ବିବେକର ବିସ୍ମୃତି ଆଦି ଘଟିଥାଏ ॥୨୫-୨୬॥ ଏ ବିଷୟରେ ଏକ ପ୍ରାଚୀନ ଦୃଷ୍ଟାନ୍ତର ଅବତାରଣା କରାଯାଏ । ତାହା ହେଉଛି ଯମ ଓ ଏକ ମୃତବ୍ୟକ୍ତିର ବନ୍ଧୁମାନଙ୍କ ମଧ୍ୟରେ କଥୋପକଥନ । ତାହା ମନ ଦେଇ ଶୁଣ ॥୨୭॥

ଉଶୀନର ଦେଶରେ ସୁଯଜ୍ଞ ନାମରେ ଜଣେ ବିଖ୍ୟାତ ରାଜା ଥିଲେ । ସେ ଯୁଦ୍ଧରେ ଶତ୍ରୁମାନଙ୍କ ଦ୍ୱାରା ନିହତ ହେବାରୁ ତାଙ୍କର ବନ୍ଧୁବାନ୍ଧବମାନେ ତାଙ୍କୁ ଘେରି ବସିରହିଲେ ॥୨୮॥ ତାଙ୍କର ରତ୍ନମୟ କବଚ ଛିନ୍ନଭିନ୍ନ ହୋଇ ପଡ଼ିଥିଲା । ମାଳା ଓ ଅଳଙ୍କାରଯାକ ଦେହରୁ ଖସିଯାଇଥିଲା ଏବଂ ଶରାଘାତରେ ବକ୍ଷସ୍ଥଳ ବିଦୀର୍ଣ୍ଣ ହୋଇପଡ଼ିଥିଲା । ବାଳ ମୁକୁଳା ଓ ଦେହସାରା ରକ୍ତରେ ସୁଡୁବୁଡୁ ହୋଇଥିଲା । ଆଖି ଖୋସିହୋଇ ଯାଇଥିଲା ଏବଂ ରାଗରେ ସେ ଓଠ କାମୁଡ଼ି ପକାଇଥିଲେ । ତାଙ୍କ ସୁନ୍ଦର ମୁହଁକୁ ଧୂଳି ଘୋଡ଼ାଇ ଦେଇଥିଲା ଏବଂ ଯୁଦ୍ଧରେ ତାଙ୍କ ବାହୁ ଓ ଅସ୍ତ୍ରଶସ୍ତ୍ର ସବୁ କଟିଯାଇଥିଲା । ଦୈବବଶତଃ ଉଶୀନର ରାଜାଙ୍କର ଏପରି ଅବସ୍ଥା ଦେଖି ତାଙ୍କ ଶୋକାକୁଳ ରାଣୀମାନେ 'ହେ ନାଥ, ଆମର ସର୍ବନାଶ ହୋଇଗଲା' ବୋଲି ଛାତିରେ ହାତ ବାଡ଼େଇ ରୋଦନ କରି ଲାଗିଲେ ଏବଂ ବାରମ୍ବାର ସ୍ୱାମୀଙ୍କ ପାଦତଳେ ଗଡ଼ିଯାଉଥିଲେ ॥୨୯-୩୧॥ ସେମାନେ ବିକଳ ହୋଇ ଏପରି ଜୋରରେ କାନ୍ଦୁଥିଲେ ଯେ, ତାଙ୍କର ଅଶ୍ରୁଧାରା ସ୍ତନର କୁଙ୍କୁମ ସହିତ ମିଶି ସ୍ୱାମୀଙ୍କର ପାଦପଦ୍ମକୁ ଧୋଇ ଦେଉଥିଲା । ସେମାନଙ୍କର କେଶରାଶି ଓ ଅଳଙ୍କାର ବିଛାଡ଼ି ହୋଇ ପଡୁଥିଲା । ସେଇ କରୁଣ କ୍ରନ୍ଦନ ଶୁଣି ଅନ୍ୟମାନଙ୍କ ହୃଦୟରେ ଶୋକ ଜାତ ହେଉଥିଲା ॥୩୨-୩୩॥ ସେମାନେ ରୋଦନପୂର୍ବକ କହୁଥିଲେ, ହାୟ, ବିଧାତା ବଡ଼ ନିଷ୍ଠୁର । ଆମର ଅଜ୍ଞାତରେ ତୁମକୁ ସେ ନେଇଯାଇଛି । ତୁମେ ସମସ୍ତ ଉଶୀନରବାସୀଙ୍କର ପିତା ଓ ଅନ୍ନଦାତା ଥିଲ । ବର୍ତ୍ତମାନ ବିଧାତା ତୁମକୁ ଏପରି ଅବସ୍ଥାପନ୍ନ କରି ସେମାନଙ୍କର ଶୋକ ବଢ଼ାଇ ଦେଇଛି । 'ରାଜା, ଆମେ ଟିକିଏ ସେବା କଲେ ତୁମେ ଆମକୁ କେତେ ପୁରସ୍କାର ଦେଉଥିଲ ! ତୁମ ପରି କୃତଜ୍ଞ ଏକମାତ୍ର ବନ୍ଧୁଙ୍କୁ ଛାଡ଼ି ଆମେ କିପରି ବଞ୍ଚି ରହିବୁ ? ବୀର ! ତୁମେ ବୀରଗତି ଲାଭ କରି ନିଜ ସ୍ଥାନକୁ ଚାଲିଗଲ, ଏବେ ତୁମ ଚରଣସେବିକାମାନଙ୍କୁ ତୁମ ସହିତ ଯିବାପାଇଁ ଆଦେଶ ଦିଅ' ॥୩୪॥ ସେମାନେ ଏହିପରି ମୃତପତିକୁ ଘେରି ବିଳାପ କରୁଥିଲେ ଏବଂ ରାଜାଙ୍କର ଦେହକୁ ଦାହ କରିବାପାଇଁ ଛାଡୁ ନ ଥିଲେ । ଇତି ମଧ୍ୟରେ ସୂର୍ଯ୍ୟାସ୍ତ ହୋଇଗଲା ॥୩୫॥ ମୃତବ୍ୟକ୍ତିର ପ୍ରିୟବନ୍ଧୁମାନଙ୍କର ରୋଦନ ଶୁଣି ଯମ ସେଠାରେ ଏକ ବାଳକ ରୂପରେ ଆସି ଉପସ୍ଥିତ ହେଲେ ॥୩୬॥

ଯମ କହିଲେ, କି ଆଶ୍ଚର୍ଯ୍ୟ ! ଏମାନେ ପିଲା ନୁହନ୍ତି । ସବୁବେଳେ ଜନ୍ମହେବା ଓ ମରିବା ଲୋକଙ୍କୁ ଦେଖି ଆସୁଛନ୍ତି, ତଥାପି ଏମାନଙ୍କର ମୋହ ଭାଙ୍ଗି ନାହିଁ । ମନୁଷ୍ୟ ଯେଉଁଠାରୁ ଆସୁଛି, ପୁଣି ସେଠାକୁ ଚାଲିଯାଉଛି । ଏମାନଙ୍କୁ ମଧ୍ୟ ଦିନେ ସେହିପରି ଯିବାକୁ ହେବ । ତଥାପି ଏମାନେ ବୃଥା ଶୋକ କରୁଛନ୍ତି ॥୩୭॥ ବାଳକ ପୁଣି କହିଲେ, 'ମୁଁ ତ ତୁମମାନଙ୍କଠାରୁ ବହୁତ ଭଲରେ ଅଛି । ମୋର ବାପ ମା' ମୋତେ ଏଇଠି ଛାଡ଼ିଦେଇ ଚାଲିଯାଇଛନ୍ତି, କିନ୍ତୁ ମୋର ଟିକେ ହେଲେ ଚିନ୍ତା ନାହିଁ । ଅସହାୟ ହେଲେ ମଧ୍ୟ ହିଂସ୍ର ଜନ୍ତୁମାନେ ମୋତେ ଖାଇଯାଉ ନାହାନ୍ତି । ଗର୍ଭରେ ଥିଲାବେଳେ ମୋତେ ଯେ ରକ୍ଷା କରିଥିଲେ, ସେ ହିଁ ମୋତେ ରକ୍ଷା କରୁଛନ୍ତି ॥୩୮॥ ଅବଳାଗଣ ! ଅବିନଶ୍ୱର ଭଗବାନଙ୍କର ଏହି ସଂସାର ହେଉଛି ଏକ ଖେଳନା ସ୍ୱରୂପ । ନିଜ ଇଚ୍ଛାରେ ସେ ଏହାକୁ ଗଢ଼ୁଛନ୍ତି, ପାଳୁଛନ୍ତି ଓ ଭାଙ୍ଗୁଛନ୍ତି । ସେହି ଈଶ୍ୱର ହିଁ ପ୍ରାଣୀମାନଙ୍କୁ ଦଣ୍ଡ ଓ ପୁରସ୍କାର ଦେବାପାଇଁ ସମର୍ଥ । ଈଶ୍ୱର ଇଚ୍ଛା କଲେ ରାସ୍ତାରେ ପଡ଼ିଥିବା ବସ୍ତୁ ନଷ୍ଟ ହୁଏ ନାହିଁ, କିନ୍ତୁ ସେ ନ ଚାହିଲେ ଘରମଧ୍ୟରେ ସୁରକ୍ଷିତ ଥିବା ପଦାର୍ଥ ମଧ୍ୟ ନଷ୍ଟ ହୋଇଯାଏ । ଈଶ୍ୱର ରକ୍ଷା କଲେ ବନମଧ୍ୟରେ ସହାୟଶୂନ୍ୟ ଜୀବ ମଧ୍ୟ ବହୁକାଳ ବଞ୍ଚିରହେ, କିନ୍ତୁ ତାଙ୍କର ସୁଦୃଷ୍ଟି ନ ରହିଲେ ଘରମଧ୍ୟରେ ନିଜର ସହାୟକ ବନ୍ଧୁ ଓ ପରିଜନ ଥାଇ ମଧ୍ୟ ଜୀବ ରକ୍ଷା ପାଏ ନାହିଁ ॥୩୯-୪୦॥ ନିଜ ପୂର୍ବକୃତ କର୍ମ ଅନୁସାରେ ସମସ୍ତ ପ୍ରାଣୀଙ୍କର ସମୟ ଅନୁସାରେ ଜନ୍ମ ଓ ମୃତ୍ୟୁ ଘଟେ । ଆତ୍ମା କିନ୍ତୁ ଅମର । ଦେହ ସହିତ ସମ୍ବନ୍ଧ ଥିଲେ ମଧ୍ୟ ଦେହଠାରୁ ସେ ପୃଥକ୍ ଏବଂ ଜନ୍ମ, ଜରା ଓ ମରଣ ଆଦି ଦେହର ଧର୍ମ ତାକୁ ସ୍ପର୍ଶ କରିପାରେ ନାହିଁ ॥୪୧॥ ଯେପରି ମାଟିରେ ଗଢ଼ା ଘରକୁ ଗୃହସ୍ଥ ମୋହବଶରୁ ନିଜର ବୋଲି ଭାବେ, ଅଥଚ ତାହା ନିଜର ନୁହେଁ, ସେହିପରି ଏହି ଭୌତିକ ଦେହ ଆତ୍ମାଠାରୁ ଭିନ୍ନ ହେଲେ ମଧ୍ୟ ମୋହବଶତଃ ଏହାକୁ ଆତ୍ମା ମନେ କରାଯାଏ । ଯେପରି ପାଣିରୁ ଜାତ ପାଣିଫୋଟକା ନଷ୍ଟ ହୋଇଯାଏ, ମାଟିରେ ତିଆରି ମାଠିଆ କାଳକ୍ରମେ ଭାଙ୍ଗିଯାଏ ଏବଂ ଅଳଙ୍କାର ଆଦି ଧାତୁଦ୍ରବ୍ୟ ସମୟ କ୍ରମେ ବିକୃତ ଓ ନଷ୍ଟ ହୋଇଯାଏ, ସେହିପରି ପଞ୍ଚଭୂତରେ ଗଢ଼ା ଏହି ଦେହ ମଧ୍ୟ ସମୟାନୁସାରେ ଭାଙ୍ଗିପଡ଼େ ବା ନଷ୍ଟ ହୋଇଯାଏ ॥୪୨॥ ଯେପରି କାଠରେ ଥିବା ନିଆଁ କାଠରୁ ସମ୍ପୂର୍ଣ୍ଣ ଅଲଗା ଏବଂ ଦେହରେ ଥିବା ବାୟୁ (ଶ୍ୱାସପ୍ରଶ୍ୱାସ) ଦେହଠାରୁ ଭିନ୍ନ, ସମସ୍ତ ବସ୍ତୁ ସହିତ ମିଶିଥିବା ଆକାଶ ଯେପରି ସେହିସବୁ ବସ୍ତୁଠାରୁ ପୃଥକ୍, ସେହିପରି ସମସ୍ତ ଦେହ ଓ ଇନ୍ଦ୍ରିୟ ସହିତ ସଂପୃକ୍ତ ଆତ୍ମା ସେମାନଙ୍କଠାରୁ ଭିନ୍ନ ॥୪୩॥

ତୁମେ ସବୁ ମୂଢ଼ । ଯାହାଙ୍କପାଇଁ ତୁମେ ଶୋକ କରୁଛ, ସେହି ସୁଯଜ୍ଞ ହିଁ ତୁମ ସମ୍ମୁଖରେ ଶୋଇ ରହିଛନ୍ତି । ତୁମେ ତାଙ୍କ ଶରୀରକୁ ଦେଖୁଛ ସତ, କିନ୍ତୁ ଏ ଶରୀରରେ ଥାଇ ଯେ ତୁମକୁ ଶୁଣୁଥିଲେ ଓ ତୁମ କଥାର ଉତ୍ତର ଦେଉଥିଲେ, ସେ କେବେ ଦେଖା ଦେଉ ନ ଥିଲେ । ତେଣୁ ଆଜି ମଧ୍ୟ ସେ ଦେଖା ଦେଉ ନାହାନ୍ତି । ସେଥିପାଇଁ କାହିଁକି ଶୋକ କରୁଛ ? ॥୪୪॥ ଶରୀରରେ ଇନ୍ଦ୍ରିୟମାନଙ୍କୁ କର୍ମ କରାଉଥିବା ପ୍ରାଣ ମୁଖ୍ୟ ହେଲେ ମଧ୍ୟ ବକ୍ତା ନୁହେଁ କି ଶ୍ରୋତା ନୁହେଁ, କିନ୍ତୁ ଦେହୀ (ଇନ୍ଦ୍ରିୟବାନ୍) ଆତ୍ମା ହିଁ ହେଉଛି ବକ୍ତା ଓ ଶ୍ରୋତା । ଆତ୍ମା ପ୍ରାଣ ଓ ଦେହଠାରୁ ଭିନ୍ନ ॥୪୫॥ ଦେହଠାରୁ ଭିନ୍ନ ଆତ୍ମା ପଞ୍ଚଭୂତ, ଏକାଦଶ ଇନ୍ଦ୍ରିୟ ଓ ମନଦ୍ୱାରା ଯୁକ୍ତ ଭିନ୍ନଭିନ୍ନ ଶରୀର ଗ୍ରହଣ କରେ । ଏହି ଶରୀରମଧ୍ୟରେ କେହି କେହି ଉଚ୍ଚସ୍ତରର ଓ କେହି କେହି ନୀଚ ସ୍ତରର ହୋଇଥାନ୍ତି, ଯଥା --ଦେବ, ମନୁଷ୍ୟ, ପଶୁ, ପକ୍ଷୀ ଆଦି । ଆତ୍ମା ନିଜର ପ୍ରଭାବବଳରେ ପୁଣି ଏହି ଶରୀରକୁ ଛାଡ଼ିଦିଏ । ଯେ ପର୍ଯ୍ୟନ୍ତ ଆତ୍ମା ପଞ୍ଚ ପ୍ରାଣ, ପଞ୍ଚ କର୍ମେନ୍ଦ୍ରିୟ, ପଞ୍ଚ ଜ୍ଞାନେନ୍ଦ୍ରିୟ, ବୁଦ୍ଧି ଓ ମନ -- ଏହି ସତରଟି ତତ୍ତ୍ୱଦ୍ୱାରା ନିର୍ମିତ ଲିଙ୍ଗଶରୀର ସହିତ ଯୁକ୍ତ ହୋଇ ରହେ, ସେ ପର୍ଯ୍ୟନ୍ତ ସେ କର୍ମବନ୍ଧନରେ ପଡ଼ିଥାଏ ଏବଂ ଏହି କାରଣରୁ ମାୟାଯୁକ୍ତ ମୋହ ଓ ଦୁଃଖ ତାକୁ ଲାଗି ରହିଥାଏ ॥୪୬-୪୭॥ ପ୍ରକୃତିର ଗୁଣଜନିତ ସୁଖଦୁଃଖାଦିଦ୍ୱାରା କେବେ ପରମାର୍ଥ ଲାଭ ହୁଏ ନାହିଁ । ତେଣୁ ସେ ସବୁ ମଧ୍ୟରେ ପରମାର୍ଥଜ୍ଞାନ ବା ପରମାର୍ଥବୋଧକ ବାକ୍ୟ ନିଷ୍ଫଳ ଓ ମିଥ୍ୟା । ସ୍ୱପ୍ନରେ ଦେଖାଯାଇଥିବା ବିଷୟମାନ ଯେପରି ମିଥ୍ୟା, ସେହିପରି ଭୌତିକ ବସ୍ତୁମାନଙ୍କର କଳ୍ପନା ମଧ୍ୟ ମିଥ୍ୟା ଏବଂ ଇନ୍ଦ୍ରିୟଗ୍ରାହ୍ୟ ଏହି ଜଗତ୍ ହିଁ

ମିଥ୍ୟା ।।୪୮।। ଯେଉଁମାନେ ନିତ୍ୟ ବା ଅନିତ୍ୟ ବସ୍ତୁ କ'ଣ ଜାଣନ୍ତି, ସେମାନେ କେବେହେଲେ ନିତ୍ୟ-ଆତ୍ମା ବା ଅନିତ୍ୟ-ଦେହପାଇଁ ଶୋକ କରନ୍ତି ନାହିଁ । ମାୟାରେ ଆଚ୍ଛନ୍ନ ବ୍ୟକ୍ତିମାନେ ହିଁ ଶୋକ କରନ୍ତି । କିନ୍ତୁ ସେମାନଙ୍କ ସ୍ୱଭାବର ପରିବର୍ତ୍ତନ ସହଜ ନୁହେଁ ।।୪୯।।

କୌଣସି ବନରେ ଏକ ବ୍ୟାଧ ରହୁଥିଲା । ବୋଧହୁଏ ପକ୍ଷୀମାନଙ୍କର ଯମରୂପେ ବିଧାତା ତାହାକୁ ସୃଷ୍ଟି କରିଥିଲେ । ସେ ଜାଲ ବିଛାଇ ପକ୍ଷୀମାନଙ୍କୁ ପ୍ରଲୋଭିତ କରି ଧରି ନେଉଥିଲା ।।୫୦।। ଦିନେ ସେହି ବନରେ କୁଳିଙ୍ଗ ନାମକ ଏକ ପକ୍ଷୀଦମ୍ପତୀଙ୍କୁ ବୁଲୁଥିବାର ଦେଖି ପକ୍ଷିଣୀ କୁଳିଙ୍ଗୀକୁ ବ୍ୟାଧ ବହୁତ ପ୍ରଲୋଭନ ଦେଖାଇଲା ।।୫୧।। ରାଣୀମାନେ ! କାଳବଶତଃ କୁଳିଙ୍ଗୀ ବ୍ୟାଧର ଜାଲରେ ପଡ଼ିଯିବାରୁ କୁଳିଙ୍ଗ ପକ୍ଷୀ ନିଜର ବିପନ୍ନା ସ୍ତ୍ରୀକୁ ଦେଖି ଅତିଶୟ ଦୁଃଖିତ ହେଲା ଏବଂ ପତ୍ନୀକୁ ଜାଲରୁ ଉଦ୍ଧାର କରି ନ ପାରି ସ୍ନେହବଶତଃ ବିଳାପ କରିବାକୁ ଲାଗିଲା ।।୫୨।। ସେ କହିଲା, ବିଧାତା ଅତିଶୟ ନିଷ୍ଠୁର । ହାୟ ! ମୋର ସ୍ନେହରେ ଆବଦ୍ଧ ସ୍ତ୍ରୀଟି ଅତି ଦୀନଭାବରେ ମୋ'ପାଇଁ ଶୋକ କରୁଛି, ମୁଁ ମଧ୍ୟ ଶୋକାର୍ତ୍ତ, ଏହାଦ୍ୱାରା ବିଧାତାର କି କାର୍ଯ୍ୟ ସାଧିତ ହେବ ? ।।୫୩।। ଏହାଠାରୁ ଭଲ, ବିଧାତା ମୋତେ ନେଇଯାଉ । ମୋର ସ୍ତ୍ରୀକୁ ହରଣ କରି ବିଧାତା ମୋର ଅର୍ଦ୍ଧାଙ୍ଗକୁ ହରଣ କରି ନେଇଛି । ବିରହବିଧୁର ଏହି ଦୁଃଖପୂର୍ଣ୍ଣ ଜୀବନକୁ ନେଇ ମୁଁ କ'ଣ କରିବି ? ।।୫୪।। ଆମ ଶାବକମାନଙ୍କର ଏ ପର୍ଯ୍ୟନ୍ତ ପକ୍ଷ ଲାଗି ନାହିଁ । ଏ ଅବସ୍ଥାରେ ସେମାନେ ମାତୃହୀନ ହୋଇଗଲେ । ମୁଁ କିପରି ତାଙ୍କୁ ପୋଷଣ କରିବି ? ହାୟ ! ନୀଡ଼ରେ ରହି ସେମାନେ ତାଙ୍କ ମା'କୁ ଅପେକ୍ଷା କରିଥିବେ । ଏହିପରି ବିରହକାତର ଶୋକାକୁଳ କୁଳିଙ୍ଗ ପକ୍ଷୀକୁ ନିକଟରେ ଦେଖି ବ୍ୟାଧ ଲୁଚିରହି ତାକୁ ଶରବିଦ୍ଧ କଲା । ମୂର୍ଖ ରାଣୀମାନେ, ତୁମମାନଙ୍କର ମଧ୍ୟ ଏହି ଦଶା ହେବାକୁ ଯାଉଛି । ତୁମେମାନେ ନିଜର ମୃତ୍ୟୁକୁ ଦେଖି ନ ପାରି ଏହିପରି କ୍ରନ୍ଦନ କରୁଛ । ବହୁ ବର୍ଷ ଧରି ତୁମେ କାନ୍ଦିଲେ ମଧ୍ୟ ତୁମର ପତିଙ୍କୁ ଫେରି ପାଇବ ନାହିଁ ।।୫୫-୫୭।।

ହିରଣ୍ୟକଶିପୁ କହିଲା, ବାଳକରୂପୀ ଯମ ଏହିପରି କହିବାରୁ ସୁଯଜ୍ଞଙ୍କର ସମସ୍ତ ରାଣୀ ଓ ଜ୍ଞାତିଗଣ ବିସ୍ମିତ ହୋଇ ସମସ୍ତ ଜଗତ୍‌କୁ ଅନିତ୍ୟ ଓ ମିଥ୍ୟା ବୋଲି ମନେ କଲେ ।।୫୮।। ବାଳକରୂପଧାରୀ ଯମ ଏହିପରି ଉପଦେଶ ଦେଇ ସେଠାରୁ ଅନ୍ତର୍ହିତ ହୋଇଗଲେ । ସୁଯଜ୍ଞଙ୍କର ଜ୍ଞାତିମାନେ ପରଲୋକଗତ ବ୍ୟକ୍ତିପାଇଁ ଯାହା କିଛି ପାରମ୍ପରିକ କର୍ତ୍ତବ୍ୟ, ତାହା ସମ୍ପାଦନ କଲେ ।।୫୯।। ଅତଏବ ତୁମେ ନିଜପାଇଁ ହେଉ, ଅବା ପରପାଇଁ ହେଉ, ଶୋକ କର ନାହିଁ । ଏହି ସଂସାରରେ କିଏ ଆତ୍ମା ବା କିଏ ପର, କିଏ ନିଜର ବା କିଏ ପରର କେବଳ ଅଜ୍ଞାନତା କାରଣରୁ ପ୍ରାଣୀମାନେ ତାହା ଚିନ୍ତା କରନ୍ତି ।।୬୦।। ମହର୍ଷି ନାରଦ କହିଲେ, ଦିତି ପୁତ୍ରବଧୂଙ୍କ ସହିତ ଦୈତ୍ୟରାଜ ହିରଣ୍ୟକଶିପୁର ଏହି ବାକ୍ୟ ଶ୍ରବଣ କରି ସ୍ୱଳ୍ପ ସମୟ ମଧ୍ୟରେ ନିଜର ପୁତ୍ରଶୋକ ତ୍ୟାଗ କଲେ ଓ ପରମାତ୍ମାଙ୍କ ତତ୍ତ୍ୱରେ ଚିତ୍ତ ନିବେଶ କଲେ ।।୬୧।।

## ତୃତୀୟ ଅଧ୍ୟାୟ

# ହିରଣ୍ୟକଶିପୁର ବରଲାଭ

ନାରଦ କହିଲେ, ଯୁଧିଷ୍ଠିର, ଦୈତ୍ୟରାଜ ହିରଣ୍ୟକଶିପୁ ନିଜକୁ ଅଜେୟ, ଅଜର, ଅମର ଓ ଅପ୍ରତିଦ୍ୱନ୍ଦ୍ୱୀ ଏକଚ୍ଛତ୍ର ସମ୍ରାଟ କରିବାପାଇଁ ଚିନ୍ତାକଲା । ସେଥିପାଇଁ ସେ ମନ୍ଦର ପର୍ବତର ଗୁହାକୁ ଯାଇ ଅତି ଉଗ୍ର ତପସ୍ୟା ଆରମ୍ଭ କଲା । ହାତ ଉପରକୁ ଉଠାଇ ଆକାଶ ଆଡ଼କୁ ଚାହିଁ ପାଦର ବୁଢ଼ା ଆଙ୍ଗୁଠିରେ ସେ ଭୂଇଁ ଉପରେ ଠିଆ ହୋଇଗଲା ।।୧-୨।। ପ୍ରଳୟକାଳୀନ

ସୂର୍ଯ୍ୟକିରଣ ପରି ଥିଲା ତା'ର ପିଙ୍ଗଳବର୍ଣ୍ଣ ଜଟାର ତେଜ । ଯେତେବେଳେ ସେ ଏହିପରି ତପସ୍ୟାରେ ଲାଗିଗଲା, ଦେବତାମାନେ ନିଜ ନିଜ ସ୍ଥାନ ଓ ପଦରେ ପୁଣି (ଭୟ ଛାଡ଼ି) ଅଧିଷ୍ଠିତ ହୋଇଗଲେ ॥୩॥ ଉଗ୍ର ତପସ୍ୟା ଫଳରେ ହିରଣ୍ୟକଶିପୁର ମସ୍ତକରୁ ଯେଉଁ ଧୂମଯୁକ୍ତ ଅଗ୍ନି ନିର୍ଗତ ହେଲା, ତାହା ଆକାଶ, ପାତାଳ ଓ ପୃଥିବୀ ତ୍ରିଲୋକକୁ ସନ୍ତାପିତ କରି ଲାଗିଲା ॥୪॥ ସମୁଦ୍ର ଓ ନଦୀମାନେ ବିକ୍ଷୁବ୍ଧ ହେଲେ । ଦ୍ୱୀପ ଓ ପର୍ବତମାନଙ୍କ ସହ ପୃଥିବୀ ପ୍ରକମ୍ପିତ ହେଲା । ଗ୍ରହ ଓ ନକ୍ଷତ୍ରମାନେ ସ୍ଥାନଭ୍ରଷ୍ଟ ହେଲେ ଓ ଦିଗ୍‌ବିଦିଗ ଜଳିବାକୁ ଲାଗିଲା ॥୫॥

ହିରଣ୍ୟକଶିପୁର ତପସ୍ୟାର ଜ୍ୱାଳାରେ ଦେବତାମାନେ ଅସ୍ଥିର ହୋଇପଡ଼ିଲେ । ସେମାନେ ସ୍ୱର୍ଗ ଛାଡ଼ି ବ୍ରହ୍ମଲୋକକୁ ପଳାଇଲେ ଏବଂ ବ୍ରହ୍ମାଙ୍କୁ ଯାଇ ପ୍ରାର୍ଥନା କଲେ 'ଜଗତ୍‌ପତି ଦେବଦେବ, ହିରଣ୍ୟକଶିପୁର ତପର ଜ୍ୱାଳାରେ ଆମେ ଜଳିଗଲୁଣି । ଆଉ ସ୍ୱର୍ଗରେ ରହିପାରୁ ନାହୁଁ । ହେ ମହାମହିମ, ସର୍ବେଶ୍ୱର ! ଯଦି ଆପଣ ଉଚିତ ମନେ କରନ୍ତି, ତା'ହେଲେ ଆପଣଙ୍କର ସେବାକାରୀ ପ୍ରଜାମାନେ ଯେପରି ନାଶ ନ ଯିବେ, ସେଥିପାଇଁ ଶୀଘ୍ର ଏହି ତାପର ଉପଶମ କରନ୍ତୁ' ॥୬-୭॥ ଭଗବାନ୍ ! ହିରଣ୍ୟକଶିପୁ କାହିଁକି ଏପରି ଦୁଷ୍କର ତପସ୍ୟା କରୁଛି, ତାହା ଆପଣଙ୍କୁ ଅବିଦିତ ନୁହେଁ । ତଥାପି ଆପଣଙ୍କୁ ଆମେ ନିବେଦନ କରୁଛୁ, ଶୁଣନ୍ତୁ ॥୮॥ ହିରଣ୍ୟକଶିପୁର ଅଭିପ୍ରାୟ ହେଉଛି ଯେପରି ବ୍ରହ୍ମା ନିଜର ତପସ୍ୟା ଓ ଯୋଗର ପ୍ରଭାବରେ ଏହି ଚରାଚର ଜଗତ ସୃଷ୍ଟି କରି ସମସ୍ତ ଲୋକର ଉପରେ ଥିବା ସତ୍ୟଲୋକରେ ବାସ କରନ୍ତି, ସେହିପରି ସେ ନିଜର ଉଗ୍ର ତପସ୍ୟା ଓ ଯୋଗର ପ୍ରଭାବରେ ସେହି ପଦ ଓ ସ୍ଥାନ ଲାଭ କରିବ । କାରଣ କାଳ ଅନନ୍ତ ଓ ଆତ୍ମା ନିତ୍ୟ । ଏକ ଜନ୍ମରେ ନ ହେଲେ ମଧ୍ୟ ଅନେକ ଜନ୍ମରେ ସେହି ଲକ୍ଷ୍ୟ ସେ ହାସଲ କରିବ ॥୯-୧୦॥ ଏହା ଯଦି ଅନ୍ୟଥା ହୁଏ, ତା'ହେଲେ ନିଜ ତପସ୍ୟାର ଶକ୍ତିରେ ସେ ଏହି ଜଗତର ନିୟମକୁ ଓଲଟପାଲଟ କରିଦେବ (ଅର୍ଥାତ୍ ପାପପୁଣ୍ୟର ଫଳ ବିପରୀତ ହେବ । ପୁଣ୍ୟବାନ୍ ଲୋକ ପରଲୋକରେ କଷ୍ଟ ଭୋଗ କରିବେ ଓ ପାପୀ ଲୋକ ସୁଖଭୋଗ କରିବେ) । ବିଷ୍ଣୁଙ୍କ ପ୍ରସାଦରୁ ଯେଉଁସବୁ ଧ୍ରୁବାଦି ଲୋକ ଅଛି ତାହାର ମଧ୍ୟ କୌଣସି ମର୍ଯ୍ୟାଦା ରହିବ ନାହିଁ, କାରଣ କାଳଦ୍ୱାରା ତାହା ଧ୍ୱଂସପ୍ରାପ୍ତ ହେବ । ଆମେମାନେ ଶୁଣିବାକୁ ପାଉଛୁ ଯେ, ଏହି କାର୍ଯ୍ୟ କରିବାପାଇଁ ସେ ଘୋର ତପସ୍ୟାରେ ମଗ୍ନ । ଆପଣ ତ୍ରିଲୋକର ସ୍ୱାମୀ, ଆପଣ ଯାହା ଠିକ୍ ମନେ କରନ୍ତି, କରନ୍ତୁ ॥୧୧-୧୨॥ ଜଗତ୍‌ପତି ! ଆପଣଙ୍କର ଏହି ଶ୍ରେଷ୍ଠ ପରମେଷ୍ଠୀ ପଦ ଗୋବ୍ରାହ୍ମଣଙ୍କର ବୃଦ୍ଧି, ସୁଖ, ଐଶ୍ୱର୍ଯ୍ୟ, ମଙ୍ଗଳ ଓ ବିଜୟ ପାଇଁ ଉଦ୍ଦିଷ୍ଟ (ଯଦି ଏହା ହିରଣ୍ୟକଶିପୁର ହାତକୁ ଚାଲିଯିବ, ତା'ହେଲେ ଜଗତର ଘୋର ଅମଙ୍ଗଳ ଘଟିବ) ।

ଯୁଧିଷ୍ଠିର ! ଦେବତାମାନେ ସ୍ୱୟଂଭୂ ବ୍ରହ୍ମାଙ୍କୁ ଏହିପରି ଜଣାଇବାରୁ ସେ ଭୃଗୁ ଓ ଦକ୍ଷାଦି ପ୍ରଜାପତିଙ୍କ ଦ୍ୱାରା ପରିବେଷ୍ଟିତ ହୋଇ ହିରଣ୍ୟକଶିପୁର ଆଶ୍ରମରେ ପହଞ୍ଚିଲେ ॥୧୪॥ ବ୍ରହ୍ମା ସେଠାରେ ହିରଣ୍ୟକଶିପୁକୁ ଦେଖିପାରିଲେ ନାହିଁ, କାରଣ ତାର ଦେହ ଉଇହୁଙ୍କା, ଗୁଳ୍ମଲତା ଓ ବାଉଁଶବୁଦାଦ୍ୱାରା ଆବୃତ ହୋଇପଡ଼ିଥିଲା । ଜନ୍ଦା ପିମ୍ପୁଡ଼ିମାନେ ତା' ଶରୀରର ମାଂସ, ମେଦ, ଚର୍ମ ଓ ରକ୍ତ ଆଦି ଖାଇଯାଉଥିଲେ । ମେଘାଚ୍ଛନ୍ନ ସୂର୍ଯ୍ୟପରି ସେ ଲୁଚି ରହି ସମସ୍ତ ଲୋକକୁ ସନ୍ତପ୍ତ କରୁଥିଲା । ତାକୁ ଦେଖି ବ୍ରହ୍ମା ମଧ୍ୟ ଆଶ୍ଚର୍ଯ୍ୟ ହୋଇଗଲେ । ସେ ହସିହସି ତାକୁ କହିବାକୁ ଲାଗିଲେ-- ॥୧୫-୧୬॥ ବ୍ରହ୍ମା କହିଲେ, ହେ କଶ୍ୟପନନ୍ଦନ ହିରଣ୍ୟକଶିପୁ, ଉଠ ଉଠ । ତୁମର ମଙ୍ଗଳ ହେଉ । ଏବେ ତୁମର ତପସ୍ୟା ସଫଳ ହୋଇଛି, ତୁମେ ସିଦ୍ଧି ଲାଭ କରିଛ । ମୁଁ ତୁମକୁ ବର ଦେବାପାଇଁ ଉପସ୍ଥିତ । ତୁମର ଯାହା ଇଚ୍ଛା, ସେ ବର ମାଗିନିଅ ॥୧୭॥ ମୁଁ ତୁମର ଅଦ୍ଭୁତ ମନୋବଳ ଦେଖି ବିସ୍ମିତ ହୋଇଛି । ତୁମର ଦେହ କୀଟଦଷ୍ଟ । ତଥାପି ଏହି ଅସ୍ଥିକଙ୍କାଳକୁ ଆଶ୍ରୟ କରି ତୁମେ ବଞ୍ଚି ରହିଛ ॥୧୮॥ ପୂର୍ବେ ଋଷିମାନେ ଏପରି କଠୋର ତପସ୍ୟା କରି ନ ଥିଲେ ଏବଂ ଭବିଷ୍ୟତ୍‌ରେ ଏପରି ତପସ୍ୟା କେହି କରିପାରିବେ ନାହିଁ । ଏପରି କିଏ ଅଛି, ଯେ ସାମାନ୍ୟ ଜଳ ଗ୍ରହଣ ନ କରି ମଧ୍ୟ ଦେବତାଙ୍କର ଶହେ ବର୍ଷ କାଳ ତପସ୍ୟା କରିପାରିବ ? ।୧୯॥

ଦିତିନନ୍ଦନ ! ମନୁଷ୍ୟମାନଙ୍କର ଯାହା କଷ୍ଟସାଧ୍ୟ, ତୁମର ସେହି ତପୋନିଷ୍ଠାଦ୍ୱାରା ମୋତେ ତୁମେ ଜୟ କରିପାରିଛ ॥୨୦॥ ଦୈତ୍ୟଶ୍ରେଷ୍ଠ ! ମୁଁ ତୁମ ତପସ୍ୟାରେ ସନ୍ତୁଷ୍ଟ ହୋଇ ଆଶୀର୍ବାଦ କରୁଛି । ତୁମେ ମରଣଶୀଳ, ମୁଁ ଅମର । ତେଣୁ ତୁମ ପକ୍ଷରେ ମୋର ଦର୍ଶନ ନିଷ୍ଫଳ ହେବ ନାହିଁ ॥୨୧॥

ନାରଦ କହିଲେ, ଯୁଧିଷ୍ଠିର, ବ୍ରହ୍ମା ଏହା କହି ହିରଣ୍ୟକଶିପୁର କୀଟଦଷ୍ଟ ଦେହ ଉପରେ ତାଙ୍କ ଅମୋଘ ଦିବ୍ୟ କମଣ୍ଡଳୁଜଳ ଛିଞ୍ଚିଦେଲେ ॥୨୨॥ ବ୍ରହ୍ମାଙ୍କର କମଣ୍ଡଳୁଜଳ ପଡ଼ିବା ମାତ୍ରେ କାଠମଧ୍ୟରୁ ନିଆଁ ଜଳିଉଠିବାପରି ବାଉଁଶବୁଦା ଓ ଉଇହୁଙ୍କାରୁ ହିରଣ୍ୟକଶିପୁ ମହାତେଜରେ ଉଠିଆସିଲା । ତା'ର ସମସ୍ତ ଅବୟବ ପରିପୂର୍ଣ୍ଣ ଓ ବଳଶାଳୀ ହୋଇଗଲା । ଇନ୍ଦ୍ରିୟମାନଙ୍କର ଶକ୍ତି ଆସିଗଲା ଓ ମନର ବଳ ବଢ଼ିଗଲା, ସମସ୍ତ ଦେହ ବଜ୍ରପରି କଠିନ ହେଲା ଓ ତପ୍ତକାଞ୍ଚନର କାନ୍ତି ଧାରଣକଲା । ତାର ଅତୁଟ ଯୌବନ ଫେରି ଆସିଲା ॥୨୩॥ ଆକାଶପଥରେ ହଂସବାହନ ବ୍ରହ୍ମା ଉପସ୍ଥିତ ଦେଖି ସେ ଅତ୍ୟନ୍ତ ଆନନ୍ଦରେ ତାଙ୍କୁ ଦଣ୍ଡପ୍ରଣାମ କଲା । ତା'ପରେ ଉଠି ଅତି ନମ୍ର ଭାବରେ ହାତ ଯୋଡ଼ି ଠିଆହେଲା । ତାର ଶରୀରରେ ପୁଲକ ଜାତ ହେଲା ଓ ନେତ୍ରଦ୍ୱୟରୁ ପ୍ରେମାଶ୍ରୁଧାରା ବହିବାକୁ ଲାଗିଲା । ସେ ଭକ୍ତିଗଦ୍‌ଗଦ ହୋଇ ଏହିପରି ସ୍ତୁତି ଆରମ୍ଭ କଲା ॥୨୪-୨୫॥

ହିରଣ୍ୟକଶିପୁ କହିଲା, କଳ୍ପାନ୍ତ ସମୟରେ କାଳଦ୍ୱାରା ସୃଷ୍ଟ ଅନ୍ଧତାମସାଚ୍ଛନ୍ନ ଜଗତକୁ ଯେଉଁ ସ୍ୱୟଂଦୀପ୍ତ ପୁରୁଷ ନିଜ ତେଜରେ ପ୍ରକାଶିତ କରିଛନ୍ତି ଏବଂ ନିଜର ତ୍ରିଗୁଣାତ୍ମକ ଆତ୍ମାଦ୍ୱାରା ଏହି ଜଗତର ସୃଷ୍ଟି, ସ୍ଥିତି ଓ ଲୟ ସାଧନ କରନ୍ତି, ସେହି ରଜୋଗୁଣ ସତ୍ତ୍ୱଗୁଣ ଓ ତମୋଗୁଣର ଆଶ୍ରୟ ପରମେଶ୍ୱରଙ୍କୁ ମୁଁ ନମସ୍କାର କରୁଛି ॥୨୬-୨୭॥ ସମସ୍ତ ଜଗତର ଆଦିକାରଣ, ଜ୍ଞାନ ଓ ବିଜ୍ଞାନର ମୂର୍ତ୍ତି, ପ୍ରାଣ, ଇନ୍ଦ୍ରିୟ, ମନ ଏବଂ ବୁଦ୍ଧି ଆଦିର ବିକାରଦ୍ୱାରା ଯେ ନିଜକୁ ପ୍ରକଟିତ କରିଛନ୍ତି, ମୁଁ ତାଙ୍କୁ ନମସ୍କାର କରୁଛି ॥୨୮॥ ଭଗବାନ୍, ଆପଣ ସମସ୍ତ ପ୍ରଜାଙ୍କର ରକ୍ଷକ । କାରଣ ସମସ୍ତ ଚରାଚରକୁ ଆପଣ ନିଜ ନିୟନ୍ତ୍ରଣରେ ରଖିଛନ୍ତି । ଆପଣ ଚିତ୍ତ, ଚେତନା, ମନ ଏବଂ ଇନ୍ଦ୍ରିୟମାନଙ୍କର ସ୍ୱାମୀ । ପଞ୍ଚଭୂତ, ଶବ୍ଦାଦି ବିଷୟ ଓ ସମସ୍ତ ପ୍ରାଣୀଙ୍କ ମନୋବାଞ୍ଛାର ଆପଣ ଏକମାତ୍ର ଈଶ୍ୱର ॥୨୯॥ ଚାତୁର୍ହୋତ୍ର କର୍ମର ବିଦ୍ୟାସ୍ୱରୂପ । ବେଦମାନେ ଆପଣଙ୍କର ଶରୀର ଏବଂ ଅଗ୍ନିଷ୍ଟୋମ ଆଦି ସାତ ଯଜ୍ଞକୁ ଆପଣ ବିସ୍ତାର କରନ୍ତି । ଆପଣ ସମସ୍ତ ପ୍ରାଣୀଙ୍କର ଆତ୍ମା, କାରଣ ଆପଣ ଅନାଦି, ଅନନ୍ତ, ଅପାର, ସର୍ବଜ୍ଞ ଓ ଅନ୍ତର୍ଯାମୀ ॥୩୦॥ ଆପଣ କାଳରୂପେ ସଦା ଜାଗ୍ରତ ରହି ଲୋକମାନଙ୍କର ଆୟୁଷକୁ କ୍ଷଣକୁ କ୍ଷଣ (ଲବ ଆଦି ବିଭାଗ ଦ୍ୱାରା) କ୍ଷୟ କରି ଚାଲିଥାନ୍ତି । ତଥାପି ଆପଣ ନିର୍ବିକାର, ଜ୍ଞାନସ୍ୱରୂପ, ପରମେଶ୍ୱର, ଅଜନ୍ମା, ମହାନ୍ ଏବଂ ସମସ୍ତ ଜୀବଙ୍କର ପ୍ରାଣଦାତା ଅନ୍ତରାତ୍ମା ॥୩୧॥ ପ୍ରଭୁ, ଆପଣଙ୍କଠାରୁ ଭିନ୍ନ କାର୍ଯ୍ୟ-କାରଣ, ସ୍ଥାବରଜଙ୍ଗମ ଆଦି କୌଣସି ବସ୍ତୁ ଏ ସଂସାରରେ ନାହିଁ । ସମସ୍ତ ବିଦ୍ୟା ଏବଂ କଳା ହେଉଛି ଆପଣଙ୍କ ଶରୀର । ଏହି ସ୍ୱର୍ଣ୍ଣମୟ ବ୍ରହ୍ମାଣ୍ଡ ଆପଣଙ୍କ ଗର୍ଭରେ ଅବସ୍ଥିତ ଏବଂ ଆପଣ ହେଉଛନ୍ତି ତ୍ରିଗୁଣାତୀତ ବ୍ରହ୍ମ ॥୩୨॥ ପ୍ରଭୁ ! ଏହି ପ୍ରକାଶମାନ ବ୍ରହ୍ମାଣ୍ଡ ହେଉଛି ଆପଣଙ୍କର ସ୍ଥୂଳ ଶରୀର । ଏହି ଶରୀରରେ ଆପଣ ପ୍ରାଣ ଓ ମନର ବିଷୟମାନଙ୍କୁ ଉପଭୋଗ କରନ୍ତି । କିନ୍ତୁ ସେତେବେଳେ ମଧ୍ୟ ଆପଣ ପରମ ଐଶ୍ୱର୍ଯ୍ୟମୟ ପଦରେ ରହିଥାନ୍ତି ଏବଂ ସମସ୍ତଙ୍କ ମଧ୍ୟରେ ଅବ୍ୟକ୍ତ ଆତ୍ମା ରୂପେ ବିଦ୍ୟମାନ ରହନ୍ତି ॥୩୩॥ ହେ ଭଗବାନ ! ଆପଣ ଅନନ୍ତ ଓ ଅବ୍ୟକ୍ତ ରୂପେ ଏହି ସମସ୍ତ ବିଶ୍ୱରେ ପରିବ୍ୟାପ୍ତ । ଆପଣ ଉଭୟ ଚେତନ ଓ ଅଚେତନ ଶକ୍ତିର ଅଧିକାରୀ । ମୁଁ ଆପଣଙ୍କୁ ନମସ୍କାର କରୁଛି ॥୩୪॥ ପ୍ରଭୁ ! ଆପଣ ସମସ୍ତ ବରଦାତାଙ୍କ ମଧ୍ୟରେ ଶ୍ରେଷ୍ଠ । ଯଦି ଆପଣ ମୋର ଅଭିଳଷିତ ବର ମୋତେ ଦେବାପାଇଁ ଚାହାନ୍ତି, ତା'ହେଲେ ଏହି ବର ଦିଅନ୍ତୁ ଯେ, ଆପଣଙ୍କ ସୃଷ୍ଟ କୌଣସି ପ୍ରାଣୀ ମୋତେ ମାରିପାରିବ ନାହିଁ । ଭିତରେ, ବାହାରେ, ଦିନରେ, ରାତିରେ ଆପଣଙ୍କ ସୃଷ୍ଟ ପ୍ରାଣୀ ବା ଅନ୍ୟ କୌଣସି ପ୍ରାଣୀ ମଧ୍ୟ କୌଣସି ଅସ୍ତ୍ରଶସ୍ତ୍ରଦ୍ୱାରା, ଭୂମି ହେଉ ବା ଆକାଶ ହେଉ କୌଣସିଠାରେ ମୋତେ ମାରି ପାରିବନାହିଁ । ମନୁଷ୍ୟ ବା ପଶୁ, ଦେବ, ଦୈତ୍ୟ, ନାଗ ଆଦି କୌଣସି ସଚେତନ ବା ଅଚେତନ ପ୍ରାଣୀ ହାତରେ ମୋର ମୃତ୍ୟୁ ହେବନାହିଁ । ଯୁଦ୍ଧରେ କେହି ମୋର ଶତ୍ରୁ ହୋଇ

ଠିଆ ହୋଇ ପାରିବେ ନାହିଁ ଏବଂ ସମସ୍ତ ପ୍ରାଣୀଙ୍କ ଉପରେ ମୋର ଏକଚ୍ଛତ୍ର ଆଧିପତ୍ୟ ରହିବ ॥୩୫-୩୭॥ ଇନ୍ଦ୍ରାଦି ସମସ୍ତ ଲୋକପାଳଙ୍କ ମଧ୍ୟରେ ଯେପରି ଆପଣଙ୍କର ମହିମା, ସେହିପରି ମୋର ମଧ୍ୟ ମହିମା ହେଉ । ତପସ୍ୟା ଓ ଯୋଗର ପ୍ରଭାବରେ ଯେଉଁ ଅକ୍ଷୟ ଐଶ୍ୱର୍ଯ୍ୟ ମିଳେ, ତାହା ମୋତେ ପ୍ରଦାନ କରନ୍ତୁ ॥୩୮॥

## ଚତୁର୍ଥ ଅଧ୍ୟାୟ

# ପ୍ରହ୍ଲାଦ

ନାରଦ କହିଲେ, ଯୁଧିଷ୍ଠିର, ହିରଣ୍ୟକଶିପୁର ତପସ୍ୟାରେ ପ୍ରସନ୍ନ ହୋଇ ବ୍ରହ୍ମା ତାର ପ୍ରାର୍ଥିତ ଅତିଶୟ ଦୁର୍ଲଭ ବର ଦାନ କଲେ ॥୧॥ ବ୍ରହ୍ମା କହିଲେ, ବତ୍ସ, ତୁମେ ମୋତେ ଯେଉଁ ବର ମାଗୁଛ, ତାହା ପ୍ରାଣୀମାନଙ୍କ ପକ୍ଷରେ ଅତିଶୟ ଦୁର୍ଲଭ । ତଥାପି ତୁମକୁ ମୁଁ ସେ ବର ପ୍ରଦାନ କରୁଛି ॥୨॥ ଏହାପରେ ଅସୁରଶ୍ରେଷ୍ଠ ହିରଣ୍ୟକଶିପୁ ଓ ପ୍ରଜାପତିମାନେ ଅବ୍ୟର୍ଥ ବରଦାତା ବ୍ରହ୍ମାଙ୍କୁ ସ୍ତୁତି କରି ଲାଗିଲେ ଏବଂ ବ୍ରହ୍ମା ନିଜ ଲୋକକୁ ପ୍ରସ୍ଥାନ କଲେ ॥୩॥ ବ୍ରହ୍ମାଙ୍କଠାରୁ ବରଲାଭ କଲାପରେ ଦୈତ୍ୟ ହିରଣ୍ୟକଶିପୁର ଦେହ ସୁବର୍ଣ୍ଣର କାନ୍ତି ଧାରଣ କଲା । ସେ ନିଜର ଭାଇର ମୃତ୍ୟୁ କଥା ସ୍ମରଣ କରି ଭଗବାନ ବିଷ୍ଣୁଙ୍କୁ ଦ୍ୱେଷ କରିବାକୁ ଲାଗିଲା ॥୪॥ ସେହି ମହାଦୈତ୍ୟ ସ୍ୱର୍ଗ, ମର୍ତ୍ତ୍ୟ, ପାତାଳ, ଦଶଦିଗ ଓ ଦିଗପାଳ, ଦେବତା, ଅସୁର, ମନୁଷ୍ୟ, ଗନ୍ଧର୍ବ, ଗରୁଡ଼, ସର୍ପ, ସିଦ୍ଧ, ଚାରଣ, ବିଦ୍ୟାଧର, ଋଷି, ପିତୃ, ପ୍ରଜାପତି, ଯକ୍ଷ,ରାକ୍ଷସ, ପିଶାଚ, ପ୍ରେତ ଓ ଭୂତମାନଙ୍କର ଅଧିପତିଙ୍କୁ ଏବଂ ସମସ୍ତ ପ୍ରାଣୀଙ୍କର ଅଧିପତିଙ୍କୁ ପରାସ୍ତ କରି ବିଶ୍ୱବିଜୟୀ ହେଲା ଏବଂ ଲୋକପାଳମାନଙ୍କର ସମସ୍ତ ତେଜ ହରଣ କରି ସେମାନଙ୍କ ସ୍ଥାନ ଅଧିକାର କଲା ॥୫-୭॥ ଏବେ ସେ ନନ୍ଦନବନର ସୌନ୍ଦର୍ଯ୍ୟରେ ଶୋଭିତ ସ୍ୱର୍ଗରାଜ୍ୟକୁ ଅଧିକାର କରି ଇନ୍ଦ୍ରଭବନରେ ବାସ କରିବାକୁ ଲାଗିଲା । ବିଶ୍ୱକର୍ମାଙ୍କଦ୍ୱାରା ନିର୍ମିତ ଏହି ଭବନ ସମସ୍ତ ଶୋଭା ଓ ସମୃଦ୍ଧିରେ ଭରପୂର ଥିଲା ॥୮॥ ସେହି ଇନ୍ଦ୍ରଭବନରେ ସୋପାନ ସବୁ ବିଦ୍ରୁମରେ (ମଣି) ନିର୍ମିତ ଏବଂ ମର୍କତମଣିର ଚଟାଣ, ସ୍ଫଟିକର କାନ୍ଥ, ବୈଦୂର୍ଯ୍ୟ ମଣିର ଖମ୍ବ ଓ ମାଣିକ୍ୟର ଚଉକିସବୁ ତାର ଶୋଭା ବଢ଼ାଉଥିଲା । ରଙ୍ଗବେରଙ୍ଗ ଚିତ୍ରିତ ଚାନ୍ଦୁଆ, ପଦ୍ମରାଗର ଆସନ ଓ ଦୁଗ୍ଧଫେନନିଭ ଶଯ୍ୟାରେ ମୁକ୍ତାଖଚିତ ଆସ୍ତରଣମାନ ଶୋଭା ପାଉଥିଲା ॥୯-୧୦॥ ସୁନ୍ଦରୀ ଅପ୍ସରାମାନେ ନୂପୁରର ରୁଣୁଝୁଣୁ ଧ୍ୱନିରେ ଧ୍ୱନିତ କରି ରତ୍ନମୟ ଚଟାଣରେ ଇତସ୍ତତଃ ଭ୍ରମଣ କରୁଥିଲେ ଏବଂ (ପ୍ରତିବିମ୍ବିତ) ନିଜର ସୁନ୍ଦର ମୁଖମଣ୍ଡଳକୁ ଚାହିଁ ରହୁଥିଲେ ॥୧୧॥ ସେହି ଇନ୍ଦ୍ରଭବନ 'ଅମରାବତୀ'ରେ ମହାମନା ମହାବଳୀ ହିରଣ୍ୟକଶିପୁ ସମସ୍ତ ଲୋକକୁ ଜୟ କରି ଏକଚ୍ଛତ୍ର ସମ୍ରାଟ ଭାବରେ ସ୍ୱଚ୍ଛନ୍ଦରେ ବିହାର କରୁଥିଲା । ତା'ର କଠୋର ଶାସନର ପ୍ରତାପରେ ଭୟଭୀତ ହୋଇ ଦେବ ଦାନବ ସମସ୍ତେ ତାର ପଦବନ୍ଦନା କରୁଥିଲେ ॥୧୨॥ ଯୁଧିଷ୍ଠିର, ଉତ୍କଟ ଗନ୍ଧଯୁକ୍ତ ମଦିରା ପାନ କରି ସେ ମତୁଆଲା ହୋଇଯାଉଥିଲା ଏବଂ ତାର ଆଖି ଭୟଙ୍କର ଲାଲ୍ ଦେଖାଯାଉଥିଲା ଏବଂ ବ୍ରହ୍ମା, ବିଷ୍ଣୁ ଓ ମହେଶ୍ୱରଙ୍କୁ ଛାଡ଼ିଦେଲେ ବାକି ସବୁ ଦେବତା ତପୋବଳ ଓ ଯୋଗବଳରେ ଦୀପ୍ତ ସେହି ଦୈତ୍ୟରାଜକୁ ନିଜ ହାତରେ ଭେଟି ନେଇ ସେବା କରୁଥିଲେ ॥୧୩॥ ପାଣ୍ଡୁପୁତ୍ର, ଯେତେବେଳେ ସେ ନିଜ ବିକ୍ରମଦ୍ୱାରା ଇନ୍ଦ୍ରର ଆସନରେ ବସିଗଲା, ବିଶ୍ୱାବସୁ, ତୁମ୍ବୁରୁ ଏବଂ ଆମେ ସମସ୍ତେ ତା'ର ପ୍ରଶଂସା ଗାନ କରୁଥିଲୁ । ଗନ୍ଧର୍ବ, ସିଦ୍ଧ, ବିଦ୍ୟାଧର ଓ ଅପ୍ସରାଗଣ ବାରମ୍ବାର ତାର ସ୍ତୁତି ପାଠ କରୁଥିଲେ ॥୧୪॥ ବର୍ଣ୍ଣାଶ୍ରମଧର୍ମ ଅବଲମ୍ବନ କରୁଥିବା ଲୋକମାନେ ବହୁ ଦକ୍ଷିଣା ଦେଇ ବଡ଼ ବଡ଼ ଯଜ୍ଞ କରୁଥିଲେ । ସବୁ ଯଜ୍ଞର ହବିର୍ଭାଗ ସେ ନିଜେ ନେଇଯାଉଥିଲା । ଚାଷ ବିନା ଫସଲ ଫଳୁଥିବା ଉର୍ବର ଜମିପୂର୍ଣ୍ଣ ଏହି ସପ୍ତଦ୍ୱୀପ । ପୃଥିବୀ ତା'ର ଅଖଣ୍ଡ ଅଧିକାରରେ ରହିଥିଲା ଏବଂ କାମଧେନୁ ପାଖରୁ ସମସ୍ତ ଇପ୍ସିତ ବସ୍ତୁ ମିଳିବା ପରି ସ୍ୱର୍ଗଲୋକ ଓ ନଭଃସ୍ଥଳରୁ ତାକୁ ସବୁ ଆଶ୍ଚର୍ଯ୍ୟଜନକ

ଭୋଗ୍ୟ ବସ୍ତୁ ମିଳିଯାଉଥିଲା ॥୧୬॥ ସେହିପରି ଯେଉଁ ସାତ ସମୁଦ୍ର ଅଛି -- ଲବଣ, ସୁରା, ଘୃତ, ଆଖୁରସ, ଦହି, କ୍ଷୀର ଏବଂ ମଧୁର ପାଣିର, ସେମାନେ ନିଜର ପତ୍ନୀ ନଦୀମାନଙ୍କ ସହିତ ତରଙ୍ଗମାଳାଦ୍ୱାରା ସମସ୍ତ ଧନରତ୍ନ ତା'ପାଖରେ ପହଞ୍ଚାଇ ଦେଉଥିଲେ ॥୧୭॥ ପର୍ବତମାନେ ନିଜ ଶୃଙ୍ଗମାନଙ୍କ ଅଧିତ୍ୟକାରେ ତା'ପାଇଁ କ୍ରୀଡ଼ାସ୍ଥଳମାନ ଯୋଗାଇ ଦେଉଥିଲେ ଏବଂ ବୃକ୍ଷମାନେ ବର୍ଷସାରା ସବୁ ଋତୁରେ ଫୁଲଫଳ ଦାନ କରୁଥିଲେ । ଲୋକପାଳମାନଙ୍କ ପୃଥକ୍ ପୃଥକ୍ ଗୁଣମାନଙ୍କୁ ସେ ଏକାକୀ ଧାରଣ କରିଥିଲା ॥୧୮॥ ଏହିପରି ଦିଗ୍‌ବିଜୟୀ ଏକଚ୍ଛତ୍ର ସମ୍ରାଟ ଭାବରେ ସେ ନିଜର ପ୍ରିୟ ଭୋଗ୍ୟବସ୍ତୁ ଭୋଗ କରୁଥିଲେ ମଧ୍ୟ ଜିତେନ୍ଦ୍ରିୟ ନ ହୋଇ ଥିବାଯୋଗୁଁ ତାକୁ କେବେ ତୃପ୍ତି ମିଳୁ ନ ଥିଲା ॥୧୯॥ ଐଶ୍ୱର୍ଯ୍ୟଗର୍ବରେ ମତ୍ତ ହୋଇ ଏବଂ ଅହଙ୍କାରରେ ଫୁଲିଉଠି ସେ ଶାସ୍ତ୍ରର ମର୍ଯ୍ୟାଦାକୁ ଲଙ୍ଘନ କରି ଚାଲିଥିଲା । ଦେଖୁ ଦେଖୁ ଏହପରି ନିରଙ୍କୁଶ ଭାବରେ ଜୀବନର ବହୁକାଳ ତାର ବିତିଗଲା । କିନ୍ତୁ ଯୁଧିଷ୍ଠିର, ସେ ଥିଲା ବିଷ୍ଣୁଙ୍କର ସେହି ବ୍ରହ୍ମଶାପଗ୍ରସ୍ତ (ସନକାଦି ଋଷିଙ୍କ ଶାପଗ୍ରସ୍ତ) ପାର୍ଷଦ ॥୨୦॥

ତାର ଉଗ୍ର ଶାସନରେ ଲୋକପାଳଙ୍କ ସମେତ ସମସ୍ତ ଲୋକ ତ୍ରସ୍ତ ଓ ଉଦ୍‌ବିଗ୍ନ ହେବାକୁ ଲାଗିଲେ ଏବଂ କେଉଁଠାରେ ଆଶ୍ରୟ ନ ପାଇ ସେମାନେ ଭଗବାନଙ୍କର ଶରଣାଗତ ହେଲେ ॥୨୧॥ ସେମାନେ ସ୍ତୁତି କଲେ, ଯେଉଁଠି ସର୍ବାନ୍ତର୍ଯାମୀ, ସମସ୍ତଙ୍କର ଈଶ୍ୱର ଶ୍ରୀହରି ନିବାସ କରନ୍ତି, ଶାନ୍ତ ଓ ବିମଳ ସନ୍ନ୍ୟାସୀଗଣ ଯେଉଁ ଧାମକୁ ଗଲେ ଆଉ ଫେରି ଆସନ୍ତି ନାହିଁ; ତାହାଙ୍କୁ ଆମେ ନମସ୍କାର କରୁଛୁ ॥୨୨॥ ଏହିପରି ସେମାନେ ଇନ୍ଦ୍ରିୟ ସଂଯମ କରି ନିର୍ମଳ ଏକାଗ୍ର ଚିତ୍ତରେ ଭଗବାନଙ୍କୁ ଆରାଧନା କଲେ ଏବଂ ଖାଇବା ପିଇବା ଶୋଇବା ଆଦି ଛାଡ଼ିଦେଲେ ॥୨୩॥ ଦିନେ ମେଘଗର୍ଜନ ପରି ଏକ ଅଶରୀରୀ ବାଣୀ ଶୁଣାଗଲା । ସେହି ଭୟଙ୍କର ନିନାଦରେ ଦିଗ୍ ବିଦିଗ୍ କମ୍ପି ଉଠିଲା । ସାଧୁମାନଙ୍କପାଇଁ ସେହି ଅଭୟବାଣୀ ଏହିପରି ଥିଲା-- ॥୨୪॥ ଶ୍ରେଷ୍ଠ ଦେବତାଗଣ । ଭୟ କର ନାହିଁ । ତୁମ ସମସ୍ତଙ୍କର କଲ୍ୟାଣ ହେଉ । ମୋର ଦର୍ଶନମାତ୍ରେ ପ୍ରାଣୀମାନଙ୍କର ସମସ୍ତ ମଙ୍ଗଳ ସାଧିତ ହୁଏ ॥୨୫॥ ଏହି ପାପାତ୍ମା ଦୈତ୍ୟର ସମସ୍ତ ଦୌରାତ୍ମ୍ୟ ବିଷୟ ମୁଁ ଜାଣିଚି । ତାର ପ୍ରତିକାର ମୁଁ କରିବି । ସମୟକୁ ଅପେକ୍ଷା କର ॥୨୬॥ କୌଣସି ବ୍ୟକ୍ତି ଦେବତା, ବେଦ, ଗୋ, ବ୍ରାହ୍ମଣ, ସାଧୁସନ୍ଥ, ଧର୍ମ ଏବଂ ମୋ'ପ୍ରତି ବିଦ୍ୱେଷ ଆଚରଣ କଲେ ଶୀଘ୍ର ବିନାଶ ଯାଏ ॥୨୭॥ ଯେତେବେଳେ ହିରଣ୍ୟକଶିପୁ ବୈରହୀନ, ପ୍ରଶାନ୍ତଚିତ୍ତ ନିଜ ପୁତ୍ର ମହାତ୍ମା ପ୍ରହ୍ଲାଦର ଦ୍ରୋହାଚରଣ କରିବ ଏବଂ ତା'ର ଅନିଷ୍ଟ କରିବାକୁ ଯିବ, ସେତେବେଳେ ବର ଲାଭ କରି ଶକ୍ତିଶାଳୀ ହୋଇଥିଲେ ମଧ୍ୟ ମୁଁ ତାକୁ ବିନାଶ କରିବି ॥୨୮॥ ଲୋକମାନଙ୍କର ଗୁରୁ ଭଗବାନ ଏହିପରି କହିବାରୁ ଦେବତାମାନେ ତାଙ୍କୁ ପ୍ରଣାମ କରି ଫେରିଗଲେ । ସେମାନଙ୍କର ସମସ୍ତ ଉଦ୍‌ବେଗ ଦୂର ହୋଇଗଲା । ହିରଣ୍ୟକଶିପୁ ମଲା ବୋଲି ସେମାନେ ଧରିନେଲେ ॥୨୯॥

ଯୁଧିଷ୍ଠିର, ଦୈତ୍ୟରାଜ ହରିଣ୍ୟକଶିପୁର ଚାରି ଜଣ ଧୂରନ୍ଧର ପୁତ୍ର ଥିଲେ । ସର୍ବକନିଷ୍ଠ ପ୍ରହ୍ଲାଦ ଗୁଣରେ ସମସ୍ତଙ୍କଠାରୁ ଶ୍ରେଷ୍ଠ ଥିଲେ ଏବଂ ସାଧୁମାନଙ୍କର ସେବା କରୁଥିଲେ ॥୩୦॥ ସେ ବ୍ରାହ୍ମଣମାନଙ୍କତୁଲ୍ୟ, ସତ୍‌ସ୍ୱଭାବସମ୍ପନ୍ନ, ସତ୍ୟସନ୍ଧ ଏବଂ ଜିତେନ୍ଦ୍ରିୟ ଥିଲେ । ନିଜପରି ସମସ୍ତ ପ୍ରାଣୀଙ୍କୁ ଦେଖୁଥିଲେ ଓ ସମସ୍ତଙ୍କର ଏକମାତ୍ର ପ୍ରିୟ ବନ୍ଧୁ ଥିଲେ ॥୩୧॥ ସେ ଗୁରୁଜନଙ୍କୁ ଭୃତ୍ୟପରି ଶିର ନତ କରି ସେବା କରୁଥିଲେ । ଗରିବମାନଙ୍କୁ ସେମାନଙ୍କର ପିତା ପରି ସ୍ନେହ କରୁଥିଲେ । ସମବୟସ୍କମାନଙ୍କୁ ଭାଇଭଳି ଶ୍ରଦ୍ଧା କରୁଥିଲେ ଓ ଗୁରୁଙ୍କୁ ଈଶ୍ୱରଭାବରେ ପୂଜା କରୁଥିଲେ । ବିଦ୍ୟା, ଧନ, ରୂପ ଓ ଉଚ୍ଚବଂଶରେ ଜନ୍ମ--ଏସବୁ ଥିଲେ ମଧ୍ୟ ତାଙ୍କର ଗର୍ବ କିମ୍ବା ଅଭିମାନ ନ ଥିଲା ॥୩୨॥ ଦୁଃଖ ବା ବିପଦରେ ସେ ବିଚଳିତ ହେଉ ନ ଥିଲେ । ଶୁଣିଥିବା ବା ଦେଖିଥିବା ଭୋଗ୍ୟ ବସ୍ତୁମାନଙ୍କୁ ସେ ଅସତ୍ ବୋଲି ମନେ କରୁଥିଲେ ଏବଂ ସେଥିପ୍ରତି ତାଙ୍କର ସ୍ପୃହା ନ ଥିଲା । ଇନ୍ଦ୍ରିୟ, ପ୍ରାଣ, ଶରୀର ଓ ମନକୁ ସେ ନିଜର ବଶ କରିପାରିଥିଲେ । କୌଣସି କାମନା ନ ଥିବାରୁ ସଦା ଶାନ୍ତ ରହୁଥିଲେ । ଅସୁରକୁଳରେ ଜନ୍ମ ହୋଇଥିଲେ ମଧ୍ୟ ତାଙ୍କର କୌଣସି ଆସୁର ସ୍ୱଭାବ ନ ଥିଲା ॥୩୩॥ ଯେଉଁ ମହତ୍ ଗୁଣାବଳୀ ଭଗବାନଙ୍କଠାରେ

ଆରୋପ କରାଯାଏ, ପ୍ରହ୍ଲାଦଙ୍କଠାରେ ମଧ୍ୟ ମହାତ୍ମାମାନେ ସେହି ସବୁ ଗୁଣର ଆରୋପ କରନ୍ତି । ବହୁଦିନ ଗଡ଼ିଗଲେ ମଧ୍ୟ ତାଙ୍କର ସେହି ଗୁଣାଲୋଚନାର ଶେଷ ନାହିଁ ॥୩୪॥ ଯୁଧିଷ୍ଠିର, ଅସୁରମାନଙ୍କ ଶତ୍ରୁ ଦେବତାମାନେ ମଧ୍ୟ ସେମାନଙ୍କ ସଭାରେ ଭକ୍ତମାନଙ୍କର ଗୁଣକୀର୍ତ୍ତନ କଲାବେଳେ ପ୍ରହ୍ଲାଦଙ୍କୁ ସମ୍ମାନ ଦିଅନ୍ତି । ଏଣୁ ଆପଣଙ୍କପରି ଭଗବତ୍‌ଭକ୍ତଙ୍କ ପକ୍ଷରେ ତାଙ୍କରି ଚର୍ଚ୍ଚା କରିବା ତ ସ୍ୱାଭାବିକ ॥୩୫॥ ତାଙ୍କ ମହିମାକୁ ପ୍ରକାଶ କରିବାପାଇଁ ତାଙ୍କ ଅସଂଖ୍ୟ ଗୁଣାବଳୀଉପରେ ଚର୍ଚ୍ଚାର ଆବଶ୍ୟକତା ନାହିଁ । କେବଳ ତାଙ୍କର ଗୋଟିଏ ଗୁଣ-ଭଗବାନ ବାସୁଦେବଙ୍କଠାରେ ଅକୃତ୍ରିମ ପ୍ରେମ ହିଁ ଯଥେଷ୍ଟ ॥୩୬॥ ପିଲାଦିନୁଁ ସେ ଖେଳଣାପ୍ରତି ଆକୃଷ୍ଟ ନ ହୋଇ ଭଗବାନଙ୍କ ଧ୍ୟାନରେ ଜଡ଼ବତ୍ ମଜ୍ଜି ଯାଉଥିଲେ । ଭଗବତ୍‌ପ୍ରେମ ତାଙ୍କ ହୃଦୟକୁ ଏପରି ଅଧିକାର କରିଥିଲା ଯେ ବାହ୍ୟଜଗତ୍ ଅଛି ବୋଲି ତାଙ୍କୁ ଜଣାଯାଉ ନ ଥିଲା ॥୩୭॥ ସବୁବେଳେ ସେ ମନେ କରୁଥିଲେ, ଗୋବିନ୍ଦ ତାଙ୍କୁ କୋଳରେ ବସାଇ ଆଲିଙ୍ଗନ କରୁଛନ୍ତି । ତେଣୁ ଶୁଆବସା, ଖିଆପିଆ, ଚାଲବୁଲ କରୁଥିବା ବେଳେ ତାଙ୍କର ଏ ସବୁ ଅବସ୍ଥା ପ୍ରତି ଧ୍ୟାନ ନ ଥିଲା ॥୩୮॥ ଭଗବାନଙ୍କ ଚିନ୍ତାରେ ସେ ଏପରି ତନ୍ମୟ ହୋଇପଡୁଥିଲେ ଯେ କେତେବେଳେ କାନ୍ଦୁଥିଲେ, କେତେବେଳେ ହସୁଥିଲେ, ଆଉ କେତେବେଳେ ତାଙ୍କରି ଭାବନାରେ ଉଲ୍ଲସି ଉଠି ଗାଇବାକୁ ଲାଗୁଥିଲେ ॥୩୯॥ କେତେବେଳେ ଉତ୍‌କଣ୍ଠାରେ ପାଟି କରି ଉଠୁଥିଲେ ତ କେତେବେଳେ ଲୋକଲଜ୍ଜାକୁ ଭୟ ନ କରି ନାଚୁଥିଲେ । କେତେବେଳେ ତାଙ୍କ କଥା ଭାବି ଭାବି ତନ୍ମୟ ହୋଇ ଯାଉଥିଲେ ଏବଂ ତାଙ୍କ ଲୀଳା ଅନୁକରଣ କରିବାରେ ଲାଗିଯାଉଥିଲେ ॥୪୦॥ କେତେବେଳେ ଭଗବାନଙ୍କର ସ୍ପର୍ଶ ଅନୁଭବ କରି ଅଙ୍ଗେ ଅଙ୍ଗେ ପୁଲକିତ ହେଉଥିଲେ ଓ ତୁନି ହୋଇ ରହୁଥିଲେ । ଅଖଣ୍ଡପ୍ରେମରେ ତାଙ୍କ ଅର୍ଦ୍ଧନିମୀଳିତ ଚକ୍ଷୁରୁ ଆନନ୍ଦାଶ୍ରୁଧାରା ବହିଯାଉଥିଲା ॥୪୧॥ ପୁଣ୍ୟଶ୍ଳୋକ ଭଗବାନଙ୍କ ଚରଣାବିନ୍ଦରେ ଭକ୍ତି କେବଳ ତାଙ୍କରି ଅକିଞ୍ଚନ ଭକ୍ତମାନଙ୍କ ସଙ୍ଗଲାଭଦ୍ୱାରା ମିଳିଥାଏ । ମାତ୍ର ପ୍ରହ୍ଲାଦ ସ୍ୱୟଂ ପରମାନନ୍ଦ ଲାଭ କରୁଥିଲେ ଏବଂ କୁସଙ୍ଗୀ ଦୀନହୀନମାନଙ୍କୁ ବାରମ୍ବାର ଶାନ୍ତି ପ୍ରଦାନ କରୁଥିଲେ ॥୪୨॥ ଯୁଧିଷ୍ଠିର, ଭଗବାନଙ୍କର ଏପରି ପ୍ରିୟ ଓ ପରମଭକ୍ତ ମହାତ୍ମା ପ୍ରହ୍ଲାଦଙ୍କ ଠାରେ ହିରଣ୍ୟକଶିପୁ ଦ୍ରୋହାଚରଣ କଲା ॥୪୩॥

ଯୁଧିଷ୍ଠିର କହିଲେ, ଦେବର୍ଷି, ଆପଣ ସତ୍ୟନିଷ୍ଠ । ନିଜର ନିର୍ମଳହୃଦୟ ସାଧୁପୁତ୍ର ପ୍ରତି ପିତା ହୋଇ ହିରଣ୍ୟକଶିପୁ କାହିଁକି ଏପରି ଦ୍ରୋହ ଆଚରଣ କଲା ? ॥୪୪॥ ବାପମାନେ ସ୍ୱଭାବତଃ ପୁତ୍ରସ୍ନେହୀ । ପୁଅ ଯଦି ଭୁଲ ବାଟରେ ଗଲା, ବାପ ତାକୁ ଶିକ୍ଷା ଦେଇ ଠିକ୍ ବାଟକୁ ଆଣେ ॥୪୫॥ କିନ୍ତୁ ପ୍ରହ୍ଲାଦ ତ ଶୁଦ୍ଧହୃଦୟ ସାଧୁ ବ୍ୟକ୍ତି ଥିଲେ । ନିଜର ଆଚରଣଦ୍ୱାରା ଗୁରୁଜନଙ୍କ ମଧ୍ୟରେ ଭଗବତ୍‌ଭକ୍ତିର ସଞ୍ଚାର କରୁଥିଲେ । ତାଙ୍କ ବିରୋଧରେ ଯିବାର କଣ କାରଣ ଥିଲା ? ବ୍ରହ୍ମନ୍, ଆପଣ ସବୁ କିଛି ଜାଣନ୍ତି । କେଉଁ କାରଣରୁ ହିରଣ୍ୟକଶିପୁ ଦ୍ୱେଷବୁଦ୍ଧିରେ ପୁତ୍ରକୁ ମାରିବାପାଇଁ ଚେଷ୍ଟା କଲା, ମୋର ଏ କୌତୂହଳକୁ ଆପଣ ଦୂର କରନ୍ତୁ ॥୪୬॥

## ପଞ୍ଚମ ଅଧ୍ୟାୟ

# ପ୍ରହ୍ଲାଦଙ୍କୁ ହତ୍ୟା କରିବାର ଉଦ୍ୟମ

ନାରଦ କହିଲେ, ଯୁଧିଷ୍ଠିର, ଅସୁରମାନେ ଭଗବାନ ଶୁକ୍ରାଚାର୍ଯ୍ୟଙ୍କୁ ନିଜର ଆଚାର୍ଯ୍ୟପଦରେ ବରଣ କରିଥିଲେ । ତାଙ୍କର ଦୁଇ ଜଣ ପୁତ୍ର ଥିଲେ - ଶଣ୍ଡ ଏବଂ ଅମର୍କ । ରାଜପ୍ରାସାଦର ପାଖରେ ରହି ଦୁହେଁ ଅସୁରବାଳକମାନଙ୍କୁ ରାଜନୀତି ଓ ଅର୍ଥନୀତି ଆଦି ବିଦ୍ୟା ଶିକ୍ଷା ଦେଉଥିଲେ । ହିରଣ୍ୟକଶିପୁ ନିଜର ନୀତିନିପୁଣ ପୁତ୍ର ପ୍ରହ୍ଲାଦଙ୍କୁ ପଢ଼ାଇବାପାଇଁ ସେ ଦୁହିଁଙ୍କ

ପାଖରେ ଛାଡ଼ି ଦେଇଥିଲା ॥୧-୨॥ ଗୁରୁ ଦୁହେଁ ଯାହା ପଢ଼ାଉଥିଲେ, ପ୍ରହ୍ଲାଦ ତାହା ଶୁଣି ସଙ୍ଗେ ସଙ୍ଗେ ପାଠ କରି ଶୁଣାଇ ଦେଉଥିଲେ । ତାଙ୍କୁ କିନ୍ତୁ ଏ ପାଠ ଭଲ ଲାଗୁ ନ ଥିଲା । କାରଣ ତାହା ନିଜ ପର ମଧ୍ୟରେ ଅସଦ୍‌ଭାବନା ସୃଷ୍ଟି କରୁଥିଲା ॥୩॥ ପାଣ୍ଡୁପୁତ୍ର, ଏକଦା ଦୈତ୍ୟରାଜ ପୁତ୍ରକୁ କୋଳରେ ବସାଇ ଆଦରରେ ପଚାରିଲେ, କହ ବତ୍ସ, କେଉଁ ବିଷୟ ତୋତେ ବେଶୀ ଭଲ ଲାଗୁଚି ? ॥୪॥ ପ୍ରହ୍ଲାଦ କହିଲେ, ଅସତ୍ ଇଚ୍ଛାଯୋଗୁଁ ପ୍ରାଣୀମାନେ ସବୁବେଳେ ଅତିଶୟ ଉଦ୍‌ବିଗ୍ନ ହୋଇ ରହୁଛନ୍ତି । ସେମାନେ ନିଜ ପତନର କାରଣ ଏହି ଗୃହରୂପକ ଅନ୍ଧକୂପକୁ ଛାଡ଼ି ଦେବା ଉଚିତ ଓ ବନକୁ ଚାଲିଯାଇ ଶ୍ରୀହରିଙ୍କର ଆଶ୍ରୟ ନେବା ଉଚିତ । ଅସୁରଶ୍ରେଷ୍ଠ, ଏହାକୁ ହିଁ ମୁଁ ଭଲ ମନେ କରୁଚି ॥୫॥ ପୁତ୍ର ମୁହଁରୁ ଶତ୍ରୁପକ୍ଷକୁ ସମର୍ଥନ କଥା ଶୁଣି ହିରଣ୍ୟକଶିପୁ ହସି ଉଠିଲା ଏବଂ କହିଲା, ପରବୁଦ୍ଧିରେ ଏହିପରି ବାଳକମାନଙ୍କର ବୁଦ୍ଧିଭ୍ରଂଶ ହୁଏ । ଜଣାପଡୁଚି, ଗୁରୁଗୃହରେ ବ୍ରାହ୍ମଣବେଶଧାରୀ ବିଷ୍ଣୁପକ୍ଷର କିଛି ଲୋକ ଅଛନ୍ତି । ସେମାନେ ଯେପରି ପୁଅର ମୁଣ୍ଡ ନ ବିଗାଡ଼ନ୍ତି, ତାର ବ୍ୟବସ୍ଥା କରିବାକୁ ହେବ ॥୬-୭॥

ଦୈତ୍ୟମାନଙ୍କର ପୁରୋହିତଦ୍ୱୟ ପ୍ରହ୍ଲାଦଙ୍କୁ ନିଜ ଗୃହକୁ ଆଣିବାପରେ ତାଙ୍କୁ ବହୁତ ପ୍ରଶଂସା କରି ମଧୁର ବାକ୍ୟରେ ପଚାରିଲେ, ବତ୍ସ ପ୍ରହ୍ଲାଦ, ତୁମର କଲ୍ୟାଣ ହେଉ । ସତ କଥା କହ, ମିଛ କହ ନାହିଁ । କିଏ ତୁମର ବୁଦ୍ଧି ଏପରି ବିଗାଡ଼ି ଦେଇଛି ? ॥୮-୯॥ କୁଳନନ୍ଦନ, ତୁମର ଗୁରୁଜନମାନେ ଜାଣିବାକୁ ଚାହାନ୍ତି, ତୁମର ସ୍ୱୟଂ ଏପରି ବିପରୀତ ବୁଦ୍ଧି ଘଟିଚି ନା ଅନ୍ୟ କାହା ଶିକ୍ଷାରେ ଏପରି ଘଟିଚି, ତାହା ଆମକୁ କହିଦିଅ ॥୧୦॥

ପ୍ରହ୍ଲାଦ କହିଲେ, ଯାହାଙ୍କର ମାୟାରେ ମୋହଗ୍ରସ୍ତ ପୁରୁଷମାନଙ୍କର ନିଜ-ପର ଏହି ମିଥ୍ୟା ଭେଦବୁଦ୍ଧି ସୃଷ୍ଟି ହୋଇଥାଏ, ସେହି ଭଗବାନଙ୍କୁ ମୁଁ ନମସ୍କାର କରୁଚି ॥୧୧॥ ସେ ଅନୁଗ୍ରହ କଲେ ମନୁଷ୍ୟମାନଙ୍କର ପଶୁବୁଦ୍ଧି ନଷ୍ଟ ହୋଇଯାଏ । ସେହି ବୁଦ୍ଧିଯୋଗୁଁ 'ଇଏ ମୁଁ' ଏବଂ 'ଇଏ ମୋଠାରୁ ଭିନ୍ନ' ଏହି ଭେଦ ଜନ୍ମିଥାଏ ॥୧୨॥ ଏହି ଆତ୍ମା ହେଉଛନ୍ତି ପରମାତ୍ମା । ନିଜ-ପର ଭେଦବୁଦ୍ଧି କରୁଥିବା ଅଜ୍ଞାନୀ ଲୋକମାନେ ତାଙ୍କୁ ଭିନ୍ନ ଭାବରେ ଦେଖିଥା'ନ୍ତି । ତାଙ୍କର ତତ୍ତ୍ୱ ଜାଣିବା ଏପରି କଠିନ ଯେ ବ୍ରହ୍ମା ଆଦି ବଡ଼ ବଡ଼ ବେଦଜ୍ଞମାନେ ମଧ୍ୟ ମୋହଗ୍ରସ୍ତ ହୋଇଯା'ନ୍ତି । ସେହି ପରମାତ୍ମା ହିଁ ମୋର ବୁଦ୍ଧି ବିଗାଡ଼ି ଦେଇଛନ୍ତି ॥୧୩॥ ଗୁରୁଦେବ, ଯେପରି ଲୁହା ନିଜେ ନିଜେ ଚୁମ୍ବକପାଖକୁ ଟାଣି ହୋଇଯାଏ, ସେହିପରି ସ୍ୱେଚ୍ଛାରେ ମୋର ଚିତ୍ତ ଚକ୍ରପାଣି ଭଗବାନଙ୍କଆଡ଼କୁ ଟାଣି ହୋଇଯାଉଚି ॥୧୪॥

ନାରଦ କହିଲେ, ଗୁରୁଙ୍କୁ ଏହିପରି କହି ମହାମତି ପ୍ରହ୍ଲାଦ ଚୁପ୍ ହୋଇଗଲେ । ଗୁରୁ ବିଚାରା ରାଜାଙ୍କର ସେବକ । ସେ ରାଗିଯାଇ ପ୍ରହ୍ଲାଦଙ୍କୁ ଭର୍ତ୍ସନା କରି କହିଲେ, ଆରେ କିଏ ଅଛ, ମୋର ବେତଟାକୁ ଆଣିବ ତ ! ଏ ଦୁର୍ବୁଦ୍ଧି କୁଳାଙ୍ଗାରପାଇଁ ଚତୁର୍ଥ ଉପାୟ ଦଣ୍ଡ ହିଁ ଦରକାର ॥୧୫-୧୬॥ ଦୈତ୍ୟବଂଶର ଚନ୍ଦନବନରେ ଏ ଏକ କଣ୍ଟକବୃକ୍ଷ ଜାତ ହୋଇଚି । ଏହି ବନର ମୂଳକୁ ଉପାଡ଼ି ଦେବାପାଇଁ ବିଷ୍ଣୁ ଯେଉଁ କୁଠାର ଚଳାଇବାକୁ ଚାହାନ୍ତି, ଏହି ଅଧମ ବାଳକ ତାର ବେଣ୍ଟ ହେବାକୁ ଯାଉଚି ॥୧୭॥ ଏହିପରି ଗର୍ଜନ ତର୍ଜନ କରି ଓ ବିଭିନ୍ନ ପ୍ରକାର ଭୟ ଦେଖାଇ ଗୁରୁ ପ୍ରହ୍ଲାଦଙ୍କୁ ଧର୍ମ ଅର୍ଥ ଓ କାମ ଏହି ତ୍ରିବର୍ଗ ସମ୍ପର୍କୀୟ ଶିକ୍ଷା ଦେବାକୁ ଲାଗିଲେ ॥୧୮॥ ସାମ, ଦାନ, ଦଣ୍ଡ ଓ ଭେଦ -- ରାଜନୀତିର ଏହି ଚାରୋଟି ଯାକ ବିଷୟରେ ପ୍ରହ୍ଲାଦଙ୍କର ସମ୍ପୂର୍ଣ୍ଣ ଜ୍ଞାନଲାଭ ହୋଇଥିବାର ଦେଖି ଗୁରୁ ତାଙ୍କୁ ରାଣୀଙ୍କ ପାଖକୁ ନେଇଗଲେ ଓ ମା ତାଙ୍କୁ ବସ୍ତ୍ର ଅଳଙ୍କାରରେ ସଜାଇ ଦେବାପରେ ତାଙ୍କୁ ରାଜାଙ୍କ ପାଖରେ ପହଞ୍ଚାଇ ଦେଲେ ॥୧୯॥ ପ୍ରହ୍ଲାଦ ପିତାଙ୍କର ପାଦତଳେ ପଡ଼ି ପ୍ରଣାମ କଲେ । ଦୈତ୍ୟରାଜ ତାଙ୍କୁ ଦୁଇ ହାତରେ ଉଠାଇ ନେଇ ଆଲିଙ୍ଗନପୂର୍ବକ ଆଶୀର୍ବାଦ କଲେ । ହିରଣ୍ୟକଶିପୁର ହୃଦୟ ଆନନ୍ଦରେ ଭରି ଉଠୁଥିଲା ॥୨୦॥ ଯୁଧିଷ୍ଠିର, ପିତାଙ୍କ କୋଳରେ ବସିଥିବା ପ୍ରହ୍ଲାଦ ପ୍ରସନ୍ନ ଦେଖାଯାଉଥିଲେ । ପିତାଙ୍କ ଚକ୍ଷୁରୁ ଆନନ୍ଦାଶ୍ରୁ ଝରି ତାଙ୍କର ମୁଣ୍ଡକୁ ଓଦା କରି ଦେଉଥିଲା । ପିତା ପ୍ରଶ୍ନ କଲେ-- ॥୨୧॥ ହିରଣ୍ୟକଶିପୁ ପଚାରିଲେ, ପୁତ୍ର ପ୍ରହ୍ଲାଦ, ଏତେଦିନ ଧରି

ଗୁରୁଙ୍କ ପାଖରେ ରହି ତୁ କଣ ଉତ୍ତମ ବିଷୟ ଶିକ୍ଷା କରିଛୁ ସେଥିରୁ କିଛି ମୋତେ କହ ॥୨୨॥ ପ୍ରହ୍ଲାଦ କହିଲେ, ବିଷ୍ଣୁଙ୍କୁ ନ'ପ୍ରକାର ଭକ୍ତି କରାଯାଏ - ଶ୍ରବଣ, କୀର୍ତ୍ତନ, ସ୍ମରଣ, ପାଦସେବନ, ଅର୍ଚ୍ଚନ, ବନ୍ଦନ, ଦାସ୍ୟ, ସଖ୍ୟ ଓ ଆତ୍ମନିବେଦନ । ଏହି ନବଧା ଭକ୍ତି ବିଷ୍ଣୁଙ୍କୁ ଅର୍ପଣପୂର୍ବକ କରାଯାଏ । ଏହି ବିଷୟଟିକୁ ମୁଁ ଉତ୍ତମ ଅଧ୍ୟୟନ ମନେ କରେ ॥୨୩-୨୪॥ ପୁତ୍ରର ଏହି ବାକ୍ୟ ଶୁଣି ହିରଣ୍ୟକଶିପୁର ଓଠ ରାଗରେ ଥରି ଉଠିଲା । ସେ ଗୁରୁପୁତ୍ରଙ୍କୁ ଡାକି କହିଲା, ଦୁଷ୍ଟ ବ୍ରାହ୍ମଣ, ତୁମେ ମୋର ଶତ୍ରୁକୁ ଆଶ୍ରୟ କରିଚ । ଦୁର୍ମତି, ମୋତେ ଅନାଦର କରି ମୋର ପୁତ୍ରକୁ ସମସ୍ତ ଅସାର କଥା ତୁମେ ଶିକ୍ଷା ଦେଇଚ ॥୨୫-୨୬॥ ସଂସାରରେ ଏପରି ଦୁଷ୍ଟଲୋକ ବହୁତ ଅଛନ୍ତି, ଯେଉଁମାନେ ବନ୍ଧୁର ଛଦ୍ମବେଶରେ ଶତ୍ରୁର କାର୍ଯ୍ୟ କରନ୍ତି । ପାପ କରୁଥିବା ଲୋକର ପାପ ଦିନେ ନା ଦିନେ ରୋଗରୂପରେ ବାହାରି ପଡ଼ିବା ପରି ତୁମର ବିଦ୍ୱେଷ ଧରାପଡ଼ିଯାଇଚି ॥୨୭॥ ଗୁରୁପୁତ୍ର କହିଲେ, ଇନ୍ଦ୍ରଶତ୍ରୁ ରାଜା, ଆପଣଙ୍କ ପୁତ୍ର ଯାହା କହୁଚି, ତାହା ମୋ ଶିକ୍ଷା ବା ଅନ୍ୟ କାହା ଶିକ୍ଷା ନୁହେ । ଏହା ତା'ର ଜନ୍ମଜାତ ବୁଦ୍ଧି । ଆପଣ କ୍ରୋଧ ସମ୍ବରଣ କରନ୍ତୁ । ଆମକୁ ବୃଥା ଦୋଷ ଦିଅନ୍ତୁ ନାହିଁ ॥୨୮॥

ନାରଦ କହିଲେ, ଗୁରୁଙ୍କର ପ୍ରତ୍ୟୁତ୍ତର ଶୁଣି ହିରଣ୍ୟକଶିପୁ ପୁଣି ପ୍ରହ୍ଲାଦକୁ ପଚାରିଲା, ଯଦି ଗୁରୁଙ୍କ ମୁହଁରୁ ତୁ ଏପରି ଅମଙ୍ଗଳକର କଥା ଶୁଣି ନାହୁଁ, ତା'ହେଲେ କାହାଠାରୁ ଶୁଣିଲୁ, କହ ॥୨୯॥

ପ୍ରହ୍ଲାଦ କହିଲେ, ଇନ୍ଦ୍ରିୟାସକ୍ତ ସଂସାରୀ ଲୋକମାନେ ବିଷୟଭୋଗର ଲାଳସାରେ ସଂସାରରୂପ ଅନ୍ଧକୂପରେ ପଡ଼ି ରହିଛନ୍ତି । ଚର୍ବିତଚର୍ବଣ ବସ୍ତୁପରି ଏହି ସଂସାରଚକ୍ରରେ ପେଷି ହେଉଛନ୍ତି । ତେଣୁ ସ୍ୱତଃ ବା ଅନ୍ୟ କାହାରିଦ୍ୱାରା ବା ପରସ୍ପର ପ୍ରରୋଚିତ ହୋଇ ସେମାନେ ଭଗବାନଙ୍କପ୍ରତି ଆକୃଷ୍ଟ ହେବେ ନାହିଁ ॥୩୦॥ ସେମାନେ ବେଦବାଣୀରୂପକ ଦଉଡ଼ିଦ୍ୱାରା ବିଭିନ୍ନ କ୍ରିୟାକର୍ମରେ ବାନ୍ଧି ହୋଇ ନାନା ସ୍ୱାର୍ଥରେ ମାତିଥା'ନ୍ତି । ଭଗବାନ ବିଷ୍ଣୁଙ୍କୁ ଲାଭ କରିବାରେ ଯେ ପ୍ରକୃତ ସ୍ୱାର୍ଥ ନିହିତ, ତାହା ସେ ଜାଣିପାରନ୍ତି ନାହିଁ ଏବଂ ଦଳେ ଅନ୍ଧ ଅନ୍ୟମାନଙ୍କୁ ବାଟ କଢ଼ାଇବାପରି ଏହି କୁବୁଦ୍ଧିସମ୍ପନ୍ନ ଲୋକମାନଙ୍କର ଅବସ୍ଥା ହୁଏ ॥୩୧॥ ଯେ ପର୍ଯ୍ୟନ୍ତ ମନ ଭଗବାନଙ୍କ ପାଦପଦ୍ମର ସମ୍ପର୍କରେ ନ ଆସିଚି, ଯେ ପର୍ଯ୍ୟନ୍ତ ଜନ୍ମମୃତ୍ୟୁ ରୂପ ଅନର୍ଥର ନାଶ ହୋଇ ନାହିଁ, ଏ ସମ୍ପର୍କ ତେବେ ଯାଇ ସମ୍ଭବ ହେବ, ଯେବେ ବ୍ୟକ୍ତି ଭଗବାନଙ୍କର ପରମଭକ୍ତ ଅକିଞ୍ଚନ ମହାତ୍ମାମାନଙ୍କର ପାଦଧୂଳି ଦେହରେ ବୋଳି ହୋଇପାରିବ ॥୩୨॥

ଏତିକି କହି ପ୍ରହ୍ଲାଦ ଚୁପ୍ ହୋଇଯିବାରୁ ହିରଣ୍ୟକଶିପୁ ରାଗରେ ତାଙ୍କୁ ନିଜ କୋଳରୁ ଉଠାଇ ନେଇ ତଳେ କଚାଡ଼ି ଦେଲା ॥୩୩॥ କ୍ରୋଧରେ ତାର ଚକ୍ଷୁ ଲାଲ୍ ପଡ଼ିଗଲା । ସେ କହିବାକୁ ଲାଗିଲା, ଦୈତ୍ୟଗଣ, ଏହାକୁ ଶୀଘ୍ର ମାରିଦିଅ । କାରଣ ଏ ବଧର ଯୋଗ୍ୟ । ନିଜର ଆତ୍ମୀୟ ସ୍ୱଜନଙ୍କୁ ଛାଡ଼ି ଏକ ନୀଚ ଭୃତ୍ୟପରି ଏ ନିଜ ଦାଦାର ହତ୍ୟାକାରୀ ବିଷ୍ଣୁର ପାଦ ପୂଜା କରୁଚି । ମୋର ଭ୍ରାତୃହନ୍ତା ବିଷ୍ଣୁ ଏହି ବାଳକ ଦେହରେ ପ୍ରବେଶ କରିଚି ॥୩୪-୩୫॥ ପାଞ୍ଚ ବର୍ଷ ବୟସରେ ଯେ ପିତାମାତାଙ୍କର ଅଭୁଲା ସ୍ନେହକୁ ଭୁଲି ପାରିଲା, ସେ କୃତଘ୍ନ ବିଷ୍ଣୁର ବା କେଉଁ କାମରେ ଲାଗିବ ? ॥୩୬॥ କେହି ଯଦି ଔଷଧ ପରି ହିତସାଧନ କରେ, ପର ହେଲେ ମଧ୍ୟ ସେ ପୁତ୍ର ପରି । କିନ୍ତୁ ନିଜର ପୁତ୍ର ଯଦି ଅହିତ କରେ, ତା'ହେଲେ ରୋଗ ପରି ସେ ଶତ୍ରୁ । କୌଣସି ରୋଗଗ୍ରସ୍ତ ଅଙ୍ଗଦ୍ୱାରା ସମସ୍ତ ଶରୀରର କ୍ଷତି ଘଟିବାକୁ ଯାଉଥିଲେ, ତାକୁ ଶୀଘ୍ର କାଟି ପକାଇବା ଉଚିତ । କାରଣ ତଦ୍ୱାରା ଅବଶିଷ୍ଟ ଶରୀର ସୁଖରେ ରହିପାରିବ ॥୩୭॥ ଭୋଗବାସନାରୂପ ଦୁଷ୍ଟ ଇନ୍ଦ୍ରିୟ ଯେପରି ଯୋଗୀର କ୍ଷତିକାରକ, ଏହି ପୁତ୍ର ସେହିପରି ମୋର ସମ୍ପୂର୍ଣ୍ଣ ଅମଙ୍ଗଳକାରୀ । ଖାଇବା, ଶୋଇବା ବା ବସିବା ସମୟରେ ଯେକୌଣସି ଉପାୟରେ ତୁମେମାନେ ଏହାକୁ ହତ୍ୟା କର ॥୩୮॥ ଶୂଳଧାରୀ ରାକ୍ଷସମାନେ ଧାରୁଆ ଦାନ୍ତ, ବିକଟାଳ ମୁହଁ, ତମ୍ବାବର୍ଣ୍ଣର ଦାଢ଼ି ଓ ବାଳ ରଖି ଅତି ଭୟଙ୍କର ଦେଖାଯାଉଥିଲେ । 'ଛେଦି ଦିଅ, ମାରିପକାଅ' ଏହିପରି କୋଳାହଳ କରି ସେମାନେ ସ୍ଥିର ହୋଇ

ବସିରହିଥିବା ପ୍ରହ୍ଲାଦଙ୍କର ମର୍ମସ୍ଥଳମାନଙ୍କୁ ଶୂଳଦ୍ୱାରା ଭୁଷିବାକୁ ଲାଗିଲେ ।।୩୯-୪୦।। ଏହି ସମୟରେ ପ୍ରହ୍ଲାଦଙ୍କର ଚିତ୍ତ ଭଗବାନ ପରଂବ୍ରହ୍ମ ପରମାତ୍ମାଙ୍କଠାରେ ନିବିଷ୍ଟ ଥିଲା । ଭାଗ୍ୟହୀନ ଲୋକର ଯେପରି ସମସ୍ତ ଉଦ୍ୟମ ବ୍ୟର୍ଥ ହୁଏ, ସେପରି ଏହିସବୁ ପ୍ରହାର ନିଷ୍ଫଳ ହେଲା ।।୪୧।।

ଯୁଧିଷ୍ଠିର, ଯେତେବେଳେ ଶୂଳପ୍ରହାରର କୌଣସି ଫଳ ଫଳିଲା ନାହିଁ, ସେତେବେଳେ ଦୈତ୍ୟରାଜ ହିରଣ୍ୟକଶିପୁ ଆତଙ୍କିତ ହେଲା । ସେ ପ୍ରହ୍ଲାଦଙ୍କୁ ବଧ କରିବା ନିମନ୍ତେ ବିଭିନ୍ନ ଉପାୟ କରିବାକୁ ଲାଗିଲା ।।୪୨।। ମତ୍ତହସ୍ତୀଦ୍ୱାରା, ବିଷଧର ସର୍ପଦ୍ୱାରା, ତାନ୍ତ୍ରିକ ପ୍ରୟୋଗଦ୍ୱାରା, ପର୍ବତଶିଖରରୁ ଭୂତଳକୁ ନିକ୍ଷେପଦ୍ୱାରା, ମାୟାଦ୍ୱାରା, ଅନ୍ଧକାରପୂର୍ଣ୍ଣ କକ୍ଷରେ ଆବଦ୍ଧ କରିବାଦ୍ୱାରା, ବିଷପାନ କରାଇବା ଓ ଖାଇବାକୁ ନ ଦେବାଦ୍ୱାରା ସେ ପ୍ରହ୍ଲାଦଙ୍କୁ ମାରିଦେବାପାଇଁ ଚେଷ୍ଟା କଲା । ବରଫାବୃତ ସ୍ଥାନ, ଜଳନ୍ତା ନିଆଁ, ସମୁଦ୍ରର ଅତଳ ଜଳ ଏବଂ ପ୍ରବଳ ତୋଫାନ ମଧ୍ୟକୁ ଠେଲି ଦେଇ ମଧ୍ୟ ସେ ତାଙ୍କୁ ମାରିପାରିଲା ନାହିଁ । ନିଜର ନିଷ୍ପାପ ପୁତ୍ରର କିଛି କରି ନ ପାରି ରାକ୍ଷସ ଚିନ୍ତାଗ୍ରସ୍ତ ହେଲା । ଆଉ ତାକୁ କୌଣସି ଉପାୟ ଦେଖାଗଲା ନାହିଁ ।।୪୩-୪୪।। ସେ ଚିନ୍ତା କଲା, ମୁଁ ତ ତାକୁ ବହୁତ ଭର୍ତ୍ସନା କଲି, ତାକୁ ହତ୍ୟା କରିବାପାଇଁ ବହୁ ଉପାୟ କଲି । ସେ ମୋ ପ୍ରତି ଦ୍ରୋହାଚରଣ ନ କରି ବା କୌଣସି ଅସତ୍ ପନ୍ଥା ନ ଧରି ନିଜ ତେଜରେ ହିଁ ନିଜକୁ ରକ୍ଷା କଲା ।।୪୫।। ସେ ବାଳକ ହେଲେ ମଧ୍ୟ ତାର ବୋଧଶକ୍ତି ବହୁତ ଅଛି । ନିର୍ଭୟରେ ମୋ ପାଖରେ ବସିଚି । ମୁଁ ତା'ପ୍ରତି ଯେଉଁ ଅନ୍ୟାୟ କରିଚି, ଶୁନଃଶେଫ ତାର ଅଧର୍ମୀ ବାପକୁ ଯେପରି ଭୁଲି ପାରି ନ ଥିଲା, ସେ ମଧ୍ୟ ତାହା ଭୁଲି ପାରିବ ନାହିଁ ।।୪୬।। ଏହିପରି ଚିନ୍ତା କରି ହିରଣ୍ୟକଶିପୁର ମୁହଁ ମଳିନ ପଡ଼ିଗଲା । ତଳକୁ ମୁହଁ କରି ବସିଥିବାର ଦେଖି ଶୁକ୍ରାଚାର୍ଯ୍ୟଙ୍କର ପୁତ୍ର ଶଣ୍ଡ ଓ ଅମର୍କ ଏକାନ୍ତରେ ରାଜାଙ୍କୁ ଯାଇ ଏହିପରି କହିଲେ-- ।।୪୭।। ମହାରାଜ, ଆପଣ ଏକାକୀ ତ୍ରିଭୁବନକୁ ଜୟ କରିଛନ୍ତି । ଆପଣ ହାଇ ମାରିବା ମାତ୍ରେ ଲୋକପାଳ କମ୍ପିଉଠନ୍ତି । ଆପଣଙ୍କପାଇଁ କୌଣସି ଚିନ୍ତାର କାରଣ ଆମେ ଦେଖୁ ନାହୁଁ । ବାଳକର ଦୋଷଗୁଣକୁ ଧରି ଆପଣ ଏପରି ବିଚଳିତ ହେବା ଉଚିତ ନୁହେଁ ।।୪୮-୪୯।। ଆମର ପିତା ଶୁକ୍ରାଚାର୍ଯ୍ୟ ନାହାନ୍ତି । ସେ ଆସିବା ପର୍ଯ୍ୟନ୍ତ ବରୁଣଙ୍କ ପାଶରେ ଏହି ବାଳକକୁ ବାନ୍ଧି ରଖନ୍ତୁ, ଯେପରି କି ସେ ପଳାଇ ନ ଯାଏ । ବୟସ ବଢ଼ିବା ସଙ୍ଗେ ସଙ୍ଗେ ଗୁରୁଜନଙ୍କ ସେବାଦ୍ୱାରା ଏହାର ବୁଦ୍ଧିର ଉଦୟ ହୋଇପାରେ ।।୫୦।।

ଗୁରୁପୁତ୍ରଙ୍କ କଥା ଶୁଣି ଦୈତ୍ୟରାଜ କହିଲା, ଠିକ୍ ଅଛି । ଗୃହସ୍ଥ ନରପତିମାନେ ଯେଉଁ ଧର୍ମ ଶିକ୍ଷା କରନ୍ତି, ଏହାକୁ ସେହି ଧର୍ମ ଶିକ୍ଷା ଦିଆଯାଉ ।।୫୧।। ଏହାପରେ ଆଚାର୍ଯ୍ୟ ପ୍ରହ୍ଲାଦଙ୍କୁ ଗୁରୁଗୃହକୁ ନେଇ ଧର୍ମ, ଅର୍ଥ ଓ କାମ ବିଷୟରେ ଯଥାକ୍ରମେ ତାଙ୍କୁ ଶିକ୍ଷା ଦେଲେ । ପ୍ରହ୍ଲାଦ ନମ୍ରଭାବରେ ସେଠାରେ ଅବସ୍ଥାନ କଲେ ।।୫୨।। କିନ୍ତୁ ସେହି ଶିକ୍ଷା ପ୍ରହ୍ଲାଦଙ୍କୁ ଭଲ ଲାଗିଲା ନାହିଁ । କାରଣ ଧର୍ମ, ଅର୍ଥ ଓ କାମ-ଏହି ତିନିବର୍ଗର ଶିକ୍ଷାରେ କେବଳ ରାଗ-ଦ୍ୱେଷ ଆଦି ଦ୍ୱନ୍ଦ୍ୱମୂଳକ ବିଷୟଭୋଗ ହିଁ ବର୍ଣ୍ଣିତ ହୋଇଥାଏ ।।୫୩।। ଦିନେ ଆଚାର୍ଯ୍ୟ କୌଣସି ଗୃହସ୍ଥଙ୍କ କାମରେ ବାହାରକୁ ଚାଲିଯାଇଥିଲେ । ଛୁଟି ପାଇବାରୁ ସମବୟସ୍କ ବାଳକମାନେ ପ୍ରହ୍ଲାଦଙ୍କୁ ଖେଳିବାକୁ ଡାକିଲେ ।।୫୪।। ପ୍ରହ୍ଲାଦ ମହାପଣ୍ଡିତ ଥିଲେ । ସେମାନଙ୍କୁ ମଧୁର କଥାରେ ନିଜ ପାଖକୁ ଡାକି ଆଣିଲେ । ଅଳ୍ପ ହସି ସେମାନଙ୍କ ପ୍ରତି କୃପାପରବଶ ହୋଇ ଏହିପରି ଉପଦେଶ ଦେଲେ ।।୫୫।। ପ୍ରହ୍ଲାଦଙ୍କୁ ଶ୍ରଦ୍ଧା କରୁଥିବା ଏହି ବାଳକମାନେ ସମସ୍ତ ଖେଳନା ବସ୍ତୁ ଛାଡ଼ିଦେଇ ପ୍ରହ୍ଲାଦଙ୍କ ଚାରି ପାଖରେ ଆସି ବସିଗଲେ । ରାଗ, ଦ୍ୱେଷ ଓ ବିଷୟଭୋଗ ଆଦିଦ୍ୱାରା ବଡ଼ମାନଙ୍କପରି ସେମାନଙ୍କର ବୁଦ୍ଧି ଦୂଷିତ ହୋଇ ନ ଥିଲା । ସେମାନେ ନିର୍ମଳହୃଦୟ ଓ ପ୍ରେମପୂର୍ଣ୍ଣ ଦୃଷ୍ଟିରେ ତାଙ୍କୁ ଚାହିଁରହିଲେ । ଭଗବାନଙ୍କର ପରମଭକ୍ତ ପ୍ରହ୍ଲାଦଙ୍କର ହୃଦୟ ସେମାନଙ୍କ ପ୍ରତି ପ୍ରେମ ଓ କରୁଣାରେ ଭରିଗଲା । ସେ ସେମାନଙ୍କୁ ଏହିପରି ଉପଦେଶ ଦେବାକୁ ଲାଗିଲେ ।।୫୬।।

## ଷଷ୍ଠ ଅଧ୍ୟାୟ

# ପ୍ରହ୍ଲାଦଙ୍କର ଉପଦେଶ

ପ୍ରହ୍ଲାଦ କହିଲେ, ବନ୍ଧୁଗଣ, ସାସାରରେ ମନୁଷ୍ୟଜନ୍ମ ଦୁର୍ଲଭ । କିନ୍ତୁ ମୃତ୍ୟୁ କେବେ ଆସିଯିବ, କେହି ନିଶ୍ଚିତ ନୁହନ୍ତି । ତେଣୁ ଏହି ଅନିଶ୍ଚିତ ଜୀବନକୁ ବିଚାର କରି ବାଲ୍ୟକାଳରୁ ହିଁ ଭଗବାନଙ୍କୁ ଲାଭ କରିବାପାଇଁ ଧର୍ମାଚରଣ ଆବଶ୍ୟକ ॥୧॥ ଏହି ଜନ୍ମରେ ଭଗବାନ ବିଷ୍ଣୁଙ୍କ ପାଦତଳେ ଆଶ୍ରୟ ନେବା ଉଚିତ । କାରଣ ସେ ହେଉଛନ୍ତି ସମସ୍ତ ପ୍ରାଣୀଙ୍କର ପ୍ରିୟ, ନିଜର ହୃଦୟର ସ୍ୱାମୀ ଏବଂ ପ୍ରକୃତ ବନ୍ଧୁ ॥୨॥ ଭାଇମାନେ, ଇନ୍ଦ୍ରିୟଜନିତ ସୁଖ ସମସ୍ତପ୍ରକାର ଦେହଧାରୀ ଜୀବଙ୍କୁ ସର୍ବତ୍ର ମିଳିଥାଏ । କିନ୍ତୁ ପରିଣାମରେ ଯେଉଁ ଦୁଃଖ ହୁଏ, ଯେତେ ଚେଷ୍ଟା କଲେ ମଧ୍ୟ ତାର ନିବାରଣ ସମ୍ଭବ ନୁହେଁ ॥୩॥ ଏହି ସାଂସାରିକ ସୁଖପାଇଁ ପରିଶ୍ରମ କରିବା ଅର୍ଥ ନିଜର ଆୟୁ ଏବଂ ଶକ୍ତି କ୍ଷୟ କରିବା । ଯେଉଁମାନେ ଏଥିରେ ମାତନ୍ତି, ସେମାନେ ଶ୍ରୀମୁକୁନ୍ଦଙ୍କର ମଙ୍ଗଳମୟ ଚରଣାରବିନ୍ଦକୁ ଲାଭ କରିପାରନ୍ତି ନାହିଁ ॥୪॥ ଯେଉଁ ଶରୀର ଶ୍ରୀପୁରୁଷୋତ୍ତମଙ୍କ କୃପାଲାଭପାଇଁ ଉଦ୍ଦିଷ୍ଟ, ତାହା ରୋଗ, ଜରା ଓ ମୃତ୍ୟୁ ଆଦିଦ୍ୱାରା ବିପନ୍ନ ହେବା ପୂର୍ବରୁ ଭୟଗ୍ରସ୍ତ ଅଥଚ କୁଶଳୀ ଜୀବ ନିଜର ମଙ୍ଗଳପାଇଁ ଯତ୍ନ କରିବା ଉଚିତ ॥୫॥ ମନୁଷ୍ୟର ଆୟୁ ଶହେ ବର୍ଷ । ଯେଉଁମାନେ ଇନ୍ଦ୍ରିୟକୁ ଜୟ କରିପାରନ୍ତି ନାହିଁ, ସେମାନଙ୍କର ଅଧେ ସମୟ ତ ନିଷ୍ଫଳ ହୋଇଯାଏ, କାରଣ ସେମାନେ ଘୋର ତମୋଗୁଣଦ୍ୱାରା ପ୍ରଭାବିତ ହୋଇ ସାରାରାତି ଶୋଇଯା'ନ୍ତି ॥୬॥ ଅଜ୍ଞାନ ବାଳକ ଭାବରେ ବାଲ୍ୟକାଳ ଓ କୌମାର ସମୟ ଖେଳିବୁଲି କଟିଯାଏ । ଏହିପରି କୋଡ଼ିଏ ବର୍ଷ କୁଆଡ଼େ ଚାଲିଯାଏ । ଜରାଗ୍ରସ୍ତ ଅବସ୍ଥାରେ ଶେଷ କୋଡ଼ିଏ ବର୍ଷରେ ମଧ୍ୟ କୌଣସି କାର୍ଯ୍ୟ କରିବାପାଇଁ ସାମର୍ଥ୍ୟ ରହେ ନାହିଁ ॥୭॥ କାମନା ଅପୂରଣୀୟ । ଘର ସଂସାରର ମୋହ ଅତ୍ୟନ୍ତ ବଳବାନ୍ । ସେଥିରେ ଆକୃଷ୍ଟ ହୋଇ ଅବଶିଷ୍ଟ ଆୟୁତକ ବିତିଯାଏ ॥୮॥ ଇନ୍ଦ୍ରିୟଦ୍ୱାରା ବଶୀଭୂତ ଏବଂ ଗୃହସଂସାରରେ ଆସକ୍ତ କେଉଁ ବ୍ୟକ୍ତି ଦୃଢ଼ ସଂସାରବନ୍ଧନରୁ ନିଜକୁ ମୁକ୍ତ କରିପାରିବ ? ॥୯॥ ପ୍ରାଣଠାରୁ ଅଧିକ ଭଲ ପାଇ ଯେଉଁ ଅର୍ଥ ଉପାର୍ଜନ କରାଯାଏ, ସେ ଅର୍ଥକୁ ଚୋର, ତସ୍କର, ସେବାକାରୀ, ବ୍ୟବସାୟୀ ଆଦି ନିଜ ନିଜ ପ୍ରାଣକୁ ବିପନ୍ନ କରି ଅପହରଣ କରି ନିଅନ୍ତି ॥୧୦॥ ଯେଉଁ ବ୍ୟକ୍ତି ନିଜର ପ୍ରିୟତମା ପତ୍ନୀର ସ୍ନେହ, ଏକାନ୍ତ ସହବାସ, ମଧୁର ପରାମର୍ଶ, ଭାଇବନ୍ଧୁଙ୍କର ସ୍ନେହପୂର୍ଣ୍ଣ ସମ୍ପର୍କ ଓ ଶିଶୁମାନଙ୍କ ଦରୋଟି କଥାରେ ବନ୍ଧା ହୋଇଚି, ସେ ସେମାନଙ୍କୁ କିପରି ଛାଡ଼ିପାରିବ ? ॥୧୧॥ ଯେ ନିଜର ପୁତ୍ର, କନ୍ୟା, ଭାଇ ଭଉଣୀ, ଶାଶୂ ଶଶୁର, ଦୀନ ଅବସ୍ଥାରେ ଥିବା ପିତାମାତା, ସୁନ୍ଦର ଭାବରେ ସଜ୍ଜିତ ନିଜର ଗୃହ, କୌଳିକ ବୃତ୍ତି, ଗୋରୁଗାଈ ଓ ଚାକର ବାକରଙ୍କ କଥା ଚିନ୍ତା କରୁଥାଏ, ସେମାନଙ୍କୁ କ'ଣ ସେ ସହଜରେ ଛାଡ଼ିପାରିବ ? ॥୧୨॥ ଯେ ନିଜର ଜନନେନ୍ଦ୍ରିୟ ଓ ରସନେନ୍ଦ୍ରିୟର ସୁଖକୁ ସବୁଠାରୁ ବଡ଼ ବୋଲି ମନେକରେ, ଲୋଭବଶତଃ କର୍ମପରେ କର୍ମ କରିଚାଲିଥାଏ ଏବଂ ଟସରପୋକ ନିଜର ଦେହରୁ ବାହାରୁଥିବା ସୂତାରେ ଗୁଡ଼ାଇ ହୋଇ ହୋଇ ଚାଲିଥିବା ଭଳି କର୍ମବନ୍ଧନରେ ବାନ୍ଧି ହୋଇଯାଏ, ସେ କିପରି ଏହି ଦୁରନ୍ତ ମୋହକୁ ଛାଡ଼ିପାରିବ ? ॥୧୩॥ କୁଟୁମ୍ବ ପୋଷଣ କରିବାରେ ଲୋକର ଆୟୁଷ ବିତିଯାଏ । ବିଷୟରେ ପ୍ରମତ୍ତ ହୋଇ ପରମାର୍ଥକୁ ସେ ବୁଝିପାରେ ନାହିଁ । ନିଜର କୁଳକୁଟୁମ୍ବର ଶ୍ରେୟକୁ ସେ ସୁଖ ମନେକରେ । ଆଧିଦୈବିକ, ଆଧ୍ୟାତ୍ମିକ ଓ ଆଧିଭୌତିକ ଏହି ତିନି ପ୍ରକାର ଦୁଃଖ ତାକୁ ଭୋଗିବାକୁ ହୁଏ । କୁଟୁମ୍ବାସକ୍ତ ବ୍ୟକ୍ତିର କେବେ ହେଲେ ବୈରାଗ୍ୟବୁଦ୍ଧି ହୁଏ ନାହିଁ ॥୧୪॥ ଏକାନ୍ତଭାବରେ ଧନ ପ୍ରତି ଆକୃଷ୍ଟ ହୋଇ ସେ ଅନ୍ୟର ଧନ ଅପହରଣକୁ ଦୋଷ ବୋଲି ଜାଣି ମଧ୍ୟ ନିଜର କୁଟୁମ୍ବପୋଷଣ ଓ ବିଷୟଭୋଗପାଇଁ ଚୋରି

କରେ ॥୧୫॥ ଭାଇମାନେ, ଯେ ନିଜର କୁଟୁମ୍ବ ପୋଷଣରେ ଏହିପରି ଲାଗିଥାଏ, ଏବଂ ଭଗବତ୍‌ଚିନ୍ତା କରେ ନାହିଁ, ସେ ବିଦ୍ୱାନ୍ ହେଲେ ମଧ୍ୟ ମୂର୍ଖ ସଙ୍ଗେ ସମାନ । 'ଏଇଟା ମୋର, ସେଇଟା ଅନ୍ୟର' ଏହି ନିଜପର ଭେଦଭାବ ତାର ରହିଥାଏ ॥୧୬॥ ଯେ କାମିନୀର ମନୋରଞ୍ଜନ ପାଇଁ ନିଜକୁ ତାର ଖେଳଣା (କ୍ରୀଡ଼ାମୃଗ)ରେ ପରିଣତ କରି ଦେଇଥାଏ, ସନ୍ତାନସ୍ନେହରୂପକ ବେଡ଼ିକୁ ପାଦରେ ବାନ୍ଧିଥାଏ, ସେ ବିଚରା ଯାହା ହେଉନା କାହିଁକି, ସେ ଯେଉଁଠି ରହୁ ନା କାହିଁକି, ନିଜକୁ ଉଦ୍ଧାର କରିପାରିବ ନାହିଁ ॥୧୭॥ ତେଣୁ ଭାଇମାନେ, ତୁମେସବୁ ବିଷୟାସକ୍ତ ଦୈତ୍ୟମାନଙ୍କ ସଙ୍ଗକୁ ଦୂରରୁ ପରିତ୍ୟାଗ କରି ଆଦିଦେବ ଶ୍ରୀନାରାୟଣଙ୍କର ଶରଣ ନିଅ । କାରଣ ବିଷୟଭୋଗରୁ ମୁକ୍ତ ହୋଇଥିବା ମହାତ୍ମାମାନେ ହିଁ ପରମଗତିସ୍ୱରୂପ ଭଗବାନଙ୍କୁ ଲାଭ କରିପାରନ୍ତି ॥୧୮॥

ଅସୁର ବାଳକମାନେ, ଭଗବାନଙ୍କୁ ସନ୍ତୁଷ୍ଟ କରିବାପାଇଁ ବହୁ ପରିଶ୍ରମ ପଡ଼େ ନାହିଁ । କାରଣ ସେ ସମସ୍ତ ପ୍ରାଣୀଙ୍କର ଆତ୍ମା ଏବଂ ସର୍ବତ୍ର ସ୍ୱୟଂସିଦ୍ଧରୂପେ ବିଦ୍ୟମାନ ॥୧୯॥ ବ୍ରହ୍ମାଙ୍କଠାରୁ ଆରମ୍ଭ କରି ସ୍ଥାବର ଜଙ୍ଗମ ପର୍ଯ୍ୟନ୍ତ ସମସ୍ତ ଚରାଚର ପ୍ରାଣୀଙ୍କଠାରେ, ପଞ୍ଚଭୂତ ଓ ପଞ୍ଚଭୂତଙ୍କଦ୍ୱାରା ନିର୍ମିତ ସମସ୍ତ ଭୌତିକ ବସ୍ତୁ, ସୂକ୍ଷ୍ମତନ୍ମାତ୍ର ଓ ମହତ୍ତତ୍ତ୍ୱ ଆଦିରେ, ତିନି ଗୁଣ (ସତ୍ତ୍ୱ, ରଜ ଓ ତମ) ଓ ଗୁଣର ସାମ୍ୟାବସ୍ଥା ପ୍ରକୃତିରେ ସେହି ଅବିନଶ୍ୱର, ଭଗବାନ ପରମାତ୍ମା ବିଦ୍ୟମାନ ॥୨୦-୨୧॥ ସେ ଅନ୍ତର୍ଯାମୀରୂପେ ଦ୍ରଷ୍ଟା ଓ ଦୃଶ୍ୟ ଜଗତ୍ ରୂପରେ ବିରାଜମାନ । ତାଙ୍କର କୌଣସି ବିକଳ୍ପ ନାହିଁ ଏବଂ ତାଙ୍କୁ ନିରୂପଣ କରିହେବ ନାହିଁ । ତଥାପି ସେ ବ୍ୟାପ୍ୟ ଓ ବ୍ୟାପକ ରୂପରେ ପ୍ରତୀତ ହୁଅନ୍ତି ॥୨୨॥ ଏକମାତ୍ର ପରମେଶ୍ୱର ରୂପେ ସେ କେବଳ ଅନୁଭବସ୍ୱରୂପ ଓ ଆନନ୍ଦସ୍ୱରୂପ । ତ୍ରିଗୁଣାତ୍ମକ ମାୟାଦ୍ୱାରା ତାଙ୍କ ଭଗବତ୍‌ସ୍ୱରୂପ ଲୁକ୍କାୟିତ ଥାଏ । ଏହି ମାୟା ଦୂର ହୋଇଗଲେ ତାଙ୍କ ଦର୍ଶନ ହୋଇଯାଏ ॥୨୩॥ ଯେପରି ସେହି ଭଗବାନ ବିଷ୍ଣୁ ସନ୍ତୁଷ୍ଟ ହେବେ, ସେଥିପାଇଁ ସମସ୍ତ ଅସୁରଭାବ ତ୍ୟାଗ କରି ସମସ୍ତ ପ୍ରାଣୀଙ୍କୁ ଦୟା କର । ସମସ୍ତଙ୍କୁ ବନ୍ଧୁଭାବରେ ଦେଖ ॥୨୪॥ ସେହି ଆଦିପୁରୁଷ ଅନନ୍ତ ସନ୍ତୁଷ୍ଟ ହେଲେ କୌଣସି ବସ୍ତୁ ଦୁଷ୍ପ୍ରାପ୍ୟ ହୁଏ ନାହିଁ । ଇହଲୋକ ଓ ପରଲୋକପାଇଁ ଯେଉଁ ଅର୍ଥ, କାମ ଓ ଧର୍ମ ଲାଭର ଇଚ୍ଛା କରାଯାଏ, ମାୟା ଦୂର ହେଲେ, ତାହା ମିଳିଯାଏ । କିନ୍ତୁ ଭଗବାନଙ୍କ ଚରଣାମୃତ ପାନ କରି ତାଙ୍କ ଗୁଣକୀର୍ତ୍ତନରେ ମଜ୍ଜିରହିଲେ, ଆମର ଏସବୁ ବସ୍ତୁର --ଏପରିକି ମୋକ୍ଷର କଣ ଆବଶ୍ୟକତା ଅଛି ? ॥୨୫॥ ଶାସ୍ତ୍ରମାନଙ୍କରେ ଧର୍ମ, ଅର୍ଥ ଓ କାମ ଏହି ତିନି ବର୍ଗର କଥା କୁହାଯାଇଚି । ଆତ୍ମବିଦ୍ୟା, କର୍ମକାଣ୍ଡ, ନ୍ୟାୟଶାସ୍ତ୍ର, ଦଣ୍ଡନୀତି ଏବଂ ଜୀବିକାର୍ଜ୍ଜନପାଇଁ ବହୁ ସାଧନର କଥା ବେଦରେ ବର୍ଣ୍ଣନା କରାଯାଇଚି । କିନ୍ତୁ ପରମପୁରୁଷ ଭଗବାନ ଶ୍ରୀହରିଙ୍କଠାରେ ଆତ୍ମସମର୍ପଣପାଇଁ ତାହା ସହାୟକ ନ ହେଲେ ସାର୍ଥକ ବୋଲି ଧରାଯିବ ନାହିଁ ॥୨୬॥ ନିର୍ମଳ ଜ୍ଞାନ ଦୁଷ୍ପ୍ରାପ୍ୟ । ତାହା ଭଗବାନ ନରନାରାୟଣ ନାରଦଙ୍କୁ ଉପଦେଶ ଦେଇଥିଲେ । ଯେଉଁମାନେ ଭଗବାନଙ୍କ ଅନନ୍ୟ ଓ ଅକିଞ୍ଚନ ଭକ୍ତଙ୍କର ପାଦଧୂଳି ଦେହରେ ବୋଳି ହୋଇ ପାରନ୍ତି, ସେହିମାନେ କେବଳ ଏହି ଜ୍ଞାନ ଲାଭ କରିପାରିବେ ॥୨୭॥ ଜ୍ଞାନ ଓ ବିଜ୍ଞାନଯୁକ୍ତ ଏହି ଶୁଦ୍ଧ ଭାଗବତ ଧର୍ମ ମୁଁ ପୂର୍ବେ ଦେବର୍ଷି ନାରଦଙ୍କଠାରୁ ଶୁଣିଥିଲି ॥୨୮॥

ଦୈତ୍ୟପୁତ୍ରମାନେ ପଚାରିଲେ, ପ୍ରହ୍ଲାଦ, ଏହି ଗୁରୁପୁତ୍ର ଦୁହିଁଙ୍କୁ ଛାଡ଼ିଦେଲେ ତୁମେ ବା ଆମେ ଅନ୍ୟ କାହାରିକୁ ଗୁରୁ ବୋଲି ଜାଣି ନାହୁଁ । ଏହି ଦୁହେଁ ଆମକୁ ଶାସନ କରୁଛନ୍ତି ॥୨୯॥ ପ୍ରିୟ ସଖା, ତୁମେ ବାଳକ, ମାତାଙ୍କ ସହିତ ଅନ୍ତଃପୁରରେ ରହୁଥିଲ । ମହାପୁରୁଷଙ୍କ ସହିତ ତୁମର କିପରି ମିଳନ ହେଲା, ଏହା ତ ଅସଙ୍ଗତ ଜଣାଯାଉଚି । ଆମର ବିଶ୍ୱାସ ଜନ୍ମାଇବା ଭଳି ତୁମ ପାଖରେ କିଛି ଥିଲେ, ତାହା କହି ଆମର ସଂଶୟ ଦୂର କର ॥୩୦॥

## ସପ୍ତମ ଅଧ୍ୟାୟ

# ମାତୃଗର୍ଭରେ ନାରଦଙ୍କ ଉପଦେଶ ଲାଭ

ନାରଦ କହିଲେ, ଯୁଧିଷ୍ଠିର, ଏହିପରି ଦୈତ୍ୟବାଳକମାନେ ପଚାରିବାରୁ ଭଗବାନଙ୍କ ପରମ ଭକ୍ତ ପ୍ରହ୍ଲାଦ ମାତୃଗର୍ଭରେ ଥିବା ବେଳେ ମୁଁ ଯାହା କହିଥିଲି, ତାହା ସ୍ମରଣ କରି ଏହିପରି ଉତ୍ତର ଦେଲେ ॥୧॥ ମୋର ପିତା ତପସ୍ୟା କରିବାପାଇଁ ମନ୍ଦରପର୍ବତକୁ ଚାଲିଯିବାପରେ ଦେବତାମାନେ ରାକ୍ଷସମାନଙ୍କ ସହିତ ଯୁଦ୍ଧ କରିବାପାଇଁ ଏକ ବଡ଼ଧରଣର ଉଦ୍ୟମ କଲେ ॥୨॥ ଇନ୍ଦ୍ରାଦି ଦେବତାମାନେ ପ୍ରଚାର କରିବାକୁ ଲାଗିଲେ, ପିମ୍ପୁଡ଼ିମାନେ ସାପକୁ ଖାଇଯିବାପରି ଲୋକଙ୍କୁ କଷ୍ଟ ଦେଉଥିବା ପାପୀ ହିରଣ୍ୟକଶିପୁକୁ ତା'ର ପାପ ଖାଇଗଲା ॥୩॥ ଅସୁର-ଯୂଥପତିମାନେ ଦେବତାମାନଙ୍କର ଯୁଦ୍ଧପ୍ରସ୍ତୁତି ଦେଖି ଭୟଭୀତ ହୋଇପଡ଼ିଲେ । ମୃତ୍ୟୁଭୟରେ ସେମାନେ କିଏ କୁଆଡ଼େ ପଳାଇଗଲେ । ଏପରିକି ନିଜର ସ୍ତ୍ରୀ, ପୁତ୍ର, ମିତ୍ର, ଗୁରୁଜନ, ଗୃହ, ପାଳିତ ପଶୁ, ପୋଷାକପତ୍ର-କୁଆଡ଼କୁ ଦୃଷ୍ଟି ନ ଦେଇ ନିଜର ପ୍ରାଣରକ୍ଷାପାଇଁ ଏଣେତେଣେ ପଳାଇଲେ ॥୪-୫॥ ନିଜର ବିଜୟ ଇଚ୍ଛା କରୁଥିବା ଦେବତାମାନେ ରାଜପ୍ରାସାଦକୁ ଲୁଟିନେଲେ ଏବଂ ମୋର ମା ରାଜମହିଷୀଙ୍କୁ ଇନ୍ଦ୍ର କବ୍‌ଜା କରିନେଲେ ॥୬॥ ଇନ୍ଦ୍ର ନେଇଯାଉଥିବାବେଳେ ଭୟ ଓ ଉଦ୍‌ବେଗରେ ମୋର ମା କୁରରୀପରି କ୍ରନ୍ଦନ କରୁଥିଲେ । ଏହି ସମୟରେ ଦେବର୍ଷି ନାରଦ ଦୈବାତ୍ ସେବାଟେ ଯାଉଥିବାବେଳେ ମୋର ମା'ଙ୍କୁ ଦେଖିପାରିଲେ ॥୭॥ ସେ ଇନ୍ଦ୍ରଙ୍କୁ କହିଲେ, ଦେବରାଜ, ଏହାଙ୍କର କୌଣସି ଦୋଷ ନାହିଁ । ଏହାଙ୍କୁ ଘେନିଯିବା ଉଚିତ ନୁହେ । ମହାଭାଗ, ସତୀ ସାଧ୍ୱୀ ପରସ୍ତ୍ରୀକୁ ଏପରି ଅପମାନିତ କର ନାହିଁ । ଏହାଙ୍କୁ ଛାଡ଼ିଦିଅ । ଶୀଘ୍ର ଛାଡ଼ିଦିଅ ॥୮॥ ଇନ୍ଦ୍ର କହିଲେ, ଦେବତାଙ୍କର ଶତ୍ରୁ ହିରଣ୍ୟକଶିପୁର ଉଗ୍ର ବୀର୍ଯ୍ୟ ଏହାଙ୍କର ଜଠରରେ ରହିଚି । ପ୍ରସବପର୍ଯ୍ୟନ୍ତ ସେ ମୋ ପାଖରେ ରହିବେ । ଯେଉଁ ପୁତ୍ର ଜନ୍ମ ହେବ, ତାକୁ ମାରିସାରିବାପରେ ମୁଁ ତାଙ୍କୁ ଛାଡ଼ିଦେବି ॥୯॥ ନାରଦ କହିଲେ, ଏହାଙ୍କ ଗର୍ଭରେ ଏକ ମହା ବଳବାନ୍ ପୁତ୍ର ଅଛି । କିନ୍ତୁ ସେ ନିଷ୍ପାପ । ଭଗବାନଙ୍କ ପରମ ଭକ୍ତ, ଏକ ମହାତ୍ମା ପୁରୁଷ । ତାଙ୍କୁ ମାରିବାକୁ ତୁମର ଶକ୍ତି ନାହିଁ ॥୧୦॥ ଦେବର୍ଷି ନାରଦଙ୍କର କଥା ମାନି ଇନ୍ଦ୍ର ମୋ ମା'ଙ୍କୁ ଛାଡ଼ିଦେଲେ । ତାଙ୍କ ଗର୍ଭରେ ଭଗବାନଙ୍କର ପ୍ରିୟ ଭକ୍ତ ଅଛନ୍ତି, ତାହା ଜାଣି ଦେବର୍ଷି ମୋ'ମା'ଙ୍କୁ ପ୍ରଦକ୍ଷିଣ କରି ସ୍ୱର୍ଗଲୋକକୁ ଚାଲିଗଲେ ॥୧୧॥ ଏହାପରେ ଦେବର୍ଷି ନାରଦ ମୋ'ମା'ଙ୍କୁ ତାଙ୍କ ଆଶ୍ରମକୁ ନେଇଗଲେ ଏବଂ ନାନାପ୍ରକାର ଆଶ୍ୱାସନା ଦେଇ କହିଲେ, 'ଝିଅ, ତୁମର ସ୍ୱାମୀ ତପସ୍ୟା କରି ଫେରିବା ପର୍ଯ୍ୟନ୍ତ ତୁମେ ଏହିଠାରେ ରହ' ॥୧୨॥ ତାହା ହେଉ ବୋଲି କହି ମୋ'ମା ପିତା ତପସ୍ୟା କରି ଫେରିବା ଯାଏଁ ନିର୍ଭୟରେ ଋଷିଙ୍କ ଆଶ୍ରମରେ ବାସ କଲେ ॥୧୩॥ ମୋର ଗର୍ଭବତୀ ମାତା ଗର୍ଭସ୍ଥ ଶିଶୁର ମଙ୍ଗଳ କାମନାରେ ଓ ଈପ୍ସିତ ସମୟରେ ସନ୍ତାନପ୍ରସବ କାମନାରେ ଋଷିଙ୍କର ପରିଚର୍ଯ୍ୟା କରିବାକୁ ଲାଗିଲେ ॥୧୪॥

ନାରଦ ପରମ ଦୟାଳୁ ଓ ମହାଜ୍ଞାନୀ ଥିଲେ । ସେ ମୋତେ ଉଦ୍ଦେଶ୍ୟ କରି ମୋ'ମା'ଙ୍କୁ ଭାଗବତ ଧର୍ମର ତତ୍ତ୍ୱ ଓ ବିଶୁଦ୍ଧ ଜ୍ଞାନ ଉପଦେଶ ଦେଲେ ॥୧୫॥ ଦୀର୍ଘସମୟ ବିତିଯାଇଥିବାରୁ ଏବଂ ମୋର ମା ସ୍ତ୍ରୀଲୋକ ହୋଇଥିବାରୁ ତାଙ୍କର ଆଉ ସେ ସବୁ କଥା ମନେ ନାହିଁ । କିନ୍ତୁ ଦେବର୍ଷିଙ୍କ ଅନୁଗ୍ରହରୁ ଏବେ ମଧ୍ୟ ତାଙ୍କର ଉପଦେଶ ମୋର ବିସ୍ମରଣ ହୋଇ ନାହିଁ ॥୧୬॥ ମୋ'କଥା ପ୍ରତି ଯଦି ତୁମମାନଙ୍କର ଶ୍ରଦ୍ଧା ରହିଚି, ତା'ହେଲେ ତୁମେମାନେ ମଧ୍ୟ ଏହି ଜ୍ଞାନ ଲାଭ କରିପାରିବ । ଶ୍ରଦ୍ଧା ରହିଲେ ସ୍ତ୍ରୀ ଓ ବାଳକମାନଙ୍କର ବୁଦ୍ଧି ମୋ'ପରି ବିଶୁଦ୍ଧ ହୋଇପାରିବ ॥୧୭॥ କାଳ ହେଉଚି ଈଶ୍ୱରଙ୍କ ମୂର୍ତ୍ତି, ଏହି କାଳବଶତଃ ବୃକ୍ଷରେ ଯେପରି ଫଳ ଜନ୍ମେ, ରହେ, ବଢ଼େ, ପାଚେ, ଶୁଖିଯାଏ ଓ ଝଡ଼ିପଡ଼େ, ସେହିପରି ଶରୀରର ମଧ୍ୟ ଛ'ଟି ଅବସ୍ଥା

ଦେଖାଯାଏ । ଯଥା ଜନ୍ମ, ସ୍ଥିତି, ବୃଦ୍ଧି, ପରିଣତି, କ୍ଷୟ ଓ ବିନାଶ । ଆତ୍ମା ସହିତ ଏହାର କୌଣସି ସମ୍ପର୍କ ନ ଥାଏ ॥୧୮॥ ଆତ୍ମା ନିତ୍ୟ, ଅବିନାଶୀ, ଶୁଦ୍ଧ, ଅଦ୍ୱିତୀୟ, ସମସ୍ତ ବସ୍ତୁର ଜ୍ଞାତା ଓ ଆଶ୍ରୟ, ନିର୍ବିକାର, ସ୍ୱୟଂପ୍ରକାଶ, ସବୁର କାରଣ, ବ୍ୟାପକ, ଅନାସକ୍ତ ଓ ଆବରଣ-ରହିତ । ବିଦ୍ୱାନ୍ ବ୍ୟକ୍ତି ଆତ୍ମାର ଏହି ଦ୍ୱାଦଶ ଲକ୍ଷଣକୁ ଜାଣି 'ମୁଁ ଏବଂ ମୋର' ବୋଲି ଯେଉଁ ମୋହବୁଦ୍ଧି ଜାତ ହେଉଚି, ତାହା ପରିତ୍ୟାଗ କରିବା ଉଚିତ ॥୧୯-୨୦॥ ସୁନାଖଣିରୁ ବାହାରୁଥିବା ପଥରରୁ ଚକ୍‌ଚକ୍ କରୁଥିବା ସୁନାକୁ ଅଭିଜ୍ଞ ସୁନାରି ଯେପରି ଯନ୍ତ୍ରସାହାଯ୍ୟରେ ବାହାର କରିଆଣେ, ସେହିପରି ଅଧ୍ୟାତ୍ମ ତତ୍ତ୍ୱ ଜାଣିଥିବା ପୁରୁଷ ଆତ୍ମପ୍ରାପ୍ତିପାଇଁ ଯୋଗସାଧନ ଦ୍ୱାରା ଶରୀରରୂପ କ୍ଷେତ୍ରରେ ବ୍ରହ୍ମଗତି ଲାଭ କରେ ॥୨୧॥ ଆଚାର୍ଯ୍ୟଗଣ, ଅଷ୍ଟପ୍ରକୃତି (ମୂଳପ୍ରକୃତି, ପଞ୍ଚତନ୍ମାତ୍ର, ମହତ୍ତତ୍ତ୍ୱ ଓ ଅହଙ୍କାର), ତିନି ଗୁଣ (ସତ୍ତ୍ୱ, ରଜ ଓ ତମ) ଓ ତାର ଷୋଳ ବିକାର (ପଞ୍ଚ କର୍ମେନ୍ଦ୍ରିୟ, ପଞ୍ଚ ଜ୍ଞାନେନ୍ଦ୍ରିୟ, ପଞ୍ଚ ମହାଭୂତ ଏବଂ ମନ) -- ଏ ସବୁର ସାକ୍ଷୀରୂପେ ଏକ ପୁରୁଷଙ୍କୁ ନିରୂପଣ କରିଛନ୍ତି ॥୨୨॥ ଏ ସମସ୍ତର ସମନ୍ୱୟରେ ଦେହ ହୋଇଚି । ଏହା ପୁଣି ଦୁଇ ପ୍ରକାର -- ସ୍ଥାବର ଓ ଜଙ୍ଗମ । ଏଥିରେ ଆତ୍ମାଠାରୁ ଅଲଗା ସମସ୍ତ ବସ୍ତୁକୁ -- ଏହା ଆତ୍ମା ନୁହେ, ଏହା ଆତ୍ମା ନୁହେ (ନେତି ନେତି) ବୋଲି କହି ଅସଲ ଆତ୍ମାକୁ ଖୋଜି ବାହାର କରିବା ଆବଶ୍ୟକ ॥୨୩॥ ମଣିମାନଙ୍କ ମଧ୍ୟରେ ସୂତ୍ର ପ୍ରବେଶ କରି ବାହାରିଯିବା ପରି ପୁରୁଷ ବା ଆତ୍ମା ଦେହମଧ୍ୟରେ ପ୍ରବେଶ କରେ ଓ ବାହାରିଯାଏ । ସେହି ଶୁଦ୍ଧ ବିବେକବୁଦ୍ଧିରେ ସୃଷ୍ଟି, ସ୍ଥିତି ଓ ସଂହାର ବିଷୟ ଧୀରଭାବରେ ବିଚାର କରିବା ଉଚିତ ॥୨୪॥ ଗାଢ଼ ନିଦ୍ରା, ସ୍ୱପ୍ନ ଓ ଜାଗରଣ -- ଏ ତିନୋଟି ହେଉଛନ୍ତି ବୁଦ୍ଧିର ବୃତ୍ତି । ଯାହାଙ୍କ ଦ୍ୱାରା ଏହା ଅନୁଭୂତ ହୁଏ, ସେ ହେଉଛନ୍ତି ଦେହାଦିର ଦ୍ରଷ୍ଟା ପରମ ପୁରୁଷ, ପରମାତ୍ମା ॥୨୫॥ ଜାଗରଣ, ସ୍ୱପ୍ନ ଏବଂ ସୁଷୁପ୍ତି ହେଉଚି ବୁଦ୍ଧିର ପରିଣତି । ଏହା ଆତ୍ମାର ଧର୍ମ ନୁହେ । କର୍ମଜନିତ ହୋଇଥିବାରୁ ଏହା ତ୍ରିଗୁଣାତ୍ମକ । ଯେପରି କୌଣସି ଗନ୍ଧର ସ୍ପର୍ଶରେ ବାୟୁ ଗନ୍ଧଯୁକ୍ତ ହୁଏ, ସେହିପରି ନିର୍ଗୁଣ ବ୍ରହ୍ମ ବୁଦ୍ଧିଯୋଗରେ ଗୁଣଯୁକ୍ତ ବୋଲି ମନେହୁଏ ॥୨୬॥ ଏହି ବୁଦ୍ଧି ହେଉଚି ଗୁଣ ଓ କର୍ମର ବନ୍ଧନରୂପ ସଂସାରର ଦ୍ୱାର । ଏହା ଅଜ୍ଞାନମୂଳକ ଓ ମିଥ୍ୟା ହେଲେ ମଧ୍ୟ ସ୍ୱପ୍ନ ପରି ଜୀବକୁ ପ୍ରତୀତ ହୋଇଥାଏ ॥୨୭॥ ସେଥିପାଇଁ ତୁମମାନଙ୍କୁ ପ୍ରଥମେ ଏହି ଗୁଣମାନଙ୍କଯୋଗୁଁ ହେଉଥିବା କର୍ମର ବୀଜକୁ ନଷ୍ଟ କରି ଦେବାକୁ ହେବ । ଏହାଦ୍ୱାରା ବୁଦ୍ଧିର ବୃତ୍ତିମାନଙ୍କର ପ୍ରବାହ ବନ୍ଦ ହୋଇଯିବ । ଅନ୍ୟ ଅର୍ଥରେ ଏହାକୁ ଯୋଗ କୁହାଯିବ ॥୨୮॥ ଏହି ବୁଦ୍ଧିର ପ୍ରବାହ ବା ଜନ୍ମ-ମରଣ ରୂପ ସଂସାରଚକ୍ରର ବୀଜବିନାଶପାଇଁ ସହସ୍ର ଉପାୟ ଶାସ୍ତ୍ରରେ କୁହାଯାଇଛି । ତାହା ମଧ୍ୟରୁ ମହର୍ଷି ନାରଦ ଭକ୍ତିଯୋଗାତ୍ମକ ଏହି ଉପାୟକୁ ଶ୍ରେଷ୍ଠ ବୋଲି କହିଛନ୍ତି । କାରଣ ଭକ୍ତିଯୋଗ ଦ୍ୱାରା ଭଗବାନଙ୍କଠାରେ ନିଷ୍କାମ ପ୍ରେମ ଜାତ ହୁଏ ॥୨୯॥

ଗୁରୁସେବା, ଭଗବତ୍‌ଭକ୍ତି, ସମସ୍ତ ଲବ୍ଧ ଦ୍ରବ୍ୟକୁ ଈଶ୍ୱରଙ୍କ ଉଦ୍ଦେଶ୍ୟରେ ସମର୍ପଣ, ସାଧୁ ଭକ୍ତମାନଙ୍କର ସଙ୍ଗ, ଈଶ୍ୱରଙ୍କର ଆରାଧନା, ଶ୍ରଦ୍ଧାପୂର୍ବକ ଶ୍ରୀହରିଙ୍କ କଥା ଗୁଣ ଓ କର୍ମର ଶ୍ରବଣ-କୀର୍ତ୍ତନ, ଶ୍ରୀଗୋବିନ୍ଦଙ୍କ ପାଦପଦ୍ମର ଧ୍ୟାନ, ଶ୍ରୀହରିଙ୍କ ମୂର୍ତ୍ତିର ଦର୍ଶନ ଓ ପୂଜନ, ସମସ୍ତ ପ୍ରାଣୀଙ୍କ ମଧ୍ୟରେ ସର୍ବଶକ୍ତିମାନ୍ ଭଗବାନ ଶ୍ରୀହରି ବିରାଜମାନ--ବୋଲି ମନେକରି ସମସ୍ତ ପ୍ରାଣୀଙ୍କୁ ସମ୍ମାନ ପ୍ରଦାନ ଏବଂ କାମ, କ୍ରୋଧ, ଲୋଭ, ମୋହ, ମଦ ଓ ମାତ୍ସର୍ଯ୍ୟ ଇତ୍ୟାଦି -- ଏହି ଷଡ଼ରିପୁଙ୍କୁ ଜୟ କରି ଯେଉଁ ବ୍ୟକ୍ତି ଭଗବାନ ବାସୁଦେବଙ୍କୁ ଭକ୍ତି କରେ -- ସେ ଭଗବାନଙ୍କର ଅନନ୍ତ ପ୍ରେମ ଲାଭ କରିବାପାଇଁ ସମର୍ଥ ହୁଏ ॥୩୦-୩୩॥ ଭଗବାନଙ୍କର ଅତୁଳନୀୟ ଗୁଣାବଳୀ ଏବଂ ସେ ଲୀଳା-ଶରୀରରେ ଯେଉଁସବୁ ଅଦ୍ଭୁତ କର୍ମ କରିଥାନ୍ତି, ତାହା ଶ୍ରବଣ କରି ଭକ୍ତର ଶରୀର ଆନନ୍ଦରେ ରୋମାଞ୍ଚିତ ହୋଇଉଠେ । ଅଶ୍ରୁଗଦ୍‌ଗଦ କଣ୍ଠରେ ସେ ଉଚ୍ଚସ୍ୱରରେ ଗାନ କରିବାକୁ ଲାଗେ, ଭକ୍ତିର ଆବେଗରେ କେତେବେଳେ କାନ୍ଦିଉଠେ ତ କେତେବେଳେ ପାଗଳଙ୍କ ପରି ନୃତ୍ୟ କରେ ॥୩୪॥ ଗ୍ରହ ଗ୍ରାସ କରିବା ପରି କେତେବେଳେ ସେ ହସେ, କେତେବେଳେ କାନ୍ଦେ, କେତେବେଳେ ଭଗବାନଙ୍କୁ ଧ୍ୟାନ କରେ, ଭକ୍ତମାନଙ୍କୁ ବନ୍ଦନା କରେ ଏବଂ ସମସ୍ତ ଇଚ୍ଛା ତ୍ୟାଗ କରି ଶ୍ରୀକୃଷ୍ଣଙ୍କଠାରେ ଚିତ୍ତସମର୍ପଣ ପୂର୍ବକ--ହେ ହରି, ହେ ଜଗତ୍‌ପତି,

ହେ ନାରାୟଣ ବୋଲି କହିଉଠେ ॥୩୫॥ ସେତେବେଳେ ସେ ସମସ୍ତ ବନ୍ଧନରୁ ମୁକ୍ତ ହୋଇ ଭଗବତ୍‌ଭାବର ଭାବନାରେ ତନ୍ମୟ ହୁଏ ଓ ତାର ହୃଦୟ ମଧ୍ୟ ଶ୍ରୀହରିମୟ ହୋଇଯାଏ । ଜନ୍ମ-ମୃତ୍ୟୁର ବୀଜ ନଷ୍ଟ ହେବା ସଙ୍ଗେ ସଙ୍ଗେ ଏହି ବ୍ୟକ୍ତି ପରମଭକ୍ତି ବଳରେ ଭଗବାନଙ୍କୁ ଲାଭ କରେ ॥୩୬॥ ସଂସାରଚକ୍ରରେ ରାଗାଦିଯୁକ୍ତ ଏହି ଅଶୁଭ ଶରୀରକୁ ଲାଭ କରିଥିବା ଜୀବ ମନେମନେ ଶ୍ରୀହରିଙ୍କୁ ଚିନ୍ତା କରି ତାଙ୍କରି ସ୍ପର୍ଶ ଲାଭ କଲେ ସଂସାରଚକ୍ରର ବିନାଶ ଘଟିଥାଏ । ଏହାକୁ କେହି କେହି ବ୍ରହ୍ମତ୍ୱ ଲାଭ ବା କେହି କେହି ନିର୍ବାଣସୁଖ ବୋଲି କହିଥାନ୍ତି । ଏଥିପାଇଁ ବନ୍ଧୁଗଣ, ତୁମେମାନେ ନିଜ ନିଜ ହୃଦୟରେ ସେହି ଅନ୍ତର୍ଯାମୀ ଶ୍ରୀହରିଙ୍କୁ ଭଜନ କର ॥୩୭॥ ଅସୁରବାଳକମାନେ, ତୁମର ହୃଦୟ-ଆକାଶରେ ବିରାଜିତ ସେହି ଶ୍ରୀହରିଙ୍କର ଉପାସନା କରିବାରେ କ'ଣ ବା ବିଶେଷ ପରିଶ୍ରମ ପଡ଼ିବ ! ସେ ତ ତୁମର ପରମ ହିତକାରୀ ବନ୍ଧୁ । ସଂସାରଚକ୍ରରେ ପଡ଼ି ବାରମ୍ବାର ଜନ୍ମ ହେଉଥିବା ଜୀବ ସାମାନ୍ୟ ସୁଖଲାଭ ପଛରେ ଦଉଡୁଛି । ତା'ପଛରେ ଦଉଡ଼ି କ'ଣ ବା ଲାଭ ହେବ ? ॥୩୮॥ ସ୍ତ୍ରୀ, ଧନ, ସନ୍ତାନସନ୍ତତି, ପଶୁ, ଗୃହ, ଭୂସମ୍ପତ୍ତି, ଧନାଗାର ଏବଂ ଯେତେ ଭୋଗ୍ୟବସ୍ତୁ ଅଛି, ଏହାସବୁ ସ୍ଥାୟୀ ନୁହେଁ; ଶୀଘ୍ର ଚାଲିଯାଏ । ମନୁଷ୍ୟର ଆୟୁଷ ମଧ୍ୟ କ୍ଷଣଭଙ୍ଗୁର, ତେଣୁ ସେମାନଙ୍କଠାରୁ ସେ କି ସୁଖ ଲାଭ କରିପାରିବ ? ॥୩୯॥ ଯଜ୍ଞାଦି କର୍ମଦ୍ୱାରା ଯେଉଁ ସ୍ୱର୍ଗସୁଖ ହୁଏ ବୋଲି କୁହାଯାଏ, ତାହା ମଧ୍ୟ କ୍ଷଣଭଙ୍ଗୁର ଓ ଦୋଷମୁକ୍ତ ନୁହେଁ । କେବଳ ପରମାତ୍ମା ହେଉଛନ୍ତି ନିର୍ଦ୍ଦୋଷ । ତାଙ୍କର ଦୋଷ ଅଛି ବୋଲି କେହି ଦେଖି ନାହିଁ କିମ୍ବା ଶୁଣି ନାହିଁ , ତେଣୁ ତାଙ୍କୁ ନିଜର କରିବାପାଇଁ ଅନନ୍ୟ ଭକ୍ତିର ସହିତ ତାଙ୍କୁ ଭଜନ କରିବାକୁ ହେବ ॥୪୦॥ ପଣ୍ଡିତମ୍ମନ୍ୟ ବ୍ୟକ୍ତିମାନେ ବିଷୟସୁଖପାଇଁ ବାରମ୍ବାର କର୍ମ କରୁଥାନ୍ତି । ଉଦ୍ଦେଶ୍ୟସିଦ୍ଧି ଦୂରର କଥା, ସେମାନଙ୍କୁ ବିପରୀତ ଫଳ ମିଳିଥାଏ ॥୪୧॥ ସୁଖଲାଭ ଓ ଦୁଃଖନିବାରଣପାଇଁ ଲୋକ ସଂକଳ୍ପ କରି କର୍ମ କରେ । 'ବିନା କାମନାରେ ଲୋକ ସୁଖରେ ଥାଏ', ଏବେ କାମନାପାଇଁ କର୍ମରେ ପ୍ରବୃତ୍ତ ହେବାଦ୍ୱାରା ତାହାକୁ ଦୁଃଖ ହିଁ ମିଳିଥାଏ ॥୪୨॥ ସଂସାରରେ ଦେହର ସୁଖପାଇଁ ମନୁଷ୍ୟ ଯେଉଁସବୁ କାମ୍ୟ କର୍ମର ଅନୁଷ୍ଠାନରେ ଲାଗିପଡ଼େ, ଶୃଗାଳ, କୁକୁରଙ୍କର ଭକ୍ଷ୍ୟ ସେହି ଦେହ ହେଉଛି ଅନିତ୍ୟ । ସେ ବାରମ୍ବାର ନାଶ ଯାଏ ଓ ବାରମ୍ବାର ଜନ୍ମେ ॥୪୩॥ ନିଜ ଦେହର ଯେତେବେଳେ ଏହି ଅବସ୍ଥା, ସେତେବେଳେ ତାହାଠାରୁ ଦୂରସ୍ଥ ପୁତ୍ର, ସ୍ତ୍ରୀ, ଗୃହ, ଧନ, ରାଜ୍ୟ, ରତ୍ନାଗାର, ହସ୍ତୀ, ମନ୍ତ୍ରୀ, ଭୃତ୍ୟ ପ୍ରଭୃତି ମମତାସ୍ପଦମାନଙ୍କର କଥା କ'ଣ ବା କହିବା ? ॥୪୪॥ ଏମାନେ ସବୁ ତୁଚ୍ଛ । ଶରୀର ସହିତ ଏମାନେ ନଷ୍ଟ ହୋଇଯାଆନ୍ତି । ପୁରୁଷାର୍ଥ ଭଳି ଜଣାଯାଉଥିଲେ ମଧ୍ୟ ଏମାନେ ଅନର୍ଥର ସ୍ୱରୂପ । ଆତ୍ମା କେବଳ ହେଉଛି ନିତ୍ୟ ଆନନ୍ଦ ରସର ସମୁଦ୍ର । ତେଣୁ ଆତ୍ମାକୁ ଛାଡ଼ି ଏମାନଙ୍କ ପଛରେ ଦଉଡ଼ିବାରେ କ'ଣ ଲାଭ ଅଛି ? ॥୪୫॥ ଭାଇମାନେ, ପୂର୍ବ କର୍ମ ଫଳରେ ଦେହଧାରୀର ଜୀବନ ହେଉଛି କ୍ଳେଶପୂର୍ଣ୍ଣ । ସ୍ତ୍ରୀସମ୍ଭୋଗ ଆଦି ସାମାନ୍ୟ ସୁଖଲାଭରେ କି ସ୍ୱାର୍ଥ ଅଛି, ତାହା ତୁମେମାନେ ଚିନ୍ତାକର ॥୪୬॥ ଜୀବ ସୂକ୍ଷ୍ମ ଶରୀରକୁ ଆତ୍ମା ବୋଲି ମନେ କରେ । ଏହାଦ୍ୱାରା ଅନେକପ୍ରକାର କାର୍ଯ୍ୟ କରେ ଏବଂ କର୍ମଫଳ ଯୋଗୁ ପୁଣି ଦେହ ଧାରଣ କରେ । ଏହିପରି କର୍ମରୁ ଦେହ ଓ ଦେହରୁ କର୍ମ - ସଂସାରର ଏହି ପରମ୍ପରା ଗଡ଼ି ଚାଲେ ॥୪୭॥ ଏହି ଉଭୟର ଅଜ୍ଞାନତାରୁ ଜନ୍ମ । ତେଣୁ ଧର୍ମ, ଅର୍ଥ ଓ କାମ ଯାହାଙ୍କର ଅଧୀନ, ସେହି ଉପାଧିଶୂନ୍ୟ ପରମାତ୍ମା ଶ୍ରୀହରିଙ୍କୁ ନିଷ୍କାମଭାବରେ ଭଜନ କର ॥୪୮॥ ଶ୍ରୀହରି ସମସ୍ତ ପ୍ରାଣୀଙ୍କର ପ୍ରିୟ, ସେମାନଙ୍କ ଆତ୍ମା ଓ ଈଶ୍ୱର । ସେ ପଞ୍ଚଭୂତ ଓ ମହତତ୍ତ୍ୱାଦି ଦ୍ୱାରା ପ୍ରାଣୀମାନଙ୍କର ଶରୀରକୁ ସୃଷ୍ଟି କରିଛନ୍ତି । ସେହି ଶରୀରରେ ସେ ଜୀବ ନାମରେ କଥିତ ହୁଅନ୍ତି । ଦେବତା, ଅସୁର, ମନୁଷ୍ୟ, ଯକ୍ଷ, ଗନ୍ଧର୍ବ - ଯେ କେହି ଶ୍ରୀମୁକୁନ୍ଦଙ୍କ ଚରଣକୁ ଭଜନ କରିବ, ସେ ଆମମାନଙ୍କପରି ତାଙ୍କର କଲ୍ୟାଣ ଲାଭ କରିପାରିବ ॥୪୯-୫୦॥

ଦୈତ୍ୟବାଳକମାନେ, ଦେବ, ଦ୍ୱିଜ ବା ଋଷି ହେଲେ, କିମ୍ବା ସଦ୍‌ବୃତ୍ତି ବା ବହୁ ଜ୍ଞାନ ଲାଭ କଲେ ଭଗବାନଙ୍କୁ ଯେ ସନ୍ତୁଷ୍ଟ କରାଯାଇପାରିବ, ତା'ନୁହେଁ ॥୫୧॥ ଦାନ, ତପ, ଯଜ୍ଞ, ଶୌଚ ଓ ବ୍ରତ -- ଏସବୁ ମଧ୍ୟ ଭଗବାନଙ୍କର ପ୍ରୀତି

ସମ୍ପାଦନ କରେ ନାହିଁ । କେବଳ ଶୁଦ୍ଧଭକ୍ତିଦ୍ୱାରା ହିଁ ସେ ସନ୍ତୁଷ୍ଟ ହୁଅନ୍ତି । ଅନ୍ୟ ସବୁ ବିଡ଼ମ୍ବନା ମାତ୍ର । ତେଣୁ ହେ ଦାନବଗଣ, ଭଗବାନ ଶ୍ରୀହରିଙ୍କୁ ଭକ୍ତି କର । ସମସ୍ତପ୍ରାଣୀଙ୍କୁ ନିଜ ପରି ଦେଖ ଏବଂ ସର୍ବତ୍ର ଓ ସବୁ ପ୍ରାଣୀଙ୍କ ମଧ୍ୟରେ ଈଶ୍ୱର ବିରାଜମାନବୋଲି ଅନୁଭବ କର । ଭଗବତ୍ ଭକ୍ତିର ପ୍ରଭାବରେ ଦୈତ୍ୟ, ଯକ୍ଷ, ରାକ୍ଷସ, ସ୍ତ୍ରୀ, ଶୂଦ୍ର, ଗୋପାଳ, ପଶୁପକ୍ଷୀ ଏବଂ ପାପକର୍ମ କରି ଯେଉଁମାନେ ଜୀବିକାର୍ଜନ କରନ୍ତି, ସେମାନେ ସମସ୍ତେ ଶ୍ରୀଅଚ୍ୟୁତଙ୍କୁ ଲାଭ କରି ପାରିଛନ୍ତି ॥୫୨-୫୪॥ ଏହି ସଂସାରରେ ଶ୍ରୀ ଗୋବିନ୍ଦଙ୍କପ୍ରତି ଏକାନ୍ତ ଭକ୍ତିଭାବ ଏବଂ ସର୍ବତ୍ର ତାଙ୍କ ଦର୍ଶନ ହିଁ ମନୁଷ୍ୟର ସର୍ବଶ୍ରେଷ୍ଠ ସ୍ୱାର୍ଥ ॥୫୫॥

## ଅଷ୍ଟମ ଅଧ୍ୟାୟ

# ନୃସିଂହ ଅବତାର

ନାରଦ କହିଲେ, ନିର୍ଦ୍ଦୋଷ ଦୈତ୍ୟ ପୁତ୍ରମାନେ ପ୍ରହ୍ଲାଦଙ୍କ ପ୍ରବଚନ ଶୁଣି ତାହା ଗ୍ରହଣ କରିଗଲେ ଓ ଗୁରୁଙ୍କର ଶିକ୍ଷାକୁ ଗ୍ରହଣ କଲେ ନାହିଁ । ସେମାନଙ୍କ ଗୁରୁ ଶୁକ୍ରାଚାର୍ଯ୍ୟଙ୍କର ପୁତ୍ରଦ୍ୱୟ ଭଗବାନଙ୍କ ପ୍ରତି ସେମାନଙ୍କର ଏକାନ୍ତ ଅନୁରାଗ ଲକ୍ଷ୍ୟ କରି ଭୟଭୀତ ହୋଇଗଲେ ଏବଂ ଶୀଘ୍ର ହିରଣ୍ୟକଶିପୁ ପାଖକୁ ଯାଇ ଏ ବିଷୟ ନିବେଦନ କଲେ ॥୧-୨॥ କୋପବଶରେ ହିରଣ୍ୟକଶିପୁର ଶରୀର କମ୍ପିବାକୁ ଲାଗିଲା । ପୁତ୍ରକୁ ହତ୍ୟା କରିବାପାଇଁ ମନମଧ୍ୟରେ ସ୍ଥିର କରି ପ୍ରହ୍ଲାଦଙ୍କୁ ସେ ଅତି କଠୋର ବାକ୍ୟରେ ଭର୍ତ୍ସନା କରି ଲାଗିଲା ॥୩॥ ସ୍ୱଭାବରେ ନିଷ୍ଠୁର ରାଜା ପଦାହତ ସର୍ପ ପରି ଘନଘନ ନିଃଶ୍ୱାସ ତ୍ୟାଗ କରୁଥିଲା; କିନ୍ତୁ ପ୍ରହ୍ଲାଦ ମନ ଓ ଇନ୍ଦ୍ରିୟକୁ ନିଜବଶରେ ରଖିଥିଲେ । ସେ ଅତି ନମ୍ର ଭାବରେ କୃତାଞ୍ଜଳି ହୋଇ ଠିଆ ହୋଇଥିଲେ ଏବଂ ତିରସ୍କାରର ଅଯୋଗ୍ୟ ଥିଲେ । ରାଜା ପ୍ରହ୍ଲାଦଙ୍କୁ ରୋଷପୂର୍ଣ୍ଣ ବକ୍ର ଦୃଷ୍ଟିରେ ଦେଖି କହିବାକୁ ଲାଗିଲା-- ॥୪॥ ରେ ଦୁର୍ବିନୀତ, ଅଧମ, ମନ୍ଦବୁଦ୍ଧି, କୁଳଭେଦକାରୀ ! ତୁ ମୋର ଶାସନକୁ ଲଘଂନ କରିଛୁ । ତୋ ପରି ଅବାଧ୍ୟ ପୁତ୍ରକୁ ମୁଁ ଶୀଘ୍ର ଯମାଳୟକୁ ପଠାଉଛି ॥୫॥ ଯେ କ୍ରୁଦ୍ଧ ହେଲେ, ସମସ୍ତ ଲୋକପାଳଙ୍କ ସହିତ ଏହି ତିନିଲୋକ କମ୍ପିଉଠେ, ମୂର୍ଖ, ତୁ ହୀନବଳ ହୋଇ କେଉଁ ସାହସରେ ତାର ଶାସନକୁ ଉଲ୍ଲଘଂନ କଲୁ ? ॥୬॥

ପ୍ରହ୍ଲାଦ କହିଲେ, ଦୈତ୍ୟରାଜ, ମୁଁ କେବଳ ନୁହେଁ, ବ୍ରହ୍ମାଦି ଦେବଗଣ ଏବଂ ସ୍ଥାବର ଜଙ୍ଗମ ସମସ୍ତ ଜଗତ୍ ବିଷ୍ଣୁଙ୍କର ବଶ ହୋଇ ରହିଛନ୍ତି । ସେ କେବଳ ମୋର ନୁହନ୍ତି, ଆପଣଙ୍କର ଓ ଅନ୍ୟସମସ୍ତ ବଳବାନଙ୍କର ବଳ । ସେହି ମହାପରାକ୍ରମୀ ଭଗବାନ କାଳସ୍ୱରୂପ ବିଦ୍ୟମାନ ଓ ସମସ୍ତ ପ୍ରାଣୀଙ୍କର ଓଜ, ତେଜ, ଶକ୍ତି, ବଳ, ଇନ୍ଦ୍ରିୟ ଓ ଆତ୍ମାରୂପେ ନିଜର ତ୍ରିଗୁଣାତ୍ମକ ଶକ୍ତିଦ୍ୱାରା ଏହି ବିଶ୍ୱ ବ୍ରହ୍ମାଣ୍ଡକୁ ସୃଷ୍ଟି, ପାଳନ ଏବଂ ସଂହାର କରୁଛନ୍ତି ॥୭-୮॥ ଆପଣ ନିଜର ଅସୁରଭାବ ତ୍ୟାଗ କରନ୍ତୁ । ଏହି ସଂସାରରେ ବିପଥଗାମୀ ମନକୁ ବଶ କରି ନ ପାରିଲେ ସେ ହିଁ ପରମ ଶତ୍ରୁ ହୁଏ । ତେଣୁ ଶତ୍ରୁ-ମିତ୍ର ଭାବ ନ ରଖି ନିଜର ମନକୁ ଶୁଦ୍ଧ କରନ୍ତୁ । ଏହି ସମଦର୍ଶିତା ହିଁ ଈଶ୍ୱରଙ୍କର ଯଥାର୍ଥ ପୂଜା ॥୯॥ ନିଜର ସର୍ବସ୍ୱ ଲୁଣ୍ଠନକାରୀ କାମାଦି ଷଡ଼ରିପୁଙ୍କୁ ଯେ ଜୟ କରିପାରି ନାହିଁ, ସେ ଦଶ ଦିଗକୁ ଜୟ କରିଛି ବୋଲି ମନେ କରିବା ଅଜ୍ଞତା ମାତ୍ର । ସେହିମାନେ ହିଁ ଶତ୍ରୁଶୂନ୍ୟ, ଯେଉଁମାନେ ଜ୍ଞାନୀ, ଜିତେନ୍ଦ୍ରିୟ ଓ ସମଦର୍ଶୀ । ଚିତ୍ତର ଅବିବେକିତାରୁ ଜନ୍ମିତ ଶତ୍ରୁ ସେମାନଙ୍କର ଆସିବେ କୁଆଡୁ ? ॥୧୦॥

ହିରଣ୍ୟକଶିପୁ କହିଲା, ପ୍ରହ୍ଲାଦ, ତୁ ଅତିମାତ୍ରାରେ ଉପଦେଶ ଦେବା ଆରମ୍ଭ କରିଛୁ । ତୁ ମରିବାକୁ ଚାହୁ, ଏହା ସ୍ପଷ୍ଟ ହୋଇଗଲାଣି । ମନ୍ଦବୁଦ୍ଧି, ଯେଉଁମାନେ ମରିବାକୁ ଚାହାନ୍ତି, ସେମାନେ ଏହିପରି ବାଚାଳତା କରନ୍ତି ॥୧୧॥ ଅଭାଗା, ମୋ ଛଡ଼ା ଜଗତ୍‌ର ଅନ୍ୟ କେହି ପ୍ରଭୁ ଅଛି ବୋଲି ତୁ କହୁଛୁ ଏବଂ ସେ ପୁଣି ସବୁଠାରେ ଅଛି; ତା'ହେଲେ ଏ ସ୍ତମ୍ଭରେ କାହିଁକି

ସେ ଦେଖାଯାଉ ନାହିଁ ? ॥୧୨॥ ପ୍ରକୃତ ଈଶ୍ୱର ହେଉଛି ମୁଁ । ବର୍ତ୍ତମାନ ମୁଁ ତୋର ଶିରଚ୍ଛେଦନ କରୁଛି, ଯଦି କେହି ହରି ଅଛି, ତୋତେ ରକ୍ଷା କରିବ, କରୁ ॥୧୩॥ ଅତି ବଳବାନ୍ ଦୈତ୍ୟରାଜ ହିରଣ୍ୟକଶିପୁ ମହାଭକ୍ତ ପ୍ରହ୍ଲାଦଙ୍କୁ ଏହିପରି କ୍ରୋଧପୂର୍ଣ୍ଣ ବାକ୍ୟରେ ବାରମ୍ବାର ଭର୍ତ୍ସନା କରି ଖଡ୍ଗ ଧାରଣପୂର୍ବକ ବେଗରେ ସିଂହାସନରୁ ଡେଇଁପଡ଼ିଲା ଏବଂ ଜୋର୍‌ରେ ସମ୍ମୁଖସ୍ଥ ସ୍ତମ୍ଭକୁ ମୁଷ୍ଟିରେ ଆଘାତ କଲା ॥୧୪॥ ନାରଦ କହିଲେ, ତତ୍‌କ୍ଷଣାତ୍ ସେହି ସ୍ତମ୍ଭରୁ ଏକ ଭୟଙ୍କର ଶବ୍ଦ ଜାତ ହେଲା । ଜଣାଗଲା ଯେପରିକି, ବ୍ରହ୍ମାଣ୍ଡରୂପକ ଭାଣ୍ଡ ଭାଙ୍ଗିଯାଉଛି । ଯୁଧିଷ୍ଠିର, ବ୍ରହ୍ମାଦି ଦେବତାମାନେ ମନେକଲେ, ବ୍ରହ୍ମଲୋକ ଆଦି ସମସ୍ତ ଲୋକରେ ପ୍ରଳୟ ହେବାକୁ ଯାଉଛି ॥୧୫॥ ସେହି ଭୟାନକ ଶବ୍ଦ ଶୁଣି ଅସୁରଯୂଥପତିମାନେ ଭୟଭୀତ ହୋଇପଡ଼ିଲେ । ନିଜର ପୁତ୍ରକୁ ମାରିବାକୁ ଯାଉଥିବା ହିରଣ୍ୟକଶିପୁ ସେହି ଅପୂର୍ବ, ଅଦ୍ଭୁତ ଭୟାନକ ଶବ୍ଦ କେଉଁଠାରୁ ଆସିଲା, ତାହା ଜାଣିପାରିଲା ନାହିଁ ॥୧୬॥ ନିଜର ଭକ୍ତ ପ୍ରହ୍ଲାଦଙ୍କର ବାକ୍ୟ (ଏହି ସ୍ତମ୍ଭରେ ଭଗବାନ ଅଛନ୍ତି)କୁ ସତ୍ୟ କରିବାପାଇଁ ଏବଂ ସର୍ବତ୍ର ସେ ଅଛନ୍ତି ଏହା ଦେଖାଇବାପାଇଁ ଭଗବାନ ଏକ ଅଦ୍ଭୁତ ମୂର୍ତ୍ତି ଧାରଣ କରି ସ୍ତମ୍ଭମଧ୍ୟରେ ଦେଖାଦେଲେ । ତାଙ୍କର ଏହି ରୂପ ପୂରା ମନୁଷ୍ୟର ବା ପୂରା ପଶୁର ନ ଥିଲା ॥୧୭॥ ରାକ୍ଷସରାଜ ଚାରିଆଡ଼କୁ ଚାହିଁ ଦେଖିଲା ଯେ, ସ୍ତମ୍ଭମଧ୍ୟରୁ ଏକ ବିଚିତ୍ର ମୂର୍ତ୍ତି ବାହାରି ଆସୁଛି, ଯେ ନର ନୁହେଁ କି ପଶୁ ନୁହେଁ -- କିନ୍ତୁ ଦୁହିଁଙ୍କର ମିଶ୍ରଣ -- ନରସିଂହ ॥୧୮॥ ଏପରି ରୂପ କୁଆଡୁ ଆସିଲା, ତାହା ବିଚାର କରୁଥିବାବେଳେ ସେ ଦେଖିଲା ତାର ସମ୍ମୁଖରେ ଏକ ଭୟଙ୍କର ନୃସିଂହ ରୂପ ବିଦ୍ୟମାନ । ଉତପ୍ତ ସୁବର୍ଣ୍ଣ ପରି ତାଙ୍କର ଚକ୍ଷୁ ଦପ୍‌ଦପ୍ କରୁଥିଲା । କଣ୍ଠର ଲୋମାବଳୀ ଠିଆ ହୋଇଯାଉଥିଲା । ଦନ୍ତସବୁ ଅତିଶୟ ଭୟଙ୍କର, ଜିହ୍ୱା କ୍ଷୁରଧାର ପରି ତୀକ୍ଷ୍ଣ ଓ ଖଡ୍ଗ ପରି ଚଞ୍ଚଳ, ଭ୍ରୂକୁଟିଯୁକ୍ତ ତାଙ୍କର ଏହି ମୁଖମଣ୍ଡଳ ଅତିଶୟ ଭୟାନକ ଦେଖାଯାଉଥିଲା ॥୧୯-୨୦॥ ତାଙ୍କର କର୍ଣ୍ଣଦ୍ୱୟ ଦୀର୍ଘ ଓ ଉନ୍ନତ । ପ୍ରଶସ୍ତ ମୁଖମଣ୍ଡଳରେ ନାକପୁଡ଼ା ଦୁଇଟି ଫୁଲି ଉଠିଥିଲା ଏବଂ ଗାଲ ଦୁଇଟିକୁ ବିସ୍ତାରିତ କରି ସେ ଆଁ କରିବାଦ୍ୱାରା ତାହା ପାହାଡ଼ର ଗୁହାପରି ଭୟଙ୍କର ଦେଖାଯାଉଥିଲା ॥୨୧॥ ତାଙ୍କର ବିଶାଳ ଶରୀର ଆକାଶକୁ ସ୍ପର୍ଶ କରୁଥିଲା । ଗ୍ରୀବା ଥିଲା ଖର୍ବ ଓ ସ୍ଥୂଳ, ବକ୍ଷ ବିସ୍ତୃତ ଏବଂ କଟିଦେଶ କ୍ଷୀଣ ଥିଲା । ଚନ୍ଦ୍ରଜ୍ୟୋତ୍ସ୍ନା ପରି ଶୁଭ୍ର ଓ ଉଜ୍ଜ୍ୱଳ ରୋମାବଳୀରେ ତାଙ୍କର ଦେହ ଉଦ୍‌ଭାସିତ ହୋଇଉଠୁଥିଲା । ଚତୁର୍ଦିଗକୁ ତାଙ୍କ ଶତସଂଖ୍ୟକ ଭୁଜ ବିସ୍ତୃତ ହୋଇ ନଖ ସବୁ ଅସ୍ତ୍ରଧାର ପରି ଦେଖାଯାଉଥିଲା ॥୨୨॥ ତାଙ୍କ ପାଖକୁ ଯିବାର ସାହସ କାହାର ନ ଥିଲା । ତାଙ୍କ ଆୟୁଧ ଓ ବଜ୍ରାଦି ଶସ୍ତ୍ରମାନଙ୍କୁ ଦେଖି ଦୈତ୍ୟ ଓ ଦାନବମାନେ ପଳାୟନ କଲେ । ହିରଣ୍ୟକଶିପୁ ଭାବିଲା ମହାମାୟାବୀ ବିଷ୍ଣୁ ମୋତେ ମାରିବାପାଇଁ ଏପରି ରୂପ ଧରି ନାହିଁ ତ ? କିନ୍ତୁ ଏହି ରୂପ ଧରି ସେ କ'ଣ କରିବ ? ଏହିପରି କହି ଦୈତ୍ୟବୀର ହିରଣ୍ୟକଶିପୁ ସିଂହନାଦ କରି ଗଦାହସ୍ତରେ ଭଗବାନ ନୃସିଂହଙ୍କ ସହିତ ଲଢ଼ିବାପାଇଁ ଦଉଡ଼ିଗଲା । କିନ୍ତୁ ଅଗ୍ନିରେ ପଡ଼ି ପତଙ୍ଗ ଯେପରି ଅଦୃଶ୍ୟ ହୋଇଯାଏ ସେହିପରି ନୃସିଂହଙ୍କ ତେଜରେ ଅସୁର ଦେଖାଗଲା ନାହିଁ ॥୨୩-୨୪॥ ଏଥିରେ ଆଶ୍ଚର୍ଯ୍ୟ ହେବାର କିଛି ନାହିଁ । କାରଣ ସମସ୍ତ ଶକ୍ତି ଓ ତେଜର ଆଧାର ଶ୍ରୀ ଭଗବାନ ସୃଷ୍ଟିର ଆରମ୍ଭରେ ତମୋଗୁଣରୂପୀ ଘୋର ଅନ୍ଧକାରକୁ ପିଇ ଦେଇଥିଲେ । ଦୈତ୍ୟରାଜ କ୍ରୋଧରେ ଲମ୍ଫ ଦେଇ ନିଜର ଗଦାକୁ ଘୂରାଇ ଘୂରାଇ ନୃସିଂହଙ୍କୁ ପ୍ରହାର କଲା ॥୨୫॥

ତତ୍‌କ୍ଷଣାତ୍ ଭଗବାନ ନୃସିଂହ ଗରୁଡ଼ ସାପକୁ ଧରିନେବା ପରି ଗଦାସହିତ ସେହି ଦୈତ୍ୟକୁ ଧରିନେଲେ । ଯେତେବେଳେ ତାହା ସହିତ ସେ ଖେଳିବାକୁ ଲାଗିଲେ, ଗରୁଡ଼-ପଞ୍ଝାରୁ ସାପ ଖସିଯିବା ପରି ଦୈତ୍ୟ ତାଙ୍କ ହାତରୁ ଖସିଗଲା ॥୨୬॥ ଯୁଧିଷ୍ଠିର, ସ୍ୱର୍ଗହରାଇଥିବା ଦେବତା ଓ ଲୋକପାଳମାନେ ମେଘର ଉହାଡ଼ରେ ଲୁଚିରହି ଏହି ଯୁଦ୍ଧକୁ ଦେଖୁଥିଲେ । ହିରଣ୍ୟକଶିପୁ ନୃସିଂହଙ୍କ ହାତରୁ ଖସିଯିବାରୁ ସେମାନେ ନିଜର ଅମଙ୍ଗଳ ଚିନ୍ତା କରିବାକୁ ଲାଗିଲେ । ଦୈତ୍ୟ ଭାବିଲା ଯେ ନୃସିଂହ ତା'ର ବଳବୀର୍ଯ୍ୟକୁ ଭୟ କରି ତାକୁ ହାତରୁ ଛାଡ଼ିଦେଲେ । ଏହି ବିଚାରରେ ସେ ଟିକିଏ ଥକ୍କା ମାରି ଖଡ୍ଗ ଓ ଚର୍ମ ଧାରଣପୂର୍ବକ ନୃସିଂହଙ୍କ ଆଡକୁ ମାଡ଼ିଆସିଲା ॥୨୭॥ ଏକ ଛଞ୍ଚାଣ ପରି ଉପରକୁ ଉଠି ଓ ପୁଣି ତଳକୁ ହୋଇ ସେ ନିଜର ଢାଲ ଓ ଖଡ୍ଗକୁ

ଏପରି ବୁଲାଇବାକୁ ଲାଗିଲା, ଯେପରିକି ତାକୁ ଧରିବାପାଇଁ ଆଉ କୌଣସି ଛିଦ୍ର ନ ଥିବ । ଏହିପରି ଉପରକୁ ତଳକୁ ଘୂରିବୁଲୁଥିବା ରାକ୍ଷସକୁ ଲକ୍ଷ୍ୟ କରି ଭଗବାନ ନୃସିଂହ ଏପରି ଭୟଙ୍କର ଅଟ୍ଟହାସ୍ୟ କଲେ, ଯଦ୍ୱାରା ହିରଣ୍ୟକଶିପୁର ଚକ୍ଷୁ ବନ୍ଦ ହୋଇଗଲା ।।୨୮।। ସାପ ମୂଷାକୁ ଧରିଲାପରି ସେ ବେଗରେ ଝପଟି ଆସି ହିରଣ୍ୟକଶିପୁକୁ ଧରିନେଲେ । ଯେଉଁ ହିରଣ୍ୟକଶିପୁର ଚର୍ମ ଏପରି କଠିନ ଯେ ବଜ୍ର ମଧ୍ୟ ତାକୁ ଭେଦିପାରେ ନାହିଁ, ସେହି ଦୈତ୍ୟ ଭଗବାନଙ୍କ ହାତରୁ ଖସିଯିବାପାଇଁ ଛଟପଟ ହେବାକୁ ଲାଗିଲା । ଭଗବାନ ତାକୁ ଦ୍ୱାରବନ୍ଧକୁ ନେଇଗଲେ ଏବଂ ଗରୁଡ଼ ମହାବିଷଧର ସର୍ପକୁ ନିଜ ନଖରେ ଚିରିଦେବା ପରି ତାକୁ ନିଜ ଉରୁ ଉପରେ ପକାଇ ନଖରେ ବିଦାରଣ କଲେ ।।୨୯।। ସେହି ସଂଘର୍ଷରେ ତାଙ୍କ କ୍ରୋଧପୂର୍ଣ୍ଣ ବିକରାଳ ଚକ୍ଷୁକୁ ଚାହିଁ ହେଉ ନ ଥିଲା । ସେ ତାଙ୍କ ଲହଲହ ଜିହ୍ୱାଦ୍ୱାରା ମୁଖର ଦୁଇ କୋଣକୁ ଚାଟିବାକୁ ଲାଗିଥିଲେ । ରକ୍ତଛିଟା ପଡ଼ି ତାଙ୍କର ମୁଖ ଓ ବେକର କାନ୍ଧସବୁ ଲାଲ୍ ହୋଇଯାଇଥିଲା । ହାତୀକୁ ମାରି ତାର ଅନ୍ତନାଳିକୁ ବେକରେ ପକାଇ ସିଂହ ଯେପରି ଶୋଭା ପାଏ, ସେ ସେହିପରି ଶୋଭା ପାଉଥିଲେ ।।୩୦।। ସେ ନିଜର ତୀକ୍ଷ୍ଣ ନଖଦ୍ୱାରା ତାର କଲିଜାକୁ ଉପାଡ଼ି ତାକୁ ଭୂଇଁରେ ପକାଇଦେଲେ । ଏହିସମୟରେ ହଜାର ହଜାର ଦୈତ୍ୟଦାନବ ସୈନ୍ୟ ତାଙ୍କୁ ପ୍ରହାର କରିବାକୁ ମାଡ଼ି ଆସିଲେ, କିନ୍ତୁ ସେ ନିଜର ଭୁଜବଳରେ, ପଦପ୍ରହାରରେ ଏବଂ ନଖରୂପୀ ଶସ୍ତ୍ରରେ ଚାରିଦିଗକୁ ଦଉଡ଼ି ଦଉଡ଼ି ସେହି ଦୁର୍ଦାନ୍ତ ଯୂଥକୁ ହତ୍ୟା କରିବାକୁ ଲାଗିଲେ ।।୩୧।। ନୃସିଂହଙ୍କ ବେକରେ ଥିବା କେଶରର ଆଘାତରେ ମେଘମାଳା ସବୁ ଇତସ୍ତତଃ ହୋଇଗଲେ । ତାଙ୍କ ଦୃଷ୍ଟିର ତେଜରେ ସୂର୍ଯ୍ୟାଦି ଗ୍ରହମାନଙ୍କର ତେଜ ନିଷ୍ପ୍ରଭ ହୋଇଗଲା, ତାଙ୍କ ନିଃଶ୍ୱାସର ପବନରେ ସମୁଦ୍ରସବୁ ବିକ୍ଷୁବ୍ଧ ହେଲେ ଏବଂ ଦିଗ୍‌ଗଜମାନେ ତାଙ୍କର ସିଂହନାଦରେ ଭୟଭୀତ ହୋଇ ଉଚ୍ଚସ୍ୱରରେ ରାବ କଲେ ।।୩୨।। ତାଙ୍କ ବେକର କେଶର ସହିତ ଧକ୍କା ଖାଇ ଦେବତାମାନଙ୍କର ବିମାନସବୁ ମାର୍ଗଚ୍ୟୁତ ହେଲା ଏବଂ ସ୍ୱର୍ଗ ଟଳମଳ ହେବାକୁ ଲାଗିଲା । ତାଙ୍କ ପଦାଘାତରେ ପୃଥିବୀ କମ୍ପିତ ହୋଇ ଅଚଳ ପର୍ବତ ସବୁ ଅତିବେଗରେ ନିଜ ସ୍ଥାନରୁ ଉପୁଡ଼ି ପଡ଼ିଲେ ଏବଂ ତାଙ୍କ ପ୍ରଚଣ୍ଡ ତେଜରେ ଆକାଶ ଓ ଦିଗ୍‌ବିଦିଗ୍ ଦେଖାଗଲା ନାହିଁ ।।୩୩।। ସେ ହିରଣ୍ୟକଶିପୁର ରାଜସଭାରେ ଥିବା ସିଂହାସନରେ ଯାଇ ବସିଗଲେ । ତାଙ୍କୁ ଚାହିଁ ହେଉ ନ ଥିଲା । ସେହି ମହା ତେଜୀୟାନ୍ ଭଗବାନ ନୃସିଂହଙ୍କର ମୁଖ ଅତି ଭୟାନକ ଥିଲା । ତାଙ୍କ ପାଖକୁ ଯାଇ ତାଙ୍କୁ ସେବା କରିବାପାଇଁ କେହି ସାହସ କଲେ ନାହିଁ ।।୩୪।। ତ୍ରିଲୋକର ଶିରପୀଡ଼ା ସଦୃଶ ଦୁଃସହ ଦୈତ୍ୟରାଜ ହିରଣ୍ୟକଶିପୁ ଯୁଦ୍ଧରେ ନିହତ ହେବାର ଦେଖି ସୁରଲଳନାମାନେ ଆନନ୍ଦରେ ଉତ୍‌ଫୁଲ୍ଲିତ ହେଲେ ଏବଂ ନୃସିଂହଙ୍କ ମସ୍ତକ ଉପରେ ବାରମ୍ବାର ପୁଷ୍ପବୃଷ୍ଟି କରିବାକୁ ଲାଗିଲେ ।।୩୫।। ତାଙ୍କୁ ଦେଖିବାକୁ ଆସୁଥିବା ଦେବତାମାନଙ୍କ ବିମାନଦ୍ୱାରା ନଭୋମଣ୍ଡଳ ଛାଇ ହୋଇଗଲା । ସେମାନଙ୍କ ଦୁନ୍ଦୁଭି, ପଟହ ଆଦି ବାଜିଉଠିଲା । ଗନ୍ଧର୍ବମାନେ ଗାଇବାକୁ ଓ ଅପ୍‌ସରାଗଣ ନୃତ୍ୟ କରିବାକୁ ଲାଗିଲେ ।।୩୬।।

ବତ୍ସ ଯୁଧିଷ୍ଠିର,ସେତେବେଳେ ବ୍ରହ୍ମା, ଇନ୍ଦ୍ର, ଓ ରୁଦ୍ର ଆଦି ଦେବତା ଋଷିଗଣ, ପିତୃଗଣ, ସିଦ୍ଧ, ବିଦ୍ୟାଧର, ପ୍ରଧାନ ପ୍ରଧାନ ନାଗ, ପ୍ରଜାପତି, ଚତୁର୍ଦ୍ଦଶ ମନୁ, ଯକ୍ଷ, ଗନ୍ଧର୍ବ, ଅପ୍‌ସରା, ଚାରଣ, କିଂପୁରୁଷ, କିନ୍ନର ଓ ବେତାଳଗଣ ଏବଂ ସୁନନ୍ଦ, କୁମୁଦ ଆଦି ବିଷ୍ଣୁଙ୍କର ପାର୍ଷଦ ସେ ସମସ୍ତେ ସେଇ ସ୍ଥାନରେ ସମବେତ ହେଲେ ଓ ମସ୍ତକ ଉପରେ କୃତାଞ୍ଜଳିପୁଟ ହୋଇ ଶ୍ରୀ ନୃସିଂହଙ୍କର ପୃଥକ୍ ପୃଥକ୍ ସ୍ତବ କରିବାକୁ ଲାଗିଲେ ।।୩୭-୩୯।। ବ୍ରହ୍ମା ସ୍ତୁତି କରି କହିଲେ, ପ୍ରଭୁ, ଆପଣ ମହପରାକ୍ରମୀ, ବିଚିତ୍ରବୀର୍ଯ୍ୟ ଓ ପବିତ୍ରକର୍ମା । ଆପଣ ନିଜ ଗୁଣରେ ଓ ନିଜର ଲୀଳାପାଇଁ ଏହି ସମସ୍ତ ବିଶ୍ୱର ସୃଷ୍ଟି, ସ୍ଥିତି ଓ ପ୍ରଳୟର ବିଧାନ କରନ୍ତି । ଅବ୍ୟୟ-ଆତ୍ମା, ଆପଣଙ୍କୁ ମୁଁ ନମସ୍କାର କରୁଛି ।।୪୦।। ରୁଦ୍ର ସ୍ତୁତି କରି କହିଲେ, ହେ ଭକ୍ତବତ୍ସଳ, ଯୁଗାନ୍ତବେଳ ହେଉଛି ଆପଣଙ୍କ କୋପର ସମୟ । ବର୍ତ୍ତମାନ ଆପଣ କୋପ କରନ୍ତୁ ନାହିଁ, କାରଣ ଏ ଅସୁର ଆପଣଙ୍କ କୋପର ଯୋଗ୍ୟ ନୁହେଁ । ତାର ପୁତ୍ର ଓ ଆପଣଙ୍କ ଭକ୍ତ ପ୍ରହ୍ଲାଦ ସେଠାରେ ଉପସ୍ଥିତ । ତାଙ୍କୁ ଆପଣ ରକ୍ଷା କରନ୍ତୁ ।।୪୧।। ଇନ୍ଦ୍ର ସ୍ତୁତି କରି କହିଲେ, ପରମେଶ୍ୱର, ଆପଣ ଦୈତ୍ୟର ଅତ୍ୟାଚାରରୁ ଆମମାନଙ୍କୁ ରକ୍ଷା କରି ଆମର ଯଜ୍ଞଭାଗର ପୁନରୁଦ୍ଧାର କରିଛନ୍ତି ।

ଆମର ହୃଦୟପଦ୍ମରେ ଆପଣ ଚିରଦିନ ବାସ କରନ୍ତି । ତାହା ଦୈତ୍ୟର ଆକ୍ରମଣରେ ମୁଦ୍ରିତ ହୋଇଯାଇଥିଲା । ଆପଣ ପୁଣି ତାକୁ ପ୍ରକାଶିତ କଲେ । ହେ ନାଥ, ଏ ତ୍ରିଭୁବନର ଐଶ୍ୱର୍ଯ୍ୟରକ୍ଷାପାଇଁ ଯେ ଆପଣ ଦୈତ୍ୟବଧ କରିଛନ୍ତି, ତାହା ନୁହେ । କାରଣ ଐଶ୍ୱର୍ଯ୍ୟ ନାଶଶୀଳ ଓ ଭକ୍ତରପାଇଁ ଅତିଶୟ ତୁଚ୍ଛ । ହେ ପରମାତ୍ମା ନରସିଂହ, ଆପଣଙ୍କର ଭକ୍ତମାନେ ମୁକ୍ତିକୁ ମଧ୍ୟ ବଡ଼ ମନେ କରନ୍ତି ନାହିଁ, ତେଣୁ ଅନ୍ୟ କୌଣସି ସମ୍ପଦରେ ତାଙ୍କର ଯାଏ ଆସେ କେତେ ? ॥୪୨॥ ଋଷିମାନେ ସ୍ତୁତି କଲେ, ହେ ଆଦି ପୁରୁଷ, ଆପଣ ଆତ୍ମତେଜଦ୍ୱାରା ଆପଣଙ୍କଠାରେ ଲୀନ ହୋଇଥିବା ଏହି ଜଗତକୁ ସୃଷ୍ଟି କରିଛନ୍ତି । ଏହି ତେଜ ଆମକୁ ତପସ୍ୟାପାଇଁ ପ୍ରରୋଚିତ କରିଛି । କିନ୍ତୁ ରାକ୍ଷସ ଦ୍ୱାରା ଆମର ଯେଉଁ ତପସ୍ୟା ବିଲୁପ୍ତ ହେବାକୁ ବସିଥିଲା, ତାହା ତ୍ରିଲୋକର ରକ୍ଷାପାଇଁ ଆପଣଙ୍କର ଏହି ନରସିଂହ ରୂପ ଧାରଣ ଦ୍ୱାରା ପୁନର୍ଜୀବିତ ହୋଇଛି । ତେଣୁ ତପ କରିବାପାଇଁ ଆମକୁ ପୁଣି ଉତ୍ସାହିତ କରିଥିବା ଯୋଗୁ, ହେ ଶରଣରକ୍ଷକ, ଆପଣଙ୍କୁ ଆମେ ନମସ୍କାର କରୁଅଛୁ ॥୪୩॥ ପିତୃଗଣ କହିଲେ, ଆମର ପୁତ୍ରମାନେ ପର୍ବଦିନରେ ଆମପାଇଁ ଶ୍ରାଦ୍ଧ କରୁଥିଲେ । ତୀର୍ଥଜଳରେ ସ୍ନାନ କରି ତିଳତର୍ପଣ କରୁଥିଲେ । ଏଇ ଅସୁର ତାହା ବଳପୂର୍ବକ ଅଧିକାର କରି ଭୋଗ କରୁଥିଲା । ଆପଣ ତା'ର ଉଦରକୁ ନଖଦ୍ୱାରା ବିଦୀର୍ଣ୍ଣ କରି ସେହି ପିଣ୍ଡକୁ ଉଦ୍ଧାର କରିଛନ୍ତି । ତେଣୁ ହେ ନରହରି, ହେ ଧର୍ମରକ୍ଷକ, ଆପଣଙ୍କୁ ଆମେ ନମସ୍କାର କରୁଅଛୁ ॥୪୪॥ ସିଦ୍ଧଗଣ କହିଲେ, ହେ ପ୍ରଭୁ ନୃସିଂହ, ଆମର ସବୁ ଯୋଗସିଦ୍ଧ ଫଳକୁ ଅସାଧୁ ଦୈତ୍ୟ ଯୋଗ ଓ ତପ ବଳରେ ଅପହରଣ କରିଥିଲା । ସେହି ବଳଦୃପ୍ତ ରାକ୍ଷସକୁ ଆପଣ ନଖରେ ବିଦାରଣ କରିଛନ୍ତି । ତେଣୁ ଆପଣଙ୍କୁ ଆମେ ପ୍ରଣାମ କରୁଛୁ ॥୪୫॥ ବିଦ୍ୟାଧରମାନେ କହିଲେ, ବଳବୀର୍ଯ୍ୟଦୃପ୍ତ ମୂର୍ଖ ଅସୁର ଆମର ସଂଯମଲବ୍ଧ ସମସ୍ତ ବିଦ୍ୟାକୁ ବ୍ୟର୍ଥ କରିଦେଇଥିଲା । ମାୟାରୂପ ଧାରଣ କରି ଯଜ୍ଞପଶୁ ପରି ଆପଣ ଯୁଦ୍ଧରେ ତାକୁ ବିନାଶ କରିଛନ୍ତି । ଆପଣଙ୍କୁ ଆମର ନମସ୍କାର ॥୪୬॥ ନାଗମାନେ କହିଲେ, ପାପୀ ରାକ୍ଷସ ଆମର ସବୁ ମଣି ଓ ସୁନ୍ଦରୀ ସ୍ତ୍ରୀମାନଙ୍କୁ ହରଣ କରିନେଉଥିଲା । ଆଜି ତାର ବକ୍ଷ ବିଦାରଣ କରି ଆପଣ ଆମ ସ୍ତ୍ରୀମାନଙ୍କର ଆନନ୍ଦବର୍ଦ୍ଧନ କରିଛନ୍ତି । ଆପଣଙ୍କୁ ଆମେ ନମସ୍କାର କରୁଅଛୁ ॥୪୭॥ ମନୁମାନେ କହିଲେ, ହେ ଦେବ, ଆମେ ମନୁମାନେ ଆପଣଙ୍କର ଆଜ୍ଞାବହ । ଯେଉଁ ଦୈତ୍ୟ ଆମର ବର୍ଣ୍ଣାଶ୍ରମ ଧର୍ମକୁ ନଷ୍ଟ କରି ଦେଇଥିଲା, ସେହି ଦୁଷ୍ଟକୁ ଆପଣ ବିନାଶ କରିଛନ୍ତି । ପ୍ରଭୁ, ଆପଣଙ୍କପାଇଁ ଆମେ କ'ଣ କରିପାରିବୁ, କିଙ୍କରମାନଙ୍କୁ ଆପଣ ଆଦେଶ କରନ୍ତୁ ॥୪୮॥ ପ୍ରଜାପତିମାନେ କହିଲେ, ପରମେଶ୍ୱର, ପ୍ରଜାସୃଷ୍ଟିପାଇଁ ଆପଣ ପ୍ରଜାପତିମାନଙ୍କୁ ସୃଷ୍ଟି କରିଥିଲେ । କିନ୍ତୁ ଦୈତ୍ୟ ଆମକୁ ତାହା କରିବାପାଇଁ ନିଷେଧ କରିଥିଲା । ଆପଣ ତାର ବକ୍ଷ ବିଦାରଣ କରିବାଦ୍ୱାରା ବର୍ତ୍ତମାନ ସେ ମରି ଶୋଇଛି । ମଙ୍ଗଳମୟ, ଜଗତର ମଙ୍ଗଳ ପାଇଁ ଆପଣ ଏହି ଅବତାର ଗ୍ରହଣ କରିଛନ୍ତି ॥୪୯॥ ଗନ୍ଧର୍ବମାନେ କହିଲେ, ହେ ବିଭୁ, ଆମେମାନେ ଆପଣଙ୍କର ନର୍ତ୍ତକ ଏବଂ ନୃତ୍ୟରେ ଗାୟକ । ବଳ-ଗର୍ବିତ ଦୈତ୍ୟ ଆମର ସ୍ୱତନ୍ତ୍ରତାକୁ ହରଣ କରି ନେଇଥିଲା । ଆଜି ସେ ଆପଣଙ୍କ ହାତରେ ମରଣ ଦଶା ଭୋଗ କରିଛି । ବିପଥଗାମୀର କେବେହେଲେ ମଙ୍ଗଳ ହୁଏ ନାହିଁ । (ଆପଣଙ୍କୁ ନମସ୍କାର) ॥୫୦॥ ଚାରଣମାନେ କହିଲେ, ଆପଣଙ୍କର ପାଦ-ପଦ୍ମରେ ଆମେ ଆଶ୍ରିତ । ଆଜି ସାଧୁମାନଙ୍କର ଭୟ ଜାତ କରୁଥିବା ଏହି ଅସୁରକୁ ଆପଣ ବିନାଶ କରିଛନ୍ତି । (ଆପଣଙ୍କୁ ନମସ୍କାର) ॥୫୧॥ ଯକ୍ଷମାନେ କହିଲେ, ପ୍ରଭୁ, ମନୋଜ୍ଞ କର୍ମପାଇଁ ଆମେମାନେ ଆପଣଙ୍କର ମୁଖ୍ୟ ସେବକ ରୂପେ ବିବେଚିତ । କିନ୍ତୁ ହିରଣ୍ୟକଶିପୁ ଆମକୁ ତାର ଶିବିକାବାହକ ଭୃତ୍ୟରୂପେ ବ୍ୟବହାର କରୁଥିଲା । ସେ ଜନଗଣଙ୍କୁ ଅତିଶୟ କଷ୍ଟ ଦେଉଥିବାର ଜାଣି ଆପଣ ତା'ର ପଞ୍ଚତ୍ୱପ୍ରାପ୍ତିର ବ୍ୟବସ୍ଥା କରିଛନ୍ତି । (ଆପଣଙ୍କୁ ପ୍ରଣାମ) ॥୫୨॥ କିଂପୁରୁଷମାନେ କହିଲେ, ପ୍ରଭୁ, ଆମେମାନେ ତୁଚ୍ଛ ପ୍ରାଣୀ । ଆପଣ ମହାପୁରୁଷ । ସାଧୁମାନଙ୍କର ନିନ୍ଦନୀୟ ଏହି ଦୁଷ୍ଟ ଦୈତ୍ୟକୁ ଆପଣ ବିନାଶ କରିଛନ୍ତି । (ଆପଣଙ୍କୁ ନମସ୍କାର) ॥୫୩॥ ବୈତାଳିକଗଣ କହିଲେ, ଭଗବାନ, ଯଜ୍ଞସ୍ଥଳରେ ଓ ସଭାମାନଙ୍କରେ ଆପଣଙ୍କର ନିର୍ମଳ ଯଶ ଗାଇ ଆମେମାନେ ସମ୍ମାନିତ ହେଉ । ଏ ଅସୁର ଆମର ସେହି ସମ୍ମାନ ନଷ୍ଟ କରି ଦେଇଥିଲା । ଶରୀରର ବ୍ୟାଧିପରି ବର୍ଜନୀୟ ସେହି

ଦୁଷ୍ଟ ଦୈତ୍ୟକୁ ଆପଣ ସୌଭାଗ୍ୟକ୍ରମେ ବଧ କରିଛନ୍ତି । ଆପଣଙ୍କୁ ଆମେ ପ୍ରଣାମ କରୁଛୁ ॥୫୪॥ କିନ୍ନରମାନେ କହିଲେ, ହେ ଈଶ୍ୱର, ଆମେମାନେ ଆପଣଙ୍କର ଅନୁଚର । ଦୈତ୍ୟ ହିରଣ୍ୟକଶିପୁ ଆମକୁ ସବୁବେଳେ ବିନା ବେତନରେ କାମରେ ଖଟାଉଥିଲା । ହେ ଶ୍ରୀହରି, ସେହି ପାପାତ୍ମାକୁ ଆପଣ ବିନାଶ କରିଛନ୍ତି । ହେ ନରସିଂହ, ହେ ନାଥ, ଆପଣ ଆମର ମଙ୍ଗଳ କରନ୍ତୁ ॥୫୫॥ ବିଷ୍ଣୁଙ୍କ ପାର୍ଷଦମାନେ କହିଲେ, ଶରଣପଞ୍ଜର, ସମସ୍ତ ଲୋକକୁ ସୁଖପ୍ରଦ ଆପଣଙ୍କର ଏହି ଅଦ୍ଭୁତ ନରସିଂହ ରୂପ ଆମେମାନେ ଆଜି ଦେଖିଲୁ । ହେ ସ୍ୱାମୀ, ଏହି ଦୈତ୍ୟ ବିପ୍ର (ସନକାଦି ଋଷି)ଙ୍କ ଦ୍ୱାରା ଅଭିଶପ୍ତ ହୋଇଥିଲା । ସେ ଆପଣଙ୍କର କିଙ୍କର, ଆପଣ ତାକୁ ବିନାଶ କରି ଶାପମୁକ୍ତ କରିଛନ୍ତି । ଏହା ଆପଣଙ୍କର ଅନୁଗ୍ରହ ଭିନ୍ନ ଅନ୍ୟ କିଛି ନୁହେଁ ॥୫୬॥

## ନବମ ଅଧ୍ୟାୟ

# ପ୍ରହ୍ଲାଦଙ୍କ ସ୍ତୁତି

ନାରଦ କହିଲେ, ଏହିପରି ବ୍ରହ୍ମା ରୁଦ୍ର ଆଦି ଦେବଗଣ ଭଗବାନ ନୃସିଂହଙ୍କର କ୍ରୋଧକୁ ଶାନ୍ତ କରିପାରିଲେ ନାହିଁ କି ତାଙ୍କୁ ସାମନା କରିପାରିଲେ ନାହିଁ । ତାଙ୍କୁ ଶାନ୍ତ କରାଇବାପାଇଁ ଦେବତାମାନେ ସାକ୍ଷାତ୍ ଲକ୍ଷ୍ମୀ ଦେବୀଙ୍କୁ ପଠାଇଲେ । କିନ୍ତୁ ଅଦୃଷ୍ଟପୂର୍ବ, ଅଶ୍ରୁତପୂର୍ବ ତାଙ୍କର ସେହି ଅଦ୍ଭୁତ ରୂପ ଦେଖି ଲକ୍ଷ୍ମୀ ମଧ୍ୟ ଶଙ୍କିଗଲେ ଏବଂ ତାଙ୍କ ଆଗକୁ ଯାଇପାରିଲେ ନାହିଁ ॥୧-୨॥ ବ୍ରହ୍ମାଙ୍କ ନିକଟରେ ପ୍ରହ୍ଲାଦ ଥିଲେ । ତାଙ୍କୁ ପଠାଇ ବ୍ରହ୍ମା କହିଲେ, ବତ୍ସ, ତୁମ ପିତାଙ୍କ ଉପରେ କ୍ରୁଦ୍ଧ ଭଗବାନଙ୍କ ପାଖକୁ ଯାଇ ତାଙ୍କୁ ଶାନ୍ତ କର ॥୩॥ ଯୁଧିଷ୍ଠିର, ମହାଭକ୍ତ ପ୍ରହ୍ଲାଦ 'ଯେ ଆଜ୍ଞା' ବୋଲି କହି ଧୀରେ ଧୀରେ ଭଗବାନଙ୍କ ପାଖକୁ ଗଲେ ଏବଂ କୃତାଞ୍ଜଳି ହୋଇ ତାଙ୍କ ପାଦତଳେ ଲୋଟିଗଲେ ॥୪॥ ନିଜ ପାଦତଳେ ଲୋଟି ପଡ଼ିଥିବା ବାଳକ ପ୍ରହ୍ଲାଦଙ୍କୁ ଦେଖି ଭଗବାନଙ୍କ ହୃଦୟ ଦୟାରେ ଭରିଗଲା । କାଳସର୍ପଭୀତ ମନୁଷ୍ୟକୁ ତାଙ୍କର ଯେଉଁ କରକମଳ ଅଭୟ ଦେଇଥାଏ, ସେହି କରକମଳଦ୍ୱାରା ସେ ତାଙ୍କୁ ଉଠାଇ ନେଇ ତାଙ୍କ ମୁଣ୍ଡକୁ ଆଉଁଶିଦେଲେ ॥୫॥ ତାଙ୍କ କରସ୍ପର୍ଶରେ ପ୍ରହ୍ଲାଦଙ୍କର ସମସ୍ତ ଅମଙ୍ଗଳ ଧୋଇ ହୋଇଗଲା ଏବଂ ସଙ୍ଗେ ସଙ୍ଗେ ତାଙ୍କଠାରେ ତତ୍ତ୍ୱଜ୍ଞାନର ଉଦୟ ହେଲା । ତନୁ ପୁଲକିତ ହେଲା । ଆନନ୍ଦାଶ୍ରୁଧାର ବହିବାକୁ ଲାଗିଲା ଏବଂ ହର୍ଷୋତ୍‌ଫୁଲ୍ଲ ହୋଇ ସେ ନୃସିଂହଙ୍କର ପାଦପଦ୍ମକୁ ହୃଦୟରେ ଜାବୁଡ଼ି ଧରିଲେ ॥୬॥ ସେ ଭଗବାନ ନୃସିଂହଙ୍କୁ ଚାହିଁ ଓ ନିଜର ହୃଦୟକୁ ତାଙ୍କଠାରେ ଅର୍ପଣ କରି ଏକାଗ୍ରଚିତ୍ତରେ ପ୍ରେମଗଦ୍‌ଗଦ ସ୍ୱରରେ ତାଙ୍କୁ ସ୍ତୁତି କରିବାକୁ ଲାଗିଲେ ॥୭॥

ପ୍ରହ୍ଲାଦ ସ୍ତୁତି କଲେ, ବ୍ରହ୍ମାଦି ଦେବତାମାନେ, ମୁନିମାନେ, ସିଦ୍ଧମାନେ ଓ ଏକାଗ୍ରଚିତ୍ତ ଜ୍ଞାନୀମାନେ ନିରବଚ୍ଛିନ୍ନ ଭାବରେ ଶ୍ରୀହରିଙ୍କୁ ସ୍ତୁତି କରି ଓ ତାଙ୍କର ବିବିଧ ଗୁଣାବଳୀ ଗାୟନ କରି ଏପର୍ଯ୍ୟନ୍ତ ତାଙ୍କୁ ସନ୍ତୁଷ୍ଟ କରି ପାରିଲେ ନାହିଁ । ମୁଁ ବା କି ଛାର ! ଅସୁର ଜାତିରେ ମୋର ଜନ୍ମ । ମୁଁ ତାଙ୍କୁ କିପରି ସନ୍ତୁଷ୍ଟ କରିପାରିବି ? ॥୮॥ ମୁଁ ଭାବୁଛି, ଧନ, ଆଭିଜାତ୍ୟ, ରୂପ, ତପସ୍ୟା, ଶାସ୍ତ୍ରଜ୍ଞାନ, ଓଜ, ତେଜ, ପ୍ରତାପ, ବଳ, 'ପୁରୁଷକାର, ବୁଦ୍ଧି ଓ ଯୋଗ ସାଧନାଦ୍ୱାରା ଭଗବାନଙ୍କୁ ଆରାଧନା କରାଯାଇପାରେ ନାହିଁ । କେବଳ ଭକ୍ତିଦ୍ୱାରା ତାଙ୍କୁ ସନ୍ତୁଷ୍ଟ କରାଯାଇପାରେ, ଯେପରିକି ଗଜେନ୍ଦ୍ର କରିପାରିଥିଲା ॥୯॥ ଭଗବାନ ପଦ୍ମନାଭଙ୍କର ପଦ୍ମପାଦପ୍ରତି ବିମୁଖ ଏପରି ଦ୍ୱାଦଶଗୁଣଯୁକ୍ତ ବ୍ରାହ୍ମଣଠାରୁ ଭଗବାନଙ୍କ ପାଦପଦ୍ମରେ ନିଜର ମନ, ବଚନ, କର୍ମ ଓ ପ୍ରାଣ ଅର୍ପଣ କରିଥିବା କୁକୁରମାଂସଭୋଜୀ ଚାଣ୍ଡାଳ ହିଁ ଭଲ । କାରଣ ସେ ନିଜର କୁଳକୁ ଭଗବତ୍‌ଭକ୍ତିଦ୍ୱାରା ପବିତ୍ର କରିଥାଏ । କିନ୍ତୁ ବ୍ରାହ୍ମଣ ନିଜ କୁଳର ଅଭିମାନରେ ହିଁ ରହିଯାଏ ॥୧୦॥ ଭଗବାନ ସ୍ୱୟଂ ପରିପୂର୍ଣ୍ଣ, ଆନନ୍ଦମୟ । ତାଙ୍କ ନିଜର

ଲାଭ ବୋଲି କିଛି ନାହିଁ । ତେଣୁ ତାଙ୍କପାଇଁ ଅଜ୍ଞ ଲୋକର ପୂଜା ସେ ଚାହାନ୍ତି ନାହିଁ । କିନ୍ତୁ ଦୟାମୟ ହୋଇଥିବାଯୋଗୁଁ ତାହା ସେ ଗ୍ରହଣ କରନ୍ତି । ଦର୍ପଣରେ ନିଜର ସ୍ୱରୂପ ପ୍ରତିବିମ୍ବିତ ହେବାପରି ଭକ୍ତ ଭଗବାନଙ୍କୁ ଯାହା କିଛି ଦେଇ ଆରାଧନା କରେ, ତାହା ସେ ତାଙ୍କଠାରୁ ପାଇଥାଏ ॥୧୧॥ ତେଣୁ ମୋର ଯୋଗ୍ୟତା ନ ଥିଲେ ମଧ୍ୟ ସର୍ବାନ୍ତଃକରଣରେ ନିଜର ବୁଦ୍ଧି ଅନୁସାରେ ମୁଁ ତାଙ୍କ ମହିମା କୀର୍ତ୍ତନ କରୁଛି । ଅବିଦ୍ୟାଯୋଗୁଁ ସଂସାରଚକ୍ରରେ ପଡ଼ିଥିବା ଜୀବ ତାଙ୍କ ଗୁଣକୀର୍ତ୍ତନର ପ୍ରଭାବରେ ପବିତ୍ର ହୋଇଯାଏ ॥୧୨॥

ହେ ଈଶ୍ୱର, ଆପଣ ସତ୍ତ୍ୱଗୁଣର ଧାମ । ଉଦ୍‌ବିଗ୍ନ ଅବସ୍ଥାରେ ଥିବା ବ୍ରହ୍ମା ଆଦି ଦେବତାମାନେ ଆପଣଙ୍କର ଆଜ୍ଞାକାରୀ ଭକ୍ତ । ଅସୁରମାନଙ୍କ ପରି ସେମାନେ ଆପଣଙ୍କୁ ଦ୍ୱେଷ କରନ୍ତି ନାହିଁ । ବିଶ୍ୱର ମଙ୍ଗଳ ଓ ଉନ୍ନତିସାଧନପାଇଁ ଓ ଆତ୍ମାର ସୁଖ ନିମନ୍ତେ ଆପଣ ଭିନ୍ନ ଭିନ୍ନ ସୁନ୍ଦର ଲୀଳା-ଅବତାର ଗ୍ରହଣ କରନ୍ତି ॥୧୩॥ ନୃସିଂହ ଦେବ, ଆପଣ କ୍ରୋଧ ପରିହାର କରନ୍ତୁ । ଯେଉଁ ଅସୁରକୁ ମାରିବାପାଇଁ ଆପଣ କ୍ରୋଧ କରିଥିଲେ, ସେ ଆଜି ନିହତ ହୋଇଛି । ବିଛା କିମ୍ବା ସାପ ମଲେ , ଯେପରି ସାଧୁଲୋକେ ଖୁସି ହୁଅନ୍ତି, ସେହିପରି ଦୈତ୍ୟର ମୃତ୍ୟୁରେ ଲୋକମାନେ ସମସ୍ତେ ସନ୍ତୁଷ୍ଟ ହୋଇଛନ୍ତି । ଏବେ ସେମାନେ ଆପଣଙ୍କର ଶାନ୍ତ ରୂପକୁ ଦେଖିବାକୁ ଚାହାନ୍ତି । ଭୟରୁ ମୁକ୍ତିପାଇଁ ଲୋକମାନେ ଆପଣଙ୍କର ଏହି ନୃସିଂହ ରୂପକୁ ସ୍ମରଣ କରିବେ ॥୧୪॥ ଅଜେୟ, ଆପଣଙ୍କର ଭୟାନକ ମୁଖ, ଜିହ୍ୱା, ସୂର୍ଯ୍ୟପରି ଜଳୁଥିବା ଚକ୍ଷୁ, ଭ୍ରୂକୁଟୀର କୁଞ୍ଚନ, ତୀକ୍ଷ୍ଣ ଦନ୍ତାବଳି, ରାକ୍ଷସର ଅନ୍ତନାଡ଼ିକୁ ମାଳାରୂପେ ଧାରଣ, ଦିଗ୍‌ଗଜମାନଙ୍କର ଭୟଜନକ ଆପଣଙ୍କ ବିକଟାଳ ରଡ଼ି, ବର୍ଚ୍ଛାପରି ସିଧା ହୋଇ ଠିଆ ହୋଇଥିବା ଆପଣଙ୍କର କାନ ଏବଂ ଶତ୍ରୁକୁ ବିଦାରଣ କରିବାପାଇଁ ଆପଣଙ୍କ ତୀକ୍ଷ୍ଣ ନଖସବୁ ଦେଖି ମୁଁ ଭୟଭୀତ ହେଉ ନାହିଁ ॥୧୫॥ ଦୟାମୟ, ମୁଁ ଏଥିପାଇଁ ଭୟଭୀତ ଯେ ଏହି ଦୁଃସହ ସଂସାରଚକ୍ରର ଦାରୁଣ ଯନ୍ତ୍ରଣାରେ ପଡ଼ି ମୁଁ ଛଟପଟ ହେଉଚି । କର୍ମବଶରୁ ତମୋମୟ ଅସୁରଜନ୍ମ ଲାଭ କରିଚି । ହେ କମନୀୟ, ମୁଁ ଜାଣେ ନାହିଁ, ସମସ୍ତ ଜୀବଙ୍କର ଶରଣପଞ୍ଜର ଓ ମୋକ୍ଷପ୍ରଦ ଆପଣଙ୍କର ପାଦପଦ୍ମକୁ ମୋତେ କେବେ ଡାକିନେବେ ॥୧୬॥ ଅନନ୍ତ, ମୁଁ ଯେଉଁସବୁ ଯୋନିରେ ଜନ୍ମ ନେଇଛି, ସେଥିରେ ପ୍ରିୟର ବିୟୋଗ ଓ ଅପ୍ରିୟର ସଂଯୋଗଜନିତ ଶୋକ ଅଗ୍ନିପରି ହୋଇ ମୋତେ ଦଗ୍ଧ କରିବାରେ ଲାଗିଚି । ଏହି ଶୋକକୁ ଉପଶମ କରିବାର ଔଷଧ ନାହିଁ । ଯାହା ଅଛି (ଧନାର୍ଜନ ଆଦି) ତାହା ଆହୁରି ଦୁଃଖମୟ । ତେଣୁ ହେ ପ୍ରଭୁ, ଏହାର ଏକମାତ୍ର ନିଦାନ, ଆପଣଙ୍କ ଦାସ ହେବାର ସୁଯୋଗ ଦେଇ ମୋତେ କୃତାର୍ଥ କରନ୍ତୁ ॥୧୭॥ ନୃସିଂହ ଦେବ, ଆପଣ ମୋର ପ୍ରିୟ, ହିତକାମୀ ସୁହୃଦ୍ । ଆପଣଙ୍କର ପାଦପଦ୍ମକୁ ଆଶ୍ରୟ କରିଥିବା ମହାଜ୍ଞାନୀ ଭକ୍ତମାନଙ୍କର ସଙ୍ଗଲାଭ ଦ୍ୱାରା ମୁଁ ରାଗାଦି ପ୍ରାକୃତ ଗୁଣରୁ ମୁକ୍ତ ହୋଇପାରିବି । ସ୍ୱୟଂ ବ୍ରହ୍ମା ଆପଣଙ୍କର ଯେଉଁ ଲୀଳା କଥା ସବୁ ଗାନ କରିଛନ୍ତି, ତାହା ଗାଇ ଗାଇ ମୁଁ ଏହି ଦୁଃସହ ସଂସାରଦୁଃଖରୁ ତରିଯିବି ॥୧୮॥ ହେ ନୃସିଂହ, ସଂସାରରେ ଦୁଃଖତପ୍ତ ବ୍ୟକ୍ତିର ଦୁଃଖର ପ୍ରତିକାର ଆପଣ ହିଁ କରିପାରନ୍ତି । ଆପଣଙ୍କୁ ଉପେକ୍ଷା କରି କୌଣସି ବ୍ୟକ୍ତିର ଦୁଃଖ ଦୂର ହେବ ନାହିଁ । ପିତାମାତା ସନ୍ତାନକୁ (ମୃତ୍ୟୁରୁ) ରକ୍ଷା କରିପାରନ୍ତି ନାହିଁ; ଔଷଧ ରୋଗୀକୁ ରକ୍ଷା କରିପାରେ ନାହିଁ; ସମୁଦ୍ରରେ ବୁଡ଼ିଯାଉଥିବା ବ୍ୟକ୍ତିକୁ ନୌକା ରକ୍ଷା କରିପାରେ ନାହିଁ । ଆପଣଙ୍କ କରୁଣା ହିଁ ଦୁଃଖନିବୃତ୍ତିର ଏକମାତ୍ର ଉପାୟ ॥୧୯॥ ପ୍ରଭୁ, ଇହଲୋକରେ ପିତାମାତା ଓ ପରଲୋକରେ ବ୍ରହ୍ମାଦି ଦେବତା କର୍ତ୍ତାରୂପେ ଆପଣଙ୍କଦ୍ୱାରା ପ୍ରେରିତ ହୁଅନ୍ତି । ଆପଣଙ୍କ ପ୍ରେରଣାରେ ସେମାନେ ଯେଉଁ ଆଧାରମଧ୍ୟରେ ରହି, ଯେଉଁ କାରଣରୁ ଯେଉଁ କାଳରେ ଯେଉଁସବୁ ଉପକରଣଦ୍ୱାରା ଯେଉଁ ବିଧିରେ ଯାହାକିଛି ଉତ୍ପନ୍ନ କରନ୍ତି ଏବଂ ଯାହାକିଛି ଉତ୍ପନ୍ନ ହୋଇ ରୂପାନ୍ତରିତ ହୁଏ, ସେ ସବୁ ଆପଣଙ୍କର ସ୍ୱରୂପ ॥୨୦॥ ଆପଣଙ୍କର ଅଂଶ ପୁରୁଷର ଅନୁମତିରେ (ଈକ୍ଷଣରୂପକ ଅନୁଗ୍ରହଦ୍ୱାରା) କାଳଦ୍ୱାରା ଗୁଣରେ କ୍ଷୋଭ ଘଟିଲେ ମାୟା ଲିଙ୍ଗଶରୀରକୁ ନିର୍ମାଣ କରେ; ମନ ହେଉଚି ଏହାର ପ୍ରଧାନ ଆଶ୍ରୟ । ଏହି ବଳବାନ୍, କର୍ମମୟ ଲିଙ୍ଗଶରୀର ଅନେକ ନାମରୂପରେ ଆସକ୍ତ ଥିବା ହେତୁ ବେଦୋକ୍ତ କର୍ମମାନଙ୍କରେ ଲାଗି

ରହିଥାଏ । ହେ ଅଜନ୍ମା, ଅବିଦ୍ୟାଦ୍ୱାରା ଅର୍ପିତ ଷୋଡ଼ଶ ଅରସ୍ୱରୂପ ଷୋଡ଼ଶ ବିକାରଯୁକ୍ତ ମନରୂପକ ଏହି ସଂସାରଚକ୍ରରୁ ଆପଣଙ୍କ ଜୀବକୁ କିଏ ଉଦ୍ଧାର କରିବ ? ॥୨୧॥ ପ୍ରଭୁ, ଆଖୁ ପେଡ଼ିହେବା ପରି ଷୋଳଟି ଅର (ଷୋଡ଼ଶ ବିକାର) ଯୁକ୍ତ ଏହି ସଂସାରଚକ୍ରରେ ମୁଁ ମାୟାଦ୍ୱାରା ପେଷି ହୋଇଯାଉଚି । ଆପଣ ଜ୍ଞାନଶକ୍ତିଦ୍ୱାରା ବୁଦ୍ଧିର ଗୁଣସବୁକୁ ନିତ୍ୟ ପରାଜିତ କରିଛନ୍ତି । ଯେହେତୁ ଆପଣ ମାୟାପ୍ରେରକ କାଳ, ଅତଏବ ଆପଣ କାର୍ଯ୍ୟଶକ୍ତି ଓ ସାଧନଶକ୍ତିକୁ ବଶ କରିଛନ୍ତି । ମୁଁ ଆପଣଙ୍କ ଶରଣାଗତ । ଦୟାପରବଶ ହୋଇ ମୋତେ ଏହି ସଂସାର ଚକ୍ରରୁ ଉଦ୍ଧାର କରନ୍ତୁ ଏବଂ ମୋତେ ଆପଣଙ୍କ ନିକଟକୁ ନେଇଯାଆନ୍ତୁ ॥୨୨॥ ବିଭୁ, ଯେଉଁ ସ୍ୱର୍ଗସୁଖପାଇଁ ସଂସାରୀ ଲୋକ ଲାଳାୟିତ, ଦିଗପାଳମାନଙ୍କର ସେ ଆୟୁ, ଐଶ୍ୱର୍ଯ୍ୟ, ବିଭବ ମୁଁ ସବୁ କିଛି ଦେଖିନେଇଚି । ମୋର ପିତା କ୍ରୋଧରେ ବା ଉପହାସରେ ତାଙ୍କ ଭ୍ରୂକୁଟି କୁଞ୍ଚନ କଲେ, ସେଥିରେ ଭୟଭୀତ ଏହି ଦିଗପାଳମାନଙ୍କର ସମସ୍ତ ଆସ୍ପର୍ଦ୍ଧା ପାଣି ଫାଟିଯାଏ । ଏପରି (ଶକ୍ତିଶାଳୀ) ମୋର ପିତା ମଧ୍ୟ ଆପଣଙ୍କଦ୍ୱାରା ବିନଷ୍ଟ ହେଲେ ॥୨୩॥ ସେଥିପାଇଁ ସଂସାରୀଙ୍କର ଅଭିଳଷିତ ବ୍ରହ୍ମଲୋକପର୍ଯ୍ୟନ୍ତ ଆୟୁ, ବିଭବ, ଐଶ୍ୱର୍ଯ୍ୟ ଓ ଇନ୍ଦ୍ରିୟଭୋଗାଦି ମୁଁ ଇଛା କରେ ନାହିଁ । କାରଣ ମୁଁ ଜାଣେ ଯେ ଶକ୍ତିଶାଳୀ କାଳର ରୂପ ଧାରଣ କରି ଆପଣ ତାକୁ ହରଣ କରିନିଅନ୍ତି । ଆପଣଙ୍କ ପାଖରେ ମୋତେ ଭୃତ୍ୟ ଭାବରେ ରଖନ୍ତୁ, ଏହା ହିଁ ମୁଁ ଚାହେ ॥୨୪॥ ଏସବୁ ଶ୍ରୁତିମଧୁର ମୃଗତୃଷ୍ଣାତୁଲ୍ୟ ଭୋଗସୁଖରେ କଣ ବା ଅଛି ? ଅଶେଷ ରୋଗର ଆଧାର ଏ ଶରୀରରେ ବା କଣ ଅଛି ? କିନ୍ତୁ ଏହା ଜାଣି ମଧ୍ୟ ଲୋକ କଷ୍ଟଲଭ୍ୟ ସାମାନ୍ୟ ସୁଖ କଣିକାଏଦ୍ୱାରା କାମନାର ଅଗ୍ନିକୁ ନିଭାଇବାପାଇଁ ଚେଷ୍ଟା କରୁଚି । କିନ୍ତୁ ତା'ର ବିଷୟ ଭୋଗ ପ୍ରତି ବିତୃଷ୍ଣା ଆସୁନାହିଁ ॥୨୫॥ ହେ ଈଶ, ତମୋଗୁଣସମ୍ପନ୍ନ ଅସୁରକୁଳରେ ରଜୋଗୁଣ ଦ୍ୱାରା ମୁଁ ଜନ୍ମଲାଭ କରିଚି । ମୁଁ କେଉଁଠି ଏବଂ ଅନନ୍ତ କରୁଣାର ଅଧିକାରୀ ଆପଣ କେଉଁଠି ? ଆପଣ ମୋ ମୁଣ୍ଡରେ ହାତ ରଖି ମୋତେ ଯେପରି ଅନୁଗୃହୀତ କରୁଛନ୍ତି, ବ୍ରହ୍ମା, ଶିବ ଓ ଲକ୍ଷ୍ମୀ ଆପଣଙ୍କଠାରୁ ସେପରି ଅନୁଗ୍ରହ ଲାଭ କରି ନାହାନ୍ତି ॥୨୬॥ ସଂସାରୀ ଜୀବମାନଙ୍କ ପରି ଆପଣଙ୍କ ପାଖରେ ଛୋଟ ବଡ଼ ଭେଦଭାବ ନ ଥାଏ । କାରଣ ଆପଣ ସମସ୍ତଙ୍କର ଆତ୍ମା, ସମସ୍ତଙ୍କର ବନ୍ଧୁ । ତଥାପି କଳ୍ପବୃକ୍ଷ ପରି ଆପଣ ସେବା ଅନୁରୂପ ଫଳ ଦାନ କରନ୍ତି । ଉଚ୍ଚ ନୀଚ ଭେଦଭାବରୁ ନୁହେ ॥୨୭॥ ପ୍ରଭୁ, ସଂସାରରୂପକ କୂପରେ କାଳସର୍ପ ଜଗି ରହିଚି । କାମବାସନା ଭୋଗ ଇଛାରେ ସଂସାରୀ ଜୀବମାନେ ତାହା ମଧ୍ୟରେ ପଡ଼ି ଛଟପଟ ହେଉଛନ୍ତି । ମୁଁ ମଧ୍ୟ ସେମାନଙ୍କୁ ଅନୁସରଣ କରି ସେହି ସର୍ପଯୁକ୍ତ କୂପରେ ପଡ଼ିବାକୁ ଯାଉଥିଲି । ମାତ୍ର ମହର୍ଷି ନାରଦ ସଦୟ ହୋଇ ମୋତେ ସେଥିରୁ ରକ୍ଷା କରିଛନ୍ତି । ତେଣୁ ଆପଣଙ୍କ ଭକ୍ତମାନଙ୍କର ସେବା ମୁଁ କିପରି ଛାଡ଼ି ପାରିବି ? ॥୨୮॥ ଅନନ୍ତ, ଅତ୍ୟନ୍ତ ଗର୍ହିତ କାର୍ଯ୍ୟରେ ପ୍ରବୃତ୍ତ ମୋର ପିତା ଖଡ୍ଗ ଧାରଣ କରି, 'ମୋ'ଛଡ଼ା କେଉଁ ଈଶ୍ୱର ଅଛି, ତୋତେ ଏବେ ରକ୍ଷା କରୁ ମୁଁ ତୋର ଶିର ଛେଦନ କରୁଛି' ବୋଲି କହି ଯେତେବେଳେ ଦଉଡ଼ି ଆସିଲେ, ସେତେବେଳେ ପିତାଙ୍କୁ ବଧ କରି ଆପଣ ମୋର ପ୍ରାଣରକ୍ଷା କରିଛନ୍ତି ଏବଂ ନିଜର ଭୃତ୍ୟ (ଜୟ ବିଜୟ)ଙ୍କୁ ଦେଇଥିବା କଥା ଓ ଋଷି (ସନକାଦି)ଙ୍କର ବାକ୍ୟକୁ ସତ୍ୟ ପ୍ରମାଣିତ କରିଛନ୍ତି ॥୨୯॥ ଆପଣ ହିଁ ଏହି ଜଗତ୍‌ର ଏକମାତ୍ର ସ୍ୱରୂପ । ସୃଷ୍ଟିର ଆଦିରେ ଆପଣ ଥିଲେ, ଅନ୍ତରେ ରହିବେ ଏବଂ ମଝିରେ ମଧ୍ୟ ରହିଛନ୍ତି । କାରଣ ମାୟାଦ୍ୱାରା ଗୁଣର ବିକାରରୂପକ ଏହି ଜଗତ୍‌କୁ ସୃଷ୍ଟିକରି ତାହା ମଧ୍ୟରେ ଆପଣ ପ୍ରବେଶ କରିଛନ୍ତି । ସତ୍ତ୍ୱଗୁଣଦ୍ୱାରା ସୃଷ୍ଟି, ରଜୋଗୁଣଦ୍ୱାରା ପାଳନ ଓ ତମୋଗୁଣଦ୍ୱାରା ଆପଣ ସଂହାର କରନ୍ତି । ସେଇସବୁ ଗୁଣଦ୍ୱାରା ନାନା ରୂପରେ ପ୍ରତୀତ ହେଲେ ମଧ୍ୟ ଆପଣ ଏକ ଏବଂ ଅଦ୍ୱିତୀୟ ॥୩୦॥ ପରମେଶ୍ୱର, କାର୍ଯ୍ୟକାରଣ ରୂପ ଏହି ଦୃଶ୍ୟମାନ ଜଗତ୍ ଆପଣଙ୍କଠାରୁ ଭିନ୍ନ ନୁହେ; ଏହା ଆପଣଙ୍କର ଶରୀର ସ୍ୱରୂପ । କିନ୍ତୁ ଆପଣ ଏହାଠାରୁ ଭିନ୍ନ । କାରଣ ଏହାର ଉତ୍ପତ୍ତି ଓ ବିନାଶ ପରେ ହିଁ ଆପଣ ସ୍ୱତନ୍ତ୍ରଭାବରେ ଅବସ୍ଥାନ କରନ୍ତି । ଜୀବର ନିଜପର ବୁଦ୍ଧି ମାୟାମାତ୍ର । ଯାହାଠାରୁ ଜଗତର ଉତ୍ପତ୍ତି, ପ୍ରକାଶ, ସ୍ଥିତି ଓ ସଂହାର ଘଟେ, ସେ ହିଁ ଜଗତ୍‌ର ସ୍ୱରୂପ । ବୀଜରୁ ଅଙ୍କୁରର ଉଦ୍‌ଗମ ହେଉଥିବାଯୋଗୁଁ ଅଙ୍କୁର ବୀଜଠାରୁ ଭିନ୍ନ ନୁହେ । ତାହା ହେଉଚି

ବୀଜର ସ୍ୱରୂପ । ସେହିପରି ଜଗତ୍ ମଧ୍ୟ ଆପଣଙ୍କର ସ୍ୱରୂପ ।।୩୧।। ଭଗବାନ, ଆପଣ ଏହି ଜଗତ୍‌କୁ ନିଜ ମଧ୍ୟରେ ଲୀନ କରି ନିଷ୍କ୍ରିୟ ହୋଇଯା'ନ୍ତି ଏବଂ ଆତ୍ମସୁଖରେ ପ୍ରଳୟପୟୋଧି ଜଳରେ ଶୟନ କରନ୍ତି । ଏହା ଆପଣଙ୍କର ଯୋଗନିଦ୍ରା । ଆପଣଙ୍କର ଆଖି ବନ୍ଦ ଥିଲେ ମଧ୍ୟ ଜାଗ୍ରତ୍, ସ୍ୱପ୍ନ ଓ ସୁଷୁପ୍ତିର ବାହାରେ ତୁରୀୟ ଅବସ୍ଥାରେ ରହି ଆପଣ ଆତ୍ମାନନ୍ଦ ଅନୁଭବ କରୁଥା'ନ୍ତି ।।୩୨।। ଆପଣ କାଳଶକ୍ତି ଦ୍ୱାରା ପ୍ରକୃତିର ସତ୍ତ୍ୱାଦି ଗୁଣକୁ ନିୟୋଜିତ କରି ଏହି ବ୍ରହ୍ମାଣ୍ଡକୁ ରଚନା କରନ୍ତି । କିନ୍ତୁ ପ୍ରଳୟ ସମୟରେ ଯୋଗନିଦ୍ରାଗତ ଆପଣଙ୍କ ମଧ୍ୟରେ ଏହା ଲୀନ ହୋଇଯାଏ । ଯେତେବେଳେ ଏହି ଯୋଗନିଦ୍ରାର ସମାଧି ଭାଙ୍ଗେ, ସେତେବେଳେ ବଟ ମଞ୍ଜିରୁ ବିଶାଳ ବଟ ବୃକ୍ଷ ଜନ୍ମ ନେବା ପରି ଆପଣଙ୍କ ନାଭିରୁ ପୁଣି ବ୍ରହ୍ମାଣ୍ଡରୂପ କମଳର ଜନ୍ମ ହୁଏ ।।୩୩।। ସେହି ପଦ୍ମରୁ ବ୍ରହ୍ମାଙ୍କର ଜନ୍ମ । କିନ୍ତୁ ବ୍ରହ୍ମା ପଦ୍ମଛଡ଼ା ଆଉ କିଛି ଦେଖି ପାରିଲେ ନାହିଁ । ସେ ସମୟରେ ସେ ଚିନ୍ତା କଲେ ଏହି ପଦ୍ମର ଉପାଦାନ କେଉଁଠି ? ସେ କମଳର ନାଡ଼କୁ ଆଶ୍ରୟ କରି ଶହେ ବର୍ଷପର୍ଯ୍ୟନ୍ତ ପାଣିରେ ବୁଡ଼ି ଖୋଜିବାକୁ ଲାଗିଲେ, କିନ୍ତୁ ତାହାର ବୀଜକୁ ପାଇଲେ ନାହିଁ । ଅଙ୍କୁର ଉଦ୍‌ଗମ ହେବାପରେ ଆଉ ବୀଜର ସତ୍ତା ରହେ ନାହିଁ । କାରଣ ତାହା ଅଙ୍କୁରର ରୂପ ଗ୍ରହଣ କରେ । ତେଣୁ ବ୍ରହ୍ମା ଖୋଜିଲେ ମଧ୍ୟ ତାଙ୍କୁ ତାହା ମିଳନ୍ତା କିପରି ? ।।୩୪।।

ତେଣୁ ଅଯୋନିସମ୍ଭୂତ ବ୍ରହ୍ମା ଆଶ୍ଚର୍ଯ୍ୟାନ୍ୱିତ ହେଲେ । ସେ ପଦ୍ମ ଉପରେ ବସି ବହୁକାଳ ଘୋର ତପସ୍ୟା ଦ୍ୱାରା ଆତ୍ମାକୁ ଶୁଦ୍ଧ କଲେ । ତାପରେ ଯାଇ ପୃଥିବୀରେ ଗନ୍ଧରୂପକ ସୂକ୍ଷ୍ମ ତନ୍ମାତ୍ର ଜଡ଼ିତ ହେବାପରି ସେ ଭୂତ, ଇନ୍ଦ୍ରିୟ ଓ ଅନ୍ତଃକରଣ ରୂପ ନିଜ ଶରୀର ସହିତ ଓତପ୍ରୋତ ଭାବରେ ଜଡ଼ିତ ନିଜର ସୂକ୍ଷ୍ମ ରୂପକୁ ଦର୍ଶନ କଲେ ।।୩୫।। ସହସ୍ର ମୁଖ, ଚରଣ, ମସ୍ତକ, ହସ୍ତ, ଜଙ୍ଘ, ନାକ, କାନ, ନେତ୍ର ସହିତ ଅଳଙ୍କାର ଓ ଆୟୁଧଯୁକ୍ତ ବିରାଟ ପୁରୁଷଙ୍କୁ ଦର୍ଶନ କଲେ । ତାଙ୍କର ପାଦ ପାତାଳପର୍ଯ୍ୟନ୍ତ ବ୍ୟାପ୍ତ ଥିଲା । ସେହି ମାୟାମୟ ବିଶାଳ ମୂର୍ତ୍ତିକୁ ଦର୍ଶନ କରି ବ୍ରହ୍ମା ଆହ୍ଲାଦିତ ହେଲେ ।।୩୬।। ରଜୋଗୁଣ ଓ ତମୋଗୁଣର ପ୍ରତୀକ ମଧୁ ଓ କୈଟଭ ନାମକ ଅତି ବଳବାନ୍ ଦୈତ୍ୟଦ୍ୱୟ ବେଦକୁ ଅପହରଣ କରିନେଇଥିଲେ । ଆପଣ ହୟଗ୍ରୀବ ମୂର୍ତ୍ତି ଧାରଣ ପୂର୍ବକ ସେ ଦୁହିଁଙ୍କୁ ନିହତ କରି ବେଦକୁ ଉଦ୍ଧାର କରିଥିଲେ ଓ ବ୍ରହ୍ମାଙ୍କୁ ତାହା ସମର୍ପଣ କରିଥିଲେ । ସତ୍ତ୍ୱଗୁଣ ଯେ ଆପଣଙ୍କର ପ୍ରିୟତମ ମୂର୍ତ୍ତି ତାହା ଋଷିମାନେ କୀର୍ତ୍ତନ କରିଥା'ନ୍ତି ।।୩୭।। ମହାପୁରୁଷ, ଏହିପରି ଆପଣ ମନୁଷ୍ୟ, ପଶୁ ପକ୍ଷୀ, ଋଷି, ଦେବତା ଏବଂ ମତ୍ସ୍ୟ ଆଦି ଅବତାର ଗ୍ରହଣ କରି ଲୋକମାନଙ୍କୁ ରକ୍ଷା କରନ୍ତି ଏବଂ ଜଗତ୍‌ର ଶତ୍ରୁମାନଙ୍କୁ ସଂହାର କରନ୍ତି । ଆପଣ ପ୍ରତ୍ୟେକ ଯୁଗରେ ଯୁଗାନୁବୃତ୍ତ ଧର୍ମକୁ ରକ୍ଷା କରି ଆସୁଥିବାରୁ ଆପଣ ତ୍ରିଯୁଗ ନାମରେ ଖ୍ୟାତ । କାରଣ (ଚତୁର୍ଥ ଯୁଗ) କଳିଯୁଗରେ ଆପଣ ଲୁକ୍କାୟିତଭାବରେ ରହିଥା'ନ୍ତି ।।୩୮।। ବୈକୁଣ୍ଠନାଥ । ମୋର ମନ ଦୂଷିତ, ଦୁର୍ଗତ, ଅତିଶୟ ଅସାଧୁ, କାମାତୁର, ହର୍ଷ ଶୋକ ଓ ଭୟଦ୍ୱାରା ପୀଡ଼ିତ । ତେଣୁ ଏପରି ଦୀନ ଅବସ୍ଥାରେ ଆପଣଙ୍କ ଲୀଳାକଥା ଶ୍ରବଣ ଦ୍ୱାରା ମୋତେ ଆନନ୍ଦ ମିଳୁ ନାହିଁ । ଏହି ଦୁଷ୍ଟ ମନଦ୍ୱାରା ମୁଁ କିପରି ଆପଣଙ୍କ ସ୍ୱରୂପ ଚିନ୍ତା କରିପାରିବି ? ।।୩୯।। ଅଚ୍ୟୁତ, କେବେହେଲେ ମୋର ଜିହ୍ୱାର ତୃପ୍ତି ନାହିଁ । ସବୁବେଳେ ସେ ମଧୁର ରସପ୍ରତି ଆକୃଷ୍ଟ । ଜନନେନ୍ଦ୍ରିୟ କାମିନୀ ପ୍ରତି, ଚର୍ମ କୋମଳବସ୍ତୁର ସ୍ପର୍ଶପ୍ରତି, ପେଟ ଭୋଜନ ପ୍ରତି, କାନ ଗାଉଣା ବାଜଣା ପ୍ରତି, ନାକ ସୁଗନ୍ଧଦ୍ରବ୍ୟ ପ୍ରତି, ଚଞ୍ଚଳ ଦୃଷ୍ଟି ସୁନ୍ଦର ଦୃଶ୍ୟପ୍ରତି ସବୁବେଳେ ମୋତେ ଆକୃଷ୍ଟ କରୁଚି । ଅନ୍ୟ କର୍ମେନ୍ଦ୍ରିୟମାନେ ନିଜ ନିଜ ବ୍ୟାପାରରେ ମୋତେ ଟାଣିନେବା ପାଇଁ ଚେଷ୍ଟା କରୁଛନ୍ତି । ବହୁପତ୍ନୀକ ବ୍ୟକ୍ତିକୁ ତା'ର ପତ୍ନୀମାନେ ନିଜ ନିଜର ଶୟନକକ୍ଷକୁ ଟାଣୁଥିବାପରି ମୋର ଅବସ୍ଥା ହୋଇଚି ।।୪୦।। ଯମଦ୍ୱାର ନିକଟରେ ଯେଉଁ ବିଷ୍ଠାମୂତ୍ରଶୋଣିତରେ ପୂର୍ଣ୍ଣ ତପ୍ତ ବୈତରଣୀ ନଦୀ ପ୍ରବାହିତ ହେଉଚି, ଏହି ସଂସାର ହେଉଚି ତାହା ସହିତ ସମାନ । ନିଜ କର୍ମଦୋଷରେ ଜୀବ ତାହା ମଧ୍ୟରେ ପଡ଼ିଚି । ଜନ୍ମ-ମରଣ-କ୍ଷୁଧା-ପିପାସାରୂପ ଆବର୍ତ୍ତ ମଧ୍ୟରେ ପଡ଼ି କାହା ସହିତ ମିତ୍ରତା କରୁଚି ତ କାହା ସହିତ ଶତ୍ରୁତା । ହେ ତ୍ରାଣକର୍ତ୍ତା, ଆପଣ ଏହି ନଦୀର ସେ ପାରିରେ ରହିଛନ୍ତି । ଅତି ଦୁଃଖ କଷ୍ଟରେ ଥିବା ଏହି ଜୀବମାନଙ୍କ ପ୍ରତି ସଦୟ ହୋଇ ଆପଣ ସେମାନଙ୍କୁ ପାରି କରନ୍ତୁ ।।୪୧।।

ଜଗତ୍‌ଗୁରୁ ଭଗବାନ୍, ଆପଣ ସମସ୍ତ ଲୋକଙ୍କୁ ଉଦ୍ଧାର କରିବାକୁ ସମର୍ଥ । କାରଣ ଆପଣ ଏକାକୀ ଏହି ଜଗତ୍‌ର ସୃଷ୍ଟି, ସ୍ଥିତି ଓ ଲୋପ କରିପାରନ୍ତି । ମୂଢ଼ଜନଙ୍କ ପ୍ରତି ମହାପୁରୁଷଙ୍କର ଅପାର ଅନୁଗ୍ରହ ରହିଥାଏ । ଆର୍ତ୍ତବନ୍ଧୁ, ମୁଁ ଆମମାନଙ୍କ କଥା କହୁ ନାହିଁ । କାରଣ ଆମେ ତ ଆପଣଙ୍କ ଭକ୍ତମାନଙ୍କ ସେବାରେ ସନ୍ତୁଷ୍ଟ ॥୪୨॥ ସର୍ବୋତ୍ତମ, ଏହି ଦୁସ୍ତର ବୈତରଣୀ ପାର ହେବାପାଇଁ ମୁଁ ଉଦ୍‌ବିଗ୍ନ ନୁହେ । କାରଣ ମୁଁ ଆପଣଙ୍କ ମହିମାକୀର୍ତ୍ତନରୂପକ ଅମୃତରସର ଆସ୍ୱାଦନରେ ନିମଗ୍ନ । କିନ୍ତୁ ଯେଉଁ ମୂଢ଼ଜନମାନେ ଆପଣଙ୍କ ଗୁଣ କୀର୍ତ୍ତନପ୍ରତି ବିମୁଖ ହୋଇ ଇନ୍ଦ୍ରିୟସୁଖର ଚରିତାର୍ଥ ପାଇଁ ମାୟାମୟ ସଂସାରରେ ଘାଣ୍ଟି ହେଉଛନ୍ତି, ସେହିମାନଙ୍କ ଉଦ୍ଧାରକଥା ମୁଁ ଚିନ୍ତା କରୁଚି ॥୪୩॥ ହେ ଦେବ ମୁନିମାନେ କେବଳ ନିଜର ମୁକ୍ତିପାଇଁ ନିର୍ଜନ ବନରେ ମୌନବ୍ରତ ଅବଲମ୍ବନ କରି ତପସ୍ୟା କରୁଥା'ନ୍ତି । ଅନ୍ୟମାନଙ୍କ କଥା ସେମାନେ ଚିନ୍ତା କରନ୍ତି ନାହିଁ । ସେହି ଦୀନହୀନ, ସାଧନବିମୁଖ ଲୋକମାନଙ୍କୁ ତ୍ୟାଗ କରି ମୁଁ ଏକାକୀ ମୁକ୍ତି କାମନା କରେ ନାହିଁ । ଏହି ଦୀନଜନଙ୍କର ଆପଣ ଏକମାତ୍ର ଆଶ୍ରୟସ୍ଥଳ । ଆପଣଙ୍କ ଛଡା ଭ୍ରମରେ ମଧ୍ୟ ଅନ୍ୟ କାହାରିକୁ ମୁଁ ଦେଖିପାରୁ ନାହିଁ ॥୪୪॥ ଗୃହସ୍ଥ ମୈଥୁନାଦି ତୁଚ୍ଛ ସୁଖରେ ବିଭୋର ହୁଏ । ହାତ କୁଣ୍ଡେଇ ହେଲେ ପ୍ରଥମେ ଟିକିଏ ଭଲ ଲାଗେ, କିନ୍ତୁ ପରେ ଭାରି ପୋଡ଼ିହୁଏ । ତେଣୁ ଏହି ତୁଚ୍ଛ ସୁଖରେ ଗୃହସ୍ଥଙ୍କୁ ପ୍ରକୃତ ତୃପ୍ତି ମିଳେ ନାହିଁ ଏବଂ ତାହା ତାର ଅତିଶୟ ଦୁଃଖର କାରଣ ହୋଇଥାଏ । ତେଣୁ ବିଜ୍ଞ ବ୍ୟକ୍ତି କଣ୍ଡୁପରି ଏହି କାମବାସନାକୁ ସହି ନିଅନ୍ତି (କୁଣ୍ଡେଇ ହୁଅନ୍ତି ନାହିଁ, ଅର୍ଥାତ୍ କାମବାସନାକୁ ପ୍ରଶ୍ରୟ ଦିଅନ୍ତି ନାହିଁ) । ହେ ଅନ୍ତର୍ଯାମୀ ପୁରୁଷ, ମୌନ, ବ୍ରହ୍ମଚର୍ଯ୍ୟ, ଶାସ୍ତ୍ରଶ୍ରବଣ, ତପସ୍ୟା, ସ୍ୱାଧ୍ୟାୟ, ସ୍ୱଧର୍ମପାଳନ, ଶାସ୍ତ୍ରମାନଙ୍କର ବ୍ୟାଖ୍ୟା, ନିର୍ଜନବାସ, ଜପ ଓ ସମାଧି --ଏହି ଦଶଟି ସାଧନ ମୋକ୍ଷପାଇଁ ପ୍ରସିଦ୍ଧ । କିନ୍ତୁ ଯେଉଁମାନେ ଇନ୍ଦ୍ରିୟକୁ ଜୟ କରି ନ ଥାନ୍ତି, ସେମାନେ ଏହାକୁ ଜୀବିକାର ପନ୍ଥା ରୂପେ ଗ୍ରହଣ କରିଥାନ୍ତି । ଦାମ୍ଭିକ ପୁରୁଷଙ୍କପାଇଁ ଏହିସବୁ ସାଧନ ବେଳେବେଳେ ଜୀବିକା ନିର୍ବାହର ଫଳ ଦେଇଥାଏ ଏବଂ ଅତିରିକ୍ତ ଦମ୍ଭଯୋଗୁଁ ବେଳେବେଳେ ମଧ୍ୟ ଦିଏ ନାହିଁ ॥୪୫-୪୬॥ ବୀଜ ଏବଂ ଅଙ୍କୁରପରି ଆପଣଙ୍କର ଦୁଇଟି ରୂପର କଥା ବେଦରେ କୁହାଯାଏ, ଯାହା ହେଉଛି କାର୍ଯ୍ୟ ଏବଂ କାରଣ । କିନ୍ତୁ ଏହି କାର୍ଯ୍ୟ ଓ କାରଣ ରୂପକୁ ଛାଡ଼ିଦେଲେ ଆପଣଙ୍କର ଅନ୍ୟ କୌଣସି ରୂପ ନାହିଁ । କାଠକୁ ଘଷିଲେ ଯେପରି ସେଥିରୁ ନିଆଁ ବାହାରେ, ସେହିପରି ଯୋଗୀମାନେ ଭକ୍ତିଯୋଗଦ୍ୱାରା ଆପଣଙ୍କର କାର୍ଯ୍ୟ-କାରଣ ରୂପକୁ ଖୋଜି ବାହାର କରନ୍ତି । ଅନ୍ୟଥା ଆପଣଙ୍କୁ ଜାଣିବା ସମ୍ଭବ ନୁହେଁ ॥୪୭॥ ମହିମାମୟ, ଆପଣ ବାୟୁ, ଅଗ୍ନି, ପୃଥିବୀ, ଆକାଶ, ଜଳ, ପଞ୍ଚତନ୍ମାତ୍ର, ପ୍ରାଣ, ଇନ୍ଦ୍ରିୟ, ମନ, ଚିତ୍ତ, ଅହଙ୍କାର, ସମ୍ପୂର୍ଣ୍ଣ ଜଗତ ଏବଂ ସଗୁଣ ଓ ନିର୍ଗୁଣ । ମନ ଓ ବାକ୍ୟଦ୍ୱାରା ଯାହା କିଛି ପ୍ରକାଶ କରାଯାଏ, ସେ ସବୁ ଆପଣଙ୍କଠାରୁ ପୃଥକ୍ ନୁହେଁ । ଆପଣ ହିଁ ସର୍ବମୟ ॥୪୮॥ ହେ କୀର୍ତ୍ତିଶାଳୀ ! ସତ୍ତ୍ୱ, ରଜ ଓ ତମୋଗୁଣ, ମହତ୍ ଓ ଅହଙ୍କାର, ମନ ପ୍ରଭୃତି ଇନ୍ଦ୍ରିୟସମୂହ, ଦେବତା, ମନୁଷ୍ୟ ଆଦି ଆପଣଙ୍କର ସ୍ୱରୂପ ଜାଣି ପାରନ୍ତି ନାହିଁ । କାରଣ ସେମାନଙ୍କର ଆଦି ଓ ଅନ୍ତ ଅଛି । କିନ୍ତୁ ଆପଣ ଅନାଦି ଏବଂ ଅନନ୍ତ । ଏଥିପାଇଁ ଜ୍ଞାନୀମାନେ ଶବ୍ଦର ମାୟା (ଶାସ୍ତ୍ରାଭ୍ୟାସ)ରୁ ବିରତ ହୋଇ କେବଳ ଆପଣଙ୍କର ଆରାଧନା କରନ୍ତି ॥୪୯॥ ପରମପୂଜ୍ୟ, ଆପଣଙ୍କ ସେବାର ଛ'ଟି ଅଙ୍ଗ ହେଉଛି -- ନମସ୍କାର, ସ୍ତୁତି, ସମସ୍ତ କର୍ମର ସମର୍ପଣ, ପରିଚର୍ଯ୍ୟା ଆପଣଙ୍କ ପାଦପଦ୍ମର ସ୍ମୃତି ଏବଂ ଲୀଳାକଥାର ଶ୍ରବଣ । ଏହାଛଡ଼ା ଆପଣଙ୍କର ଭକ୍ତିଲାଭ କିପରି ସମ୍ଭବ ? ଯେଣୁ ଆପଣ ପରମହଂସମାନଙ୍କର ପ୍ରାପ୍ୟ ॥୫୦॥

ମହର୍ଷି ନାରଦ କହିଲେ, ଏହିପରି ପରମଭକ୍ତ ପ୍ରହ୍ଲାଦ ଭକ୍ତିର ସହିତ ନିର୍ଗୁଣ ପୁରୁଷଙ୍କର ଗୁଣ ବର୍ଣ୍ଣନା କଲେ । ନୃସିଂହଙ୍କର କ୍ରୋଧ ଶାନ୍ତ ହୋଇଗଲା ଏବଂ ସେ ପ୍ରୀତ ହୋଇ କହିଲେ -- ॥୫୧॥

ଭଗବାନ ନୃସିଂହ କହିଲେ, କଲ୍ୟାଣୀୟ ପ୍ରହ୍ଲାଦ, ତୁମର ମଙ୍ଗଳ ହେଉ । ହେ ଦୈତ୍ୟଶ୍ରେଷ୍ଠ, ତୁମ ଉପରେ ମୁଁ ସନ୍ତୁଷ୍ଟ । ତୁମର ଇଚ୍ଛା ଅନୁସାରେ ବର ମାଗିନିଅ । ମୁଁ ମନୁଷ୍ୟକୁ ତା'ର ଅଭିଳଷିତ ଫଳ ଦାନ କରେ । ମୋତେ ସନ୍ତୁଷ୍ଟ ନ କରି କୌଣସି ବ୍ୟକ୍ତି ମୋର ଦର୍ଶନ ଲାଭ କରିପାରେ ନା । ଥରେ ମୋତେ ଦର୍ଶନ କଲେ ମନୁଷ୍ୟ ଆଉ ଶୋକ ଓ ମୋହଗ୍ରସ୍ତ ହୁଏ

ନାହିଁ । ଆୟୁଷ୍ମାନ୍, ମୁଁ ସମସ୍ତ ଅଭିଳାଷକୁ ପୂର୍ଣ୍ଣ କରିପାରେ । ତେଣୁ ମଙ୍ଗଳକାମୀ ଭାଗ୍ୟବାନ୍ ସାଧୁଗଣ ଇନ୍ଦ୍ରିୟକୁ ଜୟ କରି ମୋତେ ସର୍ବଭାବରେ ସନ୍ତୁଷ୍ଟ କରିବାପାଇଁ ଯତ୍ନବାନ୍ ହୁଅନ୍ତି ॥୫୨-୫୪॥

ମହର୍ଷି ନାରଦ କହିଲେ, ଏହିପରି ଲୋକଙ୍କୁ ପ୍ରଲୋଭିତ କରିବା ପରି ବରଦେବାପାଇଁ ଭଗବାନ ନୃସିଂହ କହିଲେ ମଧ୍ୟ, ତାଙ୍କର ଏକାନ୍ତ ଭକ୍ତ ଅସୁରୋତ୍ତମ ପ୍ରହ୍ଲାଦ କୌଣସି ବର ମାଗିବାକୁ ଇଚ୍ଛା କଲେ ନାହିଁ ॥୫୫॥

## ଦଶମ ଅଧ୍ୟାୟ

# ତ୍ରିପୁର ଦହନ

ନାରଦ କହିଲେ, (ଲୋଭନୀୟ) ବରସବୁ ଭକ୍ତିଯୋଗର ଅନ୍ତରାୟ ବୋଲି ମନେ କରି ବାଳକ ପ୍ରହ୍ଲାଦ ଅଳ୍ପ ହସି ଭଗବାନଙ୍କୁ କହିଲେ-- ॥୧॥

ପ୍ରହ୍ଲାଦ କହିଲେ, ପ୍ରଭୁ, ମୁଁ ଜନ୍ମରୁ ବିଷୟଭୋଗ ସହିତ ପରିଚିତ । ତେଣୁ ବିଷୟଭୋଗକୁ ଡରି ସେଥିରୁ ରକ୍ଷା ପାଇବାପାଇଁ ଆପଣଙ୍କୁ ଆଶ୍ରୟ କରିଛି ॥୨॥ ହେ ପ୍ରଭୁ, ହେ ଜଗଦ୍‌ଗୁରୁ, ମୋ'ଠାରେ ଭକ୍ତିର ଲକ୍ଷଣ ଅଛି କି ନାହିଁ, ତାହା ଜାଣିବାପାଇଁ, ଆପଣ ମୋତେ ବର ମାଗିବାକୁ ପ୍ରରୋଚିତ କରିଛନ୍ତି । ବିଷୟଭୋଗ ହିଁ ମନୁଷ୍ୟର ହୃଦୟର ଗ୍ରନ୍ଥିକୁ ଦୃଢ଼ କରେ ଓ ସଂସାରର ବୀଜସ୍ୱରୂପ ହୋଇ ମନୁଷ୍ୟକୁ ଜନ୍ମ ମୃତ୍ୟୁର ଆବର୍ତ୍ତ ଭିତରକୁ ଠେଲିଦିଏ । ଆପଣ ପରୀକ୍ଷା କରିବାପାଇଁ ମୋତେ ଏହିପରି କହିଛନ୍ତି, ନଚେତ୍ ଆପଣଙ୍କ ପରି ପରମ କରୁଣାମୟ ଭକ୍ତବତ୍ସଳ କାହିଁକି ଏପରି କହିଥା'ନ୍ତେ ! ଯେ ନିଜର ଭୋଗବିଳାସ ଚରିତାର୍ଥ କରିବାପାଇଁ ବର ଭିକ୍ଷା କରେ ସେ ଭକ୍ତ ନୁହେଁ, ଭକ୍ତିଦ୍ୱାରା ବର କିଣିବାକୁ ଚାହୁଁଥିବା ବଣିକ ॥୩-୪॥ ଯେଉଁ ଭୃତ୍ୟ ନିଜର ସ୍ୱାମୀଠାରୁ ଅଭିଳଷିତ ବସ୍ତୁଲାଭପାଇଁ ବ୍ୟାକୁଳ ହୁଏ, ସେ ପ୍ରକୃତ ଭୃତ୍ୟ ନୁହେଁ, ଏବଂ ଯେଉଁ ସ୍ୱାମୀ ନିଜର ସ୍ୱାମିତ୍ୱ ବଜାୟ ରଖିବାପାଇଁ ସେବକକୁ ତାର ପ୍ରାର୍ଥିତ ବସ୍ତୁ ଦାନ କରେ ସେ ପ୍ରକୃତ ସ୍ୱାମୀ ନୁହେଁ ॥୫॥ ମୁଁ ଆପଣଙ୍କର ନିଷ୍କାମ ସେବକ ଏବଂ ଆପଣ ମୋର ନିରପେକ୍ଷ ସ୍ୱାମୀ । ପ୍ରୟୋଜନବଶତଃ ଯେପରି ରାଜା ଏବଂ ତାଙ୍କ କର୍ମଚାରୀଙ୍କ ମଧ୍ୟରେ ସ୍ୱାମୀ-ସେବକର ସମ୍ପର୍କ ରହେ, ମୋର ଓ ଆପଣଙ୍କ ମଧ୍ୟରେ ସେପରି ସମ୍ବନ୍ଧ ନାହିଁ ॥୬॥ ହେ ଶ୍ରେଷ୍ଠ ବରଦାତା, ଯଦି ମୋତେ ମୋର ଅଭିଳଷିତ ବର ଦେବାପାଇଁ ଚାହାନ୍ତି, ତା'ହେଲେ ଯଦ୍ଦ୍ୱାରା କାମନାର ବୀଜ ନଷ୍ଟ ହୋଇପାରିବ, ମୁଁ ତାହା ହିଁ ପ୍ରାର୍ଥନା କରୁଛି । କାମନା ଅତିଶୟ ଗର୍ହିତ, ଏହା ଇନ୍ଦ୍ରିୟ ଓ ମନକୁ ଦୂଷିତ କରେ ଏବଂ ପ୍ରାଣ, ଆତ୍ମା, ଧର୍ମ, ଧୈର୍ଯ୍ୟ, ବୁଦ୍ଧି, ଲଜ୍ଜା, ଶୋଭା, ତେଜ, ସ୍ମୃତି ଓ ସତ୍ୟକୁ ବିନାଶ କରେ ॥୭-୮॥ ପୁଣ୍ଡରୀକାକ୍ଷ, ମନୁଷ୍ୟ ଯେତେବେଳେ ମନରେ ଥିବା ତା'ର ସମସ୍ତ କାମନାକୁ ତ୍ୟାଗ କରେ, ସେତେବେଳେ ସେ ଭଗବତ୍‌ତୁଲ୍ୟ ହୋଇଯାଏ ॥୯॥ ଭଗବାନ୍, ଆପଣଙ୍କୁ ନମସ୍କାର । ଆପଣ ମହାମହିମ, ପରଂବ୍ରହ୍ମ, ପରମାତ୍ମା । ଆପଣ ଅଦ୍ଭୁତ ନୃସିଂହ ରୂପ ଧାରଣ କରିଛନ୍ତି । ହେ ଶ୍ରୀହରି, ଆପଣଙ୍କୁ ମୋର ନମସ୍କାର ॥୧୦॥

ଶ୍ରୀ ଭଗବାନ କହିଲେ, ତୁମ ପରି ମୋର ଏକାନ୍ତ ଭକ୍ତମାନେ ଇହକାଳର ବା ପରକାଳର କୌଣସି ଭୋଗବିଳାସ ପାଇଁ ମୋତେ ପ୍ରାର୍ଥନା କରନ୍ତି ନାହିଁ । ତାହା ସତ୍ତ୍ୱେ ବି ତୁମେ ମନ୍ୱନ୍ତରପର୍ଯ୍ୟନ୍ତ ଦୈତ୍ୟେଶ୍ୱର ରୂପେ ସମସ୍ତ ଭୋଗ୍ୟ ଐଶ୍ୱର୍ଯ୍ୟ ଭୋଗ କର ॥୧୧॥ ସମସ୍ତ ପ୍ରାଣୀଙ୍କ ହୃଦୟରେ ଯଜ୍ଞମାନଙ୍କର ଭୋକ୍ତା ଈଶ୍ୱର ରୂପରେ ମୁଁ ବିରାଜମାନ । ତୁମ ହୃଦୟରେ ତୁମେ ମୋତେ ସର୍ବଦା ଦେଖୁଥିବ ଏବଂ ମୋର ଯେଉଁ ଲୀଳାକଥା ତୁମର ପ୍ରିୟ, ତାହା ଶୁଣୁଥିବ । ସମସ୍ତ କର୍ମଦ୍ୱାରା ମୋର

ଆରାଧନା କରି ନିଜର ପ୍ରାରବ୍ଧ କର୍ମକୁ କ୍ଷୟ କରିବ ॥୧୨॥ ଭୋଗଦ୍ୱାରା ପୁଣ୍ୟ କର୍ମର ଫଳକୁ ଏବଂ ନିଷ୍କାମ ପୁଣ୍ୟ କର୍ମଦ୍ୱାରା ପାପକୁ ବିନାଶ କରି ଯଥାସମୟ ତୁମେ ଶରୀର ତ୍ୟାଗ କରିବ ଏବଂ ସମସ୍ତ ବନ୍ଧନରୁ ମୁକ୍ତ ହୋଇ ମୋ ପାଖକୁ ଆସିବ । ଦେବଲୋକରେ ମଧ୍ୟ ଲୋକେ ତୁମର ବିମଳ କୀର୍ତ୍ତି ଗାନ କରିବେ ॥୧୩॥ ତୁମେ ମୋତେ ଯେଉଁ ସ୍ତୁତି କଲ, ଯେଉଁ ବ୍ୟକ୍ତି ତାହା କୀର୍ତ୍ତନ କରିବ ଏବଂ ମୋତେ ଓ ତୁମକୁ ସ୍ମରଣ କରିବ, ସେ ମଧ୍ୟ ନିର୍ଦ୍ଦିଷ୍ଟ ସମୟରେ କର୍ମବନ୍ଧନରୁ ମୁକ୍ତ ହୋଇଯିବ ॥୧୪॥

ପ୍ରହ୍ଲାଦ କହିଲେ, ହେ ମହେଶ୍ୱର, ଆପଣ ବ୍ରହ୍ମାଦି ବରଦାତାମାନଙ୍କର ଈଶ୍ୱର । ଆପଣଙ୍କଠାରୁ ମୁଁ ଏହିମାତ୍ର ବର କାମନା କରୁଛି ଯେ ଆପଣ ମୋର ପିତାଙ୍କୁ ଉଦ୍ଧାର କରନ୍ତୁ । ସେ କ୍ରୋଧାବେଗରେ 'ବିଷ୍ଣୁ ମୋର ଭ୍ରାତୃହନ୍ତା'--ଏହିପରି ଧାରଣାରେ ଆପଣଙ୍କୁ ବହୁତ ନିନ୍ଦା କରିଛନ୍ତି । ଆପଣ ସମସ୍ତ ଲୋକର ଗୁରୁ ଏବଂ ପ୍ରଭୁ । ଆପଣଙ୍କର ପ୍ରଭାବ ନ ଜାଣି ମୁଁ ଆପଣଙ୍କର ଭକ୍ତ ବୋଲି ମୋ'ପ୍ରତି ମଧ୍ୟ ଦ୍ରୋହ ଆଚରଣ କରିଛନ୍ତି । ଆପଣଙ୍କର ଦୃଷ୍ଟି ପଡ଼ିବାମାତ୍ରେ ମୋର ପିତା ପବିତ୍ର ହୋଇଯାଇଛନ୍ତି ସତ୍ୟ, ତଥାପି ତାଙ୍କ ପାପର ଅନ୍ତ ନାହିଁ । ସେଥିରୁ ନିସ୍ତାର ପାଇବା ସମ୍ଭବ ନୁହେଁ । ହେ ଦୀନବତ୍ସଳ, ଆପଣ ସେଥିରୁ ତାଙ୍କୁ ମୁକ୍ତ ଓ ଶୁଦ୍ଧ କରନ୍ତୁ ॥୧୫-୧୭॥

ଶ୍ରୀ ନୃସିଂହ କହିଲେ, ନିଷ୍ପାପ ପ୍ରହ୍ଲାଦ, ତୁମେ ଯେତେବେଳେ ଏହି ଦୈତ୍ୟରାଜଙ୍କ କୁଳରେ ଜନ୍ମ ଗ୍ରହଣ କରି ଏହି କୁଳକୁ ପବିତ୍ର କରିଛ, ସେତେବେଳେ ତାଙ୍କ ଏକୋଇଶ ପୁରୁଷ ସହିତ ତୁମର ପିତା ପବିତ୍ର ହୋଇଯାଇଛନ୍ତି ॥୧୮॥ ଯେଉଁଠି ପ୍ରଶାନ୍ତ, ସମଦର୍ଶୀ, ଉଦାର ଓ ସାଧୁହୃଦୟ ମୋର ଭକ୍ତମାନେ ବାସ କରନ୍ତି, ତାହା ଯେତେ ନିକୃଷ୍ଟ ସ୍ଥାନ ହେଲେ ମଧ୍ୟ ସେଠାର ଅଧିବାସୀମାନେ ସେମାନଙ୍କର ସମ୍ପର୍କଦ୍ୱାରା ପବିତ୍ର ହୋଇଯାଆନ୍ତି ॥୧୯॥ ଦୈତ୍ୟେନ୍ଦ୍ର, ମୋ ପ୍ରତି ଭକ୍ତିଭାବଦ୍ୱାରା ଯେଉଁମାନଙ୍କର କାମନା ନଷ୍ଟ ହୋଇଯାଇଛି, ସେମାନେ ଉତ୍କୃଷ୍ଟ ବା ନିକୃଷ୍ଟ ବିଚାର କରନ୍ତି ନାହିଁ, ଏବଂ କୌଣସି ତୁଚ୍ଛ ପ୍ରାଣୀ ପ୍ରତି ଭୁଲରେ ମଧ୍ୟ ହିଂସା କରନ୍ତି ନାହିଁ ॥୨୦॥ ସଂସାରରେ ଯେଉଁମାନେ ତୁମର ଅନୁଗାମୀ ହେବେ, ସେମାନେ ମଧ୍ୟ ମୋର ଭକ୍ତ ହୋଇଯିବେ । ବତ୍ସ, ତୁମେ ମୋର ଭକ୍ତମାନଙ୍କର ଆଦର୍ଶ ହୋଇ ରହିବ ॥୨୧॥ ତୁମର ପିତା ସବୁ ଦୃଷ୍ଟିରୁ ପବିତ୍ର ହୋଇଯାଇଛନ୍ତି । ତଥାପି ତୁମେ ତାଙ୍କର ଅନ୍ତ୍ୟେଷ୍ଟି କ୍ରିୟା କର । ତୁମଭଳି ସୁପୁତ୍ରର ପିତା ହୋଇଥିବାଯୋଗୁଁ ସେ ଉତ୍ତମ ଗତି ଲାଭ କରିବେ ॥୨୨॥ ବତ୍ସ, ବେଦଜ୍ଞମାନେ ଯେପରି କହିଛନ୍ତି, ସେହି ଅନୁସାରେ ତୁମେ ତୁମ ପିତାଙ୍କର ସିଂହାସନରେ ଅଧିଷ୍ଠିତ ହୁଅ ଏବଂ ମୋତେ ଏକମାତ୍ର ଆଶ୍ରୟ କରି କର୍ମ କରିଯାଅ ॥୨୩॥

ଶ୍ରୀ ନାରଦ କହିଲେ, ଯୁଧିଷ୍ଠିର, ନୃସିଂହ ଭଗବାନଙ୍କର ଆଦେଶ ଅନୁସାରେ ପ୍ରହ୍ଲାଦ ପିତାଙ୍କର ଅନ୍ତ୍ୟେଷ୍ଟିକ୍ରିୟା ଶେଷ କଲେ ଏବଂ ଶ୍ରେଷ୍ଠ ବ୍ରାହ୍ମଣମାନଙ୍କଦ୍ୱାରା ରାଜ୍ୟରେ ଅଭିଷିକ୍ତ ହେଲେ ॥୨୪॥ ପ୍ରହ୍ଲାଦଙ୍କ ସ୍ତବରେ ସନ୍ତୁଷ୍ଟ ଭଗବାନ ନୃସିଂହଙ୍କୁ ତୁଷ୍ଟ ମନରେ ବସିଥିବାର ଦେଖି ବ୍ରହ୍ମା ଦେବତାମାନଙ୍କଦ୍ୱାରା ପରିବେଷ୍ଟିତ ହୋଇ ତାଙ୍କୁ ସ୍ତୁତି କରିବାକୁ ଲାଗିଲେ ॥୨୫॥ ବ୍ରହ୍ମା ସ୍ତୁତି କଲେ, ଦେବଦେବେଶ୍ୱର, ଆପଣ ସର୍ବାନ୍ତର୍ଯାମୀ, ସମସ୍ତଙ୍କ ପୂର୍ବେ ଆପଣ ଥିଲେ । ପାପୀ ହିରଣ୍ୟକଶିପୁ ସମସ୍ତଙ୍କୁ ସନ୍ତାପିତ କରୁଥିଲା । ସୌଭାଗ୍ୟକ୍ରମେ ଆପଣ ତାକୁ ନିହତ କଲେ ॥୨୬॥ ମୁଁ ତାକୁ ବର ଦେଇଥିଲି ଯେ, ମୋ ସୃଷ୍ଟିରେ କୌଣସି ଜୀବ ତାକୁ ମାରିପାରିବ ନାହିଁ । ସେଥିପାଇଁ ସେ ଗର୍ବରେ ଫାଟିପଡ଼ିଲା । ତପସ୍ୟା, ଯୋଗ ଓ ବଳର କାରଣରୁ ଉଦ୍ଧତ ଦୈତ୍ୟ ବେଦବିଧିମାନଙ୍କୁ ଲୋପ କରିଦେଇଥିଲା ॥୨୭॥ ଭାଗ୍ୟବଶତଃ ଶୁଦ୍ଧହୃଦୟ ପରମ ଭାଗବତ ତାର ଶିଶୁପୁତ୍ର ପ୍ରହ୍ଲାଦକୁ ଆପଣ ମୃତ୍ୟୁମୁଖରୁ ରକ୍ଷା କଲେ । ଏବେ ସେ ଆପଣଙ୍କର ଶରଣାଗତ ଭକ୍ତ ॥୨୮॥ ଭଗବାନ୍, ଏକାଗ୍ର ଚିତ୍ତରେ ଯେ ଆପଣଙ୍କର ନୃସିଂହରୂପକୁ ଧ୍ୟାନ କରିବ, ସମସ୍ତ ଭୟରୁ ସେ ମୁକ୍ତ ହେବ, ଏପରିକି ମାରିବାକୁ ଆସୁଥିବା ମୃତ୍ୟୁ ମଧ୍ୟ ତାର କିଛି କରିପାରିବ ନାହିଁ ।

ଶ୍ରୀ ନୃସିଂହ କହିଲେ, ହେ ପଦ୍ମସମ୍ଭବ ବ୍ରହ୍ମା, ଦୈତ୍ୟମାନଙ୍କୁ ଆପଣ ଏପରି ବର ପ୍ରଦାନ କରନ୍ତୁ ନାହିଁ; ସେମାନେ ସ୍ୱଭାବତଃ ନିଷ୍ଠୁର; ଏହି ବର ସେମାନଙ୍କୁ ଦେବା ଅର୍ଥ ସାପକୁ ଦୁଧ ପିଆଇବା ॥୩୦॥ ନାରଦ କହିଲେ, ଯୁଧିଷ୍ଠିର, ଏହିପରି କହି ଭଗବାନ ନୃସିଂହ ସେଠାରୁ ଅନ୍ତର୍ହିତ ହୋଇଗଲେ । ବ୍ରହ୍ମାଙ୍କଦ୍ୱାରା ପୂଜିତ ହୋଇ ସେ ସମସ୍ତ ପ୍ରାଣୀଙ୍କପାଇଁ ଅଦୃଶ୍ୟ ହୋଇଗଲେ ॥୩୧॥ ଭଗବାନଙ୍କ ଅନ୍ତର୍ଦ୍ଧାନ ପରେ ଭକ୍ତବତ୍ସଳ ପ୍ରହ୍ଲାଦ ବ୍ରହ୍ମାଙ୍କୁ, ଶିବଙ୍କୁ ଏବଂ ଭଗବାନଙ୍କର କଳାସ୍ୱରୂପ ଅନ୍ୟାନ୍ୟ ପ୍ରଜାପତି ଓ ଦେବତାମାନଙ୍କୁ ମୁଣ୍ଡ ପାତି ବନ୍ଦନା କଲେ । ବ୍ରହ୍ମା ଅସୁରଗୁରୁ ଶୁକ୍ରାଚାର୍ଯ୍ୟ ପ୍ରମୁଖ ମୁନିମାନଙ୍କ ସହିତ ମିଳିତ ହୋଇ ପ୍ରହ୍ଲାଦଙ୍କୁ ଦୈତ୍ୟ ଓ ଦାନବମାନଙ୍କର ରାଜାରୂପେ ପ୍ରତିଷ୍ଠା କଲେ ॥୩୨-୩୩॥ ମହାରାଜ, ବ୍ରହ୍ମାଦି ଦେବତାମାନେ ପ୍ରହ୍ଲାଦଙ୍କୁ ଅଭିନନ୍ଦନ କରି ଆଶୀର୍ବାଦ କଲେ । ପ୍ରହ୍ଲାଦ ମଧ୍ୟ ସମସ୍ତଙ୍କର ଯଥାଯୋଗ୍ୟ ସତ୍କାର କଲେ । ଏହାପରେ ସମସ୍ତେ ନିଜ ନିଜ ସ୍ଥାନକୁ ପ୍ରସ୍ଥାନ କଲେ ॥୩୪॥ ଏହିପରି ବିଷ୍ଣୁଙ୍କର ପାର୍ଷଦ ଦୁଇ ଜଣ ଦିତିଙ୍କର ପୁତ୍ର ଦୈତ୍ୟ ରୂପରେ ଜନ୍ମ ହୋଇଥିଲେ ଏବଂ ଭଗବାନଙ୍କର ସର୍ବଦା ଶତ୍ରୁତା ଆଚରଣ କରିବାଯୋଗୁଁ ନିହତ ହୋଇଥିଲେ ॥୩୫॥ ପୁଣି ସନକାଦି ଋଷିମାନଙ୍କର ଶାପଯୋଗୁଁ ସେ ଦୁଇ ଜଣ ରାବଣ ଓ କୁମ୍ଭକର୍ଣ୍ଣ ରୂପରେ ରାକ୍ଷସ ହେଲେ ଏବଂ ଭଗବାନ ଶ୍ରୀରାମଙ୍କର ପରାକ୍ରମ ଦ୍ୱାରା ଦୁହିଁଙ୍କର ଅନ୍ତ ହେଲା ॥୩୬॥ ଯୁଦ୍ଧରେ ଶ୍ରୀରାମଙ୍କର ବାଣରେ ସେ ଦୁହିଁଙ୍କ ବକ୍ଷ ବିଦୀର୍ଣ୍ଣ ହେଲା ଏବଂ ପୂର୍ବଜନ୍ମପରି ଭଗବାନଙ୍କୁ ସ୍ମରଣ କରି ଦୁହେଁ ଦେହତ୍ୟାଗ କଲେ ॥୩୭॥ ପୁଣି ସେହି ଦୁଇ ଜଣ ଶିଶୁପାଳ ଓ ଦନ୍ତବକ୍ତ୍ର ରୂପେ ଜନ୍ମ ଗ୍ରହଣ କରିଥିଲେ ଏବଂ ଶ୍ରୀକୃଷ୍ଣଙ୍କପ୍ରତି ଦ୍ୱେଷଭାବଯୋଗୁଁ ତୁମ ଆଗରେ ନିହତ ହେଲେ ॥୩୮॥ ଯୁଧିଷ୍ଠିର, ଭଅଁର ଧରିଥିବା କୀଟ ଯେପରି ଭୟରେ ଭଅଁର ହୋଇଯାଏ, ସେହିପରି କୃଷ୍ଣଙ୍କର ଶତ୍ରୁ ରାଜାମାନେ ମରଣସମୟରେ ତାଙ୍କୁ ଚିନ୍ତା କରିକରି କୃଷ୍ଣରୂପ ହୋଇ ପୂର୍ବକୃତ ସମସ୍ତ ପାପରୁ ମୁକ୍ତ ହୋଇଯା'ନ୍ତି ॥୩୯॥ ଯେପରି ଭଗବାନଙ୍କର ପ୍ରିୟ ଭକ୍ତମାନେ ଭେଦଭାବର ବଶବର୍ତ୍ତୀ ନ ହୋଇ ସେମାନଙ୍କ ଅନନ୍ୟ ଭକ୍ତିଦ୍ୱାରା ଭଗବତ୍‌ସ୍ୱରୂପ ଲାଭ କରନ୍ତି, ସେହିପରି ଶିଶୁପାଳ ଆଦି ରାଜାମାନେ ରୋଷବଶତଃ ଶ୍ରୀହରିଙ୍କୁ ଚିନ୍ତା କରିକରି ତାଙ୍କରି ସାରୂପ୍ୟ ଲାଭ କରିଥିଲେ ॥୪୦॥ ଦମଘୋଷପୁତ୍ର ଶିଶୁପାଳ ଆଦି ରାଜାମାନେ ଶ୍ରୀହରିଙ୍କର ଶତ୍ରୁତା କରି କିପରି ତାଙ୍କର ସାରୂପ୍ୟ ଲାଭ କଲେ, ତାହା ତୁମେ ମୋତେ ପଚାରିଥିଲ, ସେ ସମସ୍ତ ବିଷୟ ମୁଁ ବର୍ଣ୍ଣନା କଲି ॥୪୧॥

ପରଂବ୍ରହ୍ମ ପରମାତ୍ମା ଶ୍ରୀହରିଙ୍କର ଏହି ପବିତ୍ର ଅବତାର କଥା, ମହାଭକ୍ତ ପ୍ରହ୍ଲାଦଙ୍କର ଚରିତ, ଭକ୍ତି, ଜ୍ଞାନ, ବୈରାଗ୍ୟ ଓ ଭଗବତ୍‌ସ୍ୱରୂପ, ସୃଷ୍ଟି, ସ୍ଥିତି ଓ ପ୍ରଳୟର କର୍ତ୍ତା ଶ୍ରୀହରିଙ୍କର ଗୁଣ ଓ କର୍ମ ଏବଂ କାଳକ୍ରମେ ଦେବତା ଓ ଦୈତ୍ୟମାନଙ୍କର ପରିବର୍ତ୍ତିତ ଭୂମିକା ଆଦି ସମସ୍ତ ବିଷୟ ମୁଁ ତୁମ ଆଗରେ ବର୍ଣ୍ଣନା କଲି ॥୪୨-୪୪॥ ଯେଉଁ ଧର୍ମଦ୍ୱାରା ଭଗବାନଙ୍କୁ ଲାଭ କରାଯାଇପାରେ, ସେହି ଭାଗବତ ଧର୍ମ ଓ ଅନ୍ୟାନ୍ୟ ଆଧ୍ୟାତ୍ମିକ ବିଷୟମାନ ମଧ୍ୟ ମୁଁ ବର୍ଣ୍ଣନା କଲି ॥୪୫॥ ଯେଉଁ ବ୍ୟକ୍ତି ଭଗବାନଙ୍କର ପରାକ୍ରମପୂର୍ଣ୍ଣ ଏହି ପବିତ୍ର କୀର୍ତ୍ତିଗାଥାକୁ ଶ୍ରଦ୍ଧାର ସହିତ ସ୍ମରଣ କରେ, ସେ କର୍ମବନ୍ଧନରୁ ମୁକ୍ତ ହୋଇଯାଏ ॥୪୬॥ ଯେ ପରମପୁରୁଷ ଭଗବାନଙ୍କର ଏହି ନୃସିଂହ ଲୀଳା ଏବଂ ଦୈତ୍ୟ ଯୂଥପତି ହିରଣ୍ୟକଶିପୁର ବୃତ୍ତାନ୍ତ ଶ୍ରଦ୍ଧାର ସହିତ ପାଠ କରେ ଏବଂ ସାଧୁମାନଙ୍କର ଶ୍ରେଷ୍ଠ ଦୈତ୍ୟରାଜପୁତ୍ର ପ୍ରହ୍ଲାଦଙ୍କର ପୁଣ୍ୟ ଚରିତ ଶ୍ରବଣ କରେ, ସେ ଅଭୟଲୋକ ପ୍ରାପ୍ତ ହୁଏ ॥୪୭॥ ଯଧିଷ୍ଠିର, ତୁମର ବହୁ ଭାଗ୍ୟ ଯେ, ମନୁଷ୍ୟରୂପଧାରୀ ପରଂବ୍ରହ୍ମ ଶ୍ରୀକୃଷ୍ଣ ତୁମ ଗୃହରେ ବାସ କରୁଛନ୍ତି ଏବଂ ତାଙ୍କୁ ଦେଖିବାପାଇଁ ପାବନପୁରୁଷ ମୁନିଋଷିଗଣ ଚତୁର୍ଦ୍ଦିଗରୁ ତୁମର ଗୃହକୁ ଆସୁଛନ୍ତି ॥୪୮॥ କୈବଲ୍ୟ ଓ ନିର୍ବାଣ ସୁଖର ଅନୁଭୂତିପାଇଁ ସେମାନେ ସବୁବେଳେ ଯାହାଙ୍କୁ ଖୋଜୁଥା'ନ୍ତି, ସେହି ପରଂବ୍ରହ୍ମ ଭଗବାନ ଶ୍ରୀକୃଷ୍ଣ ତୁମର ପ୍ରିୟ ସଖା, ମାମୁପୁଅ ଭାଇ, ବନ୍ଧୁ, ଆଜ୍ଞାକାରୀ ପୁଣି ପୂଜ୍ୟ ଗୁରୁ । ସାକ୍ଷାତ୍ ଶିବ ଓ ବ୍ରହ୍ମା ଆଦି ଯାହାଙ୍କର ରୂପକୁ ନିଜ ବୁଦ୍ଧିରେ ବସ୍ତୁତଃ ବର୍ଣ୍ଣନା କରିପାରନ୍ତି ନାହିଁ, ତାଙ୍କୁ କେବଳ ମୌନାବଲମ୍ବନ, ଭକ୍ତି ଏବଂ ସଂଯମଦ୍ୱାରା ମୁଁ ପୂଜା କରେ ଏବଂ ଭକ୍ତବତ୍ସଳ ଭଗବାନ

ମୋର ସେହି ପୂଜାକୁ ଗ୍ରହଣ କରି ମୋ ପ୍ରତି ପ୍ରସନ୍ନ ହୁଅନ୍ତି ।।୪୯-୫୦।। ମହାରାଜ, ପୂର୍ବକାଳରେ ଅତ୍ୟନ୍ତ ମାୟାବୀ ମୟ ଦାନବ ରୁଦ୍ରଦେବଙ୍କର ଯଶକୁ ନଷ୍ଟ କରିଥିଲା, କିନ୍ତୁ ଭଗବାନ ବିଷ୍ଣୁ ତାହାକୁ ବିସ୍ତାର କରିଥିଲେ ।।୫୧।। ଯୁଧିଷ୍ଠିର କହିଲେ, ଜଗଦୀଶ୍ୱର ଭଗବାନ ଶିବଙ୍କର ଯଶକୁ କିପରି ମୟ ଦାନବ ହରିବାକୁ ଚେଷ୍ଟା କରିଥିଲା ଏବଂ ଭଗବାନ ଶ୍ରୀକୃଷ୍ଣ କିପରି ତାହାକୁ ରକ୍ଷା କରିଥିଲେ, ଦୟା କରି ମୋତେ କହନ୍ତୁ ।।୫୨।।

ନାରଦ କହିଲେ, ଥରେ ବିଷ୍ଣୁଙ୍କଠାରୁ ବଳ ପାଇ ଦେବତାମାନେ ଅସୁରମାନଙ୍କୁ ପରାସ୍ତ କରିଥିଲେ । ପରାଜିତ ଅସୁରମାନେ ମହାମାୟାବୀ ମୟଦାନବର ଶରଣାପନ୍ନ ହେଲେ ।।୫୩।। ମୟ ଦାନବ ସୁନା, ରୁପା ଓ ଲୁହାର ତିନୋଟି ବିମାନ ନିର୍ମାଣ କଲା, ଯାହାକି ଗୋଟିଏ ଗୋଟିଏ ନଗରୀ ସହିତ ତୁଳନୀୟ । ତାହା ସବୁ ଏପରି ନିର୍ମିତ ହୋଇଥିଲା ଯେ ତା'ଭିତରେ ଆସିବା ଯିବା କେହି ଜାଣିପାରୁ ନ ଥିଲେ । ତା'ମଧ୍ୟରେ ଅପରିମିତ ବ୍ୟବହାର-ସାମଗ୍ରୀ ରହିଥିଲା ।।୫୪।। ଯୁଧିଷ୍ଠିର, ଦୈତ୍ୟ ସେନାପତିମାନେ ଦେବତାମାନଙ୍କ ସହିତ ପୂର୍ବ ଶତ୍ରୁତାକୁ ସ୍ମରଣ କରି ଏହି ବିମାନମାନଙ୍କ ସାହାଯ୍ୟରେ ଅଦୃଶ୍ୟ ରହି ତ୍ରିଲୋକକୁ ନଷ୍ଟଭ୍ରଷ୍ଟ କରିବାକୁ ଲାଗିଲେ ।।୫୫।। ଲୋକପାଳମାନଙ୍କ ସହିତ ସମସ୍ତ ଲୋକ ଭଗବାନ ଶିବଙ୍କୁ ଶରଣାଗତ ହୋଇ ତାଙ୍କୁ ପ୍ରାର୍ଥନା କଲେ, ପ୍ରଭୁ, ଆମକୁ ରକ୍ଷା କରନ୍ତୁ । ତିନି ଲୋକ ସହିତ ଲୋକପାଳମାନଙ୍କର ବିନାଶ ହେବାକୁ ଯାଉଛି । ଆମେମାନେ ଆପଣଙ୍କର ଭୃତ୍ୟ । ଅସୁରମାନଙ୍କ ଦାଉରୁ ଆମକୁ ମୁକ୍ତ କରନ୍ତୁ ।।୫୬।। ସେମାନଙ୍କ ପ୍ରାର୍ଥନା ଶୁଣି ଭଗବାନ ଶଙ୍କର 'ଭୟ କର ନାହିଁ' ବୋଲି ଦେବତାମାନଙ୍କୁ ଆଶ୍ୱାସନା ଦେଇ, ଧନୁରେ ବାଣ ଚଢ଼ାଇ ସେହି ତିନୋଟି ନଗରୀଆଡ଼କୁ ଛାଡ଼ିଦେଲେ ।।୫୭।। ତାଙ୍କର ସେହି ବାଣରୁ ସୂର୍ଯ୍ୟମଣ୍ଡଳର କିରଣଜାଳ ପରି ଅଗ୍ନିବର୍ଣ୍ଣ ବାଣସବୁ ନିର୍ଗତ ହେଲା ଯାହାଫଳରେ ସେହି ସ୍ୱର୍ଣ୍ଣ, ରୌପ୍ୟ ଓ ଲୌହମୟୀ ପୁରୀ ଅଦୃଶ୍ୟ ହୋଇଗଲା ।।୫୮।। ଶଙ୍କରଙ୍କ ପାଶୁପତ ଅସ୍ତ୍ର ସ୍ପର୍ଶ କରିବାମାତ୍ରେ ବିମାନରେ ରହୁଥିବା ରାକ୍ଷସମାନେ ମରି ପଡ଼ିଗଲେ । କିନ୍ତୁ ମାୟାବୀ ମୟଦାନବ ସେମାନଙ୍କୁ ଉଠାଇନେଇ ଅମୃତ କୂଅରେ ପକାଇଦେଲା ।।୫୯।। ମେଘର ଦେହରୁ ଯେପରି ବିଜୁଳି ଝଲକି ଉଠେ, ସେହିପରି ଅମୃତର ସ୍ପର୍ଶରେ ଅସୁରମାନେ ଜାଗିଉଠିଲେ । ସେମାନଙ୍କର ଶରୀର ବଜ୍ରପରି କଠିନ ହୋଇଗଲା ଓ ସେମାନଙ୍କର ଶକ୍ତି ବଢ଼ିଗଲା ।।୬୦।। ଭଗବାନ ବିଷ୍ଣୁ ଦେଖିଲେ, ବୃଷଧ୍ୱଜ ଶଙ୍କର ନିଜର ସଂକଳ୍ପ ପୂର୍ଣ୍ଣ କରି ନପାରି ବିମନା ହୋଇପଡ଼ିଛନ୍ତି । ତେଣୁ ସେ ଅସୁରମାନଙ୍କୁ ମାରିବାର ଉପାୟ ବାହାର କଲେ ।।୬୧।। ଚତୁର୍ମୁଖ ବ୍ରହ୍ମା ବାଛୁରୀର ଓ ଭଗବାନ ବିଷ୍ଣୁ ଏକ ଗାଈର ରୂପ ଧାରଣ କଲେ ଏବଂ ମଧ୍ୟାହ୍ନ ସମୟରେ ସେହି ତିନି ପୁର ମଧ୍ୟରେ ପ୍ରବେଶ କଲେ । ଅମୃତ ରସର କୂପକୁ ରକ୍ଷା କରିବାପାଇଁ ବହୁ ପ୍ରହରୀ ଥିଲେ, ମାତ୍ର ବିଷ୍ଣୁମାୟାରେ ସେମାନେ ମୋହିତ ହୋଇଗଲେ । ତେଣୁ ସେମାନଙ୍କ ଆଖିଆଗରେ ଅମୃତ କୂପର ସମସ୍ତ ଅମୃତ ସେ ଦୁହେଁ ପିଇଦେଲେ ।।୬୨।। ମାୟାମୋହିତ ପ୍ରହରୀମାନେ ସବୁ ଦେଖି ମଧ୍ୟ କିଛି କରିପାରିଲେ ନାହିଁ । ମାୟାବୀ ମୟଦାନବ ତାହା ଜାଣିପାରି ଭଗବାନଙ୍କ ଲୀଳାକୁ ସ୍ମରଣ କରି ଶୋକ କଲା ନାହିଁ ଏବଂ ଶୋକ କରୁଥିବା ପ୍ରହରୀମାନଙ୍କୁ କହିଲା, ଦେବତା, ଅସୁର, ମନୁଷ୍ୟ, ଯକ୍ଷ, ରକ୍ଷ ଆଦି ଯେ କୌଣସି ପ୍ରାଣୀଙ୍କର ନିଜପାଇଁ, ପରପାଇଁ ବା ଉଭୟଙ୍କପାଇଁ ଯେଉଁ ପ୍ରାରବ୍ଧର ବିଧାନ ଅଛି, ତାକୁ କେହି ଅତିକ୍ରମ କରିପାରନ୍ତି ନାହିଁ, ତେଣୁ ଯାହା ହେବାର ହୋଇଗଲା । ଶୋକ କରି ଲାଭ ନାହିଁ ।।୬୩-୬୪।। ଏହାପରେ ଭଗବାନ ବିଷ୍ଣୁ ନିଜ ଶକ୍ତିଦ୍ୱାରା ଭଗବାନ ଶଙ୍କରଙ୍କ ଯୁଦ୍ଧୋପକରଣର ବ୍ୟବସ୍ଥା କଲେ । ସେ ଧର୍ମରୁ ରଥ, ଜ୍ଞାନରୁ ସାରଥି, ବୈରାଗ୍ୟରୁ ଧ୍ୱଜା, ଐଶ୍ୱର୍ଯ୍ୟରୁ ଘୋଡ଼ା, ତପସ୍ୟାରୁ ଧନୁ, ବିଦ୍ୟାରୁ କବଚ ଏବଂ କ୍ରିୟାରୁ ବାଣ ଆଦିକୁ ସୃଷ୍ଟି କଲେ ।।୬୫।।

ଏ ସବୁ ଲାଭ କରି ଭଗବାନ ଶଙ୍କର ରଥରେ ଆରୋହଣ କଲେ ଏବଂ ଅଭିଜିତ୍ (ମଧ୍ୟାହ୍ନ କାଳ) ମୁହୂର୍ତ୍ତରେ ଧନୁରେ ଶର ସଂଯୋଗ କରି ଅସୁରମାନଙ୍କର ତିନି ଦୁର୍ଭେଦ୍ୟ ବିମାନକୁ (ପୁର) ଭସ୍ମ କରିଦେଲେ । ସେହି ସମୟରେ ସ୍ୱର୍ଗରେ ଦୁନ୍ଦୁଭିମାନ ବାଜିଉଠିଲା । ଶହଶହ ବିମାନରେ ନଭୋମଣ୍ଡଳ ଛାଇ ହୋଇଗଲା । ଦେବ, ଋଷି, ପିତୃ, ସିଦ୍ଧ ଓ ଗନ୍ଧର୍ବମାନେ

ଆନନ୍ଦରେ ଜୟଧ୍ୱନିପୂର୍ବକ ପୁଷ୍ପବୃଷ୍ଟି କରିବାକୁ ଲାଗିଲେ । ଅପ୍‌ସରାମାନେ ଗାନ ଗାଇ ଗାଇ ନାଚୁଥିଲେ ।।୬୬-୬୯।। ଯୁଧିଷ୍ଠିର, ଏହିପରି ତିନିପୁରକୁ ଭସ୍ମ କରି ଭଗବାନ ଶଙ୍କର 'ତ୍ରିପୁରାରି' ପଦ ଲାଭ କଲେ ଏବଂ ବ୍ରହ୍ମାଦି ଦେବତାମାନଙ୍କର ସ୍ତୁତିଗାନ ଶୁଣି ନିଜ ଧାମକୁ ପ୍ରସ୍ଥାନ କଲେ ।।୭୦।। ଜଗଦ୍‌ଗୁରୁ ଶ୍ରୀହରି ନିଜ ମାୟାରେ ମନୁଷ୍ୟରୂପ ଧାରଣ କରି ଲୀଳାମାନ କରନ୍ତି, ଏବଂ ଋଷିମାନେ ତାଙ୍କ ପାବନ ଲୀଳାକୁ କୀର୍ତ୍ତନ କରି ଲୋକମାନଙ୍କୁ ପବିତ୍ର କରନ୍ତି । ମହାରାଜ, ତୁମକୁ ମୁଁ ସବୁ କିଛି କହିଗଲି, ବର୍ତ୍ତମାନ ଆଉ କ'ଣ ଶୁଣାଇବି ? ।।୭୧।।

## ଏକାଦଶ ଅଧ୍ୟାୟ

# ମାନବ ଧର୍ମ ଓ ବର୍ଣ୍ଣାଶ୍ରମ

ଶ୍ରୀ ଶୁକଦେବ ରାଜା ପରିକ୍ଷିତଙ୍କୁ କହିଲେ, ଭଗବାନଙ୍କଠାରେ ତନ୍ମୟ ଦୈତ୍ୟରାଜ ପ୍ରହ୍ଲାଦଙ୍କର ଚରିତ ସାଧୁସମାଜରେ ସମ୍ମାନିତ ହୁଏ । ମହାତ୍ମାମାନଙ୍କ ମଧ୍ୟରେ ଶ୍ରେଷ୍ଠ ଯୁଧିଷ୍ଠିର ସେହି ଚରିତ ଶୁଣି ଅତିଶୟ ଆନନ୍ଦିତ ହେଲେ ଏବଂ ବ୍ରହ୍ମାଙ୍କର ପୁତ୍ର ନାରଦଙ୍କୁ ପୁଣି ପଚାରିଲେ ।।୧।। ଭଗବାନ, ସନାତନ ଧର୍ମକୁ ଆଶ୍ରୟ କଲେ ମନୁଷ୍ୟ ପରମପଦ ଲାଭ କରେ । ଆପଣ ସାକ୍ଷାତ୍ ବ୍ରହ୍ମାଙ୍କର ପୁତ୍ର । ତାଙ୍କର ପୁତ୍ରମାନଙ୍କ ମଧ୍ୟରେ ଆପଣ ତପୋବଳ, ଯୋଗବଳ ଓ ସମାଧିବଳରେ ଅଧିକ ସମ୍ମାନ ଲାଭ କରନ୍ତି । ଆପଣଙ୍କପରି ନାରାୟଣଙ୍କର ପରମ ଭକ୍ତ, ଦୟାଳୁ, ସଦାଚାରୀ ଏବଂ ଶାନ୍ତ ପୁରୁଷ ବ୍ରାହ୍ମଣ-ଧର୍ମର ଗୋପନୀୟ ରହସ୍ୟକୁ ଯେପରି ଭାବରେ ଜାଣନ୍ତି, ତାହା ଅନ୍ୟ କେହି ଜାଣନ୍ତି ନାହିଁ ।।୨-୪।। ନାରଦ କହିଲେ, ଯୁଧିଷ୍ଠିର, ଭଗବାନ ଅଜନ୍ମା । ଲୋକମାନଙ୍କୁ ଧର୍ମର ସେତୁସ୍ୱରୂପ ସେହି ନାରାୟଣଙ୍କ ମୁହଁରୁ ମୁଁ ଯେଉଁ ସନାତନ ଧର୍ମର କଥା ଶୁଣିଛି, ତାଙ୍କୁ ପ୍ରଣାମ କରି ମୁଁ ତୁମ ଆଗରେ ତାହା ବର୍ଣ୍ଣନା କରୁଛି ।।୫।। ଚରାଚର ପ୍ରାଣିଙ୍କ କଲ୍ୟାଣପାଇଁ ଭଗବାନ ନାରାୟଣ ଦକ୍ଷକନ୍ୟାଙ୍କର ଗର୍ଭରୁ ନିଜ ଅଂଶକଳାରେ ଅବତୀର୍ଣ୍ଣ ହୋଇ ବଦରିକାଶ୍ରମରେ ତପସ୍ୟା କରୁଛନ୍ତି ।।୬।। ଯୁଧିଷ୍ଠିର, ଭଗବାନ୍ ସମସ୍ତ ବେଦସ୍ୱରୂପ । ଭଗବାନଙ୍କର ତତ୍ତ୍ୱ ଜାଣିଥିବା ମହର୍ଷିଗଣ ଯେଉଁ ସ୍ମୃତିମାନ ରଚନା କରିଛନ୍ତି, ତାହା ସବୁ ଧର୍ମର ପ୍ରମାଣ ଓ ଧର୍ମର ଅନୁଷ୍ଠାନଦ୍ୱାରା ଲୋକମାନଙ୍କର ଚିତ୍ତ ପ୍ରସନ୍ନ ହୁଏ ।।୭।।

ଯୁଧିଷ୍ଠିର, ଧର୍ମର ତିରିଶଟି ଲକ୍ଷଣ କୁହାଯାଇଛି । ତାହା ହେଉଛି ସତ୍ୟ, ଦୟା, ତପସ୍ୟା, ଶୌଚ, ତିତିକ୍ଷା, ଉଚିତ ଓ ଅନୁଚିତର ବିଚାର, ମନର ସଂଯମ, ଇନ୍ଦ୍ରିୟ-ନିଗ୍ରହ, ଅହିଂସା, ବ୍ରହ୍ମଚର୍ଯ୍ୟ, ତ୍ୟାଗ, ସ୍ୱାଧ୍ୟାୟ, ସରଳତା, ସନ୍ତୋଷ, ସମଦର୍ଶୀ ମହାତ୍ମାମାନଙ୍କର ସେବା, ଧୀରେ ଧୀରେ ସଂସାରଭୋଗରୁ ନିବୃତ୍ତି, ଲୋକଙ୍କ ପ୍ରଚେଷ୍ଟାର ବିପରୀତ ଫଳଦର୍ଶନ, ମୌନ, ଆତ୍ମଚିନ୍ତନ, ପ୍ରାଣୀମାନଙ୍କୁ ଅନ୍ନ ଆଦିର ବିଭାଗ, ମନୁଷ୍ୟ ଆଦି ସମସ୍ତ ପ୍ରାଣୀଙ୍କଠାରେ ଆତ୍ମବତ୍ ଓ ଦେବବତ୍ ବୁଦ୍ଧି, ବିଷ୍ଣୁଙ୍କର ନାମ ଶ୍ରବଣ, କୀର୍ତ୍ତନ, ସ୍ମରଣ, ସେବା, ପୂଜା, ପ୍ରଣତି, ଦାସ୍ୟ, ସଖ୍ୟ ଓ ଆତ୍ମସମର୍ପଣ । ମହାରାଜ, ଏହି ତିରିଶି ଲକ୍ଷଣବିଶିଷ୍ଟ ଧର୍ମର ଆଚରଣ କଲେ ସର୍ବାନ୍ତର୍ଯାମୀ ଭଗବାନ ସନ୍ତୁଷ୍ଟ ହୁଅନ୍ତି । ଯାହାଙ୍କ ବଂଶରେ ଗର୍ଭାଧାନ ଆଦି ସଂସ୍କାରକର୍ମ ନିରବଚ୍ଛିନ୍ନ ଭାବରେ ହୋଇ ଆସୁଛି, ବ୍ରହ୍ମା ତାହାଙ୍କୁ ଦ୍ୱିଜ ବୋଲି ଆଖ୍ୟା ଦେଇଛନ୍ତି । ଜନ୍ମ ଓ କର୍ମଦ୍ୱାରା ଯେଉଁମାନେ ଶୁଦ୍ଧ, ସେପରି ଦ୍ୱିଜମାନଙ୍କପାଇଁ ଯାଗଯଜ୍ଞ, ଅଧ୍ୟୟନ, ଦାନ ଓ ବ୍ରହ୍ମଚର୍ଯ୍ୟ ଆଦି ଆଶ୍ରମମାନଙ୍କର ବିଶେଷ କର୍ମର ବିଧାନ କରାଯାଇଛି ।।୧୩।।

ବ୍ରାହ୍ମଣମାନଙ୍କପାଇଁ ଅଧ୍ୟୟନ ଆଦି ଷଟ୍‌କର୍ମ (ଅଧ୍ୟୟନ, ଅଧ୍ୟାପନ, ଯଜନ, ଯାଜନ, ଦାନ ଓ ପ୍ରତିଗ୍ରହ) ଏବଂ ପ୍ରଜାରକ୍ଷକ ରାଜାରପାଇଁ ବ୍ରାହ୍ମଣଙ୍କୁ ଛାଡ଼ି ଅନ୍ୟ ତିନି ବର୍ଣ୍ଣଠାରୁ ଯଥାଯୋଗ୍ୟ କରଗ୍ରହଣକୁ ଜୀବନନିର୍ବାହର ବୃତ୍ତିରୂପେ

ଗ୍ରହଣଯାଇଛି ॥୧୪॥ ବୈଶ୍ୟର କାର୍ଯ୍ୟ ହେଉଛି ବ୍ରାହ୍ମଣ କୁଳର ଅନୁଗାମୀ ହୋଇ କୃଷି ଓ ବାଣିଜ୍ୟାଦି ବୃତ୍ତି ଦ୍ୱାରା ଜୀବିକା ନିର୍ବାହ କରିବା । ଅନ୍ୟ ତିନି ଜାତିର ସେବା କରି ଜୀବିକା ନିର୍ବାହ କରିବା ହେଉଚି ଶୂଦ୍ରର ବୃତ୍ତି ॥୧୫॥ ବ୍ରାହ୍ମଣଙ୍କର ଜୀବନନିର୍ବାହର ଚାରି ପ୍ରକାର ସାଧନ ଅଛି । ବାର୍ତ୍ତା (ଯାଗଯଜ୍ଞ କରି ଧନ ଉପାର୍ଜନ କରିବା), ଶାଳୀନ (କିଛି ନ ମାଗିଲେ ମଧ୍ୟ ମିଳିଯିବା), ଯାଯାବର (ପ୍ରତିଦିନ ବୁଲି ବୁଲି ଭିକ୍ଷା କରିବା) ଶିଳ-ଉଞ୍ଛନ ( ଧାନ ସବୁ କାଟି ନେଇଯିବା ପରେ ବିଲରେ ପଡ଼ିଥିବା ଗୋଟା ଧାନ ସଂଗ୍ରହ କରିବା) । ଏହି ଚାରି ପ୍ରକାର ବୃତ୍ତି ହେଉଛି କ୍ରମାନୁସାରେ ଶ୍ରେଷ୍ଠ ॥୧୬॥ ଆପଦକାଳ ବିନା ନିମ୍ନବର୍ଣ୍ଣର ପୁରୁଷ ଉତ୍ତମ ବର୍ଣ୍ଣର ବୃତ୍ତି ଅବଲମ୍ବନ କରିବା ଠିକ୍ ନୁହେଁ । କ୍ଷତ୍ରିୟ କେବଳ ଦାନ ନେବାକୁ ଛାଡ଼ି, ବ୍ରାହ୍ମଣମାନଙ୍କର ଷଟ୍‌କର୍ମ ମଧ୍ୟରୁ ଅବଶିଷ୍ଟ ପାଞ୍ଚ କର୍ମକୁ କରିପାରେ । ଆପଦ ସମୟରେ ସମସ୍ତେ ସମସ୍ତପ୍ରକାର ବୃତ୍ତିକୁ ଅବଲମ୍ବନ କରିପାରନ୍ତି ॥୧୭॥ ଋତ, ଅମୃତ, ମୃତ, ପ୍ରମୃତ ଏବଂ ସତ୍ୟାନୃତ -- ଏହା ମଧ୍ୟରୁ ଯେ କୌଣସି ବୃତ୍ତିକୁ ଆଶ୍ରୟ କରାଯାଇପାରେ, କିନ୍ତୁ ଶ୍ୱାନ ବୃତ୍ତିକୁ କେବେହେଲେ ଅବଲମ୍ବନ କରିବା ଉଚିତ ନୁହେଁ । ଋତ ହେଉଛି ଉଞ୍ଛ ଓ ଶିଳ ବୃତ୍ତି; ଅମୃତ ହେଉଛି ଅଯାଚିତ ପ୍ରାପ୍ତି; ମୃତ ହେଉଛି ଭିକ୍ଷା; ପ୍ରମୃତ ହେଉଛି କୃଷି ଆଦି ବୃତ୍ତି; ବାଣିଜ୍ୟ ହେଉଛି ସତ୍ୟାନୃତ ଏବଂ ନୀଚମାନଙ୍କର ସେବା ହେଉଛି ଶ୍ୱାନବୃତ୍ତି । ବ୍ରାହ୍ମଣ ଏବଂ କ୍ଷତ୍ରିୟ ଏହି ଅନ୍ତିମ ନିନ୍ଦିତ ବୃତ୍ତିକୁ କେବେହେଲେ ଆଶ୍ରୟ କରିବା ଉଚିତ ନୁହେଁ, କାରଣ ବ୍ରାହ୍ମଣ ସର୍ବବେଦମୟ ଏବଂ କ୍ଷତ୍ରିୟ ସର୍ବଦେବମୟ ॥୧୮-୨୦॥

ଶମ, ଦମ, ତପ, ଶୌଚ, ସନ୍ତୋଷ, କ୍ଷମା, ସରଳତା, ଜ୍ଞାନ, ଦୟା , ଭଗବତ୍‌ପରାୟଣତା ଓ ସତ୍ୟ -- ଏହା ହେଉଛି ବ୍ରାହ୍ମଣର ଲକ୍ଷଣ ॥୨୧॥ ଶୌର୍ଯ୍ୟ, ବୀର୍ଯ୍ୟ, ଧୈର୍ଯ୍ୟ, ତେଜ, ତ୍ୟାଗ, ଇନ୍ଦ୍ରିୟନିଗ୍ରହ, କ୍ଷମା, ବ୍ରାହ୍ମଣଙ୍କପ୍ରତି ଭକ୍ତି, ପ୍ରସନ୍ନ ସ୍ୱଭାବ ଓ ସତ୍ୟ--ଏହା ହେଉଚି କ୍ଷତ୍ରିୟର ଲକ୍ଷଣ ॥୨୨॥ ଦେବ,ଗୁରୁ ଓ ବିଷ୍ଣୁଙ୍କଠାରେ ଭକ୍ତି, ଧର୍ମ, ଅର୍ଥ ଓ କାମ -- ଏହି ତିନି ପୁରୁଷାର୍ଥର ରକ୍ଷା, ଆସ୍ତିକତା (ଈଶ୍ୱରବିଶ୍ୱାସ), ଉଦ୍ୟମଶୀଳତା ଏବଂ ବ୍ୟବସାୟରେ ପଟୁତା -- ଏହା ହେଉଚି ବୈଶ୍ୟର ଲକ୍ଷଣ ॥୨୩॥ ଉଚ୍ଚବର୍ଣ୍ଣମାନଙ୍କ ପ୍ରତି ନମ୍ରତା, ପବିତ୍ରତା, ପ୍ରଭୁର ନିଷ୍କପଟ ସେବା, ବୈଦିକ ମନ୍ତ୍ରହୀନ ଯଜ୍ଞ, ଚୋରି ନ କରିବା, ସତ୍ୟରେ ଚଳିବା, ଗୋ-ବ୍ରାହ୍ମଣଙ୍କୁ ରକ୍ଷା କରିବା -- ଏହା ହେଉଛି ଶୂଦ୍ରର ଲକ୍ଷଣ ॥୨୪॥

ଦେବତାଜ୍ଞାନରେ ପତିଙ୍କ ସେବା କରିବା, ତାଙ୍କ ଅନୁକୂଳ କାର୍ଯ୍ୟ କରିବା, ପତିଙ୍କର ପିତାମାତା ଓ ବନ୍ଧୁମାନଙ୍କୁ ସନ୍ତୁଷ୍ଟ ରଖିବା ଏବଂ ସର୍ବଦା ପତିଙ୍କର ବ୍ରତରେ ବ୍ରତୀ ହେବା ହେଉଚି ପତିବ୍ରତା ସ୍ତ୍ରୀର ଧର୍ମ ॥୨୫॥ ସାଧ୍ୱୀ ସ୍ତ୍ରୀ ପ୍ରତିଦିନ ଘରକୁ ଓଳାଇ, ଲିପାପୋଛା କରି ଶୁଦ୍ଧ ଓ ସୁନ୍ଦର ରଖିବା ଉଚିତ ଏବଂ ପରିଷ୍କାର ବସ୍ତ୍ର ଓ ବିଭିନ୍ନ ଅଳଙ୍କାରରେ ଭୂଷିତ ହୋଇ ପତିର ସନ୍ତୋଷବିଧାନ କରିବା ଉଚିତ ॥୨୬॥ ନିଜ ସ୍ୱାମୀର ଛୋଟ ବଡ଼ ଇଚ୍ଛାକୁ ସମୟାନୁସାରେ ପୂରଣ କରିବା ଏବଂ ବିନୟ, ଇନ୍ଦ୍ରିୟସଂଯମ, ସତ୍ୟ ଓ ପ୍ରିୟ ବାକ୍ୟ କହି ପ୍ରେମପୂର୍ବକ ପତିଙ୍କ ସେବା କରିବା ସାଧ୍ୱୀ ସ୍ତ୍ରୀର କର୍ତ୍ତବ୍ୟ ॥୨୭॥ ସେ ସର୍ବଦା ସନ୍ତୁଷ୍ଟା, ଲୋଭଶୂନ୍ୟା, ଦକ୍ଷା ଏବଂ ଧର୍ମଜ୍ଞା ହେବା ଉଚିତ । କେବେ ବିଚଳିତ ହେବା ଉଚିତ ନୁହେ । ସ୍ୱାମୀ ପତିତ ନ ହେଲେ ପ୍ରେମପୂର୍ଣ୍ଣ ଚିତ୍ତରେ ତାଙ୍କ ସହିତ ସହବାସ କରିବା ଉଚିତ ॥୨୮॥ ଲକ୍ଷ୍ମୀଙ୍କ ପରି ପତିପରାୟଣା ହୋଇ ଯେଉଁ ସ୍ତ୍ରୀ ପତିଙ୍କୁ ବିଷ୍ଣୁଭାବରେ ସେବା କରେ, ତାର ସ୍ୱାମୀ ବୈକୁଣ୍ଠଲୋକ ଲାଭ କରେ ଏବଂ ସେ ଲକ୍ଷ୍ମୀଙ୍କପରି ସେଠାରେ ସ୍ୱାମୀ ସହିତ ଆନନ୍ଦରେ ବାସ କରେ ॥୨୯॥

ରଜକ ଆଦି ଅନ୍ତ୍ୟଜ ବ୍ୟକ୍ତି ଏବଂ ଚଣ୍ଡାଳ ଆଦି ସଙ୍କରଜାତୀୟ ଲୋକ ଚୋରିବୃତ୍ତି ବା ଅନ୍ୟାନ୍ୟ ପାପ କର୍ମ ନ କରି ନିଜ ନିଜର କୌଳିକ ବୃତ୍ତି ଅବଲମ୍ବନ କରିବେ । ମହାରାଜ, ପ୍ରାୟ ପ୍ରତି ଯୁଗରେ ମନୁଷ୍ୟର ସ୍ୱଭାବ ଅନୁସାରେ ଧର୍ମର ବ୍ୟବସ୍ଥା କରାଯାଇଥାଏ -- ତାହା ଇହକାଳ ଓ ପରକାଳପାଇଁ ସୁଖପ୍ରଦ ହୁଏ ॥୩୦-୩୧॥ ଯେ ସ୍ୱାଭାବିକ ବୃତ୍ତିକୁ ଆଶ୍ରୟ କରି ସ୍ୱଧର୍ମ ପାଳନ କରିଚାଲେ, ସେ ଧୀରେ ଧୀରେ ସ୍ୱାଭାବିକ କର୍ମର ଉପରକୁ ଉଠି ଗୁଣାତୀତ ହୋଇଯାଏ ॥୩୨॥ ବାରମ୍ବାର

ବୀଜବପନଦ୍ୱାରା ଯେପରି କ୍ଷେତର ଉତ୍ପାଦିକା ଶକ୍ତି କମିଯାଏ ଏବଂ ଶେଷରେ ରୋପିତ ବୀଜ ମଧ୍ୟ ନଷ୍ଟ ହୋଇଯାଏ, ସେହିପରି ଅତିଶୟ ବିଷୟଭୋଗଦ୍ୱାରା ଭୋଗପ୍ରତି ବିରାଗ ଜନ୍ମେ; କିନ୍ତୁ କାମନାର ଅଳ୍ପ ଉପଭୋଗ ଦ୍ୱାରା ବିରାଗ ଜନ୍ମେ ନାହିଁ। ଯେପରି କି ଜ୍ୱଳନ୍ତ ଅଗ୍ନିରେ ଏକ ଏକ ବିନ୍ଦୁ ଘିଅ ଦେଲେ ତାହା ଆହୁରି ଜଳି ଉଠେ; ମାତ୍ର ଏକାବେଳକେ ଘିଅ ଢାଳିଦେଲେ ତାହା ନିଭିଯାଏ ।।୩୩-୩୪।। ଯେଉଁ ବର୍ଣ୍ଣପାଇଁ ଯେଉଁ ସବୁ ଲକ୍ଷଣର କଥା କୁହାଗଲା, ସେ ସବୁ ଲକ୍ଷଣ ଯଦି ଅନ୍ୟ ବର୍ଣ୍ଣର ପୁରୁଷଠାରେ ଦେଖିବାକୁ ମିଳେ, ତା'ହେଲେ ତାକୁ ସେହି ଲକ୍ଷଣଯୁକ୍ତ ବର୍ଣ୍ଣର ପୁରୁଷ ବୋଲି ଧରାଯିବ । (ଅର୍ଥାତ୍ ବ୍ରାହ୍ମଣ କୁଳରେ ଜନ୍ମ ହୋଇ ଶୂଦ୍ରର ଲକ୍ଷଣ ଥିଲେ ସେ ଶୂଦ୍ର ହେବ, ଏବଂ ଶୂଦ୍ର କୁଳରେ ଜନ୍ମ ହୋଇ ବ୍ରାହ୍ମଣର ଲକ୍ଷଣ ଥିଲେ ସେ ବ୍ରାହ୍ମଣ ବୋଲି ଧରାଯିବ । ବର୍ଣ୍ଣ ଜାତିଗତ ନୁହେଁ, ଏହା ଆଚରଣସିଦ୍ଧ) ।।୩୫।।

## ଦ୍ୱାଦଶ ଅଧ୍ୟାୟ

# ବ୍ରହ୍ମଚର୍ଯ୍ୟ ଓ ବାନପ୍ରସ୍ଥ ଆଶ୍ରମ

ଶ୍ରୀ ନାରଦ କହିଲେ, ଗୁରୁକୁଳରେ ରହୁଥିବା ବ୍ରହ୍ମଚାରୀ ଜିତେନ୍ଦ୍ରିୟ ହୋଇ ଚଳିବ ଏବଂ ନିଜକୁ ଗୁରୁଙ୍କର ଭୃତ୍ୟ ବୋଲି ମନେ କରି ତାଙ୍କ ପ୍ରତି ଅଖଣ୍ଡ ଅନୁରାଗ ରଖିବ ।।୧।। ସନ୍ଧ୍ୟାରେ ଏବଂ ପ୍ରାତଃ କାଳରେ ମୌନ ରହିବ ଓ ତ୍ରିସନ୍ଧ୍ୟାରେ ଗାୟତ୍ରୀ ଜପ କରି ଗୁରୁ, ଅଗ୍ନି, ସୂର୍ଯ୍ୟ ଓ ବିଷ୍ଣୁଙ୍କୁ ଅର୍ଚ୍ଚନା କରିବ ।।୨।। ଗୁରୁ ଡାକିଲେ ସଂଯତ ଭାବରେ ତାଙ୍କ ନିକଟକୁ ଯାଇ ବେଦାଧ୍ୟୟନ କରିବ । ବେଦପାଠର ଆରମ୍ଭରେ ଓ ଶେଷରେ ଗୁରୁଙ୍କ ପାଦଦ୍ୱୟରେ ମସ୍ତକ ରଖି ପ୍ରଣାମକରିବ ।।୩।। ଶାସ୍ତ୍ରବିଧି ଅନୁସାରେ ମେଖଳା (ଅଣ୍ଟାସୂତା), ମୃଗଛାଲ, ବସ୍ତ୍ର, ଜଟା, ଦଣ୍ଡ, କମଣ୍ଡଳୁ, ଯଜ୍ଞୋପବୀତ ଏବଂ ହସ୍ତରେ କୁଶ ଧାରଣ କରିବ ।।୪।। ସନ୍ଧ୍ୟାସମୟରେ ଏବଂ ପ୍ରାତଃକାଳରେ ଭିକ୍ଷା କରି ତାହା ଗୁରୁଙ୍କୁ ଅର୍ପଣ କରିବ । ଗୁରୁ ଅନୁମତି ଦେଲେ ଭୋଜନ କରିବ, ନଚେତ୍ ଉପବାସ ରହିବ ।।୫।। ସୁଶୀଳ, ମିତଭୋଜୀ, କାର୍ଯ୍ୟଦକ୍ଷ, ଶ୍ରଦ୍ଧାବାନ୍ ଓ ଜିତେନ୍ଦ୍ରିୟ ହେବ । ସ୍ତ୍ରୀ ଓ ସ୍ତ୍ରୈଣମାନଙ୍କ ସହିତ ଆବଶ୍ୟକତା ଅନୁଯାୟୀ ବ୍ୟବହାର କରିବ ।।୬।। ଯେ ଗୃହସ୍ଥ ନୁହେଁ, ବ୍ରହ୍ମଚାରୀ, ସେ ସ୍ତ୍ରୀବିଷୟ ଚର୍ଚ୍ଚାରୁ ନିଜକୁ ଦୂରରେ ରଖିବ । କାରଣ ବଳବାନ୍ ଇନ୍ଦ୍ରିୟମାନେ ଯତିମାନଙ୍କର ମନକୁ ମଧ୍ୟ ହରଣ କରି ନିଅନ୍ତି ।।୭।। ଯୁବକ ବ୍ରହ୍ମଚାରୀ ଯୁବତୀ ଗୁରୁପତ୍ନୀଙ୍କଦ୍ୱାରା ନିଜର କେଶପ୍ରସାଧନ, ଗାତ୍ରମର୍ଦ୍ଦନ, ସ୍ନାନ, ତୈଳମର୍ଦ୍ଦନାଦି କରାଇବେ ନାହିଁ । କାରଣ ସ୍ତ୍ରୀଲୋକମାନେ ହେଲେ ନିଆଁ, ପୁରୁଷମାନେ ଘିଅଘଡ଼ି ସଙ୍ଗେ ସମାନ । ଉଭୟ ଏକାଠି ରହିବା ଠିକ୍ ନୁହେ । ଏପରିକି ନିଜର କନ୍ୟା ସହିତ ମଧ୍ୟ ଏକାନ୍ତରେ ରହିବ ନାହିଁ । ସେ ଏକାନ୍ତରେ ନ ଥିବାବେଳେ ଆବଶ୍ୟକତା ଅନୁସାରେ ତା' ସହିତ ରହିପାର ।।୮-୯।। ସ୍ୱରୂପ ସାକ୍ଷାତ୍କାରଦ୍ୱାରା 'ଏହି ଦେହ ଓ ଇନ୍ଦ୍ରିୟାଦି ମିଥ୍ୟା ମାତ୍ର' - ଏହା ନିଶ୍ଚୟ କରି ଜୀବର ସ୍ତ୍ରୀପୁରୁଷ-ଭେଦବୁଦ୍ଧି ଦୂର ହେବାପର୍ଯ୍ୟନ୍ତ ସ୍ତ୍ରୀସଙ୍ଗରେ ରହିଲେ ବିପର୍ଯ୍ୟୟ ଘଟେ ।।୧୦।।

ଏହି ସବୁ ଆଚରଣବିଧି ଉଭୟ ଗୃହସ୍ଥ ଓ ସନ୍ୟାସୀଙ୍କପ୍ରତି ପ୍ରଯୁଜ୍ୟ । କିନ୍ତୁ ଗୃହସ୍ଥର ବିଶେଷତ୍ୱ ହେଉଚି, ଋତୁକାଳ-ସମୟରେ ସ୍ତ୍ରୀଗମନଯୋଗୁଁ ସେ ଗୁରୁକୁଳରେ ରହି ଏ ସବୁ ବିଧି ପାଳନ କରିପାରିବ ନାହିଁ ।।୧୧।। ଯେ ବ୍ରହ୍ମଚର୍ଯ୍ୟ ଧାରଣ କରିବ, ସେ ଦେହରେ ତେଲ ଓ ଆଖିରେ ଅଞ୍ଜନ ଲଗାଇପାରିବ ନାହିଁ, ଗାତ୍ରମର୍ଦ୍ଦନ କରିବ ନାହିଁ, ସ୍ତ୍ରୀଙ୍କର ଚିତ୍ର ଆଙ୍କିବ ନାହିଁ ଏବଂ ମାଳା, ଚନ୍ଦନ, ଅତର, ଅଳଙ୍କାର ଆଦି ଧାରଣ କରିବ ନାହିଁ ।।୧୨।। ବ୍ରାହ୍ମଣ, କ୍ଷତ୍ରିୟ ଓ ବୈଶ୍ୟ — ଏହି ବର୍ଣ୍ଣର ବ୍ରହ୍ମଚାରୀମାନେ ପୂର୍ବୋକ୍ତ ବିଧି ପାଳନପୂର୍ବକ ଗୁରୁକୁଳରେ ବାସ କରି ନିଜର ଶକ୍ତି ଓ ଆବଶ୍ୟକତା ଅନୁସାରେ ବେଦ, ଶିକ୍ଷା, କଳ୍ପ ଆଦି ତାର

ଛ'ଟି ଅଙ୍ଗ ଏବଂ ଉପନିଷଦ୍‌ମାନଙ୍କୁ ଅଧ୍ୟୟନ କରିବେ ଏବଂ ସେଥିରୁ ଜ୍ଞାନ ଲାଭ କରିବେ ॥୧୩॥ ନିଜର ଶକ୍ତି ଅନୁସାରେ ଗୁରୁଦକ୍ଷିଣା ପ୍ରଦାନ କରି ଗୁରୁଙ୍କର ଅନୁମତି ନେଇ ଗୃହସ୍ଥ, ବାନପ୍ରସ୍ଥ ବା ସନ୍ନ୍ୟାସ ଆଶ୍ରମରେ ପ୍ରବେଶ କରିବେ କିମ୍ବା ସେହି ଗୁରୁଙ୍କ ଆଶ୍ରମରେ ଆଜୀବନ ବ୍ରହ୍ମଚର୍ଯ୍ୟ ପାଳନ କରି ରହିବେ ॥୧୪॥ ଭଗବାନ ସ୍ୱରୂପତଃ ସର୍ବତ୍ର ରହିଛନ୍ତି । ତେଣୁ ତାଙ୍କର କେଉଁଠି ପ୍ରବେଶ କରିବା ଓ କେଉଁଠୁ ବାହାରିବା ପ୍ରଶ୍ନ ନାହିଁ । ତଥାପି ଅଗ୍ନିରେ, ଗୁରୁଙ୍କଠାରେ ନିଜ ଭିତରେ ଏବଂ ସର୍ବଭୂତରେ ଭଗବାନ୍ ନିଜ ଆଶ୍ରିତ ପ୍ରାଣୀମାନଙ୍କ ସହିତ ପ୍ରବେଶ କରୁଛନ୍ତି ବୋଲି ମନେ କରିବା ଉଚିତ ॥୧୫॥ ବ୍ରହ୍ମଚାରୀ, ଗୃହୀ, ସନ୍ନ୍ୟାସୀ ଓ ବାନପ୍ରସ୍ଥୀ ପୂର୍ବୋକ୍ତ ଧର୍ମ ଆଚରଣ କରି ତତ୍ତ୍ୱଜ୍ଞାନ ଲାଭଦ୍ୱାରା ପରମପଦ ପ୍ରାପ୍ତ ହୁଏ ॥୧୬॥

ଏବେ ମୁଁ ଋଷିମାନଙ୍କ ମତ ଅନୁସାରେ ବାନପ୍ରସ୍ଥ ବ୍ରତର ନିୟମମାନ କହୁଚି । ଏହିସବୁ ନିୟମମାନ ପାଳନ କଲେ ଆଶ୍ରମବାସୀ ମୁନି, ଋଷି ମହର୍ଲୋକକୁ ଗମନ କରନ୍ତି ॥୧୭॥ ବାନପ୍ରସ୍ଥୀ ଭୂମିକୁ ଚାଷ କରି ଉତ୍ପନ୍ନ କରାଯାଇଥିବା ଶସ୍ୟକୁ ଭୋଜନ କରିବେ ନାହିଁ । ଚାଷ କରା ନ ଯାଇ ମନକୁ ମନ ହୋଇଥିବା ଶସ୍ୟ ଯଦି ଅକାଳରେ ପାଚି ଯାଇଥାଏ ତା'ହେଲେ ତାକୁ ମଧ୍ୟ ଖାଇବେ ନାହିଁ । ନିଆଁରେ ସିଝିଥିବା କିମ୍ବା ଅସିଝା ଖାଦ୍ୟ ମଧ୍ୟ ଖାଇବେ ନାହିଁ । କେବଳ ସୂର୍ଯ୍ୟତାପରେ ପାଚିଥିବା ଫଳମୂଳ ଆଦି ସେବନ କରିବେ । ଆପେ ଆପେ ହେଉଥିବା ଅନ୍ନରେ ପ୍ରତ୍ୟହ ଚରୁ ଓ ପୁରୋଡାଶ ପ୍ରସ୍ତୁତ କରିବେ ଏବଂ ଯେତେବେଳେ ନୂଆ ନୂଆ ଧାନ ଆଦି ମିଳିବ, ସେତେବେଳେ ପୂର୍ବରୁ ସଞ୍ଚିତ ଶସ୍ୟକୁ ପରିତ୍ୟାଗ କରିବେ ॥୧୮-୧୯॥ ଅଗ୍ନିହୋତ୍ରପାଇଁ ଅଗ୍ନିକୁ ରକ୍ଷା କରିବା ନିମନ୍ତେ ସେ ଘର, ପତ୍ରକୁଡ଼ିଆ ବା ଗୁମ୍ଫାର ଆଶ୍ରୟ ନେବେ । କିନ୍ତୁ ନିଜେ ଶୀତ, ଅଗ୍ନି, ବାୟୁ, ବର୍ଷା ଏବଂ ସୂର୍ଯ୍ୟତାପ ସହ୍ୟ କରିବେ ॥୨୦॥ ଶିରରେ ଜଟାଧାରଣ କରିବେ ଏବଂ କେଶ, ରୋମ, ନଖ, ଦାଢ଼ି ଓ ନିଶ କାଟିବେ ନାହିଁ ଏବଂ ଦେହର ମଇଳା ସଫା କରିବେ ନାହିଁ । ଦଣ୍ଡ, କମଣ୍ଡଳୁ, ମୃଗଛାଲ, ବଲ୍‌କଳ, ବସ୍ତ୍ର ଏବଂ ଅଗ୍ନିହୋତ୍ରର ସମସ୍ତ ସାମଗ୍ରୀ ନିଜ ପାଖରେ ରଖିବେ ॥୨୧॥ ଏହିପରି ଭାବରେ ସେ ବାର ବର୍ଷ, ଆଠ ବର୍ଷ, ଚାରି ବର୍ଷ, ଦୁଇ ବର୍ଷ ବା ଏକ ବର୍ଷ ବନରେ ବିଚରଣ କରିବେ ଯେପରି କି ତପସ୍ୟାର କଷ୍ଟଦ୍ୱାରା ତାଙ୍କର ବୁଦ୍ଧିଭ୍ରଂଶ ନ ହୁଏ ॥୨୨॥ ଯଦି ବ୍ୟାଧି ବା ବାର୍ଦ୍ଧକ୍ୟଯୋଗୁଁ ସେ ନିଜର କ୍ରିୟାକର୍ମ ବା ବେଦାନ୍ତ ଅଭ୍ୟାସ କରିପାରିବେ ନାହିଁ, ତା'ହେଲେ ବିଧି ଅନୁଯାୟୀ ଅନଶନ ବ୍ରତ ଗ୍ରହଣ କରିବେ ॥୨୩॥ ଅନଶନପୂର୍ବରୁ ଆହବନୀୟ ଆଦି ଅଗ୍ନିମାନଙ୍କୁ ଆତ୍ମାରେ ଆରୋପ କରି ଦେହ ଓ ଇନ୍ଦ୍ରିୟାଦି ନିରୋଧପୂର୍ବକ 'ମୁଁ ଏବଂ ମୋର' ଏହି ଭାବ ପରିତ୍ୟାଗ କରିବେ ଏବଂ ପଞ୍ଚଭୂତରେ ଗଢ଼ା ଏହି ଦେହକୁ ପଞ୍ଚଭୂତରେ ବିଲୀନ କରିବେ ॥୨୪॥ ଧୀମାନ୍ ବ୍ୟକ୍ତି ଦେହର ଛିଦ୍ରସମୂହକୁ ଆକାଶରେ, ନିଃଶ୍ୱାସ ଓ ପ୍ରଶ୍ୱାସକୁ ବାୟୁରେ, ଦେହର ଉଷ୍ଣତାକୁ ଅଗ୍ନିରେ, ରକ୍ତ, କଫ, ପିତ୍ତ ଆଦି ଜଳୀୟ ତତ୍ତ୍ୱକୁ ଜଳରେ, ଅସ୍ଥି, ମାଂସ ଆଦି କଠିନ ଅଂଶକୁ ପୃଥିବୀରେ -- ଏହିପରି ଶରୀରର ଯେଉଁ ଯେଉଁ ଅଂଶ, ଯେଉଁ ଯେଉଁ ମହାଭୂତରୁ ଉତ୍ପନ୍ନ ହୋଇଛି, ସେହି ସେହି ଅଂଶକୁ ସେହି ସେହି ମହାଭୂତରେ ବିଲୀନ କରିବେ ॥୨୫॥ ବକ୍ତବ୍ୟ ବିଷୟ ସହିତ ବାକ୍ୟକୁ ଅଗ୍ନିରେ, ହାତ ଏବଂ ତଦ୍ଦ୍ୱାରା ହେଉଥିବା କଳାକୌଶଳକୁ ଇନ୍ଦ୍ରଙ୍କଠାରେ, ଗତି ସହିତ ପାଦଦ୍ୱୟକୁ ବିଷ୍ଣୁଙ୍କଠାରେ, ରତି ସହିତ ଲିଙ୍ଗକୁ ପ୍ରଜାପତିଙ୍କଠାରେ ଏବଂ ପାୟୁ ଓ ମଳମୂତ୍ରତ୍ୟାଗକୁ ମୃତ୍ୟୁଠାରେ, ଶ୍ରୋତ୍ର ଓ ତଦ୍ଦ୍ୱାରା ଶୁଣାଯାଉଥିବା ଶବ୍ଦକୁ ଚତୁର୍ଦ୍ଦିଗରେ, ସ୍ପର୍ଶ ସହିତ ଚର୍ମେନ୍ଦ୍ରିୟକୁ ବାୟୁରେ ଲୀନ କରିବେ ॥୨୬-୨୭॥ ଯୁଧିଷ୍ଠିର, ଚକ୍ଷୁ ସହିତ ରୂପମାନଙ୍କୁ ସୂର୍ଯ୍ୟରେ, ମଧୁର ଆଦି ରସ ସହିତ ଜିହ୍ୱାକୁ ଜଳରେ, ଘ୍ରାଣେନ୍ଦ୍ରିୟ ଏବଂ ଏହା ସହିତ ଆଘ୍ରାଣଯୋଗ୍ୟ ଗନ୍ଧକୁ ପୃଥିବୀରେ ଲୀନ କରିଦେବେ ॥୨୮॥ ତା'ପରେ ମନୋରଥ ସହିତ ମନକୁ ଚନ୍ଦ୍ରମାରେ ଏବଂ ଜ୍ଞେୟ ବିଷୟ ସହିତ ବୁଦ୍ଧିକୁ ବ୍ରହ୍ମାଙ୍କଠାରେ ଲୀନ କରିବେ । ଯାହାଙ୍କଠାରୁ ଅହଙ୍କାର ଏବଂ ମମତାରୂପକ କ୍ରିୟା ଉତ୍ପନ୍ନ ହୋଇଛି, ସେହି ରୁଦ୍ରଙ୍କଠାରେ ଅହଙ୍କାର ସହିତ କର୍ମସମୂହକୁ ଲୀନ କରିବେ । ଏହିପରି ଚେତନାର ସହିତ ଚିତ୍ତକୁ କ୍ଷେତ୍ରଜ୍ଞରେ ଏବଂ ସତ୍ତ୍ୱାଦି ଗୁଣମାନଙ୍କ କାରଣରୁ ସେମାନଙ୍କ ବିକାରରେ ଜାତ ଜୀବକୁ ନିର୍ବିକାର ବ୍ରହ୍ମରେ ଲୀନ କରିବେ ॥୨୯॥ ଏହାପରେ ସେ କ୍ଷିତିକୁ ଜଳରେ,

ଜଳକୁ ତେଜରେ, ତେଜକୁ ବାୟୁରେ, ବାୟୁକୁ ଆକାଶରେ, ଆକାଶକୁ ଅହଙ୍କାରରେ, ଅହଙ୍କାରକୁ ମହତ୍ତତ୍ତ୍ୱରେ, ମହତ୍‌ତତ୍ତ୍ୱକୁ ଅବ୍ୟକ୍ତରେ ଏବଂ ଅବ୍ୟକ୍ତକୁ ଅବିନାଶୀ ପରମାତ୍ମାଙ୍କଠାରେ ଲୀନ କରିବେ ॥୩୦॥ ଏହିପରି ସମସ୍ତ ଉପାଧିର ଶେଷ ହୋଇଯିବା ପରେ ଅବଶିଷ୍ଟ ଜୀବାତ୍ମା ହେଉଛି ବିକାରଶୂନ୍ୟ ଓ ପରମାତ୍ମାଙ୍କଠାରୁ ଅଭିନ୍ନ । ସାଧକ ଏହା ଅନୁଭବ କଲେ କାଷ୍ଠାଦିକୁ ଦଗ୍ଧ କରି ଅଗ୍ନି ଯେପରି ସ୍ୱରୂପରେ ରହେ, ସେହିପରି ନିଜେ ଶାନ୍ତ ହୋଇଯିବ ବା ନିର୍ବାଣ ଲାଭ କରିବ ॥୩୧॥

## ତ୍ରୟୋଦଶ ଅଧ୍ୟାୟ

# ଯତିବ୍ରତ ନିରୂପଣ

ଶ୍ରୀ ନାରଦ କହିଲେ, (ଅସମର୍ଥ ଅବସ୍ଥାରେ ସାଧକ ଅନଶନ ବ୍ରତ ଗ୍ରହଣ କରିବେ, ମାତ୍ର ସମର୍ଥ ହେଲେ) ପୂର୍ବପରି ଧ୍ୟାନ କରି ସନ୍ନ୍ୟାସ ଗ୍ରହଣ କରିବେ ଏବଂ ସବୁକିଛି ପରିତ୍ୟାଗ କରି, କୌଣସି ଆକାଙ୍‌କ୍ଷା ନ ରଖି, କେବଳ ଦେହକୁ ହିଁ ଅବଲମ୍ବନ କରିବେ । କୌଣସି ଗ୍ରାମରେ ଗୋଟିଏ ରାତିରୁ ଅଧିକ ସମୟ ନ କଟାଇ ପୃଥିବୀ ଭ୍ରମଣ କରିବେ । ଯଦି କୌଣସି ବସ୍ତ୍ର ପିନ୍ଧିବାପାଇଁ ଇଚ୍ଛା କରିବେ, ତା'ହେଲେ କୌପୀନ ମାତ୍ର ହିଁ ତାଙ୍କର ବସ୍ତ୍ର ହେବ । ଆପତ୍ତି ନ ଥିଲେ ଦଣ୍ଡ ଏବଂ ନିଜର ଆଶ୍ରମର ଚିହ୍ନ ଛଡ଼ା କୌଣସି ପରିତ୍ୟକ୍ତ ବସ୍ତୁକୁ ଗ୍ରହଣ କରିବେ ନାହିଁ ॥୧-୨॥ ସନ୍ନ୍ୟାସୀ ହେଉଛନ୍ତି ସମସ୍ତ ପ୍ରାଣୀଙ୍କର ହିତୈଷୀ, ସେଥିପାଇଁ ସେ ଶାନ୍ତ ଓ ଭଗବତ୍‌ପରାୟଣ ହୋଇ କାହାର ଆଶ୍ରୟ ନେବେ ନାହିଁ ଏବଂ ନିଜମଧ୍ୟରେ ଆନନ୍ଦ ଅନୁଭବ କରି ଏକାକୀ ବିଚରଣ କରିବେ ॥୩॥ ଏହି ସମ୍ପୂର୍ଣ୍ଣ ବିଶ୍ୱକୁ କାର୍ଯ୍ୟ ଓ କାରଣରୁ ଅତୀତ ପରମାତ୍ମାଙ୍କଠାରେ ଅଧ୍ୟସ୍ତ (ଆରୋପିତ) ବୋଲି ବିଚାର କରିବେ ଏବଂ କାର୍ଯ୍ୟକାରଣସ୍ୱରୂପ ଏହି ଜଗତ୍‌ରେ ତଥା ନିଜ ମଧ୍ୟରେ ପରମାତ୍ମା ବିଦ୍ୟମାନ ବୋଲି ଅନୁଭବ କରିବେ ॥୪॥ ଆତ୍ମଦର୍ଶୀ ସନ୍ନ୍ୟାସୀ ନିଦ୍ରା ଓ ଜାଗରଣର ସନ୍ଧି ମଧ୍ୟରେ ନିଜର ସ୍ୱରୂପକୁ ଅନୁଭବ କରିବେ । ବନ୍ଧନ ଏବଂ ମୋକ୍ଷ -- ଏହି ଦୁଇଟିଯାକ କେବଳ ମାୟା ଏବଂ ବସ୍ତୁତଃ କିଛି ନୁହେଁ ଏହା ବୁଝିପାରି ନିଶ୍ଚିତ ମୃତ୍ୟୁକୁ ବା ଅନିଶ୍ଚିତ ଜୀବନକୁ ଅଭିନନ୍ଦନ କରିବେ ନାହିଁ । କେବଳ ସମସ୍ତ ପ୍ରାଣୀଙ୍କର ଉତ୍ପତ୍ତି ଏବଂ ବିନାଶର କାରଣ କାଳକୁ ପ୍ରତୀକ୍ଷା କରି ରହିବେ ॥୫-୬॥ ନାସ୍ତିକଙ୍କର କୃତ ଅନାତ୍ମ ଶାସ୍ତ୍ରମାନଙ୍କପ୍ରତି ଅନୁରକ୍ତ ହେବେ ନାହିଁ । ଜୀବିକାର୍ଜନ ପାଇଁ ଜ୍ୟୋତିଷ ବିଦ୍ୟା ଆଦି ବୃତ୍ତି ଅବଲମ୍ବନ କରିବେ ନାହିଁ । ଯେଉଁ ସବୁ ତର୍କଦ୍ୱାରା ବାଦବିବାଦ ଜନ୍ମେ, ତାହା ପରିତ୍ୟାଗ କରିବେ ଏବଂ ସଂସାରରେ କାହାରି ପକ୍ଷ ଗ୍ରହଣ କରିବେ ନାହିଁ ॥୭॥ ନିଜର ଶିଷ୍ୟମଣ୍ଡଳୀ ସୃଷ୍ଟି କରିବେ ନାହିଁ । ବହୁ ଗ୍ରନ୍ଥ ପାଠ କରିବେ ନାହିଁ । ସଭାଦିରେ ବ୍ୟାଖ୍ୟାନ ଦେବେ ନାହିଁ । ମଠାଦି ବ୍ୟାପାର ମଧ୍ୟରେ ପଶିବେ ନାହିଁ ॥୮॥ ଶାନ୍ତ, ସମଦର୍ଶୀ ମହାତ୍ମା ସନ୍ନ୍ୟାସୀମାନଙ୍କପାଇଁ ଧର୍ମକାର୍ଯ୍ୟ ନିମନ୍ତେ କୌଣସି ଆଶ୍ରମର ଆବଶ୍ୟକତା ନାହିଁ । ତେଣୁ ନିଜ ଆଶ୍ରମର ଚିହ୍ନ ଥିଲେ, ତାକୁ ସେ ଛାଡ଼ି ଦେଇପାରନ୍ତି ॥୯॥ ନିଜର କୌଣସି ଚିହ୍ନ ପ୍ରକାଶ ନ କରି, ସେ ଆତ୍ମାନୁସନ୍ଧାନରେ ମଗ୍ନ ରହିବେ ଏବଂ ନିଜେ ଜ୍ଞାନୀ ହେଲେ ମଧ୍ୟ ଲୋକଙ୍କ ଦୃଷ୍ଟିରେ ବାଳକ ଓ ପାଗଳ ପରି ଏବଂ ବିଦ୍ୱାନ୍ ହେଲେ ମଧ୍ୟ ମୂକ ପରି ବ୍ୟବହାର କରିବେ ॥୧୦॥

ଏଠାରେ ମହାତ୍ମାମାନେ ଏକ ପ୍ରାଚୀନ ଇତିହାସର ଉଦାହରଣ ଦିଅନ୍ତି । ତାହା ହେଉଚି ପ୍ରହ୍ଲାଦ ଓ ଅଜଗର ବ୍ରତାଚାରୀ ମୁନିଙ୍କର ସମ୍ବାଦ ॥୧୧॥ ଥରେ ଭଗବାନଙ୍କ ପ୍ରିୟ ଭକ୍ତ ପ୍ରହ୍ଲାଦ କେତେକ ମନ୍ତ୍ରୀଙ୍କ ଗହଣରେ ଲୋକଙ୍କ ମନର କଥା ଜାଣିବାପାଇଁ ସେମାନଙ୍କ- ମଧ୍ୟରେ ବୁଲୁଥିବାବେଳେ କାବେରୀ ନଦୀକୂଳରେ ସହ୍ୟାଦ୍ରିର ସାନୁଦେଶରେ ଜଣେ ମୁନି ଭୂଇଁ ଉପରେ ଶୋଇଥିବାର ଦେଖିପାରିଲେ । ସେ ଧୂଳିଧୂସରିତ ହୋଇଥିବାଯୋଗୁଁ ତାଙ୍କ ଅଙ୍ଗକାନ୍ତି ମଳିନ ଦେଖାଯାଉଥିଲା ॥୧୨-୧୩॥ ତାଙ୍କ କର୍ମ, ଆକୃତି,

ଭାଷା ଏବଂ ବର୍ଣ୍ଣ, ଆଶ୍ରମ ଆଦି ଚିହ୍ନରୁ ସେ ଜଣେ ସିଦ୍ଧପୁରୁଷ କି ନୁହନ୍ତି, ତାହା ଲୋକଙ୍କୁ ଜଣାପଡୁ ନ ଥିଲା ।।୧୪।। ଭଗବାନଙ୍କ ପରମ ଭକ୍ତ ପ୍ରହ୍ଲାଦ ତାଙ୍କ ପାଦତଳେ ମୁଣ୍ଡିଆ ମାରି ପ୍ରଣାମ କଲେ ଏବଂ ତାଙ୍କୁ ବିଧିବଦ୍ଧ ଭାବରେ ପୂଜା କରି ଜିଜ୍ଞାସୁ ଭାବରେ ପଚାରିଲେ--ଭଗବାନ, ଆପଣଙ୍କ ଶରୀର ଉଦ୍ୟମୀ ଓ ଭୋଗୀ ପୁରୁଷର ଶରୀର ପରି ହୃଷ୍ଟପୁଷ୍ଟ । ସଂସାରର ନିୟମ ହେଉଛି, ଉଦ୍ୟୋଗୀ ଲୋକଙ୍କର ଧନଲାଭ ହୋଇଥାଏ; ଧନବାନ୍ ଲୋକଙ୍କୁ ହିଁ ଭୋଗ କରିବାକୁ ମିଳେ, ଏବଂ ଭୋଗୀ ଲୋକଙ୍କର ଏହିପରି ହୃଷ୍ଟପୁଷ୍ଟ ଶରୀର ହୋଇଥାଏ । ଅନ୍ୟଥା ନୁହେ ।।୧୫-୧୬।। ବ୍ରହ୍ମନ୍, ଆପଣ ତ ଶୋଇ ରହିଛନ୍ତି, ତେଣୁ ଆପଣ ଉଦ୍ୟମ କରୁ ନାହାନ୍ତି । ଆପଣଙ୍କ ପାଖକୁ ଧନ କୁଆଡୁ ଆସିବ ଯେ ଆପଣ ଭୋଗ କରିବେ ? ବିପ୍ର, ବିନା ଭୋଗରେ ଆପଣଙ୍କ ଦେହ କିପରି ଏପରି ହୃଷ୍ଟପୁଷ୍ଟ ହେଲା, ଯଦି ମୋତେ ଶୁଣାଇବା ଉଚିତ ମନେ କରନ୍ତି, ତା'ହେଲେ ଶୁଣାନ୍ତୁ ।।୧୭।। ଆପଣ ବିଦ୍ୱାନ୍, ସମର୍ଥ ଏବଂ ଚତୁର ଦେଖାଯାଉଛନ୍ତି । ଆପଣଙ୍କର ବିଚିତ୍ର ପ୍ରିୟ କଥା ଲୋକଙ୍କର ମନୋରଞ୍ଜନ କରିପାରେ । ଆପଣ ସମଦର୍ଶୀ । ଲୋକମାନେ କର୍ମରେ ଲାଗିଛନ୍ତି । ଆପଣ ତାହା ଦେଖି ମଧ୍ୟ ଏପରି ପଡ଼ି ରହିଛନ୍ତି, ଏହାର କାରଣ କଣ ? ।।୧୮।। ମହର୍ଷି ନାରଦ କହିଲେ, ଦୈତ୍ୟରାଜ ପ୍ରହ୍ଲାଦ ଏହିପରି ପଚାରିବାରୁ, ତାଙ୍କ ଅମୃତତୁଲ୍ୟ ବଚନରେ ବଶୀଭୂତ ହୋଇ ମହାମୁନି ଏହିପରି ଉତ୍ତର ଦେଲେ ।।୧୯।।

ବ୍ରାହ୍ମଣ କହିଲେ, ଅସୁରଶ୍ରେଷ୍ଠ, ତୁମେ ଜ୍ଞାନୀମାନଙ୍କଦ୍ୱାରା ସମ୍ମାନିତ । ମନୁଷ୍ୟର କର୍ମପ୍ରତି ପ୍ରବୃତ୍ତି ଓ ସେଥିରୁ ନିବୃତ୍ତିର ଫଳ କ'ଣ ହୁଏ ତୁମେ ନିଶ୍ଚୟ ତାହା ଜାଣି ପାରୁଥିବ । ତୁମର ଏକାନ୍ତ ଭକ୍ତିଯୋଗୁଁ ସ୍ୱୟଂ ଭଗବାନ ନାରାୟଣ ତୁମର ହୃଦୟରେ ବିରାଜମାନ । ସୂର୍ଯ୍ୟ ଅନ୍ଧକାରକୁ ଦୂର କରିବାପରି ସେ ତୁମର ଅଜ୍ଞାନକୁ ଦୂର କରୁଛନ୍ତି । ପ୍ରହ୍ଲାଦ, ତଥାପି ମୁଁ ଯାହା ଜାଣେ, ତଦନୁସାରେ ତୁମ ପ୍ରଶ୍ନର ଉତ୍ତର ଦେଉଛି । ଯେଉଁମାନେ ଆତ୍ମଶୁଦ୍ଧି ଇଚ୍ଛା କରନ୍ତି, ସେମାନେ ନିଶ୍ଚିତଭାବରେ ତୁମକୁ ସମ୍ମାନ ଦେବା ଉଚିତ ।।୨୦-୨୨।।

ତୃଷ୍ଣା ହେଉଚି ଜନ୍ମମୃତ୍ୟୁ ପ୍ରବାହର କାରଣ । ଇଚ୍ଛାନୁସାରେ ଯେତେ ଭୋଗ କଲେ ମଧ୍ୟ କାମନା ପୂର୍ଣ୍ଣ ହୁଏ ନାହିଁ । ସେଥିପାଇଁ କର୍ମ କରି କରି ମୁଁ ନାନା ଯୋନିରେ ଜନ୍ମ ହୋଇଚି ।।୨୩।। କର୍ମବଶରୁ ନାନା ଯୋନିରେ ଭ୍ରମଣ କରି ମୁଁ ଏହି ମନୁଷ୍ୟ ଜନ୍ମ ପାଇଚି -- ଯାହା ହେଉଚି ସ୍ୱର୍ଗ, ମୋକ୍ଷ ଓ ତିର୍ଯକ୍ ଯୋନି ପ୍ରାପ୍ତିର ଦ୍ୱାର । ସୁଖଲାଭ ଓ ଦୁଃଖର ନିବୃତ୍ତିପାଇଁ ଏଠାରେ ସ୍ତ୍ରୀ ସ୍ୱାମୀ କାମ କରୁଛନ୍ତି, କିନ୍ତୁ ଓଲଟା ଫଳ ମିଳୁଚି । ସେଥିପାଇଁ ମୁଁ କର୍ମରୁ ବିରତ ହୋଇଚି । ସୁଖ ହେଉଚି ଆତ୍ମାର ସ୍ୱରୂପ । ସମସ୍ତ ଚେଷ୍ଟାର ବିରତି ହିଁ ଏହାର ଶରୀର । ସେଥିପାଇଁ ଭୋଗ କେବଳ ମନର ସଂସ୍ପର୍ଶରୁ ଜାତ ବୋଲି ଭାବି ମୁଁ ମୋର ପ୍ରାରବ୍ଧ ଭୋଗ କରି ପଡ଼ିରହିଚି ।।୨୪-୨୬।। ଯାହା ସତ୍ୟ, ଯାହା ପ୍ରକୃତ ସୁଖ ଓ ମନୁଷ୍ୟର ସ୍ୱରୂପ, ତାହା ଭୁଲିଯାଇ ମନୁଷ୍ୟ ଯାହା ଅସତ୍, ପ୍ରକୃତ ସୁଖ ନୁହେ, ଦୁଃଖ, ତାହା ପଛରେ ଦୌଡ଼ି ଭୟଙ୍କର ଓ ବିଚିତ୍ର ଜନ୍ମମୃତ୍ୟୁର ଚକ୍ରରେ ଘୂରି ବୁଲୁଚି ।।୨୭।। ଜଳୋତ୍ପନ୍ନ ଶୈବାଳ ଆଦିଦ୍ୱାରା ଆଚ୍ଛନ୍ନ ଜଳକୁ ଜାଣି ନ ପାରି ଅଜ୍ଞ ଲୋକ ଯେପରି ଜଳ ଭାବି ମୃଗତୃଷ୍ଣା ପଛରେ ଦୌଡ଼େ, ସେହିପରି ସୁଖ ଖୋଜୁଥିବା ବ୍ୟକ୍ତି ଆତ୍ମ-ସ୍ୱରୂପ ସୁଖକୁ ପରିତ୍ୟାଗ କରି ଅନ୍ୟତ୍ର ଭ୍ରମି ହେଉଥାଏ ।।୨୮।। ଶରୀର ହେଉଚି ଦୈବର ଅଧୀନ । ତଦ୍ୱାରା ଯେଉଁ ବ୍ୟକ୍ତି ସୁଖ ପାଇବାକୁ ଓ ଦୁଃଖ ଦୂର କରିବାକୁ ଚେଷ୍ଟା କରେ, ସେହି ଭାଗ୍ୟହୀନ ବ୍ୟକ୍ତିର ବାରମ୍ବାର କରୁଥିବା କର୍ମ ବିଫଳ ହୋଇଯାଏ ।।୨୯।। ଆଧ୍ୟାତ୍ମିକ, ଆଧିଦୈବିକ ଓ ଆଧିଭୌତିକ--ଏହି ତ୍ରିବିଧ ଦୁଃଖରୁ ମରଣଶୀଳ ମନୁଷ୍ୟ ମୁକ୍ତ ନୁହେ । ତାର ବହୁ କଷ୍ଟାର୍ଜିତ ଅର୍ଥ ଓ ଭୋଗ ମୂଲ୍ୟହୀନ । ଲୋଭଗ୍ରସ୍ତ ଇନ୍ଦ୍ରିୟବଶରେ ଥିବା ଧନୀ ବ୍ୟକ୍ତିକୁ ନିଦ୍ରା ହୁଏ ନାହିଁ । ସେ ସବୁବେଳେ ଭୟ ଓ ସନ୍ଦେହ ମଧ୍ୟରେ ରହିଥାଏ । ତାର ଦୁଃଖ ମୁଁ ଦେଖିଚି ।।୩୦-୩୧।। ନିଜର ଧନ ଓ ଜୀବନକୁ ଲୋଭ କରୁଥିବା ଧନୀ ବ୍ୟକ୍ତି ସର୍ବଦା ରାଜପୁରୁଷ, ଚୋର, ଶତ୍ରୁ, ସ୍ୱଜନ, ପଶୁପକ୍ଷୀ, ଅନ୍ୟ ଧନୀ ଏବଂ କାଳକୁ ଓ କାଳେ ଅଧିକ ଖର୍ଚ୍ଚ ହୋଇଯିବ, ସେଥିପାଇଁ ନିଜକୁ ମଧ୍ୟ ଭୟ କରୁଥାଏ । ତେଣୁ ଯେଉଁ ଧନ-ଜୀବନର ସ୍ପୃହା ଯୋଗୁ ଶୋକ,

ମୋହ, ଭୟ, କ୍ରୋଧ, ଆସକ୍ତି, କାପୁରୁଷତା ଏବଂ ଶ୍ରମ ଆଦି ଜନ୍ମେ, ତାହା ପରିତ୍ୟାଗ କରିବା ଉଚିତ ।।୩୨-୩୩।। ଏହି ସଂସାରରେ ମହୁମାଛି ଓ ଅଜଗର ସାପ ମୋର ଗୁରୁ । ସେ ଦୁହିଁଙ୍କଠାରୁ ମୁଁ ବୈରାଗ୍ୟ ଓ ସନ୍ତୋଷ ଶିକ୍ଷା କରିଚି ।।୩୪।। ମୁଁ ମହୁମାଛିଠାରୁ ସମସ୍ତ କର୍ମରେ ବୈରାଗ୍ୟ ହେବା ଶିକ୍ଷା କରିଚି । ମହୁମାଛି ବହୁ କଷ୍ଟରେ ମହୁ ସଞ୍ଚୟ କରେ, ମାତ୍ର ଅନ୍ୟମାନେ ତାହା ଅପହରଣ କରି ନିଅନ୍ତି । ଧନ ସଞ୍ଚୟ କରି ରଖିଥିବା ବ୍ୟକ୍ତିର ଦଶା ସେହିପରି ହୁଏ ।।୩୫।। ମୁଁ ଅଜଗର ସର୍ପ ପରି କୌଣସି ଚେଷ୍ଟା ନ କରି ପଡ଼ି ରହିଥାଏ । ଯଦି ଦୈବବଶରୁ କିଛି ମିଳିଗଲା ତ ଭଲ; ନ ମିଳିଲେ କିଛି ଇଚ୍ଛା ନ କରି ବହୁଦିନ ପର୍ଯ୍ୟନ୍ତ ପଡ଼ିରହେ ।।୩୬।। କେତେବେଳେ ବହୁ ସାର ଥିବା ସ୍ୱାଦଯୁକ୍ତ ଖାଦ୍ୟ, କେତେବେଳେ ସାର ନ ଥିବା ଅସ୍ୱାଦୁ ଖାଦ୍ୟ, କେତେବେଳେ ଅଳ୍ପ, କେତେବେଳେ ବେଶୀ, କେତେବେଳେ କିଏ ଶ୍ରଦ୍ଧାରେ ଦେଲା ତ କିଏ ଅବମାନନା କରି ଦେଲା କେବେ ରାତିରେ ବା କେବେ ଦିନରେ, ଯେତେବେଳେ ଯାହା ମିଳିଲା, ଏପରି କି ଖାଇବାପରେ ଇଚ୍ଛା ହେଲେ ମଧ୍ୟ ପୁଣି ଖାଇନିଏ ।।୩୭-୩୮।। ମୁଁ ମୋର ପ୍ରାରବ୍ଧ ଭୋଗ କରିବାରେ ସନ୍ତୁଷ୍ଟ । ତେଣୁ କେତେବେଳେ ରେଶମୀ ବସ୍ତ୍ର ବା ସୂତାଲୁଗା, କେତେବେଳେ ମୃଗଚର୍ମ ବା ଛିଣ୍ଡା କନା, କେତେବେଳେ ବା ବଲ୍କଳ ପିନ୍ଧି ନିଏ । କେତେବେଳେ ଭୂମିଶଯ୍ୟା, କେତେବେଳେ ବା ଘାସ, ପତ୍ର, ପଥର, ଓ ପାଉଁଶ ଉପରେ ମଧ୍ୟ ଶୋଇପଡ଼େ । କେତେବେଳେ କିଏ ଅନୁରୋଧ କଲେ ପ୍ରାସାଦମଧ୍ୟରେ ପଲଙ୍କ ଓ ଗଦିର ଶେଯକୁ ମଧ୍ୟ ଗ୍ରହଣ କରେ ।।୩୯-୪୦।। କେତେବେଳେ ସ୍ନାନ ସାରି ଚନ୍ଦନଚର୍ଚ୍ଚିତ ଦେହରେ ସୁନ୍ଦର ବସ୍ତ୍ର, ମାଲ୍ୟ ଓ ଅଳଙ୍କାରାଦିଦ୍ୱାରା ଭୂଷିତ ହୋଇ ରଥରେ ବା ଘୋଡ଼ାରେ ବା ହାତୀରେ ଚଢ଼ି ବୁଲେ କିମ୍ବା କେତେବେଳେ ଦିଗମ୍ବର ହୋଇ ପିଶାଚ ପରି ଘୂରୁଥାଏ ।।୪୧।। ମନୁଷ୍ୟମାନଙ୍କର ସ୍ୱଭାବ ଭିନ୍ନ ଭିନ୍ନ । ମୁଁ କାହାର ନିନ୍ଦା ବା କାହାର ସ୍ତୁତି କରେ ନାହିଁ । ମୁଁ କେବଳ ପ୍ରାଣୀମାନଙ୍କର ମଙ୍ଗଳ କାମନା କରେ ଏବଂ ଈଶ୍ୱରଙ୍କ ସହିତ ଏକାତ୍ମତା ଆଶା କରେ ।।୪୨।। ତେଣୁ ସତ୍ୟଦର୍ଶୀ ମୁନି ଭେଦବୁଦ୍ଧିକୁ ଚିତ୍ତରେ, ଚିତ୍ତକୁ ମନରେ, ମନକୁ ଅହଙ୍କାର ତତ୍ତ୍ୱରେ, ଅହଙ୍କାରକୁ ମହତ୍ତତ୍ତ୍ୱରେ, ମହତ୍ତତ୍ତ୍ୱକୁ ମାୟାରେ ଏବଂ ମାୟାକୁ ଆତ୍ମାନୁଭୂତିରେ ଲୀନ କରିବେ । ଏହିପରି ଆତ୍ମାନୁଭୂତିଦ୍ୱାରା ଆତ୍ମସ୍ୱରୂପ ପରମାତ୍ମାଙ୍କଠାରେ ସ୍ଥିତ ହୋଇ ସମସ୍ତକର୍ମରୁ ନିଶ୍ଚେଷ୍ଟ ଓ ବିରତ ହେବେ ।।୪୩-୪୪।। ମୋର ଏହି ଆତ୍ମକଥା ଅତିଶୟ ଗୁପ୍ତ । ଏହା ଲୋକମତରୁ ଓ ଶାସ୍ତ୍ରମତରୁ ବାହାର । କିନ୍ତୁ ଆପଣ ଭଗବାନଙ୍କର ପରମଭକ୍ତ ହୋଇଥିବାଯୋଗୁଁ ଆପଣଙ୍କ ଆଗରେ ତାହା ମୁଁ ବର୍ଣ୍ଣନା କଲି ।।୪୫।। ନାରଦ କହିଲେ, ମହାରାଜ, ଅସୁରଶ୍ରେଷ୍ଠ ପ୍ରହ୍ଲାଦ ପରମହଂସଙ୍କର ଏହି ଧର୍ମକୁ ମୁନିଙ୍କଠାରୁ ଶ୍ରବଣ କରି ତାଙ୍କୁ ପୂଜା କଲେ ଏବଂ ତାଙ୍କଠାରୁ ବିଦାୟ ନେଇ ଆନନ୍ଦରେ ନିଜ ରାଜଧାନୀକୁ ପ୍ରସ୍ଥାନ କଲେ ।।୪୬।।

## ଚତୁର୍ଦ୍ଦଶ ଅଧ୍ୟାୟ

# ଗୃହସ୍ଥର ଆଚରଣବିଧି

ଯୁଧିଷ୍ଠିର ପଚାରିଲେ, ଦେବର୍ଷି ନାରଦ, ମୁଁ ଗୃହସ୍ଥ, ଗୃହ ପ୍ରତି ଆସକ୍ତ, ମୋ ପରି ବ୍ୟକ୍ତି ସହଜରେ କେଉଁ ସାଧନାଦ୍ୱାରା ଏହି ପଦବୀ ଲାଭ କରିପାରିବ, ତାହା ଦୟା କରି ବୁଝାଇଦିଅନ୍ତୁ ।।୧।।

ନାରଦ କହିଲେ, ଯୁଧିଷ୍ଠିର, ଗୃହସ୍ଥାଶ୍ରମରେ ରହି ମନୁଷ୍ୟ ଭଗବାନଙ୍କଠାରେ ସମର୍ପଣଭାବ ରଖି ଧର୍ମ ଅନୁଯାୟୀ ସବୁକାମ କରିଯିବ ଏବଂ ସାଧୁ ମହାତ୍ମାମାନଙ୍କର ସେବା କରିବ ।।୨।। ଭଗବାନଙ୍କ ବିଭିନ୍ନ ଅବତାରର ଅମୃତସ୍ୱରୂପ ଲୀଳାମାନଙ୍କୁ ଶ୍ରଦ୍ଧାର ସହିତ ବାରମ୍ବାର ଶ୍ରବଣ କରିବ ଏବଂ ସଂସାରବିରାଗୀ ପୁରୁଷମାନଙ୍କ ସହିତ ବାସ କରିବ ।।୩।। ସ୍ୱପ୍ନଭଙ୍ଗ ହେଲେ

ଯେପରି ସ୍ୱପ୍ନବିଷୟପ୍ରତି ମନୁଷ୍ୟର ଆସକ୍ତି ରହେ ନାହିଁ, ସେହିପରି ସତ୍‌ସଙ୍ଗ ଦ୍ୱାରା ବୁଦ୍ଧି ଶୁଦ୍ଧ ହେଲେ ନିଜର ଶରୀର, ସ୍ତ୍ରୀ, ପୁତ୍ର, ଧନ ଆଦି ପ୍ରତି ଆସକ୍ତି ଛାଡ଼ିଯାଏ । କାରଣ ଦିନେ ନା ଦିନେ ସେମାନଙ୍କୁ ଛାଡ଼ିବାକୁ ହେବ ।।୪।। ବୁଦ୍ଧିମାନ୍ ଗୃହସ୍ଥ ପ୍ରୟୋଜନ ଅନୁସାରେ ଗୃହ ଓ ଶରୀରର ସେବା କରିବା ଉଚିତ, ଅଧିକ ନୁହେଁ । ଭିତରେ ବିରାଗ ଓ ବାହାରେ ଆସକ୍ତିର ଭାବ ପ୍ରକାଶ କରି ସାଧାରଣ ମନୁଷ୍ୟପରି ବ୍ୟବହାର କରିବ ।।୫।। ମାତା, ପିତା, ଭାଇ, ବନ୍ଧୁ, ପୁତ୍ର, ମିତ୍ର, ଜାତି, ଜ୍ଞାତି ଯାହା କହିବେ ବା ଚାହିବେ, ଭିତରେ କୌଣସି ମମତା ନ ରଖି ତାହା ଅନୁମୋଦନ କରିବ ।।୬।। ଜ୍ଞାନୀ ବ୍ୟକ୍ତି ବର୍ଷାଦ୍ୱାରା ଉତ୍ପନ୍ନ ଶସ୍ୟ ଆଦିକୁ ଏବଂ ଖଣିରୁ ଉତ୍ପନ୍ନ ବା ଅକସ୍ମାତ୍ ଲବ୍ଧ ଧନ ଆଦିକୁ ଭଗବାନଙ୍କର ଦାନ ବୋଲି ଗ୍ରହଣ କରି ପ୍ରାରବ୍ଧ ଅନୁସାରେ ଭୋଗ କରିବ । ଯେଉଁ ପରିମିତ ଧନଦ୍ୱାରା ଉଦରପୋଷଣ କରାଯାଇପାରେ, ସେହି ପରିମିତ ଧନ ଉପରେ ହିଁ ତା'ର ଅଧିକାର ରହିବ । ଏଥିରୁ ଅଧିକ ସମ୍ପତ୍ତିକୁ ଯେ ନିଜର ବୋଲି ମନେ କରେ, ସେ ଚୋର ଏବଂ ଅବଶ୍ୟ ଦଣ୍ଡନୀୟ ।।୭-୮।। ମୃଗ, ଓଟ, ଗଧ, ମର୍କଟ, ମୂଷିକ, ସରୀସୃପ, ପକ୍ଷୀ ଓ ମକ୍ଷିକାମାନଙ୍କୁ ନିଜର ପୁତ୍ରତୁଲ୍ୟ ମନେକରିବ । ନିଜର ପୁତ୍ର ଓ ସେମାନଙ୍କ ମଧ୍ୟରେ କ'ଣ ବା ପ୍ରଭେଦ ଅଛି ? ।।୯।। ଗୃହସ୍ଥ ବ୍ୟକ୍ତି ଅର୍ଥ, ଧର୍ମ ଓ କାମପାଇଁ ବେଶୀ କଷ୍ଟ କରିବା ଉଚିତ ନୁହେଁ । ଦେଶ, କାଳ ଓ ପ୍ରାରବ୍ଧ ଅନୁସାରେ ଯେତିକି ମିଳିବ, ସେତିକି ସେବା କରିବ ।।୧୦।। ଗୃହସ୍ଥ ନିଜର ସମସ୍ତ ଭୋଗ୍ୟ ପଦାର୍ଥକୁ କୁକୁର, ପତିତ ଓ ଚଣ୍ଡାଳଙ୍କ ପର୍ଯ୍ୟନ୍ତ ସମସ୍ତ ପ୍ରାଣୀଙ୍କ ମଧ୍ୟରେ ଯଥାଯଥ ଭାବରେ ବାଣ୍ଟିଦେବ । ଏପରିକି ନିଜ ସ୍ତ୍ରୀ, ଯାହା ପ୍ରତି ଗଭୀର ମମତା ଜନ୍ମିଥାଏ, ତାକୁ ମଧ୍ୟ ଅତିଥିମାନଙ୍କର ନିର୍ଦୋଷ ସେବାରେ ନିୟୋଜିତ କରିବ ।।୧୧।। ଯେଉଁ ସ୍ତ୍ରୀପାଇଁ ଲୋକ ନିଜର ପ୍ରାଣ ପର୍ଯ୍ୟନ୍ତ ବିସର୍ଜନ କରେ ଏବଂ ନିଜର ମା', ବାପ ଓ ଗୁରୁଙ୍କୁ ମଧ୍ୟ ହତ୍ୟା କରିବାକୁ ପଛାଏ ନାହିଁ, ସେଇ ସ୍ତ୍ରୀଠାରୁ ମମତାକୁ ଛଡ଼ାଇ ପାରିଲେ, ଭଗବାନଙ୍କୁ ବଶ କରିହେବ ।।୧୨।। ଏହି ଶରୀର ଶେଷରେ କୃମି, ବିଷ୍ଠା ଓ ଭସ୍ମରେ ପରିଣତ ହେବାକୁ ଯାଉଛି । ତେଣୁ ଏହି ତୁଚ୍ଛ ଦେହପ୍ରତି ଓ ଏହି ଦେହପାଇଁ ପୁଣି ସ୍ତ୍ରୀ ପ୍ରତି ଆସକ୍ତି ! ଅଥଚ ଅନନ୍ତ ମହିମାରେ ଆକାଶକୁ ଆଚ୍ଛାଦନ କରିପାରୁଥିବା ନିଜର ଆତ୍ମାପ୍ରତି ଉଦାସୀନତା ! ।।୧୩।। ପ୍ରାଜ୍ଞ ଗୃହସ୍ଥ ପ୍ରାରବ୍ଧଦ୍ୱାରା ମିଳିଥିବା ପଞ୍ଚଯଜ୍ଞ ଆଦିରୁ ବଳକା ଅନ୍ନଦ୍ୱାରା ନିଜର ଜୀବିକା ନିର୍ବାହ କରିବ । ଏହାଛଡ଼ା ଅନ୍ୟ କୌଣସି ବସ୍ତୁ ପ୍ରତି ଲୋଭ ରଖିବ ନାହିଁ । ତାହେଲେ ଯାଇ ସେ ମୁକ୍ତ ପୁରୁଷର ପଦ ଲାଭ କରିପାରିବ ।।୧୪।। ନିଜର ବର୍ଣ୍ଣାଶ୍ରମ ବୃତ୍ତିଦ୍ୱାରା ଲବ୍ଧ ବସ୍ତୁରେ ପ୍ରତିଦିନ ଦେବତା, ଋଷି, ମନୁଷ୍ୟ, ଭୂତ ଓ ପିତୃଗଣଙ୍କୁ ସନ୍ତୁଷ୍ଟ କରି ନିଜର ଆତ୍ମା ଓ ଅନ୍ତର୍ଯାମୀ ପୁରୁଷଙ୍କୁ ସନ୍ତୋଷ ପ୍ରଦାନ କରିବ ।।୧୫।। ଯଦି କୌଣସି ଅଧିକାର ହେତୁ ସମସ୍ତ ଆବଶ୍ୟକ ଯଜ୍ଞବସ୍ତୁ ମିଳିଯାଏ, ତା'ହେଲେ ବଡ଼ବଡ଼ ଯଜ୍ଞ ବା ଅଗ୍ନିହୋତ୍ରାଦି ଦ୍ୱାରା ଭଗବାନଙ୍କୁ ଆରାଧନା କରିବ ।।୧୬।। ଯୁଧିଷ୍ଠିର, ଅବଶ୍ୟ ସମସ୍ତ ଯଜ୍ଞର ଭୋକ୍ତା ହେଉଛନ୍ତି ଭଗବାନ । କିନ୍ତୁ ବ୍ରାହ୍ମଣଙ୍କ ମୁହଁରେ ପଡୁଥିବା ହବିଷ୍ୟାନ୍ନଦ୍ୱାରା ସେ ଯେପରି ତୃପ୍ତ ହୁଅନ୍ତି, ଅଗ୍ନିମୁଖରେ ପଡୁଥିବା ଘୃତଦ୍ୱାରା ସେ ସେପରି ତୃପ୍ତ ହୁଅନ୍ତି ନାହିଁ ।।୧୭।। ଏଥିପାଇଁ ବ୍ରାହ୍ମଣ, ଦେବତା ଓ ମନୁଷ୍ୟାଦି ସମସ୍ତ ପ୍ରାଣୀଙ୍କର ଉପଯୁକ୍ତ ସେବାଦ୍ୱାରା ସର୍ବାନ୍ତର୍ଯାମୀ ଭଗବାନଙ୍କର ପୂଜା ହୁଏ । ତେଣୁ ଏଥିରେ ବ୍ରାହ୍ମଣଙ୍କୁ ହିଁ ମୁଖ୍ୟ ସ୍ଥାନ ଦିଆଯାଏ ।।୧୮।। ଧନବାନ୍ ଦ୍ୱିଜ ଭାଦ୍ରବମାସରେ ନିଜ ସାମର୍ଥ୍ୟ ଅନୁସାରେ ନିଜ ପିତା, ମାତା ଓ ତାଙ୍କ ବନ୍ଧୁ (ପିତାମହ, ମାତାମହ ଆଦି)ଙ୍କର ଅପରପକ୍ଷବିହିତ ଶ୍ରାଦ୍ଧ କରିବ ।।୧୯।। ଏହାଛଡ଼ା ଉତ୍ତରାୟଣ ଓ ଦକ୍ଷିଣାୟନ (କର୍କଟ ଓ ମକର ସଂକ୍ରାନ୍ତି), ମହାବିଷୁବ ସଂକ୍ରାନ୍ତି, ବ୍ୟତୀପାତ ଯୋଗ, ଦିନକ୍ଷୟ, ଚନ୍ଦ୍ରଗ୍ରହଣ ଓ ସୂର୍ଯ୍ୟୋପରାଗ, ଶ୍ରବଣା ଦ୍ୱାଦଶୀ, ଅକ୍ଷୟ ତୃତୀୟା, କାର୍ତ୍ତିକ ଶୁକ୍ଳ ନବମୀ, ମାର୍ଗଶିର, ପୌଷ, ମାଘ ଏବଂ ଫଗୁଣ -- ଏହି ଚାରି ମାସର କୃଷ୍ଣପକ୍ଷ ଅଷ୍ଟମୀ, ମାଘ ଶୁକ୍ଳ ସପ୍ତମୀ, ମଘାନକ୍ଷତ୍ରଯୁକ୍ତ ମାଘପୂର୍ଣ୍ଣିମା ଏବଂ ମାସମାନଙ୍କ ନାମରେ ଥିବା ନକ୍ଷତ୍ରଯୁକ୍ତ ତିଥି--ତାହା ପୂର୍ଣ୍ଣିମା ହେଉ ବା ନ ହେଉ ଯଥା ଚୈତ୍ର, ବୈଶାଖ, ଜ୍ୟେଷ୍ଠ ଆଦି, ଦ୍ୱାଦଶୀରେ ଅନୁରାଧା ଓ ଶ୍ରବଣା, ଉତ୍ତରା ଫାଲଗୁନୀ, ଉତ୍ତରାଷାଢ଼ା, ଉତ୍ତରଭାଦ୍ରପଦ୍ ନକ୍ଷତ୍ର ଏ ତିନି ନକ୍ଷତ୍ରରେ ଏକାଦଶୀ, ଜନ୍ମନକ୍ଷତ୍ର ଓ ଶ୍ରବଣା ନକ୍ଷତ୍ରଯୁକ୍ତ ତିଥି -- ଏହି ସବୁ ସମୟରେ ପିତୃଗଣଙ୍କର ଶ୍ରାଦ୍ଧ କରିବା ବିହିତ ଓ ସେଥିପାଇଁ ଏହା ଶ୍ରେଷ୍ଠ ସମୟ । ଏହି ଯୋଗସବୁ

କେବଳ ଶ୍ରାଦ୍ଧପାଇଁ ନୁହେଁ, ଅନ୍ୟ ପୁଣ୍ୟକାମମାନଙ୍କପାଇଁ ମଧ୍ୟ ଉପଯୁକ୍ତ । ଏହାଦ୍ୱାରା ନିଜର ମଙ୍ଗଳ ହୁଏ ଓ ଶୁଭଫଳ ପ୍ରାପ୍ତ ହୁଏ । ଏହି ଶୁଭ ଯୋଗମାନଙ୍କରେ ସ୍ନାନ, ଜପ, ହୋମ, ବ୍ରତ ତଥା ଦେବତା ଓ ବ୍ରାହ୍ମଣଙ୍କର ପୂଜା କରାଗଲେ ଏବଂ ଯାହା କିଛି ଦେବତା, ପିତୃ, ମନୁଷ୍ୟ ଓ ଅନ୍ୟ ପ୍ରାଣୀମାନଙ୍କୁ ଅର୍ପଣ କରାଗଲେ ତାହାର ଅକ୍ଷୟ ଫଳ ଲାଭ ହୁଏ । ଯୁଧିଷ୍ଠିର, ଏହିପରି ସ୍ତ୍ରୀର ପୁଂସବନ ଆଦି, ସନ୍ତାନର ଜାତକର୍ମାଦି ତଥା ନିଜର ଯଜ୍ଞଦୀକ୍ଷା ଆଦି ସଂସ୍କାର ସମୟରେ, ଶବଦାହ ଦିନରେ, ବାର୍ଷିକ ଶ୍ରାଦ୍ଧ ଉପଲକ୍ଷରେ ଏବଂ ଅନ୍ୟ ମାଙ୍ଗଳିକ କର୍ମମାନଙ୍କରେ ଦାନ କରାଯିବା ଉଚିତ ॥୨୦-୨୬॥

ବର୍ତ୍ତମାନ ଧର୍ମ ଆଦି ଶ୍ରେୟପ୍ରାପ୍ତିପାଇଁ ଉପଯୁକ୍ତ ଦେଶମାନଙ୍କର ବର୍ଣ୍ଣନା କରୁଛି । ସେ ହେଉଛି ସବୁଠାରୁ ପବିତ୍ର ଦେଶ ଯେଉଁଠାରେ ସତ୍‌ପାତ୍ର ମିଳନ୍ତି; ଯାହାଙ୍କଠାରେ ସାରା ଚରାଚରଜଗତ୍ ଅବସ୍ଥିତ, ସେହି ଭଗବାନଙ୍କ (ଅସ୍ଥିର) ପ୍ରତିମା ଯେଉଁଠାରେ ପୂଜା ପାଏ; ଯେଉଁଠାରେ ତପ, ବିଦ୍ୟା ଏବଂ ଦୟା ଆଦି ଗୁଣଯୁକ୍ତ ବ୍ରାହ୍ମଣକୁଳ ବାସ କରେ; ଯେଉଁଠାରେ ଶ୍ରୀହରିଙ୍କର ଚର୍ଚ୍ଚା କରାଯାଏ ଏବଂ ପୁରାଣପ୍ରସିଦ୍ଧ ଗଙ୍ଗା ଆଦି ନଦୀମାନେ ପ୍ରବାହିତ ହୁଅନ୍ତି, ତାହା ହେଉଛି ପ୍ରକୃତ ମଙ୍ଗଳମୟ ଦେଶ ॥୨୭-୨୯॥ ଯୁଧିଷ୍ଠିର, ପୁଷ୍କର ଆଦି ସରୋବର, ସିଦ୍ଧପୁରୁଷମାନଙ୍କଦ୍ୱାରା ସେବିତ କ୍ଷେତ୍ର, କୁରୁକ୍ଷେତ୍ର, ଗୟା, ପ୍ରୟାଗ, ପୁଲହାଶ୍ରମ (ଶାଳଗ୍ରାମ କ୍ଷେତ୍ର), ନୈମିଷାରଣ୍ୟ, ଫଲ୍‌ଗୁତୀର୍ଥ, ସେତୁବନ୍ଧ ରାମେଶ୍ୱର, ପ୍ରଭାସ, ଦ୍ୱାରକା, କାଶୀ, ମଥୁରା, ପମ୍ପାସର, ବିନ୍ଦୁସରୋବର, ବଦରିକାଶ୍ରମ, ଅଳକନନ୍ଦା, ସୀତାରାମଙ୍କର ଆଶ୍ରମ ଅଯୋଧ୍ୟା, ଚିତ୍ରକୂଟ ଆଦି, ମହେନ୍ଦ୍ର ଓ ମଳୟ ଆଦି ସମସ୍ତ କୁଳପର୍ବତ ଏବଂ ଯେଉଁ ଦେଶରେ ଶ୍ରୀହରିଙ୍କର ସ୍ଥିର ପ୍ରତିମା ରହିଛି, ସେ ଦେଶ ଅତିଶୟ ପବିତ୍ର । ମଙ୍ଗଳକାମୀ ବ୍ୟକ୍ତି ବାରମ୍ବାର ସେହି ଦେଶକୁ ଯାତ୍ରା କରିବେ । ସେହି ସବୁ ଦେଶରେ ଯେଉଁ ପୁଣ୍ୟ କାର୍ଯ୍ୟ କରାଯାଏ, ମନୁଷ୍ୟକୁ ତା'ର ହଜାରଗୁଣ ଅଧିକ ଫଳ ମିଳେ ॥୩୦-୩୩॥ ହେ ଚକ୍ରବର୍ତ୍ତୀ ରାଜା, ଶାସ୍ତ୍ରଜ୍ଞ ବିଦ୍ୱାନ୍‌ମାନେ ଏହି ଚରାଚରଜଗତ ଯେଉଁ ହରିମୟ ସେଇ ହରିଙ୍କୁ ଏକମାତ୍ର ସତ୍‌ପାତ୍ର ବୋଲି କହିଛନ୍ତି ॥୩୪॥

ରାଜା, ତୁମର ରାଜସୂୟ ଯଜ୍ଞରେ ଦେବତା, ଋଷି, ସିଦ୍ଧ ମହାତ୍ମାମାନେ ଉପସ୍ଥିତ ଥିଲେ ମଧ୍ୟ ଅଗ୍ରପୂଜାପାଇଁ ଭଗବାନ ଶ୍ରୀକୃଷ୍ଣଙ୍କୁ ପାତ୍ରରୂପେ ଗଣାଯାଇଥିଲା ॥୩୫॥ ଅସଂଖ୍ୟ ଜୀବରେ ପରିପୂର୍ଣ୍ଣ ଏହି ବ୍ରହ୍ମାଣ୍ଡରୂପକ ମହାବୃକ୍ଷର ଏକମାତ୍ର ମୂଳ ହେଉଛନ୍ତି ଭଗବାନ ଶ୍ରୀକୃଷ୍ଣ । ଏଥିପାଇଁ ତାଙ୍କରି ପୂଜାଦ୍ୱାରା ସମସ୍ତ ଜୀବଙ୍କର ଆତ୍ମାକୁ ତୃପ୍ତି ମିଳିଥାଏ ॥୩୬॥ ସେ ମନୁଷ୍ୟ, ପଶୁପକ୍ଷୀ, ଦେବତା ଆଦିଙ୍କର ଶରୀରରୂପ ପୁରକୁ ରଚନା କରିଛନ୍ତି ଏବଂ ତହିଁରେ ଜୀବରୂପରେ ଶୟନ କରିଛନ୍ତି । ତେଣୁ ତାଙ୍କର ଏକ ନାମ ହେଉଛି ପୁରୁଷ ॥୩୭॥

ଯୁଧିଷ୍ଠିର, ଭଗବାନ ସମଦର୍ଶୀ ହେଲେ ମଧ୍ୟ ତାରତମ୍ୟଦ୍ୱାରା ମନୁଷ୍ୟଶରୀରରେ ଅଧିକ ଭାବରେ ପ୍ରକାଶମାନ । ତେଣୁ ପଶୁପକ୍ଷୀଙ୍କ ତୁଳନାରେ ମନୁଷ୍ୟ ହେଉଛି ଶ୍ରେଷ୍ଠ ପାତ୍ର, ଏବଂ ମନୁଷ୍ୟଙ୍କ ମଧ୍ୟରେ ଯେଉଁମାନେ ତପ, ଯୋଗ ଆଦି ଆଚରଣ କରନ୍ତି, ସେମାନେ ଅନ୍ୟମାନଙ୍କଠାରୁ ଶ୍ରେଷ୍ଠ ॥୩୮॥ ଯୁଧିଷ୍ଠିର, ତ୍ରେତାଦି ଯୁଗରେ ଯେତେବେଳେ ବିଦ୍ୱାନ୍‌ମାନେ ଦେଖିଲେ ଯେ, ମନୁଷ୍ୟମାନେ ପରସ୍ପର ଅବଜ୍ଞା କରୁଛନ୍ତି, ସେତେବେଳେ ଉପାସନାର ସିଦ୍ଧିପାଇଁ ସେମାନେ ଭଗବାନଙ୍କ ପ୍ରତିମାର ପ୍ରତିଷ୍ଠା କଲେ । ସେହିଦିନଠାରୁ କେତେକ ଲୋକ ଶ୍ରଦ୍ଧାର ସହିତ ବିଭିନ୍ନ ସାମଗ୍ରୀ ଦ୍ୱାରା ପ୍ରତିମାରେ ଶ୍ରୀହରିଙ୍କୁ ଅର୍ଚ୍ଚନା କରୁଛନ୍ତି । କିନ୍ତୁ ଯେଉଁ ଅର୍ଚ୍ଚନାକାରୀ ବ୍ୟକ୍ତିମାନେ ପ୍ରାଣୀଠାରେ ଦ୍ୱେଷ କରନ୍ତି, ସେମାନଙ୍କୁ ସେଇ ଉପାସନାରେ ସିଦ୍ଧି ମିଳେ ନାହିଁ ॥୩୯-୪୦॥ ରାଜେନ୍ଦ୍ର, ପୁରୁଷମାନଙ୍କ ମଧ୍ୟରେ ବ୍ରାହ୍ମଣମାନଙ୍କୁ ସୁପାତ୍ର ବୋଲି ଗଣାଯାଏ । କାରଣ ସେମାନେ ତପସ୍ୟା, ବିଦ୍ୟା ଓ ସନ୍ତୋଷଆଦି ଗୁଣଦ୍ୱାରା ଭଗବାନଙ୍କର ଅଙ୍ଗସ୍ୱରୂପ ବେଦକୁ ଧାରଣ କରିଥା'ନ୍ତି ॥୪୧॥ ଏପରିକି ସମସ୍ତ ଜଗତ୍‌ର ଆତ୍ମାସ୍ୱରୂପ ଭଗବାନ ଶ୍ରୀକୃଷ୍ଣ ବ୍ରାହ୍ମଣମାନଙ୍କୁ ଇଷ୍ଟଦେବତା ରୂପେ ମାନିଛନ୍ତି । କାରଣ ସେମାନଙ୍କ ପାଦଧୂଳିଦ୍ୱାରା ସେମାନେ ତ୍ରିଭୁବନକୁ ପବିତ୍ର କରନ୍ତି ॥୪୨॥

## ପଞ୍ଚଦଶ ଅଧ୍ୟାୟ

# ଗୃହସ୍ଥର ମୁଖ୍ୟ ଧର୍ମ

ନାରଦ କହିଲେ, ଯୁଧିଷ୍ଠିର, ବ୍ରାହ୍ମଣମାନଙ୍କ ମଧ୍ୟରେ କାହାରି କାହାରି କର୍ମରେ ନିଷ୍ଠା, କାହାର ତପସ୍ୟାରେ, କାହାର ବେଦାଧ୍ୟୟନରେ ଏବଂ କାହାର ପ୍ରବଚନରେ ନିଷ୍ଠା ଥାଏ । କେହି ପୁଣି ସାଂଖ୍ୟ ଓ ଯୋଗାଦି ଶାସ୍ତ୍ରର ବିଚାରରେ ମଧ୍ୟ ନିଷ୍ଠା ଦେଖାଇଥା'ନ୍ତି ।।୧।। ଗୃହସ୍ଥ ପିତୃ ଶ୍ରାଦ୍ଧ ବା ଦେବପୂଜାରେ ନିଜ କର୍ମର ଅକ୍ଷୟ ଫଳ ଚାହିଲେ ବ୍ରାହ୍ମଣଙ୍କୁ ବରଣ କରିବ ଓ ବ୍ରାହ୍ମଣ ନ ମିଳିଲେ ଇତର ସାଧୁମାନଙ୍କୁ ନିମନ୍ତ୍ରଣ କରିବ ।।୨।। ଦେବକାର୍ଯ୍ୟରେ ଦୁଇ ଜଣଙ୍କୁ ଓ ପିତୃକାର୍ଯ୍ୟରେ ତିନି ଜଣଙ୍କୁ କିମ୍ବା ଉଭୟ କାର୍ଯ୍ୟରେ ଜଣେ ଜଣେ ବ୍ରାହ୍ମଣଙ୍କୁ ଭୋଜନ ଦେବ । ଅତିଶୟ ଧନୀ ହେଲେ ମଧ୍ୟ ଅଧିକ ବିସ୍ତାରରେ ଶ୍ରାଦ୍ଧ କର୍ମ କରିବ ନାହିଁ ।।୩।। କାରଣ ନିଜର ସ୍ୱଜନମାନଙ୍କୁ ଡାକି ଜାକଜକମ କରି ଶ୍ରାଦ୍ଧକର୍ମକୁ ବଢ଼ାଇଦେଲେ, ଦେଶକାଳୋଚିତ ଶ୍ରଦ୍ଧା, ବସ୍ତୁ, ପାତ୍ର ଏବଂ ପୂଜା ଆଦି ଠିକ୍ ଠିକ୍ ଭାବରେ ହୋଇପାରେ ନାହିଁ ।।୪।। ଶ୍ରାଦ୍ଧପାଇଁ ଉପଯୁକ୍ତ ସ୍ଥାନ ଏବଂ କାଳ ନିରୂପିତ ହେବାପରେ, ମୁନିଋଷିଙ୍କ ଭୋଜନଯୋଗ୍ୟ ନୀବାରାଦି ଅନ୍ନ ଭଗବାନଙ୍କୁ ନିବେଦନ କରି ଶ୍ରଦ୍ଧାରେ ବିଧିପୂର୍ବକ ଯୋଗ୍ୟ ପାତ୍ରଙ୍କୁ ଦାନ କରିବ । ଏହାଦ୍ୱାରା ସମସ୍ତ କାମନା ପୂର୍ଣ୍ଣ ହୁଏ ଓ ଅକ୍ଷୟପୁଣ୍ୟ ଲାଭହୁଏ ।।୫।। ଦେବତା, ଋଷି, ପିତୃ, ଅନ୍ୟ ପ୍ରାଣୀ, ସ୍ୱଜନ ଓ ନିଜ ମଧ୍ୟରେ ଅନ୍ନକୁ ବାଣ୍ଟିବାବେଳେ ସମସ୍ତଙ୍କୁ ପରମାତ୍ମାଙ୍କ ସ୍ୱରୂପ ବୋଲି ବିଚାର କରିବ ।।୬।। ଧର୍ମର ମର୍ମ ଜାଣିଥିବା ବ୍ୟକ୍ତି ଶ୍ରାଦ୍ଧରେ ଆମିଷ ଅର୍ପଣ କରିବ ନାହିଁ ଏବଂ ନିଜେ ମଧ୍ୟ ଆମିଷ ଖାଇବ ନାହିଁ, କାରଣ ମୁନି, ଋଷିଙ୍କ ଯୋଗ୍ୟ ଅନ୍ନଦ୍ୱାରା ପିତୃପୁରୁଷ ଯେପରି ତୃପ୍ତ ହୁଅନ୍ତି, ପଶୁହିଂସା ଦ୍ୱାରା ସେପରି ନୁହେଁ ।।୭।। ସତ୍‌ଧର୍ମ ପାଳନ କରିବାକୁ ଇଚ୍ଛା କରୁଥିବା ବ୍ୟକ୍ତି କାୟମନୋବାକ୍ୟରେ ଜୀବହିଂସା କରିବେ ନାହିଁ । କାରଣ ଅହିଂସାଠାରୁ ବଳି ଅନ୍ୟ କୌଣସି ଧର୍ମ ନାହିଁ ।।୮।। ଯଜ୍ଞବିତ୍ ଜ୍ଞାନୀ ବ୍ୟକ୍ତିମାନେ ଜ୍ଞାନଦୀପ୍ତ ଆତ୍ମସଂଯମରୂପ ଅଗ୍ନିରେ କର୍ମମୟ ଯଜ୍ଞମାନଙ୍କୁ ଆହୁତି ଦେଇଦିଅନ୍ତି । ଅର୍ଥାତ୍ ସମସ୍ତ ବାହ୍ୟ କର୍ମରୁ ବିରତ ରହନ୍ତି ।।୯।। ଯଦି କେହି ଦ୍ରବ୍ୟମୟ ଯଜ୍ଞ କରିବାକୁ ଇଚ୍ଛା କରେ, ତେବେ ପ୍ରାଣୀମାନେ ଡରିଯା'ନ୍ତି । ସେମାନେ ଭାବନ୍ତି ଏହି ନିଷ୍ଠୁର ବ୍ୟକ୍ତି ନିଜର ପ୍ରାଣପୋଷଣପାଇଁ ଆମମାନଙ୍କୁ ମାରିବ ନାହିଁ ତ ! ।।୧୦।। ତେଣୁ ଧର୍ମଜ୍ଞ ମନୁଷ୍ୟ ପକ୍ଷରେ ଉଚିତ ହେଉଛି, ପ୍ରତିଦିନ ଦୈବବଶରେ ତାକୁ ଯାହା ମିଳିବ, ମୁନିଜନୋଚିତ ହବିଷ୍ୟାନ୍ନ ପ୍ରସ୍ତୁତ କରି ସେ ସେଥିରେ ସନ୍ତୁଷ୍ଟ ରହିବ ଓ ନିତ୍ୟ-ନୈମିତ୍ତିକ କର୍ମ କରିଯିବ ।।୧୧।। ଅଧର୍ମର ପାଞ୍ଚୋଟି ଶାଖା ହେଉଛି -- ବିଧର୍ମ, ପରଧର୍ମ, ଆଭାସ, ଉପମା ଓ ଛଳ । ଧର୍ମଜ୍ଞ ପୁରୁଷ ଏହି ପାଞ୍ଚୋଟି ଅଧର୍ମକୁ ପରିତ୍ୟାଗ କରିବ ।।୧୨।। ଯେଉଁ କାର୍ଯ୍ୟକୁ ଧର୍ମବୁଦ୍ଧିରେ କଲେ ମଧ୍ୟ ନିଜ ଧର୍ମରେ ବାଧା ପଡ଼େ, ତାହାକୁ ବିଧର୍ମ କୁହାଯାଏ । ଅନ୍ୟଦ୍ୱାରା କଥିତ ଓ ଅନ୍ୟପାଇଁ କରାଯାଉଥିବା ଧର୍ମ ହେଉଛି ପରଧର୍ମ । ପାଖଣ୍ଡ ବା ଦମ୍ଭର ନାମ ହେଉଛି ଉପଧର୍ମ ବା ଉପମା । ଶାସ୍ତ୍ରବାକ୍ୟକୁ ଭିନ୍ନଭାବରେ ଅର୍ଥ କରିବାର ନାମ ହେଉଛି ଛଳ ।।୧୩।। ମନୁଷ୍ୟ ସ୍ୱେଚ୍ଛାରେ ନିଜ ଆଶ୍ରମର ବିପରୀତ ଧର୍ମକୁ ମାନିନେଲେ ତାହାକୁ ଆଭାସ କୁହାଯାଏ; ନିଜର ସ୍ୱଭାବ ଅନୁକୂଳ ବର୍ଣ୍ଣାଶ୍ରମ ଧର୍ମ ଅବଶ୍ୟ କର୍ତ୍ତବ୍ୟ । କାରଣ ଏହା କ'ଣ ଇଷ୍ଟ ଫଳ ଦିଏ ନାହିଁ ? ।।୧୪।।

ଧର୍ମାତ୍ମା ବ୍ୟକ୍ତି ନିର୍ଧନ ହେଲେ ମଧ୍ୟ ଧର୍ମାନୁଷ୍ଠାନ ବା ଜୀବିକାନିର୍ବାହପାଇଁ ଧନ ଉପାର୍ଜନର ଚେଷ୍ଟା କରିବ ନାହିଁ । କାରଣ ବିନା ଚେଷ୍ଟାରେ ଯେପରି ଅଜଗର ତାର ଜୀବିକା ନିର୍ବାହ କରେ, ସେହିପରି ନିବୃତ୍ତିଦ୍ୱାରା ହିଁ ତାର ଜୀବିକାନିର୍ବାହ ହୁଏ ।।୧୫।। ନିଜ ଆତ୍ମାରେ ରମଣ କରୁଥିବା ନିଶ୍ଚେଷ୍ଟ ଅଥଚ ସନ୍ତୁଷ୍ଟ ବ୍ୟକ୍ତିକୁ ଯେଉଁ ସୁଖ ମିଳେ, ତାହା ଚାରିଆଡ଼େ

ଦଉଡୁଥିବା କାମୀ ଓ ଲୋଭଗ୍ରସ୍ତ ଲୋକକୁ ମିଳେ ନାହିଁ । ଯେପରି ପାଦରେ ଜୋତା ପିନ୍ଧିଥିବା ବ୍ୟକ୍ତିକୁ କଙ୍କଡ଼ ବା କଣ୍ଟାର ଭୟ ନ ଥାଏ, ସେହିପରି ସଦା ସନ୍ତୁଷ୍ଟମନା ବ୍ୟକ୍ତିକୁ ଚତୁର୍ଦ୍ଦିଗ ସୁଖମୟ ଦେଖାଯାଏ ॥୧୬-୧୭॥ ଯୁଧିଷ୍ଠିର, ସନ୍ତୁଷ୍ଟ ବ୍ୟକ୍ତି କାହିଁକି କେବଳ ଜଳପାନଦ୍ୱାରା ଜୀବିକା ନିର୍ବାହ ନ କରି ଜନନେନ୍ଦ୍ରିୟ ଓ ରସନେନ୍ଦ୍ରିୟକୁ ଚରିତାର୍ଥ କରିବାପାଇଁ କୁକୁର ପରି ଘୂରି ବୁଲିବ ? ॥୧୮॥ ଯେଉଁ ବ୍ରାହ୍ମଣ ଅସନ୍ତୁଷ୍ଟ ଓ ଇନ୍ଦ୍ରିୟଲୋଲୁପ ତା'ର ତେଜ, ବିଦ୍ୟା, ତପ ଏବଂ ଯଶ କ୍ଷୀଣ ହେବା ସଙ୍ଗେ ସଙ୍ଗେ ବିବେକବୁଦ୍ଧି ନଷ୍ଟ ହୋଇଯାଏ ॥୧୯॥ କ୍ଷୁଧା ଏବଂ ତୃଷାର ନିବାରଣଦ୍ୱାରା କାମର ଶାନ୍ତି ଓ ହିଂସାଦ୍ୱାରା କ୍ରୋଧର ଶାନ୍ତି ହୁଏ । କିନ୍ତୁ ଦଶ ଦିଗ ସହ ତ୍ରିଭୁବନ ଜୟ କଲେ ମଧ୍ୟ ଲୋଭର ଅନ୍ତ ହୁଏ ନାହିଁ ॥୨୦॥ ଅନେକ ବିଷୟ ଜାଣିଥିବା, ସମସ୍ତ ଶଙ୍କା ଦୂର କରି ଶାସ୍ତ୍ରାର୍ଥ କରିପାରୁଥିବା ଏବଂ ବିଦ୍ୱାନ୍‌ମାନଙ୍କ ସଭାରେ ସଭାପତିତ୍ୱ କରୁଥିବା ବଡ଼ ବଡ଼ ପଣ୍ଡିତମାନଙ୍କର ମଧ୍ୟ ଅସନ୍ତୋଷଯୋଗୁଁ ଅଧଃପତନ ହୁଏ ॥୨୧॥ ରାଜା, ସଂକଳ୍ପ ତ୍ୟାଗ କରିବାଦ୍ୱାରା କାମକୁ, କାମନାତ୍ୟାଗ ଦ୍ୱାରା କ୍ରୋଧକୁ, ଅର୍ଥକୁ ଅନର୍ଥ ଭାବିବା ଦ୍ୱାରା ଲୋଭକୁ, ତତ୍ତ୍ୱଜ୍ଞାନ ଦ୍ୱାରା ଭୟକୁ ଜୟ କରାଯାଇପାରିବ ॥୨୨॥ ଅଧ୍ୟାତ୍ମ ବିଦ୍ୟାଦ୍ୱାରା ଶୋକ ଏବଂ ମୋହକୁ, ସାଧୁସେବାଦ୍ୱାରା ଦମ୍ଭକୁ, ମୌନଦ୍ୱାରା ଯୋଗମାର୍ଗର ବିଘ୍ନମାନଙ୍କୁ, ଶରୀର ଓ ପ୍ରାଣଆଦିର ନିଃସ୍ପୃହତା ଦ୍ୱାରା ହିଂସାକୁ ଜୟ କରାଯାଇପାରିବ ॥୨୩॥ ଭୌତିକ ଦୁଃଖକୁ ଦୟାଦ୍ୱାରା, ଦୈବିକ ଦୁଃଖକୁ ସମାଧିଦ୍ୱାରା ଓ ଆଧ୍ୟାତ୍ମିକ ଦୁଃଖକୁ ଯୋଗଦ୍ୱାରା ଏବଂ ନିଦ୍ରାକୁ ସାତ୍ତ୍ୱିକ ଭୋଜନାଦିଦ୍ୱାରା ଜୟ କରିବ ॥୨୪॥ ରାଜସିକ ଓ ତାମସିକ ଗୁଣକୁ ସାତ୍ତ୍ୱିକଗୁଣଦ୍ୱାରା ଏବଂ ସତ୍ତ୍ୱଗୁଣକୁ ଉଦାସୀନତାଦ୍ୱାରା ଜିଣିବ ଏବଂ ଏକମାତ୍ର ଗୁରୁଭକ୍ତିଦ୍ୱାରା ଏହି ସମସ୍ତକୁ ଜୟ କରିପାରିବ ॥୨୫॥

ହୃଦୟରେ ଯେ ଜ୍ଞାନର ଦୀପ ଜଳାଇପାରନ୍ତି, ସେହି ଗୁରୁଦେବ ହେଉଛନ୍ତି ସାକ୍ଷାତ୍ ଭଗବାନ । ଯେଉଁ ଦୁର୍ବୁଦ୍ଧି ବ୍ୟକ୍ତି ଗୁରୁଙ୍କୁ ମନୁଷ୍ୟ ବୋଲି ମନେକରେ, ହସ୍ତୀର ସ୍ନାନପରି ତାର ସମସ୍ତ ଶାସ୍ତ୍ରଜ୍ଞାନ ବ୍ୟର୍ଥ ହୁଏ ॥୨୬॥ ବଡ଼ବଡ଼ ଯୋଗୀମାନେ ଯାହାଙ୍କର ପାଦପଦ୍ମକୁ ଅନ୍ୱେଷଣ କରନ୍ତି, ସେହି ଭଗବାନ୍ ଗୁରୁରୂପରେ ପ୍ରକଟିତ ହୋଇଥା'ନ୍ତି । ଭ୍ରମବଶତଃ ଲୋକ ତାଙ୍କୁ ସାଧାରଣ ମନୁଷ୍ୟ ବୋଲି ମନେ କରେ ॥୨୭॥ ଶାସ୍ତ୍ରରେ ଥିବା ସମସ୍ତ ନିର୍ଦ୍ଦେଶର ତାତ୍ପର୍ଯ୍ୟ ହେଉଛି କାମ, କ୍ରୋଧ, ଲୋଭ, ମୋହ, ମଦ ଓ ମାତ୍ସର୍ଯ୍ୟ -- ଏହି ଛ'ଟି ଶତ୍ରୁଙ୍କୁ ଜୟ କରି ପାଞ୍ଚ ଇନ୍ଦ୍ରିୟ ଓ ମନକୁ ନିଜ ବଶକୁ ଆଣିବା । ତା'ପରେ ମଧ୍ୟ ଯଦି ଧ୍ୟାନ, ଧାରଣା ଆଦି ସାଧନା ହୋଇପାରେ ନା, ତା'ହେଲେ ସମସ୍ତ ପରିଶ୍ରମ ବୃଥା ହୋଇଯାଏ ॥୨୮॥ କୃଷି ଆଦି ବୃତ୍ତିଦ୍ୱାରା ଯେପରି ଯୋଗ ସାଧନର ଫଳ ଭଗବତ୍‌ପ୍ରାପ୍ତି ବା ମୁକ୍ତିକୁ ଦେଇପାରେ ନାହିଁ, ସେହିପରି ଭକ୍ତିହୀନ ଶାସ୍ତ୍ରବିହିତ କର୍ମ ଅମଙ୍ଗଳର କାରଣ ହୋଇଥାଏ ॥୨୯॥ ଯେଉଁ ବ୍ୟକ୍ତି ନିଜ ମନ ଉପରେ ବିଜୟଲାଭପାଇଁ ଇଚ୍ଛା କରେ, ସେ ଆସକ୍ତି ଓ ପରିଗ୍ରହ (ଧନସଂଗ୍ରହ)କୁ ତ୍ୟାଗ କରି ସନ୍ନ୍ୟାସ ଗ୍ରହଣ କରିବ ଏବଂ ଏକାନ୍ତରେ ରହି ଶରୀରନିର୍ବାହପାଇଁ ଭିକ୍ଷାବୃତ୍ତିଦ୍ୱାରା ଅଳ୍ପ ପରିମାଣରେ ଭୋଜନ କରିବ ॥୩୦॥ ଯୁଧିଷ୍ଠିର, ଏକ ପବିତ୍ର ସମତଳ ଭୂମି ବାଛି ନେଇ ସେଠାରେ ନିଜର ଆସନ ବିଛାଇ ସିଧା ଓ ସ୍ଥିର ଭାବରେ ସୁଖରେ ବସିବ ଏବଂ ଓଁକାର ଜପ କରିବ ॥୩୧॥ ଯେପର୍ଯ୍ୟନ୍ତ ମନ କାମନାକୁ ଛାଡ଼ି ନାହିଁ, ସେ ପର୍ଯ୍ୟନ୍ତ ନାସିକାର ଅଗ୍ରଭାଗରେ ଦୃଷ୍ଟି ରଖି ପୂରକ, କୁମ୍ଭକ ଓ ରେଚକଦ୍ୱାରା ପ୍ରାଣ ଓ ଅପାନ ବାୟୁର ଗତି ରୋଧ କରିବ ॥୩୨॥ କାମବିମୋହିତ ମନ ଇତସ୍ତତଃ ଧାବମାନ ହୁଏ, ତେଣୁ ବିଦ୍ୱାନ୍ ପୁରୁଷର କର୍ତ୍ତବ୍ୟ, ଏହି ମନ ଯୁଆଡ଼େ ଯୁଆଡ଼େ ଧାଏଁ ସେଇଆଡୁ ତାକୁ ଫେରାଇ ଆଣି ହୃଦୟମଧ୍ୟରେ ନିବଦ୍ଧ କରିବା ॥୩୩॥ ଇନ୍ଧନ ବିନା ଯେପରି ଅଗ୍ନି ନିଭିଯାଏ, ସେହିପରି ନିରନ୍ତର ଅଭ୍ୟାସ କରିବା ଦ୍ୱାରା ସାଧକର ଚିତ୍ତ ଶାନ୍ତ ହୁଏ ॥୩୪॥ ଏହିପରି କାମବାସନାଦି ବିକାର ଚିତ୍ତକୁ ଆଉ ବିଦ୍ଧ କରେ ନାହିଁ ଏବଂ ସମସ୍ତ ଚିତ୍ତବୃତ୍ତି ଶାନ୍ତ ହୋଇଯାଏ । ତଦ୍ଦ୍ୱାରା ବ୍ରହ୍ମାନନ୍ଦ- ସୁଖରେ ମତ୍ତ ହେବାଯୋଗୁଁ ଆଉ ଚିତ୍ତବିକ୍ଷେପ ଘଟେ ନାହିଁ ॥୩୫॥ ଯେଉଁ ବ୍ୟକ୍ତି ଧର୍ମ, ଅର୍ଥ ଓ କାମର ମୂଳ ଗୃହକୁ ପରିତ୍ୟାଗ କରି ସନ୍ନ୍ୟାସୀ ହୋଇଯାଏ ଏବଂ ଯଦି ପୁଣି ଏହାକୁ ସେବା କରିବାପାଇଁ ଗୃହକୁ ଫେରିଆସେ, ତା'ହେଲେ ବାନ୍ତି କରିଥିବା ଖାଦ୍ୟକୁ ପୁଣି ଚାଟିବା ପରି ତାହା ଏକ ନିର୍ଲଜ୍ଜତାର କାର୍ଯ୍ୟ ହୁଏ ॥୩୬॥

ଯେଉଁମାନେ ନିଜ ଶରୀରକୁ ଆତ୍ମାଠାରୁ ଭିନ୍ନ, ମରଣଶୀଳ ଏବଂ କୃମି, ବିଷ୍ଠା ଓ ଭସ୍ମରୂପରେ ଗ୍ରହଣ କରିଥା'ନ୍ତି, ସେମାନେ ପୁଣି ଏହାକୁ ଆତ୍ମା ବୋଲି ଭାବି ତାର ପ୍ରଶଂସା କରିବା ମୂର୍ଖତା ଛଡ଼ା ଅନ୍ୟ କିଛି ନୁହେ ॥୩୭॥ କର୍ମତ୍ୟାଗୀ ଗୃହସ୍ଥ, ବ୍ରତତ୍ୟାଗୀ ବ୍ରହ୍ମଚାରୀ, ଗ୍ରାମରେ ବାସ କରୁଥିବା ତପସ୍ୱୀ (ବାନପ୍ରସ୍ଥୀ) ଏବଂ ଇନ୍ଦ୍ରିୟଲୋଲୁପ ସନ୍ୟାସୀ -- ଏହି ଚାରି ଜଣ ହେଲେ ଆଶ୍ରମର କଳଙ୍କ । ଏମାନଙ୍କ କାର୍ଯ୍ୟ ଆଶ୍ରମଧର୍ମର ବିଡ଼ମ୍ବନା ମାତ୍ର । ନିଶ୍ଚୟ ଏମାନେ ଦେବମାୟାରେ ମୋହିତ ହୋଇଥା'ନ୍ତି । ଏମାନେ ଦୟାର ଯୋଗ୍ୟ । ଏମାନଙ୍କୁ ଉପେକ୍ଷା କରିବା ଉଚିତ ॥୩୮-୩୯॥ ଆତ୍ମଜ୍ଞାନଦ୍ୱାରା ଯାହାର ସମସ୍ତ ବାସନା ନିର୍ମୂଳ ହୋଇଯାଇଛି ଏବଂ ନିଜର ଆତ୍ମାକୁ ଯେ ପରଂବ୍ରହ୍ମଙ୍କ ସ୍ୱରୂପ ବୋଲି ଜାଣିଛି, ଆଉ ତା'ର କ'ଣ ଇଚ୍ଛା କରିବାର ଅଛି ଯେ ସେ ଲମ୍ପଟ ପରି ଏହି ଦେହର ପୋଷଣ କରିବ ! ॥୪୦॥ କୁହାଯାଇଛି ଯେ, ଶରୀର ହେଉଛି ରଥ; ଇନ୍ଦ୍ରିୟମାନେ ଘୋଡ଼ା, ଇନ୍ଦ୍ରିୟମାନଙ୍କର ପ୍ରଭୁ ମନ ହେଉଛି ସେମାନଙ୍କର ଲଗାମ, ଶବ୍ଦାଦି ଗନ୍ତବ୍ୟ ଦେଶ, ବୁଦ୍ଧି ସାରଥି, ଚିତ୍ତ ଭଗବାନଙ୍କ ସୃଷ୍ଟ ବନ୍ଧନରଜ୍ଜୁ । ଦଶବିଧ ପ୍ରାଣ (ପ୍ରାଣ, ଅପାନ, ବ୍ୟାନ, ଉଦାନ, ସମାନ, ନାଗ, କୂର୍ମ, କୃକର, ଦେବଦତ୍ତ ଓ ଧନଞ୍ଜୟ) ହେଉଛନ୍ତି ରଥର ଅକ୍ଷଦଣ୍ଡ; ଧର୍ମ ଓ ଅଧର୍ମ ରଥର ଦୁଇ ଚକ, ଅହଙ୍କାରବିଶିଷ୍ଟ ଜୀବ ହେଉଛି ଏହାର ରଥୀ; ଓଁକାର ହେଉଛି ଏହି ରଥୀର ଧନୁ, ଶୁଦ୍ଧ ଜୀବ ହେଉଛି ଶର, ବ୍ରହ୍ମ ବା ପରମାତ୍ମା ହେଉଛନ୍ତି ଲକ୍ଷ୍ୟ (ଯେପରି ଧନୁଦ୍ୱାରା ଶର ଲକ୍ଷ୍ୟ ସ୍ଥଳରେ ପତିତ ହୁଏ, ସେହିପରି ଓଁକାର ବା ପ୍ରଣବଦ୍ୱାରା ଜୀବ ବ୍ରହ୍ମରେ ଲୀନ ହୁଏ) ॥୪୧-୪୨॥ ରାଗ, ଦ୍ୱେଷ, ଲୋଭ, ଶୋକ, ମୋହ, ଭୟ, ମଦ, ମାନ, ଅପମାନ, ଅସୂୟା, ମାୟା, ହିଂସା, ମାତ୍ସର୍ଯ୍ୟ, ରଜଃ (ଅଭିନିବେଶ), ପ୍ରମାଦ, କ୍ଷୁଧା ଓ ନିଦ୍ରା ଏମାନେ ହେଲେ ରଜୋଗୁଣ ଓ ତମୋଗୁଣ ବିଶିଷ୍ଟ ଶତ୍ରୁ ଏବଂ କେବେ କେବେ ସତ୍ତ୍ୱଗୁଣ ପ୍ରଧାନ ପରୋପକାରାଦି ପ୍ରବୃତ୍ତିମାନେ ମଧ୍ୟ ଶତ୍ରୁ ॥୪୩-୪୪॥ ଯେ ପର୍ଯ୍ୟନ୍ତ ଜୀବ ଶରୀରରୂପୀ ଏହି ରଥକୁ ନିଜ ବଶରେ ରଖି ପାରିଛି, ସେ ପର୍ଯ୍ୟନ୍ତ ଗୁରୁଙ୍କର ପାଦପୂଜାଦ୍ୱାରା ତା'ର ଜ୍ଞାନରୂପକ ଖଡ୍ଗକୁ ଶାଣିତ କରିବା ଦରକାର, ଏବଂ ଭଗବତ୍‌ଶକ୍ତି ବଳରେ ଶତ୍ରୁମାନଙ୍କୁ ପରାସ୍ତ କରିବା ଦରକାର । ତା'ପରେ ଆତ୍ମାନନ୍ଦରେ ତୃପ୍ତ ଓ ଶାନ୍ତ ହୋଇ ଏହି ଶରୀରକୁ ଛାଡ଼ିଦେବା ଆବଶ୍ୟକ ॥୪୫॥ ତା'ନହେଲେ ଅସତ୍ ଇନ୍ଦ୍ରିୟରୂପୀ ଘୋଡ଼ାମାନେ ବୁଦ୍ଧିରୂପକ ସାରଥି ଦ୍ୱାରା ବିପଥଗାମୀ ହୋଇ ରଥୀ ରୂପେ ବସିଥିବା ପ୍ରମତ୍ତ ଜୀବକୁ ବିଷୟରୂପକ ଦସ୍ୟୁମାନଙ୍କ ଭିତରକୁ ଟାଣି ନେଇ ପକାଇଦେବେ । ଦସ୍ୟୁମାନେ ଅଶ୍ୱମାନଙ୍କ ସହିତ ବୁଦ୍ଧିରୂପକ ସାରଥିକୁ ଓ ଜୀବରୂପକ ରଥୀକୁ ମହାମୃତ୍ୟୁଭୟଯୁକ୍ତ ତାମସ ଅନ୍ଧକାରପୂର୍ଣ୍ଣ ଏହି ସଂସାରକୂପ ମଧ୍ୟରେ ନିକ୍ଷେପ କରିବେ ॥୪୬॥ ବୈଦିକ କର୍ମ ପ୍ରବୃତ୍ତି ଓ ନିବୃତ୍ତି ଭେଦରେ ଦୁଇ ପ୍ରକାର । ପ୍ରବୃତ୍ତିଦ୍ୱାରା ମନୁଷ୍ୟ ସଂସାରର ଆବର୍ତ୍ତ ମଧ୍ୟରେ ଘୂରି ବୁଲୁଥାଏ ଓ ନିବୃତ୍ତିଦ୍ୱାରା ମୋକ୍ଷରୂପକ ଅମୃତ ଆସ୍ୱାଦନ କରେ ॥୪୭॥ ଶ୍ୟେନଯାଗ ଆଦି ହିଂସାପୂର୍ଣ୍ଣ କର୍ମ, ଅଗ୍ନିହୋତ୍ର, ଦର୍ଶ, ପୂର୍ଣ୍ଣମାସ, ଚାତୁର୍ମାସ୍ୟ, ପଶୁଯାଗ, ସୋମଯାଗ, ବିଶ୍ୱଦେବ ଓ ବଳିହରଣ ଆଦିକୁ ଇଷ୍ଟକର୍ମ ଏବଂ ଉଦ୍ୟାନ, କୂପ ଓ ପାନୀୟଶାଳା ପ୍ରତିଷ୍ଠାଦିକୁ ପୂର୍ତ୍ତ କର୍ମ କୁହାଯାଏ । ଏ ସବୁ ହେଉଛି ପ୍ରବୃତ୍ତି ମାର୍ଗର କର୍ମ ଏବଂ କାମନାଯୁକ୍ତ ହୋଇଥିବାଯୋଗୁଁ ଏହାସବୁ ଅଶାନ୍ତିର କାରଣ ହୋଇଥାଏ ॥୪୮-୪୯॥ ପ୍ରବୃତ୍ତିପରାୟଣ ପୁରୁଷ ମରିବା ପରେ ଯଜ୍ଞର ଚରୁ, ପୁରୋଡାଶ ଆଦି ଦ୍ରବ୍ୟମାନଙ୍କର ସୂକ୍ଷ୍ମଭାଗରେ ନିର୍ମିତ ଶରୀର ଧାରଣ କରି ଯଜ୍ଞଧୂମର ଅଭିମାନୀ ଦେବତାଙ୍କ ନିକଟରେ ପହଞ୍ଚେ । ସେଠାରୁ କ୍ରମେ ରାତ୍ରି, କୃଷ୍ଣପକ୍ଷ ଓ ଦକ୍ଷିଣାୟନର ଅଭିମାନୀ ଦେବତାଙ୍କ ପାଖକୁ ଯାଇ ଚନ୍ଦ୍ରଲୋକରେ ପହଞ୍ଚେ । ସେଠାରେ ତାର ଭୋଗ ଶେଷ ହେବାପରେ ଅମାବାସ୍ୟାର ଚନ୍ଦ୍ରପରି କ୍ଷୀଣ ହୋଇଯାଇ ବୃଷ୍ଟିଦ୍ୱାରା କ୍ରମେ ଓଷଧି, ଲତା, ଅନ୍ନ ଓ ବୀର୍ଯ୍ୟ ରୂପରେ ପିତୃଯାନ ମାର୍ଗରେ ଆସି ପୁଣି ସଂସାରରେ ଜନ୍ମ ହୁଏ ॥୫୦-୫୧॥

ମହାରାଜ, ଗର୍ଭାଧାନଠାରୁ ଅନ୍ତ୍ୟେଷ୍ଟି ପର୍ଯ୍ୟନ୍ତ ଯାହାଙ୍କର ପୂର୍ଣ୍ଣ ସଂସ୍କାର ହୁଏ, ତାଙ୍କୁ ଦ୍ୱିଜ କୁହାଯାଏ (ଏମାନଙ୍କ ମଧ୍ୟରୁ କେହି କେହି ପ୍ରବୃତ୍ତି ମାର୍ଗ ଓ କେହିକେହି ନିବୃତ୍ତି ମାର୍ଗ ଗ୍ରହଣ କରନ୍ତି) । ନିବୃତ୍ତିପରାୟଣ ବ୍ୟକ୍ତି ଜ୍ଞାନଦୀପ୍ତ ଇନ୍ଦ୍ରିୟମାନଙ୍କରେ କର୍ମକୁ ଆହୁତି ପ୍ରଦାନ କରନ୍ତି ଏବଂ ଇନ୍ଦ୍ରିୟମାନଙ୍କୁ ସଂକଳ୍ପରୂପକ ମନରେ, ବିକାରଯୁକ୍ତ ମନକୁ ବିଧିଯୁକ୍ତ ବାକ୍ୟରେ ,

ବାକ୍ୟକୁ ବର୍ଣ୍ଣସମୂହରେ, ବର୍ଣ୍ଣମାନଙ୍କୁ ଓଁକାରରେ, ଓଁକାରକୁ ବିନ୍ଦୁରେ, ବିନ୍ଦୁକୁ ନାଦରେ, ନାଦକୁ ସୂତ୍ରାତ୍ମାରୂପ ପ୍ରାଣରେ ଓ ପ୍ରାଣକୁ ବ୍ରହ୍ମରେ ଲୀନ କରିଦିଅନ୍ତି ।।୫୨-୫୩।। ଏହି ନିବୃତ୍ତିପରାୟଣ ଜ୍ଞାନୀ ଶରୀର ତ୍ୟାଗ କଲେ ଅଗ୍ନି, ସୂର୍ଯ୍ୟ, ଦିନ, ସନ୍ଧ୍ୟା, ଶୁକ୍ଳପକ୍ଷ, ପୂର୍ଣ୍ଣିମା ଓ ଉତ୍ତରାୟଣ -- ଏହି କ୍ରମରେ ସଂପୃକ୍ତ ଦେବତାମାନଙ୍କ ପାଖରେ ପହଞ୍ଚି ବ୍ରହ୍ମଲୋକକୁ ଯାତ୍ରା କରେ ଏବଂ ସେଠାରେ ଭୋଗ ଶେଷ କରି ସ୍ଥୂଳ ଉପାଧିକୁ ସୂକ୍ଷ୍ମରେ ଲୀନ କରି ସୂକ୍ଷ୍ମତେଜରେ ପରିଣତ ହୁଏ । ପୁଣି ସୂକ୍ଷ୍ମକୁ କାରଣରେ ଲୀନ କରି ପ୍ରାଜ୍ଞରୂପରେ ଅବସ୍ଥାନ କରେ ଏବଂ କାରଣକୁ ସ୍ୱରୂପରେ ଲୀନ କରି ତୁରୀୟ ଅବସ୍ଥା ପ୍ରାପ୍ତ ହୁଏ ଏବଂ ଏହି ଅବସ୍ଥା ଶେଷ ହେଲେ ଶୁଦ୍ଧ ଆତ୍ମା ରୂପରେ ସେ ମୋକ୍ଷ ଲାଭ କରେ । ଏହାକୁ ଦେବଯାନ ମାର୍ଗ କୁହାଯାଏ । ଆତ୍ମାକୁ ଉପାସନା କରୁଥିବା ଏହି ମାର୍ଗର ଯାତ୍ରୀ ଆତ୍ମସ୍ଥ ହୋଇ ପୂର୍ଣ୍ଣ ଶାନ୍ତି ଲାଭ କରେ ଏବଂ ଆଉ ସଂସାରକୁ ଫେରେ ନାହିଁ ।।୫୪-୫୫।। ଶାସ୍ତ୍ରରୂପ ଚକ୍ଷୁଦ୍ୱାରା ଯେଉଁ ବ୍ୟକ୍ତି ବେଦବିହିତ ପିତୃଯାନ ଓ ଦେବଯାନ ସମ୍ପର୍କରେ ଅବଗତ, ସେ ଶରୀରଧାରୀ ହେଲେ ମଧ୍ୟ ମୋହଗ୍ରସ୍ତ ହୁଏ ନାହିଁ ।।୫୬।। ଜୀବର ଜନ୍ମପୂର୍ବରୁ କାରଣ ରୂପରେ ଏବଂ ଶରୀରର ଅନ୍ତ ହେବାପରେ ତା'ର ଅବଧିରୂପରେ ଯେଉଁ ସ୍ୱୟଂ ବ୍ରହ୍ମ ବିଦ୍ୟମାନ, ଯେ ଭୋଗ୍ୟରୂପରେ ବାହାରେ ଓ ଭୋକ୍ତା ରୂପରେ ଭିତରେ ଅନୁଭୂତ ହୁଅନ୍ତି ତଥା ଉଚ୍ଚ ଓ ନୀଚ, ଜ୍ଞାତା ଓ ଜ୍ଞାତବ୍ୟ, ବଚନ ଓ ବାଚ୍ୟ ଏବଂ ତମସା ଓ ଜ୍ୟୋତି ରୂପରେ ସ୍ୱୟଂ ଯେ ଅନୁଭୂତ ହୁଅନ୍ତି, ମୋହ ତାଙ୍କୁ ସ୍ପର୍ଶ କରେ ନାହିଁ ।।୫୭।। ପ୍ରତିବିମ୍ବ ଆଦି ଯେପରି ଆଭାସ ପ୍ରକୃତ ବସ୍ତୁ ନୁହେଁ ଏବଂ ଏହା ଯୁକ୍ତିସମ୍ମତ, ସେହିପରି ଇନ୍ଦ୍ରିୟାଦିଦ୍ୱାରା ଦୃଷ୍ଟ ବା ଅନୁଭୂତ ବସ୍ତୁର ସତ୍ୟତା ଯୁକ୍ତିସମ୍ମତ ନୁହେଁ, ଯଦିଓ ତାହା ପ୍ରକୃତ ବସ୍ତୁ ରୂପେ ପ୍ରତିଭାତ ହୁଏ ।।୫୮।। ସୂକ୍ଷ୍ମ ଶରୀରକୁ ସ୍ୱୀକାର ନ କଲେ କ୍ଷିତି ଆଦି ମହାଭୂତମାନଙ୍କଦ୍ୱାରା ଏହି ଶରୀର ଉତ୍ପନ୍ନ ହୋଇଛି ବୋଲି ବିଚାର କରାଯାଇପାରିବ ନାହିଁ । ବସ୍ତୁତଃ ଏହା ପଞ୍ଚଭୂତମାନଙ୍କର ସଂଘାତ, ବିକାର ବା ପରିଣାମ ନୁହେଁ । ତେଣୁ ଦେହୀ ସିଦ୍ଧ ନ ହେଲେ, ଅବୟବମାନଙ୍କ ସତ୍ୟତାର ପ୍ରମାଣ ନାହିଁ ।।୫୯-୬୦।।

ଅବିଦ୍ୟା ବା ଅଜ୍ଞାନତାଯୋଗୁଁ ସାଦୃଶ୍ୟଭ୍ରମ ଜାତ ହୁଏ; ସ୍ୱପ୍ନରେ ଯେପରି ନିଦ୍ରା ଓ ଜାଗରଣ ଏହି ଦୁଇ ଅବସ୍ଥା ସମ୍ଭବ ହୁଏ । ଶାସ୍ତ୍ରର ବିଧି ନିଷେଧକୁ ମଧ୍ୟ ସେହିପରି ଜାଣିବ ।।୬୧।। ଆତ୍ମାର ତିନୋଟି ଅଦ୍ୱୈତ ସ୍ୱରୂପ ଅଛି । ଭାବରେ ଅଦ୍ୱୈତ, କ୍ରିୟାରେ ଅଦ୍ୱୈତ ଓ ଦ୍ରବ୍ୟରେ ଅଦ୍ୱୈତ । ତେଣୁ ଆତ୍ମତତ୍ତ୍ୱର ଅନୁଭବୀ ସାଧକ ଜାଗ୍ରତ୍, ସ୍ୱପ୍ନ ଓ ସୁଷୁପ୍ତିର ଏବଂ ଦ୍ରଷ୍ଟା, ଦର୍ଶନ ଓ ଦୃଶ୍ୟର ଭେଦରୂପକ ତିନୋଟି ଅବସ୍ଥାକୁ ହୃଦୟଙ୍ଗମ କରିବ । ବସ୍ତ୍ର ଓ ସୂତ୍ର ପରି କାର୍ଯ୍ୟ ହେଉଛି କାରଣମାତ୍ର । କାରଣ, ବସ୍ତୁତଃ ଏ ଦୁଇଟି ମଧ୍ୟରେ ଭେଦ ନାହିଁ । ତେଣୁ ଏହି ଅଭିନ୍ନଭାବ ହିଁ ହେଉଛି ଭାବାଦ୍ୱୈତ ।।୬୨-୬୩।। ଯୁଧିଷ୍ଠିର, କାୟମନୋବାକ୍ୟରେ ପରଂବ୍ରହ୍ମଙ୍କଠାରେ ସମସ୍ତ କର୍ମ ସମର୍ପଣ କରିବାକୁ କ୍ରିୟାଦ୍ୱୈତ କୁହାଯାଏ । ସେହିପରି ନିଜ ସ୍ତ୍ରୀ, ପୁତ୍ର ଆଦିଙ୍କର ଏବଂ ଅନ୍ୟ ପ୍ରାଣୀଙ୍କର ସ୍ୱାର୍ଥ ଓ ଭୋଗମଧ୍ୟରେ କୌଣସି ଭେଦ ନ ଦେଖି ତାହାକୁ ଏକ ବୋଲି ମନେ କରିବା ହେଉଛି ଦ୍ରବ୍ୟାଦ୍ୱୈତ ।।୬୪-୬୫।। ଯୁଧିଷ୍ଠିର, ଯେଉଁ ପୁରୁଷପାଇଁ ଯେଉଁ ଦ୍ରବ୍ୟ, ଯେଉଁ ସମୟରେ ଯେଉଁ ଉପାୟରେ ଯେଉଁ ବ୍ୟକ୍ତିଠାରୁ ଗ୍ରହଣ କରିବ, ଯଦି ତାହା ଶାସ୍ତ୍ରବିରୁଦ୍ଧ ନ ହୋଇଥାଏ, ତା'ହେଲେ ତଦ୍ୱାରା ସମସ୍ତ କାର୍ଯ୍ୟ ସମ୍ପନ୍ନ କରାଯିବା ଉଚିତ । ଆପଦ୍‌କାଳକୁ ଛାଡ଼ି ଦେଲେ ଏହାର ଅନ୍ୟଥା ହେବାର ନୁହେଁ । ହରିଭକ୍ତ ଗୃହରେ ରହି ଏହି ଉପାୟରେ ଏବଂ ଅନ୍ୟାନ୍ୟ ବେଦବିହିତ ଉପାୟରେ କର୍ମ କରିବାଦ୍ୱାରା ଶ୍ରୀକୃଷ୍ଣଙ୍କର ଗତି ଲାଭ କରେ ।।୬୬-୬୭।। ମହାରାଜ, ଯେପରି ତୁମେମାନେ ନିଜର ପ୍ରଭୁ ଭଗବାନ ଶ୍ରୀକୃଷ୍ଣଙ୍କର କୃପା ଓ ସହାୟତାରେ ବହୁ ବଡ଼ବଡ଼ ବିପଦରୁ ପାର ହୋଇଗଲ, ଏବଂ ତାଙ୍କରି ପାଦପଦ୍ମସେବା ଦ୍ୱାରା ସମସ୍ତ ଭୂମଣ୍ଡଳକୁ ଜୟକରି ରାଜସୂୟ ଆଦି ଏତେ ବଡ଼ବଡ଼ ଯଜ୍ଞ କରି ପାରିଥିଲ ।।୬୮।।

ପୂର୍ବକଳ୍ପରେ ମୁଁ ଉପବର୍ହଣ ନାମରେ ଏକ ଗନ୍ଧର୍ବ ଥିଲି ଓ ଗନ୍ଧର୍ବମାନଙ୍କ ମଧ୍ୟରେ ମୋର ବହୁ ସମ୍ମାନ ରହିଥିଲା ।।୬୯।। ମୋର ରୂପ, ସୁକୁମାରତ୍ୱ, ମାଧୁର୍ଯ୍ୟ ଓ ସୌଗନ୍ଧରେ ମୁଁ ପରିପୂର୍ଣ୍ଣ ଥିଲି ଓ ସ୍ତ୍ରୀମାନଙ୍କର ପ୍ରିୟପାତ୍ର ହୋଇ ପାରିଥିଲି ଏବଂ ନିଜ

ଗୃହରେ ଲମ୍ପଟ ଭାବରେ ମୁଁ ମତ୍ତ ହୋଇ ରହୁଥିଲି ॥୭୦॥ ଥରେ ଦେବତାମାନଙ୍କର ଏକ ଯଜ୍ଞ ହେଉଥିଲା । ସେଠାରେ ହରିଲୀଳା ଗାନ କରିବାପାଇଁ ବିଶ୍ୱସ୍ରଷ୍ଟା ପ୍ରଜାପତିମାନେ ଗନ୍ଧର୍ବ ଓ ଅପ୍‌ସରାମାନଙ୍କୁ ଡକାଇଥିଲେ ॥୭୧॥ ମୁଁ ଏହାକୁ ଏକ ସନ୍ଥ ସମାଜ ବୋଲି ଜାଣି ମଧ୍ୟ ନିଜ ସ୍ତ୍ରୀମାନଙ୍କ ଗହଣରେ ଅତି ମତ୍ତଭାବରେ ଅନ୍ୟ ଗାନ ଗାଇ ଗାଇ ପହଞ୍ଚିଲି । ମୁଁ ସେମାନଙ୍କୁ ଅନାଦର କରୁଛି ବୋଲି ଦେଖି ବିଶ୍ୱସ୍ରଷ୍ଟା ପ୍ରଜାପତିମାନେ ମୋତେ ଅଭିଶାପ ଦେଲେ 'ଦେବତାମାନଙ୍କର ଅବଜ୍ଞା କରିଥିବା ଯୋଗୁ ତୁମେ ଶୀଘ୍ର ହତଶ୍ରୀ ହୋଇ ଶୂଦ୍ରଯୋନିରେ ଜନ୍ମ ଗ୍ରହଣ କର' ॥୭୨॥ ସେମାନଙ୍କ ଶାପରେ ମୁଁ ଦାସୀପୁତ୍ର ଭାବରେ ଜନ୍ମ ହେଲି । କିନ୍ତୁ ସତ୍‌ସଙ୍ଗ ଓ ସାଧୁମହାତ୍ମାମାନଙ୍କ ସେବା ଶୁଶ୍ରୂଷାଦ୍ୱାରା ପରଜନ୍ମରେ ମୁଁ ବ୍ରହ୍ମାଙ୍କର ପୁତ୍ର ହୋଇପାରିଥିଲି । ମୁଁ ତୁମକୁ ପାପନାଶକ ଗୃହସ୍ଥ ଧର୍ମର କଥା କହିଲି । ଏହି ଧର୍ମର ଆଚରଣଦ୍ୱାରା ଗୃହସ୍ଥ ହୋଇ ମଧ୍ୟ ଜଣେ ସହଜରେ ସନ୍ନ୍ୟାସୀମାନଙ୍କ ଲଭ୍ୟ ପରମପଦକୁ ଲାଭ କରିପାରିବ ॥୭୩-୭୪॥

ସଂସାରରେ ତୁମେ ବଡ଼ ଭାଗ୍ୟବାନ ଯେ ସ୍ୱୟଂ ପରଂବ୍ରହ୍ମ ଶ୍ରୀକୃଷ୍ଣ ତୁମ ଗୃହରେ ଗୁପ୍ତ ଭାବରେ ମନୁଷ୍ୟ ରୂପରେ ବାସ କରୁଛନ୍ତି ଏବଂ ତାଙ୍କ ଦର୍ଶନପାଇଁ ଭୁବନପାବନ ମୁନିଋଷିଗଣ ବାରମ୍ବାର ତୁମ ଗୃହକୁ ଆସୁଛନ୍ତି ॥୭୫॥ ବଡ଼ବଡ଼ ମହାତ୍ମା ଯାହାକୁ ସର୍ବଦା ଅନ୍ୱେଷଣ କରନ୍ତି, ସେହି ମୋକ୍ଷ ସୁଖର ଅନୁଭୂତିସ୍ୱରୂପ ପରଂବ୍ରହ୍ମ ଭଗବାନ ହିଁ ତୁମର ପ୍ରିୟ ସଖା, ସୁହୃଦ୍ ମାମୁପୁଅ ଭାଇ, ପୂଜନୀୟ, ଆଜ୍ଞାକାରୀ ଏବଂ ଗୁରୁ । ଏହା କମ୍ ଭାଗ୍ୟର ବିଷୟ ନୁହେଁ ॥୭୬॥ ସାକ୍ଷାତ୍ ଶିବ ବ୍ରହ୍ମାଦି ନିଜ ଜ୍ଞାନବଳରେ ଯାହାଙ୍କର ବାସ୍ତବ ରୂପ ବର୍ଣ୍ଣନା କରିବାକୁ ଅସମର୍ଥ, ସେହି ଭକ୍ତବତ୍ସଳ ଭଗବାନଙ୍କୁ ମୌନ, ଭକ୍ତି ଓ ସଂଯମଦ୍ୱାରା ମୁଁ ସର୍ବଦା ପୂଜା କରିଛି । ସେ ମୋର ପୂଜାକୁ ଗ୍ରହଣ କରି ପ୍ରସନ୍ନ ହୁଅନ୍ତୁ ॥୭୭॥ ଶ୍ରୀ ଶୁକଦେବ କହିଲେ, ପରିକ୍ଷିତ, ଯୁଧିଷ୍ଠିର ନାରଦଙ୍କଠାରୁ ଏହି ସମସ୍ତ ବିଷୟ ଶୁଣି ଅତିଶୟ ପ୍ରୀତ ହେଲେ ଏବଂ ପ୍ରେମରେ ବିହ୍ୱଳ ହୋଇ ଶ୍ରୀକୃଷ୍ଣ ଓ ନାରଦଙ୍କୁ ଯଥୋଚିତ ପୂଜା କଲେ । ନାରଦ ଶ୍ରୀକୃଷ୍ଣ ଓ ଯୁଧିଷ୍ଠିରଙ୍କଦ୍ୱାରା ଅଭ୍ୟର୍ଥିତ ହୋଇ ଓ ତାଙ୍କଠାରୁ ବିଦାୟ ନେଇ ପ୍ରସ୍ଥାନ କଲେ । ଶ୍ରୀକୃଷ୍ଣ ଯେ ପରଂବ୍ରହ୍ମ ଏହା ଶୁଣି ଯୁଧିଷ୍ଠିର ଅତିଶୟ ଆଶ୍ଚର୍ଯ୍ୟ ହୋଇଗଲେ । ଏପରି ମୁଁ ଦକ୍ଷପୁତ୍ରୀମାନଙ୍କର ବଂଶ ପୃଥକ୍ ଭାବରେ ବର୍ଣ୍ଣନା କଲି ଯେଉଁ ବଂଶରେ ଦେବତା, ଅସୁର, ମନୁଷ୍ୟ ଆଦି ସମ୍ପୂର୍ଣ୍ଣ ଚରାଚର ସୃଷ୍ଟି ହୋଇଥିଲା ॥୭୮-୮୦॥

# ଅଷ୍ଟମ ସ୍କନ୍ଧ

## ପ୍ରଥମ ଅଧ୍ୟାୟ

## ମନ୍ୱନ୍ତରମାନଙ୍କ ବର୍ଣ୍ଣନା

ରାଜା ପରିକ୍ଷିତ କହିଲେ, ଗୁରୁଦେବ, ଯେଉଁ ବଂଶରେ ମରୀଚି ଆଦି ମୁନିଗଣଙ୍କର ଜନ୍ମ, ପୂର୍ବୋକ୍ତ ସେହି ସ୍ୱାୟଂଭୁବ ମନୁଙ୍କର ବଂଶ ଆପଣ ବିସ୍ତୃତ ଭାବରେ ବର୍ଣ୍ଣନା କଲେ । ଏବେ ଆପଣ ଅନ୍ୟ ମନୁଙ୍କର ବଂଶ ବର୍ଣ୍ଣନା କରନ୍ତୁ ॥୧॥ ବ୍ରହ୍ମନ୍, ଯେଉଁ ଯେଉଁ ମନ୍ୱନ୍ତରରେ ପୁରୁଷୋତ୍ତମ ଶ୍ରୀହରିଙ୍କ ଜନ୍ମ ଓ କର୍ମମାନଙ୍କୁ ବିଦ୍ୱାନ୍‌ମାନେ କୀର୍ତ୍ତନ କରିଛନ୍ତି, ତାହା ସବୁ ଶୁଣିବାପାଇଁ ଆମେ ଇଚ୍ଛୁକ । ଆପଣ ବର୍ଣ୍ଣନା କରନ୍ତୁ ॥୨॥ ବିଶ୍ୱସ୍ରଷ୍ଟା ଭଗବାନ ଅତୀତରେ ଯେଉଁ ଯେଉଁ ମନ୍ୱନ୍ତରରେ ଯେଉଁ ଯେଉଁ ଲୀଳା କରିଛନ୍ତି, ବର୍ତ୍ତମାନ ଯାହା ଯାହା କରୁଛନ୍ତି ଓ ଭବିଷ୍ୟତରେ ଯାହା ଯାହା କରିବେ, ସେ ସବୁ ବିଷୟ ଆପଣ ଶୁଣାଇବା ହୁଅନ୍ତୁ ॥୩॥ ଶ୍ରୀ ଶୁକଦେବ କହିଲେ, ରାଜନ୍, ଏହି କଳ୍ପରେ ସ୍ୱାୟମ୍ଭୁବ ଆଦି ଛ'ଜଣ ମନୁ ଚାଲିଗଲେଣି । ସେମାନଙ୍କ ମଧ୍ୟରୁ ଯାହାଙ୍କ ମନ୍ୱନ୍ତରରେ ଦେବତା ଆଦିଙ୍କର ଜନ୍ମ, ସେଇ ଆଦ୍ୟ ମନୁଙ୍କ ବିଷୟ ମୁଁ ତୁମ ନିକଟରେ ବର୍ଣ୍ଣନା କରିଛି ॥୪॥ କୁରୁକୁଳତିଳକ, ଧର୍ମ ଉପଦେଶ ଦେବାପାଇଁ ସ୍ୱାୟମ୍ଭୁବ ମନୁଙ୍କ କନ୍ୟା ଆକୂତିଙ୍କ ଗର୍ଭରୁ ଯଜ୍ଞପୁରୁଷ ଭଗବାନ ଜନ୍ମ ନେଇଥିଲେ । ସେହିପରି ଜ୍ଞାନ ଉପଦେଶ ଦେବାପାଇଁ ଦେବହୂତିଙ୍କ ଗର୍ଭରୁ ଭଗବାନ କପିଳରୂପରେ ଅବତୀର୍ଣ୍ଣ ହୋଇଥିଲେ ॥୫॥ ପୂର୍ବରୁ ମୁଁ କପିଳଙ୍କ ବିଷୟ ବର୍ଣ୍ଣନା କରିଛି । ଏବେ ଆକୂତିଙ୍କ ଗର୍ଭରୁ ଜାତ ଭଗବାନ ଯଜ୍ଞଙ୍କ ଲୀଳା ଆଖ୍ୟାନ କରିବି ॥୬॥

ପରିକ୍ଷିତ, ସ୍ୱାୟମ୍ଭୁବ ମନୁଙ୍କର କାମ ଓ ଭୋଗ ପ୍ରତି ବିରକ୍ତି ଆସିଯିବାରୁ ସେ ରାଜ୍ୟ ଛାଡ଼ିଦେଲେ ଏବଂ ତପସ୍ୟା କରିବାପାଇଁ ପତ୍ନୀ ଶତରୂପାଙ୍କ ସହିତ ବନକୁ ଚାଲିଗଲେ ॥୭॥ ସୁନନ୍ଦା ନାମକ ନଦୀକୂଳରେ ଗୋଟିଏ ପାଦରେ ଠିଆ ହୋଇ ସେ ଶହେ ବର୍ଷପର୍ଯ୍ୟନ୍ତ ଘୋର ତପସ୍ୟା କରିବାକୁ ଲାଗିଲେ । ତପସ୍ୟା ସମୟରେ ସେ ଭଗବାନଙ୍କୁ ଏହିପରି ସ୍ତୁତି କରୁଥିଲେ — ॥୮॥ ଯାହାଙ୍କ ଚେତନାର ସ୍ପର୍ଶରେ ଏହି ବିଶ୍ୱ ଜାଗିଉଠେ, କିନ୍ତୁ ଯାହାଙ୍କୁ ଜାଗ୍ରତ କରିବାର ଶକ୍ତି ଏହି ବିଶ୍ୱର ନାହିଁ, ସମସ୍ତ ବିଶ୍ୱ ନିଦ୍ରିତ ହେବା ସମୟରେ ଯେ ଜାଗ୍ରତ ରହନ୍ତି, ଜଗତ୍ ଯାହାଙ୍କୁ ଜାଣି ପାରେ ନାହିଁ, କିନ୍ତୁ ଯେ ସମଗ୍ର ଜଗତ୍‌କୁ ଜାଣନ୍ତି, ସେ ହିଁ ପରମାତ୍ମା ॥୯॥ ଏହି ସମ୍ପୂର୍ଣ୍ଣ ବିଶ୍ୱ ଏବଂ ବିଶ୍ୱରେ ରହୁଥିବା ସମସ୍ତ ଚରାଚର ପ୍ରାଣୀ ତାଙ୍କଠାରେ ହିଁ ଓତପ୍ରୋତ ପରିବ୍ୟାପ୍ତ; ତେଣୁ ସେ ଯାହା ଦେଉଛନ୍ତି, ତାହା ହିଁ ଭୋଗ କର । ଅନ୍ୟ କାହାର ଧନକୁ ଦେଖି ଲୋଭ କର ନାହିଁ ॥୧୦॥ ସେ ସର୍ବଦର୍ଶୀ । ବୁଦ୍ଧିବୃତ୍ତି ଓ ନେତ୍ରାଦି ଇନ୍ଦ୍ରିୟଦ୍ୱାରା ତାଙ୍କୁ କେହି ଦେଖିପାରେ ନାହିଁ । ଯାହାଙ୍କର ଜ୍ଞାନଶକ୍ତି ନଷ୍ଟ ହୁଏ ନାହିଁ, ପ୍ରାଣୀମାନଙ୍କର ଆଶ୍ରୟସ୍ୱରୂପ ସେହି ଅସଙ୍ଗ ପରମାତ୍ମାଙ୍କର ଶରଣ ନିଅ ॥୧୧॥ ଯାହାଙ୍କର ଆଦି ନାହିଁ କି ଅନ୍ତ ନାହିଁ, ତାଙ୍କର ମଧ୍ୟ ବା କୁଆଡୁ ଆସିବ ? ଯାହାଙ୍କର ଆପଣା ବା ପର, ଅନ୍ତର ଓ ବାହାର କିଛି ନାହିଁ, ବିଶ୍ୱର ଆଦି, ଅନ୍ତ ଓ ମଧ୍ୟ ତାଙ୍କଠାରୁ ସୃଷ୍ଟି ହୋଇଛି । ଏହି ବିଶ୍ୱ ତାଙ୍କରି ସ୍ୱରୂପ । ସେ ହିଁ ସତ୍ୟ ଏବଂ ପରଂବ୍ରହ୍ମ ॥୧୨॥ ସେହି ବିଶ୍ୱରୂପ ପରମାତ୍ମାଙ୍କର ଅନନ୍ତ ନାମ ଅଛି । ସେ ଈଶ୍ୱର, ସତ୍ୟସ୍ୱରୂପ, ସ୍ୱପ୍ରକାଶ, ଜନ୍ମାଦିଶୂନ୍ୟ ଏବଂ ପୁରାଣପୁରୁଷ । ସେ ନିଜର ମାୟାଶକ୍ତିଦ୍ୱାରା ଏହି ଜଗତ୍‌ର ସୃଷ୍ଟି, ସ୍ଥିତି ଓ ନାଶ କରନ୍ତି, ପୁଣି ନିଜ ଶକ୍ତିପ୍ରଭାବରେ ମାୟାକୁ ତ୍ୟାଗ କରି ନିଷ୍କ୍ରିୟଭାବରେ ଅବସ୍ଥାନ କରନ୍ତି ॥୧୩॥

ଭଗବାନ ନିଜ କର୍ମସମୂହର ଆଚରଣ ଦ୍ୱାରା ସ୍ୱୟଂ ନିଷ୍କ୍ରିୟ ହୁଅନ୍ତି ବୋଲି ଋଷିମାନେ ନିଷ୍କ୍ରିୟତା ପାଇବାପାଇଁ ପ୍ରଥମେ କର୍ମାନୁଷ୍ଠାନ କରନ୍ତି । କାରଣ ମନୁଷ୍ୟ ତା'ର କର୍ମ କରି କରି ଯେତେବେଳେ ଅନାସକ୍ତ ହୁଏ, ସେତେବେଳେ ନିଷ୍କ୍ରିୟ ହୋଇଯାଏ ॥୧୪॥ ସର୍ବଶକ୍ତିମାନ୍ ଭଗବାନ କର୍ମ କରନ୍ତି ସତ, କିନ୍ତୁ ଆତ୍ମସାକ୍ଷାତ୍କାର ଦ୍ୱାରା ପୂର୍ଣ୍ଣକାମ ହୋଇଥିବାଯୋଗୁଁ କର୍ମରେ ଆସକ୍ତ ହୁଅନ୍ତି ନାହିଁ । ତେଣୁ ତାଙ୍କୁ ଅନୁସରଣ କରି କର୍ମରେ ଅନାସକ୍ତ ରହିଥିବା ବ୍ୟକ୍ତିମାନେ କର୍ମବନ୍ଧନରୁ ମୁକ୍ତ ହୋଇଯାଆନ୍ତି ॥୧୫॥ ଭଗବାନ ଜ୍ଞାନସ୍ୱରୂପ । ତେଣୁ ସେ ଅହଙ୍କାରଶୂନ୍ୟ । ସେ ସ୍ୱୟଂସମ୍ପୂର୍ଣ୍ଣ ହୋଇଥିବାଯୋଗୁଁ କୌଣସି ବସ୍ତୁ ପ୍ରତି ତାଙ୍କର କାମନା ନ ଥାଏ । ଅନ୍ୟର ପ୍ରେରଣା ବିନା ସେ ସ୍ୱଚ୍ଛନ୍ଦ ଭାବରେ କର୍ମ କରନ୍ତି । ସେ ନିଜ ମର୍ଯ୍ୟାଦାରେ ସ୍ଥିର ରହି ନିଜ କର୍ମଦ୍ୱାରା ମନୁଷ୍ୟଙ୍କୁ ଶିକ୍ଷା ଦିଅନ୍ତି । ସେ ସମସ୍ତ ଧର୍ମର ପ୍ରବର୍ତ୍ତକ । ମୁଁ ସେହି ପ୍ରଭୁଙ୍କର ଶରଣାଗତ ହେଉଛି ॥୧୬॥ ଶ୍ରୀ ଶୁକଦେବ କହିଲେ, ପରିକ୍ଷିତ, ଥରେ ସ୍ୱାୟମ୍ଭୁବ ମନୁ ଏକାଗ୍ର ଚିତ୍ତରେ ଏହି ମନ୍ତ୍ରମୟ ଉପନିଷଦ୍ ବାକ୍ୟକୁ ପାଠ କରୁଥିବାବେଳେ ତାଙ୍କୁ ଅଚେତନ ଭାବି, କ୍ଷୁଧାର୍ତ୍ତ ଅସୁର ଓ ରାକ୍ଷସଗଣ ତାଙ୍କୁ ଭକ୍ଷଣ କରିବାକୁ ଉଦ୍ୟମ କଲେ ॥୧୭॥ ତାହା ଦେଖି ଅନ୍ତର୍ଯାମୀ ଯଜ୍ଞ ଭଗବାନ ଯାମ ନାମକ ଦେବଗଣଙ୍କଦ୍ୱାରା ପରିବୃତ ହୋଇ ସେମାନଙ୍କୁ ବଧ କଲେ ଏବଂ ସ୍ୱୟଂ ଇନ୍ଦ୍ର ହୋଇ ସ୍ୱର୍ଗରାଜ୍ୟ ଶାସନ କରିବାକୁ ଲାଗିଲେ ॥୧୮॥

ଅଗ୍ନିପୁତ୍ର ସ୍ୱାରୋଚିଷ ହେଲେ ଦ୍ୱିତୀୟ ମନୁ । ତାଙ୍କର ଦ୍ୟୁମାନ୍, ସୁଷେଣ ଓ ରୋଚିଷ୍ମାନ୍ ଆଦି ପୁତ୍ରମାନେ ଥିଲେ ॥୧୯॥ ଏହି ମନ୍ୱନ୍ତରରେ ରୋଚନ ନାମକ ଇନ୍ଦ୍ର, ତୁଷିତ ଆଦି ଦେବଗଣ ଓ ଉର୍ଜ୍ଜସ୍ତମ୍ଭ ପ୍ରମୁଖ ବ୍ରହ୍ମବାଦୀ ଋଷିମାନେ ରହିଥିଲେ । ଏହି ମନ୍ୱନ୍ତରରେ ବେଦଶିରା ନାମକ ଋଷିଙ୍କ ଔରସରେ ତାଙ୍କ ପତ୍ନୀ ତୁଷିତାଙ୍କ ଗର୍ଭରୁ ଭଗବାନ୍ ବିଭୁ ଜନ୍ମ ଗ୍ରହଣ କଲେ ॥୨୦-୨୧॥ ସେ ଆଜୀବନ ନୈଷ୍ଠିକ ବ୍ରହ୍ମଚାରୀ ଥିଲେ । ତାଙ୍କ ବ୍ରତକୁ ଶିକ୍ଷା କରି ଅଠାଅଶୀ ହଜାର ଋଷି ବ୍ରହ୍ମଚର୍ଯ୍ୟ ବ୍ରତ ପାଳନ କରିଥିଲେ ॥୨୨॥ ତୃତୀୟ ମନୁ ହେଲେ ଉତ୍ତମ । ସେ ଥିଲେ ପ୍ରିୟବ୍ରତଙ୍କର ପୁତ୍ର । ତାଙ୍କ ପୁତ୍ରମାନେ ହେଲେ -- ପବନ, ସଞ୍ଜୟ, ଯଜ୍ଞହୋତ୍ର ଆଦି ॥୨୩॥ ଏହି ମନ୍ୱନ୍ତରରେ ସପ୍ତର୍ଷି ଥିଲେ ବସିଷ୍ଠଙ୍କର ପ୍ରମଦ ଆଦି ସାତ ପୁତ୍ର । ସତ୍ୟ, ବେଦଶ୍ରୁତ ଓ ଭଦ୍ର ନାମରେ ଦେବଗଣ ଏବଂ ସତ୍ୟଜିତ୍ ନାମରେ ଇନ୍ଦ୍ର ଥିଲେ ॥୨୪॥ ସେହି ସମୟରେ ଧର୍ମଙ୍କର ପତ୍ନୀ ସୂନୃତାଙ୍କ ଗର୍ଭରୁ ପୁରୁଷୋତ୍ତମ ଭଗବାନ୍ ସତ୍ୟସେନ ନାମରେ ଜନ୍ମ ଗ୍ରହଣ କରିଥିଲେ । ତାଙ୍କ ସହିତ ଥିବା ଦେବମାନେ ସତ୍ୟବ୍ରତ ନାମରେ ପ୍ରସିଦ୍ଧ ଥିଲେ ॥୨୫॥ ସେହି ସତ୍ୟସେନ ନାମକ ଭଗବାନ ସତ୍ୟଜିତ୍ ନାମକ ଇନ୍ଦ୍ରଙ୍କର ସଖା ହୋଇ ମିଥ୍ୟାବ୍ରତ, ଦୁଃଶୀଳ ଓ ଦୁଷ୍ଟ ଯକ୍ଷ, ରାକ୍ଷସ ଓ ପ୍ରାଣିହିଂସକ ଭୂତମାନଙ୍କୁ ବିନାଶ କରିଥିଲେ ॥୨୬॥

ଚତୁର୍ଥ ମନୁଙ୍କର ନାମ ହେଲା ତାମସ । ସେ ଥିଲେ ଉତ୍ତମଙ୍କର ସହୋଦର ଭାଇ । ତାଙ୍କର ପୃଥୁ, ଖ୍ୟାତି, ନର, କେତୁ ଆଦି ଦଶ ପୁତ୍ର ଥିଲେ ॥୨୭॥ ପ୍ରଧାନ ଦେବଗଣଙ୍କର ନାମ ଥିଲା ସତ୍ୟକ, ହରି ଏବଂ ବୀର । ଇନ୍ଦ୍ରଙ୍କର ନାମ ଥିଲା ତ୍ରିଶିଖ । ସେହି ମନ୍ୱନ୍ତରରେ ଜ୍ୟୋତିର୍ଧାମ ଆଦି ସପ୍ତର୍ଷି ରହିଥିଲେ ॥୨୮॥ ସେହି ତାମସ ନାମକ ମନ୍ୱନ୍ତରରେ ବିଧୃତିଙ୍କର ପୁତ୍ର ବୈଧୃତି ନାମକ ଦେବଗଣ ଜନ୍ମ ଗ୍ରହଣ କରିଥିଲେ । କାଳକ୍ରମେ ସମସ୍ତ ବେଦ ନଷ୍ଟ ହୋଇଯିବାରୁ ସେମାନେ ନିଜ ତେଜରେ ତାହାକୁ ବିଧୃତ (ଉଦ୍ଧାର) କରିଥିଲେ । ସେଥିପାଇଁ ସେମାନଙ୍କୁ ବୈଧୃତି କୁହାଯାଉଥିଲା ॥୨୯॥ ସେହି ମନ୍ୱନ୍ତରରେ ହରିମେଧା ଋଷିଙ୍କର ପତ୍ନୀ ହରିଣୀଙ୍କ ଗର୍ଭରୁ ଭଗବାନ ବିଷ୍ଣୁ ଜନ୍ମ ଗ୍ରହଣ କରି ହରି ନାମରେ ଖ୍ୟାତ ହେଲେ । ଏହି ଭଗବାନ ଶ୍ରୀହରି କୁମ୍ଭୀରଠାରୁ ଗଜେନ୍ଦ୍ରକୁ ମୁକ୍ତ କରିଥିଲେ ॥୩୦॥

ରାଜା ପରିକ୍ଷିତ ପଚାରିଲେ, ମୁନିଶ୍ରେଷ୍ଠ, ଭଗବାନ ଶ୍ରୀହରି କିପରି କୁମ୍ଭୀରଠାରୁ ଗଜେନ୍ଦ୍ରକୁ ମୁକ୍ତ କରିଥିଲେ, ତାହା ମୁଁ ଆପଣଙ୍କଠାରୁ ଶୁଣିବାକୁ ଚାହେଁ ॥୩୧॥ ଉତ୍ତମଶ୍ଳୋକ ଭଗବାନ ଯେଉଁ ଯେଉଁଠି ବର୍ଣ୍ଣିତ ହୋଇଛନ୍ତି ଏହା ହେଉଛି ତନ୍ମଧ୍ୟରେ ଅତିମହତ୍, ପୁଣ୍ୟମୟ, ଧନ୍ୟ, ମଙ୍ଗଳକର ଏବଂ ଶାନ୍ତିପ୍ରଦ କଥା ॥୩୨॥ ଶ୍ରୀ ସୂତ କହିଲେ, ହେ ଋଷିଗଣ, ମହାରାଜ

ପରିକ୍ଷିତ ଆମରଣ ଅନଶନ କରି ହରିକଥା ଶୁଣିବାପାଇଁ ହିଁ ବସିଥିଲେ । ତାଙ୍କ ଦ୍ୱାରା ପ୍ରଣୋଦିତ ହୋଇ ଶ୍ରୀ ଶୁକଦେବ ରାଜାଙ୍କୁ ପ୍ରଶଂସାକରି ଶ୍ରବଣରତ ମୁନିମାନଙ୍କ ସଭାରେ ଏହିପରି ଭାବରେ କହିବା ଆରମ୍ଭ କଲେ-- ॥୩୩॥

## ଦ୍ୱିତୀୟ ଅଧ୍ୟାୟ

## 'ଗଜ-କୁମ୍ଭୀର ଯୁଦ୍ଧ'

ଶ୍ରୀ ଶୁକଦେବ କହିଲେ, ପରିକ୍ଷିତ, କ୍ଷୀରସାଗର ମଧ୍ୟରେ ତ୍ରିକୂଟ ନାମରେ ଏକ ସୁପ୍ରସିଦ୍ଧ, ସୁନ୍ଦର ଏବଂ ଶ୍ରେଷ୍ଠ ପର୍ବତ ଥିଲା । ଏହାର ଉଚ୍ଚତା ଥିଲା ଦଶ ହଜାର ଯୋଜନ । ଦୀର୍ଘ ଓ ପ୍ରସ୍ଥରେ ମଧ୍ୟ ଏହା ଦଶ ହଜାର ଯୋଜନ ଥିଲା । ଏହାର ତିନୋଟି ପ୍ରଧାନ ଶୃଙ୍ଗ ଥିଲା ଲୌହ, ରୌପ୍ୟ ଓ ସ୍ୱର୍ଣ୍ଣ ନିର୍ମିତ । ଏହି ଶୃଙ୍ଗମାନଙ୍କ ଆଭାରେ ଦିଗବିଦିଗ, ସମୁଦ୍ର ଓ ଆକାଶ ଆଲୋକିତ ହୋଇଉଠୁଥିଲା ॥୧-୨॥ ଏହାର ଅନ୍ୟସବୁ ଶୃଙ୍ଗ ବିଭିନ୍ନ ରତ୍ନ ଓ ଧାତୁଦ୍ରବ୍ୟରେ ନିର୍ମିତ ହୋଇ ଚିତ୍ର ବିଚିତ୍ର ଦେଖାଯାଉଥିଲା । ବହୁସଂଖ୍ୟକ ଲତା ଓ ଗୁଳ୍ମଶୋଭିତ ଏହି ପର୍ବତରେ ନିର୍ଝରିଣୀମାନଙ୍କର ଘର୍ଘର ଧ୍ୱନି ଶୁଣାଯାଉଥିଲା ॥୩॥ ଏହାର ପାଦଦେଶର ଚତୁର୍ଦିଗରେ କ୍ଷୀରସମୁଦ୍ର ଲହଡ଼ି ଭାଙ୍ଗୁଥିଲା ଜଣାଯାଉଥିଲା ଯେପରିକି ସେ ପର୍ବତର ପାଦ ପ୍ରକ୍ଷାଳନ କରୁଛି । ତାର ପାଦଦେଶ ସବୁଜ ଦୂର୍ବାଦଳ ଓ ମରକତ ପଥରମାନଙ୍କଦ୍ୱାରା ଶୋଭାପାଉଥିଲା । କ୍ରୀଡ଼ାରତ ସିଦ୍ଧ, ଚାରଣ,ଗନ୍ଧର୍ବ, ବିଦ୍ୟାଧର, ମହାନାଗ, କିନ୍ନର ଓ ଅପ୍‌ସରାମାନେ ଏହି ପର୍ବତର ଗୁହାମାନଙ୍କୁ ଆଶ୍ରୟ କରିଥିଲେ ॥୪-୫॥ କିନ୍ନରମାନଙ୍କର ସଙ୍ଗୀତ ଗୁହାରେ ପ୍ରତିଧ୍ୱନିତ ହୋଇ ସିଂହର ଗର୍ଜନ ପରି ଶୁଣାଯାଉଥିଲା ଏବଂ ସେଥିରେ ସିଂହମାନେ ଅନ୍ୟ ସିଂହର ଗର୍ଜନ ବୋଲି ଆଶଙ୍କା କରି ଅସହିଷ୍ଣୁ ଭାବରେ ପ୍ରବଳ ଗର୍ଜନ କରୁଥିଲେ ॥୬॥ ଏହି ପର୍ବତର ଗୁହାମାନଙ୍କରେ ନାନାପ୍ରକାର ପଶୁ ରହୁଥିଲେ । ବିଭିନ୍ନପ୍ରକାର ବୃକ୍ଷରେ ପରିପୂର୍ଣ୍ଣ ଦେବୋଦ୍ୟାନମାନଙ୍କରେ ସୁନ୍ଦର ପକ୍ଷୀମାନେ ମଧୁର ସ୍ୱରରେ କଳରବ କରୁଥିଲେ ॥୭॥ ନିର୍ମଳ ଜଳପୂର୍ଣ୍ଣ ନଦୀ ଓ ସରୋବରଗୁଡ଼ିକ ବାଲୁକାମୟ ତଟଭୂମିଦ୍ୱାରା ସୁନ୍ଦର ଦେଖାଯାଉଥିଲା । ଦେବାଙ୍ଗନାମାନେ ସେଥିରେ ସ୍ନାନ କରୁଥିଲେ ଏବଂ ତଦ୍ୱାରା ସୁଗନ୍ଧିତ ଜଳକଣାମାନ ପବନରେ ଭାସିଆସୁଥିଲା ॥୮॥ ସେହି ପର୍ବତର ସାନୁଦେଶରେ ଭଗବାନ ବରୁଣଙ୍କର ଋତୁମାନ୍ ନାମକ ଏକ ଉଦ୍ୟାନ ଥିଲା ଏବଂ ସେଥିରେ ଦେବାଙ୍ଗନାମାନେ କ୍ରୀଡ଼ା କରୁଥିଲେ । ଏହି ଉଦ୍ୟାନ ଫଳପୁଷ୍ପପୂର୍ଣ୍ଣ ବୃକ୍ଷରାଜିରେ ଶୋଭିତ ଥିଲା ॥୯॥ ଏଥିରେ ମନ୍ଦାର, ପାରିଜାତ, ପାଟଳ, ଅଶୋକ, ଚମ୍ପା, ଚୂତ, ପିଜୁଳି, ପଣସ, ଆମ୍ବ, ଆମ୍ବଡ଼ା, ଗୁଆ, ନଡ଼ିଆ, ଖଜୁରି, ଡାଳିମ୍ବ, ମହୁଲ, ଶାଳ, ତାଳ, ତମାଳ, ଅଶନ, ଅର୍ଜୁନ, ଅରିଷ୍ଟ, ଉଦୁମ୍ବର, ଅଶ୍ୱତ୍‌ଥ, ବଟ, କିଂଶୁକ, ଚନ୍ଦନ, ନିମ୍ବ, କୋବିଦାର, ସରଳ, ଦେବଦାରୁ, ଦ୍ରାକ୍ଷା, ଇକ୍ଷୁ, କଦଳୀ, ଜାମୁ, ବରକୋଳି, ରୁଦ୍ରାକ୍ଷ, ହରିଡ଼ା, ଅଁଳା, ବେଲ, କଇଥ, ଲେମ୍ବୁ, ବାହାଡ଼ା ଆଦି ବୃକ୍ଷମାନ ରହିଥିଲା । ଏଥିରେ ଏକ ବିଶାଳ ସରୋବର ଥିଲା, ଯାହା ମଧ୍ୟରେ ସ୍ୱର୍ଣ୍ଣ କମଳମାନ ଖେଳୁଥିଲେ ॥୧୦-୧୪॥ ଏହାଛଡ଼ା ସେଥିରେ ବିଭିନ୍ନ ଜାତିର କୁମୁଦ, କହ୍ଲାର, ଉତ୍ପଳ, ଶତଦଳ ପ୍ରସ୍ଫୁଟିତ ହୋଇ ଶୋଭା ପାଉଥିଲା । ମତ୍ତ ଭ୍ରମରମାନଙ୍କର ଗୁଞ୍ଜନ ଓ ପକ୍ଷୀମାନଙ୍କର କଳରବ ଶୁଣାଯାଉଥିଲା । ହଂସ, କାରଣ୍ଡବ, ଚକ୍ରବାକ ଏବଂ ସାରସ ମାଳମାଳ ହୋଇ ଏଥିରେ ପହଁରୁଥିଲେ । ପାଣିକୁକୁଡ଼ା, ବତକ, ଡାହୁକ ଆଦି ପକ୍ଷୀମାନେ କୂଜନ କରୁଥିଲେ । ମାଛ ଓ କଇଁଛମାନେ ଯିବାଦ୍ୱାରା ପଦ୍ମଫୁଲସବୁ ହଲି ଯାଉଥିଲା ଏବଂ ସେମାନଙ୍କର ପରାଗ ଝଡ଼ିଯାଇ ପାଣିକୁ ସୁନ୍ଦର ଓ ସୁଗନ୍ଧିତ କରୁଥିଲା । କଦମ୍ବ, ବେତ, ନରକୋଳି, କଦମ୍ବଲତା, ବାଉଁଶଆଦି ବୃକ୍ଷରେ ତାହା ଘେରି ରହିଥିଲା ॥୧୫-୧୭॥ କୁନ୍ଦ, କୁରବକ, ଅଶୋକ, ଶିରୀଷ, ବଣମଲ୍ଲୀ, ଇଙ୍ଗୁଦି, ଉଟଜ, ସୁନାରଙ୍ଗର

କୁଇ, ନାଗେଶ୍ୱର, ପୋଲାଙ୍ଗ, ଜାଇ, ମଲ୍ଲୀ, ସ୍ଥଳପଦ୍ମ, ମାଧବୀ, ଜାଳକ ଆଦି ବହୁ ସୁନ୍ଦର ସୁନ୍ଦର ଫୁଲଗଛ ଏବଂ ସମସ୍ତଋତୁରେ ଫଳଫୁଲଭରା ବୃକ୍ଷଲତାଦିଦ୍ୱାରା ଏହା ପରିପୂର୍ଣ୍ଣ ଥିଲା ॥୧୮-୧୯॥

ଏହି ପର୍ବତର ଘୋର ଜଙ୍ଗଲ ମଧ୍ୟରେ ଏକଦା ବହୁ ହସ୍ତିନୀଙ୍କ ସହିତ ଏକ ଗଜେନ୍ଦ୍ର ବାସ କରୁଥିଲା । ସେଠାରେ ସେ ହସ୍ତିଯୂଥଙ୍କ ସହିତ କଣ୍ଟାବାଉଁଶ, ବେତର ଜଙ୍ଗଲ ଓ ବଡ଼ବଡ଼ ଗଛ ଭାଙ୍ଗି ସ୍ୱଚ୍ଛନ୍ଦରେ ବିଚରଣ କରୁଥିଲା ॥୨୦॥ ତାର ଗନ୍ଧ ପାଇବା ମାତ୍ରେ ସିଂହ, ହାତୀ, ବାଘ, ଗଣ୍ଡା, ବଡ଼ବଡ଼ ସାପ, କୃଷ୍ଣସାର, ସମ୍ବର ଓ ଚମରୀ ମୃଗ ସବୁ ଭୟରେ ପଳାଉଥିଲେ ॥୨୧॥ ଗଧିଆ, ବାରହା, ମଇଁଷି, ଭାଲୁ, ଝିଙ୍କ, ମାଙ୍କଡ଼, ବଳିଆକୁକୁର, ହରିଣ ଏବଂ ଠେକୁଆ ଆଦି ପ୍ରାଣୀମାନେ ତାର ଅନୁଗ୍ରହରେ ତା'ଠାରୁ ଦୂରରେ ରହି ନିର୍ଭୟରେ ବିଚରଣ କରୁଥିଲେ ॥୨୨॥ ଦିନେ ଗ୍ରୀଷ୍ମତାପରେ ବ୍ୟାକୁଳ ସେହି ଗଜରାଜ ଅନେକ ହସ୍ତି, ହସ୍ତିନୀ ଓ ହସ୍ତିଶାବକ ସହିତ ଗୁରୁ ଗୁରୁ ପଦଭାରରେ ପର୍ବତକୁ ପ୍ରକମ୍ପିତ କରି କରି ଜଳର ସନ୍ଧାନରେ ଚାଲିଥିଲା । ମଦଗନ୍ଧରେ ଲୁବ୍ଧ ଭ୍ରମରମାନେ ମଧ୍ୟ ତା ପଛେ ପଛେ ଗୋଡ଼ାଉଥିଲେ । ଦୂରରୁ ପଦ୍ମପରାଗ ଗନ୍ଧରେ ଆମୋଦିତ ବାୟୁକୁ ଆଘ୍ରାଣ କରି ତୃଷାର୍ତ୍ତ ଗଜରାଜ ନିଜର ଯୂଥ ସହିତ ସେହି ସରୋବର ନିକଟରେ ଉପସ୍ଥିତ ହେଲା ॥୨୩-୨୪॥ ଏହାର ନିର୍ମଳ ଅମୃତମୟ ଜଳ ସୁବର୍ଣ୍ଣ ରଙ୍ଗର ପଦ୍ମକେଶରଦ୍ୱାରା ସୁବାସିତ ହେଉଥିଲା । ଗଜେନ୍ଦ୍ର ଜଳମଧ୍ୟରେ ପ୍ରବେଶ କରି ନିଜ ଶୁଣ୍ଢରେ ପ୍ରଚୁର ପରିମାଣରେ ଜଳ ଆଣି ପାନ କଲା ଏବଂ ପରେ ପରେ ଏହି ଜଳରେ ସ୍ନାନ କରି ନିଜର କ୍ଳାନ୍ତି ଦୂର କଲା ॥୨୫॥ ଗୃହସ୍ଥ ପୁରୁଷ ପରି ମୋହଗ୍ରସ୍ତ ଗଜେନ୍ଦ୍ର ନିଜ ଶୁଣ୍ଢରେ ପାଣି ପିଚ୍‌କାରି କରି ସାଙ୍ଗରେ ଥିବା ହସ୍ତିନୀମାନଙ୍କୁ ଓ ନିଜର ସନ୍ତାନମାନଙ୍କୁ ପାନ ଓ ସ୍ନାନ କରାଇଲା । ଭଗବତ୍ ମାୟାରେ ମୋହିତ ହୋଇ ଆସନ୍ନ ବିପଦକୁ ସେ କଳନା କଲା ନାହିଁ ॥୨୬॥ ଏହି ସମୟରେ କାଳପ୍ରେରିତ ଏକ ବଳବାନ୍ କୁମ୍ଭୀର କ୍ରୁଦ୍ଧ ହୋଇ ଏହି ଗଜେନ୍ଦ୍ରର ପାଦକୁ ଆକ୍ରମଣ କଲା । ଏହି ପ୍ରକାରେ ହଠାତ୍ ବିପଦ୍‌ଗ୍ରସ୍ତ ହୋଇ ସେ ବଳପ୍ରଦର୍ଶନପୂର୍ବକ କୁମ୍ଭୀରଠାରୁ ନିଜର ପାଦକୁ ଛଡ଼ାଇବାକୁ ଚେଷ୍ଟା କଲା ॥୨୭॥ ଏହିପରି ଏକ ବଳବାନ୍ କୁମ୍ଭୀର ଗଜେନ୍ଦ୍ରକୁ ଆକ୍ରମଣ କରି ବେଗରେ ଟାଣୁଥିବାର ଦେଖି ଅନ୍ୟ ହସ୍ତୀ ଓ ହସ୍ତିନୀମାନେ ବିକଳ ହେବାକୁ ଲାଗିଲେ । ସେମାନେ ଗଜେନ୍ଦ୍ରର ପାଦକୁ ଧାରଣ କରି ଟାଣିବାକୁ ଚେଷ୍ଟା କଲେ, କିନ୍ତୁ ପାରିଲେ ନାହିଁ ॥୨୮॥ ମହାରାଜ, ଗଜେନ୍ଦ୍ର ଏବଂ କୁମ୍ଭୀର ନିଜ ନିଜର ଶକ୍ତି ଖଟାଇ ପରସ୍ପର ଟାଣିବାକୁ ଲାଗିଲେ । ବେଳେବେଳେ ଗଜେନ୍ଦ୍ର କୁମ୍ଭୀରକୁ ଟାଣି ଆଣୁଥିଲା ତ ବେଳେବେଳେ କୁମ୍ଭୀର ଗଜେନ୍ଦ୍ରକୁ ଟାଣି ନେଉଥିଲା । ଏହିପରି ହଜାର ବର୍ଷ ଧରି ଦୁହେଁ ଲଢ଼ିବାକୁ ଲାଗିଲେ ଏବଂ ତାହା ଦେଖି ଦେବତାମାନେ ଆଶ୍ଚର୍ଯ୍ୟ ହୋଇଗଲେ ॥୨୯॥ ଶେଷରେ ଦୀର୍ଘକାଳ ଧରି ବାରମ୍ବାର ଜଳମଧ୍ୟରେ ଟଣା ହୁଅନ୍ତେ ଗଜେନ୍ଦ୍ରର ଶରୀର ଶିଥିଳ ହୋଇଗଲା । ଶରୀରର ଶକ୍ତି କ୍ଷୀଣ ହେବା ସଙ୍ଗେ ସଙ୍ଗେ ମନ ଓ ଇନ୍ଦ୍ରିୟର ବଳ କମିଗଲା । କିନ୍ତୁ କୁମ୍ଭୀର ଜଳଚର ଜୀବ ହୋଇଥିବାଯୋଗୁଁ ତାହାର ବଳ ଓ ଉତ୍ସାହ ବଢ଼ିବାକୁ ଲାଗିଲା ॥୩୦॥ ନିଜ ଦେହର ବଳରେ ଅଭିମାନୀ ଗଜେନ୍ଦ୍ର କୁମ୍ଭୀର କବଳରୁ ନିଜକୁ ଛଡ଼େଇବାକୁ ସମ୍ପୂର୍ଣ୍ଣ ଅସମର୍ଥ ହୋଇ ପ୍ରାଣସଙ୍କଟରେ ପଡ଼ିଗଲା ଏବଂ ଅତି କାତରଭାବରେ ରକ୍ଷାର ଉପାୟ ଚିନ୍ତା କରିବାକୁ ଲାଗିଲା । ଶେଷରେ ତାକୁ ଏକ ବୁଦ୍ଧି ଦେଖାଗଲା ॥୩୧॥ ସେ ଭାବିଲା, କାଳପାଶ ପରି ବିଧାତା ନିଶ୍ଚୟ ଏହି କୁମ୍ଭୀରକୁ ପଠାଇଛି । କାରଣ ଯେତେବେଳେ ମୋର ଜ୍ଞାତି ସହଚର ହସ୍ତୀମାନେ ମୋତେ ଉଦ୍ଧାର କରିପାରିଲେ ନାହିଁ, ହସ୍ତିନୀମାନେ ବା କିପରି ପାରିବେ ? ବର୍ତ୍ତମାନ ସମ୍ପୂର୍ଣ୍ଣ ବିଶ୍ୱର ଏକମାତ୍ର ଆଶ୍ରୟ ନାରାୟଣଙ୍କୁ ମୁଁ ଶରଣାପନ୍ନ ହେଉଛି ॥୩୨॥ ଅତିଶୟ ବଳବାନ୍ କାଳ ସର୍ପପରି ପ୍ରାଣୀଙ୍କୁ ଗ୍ରାସ କରିବାକୁ ଚାହେ । ଏହି କାଳଗ୍ରାସରୁ ଭୀତ ଓ ଶରଣାପନ୍ନ ଜୀବକୁ ଯେଉଁ ସର୍ବଶକ୍ତିମାନ୍ ପରମେଶ୍ୱର ରକ୍ଷା କରନ୍ତି, ଯାହାଙ୍କ ଭୟରେ ମୃତ୍ୟୁ ମଧ୍ୟ ପଳାୟନ କରେ, ସମସ୍ତଙ୍କର ଆଶ୍ରୟସ୍ଥଳ ସେହି ପରମାତ୍ମାଙ୍କୁ ମୁଁ ଶରଣାପନ୍ନ ହେଉଛି ॥୩୩॥

## ତୃତୀୟ ଅଧ୍ୟାୟ

# ଗଜେନ୍ଦ୍ର ମୋକ୍ଷ

ଶ୍ରୀ ଶୁକଦେବ କହିଲେ, ବୁଦ୍ଧିଦ୍ୱାରା ମନକୁ ସ୍ଥିର କରି ଗଜେନ୍ଦ୍ର ଏହିପରି ପୂର୍ବଜନ୍ମରୁ ଅଭ୍ୟସ୍ତ ପରମ ସ୍ତୋତ୍ରକୁ ଏକାଗ୍ର ଚିତ୍ତରେ ଆବୃତ୍ତି କରିବାକୁ ଲାଗିଲା ॥୧॥ ଯେଉଁ ଭଗବାନ୍ ବାସୁଦେବଙ୍କଠାରୁ ଏହି ଚୈତନ୍ୟମୟ ଜଗତ୍‌ର ସୃଷ୍ଟି, ଯେ ସମସ୍ତ ଜୀବର ଦେହରେ ପୁରୁଷରୂପେ ବିଦ୍ୟମାନ, ଜଗତର ମୂଳକାରଣ ଓଁକାରସ୍ୱରୂପ ସେହି ଭଗବାନଙ୍କୁ ମୁଁ କେବଳ ଧ୍ୟାନ କରୁଛି । ଯାହାଙ୍କଠାରୁ ଏହି ବିଶ୍ୱର ଜନ୍ମ, ଯାହାଙ୍କଠାରେ ଏହା ଅବସ୍ଥିତ, ଯାହାଙ୍କଦ୍ୱାରା ସୁରକ୍ଷିତ, ଯେ କାର୍ଯ୍ୟକାରଣରୁ ଅତୀତ, ଯେ ନିଜେ ଏ ବିଶ୍ୱର ସ୍ୱରୂପ, ସେହି ସ୍ୱୟଂଭୂ ପରମେଶ୍ୱଙ୍କର ମୁଁ ଶରଣ ନେଉଛି ॥୩॥ ଯାହାଙ୍କଠାରେ ଏହି ବିଶ୍ୱ ନିଜ ମାୟାଦ୍ୱାରା ନିହିତ, କେତେବେଳେ ପ୍ରକଟିତ ବା କେତେବେଳେ ବିଲୀନ, ଏହି ବିଶ୍ୱକୁ ଯେ ସର୍ବଦା ଦୃଷ୍ଟିପଥରେ ରଖିଥା'ନ୍ତି, କାର୍ଯ ଓ କାରଣ-ଉଭୟର ଯେ ସାକ୍ଷୀ ସେହି ସ୍ୱପ୍ରକାଶ ପରାତ୍ପର ପରମେଶ୍ୱର ମୋତେ ରକ୍ଷା କରନ୍ତୁ ॥୪॥ କାଳବଶରେ ଯେତେବେଳେ ଏହି ଲୋକସମୂହ, ଲୋକପାଳସମୂହ ଏବଂ ଏ ସମସ୍ତଙ୍କର ହେତୁ ଭୂତାଦିକାରଣମାନେ ସମୂହ ସମ୍ପୂର୍ଣ୍ଣରୂପେ ବିନାଶ ଲଭନ୍ତି, ସେତେବେଳେ ଏକ ଘନ ଓ ଗହନ ଅନ୍ଧକାର ଚାରିଆଡ଼କୁ ଘୋଟିଯାଏ । କିନ୍ତୁ ତା'ର ଅପରପାର୍ଶ୍ୱରେ ଯେଉଁ ଅନନ୍ତ ପରମାତ୍ମା ବିଦ୍ୟମାନ ଥାଆନ୍ତି, ସେହି ପ୍ରଭୁ ମୋତେ ରକ୍ଷା କରନ୍ତୁ ॥୫॥ ଯେପରି ବିଭିନ୍ନ ବେଶରେ ଅଭିନୟ କରୁଥିବା ବ୍ୟକ୍ତିର ପ୍ରକୃତ ରୂପ ଜାଣି ହୁଏ ନାହିଁ, ସେହିପରି ଭଗବାନଙ୍କ ଲୀଳାର ରହସ୍ୟ ଜାଣିବା କଷ୍ଟକର । ତାଙ୍କର ପ୍ରକୃତ ସ୍ୱରୂପକୁ ନା ଦେବତା, ନା ଋଷି, କେହି ଜାଣନ୍ତି ନାହିଁ ଏବଂ ଆଉ କିଏ ବା ଅଛି, ତାଙ୍କ ସ୍ୱରୂପ ଜାଣିବାକୁ ବା କହିବାକୁ ସମର୍ଥ ହେବ ? ସେହି ଦୁର୍ଗମଚରିତ ଭଗବାନ ମୋତେ ରକ୍ଷା କରନ୍ତୁ ॥୬॥ ଅସଙ୍ଗ, ଆତ୍ମଦର୍ଶୀ, ପ୍ରାଣୀମାନଙ୍କର ବନ୍ଧୁ, ସାଧୁ ମୁନିମାନେ ଯାହାଙ୍କର ମଙ୍ଗଳମୟ ଚରଣ ଦର୍ଶନ ଇଚ୍ଛାରେ ବନକୁ ଯାଇ ଅଖଣ୍ଡ ବ୍ରହ୍ମଚର୍ଯ୍ୟ ଆଦି ବ୍ରତ ଧାରଣ କରନ୍ତି, ସେ ହିଁ ମୋର ଗତି ॥୭॥

ଯାହାଙ୍କର ଜନ୍ମ ବା କର୍ମ , ନାମ, ରୂପ, ଗୁଣ, ଦୋଷ ଆଦି କିଛି ହେଲେ ନାହିଁ, ତଥାପି ନିଜର ମାୟାବଳରେ ଲୋକସମୂହର ବିନାଶ ଓ ଉତ୍ପତ୍ତିପାଇଁ ଯୁଗେ ଯୁଗେ ଯେ ସେଇ ଜନ୍ମ ଆଦିକୁ ଗ୍ରହଣ କରନ୍ତି, ସେହି ଅନନ୍ତବୀର୍ଯ୍ୟ, ସର୍ବବ୍ୟାପୀ ପରମେଶ୍ୱରଙ୍କୁ ମୁଁ ନମସ୍କାର କରୁଛି । ରୂପ ନ ଥାଇ ଯେ ବହୁ ରୂପରେ ଦେଖାଦିଅନ୍ତି, ଅଲୌକିକ ଲୀଳାର ଅଧିକାରୀ ସେହି ପରମାତ୍ମାଙ୍କୁ ମୁଁ ନମସ୍କାର କରୁଛି ॥୮-୯॥ ଯେ ଚିତ୍ତମନୋବାକ୍ୟର ବହିର୍ଭୂତ, ସେହି ଅନ୍ତର୍ଯାମୀ, ସ୍ୱୟଂପ୍ରଦୀପ ସ୍ୱପ୍ରକାଶ ପରମେଶ୍ୱରଙ୍କୁ ମୁଁ ନମସ୍କାର କରୁଛି ॥୧୦॥ ବିବେକୀ ପୁରୁଷ କର୍ମସନ୍ନ୍ୟାସଦ୍ୱାରା ନିଜର ଅନ୍ତଃକରଣ ଶୁଦ୍ଧ କରି ଯାହାଙ୍କୁ ପ୍ରତ୍ୟକ୍ଷରୂପେ ଲାଭ କରନ୍ତି, ଯେ ସ୍ୱୟଂ ମୋକ୍ଷାନନ୍ଦ-ଅନୁଭବସ୍ୱରୂପ ଏବଂ ଯାହାଙ୍କଠାରେ ଅନ୍ୟକୁ ମୁକ୍ତି ଦେବାର ସାମର୍ଥ୍ୟ ଅଛି, ସେହି ପ୍ରଭୁଙ୍କୁ ମୁଁ ନମସ୍କାର କରୁଛି ॥୧୧॥ ଯେ ସତ୍ତ୍ୱ, ରଜ ଓ ତମ -- ଏହି ତିନି ଗୁଣର ଧର୍ମକୁ ସ୍ୱୀକାର କରି ଯଥାକ୍ରମେ ଶାନ୍ତ, ଉଗ୍ର ଓ ମୂଢ଼ଭାବରେ ପ୍ରତୀତ ହୁଅନ୍ତି, ସେହି ଭେଦରହିତ ଓ ଭକ୍ତମାନଙ୍କ ପ୍ରତି ସମଭାବରେ ସ୍ଥିତ ଜ୍ଞାନମୂର୍ତ୍ତି ଭଗବାନଙ୍କୁ ମୁଁ ବାରମ୍ବାର ନମସ୍କାର କରୁଛି ॥୧୨॥ ଆପଣ ସମସ୍ତଙ୍କର ଅଧ୍ୟକ୍ଷ, ଶରୀରରେ କ୍ଷେତ୍ରଜ୍ଞ ରୂପରେ ଅବସ୍ଥିତ, ସମସ୍ତ ବିଷୟର ସାକ୍ଷୀ, କ୍ଷେତ୍ରଜ୍ଞମାନଙ୍କର ମୂଳ, ପୁରୁଷ ଓ ମୂଳପ୍ରକୃତି ରୂପରେ ବିଦ୍ୟମାନ । ମୁଁ ଆପଣଙ୍କୁ ନମସ୍କାର କରୁଛି ॥୧୩॥ ଆପଣ ସମସ୍ତ ଇନ୍ଦ୍ରିୟଙ୍କ ବିଷୟମାନଙ୍କର ଦ୍ରଷ୍ଟା ଓ ସମସ୍ତ ଇନ୍ଦ୍ରିୟବୃତ୍ତି ଆପଣଙ୍କର ଜ୍ଞାପକ । ଆପଣ ଅସତ୍‌ବସ୍ତୁର (ଅହଙ୍କାରାଦି) ଛାୟାଦ୍ୱାରା ଯୁକ୍ତ ଓ ସମସ୍ତ ବସ୍ତୁର ଆଭାସ ରୂପେ ବିଦ୍ୟମାନ । ମୁଁ ଆପଣଙ୍କୁ ନମସ୍କାର କରୁଛି ॥୧୪॥ ଆପଣ ସମସ୍ତଙ୍କର ମୂଳ କାରଣ; କିନ୍ତୁ ସ୍ୱୟଂ କାରଣରହିତ ଏବଂ ନିର୍ବିକାର । ତେଣୁ ଅଦ୍ଭୁତକାରଣରୂପୀ ଆପଣଙ୍କୁ ମୋର ନମସ୍କାର । ଯେପରି ସମୁଦ୍ର

ହେଉଛି ନଦୀ ଓ ନିର୍ଝରମାନଙ୍କର ଆଶ୍ରୟ, ସେହିପରି ଆପଣ ସମସ୍ତ ବେଦର ଏବଂ ପଞ୍ଚରାତ୍ରାଦି ଶାସ୍ତ୍ରମାନଙ୍କର ଆଶ୍ରୟସ୍ଥଳ । ଆପଣ ମୋକ୍ଷସ୍ୱରୂପ ଓ ଭକ୍ତମାନଙ୍କର ଶରଣପଞ୍ଜର । ମୁଁ ଆପଣଙ୍କୁ ନମସ୍କାର କରୁଛି ।।୧୫।। ଯେପରି ଅଗ୍ନି ହୋମକାଷ୍ଠର ଅରଣିରେ ଗୁପ୍ତ ହୋଇ ରହିଥାଏ, ସେହିପରି ଆପଣ ସତ୍ତ୍ୱ, ରଜ ଓ ତମ ଗୁଣର ଆବରଣ ମଧ୍ୟରେ ନିଜର ଜ୍ଞାନଶକ୍ତିକୁ ଗୋପନୀୟ ରଖିଛନ୍ତି । ଏହି ଗୁଣମାନ ବିକ୍ଷୁବ୍ଧ ହେଲେ ଆପଣଙ୍କ ମନରେ ସୃଷ୍ଟିର ସଂକଳ୍ପ ଜାତ ହୁଏ । ଯେଉଁମାନେ କର୍ମସନ୍ନ୍ୟାସ ଦ୍ୱାରା ଆତ୍ମତତ୍ତ୍ୱର ଭାବନାରେ ବେଦାଦି ଶାସ୍ତ୍ରର ବିଧି ନିଷେଧାଦି ଉପରକୁ ଉଠିଥା'ନ୍ତି, ଆପଣ ସେମାନଙ୍କଠାରେ ସ୍ୱୟଂ ଆତ୍ମାରୂପେ ପ୍ରକଟ ହୁଅନ୍ତି । ମୁଁ ଆପଣଙ୍କୁ ନମସ୍କାର କରୁଛି ।।୧୬।। ଆପଣ ମୁକ୍ତ । ଅତ୍ୟନ୍ତ ଦୟାମୟ । ଏଣୁ ଦୟାକରିବାରେ ଆପଣ ଆଳସ୍ୟ କରନ୍ତି ନାହିଁ । ମୁଁ ଆପଣଙ୍କର ଶରଣାଗତ, ଆପଣ ମୋତେ ଏହି ଅବସ୍ଥାମଧ୍ୟରୁ ମୁକ୍ତ କରନ୍ତୁ । ସମସ୍ତ ପ୍ରାଣୀଙ୍କ ହୃଦୟରେ ନିଜର ଅଂଶଦ୍ୱାରା ଅର୍ଥାତ୍ ଅନ୍ତରାତ୍ମା ରୂପରେ ଆପଣ ଅନୁଭୂତ ହୁଅନ୍ତି । ଆପଣ ସମସ୍ତ ଐଶ୍ୱର୍ଯ୍ୟର ଆଧାର ଏବଂ ଅନନ୍ତ । ମୁଁ ଆପଣଙ୍କୁ ନମସ୍କାର କରୁଛି ।।୧୭।। ଯେଉଁମାନେ ନିଜର ଶରୀର, ପୁତ୍ର, ଗୃହ, ଧନସମ୍ପତ୍ତି, ଗୁରୁଜନ ଓ ସ୍ୱଜନଙ୍କଠାରେ ଆସକ୍ତ ହୋଇ ରହିଥା'ନ୍ତି, ଆପଣଙ୍କୁ ଲାଭ କରିବା ତାଙ୍କପକ୍ଷରେ ଅତ୍ୟନ୍ତ କଠିନ । କାରଣ ଆପଣ ଗୁଣମାନଙ୍କ ସଙ୍ଗରୁ ସମ୍ପୂର୍ଣ୍ଣ ଅଲଗା ରହନ୍ତି । ଜୀବନ୍ମୁକ୍ତ ପୁରୁଷମାନେ ନିଜର ହୃଦୟମଧ୍ୟରେ ଆପଣଙ୍କୁ ଧ୍ୟାନ କରନ୍ତି । ମୁଁ ସେହି ଜ୍ଞାନ-ସ୍ୱରୂପ, ସମସ୍ତ ଐଶ୍ୱର୍ଯ୍ୟର ଅଧିକାରୀ ଭଗବାନଙ୍କୁ ନମସ୍କାର କରୁଛି ।।୧୮।।

ଯାହାଙ୍କୁ ଧର୍ମ, ଅର୍ଥ, କାମ ଓ ମୋକ୍ଷର କାମନାରେ ଲୋକେ ଭଜନ କରି ନିଜ ଅଭିଳଷିତ ବସ୍ତୁ ଲାଭ କରିଥା'ନ୍ତି, କୌଣସି ବସ୍ତୁକୁ ପ୍ରାର୍ଥନା ନ କଲେ ମଧ୍ୟ ଯେ ନିଜର ଭକ୍ତକୁ ସମସ୍ତ ପ୍ରକାର ସୁଖ ଓ (ପାର୍ଷଦ ରୂପେ) ଅବିନାଶୀ ଦେହ ପ୍ରଦାନ କରନ୍ତି, ସେ ମୋତେ ଏହି ବିପଦରୁ ଉଦ୍ଧାର କରନ୍ତୁ ।।୧୯।। ଯେଉଁମାନେ ଭଗବାନଙ୍କର ଏକାନ୍ତ ଭକ୍ତ, ସେମାନେ କୌଣସି ବିଷୟସୁଖ କାମନା କରନ୍ତି ନାହିଁ; ସେମାନେ ଭଗବାନଙ୍କଠାରେ ହିଁ ଶରଣ ନେଇଥାଆନ୍ତି, ଏବଂ ତାଙ୍କ ପରମ ମଙ୍ଗଳମୟ ଅଦ୍ଭୁତ ଲୀଳାମାନ ଗାନ କରି କରି ଆନନ୍ଦ ସାଗରରେ ମଗ୍ନ ହୋଇ ରହିଥା'ନ୍ତି ।।୨୦।। ଯେ ହେଉଛନ୍ତି ଅବିନାଶୀ ବ୍ରହ୍ମ, ସର୍ବଶ୍ରେଷ୍ଠ, ସର୍ବଶକ୍ତିମାନ୍ ଓ ଅବ୍ୟକ୍ତ ଏବଂ ଆଧ୍ୟାତ୍ମିକ ଯୋଗଦ୍ୱାରା ବୋଧଗମ୍ୟ, ମୁଁ ନିକଟରେ ଥାଇ ଦୂରରେ ଥିବା ପରି ସେହି ଅତୀନ୍ଦ୍ରିୟ, ସୂକ୍ଷ୍ମ, ଅନନ୍ତ, ଆଦିମୂଳ, ପୂର୍ଣ୍ଣବ୍ରହ୍ମ ପରମେଶ୍ୱରଙ୍କୁ ସ୍ତୁତି କରୁଛି ।।୨୧।। ବ୍ରହ୍ମାଦି ଦେବଗଣ, ସମସ୍ତ ବେଦ ଓ ଚରାଚର ଜୀବଲୋକ ନାମ ଓ ରୂପଭେଦରେ ଯାହାଙ୍କର ଏକ ସାମାନ୍ୟ କଳାରୁ ସୃଷ୍ଟ ହୋଇଛନ୍ତି ।।୨୨।। ଯେପରି ଜ୍ୱଳନ୍ତ ଅଗ୍ନିରୁ ଅଗ୍ନିକଣା ସବୁ ଏବଂ ସୂର୍ଯ୍ୟଙ୍କଠାରୁ ତାଙ୍କର କିରଣସମୂହ ବାରମ୍ବାର ବାହାରୁଥାଏ ଏବଂ ପୁଣି ତାଙ୍କଠାରେ ଲୀନ ହୋଇଯାଏ, ସେହିପରି ସ୍ୱୟଂପ୍ରକାଶ ଯାହାଙ୍କଠାରୁ ତିନି ଗୁଣର ପ୍ରବାହରୂପ ସଂସାର, ବୁଦ୍ଧି, ମନ, ଇନ୍ଦ୍ରିୟସମୂହ ଏବଂ ଶରୀରସବୁ ବାରମ୍ବାର ପ୍ରକଟ ହୋଇ ପୁଣି ଯାହାଙ୍କଠାରେ ଲୀନ ହୋଇଯାଆନ୍ତି ।।୨୩।। ସେହି ଭଗବାନ ବସ୍ତୁତଃ ଦେବତା, ଅସୁର, ମନୁଷ୍ୟ ବା ପଶୁପକ୍ଷୀ କିଛି ନୁହନ୍ତି । ସେ ସ୍ତ୍ରୀ, ପୁରୁଷ ବା ନପୁଂସକ ନୁହନ୍ତି । ସେ କୌଣସି ସାଧାରଣ ବା ଅସାଧାରଣ ପ୍ରାଣୀ ନୁହନ୍ତି । ସେ ଗୁଣ ନୁହନ୍ତି କି କର୍ମ ନୁହନ୍ତି, କାର୍ଯ୍ୟ ନୁହନ୍ତି କି କାରଣ ନୁହନ୍ତି । ଏହି ସମସ୍ତ ନାହିଁ ନାହିଁ ପରେ ଯାହା ରହିଲା, ସେହି ତାଙ୍କର ସ୍ୱରୂପ ଏବଂ ସେ ମଧ୍ୟ ସବୁକିଛି । ସେହି ପରମାତ୍ମା ମୋର ଉଦ୍ଧାରପାଇଁ ପ୍ରକଟିତ ହୁଅନ୍ତୁ ।।୨୪।। ମୁଁ ବଞ୍ଚିବାକୁ ଚାହେ ନାହିଁ । ଭିତରୁ ଓ ବାହାରୁ ଅଜ୍ଞାନରୂପକ ଆବରଣଦ୍ୱାରା ଢଙ୍କା ହୋଇଥିବା ଏହି ଗଜ ଶରୀରକୁ ରଖି ମୁଁ କ'ଣ ବା ପାଇବି ? କିନ୍ତୁ ନିଜର ଆତ୍ମାର ପ୍ରକାଶକୁ ଯେଉଁ ଅଜ୍ଞାନ ଘୋଡ଼ାଇ ପକାଇଛି, ମୁଁ ସେହି ଅଜ୍ଞାନର ବିନାଶରୂପକ ମୋକ୍ଷକୁ ଇଚ୍ଛା କରୁଛି ।।୨୫।। ବିଶ୍ୱଠାରୁ ଭିନ୍ନ ହେଲେ ମଧ୍ୟ ଯେ ବିଶ୍ୱକୁ ସୃଷ୍ଟି କରିଛନ୍ତି, ବିଶ୍ୱ ରୂପରେ ଯେ ଅଛନ୍ତି, ଯେ ବିଶ୍ୱର ଆତ୍ମା ଏବଂ ବିଶ୍ୱ ଯାହାଙ୍କ (ଲୀଳାର) ଉପକରଣ, ସେହି ଅଜନ୍ମା ପରମପଦ, ପରମବ୍ରହ୍ମଙ୍କୁ ମୁଁ ପ୍ରଣାମ କରୁଛି ।।୨୬।। ଯୋଗୀମାନେ ଯୋଗଦ୍ୱାରା କର୍ମମାନଙ୍କୁ ଦଗ୍ଧ କରି ଦିଅନ୍ତି ଏବଂ ନିଜର ଯୋଗଶୁଦ୍ଧ ହୃଦୟରେ ଯେଉଁ ଯୋଗେଶ୍ୱର ଭଗବାନଙ୍କୁ ସାକ୍ଷାତ୍

କରନ୍ତି, ତାଙ୍କୁ ମୁଁ ନମସ୍କାର କରୁଛି ॥୨୭॥ ଯାହାଙ୍କ ତ୍ରିଗୁଣାତ୍ମକ ତିନି ଶକ୍ତିର ବେଗ ଅସହ୍ୟ, ସମସ୍ତ ଇନ୍ଦ୍ରିୟଙ୍କର (ଶବ୍ଦାଦି) ଗୁଣ ରୂପରେ ଯେ ପ୍ରତୀତ ହୁଅନ୍ତି, ଯେଉଁମାନଙ୍କର ଇନ୍ଦ୍ରିୟ କୁତ୍ସିତ (ବିଷୟଭୋଗରେ ଲିପ୍ତ ଥାଏ), ସେମାନେ ଯାହାଙ୍କ ମାର୍ଗକୁ ପାଇ ପାରନ୍ତି ନାହିଁ, ମୁଁ ସେହି ଅନନ୍ତଶକ୍ତିଶାଳୀ ଶରଣରକ୍ଷଣ ପ୍ରଭୁଙ୍କୁ ବାରମ୍ବାର ନମସ୍କାର କରୁଅଛି ॥୨୮॥ ଯାହାଙ୍କର ମାୟାଶକ୍ତି ଯୋଗୁ ଅହଂବୁଦ୍ଧିଦ୍ୱାରା ତାଡ଼ିତ ଏହି ଜୀବ ନିଜକୁ ଆତ୍ମାରୂପେ ଚିହ୍ନିପାରେ ନାହିଁ, ସେହି ଅଚିନ୍ତ୍ୟପୁରୁଷ ଭଗବାନଙ୍କୁ ମୁଁ ଆଶ୍ରୟ କରୁଛି ॥୨୯॥

ଶ୍ରୀ ଶୁକଦେବ କହିଲେ, ଗଜେନ୍ଦ୍ର ଏହିପରି କାହାରି କୌଣସି ମୂର୍ତ୍ତିକୁ ବର୍ଣ୍ଣନା ନ କରି ପର ତତ୍ତ୍ୱ କହିବାକୁ ଲାଗିଲା । ଏଥିପାଇଁ ଭିନ୍ନଭିନ୍ନ ମୂର୍ତ୍ତିର ଅଭିମାନୀ ବ୍ରହ୍ମା ଆଦି ଦେବତାମାନେ ତାକୁ ରକ୍ଷା କରିବାପାଇଁ ଆସିଲେ ନାହିଁ । ସେହି ସମୟରେ ସର୍ବଦେବମୟ ମୂର୍ତ୍ତି ସ୍ୱୟଂ ଭଗବାନ ଶ୍ରୀହରି ସେଠାରେ ଆବିର୍ଭୂତ ହେଲେ ॥୩୦॥ ଏହି ଜଗତ୍ ହେଉଛି ଭଗବାନଙ୍କର ନିବାସ । ଗଜେନ୍ଦ୍ର ସେହିପରି ଆର୍ତ୍ତ ହୋଇଥିବା ଜାଣି ଚକ୍ରଧର ଭଗବାନ ଶୀଘ୍ର ଛନ୍ଦୋମୟ ଗରୁଡ଼ ପୃଷ୍ଠରେ ଆରୋହଣ କଲେ । ମନୋବେଗରେ ଗରୁଡ଼ ଗତି କରିପାରୁଥିଲେ ଏବଂ ଦେବତାମାନଙ୍କଦ୍ୱାରା ବନ୍ଦିତ ଭଗବାନ ଶ୍ରୀହରି ଗଜେନ୍ଦ୍ର ଯେଉଁଠାରେ ଥିଲା, ସେଠାରେ ଯାଇ ପହଞ୍ଚିଗଲେ ॥୩୧॥ ସରୋବର ମଧ୍ୟରେ ମହାବଳଶାଳୀ କୁମ୍ଭୀର ଗଜେନ୍ଦ୍ରକୁ ଟାଣି ଧରିଥିଲା । ଏହି ସମୟରେ କାତର ଗଜେନ୍ଦ୍ର ଦେଖିଲା ଯେ, ଗରୁଡ଼ ପିଠିରେ ବସି ଚକ୍ରକୁ ହାତରେ ଉଠାଇ ଭଗବାନ ଶ୍ରୀହରି ଆକାଶ ମାର୍ଗରେ ଅଛନ୍ତି । ସେ ଶୁଣ୍ଢରେ ପଦ୍ମଫୁଲଟିକୁ ଅତି କଷ୍ଟରେ ଉପରକୁ ଉଠାଇ 'ହେ ଜଗଦ୍‌ଗୁରୁ, ହେ ନାରାୟଣ, ହେ ଭଗବାନ୍ ଆପଣଙ୍କୁ ନମସ୍କାର' ବୋଲି ଏତିକି କହିଲା ॥୩୨॥ ଗଜେନ୍ଦ୍ରକୁ ପୀଡ଼ିତ ଦେଖି ଭଗବାନ ହଠାତ୍ ଗରୁଡ଼ ପିଠିରୁ ତଳକୁ ଡେହ୍ଲାଇ ପଡ଼ିଲେ ଓ ଦୟାପୂର୍ବକ କୁମ୍ଭୀର ସହିତ ତାକୁ ସରୋବରରୁ ଟାଣି ଆଣିଲେ ଏବଂ କୁମ୍ଭୀରର ମୁହଁକୁ ଚକ୍ରଦ୍ୱାରା ଛେଦନ କରି ଗଜେନ୍ଦ୍ରକୁ ଉଦ୍ଧାର କଲେ । ଦେବତାମାନେ ଦେଖୁ ଦେଖୁ ଏହା ହୋଇଗଲା ॥୩୩॥

## ଚତୁର୍ଥ ଅଧ୍ୟାୟ

# ଗଜ କୁମ୍ଭୀରଙ୍କ ପୂର୍ବଜନ୍ମ ବୃତ୍ତାନ୍ତ

ଶ୍ରୀ ଶୁକଦେବ କହିଲେ, ସେହି ସମୟରେ ବ୍ରହ୍ମା, ମହେଶ୍ୱର ଆଦି ଦେବଗଣ, ଋଷିଗଣ ଓ ଗନ୍ଧର୍ବଗଣ ଭଗବାନଙ୍କର ସେହି କର୍ମକୁ ପ୍ରଶଂସା କରି କରି ତାଙ୍କ ଉପରେ ପୁଷ୍ପବୃଷ୍ଟି କରିବାକୁ ଲାଗିଲେ ॥୧॥ ସ୍ୱର୍ଗରେ ଦୁନ୍ଦୁଭିସବୁ ବାଜିଉଠିଲା । ଗନ୍ଧର୍ବମାନେ ଗୀତ ଗାଇ ନୃତ୍ୟ କରିବାକୁ ଲାଗିଲେ । ଋଷି, ଚାରଣ ଓ ସିଦ୍ଧଗଣ ଭଗବାନ ପୁରୁଷୋତ୍ତମଙ୍କୁ ସ୍ତୁତି କଲେ ॥୨॥ ସେଇ କୁମ୍ଭୀର ସଙ୍ଗେ ସଙ୍ଗେ ପରମ ଆଶ୍ଚର୍ଯ୍ୟମୟ ଶରୀର ଧାରଣ କଲା । ପୂର୍ବେ ସେ ହୂହୂ ନାମକ ଶ୍ରେଷ୍ଠ ଗନ୍ଧର୍ବ ଥିଲା । ଋଷି ଦେବଳଙ୍କ ଶାପରେ କୁମ୍ଭୀର ହୋଇଯାଇଥିଲା । ବର୍ତ୍ତମାନ ଭଗବାନଙ୍କ କୃପାରୁ ମୁକ୍ତ ହୋଇଗଲା । ସର୍ବେଶ୍ୱର ଉତ୍ତମଶ୍ଲୋକଙ୍କ ପାଦରେ ମୁଣ୍ଡ ଲଗାଇ ସେ ପ୍ରଣାମ କଲା ଏବଂ ତାଙ୍କ ଗୁଣ ଗାଇବାକୁ ଲାଗିଲା । ବାସ୍ତବରେ ଭଗବାନ୍ ଅବ୍ୟୟ, ସମସ୍ତ ଯଶର ଆଧାର ଏବଂ ତାଙ୍କର ଗୁଣାବଳୀ ଓ ସତ୍‌କଥାକୁ ସାଧୁମାନେ କୀର୍ତ୍ତନ କରନ୍ତି ॥୩-୪॥ ଗନ୍ଧର୍ବ ଭଗବାନଙ୍କ କୃପାରୁ ସମସ୍ତ ପାପରୁ ମୁକ୍ତ ହୋଇଗଲା । ପ୍ରଣାମପୂର୍ବକ ସେ ତାଙ୍କୁ ପରିକ୍ରମା କରି ସମସ୍ତେ ଦେଖୁଦେଖୁ ନିଜଲୋକକୁ ପ୍ରସ୍ଥାନ କଲା । ଗଜେନ୍ଦ୍ର ଭଗବାନଙ୍କ କୃପାର ସ୍ପର୍ଶରେ ଅଜ୍ଞାନର ବନ୍ଧନରୁ ମୁକ୍ତ ହୋଇଗଲା ଏବଂ ପୀତାମ୍ବର ଓ ଚତୁର୍ଭୁଜ ହୋଇ ଭଗବାନଙ୍କର ସାରୂପ୍ୟ ମୁକ୍ତି ଲାଭ କଲା ॥୬॥

ଏହି ଗଜେନ୍ଦ୍ର ପୂର୍ବଜନ୍ମରେ ଦ୍ରାବିଡ଼ଶ୍ରେଷ୍ଠ ପାଣ୍ଡ୍ୟଦେଶର ରାଜା ଏବଂ ବିଷ୍ଣୁଭକ୍ତ ଇନ୍ଦ୍ରଦ୍ୟୁମ୍ନ ନାମରେ ପ୍ରସିଦ୍ଧ ଥିଲେ । ଏକସମୟରେ ରାଜା ଇନ୍ଦ୍ରଦ୍ୟୁମ୍ନ ମଳୟପର୍ବତରେ ଆଶ୍ରମ ନିର୍ମାଣ କରି ବିଷ୍ଣୁଙ୍କର ଆରାଧନା କରୁଥିଲେ । ସେଠାରେ ସେ ଜଟାଧାରୀ ତପସ୍ୱୀ ହୋଇ ଏବଂ ମୌନବ୍ରତ ଅବଲମ୍ବନ କରି ଶ୍ରୀ ଅଚ୍ୟୁତଙ୍କ ଉପାସନାରେ ମଗ୍ନ ଥିଲେ ॥୭-୮॥ ଅନନ୍ତର ମହାଯଶା ଅଗସ୍ତ୍ୟ ଋଷି ଶିଷ୍ୟ ପରିବୃତ ହୋଇ ବୁଲୁବୁଲୁ ଅକସ୍ମାତ୍ ସେଠାରେ ଯାଇ ପହଞ୍ଚିଲେ । ସେ ଦେଖିଲେ ଯେ ରାଜା ଅତିଥିଙ୍କୁ ସତ୍କାର ନ କରି ଏକାନ୍ତରେ ଚୁପଚାପ ବସିରହି ଉପାସନା କରୁଛନ୍ତି । ସେଥିରେ ସେ ରାଗିଗଲେ ଏବଂ ସଙ୍ଗେ ସଙ୍ଗେ ଅଭିଶାପ ଦେଇ କହିଲେ, ଏହି ରାଜା ଅସାଧୁ, ଦୁରାତ୍ମା ଓ ମନ୍ଦବୁଦ୍ଧି । ହାତୀପରି ଜଡ଼ବୁଦ୍ଧି ହୋଇଥିବା ଯୋଗୁଁ ଏ ବ୍ରାହ୍ମଣମାନଙ୍କର ଅବମାନନା କରିଛି । ତେଣୁ ସେ ଘୋର ଅନ୍ଧକାରରୂପୀ ଗଜଯୋନିରେ ଜନ୍ମ ହେଉ ॥୯-୧୦॥

ଶ୍ରୀ ଶୁକଦେବ କହିଲେ, ରାଜା ପରିକ୍ଷିତ, ଅଭିଶାପ ଓ ବରଦାନ ଉଭୟରେ ସମର୍ଥ ମୁନିଶ୍ରେଷ୍ଠ ଅଗସ୍ତ୍ୟ ଏହିପରି ଅଭିଶାପ ଦେଇ ଶିଷ୍ୟମାନଙ୍କ ସହିତ ସେହି ସ୍ଥାନ ଛାଡ଼ି ଚାଲିଗଲେ । ରାଜର୍ଷି ଇନ୍ଦ୍ରଦ୍ୟୁମ୍ନ ଏହାକୁ ଦୈବପ୍ରେରିତ ବୋଲି ମନେକଲେ ଏବଂ ଆତ୍ମସ୍ମୃତିଲୋପକ ଗଜଯୋନିରେ ଜନ୍ମଗ୍ରହଣ କଲେ । କିନ୍ତୁ ଶ୍ରୀହରିଙ୍କ ଅର୍ଚ୍ଚନ ପ୍ରଭାବରୁ ଗଜଯୋନିସତ୍ତ୍ୱେ ତାଙ୍କର ପୂର୍ବସ୍ମୃତି ଲୁପ୍ତ ହେଲା ନାହିଁ ॥୧୧-୧୨॥

ପଦ୍ମନାଭ ଶ୍ରୀହରି ଏହିପରି ଗଜେନ୍ଦ୍ରଙ୍କୁ ମୁକ୍ତ କରି ଏବଂ ତାଙ୍କୁ ନିଜର ପାର୍ଷଦ ଗତି ଦାନକରି ତାହା ସହିତ ଗରୁଡ଼ାସନରେ ବସି ସ୍ୱଧାମକୁ ଯାତ୍ରା କଲେ । ଗନ୍ଧର୍ବ, ସିଦ୍ଧ ଓ ଦେବଗଣ ତାଙ୍କ ଅଦ୍ଭୁତ କର୍ମର ସ୍ତୁତି କରିବାକୁ ଲାଗିଲେ ॥୧୩॥ କୁରୁଶ୍ରେଷ୍ଠ ମହାରାଜ, ମୁଁ ତୁମ ନିକଟରେ ଶ୍ରୀକୃଷ୍ଣଙ୍କର ମହିମା ବର୍ଣ୍ଣନା କଲି । ଏହି ଗଜେନ୍ଦ୍ରମୋକ୍ଷଣ ବୃତ୍ତାନ୍ତ ଯେ ଶ୍ରବଣ କରେ ତାର ସମସ୍ତ ଦୁଃସ୍ୱପ୍ନ ନଷ୍ଟ ହୋଇଯାଏ, କଳିକଳୁଷ ଦୂରହୁଏ ଏବଂ ସେ ଯଶସ୍ୱୀ ହୋଇ ସ୍ୱର୍ଗପ୍ରାପ୍ତ ହୁଏ ॥୧୪॥ ମଙ୍ଗଳକାମୀ ବ୍ରାହ୍ମଣମାନେ ପ୍ରାତଃକାଳରୁ ଶଯ୍ୟାତ୍ୟାଗ କରି ପବିତ୍ର ହୋଇ ଦୁଃସ୍ୱପ୍ନ ଆଦିର ଶାନ୍ତିବିଧାନପାଇଁ ଏହାକୁ ପାଠ କରିଥାନ୍ତି ॥୧୫॥ କୁରୁଶ୍ରେଷ୍ଠ, ସମସ୍ତ ପ୍ରାଣୀଙ୍କର ଶୁଣିବା ନିମନ୍ତେ ସର୍ବଭୂତମୟ ଭଗବାନ ଶ୍ରୀହରି ପ୍ରସନ୍ନ ହୋଇ ଗଜେନ୍ଦ୍ରଙ୍କୁ ଏହିପରି କହିଥିଲେ ॥୧୬॥ ଭଗବାନ କହିଥିଲେ, ହେ ଗଜେନ୍ଦ୍ର, ଯେଉଁମାନେ ତୁମକୁ, ମୋତେ, ଏହି ଗିରିକନ୍ଦର, ବନ, ସରୋବର, ବେତବାଉଁଶର ବୁଦା ଓ ଦେବଦାରୁ ବୃକ୍ଷମାନଙ୍କୁ, ଏହି ସମସ୍ତ ଗିରିଶୃଙ୍ଗଙ୍କୁ, ବ୍ରହ୍ମା, ବିଷ୍ଣୁ ଓ ମହେଶ୍ୱରଙ୍କର ପ୍ରିୟ ଏହି ସମସ୍ତ ସ୍ଥାନକୁ ଏବଂ ମୋର ପ୍ରିୟ କ୍ଷୀରସାଗରକୁ ଓ ଉଜ୍ଜ୍ୱଳ ଶ୍ୱେତ ଦ୍ୱୀପକୁ ସ୍ମରଣ କରନ୍ତି; ଯେଉଁମାନେ ମୋର ଶ୍ରୀବତ୍ସଚିହ୍ନ, କୌସ୍ତୁଭମଣି, ମାଳା, କୌମୋଦକୀ ଗଦା, ସୁଦର୍ଶନ ଚକ୍ର, ପାଞ୍ଚଜନ୍ୟ ଶଙ୍ଖ, ପକ୍ଷୀରାଜ ଗରୁଡ଼, ମୋର ସୂକ୍ଷ୍ମ ଅଂଶରୂପୀ ଅନନ୍ତ, ମୋର ଆଶ୍ରିତା ଲକ୍ଷ୍ମୀଦେବୀ, ବ୍ରହ୍ମା, ଶିବ, ନାରଦ ମୁନି, ପ୍ରହ୍ଲାଦ, ମତ୍ସ୍ୟ, କୂର୍ମ, ବରାହ ପ୍ରଭୃତି ଅନନ୍ତପୁଣ୍ୟମୟ ମୋର ଅବତାରଙ୍କ ଲୀଳାମାନ, ଏବଂ ସୂର୍ଯ୍ୟ ଚନ୍ଦ୍ର ଓ ଅଗ୍ନିଙ୍କୁ ସ୍ମରଣ କରନ୍ତି; ଓଁକାର, ସତ୍ୟ, ମୂଳପ୍ରକୃତି, ଗୋ, ବ୍ରାହ୍ମଣ, ଅକ୍ଷୟ ସନାତନ ଧର୍ମ, ସୋମ, କଶ୍ୟପ ଓ ଧର୍ମଙ୍କର ପତ୍ନୀ ଦକ୍ଷକନ୍ୟାଗଣ, ଗଙ୍ଗା, ସରସ୍ୱତୀ, ଅଳକନନ୍ଦା, ଯମୁନା, ଐରାବତ ହସ୍ତୀ, ଭକ୍ତରାଜ ଧ୍ରୁବ, ମରୀଚି ଆଦି ସପ୍ତ ବ୍ରହ୍ମର୍ଷି, ପୁଣ୍ୟଶ୍ଳୋକ ମନୁଷ୍ୟ (ଯୁଧିଷ୍ଠିର, ଜନକ, ନଳରାଜା ଆଦି)ମାନଙ୍କୁ ମୋର ରୂପ ଭାବରେ ସ୍ମରଣ କରନ୍ତି, ସେମାନେ ସମସ୍ତ ପାପରୁ ମୁକ୍ତ ହୋଇଯା'ନ୍ତି ॥୧୭-୨୪॥ ବତ୍ସ ଗଜେନ୍ଦ୍ର, ଯେଉଁମାନେ ରାତ୍ରିଶେଷରେ ବ୍ରାହ୍ମମୁହୂର୍ତ୍ତରେ ଶଯ୍ୟା ତ୍ୟାଗକରି ତୁମର ସ୍ତବଦ୍ୱାରା ମୋତେ ସ୍ତୁତି କରନ୍ତି, ମୃତ୍ୟୁ ସମୟରେ ମୁଁ ସେମାନଙ୍କୁ ପରମଗତି ଦାନ କରେ ॥୨୫॥ ଶ୍ରୀ ଶୁକଦେବ କହିଲେ, ଭଗବାନ ହୃଷୀକେଶ ଏହା କହି ଦେବତାମାନଙ୍କୁ ଆନନ୍ଦିତ କଲେ ଏବଂ ପାଞ୍ଚଜନ୍ୟ ଶଙ୍ଖ ବାଦନ କରି ଗରୁଡ଼ପୃଷ୍ଠରେ ଆରୋହଣପୂର୍ବକ ପ୍ରସ୍ଥାନ କଲେ ॥୨୬॥

## ପଞ୍ଚମ ଅଧ୍ୟାୟ

# ଶ୍ରୀହୀନ ବିଶ୍ୱର ପୁନରୁଦ୍ଧାରପାଇଁ ପ୍ରାର୍ଥନା

ଶ୍ରୀ ଶୁକଦେବ କହିଲେ, ମହାରାଜ, ଭଗବାନଙ୍କ ଗଜେନ୍ଦ୍ରମୋକ୍ଷର ଲୀଳା ସମସ୍ତ ପାପକୁ ନାଶ କରେ । ତାହା ଏବେ ମୁଁ ତୁମକୁ ଶୁଣାଇଲି । ବର୍ତ୍ତମାନ ରୈବତ ମନ୍ୱନ୍ତରର ବୃତ୍ତାନ୍ତ ଶ୍ରବଣ କର ॥୧॥ ପଞ୍ଚମ ମନୁଙ୍କର ନାମ ଥିଲା ରୈବତ । ସେ ଚତୁର୍ଥ ମନୁ ତାମସଙ୍କର ସହୋଦର ଭାଇ ଥିଲେ । ତାଙ୍କର ଅର୍ଜୁନ, ବଳି, ବିନ୍ଧ୍ୟ ଆଦି ଅନେକ ପୁତ୍ର ଥିଲେ ॥୨॥ ରୈବତ ମନ୍ୱନ୍ତରରେ ଇନ୍ଦ୍ରଙ୍କର ନାମ ଥିଲା ବିଭୁ । ଭୂତରୟ ଆଦି ଥିଲେ ଦେବଗଣ ଏବଂ ହିରଣ୍ୟରୋମା, ବେଦଶିରା ଓ ଊର୍ଦ୍ଧ୍ୱବାହୁ ପ୍ରଭୃତି ଥିଲେ ଋଷି ॥୩॥ ଏହି ଋଷିମାନଙ୍କ ମଧ୍ୟରେ ଶୁଭ୍ରଙ୍କର ପତ୍ନୀ ଥିଲେ ବିକୁଣ୍ଠା । ତାଙ୍କ ଗର୍ଭରୁ ଭଗବାନ ବୈକୁଣ୍ଠ ନିଜ ଅଂଶରେ ବୈକୁଣ୍ଠବାସୀ ଦେବତାମାନଙ୍କ ସହିତ ସ୍ୱୟଂ ଆବିର୍ଭୂତ ହୋଇଥିଲେ ॥୪॥ ଲକ୍ଷ୍ମୀଦେବୀଙ୍କ ପ୍ରାର୍ଥନା ଅନୁସାରେ ଭଗବାନ ତାଙ୍କ ପ୍ରୀତିନିମିତ୍ତ ସମସ୍ତ ଲୋକର ନମସ୍ୟ ବୈକୁଣ୍ଠଲୋକକୁ ନିର୍ମାଣ କରିଥିଲେ ॥୫॥ ସେହି ବୈକୁଣ୍ଠପତି ଶ୍ରୀହରିଙ୍କ ମଙ୍ଗଳମୟ ଗୁଣ ଏବଂ ପ୍ରଭାବର ବର୍ଣ୍ଣନା ମୁଁ ସଂକ୍ଷେପରେ ପୂର୍ବରୁ (ତୃତୀୟ ସ୍କନ୍ଧରେ) କରିଛି । ପୃଥିବୀର ଧୂଳିକଣାମାନଙ୍କୁ ଗଣନା କରିବା ଯାହା, ବିଷ୍ଣୁଙ୍କର ଗୁଣବର୍ଣ୍ଣନା କରିବା ହେଉଛି ସେଇଆ ॥୬॥ ଷଷ୍ଠ ମନୁ ହେଲେ ଚକ୍ଷୁଙ୍କର ପୁତ୍ର ଚାକ୍ଷୁଷ । ତାଙ୍କର ପୁରୁ, ପୁରୁଷ, ସୁଦ୍ୟୁମ୍ନ ଆଦି ପୁତ୍ରମାନେ ଥିଲେ ॥୭॥ ସେହି ମନ୍ୱନ୍ତରରେ ମନ୍ତ୍ରଦ୍ରୁମ ନାମକ ଇନ୍ଦ୍ର, ଆପ୍ୟ ଆଦି ଦେବଗଣ ଏବଂ ହବିଷ୍ମାନ୍ ଓ ବୀରକ ଆଦି ସପ୍ତର୍ଷି ରହିଥିଲେ ॥୮॥ ଏହି ସମୟରେ ଜଗଦୀଶ୍ୱର ଭଗବାନ ବୈରାଜଙ୍କ ପତ୍ନୀ ସମ୍ଭୂତିଙ୍କ ଗର୍ଭରୁ ଜନ୍ମଗ୍ରହଣ କରି ଅଜିତ ନାମରେ ଖ୍ୟାତ ହୋଇଥିଲେ । ସେହି ଭଗବାନ ଅଜିତ ସମୁଦ୍ରମନ୍ଥନ କରି ଦେବତାମାନଙ୍କପାଇଁ ଅମୃତ ସଂଗ୍ରହ କରିଥିଲେ ଏବଂ ସମୁଦ୍ରଜଳରେ ଭ୍ରାମ୍ୟମାଣ ମନ୍ଦରପର୍ବତକୁ କୂର୍ମରୂପରେ ଧାରଣ କରିଥିଲେ ॥୯-୧୦॥ ରାଜା ପରିକ୍ଷିତ କହିଲେ, ଯେପରି ଭାବରେ ଏବଂ ଯେଉଁଥିପାଇଁ ଭଗବାନଙ୍କ ଦ୍ୱାରା କ୍ଷୀରସାଗର ମନ୍ଥନ କରାଯାଇଥିଲା, ଯେଉଁ କାରଣରୁ ଭଗବାନ ଜଳଚର କୂର୍ମରୂପରେ ମନ୍ଦର ପର୍ବତକୁ ଧାରଣ କରିଥିଲେ, ଯେପରି ଭାବରେ ଦେବତାମାନେ ଅମୃତ ଲାଭ କରିଥିଲେ ଏବଂ ସେ ସମୟରେ ଅନ୍ୟ ଯାହା ସବୁ ଘଟଣା ଘଟିଥିଲା, ଭଗବାନଙ୍କର ସେହି ଅଦ୍ଭୁତ ଲୀଳାମାନ ବର୍ଣ୍ଣନା କରନ୍ତୁ ॥୧୨॥ ଆପଣ ଭକ୍ତବତ୍ସଳ ଭଗବାନଙ୍କର ମହିମା ଯେତେ ବର୍ଣ୍ଣନା କରୁଛନ୍ତି, ଆହୁରି ଶୁଣିବାପାଇଁ ମୋର ହୃଦୟ ସେତେ ଉତ୍ସୁକ ହେଉଛି । ଯେତେ ଶୁଣିଲେ ମଧ୍ୟ ମୁଁ ତୃପ୍ତ ହେଉ ନାହିଁ, କାରଣ ଏହି ସଂସାରର ତ୍ରିତାପ ମୋର ଚିତ୍ତକୁ ଦଗ୍ଧ କରିଦେଇଛି ॥୧୩॥

ଶ୍ରୀସୂତ କହିଲେ, ଦ୍ୱିଜଗଣ, ପରମଯୋଗୀ ବ୍ୟାସପୁତ୍ର ଶୁକଦେବ ପରିକ୍ଷିତଙ୍କର ଏହି ପ୍ରଶ୍ନକୁ ଅଭିନନ୍ଦନ ଜଣାଇ ଭଗବାନଙ୍କର ସମୁଦ୍ରମନ୍ଥନ ଲୀଳାର ବର୍ଣ୍ଣନା ଆରମ୍ଭ କଲେ ॥୧୪॥ ଶ୍ରୀ ଶୁକଦେବ କହିଲେ, ଯେଉଁ ସମୟର କଥା ମୁଁ କହୁଛି, ସେ ସମୟରେ ଅସୁରମାନେ ସେମାନଙ୍କର ସୁତୀକ୍ଷ୍ଣ ଅସ୍ତ୍ରଶସ୍ତ୍ରଦ୍ୱାରା ଦେବତାମାନଙ୍କୁ ପରାଜିତ କରିଦେଇଥିଲେ । ବହୁସଂଖ୍ୟକ ଦେବତା ଭୂପତିତ ହୋଇ ପ୍ରାଣତ୍ୟାଗ କଲେ । ଅନ୍ୟମାନେ ଏପରି ଆହତ ହୋଇପଡ଼ିଥିଲେ ଯେ ଆଉ ଉଠି ପାରିଲେ ନାହିଁ ॥୧୫॥ ରାଜନ୍, ଦୁର୍ବାସାଙ୍କ ଶାପରେ ତିନି ଲୋକ ଏବଂ ସ୍ୱୟଂ ଇନ୍ଦ୍ର ଶ୍ରୀହୀନ ହୋଇ ଯାଇଥିଲେ । ଯାଗଯଜ୍ଞାଦି କର୍ମସବୁ ବିଲୁପ୍ତ ହୋଇଗଲା ॥୧୬॥ ଇନ୍ଦ୍ର, ବରୁଣ ଆଦି ଦେବତାମାନେ ଏହାର ପ୍ରତିକାର ସମ୍ପର୍କରେ ବହୁ ଚିନ୍ତା ଓ ମନ୍ତ୍ରଣା କରି ମଧ୍ୟ କିଛି ସ୍ଥିର କରି ପାରିଲେ ନାହିଁ । ସେମାନେ ସମସ୍ତେ ମିଶି ସୁମେରୁ ଶିଖରରେ ବସିଥିବା ବ୍ରହ୍ମାଙ୍କର ସଭାକୁ ଯାତ୍ରା କଲେ ଓ ପ୍ରଣତ ହୋଇ ବ୍ରହ୍ମାଙ୍କୁ ସମସ୍ତ ବିଷୟ ଜଣାଇଲେ ॥୧୭-୧୮॥ ବ୍ରହ୍ମା ବିସ୍ମିତ ହେଲେ । ସେ ଦେଖିଲେ ଯେ ଇନ୍ଦ୍ର, ବାୟୁ ପ୍ରଭୃତି

ଦେବଗଣ ହୀନବଳ ଓ ହତଶ୍ରୀ; ଲୋକମାନଙ୍କର ପରିସ୍ଥିତି ବିଷମ ସଙ୍କଟପୂର୍ଣ୍ଣ, ଏବଂ ଏହାର ବିପରୀତରେ ଅସୁରମାନଙ୍କର ବଳବୀର୍ଯ୍ୟ ବଢ଼ିବାରେ ଲାଗିଛି ।।୧୯।। ବ୍ରହ୍ମା ସର୍ବଶକ୍ତିମାନ୍ ହେଲେ ମଧ୍ୟ ଏହାର ଉପାୟପାଇଁ ଏକାଗ୍ର ଚିତ୍ତରେ ପରମପୁରୁଷ ବିଷ୍ଣୁଙ୍କୁ ସ୍ମରଣ କଲେ ଏବଂ ଅଳ୍ପ ସମୟପରେ ପ୍ରସନ୍ନ ବଦନରେ ଦେବତାମାନଙ୍କୁ ଏହିପରି କହିଲେ-- ।।୨୦।। ଦେବଗଣ, ମୁଁ, ଶଙ୍କର, ତୁମେ ସମସ୍ତେ, ତଥା ଅସୁର, ଦୈତ୍ୟ, ମନୁଷ୍ୟ, ପଶୁପକ୍ଷୀ, ବୃକ୍ଷଲତା ଓ ସ୍ୱେଦଜ ଆଦି ସମସ୍ତ ପ୍ରାଣୀ ଯାହାଙ୍କ ବିରାଟ ରୂପର ଅତି ସାମାନ୍ୟ ଅଂଶମାତ୍ର, ଚାଲ, ସେହି ଅବିନଶ୍ୱର ଭଗବାନଙ୍କୁ ଶରଣାପନ୍ନ ହେବା ।।୨୧।। ତାଙ୍କ ଦୃଷ୍ଟିରେ କେହି ବଧର ଯୋଗ୍ୟ ନୁହେଁ ବା ରକ୍ଷାର ଯୋଗ୍ୟ । କେହି ଉପେକ୍ଷାର ଯୋଗ୍ୟ ନୁହେଁ କିମ୍ବା ଆଦରର । ତଥାପି ସୃଷ୍ଟି, ସ୍ଥିତି ଏବଂ ପ୍ରଳୟରପାଇଁ ସେ ସମୟ ସମୟରେ ରଜୋଗୁଣ, ସତ୍ତ୍ୱଗୁଣ ଓ ତମୋଗୁଣଙ୍କୁ ଧାରଣ କରନ୍ତି ।।୨୨।। ବର୍ତ୍ତମାନ ସୃଷ୍ଟିର ପାଳନର ସମୟ । ଜୀବଜଗତର ପାଳନପାଇଁ ଭଗବାନ ସତ୍ତ୍ୱଗୁଣ ଧାରଣ କରିଛନ୍ତି । ସେଥିପାଇଁ ଜଗଦ୍‌ଗୁରୁ ଭଗବାନଙ୍କର ଆମେ ଶରଣାପନ୍ନ ହେବା । ସେ ଦେବତାମାନଙ୍କର ପ୍ରିୟ ଏବଂ ଦେବତାମାନେ ମଧ୍ୟ ତାଙ୍କର ପ୍ରିୟ । ସେ ଆମମାନଙ୍କର ମଙ୍ଗଳବିଧାନ କରିବେ ।।୨୩।। ଶ୍ରୀ ଶୁକଦେବ କହିଲେ, ଅରିନ୍ଦମ, ବ୍ରହ୍ମା ଦେବତାମାନଙ୍କୁ ଏହିପରି କହି ଦେବତାଙ୍କ ସହିତ ତମୋମୟ ପ୍ରକୃତିର ପରପାରରେ ଥିବା ଭଗବାନ ଅଜିତଙ୍କର ବୈକୁଣ୍ଠଧାମକୁ ଗମନ କଲେ ।।୨୪।। ସେମାନେ ଭଗବାନଙ୍କର ସ୍ୱରୂପ ଓ ଧାମ ସମ୍ବନ୍ଧରେ ପୂର୍ବରୁ ଶୁଣିଥିଲେ ମଧ୍ୟ ସେଠାରେ ପହଞ୍ଚି କିଛି ଦେଖିପାରିଲେ ନାହିଁ । ସେଥିପାଇଁ ବ୍ରହ୍ମା ସଂଯତ ଚିତ୍ତରେ ବେଦବାଣୀଦ୍ୱାରା ଭଗବାନଙ୍କୁ ସ୍ତୁତି କରିବାକୁ ଲାଗିଲେ ।।୨୫।। ବ୍ରହ୍ମା କହିଲେ, ପ୍ରଭୁ, ଆପଣ ନିର୍ବିକାର, ସତ୍ୟ, ଅନନ୍ତ ଓ ଆଦିପୁରୁଷ । ସମସ୍ତଙ୍କ ହୃଦୟରେ ଆପଣ ବିରାଜମାନ; ଆପଣ ନିଷ୍କଳଙ୍କ ଏବଂ ତର୍କଦ୍ୱାରା ଆପଣଙ୍କୁ ଜାଣି ହୁଏ ନାହିଁ; ଆପଣ ମନ ଅପେକ୍ଷା ଦ୍ରୁତଗାମୀ, ବାକ୍ୟର ଅଗୋଚର, ଦେବତାମାନଙ୍କ ମଧ୍ୟରେ ଶ୍ରେଷ୍ଠ ଏବଂ ବରେଣ୍ୟ । ଆପଣଙ୍କୁ ଆମେ ନମସ୍କାର କରୁଛୁ ।।୨୬।। ଯେ ପ୍ରାଣ, ମନ, ବୁଦ୍ଧି ଓ ଆତ୍ମାର ଜ୍ଞାତା; ଯେ ଇନ୍ଦ୍ରିୟଙ୍କୁ ଓ ଇନ୍ଦ୍ରିୟର ବିଷୟମାନଙ୍କୁ ପ୍ରକାଶିତ କରନ୍ତି; ଯେ ଅଜ୍ଞାନ ଓ ଦୁଃଖ ରହିତ; ଜୀବର ବିଦ୍ୟା ଓ ଅବିଦ୍ୟାନାମକ ଯେଉଁ ଦୁଇ ପକ୍ଷ ଅଛି, ଯାହାଙ୍କର ତାହା ନାହିଁ, ସେହି ଅବିନାଶୀ ଆକାଶପରି ସର୍ବବ୍ୟାପୀ ଏବଂ ତ୍ରିଯୁଗରେ ଯାହାଙ୍କ ଆବିର୍ଭାବ ସେହି ଶ୍ରୀ ଭଗବାନଙ୍କର ମୁଁ ଶରଣାପନ୍ନ ହେଉଛି ।।୨୭।। ଜୀବ ସଂସାରଚକ୍ରରେ ଘୂରିବୁଲୁଛି । ଏହା ମାୟାଦ୍ୱାରା ଚାଳିତ । ଦଶ ଇନ୍ଦ୍ରିୟ ଓ ପଞ୍ଚ ପ୍ରାଣ -- ଏହି ପନ୍ଦରଟି ହେଲା ଏହାର ଅର । ସତ୍ତ୍ୱ, ରଜ ଓ ତମ -- ଏହି ତିନି ଗୁଣ ହେଉଛି ତାର ନାଭି ବା ତୁମ୍ବ । ପୃଥିବୀ, ଜଳ, ତେଜ, ବାୟୁ, ଆକାଶ, ମନ, ବୁଦ୍ଧି ଓ ଅହଙ୍କାର -- ଏହି ଆଠଟି ହେଉଛି ଏହାର ପହି । ମାୟାଦ୍ୱାରା ଚାଳିତ ଏହି ଚକ୍ର ବିଜୁଳିଠାରୁ ମଧ୍ୟ ଅଧିକ ବେଗରେ ଗତିଶୀଳ । ଏହି ଜୀବଚକ୍ରର ଅଧିଷ୍ଠାତା, ସେହି ସତ୍ୟରୂପୀ ଭଗବାନଙ୍କୁ ମୁଁ ଶରଣାପନ୍ନ ହେଉଛି ।।୨୮।।

ଯେ ଏକମାତ୍ର ଜ୍ଞାନସ୍ୱରୂପ, ଅନ୍ଧକାରମୟ ପ୍ରକୃତିରୁ ଅତୀତ, ଅଦୃଶ୍ୟ ଓ ନିର୍ବିକାର ଭାବରେ ଅବସ୍ଥିତ; ଦେଶ, କାଳ ଓ ସ୍ଥାନଦ୍ୱାରା ଯାହାଙ୍କୁ କଳନା କରାଯାଇପାରେ ନା; ସମସ୍ତ ପ୍ରାଣୀଙ୍କର ନିୟନ୍ତା ରୂପେ ସମସ୍ତଙ୍କ ହୃଦୟରେ ଯେ ବିରାଜମାନ; ବିବେକୀମାନେ ଯୋଗରୂପକ ରଥରେ ଆରୋହଣ କରି ଯାହାଙ୍କୁ ଆରାଧନା କରନ୍ତି, ମୁଁ ସେହି ଭଗବାନଙ୍କୁ ନମସ୍କାର କରୁଛି ।।୨୯।। ଯେଉଁ ଭଗବାନଙ୍କର ମାୟା ଅତିକ୍ରମ କରିବାକୁ କେହି ସମର୍ଥ ନୁହନ୍ତି; ଯେଉଁ ମାୟାଦ୍ୱାରା ମୋହିତ ହୋଇ ଜୀବ ନିଜର ଆତ୍ମସ୍ୱରୂପକୁ ଜାଣିବାରେ ଅସମର୍ଥ ହୁଏ; ସେହି ମାୟାକୁ ଜୟକରିଥିବା ଏବଂ ସମସ୍ତ ପ୍ରାଣୀଙ୍କଠାରେ ସମାନଭାବରେ ଅବସ୍ଥିତ ପରମପୁରୁଷଙ୍କୁ ମୁଁ ପ୍ରଣାମ କରୁଛି ।।୩୦।। ଆମେ ଦେବତା ଓ ଋଷିମାନେ ଭଗବାନଙ୍କର ପରମପ୍ରିୟ ସତ୍ତ୍ୱମୟ ଶରୀରରୁ ଜନ୍ମ ହୋଇଛୁ । ସେହି ଭଗବାନ ଆମର ବାହାରେ ଓ ଅନ୍ତରରେ ପ୍ରକଟିତ । ତଥାପି ଆମେ ତାଙ୍କର ସ୍ୱରୂପକୁ ଜାଣୁ ନାହୁଁ । ତେଣୁ ରଜୋଗୁଣ ବା ତମୋଗୁଣ ପ୍ରଧାନ ଅସୁର ଆଦି ତାଙ୍କୁ କିପରି ବା ଜାଣିପାରିବେ ? ।।୩୧।। ଭଗବାନଙ୍କଦ୍ୱାରା ନିର୍ମିତ ଏହି ପୃଥିବୀ ହେଉଛି ତାଙ୍କର ପାଦ । ଏହି ପୃଥିବୀରେ ଜରାୟୁଜ, ଅଣ୍ଡଜ, ସ୍ୱେଦଜ ଏବଂ ଉଦ୍‌ଭିଜ୍ଜ- ଏହି ଚାରି ପ୍ରକାରର ପ୍ରାଣୀ

ରହନ୍ତି । କିନ୍ତୁ ଭଗବାନ୍ ସେମାନଙ୍କଠାରୁ ସମ୍ପୂର୍ଣ୍ଣ ସ୍ୱତନ୍ତ୍ର । ସେହି ପରମ ଐଶ୍ୱର୍ଯ୍ୟଶାଳୀ ପୁରୁଷୋତ୍ତମ ପରବ୍ରହ୍ମ ଆମପ୍ରତି ପ୍ରସନ୍ନ ହୁଅନ୍ତୁ ॥୩୨॥ ଯେଉଁ ଜଳରୁ ସମସ୍ତ ଲୋକ ଏବଂ ଲୋକପାଳ ଉତ୍ପନ୍ନ ହୁଅନ୍ତି, ଏବଂ ଯେଉଁ ଜଳଦ୍ୱାରା ଜୀବିତ ରହନ୍ତି ଓ ବୃଦ୍ଧିଲାଭ କରନ୍ତି, ସେହି ପରମଶକ୍ତିମୟ ଜଳ ହେଉଛି ତାଙ୍କର ବୀର୍ଯ୍ୟ । ସେହି ମହାବିଭୂତିସମ୍ପନ୍ନ ଭଗବାନ ଆମପ୍ରତି ପ୍ରସନ୍ନ ହୁଅନ୍ତୁ ॥୩୩॥ ଯେଉଁ ଚନ୍ଦ୍ର ଦେବତାମାନଙ୍କର ଅନ୍ନ, ଆୟୁ ଏବଂ ବଳସ୍ୱରୂପ, ଯେ ବୃକ୍ଷସମୂହର ଏବଂ ପ୍ରଜାମାନଙ୍କର ବୃଦ୍ଧିର କାରଣ, ସେହି ଚନ୍ଦ୍ରମାଙ୍କୁ ପଣ୍ଡିତମାନେ ଭଗବାନଙ୍କର ମନ ବୋଲି କୀର୍ତ୍ତନ କରିଥାନ୍ତି । ସେହି ମହାବିଭୂତିସମ୍ପନ୍ନ ଭଗବାନ୍ ଆମପ୍ରତି ପ୍ରସନ୍ନ ହୁଅନ୍ତୁ ॥୩୪॥ ଯେଉଁ ଅଗ୍ନିରୁ ଧନର ଉତ୍ପତ୍ତି, କର୍ମକାଣ୍ଡ ବା ବେଦପ୍ରତିପାଦ୍ୟ କର୍ମମାନ କରିବାପାଇଁ ଯାହାଙ୍କର ଜନ୍ମ, ଯେ ଶରୀରମଧ୍ୟରେ ଜଠରାଗ୍ନି ରୂପେ ଓ ସମୁଦ୍ରରେ ବାଡ଼ବାଗ୍ନିରୂପେ ସମସ୍ତ ଖାଦ୍ୟ ପଦାର୍ଥକୁ ଜୀର୍ଣ୍ଣ କରନ୍ତି, ସେହି ଅଗ୍ନି ହେଉଛନ୍ତି ଯାହାଙ୍କର ମୁଖ, ସେହି ମହାବିଭୂତିସମ୍ପନ୍ନ ଭଗବାନ୍ ଆମପ୍ରତି ପ୍ରସନ୍ନ ହୁଅନ୍ତୁ ॥୩୫॥ ଯେଉଁ ସୂର୍ଯ୍ୟଙ୍କୁ ଦେବଯାନ କୁହାଯାଏ, ଯେ ସ୍ୱୟଂ ବେଦମୂର୍ତ୍ତି ଏବଂ ବ୍ରହ୍ମାଙ୍କର ଧ୍ୟାନମୟ ରୂପ, ଯେ ମୋକ୍ଷର ଦ୍ୱାର ଓ ଅମୃତସ୍ୱରୂପ ତଥା କାଳରୂପ ମୃତ୍ୟୁ, ସେହି ସୂର୍ଯ୍ୟ ହେଉଛନ୍ତି ଯାହାଙ୍କର ଚକ୍ଷୁ ସେଇ ମହାବିଭୂତିସମ୍ପନ୍ନ ଭଗବାନ ଆମପ୍ରତି ପ୍ରସନ୍ନ ହୁଅନ୍ତୁ ॥୩୬॥ ମନୋବଳ ଓ ଶାରୀରିକ ବଳବୀର୍ଯ୍ୟର କାରଣରୂପେ ଯେଉଁ ବାୟୁ ଚରାଚର ଜଗତର ପ୍ରାଣସ୍ୱରୂପ, ସେ ଯାହାଙ୍କ ପ୍ରାଣରୁ ଜନ୍ମଲାଭ କରିଛନ୍ତି, ଚକ୍ରବର୍ତ୍ତୀ ସମ୍ରାଟଙ୍କ ଚାକର ଭଳି, ଯାହାଙ୍କର ଆମେ ଅନୁଗାମୀ ସେହି ମହାବିଭୂତିସମ୍ପନ୍ନ ଭଗବାନ୍ ଆମପ୍ରତି ପ୍ରସନ୍ନ ହୁଅନ୍ତୁ ॥୩୭॥ ଯେଉଁ ପରମପୁରୁଷଙ୍କର କାନରୁ ଦିଗମାନେ, ହୃଦୟରୁ ଇନ୍ଦ୍ରିୟଗଣ ଏବଂ ନାଭିରୁ ଆକାଶ ଜନ୍ମିଛି, ଯେ ପଞ୍ଚ ପ୍ରାଣ, ଦଶ ଇନ୍ଦ୍ରିୟ, ମନ ଏବଂ ଶରୀରର ଆଶ୍ରୟସ୍ଥଳ, ସେହି ପରମବିଭୂତିସମ୍ପନ୍ନ ଭଗବାନ୍ ଆମପ୍ରତି ପ୍ରସନ୍ନ ହୁଅନ୍ତୁ ॥୩୮॥ ଯାହାଙ୍କ ବଳରୁ ଇନ୍ଦ୍ର, ପ୍ରସନ୍ନତାରୁ ଦେବଗଣ, କ୍ରୋଧରୁ ଶଙ୍କର, ବୁଦ୍ଧିରୁ ବ୍ରହ୍ମା, ଇନ୍ଦ୍ରିୟମାନଙ୍କରୁ ବେଦ ଓ ଋଷିଗଣ ତଥା, ଲିଙ୍ଗରୁ ପ୍ରଜାପତି ଜନ୍ମ ହୋଇଛନ୍ତି, ସେହି ମହାବିଭୂତିସମ୍ପନ୍ନ ଭଗବାନ୍ ଆମପ୍ରତି ପ୍ରସନ୍ନ ହୁଅନ୍ତୁ ॥୩୯॥

ଯାହାଙ୍କର ବକ୍ଷସ୍ଥଳରୁ ଲକ୍ଷ୍ମୀ, ଛାୟାରୁ ପିତୃଗଣ, ସ୍ତନରୁ ଧର୍ମ, ପିଠିରୁ ଅଧର୍ମ, ମସ୍ତକରୁ ସ୍ୱର୍ଗ ଓ ବିହାରରୁ ଅପ୍ସରାମାନେ ଜନ୍ମିଛନ୍ତି, ସେହି ମହାବିଭୂତିସମ୍ପନ୍ନ ଭଗବାନ୍ ଆମପ୍ରତି ପ୍ରସନ୍ନ ହୁଅନ୍ତୁ ॥୪୦॥ ଯାହାଙ୍କର ମୁହଁରୁ ବ୍ରାହ୍ମଣ ଏବଂ ରହସ୍ୟମୟ ବେଦ, ଭୁଜରୁ କ୍ଷତ୍ରିୟ ଏବଂ ବଳ, ଉରୁଦ୍ୱୟରୁ ବୈଶ୍ୟ ଓ ନିପୁଣତା ଏବଂ ପଦଦ୍ୱୟରୁ ଶୂଦ୍ର ଓ ସେବାବୃତ୍ତି ଉତ୍ପନ୍ନ ହୋଇଛି, ସେହି ମହାବିଭୂତିସମ୍ପନ୍ନ ଭଗବାନ୍ ଆମପ୍ରତି ପ୍ରସନ୍ନ ହୁଅନ୍ତୁ ॥୪୧॥ ଯାହାଙ୍କ ଅଧରରୁ ଲୋଭ, ଓଷ୍ଠରୁ ପ୍ରୀତି, ନାସିକାରୁ କାନ୍ତି, ସ୍ପର୍ଶରୁ ପଶୁଙ୍କର ପ୍ରିୟ କାମବୃତ୍ତି, ଭ୍ରୂଲତାରୁ ଯମ ଓ ଆଖିବାଳରୁ କାଳ ଜାତ, ସେହି ମହାବିଭୂତିସମ୍ପନ୍ନ ଭଗବାନ୍ ଆମପ୍ରତି ପ୍ରସନ୍ନ ହୁଅନ୍ତୁ ॥୪୨॥ ଯାହା ଦୁର୍ବୋଧ୍ୟ ଓ ଜ୍ଞାନୀଙ୍କଦ୍ୱାରା ପରିତ୍ୟକ୍ତ -- ସେହି ପଞ୍ଚଭୂତ, କାଳ, କର୍ମ, ସତ୍ତ୍ୱାଦି ଗୁଣ ଓ ଲୌକିକ ପ୍ରପଞ୍ଚ --ଯାହା ଯୋଗମାୟାଦ୍ୱାରା ସୃଷ୍ଟ ବୋଲି ଜ୍ଞାନୀମାନେ କହନ୍ତି -- ସେହି ମହାବିଭୂତିସମ୍ପନ୍ନ ଭଗବାନ ଆମପ୍ରତି ପ୍ରସନ୍ନ ହୁଅନ୍ତୁ ॥୪୩॥ ଯାହାଙ୍କଠାରେ ତାଙ୍କ ଅନ୍ତରଙ୍ଗ ଶକ୍ତିସବୁ ଶାନ୍ତ ହୋଇ ରହିଛି, ଯେ ମାୟାନିର୍ମିତ ସତ୍ତ୍ୱାଦି ଗୁଣରେ ଦର୍ଶନାଦି ବୃତ୍ତିଦ୍ୱାରା ଆସକ୍ତ ହୁଅନ୍ତି ନାହିଁ, ଯେ ବାୟୁପରି ସୃଷ୍ଟି ଆଦି ଲୀଳାଯୁକ୍ତ ଏବଂ ଆତ୍ମାନନ୍ଦଲାଭରେ ପରିପୂର୍ଣ୍ଣ, ଆତ୍ମସ୍ୱରୂପ ସେହି ଭଗବାନଙ୍କୁ ମୁଁ ନମସ୍କାର କରୁଛି ॥୪୪॥ ପ୍ରଭୁ, ଆମେମାନେ ଆପଣଙ୍କ ଶରଣାଗତ । ଆପଣଙ୍କ ସହାସ୍ୟ ମୁଖପଦ୍ମ ଆମେ ଏହି ନେତ୍ରରେ ଦେଖିବାକୁ ଚାହୁଁଛୁ । ଦୟାପୂର୍ବକ ଆମକୁ ତାହା ଦେଖାଇ ଦିଅନ୍ତୁ ॥୪୫॥ ଯେଉଁ କର୍ମ ଆମମାନଙ୍କଦ୍ୱାରା ସମ୍ଭବ ହୋଇ ନାହିଁ, ଆପଣ ଯୁଗେ ଯୁଗେ ସ୍ୱେଚ୍ଛାକୃତ ଅବତାରମାନଙ୍କଦ୍ୱାରା ତାହା ଅନାୟାସରେ ସାଧନ କରିଛନ୍ତି । କାରଣ ଆପଣ ସର୍ବଶକ୍ତିମାନ୍ ॥୪୬॥ ବିଷୟାସକ୍ତ ଦେହୀ ଜୀବମାନେ ବହୁ କଷ୍ଟ ସହି ଯେଉଁସବୁ କର୍ମ କରନ୍ତି, ତାହା ବିଶେଷ ଫଳଦାୟକ ହୁଏ ନାହିଁ, ବା ସମ୍ପୂର୍ଣ୍ଣ ନିଷ୍ଫଳ ହୋଇଯାଏ । କିନ୍ତୁ ଆପଣଙ୍କୁ ଅର୍ପଣ କରି ଯେଉଁ କର୍ମ କରାଯାଏ, ତାହା ସେପରି ହୁଏ ନାହିଁ ॥୪୭॥ ଛୋଟଛୋଟ କାମ ମଧ୍ୟ ଭଗବାନଙ୍କୁ ଅର୍ପଣ କରି କରାଗଲେ, ତାହା ବିଫଳ

ହୁଏ ନାହିଁ । କାରଣ ଭଗବାନ ଜୀବର ପରମ ହିତକାରୀ ପ୍ରିୟତମ ବନ୍ଧୁ ଏବଂ ତାର ଆତ୍ମାସ୍ୱରୂପ ।।୪୮।। ଗଛର ମୂଳରେ ପାଣି ଦେଲେ ଯେପରି ତାର ଶାଖା ପ୍ରଶାଖାମାନେ ପାଣି ପାଆନ୍ତି, ସେହିପରି ଭଗବାନଙ୍କର ଆରାଧନାଦ୍ୱାରା ସମସ୍ତ ପ୍ରାଣୀ ତଥା ନିଜର ଆତ୍ମା ତୃପ୍ତ ହୁଏ ।।୪୯।। ଯେ ଅନନ୍ତ, ଯାହାଙ୍କର ଲୀଳାରହସ୍ୟ ତର୍କବିତର୍କର ଦୂରରେ, ଯେ ନିର୍ଗୁଣ, ପୁଣି ଗୁଣର ଆଶ୍ରୟସ୍ୱରୂପ ଏବଂ ସତ୍ତ୍ୱଗୁଣରେ ଅବସ୍ଥିତ--ତାଙ୍କୁ ଆମେ ବର୍ତ୍ତମାନ ନମସ୍କାର କରୁଛୁ ।।୫୦।।

## ଷଷ୍ଠ ଅଧ୍ୟାୟ

# ସମୁଦ୍ରମନ୍ଥନର ଉଦ୍ୟମ

ଶ୍ରୀ ଶୁକଦେବ କହିଲେ, ପରିକ୍ଷିତ, ଦେବତାମାନେ ଏହିପରି ସ୍ତୁତି କରିବାରୁ ଭଗବାନ ଶ୍ରୀହରି ସହସ୍ର ସୂର୍ଯ୍ୟର ତେଜ ଧାରଣ କରି ସେମାନଙ୍କ ଆଗରେ ଆବିର୍ଭୂତ ହେଲେ ।।୧।। ସେହି ତେଜରେ ଦେବତାମାନଙ୍କର ଆଖି ଝଲସି ଗଲା । ସେମାନଙ୍କୁ ଆକାଶ, ପୃଥିବୀ, ଚତୁର୍ଦ୍ଦିଗ, ଏପରିକି ନିଜ ଶରୀର ମଧ୍ୟ ଦେଖାଗଲା ନାହିଁ । ତେଣୁ ସେମାନେ ଭଗବାନଙ୍କୁ ବା କିପରି ଦର୍ଶନ କରିବେ ? ।।୨।। କେବଳ ଶଙ୍କର ଏବଂ ବ୍ରହ୍ମା ତାଙ୍କର ଅନିନ୍ଦ୍ୟ ସୁନ୍ଦର ଛବିକୁ ଦେଖିପାରିଲେ । ମରକତମଣି ପରି ଶ୍ୟାମବର୍ଣ୍ଣ ଶରୀର, ପଦ୍ମକୋଷ ପରି ଆରକ୍ତ ନେତ୍ର, ତପ୍ତ କାଞ୍ଚନ ବର୍ଣ୍ଣ ପରି ଉଜ୍ଜ୍ୱଳ ପଟ୍ଟବସ୍ତ୍ର, ସର୍ବାଙ୍ଗସୁନ୍ଦର ବପୁ, ପ୍ରସନ୍ନ ମୁଖମଣ୍ଡଳ, ସୁନ୍ଦର ଭ୍ରୂଯୁଗଳ, ମହାମୂଲ୍ୟ ମଣିମୟ ମୁକୁଟଦ୍ୱାରା ଶୋଭିତ ମସ୍ତକ, କେୟୂରଯୁକ୍ତ ଭୁଜଦ୍ୱୟ ଏବଂ କର୍ଣ୍ଣାଭରଣଦ୍ୱାରା ଅଳଙ୍କୃତ କପୋଳଦେଶ ଅତିଶୟ ସୁନ୍ଦର ଦେଖାଯାଉଥିଲା ।।୩-୫।। କଟିରେ କଟିବନ୍ଧ, ହାତରେ କଙ୍କଣ, ଗଳାରେ ହାର ଓ ପାଦରେ ନୂପୁର ଶୋଭା ପାଉଥିଲା । ବକ୍ଷସ୍ଥଳରେ ଲକ୍ଷ୍ମୀ, କଣ୍ଠଦେଶରେ କୌସ୍ତୁଭମଣି ଓ ବନମାଳା ସେ ଧାରଣ କରିଥିଲେ ।।୬।। ଭଗବାନଙ୍କର ସୁଦର୍ଶନ ଚକ୍ର ଆଦି ନିଜ ଅସ୍ତ୍ର ମୂର୍ତ୍ତିମନ୍ତ ହୋଇ ତାଙ୍କୁ ସେବା କରୁଥିଲେ । ଦେବତାମାନେ ଭଗବାନଙ୍କର ସେହି ଦିବ୍ୟମୂର୍ତ୍ତିକୁ ଦେଖି ସାଷ୍ଟାଙ୍ଗ ପ୍ରଣିପାତ କଲେ । ଶଙ୍କର ଓ ବ୍ରହ୍ମା ଦେବତାମାନଙ୍କ ସହିତ ମିଶି ସେହି ପରମପୁରୁଷଙ୍କୁ ସ୍ତବ କରିବାକୁ ଲାଗିଲେ ।।୭।।

ବ୍ରହ୍ମା କହିଲେ, ହେ ଭଗବାନ୍, ଆପଣ ଜନ୍ମ, ସ୍ଥିତି ଓ ପ୍ରଳୟର ଊର୍ଦ୍ଧ୍ୱରେ । ଆପଣ ପ୍ରାକୃତ ଗୁଣରହିତ ଏବଂ ନିର୍ବାଣସୁଖର ସମୁଦ୍ରସ୍ୱରୂପ । ଆପଣ ସୂକ୍ଷ୍ମାତିସୂକ୍ଷ୍ମ, ଅନନ୍ତମୂର୍ତ୍ତି ଓ ମହାନୁଭାବ । ମୁଁ ଆପଣଙ୍କୁ ନମସ୍କାର କରୁଛି ।।୮।। ହେ ପୁରୁଷଶ୍ରେଷ୍ଠ, ହେ ବିଧାତା । ମଙ୍ଗଳକାମୀ ପୁରୁଷମାନେ ବୈଦିକ ଓ ତାନ୍ତ୍ରିକ ଉପାୟଦ୍ୱାରା ଆପଣଙ୍କର ଉପାସନା କରିଥାନ୍ତି । ଆପଣଙ୍କର ବିଶ୍ୱରୂପରେ ମୁଁ ତ୍ରିଭୁବନ ସହିତ ଆମ ସମସ୍ତଙ୍କୁ ଦେଖିପାରୁଛି ।।୯।। ଆପଣ ସ୍ୱତନ୍ତ୍ର । ଏହି ବିଶ୍ୱ ପ୍ରଥମେ ଆପଣଙ୍କଠାରେ ଲୀନ ଥିଲା । ବର୍ତ୍ତମାନ ମଧ୍ୟ ଆପଣଙ୍କଠାରେ ଏହା ଅବସ୍ଥିତ ଏବଂ ଶେଷରେ ମଧ୍ୟ ଏହା ଆପଣଙ୍କଠାରେ ଲୀନ ହୋଇଯିବ । ମୃତ୍ତିକା ଯେପରି ଘଟର, ଆପଣ ସେହିପରି ଏ ଜଗତ୍‌ର ଆଦି ମଧ୍ୟ ଏବଂ ଅନ୍ତ । ଆପଣ ଶ୍ରେଷ୍ଠଠାରୁ ଶ୍ରେଷ୍ଠତର ।।୧୦।। ଆପଣ ଆପଣଙ୍କଠାରେ ଆଶ୍ରିତ । ମାୟାଦ୍ୱାରା ସ୍ୱାଧୀନ ଭାବରେ ଏହି ବିଶ୍ୱକୁ ନିର୍ମାଣ କରି ଓ ତା'ପରେ ସେଥିରେ ପ୍ରବେଶ କରି ଆପଣ ଅନ୍ତର୍ଯାମୀ ରୂପରେ ରହିଛନ୍ତି । ସେଥିପାଇଁ ବିବେକୀ, ଶାସ୍ତ୍ରଜ୍ଞ ପୁରୁଷମାନେ ଏକାଗ୍ରଚିତ୍ତରେ ଗୁଣମାନଙ୍କ ମଧ୍ୟରେ ଆପଣଙ୍କ ନିର୍ଗୁଣ ସ୍ୱରୂପକୁ ଦର୍ଶନ କରିଥା'ନ୍ତି ।।୧୧।। ଯେପରି ବୁଦ୍ଧିମାନ୍ ମନୁଷ୍ୟ କାଷ୍ଠମଧ୍ୟରେ ଅଗ୍ନିକୁ, ଗାଭୀଠାରେ ଅମୃତମୟ ଦୁଗ୍ଧକୁ, ପୃଥିବୀରେ ଅନ୍ନ ଓ ଜଳକୁ ଏବଂ ପୁରୁଷକାର ମଧ୍ୟରେ ଜୀବିକାକୁ ଲଭକରେ, ସେହିପରି ଯୋଗମାର୍ଗରେ ରହି ପଣ୍ଡିତମାନେ ନିଜର ବୁଦ୍ଧିଦ୍ୱାରା ଗୁଣମାନଙ୍କ ମଧ୍ୟରେ ଆପଣଙ୍କ ନିର୍ଗୁଣ ସ୍ୱରୂପକୁ ଦର୍ଶନ କରନ୍ତି ଏବଂ ବର୍ଣ୍ଣନା କରନ୍ତି ।।୧୨।।

ହେ ପ୍ରଭୁ ପଦ୍ମନାଭ, ଯେପରି ଦାବାଗ୍ନିପୀଡ଼ିତ ଗଜ ଗଙ୍ଗାଜଳରେ ସ୍ନାନ କରି ଶାନ୍ତି ଲାଭ କରେ, ସେହିପରି ଆପଣଙ୍କ ଆବିର୍ଭାବରେ ଆମେ ପରମ ଶାନ୍ତି ଲାଭ କରୁଚୁ । ଆପଣଙ୍କ ଦର୍ଶନପାଇଁ ଆମେ ବହୁକାଳରୁ ଲାଳାୟିତ ହୋଇରହିଥିଲୁ ॥୧୩॥ ଅନ୍ତର୍ଯାମି ! ଆପଣ ସର୍ବସାକ୍ଷୀ; ଆମର ବାହାର ଓ ଭିତରର ଆତ୍ମାସ୍ୱରୂପ । ଆମେ ଲୋକପାଳଗଣ ଯେଉଁ ଉଦ୍ଦେଶ୍ୟରେ ଆପଣଙ୍କ ପାଖକୁ ଆସିଚୁ, ଆପଣ ତାହା ପୂର୍ଣ୍ଣ କରନ୍ତୁ । ଆପଣଙ୍କୁ ଅଧିକ କଣ ବା ଆମେ ଜଣାଇବୁ ॥୧୪॥ ପ୍ରଭୁ, ମୁଁ, ଶିବ ଓ ଦେବତାମାନେ, ଦକ୍ଷ ଆଦି ପ୍ରଜାପତିମାନେ ଓ ଋଷିମାନେ ଅଗ୍ନିର ସ୍ଫୁଲିଙ୍ଗମାନଙ୍କପରି ଆପଣଙ୍କର ଅଂଶ ଓ ପୃଥକ୍ ପୃଥକ୍ ଭାବରେ ଆପଣଙ୍କଠାରୁ ପ୍ରକାଶ ଲାଭ କରିଚୁ । ଆମପାଇଁ କଣ କଲେ ମଙ୍ଗଳ ହେବ, ଆମେ ତାହା ଜାଣୁ ନାହିଁ । ଆପଣ ବ୍ରାହ୍ମଣ ଓ ଦେବତାଙ୍କ ମଙ୍ଗଳର ଉପାୟ ବତାଇ ଦେଇ କଣ କରିବାକୁ ହେବ, ପରାମର୍ଶ ଦିଅନ୍ତୁ ॥୧୫॥

ଶ୍ରୀ ଶୁକଦେବ କହିଲେ, ବ୍ରହ୍ମାଦି ଦେବତାମାନେ ଏହିପରି ସ୍ତୁତି କରି ଇନ୍ଦ୍ରିୟନିରୋଧପୂର୍ବକ କୃତାଞ୍ଜଳି ହୋଇ ଠିଆ ହେବାରୁ ଭଗବାନ ସେମାନଙ୍କ ହୃଦୟର କଥା ଜାଣିପାରିଲେ ଏବଂ ଜଳଦଗମ୍ଭୀର ସ୍ୱରରେ କହିଲେ--ସେ ଏକାକୀ ଦେବତାମାନଙ୍କ କାର୍ଯ୍ୟସାଧନପାଇଁ ସମର୍ଥ ଥିଲେ ମଧ୍ୟ ସମୁଦ୍ର-ମନ୍ଥନ ଆଦି ଲୀଳାଦ୍ୱାରା ବିହାର କରିବା ଇଚ୍ଛାରେ ଦେବତାମାନଙ୍କୁ ଏହିପରି କହିବାକୁ ଲାଗିଲେ-- ॥୧୬-୧୭॥ ଶ୍ରୀ ଭଗବାନ କହିଲେ, ବ୍ରହ୍ମା, ଶଙ୍କର ଓ ଦେବଗଣ, ତୁମେମାନେ ସାବଧାନ ହୋଇ ମୋର କଥା ଶୁଣ । ଯେପରି କାର୍ଯ୍ୟ କଲେ ତୁମମାନଙ୍କର ମଙ୍ଗଳ ହେବ, ତାହା ମୁଁ କହିବାକୁ ଯାଉଛି ॥୧୮॥ ଏ ସମୟ ହେଉଛି ଅସୁରମାନଙ୍କ ଉନ୍ନତିର ସମୟ । ସେମାନଙ୍କପ୍ରତି କାଳର କୃପା ରହିଛି । ଯେ ପର୍ଯ୍ୟନ୍ତ ତୁମ ଅଭ୍ୟୁଦୟର ସମୟ ଆସି ନାହିଁ, ସେ ପର୍ଯ୍ୟନ୍ତ ତୁମେ ଦୈତ୍ୟ ଓ ଦାନବମାନଙ୍କ ପାଖକୁ ଯାଇ ସେମାନଙ୍କ ସହିତ ସନ୍ଧି ସ୍ଥାପନ କର ॥୧୯॥ ଦେବଗଣ, କୌଣସି ବଡ଼ କାର୍ଯ୍ୟ କରିବାକୁ ହେଲେ ଶତ୍ରୁଙ୍କ ସହିତ ସନ୍ଧିସ୍ଥାପନ ଆବଶ୍ୟକ । କାର୍ଯ୍ୟ ସରିଗଲା ପରେ ସେମାନଙ୍କ ସହିତ ସର୍ପ-ମୂଷିକ ନ୍ୟାୟରେ ଆଚରଣ କରିବ (ଅର୍ଥାତ ପେଡ଼ିରେ ବନ୍ଦ ହୋଇ ପଡ଼ିଥିବା ସାପ ମୂଷା ସହ ସନ୍ଧି ସ୍ଥାପନ କରେ ଏବଂ ମୂଷା ପେଡ଼ି କାଟିବା ପରେ ବାହାରକୁ ବାହାରିଲେ ସଙ୍ଗେ ସଙ୍ଗେ ସାପ ମୂଷାକୁ ଖାଇଯାଏ । ଏହା ହିଁ ହେଉଛି ସର୍ପ-ମୂଷିକ ନ୍ୟାୟ) ॥୨୦॥ ତୁମେମାନେ ଅତିଶୀଘ୍ର ଅମୃତ ଉତ୍ପାଦନପାଇଁ ଯତ୍ନ କର, ଯେଉଁ ଅମୃତ ପାନ କଲେ ମୃତ୍ୟୁଗ୍ରସ୍ତ ଜୀବ ମଧ୍ୟ ଅମର ହୋଇଯାଏ ॥୨୧॥ ଦେବଗଣ, କ୍ଷୀରସମୁଦ୍ର ମଧ୍ୟରେ ଗୁଳ୍ମ, ତୃଣ, ଲତା, ଓଷଧି ଓ ବୃକ୍ଷ ସବୁ ନିକ୍ଷେପ କର । ମନ୍ଦର ପର୍ବତକୁ ମନ୍ଥନଦଣ୍ଡ ଓ ବାସୁକିକୁ ରଜ୍ଜୁ କରି ମୋ ସାହାଯ୍ୟରେ ନିରଳସ ଭାବରେ ସମୁଦ୍ର ମନ୍ଥନ କର । ଏପରି କଲେ ଦୈତ୍ୟମାନଙ୍କୁ ମିଳିବ କେବଳ ଶ୍ରମ ଓ କ୍ଲେଶ ଏବଂ ତୁମକୁ ମିଳିବ ଫଳ ॥୨୨-୨୩॥ ଦେବଗଣ, ଅସୁରମାନେ ଯାହା ଇଚ୍ଛା କରିବେ, ତୁମେ ତାହା ଅନୁମୋଦନ କରିବ । ଶାନ୍ତିରେ ଯେଉଁ କାମ ହୁଏ, କ୍ରୋଧ କରିବାଦ୍ୱାରା ତାହା ହୁଏ ନାହିଁ ॥୨୪॥ ପ୍ରଥମେ ସମୁଦ୍ରରୁ କାଳକୂଟ ବିଷ ବାହାରିବ, ତୁମେ ସେଥିରେ ଭୟଭୀତ ହେବ ନାହିଁ । ଅନ୍ୟ ଯାହାସବୁ ବାହାରିବ, ସେଥିପ୍ରତି ଲୋଭ କରିବ ନାହିଁ । କୌଣସି ବସ୍ତୁ କାମନା କରିବ ନାହିଁ । କାମନା ଯଦି ପୂର୍ଣ୍ଣ ନ ହୁଏ, ତେବେ କ୍ରୋଧ କରିବ ନାହିଁ । ଶୁକଦେବ କହିଲେ, ପରିକ୍ଷିତ, ଦେବତାମାନଙ୍କୁ ଏହିପରି ଆଦେଶ ଦେଇ ଭଗବାନ ପୁରୁଷୋତ୍ତମ ସ୍ୱଚ୍ଛନ୍ଦଗତିରେ ସେଠାରୁ ଅନ୍ତର୍ହିତ ହୋଇଗଲେ ॥୨୬॥

ଭଗବାନ୍ ଚାଲିଯିବା ପରେ ବ୍ରହ୍ମା ଓ ଶିବ ତାଙ୍କୁ ନମସ୍କାର କରି ନିଜ ନିଜ ଧାମକୁ ପ୍ରସ୍ଥାନ କଲେ । ଦେବତାମାନେ ଯାଇ ବଳିରାଜାଙ୍କ ପାଖରେ ଉପସ୍ଥିତ ହେଲେ ॥୨୭॥ କୌଣସି ଅସ୍ତ୍ରଶସ୍ତ୍ର ନ ଥାଇ ଦେବତାମାନେ ଆସୁଥିବାର ଦେଖି ଦୈତ୍ୟ ସେନାପତିମାନଙ୍କ ମନରେ ସନ୍ଦେହ ହେଲା । ସେମାନେ ତାଙ୍କୁ ହତ୍ୟା କରିବାକୁ ଉଦ୍ୟତ ହେଲେ । ମାତ୍ର ବଳିରାଜା ପୁଣ୍ୟଶ୍ଳୋକ ଥିଲେ । କେତେବେଳେ ସନ୍ଧି ଓ କେତେବେଳେ ଯୁଦ୍ଧ କରାଯିବ, ସେ ବିଷୟ ସେ ଭଲଭାବରେ ଜାଣିଥିଲେ । ତେଣୁ ସେପରି କରିବାକୁ ସେ ଅସୁରମାନଙ୍କୁ ନିଷେଧ କଲେ ॥୨୮॥ ତ୍ରିଭୁବନବିଜୟୀ ବଳିରାଜା ସମସ୍ତ ଶୋଭା ଓ ସମ୍ପଦର ଅଧୀଶ୍ୱର ଥିଲେ ।

ଅସୁରସେନାଦ୍ୱାରା ସେ ସୁରକ୍ଷିତ ଥିଲେ । ଦେବତାମାନେ ରାଜସିଂହାସନରେ ବସିଥିବା ବଳିଙ୍କ ପାଖରେ ପହଞ୍ଚିଲେ ॥୨୯॥ ଭଗବାନ ପୁରୁଷୋତ୍ତମ ଯେପରି ଶିକ୍ଷା ଦେଇଥିଲେ, ତଦନୁଯାୟୀ ମହାମନା ଇନ୍ଦ୍ର ଅସୁରମାନଙ୍କୁ ସାନ୍ତ୍ୱନା ଦେଇ ସମସ୍ତ କଥା କହିଗଲେ ॥୩୦॥ ଇନ୍ଦ୍ର ଯାହା ସବୁ କହିଲେ, ତାହା ଦୈତ୍ୟରାଜ ବଳିଙ୍କୁ ଏବଂ ସେଠାରେ ଉପସ୍ଥିତ ଶମ୍ବର, ଅରିଷ୍ଟନେମି ଆଦି ସେନାପତିଙ୍କୁ ଓ ତ୍ରିପୁରବାସୀ ଦୈତ୍ୟମାନଙ୍କୁ ବେଶ୍ ରୁଚିକର ବୋଧହେଲା ॥୩୧॥ ମହାରାଜ ପରିକ୍ଷିତ, ଦେବତା ଓ ଅସୁରମାନଙ୍କ ମଧ୍ୟରେ ସୌହାର୍ଦ୍ଦ ପ୍ରତିଷ୍ଠିତ ହେଲା ଏବଂ ସେମାନେ ପ୍ରତିଜ୍ଞା କଲେ ଯେ ଅମୃତ ମନ୍ଥନପାଇଁ ସବିଶେଷ ଯତ୍ନବାନ୍ ହେବେ ॥୩୨॥ ପରିଘପରି ବଳଶାଳୀ ବାହୁମାନଙ୍କଦ୍ୱାରା ମନ୍ଦର ପର୍ବତକୁ ସେମାନେ ଉପାଡ଼ି ପକାଇଲେ ଓ ସିଂହଗର୍ଜନ କରି ସମୁଦ୍ର ଆଡକୁ ଧାବମାନ ହେଲେ ॥୩୩॥ ମନ୍ଦର ପର୍ବତକୁ ସିନା ଉପାଡ଼ି ଦେଲେ, କିନ୍ତୁ ଇନ୍ଦ୍ର ଓ ବଳିଙ୍କ ସମେତ ଦେବତା ଓ ଅସୁରମାନେ ଏହାକୁ ବେଶୀ ଦୂର ନେଇପାରିଲେ ନାହିଁ ଏବଂ ରାସ୍ତାରେ ପକାଇଦେଲେ ॥୩୪॥

ଦେବତା ଓ ଅସୁରଙ୍କର ହାତ, କାନ୍ଧ ଓ ଅଣ୍ଟା ସବୁ ଭାଙ୍ଗିଗଲା ଏବଂ ମନ ମଧ୍ୟ ଭାଙ୍ଗିଗଲା । ସେମାନଙ୍କର ଏହି ଅବସ୍ଥା ଦେଖି ଗରୁଡ଼ ପିଠିରେ ବସିଥିବା ଭଗବାନ ବିଷ୍ଣୁ ସେଠାରେ ଆବିର୍ଭୂତ ହେଲେ । ପର୍ବତ ପଡ଼ିବା ଫଳରେ ଯେଉଁ ଦେବତା ଓ ଅସୁରମାନେ ଚାପି ହୋଇ ଯାଇଥିଲେ, ଭଗବାନ ତାଙ୍କ ଅମୃତ ଦୃଷ୍ଟିଦ୍ୱାରା ସେମାନଙ୍କୁ ଜିଆଇ ଦେଲେ ଏବଂ ସେମାନଙ୍କ ଦେହରେ କୌଣସି କ୍ଷତଚିହ୍ନ ରହିଲା ନାହିଁ ॥୩୫-୩୭॥ ଭଗବାନ୍ ଗୋଟିଏ ହାତରେ ଅତି ସହଜରେ ମନ୍ଦର ପର୍ବତକୁ ଉଠାଇ ନେଇ ଗରୁଡ଼ଙ୍କ ପିଠିରେ ରଖିଦେଇ ନିଜେ ଯାଇ ବସିଗଲେ ଏବଂ ଦେବତା ଓ ଅସୁରମାନଙ୍କ ଗହଣରେ ସମୁଦ୍ର କୂଳକୁ ଯାତ୍ରା କଲେ ॥୩୮॥ ପକ୍ଷିରାଜ ଗରୁଡ଼ ସମୁଦ୍ର କୂଳରେ ପହଞ୍ଚି ନିଜ ପିଠିରୁ ପର୍ବତକୁ ଓହ୍ଲାଇଦେଲେ ଏବଂ ଭଗବାନଙ୍କଠାରୁ ବିଦାୟ ନେଇ ଚାଲିଗଲେ ॥୩୯॥

## ସପ୍ତମ ଅଧ୍ୟାୟ

# ସମୁଦ୍ରମନ୍ଥନ ଓ ଶିବଙ୍କର ବିଷପାନ

ଶ୍ରୀ ଶୁକଦେବ କହିଲେ, କୁରୁଶ୍ରେଷ୍ଠ, 'ସମୁଦ୍ରମନ୍ଥନରୁ ଯେଉଁ ଅମୃତ ବାହାରିବ, ସେଥିରେ ତୁମର ଭାଗ ରହିବ' ବୋଲି ବାସୁକିଙ୍କୁ ବଚନ ଦେଇ ଦେବତା ଓ ଅସୁରମାନେ ତାଙ୍କୁ ମନ୍ଦର ପର୍ବତର ବନ୍ଧନରଜ୍ଜୁ କଲେ ଏବଂ ଅତ୍ୟନ୍ତ ଆନନ୍ଦ ଉତ୍ସାହରେ ଅମୃତପାଇଁ ସମୁଦ୍ର ମନ୍ଥନ କରିବାକୁ ଆରମ୍ଭ କଲେ ॥୧॥ ଭଗବାନ ଶ୍ରୀହରି ବାସୁକିଙ୍କର ମୁଣ୍ଡଆଡୁ ଧରିବାରୁ ଦେବତାମାନେ ମଧ୍ୟ ମୁଣ୍ଡଆଡୁ ଧରିବାକୁ ଗଲେ । ଦୈତ୍ୟ ସେନାପତିମାନଙ୍କର ଏହା ପସନ୍ଦ ହେଲା ନାହିଁ ॥୨॥ ସେମାନେ କହିଲେ, ସାପର ଲାଂଜଟା ଅଶୁଭ, ଆମେ ତାହା ଧରିବୁ ନାହିଁ । ଆମେ ଜନ୍ମ ଓ କର୍ମଦ୍ୱାରା ବିଖ୍ୟାତ । ବେଦ ଓ ଶାସ୍ତ୍ରମାନଙ୍କୁ ଆମେ ବିଧିପୂର୍ବକ ଅଧ୍ୟୟନ କରିଛୁ । ଆମେ ଦେବତାମାନଙ୍କଠାରୁ କୌଣସି ଗୁଣରେ କମ୍ ନୋହୁ ॥୩॥ ଏହା କହି ଦୈତ୍ୟମାନେ ତୂନୀ ହୋଇ ଠିଆହେଲେ । ତାଙ୍କୁ ଦେଖି ଭଗବାନ ପୁରୁଷୋତ୍ତମ ଅଳ୍ପ ହସି ସାପର ମୁହଁପଟ ଛାଡ଼ିଦେଲେ ଏବଂ ଦେବତାମାନଙ୍କ ସହିତ ଲାଞ୍ଜପଟକୁ ଧରିଲେ ॥୪॥ ଏହିପରି ମନ୍ଥନରଜ୍ଜୁ ଧରିବାରେ ନିଜ ନିଜ ସ୍ଥାନ ସ୍ଥିର କରି ଦେବତା ଓ ଅସୁରମାନେ ଅମୃତ ଲାଭପାଇଁ ଅତିଶୟ ଯତ୍ନର ସହିତ ସମୁଦ୍ରମନ୍ଥନରେ ଲାଗିଗଲେ ॥୫॥ ପରିକ୍ଷିତ, ବଳବାନ୍ ଦେବଦାନବମାନେ ମନ୍ଦରପର୍ବତକୁ ଧରି ସମୁଦ୍ରକୁ ମନ୍ଥନ କରିବାବେଳେ ପର୍ବତର କୌଣସି ଆଧାର ନ ଥିବାରୁ ତାହା ସମୁଦ୍ରଜଳରେ ବୁଡ଼ିବାକୁ ଲାଗିଲା ॥୬॥ ଦେବ ଓ ଦାନବମାନେ ନିଜର ପୁରୁଷକାରପାଇଁ ଗର୍ବ କରୁଥିଲେ । କିନ୍ତୁ ଅତି ବଳବାନ୍ ଦୈବଦ୍ୱାରା ସେମାନଙ୍କ ପୁରୁଷକାରର

ମୂଲ୍ୟ ରହିଲା ନାହିଁ । ତାଙ୍କ ମୁଖଶ୍ରୀ ମଳିନ ଓ ମନ ବିଷଣ୍ଣ ହୋଇଗଲା ॥୭॥ ସତ୍ୟସଂକଳ୍ପ ଭଗବାନ ଦେଖିଲେ ଯେ, ମହା ବିଘ୍ନ ଉପସ୍ଥିତ । ତାଙ୍କ ଶକ୍ତିର ସୀମା ନ ଥିଲା । ସେ ଏକ ବିଶାଳ ବିଚିତ୍ର କୂର୍ମ ଶରୀର ଧାରଣ କରି ଜଳରେ ପ୍ରବେଶ କଲେ ଓ ମନ୍ଦର ଗିରିକୁ ଉପରକୁ ଉଠାଇ ଧରିଲେ ॥୮॥ ଜଳମଧ୍ୟରୁ ମନ୍ଦର ପର୍ବତ ଉଠିଆସିବାରୁ ଦେବତା ଓ ଅସୁରମାନେ ପୁଣି ମନ୍ଥନ କରିବା ଆରମ୍ଭ କରିଦେଲେ । ଭଗବାନ ବିଷ୍ଣୁ ଏକ ବିଶାଳ ଦ୍ୱୀପପରି ଲକ୍ଷେ ଯୋଜନ ବିସ୍ତୃତ ତାଙ୍କ ପିଠିଦ୍ୱାରା ମନ୍ଦର ପର୍ବତକୁ ଧାରଣ କଲେ ॥୯॥ ପରିକ୍ଷିତ, ଦେବ ଓ ଦାନବଙ୍କ ଭୁଜବୀର୍ଯ୍ୟରେ କମ୍ପିତ ଏହି ମନ୍ଦରପର୍ବତ କୂର୍ମଙ୍କର ପିଠିଉପରେ ଜୋର୍‌ରେ ଘୂରୁଥିଲା । କିନ୍ତୁ ଏଥିରେ ପିଠି କୁଣ୍ଡେଇ ହେବା ଛଡ଼ା ଭଗବାନଙ୍କୁ ଆଉ କିଛି ଲାଗିଲା ନାହିଁ ॥୧୦॥ ଭଗବାନ ବିଷ୍ଣୁ ଦୈତ୍ୟରୂପେ ଦୈତ୍ୟମାନଙ୍କ ମଧ୍ୟରେ ଓ ଦେବତାରୂପେ ଦେବତାମାନଙ୍କ ମଧ୍ୟରେ ପ୍ରବେଶ କରି ସେମାନଙ୍କର ବଳବୀର୍ଯ୍ୟ ବଢ଼ାଇ ଦେଲେ ଏବଂ ତାମସ ଶକ୍ତି ରୂପରେ ବାସୁକିଙ୍କ ମଧ୍ୟରେ ପ୍ରବେଶ କରି ତାଙ୍କୁ ମଧ୍ୟ ବଳୀୟାନ୍ କଲେ । ପୁଣି ପର୍ବତ ଉପରେ ଅନ୍ୟ ଏକ ପର୍ବତ ପରି ହୋଇ ସହସ୍ରବାହୁଦ୍ୱାରା ତାକୁ ଦବାଇ ରଖିଲେ । ଏହି ସମୟରେ ଆକାଶରୁ ବ୍ରହ୍ମା, ଶିବ, ଇନ୍ଦ୍ର ଆଦି ଦେବତାମାନେ ତାଙ୍କୁ ସ୍ତୁତି କରି ତାଙ୍କ ଉପରେ ପୁଷ୍ପ ବୃଷ୍ଟି କରିବାକୁ ଲାଗିଲେ । ଉପରେ, ତଳେ ପର୍ବତରେ ଦାର୍ଢ୍ୟ ରୂପେ, ଦେବ, ଦାନବ ଓ ବାସୁକିଙ୍କ ମଧ୍ୟରେ ପ୍ରବେଶ କରି ଭଗବାନ ଶ୍ରୀହରି ସମସ୍ତଙ୍କର ବଳ ଓ ଉତ୍ସାହ ବଢ଼ାଇ ଦେଲେ । ଦେବ ଓ ଦୈତ୍ୟମାନେ ମହାଗିରି ମନ୍ଦର ପର୍ବତଦ୍ୱାରା ଏପରି ବେଗରେ ସମୁଦ୍ର ମନ୍ଥନ କରିବାକୁ ଲାଗିଲେ ଯେ କୁମ୍ଭୀର, ମଗର ଆଦି ଜଳଚର ଜନ୍ତୁମାନେ ଅତିଶୟ ବିକ୍ଷୁବ୍ଧ ହୋଇପଡ଼ିଲେ ॥୧୩॥ ଅହୀନ୍ଦ୍ର ବାସୁକିଙ୍କର ସହସ୍ର ଆଖିରୁ ମୁଖରୁ ଓ ନିଃଶ୍ୱାସରୁ ଯେଉଁ ନିଆଁ ଓ ଧୂଆଁ ଜାତହେଲା, ସେଥିରେ ହତବୀର୍ଯ୍ୟ ପୌଲୋମ, କାଳକେୟ, ବଳି ଓ ଇଲ୍ୱଳ ଆଦି ଅସୁରମାନେ ଦାବାଗ୍ନିଦଗ୍ଧ ବୃକ୍ଷମାନଙ୍କପରି ଦେଖାଗଲେ ॥୧୪॥ ଦେବତାମାନେ ମଧ୍ୟ ରକ୍ଷା ପାଇଲେ ନାହିଁ । ବାସୁକିଙ୍କର ନିଃଶ୍ୱାସର ଧୂଆଁରେ ସେମାନଙ୍କର ତେଜ ମଳିନ ପଡ଼ିଗଲା । ସେମାନଙ୍କର ମୁଖମଣ୍ଡଳ ଓ ସେମାନେ ଯେଉଁ ବସ୍ତ୍ର, ମାଳା, କବଚ, ଅଳଙ୍କାରାଦି ପିନ୍ଧିଥିଲେ ତାହା ବିବର୍ଣ୍ଣ ହୋଇଗଲା । ଭଗବାନ ମେଘଦ୍ୱାରା ବର୍ଷା କରାଇ ଏବଂ ବାୟୁଦ୍ୱାରା ସମୁଦ୍ର ଲହରୀରୁ ଜଳକଣା ସୃଷ୍ଟି କରାଇ ତାର ଶୀତଳ ସ୍ପର୍ଶରେ ସେମାନଙ୍କୁ ସୁସ୍ଥ କରାଇଲେ ॥୧୫॥ ମହାବଳୀ ଦେବତା ଓ ଅସୁରମାନେ ଯେତେ ସମୁଦ୍ରମନ୍ଥନ କଲେ ମଧ୍ୟ ଅମୃତ ବାହାରିଲା ନାହିଁ । ତେଣୁ ଭଗବାନ୍ ଅଜିତ ସ୍ୱୟଂ ସମୁଦ୍ର ମନ୍ଥନ କରିବାକୁ ଲାଗିଲେ ॥୧୬॥ ଭଗବାନଙ୍କର ମେଘଶ୍ୟାମ ଶରୀରରେ ସ୍ୱର୍ଣ୍ଣରଙ୍ଗର ପୀତାମ୍ବର, କାନରେ ବିଜୁଳିପରି ଝଟକୁଥିବା କୁଣ୍ଡଳ, ଶିରରେ ଆଲୁଳାୟିତ କେଶରାଶି, ଚକ୍ଷୁରେ ଅରୁଣିମା ଓ ଗଳାରେ ବନମାଳା ଶୋଭା ପାଉଥିଲା । ଜଗତ୍‌ର ଅଭୟଦାୟକ ତାଙ୍କ ବିଶ୍ୱବିଜୟୀ ଭୁଜଦଣ୍ଡରେ ବାସୁକିକୁ ଏବଂ କୂର୍ମରୂପରେ ପର୍ବତକୁ ଧାରଣ କରି ଭଗବାନ ଯେତେବେଳେ ମନ୍ଦରପର୍ବତରୂପକ ମନ୍ଥନଦଣ୍ଡଦ୍ୱାରା ସମୁଦ୍ରମନ୍ଥନ କରିବାକୁ ଲାଗିଲେ, ସେତେବେଳେ ସେ ଅନ୍ୟ ଏକ ପ୍ରତିଦ୍ୱନ୍ଦ୍ୱୀ ପର୍ବତ ପରି ଶୋଭା ପାଇଲେ ॥୧୭॥ ଏହି ମନ୍ଥନଫଳରେ ମତ୍ସ୍ୟ, ମଗର, ସର୍ପ ଓ କଚ୍ଛପମାନେ ଭୟଭୀତ ହୋଇ ଉପରକୁ ଉଠିଆସିଲେ । ତିମି, ତିମିଙ୍ଗିଳ, ସମୁଦ୍ରହସ୍ତୀ ଓ କୁମ୍ଭୀର ଆଦି ଭୟରେ ଆକୁଳ ହେଲେ । ଏହି ସମୟରେ ସମୁଦ୍ରରୁ ହଳାହଳ ନାମକ ଏକ ଉତ୍କଟ ବିଷ ବାହାରିଲା ॥୧୮॥ ଏହି ଉତ୍କଟ ବିଷ ଉପର, ତଳ ଚତୁର୍ଦ୍ଦିଗକୁ ବ୍ୟାପିଗଲା । ଏଥିରୁ ରକ୍ଷା ପାଇବାପାଇଁ କୌଣସି ଉପାୟ ଦେଖାଗଲା ନାହିଁ । ସମସ୍ତ ପ୍ରଜା ଓ ପ୍ରଜାପତି ଭଗବାନ ସଦାଶିବଙ୍କ ପାଖରେ ଶରଣ ପଶିଲେ ॥୧୯॥

ଏହି ସମୟରେ ଭଗବାନ ଶଙ୍କର ସତୀଙ୍କ ସହିତ କୈଳାସ ପର୍ବତରେ ରହୁଥିଲେ । ପ୍ରଧାନ ପ୍ରଧାନ ଋଷିମାନେ ତାଙ୍କୁ ସେବା କରୁଥିଲେ । ସେ ତ୍ରୈଲୋକ୍ୟର ମଙ୍ଗଳ ଓ ମୋକ୍ଷପାଇଁ ତପସ୍ୟାରତ ଥିଲେ । ପ୍ରଜାପତିମାନେ ତାଙ୍କୁ ଦର୍ଶନ କରି ସ୍ତୁତିପୂର୍ବକ ପ୍ରଣାମ କଲେ ॥୨୦॥ ପ୍ରଜାପତିମାନେ ସ୍ତୁତିକରି କହିଲେ, ହେ ଦେବଦେବ ମହାଦେବ, ଆପଣ ସମସ୍ତ ପ୍ରାଣୀଙ୍କର ଆତ୍ମା ଏବଂ ସେମାନଙ୍କୁ ଜୀବନ ଦାନ କରିଛନ୍ତି । ଆମେମାନେ ଆପଣଙ୍କ ଶରଣାପନ୍ନ । ଏହି ତ୍ରିଭୁବନକୁ ଦହନ କରୁଥିବା

ବିଷଜ୍ୱାଳାରୁ ଆପଣ ଆମକୁ ରକ୍ଷା କରନ୍ତୁ ॥୨୧॥ ଆପଣ ସର୍ବଶକ୍ତିମାନ୍ । ସମସ୍ତ ଜଗତର ବନ୍ଧନ ଓ ମୁକ୍ତିର କାରଣ । ବିବେକୀ ପୁରୁଷମାନେ ଆପଣଙ୍କୁ ଅର୍ଚ୍ଚନା କରନ୍ତି । କାରଣ ଆପଣ ଶରଣାଗତର ଆର୍ତ୍ତି ହରଣ କରନ୍ତି । ଆପଣ ଜଗତର ଗୁରୁ ॥୨୨॥ ବିଭୁ, ଆପଣଙ୍କ ଗୁଣମୟୀ ମାୟାଶକ୍ତିଦ୍ୱାରା ଆପଣ ଏହି ଜଗତ୍‌ର ସୃଷ୍ଟି, ସ୍ଥିତି ଓ ଲୟର କାରଣ ହୁଅନ୍ତି । ଆପଣ ସ୍ୱତଃସିଦ୍ଧ, ମହାମହିମ । ବ୍ରହ୍ମା, ବିଷ୍ଣୁ ଓ ଶିବ ନାମରେ ଆପଣ କଥିତ ହୁଅନ୍ତି ॥୨୩॥ ଆପଣ ସତ୍ ଓ ଅସତ୍ ସ୍ରଷ୍ଟା । ଅର୍ଥାତ୍ ଦେବତା, ମନୁଷ୍ୟ ଓ ପଶୁପକ୍ଷୀମାନଙ୍କୁ ସୃଷ୍ଟି କରିଛନ୍ତି । ଆପଣ ପରମ ରହସ୍ୟମୟ ବ୍ରହ୍ମ ଏବଂ ନିଜର ବିଭିନ୍ନ ଶକ୍ତିଦ୍ୱାରା ଆବିର୍ଭୂତ ହୁଅନ୍ତି; ଆପଣ ଆତ୍ମାର ସ୍ୱରୂପ ଓ ଜଗତର ଈଶ୍ୱର ॥୨୪॥ ବେଦମାନେ ଆପଣଙ୍କଠାରୁ ପ୍ରକଟିତ ହୋଇଛନ୍ତି । ଆପଣ ଏହି ଜଗତ୍‌ର ଆଦିମୂଳ, ଜଗତର ଆତ୍ମା । ଆପଣ ମହତ୍ତତ୍ତ୍ୱ, ତ୍ରିବିଧ ଅହଙ୍କାର ଏବଂ ପ୍ରାଣ, ଇନ୍ଦ୍ରିୟ, ପଞ୍ଚମହାଭୂତ ଓ ଶବ୍ଦାଦି ବିଷୟମାନଙ୍କର ଗୁଣ ଏବଂ ଜୀବର ସ୍ୱଭାବସ୍ୱରୂପ । ଆପଣ କାଳ, ସଂକଳ୍ପ, ସତ୍ୟ, ଋତ ଏବଂ ଧର୍ମ । ଆପଣ ଓଁକାରସ୍ୱରୂପ । ତ୍ରିଗୁଣାତ୍ମକ ପ୍ରକୃତି ଆପଣଙ୍କୁ ଆଶ୍ରୟ କରିଥାଏ ବୋଲି ସାଧୁମାନେ କୀର୍ତ୍ତନ କରନ୍ତି ॥୨୫॥ ହେ ତ୍ରିଲୋକର ମଙ୍ଗଳଦାତା ! ପଣ୍ଡିତମାନେ ସର୍ବଦେବମୟ ଅଗ୍ନିକୁ ଆପଣଙ୍କର ମୁଖ, ପୃଥିବୀକୁ ପାଦପଦ୍ମ, କାଳକୁ ଗତି ଏବଂ ଦିଗ୍‌ବିଦିଗମାନଙ୍କୁ ଆପଣଙ୍କର କର୍ଣ୍ଣ ବୋଲି ଜାଣନ୍ତି । ଆପଣ ସମସ୍ତ ଦେବତାଙ୍କର ସ୍ୱରୂପ । ସେମାନେ ବରୁଣଙ୍କୁ ଆପଣଙ୍କର ରସନାବୋଲି କହିଥାନ୍ତି ॥୨୬॥ ଭଗବାନ୍, ଆକାଶ ଆପଣଙ୍କର ନାଭି, ବାୟୁ ଶ୍ୱାସ, ସୂର୍ଯ୍ୟ ଚକ୍ଷୁ, ଜଳ ବୀର୍ଯ୍ୟ, ଉଚ୍ଚ-ନୀଚ ସମସ୍ତ ଜୀବଙ୍କର ଆଶ୍ରୟ ଆପଣଙ୍କର ଅହଙ୍କାର; ଚନ୍ଦ୍ରମା ମନ ଓ ସ୍ୱର୍ଗ ଶିର ॥୨୭॥

ବେଦମୂର୍ତ୍ତି ଭଗବାନ୍, ସମୁଦ୍ର ଆପଣଙ୍କର ଉଦର, ପର୍ବତମାନେ ଅସ୍ଥି; ସମସ୍ତପ୍ରକାର ଓଷଧି ବୃକ୍ଷ, ଲତା ଓ ଘାସ ଆପଣଙ୍କ ରୋମାବଳୀ; ଗାୟତ୍ରୀ ଆଦି ସପ୍ତଛନ୍ଦ ଆପଣଙ୍କର ସପ୍ତଧାତୁ ଓ ସମସ୍ତ ଧର୍ମ ଆପଣଙ୍କର ହୃଦୟ ॥୨୮॥ ପାଞ୍ଚ ଉପନିଷଦ୍ (ତତ୍‌ପୁରୁଷ, ଅଘୋର, ସଦ୍ୟୋଜାତ, ବାମଦେବ ଓ ଈଶାନରୂପକ ମନ୍ତ୍ରମାନେ) ହେଉଛନ୍ତି ଆପଣଙ୍କର ପାଞ୍ଚମୁଖ । ଏହି ମୁଖମାନଙ୍କରୁ ଅଠତିରିଶଟି କଳାତ୍ମକ ମନ୍ତ୍ର ଉତ୍ପନ୍ନ ହୋଇଛନ୍ତି । ଯେଉଁ ସ୍ୱୟଂଜ୍ୟୋତିରୂପ ପରମାତ୍ମତତ୍ତ୍ୱ ଆପଣଙ୍କର ଅବସ୍ଥିତି, ତାହାକୁ 'ଶିବ' ଆଖ୍ୟା ଦିଆଯାଇଚି ॥୨୯॥ ଦମ୍ଭ ଲୋଭ ଆଦି ଅଧର୍ମର ତରଙ୍ଗମାଳାରେ ଆପଣଙ୍କର ଛାୟା ଥାଏ । ସତ୍ତ୍ୱ, ରଜ ଓ ତମ ହେଉଛନ୍ତି ଆପଣଙ୍କର ତିନିନେତ୍ର; ଆପଣ ସାଂଖ୍ୟଶାସ୍ତ୍ରର କର୍ତ୍ତା; ହେ ଦେବ, ଗାୟତ୍ରୀ ଆଦି ଛନ୍ଦୋମୟ ସନାତନ ବେଦ ହେଉଛି ଆପଣଙ୍କର ଦୃଷ୍ଟି ॥୩୦॥ ହେ ଗିରିତ୍ର, ଯେଉଁଠି ସତ୍ତ୍ୱ, ରଜ ଓ ତମ ଗୁଣ ନାହିଁ, ଯାହା ଭେଦରହିତ, ବ୍ରହ୍ମସ୍ୱରୂପ, ଆପଣଙ୍କର ସେହି ପରଂଜ୍ୟୋତି ସମସ୍ତ ଲୋକପାଳଙ୍କୁ ତଥା ବ୍ରହ୍ମା, ବିଷ୍ଣୁ, ଇନ୍ଦ୍ର ଓ ଆମ୍ଭମାନଙ୍କୁ ଅଗୋଚର ॥୩୧॥ କାମଦେବଙ୍କୁ, ଦକ୍ଷଙ୍କର ଯଜ୍ଞକୁ, ତ୍ରିପୁରାସୁରଙ୍କୁ, ଏବଂ କାଳକୂଟ ବିଷ ଆଦି ଅନେକ ଜୀବଦ୍ରୋହୀଙ୍କୁ ଆପଣ ନଷ୍ଟ କରି ଦେଇଛନ୍ତି । ଏଥିପାଇଁ ଆପଣଙ୍କୁ ଆମେ ପ୍ରଶଂସା କରୁ ନାହୁଁ । କାରଣ ପ୍ରଳୟସମୟରେ ଆପଣଙ୍କ ନେତ୍ରରୁ ନିର୍ଗତ ଅଗ୍ନିଶିଖାଦ୍ୱାରା ଆପଣ ନିଜସୃଷ୍ଟ ଏହି ବିଶ୍ୱକୁ ଭସ୍ମ କରିଦିଅନ୍ତି ଏବଂ କିଛି ନ ଜାଣିଲା ପରି ଧ୍ୟାନମଗ୍ନ ହୁଅନ୍ତି ॥୩୨॥ ଆତ୍ମାରାମ ଯୋଗୀମାନେ ଓ ବିଶ୍ୱର ହିତୈଷୀ ପୁରୁଷମାନେ ଆପଣଙ୍କର ପାଦପଦ୍ମକୁ ତାଙ୍କ ହୃଦୟରେ ଧ୍ୟାନ କରିଥାଆନ୍ତି । ଆପଣ ଶ୍ମଶାନରେ ବାସ କରି କଠୋର ତପସ୍ୟା କରୁଥିଲେ ମଧ୍ୟ ଉମାଙ୍କ ସହିତ ଏକତ୍ର ଅବସ୍ଥାନ କରନ୍ତି । ଏହି କାରଣରୁ ଯେଉଁମାନେ ଆପଣଙ୍କୁ କାମୁକ ଏବଂ ଶ୍ମଶାନବାସପାଇଁ ଉଗ୍ର ଓ ପରୁଷସ୍ୱଭାବ ବୋଲି ନିନ୍ଦା କରନ୍ତି, ସେଇ ନିର୍ଲ୍ଲଜ୍ଜ ମୂର୍ଖମାନେ ଆପଣଙ୍କର ଲୀଳାକୁ ବୁଝିପାରନ୍ତି ନାହିଁ ॥୩୩॥ ଆପଣ ସତ୍ ଏବଂ ଅସତ୍‌ରୁ ଅତୀତ, ପରାତ୍ପର ସର୍ବବ୍ୟାପୀ ପୁରୁଷ । ବ୍ରହ୍ମାଦି ଦେବଗଣ ଆପଣଙ୍କର ସ୍ୱରୂପତତ୍ତ୍ୱ ନିର୍ଣ୍ଣୟ କରିପାରନ୍ତି ନାହିଁ । ଆମେ ବ୍ରହ୍ମାଙ୍କ ସୃଷ୍ଟିରେ ଅତିଶୟ ଅର୍ବାଚୀନ ହୋଇଥିବାଯୋଗୁଁ ଆପଣଙ୍କୁ ସ୍ତବ କରିବାକୁ କିପରି ବା ସମର୍ଥ ହୋଇପାରିବୁ ? ତଥାପି ନିଜର ଶକ୍ତି ଅନୁସାରେ ସ୍ତବ କଲୁ ॥୩୪॥ ମହେଶ୍ୱର, ଆପଣଙ୍କର ଏହି ଦୃଶ୍ୟମାନ ରୂପଟିକୁ ଆମେ ଦେଖିପାରୁଛୁ । କିନ୍ତୁ ସେହି ପରମ ସ୍ୱରୂପକୁ ଆମେ ଦେଖିପାରୁ ନାହୁଁ । ଆପଣଙ୍କର ଲୀଳା ଅବ୍ୟକ୍ତ । ଲୋକଙ୍କର ମଙ୍ଗଳପାଇଁ ଆପଣ ବ୍ୟକ୍ତ ରୂପରେ ରହିଛନ୍ତି ॥୩୫॥

ଶ୍ରୀ ଶୁକଦେବ କହିଲେ, ପରିକ୍ଷିତ , ପ୍ରଜାମାନଙ୍କର ଏହିପରି ସଙ୍କଟ ଦେଖି ସମସ୍ତ ଜୀବଙ୍କର ବନ୍ଧୁ ଭଗବାନ ମହେଶ୍ୱର କୃପାପରବଶ ହୋଇ ନିଜର ପ୍ରିୟା ସତୀଙ୍କୁ ଏହିପରି କହିଲେ ॥୩୬॥ ଭବାନୀ, ଦେଖ, ସମୁଦ୍ରମନ୍ଥନରୁ ଜାତ କାଳକୂଟ ବିଷର ପ୍ରଭାବରେ ପ୍ରଜାମାନଙ୍କର କିପରି ବିପଦ ଉପସ୍ଥିତ ହୋଇଛି । ଏ ସମସ୍ତ ପ୍ରଜା ପ୍ରାଣରକ୍ଷାପାଇଁ କାତର ହେଉଛନ୍ତି । ଏମାନଙ୍କୁ ଅଭୟ ଦାନ କରିବା ମୋର କର୍ତ୍ତବ୍ୟ । କାରଣ ଦୀନଜନଙ୍କୁ ପାଳନ କରିବା ସମର୍ଥ ବ୍ୟକ୍ତିର କର୍ତ୍ତବ୍ୟ ॥୩୭-୩୮॥ ପରମାତ୍ମାଙ୍କ ମାୟାଦ୍ୱାରା ମୁଗ୍ଧ ଓ ପରସ୍ପର ଶତ୍ରୁତାରେ ନିରତ ଦୀନ ଜୀବମାନଙ୍କୁ ସତ୍‌ପୁରୁଷମାନେ ନିଜର କ୍ଷଣଭଙ୍ଗୁର ପ୍ରାଣ ଦେଇ ରକ୍ଷା କରିଥାଆନ୍ତି ॥୩୯॥ ଭଦ୍ରେ, ଏହିପରି କୃପାଳୁ ମନୁଷ୍ୟଙ୍କ ପ୍ରତି ସର୍ବାତ୍ମା ଶ୍ରୀହରି ପ୍ରସନ୍ନ ହୁଅନ୍ତି ଏବଂ ସେ ପ୍ରସନ୍ନ ହେଲେ ଚରାଚର ବିଶ୍ୱର ସହିତ ମୁଁ ମଧ୍ୟ ପ୍ରସନ୍ନ ହୁଏ । ତେଣୁ ମୁଁ ଏହି ବିଷକୁ ପାନ କରୁଛି । ମୋ ଦ୍ୱାରା ପ୍ରଜାମାନଙ୍କର ମଙ୍ଗଳ ସାଧିତ ହେବ ॥୪୦॥ ଶ୍ରୀ ଶୁକଦେବ କହିଲେ, ଭଗବାନ ବିଶ୍ୱଭାବନ ମହେଶ୍ୱର ଭବାନୀଙ୍କୁ ଏହିପରି କହି ବିଷପାନରେ ପ୍ରବୃତ୍ତ ହେଲେ । ଭବାନୀ ଶଙ୍କରଙ୍କ ପ୍ରଭାବ ଜାଣିଥିଲେ । ତେଣୁ ସେ ଏହି ବିଷପାନକୁ ଅନୁମୋଦନ କଲେ ॥୪୧॥ ପ୍ରାଣୀମାନଙ୍କପ୍ରତି ଦୟାର୍ଦ୍ର ଭଗବାନ ଶଙ୍କର ଚାରିଆଡ଼େ ବ୍ୟାପିଯାଇଥିବା ଏହି ଭୀଷଣ ହଳାହଳ ବିଷକୁ ନିଜର ପାପୁଲିକୁ ଉଠାଇଆଣି ପାନ କରିଗଲେ ॥୪୨॥ ଜଳର ମଳସ୍ୱରୂପ ଏହି ବିଷ ଭଗବାନ ଶଙ୍କରଙ୍କୁ ମଧ୍ୟ ପ୍ରଭାବିତ କଲା ଏବଂ ତାଙ୍କର କଣ୍ଠ ନୀଳବର୍ଣ୍ଣ ହୋଇଗଲା । କିନ୍ତୁ ଲୋକମଙ୍ଗଳକାରୀ ଲୋକନାଥଙ୍କପାଇଁ ତାହା ଭୂଷଣସ୍ୱରୂପ ହେଲା ॥୪୩॥ ଲୋକଙ୍କର ସନ୍ତାପରେ ସାଧୁମାନେ ସନ୍ତପ୍ତ ହୁଅନ୍ତି । ତାହା ହେଉଛି ସର୍ବାନ୍ତର୍ଯାମୀ ଭଗବାନଙ୍କର ଶ୍ରେଷ୍ଠ ଆରାଧନା ॥୪୪॥ ଦେବାଧିଦେବ ମହାଦେବ ସମସ୍ତଙ୍କର କାମନା ପୂର୍ଣ୍ଣ କରନ୍ତି । ତେଣୁ ବିଷପାନ ରୂପକ ତାଙ୍କର ଏହି ଅଦ୍ଭୁତକର୍ମ ବିଷୟ ଶ୍ରବଣ କରି ପ୍ରଜାଗଣ, ଦକ୍ଷକନ୍ୟା ସତୀ ଏବଂ ବ୍ରହ୍ମା, ବିଷ୍ଣୁ ପ୍ରଭୃତି ସମସ୍ତେ ତାଙ୍କୁ ପ୍ରଶଂସା କରିବାକୁ ଲାଗିଲେ ॥୪୫॥ ଯେତେବେଳେ ଭଗବାନ ଶିବ ବିଷପାନ କରୁଥିଲେ, ସେତେବେଳେ ତାଙ୍କ ପାପୁଲିରୁ କିଛି ବିଷ ପଡ଼ିଯାଇଥିଲା । ତାହା ବିଛା, ସାପ, କଙ୍କଡ଼ାବିଛା ଓ ବିଷାକ୍ତ ଓଷଧି (ବୃକ୍ଷଲତା)ମାନେ ଗ୍ରହଣ କରି ବିଷଯୁକ୍ତ ହୋଇଥିଲେ ॥୪୬॥

## ଅଷ୍ଟମ ଅଧ୍ୟାୟ

# ଅମୃତର ଉଦ୍‌ଭବ ଓ ଭଗବାନଙ୍କର ମୋହିନୀ ଅବତାର

ଶ୍ରୀ ଶୁକଦେବ କହିଲେ, ଏହିପରି ଭଗବାନ ବୃଷଧ୍ୱଜ ବିଷ ପାନ କରିବାରୁ ଦେବତା ଓ ଅସୁରମାନେ ଅତିଶୟ ଆନନ୍ଦିତ ହେଲେ । ସେମାନେ ଆହୁରି ଉତ୍ସାହରେ ସମୁଦ୍ରମନ୍ଥନ କରିବାକୁ ଲାଗିଲେ । ସେତେବେଳେ ସମୁଦ୍ରରୁ କାମଧେନୁ ସୁରଭିଙ୍କର ଆବିର୍ଭାବ ହେଲା ॥୧॥ ବ୍ରହ୍ମବାଦୀ ଋଷିମାନେ ବ୍ରହ୍ମଲୋକପ୍ରାପ୍ତିର ଯଜ୍ଞପାଇଁ ଘୃତାଦି ଲାଭ ନିମନ୍ତେ ସେଇ ଅଗ୍ନିହୋତ୍ରୀ କାମଧେନୁଙ୍କୁ ଗ୍ରହଣ କଲେ । ଏହାପରେ ଚନ୍ଦ୍ରଙ୍କ ପରି ଧବଳବର୍ଣ୍ଣ ଉଚ୍ଚୈଃଶ୍ରବା ଅଶ୍ୱ ଜନ୍ମ ହେଲା । ତାହାକୁ ନେବାପାଇଁ ଅସୁରରାଜ ବଳି ଇଚ୍ଛାପ୍ରକାଶ କଲେ । ଭଗବାନଙ୍କର ଉପଦେଶ ଅନୁଯାୟୀ ଇନ୍ଦ୍ର ସେଥିପାଇଁ ମନ ବଳାଇଲେ ନାହିଁ ॥୨-୩॥ ତା'ପରେ ହସ୍ତିଶ୍ରେଷ୍ଠ ଐରାବତ ବାହାରିଲେ । ତାଙ୍କ ଚାରୋଟି ଦନ୍ତର କାନ୍ତି ଶ୍ୱେତବର୍ଣ୍ଣ କୈଳାସ ପର୍ବତର ଶୋଭାକୁ ହରଣ କରୁଥିଲା ॥୪॥ ଏହାପରେ କୌସ୍ତୁଭ ନାମକ ପଦ୍ମରାଗ ମଣି ଉତ୍ପନ୍ନ ହେଲା । ଭଗବାନ ଶ୍ରୀହରି ନିଜ ବକ୍ଷର ଶୋଭାବର୍ଦ୍ଧନପାଇଁ ଏହି ମଣିକୁ ଇଚ୍ଛା କଲେ । ଏହାପରେ ସ୍ୱର୍ଗଲୋକର ଅଳଙ୍କାରସ୍ୱରୂପ ପାରିଜାତ ନାମକ କଳ୍ପବୃକ୍ଷର ଉଦ୍ଭବ ହେଲା । ପରିକ୍ଷିତ, ପୃଥିବୀରେ ଆପଣ ଯେପରି ଅଭିଳଷିତ ବସ୍ତୁ ଦାନ କରି ପ୍ରାର୍ଥୀମାନଙ୍କ ପ୍ରାର୍ଥନା ପୂର୍ଣ୍ଣ କରନ୍ତି, ସେହିପରି ଏହି ବୃକ୍ଷ ଯାଚକମାନଙ୍କର

ସମସ୍ତ କାମନା ପୂର୍ଣ୍ଣ କରେ ॥୫-୬॥ ଏହାପରେ ବାହାରିଲେ ଅପ୍‌ସରାମାନେ । ସୁନ୍ଦର ବସ୍ତ୍ର ଓ ବେକରେ ସୁନାର ହାର ପିନ୍ଧି ନିଜର ଲୀଳାମୟ ଗତି ଓ ଦୃଷ୍ଟିଦ୍ୱାରା ସେମାନେ ଦେବତାମାନଙ୍କୁ ଆନନ୍ଦ ପ୍ରଦାନ କଲେ ॥୭॥ ଏଥର ଆବିର୍ଭୂତ ହେଲେ ସ୍ୱୟଂ ଲକ୍ଷ୍ମୀଦେବୀ । ବିଜୁଳିର ଛଟାପରି ତାଙ୍କ ଶୋଭାରେ ଚତୁର୍ଦ୍ଦିଗ ଆଲୋକିତ ହୋଇଗଲା । ସେ ଥିଲେ ଏକାନ୍ତ ଭଗବତ୍‌ପରାୟଣା ॥୮॥ ତାଙ୍କ ରୂପ, ଯୌବନ, ଉଦାରତା ବର୍ଣ୍ଣ ଓ ମହିମାଦ୍ୱାରା ଦେବତା, ଅସୁର ଓ ମନୁଷ୍ୟ ସମସ୍ତଙ୍କର ଚିତ୍ତ ମୋହିତ ହୋଇଗଲା ଓ ସମସ୍ତେ ତାଙ୍କୁ ପାଇବାକୁ ଇଚ୍ଛା କଲେ ॥୯॥ ଇନ୍ଦ୍ର ନିଜେ ତାଙ୍କ ବସିବାପାଇଁ ଆପଣା ହାତରେ ଏକ ସୁନ୍ଦର ବିଚିତ୍ର ଆସନ ନେଇ ଆସିଲେ । ଶ୍ରେଷ୍ଠନଦୀମାନେ ତାଙ୍କ ଅଭିଷେକପାଇଁ ସ୍ୱର୍ଣ୍ଣଘଟରେ ପବିତ୍ର ଜଳ ନେଇ ଆସିଲେ ॥୧୦॥ ପୃଥିବୀ ତାଙ୍କ ଅଭିଷେକପାଇଁ ସମସ୍ତ ଔଷଧି ଦାନ କଲେ । ଗାଭୀମାନେ ପଞ୍ଚଗବ୍ୟ ଆଣି ପହଞ୍ଚାଇ ଦେଲେ ଏବଂ ବସନ୍ତ ଋତୁ ଚୈତ୍ର ଓ ବୈଶାଖ ମାସରେ ହେଉଥିବା ଫଳଫୁଲ ଆଦି ଦାନ କଲେ ॥୧୧॥ ଋଷିମାନେ ଶାସ୍ତ୍ରବିହିତ ଅଭିଷେକ ବିଧିର କଳ୍ପନା କଲେ । ଗନ୍ଧର୍ବମାନେ ମଙ୍ଗଳ ସଙ୍ଗୀତ ଓ ନଟୀମାନେ ନୃତ୍ୟ ଗାନ ଆରମ୍ଭ କରିଦେଲେ ॥୧୨॥ ମେଘମାନେ ମୂର୍ତ୍ତିମନ୍ତ ହୋଇ ମୃଦଙ୍ଗ, ଡମ୍ବରୁ, ଢୋଲ ଓ ଗୋମୁଖ ଆଦି ବାଦ୍ୟ ସହିତ ଶଙ୍ଖ, ବେଣୁ ଓ ବୀଣା ବାଦନ କରିବାରେ ଲାଗିଲେ ॥୧୩॥ ସତୀ ଲକ୍ଷ୍ମୀଦେବୀ ହସ୍ତରେ ପଦ୍ମପୁଷ୍ପ ଧାରଣ କରିଥିଲେ । ଐରାବତ ଆଦି ଦିଗ୍‌ଗଜମାନେ ବ୍ରାହ୍ମଣମାନଙ୍କ ଉଚ୍ଚାରିତ ବେଦମନ୍ତ୍ର ସହିତ ପୂର୍ଣ୍ଣକୁମ୍ଭ ଦ୍ୱାରା ତାଙ୍କ ଅଭିଷେକ କରିବାକୁ ଲାଗିଲେ ॥୧୪॥ ରତ୍ନାକର ସମୁଦ୍ର ଦୁଇଟି ପାଟଶାଢ଼ି ଆଣିଦେଲେ । ବରୁଣ ଆଣିଲେ ବୈଜୟନ୍ତୀ ମାଳା, ଯାହାର ମଧୁମୟ ସୁଗନ୍ଧରେ ମତ୍ତ ଭ୍ରମରମାନେ ଗୁଞ୍ଜନ କରୁଥିଲେ ॥୧୫॥ ପ୍ରଜାପତି ବିଶ୍ୱକର୍ମା ବିଭିନ୍ନ ପ୍ରକାର ଅଳଙ୍କାର, ସରସ୍ୱତୀ ହାର, ବ୍ରହ୍ମା ପଦ୍ମ ଏବଂ ନାଗମାନେ ତାଙ୍କୁ ଦୁଇଟି କୁଣ୍ଡଳ ଉପହାର ଦେଲେ ॥୧୬॥

ଏହାପରେ ବ୍ରାହ୍ମଣମାନେ ସ୍ୱସ୍ତ୍ୟୟନ ପାଠ କରିବା ପରେ ଲକ୍ଷ୍ମୀଦେବୀ ହାତରେ ଏକ ପଦ୍ମଫୁଲର ମାଳା ଧରି ଯାତ୍ରା କଲେ । ମାଳାପାଖରେ ତା'ର ସୁଗନ୍ଧରେ ଆମୋଦିତ ଭ୍ରମରମାନେ ଗୁଞ୍ଜନ କରୁଥିଲେ । ତାଙ୍କ ମନୋହର ଗଣ୍ଡଦେଶରେ କୁଣ୍ଡଳ ଶୋଭା ପାଉଥିଲା । ସେ ଲାଜରେ ମନ୍ଦମନ୍ଦ ହସୁଥିଲେ । ତାଙ୍କ ଅଣ୍ଟା ଥିଲା ବହୁତ ପତଳା । ସ୍ତନ ଦୁଇଟି ଉଚ୍ଚ ଓ ପରସ୍ପର ଲାଗି ରହିଥିଲା ଏବଂ ତା'ଉପରେ ଚନ୍ଦନ ଓ କୁଙ୍କୁମ ବୋଳା ହୋଇଥିଲା । ସେ ଚାଲିଲାବେଳେ ତାଙ୍କ ପାଦରେ ପିନ୍ଧିଥିବା ନୂପୁରର ମଧୁର ଧ୍ୱନି ଶୁଣାଯାଉଥିଲା । ଜଣାଯାଉଥିଲା ସତେଯେପରି ଏକ ସୁବର୍ଣ୍ଣର ଲତା ଚାଲିଚାଲି ଯାଉଛି ॥୧୭-୧୮॥ ଲକ୍ଷ୍ମୀଦେବୀ ନିଜପାଇଁ ଜଣେ ନିର୍ଦ୍ଦୋଷ ଓ ସମସ୍ତ ସଦ୍‌ଗୁଣର ଆଧାର ପୁରୁଷଙ୍କୁ ଖୋଜୁଥିଲେ, ଯାହାଙ୍କୁ ଆଶ୍ରୟ କରି ସେ ରହିପାରିବେ । କିନ୍ତୁ ଗନ୍ଧର୍ବ, ଯକ୍ଷ, ଅସୁର, ସିଦ୍ଧ, ଚାରଣ ଓ ଦେବତା ଆଦିଙ୍କ ମଧ୍ୟରେ ଏପରି କୌଣସି ପୁରୁଷ ତାଙ୍କୁ ମିଳିଲା ନାହିଁ ॥୧୯॥ କାରଣ କେହି ତପସ୍ୱୀ ଥିଲେ ତ କ୍ରୋଧକୁ ଜିଣି ପାରି ନ ଥିଲେ । କେହି ଜ୍ଞାନୀ ଥିଲେ, କିନ୍ତୁ ଅନାସକ୍ତ ନ ଥିଲେ । କେହି ହୁଏତ ମହାପୁରୁଷ ଥିଲେ, କିନ୍ତୁ କାମକୁ ଜିଣିପାରି ନ ଥିଲେ । ତେଣୁ ତାଙ୍କୁ ନିଜର ଈଶ୍ୱର ଭାବି କିପରି ଆଶ୍ରୟ ନିଆଯାଇ ପାରିବ ? ॥୨୦॥ କେହି ହୁଏତ ଧର୍ମାଚରଣ କରୁଥିଲେ, କିନ୍ତୁ ପ୍ରାଣୀମାନଙ୍କପ୍ରତି ତାଙ୍କର ପ୍ରେମଭାବ ନ ଥିଲା । ହୁଏତ କାହାର ତ୍ୟାଗ ଥିଲା, କିନ୍ତୁ ସେ ତ୍ୟାଗ ମୁକ୍ତିର କାରଣ ନ ଥିଲା । ବଳବୀର୍ଯ୍ୟ ଥିବା ପୁରୁଷ ଥିଲେ, କିନ୍ତୁ କାଳଭୟ ତାଙ୍କୁ ଲାଗି ରହିଥିଲା । ଅନାସକ୍ତ ନିର୍ଗୁଣ ପୁରୁଷ ଥିଲେ, କିନ୍ତୁ ସେମାନେ ସମାଧିସ୍ଥ ହୋଇ ରହୁଥିଲେ ॥୨୧॥ କେହି ଚିରଞ୍ଜୀବୀ ଥିଲେ ମଧ୍ୟ ତାଙ୍କ ସ୍ୱଭାବ ମଙ୍ଗଳମୟ ନ ଥିଲା । କାହାର ସ୍ୱଭାବ ଭଲ ଥିଲେ ମଧ୍ୟ ତାଙ୍କ ଆୟୁର ସ୍ଥିରତା ନ ଥିଲା । କାହାର ସ୍ୱଭାବ ଏବଂ ଆୟୁ ଉଭୟ ଥିଲେ ମଧ୍ୟ ସେ ଅମଙ୍ଗଳ ବେଶରେ ରହୁଥିଲେ । କିନ୍ତୁ ଶ୍ରୀବିଷ୍ଣୁ ହିଁ ଜଣେ, ଯାହାଙ୍କଠାରେ ସମସ୍ତ ମଙ୍ଗଳମୟ ଗୁଣ ରହିଥିଲା; କିନ୍ତୁ (ଲକ୍ଷ୍ମୀଦେବୀ ଭାବିଲେ) ସେ ହୁଏତ ତାଙ୍କୁ ଚାହୁଁ ନ ଥିବେ ॥୨୨॥

ଏହିପରି ଚିନ୍ତା କରି ଲକ୍ଷ୍ମୀଦେବୀ ତାଙ୍କ ଚିର ଅଭୀଷ୍ଟ ବରରୂପେ ବିଷ୍ଣୁଙ୍କୁ ହିଁ ବରଣ କଲେ । କାରଣ ସମସ୍ତ ସଦ୍‌ଗୁଣ ସ୍ଥାୟୀ ଭାବରେ ତାଙ୍କଠାରେ ବାସ କରନ୍ତି । ଅଣିମାଦି ସମସ୍ତ ସିଦ୍ଧି ତାଙ୍କୁ ଘେରି ରହିଥା'ନ୍ତି । କୌଣସି ବିଷୟ ପ୍ରତି ସେ ଆସକ୍ତ

ହୁଅନ୍ତି ନାହିଁ କିମ୍ବା ତାଙ୍କୁ ଉପେକ୍ଷା କରନ୍ତି ନାହିଁ । ତେଣୁ ସେହି ନିରପେକ୍ଷ ମୁକୁନ୍ଦଙ୍କୁ ସେ ଆଶ୍ରୟ କରିପାରିବେ ॥୨୩॥ ଏହାପରେ ଲକ୍ଷ୍ମୀଦେବୀ ମତ୍ତଭ୍ରମରଙ୍କ ଗୁଞ୍ଜନଯୁକ୍ତ କମନୀୟ ନବୀନ ପଦ୍ମ ଫୁଲର ମାଳାକୁ ବିଷ୍ଣୁଙ୍କର ଗଳାରେ ଲମ୍ବାଇ ଦେଲେ ଏବଂ ସଲଜ୍ଜ ମନ୍ଦହାସ ଓ ପ୍ରେମପୂର୍ଣ୍ଣ ଦୃଷ୍ଟିରେ ନିଜର ନିବାସସ୍ଥାନ ବିଷ୍ଣୁଙ୍କର ବକ୍ଷସ୍ଥଳକୁ ଚାହିଁ ତାଙ୍କ ପାଖରେ ଠିଆ ହୋଇରହିଲେ ॥୨୪॥ ଜଗତ୍‌ପିତା ଭଗବାନ ବିଷ୍ଣୁ ସମସ୍ତ ସମ୍ପଦର ଅଧିଷ୍ଠାତ୍ରୀ ଜଗତ୍‌ଜନନୀ ଲକ୍ଷ୍ମୀଦେବୀଙ୍କୁ ନିଜର ବକ୍ଷସ୍ଥଳରେ ଆଶ୍ରୟ ଦେଲେ ଏବଂ ବିଷ୍ଣୁଙ୍କର ବକ୍ଷସ୍ଥଳରେ ବାସ କରି ଲକ୍ଷ୍ମୀ ତାଙ୍କ କରୁଣାପୂର୍ଣ୍ଣ ଦୃଷ୍ଟିଦ୍ୱାରା ଲୋକପାଳଙ୍କ ସହିତ ସମସ୍ତ ଲୋକଙ୍କୁ ଓ ପ୍ରଜାଗଣଙ୍କୁ ଚାହିଁ ସେମାନଙ୍କର ଅଭିବୃଦ୍ଧି ଘଟାଇଲେ ॥୨୫॥ ସେହି ସମୟରେ ତୁମୁଳ ଧ୍ୱନି ସହ ଶଙ୍ଖ, ତୂରୀ ଓ ମୃଦଙ୍ଗମାନ ବାଜିଉଠିଲା ଏବଂ ଗନ୍ଧର୍ବମାନେ ଅପ୍‌ସରାମାନଙ୍କ ସହିତ ନୃତ୍ୟ, ଗୀତରେ ଲାଗିଗଲେ ॥୨୬॥ ବ୍ରହ୍ମା, ରୁଦ୍ର, ଅଙ୍ଗିରା ଆଦି ପ୍ରଜାପତିମାନେ ପୁଷ୍ପବୃଷ୍ଟିପୂର୍ବକ ଯଥାର୍ଥ ପୂଜାମନ୍ତ୍ର ଆଦି ଉଚ୍ଚାରଣ କରି ଭଗବାନଙ୍କୁ ସ୍ତବ କରିବାରେ ଲାଗିଲେ ॥୨୭॥ ଲକ୍ଷ୍ମୀଦେବୀଙ୍କର କରୁଣାମୟ ଦୃଷ୍ଟିପାତଦ୍ୱାରା ସମସ୍ତ ଦେବତା, ପ୍ରଜାପତି ଓ ପ୍ରଜାମାନେ ଉତ୍ତମ ଗୁଣ ଓ ଶୀଳସମ୍ପନ୍ନ ହୋଇ ପରମ ଶାନ୍ତି ଲାଭ କଲେ ॥୨୮॥ ପରିକ୍ଷିତ, ଦୈତ୍ୟ-ଦାନବମାନେ ଲକ୍ଷ୍ମୀଙ୍କଦ୍ୱାରା ଉପେକ୍ଷିତ ହୋଇ ନିଜକୁ ସାମର୍ଥ୍ୟହୀନ ମନେ କଲେ ଏବଂ କୌଣସି ଉଦ୍ୟମ କରିବାକୁ ତାଙ୍କର ଇଚ୍ଛା ହେଲା ନାହିଁ । ସେମାନେ ଲଜ୍ଜାଶୂନ୍ୟ ହୋଇଗଲେ ଏବଂ ତାଙ୍କର ଲୋଭ ବଢ଼ିଗଲା ॥୨୯॥ ଏହାପରେ ସମୁଦ୍ରମନ୍ଥନରୁ ଏକ କମଳନୟନା କନ୍ୟା ବାରୁଣୀଦେବୀଙ୍କର ଆବିର୍ଭାବ ହେଲା । ବିଷ୍ଣୁଙ୍କର ଅନୁମତି ନେଇ ଅସୁରମାନେ ତାଙ୍କୁ ଗ୍ରହଣ କଲେ ॥୩୦॥

ମହାରାଜ, ଅମୃତଲାଭର ଇଚ୍ଛାରେ ସମୁଦ୍ରକୁ ପୁଣି ମନ୍ଥନ କରିବାରୁ ସମୁଦ୍ରଗର୍ଭରୁ ଏକ ଅମୃତପୁରୁଷ ଉଠିଆସିଲେ ॥୩୧॥ ଏହି ପୁରୁଷଙ୍କର ଭୁଜଦ୍ୱୟ ଦୀର୍ଘ ଓ ଆଜାନୁଲମ୍ବିତ । କଣ୍ଠ ଶଙ୍ଖତୁଲ୍ୟ, ଚକ୍ଷୁ ଅରୁଣ ବର୍ଣ୍ଣର । ସମସ୍ତ ଅଳଙ୍କାରରେ ମଣ୍ଡିତ ଏହି ବିଶାଳବକ୍ଷ ଶ୍ୟାମବର୍ଣ୍ଣର ଯୁବାପୁରୁଷ ପୀତବସ୍ତ୍ର ପିନ୍ଧିଥିଲେ ଏବଂ ସୁନ୍ଦର ମଣିମୟ କୁଣ୍ଡଳ ଓ ମାଳା ଧାରଣ କରିଥିଲେ । ତାଙ୍କ ମସ୍ତକରେ ଶ୍ୟାମଳ ସୁନ୍ଦର କେଶରାଶି ଶୋଭା ପାଉଥିଲା । ସିଂହପରି ସେ ବିକ୍ରମୀ ଥିଲେ ଓ ବଳୟ ପିନ୍ଧିଥିଲେ । ହସ୍ତରେ ସେ ଅମୃତପୂର୍ଣ୍ଣ କଳସ ଧରିଥିଲେ । ସେ ସାକ୍ଷାତ୍ ବିଷ୍ଣୁଙ୍କର ଅଂଶରୁ ଜାତ ଧନ୍ୱନ୍ତରି ନାମରେ ବିଖ୍ୟାତ । ସେ ଆୟୁର୍ବେଦ ଶାସ୍ତ୍ରରେ ପାରଙ୍ଗମ ଓ ଯଜ୍ଞଭାଗର ଭୋକ୍ତା ଥିଲେ ॥୩୨-୩୪॥ ତାଙ୍କ ହାତରେ ଥିବା ଅମୃତପୂର୍ଣ୍ଣ କଳସକୁ ଦେଖି ଅସୁରମାନେ ତତ୍‌କ୍ଷଣାତ୍ ବଳପୂର୍ବକ ହରଣ କଲେ । ଅସୁରମାନଙ୍କଦ୍ୱାରା ଅମୃତପାତ୍ର ଅପହୃତ ହେବାର ଦେଖି ବିଷଣ୍ଣ ମନରେ ଦେବତାମାନେ ଭଗବାନ ବିଷ୍ଣୁଙ୍କର ଶରଣାପନ୍ନ ହେଲେ ॥୩୫-୩୬॥ ଭଗବାନ୍ ତାଙ୍କ ଭକ୍ତମାନଙ୍କ କାମନା ପୂର୍ଣ୍ଣ କରନ୍ତି । ତେଣୁ ଦେବତାମାନଙ୍କର ଏପରି ଦୀନ ଅବସ୍ଥାକୁ ଦେଖି ସେ କହିଲେ -- ତୁମେମାନେ ଦୁଃଖ କର ନାହିଁ । ମୁଁ ନିଜ ମାୟାଦ୍ୱାରା ଏହାର ସମାଧାନ କରିବି ॥୩୭॥ ପରିକ୍ଷିତ, ଏହାପରେ ଅମୃତଲୋଭୀ ଅସୁରମାନଙ୍କ ମଧ୍ୟରେ କଳି ଲାଗିଗଲା । 'ମୁଁ ଆଗ ପିଇବି, ମୁଁ ଆଗ ପିଇବି, ତୁ ନୁହଁ, ତୁ ନୁହଁ' -- ବୋଲି ସେମାନେ ପାଟି କରିବାକୁ ଲାଗିଲେ ॥୩୮॥ ଅସୁରମାନଙ୍କ ମଧ୍ୟରେ ଯେଉଁମାନେ ଦୁର୍ବଳ ଥିଲେ, ସେମାନେ ଅମୃତ କଳସ ଧରିଥିବା ବଳବାନ୍ ଅସୁରମାନଙ୍କୁ ବିରୋଧ କରି ଧର୍ମର ଦ୍ୱାହି ଦେଇ କହିଲେ, ଯାଗଯଜ୍ଞରେ ଯେପରି ସମସ୍ତଙ୍କର ସମାନ ଭାଗ ଥାଏ, ସେହିପରି ଏହି କାର୍ଯ୍ୟରେ (ସମୁଦ୍ରମନ୍ଥନ) ଶ୍ରମ କରିଥିବା ଦେବତାମାନଙ୍କର ମଧ୍ୟ ସମାନ ଭାଗ ରହିଛି । ଏହା ହିଁ ସନାତନ ଧର୍ମ ॥୩୯-୪୦॥ ଇତ୍ୟବସରେ ସମସ୍ତ ଉପାୟରେ ନିପୁଣ ଚତୁରଶିରୋମଣି ଭଗବାନ ଏକ ଅପୂର୍ବସୁନ୍ଦରୀ ସ୍ତ୍ରୀର ରୂପ ଧାରଣ କଲେ ॥୪୧॥ ନୀଳପଦ୍ମପରି ଶ୍ୟାମବର୍ଣ୍ଣ ତାହା ଏକ ସର୍ବାଙ୍ଗସୁନ୍ଦର ଦର୍ଶନୀୟ ରୂପ ଥିଲା । ସେହି ସୁନ୍ଦରୀ ସ୍ତ୍ରୀର କପୋଳ, ଉଚ୍ଚନାସା ଏବଂ ମୁଖମଣ୍ଡଳ ଅତିଶୟ ସୁନ୍ଦର ଥିଲା । କାନରେ କାନଫୁଲ ଶୋଭାପାଉଥିଲା । ନବୀନ ଯୁବା ବୟସଯୋଗୁଁ ଉନ୍ନତ ସ୍ତନଦ୍ୱୟର ଭାରରେ କଟିଦେଶ କୃଶ ଦେଖାଯାଉଥିଲା ।

ମୁଖର ସୁଗନ୍ଧରେ ଆକୃଷ୍ଟ ହୋଇ ଭ୍ରମରମାନେ ଗୁଞ୍ଜନ କରୁଥିଲେ । ଆଖି ଦୁଇଟିରେ ଚପଳତା ଭରି ରହିଥିଲା ॥୪୨-୪୩॥ ଦୀର୍ଘ କେଶପାଶରେ ଥିଲା ମଲ୍ଲୀଫୁଲର ମାଳା, ସୁନ୍ଦର ଗଳାରେ ଥିଲା କଣ୍ଠାଭରଣ ଏବଂ ଭୁଜଦ୍ୱୟରେ ସୁନ୍ଦର ବାଜୁବନ୍ଧ । ପାଦର ନୂପୁର ରୁଣୁଝୁଣୁ ଧ୍ୱନି କରୁଥିଲା । ଦ୍ୱୀପପରି ବିଶାଳ ନିତମ୍ବଦେଶରେ ନିର୍ମଳ ବସ୍ତ୍ର ଓ ମେଖଳା ଶୋଭା ପାଉଥିଲା । ସେ ନିଜର ସଲଜ୍ଜ ମୃଦୁହାସ ଓ ଲୀଳାପୂର୍ଣ୍ଣ ଭ୍ରୂଭଙ୍ଗୀ ଦ୍ୱାରା ଅସୁର ଯୂଥପତିମାନଙ୍କ ଚିତ୍ତରେ ବାରମ୍ବାର କାମଭାବ ଉଦ୍ଦୀପିତ କରିବାକୁ ଲାଗିଲେ ।

## ନବମ ଅଧ୍ୟାୟ

# ମୋହିନୀ ରୂପରେ ଭଗବାନଙ୍କର ଅମୃତବଣ୍ଟନ

ଶ୍ରୀ ଶୁକଦେବ କହିଲେ, ପରିକ୍ଷିତ, ଅସୁରମାନେ ପରସ୍ପର ସୁହୃଦ୍‌ଭାବ ତ୍ୟାଗ କରି ଏକ ଆରେକ ଗାଳିଗୁଲଜ କରୁଥିଲେ ଏବଂ ଦସ୍ୟୁପରି ଜଣେ ଜଣକ ହାତରୁ ଅମୃତପାତ୍ର ଛଡ଼ାଇନେଉଥିଲା । ଏହି ସମୟରେ ଏଇ ଅତ୍ୟନ୍ତ ସୁନ୍ଦରୀ ସ୍ତ୍ରୀ ତାଙ୍କ ଆଡ଼କୁ ଆସୁଥିବା ସେମାନେ ଦେଖିପାରିଲେ ॥୧॥ 'ଆହା ! କି ସୁନ୍ଦର ରୂପ ! କି ସୁନ୍ଦର କାନ୍ତି ! ନବୀନ ବୟସ !' କାମମୋହିତ ଅସୁରମାନେ ଏହିପରି କହି କହି ସେହି ସ୍ତ୍ରୀ ନିକଟକୁ ଆସି ପଚାରିବାକୁ ଲାଗିଲେ ॥୨॥ କମଳନୟନୀ, ତୁମେ କିଏ ? କେଉଁଠୁ ଆସିଲ ? କ'ଣ ଚାହୁଁଛ ? ସୁନ୍ଦରି ! ତୁମେ କାହାର କନ୍ୟା ? ତୁମକୁ ଦେଖି ଆମର ମନ ମତ୍ତି ହୋଇଯାଉଛି । ଆମେ ଜାଣି ପାରୁଛୁ, ଏପର୍ଯ୍ୟନ୍ତ ଦେବତା, ଦୈତ୍ୟ, ସିଦ୍ଧ, ଗନ୍ଧର୍ବ, ଚାରଣ ଓ ଲୋକପାଳ କେହି ତୁମକୁ ସ୍ପର୍ଶ କରିପାରି ନାହାନ୍ତି । ଛାର ମନୁଷ୍ୟ କଥା କ'ଣ କହିବା ! ॥୩-୪॥ ସୁନ୍ଦରି ! ଦେହଧାରୀଙ୍କ ଇନ୍ଦ୍ରିୟ ଓ ମନକୁ ସମ୍ପୂର୍ଣ୍ଣ ତୃପ୍ତ କରିବାପାଇଁ ବୋଧହୁଏ, ବିଧାତା ସଦୟ ହୋଇ ତୁମକୁ ଏଠାକୁ ପଠାଇଛନ୍ତି ॥୫॥ ମାନିନି ! ଆମେ ସମସ୍ତେ ହେଉଛୁ ଗୋଟିଏ ଜ୍ଞାତି କୁଟୁମ୍ବ । କେବଳ ଗୋଟିଏ ବସ୍ତୁପାଇଁ ଆମେ ପରସ୍ପର ବିରୋଧୀ ହୋଇ ଶତ୍ରୁପରି ଲଢୁଛୁ । ସୁମଧ୍ୟମା, ତୁମେ ଆମ ବିବାଦ ତୁଟାଇ ଦେଇ ଆମର ମଙ୍ଗଳ ବିଧାନ କର ॥୬॥ ଆମେ ସବୁ କଶ୍ୟପଙ୍କର ପୁତ୍ର ହୋଇଥିବାଯୋଗୁଁ ସହୋଦର ଭାଇ । ଆମେ ପୌରୁଷ ଦେଖାଇ ଅମୃତ ଲାଭ କରିଛୁ । ତୁମେ ନ୍ୟାୟ ଅନୁସାରେ ନିରପେକ୍ଷ ଭାବରେ ଏହାକୁ ବାଣ୍ଟିଦିଅ, ଯେପରିକି ଆମ ଭିତରେ କଳିଝଗଡ଼ା ହେବ ନାହିଁ ॥୭॥ ଅସୁରମାନେ ଏହିପରି କହିବାରୁ ମାୟାରୂପ ଧାରଣ କରିଥିବା ଭଗବାନ ଶ୍ରୀହରି ମଧୁର କଟାକ୍ଷରେ ସେମାନଙ୍କୁ ଚାହିଁ ସ୍ମିତହାସ୍ୟ ପୂର୍ବକ କହିଲେ-- ॥୮॥

ଶ୍ରୀ ଭଗବାନ କହିଲେ, ଆପଣମାନେ ମହର୍ଷି କଶ୍ୟପଙ୍କର ପୁତ୍ର । ମୁଁ ହେଉଛି ଜଣେ କୁଳଟା । ମୋ ଉପରେ କିପରି ଆପଣ ଏହି ନ୍ୟାୟର ଭାର ଦେଉଛନ୍ତି ? ପଣ୍ଡିତ ବ୍ୟକ୍ତି କେବେହେଲେ ସ୍ୱେଚ୍ଛାଚାରିଣୀ ସ୍ତ୍ରୀକୁ ବିଶ୍ୱାସ କରେ ନାହିଁ ॥୯॥ ଅସୁରମାନେ, ବୁଲାକୁକୁର ଓ ବ୍ୟଭିଚାରିଣୀ ସ୍ତ୍ରୀ ସହିତ କେବେହେଲେ ସ୍ଥାୟୀ ମିତ୍ରତା ସମ୍ଭବ ନୁହେଁ । କାରଣ ଏ ଦୁହେଁ ପ୍ରତିଦିନ ନୂଆନୂଆ ଶିକାର ଖୋଜିବୁଲନ୍ତି ॥୧୦॥

ଶ୍ରୀ ଶୁକଦେବ କହିଲେ, ପରିକ୍ଷିତ, ମୋହିନୀଙ୍କର ଏହିପରି ପରିହାସପୂର୍ଣ୍ଣ କଥା ଶୁଣି ଅସୁରମାନେ ଆଶ୍ୱସ୍ତ ହେଲେ ଏବଂ ଗମ୍ଭୀର ହୋଇ ଅମୃତପାତ୍ରକୁ ତାଙ୍କ ହାତରେ ଟେକିଦେଲେ ॥୧୧॥ ଅମୃତଭାଣ୍ଡକୁ ଗ୍ରହଣ କରି ଭଗବାନ ଶ୍ରୀହରି ଅଳ୍ପ ହସି ମଧୁର ବାକ୍ୟରେ କହିଲେ, ''ମୁଁ ଏ ବିଷୟରେ ଭଲମନ୍ଦ ଯାହା କରିବି, ତୁମେମାନେ ଯଦି ମାନିନେବ, ତାହେଲେ ଏହି ଅମୃତ ମୁଁ ବାଣ୍ଟି ଦେଇପାରେ'' ॥୧୨॥ ଅସୁରମାନେ ମୋହିନୀଙ୍କର ମିଠା କଥାରେ ତାଙ୍କ କଥାର ମର୍ମ ବୁଝିପାରିଲେ ନାହିଁ ଏବଂ ଏକସ୍ୱରରେ କହିଉଠିଲେ 'ତାହା ହିଁ ହେବ' ॥୧୩॥ ଏହାପରେ ଅସୁରମାନେ ଗୋଟିଏ ଦିନ ଉପବାସ କରି ସ୍ନାନ

କଲେ । ହବିଷ୍ୟ କରି ଅଗ୍ନିରେ ହବନ କଲେ । ଗୋ, ବ୍ରାହ୍ମଣ ଓ ଅନ୍ୟପ୍ରାଣୀଙ୍କୁ ଭୋଜନ ଦେଲେ ଏବଂ ବ୍ରାହ୍ମଣମାନଙ୍କଦ୍ୱାରା ସ୍ୱସ୍ତ୍ୟୟନ କରାଇଲେ । ନୂତନ ବସ୍ତ୍ର ଓ ଅଳଙ୍କାର ପରିଧାନ କରି କୁଶର ଅଗ୍ରଭାଗକୁ ପୂର୍ବଦିଗକୁ ରଖି କୁଶଆସନରେ ବସିଗଲେ ॥୧୪-୧୫॥ ଏହାପରେ ପୂର୍ବକୁ ମୁହଁ କରି ଦେବତା ଓ ଦୈତ୍ୟମାନେ ଏକ ସୁନ୍ଦର ଭବନରେ ବସିଲେ । ଏହି ଭବନଟି ମାଳା ଓ ପ୍ରଦୀପଦ୍ୱାରା ଅଳଙ୍କୃତ ଏବଂ ଧୂପର ସୁଗନ୍ଧରେ ଆମୋଦିତ ହେଉଥିଲା ॥୧୬॥ ହାତରେ ଅମୃତର କଳସ ଧରି ମୋହିନୀ ସେହି ସଭାଗୃହରେ ପ୍ରବେଶ କଲେ । ସେ ଏକ ସୁନ୍ଦର ପଟ୍ଟବସ୍ତ୍ର ପିନ୍ଧିଥିଲେ । ନିତମ୍ବର ଭାରଯୋଗୁ ସେ ଧୀରେ ଧୀରେ ଚାଲୁଥିଲେ । ଆଖି ମଦବିହ୍ୱଳ ଦେଖାଯାଉଥିଲା । ସ୍ତନଦ୍ୱୟ କଳସସଦୃଶ ଓ ଜାନୁଦ୍ୱୟ ଗଜଶାବକର ଶୁଣ୍ଡପରି ମନେ ହେଉଥିଲା । ସୁବର୍ଣ୍ଣ ନୂପୁରର ରୁଣୁଝୁଣୁ ଧ୍ୱନିରେ ସଭାଗୃହ ଧ୍ୱନିତ ହେଉଥିଲା । ସୁନ୍ଦର କର୍ଣ୍ଣଦ୍ୱୟରେ ଥିଲା ସୁବର୍ଣ୍ଣର କୁଣ୍ଡଳ । ନାସା, କପୋଳ ଓ ମୁଖ ଅତିଶୟ ରମଣୀୟ ଥିଲା । ସ୍ୱୟଂ ଦେବଶ୍ରେଷ୍ଠ ଭଗବାନ ମୋହିନୀରୂପରେ ଲକ୍ଷ୍ମୀଙ୍କର ସଖୀ ପରି ଦେଖାଯାଉଥିଲେ । ତାଙ୍କ ସ୍ତନଦ୍ୱୟରୁ ବାରମ୍ବାର ଅଞ୍ଚଳଟି ଖସି ଯାଉଥିଲା ଏବଂ ତାଙ୍କ ମଧୁର କଟାକ୍ଷ ଓ ସ୍ମିତହାସ ଦ୍ୱାରା ସେ ସମସ୍ତଙ୍କୁ ମୋହିତ କରିଦେଉଥିଲେ ॥୧୭-୧୮॥

ଭଗବାନ ମୋହିନୀରୂପରେ ବିଚାର କଲେ ଯେ, ଅସୁରମାନେ ଜନ୍ମରୁ କ୍ରୂର । ଏମାନଙ୍କୁ ଅମୃତ ଦେବା ବିଷଧର ସର୍ପକୁ ଦୁଧ ପିଆଇବା ସଙ୍ଗେ ସମାନ । ତେଣୁ ସେ ଅସୁରମାନଙ୍କୁ ଅମୃତରେ ଭାଗ ଦେଲେ ନାହିଁ ॥୧୯॥ ଭଗବାନ ଦେବତା ଓ ଅସୁରମାନଙ୍କୁ ଅଲଗା ଅଲଗା ଦୁଇ ଧାଡ଼ି କରି ବସାଇଦେଲେ ॥୨୦॥ ଅମୃତ କଳସ ଧରିଥିବା ଭଗବାନ ନିଜର କଟାକ୍ଷ ଓ ଅଙ୍ଗଭଙ୍ଗୀଦ୍ୱାରା ପ୍ରଥମେ ଅସୁରମାନଙ୍କୁ ମୋହିତ କରି ସେମାନଙ୍କୁ ଛାଡ଼ିଦେଇ ଦେବତାମାନଙ୍କ ପାଖକୁ ଚାଲିଗଲେ ଏବଂ ସେମାନଙ୍କୁ ଜରା ଓ ମରଣ ନିବାରକ ଅମୃତକୁ ବାଣ୍ଟିଦେଲେ ॥୨୧॥ ପରିକ୍ଷିତ, ଅସୁରମାନେ ମୋହିନୀଙ୍କ ପ୍ରତି ଆସକ୍ତ ହୋଇପଡ଼ିଥିଲେ । ଜଣେ ସ୍ତ୍ରୀଲୋକ ସହିତ ବିବାଦ କରିବା ଲଜ୍ଜାଜନକ ବୋଲି ମନେକରି ସେମାନେ ନିଜର ପ୍ରତିଜ୍ଞାପାଳନପୂର୍ବକ ଚୁପ ହୋଇ ରହିଲେ ॥୨୨॥ ମୋହିନୀ ତାଙ୍କର କଥା ଓ ହାବଭାବଦ୍ୱାରା ଅସୁରମାନଙ୍କୁ ପ୍ରେମରେ ଆକୃଷ୍ଟ କରିସାରିଥିଲେ । ତେଣୁ ପ୍ରଣୟଭଙ୍ଗ ଭୟରେ ସେମାନେ ତାଙ୍କୁ କୌଣସି ଅପ୍ରିୟ ବାକ୍ୟ କହିପାରିଲେ ନାହିଁ ॥୨୩॥

ଅମୃତବଣ୍ଟନ ବେଳେ ରାହୁ ଦୈତ୍ୟ ଦେବତାଙ୍କ ବେଶ ପିନ୍ଧି ଦେବତାମାନଙ୍କ ଗହଣରେ ଚନ୍ଦ୍ର ଓ ସୂର୍ଯ୍ୟଙ୍କ ମଧ୍ୟରେ ଯାଇ ବସିଥିଲା । ସେ ମଧ୍ୟ ଅମୃତ ପିଇଦେଲା । ଏ କଥା ଚନ୍ଦ୍ର ଓ ସୂର୍ଯ୍ୟ କହିଦେଲେ ॥୨୪॥ ଭଗବାନ ଶ୍ରୀହରି ସଙ୍ଗେ ସଙ୍ଗେ ଅମୃତପିଉଥିବା ରାହୁର ମସ୍ତକକୁ ତୀକ୍ଷ୍ଣଧାରଯୁକ୍ତ ଚକ୍ରଦ୍ୱାରା ଛେଦନ କଲେ । ଅମୃତସଂସ୍ପର୍ଶରେ ଆସି ନ ଥିବାଯୋଗୁଁ ତାର ଗଣ୍ଡି ମୁଣ୍ଡରୁ ଅଲଗା ହୋଇ ତଳେ ପଡ଼ିଗଲା ॥୨୫॥ କିନ୍ତୁ ମୁଣ୍ଡଟି ଅମର ହୋଇଗଲା ଏବଂ ବ୍ରହ୍ମା ତାକୁ ଏକ ଗ୍ରହ କରିଦେଲେ । ଏହି ରାହୁ ସେହିଦିନଠାରୁ ଶତ୍ରୁଭାବ ପୋଷଣ କରି ପୂର୍ଣ୍ଣିମା ଓ ଅମାବାସ୍ୟାରେ ଚନ୍ଦ୍ର ଓ ସୂର୍ଯ୍ୟଙ୍କୁ ଆକ୍ରମଣ କରୁଛି ॥୨୬॥ ଯେତେବେଳେ ଦେବତାମାନେ ଅମୃତପାନ ଶେଷ କଲେ, ସେତେବେଳେ ତ୍ରିଲୋକର ଜନକ ଭଗବାନ ଅସୁରମାନେ ଦେଖୁଦେଖୁ ପୁଣି ନିଜ ରୂପ ଧାରଣ କଲେ ॥୨୭॥ ଏହିପରି ଦେବତା ଓ ଅସୁରମାନେ ଏକ ସ୍ଥାନରେ ଏକ ସମୟରେ ଏକମତ ହୋଇ ଏକ ବସ୍ତୁର ଲାଭପାଇଁ କର୍ମ କରିଥିଲେ, କିନ୍ତୁ ଫଳ ବିପରୀତ ହେଲା । ଦେବତାମାନଙ୍କୁ ସହଜରେ ସୁଫଳ ମିଳିଲା, କାରଣ ସେମାନେ ଭଗବାନଙ୍କର ପାଦପଦ୍ମରଜକୁ ଆଶ୍ରୟ କରି ରହିଥିଲେ । କିନ୍ତୁ ଅସୁରମାନେ ତାହା ନ କରିଥିବାଯୋଗୁଁ ବାଞ୍ଛିତ ଫଳ ପାଇଲେ ନାହିଁ ॥୨୮॥ ମନୁଷ୍ୟ ନିଜର ପ୍ରାଣ, ଧନ, କର୍ମ, ମନ ଏବଂ ବାକ୍ୟଦ୍ୱାରା ନିଜପାଇଁ ଓ ନିଜର ପୁତ୍ରାଦିଙ୍କ ପାଇଁ ଯାହା ସବୁ କରେ, ତାହା ବ୍ୟର୍ଥ ହୋଇଯାଏ, କାରଣ ତାହା ଭେଦବୁଦ୍ଧିଯୁକ୍ତ । ବୃକ୍ଷର ମୂଳରେ ଜଳଦାନପରି ଭଗବାନଙ୍କ ଠାରେ ଅର୍ପଣ କରି ଯଦି ସମସ୍ତ କର୍ମ କରାଯାଏ, ତା'ହେଲେ ତାହା ନିଶ୍ଚିତ ଭାବରେ ସଫଳ ହୁଏ ॥୨୯॥

## ଦଶମ ଅଧ୍ୟାୟ

# ଦେବାସୁର ଯୁଦ୍ଧ

ପରିକ୍ଷିତ, ଦୈତ୍ୟ ଓ ଦାନବମାନେ ଯତ୍ନପୂର୍ବକ ସମୁଦ୍ର ମନ୍ଥନ କରିଥିଲେ ମଧ୍ୟ ବାସୁଦେବଙ୍କ ପ୍ରତି ବିମୁଖ ହେବାଯୋଗୁଁ ଅମୃତ ଲାଭ କରିପାରିଲେ ନାହିଁ ॥୧॥ ମହାରାଜ, ସମୁଦ୍ରମନ୍ଥନ କରାଇ ଭଗବାନ ନିଜର ଭକ୍ତ ଦେବତାମାନଙ୍କୁ ଅମୃତ ପିଆଇଲେ ଓ ସମସ୍ତେ ଦେଖୁ ଦେଖୁ ଗରୁଡ଼ପୃଷ୍ଠରେ ବସି ପ୍ରସ୍ଥାନ କଲେ ॥୨॥ ଦୈତ୍ୟମାନେ ନିଜ ଶତ୍ରୁମାନଙ୍କ ଅଭିବୃଦ୍ଧି ଦେଖି ସହିପାରିଲେ ନାହିଁ । ସେମାନେ ଆୟୁଧହସ୍ତରେ ଦେବତାମାନଙ୍କପ୍ରତି ଧାବିତ ହେଲେ ॥୩॥ ଶ୍ରୀ ନାରାୟଣଙ୍କ ପାଦରେ ଆଶ୍ରିତ ଦେବତାମାନେ ସୁଧାପାନ କରି ଶକ୍ତି ଲାଭ କରିଥିଲେ । ସେମାନେ ମଧ୍ୟ ଅସ୍ତ୍ରଶସ୍ତ୍ରରେ ସଜ୍ଜିତ ହୋଇ ଦୈତ୍ୟମାନଙ୍କପ୍ରତି ଆକ୍ରମଣ କଲେ ॥୪॥ ପରିକ୍ଷିତ, କ୍ଷୀରସମୁଦ୍ର କୂଳରେ ତୁମୁଳ ଲୋମହର୍ଷଣକାରୀ ଯୁଦ୍ଧ ଆରମ୍ଭ ହୋଇଗଲା । ଏହା ଦେବାସୁର ଯୁଦ୍ଧ ନାମରେ ଖ୍ୟାତ ॥୫॥ ପୂର୍ବରୁ ତ ସେମାନଙ୍କ ମଧ୍ୟରେ ଶତ୍ରୁତା ଲାଗିରହିଥିଲା । ବର୍ତ୍ତମାନ ସେମାନେ ପରସ୍ପର ସମ୍ମୁଖୀନ ହୋଇ ଖଡ୍ଗ, ବାଣ ଓ ଅନ୍ୟାନ୍ୟ ଅସ୍ତ୍ରଶସ୍ତ୍ର ଦ୍ୱାରା ପରସ୍ପର ହଣାହଣି ହେଲେ ॥୬॥ ଏହି ସମୟରେ ଶଙ୍ଖ, ତୂରୀ, ଭେରୀ, ମୃଦଙ୍ଗ, ନାଗରା ଆଦି ଯୁଦ୍ଧବାଦ୍ୟମାନ ଜୋର୍‌ରେ ବାଜିଉଠିଲା । ହସ୍ତୀ, ଅଶ୍ୱ, ରଥୀ ଓ ପଦାତିକ ସୈନ୍ୟମାନେ ବିଭିନ୍ନ ଧ୍ୱନି ଓ ତୁମୁଳ କୋଳାହଳ ସୃଷ୍ଟି କଲେ ॥୭॥ ଏହି ଯୁଦ୍ଧରେ ରଥୀମାନେ ରଥୀମାନଙ୍କସହିତ, ପଦାତିକମାନେ ପଦାତିକଙ୍କସହିତ, ଅଶ୍ୱମାନେ ଅଶ୍ୱମାନଙ୍କସହିତ ଓ ହସ୍ତୀମାନେ ହସ୍ତୀମାନଙ୍କସହିତ ଯୁଦ୍ଧ କରିବାକୁ ଲାଗିଲେ ॥୮॥ ଯୋଦ୍ଧାମାନେ କେତେକ ଓଟରେ, କେତେକ ହାତୀରେ, କେତେକ ଗଧ ଉପରେ, ଆଉ କେତେକ ମାଙ୍କଡ଼, ଭାଲୁ, ବାଘ, ଶାଗୁଣା, ଝିଙ୍କ, ବଗ, ବାଜ, ଭାସ, ତିମିଙ୍ଗିଳ, ଶରଭ, ମହିଷ, ଗଣ୍ଡାର, ଷଣ୍ଢ ଓ ଗୟଳ ଉପରେ ବସି ଯୁଦ୍ଧ କରୁଥିଲେ ॥୯-୧୦॥ କେତେକ ବିଲୁଆ, ମୂଷା, ଏଣ୍ଡୁଅ ଓ ଠେକୁଆ ଉପରେ ବସିଥିଲେ ଏବଂ ଅନେକ ଛେଳି, କୃଷ୍ଣସାର ମୃଗ, ହଂସ ଓ ଘୁଷୁରିମାନଙ୍କୁ ବାହନ କରିଥିଲେ ॥୧୧॥ ଅନେକ ଦୈତ୍ୟ ଜଳ, ସ୍ଥଳ ଓ ଆକାଶରେ ବିଚରଣ କରୁଥିବା ନାନାବିଧ ଭୟାନକ ପକ୍ଷୀ ଓ ଅନ୍ୟ ବିକଟାଳ ପ୍ରାଣୀମାନଙ୍କ ଉପରେ ଚଢ଼ି ଉଭୟ ସେନାର ଆଗକୁ ଆଗକୁ ମାଡ଼ିଗଲେ ॥୧୨॥ ପରିକ୍ଷିତ, ଏହି ସମୟରେ ରଂଗ ବେରଂଗ ପତାକା, ସ୍ଫଟିକ ମଣିପରି ନିର୍ମଳ ଶ୍ୱେତଛତ୍ର, ରତ୍ନଜଡ଼ିତ ବେଣ୍ଟଯୁକ୍ତ ଆଲଟ, ମୟୂରପୁଚ୍ଛର ଚାମର, ପବନରେ ଦୋଳାୟିତ ଉତ୍ତରୀୟ, ପଗଡ଼ି, କବଚ, ଅଳଙ୍କାର ଏବଂ ସୂର୍ଯ୍ୟକିରଣରେ ଝଲକୁଥିବା ବିବିଧ ଅସ୍ତ୍ରଶସ୍ତ୍ର ସହିତ ଉଭୟ ପକ୍ଷର ବୀର ଯୋଦ୍ଧାମାନେ ଏପରି ଲଢୁଥିଲେ ଯେ ତାହା ଜଳଜନ୍ତୁପୂର୍ଣ୍ଣ ଏକ ବିକ୍ଷୁବ୍ଧ ସମୁଦ୍ରପରି ଜଣାଯାଉଥିଲା ॥୧୩-୧୫॥

ରାଜା, ସେହି ଯୁଦ୍ଧରେ ବିରୋଚନର ପୁତ୍ର ଦାନବରାଜ ବଳି ଅସୁର ସେନାର ସେନାପତି ହୋଇ ମୟଦାନବ ନିର୍ମିତ ବୈହାୟସ ନାମକ ରଥରେ ଆରୋହଣ କରିଥିଲେ । ଏହି ରଥ ଇଚ୍ଛାମାତ୍ରେ ଗତି କରି ପାରୁଥିଲା ॥୧୬॥ ଯୁଦ୍ଧର ସମସ୍ତ ସାମଗ୍ରୀ ସେଥିରେ ସୁସଜ୍ଜିତ ଥିଲା । ଏହି ରଥ ଏପରି ଆଶ୍ଚର୍ଯ୍ୟଜନକ ଥିଲା ଯେ କେତେବେଳେ ଦୃଶ୍ୟ ତ ଆଉ କେତେବେଳେ ଅଦୃଶ୍ୟ ହୋଇଯାଉଥିଲା ॥୧୭॥ ପ୍ରଧାନ ପ୍ରଧାନ ସେନାପତିମାନେ ରାଜା ବଳିଙ୍କୁ ଚାରି ଦିଗରେ ଘେରି ରହିଥିଲେ । ଛତ୍ର, ଚାମର ଓ ଆଲଟ ଆଦିଦ୍ୱାରା ଶୋଭିତ ରାଜା ବଳି ଉଦୟାଚଳ ଉପରେ ଚନ୍ଦ୍ରମାପରି ଶୋଭାପାଉଥିଲେ ॥୧୮॥ ନିଜ ନିଜର ରଥ ଆରୋହଣ କରି ଯେଉଁ ଯୂଥପତିମାନେ ବଳିଙ୍କ ଚାରିପଟେ ରହି ଯୁଦ୍ଧ କରୁଥିଲେ, ସେମାନେ ହେଲେ ନମୁଚି, ଶମ୍ବର, ବାଣ, ବିପ୍ରଚିତ୍ତି, ଅୟୋମୁଖ, ଦ୍ୱିମୂର୍ଦ୍ଧା, କାଳନାଭ, ପ୍ରହେତି, ହେତି, ଇଲ୍ୱଳ, ଶକୁନି, ଭୂତସନ୍ତାପ, ବଜ୍ରଦଂଷ୍ଟ୍ର, ବିରୋଚନ,

ହୟଗ୍ରୀବ, ଶଙ୍କୁଶିରା, କପିଳ, ମେଘଦୁନ୍ଦୁଭି, ତାରକ, ଚକ୍ରାକ୍ଷ, ଶୁମ୍ଭ, ନିଶୁମ୍ଭ, ଜମ୍ଭ, ଉତ୍କଳ, ଅରିଷ୍ଟ, ଅରିଷ୍ଟନେମି, ତ୍ରିପୁରାଧିପ ମୟ, ପୌଲୋମ, କାଳେୟ ଏବଂ ନିବାତକବଚ ଆଦି ଦୈତ୍ୟଗଣ ॥୧୯-୨୨॥ ସମୁଦ୍ର ମନ୍ଥନରେ ଭାଗ ନେଇଥିବା ଏହି ଅସୁରମାନେ ଅମୃତର ଭାଗ ନ ପାଇ କେବଳ କ୍ଳେଶ ଭୋଗ କରିଥିଲେ । ସେମାନେ ଥରେ ନୁହେଁ, ବାରମ୍ବାର ଯୁଦ୍ଧରେ ଦେବତାମାନଙ୍କୁ ପରାଜିତ କରିଥିଲେ ॥୨୩॥ ଏଥିପାଇଁ ସେମାନେ ସିଂହନାଦ କରି ଏବଂ ଶଙ୍ଖ ବଜାଇ ତୁମୁଳ କୋଳାହଳ ସୃଷ୍ଟି କଲେ । ଶତ୍ରୁମାନଙ୍କର ଏପରି ଗର୍ବ ଦେଖି ଇନ୍ଦ୍ର ଅତିଶୟ କ୍ରୁଦ୍ଧ ହୋଇପଡ଼ିଲେ ॥୨୪॥ ଇନ୍ଦ୍ର ଐରାବତ ହସ୍ତୀ ଉପରେ ଆରୋହଣ କଲେ । ଏହି ହସ୍ତୀର ଗଣ୍ଡସ୍ଥଳରୁ ମଦଜଳ ସ୍ରାବିତ ହେଉଥିଲା । ନିର୍ଝରଯୁକ୍ତ ଉଦୟାଚଳରେ ରହି ସୂର୍ଯ୍ୟ ଯେପରି ଶୋଭା ପାନ୍ତି, ଇନ୍ଦ୍ର ସେହିପରି ଶୋଭା ପାଉଥିଲେ ॥୨୫॥ ଇନ୍ଦ୍ରଙ୍କର ଚାରିପଟେ ନିଜ ନିଜର ବାହନ, ଧ୍ୱଜା ଓ ଆୟୁଧରେ ସଜ୍ଜିତ ଦେବତାମାନେ ଏବଂ ନିଜ ନିଜର ସେନାମାନଙ୍କ ସହିତ ବାୟୁ ଓ ବରୁଣ ଆଦି ଲୋକପାଳମାନେ ଯାତ୍ରା କଲେ ॥୨୬॥ ଉଭୟସେନା ପରସ୍ପର ସମ୍ମୁଖୀନ ହୋଇ ଦ୍ୱନ୍ଦ୍ୱଯୁଦ୍ଧ ଆରମ୍ଭ କରିଦେଲେ । ସେମାନେ ମର୍ମଭେଦୀ କୁବାକ୍ୟମାନ ପ୍ରୟୋଗ କରି ଯୁଦ୍ଧର ଆହ୍ୱାନ ଦେଉଥିଲେ ॥୨୭॥ ରାଜା ପରିକ୍ଷିତ, ଦାନବରାଜ ବଳି ଇନ୍ଦ୍ରଙ୍କସହିତ, କାର୍ତ୍ତିକେୟ ତାରକାସୁରସହିତ, ବରୁଣ ହେତିସହିତ ଓ ମିତ୍ର ପ୍ରହେତିସହିତ, ଯମରାଜ କାଳନାଭସହିତ, ବିଶ୍ୱକର୍ମା ମୟଦାନବସହିତ, ଶମ୍ବରାସୁର ତ୍ୱଷ୍ଟାଙ୍କସହିତ ଓ ସବିତା ବିରୋଚନସହିତ ଲଢ଼ିବାକୁ ଲାଗିଲେ । ନମୁଚି ଅପରାଜିତସହିତ, ଅଶ୍ୱିନକୁମାର ବୃଷପର୍ବାସହିତ, ସୂର୍ଯ୍ୟ ବାଣ ଆଦି ବଳିଙ୍କର ଶହେପୁତ୍ରଙ୍କସହିତ ଯୁଦ୍ଧ କରିବାକୁ ଲାଗିଲେ ॥୩୦॥ ରାହୁସହିତ ଚନ୍ଦ୍ରଙ୍କର ଓ ପୁଲୋମାସହିତ ବାୟୁଙ୍କର ଯୁଦ୍ଧ ହେଲା । ଦେବୀ ଭଦ୍ରକାଳୀ ଶୁମ୍ଭ ଓ ନିଶୁମ୍ଭଙ୍କସହିତ ଲଢ଼ିଲେ ॥୩୧॥ ପରୀକ୍ଷିତ, ଜମ୍ଭାସୁରସହିତ ମହାଦେବ, ମହିଷାସୁରସହିତ ଅଗ୍ନି ଏବଂ ବାତାପି ଓ ଇଲ୍ୱଳଙ୍କସହିତ ବ୍ରହ୍ମାଙ୍କ ପୁତ୍ର ମରୀଚି ଆଦି ଲଢ଼ିବାକୁ ଲାଗିଲେ ॥୩୨॥ ଦୁର୍ମର୍ଷସହିତ କାମଦେବ, ଉତ୍କଳସହିତ ମାତୃଗଣ, ଶୁକ୍ରାଚାର୍ଯ୍ୟଙ୍କସହିତ ବୃହସ୍ପତି ଓ ନରକାସୁରସହିତ ଶନୈଶ୍ଚରଙ୍କର ଯୁଦ୍ଧ ହେଲା ॥୩୩॥ ନିବାତକବଚମାନଙ୍କସହିତ ମରୁତ୍‌ମାନେ, କାଳେୟମାନଙ୍କସହିତ ବସୁମାନେ, ପୌଲୋମମାନଙ୍କସହିତ ବିଶ୍ୱଦେବମାନେ ଏବଂ କ୍ରୋଧବଶମାନଙ୍କସହିତ ରୁଦ୍ରଗଣ ସଂଗ୍ରାମ କଲେ ॥୩୪॥ ଏହିପରି ରଣଭୂମିରେ ଅସୁର ଓ ଦେବତାମାନେ ପରସ୍ପର ଦ୍ୱନ୍ଦ୍ୱଯୁଦ୍ଧରେ ପ୍ରବୃତ୍ତ ହୋଇ ବିଜୟଲାଭ ଆଶାରେ ତୀକ୍ଷ୍ଣ ଶର, ଖଡ୍ଗ ଓ ତୋମର ଆଦି ଅସ୍ତ୍ରଦ୍ୱାରା ପରସ୍ପରକୁ ନିହତ କଲେ ॥୩୫॥ ଭୁଶୁଣ୍ଡି, ଚକ୍ର, ଗଦା, ଋଷ୍ଟି, ପଟ୍ଟିଶ, ଶକ୍ତି, ଉଲ୍ମୁକ, ପ୍ରାସ, ଫାର୍ସା, ଖଡ୍ଗ, ଭାଲ, ମୁଦ୍ଗର, ପରିଘ ଓ ଭିନ୍ଦିପାଳ ଆଦି ଅସ୍ତ୍ର ଦ୍ୱାରା ପରସ୍ପର ଶିରଚ୍ଛେଦନ କଲେ ॥୩୬॥ ଏହି ସମୟରେ ଆରୋହୀମାନଙ୍କ ହାତୀ, ଘୋଡ଼ା, ରଥ, ଅନ୍ୟାନ୍ୟ ବାହନ ଓ ପଦାତିକ ସୈନ୍ୟମାନେ ଛିନ୍ନଭିନ୍ନ ହୋଇଗଲେ । କାହାର ଭୁଜ କଟିଗଲା , କାହାର ଜଂଘ, କାହାର ବେକ, କାହାର ପାଦ ଏବଂ କାହାର କାହାର ଧ୍ୱଜା, ଧନୁ, କବଚ ଓ ଅଳଙ୍କାର ଆଦି ଖଣ୍ଡ ଖଣ୍ଡ ହୋଇଗଲା ॥୩୭॥ ଏମାନଙ୍କ ପଦାଘାତ ଶବ୍ଦରେ ଓ ରଥର ଘର୍ଘର ଶବ୍ଦରେ ପୃଥିବୀ କମ୍ପିତ ହେଲା ଏବଂ ଏତେ ଧୂଳି ଉଡ଼ିଲା ଯେ, ଚତୁର୍ଦ୍ଦିଗ, ଆକାଶ ଓ ସୂର୍ଯ୍ୟ ସମସ୍ତେ ଲୁଚିଗଲେ । ଶେଷରେ ଯୋଦ୍ଧାମାନଙ୍କ ରକ୍ତରେ ରଣଭୂମି ସିକ୍ତ ହେବାରୁ ଆଉ ଧୂଳି ଉଡ଼ିଲା ନାହିଁ ॥୩୮॥ ଯୁଦ୍ଧଭୂମି କଟାମୁଣ୍ଡରେ ପୂର୍ଣ୍ଣ ହୋଇଗଲା । କାହାର ମୁକୁଟ କୁଣ୍ଡଳ ଖସି ପଡ଼ିଥିଲା ତ କାହାରି କାହାରି ଆଖିରେ କ୍ରୋଧ ଓ ବିକଟ ଦନ୍ତପଙ୍କ୍ତି ସବୁ ବାରି ହୋଇ ଯାଉଥିଲା । ଅଳଙ୍କାର ଓ ଶସ୍ତ୍ରଯୁକ୍ତ ଲମ୍ବା ଲମ୍ବା ବାହୁମାନ କଟା ହୋଇପଡ଼ିଥିଲା ଏବଂ ହାତୀଶୁଣ୍ଡପରି ବିଶାଳ ଜଂଘସବୁ ଭୂମିରେ ପଡ଼ି ରହିଥିଲା । ଏ ସବୁ ରଣଭୂମିର ଶୋଭା ବଢ଼ାଉଥିଲେ ॥୩୯॥ ଦେହରୁ ମସ୍ତକ ଅଲଗା ହୋଇଯାଇଥିଲା, ତଥାପି କ୍ରୋଧ ଦୂର ହୋଇ ନ ଥିବାଯୋଗୁଁ ଅସ୍ତ୍ରଶସ୍ତ୍ର ଧରିଥିବା କବନ୍ଧ ସବୁ ଶତ୍ରୁଆଡ଼କୁ ଦଉଡୁଥିଲେ ଏବଂ ଏହା ଦେଖିବାପାଇଁ କଟାମୁଣ୍ଡର ଆଖିମାନ ସତେ ଯେପରି ଚାହିଁ ରହିଥିଲେ ॥୪୦॥ ରାଜା ବଳି ଦଶବାଣ ଇନ୍ଦ୍ରଙ୍କ ଉପରେ, ତିନି ବାଣ ତାଙ୍କ ବାହନ ଐରାବତ ଉପରେ, ଚାରି ବାଣ ଐରାବତର

ଚାରିପାଦର ରକ୍ଷକମାନଙ୍କ ଉପରେ ଏବଂ ଗୋଟିଏ ବାଣ ମାହୁନ୍ତ ଉପରେ ପ୍ରହାର କଲେ ॥୪୧॥ ଏହି ସବୁ ବାଣ ଆସୁଥିବାର ଦେଖି ଇନ୍ଦ୍ର ସଙ୍ଗେ ସଙ୍ଗେ ତୀକ୍ଷ୍ଣ ଭଲ୍ଲାସ୍ତ୍ର ପ୍ରୟୋଗ କଲେ ଏବଂ ହସି ହସି ଲକ୍ଷ୍ୟସ୍ଥଳରେ ପହଞ୍ଚିବା ପୂର୍ବରୁ ସେହି ସବୁ ବାଣକୁ କାଟି ଦେଲେ ॥୪୨॥ ଇନ୍ଦ୍ରଙ୍କର ଏହି ଉତ୍ତମ କର୍ମ ଦେଖି କ୍ରୁଦ୍ଧ ବଳି ଉଲ୍କାପରି ଜ୍ୱଳନ୍ତ ମହାଶକ୍ତି ଧାରଣ କଲେ, ମାତ୍ର ତାଙ୍କ ହାତରେ ଥିବା ଅବସ୍ଥାରେ ଇନ୍ଦ୍ର ସେହି ଶକ୍ତିକୁ କାଟିଦେଲେ ॥୪୩॥ ଏହାପରେ ବଳି ଶୂଳ, ପ୍ରାସ, ଋଷ୍ଟି, ତୋମର ଆଦି ଶସ୍ତ୍ର ଗୋଟିକ ପରେ ଗୋଟିଏ ବାହାର କଲେ, ମାତ୍ର ସେ ଯାହାକୁ ହାତରେ ଉଠାଇଲେ, ଇନ୍ଦ୍ର ତାହାକୁ ଖଣ୍ଡ ଖଣ୍ଡ କରି ପକାଇଲେ ॥୪୪॥ ତାପରେ ବଳି ଅନ୍ତର୍ଦ୍ଧାନ ହୋଇଯାଇ ଆସୁରୀ ମାୟା ପ୍ରୟୋଗ କଲେ । ଦେବସେନା ଉପରେ ଏକ ବିଶାଳ ପର୍ବତ ଖସୁଥିବାର ଦେଖାଗଲା । ସେଥିରୁ ଦାବାଗ୍ନିରେ ଜଳୁଥିବା ବୃକ୍ଷମାନ ଏବଂ ତୀକ୍ଷ୍ଣ କଙ୍କରମୟ ଶିଳାମାନ ନିପତିତ ହେଲା । ଏଥିରେ ଶତ୍ରୁସେନା ଚୂର୍ଣ୍ଣବିଚୂର୍ଣ୍ଣ ହେବାକୁ ଲାଗିଲା ॥୪୫-୪୬॥ ତା'ପରେ ସେଥିରୁ ବଡ଼ ବଡ଼ ସାପ, କଙ୍କଡ଼ା ବିଛା, ଡାଉଁସ ଆଦି ବିଷଧର ଜୀବମାନେ ବାହାରି ଦେବସେନାକୁ ଦଂଶନ କରି ଲାଗିଲେ ଏବଂ ସିଂହ ବ୍ୟାଘ୍ର ବରାହମାନଙ୍କଦ୍ୱାରା ଦେବତାମାନଙ୍କର ଗଜସେନା ମର୍ଦ୍ଦିତ ହେବାକୁ ଲାଗିଲା ॥୪୭॥ ତହୁଁ ଲଙ୍ଗଳା ହୋଇ ଶହ ଶହ ରାକ୍ଷସୀ ହାତରେ ଶୂଳମାନ ଧରି ବାହାରି ଆସିଲେ । ସେମାନେ 'ମାର, ହାଣ' ବୋଲି ଚିତ୍କାର କରୁଥିଲେ ॥୪୮॥ କିଛି ସମୟପରେ ଆକାଶରେ ଘନଘୋର ମେଘ ଘୋଟି ଆସିଲା । ପବନରେ ଆନ୍ଦୋଳିତ ଏହି ମେଘମାନଙ୍କରୁ ଭୟଙ୍କର ଘଡ଼ଘଡ଼ି ଗର୍ଜନ ଶୁଣାଯାଉଥିଲା; ବିଜୁଳି ଚମକିବା ସହ ତପ୍ତ ଅଙ୍ଗାର ବୃଷ୍ଟି ହେବାକୁ ଲାଗିଲା ॥୪୯॥ ଦୈତ୍ୟରାଜ ପ୍ରଳୟ ଅଗ୍ନିପରି ଏକ ଭୟାନକ ଅଗ୍ନି ସୃଷ୍ଟି କଲେ । ଏହା ପ୍ରବଳ ବାୟୁଦ୍ୱାରା ପ୍ରଜ୍ୱଳିତ ହୋଇ ସଙ୍ଗେ ସଙ୍ଗେ ଦେବସେନାକୁ ପୋଡ଼ିବାକୁ ଲାଗିଲା ॥୫୦॥ ଅଳ୍ପ ସମୟପରେ ଦେଖାଗଲା, ପ୍ରଚଣ୍ଡ ବାୟୁଦ୍ୱାରା ବିକ୍ଷୁବ୍ଧ ସମୁଦ୍ର ଭୟାନକ ଲହଡିମାନ ସୃଷ୍ଟି କରି ଚତୁର୍ଦ୍ଦିଗରୁ ଦେବସେନା ଆଡ଼କୁ ମାଡ଼ି ଆସୁଚି ॥୫୧॥ ଏହିପରି ମହାମାୟାବୀ, ଅଦୃଶ୍ୟଗତି, ଭୟଙ୍କର ଅସୁରମାନେ ଯେଉଁ ମାୟା ସୃଷ୍ଟି କଲେ, ସେଥିରେ ଦେବସୈନିକମାନେ ବିଷାଦଗ୍ରସ୍ତ ହେଲେ ॥୫୨॥

ପରିକ୍ଷିତ, ଇନ୍ଦ୍ର ଆଦି ଦେବତାମାନେ ଏହାର ପ୍ରତିକାର ଚିନ୍ତା କରି ନ ପାରି ବିଶ୍ୱସ୍ରଷ୍ଟା ଭଗବାନଙ୍କୁ ଧ୍ୟାନ କରିବାରୁ ସେ ସଙ୍ଗେ ସଙ୍ଗେ ସେଠାରେ ଆବିର୍ଭୂତ ହେଲେ ॥୫୩॥ ଗରୁଡ଼ଙ୍କ ସ୍କନ୍ଧରେ ତାଙ୍କ ପାଦପଲ୍ଲବ ଶୋଭା ପାଉଥିଲା । ଦେହରେ ପୀତବସ୍ତ୍ର ଏବଂ ଚକ୍ଷୁଦ୍ୱୟରେ ଥିଲା ନବପଦ୍ମର ଶୋଭା । ଅଷ୍ଟଭୁଜରେ ଅଷ୍ଟସଂଖ୍ୟକ ଆୟୁଧ, ଗଳାରେ କୌସ୍ତୁଭ ମଣି, ମସ୍ତକରେ ମହାର୍ଘ ମୁକୁଟ ଏବଂ କର୍ଣ୍ଣରେ କୁଣ୍ଡଳ ଝଲସି ଉଠୁଥିଲା । ଦେବତାମାନେ ନେତ୍ରରେ ଭଗବାନଙ୍କ ରୂପ ଦେଖି ଆପ୍ୟାୟିତ ହେଲେ ॥୫୪॥ ଜାଗ୍ରତ୍ ଅବସ୍ଥା ଆସିଲେ ସ୍ୱପ୍ନ ଯେପରି ଅଦୃଶ୍ୟ ହୋଇଯାଏ, ସେହିପରି ମହାମହିମାମୟ ଭଗବାନ ବିଷ୍ଣୁ ସେଠାରେ ପହଞ୍ଚିବା ମାତ୍ରେ ତାଙ୍କ ମହିମାରେ ଅସୁରମାନଙ୍କର ସମସ୍ତ କୂଟକପଟ, ସମସ୍ତ ମାୟା କେଉଁଆଡ଼େ ଉଭେଇଗଲା । କାରଣ ଭଗବାନ ଶ୍ରୀହରିଙ୍କୁ ସ୍ମରଣ କଲେ ସମସ୍ତ ବିପଦରୁ ଉଦ୍ଧାର ମିଳିଥାଏ ॥୫୫॥ ଗରୁଡ଼ାସନ ବିଷ୍ଣୁଙ୍କୁ ସେଠାରେ ଥିବାର ଦେଖି କାଳନେମି ଦୈତ୍ୟ ସିଂହବାହନରେ ବସି ତାଙ୍କ ଉପରକୁ ଏକ ତ୍ରିଶୂଳ ନିକ୍ଷେପ କଲା । ତାହା ଗରୁଡ଼ଙ୍କ ମୁଣ୍ଡ ଉପରେ ପଡ଼ିବା ପୂର୍ବରୁ ଭଗବାନ ତାକୁ ଅକ୍ଳେଶେ ଧରିନେଲେ । ପରିକ୍ଷିତ, ସେହି ତ୍ରିଶୂଳ ଦ୍ୱାରା କାଳନେମି ଓ ତାର ବାହନ-ଉଭୟଙ୍କୁ ସଂହାର କଲେ ॥୫୬॥ ମାଳୀ ଏବଂ ସୁମାଳୀ ଅତିଶୟ ବଳବାନ୍ ଥିଲେ । ଦୁହେଁ ଯୁଦ୍ଧ କରିବାକୁ ଆସିବାରୁ ଭଗବାନ ଚକ୍ରଦ୍ୱାରା ଦୁହିଁଙ୍କୁ ଶିରଚ୍ଛେଦନ କରି ଭୂପାତିତ କଲେ । ତାପରେ ରାକ୍ଷସ ମାଲ୍ୟବାନ୍ ଭଗବାନଙ୍କୁ ଆହତ କରି ଏକ ପ୍ରଚଣ୍ଡ ଗଦା ଦ୍ୱାରା ଗରୁଡ଼ଙ୍କୁ ମାରିବାକୁ ବାହାରିବାରୁ ଭଗବାନ ଚକ୍ରଦ୍ୱାରା ସେହି ଗର୍ଜନକାରୀ ଦୈତ୍ୟର ଶିରଚ୍ଛେଦନ କଲେ ॥୫୭॥

## ଏକାଦଶ ଅଧ୍ୟାୟ

# ଦେବାସୁର ଯୁଦ୍ଧର ପରିସମାପ୍ତି

ପରିକ୍ଷିତ, ଏହାପରେ ଦେବତାମାନେ ପରମପୁରୁଷ ଭଗବାନଙ୍କ ଅପାର କରୁଣାରୁ ନିଜର ଚେତନା ଫେରିପାଇଲେ । ସେମାନଙ୍କ ମଧ୍ୟରେ ନୂଆ ଶକ୍ତି ଏବଂ ଉତ୍ସାହ ସୃଷ୍ଟି ହେଲା । ଯେଉଁ ଯେଉଁ ଅସୁରମାନଙ୍କ ଦ୍ୱାରା ସେମାନେ ପରାଜିତ ହୋଇଥିଲେ, ଏବେ ସେହି ସେହିମାନଙ୍କ ଉପରେ ପ୍ରଚଣ୍ଡ ଆକ୍ରମଣ ଚଳାଇଲେ ॥୧॥ ଇନ୍ଦ୍ର କ୍ରୁଦ୍ଧ ହୋଇ ଯୁଦ୍ଧରତ ବଳିଙ୍କୁ ମାରିବାପାଇଁ ଯେତେବେଳେ ବଜ୍ର ଉଠାଇଲେ, ପ୍ରଜାମାନେ ହାହାକାର କରିବାକୁ ଲାଗିଲେ ॥୨॥ ଅସ୍ତ୍ରଶସ୍ତ୍ରରେ ସୁସଜ୍ଜିତ ବଳି ନିର୍ଭୟରେ ରଣଭୂମିରେ ବିଚରଣ କରୁଥିଲେ । ସେହି ମନସ୍ୱୀ ଦୈତ୍ୟରାଜଙ୍କୁ ସମ୍ମୁଖରେ ଦେଖି ବଜ୍ରହସ୍ତ ଇନ୍ଦ୍ର ତାଙ୍କୁ ତିରସ୍କାର କରିବାକୁ ଲାଗିଲେ ॥୩॥ ଇନ୍ଦ୍ର କହିଲେ, ମୂର୍ଖ, ଯାଦୁକର ଯେପରି କପଟାଚରଣ ଦ୍ୱାରା ପିଲାଙ୍କ ଚକ୍ଷୁବନ୍ଧନ କରି ସେମାନଙ୍କ ଧନଯାକ ନେଇଯାଏ, ସେହିପରି ମାୟାଦ୍ୱାରା ତୁ ଆମକୁ ଜିଣିବାକୁ ଚାହୁଁଛୁ । ତୁ ଜାଣୁ ନାହୁଁ ଯେ ଆମ୍ଭେ ମାୟାର ଅଧୀଶ୍ୱର ॥୪॥ ଯେଉଁମାନେ ନିଜର ସୀମା ଉଲ୍ଲଂଘନ କରି ସ୍ୱର୍ଗ ଜୟ କରିବାକୁ ଚାହାନ୍ତି, ସେହି ଦସ୍ୟୁମାନଙ୍କୁ ମୁଁ ସେମାନଙ୍କ ପୂର୍ବପଦରୁ ଖସାଇ ଉଚିତ ସ୍ଥାନ ଦେବାକୁ ଚାହେ । ସେଥିପାଇଁ ରେ ଦୁରାତ୍ମା, ଶତଧାର ବଜ୍ରଦ୍ୱାରା ତୋର ଶିର ଛେଦନ କରି ମୁଁ ତୋର ଦୁରନ୍ତ ମାୟାର ଉଚିତ ଜବାବ ଦେଉଛି । ନିଜର ଭାଇ ବନ୍ଧୁ ସ୍ୱଜନଙ୍କ ସହ ତୁ କ'ଣ କରିପାରିବୁ, କର ॥୫-୬॥

ଦାନବରାଜ ବଳି କହିଲେ, ଇନ୍ଦ୍ର, ଯେଉଁମାନେ କାଳଦ୍ୱାରା ପ୍ରରୋଚିତ ହୋଇ ସଂଗ୍ରାମକ୍ଷେତ୍ରରେ ଉପସ୍ଥିତ ହୁଅନ୍ତି, ସେମାନଙ୍କୁ ଜୟ କିମ୍ବା ପରାଜୟ, ଯଶ ବା ଅପଯଶ କିମ୍ବା ମୃତ୍ୟୁ ମିଳିଥାଏ ॥୭॥ ଏଥିପାଇଁ ଜ୍ଞାନୀ ଲୋକମାନେ ଏହି ଜଗତକୁ କାଳର ଅଧୀନ ବୋଲି ଦେଖିପାରି ଜୟରେ ଆନନ୍ଦିତ ବା ପରାଜୟରେ ବିଷାଦଗ୍ରସ୍ତ ହୁଅନ୍ତି ନାହିଁ । ଏ ବିଷୟରେ ତୁମର କୌଣସି ଜ୍ଞାନ ନାହିଁ ॥୮॥ କୀର୍ତ୍ତି ଓ ଜୟ ଆଦିର ତୁମେ ହିଁ କର୍ତ୍ତା -- ତୁମ ମନରେ ଏହି ଅଭିମାନ ଜାତ ହୋଇଛି । ତେଣୁ ଆମପକ୍ଷରେ ସାଧୁମାନଙ୍କ ନିନ୍ଦନୀୟ ତୁମ ମର୍ମଭେଦୀ ବାକ୍ୟର କୌଣସି ମୂଲ୍ୟ ନାହିଁ ॥୯॥

ଶ୍ରୀ ଶୁକଦେବ କହିଲେ, ଶତ୍ରୁମର୍ଦ୍ଦନ ମହାବୀର ବଳି ଏହିପରି ଇନ୍ଦ୍ରଙ୍କୁ ବାକ୍ୟବାଣଦ୍ୱାରା ତିରସ୍କାର କରି ଧନୁକୁ କାନପର୍ଯ୍ୟନ୍ତ ଓଟାରି ବହୁ ବାଣ ନିକ୍ଷେପ କଲେ ॥୧୦ ଦେବତାମାନଙ୍କ ଶତ୍ରୁ ବଳି ଏପରି ସତ କଥା କହିବାରୁ ଇନ୍ଦ୍ର ତାଙ୍କୁ ସହିପାରିଲେ ନାହିଁ । ଅଙ୍କୁଶରେ ଆହତ ହାତୀ ପରି ସେ ଚିଡ଼ି ଉଠିଲେ ଏବଂ ବଳିଙ୍କ ଉପରେ ତାଙ୍କ ଶତ୍ରୁଘାତୀ ଅମୋଘ ବଜ୍ରକୁ ନିକ୍ଷେପ କଲେ । ଛିନ୍ନପକ୍ଷ ପର୍ବତ ପରି ବଳି ରଥରୁ ତଳକୁ ଖସିପଡ଼ିଲେ ॥୧୧-୧୨॥ ବଳିଙ୍କର ପ୍ରିୟ ସଖା ଜମ୍ଭାସୁର ନିଜ ମିତ୍ରର ଏପରି ଅବସ୍ଥା ଦେଖି ଯୁଦ୍ଧ କରିବାପାଇଁ ଇନ୍ଦ୍ରଙ୍କ ଆଗରେ ଆସି ଠିଆ ହୋଇଗଲା ॥୧୩॥

ମହାବଳୀ ସିଂହାରୂଢ଼ ଜମ୍ଭ ଗଦା ଉଠାଇ ଇନ୍ଦ୍ରଙ୍କ ଆଡ଼କୁ ଦଉଡ଼ି ଆସିଲା ଏବଂ ଇନ୍ଦ୍ର ଓ ଐରାବତ ହସ୍ତୀର ସ୍କନ୍ଧରେ ପ୍ରହାର କଲା । ଐରାବତ ଗଦାପ୍ରହାରରେ ଅତିଶୟ ବ୍ୟଥିତ ଓ କାତର ହୋଇ ଜଙ୍ଘ ମାଡ଼ି ଭୂଇଁରେ ମୂର୍ଚ୍ଛିତ ହୋଇ ପଡ଼ିଗଲା ॥୧୪-୧୫॥ ଏହା ଦେଖି ଇନ୍ଦ୍ରଙ୍କର ସାରଥି ମାତଳି ସହସ୍ର ଅଶ୍ୱଯୁକ୍ତ ରଥ ଆଣି ପହଞ୍ଚାଇ ଦେଲା ଏବଂ ଇନ୍ଦ୍ର ଐରାବତକୁ ଛାଡ଼ି ରଥ ଉପରକୁ ଉଠିଗଲେ ॥୧୬॥ ଦାନବଶ୍ରେଷ୍ଠ ଜମ୍ଭ ସାରଥିର ଏହି କାର୍ଯ୍ୟକୁ ପ୍ରଶଂସା କରି ହସି ହସି ଏକ ଜଳନ୍ତା ଶୂଳଦ୍ୱାରା ମାତଳିଙ୍କୁ ପ୍ରହାର କଲା ॥୧୭॥ ମାତଳି ବହୁ କଷ୍ଟରେ ଏହି ଅସହ୍ୟ ପୀଡ଼ାକୁ ସହିନେଲେ । ଇନ୍ଦ୍ର କ୍ରୁଦ୍ଧ ହୋଇ ବଜ୍ରଦ୍ୱାରା ଜମ୍ଭର ମସ୍ତକ ଛେଦନ କଲେ ॥୧୮॥ ଦେବର୍ଷି ନାରଦଙ୍କଠାରୁ ଜମ୍ଭାସୁରର ମୃତ୍ୟୁ ସମ୍ବାଦ ଶୁଣି ନମୁଚି, ବଳ ଓ ପାକ ଆଦି ତାର ଆତ୍ମୀୟ ସ୍ୱଜନମାନେ ରଣଭୂମିରେ ଆସି ପହଞ୍ଚିଗଲେ ॥୧୯॥ ସେମାନେ ମର୍ମଭେଦୀ କଠୋର ବାକ୍ୟଦ୍ୱାରା ଇନ୍ଦ୍ରଙ୍କୁ ତିରସ୍କାର କରି

ମେଘମାନେ ପର୍ବତ ଉପରେ ମୁଷଳଧାର ବର୍ଷା କରିବା ପରି ଇନ୍ଦ୍ରଙ୍କ ବକ୍ଷସ୍ଥଳରେ ଶର ବୃଷ୍ଟି କଲେ ॥୨୦॥ ବଳ ନାମକ ଅସୁର ଅତି କ୍ଷିପ୍ରତାର ସହିତ ଏକ ହଜାର ଶରଦ୍ୱାରା ଇନ୍ଦ୍ରଙ୍କର ଏକ ହଜାର ଘୋଡ଼ାଙ୍କୁ ଆହତ କଲା ॥୨୧॥ ପାକ ନାମକ ଅସୁର ଦୁଇଟି ଶର ଦ୍ୱାରା ମାତଲିଙ୍କୁ ଓ ଶହେ ବାଣଦ୍ୱାରା ରଥର ପ୍ରତ୍ୟେକ ଅଙ୍ଗକୁ ବିଦ୍ଧ କଲା । ଏକାଥରକେ ଜଣେ ଉପର ନଳ ହୋଇ ଏତେ ଅସ୍ତ୍ର ନିକ୍ଷେପ କରିବା ଅଦ୍ଭୁତ ମନେ ହେଲା ॥୨୨॥ ନମୁଚି ଯୁଦ୍ଧକ୍ଷେତ୍ରରେ ପନ୍ଦରଟି ସ୍ୱର୍ଣ୍ଣପୁଙ୍ଖ ମହାଶର ଦ୍ୱାରା ଇନ୍ଦ୍ରଙ୍କୁ ବିଦ୍ଧ କରି ସଜଳ ମେଘର ଘଡ଼ଘଡ଼ି ଶବ୍ଦପରି ସିଂହନାଦ କରିବାକୁ ଲାଗିଲା ॥୨୩॥ ବର୍ଷାକାଳରେ ମେଘମାନେ ଯେପରି ସୂର୍ଯ୍ୟକୁ ଘୋଡ଼ାଇ ପକାନ୍ତି, ଅସୁରମାନେ ସେହିପରି ସବୁଦିଗରୁ ଶରବୃଷ୍ଟି କରି ରଥ ଓ ସାରଥି ସହିତ ଇନ୍ଦ୍ରଙ୍କୁ ଘୋଡ଼ାଇ ପକାଇଲେ ॥୨୪॥ ସମୁଦ୍ରରେ ଭଗ୍ନତରୀ ବଣିକମାନଙ୍କର ଯେପରି ଅବସ୍ଥା ହୁଏ, ଇନ୍ଦ୍ରଙ୍କୁ ନ ଦେଖି ଦେବତାମାନଙ୍କର ସେହିପରି ଅବସ୍ଥା ହେଲା । ସେମାନେ ନାୟକହୀନ ଭାବରେ ଶତ୍ରୁମାନଙ୍କ ହାତରେ ପଡ଼ି ଆକୁଳ ହୋଇ ହାହାକାର କରିବାକୁ ଲାଗିଲେ ॥୨୫॥ ଏହି ସମୟରେ ଇନ୍ଦ୍ର ଅଶ୍ୱ, ରଥ ଓ ସାରଥିଙ୍କ ସହିତ ସେହି ଶରବଦ୍ଧ ପିଞ୍ଜରା ଭିତରୁ ବାହାରି ଆସିଲେ । ସକାଳେ ସୂର୍ଯ୍ୟ ଯେପରି ନିଜ ଆଲୋକରେ ପୃଥିବୀକୁ, ଆକାଶକୁ ଓ ଚତୁର୍ଦ୍ଦିଗକୁ ଆଲୋକିତ କରେ, ଇନ୍ଦ୍ର ସେହିପରି ନିଜ ତେଜରେ ପ୍ରତିଭାତ ହେଲେ ॥୨୬॥ ପରିକ୍ଷିତ, ବଜ୍ରଧାରୀ ଇନ୍ଦ୍ର ଶତ୍ରୁମାନଙ୍କଦ୍ୱାରା ନିଜ ସୈନ୍ୟମାନଙ୍କର ଏପରି ଆର୍ତ୍ତ ଅବସ୍ଥା ଦେଖି ଶତ୍ରୁବିନାଶପାଇଁ ଅଷ୍ଟଧାର ବଜ୍ରାସ୍ତ୍ରକୁ ନିକ୍ଷେପ କଲେ । ରାକ୍ଷସମାନେ ଦେଖୁ ଦେଖୁ ଏହି ବଜ୍ର ସେମାନଙ୍କର ଭୟସଞ୍ଚାରପୂର୍ବକ ବଳ ଓ ପାକର ଶିରଚ୍ଛେଦନ କଲା ॥୨୭-୨୮॥

ପରିକ୍ଷିତ, ବଳ ଓ ପାକ ନିହତ ହେବାର ଦେଖି ଶୋକ, ଦୁଃଖ ଓ କ୍ରୋଧଯୁକ୍ତ ନମୁଚି ଇନ୍ଦ୍ରଙ୍କୁ ହତ୍ୟା କରିବାକୁ ଇଚ୍ଛା କରି ଘୋର ଯୁଦ୍ଧରେ ପ୍ରବୃତ୍ତ ହେଲା ॥୨୯॥ 'ଇନ୍ଦ୍ର, ବର୍ତ୍ତମାନ ତୁ ବଞ୍ଚିବୁ ନାହିଁ' -- ଏହିପରି ଚିତ୍କାର କରି ସେ ଏକ ତ୍ରିଶୂଳ ଉଠାଇ ଇନ୍ଦ୍ରଙ୍କଆଡ଼କୁ ଦଉଡ଼ି ଆସିଲା । ଲୌହବଳୟଯୁକ୍ତ ଓ ସ୍ୱର୍ଣ୍ଣଜଡ଼ିତ ଏହି ତ୍ରିଶୂଳକୁ ସିଂହନାଦ କରି ସେ ଇନ୍ଦ୍ରଙ୍କ ପ୍ରତି ନିକ୍ଷେପ କଲା ॥୩୦॥ ପରିକ୍ଷିତ, ଇନ୍ଦ୍ର ଦେଖିଲେ, ଅତି ବେଗରେ ତ୍ରିଶୂଳ ତାଙ୍କ ଆଡ଼କୁ ଆସୁଛି । ସେ ଶରଦ୍ୱାରା ଆକାଶମାର୍ଗରୁ ତାକୁ ହଜାର ହଜାର ଖଣ୍ଡରେ ଛେଦନ କଲେ । ଦେବରାଜ ଇନ୍ଦ୍ର କ୍ରୁଦ୍ଧ ହୋଇ ତାର ଗ୍ରୀବା ଦେଶକୁ ବଜ୍ରରେ ଆଘାତ କଲେ ॥୩୧॥ କ୍ରୋଧରେ ନିକ୍ଷିପ୍ତ ସେହି ଇନ୍ଦ୍ରବଜ୍ର ନମୁଚିର ଚର୍ମକୁ ମଧ୍ୟ ଭେଦ କରିପାରିଲା ନାହିଁ । ଯେଉଁ ବଜ୍ର ଦିନେ ଅତିବଳଶାଳୀ ବୃତ୍ରାସୁରକୁ ନିହତ କରିଥିଲା, ଆଜି ସେ ନମୁଚିର ଗ୍ରୀବାର ଚର୍ମକୁ ଭେଦ କରି ନ ପାରି ତିରସ୍କୃତ ହେଲା ; ଏହା ହିଁ ଆଶ୍ଚର୍ଯ୍ୟର ବିଷୟ ॥୩୨॥ ଶତ୍ରୁର କିଛି କରି ନ ପାରି ବଜ୍ର ଯେତେବେଳେ ବ୍ୟର୍ଥ ହୋଇ ଫେରି ଆସେ, ଇନ୍ଦ୍ର ସେତେବେଳେ ଭୟଭୀତ ହୋଇପଡ଼ନ୍ତି (କାରଣ ବଜ୍ର ହିଁ ତାଙ୍କର ଅମୋଘ ଅସ୍ତ୍ର) । ଇନ୍ଦ୍ର ଭାବିବାକୁ ଲାଗିଲେ, 'ଦୈବଯୋଗରେ ପୁଣି ଏପରି ଘଟଣା ଘଟିପାରେ' ? ସୃଷ୍ଟିର ପ୍ରଥମ ଅବସ୍ଥାରେ ପର୍ବତମାନଙ୍କର ପକ୍ଷ ଥିବାରୁ ସେମାନେ ଉଡ଼ି ପାରୁଥିଲେ ଏବଂ ଯେତେବେଳେ ପୃଥିବୀରେ ଆସି ପଡୁଥିଲେ, ସେମାନଙ୍କ ଅତି ଭାରରେ ପ୍ରଜାଙ୍କର ବିନାଶ ଘଟୁଥିଲା । ଏହା ଦେଖି ମୁଁ ଏହି ବଜ୍ରଦ୍ୱାରା ସେମାନଙ୍କର ପକ୍ଷ ଛେଦନ କରୁଥିଲି ॥୩୩-୩୪॥ ତ୍ୱଷ୍ଟାଙ୍କ ତପୋବୀର୍ଯ୍ୟର ସାରସ୍ୱରୂପ ତାଙ୍କ ସୃଷ୍ଟ ବୃତ୍ରାସୁରକୁ ଏହି ବଜ୍ରଦ୍ୱାରା ମୁଁ ନିହତ କରିଥିଲି ଏବଂ ଅନ୍ୟ ଯେଉଁ ବଳବାନ୍ ଶତ୍ରୁମାନଙ୍କ ଦେହ ଅନ୍ୟ ଅସ୍ତ୍ରଶସ୍ତ୍ରଙ୍କଦ୍ୱାରା ଅଭେଦ୍ୟ ଥିଲା, ମୁଁ ଏହି ବଜ୍ରଦ୍ୱାରା ସେମାନଙ୍କୁ ମଧ୍ୟ ବିଦୀର୍ଣ୍ଣ କରିଛି ॥୩୫॥ ବର୍ତ୍ତମାନ ମୋର ସେହି ବଜ୍ର ଏକ ସାମାନ୍ୟ ଅସୁରପାଖରେ ବ୍ୟର୍ଥ ହେଲା । ଦଧୀଚିଙ୍କର ଅବ୍ୟର୍ଥ ବ୍ରହ୍ମତେଜ ବ୍ୟର୍ଥ ହୋଇଗଲା । ବର୍ତ୍ତମାନ ଏକ ଯଷ୍ଟିତୁଲ୍ୟ ଏହି ବଜ୍ରକୁ ମୁଁ ଆଉ ଧାରଣ କରିବି ନାହିଁ ॥୩୬॥ ଇନ୍ଦ୍ର ବିଷଣ୍ଣ ହୋଇ ପଡ଼ିଲେ । ଆକାଶରୁ ଅଶରୀରୀ ବାଣୀ ହେଲା, 'ଇନ୍ଦ୍ର, ଏ ଦାନବ ଶୁଷ୍କ କିମ୍ବା ଆର୍ଦ୍ର କୌଣସି ଅସ୍ତ୍ରରେ ନିହତ ହେବ ନାହିଁ । ଆର୍ଦ୍ର ଏବଂ ଶୁଷ୍କ କୌଣସି ଅସ୍ତ୍ରରେ ତା'ର ମୃତ୍ୟୁ ହେବ ନାହିଁ ବୋଲି ମୁଁ ବର ଦେଇଥିବାଯୋଗୁଁ ତୁମେ ଶତ୍ରୁନାଶପାଇଁ ଅନ୍ୟ ଉପାୟ ଚିନ୍ତା କର' ॥୩୭-୩୮॥ ଏହି ଦୈବବାଣୀ ଶୁଣି ଇନ୍ଦ୍ର ଧୀରସ୍ଥିର ଭାବରେ ଚିନ୍ତା କରି ସ୍ଥିର କଲେ

ଯେ, ଫେଣ ହେଉଛି ଏକମାତ୍ର ଅସ୍ତ୍ର ଯାହା ଉଭୟ ଆର୍ଦ୍ର ଓ ଶୁଷ୍କ । ତେଣୁ ଏହା କେବଳ ଶୁଷ୍କ ବା ଆର୍ଦ୍ର କୁହାଯାଇ ପାରିବ ନାହିଁ । ଏହିପରି ଚିନ୍ତା କରି ସମୁଦ୍ରଫେଣରେ ସେ ନମୁଚିର ଶିର ଛେଦନ କଲେ । ମୁନିଋଷିଗଣ ଇନ୍ଦ୍ରଙ୍କର ସ୍ତୁତି କରି ତାଙ୍କ ଉପରେ ପୁଷ୍ପ ବୃଷ୍ଟି କରିବାକୁ ଲାଗିଲେ ॥୩୯-୪୦॥ ବିଶ୍ୱାବସୁ ଓ ପରାବସୁ ନାମରେ ଦୁଇଜଣ ଶ୍ରେଷ୍ଠ ଗନ୍ଧର୍ବ ଦେବରାଜଙ୍କର ସ୍ତୁତିଗାନ କଲେ । ଦେବତାମାନଙ୍କର ଦୁନ୍ଦୁଭି ବାଜି ଉଠିଲା ଏବଂ ନର୍ତ୍ତକୀମାନେ ଆନନ୍ଦରେ ନୃତ୍ୟ କରିବାକୁ ଲାଗିଲେ ॥୪୧॥ ଏହିପରି ବାୟୁ, ଅଗ୍ନି, ବରୁଣ ଓ ଅନ୍ୟ ଦେବତାମାନେ ସିଂହ ମୃଗମାନଙ୍କୁ ବଧ କରିବା ପରି ପ୍ରତିଦ୍ୱନ୍ଦ୍ୱୀ ଅସୁରମାନଙ୍କୁ ବିନାଶ କରିବାକୁ ଲାଗିଲେ ॥୪୨॥ ପରିକ୍ଷିତ, ବ୍ରହ୍ମା ଦାନବମାନଙ୍କର ଏପରି ବିନାଶ ଦେଖି ଦେବର୍ଷି ନାରଦଙ୍କୁ ଦେବତାମାନଙ୍କ ପାଖକୁ ପଠାଇଲେ । ଦେବର୍ଷି ନାରଦ ଦେବତାମାନଙ୍କୁ ଅସୁରକ୍ଷୟରୁ ନିବୃତ୍ତ କଲେ ॥୪୩॥

ନାରଦ କହିଲେ, ଦେବତାମାନେ, ଭଗବାନ ନାରାୟଣଙ୍କ ବାହୁବଳକୁ ଆଶ୍ରୟ କରି ତୁମେ ଅମୃତ ଲାଭ କରିଛ ଏବଂ ତୁମର ଐଶ୍ୱର୍ଯ୍ୟ ବୃଦ୍ଧି ଘଟିଛି । ବର୍ତ୍ତମାନ ତୁମେ ସମସ୍ତେ ଯୁଦ୍ଧରୁ ନିବୃତ୍ତ ହୁଅ ॥୪୪॥

ଶ୍ରୀ ଶୁକଦେବ କହିଲେ, ନାରଦଙ୍କର କଥା ମାନି ଦେବତମାନେ ନିଜର କ୍ରୋଧ ସମ୍ବରଣ କଲେ ଏବଂ ନିଜର ଅନୁଚରମାନଙ୍କଦ୍ୱାରା ପ୍ରଶଂସିତ ହୋଇ ସ୍ୱର୍ଗଧାମକୁ ଚାଲିଗଲେ ॥୪୫॥ ନାରଦଙ୍କ ଉପଦେଶକ୍ରମେ ଯୁଦ୍ଧରେ ବଞ୍ଚିଯାଇଥିବା ରାକ୍ଷସମାନେ ବଜ୍ରାଘାତରେ ବିପନ୍ନ ବଳିଙ୍କୁ ନେଇ ଅସ୍ତାଚଳକୁ ଚାଲିଗଲେ ॥୪୬॥ ସେଠାରେ ଦୈତ୍ୟଗୁରୁ ଶୁକ୍ରାଚାର୍ଯ୍ୟ ଯେଉଁମାନଙ୍କର ଗଳା ଆଦି ଅଙ୍ଗପ୍ରତ୍ୟଙ୍ଗ କଟିଯାଇ ନ ଥିଲା ସେହି ଆହତ ଅସୁରମାନଙ୍କୁ ସଞ୍ଜୀବନୀ ମନ୍ତ୍ରଦ୍ୱାରା ବଞ୍ଚାଇଦେଲେ ॥୪୭॥ ଶୁକ୍ରାଚାର୍ଯ୍ୟଙ୍କ କରସ୍ପର୍ଶରେ ବଳିଙ୍କ ଇନ୍ଦ୍ରିୟମାନଙ୍କରେ ବଳ ଓ ମନରେ ସ୍ମରଣଶକ୍ତି ଆସିଗଲା । ବଳି ଲୋକତତ୍ତ୍ୱ ବିଷୟରେ ବିଚକ୍ଷଣ ଥିଲେ । ସଂସାରରେ ଜନ୍ମମରଣ ଲାଗିରହିଛି ବୋଲି ଚିନ୍ତା କରି ଏହି ପରାଜୟରେ ସେ ଆଦୌ ଦୁଃଖିତ ହେଲେ ନାହିଁ ॥୪୮॥

## ଦ୍ୱାଦଶ ଅଧ୍ୟାୟ

# ମୋହିନୀ ରୂପରେ ମହାଦେବ ମୋହିତ ହେଲେ

ଶ୍ରୀ ଶୁକଦେବ କହିଲେ, ପରିକ୍ଷିତ, ଭଗବାନ ବିଷ୍ଣୁ ସ୍ତ୍ରୀରୂପଧାରଣ ଦ୍ୱାରା ଦାନବମାନଙ୍କୁ ମୋହିତ କରି ଦେବତାମାନଙ୍କୁ ଅମୃତ ପିଆଇଥିଲେ -- ତାହା ଶୁଣି ଦେବୀଙ୍କ ସହିତ ବୃଷଭପିଠିରେ ବସି ସମସ୍ତ ଭୂତଗଣଙ୍କୁ ସାଙ୍ଗରେ ଧରି ଭଗବାନ୍ ଶଙ୍କର ଶ୍ରୀହରିଙ୍କ ନିବାସ-ସ୍ଥାନରେ ପହଞ୍ଚିଲେ ॥୧-୨॥ ଭଗବାନ୍ ଶ୍ରୀହରି ଅତିଶୟ ଆଦରରେ ଗୌରୀ ଓ ଶଙ୍କରଙ୍କୁ ସ୍ୱାଗତ ଅଭିବାଦନ କଲେ । ଶଙ୍କର ପ୍ରତ୍ୟଭିବାଦନ କରି ହସି ହସି ତାଙ୍କୁ ପଚାରି ବସିଲେ-- ॥୩॥ ଶ୍ରୀ ମହାଦେବ କହିଲେ, ଆପଣ ସମସ୍ତଙ୍କର ଆରାଧ୍ୟ ଦେବତା, ବିଶ୍ୱବ୍ୟାପୀ, ଜଗଦୀଶ୍ୱର ଏବଂ ଜଗତ୍‌ର ସ୍ୱରୂପ । ଆପଣ ସମସ୍ତ ଚରାଚରର ମୂଳକାରଣ, ତାର ନିୟନ୍ତା ଏବଂ ଆତ୍ମା ସ୍ୱରୂପ ॥୪॥ ଏହି ଜଗତ୍‌ର ଆଦି, ଅନ୍ତ ଓ ମଧ୍ୟର ଆପଣ ହିଁ କର୍ତ୍ତା । କିନ୍ତୁ ଆପଣଙ୍କର ଆଦି, ଅନ୍ତ ଓ ମଧ୍ୟ ନାହିଁ, ଏବଂ ଆପଣଙ୍କ ଅବିନାଶୀ ସ୍ୱରୂପରେ ଦ୍ରଷ୍ଟା-ଦୃଶ୍ୟର, ଓ ଭୋକ୍ତା-ଭୋଗ୍ୟର ଭେଦଭାବ ନାହିଁ । ତେଣୁ ଆପଣ ସ୍ୱୟଂ ସତ୍ୟ ଓ ଚିନ୍ମୟ ବ୍ରହ୍ମ ॥୫॥ ସେଥିପାଇଁ ମଙ୍ଗଳକାମୀ ନିଷ୍କାମ ମୁନିମାନେ ଐହିକ ଓ ପାରତ୍ରିକ ଭୋଗମାନଙ୍କ ପ୍ରତି ଆସକ୍ତ ନହୋଇ ଆପଣଙ୍କ ପାଦପଦ୍ମକୁ ସର୍ବଦା ଧ୍ୟାନ କରନ୍ତି ॥୬॥ ଆପଣ ପୂର୍ଣ୍ଣବ୍ରହ୍ମ, ଅମୃତସ୍ୱରୂପ, ନିର୍ଗୁଣ, ଶୋକରହିତ, ଆନନ୍ଦସ୍ୱରୂପ, ନିର୍ବିକାର, ଅନନ୍ୟ ଏବଂ ବିଶ୍ୱର ସୃଷ୍ଟି, ସ୍ଥିତି ଓ ଲୟର କାରଣ । ନିଜର ନିଜେ ନିୟନ୍ତା ଏବଂ ନିରପେକ୍ଷ ॥୭॥ ଯେପରି ସୁବର୍ଣ୍ଣ

ଓ ସୁବର୍ଣ୍ଣନିର୍ମିତ କୁଣ୍ଡଳ ମଧ୍ୟରେ ତତ୍ତ୍ୱତଃ କୌଣସି ପାର୍ଥକ୍ୟ ନ ଥାଏ, ଉଭୟ ଏକ ଓ ଅଭିନ୍ନ, ସେହିପରି ଆପଣଙ୍କଠାରେ ଉଭୟ କାର୍ଯ୍ୟ ଓ କାରଣ ନିହିତ । ଅଜ୍ଞାନୀମାନେ ଆପଣଙ୍କର ସ୍ୱରୂପକୁ ଜାଣି ନ ପାରି ଆପଣଙ୍କ ମଧ୍ୟରେ ଭେଦର କଳ୍ପନା କରିଥା'ନ୍ତି । କିନ୍ତୁ ବସ୍ତୁତଃ ଆପଣ ନିର୍ଗୁଣ ଓ ନିରାକାର ॥୮॥ କେହି କେହି ଆପଣଙ୍କୁ ବ୍ରହ୍ମ ବୋଲି ଭାବନ୍ତି, କେହି କେହି ଏକମାତ୍ର ଧର୍ମ ବୋଲି ବର୍ଣ୍ଣନା କରନ୍ତି ଏବଂ ପ୍ରକୃତି ଓ ପୁରୁଷର ଉର୍ଦ୍ଧ୍ୱରେ ସ୍ଥିତ ପରମେଶ୍ୱର ବୋଲି କେହି କେହି ଆପଣଙ୍କୁ ଚିନ୍ତା କରନ୍ତି । ପୁଣି କେହି କେହି ନବଶକ୍ତିଯୁକ୍ତ ପରମପୁରୁଷ ଏବଂ କେହି ଆପଣଙ୍କୁ ଅବ୍ୟୟ ଓ ସ୍ୱତନ୍ତ୍ର ପୁରୁଷୋତ୍ତମ ବୋଲି କୀର୍ତ୍ତନ କରିଥା'ନ୍ତି ॥୯॥

ପ୍ରଭୁ, ଆପଣଙ୍କ ରଚିତ ଏହି ବିଶ୍ୱର ତତ୍ତ୍ୱ ବ୍ରହ୍ମା ଏବଂ ମୁଁ ଜାଣୁ ନାହିଁ । ସତ୍ତ୍ୱଗୁଣରୁ ଜାତ ମରୀଚି ଆଦି ଋଷିମାନେ ମଧ୍ୟ ଜାଣନ୍ତି ନାହିଁ । ଆପଣଙ୍କ ମାୟାରେ ମୋହିତ ଦୁଷ୍ଟସ୍ୱଭାବସମ୍ପନ୍ନ ଦୈତ୍ୟ ଓ ମନୁଷ୍ୟମାନେ ଆପଣଙ୍କୁ ଜାଣିବାକୁ କିପରି ବା ସମର୍ଥ ହେବେ ? ॥୧୦॥ ବାୟୁ ଯେପରି ସମସ୍ତ ଚରାଚର ଜଗତ୍‌ରେ ଓ ଆକାଶରେ ପରିବ୍ୟାପ୍ତ ହୋଇଥାଏ, ଆପଣ ସେହିପରି ଜ୍ଞାନ ରୂପରେ ସମସ୍ତଙ୍କ ଆତ୍ମାରେ ବିରାଜିତ । ନିଜ ସୃଷ୍ଟ ଏହି ବିଶ୍ୱର ସୃଷ୍ଟି, ସ୍ଥିତି ଓ ପ୍ରଳୟ, ପ୍ରାଣୀମାନଙ୍କର ଆଚରଣ, ଜଗତର ବନ୍ଧନ ଏବଂ ମୋକ୍ଷ ସବୁ କିଛି ଆପଣ ଜାଣନ୍ତି, କିନ୍ତୁ ଆପଣଙ୍କୁ କେହି ଜାଣିପାରନ୍ତି ନାହିଁ ॥୧୧॥ ସତ୍ତ୍ୱାଦିଗୁଣଦ୍ୱାରା ଆପଣ ଯେଉଁସବୁ ଅବତାର ଗ୍ରହଣ କରିଛନ୍ତି, ତାହା ମୁଁ ଦେଖିଛି, କିନ୍ତୁ ଆପଣ ଏବେ ଯେଉଁ ନାରୀରୂପ ଧାରଣ କରିଥିଲେ, ମୁଁ ତାହା ଦେଖି ନାହିଁ, କିନ୍ତୁ ଦେଖିବାକୁ ଇଚ୍ଛା କରୁଛି । ଯେଉଁ ରୂପଦ୍ୱାରା ଆପଣ ଦୈତ୍ୟମାନଙ୍କୁ ମୋହିତ କରି ଦେବତାମାନଙ୍କୁ ଅମୃତ ପାନ କରାଇଲେ, ଆପଣଙ୍କର ସେହି ରୂପଦର୍ଶନ ପାଇଁ ଆମେ ଏଠାକୁ ଆସିଛୁ । ସେଥିପାଇଁ ଆମର କୌତୂହଳ ସୃଷ୍ଟିହୋଇଛି ॥୧୨-୧୩॥

ଶ୍ରୀ ଶୁକଦେବ କହିଲେ, ଭଗବାନ ବିଷ୍ଣୁ ଶୂଳପାଣିଙ୍କଦ୍ୱାରା ପ୍ରାର୍ଥିତ ହୋଇ ତାଙ୍କୁ ହସି ହସି ଭାବଗମ୍ଭୀର ସ୍ୱରରେ ଏହିପରି ଉତ୍ତର ଦେଲେ-- ॥୧୪॥ ଭଗବାନ କହିଲେ, ଦୈତ୍ୟମାନଙ୍କର କୌତୂହଳ ଉଦ୍ରେକ କରିବାକୁ ମୁଁ ସ୍ତ୍ରୀ ବେଶ ଧାରଣ କରିଥିଲି । ଅମୃତପାତ୍ର ଅସୁରମାନେ ଅପହରଣ କରିଥିବାଯୋଗୁଁ ଦେବକାର୍ଯ୍ୟପାଇଁ ତାର ଉଦ୍ଧାର ଥିଲା ମୋର ଉଦ୍ଦେଶ୍ୟ ॥୧୫॥ ଦେବଶ୍ରେଷ୍ଠ, କିନ୍ତୁ ଏହି ରୂପ କାମୀମାନଙ୍କର କାମଭାବନାକୁ ଉତ୍ତେଜିତ କରେ । ସେଥିପାଇଁ ସେମାନଙ୍କୁ ଏହା ପ୍ରିୟ । ଆପଣ ଦେଖିବାକୁ ଚାହାନ୍ତି ତ ବର୍ତ୍ତମାନ ମୁଁ ତାହା ଦେଖାଇବାକୁ ଯାଉଛି ॥୧୬॥

ଶ୍ରୀ ଶୁକଦେବ କହିଲେ, ଭଗବାନ ବିଷ୍ଣୁ ଏହିପରି କହି ଅନ୍ତର୍ହିତ ହୋଇଗଲେ । ଉମାଙ୍କ ସହିତ ଶିବ ଚାରିଆଡ଼କୁ ଚାହିଁବାକୁ ଲାଗିଲେ ॥୧୭॥ ସେ ଦେଖିଲେ ଯେ, ଏକ ସୁନ୍ଦର ଉପବନ ହୋଇଛି । ବୃକ୍ଷଲତାମାନେ ବହୁରଙ୍ଗର ପତ୍ର ଓ ଫୁଲ ଦ୍ୱାରା ଶୋଭା ପାଉଛନ୍ତି । ଝିଲିମିଲି ଶାଢ଼ି ପିନ୍ଧି ଏକ ରୂପସୀ ନାରୀ କନ୍ଦୁକ ଧରି କ୍ରୀଡ଼ାରତ । ତାର ନିତମ୍ବରେ ଚନ୍ଦ୍ରହାର ଶୋଭା ପାଉଛି । କନ୍ଦୁକଟି ଉପରତଳ ହେଉଥିବା ହେତୁ ତାକୁ ଧରିବାବେଳେ ତାର ସ୍ତନଦ୍ୱୟ ଥରି ଉଠୁଛି, ଦୁଇ ସ୍ତନ ମଧ୍ୟରେ ଥିବା ସୁନ୍ଦର ହାରଟି ଏପରି ହଲିବାରେ ଲାଗିଛି ଯେ ଜଣାଯାଉଛି ସତେ ଅବା ସ୍ତନ ଭାରରେ ତାର କ୍ଷୀଣ କଟିଟି ଭାଙ୍ଗିପଡ଼ିବ । ନବପଲ୍ଲବର ରଙ୍ଗ ପରି ତାର ନାଲି ନାଲି ପାଦ ଦୁଇଟି ଏକ ବିଚିତ୍ର ଅରୁଣିମାର ଶୋଭା ସୃଷ୍ଟି କରିଛି ॥୧୮-୧୯॥ କନ୍ଦୁକଟି ଉପରକୁ ଉଠି ଯେତେବେଳେ ଏପଟ ସେପଟ ହେଉଛି ସେ ଡେଇଁପଡ଼ି ତାକୁ ଧରି ନେଉଛି । ଏଥିରେ ତାର ଚଞ୍ଚଳ ଆୟତ ଚକ୍ଷୁରେ ଉଦ୍‌ବେଗ ଦେଖା ଯାଉଛି । କପୋଳରେ କର୍ଣ୍ଣସ୍ଥିତ କୁଣ୍ଡଳର ଆଭା ସହିତ କୁଞ୍ଚିତ କେଶରାଶି ବିଚ୍ଛୁରିତ ହୋଇ ତାର ମୁଖଶୋଭାକୁ ଆହୁରି ବଢ଼ାଇ ଦେଉଛି ॥୨୦॥ ଯେବେ ତାର ଶାଢ଼ି ଖସି ଯାଉଛି କିମ୍ବା କବରୀ ଫିଟି ଯାଉଛି ତେବେ ସେ ବାଁ ହାତରେ ତାକୁ ସଜାଡ଼ିଦେଇ ଡାହାଣ ହାତରେ କନ୍ଦୁକକୁ ଫିଙ୍ଗୁଛି । ସେତେବେଳେ ସେ ନିଜ ମାୟାରେ ସମସ୍ତ ଜଗତକୁ ମୋହିତ କରିଦେଉଛି ॥୨୧॥ କନ୍ଦୁକ ଧରି ଖେଳୁ ଖେଳୁ ସେହି ରମଣୀ ଅଳ୍ପ ହସିଦେଇ କଟାକ୍ଷରେ ଶଙ୍କରଙ୍କୁ ଟିକିଏ ଚାହିଁଦେଲା

କ୍ଷଣି ତାଙ୍କ ମନ ଆଉ ନିଜ ବଶରେ ରହିଲା ନାହିଁ । ସ୍ତ୍ରୀର କଟାକ୍ଷକୁ ମନେ ମନେ ଭାବି ଓ ବାରମ୍ବାର ତା ଆଡକୁ ଚାହିଁ ତାଙ୍କ ମନ ବିଚଳିତ ହୋଇଗଲା । ତାଙ୍କ ପାଖରେ ପତ୍ନୀ ଉମା ଓ ଅନୁଚରମାନେ ଯେ ଅଛନ୍ତି, ତାହା ସେ ଭୁଲିଗଲେ ॥୨୨॥ ଥରେ ସେ ମୋହିନୀର ହାତରୁ ଖସିଯାଇ କନ୍ଦୁକଟି ଦୂରକୁ ଚାଲିଗଲା । ସେ କନ୍ଦୁକ ପଛେ ପଛେ ଗୋଡ଼ାଇବାବେଳେ ମହାଦେବ ଦେଖିଲେ ଯେ, ହଠାତ୍ ଟିକିଏ ପବନ ବହି ତାର ଶାଢ଼ି ଓ କାଞ୍ଚିଲାକୁ ଉଡ଼ାଇନେଲା ॥୨୩॥ ତାର ପ୍ରତ୍ୟେକ ଅଙ୍ଗପ୍ରତ୍ୟଙ୍ଗ ଅତିଶୟ ସୁନ୍ଦର ଥିଲା ଓ ଆଖିପଡ଼ିବା ମାତ୍ରେ ମନକୁ ହରି ନେଉଥିଲା । କୁଞ୍ଚିତ କଟାକ୍ଷରେ ନିଜ ଦେହକୁ ମଧ୍ୟ ସେ ମଝିରେ ମଝିରେ ଚାହୁଁଥିଲା । ତାକୁ ଦେଖି ଭଗବାନ ଶଙ୍କର ତା'ପ୍ରତି ଅତିଶୟ ଆକୃଷ୍ଟ ହୋଇ ପଡ଼ିଲେ ॥୨୪॥

କାମବିହ୍ଵଳ ମହାଦେବଙ୍କର ବିବେକବୁଦ୍ଧି ହଜିଗଲା । ଭବାନୀ ଦେଖୁଛନ୍ତି, ତଥାପି ସେ ଲଜ୍ଜାହୀନ ଭାବରେ ତା ପଛରେ ଗୋଡ଼ାଇଲେ । ସେହି ବିବସ୍ତ୍ରା କନ୍ୟା ଶଙ୍କରଙ୍କୁ ତା ଆଡ଼କୁ ଆସୁଥିବାର ଦେଖି ଲଜ୍ଜିତ ହେଲା ଏବଂ ବୃକ୍ଷ ଉହାଡ଼ରେ ଲୁଚି ଯାଇ ହସିବାକୁ ଲାଗିଲା । କିନ୍ତୁ ବେଶୀ ସମୟ ଲୁଚିଲା ନାହିଁ । ହସ୍ତିନୀର ପିଛା କରୁଥିବା କାମାନ୍ଧ ହସ୍ତୀ ପରି ମହାଦେବ ତା ପଛରେ ଦଉଡୁଥିଲେ ଏବଂ ଇନ୍ଦ୍ରିୟମାନେ ତାଙ୍କ ବଶରେ ନ ଥିଲେ । ସେ ଅତିବେଗରେ ତା ପଛରେ ଦଉଡ଼ିଯାଇ ତାର ଜୁଡ଼ାକୁ ଧରିନେଲେ ଏବଂ ତାର ଅନିଚ୍ଛାସତ୍ତ୍ୱେ ତାକୁ ଦୁଇ ବାହୁରେ ଜଡ଼ାଇ ରଖିଲେ ॥୨୮॥ ହସ୍ତିନୀ ହସ୍ତୀଦ୍ୱାରା ଆଲିଙ୍ଗିତ ହେବାପରି ଶଙ୍କର ସେହି କନ୍ୟାକୁ ଜୋର୍‌ରେ ଆଲିଙ୍ଗନ କରିବା ପରେ ସେ ଖସିଯିବାପାଇଁ ଛଟପଟ ହେବାକୁ ଲାଗିଲା ଏବଂ ତାର ମୁଣ୍ଡର ବାଳ ମୁକୁଳା ହୋଇଗଲା ॥୨୯॥ ପରିକ୍ଷିତ, ବିଷ୍ଣୁଙ୍କ ରଚିତ ସେହି ମାୟାମୟୀ ନାରୀ କୌଣସିମତେ ମହାଦେବଙ୍କ ବାହୁବନ୍ଧନରୁ ମୁକ୍ତ ହୋଇ ଦ୍ରୁତ ବେଗରେ ପଳାୟନ କଲା ॥୩୦॥ ଭଗବାନ ଶଙ୍କର ମଧ୍ୟ ମୋହିନୀ ବେଶଧାରୀ ଅଦ୍ଭୁତକର୍ମା ବିଷ୍ଣୁଙ୍କ ପଛେ ପଛେ ଦଉଡ଼ିବାକୁ ଲାଗିଲେ । ମନେ ହେଉଥିଲା ସତେ ଯେପରି ତାଙ୍କ ଶତ୍ରୁ କାମଦେବଦ୍ୱାରା ସେ ପରାଜିତ ହୋଇଛନ୍ତି ॥୩୧॥ କାମାତୁରା ହସ୍ତିନୀ ପଛରେ ଦଉଡୁଥିବା ମଦମତ୍ତ ହସ୍ତୀପରି ଅବ୍ୟର୍ଥବୀର୍ଯ୍ୟ ମହାଦେବଙ୍କର ବୀର୍ଯ୍ୟ ପଥମଧ୍ୟରେ ସ୍ଖଳିତ ହେଲା । ପରିକ୍ଷିତ, ଯେଉଁ ଯେଉଁ ସ୍ଥାନରେ ମହାଦେବଙ୍କର ବୀର୍ଯ୍ୟପାତ ହେଲା, ସେହି ସେହି ସ୍ଥାନ ରୁପାଖଣି ଓ ସୁନା ଖଣିରେ ପରିଣତ ହୋଇଗଲା ॥୩୨-୩୩॥ ଏହିପରି ସେହି ନାରୀକୁ ଅନୁସରଣ କରି କରି ମହାଦେବ ନଦୀ , ସରୋବର, ପର୍ବତ, ବନ, ଉପବନ ଏବଂ ଯେଉଁ ଯେଉଁଠି ଋଷିମାନେ ରହୁଥିଲେ, ସେହି ସେହି ସ୍ଥାନରେ ଉପସ୍ଥିତ ହେଲେ ॥୩୪॥ ମହାରାଜ, ବୀର୍ଯ୍ୟପାତ ହେବାପରେ ମହାଦେବଙ୍କର ଜ୍ଞାନ ଉଦୟ ହେଲା । ବିଷ୍ଣୁ ନିଜ ମାୟାରେ ତାଙ୍କୁ ମୋହିତ କରିଛନ୍ତି, ତାହା ଅନୁଭବ କରି ସେହି ଦୁଃଖଦ ପରିସ୍ଥିତିରୁ ସେ ନିବୃତ୍ତ ହେଲେ ॥୩୫॥ ଜଗତ୍‌ର ଆତ୍ମାସ୍ୱରୂପ ଭଗବାନଙ୍କ ମାୟାର ମହିମାକୁ ହୃଦୟଙ୍ଗମ କରି ତାଙ୍କୁ କିଛି ଆଶ୍ଚର୍ଯ୍ୟ ବୋଧ ହେଲା ନାହିଁ । କାରଣ ସେ ଜାଣିଥିଲେ ଯେ, ଭଗବାନଙ୍କ ଶକ୍ତିର କେହି ପାର ପାଆନ୍ତି ନାହିଁ ॥୩୬॥ ମଧୁସୂଦନ ଦେଖିଲେ ଯେ, ଭଗବାନ ଶଙ୍କର ପ୍ରକୃତିସ୍ଥ ହୋଇଛନ୍ତି । ତାଙ୍କର କୌଣସି ଦୁଃଖ ବା ଲଜ୍ଜା ନାହିଁ । ସେ ତତ୍‌କ୍ଷଣାତ୍ ନିଜର ପୁରୁଷଶରୀର ଧାରଣ କରି ପ୍ରସନ୍ନ ଭାବରେ ମହାଦେବଙ୍କୁ କହିବା ଆରମ୍ଭ କଲେ-- ॥୩୭॥

ଭଗବାନ କହିଲେ, ଦେବଶ୍ରେଷ୍ଠ, ମୋର ମୋହିନୀ ମାୟାରେ ବିମୋହିତ ହୋଇ ମଧ୍ୟ ଆପଣ ନିଜ ନିଷ୍ଠାରେ ଅଟଳ ରହିଛନ୍ତି ॥୩୮॥ ମୋର ମାୟା ଦୁସ୍ତର । ଏହା ଏପରି ଭାବନା ସବୁ ସୃଷ୍ଟି କରେ ଯେ, ଇନ୍ଦ୍ରିୟକୁ ଜୟ କରିନଥିବା ପୁରୁଷ ତା ପ୍ରତି ଥରେ ଆସକ୍ତ ହେଲେ ଆଉ ଛାଡ଼ିପାରେ ନାହିଁ । ଆପଣଙ୍କ ଛଡ଼ା ମାୟାର ଫାନ୍ଦରେ ପଡ଼ି ଆଉ କେହି ଖସିପାରିନାହାନ୍ତି ॥୩୯॥ ମୁଁ କାଳରୂପରେ ସୃଷ୍ଟି କରିବାପାଇଁ ମୋର ଏହି ଗୁଣମୟୀ ମାୟାର ରଜ ଆଦି ଅଂଶଦ୍ୱାରା ମିଳିତ ହୋଇଥାଏ । କିନ୍ତୁ ଏହା ଆଉ କେବେ ଆପଣଙ୍କୁ ମୋହିତ କରିବାକୁ ସମର୍ଥ ହେବ ନାହିଁ ॥୪୦॥ ଶ୍ରୀ ଶୁକଦେବ କହିଲେ, ପରିକ୍ଷିତ, ଏହିପରି ଶ୍ରୀବତ୍ସଲାଞ୍ଛନ ଭଗବାନ୍ ମହାଦେବଙ୍କର ସତ୍କାର କରିବାରୁ ସେ ତାଙ୍କଠାରୁ ଅନୁମତି ନେଇ ତାଙ୍କର ପରିକ୍ରମା ସହିତ ନିଜର ଅନୁଚରମାନଙ୍କୁ ନେଇ ସ୍ୱଧାମକୁ ପ୍ରସ୍ଥାନ କଲେ ॥୪୧॥ ଭରତବଂଶୀୟ ରାଜା ପରିକ୍ଷିତ, ଭଗବାନ ଶଙ୍କର ଋଷିମାନଙ୍କର ବଡ଼ ବଡ଼ ସଭାରେ

ନିଜର ଅର୍ଦ୍ଧାଙ୍ଗିନୀ ସତୀଙ୍କ ସହିତ ବିଷ୍ଣୁଙ୍କର ଏହି ମାୟାମୟୀ ମୋହିନୀ ରୂପର ବର୍ଣ୍ଣନା କରିଥିଲେ । ସେ ଅତି ପ୍ରୀତିର ସହିତ କହିଲେ, ଦେବୀ, ତୁମେ ପରମପୁରୁଷ ପରମେଶ୍ୱର ବିଷ୍ଣୁଙ୍କର ମାୟା ଦେଖିଲ ତ ! ମୁଁ ସମସ୍ତ କଳା ଓ ବିଦ୍ୟାର ସ୍ରଷ୍ଟା ଏବଂ ସ୍ୱତନ୍ତ୍ର । କିନ୍ତୁ ତାଙ୍କର ଏହି ମାୟାରେ ମୁଁ ବିବଶ ହୋଇପଡ଼ିଲି । ଯେଉଁମାନେ ଇନ୍ଦ୍ରିୟକୁ ଜୟ କରି ନାହାନ୍ତି, ସେମାନଙ୍କର କଥା କ'ଣ ବା କହିବା ! ॥୪୨-୪୩॥ ମୁଁ ଯେତେବେଳେ ହଜାରେ ବର୍ଷ ଧରି ସମାଧିରେ ବସିଥିଲି, ତୁମେ ମୋ ପାଖକୁ ଆସି ପଚାରିଥିଲ, 'ତୁମେ କାହାର ଉପାସନା କରୁଛ' ? ଯାହାଙ୍କର ଉପାସନା କରୁଥିଲି ସେ ହେଉଛନ୍ତି ସାକ୍ଷାତ୍ ଏହି ସନାତନ ପୁରୁଷ । କାଳ ସର୍ବତ୍ର ପ୍ରବେଶ କରିପାରେ, କିନ୍ତୁ ତାଙ୍କ ନିକଟରେ ପଶିପାରେ ନାହିଁ । ବେଦ ସମସ୍ତ ଜ୍ଞାନର ଆଧାର ହେଲେ ମଧ୍ୟ ତାଙ୍କୁ ଜାଣିପାରି ନାହିଁ ॥୪୪॥

ଶ୍ରୀ ଶୁକଦେବ କହିଲେ, ବତ୍ସ, ମୁଁ ଶାର୍ଙ୍ଗଧାରୀ ବିଷ୍ଣୁଙ୍କର ସମୁଦ୍ରମନ୍ଥନ ଲୀଳା ତୁମକୁ ଶୁଣାଇଲି । ସେ ପିଠିରେ କିପରି ବିଶାଳ ମନ୍ଦରପର୍ବତକୁ ଧାରଣ କରିଥିଲେ, ତାହା ମୁଁ ବର୍ଣ୍ଣନା କଲି । ଭଗବାନ୍‌ଙ୍କର ଏହି ଲୀଳା ଯେ ବାରମ୍ବାର କୀର୍ତ୍ତନ କରେ ଓ ଶ୍ରବଣ କରେ, ତାର କୌଣସି ଉଦ୍ୟମ କେବେ ବିଫଳ ହୁଏ ନାହିଁ । କାରଣ ପୁଣ୍ୟଶ୍ଳୋକ ଭଗବାନଙ୍କର ଗୁଣାବଳୀ ବର୍ଣ୍ଣନା କରିବାଦ୍ୱାରା ସଂସାରର ସମସ୍ତ କ୍ଳେଶ ଦୂର ହୋଇଥାଏ ॥୪୫-୪୬॥ କପଟନାରୀବେଶ ଧାରଣକରି ଯେ ଦେବଦ୍ରୋହୀ ଅସୁରମାନଙ୍କୁ ମୋହିତ କରିଥିଲେ, ଯାହାଙ୍କର ପାଦପଦ୍ମ ଅସାଧୁ ଲୋକପାଇଁ ଅଗମ୍ୟ ଏବଂ ଭକ୍ତର ଭାବଗମ୍ୟ ; ଯାହାଙ୍କ ଚରଣକୁ ଆଶ୍ରୟକରି ଦେବତାମାନେ ସମୁଦ୍ରମନ୍ଥନରୁ ଜାତ ଅମୃତ ପାନ କରିଥିଲେ ; ଶରଣାଗତଙ୍କର କାମନାପୂରଣକାରୀ ସେହି ଭଗବାନ ବିଷ୍ଣୁଙ୍କୁ ମୁଁ ପ୍ରଣାମ କରୁଛି ।

## ତ୍ରୟୋଦଶ ଅଧ୍ୟାୟ

# ସପ୍ତ ମନ୍ୱନ୍ତରର ବର୍ଣ୍ଣନା

ପରିକ୍ଷିତ, ବିବସ୍ୱାନଙ୍କ ପୁତ୍ର ଶ୍ରାଦ୍ଧଦେବ ହେଉଛନ୍ତି ସପ୍ତମ ମନୁ । ବର୍ତ୍ତମାନ ତାଙ୍କର କାର୍ଯ୍ୟକାଳ ଚାଲିଛି । ଏହି ବୈବସ୍ୱତ ମନୁଙ୍କର ସନ୍ତାନମାନଙ୍କ ବର୍ଣ୍ଣନା କରୁଛି, ଶୁଣ ॥୧॥ ତାଙ୍କର ଦଶ ଜଣ ପୁତ୍ର -- ସେମାନେ ହେଲେ ଇକ୍ଷ୍ୱାକୁ, ନଭଗ, ଧୃଷ୍ଟ, ଶର୍ଯାତି, ନରିଷ୍ୟନ୍ତ, ନାଭାଗ, ଦିଷ୍ଟ, କରୁଷ, ପୃଷଧ୍ର ଓ ବସୁମାନ୍ ॥୨-୩॥ ପରିକ୍ଷିତ, ଏହି ମନ୍ୱନ୍ତରରେ ଆଦିତ୍ୟ, ବସୁ, ରୁଦ୍ର, ବିଶ୍ୱେଦେବ, ମରୁତ୍, ଅଶ୍ୱିନୀକୁମାର ଏବଂ ଋଭୁ -- ଏମାନେ ହେଲେ ଗଣମାନଙ୍କର ପ୍ରଧାନ ପ୍ରଧାନ ଦେବତା ଏବଂ ପୁରନ୍ଦର ହେଉଛନ୍ତି ସେମାନଙ୍କର ଇନ୍ଦ୍ର ॥୪॥ କଶ୍ୟପ, ଅତ୍ରି, ବଶିଷ୍ଠ, ବିଶ୍ୱାମିତ୍ର, ଗୌତମ, ଜମଦଗ୍ନି ଓ ଭରଦ୍ୱାଜ ଏମାନେ ହେଉଛନ୍ତି ସପ୍ତର୍ଷି ॥୫॥ ଏହି ମନ୍ୱନ୍ତରରେ କଶ୍ୟପଙ୍କର ପତ୍ନୀ ଅଦିତିଙ୍କ ଗର୍ଭରୁ ଆଦିତ୍ୟଙ୍କ ଅନୁଜ ଭାବରେ ଭଗବାନ ବିଷ୍ଣୁ ବାମନରୂପରେ ଜନ୍ମ ହୋଇଥିଲେ ॥୬॥ ରାଜା, ଏହିପରି ସାତଟି ମନ୍ୱନ୍ତରର କଥା ମୁଁ ତୁମକୁ ସଂକ୍ଷେପରେ କହିଲି । ଏବେ ଭଗବାନଙ୍କ ଶକ୍ତିଯୁକ୍ତ ଆଗାମୀ ସାତଟି ମନ୍ୱନ୍ତରର କଥା ବର୍ଣ୍ଣନା କରୁଚି ॥୭॥

ସୂର୍ଯ୍ୟ (ବିବସ୍ୱାନ୍)ଙ୍କର ଦୁଇ ପତ୍ନୀ ହେଲେ ସଂଜ୍ଞା ଓ ଛାୟା । ସେଦୁହେଁ ବିଶ୍ୱକର୍ମାଙ୍କର କନ୍ୟା ଥିଲେ ବୋଲି ମୁଁ ପୂର୍ବରୁ ତୁମକୁ କହିଚି ॥୮॥ କେହି କେହି ବଡ଼ବାଙ୍କୁ ସୂର୍ଯ୍ୟଙ୍କର ତୃତୀୟ ପତ୍ନୀରୂପେ ଅଭିହିତ କରନ୍ତି । ଯମ, ଯମୁନା ଓ ଶ୍ରାଦ୍ଧଦେବ -- ଏମାନେ ହେଲେ ସଂଜ୍ଞାଙ୍କର ସନ୍ତାନ । ବର୍ତ୍ତମାନ ଛାୟାଙ୍କ ପୁତ୍ରମାନଙ୍କ ବର୍ଣ୍ଣନା କରୁଚି, ଶୁଣ ॥୯॥ ଛାୟାଙ୍କ ଗର୍ଭରୁ ସାବର୍ଣ୍ଣ ଓ ଶନୈଶ୍ଚର ନାମକ ଦୁଇ ପୁତ୍ର ଏବଂ ତପତୀ ନାମକ କନ୍ୟା ଜନ୍ମ ଗ୍ରହଣ କରିଥିଲେ । ବଡ଼ବାଙ୍କର ଦୁଇଟି ଜାଁଲା ପୁଅ--

ଅଶ୍ୱିନକୁମାର ॥୧୦॥ ଅଷ୍ଟମ ମନ୍ୱନ୍ତର ଆସିଗଲେ ଏହି ସାବର୍ଣ୍ଣ ମନୁ ହେବେ । ନିର୍ମୋକ, ବିରଜସ୍କ ଆଦି ସାବର୍ଣ୍ଣିଙ୍କର ପୁତ୍ରହେବେ ॥୧୧॥ ସେ ସମୟରେ ସୁତପା, ବିରଜ ଓ ଅମୃତପ୍ରଭ ନାମକ ଦେବତାମାନେ ହେବେ ଏବଂ ସେମାନଙ୍କର ଇନ୍ଦ୍ର ହେବେ -- ବିରୋଚନପୁତ୍ର ବଳି ॥୧୨॥ ଭଗବାନ ବିଷ୍ଣୁ (ବାମନ) ତ୍ରିପାଦ ଭୂମି ମାଗିବାରୁ ଏହି ବଳି ତାହା ତାଙ୍କୁ ଦାନ କରି ଇନ୍ଦ୍ରପଦ ମଧ୍ୟ ଛାଡ଼ି ଦେବେ ଏବଂ ତଦ୍ୱାରା ପରମ ସିଦ୍ଧି ଲାଭ କରିବେ ॥୧୩॥ ବିଷ୍ଣୁ ଭଗବାନ ଏହି ବଳିଙ୍କୁ ବାନ୍ଧି ରଖିବେ, ମାତ୍ର ପରେ ପ୍ରସନ୍ନ ହୋଇ ସ୍ୱର୍ଗଠାରୁ ଶ୍ରେଷ୍ଠ ପାତାଳପୁରୀର ରାଜା କରାଇବେ ଏବଂ ସେଠାରେ ସେ ଇନ୍ଦ୍ରଙ୍କସମାନ ଐଶ୍ୱର୍ଯ୍ୟ ଭୋଗ କରିବେ ॥୧୪॥ ଗାଲବ, ଦୀପ୍ତିମାନ୍, ପରଶୁରାମ, ଅଶ୍ୱତ୍ଥାମା, କୃପାଚାର୍ଯ୍ୟ, ଋଷ୍ୟଶୃଙ୍ଗ ଏବଂ ମୋର ପିତା ବ୍ୟାସଦେବ ଏହି ଅଷ୍ଟମ ମନ୍ୱନ୍ତରରେ ସପ୍ତର୍ଷି ହେବେ । ମହାରାଜ, ବର୍ତ୍ତମାନ ସେମାନେ ନିଜ ନିଜ ଆଶ୍ରମ ମଣ୍ଡଳରେ ଅବସ୍ଥାନ କରୁଛନ୍ତି ॥୧୫-୧୬॥ ଦେବଗୁହ୍ୟଙ୍କର ପତ୍ନୀ ସରସ୍ୱତୀଙ୍କ ଗର୍ଭରୁ ସାର୍ବଭୌମ ନାମକ ଭଗବାନଙ୍କର ଅବତାର ହେବ । ସେ ପୁରନ୍ଦର ଇନ୍ଦ୍ରଙ୍କଠାରୁ ସ୍ୱର୍ଗରାଜ୍ୟ ବଳପୂର୍ବକ ଛଡ଼ାଇ ନେଇ ରାଜା ବଳିଙ୍କୁ ଦାନ କରିବେ ॥୧୭

ପରିକ୍ଷିତ, ବରୁଣଙ୍କର ପୁତ୍ର ଦକ୍ଷସାବର୍ଣ୍ଣି ନବମ ମନୁ ହେବେ । ତାଙ୍କର ଭୂତକେତୁ, ଦୀପ୍ତକେତୁ ଆଦି ପୁତ୍ର ହେବେ ॥୧୮॥ ଏହି ମନ୍ୱନ୍ତରରେ ପାର, ମରୀଚିଗର୍ଭ ଆଦି ଦେବଗଣ ହେବେ ଏବଂ ଅଦ୍ଭୁତ ନାମକ ଇନ୍ଦ୍ର ହେବେ । ସପ୍ତର୍ଷି ହେବେ ଦ୍ୟୁତିମାନ୍ ଆଦି ଋଷି ॥୧୯॥ ଆୟୁଷ୍ମାନ୍‌ଙ୍କ ପତ୍ନୀ ଅମ୍ବୁଧାରାଙ୍କ ଗର୍ଭରୁ ଭଗବାନଙ୍କ କଳାରେ ଋଷଭଙ୍କର ଜନ୍ମ ହେବ । ତାଙ୍କ ଦୟାରୁ ଅଦ୍ଭୁତ ନାମକ ଇନ୍ଦ୍ରଙ୍କୁ ତ୍ରିଲୋକର ଭୋଗ ମିଳିବ ॥୨୦॥

ଉପଶ୍ଳୋକଙ୍କର ପୁତ୍ର ବ୍ରହ୍ମସାବର୍ଣ୍ଣି ଦଶମ ମନୁ ରୂପେ ପ୍ରସିଦ୍ଧ ହେବେ । ଭୂରିଷେଣ ଆଦି ତାଙ୍କର ପୁତ୍ର ହେବେ । ହବିଷ୍ମାନ୍, ସୁକୃତି, ସତ୍ୟ, ଜୟ, ମୂର୍ତ୍ତି ଆଦି ସପ୍ତର୍ଷି ହେବେ । ସୁବାସନ ବିରୁଦ୍ଧ ଆଦି ଦେବଗଣ ହେବେ ଏବଂ ଇନ୍ଦ୍ରଙ୍କର ନାମ ହେବ ଶମ୍ଭୁ ॥୨୧-୨୨॥ ଭଗବାନ୍ ବିଷ୍ଣୁ ବିଶ୍ୱସୃକ୍‌ଙ୍କ ପତ୍ନୀ ବିଷୂଚୀଙ୍କ ଗର୍ଭରୁ ବିଷ୍ୱକ୍‌ସେନ ନାମରେ ନିଜ କଳାରେ ଅବତାର ଗ୍ରହଣ କରିବେ ଏବଂ ଶମ୍ଭୁ ନାମକ ଇନ୍ଦ୍ରଙ୍କ ସହିତ ମିତ୍ରତା ସ୍ଥାପନ କରିବେ ॥୨୩॥

ଅତ୍ୟନ୍ତ ସଂଯମୀ ପୁରୁଷ ଧର୍ମସାବର୍ଣ୍ଣି ଏକାଦଶ ମନୁ ହେବେ । ତାଙ୍କର ସତ୍ୟ, ଧର୍ମ ଆଦି ଦଶ ପୁତ୍ର ହେବେ । ସେହି ମନ୍ୱନ୍ତରରେ ଦେବଗଣଙ୍କର ନାମ ହେବ ବିହଙ୍ଗମ, କାମଗମ, ନିର୍ବାଣରୁଚି ଆଦି । ଅରୁଣାଦି ସପ୍ତର୍ଷି ହେବେ ଏବଂ ବୈଧୃତ ନାମକ ଇନ୍ଦ୍ର ହେବେ । ଆର୍ଯ୍ୟକଙ୍କ ପତ୍ନୀ ବୈଧୃତାଙ୍କ ଗର୍ଭରୁ ଧର୍ମସେତୁ ନାମରେ ଭଗବାନ୍ ନିଜ କଳାରେ ଅବତୀର୍ଣ୍ଣ ହେବେ ଏବଂ ଏହି ରୂପରେ ତ୍ରିଲୋକକୁ ରକ୍ଷା କରିବେ ॥୨୪-୨୬॥

ପରିକ୍ଷିତ, ଦ୍ୱାଦଶ ମନୁ ହେବେ ରୁଦ୍ରସାବର୍ଣ୍ଣି । ତାଙ୍କର ଦେବବାନ୍, ଉପଦେବ ଓ ଦେବଶ୍ରେଷ୍ଠ ଆଦି ପୁତ୍ର ହେବେ ॥୨୭॥ ସେହି ମନ୍ୱନ୍ତରରେ ଇନ୍ଦ୍ରଙ୍କ ନାମ ହେବ ଋତଧାମା ଏବଂ ହରିତ ଆଦି ଦେବଗଣ ହେବେ । ତପୋମୂର୍ତ୍ତି, ତପସ୍ୱୀ, ଆଗ୍ନୀଧ୍ରକ ଆଦି ସପ୍ତର୍ଷି ହେବେ ॥୨୮॥ ସତ୍ୟସହାଙ୍କ ପତ୍ନୀ ସୂନୃତାଙ୍କ ଗର୍ଭରୁ ସ୍ୱଧାମା ରୂପରେ ଭଗବାନଙ୍କର କଳାବତାର ହେବ ଏବଂ ସେହି ଅବତାରରେ ଭଗବାନ୍ ମନ୍ୱନ୍ତରର ପାଳକ ହେବେ ॥୨୯॥

ଜିତେନ୍ଦ୍ରିୟ ଦେବସାବର୍ଣ୍ଣି ହେବେ ତ୍ରୟୋଦଶ ମନୁ । ଚିତ୍ରସେନ, ବିଚିତ୍ର ଆଦି ନାମରେ ତାଙ୍କର ପୁତ୍ର ହେବେ । ସୁକର୍ମା ଓ ସୁତ୍ରାମା ନାମକ ଦେବଗଣ, ଦିବସ୍ପତି ନାମକ ଇନ୍ଦ୍ର ଏବଂ ନିର୍ମୋକ ଓ ତତ୍ତ୍ୱଦର୍ଶ ଆଦି ସପ୍ତର୍ଷି ହେବେ ॥୩୦-୩୧॥ ଦେବହୋତ୍ରଙ୍କ ପତ୍ନୀ ବୃହତୀଙ୍କ ଗର୍ଭରୁ ଯୋଗେଶ୍ୱର ରୂପରେ ଭଗବାନ ଅବତୀର୍ଣ୍ଣ ହେବେ ଏବଂ ଦିବସ୍ପତିଙ୍କୁ ଇନ୍ଦ୍ରପଦ ଦେବେ ॥୩୨॥ ମହାରାଜ, ଚତୁର୍ଦ୍ଦଶ ମନୁ ହେବେ ଇନ୍ଦ୍ରସାବର୍ଣ୍ଣି । ଉରୁ, ଗମ୍ଭୀର, ବୁଦ୍ଧି ଆଦି ତାଙ୍କର ପୁତ୍ର ହେବେ । ସେସମୟରେ ପବିତ୍ର, ଚାକ୍ଷୁଷ ଆଦି ଦେବଗଣ ହେବେ ଏବଂ ଇନ୍ଦ୍ରଙ୍କର ନାମ ହେବ ଶୁଚି । ଅଗ୍ନି, ବାହୁ, ଶୁଚି, ଶୁଦ୍ଧ ଓ ମାଗଧ ଆଦି ସପ୍ତର୍ଷି ହେବେ ॥୩୩-୩୪॥ ସେହି ସମୟରେ ସତ୍ରାୟଣଙ୍କ ପତ୍ନୀ ବିତାନାଙ୍କ ଗର୍ଭରୁ ଜନ୍ମ ହୋଇ ଭଗବାନ୍ ବୃହଦ୍‌ଭାନୁ ନାମରେ ଅଭିହିତ ହେବେ ଏବଂ କର୍ମକାଣ୍ଡର ବିସ୍ତାର କରିବେ ॥୩୫॥

ରାଜା, ଏହି ଚଉଦ ମନ୍ୱନ୍ତର ଅତୀତ, ବର୍ତ୍ତମାନ ଓ ଭବିଷ୍ୟତ୍-- ଏହି ତିନି କାଳରେ କ୍ରମାନ୍ୱୟରେ ଭୋଗ ହେଉଚି । ହଜାରେ ଚତୁର୍ଯୁଗରେ ଗୋଟିଏ କଳ୍ପ ହୁଏ ବୋଲି ଗଣନା କରାଯାଇଚି ॥୩୬॥

## ଚତୁର୍ଦ୍ଦଶ ଅଧ୍ୟାୟ

# ମନୁ ଆଦିଙ୍କର କର୍ମ ନିରୂପଣ

ରାଜା ପରିକ୍ଷିତ ପଚାରିଲେ, ଭଗବନ୍, ଆପଣ ଯେଉଁ ମନୁ, ମନୁପୁତ୍ର, ସପ୍ତର୍ଷି ଆଦିଙ୍କର ବର୍ଣ୍ଣନା କଲେ, ସେମାନେ ନିଜ ନିଜ ମନ୍ୱନ୍ତରରେ କାହାଦ୍ୱାରା ନିଯୁକ୍ତ ହୋଇ କଣ କଣ କାମ କିପରି କରନ୍ତି, ତାହା ଦୟାକରି ମୋତେ ବୁଝାଇ କହନ୍ତୁ ॥୧॥ ଶ୍ରୀ ଶୁକଦେବ କହିଲେ, ପରିକ୍ଷିତ, ମନୁ, ମନୁପୁତ୍ର, ଋଷି, ଇନ୍ଦ୍ର ଏବଂ ଦେବଗଣ -- ଏମାନଙ୍କୁ ସମସ୍ତଙ୍କୁ ସ୍ୱୟଂ ଭଗବାନ ହିଁ ନିଯୁକ୍ତ କରନ୍ତି ॥୨॥ ମହାରାଜ, ଭଗବାନଙ୍କର ଯଜ୍ଞ ଆଦି ଯେଉଁସବୁ ଦେହଧାରୀ ଅବତାରଙ୍କୁ ମୁଁ ବର୍ଣ୍ଣନା କଲି, ସେହିମାନଙ୍କ ପ୍ରେରଣାରେ ମନୁ ଆଦି ବିଶ୍ୱବ୍ୟବସ୍ଥାର ପରିଚାଳନା କରନ୍ତି ॥୩॥ ଚତୁର୍ଯୁଗ ଶେଷ ହୋଇ ପୁଣି ଯେତେବେଳେ ସତ୍ୟଯୁଗ ଆସେ, ସେତେବେଳେ ଭଗବାନଙ୍କ ପ୍ରେରଣାରେ ଲୁପ୍ତପ୍ରାୟ ବେଦମାନଙ୍କୁ ଋଷିମାନେ ତପସ୍ୟାଦ୍ୱାରା ସୂକ୍ଷ୍ମ ଦୃଷ୍ଟିରେ ଦେଖିପାରନ୍ତି । ଏହିପରି ସନାତନ ଧର୍ମର ପରମ୍ପରା ଲାଗି ରହିଥାଏ ॥୪॥ ମହାରାଜ, ଭଗବାନଙ୍କ ପ୍ରେରଣାରେ ପ୍ରତି ମନ୍ୱନ୍ତରରେ ଥିବା ମନୁ ଅତି ଯତ୍ନର ସହିତ ଚାରି ପାଦବିଶିଷ୍ଟ ଧର୍ମକୁ ପୃଥିବୀରେ ପ୍ରଚାର କରାନ୍ତି ॥୫॥ ଏହିପରି ମନୁଙ୍କର ପୁତ୍ରପୌତ୍ରାଦିକ୍ରମେ ମନ୍ୱନ୍ତର ଶେଷ ହେବାପର୍ଯ୍ୟନ୍ତ ପ୍ରଜାପାଳନ ଏବଂ ସନାତନ ଧର୍ମର ସୁରକ୍ଷା ହୋଇଥାଏ । ଦେବତାମାନେ ସେମାନଙ୍କ ଯଜ୍ଞଭାଗ ଲାଭ କରନ୍ତି ଏବଂ ସେମାନଙ୍କ ସହିତ ମିଳିତ ହୋଇ ଇନ୍ଦ୍ର ଭଗବାନଙ୍କ ପ୍ରଦତ୍ତ ତ୍ରିଲୋକର ଐଶ୍ୱର୍ଯ୍ୟ ଭୋଗ କରନ୍ତି ଏବଂ ପ୍ରଚୁର ବର୍ଷା କରି ପ୍ରଜାମାନଙ୍କୁ ପାଳନ କରନ୍ତି ॥୬-୭॥ ଭଗବାନ ବିଷ୍ଣୁ ଯୁଗେ ଯୁଗେ ସିଦ୍ଧରୂପେ ଜ୍ଞାନକୁ, ଋଷିରୂପେ କର୍ମକୁ ଏବଂ ଯୋଗେଶ୍ୱର ରୂପରେ ଯୋଗ ଶିକ୍ଷା ପ୍ରଚାର କରନ୍ତି ॥୮॥ ଭଗବାନ୍ ବିଷ୍ଣୁ ପ୍ରଜାପତିରୂପରେ ପ୍ରଜାସୃଷ୍ଟି କରନ୍ତି । ରାଜା ରୂପରେ ଦସ୍ୟୁମାନଙ୍କୁ ବିନାଶ କରନ୍ତି ଏବଂ ବିଭିନ୍ନଗୁଣବିଶିଷ୍ଟ କାଳରୂପରେ ସମସ୍ତଙ୍କୁ ସଂହାର କରନ୍ତି ॥୯॥ ନାମ ଓ ରୂପର ମାୟାରେ ପ୍ରାଣୀମାନେ ମୋହିତ ହୋଇଯାଇଥାନ୍ତି । ସେମାନେ ନାନା ଶାସ୍ତ୍ରମାନଙ୍କଦ୍ୱାରା ତାଙ୍କର ନିରୂପଣକଲେ ମଧ୍ୟ ତାଙ୍କର ସ୍ୱରୂପକୁ ଦର୍ଶନ କରିପାରନ୍ତି ନାହିଁ ॥୧୦॥ ପରିକ୍ଷିତ, ଏହିପରି କଳ୍ପବିକଳ୍ପ (ଅବାନ୍ତର କଳ୍ପ)ର ପ୍ରମାଣ ମୁଁ ତୁମ ନିକଟରେ ବର୍ଣ୍ଣନା କଲି । ପୁରାତତ୍ତ୍ୱବିଦ୍‌ମାନେ ପ୍ରତ୍ୟେକ ଅବାନ୍ତରକଳ୍ପରେ ଚଉଦଟି ମନ୍ୱନ୍ତରର କଥା କହିଥା'ନ୍ତି ॥୧୧॥

## ପଞ୍ଚଦଶ ଅଧ୍ୟାୟ

# ବଳିଙ୍କର ସ୍ୱର୍ଗଜୟ

ରାଜା ପରିକ୍ଷିତ ପଚାରିଲେ, ଭଗବାନ ଶ୍ରୀହରି ସମସ୍ତଙ୍କର ଈଶ୍ୱର । ସେ କାହିଁକି ବଳିଠାରୁ ତିନିପାଦ ଭୂମି ମାଗିଲେ ? ପାଇସାରିବା ପରେ ମଧ୍ୟ କୃପଣ ଭାବରେ ତାଙ୍କୁ କାହିଁକି ବନ୍ଧନ କରିଥିଲେ ? ଏହି ବିଷୟ ଜାଣିବାପାଇଁ ମୋର ବଡ଼ କୌତୂହଳ ଜାତ ହୋଇଛି । ଯଜ୍ଞେଶ୍ୱର ସବୁଥିରେ ପୂର୍ଣ୍ଣ ହୋଇ କାହିଁକି ଏପରି ମାଗିବସିଲେ ଏବଂ ନିଷ୍ପାପ ବଳିଙ୍କୁ ବନ୍ଧନ

କଲେ ? ଏ ସବୁ ବିଷୟ ଜାଣିବାକୁ ମୋର ଇଚ୍ଛା ହେଉଛି ॥୧-୨॥ ଶ୍ରୀ ଶୁକଦେବ କହିଲେ, ପରିକ୍ଷିତ, ଇନ୍ଦ୍ରଙ୍କଦ୍ୱାରା ଯୁଦ୍ଧରେ ପରାଜିତ ଓ ହତଶ୍ରୀ ହୋଇ ବଳି ଯେତେବେଳେ ପ୍ରାଣ ହରାଇଲେ, ସେତେବେଳେ ଭୃଗୁନନ୍ଦନ ଶୁକ୍ରାଚାର୍ଯ୍ୟ ତାଙ୍କୁ ସଞ୍ଜୀବନୀ ମନ୍ତ୍ରରେ ପୁନର୍ଜ୍ଜୀବିତ କଲେ । ଏହାପରେ ଶୁକ୍ରାଚାର୍ଯ୍ୟଙ୍କର ଶିଷ୍ୟ ବଳି ନିଜର ସର୍ବସ୍ୱ ଶୁକ୍ରାଚାର୍ଯ୍ୟଙ୍କୁ ଅର୍ପଣ କରି ଭୃଗୁବଂଶୀୟ ବ୍ରାହ୍ମଣମାନଙ୍କର ସେବା କରିବାକୁ ଲାଗିଲେ ॥୩॥ ଭୃଗୁବଂଶୀୟ ମହାନୁଭାବ ବ୍ରାହ୍ମଣମାନେ ସନ୍ତୁଷ୍ଟ ହୋଇ ବଳିଙ୍କ ସ୍ୱର୍ଗବିଜୟର ଇଚ୍ଛା ପୂରଣ କରିବାପାଇଁ ମହାଭିଷେକ ବିଧିରେ ତାଙ୍କୁ ଅଭିଷିକ୍ତ କଲେ ଏବଂ ବିଶ୍ୱଜିତ୍ ନାମକ ଯଜ୍ଞ କରାଇଲେ ॥୪॥ ପବିତ୍ର ଘୃତାହୁତିଦ୍ୱାରା ଅର୍ଚ୍ଚିତ ଏହି ଯଜ୍ଞରୁ ଏକ ସୁବର୍ଣ୍ଣପଟ୍ଟଯୁକ୍ତ ରଥ, ଇନ୍ଦ୍ରଙ୍କ ଅଶ୍ୱପରି ହରିତ୍‌ବର୍ଣ୍ଣର ଅଶ୍ୱଗଣ ଏବଂ ସିଂହଚିହ୍ନଯୁକ୍ତ ଏକ ଧ୍ୱଜା ବାହାରିଆସିଲା । ଏହା ସଙ୍ଗେ ସଙ୍ଗେ ସ୍ୱର୍ଣ୍ଣଜଡ଼ିତ ଏକ ଦିବ୍ୟଧନୁ, ଦୁଇଟି ଅକ୍ଷୟ ତୂଣୀର ଏବଂ ଦିବ୍ୟ କବଚ ଆବିର୍ଭୂତ ହେଲା । ବଳିଙ୍କର ପିତାମହ ପ୍ରହ୍ଲାଦ ବଳିଙ୍କୁ ଏପରି ଏକ ପୁଷ୍ପମାଳା ଦାନ କଲେ, ଯାହାର ପୁଷ୍ପ ମଳିନ ହେଉ ନ ଥିଲା । ଗୁରୁ ଶୁକ୍ରାଚାର୍ଯ୍ୟ ବଳିଙ୍କୁ ଏକ ଶଙ୍ଖ ଦାନ କଲେ ॥୫-୬॥ ଏ ପ୍ରକାରେ ବ୍ରାହ୍ମଣମାନଙ୍କ ସମ୍ପାଦିତ ଯୁଦ୍ଧସାମଗ୍ରୀ ଲାଭ କରି ବଳି ସେମାନଙ୍କଦ୍ୱାରା ସ୍ୱସ୍ତ୍ୟୟନ କରାଇଲେ । ବ୍ରାହ୍ମଣମାନଙ୍କୁ ପ୍ରଦକ୍ଷିଣ ଓ ପ୍ରଣାମ କରି ପିତାମହ ପ୍ରହ୍ଲାଦଙ୍କୁ ବିଦାୟ ସମ୍ଭାଷଣ କରି ନମସ୍କାର କଲେ ॥୭॥ ଏହାପରେ ମାଳା ଓ କବଚ ପିନ୍ଧି ଏବଂ ତୂଣୀର ସହ ଧନୁର୍ବାଣ ଓ ଖଡ୍ଗ ଧାରଣ କରି ସୁବର୍ଣ୍ଣର ବଳୟ ଓ ମକରକୁଣ୍ଡଳରେ ଶୋଭିତ ହୋଇ ମହାରଥୀ ବଳି ବ୍ରାହ୍ମଣମାନଙ୍କ ପ୍ରଦତ୍ତ ଦିବ୍ୟରଥରେ ଆରୋହଣ କଲେ ଏବଂ ଯଜ୍ଞକୁଣ୍ଡରେ ଥିବା ଆହବନୀୟ ଅଗ୍ନିପରି ଶୋଭାପାଇବାକୁ ଲାଗିଲେ ॥୮-୯॥ ତାଙ୍କ ସହିତ ତୁଲ୍ୟ ଐଶ୍ୱର୍ଯ୍ୟ, ଶ୍ରୀ ଓ ବଳଶାଳୀ ଦୈତ୍ୟ ସେନାପତିମାନେ ନିଜର ସେନାମାନଙ୍କ ସହ ଉପସ୍ଥିତ ହେଲେ । ଜଣାଯାଉଥିଲା ଯେପରି ସେମାନେ ତାଙ୍କ କ୍ରୁଦ୍ଧଦୃଷ୍ଟିଦ୍ୱାରା ଆକାଶକୁ ପିଇଯିବେ ଓ ଦିଗ୍‌ବିଦିଗକୁ ଭସ୍ମ କରିଦେବେ । ଏହିପରି ସ୍ୱର୍ଗ ଓ ପୃଥିବୀକୁ କମ୍ପିତ କରି କରି ଏକ ବିଶାଳ ଆସୁରୀ ସେନାଚାଳନାପୂର୍ବକ ବଳି ଅତିସମୃଦ୍ଧ ଇନ୍ଦ୍ରପୁରୀକୁ ଗଲେ ॥୧୦-୧୧॥

ଇନ୍ଦ୍ରପୁରୀ ଅମରାବତୀରେ ନନ୍ଦନବନ ଆଦି ବହୁ ସୁନ୍ଦର ସୁନ୍ଦର ଉଦ୍ୟାନ ଓ ଉପବନ ଥିଲା । ଏଥିରେ ବିହଙ୍ଗମିଥୁନମାନେ କୂଜନ କରୁଥିଲେ । ମତ୍ତଭ୍ରମରମାନେ ଗୁଞ୍ଜନ କରୁଥିଲେ ॥୧୨॥ ନାଲି ନାଲି ନୂଆ ପତ୍ର, ଫୁଲ ଏବଂ ଫଳରେ କଳ୍ପବୃକ୍ଷମାନଙ୍କର ଶାଖାସବୁ ଭରି ଯାଇଥିଲା । ସରୋବରମାନଙ୍କରେ ହଂସ, ସାରସ, ଚକ୍ରବାକ ଓ କାରଣ୍ଡବ ପକ୍ଷୀମାନେ କଳରୋଳ କରୁଥିଲେ । ଦେବତାସେବିତ ଦେବାଙ୍ଗନାମାନେ ସେଥିରେ ଜଳକ୍ରୀଡ଼ା କରୁଥିଲେ । ଅମରାବତୀର ପରିଖାରୂପରେ ଆକାଶ ଗଙ୍ଗା ଅବସ୍ଥିତ ଥିଲା । ଏହାର ଚାରିପାଖରେ ସୁବର୍ଣ୍ଣ ବର୍ଣ୍ଣର ପ୍ରାଚୀର ଏବଂ ଉଚ୍ଚ ସ୍ଥାନମାନଙ୍କରେ ଯୁଦ୍ଧଶାଳାମାନ ନିର୍ମାଣ କରାଯାଇଥିଲା । ଦ୍ୱାର ଦ୍ୱାରରେ ଥିଲା ସୁନାର କବାଟ ଓ ସ୍ଫଟିକମଣିର ଫାଟକ । ପ୍ରଶସ୍ତ ରାଜମାର୍ଗଯୁକ୍ତ ଏହି ଇନ୍ଦ୍ରପୁରୀକୁ ସ୍ୱୟଂ ବିଶ୍ୱକର୍ମା ନିର୍ମାଣ କରିଥିଲେ ॥୧୩-୧୫॥ ସଭାସ୍ଥଳ, କ୍ରୀଡ଼ାଙ୍ଗନ ଓ ବହୁ ମାର୍ଗ ଉପମାର୍ଗ ଯୁକ୍ତ ଏହି ଇନ୍ଦ୍ରପୁରୀରେ କୋଟିକୋଟି ବିମାନ ରହିଥିଲା । ଛକ ସ୍ଥାନମାନଙ୍କରେ ମଣିମୟ ବେଦୀ ସବୁ ଶୋଭା ପାଉଥିଲା ॥୧୬॥ ସେଠାରେ ସ୍ତ୍ରୀମାନେ ରୂପସୀ; ଚିରଦିନ ତାଙ୍କର ନବଯୌବନ ରହିଥାଏ । ତାତିଲା ସୁନାପରି ତାଙ୍କ ଅଙ୍ଗକାନ୍ତି ଝଟକୁଥାଏ । ନିର୍ମଳ ପଟ୍ଟବସ୍ତ୍ର ପରିଧାନ କରି ଚାଲିଲାବେଳେ, ତାଙ୍କ କବରୀରୁ ଫୁଲ ସବୁ ଖସି ପଡୁଥାଏ । ଧୀର ପବନରେ ତାର ମହକ ଭାସି ଉଠୁଥାଏ ॥୧୭-୧୮॥ ପୁଣି ଗବାକ୍ଷମାନଙ୍କରୁ ବାହାରି ଆସୁଥିବା ଧବଳ ରଙ୍ଗର ଧୂଆଁଦ୍ୱାରା ରାସ୍ତାସବୁ ଭରିଯାଉଥାଏ ଏବଂ ଅପ୍ସରାମାନେ ତାହା ମଧ୍ୟରେ ବିଚରଣ କରୁଥା'ନ୍ତି ॥୧୯॥ ସ୍ଥାନେ ସ୍ଥାନେ ମୋତିର ଝାଲରଥିବା ଚାନ୍ଦୁଆମାନ ଟଙ୍ଗା ହୋଇଥାଏ ଏବଂ ମଣିଜଡ଼ିତ ସୁନାର ପତାକା ସବୁ ଛାତମାନଙ୍କ ଉପରେ ଉଡୁଥାଏ । ବିମାନମାନଙ୍କ ଆଗରେ ମୟୂର, ପାରାବତ ଓ ଭ୍ରମରମାନେ ଗୁଞ୍ଜରଣ କରୁଥା'ନ୍ତି । ବିମାନଚାରିଣୀ ସ୍ତ୍ରୀମାନଙ୍କର ମଙ୍ଗଳସଙ୍ଗୀତ ଧ୍ୱନିତ ହେଉଥାଏ ॥୨୦॥ ମୃଦଙ୍ଗ, ଶଙ୍ଖ, ନାଗରା, ଦୁନ୍ଦୁଭି, ବୀଣା, ମଞ୍ଜିରା ଓ ବଂଶୀର ଧ୍ୱନି ସହ ବାଦ୍ୟର ତାଳେ ତାଳେ ଗୀତ ଗାଇ ଗନ୍ଧର୍ବ ଓ ଅପ୍ସରାମାନେ ନୃତ୍ୟ କରୁଥା'ନ୍ତି ଏବଂ ଏହା ଏପରି ସୁନ୍ଦର

ଦେଖାଯାଉଥାଏ ଯେ ଶୋଭାର ଦେବୀ ତାହା ଆଗରେ ପରାଜିତ ଜଣାଯାଉଥା'ନ୍ତି ॥୨୧॥ ଅଧର୍ମୀ, ଦୁଷ୍ଟ, ଜୀବଦ୍ରୋହୀ, ଠକ, ମାନୀ, କାମୀ ଓ ଲୋଭୀମାନେ ଏହାମଧ୍ୟରେ ପ୍ରବେଶ କରି ପାରନ୍ତି ନାହିଁ । ଯେଉଁମାନେ ଏହିସବୁ ଦୋଷରୁ ରହିତ, ସେମାନେ ସେଠାକୁ ଯାଇଥା'ନ୍ତି ॥୨୨॥

ବିପୁଳସେନାର ଅଧିକାରୀ ବଳବାନ୍ ବଳି ନିଜର ସେନାଦ୍ୱାରା ବାହାରୁ ଚାରିପଟରୁ ଏହି ଅମରପୁରୀକୁ ଘେରି ନେଲେ ଏବଂ ଇନ୍ଦ୍ରପତ୍ନୀମାନଙ୍କ ହୃଦୟରେ ଭୟର ସଞ୍ଚାର କରି ଶୁକ୍ରାଚାର୍ଯ୍ୟ ଦେଇଥିବା ମହାନାଦ ଶଙ୍ଖକୁ ବଜାଇବାକୁ ଲାଗିଲେ । ଏହି ଶଙ୍ଖନାଦରେ ଚତୁର୍ଦ୍ଦିଗ ଧ୍ୱନିତ ହେଲା ॥୨୩॥ ବଳି ଏକ ବଡ଼ ଯୁଦ୍ଧ ପାଇଁ ପ୍ରସ୍ତୁତ ହୋଇ ଆସିଥିବାର ଦେଖି ଇନ୍ଦ୍ର ଦେବତାମାନଙ୍କ ସହିତ ଗୁରୁ ବୃହସ୍ପତିଙ୍କ ପାଖରେ ପହଞ୍ଚି କହିଲେ, ମୋର ପୂର୍ବ ଶତ୍ରୁ ବଳି ଏଥର ଯୁଦ୍ଧପାଇଁ ପୂରା ପ୍ରସ୍ତୁତ ହୋଇ ଆସିଛି । ବର୍ତ୍ତମାନ ସେ ଅସହ୍ୟ, ତାର ସମ୍ମୁଖୀନ ହେବା ସମ୍ଭବ ନୁହେ । ବଳି କାହାର ତେଜଦ୍ୱାରା ଏପରି ବଳବାନ୍ ହୋଇଚି ? ॥୨୪-୨୫॥ ବର୍ତ୍ତମାନ କେହି କୌଣସି ପ୍ରକାର ଏହାର ପ୍ରତିରୋଧ କରିପାରିବେ ନାହିଁ । ମନେ ହେଉଛି ସତେ ଅବା ସେ ପ୍ରଳୟର ଅଗ୍ନିପରି ବିଶ୍ୱକୁ ପିଇଯିବ, ଜିଭରେ ଦଶଦିଗକୁ ଚାଟିଯିବ ଏବଂ ଦୃଷ୍ଟିଦ୍ୱାରା ଚତୁର୍ଦ୍ଦିଗକୁ ପୋଡ଼ି ଭସ୍ମ କରିଦେବ ॥୨୬॥ ମୋର ଶତ୍ରୁ କାହିଁକି ଏପରି ଦୁର୍ଦ୍ଧର୍ଷ ହୋଇଛି, ତାର କାରଣ କଣ ଦୟା କରି କହନ୍ତୁ । ଓଜଃ, ତେଜ, ବଳ, ସାହସ -- ଏସବୁ ତାର କୁଆଡୁ ଆସିଗଲା, ଯାହା ଫଳରେ ସେ ଏଡେ ବଡ଼ ଯୁଦ୍ଧପାଇଁ ପ୍ରସ୍ତୁତ ହୋଇ ଆସିଛି ? ॥୨୭॥

ବୃହସ୍ପତି କହିଲେ, ଇନ୍ଦ୍ର, ତୁମ ଶତ୍ରୁ ବଳିର ଏହି ଅଭିବୃଦ୍ଧିର କାରଣ ମୁଁ ଜାଣେ । ବ୍ରହ୍ମବାଦୀ ଭୃଗୁବଂଶୀମାନେ ନିଜ ନିଜର ତେଜଦ୍ୱାରା ବଳିକୁ ଏପରି ଶକ୍ତିଶାଳୀ କରାଇଛନ୍ତି । କାଳ (ଯମ) ଆଗରେ ଯେପରି କୌଣସି ପ୍ରାଣୀ ଠିଆ ହୋଇପାରେ ନାହିଁ, ସର୍ବଶକ୍ତିମାନ୍ ଭଗବାନଙ୍କ ଛଡ଼ା ତୁମେ ବା ତୁମପରି ଅନ୍ୟ କେହି ତାହା ଆଗରେ ଠିଆ ହୋଇପାରିବ ନାହିଁ ॥୨୮-୨୯॥ ତେଣୁ ଶତ୍ରୁର ବିପର୍ଯ୍ୟୟ ଘଟିବା ପର୍ଯ୍ୟନ୍ତ ତୁମେ ଦେବତାମାନେ ସ୍ୱର୍ଗ ଛାଡ଼ି ଚାଲିଯାଇ ଅଦୃଶ୍ୟଭାବରେ ଅବସ୍ଥାନ କର ॥୩୦॥ ବ୍ରାହ୍ମଣମାନଙ୍କ ତେଜରେ ତାର ଏପରି ବଳ ବଢ଼ିଯାଇଚି । ଯେଉଁଦିନ ସେ ସେମାନଙ୍କୁ ଅବମାନନା କରିବ, ସେଦିନ ସବାନ୍ଧବ ତାର ବିନାଶ ଘଟିବ ॥୩୧॥ ତତ୍ତ୍ୱଦର୍ଶୀ ଗୁରୁଙ୍କଦ୍ୱାରା ଏହିପରି ଉପଦିଷ୍ଟ ହୋଇ କାମରୂପୀ ଦେବତାମାନେ ସ୍ୱର୍ଗ ଛାଡ଼ି ଚାଲିଗଲେ ॥୩୨॥ ଦେବତାମାନେ ଅନ୍ତର୍ଦ୍ଧାନ ହୋଇଯିବାରୁ ବିରୋଚନପୁତ୍ର ବଳି ସ୍ୱର୍ଗରାଜ୍ୟକୁ ଅଧିକାର କରି ତ୍ରିଭୁବନ-ବିଜୟୀ ହେଲେ ॥୩୩॥ ବଳି ବିଶ୍ୱବିଜୟୀ ହୋଇଯିବାପରେ ଶିଷ୍ୟବତ୍ସଳ ଭୃଗୁବଂଶୀମାନେ ତାଙ୍କ ଦ୍ୱାରା ଶହେ ଅଶ୍ୱମେଧ ଯଜ୍ଞ କରାଇଲେ ॥୩୪॥ ଏହି ସବୁ ଯଜ୍ଞର ପ୍ରଭାବରେ ବଳିଙ୍କର କୀର୍ତ୍ତି ତ୍ରିଭୁବନକୁ ଓ ଦଶ ଦିଗକୁ ବ୍ୟାପିଗଲା । ସେ ନକ୍ଷତ୍ରପତି ଚନ୍ଦ୍ରମାଙ୍କପରି ଶୋଭା ପାଇବାକୁ ଲାଗିଲେ ॥୩୫॥ ମହାମନା ବଳି ନିଜକୁ କୃତକୃତ୍ୟ ମନେ କରି ଦେବୋପମ ବ୍ରାହ୍ମଣମାନଙ୍କ କୃପାରୁ ପାଇଥିବା ଏହି ସମୃଦ୍ଧ ରାଜ୍ୟସମ୍ପଦ ଭୋଗ କରିବାକୁ ଲାଗିଲେ ॥୩୬॥

## ଷୋଡ଼ଶ ଅଧ୍ୟାୟ

# ଅଦିତିଙ୍କୁ ବ୍ରତୋପଦେଶ

ଶ୍ରୀ ଶୁକଦେବ କହିଲେ, ପୁତ୍ରମାନେ ଏପରି ଦୁଃଖରେ ଲୁଚି ରହିଥିବାରୁ ଏବଂ ଦୈତ୍ୟମାନେ ବଳପୂର୍ବକ ସ୍ୱର୍ଗକୁ ଅଧିକାର କରି ନେଇଥିବାରୁ ଦେବମାତା ଅଦିତି ବିଳାପ କରିବାକୁ ଲାଗିଲେ ॥୧॥ ଭଗବାନ କଶ୍ୟପ ଦୀର୍ଘକାଳ ଧରି ସମାଧିରେ ବସିଥିଲେ । ସେ ସମାଧିରୁ ଉଠି ଆଶ୍ରମକୁ ଆସି ଦେଖିଲେ ଯେ ଆଶ୍ରମରେ କୌଣସି ଆନନ୍ଦ ନାହିଁ, କୌଣସି ଉତ୍ସବ ହେଉ

ନାହିଁ ॥୨॥ ପରିକ୍ଷିତ, ପତ୍ନୀ ଅଦିତିଙ୍କ ଦ୍ୱାରା ଅଭ୍ୟର୍ଥିତ ହୋଇ କଶ୍ୟପ ଆସନ ଗ୍ରହଣ କଲେ । ଅଦିତିଙ୍କ ମୁହଁ ଦୁଃଖରେ ଶୁଖି ଯାଇଥିବାରୁ ସେ ତାଙ୍କୁ ଏହିପରି ଭାବରେ ପଚାରିଲେ-- ॥୩॥ କଲ୍ୟାଣି ! ସଂସାରରେ ଏବେ ବ୍ରାହ୍ମଣମାନଙ୍କର କୌଣସି ଅମଙ୍ଗଳ ହେଉନାହିଁ ତ ? ଧର୍ମର କିମ୍ବା କାଳକବଳିତ ଜଗତର କୌଣସି ବିପଦ ନାହିଁ ତ ? ॥୪॥ ଗୃହସ୍ଥାଶ୍ରମରେ ଥିବା ଗୃହସ୍ଥମାନଙ୍କର ସମସ୍ତ କୁଶଳତ ? କାରଣ ଯୋଗୀ ନ ହେଲେ ମଧ୍ୟ ସେମାନେ ଧର୍ମାନୁମୋଦିତ ଅର୍ଥ ଓ କାମକୁ ଉପଭୋଗ କରି ଯୋଗର ଫଳ ଲାଭ କରନ୍ତି ॥୫॥ ତୁମେ କୁଟୁମ୍ବଙ୍କପାଇଁ ବ୍ୟସ୍ତ ଥିବାବେଳେ କେହି ଅତିଥି, ଅଭ୍ୟାଗତ ଆସିଛନ୍ତି, ତୁମେ ଗାତ୍ରୋତ୍ଥାନପୂର୍ବକ ସାମନ୍ୟ ପାଣି ଟିକିଏ ଦେଇ ତାଙ୍କର ଚର୍ଚ୍ଚା କରିପାରି ନାହଁ, ସେମାନେ ଫେରି ଯାଇଛନ୍ତି, ଏ ଗୃହ ଶୃଗାଳର ଗୃହ ପରି ହୋଇଛି -- ଏପରି କିଛି ଘଟି ନାହିଁ ତ ? ॥୬-୭॥ କଲ୍ୟାଣି ! ମୁଁ ପ୍ରବାସରେ ଥିବାବେଳେ ତୁମର ମନ ବିଚଳିତ ଥିବାରୁ ତ୍ରିସନ୍ଧ୍ୟାରେ ଅଗ୍ନିରେ ଆହୁତି ଦେଇ ନାହଁ, ଏପରି କେବେ ହୋଇଛି କି ? କାରଣ ଅଗ୍ନିପୂଜାଦ୍ୱାରା ଗୃହସ୍ଥ ଅଭିଳଷିତ ଲୋକ ଲାଭକରେ, କାରଣ ବ୍ରାହ୍ମଣ ଓ ଅଗ୍ନି ହେଉଛନ୍ତି ସର୍ବଦେବମୟ ଭଗବାନ ବିଷ୍ଣୁଙ୍କର ମୁଖସ୍ୱରୂପ ॥୮-୯॥ ମନସ୍ୱିନୀ, ତୁମର ପୁତ୍ରମାନେ କୁଶଳରେ ଅଛନ୍ତି ତ ? ତୁମ ମୁହଁର ହାବଭାବରୁ ଜଣାଯାଉଛି, ତୁମେ ସୁଖୀ ନୁହଁ ॥୧୦॥

ଅଦିତି କହିଲେ, ବ୍ରହ୍ମନ୍, ଗୋ, ବ୍ରାହ୍ମଣ, ଧର୍ମ ଏବଂ ଲୋକସମୂହ-ସମସ୍ତେ କୁଶଳରେ ଅଛନ୍ତି । ଆପଣ ଗୃହର ମର୍ମଜ୍ଞ । ଏହି ଗୃହସ୍ଥାଶ୍ରମ ହେଉଚି ଧର୍ମ ଅର୍ଥ ଓ କାମର ଶ୍ରେଷ୍ଠ କ୍ଷେତ୍ର ॥୧୧॥ ସ୍ୱାମୀ, ମୁଁ ଯେ ଆପଣଙ୍କୁ ସର୍ବଦା ଧ୍ୟାନ କରେ, ତାହାରି ପ୍ରଭାବରେ ଅଗ୍ନି, ଅତିଥି, ଭୃତ୍ୟ ବା ଭିକ୍ଷୁକ ପ୍ରଭୃତି କାହାରି ସତ୍କାରରେ ଅବହେଳା ହୋଇ ନାହିଁ ॥୧୨॥ ପ୍ରଭୁ, ଆପଣଙ୍କ ପରି ପ୍ରଜାପତି ମୋତେ ଯେଉଁ ଧର୍ମୋପଦେଶ ଦିଅନ୍ତି, ସେଥିରେ ଏପରି କଣ ବା ମନର କାମନା ଅଛି, ଯାହା ପୂରଣ ହୋଇପାରିବ ନାହିଁ ? ॥୧୩॥ ମରୀଚିପୁତ୍ର, ସତ୍ତ୍ୱ, ରଜ ଓ ତମୋଗୁଣସମ୍ପନ୍ନ ସମସ୍ତ ପ୍ରଜା ଆପଣଙ୍କ ଦେହ ଓ ମନରୁ ଉତ୍ପନ୍ନ ହୋଇଛନ୍ତି । ସୁରାସୁର ସମସ୍ତଙ୍କ ପ୍ରତି ଆପଣ ସମଭାବାପନ୍ନ ହେଲେ ମଧ୍ୟ ଭଗବାନ କେବଳ ଭକ୍ତକୁ ହିଁ ଅଧିକ ସ୍ନେହ କରନ୍ତି ॥୧୪॥ ହେ ସ୍ୱାମୀ, ହେ ସୁବ୍ରତ ! ଶତ୍ରୁ ଦୈତ୍ୟମାନେ ମୋର ସନ୍ତାନ ଦେବତାମାନଙ୍କ ରାଜ୍ୟ ଓ ସମ୍ପଦ ଅପହରଣ କରି ନେଇଛନ୍ତି । ମୁଁ ଆପଣଙ୍କର ଶରଣାଗତ । ଆପଣ ଆମକୁ ରକ୍ଷା କରନ୍ତୁ ॥୧୫॥ ବଳବାନ୍ ଶତ୍ରୁମାନେ ମୋର ଐଶ୍ୱର୍ଯ୍ୟ, ଧନ, ଯଶ ଏବଂ ପଦ ମୋଠାରୁ ଛଡ଼ାଇ ନେଇଛନ୍ତି ଏବଂ ମୋତେ ଘରୁ ତଡ଼ି ଦେଇଛନ୍ତି । ମୁଁ ଦୁଃଖର ସାଗରରେ ଉବୁଟୁବୁ ହେଉଚି । ମୋର ପ୍ରଭୁ, ମୋରହିତୈଷୀ । ଆପଣ ଏପରି ଉପାୟ କରନ୍ତୁ, ଯଦ୍ୱାରା ମୋର ସନ୍ତାନମାନେ ପୁଣି ତାଙ୍କର ରାଜ୍ୟ ସମ୍ପଦ ଫେରି ପାଇବେ ॥୧୬-୧୭॥

ଶ୍ରୀଶୁକଦେବ କହିଲେ, ଅଦିତି ଏପରି ପ୍ରାର୍ଥନା କରିବାରୁ କଶ୍ୟପ ସ୍ମିତହାସ୍ୟ କରି କହିଲେ, ଓଃ, ବିଷ୍ଣୁଙ୍କର ମାୟା କେଡ଼େ ବଳୀୟାନ୍ । ମମତାର ରଜ୍ଜୁରେ ସେ ଏହି ଜଗତକୁ ବାନ୍ଧି ରଖିଛନ୍ତି । କେଉଁଠି ଏହି ଭୌତିକ ଅନାତ୍ମା ଦେହ ଏବଂ କେଉଁଠି ପ୍ରକୃତିରୁ ଅତୀତ ବିଦେହ ଆତ୍ମା । କିଏ କାହାର ପତି, ପୁତ୍ର ବା ଆତ୍ମୀୟ ? ମୋହ ହିଁ ହେଉଚି ଏସବୁର କାରଣ ॥୧୮-୧୯॥ ସବୁ ଲୋକଙ୍କର ହୃଦୟରେ ପୁରୁଷରୂପେ ବାସ କରୁଥିବା ସେହି ଜଗଦ୍‌ଗୁରୁ ଭଗବାନ ବାସୁଦେବଙ୍କୁ ଆରାଧନା କର । ସେ ଜନାର୍ଦ୍ଦନ, ସମସ୍ତଙ୍କର ଦୁଃଖ ମୋଚନ କରନ୍ତି ॥୨୦॥ ସେ ଦୀନଦୟାଳୁ ନିଶ୍ଚୟ ତୁମର ମନସ୍କାମନା ପୂର୍ଣ୍ଣ କରିବେ । କାରଣ ଭଗବାନଙ୍କୁ ଯେ ଭକ୍ତି କରେ, ତାହା କେବେ ବ୍ୟର୍ଥ ହୁଏ ନାହିଁ । ଏହା ଛଡ଼ା ଆଉ କୌଣସି ଉପାୟ ଦେଖାଯାଉ ନାହିଁ ॥୨୧॥

ଅଦିତି କହିଲେ, ହେ ବ୍ରହ୍ମନ୍, ମୁଁ କେଉଁ ବିଧିରେ ଭଗବାନ ଜଗଦୀଶ୍ୱରଙ୍କୁ ଉପାସନା କରିବି, ଯେପରିକି ସେହି ସତ୍ୟସଂକଳ୍ପ ପ୍ରଭୁ ମୋର ମନୋରଥ ପୂର୍ଣ୍ଣ କରିବେ, ତାହା ମୋତେ ବତାଇ ଦିଅନ୍ତୁ ॥୨୨॥ ଦ୍ୱିଜଶ୍ରେଷ୍ଠ, ମୋର ପୁତ୍ରମାନଙ୍କ ସହିତ ମୁଁ ବହୁ ଦୁଃଖଭୋଗ କରୁଚି । ଶୀଘ୍ର ଯେପରି ଭଗବାନ ମୋ ପ୍ରତି ପ୍ରସନ୍ନ ହେବେ, ସେହି ଆରାଧନା ବିଧି ମୋତେ ଆଦେଶ କରନ୍ତୁ ॥୨୩॥

କଶ୍ୟପ କହିଲେ, ଅଦିତି, ମୁଁ ଯେତେବେଳେ ପୁତ୍ରକାମନା କରି ଭଗବାନ ବ୍ରହ୍ମାଙ୍କ ପାଖକୁ ଯାଇଥିଲି, ଶ୍ରୀ କେଶବଙ୍କୁ ସନ୍ତୁଷ୍ଟ କରିବାପାଇଁ ଯେଉଁ ବ୍ରତର କଥା ସେ ମୋତେ ଉପଦେଶ ଦେଇଥିଲେ, ତାହା ମୁଁ ତୁମକୁ କହିବାକୁ ଯାଉଚି ॥୨୪॥ ଫାଲ୍ଗୁନ ଶୁକ୍ଳପକ୍ଷରେ ବାରଦିନଯାକ କେବଳ ଦୁଧ ପିଇ ରହିବାକୁ ହେବ ଓ ଅତିଶୟ ଭକ୍ତି ଭାବରେ ଭଗବାନ କମଳନୟନଙ୍କୁ ପୂଜା କରିବାକୁ ହେବ ॥୨୫॥ ବନ୍ୟବରାହ ଯେଉଁ ମୃତ୍ତିକାକୁ ବିଦାରଣ କରିଥିବ, ଯଦି ତାହା ମିଳିଯାଏ, ତେବେ ଅମାବାସ୍ୟା ଦିନ ତାହାକୁ ଦେହରେ ବୋଳି ହୋଇ ନଦୀରେ ସ୍ନାନ କରିବ ଏବଂ ଏହି ମନ୍ତ୍ର ପାଠକରିବ-- ॥୨୬॥

'ପୃଥ୍ୱୀଦେବୀ, ପ୍ରାଣୀମାନଙ୍କୁ ସ୍ଥାନ ଦେବାପାଇଁ ଭଗବାନ ବରାହ ରୂପରେ ତୁମକୁ ରସାତଳରୁ ଉଦ୍ଧାର କରିଥିଲେ । ମୁଁ ତୁମକୁ ନମସ୍କାର କରୁଚି । ତୁମେ ମୋର ପାପକୁ ନାଶ କରିଦିଅ ।' ॥୨୭॥ ଏହାପରେ ନିଜର ନିତ୍ୟ ନୈମିତ୍ତିକ କର୍ମ ଶେଷ କରି ଏକାଗ୍ର ଚିତ୍ତରେ ମୂର୍ତ୍ତି, ବେଦୀ, ସୂର୍ଯ୍ୟ, ଜଳ, ଅଗ୍ନି ଓ ଗୁରୁଦେବଙ୍କ ରୂପରେ ଭଗବାନଙ୍କୁ ପୂଜା କରିବ ॥୨୮॥ ଏହିପରି ସ୍ତୁତି କରିବ - ହେ ଭଗବାନ୍, ଆପଣ ମହୀୟାନ୍, ପୁରୁଷୋତ୍ତମ, ସମସ୍ତ ପ୍ରାଣୀଙ୍କର ଆବାସସ୍ଥଳ, ସମସ୍ତ ବିଶ୍ୱର ସାକ୍ଷୀ ବାସୁଦେବ । ମୁଁ ଆପଣଙ୍କୁ ନମସ୍କାର କରୁଚି ॥୨୯॥ ଆପଣ ସୂକ୍ଷ୍ମ ଓ ଅବ୍ୟକ୍ତ । ପ୍ରକୃତି ଓ ପୁରୁଷ ରୂପରେ ଅବସ୍ଥିତ । ଆପଣ ସାଂଖ୍ୟ ଶାସ୍ତ୍ରରେ ଥିବା ଚବିଶ ଗୁଣ ଜାଣନ୍ତି ଏବଂ ଗୁଣର ସଂଖ୍ୟା କରୁଥିବା ଏହି ଶାସ୍ତ୍ରର ପ୍ରବର୍ତ୍ତକ । ଆପଣଙ୍କୁ ମୋର ନମସ୍କାର ॥୩୦॥ ଯେଉଁ ଯଜ୍ଞରୂପୀ ଭଗବାନଙ୍କର ଦୁଇଟି ମସ୍ତକ ହେଉଚି, ପ୍ରାୟଣୀୟ ଓ ଉଦୟନୀୟ ; ପ୍ରାତଃ, ମଧ୍ୟାହ୍ନ ଓ ସାୟଂକାଳୀନ -- ତିନି ସବନ ହେଉଚି ତାଙ୍କର ତିନୋଟି ପାଦ; ଚାରିବେଦ ହେଉଚି ଚାରୋଟି ଶିଙ୍ଗ, ଗାୟତ୍ରୀ ଆଦି ସାତଟି ଛନ୍ଦ ହେଉଚି ସାତଟି ହାତ; ଯେ ଯଜ୍ଞଫଳବିସ୍ତାରକ ଏବଂ ବେଦର ଆତ୍ମା ସ୍ୱରୂପ ସେହି ଭଗବାନଙ୍କୁ ମୋର ନମସ୍କାର ॥୩୧॥ ଆପଣ ଲୋକଙ୍କର ମଙ୍ଗଳକାରୀ ଶିବ ଏବଂ ଧ୍ୱଂସକାରୀ ରୁଦ୍ର । ଆପଣ ସମସ୍ତ ଶକ୍ତି ଧାରଣ କରିଛନ୍ତି । ସମସ୍ତ ବିଦ୍ୟାର ଅଧିପତି ଏବଂ ପ୍ରାଣୀମାନଙ୍କର ଈଶ୍ୱର, ଆପଣଙ୍କୁ ମୋର ନମସ୍କାର ॥୩୨॥ ହେ ହିରଣ୍ୟଗର୍ଭ, ଆପଣ ସମସ୍ତଙ୍କର ପ୍ରାଣ ଓ ଜଗତ୍‌ର ଆତ୍ମାସ୍ୱରୂପ, ଆପଣ ଯୋଗର ପ୍ରବର୍ତ୍ତକ ଏବଂ ଯୋଗର ସମସ୍ତ ଐଶ୍ୱର୍ଯ୍ୟ ଆପଣଙ୍କଠାରେ ମୂର୍ତ୍ତିମନ୍ତ ହୋଇଚି । ମୁଁ ଆପଣଙ୍କୁ ନମସ୍କାର କରୁଚି ॥୩୩॥ ଆପଣ ଆଦିଦେବ, ସମସ୍ତଙ୍କର ସାକ୍ଷୀ । ଆପଣ ସ୍ୱୟଂ ଭଗବାନ ନରନାରାୟଣ ଋଷିରୂପରେ ଅବତୀର୍ଣ୍ଣ ହୋଇଛନ୍ତି । ଆପଣଙ୍କୁ ମୋର ନମସ୍କାର ॥୩୪॥ ଆପଣ ମରକତମଣି ପରି ଶ୍ୟାମବର୍ଣ୍ଣ ଶରୀର; ଆପଣ ଐଶ୍ୱର୍ଯ୍ୟର ଦେବୀ ଲକ୍ଷ୍ମୀଙ୍କୁ ପାଇଛନ୍ତି, ଆପଣ ପୀତବାସ ଓ କେଶବ, ଆପଣଙ୍କୁ ନମସ୍କାର କରୁଚି ॥୩୫॥ ହେ ବରେଣ୍ୟ, ହେ ବରଦଶ୍ରେଷ୍ଠ, ଆପଣ ସକଳ ଅଭୀଷ୍ଟ ବର ଦେଇପାରନ୍ତି । ଏଣୁ ବିବେକୀ ପୁରୁଷମାନେ ନିଜର ମଙ୍ଗଳପାଇଁ ଆପଣଙ୍କ ପାଦରଜକୁ ଉପାସନା କରନ୍ତି ॥୩୬॥ ତାହାଙ୍କ ପାଦପଦ୍ମର ସୌରଭ କାମନା କରୁଥିବା ଦେବତାମାନେ ଏବଂ ସ୍ୱୟଂ ଲକ୍ଷ୍ମୀ ଦେବୀ ଯାହାଙ୍କୁ ସେବା କରନ୍ତି, ସେ ଭଗବାନ ମୋ ପ୍ରତି ପ୍ରସନ୍ନ ହୁଅନ୍ତୁ ॥୩୭॥ ଏହି ମନ୍ତ୍ରମାନଙ୍କ ଦ୍ୱାରା ଭଗବାନ ହୃଷୀକେଶଙ୍କୁ ଆବାହନରେ ସମ୍ମାନିତ କରି ଶ୍ରଦ୍ଧାପୂର୍ବକ ପାଦ୍ୟ ଓ ଆଚମନୀୟ ଆଦିଦ୍ୱାରା ପୂଜା କରିବ ॥୩୮॥ ଗନ୍ଧ ମାଲ୍ୟାଦିଦ୍ୱାରା ପୂଜା କରି କ୍ଷୀରରେ ଭଗବାନଙ୍କ ମୂର୍ତ୍ତିକୁ ଗାଧୋଇ ଦେବ । ତା'ପରେ ବସ୍ତ୍ର, ଉପବୀତ, ଆଭରଣ, ପାଦ୍ୟ, ଆଚମନୀୟ, ଧୂପ, ଗନ୍ଧ ଆଦି ଦ୍ୱାରା ଦ୍ୱାଦଶାକ୍ଷର ମନ୍ତ୍ରରେ ପୂଜା କରିବ । ସାମର୍ଥ୍ୟ ଥିଲେ କ୍ଷୀରରେ ଘିଅ ଓ ଗୁଡ଼ ମିଶାଇ ଶାଳି ଅନ୍ନକୁ ସିଦ୍ଧ କରି ନୈବେଦ୍ୟ ଓ ଦ୍ୱାଦଶାକ୍ଷର ମନ୍ତ୍ରରେ ହବନ କରିବ ॥୩୯-୪୦॥ ସେହି ନୈବେଦ୍ୟ କରାଯାଇଥିବା ଅନ୍ନକୁ ଭକ୍ତମାନଙ୍କୁ ଦେବ ବା ନିଜେ ଭୋଜନ କରିବ । ସେହିପରି ଆଚମନ ଓ ପୂଜାପରେ ତାମ୍ବୂଳ ନିବେଦନ କରିବ ॥୪୧॥ ତାପରେ ଦ୍ୱାଦଶାକ୍ଷର ମନ୍ତ୍ରକୁ ଶହେ ଆଠଥର ଜପ କରିବ ଏବଂ ବହୁବିଧ ସ୍ତୁତିଦ୍ୱାରା ଭଗବାନଙ୍କୁ ସ୍ତବ କରିବ ଏବଂ ପରେ ପରେ ପ୍ରଦକ୍ଷିଣ କରି ଆନନ୍ଦରେ ଭୂମିଉପରେ ସାଷ୍ଟାଙ୍ଗ ପ୍ରଣିପାତ କରିବ ॥୪୨॥

ତା'ପରେ ନିର୍ମାଲ୍ୟକୁ ମୁଣ୍ଡରେ ଲଗାଇ ଦେବତାଙ୍କୁ ବିସର୍ଜନ କରିବ ଏବଂ ଖୁବ୍ କମ୍‌ରେ ଦୁଇ ଜଣ ବ୍ରାହ୍ମଣଙ୍କୁ ପାୟସ ଅନ୍ନରେ ଯଥୋଚିତ ଆପ୍ୟାୟିତ କରିବ ॥୪୩॥ ବ୍ରାହ୍ମଣଙ୍କୁ ସତ୍‌କାର କରିସାରିବାପରେ ସେମାନଙ୍କ ଅନୁମତି ନେଇ ନିଜର ବନ୍ଧୁ ବାନ୍ଧବଙ୍କ ସହ ଅବଶିଷ୍ଟ ପ୍ରସାଦ ଭୋଜନ କରିବ । ସେଦିନ ରାତିରେ ବ୍ରହ୍ମଚର୍ଯ୍ୟ ଅବଲମ୍ବନ କରିବ ଏବଂ ତା' ପରଦିନ ପ୍ରାତଃ କାଳରେ ସ୍ନାନାଦିଦ୍ୱାରା ପବିତ୍ର ହୋଇ ପୂର୍ବୋକ୍ତ ବିଧିରେ ବିଷ୍ଣୁଙ୍କର ପୂଜା କରିବ ଏବଂ ବ୍ରତ ସରିବା ପର୍ଯ୍ୟନ୍ତ କ୍ଷୀରରେ ଗାଧୋଇ ଦେଇ ପ୍ରତିଦିନ ପୂଜା କରୁଥିବ ॥୪୪-୪୫॥ (ବ୍ରତୀ) କ୍ଷୀର ଆହାର କରି ଏବଂ ବିଷ୍ଣୁଙ୍କର ପୂଜାରେ ମନଦେଇ ଏହି ପୟୋବ୍ରତ କରିବ । ପୂର୍ବପରି ପ୍ରତିଦିନ ଅଗ୍ନିଙ୍କୁ ହବନ କରିବ ଓ ବ୍ରାହ୍ମଣଙ୍କୁ ଭୋଜନ କରାଇବ ॥୪୬॥ ପୟୋବ୍ରତୀ ଅହରହ ବାରଦିନ ପର୍ଯ୍ୟନ୍ତ ଶ୍ରୀହରିଙ୍କ ଆରାଧନା, ହୋମ, ପୂଜା ଓ ବ୍ରାହ୍ମଣଭୋଜନ କରିବ ॥୪୭॥

ପ୍ରତିପଦାରୁ ଆରମ୍ଭ କରି ଶୁକ୍ଳ ତ୍ରୟୋଦଶୀ ପର୍ଯ୍ୟନ୍ତ ବ୍ରହ୍ମଚର୍ଯ୍ୟ ପାଳନ କରି ଭୂମିରେ ଶୟନ ଏବଂ ଦିନରେ ତିନି ବାର ସ୍ନାନ କରିବ ॥୪୮॥ ମନ୍ଦକଥା ଆଲୋଚନା କରିବ ନାହିଁ । ଛୋଟ ବଡ଼ ଭୋଗ ତ୍ୟାଗ କରିବ । ସମସ୍ତ ପ୍ରାଣୀଙ୍କ ପ୍ରତି ଅହିଂସା କରିବ ଏବଂ ବାସୁଦେବଙ୍କଠାରେ ଲୟ ରଖିଥିବ ॥୪୯॥ ତ୍ରୟୋଦଶୀ ଦିନ ଶାସ୍ତ୍ରବିଧିଜ୍ଞ ବ୍ରାହ୍ମଣମାନଙ୍କ ଦ୍ୱାରା ଶାସ୍ତ୍ରୋକ୍ତ ବିଧି ଅନୁଯାୟୀ ବିଷ୍ଣୁଙ୍କୁ ପଞ୍ଚାମୃତରେ ସ୍ନାନ କରାଇବ ॥୫୦॥ ଧନଲୋଭ ନ କରି ସେଦିନ ଭଗବାନଙ୍କର ଏକ ବଡ଼ଧରଣର ପୂଜାର ଆୟୋଜନ କରିବ । କ୍ଷୀରରେ ଚରୁ ରନ୍ଧନ କରି ସର୍ବେଶ୍ୱର ଶ୍ରୀଭଗବାନଙ୍କୁ ଅର୍ପଣ କରିବ ॥୫୧॥ ସେଇ ପକ୍ୱ ଚରୁଦ୍ୱାରା ଏକାଗ୍ର ଚିତ୍ତରେ ଭଗବାନଙ୍କୁ ପୂଜା କରିବ । ତାଙ୍କ ସନ୍ତୋଷପାଇଁ ଅତୀବ ଗୁଣଯୁକ୍ତ ନୈବେଦ୍ୟ ଅର୍ପଣ କରିବ ॥୫୨॥ ପରେ ପରେ ଜ୍ଞାନସମ୍ପନ୍ନ ଆଚାର୍ଯ୍ୟଙ୍କୁ ଓ ଋତ୍ୱିକମାନଙ୍କୁ ବସ୍ତ୍ର, ଅଳଙ୍କାର, ଧେନୁ, ଆଦି ଦାନ କରି ସନ୍ତୋଷ କରିବ । ତାହାକୁ ହିଁ ଭଗବାନଙ୍କର ପ୍ରକୃଷ୍ଟ ପୂଜା ବୋଲି ଜାଣିବ ॥୫୩॥

ହେ ଶୁଚିସ୍ମିତା ! ଉତ୍‌କୃଷ୍ଟ ସାରଯୁକ୍ତ ଅନ୍ନଦ୍ୱାରା ସେମାନଙ୍କୁ ଭୋଜନ କରାଇବ । ଅନ୍ୟ ବ୍ରାହ୍ମଣମାନଙ୍କୁ ଓ ଅନ୍ୟଯେଉଁମାନେ ସେଠାକୁ ଆସିଥିବେ, ସେମାନଙ୍କୁ ଯଥାଶକ୍ତି ଭୋଜନ ଦେବ ॥୫୪॥ ଗୁରୁ ଓ ଋତ୍ୱିକମାନଙ୍କୁ ଯଥାଯୋଗ୍ୟ ଦକ୍ଷିଣା ଦେବ । ଆଚାଣ୍ଡାଳ ଦୀନ ଦୁଃଖୀ ଅନ୍ଧ ଓ ଅସମର୍ଥ -- ଯେଉଁମାନେ ସେଠାକୁ ଆସିଥିବେ, ସମସ୍ତଙ୍କୁ ଖାଇବାକୁ ଦେଇ ଖୁସି କରାଇବ । କାରଣ ସେଇ ସମସ୍ତ ପ୍ରାଣୀଙ୍କର ଭୋଜନ ହିଁ ଭଗବାନଙ୍କର ସନ୍ତୋଷ । ଏଣୁ ସମସ୍ତେ ଖାଇ ସାରିବାପରେ ବିଦ୍ୱାନ୍ ନିଜର ବନ୍ଧୁବାନ୍ଧବଙ୍କ ସହିତ ବସି ଭୋଜନ କରିବ । ତା'ପରେ ଗାଉଣା, ବାଜଣା, ନାଚ, ସ୍ତବ, ସ୍ୱସ୍ତିବାଚନ, ହରିଲୀଳା କୀର୍ତ୍ତନ ଆଦି ଦ୍ୱାରା ତେରଦିନ ଯାକ ପ୍ରତିଦିନ ଭଗବାନଙ୍କର ପୂଜା କରାଇବ । ଅଦିତି, ଏହା ହରିଙ୍କର ଶ୍ରେଷ୍ଠ ଆରାଧନା, ଏହାର ନାମ ହେଉଚି ପୟୋବ୍ରତ, ଯାହା ପିତାମହ ବ୍ରହ୍ମାଙ୍କଠାରୁ ମୁଁ ଶୁଣିଥିଲି ଏବଂ ତୁମକୁ ଜଣାଇଲି ॥୫୫-୫୮॥ ସୌଭାଗ୍ୟବତୀ, ନିଜେ ସଂଯତ ରହି ଶୁଦ୍ଧପୂତ ଭାବରେ ତୁମେ ଏହି ବ୍ରତଟିକୁ ସମ୍ୟକ୍‌ରୂପେ ପାଳନ କରି ସେହି ଅବ୍ୟୟପୁରୁଷ କେଶବଙ୍କୁ ଭଜନକର ॥୫୯॥ କଲ୍ୟାଣି ! ଶ୍ରେଷ୍ଠତାପାଇଁ ଏହି ଯଜ୍ଞକୁ 'ସର୍ବଯଜ୍ଞ' ଓ ଏହି ବ୍ରତକୁ 'ସର୍ବବ୍ରତ' ଆଖ୍ୟା ଦିଆଯାଇଚି । ଏହା ହେଉଚି ସବୁ ତପସ୍ୟା ମଧ୍ୟରେ ସାର, ଦାନ ମଧ୍ୟରେ ଶ୍ରେଷ୍ଠ ଏବଂ ଭଗବାନଙ୍କୁ ଅତିଶୟ ତୃପ୍ତିପ୍ରଦ ॥୬୦॥ ଯାହାଦ୍ୱାରା ଭଗବାନଙ୍କ ସନ୍ତୋଷ ହୁଏ, ତାହା ହିଁ ପ୍ରକୃଷ୍ଟ ଯମ, ନିୟମ, ତପ, ଦାନ, ବ୍ରତ ଏବଂ ଯଜ୍ଞ । ତେଣୁ ହେ ଦେବୀ, ତୁମେ ଶ୍ରଦ୍ଧା ଓ ନିଷ୍ଠାର ସହିତ ଏହି ବ୍ରତକୁ ପାଳନ କର । ଭଗବାନ ଖୁବ୍ ଶୀଘ୍ର ତୁମ ଉପରେ ସନ୍ତୁଷ୍ଟ ହୋଇ ତୁମକୁ ବର ପ୍ରଦାନ କରିବେ ॥୬୧-୬୨॥

## ସପ୍ତଦଶ ଅଧ୍ୟାୟ

# ଅଦିତିଙ୍କର ବରଲାଭ

ଶ୍ରୀ ଶୁକଦେବ କହିଲେ, ମହାରାଜ, ଅଦିତି ନିଜର ପତି କଶ୍ୟପଙ୍କ ଉପଦେଶ ଅନୁସାରେ ବାରଦିନ ଧରି ନିରଳସଭାବରେ ଏହି ବ୍ରତ ଅନୁଷ୍ଠାନ କଲେ ॥୧॥ ବୁଦ୍ଧିକୁ ସାରଥି କରି ଇନ୍ଦ୍ରିୟରୂପକ ଦୁଷ୍ଟ ଅଶ୍ୱମାନଙ୍କୁ ମନଦ୍ୱାରା ସେ ବଶୀଭୂତ କଲେ ଏବଂ ଏକନିଷ୍ଠ ଚିତ୍ତରେ ମହାପୁରୁଷ ଈଶ୍ୱରଙ୍କୁ ଚିନ୍ତା କରୁଥିଲେ ॥୨॥ ଏକାଗ୍ର ବୁଦ୍ଧିରେ ସର୍ବାତ୍ମା ଭଗବାନ ବାସୁଦେବଙ୍କଠାରେ ମନୋନିବେଶ କରି ପୟୋବ୍ରତକୁ ପାଳନ କଲେ ॥୩॥ ହେ ତାତ ! ସେତେବେଳେ ଆଦିପୁରୁଷ ଭଗବାନ ତାଙ୍କ ଆଗରେ ଆବିର୍ଭୂତ ହେଲେ । ସେ ପୀତବସନ ଏବଂ ଚତୁର୍ଭୁଜ ରୂପରେ ଶଙ୍ଖ ଚକ୍ର ଓ ଗଦା ଧାରଣ କରିଥିଲେ ॥୪॥ ହଠାତ୍ ତାଙ୍କୁ ଆଖି ଆଗରେ ଦେଖି ଅଦିତି ଆଦରରେ ଉଠି ପଡ଼ିଲେ ଏବଂ ପ୍ରେମରେ ଗଦ୍‌ଗଦ ହୋଇ ଭୂଇଁରେ ଶୋଇଯାଇ ଦଣ୍ଡପ୍ରଣାମ କଲେ ॥୫॥ ଉଠିପଡ଼ି ହାତ ଯୋଡ଼ି ସ୍ତୁତି କରିବାକୁ ଚେଷ୍ଟାକଲେ । କିନ୍ତୁ ପାରିଲେ ନାହିଁ । କାରଣ ଚକ୍ଷୁରୁ ଆନନ୍ଦାଶ୍ରୁ ଝରିବାକୁ ଲାଗିଲା । ଶରୀର ପୁଲକିତ ହେଲା । ଆନନ୍ଦରେ ଦେହ ଥରିବାକୁ ଲାଗିଲା । ସେ ତୁନି ହୋଇ ଠିଆହୋଇ ରହିଲେ ॥୬॥ କୁରୁଶ୍ରେଷ୍ଠ ! ପ୍ରଥମେ ତ ଲକ୍ଷ୍ମୀପତି, ଜଗତ୍‌ପତି ଓ ଯଜ୍ଞପତି ଶ୍ରୀହରିଙ୍କୁ ଚାହିଁରହି ଚକ୍ଷୁଦ୍ୱାରା ତାଙ୍କର ସେ ରୂପକୁ ପିଇବାକୁ ଲାଗିଲେ । ପରେ ପ୍ରୀତିପୂର୍ବକ ଧୀରେ ଧୀରେ ଗଦ୍‌ଗଦ ସ୍ୱରରେ ସେ ତାଙ୍କର ସ୍ତୁତି ଆରମ୍ଭ କଲେ-- ॥୭॥

ଅଦିତି କହିଲେ, ଆପଣ ଯଜ୍ଞର ଈଶ୍ୱର ଏବଂ ସ୍ୱୟଂ ଯଜ୍ଞପୁରୁଷ । ସକଳ ତୀର୍ଥ ହିଁ ଆପଣଙ୍କ ପାଦରେ ନିହିତ । ସଂସାରରୁ ତାରିବାପାଇଁ ହିଁ ଆପଣ କୀର୍ତ୍ତି ବିସ୍ତାର କରିଛନ୍ତି । ଆପଣଙ୍କ ନାମ ଶ୍ରବଣଦ୍ୱାରା ଅଶେଷ ମଙ୍ଗଳ ସାଧିତ ହୁଏ । ବିପନ୍ନ ଲୋକଙ୍କୁ ଆପଣ ସମସ୍ତ ବିପଦରୁ ଉଦ୍ଧାର କରିପାରନ୍ତି । ହେ ଆଦିପୁରୁଷ, ହେ ଈଶ୍ୱର, ଆପଣ ଦୀନଜନଙ୍କର ସ୍ୱାମୀ । ଆପଣ ଆମର ମଙ୍ଗଳ କରନ୍ତୁ ॥୮॥ ଆପଣ ବିଶ୍ୱର ସୃଷ୍ଟି, ସ୍ଥିତି, ପ୍ରଳୟର କାରଣ । ସ୍ୱୟଂ ବିଶ୍ୱରୂପ । ସ୍ୱେଚ୍ଛାରେ ଆପଣ ବହୁ ଶକ୍ତି, ଗୁଣ ଓ ମହିମା ପ୍ରକାଶ କରନ୍ତି । ଆପଣ ସ୍ୱରୂପରେ ସ୍ଥିତ ରହି ଅନ୍ୟମାନଙ୍କ ମଧ୍ୟରେ ସମ୍ପୂର୍ଣ୍ଣ ବୋଧଶକ୍ତି ଜାଗରିତ କରିବାଦ୍ୱାରା ସେମାନଙ୍କ ହୃଦୟର ଅନ୍ଧକାରକୁ ଦୂର କରିଦିଅନ୍ତି । ହେ ଶ୍ରୀହରି, ମୁଁ ଆପଣଙ୍କୁ ନମସ୍କାର କରୁଚି ॥୯॥ ଅନନ୍ତ, ଆପଣ ସନ୍ତୁଷ୍ଟ ହେଲେ ମନୁଷ୍ୟଙ୍କୁ ବ୍ରହ୍ମାଙ୍କ ପରି ଦୀର୍ଘ ପରମାୟୁ, ଦିବ୍ୟ ଶରୀର, ସମସ୍ତ ଅଭିଳଷିତ ବସ୍ତୁ, ଅତୁଳନୀୟ ଐଶ୍ୱର୍ଯ୍ୟ, ସ୍ୱର୍ଗ-ମର୍ତ୍ତ୍ୟ-ପାତାଳର ଆଧିପତ୍ୟ, ଅଣିମା ଆଦି ସକଳ ଯୋଗ-ସିଦ୍ଧି, ଧର୍ମ, ଅର୍ଥ ଓ କାମ -- ଏହି ତ୍ରିବର୍ଗ ଏବଂ ଜ୍ଞାନ ସବୁ କିଛି ଲୋକଙ୍କୁ ମିଳିପାରେ । ଏସବୁ ତୁଳନାରେ ଶତ୍ରୁଜୟର ଅଭିଳାଷ ତୁଚ୍ଛ ମାତ୍ର ॥୧୦॥

ଶ୍ରୀ ଶୁକଦେବ କହିଲେ, ପରିକ୍ଷିତ, ଅଦିତି କମଳନୟନ ଭଗବାନଙ୍କୁ ଏହିପରି ସ୍ତୁତି କରିବାରୁ ସବୁ ପ୍ରାଣୀଙ୍କ ଅନ୍ତର୍ଯ୍ୟାମୀ ଭଗବାନ ଏହିପରି ଉତ୍ତର ଦେଲେ । ଶ୍ରୀ ଭଗବାନ କହିଲେ, ଦେବମାତା, ବହୁଦିନ ଧରି ତୁମେ ଯାହା ଇଚ୍ଛା କରି ଆସିଚ, ତାହା ମୁଁ ଜାଣିଚି । ଶତ୍ରୁମାନଙ୍କଦ୍ୱାରା ତୁମର ପୁତ୍ରମାନେ ହତଶ୍ରୀ ହୋଇ ସ୍ୱଧାମରୁ ବିତାଡ଼ିତ ହୋଇଛନ୍ତି । ଯୁଦ୍ଧରେ ତୁମର ପୁତ୍ରମାନେ ସେହି ମହାବଳୀ ଅସୁରମାନଙ୍କୁ ଜୟ କରି ବିଜୟଶ୍ରୀ ଲାଭ କରନ୍ତୁ--ଏହା ଚାହିବା ସହିତ ତୁମେ ସେମାନଙ୍କ ସଙ୍ଗେ ଏକତ୍ର ରହିବାକୁ ମଧ୍ୟ ଚାହୁଁଛ ॥୧୧-୧୩॥ ତୁମର ଜ୍ୟେଷ୍ଠପୁତ୍ର ଇନ୍ଦ୍ରଙ୍କସହିତ ଅନ୍ୟ ଦେବତାମାନେ ଯୁଦ୍ଧରେ ଶତ୍ରୁମାନଙ୍କୁ ବିନାଶ କରନ୍ତୁ ଏବଂ ଶତ୍ରୁଙ୍କ ସ୍ତ୍ରୀମାନେ ଦୁଃଖରେ ରୋଦନ କରନ୍ତୁ, ଏହା ତୁମେ ଦେଖିବାକୁ ଚାହ ॥୧୪॥ ତୁମର ପୁତ୍ରମାନେ ପୁଣି ସମୃଦ୍ଧ ହୋଇଉଠନ୍ତୁ, ସେମାନଙ୍କର ଧନ, ସମ୍ପଦ, ଯଶ, କୀର୍ତ୍ତି ଫେରି ଆସୁ, ପୁଣି ସ୍ୱର୍ଗରେ ରାଜ୍ୟ କରି ସେମାନେ କ୍ରୀଡ଼ା କରନ୍ତୁ, ଏହା ତୁମେ ଦେଖିବାକୁ ଚାହ ॥୧୫॥ କିନ୍ତୁ ଦେବୀ, ମୋର ମତ ହେଉଚି, ସେହି ଅସୁର ସେନାପତିମାନଙ୍କୁ

ବର୍ତ୍ତମାନ ଜୟ କରାଯାଇପାରିବ ନାହିଁ, ଯେହେତୁ କାଳ ଯାହାଙ୍କୁ ଅନୁକୂଳ, ସେଇ ବ୍ରାହ୍ମଣମାନଙ୍କଦ୍ୱାରା ସେମାନେ ସୁରକ୍ଷିତ । ସେମାନଙ୍କ ନିକଟରେ ବଳପ୍ରକାଶ ଫଳପ୍ରଦ ହେବ ନାହିଁ ॥୧୬॥ ତଥାପି ଦେବୀ, ମୁଁ ତୁମ ବ୍ରତପାଳନରେ ସନ୍ତୁଷ୍ଟ ହୋଇଛି । ସେଥିପାଇଁ ମୁଁ ଅନ୍ୟ ଉପାୟ ଚିନ୍ତା କରୁଚି । ମୋର ପୂଜା କେବେ ବୃଥା ଯାଏ ନାହିଁ । ଭକ୍ତି ଅନୁସାରେ ନିଶ୍ଚିତ ଫଳପ୍ରାପ୍ତି ହୁଏ ॥୧୭॥ ତୁମେ ନିଜର ପୁତ୍ରମାନଙ୍କ ରକ୍ଷାପାଇଁ ନିୟମାନୁଯାୟୀ ପୟୋବ୍ରତଦ୍ୱାରା ମୋର ପୂଜାଦି କରିଚ ଏବଂ ସ୍ତୁତି କରିଚ । ବର୍ତ୍ତମାନ କଶ୍ୟପଙ୍କ ତପୋଜନିତ ତେଜରେ ଅବସ୍ଥାନ କରି ମୁଁ ନିଜ ଅଂଶରୂପେ ତୁମର ପୁତ୍ର ହୋଇ ଜନ୍ମ ହେବି ଓ ତୁମର ସନ୍ତାନମାନଙ୍କୁ ରକ୍ଷା କରିବି ॥୧୮॥ କଲ୍ୟାଣି ! ମୁଁ ତୁମ ପତିଙ୍କ ମଧ୍ୟରେ ରହିଚି ବୋଲି ଚିନ୍ତା କରି କରି ସେହି ନିଷ୍ପାପ ପ୍ରଜାପତିଙ୍କର ସେବା କର । ଦେବ ! କେହି ପଚାରିଲେ ମଧ୍ୟ କାହାରି ନିକଟରେ ଏହା ପ୍ରକାଶ କରିବ ନାହିଁ । କାରଣ ଦେବତାଙ୍କର ଗୋପନୀୟ ରହସ୍ୟକୁ ଗୁପ୍ତ ରଖିଲେ ତାହା ସଫଳ ହୁଏ ॥୧୯-୨୦॥

ଶ୍ରୀ ଶୁକଦେବ କହିଲେ, ଏତିକି କହି ଭଗବାନ ସେଠାରୁ ଅନ୍ତର୍ଦ୍ଧାନ ହୋଇଗଲେ । ତାଙ୍କ ଗର୍ଭରୁ ପ୍ରଭୁ ସ୍ୱୟଂ ଜନ୍ମହେବେ, ଏହି ଦୁର୍ଲଭ ବର ଲାଭ କରି ଅଦିତି ନିଜକୁ ଧନ୍ୟ ମନେକଲେ ॥୨୧॥ କୃତକୃତ୍ୟ ହୋଇ ଅତି ଭକ୍ତି ସହକାରେ ପତିଙ୍କୁ ସେବା କରିବାକୁ ଲାଗିଲେ । ସମାଧିଯୋଗଦ୍ୱାରା କଶ୍ୟପ ଋଷି ଅବ୍ୟର୍ଥ ଦୃଷ୍ଟିରେ ତାହା ଦେଖିପାରିଲେ ଯେ ଭଗବାନ୍ ସ୍ୱଅଂଶରେ ତାଙ୍କ ମଧ୍ୟରେ ପ୍ରବେଶ କରିଛନ୍ତି । ହେ ରାଜା କାଠରେ କାଠ ଘଷି ହେଲେ ଯେଉଁ ନିଆଁ ବାହାରେ, ବାୟୁ ଯେପରି ସେଇ ନିଆଁକୁ କାଠରେ ଧରି ରଖେ, ସେହିପରି ତପସ୍ୟା ଦ୍ୱାରା ଦୀର୍ଘସଞ୍ଚିତ ବୀର୍ଯ୍ୟକୁ ସମାହିତମନା ଋଷି ଅଦିତିଙ୍କ ଗର୍ଭରେ ସ୍ଥାପନ କଲେ ॥୨୨-୨୩॥ ଅଦିତିଙ୍କ ଗର୍ଭରେ ସନାତନ ବିଷ୍ଣୁ ଥିବାର ଜାଣି ହିରଣ୍ୟଗର୍ଭ ବ୍ରହ୍ମା ଭଗବାନ୍‌ଙ୍କର ରହସ୍ୟମୟ ନାମମାନଙ୍କଦ୍ୱାରା ତାଙ୍କୁ ସ୍ତୁତି କରିବାକୁ ଲାଗିଲେ ॥୨୪॥

ବ୍ରହ୍ମା କହିଲେ, ହେ ବହୁକୀର୍ତ୍ତିତ, ଅନନ୍ତଶକ୍ତି ଭଗବାନ୍, ଆପଣଙ୍କୁ ମୁଁ ନମସ୍କାର କରୁଚି । ହେ ବ୍ରହ୍ମଣ୍ୟଦେବ, ହେ ତ୍ରିଗୁଣସ୍ୱରୂପ, ମୁଁ ଆପଣଙ୍କୁ ବାରମ୍ବାର ନମସ୍କାର କରୁଚି ॥୨୫॥ ପୂର୍ବଜନ୍ମରେ ପୃଶ୍ନି ନାମରେ ଅଭିହିତ ଏହି ଅଦିତିଙ୍କର ଗର୍ଭରେ ଆପଣ ଜନ୍ମଗ୍ରହଣ କରିଥିଲେ । ବେଦମାନେ ଆପଣଙ୍କ ଗର୍ଭରେ ବିଦ୍ୟମାନ । ଆପଣ ହିଁ ବିଧାତା । ଆପଣଙ୍କୁ ନମସ୍କାର । ଏହି ତିନିଲୋକ ଆପଣଙ୍କ ନାଭିରେ ଅବସ୍ଥିତ । ତିନି ଲୋକର ଉପରେ (ବୈକୁଣ୍ଠରେ) ଆପଣ ବାସ କରନ୍ତି; ପୁଣି ସମସ୍ତ ଜୀବଙ୍କ ଅନ୍ତଃକରଣରେ । ତଥାପି ହେ ସର୍ବବ୍ୟାପୀ ବିଷ୍ଣୁ, ଆପଣଙ୍କୁ ନମସ୍କାର ॥୨୬॥ ଭଗବାନ୍, ଆପଣ ବିଶ୍ୱର ଆଦି, ଅନ୍ତ ଓ ମଧ୍ୟ; ଆପଣଙ୍କର ଶକ୍ତି ଅନନ୍ତ । ବେଦରେ ଆପଣ ପୁରୁଷରୂପେ ଖ୍ୟାତ । ଯେପରି ଗଭୀର ସ୍ରୋତ ତାହା ମଧ୍ୟରେ ପଡ଼ିଥିବା ତୃଣାଦି ବସ୍ତୁକୁ ଟାଣି ଭସାଇ ନିଏ, କାଳରୂପୀ ଆପଣ ସେହିପରି (ସଂସାର ସ୍ରୋତରେ) ବିଶ୍ୱକୁ ଭସାଇ ନେଉଛନ୍ତି । ଆପଣ ସ୍ଥାବର-ଜଙ୍ଗମ ସମସ୍ତ ପ୍ରଜାଙ୍କର ଏବଂ ପ୍ରଜାପତିମାନଙ୍କର ଜନ୍ମଦାତା । ହେ ଦେବ, ଯେପରି ଜଳରେ ବୁଡ଼ିଯାଉଥିବା ଲୋକପାଇଁ ନୌକା ପରମ ଆଶ୍ରୟ ହୁଏ, ସେହିପରି ସ୍ୱର୍ଗଚ୍ୟୁତ ଦେବତାମାନଙ୍କପାଇଁ ଆପଣ ହିଁ ପରମ ସହାୟକ ॥୨୭-୨୮॥

## ଅଷ୍ଟାଦଶ ଅଧ୍ୟାୟ

# ଭଗବାନ୍‌ଙ୍କ ବାମନାବତାର

ଶ୍ରୀ ଶୁକଦେବ କହିଲେ, ଏହିପରି ବ୍ରହ୍ମା ଯାହାଙ୍କ କର୍ମ ଓ ପ୍ରଭାବର ସ୍ତୁତି କଲେ, ଜନ୍ମମୃତ୍ୟୁରହିତ ସେହି ଭଗବାନ୍ ଅଦିତିଙ୍କ ଗର୍ଭରେ ଚତୁର୍ଭୁଜ ହୋଇ ପ୍ରକଟିତ ହେଲେ । ତାଙ୍କ ହାତରେ ଥିଲା ଶଙ୍ଖ, ଚକ୍ର, ଗଦା ଓ ପଦ୍ମ । ସେ ଥିଲେ ପୀତାମ୍ବର

ଏବଂ ତାଙ୍କର ପଦ୍ମଭଳି ଆୟତଚକ୍ଷୁ ଥିଲା ॥୧॥ ସେ ଥିଲେ ଶୁଦ୍ଧ ଶ୍ୟାମବର୍ଣ୍ଣ; କର୍ଣ୍ଣରେ ମକରକୁଣ୍ଡଳ ମୁଖମଣ୍ଡଳ ପଦ୍ମପରି ପ୍ରଫୁଲ୍ଲ, ବକ୍ଷସ୍ଥଳରେ ଶ୍ରୀବତ୍ସ ଲାଞ୍ଛନ, ହସ୍ତରେ କଙ୍କଣ ଓ ଭୁଜରେ ବାଜୁବନ୍ଧ, ମସ୍ତକରେ କିରୀଟ, କଟିରେ ଚନ୍ଦ୍ରହାର ଏବଂ ପାଦରେ ସୁଦୃଶ୍ୟ ନୂପୁର ଦ୍ୱାରା ଶୋଭା ପାଉଥିଲା ॥୨॥ ସେ ନିଜର ଯେଉଁ ବନମାଳା ଧାରଣ କରିଥିଲେ, ତାର ଚାରିପଟେ ଭ୍ରମରମାନେ ଗୁଞ୍ଜନ କରୁଥିଲେ । ତାଙ୍କ କଣ୍ଠରେ କୌସ୍ତୁଭମଣି ଶୋଭା ପାଉଥିଲା । ନିଜ ତେଜରେ ସେ କଶ୍ୟପଙ୍କ ଗୃହର ଅନ୍ଧକାର ଦୂର କରୁଥିଲେ ॥୩॥ ସେତେବେଳେ ଦିଗମାନେ ନିର୍ମଳ ଦେଖାଗଲେ । (ନଦୀ ଓ ସରୋବର ଆଦି) ଜଳାଶୟମାନ ସ୍ୱଚ୍ଛ ହୋଇଗଲା । ପ୍ରଜାମାନେ ଉଲ୍ଲସିତ ହେଲେ । ଋତୁସବୁ ସମୟାନୁସାରେ ଫଳ ଫୁଲ ଦାନ କଲେ । ସ୍ୱର୍ଗ, ଅନ୍ତରୀକ୍ଷ, ପୃଥିବୀ, ପର୍ବତ, ଗୋବ୍ରାହ୍ମଣ ଓ ଦେବତାମାନଙ୍କ ମଧ୍ୟରେ ଆନନ୍ଦର ସଞ୍ଚାର ହେଲା ॥୪॥

ମହାରାଜ, ଭଗବାନଙ୍କର ଜନ୍ମବେଳେ ଚନ୍ଦ୍ର ଶ୍ରବଣା ନକ୍ଷତ୍ରରେ ଥିଲେ । ସେଦିନ ଭାଦ୍ରମାସ ଶୁକ୍ଳପକ୍ଷ ଦ୍ୱାଦଶୀ ଓ ଅଭିଜିତ୍ ନାମକ ମୁହୂର୍ତ୍ତ । ସବୁ ନକ୍ଷତ୍ର ଏବଂ ଗୁରୁ, ଶୁକ୍ର ଓ ସୂର୍ଯ୍ୟାଦି ଗ୍ରହ ଶୁଭଲଗ୍ନରେ ଥିଲେ ॥୫॥ ଯେଉଁ ଦ୍ୱାଦଶୀରେ ଭଗବାନଙ୍କର ଜନ୍ମ ହେଲା, ତା'ର ନାମ ହେଲା ବିଜୟା ଦ୍ୱାଦଶୀ । ରାଜା, ସେତେବେଳକୁ ସୂର୍ଯ୍ୟ ଦିନର ମଧ୍ୟଭାଗରେ ଥିଲେ ॥୬॥ ଶଙ୍ଖ, ଦୁନ୍ଦୁଭି, ଭେରୀ, ମୃଦଙ୍ଗ, ଢୋଲ ଓ ନାଗରାଦି ବାଜି ଉଠିଲା । ବିଭିନ୍ନପ୍ରକାର ବାଦ୍ୟ ଓ ତୂରୀମାନଙ୍କ ଦ୍ୱାରା ତୁମୁଳ ଧ୍ୱନି ସୃଷ୍ଟି ହେଲା ॥୭॥ ଆନନ୍ଦରେ ଅପ୍‌ସରାମାନେ ନାଚିବାକୁ ଲାଗିଲେ । ପ୍ରଧାନ ପ୍ରଧାନ ଗନ୍ଧର୍ବମାନେ ଗାନ କଲେ । ମୁନି, ଦେବତା, ମନୁ, ପିତୃ ଓ ଅଗ୍ନି -- ଏମାନେ ସମସ୍ତେ ସ୍ତୁତି କରିବାକୁ ଲାଗିଲେ ॥୮॥ ସିଦ୍ଧ, ବିଦ୍ୟାଧର, କିଂପୁରୁଷ, କିନ୍ନର, ଚାରଣ, ଯକ୍ଷ, ରାକ୍ଷସ, ପ୍ରଧାନ ପ୍ରଧାନ ପକ୍ଷୀ ଓ ନାଗ ଏବଂ ଦେବତାମାନଙ୍କର ସମସ୍ତ ଅନୁଚର ନୃତ୍ୟ, ଗୀତ ସହିତ ଭଗବାନଙ୍କୁ ସ୍ତୁତି କରି ପୁଷ୍ପବୃଷ୍ଟିରେ ଅଦିତିଙ୍କର ଆଶ୍ରମକୁ ଭରିଦେଲେ ॥୯-୧୦॥ ପରମପୁରୁଷ ସେଇ ଭଗବାନଙ୍କୁ ନିଜ ଗର୍ଭରୁ ଜନ୍ମ ହେବାର ଦେଖି ଅଦିତି ଆନନ୍ଦିତ ଓ ଆଶ୍ଚର୍ଯ୍ୟଚକିତ ହୋଇଗଲେ । ନିଜ ଯୋଗମାୟା ବଳରେ ଦେହ ଧାରଣ କରିଥିବା ଭଗବାନ ବିଷ୍ଣୁଙ୍କୁ ଦେଖି ପ୍ରଜାପତି କଶ୍ୟପ ବିସ୍ମିତ ହୋଇ ଜୟଜୟକାର କରିବାକୁ ଲାଗିଲେ ॥୧୧॥ ଅବ୍ୟକ୍ତ ଚିତ୍‌ସ୍ୱରୂପ ଭଗବାନ ବିବିଧ ଅଳଙ୍କାର ଓ ଆୟୁଧମାନ ଧାରଣ କରି ସୁନ୍ଦର ଶରୀରରେ ଆବିର୍ଭୂତ ହେଲେ; କଶ୍ୟପ ଓ ଅଦିତି ଦେଖୁ ଦେଖୁ ଅଦ୍ଭୁତକର୍ମା ହରି ନଟ ତାର ବେଶ ପରିବର୍ତ୍ତନ କରିବାପରି, ସେଇ ଶରୀରରେ ସଙ୍ଗେ ସଙ୍ଗେ ଏକ ବାମନରୂପୀ ବାଳବ୍ରହ୍ମଚାରୀ ହୋଇଗଲେ ॥୧୨॥ ସେହି ବଟୁବାମନଙ୍କୁ ଦେଖି ମହର୍ଷିମାନେ ଅତିଶୟ ଆନନ୍ଦିତ ହେଲେ ଏବଂ କଶ୍ୟପଙ୍କୁ ଆଗରେ ରଖି ତାଙ୍କ ଜାତକର୍ମ ଆଦି ସଂସ୍କାର କରାଇଲେ ॥୧୩॥ ତାଙ୍କ ଉପନୟନ ହେଉଥିବାବେଳେ ସୂର୍ଯ୍ୟ ଦେବତା ତାଙ୍କୁ ଗାୟତ୍ରୀ ମନ୍ତ୍ର ଦେଲେ । ଦେବଗୁରୁ ବୃହସ୍ପତି ଯଜ୍ଞୋପବୀତ ଦେଲେ ଏବଂ କଶ୍ୟପ ମୁଞ୍ଜମେଖଳା ଦାନ କଲେ । ପୃଥିବୀ କୃଷ୍ଣମୃଗ ଚର୍ମ, ବନମାନଙ୍କର ରାଜା ଚନ୍ଦ୍ର ପଳାଶର ଦଣ୍ଡ, ମାତା ଅଦିତି କୌପୀନ ବସ୍ତ୍ର ଏବଂ ଆକାଶ ତାଙ୍କୁ ଛତ୍ର ଦାନ କଲେ ॥୧୪-୧୫॥ ମହାରାଜ, ବ୍ରହ୍ମା ତାଙ୍କୁ କମଣ୍ଡଳୁ ଦେଲେ, ସପ୍ତର୍ଷିମାନେ କୁଶ ଦେଲେ ଏବଂ ସରସ୍ୱତୀ ସେହି ଅବ୍ୟୟାତ୍ମା ବିଷ୍ଣୁଙ୍କୁ ରୁଦ୍ରାକ୍ଷମାଳା ଅର୍ପଣ କଲେ ॥୧୬॥ ଏହିପରି ଉପନୟନ ସାରିଥିବା ଭଗବାନ ବାମନଙ୍କୁ ଯକ୍ଷରାଜ କୁବେର ଏକ ଭିକ୍ଷାପାତ୍ର ଦେଲେ ଏବଂ ସ୍ୱୟଂ ସତୀ ଭଗବତୀ ଜଗଦମ୍ବା ଉମା ତାଙ୍କୁ ଭିକ୍ଷା ଦେଲେ ॥୧୭॥ ଏହିପରି ସମସ୍ତେ ସେହି ବଟୁବାମନରୂପୀ ଭଗବାନଙ୍କୁ ସମ୍ମାନିତ କଲେ ଓ ନିଜ ବ୍ରହ୍ମତେଜଦ୍ୱାରା ମହର୍ଷିମାନଙ୍କ ସଭାରେ କଶ୍ୟପଙ୍କ ପୁତ୍ର ଭଗବାନ ଅତିଶୟ ସୁନ୍ଦର ଦେଖାଗଲେ ॥୧୮॥ ବାମନରୂପୀ ଭଗବାନ ଆଉ ଥରେ ଅଗ୍ନିକୁ ପ୍ରଜ୍ୱଳିତ କଲେ ଓ ଅଗ୍ନିର ଚାରିପଟେ କୁଶ ସ୍ଥାପନ କରି ସମିଧ ଓ ଘୃତାହୁତିଦ୍ୱାରା ଅଗ୍ନିର ପୂଜା କଲେ ॥୧୯॥

ସେତିକିବେଳେ ବାମନ ଭଗବାନ ଶୁଣିଲେ, ଭୃଗୁବଂଶୀ ବ୍ରାହ୍ମଣମାନଙ୍କଦ୍ୱାରା ପ୍ରବର୍ତ୍ତିତ ବହୁ ଅଶ୍ୱମେଧ ଯଜ୍ଞ କରୁଥିବା (ଦାନବରାଜ) ବଳିଙ୍କର ଶକ୍ତି ବଢ଼ିବାରେ ଲାଗିଛି । ତାହା ଶୁଣି ଅଖିଳ ବଳରେ ପରିପୂର୍ଣ୍ଣ ଭଗବାନ୍ ନିଜର ପାଦ ଭାରଦ୍ୱାରା

ପୃଥିବୀକୁ କମ୍ପିତ କରି ବଳିଙ୍କ ଯଜ୍ଞସ୍ଥଳକୁ ଯାତ୍ରାକଲେ ॥୨୦॥ ନର୍ମଦା ନଦୀର ଉତ୍ତରକୂଳରେ ଭୃଗୁକଚ୍ଛ ନାମକ ଏକ ସୁନ୍ଦର ସ୍ଥାନରେ ବଳିଙ୍କର ଭୃଗୁବଂଶୀ ଋତ୍ୱିକମାନେ ଏକ ଶ୍ରେଷ୍ଠ ଯଜ୍ଞ କରାଉଥିଲେ । ସେମାନେ ଦୂରରୁ ଉଦିତ ସୂର୍ଯ୍ୟଙ୍କପରି ବାମନଙ୍କୁ ଦେଖିବାକୁ ପାଇଲେ ॥୨୧॥ ରାଜା, ବାମନଙ୍କ ତେଜରେ ସବୁ ଋତ୍ୱିକ, ଯଜମାନ ବଳି ଏବଂ ଉପସ୍ଥିତ ସଦସ୍ୟଗଣ ନିଷ୍ପ୍ରଭ ହୋଇଗଲେ । ସେମାନେ ଭାବିଲେ ସ୍ୱୟଂ ସୂର୍ଯ୍ୟ, ଅଗ୍ନି କିମ୍ବା ସନତ୍‌କୁମାର ଏହି ଯଜ୍ଞ ଦେଖିବାକୁ ଆସୁଛନ୍ତି । ଶିଷ୍ୟମାନଙ୍କ ସହିତ ଭୃଗୁବଂଶୀୟ ବ୍ରାହ୍ମଣମାନେ ଏହିପରି ଅନେକପ୍ରକାର ଆଲୋଚନା କରୁଥିବା ସମୟରେ ବାମନ ଭଗବାନ୍ ଦଣ୍ଡଯୁକ୍ତ ଛତ୍ର ଓ ଜଳପୂର୍ଣ୍ଣ କମଣ୍ଡଳୁ ଧରି ଅଶ୍ୱମେଧଯଜ୍ଞର ମଣ୍ଡପରେ ପହଞ୍ଚିଗଲେ । ବାମନ ଭଗବାନ୍ ଅଣ୍ଟାରେ ମୁଞ୍ଜଘାସର ମେଖଳା, କାନ୍ଧରେ ଯଜ୍ଞୋପବୀତ ଏବଂ ମୃଗଚର୍ମର ଉତ୍ତରୀୟ ଏବଂ ଶିରରେ ଜଟା ଧାରଣ କରିଥିଲେ । ବାମନରୂପୀ ଏହି କପଟବ୍ରାହ୍ମଣଙ୍କ ତେଜରେ ଶୁକ୍ରାଚାର୍ଯ୍ୟ ଓ ତାଙ୍କର ଶିଷ୍ୟମାନେ ମଳିନ ପଡ଼ିଯାଇଥିଲେ । ଅଗ୍ନିର ତେଜ ମଧ୍ୟ ମଳିନ ଦିଶୁଥିଲା । ସେମାନେ ସମସ୍ତେ ଉଠିଯାଇ ତାଙ୍କୁ ସ୍ୱାଗତ ଅଭିନନ୍ଦନ ଜଣାଇଲେ ॥୨୪-୨୫॥ ପ୍ରିୟଦର୍ଶନ, ମନୋରମ ଓ ସର୍ବାଙ୍ଗସୁନ୍ଦର ଏହି ବାମନ ଭଗବାନଙ୍କୁ ଦର୍ଶନ କରି ଯଜମାନ ବଳି ଅତିଶୟ ଆନନ୍ଦିତ ହୋଇ ତାଙ୍କୁ ଉତ୍ତମ ଆସନ ପ୍ରଦାନ କଲେ ଏବଂ ସ୍ୱାଗତ ବାକ୍ୟରେ ତାଙ୍କୁ ଅଭିନନ୍ଦନ ଜଣାଇଲେ ଓ ତାଙ୍କ ଦୁଇ ପାଦକୁ ଧୋଇ ଦେଇ ଅନାସକ୍ତ ଯୋଗୀମାନଙ୍କର କାମ୍ୟ ସେହି ଭଗବାନଙ୍କୁ ପୂଜା କଲେ ॥୨୬-୨୭॥ ଯେଉଁ ପାଦଧୌତ ଜଳ ଲୋକଙ୍କର ସମସ୍ତ କଳ୍ମଷ ଦୂର କରେ, ଦେବାଧିଦେବ ଚନ୍ଦ୍ରମୌଳି ମହାଦେବ ମଧ୍ୟ ଗଙ୍ଗାରୂପକ ଯେଉଁ ପାଦୋଦକକୁ ପରମ ଭକ୍ତିର ସହିତ ଶିରରେ ଧାରଣ କରିଥିଲେ, ଧର୍ମଜ୍ଞ ବଳି ସେହି ମଙ୍ଗଳମୟ ଚରଣାମୃତକୁ ମସ୍ତକରେ ଧାରଣ କଲେ ॥୨୮॥ ବଳି କହିଲେ, ବ୍ରହ୍ମନ୍, ଆପଣଙ୍କୁ ମୁଁ ନମସ୍କାର କରି ସ୍ୱାଗତ କରୁଚି । (ଆଦେଶ ଦିଅନ୍ତୁ) ଆପଣଙ୍କର ମୁଁ କଣ ସେବା କରିବି ? ଆର୍ଯ୍ୟ, ମୋର ମନେ ହେଉଚି, ଆପଣ ସାକ୍ଷାତ୍ ବ୍ରହ୍ମର୍ଷିମାନଙ୍କର ମୂର୍ତ୍ତିମନ୍ତ ତପ ॥୨୯॥ ଆପଣ ଆମ ଗୃହକୁ ଆସିବାଦ୍ୱାରା ଆଜି ଆମର ପିତୃପୁରୁଷମାନେ ତୃପ୍ତ ହୋଇଗଲେ, ଆଜି କୁଳ ପବିତ୍ର ହୋଇଗଲା ଏବଂ ଆଜି ଏହି ଯଜ୍ଞ ସଫଳ ହେଲା ॥୩୦॥ ବ୍ରାହ୍ମଣତନୟ, ଆଜି ମୋର ଅଗ୍ନିରେ ଆହୂତି ସଫଳ ହୋଇଚି । ଆପଣଙ୍କ ପାଦୋଦକର ସ୍ପର୍ଶରେ ମୋର ସମସ୍ତ ପାପ ଦୂର ହୋଇଚି ଏବଂ ଆପଣଙ୍କର କ୍ଷୁଦ୍ର ପାଦଚିହ୍ନମାନଙ୍କରେ ଏହି ଧରଣୀ ପବିତ୍ର ହୋଇଯାଇଚି ॥୩୧॥ ବିପ୍ରକୁମାର, ମୁଁ ଭାବୁଚି, ଆପଣ କିଛି ମାଗିବାକୁ ଆସିଛନ୍ତି । ବଟୁବାମନ, ଆପଣଙ୍କର ଯାହା ଯାହା ଇଚ୍ଛା ମୋଠାରୁ ମାଗି ନିଅନ୍ତୁ । ହେ ପୂଜ୍ୟତମ ଧେନୁ, ସ୍ୱର୍ଣ୍ଣ, ସୁସଜ୍ଜିତ ଗୃହ, ଉତ୍‌କୃଷ୍ଟ ଅନ୍ନ, ଉତ୍‌କୃଷ୍ଟ ପେୟ ଅଥବା ବିବାହ ପାଇଁ ବ୍ରାହ୍ମଣକନ୍ୟା, ସମୃଦ୍ଧିଶାଳୀ ଗ୍ରାମ, ଅଶ୍ୱ, ଗଜ ବା ରଥ ଆପଣ ସବୁ କିଛି ମାଗି ନିଅନ୍ତୁ ॥୩୨॥

## ଊନବିଂଶ ଅଧ୍ୟାୟ

# ବାମନଙ୍କର ତିନିପାଦ ଭୂମି ଭିକ୍ଷା

ଶ୍ରୀ ଶୁକଦେବ କହିଲେ, ରାଜା, ବଳିଙ୍କର ଏହି ଧର୍ମଯୁକ୍ତ ମଧୁରବାକ୍ୟ ଶ୍ରବଣ କରି ବାମନ ଭଗବାନ ପ୍ରୀତ ହେଲେ ଓ ତାହାଙ୍କୁ ଏହିପରି ପ୍ରତ୍ୟୁତ୍ତର ଦେଲେ ॥୧॥ ଶ୍ରୀ ଭଗବାନ କହିଲେ, ରାଜା, ଆପଣ ଯାହା କହିଲେ, ତାହା ଆପଣଙ୍କ କୁଳପରମ୍ପରାର ଅନୁରୂପ, ଅତିଶୟ ମଧୁର, ଧର୍ମଯୁକ୍ତ ଓ ଯଶସ୍କର । ପରଲୋକର ମଙ୍ଗଳକର ଧର୍ମ ସମ୍ପର୍କରେ ଆପଣ ଗୁରୁ ଶୁକ୍ରାଚାର୍ଯ୍ୟଙ୍କୁ ଏବଂ ଆପଣଙ୍କର ପ୍ରଶାନ୍ତଚେତା କୁଳବୃଦ୍ଧ ପିତାମହ ପ୍ରହ୍ଲାଦଙ୍କୁ ତାହାର ପ୍ରମାଣ ବୋଲି ଆପଣ ମନେକରନ୍ତି ॥୨॥ ଆପଣଙ୍କ ଏହି ବଂଶରେ କେହି ନିର୍ଦ୍ଧନ ବା କୃପଣ ବ୍ୟକ୍ତି ଜନ୍ମି ନାହାନ୍ତି -- ଯେ କି ତାଙ୍କୁ ପ୍ରତିଶ୍ରୁତି ଭଙ୍ଗ କରିବେ ବା ବ୍ରାହ୍ମଣଙ୍କୁ

ତାଙ୍କର ଅଭିଳଷିତ କିଛି ଦାନ ଦେବ ନାହିଁ ॥୩॥ ଦାନ ଦେବାରେ ବା ଯୁଦ୍ଧରେ ଶତ୍ରୁର ସମ୍ମୁଖୀନହେବାରେ ବିମୁଖ ବ୍ୟକ୍ତି ଆପଣଙ୍କ ବଂଶରେ ଜନ୍ମି ନାହାନ୍ତି । ଆପଣଙ୍କ ବଂଶରେ ଜାତ ବିମଳଯଶା ପ୍ରହ୍ଲାଦ ନିର୍ମଳ ଆକାଶରେ ପୂର୍ଣ୍ଣଚନ୍ଦ୍ରପରି ଶୋଭା ପାଉଛନ୍ତି ॥୪॥ ଯେଉଁ ବଂଶରେ ହିରଣ୍ୟାକ୍ଷ ଜନ୍ମ ହୋଇ ଦିଗ୍‌ବିଜୟ ସମୟରେ ଏକାକୀ ଗଦାହସ୍ତରେ ମହୀମଣ୍ଡଳ ଭ୍ରମଣ କରି ନିଜ ସହିତ ଲଢ଼ିବା ଭଳି ବୀର ପାଇ ନ ଥିଲେ, ଯାହାଙ୍କୁ ବହୁ କଷ୍ଟରେ ଜୟକରି ବିଷ୍ଣୁ ଏହି ପୃଥିବୀକୁ ଉଦ୍ଧାର କରିଥିଲେ ଏବଂ ବିଜେତାଭାବରେ ତାଙ୍କର ବୀରତ୍ୱକୁ ବାରମ୍ବାର ସ୍ମରଣ କରିଥିଲେ ॥୫-୬॥ ନିଜ ଭାଇର ନିଧନ ସମ୍ବାଦ ଶୁଣି କ୍ରୁଦ୍ଧ ହିରଣ୍ୟକଶିପୁ ନିଜର ଭ୍ରାତୃହନ୍ତାକୁ ହତ୍ୟା କରିବାପାଇଁ ବିଷ୍ଣୁଲୋକରେ ପହଞ୍ଚିଥିଲେ ॥୭॥ ଯମପରି ଶୂଳହସ୍ତରେ ଆସୁଥିବା ଦୈତ୍ୟରାଜଙ୍କୁ ଦେଖି ମାୟାବୀମାନଙ୍କ ମଧ୍ୟରେ ଶ୍ରେଷ୍ଠ ଭଗବାନ ଚିନ୍ତା କରିବାକୁ ଲାଗିଲେ । ଯେପରିକି ସଂସାରରେ ପ୍ରାଣୀମାନଙ୍କ ପଛରେ ମୃତ୍ୟୁ ଲାଗି ରହିଚି, ସେହିପରି ମୁଁ ଯୁଆଡ଼େ ଯିବି, ସେ ମୋ ପଛରେ ଲାଗି ରହିବ--ତେଣୁ ମୁଁ ଏହାର ହୃଦୟମଧ୍ୟରେ ପ୍ରବେଶ କରିବି, ଯେପରିକି ସେ ମୋତେ ଦେଖିପାରିବ ନାହିଁ । କାରଣ ତାର ବହିର୍ଦୃଷ୍ଟି ଅଛି । ଅନ୍ତର୍ଦୃଷ୍ଟି ନାହିଁ ॥୮-୯॥ ଦାନବେନ୍ଦ୍ର, ଭଗବାନ ବିଷ୍ଣୁ ଏହିପରି ସ୍ଥିର କରି ହିରଣ୍ୟକଶିପୁ ଧାଉଁଥିବା ଅବସ୍ଥାରେ ଯେତେବେଳେ ନିଃଶ୍ୱାସ ପ୍ରଶ୍ୱାସ ନେଉଥିଲା, ସେତେବେଳେ ସୂକ୍ଷ୍ମ ଶରୀରରେ ତାର ଶ୍ୱାସନଳି ମଧ୍ୟରେ ପ୍ରବେଶ କରି ରହିଗଲେ ॥୧୦॥ ହିରଣ୍ୟକଶିପୁ ବିଷ୍ଣୁଙ୍କର ଧାମକୁ ଶୂନ୍ୟ ଦେଖି ପୃଥିବୀ, ସ୍ୱର୍ଗ, ଅନ୍ତରୀକ୍ଷ, ଦିଗ୍‌ବିଦିଗ୍, ପାତାଳ, ସମୁଦ୍ର ସର୍ବତ୍ର ଭଗବାନଙ୍କୁ ଖୋଜିବାକୁ ଲାଗିଲା ଏବଂ କେଉଁଠି ନପାଇ କ୍ରୋଧରେ ସିଂହନାଦ କଲା । ବିଷ୍ଣୁଙ୍କୁ ଦେଖି ନ ପାରି କହିଲା, ସମଗ୍ର ଜଗତ୍ ଅନ୍ୱେଷଣ କଲି, ମାତ୍ର ମୋର ଭ୍ରାତୃହନ୍ତା ବିଷ୍ଣୁକୁ ପାଇଲି ନାହିଁ । ମୋର ମନେ ହେଉଚି, ସେ ସେହି ସ୍ଥାନକୁ ଯାଇଚି, ଯେଉଁଠିକି ଗଲେ, ଆଉ ଜୀବ ସେଠାରୁ ଫେରେନାହିଁ ॥୧୧-୧୨॥ ରାଜା, ଦେହଧାରୀମାନଙ୍କ ଶତ୍ରୁତା ମୃତ୍ୟୁ ପର୍ଯ୍ୟନ୍ତ ରହିଥାଏ । ଅଜ୍ଞାନ କ୍ରୋଧର ଜନ୍ମସ୍ଥାନ ଏବଂ ଅହଙ୍କାରଦ୍ୱାରା ତାହା ବୃଦ୍ଧି ପାଇଥାଏ ॥୧୩॥ ତୁମର ପିତା ପ୍ରହ୍ଲାଦଙ୍କର ପୁତ୍ର ବିରୋଚନ । ସେ ବ୍ରାହ୍ମଣମାନଙ୍କର ଭକ୍ତ ଥିଲେ । ତାଙ୍କର ଶତ୍ରୁ ଦେବତାମାନେ ବ୍ରାହ୍ମଣବେଶରେ ଆସି ତାଙ୍କୁ ତାଙ୍କର ଆୟୁ ମାଗିଲେ, ସେ ସେମାନଙ୍କର ଛଳ ଜାଣିଥିଲେ ମଧ୍ୟ ସେମାନଙ୍କୁ ନିଜର ଆୟୁଷ ଦାନ କରିଦେଲେ ॥୧୪॥ ଆପଣ ମଧ୍ୟ ସେହି ଧର୍ମର ଆଚରଣ କରୁଛନ୍ତି, ଯାହା ବ୍ରାହ୍ମଣମାନେ, ଆପଣଙ୍କର ପୂର୍ବଜ ପ୍ରହ୍ଲାଦ ଆଦି ବୀରମାନେ ଓ ଅନ୍ୟ ଯଶସ୍ୱୀମାନେ ପାଳନ କରୁଥିଲେ ॥୧୫॥ ଦାନବେନ୍ଦ୍ର, ଆପଣ ବରଦାତାଙ୍କ ମଧ୍ୟରେ ଶ୍ରେଷ୍ଠ । ତେଣୁ ମୁଁ ଆପଣଙ୍କଠାରୁ ମୋ ପାଦରେ ତିନିପାଦ ପରିମିତ ଭୂମି ଭିକ୍ଷା ମାଗୁଚି ॥୧୬॥ ରାଜନ୍, ମୁଁ ଜାଣେ ତୁମେ ଅତ୍ୟନ୍ତ ବଦାନ୍ୟ ଓ ଜଗତ୍‌ର ଅଧୀଶ୍ୱର । ଏହା ଛଡ଼ା ମୁଁ ତୁମଠାରୁ ଆଉ କିଛି ମାଗୁ ନାହିଁ । ଶରୀରରକ୍ଷା ପାଇଁ ଯେତିକି ଆବଶ୍ୟକ, ସେତିକି ଗ୍ରହଣ କଲେ, ବିଦ୍ୱାନ୍ ବ୍ୟକ୍ତିଙ୍କୁ ପାପ ଲାଗେ ନାହିଁ ॥୧୭॥

ବଳି କହିଲେ, ବ୍ରାହ୍ମଣପୁତ୍ର, ତୁମେ ବୃଦ୍ଧଙ୍କଦ୍ୱାରା ଅନୁମୋଦିତ ବାକ୍ୟ କହୁଚ । କିନ୍ତୁ ତୁମର ବୁଦ୍ଧି ବାଳକୋଚିତ । ଅଳ୍ପବୁଦ୍ଧି ବାଳକ ପରି ତୁମେ ନିଜର ସ୍ୱାର୍ଥ ବୁଝିପାରୁନାହଁ ॥୧୮॥ ମୁଁ ତ୍ରିଲୋକର ଏକମାତ୍ର ଅଧୀଶ୍ୱର ଏବଂ ଦ୍ୱୀପ ପରେ ଦ୍ୱୀପ ମୁଁ ଦାନ କରିପାରେ । ନିଜର ବାକ୍ୟ ଦ୍ୱାରାମୋତେ ସନ୍ତୁଷ୍ଟ କରି ସାରି ତା'ପରେ ତିନିପାଦ ଭୂମି ମାଗିବା କେବେ ବୁଦ୍ଧିମାନର କାର୍ଯ୍ୟ ନୁହେଁ ॥୧୯॥ ବ୍ରହ୍ମଚାରି ! ମୋ' ପାଖକୁ ଯେ ମାଗିବାକୁ ଆସେ, ସେ ପୁଣି ଅନ୍ୟ କାହାକୁ ମାଗିବା ଉଚିତ ନୁହେଁ । ତେଣୁ ନିଜର ଜୀବିକାନିର୍ବାହ ପାଇଁ ଯେତେ ଇଚ୍ଛା, ସେତେ ଭୂମି ମୋଠାରୁ ମାଗିନିଅ ॥୨୦॥

ଶ୍ରୀ ଭଗବାନ କହିଲେ, ରାଜା, ଯେଉଁ ବ୍ୟକ୍ତି ନିଜର ଇନ୍ଦ୍ରିୟକୁ ଜୟ କରି ନାହିଁ, ତିନି ଲୋକରେ ଯେତେ ପ୍ରିୟତମ ଭୋଗ୍ୟ ବସ୍ତୁ ଅଛି, ସେ ସବୁ ତାକୁ ସନ୍ତୁଷ୍ଟ କରିବାକୁ ସମର୍ଥ ନୁହନ୍ତି ॥୨୧॥ ତିନି ପାଦ ଭୂମିରେ ଯେ ସନ୍ତୁଷ୍ଟ ନୁହେଁ ନବବର୍ଷ ସମେତ ଏକ ଦ୍ୱୀପଦ୍ୱାରା ତାର ସନ୍ତୋଷ ହେବ ନାହିଁ । କାରଣ ପୁନର୍ବାର ସେ ସପ୍ତଦ୍ୱୀପ ମାଗିବାକୁ ଇଚ୍ଛାକରିବ ॥୨୨॥ ମୁଁ ଶୁଣିଚି ଯେ ପୃଥୁ, ଗୟ ଆଦି ରାଜା ସପ୍ତଦ୍ୱୀପର ଅଧିପତି ହୋଇଛନ୍ତି; କିନ୍ତୁ ଏହାର ସମସ୍ତ ଧନ ଓ ଭୋଗ୍ୟବସ୍ତୁଦ୍ୱାରା ମଧ୍ୟ

ସେମାନଙ୍କ ତୃଷ୍ଣାର ଅନ୍ତ ହୋଇ ନାହିଁ ॥୨୩॥ ଦୈବଯୋଗେ ଯାହା ମିଳିଲା, ସେଥିରେ ସନ୍ତୁଷ୍ଟ ବ୍ୟକ୍ତି ସୁଖରେ ରହେ । କିନ୍ତୁ ଯେ ଇନ୍ଦ୍ରିୟକୁ ଜୟ କରି ନାହିଁ, ସେଇ ଅସନ୍ତୁଷ୍ଟ ବ୍ୟକ୍ତି ତିନି ଲୋକ ଲାଭ କରି ମଧ୍ୟ ସୁଖୀ ହୁଏ ନାହିଁ । ସଂସାର ଚକ୍ରରେ ଘାଣ୍ଟି ହେବାର ଲକ୍ଷଣ ହେଉଚି, ଯେତେ ଧନ ଓ ଭୋଗ ଲାଭକଲେ ମଧ୍ୟ ଅସନ୍ତୁଷ୍ଟ ରହିବା । ମାତ୍ର ମୁକ୍ତିର ଲକ୍ଷଣ ହେଉଚି ଯାହା କିଛି ମିଳେ, ସେଥିରେ ସନ୍ତୁଷ୍ଟ ରହିବା ॥୨୫॥ ଯାହା ମିଳେ, ସେତିକିରେ ସନ୍ତୁଷ୍ଟ ରହିବାଦ୍ୱାରା ବ୍ରାହ୍ମଣର ତେଜୋବୃଦ୍ଧି ଘଟେ । ମାତ୍ର ଜଳରେ ଅଗ୍ନି ପରି ଅସନ୍ତୋଷରେ ବ୍ରାହ୍ମଣର ତେଜ ନଷ୍ଟ ହୋଇଯାଏ ॥୨୬॥ ଆପଣ ଦାତାମାନଙ୍କ ମଧ୍ୟରେ ଶ୍ରେଷ୍ଠ । ଆପଣଙ୍କଠାରୁ ମୁଁ ତିନି ପାଦ ମାତ୍ର ଭୂମି ମାଗୁଚି । ଏହାଦ୍ୱାରା ମୋର କାମ ଚଳିଯିବ । ଆଉ କୌଣସି ସମ୍ପତ୍ତିରେ ମୋର ପ୍ରୟୋଜନ ନାହିଁ ॥୨୭॥

ଶ୍ରୀ ଶୁକଦେବ କହିଲେ, ବାମନ ଏହିପରି କହିବାରୁ ବଳି ହସି ହସି କହିଲେ, ଇଚ୍ଛା ଅନୁରୂପ ଦାନ ଗ୍ରହଣ କରନ୍ତୁ । ଏହା କହି ବାମନଙ୍କୁ ଭୂମି ଦାନ ନିମନ୍ତେ ସେ ଜଳପାତ୍ର ଗ୍ରହଣ କଲେ ॥୨୮॥ ବିଜ୍ଞମାନଙ୍କ ମଧ୍ୟରେ ଶ୍ରେଷ୍ଠ ଅସୁରଗୁରୁ ଶୁକ୍ରାଚାର୍ଯ୍ୟ ବିଷ୍ଣୁଙ୍କର ଅଭିଳାଷ ଜାଣିପାରି ତାଙ୍କୁ ତିନି ପାଦ ଭୂମି ଦେବାପାଇଁ ପ୍ରସ୍ତୁତ ନିଜର ଶିଷ୍ୟ ରାଜା ବଳିଙ୍କୁ ବାରଣ କରି ଏହିପରି କହିଲେ— ॥୨୯॥

ଶ୍ରୀ ଶୁକ୍ରାଚାର୍ଯ୍ୟ କହିଲେ, ବିରୋଚନପୁତ୍ର, ଏ ହେଉଛନ୍ତି ଅବିନଶ୍ୱର ସ୍ୱୟଂ ଭଗବାନ୍ ବିଷ୍ଣୁ । ଦେବତାମାନଙ୍କର କାର୍ଯ୍ୟସାଧନପାଇଁ କଶ୍ୟପଙ୍କର ପତ୍ନୀ ଅଦିତିଙ୍କର ଗର୍ଭରୁ ଜନ୍ମ ହୋଇଛନ୍ତି ॥୩୦॥ ଅନର୍ଥ ହେବାକୁ ଯାଉଛି ବୋଲି ଜାଣି ନ ପାରି ତୁମେ ଏହାଙ୍କୁ ଭୂମି ଦାନପାଇଁ ପ୍ରତିଶ୍ରୁତି ଦେଇଦେଲ । ଏହାକୁ ମୁଁ ଆଦୌ ଭଲ ମନେ କରୁ ନାହିଁ । ଏହାଫଳରେ ଦୈତ୍ୟମାନଙ୍କର ଘୋର ଅନିଷ୍ଟ ହେବାକୁ ଯାଉଛି ॥୩୧॥ ବିଷ୍ଣୁ କପଟବ୍ରାହ୍ମଣ ରୂପରେ ତୁମର ରାଜ୍ୟ, ଐଶ୍ୱର୍ଯ୍ୟ, ଲକ୍ଷ୍ମୀ, ତେଜ, ଯଶ, କୀର୍ତ୍ତି ସବୁକିଛି ଛଡ଼ାଇନେଇ ଇନ୍ଦ୍ରଙ୍କୁ ଦେଇଦେବେ ॥୩୨॥ ଏ ହେଉଛନ୍ତି ବିଶ୍ୱରୂପ । ଏହାଙ୍କର ତିନି ପାଦ ତ୍ରିଲୋକକୁ ଅଧିକାର କରିବ । ମୂଢ଼, ନିଜର ସର୍ବସ୍ୱ ବିଷ୍ଣୁଙ୍କୁ ଦାନ କରିସାରି ତୁମେ ନିଜେ କେଉଁଠି ରହିବ ? ॥୩୩॥ ଏହି ବିଶ୍ୱମୂର୍ତ୍ତି ଭଗବାନ ଗୋଟିଏ ପାଦଦ୍ୱାରା ପୃଥିବୀ, ଦ୍ୱିତୀୟ ପାଦଦ୍ୱାରା ସ୍ୱର୍ଗ ଏବଂ ନିଜର କାୟାରେ ସମସ୍ତ ଅନ୍ତରୀକ୍ଷକୁ ଗ୍ରାସିଯିବେ । ବର୍ତ୍ତମାନ ତାଙ୍କର ତୃତୀୟ ପାଦ ନାହିଁ, କହ, କେଉଁଠାରୁ ଭୂମି ଆସିବ ? ॥୩୪॥ ଯେତେବେଳେ ତୁମର ପ୍ରତିଶ୍ରୁତି ଅନୁଯାୟୀ ତୁମେ ଭୂମିଦାନପାଇଁ ଅସମର୍ଥ ହେବ, ପ୍ରତିଶ୍ରୁତି ଭଙ୍ଗ ଦୋଷରେ ନିଶ୍ଚୟ ତୁମେ ନରକଗାମୀ ହେବ । ଯଦ୍ଦ୍ୱାରା ନିଜର ଜୀବିକାପ୍ରତି ବିପଦ ଆସିଥାଏ, ସେପରି ଦାନ କେବେହେଲେ ପଣ୍ଡିତମାନେ ପ୍ରଶଂସା କରନ୍ତି ନାହିଁ । କାରଣ ନିଜର ଜୀବିକା ଠିକ୍ ରହିଲେ ଲୋକ ଦାନ, ଯଜ୍ଞ, ତପସ୍ୟା ଓ ଧର୍ମାଚରଣ କରିପାରିବ ॥୩୫-୩୬॥ ଯେଉଁ ବ୍ୟକ୍ତି ନିଜର ଧନକୁ ପାଞ୍ଚ ଭାଗରେ ବାଣ୍ଟିଦିଏ, ଯଥା ଧର୍ମପାଇଁ, ଯଶପାଇଁ, ଧନର ବୃଦ୍ଧିପାଇଁ, ଭୋଗପାଇଁ ଏବଂ ସ୍ୱଜନଙ୍କ ପାଇଁ -- ସେହି ବ୍ୟକ୍ତି ଇହଲୋକ ଓ ପରଲୋକରେ ସୁଖ ଭୋଗକରେ ॥୩୭॥ ଦାନବେନ୍ଦ୍ର, ସତ୍ୟ କ'ଣ ଓ ଅସତ୍ୟ କ'ଣ, ସେ ବିଷୟରେ ବେଦଜ୍ଞ ପଣ୍ଡିତମାନେ ଯାହା କହିଛନ୍ତି, ତାହା ତୁମେ ଶୁଣ । ଦେବା ପାଇଁ 'ହଁ' କରିବା ହେଉଛି ସତ୍ୟ, ନାହିଁ କରିବା ହେଉଛି ଅସତ୍ୟ ॥୩୮॥ ଏହି ଶରୀରରୂପ ବୃକ୍ଷରେ ସତ୍ୟ ହେଉଛି ଫଳଫୁଲ, କିନ୍ତୁ ଏହି ଦେହରୂପୀ ବୃକ୍ଷ ନ ରହିଲେ ଫଳଫୁଲ ବା ରହିବ କିପରି ? ତେଣୁ ନାହିଁ କରିବାଦ୍ୱାରା ଯଦି ଆତ୍ମରକ୍ଷା କରାଯାଏ, ତା'ହେଲେ ମିଥ୍ୟା ହିଁ ସ୍ପୃହଣୀୟ ॥୩୯॥ ଯେପରି ଚେର ନ ଥିଲେ ଗଛ ଶୀଘ୍ର ଶୁଖି ଝଡ଼ିପଡ଼େ, ସେହିପରି ଅସତ୍ୟ ହେବବୋଲି ସବୁ ଦାନ କରିଦେଲେ ଦେହ ଖୁବ୍ ଶୀଘ୍ର ନଷ୍ଟ ହୋଇଯିବ, ଏଥିରେ କୌଣସି ସନ୍ଦେହ ନାହିଁ ॥୪୦॥ କେବଳ ସତ୍ୟବାକ୍ୟଦ୍ୱାରା ଶରୀର ଯାତ୍ରା ସମ୍ଭବ ନୁହେଁ, କାରଣ ଓଁ ଅର୍ଥାତ୍ 'ହଁ ମୁଁ ଦେବି' ଏହିପରି ପ୍ରତିଶ୍ରୁତିଦ୍ୱାରା ଦାତାର ଧନ ଶେଷ ହୋଇଯାଏ । ପୂର୍ଣ୍ଣ ଥିବା ଭଣ୍ଡାର ଶୂନ୍ୟ ହୁଏ । ଯେ ଯାଚକକୁ ସବୁ କିଛି ଦେବାପାଇଁ ରାଜି ହୋଇଯାଏ, ସେ ନିଜ ପାଇଁ କୌଣସି ଭୋଗ୍ୟବସ୍ତୁ ରଖିପାରେ ନାହିଁ ॥୪୧॥ ଏହାର

ବିପରୀତ ହେଉଛି--ମୁଁ ଦେବି ନାହିଁ । ଏହି ମିଥ୍ୟା ବାକ୍ୟଦ୍ୱାରା ନିଜର ଅର୍ଥ ପୂର୍ଣ୍ଣ ରହେ ଏବଂ ଅନ୍ୟର ଅର୍ଥକୁ ମଧ୍ୟ ନିଜ ଆଡ଼କୁ ଆକର୍ଷଣ କରାଯାଇପାରେ । କିନ୍ତୁ ସବୁ ସମୟରେ ଏପରି କରାଯିବା ଉଚିତ ନୁହେଁ । ଯେ ସମସ୍ତଙ୍କୁ ସବୁ ବିଷୟ ପାଇଁ ନାହିଁ କରୁଥାଏ, ତାହାର କେବଳ ଅପଯଶ ହିଁ ସାର ହୁଏ । ସେ ଜୀବିତ ହେଲେ ମଧ୍ୟ ଜୀବନ୍ମୃତ ପରି ରହେ ।।୪୨।। ସ୍ତ୍ରୀଲୋକମାନଙ୍କୁ ପ୍ରସନ୍ନ କରିବା କାର୍ଯ୍ୟରେ, ଥଟ୍ଟାପରିହାସ ବେଳେ, ବିବାହ (ବରକନ୍ୟାଙ୍କ ପ୍ରଶସ୍ତି କରିବାରେ), ନିଜର ଜୀବିକାରକ୍ଷା ଉଦ୍ଦେଶ୍ୟରେ, ପ୍ରାଣସଙ୍କଟବେଳେ, ଗୋବ୍ରାହ୍ମଣଙ୍କ ହିତରେ କିମ୍ବା କାହାରିକୁ ମୃତ୍ୟୁମୁଖରୁ ରକ୍ଷା କରିବାରେ ଅସତ୍ୟ ଭାଷଣ ସେପରି ନିନ୍ଦନୀୟ ନୁହେଁ ।।୪୩।।

## ବିଂଶ ଅଧ୍ୟାୟ

# ବାମନଙ୍କର ବିଶ୍ୱରୂପ

ରାଜା, କୁଳଗୁରୁ ଶୁକ୍ରାଚାର୍ଯ୍ୟ ଏପରି କହିବାରୁ ଆଦର୍ଶ ଗୃହସ୍ଥ ଭାବରେ ଦାନବରାଜ ବଳି କିଛି ସମୟ ନୀରବ ରହିଲେ । ତା'ପରେ ଚିନ୍ତା କରି ବିନୟପୂର୍ବକ ଗୁରୁ ଶୁକ୍ରାଚାର୍ଯ୍ୟଙ୍କୁ କହିଲେ-- ।।୧।।

ରାଜା ବଳି କହିଲେ, ଗୁରୁଦେବ, ଆପଣ ଯାହା କହିଲେ, ତାହା ସତ୍ୟ ଏବଂ ତାହା ହେଉଛି ଗୃହସ୍ଥଙ୍କର ଧର୍ମ, ଯଦ୍ଦ୍ୱାରା ଅର୍ଥ, କାମ, ଯଶ ଏବଂ ଜୀବିକା ବ୍ୟାହତ ହୁଏ ନାହିଁ ।।୨।। ମୁଁ ପ୍ରହ୍ଲାଦଙ୍କର ନାତି । ମୁଁ ଦେବି ବୋଲି ପ୍ରତିଶ୍ରୁତି ଦେଇ ପୁଣି ଧନଲୋଭରେ କପଟାଚରଣପୂର୍ବକ ବ୍ରାହ୍ମଣଙ୍କୁ କିପରି ପ୍ରତ୍ୟାଖ୍ୟାନ କରିବି ? ଅସତ୍ୟଠାରୁ ବଳି ଅଧର୍ମ ନାହିଁ । ସେଥିପାଇଁ, ପୃଥ୍ୱୀ ଦେବୀ ନିଜେ କହିଛନ୍ତି, ମିଥ୍ୟାବାଦୀ ବ୍ୟକ୍ତିଙ୍କ ଛଡ଼ା ମୁଁ ଅନ୍ୟ ସମସ୍ତଙ୍କୁ ବହନ କରିବାକୁ ସମର୍ଥ ।।୩-୪।। ବ୍ରାହ୍ମଣଙ୍କୁ ଠକିବାଦ୍ୱାରା ଯେଉଁ ଅଧର୍ମ ହେବ, ତାକୁ ମୁଁ ଯେତିକି ଭୟ କରେ, ନରକକୁ, ଦାରିଦ୍ର୍ୟକୁ, ଦୁଃଖର ସମୁଦ୍ରକୁ, ରାଜ୍ୟଚ୍ୟୁତିକୁ ବା ମୃତ୍ୟୁକୁ ସେତିକି ଭୟ କରେନାହିଁ ।।୫।। ମରିଗଲେ ଏହି ସଂସାରରେ ଧନ ଆଦି ସମସ୍ତ ବସ୍ତୁକୁ ତ୍ୟାଗ କରିବାକୁ ପଡ଼େ । ତେଣୁ (ଜୀବିତ ଅବସ୍ଥାରେ) ଦାନ କରି ଯଦି ବ୍ରାହ୍ମଣଙ୍କୁ ସନ୍ତୁଷ୍ଟ କରାଯାଇନପାରେ, ତାହେଲେ ସେ ତ୍ୟାଗର କଣ ମୂଲ୍ୟ ଅଛି ? ।।୬।। ଦଧୀଚି, ଶିବି ଆଦି ମହାତ୍ମାମାନେ ନିଜର ପରମପ୍ରିୟ ଦୁସ୍ତ୍ୟଜ ପ୍ରାଣକୁ ଦାନ କରି ପ୍ରାଣୀମାନଙ୍କର ଉପକାର କରିଯାଇଛନ୍ତି । ଅତଏବ ସାମାନ୍ୟ ପୃଥିବୀ ଆଦି ତୁଚ୍ଛ ପଦାର୍ଥ ଦାନ କରିବାରେ ଏପରି ଶୋଚନାର କ'ଣ ଆବଶ୍ୟକତା ଅଛି ? ।।୭।।

ବ୍ରହ୍ମନ୍, ଯୁଦ୍ଧରେ ପଛଘୁଞ୍ଚା ଦେଇ ନ ଥିବା ଯେଉଁ ଶ୍ରେଷ୍ଠ ଦାନବବୀରମାନେ ଏହି ପୃଥିବୀକୁ ଉପଭୋଗ କରିଛନ୍ତି, ସେମାନଙ୍କ ଇହଲୋକ-ପରଲୋକକୁ କାଳ ଗ୍ରାସ କରିଯାଇଛି । କିନ୍ତୁ ଏବେ ମଧ୍ୟ ସେମାନଙ୍କର ଯଶ ପୃଥିବୀରେ କୀର୍ତ୍ତିତ ହେଉଛି ।।୮।। ବ୍ରହ୍ମନ୍, ଯୁଦ୍ଧରୁ ପରାଙ୍ମୁଖ ନ ହୋଇ ତନୁ ତ୍ୟାଗ କରିବା ଲୋକଙ୍କର ଅଭାବ ନାହିଁ । କିନ୍ତୁ ଶ୍ରଦ୍ଧାର ସହିତ ସତ୍‌ପାତ୍ରରେ ନିଜର ଧନ ତ୍ୟାଗ କରିବା ଲୋକ ସୁଲଭ ନୁହନ୍ତି ।।୯।। ସାଧାରଣ ଯାଚକଙ୍କର କାମନା ପୂରଣ କରି ଯଦି ଦୁର୍ଗତି ଭୋଗ କରିବାକୁ ପଡ଼େ, ତେବେ ଦାନବୀର କାରୁଣିକ ବ୍ୟକ୍ତିଙ୍କପାଇଁ ତାହା ଶୋଭନୀୟ ହୋଇଥାଏ; କିନ୍ତୁ ଆପଣଙ୍କ ପରି ବ୍ରହ୍ମଜ୍ଞ ବ୍ୟକ୍ତିଙ୍କୁ ଦାନ କରିବାଦ୍ୱାରା ଯଦି ଦୁର୍ଗତି ଦେଖାଦିଏ, ତେବେ ତାହାଠାରୁ ଅନ୍ୟ କ'ଣ ସ୍ପୃହଣୀୟ ହୋଇପାରେ ? ତେଣୁ ଏହି ବ୍ରାହ୍ମଣଙ୍କର ବାଞ୍ଛିତ ବସ୍ତୁ ମୁଁ ନିଶ୍ଚୟ ପ୍ରଦାନ କରିବି ।।୧୦।। ମହାମୁନି, ଆପଣମାନେ ବେଦୋକ୍ତ ଯଜ୍ଞବିଧିକୁ ଭଲଭାବରେ ଜାଣି ଶ୍ରଦ୍ଧାର ସହିତ ଯଜ୍ଞଦ୍ୱାରା ଯେଉଁ ଯଜ୍ଞପୁରୁଷଙ୍କୁ ଆରାଧନା କରନ୍ତି, ଏ ଯଦି ସେହି ବରଦ ବିଷ୍ଣୁ ବା ଅନ୍ୟ କେହି

ହୋଇଥା'ନ୍ତି, ତେବେ ମୁଁ ତାଙ୍କର ଅଭିଳଷିତ ଏହି ପୃଥିବୀକୁ ଦାନ କରିବି ॥୧୧॥ ଯଦି ମୋର ଅପରାଧ ନ ଥାଇ ସେ ଅଧର୍ମରେ ମୋତେ ବନ୍ଧନ କରନ୍ତି, ତଥାପି ବ୍ରାହ୍ମଣ ରୂପଧାରୀ ଭୀତଶତ୍ରୁ ପ୍ରତି ମୁଁ ହିଂସାଚରଣ କରିବି ନାହିଁ ॥୧୨॥ ଯଦି ସେ ପୁଣ୍ୟଶ୍ଲୋକ ବିଷ୍ଣୁ ହୋଇଥା'ନ୍ତି, ତା'ହେଲେ ସେ ତାଙ୍କ କୀର୍ତ୍ତିକୁ ପରିତ୍ୟାଗ ନ କରି ଯୁଦ୍ଧରେ ମୋତେ ବିନାଶ କରି ଏହି ଭୂମିକୁ ହରଣ କରି ପାରିବେ । ନ ହୋଇଥିଲେ, ମୋ ଦ୍ୱାରା ନିହତ ହୋଇ ଭୂତଳଶାୟୀ ହେବେ ॥୧୩॥

ଶ୍ରୀ ଶୁକଦେବ କହିଲେ, ଯେତେବେଳେ ଶୁକ୍ରାଚାର୍ଯ୍ୟ ଦେଖିଲେ ଯେ, ଗୁରୁଙ୍କ କଥା ପ୍ରତି ଶିଷ୍ୟର ଶ୍ରଦ୍ଧା ନାହିଁ ଏବଂ ସେ ଗୁରୁଙ୍କର ଆଜ୍ଞା ଉଲ୍ଲଙ୍ଘନ କରିବାକୁ ଯାଉଛି ସେତେବେଳେ ସେ ଦୈବପ୍ରେରିତ ହୋଇ ନିଜର ମନସ୍ୱୀ ସତ୍ୟପ୍ରତିଜ୍ଞ ଶିଷ୍ୟଙ୍କୁ ଅଭିଶାପ ଦେଲେ ॥୧୪॥ ଶୁକ୍ରାଚାର୍ଯ୍ୟ କହିଲେ, ରେ ମୂର୍ଖ, ତୁ ନିଜକୁ ଖୁବ୍ ପଣ୍ଡିତ ମନେ କରୁଛୁ ଏବଂ ମୋତେ ଉପେକ୍ଷା କରି ଗର୍ବ କରୁଛୁ । ଏଥିପାଇଁ ଶୀଘ୍ର ତୋର ଐଶ୍ୱର୍ଯ୍ୟ ଶେଷ ହୋଇଯିବ ॥୧୫॥ ଏହିପରି ନିଜ ଗୁରୁଙ୍କଦ୍ୱାରା ଅଭିଶପ୍ତ ହୋଇ ମହାମନା ବଳି ନିଜ ସତ୍ୟରୁ ବିଚଳିତ ହେଲେ ନାହିଁ । ସେ ବାମନଙ୍କୁ ବିଧିପୂର୍ବକ ପୂଜା କରି ହସ୍ତରେ ଜଳ ଧରି ତିନି ପାଦ ଭୂମି ଦେବା ପାଇଁ ସଂକଳ୍ପ କଲେ ॥୧୬॥ ଏହି ସମୟରେ ମୁକ୍ତାମାଳା ପରିହିତା ବଳିଙ୍କର ପତ୍ନୀ ବିନ୍ଧ୍ୟାବଳୀ ସେଠାରେ ଉପସ୍ଥିତ ହେଲେ । ବାମନଙ୍କର ପାଦ ଧୋଇଦେବାପାଇଁ ସେ ନିଜ ହାତରେ ଏକ ଜଳପୂର୍ଣ୍ଣ ସୁବର୍ଣ୍ଣକଳସ ଆଣି ପହଞ୍ଚାଇଦେଲେ ॥୧୭॥ ସ୍ୱୟଂ ଯଜମାନ ବଳି ବାମନ ଭଗବାନଙ୍କର ଶ୍ରୀଚରଣଦ୍ୱୟକୁ ଜଳରେ ପ୍ରକ୍ଷାଳନ କରି ବିଶ୍ୱପାବନ ସେହି ପାଦୋଦକକୁ ମସ୍ତକରେ ଧାରଣ କଲେ ॥୧୮॥

ସେହି ସମୟରେ ଆକାଶରେ ଥିବା ଦେବତା, ଗନ୍ଧର୍ବ, ସିଦ୍ଧ, ବିଦ୍ୟାଧର ଓ ଚାରଣଗଣ ଦାନବେନ୍ଦ୍ର ବଳିଙ୍କର ସେହି ନିଷ୍କପଟ କର୍ମକୁ ପ୍ରଶଂସା କରି ଆନନ୍ଦରେ ତାଙ୍କ ଉପରେ ପୁଷ୍ପବୃଷ୍ଟି କରିବାକୁ ଲାଗିଲେ ॥୧୯॥ ହଜାର ହଜାର ଦୁନ୍ଦୁଭି ଏକ ସଙ୍ଗେ ବାଜିଉଠିଲା । ଗନ୍ଧର୍ବ, କିନ୍ନର, କିଂପୁରୁଷମାନେ ଗୀତ ଗାଇବାକୁ ଲାଗିଲେ । ସେମାନେ କହିଲେ, ଏହି ମହାମନା ରାଜା ବଳି ଦୁଷ୍କର କର୍ମ କରି ଦେଖାଇଦେଲେ ଯେ ଜାଣି ଶୁଣି ସେ ତାଙ୍କ ଶତ୍ରୁକୁ ତ୍ରିଭୁବନ ଦାନ କରିଛନ୍ତି ॥୨୦॥ ଏହି ସମୟରେ ଏକ ଅଦ୍ଭୁତ ଘଟଣା ଘଟିଲା । ଅନନ୍ତ ଭଗବାନଙ୍କର ତ୍ରିଗୁଣାତ୍ମକ ବାମନ ରୂପ ବଢ଼ିବାକୁ ଲାଗିଲା । ଏହି ରୂପ ପୃଥିବୀ, ଆକାଶ, ଦିଗ୍‌ବିଦିଗ, ସ୍ୱର୍ଗ, ପାତାଳ, ସାଗର ଏବଂ ପଶୁ-ପକ୍ଷୀ, ମନୁଷ୍ୟ, ଦେବତା ଓ ଋଷି, --ସମସ୍ତଙ୍କୁ ଆଚ୍ଛାଦନ କଲା ॥୨୧॥ ମହାବିଭୂତିସମ୍ପନ୍ନ ଭଗବାନ୍ ବାମନଙ୍କ ଗୁଣାତ୍ମକ ଶରୀରରେ ପଞ୍ଚମହାଭୂତ, ଇନ୍ଦ୍ରିୟଗଣ, ଶବ୍ଦାଦି ବିଷୟ ସମୂହ, ଅନ୍ତଃକରଣ ଓ ଜୀବମାନଙ୍କ ସହିତ ଏହି ତ୍ରିଗୁଣାତ୍ମକ ବିଶ୍ୱ ରହିଥିଲା । ତାହା ମଧ୍ୟରେ ଋତ୍ୱିଜ, ଆଚାର୍ଯ୍ୟ, ସଭାସଦ୍ ଓ ଯଜମାନ ବଳି ନିଜ ନିଜକୁ ମଧ୍ୟ ଦେଖିପାରିଲେ ॥୨୨॥ ସେମାନେ ବିଶ୍ୱରୂପ ଭଗବାନଙ୍କର ପାଦତଳେ ରସାତଳକୁ, ପାଦରେ ପୃଥିବୀକୁ, ଜଙ୍ଘ(ପୁଟିଆ)ରେ ପର୍ବତକୁ, ଜାନୁରେ ପକ୍ଷୀମାନଙ୍କୁ ଏବଂ ଉରୁଦ୍ୱୟରେ ମରୁଦ୍‌ଗଣଙ୍କୁ ଦେଖିଲେ ॥୨୩॥ ଏହିପରି ତାଙ୍କ ବସ୍ତ୍ରରେ ସନ୍ଧ୍ୟାକୁ, ଗୁହ୍ୟସ୍ଥାନରେ ପ୍ରଜାପତିମାନଙ୍କୁ, ଜଘନ ସ୍ଥଳରେ ନିଜ ସହିତ ସମସ୍ତ ଅସୁରଙ୍କୁ, ନାଭିରେ ଆକାଶକୁ, ପେଟଭିତରେ ସାତ ସମୁଦ୍ରକୁ ଏବଂ ବକ୍ଷସ୍ଥଳରେ ନକ୍ଷତ୍ରମାନଙ୍କୁ ଦେଖିଲେ ॥୨୪॥ ଭଗବାନଙ୍କ ହୃଦୟରେ ଧର୍ମକୁ, ସ୍ତନରେ ଋତ ଏବଂ ସତ୍ୟକୁ, ମନରେ ଚନ୍ଦ୍ରକୁ, ବକ୍ଷସ୍ଥଳରେ ପଦ୍ମହସ୍ତା ଲକ୍ଷ୍ମୀଙ୍କୁ, କଣ୍ଠଦେଶରେ ସାମବେଦକୁ ଏବଂ ଆକାରାଦି ସମ୍ପୂର୍ଣ୍ଣ ବର୍ଣ୍ଣମାଳାକୁ ସେମାନେ ଦେଖିବାକୁ ପାଇଲେ ॥୨୫॥ ପୁଣି ତାଙ୍କ ବାହୁଦ୍ୱୟରେ ଇନ୍ଦ୍ରାଦି ଦେବଗଣ, କର୍ଣ୍ଣଦ୍ୱୟରେ ଦିଗ୍‌ବିଦିଗ୍ ସମୂହ, ମସ୍ତକରେ ସ୍ୱର୍ଗ, କେଶରାଶିରେ ମେଘମାଳା, ନାସିକାରେ ବାୟୁ, ନେତ୍ରରେ ସୂର୍ଯ୍ୟ ଓ ମୁଖରେ ଅଗ୍ନି ଦେଖିବାକୁ ମିଳିଲେ ॥୨୬॥ ତାଙ୍କ ବାଣୀରେ ବେଦ, ରସନାରେ ବରୁଣ, ଭ୍ରୂଦ୍ୱୟରେ ବିଧି ଓ ନିଷେଧ, ଏବଂ ଆଖିପତାରେ ଦିନ ଏବଂ ରାତି ଦୃଶ୍ୟ ହେଲେ । ବିଶ୍ୱରୂପଙ୍କ ଲଲାଟରେ କ୍ରୋଧ ଏବଂ ଓଷ୍ଠରେ ଲୋଭ ପରିଦୃଷ୍ଟ ହେଉଥିଲା ॥୨୭॥ ପରିକ୍ଷିତ, ଏହାଙ୍କ ସ୍ପର୍ଶରେ କାମ, ବୀର୍ଯ୍ୟରେ ଜଳ, ପିଠିରେ ଅଧର୍ମ, ପଦକ୍ଷେପରେ ଯଜ୍ଞ, ଛାୟାରେ ମୃତ୍ୟୁ, ହସରେ ମାୟା ଏବଂ ରୋମାବଳୀରେ

ସମସ୍ତପ୍ରକାର ଓଷଧି ରହିଥିଲା ॥୨୮॥ ତାଙ୍କ ନାଡ଼ୀମାନଙ୍କରେ ଥିଲେ ନଦୀମାନେ, ନଖମାନଙ୍କରେ ଶିଳା, ଏବଂ ବୁଦ୍ଧିରେ ବ୍ରହ୍ମା, ଦେବତା ଓ ଋଷିମାନେ ରହିଥିଲେ । ଏହିପରି ବୀରଶ୍ରେଷ୍ଠ ବଳି ଭଗବାନଙ୍କର ଶରୀର ଓ ଇନ୍ଦ୍ରିୟମାନଙ୍କରେ ସମସ୍ତ ଚରାଚର ପ୍ରାଣୀଙ୍କୁ ଦେଖିପାରିଲେ ॥୨୯॥

ପରିକ୍ଷିତ, ସର୍ବାତ୍ମା ଭଗବାନଙ୍କଠାରେ ଏହି ସମ୍ପୂର୍ଣ୍ଣ ବିଶ୍ୱକୁ ଦେଖି ଦୈତ୍ୟମାନେ ସମସ୍ତେ ଅତ୍ୟନ୍ତ ଭୟଭୀତ ହୋଇପଡିଲେ । ସେତେବେଳ ଭଗବାନଙ୍କ ପାଖରେ ଥିଲା ଅସହ୍ୟ ତେଜସମ୍ପନ୍ନ ସୁଦର୍ଶନ ଚକ୍ର, ଧ୍ୱନି ମେଘ ପରି ଟଙ୍କାର କରୁଥିବା ଶାର୍ଙ୍ଗ ଧନୁ, ମେଘ ପରି ଗମ୍ଭୀର ନାଦ କରୁଥିବା ପାଞ୍ଚଜନ୍ୟ ଶଙ୍ଖ, ଅତ୍ୟନ୍ତ ବେଗବତୀ କୌମୋଦକୀ ଗଦା, ଶତଚନ୍ଦ୍ରଚିହ୍ନିତ ଢାଲ, ବିଦ୍ୟାଧର ନାମକ ଖଡ୍ଗ ଏବଂ ଅକ୍ଷୟ ତୂଣୀର । ଲୋକପାଳଙ୍କ ସହିତ ଭଗବାନଙ୍କର ସୁନନ୍ଦ ଆଦି ପାର୍ଷଦଗଣ ତାଙ୍କ ସେବାପାଇଁ ଉପସ୍ଥିତ ଥିଲେ । ସେତେବେଳେ ଭଗବାନ ଉରୁକ୍ରମ ଅତ୍ୟନ୍ତ ସୁନ୍ଦର ଦେଖାଯାଉଥିଲେ । ମସ୍ତକରେ କିରୀଟ, ବାହୁରେ ବାଜୁବନ୍ଧ, କାନରେ ମକରକୁଣ୍ଡଳ, ବକ୍ଷସ୍ଥଳରେ ଶ୍ରୀବତ୍ସ ଚିହ୍ନ, ଗଳାରେ କୌସ୍ତୁଭ ମଣି, କଟିରେ ମେଖଳା ଏବଂ କାନ୍ଧ ଉପରେ ପୀତାମ୍ବର ଶୋଭା ପାଉଥିଲା । ପାଞ୍ଚଟି ପୁଷ୍ପର ଯେଉଁ ବନମାଳା ସେ ପିନ୍ଧିଥିଲେ, ସେଥିରେ ମଧୁଲୋଭୀ ଭ୍ରମରମାନେ ଗୁଞ୍ଜରଣ କରୁଥିଲେ । ସେ ନିଜର ଏକ ପଦକ୍ଷେପରେ ବଳିଙ୍କର ସମଗ୍ର ପୃଥିବୀକୁ ଆଚ୍ଛାଦନ କଲେ । ଶରୀର ଦ୍ୱାରା ଆକାଶକୁ ଏବଂ ବାହୁଦ୍ୱାରା ଦିଗ୍‌ବିଦିଗକୁ ଆଚ୍ଛାଦିତ କଲେ । ତାଙ୍କର ଦ୍ୱିତୀୟ ପାଦ ସ୍ୱର୍ଗକୁ ପରିବ୍ୟାପ୍ତ ହୋଇ ସ୍ୱର୍ଗର ଉପରେ ଥିବା ମହର୍ଲୋକ, ଜନଲୋକ, ତପୋଲୋକ ଏବଂ ତାର ଉର୍ଦ୍ଧ୍ୱରେ ଥିବା ସତ୍ୟଲୋକରେ ପହଞ୍ଚିଗଲା ॥୩୦-୩୪॥

## ଏକବିଂଶ ଅଧ୍ୟାୟ

# ବଳିଙ୍କର ବନ୍ଧନ

ଶ୍ରୀ ଶୁକଦେବ କହିଲେ, ପରିକ୍ଷିତ, ଭଗବାନଙ୍କର ପାଦପଦ୍ମ ସତ୍ୟଲୋକରେ ଯାଇ ପହଂଚିଲା । ତାଙ୍କ ନଖଚନ୍ଦ୍ରର ଦୀପ୍ତିରେ ସତ୍ୟଲୋକର ତେଜ ଫିକା ପଡ଼ିଗଲା । ସ୍ୱୟଂ ବ୍ରହ୍ମା ମଧ୍ୟ ମଳିନ ହୋଇଗଲେ । ସେ ମରୀଚି ଆଦି ଋଷି, ସନନ୍ଦନ ଆଦି ବ୍ରହ୍ମଚାରୀ ଏବଂ ପ୍ରଧାନ ପ୍ରଧାନ ଯୋଗୀମାନଙ୍କୁ ଧରି ଭଗବାନଙ୍କ ପାଦପାଖରେ ଆସି ପହଞ୍ଚିଲେ । ବେଦ, ଉପବେଦ, ଯମ-ନିୟମ, ତର୍କ, ଇତିହାସ, ଶିକ୍ଷା-କଳ୍ପ ପ୍ରଭୃତି ବେଦାଙ୍ଗ ଓ ପୁରାଣ ସଂହିତା ଯେଉଁମାନେ ବ୍ରହ୍ମଲୋକରେ ମୂର୍ତ୍ତି ଧରି ରହନ୍ତି ଏବଂ ଯୋଗରୂପକ ବାୟୁର ପ୍ରଭାବରେ ଯେଉଁମାନେ ଜ୍ଞାନରୂପକ ଅଗ୍ନିକୁ ପ୍ରଜ୍ୱଳିତ କରି କର୍ମମଳକୁ ଭସ୍ମ କରିଦେଇଛନ୍ତି, ଯେଉଁମାନେ କେବଳ ତାଙ୍କ ପାଦପଦ୍ମକୁ ସ୍ମରଣ କରି କର୍ମଦ୍ୱାରା ଅଲଭ୍ୟ ବ୍ରହ୍ମଲୋକରେ ପହଞ୍ଚିଛନ୍ତି, ସେ ସବୁ ମହାତ୍ମା ଭଗବାନଙ୍କର ପାଦବନ୍ଦନା କଲେ ॥୨॥ ଏହାପରେ ତାଙ୍କ ନାଭିପଦ୍ମରୁ ସ୍ୱୟଂ ଉତ୍ପନ୍ନ ହୋଇଥିବା ବ୍ରହ୍ମା ତାଙ୍କୁ ପାଛୋଟି ଆଣି ତାଙ୍କ ଉର୍ଦ୍ଧ୍ୱପ୍ରସାରିତ ପାଦରେ ଅର୍ଘ୍ୟପାଦ୍ୟ ପ୍ରଦାନ କଲେ ଏବଂ ଭକ୍ତିଭରେ ତାଙ୍କୁ ଅର୍ଚ୍ଚନା କରି ସ୍ତବ କରିବାକୁ ଲାଗିଲେ ॥୩॥ ପରିକ୍ଷିତ, ବ୍ରହ୍ମାଙ୍କର ସେହି କମଣ୍ଡଳୁର ଜଳ ଭଗବାନ ଉରୁକ୍ରମଙ୍କର ପାଦ ପ୍ରକ୍ଷାଳନରେ ପବିତ୍ର ହୋଇ ଗଙ୍ଗାରୂପରେ ପରିଣତ ହେଲା । ଭଗବାନଙ୍କର ନିର୍ମଳ କୀର୍ତ୍ତି ବହନ କରିଥିବା ସେହି ସ୍ୱର୍ଗଗଙ୍ଗା ଆକାଶରୁ ପୃଥିବୀ ଉପରେ ପଡ଼ି ତିନି ଲୋକକୁ ପବିତ୍ର କଲା ॥୪॥ ଏହାପରେ ଭଗବାନ ନିଜର ରୂପ ଓ ବିଭୂତିକୁ ସଙ୍କୁଚିତ କରିନେଲେ । ବ୍ରହ୍ମା ଆଦି ଲୋକପାଳମାନେ ନିଜ ନିଜ ଅନୁଚରଙ୍କ ସହ ଅତି ଶ୍ରଦ୍ଧାରେ ସେମାନଙ୍କର ପ୍ରଭୁଙ୍କୁ ନାନାପ୍ରକାର ପୂଜାର ଅର୍ଘ୍ୟ ଦେବାକୁ ଲାଗିଲେ ॥୫॥ ସେମାନେ

ସୁଶୀତଳ ଜଳ, ସୁନ୍ଦର ମାଳା, ସୁଗନ୍ଧ ଚନ୍ଦନ ଓ ଅଙ୍ଗଲେପନ ଦ୍ରବ୍ୟ, ସୁବାସିତ ଧୂପ, ଖଇ, ଅକ୍ଷତ ଏବଂ ବହୁପ୍ରକାର ଫଳଦ୍ୱାରା ଭଗବାନଙ୍କୁ ଅର୍ଚ୍ଚନା କଲେ । ତାଙ୍କ ସ୍ତବ ଓ ଗୁଣଗାନ କରି ଜୟଧ୍ୱନି କଲେ । ଆନନ୍ଦରେ ନୃତ୍ୟ, ଗୀତ, ବାଦ୍ୟ, ଶଙ୍ଖ ଓ ଦୁନ୍ଦୁଭି ଧ୍ୱନି କରି ତାଙ୍କୁ ଆରାଧନା କଲେ ॥୬-୭॥ ମନପରି ବେଗଗାମୀ ଋକ୍ଷରାଜ ଜାମ୍ବବାନ୍ ଭେରୀ ଶବ୍ଦଦ୍ୱାରା ଚତୁର୍ଦ୍ଦିଗରେ ଭଗବାନଙ୍କର ବିଜୟ ଘୋଷଣା କରିବାକୁ ଲାଗିଲେ ॥୮॥

ଦୈତ୍ୟମାନେ ଦେଖିଲେ ଯେ, ତିନିପାଦ ଭୂମି ମାଗିବା ଛଳରେ ଏହି ବାମନ ସମସ୍ତ ପୃଥିବୀକୁ ଅପହରଣ କରିଛନ୍ତି । ସେମାନଙ୍କର ରାଜା ଯଜ୍ଞରେ ଦୀକ୍ଷିତ ହୋଇଥିବାଯୋଗୁଁ କିଛି କହିପାରୁ ନାହାନ୍ତି । ତେଣୁ ସେମାନେ କ୍ରୋଧରେ କହିବାକୁ ଲାଗିଲେ— ॥୯॥ ଏ କାହିଁକି ବ୍ରାହ୍ମଣ ହେବେ ? ବ୍ରାହ୍ମଣ ରୂପରେ ସବୁଠାରୁ ବଡ଼ ଏଇ ମାୟାବୀ ବିଷ୍ଣୁ ଦେବତାଙ୍କ କାର୍ଯ୍ୟର ସିଦ୍ଧିପାଇଁ ଆସିଛନ୍ତି ॥୧୦॥ ମାଗିବାକୁ ଆସିଥିବା ଏହି ବାମନରୂପୀ ଶତ୍ରୁ ଆମର ସର୍ବସ୍ୱ ହରିନେଲା । ଯଜ୍ଞରେ ଦୀକ୍ଷା ନେଇଥିବାଯୋଗୁଁ ଆମ ରାଜାଙ୍କର ହାତରେ ଆଉ ରାଜଦଣ୍ଡ ନାହିଁ ॥୧୧॥ ଆମର ସ୍ୱାମୀ ସର୍ବଦା ସତ୍ୟନିଷ୍ଠ । ବିଶେଷତଃ ସେ ଯଜ୍ଞରେ ଦୀକ୍ଷିତ ହୋଇଛନ୍ତି । ସେ କେବେ ମିଥ୍ୟା କହିବେ ନାହିଁ । ସେ ଅତ୍ୟନ୍ତ ଦୟାଳୁ ଓ ବ୍ରାହ୍ମଣମାନଙ୍କର ଭକ୍ତ ॥୧୨॥ ତେଣୁ ସ୍ୱାମୀଙ୍କର ସେବାରତ ଆମମାନଙ୍କର କର୍ତ୍ତବ୍ୟ ହେଉଛି ଏହି ବାମନଙ୍କୁ ବଧ କରିବା । ଏହା କହି ବଳିଙ୍କର ଅନୁଚର ଅସୁରମାନେ ବିବିଧ ଅସ୍ତ୍ରଶସ୍ତ୍ର ଧାରଣ କଲେ ॥୧୩॥ ବଳି ନିଜେ ଇଚ୍ଛା କରୁ ନ ଥିଲେ ମଧ୍ୟ ଅସୁରମାନେ କ୍ରୋଧରେ ଶୂଳ, ପଟ୍ଟିଶ ଆଦି ଅସ୍ତ୍ରମାନ ଧାରଣ କରି ବାମନଙ୍କୁ ମାରିବା ପାଇଁ ମାଡ଼ି ଆସିଲେ ॥୧୪॥ ପରିକ୍ଷିତ, ଆକ୍ରମଣପାଇଁ ଦୈତ୍ୟସେନାପତିମାନେ ଦଉଡ଼ିଆସୁଥିବାର ଦେଖି, ବିଷ୍ଣୁଙ୍କର ଅନୁଚରମାନେ ଆୟୁଧ ଉଠାଇ ସେମାନଙ୍କର ପ୍ରତିରୋଧ କଲେ ॥୧୫॥ ନନ୍ଦ, ସୁନନ୍ଦ, ଜୟ, ବିଜୟ, ପ୍ରବଳ, ବଳ, କୁମୁଦ, କୁମୁଦାକ୍ଷ, ବିଷ୍ୱକ୍‌ସେନ, ପକ୍ଷୀରାଜ ଗରୁଡ଼, ଜୟନ୍ତ, ଶ୍ରୁତଦେବ, ପୁଷ୍ପଦନ୍ତ ଓ ସାତ୍ୱତ — ଏମାନେ ଜଣେ ଜଣେ ଦଶହଜାର ହସ୍ତୀଙ୍କର ବଳ ଧାରଣ କରନ୍ତି । ସେମାନେ ଅସୁରସେନାର ସଂହାର କରିବାକୁ ଲାଗିଲେ ॥୧୬-୧୭॥ ରାଜା ବଳି ଦେଖିଲେ ଯେ ଭଗବାନଙ୍କର ପାର୍ଷଦମାନେ ତାଙ୍କ ଅନୁଚରମାନଙ୍କୁ ମାରି ପକାଉଛନ୍ତି, ତହୁଁ ଶୁକ୍ରାଚାର୍ଯ୍ୟଙ୍କର ଅଭିଶାପକୁ ମନେ ପକାଇ ସେ କ୍ରୁଦ୍ଧ ଅସୁରମାନଙ୍କୁ ଯୁଦ୍ଧରୁ ବାରଣ କଲେ ॥୧୮॥ ସେ ଅସୁରମାନଙ୍କୁ କହିଲେ, ବିପ୍ରଚିତ୍ତି, ରାହୁ, ନେମି, ମୋର କଥା ତୁମେମାନେ ଶୁଣ । ଯୁଦ୍ଧ କର ନାହିଁ । ଫେରିଆସ । ବର୍ତ୍ତମାନ ସମୟ ଅନୁକୂଳ ନୁହେଁ ॥୧୯॥ ଦୈତ୍ୟଗଣ, ଯେଉଁ କାଳ ସମସ୍ତ ପ୍ରାଣୀଙ୍କର ପ୍ରଭୁରୂପେ ସମସ୍ତଙ୍କୁ ସୁଖ ଓ ଦୁଃଖ ଦେବାପାଇଁ ସମର୍ଥ, କୌଣସି ପୁରୁଷ ନିଜ ଶକ୍ତିବଳରେ ତାକୁ ଅତିକ୍ରମ କରିପାରିବ ନାହିଁ ॥୨୦॥ ଯେଉଁ କାଳ ପୂର୍ବେ ଆମମାନଙ୍କ ମଙ୍ଗଳର ଏବଂ ସ୍ୱର୍ଗବାସୀ ଦେବତାମାନଙ୍କ ଅମଙ୍ଗଳର କାରଣ ହୋଇଥିଲା, ସେହି କାଳ ଏବେ ଭଗବାନଙ୍କ ରୂପରେ ଆମମାନଙ୍କୁ ଅମଙ୍ଗଳପ୍ରଦ ଓ ଦେବତାମାନଙ୍କୁ ମଙ୍ଗଳପ୍ରଦ ହୋଇଛନ୍ତି ॥୨୧॥ ବଳଦ୍ୱାରା, ସଚିବମାନଙ୍କଦ୍ୱାରା, ବୁଦ୍ଧିଦ୍ୱାରା, ଦୁର୍ଗ, ମନ୍ତ୍ର, ଔଷଧ ଏବଂ ସାମଦଣ୍ଡ ଆଦି ନୀତିଦ୍ୱାରା କିମ୍ବା ଏ ସବୁର ପ୍ରୟୋଗଦ୍ୱାରା ମଧ୍ୟ ମନୁଷ୍ୟ କାଳକୁ ଅତିକ୍ରମ କରିପାରିବ ନାହିଁ ॥୨୨॥ ଯେତେବେଳେ ଦୈବ ତୁମର ଅନୁକୂଳ ଥିଲା, ତୁମେମାନେ ଶ୍ରୀହରିଙ୍କର ଏହି ପାର୍ଷଦମାନଙ୍କୁ ବାରମ୍ବାର ପରାଜିତ କରିଥିଲ । କିନ୍ତୁ ଆଜି ଦେଖ, ସେମାନେ ଯୁଦ୍ଧରେ ଜୟଲାଭ କରି ଆନନ୍ଦଧ୍ୱନି ହେଉଛନ୍ତି । ଯଦି ପୁଣି ଦୈବ ପ୍ରସନ୍ନ ହୁଏ, ତେବେ ଆମେମାନେ ଭବିଷ୍ୟତରେ ମଧ୍ୟ ସେମାନଙ୍କୁ ଜୟ କରିପାରିବା । ତେଣୁ ଆମର ଅନୁକୂଳ ସମୟ ପାଇଁ ପ୍ରତୀକ୍ଷା କର ॥୨୩-୨୪॥ ଶ୍ରୀ ଶୁକଦେବ କହିଲେ, ପରିକ୍ଷିତ, ଦୈତ୍ୟ ଓ ଦାନବ ଯୂଥପତିମାନେ ନିଜର ପ୍ରଭୁ ବଳିଙ୍କଠାରୁ ଏହିପରି ଶୁଣି ଯୁଦ୍ଧରୁ ନିବୃତ୍ତ ହେଲେ ଏବଂ ବିଷ୍ଣୁଙ୍କର ପାର୍ଷଦମାନଙ୍କଦ୍ୱାରା ବିତାଡ଼ିତ ହୋଇ ରସାତଳରେ ପ୍ରବେଶ କଲେ ॥୨୫॥ ସେଦିନ ଅଶ୍ୱମେଧ ଯଜ୍ଞରେ ବଳିଙ୍କର ସୋମପାନର ଦିବସ । କିନ୍ତୁ ବିଷ୍ଣୁଙ୍କର ଅଭିପ୍ରାୟ ଜାଣି ଗରୁଡ଼ ତାଙ୍କୁ ବରୁଣଙ୍କ ପାଶରେ ଆବଦ୍ଧ କଲେ ॥୨୬॥ ସର୍ବଶକ୍ତିମାନ୍ ଭଗବାନ୍ ବିଷ୍ଣୁ ବଳିଙ୍କୁ ଏପରି ପାଶବଦ୍ଧ କରନ୍ତେ, ପୃଥିବୀ, ଆକାଶ

ଏବଂ ଚତୁର୍ଦ୍ଦିଗରେ ଲୋକମାନେ ହାହାକାର କରିବାକୁ ଲାଗିଲେ ॥୨୭॥ ରାଜା, ଏହିପରି ବରୁଣଙ୍କ ପାଶରେ ଆବଦ୍ଧ ବଳି ଶ୍ରୀହୀନ ହେଲେ ମଧ୍ୟ ସ୍ଥିତପ୍ରଜ୍ଞ ଥିଲେ ଏବଂ ସମସ୍ତେ ତାଙ୍କର ଉଦାର ଯଶ ଗାନ କରୁଥିଲେ । ତାଙ୍କୁ ବାମନ ଭଗବାନ କହିଲେ, ଅସୁର, ତୁମେ ମୋତେ ତିନି ପାଦ (ପାହୁଣ୍ଡେ) ଭୂମି ଦେବାପାଇଁ ପ୍ରତିଶ୍ରୁତି ଦେଇଥିଲ । ମୋର ଦୁଇପାଦରେ ପୃଥିବୀ ଏବଂ ବାକି ସମସ୍ତ ସ୍ଥାନ ଭରିଯାଇଛି । ଏବେ ତୃତୀୟ ପାଦର ସ୍ଥାନ ପୂରଣକର ॥୨୮-୨୯॥ ଯେତେଦୂରଯାଏଁ ସୂର୍ଯ୍ୟ କିରଣଦ୍ୱାରା ତାପ ଦେଉଛି, ନକ୍ଷତ୍ରମାନଙ୍କସହ ଚନ୍ଦ୍ର ଯେତେଦୂରପର୍ଯ୍ୟନ୍ତ ପ୍ରଭା ବିସ୍ତାର କରୁଛି, ଯେତେ ଦୂର ପର୍ଯ୍ୟନ୍ତ ମେଘମାନେ ବର୍ଷା କରନ୍ତି, ସେତେ ପର୍ଯ୍ୟନ୍ତ ଏହି ପୃଥିବୀ ତୁମର (ବୋଲି ତୁମେ ମନେ କରିଥିଲ) ॥୩୦॥ ଏବେ ମୁଁ ଏକ ପାଦରେ ଭୂଲୋକକୁ, ଶରୀରଦ୍ୱାରା ଆକାଶ ଓ ଦିଗ୍‌ବିଦିଗ୍‌କୁ, ଦ୍ୱିତୀୟ ପାଦଦ୍ୱାରା, ତୁମେ ଚାହୁଁ ଚାହୁଁ ସ୍ୱର୍ଗଲୋକକୁ ଏବଂ ମୁଁ ନିଜେ ତୁମର ସର୍ବସ୍ୱକୁ ନେଇଯାଇଛି । ବର୍ତ୍ତମାନ ତୁମର ଯାହା ଥିଲା ମୁଁ ନେଇଗଲି । ତଥାପି ତୁମର ପ୍ରତିଶ୍ରୁତି ପୂରଣ ବାକି ରହିଛି । ତାହା ପୂରଣ ନ କଲେ ତୁମକୁ ନରକରେ ରହିବାକୁ ପଡ଼ିବ । ତୁମର ଗୁରୁ ମଧ୍ୟ ସେହି କଥା କହିଛନ୍ତି । ଯାଅ, ନରକରେ ପ୍ରବେଶ କର ॥୩୧-୩୨॥ ଯେଉଁ ବ୍ୟକ୍ତି ଯାଚକକୁ ଦେବାର ପ୍ରତିଶ୍ରୁତି ଦେଇ ପ୍ରତିଶ୍ରୁତ ବସ୍ତୁ ନ ଦିଏ, ସେ ତାକୁ ଠକି ଦିଏ, ତାର ସମସ୍ତ ମନୋରଥ ବ୍ୟର୍ଥ ହୁଏ । ସ୍ୱର୍ଗ ତା'ଠାରୁ ଦୂରେଇ ଯାଏ ଏବଂ ସେ ନରକଗାମୀ ହୁଏ ॥୩୩॥ ତୁମେ ଧନ ଗର୍ବରେ ଗର୍ବିତ ହୋଇ ମୋତେ ଦାନ ଦେବ ବୋଲି ସଙ୍କଳ୍ପ କରିଥିଲ । ମାତ୍ର ତାହା ନ ଦେବାରୁ ତୁମେ ମୋତେ ଠକିବାକୁ ଯାଉଛ । ତେଣୁ ମିଥ୍ୟା କହିବାର ଫଳସ୍ୱରୂପ କିଛି ବର୍ଷ ତୁମେ ନରକ ଭୋଗ କର ॥୩୪॥

## ଦ୍ୱାବିଂଶ ଅଧ୍ୟାୟ

# ବଳିଙ୍କର ମୁକ୍ତି

ପରିକ୍ଷିତ, ଏହିପରି ବଳିଙ୍କୁ ତିରସ୍କାର କରି ଭଗବାନ ତାଙ୍କୁ ବିଚଳିତ କରିବାକୁ ଚେଷ୍ଟାକଲେ । କିନ୍ତୁ ବଳି କିଞ୍ଚିନ୍ମାତ୍ର ବିଚଳିତ ନ ହୋଇ ଧୈର୍ଯ୍ୟର ସହିତ ଏହିପରି କହିଲେ-- ॥୧॥ ଦୈତ୍ୟରାଜ ବଳି କହିଲେ, ହେ ଉତ୍ତମଶ୍ଳୋକ ଦେବଶ୍ରେଷ୍ଠ, ଆପଣ ମୋର ପ୍ରତିଶ୍ରୁତିକୁ ମିଥ୍ୟା ବୋଲି ମନେ କରୁଛନ୍ତି ? ବର୍ତ୍ତମାନ ମୁଁ ତାକୁ ସତ୍ୟରେ ପରିଣତ କରିବାକୁ ଯାଉଛି । କେବେହେଲେ ପ୍ରତିଶ୍ରୁତି ଭଙ୍ଗ ହେବ ନାହିଁ । ଆପଣଙ୍କ ତୃତୀୟ ପଦପାଇଁ ମୁଁ ମୋର ମସ୍ତକକୁ ଦେଖାଇଦେଉଛି । ଆପଣ ପାଦ ରଖନ୍ତୁ ॥୨॥ ନରକକୁ ଯିବାରେ ବା ପଦଚ୍ୟୁତ ହେବାରେ ମୋର କୌଣସି ଭୟ ନାହିଁ । ଏହି ପାଶରେ ମୋତେ ବନ୍ଧା ଯାଇଛି । ସେଥିପାଇଁ ମୋର ଡର ନାହିଁ, କିମ୍ବା ଅପାର ଦୁଃଖ ଭୋଗ କରିବାରେ ମଧ୍ୟ ମୋର ଭୟ ନାହିଁ । ମୁଁ ନିର୍ଦ୍ଧନ ହୋଇଯାଏ ବା ଆପଣଙ୍କଦ୍ୱାରା ଘୋର ଦଣ୍ଡରେ ଦଣ୍ଡିତ ହୁଏ, ସେଥପାଇଁ ମଧ୍ୟ ମୋର ଡର ନାହିଁ । କିନ୍ତୁ ଗୋଟିଏ କଥାକୁ ମୁଁ ଡରେ, ତାହା ହେଉଛି ନିଜର ଅପନିନ୍ଦା ॥୩॥ ପୁରୁଷୋତ୍ତମ, ପୂଜ୍ୟତମ ଗୁରୁଜନମାନେ ଯେଉଁ ଦଣ୍ଡ ଦିଅନ୍ତି, ମୁଁ ଭାବେ ତାହା ପ୍ରତ୍ୟେକ ବ୍ୟକ୍ତି ପାଇଁ ଅତ୍ୟନ୍ତ ପ୍ରଶଂସନୀୟ । କାରଣ ସେପରି ଦଣ୍ଡ ମାତା, ପିତା, ଭାଇ ଏବଂ ସୁହୃଦ୍ ମୋହବଶରୁ ଦେଇପାରନ୍ତି ନାହିଁ । ପରୋକ୍ଷରେ ଅର୍ଥାତ୍ ଶତ୍ରୁଛଳରେ ଆପଣ ଅସୁରମାନଙ୍କର ପରମଗୁରୁ । କାରଣ ଐଶ୍ୱର୍ଯ୍ୟ ମଦରେ ଅନ୍ଧ ଆମମାନଙ୍କୁ ଆପଣ ଚକ୍ଷୁ ଦାନ କରିଛନ୍ତି, ଯଦ୍ଦ୍ୱାରା ଆମର ଭ୍ରମ ଦୂର ହୋଇଚି ॥୪-୫॥ ଯୋଗୀମାନେ ଏକାନ୍ତ ନିଷ୍ଠାର ସହିତ ଆପଣଙ୍କୁ ଉପାସନା କରି ଯେଉଁ ସିଦ୍ଧି ଲାଭ କରନ୍ତି, ଆପଣଙ୍କ ସହିତ ବଦ୍ଧମୂଳ ଶତ୍ରୁତା କରି ବହୁ ଅସୁର ସେହି ସିଦ୍ଧି ଲାଭ କରିଛନ୍ତି ॥୬॥ ଆପଣ ବିପୁଳକର୍ମା । ମୋତେ ଦଣ୍ଡ ଦେବାପାଇଁ ବରୁଣ ପାଶରେ ବାନ୍ଧି ରଖିଛନ୍ତି । ମାତ୍ର ସେଥିପାଇଁ ମୋର ଟିକିଏ ଲଜ୍ଜା ନାହିଁ ବା

କାଣିଚାଏ ଦୁଃଖ ନାହିଁ ॥୭॥ ମୋର ପିତାମହ ପ୍ରହ୍ଲାଦ ଆପଣଙ୍କର ଅନୁଗତ ହୋଇ ବହୁ ଯଶ କୀର୍ତ୍ତି ଅର୍ଜନ କରିଛନ୍ତି । ଆପଣଙ୍କର ଅନୁଗତ ହୋଇ ସେ ବହୁ ଯଶକୀର୍ତ୍ତି ଅର୍ଜନ କରିଛନ୍ତି । ଆପଣଙ୍କ ବିପକ୍ଷ ତାଙ୍କ ପିତା ହରିଣ୍ୟକଶିପୁଙ୍କଦ୍ୱାରା ସେ ବହୁ ଦୁଃଖ ଭୋଗ କରିଥିଲେ ମଧ୍ୟ ଆପଣଙ୍କୁ ଛାଡ଼ି ନାହାନ୍ତି ॥୮॥ ଆୟୁ ଶେଷ ହେଲେ ଯେଉଁ ଦେହକୁ ଛାଡ଼ି ଚାଲିଯିବାକୁ ହୁଏ, ସେ ଦେହକୁ ଲୋଭ କରି ଲାଭ କ'ଣ ? ଯେଉଁ ଧନସମ୍ପତ୍ତିକୁ ନେବାପାଇଁ ନିଜର ସ୍ୱଜନ ଦସ୍ୟୁପରି ଅପେକ୍ଷା କରି ରହିଥାନ୍ତି, ସେ ସମ୍ପତ୍ତି ରଖି ଲାଭ କ'ଣ ? ଯେଉଁ ନାରୀଯୋଗୁଁ ଜନ୍ମମୃତ୍ୟୁରୂପ ସଂସାର ଚକ୍ରରେ ପଡ଼ି ଦୁଃଖ ଭୋଗ କରିବାକୁ ହେଉଛି, ସେ ପତ୍ନୀପ୍ରତି ମୋହ ରଖି ଲାଭ କ'ଣ ହେବ ? ଜୀବ ସ୍ଥାୟୀ ନୁହେଁ, ସେ ସଦା ମରଣଶୀଳ । ସେଥିପାଇଁ ଗୃହପ୍ରତି ଲୋଭ କରି ଲାଭ କ'ଣ ହେବ ? ଏହା ନିଶ୍ଚିତ କରି ମୋର ପରମଜ୍ଞାନୀ ମହାନ୍ ପିତାମହ ନିଜ କୁଳକ୍ଷୟକୁ ଭୟ କରି ନ ଥିଲେ । କେବଳ ଅଧର୍ମ ପ୍ରତି ହିଁ ତାଙ୍କର ଭୟ ଥିଲା ॥୯-୧୦॥ ଆପଣ ଅସୁର କୁଳର ଶତ୍ରୁ ହୋଇଥିବା ହେତୁ ମୋର ଶତ୍ରୁ । କିନ୍ତୁ ଦୈବବଶରେ ଶ୍ରୀହୀନ ହୋଇ ମୁଁ ଆପଣଙ୍କ କର୍ତ୍ତୃତ୍ୱରେ ରହିଛି । ସର୍ବଦା ମୃତ୍ୟୁର ନିକଟବର୍ତ୍ତୀ ଏହି ଜୀବନ ଯେ ଅନିତ୍ୟ, ଧନ ଗର୍ବରେ ତାହା ମୂଢ଼ବୁଦ୍ଧିର ଲୋକ ବୁଝିପାରେ ନାହିଁ ॥୧୧॥

ଶ୍ରୀ ଶୁକଦେବ କହିଲେ, ପରିକ୍ଷିତ, ଏହିପରି ବଳି କହୁଥିବାବେଳେ ଭଗବାନଙ୍କର ପ୍ରିୟଭକ୍ତ ପ୍ରହ୍ଲାଦ ଉଦିତ ଚନ୍ଦ୍ରମା ପରି ସେଠାରେ ଆସି ପହଞ୍ଚିଲେ ॥୧୨॥ ପ୍ରହ୍ଲାଦ ଅତିଶୟ ସୁନ୍ଦର ଓ ଶ୍ରୀସମ୍ପନ୍ନ ଥିଲେ । ପଦ୍ମପାଖୁଡ଼ା ପରି ତାଙ୍କର ଚକ୍ଷୁ ଆୟତ ଥିଲା । ସେ ଦୀର୍ଘ ଓ ଶ୍ୟାମଳ କାନ୍ତି ଥିଲେ, ପୀତାମ୍ବର ପରିଧାନ କରିଥିଲେ । ବାହୁଦ୍ୱୟ ଆଜାନୁଲମ୍ବିତ ଥିଲା । ଏହିପରି ପରମ ଭାଗ୍ୟବାନ୍ ପିତାମହଙ୍କୁ ଇନ୍ଦ୍ରସେନ ବଳି ନିଜ ନିକଟରେ ଦେଖିବାକୁ ପାଇଲେ ॥୧୩॥ ବାରୁଣ ପାଶଦ୍ୱାରା ବନ୍ଧା ହୋଇଥିବାଯୋଗୁଁ ସେ ପୂର୍ବପରି ତାଙ୍କୁ ଉପହାର ଦେଇ ପୂଜା କରି ପାରିଲେ ନାହିଁ । କେବଳ ମୁଣ୍ଡ ନୁଆଁଇ ପ୍ରଣାମ କଲେ । ଚକ୍ଷୁ ଲୋତକପୂର୍ଣ୍ଣ ଥିଲା । ଲଜ୍ଜାରେ ସେ ମୁହଁ ତଳକୁ ନୁଆଇଁ ରହିଲେ ॥୧୪॥ ପ୍ରହ୍ଲାଦ ଦେଖିଲେ ଯେ, ଭକ୍ତବତ୍ସଳ ଭଗବାନ ସେଠାରେ ଉପବିଷ୍ଟ ଏବଂ ସୁନନ୍ଦ, ନନ୍ଦ ଆଦି ପାର୍ଷଦମାନେ ତାଙ୍କୁ ସେବା କରୁଛନ୍ତି । ଭଗବତ୍ ପ୍ରେମରେ ପ୍ରହ୍ଲାଦଙ୍କର ଶରୀର ପୁଲକିତ ହୋଇଉଠିଲା ଏବଂ ଚକ୍ଷୁ ଅଶ୍ରୁପୂର୍ଣ୍ଣ ହୋଇଗଲା । ସେ ଆନନ୍ଦରେ ମୁଣ୍ଡ ନୁଆଁଇ ତାଙ୍କ ପାଖକୁ ଗଲେ ଏବଂ ଭୂଇଁରେ ମୁଣ୍ଡ ରଖି ସାଷ୍ଟାଙ୍ଗ ପ୍ରଣିପାତ କଲେ ॥୧୫॥

ପ୍ରହ୍ଲାଦ କହିଲେ, ଭଗବାନ, ଆପଣ ବଳିକୁ ପୂର୍ବରୁ ଇନ୍ଦ୍ରପଦ ଦାନ କରିଥିଲେ ଏବଂ ତାର ସେହି ସମୃଦ୍ଧ ଇନ୍ଦ୍ରପଦକୁ ଆପଣ ଏବେ ହରଣ କରି ନେଇଛନ୍ତି । ଏହାକୁ ମୁଁ ଉଚିତ ମନେ କରୁଛି । ସମ୍ପତ୍ତି ହେଉଛି ମୋହର କାରଣ । ଆପଣ ସେଥିରୁ ତାକୁ ହଟାଇ ଦେଇ ତାହାପ୍ରତି ଅନୁଗ୍ରହ କରିଛନ୍ତି ॥୧୬॥ ସମ୍ପଦଦ୍ୱାରା ବିଦ୍ୱାନ୍ ବ୍ୟକ୍ତି ମଧ୍ୟ ମୋହିତ ହୋଇଯାଏ । ସେହି ସମ୍ପଦ ଥିବା ପର୍ଯ୍ୟନ୍ତ କୌଣସି ବ୍ୟକ୍ତି ଆତ୍ମତତ୍ତ୍ୱ ଦର୍ଶନ କରିପାରେ ନାହିଁ । ଏଣୁ ନାରାୟଣ, ଆପଣ ବଳିପ୍ରତି ବହୁ ଅନୁଗ୍ରହ କରିଛନ୍ତି । ହେ ସର୍ବାନ୍ତର୍ଯାମୀ, ଜଗଦୀଶ୍ୱର, ମୁଁ ଆପଣଙ୍କୁ ନମସ୍କାର କରୁଛି ॥୧୭॥ ଶ୍ରୀ ଶୁକଦେବ କହିଲେ, ପରିକ୍ଷିତ, ଭଗବାନଙ୍କୁ ଏହିପରି ସ୍ତୁତି କରି ପ୍ରହ୍ଲାଦ ହାତ ଯୋଡ଼ି ଠିଆହେଲେ । ତାଙ୍କ ଆଗରେ ହିରଣ୍ୟଗର୍ଭ ବ୍ରହ୍ମା ମଧ୍ୟ ଭଗବାନଙ୍କୁ କିଛି କହିବାକୁ ଚାହିଲେ । ଏହି ସମୟରେ ରାଜା ବଳିଙ୍କର ପତ୍ନୀ ସତୀ ବିନ୍ଧ୍ୟାବଳି ଭଗବାନଙ୍କୁ ପ୍ରଣାମ କଲେ ଏବଂ ଭୟରେ ହାତ ଯୋଡ଼ି କହିଲେ, ପ୍ରଭୁ, ଆପଣ ନିଜର ଲୀଳାପାଇଁ ଏହି ତ୍ରିଭୁବନ ସୃଷ୍ଟି କରିଛନ୍ତି । ମନ୍ଦବୁଦ୍ଧି ଲୋକମାନେ ଏହି ଜଗତର ସ୍ୱାମୀ ବୋଲି ନିଜକୁ ମନେ କରନ୍ତି । ଆପଣଙ୍କର କର୍ତ୍ତୃତ୍ୱକୁ ନ ମାନି ଯେଉଁ ନିର୍ଲଜ ବ୍ୟକ୍ତିମାନେ ଆତ୍ମାଭିମାନରେ ଭାଗି ପଡ଼ନ୍ତି, ସେମାନେ ଜଗତ୍‌ର କର୍ତ୍ତା, ଭର୍ତ୍ତା ଓ ସଂହର୍ତ୍ତା ଆପଣଙ୍କୁ କ'ଣ ଦେବେ ବୋଲି ଆସ୍ପର୍ଦ୍ଧା କରିପାରିବେ ? ।୧୮-୨୦॥ ବ୍ରହ୍ମା କହିଲେ, ହେ ଭୂତଭାବନ, ଭୂତେଶ, ଦେବଦେବ, ଜଗଦୀଶ୍ୱର, ହୃତସର୍ବସ୍ୱ ଏହି ବଳିକୁ ଆପଣ ମୁକ୍ତି ଦିଅନ୍ତୁ । ସର୍ବସ୍ୱ ଦେଇଥିବା ଏହି ବଳିକୁ କେବେହେଁ ଦଣ୍ଡ ଦିଆଯାଇପାରେନା ॥୨୧॥ ସେ ନିଷ୍କପଟ ହୃଦୟରେ ଆପଣଙ୍କୁ ସମସ୍ତ ଭୂମି ଏବଂ ସ୍ୱଅର୍ଜିତ ସ୍ୱର୍ଗ ଆଦି ଲୋକମାନ ଦାନ କରି

ସାରିଛନ୍ତି ଏବଂ ସର୍ବସ୍ୱ ଦାନ କରିବା ସଙ୍ଗେସଙ୍ଗେ ନିଜର ଦେହକୁ ମଧ୍ୟ ନିବେଦନ କରିଛନ୍ତି ॥୨୨॥ ଭଗବାନ୍, କପଟରହିତ ବ୍ୟକ୍ତି ଆପଣଙ୍କ ପଦଦ୍ୱୟରେ ଜଳମାତ୍ର ଅର୍ପଣ କରି ବା ଦୂର୍ବାଙ୍କୁରଦ୍ୱାରା ଆପଣଙ୍କୁ ଅର୍ଚ୍ଚନା କରି ଉତ୍ତମ ଗତି ଲାଭ କରେ । ବଳି ତ ନିର୍ବିକାର ମନରେ ଆପଣଙ୍କୁ ତ୍ରିଭୁବନ ଦାନ କରିଛନ୍ତି । ସେ କାହିଁକି ଦୁଃଖ ଭୋଗ କରିବେ ? ॥୨୩॥

ଭଗବାନ କହିଲେ, ବ୍ରହ୍ମନ୍ ମୁଁ ଯାହା ପ୍ରତି ଅନୁଗ୍ରହ କରେ, ତା'ର ଧନକୁ ଛଡ଼ାଇ ନିଏ । କାରଣ ଧନଗର୍ବରେ ମତ୍ତ ହୋଇ ସେ ମୋତେ ଅବଜ୍ଞା କରିଥାଏ ॥୨୪॥ ଜୀବାତ୍ମା ନିଜ କର୍ମଦ୍ୱାରା ନାନା ଯୋନିରେ ଭ୍ରମଣ କରିକରି ମୋର କୃପାରୁ ମନୁଷ୍ୟଜନ୍ମ ଲାଭ କରେ ଏବଂ ସେହି ମନୁଷ୍ୟଜନ୍ମରେ ଜନ୍ମ, କର୍ମ, ବୟସ, ରୂପ, ବିଦ୍ୟା, ଐଶ୍ୱର୍ଯ୍ୟ ଆଦି ଲାଭ କରି ଯଦି ତାର ଗର୍ବ ନ ହୁଏ, ତା'ହେଲେ ତାକୁ ମୋର ଅନୁଗ୍ରହ ବୋଲି ମାନିବାକୁ ହେବ ॥୨୫-୨୬॥

ବ୍ରହ୍ମନ୍, ବଂଶର ଅଭିମାନ ବା ଧନଗର୍ବ ସମସ୍ତପ୍ରକାର ମଙ୍ଗଳର ଅନ୍ତରାୟ । କିନ୍ତୁ ମୋର ଶରଣାଗତ ଭକ୍ତମାନେ ଏଥିରେ ବିଚଳିତ ହୁଅନ୍ତି ନାହିଁ ॥୨୭॥ ଏହି ବଳି ଦାନବ ଓ ଦୈତ୍ୟମାନଙ୍କର ଅଗ୍ରଣୀ ଓ କୀର୍ତ୍ତିବର୍ଦ୍ଧକ, କିନ୍ତୁ ଯେଉଁ ମାୟାକୁ କେହି ଜୟ କରିପାରନ୍ତି ନାହିଁ, ସେ ତାହାକୁ ଜୟ କରିପାରିଛନ୍ତି । ଯେତେ ଦୁଃଖ ହେଲେ ମଧ୍ୟ ସେ ତଦ୍ୱାରା ପ୍ରଭାବିତ ହୋଇ ନାହାନ୍ତି ॥୨୮॥ ମୁଁ ଏହାଙ୍କର ଧନ ଓ ରାଜପଦ ଛଡ଼ାଇ ନେଲି, ବହୁପ୍ରକାର ତିରସ୍କାର କଲି, ବରୁଣପାଶରେ ଆବଦ୍ଧ କଲି, ଜ୍ଞାତିମାନେ ତାଙ୍କୁ ଛାଡ଼ି ଚାଲିଗଲେ ଏବଂ ବହୁ ଦୁଃଖ ତାଙ୍କୁ ଭୋଗ କରିବାକୁ ପଡ଼ିଲା, ଗୁରୁ ଶୁକ୍ରାଚାର୍ଯ୍ୟ ତାଙ୍କୁ ଭର୍ତ୍ସନା କଲେ, ଏପରିକି ଅଭିଶାପ ଦେଲେ, କିନ୍ତୁ ନିଜର ପ୍ରତିଶ୍ରୁତିରେ ଅଟଳ ରହି ସେ ସତ୍ୟକୁ ଛାଡ଼ିଲେ ନାହିଁ । ମୁଁ ଏହାଙ୍କୁ ବହୁତ ଛଳପୂର୍ଣ୍ଣ ଧର୍ମକଥା କହିଲି, କିନ୍ତୁ ସତ୍ୟବାଦୀ ବଳି ସତ୍ୟଧର୍ମ ତ୍ୟାଗ କଲେ ନାହିଁ ॥୨୯-୩୦॥ ତେଣୁ ମୁଁ ତାଙ୍କୁ ଏପରି ସ୍ଥାନ ଦେଉଛି, ଯାହାକି ଦେବତାମାନଙ୍କୁ ଦୁଷ୍ପ୍ରାପ୍ୟ । ସାବର୍ଣ୍ଣି ମନ୍ୱନ୍ତରରେ ସେ ସ୍ୱର୍ଗର ଅଧିପତି ଇନ୍ଦ୍ର ହେବେ ॥୩୧॥ ସେପର୍ଯ୍ୟନ୍ତ ସୁତଳ ଲୋକରେ ସେ ବାସ କରିବେ । ମୋର କୃପାଦୃଷ୍ଟିଦ୍ୱାରା ସେ ସ୍ଥାନର ନିବାସୀମାନଙ୍କପାଇଁ ମନର ପୀଡ଼ା, ଦେହର ପୀଡ଼ା, ଗ୍ଲାନି, ଆଳସ୍ୟ, ଶତ୍ରୁଠାରୁ ପରାଭବ ଆଦି କୌଣସି ଉପଦ୍ରବର ସମ୍ଭାବନା ରହିବ ନାହିଁ ॥୩୨॥ ବଳିଙ୍କୁ ଲକ୍ଷ୍ୟ କରି ଶ୍ରୀ ଭଗବାନ କହିଲେ, ମହାରାଜ ଇନ୍ଦ୍ରସେନ, ତୁମର କଲ୍ୟାଣ ହେଉ । ତୁମେ ସ୍ୱଜନଙ୍କ ସହିତ ସ୍ୱର୍ଗବାସୀ ଦେବତାମାନଙ୍କର କାମ୍ୟ ସୁତଳଲୋକରେ ଯାଇ ବାସ କର ॥୩୩॥ ଅନ୍ୟମାନଙ୍କ କଥା ଦୂରେ ଥାଉ, ଇନ୍ଦ୍ର ଆଦି ଲୋକପାଳମାନେ ତୁମକୁ ପରାସ୍ତ କରିପାରିବେ ନାହିଁ । ଯେଉଁ ଦୈତ୍ୟମାନେ ତୁମର ଶାସନକୁ ଲଂଘନ କରିବେ, ମୋର ଏହି ଚକ୍ର ସେମାନଙ୍କୁ ଛେଦନ କରିବ ॥୩୪॥ ମୁଁ ତୁମର ଅନୁଚରମାନଙ୍କୁ ଓ ତୁମର ସମସ୍ତ ଭୋଗ୍ୟ ପଦାର୍ଥକୁ ସମସ୍ତପ୍ରକାର ବିଘ୍ନରୁ ରକ୍ଷା କରିବି । ବୀର, ତୁମେ ସେଠାରେ ସବୁ ସମୟରେ ମୋତେ ପାଖରେ ଦେଖିପାରିବ ॥୩୫॥ ଦାନବ ଓ ଦୈତ୍ୟମାନଙ୍କ ସଂସର୍ଗରେ ଆସି ତୁମର ଯାହାକିଛି ଆସୁରିକ ଭାବ ରହିଥିବ, ମୋର ପ୍ରଭାବରେ ତାହା ତୁରନ୍ତ ନଷ୍ଟ ହୋଇଯିବ ॥୩୬॥

## ତ୍ରୟୋବିଂଶ ଅଧ୍ୟାୟ

# ବଳିଙ୍କର ସୁତଳଯାତ୍ରା

ଶ୍ରୀ ଶୁକଦେବ କହିଲେ, ପୁରାଣପୁରୁଷ ଭଗବାନ ଏହିପରି କହିବାରୁ ମହାନୁଭାବ, ସମସ୍ତ ସାଧୁଙ୍କର ପ୍ରଶଂସନୀୟ ଦୈତ୍ୟରାଜ ବଳିଙ୍କର ଆଖି ଛଳ ଛଳ ହୋଇଗଲା, ପ୍ରେମରେ କଣ୍ଠ ଭରିଗଲା । ସେ ଗଦ୍‌ଗଦ ସ୍ୱରରେ ଭଗବାନଙ୍କୁ କହିବାକୁ ଲାଗିଲେ--॥୧॥ ଶ୍ରୀ ବଳି କହିଲେ, ପ୍ରଭୁ, ଆପଣଙ୍କୁ ପ୍ରଣାମ କରିବାପାଇଁ ମୁଁ ଉଦ୍ୟମ ମାତ୍ର କରିଛି, କିନ୍ତୁ ଶରଣାଗତ

ଭକ୍ତମାନଙ୍କର ବାଞ୍ଛିତ ଫଳ ଆପଣ ମୋତେ ଦାନ କଲେ । ଦେବତାମାନେ ଓ ଲୋକପାଳମାନେ ଏହା ପୂର୍ବରୁ ଆପଣଙ୍କର ଯେଉଁ ଅନୁଗ୍ରହ ପାଇ ନ ଥିଲେ, ମୁଁ ଅଧମ ଅସୁର ହୋଇ ମଧ୍ୟ ସେହି ଅନୁଗ୍ରହ ଲାଭ କରି ଆପଣଙ୍କର କୃପାପାତ୍ର ହୋଇଛି ॥୨॥ ଶ୍ରୀ ଶୁକଦେବ କହିଲେ, ପରିକ୍ଷିତ, ଏହା କହିବା ସଙ୍ଗେ ସଙ୍ଗେ ବଳି ବରୁଣଙ୍କ ପାଶରୁ ମୁକ୍ତ ହୋଇଗଲେ ଏବଂ ବାମନରୂପୀ ଭଗବାନଙ୍କୁ, ଶ୍ରୀଶଙ୍କରଙ୍କୁ ଓ ବ୍ରହ୍ମାଙ୍କୁ ପ୍ରଣାମ କରି ଆନନ୍ଦମନରେ ଅସୁରମାନଙ୍କ ସହିତ ସୁତଳରେ ପ୍ରବେଶ କଲେ ॥୩॥ ଭଗବାନ ବଳିଙ୍କଠାରୁ ସ୍ୱର୍ଗରାଜ୍ୟ ଆଣି ଇନ୍ଦ୍ରଙ୍କୁ ଫେରାଇଦେଲେ । ଏହିପରି ଅଦିତିଙ୍କର ଅଭିଳାଷ ପୂର୍ଣ୍ଣ କରି ସେ ସମସ୍ତ ଜଗତକୁ ଶାସନ କଲେ ॥୪॥ ଯେତେବେଳେ ପ୍ରହ୍ଲାଦ ଦେଖିଲେ ଯେ, ନିଜର ବଂଶଧର ଓ ପୌତ୍ର ବଳି ବନ୍ଧନମୁକ୍ତ ହୋଇ ଭଗବାନଙ୍କ ଅନୁଗ୍ରହ ଲାଭ କରିଛନ୍ତି, ସେ ଭଗବାନଙ୍କୁ ଏହିପରି ସ୍ତୁତି କରିବାକୁ ଲାଗିଲେ-- ॥୫॥

ଶ୍ରୀ ପ୍ରହ୍ଲାଦ କହିଲେ, ଭଗବାନ୍, ବିଶ୍ୱର ବନ୍ଦନୀୟ ବ୍ରହ୍ମାଦି ଦେବତାମାନେ ଆପଣଙ୍କ ପାଦ ବନ୍ଦନା କରନ୍ତି । ଆପଣ ଯେ ଆମ ଅସୁରମାନଙ୍କର ଦ୍ୱାରପାଳ ହେଲେ, ସେପରି ଅନୁଗ୍ରହ ବ୍ରହ୍ମା, ଲକ୍ଷ୍ମୀ ଏବଂ ଶିବ ଆଦି ପାଇନାହାନ୍ତି । ଅନ୍ୟମାନଙ୍କ କଥା ବା କ'ଣ କହିବା ? ॥୬॥ ଶରଣବତ୍ସଳ, ବ୍ରହ୍ମାଦି ଦେବତାମାନେ ଯାହାଙ୍କ ପାଦପଦ୍ମ ମକରନ୍ଦ ସେବା କରିବାଦ୍ୱାରା ଅଶେଷ ଐଶ୍ୱର୍ଯ୍ୟ ଲାଭ କରନ୍ତି, ଆପଣ ହେଉଛନ୍ତି ସେହି ଭଗବାନ । ଖଳସ୍ୱଭାବ ଦୁର୍ବୃତ୍ତ ଅସୁରମାନଙ୍କ ପ୍ରତି କୃପାଦୃଷ୍ଟି ପକାଇ ଆପଣ କିପରି ସେମାନଙ୍କ ଦ୍ୱାରପାଳ ହୋଇଗଲେ ? ॥୭॥ ଆପଣ ନିଜର ଅପାର ଯୋଗମାୟାଦ୍ୱାରା ସୃଷ୍ଟିର ଲୀଳା ରଚନା କରିଛନ୍ତି । ଆପଣ ସର୍ବଜ୍ଞ, ସମସ୍ତ ଜୀବଙ୍କର ଚେତନାସଦୃଶ । ଆପଣ ସମଦର୍ଶୀ ହେଲେ ମଧ୍ୟ ଭକ୍ତପ୍ରିୟ ହୋଇଥିବାରୁ ଆପଣଙ୍କ ସ୍ୱଭାବରେ ବୈଷମ୍ୟ ଦେଖାଯାଏ । ଆପଣ ଭକ୍ତର ସମସ୍ତ ବାଞ୍ଛା ପୂରଣ କରନ୍ତି, ଏହା ହେଉଛି ଆପଣଙ୍କ ଆଶ୍ଚର୍ଯ୍ୟଜନକ ଲୀଳାର ବିଶେଷତ୍ୱ ॥୮॥

ଭଗବାନ କହିଲେ, ବତ୍ସ ପ୍ରହ୍ଲାଦ, ତୁମର ମଙ୍ଗଳ ହେଉ । ତୁମେ ମଧ୍ୟ ସୁତଳ ଧାମକୁ ଯାତ୍ରା କର । ସେଠାରେ ନିଜର ପୌତ୍ର ବଳିଙ୍କ ସହିତ ଆନନ୍ଦରେ ବାସ କରି ଜ୍ଞାତିମାନଙ୍କର ପ୍ରୀତି ସମ୍ପାଦନ କର ॥୯॥ ସେଠାରେ ତୁମେ ପ୍ରତିଦିନ ମୋତେ ହାତରେ ଗଦା ଧରି ଠିଆ ହୋଇଥିବାର ଦେଖିବ । ମୋର ଦର୍ଶନର ଆନନ୍ଦରେ ମଜ୍ଜିତ ହୋଇ ତୁମେ ସମସ୍ତ କର୍ମବନ୍ଧନକୁ ଛିନ୍ନ କରିବ । ଶ୍ରୀ ଶୁକଦେବ କହିଲେ, ପରିକ୍ଷିତ, ସମସ୍ତ ଅସୁରଙ୍କ ମଧ୍ୟରେ ଶ୍ରେଷ୍ଠ ବିଶୁଦ୍ଧବୁଦ୍ଧି ପ୍ରହ୍ଲାଦ ମୁଣ୍ଡ ନୁଆଁଇ ହାତଯୋଡ଼ି ଭଗବାନଙ୍କର ଆଜ୍ଞାକୁ ଶିରୋଧାର୍ଯ୍ୟ କଲେ ଏବଂ ଭଗବାନ ବିଷ୍ଣୁଙ୍କ ଅନୁମତିକ୍ରମେ ତାଙ୍କୁ ପ୍ରଦକ୍ଷିଣ ଓ ପ୍ରଣାମ କରି ବଳିଙ୍କ ସହିତ ସୁତଳ ଲୋକରେ ପ୍ରବେଶ କଲେ ॥୧୧-୧୨॥

ପରିକ୍ଷିତ, ଏହାପରେ ଭଗବାନ ଶ୍ରୀହରି ଋତ୍ୱିଜମାନଙ୍କ ସଭାରେ ବସିଥିବା ଶୁକ୍ରାଚାର୍ଯ୍ୟଙ୍କୁ ଡାକି କହିଲେ, ବ୍ରହ୍ମନ୍, ଯଜ୍ଞାନୁଷ୍ଠାନ କରୁଥିବା ଆପଣଙ୍କ ଶିଷ୍ୟର ଯେଉଁ ଯଜ୍ଞକାର୍ଯ୍ୟ ଅପୂର୍ଣ୍ଣ ରହିଛି ତାହା ଆପଣ ପୂରଣ କରନ୍ତୁ । କାରଣ କର୍ମାନୁଷ୍ଠାନରେ ଯାହା କିଛି ଭୁଲଭ୍ରାନ୍ତି ରହିଯାଇଥାଏ, ତାହା ବ୍ରାହ୍ମଣମାନଙ୍କ କୃପାଦୃଷ୍ଟିରେ ସୁଧୁରି ଯାଏ ॥୧୩-୧୪॥ ଶୁକ୍ରାଚାର୍ଯ୍ୟ କହିଲେ, ଆପଣ ସ୍ୱୟଂ ଯଜ୍ଞେଶ୍ୱର ଯଜ୍ଞପୁରୁଷ । ଯେ ତାଙ୍କର ସମସ୍ତ କର୍ମ ସମର୍ପଣ ପୂର୍ବକ ଆପଣଙ୍କୁ ପୂଜା କରିସାରିଛନ୍ତି, ତାଙ୍କ ସେଇ କର୍ମରେ ଆଉ କ'ଣ ଅସମ୍ପୂର୍ଣ୍ଣତା ରହିପାରେ ? ॥୧୫॥ କାରଣ ମନ୍ତ୍ର ତନ୍ତ୍ର, ଦେଶ, କାଳ, ପାତ୍ର ଏବଂ ବସ୍ତୁ ଆଦିରେ ଭୁଲଭ୍ରାନ୍ତି ବା ଅସମ୍ପୂର୍ଣ୍ଣତା ଥାଏ । ମାତ୍ର ତାହା ଆପଣଙ୍କ ନାମ ସଂକୀର୍ତ୍ତନଦ୍ୱାରା ଶୁଦ୍ଧ ଓ ସମ୍ପୂର୍ଣ୍ଣ ହୋଇଯାଏ ॥୧୬॥ ମହିମାମୟ, ତଥାପି ଆପଣ ଯେତେବେଳେ କହିଲେଣି, ମୁଁ ଆପଣଙ୍କର ଆଦେଶ ପାଳନ କରିବି । ଆପଣଙ୍କର ଆଜ୍ଞା ପାଳନ ହିଁ ମନୁଷ୍ୟର ଧର୍ମ ॥୧୭॥

ଶ୍ରୀ ଶୁକଦେବ କହିଲେ, ଶୁକ୍ରାଚାର୍ଯ୍ୟ ଭଗବାନ ଶ୍ରୀହରିଙ୍କର ଆଜ୍ଞା ପାଳନ କରି ଅନ୍ୟ ବ୍ରହ୍ମର୍ଷିମାନଙ୍କ ସହିତ ବଳିଙ୍କ ଯଜ୍ଞରେ ଯାହାକିଛି ଅପୂର୍ଣ୍ଣ ଥିଲା, ତାହା ପୂର୍ଣ୍ଣ କରିଦେଲେ ॥୧୮॥ ପରିକ୍ଷିତ, ବାମନାବତାରରେ ଭଗବାନ ଶ୍ରୀହରି ଏହିପରି ବଳିଙ୍କଠାରୁ ତ୍ରିପାଦ ଭୂମି ଭିକ୍ଷା କରି ଶତ୍ରୁଗଣଙ୍କଦ୍ୱାରା ଅଧିକୃତ ସ୍ୱର୍ଗରାଜ୍ୟ ନିଜର ବଡ଼ଭାଇ ଇନ୍ଦ୍ରଙ୍କୁ ଅର୍ପଣ କଲେ ॥୧୯॥ ଏହାପରେ ପ୍ରଜାପତିମାନଙ୍କର ଈଶ୍ୱର ବ୍ରହ୍ମା କଶ୍ୟପ ଓ ଅଦିତିଙ୍କର ପ୍ରୀତିବର୍ଦ୍ଧନପାଇଁ ଓ ନିଖିଳଲୋକର ମଙ୍ଗଳନିମନ୍ତେ

ଦେବର୍ଷିଗଣ, ପିତୃଗଣ, ମନୁ, ଦକ୍ଷ, ଭୃଗୁ, ଅଙ୍ଗିରା, ସନତ୍‌କୁମାର ଓ ଶ୍ରୀଶଙ୍କରଙ୍କ ସହିତ ମିଳିତ ହୋଇ ଭଗବାନ ବାମନଙ୍କୁ ସମସ୍ତ ଲୋକ ଓ ଲୋକପାଳଙ୍କର ଅଧିପତି ରୂପେ ଅଭିଷିକ୍ତ କଲେ ।।୨୦-୨୧।। ପରିକ୍ଷିତ, ବେଦ ଓ ଦେବଗଣ, ଧର୍ମ, ଯଶ, ଲକ୍ଷ୍ମୀ, ମଙ୍ଗଳ, ବ୍ରତ, ସ୍ୱର୍ଗ ଏବଂ ଅପବର୍ଗ -- ଏହି ସମସ୍ତଙ୍କର ଦକ୍ଷ ରକ୍ଷକରୂପେ ଏବଂ ସମସ୍ତଙ୍କର ମଙ୍ଗଳ ନିମନ୍ତେ ବ୍ରହ୍ମା ବାମନ ଭଗବାନଙ୍କୁ ଉପେନ୍ଦ୍ର ପଦ ଦାନ କଲେ । ଏହାଦ୍ୱାରା ସମସ୍ତ ପ୍ରାଣୀ ଆନନ୍ଦିତ ହେଲେ ।।୨୨-୨୩।। ଏହାପରେ ବ୍ରହ୍ମାଙ୍କର ଅନୁମତି ନେଇ ଦେବରାଜ ଇନ୍ଦ୍ର ସମସ୍ତ ଲୋକପାଳଙ୍କ ସହିତ ବାମନ ଭଗବାନଙ୍କୁ ଆଗରେ ରଖି ବିମାନ ଆରୋହଣପୂର୍ବକ ସ୍ୱର୍ଗଧାମକୁ ଯାତ୍ରା କଲେ ।।୨୪।। ତିନିଲୋକର ରାଜ୍ୟସମ୍ପଦ ଲାଭ କରି ଏବଂ ଉପେନ୍ଦ୍ରଙ୍କ ବାହୁବଳରେ ସୁରକ୍ଷିତ ହୋଇ ଦେବରାଜ ଇନ୍ଦ୍ରଙ୍କର ଆନନ୍ଦ ବଢ଼ିଗଲା ।।୨୫।। ପରିକ୍ଷିତ, ବ୍ରହ୍ମା, ଶଙ୍କର, ସନତ୍‌କୁମାର, ଭୃଗୁ ଆଦି ମୁନିମାନେ, ପିତୃଗଣ, ପ୍ରାଣୀମାନେ ଏବଂ ଯେଉଁ ସିଦ୍ଧ ଓ ବୈମାନିକମାନେ ସେଠାରେ ଥିଲେ, ସମସ୍ତେ ଭଗବାନଙ୍କର ଏହି ଅତ୍ୟନ୍ତ ଅଦ୍ଭୁତ ଓ ଅତିଶୟ ମହତ୍ କର୍ମକୁ ପ୍ରଶଂସା କରିକରି ନିଜନିଜ ଧାମକୁ ଚାଲିଗଲେ ଏବଂ ସମସ୍ତେ ଅଦିତିଙ୍କୁ ପ୍ରଶଂସା କରିବାକୁ ଲାଗିଲେ ।।୨୬-୨୭।। କୁଳନନ୍ଦନ ପରିକ୍ଷିତ, ଭଗବାନ ବାମନଙ୍କର ଏହି ସମସ୍ତ ଚରିତ ମୁଁ ତୁମ ଆଗରେ ବ୍ୟାଖ୍ୟାନ କଲି । ଏହାକୁ ଯେ ଶ୍ରବଣ କରେ, ତାହାର ପାପ ନାଶ ହୋଇଯାଏ । ଭଗବାନଙ୍କର ଅନନ୍ତ ଲୀଳା ଓ ଅପାର ମହିମାକୁ ଯେ ବର୍ଣ୍ଣନା କରି ଶେଷ କରିପାରିବ ବୋଲି ଭାବେ, ସେ ପୃଥିବୀର ସମସ୍ତ ଅଣୁ ପରମାଣୁକୁ ଗଣନା କରିବାପରି ଦୁଃସାହସ କରେ । ଭଗବାନଙ୍କ ସମ୍ପର୍କରେ ମନ୍ତ୍ରଦ୍ରଷ୍ଟା ମହର୍ଷି ବଶିଷ୍ଠ ବେଦରେ କହିଛନ୍ତି ଯେ, ଏପରି ପୁରୁଷ କେହି ଜନ୍ମ ହୋଇଛି ବା ଏବେ ଜନ୍ମିଛି ଯେ କି ବିଷ୍ଣୁଙ୍କର ମହିମା ବର୍ଣ୍ଣନା କରି ଶେଷ କରିପାରିବ ? ।।୨୮-୨୯।। ଯେଉଁ ବ୍ୟକ୍ତି ଅଦ୍ଭୁତକର୍ମା ଦେବଦେବ ଶ୍ରୀହରିଙ୍କର ବାମନାବତାର କଥା ଶ୍ରବଣ କରେ, ସେ ପରମଗତି ଲାଭ କରେ ।।୩୦।। ଦେବଯଜ୍ଞ, ପିତୃଯଜ୍ଞ, ମନୁଷ୍ୟଯଜ୍ଞ ଆଦି ଯେ କୌଣସି କର୍ମ ଅନୁଷ୍ଠାନ କଲାବେଳେ ଯଦି ଭଗବାନଙ୍କର ଏହି ଲୀଳା କୀର୍ତ୍ତନ କରାଯାଏ, ତା'ହେଲେ ସେଇ କର୍ମ ସଫଳରୂପେ ସମ୍ପନ୍ନ ହୁଏ । ଏହା ହେଉଛି ମହାତ୍ମାମାନଙ୍କ ନିଜର ଅନୁଭୂତି ।।୩୧।।

## ଚତୁର୍ବିଂଶ ଅଧ୍ୟାୟ

## ମତ୍ସ୍ୟାବତାର

ରାଜା ପରିକ୍ଷିତ କହିଲେ, ଶ୍ରୀହରି ଆଶ୍ଚର୍ଯ୍ୟଜନକ କର୍ମମାନ କରନ୍ତି । ସେ ପ୍ରଥମ ଅବତାରରେ ମାୟାଦ୍ୱାରା ମତ୍ସ୍ୟରୂପ ଧାରଣ କରିଥିଲେ । ଜୀବଭାବରେ ମତ୍ସ୍ୟକୁ ଲୋକେ ଘୃଣା କରନ୍ତି । ତାହା ଦୁଃସହ ତାମସ ପ୍ରକୃତିଯୁକ୍ତ । ସ୍ୱୟଂ ଭଗବାନ କିପରି କର୍ମବନ୍ଧନରେ ପଡ଼ିବା ଭଳି ଏହି ରୂପ ଗ୍ରହଣ କଲେ ? ସମସ୍ତ ଲୋକଙ୍କୁ ସୁଖକର ଉତ୍ତମଶ୍ଳୋକ ଭଗବାନଙ୍କର ଏହି ଚରିତ ମୁଁ ଶୁଣିବାକୁ ଇଚ୍ଛା କରୁଛି । ବ୍ରହ୍ମର୍ଷି, ଆପଣଙ୍କଠାରୁ ବିସ୍ତାରିତ ଭାବରେ ଏହା ମୁଁ ଶୁଣିବାକୁ ଚାହୁଁଚି ।।୧-୩।।

ସୂତ କହିଲେ, ବିଷ୍ଣୁଭକ୍ତ ପରିକ୍ଷିତ ଏହିପରି କହିବାରୁ ବ୍ୟାସପୁତ୍ର ଶୁକଦେବ ମତ୍ସ୍ୟାବତାରରେ ଭଗବାନ ଯାହାସବୁ କରିଥିଲେ, ତାହା ବର୍ଣ୍ଣନା କଲେ ।।୪।।

ଶ୍ରୀ ଶୁକଦେବ କହିଲେ, ଗୋ-ବ୍ରାହ୍ମଣ, ଦେବତା, ସାଧୁ ମହାତ୍ମା, ବେଦ, ଧର୍ମ ଓ ଅର୍ଥର ରକ୍ଷା ପାଇଁ ଈଶ୍ୱର ଶରୀର ଧାରଣ କରନ୍ତି ।।୫।। ଭଗବାନ ସର୍ବଶକ୍ତିମାନ୍ । ସେ ଉଚ୍ଚ, ନୀଚ ସମସ୍ତ ପ୍ରାଣୀଙ୍କ ମଧ୍ୟରେ ବାୟୁପରି ବିଚରଣ କରନ୍ତି । କିନ୍ତୁ ସେମାନଙ୍କ ମଧ୍ୟରେ ରହି ସେ ଉଚ୍ଚ ବା ନୀଚ ହୁଅନ୍ତି ନାହିଁ । କାରଣ ତାଙ୍କର କୌଣସି ଗୁଣ ନ ଥାଏ, ସେ ନିର୍ଗୁଣ ।।୬।। ରାଜା,

ଅତୀତରେ ଏକ କଳ୍ପର ଶେଷରେ ବ୍ରହ୍ମା ନିଦ୍ରା ଯାଇଥିବାରୁ ଏକ ପ୍ରଳୟ ଘଟି ପୃଥିବୀସମେତ ସମସ୍ତ ଲୋକ ସମୁଦ୍ରଜଳରେ ନିମଗ୍ନ ହେଲେ । କାଳବଶତଃ ବ୍ରହ୍ମାଙ୍କ ପାଖରେ ହୟଗ୍ରୀବ ନାମକ ଏକ ବଳବାନ୍ ଅସୁର ଉପସ୍ଥିତ ଥିଲା । ସେ ନିଦ୍ରାଗତ ବ୍ରହ୍ମାଙ୍କର ମୁଖନିଃସୃତ ବେଦମାନଙ୍କୁ ଅପହରଣ କରିନେଲା ॥୭-୮॥ ସର୍ବଶକ୍ତିମାନ୍ ଭଗବାନ ଶ୍ରୀହରି ଦାନବେନ୍ଦ୍ର ହୟଗ୍ରୀବର ଏହି କାର୍ଯ୍ୟ ଜାଣିପାରି ମତ୍ସ୍ୟରୂପ ଧାରଣ କଲେ ॥୯॥ ସେତେବେଳେ ସତ୍ୟବ୍ରତ ନାମକ ଏକ ମହାନ୍ ହରିଭକ୍ତ ରାଜର୍ଷି ଜଳ ଭକ୍ଷଣ କରି ତପସ୍ୟା କରୁଥିଲେ ॥୧୦॥ ରାଜର୍ଷି ସତ୍ୟବ୍ରତ ଏହି ମହାକଳ୍ପରେ ବିବସ୍ୱାନ୍‌ଙ୍କ ପୁତ୍ର ଶ୍ରାଦ୍ଧଦେବ ନାମରେ ବିଖ୍ୟାତ ହେଲେ ଏବଂ ଶ୍ରୀହରିଙ୍କଦ୍ୱାରା ସେହି କଳ୍ପର ମନୁପଦରେ ଅଭିଷିକ୍ତ ହେଲେ ॥୧୧॥

ଏକଦା କୃତମାଳା ନାମକ ଏକ ନଦୀରେ ରାଜର୍ଷି ସତ୍ୟବ୍ରତ ଜଳତର୍ପଣ କରୁଥିବାବେଳେ ତାଙ୍କ ପାଣି ଆଞ୍ଜୁଳାରେ ଗୋଟିଏ ଛୋଟମାଛ ଦେଖାଗଲା ॥୧୨॥ ପରିକ୍ଷିତ, ଦ୍ରାବିଡ଼ ଦେଶର ରାଜା ସତ୍ୟବ୍ରତ ପାଣି ଆଞ୍ଜୁଳାସହ ସେ ମାଛଟିକୁ ନଦୀଜଳକୁ ପକାଇଦେଲେ ॥୧୩॥ ସେତେବେଳେ ମାଛଟି ଅତି କାତର ସ୍ୱରରେ ମହାକାରୁଣିକ ରାଜା ସତ୍ୟବ୍ରତଙ୍କୁ କହିଲା, ହେ ଦୀନବତ୍ସଳ ରାଜା, ଜଳଜନ୍ତୁମାନେ ତାଙ୍କ ନିଜ ଜାତିର ଛୋଟ ଜୀବମାନଙ୍କୁ ଖାଇପକାନ୍ତି । ମୁଁ ସେମାନଙ୍କ ଭୟରେ ବ୍ୟାକୁଳ ହୋଇ ଆପଣଙ୍କ ପାଖକୁ ଆସିଥିଲି । ଆପଣ ପୁଣି ମୋତେ ସେହି ନଦୀଜଳରେ କିପରି ପକାଇ ଦେଲେ ? ॥୧୪॥ ରାଜା ଜାଣି ନ ଥିଲେ ଯେ, ସ୍ୱୟଂ ଭଗବାନ ପ୍ରସନ୍ନ ହୋଇ ତାଙ୍କୁ ଅନୁଗ୍ରହ କରିବାକୁ ଆସିଛନ୍ତି । ସେ ଏହି ମାଛଟିକୁ ରକ୍ଷା କରିବାପାଇଁ ମନେ ମନେ ସଂକଳ୍ପ କଲେ ॥୧୫॥ ଦୟାଳୁ ରାଜା ମାଛର କରୁଣବାକ୍ୟ ଶୁଣି ନିଜର କମଣ୍ଡଳୁ ଜଳରେ ତାକୁ ରଖି ଆଶ୍ରମକୁ ଘେନି ଆସିଲେ ॥୧୬॥ ଗୋଟିଏ ରାତି ମଧ୍ୟରେ କମଣ୍ଡଳୁରେ ଛୋଟମାଛଟି ଏପରି ବଢ଼ିଗଲା ଯେ ତାକୁ ସେଠାରେ ଜାଗା ହେଲା ନାହିଁ । ସେ ରାଜାଙ୍କୁ କହିଲା, ଏହି ଛୋଟ କମଣ୍ଡଳୁମଧ୍ୟରେ ମୋତେ ରହିବାକୁ କଷ୍ଟ ହେଉଛି । ଆପଣ ବିପୁଳ ଜଳଥିବା ଏକ ସ୍ଥାନର କଳ୍ପନା କରନ୍ତୁ, ଯେଉଁଠି ମୁଁ ସୁଖରେ ରହିପାରିବି ॥୧୭-୧୮॥ ରାଜା ସତ୍ୟବ୍ରତ, କମଣ୍ଡଳୁରୁ ମାଛକୁ ଆଣି ଏକ ପାଣିକୁଣ୍ଡରେ ରଖିଦେଲେ । କିନ୍ତୁ ସେଠାରେ ଦୁଇ ଘଡ଼ି ମଧ୍ୟରେ ସେ ତିନି ହାତ ବଢ଼ିଗଲା ॥୧୯॥ ମାଛ କହିଲା ରାଜା, ଏହି କୁଣ୍ଡ ମୋ ପାଇଁ ଯଥେଷ୍ଟ ହେଉ ନାହିଁ; ମୁଁ ଆପଣଙ୍କର ଶରଣାଗତ । ମୁଁ କିପରି ସୁଖରେ ରହିପାରିବି ସେଥିପାଇଁ ଏକ ବଡ଼ସ୍ଥାନର ବ୍ୟବସ୍ଥା କରନ୍ତୁ ॥୨୦॥ ପରିକ୍ଷିତ, ସତ୍ୟବ୍ରତ ସେଠାରୁ ମାଛକୁ ଉଠାଇ ନେଇ ଏକ ପୋଖରୀ ଭିତରେ ଛାଡ଼ିଦେଲେ । କିନ୍ତୁ ଅଳ୍ପ ସମୟ ମଧ୍ୟରେ ସେ ଏପରି ବଢ଼ିଗଲା ଯେ ଏକ ମସ୍ତବଡ଼ ମାଛ ହୋଇ ସାରା ପୋଖରୀକୁ ଅଧିକାର କରିନେଲା ॥୨୧॥ ପୋଖରୀରେ ରହି ମାଛ କହିଲା, ରାଜା, ଏହି ପୋଖରୀ ମୋର ରହିବାପାଇଁ ସୁବିଧାଜନକ ହେଉ ନାହିଁ; ଆପଣ ମୋ ପାଇଁ ପାଣି ଶୁଖୁ ନ ଥିବା ଏକ ବଡ଼ହ୍ରଦର ବ୍ୟବସ୍ଥା କରନ୍ତୁ ॥୨୨॥ ମାଛଟି ଏହିପରି କହିବାରୁ ରାଜା ତାକୁ ନେଇ ଏକ ହ୍ରଦରେ ଛାଡ଼ିଲେ; କିନ୍ତୁ ହ୍ରଦମଧ୍ୟ ତାକୁ ଯଥେଷ୍ଟ ହେଲା ନାହିଁ । ରାଜା ଗୋଟାକ ପରେ ଗୋଟାଏ ଯେତେବଡ଼ ଜଳାଶୟରେ ଛାଡ଼ିଲେ ମଧ୍ୟ ମାଛ ଅତିଶୟ ବଢ଼ିବାକୁ ଲାଗିବାରୁ ଶେଷରେ ସେ ମାଛଟିକୁ ସମୁଦ୍ରରେ ନିକ୍ଷେପ କଲେ ॥୨୩॥ ସମୁଦ୍ରରେ ଛାଡ଼ିବା ସମୟରେ ମାଛ କହିଲା, ବୀର ସତ୍ୟବ୍ରତ, ସମୁଦ୍ରରେ ବହୁତ ବଡ଼ବଡ଼ ବଳବାନ ମଗର ରହିଛନ୍ତି । ସେମାନେ ମୋତେ ଖାଇଯିବେ । ଅତଏବ ଆପଣ ମୋତେ ସମୁଦ୍ର ଜଳରେ ଛାଡ଼ନ୍ତୁ ନାହିଁ ॥୨୪॥

ମାଛର ଏହି ମଧୁର କଥା ଶୁଣି ରାଜା ମୁଗ୍ଧ ହୋଇଗଲେ । ରାଜା କହିଲେ ମତ୍ସ୍ୟରୂପ ଧରି ଆପଣ ମୋତେ ମୋହିତ କରୁଛନ୍ତି । ଆପଣ କିଏ ? ॥୨୫॥ ଆପଣ ଦିନକ ଭିତରେ ବଢ଼ି ଶହେ ଯୋଜନ ବିସ୍ତୃତ ହ୍ରଦକୁ ପୂର୍ଣ୍ଣ କରିଦେଲେ । ମୁଁ ତ ଏପରି ଶକ୍ତିଶାଳୀ ଜଳଚର ପ୍ରାଣୀ କେବେ ଦେଖି ନାହିଁ ବା ଏପରି ଜୀବ ଅଛି ବୋଲି ଶୁଣି ନାହିଁ ॥୨୬॥ ମୁଁ ନିଶ୍ଚିତ ଭାବରେ ଜାଣିପାରୁଛି ଯେ ଆପଣ ସାକ୍ଷାତ୍ ସର୍ବଶକ୍ତିମାନ୍ ଶ୍ରୀହରି, ସର୍ବାନ୍ତର୍ଯାମୀ ଓ ଅବିନଶ୍ୱର ନାରାୟଣ । ଜୀବମାନଙ୍କପ୍ରତି କୃପାକରି ଆପଣ ଏହି ଜଳଚର ରୂପ ଧାରଣ କରିଛନ୍ତି ॥୨୭॥ ପୁରୁଷୋତ୍ତମ, ଆପଣ ଜଗତ୍‌ର ଉତ୍ପତ୍ତି, ସ୍ଥିତି ଏବଂ ପ୍ରଳୟର ସ୍ୱାମୀ ।

ଆପଣଙ୍କୁ ମୁଁ ନମସ୍କାର କରୁଛି । ଆମପରି ଶରଣାଗତ ଭକ୍ତମାନଙ୍କପାଇଁ ଆପଣ ହିଁ ଏକମାତ୍ର ଆଶ୍ରୟ ॥୨୮॥ ପ୍ରଭୁ, ଆପଣଙ୍କର ସମସ୍ତ ଅବତାର ଜୀବମାନଙ୍କର ମଙ୍ଗଳପାଇଁ ହୋଇଥାଏ । ଆପଣ କେଉଁ କାର୍ଯ୍ୟ କରିବା ପାଇଁ ଏହି ମତ୍ସ୍ୟ ରୂପ ଧାରଣ କରିଛନ୍ତି, ତାହା ମୁଁ ଜାଣିବାକୁ ଚାହେଁ ॥୨୯॥ କମଳଲୋଚନ, ଦେହାଦିରେ ଅଭିମାନ କରୁଥିବା ସଂସାରୀ ବ୍ୟକ୍ତିମାନେ ଯାହା ଆଶ୍ରୟ କଲେ ମଧ୍ୟ ତାହା ବିଫଳ ହୁଏ । କିନ୍ତୁ ଆପଣଙ୍କ ପାଦପଦ୍ମର ଆଶ୍ରୟ କେବେହେଲେ ବ୍ୟର୍ଥ ହୁଏ ନାହିଁ । କାରଣ ଭକ୍ତର ପ୍ରିୟ ବନ୍ଧୁ ଓ ଆତ୍ମସ୍ୱରୂପ ଆପଣଙ୍କ ଅପୂର୍ବ ମୂର୍ତ୍ତି ଦର୍ଶନ କରି ଏହା ହିଁ ମୁଁ ଅନୁଭବ କରୁଛି ॥୩୦॥

ଶ୍ରୀ ଶୁକଦେବ କହିଲେ, ରାଜା, ଯୁଗାନ୍ତକାଳରେ ପ୍ରଳୟସମୁଦ୍ରରେ ବିହାର କରିବାପାଇଁ ଇଚ୍ଛା କରୁଥିବା ଜଗଦୀଶ୍ୱର ଭକ୍ତପ୍ରିୟ ଭଗବାନ ନିଜ ଏହି ଅବତାରର କାରଣ ସମ୍ପର୍କରେ ରାଜା ସତ୍ୟବ୍ରତଙ୍କୁ ଉତ୍ତର ଦେଲେ-- ॥୩୧॥

ରାଜା, ଆଜିଠାରୁ ସପ୍ତମଦିନରେ ଭୂଲୋକ ଆଦି ତିନିଲୋକ ପ୍ରଳୟସମୁଦ୍ରରେ ବୁଡ଼ିଯିବ । ପ୍ରଳୟ ସମୁଦ୍ରରେ ତିନି ଲୋକ ବୁଡ଼ିଯିବାବେଳେ ମୋ'ଦ୍ୱାରା ପ୍ରେରିତ ଏକ ବିଶାଳ ନୌକା ଆସି ତୁମ ପାଖରେ ପହଞ୍ଚିବ ॥୩୨-୩୩॥ ତୁମେ ସେତେବେଳେ ଏହି ବିଶାଳ ନୌକାରେ ବସି ମହାସମୁଦ୍ର ମଧ୍ୟରେ ବିଚରଣ କରିବ । ତୁମର କୌଣସି ଅସୁବିଧା ହେବ ନାହିଁ । ଧାନ, ଅନ୍ୟ ଶସ୍ୟଜାତୀୟ ଓ ବନୌଷଧି ଜାତୀୟ ବିହନମାନ ଏହି ନୌକାରେ ରଖାଯାଇଥିବ । ଏଥିରେ ସପ୍ତର୍ଷିମାନେ ବସିଥିବେ । ସୂର୍ଯ୍ୟାଦି ଜ୍ୟୋତିଷ୍କମାନେ ନ ଥିବାରୁ ଏହି ଅନ୍ଧକାରାଚ୍ଛନ୍ନ ମହାସମୁଦ୍ରମଧ୍ୟରେ କେବଳ ତୁମର ନୌକାଟି ଋଷିମାନଙ୍କ ତେଜରେ ଆଲୋକିତ ହେଉଥିବ । ତୁମେ ସମସ୍ତ ପ୍ରାଣୀଙ୍କର ସୂକ୍ଷ୍ମ ଶରୀରମାନଙ୍କୁ ଗ୍ରହଣକରି ସେହି ନୌକାରେ ପରିଭ୍ରମଣ କରିବ ॥୩୪-୩୫॥ ପ୍ରବଳ ବାୟୁବେଗରେ ଦୋଦୁଲ୍ୟମାନ ସେହି ନୌକାକୁ ଧରିରଖିବାପାଇଁ ମୁଁ ସେଠାରେ ଉପସ୍ଥିତ ଥିବି । ତୁମେ ସେତେବେଳେ ବାସୁକି ନାଗଦ୍ୱାରା ମୋ ଶିଙ୍ଘରେ ସେହି ନୌକାକୁ ବାନ୍ଧି ଦେବ ॥୩୬॥ ରାଜା, ଯେ ପର୍ଯ୍ୟନ୍ତ ବ୍ରହ୍ମାଙ୍କର ରାତ୍ରି ଶେଷ ନ ହେବ, ସେ ପର୍ଯ୍ୟନ୍ତ ମୁଁ ଋଷିମାନଙ୍କ ସହ ତୁମେ ବସିଥିବା ଏହି ନୌକାକୁ ଟାଣିଟାଣି ସମୁଦ୍ରମଧ୍ୟରେ ବୁଲୁଥିବି ॥୩୭॥ ଏହି ସମୟରେ ତୁମେ ପ୍ରଶ୍ନ କଲେ ମୁଁ ଉପଦେଶ ଦେବି । ମୋର ଅନୁଗ୍ରହରୁ ତୁମେ ମୋର ମହିମା, ଯାହାକି 'ପରଂବ୍ରହ୍ମ' ନାମରେ କଥିତ, ତାହା ଭଲଭାବରେ ହୃଦୟଙ୍ଗମ କରିପାରିବ ॥୩୮॥ ଏହିପରି ରାଜା ସତ୍ୟବ୍ରତଙ୍କୁ ଆଦେଶ ଦେଇ ଭଗବାନ ସେଠାରୁ ଅନ୍ତର୍ହିତ ହୋଇଗଲେ । ଭଗବାନଙ୍କର ଆଦିଷ୍ଟ ସମୟ ଆସିବାପର୍ଯ୍ୟନ୍ତ ରାଜା ସତ୍ୟବ୍ରତ ଅପେକ୍ଷା କରିବାକୁ ଲାଗିଲେ ॥୩୯॥ ରାଜର୍ଷି ସତ୍ୟବ୍ରତ କୁଶାଗ୍ରଗୁଡ଼ିକୁ ପୂର୍ବଆଡ଼କୁ ମୁହଁ କରାଇ ଏବଂ ନିଜେ ଐଶାନ୍ୟ କୋଣକୁ ମୁହଁ କରି ସେଥିରେ ବସି ପଡ଼ିଲେ ଏବଂ ମତ୍ସ୍ୟରୂପୀ ଭଗବାନଙ୍କର ପାଦପଦ୍ମକୁ ଚିନ୍ତା କରିଲାଗିଲେ । ଭଗବାନ ଯେଉଁ ସମୟ କଥା କହିଥିଲେ, ତାହା ଆସିଗଲା । ପ୍ରଳୟକାଳୀନ ଭୟଙ୍କର ମେଘମାନେ ପ୍ରବଳ ବର୍ଷା କରିବାକୁ ଲାଗିଲେ । ଦେଖୁଦେଖୁ ଉତ୍ତାଳ ସମୁଦ୍ର ବେଳାଭୂମି ଅତିକ୍ରମ କରି ସାରା ପୃଥିବୀକୁ ବୁଡ଼ାଇ ଦେଲା ॥୪୧॥ ସେତେବେଳେ ରାଜା ଭଗବାନଙ୍କର ଆଦେଶ କଥା ସ୍ମରଣ କଲେ ଏବଂ ଦେଖିଲେ ଯେ ନୌକା ଆସି ଉପସ୍ଥିତ । ବନୌଷଧି ଓ ଶସ୍ୟମାନଙ୍କର ବୀଜ ଧରି ସପ୍ତର୍ଷିମାନେ ବସିଥିବା ସେହି ନୌକାକୁ ସେ ଆରୋହଣ କଲେ ॥୪୨॥ ମୁନିମାନେ ପ୍ରୀତିପୂର୍ବକ ରାଜା ସତ୍ୟବ୍ରତଙ୍କୁ କହିଲେ, ରାଜା, ଭଗବାନଙ୍କୁ ଧ୍ୟାନ କର । ଏହି ବିପଦରୁ ଆମକୁ ରକ୍ଷା କରି ସେ ଆମର ମଙ୍ଗଳ ବିଧାନ କରିବେ ॥୪୩॥ ରାଜା ଭଗବାନଙ୍କୁ ଧ୍ୟାନ କରିବାରୁ ସୁବର୍ଣ୍ଣ ବର୍ଣ୍ଣର ଏକ ବିଶାଳ ମତ୍ସ୍ୟ ସେହି ମହାସମୁଦ୍ର ମଧ୍ୟରେ ଆବିର୍ଭୂତ ହେଲା । ତା' ଶରୀରର ବିସ୍ତାର ଥିଲା ଦଶ ହଜାର ଯୋଜନ ଏବଂ ତାହାର ଏକ ବଡ଼ ଶିଙ୍ଘ ରହିଥିଲା ॥୪୪॥ ପୂର୍ବେ ଭଗବାନ ଯେପରି କହିଥିଲେ, ବାସୁକିକୁ ଦଉଡ଼ି କରି ଏବଂ ସେହି ମାଛ ଶିଙ୍ଘରେ ନୌକାଟିକୁ ବାନ୍ଧିଦେଇ ପ୍ରସନ୍ନ ଚିତ୍ତରେ ରାଜା ସତ୍ୟବ୍ରତ ଭଗବାନ ମଧୁସୂଦନଙ୍କୁ ସ୍ତବ କରି ଲାଗିଲେ ॥୪୫॥

ରାଜା ସତ୍ୟବ୍ରତ କହିଲେ, ପ୍ରଭୁ, ଅନାଦି କାଳରୁ ଅବିଦ୍ୟାଦ୍ୱାରା ଜୀବମାନଙ୍କର ଆତ୍ମଜ୍ଞାନ ଆଚ୍ଛାଦିତ ହୋଇ ରହିଛି, ସେଥିପାଇଁ ସେମାନେ ସଂସାରରେ ବହୁ କ୍ଳେଶ ଓ ପରିଶ୍ରମରେ ବ୍ୟାକୁଳ ହେଉଛନ୍ତି । କିନ୍ତୁ ସେମାନଙ୍କ ମଧ୍ୟରୁ କେହି କେହି

ଆପଣଙ୍କୁ ଶରଣାଗତ ହୋଇ ଆପଣଙ୍କ କୃପା ଲାଭ କରନ୍ତି । ତେଣୁ ଆପଣ ହିଁ ଆମର ମୁକ୍ତିପ୍ରଦାତା ପରମ ଗୁରୁ ॥୪୬॥ ଜୀବ ଅଜ୍ଞାନୀ, ନିଜ କର୍ମବନ୍ଧନରେ ବନ୍ଧା ହୋଇଛି । ସୁଖ ଇଚ୍ଛା କରି ସେ କର୍ମ କରେ । କିନ୍ତୁ ଦୁଃଖ ଭୋଗେ । ଆପଣଙ୍କ ସେବାଦ୍ୱାରା ହିଁ ଜୀବର ସେହି ଅସଦ୍ ବୁଦ୍ଧି ନଷ୍ଟ ହୋଇଯାଏ । ତେଣୁ ହେ ପରମଗୁରୁ, ମୋର ସେହି କର୍ମବନ୍ଧନକୁ କାଟି ଦିଅନ୍ତୁ ॥୪୭॥ ଯେପରି ନିଆଁରେ ପୋଡ଼ିବାଦ୍ୱାରା ସୁନା, ରୁପା ଆଦି ଧାତୁଦ୍ରବ୍ୟ ନିଜର ମଇଳା ଅଂଶକୁ ପରିତ୍ୟାଗ କରନ୍ତି, ସେହିପରି ଆପଣଙ୍କ ସେବା ରୂପକ ଅଗ୍ନିଦ୍ୱାରା ଆତ୍ମାର ସମସ୍ତ ଅଜ୍ଞାନରୂପ ମଳିନତା ଦୂର ହୁଏ ଏବଂ ପ୍ରକୃତ ଶୁଦ୍ଧ ସ୍ୱରୂପ ପ୍ରକାଶପାଏ । ସେହି ଅବିନଶ୍ୱର, ସର୍ବଶକ୍ତିମାନ୍ ଭଗବାନ ହିଁ ଆମର ପରମଗୁରୁ ଅଟନ୍ତି ॥୪୮॥ ଅନ୍ୟ ଦେବଗଣ, ପିତୃଗଣ ଓ ରାଜାମାନେ ସମସ୍ତେ ଏକାଠି ହୋଇ ମଧ୍ୟ ଭଗବତ୍‌ଶକ୍ତି ନ ଥିବାହେତୁ ଆପଣଙ୍କ ଆଶୀର୍ବାଦର ଅଯୁତଭାଗରୁ ଏକଭାଗ ମଧ୍ୟ ପ୍ରଦାନ କରିବାପାଇଁ ସମର୍ଥ ନୁହନ୍ତି । ସେଇ ସର୍ବେଶ୍ୱରଙ୍କୁ ଆମେ ଶରଣାଗତ ହେଉଛୁ ॥୪୯॥ ଅନ୍ଧଲୋକ ଅନ୍ଧଲୋକକୁ ବାଟ ଦେଖାଇଲେ ତାହା ଯେପରି ମଙ୍ଗଳକର ହୁଏ ନାହିଁ, ସେହିପରି ଜଣେ ଅଜ୍ଞାନୀ ବ୍ୟକ୍ତି ଅନ୍ୟ ଜଣେ ଅଜ୍ଞାନୀ ବ୍ୟକ୍ତିକୁ ଗୁରୁ କରିବାଦ୍ୱାରା କୌଣସି ଭଲ ଫଳ ହୁଏ ନାହିଁ । ଆମେମାନେ ଆତ୍ମତତ୍ତ୍ୱ ଜାଣିବାପାଇଁ ଇଚ୍ଛୁକ । ଆପଣ ସମସ୍ତ ଇନ୍ଦ୍ରିୟଙ୍କର ପ୍ରକାଶକ ଏବଂ ସୂର୍ଯ୍ୟପରି ସ୍ୱୟଂ ପ୍ରକାଶମାନ । ଆମେମାନେ ଆପଣଙ୍କୁ ଗୁରୁ ରୂପେ ବରଣ କରୁଛୁ ॥୫୦॥ ଅଜ୍ଞାନୀ ବ୍ୟକ୍ତି ଅଜ୍ଞାନୀମାନଙ୍କୁ ଯେଉଁ ଜ୍ଞାନ ଉପଦେଶ ଦିଏ, ତାହା ଅଜ୍ଞାନ ଛଡ଼ା ଅନ୍ୟ କିଛି ନୁହେଁ । ଏହାଦ୍ୱାରା ସଂସାରରୂପ ଘୋର ଅନ୍ଧକାର ଆହୁରି ଘନୀଭୂତ ହୁଏ । କିନ୍ତୁ ଆପଣ ଯେଉଁ ଅବିନାଶୀ ଓ ଅମୋଘ ଜ୍ଞାନ ଉପଦେଶ ଦିଅନ୍ତି, ତଦ୍ୱାରା ମନୁଷ୍ୟ ଅନାୟାସରେ ନିଜ ସ୍ୱରୂପକୁ ଲାଭ କରେ ॥୫୧॥ ଆପଣ ସମସ୍ତ ଲୋକଙ୍କର ପ୍ରିୟତମ ବନ୍ଧୁ, ଈଶ୍ୱର ଏବଂ ଆତ୍ମଜ୍ଞାନ ଓ ଅଭୀଷ୍ଟ ସିଦ୍ଧିର ସ୍ୱରୂପ । ତଥାପି କାମନା ବାସନାର ବନ୍ଧନରେ ପଡ଼ି ଲୋକ ଅନ୍ଧ ହୋଇଯାଏ । ଆପଣ ତାହାର ହୃଦୟରେ ବିଦ୍ୟମାନ ବୋଲି ସେ ଅନୁଭବ କରିପାରେ ନାହିଁ ॥୫୨॥ ଭଗବାନ୍, ଆପଣ ଦେବତାମାନଙ୍କ ମଧ୍ୟରେ ଶ୍ରେଷ୍ଠ, ବରେଣ୍ୟ ଓ ସର୍ବଶକ୍ତିମାନ୍ । ତତ୍ତ୍ୱଜ୍ଞାନ ଲାଭପାଇଁ ଆପଣଙ୍କୁ ଆମେ ଆଶ୍ରୟ କରିଛୁ । ଆପଣ ସଦୁପଦେଶଦ୍ୱାରା ଆମ ଅହଙ୍କାରରୂପୀ ଗ୍ରନ୍ଥିକୁ ଛେଦନ କରନ୍ତୁ ଏବଂ ନିଜର ସ୍ୱରୂପକୁ ପ୍ରକାଶ କରନ୍ତୁ ॥୫୩॥

ଶୁକଦେବ କହିଲେ, ପରିକ୍ଷିତ, ରାଜା ସତ୍ୟବ୍ରତ ଏହିପରି ପ୍ରାର୍ଥନା କରିବାରୁ ମତ୍ସ୍ୟରୂପୀ ଆଦିପୁରୁଷ ଭଗବାନ ମହାସମୁଦ୍ର ମଧ୍ୟରେ ବିହାର କରୁ କରୁ ତାଙ୍କୁ ଆତ୍ମତତ୍ତ୍ୱ ଉପଦେଶ ଦେଲେ ॥୫୪॥ ଭଗବାନ ରାଜର୍ଷି ସତ୍ୟବ୍ରତଙ୍କ ନିକଟରେ ନିଜରୂପର ସମ୍ପୂର୍ଣ୍ଣ ରହସ୍ୟ ବର୍ଣ୍ଣନା କରି ସାଂଖ୍ୟ, ଯୋଗ ଓ କ୍ରିୟାପୂର୍ଣ୍ଣ ଦିବ୍ୟପୁରାଣ ଉପଦେଶ ଦେଲେ । ଏହା ମତ୍ସ୍ୟପୁରାଣ ନାମରେ ନାମିତ ଏବଂ ଏଥିରେ ଗୋପନୀୟ ଆତ୍ମତତ୍ତ୍ୱର ବ୍ୟାଖ୍ୟା କରାଯାଇଛି । ନୌକାରେ ବସିଥିବା ଋଷିମାନଙ୍କ ସହିତ ରାଜା ସତ୍ୟବ୍ରତ ଭଗବାନଙ୍କ କଥିତ ସନାତନ ଆତ୍ମତତ୍ତ୍ୱ ଓ ବ୍ରହ୍ମତତ୍ତ୍ୱ ଶୁଣିବାକୁ ଲାଗିଲେ ଏବଂ ତାଙ୍କର ସମସ୍ତ ସଂଶୟ ଦୂର ହେଲା ॥୫୫-୫୬॥ ସେହି ଭଗବାନ ଶ୍ରୀହରି ହୟଗ୍ରୀବ ନାମକ ଅସୁରକୁ ବିନାଶ କରି ପୂର୍ବକଳ୍ପର ଶେଷରେ ନିଦ୍ରାରୁ ଉଠିଥିବା ବ୍ରହ୍ମାଙ୍କୁ ନିଜେ ଉଦ୍ଧାର କରିଥିବା ବେଦମାନଙ୍କୁ ପ୍ରଦାନ କଲେ ॥୫୭॥ ଜ୍ଞାନ ବିଜ୍ଞାନଯୁକ୍ତ ସେହି ରାଜା ସତ୍ୟବ୍ରତ ଭଗବାନଙ୍କ ଅନୁଗ୍ରହରୁ ଏହି କଳ୍ପରେ ବୈବସ୍ୱତ ମନୁ ହୋଇଛନ୍ତି । ରାଜା ସତ୍ୟବ୍ରତଙ୍କର ଏବଂ ମାୟାମତ୍ସ୍ୟରୂପୀ ଭଗବାନଙ୍କର ଏହି ଚରିତ ଶ୍ରବଣ କଲେ ଜୀବ ସମସ୍ତ ପାପରୁ ମୁକ୍ତ ହୁଏ ॥୫୮-୫୯॥ ଶ୍ରୀହରିଙ୍କର ଏହି ଅବତାରକୁ ଯେଉଁ ବ୍ୟକ୍ତି ପ୍ରତିଦିନ କୀର୍ତ୍ତନ କରେ, ତାର ସମସ୍ତ ଅଭିଳାଷ ସିଦ୍ଧ ହୁଏ, ଏବଂ ସେ ପରମପଦ ଲାଭ କରେ ॥୬୦॥ ପ୍ରଳୟପୟୋଧି ଜଳରେ ନିଦ୍ରିତ ବ୍ରହ୍ମାଙ୍କର ମୁଖନିଃସୃତ ବେଦମାନଙ୍କୁ ଯେଉଁ ହୟଗ୍ରୀବ ଦୈତ୍ୟ ଅପହରଣ କରିଥିଲା, ଭଗବାନ ତାକୁ ବିନାଶ କରି ବେଦମାନଙ୍କୁ ବ୍ରହ୍ମାଙ୍କୁ ପ୍ରତ୍ୟର୍ପଣ କଲେ ଏବଂ ବ୍ରହ୍ମତତ୍ତ୍ୱର ପ୍ରତିପାଦକ ମତ୍ସ୍ୟପୁରାଣକୁ ରାଜର୍ଷି ସତ୍ୟବ୍ରତଙ୍କୁ ଓ ଋଷିମାନଙ୍କୁ ଉପଦେଶ ଦେଲେ । ତେଣୁ ଅଖିଳ ଜଗତର ହେତୁ ମାୟାମତ୍ସ୍ୟରୂପୀ ଶ୍ରୀହରିଙ୍କୁ ମୁଁ ପ୍ରଣାମ କରୁଛି ॥୬୧॥

# ନବମ ସ୍କନ୍ଧ

## ପ୍ରଥମ ଅଧ୍ୟାୟ

## ରାଜା ସୁଦ୍ୟୁମ୍ନ

ରାଜା ପରିକ୍ଷିତ କହିଲେ, ମହାଭାଗ, ଆପଣ ସମସ୍ତ ମନ୍ୱନ୍ତରର କଥା ଏବଂ ସେ ମନ୍ୱନ୍ତରମାନଙ୍କରେ ଅନନ୍ତବୀର୍ଯ୍ୟ ଶ୍ରୀହରିଙ୍କର ମହିମା ଏବଂ ସେ ଯେଉଁସବୁ କର୍ମ କରିଛନ୍ତି ତାହା ବର୍ଣ୍ଣନା କରିଛନ୍ତି । ତାହା ମୁଁ ଭଲରୂପେ ଶୁଣିଛି । ଆପଣ କହିଲେ ଯେ ପୂର୍ବକଳ୍ପର ଶେଷରେ ଦ୍ରାବିଡ଼ ଦେଶର ଅଧିପତି ସତ୍ୟବ୍ରତ ନାମକ ରାଜର୍ଷି ଭଗବାନଙ୍କୁ ସେବା କରି ସଦ୍‌ଜ୍ଞାନ ଲାଭ କଲେ ଏବଂ ଏହି କଳ୍ପରେ ବୈବସ୍ୱତ ମନୁ ହେଲେ । ତାଙ୍କର ଇକ୍ଷ୍ୱାକୁ ଆଦି କେତେକ ପୁତ୍ରଙ୍କ କଥା ମଧ୍ୟ ଆପଣ ବର୍ଣ୍ଣନା କରିଛନ୍ତି ॥୧-୩॥ ବ୍ରହ୍ମନ୍, ସେମାନଙ୍କର ବଂଶ ଓ ବଂଶାନୁଚରିତ ଆପଣ ପୃଥକ୍ ପୃଥକ୍ ଭାବରେ ବର୍ଣ୍ଣନା କରନ୍ତୁ । ଆମେ ତାହା ଶୁଣିବାପାଇଁ ସର୍ବଦା ବ୍ୟଗ୍ର ହୋଇ ରହିଛୁ ॥୪॥ ଯେଉଁମାନେ ଅତୀତରେ ରାଜା ଥିଲେ, ଭବିଷ୍ୟତରେ ହେବେ ଏବଂ ବର୍ତ୍ତମାନ ରାଜା ଅଛନ୍ତି, ସେହିସବୁ ପୁଣ୍ୟଶ୍ଳୋକ ରାଜାମାନଙ୍କର ପରାକ୍ରମ କଥା ଆପଣ ବର୍ଣ୍ଣନା କରନ୍ତୁ ॥୫॥

ସୂତ କହିଲେ, ବ୍ରହ୍ମବାଦୀମାନଙ୍କର ସଭାରେ ରାଜା ପରିକ୍ଷିତ ଏହିପରି ପଚାରିବାରୁ ପରମଧର୍ମଜ୍ଞ ଭଗବାନ୍ ଶୁକଦେବ କହିବାକୁ ଆରମ୍ଭ କଲେ— ॥୬॥ ଶ୍ରୀ ଶୁକଦେବ କହିଲେ, ଶତ୍ରୁନାଶନ, ଶହେ ବର୍ଷରେ ମଧ୍ୟ ଯାହାକୁ କେହି ବିସ୍ତାରିତ ଭାବରେ ବର୍ଣ୍ଣନା କରିପାରିବେ ନାହିଁ ସେହି ମନୁବଂଶର କଥା ମୁଁ ବିଶେଷଭାବରେ ବର୍ଣ୍ଣନା କରୁଛି, ଶୁଣ ॥୭॥ ଯେଉଁ ପରମ ପୁରୁଷ ଭଗବାନ୍ ଛୋଟବଡ଼ ସମସ୍ତ ପ୍ରାଣୀଙ୍କର ଆତ୍ମା, କଳ୍ପ ଶେଷ ହେବାପରେ ସେ ହିଁ ଏକମାତ୍ର ବିଦ୍ୟମାନ ରହନ୍ତି, ତାଙ୍କ ଛଡ଼ା ଏହି ବିଶ୍ୱସଂସାରର ଅନ୍ୟ କିଛି ରହେ ନାହିଁ ॥୮॥ ମହାରାଜ, ସେହି ଭଗବାନଙ୍କର ନାଭିଦେଶରୁ ଏକ ସୁବର୍ଣ୍ଣ ବର୍ଣ୍ଣର ପଦ୍ମକୋଷ ପ୍ରକଟିତ ହେଲା । ସେଥିରୁ ଚତୁର୍ମୁଖ ବ୍ରହ୍ମା ଆବିର୍ଭୂତ ହେଲେ ॥୯॥ ବ୍ରହ୍ମାଙ୍କର ମନରୁ ଜନ୍ମ ହେଲେ ମରୀଚି । ମରୀଚିଙ୍କ ଔରସରୁ କଶ୍ୟପ ଜନ୍ମହେଲେ ଏବଂ କଶ୍ୟପଙ୍କଠାରୁ ଅଦିତିଙ୍କ ଗର୍ଭରେ ସୂର୍ଯ୍ୟ ଜନ୍ମ ଗ୍ରହଣ କଲେ ॥୧୦॥ ହେ ଭରତବଂଶର ରାଜା, ସୂର୍ଯ୍ୟଙ୍କଠାରୁ ସଂଜ୍ଞାଙ୍କ ଗର୍ଭରେ ଶ୍ରାଦ୍ଧଦେବ ନାମକ ମନୁ ଜନ୍ମଗ୍ରହଣ କଲେ । ଜିତେନ୍ଦ୍ରିୟ ଏହି ମନୁଙ୍କଠାରୁ ତାଙ୍କର ପତ୍ନୀ ଶ୍ରଦ୍ଧାଙ୍କଠାରେ ଦଶଟି ପୁତ୍ରଙ୍କର ଜନ୍ମ ହେଲା । ସେମାନେ ହେଲେ ଇକ୍ଷ୍ୱାକୁ, ନୃଗ, ଶର୍ଯାତି, ଦିଷ୍ଟ, ଧୃଷ୍ଟ, କରୂଷକ, ନରିଷ୍ୟନ୍ତ, ପୃଷଧ୍ର, ନଭଗ ଓ କବି ॥୧୧-୧୨॥

ବୈବସ୍ୱତ ମନୁ ପ୍ରଥମେ ନିଃସନ୍ତାନ ଥିଲେ । ମହାତେଜସ୍ୱୀ ବଶିଷ୍ଠ ଋଷି ତାଙ୍କର ସନ୍ତାନଲାଭପାଇଁ ମିତ୍ରାବରୁଣଙ୍କର ଯଜ୍ଞ କରାଇଥିଲେ । ସେହି ଯଜ୍ଞରେ କେବଳ ଦୁଗ୍ଧପାନ କରି ନିୟମରେ ଚଳିବାକୁ ହୁଏ । ଏହି ନିୟମ ପାଳନ କରୁଥିବା ମନୁଙ୍କର ପତ୍ନୀ ଶ୍ରଦ୍ଧା ଯଜ୍ଞର ହୋତାଙ୍କ ନିକଟକୁ ଯାଇ ପ୍ରଣାମପୂର୍ବକ କନ୍ୟାଲାଭପାଇଁ ପ୍ରାର୍ଥନା କଲେ ॥୧୩-୧୪॥ ଯଜ୍ଞର ଅଧ୍ୱର୍ଯ୍ୟୁଙ୍କ ଉପଦେଶ ଅନୁସାରେ ଯଜ୍ଞରେ ଆହୁତି ଦେଉଥିବା ବ୍ରାହ୍ମଣ ଶ୍ରଦ୍ଧାଙ୍କର ପ୍ରାର୍ଥନାକୁ ମନେ ରଖି ବଷଟ୍‌କାର ଉଚ୍ଚାରଣପୂର୍ବକ ଯଜ୍ଞରେ ଆହୁତି ଦେଲେ ॥୧୫॥

ହୋତାଙ୍କର ଏହି ବିପରୀତ କର୍ମଦ୍ୱାରା ଯଜ୍ଞର ଫଳସ୍ୱରୂପ ଇଳା ନାମକ ଏକ କନ୍ୟା ଜାତ ହେଲା । ତାହାକୁ ଦେଖି ମନୁଙ୍କର ସନ୍ତୋଷ ହେଲା ନାହିଁ । ସେ ଗୁରୁ ବଶିଷ୍ଠଙ୍କୁ କହିଲେ, ବ୍ରହ୍ମନ୍, ଆପଣଙ୍କ କର୍ମର କିପରି ବିପରୀତ ଫଳ ହେଲା ?

ଦୁଃଖର ବିଷୟ, ବୈଦିକ କର୍ମର ଏପରି ବିପରୀତ ଫଳ କେବେ ହେବା ଉଚିତ ନୁହେଁ ।।୧୬-୧୭।। ଆପଣମାନେ ବ୍ରହ୍ମଜ୍ଞ, ସଂଯତ ଏବଂ ତପସ୍ୟାଦ୍ୱାରା ଆପଣଙ୍କର ସମସ୍ତ ପାପ ନଷ୍ଟ ହୋଇଯାଇଛି । ଦେବତାମାନଙ୍କର ବାକ୍ୟ ଯେପରି ମିଥ୍ୟା ହୁଏ ନାହିଁ, ଆପଣଙ୍କ କର୍ମର ଫଳ ସେହିପରି ଅନ୍ୟଥା ହେବା ଅସମ୍ଭବ । କିନ୍ତୁ ତାହା କିପରି ଘଟିଲା ? ।।୧୮।। ମୋର ପ୍ରପିତାମହ ଭଗବାନ ବଶିଷ୍ଠ ମନୁଙ୍କର କଥା ଶୁଣି ହୋତାଙ୍କର ବ୍ୟତିକ୍ରମ ଦୋଷରୁ ଏହିପରି ଘଟିଛି ବୋଲି ସୂର୍ଯ୍ୟପୁତ୍ର ମନୁଙ୍କୁ ଉତ୍ତର ଦେଲେ । ତଥାପି ମୁଁ ନିଜର ତପସ୍ୟାର ପ୍ରଭାବରେ ତୁମର ଏହି କନ୍ୟାକୁ ପୁରୁଷ ରୂପରେ ପରିବର୍ତ୍ତନ କରିଦେଉଛି ।।୧୯-୨୦।। ପରିକ୍ଷିତ, ମହାଯଶା ଭଗବାନ ବଶିଷ୍ଠ ଏହିପରି ସ୍ଥିର କରି ଇଳାଙ୍କର ପୁରୁଷତ୍ୱ କାମନାରେ ଆଦିପୁରୁଷ ବିଷ୍ଣୁଙ୍କର ସ୍ତବ କରିବାକୁ ଲାଗିଲେ । ସର୍ବଶକ୍ତିମାନ୍ ଭଗବାନ ଶ୍ରୀହରି ତାଙ୍କର ସ୍ତବରେ ସନ୍ତୁଷ୍ଟ ହୋଇ ତାଙ୍କୁ ଅଭିଳଷିତ ବର ପ୍ରଦାନ କଲେ । ଯାହା ଫଳରେ ଇଳା ସୁଦ୍ୟୁମ୍ନ ନାମକ ଶ୍ରେଷ୍ଠ ପୁରୁଷ ହୋଇଗଲେ ।।୨୧-୨୨।।

ମହାରାଜ, ବୀର ସୁଦ୍ୟୁମ୍ନ କବଚ ଧାରଣ କରି ସିନ୍ଧୁଦେଶୀୟ ଏକ ଘୋଡ଼ା ଉପରେ ବସି ମନ୍ତ୍ରୀମାନଙ୍କ ସଙ୍ଗରେ ବନକୁ ଯାଇଥିଲେ । ତାଙ୍କ ପାଖରେ ଏକ ସୁରୁଚିର ଧନୁ ଓ ଅତ୍ୟାଶ୍ଚର୍ଯ୍ୟ ଶରମାନ ଥିଲା । ସେ ଏକ ମୃଗକୁ ଅନୁସରଣ କରି ଉତ୍ତର ଦିଗକୁ ଦୌଡ଼ିବାକୁ ଲାଗିଲେ ।।୨୩-୨୪।। ମେରୁ ପର୍ବତର ନିମ୍ନ ଦେଶରେ ସୁକୁମାର ନାମକ ଏକ ବନ ମଧ୍ୟରେ ସେ ପ୍ରବେଶ କଲେ । ସେଠାରେ ଭଗବାନ ଶଙ୍କର ପାର୍ବତୀଙ୍କ ସହିତ ବିହାର କରୁଥିଲେ ।।୨୫।। ପରିକ୍ଷିତ, ଶତ୍ରୁହନ୍ତା ସୁଦ୍ୟୁମ୍ନ ତାହା ମଧ୍ୟରେ ପ୍ରବେଶ କରିବା ମାତ୍ରେ ସ୍ତ୍ରୀ ହୋଇଗଲେ ଏବଂ ତାଙ୍କର ପରମପ୍ରିୟ ଘୋଡ଼ାଟି ମଧ୍ୟ ଘୋଡ଼ୀ ହୋଇଗଲା ।।୨୬।। ସେହିପରି ତାଙ୍କର ଅନୁଚରଗଣ ନିଜ ନିଜକୁ ସ୍ତ୍ରୀ ରୂପରେ ଦେଖି ଅତିଶୟ ବ୍ୟଥିତ ହେବାକୁ ଲାଗିଲେ ।।୨୭।।

ରାଜା ପରିକ୍ଷିତ ପଚାରିଲେ, ଭଗବାନ, ଏ ସ୍ଥାନରେ କ'ଣ ଏପରି ଗୁଣ ଥିଲା ନା କୌଣସି ବ୍ୟକ୍ତିଦ୍ୱାରା ଏପରି ଘଟିଲା ? ଆପଣ ମୋର କୌତୂହଳ ନିବାରଣ କରନ୍ତୁ ।।୨୮।।

ଶ୍ରୀ ଶୁକଦେବ କହିଲେ, ଦିନେ ଭଗବାନ ଶଙ୍କରଙ୍କୁ ଦର୍ଶନ କରିବାପାଇଁ ବଡ଼ବଡ଼ ତପୋନିଷ୍ଠ ଋଷିମାନେ ନିଜର ତେଜଦ୍ୱାରା ଅନ୍ଧକାରକୁ ଦୂର କରି ଓ ଚାରିଆଡ଼କୁ ଆଲୋକିତ କରି ସେହି ବନ ମଧ୍ୟରେ ପ୍ରବେଶ କଲେ ।।୨୯।। ସେହି ସମୟରେ ବିବସ୍ତ୍ରା ପାର୍ବତୀ ଲଜ୍ଜାରେ ମହାଦେବଙ୍କ କୋଳରୁ ଉଠିପଡ଼ି ବସ୍ତ୍ର ପିନ୍ଧି ପକାଇଲେ । ଋଷିମାନେ ମଧ୍ୟ ହରପାର୍ବତୀଙ୍କୁ ରମଣ କରୁଥିବାର ଅବସ୍ଥାରେ ଦେଖି ସେହି ବନରୁ ଫେରିଗଲେ ଏବଂ ଭଗବାନ୍ ଶ୍ରୀନରନାରାୟଣଙ୍କର ଆଶ୍ରମକୁ ଚାଲିଗଲେ ।।୩୦-୩୧।। ଏହି ସମୟରେ ଭଗବାନ ଶଙ୍କର ନିଜର ପ୍ରିୟାଙ୍କୁ ସନ୍ତୁଷ୍ଟ କରିବାକୁ ଯାଇ କହିଲେ, ମୋ ଛଡ଼ା ଏ ବନରେ ଯେ ପ୍ରବେଶ କରିବ, ସେ ସ୍ତ୍ରୀ ହୋଇଯିବ ।।୩୨।। ସେହିଦିନରୁ ପୁରୁଷମାନେ କେହି ଏ ବନକୁ ଆସନ୍ତି ନାହିଁ । ବର୍ତ୍ତମାନ ସୁଦ୍ୟୁମ୍ନ ସ୍ତ୍ରୀ ହୋଇଗଲେ ଏବଂ ସ୍ତ୍ରୀ ହୋଇଯାଇଥିବା ନିଜର ଅନୁଚରମାନଙ୍କ ସହିତ ବନରୁ ବନ ବୁଲିବାକୁ ଲାଗିଲେ ।।୩୩।। ଏହି ସମୟରେ ଭଗବାନ ବୁଧ ଦେଖିଲେ, ତାଙ୍କର ଆଶ୍ରମ ପାଖରେ ସ୍ତ୍ରୀମାନଙ୍କ ଗହଣରେ ଏକ ପରମ ସୁନ୍ଦରୀ ସ୍ତ୍ରୀ ବିଚରଣ କରୁଛି । ସେ ସେହି ସ୍ତ୍ରୀକୁ ତତ୍‌କ୍ଷଣାତ୍ କାମନା କଲେ ଏବଂ ସୁନ୍ଦରୀ ସ୍ତ୍ରୀରେ ପରିଣତ ହୋଇଥିବା ସୁଦ୍ୟୁମ୍ନ ମଧ୍ୟ ଚନ୍ଦ୍ରକୁମାର ବୁଧଙ୍କୁ ପତିରୂପେ କାମନା କଲେ । ବୁଧଙ୍କ ଔରସରୁ ସେଇ ସ୍ତ୍ରୀଠାରେ ପୁରୂରବା ନାମକ ପୁତ୍ର ଜନ୍ମ ହେଲା ।।୩୪-୩୫।। ଶୁଣାଯାଏ ଯେ, ମନୁଙ୍କର ପୁତ୍ର ରାଜା ସୁଦ୍ୟୁମ୍ନ ଏହିପରି ସ୍ତ୍ରୀତ୍ୱ ଲାଭ କରିଥିବା ସମୟରେ ନିଜର କୁଳପୁରୋହିତ ବଶିଷ୍ଠଙ୍କୁ ସ୍ମରଣ କଲେ ।।୩୬।। ତାଙ୍କର ଏପରି ଦଶା ଦେଖି ବଶିଷ୍ଠଙ୍କର ଦୁଃଖ ହେଲା । କୃପାବଶତଃ ସୁଦ୍ୟୁମ୍ନ କିପରି ପୁରୁଷତ୍ୱ ଫେରିପାଇବେ, ସେଥିପାଇଁ ସେ ଭଗବାନ ଶଙ୍କରଙ୍କର ଆରାଧନା କରିବାକୁ ଲାଗିଲେ ।।୩୭।। ପରୀକ୍ଷିତ, ବଶିଷ୍ଠଙ୍କର ଆରାଧନାରେ ସନ୍ତୁଷ୍ଟ ଭଗବାନ ଶଙ୍କର ତାଙ୍କର ପ୍ରିୟ କାର୍ଯ୍ୟ କରିବାପାଇଁ ଏବଂ ନିଜର ସତ୍ୟ ରଖିବା ପାଇଁ ଏହିପରି କହିଲେ-- ।।୩୮।। ବଶିଷ୍ଠ, ତୁମର ଏହି ଶିଷ୍ୟ ମାସେ ପୁରୁଷ ହେଲେ ଆଉ ଗୋଟିଏ ମାସ ସ୍ତ୍ରୀ ହୋଇ ରହିବେ । ଏହି

ବ୍ୟବସ୍ଥାଦ୍ୱାରା ରାଜା ସୁଦ୍ୟୁମ୍ନ ପୃଥିବୀକୁ ପାଳନ କରିବେ ।।୩୯।। ବଶିଷ୍ଠଙ୍କ ଅନୁଗ୍ରହରେ ଏହପରି ମାସେ ପୁରୁଷ ଓ ମାସେ ସ୍ତ୍ରୀ ହୋଇ ସୁଦ୍ୟୁମ୍ନ ରାଜ୍ୟ ଶାସନ କଲେ । କିନ୍ତୁ ପ୍ରଜାମାନେ ସେଥିରେ ସନ୍ତୁଷ୍ଟ ହେଲେ ନାହିଁ ।।୪୦।। ପରିକ୍ଷିତ, ସୁଦ୍ୟୁମ୍ନଙ୍କର ଉତ୍କଳ, ଗୟ ଓ ବିମଳ ନାମରେ ତିନିଜଣ ଧର୍ମପରାୟଣ ପୁତ୍ର ଥିଲେ । ସେମାନେ ଦକ୍ଷିଣାପଥ ରାଜ୍ୟମାନଙ୍କୁ ଶାସନ କରୁଥିଲେ । ବହୁକାଳ ବିତିଯିବା ପରେ ପ୍ରତିଷ୍ଠାନ ଦେଶର ରାଜା ସୁଦ୍ୟୁମ୍ନ ନିଜର ପୁତ୍ର ପୁରୂରବାଙ୍କୁ ରାଜ୍ୟ ପ୍ରଦାନ କରି ବନଗମନ କଲେ ।।୪୧-୪୨।।

## ଦ୍ୱିତୀୟ ଅଧ୍ୟାୟ

# ମନୁଙ୍କର ବଂଶାବଳୀ

ଶ୍ରୀ ଶୁକଦେବ କହିଲେ, ପରିକ୍ଷିତ, ଏହିପରି ପୁତ୍ର ସୁଦ୍ୟୁମ୍ନ ବନକୁ ଯିବାପରେ ବୈବସ୍ୱତ ମନୁ ପୁତ୍ରକାମନାରେ ଯମୁନା କୂଳରେ ଶହେ ବର୍ଷପର୍ଯ୍ୟନ୍ତ ତପସ୍ୟା କରିବାକୁ ଲାଗିଲେ ।।୧।। ପୁତ୍ରକାମନାରେ ମନୁ ଭଗବାନ ଶ୍ରୀହରିଙ୍କୁ ପୂଜା କରିବାକୁ ଲାଗିଲେ ଏବଂ ସେଇ ପ୍ରଭୁଙ୍କ କରୁଣାରୁ ନିଜପରି ଇକ୍ଷ୍ୱାକୁ ପ୍ରମୁଖ ଦଶଟି ପୁତ୍ର ଲାଭ କଲେ ।।୨।। ଏମାନଙ୍କ ମଧ୍ୟରୁ ମନୁଙ୍କର ଜଣେ ପୁତ୍ର ପୃଷଧ୍ର ଗୁରୁଙ୍କଦ୍ୱାରା ତାଙ୍କ ଗାଈଗୋଠର ଜଗୁଆଳ ରୂପେ ନିଯୁକ୍ତ ହୋଇଥିଲେ । ଗାଈଙ୍କୁ ଜଗିବା ପାଇଁ ସେ ରାତିସାରା ଖଣ୍ଡା ଧରି ପହରା ଦେଉଥିଲେ ।।୩।। ଦିନେ ରାତିରେ ବର୍ଷା ହେଉଛି, ଏକ ବାଘ ଗାଈଗୋଠ ମଧ୍ୟରେ ପଶିଗଲା ଏବଂ ଗାଈମାନେ ଚାରିଆଡ଼େ ଭୟରେ ଦଉଡ଼ିବାକୁ ଲାଗିଲେ ।।୪।। ସେମାନଙ୍କ ମଧ୍ୟରୁ ଗୋଟିକୁ ବାଘ ବଳପୂର୍ବକ ଧରିନେଲା ଏବଂ ଗାଈଟି ଭୟରେ ବୋବାଳି ଛାଡ଼ିବାକୁ ଲାଗିଲା । ତାହା ଶୁଣି ପୃଷଧ୍ର ଗାଈ ନିକଟକୁ ଦଉଡ଼ିଗଲେ ।।୫।। ଆକାଶ ମେଘାଛନ୍ନ ଥିବାରୁ ନକ୍ଷତ୍ରମାନେ ମଧ୍ୟ ଦେଖାଯାଉ ନ ଥିଲେ । ସେ ଜୋରରେ ଖଣ୍ଡା ଉଠାଇ ବାଘ ବୋଲି ମାରିବାବେଳେ ଗାଈର ମୁଣ୍ଡ କଟିଗଲା ଓ ବାଘର କାନ କଟିଗଲା ଏବଂ ବାଘ ଭୟରେ ପଳେଇଯିବା ବେଳେ ବାଟଯାକ ରକ୍ତ ପକାଇ ପକାଇ ପଳାଇଲା ।।୬-୭।। ଶତ୍ରୁହନ୍ତା ପୃଷଧ୍ର ବାଘକୁ ମାରିଦେଇଛନ୍ତି ବୋଲି ଭାବିଥିଲେ । କିନ୍ତୁ ସକାଳ ହେବାରୁ ଗାଈଟି ମରିଯାଇଛି ଦେଖି ତାଙ୍କର ଅତିଶୟ ଦୁଃଖ ହେଲା ।।୮।। ଅଜାଣତରେ ସେ ଅପରାଧ କରିଥିଲେ । କିନ୍ତୁ କୁଳଗୁରୁ ବଶିଷ୍ଠ ତାଙ୍କୁ ଅଭିଶାପ ଦେଇ କହିଲେ 'ତୁ ଯେଉଁ କର୍ମ କରିଛୁ, ସେଥିରେ କ୍ଷତ୍ରିୟ ହୋଇ ରହିପାରିବୁ ନାହିଁ । ଯା', ଶୂଦ୍ର ହୋଇଯା' ।।୯।। ପୃଷଧ୍ର ଗୁରୁଙ୍କର ଅଭିଶାପକୁ ହାତ ଯୋଡ଼ି ଗ୍ରହଣ କଲେ ଓ ସବୁଦିନ ପାଇଁ ମୁନିମାନଙ୍କର ପ୍ରିୟ, ନୈଷ୍ଠିକ ବ୍ରହ୍ମଚର୍ଯ୍ୟ ବ୍ରତ ଧାରଣ କଲେ ।।୧୦।।

ସେ ସମସ୍ତ ପ୍ରାଣୀଙ୍କର ସମଦର୍ଶୀ ବନ୍ଧୁ ଭାବରେ ପରମଶୁଦ୍ଧ ସର୍ବାତ୍ମା ଭଗବାନ ବାସୁଦେବଙ୍କର ଏକାନ୍ତଭକ୍ତ ହୋଇଗଲେ ।।୧୧।। ତାଙ୍କର କୌଣସି ବସ୍ତୁ ପ୍ରତି ଆସକ୍ତି ନ ଥିଲା । ଚିତ୍ତବୃତ୍ତି ଶାନ୍ତ ହୋଇଗଲା । ସେ ଇନ୍ଦ୍ରିୟମାନଙ୍କୁ ବଶୀଭୂତ କରିସାରିଥିଲେ । ସେ କାହାରିକୁ କିଛି ମାଗୁ ନ ଥିଲେ । ଯାହା କିଛି ମିଳିଯାଉଥିଲା, ସେଥିରେ ଜୀବନ ବଞ୍ଚାଉଥିଲେ ।।୧୨।। ସେ ଆତ୍ମଜ୍ଞାନରେ ତୃପ୍ତ ଥିଲେ ଏବଂ ପରମାତ୍ମାଙ୍କଠାରେ ନିଜର ଚିତ୍ତକୁ ଅର୍ପଣ କରି ଅନେକ ସମୟରେ ସମାଧିସ୍ଥ ରହୁଥିଲେ । ସେ ଜଡ଼, ଅନ୍ଧ ଓ ବଧିର ପରି ହୋଇ ପୃଥିବୀରେ ବିଚରଣ କରୁଥିଲେ ।।୧୩।। ଏହିପରି ଜୀବନ ବିତାଇବାବେଳେ ଦିନେ ବନକୁ ଯାଇ ସେ ଦେଖିଲେ ଯେ, ଦାବାଗ୍ନି ଚାରିଆଡ଼କୁ ବ୍ୟାପିବାରେ ଲାଗିଛି । ମୁନି ପୃଷଧ୍ର ସେଥିରେ ନିଜକୁ ଝାସ ଦେଇ ପରଂବ୍ରହ୍ମଙ୍କୁ ଲାଭ କଲେ ।।୧୪।। ମନୁଙ୍କର ସବାସାନ ପୁଅ କବି କିଶୋରବୟସରୁ ଭୋଗାଦି ବିଷୟରୁ ନିଃସ୍ପୃହ ରହୁଥିଲେ । ସେ ବନ୍ଧୁମାନଙ୍କ ସହ ରାଜ୍ୟ ଛାଡ଼ି ବନକୁ ଚାଲିଗଲେ ଏବଂ ନିଜ ହୃଦୟରେ ଥିବା ପରମାତ୍ମାଙ୍କ ପ୍ରତି ଚିତ୍ତ ନିବେଶ କରି ପରମପଦ ଲାଭ କଲେ ।।୧୫।। ମନୁଙ୍କର ପୁତ୍ର କରୁଷଙ୍କଠାରୁ କାରୁଷ ନାମକ

କ୍ଷତ୍ରିୟ ଜାତିଙ୍କର ଉଦ୍‌ଭବ ହେଲା । ସେମାନେ ବ୍ରହ୍ମଣ୍ୟ ଓ ଧର୍ମପରାୟଣ ହୋଇ ଉତ୍ତରାପଥକୁ ରକ୍ଷା କରୁଥିଲେ ॥୧୬॥ ଧୃଷ୍ଟ ନାମକ ମନୁଙ୍କ ପୁତ୍ରଙ୍କଠାରୁ ଧାର୍ଷ୍ଟ ନାମକ କ୍ଷତ୍ରିୟ ଜାତି ଉତ୍ପନ୍ନ ହେଲା । ସେମାନେ ପୃଥିବୀରେ ବ୍ରାହ୍ମଣତ୍ୱ ଲାଭ କରିଥିଲେ । ନୃଗ ନାମକ ମନୁଙ୍କ ପୁତ୍ରଙ୍କ ଠାରୁ ସୁମତିଙ୍କର ଜନ୍ମ ଏବଂ ସୁମତିଙ୍କଠାରୁ ଭୂତଜ୍ୟୋତି ଓ ତାଙ୍କଠାରୁ ବସୁ ଜନ୍ମ ଗ୍ରହଣ କଲେ ॥୧୭॥ ବସୁଙ୍କର ପୁତ୍ର ହେଲେ ପ୍ରତୀକ । ପ୍ରତୀକଙ୍କର ପୁତ୍ର ଓଘବାନ୍ । ଓଘବାନ୍‌ଙ୍କର ପୁତ୍ରଙ୍କ ନାମ ମଧ୍ୟ ଓଘବାନ୍ ଥିଲା । ତାଙ୍କର ଓଘବତୀ ନାମକ ଏକ କନ୍ୟା ହେଲା । ଏହି କନ୍ୟାର ବିବାହ ସୁଦର୍ଶନଙ୍କ ସହିତ ହୋଇଥିଲା ॥୧୮॥ ମନୁପୁତ୍ର ନରିଷ୍ୟନ୍ତଙ୍କ ଠାରୁ ଚିତ୍ରସେନ, ଚିତ୍ରସେନଙ୍କର ପୁତ୍ର ଋକ୍ଷ, ଋକ୍ଷଙ୍କର ପୁତ୍ର ମୀଢ୍ୱାନ, ତାଙ୍କର ପୁତ୍ର ପୂର୍ଣ୍ଣ, ପୂର୍ଣ୍ଣଙ୍କ ପୁତ୍ର ଇନ୍ଦ୍ରସେନ, ଇନ୍ଦ୍ରସେନଙ୍କର ପୁତ୍ର ବୀତିହୋତ୍ର, ତାଙ୍କର ପୁତ୍ର ସତ୍ୟଶ୍ରବା, ସତ୍ୟଶ୍ରବାଙ୍କର ପୁତ୍ର ଉରୁଶ୍ରବା ଓ ତାଙ୍କର ପୁତ୍ର ହେଲେ ଦେବଦତ୍ତ ॥୧୯-୨୦॥ ଦେବଦତ୍ତଙ୍କର ଅଗ୍ନିବେଶ୍ୟ ନାମକ ପୁତ୍ର ହେଲେ । ତାଙ୍କଠାରୁ ଭଗବାନ ଅଗ୍ନି ସ୍ୱୟଂ ପୁତ୍ର ରୂପେ ଜନ୍ମ ଗ୍ରହଣ କରିଥିଲେ । ଅଗ୍ନିବେଶ୍ୟ ଜଣେ ବିଖ୍ୟାତ ଋଷି ହୋଇ କାନୀନ ଓ ଜାତୂକର୍ଣ୍ଣ୍ୟ ନାମରେ ପ୍ରସିଦ୍ଧ ହେଲେ । ଅଗ୍ନିବେଶ୍ୟଙ୍କ ଠାରୁ ଆଗ୍ନିବେଶାୟନ ନାମକ ବ୍ରାହ୍ମଣ ବଂଶ ଜାତ ହେଲେ । ପରୀକ୍ଷିତ, ନରିଷ୍ୟନ୍ତଙ୍କର ବଂଶ ମୁଁ ବର୍ଣ୍ଣନା କଲି । ଏବେ ଦିଷ୍ଟଙ୍କର ବଂଶ ବର୍ଣ୍ଣନା କରୁଛି ଶୁଣ ॥୨୧-୨୨॥ ଦିଷ୍ଟଙ୍କର ପୁତ୍ର ହେଲେ ନାଭାଗ । ସେ ପରବର୍ତ୍ତୀ ନାଭାଗଙ୍କଠାରୁ ଭିନ୍ନ ଥିଲେ ଏବଂ କର୍ମବଶରୁ ସେ ବୈଶ୍ୟ ହୋଇଗଲେ । ନାଭାଗଙ୍କର ପୁତ୍ର ଭଲନ୍ଦନ, ଭଲନ୍ଦନଙ୍କର ପୁତ୍ର ବତ୍ସପ୍ରୀତି, ତାଙ୍କର ପୁତ୍ର ପ୍ରାଂଶୁ, ପ୍ରାଂଶୁଙ୍କର ପୁତ୍ର ପ୍ରମତି, ପ୍ରମତିଙ୍କ ପୁତ୍ର ଖନିତ୍ର, ଖନିତ୍ରଙ୍କର ପୁତ୍ର ଚାକ୍ଷୁଷ ଏବଂ ଚାକ୍ଷୁଷଙ୍କର ପୁତ୍ର ବିବିଂଶତି ॥୨୩-୨୪॥ ବିବିଂଶତିଙ୍କର ପୁତ୍ର ରମ୍ଭ ଏବଂ ସେହି ରମ୍ଭଙ୍କର ଖନୀନେତ୍ର ନାମକ ଏକ ପରମ ଧାର୍ମିକ ପୁତ୍ର ଜନ୍ମ ହେଲେ । ଖନୀନେତ୍ରଙ୍କର ପୁତ୍ର କରନ୍ଧମ ରାଜା ହୋଇଥିଲେ । କରନ୍ଧମଙ୍କର ପୁତ୍ର ଅବୀକ୍ଷିତ୍, ତାଙ୍କର ପୁତ୍ର ମରୁତ୍ତ ଯେ କି ରାଜଚକ୍ରବର୍ତ୍ତୀ ହୋଇଥିଲେ । ସେ ଅଙ୍ଗିରାଙ୍କ ପୁତ୍ର ମହାଯୋଗୀ ସଂବର୍ତ୍ତଙ୍କଦ୍ୱାରା ଯଜ୍ଞ କରାଇଥିଲେ ॥୨୫-୨୬॥ ମରୁତ୍ତଙ୍କ ଯଜ୍ଞପରି ଆଉ କୌଣସି ଯଜ୍ଞ ହୋଇ ନାହିଁ । ସେ ଯଜ୍ଞରେ ଯେଉଁ ଛୋଟବଡ଼ ପାତ୍ର ବ୍ୟବହୃତ ହୋଇଥିଲା, ତାହା ସବୁ  ସୁନାରେ ତିଆରି ହୋଇଥିଲା । ଏହି ଯଜ୍ଞରେ ଇନ୍ଦ୍ର ସୋମପାନ କରି ମତୁଆଲ ହୋଇଯାଇଥିଲେ । ବ୍ରାହ୍ମଣମାନେ ଭୂରି ଦକ୍ଷିଣା ଲାଭ କରି ସନ୍ତୁଷ୍ଟ ହୋଇଥିଲେ । ମରୁତ୍‌ଗଣ ପରଶିବା କାର୍ଯ୍ୟ କରିଥିଲେ ଏବଂ ବିଶ୍ୱଦେବମାନେ ସଭାସଦ୍ ଥିଲେ ॥୨୭-୨୮॥

ମରୁତ୍ତଙ୍କର ପୁତ୍ର ଦମ, ଦମଙ୍କର ପୁତ୍ର ରାଜବର୍ଦ୍ଧନ, ତାଙ୍କର ପୁତ୍ର ସୁଧୃତି, ସୁଧୃତିଙ୍କର ପୁତ୍ର ନର, ନରଙ୍କର ପୁତ୍ର କେବଳ, କେବଳଙ୍କର ପୁତ୍ର ଧୁନ୍ଧୁମାନ, ଧୁନ୍ଧୁମାନଙ୍କର ପୁତ୍ର ବେଗବାନ୍, ବେଗବାନଙ୍କର ପୁତ୍ର ବୁଧ, ଏବଂ ବୁଧଙ୍କର ପୁତ୍ର ହେଲେ ରାଜା ତୃଣବିନ୍ଦୁ ॥୨୯-୩୦॥ ତୃଣବିନ୍ଦୁ ବହୁଗୁଣସମ୍ପନ୍ନ ଥିଲେ । ତାଙ୍କୁ ଶ୍ରେଷ୍ଠ ଅପ୍‌ସରା ଅଳଂବୁଷା ଦେବୀ ବିବାହ କରିଥିଲେ । ତୃଣବିନ୍ଦୁଙ୍କଠାରୁ ଅଳଂବୁଷାଙ୍କ ଗର୍ଭରେ ପୁତ୍ରମାନେ ଜନ୍ମହେଲେ ଏବଂ ଇଳବିଳା ନାମକ ଗୋଟିଏ କନ୍ୟା ଜନ୍ମ ହୋଇଥିଲା ॥୩୧॥ ମୁନିଶ୍ରେଷ୍ଠ ବିଶ୍ରବା ନିଜର ମହାଯୋଗୀ ପିତା ପୁଲସ୍ତ୍ୟଙ୍କଠାରୁ ଉତ୍ତମ ବିଦ୍ୟା ଲାଭ କରି ଇଳବିଳାଙ୍କ ଗର୍ଭରେ କୁବେର ନାମକ ପୁତ୍ର ଉତ୍ପାଦନ କଲେ, ଯେ କି ଲୋକପାଳ ହୋଇଥିଲେ ॥୩୨॥ ତୃଣବିନ୍ଦୁଙ୍କର ପୁତ୍ର ବିଶାଳ, ଶୂନ୍ୟବନ୍ଧୁ ଓ ଧୂମ୍ରକେତୁ । ବିଶାଳ ଏକ ରାଜବଂଶ ସ୍ଥାପନ କରି ବୈଶାଳୀ ନଗରୀ ନିର୍ମାଣ କରିଥିଲେ ॥୩୩॥ ତାଙ୍କର ପୁତ୍ର ହେଲେ ହେମଚନ୍ଦ୍ର । ହେମଚନ୍ଦ୍ରଙ୍କର ପୁତ୍ର ଧୂମ୍ରାକ୍ଷ, ଧୂମ୍ରାକ୍ଷଙ୍କର ପୁତ୍ର ସଂଯମ, ସଂଯମଙ୍କର ପୁତ୍ର ଦେବଜ ଓ କୃଶାଶ୍ୱ ଏବଂ କୃଶାଶ୍ୱଙ୍କର ପୁତ୍ର ସୋମଦତ୍ତ । ସୋମଦତ୍ତ ବହୁ ଅଶ୍ୱମେଧ ଯଜ୍ଞ କରି ବିଷ୍ଣୁଙ୍କର ଆରାଧନା କରିଥିଲେ ଓ ଶ୍ରେଷ୍ଠ ଯୋଗୀମାନଙ୍କର ଆଶ୍ରୟରେ ଉତ୍ତମ ଗତି ଲାଭ କରିଥିଲେ ॥୩୪-୩୫॥ ସୋମଦତ୍ତଙ୍କର ପୁତ୍ର ହେଲେ ସୁମତି । ସୁମତିଙ୍କ ପୁତ୍ର ଜନମେଜୟ । ଏହି ବିଶାଳବଂଶୀୟ ରାଜାମାନେ ତୃଣବିନ୍ଦୁଙ୍କର କୀର୍ତ୍ତି ବର୍ଦ୍ଧନ କରିଥିଲେ ॥୩୬॥

## ତୃତୀୟ ଅଧ୍ୟାୟ

# ଚ୍ୟବନ ଓ ସୁକନ୍ୟା

ଶ୍ରୀ ଶୁକଦେବ କହିଲେ, ପରିକ୍ଷିତ, ମନୁଙ୍କ ପୁତ୍ର ରାଜା ଶର୍ଯାତି ବେଦଜ୍ଞ ପଣ୍ଡିତ ଥିଲେ । ସେ ଅଙ୍ଗିରାଗୋତ୍ରର ଋଷିମାନଙ୍କ ଯଜ୍ଞରେ ଦ୍ୱିତୀୟ ଦିନର କର୍ମ ସମ୍ପର୍କରେ ଉପଦେଶ ଦେଇଥିଲେ ॥୧॥ ତାଙ୍କର ସୁକନ୍ୟା ନାମରେ ଏକ କମଳନୟନୀ କନ୍ୟା ଥିଲେ । ଦିନେ ରାଜା ଶର୍ଯାତି କନ୍ୟାସହ ବନରେ ବୁଲୁ ବୁଲୁ ଚ୍ୟବନ ଋଷିଙ୍କ ଆଶ୍ରମରେ ଯାଇପହଁଚିଲେ ॥୨॥ ସଖୀମାନଙ୍କ ଗହଣରେ ସୁକନ୍ୟା ବୃକ୍ଷମାନଙ୍କରେ ଫଳ ଖୋଜୁ ଖୋଜୁ ଏକ ଉଇହୁଙ୍କାର ଜଳାଦୁଇଟିରେ ଜୁଳୁଜୁଳିଆ ପୋକପରି ଦୁଇଟି ମିଞ୍ଜିମିଞ୍ଜି ହେଉଥିବା ଆଲୋକ ଦେଖିପାରିଲେ ॥୩॥ ଦୈବବଶତଃ ବାଲ୍ୟଚପଳତା ଯୋଗୁ ସେ ଏକ କଣ୍ଟା ଧରି ସେହି ଦୁଇଟି ଆଲୋକକୁ ଫୋଡ଼ିଦେଲେ । ସେଥିରୁ ରକ୍ତ ଝରିବାକୁ ଲାଗିଲା ॥୪॥ ସଙ୍ଗେ ସଙ୍ଗେ ଶର୍ଯ୍ୟାତିଙ୍କ ସୈନ୍ୟମାନଙ୍କର ମଳମୂତ୍ର ବନ୍ଦ ହୋଇଗଲା । ରାଜର୍ଷି ଶର୍ଯାତି ଆଶ୍ଚର୍ଯ୍ୟ ହୋଇ ସୈନ୍ୟମାନଙ୍କୁ ପଚାରିଲେ, ତୁମେମାନେ କେହି ମହର୍ଷି ଚ୍ୟବନଙ୍କ ପ୍ରତି କୌଣସି ଅଭଦ୍ର ବ୍ୟବହାର କରିଛ କି ? ମୋତେ ଜଣାଯାଉଛି, ଆମମଧ୍ୟରୁ କେହି ନା କେହି ଏପରି କୌଣସି ଅନୁଚିତ କାର୍ଯ୍ୟ କରିଛନ୍ତି ॥୫-୬॥ ସେତେବେଳେ ସୁକନ୍ୟା ଡରିଡରି ନିଜର ପିତାଙ୍କୁ କହିଲେ, 'ପିତା, ମୁଁ କିଛି ଅନ୍ୟାୟ କାର୍ଯ୍ୟ କରିଛି, ଜାଣି ନ ପାରି ଉଇହୁଙ୍କାରୁ ବାହାରୁଥିବା ଦୁଇଟି ଜ୍ୟୋତିକୁ ମୁଁ କଣ୍ଟାରେ ଫୋଡ଼ି ଦେଇଛି' ॥୭॥ କନ୍ୟାର କଥା ଶୁଣି ଶର୍ଯାତି ବିଚଳିତ ହୋଇଗଲେ । ସେ ବହୁ ସ୍ତୁତି କରି ଉଇହୁଙ୍କା ମଧ୍ୟରେ ଅନ୍ତର୍ହିତ ଥିବା ଚ୍ୟବନ ମୁନିଙ୍କୁ ଧୀରେ ଧୀରେ ପ୍ରସନ୍ନ କରାଇଲେ ॥୮॥ ସେ ଚ୍ୟବନ ମୁନିଙ୍କର ଅଭିପ୍ରାୟ ଜାଣିପାରିଲେ ଓ ତାଙ୍କୁ ନିଜର କନ୍ୟାକୁ ଦାନ କଲେ । ବିପଦରୁ ମୁକ୍ତ ହୋଇ ଚ୍ୟବନଋଷିଙ୍କ ଅନୁମତିକ୍ରମେ ସେ ନିଜର ରାଜଧାନୀକୁ ଫେରିଗଲେ ॥୯॥ ଚ୍ୟବନ ଋଷି ଅତିଶୟ କ୍ରୋଧୀ ଥିଲେ । ତାହାଙ୍କୁ ପତିରୂପେ ଲାଭ କରି ସୁକନ୍ୟା ଅତି ସାବଧାନରେ ତାଙ୍କର ସେବା କରି ତାଙ୍କୁ ସନ୍ତୁଷ୍ଟ କଲେ । ସେ ପତିଙ୍କର ଅଭିପ୍ରାୟ ଜାଣି ତାଙ୍କର ସେବା କରୁଥିଲେ ॥୧୦॥ କିଛିଦିନ ଗଡ଼ିଯିବା ପରେ ଅଶ୍ୱିନୀକୁମାର ଦ୍ୱୟ ସେହି ଆଶ୍ରମରେ ଆସି ପହଞ୍ଚିଲେ । ଚ୍ୟବନ ମୁନି ଦୁହିଁଙ୍କର ଯଥୋଚିତ ସତ୍କାର କରି କହିଲେ, ଆପଣ ମୋତେ ଯୌବନ ଦାନ କରନ୍ତୁ । ଆପଣ ଯଜ୍ଞରେ ସୋମପାନରୁ ବଞ୍ଚିତ ହୋଇଛନ୍ତି । ମୁଁ ଆପଣ ଦୁହିଁଙ୍କୁ ଯଜ୍ଞରେ ସୋମରସର ପାତ୍ର ଦାନ କରବି । କିନ୍ତୁ ଯେଉଁ ରୂପ ଓ ଯୌବନ ପ୍ରମଦାମାନଙ୍କର ପ୍ରିୟ, ତାହା ମୋତେ ପ୍ରଦାନ କରନ୍ତୁ ॥୧୧-୧୨॥ ଅଶ୍ୱିନୀକୁମାର ଦ୍ୱୟ ବୈଦ୍ୟମାନଙ୍କ ମଧ୍ୟରେ ଶ୍ରେଷ୍ଠ ଥିଲେ । ସେଦୁହେଁ ଚ୍ୟବନଙ୍କୁ ଅଭିନନ୍ଦନ କରି କହିଲେ, ତାହା ହିଁ ହେବ । ଆପଣ ବର୍ତ୍ତମାନ ସିଦ୍ଧମାନଙ୍କ ନିର୍ମିତ ଏହି ହ୍ରଦରେ ବୁଡ଼ ପକାଇ ଦିଅନ୍ତୁ ॥୧୩॥ ଜରାଜୀର୍ଣ୍ଣ ଚ୍ୟବନ ଋଷିଙ୍କ ଦେହର ଚର୍ମ ଧୁଡୁଧୁଡୁ ହେଉଥିଲା, ବାଳ ପାଚିଯାଇଥିଲା ଏବଂ ଦେହସାରା ଶିରାମାଳ ଦେଖାଯାଉଥିଲା । ଅଶ୍ୱିନକୁମାର ଦୁହେଁ ଚ୍ୟବନଙ୍କୁ ନେଇ ହ୍ରଦରେ ପ୍ରବେଶ କରାଇଲେ ॥୧୪॥ ପରେପରେ ହ୍ରଦରୁ ତିନି ଜଣ ରୂପବାନ୍ ପୁରୁଷ ବାହାରିଲେ । ସେମାନେ ପଦ୍ମର ମାଳା, କୁଣ୍ଡଳ ଏବଂ ସୁନ୍ଦର ବସ୍ତ୍ର ପରିଧାନ କରି ଏକାପରି ଦେଖାଯାଉଥିଲେ ଏବଂ ସେମାନଙ୍କ ରୂପ ସ୍ତ୍ରୀମାନଙ୍କର ଅତିଶୟ ଆକର୍ଷକ ଥିଲା ॥୧୫॥ ପରମସାଧ୍ୱୀ ସୁନ୍ଦରୀ ସୁକନ୍ୟା ଦେଖିଲେ ଯେ, ସୂର୍ଯ୍ୟପରି ତେଜସ୍ୱୀ ଏହି ତିନି ଜଣ ଯାକ ସମାନ ଦେଖାଯାଉଛନ୍ତି । ତେଣୁ ସେ ନିଜର ସ୍ୱାମୀଙ୍କୁ ଚିହ୍ନି ନ ପାରି ଅଶ୍ୱିନକୁମାର ଦୁହିଁଙ୍କର ଶରଣ ନେଲେ ॥୧୬॥ ଅଶ୍ୱିନକୁମାର ସୁକନ୍ୟାଙ୍କର ପାତିବ୍ରତ୍ୟରେ ସନ୍ତୁଷ୍ଟ ହୋଇ ତାଙ୍କର ସ୍ୱାମୀ କିଏ ତାହା ବତାଇଦେଲେ, ଏବଂ ମୁନିଙ୍କଠାରୁ ବିଦାୟ ନେଇ ବିମାନରେ ସ୍ୱର୍ଗକୁ ପ୍ରସ୍ଥାନ କଲେ ॥୧୭॥

କିଛିଦିନ ପରେ ରାଜା ଶର୍ଯାତି ଯଜ୍ଞ କରିବା ଉଦ୍ଦେଶ୍ୟରେ ଚ୍ୟବନ ମୁନିଙ୍କର ଆଶ୍ରମରେ ପହଞ୍ଚିଲେ । ସେ ଦେଖିଲେ ଯେ, ତାଙ୍କର କନ୍ୟାଙ୍କର ପାଖରେ ସୂର୍ଯ୍ୟପରି ତେଜସ୍ୱୀ ଜଣେ ପୁରୁଷ ବସିଛନ୍ତି ॥୧୮॥ କନ୍ୟା ତାଙ୍କର ପଦବନ୍ଦନା କରିବାରୁ ରାଜା ଆଶୀର୍ବାଦ ନ କରି ଅସନ୍ତୁଷ୍ଟ ହୋଇ ପଚାରିଲେ, 'ତୁ ଏ କି କାର୍ଯ୍ୟ କରିଛୁ ? ସର୍ବଜନପୂଜ୍ୟ ଚ୍ୟବନ ଋଷିଙ୍କୁ ଅବଜ୍ଞା କରି ଏକ ଜାରପୁରୁଷକୁ ଗ୍ରହଣ କରିଛୁ ! ଜରାଗ୍ରସ୍ତ ଓ ତୋର ଅଭିଳଷିତ ନ ହେଲେ ମଧ୍ୟ ସେ ତୋର ସ୍ୱାମୀ । ଅସତୀ, ତୁ ସତ୍‌କୁଳରେ ଜନ୍ମ, ତୋର ମନ କିପରି ଏ ଅସତ୍ ପଥକୁ ଗଲା ? ଲଜ୍ଜାଶର୍ମ ଛାଡ଼ି ତୁ ଏହି ନିନ୍ଦନୀୟ କାର୍ଯ୍ୟ କରିବାଦ୍ୱାରା ପିତୃକୁଳ ଓ ପତିକୁଳର କଳଙ୍କ ହୋଇଛୁ ଏବଂ ଉଭୟକୁଳକୁ ନରକଗାମୀ କରିଛୁ ।' ୧୯-୨୧॥ ଏହିପରି କହିଚାଲିଥିବା ପିତାଙ୍କୁ ସାମାନ୍ୟ ଆଶ୍ଚର୍ଯ୍ୟ ହୋଇ ହସିହସି ସୁକନ୍ୟା କହିଲେ, 'ପିତା, ଏ ହେଉଛନ୍ତି ଆପଣଙ୍କର ଜାମାତା -- ଭୃଗୁନନ୍ଦନ ଚ୍ୟବନ ମହର୍ଷି' ॥୨୨॥ ଏହାପରେ ସେ ନିଜର ପିତାଙ୍କୁ ମହର୍ଷି ଚ୍ୟବନଙ୍କର ରୂପଯୌବନ ଲାଭର ସମସ୍ତ ବୃତ୍ତାନ୍ତ ଶୁଣାଇଲେ । ପିତା ଶର୍ଯାତି ସ୍ନେହରେ କନ୍ୟାକୁ ଆଲିଙ୍ଗନ କଲେ ॥୨୩॥ ମହର୍ଷି ଚ୍ୟବନ ବୀର ଶର୍ଯାତିଙ୍କୁ ସୋମଯଜ୍ଞର ଅନୁଷ୍ଠାନ କରାଇଲେ ଏବଂ ସୋମପାନର ଅଧିକାରୀ ନ ହେଲେ ମଧ୍ୟ ନିଜ ତେଜଦ୍ୱାରା ଅଶ୍ୱିନୀକୁମାରଦ୍ୱୟଙ୍କପାଇଁ ସୋମପାତ୍ର ଧରିଲେ ॥୨୪॥ କ୍ଷଣକୋପୀ ଇନ୍ଦ୍ର ଏହା ସହି ନ ପାରି ଶର୍ଯାତିଙ୍କୁ ମାରିବାପାଇଁ ବଜ୍ର ଉଠାଇଲେ । ମହର୍ଷି ଚ୍ୟବନ ବଜ୍ରସହିତ ଇନ୍ଦ୍ରଙ୍କର ହସ୍ତକୁ ସ୍ତମ୍ଭିତ କରି ରଖିଦେଲେ ॥୨୫॥ ସେହିଦିନଠାରୁ ଦେବତାମାନେ ଅଶ୍ୱିନୀକୁମାର ଦୁହିଁଙ୍କୁ ସୋମପାତ୍ର ଦେବାପାଇଁ ରାଜି ହୋଇଗଲେ । ବୈଦ୍ୟ ହୋଇଥିବାରୁ ଅଶ୍ୱିନୀକୁମାରଦୁହିଁଙ୍କୁ ସେମାନେ ପୂର୍ବରୁ ସୋମପାନରୁ ବଞ୍ଚିତ କରିଥିଲେ ॥୨୬॥

ପରିକ୍ଷିତ, ଶର୍ଯାତିଙ୍କର ତିନୋଟି ପୁଅ ଥିଲେ -- ଉତ୍ତାନବର୍ହି, ଆନର୍ତ୍ତ ଓ ଭୂରିଷେଣ । ଆନର୍ତ୍ତଙ୍କଠାରୁ ରେବତ ନାମକ ପୁତ୍ରଙ୍କର ଜନ୍ମ ହେଲା ॥୨୭॥ ଶତ୍ରୁନାଶନ ରାଜା ସେହି ରେବତ ସମୁଦ୍ରମଧ୍ୟରେ କୁଶସ୍ଥଳୀ ନାମକ ନଗରୀ ନିର୍ମାଣ କରିଥିଲେ ଏବଂ ସେଠାରେ ଥାଇ ଆନର୍ତ୍ତ ଆଦି ଦେଶମାନଙ୍କୁ ପାଳନ କଲେ ॥୨୮॥ ତାଙ୍କର ଶହେ ଜଣ ଉତ୍ତମ ପୁତ୍ର ଥିଲେ । ସେମାନଙ୍କ ମଧ୍ୟରେ ଜ୍ୟେଷ୍ଠ ପୁତ୍ର କକୁଦ୍ମୀ ନିଜ କନ୍ୟା ରେବତୀଙ୍କ ସହିତ ବ୍ରହ୍ମାଙ୍କ ପାଖକୁ ଯାଇଥିଲେ ॥୨୯॥ ସେତେବେଳେ ଗନ୍ଧର୍ବମାନେ ସଙ୍ଗୀତ କରୁଥିବାରୁ ସେ କିଛିକ୍ଷଣ ଅପେକ୍ଷା କଲେ ଏବଂ ତା'ପରେ ଅବସର ପାଇ କନ୍ୟାପାଇଁ ବର ଖୋଜିବା ଅଭିପ୍ରାୟରେ ଆସିଛନ୍ତି ବୋଲି ବ୍ରହ୍ମାଙ୍କୁ ନିବେଦନ କଲେ ॥୩୦॥ ତାଙ୍କର ଅଭିପ୍ରାୟ ଶୁଣି ବ୍ରହ୍ମା ହସିହସି କହିଲେ, ରାଜା, ତୁମେ ମନେମନେ ଯାହାଙ୍କୁ ସବୁ ବରରୂପରେ ଇଚ୍ଛା କରିଛ, କାଳବଶରେ ସେମାନଙ୍କର ବିନାଶ ଘଟିଛି । ଏବେ ତାଙ୍କର ପୁତ୍ର, ପୌତ୍ର ଓ ଗୋତ୍ରାଦିର ନାମ ଶୁଣିବାକୁ ମିଳିବ ନାହିଁ । ତୁମେ ଯେତିକି ସମୟ ବ୍ରହ୍ମଲୋକରେ ରହିଲ, ସେହି ସମୟମଧ୍ୟରେ ସତେଇଶଟି ଚତୁର୍ଯୁଗର ସମୟ ବିତିଗଲାଣି । ବର୍ତ୍ତମାନ ଦେବାଧିଦେବ ନାରାୟଣଙ୍କର ଅଂଶାବତାର ମହାବଳୀ ବଳଦେବ ପୃଥିବୀରେ ବିଦ୍ୟମାନ ॥୩୧-୩୩॥ ରାଜା, ଏହି ପୁରୁଷରତ୍ନଙ୍କୁ ତୁମର କନ୍ୟାରତ୍ନ ଦାନ କର । ସେହି ଭୂତଭାବନ ଭଗବାନ୍ ପୃଥିବୀର ଭାର ହରଣ କରିବାପାଇଁ ନିଜ ଅଂଶରେ ପୃଥିବୀରେ ଅବତୀର୍ଣ୍ଣ ହୋଇଛନ୍ତି । ତାଙ୍କର ପବିତ୍ର ଚରିତ ଶ୍ରବଣ ଓ କୀର୍ତ୍ତନର ଯୋଗ୍ୟ । ଏହିପରି ବ୍ରହ୍ମାଙ୍କର ଆଦେଶ ପାଇ କକୁଦ୍ମୀ ତାଙ୍କ ପଦ ବନ୍ଦନା କରି ନିଜ ରାଜଧାନୀକୁ ଫେରି ଆସିଲେ । ଆସି ଦେଖିଲେ ଯେ ଯକ୍ଷମାନଙ୍କ ଭୟରେ ତାଙ୍କର ଭାଇମାନେ ସେହି ନଗରୀକୁ ଛାଡ଼ି ପଳାଇଯାଇଛନ୍ତି ॥୩୪-୩୫॥ ମହାବଳଶାଳୀ ବଳଦେବଙ୍କୁ ନିଜର ଅନିନ୍ଦ୍ୟସୁନ୍ଦରୀ କନ୍ୟାକୁ ଅର୍ପଣ କରି ରାଜା ତପସ୍ୟା କରିବାପାଇଁ ନରନାରାୟଣଙ୍କର ଧାମ ବଦରିକାଶ୍ରମକୁ ଚାଲିଗଲେ ॥୩୬॥

## ଚତୁର୍ଥ ଅଧ୍ୟାୟ

# ନାଭାଗ ଓ ଅମ୍ବରୀଷ

ଶ୍ରୀ ଶୁକଦେବ କହିଲେ, ପରିକ୍ଷିତ, ମନୁପୁତ୍ର ନଭଗଙ୍କର ପୁତ୍ର ଥିଲେ ନାଭାଗ । ସେ କନିଷ୍ଠ ଥିଲେ । ଦୀର୍ଘକାଳ ବ୍ରହ୍ମଚର୍ଯ୍ୟ ପାଳନ କରି ସେ ଯେତେବେଳେ ଫେରି ଆସିଲେ, ସେତେବେଳକୁ ବଡ଼ଭାଇମାନେ ପିତାଙ୍କର ସବୁ ସମ୍ପତ୍ତିକୁ ବାଣ୍ଟି ନେଇଥିଲେ ॥୧॥ ତାଙ୍କ ସମ୍ପତ୍ତିର ଭାଗ ବିଷୟରେ ସେ ଭାଇମାନଙ୍କୁ ପଚାରିବାରୁ ସେମାନେ ଉତ୍ତର ଦେଲେ, 'ପିତା ହିଁ ତୁମର ଭାଗରେ ପଡ଼ିଛନ୍ତି' । ସେ ପିତାଙ୍କୁ ଯାଇ ପଚାରିବାରୁ, ପିତା କହିଲେ, ପୁତ୍ର, ତୁମେ ସେମାନଙ୍କର କଥା ଶୁଣ ନାହିଁ । ବର୍ତ୍ତମାନ ଅଙ୍ଗିରାଗୋତ୍ରର ବ୍ରାହ୍ମଣମାନେ ଏକ ବଡ଼ ଯଜ୍ଞ କରୁଛନ୍ତି । ସେମାନେ ପ୍ରତ୍ୟେକ ଷଷ୍ଠଦିନରେ ନିଜର କର୍ମ ଭୁଲି ଯାଉଛନ୍ତି । ତୁମେ ବିଦ୍ୱାନ୍, ତୁମେ ସେହି ବ୍ରାହ୍ମଣମାନଙ୍କ ପାଖକୁ ଯାଇ ସେମାନଙ୍କୁ ଦୁଇଟି ବୈଶ୍ୱଦେବ ସୂକ୍ତ ବତାଇଦେବ । କର୍ମ ସମ୍ପୂର୍ଣ୍ଣ ହେବା ପରେ ସେମାନେ ସ୍ୱର୍ଗକୁ ଚାଲିଯିବେ । କିନ୍ତୁ ଯିବା ପୂର୍ବରୁ ଯଜ୍ଞରୁ ବଞ୍ଚିଥିବା ସମସ୍ତ ଧନ ତୁମକୁ ଦେଇଯିବେ । ବର୍ତ୍ତମାନ ତୁମେ ସେଠାକୁ ଚାଲିଯାଅ । ନାଭାଗ ପିତାଙ୍କର ଆଜ୍ଞା ପାଳନ କଲେ ଏବଂ ମୁନିମାନେ ତାଙ୍କୁ ଯଜ୍ଞାବଶିଷ୍ଟ ସମସ୍ତ ଧନ ଦାନ କରି ସ୍ୱର୍ଗକୁ ଚାଲିଗଲେ ॥୨-୫॥ ନାଭାଗ ସେହି ସବୁ ଧନ ଗ୍ରହଣ କରିବାକୁ ଯାଉଛନ୍ତି, ଇତି ମଧ୍ୟରେ ଏକ କୃଷ୍ଣକାୟ ପୁରୁଷ ସେଠାରେ ଉପସ୍ଥିତ ହୋଇ କହିଲେ, ଏହି ଯଜ୍ଞଭୂମିରେ ଯାହା କିଛି ସମ୍ପତ୍ତି ଅବଶିଷ୍ଟ ଅଛି, ସେ ସବୁ ମୋର ॥୬॥ ମନୁଙ୍କର ବଂଶଧର ନାଭାଗ 'ମୋତେ ଋଷିମାନେ ଏହା ଦେଇଛନ୍ତି' ବୋଲି କହିବାରୁ 'ତୁମେ ଯାଇ ନିଜର ପିତାଙ୍କୁ ପଚାର' ବୋଲି ସେହି ପୁରୁଷ ଉତ୍ତର ଦେଲେ ଏବଂ ନାଭାଗ ଯାଇ ତାଙ୍କର ପିତାଙ୍କୁ ପଚାରିଲେ ॥୭॥ ପିତା କହିଲେ, 'ଥରେ ଦକ୍ଷପ୍ରଜାପତିଙ୍କ ଯଜ୍ଞରେ ଋଷିମାନେ ସ୍ଥିର କରିଥିଲେ ଯେ, ଯଜ୍ଞଭୂମିରେ ଯାହା କିଛି ବଞ୍ଚି ରହିବ, ତାହା ହେବ ରୁଦ୍ରଙ୍କର ଭାଗ । ତେଣୁ ଏହା ହେଉଛି ମହାଦେବଙ୍କର ପ୍ରାପ୍ୟ ।'୮॥ ଏହା ଶୁଣି ନାଭାଗ ସେହି ପୁରୁଷଙ୍କୁ ପ୍ରଣାମ କରି କହିଲେ, 'ହେ ଈଶ୍ୱର, ଏହା ଆପଣଙ୍କର ଧନ ବୋଲି ମୋର ପିତା କହିଛନ୍ତି । ବ୍ରହ୍ମନ୍, ମୁଁ ଆପଣଙ୍କର ଶ୍ରୀଚରଣରେ ପ୍ରଣାମ କରୁଛି । ମୋ ଅପରାଧ କ୍ଷମା କରନ୍ତୁ ।'୯॥ ଭଗବାନ ରୁଦ୍ର କହିଲେ, ତୁମର ପିତା ଧର୍ମସମ୍ମତ କଥା କହିଛନ୍ତି । ତୁମେ ମଧ୍ୟ ସତ୍ୟ କହିଛ । ବେଦମନ୍ତ୍ର ତ ପୂର୍ବରୁ ତୁମକୁ ଜଣାଅଛି । ବର୍ତ୍ତମାନ ମୁଁ ତୁମକୁ ସନାତନ ବ୍ରହ୍ମଜ୍ଞାନ ପ୍ରଦାନ କରୁଛି । ଯଜ୍ଞର ଅବଶିଷ୍ଟ ଧନ ମଧ୍ୟ ତୁମକୁ ମୁଁ ଦାନ କରୁଛି । ତୁମେ ମଧ୍ୟ ତାହା ଗ୍ରହଣ କର । ଏହା କହି ସତ୍ୟବତ୍ସଳ ଭଗବାନ ରୁଦ୍ର ସେଠାରୁ ଅନ୍ତର୍ହିତ ହୋଇଗଲେ ।୧୦-୧୧॥ ଯେଉଁ ବ୍ୟକ୍ତି ପ୍ରାତଃକାଳରେ ଓ ସନ୍ଧ୍ୟା ସମୟରେ ସଂଯମ ଆଚରଣପୂର୍ବକ ଏହି ଆଖ୍ୟାନକୁ ସ୍ମରଣ କରିବ, ସେ ବେଦଜ୍ଞ ଓ ବିଦ୍ୱାନ୍ ହେବ ଓ ନିଜର ସ୍ୱରୂପକୁ ଜାଣିପାରିବ ॥୧୨॥

ନାଭାଗଙ୍କର ପୁତ୍ର ହେଲେ ଅମ୍ବରୀଷ । ସେ ଭଗବାନଙ୍କର ପରମଭକ୍ତ ଓ ଅତ୍ୟନ୍ତ ପୁଣ୍ୟବନ୍ତ ପୁରୁଷ ଥିଲେ । ଯେଉଁ ବ୍ରହ୍ମଶାପ ଅମୋଘ, ତାହା ଅମ୍ବରୀଷଙ୍କୁ ସ୍ପର୍ଶ କରିପାରି ନ ଥିଲା ॥୧୩॥

ରାଜା ପରିକ୍ଷିତ ପଚାରିଲେ, ପରମଜ୍ଞାନୀ ରାଜର୍ଷି ଅମ୍ବରୀଷଙ୍କ କଥା ମୁଁ ଶୁଣିବାକୁ ଚାହୁଁଛି, ବ୍ରହ୍ମଶାପର କୌଣସି ପ୍ରତିକାର ନାହିଁ, ସେଥିରୁ ସେ କିପରି ମୁକ୍ତ ହୋଇପାରିଲେ ? ॥୧୪॥ ଅମ୍ବରୀଷ ମହାଭାଗ୍ୟବାନ୍ ଥିଲେ । ସେ ସପ୍ତଦ୍ୱୀପା ପୃଥିବୀର ଚକ୍ରବର୍ତ୍ତୀ ରାଜା ହୋଇ ଅତୁଳନୀୟ ଐଶ୍ୱର୍ଯ୍ୟ ଓ ଅଚଳା ସମ୍ପତ୍ତିର ଅଧିକାରୀ ଥିଲେ । କିନ୍ତୁ ଅତିଦୁର୍ଲ୍ଲଭ ଭୋଗ୍ୟବସ୍ତୁମାନଙ୍କୁ ସ୍ୱପ୍ନପରି ଅସ୍ଥାୟୀ ମନେ କରୁଥିଲେ । କାରଣ ସେ ଜାଣିଥିଲେ ଯେ; ଏହି ବିନାଶଶୀଳ ବିଭବର ଲୋଭରେ ପଡ଼ି ମନୁଷ୍ୟ କେବଳ ଘୋର ଦୁଃଖ ହିଁ ଲାଭ କରେ ॥୧୫-୧୬॥ ରାଜା ଅମ୍ବରୀଷ ଭଗବାନ ବାସୁଦେବଙ୍କୁ ଓ ତାଙ୍କର ଭକ୍ତ ସାଧୁମହାତ୍ମାମାନଙ୍କୁ

ଅତିଶୟ ଭକ୍ତି କରୁଥିଲେ । ସେଥିପାଇଁ ସେ ସମଗ୍ର ବିଶ୍ୱର ଅଧିକାରକୁ ଲୋଷ୍ଟ୍ରବତ୍ ତୁଚ୍ଛଜ୍ଞାନ କରୁଥିଲେ ॥୧୭॥ ଭଗବାନ ଶ୍ରୀକୃଷ୍ଣଙ୍କର ପଦାରବିନ୍ଦରେ ନିଜର ମନକୁ ଅର୍ପଣ କରି ବଚନକୁ ତାଙ୍କର ଗୁଣବର୍ଣ୍ଣନାରେ, ହସ୍ତ ଦୁଇଟିକୁ ଶ୍ରୀହରିଙ୍କର ମନ୍ଦିରମାର୍ଜ୍ଜନା ଆଦି କାର୍ଯ୍ୟରେ ଏବଂ କର୍ଣ୍ଣଦ୍ୱୟକୁ ତାଙ୍କରି ପବିତ୍ର କଥାମୃତ ଶ୍ରବଣରେ ନିୟୋଜିତ କରିଥିଲେ ॥୧୮॥ ତାଙ୍କ ନେତ୍ରଦ୍ୱୟକୁ ଶ୍ରୀମୁକୁନ୍ଦଙ୍କର ମନ୍ଦିର ଓ ମୂର୍ତ୍ତିଦର୍ଶନରେ, ଶରୀରକୁ ଭଗବତ୍ ଭକ୍ତଙ୍କର ଗାତ୍ର ସଂସ୍ପର୍ଶରେ, ନାସିକାକୁ ଶ୍ରୀକୃଷ୍ଣଙ୍କ ପାଦପଦ୍ମରେ ଅର୍ପିତ ତୁଳସୀଦଳର ଗନ୍ଧରେ ଏବଂ ରସନାକୁ ତାଙ୍କର ନୈବେଦ୍ୟରୂପ ପ୍ରସାଦ ସେବନରେ ସମର୍ପିତ କରିଥିଲେ ॥୧୯॥ ତାଙ୍କର ପଦଦ୍ୱୟ ଲାଗିଥିଲା ଶ୍ରୀଭଗବାନଙ୍କର କ୍ଷେତ୍ରକୁ ପଦଯାତ୍ରା କରିବାରେ ଏବଂ ମସ୍ତକ ହୃଷୀକେଶଙ୍କର ପାଦପଦ୍ମକୁ ବନ୍ଦନା କରିବାରେ ନିୟୋଜିତ ହୋଇଥିଲା । କୌଣସି ବସ୍ତୁର କାମନା ନୁହେଁ, ଭଗବାନଙ୍କର ଦାସ ହୋଇ ରହିବା ଥିଲା ତାଙ୍କର ଏକମାତ୍ର କାମନା ଯେପରିକି କେବଳ ଉତ୍ତମଶ୍ଳୋକ ଭଗବାନଙ୍କୁ ଆଶ୍ରୟ କରିଥିବା ବ୍ୟକ୍ତିର ଏହାସବୁ ସମ୍ଭବ ହୁଏ ॥୨୦॥ ଏହିପରି ରାଜା ଅମ୍ବରୀଷ ତାଙ୍କର ସମସ୍ତ କର୍ମ ଯଜ୍ଞପୁରୁଷ ଭଗବାନଙ୍କଠାରେ ଅର୍ପଣ କରିଥିଲେ ଏବଂ ସମସ୍ତ ପ୍ରାଣୀଙ୍କୁ ସମାନ ଭାବରେ ଦେଖି ସତ୍ୟନିଷ୍ଠ ବ୍ରାହ୍ମଣମାନଙ୍କର ପରାମର୍ଶ ଅନୁସାରେ ଏହି ପୃଥିବୀକୁ ଶାସନ କରୁଥିଲେ ॥୨୧॥ ରାଜା ଅମ୍ବରୀଷ ସରସ୍ୱତୀ ନଦୀକୂଳରେ ଏକ ଶୁଷ୍କ ଭୂମିରେ ବଶିଷ୍ଠ, ଅସିତ ଓ ଗୌତମ ଆଦି ମୁନିମାନଙ୍କଦ୍ୱାରା ବହୁ ଅଶ୍ୱମେଧ ଯଜ୍ଞ କରାଇ ଯଜ୍ଞେଶ୍ୱର ବିଷ୍ଣୁଙ୍କର ଆରାଧନା କରିଥିଲେ । ବିପୁଳ ବିଭବଯୁକ୍ତ ଏହି ସବୁ ଯଜ୍ଞରେ ଭୂରି ଦକ୍ଷିଣା ପ୍ରଦାନ କରାଯାଉଥିଲା ॥୨୨॥ ଅମ୍ବରୀଷଙ୍କର ଏହି ସବୁ ଯଜ୍ଞରେ ଦେବତାମାନଙ୍କ ସହିତ ସଦସ୍ୟ ଓ ଋତ୍ୱିକ୍‌ମାନେ ଯେତେବେଳେ ବସିଯାଉଥିଲେ, ସେତେବେଳେ ଏ ଅପୂର୍ବ ଯଜ୍ଞ ଦେଖି ସେମାନଙ୍କର (ଦେବତାମାନଙ୍କ ପରି) ଆଖିର ପଲକ ପଡୁ ନ ଥିଲା ଏବଂ ସୁନ୍ଦର ବସ୍ତ୍ର ଓ ଅଳଙ୍କାର ଆଦି ପରିଧାନ କରି ସେମାନେ ଦେବତାମାନଙ୍କ ପରି ଦେଖାଯାଉଥିଲେ ॥୨୩॥ ଉତ୍ତମଶ୍ଳୋକ ଭଗବାନଙ୍କର ପବିତ୍ର ଚରିତ କୀର୍ତ୍ତନ ଓ ଶ୍ରବଣ କରି ରାଜାନୁଗତ ପ୍ରଜାମାନେ ଦେବତାମାନଙ୍କ ପ୍ରିୟ ସ୍ୱର୍ଗ ମଧ୍ୟ କାମନା କରୁ ନ ଥିଲେ ॥୨୪॥ ଯେଉଁମାନେ ହୃଦୟରେ ମୁକୁନ୍ଦଙ୍କୁ ଦର୍ଶନ କରୁଥିଲେ, ସେମାନଙ୍କୁ କୌଣସି ଭୋଗୈଶ୍ୱର୍ଯ୍ୟ ପ୍ରଭାବିତ କରିପାରୁ ନ ଥିଲା । କାରଣ ସିଦ୍ଧମାନଙ୍କ ଦୁର୍ଲଭ ଆତ୍ମାନନ୍ଦ ନିକଟରେ ସେ ସବୁ ଅତିଶୟ ତୁଚ୍ଛ ଥିଲା ॥୨୫॥ ରାଜା ଅମ୍ବରୀଷ ଏହି ତପୋଯୁକ୍ତ ଭକ୍ତିଯୋଗ ଏବଂ ପ୍ରଜାପାଳନରୂପକ ସ୍ୱଧର୍ମ ପାଳନ କରି ଭଗବାନଙ୍କୁ ନିରନ୍ତର ପ୍ରସନ୍ନ କରୁଥିଲେ ଏବଂ ଧୀରେ ଧୀରେ ସମସ୍ତ କାମନାକୁ ପରିତ୍ୟାଗ କଲେ । ଗୃହ, ଦାରା, ସୁତ, ବନ୍ଧୁ, ହସ୍ତୀ, ଉତ୍ତମ ରଥ, ଅଶ୍ୱ, ପଦାତି, ଆୟୁଧ, ସୁଦୃଢ଼ ରତ୍ନାଭରଣ, ବହୁମୂଲ୍ୟ ବସ୍ତ୍ର ଆଦି ଭୋଗ୍ୟବସ୍ତୁ ଓ ଅକ୍ଷୟ ରାଜକୋଷ ପ୍ରତି ତାଙ୍କର ଏକାନ୍ତ ତୁଚ୍ଛଭାବ ଜାତହେଲା ॥୨୬-୨୭॥

ତାଙ୍କ ଅନନ୍ୟ ପ୍ରେମଭକ୍ତିରେ ପ୍ରସନ୍ନ ହୋଇ ଭଗବାନ ତାଙ୍କ ସୁରକ୍ଷାପାଇଁ ସୁଦର୍ଶନ ଚକ୍ରକୁ ଦାନ କଲେ । ଏହି ଚକ୍ରର କାର୍ଯ୍ୟ ଥିଲା ବିରୋଧୀମାନଙ୍କୁ ଭୟଭୀତ କରି ଭଗବତ୍‌ଭକ୍ତମାନଙ୍କୁ ରକ୍ଷା କରିବା ॥୨୮॥ ଅମ୍ବରୀଷଙ୍କର ପତ୍ନୀଙ୍କ ସ୍ୱଭାବ ମଧ୍ୟ ତାଙ୍କରି ଅନୁରୂପ ଥିଲା । ବୀରରାଜା ନିଜର ରାଣୀଙ୍କ ସହିତ ମିଳିତ ହୋଇ କୃଷ୍ଣଙ୍କ ଆରାଧନାପାଇଁ ବର୍ଷବ୍ୟାପୀ ଦ୍ୱାଦଶୀ ବ୍ରତ ପାଳନ କଲେ । ବ୍ରତ ଶେଷ ହେବା ପରେ କାର୍ତ୍ତିକମାସରେ ସେ ଦୁହେଁ ତିନିରାତି ଉପବାସ କଲେ ଏବଂ ଦିନେ ଯମୁନାରେ ସ୍ନାନ କରି ମଧୁବନରେ ଭଗବାନ ଶ୍ରୀକୃଷ୍ଣଙ୍କୁ ପୂଜା କଲେ ॥୨୯-୩୦॥ ସେ ମହାଭିଷେକର ବିଧାନ ଅନୁସାରେ ବିଭିନ୍ନ ଉପଚାର ଦ୍ୱାରା ଭଗବାନ୍ କେଶବଙ୍କୁ ଅଭିଷେକ କଲେ ଏବଂ ଭକ୍ତିରେ ତଲ୍ଲୀନ ହୋଇ ବସ୍ତ୍ର, ଅଳଙ୍କାର, ଚନ୍ଦନ, ମାଳା ଓ ଅର୍ଘ୍ୟଆଦି ଦ୍ୱାରା ତାଙ୍କୁ ପୂଜା କଲେ । ମହାଭାଗ୍ୟବାନ (ସିଦ୍ଧ) ବ୍ରାହ୍ମଣମାନଙ୍କପାଇଁ ଏପରି ପୂଜାର ଆବଶ୍ୟକତା ନ ଥିଲେ ମଧ୍ୟ ରାଜା ଅମ୍ବରୀଷ ଭକ୍ତିଭାବରେ ସେମାନଙ୍କୁ ପୂଜା କରିଥିଲେ ॥୩୧॥ ଗୃହକୁ ଆସିଥିବା ବ୍ରାହ୍ମଣମାନଙ୍କୁ ରାଜା ଆଗେ ସାରଯୁକ୍ତ ସ୍ୱାଦିଷ୍ଟ ଭୋଜନ ଦାନ କରି ସେମାନଙ୍କ ଘରକୁ ବାଛୁରୀଙ୍କ ସହିତ ଷାଠିଏକୋଟି ଗାଭୀଙ୍କୁ ସୁସଜ୍ଜିତ କରି ପଠାଇଦେଲେ ।

ଗାଭୀସବୁ ବଡ଼ ସୁଧାର, ରୂପବତୀ, ଦୁଗ୍ଧବତୀ ଓ ଅଳ୍ପବୟସ୍କ ଥିଲେ ଏବଂ ନିଜର ବାଛୁରୀମାନଙ୍କ ସହିତ ଅତି ସୁନ୍ଦର ଦେଖାଯାଉଥିଲେ । ତାଙ୍କର ଶିଙ୍ଗ ସବୁ ସୁନାରେ ଓ ଖୁରା ସବୁ ରୁପାରେ ଛାଉଣି ହୋଇଥିଲା ଏବଂ ତାଙ୍କ ଦେହରେ ସୁନ୍ଦର ବସ୍ତ୍ର ଘୋଡ଼ାଇ ଦିଆଯାଇଥିଲା ॥୩୨-୩୪॥

ବ୍ରାହ୍ମଣମାନଙ୍କର ସନ୍ତୋଷବିଧାନ କରି ରାଜା ସେମାନଙ୍କର ଅନୁମତିକ୍ରମେ ବ୍ରତପାରଣ କରିବାପାଇଁ ପ୍ରସ୍ତୁତ ହେଲେ । ଏହି ସମୟରେ ମହାପରାକ୍ରମୀ ଦୁର୍ବାସା ଋଷି ସେଠାରେ ଆସି ପହଞ୍ଚିଗଲେ ॥୩୫॥ ଅମ୍ବରୀଷ ସଙ୍ଗେ ସଙ୍ଗେ ଉଠିପଡ଼ି ଆସନ ଓ ପାଦ୍ୟ ଆଦିଦ୍ୱାରା ନବାଗତ ଅତିଥିଙ୍କର ପୂଜା କଲେ ଏବଂ ତାଙ୍କ ପାଦ ପାଖରେ ଠିଆ ହୋଇ ଭୋଜନ କରିବାପାଇଁ ତାଙ୍କୁ ନିମନ୍ତ୍ରଣ କଲେ ॥୩୬॥ ଦୁର୍ବାସା ଋଷି ରାଜାଙ୍କର ଅନୁରୋଧକୁ ସ୍ୱୀକାର କରି ମଧ୍ୟାହ୍ନର ନିତ୍ୟକର୍ମ ସମାପନପାଇଁ ଯମୁନାକୁ ଚାଲିଗଲେ ଏବଂ ବ୍ରହ୍ମଙ୍କୁ ଧ୍ୟାନ କରି ଯମୁନାର ପବିତ୍ର ଜଳରେ ସ୍ନାନ କରିବାକୁ ଲାଗିଲେ ॥୩୭॥ ରାଜା ଅମ୍ବରୀଷଙ୍କର ଏକ ଧର୍ମସଙ୍କଟ ଉପସ୍ଥିତ ହେଲା । ଦ୍ୱାଦଶୀ ଶେଷ ହେବାପାଇଁ ଆଉ ଅର୍ଦ୍ଧ ମୁହୂର୍ତ୍ତ ବାକି ଅଛି । ତା'ଭିତରେ ଯଦି ଦ୍ୱାଦଶୀର ପାରଣା କରା ନ ଯାଏ, ତା'ହେଲେ ବ୍ରତଭଙ୍ଗ ଦୋଷ ହେବ । କିନ୍ତୁ ବ୍ରାହ୍ମଣଙ୍କୁ ଭୋଜନ ନ କରାଇ ନିଜେ କିଛି ଖାଇଲେ ତାହା ମଧ୍ୟ ଅତିଥିଙ୍କପ୍ରତି ଅପରାଧ ହେବ । ବ୍ରାହ୍ମଣମାନଙ୍କୁ ଡାକି ରାଜା ପଚାରିଲେ, 'କ'ଣ କଲେ ଠିକ୍ ହେବ, ଆପଣମାନେ ପରାମର୍ଶ ଦିଅନ୍ତୁ, ଯେପରି ଅଧର୍ମ ମୋତେ ସ୍ପର୍ଶ କରିପାରିବ ନାହିଁ ।'୩୮-୩୯॥ ବ୍ରାହ୍ମଣମାନଙ୍କ ପରାମର୍ଶ ଅନୁସାରେ କେବଳ ଜଳମାତ୍ର ପାନକରି ସେ ବ୍ରତ ପାରଣା କରିବେ । କାରଣ ଶାସ୍ତ୍ରାନୁସାରେ କେବଳ ଜଳପାନ ଭୋଜନ ଏବଂ ଅଭୋଜନ ଉଭୟକୁ ବୁଝାଇବ ॥୪୦॥ କୁରୁଶ୍ରେଷ୍ଠ, ରାଜର୍ଷି ଅମ୍ବରୀଷ ଏହିପରି ନିଶ୍ଚୟ କରି ଏବଂ ମନେ ମନେ ଭଗବାନ ଅଚ୍ୟୁତଙ୍କୁ ଚିନ୍ତାକରି ଜଳମାତ୍ର ପାନକଲେ ଏବଂ ଦୁର୍ବାସାଙ୍କ ଆସିବା ବାଟକୁ ଅପେକ୍ଷା କରି ରହିଲେ । ଦୁର୍ବାସା ତାଙ୍କର ସ୍ନାନାଦି କର୍ମ ଶେଷ କରି ଯମୁନାରୁ ଫେରିଆସିବା ଦେଖି ରାଜା ଦୁର୍ବାସାଙ୍କୁ ଅଭିନନ୍ଦନ କଲେ; କିନ୍ତୁ ଦୁର୍ବାସା ନିଜର ମନଶ୍ଚକ୍ଷୁଦ୍ୱାରା ରାଜା ବ୍ରତପାରଣା କରିଛନ୍ତି ବୋଲି ଜାଣି ପାରିଲେ ॥୪୧-୪୨॥

କ୍ଷୁଧାର୍ତ୍ତ ଦୁର୍ବାସାଙ୍କର ଗାତ୍ର କ୍ରୋଧରେ ଥରି ଉଠିଲା । ଭ୍ରୂକୁଞ୍ଚନଦ୍ୱାରା ତାଙ୍କର ମୁହଁ ଭୟଙ୍କର ଦେଖାଯାଉଥିଲା । ଅମ୍ବରୀଷ ହାତ ଯୋଡ଼ି ଠିଆ ହୋଇଥିଲେ । ସେ ତାଙ୍କୁ ପାଟିକରି କହିଲେ, ଦେଖ, ଏହି ଅମ୍ବରୀଷ କେତେବଡ଼ ନୃଶଂସ ଓ ଐଶ୍ୱର୍ଯ୍ୟମଦରେ ମତ୍ତ । ଈଶ୍ୱରଙ୍କଠାରେ ତାର ତ ଭକ୍ତି ନାହିଁ, ସେ ନିଜକୁ ଈଶ୍ୱର ବୋଲି ମନେ କରୁଛି । ମୁଁ ତାର ଅତିଥି ହୋଇ ଆସିଛି, ସେ ମଧ୍ୟ ଆତିଥ୍ୟ ପାଇଁ ମୋତେ ନିମନ୍ତ୍ରଣ କଲା; କିନ୍ତୁ ମୋତେ ଆଗେ ଖାଇବାକୁ ନଦେଇ ନିଜେ ଖାଇନେଲା । ଧର୍ମକୁ ଲଂଘନ କଲେ ପ୍ରତିଫଳ କିପରି ଭୋଗିବାକୁ ହୁଏ, ତାହା ଆଜି ମୁଁ ତାକୁ ଦେଖାଇଦେଉଛି ॥୪୩-୪୫॥ ଏପରି କହୁ କହୁ ଦୁର୍ବାସା କ୍ରୋଧରେ ଜଳିଉଠିଲେ । ମୁଣ୍ଡରୁ ଏକ ଜଟା ଉପାଡ଼ି ଅମ୍ବରୀଷଙ୍କୁ ମାରିବାପାଇଁ କାଳାନଳ ପରି ଏକ କୃତ୍ୟା (ମୂର୍ତ୍ତିଧାରୀ କ୍ରୋଧ) ସୃଷ୍ଟି କଲେ । ସେହି କୃତ୍ୟା ହାତରେ ଏକ ଖଣ୍ଡା ଧରିଥିଲା ଏବଂ ନିଆଁପରି ଜଳୁଥିଲା । ପଦାଘାତରେ ପୃଥିବୀକୁ କମ୍ପିତ କରି ସେ ଅମ୍ବରୀଷଙ୍କ ଆଡ଼କୁ ଦଉଡ଼ି ଆସିଲା । କିନ୍ତୁ ରାଜା ଏଥିରେ ସାମାନ୍ୟ ମାତ୍ର ବିଚଳିତ ହେଲେ ନାହିଁ ଏବଂ ସେ ଗୋଟିଏ ପାଦ ନ ହଟି ସେହିପରି ଠିଆ ହୋଇ ରହିଲେ ॥୪୬-୪୭॥ ପରମପୁରୁଷ ବିଷ୍ଣୁ ଭକ୍ତ ଅମ୍ବରୀଷଙ୍କୁ ଆଗରୁ ଚକ୍ରଦ୍ୱାରା ରକ୍ଷା କରୁଥିଲେ । ପ୍ରଚଣ୍ଡ ଅଗ୍ନି ଯେପରି କ୍ରୁଦ୍ଧ ସର୍ପକୁ ଦହନ କରେ, ଚକ୍ର ସେହିପରି ଦୁର୍ବାସାଙ୍କର କୃତ୍ୟାକୁ ଜାଳି ଭସ୍ମ କରିଦେଲା ॥୪୮॥ ନିଜର ଚେଷ୍ଟା ନିଷ୍ଫଳ ଓ ଚକ୍ର ତାଙ୍କ ଆଡ଼କୁ ଧାବମାନ--ଏହା ଦେଖି ଦୁର୍ବାସା ଭୟଭୀତ ହୋଇ ନିଜର ପ୍ରାଣରକ୍ଷାପାଇଁ ଚାରିଆଡ଼କୁ ଦଉଡ଼ିବାକୁ ଲାଗିଲେ । ସର୍ପକୁ ଦଗ୍ଧ କରିବା ପରେ ଦାବାନଳ ଲେଲିହାନ ଶିଖାରେ ଯେପରି ମାଡ଼ିଯାଉଥାଏ, ସେହିପରି ଭଗବାନଙ୍କର ଚକ୍ର ଦୁର୍ବାସାଙ୍କ ପଛେପଛେ ଗୋଡ଼ାଇବାକୁ ଲାଗିଲା । ଚକ୍ରକୁ ପଛେ ପଛେ ଆସୁଥିବାର

ଦେଖି ଦୁର୍ବାସା ମେରୁ ପର୍ବତର ଗୁମ୍ଫାମଧ୍ୟରେ ପଶିଯିବାପାଇଁ ସେହି ଆଡ଼କୁ ଦୌଡ଼ିଲେ ।।୪୯-୫୦।। ଦୁର୍ବାସା କୁଆଡ଼େ ଯେ ନ ଗଲେ, ନୁହେଁ--ଆକାଶ, ପାତାଳ, ପୃଥିବୀ, ସମସ୍ତ ଦିଗବିଦିଗ, ସମୁଦ୍ର, ଗୁହା ଏବଂ ସ୍ୱର୍ଗଧାମ ପର୍ଯ୍ୟନ୍ତ ବିଭିନ୍ନ ଲୋକ ଓ ଲୋକପାଳ । କିନ୍ତୁ ସେ ଯୁଆଡ଼େ ଗଲେ, ଅସହ୍ୟ ତେଜରେ ସୁଦର୍ଶନ ଚକ୍ର ତାଙ୍କ ପଛେ ପଛେ ଲାଗି ରହିଥିବାର ଦେଖିଲେ ।।୫୧।। ଯେତେବେଳେ ସେ ଦେଖିଲେ ଯେ, କେହି ତାଙ୍କୁ ରକ୍ଷା କରିବାକୁ ନାହିଁ, ସେ ଅତି ସନ୍ତ୍ରସ୍ତ ଅବସ୍ଥାରେ ବ୍ରହ୍ମାଙ୍କ ପାଖରେ ପହଞ୍ଚିଲେ ଏବଂ ତାଙ୍କୁ ପ୍ରାର୍ଥନା କରି କହିଲେ, ହେ ବିଧାତା, ଆତ୍ମଯୋନି, ଏହି ଅମିତତେଜା ବିଷ୍ଣୁଚକ୍ରରୁ ମୋତେ ରକ୍ଷା କରନ୍ତୁ ।।୫୨।।

ବ୍ରହ୍ମା କହିଲେ, ଏ ହେଉଛି ଯାହାଙ୍କର ଚକ୍ର, କାଳରୂପୀ ସେହି ଭଗବାନଙ୍କ ଇଚ୍ଛାରେ ପ୍ରଳୟ ଘଟି ମୋର ଦୁଇ ପରାର୍ଦ୍ଧର ଆୟୁ ଶେଷ ହୋଇଯିବ ଏବଂ ସଙ୍ଗେ ସଙ୍ଗେ ସୃଷ୍ଟିର ଖେଳ ସରିଯିବ । ସେହି ସମୟରେ ତାଙ୍କର ଭ୍ରୂଭଙ୍ଗମାତ୍ରେ ମୋର ଏହି ଲୋକ ଓ ସମସ୍ତ ବିଶ୍ୱ ଲୀନ ହୋଇଯିବ । ମୁଁ, ଶିବ, ଦକ୍ଷ, ଭୃଗୁଆଦି ପ୍ରଜାପତି, ଭୂତେଶ, ଦେବେଶ ଆଦି ସମସ୍ତେ ତାଙ୍କରି ନିୟମରେ ବନ୍ଧା ହୋଇ ସଂସାରର ହିତ ପାଇଁ ତାଙ୍କ ଆଜ୍ଞାକୁ ହିଁ ଶିରୋଧାର୍ଯ୍ୟ କରୁ ।।୫୩-୫୪।। ବ୍ରହ୍ମାଙ୍କଦ୍ୱାରା ଏରୂପେ ପ୍ରତ୍ୟାଖ୍ୟାତ ହୋଇ ବିଷ୍ଣୁଚକ୍ରରେ ସନ୍ତାପିତ ଋଷି କୈଳାସନାଥ ଶଙ୍କରଙ୍କର ଶରଣାପନ୍ନ ହେଲେ ।।୫୫।।

ଶ୍ରୀ ଶଙ୍କର କହିଲେ, ବତ୍ସ ଦୁର୍ବାସା, ଯେଉଁ ମହାନ୍ ପରମେଶ୍ୱରଙ୍କ ମଧ୍ୟରେ ଜଣେ ଜୀବଭାବରେ ବ୍ରହ୍ମା ଓ ଅନ୍ୟ ଜୀବମାନେ ଏବଂ ତାଙ୍କର ଉପାଧିଭୂତ ସମସ୍ତ ବ୍ରହ୍ମାଣ୍ଡ ଓ ଦୃଶ୍ୟମାନ୍ ସମସ୍ତ ପଦାର୍ଥର ଜନ୍ମ ହୁଏ ଏବଂ ବିନାଶ ଘଟେ, ଏବଂ ସହସ୍ରବାର ଆମେ ଯାହାଙ୍କୁ ପ୍ରଦକ୍ଷିଣ କରୁ, ସେହି ଭଗବାନଙ୍କ ଶକ୍ତି ନିକଟରେ ଆମର କୌଣସି ପ୍ରଭାବ କାର୍ଯ୍ୟକାରୀ ହେବ ନାହିଁ ।।୫୬।। ମୁଁ ଶିବ, ସନତ୍‌କୁମାର, ନାରଦ, ଭଗବାନ୍ ବ୍ରହ୍ମା, ଶ୍ରେଷ୍ଠଜ୍ଞାନୀ କପିଳ, ଅପାନ୍ତରତମ, ଋଷି ଦେବଳ, ଧର୍ମ, ଆସୁରି, ମରୀଚିଆଦି ତତ୍ତ୍ୱଜ୍ଞ ସିଦ୍ଧେଶ୍ୱରଗଣ--ଆମେ ସମସ୍ତେ ତାଙ୍କରି ମାୟାଦ୍ୱାରା ଆଚ୍ଛନ୍ନ ଏବଂ ସେ ମାୟାକୁ ଆମେ ବୁଝିବାକୁ ସମର୍ଥ ନୋହୁଁ ।।୫୭-୫୮।। ସେହି ବିଶ୍ୱେଶ୍ୱର ବିଷ୍ଣୁଙ୍କର ଏହି ଶସ୍ତ୍ରକୁ କେହି ପ୍ରତିରୋଧ କରିପାରିବେ ନାହିଁ । ତୁମେ ସେହି ଶ୍ରୀହରିଙ୍କର ଶରଣାପନ୍ନ ହୁଅ । ସେହି କେବଳ ତୁମର ମଙ୍ଗଳବିଧାନ କରିପାରିବେ ।।୫୯।।

ସେଠାରୁ ନିରାଶ ହୋଇ ଦୁର୍ବାସା ଭଗବାନଙ୍କର ପରମଧାମ ବୈକୁଣ୍ଠ, ଯେଉଁଠି ଲକ୍ଷ୍ମୀଙ୍କ ସହିତ ସେ ନିବାସ କରନ୍ତି, ସେଠାକୁ ଗଲେ । ଦୁର୍ବାସା ଭଗବାନଙ୍କ ଚକ୍ରର ତେଜରେ ପୋଡ଼ି ହୋଇଯାଉଥିଲେ । ସେ କମ୍ପିକମ୍ପି ଭଗବାନଙ୍କର ପାଦତଳେ ପଡ଼ିଗଲେ ଏବଂ ତାଙ୍କୁ ପ୍ରାର୍ଥନା କରି କହିଲେ, ହେ ଅଚ୍ୟୁତ, ହେ ଅନନ୍ତ, ସାଧୁମାନଙ୍କର ଈପ୍ସିତ ପ୍ରଭୁ, ବିଶ୍ୱର ଜୀବନଦାତା, ମୁଁ ଜଣେ ଅପରାଧୀ, ମୋତେ ଆପଣ ରକ୍ଷା କରନ୍ତୁ ।।୬୦-୬୧।। ଅଜାଣତରେ ଆପଣଙ୍କର ପ୍ରଭାବକୁ ହୃଦୟଙ୍ଗମ ନ କରି ମୁଁ ଆପଣଙ୍କ ଭକ୍ତଙ୍କ ପାଖରେ ଅପରାଧ କରିଛି । ବିଶ୍ୱନିୟନ୍ତା, ଆପଣ ମୋତେ ଏଥିରୁ ଉଦ୍ଧାର କରନ୍ତୁ । ଆପଣଙ୍କର ନାମ ଉଚ୍ଚାରଣ ମାତ୍ରେ ନରକର ଜୀବ ମଧ୍ୟ ମୁକ୍ତ ହୋଇଯାଏ ।।୬୨।।

ଶ୍ରୀ ଭଗବାନ କହିଲେ, ଦ୍ୱିଜ, ମୁଁ ହେଉଛି ଭକ୍ତର ଅଧୀନ । ମୋର ସ୍ୱାଧୀନତା ଥାଇ ନ ଥିଲା ଭଳି । ମୋର ହୃଦୟ ସାଧୁ ଭକ୍ତଙ୍କର ବଶୀଭୂତ । ଭକ୍ତମାନେ ମୋତେ ଶ୍ରଦ୍ଧା କରନ୍ତି ଓ ମୁଁ ସେମାନଙ୍କୁ ଶ୍ରଦ୍ଧା କରେ ।।୬୩।। ବ୍ରହ୍ମନ୍, ମୁଁ ମୋର ଭକ୍ତଙ୍କର ଏକମାତ୍ର ଗତି । ମୁଁ ସେହି ସାଧୁଭକ୍ତଙ୍କ ଛଡ଼ା ସମ୍ପଦରୂପିଣୀ ମୋର ଅର୍ଦ୍ଧାଙ୍ଗିନୀ ଲକ୍ଷ୍ମୀଦେବୀଙ୍କୁ, ଏପରିକି ମୋ ନିଜକୁ ମଧ୍ୟ ଇଚ୍ଛା କରେ ନାହିଁ ।।୬୪।। ଯେଉଁମାନେ ନିଜର ସ୍ତ୍ରୀ, ପୁତ୍ର, ଗୃହ, ଗୁରୁଜନ, ପ୍ରାଣ, ଧନ, ଇହଲୋକ, ପରଲୋକ--ସବୁକିଛି ଛାଡ଼ି କେବଳ ମୋତେ ଶରଣାଗତ ହୋଇଥାନ୍ତି, ସେହି ଭକ୍ତମାନଙ୍କୁ ମୁଁ କିପରି ଛାଡ଼ିପାରିବି ? ।।୬୫।। ସତୀ ସ୍ତ୍ରୀ ଯେପରି ସଦାଚାରୀ ପତିକୁ ନିଜବଶରେ ରଖିଥାଏ, ସେହିପରି ମୁଁ ପ୍ରେମର ବଂଧନରେ ମୋର ହୃଦୟକୁ ବାନ୍ଧି ରଖିଥିବା ସାଧୁଭକ୍ତମାନଙ୍କଦ୍ୱାରା ବଶୀଭୂତ ହୋଇ ରହିଥାଏ । ମୋର ସେହି ସାଧୁଭକ୍ତମାନେ ମୋ ସେବାରେ ଲାଗି ରହି କାଳବଶରେ

କ୍ଷୟପ୍ରାପ୍ତ ଧନସଂପଦ କଥା ଦୂରେ ଥାଉ, ସାଲୋକ୍ୟ ଆଦି ଚତୁର୍ବିଧ ମୁକ୍ତିକୁ ମଧ୍ୟ ଇଚ୍ଛା କରନ୍ତି ନାହିଁ । କାରଣ ଏହି ସେବାରେ ସେମାନେ ସମ୍ପୂର୍ଣ୍ଣ ଆନନ୍ଦ ଲାଭ କରନ୍ତି ॥୬୬-୬୭॥ ସାଧୁମାନେ ହେଉଛନ୍ତି ମୋର ହୃଦୟ ଏବଂ ମୁଁ ହେଉଛି ସେମାନଙ୍କର ହୃଦୟ । ମୋ ଛଡ଼ା ସେମାନେ ଅନ୍ୟ କିଛି ଜାଣନ୍ତି ନାହିଁ । ମୁଁ ମଧ୍ୟ ସେମାନଙ୍କୁ ଛାଡ଼ି ଅନ୍ୟ କିଛି ଜାଣେ ନାହିଁ ॥୬୮॥ ବିପ୍ର, ଶୁଣ, ମୁଁ ତୁମକୁ ଉଦ୍ଧାରର ଉପାୟ ବତାଇ ଦେଉଛି । ଅନ୍ୟର ଅନିଷ୍ଟ କରିବାକୁ ଯାଇ ତୁମେ ନିଜେ ହିଁ ବିପଦକୁ ଡାକି ଆଣିଛ । ଯେଉଁ ଅମ୍ବରୀଷଙ୍କ ପାଖରୁ ଏହି ଚକ୍ର ଆସିଛି, ତୁମେ ତାଙ୍କ ପାଖକୁ ଯାଅ । ସାଧୁମାନଙ୍କର ଅନିଷ୍ଟ କରିବାକୁ ଗଲେ, ଅନିଷ୍ଟ କରିବା ଲୋକର ହିଁ ଅମଙ୍ଗଳ ହୁଏ ॥୬୯॥ ତପସ୍ୟା ଓ ବିଦ୍ୟା ଉଭୟ ବ୍ରାହ୍ମଣମାନଙ୍କପାଇଁ ମଙ୍ଗଳକର । କିନ୍ତୁ ଯେଉଁ ଲୋକ ବିନୟୀ ନୁହେଁ, ତା'ପ୍ରତି ଏ ଦୁଇଟିଯାକ ବିପରୀତ ଫଳ ଦାନ କରିଥାଏ ॥୭୦॥ ହେ ବ୍ରାହ୍ମଣ, ତୁମର ମଙ୍ଗଳ ହେଉ । ତୁମେ ନାଭାଗଙ୍କର ପୁତ୍ର ମହାଭାଗ ରାଜା ଅମ୍ବରୀଷଙ୍କ ପାଖକୁ ଯାଇ ତାଙ୍କୁ କ୍ଷମା ପ୍ରାର୍ଥନା କର । ତା'ହେଲେ ତୁମକୁ ଶାନ୍ତି ମିଳିପାରିବ ॥୭୧॥

## ପଞ୍ଚମ ଅଧ୍ୟାୟ

# ଦୁର୍ବାସା ରକ୍ଷା ପାଇଲେ

ଶ୍ରୀ ଶୁକଦେବ କହିଲେ, ପରିକ୍ଷିତ, ଭଗବାନଙ୍କଦ୍ୱାରା ଆଦିଷ୍ଟ ହୋଇ ଚକ୍ରତାପରେ ପୀଡ଼ିତ ଦୁର୍ବାସା ଅମ୍ବରୀଷଙ୍କ ପାଖକୁ ଫେରି ଆସିଲେ ଓ ଅତିଦୁଃଖରେ ତାଙ୍କ ପାଦ ଦୁଇଟିକୁ ଧରି ପକାଇଲେ ॥୧॥ ଦୁର୍ବାସା ଋଷି ତାଙ୍କ ପାଦ ଧରୁଥିବାର ଦେଖି ରାଜା ଅମ୍ବରୀଷ ଅତି ଲଜ୍ଜିତ ଓ ଦୟାପୀଡ଼ିତ ହୋଇ ସୁଦର୍ଶନ ଚକ୍ରକୁ ସ୍ତୁତି କରିବାକୁ ଲାଗିଲେ ॥୨॥ ଅମ୍ବରୀଷ ସ୍ତୁତି କରି କହିଲେ, 'ସୁଦର୍ଶନ, ଆପଣଙ୍କୁ ମୁଁ ନମସ୍କାର କରୁଛି । ଆପଣ ଅଗ୍ନି, ଭଗବାନ୍ ସୂର୍ଯ୍ୟ, ନକ୍ଷତ୍ରମାନଙ୍କର ଅଧିପତି ଚନ୍ଦ୍ରମା, ଜଳ, ପୃଥିବୀ, ଆକାଶ, ବାୟୁ, ସମସ୍ତ ଇନ୍ଦ୍ରିୟ ଓ ତାଙ୍କର ଦେବତା । ଆପଣ ସହସ୍ରଧାରଯୁକ୍ତ ଏବଂ ସମସ୍ତ ଅସ୍ତ୍ରକୁ ପ୍ରତିହତ କରିପାରନ୍ତି । ବିଷ୍ଣୁଙ୍କର ଆପଣ ପ୍ରିୟତମ ଅସ୍ତ୍ର । ହେ ପୃଥିବୀର ଅଧିପତି, ଆପଣ ଏହି ବ୍ରାହ୍ମଣଙ୍କର ମଙ୍ଗଳ କରନ୍ତୁ ।'୩-୪॥ ଆପଣ ଧର୍ମ, ଆପଣ ଋତ, ସତ୍ୟ, ଯଜ୍ଞସ୍ୱରୂପ, ସମସ୍ତ ଯଜ୍ଞର ଭୋକ୍ତା, ଲୋକପାଳଙ୍କର ପାଳକ, ସମସ୍ତଙ୍କର ଆତ୍ମାସ୍ୱରୂପ ଏବଂ ପରମପୁରୁଷଙ୍କର ତେଜୋମୟ ଶକ୍ତି ॥୫॥ ସୁନାଭ(ଚକ୍ର), ଆପଣ ସକଳ ଧର୍ମର ସେତୁସ୍ୱରୂପ, ଅଧର୍ମଶୀଳ ଅସୁରଙ୍କର ବିନାଶକ ଧୂମକେତୁ, ତ୍ରୈଲୋକ୍ୟର ରକ୍ଷକ ଏବଂ ଶୁଦ୍ଧ ତେଜୋମୟ, ମନପରି ଦ୍ରୁତ ଗତିଶୀଳ ଏବଂ ଅଦ୍ଭୁତକର୍ମା । ମୁଁ ଆପଣଙ୍କୁ ନମସ୍କାର କରୁଛି ॥୬॥ ବେଦବାଣୀର ଅଧୀଶ୍ୱର, ଆପଣଙ୍କର ଧର୍ମମୟ ତେଜରେ ଅନ୍ଧକାରର ବିନାଶ ଘଟି ସୂର୍ଯ୍ୟଆଦି ମହାମହିମ ଜ୍ୟୋତିଷ୍କମାନେ ପ୍ରକାଶିତ ହୁଅନ୍ତି । ଆପଣଙ୍କର ଶକ୍ତିକୁ କେହି ଅତିକ୍ରମ କରିପାରନ୍ତି ନାହିଁ । ଉଚ୍ଚ-ନୀଚ, ଛୋଟ-ବଡ଼ ସମସ୍ତ ବସ୍ତୁ ହେଉଛି ଆପଣଙ୍କର ସ୍ୱରୂପ ॥୭॥ ଅଜେୟ, ଯେତେବେଳେ ଭଗବାନ ଶ୍ରୀହରି ଆପଣଙ୍କୁ ନିକ୍ଷେପ କରନ୍ତି, ସେତେବେଳେ ଆପଣ ଦୈତ୍ୟ ଦାନବ ସେନାମଧ୍ୟରେ ପ୍ରବେଶ କରି ସେମାନଙ୍କର ବାହୁ, ଉଦର, ଜଙ୍ଘ ଓ ହସ୍ତପଦସବୁ ଛେଦନ କରି ଯୁଦ୍ଧକ୍ଷେତ୍ରରେ ବିରାଜିତ ହୁଅନ୍ତି ॥୮॥ ହେ ଜଗତର ତ୍ରାଣକର୍ତ୍ତା, ଆପଣ ସବୁକିଛି ସହିପାରନ୍ତି । ଗଦାଧାରୀ ବିଷ୍ଣୁ ଦୁଷ୍ଟମାନଙ୍କର ଦମନପାଇଁ ଆପଣଙ୍କୁ ନିୟୋଜିତ କରିଛନ୍ତି । ତେଣୁ ଆମ ବଂଶର ମଙ୍ଗଳାର୍ଥ ଏହି ବ୍ରାହ୍ମଣଙ୍କର ମଙ୍ଗଳ କରି ଆମକୁ ଅନୁଗୃହୀତ କରନ୍ତୁ ॥୯॥ ଯଦି ମୁଁ ଦାନ, ଧର୍ମ, ଯଜ୍ଞ ଆଦି ଭଲଭାବରେ ଅନୁଷ୍ଠାନ କରୁଥାଏ, ଯଦି ବ୍ରାହ୍ମଣମାନଙ୍କୁ

ଦେବତାଜ୍ଞାନରେ ମୋର ବଂଶ ଆରାଧନା କରୁଥାଏ, ତା'ହେଲେ ଏହି ବ୍ରାହ୍ମଣଙ୍କର କ୍ଲେଶ ଦୂର ହେଉ ॥୧୦॥ ଯଦି ସମସ୍ତଗୁଣର ଆଶ୍ରୟସ୍ୱରୂପ ଅଦ୍ୱିତୀୟ ଭଗବାନ୍ ସମସ୍ତପ୍ରାଣୀଙ୍କ ଆତ୍ମା ଭାବରେ ଆମପ୍ରତି ପ୍ରସନ୍ନ ହୋଇଥାନ୍ତି, ତା'ହେଲେ ଏହି ବ୍ରାହ୍ମଣଙ୍କର କ୍ଲେଶ ଦୂର ହେଉ ॥୧୧॥

ଶ୍ରୀ ଶୁକଦେବ କହିଲେ, ଚକ୍ରର ତେଜରେ ସର୍ବତୋଭାବେ ଦୁର୍ବାସାଙ୍କର ଦେହ ଜଳିଯାଉଥିଲା । ରାଜା ଏହିପରି ବିଷ୍ଣୁଙ୍କର ସୁଦର୍ଶନ ଚକ୍ରକୁ ସ୍ତବ କରିବାରୁ ତାଙ୍କର ପ୍ରାର୍ଥନା ଶୁଣି ସେହି ଚକ୍ର ଶାନ୍ତ ହୋଇଗଲା ॥୧୨॥ ଅସ୍ତ୍ରର ଅଗ୍ନିଜ୍ୱାଳାରୁ ମୁକ୍ତ ହୋଇ ଆଶ୍ୱସ୍ତ ଦୁର୍ବାସା ସେଇ ରାଜାଙ୍କୁ ବହୁ ଆଶୀର୍ବାଦ କରି ପ୍ରଶଂସା କରିବାକୁ ଲାଗିଲେ ॥୧୩॥

ଦୁର୍ବାସା କହିଲେ, ରାଜା, ଭଗବାନଙ୍କ ଭକ୍ତମାନଙ୍କର ମହିମା ଆଜି ମୁଁ ସ୍ୱଚକ୍ଷୁରେ ଦର୍ଶନ କଲି । ମୁଁ ଅପରାଧ କରିଛି । ତଥାପି ତୁମେ ମୋର ମଙ୍ଗଳ ଚିନ୍ତା କରୁଛ ॥୧୪॥ ଯେଉଁ ଭକ୍ତଶ୍ରେଷ୍ଠମାନେ ନିଜର ଭକ୍ତିରେ ଭଗବାନଙ୍କୁ ବଶୀଭୂତ କରିଛନ୍ତି, ସେହି ସାଧୁମହାତ୍ମାମାନଙ୍କପାଇଁ କୌଣସି କାର୍ଯ୍ୟକରିବା କଠିନ ନୁହେଁ ବା କୌଣସି ବସ୍ତୁ ଛାଡ଼ିବା କଠିନ ନୁହେଁ ॥୧୫॥ ଯାହାଙ୍କର ନାମ ଶୁଣିବାମାତ୍ରେ ଜୀବର ହୃଦୟ ଶୁଦ୍ଧ ହୋଇଯାଏ, ସେହି ତୀର୍ଥପାଦ ଶ୍ରୀହରିଙ୍କର ଭକ୍ତମାନେ ଚାହିଁଲେ ଯେ କୌଣସି କାର୍ଯ୍ୟ କରିଦେଇପାରନ୍ତି ॥୧୬॥ ମହାରାଜ ଅମ୍ବରୀଷ, ତୁମେ ଅତ୍ୟନ୍ତ ଦୟାଶୀଳ । ଯେହେତୁ ତୁମେ ମୋର ଅପରାଧକୁ ଗଣନା ନକରି ପ୍ରାଣରକ୍ଷାଦ୍ୱାରା ମୋତେ ଅନୁଗୃହୀତ କରିଛ ॥୧୭॥ ପରିକ୍ଷିତ, ଦୁର୍ବାସା ଚାଲିଯିବା ପରେ ରାଜା ଅମ୍ବରୀଷ ନ ଖାଇ ତାଙ୍କୁ ଅପେକ୍ଷା କରି ରହିଥିଲେ । ବର୍ତ୍ତମାନ ତାଙ୍କର ପାଦ ଧରି ତାଙ୍କୁ ପ୍ରସନ୍ନ କରି ଭୋଜନ କରାଇଲେ ॥୧୮॥ ସେ ସମସ୍ତକାମ୍ୟ ଅତିଥିଯୋଗ୍ୟ ଭୋଜନସାମଗ୍ରୀ ଆଣିଲେ । ଦୁର୍ବାସା ତାହା ଖାଇ ତୃପ୍ତ ହୋଇ ସ୍ନେହରେ କହିଲେ, 'ମହାରାଜ, ଏବେ ତୁମେ ଭୋଜନ କର' ॥୧୯॥ ରାଜା, ତୁମେ ଭଗବାନଙ୍କର ପରମପ୍ରେମୀ ଭକ୍ତ । ତୁମର ଦର୍ଶନ, ସ୍ପର୍ଶ, ବାକ୍ୟାଳାପ ଏବଂ ଆତ୍ମାର ତୃପ୍ତିକର ଆତିଥ୍ୟ ଅନ୍ନଦ୍ୱାରା ମୁଁ ଅତିଶୟ ପ୍ରୀତ ଓ ଅନୁଗୃହୀତ ହୋଇଛି ॥୨୦॥ ତୁମର ଏହି ବିଶୁଦ୍ଧ କର୍ମକୁ ଦେବାଙ୍ଗନାମାନେ ବାରମ୍ବାର ଗାନ କରିବେ ଏବଂ ପୃଥିବୀର ମନୁଷ୍ୟମାନେ ତୁମର ପରମ ପୁଣ୍ୟମୟ କୀର୍ତ୍ତିଗାଥାକୁ କୀର୍ତ୍ତନ କରିବେ ॥୨୧॥

ଶ୍ରୀ ଶୁକଦେବ କହିଲେ, ଏହିପରି ରାଜାଙ୍କ ଆତିଥ୍ୟରେ ପରିତୃପ୍ତ ଦୁର୍ବାସା ରାଜା ଅମ୍ବରୀଷଙ୍କ ଗୁଣାବଳୀର ପ୍ରଶଂସା କଲେ ଓ ତାଙ୍କଠାରୁ ବିଦାୟ ନେଇ ଆକାଶମାର୍ଗରେ ବ୍ରହ୍ମଲୋକକୁ ଯାତ୍ରା କଲେ ॥୨୨॥ ପରିକ୍ଷିତ, ସୁଦର୍ଶନ ଚକ୍ରଭୟରେ ପଳାଇବା ଓ ପୁଣି ଫେରିଆସିବା ମଧ୍ୟରେ ଏକବର୍ଷ ବିତିଯାଇଥିଲା । ଏହି ବର୍ଷେକାଳ ରାଜା ଅମ୍ବରୀଷ ଦୁର୍ବାସାଙ୍କ ଦର୍ଶନର ଅପେକ୍ଷାରେ କେବଳ ଜଳଗ୍ରହଣ କରି ରହିଥିଲେ ॥୨୩॥ ଦୁର୍ବାସା ଚାଲିଯିବା ପରେ ତାଙ୍କର ଭୁକ୍ତାବଶେଷ ପବିତ୍ର ଅନ୍ନକୁ ସେ ଭକ୍ଷଣ କଲେ । ରାଜା ତାଙ୍କ ନିଜହେତୁ ଦୁର୍ବାସାଙ୍କ ବିପଦ ଓ ନିଜ ପ୍ରାର୍ଥନାହେତୁ ସେଥିରୁ ତାଙ୍କର ମୁକ୍ତି – ଏ ଦୁଇଟି ବିଷୟ ବୁଝି ତାହାକୁ ଭଗବାନଙ୍କର ମହିମା ବୋଲି ସେ ମନେକଲେ ॥୨୪॥ ରାଜା ଅମ୍ବରୀଷଙ୍କର ଏହିପରି ଅନେକ ଗୁଣ ଥିଲା । ସେ ତାଙ୍କର କ୍ରିୟାକଳାପ ଦ୍ୱାରା ପରମାତ୍ମା, ପରଂବ୍ରହ୍ମ ବାସୁଦେବଙ୍କ ପ୍ରତି ତାଙ୍କର ଅଚଳା ଭକ୍ତିକୁ ଦୃଢ଼ୀଭୂତ କରିବାକୁ ଲାଗିଲେ । ସେହି ଭକ୍ତି ଦ୍ୱାରା ବ୍ରହ୍ମଲୋକର ଭୋଗ ମଧ୍ୟ ତାଙ୍କୁ ନରକ ପରି ମନେହେଲା ॥୨୫॥ ଏହାପରେ ରାଜା ଅମ୍ବରୀଷ ନିଜସମାନ ସ୍ୱଭାବସମ୍ପନ୍ନ ପୁତ୍ରର ହସ୍ତରେ ରାଜ୍ୟଭାର ଛାଡ଼ିଦେଇ ବନକୁ ଚାଲିଗଲେ ଏବଂ ବାସୁଦେବଙ୍କଠାରେ ଚିତ୍ତନିବେଶ କରି ତମ ଆଦି ନାନାଗୁଣଯୁକ୍ତ ଏହି ସଂସାରର ପ୍ରବାହରୁ ମୁକ୍ତ ହୋଇଗଲେ ॥୨୬॥ ପରିକ୍ଷିତ, ମହାତ୍ମା ଅମ୍ବରୀଷଙ୍କର ଏହି ପବିତ୍ର ଚରିତ ଯେ ଶ୍ରବଣ ବା କୀର୍ତ୍ତନ କରେ ଭଗବାନ ତା ପ୍ରତି ପ୍ରସନ୍ନ ହୁଅନ୍ତି ଓ ସେ ତାଙ୍କର ଭକ୍ତ ହୋଇଯାଏ ॥୨୭॥

# ଷଷ୍ଠ ଅଧ୍ୟାୟ

## ମାନ୍ଧାତାଙ୍କ କଥା

ଶ୍ରୀ ଶୁକଦେବ କହିଲେ, ପରିକ୍ଷିତ, ଅମ୍ବରୀଷଙ୍କର ତିନିପୁତ୍ର --ବିରୂପ, କେତୁମାନ୍ ଓ ଶମ୍ଭୂ । ବିରୂପଙ୍କର ପୁତ୍ର ହେଲେ ପୃଷଦଶ୍ୱ ଓ ତାଙ୍କର ପୁତ୍ର ରଥୀତର । ରଥୀତର ନିଃସନ୍ତାନ ଥିଲେ । ବଂଶରକ୍ଷା ପାଇଁ ସେ ଅଙ୍ଗିରା ଋଷିଙ୍କୁ ପ୍ରାର୍ଥନା କରିବାରୁ ଅଙ୍ଗିରା ଋଷି ତାଙ୍କ ପତ୍ନୀଙ୍କ ଗର୍ଭରୁ କେତେକ ବ୍ରହ୍ମତେଜସମ୍ପନ୍ନ ପୁତ୍ର ଉତ୍ପନ୍ନ କଲେ ॥୧-୨॥ ରଥୀତରଙ୍କର ପତ୍ନୀଙ୍କଠାରୁ ଜନ୍ମ ହୋଇଥିଲେ ମଧ୍ୟ ରଥୀତର ଗୋତ୍ର ନ ହୋଇ ଏମାନେ ଅଙ୍ଗିରାଙ୍କ ଗୋତ୍ରରେ ଗଲେ । ରଥୀତର ବଂଶର ଏହି ଶ୍ରେଷ୍ଠ ପୁରୁଷମାନଙ୍କ ମଧ୍ୟରେ ଉଭୟ କ୍ଷତ୍ରିୟତ୍ୱ ଓ ବ୍ରାହ୍ମଣତ୍ୱ ରହିଥିଲା ॥୩॥ ପରୀକ୍ଷିତ, ଥରେ ମନୁ ଛିଙ୍କି ଦେଲେ । ତାଙ୍କ ନାକରୁ ଇକ୍ଷ୍ୱାକୁ ନାମକ ପୁତ୍ର ଜନ୍ମହେଲେ । ଇକ୍ଷ୍ୱାକୁଙ୍କର ଶହେ ପୁତ୍ର । ତାଙ୍କ ମଧ୍ୟରୁ ବଡ଼ ତିନି ଜଣ ହେଲେ ବିକୁକ୍ଷି, ନିମି ଓ ଦଣ୍ଡକ ॥୪॥ ପରିକ୍ଷିତ, ଇକ୍ଷ୍ୱାକୁଙ୍କର ପୁତ୍ରମାନେ ଆର୍ଯ୍ୟାବର୍ତ୍ତକୁ ବାଣ୍ଟିଦେଲେ । ସାନ ପଚିଶ ଜଣ ପୁଅ ପୂର୍ବଭାଗକୁ ଓ ପର ପଚିଶ ଜଣ ପଶ୍ଚିମଭାଗକୁ ନେଲେ ଏବଂ ଏହି ବଡ଼ ତିନି ଜଣ ମଧ୍ୟଭାଗର ରାଜା ହେଲେ । ଶେଷ ସତଚାଳିଶ ଜଣ ଦକ୍ଷିଣ ଓ ଉତ୍ତର ଭାଗରେ ରାଜତ୍ୱ କଲେ ॥୫॥ ଥରେ ଇକ୍ଷ୍ୱାକୁ ଅଷ୍ଟକା ଶ୍ରାଦ୍ଧପାଇଁ ବଡ଼ ପୁଅ ବିକୁକ୍ଷିଙ୍କୁ ଡାକି କହିଲେ, ବିକୁକ୍ଷି, ଶ୍ରାଦ୍ଧପାଇଁ ମାଂସ ଆଣିବାର ବ୍ୟବସ୍ଥା କର । 'ଯେ ଆଜ୍ଞା' ବୋଲି କହି ବିକୁକ୍ଷି ବଣକୁ ଯାଇ ବହୁ ପଶୁ ଶିକାର କଲେ । ଶ୍ରାନ୍ତ, କ୍ଳାନ୍ତ ଓ କ୍ଷୁଧିତ ଅବସ୍ଥାରେ ସେ ଏକ ଠେକୁଆର ମାଂସକୁ ଖାଇଦେଲେ । ସେ ଭୁଲିଗଲେ ଯେ ଶ୍ରାଦ୍ଧପାଇଁ ମରା ହୋଇଥିବା ପଶୁକୁ କେହି ଖାଇବା ଉଚିତ ନୁହେଁ ॥୬-୭॥ ସେ ଅବଶିଷ୍ଟ ମାଂସ ଆଣି ପିତାଙ୍କୁ ଦେଲେ । ଶ୍ରାଦ୍ଧପାଇଁ ସଂସ୍କାର କରିବାକୁ ଇକ୍ଷ୍ୱାକୁ ଯେତେବେଳେ ତାଙ୍କ ଗୁରୁଙ୍କୁ ଏହି ମାଂସ ଦେଲେ, ଗୁରୁ କହିଲେ, ଏ ମାଂସ ଦୂଷିତ ଓ ଶ୍ରାଦ୍ଧପାଇଁ ଅଯୋଗ୍ୟ ॥୮॥ ଗୁରୁଙ୍କର କଥା ଶୁଣିବା ପରେ ରାଜା ଇକ୍ଷ୍ୱାକୁ ପୁତ୍ରର କୃତକର୍ମକୁ ଜାଣିପାରିଲେ ଏବଂ କ୍ରୋଧରେ ତାଙ୍କୁ ନିଜ ରାଜ୍ୟରୁ ବାହାର କରିଦେଲେ ॥୯॥ ସେହି ଇକ୍ଷ୍ୱାକୁ ନିଜର ଗୁରୁ ବଶିଷ୍ଠଙ୍କ ସଙ୍ଗେ ଆତ୍ମତତ୍ତ୍ୱ ବିଷୟରେ ଚର୍ଚ୍ଚା କରିଥିଲେ ଓ ଯୋଗଦ୍ୱାରା ଦେହତ୍ୟାଗ କରି ପରମପଦ ଲାଭ କଲେ ॥୧୦॥

ପିତାଙ୍କର ମୃତ୍ୟୁପରେ ବିକୁକ୍ଷି ଫେରିଆସି ରାଜ୍ୟ ଶାସନ କଲେ । ସେ ବଡ଼ବଡ଼ ଯଜ୍ଞ କରି ସଂସାରରେ ଖ୍ୟାତି ଅର୍ଜନ କଲେ । କିନ୍ତୁ ତାଙ୍କର ନାମ ଶଶାଦ (ଶଶ ଭକ୍ଷଣକାରୀ) ରହିଗଲା ॥୧୧॥ ବିକୁକ୍ଷିଙ୍କର ପୁତ୍ର ପୁରଞ୍ଜୟ । ତାଙ୍କର ଅନ୍ୟ ଦୁଇଟି ନାମ ଥିଲା । ତାଙ୍କୁ କେହି କେହି ଇନ୍ଦ୍ରବାହ ଓ କେହି କେହି କକୁତ୍ସ୍ଥ ବୋଲି କହୁଥିଲେ । କେଉଁ କେଉଁ କର୍ମପାଇଁ ସେ ଏହି ନାମରେ ଡକାଯାଉଥିଲେ, ତାହା ମୁଁ କହୁଛି, ଶୁଣ ॥୧୨॥ ସତ୍ୟଯୁଗ ଶେଷରେ ଦେବ ଦାନବଙ୍କ ମଧ୍ୟରେ ଘୋର ସଂଗ୍ରାମ ହେଲା; ସେଥିରେ ଦାନବମାନଙ୍କ ଦ୍ୱାରା ଦେବତାମାନେ ପରାଜିତ ହେବାରୁ ସେମାନେ ପୁରଞ୍ଜୟଙ୍କୁ ସହାୟକ ଭାବରେ ବରଣ କଲେ ॥୧୩॥ ପୁରଞ୍ଜୟ କହିଲେ, ଯଦି ଦେବରାଜ ଇନ୍ଦ୍ର ମୋର ବାହନ ହେବେ, ତା'ହେଲେ ମୁଁ ଯୁଦ୍ଧ କରିବି । ଇନ୍ଦ୍ର ଏଥିରେ ରାଜି ହେଲେ ନାହିଁ । କିନ୍ତୁ ଦେବାଧିଦେବ ବିଷ୍ଣୁଙ୍କର ଆଦେଶ ପାଳନ କରି ତାଙ୍କୁ ରାଜି ହେବାକୁ ପଡ଼ିଲା ଏବଂ ସେ ଏକ ମହାବୃଷଭ ରୂପ ଧାରଣ କଲେ ॥୧୪॥ ପୁରଞ୍ଜୟ ଦିବ୍ୟଧନୁ, ଶର ଓ କବଚାଦି ଧାରଣ କଲେ ଏବଂ ମହାବୃଷଭର ଚୂଳ ଉପରେ ବସି ଯୁଦ୍ଧପାଇଁ ବାହାରିଲେ । ଦେବତାମାନେ ତାଙ୍କୁ ସ୍ତୁତି କରିବାକୁ ଲାଗିଲେ ॥୧୫॥ ସର୍ବଶକ୍ତିମାନ୍ ବିଷ୍ଣୁଙ୍କର ତେଜରେ ବଳୀୟାନ୍ ହୋଇ ସେ ଦେବତାମାନଙ୍କ ସହିତ ପଶ୍ଚିମ ଦିଗରେ ଥିବା ଦାନବ ନଗରୀକୁ ଅବରୋଧ କଲେ ॥୧୬॥ ଦୈତ୍ୟମାନଙ୍କ ସହିତ ତାଙ୍କର ଲୋମହର୍ଷଣକାରୀ ଘୋର ଯୁଦ୍ଧ ହେଲା ଏବଂ ଏହି ଯୁଦ୍ଧରେ ଯେଉଁ ଯେଉଁ ଦୈତ୍ୟ ପୁରଞ୍ଜୟଙ୍କ

ଆଗକୁ ଆସିଲେ ସେ ସମସ୍ତଙ୍କୁ ଭଲ୍ଲାସ୍ତ୍ରଦ୍ୱାରା ସେ ଯମାଳୟକୁ ପ୍ରେରଣ କଲେ ॥୧୭॥ ପ୍ରଳୟକାଳୀନ ଅଗ୍ନିତୁଲ୍ୟ ତାଙ୍କର ଶରାଘାତରେ ଦୈତ୍ୟସେନା ଛିନ୍ନଭିନ୍ନ ହୋଇଗଲେ । ସେମାନଙ୍କର ସାହସ ହଜିଗଲା । ସେମାନେ ଯୁଦ୍ଧଭୂମି ଛାଡ଼ି ସ୍ତ୍ରୀମାନଙ୍କ ସମେତ ପାତାଳରେ ପଶିଗଲେ ॥୧୮॥ ପୁରଞ୍ଜୟ ଦୈତ୍ୟମାନଙ୍କର ପୁର (ରାଜଧାନୀ), ଧନ, ଦୌଲତ ସବୁ କିଛି ଜୟ କରି ଇନ୍ଦ୍ରଙ୍କୁ ଦେଇଦେଲେ । ପୁର ଜୟ କରିଥିବାରୁ ତାଙ୍କର ନାମ ହେଲା ପୁରଞ୍ଜୟ । ଇନ୍ଦ୍ରଙ୍କୁ ବାହନ କରିଥିବାରୁ ତାଙ୍କର ନାମ ଇନ୍ଦ୍ରବାହ । ବୃଷଭର ଚୂଳ ବା କକୁଦ୍ ଉପରେ ବସିଥିବାରୁ ତାଙ୍କର ନାମ ହେଲା କକୁତ୍‌ସ୍ଥ ॥୧୯॥

ପୁରଞ୍ଜୟଙ୍କର ପୁତ୍ର ଅନେନା । ଅନେନାଙ୍କର ପୁତ୍ର ପୃଥୁ । ପୃଥୁଙ୍କର ପୁତ୍ର ବିଶ୍ୱଗନ୍ଧି । ତାଙ୍କର ପୁତ୍ର ଚନ୍ଦ୍ର, ଚନ୍ଦ୍ରଙ୍କର ପୁତ୍ର ଯୁବନାଶ୍ୱ, ତାଙ୍କର ପୁତ୍ର ଶ୍ରାବସ୍ତ, ଯେ ଶ୍ରାବସ୍ତୀ ନାମକ ନଗରୀ ନିର୍ମାଣ କରିଥିଲେ । ଶ୍ରାବସ୍ତଙ୍କର ପୁତ୍ର ବୃହଦଶ୍ୱ, ବୃହଦଶ୍ୱଙ୍କର ପୁତ୍ର କୁବଳୟାଶ୍ୱକ ॥୨୦-୨୧॥ ବଳବାନ କୁବଳୟାଶ୍ୱକ ଉତଙ୍କ ଋଷିଙ୍କର ପ୍ରିୟ କାର୍ଯ୍ୟ କରିବାପାଇଁ ତାଙ୍କର ଏକୋଇଶ ହଜାର ପୁତ୍ରଙ୍କୁ ଧରି ଧୁନ୍ଧୁ ନାମକ ଦୈତ୍ୟକୁ ବଧ କରିଥିଲେ ॥୨୨॥ ସେଥିପାଇଁ ତାଙ୍କର ନାମ ହେଲା ଧୁନ୍ଧୁମାର । ଧୁନ୍ଧୁ ଦୈତ୍ୟର ମୁହଁରୁ ନିଆଁ ବାହାରି ତାଙ୍କର ସମସ୍ତ ପୁତ୍ରଙ୍କୁ ଭସ୍ମ କରିଦେଲା । କେବଳ ତିନି ଜଣ ବଞ୍ଚିଗଲେ । ସେମାନେ ହେଲେ ଦୃଢ଼ାଶ୍ୱ, କପିଳାଶ୍ୱ ଏବଂ ଭଦ୍ରାଶ୍ୱ । ଦୃଢ଼ାଶ୍ୱଙ୍କର ପୁତ୍ର ହର୍ଯ୍ୟଶ୍ୱ ଏବଂ ତାଙ୍କର ପୁତ୍ର ନିକୁମ୍ଭ ॥୨୩-୨୪॥ ନିକୁମ୍ଭଙ୍କର ପୁତ୍ର ହେଲେ ବର୍ହଣାଶ୍ୱ, ତାଙ୍କର ପୁତ୍ର କୃତାଶ୍ୱ, କୃତାଶ୍ୱଙ୍କର ପୁତ୍ର ସେନଜିତ୍ ଓ ସେନଜିତ୍‌ଙ୍କର ଯୁବନାଶ୍ୱ । ଯୁବନାଶ୍ୱ ନିଃସନ୍ତାନ ଥିଲେ । ତେଣୁ ସେ ଅତିଶୟ ଦୁଃଖରେ ନିଜର ଶହେ ସ୍ତ୍ରୀଙ୍କ ସହ ବନକୁ ଚାଲିଗଲେ । ସେଠାରେ ଋଷିମାନେ ଯୁବନାଶ୍ୱଙ୍କ ପ୍ରତି କୃପାପରବଶ ହୋଇ ତାଙ୍କର ପୁତ୍ରପ୍ରାପ୍ତି ନିମନ୍ତେ ଏକାଗ୍ର ଚିତ୍ତରେ ଇନ୍ଦ୍ରଦୈବତ୍ୟ ଯଜ୍ଞ କଲେ ॥୨୫-୨୬॥

ଦିନେ ରାତିରେ ରାଜା ଯୁବନାଶ୍ୱଙ୍କୁ ଶୋଷ ହେଲା । ସେ ଯଜ୍ଞସ୍ଥଳକୁ ଯାଇ ଦେଖିଲେ ଯେ, ଋଷିମାନେ ଶୋଇ ପଡ଼ିଛନ୍ତି । ସେ ଜାଣି ନପାରି ତାଙ୍କର ପତ୍ନୀଙ୍କୁ ଦେବାପାଇଁ ରଖାହୋଇଥିବା ମନ୍ତ୍ରପୂତ ଜଳକୁ ପାନ କଲେ ॥୨୭॥ ପରିକ୍ଷିତ, ଋଷିମାନେ ନିଦରୁ ଉଠି ଦେଖିଲେ, କଳସରୁ ପାଣି ଶେଷ ହୋଇ ଯାଇଛି । ସେମାନେ ପଚାରିଲେ, କିଏ ଏହି କର୍ମ କରିଛି ? ପୁଂସବନଜଳ (ପୁତ୍ରାର୍ଥ ମନ୍ତ୍ରିତ ଜଳ) ପାନ କରିଛି ? ଯେତେବେଳେ ସେମାନେ ଜାଣିଲେ ଯେ, ଦୈବପ୍ରେରିତ ହୋଇ ରାଜା ଏହି ଜଳପାନ କରିଛନ୍ତି, 'ଦୈବ ବଳ ହିଁ ପ୍ରକୃତ ବଳ' --ଏହା କହି ଋଷିମାନେ ଈଶ୍ୱରଙ୍କୁ ନମସ୍କାର କଲେ ॥୨୮-୨୯॥ କିଛି କାଳ ବିତିଯିବା ପରେ ଯୁବନାଶ୍ୱଙ୍କର ଡାହାଣ ପେଟକୁ ବିଦୀର୍ଣ୍ଣ କରି ଏକ ରାଜଲକ୍ଷଣଯୁକ୍ତ ପୁତ୍ରର ଜନ୍ମ ହେଲା ॥୩୦॥ 'ଏହି ପୁତ୍ର ସ୍ତନ୍ୟପାନ କରିବାପାଇଁ ଅତିଶୟ ରୋଦନ କରୁଛି । ଏ କାହାଠାରୁ ସ୍ତନ୍ୟ ପାନ କରିବ' --ଏହା କହି ଋଷିମାନେ ଦୁଃଖ କରିବାରୁ ଇନ୍ଦ୍ର ଆସି ଉପସ୍ଥିତ ହୋଇ କହିଲେ, 'ବତ୍ସ, ରୋଦନ କର ନାହିଁ । 'ମାଂ ଧାତା' (ମୋ ଠାରୁ ପାନ କରିବ) ବୋଲି କହି ନିଜର ତର୍ଜନୀ ଆଙ୍ଗୁଠି ଶିଶୁର ମୁହଁରେ ଦେଇଦେଲେ । (ଫଳରେ କୁମାର ମାନ୍ଧାତା ନାମରେ ଖ୍ୟାତ ହେଲେ) ॥୩୧॥ ବ୍ରାହ୍ମଣ ଓ ଦେବତାମାନଙ୍କ ଅନୁଗ୍ରହରୁ (ପେଟ ଫାଟି ଯାଇଥିଲେ ମଧ୍ୟ) ପିତା ଯୁବନାଶ୍ୱଙ୍କର ମୃତ୍ୟୁ ହେଲା ନାହିଁ । ସେଠାରେ ସେ ତପସ୍ୟା କରି ସିଦ୍ଧି ଲାଭ କଲେ ॥୩୨॥ ପରିକ୍ଷିତ, ଇନ୍ଦ୍ର ଏହି ବାଳକର ନାମ ରଖିଥିଲେ ତ୍ରସଦସ୍ୟୁ, କାରଣ ରାବଣ ଆଦି ଦସ୍ୟୁମାନେ ତାଙ୍କୁ ଭୟ କରୁଥିଲେ ॥୩୩॥ ଯୁବନାଶ୍ୱଙ୍କର ଏହି ପୁତ୍ର ମାନ୍ଧାତା ଚକ୍ରବର୍ତ୍ତୀ ରାଜାରୂପେ ଭଗବାନଙ୍କ ତେଜର ପ୍ରଭାବରେ ସପ୍ତଦ୍ୱୀପା ପୃଥିବୀକୁ ଶାସନ କରିବାକୁ ଲାଗିଲେ ॥୩୪॥ ମାନ୍ଧାତା ଥିଲେ ଆତ୍ମଜ୍ଞାନୀ । ତାଙ୍କପାଇଁ କର୍ମକାଣ୍ଡର ଆବଶ୍ୟକତା ନଥିଲା । ତଥାପି ସେ ଭୂରି ଦକ୍ଷିଣା ଦେଇ ବହୁ ଯଜ୍ଞଦ୍ୱାରା ସର୍ବଦେବମୟ ସର୍ବାତ୍ମା ଅତୀନ୍ଦ୍ରିୟ ଯଜ୍ଞପୁରୁଷ ବିଷ୍ଣୁଙ୍କୁ ଆରାଧନା କରିଥିଲେ ॥୩୫॥ ଯଜ୍ଞର ସାମଗ୍ରୀ, ମନ୍ତ୍ର, ବିଧି, ଯଜ୍ଞ, ଯଜମାନ, ଋତ୍ୱିକ୍, ଧର୍ମ, ଦେଶ ଓ କାଳ -ଏ ସମସ୍ତ ହେଉଛନ୍ତି ଭଗବାନଙ୍କର ସ୍ୱରୂପ ॥୩୬॥ ପରିକ୍ଷିତ, ଯେଉଁଠାରୁ ସୂର୍ଯ୍ୟଙ୍କର ଉଦୟ ହୁଏ ଏବଂ ଯେଉଁଠାରେ ତାଙ୍କର ଅସ୍ତ ହୁଏ, ମାନ୍ଧାତା ସେହି ସମସ୍ତ ଭୂମଣ୍ଡଳର ଅଧୀଶ୍ୱର ଥିଲେ ॥୩୭॥

ରାଜା ମାନ୍ଧାତାଙ୍କ ଔରସରେ ଶଶବିନ୍ଦୁଙ୍କର କନ୍ୟା ବିନ୍ଦୁମତୀଙ୍କର ଗର୍ଭରୁ ପୁରୁକୁତ୍‌ସ, ଅମ୍ବରୀଷ ଓ ପରମଯୋଗୀ ମୁଚୁକୁନ୍ଦ- ଏହି ତିନିପୁତ୍ର ଜନ୍ମ ହୋଇଥିଲେ । ଏମାନଙ୍କର ପଚାଶ ଜଣ ଭଉଣୀ ଥିଲେ । ସେମାନେ ସୌଭରି ଋଷିଙ୍କୁ ପତିରୂପେ ବରଣ କରିଥିଲେ ।।୩୮।।

ସୌଭରି ଋଷି ଯମୁନା ଜଳରେ ବୁଡ଼ି ତପସ୍ୟା କରୁଥିଲେ । ଏଠାରେ ମୈଥୁନପରାୟଣ ମତ୍ସ୍ୟରାଜାର ସୁଖ ଦେଖି ତାଙ୍କର କାମବାସନା ଜାତ ହେଲା ଏବଂ ସେ ମାନ୍ଧାତାଙ୍କ ପାଖକୁ ଆସି ତାଙ୍କଠାରୁ ଏକ କନ୍ୟା ପ୍ରାର୍ଥନା କଲେ । ମାନ୍ଧାତା କହିଲେ, ବ୍ରହ୍ମନ୍, ଆପଣ ସ୍ୱୟମ୍ବର ବିଧି ଅନୁଯାୟୀ କନ୍ୟାକୁ ଗ୍ରହଣ କରନ୍ତୁ ।।୩୯-୪୦।। ସୌଭରି ଭାବିଲେ, ମୁଁ ବୃଦ୍ଧ ହୋଇଗଲିଣି । ଚମ ଧୁଡୁଧୁଡୁ ହେଲାଣି, ବାଳ ପାଚିଗଲାଣି ଏବଂ ମୁଣ୍ଡ ସବୁବେଳେ ଥରୁଛି । କୌଣସି ସ୍ତ୍ରୀ ମୋତେ ପସନ୍ଦ କରିବ ନାହିଁ ବୋଲି ଜାଣି ରାଜା ସ୍ୱୟମ୍ବର ଛଳରେ ମୋର ପ୍ରାର୍ଥନାକୁ ପ୍ରତ୍ୟାଖ୍ୟାନ କରିଛନ୍ତି । ଠିକ୍ ଅଛି, ମୁଁ ନିଜକୁ ଏପରି ସୁନ୍ଦର କରିବି ଯେ, ରାଜକନ୍ୟାଙ୍କ କଥା ଛାଡ଼, ଦେବାଙ୍ଗନାମାନେ ମଧ୍ୟ ମୋ ପ୍ରତି ଲାଳାୟିତ ହେବେ । ଏହା ଚିନ୍ତା କରି ଯୋଗଶକ୍ତିସମ୍ପନ୍ନ ସୌଭରି ତାହା ହିଁ କଲେ ।।୪୧-୪୨।।

ଅନ୍ତଃପୁରର ପ୍ରତିହାରୀ ସୌଭରି ମୁନିଙ୍କୁ ରାଜକନ୍ୟାମାନଙ୍କର ସୁସଜ୍ଜିତ ମହଲକୁ ନେଇଗଲେ । ପଚାଶଜଣ ଯାକ ରାଜକନ୍ୟା ସଙ୍ଗେ ସଙ୍ଗେ ସୌଭରିଙ୍କୁ ନିଜର ସ୍ୱାମୀ ରୂପେ ବରଣ କଲେ ।।୪୩।। ସେମାନଙ୍କର ମନ ସୌଭରିଙ୍କ ପ୍ରତି ଏପରି ଆସକ୍ତ ହୋଇଗଲା ଯେ ସେମାନେ ପରସ୍ପରକୁ କହିଲେ, ' ଏ ତୋର ଯୋଗ୍ୟ ନୁହନ୍ତି, ମୋର ଯୋଗ୍ୟ' । ଏହିପରି ତାଙ୍କ ମଧ୍ୟରେ କଳହ ଲାଗିଗଲା ।।୪୪।। ମନ୍ତ୍ରଶକ୍ତିସମ୍ପନ୍ନ ସୌଭରି ଏମାନଙ୍କୁ ସମସ୍ତଙ୍କୁ ବିବାହ କଲେ । ସେ ନିଜ ଅପାର ତପସ୍ୟାର ପ୍ରଭାବରେ ସଙ୍ଗେ ସଙ୍ଗେ ବହୁମୂଲ୍ୟ ପରିଚ୍ଛଦ ଓ ନାନାପ୍ରକାର ବନ ଉପବନଯୁକ୍ତ ଗୃହମାନ ସୃଷ୍ଟି କଲେ । ସେଠାର ନିର୍ମଳ ଜଳଯୁକ୍ତ ସରୋବର, ସୁନ୍ଦର ପୁଷ୍ପଗଂଧରେ ଆମୋଦିତ ପକ୍ଷୀମାନଙ୍କର କୂଜନ ଓ ଭ୍ରମରମାନଙ୍କର ଗୁଞ୍ଜନରେ ତାହା ସବୁ ପ୍ରତିଧ୍ୱନିତ ହେଉଥିଲା । ଦାସଦାସୀଶୋଭିତ ପ୍ରାସାଦମାନ, ବହୁମୂଲ୍ୟ ଶଯ୍ୟା, ଆସନ, ବସ୍ତ୍ର, ଅଳଙ୍କାର, ସ୍ନାନ ଓ ଅଙ୍ଗଲେପନଦ୍ୱାରା ସେସବୁ ଅଳଂକୃତ ଥିଲା । ସୌଭରି ଋଷି ରାଜକନ୍ୟାମାନଙ୍କ ସହିତ କ୍ରୀଡ଼ା କରିବାକୁ ଲାଗିଲେ ।।୪୫-୪୬।। ସପ୍ତଦ୍ୱୀପା ପୃଥିବୀର ଅଧିପତି ମାନ୍ଧାତା ସୌଭରିଙ୍କ ଗୃହସ୍ଥାଶ୍ରମର ସୁଖ ଦେଖି ଆଶ୍ଚର୍ଯ୍ୟ ହୋଇଗଲେ ଏବଂ ତାଙ୍କ ସାର୍ବଭୌମ ଐଶ୍ୱର୍ଯ୍ୟର ଗର୍ବ ଦୂର ହୋଇଗଲା ।।୪୭।। ଏହିପରି ସୌଭରି ଋଷି ଗୃହସୁଖରେ ଆସକ୍ତ ହୋଇ ବିଷୟଭୋଗ କରିବାକୁ ଲାଗିଲେ । କିନ୍ତୁ ଘୃତବିନ୍ଦୁ ଦ୍ୱାରା ଯେପରି ଅଗ୍ନି ଶାନ୍ତ ହୁଏ ନାହିଁ, ସେହିପରି ଯେତେ ଭୋଗ କଲେ ମଧ୍ୟ ତାଙ୍କର ତୃପ୍ତି ହେଲା ନାହିଁ ।।୪୮।।

ଦିନେ ମନ୍ତ୍ରଜ୍ଞ ସୌଭରି ନିର୍ଜନରେ ଶାନ୍ତ ଚିତ୍ତରେ ବସିଛନ୍ତି; ସେ ବୁଝିପାରିଲେ ଯେ ମତ୍ସ୍ୟସଂସର୍ଗରୁ ତାଙ୍କର କିପରି ଆତ୍ମପତନ ଓ ତପୋହାନି ଘଟିବାରେ ଲାଗିଛି ।।୪୯।। ସେ ଚିନ୍ତା କରିବାକୁ ଲାଗିଲେ, ଦେଖ, ଜଣେ ତପସ୍ୱୀ ଓ ସଦାଚାରପରାୟଣ ବ୍ୟକ୍ତିର କିପରି ଅଧଃପତନ ଘଟିଛି । ଜଳମଧ୍ୟରେ ଦୀର୍ଘକାଳ ତପସ୍ୟା କରି ମୁଁ ଯେଉଁ ବ୍ରହ୍ମତେଜ ଧାରଣ କରିଥିଲି, ତାହା ଜଳଚର ମତ୍ସ୍ୟର ସଂସର୍ଗରେ ନଷ୍ଟ ହୋଇଯାଇଛି ।।୫୦।। ମୁକ୍ତିକାମୀ ବ୍ୟକ୍ତି ମିଥୁନଧର୍ମୀ ବ୍ୟକ୍ତିମାନଙ୍କର ସଙ୍ଗ ସର୍ବାନ୍ତଃକରଣରେ ତ୍ୟାଗ କରିବା ଆବଶ୍ୟକ । ବିଷୟଭୋଗରୁ ଇନ୍ଦ୍ରିୟମାନଙ୍କୁ ନିବୃତ୍ତ କରି ନିର୍ଜନରେ ପରମେଶ୍ୱରଙ୍କଠାରେ ଚିତ୍ତ ନିବିଷ୍ଟ କରିବା ଉଚିତ ଏବଂ ଯଦି କାହାର ସଙ୍ଗଲାଭ ଆବଶ୍ୟକ, ତାହେଲେ ତାହା ଭଗବାନଙ୍କର ଭକ୍ତ ସାଧୁ ମହାତ୍ମାମାନଙ୍କର ।।୫୧।। ମୁଁ ଜଳରେ ଏକାକୀ ତପସ୍ୟା କରୁଥିଲି । ମତ୍ସ୍ୟସଙ୍ଗ ଯୋଗୁ ବିବାହ କରିବାରୁ ପଚାଶ ଜଣ ସ୍ତ୍ରୀ ମୋର ସାଙ୍ଗ ହେଲେ ଏବଂ ପ୍ରତି ସ୍ତ୍ରୀର ଶହେ ପୁଅ ହେବାରୁ ବର୍ତ୍ତମାନ ଆମର ସଂଖ୍ୟା ହେଉଛି ପାଞ୍ଚ ହଜାର । ମାୟାଗୁଣଦ୍ୱାରା ମୋର ବିବେକ ବୁଦ୍ଧି ହଜିଗଲାଣି । କାରଣ ଐହିକ ଓ ପାରତ୍ରିକ ସୁଖପାଇଁ ମୋର କଳ୍ପନାର ଅନ୍ତ ନାହିଁ ।।୫୨।। ଏହିପରି କିଛି କାଳ ଗୃହରେ ବାସ କରି ସଂସାର ପ୍ରତି ବିରକ୍ତ ସୌଭରି ବନକୁ ପ୍ରସ୍ଥାନ କଲେ । ପତିପରାୟଣା ତାଙ୍କର ପତ୍ନୀମାନେ ତାଙ୍କୁ ଅନୁଗମନ କଲେ ।।୫୩।। ସେଠାରେ

ପରମସଂଯତ ହୋଇ ସୌଭରି ଘୋର ତପସ୍ୟା କଲେ । ତାଙ୍କର ଶରୀର ଶୁଷ୍କ ହୋଇଗଲା ଏବଂ ଆହବନୀୟ ଆଦି ଅଗ୍ନିଙ୍କର ସହିତ ସେ ନିଜେ ନିଜକୁ ପରମାତ୍ମାଙ୍କ ଠାରେ ଲୀନ କରିଦେଲେ ॥୫୪॥ ପରିକ୍ଷିତ, ଅଗ୍ନିର ଶିଖା ଯେପରି ଲିଭିଯାଇଥିବା ନିଆଁର ସହିତ ମିଶିଯାଏ, ସୌଭରିଙ୍କର ପତ୍ନୀମାନେ ସେହିପରି ତାଙ୍କରି ପ୍ରଭାବରେ ତାଙ୍କ ସହିତ ନିର୍ବାଣ ଲାଭକଲେ ॥୫୫॥

## ସପ୍ତମ ଅଧ୍ୟାୟ

# ତ୍ରିଶଙ୍କୁ ଓ ହରିଶ୍ଚନ୍ଦ୍ରଙ୍କର କଥା

ଶ୍ରୀ ଶୁକଦେବ କହିଲେ, ମୁଁ ପୂର୍ବରୁ ବର୍ଣ୍ଣନା କରିଛି ଯେ ମାନ୍ଧାତାଙ୍କର ପୁତ୍ରମାନଙ୍କ ମଧ୍ୟରେ ଅମ୍ବରୀଷ ଶ୍ରେଷ୍ଠ ଥିଲେ । ତାଙ୍କର ପିତାମହ ଯୁବନାଶ୍ୱ ତାଙ୍କୁ ପୁଅ କରି ନେଇଥିଲେ । ତାଙ୍କର ପୁତ୍ର ହେଲେ ଯୌବନାଶ୍ୱ ଓ ଯୌବନାଶ୍ୱଙ୍କ ପୁତ୍ର ହାରୀତ । ମାନ୍ଧାତାଙ୍କ ଗୋତ୍ରରେ ଏହିପରି ତିନିଜଣ ପ୍ରଧାନ ହେଲେ (ଅମ୍ବରୀଷ, ଯୌବନାଶ୍ୱ ଓ ହାରୀତ) ॥୧॥ (ତାପରେ ପୁରୁକୁତ୍ସଙ୍କ ବଂଶ ବର୍ଣ୍ଣନା କରାଯାଉଚି) । ନାଗମାନେ ନିଜର ଭଉଣୀ ନର୍ମଦାଙ୍କୁ ପୁରୁକୁତ୍ସଙ୍କ ସହ ବିବାହ ଦେଲେ । ନାଗରାଜ ବାସୁକିଙ୍କ ଆଦେଶରେ ନାଗମାନେ ପୁରୁକୁତ୍ସଙ୍କୁ ରସାତଳକୁ ନେଇଗଲେ ॥୨॥ ସେଠାରେ ବିଷ୍ଣୁତେଜରେ ବଳୀୟାନ୍ ହୋଇ ପୁରୁକୁତ୍ସ ବଧଯୋଗ୍ୟ ଗନ୍ଧର୍ବମାନଙ୍କୁ ବଧ କଲେ । ସେଥିପାଇଁ ନାଗମାନେ ତାଙ୍କୁ ବର ଦେଲେ ଯେ ପୁରୁକୁତ୍ସଙ୍କର ଏହି ଚରିତ ଶ୍ରବଣ କଲେ ସର୍ପଭୟ ରହିବ ନାହିଁ ॥୩॥ ପୁରୁକୁତ୍ସଙ୍କ ପୁତ୍ର ତ୍ରସଦସ୍ୟୁ, ତାଙ୍କ ପୁତ୍ର ଅନରଣ୍ୟ, ଅନରଣ୍ୟଙ୍କ ପୁତ୍ର ହର୍ଯଶ୍ୱ, ହର୍ଯଶ୍ୱଙ୍କ ପୁତ୍ର ପ୍ରାରୁଣ ଓ ତାଙ୍କ ପୁତ୍ର ତ୍ରିବନ୍ଧନ । ତ୍ରିବନ୍ଧନଙ୍କ ପୁତ୍ର ସତ୍ୟବ୍ରତ ଏବଂ ସତ୍ୟବ୍ରତଙ୍କ ପୁତ୍ର ହେଲେ ତ୍ରିଶଙ୍କୁ । ତ୍ରିଶଙ୍କୁ ପିତା ଓ ଗୁରୁଙ୍କ ଅଭିଶାପରେ ଚାଣ୍ଡାଳ ହୋଇଯାଇଥିଲେ ମଧ୍ୟ ବିଶ୍ୱାମିତ୍ରଙ୍କ ତେଜଦ୍ୱାରା ସଶରୀର ସ୍ୱର୍ଗକୁ ଯାଇଥିଲେ । ଦେବତାମାନେ ତାଙ୍କୁ ସ୍ୱର୍ଗରୁ ଠେଲି ଦେବାରୁ ସେ ତଳକୁ ଖସି ପଡ଼ିଲେ । ତାଙ୍କର ମୁଣ୍ଡ ତଳକୁ ଓ ଗୋଡ଼ ଉପରକୁ ଥିଲା । ମାତ୍ର ବିଶ୍ୱାମିତ୍ର ନିଜ ତପୋବଳରେ ତାଙ୍କୁ ସ୍ତମ୍ଭନବିଦ୍ୟାଦ୍ୱାରା ସେହି ଅବସ୍ଥାରେ ରଖିଦେଲେ । ବର୍ତ୍ତମାନ ଦେଖାଯାଏ ତ୍ରିଶଙ୍କୁ ସେହିପରି ଆକାଶରେ ଲଟକି ରହିଛନ୍ତି ।୪-୬॥

ତ୍ରିଶଙ୍କୁଙ୍କ ପୁତ୍ର ହେଲେ ହରିଶ୍ଚନ୍ଦ୍ର । ତାଙ୍କ ପାଇଁ ବିଶ୍ୱାମିତ୍ର ଓ ବଶିଷ୍ଠ ପରସ୍ପରକୁ ଅଭିଶାପ ଦେଇ ପକ୍ଷୀ ହୋଇଗଲେ ଏବଂ ବହୁ ବର୍ଷପର୍ଯ୍ୟନ୍ତ ଲଢ଼ିବାକୁ ଲାଗିଲେ ॥୭॥ ଅପୁତ୍ରିକ ଥିବାରୁ ରାଜା ହରିଶ୍ଚନ୍ଦ୍ର ମନଦୁଃଖରେ ରହୁଥିଲେ । ନାରଦଙ୍କ ଉପଦେଶ ଶୁଣି ସେ ବରୁଣଙ୍କ ଶରଣାଗତ ହେଲେ । ତାଙ୍କୁ ପ୍ରାର୍ଥନା କରି କହିଲେ ପ୍ରଭୁ, ମୋର ପୁତ୍ର ହେଉ । ମହାରାଜ, ଯଦି ମୋର ଏକ ବୀରପୁତ୍ର ହୁଏ, ତା'ହେଲେ ମୁଁ ତା'ଦ୍ୱାରା ଆପଣଙ୍କୁ ଯଜନ କରିବି । ବରୁଣ କହିଲେ, ତଥାସ୍ତୁ । ବରୁଣଙ୍କ କୃପାରୁ ହରିଶ୍ଚନ୍ଦ୍ରଙ୍କର ରୋହିତ ନାମକ ପୁତ୍ର ହେଲା ॥୮-୯॥ ପୁତ୍ର ହେବାପରେ ବରୁଣ ଆସି କହିଲେ, ତୁମର ପୁଅ ହୋଇଗଲା । ବର୍ତ୍ତମାନ ତାହାଦ୍ୱାରା ମୋ ଯଜ୍ଞ କର । ହରିଶ୍ଚନ୍ଦ୍ର କହିଲେ, ଆପଣଙ୍କର ଏହି ଯଜ୍ଞପଶୁ (ରୋହିତ) ଦଶଦିନର ହୋଇଗଲେ ଯଜ୍ଞପାଇଁ ଉପଯୁକ୍ତ ହେବ ॥୧୦॥ ଦଶ ଦିନ ବିତିଯିବାପରେ ବରୁଣ ଆସି କହିଲେ, 'ଏବେ ମୋର ଯଜ୍ଞ କର' । ହରିଶ୍ଚନ୍ଦ୍ର ଉତ୍ତର ଦେଲେ, ଆପଣଙ୍କ ଯଜ୍ଞପଶୁର ଦାନ୍ତ ନ ଉଠିଲେ ସେ ଯଜ୍ଞପାଇଁ ଉପଯୁକ୍ତ ହେବ ନାହିଁ ॥୧୧॥ ଦାନ୍ତ ଉଠିବାପରେ ବରୁଣ ଆସି କହିଲେ, 'ତାର ଦାନ୍ତ ତ ଉଠିଲାଣି । ଏବେ ମୋର ଯଜ୍ଞ କର' । ହରିଶ୍ଚନ୍ଦ୍ର କହିଲେ, 'ଯେତେବେଳେ ଏହାର ଦୁଧଦାନ୍ତ ସବୁ ପଡିଯିବ, ସେତେବେଳେ ସେ ଯଜ୍ଞର ଯୋଗ୍ୟ ହେବ ।'୧୨॥ ଦୁଧଦାନ୍ତ ପଡ଼ିଯିବାର ଜାଣି ବରୁଣ ଆସି କହିଲେ, 'ଦାନ୍ତ ତ ପଡ଼ିଗଲାଣି, ଏବେ ଯଜ୍ଞ କର' । ରାଜା କହିଲେ, ପୁଣି ଏହାର ଦାନ୍ତ ଉଠିଲେ ଯାଇ ଯଜ୍ଞପାଇଁ ପବିତ୍ର

ବୋଲି ସେ ଗଣାଯିବ ।।୧୩।। ପୁଣି ଦାନ୍ତ ଉଠିବାରୁ ବରୁଣ କହିଲେ, 'ଏବେ ମୋର ଯଜ୍ଞ କର' । ରାଜା କହିଲେ, ମହାରାଜ ବରୁଣ, କ୍ଷତ୍ରିୟପଶୁ ଯୁଦ୍ଧରେ କବଚ ଧାରଣ କଲେ ଯାଇ ଯଜ୍ଞପାଇଁ ଯୋଗ୍ୟ ହେବ ।।୧୪।। ଏହିପରି ପୁତ୍ରସ୍ନେହରେ ରାଜା ହରିଶ୍ଚନ୍ଦ୍ର କାଳକ୍ଷେପଣ କରିବାକୁ ଲାଗିଲେ ଏବଂ ତାଙ୍କ କହିବା ଅନୁସାରେ ବରୁଣ ଦେବତା ମଧ୍ୟ ଠିକ୍ ସମୟକୁ ଅପେକ୍ଷା କଲେ ।।୧୫।। ତାକୁ ପଶୁ କରି ବରୁଣଙ୍କ ଯଜ୍ଞ ହେବ ବୋଲି ପିତାଙ୍କର ଇଚ୍ଛାକୁ ଜାଣିପାରି ପ୍ରାଣରକ୍ଷା କରିବାପାଇଁ ରୋହିତ ହାତରେ ଧନୁ ଧରି ବନକୁ ଚାଲିଗଲେ ।।୧୬।। କିଛିଦିନପରେ ରୋହିତ ଶୁଣିବାକୁ ପାଇଲେ ଯେ ବରୁଣଙ୍କ କ୍ରୋଧରୁ ତାଙ୍କ ପିତା ଜଳୋଦର ରୋଗରେ କଷ୍ଟ ପାଉଛନ୍ତି । ତେଣୁ ସେ ନିଜ ନଗରୀଆଡ଼କୁ ଫେରି ଆସୁଥିଲେ, ମାତ୍ର ଇନ୍ଦ୍ର ଆସି ତାଙ୍କୁ ବାରଣ କଲେ ।।୧୭।। ସେଠାକୁ ଯିବା ଅପେକ୍ଷା ପୃଥିବୀ ପର୍ଯ୍ୟଟନ କରି ପବିତ୍ର ତୀର୍ଥକ୍ଷେତ୍ର ଆଦି ଭ୍ରମଣ ଦ୍ୱାରା ପୁଣ୍ୟ ଅର୍ଜନ କରିବାପାଇଁ ଇନ୍ଦ୍ର ତାଙ୍କୁ ଉପଦେଶ ଦେଲେ ଏବଂ ରୋହିତ ମଧ୍ୟ ଏକ ବର୍ଷ କାଳ ତୀର୍ଥାଟନ କରି ଅରଣ୍ୟବାସ କଲେ ।।୧୮।।

ଏହିପରି ଦ୍ୱିତୀୟ, ତୃତୀୟ, ଚତୁର୍ଥ ଓ ପଞ୍ଚମ ବର୍ଷ ରୋହିତ ନିଜର ପିତାଙ୍କ ପାଖକୁ ଆସିବାପାଇଁ ଚେଷ୍ଟା କରୁଥାନ୍ତି, ମାତ୍ର ଇନ୍ଦ୍ର ଆସି ତାହା ଭାଙ୍ଗି ଦେଉଥା'ନ୍ତି ।।୧୯।।

ଏହିପରି ଛ'ବର୍ଷ ବନରେ ରହି ସପ୍ତମ ବର୍ଷ ରୋହିତ ଘରକୁ ଫେରିବାବେଳେ ବାଟରେ ଅଜୀଗର୍ତ୍ତଙ୍କ ମଧ୍ୟମ ପୁତ୍ର ଶୁନଃଶେପକୁ କିଣି ଆଣିଲେ ଏବଂ ଯଜ୍ଞପଶୁ ରୂପେ ପିତାଙ୍କୁ ଦାନ କରି ପିତାଙ୍କର ଚରଣ ବନ୍ଦନା କଲେ । ମହାଯଶା ରାଜା ହରିଶ୍ଚନ୍ଦ୍ର ଉଦରରୋଗରୁ ମୁକ୍ତ ହୋଇ ନରମେଧ ଯଜ୍ଞଦ୍ୱାରା ବରୁଣ ଆଦି ଦେବତାମାନଙ୍କୁ ଯଜନ କଲେ । ଏହି ଯଜ୍ଞରେ ବିଶ୍ୱାମିତ୍ର ହୋତା, ଆତ୍ମଜ୍ଞ ଜମଦଗ୍ନି ଅଧ୍ୱର୍ଯ୍ୟୁ ଓ ବଶିଷ୍ଠ ବ୍ରହ୍ମା ହେଲେ । ଅୟାସ୍ୟ ମୁନି ଉଦ୍‌ଗାତା ଭାବରେ ସାମଗାନ କଲେ । ଇନ୍ଦ୍ର ସନ୍ତୁଷ୍ଟ ହୋଇ ହରିଶ୍ଚନ୍ଦ୍ରଙ୍କୁ ଏକ ସୁବର୍ଣ୍ଣମୟ ରଥ ଦାନ କରିଥିଲେ ।।୨୦-୨୩।। ପରିକ୍ଷିତ, ଶୁନଃଶେପଙ୍କ ମାହାତ୍ମ୍ୟ ମୁଁ ପରେ ପ୍ରସଙ୍ଗକ୍ରମେ ବର୍ଣ୍ଣନା କରିବି । ସସ୍ତ୍ରୀକ ହରିଶ୍ଚନ୍ଦ୍ର ନିଜର ସତ୍ୟରକ୍ଷା, ସାମର୍ଥ୍ୟ ଓ ଧୈର୍ଯ୍ୟ ବଳରେ ଋଷି ବିଶ୍ୱାମିତ୍ରଙ୍କୁ ଅତିଶୟ ସନ୍ତୁଷ୍ଟ କରିବାରୁ ବିଶ୍ୱାମିତ୍ର ପ୍ରୀତ ହୋଇ ତାଙ୍କୁ ପରମଜ୍ଞାନ ଦାନ କରିଥିଲେ ।।୨୪।। ରାଜା ହରିଶ୍ଚନ୍ଦ୍ର ଅନ୍ନମୟ ମନକୁ ପୃଥିବୀରେ, ପୃଥିବୀକୁ ଜଳରେ, ଜଳକୁ ତେଜରେ, ତେଜକୁ ବାୟୁରେ ଓ ବାୟୁକୁ ଆକାଶରେ ଧାରଣ କରି ଆକାଶକୁ ଅହଂକାରରେ ବିଲୀନ କଲେ । ପୁଣି ଅହଙ୍କାରକୁ ମହତ୍ ତତ୍ତ୍ୱରେ ଲୀନ କରି ଜ୍ଞାନକଳାକୁ ଧ୍ୟାନ କଲେ ଏବଂ ତଦ୍ୱାରା ଅଜ୍ଞାନ ଭସ୍ମ ହୋଇଗଲା ।।୨୫-୨୬।। ଏହାପରେ ନିର୍ବାଣ ସୁଖର ଅନୁଭୂତିଦ୍ୱାରା ଜ୍ଞାନକଳାକୁ ମଧ୍ୟ ପରିତ୍ୟାଗ କଲେ ଏବଂ ବନ୍ଧନମୁକ୍ତ ହୋଇ ନିଜ ସ୍ୱରୂପରେ ଅବସ୍ଥାନ କଲେ--ଯାହାକି ବର୍ଣ୍ଣନା ଓ ତର୍କର ଅତୀତ ।।୨୭।।

## ଅଷ୍ଟମ ଅଧ୍ୟାୟ

# ସଗର ଚରିତ

ଶ୍ରୀ ଶୁକଦେବ କହିଲେ, ରୋହିତଙ୍କ ପୁତ୍ର ହରିତ । ହରିତଙ୍କର ପୁତ୍ର ଚମ୍ପ ହେଲେ, ଯେ ଚମ୍ପାପୁରୀକୁ ବସାଇଥିଲେ । ଚମ୍ପଙ୍କ ପୁତ୍ର ସୁଦେବ ଓ ସୁଦେବଙ୍କ ପୁତ୍ର ବିଜୟ ହେଲେ ।।୧।। ବିଜୟଙ୍କ ପୁତ୍ର ବୃକ ଓ ବୃକଙ୍କର ପୁତ୍ର ବାହୁକ ହେଲେ । ଶତ୍ରୁମାନେ ବାହୁକଙ୍କ ରାଜ୍ୟ ଛଡ଼ାଇ ନେବାରୁ ସେ ନିଜର ପତ୍ନୀଙ୍କ ସହିତ ବନକୁ ଚାଲିଗଲେ ।।୨।। ରାଜା ବୁଢ଼ା ହୋଇ ମରିଯିବାରୁ, ରାଣୀ ତାଙ୍କୁ ଅନୁଗମନ କରିବାକୁ ବାହାରିଲେ । ମାତ୍ର ସେ ଗର୍ଭବତୀ ଥିବାରୁ ଔର୍ବ ଋଷି ତାଙ୍କୁ ସହମରଣରୁ ନିବାରଣ କଲେ ।।୩।। ଯେତେବେଳେ ତାଙ୍କ ସଉତୁଣୀମାନେ ଏହା ଜାଣିପାରିଲେ, ସେମାନେ ଅନ୍ନ ସହିତ ତାଙ୍କୁ ବିଷ

ଦେଇଦେଲେ । କିନ୍ତୁ ଗର୍ଭ ଉପରେ ବିଷର ପ୍ରଭାବ ପଡ଼ିଲା ନାହିଁ । ବିଷ ବା ଗର ସହ ପୁତ୍ର ଜନ୍ମ ହେବାରୁ ପୁତ୍ରର ନାମ ହେଲା ସଗର ॥୪॥ ସଗର ଚକ୍ରବର୍ତ୍ତୀ ସମ୍ରାଟ ହେଲେ । ତାଙ୍କର ପୁତ୍ରମାନେ ଭୂମି ଖୋଳି ସାଗରକୁ ନିର୍ମାଣ କରିଥିଲେ । ରାଜା ସଗର ନିଜ ଗୁରୁଙ୍କର ଆଜ୍ଞା ମାନି ତାଳଜଂଘ, ଯବନ, ଶକ, ହୈହୟ ଆଦି ବର୍ବର ଜାତିର ଲୋକଙ୍କୁ ପ୍ରାଣରେ ନ ମାରି ବିରୂପ କରି ଦେଇଥିଲେ । କାହାକୁ ଲଣ୍ଡା କରିଥିଲେ ତ କାହାକୁ ଦାଢ଼ି ଛାଡ଼ିବାକୁ ବାଧ୍ୟ କରିଥିଲେ । କାହାର ବାଳ ମୁକୁଳା କରି ବା କାହାର ମୁଣ୍ଡକୁ ଅଧା ଖିଅର କରି ଛାଡ଼ି ଦେଇଥିଲେ । କାହାକୁ ପିନ୍ଧିବାପାଇଁ ନୁହେଁ, ଦେହରେ ଘୋଡ଼େଇବାପାଇଁ ଲୁଗା ଦେଇ ତ କାହାକୁ କୌପୀନ ପିନ୍ଧାଇ ଛାଡ଼ି ଦେଇଥିଲେ । ଏହାପରେ ଔର୍ବ ଋଷିଙ୍କ ଉପଦେଶ ଅନୁସାରେ ସେ ଅଶ୍ୱମେଧ ଯଜ୍ଞଦ୍ୱାରା ସର୍ବଦେବମୟ ଆତ୍ମସ୍ୱରୂପ ଶ୍ରୀହରିଙ୍କୁ ଅର୍ଚ୍ଚନା କରିଥିଲେ । ସେହି ଯଜ୍ଞରେ ଅର୍ପିତ ଅଶ୍ୱକୁ ଇନ୍ଦ୍ର ଚୋରାଇନେଲେ ॥୫-୮॥ ରାଣୀ ସୁମତିଙ୍କ ଗର୍ଭଜାତ ସଗରଙ୍କର ପୁତ୍ରମାନେ ବଡ଼ ପିତୃଭକ୍ତ ଥିଲେ । ସେମାନେ ସାରା ପୃଥିବୀକୁ ଖୋଜି ଖୋଜି ଯେତେବେଳେ ଘୋଡ଼ାକୁ ପାଇଲେନାହିଁ, ସେତେବେଳେ ଚତୁର୍ଦ୍ଦିଗରୁ ପୃଥିବୀକୁ ଖୋଳିବାକୁ ଲାଗିଲେ । ଖୋଳିଖୋଳି ପୂର୍ବ-ଉତ୍ତର କୋଣରେ କପିଳ ଋଷିଙ୍କ ନିକଟରେ ଘୋଡ଼ାଟିକୁ ଦେଖିବାକୁ ପାଇଲେ । 'ଏ ହେଉଛି ଚୋର, ଆମର ଘୋଡ଼ାକୁ ଚୋରି କରିଛି (କିଛି ନ ଜାଣିବାପରି ଆଖି ବୁଜି ବସିଛି), ଏହି ପାପୀକୁ ହତ୍ୟା କର, ହତ୍ୟା କର'--ଏହିପରି କହି ଆୟୁଧ ଉଠାଇ ମୁନିଙ୍କ ଆଡ଼କୁ ଦୌଡ଼ିଲେ । କୋଳାହଳ ଶୁଣି ମୁନି ଆଖି ଖୋଲି ଚାହିଁଲେ ॥୯-୧୧॥ ଇନ୍ଦ୍ରଙ୍କଦ୍ୱାରା ଏହି ରାଜକୁମାରମାନଙ୍କର ବୁଦ୍ଧି ବିଚଳିତ ହୋଇଯାଇଥିଲା, ଯାହାଫଳରେ ସେମାନେ କପିଳମୁନିଙ୍କୁ ତିରସ୍କାର କରିଥିଲେ । ମହାପୁରୁଷଙ୍କ ଅପମାନ ଫଳରେ ତାଙ୍କ ଦେହରୁ ଜାତ ଅଗ୍ନିରେ ସେମାନେ ଭସ୍ମ ହୋଇଗଲେ ॥୧୨॥ ପରିକ୍ଷିତ, ସଗରଙ୍କ ପୁତ୍ରମାନେ କପିଳଙ୍କ କ୍ରୋଧରେ ଜଳିଗଲେ ବୋଲି କହିବା ଠିକ୍ ହେବ ନାହିଁ । କାରଣ ସେ ଶୁଦ୍ଧ, ସତ୍ତ୍ୱମୟ ଥିଲେ । ପୃଥିବୀର ଧୂଳି ଯେପରି ମହାକାଶରେ ରହିପାରିବ ନାହିଁ, ସେହିପରି କ୍ରୋଧମୟ ତମ ଏହି ସତ୍ତ୍ୱମୟ ପୁରୁଷଙ୍କ ପାଖରେ କିପରି ରହିପାରିବ ? ॥୧୩॥ ଏହି ଭବସାଗର ହେଉଛି ଏକ ମୃତ୍ୟୁମୟ ପଥ । ଏହାକୁ ପାର ହେବାପାଇଁ କପିଳ ସାଂଖ୍ୟଶାସ୍ତ୍ରରୂପକ ଏକ ସୁଦୃଢ଼ ନୌକା ପ୍ରସ୍ତୁତ କରିଥିଲେ, ଯାହାଫଳରେ ଯେକୌଣସି ମୁକ୍ତିକାମୀ ବ୍ୟକ୍ତି ଏହି ସମୁଦ୍ରକୁ ପାର ହୋଇଯିବ । ସେହି ପରମଜ୍ଞାନୀ ପରମାତ୍ମା ପୁରୁଷଙ୍କ ପାଖରେ ଶତ୍ରୁମିତ୍ର ଭାବ କିପରି ରହିପାରେ ? ॥୧୪॥ ସଗରଙ୍କର ଦ୍ୱିତୀୟ ପତ୍ନୀଙ୍କର ନାମ କେଶିନୀ । ତାଙ୍କ ଗର୍ଭରୁ ଅସମଞ୍ଜସ ଜନ୍ମ ହୋଇଥିଲେ । ଅସମଞ୍ଜସଙ୍କ ପୁତ୍ରଙ୍କ ନାମ ଅଂଶୁମାନ୍ । ଅଂଶୁମାନ୍ ନିଜର ପିତାମହଙ୍କର ସେବାରେ ଲାଗିଥିଲେ । ପୂର୍ବଜନ୍ମରେ ଅସମଞ୍ଜସ ଯୋଗୀ ଥିଲେ । ସଙ୍ଗଦୋଷରୁ ସେ ଯୋଗଭ୍ରଷ୍ଟ ହୋଇଗଲେ । କିନ୍ତୁ ସେ ଜାତିସ୍ମର ଥିବାରୁ ପୂର୍ବଜନ୍ମର କଥା ତାଙ୍କର ମନେଥିଲା । ତେଣୁ ସେ ଜ୍ଞାତିମାନଙ୍କର ଅପ୍ରିୟ, ଗର୍ହିତ କାର୍ଯ୍ୟସବୁ କରୁଥିଲେ । ଖେଳୁଥିବା ପିଲାମାନଙ୍କୁ ସେ ସରଯୂ ନଦୀରେ ବୁଡ଼ାଇ ଦେଉଥିଲେ ଏବଂ ଲୋକଙ୍କର ବହୁ ଉଦ୍‌ବେଗର କାରଣ ହେଲେ ॥୧୫-୧୭॥ ଏହି କାର୍ଯ୍ୟପାଇଁ ସେ ଯେ କେବଳ ପିତାଙ୍କ ସ୍ନେହରୁ ବଞ୍ଚିତ ହେଲେ, ତା ନୁହେଁ, ପିତାଙ୍କ ଦ୍ୱାରା ମଧ୍ୟ ପରିତ୍ୟକ୍ତ ହେଲେ । ଅସମଞ୍ଜସ ଯୋଗବଳରେ ସରଯୂରେ ବୁଡ଼ାଇଦେଇଥିବା ପିଲାମାନଙ୍କୁ ପୁଣି ବଞ୍ଚାଇ ଦେଇ ଅଯୋଧ୍ୟା ଛାଡ଼ି ଚାଲିଗଲେ । ପିଲାମାନଙ୍କୁ ଫେରି ଆସିବାର ଦେଖି ଅଯୋଧ୍ୟାବାସୀମାନେ ବିସ୍ମିତ ହୋଇଗଲେ ଏବଂ ରାଜା ମଧ୍ୟ ଅନୁତାପ କରିବାକୁ ଲାଗିଲେ ॥୧୮-୧୯॥

ପିତାମହ ସଗରଙ୍କର ଆଦେଶରେ ଅଂଶୁମାନ୍ ଘୋଡ଼ାକୁ ଖୋଜିବାକୁ ଗଲେ । ତାଙ୍କର ପିତୃବ୍ୟମାନେ ଯେଉଁ ସାଗର ଖୋଳିଥିଲେ, ତାହାରି କୂଳେକୂଳେ ଯାଇ ସେ ସେମାନଙ୍କର ଭସ୍ମାବଶେଷ ଓ ଘୋଡ଼ାକୁ ଦେଖିବାକୁ ପାଇଲେ ॥୨୦॥ ସେଠାରେ ଭଗବାନଙ୍କ ଅବତାର କପିଳମୁନିଙ୍କୁ ବସିଥିବାର ଦେଖି ସେ ତାଙ୍କ ପାଦତଳେ ପ୍ରଣାମ କଲେ ଓ ହାତ ଯୋଡ଼ି ତାଙ୍କୁ ସ୍ତୁତି କରିବାକୁ ଲାଗିଲେ ॥୨୧॥ ଅଂଶୁମାନ କହିଲେ, ଭଗବନ୍, ବ୍ରହ୍ମା ମଧ୍ୟ ଏ ପର୍ଯ୍ୟନ୍ତ ପରାତ୍ପର ପରମେଶ୍ୱରରୂପୀ ଆପଣଙ୍କୁ ଏକାନ୍ତ ଧ୍ୟାନଦ୍ୱାରା ବା ଯୁକ୍ତିଦ୍ୱାରା ବୁଝିପାରି ନାହାନ୍ତି । ମନ, ଶରୀର ଓ ବୁଦ୍ଧିଯୁକ୍ତ ଆମପରି ଅଜ୍ଞାନୀ ଜୀବମାନେ ଆପଣଙ୍କୁ

କିପରି ଜାଣି ପାରିବୁ ? ॥୨୨॥ ସଂସାରର ଏହି ଦେହଧାରୀମାନେ ସତ୍ତ୍ୱଗୁଣ, ରଜଗୁଣ ଓ ତମଗୁଣ ପ୍ରଧାନ । ସେମାନେ ଜାଗ୍ରତ୍ ଅବସ୍ଥାରେ ଏବଂ ସ୍ୱପ୍ନରେ ଗୁଣମୟ ବିଷୟମାନଙ୍କୁ ଦେଖନ୍ତି ବା ଅଜ୍ଞାନଭାବରେ ରହନ୍ତି । କାରଣ ଆପଣଙ୍କ ମାୟାରେ ମୋହିତ ହୋଇ ସେମାନେ କେବଳ ବାହାରର ବସ୍ତୁକୁ ହିଁ ଦେଖନ୍ତି, ଅନ୍ତର୍ଯାମୀ ରୂପେ ଆପଣ ଯେ ସେମାନଙ୍କ ମଧ୍ୟରେ ରହିଛନ୍ତି, ତାହା ସେମାନେ ଦେଖି ପାରନ୍ତି ନାହିଁ ॥୨୩॥ ଯେଉଁମାନଙ୍କର ମାୟାଗୁଣଜନିତ ମୋହ ଓ ଭେଦଭାବ ଦୂର ହୋଇଯାଇଛି, ସନନ୍ଦନ ଆଦି ସେହି ମୁନିମାନେ ଆପଣଙ୍କୁ ସର୍ବଦା ଚିନ୍ତନ କରିଥାନ୍ତି । କିନ୍ତୁ ମୂଢ଼ବିଚାର ଦ୍ୱାରା ଆମେମାନେ ଶୁଦ୍ଧ ଜ୍ଞାନଘନମୂର୍ତ୍ତି ଆପଣଙ୍କୁ କିପରି ଜାଣିପାରିବୁ ? ॥୨୪॥ ତେଣୁ ହେ ପ୍ରଶାନ୍ତ, ଆପଣଙ୍କଠାରେ ମାୟାର ଗୁଣ, ଗୁଣର କାରଣ କର୍ମ ଏବଂ କର୍ମ ନିର୍ମିତ ଶରୀର ନାହିଁ । ଆପଣଙ୍କର ନାମ ନାହିଁ କି ରୂପ ନାହିଁ । କାର୍ଯ୍ୟ ନାହିଁ କି କାରଣ ନାହିଁ । ଜୀବମାନଙ୍କୁ ଜ୍ଞାନ ଉପଦେଶ ଦେବାପାଇଁ ଆପଣ ଏହି ଶରୀର ଧାରଣ କରିଛନ୍ତି । ଆପଣ ସନାତନ ପୁରୁଷ । ମୁଁ ଆପଣଙ୍କୁ ନମସ୍କାର କରୁଛି ॥୨୫॥ କାମ, ଲୋଭ, ଈର୍ଷା ଓ ମୋହ ଆଦି ଦ୍ୱାରା ଭ୍ରାନ୍ତଚିତ୍ତ ବ୍ୟକ୍ତିମାନେ ଆପଣଙ୍କ ମାୟାରଚିତ ଏହି ପୃଥିବୀରେ ଦେହ, ଗୃହ ଆଦି ଘେରମଧ୍ୟରେ ପଡ଼ି ସର୍ବଦା ଭ୍ରମୁଥାନ୍ତି ॥୨୬॥ ହେ ସର୍ବଭୂତାତ୍ମା ଭଗବାନ୍, ଆଜି ଆପଣଙ୍କୁ ଦର୍ଶନ କରି ଆମର ମୋହବନ୍ଧନ କଟିଗଲା । ଏହି ମୋହ ହିଁ କାମ, କର୍ମ ଓ ଇନ୍ଦ୍ରିୟମାନଙ୍କର ଆଶ୍ରୟ ॥୨୭॥ ଶ୍ରୀ ଶୁକଦେବ କହିଲେ, ପରୀକ୍ଷିତ, ଅଂଶୁମାନ୍ ଏହିପରି ଭଗବାନ୍ କପିଳଦେବଙ୍କର ସ୍ତୁତି ଗାନ କଲେ । ଭଗବାନ୍ କପିଳଦେବ ଅତିଶୟ କୃପାପରବଶ ହୋଇ ତାଙ୍କୁ କହିଲେ— ॥୨୮॥

ଭଗବାନ୍ କପିଳ କହିଲେ, ବତ୍ସ, ଏ ହେଉଛି ତୁମ ପିତାମହଙ୍କ ଯଜ୍ଞର ଅଶ୍ୱ । ତୁମେ ଏହାକୁ ନେଇଯାଅ । ତୁମର ଯେଉଁ ପିତୃବ୍ୟମାନେ ଭସ୍ମ ହୋଇଯାଇଛନ୍ତି, ସେମାନେ କେବଳ ଗଙ୍ଗାଜଳଦ୍ୱାରା ଉଦ୍ଧାର ପାଇ ପାରିବେ; ସେମାନଙ୍କ ଉଦ୍ଧାରର ଅନ୍ୟ ଉପାୟ ନାହିଁ ॥୨୯॥ ଅଂଶୁମାନ୍ କପିଳମୁନିଙ୍କୁ ପ୍ରଦକ୍ଷିଣ, ପ୍ରଣାମ ଓ ପ୍ରସନ୍ନ କରି ଯଜ୍ଞଅଶ୍ୱକୁ ଧରି ଫେରି ଆସିଲେ । ଏହି ଅଶ୍ୱଦ୍ୱାରା ରାଜା ସଗର ତାଙ୍କର ଯଜ୍ଞ ଶେଷ କଲେ ॥୩୦॥ ଏହାପରେ ରାଜା ସଗର ନିଃସ୍ପୃହଭାବରେ ସମସ୍ତ ସଂସାରବଂଧନରୁ ମୁକ୍ତ ହୋଇ ଅଂଶୁମାନ୍‌ଙ୍କୁ ରାଜ୍ୟଭାର ଅର୍ପଣ କଲେ ଏବଂ ଔର୍ବଋଷିଙ୍କର ଉପଦିଷ୍ଟ ମାର୍ଗରେ ଯାଇ ପରମଗତି ଲାଭ କଲେ ॥୩୧॥

## ନବମ ଅଧ୍ୟାୟ

# ଭଗୀରଥ ଗଙ୍ଗାଙ୍କୁ ଆଣିଲେ

ଶ୍ରୀ ଶୁକଦେବ କହିଲେ, ପରିକ୍ଷିତ, ଗଙ୍ଗାଙ୍କୁ ଆଣିବା ପାଇଁ ଅଂଶୁମାନ୍ ବହୁକାଳ ଧରି ତପସ୍ୟା କଲେ ମଧ୍ୟ ତାଙ୍କୁ ଆଣି ପାରିଲେ ନାହିଁ ଏବଂ ପରେ ତାଙ୍କର ମୃତ୍ୟୁ ହୋଇଗଲା ॥୧॥ ତାଙ୍କର ପୁତ୍ର ଦିଲୀପ ପିତାଙ୍କ ପରି ବହୁକାଳ ଧରି ତପସ୍ୟା କଲେ ମଧ୍ୟ ଗଙ୍ଗାଙ୍କୁ ଆଣି ପାରିଲେ ନାହିଁ ଏବଂ ପରେ ତାଙ୍କର ମଧ୍ୟ ମୃତ୍ୟୁ ହୋଇଗଲା । ଦିଲୀପଙ୍କର ପୁତ୍ର ଭଗୀରଥ ଘୋର ତପସ୍ୟା କରିଥିଲେ । ଗଙ୍ଗାଦେବୀ ପ୍ରସନ୍ନ ହୋଇ ଭଗୀରଥଙ୍କୁ ଦର୍ଶନ ଦେଲେ ଏବଂ କହିଲେ, 'ମୁଁ ତୁମକୁ ବର ଦେବାପାଇଁ ଆସିଛି, କ'ଣ ତୁମର ଅଭିଳାଷ କହ ।' ରାଜା ଭଗୀରଥ ଗଙ୍ଗାଙ୍କୁ ପ୍ରଣାମ କରି ନିଜ ଅଭିଳାଷ ବ୍ୟକ୍ତ କଲେ । ଗଙ୍ଗା କହିଲେ, ରାଜା, ଆକାଶରୁ ତଳକୁ ପଡ଼ିଲେ ମୋର ବେଗକୁ କିଏ ଧାରଣ କରିବ ? ଅନ୍ୟଥା ଏହି ପୃଥିବୀକୁ ଭେଦ କରି ମୁଁ ରସାତଳକୁ ଚାଲିଯିବି । ଆହୁରି ଏକ କାରଣରୁ ମୁଁ ପୃଥିବୀକୁ ଆସିବାକୁ ଚାହୁଁ ନାହିଁ । ଲୋକମାନେ ମୋ ମଧ୍ୟରେ ତାଙ୍କର ପାପ ଧୋଇବାକୁ ଲାଗିବେ । ମୁଁ ଏ ପାପକୁ ପୁଣି କେଉଁଠି ଧୋଇବି ? ରାଜା, ତୁମେ ଏ ବିଷୟରେ ସ୍ୱୟଂ ବିଚାର କର ॥୨-୫॥ ଭଗୀରଥ

କହିଲେ, ଦେବୀ, ଲୋକମାନଙ୍କୁ ପବିତ୍ର କରୁଥିବା ସନ୍ନ୍ୟାସୀ, ବ୍ରହ୍ମନିଷ୍ଠ ଶାନ୍ତ ସାଧୁ ମହାତ୍ମାମାନେ ସେମାନଙ୍କର ଗାତ୍ରସ୍ପର୍ଶଦ୍ୱାରା ଆପଣଙ୍କର ପାପ ହରଣ କରିବେ । କାରଣ ସେମାନଙ୍କ ହୃଦୟରେ ପାପହାରୀ ଶ୍ରୀହରି ସର୍ବଦା ବିଦ୍ୟମାନ ॥୬॥ ଦେହଧାରୀମାନଙ୍କର ଆତ୍ମା ରୁଦ୍ରଦେବ ଆପଣଙ୍କର ବେଗକୁ ଧାରଣ କରିବେ । ସୂତାରେ ଯେପରି ଶାଢ଼ି ବୁଣା ହୋଇଥାଏ, ସେହିପରି ଭଗବାନ ରୁଦ୍ରଦେବଙ୍କ ଠାରେ ଏହି ବିଶ୍ୱ ଓତପ୍ରୋତ ଭାବରେ ରହିଚି ॥୭॥ ଏହା କହି ରାଜା ଭଗୀରଥ ଅଳ୍ପକାଳ ମଧ୍ୟରେ ତପସ୍ୟାଦ୍ୱାରା ଶିବଙ୍କୁ ସନ୍ତୁଷ୍ଟ କଲେ । ଭଗବାନ ଆଶୁତୋଷ ଅଳ୍ପ ତପସ୍ୟାରେ ହିଁ ତାଙ୍କ ପ୍ରତି ସନ୍ତୁଷ୍ଟ ହୋଇଗଲେ ॥୮॥ ଭଗବାନ ଶଙ୍କର ସମସ୍ତ ବିଶ୍ୱର ମଙ୍ଗଳକାରୀ । ସେ ତଥାସ୍ତୁ ବୋଲି କହି ଭଗୀରଥଙ୍କର ପ୍ରାର୍ଥନା ସ୍ୱୀକାର କଲେ ଏବଂ ସାବଧାନ ହୋଇ ବିଷ୍ଣୁଙ୍କ ପାଦସ୍ପର୍ଶଦ୍ୱାରା ପବିତ୍ରଜଳା ଗଙ୍ଗାଙ୍କୁ ମସ୍ତକରେ ଧାରଣ କଲେ ॥୯॥ ରାଜର୍ଷି ଭଗୀରଥ ଯେଉଁଠାରେ ନିଜ ପିତୃମାନଙ୍କର ଦେହସବୁ ଭସ୍ମୀଭୂତ ହୋଇଥିଲା, ସେହି ସ୍ଥାନକୁ ଭୁବନପାବନୀ ଗଙ୍ଗାଙ୍କୁ ନେଇଗଲେ ॥୧୦॥ ଭଗୀରଥ ରଥରେ ବସି ବାୟୁବେଗରେ ଯାଉଥିଲେ ଏବଂ ଗଙ୍ଗାଦେବୀ ତାଙ୍କୁ ଅନୁଧାବନ କରି ପଥମଧ୍ୟରେ ଥିବା ସମସ୍ତ ଦେଶକୁ ପବିତ୍ର କରୁଥିଲେ । ଏହିପରି ସଗରଙ୍କ ପୁତ୍ରମାନଙ୍କର ଭସ୍ମୀଭୂତ ଦେହ ଗଙ୍ଗାଜଳରେ ଧୌତ ହୋଇଗଲା ॥୧୧॥ ସଗରଙ୍କ ପୁତ୍ରମାନେ ବ୍ରାହ୍ମଣଙ୍କୁ ତିରସ୍କାର କରିବା କାରଣରୁ ଦଣ୍ଡସ୍ୱରୂପ ଭସ୍ମ ହୋଇଯାଇଥିଲେ । ତାଙ୍କ ଉଦ୍ଧାରର ଅନ୍ୟ କୌଣସି ଉପାୟ ନ ଥିଲା । ସେମାନଙ୍କର ଭସ୍ମାବଶେଷକୁ ଗଂଗାଜଳ ସ୍ପର୍ଶ କରିବା ମାତ୍ରେ ସେମାନେ ସ୍ୱର୍ଗକୁ ଚାଲିଗଲେ ॥୧୨॥ ପରିକ୍ଷିତ, ସେମାନଙ୍କର ଶରୀର ଭସ୍ମ ହୋଇଯିବା ପରେ କେବଳ ଗଙ୍ଗାଜଳର ସ୍ପର୍ଶମାତ୍ରେ ସେମାନେ ସ୍ୱର୍ଗଲାଭ କଲେ ଏଣୁ ଶ୍ରଦ୍ଧାର ସହିତ ବ୍ରତ ଧାରଣ କରି ଯେଉଁମାନେ ଗଙ୍ଗାଙ୍କର ସେବା କରନ୍ତି, ସେମାନଙ୍କ ସମ୍ବନ୍ଧରେ ବା କ'ଣ କହିବା ? ॥୧୩॥ ମୁଁ ଗଙ୍ଗାଙ୍କର ମାହାତ୍ମ୍ୟ ସମ୍ପର୍କରେ ଯାହା କିଛି କହୁଛି, ଏଥିରେ ଆଶ୍ଚର୍ଯ୍ୟ ହେବାର କିଛି ନାହିଁ । କାରଣ ଗଙ୍ଗା ଭଗବାନଙ୍କ ପାଦପଦ୍ମରୁ ବାହାରି ଆସିଛନ୍ତି । ସେହି ପାଦପଦ୍ମକୁ ଶ୍ରଦ୍ଧାର ସହିତ ଚିନ୍ତାକରି ବଡ଼ ବଡ଼ ମୁନିଋଷି ଶୁଦ୍ଧ ହୋଇଯାଆନ୍ତି ଏବଂ ତ୍ରିଗୁଣର ବନ୍ଧନରେ ଥିବା ଏହି ଦେହକୁ ସେଥିରୁ ମୁକ୍ତ କରି ଭଗବତ୍‌ସ୍ୱରୂପରେ ମିଶିଯାଆନ୍ତି । ତେଣୁ ସୁରଧୁନୀ ଗଙ୍ଗା ହେଉଛନ୍ତି ସର୍ବପାପହାରିଣୀ ॥୧୪-୧୫॥

ଭଗୀରଥଙ୍କ ପୁତ୍ର ହେଲେ ଶ୍ରୁତ । ତାଙ୍କର ପୁତ୍ର ନାଭ । ନାଭଙ୍କର ପୁତ୍ର ସିନ୍ଧୁଦ୍ୱୀପ, ସିନ୍ଧୁଦ୍ୱୀପଙ୍କର ପୁତ୍ର ଅୟୁତାୟୁ ଓ ତାଙ୍କର ପୁତ୍ର ଋତୁପର୍ଣ୍ଣ । ଋତୁପର୍ଣ୍ଣ ନଳରାଜାଙ୍କର ପରମବନ୍ଧୁ ଥିଲେ ଏବଂ ନଳଙ୍କୁ ଅକ୍ଷହୃଦୟ (ପଶାଖେଳର କୌଶଳ) ଦାନ କରି ତାଙ୍କଠାରୁ ଅଶ୍ୱବିଦ୍ୟା ଲାଭ କରିଥିଲେ । ଋତୁପର୍ଣ୍ଣଙ୍କର ପୁତ୍ର ହେଲେ ସର୍ବକାମ ॥୧୬-୧୭॥

ସର୍ବକାମଙ୍କର ପୁତ୍ର ସୁଦାସ, ସୁଦାସଙ୍କ ପୁତ୍ରଙ୍କର ନାମ ସୌଦାସ ଓ ତାଙ୍କ ପତ୍ନୀଙ୍କର ନାମ ଥିଲା ମଦୟନ୍ତୀ । ସୌଦାସଙ୍କୁ ଲୋକେ ମିତ୍ରସହ ଏବଂ କେବେକେବେ କଲ୍ମାଷପାଦ ବୋଲି କହୁଥିଲେ । ନିଜ କର୍ମଦୋଷରୁ ବଶିଷ୍ଠଙ୍କ ଶାପରେ ସେ ନିଃସନ୍ତାନ ହୋଇ ରାକ୍ଷସ ହୋଇଗଲେ ॥୧୮॥ ପରିକ୍ଷିତ ପଚାରିଲେ, ଭଗବନ୍, କେଉଁଥିପାଇଁ ସୌଦାସଙ୍କୁ ତାଙ୍କର ଗୁରୁ ବଶିଷ୍ଠମୁନି ଅଭିଶାପ ଦେଲେ, ମୁଁ ତାହା ଜାଣିବାକୁ ଚାହୁଁଛି । ଯଦି ସେଥିରେ କିଛି ଗୋପନୀୟ ନ ଥାଏ, ତା'ହେଲେ ତାହା ମୋତେ ଦୟା କରି କହନ୍ତୁ ॥୧୯॥

ଶ୍ରୀ ଶୁକଦେବ କହିଲେ, ପରିକ୍ଷିତ, ଥରେ ରାଜା ସୌଦାସ ଶିକାର କରିବାକୁ ବଣକୁ ଯାଇଥିଲେ । ସେଠାରେ ସେ ଏକ ରାକ୍ଷସକୁ ମାରି ତାର ଭାଇକୁ ଛାଡ଼ିଦେଇଥିଲେ । ମାତ୍ର ଛାଡ଼ିଦେବା ଫଳରେ ଏହି ରାକ୍ଷସ ଭ୍ରାତୃହନ୍ତାର ପ୍ରତିଶୋଧ ନେବାପାଇଁ ପ୍ରତିଜ୍ଞା କଲା ॥୨୦॥ ରାଜାଙ୍କର ଅନିଷ୍ଟ ଚିନ୍ତା କରି ସେ ତାଙ୍କର ଘରେ ଏକ ପାଚକ ରୂପରେ ପ୍ରବେଶ କଲା । ଦିନେ ବଶିଷ୍ଠ ଋଷି ଭୋଜନ କରିବାପାଇଁ ସେଠାରେ ଉପସ୍ଥିତ ହେଲେ ଏବଂ ଏହି ପାଚକରୂପୀ ରାକ୍ଷସ ନରମାଂସ ରାନ୍ଧି ତାଙ୍କୁ ଖାଇବାକୁ ଦେଲା ॥୨୧॥ ଯୋଗବଳରେ ଭଗବାନ ବଶିଷ୍ଠ ଦିବ୍ୟଚକ୍ଷୁଦ୍ୱାରା ଜାଣିପାରିଲେ ଯେ, ଅଭକ୍ଷ୍ୟ ନରମାଂସ ତାଙ୍କୁ ଦିଆଯାଇଛି । ସେ କ୍ରୁଦ୍ଧ ହୋଇ ରାଜାଙ୍କୁ ଅଭିଶାପ ଦେଲେ, 'ତୁମେ ରାକ୍ଷସ ହୋଇ ଏହିପରି ନରମାଂସ ଭୋଜନ କର ।' ୨୨॥ ଯେତେବେଳେ

ସେ ଜାଣି ପାରିଲେ ଯେ ଏହି କାର୍ଯ୍ୟ ରାକ୍ଷସର, ରାଜାଙ୍କର ନୁହେଁ, ସେତେବେଳେ ବଶିଷ୍ଠ ତାଙ୍କର ଅଭିଶାପକୁ ବାର ବର୍ଷକୁ କମାଇଦେଲେ । ସେତେବେଳେ ସୌଦାସ ମଧ୍ୟ ଆଞ୍ଜୁଳାରେ ପାଣି ଧରି ବଶିଷ୍ଠଙ୍କୁ ଶାପ ଦେବାପାଇଁ ପ୍ରସ୍ତୁତ ହେଲେ । କିନ୍ତୁ ତାଙ୍କର ପତ୍ନୀ ମଦୟନ୍ତୀ ସେଥିରୁ ତାଙ୍କୁ ବାରଣ କରିଥିଲେ । ତହୁଁ ରାଜା ନିଜର କ୍ରୋଧାନଳ ରୂପ ଜଳ ଆଞ୍ଜୁଳାକୁ ନିଜର ପାଦଉପରେ ପକାଇଦେଲେ । ଏଥିଯୋଗୁଁ ତାଙ୍କର ପାଦ ଦୁଇଟି କଳା ହୋଇଯିବାରୁ ତାଙ୍କ ନାମ ହେଲା କଲ୍ମାଷପାଦ । ଏହାପରେ ରାକ୍ଷସଭାବାପନ୍ନ ହୋଇ ସେ ଅରଣ୍ୟମଧ୍ୟରେ ବିଚରଣ କରିବାକୁ ଲାଗିଲେ । ସେ ଦିଗବିଦିଗ, ଆକାଶ ଓ ପୃଥିବୀ ସମସ୍ତଙ୍କୁ ଜୀବମୟ ଦେଖିଲେ ଏବଂ ଏଥିସହିତ ରତିକ୍ରୀଡ଼ାସକ୍ତ ଏକ ବ୍ରାହ୍ମଣଦମ୍ପତୀଙ୍କୁ ଦେଖିବାକୁ ପାଇଲେ ॥୨୩-୨୫॥

କ୍ଷୁଧାର୍ତ୍ତ ରାଜା ବ୍ରାହ୍ମଣଟିକୁ ଧରିନେଲେ । ନିଜର ଅଭିଳାଷ ଅସମ୍ପୂର୍ଣ୍ଣ ହେବାର ଦେଖି ବ୍ରାହ୍ମଣୀ କାତର ଭାବରେ କହିବାକୁ ଲାଗିଲେ, ରାଜା, ଆପଣ ରାକ୍ଷସ ନୁହନ୍ତି, ଆପଣ ଇକ୍ଷ୍ୱାକୁ ବଂଶର ରକ୍ଷକ, ବୀର, ମହାରଥୀ ଓ ମହାରାଣୀ ମଦୟନ୍ତୀଙ୍କର ସ୍ୱାମୀ । ଆପଣ ଏପରି ଅଧର୍ମ କାର୍ଯ୍ୟ କରନ୍ତୁ ନାହିଁ । ମୋର କାମନା ସନ୍ତାନ ଲାଭ କରିବା ଏବଂ ଏହି ବ୍ରାହ୍ମଣଙ୍କର କାମନା ମଧ୍ୟ ଅପୂର୍ଣ୍ଣ ରହିଛି । ତେଣୁ ଆପଣ ମୋତେ ମୋର ବ୍ରାହ୍ମଣ ସ୍ୱାମୀଙ୍କୁ ଦେଇ ଦିଅନ୍ତୁ ॥୨୬-୨୭॥ ରାଜା, ଏହି ମନୁଷ୍ୟ ଶରୀରଦ୍ୱାରା ଜୀବ ଧର୍ମ, ଅର୍ଥ, କାମ ଓ ମୋକ୍ଷ--ଏହି ଚାରୋଟି ପୁରୁଷାର୍ଥ ଲାଭ କରେ । ତେଣୁ ହେ ବୀର, ଏହାଙ୍କୁ ହତ୍ୟା କଲେ ସମସ୍ତ ପୁରୁଷାର୍ଥକୁ ହତ୍ୟା କରିବା ପରି ହେବ ॥୨୮॥ ପୁଣି ଏହି ବ୍ରାହ୍ମଣ ହେଉଛନ୍ତି, ବିଦ୍ୱାନ୍, ତପସ୍ୱୀ, ଶୀଳବାନ୍ ଓ ବହୁଗୁଣସମ୍ପନ୍ନ । ସେ ସମସ୍ତ ପ୍ରାଣୀଙ୍କର ଆତ୍ମାମଧ୍ୟରେ ପରମାତ୍ମା ଭଗବାନଙ୍କୁ ଦର୍ଶନ କରି ଆରାଧନା କରିବାକୁ ଇଚ୍ଛା କରନ୍ତି । ଆପଣ ଶକ୍ତିମାନ୍; ଧର୍ମଜ୍ଞ ପିତାଦ୍ୱାରା ପୁତ୍ର ଯେପରି ଅବଧ୍ୟ, ସେହିପରି ରାଜର୍ଷିଶ୍ରେଷ୍ଠ, ଆପଣଙ୍କ ହାତରେ ମୋର ସ୍ୱାମୀଙ୍କର ମୃତ୍ୟୁ ହେବା ଉଚିତ ନୁହେଁ ॥୨୯-୩୦॥ କାୟମନୋବାକ୍ୟରେ ସମସ୍ତ ପ୍ରାଣୀଙ୍କ ଠାରେ ସୁହୃଦ୍‌ଭାବକୁ ବିଦ୍ୟାବିବେକଯୁକ୍ତ ପଣ୍ଡିତମାନେ ଶୀଳ ବା ସତ୍‌ସ୍ୱଭାବ ବୋଲି ବର୍ଣ୍ଣନା କରିଥା'ନ୍ତି ॥୩୧॥ ଏ ହେଉଛନ୍ତି ନିଷ୍ପାପ, ବ୍ରହ୍ମଜ୍ଞାନୀ, ସାଧୁ ଓ ବ୍ରାହ୍ମଣଙ୍କର ପୁତ୍ର । ଏହାଙ୍କର ବଧ ଗୋ-ବଧ ସହିତ ସମାନ । ସାଧୁମାନେ ଆପଣଙ୍କୁ ସମ୍ମାନ କରନ୍ତି । ଆପଣ କିପରି ଏ କାର୍ଯ୍ୟ କରିବାକୁ ଯାଉଛନ୍ତି ? ॥୩୨॥ ଯଦି ଏହାଙ୍କୁ ଆପଣ ଭକ୍ଷଣ କରିବାକୁ ଚାହାନ୍ତି, ତା'ହେଲେ ତା ପୂର୍ବରୁ ମୋତେ ଖାଇଦିଅନ୍ତୁ । କାରଣ ପତିଙ୍କ ବିନା ମୃତତୁଲ୍ୟ ହୋଇ କ୍ଷଣେମାତ୍ର ମୁଁ ବଞ୍ଚିପାରିବି ନାହିଁ ॥୩୩॥ ବ୍ରହ୍ମଶାପରେ ମୋହିତ ସୌଦାସ ଅନାଥାଙ୍କପରି କରୁଣ ବିଳାପ କରୁଥିବା ବ୍ରାହ୍ମଣୀଙ୍କୁ ଭ୍ରୂକ୍ଷେପ ନକରି ବ୍ୟାଘ୍ର ପଶୁକୁ ଖାଇଯିବାପରି ସେହି ବ୍ରାହ୍ମଣଙ୍କୁ ଖାଇଗଲେ ॥୩୪॥

ସତୀ ବ୍ରାହ୍ମଣୀ ଯେତେବେଳେ ଦେଖିଲେ ଯେ ଗର୍ଭାଧାନ କରିବାକୁ ଯାଉଥିବା ପତିଙ୍କୁ ଏହି ରାକ୍ଷସ ଖାଇଗଲା, ସେତେବେଳେ ସେ ଶୋକ କରି କରି କ୍ରୋଧରେ ରାଜାଙ୍କୁ ଅଭିଶାପ ଦେଲେ ॥୩୫॥ 'ପାପୀ, ରତିକ୍ରୀଡ଼ା ସମୟରେ ମୋର କାମନା ପୂର୍ଣ୍ଣ ନ ହେଉଣୁ ତୁ ମୋର ପତିଙ୍କୁ ଭକ୍ଷଣ କଲୁ । ମୂର୍ଖ, ଯେତେବେଳେ ତୁ ତୋର ସ୍ତ୍ରୀ ସହିତ ସହବାସ କରିବାକୁ ଯିବୁ, ସେତେବେଳେ ତୋର ମୃତ୍ୟୁ ହେବ' । ଏହିପରି ରାଜାଙ୍କୁ ଅଭିଶାପ ଦେଇ ବ୍ରାହ୍ମଣୀ ନିଜ ପତିଙ୍କର ଜଳନ୍ତା ଚିତାରେ ଝାସ ଦେଇ ସତୀ ହୋଇଗଲେ ଏବଂ ନିଜ ସ୍ୱାମୀଙ୍କର ଗତି ଲାଭ କଲେ ॥୩୬-୩୭॥ ବାର ବର୍ଷ ପରେ ଶାପମୁକ୍ତ ସୌଦାସ ଦିନେ ନିଜର ସ୍ତ୍ରୀଙ୍କ ସହିତ ରତିକ୍ରୀଡ଼ାପାଇଁ ଉଦ୍ୟତ ହେଉଥିବାବେଳେ ରାଜମହିଷୀ ବ୍ରାହ୍ମଣୀଙ୍କର ଶାପ କଥା ମନେ ପକାଇ ଦେଇ ତାଙ୍କୁ ସେଥିରୁ ନିବାରଣ କଲେ ଏବଂ ନିଜର କର୍ମଦୋଷରୁ ନିଃସନ୍ତାନ ରହିଲେ । ରାଜାଙ୍କର ଅନୁରୋଧରେ ବଶିଷ୍ଠ ଋଷି ରାଜପତ୍ନୀ ମଦୟନ୍ତୀଙ୍କର ଗର୍ଭାଧାନ କଲେ ॥୩୮-୩୯॥ ମଦୟନ୍ତୀ ସାତ ବର୍ଷପର୍ଯ୍ୟନ୍ତ ଗର୍ଭଧାରଣ କଲେ ମଧ୍ୟ ତାଙ୍କର ସନ୍ତାନ ଜନ୍ମ ହେଲା ନାହିଁ । ବଶିଷ୍ଠ ପଥରଦ୍ୱାରା ତାଙ୍କର ପେଟକୁ ଆଘାତ କଲେ । ସେଥିରୁ ଯେଉଁ ବାଳକ ଜନ୍ମ ହେଲା, ତା'ର ନାମ ହେଲା ଅଶ୍ମକ (ଅଶ୍ମ ବା ପଥରଦ୍ୱାରା ଜନ୍ମ) ॥୪୦॥

ଅଶ୍ମକଙ୍କର ପୁତ୍ର ହେଲେ ମୂଳକ । ସ୍ତ୍ରୀମାନେ ତାଙ୍କୁ ବେଷ୍ଟନ କରି ପର୍ଶୁରାମଙ୍କ କୋପରୁ ରକ୍ଷା କରିଥିବା ଯୋଗୁ ତାଙ୍କର ନାମ ନାରୀକବଚ ହେଲା । ପର୍ଶୁରାମଙ୍କଦ୍ୱାରା ପୃଥିବୀ ନିଃକ୍ଷତ୍ରିୟ ହେଲେ ମଧ୍ୟ ମୂଳକ କ୍ଷତ୍ରିୟବଂଶର ପୁନରୁଦ୍ଧାର କରିଥିଲେ । ସେଥିପାଇଁ ତାଙ୍କର ନାମ ସାର୍ଥକ ହୋଇଗଲା ॥୪୧॥ ମୂଳକଙ୍କର ପୁତ୍ର ହେଲେ ଦଶରଥ । ଦଶରଥଙ୍କର ପୁତ୍ର ଐଡ଼ବିଡ଼, ତାଙ୍କର ପୁତ୍ର ବିଶ୍ୱସହ, ତାଙ୍କର ପୁତ୍ର ଖଟ୍ୱାଙ୍ଗ ଯେ କି ରାଜଚକ୍ରବର୍ତ୍ତୀ ହୋଇଥିଲେ ॥୪୨॥ ଦୁର୍ଜୟ ଯୋଦ୍ଧା ଖଟ୍ୱାଙ୍ଗ ଦେବତାମାନଙ୍କଦ୍ୱାରା ପ୍ରାର୍ଥିତ ହୋଇ ଦୈତ୍ୟମାନଙ୍କୁ ବଧ କରିଥିଲେ । ଯେତେବେଳେ ସେ ଦେବତାମାନଙ୍କଠାରୁ ଜାଣିପାରିଲେ ଯେ ତାଙ୍କର ଆୟୁ ମାତ୍ର ଦୁଇ ଘଡ଼ି ବାକି ଅଛି, ସେତେବେଳେ ସେ ରାଜଧାନୀକୁ ଫେରିଆସି ଭଗବାନ୍‌ଙ୍କଠାରେ ଚିତ୍ତନିବେଶ କଲେ ॥୪୩॥ ଖଟ୍ୱାଙ୍ଗ ଚିନ୍ତାକଲେ, ମୋର କୁଳଦେବତା ବ୍ରାହ୍ମଣଙ୍କ ଠାରୁ ବଳି ମୋର ପ୍ରାଣ, ପୁତ୍ର, ଐଶ୍ୱର୍ଯ୍ୟ, ପୃଥିବୀ, ରାଜ୍ୟ ଏବଂ ସ୍ତ୍ରୀ ଅଧିକ ପ୍ରିୟ ନୁହେଁ ॥୪୪॥ ପିଲା ଦିନରୁ ସାମାନ୍ୟ ଅଧର୍ମ କାର୍ଯ୍ୟରେ ମଧ୍ୟ ମୋର ମନ କେବେ ଯାଇ ନାହିଁ । ମୁଁ ଉତ୍ତମଶ୍ଳୋକ ଭଗବାନ୍ ବିଷ୍ଣୁଙ୍କ ଛଡ଼ା ଅନ୍ୟ କୌଣସି ବସ୍ତୁ ଦେଖି ନାହିଁ ॥୪୫॥ ତ୍ରିଲୋକର ସ୍ୱାମୀ ଦେବତାମାନେ ମୋତେ ଇଚ୍ଛାମତେ ବରମାଗିବା ପାଇଁ କହିଥିଲେ; କିନ୍ତୁ ମୋର ଭାବନା ସେହି ଭୂତଭାବନ ଭଗବାନଙ୍କ ଠାରେ ସର୍ବଦା ରହିଥିବାରୁ ମୁଁ କୌଣସି ବର ମାଗିନାହିଁ ॥୪୬॥ ଅନ୍ୟମାନଙ୍କ କଥା ଛାଡ଼, ଦେବତାମାନଙ୍କର ଇନ୍ଦ୍ରିୟ ଓ ମନ ବିଷୟାସକ୍ତ ହୋଇଥିବା ଯୋଗୁ ନିଜର ହୃଦୟରେ ଥିବା ପ୍ରେମାସ୍ପଦ ଭଗବାନଙ୍କୁ ସେମାନେ ଜାଣନ୍ତିନାହିଁ ॥୪୭॥ ତେଣୁ, ଏ ସମସ୍ତ ବିଷୟ ଭୋଗ ପ୍ରତି ମୋର ଆସକ୍ତି ନାହିଁ । ଏହା ହେଉଛି ପରମାତ୍ମାଙ୍କ ମାୟାର ଖେଳ । ଆକାଶରେ ଗନ୍ଧର୍ବନଗରୀ ଦେଖାଯାଇ ଯେପରି ଅନ୍ତର୍ହିତ ହୋଇଯାଏ, ଏହା ସେହିପରି ଅସତ୍ୟ । ତେଣୁ ଯେ ହେଉଛନ୍ତି ବିଶ୍ୱର କର୍ତ୍ତା, ପ୍ରକୃତ ଆତ୍ମସ୍ୱରୂପ, ତାଙ୍କରି ଚିନ୍ତାରେ ଲୀନ ହୋଇ ମୁଁ ସମସ୍ତ ବିଷୟ ପରିତ୍ୟାଗ କରୁଛି ଏବଂ କେବଳ ତାଙ୍କରି ହିଁ ଶରଣ ନେଉଛି ॥୪୮॥ ପରିକ୍ଷିତ, ନାରାୟଣଙ୍କ ଠାରେ ନିବିଷ୍ଟ ଶୁଦ୍ଧବୁଦ୍ଧି ଦ୍ୱାରା ରାଜର୍ଷି ଖଟ୍ୱାଙ୍ଗ ଏହିପରି ସ୍ଥିର କରି ଦେହାଦି ଅଭିମାନରୂପୀ ଅଜ୍ଞାନକୁ ତ୍ୟାଗ କରି ଆତ୍ମସ୍ୱରୂପରେ ସ୍ଥିତ ହେଲେ ॥୪୯॥ ସେହି ସ୍ୱରୂପ ହିଁ ସାକ୍ଷାତ୍ ପରଂବ୍ରହ୍ମ, ତାହା ସୂକ୍ଷ୍ମଠାରୁ ସୂକ୍ଷ୍ମ ଓ ଶୂନ୍ୟ ସହିତ ସମାନ କିନ୍ତୁ ଶୂନ୍ୟ ନୁହେଁ । ଏହା ହିଁ ପରମ ସତ୍ୟ । ଭକ୍ତମାନେ ଏହାକୁ ଭଗବାନ୍ ବାସୁଦେବ ନାମରେ ବର୍ଣ୍ଣନା କରନ୍ତି ॥୫୦॥

## ଦଶମ ଅଧ୍ୟାୟ

# ଶ୍ରୀରାମ ଚରିତ

ଶ୍ରୀ ଶୁକଦେବ କହିଲେ, ପରିକ୍ଷିତ, ଖଟ୍ୱାଙ୍ଗଙ୍କର ପୁତ୍ର ହେଲେ ଦୀର୍ଘବାହୁ । ତାଙ୍କର ପୁତ୍ର ମହାଯଶସ୍ୱୀ ରଘୁ । ରଘୁଙ୍କର ପୁତ୍ର ମହାରାଜ ଅଜ ଏବଂ ଅଜଙ୍କର ପୁତ୍ର ଦଶରଥ ॥୧॥ ଦେବତାମାନେ ପ୍ରାର୍ଥନା କରିବାରୁ ଭଗବାନ୍ ପୂର୍ଣ୍ଣବ୍ରହ୍ମସ୍ୱରୂପ ଶ୍ରୀହରି ନିଜର ଅଂଶାଂଶରେ ଚାରୋଟି ରୂପ ଧାରଣ କରି ଦଶରଥଙ୍କ ପୁତ୍ରରୂପେ ଜନ୍ମ ହେଲେ । ଏହି ଚାରି ଅଂଶ ହେଲେ--ରାମ, ଲକ୍ଷ୍ମଣ, ଭରତ ଓ ଶତ୍ରୁଘ୍ନ ॥୨॥ ପରିକ୍ଷିତ, ସୀତାପତି ଶ୍ରୀରାମଙ୍କର ଚରିତ ତତ୍ତ୍ୱଦର୍ଶୀ ଋଷିମାନେ ବାରମ୍ବାର ବର୍ଣ୍ଣନା କରିଛନ୍ତି ଏବଂ ତୁମେ ମଧ୍ୟ ତାହା ବାରମ୍ବାର ଶୁଣିଛ । ପିତୃସତ୍ୟ ପାଳନ କରିବାପାଇଁ ରାଜା ରାମଚନ୍ଦ୍ର ରାଜ୍ୟ ତ୍ୟାଗ କରି ବନକୁ ବନ ବିଚରଣ କରିଥିଲେ । ତାଙ୍କର ପାଦପଦ୍ମ ଏତେ ସୁକୁମାର ଥିଲା ଯେ, ସୁକୁମାରୀ ସୀତାଙ୍କର କରକମଳର ସ୍ପର୍ଶ ମଧ୍ୟ ସେ ସହି ପାରୁ ନ ଥିଲେ । ବନରେ ବିଚରଣ କରି ଯେତେବେଳେ ସେ କ୍ଳାନ୍ତ ହୋଇ ପଡୁଥିଲେ, ବାନରେନ୍ଦ୍ର ହନୁମାନ୍ ଓ ଅନୁଜ ଲକ୍ଷ୍ମଣ ସେବାଦ୍ୱାରା ତାଙ୍କର କ୍ଳାନ୍ତି ଦୂର କରୁଥିଲେ । ସୂର୍ପଣଖାର କାନ, ନାକ କାଟି ତାକୁ ବିରୂପ କରିଦେବାରୁ ତାଙ୍କ ପ୍ରିୟତମା ପତ୍ନୀ

ସୀତାଙ୍କର ବିରହଦୁଃଖ ତାଙ୍କୁ ସହିବାକୁ ପଡ଼ିଥିଲା । ବିରହଜନିତ କ୍ରୋଧଯୋଗୁଁ ତାଙ୍କ ଭ୍ରୂଭଙ୍ଗରେ ସମୁଦ୍ର ଭୀତ ହୋଇ ପଡ଼ିଥିଲା ଏବଂ ସେ ସମୁଦ୍ରରେ ସେତୁବନ୍ଧ କରି ଲଙ୍କାକୁ ଯାଇଥିଲେ ଏବଂ ଦାବାଗ୍ନି ଯେପରି ବନକୁ ଦହନ କରେ, ସେହିପରି ସେ ଦୁଷ୍ଟ ରାକ୍ଷସମାନଙ୍କୁ ବଧ କରିଥିଲେ । ସେହି କୋଶଳେନ୍ଦ୍ର ରାମଚନ୍ଦ୍ର ଆମକୁ ରକ୍ଷା କରନ୍ତୁ ।।୩।। ଲକ୍ଷ୍ମଣ ଦେଖୁ ଦେଖୁ ଭଗବାନ୍ ଶ୍ରୀରାମଚନ୍ଦ୍ର ବିଶ୍ୱାମିତ୍ରଙ୍କ ଯଜ୍ଞରେ ମାରୀଚ ଆଦି ରାକ୍ଷସମାନଙ୍କୁ ବଧ କରିଥିଲେ । ଜନକପୁରୀରେ ସୀତାଙ୍କ ସ୍ୱୟଂବରକୁ ଯାଇ ସଂସାରର ଶ୍ରେଷ୍ଠ ବୀରମାନଙ୍କ ଉପସ୍ଥିତିରେ ଭୟଙ୍କର ଶିବଧନୁକୁ ଭାଙ୍ଗି ଦେଇଥିଲେ । ତିନି ଶହ ବୀର ଲାଗି ସେହି ଧନୁକୁ ସ୍ୱୟମ୍ବର ସଭାକୁ ଆଣିଥିଲେ । ହାତୀଛୁଆ ଖେଳି ଖେଳି ଆଖୁଗଛକୁ ଭାଙ୍ଗିଦେବାପରି ଭଗବାନ୍ ଶ୍ରୀରାମ ସେହି ଧନୁକୁ ଅନାୟାସରେ ଉଠାଇ ଦୁଇ ଖଣ୍ଡ କରିଦେଇଥିଲେ ।।୪-୬।। ଭଗବାନ୍ ଯାହାଙ୍କୁ ବକ୍ଷସ୍ଥଳରେ ଧାରଣ କରି ସମ୍ମାନିତ କରିଥା'ନ୍ତି, ସେହି ଲକ୍ଷ୍ମୀଦେବୀ ସୀତାରୂପେ ଜନକପୁରୀରେ ଅବତୀର୍ଣ୍ଣ ହୋଇଥିଲେ । ସେ ରୂପ, ଶୀଳ ଓ ବୟସରେ ଭଗବାନ୍ ଶ୍ରୀରାମଚନ୍ଦ୍ରଙ୍କର ଅନୁରୂପ ଥିଲେ । ଶିବଧନୁ ଭାଙ୍ଗି ସେ ତାଙ୍କୁ ଲାଭ କରିଥିଲେ । ଅଯୋଧ୍ୟାକୁ ଆସିବା ବାଟରେ ପର୍ଶୁରାମଙ୍କ ସହିତ ଦେଖାହେଲାବେଳେ ପୃଥିବୀକୁ ଏକୋଇଶବାର କ୍ଷତ୍ରିୟଶୂନ୍ୟ କରିଥିବା ସେହି ବୀରଙ୍କର ଦର୍ପକୁ ସେ ଚୂର୍ଣ୍ଣ କରିଦେଇଥିଲେ ।।୭।। ପିତା ଦଶରଥ ସ୍ତ୍ରୈଣ ଥିଲେ । ତଥାପି ତାଙ୍କର ସତ୍ୟପାଶରେ ଆବଦ୍ଧ ଆଜ୍ଞାକୁ ଶିରୋଧାର୍ଯ୍ୟ କରି ଭଗବାନ୍ ଶ୍ରୀରାମ ମୁକ୍ତସଙ୍ଗ ଯୋଗୀ ଯେପରି ପ୍ରାଣ ତ୍ୟାଗ କରେ, ସେହିପରି ନିଜର ପତ୍ନୀ ସୀତାଙ୍କ ସହିତ ରାଜ୍ୟ, ଐଶ୍ୱର୍ଯ୍ୟ, ପ୍ରିୟଜନ, ବନ୍ଧୁବାନ୍ଧବ ଓ ବାସସ୍ଥାନ—ସମସ୍ତ ପରିତ୍ୟାଗ କରି ବନଗମନ କରିଥିଲେ ।।୮।। ରାମଚନ୍ଦ୍ର ରାବଣର ଦୁଷ୍ଟସ୍ୱଭାବ ଭଉଣୀ ସୂର୍ପଣଖାର ନାସା, କର୍ଣ୍ଣ ଛେଦନ କରି ତାକୁ ବିରୂପ କରିଥିଲେ ଏବଂ ତାର ପ୍ରଧାନ ପ୍ରଧାନ ବାନ୍ଧବ ଖର, ଦୂଷଣ ଓ ତ୍ରିଶିରା ସହିତ ଚଉଦହଜାର ରାକ୍ଷସସୈନ୍ୟଙ୍କୁ ବିନାଶ କରିଥିଲେ । କୋଦଣ୍ଡପାଣି ଭଗବାନ ରାମଚନ୍ଦ୍ର ଯେଉଁ ଧନୁ ଧରି ବନକୁ ବନ ବିଚରଣ ବିଚରଣପୂର୍ବକ କଷ୍ଟରେ ରହୁଥିଲେ, ସେହି ଧନୁକୁ ଧାରଣ କରିବା ଅନ୍ୟମାନଙ୍କ ପକ୍ଷରେ ଅସମ୍ଭବ ଥିଲା ।।୯।। ରାଜା, ସୀତାଙ୍କ ବିଷୟ ଶୁଣି କାମାର୍ତ୍ତ ରାବଣ ମାରୀଚକୁ ପଠାଇଥିଲା; ମାରୀଚ ମାୟାରେ ଆଶ୍ଚର୍ଯ୍ୟଜନକ ସ୍ୱର୍ଣ୍ଣମୃଗର ରୂପ ଧାରଣ କରି ରାମଚନ୍ଦ୍ରଙ୍କୁ ଆଶ୍ରମଠାରୁ ଦୂରକୁ ନେଇଯାଇଥିଲା । ରୁଦ୍ର ଯେପରି ଦକ୍ଷଙ୍କୁ ବିନାଶ କରିଥିଲେ ସେହିପରି ରାମଚନ୍ଦ୍ର ବାଣଦ୍ୱାରା ରାକ୍ଷସ ମାରୀଚକୁ ବଧ କରିଥିଲେ ।।୧୦।। ରାକ୍ଷସାଧମ ରାବଣ ହେଟାବାଘ ପରି ଲୁଚି ରହିଥିଲା । ଜନକରାଜନନ୍ଦିନୀଙ୍କୁ ଏକାକିନୀ ଦେଖି ଅପହରଣ କରିନେଲା । ପ୍ରିୟାର ବିରହରେ ରାମଚନ୍ଦ୍ର ଲକ୍ଷ୍ମଣଙ୍କ ସହିତ ଅତି ଦୀନଭାବରେ ବୁଲିବାକୁ ଲାଗିଲେ । ସ୍ତ୍ରୀସଙ୍ଗ ଯେ ଦୁଃଖଦାୟକ, ଏହା ଦେଖାଇବାପାଇଁ ସେ ଏହି ଲୀଳା ରଚନା କରିଥିଲେ ।।୧୧।। ଶ୍ରୀରାମଚନ୍ଦ୍ରଙ୍କପାଇଁ ରାବଣର ପଥକୁ ଓଗାଳି ଓ ତା ସହିତ ଯୁଦ୍ଧ କରି ଜଟାୟୁର ମୃତ୍ୟୁ ହୋଇଥିବାରୁ ତା'ର ଦାହାଦି କୃତ୍ୟ ହୋଇନଥିଲା । ବ୍ରହ୍ମା, ଶିବ ଆଦି ଦେବଗଣ ଯାହାଙ୍କର ଚରଣ ବନ୍ଦନା କରନ୍ତି, ସେହି ବିଷ୍ଣୁରୂପୀ ରାମଚନ୍ଦ୍ର ଜଟାୟୁର ଅନ୍ତିମ ଦାହସଂସ୍କାର କରିଥିଲେ ଏବଂ ଯେଉଁ କବନ୍ଧ ତାଙ୍କୁ ଗିଳିଦେବ ବୋଲି ହସ୍ତ ପ୍ରସାରିତ କରିଥିଲା, ତାକୁ ବଧ କରି ବାନରମାନଙ୍କ ସହିତ ସଖ୍ୟସ୍ଥାପନ କଲେ ଏବଂ ବାଳିବଧ ପରେ ସେମାନଙ୍କ ସହାୟତାରେ ସୀତାଙ୍କୁ ଠାବ କଲେ ଓ ବାନର ସୈନ୍ୟମାନେ ଲକ୍ଷ୍ମଣଙ୍କ ସହିତ ସମୁଦ୍ରବେଳାରେ ଉପସ୍ଥିତ ହେଲେ ।।୧୨।। (ସେଠାରେ ତିନିରାତି ଉପବାସ କରି ସମୁଦ୍ରକୁ ପ୍ରଭାବିତ କରିପାରିଲେ ନାହିଁ) ତା'ପରେ କ୍ରୋଧଜନିତ କଟାକ୍ଷପାତଦ୍ୱାରା ବିକ୍ଷୁବ୍ଧ ସମୁଦ୍ରର ଗର୍ଜନକୁ ଶାନ୍ତ କରିଦେଲେ । କୁମ୍ଭୀର, ମଗର ଆଦି ଜଳଜୀବମାନେ ଭୟଭୀତ ହୋଇଗଲେ ଏବଂ ସମୁଦ୍ର ମୂର୍ତ୍ତିମନ୍ତ ହୋଇ ନିଜ ମସ୍ତକରେ ବହୁ ପ୍ରକାର ଉପହାର ଗ୍ରହଣ କରି ଭଗବାନଙ୍କ ପାଦପଦ୍ମରେ ଶରଣ ପଶିଲେ ।।୧୩।।

ସମୁଦ୍ର ରାମଚନ୍ଦ୍ରଙ୍କୁ ସ୍ତୁତି କରି କହିଲେ, ହେ ମହାମହିମ ଦେବ, ଆପଣ ସମସ୍ତ ଜଗତର ଅଧୀଶ୍ୱର, ନିର୍ବିକାର ଆଦିପୁରୁଷ । ମୂର୍ଖବୁଦ୍ଧିରେ ମୁଁ ଆପଣଙ୍କୁ ଜାଣିପାରି ନାହିଁ । ଆପଣଙ୍କର ଯେଉଁ ସତ୍ତ୍ୱଗୁଣରୁ ଦେବତାମାନେ, ରଜୋଗୁଣରୁ

ପ୍ରଜାପତିମାନେ ଏବଂ ତମୋଗୁଣରୁ ରୁଦ୍ରଗଣ ଆବିର୍ଭୂତ ହୋଇଛନ୍ତି, ଆପଣ ସେହି ସମସ୍ତଗୁଣର ଅଧୀଶ୍ୱର ।।୧୪।। ବୀର, ସ୍ୱେଚ୍ଛାରେ ମୋର ଜଳ ଉପରଦେଇ ଯାଆନ୍ତୁ । ଯେଉଁ ରାବଣର ଅତ୍ୟାଚାରରେ ତ୍ରିଲୋକ ରୋଦନ କରୁଛି, ବିଶ୍ରବାଙ୍କର କୁପୁତ୍ର ସେହି ରାବଣକୁ ମାରି ଆପଣ ନିଜର ପତ୍ନୀଙ୍କୁ ଲାଭ କରନ୍ତୁ । ଆପଣଙ୍କ ଯଶ ବିସ୍ତାର କରିବା ପାଇଁ ଆପଣ ମୋ' ଉପରେ ଏକ ସେତୁ ବାନ୍ଧିଦିଅନ୍ତୁ, ଯେପରିକି ତାହା ଦେଖି ଦିଗ୍‌ବିଜୟୀ ରାଜାମାନେ ଭବିଷ୍ୟତରେ ଆପଣଙ୍କର କୀର୍ତ୍ତି ଗାନ କରିବେ ।।୧୫।। ରଘୁପତି ରାମଚନ୍ଦ୍ର ବାନରବୀରମାନଙ୍କଦ୍ୱାରା ଆନୀତ ଗିରିଶୃଙ୍ଗମାନଙ୍କଦ୍ୱାରା ସମୁଦ୍ରରେ ସେତୁ ବନ୍ଧନ କଲେ । ଏହି ବାନରମାନେ ପର୍ବତମାନଙ୍କୁ ଉଠାଇ ଆଣିବାବେଳେ ପର୍ବତରେ ଥିବା ବୃକ୍ଷ ଶାଖାମାନ କମ୍ପି ଉଠୁଥିଲେ । ରାମଚନ୍ଦ୍ର ବିଭୀଷଣଙ୍କ ସହିତ ମନ୍ତ୍ରଣା କରି ସୁଗ୍ରୀବ, ନଳ, ନୀଳ ଓ ହନୁମାନ ପ୍ରଭୃତି ବାନର ବୀରଙ୍କ ସହିତ ଲଙ୍କାରେ ପ୍ରବେଶ କଲେ । ଏହାପୂର୍ବରୁ ହନୁମାନ ଲଙ୍କାକୁ ପୋଡ଼ି ଦେଇଥିଲେ ।।୧୬।। ହାତୀମାନେ ପଶିଲେ ନଦୀଜଳ ଯେପରି ବିକ୍ଷୁବ୍ଧ ହୁଏ, ସେହିପରି ସହନଶୀଳତା ଭିତରେ ରାମଚନ୍ଦ୍ର ବାନରସୈନ୍ୟଙ୍କ ସହିତ ଲଙ୍କାରେ ପ୍ରବେଶ କରିବାକ୍ଷଣି ଲଙ୍କାପୁରୀ କମ୍ପମାନ ହେବାକୁ ଲାଗିଲା । ବାନରସେନା ଲଙ୍କାନଗରୀର କ୍ରୀଡାସ୍ଥଳ, ପଣ୍ୟାଗାର, କୋଷ, ସମସ୍ତ ଦରଓ୍ୱାଜା, ଫାଟକ, ସଭାମଣ୍ଡପ, ଅଗ୍ନିବାରଣ, ପାରାମାନଙ୍କର ରହିବାସ୍ଥାନ ଆଦିକୁ ଘେରିଗଲେ । ବେଦୀ, ପତାକା, ସୁବର୍ଣ୍ଣର କଳସ, ଚଉପାଢ଼ି ଆଦିକୁ ଭାଙ୍ଗି ପକାଇଲେ ।।୧୭।। ଏହା ଦେଖି ରାକ୍ଷସାଧିପତି ରାବଣ ସେମାନଙ୍କୁ ଜୟ କରିବାପାଇଁ ନିକୁମ୍ଭ, କୁମ୍ଭ, ଧୂମ୍ରାକ୍ଷ, ଦୁର୍ମୁଖ, ସୁରାନ୍ତକ, ନରାନ୍ତକ ପ୍ରଭୃତି ନିଜର ସେନାପତିମାନଙ୍କୁ ପଠାଇଲା ଏବଂ ପରେ ନିଜର ପୁତ୍ର ଇନ୍ଦ୍ରଜିତ୍‌କୁ ଏବଂ ପ୍ରହସ୍ତ, ଅତିକାୟ ଓ ବିକମ୍ପନ ଆଦି ଅନୁଚରମାନଙ୍କୁ ଓ ସବାଶେଷରେ ନିଜର ଭାଇ କୁମ୍ଭକର୍ଣ୍ଣକୁ ଯୁଦ୍ଧ କରିବାପାଇଁ ପଠାଇଲା ।।୧୮।। ବିଶାଳ ରାକ୍ଷସସେନା ଅସି, ତ୍ରିଶୂଳ, ଧନୁ, ପ୍ରାସ, ଋଷ୍ଟି, ଶକ୍ତି, ବାଣ, ଭଲ୍ଲ ଓ ତୋମର ଆଦି ଅସ୍ତ୍ରଶସ୍ତ୍ରରେ ସଜ୍ଜିତ ଓ ସୁରକ୍ଷିତ ଥିଲେ । ଏହି ଦୁର୍ଜୟସେନା ସହିତ ଲଢ଼ିବାପାଇଁ ସୁଗ୍ରୀବ, ଲକ୍ଷ୍ମଣ, ହନୁମାନ୍, ଗନ୍ଧମାଦନ, ନୀଳ, ଅଙ୍ଗଦ, ଜାମ୍ବବାନ୍ ଏବଂ ପନସ ଆଦି ବୀରମାନଙ୍କୁ ସାଙ୍ଗରେ ଧରି ରାମଚନ୍ଦ୍ର ଏହି ରାକ୍ଷସ ସେନାର ସମ୍ମୁଖୀନ ହେଲେ ।।୧୯।। ଅଙ୍ଗଦ ଆଦି ରାମଚନ୍ଦ୍ରଙ୍କର ସେନାପତିମାନେ ରାବଣର ହସ୍ତୀ, ଅଶ୍ୱ ଓ ରଥଆରୋହୀ ଓ ପଦାତିକ -- ଏହି ଚତୁରଙ୍ଗସେନା ସହିତ ଦ୍ୱନ୍ଦ୍ୱଯୁଦ୍ଧରେ ପ୍ରବୃତ୍ତ ହେଲେ । ସୀତାହରଣର ଅପରାଧରେ ରାବଣର ସୈନ୍ୟମାନେ ହତଶ୍ରୀ ହୋଇଥିଲେ । ସେମାନଙ୍କୁ ଶିଳା, ବୃକ୍ଷ, ଗଦା ଓ ବାଣଦ୍ୱାରା ରାମଚନ୍ଦ୍ରଙ୍କର ସୈନ୍ୟମାନେ ନିହତ କରିବାକୁ ଲାଗିଲେ । ନିଜ ସୈନ୍ୟର ବିନାଶ ଦେଖି କ୍ରୋଧୀ ରାବଣ ପୁଷ୍ପକ ଯାନରେ ଚଢ଼ି ମାତଳି ଆଣି ପହଞ୍ଚାଇଦେଇଥିବା ଦୀପ୍ତିମାନ୍ ସ୍ୱର୍ଣ୍ଣରଥରେ ବିରାଜମାନ ରାମଚନ୍ଦ୍ରଙ୍କ ନିକଟକୁ ଯାତ୍ରା କଲା ଏବଂ ଶାଣିତ କ୍ଷୁରାସ୍ତ୍ରଦ୍ୱାରା ତାଙ୍କୁ ପ୍ରହାର କରିବାକୁ ଲାଗିଲା ।।୨୦-୨୧।। ରାମଚନ୍ଦ୍ର ରାବଣକୁ କହିଲେ, ନୀଚ ରାକ୍ଷସ, ମୋର ଅନୁପସ୍ଥିତିର ସୁଯୋଗ ନେଇ ତୁ କୁକୁର ପରି ମୋର ପ୍ରାଣପ୍ରିୟା ପତ୍ନୀଙ୍କୁ ହରଣ କରିଛୁ । ତୁ ଘୃଣାର ଯୋଗ୍ୟ । ନିର୍ଲଜ, କାଳ ଅଲଂଘନୀୟ । ଆଜି ମୋର ଅମୋଘ ଶକ୍ତି ଦେଖିବୁ ଏବଂ ତୋର କୃତକର୍ମର ଫଳ ଭୋଗ କରିବୁ । ଏହିପରି ରାବଣକୁ ଭର୍ତ୍ସନା କରି ଭଗବାନ୍ ଶ୍ରୀରାମ ଧନୁରେ ବାଣ ଚଢ଼ାଇ ରାବଣ ପ୍ରତି ନିକ୍ଷେପ କଲେ ଏବଂ ବଜ୍ରପରି ସେହି ବାଣ ଯାଇ ରାବଣର ହୃଦୟକୁ ବିଦୀର୍ଣ୍ଣ କଲା । ସେ ରକ୍ତବାନ୍ତି କରି ବିମାନରୁ ତଳକୁ ପଡ଼ିଗଲା, ଯେପରି ପୁଣ୍ୟାତ୍ମା ଲୋକ ପୁଣ୍ୟଭୋଗ କରି ତଳକୁ ଖସିପଡ଼େ । ସେହି ସମୟରେ ରାବଣର ସ୍ୱଜନମାନେ ହାହାକାର କରିବାକୁ ଲାଗିଲେ ।।୨୨-୨୩।।

ଏହାପରେ ହଜାର ହଜାର ସଂଖ୍ୟାରେ ରାକ୍ଷସୀ ମନ୍ଦୋଦରୀଙ୍କ ସହିତ ରଣଭୂମିରେ କ୍ରନ୍ଦନ କରିବାକୁ ଲାଗିଲେ । ସେହି ରଣଭୂମିରେ ଲକ୍ଷ୍ମଣଙ୍କର ବାଣାଘାତରେ ଶହଶହ ରାକ୍ଷସ ନିହତ ହୋଇପଡ଼ିଥିଲେ । ରାକ୍ଷସୀମାନେ ନିଜର ବକ୍ଷରେ କରାଘାତ କରି ନିଜର ସ୍ୱାମୀ ଓ ସ୍ୱଜନଙ୍କୁ ଆଲିଙ୍ଗନପୂର୍ବକ ଉଚ୍ଚସ୍ୱରରେ ବିଳାପ କଲେ ।।୨୪-୨୫।। ମନ୍ଦୋଦରୀ ବିଳାପ କରି କହିଲେ, ହେ ନାଥ, ଲୋକମାନଙ୍କ ଭୟପ୍ରଦ ରାବଣ, ଆମେମାନେ ସମସ୍ତେ ଅନାଥ ହୋଇଗଲୁ । ତୁମ ବିହୁନେ ଶତ୍ରୁମାନଙ୍କଦ୍ୱାରା

ଲଙ୍କାର ଯେଉଁ ଦୁର୍ଦ୍ଦଶା ହେବ, ତାକୁ କିଏ ରକ୍ଷାକରିବ ? ॥୨୬॥ ମହାଭାଗ, ତୁମେ କାମବଶରେ ସୀତାଙ୍କ ସତୀତ୍ୱର ପ୍ରଭାବ ଜାଣି ପାରିଲ ନାହିଁ । ସେହି ସତୀର ପ୍ରଭାବରେ ହିଁ ତୁମର ଏହି ଦୁର୍ଦ୍ଦଶା ଘଟିଛି ॥୨୭॥ ଦିନେ ତୁମର କର୍ମଦ୍ୱାରା ସମସ୍ତ ଲଙ୍କା ଆନନ୍ଦିତ ହେଉଥିଲା, କିନ୍ତୁ ସେହି ଲଙ୍କାପୁରୀକୁ ଏବେ ବୈଧବ୍ୟ ଘୋଟିଗଲା । ଯେଉଁ ଶରୀରପାଇଁ ତୁମେ ସବୁକିଛି କରୁଥିଲ, ତାହା ଆଜି ଗୃଧ୍ରମାନଙ୍କର ଆହାର ହେଲା ଏବଂ ନିଜର ଆତ୍ମାକୁ ତୁମେ ନରକଗାମୀ କଲ ॥୨୮॥ ଶ୍ରୀ ଶୁକଦେବ କହିଲେ, ପରିକ୍ଷିତ, କୋଶଳେନ୍ଦ୍ର ରାମଚନ୍ଦ୍ରଙ୍କର ଆଜ୍ଞାରେ ବିଭୀଷଣ ପିତୃଯଜ୍ଞର ବିଧି ଅନୁସାରେ ନିଜ ଆତ୍ମୀୟସ୍ୱଜନଙ୍କର ଅନ୍ତ୍ୟେଷ୍ଟିକ୍ରିୟା ସମ୍ପାଦନ କଲେ ॥୨୯॥ ତାପରେ ଭଗବାନ ରାମଚନ୍ଦ୍ର ଅଶୋକବନକୁ ଯାଇ ଅଶୋକ ବୃକ୍ଷର ମୂଳରେ ପତିବିରହକାତରା ନିଜ ପତ୍ନୀଙ୍କୁ ବସିଥିବାର ଦେଖିଲେ । ବିରହିଣୀ ସୀତା ଅତିଶୟ କ୍ଷୀଣ ଓ ଦୁର୍ବଳ ହୋଇପଡ଼ିଥିଲେ । ଏହି ଅବସ୍ଥାରେ ନିଜର ପ୍ରାଣପ୍ରିୟାଙ୍କୁ ଦେଖି ଶ୍ରୀରାମଙ୍କର ହୃଦୟ ପ୍ରେମ ଓ କୃପାରେ ଭରିଗଲା । ଶ୍ରୀରାମଙ୍କ ଦର୍ଶନ ଲାଭ କରି ସୀତାଙ୍କର ହୃଦୟ ପ୍ରେମ ଓ ଆନନ୍ଦରେ ପରିପୂର୍ଣ୍ଣ ହେଲା ଏବଂ ମୁଖମଣ୍ଡଳ ପ୍ରସନ୍ନ ହୋଇଉଠିଲା । ରାମଚନ୍ଦ୍ର ସୀତାଙ୍କୁ ପୁଷ୍ପକ ରଥରେ ବସାଇ ଲକ୍ଷ୍ମଣ, ସୁଗ୍ରୀବ ଓ ହନୁମାନ୍‌ଙ୍କ ସହିତ ରଥରେ ଆରୋହଣ କଲେ । ରାମଚନ୍ଦ୍ର ବିଭୀଷଣଙ୍କୁ ରାକ୍ଷସମାନଙ୍କର ରାଜାରୂପେ ଅଭିଷିକ୍ତ କଲେ ଏବଂ ଲଙ୍କାପୁରୀ ଓ ଏକ କଳ୍ପ ଆୟୁ ପ୍ରଦାନପୂର୍ବକ ନିଜର ବନବାସ ବ୍ରତ ଶେଷ କଲେ ଏବଂ ଅଯୋଧ୍ୟାକୁ ଫେରିଗଲେ ॥୩୦-୩୨॥ ତାଙ୍କର ଫେରିବା ପଥରେ ଇନ୍ଦ୍ରାଦି ଲୋକପାଳମାନେ ପୁଷ୍ପବୃଷ୍ଟି କଲେ ଓ ବ୍ରହ୍ମାଦି ଦେବତାମାନେ ସ୍ତୁତି କରିବାକୁ ଲାଗିଲେ । ସେ ଆନନ୍ଦର ସହିତ ଅଯୋଧ୍ୟାକୁ ପ୍ରତ୍ୟାବର୍ତ୍ତନ କଲେ ॥୩୩॥ କିନ୍ତୁ ପରମକାରୁଣିକ ଶ୍ରୀରାମଚନ୍ଦ୍ର ଯେତେବେଳେ ଶୁଣିଲେ ଯେ ଅଯୋଧ୍ୟାରେ ତାଙ୍କର ଭାଇ ଭରତ ଗୋମୂତ୍ର-ପକ୍ୱ ଯବାନ୍ନଭୋଜନ, ବଳ୍‌କଳ-ପରିଧାନ ଓ ଜଟାଧାରଣ କରି ଭୂତଳରେ ଶୟନ କରୁଛନ୍ତି, ସେତେବେଳେ ସେ ଅତିଶୟ ଦୁଃଖିତ ହେଲେ ॥୩୪॥

ରାମଚନ୍ଦ୍ର ଆସୁଛନ୍ତି ବୋଲି ଜାଣିପାରି ତାଙ୍କୁ ଭେଟିବାପାଇଁ ଭରତ ରାମଚନ୍ଦ୍ରଙ୍କର ପାଦୁକା ଦୁଇଟିକୁ ମସ୍ତକରେ ଧାରଣ କରି ନିଜର ରାଜଧାନୀ ନନ୍ଦିଗ୍ରାମରୁ ବାହାରି ଆସିଲେ । ମନ୍ତ୍ରୀ, ପୁରୋହିତ ଓ ନଗରବାସୀମାନେ ତାଙ୍କ ପଛେପଛେ ଚାଲିଥିଲେ । ଗୀତ ଓ ବାଦ୍ୟଧ୍ୱନି ସହିତ ବେଦଜ୍ଞ ବ୍ରାହ୍ମଣମାନେ ବାରମ୍ବାର ବେଦମନ୍ତ୍ର ଉଚ୍ଚାରଣ କରିବାକୁ ଲାଗିଥିଲେ ଏବଂ ତାହା ଚତୁର୍ଦ୍ଦିଗକୁ ଧ୍ୱନିତ ହେଉଥିଲା । ସ୍ୱର୍ଣ୍ଣଜଡ଼ିତ ରଙ୍ଗବେରଙ୍ଗ ପତାକାମାନଙ୍କଦ୍ୱାରା ରଥସବୁ ସଜ୍ଜିତ ହୋଇଥିଲା । ସୁନେଲି ସାଜରେ ସଜ୍ଜିତ ଅଶ୍ୱମାନେ ଓ ସୁବର୍ଣ୍ଣକବଚପରିହିତ ସୈନିକମାନେ ଚାଲିଥିଲେ । ସୁନ୍ଦରୀ ବାରାଙ୍ଗନା ଓ ପଦଚାରୀ ଭୃତ୍ୟମାନେ ଧାଡ଼ିଧାଡ଼ି ହୋଇ ଚାଲିଥିଲେ । ରାଜଯୋଗ୍ୟ ଛତ୍ର, ଚାମର ଓ ବହୁମୂଲ୍ୟ ରତ୍ନ ଆଦି ଉପହାର ଘେନି ରାମପ୍ରେମରେ ବିହ୍ୱଳ ଭରତ ଭ୍ରାତାଙ୍କର ପାଦ ଧରି ପଡ଼ିଗଲେ । ପ୍ରଥମେ ଭରତ ରାମଚନ୍ଦ୍ରଙ୍କ ଆଗରେ ପାଦୁକା ଦୁଇଟି ରଖି କୃତାଞ୍ଜଳି ପୁଟରେ ଠିଆ ହୋଇ ରହିଲେ । ନେତ୍ରରୁ ଅଶ୍ରୁଧାରା ବହିବାକୁ ଲାଗିଲା । ରାମଚନ୍ଦ୍ର ଦୁଇ ହାତରେ ଭରତଙ୍କୁ କୋଳାଗ୍ରତ କରି ବହୁ ସମୟ ବକ୍ଷରେ ଚାପି ଧରିଲେ । ଭଗବାନଙ୍କ ନେତ୍ରଜଳରେ ଭରତଙ୍କର ସ୍ନାନ ହୋଇଗଲା ॥୩୫-୪୦॥ ଏହାପରେ ଶ୍ରୀରାମଚନ୍ଦ୍ର ପ୍ରଜାମାନଙ୍କଦ୍ୱାରା ପୂଜିତ ହୋଇ ସୀତା ଓ ଲକ୍ଷ୍ମଣଙ୍କ ସହ ପୂଜନୀୟ ଗୁରୁଜନ ଓ ବ୍ରାହ୍ମଣମାନଙ୍କୁ ନମସ୍କାର କଲେ ॥୪୧॥ ସେହି ସମୟରେ ଉତ୍ତରକୋଶଳର ଅଧିବାସୀ ପ୍ରଜାଗଣ ନିଜର ପ୍ରଭୁ ରାମଚନ୍ଦ୍ରଙ୍କୁ ବହୁଦିନପରେ ଆସୁଥିବାର ଦେଖି ପୁଷ୍ପବୃଷ୍ଟି କରି ନିଜର ଉତ୍ତରୀୟକୁ ହଲାଇ ହଲାଇ ଆନନ୍ଦରେ ନାଚିବାକୁ ଲାଗିଲେ ॥୪୨॥ ଭରତ ରାମଚନ୍ଦ୍ରଙ୍କର ପାଦୁକାକୁ ଧରିଲେ; ବିଭୀଷଣ ଚାମର ପକାଉଥିଲେ । ସୁଗ୍ରୀବ ପଙ୍ଖାଚାଳନା କରୁଥିଲେ ଏବଂ ହନୁମାନ୍ ଶ୍ୱେତଛତ୍ର ଧାରଣ କରିଥିଲେ ॥୪୩॥ ପରିକ୍ଷିତ, ଶତ୍ରୁଘ୍ନ ଧନୁ ଓ ତୂଣୀର, ସୀତା ତୀର୍ଥଜଳପୂର୍ଣ୍ଣ କମଣ୍ଡଳୁ, ଅଙ୍ଗଦ ଖଡ୍ଗ ଏବଂ ଋକ୍ଷରାଜ ଜାମ୍ବବାନ୍ ସ୍ୱର୍ଣ୍ଣମୟ ଢାଲ ଧାରଣ କରିଥିଲେ ॥୪୪॥ ସ୍ତ୍ରୀଲୋକମାନେ ବନ୍ଦାପନା କରୁଥିଲେ; ବନ୍ଦୀମାନେ ସ୍ତୁତି କରୁଥିଲେ; ପୁଷ୍ପକ ବିମାନରେ ବସି ଏମାନଙ୍କ ମଧ୍ୟରେ ଭଗବାନ ଶ୍ରୀରାମଚନ୍ଦ୍ର ଗ୍ରହମାନଙ୍କ ସହିତ ଚନ୍ଦ୍ରମାଙ୍କପରି ଶୋଭା ପାଉଥିଲେ ॥୪୫॥

ଏହିପରି ଭାଇମାନଙ୍କର ଅଭିନନ୍ଦନ ଗ୍ରହଣ କରି ଶ୍ରୀରାମଚନ୍ଦ୍ର ଉତ୍ସବମୁଖର ଅଯୋଧ୍ୟାପୁରୀରେ ପ୍ରବେଶ କଲେ । ରାଜପ୍ରାସାଦରେ ପ୍ରବେଶ କରି ସେ ମାତା କୌଶଲ୍ୟା, କୈକେୟୀ ଆଦି ମାତାମାନଙ୍କୁ, ଗୁରୁଜନଙ୍କୁ, ସମବୟସ୍କ ସଖାଙ୍କୁ ଓ ଛୋଟପିଲାମାନଙ୍କୁ ଯଥାଯୋଗ୍ୟ ସମ୍ମାନ ଦେଇ ସେମାନଙ୍କ ଦ୍ୱାରା ସମ୍ମାନିତ ହେଲେ । ସୀତା ଓ ଲକ୍ଷ୍ମଣ ମଧ୍ୟ ଭଗବାନଙ୍କ ପରେ ପରେ ଅନ୍ୟମାନଙ୍କ ପ୍ରତି ଯଥାଯୋଗ୍ୟ ସମ୍ମାନ ଦେଖାଇଲେ ॥୪୬-୪୭॥ ମୃତଦେହରେ ପ୍ରାଣର ସଞ୍ଚାର ହେବାପରି ମାତାମାନେ ନିଜର ପୁତ୍ରମାନଙ୍କର ଆଗମନରେ ଆନନ୍ଦିତ ହୋଇଉଠିଲେ ଏବଂ ସେମାନଙ୍କୁ କୋଳାଗ୍ରତ କରି ଆନନ୍ଦାଶ୍ରୁରେ ଅଭିଷିକ୍ତ କଲେ ॥୪୮॥

ଏହାପରେ କୁଳଗୁରୁ ବଶିଷ୍ଠ ଅନ୍ୟ କୁଳବୃଦ୍ଧମାନଙ୍କ ସହିତ ରାମଚନ୍ଦ୍ରଙ୍କର ଜଟାକୁ ମୁଣ୍ଡନ କରାଇ ଚାରିସମୁଦ୍ରରୁ ଅଣାଯାଇଥିବା ଜଳଦ୍ୱାରା ଇନ୍ଦ୍ରତୁଲ୍ୟ ତାଙ୍କୁ ଅଭିଷିକ୍ତ କଲେ ॥୪୯॥ ଅଭିଷିକ୍ତ ରାମଚନ୍ଦ୍ର ଉତ୍ତମ ବସନ, ମାଳା ଓ ଅଳଙ୍କାର ଆଦି ପରିଧାନ କଲେ ଏବଂ ବସ୍ତ୍ର ଓ ଅଳଙ୍କାରଭୂଷିତ ନିଜର ଭ୍ରାତୃଗଣ ଓ ସୀତାଙ୍କ ସହିତ ଅତିଶୟ ଶୋଭା ପାଇବାକୁ ଲାଗିଲେ ॥୫୦॥ ନତଶିର ଭ୍ରାତା ଭରତଙ୍କର ଅନୁରୋଧରେ ପ୍ରସନ୍ନ ହୋଇ ସେ ରାଜସିଂହାସନ ଆରୋହଣ କଲେ । ଏହାପରେ ବର୍ଣ୍ଣାଶ୍ରମନିୟମକୁ ପାଳନ କରି ନିଜ ନିଜର ଧର୍ମାଚରଣ କରୁଥିବା ପ୍ରଜାମାନଙ୍କୁ ସେ ପୁତ୍ରପରି ପାଳନ କରିବାକୁ ଲାଗିଲେ । ପ୍ରଜାମାନେ ମଧ୍ୟ ତାଙ୍କୁ ପିତୃତୁଲ୍ୟ ଭକ୍ତି କରୁଥିଲେ ॥୫୧॥ ପରିକ୍ଷିତ, ସମସ୍ତ ପ୍ରାଣୀଙ୍କର ସୁଖଦାତା ପରମଧର୍ମଜ୍ଞ ରାମଚନ୍ଦ୍ର ଯେତେବେଳେ ରାଜା ହେଲେ, ସେତେବେଳେ ତ୍ରେତାଯୁଗ ଥିଲା । କିନ୍ତୁ ଜଣାଗଲା, ସତେ ଯେପରି ସତ୍ୟଯୁଗ ଆସିଯାଇଛି ॥୫୨॥ ପରିକ୍ଷିତ, ସେ ସମୟରେ ବନ, ନଦୀ, ପର୍ବତ, ବର୍ଷ, ଦ୍ୱୀପ ଓ ସମୁଦ୍ର- ସମସ୍ତେ କାମଧେନୁ ତୁଲ୍ୟ ପ୍ରଜାଙ୍କର ସକଳ କାମନାକୁ ପୂର୍ଣ୍ଣ କରୁଥିଲେ ॥୫୩॥ ରାମରାଜ୍ୟରେ କାହାର ମାନସିକ ଦୁଶ୍ଚିନ୍ତା ବା ଶାରୀରିକ ରୋଗ ନଥିଲା । ଜରା, ଗ୍ଲାନି, ଦୁଃଖ, ଶୋକ, ଭୟ ଓ କ୍ଲାନ୍ତି ଆଦି ଦେଖାଯାଉ ନ ଥିଲା । ମୃତ୍ୟୁ ମଧ୍ୟ ଲୋକଙ୍କର ଇଚ୍ଛାଧୀନ ଥିଲା ॥୫୪॥ ଭଗବାନ ଶ୍ରୀରାମଚନ୍ଦ୍ରଙ୍କର ଏକପତ୍ନୀବ୍ରତ ଥିଲା ଏବଂ ରାଜର୍ଷିଙ୍କପରି ତାଙ୍କର ଚରିତ ଅତିଶୟ ପବିତ୍ର ଥିଲା । ଗୃହସ୍ଥର ସ୍ୱଧର୍ମ କ'ଣ ହେବା ଉଚିତ, ତାହା ଶିକ୍ଷା ଦେବା ପାଇଁ ସେ ଧର୍ମାଚରଣ କରୁଥିଲେ ॥୫୫॥ ସତୀ ସୀତା ଅତ୍ୟନ୍ତ ପତିପରାୟଣା ଥିଲେ । ସେ ପ୍ରେମଦ୍ୱାରା, ସେବାଦ୍ୱାରା, ନିଜର ବିନୟୀ ସ୍ୱଭାବଦ୍ୱାରା, ଧୀମତ୍ତା ଓ ଲଜ୍ଜାଦି ଗୁଣଦ୍ୱାରା ପତି ରାମଚନ୍ଦ୍ରଙ୍କର ଚିତ୍ତ ହରଣ କରୁଥିଲେ ॥୫୬॥

## ଏକାଦଶ ଅଧ୍ୟାୟ

# ଭଗବାନ ରାମଚନ୍ଦ୍ରଙ୍କର ଅନ୍ତିମ ଲୀଳା

ଶ୍ରୀଶୁକଦେବ କହିଲେ, ପରୀକ୍ଷିତ, ଭଗବାନ୍ ଶ୍ରୀରାମଚନ୍ଦ୍ର ନିଜେ ସର୍ବଦେବମୟ ଥିଲେ । ସେ କୁଳଗୁରୁ ବଶିଷ୍ଠଙ୍କୁ ଆଚାର୍ଯ୍ୟ ରୂପେ ନିୟୋଜିତ କରି ବିଭିନ୍ନ ଯଜ୍ଞଦ୍ୱାରା ନିଜେ ହିଁ ନିଜର ଯଜନ କରିଥିଲେ ॥୧॥ ସେ ଯଜ୍ଞର ହୋତାଙ୍କୁ ପୂର୍ବଦିଗ, ଯଜ୍ଞର ବ୍ରହ୍ମାଙ୍କୁ ଦକ୍ଷିଣ ଦିଗ, ଅଧ୍ୱର୍ଯ୍ୟୁଙ୍କୁ ପଶ୍ଚିମ ଦିଗ ଏବଂ ଉଦ୍‌ଗାତାଙ୍କୁ ଉତ୍ତର ଦିଗ ଦାନ କଲେ । ସେହି ସେହି ଦିଗ ମଧ୍ୟରେ ଯେତିକି ଭୂମି ଅବଶିଷ୍ଟ ରହିଲା, ସେ ତାହା ଆଚାର୍ଯ୍ୟଙ୍କୁ ଦାନ କରିଦେଲେ । କାରଣ ସେ ଜାଣିଥିଲେ ଯେ ନିଃସ୍ପୃହ ବ୍ରାହ୍ମଣ ହେଉଛନ୍ତି ଏହା ସବୁ ପାଇବାର ଯୋଗ୍ୟ ॥୨-୩॥ ଏହିପରି ଦାନ କରି ଭଗବାନ ଶ୍ରୀରାମଙ୍କର କେବଳମାତ୍ର ବସ୍ତ୍ର ଓ ଅଳଙ୍କାର ରହିଲା । ରାଜମହିଷୀ ସୀତାଦେବୀଙ୍କର କେବଳ ମଙ୍ଗଳସୂତ୍ର ଅବଶିଷ୍ଟ ଥିଲା । ସେହି ଆଚାର୍ଯ୍ୟାଦି ବ୍ରାହ୍ମଣମାନେ ଯେତେବେଳେ ଦେଖିଲେ ଯେ ଶ୍ରୀରାମ ବ୍ରାହ୍ମଣମାନଙ୍କୁ ନିଜର ଇଷ୍ଟଦେବ ବୋଲି ମାନୁଛନ୍ତି ଏବଂ ତାଙ୍କର ହୃଦୟରେ ବ୍ରାହ୍ମଣମାନଙ୍କ ପ୍ରତି

ଅତ୍ୟନ୍ତ ଶ୍ରଦ୍ଧା ଅଛି, ସେତେବେଳେ ସେମାନଙ୍କର ହୃଦୟ ପ୍ରେମରେ ଦ୍ରବୀଭୂତ ହୋଇଗଲା । ସେମାନେ ସମସ୍ତ ସମ୍ପତ୍ତିକୁ ରାମଚନ୍ଦ୍ରଙ୍କୁ ଫେରାଇଦେଇ କହିବାକୁ ଲାଗିଲେ--॥୪-୫॥ ହେ ଭଗବାନ, ହେ ଭୁବନେଶ୍ୱର, ଆପଣ ଆମମାନଙ୍କୁ କ'ଣ ଦେଇ ନାହାନ୍ତି ? ଆପଣ ଆମମାନଙ୍କର ହୃଦୟରେ ପ୍ରବେଶ କରି ନିଜର ତେଜଦ୍ୱାରା ଆମର ଅଜ୍ଞାନରୂପକ ଅନ୍ଧକାରକୁ ବିନାଶ କରିଛନ୍ତି ॥୬॥ ହେ ବ୍ରହ୍ମଣ୍ୟଦେବ ଶ୍ରୀରାମ, ଆପଣଙ୍କର ଜ୍ଞାନ ଅନନ୍ତ । ପୁଣ୍ୟଶ୍ଳୋକ ପୁରୁଷମାନଙ୍କ ମଧ୍ୟରେ ଆପଣ ଶ୍ରେଷ୍ଠ, ଆପଣଙ୍କର ପାଦପଦ୍ମକୁ ମୁନିମାନେ ସେବା କରନ୍ତି । ହେ ଉଦାରଚେତା, ଆପଣଙ୍କୁ ଆମେ ନମସ୍କାର କରୁଛୁ ॥୭॥

ଏକଦା ରାତ୍ରିକାଳରେ ଲୋକଚରିତ୍ର ଜାଣିବା ପାଇଁ ଗୋପନରେ ବୁଲୁଥିବାବେଳେ ସୀତାଙ୍କୁ ଲକ୍ଷ୍ୟ କରି ଜଣେ ବ୍ୟକ୍ତି କିଛି କହୁଥିବାର ସେ ଶୁଣିପାରିଲେ । ସେ ଲୋକଟି ତା'ର ସ୍ତ୍ରୀକୁ କହୁଥିଲା, ତୁ ପରଗୃହକୁ ଯାଇଛୁ, ଦୁଷ୍ଟା, ଅସତୀ । ମୁଁ ତୋତେ ଗ୍ରହଣ କରିବି ନାହିଁ । ରାମ ସ୍ତ୍ରୈଣ ହୋଇଥିବାଯୋଗୁଁ ସୀତାଙ୍କୁ ଗ୍ରହଣ କଲେ । ମୁଁ କିନ୍ତୁ ତାହା କରିବି ନାହିଁ ॥୮-୯॥ ବିଭିନ୍ନ ଲୋକଙ୍କ ମୁହଁରୁ ଏହିପରି ଶୁଣି ଦୁଷ୍ଟ ଓ ଅଜ୍ଞ ଲୋକଙ୍କ ଭୟରେ ରାମଚନ୍ଦ୍ର ସୀତାଙ୍କୁ ପରିତ୍ୟାଗ କଲେ । ସୀତା ସେତେବେଳେ ଗର୍ଭବତୀ ଥିଲେ । ସେ ବାଲ୍ମୀକିଙ୍କ ଆଶ୍ରମରେ ରହି କାଳକ୍ରମେ ଦୁଇ ଯାଆଁଳା ପୁତ୍ରଙ୍କୁ ଜନ୍ମ ଦେଲେ । ବାଲ୍ମୀକି କୁଶ, ଲବ ନାମକ ଏହି ଦୁଇ ପୁତ୍ରଙ୍କର ଜାତକର୍ମାଦି ସଂସ୍କାର କଲେ ॥୧୦-୧୧॥ ମହାରାଜ, ଅଙ୍ଗଦ ଓ ଚିତ୍ରକେତୁ ହେଲେ ଲକ୍ଷ୍ମଣଙ୍କର ପୁତ୍ର । ତକ୍ଷ ଓ ପୁଷ୍କଳ ହେଲେ ଭରତଙ୍କର ପୁତ୍ର । ଶତ୍ରୁଘ୍ନଙ୍କର ପୁତ୍ର ହେଲେ ସୁବାହୁ ଓ ଶ୍ରୁତସେନ । ଦିଗ୍‌ବିଜୟ ସମୟରେ ଭରତ କୋଟି କୋଟି ଗନ୍ଧର୍ବଙ୍କୁ ବିନାଶ କରି ସେମାନଙ୍କର ଧନରତ୍ନ ସବୁ ଶ୍ରୀରାମଙ୍କୁ ଅର୍ପଣ କରିଥିଲେ । ଶତ୍ରୁଘ୍ନ ମଧୁଦୈତ୍ୟର ପୁତ୍ର ଲବଣନାମକ ରାକ୍ଷସକୁ ବଧ କରି ମଧୁବନରେ ମଥୁରାପୁରୀ ନିର୍ମାଣ କରିଥିଲେ ॥୧୨-୧୪॥

ସ୍ୱାମୀଙ୍କ ଦ୍ୱାରା ନିର୍ବାସିତା ସୀତା ନିଜର ଯାଆଁଳା ପୁଅ ଦୁହିଁଙ୍କୁ ବାଲ୍ମୀକିଙ୍କ ପାଖରେ ଛାଡ଼ିଦେଇ ରାମଙ୍କର ପାଦପଦ୍ମକୁ ଧ୍ୟାନ କରି କରି ପାତାଳରେ ପ୍ରବେଶ କଲେ ॥୧୫॥ ତାହା ଶୁଣି ଭଗବାନ୍ ରାମଚନ୍ଦ୍ର ସୀତାଙ୍କର ଗୁଣମାନ ସ୍ମରଣ କରି ରୋଦନ କରିବାକୁ ଲାଗିଲେ । ଈଶ୍ୱର ହେଲେ ମଧ୍ୟ ବିବେକବୁଦ୍ଧି ଦ୍ୱାରା ନିଜର ଶୋକକୁ ରୁଦ୍ଧ କରିବାକୁ ଚେଷ୍ଟା କରି ମଧ୍ୟ କରିପାରିଲେ ନାହିଁ ॥୧୬॥ ସ୍ତ୍ରୀ-ପୁରୁଷଙ୍କର ସମ୍ପର୍କ ସର୍ବତ୍ର ଏହିପରି ଦୁଃଖାବହ । ଯେତେବେଳେ ଈଶ୍ୱର ମଧ୍ୟ ଏହାକୁ ନିବାରଣ କରିପାରୁ ନାହାନ୍ତି, ଗ୍ରାମ୍ୟ ଗୃହସ୍ଥମାନଙ୍କ ସମ୍ପର୍କରେ ବା କ'ଣ କହିବା ? ॥୧୭॥ ରାଜା ରାମଚନ୍ଦ୍ର ବ୍ରହ୍ମଚର୍ଯ୍ୟ ଧାରଣ କରି ରହିଥିଲେ । ସେ ଅଖଣ୍ଡ ବ୍ରହ୍ମଚର୍ଯ୍ୟ ରକ୍ଷା କରି ତେର ହଜାର ବର୍ଷ ଅଗ୍ନିହୋତ୍ର ଯଜ୍ଞ କରିଥିଲେ ॥୧୮॥ ଏହାପରେ ଶ୍ରୀରାମଚନ୍ଦ୍ର ଅନୁରକ୍ତ ଭକ୍ତମାନଙ୍କର ହୃଦୟରେ ଦଣ୍ଡକାରଣ୍ୟର କଣ୍ଟକବିଦ୍ଧ ପାଦପଦ୍ମକୁ ସ୍ଥାପନ କରି ନିଜର ଜ୍ୟୋତିର୍ମୟ ଧାମକୁ ପ୍ରସ୍ଥାନ କଲେ ॥୧୯॥ ଭଗବାନ ରାମଚନ୍ଦ୍ରଙ୍କର ଶକ୍ତି ଅତୁଳନୀୟ ଥିଲା । ତାଙ୍କଠାରୁ କାହାର ଅଧିକ ଶକ୍ତି ବା ତାଙ୍କ ସମାନ ଶକ୍ତି ଥିବାର ଚିନ୍ତା କରାଯାଇ ନ ପାରେ । ସେ ସମୁଦ୍ରକୁ ବନ୍ଧନ କରିଥିଲେ । ଅସ୍ତ୍ରମାନଙ୍କରେ ରାକ୍ଷସମାନଙ୍କୁ ବଧ କରିଥିଲେ । କିନ୍ତୁ ତାଙ୍କପାଇଁ ଏହା କିଛି ବଡ଼ କଥା ନୁହେଁ ଏବଂ ଏହା ତାଙ୍କର ଅଧିକ ଯଶ ସ୍ତୁତିର ବିଷୟ ନୁହେଁ । ଶତ୍ରୁମାନଙ୍କୁ ମାରିବାପାଇଁ ବାନରମାନେ ବା ତାଙ୍କୁ କି ସହାୟତା କରିବେ ? ଏହା ତାଙ୍କର ଲୀଳାମାତ୍ର । ଦେବତାମାନଙ୍କ ପ୍ରାର୍ଥନାରେ ଧରାରେ ଅବତୀର୍ଣ୍ଣ ହୋଇ ସେ ଏହି ଲୀଳା ରଚନା କରିଥିଲେ ॥୨୦॥ ଯାହାଙ୍କର ନିର୍ମଳ ଯଶ ସମସ୍ତ ପାପକୁ ହରଣ କରେ, ଯାହା ଦିଗବିଦିଗରେ ପରିବ୍ୟାପ୍ତ ହୋଇ ବଡ଼ବଡ଼ ଋଷିମାନଙ୍କଦ୍ୱାରା ରାଜସଭାମାନଙ୍କରେ କୀର୍ତ୍ତିତ ହୁଏ, ସ୍ୱର୍ଗର ଦେବତାମାନେ ଓ ପୃଥିବୀର ରାଜାମାନେ ନିଜ କିରୀଟର ସ୍ପର୍ଶରେ ଯାହାଙ୍କ ପାଦପଦ୍ମ ସେବା କରନ୍ତି, ମୁଁ ସେହି ରଘୁପତିଙ୍କୁ ଶରଣାପନ୍ନ ହେଉଛି ॥୨୧॥ ଯୋଗୀମାନେ ଯେଉଁଠାକୁ ଯାଆନ୍ତି, ସମସ୍ତ ଅଯୋଧ୍ୟାବାସୀ ଓ ଅନ୍ୟ ଯେଉଁମାନେ ରାମଚନ୍ଦ୍ରଙ୍କୁ ସ୍ପର୍ଶ କରିଥିଲେ, ଦର୍ଶନ କରିଥିଲେ, ପାଖରେ ବସାଇଥିଲେ ବା ତାଙ୍କର ଅନୁଗତ ହୋଇଥିଲେ, ସେମାନେ ସମସ୍ତେ ସେହି ବୈକୁଣ୍ଠଧାମକୁ ଯାଇଛନ୍ତି । ରାଜା, ଯେଉଁ ବ୍ୟକ୍ତି ନୃଶଂସ କାର୍ଯ୍ୟ ତ୍ୟାଗ କରି ରାମଚରିତକୁ ଶ୍ରବଣ କରେ ଓ ଧାରଣ କରେ ସେ କର୍ମବନ୍ଧନରୁ ମୁକ୍ତ ହୋଇଯାଏ ॥୨୨-୨୩॥

ରାଜା ପରିକ୍ଷିତ ପଚାରିଲେ, ଭଗବାନ ରାମଚନ୍ଦ୍ର କିପରି ଚଳୁଥିଲେ ? ତାଙ୍କ ଅଂଶରୁ ଜନ୍ମିଥିବା ଭ୍ରାତାମାନଙ୍କପ୍ରତି ସେ କିପରି ବ୍ୟବହାର କରୁଥିଲେ ? ସ୍ୱୟଂ ପରମେଶ୍ୱର ସ୍ୱରୂପ ରାମଚନ୍ଦ୍ରଙ୍କପ୍ରତି ସେହି ଭ୍ରାତାମାନେ, ପ୍ରଜାମାନେ ଓ ପୁରବାସୀମାନେ କିପରି ବ୍ୟବହାର କରୁଥିଲେ, ତାହା ମୁଁ ଜାଣିବାକୁ ଇଚ୍ଛା କରୁଛି ॥୨୪॥ ଶ୍ରୀ ଶୁକଦେବ କହିଲେ, ରାଜା, ତ୍ରିଭୁବନର ଈଶ୍ୱର ଶ୍ରୀ ରାମଚନ୍ଦ୍ର ନିଜର ଭାଇମାନଙ୍କୁ ଦିଗ୍‌ବିଜୟ ନିମନ୍ତେ ପଠାଇଲେ ଏବଂ ନିଜେ ନିଜଲୋକଙ୍କୁ ଦର୍ଶନ ଦେବା ସଙ୍ଗେ ସଙ୍ଗେ ଅଯୋଧ୍ୟାନଗରୀର ଭଲମନ୍ଦ ସବୁ ବୁଝୁଥିଲେ ॥୨୫॥ ସେହି ସମୟରେ ଅଯୋଧ୍ୟାର ରାସ୍ତା ସବୁ ସୁଗନ୍ଧିତ ଜଳରେ ଓ ହାତୀମାନଙ୍କର ମଦଜଳରେ ସିକ୍ତ ରହୁଥିଲା । ଜଣାଯାଉଥିଲା, ସତେ ଯେପରି ଏହି ଅଯୋଧ୍ୟାନଗରୀ ତାର ସ୍ୱାମୀ ରାମଚନ୍ଦ୍ରଙ୍କୁ ଲାଭ କରି ବିହ୍ୱଳ ହୋଇପଡ଼ିଛି ॥୨୬॥ ପ୍ରାସାଦ, ଗୋପୁର, ସଭାଗୃହ, ଦେବାଳୟ ଆଦିରେ ସୁନାର କଳସମାନ ରଖାଯାଇଥିଲା ଏବଂ ସ୍ଥାନେ ସ୍ଥାନେ ପତାକା ଉଡୁଥିଲା । ।୨୭॥ ଫଳିଥିବା ଗୁଆଗଛ, କଦଳୀ ଗଛ, ସୁନ୍ଦର ପଟ୍ଟବସ୍ତ୍ର, ଦର୍ପଣ ଓ ମାଳାଦ୍ୱାରା ମଙ୍ଗଳତୋରଣ ସବୁ ନିର୍ମିତ ହେଉଥିଲା ॥୨୮॥ ଶ୍ରୀରାମଚନ୍ଦ୍ର ଯେଉଁ ସବୁ ସ୍ଥାନକୁ ଯାଉଥିଲେ, ସେଠାର ଅଧିବାସୀମାନେ ସାଙ୍ଗରେ ଉପହାର ନେଇ ତାଙ୍କୁ ଭେଟୁଥିଲେ ଏବଂ କହୁଥିଲେ, ଦେବ, ଆପଣ ପୂର୍ବେ ଏହି ପୃଥିବୀକୁ (ବରାହରୂପରେ) ଉଦ୍ଧାର କରିଥିଲେ, ଏବେ ଏହାକୁ ପାଳନ କରନ୍ତୁ ॥୨୯॥ ପ୍ରଜାମାନେ ବହୁଦିନ ପରେ ବନବାସରୁ ଫେରି ଆସିଥିବା ରାମଚନ୍ଦ୍ରଙ୍କୁ ଯେତେ ଦେଖିଲେ ମଧ୍ୟ ତୃପ୍ତ ହେଉ ନ ଥିଲେ । ସ୍ତ୍ରୀ ପୁରୁଷ ତାଙ୍କୁ ବାରମ୍ବାର ଦେଖିବାପାଇଁ ଘର ଛାଡ଼ି ପ୍ରାସାଦ ଉପରକୁ ଉଠିଯାଉଥିଲେ ଏବଂ ସେଠାରୁ କମଳଲୋଚନ ରାମଚନ୍ଦ୍ରଙ୍କ ଉପରେ ପୁଷ୍ପବୃଷ୍ଟି କରୁଥିଲେ ॥୩୦॥ ଏହିପରି ପ୍ରଜାମାନଙ୍କୁ ଦେଖି ରାମଚନ୍ଦ୍ର ନିଜ ପ୍ରାସାଦକୁ ଫେରିଯାଉଥିଲେ । ଏହି ପ୍ରାସାଦ ତାଙ୍କ ପୂର୍ବସୂରିମାନଙ୍କର ମଧ୍ୟ ଥିଲା । ଏଥିରେ ଯେତେ ଧନରତ୍ନ ଥିଲା, ତାହା ଶେଷ ହେଉ ନ ଥିଲା । ବହୁମୂଲ୍ୟ ସାମଗ୍ରୀମାନଙ୍କଦ୍ୱାରା ଏହା ସୁସଜ୍ଜିତ ହେଉଥିଲା ॥୩୧॥ ରାଜମହଲର ଦ୍ୱାର ସବୁ ପଦ୍ମରାଗମଣିରେ ଓ ସ୍ତମ୍ଭମାନ ବୈଦୂର୍ଯ୍ୟ ମଣିରେ ନିର୍ମିତ ହୋଇଥିଲା । ମରକତ ମଣିର କବାଟ ଓ ଝରକା ସ୍ଫଟିକର କାନ୍ଥସବୁ ଶୋଭାପାଉଥିଲା ॥୩୨॥ ରଙ୍ଗବେରଙ୍ଗ ମାଳା, ମଣିମୟ ପତାକା, ରତ୍ନଖଚିତ ଝଲମଲ କରୁଥିବା ବସ୍ତ୍ର, ହୃଦୟସ୍ପର୍ଶୀ ଉଜ୍ଜ୍ୱଳ ମୁକ୍ତାମାଳା, ଅନ୍ୟାନ୍ୟ ଉପଭୋଗ୍ୟ ବସ୍ତୁ ଓ ସୁଗନ୍ଧ ଧୂପଦୀପ, ଏବଂ ପୁଷ୍ପ ଓ ଅଳଙ୍କାର ଦ୍ୱାରା ତାହା ସୁଶୋଭିତ ଥିଲା । ଯେଉଁ ସ୍ତ୍ରୀ-ପୁରୁଷମାନେ ଦେହରେ ଅଳଙ୍କାର ପିନ୍ଧି ନିଜକୁ ଅଳଙ୍କୃତ ମନେ କରୁଥିଲେ, ସେହି ଦେବତୁଲ୍ୟ ବ୍ୟକ୍ତିମାନେ ଭଗବାନ୍ ଶ୍ରୀରାମଙ୍କର ସେବା କରୁଥିଲେ ॥୩୩-୩୪॥ ପରିକ୍ଷିତ, ଭଗବାନ୍ ଶ୍ରୀରାମ ଥିଲେ ଆତ୍ମାରାମ ଓ ଧୀରମାନଙ୍କ ମଧ୍ୟରେ ଶ୍ରେଷ୍ଠ । ସେ ନିଜର ପ୍ରିୟତମା ସ୍ନେହମୟୀ ପତ୍ନୀ ସୀତାଙ୍କ ସହିତ ସେଠାରେ ଆନନ୍ଦରେ ବିହାର କରୁଥିଲେ ॥୩୫॥ ନରନାରୀଗଣ ଯାହାଙ୍କର ପଦପଲ୍ଲବକୁ ଧ୍ୟାନ କରିଥାନ୍ତି, ସେହି ଭଗବାନ ଶ୍ରୀରାମ ବହୁ ବର୍ଷ ଧରି ଧର୍ମମର୍ଯ୍ୟାଦା ପାଳନ କରି ସମୟୋଚିତ ଭୋଗ୍ୟବସ୍ତୁମାନ ଉପଭୋଗ କରୁଥିଲେ ॥୩୬॥

## ଦ୍ୱାଦଶ ଅଧ୍ୟାୟ

# ଇକ୍ଷ୍ୱାକୁ ବଂଶର ଶେଷରାଜାମାନଙ୍କ ବର୍ଣ୍ଣନା

ଶ୍ରୀ ଶୁକଦେବ କହିଲେ, ପରିକ୍ଷିତ, କୁଶଙ୍କର ପୁତ୍ର ଅତିଥି, ତାଙ୍କ ପୁତ୍ର ନିଷଧ, ନିଷଧଙ୍କ ପୁତ୍ର ନଭ, ତାଙ୍କ ପୁତ୍ର ପୁଣ୍ଡରୀକ ଓ ପୁଣ୍ଡରୀକଙ୍କର ପୁତ୍ର ଥିଲେ କ୍ଷେମଧନ୍ୱା ॥୧॥ କ୍ଷେମଧନ୍ୱାଙ୍କ ପୁତ୍ର ଦେବାନୀକ, ଦେବାନୀକଙ୍କ ପୁତ୍ର ଅନୀହ, ତାଙ୍କ ପୁତ୍ର ପାରିଯାତ୍ର, ପାରିଯାତ୍ରଙ୍କର ପୁତ୍ର ବଳସ୍ଥଳ ଏବଂ ବଳସ୍ଥଳଙ୍କର ପୁତ୍ର ହେଲେ ବଜ୍ରନାଭ । ବଜ୍ରନାଭ ସୂର୍ଯ୍ୟଙ୍କ ଅଂଶରେ ଜନ୍ମ

ହୋଇଥିଲେ ॥୨॥ ବଜ୍ରନାଭଙ୍କର ପୁତ୍ର ଖଗଣ, ଖଗଣଙ୍କର ପୁତ୍ର ବିଧୃତି ଓ ବିଧୃତିଙ୍କଠାରୁ ହିରଣ୍ୟନାଭଙ୍କର ଜନ୍ମ ହେଲା । ହିରଣ୍ୟନାଭ ଜୈମିନିଙ୍କର ଶିଷ୍ୟ ଏବଂ ଯୋଗାଚାର୍ଯ୍ୟ ଥିଲେ ॥୩॥ କୋଶଳବାସୀ ଋଷି ଯାଜ୍ଞବଲ୍କ୍ୟ ତାଙ୍କର ଶିଷ୍ୟତ୍ୱ ଗ୍ରହଣ କରି ଅଧ୍ୟାତ୍ମଯୋଗ ଶିକ୍ଷା କରିଥିଲେ । ଏହି ବିଦ୍ୟା ହୃଦୟର ଗ୍ରନ୍ଥି ଛେଦନ କରି ପରମସିଦ୍ଧି ଦାନ କରେ ॥୪॥ ହିରଣ୍ୟନାଭଙ୍କର ପୁତ୍ର ପୁଷ୍ପ, ତାଙ୍କ ପୁତ୍ର ଧ୍ରୁବସନ୍ଧି, ଧ୍ରୁବସନ୍ଧିଙ୍କର ପୁତ୍ର ସୁଦର୍ଶନ, ତାଙ୍କ ପୁତ୍ର ଅଗ୍ନିବର୍ଣ୍ଣ, ଅଗ୍ନିବର୍ଣ୍ଣଙ୍କ ପୁତ୍ର ଶୀଘ୍ର ଏବଂ ତାଙ୍କର ପୁତ୍ର ହେଲେ ମରୁ ॥୫॥ ମରୁ ଯୋଗସାଧନଦ୍ୱାରା ସିଦ୍ଧିଲାଭ କରି ଏବେ କଳାପ ନାମକ ଗ୍ରାମରେ ଅବସ୍ଥାନ କରିଛନ୍ତି, ଯେ କି କଳିଯୁଗ ଶେଷ ହେବା ପରେ ନଷ୍ଟପ୍ରାୟ ସୂର୍ଯ୍ୟବଂଶର ପୁନରୁଦ୍ଧାର କରିବେ ॥୬॥ ସେହି ମରୁଙ୍କର ପୁତ୍ର ପ୍ରସୁଶ୍ରୁତ । ତାଙ୍କର ପୁତ୍ର ସନ୍ଧି ଓ ସନ୍ଧିଙ୍କର ପୁତ୍ର ହେଲେ ଅମର୍ଷଣ । ଅମର୍ଷଣଙ୍କର ପୁତ୍ର ମହସ୍ୱାନ ଏବଂ ମହସ୍ୱାନଙ୍କର ପୁତ୍ର ବିଶ୍ୱବାହୁ ॥୭॥ ବିଶ୍ୱବାହୁଙ୍କର ପୁତ୍ର ହେଲେ ପ୍ରସେନଜିତ୍ । ପ୍ରସେନଜିତ୍‌ଙ୍କର ପୁତ୍ର ତକ୍ଷକ ଏବଂ ତକ୍ଷକଙ୍କର ପୁତ୍ର ବୃହଦ୍‌ବଳ । ପରିକ୍ଷିତ, ଏହି ବୃହଦ୍‌ବଳଙ୍କୁ ତୁମର ପିତା ଅଭିମନ୍ୟୁ ଯୁଦ୍ଧରେ ନିହତ କରିଥିଲେ ॥୮॥ ପରିକ୍ଷିତ, ଇକ୍ଷ୍ୱାକୁ ବଂଶର ଅତୀତ ରାଜାମାନଙ୍କ ବିଷୟରେ ମୁଁ କହିଲି । ଏବେ ଆଗାମୀ ପିଢ଼ିର କଥା କହୁଛି, ଶୁଣ । ବୃହଦ୍‌ବଳଙ୍କର ପୁତ୍ର ହେବେ ବୃହଦ୍‌ରଣ ॥୯॥ ବୃହଦ୍‌ରଣଙ୍କର ପୁତ୍ର ଉରୁକ୍ରିୟ । ତାଙ୍କର ପୁତ୍ର ବତ୍ସବୃଦ୍ଧ, ବତ୍ସବୃଦ୍ଧଙ୍କ ପୁତ୍ର ପ୍ରତିବ୍ୟୋମ, ପ୍ରତିବ୍ୟୋମଙ୍କ ପୁତ୍ର ଭାନୁ ଏବଂ ଭାନୁଙ୍କର ପୁତ୍ର ହେବେ ସେନାପତି ଦିବାକ ॥୧୦॥ ଦିବାକଙ୍କ ପୁତ୍ର ବୀର ସହଦେବ, ତାଙ୍କର ପୁତ୍ର ବୃହଦଶ୍ୱ, ବୃହଦଶ୍ୱଙ୍କର ପୁତ୍ର ଭାନୁମାନ, ଭାନୁମାନ୍‌ଙ୍କର ପୁତ୍ର ହେବେ ପ୍ରତୀକାଶ ଏବଂ ତାଙ୍କର ପୁତ୍ର ହେବେ ସୁପ୍ରତୀକ ॥୧୧॥ ତାଙ୍କଠାରୁ ମରୁଦେବ, ମରୁଦେବଙ୍କଠାରୁ ସୁନକ୍ଷତ୍ର, ତାଙ୍କଠାରୁ ପୁଷ୍କର, ପୁଷ୍କରଙ୍କଠାରୁ ଅନ୍ତରୀକ୍ଷ, ଅନ୍ତରୀକ୍ଷଙ୍କର ପୁତ୍ର ସୁତପା ଏବଂ ସୁତପାଙ୍କର ପୁତ୍ର ହେବେ ଅମିତ୍ରଜିତ୍ ॥୧୨॥ ଅମିତ୍ରଜିତ୍‌ଙ୍କର ପୁତ୍ର ବୃହଦ୍ରାଜ, ତାଙ୍କର ପୁତ୍ର ବର୍ହି, ବର୍ହିଙ୍କର ପୁତ୍ର କୃତଞ୍ଜୟ, କୃତଞ୍ଜୟଙ୍କର ପୁତ୍ର ରଣଞ୍ଜୟ, ରଣଞ୍ଜୟଙ୍କର ପୁତ୍ର ହେବେ ସଞ୍ଜୟ ॥୧୩॥ ସଞ୍ଜୟଙ୍କର ପୁତ୍ର ଶାକ୍ୟ, ତାଙ୍କ ପୁତ୍ର ଶୁଦ୍ଧୋଦ ଓ ଶୁଦ୍ଧୋଦଙ୍କ ପୁତ୍ର ଲାଙ୍ଗଳ, ତାଙ୍କ ପୁତ୍ର ପ୍ରସେନଜିତ୍ ଓ ପ୍ରସେନଜିତ୍‌ଙ୍କର ପୁତ୍ର କ୍ଷୁଦ୍ରକ ହେବେ ॥୧୪॥ କ୍ଷୁଦ୍ରକଙ୍କ ପୁତ୍ର ହେବେ ରଣକ, ରଣକଙ୍କର ସୁରଥ ଏବଂ ସୁରଥଙ୍କ ଠାରୁ ଏହି ବଂଶର ଅନ୍ତିମ ରାଜା ସୁମିତ୍ରଙ୍କର ଜନ୍ମ ହେବ । ଏମାନେ ସମସ୍ତେ ବୃହଦ୍‌ବଳଙ୍କର ବଂଶଧର ହେବେ ॥୧୫॥ ଇକ୍ଷ୍ୱାକୁ ବଂଶ ସୁମିତ୍ରଙ୍କପର୍ଯ୍ୟନ୍ତ ରହିବ । କଳିଯୁଗରେ ସୁମିତ୍ର ରାଜା ହେବାପରେ ଏହି ବଂଶ ଲୋପ ହୋଇଯିବ ॥୧୬॥

### ତ୍ରୟୋଦଶ ଅଧ୍ୟାୟ

## ରାଜା ନିମିଙ୍କର ବଂଶ ବର୍ଣ୍ଣନ

ଶ୍ରୀ ଶୁକଦେବ କହିଲେ, ପରିକ୍ଷିତ, ନିମି ଇକ୍ଷ୍ୱାକୁଙ୍କର ପୁତ୍ର ଥିଲେ । ସେ ଯଜ୍ଞ କରିବାପାଇଁ ମହର୍ଷି ବଶିଷ୍ଠଙ୍କୁ ପୁରୋହିତ ରୂପେ ବରଣ କଲେ । ବଶିଷ୍ଠ କହିଲେ, ରାଜା, ପୂର୍ବରୁ ଇନ୍ଦ୍ର ମୋତେ ବରଣ କରିଛନ୍ତି । ତେଣୁ ତୁମର ଯଜ୍ଞ ମୁଁ କିପରି କରିପାରିବି ? ମୁଁ ଇନ୍ଦ୍ରଙ୍କର ଯଜ୍ଞ ଶେଷ କରି ଆସିଯିବି, ସେ ପର୍ଯ୍ୟନ୍ତ ତୁମେ ଅପେକ୍ଷା କର । ତାଙ୍କ କଥା ଶୁଣି ରାଜା ନିମି ତୁନି ହୋଇ ରହିଲେ ଏବଂ ବଶିଷ୍ଠ ଇନ୍ଦ୍ରଙ୍କର ଯଜ୍ଞ କରିବାକୁ ଚାଲିଗଲେ ॥୧-୨॥ ବିଦ୍ୱାନ୍ ନିମି ଭାବିଲେ ଯେ ଏ ଜୀବନ କ୍ଷଣଭଂଗୁର, ଆଉ ବିଳମ୍ବ କରିବା ଉଚିତ ନୁହେଁ । ତେଣୁ ବଶିଷ୍ଠ ଆସିବାଯାଏ ଅପେକ୍ଷା ନ କରି ସେ ଅନ୍ୟ ଋତ୍ୱିକମାନଙ୍କୁ ନେଇ ଯଜ୍ଞ ଆରମ୍ଭ କରିଦେଲେ ॥୩॥ ଇନ୍ଦ୍ରଙ୍କ ଯଜ୍ଞରୁ ଫେରି ଆସି ବଶିଷ୍ଠ ଶିଷ୍ୟ ନିମିଙ୍କର ଏହି ବ୍ୟତିକ୍ରମ ଦେଖିଲେ । ସେ ଅଭିଶାପ ଦେଲେ, ନିଜକୁ ପଣ୍ଡିତ ବୋଲି ମନେକରି ତୁମେ ଯେଉଁ କାର୍ଯ୍ୟ କଲ, ତଦ୍ୱାରା ତୁମର ଶରୀରପାତ ଘଟିବ ॥୪॥ ନିମିଙ୍କ ଦୃଷ୍ଟିରେ

ଗୁରୁଙ୍କର ଶାପ ଧର୍ମର ଅନୁକୂଳ ନଥିଲା । ସେଥିପାଇଁ, ସେ ପ୍ରତି-ଅଭିଶାପ ଦେଇ କହିଲେ, 'ଆପଣ ଲୋଭବଶରୁ ଧର୍ମର ଅନାଦର କରିଛନ୍ତି । ତେଣୁ ଆପଣଙ୍କର ଶରୀର ମଧ୍ୟ ଖସିପଡୁ ।' ଏହା କହି ଅଧ୍ୟାତ୍ମଜ୍ଞାନରେ ପଣ୍ଡିତ ନିମି ଦେହତ୍ୟାଗ କଲେ ଏବଂ ମୋର ପ୍ରପିତାମହ ବଶିଷ୍ଠ ଦେହତ୍ୟାଗ କଲେ । କିନ୍ତୁ ମିତ୍ରାବରୁଣଙ୍କଠାରୁ ଉର୍ବଶୀଙ୍କ ଗର୍ଭରେ ସେ ପୁଣି ଜନ୍ମଗ୍ରହଣ କଲେ ॥୫-୬॥ ଯେଉଁ ପ୍ରଧାନ ପ୍ରଧାନ ଋଷିମାନେ ନିମିଙ୍କର ଯଜ୍ଞ କରିଥିଲେ, ସେମାନେ ନିମିଙ୍କର ଦେହକୁ ସୁଗଂଧିବସ୍ତୁଯୁକ୍ତ ତୈଳମଧ୍ୟରେ ରଖିଲେ ଏବଂ ଯଜ୍ଞ ଶେଷ ହେବାରୁ ଯେଉଁ ଦେବତାମାନେ ଆସିଲେ, ସେମାନଙ୍କୁ ଏହିପରି ପ୍ରାର୍ଥନା କଲେ-- ॥୭॥ 'ଆପଣମାନେ ପ୍ରଭାବଶାଳୀ । ଯଦି ପ୍ରସନ୍ନ ହୋଇଥା'ନ୍ତି, ତା'ହେଲେ ରାଜା ନିମି ପୁନର୍ଜୀବନ ଲାଭ କରନ୍ତୁ ।' ଦେବତାମାନେ କହିଲେ, ତଥାସ୍ତୁ । କିନ୍ତୁ ନିମି କହିଲେ, ମୁଁ ଆଉ ଏ ଦେହବନ୍ଧନ ଚାହୁଁ ନାହିଁ ॥୮॥ ବିବେକୀ ମୁନିଗଣ ଭଗବାନଙ୍କଠାରେ ସଂପୂର୍ଣ୍ଣ ଭାବରେ ନିଜର ଚିତ୍ତ ନିବେଶ କରି ତାଙ୍କ ପାଦପଦ୍ମକୁ ଭଜନ କରନ୍ତି । ଅତଏବ ଦୁଃଖ, ଶୋକ ଓ ଭୟପୂର୍ଣ୍ଣ ଏହି ଶରୀରକୁ ମୁଁ ଆଉ ଇଚ୍ଛା କରୁ ନାହିଁ । ଜଳରେ ଯେପରି ମତ୍ସ୍ୟମାନଙ୍କର ମୃତ୍ୟୁ ଥାଏ, ଏହି ଦେହ ସେହିପରି ମୃତ୍ୟୁବଶରେ ରହିଥାଏ ॥୯-୧୦॥

ଦେବତାମାନେ କହିଲେ, ମୁନିଗଣ, ନିମି ଅଶରୀରୀ ହୋଇ ଶରୀରଧାରୀଙ୍କ ଚକ୍ଷୁରେ ସ୍ୱେଚ୍ଛାରେ ବାସ କରନ୍ତୁ । ସେହି ସୂକ୍ଷ୍ମ ଶରୀରରେ ରହି ସେ ଭଗବାନଙ୍କୁ ଚିନ୍ତା କରୁଥିବେ । ତାଙ୍କର ନାମାନୁସାରେ ଆଖିର ପଲକ ଉଠିବାକୁ ଉନ୍ମେଷ ଓ ପଡ଼ିବାକୁ ନିମେଷ ବୋଲି କୁହାଯିବ ॥୧୧॥ ରାଜା ନ ରହିଲେ ଲୋକଙ୍କ ମଧ୍ୟରେ ଅରାଜକତାର ଭୟ ଘୋଟିଯିବ । ଏହା ମନେ କରି ଋଷିମାନେ ନିମିଙ୍କର ଦେହକୁ ମନ୍ଥନ କଲେ । ସେଥିରୁ ଏକ ପୁତ୍ର ଜନ୍ମହେଲା ॥୧୨॥ ଜନ୍ମଯୋଗୁଁ ତାଙ୍କର ନାମ ହେଲା ଜନକ । ବିଦେହଙ୍କଠାରୁ ଜନ୍ମ ଯୋଗୁ ତାଙ୍କର ନାମ ହେଲା ବୈଦେହ ଏବଂ ମନ୍ଥନରୁ ଜାତ ବୋଲି ସେ ହେଲେ ମିଥିଳ । ତାଙ୍କ ନିର୍ମିତ ରାଜଧାନୀର ନାମ ହେଲା ମିଥିଳା ॥୧୩॥

ରାଜା, ଜନକଙ୍କର ପୁତ୍ର ହେଲେ ଉଦାବସୁ । ତାଙ୍କ ପୁତ୍ର ନନ୍ଦିବର୍ଦ୍ଧନ, ତାଙ୍କର ପୁତ୍ର ସୁକେତୁ ଏବଂ ସୁକେତୁଙ୍କର ପୁତ୍ର ହେଲେ ଦେବରାତ ॥୧୪॥ ଦେବରାତଙ୍କର ପୁତ୍ର ବୃହଦ୍ରଥ, ବୃହଦ୍ରଥଙ୍କର ପୁତ୍ର ମହାବୀର୍ଯ୍ୟ, ତାଙ୍କର ପୁତ୍ର ସୁଧୃତି, ସୁଧୃତିଙ୍କର ପୁତ୍ର ଧୃଷ୍ଟକେତୁ, ତାଙ୍କର ପୁତ୍ର ହର୍ଯ୍ୟଶ୍ୱ ଏବଂ ହର୍ଯ୍ୟଶ୍ୱଙ୍କ ପୁତ୍ର ହେଲେ ମରୁ ॥୧୫॥ ମରୁଙ୍କ ପୁତ୍ର ପ୍ରତୀପକ, ତାଙ୍କ ପୁତ୍ର କୃତିରଥ, କୃତିରଥଙ୍କର ପୁତ୍ର ଦେବମୀଢ଼, ତାଙ୍କ ପୁତ୍ର ବିଶ୍ରୁତ ଏବଂ ବିଶ୍ରୁତଙ୍କର ପୁତ୍ର ହେଲେ ମହାଧୃତି । ମହାଧୃତିଙ୍କର କୃତିରାତ, କୃତିରାତଙ୍କର ମହାରୋମା, ମହାରୋମାଙ୍କର ସ୍ୱର୍ଣ୍ଣରୋମା ଓ ସ୍ୱର୍ଣ୍ଣରୋମାଙ୍କର ପୁତ୍ର ହେଲେ ହ୍ରସ୍ୱରୋମା ॥୧୬-୧୭॥ ତାଙ୍କର ପୁତ୍ର ହେଲେ ସୀରଧ୍ୱଜ, ଯେ ଯଜ୍ଞ କରିବା ପାଇଁ ଭୂମିକର୍ଷଣ କରିଥିଲେ । ତାଙ୍କ ଲଙ୍ଗଳର ଅଗ୍ରଭାଗରୁ ସୀତାଙ୍କର ଜନ୍ମ ହେଲା । ତେଣୁ ତାଙ୍କର ନାମ ସୀରଧ୍ୱଜ ହୋଇଥିଲା ॥୧୮॥ ରାଜା ସୀରଧ୍ୱଜଙ୍କର ପୁତ୍ର କୁଶଧ୍ୱଜ, ତାଙ୍କ ପୁତ୍ର ଧର୍ମଧ୍ୱଜ ଏବଂ ଧର୍ମଧ୍ୱଜଙ୍କର ଦୁଇପୁତ୍ର ହେଲେ କୃତଧ୍ୱଜ ଓ ମିତଧ୍ୱଜ । କୃତଧ୍ୱଜଙ୍କର ପୁତ୍ର କେଶିଧ୍ୱଜ ଓ ମିତଧ୍ୱଜଙ୍କର ପୁତ୍ର ହେଲେ ଖାଣ୍ଡିକ୍ୟ । ପରୀକ୍ଷିତ, କେଶିଧ୍ୱଜ ଆତ୍ମବିଦ୍ୟାରେ ପ୍ରବୀଣ ଥିଲେ ॥୧୯-୨୦॥ ଖାଣ୍ଡିକ୍ୟ କର୍ମକାଣ୍ଡରେ ପଣ୍ଡିତ ଥିଲେ । କେଶିଧ୍ୱଜଙ୍କ ଭୟରେ ସେ ପଳାଇଗଲେ । କେଶିଧ୍ୱଜଙ୍କର ପୁତ୍ର ଭାନୁମାନ୍ ଓ ଭାନୁମାନ୍‌ଙ୍କର ପୁତ୍ର ଶତଦ୍ୟୁମ୍ନ ॥୨୧॥ ଶତଦ୍ୟୁମ୍ନଙ୍କଠାରୁ ଶୁଚି, ଶୁଚିଙ୍କଠାରୁ ସନଦ୍ୱାଜ, ସନଦ୍ୱାଜଙ୍କ ଠାରୁ ଊର୍ଦ୍ଧ୍ୱକେତୁ, ଊର୍ଦ୍ଧ୍ୱକେତୁଙ୍କଠାରୁ ଅଜ, ଅଜଙ୍କ ଠାରୁ ପୁରୁଜିତ୍, ପୁରୁଜିତ୍‌ଙ୍କଠାରୁ ଅରିଷ୍ଟନେମି, ଅରିଷ୍ଟନେମିଙ୍କଠାରୁ ଶ୍ରୁତାୟୁ, ଶ୍ରୁତାୟୁଙ୍କଠାରୁ ସୁପାର୍ଶ୍ୱକ, ସୁପାର୍ଶ୍ୱକଙ୍କଠାରୁ ଚିତ୍ରରଥ ଏବଂ ଚିତ୍ରରଥଙ୍କଠାରୁ ମିଥିଳାଧିପତି କ୍ଷେମଧିଙ୍କର ଜନ୍ମ ହୋଇଥିଲା ॥୨୨-୨୩॥ କ୍ଷେମଧିଙ୍କଠାରୁ ସମରଥ, ତାଙ୍କଠାରୁ ସତ୍ୟରଥ, ସତ୍ୟରଥଙ୍କଠାରୁ ଉପଗୁରୁ ଓ ତାଙ୍କଠାରୁ ଉପଗୁପ୍ତ ନାମକ ପୁତ୍ର ଜନ୍ମହେଲେ । ଉପଗୁପ୍ତ ଅଗ୍ନିଙ୍କ ଅଂଶରେ ଜନ୍ମ ହୋଇଥିଲେ ॥୨୪॥ ଉପଗୁପ୍ତଙ୍କର ପୁତ୍ର ବସ୍ୱନନ୍ତ, ବସ୍ୱନନ୍ତଙ୍କର ପୁତ୍ର ଯୁଯୁଧ, ତାଙ୍କ ପୁତ୍ର

ସୁଭାଷଣ, ତାଙ୍କ ପୁତ୍ର ଶ୍ରୁତ, ତାଙ୍କ ପୁତ୍ର ଜୟ, ଜୟଙ୍କ ପୁତ୍ର ବିଜୟ ଏବଂ ତାଙ୍କର ପୁତ୍ର ଋତ ॥୨୫॥ ଋତଙ୍କର ପୁତ୍ର ଶୁନକ, ତାଙ୍କର ବୀତହବ୍ୟ, ବୀତହବ୍ୟଙ୍କର ଧୃତି, ଧୃତିଙ୍କର ବହୁଳାଶ୍ୱ, ବହୁଳାଶ୍ୱଙ୍କର ମହାମନା ଜିତେନ୍ଦ୍ରିୟ କୃତି ॥୨୬॥ ପରିକ୍ଷିତ, ମିଥିଳାଧିପତି ରାଜାମାନେ ସମସ୍ତେ ଆତ୍ମଜ୍ଞାନୀ ଥିଲେ ଏବଂ ଗୃହସ୍ଥାଶ୍ରମରେ ଥାଇ ମଧ୍ୟ ସେମାନେ ମହାଯୋଗୀ ଯାଜ୍ଞବଲ୍କ୍ୟଙ୍କ କୃପାରୁ ସୁଖ ଦୁଃଖ ଆଦି ଦ୍ୱନ୍ଦ୍ୱରୁ ମୁକ୍ତ ଥିଲେ ॥୨୭॥

## ଚତୁର୍ଦ୍ଦଶ ଅଧ୍ୟାୟ

# ଚନ୍ଦ୍ରବଂଶ ବର୍ଣ୍ଣନା

ଶ୍ରୀ ଶୁକଦେବ କହିଲେ, ପରିକ୍ଷିତ, ବର୍ତ୍ତମାନ ମୁଁ ତୁମକୁ ପାବନ ଚନ୍ଦ୍ରବଂଶ ସଂପର୍କରେ ଶୁଣେଇବାକୁ ଯାଉଛି । ଏହି ବଂଶରେ ଐଳ ପ୍ରଭୃତି ପୁଣ୍ୟକୀର୍ତ୍ତି ରାଜାମାନେ ରାଜପଣ କରିଥିଲେ ॥୧॥ ସହସ୍ରଶୀର୍ଷା ପୁରୁଷ ଶ୍ରୀ ବିଷ୍ଣୁଙ୍କର ନାଭିରୂପକ ହ୍ରଦର ପଦ୍ମରୁ ବ୍ରହ୍ମାଙ୍କର ଉତ୍ପତ୍ତି ହୋଇଥିଲା । ବ୍ରହ୍ମାଙ୍କର ଅତ୍ରି ନାମକ ଏକ ପୁତ୍ର ହେଲେ, ଯେ କି ପିତୃତୁଲ୍ୟ ଗୁଣୀ ଥିଲେ ॥୨॥ ଅତ୍ରିଙ୍କର ନେତ୍ରରୁ ଅମୃତମୟ ଚନ୍ଦ୍ରଙ୍କର ଜନ୍ମ ହେଲା । ବ୍ରହ୍ମା ଚନ୍ଦ୍ରଙ୍କୁ ବିପ୍ର, ଓଷଧି ଓ ନକ୍ଷତ୍ରମାନଙ୍କର ରାଜା କଲେ । ଚନ୍ଦ୍ର ତ୍ରିଭୁବନ ଜୟ କରି ରାଜସୂୟ ଯଜ୍ଞ କରିଥିଲେ ଏବଂ ବଳପୂର୍ବକ ବୃହସ୍ପତିଙ୍କର ପତ୍ନୀ ତାରାଙ୍କୁ ଅପହରଣ କରିଥିଲେ ॥୩-୪॥ ଦେବଗୁରୁ ବୃହସ୍ପତି ନିଜର ପତ୍ନୀଙ୍କୁ ଫେରାଇ ଦେବାପାଇଁ ବାରମ୍ବାର ଅନୁରୋଧ କଲେ ମଧ୍ୟ ଗର୍ବିତ ମଦମତ୍ତ ଚନ୍ଦ୍ର ତାଙ୍କୁ ଫେରାଇଲେ ନାହିଁ । ଏଥିପାଇଁ ଦେବ-ଦାନବଙ୍କ ମଧ୍ୟରେ ଘୋରତର ଯୁଦ୍ଧ ଲାଗିଗଲା ॥୫॥ ବୃହସ୍ପତିଙ୍କ ପ୍ରତି ଦ୍ୱେଷ ଯୋଗୁ ଅସୁରଗୁରୁ ଶୁକ୍ରାଚାର୍ଯ୍ୟ ଅସୁରମାନଙ୍କ ସହିତ ଚନ୍ଦ୍ରଙ୍କର ପକ୍ଷ ଗ୍ରହଣ କଲେ ଏବଂ ମହାଦେବ ସ୍ନେହବଶତଃ ସମସ୍ତ ଭୂତଗଣଙ୍କୁ ସାଙ୍ଗରେ ନେଇ ନିଜର ବିଦ୍ୟାଗୁରୁ ଅଙ୍ଗିରାଙ୍କର ପୁତ୍ର ବୃହସ୍ପତିଙ୍କର ପକ୍ଷ ଗ୍ରହଣ କଲେ ॥୬॥ ଦେବରାଜ ଇନ୍ଦ୍ର ମଧ୍ୟ ସମସ୍ତ ଦେବତାଙ୍କ ସହିତ ଗୁରୁ ବୃହସ୍ପତିଙ୍କର ପକ୍ଷ ଗ୍ରହଣ କଲେ । ତାରାଙ୍କୁ କେନ୍ଦ୍ର କରି ଦେବାସୁରଙ୍କ ମଧ୍ୟରେ ଏକ ପ୍ରଳୟଙ୍କର ଯୁଦ୍ଧ ହୋଇଗଲା ॥୭॥ ଏହାପରେ ଅଙ୍ଗିରା ଋଷି ବ୍ରହ୍ମାଙ୍କ ପାଖକୁ ଯାଇ ଏହି ଯୁଦ୍ଧ ବନ୍ଦ କରିବାପାଇଁ ଅନୁରୋଧ କଲେ । ବ୍ରହ୍ମା ଚନ୍ଦ୍ରଙ୍କୁ ଡାକି ବହୁ ଭର୍ତ୍ସନା କରିବାରୁ ଚନ୍ଦ୍ର ତାରାଙ୍କୁ ଫେରାଇଦେଲେ । ବୃହସ୍ପତି ଜାଣିଲେ ଯେ ତାରା ଗର୍ଭବତୀ ହୋଇଛନ୍ତି, ତହୁଁ ସେ କହିଲେ, ମୋ କ୍ଷେତ୍ରରେ ପରପୁରୁଷଦ୍ୱାରା ଉତ୍ପନ୍ନ ଗର୍ଭକୁ ଶୀଘ୍ର ତ୍ୟାଗ କର । ଅସତୀ, ମୁଁ ସନ୍ତାନାର୍ଥୀ ଏବଂ ତୁ ମୋର ସ୍ତ୍ରୀ । ଏଣୁ ମୁଁ କେବେ ତୋତେ ଭସ୍ମ କରିବାକୁ ଯାଉ ନାହିଁ ॥୮-୯॥ ତାହା ଶୁଣି ତାରା ଅତିଶୟ ଲଜ୍ଜିତ ହେଲେ ଓ ସଙ୍ଗେ ସଙ୍ଗେ ସ୍ୱର୍ଣ୍ଣପରି ତେଜୀୟାନ୍ ଏକ ସନ୍ତାନକୁ ଜନ୍ମ ଦେଲେ । ଉଭୟ ବୃହସ୍ପତି ଓ ଚନ୍ଦ୍ର ଏହାକୁ ପୁତ୍ର ରୂପେ ଦାବୀ କଲେ ॥୧୦॥ 'ଏ ପୁତ୍ର ମୋର, ତୁମର ନୁହେଁ' -- ଏହିପରି ଚନ୍ଦ୍ର ଓ ବୃହସ୍ପତିଙ୍କ ମଧ୍ୟରେ ବିବାଦ ଉପସ୍ଥିତ ହେଲା । ମୁନି, ଋଷି ଓ ଦେବତାମାନେ ତାରାଙ୍କୁ ପଚାରିଲେ, 'ଏ କାହାର ପୁତ୍ର, କହ ।' କିନ୍ତୁ ତାରା ଲଜ୍ଜାରେ କିଛି କହିଲେ ନାହିଁ ॥୧୧॥ ଜନ୍ମିତ ସନ୍ତାନ ମାତାର ମିଥ୍ୟାଲଜ୍ଜାରେ କ୍ରୁଦ୍ଧ ହୋଇ କହିଲା, ଦୁଷ୍ଟା, ତୁ କାହିଁକି କିଛି କହୁନାହୁଁ ? ନିଜର କୁକର୍ମ ଶୀଘ୍ର ମୋତେ କହିଦେ' ॥୧୨॥

ଏହି ସମୟରେ ବ୍ରହ୍ମା ଏକାନ୍ତରେ ତାରାଙ୍କୁ ଡାକି ପଚାରିଲେ; ତାରା ଚୁପ୍ ଚୁପ୍ କହିଲେ, 'ଏ ଚନ୍ଦ୍ରଙ୍କର ପୁତ୍ର' । ତା'ପରେ ଚନ୍ଦ୍ର ସେହି ପୁତ୍ରକୁ ନେଇଗଲେ ॥୧୩॥ ରାଜା, ବ୍ରହ୍ମା ପୁତ୍ରର ଗମ୍ଭୀର ବୁଦ୍ଧି ଦେଖି ତାର ନାମ ଦେଲେ ବୁଧ । ନକ୍ଷତ୍ରାଧିପତି ଚନ୍ଦ୍ର ଏହି ପୁତ୍ରକୁ ପାଇ ଅତିଶୟ ଆନନ୍ଦିତ ହେଲେ ॥୧୪॥ ବୁଧଙ୍କଠାରୁ ଇଳାଙ୍କ ଗର୍ଭରେ ପୁରୂରବାଙ୍କର ଜନ୍ମ ହେଲା, ଯାହାଙ୍କ ବିଷୟ ମୁଁ ପୂର୍ବରୁ ବର୍ଣ୍ଣନା କରିଛି । ଦିନେ ଇନ୍ଦ୍ରସଭାରେ ଦେବର୍ଷି ନାରଦ ପୁରୂରବାଙ୍କ ରୂପ, ଗୁଣ, ସ୍ୱଭାବ,

ଧନ ଏବଂ ବୀରତ୍ୱର ବର୍ଣ୍ଣନା କରୁଥିଲେ । ତାହା ଶୁଣି ଉର୍ବଶୀ କାମବାଣରେ ପୀଡ଼ିତା ହୋଇ ପୁରୂରବାଙ୍କ ପାଖକୁ ଚାଲିଆସିଲେ ॥୧୫-୧୬॥ ମିତ୍ରାବରୁଣଙ୍କ ଶାପରେ ମର୍ତ୍ତ୍ୟଲୋକକୁ ଆସିଥିବା ଉର୍ବଶୀ କନ୍ଦର୍ପଙ୍କପରି ରୂପବାନ୍ ପୁରୁଷଶ୍ରେଷ୍ଠ ପୁରୁରବାଙ୍କ ବିଷୟ ଶୁଣି ବିଚଳିତା ନହୋଇ ତାଙ୍କ ନିକଟରେ ଆସି ଉପସ୍ଥିତ ହେଲେ । ତାଙ୍କୁ ଦେଖି ଆନନ୍ଦରେ ରାଜାଙ୍କର ଆଖି ଖୋଲିଗଲା । ଶରୀର ରୋମାଞ୍ଚିତ ହେଲା । ସେ ମଧୁର ବାକ୍ୟରେ ତାଙ୍କୁ କହିବାକୁ ଲାଗିଲେ-- ॥୧୭-୧୮॥ ପୁରୁରବା କହିଲେ, ସୁନ୍ଦରି ! ତୁମେ ଏଠାକୁ ଭଲରେ ଆସିଛ, ତୁମକୁ କୌଣସି କଷ୍ଟ ହୋଇ ନାହିଁ ତ ! ବସ, ମୁଁ ତୁମର କ'ଣ ସେବା କରି ପାରିବି ? ତୁମେ ମୋ ସହିତ ରମଣ କର, ଅନନ୍ତକାଳ ପର୍ଯ୍ୟନ୍ତ ଆମେ ବିହାର କରିବା ॥୧୯॥

ଉର୍ବଶୀ କହିଲେ, ହେ ରୂପବାନ୍, ତୁମକୁ ଦେଖି କାହାର ମନ ତୁମ ପ୍ରତି ଆସକ୍ତ ନ ହେବ ? ତୁମର ବକ୍ଷସ୍ଥଳ ଲାଭ କରି କେଉଁ ରମଣୀ ତାହା ତ୍ୟାଗ କରିପାରିବ ? ॥୨୦॥ ରାଜା, ରୂପଗୁଣସମ୍ପନ୍ନ ପୁରୁଷ ସ୍ତ୍ରୀମାନଙ୍କର ଅଭୀଷ୍ଟ ହୁଏ । ତେଣୁ ହେ ମାନଦ, ମୁଁ ତୁମ ସହିତ ରମଣ କରିବି । କିନ୍ତୁ ମୋର ଏହି ଦୁଇଟି ମେଷଶାବକ ତୁମକୁ ଅର୍ପଣ କରୁଛି, ତୁମେ ଏହାଙ୍କୁ ରକ୍ଷା କରିବ ॥୨୧॥ ବୀର, କେବଳ ଘୃତ ହେବ ମୋର ଖାଦ୍ୟ । ମୈଥୁନ ସମୟ ଛଡ଼ା ଅନ୍ୟ ସମୟରେ ଆପଣଙ୍କୁ ମୁଁ ଉଲଗ୍ନ ଦେଖିବି ନାହିଁ । ରାଜା 'ତାହା ହିଁ ହେବ' ବୋଲି କହି ଉର୍ବଶୀଙ୍କ ସର୍ତ୍ତକୁ ସ୍ୱୀକାର କଲେ ॥୨୨॥ ରାଜା ପୁରୁରବା କହିଲେ, ମର୍ତ୍ତ୍ୟଲୋକରେ ତୁମର ଏହି ବିମୋହନ ରୂପ ଓ ସ୍ୱଭାବ ଦୁର୍ଲଭ । ଦେବୀ, ତୁମେ ସ୍ୱୟଂ ଆସିଥିବା ଦେଖି କେଉଁ ପୁରୁଷ ତୁମ ସେବା ନ କରିବ ? ॥୨୩॥

ପରିକ୍ଷିତ, ଉର୍ବଶୀ କାମଶାସ୍ତ୍ର ରୀତିରେ ପୁରୁଷଶ୍ରେଷ୍ଠ ପୁରୂରବାଙ୍କ ସହିତ ବିହାର କରିବାକୁ ଲାଗିଲେ । ଦେବତାମାନଙ୍କ ବିହାରଯୋଗ୍ୟ ଚୈତ୍ରରଥ ଆଦି ଉପବନମାନଙ୍କରେ ସେ ତାଙ୍କ ସହିତ ବିହାର କଲେ ॥୨୪॥ ଉର୍ବଶୀଙ୍କ ଶରୀରରୁ ପଦ୍ମକେଶରର ଗନ୍ଧ ବାହାରୁଥିଲା । ତାଙ୍କ ମୁଖର ମଧୁର ଗନ୍ଧରେ ଆମୋଦିତ ପୁରୂରବା ବହୁ ବର୍ଷ ଧରି ଆନନ୍ଦରେ ତାଙ୍କ ସହ କଟାଇଲେ ॥୨୫॥ ଇନ୍ଦ୍ର ଉର୍ବଶୀଙ୍କୁ ନ ଦେଖି ତାଙ୍କୁ ଆଣିବା ପାଇଁ ଗନ୍ଧର୍ବମାନଙ୍କୁ ପଠାଇଲେ ଏବଂ କହିଲେ, 'ଉର୍ବଶୀଙ୍କ ବିନା ମୋର ଆସ୍ଥାନ ଶୋଭା ପାଉ ନାହିଁ ।' ୨୬॥ ଗନ୍ଧର୍ବମାନେ ଘୋର ନିଶାର୍ଦ୍ଧର ଅନ୍ଧକାର ମଧ୍ୟରେ ରାଜାଙ୍କ ପାଖରେ ନ୍ୟସ୍ତ ଉର୍ବଶୀଙ୍କର ମେଷଶାବକ ଦୁଇଟିଙ୍କୁ ଚୋରାଇନେଲେ । ଗନ୍ଧର୍ବମାନେ ନେବାବେଳେ ନିଜର ପାଳିତ ମେଷ ଶାବକ ଦୁଇଟିର ମେଁ ମେଁ ଶବ୍ଦ ଶୁଣିପାରି ଉର୍ବଶୀ କହିବାକୁ ଲାଗିଲେ- ହାୟ, ଏହି କାପୁରୁଷକୁ ସ୍ୱାମୀ ବୋଲି ଗ୍ରହଣ କରି ମୋର ସବୁ ଶେଷ ହୋଇଗଲା । ଏହି ନପୁଂସକ ନିଜକୁ ବୀର ବୋଲି ଅଭିମାନ କରୁଛି । ଏ ମୋର ମେଷ ଶାବକ ଦୁଇଟିଙ୍କୁ ରକ୍ଷା କରିପାରିଲା ନାହିଁ ॥୨୭-୨୮॥ ଏହାଙ୍କୁ ବିଶ୍ୱାସ କରି ମୁଁ ଶେଷ ହୋଇଗଲି । ଦସ୍ୟୁମାନେ ମୋର ସନ୍ତାନ ଦୁହିଁଙ୍କୁ ଅପହରଣ କଲେ । ଏ ଦିନରେ ପୁରୁଷ ହୋଇ ବୁଲୁଛି, କିନ୍ତୁ ରାତିରେ ସ୍ତ୍ରୀ ପରି ଡରି ଶୋଇରହୁଛି ॥୨୯॥ ରାଜା, ହାତୀ ଅଙ୍କୁଶରେ ବିଦ୍ଧ ହେବା ପରି ଉର୍ବଶୀଙ୍କ ବାକ୍ୟବାଣରେ ବିଦ୍ଧ ପୁରୂରବା ସେହି ନିଶାର୍ଦ୍ଧକାଳରେ ବିବସ୍ତ୍ର ଅବସ୍ଥାରେ ଖଡ୍ଗ ଧାରଣ କରି ଗନ୍ଧର୍ବମାନଙ୍କୁ ଗୋଡ଼ାଇଲେ । ଗନ୍ଧର୍ବମାନେ ମେଷ ଶାବକ ଦୁଇଟିଙ୍କୁ ଛାଡ଼ିଦେଲେ, କିନ୍ତୁ ନିଜର ତେଜଦ୍ୱାରା ସେହି ସ୍ଥାନଟିକୁ ଆଲୋକିତ କରିଦେଲେ । ରାଜା ମେଷ ଶାବକ ଦୁଇଟିଙ୍କୁ ଧରି ଆସିବା ବେଳେ ଉର୍ବଶୀ ନିଜର ସ୍ୱାମୀଙ୍କୁ ଉଲଗ୍ନ ଅବସ୍ଥାରେ ଦେଖିଲେ (ତତ୍‌କ୍ଷଣାତ୍ ଉର୍ବଶୀ ରାଜାଙ୍କୁ ଛାଡ଼ି ଚାଲିଗଲେ) ॥୩୦-୩୧॥ ରାଜା ଯେତେବେଳେ ନିଜର ଶୟନକକ୍ଷରେ ଉର୍ବଶୀଙ୍କୁ ଦେଖିଲେ ନାହିଁ, ସେ ବିଚଳିତ ହୋଇପଡ଼ିଲେ । ସେ ଶୋକାର୍ତ୍ତ ହୋଇ ପାଗଳପରି ପୃଥିବୀ ସାରା ଉର୍ବଶୀଙ୍କୁ ଖୋଜିବାକୁ ଲାଗିଲେ ॥୩୨॥ ଏହିପରି ବୁଲୁବୁଲୁ ସରସ୍ୱତୀ ନଦୀକୂଳରେ କୁରୁକ୍ଷେତ୍ରରେ ପଞ୍ଚସଖୀଙ୍କ ସହିତ ଉର୍ବଶୀଙ୍କୁ ବୁଲୁଥିବାର ଦେଖି ତାଙ୍କର ମନ ଆନନ୍ଦରେ ଭରିଗଲା । ସେ କହିବାକୁ ଲାଗିଲେ - ॥୩୩॥

ପ୍ରିୟେ, କ୍ଷଣମାତ୍ର ଅପେକ୍ଷା କର । ନିଷ୍ଠୁର ହୁଅ ନାହିଁ । ମୋ' ସୁଖର ଶେଷ ହୋଇ ନାହିଁ, ଟିକିଏ ଅପେକ୍ଷା କର, କିଛି କଥା କହିବାର ଅଛି । ମୋର ଏହି ସୁନ୍ଦର ଦେହ ପ୍ରତି ତୁମର କୃପାଦୃଷ୍ଟି ନାହିଁ ଏବଂ ତୁମେ ଏହାକୁ ଦୂରକୁ ଫିଙ୍ଗି ଦେଇଛ । ତୁମେ ସାଦରେ ଗ୍ରହଣ ନ କଲେ ଏହି ସୁନ୍ଦର ଶରୀର ଶାଗୁଣା ଓ ହେଟାବାଘଙ୍କର ଖାଦ୍ୟ ହେବ ।।୩୪-୩୫।। ଉର୍ବଶୀ କହିଲେ, ରାଜା, ତୁମେ ପୁରୁଷ, ଧୈର୍ଯ୍ୟ ଧର । ପ୍ରାଣତ୍ୟାଗ କର ନାହିଁ । ହେଟାବାଘ ପରି ଏହି ଇନ୍ଦ୍ରିୟମାନେ ତୁମକୁ ଯେପରି ଖାଇ ନ ଯାଆନ୍ତି । ସ୍ତ୍ରୀମାନଙ୍କ ହୃଦୟ ହେଉଛି ହେଟାବାଘପରି ନିର୍ଦ୍ଦୟ । କୌଣସି ବ୍ୟକ୍ତିପ୍ରତି ତାଙ୍କର ବନ୍ଧୁଭାବ ଚିରକାଳ ରହେ ନାହିଁ । ସ୍ତ୍ରୀମାନଙ୍କ ଠାରେ କରୁଣା ନଥାଏ । ସେମାନେ ନିଷ୍ଠୁର । ଅଳ୍ପ କଥାରେ ସେମାନେ ଚିଡ଼ି ଯାଆନ୍ତି ଏବଂ ଅଳ୍ପସୁଖ ପାଇଁ ଦୁଃସାହସିକ କାର୍ଯ୍ୟମାନ କରି ଦିଅନ୍ତି । ସାମାନ୍ୟ ସ୍ୱାର୍ଥପାଇଁ ସେମାନେ ବିଶ୍ୱାସ ଦେଇ ସ୍ୱାମୀ ହେଉ, ଭ୍ରାତା ହେଉ, କାହାରିକୁ ମାରିବାକୁ ପଛାନ୍ତି ନାହିଁ ।।୩୬-୩୭।। ବିଶେଷତଃ ସ୍ୱେଚ୍ଛାଚାରିଣୀ କୁଳଟା ସ୍ତ୍ରୀମାନେ ମୂର୍ଖ ସ୍ୱାମୀମାନଙ୍କୁ କପଟପ୍ରେମ ଦେଖାଇ ମୋହିତ କରନ୍ତି, କିନ୍ତୁ ସେମାନଙ୍କପ୍ରତି ତାଙ୍କର ଟିକିଏ ସ୍ନେହ ନ ଥାଏ । ସେମାନେ ସବୁବେଳେ ନୂଆ ନୂଆ ପୁରୁଷ କାମନା କରୁଥାନ୍ତି ।।୩୮।। ରାଜେଶ୍ୱର, ଧୈର୍ଯ୍ୟ ଧର । ବର୍ଷେ ଅତୀତ ହେଲେ ଗୋଟିଏ ରାତି ତୁମେ ମୋ ସହିତ ସହବାସ କରିପାରିବ ଏବଂ ତଦ୍ୱାରା ତୁମର ଅନ୍ୟ ସନ୍ତାନ ଜନ୍ମ ହେବେ ।।୩୯।।

ଏହା ଶୁଣିବା ପରେ ପୁରୂରବା ଉର୍ବଶୀଙ୍କୁ ଗର୍ଭବତୀ ଦେଖି ନିଜ ନଗରୀକୁ ଫେରିଆସିଲେ । ବର୍ଷକ ପରେ ପୁଣି ସେହି ସ୍ଥାନକୁ ଆସି ରାଜା ବୀରପ୍ରସବିନୀ ଉର୍ବଶୀଙ୍କୁ ପାଇ ଅତିଶୟ ଆନନ୍ଦିତ ହେଲେ ଓ ତାଙ୍କ ସହିତ ଗୋଟିଏ ରାତି କଟାଇଲେ । ରାଜାଙ୍କୁ ଅତିଶୟ ବିରହକାତର ଦେଖି ଉର୍ବଶୀ କହିଲେ-- ।।୪୦-୪୧।। ରାଜା, ମୋ ପାଇଁ ଏ ଗନ୍ଧର୍ବମାନଙ୍କୁ ପ୍ରାର୍ଥନା କର, ଯେଉଁମାନେ ଚାହିଲେ ମୋତେ ତୁମକୁ ଦେଇପାରିବେ । ପରିକ୍ଷିତ, ରାଜା ପୁରୂରବା ଗନ୍ଧର୍ବମାନଙ୍କୁ ସ୍ତୁତି କରିବାରୁ ସେମାନେ ସନ୍ତୁଷ୍ଟ ହୋଇ ରାଜାଙ୍କୁ ଏକ ଅଗ୍ନିସ୍ଥାଳୀ (ଅଗ୍ନି ସ୍ଥାପନ କରିବାର ପାତ୍ର) ପ୍ରଦାନ କଲେ । ରାଜା ତାହାକୁ ଉର୍ବଶୀ ବୋଲି ମନେକରି ବନକୁ ବନ ବୁଲିବାକୁ ଲାଗିଲେ । ପରେ ତାହା ଉର୍ବଶୀ ନୁହେଁ, ଅଗ୍ନିସ୍ଥାଳୀ ବୋଲି ଜାଣିପାରି ଅଗ୍ନିସ୍ଥାଳୀକୁ ବନମଧ୍ୟରେ ପରିତ୍ୟାଗ କରି ସେ ଗୃହକୁ ଆସି ରାତ୍ରିକାଳରେ ଉର୍ବଶୀଙ୍କୁ ହିଁ ଧ୍ୟାନ କରିବାକୁ ଲାଗିଲେ । ଏହିପରି ତ୍ରେତାଯୁଗର ଆରମ୍ଭ ହେଲା କ୍ଷଣି ତାଙ୍କର ହୃଦୟରେ ତିନୋଟି ବେଦ ପ୍ରକଟିତ ହେଲା । ତାପରେ ସେ ଯେଉଁଠି ଅଗ୍ନିସ୍ଥାଳୀକୁ ଛାଡ଼ିଥିଲେ, ସେଠାକୁ ଗଲେ । ସେହି ସ୍ଥାନରେ ଶମୀ ବୃକ୍ଷର ଗର୍ଭରେ ଏକ ଅଶ୍ୱତ୍ଥ ବୃକ୍ଷ ଉଠିଆସୁଥିଲା । ସେହି ଅଶ୍ୱତ୍ଥ ବୃକ୍ଷଦ୍ୱାରା ଦୁଇଟି ଅରଣି (ମନ୍ଥନ କାଠ) ପ୍ରସ୍ତୁତ କରି ଉର୍ବଶୀ-ଲୋକ ଲାଭ କରିବା ଇଚ୍ଛାରେ ତଳ ଅରଣିକୁ ଉର୍ବଶୀ, ଉପର ଅରଣିକୁ ପୁରୂରବା ଏବଂ ମଝିରେ ଥିବା କାଠକୁ ପୁତ୍ରରୂପେ ଚିନ୍ତାକରି ମନ୍ତ୍ର ଅନୁସାରେ ମନ୍ଥନ କରିବାକୁ ଲାଗିଲେ ।।୪୨-୪୫।। ଏହିପରି ମନ୍ଥନ କରିବାରୁ ଅଗ୍ନି ଜାତ ହେଲା । ରାଜା ପୁରୂରବା ଅଗ୍ନି ଦେବତାଙ୍କୁ ଆହବନୀୟ, ଗାର୍ହପତ୍ୟ ଏବଂ ଦକ୍ଷିଣାଗ୍ନି-ଏହିପରି ତିନି ଭାଗରେ ବିଭକ୍ତ କରି ପୁତ୍ରରୂପରେ ଗ୍ରହଣ କରିନେଲେ ।।୪୬।।

ପୁଣି ଉର୍ବଶୀଲୋକର ଇଚ୍ଛାରେ ପୁରୂରବା ଏହି ତିନି ଅଗ୍ନିଦ୍ୱାରା ସର୍ବଦେବମୟ ଯଜ୍ଞେଶ୍ୱର ଭଗବାନ ଶ୍ରୀହରିଙ୍କୁ ଆରଧନା କରିବାକୁ ଲାଗିଲେ ।।୪୭।। ସତ୍ୟଯୁଗରେ ସମସ୍ତ ବେଦର ମୂଳ ପ୍ରଣବ (ଓଁକାର) ଏକମାତ୍ର ବେଦ ଥିଲା । ନାରାୟଣ ଥିଲେ ଏକମାତ୍ର ଦେବତା; ଏକମାତ୍ର ଅଗ୍ନି (ତିନୋଟି ନୁହେଁ) ଥିଲା ଏବଂ ହଂସ ନାମରେ ଏକମାତ୍ର ବର୍ଣ୍ଣ ଥିଲା ।।୪୮।। ପରିକ୍ଷିତ, ତ୍ରେତାର ଆରମ୍ଭରେ ପୁରୁରବାଙ୍କଠାରୁ ତିନୋଟି ବେଦର ଆବିର୍ଭାବ ହେଲା । ପୁରୂରବା ନିଜର ପୁତ୍ରରୂପୀ ଅଗ୍ନିଦ୍ୱାରା ଯଜ୍ଞ କରି ଗନ୍ଧର୍ବଲୋକ ଲାଭ କଲେ ।।୪୯।।

## ପଞ୍ଚଦଶ ଅଧ୍ୟାୟ

# ପରଶୁରାମ ଚରିତ

ଶ୍ରୀ ଶୁକଦେବ କହିଲେ, ପରିକ୍ଷିତ, ପୁରୁରବାଙ୍କର ଉର୍ବଶୀଙ୍କ ଗର୍ଭରୁ ଆୟୁ, ଶ୍ରୁତାୟୁ, ସତ୍ୟାୟୁ, ରୟ, ବିଜୟ ଓ ଜୟ ଏହି ଛ'ଜଣ ପୁତ୍ର ଜାତ ହେଲେ । ଶ୍ରୁତାୟୁଙ୍କ ପୁତ୍ର ବସୁମାନ୍, ସତ୍ୟାୟୁଙ୍କ ପୁତ୍ର ଶ୍ରୁତଞ୍ଜୟ, ରୟଙ୍କର ପୁତ୍ର ଏକ ଓ ଜୟଙ୍କର ପୁତ୍ର ଅମିତ ॥୧-୨॥ ବିଜୟଙ୍କ ପୁତ୍ର ଭୀମ, ଭୀମଙ୍କ ପୁତ୍ର କାଞ୍ଚନ, କାଞ୍ଚନଙ୍କ ପୁତ୍ର ହୋତ୍ରକ, ହୋତ୍ରକଙ୍କର ପୁତ୍ର ଜହ୍ନୁ, ଯେ କି ଗଙ୍ଗାଙ୍କୁ ଗୋଟିଏ ଆଞ୍ଜୁଳାରେ ପାନ କରିଦେଇଥିଲେ । ଜହ୍ନୁଙ୍କର ପୁତ୍ର ପୁରୁ, ପୁରୁଙ୍କର ପୁତ୍ର ବଳାକ ଏବଂ ବଳାକଙ୍କର ପୁତ୍ର ଅଜକ ॥୩॥

ଜକଙ୍କର ପୁତ୍ର କୁଶ, କୁଶଙ୍କର ଚାରି ପୁତ୍ର ଥିଲେ -- କୁଶାମ୍ବୁ, ତନୟ, ବସୁ ଏବଂ କୁଶନାଭ । କୁଶାମ୍ବୁଙ୍କ ପୁତ୍ରଙ୍କ ନାମ ଗାଧି ॥୪॥ ପରିକ୍ଷିତ, ଗାଧିଙ୍କ କନ୍ୟା ହେଲେ ସତ୍ୟବତୀ । ଏହି କନ୍ୟାକୁ ବିବାହ କରିବାପାଇଁ ଋଚୀକ ଋଷି ଗାଧିଙ୍କୁ ପ୍ରାର୍ଥନା କଲେ । ଗାଧି ଜାଣିଥିଲେ ଯେ, ଏ ତାଙ୍କ କନ୍ୟାର ଯୋଗ୍ୟପାତ୍ର ନୁହନ୍ତି । ତେଣୁ ସେ ଋଚୀକଙ୍କୁ କହିଲେ -- ॥୫॥ ମୁନିବର, ଆମର ବଂଶ ହେଉଛି କୁଶିକ ବଂଶ । ଏହି କନ୍ୟାପାଇଁ ଆପଣଙ୍କୁ ଶୁଳ୍କ ଦେବାକୁ ହେବ । ଏହି ଶୁଳ୍କ ହେଲା-- ଚନ୍ଦ୍ରମାର ଜ୍ୟୋତି ପରି ଶୁକ୍ଳବର୍ଣ୍ଣ ଏକ ହଜାର ଅଶ୍ୱ, ଯେଉଁ ଅଶ୍ୱମାନଙ୍କର ଗୋଟିଏ କାନ ଶ୍ୟାମଳ ବର୍ଣ୍ଣ ହୋଇଥିବ ॥୬॥ ଗାଧିଙ୍କର କଥା ଶୁଣି ଋଚୀକ ତାଙ୍କର ମତ ବୁଝିପାରିଲେ ଏବଂ ବରୁଣଙ୍କ ନିକଟକୁ ଯାଇ ତାଙ୍କୁ ସନ୍ତୁଷ୍ଟ କରି ଏହିପରି ହଜାରେ ଘୋଡ଼ା ଆଣି ଗାଧିଙ୍କୁ ଦେଲେ ଓ ସୁନ୍ଦରୀ ସତ୍ୟବତୀଙ୍କୁ ବିବାହ କଲେ ॥୭॥ ଥରେ ମହର୍ଷି ଋଚୀକଙ୍କୁ ତାଙ୍କର ପତ୍ନୀ ଏବଂ ଶାଶୂ--ଦୁହେଁ ପୁତ୍ରଲାଭ ପାଇଁ ପ୍ରାର୍ଥନା କଲେ । ମନ୍ତ୍ରଜ୍ଞ ଋଷି ଦୁହିଁଙ୍କପାଇଁ ଭିନ୍ନ ଭିନ୍ନ ମନ୍ତ୍ରରେ ଚରୁ ରଂଧନ କରି ସ୍ନାନ କରିବାକୁ ଗଲେ ॥୮॥

ସତ୍ୟବତୀଙ୍କର ମା ଭାବିଲେ ଯେ ଋଷି ନିଜର ପତ୍ନୀଙ୍କପାଇଁ ଶ୍ରେଷ୍ଠ ଚରୁ ରନ୍ଧନ କରିଛନ୍ତି । ତେଣୁ ସେ ନିଜର କନ୍ୟାଠାରୁ ସେହି ଚରୁକୁ ମାଗିନେଲେ ଏବଂ ସତ୍ୟବତୀ ତାଙ୍କ ମା'ଙ୍କ ଚରୁକୁ ସ୍ୱୟଂ ଭକ୍ଷଣ କଲେ ॥୯॥ ମୁନି ଏହା ଜାଣିପାରି ସତ୍ୟବତୀଙ୍କୁ କହିଲେ, ତୁମେ ଏକ ଅନର୍ଥ କାର୍ଯ୍ୟ କଲ । ତୁମର ପୁତ୍ର ଦୁର୍ଦାନ୍ତ କ୍ଷତ୍ରିୟ ହେବ ଓ ତୁମର ଭାଇ ହେବ ପରମ ଧାର୍ମିକ ଓ ବ୍ରହ୍ମଜ୍ଞ ॥୧୦॥ ଏହା ଶୁଣି ସତ୍ୟବତୀ ମୁନିଙ୍କୁ ପ୍ରାର୍ଥନା କରି ସନ୍ତୁଷ୍ଟ କଲେ ଏବଂ ଏହା ଯେପରି ନ ହୁଏ, ସେଥିପାଇଁ ପ୍ରାର୍ଥନା କଲେ । ଋଷି କହିଲେ, ଠିକ୍ ଅଛି, ତା'ହେଲେ ତୁମର ନାତି ଏହିପରି ଦୁର୍ଦାନ୍ତ ହେବ । ଏହାପରେ ସତ୍ୟବତୀଙ୍କ ଗର୍ଭରୁ ଜମଦଗ୍ନିଙ୍କର ଜନ୍ମ ହେଲା ॥୧୧॥ ସତ୍ୟବତୀ ଲୋକମାନଙ୍କର ପବିତ୍ରକାରିଣୀ, ପୁଣ୍ୟତୋୟା କୌଶିକୀ ନଦୀ ହୋଇଗଲେ । ଜମଦଗ୍ନି ରେଣୁଋଷିଙ୍କର କନ୍ୟା ରେଣୁକାଙ୍କୁ ବିବାହ କଲେ ॥୧୨॥ ଜମଦଗ୍ନିଙ୍କର ରେଣୁକାଙ୍କ ଗର୍ଭରୁ ବସୁମଦ ଆଦି ଅନେକ ସନ୍ତାନ ଜନ୍ମ ହେଲେ । କନିଷ୍ଠ ପୁତ୍ରଙ୍କର ନାମ ହେଲା ରାମ । ଏହି ରାମ ପରଶୁରାମ ଭାବରେ ସାରା ସଂସାରରେ ଖ୍ୟାତ ହେଲେ । କୁହାଯାଏ ଯେ ହୈହୟ ବଂଶକୁ ଶେଷ କରିବା ପାଇଁ ବିଷ୍ଣୁଙ୍କ ଅଂଶରେ ସେ ଜନ୍ମ ହୋଇଥିଲେ । ସେ ପୃଥିବୀକୁ ଏକୋଇଶ ବାର ନିଃକ୍ଷତ୍ରିୟ କରିଥିଲେ ॥୧୩-୧୪॥ କ୍ଷତ୍ରିୟମାନେ ତାଙ୍କ ପ୍ରତି ଗୁରୁତର ଅପରାଧ କରି ନ ଥିଲେ ମଧ୍ୟ ସେମାନେ ଅତିଶୟ ଗର୍ବୀ, ବେଦ ଓ ବ୍ରାହ୍ମଣଙ୍କ ବିରୋଧୀ, ରଜ ଓ ତମୋଗୁଣଯୁକ୍ତ ହୋଇ ପୃଥିବୀର ଭାରସ୍ୱରୂପ ହୋଇଥିଲେ । ତେଣୁ ସେମାନଙ୍କୁ ବିନାଶ କରି ସେ ପୃଥିବୀର ଭାରକୁ ଉଶ୍ୱାସ କରିଦେଇଥିଲେ ॥୧୫॥ ରାଜା ପରିକ୍ଷିତ ପଚାରିଲେ, ବ୍ରହ୍ମନ୍, ଅବଶ୍ୟ କ୍ଷତ୍ରିୟମାନେ ବିଷୟାସକ୍ତ ହୋଇପଡ଼ିଥିଲେ । କିନ୍ତୁ ପରଶୁରାମଙ୍କର ସେମାନେ ଏପରି କ'ଣ ଅପରାଧ କରିଥିଲେ ଯେ ବାରମ୍ବାର ସେ କ୍ଷତ୍ରିୟବଂଶର ସଂହାର କରିଥିଲେ ॥୧୬॥ ଶ୍ରୀ ଶୁକଦେବ କହିଲେ, ରାଜା, ହୈହୟମାନଙ୍କର ରାଜା କ୍ଷତ୍ରିୟଶ୍ରେଷ୍ଠ

କାର୍ତ୍ତବୀର୍ଯ୍ୟାର୍ଜୁନ ବହୁ ସେବାଶୁଶ୍ରୂଷା ଦ୍ୱାରା ଭଗବାନଙ୍କର ଅଂଶାବତାର ଦତ୍ତାତ୍ରେୟଙ୍କୁ ସନ୍ତୁଷ୍ଟ କରିଥିଲେ ଏବଂ ତାଙ୍କଠାରୁ ହଜାରେ ବାହୁ ଲାଭ କରିବା ସଙ୍ଗେ ସଙ୍ଗେ ଯୁଦ୍ଧରେ ଦୁର୍ଜୟ ହେବେ ବୋଲି ବରଲାଭ କଲେ । ଏହା ସହିତ ସେ ଇନ୍ଦ୍ରିୟମାନଙ୍କର ଅପୂର୍ବ ଶକ୍ତି, ତେଜ, ବୀର୍ଯ୍ୟ, ଯଶ, ଐଶ୍ୱର୍ଯ୍ୟ ଓ ଶାରୀରିକ ବଳର ଅଧିକାର ଲାଭ କଲେ ॥୧୭-୧୮॥ ସେ ଯୋଗେଶ୍ୱର ହୋଇଗଲେ । ଅଣିମା, ଲଘିମା ଆଦି ସମସ୍ତ ସିଦ୍ଧି ତାଙ୍କର କରଗତ ଥିଲା, ପବନ ପରି ସେ ସମସ୍ତ ଜଗତରେ ଭ୍ରମଣ କରିପାରୁଥିଲେ ॥୧୯॥ ଥରେ ସେ ବୈଜୟନ୍ତୀମାଳା ପରିଧାନ କରି ସୁନ୍ଦରୀ ସ୍ତ୍ରୀମାନଙ୍କ ସହିତ ନର୍ମଦାରେ ଜଳକ୍ରୀଡ଼ା କରୁଥିଲେ । ସେ ନିଜର ସହସ୍ର ବାହୁରେ ନଦୀର ପ୍ରବାହକୁ ଅବରୋଧ କରି ଦେଇଥିଲେ । ଏହି ସମୟରେ ବୀରଗର୍ବରେ ରାବଣ ନର୍ମଦା ନଦୀ କୂଳରେ ପୂଜା କରୁଥିଲା । ନଦୀଜଳ ଉଜାଣି ଉଠି କୂଳର ଭୂମିକୁ ପ୍ଳାବିତ କରିବା ସଙ୍ଗେ ସଙ୍ଗେ ରାବଣର ଶିବିରକୁ ମଧ୍ୟ ବୁଡ଼ାଇଦେବାକୁ ବସିଲା । ରାବଣ ସହସ୍ରାର୍ଜୁନ (କାର୍ତ୍ତବୀର୍ଯ୍ୟ)ଙ୍କ ପରାକ୍ରମକୁ ସହି ପାରିଲା ନାହିଁ ॥୨୦-୨୧॥ ସେ କାର୍ତ୍ତବୀର୍ଯ୍ୟଙ୍କୁ ଯୁଦ୍ଧପାଇଁ ଆହ୍ୱାନ କରିବାରୁ କାର୍ତ୍ତବୀର୍ଯ୍ୟ ସ୍ତ୍ରୀମାନଙ୍କ ସମକ୍ଷରେ ରାବଣକୁ ଅନାୟାସରେ ଧରି ନେଇ ନିଜର ରାଜଧାନୀ ମାହିଷ୍ମତୀ ନଗରୀରେ ବାନରପରି ବାନ୍ଧି ରଖିଲେ ଏବଂ ଅବଜ୍ଞାପୂର୍ବକ କିଛିଦିନପରେ ଛାଡ଼ିଦେଲେ ॥୨୨॥

ଦିନେ କାର୍ତ୍ତବୀର୍ଯ୍ୟାର୍ଜୁନ ନିର୍ଜନ ଅରଣ୍ୟରେ ମୃଗୟାପାଇଁ ବୁଲୁଥିବା ବେଳେ ଦୈବାତ୍ ଜମଦଗ୍ନିଙ୍କର ଆଶ୍ରମରେ ପହଞ୍ଚିଲେ । ତପସ୍ୱୀ ଜମଦଗ୍ନି କାମଧେନୁଙ୍କ ସହାୟତାରେ ସମସ୍ତ ସୈନ୍ୟ, ଅମାତ୍ୟ ଓ ବାହନଙ୍କ ସହିତ ରାଜାଙ୍କୁ ସତ୍କାର କଲେ ॥୨୩-୨୪॥ ହୈହୟମାନଙ୍କର ରାଜା ବୀର ଅର୍ଜୁନ ଜମଦଗ୍ନିଙ୍କର ଐଶ୍ୱର୍ଯ୍ୟ ତୁଳନାରେ ନିଜର ଐଶ୍ୱର୍ଯ୍ୟକୁ ନ୍ୟୂନ ବୋଲି ବିଚାର କଲେ । ତେଣୁ ସେହି ସତ୍କାରରେ ସନ୍ତୁଷ୍ଟ ନ ହୋଇ ସେ କାମଧେନୁଟିକୁ ନେବାପାଇଁ ଇଚ୍ଛାକଲେ ॥୨୫॥ ଗର୍ବରେ ଉନ୍ମତ୍ତ ରାଜା ବଳପୂର୍ବକ କାମଧେନୁକୁ ନେଇଆସିବାପାଇଁ ନିଜର ସେବକମାନଙ୍କୁ ଆଜ୍ଞା ଦେଲେ । ସେମାନେ ରାଜାର ଆଜ୍ଞାରେ କ୍ରନ୍ଦନ କରୁଥିବା ସବତ୍ସା କାମଧେନୁକୁ ମାହିଷ୍ମତୀକୁ ନେଇଗଲେ ॥୨୬॥ ସେମାନେ ଚାଲିଯିବା ପରେ ପରଶୁରାମ ଆଶ୍ରମରେ ପହଞ୍ଚିଲେ ଏବଂ ରାଜାଦ୍ୱାରା କରାଯାଇଥିବା ନିର୍ଯାତନାର ସମ୍ବାଦ ଶୁଣି ଆହତ ସର୍ପ ପରି କ୍ରୋଧରେ ଗର୍ଜନ କଲେ । ସେ ନିଜର ଭୟଙ୍କର ପରଶୁ, ଧନୁର୍ବାଣ, ତୂଣୀର ଓ ବର୍ମ ପ୍ରଭୃତି ଧାରଣ କରି ସିଂହ ହାତୀକୁ ଆକ୍ରମଣ କରିବା ପରି ରାଜାର ପଛେପଛେ ଗୋଡ଼ାଇଲେ ॥୨୭-୨୮॥ ସେତେବେଳେ ରାଜା ନିଜର ନଗରୀ ମଧ୍ୟରେ ପ୍ରବେଶ କରୁଥିଲେ, ସେ ଦେଖିଲେ ଯେ ପର୍ଶୁରାମ ତାଙ୍କଆଡ଼କୁ ଧାଇଁ ଆସୁଛନ୍ତି । ସେ ଧନୁର୍ବାଣ, ପରଶୁ ଓ ଅନ୍ୟାନ୍ୟ ଆୟୁଧମାନ ଧରିଛନ୍ତି । ମୃଗଚର୍ମ ପରିହିତ ଏହି ଭାର୍ଗବଶ୍ରେଷ୍ଠଙ୍କର ଜଟାଜୂଟରୁ ସୂର୍ଯ୍ୟକିରଣ ପରି ତେଜ ବାହାରୁଛି । ସେ ପର୍ଶୁରାମଙ୍କୁ ବାଧା ଦେବାପାଇଁ ସଙ୍ଗେ ସଙ୍ଗେ ଖଡ୍ଗ, ବାଣ, ଋଷ୍ଟି, ଶତଘ୍ନୀ ଏବଂ ଶକ୍ତି ଆଦି ଆୟୁଧରେ ସଜ୍ଜିତ ହାତୀ, ଘୋଡ଼ା ଏବଂ ପଦାତିଯୁକ୍ତ ସତର ଅକ୍ଷୌହିଣୀ ସେନା ପଠାଇଲେ । ପର୍ଶୁରାମ ଏକାକୀ ଏ ବିଶାଳ ଚତୁରଙ୍ଗ ସେନାକୁ ବିନାଶ କଲେ ॥୨୯-୩୦॥ ପରଶୁରାମଙ୍କର ଗତି ଥିଲା ମନ ଓ ବାୟୁର ବେଗ ପରି । ସେ ସେହି ବେଗରେ ଗତି କରି ନିଜ ପରଶୁର ପ୍ରହାରରେ ଅଶ୍ୱମାନଙ୍କ ସହିତ ରଥୀମାନଙ୍କର ବାହୁ, ଜଂଘ, ମସ୍ତକ ଆଦି କାଟି ଚାଲିଥିଲେ । ନିହତ ଶତ୍ରୁମାନଙ୍କର ଛିନ୍ନଭିନ୍ନ ଅଙ୍ଗ ପ୍ରତ୍ୟଙ୍ଗଦ୍ୱାରା ରଣଭୂମି ପୂର୍ଣ୍ଣ ହୋଇଗଲା ॥୩୧॥ ହୈହୟରାଜ ରୁଧିରକର୍ଦ୍ଦମାକ୍ତ ରଣଭୂମିରେ ପରଶୁରାମଙ୍କ କୁଠାର ଓ ଶରାଘାତଦ୍ୱାରା ବର୍ମ, ଧ୍ୱଜ ଓ ଧନୁର୍ବାଣଧାରୀ ନିଜ ସୈନ୍ୟମାନଙ୍କୁ ମରି ପଡ଼ିବାର ଦେଖି କ୍ରୁଦ୍ଧ ହୋଇଉଠିଲେ ଓ ନିଜେ ଯାଇ ଯୁଦ୍ଧକ୍ଷେତ୍ରରେ ଉପସ୍ଥିତ ହେଲେ ॥୩୨॥ ସେ ନିଜର ପାଞ୍ଚଶହ ଧନୁ ଯୋଡ଼ି ପରଶୁରାମଙ୍କୁ ନିହତ କରିବା ପାଇଁ ସେଥିରେ ଶହଶହ ଶର ସଂଧାନ କରିବାକୁ ଲାଗିଲା । କିନ୍ତୁ ଅସ୍ତ୍ରଧାରୀଙ୍କ ମଧ୍ୟରେ ଶ୍ରେଷ୍ଠ ପରଶୁରାମ ନିଜର ଗୋଟିଏ ଧନୁରେ ଶର ସନ୍ଧାନ କରି ତାଙ୍କର ସମସ୍ତ ବାଣକୁ କାଟିଦେଲେ ॥୩୩॥ କାର୍ତ୍ତବୀର୍ଯ୍ୟ ପାହାଡ଼ ଓ ବୃକ୍ଷମାନଙ୍କୁ ଉପାଡ଼ି ପକାଇ ତୀବ୍ର ବେଗରେ ପର୍ଶୁରାମଙ୍କ ଆଡ଼କୁ ଦଉଡ଼ି ଆସିଲେ, କିନ୍ତୁ ପର୍ଶୁରାମ ନିଜର ତୀକ୍ଷ୍ଣଧାର କୁଠାରଦ୍ୱାରା ସର୍ପର ଫଣା ତୁଲ୍ୟ ତାଙ୍କର ବାହୁମାନଙ୍କୁ ଛେଦନ କଲେ ॥୩୪॥ ତା'ପରେ ପର୍ବତର ଶୃଙ୍ଗପରି

ଛିନ୍ନବାହୁ କାର୍ତ୍ତବୀର୍ଯ୍ୟାର୍ଜ୍ଜୁନଙ୍କ ମସ୍ତକକୁ ସେ ବଳପୂର୍ବକ ଛେଦନ କଲେ । ପିତାର ମୃତ୍ୟୁରେ ଦଶହଜାର ପୁତ୍ର ଭୟରେ ଡରି ପଳାଇଗଲେ ॥୩୫॥ ଶତ୍ରୁହନ୍ତା ପରଶୁରାମ ବତ୍ସାସହ ଦୁଃଖିନୀ କାମଧେନୁକୁ ମୁକୁଳାଇ ଆଣି ଆଶ୍ରମରେ ପିତାଙ୍କୁ ଫେରାଇଦେଲେ ଏବଂ ସେଠାରେ ସେ ଯାହା କିଛି କରିଥିଲେ, ତାହା ପିତା ଓ ଭ୍ରାତାମାନଙ୍କ ଆଗରେ ବର୍ଣ୍ଣନା କଲେ । ତାହା ଶୁଣି ଜମଦଗ୍ନି କହିଲେ -- ॥୩୬-୩୭॥ ହେ ରାମ, ହେ ମହାବାହୁ, ତୁମେ ଏଡ଼େ ପାପକର୍ମ କଲ ! ସାମାନ୍ୟ କାରଣରୁ ସର୍ବଦେବମୟ ରାଜାଙ୍କୁ ତୁମେ ନିହତ କରିଛ ॥୩୮॥ ବତ୍ସ, ଆମେ ହେଉଛେ ବ୍ରାହ୍ମଣ । ଆମର କ୍ଷମାଗୁଣ ଯୋଗୁ ଆମେ ପୂଜ୍ୟ ହୋଇଥାଏ । ଏହି କ୍ଷମାଗୁଣ ପାଇଁ ବ୍ରହ୍ମା ବ୍ରହ୍ମପଦ ଲାଭ କରିଛନ୍ତି ॥୩୯॥ କ୍ଷମାଗୁଣରେ ହିଁ ବ୍ରାହ୍ମଣମାନଙ୍କର ତେଜ ସୂର୍ଯ୍ୟଙ୍କ ପ୍ରଭାପରି ଶୋଭାମାନ ହୋଇଉଠେ । ସର୍ବଶକ୍ତିମୟ ଭଗବାନ୍ ଶ୍ରୀହରି କ୍ଷମାଶୀଳମାନଙ୍କ ପ୍ରତି ଶୀଘ୍ର ପ୍ରସନ୍ନ ହୁଅନ୍ତି ॥୪୦॥ ବତ୍ସ, ଚକ୍ରବର୍ତ୍ତୀ ରାଜାର ବଧ ବ୍ରାହ୍ମଣବଧଠାରୁ ମଧ୍ୟ ଗୁରୁତର । ବତ୍ସ, ତୁମେ ଭଗବାନ୍ ଶ୍ରୀ ଅଚ୍ୟୁତଙ୍କ ଠାରେ ଚିତ୍ତନିବେଶ କରି ତୀର୍ଥଭ୍ରମଣଦ୍ୱାରା ଏହି ପାପକୁ କ୍ଷାଳନ କର ॥୪୧॥

## ଷୋଡ଼ଶ ଅଧ୍ୟାୟ

# କ୍ଷତ୍ରିୟ ସଂହାର ଓ ବିଶ୍ୱାମିତ୍ରଙ୍କର ବଂଶ

ଶ୍ରୀ ଶୁକଦେବ କହିଲେ, ପରିକ୍ଷିତ, ପରଶୁରାମ ପିତାଙ୍କର ଉପଦେଶକୁ 'ଯେ ଆଜ୍ଞା' ବୋଲି କହି ସ୍ୱୀକାର କଲେ ଏବଂ ବର୍ଷେକାଳ ତୀର୍ଥ ଯାତ୍ରା କରି ନିଜ ଆଶ୍ରମକୁ ଫେରି ଆସିଲେ ॥୧॥ ଦିନକର କଥା । ପରଶୁରାମଙ୍କର ମାତା ଗଂଗାକୂଳକୁ ଯାଇଥିଲେ । ସେଠାରେ ସେ ଦେଖିଲେ ଯେ ଗନ୍ଧର୍ବରାଜ ଚିତ୍ରରଥ ପଦ୍ମର ମାଳା ପକାଇ ଅପ୍‌ସରାମାନଙ୍କ ସହିତ କ୍ରୀଡ଼ା କରୁଛନ୍ତି ॥୨॥ ରେଣୁକା ନଦୀରୁ ଜଳ ଆଣିବା ପାଇଁ ଯାଇଥିଲେ । କିନ୍ତୁ ତାହା ଭୁଲି ଯାଇ କ୍ରୀଡ଼ାରତ ଗନ୍ଧର୍ବରାଜଙ୍କୁ ଦେଖିବାକୁ ଲାଗିଲେ । ଏଣେ ପତିଙ୍କର ହବନର ସମୟ ହୋଇଗଲା । ଚିତ୍ରରଥଙ୍କ ପ୍ରତି ତାଙ୍କର ମନ ମଧ୍ୟ କିଞ୍ଚିତ୍ ଆକୃଷ୍ଟ ହୋଇଥିଲା । ହବନର ସମୟ ଗଡ଼ିଗଲାଣି ବୋଲି ଜାଣି ସେ ମୁନିଙ୍କର ଶାପ ଭୟରେ ଅତିଶୟ ଡରିଗଲେ । ଶୀଘ୍ର ଆଶ୍ରମକୁ ଫେରି ଆସି କଳସଟି ମହର୍ଷିଙ୍କ ଆଗରେ ରଖି ହାତ ଯୋଡ଼ି ଠିଆ ହୋଇରହିଲେ । ପତ୍ନୀଙ୍କର ଏହି ମାନସିକ ବ୍ୟଭିଚାର କଥା ଜାଣି, ମୁନି ଅତିଶୟ କ୍ରୋଧରେ କହିଲେ, ପୁତ୍ରମାନେ, ଏହି ପାପିନୀକୁ ହତ୍ୟା କର । କିନ୍ତୁ ପୁତ୍ରମାନେ ତାହା କଲେ ନାହିଁ ॥୩-୫॥ ତା ପରେ ଜମଦଗ୍ନି ପରଶୁରାମଙ୍କୁ ଆଦେଶ କଲେ । ପରଶୁରାମ ପିତାଙ୍କ ସମାଧିର ଓ ତପୋବଳର ପ୍ରଭାବ କ'ଣ ତାହା ଭଲ ଭାବରେ ଜାଣିଥିଲେ । ସେ ମାତାଙ୍କ ସହିତ ଭ୍ରାତାମାନଙ୍କୁ ବଧ କଲେ ॥୬॥ ସତ୍ୟବତୀନନ୍ଦନ ମହର୍ଷି ଜମଦଗ୍ନି ପରଶୁରାମଙ୍କ କାର୍ଯ୍ୟରେ ଅତିଶୟ ସନ୍ତୁଷ୍ଟ ହୋଇ କହିଲେ, 'ତୁମର ଯାହା ଇଚ୍ଛା ହେଉଛି, ବର ମାଗିନିଅ ।' ପରଶୁରାମ କହିଲେ, 'ମୋର ମାତା ଓ ଭ୍ରାତାମାନେ ଜୀବିତ ହୋଇଉଠନ୍ତୁ । ମୁଁ ସେମାନଙ୍କୁ ମାରିଛି ବୋଲି ସେମାନଙ୍କ ମନରେ ନ ରହୁ ।'୭॥ ନିଦରୁ ଉଠିପଡ଼ିବା ଭଳି ସେମାନେ ସମସ୍ତେ ସୁସ୍ଥ ଶରୀରରେ ଉଠିପଡ଼ିଲେ । ପରଶୁରାମ ନିଜ ପିତାଙ୍କ ତପସ୍ୟାର ଅମୋଘ ଶକ୍ତି ଜାଣିଥିବାଯୋଗୁଁ ସ୍ୱଜନଙ୍କୁ ବଧ କରିଥିଲେ ॥୮॥ ପରିକ୍ଷିତ, ସହସ୍ରାର୍ଜ୍ଜୁନଙ୍କର ପୁତ୍ରମାନେ ଯୁଦ୍ଧରେ ପରାସ୍ତ ହୋଇଥିଲେ ମଧ ନିଜର ପିତୃବଧକୁ ସ୍ମରଣ କରି ଶାନ୍ତିରେ ରହିପାରୁ ନଥିଲେ ॥୯॥ ଦିନେ ପରଶୁରାମ ଭାଇମାନଙ୍କ ସାଙ୍ଗରେ ବନକୁ ଯାଇଥିଲେ । କାର୍ତ୍ତବୀର୍ଯ୍ୟର ପୁତ୍ରମାନେ ସେହି ସୁଯୋଗ ଦେଖି ଶତ୍ରୁତା ସାଧିବା ଉଦ୍ଦେଶ୍ୟରେ ଜମଦଗ୍ନିଙ୍କ ଆଶ୍ରମରେ ଯାଇ ପହଞ୍ଚିଲେ ॥୧୦॥ ସେ ସମୟରେ ମହର୍ଷି ଜମଦଗ୍ନି ଯଜ୍ଞଶାଳାରେ ବସିଥିଲେ ଏବଂ ଉତ୍ତମଶ୍ଳୋକ ଭଗବାନ୍‌ଙ୍କ ଠାରେ ସମସ୍ତ ଚିତ୍ତବୃତ୍ତି ନିବେଶକରି

ଧ୍ୟାନମଗ୍ନ ଥିଲେ । ଚକ୍ରାନ୍ତକାରୀ ପାପୀମାନେ ତାଙ୍କୁ ହତ୍ୟା କଲେ ॥୧୧॥ ପରଶୁରାମଙ୍କର ମାତା କାତର ହୋଇ ନିଜ ପତିଙ୍କର ପ୍ରାଣଭିକ୍ଷା କଲେ ମଧ୍ୟ ଅତି ନିଷ୍ଠୁର ଏହି ନୀଚ କ୍ଷତ୍ରିୟଗଣ ବଳପୂର୍ବକ ତାଙ୍କ ଶିରଶ୍ଛେଦନ କଲେ । ଶୋକାର୍ତ୍ତା ସତୀ ରେଣୁକା ଛାତିକୁ ହାତରେ ପିଟିପିଟି 'ହା ରାମ, ହା ତାତ' କହି ଉଚ୍ଚସ୍ୱରରେ ରୋଦନ କରିବାକୁ ଲାଗିଲେ ॥୧୨-୧୩॥ ବହୁଦୂରରୁ ପରଶୁରାମ ମାତାଙ୍କର 'ହା ରାମ' କ୍ରନ୍ଦନର ସ୍ୱର ଶୁଣିବାକୁ ପାଇଲେ । ସେ ଶୀଘ୍ର ଆଶ୍ରମକୁ ଦଉଡ଼ିଆସି ଦେଖିଲେ ତାଙ୍କର ପିତାଙ୍କୁ ହତ୍ୟା କରାଯାଇଛି ॥୧୪॥ ସେ ଦୁଃଖ, ଅସହିଷ୍ଣୁତା, କ୍ରୋଧ ଓ ଶୋକର ଆବେଗରେ କିଂକର୍ତ୍ତବ୍ୟବିମୂଢ଼ ହୋଇ ରୋଦନ କରିବାକୁ ଲାଗିଲେ । ହାୟ, ହାୟ, ହେ ତାତ ! ଆପଣ ମହାତ୍ମା ଓ ଧର୍ମନିଷ୍ଠ ହୋଇ ମଧ୍ୟ ମୃତ୍ୟୁବରଣ କଲେ ଓ ଆମକୁ ଛାଡ଼ି ସ୍ୱର୍ଗକୁ ଚାଲିଗଲେ ॥୧୫॥ ଏହିପରି ବିଳାପ କରି ପିତାଙ୍କର ମୃତ ଦେହକୁ ଭାଇମାନଙ୍କ ଜିମାରେ ଛାଡ଼ିଦେଇ ହାତରେ କୁଠାର ଧରି ପ୍ରତିଜ୍ଞାକଲେ ଯେ ସେ କ୍ଷତ୍ରିୟବଂଶକୁ ନିପାତ କରିବେ ॥୧୬॥

ପରିକ୍ଷିତ, ଏହି ବ୍ରହ୍ମହତ୍ୟାପାଇଁ ମାହିଷ୍ମତୀନଗରୀ ଶ୍ରୀହୀନ ଦେଖାଯାଉଥିଲା । ସେଠାରେ ସେ ସହସ୍ରାର୍ଜୁନର ପୁତ୍ରମାନଙ୍କର ଗୋଟି ଗୋଟି କରି ଶିରଶ୍ଛେଦନ କଲେ ଏବଂ ଏମାନଙ୍କ ଛିନ୍ନ ଶିରଯାକ ପର୍ବତ ଆକାରରେ ଗଦା ହୋଇଗଲା ॥୧୭॥ ଏମାନଙ୍କ ରକ୍ତରେ ଏକ ଭୟଙ୍କର ନଦୀ ପ୍ରବାହିତ ହେଲା ଯାହାକି ବ୍ରାହ୍ମଣବିରୋଧୀଙ୍କ ହୃଦୟରେ ଭୟର ସଞ୍ଚାର କରୁଥିଲା । ପରଶୁରାମ ଦେଖିଲେ ଯେ ଅତ୍ୟାଚାରୀ କ୍ଷତ୍ରିୟମାନଙ୍କର ନ୍ୟାୟାନ୍ୟାୟ ଜ୍ଞାନ ନାହିଁ, ତେଣୁ ସେ ପିତୃବଧକୁ କାରଣ କରି ଏହି ପୃଥିବୀକୁ ଏକୋଇଶବାର ନିଃକ୍ଷତ୍ରିୟ କଲେ ଏବଂ କୁରୁକ୍ଷେତ୍ରର ସମନ୍ତପଞ୍ଚକରେ କ୍ଷତ୍ରିୟମାନଙ୍କର ରକ୍ତରେ ପାଞ୍ଚୋଟି ହ୍ରଦ ସୃଷ୍ଟି କଲେ ॥୧୮-୧୯॥ ତା ପରେ ପିତାଙ୍କର ମସ୍ତକକୁ ତାଙ୍କ ଦେହରେ ଯୋଡ଼ିଦେଇ ଯଜ୍ଞମାନଙ୍କଦ୍ୱାରା ସର୍ବଦେବମୟ ଆତ୍ମସ୍ୱରୂପ ପରମେଶ୍ୱରଙ୍କୁ ଆରାଧନା କଲେ ॥୨୦॥ ଏହି ଯଜ୍ଞରେ ସେ ହୋତାଙ୍କୁ ପୂର୍ବଦିଗ, ବ୍ରହ୍ମାଙ୍କୁ ଦକ୍ଷିଣଦିଗ, ଅଧ୍ୱର୍ଯ୍ୟୁଙ୍କୁ ପଶ୍ଚିମଦିଗ ଓ ଉଦ୍‌ଗାତାଙ୍କୁ ଉତ୍ତରଦିଗ ଦାନ କଲେ ॥୨୧॥ ଏହିପରି ଅନ୍ୟ ଋତ୍ୱିକମାନଙ୍କୁ ଅଗ୍ନିକୋଣ ଆଦି ବିଦିଗସବୁ ଦାନ କଲେ । କଶ୍ୟପଙ୍କୁ ମଧ୍ୟଭୂମି ଦେଲେ । ଉପଦ୍ରଷ୍ଟାଙ୍କୁ ଆର୍ଯ୍ୟାବର୍ତ୍ତ ଓ ସଦସ୍ୟମାନଙ୍କୁ ଅନ୍ୟ ଭୂମି ଦାନ କଲେ ॥୨୨॥ ତାହାପରେ ପରମ ପବିତ୍ର ସରସ୍ୱତୀ ନଦୀରେ ଯଜ୍ଞଶେଷ (ଅବଭୃଥ) ସ୍ନାନ କରି ସମସ୍ତ ପାପରୁ ମୁକ୍ତ ହେଲେ ଏବଂ ମେଘଶୂନ୍ୟ ସୂର୍ଯ୍ୟପରି ଶୋଭାପାଇଲେ ॥୨୩॥ ଜମଦଗ୍ନି ସ୍ୱଦେହ ଲାଭ କରି ପରଶୁରାମଙ୍କ ଦ୍ୱାରା ଅର୍ଚ୍ଚିତ ହେଲେ । ଏହି ଦେହ ତାଙ୍କ (ପିତୃଭକ୍ତିର) ସ୍ମୃତିସ୍ୱରୂପ ହେଲା ଏବଂ ସେ ସପ୍ତର୍ଷିମଣ୍ଡଳରେ ସ୍ଥାନ ପାଇ ସପ୍ତମ ଋଷି ହୋଇଗଲେ ॥୨୪॥ ଜମଦଗ୍ନିନନ୍ଦନ କମଳଲୋଚନ ଭଗବାନ ପରଶୁରାମ ଆଗାମୀ ମନ୍ୱନ୍ତରରେ ସପ୍ତର୍ଷିମଣ୍ଡଳରେ ରହି ବେଦର ପ୍ରବର୍ତ୍ତକ ହେବେ ॥୨୫॥ ଏବେ ମଧ୍ୟ ପରଶୁରାମ କାହାରିକୁ କିଛି ଦଣ୍ଡ ନ ଦେଇ ଶାନ୍ତଚିତ୍ତରେ ମହେନ୍ଦ୍ର ପର୍ବତରେ ବାସ କରୁଛନ୍ତି । ସେଠାରେ ସିଦ୍ଧ, ଗନ୍ଧର୍ବ ଓ ଚାରଣମାନେ ତାଙ୍କର ମହାନ୍ ଚରିତକୁ ଗାନ କରୁଛନ୍ତି ॥୨୬॥ ଭୃଗୁବଂଶରେ ଅବତୀର୍ଣ୍ଣ ହୋଇ ସମସ୍ତ ଜୀବଙ୍କର ଆତ୍ମସ୍ୱରୂପ ଭଗବାନ୍ ଶ୍ରୀହରି ପୃଥିବୀର ଭାରଭୂତ କ୍ଷତ୍ରିୟମାନଙ୍କୁ ବହୁବାର ବିନାଶ କରିଥିଲେ ॥୨୭॥

ଗାଧିଙ୍କଠାରୁ ପ୍ରଜ୍ୱଳିତ ଅଗ୍ନିପରି ତେଜସ୍ୱୀ ବିଶ୍ୱାମିତ୍ର ଜନ୍ମଗ୍ରହଣ କଲେ । ସେ ତପସ୍ୟାଦ୍ୱାରା ନିଜର କ୍ଷତ୍ରିୟତ୍ୱ ତ୍ୟାଗ କରି ବ୍ରହ୍ମର୍ଷିପଦ ଲାଭ କଲେ ॥୨୮॥ ପରିକ୍ଷିତ, ବିଶ୍ୱାମିତ୍ରଙ୍କର ଶହେପୁଅ ଥିଲେ । ଏମାନଙ୍କ ମଧ୍ୟରେ ପ୍ରଧାନ ମଧ୍ୟମପୁତ୍ରଙ୍କ ନାମ ଥିଲା ମଧୁଚ୍ଛନ୍ଦା । ଏଥିପାଇଁ ସବୁ ପୁଅମାନେ 'ମଧୁଚ୍ଛନ୍ଦସ' ନାମରେ ଖ୍ୟାତ ହେଲେ ॥୨୯॥ ବିଶ୍ୱାମିତ୍ର ଭୃଗୁବଂଶୀ ଅଜୀଗର୍ତ୍ତଙ୍କର ପୁତ୍ର ନିଜର ଭଣଜା ଶୁନଃଶେପଙ୍କୁ ପୁତ୍ରରୂପେ ଗ୍ରହଣ କଲେ । ଶୁନଃଶେପଙ୍କର ଅନ୍ୟ ନାମ ଦେବରାତ ଥିଲା । ସେ ପୁତ୍ରମାନଙ୍କୁ ଡାକି କହିଲେ, ତୁମେମାନେ ଏହାଙ୍କୁ ନିଜର ବଡ଼ଭାଇ ବୋଲି ଗ୍ରହଣକର ॥୩୦॥ ଏ ସେହି ଶୁନଃଶେପ, ଯେ କି ହରିଶ୍ଚନ୍ଦ୍ରଙ୍କ ଯଜ୍ଞରେ ଯଜ୍ଞପଶୁରୂପେ ବିକ୍ରୀ ହୋଇଥିଲେ ଏବଂ ପ୍ରଜାପତି ଆଦି ଦେବତାମାନଙ୍କୁ ସ୍ତୁତି କରି ପାଶ ବନ୍ଧନରୁ ମୁକ୍ତ ହୋଇଥିଲେ ॥୩୧॥ ଏହି ତପସ୍ୱୀ ଶୁନଃଶେପଙ୍କୁ ଯଜ୍ଞରେ ରକ୍ଷା କରି ଦେବତାମାନେ ବିଶ୍ୱାମିତ୍ରଙ୍କୁ ଦାନ କରିଥିଲେ,ତେଣୁ

ତାଙ୍କର ନାମ 'ଦେବରାତ' ହେଲା ଏବଂ ସେ ଗାଧିବଂଶରେ ଗଣାଗଲେ ।।୩୨।। ବିଶ୍ୱାମିତ୍ରଙ୍କର ପୁଅମାନଙ୍କ ମଧ୍ୟରୁ ଯେଉଁମାନେ ମଧୁଚ୍ଛନ୍ଦାଙ୍କଠାରୁ ବଡ଼ ଥିଲେ, ସେମାନେ ଶୁନଃଶେପଙ୍କୁ ଜ୍ୟେଷ୍ଠ ବୋଲି ସ୍ୱୀକାର କଲେ ନାହିଁ । ସେଥିରେ ବିଶ୍ୱାମିତ୍ର କ୍ରୁଦ୍ଧ ହୋଇ ଅଭିଶାପ ଦେଲେ, 'ଆରେ ଦୁଷ୍ଟ, ତୁମେମାନେ ସବୁ ମ୍ଳେଚ୍ଛ ହୋଇଯାଅ' ।।୩୩।। ତା ପରେ ମଧ୍ୟମପୁତ୍ର ମଧୁଚ୍ଛନ୍ଦା ତାଙ୍କ ସାନ ପଚାଶଜଣ ଭାଇଙ୍କ ସହିତ ପିତାଙ୍କ ପାଖକୁ ଆସି କହିଲେ, 'ଆପଣ ଯାହା କହିବେ, ଆମେ ତାହା ହିଁ ପାଳନ କରିବୁ ।'୩୪।। ଏହା କହି ସେମାନେ ମନ୍ତ୍ରଦ୍ରଷ୍ଟା ଶୁନଃଶେପଙ୍କୁ ଜ୍ୟେଷ୍ଠ ଭ୍ରାତା ରୂପେ ମାନିନେଲେ ଏବଂ ତାଙ୍କର ଆନୁଗତ୍ୟ ସ୍ୱୀକାର କଲେ । ଏଥିରେ ବିଶ୍ୱାମିତ୍ର ସନ୍ତୁଷ୍ଟ ହୋଇ କହିଲେ, 'ତୁମେମାନେ ମୋର କଥା ମାନି ମୋର ସମ୍ମାନ ରକ୍ଷା କରିଛ । ମୁଁ ତୁମକୁ ଆଶୀର୍ବାଦ କରୁଛି, 'ତୁମେମାନେ ମଧ୍ୟ ସୁପୁତ୍ର ଲାଭକର ।'୩୫।। ପୁତ୍ରମାନେ, ଏହି ଦେବରାତ ଶୁନଃଶେପ ମଧ୍ୟ ତୁମରି ଗୋତ୍ରର । ତୁମେମାନେ ତାଙ୍କରି ଆଜ୍ଞା ମାନି ଚଳିବ । ବିଶ୍ୱାମିତ୍ରଙ୍କର ଅଷ୍ଟକ, ହାରୀତ, ଜୟ ଏବଂ କ୍ରତୁମନ୍ତ ଆଦି ଅନ୍ୟ ପୁତ୍ର ଥିଲେ ।।୩୬।। ଏହିପରି ବିଶ୍ୱାମିତ୍ରଙ୍କ ସନ୍ତାନମାନଙ୍କଦ୍ୱାରା କୌଶିକଗୋତ୍ର ଭାଗ ଭାଗ ହୋଇଗଲା ଏବଂ ଦେବରାତଙ୍କୁ ବଡ଼ଭାଇ ମାନିବାରୁ ସେମାନଙ୍କର ଶାଖାପ୍ରଶାଖା ମଧ୍ୟ ଭିନ୍ନ ଭିନ୍ନ ହୋଇଗଲା ।।୩୭।।

## ସପ୍ତଦଶ ଅଧ୍ୟାୟ

# ଅନ୍ୟାନ୍ୟ ରାଜବଂଶର ବର୍ଣ୍ଣନା

ଶ୍ରୀ ଶୁକଦେବ କହିଲେ, ପରିକ୍ଷିତ, ପୁରୁରବାଙ୍କର ଆୟୁ ନାମକ ଯେଉଁ ପୁତ୍ର ଥିଲେ, ତାଙ୍କର ପାଞ୍ଚ ପୁଅ ହେଲେ । ନହୁଷ, କ୍ଷତ୍ରବୃଦ୍ଧ, ରଜି, ରମ୍ଭ ଓ ଅନେନା । ସେମାନେ ସମସ୍ତେ ବୀର ଥିଲେ । କ୍ଷତ୍ରବୃଦ୍ଧଙ୍କର ବଂଶ କଥା ଶୁଣ । ତାଙ୍କର ପୁତ୍ର ସୁହୋତ୍ର । ସୁହୋତ୍ରଙ୍କର ତିନିପୁତ୍ର--କାଶ୍ୟ, କୁଶ ଓ ଗୃତ୍ସମଦ । ଗୃତ୍ସମଦଙ୍କର ପୁତ୍ର ଶୁନକ ଏବଂ ଶୁନକଙ୍କର ପୁତ୍ର ଶୌନକ ଋଷି ବେଦଜ୍ଞମାନଙ୍କ ମଧ୍ୟରେ ଶ୍ରେଷ୍ଠ ଥିଲେ ।।୧-୩।। କାଶ୍ୟଙ୍କର ପୁତ୍ର କାଶି । କାଶିଙ୍କ ପୁତ୍ର ରାଷ୍ଟ୍ର । ରାଷ୍ଟ୍ରଙ୍କ ପୁତ୍ର ଦୀର୍ଘତମା ଓ ଦୀର୍ଘତମାଙ୍କର ପୁତ୍ର ଧନ୍ୱନ୍ତରି ହେଲେ । ସେ ଆୟୁର୍ବେଦର ପ୍ରବର୍ତ୍ତକ ଥିଲେ । ଧନ୍ୱନ୍ତରି ଯଜ୍ଞଭାଗର ଭୋକ୍ତା ଓ ଭଗବାନ୍ ବାସୁଦେବଙ୍କର ଅଂଶ ଥିଲେ । ତାଙ୍କୁ ସ୍ମରଣ କରିବା ମାତ୍ରେ ସମସ୍ତ ରୋଗ, ଦୁଃଖ ଦୂର ହୋଇଯାଏ ।।୪।। ଧନ୍ୱନ୍ତରିଙ୍କ ପୁତ୍ର କେତୁମାନ୍ ଓ କେତୁମାନ୍‌ଙ୍କର ପୁତ୍ର ହେଲେ ଭୀମରଥ । ଭୀମରଥଙ୍କର ପୁତ୍ର ଦିବୋଦାସ ଓ ଦିବୋଦାସଙ୍କ ପୁତ୍ର ହେଲେ ଦ୍ୟୁମାନ୍ । ଏହି ଦ୍ୟୁମାନ୍ ପ୍ରତର୍ଦ୍ଦନ, ଶତ୍ରୁଜିତ୍ ଓ ଋତଧ୍ୱଜ ନାମରେ ମଧ୍ୟ କଥିତ ହେଲେ । ଯାଙ୍କର ଅନ୍ୟଏକ ନାମ ମଧ୍ୟ କୁବଳୟାଶ୍ୱ ଥିଲା । ଦ୍ୟୁମାନଙ୍କର ଅଳର୍କାଦି ଅନେକ ପୁତ୍ର ଥିଲେ । ସେମାନଙ୍କ ମଧ୍ୟରେ ଅଳର୍କ ଛଷଠି ହଜାର ବର୍ଷ ରାଜତ୍ୱ କରିଥିଲେ । ପରିକ୍ଷିତ, ଅଳର୍କଙ୍କ ଛଡ଼ା ଅନ୍ୟ କୌଣସି ରାଜପୁତ୍ର ଯୁବକ ଏତେକାଳ ରାଜ୍ୟ ଭୋଗ କରି ନାହାନ୍ତି ।।୫-୭।। ଅଳର୍କଙ୍କର ପୁତ୍ର ହେଲେ ସନ୍ତତି । ସନ୍ତତିଙ୍କର ପୁତ୍ର ସୁନୀଥ । ସୁନୀଥଙ୍କର ପୁତ୍ର ସୁକେତନ । ସୁକେତନଙ୍କର ପୁତ୍ର ଧର୍ମକେତୁ ଏବଂ ଧର୍ମକେତୁଙ୍କର ପୁତ୍ର ସତ୍ୟକେତୁ ।।୮।। ସତ୍ୟକେତୁଙ୍କର ପୁତ୍ର ହେଲେ ଧୃଷ୍ଟକେତୁ । ଧୃଷ୍ଟକେତୁଙ୍କର ପୁତ୍ର ରାଜା ସୁକୁମାର । ସୁକୁମାରଙ୍କର ପୁତ୍ର ବୀତିହୋତ୍ର । ବୀତିହୋତ୍ରଙ୍କର ପୁତ୍ର ଭର୍ଗ ଓ ଭର୍ଗଙ୍କଠାରୁ ରାଜା ଭାର୍ଗଭୂମିଙ୍କର ଜନ୍ମ ହେଲା । ଏମାନେ ସମସ୍ତେ କ୍ଷତ୍ରବୃଦ୍ଧଙ୍କ ବଂଶଗତ କାଶିବଂଶୀୟ ରାଜାରୂପେ ଖ୍ୟାତ ଥିଲେ ।।୯।। ରମ୍ଭଙ୍କର ପୁତ୍ରଙ୍କ ନାମ ରଭସ । ତାଙ୍କର ପୁତ୍ର ଗମ୍ଭୀର ଓ ଗମ୍ଭୀରଙ୍କ ପୁତ୍ର ହେଲେ ଅକ୍ରିୟ । ଅକ୍ରିୟଙ୍କର ବ୍ରହ୍ମବିତ୍ ନାମକ ପୁତ୍ରଥିଲେ । ରାଜା, ଏହାପରେ ଅନେନାଙ୍କର ବଂଶ ବର୍ଣ୍ଣନା କରୁଛି, ଶୁଣ ।।୧୦।। ନେନାଙ୍କର ପୁତ୍ର ଶୁଦ୍ଧ, ଶୁଦ୍ଧଙ୍କର ପୁତ୍ର ଶୁଚି, ଶୁଚିଙ୍କର ପୁତ୍ର ତ୍ରିକକୁଦ୍, ଯେ କି ଧର୍ମଙ୍କୁ ସାରଥି

କରି ଚାଲିଥିଲେ । ତାଙ୍କର ପୁତ୍ର ହେଲେ ଶାନ୍ତରୟ । ଶାନ୍ତରୟ ଆତ୍ମଜ୍ଞାନୀ ଥିଲେ ଏବଂ ସର୍ବଦା ନିଜକୁ କୃତକୃତ୍ୟ ମନେ କରୁଥିଲେ ॥୧୧॥ ରଜିଙ୍କର ମହାବଳଶାଳୀ ପାଞ୍ଚଶହ ପୁତ୍ର ଜନ୍ମ ହୋଇଥିଲେ । ଇନ୍ଦ୍ରାଦି ଦେବତାମାନଙ୍କର ଅନୁରୋଧରେ ରଜି ଦୈତ୍ୟମାନଙ୍କୁ ବଧ କରି ଇନ୍ଦ୍ରଙ୍କୁ ସ୍ୱର୍ଗରାଜ୍ୟ ଦାନ କରିଥିଲେ । କିନ୍ତୁ ଇନ୍ଦ୍ର ପ୍ରହ୍ଲାଦ ଆଦି ଅସୁରମାନଙ୍କ ଭୟରେ ସ୍ୱର୍ଗରାଜ୍ୟ ତାଙ୍କୁ ଫେରାଇଦେଲେ ଏବଂ ତାଙ୍କ ପାଦ ଧରି ତାଙ୍କୁ ନିଜ ରକ୍ଷାର ଭାର ଅର୍ପଣ କଲେ । ରଜିଙ୍କର ମୃତ୍ୟୁ ହେବାରୁ ଇନ୍ଦ୍ର ମାଗିଲେ ମଧ୍ୟ ରଜିଙ୍କର ପୁତ୍ରମାନେ ସ୍ୱର୍ଗରାଜ୍ୟ ତାଙ୍କୁ ଫେରାଇଲେ ନାହିଁ, ଏବଂ ସ୍ୱର୍ଗର ଅଧିପତି ଭାବରେ ଯଜ୍ଞଭାଗ ଗ୍ରହଣ କରିବାକୁ ଲାଗିଲେ ॥୧୨-୧୪॥ ଇନ୍ଦ୍ର ପ୍ରାର୍ଥନା କରିବାରୁ ଦେବଗୁରୁ ବୃହସ୍ପତି ଅଭିଚାର ବିଧିରେ ହବନ କଲେ । ଏହାଫଳରେ ରଜିଙ୍କର ପୁତ୍ରମାନେ ଧର୍ମପଥରୁ ଭ୍ରଷ୍ଟ ହୋଇଗଲେ । ସେମାନଙ୍କୁ ମାରିବା ଇନ୍ଦ୍ରଙ୍କ ପକ୍ଷରେ ସହଜ ହେଲା । ସେମାନଙ୍କ ମଧ୍ୟରୁ ଜଣେ ମଧ୍ୟ ବଞ୍ଚିଲେ ନାହିଁ ॥୧୫॥ ଶ୍ରୀ ଶୁକଦେବ କହିଲେ, କ୍ଷତ୍ରବୃଦ୍ଧଙ୍କ ନାତି କୁଶଙ୍କଠାରୁ ତାଙ୍କର ପୁତ୍ର ପ୍ରତି, ପ୍ରତିଙ୍କ ଠାରୁ ସଞ୍ଜୟ ଓ ସଞ୍ଜୟଙ୍କ ଠାରୁ ଜୟଙ୍କର ଜନ୍ମ ହେଲା । ଜୟଙ୍କର ପୁତ୍ର ହେଲେ କୃତ । କୃତଙ୍କର ପୁତ୍ର ରାଜା ହର୍ଯବନ, ତାଙ୍କର ପୁତ୍ର ସହଦେବ, ସହଦେବଙ୍କର ପୁତ୍ର ହୀନ, ହୀନଙ୍କର ପୁତ୍ର ଜୟସେନ, ତାଙ୍କର ପୁତ୍ର ସଂକୃତି ଏବଂ ତାଙ୍କର ପୁତ୍ର ଜୟ ହେଲେ । ସେ ମହାରଥୀ ଥିଲେ ଓ କ୍ଷାତ୍ରଧର୍ମରେ ରହି ପ୍ରଜାପାଳନ କରୁଥିଲେ । ରାଜା, କ୍ଷତ୍ରବୃଦ୍ଧଙ୍କର ବଂଶ ବର୍ଣ୍ଣନା କଲି, ଏବେ ନହୁଷ ବଂଶର ବର୍ଣ୍ଣନା କରୁଛି ଶୁଣ ॥୧୬-୧୭॥

## ଅଷ୍ଟାଦଶ ଅଧ୍ୟାୟ

# ଯଯାତି ଚରିତ

ଶ୍ରୀ ଶୁକଦେବ କହିଲେ, ଶରୀରଧାରୀର ଯେପରି ଛ'ଟି ଇନ୍ଦ୍ରିୟ ଥାଆନ୍ତି, ସେହିପରି ନହୁଷଙ୍କର ଛ'ଜଣ ପୁତ୍ର ଥିଲେ । ସେମାନେ ହେଲେ -- ଯତି, ଯଯାତି, ସଂଯାତି, ଆୟତି, ବିୟତି, ଓ କୃତି ॥୧॥ ଜ୍ୟେଷ୍ଠପୁତ୍ର ଯତିଙ୍କୁ ପିତା ରାଜ୍ୟ ଦାନ କଲେ ମଧ୍ୟ ଯତି ତାହା ଗ୍ରହଣ କଲେ ନାହିଁ । କାରଣ ତାହାର ପରିଣାମ କ'ଣ ହେବ ତାହା ସେ ବୁଝିଥିଲେ । ସେ ଜାଣିଥିଲେ, ରାଜ୍ୟ ଶାସନରେ ପ୍ରବେଶ କଲେ ନିଜର ଆତ୍ମା ସମ୍ପର୍କରେ ଜ୍ଞାନ ହୁଏ ନାହିଁ । ଇନ୍ଦ୍ରଙ୍କର ପତ୍ନୀଙ୍କୁ ହରଣ କରିବାକୁ ଚେଷ୍ଟା କରି ନହୁଷ ଯେତେବେଳେ ଋଷିମାନଙ୍କ ଶାପରେ ଇନ୍ଦ୍ରପଦ ହରାଇ ଏକ ଅଜଗର ସାପ ହୋଇଗଲେ, ସେତେବେଳେ ତାଙ୍କର ପୁତ୍ର ଯଯାତି ରାଜା ହେଲେ ॥୨-୩॥ ଶୁକ୍ରାଚାର୍ଯ୍ୟ ଓ ଅସୁରରାଜ ବୃଷପର୍ବା -- ଏହି ଉଭୟଙ୍କର କନ୍ୟାଙ୍କୁ ଯଯାତି ବିବାହ କରିଥିଲେ । ସେ ତାଙ୍କର ସାନ ଚାରିଭାଇଙ୍କୁ ଚାରୋଟି ଦିଗରେ ଶାସନର ଦାୟିତ୍ୱ ଦେଲେ ଏବଂ ନିଜେ ଏହି ପୃଥିବୀକୁ ଶାସନ କଲେ ॥୪॥ ରାଜା ପରୀକ୍ଷିତ ପଚାରିଲେ, ଭଗବାନ, ଶୁକ୍ରାଚାର୍ଯ୍ୟ ବ୍ରହ୍ମର୍ଷି ଥିଲେ ଓ ନହୁଷଙ୍କର ପୁତ୍ର ଯଯାତି ହେଲେ କ୍ଷତ୍ରିୟ । ବ୍ରାହ୍ମଣକ୍ଷତ୍ରିୟଙ୍କର ପ୍ରତିଲୋମ ବିବାହ କିପରି ସମ୍ଭବ ହେଲା ? ॥୫॥

ଶ୍ରୀଶୁକଦେବ କହିଲେ, ଏକଦା ଦାନବେନ୍ଦ୍ର ବୃଷପର୍ବାଙ୍କର କନ୍ୟା ଶର୍ମିଷ୍ଠା ଏକ ସହସ୍ର ସଖୀଙ୍କୁ ନେଇ ଗୁରୁ ଶୁକ୍ରାଚାର୍ଯ୍ୟଙ୍କ କନ୍ୟା ଦେବଯାନୀଙ୍କ ସହିତ ରାଜପ୍ରାସାଦର ଉଦ୍ୟାନରେ ବିଚରଣ କରୁଥିଲେ । ଉଦ୍ୟାନଟି ପୁଷ୍ପିତ ବୃକ୍ଷମାନଙ୍କରେ ପରିପୂର୍ଣ୍ଣ ଥିଲା ଏବଂ ପଦ୍ମପୁଷ୍ପଶୋଭିତ ସରୋବରରେ ଭ୍ରମରମାନେ ମଧୁର ଗୁଞ୍ଜନ କରୁଥିଲେ ॥୬-୭॥ ଜଳାଶୟ କୂଳରେ ନିଜର ବସ୍ତ୍ରମାନ ରଖି କମଳନୟନୀ ଲଳନାମାନେ ପରସ୍ପରକୁ ପାଣି ପକାଇ ଜଳରେ କ୍ରୀଡ଼ା କରିବାକୁ ଲାଗିଲେ । ସେହି ସମୟରେ ମହାଦେବ ବୃଷବାହନରେ ବସି ଉମାଙ୍କ ସହିତ ଯାଉଥିଲେ । ସେମାନେ ଏହା ଦେଖି ଲଜ୍ଜାରେ ପାଣିରୁ ଉଠି ଲୁଗା

ପିନ୍ଧିପକାଇଲେ । ଅଜାଣତରେ ଶର୍ମିଷ୍ଠା ଗୁରୁକନ୍ୟାଙ୍କର ବସ୍ତ୍ରକୁ ନିଜ ବସ୍ତ୍ର ଭାବି ପିନ୍ଧି ପକାଇବାରୁ ଦେବଯାନୀ କ୍ରୁଦ୍ଧ ହୋଇ କହିଲେ, ଆରେ, ଦେଖ, ଏହି ଦାସୀଟା କିପରି ଅନ୍ୟାୟ କାର୍ଯ୍ୟ କଲା ! ଯଜ୍ଞର ଘୃତକୁ କୁକୁରୀ ନେଇଯିବା ପରି ଏ ମୋର ବସ୍ତ୍ରକୁ ନେଇଗଲା ॥୮-୧୧॥ ତପସ୍ୟାଦ୍ୱାରା ଯେଉଁମାନେ ଏହି ବିଶ୍ୱକୁ ସୃଷ୍ଟି କରିଛନ୍ତି, ଯେଉଁମାନେ ପରମାତ୍ମା ପରମପୁରୁଷଙ୍କର ମୁଖସ୍ୱରୂପ, ଯେଉଁମାନେ ନିଜର ହୃଦୟରେ ଜ୍ୟୋତିର୍ମୟ ପରମାତ୍ମାଙ୍କୁ ଧାରଣ କରିଥାନ୍ତି ଏବଂ ଯେଉଁମାନେ ସକଳ ପ୍ରାଣୀଙ୍କର କଲ୍ୟାଣ ନିମନ୍ତେ ବୈଦିକ ମାର୍ଗର ନିର୍ଦ୍ଦେଶ ଦେଇଛନ୍ତି, ଲୋକପାଳଗଣ ଓ ଇନ୍ଦ୍ରାଦିଦେବତା ଯାହାଙ୍କର ପାଦବନ୍ଦନା କରନ୍ତି ଏବଂ ଲକ୍ଷ୍ମୀଙ୍କର ଆଶ୍ରୟସ୍ୱରୂପ ପରମପୁରୁଷ ବିଶ୍ୱାତ୍ମା ଯାହାଙ୍କର ସେବା କରନ୍ତି, ଆମେମାନେ ସେହି ବ୍ରାହ୍ମଣ । ପୁଣି ଭୃଗୁବଂଶରେ ଜନ୍ମ । ଏହାର ପିତା ଅସୁର । ସେ ହେଉଛି ଆମର ଶିଷ୍ୟ । ଶୂଦ୍ର ଜାତିର ଲୋକ ବେଦ ପଢ଼ିବା ପରି ଏହି ଦୁଷ୍ଟା ମୋର ବସ୍ତ୍ରକୁ ପିନ୍ଧିପକାଇଛି ॥୧୨-୧୪॥ ଦେବଯାନୀ ଏହିପରି ତିରସ୍କାର କରିବାରୁ ଶର୍ମିଷ୍ଠା ଆହତା ସର୍ପିଣୀ ପରି ଘନଘନ ନିଃଶ୍ୱାସ ତ୍ୟାଗ କରି ରାଗରେ ଓଠ କାମୁଡ଼ି କହିଲେ, ଭିକାରୁଣୀ, ତୋର ଏଡେ ବଡ଼ ବହପ, ନିଜ କଥା ଭୁଲି ଯାଉଛୁ ? କୁଆ, କୁକୁର ଯେପରି ଗଣ୍ଡେ ଅଇଁଠା ଭାତପାଇଁ ଦୁଆର ମୁହଁରେ ଅପେକ୍ଷା କରିଥାନ୍ତି, ତୁମେମାନେ ସେହିପରି ଆମଘରେ ଅପେକ୍ଷା କରି ରହିଥାଅ ॥୧୫-୧୬॥ ଅତି କଡ଼ା ଭାଷାରେ ଏହିପରି ଗୁରୁପୁତ୍ରୀଙ୍କୁ ଭର୍ତ୍ସନା କରି ଶର୍ମିଷ୍ଠା ରାଗରେ ବସ୍ତ୍ର ଛଡାଇ ନେଇ ତାଙ୍କୁ କୂଅକୁ ଠେଲିଦେଲେ ॥୧୭॥ ଶର୍ମିଷ୍ଠା ଘରକୁ ଚାଲିଯିବା ପରେ ରାଜା ଯଯାତି ମୃଗୟା କରିବାପାଇଁ ସେହି ବନରେ ବୁଲୁଥିଲେ । ଶୋଷ ହେବାରୁ ସେ ପାଣିପାଇଁ କୂଅ ପାଖକୁ ଆସିବାରୁ କୂଅ ମଧ୍ୟରେ ପଡ଼ିଥିବା ଦେବଯାନୀଙ୍କୁ ଦେଖିଲେ ॥୧୮॥ ଦୟାପରବଶ ହୋଇ ରାଜା ଦେବଯାନୀଙ୍କୁ ପିନ୍ଧିବାପାଇଁ ନିଜର ଉତ୍ତରୀୟଟି ବଢ଼ାଇଦେଲେ ଏବଂ ନିଜ ହାତରେ ତାଙ୍କ ହାତ ଧରି ଉପରକୁ ଟାଣିଆଣିଲେ ॥୧୯॥ ଦେବଯାନୀ ପ୍ରେମଭରା ସ୍ୱରରେ କହିଲେ, ହେ ରାଜା, ହେ ଅରିନ୍ଦମ ବୀର, ଆପଣ ମୋର ପାଣିଗ୍ରହଣ କରିଛନ୍ତି । ଆପଣଙ୍କ ଦ୍ୱାରା ଯେଉଁ ହସ୍ତ ଗୃହୀତ ହୋଇଛି, ତାହା ଅନ୍ୟ ଦ୍ୱାରା ଗୃହୀତ ନ ହେଉ । ବୀରଶ୍ରେଷ୍ଠ, ମୁଁ କୂଅରେ ପଡ଼ିଥିବାବେଳେ ଆପଣ ହଠାତ୍ ଆସି ପହଞ୍ଚିବା ଦୈବପ୍ରେରିତ ଛଡ଼ା ଆଉ କ'ଣ ହୋଇପାରେ ? ଏଥିରେ ମନୁଷ୍ୟର କିଛି କହିବାର ନାହିଁ । ମହାବାହୁ, ମୁଁ ବୃହସ୍ପତିଙ୍କର ପୁତ୍ର କଚଙ୍କୁ ଶାପ ଦେଇଥିଲି । ସେ ମୋତେ ଅଭିଶାପ ଦେଇ କହିଥିଲେ ଯେ, କୌଣସି ବ୍ରାହ୍ମଣ ମୋର ପାଣି ଗ୍ରହଣ କରିବ ନାହିଁ ॥୨୦-୨୨॥ ଏହା ନିଜର ଅଭିପ୍ରେତ ନ ହେଲେ ମଧ୍ୟ ଦୈବପ୍ରେରିତ, ଏହା ଭାବି ଏବଂ ତାଙ୍କ ମନ ଦେବଯାନୀଙ୍କପ୍ରତି ଆକୃଷ୍ଟ ହୋଇଥିବା ଦେଖି ରାଜା ତାଙ୍କ କଥାକୁ ମାନିନେଲେ ॥୨୩॥ ବୀର ରାଜା ଚାଲିଯିବା ପରେ ଦେବଯାନୀ କାନ୍ଦି କାନ୍ଦି ନିଜର ପିତା ଶୁକ୍ରାଚାର୍ଯ୍ୟଙ୍କ ପାଖରେ ପହଞ୍ଚିଲେ ଏବଂ ଶର୍ମିଷ୍ଠା ଯାହା ସବୁ କହିଥିଲେ ଓ କରିଥିଲେ, ସେ ସମସ୍ତ କଥା ତାଙ୍କୁ ଜଣାଇଲେ ॥୨୪॥ ତାହା ଶୁଣି ଭଗବାନ ଶୁକ୍ରାଚାର୍ଯ୍ୟଙ୍କର ମନ ଚହଲିଗଲା । ସେ ପୁରୋହିତ କର୍ମକୁ ନିନ୍ଦା କରି ଏବଂ ଉଞ୍ଛବୃତ୍ତିକୁ (ଶସ୍ୟ କଟା ହେବା ପରେ ବିଲରେ ପଡ଼ିଥିବା ଶସ୍ୟକୁ ଗୋଟାଇ ଚଳିବା) ପ୍ରଶଂସା କରି କନ୍ୟା ସହିତ ଅସୁରପୁରୀକୁ ତ୍ୟାଗ କଲେ ॥୨୫॥ ବୃଷପର୍ବା ଜାଣିଥିଲେ ଯେ ତାଙ୍କର ଗୁରୁ ଶୁକ୍ରାଚାର୍ଯ୍ୟ ଯଦି ତାଙ୍କର ଶତ୍ରୁ ଦେବତାଙ୍କର ପକ୍ଷ ଗ୍ରହଣ କରନ୍ତି, ତାହେଲେ ସେମାନଙ୍କର ଜୟ ସୁନିଶ୍ଚିତ, ତେଣୁ ସେ ଶୁକ୍ରାଚାର୍ଯ୍ୟଙ୍କ ପଛେପଛେ ଯାଇ ତାଙ୍କୁ ପ୍ରସନ୍ନ କରିବାପାଇଁ ତାଙ୍କ ପାଦ ଦୁଇଟିକୁ ଧରି ରାସ୍ତାରେ ପଡ଼ିଗଲେ ॥୨୬॥ ଶୁକ୍ରାଚାର୍ଯ୍ୟଙ୍କର ରାଗ ବେଶୀ ସମୟ ରହୁ ନ ଥିଲା । ସେ କ୍ରୋଧ ସମ୍ବରଣ କରି ଶିଷ୍ୟଙ୍କୁ କହିଲେ, 'ମୋ' କନ୍ୟାର ଅଭିଳାଷ ପୂର୍ଣ୍ଣ କରି ତୁମେ ତାକୁ ସନ୍ତୁଷ୍ଟ କର । କାରଣ ମୁଁ ମୋର କନ୍ୟାକୁ ଛାଡ଼ି ରହିପାରିବି ନାହିଁ ।' ୨୭॥ ବୃଷପର୍ବା ତାହା ସ୍ୱୀକାର କରିବାରୁ ଦେବଯାନୀ ନିଜର ଅଭିପ୍ରାୟ ଜଣାଇ କହିଲେ, ପିତା ମୋତେ ଯେଉଁଠାରେ ବିବାହପାଇଁ ଦାନ କରିବେ, ତୁମର କନ୍ୟା ଶର୍ମିଷ୍ଠା ତା'ର ସଖୀମାନଙ୍କ ସହିତ ସେଠାକୁ ଯାଇ ମୋର ଅନୁଚରୀ ହୋଇ ରହିବ ॥୨୮॥

ବୃଷପର୍ବା ଧର୍ମସଙ୍କଟରେ ପଡ଼ିଗଲେ । କିନ୍ତୁ ଅସୁରକୁଳର ମଙ୍ଗଳକୁ ଚିନ୍ତା କରି ସେ ଶର୍ମିଷ୍ଠାକୁ ଦେବଯାନୀଙ୍କ ହସ୍ତରେ ଅର୍ପଣ କଲେ । ଏକସହସ୍ର ଦାସୀଙ୍କ ସହିତ ଜଣେ ସେବିକା ରୂପେ ଶର୍ମିଷ୍ଠା ଦେବଯାନୀଙ୍କର ସେବା କରିବାକୁ ଲାଗିଲେ ॥୨୯॥ ଶୁକ୍ରାଚାର୍ଯ୍ୟ ଶର୍ମିଷ୍ଠାଙ୍କ ସହ ନିଜ କନ୍ୟା ଦେବଯାନୀଙ୍କୁ ନହୁଷଙ୍କ ପୁତ୍ର ଯଯାତିଙ୍କ ହସ୍ତରେ ଅର୍ପଣ କରି କହିଲେ, 'ରାଜା, ଶର୍ମିଷ୍ଠାକୁ କେବେ ନିଜର ଶଯ୍ୟାଶାୟିନୀ କରିବ ନାହିଁ ।'୩୦॥

ପରିକ୍ଷିତ, କିଛି କାଳ ପରେ ଦେବଯାନୀଙ୍କର ପୁତ୍ରଲାଭ ହେଲା । ତାଙ୍କୁ ପୁତ୍ରବତୀ ଦେଖି ଶର୍ମିଷ୍ଠା ନିଜର ଋତୁକାଳରେ ଦେବଯାନୀଙ୍କର ପତି ରାଜା ଯଯାତିଙ୍କୁ ଏକାନ୍ତ ସହବାସପାଇଁ ପ୍ରାର୍ଥନା କଲେ ॥୩୧॥ ପୁତ୍ରପାଇଁ ଶର୍ମିଷ୍ଠାଙ୍କର ପ୍ରାର୍ଥନା ଧର୍ମସଙ୍ଗତ -- ଏହା ଚିନ୍ତା କରି, ଶୁକ୍ରାଚାର୍ଯ୍ୟଙ୍କର (ନିଷେଧ) ବାକ୍ୟ ମନେପଡ଼ିଲେ ମଧ୍ୟ, ଏହା ଦୈବ ପ୍ରେରିତ ବୋଲି ଭାବି ସେ ଶର୍ମିଷ୍ଠାଙ୍କର ସହବାସକୁ ସ୍ୱୀକାର କଲେ ॥୩୨॥ ଦେବଯାନୀଙ୍କର ଦୁଇଟି ପୁତ୍ର ହେଲେ -- ଯଦୁ ଓ ତୁର୍ବସୁ ଏବଂ ବୃଷପର୍ବାଙ୍କର କନ୍ୟା ଶର୍ମିଷ୍ଠାଙ୍କର ତିନୋଟି ପୁତ୍ର ହେଲେ--ଦ୍ରୁହ୍ୟୁ, ଅନୁ ଓ ପୁରୁ ॥୩୩॥ ମାନିନୀ ଦେବଯାନୀ ନିଜର ସ୍ୱାମୀ ଯଯାତିଙ୍କଠାରୁ ଶର୍ମିଷ୍ଠାଙ୍କର ଗର୍ଭ ସମ୍ଭବ ହୋଇଛି ବୋଲି ଜାଣିପାରି ରାଗରେ ଗରଗର ହୋଇ ପିତୃଗୃହକୁ ଚାଲିଗଲେ ॥୩୪॥ କାମୁକ ରାଜା ପ୍ରିୟତମା ଦେବଯାନୀଙ୍କର ପଛେପଛେ ଯାଇ ନାନା ସାନ୍ତ୍ୱନା ବାକ୍ୟ ଶୁଣାଇଲେ ଏବଂ ତାଙ୍କ ପାଦ ଧରି ଫେରାଇ ଆଣିବାକୁ ଚେଷ୍ଟା କଲେ । ମାତ୍ର ତାହା ସେ ଶୁଣିଲେ ନାହିଁ ।୩୫॥ କ୍ରୁଦ୍ଧ ଶୁକ୍ରାଚାର୍ଯ୍ୟ ସମସ୍ତ କଥା ଶୁଣି ଯଯାତିଙ୍କୁ ଅଭିଶାପ ଦେଲେ -- 'ରେ ଲମ୍ପଟ, ମନ୍ଦବୁଦ୍ଧି, ମିଥ୍ୟାଚାରୀ, ଯେଉଁ ଜରା ମନୁଷ୍ୟକୁ କୁରୂପ କରିଦିଏ, ସେହି ଅବସ୍ଥା ତୋର ଆସିଯାଉ ।'୩୬॥

ଯଯାତି କହିଲେ, 'ବ୍ରହ୍ମନ୍, ଆପଣଙ୍କ କନ୍ୟାକୁ ଭୋଗ କରି ବର୍ତ୍ତମାନ ସୁଦ୍ଧା ମୋର କାମ ତୃପ୍ତି ଆସିନାହିଁ । ଶୁକ୍ରାଚାର୍ଯ୍ୟ କହିଲେ, ଠିକ୍‌ଅଛି, ଯଦି ତୁମର ଜରା ଅନ୍ୟ କେହି ଗ୍ରହଣ କରେ ଓ ତୁମକୁ ତାହାର ଯୌବନ ଦିଏ, ତା'ହେଲେ ତୁମେ ଯେତେ ଇଚ୍ଛା ଉପଭୋଗ କରିପାରିବ, କର ॥୩୭॥ ଏହି ପ୍ରତିକାର ବ୍ୟବସ୍ଥାକୁ ଶୁଣି ଯଯାତି ଫେରିଆସିଲେ ଏବଂ ଜ୍ୟେଷ୍ଠପୁତ୍ର ଯଦୁଙ୍କୁ କହିଲେ, ବତ୍ସ, ମୋର ଜରା ଗ୍ରହଣ କରି ତୁମର ଯୌବନ ମୋତେ ଦାନ କର । ତୁମର ମାତାମହ ମୋତେ ଜରାଗ୍ରସ୍ତ କରିଛନ୍ତି । ମୁଁ ଏପର୍ଯ୍ୟନ୍ତ ବିଷୟଭୋଗରେ ତୃପ୍ତ ହୋଇପାରି ନାହିଁ । ତେଣୁ କିଛି ବର୍ଷପାଇଁ ତୁମର ଯୌବନ ଦ୍ୱାରା ମୁଁ ସୁଖ ଭୋଗ କରିବି ॥୩୮-୩୯॥ ଯଦୁ କହିଲେ, ଆପଣ ମଧ୍ୟ-ବୟସରେ ଯେଉଁ ଜରା ଲାଭ କରିଛନ୍ତି, ମୁଁ ତାହାକୁ ନେଇ ବଞ୍ଚି ରହିବାକୁ ଚାହେ ନାହିଁ, କାରଣ ବିଷୟ ଭୋଗ ଅନୁଭବ ନ କରିଥିବା ଲୋକର କେବେ ଭୋଗ ବିତୃଷ୍ଣା ଆସିବ ନାହିଁ ॥୪୦॥ ପରିକ୍ଷିତ, ଏହିପରି ତୁର୍ବସୁ, ଦ୍ରୁହ୍ୟୁ ଓ ଅନୁ ପିତାଙ୍କର ପ୍ରାର୍ଥନାକୁ ପ୍ରତ୍ୟାଖାନ କଲେ । ସେମାନଙ୍କର ଧର୍ମଜ୍ଞାନ ନ ଥିଲା, ଯେହେତୁ ଅନିତ୍ୟ ଯୌବନକୁ ସେମାନେ ନିତ୍ୟ ବୋଲି ମନେ କରୁଥିଲେ ॥୪୧॥ କନିଷ୍ଠ ପୁତ୍ର ପୁରୁ କିନ୍ତୁ ବୟସରେ ସାନ ହେଲେ ମଧ୍ୟ ଗୁଣରେ ବଡ଼ ଥିଲେ । ଯଯାତି ତାଙ୍କୁ କହିଲେ, 'ବତ୍ସ, ବଡ଼ଭାଇମାନଙ୍କ ପରି ତୁମେ ମୋର କଥାକୁ ଅଗ୍ରାହ୍ୟ କରିବ ନାହିଁ ।'୪୨॥

ପୁରୁ କହିଲେ, 'ନରେନ୍ଦ୍ର, ପିତାଙ୍କଠାରୁ ଦେହ ଲାଭ କରିଥିବା କେଉଁ ପୁତ୍ର ପ୍ରତ୍ୟୁପକାର କରିବାପାଇଁ ସମର୍ଥ ? ପିତାଙ୍କର ଅନୁଗ୍ରହରୁ ହିଁ ପୁତ୍ରର ପରମମଙ୍ଗଳ ହୋଇଥାଏ ॥୪୩॥ ଯେ ଉତ୍ତମ ପୁତ୍ର, ସେ ପିତାଙ୍କର ମନ ଜାଣି କାର୍ଯ୍ୟ କରେ । ଯେ ମଧ୍ୟମ, ପିତା କହିବା ମାତ୍ରେ ସେ ତାହା ପାଳନ କରେ । ଯେ ଅଧମ, କହିବାପରେ ଶ୍ରଦ୍ଧା ନଥାଇ ମଧ୍ୟ ପିତାଙ୍କର ଆଦେଶ ପାଳନ କରେ । କିନ୍ତୁ ଯେଉଁପୁତ୍ର କୌଣସି ପ୍ରକାରେ ମଧ୍ୟ ପିତାଙ୍କର ଆଦେଶକୁ ପାଳନ କରେ ନାହିଁ, ସେ ପିତାଙ୍କର ମଳମୂତ୍ର ସହିତ ସମାନ ହୋଇଥାଏ ॥୪୪॥ ପରିକ୍ଷିତ, ଏହିପରି କହି ପୁରୁ ଆନନ୍ଦରେ ପିତାଙ୍କର ବାର୍ଦ୍ଧକ୍ୟ ଗ୍ରହଣ କଲେ ଏବଂ ରାଜା ଯଯାତି ପୁତ୍ରଠାରୁ ଯୌବନ ଲାଭ କରି ପୂର୍ବପରି ବିଷୟସୁଖ ଭୋଗ କରିବାକୁ ଲାଗିଲେ ॥୪୫॥ ସପ୍ତଦ୍ୱୀପର ଅଧୀଶ୍ୱର

ରାଜା ଯଯାତି ସମ୍ପୂର୍ଣ୍ଣ ସୁସ୍ଥ ସବଳ ରହି ଯଥେଚ୍ଛ ବିଷୟଭୋଗ ପୂର୍ବକ ପୁତ୍ରପରି ପ୍ରଜାମାନଙ୍କୁ ଭଲ ରୂପେ ପାଳନ କରିବାକୁ ଲାଗିଲେ ॥୪୬॥ ପ୍ରିୟତମା ଦେବଯାନୀ ମଧ୍ୟ ଏକାନ୍ତ ନିଷ୍ଠାର ସହ କାୟମନୋବାକ୍ୟରେ ଓ ବିବିଧ ଦ୍ରବ୍ୟଦ୍ୱାରା ପ୍ରିୟତମ ପତିଙ୍କୁ ସର୍ବଦା ସନ୍ତୁଷ୍ଟ ଓ ସୁଖୀ ରଖୁଥିଲେ ॥୪୭॥ ରାଜା ଯଯାତି ବେଦପ୍ରତିପାଦିତ ପ୍ରଚୁର ଦକ୍ଷିଣାଯୁକ୍ତ ଯଜ୍ଞମାନଙ୍କ ଦ୍ୱାରା ସର୍ବଦେବମୟ ଓ ସର୍ବବେଦମୟ ଯଜ୍ଞପୁରୁଷ ଭଗବାନ ଶ୍ରୀହରିଙ୍କୁ ଅର୍ଚ୍ଚନା କଲେ ॥୪୮॥ ଆକାଶରେ ମେଘମାଳା ଯେପରି ବେଳେ ବେଳେ ଦେଖାଯାଏ ଓ ପୁଣି ଦେଖାଯାଏ ନାହିଁ, ଏହି ଜଗତ୍ ପରମାତ୍ମାଙ୍କ ସ୍ୱରୂପରେ ସ୍ୱପ୍ନ, ମାୟା ଓ କଳ୍ପନା ବିଳାସ ପରି କଳ୍ପିତ । ଏହା ନାନା ରୂପରେ ଦେଖାଯାଏ ଓ ପୁଣି ଦେଖାପଡ଼େ ନାହିଁ, ସେହି ସୂକ୍ଷ୍ମସ୍ୱରୂପ ଅନ୍ତର୍ଯ୍ୟାମୀ ନାରାୟଣ ବାସୁଦେବଙ୍କୁ ହିଁ ରାଜା ଯଯାତି କୌଣସି ଆଶା ନ ରଖି ହୃଦୟରେ ଚିନ୍ତାକରି ଅର୍ଚ୍ଚନା କରିବାକୁଲାଗିଲେ ॥୪୯-୫୦॥ ଏହିପରି ସାର୍ବଭୌମ ରାଜା ଯଯାତି ପଞ୍ଚ ଜ୍ଞାନେନ୍ଦ୍ରିୟ ଓ ମନ -- ବିଷୟାସକ୍ତ ଏହି ଛ'ଟି ଇନ୍ଦ୍ରିୟ ଦ୍ୱାରା ହଜାର ବର୍ଷ ଧରି ଯେତେ ବିଷୟଭୋଗ କଲେ ମଧ୍ୟ ତୃପ୍ତ ହେଲେ ନାହିଁ ॥୫୧॥

### ଊନବିଂଶ ଅଧ୍ୟାୟ

## ଯଯାତିଙ୍କ ଗୃହତ୍ୟାଗ

ଶ୍ରୀ ଶୁକଦେବ କହିଲେ, ପରିକ୍ଷିତ, ଏହିପରି ଅତ୍ୟନ୍ତ ସ୍ତ୍ରୈଣ ରାଜା ଯଯାତି କାମବଶରେ ବିଷୟଭୋଗ କରି କରି ଶେଷରେ ତାଙ୍କର ବୈରାଗ୍ୟ ଜନ୍ମିଲା ଏବଂ ତାଙ୍କର କିଭଳି ଅଧଃପତନ ଘଟୁଚି ସେ ତାହା ବୁଝିପାରିଲେ । ଦିନେ ସେ ପତ୍ନୀ ଦେବଯାନୀଙ୍କୁ ଏକ ଗାଥା ଶୁଣାଇଲେ ॥୧॥ ସେ କହିଲେ, ଭୃଗୁନନ୍ଦିନି ! ତୁମେ ଏହି ଗାଥାଟିକୁ ଶୁଣ । ପୃଥିବୀରେ ମୋ'ପରି ବିଷୟୀଙ୍କର ଏହା ହେଉଛି କାହାଣୀ -- ବନବାସୀ ଜିତେନ୍ଦ୍ରିୟ ବ୍ୟକ୍ତିମାନେ ଗ୍ରାମବାସୀ କାମାସକ୍ତ ପୁରୁଷଙ୍କ ସମ୍ପର୍କରେ କିପରି ଅନୁଶୋଚନା କରନ୍ତି ॥୨॥ ଥରେ ଗୋଟିଏ ଛାଗଳ ବନ ମଧ୍ୟରେ ନିଜର ପ୍ରିୟ ବସ୍ତୁ ଖୋଜୁ ଖୋଜୁ କୂଅ ଭିତରେ ପଡ଼ିଥିବା ଏକ ଛାଗଳୀକୁ ଦେଖିଲା । ଏହି ଛାଗଳ ଅତ୍ୟନ୍ତ କାମୁକ ଥିଲା । ସେ ଛାଗଳୀର ଉଦ୍ଧାର ବିଷୟ ଚିନ୍ତା କରି କୂଅକୁ ଲାଗିଥିବା ମାଟିକୁ ତାଡ଼ି ଏକ ରାସ୍ତା କରି ଦେଲା ॥୩-୪॥ ସୁନ୍ଦରୀ ଛାଗଳୀଟି କୂପରୁ ଉଠିଆସି ଏହି ଛାଗଳ ସହିତ ମୈଥୁନପାଇଁ ଇଚ୍ଛାକଲା । ଶ୍ମଶ୍ରୁବହୁଳ, ମୈଥୁନରେ ଅଭିଜ୍ଞ, ରେତସେଚକ ସେହି ଛାଗଳକୁ ସେହି ଛାଗଳୀ ସହିତ ମୈଥୁନାସକ୍ତ ଦେଖି ଅନ୍ୟ ଛାଗଳୀମାନେ ତାହାସହିତ ରମଣ ପାଇଁ ଇଚ୍ଛୁକ ହେଲେ । କାମରୂପ ଗ୍ରହର କବଳରେ ପଡ଼ି ସେହି ଛାଗଳଶ୍ରେଷ୍ଠ ଏକାକୀ ବହୁ ଛାଗଳିଙ୍କ ସହିତ ବିହାର କରିବାକୁ ଲାଗିଲା ଏବଂ ନିଜର ଆତ୍ମାକୁ ଚିହ୍ନି ପାରିଲା ନାହିଁ ॥୫-୬॥ କୂଅରୁ ଉଦ୍ଧାର ପାଇଥିବା ଛାଗଳୀ ଯେତେବେଳେ ଦେଖିଲା ଯେ ତାର ପ୍ରେମିକ, ଅନ୍ୟ ପ୍ରିୟତମା ଛାଗଳୀଙ୍କ ସହିତ ରମଣ କରୁଛି, ସେତେବେଳେ ସେ ତାହା ସହି ପାରିଲା ନାହିଁ । ସେ ଦେଖିଲା ଯେ, ଏ ହେଉଛି ଅତ୍ୟନ୍ତ କାମୁକ । ଏହାର ପ୍ରେମ କ୍ଷଣିକ । ଏ ବନ୍ଧୁ ରୂପରେ ଛଳନା କରୁଛି, କିନ୍ତୁ ପକୃତରେ ଦୁଶ୍ଚରିତ୍ର । ତେଣୁ ଛାଗଳୀ ଇନ୍ଦ୍ରିୟଲୋଲୁପ ସେହି ଛାଗଳକୁ ଛାଡ଼ିଦେଇ ଦୁଃଖରେ ନିଜର ପାଳକ ନିକଟକୁ ଚାଲିଗଲା ॥୭-୮॥ କାମାସକ୍ତ ଛାଗଳ ତାକୁ ବୁଝାଇ ଫେରାଇ ଆଣିବା ପାଇଁ ମେଁ ମେଁ କରି ତା ପଛରେ ଗୋଡ଼ାଇବାକୁ ଲାଗିଲା । କିନ୍ତୁ ଛାଗଳୀକୁ ସନ୍ତୁଷ୍ଟ କରିପାରିଲା ନାହିଁ ॥୯॥ ସେ ଛାଗଳୀର ପାଳକ ଜଣେ ବ୍ରାହ୍ମଣ ଥିଲେ । ସେ କ୍ରୋଧରେ ଛାଗଳର ଝୁଲୁଥିବା ଅଣ୍ଡକୋଷକୁ କାଟିଦେଲେ । କିନ୍ତୁ କାର୍ଯ୍ୟସିଦ୍ଧିପାଇଁ ପୁଣି ଏହାର ଅଣ୍ଡକୋଷକୁ ଯୋଡ଼ି ଦେଲେ । ତାଙ୍କୁ ଏ ସମସ୍ତ ଉପାୟ ଜଣା ଥିଲା ॥୧୦॥ ଭଦ୍ରେ, ଏହିପରି ତାର ଅଣ୍ଡକୋଷ ଯୋଡ଼ା ହେଇଯିବାରୁ ସେ ପୁଣି ରତିଶକ୍ତିସମ୍ପନ୍ନ

ହୋଇଗଲା ଏବଂ କୂଅ ଭିତରୁ ଉଠିଥିବା ଛାଗଳୀକୁ ବହୁ ବର୍ଷ ଧରି ଉପଭୋଗ କଲା । ତଥାପି ତାର କାମବାସନା ତୃପ୍ତ ହେଲା ନାହିଁ ॥୧୧॥ ସୁନ୍ଦରୀ, ମୋର ମଧ୍ୟ ସେହିପରି ଦଶା ହୋଇଛି । ତୁମର ପ୍ରେମପାଶରେ ବନ୍ଧା ହୋଇ ମୁଁ ଅତିଶୟ ଦୀନ ଓ ମାୟାମୋହିତ ହୋଇ ନିଜକୁ ମଧ୍ୟ ଭୁଲିଯାଇଛି ॥୧୨॥ ଏହି ପୃଥିବୀରେ ଯେତେ ବିରି, ଧାନ, ସୁନା, ପଶୁ ଓ ସ୍ତ୍ରୀ ପ୍ରଭୃତି ଭୋଗ୍ୟ ଦ୍ରବ୍ୟ ଅଛନ୍ତି, କାମାସକ୍ତ ପୁରୁଷର ମନକୁ ସେସବୁ ସନ୍ତୁଷ୍ଟ କରିପାରିବେ ନାହିଁ । ଯେତେ ଉପଭୋଗ କଲେ ମଧ୍ୟ କାମନା କେବେ ଶାନ୍ତ ହୁଏ ନାହିଁ । ନିଆଁରେ ଘିଅ ଢାଳିଲେ ତାହା ଯେପରି ଆହୁରି ଜଳିଉଠେ, ସେହିପରି ଭୋଗଦ୍ୱାରା ଭୋଗ ବାସନା ବଢ଼ି ଚାଲିଥାଏ ॥୧୩-୧୪॥ ଯେତେବେଳେ ମନୁଷ୍ୟ କୌଣସି ପ୍ରାଣୀ ବା କୌଣସି ବସ୍ତୁ ସହିତ ରାଗ ଦ୍ୱେଷ ଭାବ ରଖେ ନାହିଁ, ସମସ୍ତଙ୍କ ପ୍ରତି ସମଦର୍ଶୀ ହୁଏ, ସେତେବେଳେ ଚାରିଆଡ଼ ତା'ପାଇଁ ସୁଖମୟ ହୋଇଯାଏ ॥୧୫॥ ତୃଷ୍ଣା ହେଉଛି ଦୁଃଖାବହ । ମନ୍ଦବୁଦ୍ଧି ଲୋକ ପକ୍ଷରେ ଏହା ତ୍ୟାଗ କରିବା କଷ୍ଟକର । ଶରୀର ବୁଢ଼ା ହୋଇଯାଏ, କିନ୍ତୁ ତୃଷ୍ଣା ବୁଢ଼ା ହୁଏ ନାହିଁ । ନିଜର ହିତକାମୀ ବ୍ୟକ୍ତି ତୃଷ୍ଣାକୁ ଶୀଘ୍ର ପରିତ୍ୟାଗ କରିବା ଉଚିତ । ।୧୬॥ କୌଣସି ବ୍ୟକ୍ତି ନିଜର ମା', ଭଉଣୀ ବା କନ୍ୟା ସହିତ ଏକାନ୍ତରେ ଏକ ଆସନରେ ବସିବା ଉଚିତ ନୁହେଁ । କାରଣ ଇନ୍ଦ୍ରିୟମାନେ ଏପରି ପ୍ରବଳ ଯେ ପଣ୍ଡିତବ୍ୟକ୍ତିଙ୍କୁ ମଧ୍ୟ ବିଚଳିତ କରିଦିଅନ୍ତି ॥୧୭॥ ବିଷୟ ବାସନାର ସେବା କରି କରି ମୋର ହଜାରେ ବର୍ଷ ପୂରିଗଲା । ତଥାପି ପ୍ରତି ମୁହୂର୍ତ୍ତରେ ମୋ ମନରେ ବିଷୟ ଲାଳସା ବଢ଼ିବଢ଼ି ଚାଲିଛି । ବର୍ତ୍ତମାନ ମୁଁ ଏହାକୁ ଛାଡ଼ି ପରମାତ୍ମାଙ୍କୁ ଧ୍ୟାନ କରିବି । ଶୀତ-ଉଷ୍ଣ, ସୁଖ-ଦୁଃଖ ଆଦି ଦ୍ୱନ୍ଦ୍ୱରୁ ମୁକ୍ତ ହୋଇ ନିରହଙ୍କାର ଭାବରେ ମୃଗମାନଙ୍କ ସହିତ ବନରେ ବିଚରଣ କରିବି ॥୧୮-୧୯॥ ଇହଲୋକ ଓ ପରଲୋକ-ଉଭୟରେ ଭୋଗ ହେଉଛି ଅସ୍ଥାୟୀ । ଏହା ଭଲ ଭାବରେ ବୁଝି ବିଷୟ ଭୋଗକୁ ଚିନ୍ତା କରିବା ଉଚିତ ନୁହେଁ ଏବଂ ତାହା ଉପଭୋଗ କରିବା ଉଚିତ ନୁହେଁ । ଜାଣିବା ଉଚିତ ଯେ, ଏହି ଭୋଗଦ୍ୱାରା ଆତ୍ମନାଶ ଘଟି ବାରମ୍ବାର ସଂସାର ବନ୍ଧନରେ ପଡ଼ିବାକୁ ହୁଏ । ଏହି ରହସ୍ୟକୁ ଜାଣିବା ବ୍ୟକ୍ତି ହେଉଛି ପ୍ରକୃତ ଆତ୍ମଜ୍ଞାନୀ ॥୨୦॥ ଏହିପରି ବୀତସ୍ପୃହ ରାଜା ଯଯାତି ନିଜ ସ୍ତ୍ରୀ ଦେବଯାନୀଙ୍କୁ କହି ପୁତ୍ର ପୂରୁଙ୍କୁ ତାଙ୍କର ଯୌବନ ଫେରାଇଦେଲେ ଏବଂ ତାଙ୍କଠାରୁ ନିଜର ଜରା ଗ୍ରହଣ କଲେ ॥୨୧॥ ଯଯାତି ଦକ୍ଷିଣ--ପୂର୍ବ ଦିଗରେ ଦ୍ରୁହ୍ୟୁଙ୍କୁ, ଦକ୍ଷିଣରେ ଯଦୁଙ୍କୁ, ପୂର୍ବ ଦିଗରେ ତୁର୍ବସୁଙ୍କୁ ଏବଂ ଉତ୍ତର ଦିଗରେ ଅନୁଙ୍କୁ ରାଜା କଲେ ଏବଂ ଯୋଗ୍ୟତମ ପୁତ୍ର ମହାତ୍ମା ପୂରୁଙ୍କୁ ସମସ୍ତ ଭୂମଣ୍ଡଳର ରାଜା ରୂପେ ଅଭିଷିକ୍ତ କଲେ ଏବଂ ବଡ଼ଭାଇମାନଙ୍କୁ ତାଙ୍କର ବଶ୍ୟତା ସ୍ୱୀକାର କରାଇ ବନକୁ ଚାଲିଗଲେ ॥୨୨-୨୩॥ ବହୁ ବର୍ଷ ଧରି ଇନ୍ଦ୍ରିୟ ଭୋଗରେ ଥିଲେ ସୁଦ୍ଧା ରାଜା ଯଯାତି ଡେଣା ବାହାରିବା ପରେ ଚଢ଼େଇ ନିଜର ବସା ଛାଡ଼ି ଉଡ଼ିଯିବା ପରି ସମସ୍ତ ବିଷୟବାସନାକୁ ମୁହୂର୍ତ୍ତକ ମଧ୍ୟରେ ଛାଡ଼ିଦେଲେ ॥୨୪॥ ବନରେ ସେ ସମସ୍ତ ଆସକ୍ତିରୁ ମୁକ୍ତ ହୋଇ ପରଂବ୍ରହ୍ମ ପରମାତ୍ମା ବାସୁଦେବଙ୍କଠାରେ ମିଳିତ ହେଲେ । ଆତ୍ମଜ୍ଞାନ ଦ୍ୱାରା ତାଙ୍କର ତ୍ରିଗୁଣମୟ ଲିଙ୍ଗଶରୀର ନଷ୍ଟ ହୋଇଗଲା । ସେ ଭଗବତ୍‌ଭକ୍ତ ସାଧୁ ସନ୍ଥଙ୍କର ଗତି ଲାଭକଲେ ॥୨୫॥

ଦେବଯାନୀଙ୍କୁ ସ୍ୱାମୀ ପରିହାସ କଲାଭଳି ଯେଉଁ ଗାଥା ଶୁଣାଇଲେ, ସେଥିରୁ ସେ ମନେକଲେ ଯେ ତାଙ୍କୁ ନିବୃତ୍ତି ମାର୍ଗରେ ଯିବାପାଇଁ ପରୋକ୍ଷରେ ଉତ୍ସାହିତ କରାଯାଉଛି । ଭୃଗୁନନ୍ଦିନୀ ବୁଝିପାରିଲେ ଯେ, ସ୍ୱଜନମାନଙ୍କ ସହିତ ସଂଯୋଗ ହେଉଛି ଈଶ୍ୱରଙ୍କ ଅଧୀନ । ଜଳଛତ୍ରରେ ମିଳିତ ହେବା ପଥିକଙ୍କ ପରି ଏହା ହେଉଛି ଭଗବାନଙ୍କ ମାୟାର ଖେଳ । ତେଣୁ ସ୍ୱପ୍ନପରି ପ୍ରତୀୟମାନ ସେ ସମସ୍ତ ପଦାର୍ଥର ଆସକ୍ତି ତ୍ୟାଗ କରି ଏବଂ ଶ୍ରୀକୃଷ୍ଣଙ୍କଠାରେ ନିଜର ମନୋନିବେଶ କରି ସମସ୍ତ ବନ୍ଧନର ହେତୁ ଏହି ଲିଙ୍ଗଶରୀରକୁ ତ୍ୟାଗ କଲେ ॥୨୬-୨୮॥ ସେ ଭଗବାନଙ୍କୁ କହିଲେ, ହେ ସମସ୍ତ ଜଗତର ରଚୟିତା, ସର୍ବାଶ୍ରୟ, ଅନ୍ତର୍ଯାମୀ ପୁରୁଷ, ପରମ ଶାନ୍ତ ଭଗବାନ ବାସୁଦେବ, ମୁଁ ଆପଣଙ୍କୁ ନମସ୍କାର କରୁଛି ॥୨୯॥

## ବିଂଶ ଅଧ୍ୟାୟ

# ରାଜା ଦୁଷ୍ୟନ୍ତ ଓ ଭରତ

ଶ୍ରୀ ଶୁକଦେବ କହିଲେ, ପରିକ୍ଷିତ, ଯେଉଁ ବଂଶରେ ତୁମେ ଜନ୍ମଗ୍ରହଣ କରିଛ ଏବଂ ଅନେକ ରାଜର୍ଷି ଓ ବ୍ରାହ୍ମଣ ଜନ୍ମ ଗ୍ରହଣ କରିଛନ୍ତି, ରାଜା ପୁରୁଙ୍କର ସେହି ପ୍ରସିଦ୍ଧ ବଂଶ ମୁଁ ବର୍ଣ୍ଣନା କରୁଛି ॥୧॥ ପୁରୁଙ୍କଠାରୁ ଜନମେଜୟଙ୍କର ଜନ୍ମ । ତାଙ୍କର ପୁତ୍ର ହେଲେ ପ୍ରଚିନ୍ୱାନ୍ । ତାଙ୍କ ପୁତ୍ର ପ୍ରବୀର, ପ୍ରବୀରଙ୍କ ପୁତ୍ର ମନସ୍ୟୁ ଏବଂ ମନସ୍ୟୁଙ୍କର ପୁତ୍ର ଚାରୁପଦ ହେଲେ ॥୨॥ ଚାରୁପଦଙ୍କ ପୁତ୍ର ସୁଦ୍ୟୁ, ସୁଦ୍ୟୁଙ୍କର ପୁତ୍ର ବହୁଗବ, ତାଙ୍କ ପୁତ୍ର ସଂଯାତି, ସଂଯାତିଙ୍କର ଅହଂଯାତି ଓ ଅହଂଯାତିଙ୍କର ପୁତ୍ର ରୌଦ୍ରାଶ୍ୱ ହେଲେ ॥୩॥ ରୌଦ୍ରାଶ୍ୱଙ୍କ ଔରସରୁ ଓ ଅପ୍‌ସରା ଘୃତାଚୀଙ୍କ ଗର୍ଭରେ ଦଶଟି ପୁତ୍ର ଜନ୍ମ ହେଲେ--ଋତେୟୁ, କୁକ୍ଷେୟୁ, ସ୍ଥଣ୍ଡିଲେୟୁ, କୃତେୟୁ, ଜଳେୟୁ, ସନ୍ତତେୟୁ, ଧର୍ମେୟୁ, ସତ୍ୟେୟୁ, ବ୍ରତେୟୁ ଏବଂ ବନେୟୁ, ଯେପରି ମୁଖ୍ୟ ପ୍ରାଣରୁ ଦଶ ଇନ୍ଦ୍ରିୟ ହୁଅନ୍ତି ॥୪-୫॥ ରାଜା, ଏମାନଙ୍କ ମଧ୍ୟରେ ଋତେୟୁଙ୍କ ପୁତ୍ର ରନ୍ତିଭାର ଓ ରନ୍ତିଭାରଙ୍କର ତିନି ପୁଅ ହେଲେ--ସୁମତି, ଧ୍ରୁବ ଓ ଅପ୍ରତିରଥ । ଅପ୍ରତିରଥଙ୍କ ପୁତ୍ରର ନାମ ହେଲା କଣ୍ୱ ॥୬॥ କଣ୍ୱଙ୍କର ପୁତ୍ର ହେଲେ ମେଧାତିଥି । ଏହି ମେଧାତିଥିଙ୍କଠାରୁ ପ୍ରସ୍କଣ୍ୱ ଆଦି ଦ୍ୱିଜାତିମାନେ ଉତ୍ପନ୍ନ ହେଲେ । ସୁମତିଙ୍କର ପୁତ୍ର ହେଲେ ରୈଭ୍ୟ ଓ ରୈଭଙ୍କର ପୁତ୍ର ଦୁଷ୍ୟନ୍ତ ॥୭॥

ଥରେ ରାଜା ଦୁଷ୍ୟନ୍ତ ସୈନ୍ୟମାନଙ୍କ ସହ ମୃଗୟା କରିବାପାଇଁ ବନକୁ ଯାଇଥିଲେ । ସେଠାରେ ସେ କଣ୍ୱ ମୁନିଙ୍କର ଆଶ୍ରମରେ ପହଞ୍ଚିଲେ । ସେହି ଆଶ୍ରମରେ ଲକ୍ଷ୍ମୀଙ୍କ ପରି ଏକ ସୁନ୍ଦରୀ ସ୍ତ୍ରୀ ବସିଥିଲେ ଏବଂ ସେ ଦେବମାୟା ପରି ମନେ ହେଉଥିଲେ । ତାଙ୍କର ରୂପଲାବଣ୍ୟରେ ଆଶ୍ରମ ପୂରି ଉଠୁଥିଲା । ଏହି ସୁନ୍ଦରୀଙ୍କୁ ଦେଖି ଦୁଷ୍ୟନ୍ତ ଏପରି ମୋହିତ ହୋଇଗଲେ ଯେ ତାଙ୍କ ସହିତ ବାକ୍ୟାଳାପ କରିବାକୁ ଲାଗିଲେ ॥୮-୯॥ ଏହି ସୁନ୍ଦରୀଙ୍କ ଦର୍ଶନ ମାତ୍ରେ ତାଙ୍କର କ୍ଳାନ୍ତି ଦୂର ହୋଇଗଲା । ଇନ୍ଦ୍ରିୟରେ କାମବାସନା ଜାତହେଲା । ସେ ଅଳ୍ପ ହସି ମଧୁର ଭାବରେ ପଚାରିଲେ, କମଳନୟନୀ, ତୁମେ କିଏ ଓ କାହାର କନ୍ୟା ? ତୁମେ ମୋର ହୃଦୟକୁ ହରଣ କରିନେଇଛ । ଏହି ନିର୍ଜନ ବନରେ ତୁମେ କ'ଣ କରୁଛ ? ॥୧୦-୧୧॥ ସୁନ୍ଦରୀ, ମୁଁ ଜାଣିପାରୁଛି ଯେ, ତୁମେ ଜଣେ ରାଜକନ୍ୟା । କାରଣ ପୁରୁବଂଶୀୟଙ୍କ ମନ କେବେ ଅଧର୍ମଆଡ଼କୁ ଯାଏ ନାହିଁ ॥୧୨॥ ଶକୁନ୍ତଳା କହିଲେ, ମୁଁ ବିଶ୍ୱାମିତ୍ରଙ୍କର କନ୍ୟା । ମୋର ମାତା ମେନକା ମୋତେ ବନରେ ଛାଡ଼ି ଚାଲିଯାଇଥିଲେ । କଣ୍ୱଋଷି ତାହା ଜାଣି ମୋତେ ପ୍ରତିପାଳନ କରିଛନ୍ତି । ବୀର, ମୁଁ ଆପଣଙ୍କର କି ସେବା କରିପାରିବି ? ॥୧୩॥ କମଳନୟନ, ଆପଣ ବସନ୍ତୁ ଏବଂ ଆମର ସତ୍କାର ଗ୍ରହଣ କରନ୍ତୁ । ଏଠାରେ ନୀବାର ତଣ୍ଡୁଳର ଅନ୍ନ ଅଛି, ଭୋଜନ କରନ୍ତୁ ଏବଂ ଯଦି ଇଚ୍ଛା ହୁଏ, ଏଠାରେ ଅବସ୍ଥାନ କରନ୍ତୁ ॥୧୪॥ ଦୁଷ୍ୟନ୍ତ କହିଲେ, ସୁନ୍ଦରୀ, ତୁମେ କୁଶିକ ବଂଶରେ ଜନ୍ମଗ୍ରହଣ କରିଛ । ତେଣୁ ତୁମର ଅତିଥିସତ୍କାର ଯଥାଯଥ ହୋଇଛି । ରାଜକନ୍ୟାମାନେ ନିଜର ଯୋଗ୍ୟ ବର ସ୍ୱୟଂ ହିଁ ବରଣ କରିଥାଆନ୍ତି ॥୧୫॥ ଶକୁନ୍ତଳା ସ୍ୱୀକାର କରିବାରୁ ଦେଶ, କାଳ ଓ ବିଧିକୁ ଜାଣିଥିବା ରାଜା ଦୁଷ୍ୟନ୍ତ ଗନ୍ଧର୍ବ ବିଧିରେ ତାଙ୍କୁ ବିବାହ କଲେ ॥୧୬॥ ରାଜର୍ଷି ଦୁଷ୍ୟନ୍ତଙ୍କର ବୀର୍ଯ୍ୟ ଥିଲା ଅମୋଘ । ସେଠାରେ ରାତ୍ରିଯାପନ କରି ଶକୁନ୍ତଳାଙ୍କ ସହିତ ସହବାସ କଲେ ଓ ପ୍ରଭାତରେ ନିଜ ରାଜଧାନୀକୁ ଫେରିଗଲେ । ସମୟ କ୍ରମେ ଶକୁନ୍ତଳାଙ୍କର ଗୋଟିଏ ପୁତ୍ର ଜନ୍ମ ହେଲା ॥୧୭॥ ମହର୍ଷି କଣ୍ୱ ଏହି କୁମାରର ଜାତକର୍ମ ଆଦି ସଂସ୍କାର କଲେ । ବାଲ୍ୟକାଳରେ ଏହି ବାଳକ ଏପରି ବଳବାନ୍ ଥିଲା ଯେ ବଳପୂର୍ବକ ସିଂହମାନଙ୍କୁ ବାନ୍ଧିଆଣି ସେମାନଙ୍କ ସହିତ କ୍ରୀଡ଼ା କରୁଥିଲା ॥୧୮॥

ବରାଙ୍ଗନା ଶକୁନ୍ତଳା ବିଷ୍ଣୁଙ୍କ ଅଂଶରେ ଜାତ ଅମିତବିକ୍ରମ ଏହି ବାଳକକୁ ସଙ୍ଗରେ ନେଇ ସ୍ୱାମୀଙ୍କ ନିକଟକୁ ଯାତ୍ରା କଲେ । କିନ୍ତୁ ରାଜା ଦୁଷ୍ୟନ୍ତ ଏହି ଅନିନ୍ଦିତ ପତ୍ନୀ ଓ ପୁତ୍ରଙ୍କୁ ଗ୍ରହଣ କଲେ ନାହିଁ । ସେତେବେଳେ ସମସ୍ତେ ଶୁଣିପାରିବା ଭଳି ଏକ ଅଶରୀରୀ ଆକାଶବାଣୀ ଶୁଣାଗଲା--ପୁତ୍ରକୁ ଜନ୍ମଦେଇଥିବା ମାତା ହେଉଛି ଏକ ଚର୍ମମୟ ପାତ୍ର, ପୁତ୍ର ହେଉଛି ପିତାର । କାରଣ ପିତାର ଆତ୍ମା ହିଁ ପୁତ୍ର ରୂପରେ ଜନ୍ମହୁଏ । ତେଣୁ ରାଜା, ଏହି ପୁତ୍ରକୁ ପାଳନ କର । ଶକୁନ୍ତଳାଙ୍କୁ ଅବମାନନା କର ନାହିଁ । ବଂଶବୃଦ୍ଧି କରୁଥିବା ପୁତ୍ର ପିତାକୁ ଯମଦ୍ୱାରରୁ ଉଦ୍ଧାର କରିଥାଏ । ତୁମେ ହିଁ ଶକୁନ୍ତଳାଙ୍କର ଗର୍ଭାଧାନ କରିଛ । ତେଣୁ ସେ ଯାହା କହୁଛନ୍ତି, ସତ୍ୟ ॥୧୯-୨୨॥ ଆକାଶବାଣୀ ଶୁଣି ରାଜା ପତ୍ନୀ ଓ ପୁତ୍ରଙ୍କୁ ଗ୍ରହଣ କଲେ । ଦୁଷ୍ୟନ୍ତଙ୍କ ପରଲୋକପରେ ଏହି ଯଶସ୍ୱୀ କୁମାର ଭରତ ନାମରେ ସମସ୍ତ ପୃଥିବୀର ରାଜଚକ୍ରବର୍ତ୍ତୀ ହେଲେ । ବିଷ୍ଣୁଙ୍କର ଅଂଶ ବୋଲି ସାରା ବିଶ୍ୱରେ ତାଙ୍କର କୀର୍ତ୍ତି ବ୍ୟାପିଗଲା ॥୨୩॥ ଭରତଙ୍କର ଦକ୍ଷିଣ ହସ୍ତରେ ଚକ୍ର ଏବଂ ପଦଦ୍ୱୟରେ ପଦ୍ମଚିହ୍ନ ଥିଲା । ସେ ମହାଭିଷେକ ବିଧିରେ ଅଭିଷିକ୍ତ ହୋଇ ସମ୍ରାଟ ହୋଇଥିଲେ ଏବଂ ମମତାଙ୍କର ପୁତ୍ର ଭରଦ୍ୱାଜଙ୍କୁ ପୁରୋହିତ କରି ଗଙ୍ଗା ଓ ଯମୁନାର କୂଳରେ ପଞ୍ଚାବନଟି ପବିତ୍ର ଅଶ୍ୱଦ୍ୱାରା ଅଶ୍ୱମେଧ ଯଜ୍ଞ କରିଥିଲେ ॥୨୪-୨୫॥ ଏହାଛଡ଼ା ଦୁଷ୍ୟନ୍ତଙ୍କର ପୁତ୍ର ଭରତ ବହୁ ଧନଦାନପୂର୍ବକ ଅଠସ୍ତରିଟି ଯଜ୍ଞଅଶ୍ୱକୁ ଯଜ୍ଞପାଇଁ ବାନ୍ଧି ରଖି ସେତିକି ସଂଖ୍ୟକ ପବିତ୍ର ସ୍ଥାନମାନଙ୍କରେ ଅଶ୍ୱମେଧ ଯଜ୍ଞ କରିଥିଲେ । ଏକହଜାର ବ୍ରାହ୍ମଣଙ୍କୁ ଜଣ ଜଣ କରି ସେ ତେରହଜାର ଚୌରାଅଶି ଗୋଦାନ କରିଥିଲେ । ବ୍ରାହ୍ମଣମାନେ ତାହା ଭାଗ ଭାଗ କରି ନେଇଥିଲେ ॥୨୬॥ ପୁଣି ସେ ତେତିଶ ଶହ ଯଜ୍ଞ ଅଶ୍ୱକୁ ଯଜ୍ଞପାଇଁ ବନ୍ଧନ କରି ସମସ୍ତ ରାଜାଙ୍କୁ ବିସ୍ମିତ କରିଦେଇଥିଲେ । ତାଙ୍କ ଐଶ୍ୱର୍ଯ୍ୟ ଦେବତାମାନଙ୍କ ଐଶ୍ୱର୍ଯ୍ୟକୁ ବଳିଯାଇଥିଲା । ଦେବତାମାନଙ୍କ ମାୟାକୁ ଜୟ କରି ସେ ଶ୍ରୀହରିଙ୍କୁ ଲାଭ କରିଥିଲେ । ସେ ମଷ୍ଣାର ନାମକ କୌଣସି ଯଜ୍ଞ କର୍ମରେ ଶ୍ୱେତଦନ୍ତଯୁକ୍ତ ସୁବର୍ଣ୍ଣମଣ୍ଡିତ ଚତୁର୍ଦ୍ଦଶ ନିୟୁତ କୃଷ୍ଣହସ୍ତୀଙ୍କୁ ଦାନ କରିଥିଲେ ॥୨୭-୨୮॥ ଭରତ ଯେଉଁ ମହତ୍ କାର୍ଯ୍ୟ କଲେ, ତାଙ୍କ ପୂର୍ବରୁ ତାହା କୌଣସି ରାଜା କରିନଥିଲେ ଓ ପରେ ମଧ୍ୟ କୌଣସି ରାଜା କରିପାରିବେ ନାହିଁ, କାରଣ ହାତରେ କିଏ ସ୍ୱର୍ଗକୁ ଛୁଇଁପାରିବ ? ॥୨୯॥ ଦିଗ୍‌ବିଜୟରେ ଭରତ କିରାତ, ହୂଣ, ଯବନ, ପୌଣ୍ଡ୍ର, କଙ୍କ ଓ ଶକ ପ୍ରଭୃତି ମ୍ଳେଚ୍ଛ ବ୍ରାହ୍ମଣବିରୋଧୀ ରାଜାମାନଙ୍କୁ ମାରି ଦେଇଥିଲେ ॥୩୦॥ ପୂର୍ବକାଳରେ ଅସୁରମାନେ ଦେବତାମାନଙ୍କୁ ପରାଜିତ କରି ରସାତଳରେ ଆଶ୍ରୟ ଦେଇଥିଲେ ଓ ସୁରନାରୀମାନଙ୍କୁ ସେଠାକୁ ଅପହରଣ କରିନେଇଥିଲେ । ଭରତ ସେହି ଅସୁରମାନଙ୍କୁ ବିନାଶ କରି ସୁରନାରୀମାନଙ୍କୁ ଉଦ୍ଧାର କରିଥିଲେ ॥୩୧॥ ଭରତଙ୍କର ରାଜତ୍ୱରେ ପ୍ରଜାମାନଙ୍କର ସମସ୍ତ କାମନାକୁ ସ୍ୱର୍ଗ ଓ ପୃଥିବୀ ପୂର୍ଣ୍ଣ କରୁଥିଲେ । ସେ ସତେଇଶ ହଜାର ବର୍ଷପର୍ଯ୍ୟନ୍ତ ଏକ ଛତ୍ର ଶାସନ କରିଥିଲେ ॥୩୨॥ ଶେଷରେ ସମ୍ରାଟ ଭରତ ଇନ୍ଦ୍ରାଦି ଲୋକପାଳଙ୍କ ଆଖ୍ୟାଯୁକ୍ତ ଐଶ୍ୱର୍ଯ୍ୟ, ରାଜଲକ୍ଷ୍ମୀ ଓ ଅଖଣ୍ଡ ଶାସନଶକ୍ତି ଏବଂ ନିଜର ଜୀବନ ମଧ୍ୟ ମିଥ୍ୟା -- ଏହା ସ୍ଥିରକରି ସଂସାର ପ୍ରତି ଉଦାସୀନ ହେଲେ ॥୩୩॥

ପରୀକ୍ଷିତ, ବିଦର୍ଭ ରାଜାଙ୍କର ତିନି କନ୍ୟା ଭରତଙ୍କର ପତ୍ନୀ ଥିଲେ । ସେମାନଙ୍କ ଗର୍ଭରୁ ଅନେକ ପୁତ୍ର ଜନ୍ମ ହୋଇଥିଲେ । କିନ୍ତୁ ସେହି ପୁତ୍ରମାନେ ରାଜାଙ୍କର ଅନୁରୂପ ନୁହନ୍ତି ବୋଲି ରାଜା କହିବାରୁ, ରାଜା କାଳେ ସେମାନଙ୍କୁ ତ୍ୟାଗ କରିଦେବେ, ସେଥିପାଇଁ ପ୍ରସବ ପରେ ପରେ ରାଣୀମାନେ ଏହି ପୁତ୍ରମାନଙ୍କୁ ବ୍ୟଭିଚାର ଭୟରେ ମାରିଦେଉଥିଲେ । ଏହିପରି ନିଜ ବଂଶ ବିତଥ (ବିଚ୍ଛିନ୍ନ) ହେବାର ଦେଖି ଭରତ ପୁତ୍ରପାଇଁ ମରୁତ୍‌ସୋମ ନାମକ ଏକ ଯଜ୍ଞ କରିଥିଲେ । ସେ ଯଜ୍ଞରେ ସନ୍ତୁଷ୍ଟ ହୋଇ ମରୁତ୍‌ମାନେ ତାଙ୍କୁ ଭରଦ୍ୱାଜ ନାମରେ ଗୋଟିଏ ପୁତ୍ର ଦାନ କରିଥିଲେ ॥୩୪-୩୫॥

ରଦ୍ୱାଜଙ୍କର ଜନ୍ମ ବୃତ୍ତାନ୍ତ ହେଉଛି -- ଥରେ ବୃହସ୍ପତି ନିଜର ଗର୍ଭବତୀ ଭାଇବୋହୂ ସହିତ ସହବାସ କରିବାକୁ ବସିବାରୁ ଗର୍ଭସ୍ଥ ଶିଶୁ 'ଏଠି ଆଉ ସ୍ଥାନ ନାହିଁ' କହି ତାଙ୍କୁ ନିଷେଧ କଲା । ଏଥିରେ କ୍ରୁଦ୍ଧ ହୋଇ ବୃହସ୍ପତି ତାଙ୍କୁ ଅନ୍ଧ ହୁଅ ବୋଲି ଅଭିଶାପ ଦେଇ ସେଇ କ୍ଷେତ୍ରରେ ବୀର୍ଯ୍ୟ ତ୍ୟାଗ କଲେ ॥୩୬॥ କାଳେ ଜାଣିଲେ ସ୍ୱାମୀ ତାଙ୍କୁ ବ୍ୟଭିଚାର ଦୋଷରେ

ତ୍ୟାଗ କରିଦେବେ, ଏହି ଭୟରେ ଉତଥ୍ୟଙ୍କର ପତ୍ନୀ ମମତା ବୃହସ୍ପତିଙ୍କ ଦ୍ୱାରା ହେବାକୁ ଯାଉଥିବା ପୁତ୍ରକୁ ତ୍ୟାଗ କରିବାକୁ ଇଚ୍ଛା କଲେ । ଦେବତାମାନେ ଏହି ଗର୍ଭସ୍ଥ ଶିଶୁର ନାମକରଣ ସଂପର୍କରେ ଏହିପରି କହିଥିଲେ-- ॥୩୭॥ ବୃହସ୍ପତି ମମତାଙ୍କୁ କହୁଛନ୍ତି, ମୂଢ଼ ! ମୋର ଔରସରୁ ମୋ' ଭାଇଙ୍କ କ୍ଷେତ୍ରରେ ଏହିପରି ଆମ ଦୁହିଁଙ୍କର ଏଇ ଯେଉଁ ପୁତ୍ର (ଦ୍ୱାଜ) ଜନ୍ମିଛି, ତାହାକୁ ତୁମେ ଭରଣ (ପାଳନ) କର । ଏହା ଶୁଣି ମମତା କହିଲେ, ବୃହସ୍ପତି, ଏ ମୋ ପତିଙ୍କର ସନ୍ତାନ ନୁହେଁ । ତୁମର ଏବଂ ମୋର ଆମ ଦୁହିଁଙ୍କଠାରୁ ଜାତ(ଦ୍ୱାଜ) ପୁତ୍ର ହୋଇଥିବାରୁ ତୁମେ ଏହାକୁ ଭରଣ କର । ଏହିପରି ନିଜ ଭିତରେ ବିବାଦ କରି ଦୁହେଁ ସେ ପୁତ୍ରଟିକୁ ଛାଡ଼ି ଚାଲିଯିବାରୁ ଦେବତାମାନେ ତାର ନାମ ଦେଲେ ଭରଦ୍ୱାଜ ॥୩୮॥ ମହାରାଜ, ଦେବତାଙ୍କଦ୍ୱାରା ନାମିତ ଏହି ଜାରଜପୁତ୍ରକୁ ନିରର୍ଥକ ମଣି ମମତା ଛାଡ଼ିଦେବା ପରେ ମରୁତ୍‌ମାନେ ପାଳନ କରି ପୁତ୍ରହୀନ ଭରତଙ୍କୁ ଦାନ କରିଥିଲେ ॥୩୯॥

## ଏକବିଂଶ ଅଧ୍ୟାୟ

# ରାଜା ରନ୍ତିଦେବ

ଶ୍ରୀ ଶୁକଦେବ କହିଲେ, ପରିକ୍ଷିତ, ପୁତ୍ରହୀନ ବଂଶରେ ଦତ୍ତ ବୋଲି ଭରଦ୍ୱାଜଙ୍କର ନାମ ହେଲା ବିତଥ । ବିତଥଙ୍କର ପୁତ୍ର ମନ୍ୟୁ । ମନ୍ୟୁଙ୍କର ପାଞ୍ଚ ପୁଅ ହେଲେ । ବୃହତ୍‌କ୍ଷତ୍ର, ଜୟ, ମହାବୀର୍ଯ୍ୟ, ନର ଓ ଗର୍ଗ । ନରଙ୍କ ପୁତ୍ର ହେଲେ ସଂକୃତି ॥୧॥ ସଂକୃତିଙ୍କର ଦୁଇ ପୁଅ—ଗୁରୁ ଓ ରନ୍ତିଦେବ । ପରିକ୍ଷିତ, ରନ୍ତିଦେବଙ୍କର ନିର୍ମଳ ଯଶ ଇହଲୋକ ଓ ପରଲୋକରେ କୀର୍ତ୍ତିତ ହୁଏ ॥୨॥ ରନ୍ତିଦେବଙ୍କୁ ଦୈବାତ୍ ଅଜସ୍ର ଧନ ମିଳୁଥିଲା । ତଥାପି ସେ ନିଜେ ତାହା ଭୋଗ ନ କରି ଧନ ଆସିବାମାତ୍ରେ ତାହା ଦାନ କରିଦେଉଥିଲେ ଯାହାଫଳରେ ସେ ନିର୍ଦ୍ଧନ ହୋଇଗଲେ । ଏପରିକି ନିଜର ପରିବାର ସହ ଉପବାସ କଷ୍ଟ ସହିବାପାଇଁ ସେ କୁଣ୍ଠା ପ୍ରକାଶ କରୁନଥିଲେ । ଏହିପରି ଧୈର୍ଯ୍ୟ ଧରି ତାଙ୍କର ଅଠଚାଳିଶ ଦିନ କଟିଗଲା । ଅଣଚାଶ ଦିନ ସକାଳେ ଯେତେବେଳେ ତାଙ୍କ ପାଖରେ ଘିଅରେ ରନ୍ଧା ହୋଇଥିବା ଯବର ପାୟସ ଓ ପାଣି ଆସି ପହଞ୍ଚିଲା, ସେହି ସମୟରେ ଜଣେ ବ୍ରାହ୍ମଣ ଅତିଥି ରୂପରେ ପହଞ୍ଚିଗଲେ ॥୩-୫॥ ସବୁଠାରେ ଶ୍ରୀହରିଙ୍କୁ ଦର୍ଶନ କରୁଥିବା ରାଜା ଅତି ଶ୍ରଦ୍ଧାରେ ସେହି ଅନ୍ନରୁ କିଛି ବ୍ରାହ୍ମଣଙ୍କୁ ଖୁଆଇଲେ ॥୬॥ ପରିକ୍ଷିତ, ଯାହା ବାକି ରହିଲା ରନ୍ତିଦେବ ନିଜ ପରିବାର ମଧ୍ୟରେ ତାହା ବାଣ୍ଟିଦେଲେ ଓ ନିଜ ଭାଗଟିକୁ ଖାଇବାକୁ ଚାହିଁଲେ । ଏହି ସମୟରେ ଏକ ଶୂଦ୍ର ଅତିଥି ଆସି ପହଞ୍ଚିଲା । ରନ୍ତିଦେବ ଭଗବାନଙ୍କୁ ସ୍ମରଣ କରି ଏହି ଅନ୍ନରୁ କିଛି ଅଂଶ ସେଇ ଶୂଦ୍ରରୂପୀ ଅତିଥିଙ୍କୁ ଦାନ କଲେ ॥୭॥ ଶୂଦ୍ର ଚାଲିଯିବା ପରେ ସାଙ୍ଗରେ ଗୁଡ଼ିଏ କୁକୁର ଧରି ଅନ୍ୟ ଏକ ଅତିଥି ପହଞ୍ଚିଗଲେ । ସେ କହିଲେ, ରାଜା, ମୁଁ ଏବଂ ମୋର କୁକୁରଗୁଡ଼ିକ ବହୁତ ଭୋକିଲା ଅଛୁ । ଆମକୁ କିଛି ଖାଇବାକୁ ଦିଅନ୍ତୁ । ରନ୍ତିଦେବ ଅତି ଶ୍ରଦ୍ଧାରେ ଯାହା କିଛି ଖାଦ୍ୟ ବାକି ଥିଲା ତାହା ସବୁ ସେମାନଙ୍କୁ ଦେଇଦେଲେ ଏବଂ ଭଗବତ୍‌ଭାବରେ ତନ୍ମୟ ହୋଇ ସେହି କୁକୁରମାନଙ୍କୁ ଓ କୁକୁରଙ୍କ ମାଲିକଙ୍କୁ ନମସ୍କାର କଲେ ॥୮-୯॥ ଏବେ କେବଳ ବାକି ରହିଲା ଜଳ ଏବଂ ତାହା ଜଣେ ଲୋକର ପିଇବାପାଇଁ ହେବ । ରାଜା ତାକୁ ପିଇବାପାଇଁ ଯାଉଛନ୍ତି ଏହି ସମୟରେ ଜଣେ ତୃଷାର୍ତ୍ତ ଚଣ୍ଡାଳ ଆସି ପହଁଚିଗଲା । ସେ କହିଲା, ରାଜା, ମୁଁ ନୀଚ ଜାତିର । ମୋତେ କିଛି ପାଣି ପିଇବାକୁ ଦିଅନ୍ତୁ । ଚଣ୍ଡାଳଟି କ୍ଳାନ୍ତ ହୋଇପଡ଼ିଥିଲା ଏବଂ ବହୁ କଷ୍ଟରେ ସେ ଏତିକିମାତ୍ର ଉଚ୍ଚାରଣ କଲା । ଚଣ୍ଡାଳର କାତର ବାକ୍ୟ ଶୁଣି ଦୟାର୍ଦ୍ର ରନ୍ତିଦେବ କହିବାକୁ ଲାଗିଲେ -- ॥୧୦-୧୧॥ ମୁଁ ଭଗବାନଙ୍କଠାରୁ ଅଣିମାଦି ଅଷ୍ଟୈଶ୍ୱର୍ଯ୍ୟ ଚାହେ ନାହିଁ, ଏପରିକି ମୋକ୍ଷ ମଧ୍ୟ

କାମନା କରେ ନାହିଁ । ମୁଁ ଚାହେ କିପରି ସମସ୍ତ ପ୍ରାଣୀଙ୍କର ହୃଦୟରେ ରହି ମୁଁ ସେମାନଙ୍କର ସମସ୍ତ ଦୁଃଖ ସହିନେବି ଏବଂ ସେମାନଙ୍କର ଦୁଃଖ ରହିବ ନାହିଁ ॥୧୨॥ ବଞ୍ଚିବାକୁ ଚାହୁଁଥିବା କାତର ଜୀବକୁ ଜୀବନର ହେତୁ ଜଳ ଦେବାଦ୍ୱାରା ମୋର କ୍ଷୁଧା, ତୃଷା, ଶ୍ରମ, ଭ୍ରମ, ଦୈନ୍ୟ, କ୍ଲାନ୍ତି, ଶୋକ, ବିଷାଦ ଓ ମୋହ - ଏସବୁ ଦୂରହୋଇଗଲା ॥୧୩॥ ସ୍ୱଭାବତଃ ଦୟାଳୁ ଏବଂ ଧୈର୍ଯ୍ୟଶୀଳ ରାଜା ରନ୍ତିଦେବ ପିପାସାରେ ନିଜେ ମୃତପ୍ରାୟ ହେଲେ ହେଁ, ଏହିପରି କହି ଚଣ୍ଡାଳକୁ ସେହି ଜଳ ଦାନ କଲେ ॥୧୪॥

ରାଜା, ଏହି ଅତିଥିମାନେ ପ୍ରକୃତରେ ଭଗବାନଙ୍କ ରଚିତ ମାୟାରେ ବିଭିନ୍ନ ରୂପ ଧରି ଆସିଥିଲେ । ପରୀକ୍ଷା ଶେଷହେବା ପରେ ଭକ୍ତର କାମନା ପୂର୍ଣ୍ଣ କରିବାପାଇଁ ତିନିଲୋକର ଅଧୀଶ୍ୱର ବ୍ରହ୍ମା, ବିଷ୍ଣୁ, ଓ ମହେଶ୍ୱର ରନ୍ତିଦେବଙ୍କ ଆଗରେ ଉପସ୍ଥିତ ହେଲେ ॥୧୫॥ ରନ୍ତିଦେବ ସେମାନଙ୍କୁ ନମସ୍କାର କଲେ । ସେମାନଙ୍କଠାରୁ ତାଙ୍କର କିଛି ମାଗିବାର ନ ଥିଲା । ଭଗବାନଙ୍କ କରୁଣାରୁ ତାଙ୍କର କୌଣସି ଆସକ୍ତି ବା କାମନା ନ ଥିଲା । ସେ ଅତିଶୟ ଭକ୍ତିରେ ଭଗବାନ ଶ୍ରୀ ବାସୁଦେବଙ୍କଠାରେ ନିଜର ମନୋନିବେଶ କରିଥିଲେ ॥୧୬॥ ରାଜା, ଯେ ଅନନ୍ୟଭକ୍ତିର ସହିତ ଈଶ୍ୱରଙ୍କୁ ଏକମାତ୍ର ଅବଲମ୍ବନ ବୋଲି ମନେକରେ ଏବଂ ତାଙ୍କଠାରେ ନିଜର ଚିତ୍ତ ଅର୍ପଣ କରିଥାଏ, ତା'ପାଖରେ ଏହି ଗୁଣମୟୀ ମାୟା ସ୍ୱପ୍ନ ପରି ଆସି କୁଆଡ଼େ ଚାଲିଯାଏ ॥୧୭॥ ରନ୍ତିଦେବଙ୍କର ଅନୁଗାମୀ ଲୋକମାନେ ତାଙ୍କରି ପ୍ରଭାବରେ ଯୋଗୀ ହୋଇ ଭଗବାନଙ୍କର ପରମଭକ୍ତ ପାଲଟିଗଲେ ॥୧୮॥

ଗର୍ଗଙ୍କଠାରୁ ଶିନିଙ୍କର ଜନ୍ମ ହେଲା । ତାଙ୍କର ପୁତ୍ର ଗାର୍ଗ୍ୟ । ଗାର୍ଗ୍ୟ ଜନ୍ମରୁ କ୍ଷତ୍ରିୟ ଥିଲେ ହେଁ ବ୍ରାହ୍ମଣ ହୋଇଗଲେ । ମହାବୀର୍ଯ୍ୟଙ୍କ ପୁତ୍ର ଦୁରିତକ୍ଷୟଙ୍କର ତିନି ପୁତ୍ର ହେଲେ -- ତ୍ରୟ୍ୟାରୁଣି, କବି ଓ ପୁଷ୍କରାରୁଣି । ସେମାନେ କ୍ଷତ୍ରିୟ ହେଲେ ମଧ୍ୟ ବ୍ରାହ୍ମଣତ୍ୱ ଲାଭ କରିଥିଲେ । ବୃହତ୍‌କ୍ଷତ୍ରଙ୍କର ପୁତ୍ର ହସ୍ତୀ । ସେ ହସ୍ତିନାପୁର ନିର୍ମାଣ କରିଥିଲେ ॥୧୯-୨୦॥ ହସ୍ତୀଙ୍କର ତିନି ପୁଅ -- ଅଜମୀଢ଼, ଦ୍ୱିମୀଢ଼ ଓ ପୁରୁମୀଢ଼ । ଅଜମୀଢ଼ଙ୍କ ବଂଶରେ ପ୍ରିୟମେଧ ଆଦି ବ୍ରାହ୍ମଣମାନେ ଜନ୍ମ ହୋଇଥିଲେ ॥୨୧॥ ଅଜମୀଢ଼ଙ୍କର ପୁତ୍ର ବୃହଦିଷୁ, ବୃହଦିଷୁଙ୍କର ପୁତ୍ର ହେଲେ ବୃହଦ୍ଧନୁ, ବୃହଦ୍ଧନୁଙ୍କର ପୁତ୍ର ବୃହତ୍‌କାୟ ଓ ବୃହତ୍‌କାୟଙ୍କର ପୁତ୍ର ଜୟଦ୍ରଥ ॥୨୨॥ ଜୟଦ୍ରଥଙ୍କର ପୁତ୍ର ହେଲେ ବିଶଦ ଓ ବିଶଦଙ୍କର ପୁତ୍ର ସେନଜିତ୍ । ସେନଜିତ୍‌ଙ୍କର ଚାରି ପୁଅ -- ରୁଚିରାଶ୍ୱ, ଦୃଢ଼ଧନୁ, କାଶ୍ୟ ଓ ବତ୍ସ ॥୨୩॥ ରୁଚିରାଶ୍ୱଙ୍କର ପୁତ୍ର ପାର ଓ ତାଙ୍କ ପୁତ୍ର ପୃଥୁସେନ । ପାରଙ୍କର ଅନ୍ୟ ଏକ ପୁତ୍ର ଥିଲେ ନୀପ । ତାଙ୍କର ଶହେ ପୁଅ ହେଲେ ॥୨୪॥ ଏହି ନୀପ ଶୁକଙ୍କର କନ୍ୟା କୃତ୍ୱୀଙ୍କୁ ବିବାହ କଲେ । ତାଙ୍କର ବ୍ରହ୍ମଦତ୍ତ ନାମକ ପୁତ୍ର ଜନ୍ମହେଲେ । ବ୍ରହ୍ମଦତ୍ତ ଏକ ମହାନ୍ ଯୋଗୀ ଥିଲେ । ତାଙ୍କର ଔରସରୁ ପତ୍ନୀ ସରସ୍ୱତୀଙ୍କ ଗର୍ଭରେ ବିଷ୍ୱକ୍‌ସେନ ନାମକ ପୁତ୍ର ଜନ୍ମ ହେଲେ ॥୨୫॥ ଜୈଗୀଷବ୍ୟଙ୍କ ଉପଦେଶରେ ସେ ଯୋଗତନ୍ତ୍ର ପ୍ରଣୟନ କରିଥିଲେ । ବିଷ୍ୱକ୍‌ସେନଙ୍କର ପୁତ୍ର ହେଲେ ଉଦକ୍‌ସ୍ୱନ ଓ ତାଙ୍କର ପୁତ୍ର ଭଲ୍ଲାଟ । ସେମାନେ ସମସ୍ତେ ବୃହଦିଷୁଙ୍କର ବଂଶଧର ॥୨୬॥

ଦ୍ୱିମୀଢ଼ଙ୍କର ପୁତ୍ର ହେଲେ ଯବୀନର । ଯବୀନରଙ୍କର ପୁତ୍ର କୃତିମାନ୍ । କୃତିମାନ୍‌ଙ୍କର ପୁତ୍ର ସତ୍ୟଧୃତି । ସତ୍ୟଧୃତିଙ୍କର ପୁତ୍ର ଦୃଢ଼ନେମି ଓ ଦୃଢ଼ନେମିଙ୍କର ପୁତ୍ର ସୁପାର୍ଶ୍ୱ । ସୁପାର୍ଶ୍ୱଙ୍କର ପୁତ୍ର ସୁମତି, ସୁମତିଙ୍କ ପୁତ୍ର ସନ୍ନତିମାନ୍ ଓ ତାଙ୍କର ପୁତ୍ର କୃତି । ଏହି କୃତି ହିରଣ୍ୟନାଭଙ୍କଠାରୁ ଯୋଗବିଦ୍ୟା ଲାଭ କରିଥିଲେ ଏବଂ ପ୍ରାଚ୍ୟସାମବେଦକୁ ଛ'ଟି ସଂହିତାରେ ବିଭାଗ କରି ଅଧ୍ୟାପନା କରୁଥିଲେ । ନୀପବଂଶୀୟ କୃତିଙ୍କର ପୁତ୍ର ଉଗ୍ରାୟୁଧ, ତାଙ୍କର ପୁତ୍ର କ୍ଷେମ୍ୟ, କ୍ଷେମ୍ୟଙ୍କ ପୁତ୍ର ସୁବୀର ଓ ସୁବୀରଙ୍କର ପୁତ୍ର ରିପୁଂଜୟ ହେଲେ ॥୨୭-୨୯॥ ରିପୁଞ୍ଜୟଙ୍କର ବହୁରଥ ନାମକ ପୁତ୍ର ଜନ୍ମ ହେଲେ । ପୁରୁମୀଢ଼ ନିଃସନ୍ତାନ ଥିଲେ । ଅଜମୀଢ଼ଙ୍କର ଅନ୍ୟପତ୍ନୀ ନଳିନୀଙ୍କ ଗର୍ଭରୁ ନୀଳଙ୍କର ଜନ୍ମ ହେଲା । ନୀଳଙ୍କର ପୁତ୍ର ଶାନ୍ତି । ଶାନ୍ତିଙ୍କର ସୁଶାନ୍ତି, ସୁଶାନ୍ତିଙ୍କର ପୁରୁଜ, ପୁରୁଜଙ୍କର ଅର୍କ ଏବଂ ଅର୍କଙ୍କର ପୁତ୍ର ହେଲେ ଭର୍ମ୍ୟାଶ୍ୱ । ଭର୍ମ୍ୟାଶ୍ୱଙ୍କର ପାଞ୍ଚ ପୁଅ ଥିଲେ -- ମୁଦ୍‌ଗଳ, ଯବୀନର, ବୃହଦିଷୁ, କାମ୍ପିଲ୍ୟ ଓ ସଂଜୟ । ଭର୍ମ୍ୟାଶ୍ୱ କହିଥିଲେ ମୋର ଏହି ପାଞ୍ଚ ଜଣ ପୁତ୍ର ପାଞ୍ଚଟି ଦେଶକୁ ଶାସନ କରିବାପାଇଁ ସମର୍ଥ ।

ସେଥିପାଇଁ ସେମାନେ ପଞ୍ଚାଳ ନାମରେ ପ୍ରସିଦ୍ଧ ହେଲେ । ଏମାନଙ୍କ ମଧ୍ୟରେ ମୁଦ୍‌ଗଳଙ୍କଠାରୁ ମୌଦ୍‌ଗଲ୍ୟ ନାମକ ବ୍ରାହ୍ମଣଗୋତ୍ରର ସୃଷ୍ଟି ହେଲା ॥୩୦-୩୩॥ ଭର୍ମ୍ୟାଶ୍ୱଙ୍କର ପୁତ୍ର ମୁଦ୍‌ଗଳଙ୍କର ଯୁଗଳ (ମିଥୁନ) ସନ୍ତାନ ହେଲେ; ସେ ଦୁହିଙ୍କ ମଧ୍ୟରୁ ପୁତ୍ରର ନାମ ହେଲା ଦିବୋଦାସ ଓ କନ୍ୟାର ନାମ ଅହଲ୍ୟା । ଅହଲ୍ୟା ମହର୍ଷି ଗୌତମଙ୍କୁ ବିବାହ କରିଥିଲେ । ଗୌତମଙ୍କ ପୁତ୍ର ହେଲେ ଶତାନନ୍ଦ । ଶତାନନ୍ଦଙ୍କର ପୁତ୍ର ସତ୍ୟଧୃତି । ସେ ଧନୁର୍ବିଦ୍ୟାରେ ନିପୁଣ ଥିଲେ । ସତ୍ୟଧୃତିଙ୍କ ପୁତ୍ରର ନାମ ଶରଦ୍ୱାନ୍ । ଦିନେ ଉର୍ବଶୀଙ୍କୁ ଦେଖିବା ମାତ୍ରେ ଶରଦ୍ୱାନ୍‌ଙ୍କର ବୀର୍ଯ୍ୟ ଶରବନରେ ସ୍ଖଳିତ ହେଲା । ସେଥିରୁ ଦୁଇଟି ସୁନ୍ଦର ସନ୍ତାନଙ୍କର ଜନ୍ମ ହେଲା । ମହାମନା ଶନ୍ତନୁ ମୃଗୟାକୁ ଯାଇ ବନରେ ବୁଲୁବୁଲୁ ଏହି ଶିଶୁ ଦୁଇଟିଙ୍କୁ ଦେଖି କୃପା କରିଥିଲେ । ଶନ୍ତନୁ ପାଳନ କରିଥିବା ଏହି ସନ୍ତାନଦ୍ୱୟଙ୍କ ମଧ୍ୟରୁ ପୁଅର ନାମ ହେଲା କୃପ ଓ କନ୍ୟାର ନାମ କୃପୀ । ଏହି କୃପୀ ଦ୍ରୋଣାଚାର୍ଯ୍ୟଙ୍କର ପତ୍ନୀ ହେଲେ ॥୩୪-୩୬॥

## ଦ୍ୱାବିଂଶ ଅଧ୍ୟାୟ

# ପାଞ୍ଚାଳ, କୌରବ ଓ ମଗଧ ରାଜବଂଶ

ଶ୍ରୀ ଶୁକଦେବ କହିଲେ, ପରିକ୍ଷିତ, ଦିବୋଦାସଙ୍କ ପୁତ୍ର ମିତ୍ରାୟୁ, ମିତ୍ରାୟୁଙ୍କର ଚାରିପୁଅ -- ଚ୍ୟବନ, ସୁଦାସ, ସହଦେବ ଓ ସୋମକ । ସୋମକଙ୍କର ଶହେ ପୁଅ । ଜ୍ୟେଷ୍ଠ ହେଲେ ଜନ୍ତୁ ଓ କନିଷ୍ଠ ପୃଷତ । ପୃଷତଙ୍କର ପୁତ୍ର ଦ୍ରୁପଦ, ଦ୍ରୁପଦଙ୍କ କନ୍ୟାର ନାମ ଦ୍ରୌପଦୀ ଓ ପୁତ୍ରଙ୍କ ମଧ୍ୟରେ ଧୃଷ୍ଟଦ୍ୟୁମ୍ନ ପ୍ରଧାନ ଥିଲେ ॥୧-୨॥ ଧୃଷ୍ଟଦ୍ୟୁମ୍ନଙ୍କର ପୁତ୍ର ଧୃଷ୍ଟକେତୁ । ଭର୍ମ୍ୟାଶ୍ୱ ବଂଶରୁ ଜନ୍ମ ହୋଇ ଏମାନେ ପାଞ୍ଚାଳ ନାମରେ ପ୍ରସିଦ୍ଧ ହେଲେ । ଅଜମୀଢ଼ଙ୍କ ଅନ୍ୟ ପୁତ୍ର ଥିଲେ ଋକ୍ଷ; ତାଙ୍କର ପୁତ୍ର ସମ୍ବରଣ, ସମ୍ବରଣଙ୍କର ବିବାହ ସୂର୍ଯ୍ୟକନ୍ୟା ତପତୀଙ୍କ ସହିତ ହୋଇଥିଲା । ତାଙ୍କର ଗର୍ଭରୁ କୁରୁକ୍ଷେତ୍ରର ଅଧିପତି କୁରୁଙ୍କର ଜନ୍ମ ହୋଇଥିଲା । କୁରୁଙ୍କର ଚାରି ଜଣ ପୁଅ ହେଲେ -- ପରୀକ୍ଷିତ, ସୁଧନୁ, ଜହ୍ନୁ ଓ ନିଷଧାଶ୍ୱ ॥୩-୪॥ ସୁଧନୁଙ୍କଠାରୁ ସୁହୋତ୍ର, ସୁହୋତ୍ରଙ୍କଠାରୁ ଚ୍ୟବନ, ଚ୍ୟବନଙ୍କଠାରୁ କୃତୀ, କୃତୀଙ୍କଠାରୁ ଉପରିଚରବସୁ ଓ ଉପରିଚରବସୁଙ୍କଠାରୁ ବୃହଦ୍‌ରଥ ଆଦି କେତେକ ପୁତ୍ର ଜନ୍ମ ହେଲେ । ଏମାନଙ୍କ ମଧ୍ୟରେ ବୃହଦ୍‌ରଥ, କୁଶାମ୍ବ, ମତ୍ସ୍ୟ, ପ୍ରତ୍ୟଗ୍ର, ଚେଦିପ ଆଦି ଚେଦି ଦେଶର ରାଜା ହେଲେ । ବୃହଦ୍‌ରଥଙ୍କର ପୁତ୍ର କୁଶାଗ୍ର, କୁଶାଗ୍ରଙ୍କର ଋଷଭ, ଋଷଭଙ୍କର ସତ୍ୟହିତ, ସତ୍ୟହିତଙ୍କର ପୁଷ୍ପବାନ ଓ ପୁଷ୍ପବାନଙ୍କର ପୁତ୍ର ହେଲେ ଜହ୍ନୁ । ବୃହଦ୍‌ରଥଙ୍କ ଅନ୍ୟ ପତ୍ନୀଙ୍କ ଗର୍ଭରୁ ଗୋଟିଏ ପୁତ୍ର ଦୁଇଟି ଖଣ୍ଡ ହୋଇ ଜନ୍ମ ହେଲା ॥୫-୭॥ ପୁତ୍ରର ମା'ତାକୁ ବାହାରେ ଫିଙ୍ଗିଦେଲା । ଜରା ନାମକ ରାକ୍ଷସୀ 'ଜୀଅ, ଜୀଅ' ବୋଲି କହି କ୍ରୀଡ଼ା ଛଳରେ ସେହି ଦୁଇ ଖଣ୍ଡକୁ ଏକାଠି କରିଦେଲା । ଏହିପୁତ୍ର ଜୀଇଉଠି ଜରାସନ୍ଧ ନାମରେ ପ୍ରସିଦ୍ଧ ହେଲା ॥୮॥ ଜରାସନ୍ଧଙ୍କର ପୁତ୍ର ହେଲେ ସହଦେବ, ସହଦେବଙ୍କର ପୁତ୍ର ସୋମାପି ଓ ସୋମାପିଙ୍କ ପୁତ୍ର ହେଲେ ଶ୍ରୁତଶ୍ରବା । କୁରୁଙ୍କର ଜ୍ୟେଷ୍ଠପୁତ୍ର ପରୀକ୍ଷିତ୍ ନିଃସନ୍ତାନ ଥିଲେ । ଜହ୍ନୁଙ୍କର ପୁତ୍ର ହେଲେ ସୁରଥ । ସୁରଥଙ୍କର ପୁତ୍ର ବିଦୂରଥ, ବିଦୂରଥଙ୍କର ସାର୍ବଭୌମ, ସାର୍ବଭୌମଙ୍କର ଜୟସେନ, ଜୟସେନଙ୍କର ରାଧିକ ଏବଂ ରାଧିକଙ୍କର ପୁତ୍ର ହେଲେ ଅୟୁତ ॥୯-୧୦॥ ଅୟୁତଙ୍କର ପୁତ୍ର କ୍ରୋଧନ, କ୍ରୋଧନଙ୍କର ଦେବାତିଥି, ଦେବାତିଥିଙ୍କର ଋଷ୍ୟ, ଋଷ୍ୟଙ୍କର ଦିଲୀପ ଓ ଦିଲୀପଙ୍କର ପୁତ୍ର ହେଲେ ପ୍ରତୀପ ॥୧୧॥ ପ୍ରତୀପଙ୍କର ହେଲେ ତିନି ପୁଅ -- ଦେବାପି, ଶନ୍ତନୁ ଏବଂ ବାହ୍ଲୀକ । ଦେବାପି ନିଜର ପିତୃ ରାଜ୍ୟ ଛାଡ଼ିଦେଇ ବନକୁ ଚାଲିଗଲେ ॥୧୨॥ ସେଥିପାଇଁ ତାଙ୍କର ସାନଭାଇ ଶନ୍ତନୁ ରାଜା ହେଲେ । ପୂର୍ବ ଜନ୍ମରେ ଶନ୍ତନୁଙ୍କର ନାମ ଥିଲା ମହାଭିଷ । ଏ ଜନ୍ମରେ ସେ ନିଜ ହାତରେ ଯାହାକୁ ଛୁଇଁଦେଉଥିଲେ, ସେ ବୁଢ଼ାରୁ ଯୁବକ ହୋଇଯାଉଥିଲା ॥୧୩॥

ତଦ୍ୱାରା ସେ ପରମ ଶାନ୍ତି ଲାଭ କରୁଥିଲେ । ଏଥିପାଇଁ ସେ ଶନ୍ତନୁ ନାମରେ ପ୍ରସିଦ୍ଧ ହେଲେ । ଥରେ ତାଙ୍କ ରାଜ୍ୟରେ ବାର ବର୍ଷପର୍ଯ୍ୟନ୍ତ ଇନ୍ଦ୍ର ବର୍ଷା କଲେ ନାହିଁ । ବ୍ରାହ୍ମଣମାନେ ତାଙ୍କୁ କହିଲେ, ତୁମେ ତୁମର ବଡ଼ ଭାଇ ଥାଉ ଥାଉ ରାଜ୍ୟ ଭୋଗ କରୁଥିବା ଯୋଗୁ ପରିବେତ୍ତା ହେବା ଦୋଷରେ ଦୂଷିତ ହୋଇଯାଇଛ । ତେଣୁ ତୁମ ରାଜ୍ୟରେ ବର୍ଷା ହେଉ ନାହିଁ । ତେଣୁ ନିଜର ନଗର ଓ ରାଷ୍ଟ୍ରର ଅଭିବୃଦ୍ଧିପାଇଁ ଶୀଘ୍ର ବଡ଼ଭାଇଙ୍କୁ ରାଜ୍ୟ ଫେରାଇଦିଅ ॥୧୪-୧୫॥ ବ୍ରାହ୍ମଣମାନଙ୍କଠାରୁ ଏହିପରି ଶୁଣି ଶନ୍ତନୁ ବନକୁ ଯାଇ ବଡ଼ଭାଇ ଦେବାପିଙ୍କୁ ରାଜ୍ୟଭାର ନେବାକୁ ଅନୁରୋଧ କଲେ । ଏହା ପୂର୍ବରୁ ଶନ୍ତନୁଙ୍କର ମନ୍ତ୍ରୀ ଅଶ୍ମରାତ ଦେବାପିଙ୍କ ପାଖକୁ ଏପରି କେତେକ ବ୍ରାହ୍ମଣଙ୍କୁ ପଠାଇଥିଲେ, ଯେଉଁମାନେ ବେଦବିରୋଧୀ ବାକ୍ୟଦ୍ୱାରା ଦେବାପିଙ୍କୁ ବେଦମାର୍ଗରୁ ବିଚଳିତ କରିଦେଇଥିଲେ, ଯାହାଫଳରେ ସେ ବେଦମାନଙ୍କୁ ନିନ୍ଦା କରିଥିଲେ । ତଦ୍ୱାରା ସେ ଅଧଃପତିତ ହୋଇଥିବା ଯୋଗୁ ରାଜ୍ୟଭାର ଗ୍ରହଣ କଲେ ନାହିଁ ଏବଂ ଶନ୍ତନୁ ନିର୍ଦ୍ଦୋଷ ଥିବାଯୋଗୁଁ ରାଜା ହେବାରୁ ବର୍ଷା ହେଲା । ଦେବାପି ଯୋଗୀମାନଙ୍କର ପ୍ରସିଦ୍ଧ ନିବାସସ୍ଥାନ କଳାପ ଗ୍ରାମରେ ରହି ଯୋଗସାଧନା କଲେ ॥୧୬-୧୭॥

କଳିଯୁଗରେ ଚନ୍ଦ୍ରବଂଶ ଲୋପ ପାଇଲେ, ସତ୍ୟଯୁଗର ଆରମ୍ଭରେ ସେ ପୁଣି ଏହି ବଂଶକୁ ଆରମ୍ଭ କରିବେ । ଶନ୍ତନୁଙ୍କ ଛୋଟଭାଇ ବାହ୍ଲୀକଙ୍କ ପୁତ୍ର ହେଲେ ସୋମଦତ୍ତ । ସୋମଦତ୍ତଙ୍କର ତିନି ପୁତ୍ର -- ଭୂରି, ଭୂରିଶ୍ରବା ଓ ଶଳ । ଶନ୍ତନୁଙ୍କ ଦ୍ୱାରା ଗଂଗାଙ୍କ ଗର୍ଭରୁ ଭୀଷ୍ମଙ୍କର ଜନ୍ମ ହେଲା । ସେ ଆତ୍ମତତ୍ତ୍ୱଜ୍ଞ, ଧର୍ମଜ୍ଞମାନଙ୍କ ମଧ୍ୟରେ ଶ୍ରେଷ୍ଠ, ଭଗବାନଙ୍କର ଭକ୍ତ ଓ ବିଦ୍ୱାନ୍ ଥିଲେ ॥୧୮-୧୯॥ ସେ ସଂସାରର ସମସ୍ତ ବୀରଙ୍କର ଅଗ୍ରଗଣ୍ୟ ନେତା ଥିଲେ । ସେ ନିଜର ଗୁରୁ ପରଶୁରାମଙ୍କୁ ମଧ୍ୟ ପରାସ୍ତ କରି ଯୁଦ୍ଧରେ ସନ୍ତୁଷ୍ଟ କରିଥିଲେ । ଶନ୍ତନୁଙ୍କ ଔରସରୁ କୈବର୍ତ୍ତକନ୍ୟା ସତ୍ୟବତୀଙ୍କ ଗର୍ଭରେ ଚିତ୍ରାଙ୍ଗଦ ଓ ବିଚିତ୍ରବୀର୍ଯ୍ୟ ଜନ୍ମ ହେଲେ । ଚିତ୍ରାଙ୍ଗଦ ଚିତ୍ରାଙ୍ଗଦ ନାମକ ଜଣେ ଗନ୍ଧର୍ବଦ୍ୱାରା ଯୁଦ୍ଧରେ ନିହତ ହେଲେ । ଏହି ଦାଶକନ୍ୟା ସତ୍ୟବତୀଙ୍କ ଗର୍ଭରେ ଋଷି ପରାଶରଙ୍କ ଔରସରୁ ଭଗବାନଙ୍କ କଳାରେ ମୋର ପିତା କୃଷ୍ଣଦ୍ୱୈପାୟନ ବ୍ୟାସ ଜନ୍ମ ହେଲେ । ସେ ବେଦକୁ ରକ୍ଷା କରିଥିଲେ । ତାଙ୍କଠାରୁ ଏହି ଭାଗବତପୁରାଣ ମୁଁ ଅଧ୍ୟୟନ କରିଥିଲି । ପୈଳ ଆଦି ତାଙ୍କର ଶିଷ୍ୟମାନଙ୍କୁ ଏହି ପରମ ରହସ୍ୟମୟ ଭାଗବତକୁ ନ ଦେଇ ମୋତେ ସେଥିପାଇଁ ଯୋଗ୍ୟ ବୋଲି ମନେ କଲେ । ପ୍ରଥମତଃ ମୁଁ ତାଙ୍କର ପୁତ୍ର, ପୁଣି ଶାନ୍ତି ଆଦି ଗୁଣ ମୋଠାରେ ବିଶେଷ ଭାବରେ ଥିଲା ॥୨୦-୨୩॥

ବିଚିତ୍ରବୀର୍ଯ୍ୟ କାଶିରାଜକନ୍ୟା ଅମ୍ବା ଓ ଅମ୍ବାଳିକାଙ୍କୁ ବିବାହ କରିଥିଲେ । ସେ ଦୁହିଁଙ୍କୁ ଭୀଷ୍ମ ସ୍ୱୟମ୍ବର ସଭାରୁ ବଳପୂର୍ବକ ନେଇ ଆସିଥିଲେ । ସେ ଦୁହିଁଙ୍କ ପ୍ରତି ବିଚିତ୍ରବୀର୍ଯ୍ୟ ଏପରି ଆସକ୍ତ ହୋଇ ପଡ଼ିଥିଲେ ଯେ, ରାଜଯକ୍ଷ୍ମା ରୋଗରେ ପୀଡ଼ିତ ହୋଇ ମୃତ୍ୟୁବରଣ କଲେ ॥୨୪॥ ମାତା ସତ୍ୟବତୀଙ୍କର ଅନୁରୋଧରେ ବ୍ୟାସଦେବ ନିଃସନ୍ତାନ ବିଚିତ୍ରବୀର୍ଯ୍ୟଙ୍କର ଦୁଇ ପତ୍ନୀଙ୍କ ସହିତ ସହବାସ କରିଥିଲେ । ତାଙ୍କର ଔରସରୁ ଧୃତରାଷ୍ଟ୍ର ଓ ପାଣ୍ଡୁ ଏହି ଦୁଇପୁତ୍ରଙ୍କର ଜନ୍ମ ହେଲା । ବିଚିତ୍ରବୀର୍ଯ୍ୟଙ୍କର ଦାସୀଠାରୁ ବ୍ୟାସଦେବଙ୍କଦ୍ୱାରା ତୃତୀୟ ପୁତ୍ର ବିଦୁର ଜନ୍ମ ହେଲେ ॥୨୫॥

ପରୀକ୍ଷିତ, ଧୃତରାଷ୍ଟ୍ରଙ୍କର ପତ୍ନୀ ହେଲେ ଗାଂଧାରୀ । ତାଙ୍କଠାରୁ ଶହେ ପୁଅ ଜନ୍ମ ହୋଇଥିଲେ । ସେମାନଙ୍କ ମଧ୍ୟରେ ଦୁର୍ଯ୍ୟୋଧନ ଥିଲେ ଜ୍ୟେଷ୍ଠପୁତ୍ର ଏବଂ ଏକମାତ୍ର କନ୍ୟା ଥିଲେ ଦୁଃଶଳା ॥୨୬॥ ପାଣ୍ଡୁଙ୍କର ପତ୍ନୀ ହେଲେ କୁନ୍ତୀ । ଶାପବଶତଃ ପାଣ୍ଡୁ ସ୍ତ୍ରୀସହବାସ କରିପାରୁ ନ ଥିଲେ । ତେଣୁ ତାଙ୍କର ପତ୍ନୀ କୁନ୍ତୀଙ୍କ ଗର୍ଭରେ ଧର୍ମ, ବାୟୁ ଓ ଇନ୍ଦ୍ରଙ୍କ ଦ୍ୱାରା ଯୁଧିଷ୍ଠିର, ଭୀମ ଓ ଅର୍ଜୁନ ନାମରେ ଯଥାକ୍ରମେ ତିନୋଟି ପୁତ୍ର ଜନ୍ମ ହେଲେ । ଏହି ତିନି ଜଣ ମହାରଥୀ ଥିଲେ ॥୨୭॥ ପାଣ୍ଡୁଙ୍କ ଦ୍ୱିତୀୟ ପତ୍ନୀଙ୍କର ନାମ ହେଲା ମାଦ୍ରୀ । ଅଶ୍ୱିନୀକୁମାରଙ୍କଠାରୁ ମାଦ୍ରୀଙ୍କ ଗର୍ଭରେ ନକୁଳ ଓ ସହଦେବଙ୍କର ଜନ୍ମ ହେଲା । ପରିକ୍ଷିତ, ଏହି ପଞ୍ଚପାଣ୍ଡବଙ୍କ ଦ୍ୱାରା ଦ୍ରୌପଦୀଙ୍କ ଗର୍ଭରୁ ପଞ୍ଚପୁତ୍ର ଜନ୍ମ ହେଲେ । ସେମାନେ ହେଲେ ତୁମର ପିତୃବ୍ୟ ॥୨୮॥ ଯୁଧିଷ୍ଠିରଙ୍କର ପୁତ୍ର ହେଲେ ପ୍ରତିବିନ୍ଧ୍ୟ, ଭୀମଙ୍କର ପୁତ୍ର ଶ୍ରୁତସେନ, ଅର୍ଜୁନଙ୍କର ଶ୍ରୁତକୀର୍ତ୍ତି, ନକୁଳଙ୍କର ଶତାନୀକ ଓ ସହଦେବଙ୍କର ପୁତ୍ର

ହେଲେ ଶ୍ରୁତକର୍ମ । ଏହାଛଡ଼ା ଯୁଧିଷ୍ଠିରଙ୍କର ପୌରବୀ ନାମକ ପତ୍ନୀଙ୍କଠାରୁ ଦେବକ ଓ ଭୀମସେନଙ୍କର ହିଡ଼ିମ୍ବାଙ୍କ ଗର୍ଭରୁ ଘଟୋତ୍କଚ ଓ ଅନ୍ୟ ପତ୍ନୀ କାଳୀଙ୍କ ଗର୍ଭରୁ ସର୍ବଗତ ନାମକ ପୁତ୍ର ହେଲେ । ସହଦେବଙ୍କର ପର୍ବତକନ୍ୟା ବିଜୟାଙ୍କ ଗର୍ଭରୁ ସୁହୋତ୍ର ଏବଂ ନକୁଳଙ୍କର କରେଣୁମତୀଙ୍କ ଗର୍ଭରୁ ନରମିତ୍ର ଜନ୍ମ ହେଲେ । ଅର୍ଜୁନଙ୍କ ଦ୍ୱାରା ନାଗକନ୍ୟା ଉଲୂପୀଙ୍କ ଗର୍ଭରୁ ଇରାବାନ୍ ଓ ମଣିପୁର ରାଜକନ୍ୟାଙ୍କ ଗର୍ଭରୁ ବଭ୍ରୁବାହନଙ୍କର ଜନ୍ମ ହେଲା । ବଭ୍ରୁବାହନଙ୍କୁ ତାଙ୍କର ପିତାମହ ପୁଅ କରିନେଲେ । କାରଣ ପୂର୍ବରୁ ଏହା ତାଙ୍କ ସହିତ ଚୁକ୍ତି ହୋଇଥିଲା ॥୨୯-୩୨॥

ଅର୍ଜୁନଙ୍କର ସୁଭଦ୍ରା ନାମକ ପତ୍ନୀଙ୍କଠାରୁ ତୁମର ପିତା ଅଭିମନ୍ୟୁ ଜନ୍ମ ହୋଇଥିଲେ । ସମସ୍ତ ଅତିରଥୀମାନଙ୍କୁ ବୀର ଅଭିମନ୍ୟୁ ପରାସ୍ତ କରିଥିଲେ । ଅଭିମନ୍ୟୁଙ୍କ ଦ୍ୱାରା ଉତ୍ତରାଙ୍କ ଗର୍ଭରୁ ତୁମର ଜନ୍ମ ହେଲା ॥୩୩॥ ପରିକ୍ଷିତ, ଏହି ସମୟରେ କୁରୁବଂଶ ନାଶ ହେବାକୁ ବସିଥିଲା । ଅଶ୍ୱତ୍‌ଥାମାଙ୍କ ବ୍ରହ୍ମାସ୍ତ୍ରର ତେଜରେ ତୁମେ ମଧ୍ୟ ବିନାଶ ପ୍ରାପ୍ତ ହୋଇଥିଲ; କିନ୍ତୁ ଭଗବାନ ଶ୍ରୀକୃଷ୍ଣଙ୍କ ପ୍ରଭାବରେ ମୃତ୍ୟୁପାଶରୁ ମୁକ୍ତ ହୋଇ ତୁମେ ଜୀବିତ ରହିଛ ॥୩୪॥ ଏଠାରେ ଥିବା ତୁମର ଏହି ପୁତ୍ରମାନେ ହେଉଛନ୍ତି — ବଡ଼ ଜନମେଜୟ, ଶ୍ରୁତସେନ, ଭୀମସେନ ଏବଂ ଉଗ୍ରସେନ । ଏମାନେ ସମସ୍ତେ ବୀର ଯୋଦ୍ଧା ॥୩୫॥ ଯେବେ ତକ୍ଷକର ଦଂଶନରେ ତୁମର ମୃତ୍ୟୁ ହେବ, ସେତେବେଳେ ତାହା ଜାଣି କ୍ରୁଦ୍ଧ ଜନମେଜୟ ଏକ ସର୍ପଯଜ୍ଞ କରି ସର୍ପମାନଙ୍କୁ ଅଗ୍ନିରେ ହବନ କରିବେ ॥୩୬॥ ଏହାପରେ ସେ ସମସ୍ତ ପୃଥିବୀକୁ ଜୟ କରି ଅଶ୍ୱମେଧ ଯଜ୍ଞରେ ପ୍ରବୃତ୍ତ ହେବେ ଏବଂ କବଷଙ୍କର ପୁତ୍ର ତୁରଙ୍କୁ ପୁରୋହିତ ରୂପେ ବରଣ କରି ଏହି ଯଜ୍ଞମାନଙ୍କଦ୍ୱାରା ଭଗବାନଙ୍କୁ ଆରଧନା କରିବେ ॥୩୭॥ ଜନମେଜୟଙ୍କର ପୁତ୍ର ହେବେ ଶତାନୀକ । ସେ ଯାଜ୍ଞବଲ୍କ୍ୟ ଋଷିଙ୍କଠାରୁ ତିନି ବେଦ ଓ କୃପାଚାର୍ଯ୍ୟଙ୍କଠାରୁ ଅସ୍ତ୍ରବିଦ୍ୟା ଶିକ୍ଷା କରିବେ ଏବଂ ଶୌନକଙ୍କଠାରୁ କ୍ରିୟାଯୋଗର ଜ୍ଞାନ ଲାଭ କରି ଭଗବାନଙ୍କର ପରମପଦ ପ୍ରାପ୍ତ ହେବେ ॥୩୮॥ ଶତାନୀକଙ୍କର ପୁତ୍ର ହେବେ ସହସ୍ରାନୀକ । ସହସ୍ରାନୀକଙ୍କର ଅଶ୍ୱମେଧଜ, ଅଶ୍ୱମେଧଜଙ୍କର ଅସୀମକୃଷ୍ଣ ଏବଂ ଅସୀମକୃଷ୍ଣଙ୍କର ପୁତ୍ର ହେବେ ନେମିଚକ୍ର ॥୩୯॥ ଯେତେବେଳେ ହସ୍ତିନାପୁର ଗଙ୍ଗାଗର୍ଭରେ ବୁଡ଼ିଯିବ, ସେତେବେଳେ କୌଶାମ୍ବିପୁରରେ ନେମିଚକ୍ର ସୁଖରେ ବାସ କରିବେ । ତାଙ୍କର ପୁତ୍ର ହେବେ ଚିତ୍ରରଥ ଏବଂ ଚିତ୍ରରଥଙ୍କର ପୁତ୍ର କବିରଥ, କବିରଥଙ୍କର ବୃଷ୍ଟିମାନ୍, ବୃଷ୍ଟିମାନ୍‌ଙ୍କର ସୁଷେଣ, ସୁଷେଣଙ୍କର ସୁନୀଥ, ତାଙ୍କ ପୁତ୍ର ନୃଚକ୍ଷୁ, ନୃଚକ୍ଷୁଙ୍କର ସୁଖୀନଳ, ସୁଖୀନଳଙ୍କର ପରିପ୍ଳବ, ପରିପ୍ଳବଙ୍କର ସୁନୟ, ସୁନୟଙ୍କର ମେଧାବୀ, ତାଙ୍କ ପୁତ୍ର ନୃପଞ୍ଜୟ, ନୃପଞ୍ଜୟଙ୍କର ଦୂର୍ବ ଏବଂ ଦୂର୍ବଙ୍କର ପୁତ୍ର ତିମି ॥୪୦-୪୨॥ ତିମିଙ୍କର ପୁତ୍ର ବୃହଦ୍ରଥ, ବୃହଦ୍ରଥଙ୍କର ସୁଦାସ, ସୁଦାସଙ୍କର ଶତାନୀକ, ଶତାନୀକଙ୍କର ଦୁର୍ଦ୍ଦମନ, ତାଙ୍କ ପୁତ୍ର ମହୀନର, ମହୀନରଙ୍କର ପୁତ୍ର ଦଣ୍ଡପାଣି, ଦଣ୍ଡପାଣିଙ୍କର ପୁତ୍ର ନିମି ଓ ନିମିଙ୍କର ପୁତ୍ର ହେବେ ରାଜା କ୍ଷେମକ--ଏହିପରି ମୁଁ ତୁମ ଆଗେ ବ୍ରାହ୍ମଣ ଓ କ୍ଷତ୍ରିୟ ଏହି ଦୁଇବଂଶର ଉତ୍ପତ୍ତି ସ୍ଥଳ ସୋମବଂଶର ବର୍ଣ୍ଣନା କଲି । ଦେବତା ଓ ଋଷିମାନେ ଏହି ବଂଶର ସତ୍କାର କରନ୍ତି ॥୪୩-୪୪॥ କଳିଯୁଗରେ ଏହି ବଂଶ ରାଜା କ୍ଷେମକଙ୍କ ପରେ ସମାପ୍ତ ହୋଇଯିବ । ଏବେ ମଗଧ ଦେଶରେ ଯେଉଁମାନେ ରାଜା ହେବେ ସେମାନଙ୍କ କଥା ମୁଁ ତୁମକୁ ଶୁଣାଉଛି ॥୪୫॥ ଜରାସନ୍ଧଙ୍କ ପୁତ୍ର ସହଦେବଙ୍କର ମାର୍ଜାରି ନାମକ ପୁତ୍ର ହେବେ । ମାର୍ଜାରିଙ୍କର ପୁତ୍ର ଶ୍ରୁତଶ୍ରବା । ଶ୍ରୁତଶ୍ରବାଙ୍କର ଅୟୁତାୟୁ ଓ ଅୟୁତାୟୁଙ୍କର ନିରମିତ୍ର ନାମକ ପୁତ୍ର ହେବେ ॥୪୬॥ ନିରମିତ୍ରଙ୍କର ସୁନକ୍ଷତ୍ର, ସୁନକ୍ଷତ୍ରଙ୍କର ବୃହତ୍‌ସେନ, ବୃହତ୍‌ସେନଙ୍କର କର୍ମଜିତ୍, କର୍ମଜିତ୍‌ଙ୍କର ଶ୍ରୁତଞ୍ଜୟ, ଶ୍ରୁତଞ୍ଜୟଙ୍କର ପୁତ୍ର ବିପ୍ର ଏବଂ ବିପ୍ରଙ୍କର ପୁତ୍ର ହେବେ ଶୁଚି ॥୪୭॥ ଶୁଚିଙ୍କର କ୍ଷେମ, କ୍ଷେମଙ୍କର ସୁବ୍ରତ, ସୁବ୍ରତଙ୍କର ଧର୍ମସୂତ୍ର, ଧର୍ମସୂତ୍ରଙ୍କର ଶମ, ଶମଙ୍କର ଦ୍ୟୁମତ୍‌ସେନ, ତାଙ୍କର ପୁତ୍ର ସୁମତି ଏବଂ ସୁମତିଙ୍କର ପୁତ୍ର ହେବେ ସୁବଳ ॥୪୮॥ ସୁବଳଙ୍କର ପୁତ୍ର ସୁନୀଥ, ସୁନୀଥଙ୍କର ସତ୍ୟଜିତ୍, ସତ୍ୟଜିତ୍‌ଙ୍କର ବିଶ୍ୱଜିତ୍ ଓ ବିଶ୍ୱଜିତ୍‌ଙ୍କର ପୁତ୍ର ରିପୁଞ୍ଜୟ ହେବେ । ଏମାନେ ସମସ୍ତେ ବୃହଦ୍ରଥ ବଂଶର ରାଜା ହେବେ ଏବଂ ଏକ ହଜାର ବର୍ଷ ପର୍ଯ୍ୟନ୍ତ ରାଜପଣ କରିବେ ॥୪୯॥

## ତ୍ରୟୋବିଂଶ ଅଧ୍ୟାୟ

# ଯଯାତିଙ୍କ ପୁତ୍ର ଅନୁ, ଦ୍ରୁହ୍ୟ, ତୁର୍ବସୁ ଓ ଯଦୁଙ୍କର ବଂଶ ବର୍ଣ୍ଣନା

ଶ୍ରୀ ଶୁକଦେବ କହିଲେ, ସଭାନର, ଚକ୍ଷୁ ଏବଂ ପରେକ୍ଷୁ -- ଅନୁଙ୍କର ଏହି ତିନି ପୁତ୍ର ଥିଲେ । ସଭାନରଙ୍କର କାଳନର, କାଳନରଙ୍କର ସୃଞ୍ଜୟ, ସୃଞ୍ଜୟଙ୍କର ଜନମେଜୟ, ଜନମେଜୟଙ୍କର ମହାଶୀଳ ଓ ମହାଶୀଳଙ୍କର ପୁତ୍ର ହେଲେ ମହାମନା । ମହାମନାଙ୍କର ଦୁଇ ପୁଅ -- ଉଶୀନର ଓ ତିତିକ୍ଷୁ ॥୧-୨॥ ଉଶୀନରଙ୍କର ଚାରିପୁଅ--ଶିବି, ବର, କୃମି ଓ ଦକ୍ଷ । ଶିବିଙ୍କର ଚାରିପୁଅ ହେଲେ -- ବୃଷାଦର୍ଭ, ସୁବୀର, ମଦ୍ର ଓ କୈକେୟ । ଉଶୀନରଙ୍କର ଭାଇ ତିତିକ୍ଷୁଙ୍କର ପୁତ୍ର ହେଲେ ରୁଶଦ୍ରଥ, ରୁଶଦ୍ରଥଙ୍କର ହୋମ, ହୋମଙ୍କର ସୁତପା ଓ ସୁତପାଙ୍କର ବଳିନାମକ ପୁତ୍ର ହେଲେ ॥୩-୪॥ ରାଜା ବଳିଙ୍କ ପତ୍ନୀଙ୍କ ଗର୍ଭରେ ଦୀର୍ଘତମା ଋଷିଙ୍କ ଔରସରୁ ଛ'ପୁଅ ଜନ୍ମ ହୋଇଥିଲେ -- ଅଙ୍ଗ, ବଙ୍ଗ, କଳିଙ୍ଗ, ସୁହ୍ମ ପୌଣ୍ଡ୍ର ଓ ଅନ୍ଧ୍ର ॥୫॥ ଏମାନେ ନିଜ ନିଜ ନାମରେ ପୂର୍ବ ଦିଗରେ ଛ'ଟି ରାଜ୍ୟ ପ୍ରତିଷ୍ଠା କଲେ । ଅଙ୍ଗଙ୍କର ପୁତ୍ର ଖଳପାନ, ଖଳପାନଙ୍କର ପୁତ୍ର ଦିବିରଥ, ଦିବିରଥଙ୍କର ଧର୍ମରଥ ଓ ଧର୍ମରଥଙ୍କର ପୁତ୍ର ହେଲେ ଚିତ୍ରରଥ । ଏହି ଚିତ୍ରରଥ ରୋମପାଦ ନାମରେ ପ୍ରସିଦ୍ଧ ଥିଲେ । ଏହାଙ୍କର ମିତ୍ର ଥିଲେ ଅଯୋଧ୍ୟାର ମହାରାଜ ଦଶରଥ । ରୋମପାଦଙ୍କର କୌଣସି ସନ୍ତାନ ନ ଥିଲେ । ଏଣୁ ଦଶରଥ ତାଙ୍କ ନିଜ କନ୍ୟା ଶାନ୍ତାଙ୍କୁ ରୋମପାଦଙ୍କୁ ଦାନ କରିଥିଲେ । ଶାନ୍ତାଙ୍କର ବିବାହ ଋଷ୍ୟଶୃଙ୍ଗ ମୁନିଙ୍କ ସହିତ ହୋଇଥିଲା । ଋଷ୍ୟଶୃଙ୍ଗ ବିଭାଣ୍ଡକ ଋଷିଙ୍କ ଦ୍ୱାରା ହରିଣୀଗର୍ଭରୁ ଜନ୍ମ ହୋଇଥିଲେ । ଥରେ ରାଜା ରୋମପାଦଙ୍କ ରାଜ୍ୟରେ ବହୁଦିନ ଧରି ବର୍ଷା ହେଉନଥିଲା । ତହୁଁ ସେ ଗଣିକାମାନଙ୍କୁ ପଠାଇ ନୃତ୍ୟ, ବାଦ୍ୟ, ସଙ୍ଗୀତ, ବିଭିନ୍ନ ଭାବଭଙ୍ଗୀ, ଆଲିଙ୍ଗନ ଓ ଉପହାରମାନଙ୍କ ଦ୍ୱାରା ଋଷ୍ୟଶୃଙ୍ଗଙ୍କୁ ମୋହିତ କରି ନିଜ ରାଜ୍ୟକୁ ଘେନି ଆସିଥିଲେ । ସେ ଆସିବା ମାତ୍ରେ ବର୍ଷା ହେଲା । ଏହି ଋଷ୍ୟଶୃଙ୍ଗ ରୋମପାଦଙ୍କପାଇଁ ଐନ୍ଦ୍ରୀ ଇଷ୍ଟି ନାମକ ଯଜ୍ଞ କରି ତାଙ୍କୁ ପୁତ୍ର ଦାନ କରିଥିଲେ । ପୁତ୍ରହୀନ ରାଜା ଦଶରଥ ମଧ୍ୟ ଋଷ୍ୟଶୃଙ୍ଗଙ୍କଦ୍ୱାରା ପୁତ୍ରେଷ୍ଟି ଯଜ୍ଞ କରାଇ ଚାରୋଟି ପୁତ୍ର ଲାଭ କରିଥିଲେ । ରୋମପାଦଙ୍କର ପୁତ୍ର ହେଲେ ଚତୁରଙ୍ଗ ଓ ଚତୁରଙ୍ଗଙ୍କର ପୁତ୍ର ପୃଥୁଲାକ୍ଷ ॥୬-୧୦॥ ପୃଥୁଲାକ୍ଷଙ୍କର ତିନି ପୁଅ ଥିଲେ -- ବୃହଦ୍ରଥ, ବୃହତ୍‌କର୍ମା ଓ ବୃହଦ୍‌ଭାନୁ । ବୃହଦ୍ରଥଙ୍କର ପୁତ୍ର ହେଲେ ବୃହନ୍ମନା ଓ ବୃହନ୍ମନାଙ୍କର ପୁତ୍ର ହେଲେ ଜୟଦ୍ରଥ ॥୧୧॥ ଜୟଦ୍ରଥଙ୍କ ପତ୍ନୀଙ୍କ ନାମ ସମ୍ଭୂତୀ । ତାଙ୍କ ଗର୍ଭରୁ ବିଜୟଙ୍କର ଜନ୍ମ ହେଲା । ବିଜୟଙ୍କର ପୁତ୍ର ଧୃତି, ଧୃତିଙ୍କର ପୁତ୍ର ଧୃତବ୍ରତ, ଧୃତବ୍ରତଙ୍କର ସତ୍‌କର୍ମା ଓ ସତ୍‌କର୍ମାଙ୍କର ପୁତ୍ର ହେଲେ ଅଧିରଥ ॥୧୨॥ ଅଧିରଥ ନିଃସନ୍ତାନ ଥିଲେ । ଦିନେ ସେ ଗଙ୍ଗାକୂଳରେ କ୍ରୀଡ଼ା କରୁଥିବାବେଳେ ଦେଖିଲେ ଯେ, ଏକ ପେଟରା ଭିତରେ ଗୋଟିଏ ସଦ୍ୟୋଜାତ ଶିଶୁ ଭାସିଯାଉଛି । ଏହି ବାଳକର ନାମ ହେଲା କର୍ଣ୍ଣ । କୁନ୍ତୀଙ୍କର କନ୍ୟାବସ୍ଥାରେ ସେ ଜନ୍ମ ହୋଇଥିବାରୁ ମା'ତାକୁ ଏହିପରି ନଦୀରେ ଭସାଇ ଦେଇଥିଲେ । ଅଧିରଥ ହେଲେ ତାର ପାଳକ ପିତା ॥୧୩॥ ପରିକ୍ଷିତ, କର୍ଣ୍ଣଙ୍କ ପୁତ୍ରଙ୍କର ନାମ ଥିଲା ବୃଷସେନ । ଯଯାତିଙ୍କ ପୁତ୍ର ଦ୍ରୁହ୍ୟ, ଦ୍ରୁହ୍ୟଙ୍କର ବଭ୍ରୁ ନାମକ ପୁତ୍ର ହେଲେ । ବଭ୍ରୁଙ୍କର ସେତୁ, ସେତୁଙ୍କ ପୁତ୍ର ଆରବ୍ଧ । ତାଙ୍କ ପୁତ୍ର ଗାନ୍ଧାର, ଗାନ୍ଧାରଙ୍କର ଧର୍ମ, ଧର୍ମଙ୍କର ଧୃତି, ଧୃତିଙ୍କ ପୁତ୍ର ଦୁର୍ମଦ ଏବଂ ଦୁର୍ମଦଙ୍କର ପୁତ୍ର ହେଲେ ପ୍ରଚେତା । ପ୍ରଚେତାଙ୍କର ଶହେ ପୁଅ ଥିଲେ । ସେମାନେ ଉତ୍ତର ଦିଗକୁ ଯାଇ ମ୍ଳେଚ୍ଛମାନଙ୍କର ରାଜା ହେଲେ । ଯଯାତିଙ୍କର ଅନ୍ୟ ପୁତ୍ର ତୁର୍ବସୁଙ୍କର ବହ୍ନି ନାମକ ପୁତ୍ର ହେଲେ । ବହ୍ନିଙ୍କ ପୁତ୍ର ଭର୍ଗ, ଭର୍ଗଙ୍କର ଭାନୁମାନ୍, ଭାନୁମାନ୍‌ଙ୍କର ତ୍ରିଭାନୁ, ତ୍ରିଭାନୁଙ୍କର କରନ୍ଧମ ନାମକ ଉଦାରବୁଦ୍ଧି ପୁତ୍ର ଜନ୍ମ ହେଲେ । କରନ୍ଧମଙ୍କର ପୁତ୍ର ହେଲେ ମରୁତ । ମରୁତ ନିଃସନ୍ତାନ ଥିଲେ । ସେଥିପାଇଁ ପୁରୁବଂଶୀୟ ଦୁଷ୍ୟନ୍ତଙ୍କୁ ସେ ପୁଅ କରିଥିଲେ ॥୧୪-୧୭॥

କିନ୍ତୁ ଦୁଷ୍ୟନ୍ତ ରାଜ୍ୟ କାମନାରେ ନିଜ ବଂଶକୁ ଫେରିଗଲେ । ପରିକ୍ଷିତ, ବର୍ତ୍ତମାନ ମୁଁ ରାଜା ଯଯାତିଙ୍କର ବଡ଼ ପୁଅ ଯଦୁଙ୍କ ବଂଶର ବର୍ଣ୍ଣନା କରୁଛି ॥୧୮॥ ଯଦୁଙ୍କର ବଂଶ ହେଉଛି ପରମ ପବିତ୍ର ଓ ସର୍ବପାପହର । ଏହି ବଂଶର ବର୍ଣ୍ଣନା ଶୁଣି ମନୁଷ୍ୟ ସମସ୍ତ ପାପରୁ ମୁକ୍ତ ହୁଏ ॥୧୯॥ ଏହି ଯଦୁବଂଶରେ ସ୍ୱୟଂ ଭଗବାନ୍ ଶ୍ରୀକୃଷ୍ଣ ମନୁଷ୍ୟ ରୂପରେ ଅବତାର ଗ୍ରହଣ କରିଥିଲେ । ଯଦୁଙ୍କର ଚାରୋଟି ପୁତ୍ର ଥିଲେ--ସହସ୍ରଜିତ୍, କ୍ରୋଷ୍ଟା, ନନ୍ଦ ଏବଂ ରିପୁ । ସହସ୍ରଜିତ୍‌ଙ୍କର ପୁତ୍ର ହେଲେ ଶତଜିତ୍, ଶତଜିତ୍‌ଙ୍କର ତିନି ପୁତ୍ର ହେଲେ -- ମହାହୟ, ରେଣୁହୟ ଓ ହୈହୟ ॥୨୦-୨୧॥ ହୈହୟଙ୍କର ପୁତ୍ର ହେଲେ ଧର୍ମ, ଧର୍ମଙ୍କର ନେତ୍ର, ନେତ୍ରଙ୍କର କୁନ୍ତି, କୁନ୍ତିଙ୍କର ସୋହଞ୍ଜି, ସୋହଞ୍ଜିଙ୍କର ମହିଷ୍ମାନ୍, ମହିଷ୍ମାନ୍‌ଙ୍କର ପୁତ୍ର ହେଲେ ଭଦ୍ରସେନ ॥୨୨॥ ଭଦ୍ରସେନଙ୍କର ଦୁଇପୁଅ -- ଦୁର୍ମଦ ଓ ଧନକ । ଧନକଙ୍କର ଚାରିପୁଅ--କୃତବୀର୍ଯ୍ୟ, କୃତାଗ୍ନି, କୃତବର୍ମା ଓ କୃତୌଜା ॥୨୩॥ କୃତବୀର୍ଯ୍ୟଙ୍କର ପୁତ୍ର ହେଲେ ଅର୍ଜୁନ । ସେ ସପ୍ତ ଦ୍ୱୀପର ଅଧୀଶ୍ୱର ହୋଇଥିଲେ । ସେ ଭଗବାନ୍‌ଙ୍କର କଳାବତାର ଶ୍ରୀ ଦତ୍ତାତ୍ରେୟଙ୍କଠାରୁ ଯୋଗବିଦ୍ୟା ଓ ଅଣିମା, ଲଘିମା ଆଦି ସିଦ୍ଧିମାନ ଲାଭ କରିଥିଲେ ॥୨୪॥ ନିଃସନ୍ଦେହଭାବରେ କୁହାଯାଇପାରେ ଯଜ୍ଞ, ଦାନ, ତପସ୍ୟା, ଯୋଗ, ଶାସ୍ତ୍ରଜ୍ଞାନ, ପରାକ୍ରମ ଓ ଦୟାଦିଗୁଣରେ କୌଣସି ରାଜା କାର୍ତ୍ତବୀର୍ଯ୍ୟାର୍ଜୁନଙ୍କର ସମକକ୍ଷ ନଥିଲେ । ପଞ୍ଚାଅଶୀ ବର୍ଷ ପର୍ଯ୍ୟନ୍ତ ତାଙ୍କର ବଳବୀର୍ଯ୍ୟ ଓ ସମ୍ପଦ ଅକ୍ଷୁଣ୍ଣ ଥିଲା । ତାଙ୍କୁ ସ୍ମରଣ କରିବାଦ୍ୱାରା ଅନ୍ୟମାନଙ୍କର ହଜିଥିବା ଧନ ପୁଣି ମିଳିଯାଉଥିଲା । ଅର୍ଜୁନଙ୍କର ଏକହଜାର ପୁତ୍ର ଥିଲେ । ସେମାନଙ୍କ ମଧ୍ୟରୁ କେବଳ ପାଞ୍ଚଜଣ ଜୀବିତ ରହିଥିଲେ । ଅନ୍ୟମାନେ ପରଶୁରାମଙ୍କର କ୍ରୋଧାଗ୍ନିରେ ଭସ୍ମ ହୋଇଗଲେ । ଯେଉଁମାନେ ବଞ୍ଚିଥିଲେ ସେମାନଙ୍କର ନାମ ହେଲା--ଜୟଧ୍ୱଜ, ସୁରସେନ, ବୃଷଭ, ମଧୁ ଏବଂ ଊର୍ଜିତ ॥୨୫-୨୭॥ ଜୟଧ୍ୱଜଙ୍କର ପୁତ୍ରଙ୍କ ନାମ ତାଳଜଂଘ । ତାଳଜଂଘଙ୍କର ଶହେପୁତ୍ର ଥିଲେ । ଏମାନେ ସମସ୍ତେ ତାଳଜଂଘ କ୍ଷତ୍ରିୟ ନାମରେ ପ୍ରସିଦ୍ଧ ହେଲେ । ମହର୍ଷି ଔର୍ବଙ୍କ ଶକ୍ତିଦ୍ୱାରା ରାଜା ସଗର ଏସମସ୍ତଙ୍କୁ ସଂହାର କରିଥିଲେ ॥୨୮॥ ଶହେପୁଅଙ୍କ ମଧ୍ୟରେ ସବୁଠାରୁ ବଡ଼ ହେଲେ ବୀତିହୋତ୍ର । ବୀତିହୋତ୍ରଙ୍କର ପୁତ୍ର ମଧୁ । ମଧୁଙ୍କର ଶହେ ପୁଅ ଥିଲେ । ସବୁଠାରୁ ବଡ଼ ହେଲେ ବୃଷ୍ଣି ॥୨୯॥ ପରିକ୍ଷିତ, ମଧୁ, ବୃଷ୍ଣି ଓ ଯଦୁଙ୍କ ନାମାନୁସାରେ ଏହି ବଂଶ ମାଧବ, ବାର୍ଷ୍ଣେୟ ଓ ଯାଦବ ନାମରେ ପ୍ରସିଦ୍ଧ ହେଲା । ଯଦୁପୁତ୍ର କ୍ରୋଷ୍ଟୁଙ୍କର ପୁତ୍ର ହେଲେ ବୃଜିନବାନ୍ ॥୩୦॥ ବୃଜିନବାନ୍‌ଙ୍କର ପୁତ୍ର ଶ୍ୱାହି । ଶ୍ୱାହିଙ୍କର ରୁଶେକୁ । ରୁଶେକୁଙ୍କର ଚିତ୍ରରଥ ଓ ଚିତ୍ରରଥଙ୍କ ପୁତ୍ରଙ୍କର ନାମ ଥିଲା ଶଶବିନ୍ଦୁ । ଏହି ଶଶବିନ୍ଦୁ ଥିଲେ ଜଣେ ଭୋଗୈଶ୍ୱର୍ଯ୍ୟସମ୍ପନ୍ନ ପରାକ୍ରମଶାଳୀ ଶ୍ରେଷ୍ଠ ଯୋଗୀ ॥୩୧॥ ସେ ଥିଲେ ଚଉଦ ରତ୍ନ (ହାତୀ, ଘୋଡ଼ା, ରଥ, ସ୍ତ୍ରୀ, ବାଣ, ଧନ, ମାଳା, ବସ୍ତ୍ର, ବୃକ୍ଷ, ଶକ୍ତି, ପାଶ, ମଣି, ଛତ୍ର ଓ ବିମାନ)ର ଅଧିକାରୀ ଓ ଏକାଙ୍ଗଚକ୍ରବର୍ତ୍ତୀ ରାଜା ଏବଂ ଯୁଦ୍ଧରେ ଅପରାଜେୟ ଥିଲେ । ଏହି ଯଶସ୍ୱୀ ରାଜାଙ୍କର ଦଶହଜାର ସ୍ତ୍ରୀ ଥିଲେ । ପ୍ରତ୍ୟେକଙ୍କର ଲକ୍ଷେ ପୁତ୍ର ହିସାବରେ ଏହି ସ୍ତ୍ରୀମାନଙ୍କଠାରୁ ଶହେ କୋଟି ସନ୍ତାନ ଜନ୍ମ ହୋଇଥିଲେ । ଏମାନଙ୍କ ମଧ୍ୟରେ ପୃଥୁଶ୍ରବା ଆଦି ଛ'ଜଣ ସନ୍ତାନ ପ୍ରଧାନ ଥିଲେ । ପୃଥୁଶ୍ରବାଙ୍କର ପୁତ୍ର ଧର୍ମ ଓ ଧର୍ମଙ୍କର ପୁତ୍ର ଉଶନା । ଉଶନା ଶହେ ଅଶ୍ୱମେଧ ଯଜ୍ଞ କରିଥିଲେ । ଉଶନାଙ୍କ ପୁତ୍ର ରୁଚକ ଓ ରୁଚକଙ୍କର ପାଞ୍ଚ ପୁଅ ଥିଲେ । ସେମାନଙ୍କ ନାମ ମୁଁ କହୁଛି ଶୁଣ ॥୩୨-୩୪॥ ସେମାନେ ହେଲେ ପୁରୁଜିତ୍, ରୁକ୍ମ, ରୁକ୍ମେଷୁ, ପୃଥୁ ଓ ଜ୍ୟାମଘ । ଜ୍ୟାମଘଙ୍କ ପତ୍ନୀଙ୍କର ନାମ ହେଲା ଶୈବ୍ୟା । ବହୁକାଳ ପର୍ଯ୍ୟନ୍ତ ଜ୍ୟାମଘଙ୍କର କୌଣସି ସନ୍ତାନ ହେଲା ନାହିଁ । କିନ୍ତୁ ସେ ନିଜର ପତ୍ନୀଙ୍କ ଭୟରେ ଅନ୍ୟ ବିବାହ କରୁ ନ ଥିଲେ । ଦିନେ ସେ ନିଜର ଶତ୍ରୁଙ୍କ ଗୃହରୁ ଭୋଜ୍ୟା ନାମକ ଏକ କନ୍ୟାକୁ ହରଣକରି ନେଇଆସିଲେ । ପତିଙ୍କ ରଥରେ ଏହି କନ୍ୟାକୁ ଦେଖି ଶୈବ୍ୟା ରାଗରେ କହିଲେ, କପଟୀ, ମୋର ବସିବା ସ୍ଥାନରେ ତୁମେ କାହାକୁ ବସାଇଆଣିଛ ? ଜ୍ୟାମଘ କହିଲେ, ଏ ତୁମର ପୁତ୍ରବଧୂ । ବିସ୍ମୟରେ ଶୈବ୍ୟା ପଚାରିଲେ, ମୁଁ ତ ଜନ୍ମରୁ ବନ୍ଧ୍ୟା ଏବଂ ମୋର କୌଣସି ସପତ୍ନୀ ନାହାନ୍ତି । ଏ ପୁଣି କିପରି ମୋର ପୁତ୍ରବଧୂ ହେବ ? ଜ୍ୟାମଘ କହିଲେ--ରାଣୀ, ତୁମର ଯେଉଁ ପୁତ୍ର ହେବ, ସେ ହେବ ତାର ପତ୍ନୀ ॥୩୫-୩୮॥ ରାଜା ଜ୍ୟାମଘଙ୍କର କଥା ଶୁଣି ଦେବ ଓ ପିତୃଗଣ

ଆନନ୍ଦିତ ହୋଇ ତାହା ଅନୁମୋଦନ କଲେ । କାଳକ୍ରମେ ଶୈବ୍ୟାଙ୍କର ଗର୍ଭ ହେଲା ଓ ତାଙ୍କଠାରୁ ଏକ ସୁନ୍ଦର ପୁତ୍ର ଜନ୍ମ ହେଲା । ପୁତ୍ରର ନାମ ହେଲା ବିଦର୍ଭ । ଏହାଙ୍କୁ ବିବାହ କରି ଭୋଜ୍ୟା ହେଲେ ଶୈବ୍ୟାଙ୍କର ସାଧ୍ୱୀ ପୁତ୍ରବଧୂ ॥୩୯॥

## ଚତୁର୍ବିଂଶ ଅଧ୍ୟାୟ

# ବିଦର୍ଭ ବଂଶ

ଶ୍ରୀ ଶୁକଦେବ କହିଲେ, ପରିକ୍ଷିତ, ରାଜା ବିଦର୍ଭଙ୍କର ପୂର୍ବକଥିତ ପତ୍ନୀ ଭୋଜ୍ୟାଙ୍କଠାରୁ କୁଶ, କ୍ରଥ ଓ ରୋମପାଦ -- ଏହି ତିନି ପୁତ୍ର ଜନ୍ମ ହେଲେ । ସେମାନଙ୍କ ମଧ୍ୟରେ ରୋମପାଦ କୁଳନନ୍ଦନ ଭାବରେ ବିଦର୍ଭ ବଂଶର ଖ୍ୟାତି ବୃଦ୍ଧି କରିଥିଲେ ॥୧॥ ରୋମପାଦଙ୍କ ପୁତ୍ରଙ୍କର ନାମ ହେଉଛି ବଭ୍ରୁ । ବଭ୍ରୁଙ୍କର ପୁତ୍ର କୃତି, ତାଙ୍କ ପୁତ୍ର ଉଶିକ ଓ ଉଶିକଙ୍କର ପୁତ୍ର ଚେଦି । ଏହି ଚେଦିଙ୍କ ବଂଶରେ ଦମଘୋଷ ଓ ଶିଶୁପାଳ ଆଦି ଜନ୍ମ ହୋଇଥିଲେ ॥୨॥ କ୍ରଥଙ୍କର ପୁତ୍ର କୁନ୍ତି, କୁନ୍ତିଙ୍କ ପୁତ୍ର ବୃଷ୍ଣି, ତାଙ୍କ ପୁତ୍ର ନିର୍ବୃତି, ତାଙ୍କ ପୁତ୍ର ଦଶାର୍ହ ଓ ଦଶାର୍ହଙ୍କ ପୁତ୍ର ବ୍ୟୋମ ॥୩॥ ବ୍ୟୋମଙ୍କ ପୁତ୍ର ଜୀମୂତ, ଜୀମୂତଙ୍କର ପୁତ୍ର ବିକୃତି, ତାଙ୍କ ପୁତ୍ର ଭୀମରଥ, ଭୀମରଥଙ୍କର ପୁତ୍ର ନବରଥ ଓ ନବରଥଙ୍କର ପୁତ୍ର ଦଶରଥ ହେଲେ ॥୪॥ ଦଶରଥଙ୍କର ଶକୁନି, ଶକୁନିଙ୍କର କରମ୍ଭି, କରମ୍ଭିଙ୍କର ଦେବରାତ, ଦେବରାତଙ୍କର ଦେବକ୍ଷେତ୍ର, ଦେବକ୍ଷେତ୍ରଙ୍କର ମଧୁ, ମଧୁଙ୍କର କୁରୁବଶ ଓ କୁରୁବଶଙ୍କର ପୁତ୍ର ହେଲେ ଅନୁ ॥୫॥

ଅନୁଙ୍କର ପୁତ୍ର ହେଲେ ପୁରୁହୋତ୍ର, ତାଙ୍କର ପୁତ୍ର ଆୟୁ ଓ ଆୟୁଙ୍କର ପୁତ୍ର ସାତ୍ୱତ । ପରିକ୍ଷିତ, ସାତ୍ୱତଙ୍କର ସାତ ପୁଅ ଥିଲେ-- ଭଜମାନ, ଭଜି, ଦିବ୍ୟ, ବୃଷ୍ଣି, ଦେବାବୃଧ, ଅନ୍ଧକ ଓ ମହାଭୋଜ । ଭଜମାନଙ୍କର ଦୁଇଟି ସ୍ତ୍ରୀ ଥିଲେ । ଜଣଙ୍କର ତିନି ପୁଅ ହେଲେ -- ନିମ୍ଳୋଚି, କିଙ୍କିଣ ଓ ଧୃଷ୍ଟି । ଅନ୍ୟପତ୍ନୀଙ୍କର ମଧ୍ୟ ତିନି ପୁତ୍ର ଥିଲେ -- ଶତାଜିତ୍, ସହସ୍ରାଜିତ୍ ଓ ଅୟୁତାଜିତ୍ ॥୬-୮॥ ଦେବାବୃଧଙ୍କ ପୁତ୍ରଙ୍କ ନାମ ବଭ୍ରୁ । ପିତା ପୁତ୍ର ଦୁହିଁଙ୍କ ସମ୍ବନ୍ଧରେ ଦୁଇଟି ଶ୍ଳୋକ ପାଠ କରାଯାଏ । 'ଆମେ ଦୂରରୁ ଯାହା ଶୁଣୁଥିଲୁ ଏବେ ନିକଟରେ ତାହା ଦେଖିଲୁ । ବଭ୍ରୁ ମନୁଷ୍ୟମାନଙ୍କ ମଧ୍ୟରେ ଶ୍ରେଷ୍ଠ ଓ ଦେବାବୃଧ ଦେବତୁଲ୍ୟ । କାରଣ ବଭ୍ରୁ ଓ ଦେବାବୃଧଙ୍କ ଉପଦେଶ ଲାଭ କରି ଚଉଦହଜାର ପଅଁଷଠି ଜଣ ଲୋକ ଅମୃତତ୍ୱ ଲାଭ କରିଛନ୍ତି' । ସାତ୍ୱତଙ୍କ ପୁତ୍ରମାନଙ୍କ ମଧ୍ୟରେ ମହାଭୋଜ ବଡ଼ ଧର୍ମାତ୍ମା ଥିଲେ । ତାଙ୍କ ବଂଶରେ ଭୋଜବଂଶୀୟ ଯାଦବମାନେ ଜନ୍ମ ହୋଇଥିଲେ ॥୯-୧୧॥ ପରିକ୍ଷିତ, ବୃଷ୍ଣିଙ୍କର ଦୁଇ ପୁତ୍ର ଥିଲେ -- ସୁମିତ୍ର ଓ ଯୁଧାଜିତ୍ । ଯୁଧାଜିତ୍‌ଙ୍କର ଦୁଇ ପୁତ୍ର ଶିନି ଓ ଅନମିତ୍ର । ଅନମିତ୍ରଙ୍କର ପୁତ୍ର ହେଲେ ନିମ୍ନ । ନିମ୍ନଙ୍କର ପୁତ୍ର ସତ୍ରାଜିତ୍ ଓ ପ୍ରସେନ । ଏମାନେ ଯଦୁବଂଶରେ ପ୍ରସିଦ୍ଧ ହୋଇଥିଲେ । ଅନମିତ୍ରଙ୍କର ଆଉ ଜଣେ ପୁତ୍ର ଥିଲେ ଶିନି । ଶିନିଙ୍କର ପୁତ୍ର ହେଲେ ସତ୍ୟକ ॥୧୨-୧୩॥

ଏହି ସତ୍ୟକଙ୍କର ପୁତ୍ର ହେଲେ ଯୁଯୁଧାନ ଯେ ସାତ୍ୟକି ନାମରେ ପ୍ରସିଦ୍ଧ ହୋଇଥିଲେ । ସାତ୍ୟକିଙ୍କ ପୁତ୍ର ଜୟ, ଜୟଙ୍କର ପୁତ୍ର କୁଣି ଓ କୁଣିଙ୍କର ପୁତ୍ର ଯୁଗନ୍ଧର ଥିଲେ । ଅନମିତ୍ରଙ୍କର ତୃତୀୟ ପୁତ୍ରଙ୍କର ନାମ ବୃଷ୍ଣି । ବୃଷ୍ଣିଙ୍କର ଦୁଇ ପୁଅ । ଶ୍ୱଫଲ୍କ ଓ ଚିତ୍ରରଥ । ଶ୍ୱଫଲ୍କଙ୍କର ପତ୍ନୀ ଗାନ୍ଦିନୀ । ଏହାଙ୍କ ପୁତ୍ରଙ୍କ ମଧ୍ୟରେ ଶ୍ରେଷ୍ଠ ଅକ୍ରୂରଙ୍କ ଭିନ୍ନ ଆଉ ବାରଜଣ ଜନ୍ମ ହୋଇଥିଲେ । ସେମାନେ ହେଲେ -- ଆସଙ୍ଗ, ସାରମେୟ, ମୃଦୁର, ମୃଦୁବିଦ୍, ଗିରି, ଧର୍ମବୃଧ, ସୁକର୍ମା, କ୍ଷତ୍ରୋପେକ୍ଷ, ଅରିମର୍ଦ୍ଦନ, ଶତ୍ରୁଘ୍ନ, ଗନ୍ଧମାଦ ଓ ପ୍ରତିବାହୁ । ସେମାନଙ୍କର ସୁରୁଚି ନାମରେ ଜଣେ ଭଉଣୀ ଥିଲେ । ଅକ୍ରୂରଙ୍କର ଦୁଇ ପୁତ୍ର ହେଲେ -- ଦେବବାନ ଓ ଉପଦେବ । ଶ୍ୱଫଲ୍କଙ୍କର ଭାଇ ଚିତ୍ରରଥଙ୍କର ପୃଥୁ, ବିଦୂରଥ ଆଦି ବହୁ ପୁତ୍ର ଥିଲେ । ସେମାନେ

ସମସ୍ତେ ବୃଷ୍ଣି ବଂଶର ଖ୍ୟାତି ବର୍ଦ୍ଧନ କରିଥିଲେ ।।୧୪-୧୮।। ସାତ୍ୱତଙ୍କର ପୁତ୍ର ଅନ୍ଧକଙ୍କର ଚାରି ପୁଅ ଥିଲେ - କୁକୁର, ଭଜମାନ, ଶୁଚି ଓ କମ୍ବଳବର୍ହିଷ । କୁକୁରଙ୍କ ପୁତ୍ର ହେଲେ ବହ୍ନି, ବହ୍ନିଙ୍କର ବିଲୋମା, ତାଙ୍କ ପୁତ୍ର କପୋତରୋମା ଏବଂ କପୋତରୋମାଙ୍କର ପୁତ୍ର ଅନୁ ହେଲେ । ତୁମ୍ବୁରୁ ଗନ୍ଧର୍ବଙ୍କ ସହିତ ଅନୁଙ୍କର ବନ୍ଧୁତା ଥିଲା । ଅନୁଙ୍କର ପୁତ୍ର ଅନ୍ଧକ, ତାଙ୍କ ପୁତ୍ର ଦୁନ୍ଦୁଭି, ଦୁନ୍ଦୁଭିଙ୍କର ପୁତ୍ର ଅରିଦ୍ୟୋତ ଓ ତାଙ୍କର ପୁନର୍ବସୁ ନାମକ ପୁତ୍ର ହେଲେ । ପୁନର୍ବସୁଙ୍କର ପୁତ୍ର ହେଲେ ଆହୁକ ଓ କନ୍ୟା ହେଲେ ଆହୁକୀ । ଆହୁକଙ୍କର ଦୁଇ ପୁଅ--ଦେବକ ଓ ଉଗ୍ରସେନ । ଦେବକଙ୍କର ଚାରି ପୁଅ--ଦେବବାନ୍, ଉପଦେବ, ସୁଦେବ ଓ ଦେବବର୍ଧନ । ଏମାନଙ୍କର ସାତ ଜଣ ଭଉଣୀ ଥିଲେ -- ଧୃତଦେବା, ଶାନ୍ତିଦେବା, ଉପଦେବା, ଶ୍ରୀଦେବା, ଦେବରକ୍ଷିତା, ସହଦେବା ଓ ଦେବକୀ । ବସୁଦେବ ଏହି ସାତଭଉଣୀଙ୍କୁ ବିବାହ କରିଥିଲେ ।।୧୯-୨୩।।

ଉଗ୍ରସେନଙ୍କର ନଅ ପୁଅ -- କଂସ, ସୁନାମା, ନ୍ୟଗ୍ରୋଧ, କଙ୍କ, ଶଙ୍କୁ, ସୁହୂ, ରାଷ୍ଟ୍ରପାଳ, ଧୃଷ୍ଟି ଓ ତୁଷ୍ଟିମାନ୍ ।।୨୪।। ଉଗ୍ରସେନଙ୍କର ପାଞ୍ଚ କନ୍ୟାଙ୍କର ନାମ ହେଲା -- କଂସା, କଂସବତୀ, କଙ୍କା, ଶୂରଭୂ ଓ ରାଷ୍ଟ୍ରପାଳିକା । ଦେବଭାଗ ଆଦି ବସୁଦେବଙ୍କର ଛୋଟଭାଇମାନେ ଏମାନଙ୍କୁ ବିବାହ କରିଥିଲେ ।।୨୫।। ବିଦୂରଥଙ୍କର ପୁତ୍ର ହେଲେ ଶୂର, ଶୂରଙ୍କର ଭଜମାନ, ଭଜମାନଙ୍କର ଶିନି, ଶିନିଙ୍କର ପୁତ୍ର ପ୍ରସିଦ୍ଧ ଭୋଜ ଓ ଭୋଜଙ୍କର ପୁତ୍ର ହୃଦୀକ ହେଲେ ।।୨୬।। ଦେବମୀଢ଼, ଶତଧନ୍ୱା ଓ କୃତବର୍ମା — ଏ ତିନି ଜଣ ଥିଲେ ହୃଦୀକଙ୍କର ପୁତ୍ର । ଶୂରଙ୍କ ପତ୍ନୀଙ୍କର ନାମ ଥିଲା ମାରିଷା ।।୨୭।। ଶୂରଙ୍କ ଔରସରୁ ମାରିଷାଙ୍କ ଠାରେ ଦଶ ଜଣ ନିଷ୍ପାପ ପୁତ୍ର ଜନ୍ମ ହୋଇଥିଲେ -- ବସୁଦେବ, ଦେବଭାଗ, ଦେବଶ୍ରବା, ଆନକ, ସୃଞ୍ଜୟ, ଶ୍ୟାମକ, କଙ୍କ, ଶମୀକ, ବସକ ଓ ବୃକ । ଏମାନେ ସମସ୍ତେ ପୁଣ୍ୟାତ୍ମା ଥିଲେ । ବସୁଦେବଙ୍କ ଜନ୍ମ ସମୟରେ ଦେବତାମାନେ ଆନକ (ନାଗରା) ଓ ଦୁନ୍ଦୁଭି ବାଦନ କରିଥିଲେ । ତେଣୁ ତାଙ୍କୁ ଆନକଦୁନ୍ଦୁଭି କୁହାଯାଉଥିଲା । ସେ ହେଲେ ଭଗବାନ ଶ୍ରୀକୃଷ୍ଣଙ୍କର ପିତା । ବସୁଦେବାଦିଙ୍କର ପାଞ୍ଚ ଭଉଣୀ ଥିଲେ--ପୃଥା (କୁନ୍ତୀ), ଶ୍ରୁତଦେବା, ଶ୍ରୁତକୀର୍ତ୍ତି, ଶ୍ରୁତଶ୍ରବା ଓ ରାଜାଧିଦେବୀ । ପିତା ଶୂରଙ୍କର ସଖା କୁନ୍ତିଭୋଜ ନିଃସନ୍ତାନ ଥିବାରୁ ଜ୍ୟେଷ୍ଠକନ୍ୟା କୁନ୍ତୀଙ୍କୁ କନ୍ୟାରୂପେ ପାଳନ କରିବାକୁ ଶୂର ତାଙ୍କୁ ଦେଇଥିଲେ ।।୨୮-୩୧।।

କୁନ୍ତୀ ଦୁର୍ବାସା ଋଷିଙ୍କଠାରୁ ଦେବତାଙ୍କୁ ଆହ୍ୱାନ କରିବାର ବିଦ୍ୟା ଲାଭ କରିଥିଲେ । ଏହି ବିଦ୍ୟାର ଶକ୍ତି ପରୀକ୍ଷା କରିବା ପାଇଁ ସେ ଭଗବାନ ସୂର୍ଯ୍ୟଙ୍କୁ ଥରେ ଆହ୍ୱାନ କଲେ । ସୂର୍ଯ୍ୟ ତାଙ୍କ ନିକଟରେ ଉପସ୍ଥିତ ହେବାରୁ କୁନ୍ତୀ ଆଶ୍ଚର୍ଯ୍ୟ ହୋଇଗଲେ । ସେ କହିଲେ, ଭଗବାନ, ମୋତେ କ୍ଷମା କରନ୍ତୁ । ମୁଁ ପରୀକ୍ଷା କରିବାପାଇଁ ଏ ବିଦ୍ୟାର ପ୍ରୟୋଗ କରିଥିଲି । ଏବେ ଆପଣ ଚାଲି ଯାଆନ୍ତୁ ।।୩୨-୩୩।। ସୂର୍ଯ୍ୟଦେବ କହିଲେ, ଦେବୀ, ମୋର ଦର୍ଶନ କେବେ ନିଷ୍ଫଳ ହୁଏ ନାହିଁ । ମୁଁ ତୁମ ଗର୍ଭରେ ଏକ ପୁତ୍ର ଉତ୍ପନ୍ନ କରିବାକୁ ଚାହେ । ସୁନ୍ଦରୀ, ତୁମର ଯୋନି ଯେପରି ଅକ୍ଷତ ରହେ, ମୁଁ ତା'ର ଉପାୟ କରିବି । ଏହା କହି ସୂର୍ଯ୍ୟ କୁନ୍ତୀଙ୍କର ଗର୍ଭାଧାନ କରି ସ୍ୱର୍ଗକୁ ଚାଲିଗଲେ । କୁନ୍ତୀଙ୍କ ଗର୍ଭରୁ ଦ୍ୱିତୀୟ ସୂର୍ଯ୍ୟପରି ଏକ ସୁନ୍ଦର ତେଜସ୍ୱୀ ଶିଶୁ ଜନ୍ମ ହେଲା ।।୩୪-୩୫।। କୁନ୍ତୀ ଲୋକନିନ୍ଦାକୁ ଡରି ଏହି ଶିଶୁକୁ ଅତି ଦୁଃଖରେ ନଦୀଜଳରେ ଭସାଇଦେଲେ । ପରିକ୍ଷିତ, ଏହି କୁନ୍ତୀଙ୍କର ବିବାହ ତୁମର ପ୍ରପିତାମହ ବୀର ପାଣ୍ଡୁଙ୍କ ସହ ହୋଇଥିଲା ।।୩୬।। କରୂଷ ଦେଶର ରାଜା ବୃଦ୍ଧଶର୍ମାଙ୍କ ସହିତ କୁନ୍ତୀଙ୍କର ସାନ ଭଉଣୀ ଶ୍ରୁତଦେବାଙ୍କର ବିବାହ ହେଲା । ତାଙ୍କ ଗର୍ଭରୁ ଦନ୍ତବକ୍ତ୍ରର ଜନ୍ମ ହେଲା । ଏ ହେଉଛି ସେହି ଦନ୍ତବକ୍ତ୍ର ଯେ ସନକ ଆଦି ଋଷିମାନଙ୍କ ଶାପରୁ ପୂର୍ବେ ଦିତିଙ୍କର ପୁତ୍ର ହିରଣ୍ୟାକ୍ଷ ହୋଇଥିଲା ।।୩୭।। କେକୟ ଦେଶର ରାଜା ଧୃଷ୍ଟକେତୁ ଶ୍ରୁତକୀର୍ତ୍ତିଙ୍କୁ ବିବାହ କରିଥିଲେ । ତାଙ୍କଠାରୁ ସନ୍ତର୍ଦନ ଆଦି ପାଞ୍ଚ ଜଣ କୈକେୟକୁମାର ଜନ୍ମ ହୋଇଥିଲେ ।।୩୮।। ଜୟସେନଙ୍କ ଔରସରୁ ରାଜାଧିଦେବୀଙ୍କ ଗର୍ଭରେ ବିନ୍ଦ ଓ ଅନୁବିନ୍ଦ ନାମକ ଦୁଇପୁତ୍ର ହେଲେ । ଚେଦିରାଜ ଦମଘୋଷ ଶ୍ରୁତଶ୍ରବାଙ୍କର ପାଣିଗ୍ରହଣ କରିଥିଲେ ।।୩୯।। ତାଙ୍କର ପୁତ୍ର ହେଲେ ଶିଶୁପାଳ, ଯାହାଙ୍କ ବିଷୟ ମୁଁ ପୂର୍ବରୁ (ସପ୍ତମ ସ୍କନ୍ଧରେ) ବର୍ଣ୍ଣନା କରିଛି ।

ବସୁଦେବଙ୍କର ଭାଇ ଦେବଭାଗଙ୍କ ଔରସରୁ କଂସାଙ୍କ ଗର୍ଭରେ ଚିତ୍ରକେତୁ ଓ ବୃହଦ୍‌ବଳ ନାମରେ ଦୁଇ ପୁତ୍ର ହେଲେ ॥୪୦॥ ଦେବଶ୍ରବାଙ୍କର ସ୍ତ୍ରୀ କଂସବତୀଙ୍କଠାରୁ ସୁବୀର ଓ ଇଷୁମାନ୍ ନାମକ ଦୁଇପୁତ୍ର ଜାତ ହେଲେ । ଆନକଙ୍କ ଠାରୁ ପତ୍ନୀ କଙ୍କାଙ୍କ ଗର୍ଭରେ ମଧ୍ୟ ଦୁଇଟି ପୁତ୍ର ହେଲେ -- ସତ୍ୟଜିତ୍ ଓ ପୁରୁଜିତ୍ । ସୃଞ୍ଜୟଙ୍କର ପତ୍ନୀ ହେଲେ ରାଷ୍ଟ୍ରପାଳିକା । ତାଙ୍କ ଗର୍ଭରୁ ବୃଷ ଓ ଦୁର୍ମର୍ଷଣ ଆଦି କେତେକ ପୁତ୍ର ଜାତ ହୋଇଥିଲେ । ସେହିପରି ଶ୍ୟାମକଙ୍କର ପତ୍ନୀ ଶୂରଭୂଙ୍କଠାରୁ ହରିକେଶ ଓ ହିରଣ୍ୟାକ୍ଷ ନାମକ ଦୁଇ ପୁତ୍ର ଜନ୍ମ ହେଲେ ॥୪୧-୪୨॥ ବତ୍ସକଙ୍କର ଔରସରୁ ମିଶ୍ରକେଶୀ ନାମକ ଅପ୍‌ସରାଙ୍କ ଗର୍ଭରେ ବୃକ ଆଦି କେତେକ ପୁତ୍ର ଜନ୍ମ ହେଲେ । ବୃକଙ୍କ ଠାରୁ ଦୁର୍ବାକ୍ଷୀଙ୍କ ଗର୍ଭରେ ତକ୍ଷ, ପୁଷ୍କର ଓ ଶାଳ ଆଦି କେତେକ ପୁତ୍ର ଜନ୍ମ ହେଲେ ॥୪୩॥ ଶମୀକଙ୍କର ପତ୍ନୀ ହେଲେ ସୁଦାମିନୀ । ତାଙ୍କର ସୁମିତ୍ର ଓ ଅର୍ଜୁନପାଳ ଆଦି କେତେକ ପୁତ୍ର ଥିଲେ । କଙ୍କଙ୍କର ପତ୍ନୀ କର୍ଣ୍ଣିକାଙ୍କ ଗର୍ଭରୁ ଋତଧାମା ଓ ଜୟ ଏହି ଦୁଇପୁଅଙ୍କର ଜନ୍ମ ହେଲା ॥୪୪-୪୬॥ ବସୁଦେବଙ୍କର ପୌରବୀ, ରୋହିଣୀ, ଭଦ୍ରା, ମଦିରା, ରୋଚନା, ଇଳା ଓ ଦେବକୀ ଆଦି ବହୁ ପତ୍ନୀ ଥିଲେ । ସେମାନଙ୍କ ମଧ୍ୟରେ ରୋହିଣୀଙ୍କ ଗର୍ଭରୁ ବଳରାମ, ଗଦ, ସାରଣ, ଦୁର୍ମଦ, ବିପୁଳ, ଧ୍ରୁବ ଓ କୃତ ଆଦି ପୁତ୍ର ହୋଇଥିଲେ । ପୌରବୀଙ୍କ ଗର୍ଭରୁ ଭୂତ, ସୁଭଦ୍ର, ଭଦ୍ରବାହ, ଦୁର୍ମଦ ଓ ଭଦ୍ର ଆଦି ବାରଟି ପୁତ୍ର ହେଲେ ॥୪୭॥ ନନ୍ଦ, ଉପନନ୍ଦ, କୃତକ, ଶୂର ଆଦି ପୁତ୍ର ମଦିରାଙ୍କ ଗର୍ଭରୁ ଜନ୍ମ ହେଲେ । କୌସଲ୍ୟାଙ୍କ ଗର୍ଭରୁ କେଶୀ ନାମକ ଏକମାତ୍ର କୁଳଦୀପକ ପୁତ୍ର ଜନ୍ମ ହୋଇଥିଲେ ॥୪୮॥ କେଶୀଙ୍କର ରୋଚନାଙ୍କଠାରୁ ହସ୍ତ ଏବଂ ହେମାଙ୍ଗଦ ଆଦି ଓ ଇଳାଙ୍କଠାରୁ ଉରୁବଲ୍କ ଆଦି ଯାଦବମୁଖ୍ୟମାନେ ଜନ୍ମ ହୋଇଥିଲେ ॥୪୯॥

ପରିକ୍ଷିତ, ବସୁଦେବଙ୍କ ଔରସରୁ ଧୃତଦେବାଙ୍କ ଠାରେ ବିପୃଷ୍ଠ ନାମକ ପୁତ୍ର ଓ ଅନ୍ୟପତ୍ନୀ ଶାନ୍ତିଦେବାଙ୍କ ଗର୍ଭରେ ଶ୍ରମ ଓ ପ୍ରତିଶ୍ରୁତ ଆଦି ପୁତ୍ରମାନେ ଜନ୍ମ ହୋଇଥିଲେ ॥୫୦॥ ଉପଦେବାଙ୍କର କଳ୍କ ଓ ବର୍ଷ ଆଦି ଦଶ ପୁତ୍ର ହୋଇଥିଲେ । ଶ୍ରୀଦେବାଙ୍କର ବସୁ ହଂସ, ସୁବଂଶ ଆଦି ଛ' ପୁତ୍ର ଥିଲେ ॥୫୧॥ ଦେବରକ୍ଷିତାଙ୍କ ଗର୍ଭରୁ ଗଦ ଆଦି ନଅ ପୁତ୍ର ହେଲେ । ବସୁଦେବଙ୍କ ଔରସରୁ ସହଦେବାଙ୍କ ଗର୍ଭରେ ପୁରୁବିଶ୍ରୁତ ଆଦି ଆଠ ପୁତ୍ର ଜାତ ହୋଇଥିଲେ । ଧର୍ମ ଯେପରି ଅଷ୍ଟବସୁଙ୍କର ଜନକ ଥିଲେ, ବସୁଦେବ ସେହିପରି ଦେବକୀଙ୍କ ଗର୍ଭରୁ ଜାତ ଆଠ ପୁତ୍ରଙ୍କର ଜନକ ହେଲେ । ସେମାନଙ୍କ ମଧ୍ୟରୁ ସାତ ଜଣ ହେଲେ -- କୀର୍ତ୍ତିମାନ୍, ସୁଷେଣ, ଭଦ୍ରସେନ, ଋଜୁ, ସମ୍ମର୍ଦନ, ଭଦ୍ର ଓ ଶେଷାବତାର ଶ୍ରୀବଳରାମ । ସ୍ୱୟଂ ଭଗବାନ୍ ଶ୍ରୀକୃଷ୍ଣ ହେଲେ ଅଷ୍ଟମ ପୁତ୍ର । ପରିକ୍ଷିତ, ତୁମର ସୌଭାଗ୍ୟବତୀ ପିତାମହୀ ସୁଭଦ୍ରା ମଧ୍ୟ ଦେବକୀଙ୍କର କନ୍ୟା ଥିଲେ ॥୫୨-୫୫॥ ଯେତେବେଳେ ସଂସାରରେ ଧର୍ମର କ୍ଷୟ ଓ ପାପର ବୃଦ୍ଧି ହୁଏ, ସେତେବେଳେ ସର୍ବଶକ୍ତିମାନ୍ ଭଗବାନ୍ ଶ୍ରୀହରି ଅବତାର ଗ୍ରହଣ କରନ୍ତି ॥୫୬॥ ରାଜା, ତାଙ୍କ ଆତ୍ମସ୍ୱରୂପିଣୀ ମାୟା ଛଡ଼ା ତାଙ୍କ ଜନ୍ମ ଏବଂ କର୍ମର ଅନ୍ୟ କୌଣସି କାରଣ ନ ଥାଏ । କାରଣ ସେ ଈଶ୍ୱର, ସମସ୍ତଙ୍କର ସାକ୍ଷୀ ଅନାସକ୍ତ ଆତ୍ମା ଅଟନ୍ତି । ତାଙ୍କ ମାୟା ଜୀବର ଜନ୍ମ, ଜୀବନ ଓ ମୃତ୍ୟୁର କାରଣ ସ୍ୱରୂପ ଏବଂ ତାଙ୍କରି ଅନୁଗ୍ରହରୁ ଜୀବ ସେହି ମାୟାରୂପକ ସଂସାରରୁ ନିବୃତ୍ତ ହୋଇ ମୋକ୍ଷଲାଭପାଇଁ ଇଚ୍ଛା କରେ ॥୫୭-୫୮॥ ବହୁ ଅକ୍ଷୌହିଣୀ ସେନାର ଅଧିପତି ଅସୁରମାନେ ଯେତେବେଳେ ରାଜାର ବେଶ ପିନ୍ଧି ଏହି ପୃଥିବୀକୁ ଆକ୍ରାନ୍ତ କରନ୍ତି, ସେତେବେଳେ ଭୂଭାର ହରଣ କରିବା ପାଇଁ ସେ ଅବତାର ଗ୍ରହଣ କରିଥାନ୍ତି । ବ୍ରହ୍ମାଦି ସୁରେଶ୍ୱରମାନେ ଯାହା କେବେ କଳ୍ପନା କରିପାରିବେ ନାହିଁ, ଭଗବାନ ମଧୁସୂଦନ ସଙ୍କର୍ଷଣଙ୍କ ସହିତ ସେ ସବୁ କାର୍ଯ୍ୟ ସାଧନ କରିଥିଲେ ॥୫୯-୬୦॥ କଳିଯୁଗରେ ଯେଉଁ ଭକ୍ତମାନେ ଜନ୍ମଗ୍ରହଣ କରିବେ, ସେମାନଙ୍କ ପ୍ରତି ଅନୁଗ୍ରହ କରି ସେମାନଙ୍କର ଦୁଃଖ, ଶୋକ ଓ ଅଜ୍ଞାନ ରୂପକ ଅନ୍ଧକାରକୁ ଦୂର କରିବାପାଇଁ ସେ ତାଙ୍କର ନିର୍ମଳ ଯଶ ବିସ୍ତାର କରିଛନ୍ତି । ସାଧୁମାନଙ୍କର କର୍ଣ୍ଣାମୃତ ସ୍ୱରୂପ ତାଙ୍କର ଏହି ଯଶ ହେଉଛି ଶ୍ରେଷ୍ଠ ତୀର୍ଥ । କର୍ଣ୍ଣ ଯୁଗଳରେ ଏହାକୁ ଥରେ ସ୍ପର୍ଶ କରିବା ମାତ୍ରେ କର୍ମବାସନା ସବୁ ଧୋଇହୋଇ ଯାଏ ॥୬୧-୬୨॥ ଭୋଜ, ବୃଷ୍ଣି, ଅଂଧକ, ମଧୁ, ଶୂରସେନ, ଦଶାର୍ହ, କୁରୁ, ସୃଞ୍ଜୟ ଓ ପାଣ୍ଡୁ ବଂଶୀୟମାନେ ଶ୍ରଦ୍ଧାର ସହିତ ତାଙ୍କର ଲୀଳା କୀର୍ତ୍ତନ

କରିଥାନ୍ତି । ତାଙ୍କର ସ୍ନିଗ୍ଧ, ସ୍ମିତଦୃଷ୍ଟି, ଉଦାର ବାକ୍ୟ, ବୀରତ୍ୱପୂର୍ଣ୍ଣ ଲୀଳା ଓ ସର୍ବାଙ୍ଗସୁନ୍ଦର ମୂର୍ତ୍ତିଦ୍ୱାରା ସେ ଏହି ନରଲୋକକୁ ଆନନ୍ଦମୟ କରିଛନ୍ତି ।।୬୩-୬୪।। ମକରକୁଣ୍ଡଳଶୋଭିତ ତାଙ୍କ କର୍ଣ୍ଣଦ୍ୱୟ, ତେଜୋମୟ ଗଣ୍ଡସ୍ଥଳ ଏବଂ ବିଳାସପୂର୍ଣ୍ଣ ହାସ୍ୟ ତାଙ୍କ ମୁଖର ଶୋଭା ବର୍ଦ୍ଧନ କରୁଥିଲା । ନିତ୍ୟୋତ୍ସବମୟ ସେଇ ମୁଖର ମାଧୁରୀକୁ ଯେଉଁମାନେ ଚକ୍ଷୁଦ୍ୱାରା ପାନ କରୁଥିଲେ, ସେହି ନରନାରୀମାନେ କେବେହେଲେ ତୃପ୍ତ ହେଉ ନ ଥିଲେ । ଅପଲକ ନେତ୍ରରେ ସେମାନେ ପିଇବାକୁ ଇଚ୍ଛା କରୁଥିଲେ । କିନ୍ତୁ ପଲକ ପଡ଼ିଯାଉଥିବାରୁ ତାହାର ସ୍ରଷ୍ଟା ନିମିଙ୍କ ପ୍ରତି ସେମାନେ କ୍ରୁଦ୍ଧ ହେଉଥିଲେ ।।୬୫।। ମଥୁରାରେ ବସୁଦେବଙ୍କର ଘରେ ସେ ଜନ୍ମ ହୋଇଥିଲେ । କିନ୍ତୁ ଗୋକୁଳରେ ନନ୍ଦଙ୍କର ଘରକୁ ତାଙ୍କର ପୁତ୍ରଭାବରେ ଚାଲିଗଲେ । ସେଠାରେ ବ୍ରଜବାସୀଙ୍କର ସମସ୍ତ ଅଭିଳାଷ ପୂରଣ କରି ବହୁ ଶତ୍ରୁଙ୍କୁ ବିନାଶ କଲେ । ଏହାପରେ ବହୁ କନ୍ୟାଙ୍କୁ ବିବାହ କରି ଶହଶହ ପୁତ୍ରଙ୍କର ଜନକ ହେଲେ । ଏଥି ସହିତ ଲୋକସମାଜରେ ନିଜ ବେଦର ମର୍ଯ୍ୟାଦା ପ୍ରତିଷ୍ଠା କରିବାପାଇଁ ବହୁ ଯଜ୍ଞଦ୍ୱାରା ଆତ୍ମସ୍ୱରୂପ ନିଜକୁ ହିଁ ପୂଜା କରିଥିଲେ । କୌରବ ଓ ପାଣ୍ଡବମାନଙ୍କ ମଧ୍ୟରେ ଯେଉଁ କଳହର ସୂତ୍ରପାତ ହୋଇଥିଲା, ତଦ୍ଦ୍ୱାରା ଉପସ୍ଥିତ ଯୁଦ୍ଧରେ ନିଜର ଦୃଷ୍ଟିମାତ୍ରକେ ଦୁଷ୍ଟ ରାଜାମାନଙ୍କୁ ଓ ତାଙ୍କର ସେନାକୁ ସଂହାର କରି ସେ ପୃଥିବୀର ଗୁରୁଭାର ହରଣ କରିଥିଲେ ଓ ଅର୍ଜୁନଙ୍କର ବିଜୟ ଘୋଷଣା କରିଥିଲେ । ଉଦ୍ଧବଙ୍କୁ ଆତ୍ମତତ୍ତ୍ୱର ଉପଦେଶ ଦେଇ ନିଜ ରୂପରେ ନିଜର ପରମଧାମକୁ ଯାତ୍ରା କରିଥିଲେ ।।୬୬-୬୭।।

## ଦଶମ ସ୍କନ୍ଧ

### ପ୍ରଥମ ଅଧ୍ୟାୟ

# ପୃଥିବୀର ଭାରହରଣ ପାଇଁ ଭଗବାନ୍‌ଙ୍କ ପ୍ରତିଶ୍ରୁତି

ରାଜା ପରିକ୍ଷିତ କହିଲେ, ଆପଣ ସୂର୍ଯ୍ୟବଂଶ ଓ ଚନ୍ଦ୍ରବଂଶର ସବିସ୍ତର ବର୍ଣ୍ଣନା କଲେ ଏବଂ ସେହି ଦୁଇ ବଂଶର ରାଜାମାନଙ୍କର ଅଦ୍ଭୁତ ଚରିତମାନ ଶୁଣାଇଲେ ॥୧॥ ମୁନିଶ୍ରେଷ୍ଠ, ଧାର୍ମିକ ଯଦୁବଂଶର ମଧ୍ୟ ଆପଣ ବିଶଦ ବର୍ଣ୍ଣନା କରିଛନ୍ତି । ସେହି ବଂଶରେ ବିଷ୍ଣୁ ନିଜର ଅଂଶ ବଳଦେବଙ୍କ ସହିତ ଅବତୀର୍ଣ୍ଣ ହୋଇଥିଲେ । ବର୍ତ୍ତମାନ ତାଙ୍କର ପବିତ୍ର ଚରିତ ଶୁଣାଇବାହୁଅନ୍ତୁ ॥୨॥ ଭଗବାନ ଶ୍ରୀକୃଷ୍ଣ ସମସ୍ତ ବିଶ୍ୱର ଆତ୍ମା ସ୍ୱରୂପ ଓ ସମସ୍ତ ପ୍ରାଣୀଙ୍କର ଜନ୍ମଦାତା । ସେ ଯଦୁବଂଶରେ ଅବତୀର୍ଣ୍ଣ ହୋଇ କଣ କଣ କରିଥିଲେ ତାହା ବିସ୍ତାରିତ ଭାବରେ କହିବାହୁଅନ୍ତୁ ॥୩॥ ଭଗବାନଙ୍କ ଲୀଳା ଅତୀବ ପବିତ୍ର । ଯେଉଁମାନେ ଜୀବନ୍ମୁକ୍ତ ସେମାନେ ତାଙ୍କର ଗୁଣଗାନ କରନ୍ତି । ଯେଉଁମାନେ ମୁକ୍ତି ପାଇବାପାଇଁ ଇଚ୍ଛା କରନ୍ତି ସେମାନଙ୍କପାଇଁ ଏହା ଅମୋଘ ଔଷଧ ସ୍ୱରୂପ । ବିଷୟୀ ଲୋକମାନଙ୍କର କର୍ଣ୍ଣ ଓ ମନକୁ ଏହା ଆନନ୍ଦ ଦାନକରେ । କେବଳ ପଶୁଘାତୀ ବା ଆତ୍ମଘାତୀ ବ୍ୟକ୍ତିଙ୍କୁ ଛାଡ଼ିଦେଲେ କିଏ ବା ଭଗବାନଙ୍କର ଏହି ପବିତ୍ର ଲୀଳାର କୀର୍ତ୍ତନ ନକରି ରହିପାରିବ ? ॥୪॥ ମହାଭାରତ ଯୁଦ୍ଧବେଳେ କୌରବ ସେନାସାଗରରେ ଭୀଷ୍ମ ପିତାମହଙ୍କପରି ଅତିରଥମାନେ ତିମିଙ୍ଗିଳରୂପେ ବିଚରଣ କରୁଥିଲେ । ଦେବତାମାନଙ୍କୁ ମଧ୍ୟ ଜୟ କରିବାର ଶକ୍ତି ସେମାନଙ୍କର ଥିଲା । କିନ୍ତୁ ମୋର ପିତାମହ ପାଣ୍ଡବମାନେ ଭଗବାନ୍ ଶ୍ରୀକୃଷ୍ଣଙ୍କର ପାଦପଦ୍ମ ରୂପ ନୌକାର ଆଶ୍ରୟରେ ଏହି ଅପାର କୁରୁସେନାସାଗରକୁ ବାଛୁରୀର ଖୁରାରେ ଲାଗୁଥିବା ପାଣି(ବସପଦ) ପରି ସହଜରେ ପାରି ହୋଇଗଲେ ॥୫॥ କୁରୁପାଣ୍ଡବମାନଙ୍କର କୁଳାଙ୍କୁର ମୋର ଏହି ଶରୀରଟି ଅଶ୍ୱତ୍‌ଥାମାର ଅସ୍ତ୍ରରେ ଜଳିଯାଇଥିଲା । କିନ୍ତୁ ମୋର ମା' ସେହି ସମୟରେ ଭଗବାନଙ୍କ ଶରଣ ପଶିବାରୁ ଭଗବାନ୍ ଚକ୍ର ଧରି ମାତାଙ୍କ ଗର୍ଭରେ ପ୍ରବେଶ କରି ମୋତେ ରକ୍ଷା କରିଥିଲେ ॥୬॥ ଭଗବାନ୍ ସମସ୍ତ ଦେହଧାରୀଙ୍କ ଭିତରେ ଅନ୍ତର୍ଯାମୀ ପୁରୁଷରୂପରେ ରହି ଅମୃତତ୍ୱ ଦାନ କରନ୍ତି ଏବଂ ବାହାରେ କାଳ ରୂପରେ ରହି ସମସ୍ତଙ୍କର ବିନାଶ କରନ୍ତି । ଏଣୁ ମନୁଷ୍ୟ ରୂପ ଧାରଣ କରିବା ତାଙ୍କର ଏକ ଲୀଳା ମାତ୍ର । ଐଶ୍ୱର୍ଯ୍ୟରେ ପରିପୂର୍ଣ୍ଣ ତାଙ୍କର ସେହି ଲୀଳାମାନଙ୍କୁ ଆପଣ ବର୍ଣ୍ଣନା କରନ୍ତୁ ॥୭॥ ମହର୍ଷି, ଆପଣ ଏବେ କହିଲେ ଯେ, ବଳରାମ ହେଉଛନ୍ତି ରୋହିଣୀଙ୍କର ପୁଅ । ତେଣୁ ସେ ଦେବକୀଙ୍କ ଗର୍ଭରୁ କିପରି ଜନ୍ମ ହେଲେ ? ଅନ୍ୟ ଶରୀର ବିନା ସେ ଆଉ ଜଣଙ୍କର କିପରି ପୁତ୍ର ହେଲେ ? ॥୮॥ ସାଧୁମାନଙ୍କର ରକ୍ଷକ ଭଗବାନ ମୁକୁନ୍ଦ ପିତୃଗୃହ ଛାଡ଼ି କାହିଁକି ବ୍ରଜକୁ ଗଲେ ଓ ନିଜର ଜ୍ଞାତିମାନଙ୍କ ସହିତ ସେ କେଉଁଠାରେ ବାସ କଲେ ? ଶ୍ରୀକୃଷ୍ଣ ବ୍ରଜରେ ରହି କଣ କଣ କରିଥିଲେ ? କଂସ ମାତୁଳ ହେଲେ ମଧ୍ୟ ସେ କାହିଁକି ତାଙ୍କୁ ବଧ କଲେ ? ॥୯-୧୦॥ ମନୁଷ୍ୟଶରୀର ଧାରଣ କରି ଦ୍ୱାରକାପୁରୀରେ ସେ କେତେ ବର୍ଷ ରହିଥିଲେ ଏବଂ ତାଙ୍କର କେତେ ଜଣ ପତ୍ନୀ ଥିଲେ ? ॥୧୧॥ ମହାମୁନି, ମୁଁ ଭଗବାନ ଶ୍ରୀକୃଷ୍ଣଙ୍କର ଯେଉଁସବୁ ଲୀଳା ବିଷୟରେ ପଚାରିଲି ଓ ତାଙ୍କ ବିଷୟରେ ଯାହା ବି ପଚାରି ନାହିଁ, ସେ ସମସ୍ତ ମୁଁ ଶ୍ରଦ୍ଧାର ସହିତ ଶୁଣିବାକୁ ଚାହୁଁଛି । ଆପଣ ତାହା ସବିସ୍ତର ବର୍ଣ୍ଣନା କରନ୍ତୁ ॥୧୨॥ ଆପଣଙ୍କ ମୁଖାରବିନ୍ଦରୁ ଯେଉଁ ଅମୃତମୟ ହରିକଥା ବାହାରୁଛି, ତାହା ପାନ କରି, ଅନ୍ନ, ଜଳ ତ୍ୟାଗ

କଲେ ଯେଉଁ ଦୁଃସହ କଷ୍ଟ ଭୋଗିବାକୁ ହୁଏ, ମୋତେ ତାହା ଆଦୌ ବାଧୁ ନାହିଁ ॥୧୩॥ ସୂତ କହିଲେ, ଭୃଗୁନନ୍ଦନ ଶୌନକ, ରାଜା ପରିକ୍ଷିତଙ୍କର ଏହି ସମୀଚୀନ ପ୍ରଶ୍ନ ଶୁଣି ଭଗବାନ୍ ଶୁକଦେବ ତାଙ୍କୁ ଅଭିନନ୍ଦନ କଲେ ଏବଂ କଳିଯୁଗର କଳୁଷକୁ ନାଶ କରୁଥିବା କୃଷ୍ଣଚରିତ ବର୍ଣ୍ଣନା କଲେ । କାରଣ ସେ ହିଁ ନିଜେ ପରମଭାଗବତ ଥିଲେ ॥୧୪॥

ଶ୍ରୀ ଶୁକଦେବ କହିଲେ, ହେ ରାଜର୍ଷିଶ୍ରେଷ୍ଠ, ବାସୁଦେବଙ୍କ କଥାରେ ତୁମର ପ୍ରଗାଢ଼ ଆଗ୍ରହ ସୃଷ୍ଟି ହୋଇଛି, ଯାହା ଶୁଣିଲେ ଭଗବାନଙ୍କଠାରେ ପରମ ନିଷ୍ଠା ଜାତ ହୁଏ ॥୧୫॥ ଭଗବାନ୍ ବାସୁଦେବଙ୍କ ପାଦରୁ ପ୍ରବାହିତ ଗଙ୍ଗାଜଳ ଯେପରି ତିନି ଲୋକକୁ ପବିତ୍ର କରେ, ତାଙ୍କ ବିଷୟରେ ଯେଉଁ ପ୍ରଶ୍ନ, ତାହା ଯେ ପଚାରେ, ଯେ ଉତ୍ତର ଦିଏ ଏବଂ ଯେଉଁମାନେ ଶୁଣନ୍ତି, ସେଇ ତ୍ରିବିଧ ପୁରୁଷଙ୍କୁ ସେହିପରି ପବିତ୍ର କରେ ॥୧୬॥ ରାଜବେଶଧାରୀ ଦୈତ୍ୟମାନଙ୍କର ଦର୍ପରେ ଏବଂ ସେମାନଙ୍କ ଅଗଣିତ ସୈନ୍ୟସାମନ୍ତଙ୍କ ଭାରରେ ପୃଥିବୀ ପୀଡ଼ିତ ହୋଇ ବ୍ରହ୍ମାଙ୍କର ଶରଣାଗତ ହେଲେ । ସେ ଗାଈରୂପ ଧରି ଅତିଶୟ ଶୀର୍ଣ୍ଣ ଦେଖାଯାଉଥିଲେ । ତାଙ୍କ ଚକ୍ଷୁରୁ ଲୁହଧାର ବହିଯାଉଥିଲା । ସେ ଅତି କରୁଣଭାବରେ ବିଳାପ କରି ବ୍ରହ୍ମାଙ୍କ ଆଗରେ ନିଜର ଦୁଃଖ ବର୍ଣ୍ଣନା କଲେ ॥୧୭-୧୮॥ ବ୍ରହ୍ମା ତାଙ୍କର ଦୁଃଖ କାହାଣୀ ଶୁଣି ଶିବ ପ୍ରମୁଖ ଦେବତାମାନଙ୍କ ସହିତ ପୃଥିବୀଙ୍କୁ ସାଙ୍ଗରେ ନେଇ କ୍ଷୀରସମୁଦ୍ର କୂଳରେ ଉପସ୍ଥିତ ହେଲେ ॥୧୯॥ ସେଠାରେ ପହଞ୍ଚି ଏକାଗ୍ର ଭାବରେ ଶରଣବତ୍ସଳ ଜଗତର ନାଥ ଦେବଦେବ ଭଗବାନଙ୍କୁ ପୁରୁଷସୂକ୍ତ ଦ୍ୱାରା ପ୍ରାର୍ଥନା କଲେ ॥୨୦॥

ସମାଧିସ୍ଥ ବ୍ରହ୍ମା ଆକାଶବାଣୀ ଶୁଣି ଦେବତାମାନଙ୍କୁ କହିଲେ, ଭଗବାନ ଯାହା କହିଲେ, ଦେବତାମାନେ ଶୁଣ । ଶ୍ରୀ ଭଗବାନଙ୍କର ଆଦେଶ ଅବିଳମ୍ବେ ପାଳନ କର ॥୨୧॥ ଭଗବାନ ପୂର୍ବରୁ ପୃଥିବୀର ଦୁଃଖ କଥା ଜାଣିଛନ୍ତି । ପୃଥିବୀର ଭାରହରଣ କରିବାପାଇଁ ଭଗବାନ ଶୀଘ୍ର ନିଜ କାଳଶକ୍ତିଦ୍ୱାରା ପୃଥିବୀରେ ଅବତୀର୍ଣ୍ଣ ହେବେ । ସେ ଯେତେଦିନ ପୃଥିବୀରେ ରହିବେ, ତୁମେମାନେ ମଧ୍ୟ ସେତେଦିନ ପର୍ଯ୍ୟନ୍ତ ଯଦୁବଂଶରେ ଓ ଯାଦବମାନଙ୍କର ଆତ୍ମୀୟମାନଙ୍କ ବଂଶରେ ଜନ୍ମଗ୍ରହଣ କରି ସେଠାରେ ଅବସ୍ଥାନ କର ॥୨୨॥ ସାକ୍ଷାତ୍ ପୁରୁଷୋତ୍ତମ ଭଗବାନ ବସୁଦେବଙ୍କ ଗୃହରେ ଜନ୍ମ ହେବେ । ଦେବାଙ୍ଗନାମାନେ ତାଙ୍କରି ପ୍ରିୟ କାର୍ଯ୍ୟ କରିବାପାଇଁ ଶୀଘ୍ର ଜନ୍ମ ହୁଅନ୍ତୁ ॥୨୩॥ ସହସ୍ରବଦନ ଭଗବାନ ଅନନ୍ତ ହେଉଛନ୍ତି ବାସୁଦେବଙ୍କର ଅଂଶ । ଶ୍ରୀହରିଙ୍କର ପ୍ରିୟ କାର୍ଯ୍ୟ କରିବାପାଇଁ ସେ ଅଗ୍ରଜ ରୂପେ ଜନ୍ମ ହେବେ ॥୨୪॥ ଭଗବାନଙ୍କର ଶକ୍ତିସ୍ୱରୂପିଣୀ ଯୋଗମାୟା ଯେ ସମସ୍ତ ଜଗତକୁ ମୋହିତ କରି ରଖିଛନ୍ତି, ସେ ତାଙ୍କରି ଆଦେଶରେ ତାଙ୍କରି କାର୍ଯ୍ୟ କରିବାପାଇଁ ପ୍ରଭୁଙ୍କ ଅଂଶରେ ଜନ୍ମ ହେବେ ॥୨୫॥ ଶ୍ରୀ ଶୁକଦେବ କହିଲେ, ପ୍ରଜାପତିମାନଙ୍କର ଈଶ୍ୱର ବ୍ରହ୍ମା ଦେବତାମାନଙ୍କୁ ଏହିପରି ଆଦେଶ କରି ଏବଂ ପୃଥିବୀଙ୍କୁ ଆଶ୍ୱାସନା ଦେଇ ନିଜର ପରମଧାମକୁ ଚାଲିଗଲେ ॥୨୬॥

ଯଦୁବଂଶୀୟ ରାଜା ଶୂରସେନ ମଥୁରାପୁରୀ ସ୍ଥାପନ କରିଥିଲେ । ସେ ପୂର୍ବେ ମଥୁରା ଓ ଶୂରସେନ ମଣ୍ଡଳ-ଏହି ଦୁଇଟି ରାଜ୍ୟକୁ ଭୋଗ କରୁଥିଲେ ॥୨୭॥ ସେତେବେଳେ ମଥୁରା ଥିଲା ସମସ୍ତ ଯଦୁବଂଶୀ ରାଜାମାନଙ୍କର ରାଜଧାନୀ । ଭଗବାନ ଶ୍ରୀହରିଙ୍କର ତାହା ଥିଲା ନିତ୍ୟ ନିବାସସ୍ଥଳ ॥୨୮॥ ଦିନେ ଶୂରବଂଶୀୟ ବସୁଦେବ ବିବାହ କଲେ ଓ ନବବିବାହିତା ଦେବକୀଙ୍କ ସହିତ ରଥାରୋହଣପୂର୍ବକ ନିଜ ଗୃହକୁ ଯାଉଥିଲେ ॥୨୯॥ ନିଜ ଭଉଣୀ ଦେବକୀଙ୍କର ପ୍ରିୟ କାମନାରେ ଉଗ୍ରସେନଙ୍କର ପୁଅ କଂସ ଦେବକୀଙ୍କ ରଥର ସାରଥି ହୋଇ ରଥର ଅଶ୍ୱରଶ୍ମି ଧାରଣ କରିଥିଲେ । ଶହ ଶହ ସୁବର୍ଣ୍ଣମଣ୍ଡିତ ରଥ ଚାଲିଥିଲା । ଦେବକୀଙ୍କର ପିତା ଦେବକ କନ୍ୟା ପ୍ରତି ସ୍ନେହବଶରୁ ବିଦାୟ କାଳରେ ସ୍ୱର୍ଣ୍ଣାଳଙ୍କୃତ ଚାରିଶହ ହାତୀ, ପନ୍ଦର ହଜାର ଘୋଡ଼ା, ଅଠର ଶହ ରଥ ଏବଂ ସୁନ୍ଦର ସୁନ୍ଦର ବସ୍ତ୍ରାଳଙ୍କାରଭୂଷିତ ଦୁଇ ଶହ ଦାସୀ ଯୌତୁକସ୍ୱରୂପ ଦାନ କରିଥିଲେ ॥୩୦-୩୨॥ ବିଦାୟ ସମୟରେ ବରବଧୂଙ୍କର ମଙ୍ଗଳପାଇଁ ଶଙ୍ଖ, ତୂରୀ, ମୃଦଙ୍ଗ ଓ ଦୁନ୍ଦୁଭି ଆଦି ବାଜୁଥିଲା ॥୩୩॥ ଅଶ୍ୱର ରଜ୍ଜୁ ଧାରଣ କରି ରାସ୍ତାରେ ଯାଉଥିବାବେଳେ କଂସ ଏକ ଆକାଶବାଣୀ ଶୁଣିଲା, ରେ ଅବୋଧ, ଯାହାକୁ ତୁ ରଥରେ ବସାଇ ସ୍ୱାମୀଘରକୁ ନେଇ

ଯାଉଛୁ, ସେହି ଦେବକୀର ଅଷ୍ଟମ ଗର୍ଭର ସନ୍ତାନ ଦିନେ ତୋତେ ହତ୍ୟା କରିବ । ଭୋଜକୁଳପାଂଶୁଳ କଂସ ଅତି ପାପୀ ଓ ଦୁରାଚାରୀ ଥିଲା । ସେ ସଙ୍ଗେ ସଙ୍ଗେ ଖଣ୍ଡା ବାହାର କରି ମାରିଦେବାପାଇଁ ଭଉଣୀର ଚୁଟିକୁ ଧରିନେଲା ॥୩୪-୩୫॥

ମହାମନା ବସୁଦେବ ଏହି ଘୃଣିତ କାର୍ଯ୍ୟରୁ ନିବୃତ୍ତ ହେବାପାଇଁ ନୃଶଂସ, ନିର୍ଲଜ୍ଜ କଂସକୁ ଏହିପରି କହିବାକୁ ଲାଗିଲେ-- ॥୩୬॥ ଶ୍ରୀ ବସୁଦେବ କହିଲେ, କଂସ, ତୁମେ ବୀରପୁରୁଷଙ୍କଦ୍ୱାରା ପ୍ରଶଂସନୀୟ । ତୁମେ ଭୋଜବଂଶର ଯଶୋବର୍ଦ୍ଧନ କରିଛ । ବିବାହ ଉତ୍ସବରେ ନିଜର ଭଗିନୀକୁ ହତ୍ୟା କରିବା ତୁମ ପକ୍ଷରେ ଉଚିତ ହେବ କି ? ଯେଉଁମାନେ ଜନ୍ମ ହୋଇଛନ୍ତି, ସେମାନେ ଦେହ ସହିତ ମୃତ୍ୟୁକୁ ଧରି ଆସିଛନ୍ତି । ତେଣୁ ଆଜି ହେଉ ବା ଶହେ ବର୍ଷ ପରେ ହେଉ, ସମସ୍ତଙ୍କର ନିଶ୍ଚୟ ମୃତ୍ୟୁ ହେବ ॥୩୭-୩୮॥ ଦେହ ଯେତେବେଳେ ପଞ୍ଚତ୍ୱ ପ୍ରାପ୍ତ ହୁଏ, ସେତେବେଳେ ଦେହାଭିମାନୀ ଜୀବ କର୍ମ ଅନୁସାରେ ଅନ୍ୟ ଦେହ ଗ୍ରହଣ କରି ପୂର୍ବ ଦେହ ତ୍ୟାଗ କରିଥାଏ ॥୩୯॥ ଚାଲିଲାବେଳେ ଲୋକ ଯେପରି ଗୋଟିଏ ପାଦରେ ଭୂମିକୁ ଆଶ୍ରୟ କରେ ଏବଂ ଅନ୍ୟ ପାଦରେ ଭୂମିକୁ ତ୍ୟାଗ କରେ, ଜୋକ ଯେପରି ଅନ୍ୟ ଘାସକୁ ଧରିବାବେଳେ ପୂର୍ବ ଘାସକୁ ଛାଡ଼ିଦିଏ, ସେହିପରି ଜୀବ କର୍ମ ଅନୁସାରେ ଏକ ଶରୀର ଲାଭ କଲାପରେ ପୂର୍ବ ଶରୀରକୁ ଛାଡ଼ିଦିଏ ॥୪୦॥ ରାଜାର ଐଶ୍ୱର୍ଯ୍ୟ ଦେଖି ବା ଇନ୍ଦ୍ରାଦି ଦେବତାଙ୍କର ଐଶ୍ୱର୍ଯ୍ୟର କଥା ଶୁଣି ଲୋକ ସେହିପରି ଐଶ୍ୱର୍ଯ୍ୟ ପାଇବାପାଇଁ ଚିନ୍ତା କରିବା ଫଳରେ ସ୍ୱପ୍ନରେ ନିଜେ ରାଜା ବା ଇନ୍ଦ୍ର ହୋଇଯାଏ । ସେତେବେଳେ ସେ ତାର ଦରିଦ୍ର ଅବସ୍ଥାକୁ ଭୁଲିଯାଏ ବା ଜାଗ୍ରତ୍ ଅବସ୍ଥାରେ ରହି ସେସବୁ ଚିନ୍ତା କରି କରି ଏପରି ତନ୍ମୟ ହୋଇଯାଏ ଯେ ନିଜର ବାସ୍ତବ ସ୍ଥିତିକୁ ଭୁଲିଯାଏ । ସେହିପରି ଜୀବ କର୍ମ ଅନୁସାରେ କାମନାର ଓ କାମନା ଅନୁସାରେ କର୍ମର ବଶ ହୋଇ ଅନ୍ୟ ଶରୀରକୁ ଲାଭ କରେ ଓ ନିଜର ପୂର୍ବ ଶରୀରକୁ ଭୁଲିଯାଏ ॥୪୧॥ ଜୀବର ମନ ଯେଉଁ ଯେଉଁ ବାସନାରେ ପୂର୍ଣ୍ଣ ହୋଇଥାଏ, ମୃତ୍ୟୁ ସମୟରେ ପୂର୍ବଜନ୍ମସଂଚିତ କର୍ମବଶରୁ ସେହି ସେହି ବାସନାର ଅସଂଖ୍ୟ ପାଞ୍ଚଭୌତିକ ଶରୀର ମଧ୍ୟରୁ ଗୋଟିଏ ଶରୀର ଲାଭ କରିବାପାଇଁ ଇଚ୍ଛା କରେ ଓ ଦୈବ ମାୟାରେ ସେହି ଶରୀରଟିକୁ ଧାରଣ କରି ସେ ଜନ୍ମ ହୁଏ । ଆକାଶରେ ଚନ୍ଦ୍ର ଓ ସୂର୍ଯ୍ୟର ପ୍ରତିବିମ୍ବ ଘଟରେ ଥିବା ଜଳରେ ଯେପରି ପବନ ଦ୍ୱାରା ହଲଚଲ ହୋଇଥାଏ, କିନ୍ତୁ ପ୍ରକୃତରେ ସୂର୍ଯ୍ୟ, ଚନ୍ଦ୍ର ହଲୁ ନ ଥାନ୍ତି, ସେହିପରି ଶୁଦ୍ଧ ଜୀବ ଦେହ ପ୍ରତି ଅଭିମାନଯୋଗୁଁ ଦେହର ଧର୍ମ ଜରା, ମରଣ, ଦୁଃଖ, ସୁଖ ଆଦି ଭୋଗ କରେ ॥୪୨-୪୩॥ ତେଣୁ ନିଜର ମଙ୍ଗଳ କାମନା କରୁଥିବା ବ୍ୟକ୍ତି କାହାରିପ୍ରତି ଦ୍ରୋହ ଆଚରଣ କରିବା ଉଚିତ ନୁହେଁ । କାରଣ ପରର ଅନିଷ୍ଟ କଲେ ଲୋକ ଇହକାଳରେ ଓ ପରକାଳରେ ନାନା ଦୁଃଖ ଯନ୍ତ୍ରଣା ଭୋଗ କରିଥାଏ ॥୪୪॥ ଏହି ଦେବକୀ ତୁମର ଛୋଟ ଭଉଣୀ, ତୁମର କନ୍ୟା ପରି, ସେ ମୃତ୍ୟୁ ଭୟରେ କାଠ ପିତୁଳୀ ହୋଇ ଠିଆହୋଇଛି । ତୁମେ ଦୀନବତ୍ସଳ । ଏହି ନିରପରାଧ କନ୍ୟାକୁ ବଧକରିବା ତୁମ ପକ୍ଷରେ ଉଚିତ ହେଉ ନାହିଁ ॥୪୫॥ ଶ୍ରୀ ଶୁକଦେବ କହିଲେ, ପରିକ୍ଷିତ, ବସୁଦେବ ଏହିପରି ସାମ-ଭେଦ ଦ୍ୱାରା ଇହକାଳର ଓ ପରକାଳର ଭୟ ଦେଖାଇ କଂସକୁ ନାନାପ୍ରକାରେ ବୁଝାଇବା ପାଇଁ ଚେଷ୍ଟା କଲେ । କିନ୍ତୁ ଅଘ, ବକ ପ୍ରଭୃତି ଦୁଷ୍ଟ ରାକ୍ଷସମାନଙ୍କର ସହଚର ନିଷ୍ଠୁର କଂସ ତାର ସଂକଳ୍ପରୁ ନିବୃତ୍ତ ହେଲା ନାହିଁ ॥୪୬॥ କଂସର ସଂକଳ୍ପକୁ ଜାଣି ନିଶ୍ଚିତ ମୃତ୍ୟୁମୁଖରୁ ରକ୍ଷା କରିବାପାଇଁ ବସୁଦେବ ଏକ ଉପାୟ ଚିନ୍ତା କଲେ । ବୁଦ୍ଧି, କୌଶଳ ଓ ବଳ ପ୍ରୟୋଗରେ ତ୍ରୁଟି ନ କରି ଆସନ୍ନ ମୃତ୍ୟୁରୁ ରକ୍ଷା ପାଇବାର ପ୍ରତିକାର ହେଉଛି ବୁଦ୍ଧିମାନ୍ ଲୋକର କର୍ତ୍ତବ୍ୟ । ସେଥିରେ ଯଦି ରକ୍ଷା ନ ମିଳେ, ତାହେଲେ ନିଜକୁ ଦୋଷ ଲାଗିବ ନାହିଁ ॥୪୭-୪୮॥ ବସୁଦେବ ଭାବିଲେ, ଯଦି ଦେବକୀର ଗର୍ଭରୁ ମୋର ପୁତ୍ର ଜନ୍ମ ହୁଏ ଏବଂ ତା ପୂର୍ବରୁ କଂସ ମରି ନ ଥାଏ, ତେବେ କଣ କରାଯିବ, ମୁଁ ତାହା ସ୍ଥିର କରିବି । କିନ୍ତୁ ପୁତ୍ର ଜନ୍ମ ହେଲେ ସେହି ପୁତ୍ରକୁ କଂସ ହସ୍ତରେ ପ୍ରଦାନ କରିବି -- ଏହି ପ୍ରତିଶ୍ରୁତି ଦେଇ ମୁଁ ଦେବକୀକୁ ରକ୍ଷା କରିବାକୁ ବର୍ତ୍ତମାନ ଚେଷ୍ଟା କରିବି ॥୪୯॥ ବିଧିର ବିଧାନକୁ କେହି ଜାଣନ୍ତି ନାହିଁ । ମୁଁ ଯାହା ଭାବୁଛି, ତାର ବିପରୀତ କାହିଁକି ବା ନ ହେବ ? ଆସନ୍ନ ମୃତ୍ୟୁମୁଖରୁ ଲୋକ ରକ୍ଷା

ପାଇଯାଉଛି, ଏବଂ ଖୁବ୍ ଭଲ ଥିବା ଅବସ୍ଥାରେ ମଧ୍ୟ ମୃତ୍ୟୁ ହେଉଛି ।।୫୦।। ଖୁବ୍ ଜୋର୍‌ରେ ନିଆଁ ଉଠୁଥିବ, କିନ୍ତୁ ନିକଟରେ ଥିବା ଘରେ ନ ଲାଗି ଦୂରରେ ଥିବା ଘରେ ଲାଗିଯିବ, ଏହା କେବଳ ଗୃହସ୍ଥମାନଙ୍କର ଅଦୃଷ୍ଟ ଯୋଗୁଁ ହୋଇଥାଏ । ସେହିପରି ଦେହ ଲାଭକରିବା ବା ତ୍ୟାଗକରିବା ଅଦୃଷ୍ଟ ଭିନ୍ନ ଅନ୍ୟ କୌଣସି କାରଣରୁ ହୁଏ ନାହିଁ ।।୫୧।।

ଏହିପରି ଚିନ୍ତା କରି ବସୁଦେବ ପାପୀ କଂସକୁ ବହୁ ଅନୁନୟ ବିନୟପୂର୍ବକ ପ୍ରାର୍ଥନା କରିବାକୁ ଲାଗିଲେ ।।୫୨।। ନିଜର ମନଦୁଃଖକୁ ଚାପିରଖି ମୁହଁରେ ହସ ଦେଖାଇ ବସୁଦେବ କ୍ରୂର, ନିର୍ଲଜ୍ଜ କଂସକୁ ଏହିପରି କହିଲେ-- ।।୫୩।। ସୌମ୍ୟ, ଯାହା ଆକାଶବାଣୀ ଶୁଣାଗଲା, ତଦନୁସାରେ ଦେବକୀଠାରୁ ତୁମର କୌଣସି ଭୟ ନାହିଁ, ଭୟ ତା' ପୁତ୍ରଙ୍କଠାରୁ । ତେଣୁ ତାର ପୁତ୍ର ହେଲେ ମୁଁ ସଙ୍ଗେ ସଙ୍ଗେ ତୁମକୁ ପ୍ରଦାନ କରିବି ।।୫୪।। ଶ୍ରୀ ଶୁକଦେବ କହିଲେ, ବସୁଦେବଙ୍କ କଥାର ସାର ଅନୁଭବ କରି କଂସ ନିଜ ଭଉଣୀକୁ ମାରିବାରୁ ନିବୃତ୍ତ ହେଲା । ବସୁଦେବ ମଧ୍ୟ ସନ୍ତୁଷ୍ଟ ହୋଇ କଂସକୁ ପ୍ରଶଂସା କଲେ ଏବଂ ନିଜ ଗୃହରେ ପ୍ରବେଶ କଲେ ।।୫୫।। କିଛି କାଳ ଗତ ହେବା ପରେ ସର୍ବଦେବମୟୀ ଦେବକୀଙ୍କ ଗର୍ଭରେ ପ୍ରତି ବର୍ଷ ଗୋଟି ଗୋଟି କରି ଆଠଟି ପୁତ୍ର ଓ ଗୋଟିଏ କନ୍ୟା ଜାତ ହେଲେ ।।୫୬।। ପ୍ରଥମ ପୁତ୍ରର ନାମ ହେଲା କୀର୍ତ୍ତିମାନ୍ । ବସୁଦେବ ମିଥ୍ୟାକୁ ଭୟ କରୁଥିଲେ । ତେଣୁ ସେ ତାଙ୍କର କଥା ରକ୍ଷାକରି ଅତି ଦୁଃଖରେ ଏହି ପୁତ୍ରଟିକୁ କଂସ ହସ୍ତରେ ଅର୍ପଣ କଲେ ।।୫୭।। ସାଧୁମାନେ କଣ ବା ସହି ନ ପାରନ୍ତି ? ଜ୍ଞାନୀମାନଙ୍କର କେଉଁ ବିଷୟ ପ୍ରତି ଅପେକ୍ଷା ଥାଏ ? କଦର୍ଯ୍ୟ ଲୋକମାନଙ୍କପାଇଁ କେଉଁ କାମଟି ଅକାର୍ଯ୍ୟ ? ଏବଂ ଶ୍ରୀ ଭଗବାନଙ୍କଠାରେ ନିଜକୁ ସମର୍ପଣ କରିଥିବା ବ୍ୟକ୍ତି ପକ୍ଷରେ କେଉଁ ବସ୍ତୁ ବା ଅତ୍ୟାଜ୍ୟ ? ।।୫୮।। ପରିକ୍ଷିତ, ବସୁଦେଙ୍କର ଶତ୍ରୁ, ମିତ୍ର ସମସ୍ତଙ୍କ ପ୍ରତି ସମଦୃଷ୍ଟି ଏବଂ ସତ୍ୟ ପ୍ରତି ନିଷ୍ଠା ଦେଖି କଂସ ଅତିଶୟ ସନ୍ତୁଷ୍ଟ ହୋଇ ତାଙ୍କୁ ହସି ହସି କହିଲା, ବସୁଦେବ, ତୁମର ଏହି ପୁଅଟିକୁ ନେଇ ତୁମେ ଘରକୁ ଚାଲିଯାଅ । ଏହାଠାରୁ ମୋର କୌଣସି ଭୟ ନାହିଁ । କେବଳ ଦେବକୀର ଅଷ୍ଟମ ଗର୍ଭର ପୁତ୍ର ମୋ' ମୃତ୍ୟୁର କାରଣ ହେବ । ତାହାହିଁ ମୁଁ ଆକାଶବାଣୀରୁ ଶୁଣିଛି ।।୫୯-୬୦।। ବସୁଦେବ, 'ତାହା ହେଉ' ବୋଲି କହି ଘରକୁ ଫେରିଲେ, କିନ୍ତୁ ଅବ୍ୟବସ୍ଥିତ ଚିତ୍ତ ଦୁଷ୍ଟ କଂସର କଥାରେ ଆସ୍ଥା ସ୍ଥାପନ କଲେ ନାହିଁ ।।୬୧।।

ପରିକ୍ଷିତ, ଏହି ସମୟରେ ଭଗବାନ ନାରଦ କଂସପାଖକୁ ଆସି କହିଲେ, କଂସ, ନନ୍ଦ ଆଦି ଗ୍ରାମବାସୀ ଗୋପାଳମାନେ, ସେମାନଙ୍କ ସ୍ତ୍ରୀ ଗୋପୀମାନେ, ବସୁଦେବ ପ୍ରଭୃତି ଯାଦବମାନେ, ଦେବକୀ ପ୍ରଭୃତି ଯାଦବ ସ୍ତ୍ରୀମାନେ, ନନ୍ଦ ଓ ବସୁଦେବ ଉଭୟଙ୍କର ଜ୍ଞାତି, ବନ୍ଧୁ, ସଖା, ସୁହୃଦ୍-ସମସ୍ତେ ଦେବତା, ଯେଉଁମାନେ କି ତୁମର ସେବା କରୁଛନ୍ତି । ନାରଦ ପୁଣି କହିଲେ ଯେ ଦୈତ୍ୟମାନଙ୍କ ଯୋଗୁଁ ପୃଥିବୀର ଭାର ବଢ଼ିଗଲାଣି; ସେଥିପାଇଁ ଦେବତାମାନଙ୍କ ପକ୍ଷରୁ ସେମାନଙ୍କର ବିନାଶପାଇଁ ପ୍ରସ୍ତୁତି ଆରମ୍ଭ ହୋଇଗଲାଣି ।।୬୨-୬୪।। ନାରଦ ଚାଲିଯିବାରୁ କଂସ ମନେ କଲା ଯେ, ଯାଦବମାନେ ସମସ୍ତେ ଦେବତା ଏବଂ ଦେବକୀର ଗର୍ଭରୁ ତାକୁ ବଧ କରିବାପାଇଁ ବିଷ୍ଣୁ ଜନ୍ମ ହେବେ । ଦେବକୀ ଓ ବସୁଦେବ ଉଭୟଙ୍କୁ ସେ ବନ୍ଦୀଶାଳରେ ବନ୍ଦୀ କରି ଜନ୍ମ ହେବା ମାତ୍ରେ ଦୁହିଁଙ୍କର ପୁଅଙ୍କୁ ଗୋଟିକ ପରେ ଗୋଟିଏ ମାରିବାକୁ ଲାଗିଲା । ତାର ଭୟ ଥିଲା ଯେ କାଳେ ବିଷ୍ଣୁ ସେ ଦୁହିଁଙ୍କର ପୁତ୍ରରୂପେ ତାକୁ ମାରିବାପାଇଁ ଆସିଥିବେ ।।୬୫-୬୬।। ପୃଥିବୀରେ ପ୍ରାୟ ଦେଖାଯାଏ ଯେ ନିଜର ପ୍ରାଣକୁ ପୋଷଣ କରିବାପାଇଁ ଲୋଲୁପ ରାଜାମାନେ ସ୍ୱାର୍ଥବୁଦ୍ଧିରେ ନିଜର ମାତା, ପିତା, ଭାଇ, ବଂଧୁ ଏବଂ ଅତିଶୟ ହିତୈଷୀ ବନ୍ଧୁମାନଙ୍କୁ ହତ୍ୟା କରନ୍ତି ।।୬୭।। କଂସ ଜାଣିଥିଲା ଯେ ସେ ପୂର୍ବେ କାଳନେମି ନାମକ ଦୈତ୍ୟ ଥିଲା ଏବଂ ବିଷ୍ଣୁ ତାକୁ ମାରି ଦେଇଥିଲେ । ସେଥିପାଇଁ ସେ ଯଦୁବଂଶୀୟମାନଙ୍କୁ ଘୋର ଶତ୍ରୁତା କରିବାକୁ ଲାଗିଲା ।।୬୮।। ମହାବଳୀ କଂସ ଯଦୁ, ଭୋଜ ଓ ଅନ୍ଧକମାନଙ୍କର ଅଧିପତି ନିଜର ପିତା ଉଗ୍ରସେନଙ୍କୁ କାରାଗାରରେ ବନ୍ଦୀ କରି ସ୍ୱୟଂ ରାଜ୍ୟ ଭୋଗ କରିବାକୁ ଲାଗିଲା ।।୬୯।।

## ଦ୍ୱିତୀୟ ଅଧ୍ୟାୟ

# ଭଗବାନଙ୍କର ଗର୍ଭବାସ

ଶ୍ରୀ ଶୁକଦେବ କହିଲେ, ପରିକ୍ଷିତ, ମହାବଳୀ କଂସ ମଗଧସମ୍ରାଟ୍ ଜରାସନ୍ଧ ସାହାଯ୍ୟରେ ପ୍ରଳମ୍ବ, ବକ, ଚାଣୂର, ତୃଣାବର୍ତ୍ତ, ଅଘାସୁର, ମୁଷ୍ଟିକ, ଅରିଷ୍ଟ, ଦ୍ୱିବିଦ, ପୂତନା, କେଶୀ, ଧେନୁକ ଆଦି ଅସୁର ଏବଂ ବାଣାସୁର ଓ ନରକାସୁର ପ୍ରଭୃତି ଅସୁରରାଜାମାନଙ୍କ ସହିତ ମିଶି ଯାଦବମାନଙ୍କ ଉପରେ ଅତ୍ୟାଚାର ଆରମ୍ଭ କରିଦେଲା ॥୧-୨॥ କଂସର ଅତ୍ୟାଚାରରେ ପୀଡ଼ିତ ହୋଇ ଯାଦବମାନେ କୁରୁ, ପାଞ୍ଚାଳ, ଶାଲ୍ୱ, ବିଦର୍ଭ, ନିଷଧ, ବିଦେହ, କୋଶଳ ପ୍ରଭୃତି ଦେଶକୁ ପଳାଇଯାଇ ଗୋପନରେ ଅବସ୍ଥାନ କଲେ ॥୩॥ କେହି କେହି ଜ୍ଞାତି କଂସକୁ ମାନି ମଥୁରାରେ ରହିଥିଲେ ଏବଂ ଇତିମଧ୍ୟରେ କଂସ ଦେବକୀଙ୍କର ଛ'ଟି ପୁତ୍ରଙ୍କୁ ବିନାଶ କଲା ॥୪॥ ଦେବକୀଙ୍କର ହର୍ଷ ଓ ସୁଖ ବର୍ଦ୍ଧନକାରୀ ସପ୍ତମ ଗର୍ଭର ଉଦୟ ହେଲା । ଏହି ଗର୍ଭରେ ସ୍ୱୟଂ ବିଷ୍ଣୁଙ୍କର ଅଂଶ ଶ୍ରୀଅନନ୍ତ ପ୍ରବେଶ କରିଥିଲେ ॥୫॥ ବିଶ୍ୱର ଆତ୍ମାସ୍ୱରୂପ ଭଗବାନ କଂସପ୍ରପୀଡ଼ିତ ଯାଦବମାନଙ୍କର ଭୟକୁ ଜାଣିପାରି ଯୋଗମାୟାଙ୍କୁ ଆଦେଶ ଦେଲେ, ଭଦ୍ରେ, ଦେବୀ, ଗୋରୁ ଓ ଗୋପାଳମାନଙ୍କରେ ଶୋଭିତ ବ୍ରଜପୁରୀକୁ ତୁମେ ଯାତ୍ରା କର । ସେଠାରେ ଗୋକୁଳରେ ନନ୍ଦଙ୍କ ଗୃହରେ ବସୁଦେବଙ୍କର ପତ୍ନୀ ରୋହିଣୀ ବାସ କରୁଛନ୍ତି । ତାଙ୍କର ଅନ୍ୟ ପତ୍ନୀମାନେ ମଧ୍ୟ କଂସର ଭୟରେ ବିଭିନ୍ନ ଗୁପ୍ତ ସ୍ଥାନରେ ରହିଛନ୍ତି ॥୬-୭॥ ଏବେ ମୋର ଅଂଶ ଶେଷଦେବ ଦେବକୀଙ୍କ ଗର୍ଭରେ ରହିଛନ୍ତି । ତୁମେ ତାଙ୍କୁ ଦେବକୀଙ୍କ ଗର୍ଭରୁ ଟାଣି ଆଣି ରୋହିଣୀଙ୍କ ଗର୍ଭରେ ସ୍ଥାପନ କର ॥୮॥

ମଙ୍ଗଳମୟୀ, ଏହାପରେ ଦେବକୀଙ୍କ ଗର୍ଭରେ ମୁଁ ମୋର ପରିପୂର୍ଣ୍ଣ ସ୍ୱରୂପରେ ପ୍ରବେଶ କରି ଦେବକୀଙ୍କର ପୁତ୍ରରୂପେ ଜନ୍ମ ହେବି । ତୁମେ ନନ୍ଦପତ୍ନୀ ଯଶୋଦାଙ୍କର ଗର୍ଭରେ ଜନ୍ମ ହେବ ॥୯॥ ସର୍ବ କାମେଶ୍ୱରୀ ଓ ବରପ୍ରଦାୟିନୀ ଭାବରେ ମନୁଷ୍ୟମାନେ ତୁମକୁ ଧୂପ, ନୈବେଦ୍ୟ ଆଦି ବିଭିନ୍ନ ପ୍ରକାର ପୂଜାଦ୍ରବ୍ୟଦ୍ୱାରା ପୂଜା କରିବେ ॥୧୦॥ ପୃଥିବୀରେ ମନୁଷ୍ୟମାନେ ତୁମକୁ ନାନା ସ୍ଥାନରେ ଓ ନାନା ନାମରେ ସ୍ଥାପନ କରିବେ । ଦୁର୍ଗା, ଭଦ୍ରକାଳୀ, ବିଜୟା, ବୈଷ୍ଣବୀ, କୁମୁଦା, କୃଷ୍ଣା, ମାଧବୀ, କନ୍ୟକା, ମାୟା, ନାରାୟଣୀ, ଈଶାନୀ, ଶାରଦା, ଅମ୍ବିକା ପ୍ରଭୃତି ବିଭିନ୍ନ ନାମରେ ତୁମକୁ ପୂଜା କରିବେ ॥୧୧-୧୨॥ ଦେବକୀଙ୍କ ଗର୍ଭରୁ ତାଙ୍କୁ ତୁମେ ସମ୍ୟକ୍ କର୍ଷଣ କରିବାଯୋଗୁଁ ତାଙ୍କର ନାମ ସଙ୍କର୍ଷଣ ହେବ । ଲୋକରମଣପାଇଁ ତାଙ୍କର ନାମ ହେବ ରାମ ଓ ବଳଶାଳୀ ବୋଲି ତାଙ୍କର ନାମ ବଳ ହେବ ॥୧୩॥ ଏହିପରି ଭଗବାନଙ୍କଦ୍ୱାରା ଆଦିଷ୍ଟ ହୋଇ, 'ତାହା ହିଁ ମୁଁ କରିବି' ବୋଲି କହି ଭଗବାନ୍‌ଙ୍କୁ ଅଭିନନ୍ଦନ ଓ ପ୍ରଦକ୍ଷିଣପୂର୍ବକ ଯୋଗମାୟା ମର୍ତ୍ତ୍ୟଲୋକକୁ ଚାଲିଗଲେ ଓ ଭଗବାନ୍ ଯେପରି କହିଥିଲେ, ସେହିପରି କଲେ ॥୧୪॥ ଯୋଗମାୟା ଦେବକୀଙ୍କର ଗର୍ଭକୁ ନେଇ ରୋହିଣୀଙ୍କ ଗର୍ଭରେ ରଖିବାରୁ, ମଥୁରାବାସୀ ଅତି ଦୁଃଖର ସହିତ ନିଜ ମଧ୍ୟରେ କୁହାକୁହି ହେଲେ, ହାୟ, ଦେବକୀଙ୍କର ଏ ଗର୍ଭଟି ମଧ୍ୟ ନଷ୍ଟ ହୋଇଗଲା ॥୧୫॥ ବିଶ୍ୱର ଆତ୍ମାସ୍ୱରୂପ ଭଗବାନ ଭକ୍ତମାନଙ୍କୁ ଅଭୟ ଦାନ କରନ୍ତି । ସେ ନିଜର ଅଂଶଭାଗରେ ବସୁଦେବଙ୍କ ହୃଦୟରେ ପ୍ରବେଶ କଲେ ॥୧୬॥ ଶ୍ରୀ ଭଗବାନଙ୍କ ତେଜ ହୃଦୟରେ ଧାରଣ କରିବାରୁ ବସୁଦେବ ସୂର୍ଯ୍ୟଙ୍କ ପରି ତେଜସ୍ୱୀ ହୋଇଗଲେ । ତାଙ୍କର ଏପରି ତେଜ ପ୍ରକାଶିତ ହେଲା ଯେ କେହି ତାଙ୍କୁ ଚାହିଁପାରିଲେ ନାହିଁ ବା କେହି ତାଙ୍କୁ ପରାଭୂତ କରିପାରିଲେ ନାହିଁ ॥୧୭॥ ଜଗତର ପରମ ମଙ୍ଗଳମୟ ଭଗବାନଙ୍କ ଜ୍ୟୋତିର୍ମୟ ଅଂଶକୁ ବସୁଦେବଙ୍କଦ୍ୱାରା ଦେବକୀ ତାଙ୍କ ଗର୍ଭରେ ଧାରଣ କଲେ । ପୂର୍ବ ଦିଗ ଯେପରି ପୂର୍ଣ୍ଣ ଚନ୍ଦ୍ରକୁ ଧାରଣ କରେ, ଦେବକୀ ସେହିପରି ସର୍ବାନ୍ତର୍ଯାମୀ ଭୁବନମଙ୍ଗଳ ସର୍ବସୁଖକର ଭଗବାନଙ୍କୁ ଧାରଣ କଲେ ॥୧୮॥ ସମସ୍ତ ଜଗତର ଯେ ନିବାସସ୍ଥଳ, ଦେବକୀ ତାଙ୍କର ନିବାସସ୍ଥାନ ହୋଇଗଲେ । ଜ୍ଞାନୀ ବ୍ୟକ୍ତି ଅନ୍ୟକୁ

ନିଜର ବିଦ୍ୟା ନ ଦେଇ ଯେପରି ପ୍ରଚ୍ଛନ୍ନ ଭାବରେ ଅବସ୍ଥାନ କରେ, ସେହିପରି ସର୍ବଜଗତର ଆଧାର ଭଗବାନଙ୍କୁ ଧାରଣ କରି ଘଟ ମଧ୍ୟରେ ଥିବା ଅଗ୍ନି ଶିଖା ପରି ଦେବକୀ କଂସର କାରାଗାରର ବନ୍ଧକକ୍ଷ ମଧ୍ୟରେ ରହିଥିଲେ ।।୧୯।। କିନ୍ତୁ ଭଗବାନଙ୍କୁ ଗର୍ଭରେ ଧାରଣ କରିଥିବାରୁ ଦେବକୀଙ୍କ ଶରୀରର ତେଜରେ କାରାଗୃହ ଆଲୋକିତ ହେବାକୁ ଲାଗିଲା । କଂସ ତାହା ଦେଖି ମନେ ମନେ ଚିନ୍ତା କଲା, ନିଶ୍ଚୟ ମୋର ପ୍ରାଣ ହରଣ କରିବାପାଇଁ ଶ୍ରୀହରି ଦେବକୀର ଗର୍ଭରେ ପ୍ରବେଶ କରିଛନ୍ତି । କାରଣ ପୂର୍ବରୁ ମୁଁ ଦେବକୀର ଏପରି ଅଙ୍ଗକାନ୍ତି ଦେଖି ନ ଥିଲି ।।୨୦।। ତାହେଲେ ଶୀଘ୍ର ମୋତେ କିଛି କରିବାକୁ ହେବ । ଦେବକୀକୁ ମାରିବା ଠିକ୍ ହେବ ନାହିଁ, କାରଣ ବୀର ପୁରୁଷ ସ୍ୱାର୍ଥପାଇଁ ନିଜର ପରାକ୍ରମକୁ କଳଙ୍କିତ କରେ ନାହିଁ । ପ୍ରଥମତଃ ସ୍ତ୍ରୀ, ତା'ପରେ ମୋର ଭଉଣୀ ଓ ଗର୍ଭବତୀ । ଏହାକୁ ମାରିଲେ ମୋର କୀର୍ତ୍ତି, ଲକ୍ଷ୍ମୀ, ଆୟୁ--ସମସ୍ତ ନଷ୍ଟ ହୋଇଯିବ ।।୨୧।। ଯେଉଁ ବ୍ୟକ୍ତି ନୃଶଂସ ଭାବରେ ବଞ୍ଚି ରହେ, ତାର ଜୀବନ ମୃତ୍ୟୁ ସହିତ ସମାନ । ଲୋକେ ତାକୁ ଶାପ ଦେବାକୁ ଲାଗନ୍ତି ଏବଂ ମୃତ୍ୟୁପରେ ସେ ଘୋର ନରକରେ ପଡ଼ିଥାଏ ।।୨୨।। ଏହିପରି ଚିନ୍ତାକରି କଂସ ନୃଶଂସ କଳ୍ପନାରୁ ନିବୃତ୍ତ ହେଲା ଏବଂ ଶ୍ରୀହରିଙ୍କ ପ୍ରତି ଦ୍ୱେଷପରାୟଣ ହୋଇ ଦେବକୀଙ୍କ ଗର୍ଭରୁ ତାଙ୍କ ଜନ୍ମକୁ ଅପେକ୍ଷା କରିରହିଲା ।।୨୩।। ବସିଥିବାବେଳେ, ଶୋଇଥିବାବେଳେ, ଖାଉଥିବାବେଳେ, ଯାଉଥିବାବେଳେ - ଏହିପରି ସବୁ ସମୟରେ, ସବୁ ଅବସ୍ଥାରେ ସେ ଭଗବାନଙ୍କୁ ଚିନ୍ତା କରି କରି ସମସ୍ତ ଜଗତକୁ ଶ୍ରୀହରିମୟ ଦେଖିବାକୁ ଲାଗିଲା ।।୨୪।।

ପରିକ୍ଷିତ, ଦେବକୀଙ୍କ ଗର୍ଭରେ ଭଗବାନଙ୍କ ଆବିର୍ଭାବ ଦେଖି ବ୍ରହ୍ମା, ରୁଦ୍ର, ନାରଦ ଆଦି ମୁନି ଓ ନିଜର ଅନୁଗାମୀମାନଙ୍କ ସହିତ ଦେବତାମାନେ କଂସର ବନ୍ଦିଶାଳକୁ ଆସି ମଧୁରବାକ୍ୟଦ୍ୱାରା ଭଗବାନଙ୍କୁ ସ୍ତୁତି କରିବାକୁ ଲାଗିଲେ ।।୨୫।। ସେମାନେ ସ୍ତୁତି କଲେ, ପ୍ରଭୁ, ଆପଣ ସତ୍ୟସଙ୍କଳ୍ପ । ଆପଣଙ୍କୁ ଲାଭ କରିବା ପାଇଁ ସତ୍ୟ ହିଁ ଏକମାତ୍ର ସାଧନ । ଭୂତ, ଭବିଷ୍ୟତ୍ ଓ ବର୍ତ୍ତମାନ - ଆପଣ ଏହି ତ୍ରିକାଳରେ ସତ୍ୟ । ପୃଥିବୀ, ଜଳ, ଅଗ୍ନି, ବାୟୁ ଓ ଆକାଶ - ଏହି ପଞ୍ଚଭୂତଙ୍କ ଉତ୍ପତ୍ତିର କାରଣ ଓ ଅନ୍ତର୍ଯାମୀ ରୂପରେ ଆପଣ ବିଦ୍ୟମାନ । ଦୃଶ୍ୟମାନ ଜଗତର ଆପଣ ଶ୍ରେଷ୍ଠ ତତ୍ତ୍ୱ ଏବଂ ସତ୍ୟବାଣୀ ଓ ସମଦର୍ଶିତାର ପ୍ରବର୍ତ୍ତକ । ସତ୍ୟସ୍ୱରୂପ ଆପଣଙ୍କର ଆମେ ଶରଣାପନ୍ନ ହେଉଛୁ ।।୨୬।। ଏହି ଦୃଶ୍ୟମାନ ସଂସାର ହେଉଛି ଏକ ବୃକ୍ଷ । ପ୍ରକୃତି ଏହାର ଆଶ୍ରୟ । ସୁଖ ଓ ଦୁଃଖ - ଏ ଦୁଇଟି ତାର ଫଳ ; ସତ୍ତ୍ୱ, ରଜ ଓ ତମ -- ଏହି ତିନୋଟି ମୂଳ; ଧର୍ମ, ଅର୍ଥ, କାମ ଓ ମୋକ୍ଷ -- ଏହି ଚାରୋଟି ରସ ; ଚକ୍ଷୁ, କର୍ଣ୍ଣ, ନାସା, ଜିହ୍ୱା ଓ ତ୍ୱକ୍ -- ଏହି ପଞ୍ଚେନ୍ଦ୍ରିୟ ଏହାର ରୂପ ରସାଦି ଜ୍ଞାନର ହେତୁ ; ଶୋକ, ମୋହ, ଜରା, ମୃତ୍ୟୁ, କ୍ଷୁଧା ଓ ପିପାସା -- ଏହି ଛଅଟି ଏହାର ସ୍ୱଭାବ । ରସ, ରକ୍ତ,ମାଂସ,ମେଦ,ଅସ୍ଥି, ମଜ୍ଜା ଓ ଶୁକ୍ର -- ଏହି ସାତଟି ଏହାର ତ୍ୱକ୍(ଛାଲ); କ୍ଷିତି, ଅପ୍, ତେଜ, ବାୟୁ ଓ ଆକାଶ -- ଏହି ପଞ୍ଚଭୂତ ଏବଂ ମନ, ବୁଦ୍ଧି ଓ ଅହଙ୍କାର--ଏହି ଆଠଟି ଏହାର ଶାଖା; ମୁଖ, ନାସା, ଚକ୍ଷୁ, କର୍ଣ୍ଣ, ପାୟୁ ଓ ଉପସ୍ଥ -- ଏ ନବ ଦ୍ୱାର ଏହାର ନ'ଟି କୋରଡ଼ ; ପ୍ରାଣ, ଅପାନ, ଉଦାନ, ବ୍ୟାନ, ସମାନ, ନାଗ, କୂର୍ମ, କୃକଳ, ଦେବଦତ୍ତ ଓ ଧନଞ୍ଜୟ - ଏହି ଦଶପ୍ରାଣ ହେଉଛି ଦଶଟି ପତ୍ର ଏବଂ ଏହି ବୃକ୍ଷରେ ଜୀବାତ୍ମା ଓ ପରମାତ୍ମା - ଏହି ଦୁଇଟି ପକ୍ଷୀ ବାସ କରନ୍ତି ।।୨୭।। ଏହି ସଂସାରରୂପ ବୃକ୍ଷର ଆପଣ ଏକମାତ୍ର ଉତ୍ପତ୍ତି, ସ୍ଥିତି ଓ ବିନାଶର ହେତୁ । ଯାର ଚିତ୍ତ ଆପଣଙ୍କ ମାୟାରେ ମୋହିତ, ସେ ଏହି ସତ୍ୟକୁ ବୁଝିବାପାଇଁ ସମର୍ଥ ନୁହେଁ । ଆପଣଙ୍କ ଅଚିନ୍ତ୍ୟ ଶକ୍ତିର ପ୍ରଭାବରେ ସୃଷ୍ଟି, ସ୍ଥିତି ଓ ଲୟର କର୍ତ୍ତା ବ୍ରହ୍ମା, ଶିବ ଆଦି ଦେବତାମାନେ ଭିନ୍ନ ଭିନ୍ନ ରୂପରେ ଦେଖାଗଲେ ମଧ୍ୟ, ତତ୍ତ୍ୱଦର୍ଶୀ ପୁରୁଷ ସମସ୍ତଙ୍କ ମଧ୍ୟରେ କେବଳ ଆପଣଙ୍କୁ ହିଁ ଦର୍ଶନ କରନ୍ତି ।।୨୮।। କମଳନୟନ, ଆପଣ ଜ୍ଞାନସ୍ୱରୂପ ଆତ୍ମା, ଚରାଚର ଜଗତର ମଙ୍ଗଳପାଇଁ ଆପଣ ଅନେକ ରୂପ ଧାରଣ କରନ୍ତି । ବିଶୁଦ୍ଧ ସତ୍ତ୍ୱମୟ ରୂପରେ ଆପଣ ସାଧୁଙ୍କୁ ପାଳନ କରନ୍ତି ଓ ଦୁର୍ଜନଙ୍କୁ ବିନାଶ କରନ୍ତି ।।୨୯।। କମଳନୟନ, ବିବେକୀ ବ୍ୟକ୍ତିମାନେ ଏକାଗ୍ର ଭାବରେ ଆପଣଙ୍କର ଶୁଦ୍ଧ ସତ୍ତ୍ୱବିଗ୍ରହକୁ ଚିନ୍ତା କରି

ସେଥିରେ ନିଜର ଚିତ୍ତକୁ ସମାହିତ କରନ୍ତି ଏବଂ ଗୁରୁକୃପା ଫଳରେ ଆପଣଙ୍କର ଚରଣରୂପକ ନୌକାକୁ ଆଶ୍ରୟ କରି ଭବସାଗରକୁ ବାଛୁରୀର ଖୁରା ବୁଡୁଥିବା ପାଣି ପରି ସହଜରେ ପାର ହୋଇଯାନ୍ତି ।।୩୦।।

ହେ ତେଜୋମୟ, ଭକ୍ତମାନଙ୍କ ପ୍ରତି ଆପଣଙ୍କର ଅସୀମ ସୌହାର୍ଦ୍ଦ ରହିଥାଏ । ଆପଣଙ୍କ ଅନୁଗ୍ରହରୁ ସେମାନେ ଆପଣଙ୍କ ପାଦପଦ୍ମକୁ ଆଶ୍ରୟ କରି ଏହି ଦୁସ୍ତର, ଭୟଙ୍କର ଭବସାଗରକୁ ନିଜେ ପାରି ହୋଇଥାଆନ୍ତି ଏବଂ ସର୍ବଭୂତରେ ପ୍ରୀତିଯୁକ୍ତ ହୋଇ ଏହି ସଂସାରରେ ଆପଣଙ୍କର ପାଦପଦ୍ମରୂପକ ନୌକାକୁ ରଖିଦେଇ ଯାଆନ୍ତି ।।୩୧।। ପଦ୍ମାକ୍ଷ, ଅନ୍ୟ ଯେଉଁମାନେ ଆପଣଙ୍କର ଚରଣକୁ ଅନାଦର କରନ୍ତି, ଆପଣଙ୍କ ପ୍ରତି ଭକ୍ତି ନ ଥିବାଯୋଗୁଁ ସେମାନଙ୍କର ବୁଦ୍ଧି ଶୁଦ୍ଧ ନୁହେଁ । ସେମାନେ ନିଜକୁ ମୁକ୍ତ ବୋଲି ମନେ କଲେ ମଧ୍ୟ ପ୍ରକୃତରେ ବଦ୍ଧ ହୋଇ ରହିଥାଆନ୍ତି । ସେମାନେ ତପସ୍ୟା ଦ୍ୱାରା ଉଚ୍ଚରୁ ଉଚ୍ଚତର ପଦ ଲାଭ କଲେ ମଧ୍ୟ ଶୀଘ୍ର ସେଥିରୁ ଭ୍ରଷ୍ଟ ହୋଇପଡ଼ନ୍ତି ।।୩୨।। କିନ୍ତୁ ହେ ମାଧବ, ଯେଉଁମାନେ ଆପଣଙ୍କର ନିଜ ଲୋକ, ସେମାନେ ଆପଣଙ୍କ ଭକ୍ତି ଦ୍ୱାରା ବନ୍ଧା ହୋଇଥାନ୍ତି । କ୍ୱଚିତ୍ ସେମାନେ ପଥଭ୍ରଷ୍ଟ ହୁଅନ୍ତି । ଆପଣ ସେମାନଙ୍କୁ ସର୍ବଦା ରକ୍ଷା କରୁଥିବାରୁ ସେମାନେ ସବୁ ବିଘ୍ନ ସୃଷ୍ଟିକାରୀଙ୍କ ମୁଣ୍ଡରେ ପାଦ ରଖି ନିର୍ଭୟରେ ବିଚରଣ କରନ୍ତି ।।୩୩।। ଆପଣ ଏହି ସଂସାରର ପାଳନ ନିମନ୍ତେ ସମସ୍ତ ଜୀବଙ୍କର ମଙ୍ଗଳପ୍ରଦ ଯେଉଁ ଶୁଦ୍ଧ ସତ୍ତ୍ୱମୟ ଶ୍ରୀବିଗ୍ରହରେ ପ୍ରକାଶିତ ହୁଅନ୍ତି, ବ୍ରହ୍ମଚର୍ଯ୍ୟ, ଗାର୍ହସ୍ଥ୍ୟ, ବାନପ୍ରସ୍ଥ ଏବଂ ସନ୍ନ୍ୟାସ -- ଏହି ଚାରୋଟି ଆଶ୍ରମର ଲୋକମାନେ ବେଦପାଠ, କ୍ରିୟାଯୋଗ, ତପସ୍ୟା ଏବଂ ସମାଧି ଦ୍ୱାରା ଆପଣଙ୍କ ରୂପ ଦେଖିବାର ସୁଯୋଗ ପାଇଥାଆନ୍ତି ।।୩୪।। ପ୍ରଭୁ, ଆପଣ ବିବିଧ ରୂପ ଧାରଣ କରିଥାନ୍ତି । ଯଦି ଆପଣଙ୍କର ବିଶୁଦ୍ଧ ସତ୍ତ୍ୱମୟ ଶ୍ରୀବିଗ୍ରହ ଜଗତରେ ପ୍ରକାଶ ନ ହୁଏ, ତାହେଲେ କେହି ଆପଣଙ୍କୁ ପ୍ରତ୍ୟକ୍ଷ ଦେଖିପାରିବେ ନାହିଁ । ତେଣୁ କାହାରି ମଧ୍ୟ ଅଜ୍ଞାନ ଦୂର ହେବା ସମ୍ଭବପର ନୁହେଁ । ବିଭିନ୍ନ ବସ୍ତୁ-ଜ୍ଞାନରେ କିମ୍ବା ଜ୍ଞାନପ୍ରକାଶକ ତତ୍ତ୍ୱରୂପରେ ଆପଣଙ୍କୁ ଅନୁମାନ କରାଯାଇପାରେ; କିନ୍ତୁ ତଦ୍ୱାରା ଆପଣଙ୍କ ସ୍ୱରୂପର ସାକ୍ଷାତ୍‌କାର ହୁଏ ନାହିଁ ।।୩୫।। ଭଗବାନ, ଆପଣ ସମସ୍ତଙ୍କର ସାକ୍ଷୀ । ମନ ଓ ବାକ୍ୟର ଅଗୋଚର । ଭକ୍ତମାନଙ୍କ ପ୍ରତି ଆପଣଙ୍କର ବାତ୍ସଲ୍ୟ ଗୁଣ, ସଂସାରର ଭାର ହରଣ ଆଦି କର୍ମ, ଅବତାରସ୍ୱରୂପ ଆପଣଙ୍କର ନାମ ଓ ମନୋହର ରୂପ ଆଦିରେ ଆପଣଙ୍କ ତତ୍ତ୍ୱର ଅନୁଭୂତି ହୁଏ ନାହିଁ । କେବଳ ଭକ୍ତି ଯୋଗରେ ହିଁ ଆପଣଙ୍କର ସାକ୍ଷାତ୍‌କାର ମିଳିଥାଏ ।।୩୬।। ଆପଣଙ୍କର ମଙ୍ଗଳମୟ ନାମ ଓ ରୂପମାନଙ୍କୁ କୀର୍ତ୍ତନ କରି, ସ୍ମରଣ କରି, ଧ୍ୟାନ କରି ଭକ୍ତମାନେ ଆପଣଙ୍କର ଆରାଧନାରେ ଚିତ୍ତନିବେଶ କରିଥାଆନ୍ତି । ଏଥିପାଇଁ ସେମାନେ ପୁଣି ସଂସାରରେ ଜନ୍ମ ହୁଅନ୍ତି ନାହିଁ ।।୩୭।। ସର୍ବଦୁଃଖହର, ଆପଣ ସର୍ବେଶ୍ୱର । ଆମର ପରମ ସୌଭାଗ୍ୟରୁ ଆପଣଙ୍କ ଜନ୍ମଦ୍ୱାରା ହିଁ ଆପଣଙ୍କ ପାଦସ୍ୱରୂପ ଏହି ପୃଥିବୀର ଭାର ଉଶ୍ୱାସ ହୋଇଗଲାଣି । ଆମେମାନେ କେବଳ ଆପଣଙ୍କ କୃପାକୁ ଲାଭ କରିଥିବା ଏହି ସ୍ୱର୍ଗ ଓ ପୃଥିବୀ କିପରି ଆପଣଙ୍କର ସୁଶୋଭନ ଚରଣଚିହ୍ନ ବହନ କରିଛି, ତାହା ଦେଖି କୃତାର୍ଥ ହେବୁ ।।୩୮।। ପ୍ରଭୁ, ଆପଣ ଜନ୍ମରହିତ ଏବଂ ଅଭୟର ଆଶ୍ରୟ । କେବଳ ନିଜ ଲୀଳାର ଆନନ୍ଦପାଇଁ ଆପଣ ଜନ୍ମକୁ ଗ୍ରହଣ କରୁଛନ୍ତି । ତାହା ଛଡ଼ା ଆପଣଙ୍କ ଜନ୍ମର ଅନ୍ୟ କାରଣ ଆମ ତର୍କର ଅଗୋଚର । ଆପଣଙ୍କ ଆଶ୍ରିତ ମାୟାଶକ୍ତିରୁ ଏହି ଜଗତ୍‌ର ସୃଷ୍ଟି, ସ୍ଥିତି ଓ ଲୟ କାର୍ଯ୍ୟ ହୋଇଥାଏ । ତେଣୁ ତାହା ଆପଣଙ୍କ ଜନ୍ମର କାରଣ ହୋଇ ନ ପାରେ ।।୩୯।। ପ୍ରଭୁ, ଆପଣ ମତ୍ସ୍ୟ, ହୟଗ୍ରୀବ, କଚ୍ଛପ, ନୃସିଂହ, ବରାହ, ହଂସ, ରାମ, ପରଶୁରାମ ଓ ବାମନ ଅବତାର ହୋଇ ଆମକୁ ଏବଂ ଏହି ତ୍ରିଭୁବନକୁ ରକ୍ଷା କରୁଛନ୍ତି । ସେହିପରି ଏଥର ମଧ୍ୟ ଆପଣ ଭୂଭାର ହରଣ କରନ୍ତୁ । ଯଦୁଶ୍ରେଷ୍ଠ, ଆମେ ଆପଣଙ୍କର ବନ୍ଦନା କରୁଛୁ ।।୪୦।। (ଦେବକୀଙ୍କୁ ସମ୍ବୋଧନ କରି କହୁଛନ୍ତି) ମାତା, ଆପଣଙ୍କର ପରମ ସୌଭାଗ୍ୟରୁ ସ୍ୱୟଂ ଭଗବାନ ନିଜର ପରିପୂର୍ଣ୍ଣ ଅଂଶରେ ଆପଣଙ୍କ ଗର୍ଭରେ ରହିଛନ୍ତି । ଏବେ ଆପଣ ଆଉ କଂସକୁ ଭୟ କରନ୍ତୁ ନାହିଁ । କଂସ କେବଳ ଅଳ୍ପ ଦିନପାଇଁ ଅଛି । ଆପଣଙ୍କର ପୁତ୍ର ଯଦୁବଂଶକୁ ରକ୍ଷାକରିବ ।।୪୧।। ଶ୍ରୀ ଶୁକଦେବ କହିଲେ, ବ୍ରହ୍ମାଦି

ଦେବତାମାନେ ଏହିପରି ଶ୍ରୀଭଗବାନଙ୍କର ସ୍ତୁତି କଲେ । ଯାହାଙ୍କର ରୂପ କ'ଣ, ଜାଣିବାପାଇଁ ସମସ୍ତେ ଅଣ୍ଡାଳି ହୁଅନ୍ତି, ସେହି ପୁରୁଷୋତ୍ତମ ଗୋବିନ୍ଦଙ୍କୁ ନିଜର ବୁଦ୍ଧି ଓ କ୍ଷମତା ଅନୁସାରେ ସ୍ତୁତି କରି ବ୍ରହ୍ମା ଓ ଶିବଙ୍କ ସହିତ ଦେବତାମାନେ ସ୍ୱର୍ଗଲୋକକୁ ପ୍ରସ୍ଥାନ କଲେ ॥୪୨॥

## ତୃତୀୟ ଅଧ୍ୟାୟ

## କୃଷ୍ଣ ଜନ୍ମ

ଶ୍ରୀ ଶୁକଦେବ କହିଲେ, ସମସ୍ତ ଶୁଭଗୁଣଯୁକ୍ତ ଅତିଶୟ ସୁନ୍ଦର ସମୟ ଆସିଗଲା । ସେତେବେଳେ ରୋହିଣୀ ନକ୍ଷତ୍ର ଥିଲା । ଆକାଶରେ ନକ୍ଷତ୍ର,ଗ୍ରହ ଓ ତାରାମାନେ ଅତି ଶାନ୍ତ ଦେଖାଯାଉଥିଲେ ॥୧॥ ଚତୁର୍ଦିଗ ନିର୍ମଳ ଥିଲା । ନିର୍ମଳ ଆକାଶରେ ତାରକାମାନେ ଉଦିତ ହୋଇଯାଇଥିଲେ । ପୃଥିବୀର ଛୋଟ ବଡ଼ ସହର, ଗ୍ରାମ, ଗୋପାଳପଲ୍ଲୀ, ଖଣି ଖଦାନ ସବୁ ମଙ୍ଗଳମୟ ଦେଖାଗଲା । ନଦୀମାନଙ୍କର ଜଳ ନିର୍ମଳ ଥିଲା ଓ ହ୍ରଦମାନଙ୍କରେ ପଦ୍ମଫୁଲ ସବୁ ଫୁଟିଥିଲା । ବନରାଜି ପୁଷ୍ପସ୍ତବକରେ ଭରି ଯାଇଥିଲା ଏବଂ ପକ୍ଷୀମାନଙ୍କର କାକଳୀ ଓ ଭ୍ରମରମାନଙ୍କର ଗୁଞ୍ଜନରେ ନିନାଦିତ ହେଉଥିଲା ॥୨-୩॥ ମୃଦୁ ସୁଗନ୍ଧ ଶୀତଳ ବାୟୁ ଲୋକମାନଙ୍କୁ ଆନନ୍ଦ ଦେଉଥିଲା । ବ୍ରାହ୍ମଣମାନଙ୍କର ଯେଉଁ ହୋମାଗ୍ନି କଂସର ଅତ୍ୟାଚାରରେ ଶାନ୍ତ ପଡ଼ିଯାଇଥିଲା, ତାହା ପୁଣି ଜଳିଉଠିଲା ॥୪॥ ଅସୁରଦ୍ରୋହୀ ସାଧୁମାନଙ୍କର ମନ ପ୍ରସନ୍ନ ହୋଇଉଠିଲା । ଭଗବାନଙ୍କର ଜନ୍ମ ସମୟ ଆସିଯିବାରୁ ଦେବତାମାନଙ୍କର ଦୁନ୍ଦୁଭି ଆପେ ଆପେ ବାଜିଉଠିଲା ॥୫॥ ଗନ୍ଧର୍ବ ଓ କିନ୍ନରମାନେ ଗୀତଗାନ କଲେ । ସିଦ୍ଧ ଓ ଚାରଣମାନେ ସ୍ତୁତି କରିବାକୁ ଲାଗିଲେ । ବିଦ୍ୟାଧରୀ ଓ ଅପ୍‌ସରାମାନେ ନୃତ୍ୟ କଲେ ॥୬॥ ଦେବତା ଓ ଋଷିମାନେ ଆନନ୍ଦରେ ପୁଷ୍ପବୃଷ୍ଟି କରିବାକୁ ଲାଗିଲେ । ସମୁଦ୍ର ସହିତ ମେଘମାନେ ମନ୍ଦ ମନ୍ଦ ଗର୍ଜନ କରିବାକୁ ଲାଗିଲେ ॥୭॥ ଘନାନ୍ଧକାର ନିଶୀଥ ସମୟରେ ଭଗବାନ ଜନାର୍ଦନଙ୍କର ଜନ୍ମ ହେଲା । ପୂର୍ବ ଦିଗରେ ପୂର୍ଣ୍ଣ ଚନ୍ଦ୍ରର ଉଦୟ ହେବାପରି ଦେବୀରୂପିଣୀ ଦେବକୀଙ୍କ ଗର୍ଭରେ ସମସ୍ତ ପ୍ରାଣୀଙ୍କର ଆଶ୍ରୟସ୍ୱରୂପ ଭଗବାନ ବିଷ୍ଣୁ ଆବିର୍ଭୂତ ହେଲେ ॥୮॥ ବସୁଦେବ ସେହି ଅଦ୍ଭୁତ ବାଳକଙ୍କୁ ଦେଖିଲେ । ପଦ୍ମ ପରି ସୁନ୍ଦର ଚକ୍ଷୁ; ଚତୁର୍ଭୁଜରେ ଶଙ୍ଖ, ଚକ୍ର, ଗଦା ଓ ପଦ୍ମ; ବକ୍ଷସ୍ଥଳରେ ଶ୍ରୀବତ୍ସ ଚିହ୍ନ; ଗଳାରେ କୌସ୍ତୁଭର ମଣି; ପୀତାମ୍ବର; ସଜଳ ଜଳଦମୂର୍ତ୍ତି; ମହାର୍ଘବୈଦୂର୍ଯ୍ୟମଣିଶୋଭିତ କିରୀଟ ଓ କୁଣ୍ଡଳ । କୁଞ୍ଚିତ କେଶରାଶି; ଉଜ୍ଜ୍ୱଳ କଟିବସ୍ତ୍ର; ବାଜୁବନ୍ଧ ଓ କଙ୍କଣ – ଏହି ସମସ୍ତ ଅଳଙ୍କାରରେ ଶୋଭମାନ ସେହି ତେଜୋମୟ ବାଳକଙ୍କୁ ବସୁଦେବ ଦେଖିଲେ ॥୯-୧୦॥ ଯେତେବେଳେ ବସୁଦେବ ଦେଖିଲେ ସ୍ୱୟଂ ଶ୍ରୀହରି ତାଙ୍କର ପୁତ୍ରରୂପରେ ଆସିଛନ୍ତି, ସେତେବେଳେ ବିସ୍ମୟରେ ତାଙ୍କର ଚକ୍ଷୁ ଉତ୍‌ଫୁଲ୍ଲିତ ହୋଇଉଠିଲା । ଶ୍ରୀକୃଷ୍ଣଙ୍କ ଅବତାର ଉତ୍ସବଜନିତ ଆନନ୍ଦରେ ବିଭୋର ହୋଇ ସେ ମନେ ମନେ ସ୍ଥିର କଲେ ଯେ ବ୍ରାହ୍ମଣମାନଙ୍କୁ ଦଶହଜାର ଗୋରୁଦାନ କରିବେ ॥୧୧॥ ପରିକ୍ଷିତ, ଭଗବାନଙ୍କ ଅଙ୍ଗ କାନ୍ତିରେ ସୂତିକାଗୃହ ଝଲସି ଉଠୁଥିଲା । ବସୁଦେବ ନିଶ୍ଚିତ ହୋଇଗଲେ ଯେ ଦେବକୀର ପୁତ୍ର ହେଉଛନ୍ତି ପରମପୁରୁଷ ପରମାତ୍ମା । ତାଙ୍କରି ପ୍ରଭାବରେ ବସୁଦେବଙ୍କର କଂସଭୟ ଦୂର ହୋଇଗଲା । କୃତଜ୍ଞ ବସୁଦେବ ମୁଣ୍ଡ ନୁଆଁଇ କୃତାଞ୍ଜଳିପୁଟରେ ତାଙ୍କୁ ସ୍ତୁତି କରିବାକୁ ଲାଗିଲେ ॥୧୨॥

ବସୁଦେବ କହିଲେ, ମୁଁ ଜାଣିସାରିଲିଣି, ଆପଣ ପ୍ରକୃତିରୁ ଅତୀତ ସାକ୍ଷାତ୍ ପୁରୁଷ । ଆପଣଙ୍କର ସ୍ୱରୂପ ହେଉଛି ଆନନ୍ଦମୟ, ଯାହାକି କେବଳ ଅନୁଭବର ବିଷୟ । ଆପଣ ସର୍ବାନ୍ତର୍ଯାମୀ ॥୧୩॥ ସୃଷ୍ଟିର ଆରମ୍ଭରେ ଆପଣ ନିଜର ମାୟାଦ୍ୱାରା

ଏହି ତ୍ରିଗୁଣାତ୍ମକ ଜଗତକୁ ସୃଷ୍ଟି କରିଛନ୍ତି । ଏଥିରେ ପ୍ରବେଶ ନ କରିଥିଲେ ମଧ୍ୟ ସର୍ବବ୍ୟାପକତାଯୋଗୁଁ ଆପଣ ଏଥିରେ ପ୍ରବେଶ କରିବାପରି ଜଣାଯାଆନ୍ତି ॥୧୪॥ ମହତ୍ତତ୍ତ୍ୱ ଆଦି ଯେଉଁ ସାତଟି (ମହତ ଅହଙ୍କାର ଓ ପଞ୍ଚତନ୍ମାତ୍ର) ଏହି ସୃଷ୍ଟିର କାରଣ, ସେମାନେ ପରସ୍ପର ଅଲଗା ରହିବାପର୍ଯ୍ୟନ୍ତ ସେମାନଙ୍କର ପୃଥକ୍ ପୃଥକ୍ ଶକ୍ତି ରହିଥାଏ ; ଇନ୍ଦ୍ରିୟାଦି ଷୋଳ ବିକାର ସହିତ ମିଶିଯିବାପରେ ସେମାନେ ଏହି ବ୍ରହ୍ମାଣ୍ଡକୁ ରଚନା କରନ୍ତି ଏବଂ ତାହାମଧ୍ୟରେ ପ୍ରବେଶ କରିଛନ୍ତି ବୋଲି ଜଣାଯାଏ; କିନ୍ତୁ ସେମାନେ ସମସ୍ତ ପଦାର୍ଥର କାରଣ ହୋଇଥିବାଯୋଗୁଁ ପ୍ରକୃତରେ ସେଥିରେ ପ୍ରବେଶ କରି ନ ଥାନ୍ତି ॥୧୫-୧୬॥ ଗୁଣମାନଙ୍କର ଲକ୍ଷଣକୁ ବୁଦ୍ଧି ଦ୍ୱାରା ଅନୁମାନ କରାଯାଇପାରେ ଓ ଇନ୍ଦ୍ରିୟମାନଙ୍କଦ୍ୱାରା ଗୁଣମୟ ବିଷୟକୁ ଗ୍ରହଣ କରାଯାଏ । ଆପଣ ଇନ୍ଦ୍ରିୟମାନଙ୍କଦ୍ୱାରା ଗୃହୀତ ଦେହାଦିରେ ଅବସ୍ଥିତ ହେଲେ ମଧ୍ୟ ଇନ୍ଦ୍ରିୟମାନଙ୍କର ଅତୀତ । ଆପଣଙ୍କର ସ୍ୱରୂପକୁ କୌଣସି ଗୁଣରୂପକ ଆବରଣ ଘୋଡ଼ାଇ ପାରିବ ନାହିଁ । ଆପଣ ସର୍ବସ୍ୱରୂପ, ସର୍ବାନ୍ତର୍ଯାମୀ ଓ ପରମାର୍ଥ ସତ୍ୟ । ଆପଣଙ୍କର ବାହାର ଓ ଭିତର ହୋଇ କିଛି ନାହିଁ ॥୧୭॥ ଯେଉଁ ବ୍ୟକ୍ତି ଦେହାଦି ବସ୍ତୁକୁ ନିଜ ଠାରୁ ପୃଥକ୍ ବୋଲି ମନେ କରେ, ସେ ବ୍ୟକ୍ତି ପ୍ରକୃତରେ ଅବୁଧ । କାରଣ ଦେହାଦି ଗୁଣମୟ ବସ୍ତୁ ସବୁ କେବଳ କଥାର ଚାତୁରୀ ମାତ୍ର; ପ୍ରକୃତରେ ଦେହାଦି ଅସତ୍ୟ ବସ୍ତୁକୁ ସତ୍ୟ ମନେ କରିବା ଅଜ୍ଞାନତାର ପରିଚାୟକ ବୋଲି କୁହାଯାଇପାରେ ॥୧୮॥ କିନ୍ତୁ ଆପଣ ସମସ୍ତ ଚେଷ୍ଟାରୁ ବିରତ ନିର୍ଗୁଣ ଓ ନିର୍ବିକାର ହେଲେ ମଧ୍ୟ ବେଦଜ୍ଞମାନଙ୍କ ମତରେ ଆପଣଙ୍କଠାରୁ ଜଗତ୍‌ର ସୃଷ୍ଟି, ସ୍ଥିତି ଓ ଲୟ ହୋଇଥାଏ । କାରଣ ଆପଣଙ୍କ ଆଶ୍ରିତ ମାୟା ବା ସତ୍ତ୍ୱାଦିଗୁଣ ଦ୍ୱାରା ଏହି ଜଗତ୍‌ର ସୃଷ୍ଟି ଆଦି ହୋଇଥାଏ । ଆପଣ ସର୍ବଶକ୍ତିମୟ ପରମବ୍ରହ୍ମ ଏବଂ ଆପଣଙ୍କୁ ସୃଷ୍ଟିର ହର୍ତ୍ତା, କର୍ତ୍ତା, ନିୟନ୍ତା ବୋଲି କହିବାରେ କୌଣସି ବିରୋଧାଭାସ ହୁଏ ନାହିଁ ॥୧୯॥ ଆପଣ ତ୍ରିଲୋକର ପାଳନପାଇଁ ନିଜ ମାୟାରେ ଶୁଦ୍ଧ ସତ୍ତ୍ୱମୟ ଶ୍ରୀବିଷ୍ଣୁରୂପ (ଶୁକ୍ଳ ବର୍ଣ୍ଣ ) ଧାରଣ କରନ୍ତି । ବିଶ୍ୱର ସୃଷ୍ଟିପାଇଁ ରଜୋଗୁଣଯୁକ୍ତ ବ୍ରହ୍ମାଙ୍କର ରୂପ (ରକ୍ତ ବର୍ଣ୍ଣ) ଧାରଣ କରନ୍ତି ଏବଂ ମହାପ୍ରଳୟବେଳେ ତମୋଗୁଣଯୁକ୍ତ ରୁଦ୍ରରୂପ (କୃଷ୍ଣ ବର୍ଣ୍ଣ) ଧାରଣ କରନ୍ତି ॥୨୦॥ ପ୍ରଭୁ, ହେ ଅଖିଳଜଗତର ଇଶ୍ୱର, ଏହି ସଂସାରର ରକ୍ଷାପାଇଁ ଆପଣ ମୋ ଘରେ ଜନ୍ମ ହୋଇଛନ୍ତି । ଏବେ କୋଟି କୋଟି ଅସୁର ସେନାପତି 'ରାଜା' ନାମ ଧାରଣ କରି ବିଶାଳ ସେନାମାନ ରଖିଛନ୍ତି । ଆପଣ ଏମାନଙ୍କୁ ନିର୍ମୂଳ କରିବାହୁଅନ୍ତୁ ॥୨୧॥ ସୁରେଶ୍ୱର, ଆପଣ ଆମ ଗୃହରେ ଜନ୍ମ ହେବେ ବୋଲି ଆକାଶବାଣୀ ଶୁଣି କଂସ ଆପଣଙ୍କର ଜ୍ୟେଷ୍ଠ ଭ୍ରାତାମାନଙ୍କୁ ହତ୍ୟା କରିଛି । ତାର ଅନୁଚରମାନଙ୍କଠାରୁ ଆପଣଙ୍କର ଜନ୍ମସଂବାଦ ପାଇଗଲେ ସେ ଅସ୍ତ୍ରଶସ୍ତ୍ର ଧରି ଏଠାରେ ଆସି ପହଞ୍ଚିଯିବ ॥୨୨॥ ଶ୍ରୀଶୁକଦେବ କହିଲେ, ଦେବକୀ ନିଜ ପୁତ୍ର ଠାରେ ମହାପୁରୁଷଙ୍କର ସମସ୍ତ ଲକ୍ଷଣ ଦେଖି ଉଭୟ କଂସର ଭୟରେ ଓ ପୁତ୍ରଜନ୍ମର ଆନନ୍ଦରେ ଅଭିଭୂତ ହୋଇ ପବିତ୍ର ଭାବରେ ଅଳ୍ପ ହସି ଶ୍ରୀ ଭଗବାନଙ୍କୁ ସ୍ତୁତି କରିବାକୁ ଲାଗିଲେ-- ॥୨୩॥

ଦେବକୀ କହିଲେ, ଆପଣ ବାକ୍ୟ ଓ ମନର ଅଗୋଚର, ସର୍ବକାରଣର ମୂଳ ବ୍ରହ୍ମ; ଚୈତନ୍ୟମୟ; ନିର୍ଗୁଣ; ନିର୍ବିକାର ବିଶେଷହୀନ; ଅନିର୍ବଚନୀୟ; ନିଷ୍କ୍ରିୟ ଓ ବିଶୁଦ୍ଧସତ୍ତ୍ୱ ରୂପରେ ବିଦ୍ୟମାନ । ଆପଣ ସ୍ୱୟଂ ଆତ୍ମପ୍ରଦୀପ ଭଗବାନ ବିଷ୍ଣୁ ॥୨୪॥ ଦୁଇଟି ପରାର୍ଦ୍ଧ ଶେଷ ହେବାପରେ ଯେତେବେଳେ ବ୍ରହ୍ମାଙ୍କର ଆୟୁ ପୂରିଯାଏ, ସେତେବେଳେ କାଳର ପ୍ରଭାବରେ ସମସ୍ତ ଲୋକର ବିନାଶ ଘଟେ । ପଞ୍ଚମହାଭୂତ ଅହଙ୍କାରରେ, ଅହଙ୍କାର ମହତ୍‌ତତ୍ତ୍ୱରେ ଏବଂ ମହତ୍‌ତତ୍ତ୍ୱ ପ୍ରକୃତିରେ ଲୀନ ହୋଇଯାଏ । ଅବଶେଷରେ ଏକମାତ୍ର ଆପଣ ରହିଥାନ୍ତି ॥୨୫॥ ଆପଣ ପ୍ରକୃତିର ଏକମାତ୍ର ସହାୟକ । ନିମେଷଠାରୁ ଆରମ୍ଭ କରି ଦଣ୍ଡ, ପ୍ରହର, ମାସ, ବର୍ଷ ପର୍ଯ୍ୟନ୍ତ କାଳକୁ ବିଭିନ୍ନ ଭାଗରେ ବିଭକ୍ତ କରାଯାଏ । କିନ୍ତୁ ଏହି କାଳ ହେଉଛି ଆପଣଙ୍କର ଲୀଳାମାତ୍ର । ଆପଣ ସର୍ବଶକ୍ତିମାନ୍ ଓ ପରମ ମଙ୍ଗଳମୟ । ମୁଁ ଆପଣଙ୍କର ଶରଣାପନ୍ନ ହେଉଛି ॥୨୬॥ ଜୀବମାତ୍ରେ ମୃତ୍ୟୁରୂପକ ସର୍ପ ଦ୍ୱାରା ଭୟଭୀତ ଓ ଯେତେ ଉପାୟ କଲେ ମଧ୍ୟ ମୃତ୍ୟୁଠାରୁ ନିର୍ଭୟରେ ରହିପାରେ ନାହିଁ । ଆପଣ ଆଦିମୂଳ; ସୌଭାଗ୍ୟରୁ ଆପଣଙ୍କର ପାଦପଦ୍ମର ଆଶ୍ରୟ ମିଳିଲେ ମୃତ୍ୟୁଭୟ ରହେ ନାହିଁ । ସ୍ୱୟଂ ମୃତ୍ୟୁ ମଧ୍ୟ ଭୟଭୀତ ହୋଇ

ପଳାୟନ କରେ ॥୨୭॥ ଶରଣବତ୍ସଳ ପ୍ରଭୁ, କଂସଯୋଗୁଁ ଆମେମାନେ ଭୟଭୀତ ହୋଇ ରହିଛୁ । ଆପଣଙ୍କର ଏହି ଚତୁର୍ଭୁଜ ରୂପ ଯୋଗୀମାନଙ୍କ ଧ୍ୟାନର ବସ୍ତୁ । ଆମପରି ରକ୍ତମାଂସଧାରୀ ଲୋକଙ୍କ ଆଗରେ ଏହି ରୂପରେ ଆଉ ପ୍ରକଟ ହୁଅନ୍ତୁ ନାହିଁ ॥୨୮॥ ମଧୁସୂଦନ, ମୋ ଗର୍ଭରୁ ଆପଣଙ୍କର ଜନ୍ମ ହୋଇଛି ବୋଲି ପାପୀ କଂସକୁ ଜଣା ନାହିଁ । ମୁଁ ତ ଅତି ଭୟ ଓ ଉଦ୍‌ବେଗରେ ରହିଛି । କଂସର ଭୟରେ ମୋର ଧୈର୍ଯ୍ୟ ତୁଟିଗଲାଣି । ବିଶ୍ୱାତ୍ମା, ଶଙ୍ଖ ଚକ୍ର ଗଦା ପଦ୍ମଧାରୀ ଆପଣଙ୍କର ଏହି ଅଲୌକିକ ଚତୁର୍ଭୁଜ ରୂପକୁ ସମ୍ବରଣ କରନ୍ତୁ ॥୨୯-୩୦॥ ପ୍ରଳୟ ଶେଷରେ ଆପଣ ସମ୍ପୂର୍ଣ୍ଣ ବିଶ୍ୱକୁ ଅନାୟାସରେ ନିଜ ଦେହ ମଧ୍ୟରେ ଧାରଣ କରନ୍ତି । ଆପଣ ଯେ ମୋର ଗର୍ଭମଧ୍ୟରେ ରହିଲେ, ଏହା ଆପଣଙ୍କ ନରଲୋକର ଲୀଳା ଛଡ଼ା ଅନ୍ୟ କିଛି ନୁହେଁ ॥୩୧॥

ଶ୍ରୀ ଭଗବାନ କହିଲେ, ସତୀ, ପୂର୍ବେ ସ୍ୱାୟମ୍ଭୁବ ମନ୍ୱନ୍ତରରେ ତୁମର ନାମ ଥିଲା ପୃଶ୍ନି ଏବଂ ଏହି ନିଷ୍ପାପ ବସୁଦେବ ସେତେବେଳେ ସୁତପା ନାମରେ ପ୍ରଜାପତି ଥିଲେ । ବ୍ରହ୍ମା ଯେତେବେଳେ ତୁମ ଉଭୟଙ୍କୁ ପ୍ରଜାସୃଷ୍ଟିପାଇଁ ଆଦେଶ ଦେଲେ, ସେତେବେଳେ ଇନ୍ଦ୍ରିୟ ସଂଯମ କରି ତୁମେମାନେ କଠୋର ତପସ୍ୟା କରିଥିଲ ॥୩୨-୩୩॥ ବୃଷ୍ଟି, ବାତ୍ୟା, ରୌଦ୍ର, ଶୀତ, ଗ୍ରୀଷ୍ମ ଆଦି ସମସ୍ତ କଷ୍ଟ ସହ୍ୟ କରି ଏବଂ କଠୋର ପ୍ରାଣାୟାମଦ୍ୱାରା କାମନା, ବାସନା ଆଦି ମନର ସମସ୍ତ କଳୁଷକୁ ଦୂର କରି କେବଳ ଗଛରୁ ପଡୁଥିବା ପତ୍ର ଓ ବାୟୁ ସେବନ ଦ୍ୱାରା ଜୀବନ ଧାରଣ କରୁଥିଲ ଏବଂ ମୋ ଠାରୁ ମନୋଗତ ବର ଲାଭ ଆଶାରେ ଭକ୍ତିପୂର୍ଣ୍ଣ ହୃଦୟରେ ମୋତେ ଆରାଧନା କରୁଥିଲ ॥୩୪-୩୫॥ ଭଦ୍ରେ, ଏହିପରି ମୋତେ ଲାଭ କରିବାପାଇଁ ତୁମର ତପସ୍ୟାରେ ଦେବ ବର୍ଷ ଗଣନାରେ ବାର ହଜାର ବର୍ଷ ବିତିଥିଲା ॥୩୬॥ ନିଷ୍ପାପା, ଏହିପରି ଶ୍ରଦ୍ଧା ଭକ୍ତିର ସହିତ ମୋତେ ହୃଦୟରେ ଧ୍ୟାନ କରି ତୁମେ ତପସ୍ୟା କରିବାରୁ ମୁଁ ସେଥିରେ ସନ୍ତୁଷ୍ଟ ହୋଇ ଏହି ମୂର୍ତ୍ତିରେ ତୁମ ପାଖରେ ଉପସ୍ଥିତ ହୋଇଥିଲି ଓ ବର ମାଗିବାପାଇଁ କହିଥିଲି । ତୁମେ ଦୁହେଁ ମୋ ପରି ତୁମର ଏକ ପୁତ୍ର ହେଉ ବୋଲି ବର ମାଗିଲ ॥୩୭-୩୮॥ ତୁମେ ଦୁହେଁ କେବେ ବିଷୟଭୋଗ କରି ନ ଥିଲ ଏବଂ ତୁମର କୌଣସି ପୁତ୍ର କନ୍ୟା ନ ଥିଲା । କିନ୍ତୁ ମୋ' ମାୟାରେ ମୁଗ୍ଧ ହୋଇ ମୋଠାରୁ ମୋକ୍ଷ ବର ମାଗିଲ ନାହିଁ । 'ମୋ ପରି ପୁତ୍ର ହେଉ' ବୋଲି ତୁମର ବରକୁ ସ୍ୱୀକାର କରି ମୁଁ ଚାଲିଗଲି । ତୁମର ମନସ୍କାମନା ପୂର୍ଣ୍ଣ ହେବାରୁ ତୁମେଦୁହେଁ ବିଷୟଭୋଗରେ ପ୍ରବୃତ୍ତ ହେଲ ॥୩୯-୪୦॥ ସଂସାରରେ ସତ୍‌ସ୍ୱଭାବ,ଉଦାରତା ଓ ଅନ୍ୟ ଗୁଣରେ ମୋ ପରି କେହି ନ ଥିବାରୁ ମୁଁ ପୃଶ୍ନିଗର୍ଭ ରୂପେ ତୁମର ପୁତ୍ର ହୋଇଥିଲି ॥୪୧॥ ମୋର ଦ୍ୱିତୀୟ ଜନ୍ମରେ ତୁମେ ହେଲ ଅଦିତି ଏବଂ ବସୁଦେବ ହେଲେ କଶ୍ୟପ । ସେ ସମୟରେ ମୁଁ ତୁମର ପୁତ୍ରରୂପେ ଜନ୍ମ ହେଲି । ମୋର ନାମ ହେଲା ଉପେନ୍ଦ୍ର ଏବଂ ଖର୍ବାକୃତିଯୋଗୁଁ ମୋତେ ବାମନ କୁହାଯାଉଥିଲା ॥୪୨॥ ଯେଉଁ ରୂପ ଧରି ମୁଁ ତୁମକୁ ବର ଦେବାକୁ ଆସିଥିଲି, ତୃତୀୟ ଜନ୍ମରେ ସେହି ରୂପରେ ମୁଁ ତୁମର ପୁତ୍ର ଭାବରେ ଜନ୍ମ ଗ୍ରହଣ କରିଛି । ସତୀ, ମୋର ପ୍ରତିଶ୍ରୁତି ସର୍ବଦା ସତ୍ୟ ହୁଏ ॥୪୩॥ ମୁଁ ତୁମକୁ ଏହି ରୂପ ଦେଖାଇବାର ଉଦ୍ଦେଶ୍ୟ ହେଉଛି, ତୁମେ ମୋର ପୂର୍ବ ଅବତାରକୁ ସ୍ମରଣ କରିବ; ଯଦି ତାହା ମୁଁ ନ କରିଥା'ନ୍ତି, ତେବେ ମନୁଷ୍ୟ ଶରୀରରେ ମୋର ଅବତାରକୁ କେହି ଚିହ୍ନି ପାରି ନ ଥାନ୍ତେ । ତୁମେ ମୋତେ ପୁତ୍ର ଭାବରେ ଓ ବ୍ରହ୍ମ ଭାବରେ ବାରମ୍ବାର ଚିନ୍ତା କରିଚ ଏବଂ ମୋ ପ୍ରତି ତୁମର ସ୍ନେହ ଓ ଶ୍ରଦ୍ଧା ରହିଛି । ତୁମେ ନିଶ୍ଚୟ ପରମପଦ ଲାଭ କରିବ ॥୪୪-୪୫॥

ଶ୍ରୀ ଶୁକଦେବ କହିଲେ, ଏହା କହି ଭଗବାନ ଚୁପ୍ ହୋଇଗଲେ । ପିତାମାତା ଦେଖୁ ଦେଖୁ ଯୋଗମାୟା ବଳରେ ସେ ଏକ ସାଧାରଣ ଶିଶୁର ରୂପ ଧାରଣ କଲେ ॥୪୬॥ ତହୁଁ ଭଗବାନଙ୍କ ପ୍ରେରଣାରେ ବସୁଦେବ ପୁତ୍ରଙ୍କୁ ଧରି ସୂତିକା ଗୃହରୁ ବାହାରିଯିବାପାଇଁ ଇଚ୍ଛା କଲେ । ଠିକ୍ ସେହି ସମୟରେ ନନ୍ଦଙ୍କର ପତ୍ନୀ ଯଶୋଦାଙ୍କ ଗର୍ଭରୁ ଯୋଗମାୟା ଜନ୍ମ ହେଲେ, ଯଦିଓ ସେ ଭଗବାନଙ୍କର ଶକ୍ତି ହୋଇଥିବାଯୋଗୁଁ ଅଜନ୍ମା ଥିଲେ ॥୪୭॥ ଯୋଗମାୟାଙ୍କର ପ୍ରଭାବରେ କଂସ କାରାଗାରର ପ୍ରହରୀଗଣ

ଗଭୀର ନିଦ୍ରାରେ ଅଚେତନ ହୋଇ ଶୋଇରହିଲେ । ବଡ଼ ବଡ଼ ଲୁହାକବାଟ, ଲୁହାର କିଳିଣି ଓ ଶିକୁଳି ଦ୍ୱାରା କାରାକକ୍ଷ ବନ୍ଦ ହୋଇଥିଲା ତାହା ଚାହୁଁ ଚାହୁଁ ଖୋଲିଗଲା । ସୂର୍ଯ୍ୟୋଦୟ ହେଲେ ଯେପରି ଅନ୍ଧକାର ଦୂର ହୋଇଯାଏ, ସେହିପରି କୃଷ୍ଣଙ୍କୁ ଧରି ଆସିବାମାତ୍ରେ ହିଁ ଏହା ଘଟିଲା । ସେତେବେଳେ ଧୀରେ ଧୀରେ ମେଘ ଗର୍ଜନ କରୁଥିଲା ଓ ବୃଷ୍ଟିପାତ ହେଉଥିଲା ଏବଂ ଶେଷଦେବ ନିଜର ସହସ୍ର ଫଣାକୁ ଟେକି ବର୍ଷାପାଣି ନ ପଡ଼ିବାପାଇଁ ବସୁଦେବଙ୍କର ପଛେ ପଛେ ଯିବାକୁ ଲାଗିଲେ ।।୪୮-୪୯।। ସେ ଦିନଟି ବାରମ୍ବାର ବର୍ଷା ହେବା ଫଳରେ ଯମୁନା ବହୁତ ବଢ଼ିଯାଇଥିଲା । ଏହାର ଜଳରାଶି ଗଭୀର ଥିଲା ଓ ତାହା ପ୍ରବଳ ବେଗରେ ବହୁଥିଲା । ବଡ଼ ବଡ଼ ଲହରୀ ଉଠୁଥିଲା ଓ ଅସଂଖ୍ୟ ଭଉଁରି ସୃଷ୍ଟି ହେଉଥିଲା । କିନ୍ତୁ ସୀତାପତି ଭଗବାନ ରାମଚନ୍ଦ୍ରଙ୍କୁ ଯେପରି ସମୁଦ୍ର ବାଟ ଛାଡି ଦେଇଥିଲା, ସେହିପରି ଯମୁନା ଭଗବାନଙ୍କ ପାଇଁ ବାଟ ଖୋଲିଦେଲା । ବସୁଦେବ ଯମୁନା ପାରହୋଇ ଗୋକୁଳରେ ଯାଇ ଦେଖିଲେ ଯେ, ସମସ୍ତ ଗୋପାଳ ଗାଢ଼ ନିଦରେ ଶୋଇଯାଇଛନ୍ତି । ସେ ନିଜର ପୁତ୍ରଙ୍କୁ ଯଶୋଦାଙ୍କ ଶେଯରେ ଶୁଆଇଦେଲେ ଏବଂ ତାଙ୍କ ନବଜାତା କନ୍ୟାକୁ ଧରି ବନ୍ଦୀଗୃହକୁ ଫେରିଆସିଲେ ।।୫୦-୫୧।। କାରାଗାରରେ ପହଞ୍ଚି ସେ ଏହି କନ୍ୟାକୁ ଦେବକୀଙ୍କ ଶେଯରେ ଶୁଆଇଦେଲେ ଏବଂ ନିଜର ଗୋଡ଼ରେ ବେଡ଼ି ପିନ୍ଧି ଯେପରି ପୂର୍ବେ ରହିଥିଲେ ସେହିପରି ବନ୍ଦିଶାଳାରେ ବନ୍ଦି ହୋଇଗଲେ ।।୫୨।। ନନ୍ଦପତ୍ନୀ ଯଶୋଦା ତାଙ୍କର ଏକ ସନ୍ତାନ ହୋଇଛି ବୋଲି ଜାଣିଥିଲେ । କିନ୍ତୁ ତାହା ପୁଅ କି ଝିଅ ତାହା ଜାଣି ନ ଥିଲେ । କାରଣ ପ୍ରସବ ବେଦନାରେ ସେ କ୍ଳାନ୍ତ ହୋଇ ପଡ଼ିଥିଲେ ଏବଂ ଯୋଗମାୟା ତାଙ୍କୁ ନିଦ୍ରାରେ ଅଚେତ କରିଦେଇଥିଲେ ।।୫୩।।

## ଚତୁର୍ଥ ଅଧ୍ୟାୟ

# ଯୋଗମାୟାଙ୍କର ଭବିଷ୍ୟବାଣୀ

ପରିକ୍ଷିତ, ଯେତେବେଳେ ବସୁଦେବ ବନ୍ଦିଶାଳାକୁ ଫେରିଆସିଲେ, ନଗରର ବାହାର ଓ ଭିତର ଦରଜା ସବୁ ଆପେ ବନ୍ଦ ହୋଇଗଲା । ନବଜାତ ଶିଶୁର କ୍ରନ୍ଦନଧ୍ୱନି ଶୁଣି ପ୍ରହରୀମାନେ ଉଠିପଡ଼ିଲେ । ସେମାନେ ସଙ୍ଗେ ସଙ୍ଗେ ଭୋଜରାଜ କଂସଙ୍କ ପାଖକୁ ଯାଇ ଦେବକୀଙ୍କର ସନ୍ତାନ ଜନ୍ମର ସମ୍ବାଦ ଦେଲେ । କଂସ ଅତି ବ୍ୟଗ୍ରତାର ସହିତ ଏହି ଘଟଣାପାଇଁ ଅପେକ୍ଷା କରି ରହିଥିଲା । ପ୍ରହରୀଙ୍କଠାରୁ ଖବର ପାଇ ସେ ସଙ୍ଗେ ସଙ୍ଗେ ଶଯ୍ୟାରୁ ଉଠିପଡ଼ିଲା ଓ ମୋର ସାକ୍ଷାତ୍ ମୃତ୍ୟୁ ଆସିଗଲା ବୋଲି ମନେ କରି ସୂତିକା ଗୃହକୁ ଦଉଡ଼ିଗଲା । ତା'ର ମୁଣ୍ଡ ବାଳ ସବୁ ମୁକୁଳା ହୋଇପଡ଼ିଥିଲା ଏବଂ ସେ ପଡ଼ି ଉଠି ଧାଉଁଥିଲା । ବନ୍ଦି ଗୃହରେ ପହଞ୍ଚିବାମାତ୍ରେ ଦେବକୀ ଅତି କରୁଣ ଭାବରେ ଦୁଃଖରେ ଭାଙ୍ଗିପଡ଼ି କହିଲେ, ଭାଇ, ମୋର ଏହି କନ୍ୟାଟି ତୁମର ପୁତ୍ରବଧୂ ହେବ । ସ୍ତ୍ରୀହତ୍ୟା କରିବା ତୁମ ପକ୍ଷରେ ଉଚିତ ହେବ ନାହିଁ । ଦୈବପ୍ରେରିତ ହୋଇ ଅଗ୍ନିପରି ମୋର ତେଜସ୍ୱୀ ପୁତ୍ରମାନଙ୍କୁ ତୁମେ ହତ୍ୟାକରିଛ । ଏଇଟିପାଇଁ ତୁମକୁ ମୁଁ ଭିକ୍ଷା ମାଗୁଛି,ମୁଁ ତୁମର ସାନ ଭଉଣୀ । ସବୁ ପୁଅଙ୍କୁ ହରାଇଲି । ପୁତ୍ରଶୋକରେ ଭାଙ୍ଗିପଡିଛି । ଏଣୁ ମୋତେ ମୋର ଏହି ଶେଷ ସନ୍ତାନଟିକୁ ଦାନ କର ।।୧-୬।।

ଶ୍ରୀ ଶୁକଦେବ କହିଲେ, ପରିକ୍ଷିତ, କନ୍ୟାଟିକୁ ନିଜ କୋଳରେ ଲୁଚାଇ ଧରି ଦେବକୀ ଅତି କରୁଣ ଭାବରେ କାନ୍ଦି କାନ୍ଦି କଂସକୁ ପ୍ରାର୍ଥନା କରୁଥିଲେ । କିନ୍ତୁ ଦୁଷ୍ଟ କଂସ ଦେବକୀଙ୍କ ହାତରୁ କନ୍ୟାଟିକୁ ଛଡ଼ାଇନେଲା । ନିଜ ଭଉଣୀର ସେହି ନବଜାତ କନ୍ୟାଟିର ଗୋଡ଼ ଦୁଇଟିକୁ ଧରି କଂସ ପଥରଚଟାଣ ଉପରେ ତାକୁ ଜୋର୍‌ରେ ପିଟିଦେଲା । ନିଜର ସ୍ୱାର୍ଥପାଇଁ ତାର

ହୃଦୟରେ ଟିକିଏ ହେଲେ ଦୟା ନ ଥିଲା ।।୭-୮।। କିନ୍ତୁ ସେ ଶିଶୁ ବିଷ୍ଣୁଙ୍କର ଅନୁଜା ସାକ୍ଷାତ୍ ଯୋଗମାୟା ଥିଲେ । ସେ କଂସର ହାତରୁ ଖସିଯାଇ ସଙ୍ଗେ ସଙ୍ଗେ ଆକାଶକୁ ଉଠିଗଲେ ଏବଂ ନିଜ ରୂପ ପ୍ରକାଶ କରି ଅଷ୍ଟଭୁଜରେ ଧନୁ, ଶୂଳ, ବାଣ, ଚର୍ମ, ଅସି, ଶଙ୍ଖ, ଚକ୍ର ଓ ଗଦା ଧାରଣ କରି ଦିବ୍ୟ ମାଳା, ଚନ୍ଦନ, ବସ୍ତ୍ର ଓ ମଣିମୟ ଅଳଙ୍କାରମାନ ପରିଧାନ କରିଥିଲେ । ସିଦ୍ଧ, ଚାରଣ, ଗନ୍ଧର୍ବ, ଅପ୍ସରା, କିନ୍ନର ଓ ନାଗମାନେ ତାଙ୍କୁ ପ୍ରଚୁର ଉପହାର ଦାନ କରି ସ୍ତୁତି କରିବାକୁ ଲାଗିଲେ । ଆକାଶରେ ଏହିପରି ଅବସ୍ଥାନ କରି ଦେବୀ କଂସକୁ କହିଲେ, ମୂର୍ଖ, ମୋତେ ହତ୍ୟା କଲେ ତୋର କ'ଣ ଲାଭ ହେବ ? ତୋର ପୂର୍ବ ଜନ୍ମର ଶତ୍ରୁ ତୋତେ ମାରିବାପାଇଁ କୌଣସି ଏକ ସ୍ଥାନରେ ଜନ୍ମ ହୋଇସାରିଲାଣି । ତେଣୁ ନିର୍ଦ୍ଦୋଷ ଶିଶୁମାନଙ୍କୁ ବୃଥା ହିଂସା କର ନାହିଁ ।।୯-୧୨।। କଂସକୁ ଏହିପରି କହି ଭଗବତୀ ଯୋଗମାୟା ଅନ୍ତର୍ହିତ ହୋଇଗଲେ ଏବଂ ପୃଥିବୀରେ ବହୁ ସ୍ଥାନରେ ବିଭିନ୍ନ ନାମରେ ପୂଜା ପାଇ ପ୍ରସିଦ୍ଧ ହେଲେ ।।୧୩।।

ଦେବୀଙ୍କର କଥା ଶୁଣି ବିସ୍ମିତ କଂସ ଦେବକୀ ଓ ବସୁଦେବଙ୍କୁ ବନ୍ଦିଶାଳାରୁ ମୁକ୍ତ କରିଦେଲା ଏବଂ ବିନୀତ ଭାବରେ ତାଙ୍କୁ କହିବାକୁ ଲାଗିଲା, ହେ ମୋର ଭଗିନୀ ଓ ଭଗିନୀପତି, ମୁଁ ବହୁ ପାପ କରିଛି । ରାକ୍ଷସ ନିଜ ପିଲାଙ୍କୁ ମାରିବା ପରି ତୁମର ପୁଅମାନଙ୍କୁ ମାରି ପକାଇଛି । ମୁଁ ଦୁଷ୍ଟ, ନିର୍ଦ୍ଦୟ, ପୁତ୍ରହନ୍ତା ଜ୍ଞାତିସ୍ୱଜନଙ୍କୁ ପରିତ୍ୟାଗ କରି ଜୀବନ୍ମୃତ ପରି ବଞ୍ଚି ରହିଛି । ବ୍ରହ୍ମହତ୍ୟାକାରୀ ପରି ମଲେ ମୁଁ ଯେ କେଉଁ ଲୋକକୁ ଯିବି ତାହା ଜାଣେ ନାହିଁ ।।୧୪-୧୬।। କେବଳ ମନୁଷ୍ୟ ଯେ ମିଥ୍ୟା କଥା କହେ, ତାହା ନୁହେଁ । ମୁଁ ମିଥ୍ୟା ଦୈବବାଣୀରେ ବିଶ୍ୱାସ କରି ମୋ ଭଉଣୀର ପୁଅମାନଙ୍କୁ ହତ୍ୟା କଲି । ତେଡ଼େ ପାପୀ ନ ହେଲେ କିଏ ଏହା କରିପାରେ ? ।।୧୭।। ତୁମେ ଦୁହେଁ ମହାମନା । ନିଜର କର୍ମଫଳ ଭୋଗ କରିଥିବା ପୁତ୍ରମାନଙ୍କପାଇଁ ଶୋକ କର ନାହିଁ । ଦୈବର ଅଧୀନ ଜୀବମାନେ ଆତ୍ମୀୟ ହୋଇ ଏକାଠି ରହିପାରନ୍ତି ନାହିଁ । ମାଟିରୁ ଗଢ଼ା ହୋଇଥିବା ପଦାର୍ଥମାନ ଯେପରି ମାଟିରେ ମିଶିଯାଏ, କିନ୍ତୁ ମାଟି ସେହିପରି ଥାଏ, ଶରୀରର ସେହିପରି ଜନ୍ମ ଓ ମୃତ୍ୟୁ ଘଟେ । ଆତ୍ମାର କୌଣସି ପରିବର୍ତ୍ତନ ହୁଏ ନାହିଁ । ଯେଉଁମାନେ ଆତ୍ମାର ସ୍ୱରୂପ ଜାଣନ୍ତି ନାହିଁ, ଦେହକୁ ଆତ୍ମା ବୋଲି ମନେ କରନ୍ତି, ସେମାନେ ବାରମ୍ବାର ଜନ୍ମମୃତ୍ୟୁର ଚକ୍ରରେ ଘାଣ୍ଟି ହେଉଥାନ୍ତି । ତେଣୁ ସଂସାରଦୁଃଖରୁ ସେମାନଙ୍କୁ ମୁକ୍ତି ମିଳେ ନାହିଁ ।।୧୮-୨୦।। ତେଣୁ ହେ କଲ୍ୟାଣି ! ମୁଁ ତୁମର ପୁତ୍ରମାନଙ୍କୁ ହତ୍ୟା କରିଛି ବୋଲି ଦୁଃଖ କର ନାହିଁ । ସମସ୍ତ ପ୍ରାଣୀଙ୍କୁ ଅବଶ୍ୟ ନିଜ କୃତକର୍ମର ଫଳ ଭୋଗ କରିବାକୁ ହୁଏ ।।୨୧।। ଯେପର୍ଯ୍ୟନ୍ତ ଲୋକ ନିଜକୁ ହନ୍ତା ବା ହତ ବୋଲି ଭାବୁଥାଏ, ସେପର୍ଯ୍ୟନ୍ତ ଦେହର ମୃତ୍ୟୁକୁ ନିଜର ମୃତ୍ୟୁ ବୋଲି ଭାବୁଥିବା ସେହି ଦେହାଭିମାନୀ ଅଜ୍ଞ ବ୍ୟକ୍ତିକୁ ବାଧ୍ୟବାଧକତାରେ ଦେହର ସୁଖଦୁଃଖ ଭୋଗ କରିବାକୁ ପଡ଼େ ।।୨୨।। ତୁମେ ଦୁହେଁ ସ୍ୱଜନବତ୍ସଳ ଓ ସଜ୍ଜନ । ତୁମେ ମୋର ଏହି ଦୌରାତ୍ମ୍ୟକୁ କ୍ଷମା କର -- ଏହା କହି କଂସ ଦେବକୀ ଓ ବସୁଦେବଙ୍କର ପାଦ ଧରି ପକାଇଲା ଓ ଯୋଗମାୟାଙ୍କ କଥାରେ ବିଶ୍ୱାସ କରି ମଧୁର କଥାରେ ଦେବକୀ ଓ ବସୁଦେବଙ୍କୁ ନିଜର ସ୍ନେହଭାବ ଜଣାଇ ଲୌହଶୃଙ୍ଖଳରୁ ମୁକ୍ତ କରିଦେଲା ।।୨୩-୨୪।। ନିଜର ଭାଇକୁ ଏପରି ଅନୁତପ୍ତ ହେବାର ଦେଖି ଦେବକୀ ତାକୁ କ୍ଷମା ଦେଲେ ଓ ନିଜର କ୍ରୋଧ ତ୍ୟାଗ କଲେ । ବସୁଦେବ ମଧ୍ୟ କଂସର ଅପରାଧକୁ କ୍ଷମାଦେଇ କହିଲେ, କଂସ ମହାଭାଗ, ତୁମେ ଯାହା କହିଲ ଠିକ୍ କଥା । ଅଜ୍ଞାନବଶତଃ ଜୀବ ନିଜର ଦେହକୁ ଆତ୍ମା ବୋଲି ମନେକରେ ଏବଂ ଅହଂ ଭାବରେ ନିଜ-ପର ଭେଦ ସୃଷ୍ଟି କରିଥାଏ । ଶୋକ, ହର୍ଷ, ଦ୍ୱେଷ, ଲୋଭ, ମୋହ ଓ ମଦରେ ଅନ୍ଧ ହୋଇଥିବା ଏହି ବ୍ୟକ୍ତିମାନଙ୍କୁ କାଳରୂପୀ ଭଗବାନ ଜଣକୁ ଅନ୍ୟ ଜଣକ ଦ୍ୱାରା ନିହତ କରାନ୍ତି ।।୨୫-୨୭।। ଶ୍ରୀ ଶୁକଦେବ କହିଲେ, ବସୁଦେବ ଓ ଦେବକୀ କଂସପ୍ରତି ପ୍ରସନ୍ନ ହୋଇ ନିର୍ମଳ ହୃଦୟରେ ତାର ପ୍ରତ୍ୟୁତ୍ତର ଦେଲେ । ଦୁହିଁଙ୍କ ଠାରୁ ଅନୁମତି ନେଇ କଂସ ତାର ପ୍ରାସାଦକୁ ଫେରିଗଲା ।।୨୮।।

ରାତ୍ରି ଗତ ହେବାରୁ କଂସ ତାର ମନ୍ତ୍ରୀମାନଙ୍କୁ ଡକାଇ ଯୋଗମାୟା ଯାହା କହିଥିଲେ, ତାହା ଶୁଣାଇଲା ॥୨୯॥ କଂସର ଏହି ମନ୍ତ୍ରୀମାନେ ଦେବତାଙ୍କର ଶତ୍ରୁ ଥିଲେ । ଦେବତାଙ୍କପ୍ରତି ଅସୂୟାଯୋଗୁଁ ସେମାନଙ୍କର ବୁଦ୍ଧି ଠିକ୍ ନ ଥିଲା ଏବଂ ସେମାନେ ନୀତିଜ୍ଞ ନ ଥିଲେ । ସେମାନେ ନିଜର ସ୍ୱାମୀ କଂସର କଥା ଶୁଣି କହିଲେ, ମହାରାଜ, ଯଦି ଯୋଗମାୟା ଏହିପରି କହିଥାନ୍ତି, ତା'ହେଲେ ଯେତେ ଗ୍ରାମ, ନଗର, ଗୋପାଳପଲ୍ଲୀ ଅଛି, ସେଠାରେ ଦଶ ଦିନରୁ ଅଧିକ ବା କମ୍ ଯେତେ ଶିଶୁ ଜନ୍ମ ହୋଇଛନ୍ତି, ସମସ୍ତଙ୍କୁ ପ୍ରାଣରେ ବଧ କରିବାକୁ ହେବ । ଦେବତାମାନେ ତୁମର କ'ଣ କରିବେ ? ସେମାନେ ତ ଯୁଦ୍ଧ କରିବାପାଇଁ ଭୟ କରନ୍ତି । ଆପଣଙ୍କର ଧନୁଷ୍ଟଙ୍କାର ଶବ୍ଦରେ ସେମାନେ ସର୍ବଦା ଭୟ ଓ ଉଦ୍‌ବେଗରେ ରହିଥା'ନ୍ତି ॥୩୦-୩୨॥ ଆପଣଙ୍କ ବାଣାଘାତରେ କ୍ଷତବିକ୍ଷତ ହୋଇ ନିଜର ପ୍ରାଣରକ୍ଷାପାଇଁ ସେମାନେ ବାରମ୍ବାର ପଳାଇଯାଇଛନ୍ତି ॥୩୩॥ ସେମାନଙ୍କ ମଧ୍ୟରୁ କେହି କେହି ଅସ୍ତ୍ର ତ୍ୟାଗ କରି ହାତ ଯୋଡ଼ି ଆପଣଙ୍କର ଶରଣ ପଶିଛନ୍ତି । କାହାର କଛା ଫିଟି ଯାଇଛି ଓ ବାଳ ମୁକୁଳା ହୋଇଯାଇଛି । ଭୟରେ ପଳାଇ ଆସି ସେ ଆପଣଙ୍କର ଶରଣଭିକ୍ଷା କରିଛି ॥୩୪॥ ପୁଣି ସେମାନଙ୍କ ମଧ୍ୟରୁ ଯାହାର ହାତରେ ଅସ୍ତ୍ର ନ ଥାଏ, ଯାହାର ରଥ ଭାଂଗି ପଡ଼ିଥାଏ, ଯେଉଁମାନେ ଭୟାତୁର, ଯୁଦ୍ଧରୁ ପଳାଇଯାଉଥାନ୍ତି ଓ ଯେଉଁମାନଙ୍କର ଧନୁ କଟିଯାଇଥାଏ, ସେପରି ଯୁଦ୍ଧବିମୁଖ ଦେବତାମାନଙ୍କୁ ଆପଣ ବଧ କରନ୍ତିନାହିଁ ॥୩୫॥ ଯେଉଁଠାରେ ଯୁଦ୍ଧର ଭୟ ନଥାଏ, ସେଠାରେ ସେମାନେ ବୀରତ୍ୱ ଦେଖାଇଥାଆନ୍ତି । ବିଷ୍ଣୁ ତ ନିର୍ଜନ ସ୍ଥାନରେ ରହିବାକୁ ଭଲ ପା'ନ୍ତି । ଶିବ ବନରେ ରହନ୍ତି । ବ୍ରହ୍ମା ତପସ୍ୟା କରୁଥା'ନ୍ତି । ବାକି ଇନ୍ଦ୍ର, ସେ ତ ହୀନବୀର୍ଯ୍ୟ ॥୩୬॥ କିନ୍ତୁ ଏହି ନଗଣ୍ୟ ଦେବତାମାନେ ଚିର ଦିନ ଆମ ସହିତ ଶତ୍ରୁତା କରନ୍ତି । ତେଣୁ ସେମାନଙ୍କୁ ଉପେକ୍ଷା କରିବା ଉଚିତ ନୁହେଁ । ଆମେ ଆପଣଙ୍କର ଅନୁଚର । ସେମାନଙ୍କ ମୂଳୋତ୍ପାଟନପାଇଁ ଆମକୁ ନିଯୁକ୍ତ କରନ୍ତୁ ॥୩୭॥ ଶରୀରର ବ୍ୟାଧିକୁ ଉପେକ୍ଷା କଲେ ପରେ ଯେପରି ବ୍ୟାଧି ବଢ଼ିଯାଏ ଓ ତାର ଚିକିତ୍ସା ହୋଇପାରେ ନାହିଁ, ଇନ୍ଦ୍ରିୟଙ୍କୁ ଉପେକ୍ଷା କଲେ ସେମାନେ ଯେପରି ନିଜ ବଶରେ ରହନ୍ତି ନାହିଁ, ସେହିପରି କ୍ଷୁଦ୍ର ଶତ୍ରୁକୁ ଉପେକ୍ଷା କଲେ, ସେ ମହାବଳଶାଳୀ ହୋଇଉଠେ ଏବଂ ତାକୁ ହରାଇବା କଷ୍ଟକର ହୁଏ ॥୩୮॥ ଦେବତାମାନଙ୍କ ମୂଳରେ ହିଁ ବିଷ୍ଣୁ, ଯେଉଁଠି ସନାତନ ଧର୍ମ ରହିଛି, ବିଷ୍ଣୁ ସେଇଠି ଅଛନ୍ତି । ଗୋ-ବ୍ରାହ୍ମଣ, ବେଦାଧ୍ୟୟନ, ତପସ୍ୟା ଓ ଯଜ୍ଞ ହେଉଛି ସନାତନ ଧର୍ମର ମୂଳ ॥୩୯॥ ତେଣୁ ମହାରାଜ, ପ୍ରଥମେ ଆମକୁ, ବେଦବାଦୀ ବ୍ରାହ୍ମଣଙ୍କୁ, ତପସ୍ୱୀଙ୍କୁ ଓ ଯଜ୍ଞପାଇଁ ଘୃତ ଦାନ କରୁଥିବା ଗାଭୀମାନଙ୍କୁ ହତ୍ୟା କରିବାକୁ ହେବ । ଗୋ-ବ୍ରାହ୍ମଣ, ବେଦ, ତପସ୍ୟା, ସତ୍ୟ,ଦମ, ଶମ, ଶ୍ରଦ୍ଧା, ଦୟା, କ୍ଷମା ଓ ଯଜ୍ଞ ହେଉଛି ବିଷ୍ଣୁଙ୍କର ଅଂଗସ୍ୱରୂପ ॥୪୦-୪୧॥ ସେହି ବିଷ୍ଣୁ ହେଉଛନ୍ତି ସମସ୍ତ ଦେବତାଙ୍କର ଅଧିପତି ଓ ଅସୁରମାନଙ୍କର ଶତ୍ରୁ । ତେଣୁ ସେ ନିଶ୍ଚୟ କୌଣସି ଗୁମ୍ଫାରେ ଲୁଚି ରହିଥିବ । ସେ ଇନ୍ଦ୍ର ଆଦି ଲୋକପାଳଙ୍କର ଏବଂ ବ୍ରହ୍ମା, ରୁଦ୍ର ଆଦି ସମସ୍ତ ଦେବତାଙ୍କର ମୂଳ ସ୍ୱରୂପ । ତେଣୁ ଋଷିମାନଙ୍କୁ ହତ୍ୟା କରିବା ହେଉଛି ବିଷ୍ଣୁଙ୍କୁ ମାରିବାର ଏକମାତ୍ର ଉପାୟ ॥୪୨॥ ଶ୍ରୀ ଶୁକଦେବ କହିଲେ, ଏହିପରି ମନ୍ଦମତି କଂସ ତାର ଦୁଷ୍ଟ ବୁଦ୍ଧି ମନ୍ତ୍ରୀମାନଙ୍କ ସହିତ ମନ୍ତ୍ରଣା କରି ବ୍ରହ୍ମହତ୍ୟାକୁ ନିଜର ହିତକର ଉଚିତ କାର୍ଯ୍ୟ ବୋଲି ମନେକଲା । ସେତେବେଳକୁ କାଳପାଶରେ ସେ ଛନ୍ଦିହୋଇ ସାରିଥିଲା ॥୪୩॥ ନିରୀହ ଗୋ-ବ୍ରାହ୍ମଣମାନଙ୍କୁ ହିଂସା କରିବାପାଇଁ ସେ ବହୁରୂପଧାରୀ ପରପୀଡ଼କ ରାକ୍ଷସମାନଙ୍କୁ ଚତୁର୍ଦ୍ଦିଗକୁ ପ୍ରେରଣ କରି ନିଜ ପ୍ରାସାଦରେ ପ୍ରବେଶ କଲା ॥୪୪॥ ଅସୁରମାନେ ରଜୋଗୁଣସମ୍ପନ୍ନ ହେଲେ ମଧ୍ୟ ତମୋଗୁଣଦ୍ୱାରା ତାଙ୍କର ହିତାହିତ ଜ୍ଞାନ ରହେ ନାହିଁ । ସେମାନେ ଆସନ୍ନ ମୃତ୍ୟୁକୁ ଦେଖି ନ ପାରି ସାଧୁସନ୍ଥଙ୍କପ୍ରତି ଅତ୍ୟାଚାର କରିବାକୁ ଲାଗିଲେ । ମହତ୍ ବ୍ୟକ୍ତିମାନଙ୍କୁ ଅବଜ୍ଞା କଲେ ଆୟୁ, ଧନ, ଯଶ, ଧର୍ମ ଏବଂ ପରକାଳ ଓ ଇହକାଳର ସକଳ ପୁଣ୍ୟ ନଷ୍ଟ ହୁଏ ତଥା ସମସ୍ତପ୍ରକାର ଅମଙ୍ଗଳ ଘଟିଥାଏ ॥୪୫-୪୬॥

## ପଞ୍ଚମ ଅଧ୍ୟାୟ

# ଗୋକୁଳରେ ମହୋତ୍ସବ

ଶ୍ରୀ ଶୁକଦେବ କହିଲେ, ପୁତ୍ର ଜନ୍ମ ହେବାରୁ ମହାମନା ନନ୍ଦଙ୍କର ହୃଦୟ ଆନନ୍ଦରେ ଭରିଗଲା । ସେ ସ୍ନାନ ସାରି ଶୁଦ୍ଧ ବସ୍ତ୍ର ଓ ଅଳଙ୍କାର ପରିଧାନ କରି ବେଦଜ୍ଞ ବ୍ରାହ୍ମଣମାନଙ୍କୁ ଡକାଇଲେ ଏବଂ ସ୍ୱସ୍ତିବାଚନ ଓ ପୁତ୍ରର ଜାତକର୍ମ କରାଇ ବିଧିପୂର୍ବକ ପିତୃ ଓ ଦେବତାଙ୍କର ପୂଜା କଲେ । ସେ ବିଭିନ୍ନ ଅଳଙ୍କାରରେ ଭୂଷିତ ଦୁଇ ଲକ୍ଷ ଗାଭୀ ଏବଂ ନାନା ରତ୍ନ ଓ ସୁବର୍ଣ୍ଣଖଚିତ ବସ୍ତ୍ରରେ ଯୋଡ଼ା ହୋଇଥିବା ସାତଟି ତିଳପର୍ବତ ବ୍ରାହ୍ମଣମାନଙ୍କୁ ଦାନ କଲେ ।।୧-୩।। ସମୟ ଅନୁଯାୟୀ ଜଳ ଓ ଭୂମି ଆଦି ଶୁଦ୍ଧ ହୋଇଥାଏ । ସ୍ନାନରେ ଶରୀର ଶୁଦ୍ଧ ହୁଏ । ପ୍ରକ୍ଷାଳନରେ ବସ୍ତ୍ରାଦି, ସଂସ୍କାରରେ ଗର୍ଭାଦି, ତପସ୍ୟାରେ ଇନ୍ଦ୍ରିୟାଦି, ଯଜ୍ଞରେ ବ୍ରାହ୍ମଣ ଆଦି, ଦାନରେ ଧନ ସମ୍ପଦ ଆଦି ଏବଂ ସନ୍ତୋଷରେ ମନ ଆଦି ଦ୍ରବ୍ୟ ଶୁଦ୍ଧ ହୁଏ । କିନ୍ତୁ ଆତ୍ମାର ଶୁଦ୍ଧି ଆତ୍ମଜ୍ଞାନରେ ହୋଇଥାଏ ।।୪।। ଏହି ଉତ୍ସବରେ ବ୍ରାହ୍ମଣମାନେ ଏବଂ ସୂତ, ମାଗଧ ଓ ବନ୍ଦିମାନେ ଶୁଭ ଆଶୀର୍ବାଦ ଦେଲେ ଓ ସ୍ତୁତିପାଠ କରିବାକୁ ଲାଗିଲେ । ଗାୟକମାନେ ଗାନ କରିବାକୁ ଲାଗିଲେ ଓ ଭେରୀ ଦୁନ୍ଦୁଭି ଆଦି ବାଦ୍ୟ ବାଜିବାକୁ ଲାଗିଲା ।।୫।। ବ୍ରଜର ଘରଦ୍ୱାର, ଅଗଣା ପରିଷ୍କାର ପରିଚ୍ଛନ୍ନ କରାଯାଇ ସେଥିରେ ସୁଗନ୍ଧ ଜଳ ଛିଞ୍ଚା ଯାଇଥିଲା । ବିଭିନ୍ନ ଚିତ୍ରବିଚିତ୍ର ପତାକା, ଫୁଲମାଳ, ପଟ୍ଟବସ୍ତ୍ର, ପତ୍ର-ପୁଷ୍ପ ଓ ତୋରଣରେ ବ୍ରଜମଣ୍ଡଳ ଶୋଭାପାଉଥିଲା ।।୬।। ଗାଈ, ବଳଦ ଓ ବାଛୁରୀମାନଙ୍କ ଦେହରେ ହଳଦୀ ଓ ତେଲ ଲଗାଯାଇଥିଲା ଏବଂ ସେମାନଙ୍କୁ ବିଭିନ୍ନ ପ୍ରକାର ରଙ୍ଗ, ମୟୂରପୁଚ୍ଛ, ଫୁଲମାଳ, ବସ୍ତ୍ର ଓ ସୁବର୍ଣ୍ଣର ମାଳରେ ସଜା ଯାଇଥିଲା ।।୭।। ପରିକ୍ଷିତ, ଗୋପାଳମାନେ ବହୁମୂଲ୍ୟ ବସ୍ତ୍ର ଓ ଅଳଙ୍କାର ପିନ୍ଧି, ସୁନ୍ଦର ସୁନ୍ଦର କଟିବସ୍ତ୍ର ଓ ପଗଡ଼ିରେ ସଜ୍ଜିତ ହୋଇ ଉପହାର ଭେଟି ଦେବାପାଇଁ ନନ୍ଦଙ୍କ ଘରେ ଯାଇ ପହଞ୍ଚିଲେ ।।୮।। ଯଶୋଦାଙ୍କର ପୁଅ ହୋଇଛି ବୋଲି ଶୁଣି ଗୋପୀମାନେ ଆନନ୍ଦିତ ହେଲେ । ସେମାନେ ସୁନ୍ଦର ସୁନ୍ଦର ବସ୍ତ୍ର ଅଳଙ୍କାର ପିନ୍ଧି ଓ ଆଖିରେ ଅଞ୍ଜନ ଲଗାଇ ନିଜକୁ ସୁସଜ୍ଜିତ କଲେ ।।୯।। ତାଙ୍କର ପଦ୍ମଫୁଲପରି ସୁନ୍ଦର ମୁହଁରେ କୁଙ୍କୁମ ପଦ୍ମକେଶର ପରି ଶୋଭାପାଉଥିଲା । ନିତମ୍ବିନୀ ବ୍ରଜବଧୂମାନେ ଉପହାରମାନ ଧରି ଯଶୋଦାଙ୍କ ଗୃହକୁ ଯିବାବେଳେ ସେମାନଙ୍କର କୁଚମାନ ହଲିଉଠୁଥିଲା ।।୧୦।। ଗୋପୀମାନଙ୍କର କର୍ଣ୍ଣରେ ଥିବା ମଣିମୟ କୁଣ୍ଡଳ ଓ କଣ୍ଠରେ ଥିବା ହାରଗୁଡ଼ିକ ଝଲସି ଉଠୁଥିଲା । ସେମାନେ ସୁନ୍ଦର ସୁନ୍ଦର ରଙ୍ଗିନ ବସ୍ତ୍ର ପରିଧାନ କରିଥିଲେ । ବାଟରେ ଗଲାବେଳେ ତାଙ୍କ ଜୁଡ଼ାରୁ ଫୁଲଯାକ ଝଡ଼ି ପଡୁଥିଲା । ହାତରେ ଥିବା କଙ୍କଣ ଓ ବାଜୁବନ୍ଧ ମଧ୍ୟ ଜକଜକ କରୁଥିଲା । କାନର କୁଣ୍ଡଳ, କୁଚଦ୍ୱୟ ଓ ସେଥିରେ ଲମ୍ବିଥିବା ହାର ସବୁ ହଲି ହଲି ଅପୂର୍ବ ଶୋଭା ଧାରଣ କରୁଥିଲା ।।୧୧।।

ଗୋପୀମାନେ ନନ୍ଦଙ୍କ ଗୃହରେ ଉପସ୍ଥିତ ହୋଇ 'ଚିରଞ୍ଜୀବୀ ହୁଅ' ବୋଲି ନନ୍ଦନନ୍ଦନଙ୍କୁ ଆଶୀର୍ବାଦ କଲେ ଏବଂ ତେଲମିଶା ହଳଦୀପାଣି ନିଜ ନିଜ ଦେହରେ ଛିଂଚି ଉଚ୍ଚ ସ୍ୱରରେ ମଙ୍ଗଳଗୀତି ଗାନ କରିବାକୁ ଲାଗିଲେ ।।୧୨।। ନନ୍ଦଙ୍କର ବ୍ରଜପୁରୀରେ ଅନନ୍ତ ବିଶ୍ୱେଶ୍ୱର କୃଷ୍ଣଙ୍କର ଜନ୍ମ ହେବାରୁ ସେଠାରେ ଏକ ମହୋତ୍ସବ ଜମିଗଲା । ବିଚିତ୍ର ବାଦ୍ୟମାନ ବାଜିଉଠିଲା । ଗୋପାଳମାନେ ଆନନ୍ଦରେ ପରସ୍ପରକୁ ଦଧି, ଦୁଧ, ଘିଅ ଓ ଜଳ ଛିଞ୍ଚିବାକୁ ଲାଗିଲେ । ପରସ୍ପର ମୁହଁରେ ଲହୁଣି ବୋଳି ଓ ପରସ୍ପରକୁ ଲହୁଣି ପକାଇ ଆନନ୍ଦ କରିବାକୁ ଲାଗିଲେ ।।୧୩-୧୪।। ଉଦାର ନନ୍ଦ ଗୋପାଳମାନଙ୍କୁ ବସ୍ତ୍ର, ଅଳଙ୍କାର

ଓ ଗୋଧନ ଦାନ କଲେ । ସୂତ, ମାଗଧ ଓ ବନ୍ଦିମାନଙ୍କୁ ଏବଂ ଅନ୍ୟ ଯେଉଁମାନେ ନୃତ୍ୟ, ଗୀତ, ବାଦ୍ୟ ଆଦି କଳାରେ ଜୀବିକା ନିର୍ବାହ କରୁଥିଲେ, ସେ ସମସ୍ତଙ୍କୁ ବସ୍ତ୍ର, ଅଳଙ୍କାର, ଗାଭୀ ଓ ସୁବର୍ଣ୍ଣ ଆଦି ଦାନ କଲେ । ବିଷ୍ଣୁଙ୍କର ଆରାଧନାପାଇଁ ଏବଂ ନିଜର ନବଜାତ ପୁତ୍ରକୁ ଦେଖିବାପାଇଁ ଅନ୍ୟ ଯେଉଁମାନେ ସବୁ ଆସିଥିଲେ, ଉଦାରମନା ନନ୍ଦ ସମସ୍ତଙ୍କୁ ଯଥୋଚିତ ଉପହାରମାନ ଦେଇ ସନ୍ତୁଷ୍ଟ କରାଇଲେ ॥୧୫-୧୬॥ ମହାଭାଗ୍ୟବତୀ ରୋହିଣୀଙ୍କୁ ନନ୍ଦ ବହୁମାନ୍ୟ ଆଦର ଦେଖାଇଲେ । ଦିବ୍ୟବସ୍ତ୍ର, ମାଳ ଓ କଣ୍ଠହାର ଦ୍ୱାରା ଭୂଷିତା ହୋଇ ସେ ଏହି ଉତ୍ସବରେ ସମସ୍ତଙ୍କ ମଧ୍ୟରେ ବୁଲୁଥିଲେ ॥୧୭॥ ପରିକ୍ଷିତ, ସେହିଦିନ ଠାରୁ ନନ୍ଦଙ୍କର ବ୍ରଜ ସମସ୍ତପ୍ରକାର ସମୃଦ୍ଧିରେ ପରିପୂର୍ଣ୍ଣ ହେଲା । ସ୍ୱୟଂ ଶ୍ରୀହରି ସେଠାରେ ବାସ କରୁଥବାରୁ ଲକ୍ଷ୍ମୀଦେବୀ ମଧ୍ୟ ସେଠାରେ କ୍ରୀଡ଼ା ଆରମ୍ଭ କଲେ ॥୧୮॥ ପରିକ୍ଷିତ, ଗୋକୁଳକୁ ରକ୍ଷା କରିବାପାଇଁ ଅନ୍ୟ ବ୍ରଜବାସୀଙ୍କୁ ନିୟୋଜିତ କରି ବାର୍ଷିକକର ଦେବାପାଇଁ ନନ୍ଦ ମଥୁରାକୁ ଗଲେ ॥୧୯॥

ବସୁଦେବ ଯେତେବେଳେ ଶୁଣିଲେ, ଭାଇ ନନ୍ଦ ମଥୁରାକୁ ଆସିଛନ୍ତି ଓ ରାଜାଙ୍କୁ ତାଙ୍କର ବାର୍ଷିକ କର ଦେଇସାରିଛନ୍ତି, ସେତେବେଳେ ଯେଉଁଠି ନନ୍ଦ ଥିଲେ, ସେ ସେଠାକୁ ତାଙ୍କୁ ଦେଖିବାକୁ ଗଲେ ॥୨୦॥ ଦେହରେ ପ୍ରାଣ ପଶିଲାପରି ବସୁଦେବଙ୍କୁ ଦେଖି ନନ୍ଦ ଅତିଶୟ ଆନନ୍ଦରେ ଉଠିପଡ଼ିଲେ ଏବଂ ପ୍ରେମରେ ବିହ୍ୱଳ ହୋଇ ଦୁଇ ହାତରେ ତାଙ୍କୁ ଆଲିଙ୍ଗନ କଲେ । ଆଦରରେ ତାଙ୍କୁ ପାଖରେ ବସାଇ କୁଶଳବାର୍ତ୍ତା ପଚାରିଲେ । ସେତେବେଳେ ରାଜା ବସୁଦେବଙ୍କର ମନ ପୁତ୍ର ଦୁହିଁଙ୍କଠାରେ ହିଁ ରହିଥିଲା ॥୨୧-୨୨॥ ସେ କହିଲେ, ଭାଇ, ତୁମର ବୟସ ହୋଇଗଲାଣି । ତୁମେ ଏତେଦିନ ଧରି ନିଃସନ୍ତାନ ଥିଲ । ତୁମର ସନ୍ତାନର ଆଶା ମଧ୍ୟ ନ ଥିଲା । ସୌଭାଗ୍ୟର ବିଷୟ ତୁମର ଏକ ପୁତ୍ର ଜାତ ହୋଇଛି । ଆହୁରି ଭାଗ୍ୟର ବିଷୟ ଯେ, ସଂସାରଚକ୍ରରେ ରହି ଯେ ପ୍ରିୟ ବନ୍ଧୁଙ୍କର ଦର୍ଶନ ଦୁର୍ଲଭ ହୋଇଥାଏ, ତୁମ ସହିତ ଆଜି ମୋର ଦେଖା ହୋଇଯିବାରୁ ମୋତେ ପୁନର୍ଜନ୍ମ ପରି ଲଗୁଛି ॥୨୩-୨୪॥ ସୁଅରେ ଯେଉଁ କାଠି କୁଟା ଭାସି ଯାଉଥାଏ, ସେ ସବୁ ଏକାଠି ହେବା ସମ୍ଭବ ନୁହେଁ । ସେହିପରି ବିଭିନ୍ନ କର୍ମରେ ବ୍ୟସ୍ତ ଥିବା ସଂସାରୀ ବ୍ୟକ୍ତିମାନଙ୍କୁ ନିଜ ପ୍ରିୟ ବନ୍ଧୁମାନଙ୍କ ସାକ୍ଷାତ୍ ହେବା ସହଜ ନୁହେଁ ॥୨୫॥ ବର୍ତ୍ତମାନ ବ୍ରଜବନରେ ପଶୁମାନେ ନୀରୋଗ ଅଛନ୍ତି ତ ? ତୃଣ, ଜଳ, ବୃକ୍ଷ, ଲତା ଆଦି ସେଠାରେ ପୂରି ରହିଛନ୍ତି ତ ? ବନ୍ଧୁବାନ୍ଧବମାନଙ୍କ ସହିତ ତୁମେ କୁଶଳରେ ଅଛ ତ ? ॥୨୬॥ ଭାଇ, ମୋର ପୁଅ ତାର ମା' ସହିତ ତୁମ ବ୍ରଜରେ ରହିଛି । ସେ ଯଶୋଦା ଦ୍ୱାରା ଓ ତୁମ ଦ୍ୱାରା ଲାଳିତ ପାଳିତ । ସେ ତୁମକୁ ବାପା ବୋଲି ଭାବୁଛି । ସେ କିପରି ଅଛି ? ॥୨୭॥ ଧର୍ମ, ଅର୍ଥ ଏବଂ କାମ ଭୋଗଦ୍ୱାରା ନିଜର ପରିବାରବର୍ଗଙ୍କୁ ସୁଖୀ କରାଇବା ଉଚିତ । ସେମାନେ ଦୁଃଖ ପାଇଲେ ଧର୍ମ, ଅର୍ଥ ଓ କାମ ଭୋଗରେ ନିଜ ସୁଖର କୌଣସି ମୂଲ୍ୟ ନାହିଁ ॥୨୮॥

ନନ୍ଦ କହିଲେ, ହାୟ, ଦେବକୀଗର୍ଭରୁ ଜାତ ତୁମର ସମସ୍ତ ପୁତ୍ର କଂସଦ୍ୱାରା ନିହତ ହୋଇଛନ୍ତି । ଅବଶେଷରେ ଗୋଟିଏ କନ୍ୟା ହୋଇଥିଲା । ସେ ମଧ୍ୟ ଆକାଶପଥରେ ଚାଲିଗଲା । ଅଦୃଷ୍ଟଯୋଗୁଁ ଲୋକର ଜନ୍ମମରଣର ସୁଖଦୁଃଖ ଘଟିଥାଏ । ଯେ ଏହା ଜାଣେ, ସେ ସୁଖଦୁଃଖ ଦ୍ୱାରା ମୋହଗ୍ରସ୍ତ ହୁଏ ନାହିଁ ॥୨୯-୩୦॥ ବସୁଦେବ କହିଲେ, କଂସର ବାର୍ଷିକ କର ତୁମେ ତାକୁ ଦେଇ ସାରିଲଣି । ତାଙ୍କୁ ମଧ୍ୟ ଦେଖା କରିସାରିଛ । ଆଉ ତୁମର ଏଠାରେ ବେଶି ଦିନ ରହିବା ଉଚିତ ନୁହେଁ, କାରଣ ଗୋକୁଳରେ ନାନାପ୍ରକାର ଉତ୍ପାତ ଘଟିପାରେ ॥୩୧॥ ଶ୍ରୀ ଶୁକଦେବ କହିଲେ, ଶୂରନନ୍ଦନ ବସୁଦେବ ଏହିପରି କହିବାରୁ ନନ୍ଦ ଆଦି ଗୋପାଳମାନେ ତାଙ୍କଠାରୁ ବିଦାୟ ନେଇ ବଳଦଯୋଚା ଶଗଡ଼ମାନ ଆରୋହଣକରି ଗୋକୁଳକୁ ଫେରିଗଲେ ॥୩୨॥

## ଷଷ୍ଠ ଅଧ୍ୟାୟ

# ପୂତନା ରାକ୍ଷସୀର ମୃତ୍ୟୁ

ଶ୍ରୀ ଶୁକଦେବ କହିଲେ, ପରିକ୍ଷିତ, ମଥୁରାରୁ ଗୋକୁଳକୁ ଯିବା ରାସ୍ତାରେ ନନ୍ଦ ବସୁଦେବଙ୍କ କଥା ମିଥ୍ୟା ନୁହେଁ ବୋଲି ଭାବିବାକୁ ଲାଗିଲେ । ଗୋକୁଳରେ ଦୁର୍ଘ୍ୟପ୍ରାତ ଘଟିପାରେ ଏହି ଆଶଙ୍କାରେ ସେ ଭଗବାନଙ୍କୁ ହିଁ ଶରଣ ଗଲେ ॥୧॥ ଏଣେ କଂସ ନବଜାତ ଶିଶୁମାନଙ୍କୁ ହତ୍ୟା କରୁଥିବା ପୂତନା ନାମକ ଏକ ଭୟଙ୍କରୀ ରାକ୍ଷସୀକୁ ପଠାଇଥାଏ । ସେ ସହର, ଗ୍ରାମ, ଗୋପାଳପଲ୍ଲୀ ଆଦିରେ ଶିଶୁମାନଙ୍କୁ ମାରି ମାରି ବୁଲୁଥାଏ ॥୨॥ ଯେଉଁଠାରେ ଲୋକମାନେ ପ୍ରତିଦିନ ନିଜ କାମ କରିବାବେଳେ ରାକ୍ଷସମାନଙ୍କର ବିନାଶକ ଭକ୍ତପାଳକ ଭଗବାନଙ୍କର ନାମ, ଗୁଣ, ଲୀଳାର ଶ୍ରବଣ, କୀର୍ତ୍ତନ ସ୍ମରଣ କରନ୍ତି ନାହିଁ, ସେଠାରେ ରାକ୍ଷସୀମାନେ ନିଜର କରାମତି ଦେଖାଇଥା'ନ୍ତି ॥୩॥ ରାକ୍ଷସୀ ପୂତନା ଆକାଶମାର୍ଗରେ ଯାଇପାରୁଥିଲା ଏବଂ ନିଜ ଇଚ୍ଛା ଅନୁସାରେ ବିଭିନ୍ନ ରୂପ ଧାରଣ କରିପାରୁଥିଲା । ମାୟାରେ ଏକ ସୁନ୍ଦରୀ ନାରୀରୂପ ଧାରଣ କରି ସେ ନନ୍ଦଙ୍କର ଗୋକୁଳ ମଧ୍ୟରେ ପଶିଗଲା ॥୪॥ ତା'ର ମୁଣ୍ଡରେ ମଲ୍ଲୀ ଫୁଲର ମାଳ, ବିପୁଳ ନିତମ୍ବ, କ୍ଷୀଣ କଟି ଓ ଉନ୍ନତ କୁଚ, କାନରେ କାନଫୁଲ, ରଙ୍ଗିନ ଶାଢ଼ି ଓ ସ୍ୱର୍ଣ୍ଣ କୁଣ୍ଡଳ -- ଅତିଶୟ ସୁନ୍ଦର ଦେଖାଯାଉଥିଲା । ତାର ବାଙ୍କ ଚାହାଣି ଓ ମୃଦୁହାସରେ ସେ ବ୍ରଜବାସୀଙ୍କର ମନୋହରଣ କରୁଥିଲା । ହାତରେ ପଦ୍ମଫୁଲ ଧରି ସେ ବିଳାସ-ଭଂଗୀରେ ଆସୁଥିବାବେଳେ ବ୍ରଜବାସୀମାନେ ଭାବିଲେ ଯେ ସାକ୍ଷାତ୍ ଲକ୍ଷ୍ମୀ ମୂର୍ତ୍ତିମନ୍ତ ହୋଇ ନିଜର ପତିଙ୍କୁ ଦେଖିବାକୁ ଆସିଛନ୍ତି କି ! ॥୫-୬॥

ବାଳଘାତିନୀ ପୂତନା ଗୋକୁଳରେ ଶିଶୁମାନଙ୍କୁ ଖୋଜିବାକୁ ଆସି ହଠାତ୍ ନନ୍ଦଙ୍କ ଗୃହରେ ପହଞ୍ଚିଲା ଏବଂ ସେଠାରେ ଶିଶୁ କୃଷ୍ଣଙ୍କୁ ଶେଯରେ ଶୋଇଥିବାର ଦେଖିଲା । ଦୁଷ୍ଟମାନଙ୍କର କାଳସ୍ୱରୂପ ଶ୍ରୀଭଗବାନ୍ ଭସ୍ମରେ ଲୁଚିଥିବା ଅଗ୍ନି ପରି ନିଜର ପ୍ରଭାବକୁ ଲୁଚାଇ ରଖି ବାଳକ ରୂପରେ ଶୟନ କରିଥିଲେ ॥୭॥ ସମସ୍ତ ପ୍ରାଣୀଙ୍କର ଅନ୍ତର୍ଯାମୀ ଭଗବାନ୍ ଶ୍ରୀକୃଷ୍ଣ ପିଲାଙ୍କୁ ମାରିବାପାଇଁ ପୂତନା ଗ୍ରହ ଆସିବାର ଦେଖି ଆଖି ବୁଜିଦେଲେ । ନିର୍ବୋଧ ବ୍ୟକ୍ତି ଶୋଇଥିବା ସାପକୁ ଦଉଡ଼ି ବୋଲି ଭାବି ଯେପରି ଉଠାଇନିଏ, ପୂତନା ସେହିପରି କାଳସ୍ୱରୂପ ଭଗବାନଙ୍କୁ ବାଳକଜ୍ଞାନରେ ନିଜର କୋଳକୁ ଉଠାଇନେଲା ॥୮॥ ରଙ୍ଗିନ କୋଷ ମଧ୍ୟରେ ଥିବା ଏକ ତୀକ୍ଷ୍ଣଧାର ଅସି ପରି, ମଧୁରଭାଷିଣୀ ପୂତନା ଏକ ଭଦ୍ର ଘରର ସ୍ତ୍ରୀ ପରି ଦେଖାଯାଉଥିଲେ ମଧ୍ୟ ତାର ହୃଦୟ ଥିଲା ହିଂସାରେ ଜର୍ଜରିତ । ଯଶୋଦା ଓ ରୋହିଣୀ ତାକୁ ମୁଗ୍ଧ ହୋଇ ଦେଖୁ ଦେଖୁ ଶିଶୁ କୃଷ୍ଣଙ୍କୁ ସେ କୋଳକୁ ନେଇ ଭୟଙ୍କର ବିଷ ବୋଳା ହୋଇଥିବା ତାର ସ୍ତନକୁ ସେ କୃଷ୍ଣଙ୍କ ମୁହଁରେ ଦେଇଦେଲା । ସେହି ଭୟଙ୍କରୀ ରାକ୍ଷସୀର ଉଦ୍ଦେଶ୍ୟ ଜାଣିପାରି କ୍ରୋଧରେ ଦୃଢ଼ ରୂପେ ତାର ଦୁଇ ସ୍ତନକୁ ଧରିନେଇ କୃଷ୍ଣ କ୍ଷୀର ସହିତ ପୂତନାର ପ୍ରାଣକୁ ଶୋଷିବାକୁ ଲାଗିଲେ ॥୯-୧୦॥ ରାକ୍ଷସୀ ଅନୁଭବ କଲା, ତାର ଶରୀରର ସମସ୍ତ ଅଙ୍ଗରୁ ଯେପରି ପ୍ରାଣ ବାହାରିଯାଉଛି । 'ଆରେ ଛାଡ଼ି ଦେ, ଛାଡ଼ି ଦେ' ବୋଲି ସେ ଚିତ୍କାର କରିବାକୁ ଲାଗିଲା । ଗୋଡ଼ ହାତ ଛାଟିଲା, ଆଖିଡୋଳା ଓଲଟିଗଲା, ସମସ୍ତ ଶରୀରରୁ ଗମ୍‌ଗମ୍ ଝାଳ ବୋହିବାକୁ ଲାଗିଲା । ତାର ଗର୍ଜନ ଏପରି ଭୟାନକ ଥିଲା ଯେ ପର୍ବତମାନଙ୍କ ସହିତ ପୃଥିବୀ, ଗ୍ରହ ଓ ଅନ୍ତରୀକ୍ଷ ସବୁ କମ୍ପମାନ ହେଲେ । ଦଶ ଦିଗ ଓ ରସାତଳ ପ୍ରତିଧ୍ୱନିତ ହେଲା । ବଜ୍ରପାତ ଭୟରେ ବ୍ରଜବାସୀମାନେ ମୂର୍ଚ୍ଛିତ ହୋଇ ଭୂମିରେ ପଡ଼ିଗଲେ ॥୧୧-୧୨॥ ପରିକ୍ଷିତ, ନିଶାଚରୀ ପୂତନାର ସ୍ତନରେ ଏତେ ପୀଡ଼ା ହେଲା ଯେ ସେ ନିଜ ରୂପକୁ ଆଉ ଲୁଚାଇ ପାରିଲା ନାହିଁ । ରାକ୍ଷସୀ ରୂପରେ ତାର ବାଳ ମୁକୁଳା କରି ବିକଟ ମୁଖବ୍ୟାଦାନ ସହ ହସ୍ତପଦ ପ୍ରସାରଣ କରି ସେ ପ୍ରାଣତ୍ୟାଗ କଲା । ଇନ୍ଦ୍ରଙ୍କ ବଜ୍ରରେ ବୃତ୍ରାସୁର ନିପତିତ ହେବାପରି ସେ ଗୋରୁଗୋଷ୍ଠର ଆଗରେ ଆସି ପଡ଼ିଲା ॥୧୩॥

ରାଜେନ୍ଦ୍ର, ଅଦ୍ଭୁତ ଘଟଣା ହେଉଚି ପୂତନାର ମୃତଦେହ ପଡ଼ିବାର ଛ'କୋଶ ପରିମିତ ଅଞ୍ଚଳରେ ଯେତେ ବୃକ୍ଷ ଥିଲା ସବୁ ଚୂର୍ଣ୍ଣ ବିଚୂର୍ଣ୍ଣ ହୋଇଗଲା ॥୧୪॥ ପୂତନାର ଶରୀର ଅତି ଭୟଙ୍କର ଥିଲା । ତାର ମୁଖଗହ୍ୱର ଲଙ୍ଗଳଫାଳ ପରି ଦୀର୍ଘ, ଦାନ୍ତ ସବୁ ଅତି ଭୟଙ୍କର, ନାକପୁଡ଼ା ପର୍ବତର ଗୁହାପରି ଗଭୀର, ସ୍ତନ ଦୁଇଟି ଛୋଟ ପର୍ବତ ପରି, ମୁଣ୍ଡର ନାଲି ବାଳ ସବୁ ଚାରିଆଡ଼େ ବିଛାଇ ପଡ଼ିଥିଲା । ଆଖି ଦୁଇଟି ଅନ୍ଧକୂପପରି ଦେଖାଯାଉଥିଲା । ଜଘନ ଦୁଇଟି ନଦୀର ପୁଲିନପରି, ଉଦର ଏକ ଶୁଷ୍କ ହ୍ରଦପରି ଏବଂ ହସ୍ତ, ଉରୁ ଓ ପଦ ନଦୀରେ ପଡ଼ିଥିବା ବନ୍ଧପରି ଦେଖାଯାଉଥିଲା ॥୧୫-୧୬॥ ପୂତନାର ଗର୍ଜନ ଶୁଣି ଗୋପୀ - ଗୋପାଳମାନଙ୍କର ଛାତି ଓ କାନ ଫାଟି ଯାଉଥିଲା ଓ ମୁଣ୍ଡ ଝାଇଁ ଝାଇଁ ମାରୁଥିଲା ॥୧୭॥

ଗୋପୀମାନେ ଦେଖିଲେ, ମୃତ ପୂତନାର ଛାତି ଉପରେ ଶିଶୁ କୃଷ୍ଣ ନିର୍ଭୟରେ ଖେଳୁଛନ୍ତି । ସେମାନେ ପୂତନା ଉପରେ ଚଢ଼ି ଶୀଘ୍ର ତାଙ୍କୁ ସେଠାରୁ ଉଠାଇ ଆଣିଲେ । ଏହାପରେ ଯଶୋଦା ଓ ରୋହିଣୀଙ୍କ ସହିତ ଗୋପୀମାନେ କୃଷ୍ଣଙ୍କୁ ଗାଈର ପୁଚ୍ଛରେ ଝାଡ଼ିବା ଆଦି ବିବିଧ ରକ୍ଷାବିଧି ପାଳନ କଲେ । ଶିଶୁ ଶ୍ରୀକୃଷ୍ଣଙ୍କୁ ଗୋମୂତ୍ରରେ ସ୍ନାନ କରାଇ, ସମସ୍ତ ଦେହରେ ଗୋଧୂଳି ନିକ୍ଷେପ କଲେ, ଗୋବର ବୋଳି ଦେହର ବାରଟି ଅଙ୍ଗରେ ଭଗବାନଙ୍କର କେଶବ ଆଦି ନାମ ଉଚ୍ଚାରଣ କରି ଅଙ୍ଗରକ୍ଷା କରାଇଲେ । ପ୍ରଥମେ ଗୋପୀମାନେ ଆଚମନ ସାରି 'ଅଜ' ଆଦି ଏଗାରଟି ବୀଜମନ୍ତ୍ରରେ ଶରୀରର ବିଭିନ୍ନ ଅଙ୍ଗନ୍ୟାସ ଓ କରନ୍ୟାସ କରି ବାଳକର ପଦ ଓ ହସ୍ତ ଆଦି ଅଙ୍ଗରେ ବୀଜନ୍ୟାସ କଲେ ॥୧୮-୨୧॥ ସେମାନେ କହିବାକୁ ଲାଗିଲେ, ଅଜନ୍ମା ଭଗବାନ୍ ତୋର ପାଦ ଦୁଇଟିକୁ ରକ୍ଷା କରନ୍ତୁ । ମଣିମାନ୍ ତୋର ଜାନୁ ଦୁଇଟିକୁ ଓ ଯଜ୍ଞ ତୋର ଉରୁ ଦୁଇଟିକୁ ରକ୍ଷା କରନ୍ତୁ । ଅଚ୍ୟୁତ ତୋର କଟିତଟକୁ, ହୟଗ୍ରୀବ ଉଦରକୁ, କେଶବ ହୃଦୟକୁ,ଈଶ ବକ୍ଷସ୍ଥଳକୁ, ସୂର୍ଯ୍ୟ କଣ୍ଠକୁ, ବିଷ୍ଣୁ ଭୁଜଦ୍ୱୟକୁ, ଉରୁକ୍ରମ ମୁଖକୁ ଓ ଈଶ୍ୱର ତୋର ଶିରକୁ ରକ୍ଷା କରନ୍ତୁ ॥୨୨॥ ଚକ୍ରଧାରୀ ଭଗବାନ୍ ସର୍ବଦା ତୋର ଆଗେ ଆଗେ ରହନ୍ତୁ । ଗଦାଧର ହରି ପଛରେ, ଧନୁର୍ଦ୍ଧର ମଧୁସୂଦନ ଓ ଖଡ୍ଗଧାରୀ ଭଗବାନ୍ ଅଜନ ତୋର ଦୁଇ କଡ଼ରେ, ଶଙ୍ଖହସ୍ତ ଭଗବାନ ତୋର ଈଶାନ ଆଦି ଚାରୋଟି କୋଣରେ ଅବସ୍ଥାନ କରନ୍ତୁ । ଗରୁଡ଼ବାହନ ଉପେନ୍ଦ୍ର ଊର୍ଦ୍ଧ୍ୱରେ ରହନ୍ତୁ, ହଳଧର ଅଧୋଦେଶରେ ଏବଂ ପୁରୁଷୋତ୍ତମ ଚତୁର୍ଦିଗରେ ରକ୍ଷା କରନ୍ତୁ ॥୨୩॥ ହୃଷୀକେଶ ତୋର ଇନ୍ଦ୍ରିୟମାନଙ୍କୁ ରକ୍ଷା କରନ୍ତୁ, ନାରାୟଣ ପ୍ରାଣକୁ, ଶ୍ୱେତଦ୍ୱୀପର ଅଧିପତି ତୋର ଚିତ୍ତକୁ ଓ ଯୋଗେଶ୍ୱର ଭଗବାନ୍ ତୋର ମନକୁ ରକ୍ଷା କରନ୍ତୁ ॥୨୪॥ ଭଗବାନ୍ ପୃଶ୍ନିଗର୍ଭ ତୋର ବୁଦ୍ଧିକୁ ଓ ପରମାତ୍ମା ଭଗବାନ ତୋର ଅହଙ୍କାରକୁ ରକ୍ଷା କରନ୍ତୁ । ଖେଳିବା ସମୟରେ ଗୋବିନ୍ଦ ଓ ଶୋଇବା ସମୟରେ ମାଧବ ତୋତେ ରକ୍ଷା କରନ୍ତୁ ॥୨୫॥ ଚାଲିବା ସମୟରେ ଭଗବାନ ବୈକୁଣ୍ଠ ଓ ବସିବା ସମୟରେ ଭଗବାନ୍ ଶ୍ରୀପତି ତୋତେ ରକ୍ଷା କରନ୍ତୁ । ଭୋଜନ ସମୟରେ ସମସ୍ତ ଗ୍ରହଙ୍କୁ ଭୟଭୀତ କରୁଥିବା ଯଜ୍ଞଭୋକ୍ତା ଭଗବାନ୍ ତୋତେ ରକ୍ଷା କରନ୍ତୁ ॥୨୬॥ ଡାକିନୀ, ରାକ୍ଷସୀ ଓ ବାଳଘାତୀ ଗ୍ରହଗଣ, ଭୂତ, ପ୍ରେତ, ଯକ୍ଷ, ରାକ୍ଷସ ଓ ବିନାୟକ, କୋଟରା, ରେବତୀ, ଜ୍ୟେଷ୍ଠା, ପୂତନା ଓ ମାତୃକାଗଣ, ଉନ୍ମାଦ, ଅପସ୍ମାର ପ୍ରଭୃତି ଦେହ ଓ ଇନ୍ଦ୍ରିୟର ଘାତକଗଣ, ସ୍ୱପ୍ନରେ ଦେଖାଯାଉଥିବା ଉତ୍ପାତସମୂହ ଏବଂ ବୃଦ୍ଧଙ୍କୁ ଓ ବାଳକମାନଙ୍କୁ ନାଶ କରୁଥିବା ଗ୍ରହଗଣ, ସେମାନେ ସମସ୍ତେ ଭଗବାନ୍ ବିଷ୍ଣୁଙ୍କର ନାମକୀର୍ତ୍ତନଦ୍ୱାରା ଭୟରେ ନାଶ ଯାଆନ୍ତୁ ॥୨୭-୨୯॥ ଶ୍ରୀ ଶୁକଦେବ କହିଲେ, ପରିକ୍ଷିତ, ଏହିପରି ବାତ୍ସଲ୍ୟ ପ୍ରେମରେ ବାନ୍ଧିହୋଇ ଗୋପୀମାନେ ଭଗବାନ ଶ୍ରୀକୃଷ୍ଣଙ୍କର ରକ୍ଷା ବ୍ୟବସ୍ଥା କଲେ । ମାତା ଯଶୋଦା କୃଷ୍ଣଙ୍କୁ କୋଳକୁ ଆଣି ସ୍ତନ ପିଆଇଲେ ଏବଂ ଶେଯରେ ଶୁଆଇଦେଲେ ॥୩୦॥

ସେହି ସମୟରେ ନନ୍ଦ ଆଦି ଗୋପାଳମାନେ ମଥୁରାରୁ ଗୋକୁଳ ନିକଟରେ ପହଞ୍ଚିଲେ ଓ ଦୂରରୁ ପୂତନାର ବିଶାଳ ମୃତ ଦେହ ଦେଖି ବିସ୍ମିତ ହୋଇଗଲେ । ସେମାନେ କହିଲେ, ଯାହା ବସୁଦେବ କହୁଥିଲେ, ସେଇଆ ଘଟିଲା । ବ୍ରଜରେ ମହାବ୍ୟୁତ୍ପାତ ଘଟିଗଲା । ବସୁଦେବ ନିଶ୍ଚୟ ଜଣେ ଯୋଗସିଦ୍ଧ ତପସ୍ୱୀ ॥୩୧-୩୨॥ ଏଣେ ବ୍ରଜବାସୀମାନେ ପୂତନାର

ଦେହକୁ କୁରାଢ଼ିରେ ଖଣ୍ଡ ଖଣ୍ଡ କରି ଦୂରକୁ ଫିଙ୍ଗିଦେଲେ ଓ ପ୍ରତି ଖଣ୍ଡକୁ କାଠରେ ଘୋଡ଼ାଇ ଅଗ୍ନି ସଂଯୋଗ କଲେ । ଯେତେବେଳେ ପୂତନାର ଦେହ ଜଳିବାକୁ ଲାଗିଲା, ସେଥିରୁ ଉଠୁଥିବା ଧୂଆଁ ଅଗୁରୁଗନ୍ଧ ପରି ଲାଗିଲା, କାରଣ ଭଗବାନ୍ ଶ୍ରୀକୃଷ୍ଣ ତାର ସ୍ତନପାନ କରିଥିବା ହେତୁ ତାର ସମସ୍ତ ପାପ ନଷ୍ଟ ହୋଇଯାଇଥିଲା । ପୂତନା ଏକ ରାକ୍ଷସୀ ଥିଲା । ସେ ପିଲାମାନଙ୍କୁ ମାରି ପକାଇ ସେମାନଙ୍କର ରକ୍ତପାନ କରୁଥିଲା । କୃଷ୍ଣଙ୍କୁ ମାରିବା ଇଚ୍ଛାରେ ସେ ମଧ୍ୟ ତାଙ୍କୁ ସ୍ତନ ପିଆଉଥିଲା । କିନ୍ତୁ ତଦ୍ଦ୍ୱାରା ସେ ସଦ୍‌ଗତି ଲାଭ କଲା ।।୩୩-୩୫।। ଏଥିରୁ ଅନୁମେୟ ଯେ, କୃଷ୍ଣଙ୍କର ଅନୁରକ୍ତ ଭକ୍ତମାନଙ୍କପରି କିମ୍ବା ତାଙ୍କ ମାତାମାନଙ୍କ ପରି ପରମାତ୍ମା ଶ୍ରୀକୃଷ୍ଣଙ୍କୁ ନିଜର ପ୍ରିୟତମ ବସ୍ତୁ ଅର୍ପଣ କଲେ ନିଶ୍ଚୟ ସଦ୍‌ଗତି ହେବ ।।୩୬।। ଭଗବାନ ଭକ୍ତଙ୍କ ହୃଦୟରେ ସ୍ଥାନ ପାଉଥିବା ଭୁବନବନ୍ଦିତ ନିଜ ପାଦଦୁଇଟିଦ୍ୱାରା ପୂତନାର ଶରୀରକୁ ଧରି ତାର ସ୍ତନପାନ କଲେ । ତେଣୁ ସେ ରାକ୍ଷସୀ ହେଲେ ମଧ୍ୟ କୃଷ୍ଣଙ୍କର ମାତାଙ୍କୁ ଯେଉଁ ସ୍ୱର୍ଗ ମିଳିବା କଥା, ତାକୁ ମଧ୍ୟ ତାହା ମିଳିଗଲା ।।୩୭।। ଭଗବାନ୍ ଶ୍ରୀକୃଷ୍ଣ ଯେଉଁ ମାତାଙ୍କର ସ୍ତନରୁ କ୍ଷୀର ଖାଉଥିଲେ, କିମ୍ବା ଯେଉଁ ଗାଇମାନଙ୍କର କ୍ଷୀର ଖାଉଥିଲେ, ସେମାନଙ୍କର ଯେ ପରମଗତି ହେବ, ତାହା କହିବା ବାହୁଲ୍ୟମାତ୍ର ।।୩୮।।

ରାଜା, ଦେବକୀନନ୍ଦନ ଭଗବାନ୍ ଭକ୍ତି, ମୁକ୍ତି ଆଦି ସମସ୍ତ ଫଳ ପ୍ରଦାନ କରନ୍ତି । ପୁତ୍ରସ୍ନେହରେ ଝରୁଥିବା କ୍ଷୀରକୁ ତାଙ୍କୁ ଯେଉଁମାନେ ପାନ କରାଇଛନ୍ତି, ତାଙ୍କପ୍ରତି ପୁତ୍ରଦୃଷ୍ଟି କରୁଥିବା ସେଇ ମୁଗ୍ଧ ଗୋପୀମାନଙ୍କର କେବେହେଲେ ଅଜ୍ଞାନପ୍ରସୂତ ସଂସାରବନ୍ଧନ ରହିବ ନାହିଁ ।।୩୯-୪୦।। ମଥୁରାରୁ ପ୍ରତ୍ୟାଗତ ବ୍ରଜବାସୀମାନେ ପୂତନାର ଚିତାଦେହରୁ ଯେଉଁ ସୁଗନ୍ଧ ବାହାରୁଥିଲା, ତାହା ଆଘ୍ରାଣ କରି ଏହା କ'ଣ ଏବଂ ଏହା କେଉଁଠାରୁ ବାହାରୁଛି ବୋଲି କୁହାକୁହି ହୋଇ ଗୋକୁଳରେ ପହଞ୍ଚିଲେ ।।୪୧।। ସେମାନେ ବ୍ରଜବାସୀ ଗୋପାଳମାନଙ୍କଠାରୁ ପୂତନାର ବ୍ରଜକୁ ଆସିବା ବିଷୟ ଓ ତତ୍ପରବର୍ତ୍ତୀ ସମସ୍ତ ବିଷୟ ଶୁଣି ଆଶ୍ଚର୍ଯ୍ୟ ହୋଇଗଲେ ।।୪୨।। ପରିକ୍ଷିତ, ଉଦାରମନା ନନ୍ଦ ମୃତ୍ୟୁମୁଖରୁ ପ୍ରତ୍ୟାଗତ ନିଜ ପୁତ୍ରକୁ କୋଳକୁ ଆଣି ଓ ତାର ଶିରକୁ ଶୁଙ୍ଘି ପରମ ଆନନ୍ଦ ଲାଭ କଲେ ।।୪୩।। ଯେଉଁ ବ୍ୟକ୍ତି ପୂତନାମୋକ୍ଷ ରୂପକ ଶିଶୁ କୃଷ୍ଣଙ୍କର ଏହି ଅଦ୍ଭୁତ ଲୀଳାକୁ ଶ୍ରଦ୍ଧାର ସହିତ ଶ୍ରବଣ କରେ ଶ୍ରୀଗୋବିନ୍ଦଙ୍କଠାରେ ତାର ପରମ ଭକ୍ତି ଜାତ ହୁଏ ।।୪୪।।

## ସପ୍ତମ ଅଧ୍ୟାୟ

# ତୃଣାବର୍ତ୍ତର ନିଧନ

ପରିକ୍ଷିତ କହିଲେ, ଯେଉଁ ଯେଉଁ ଅବତାରରେ ଭଗବାନ୍ ସର୍ବଶକ୍ତିମାନ୍ ଶ୍ରୀହରି ଯେଉଁସବୁ ମନୋଜ୍ଞ ଲୀଳାମାନ କରିଛନ୍ତି, ତାହା ଶୁଣିବାକୁ ମଧୁର ଓ ପ୍ରୀତିକର ।।୧।। ତାହା ଶୁଣିବାମାତ୍ରେ ଭଗବତ୍‌ପ୍ରସଙ୍ଗ ପ୍ରତି ଯେଉଁ ଅରୁଚି ଥାଏ ତାହା ଦୂର ହୁଏ, ମନୁଷ୍ୟର ବିବିଧ ବିଷୟତୃଷ୍ଣା ମଧ୍ୟ ଦୂର ହୋଇଯାଏ । ତାହାର ଅନ୍ତଃକରଣ ଶୀଘ୍ର ଶୁଦ୍ଧ ହେବା ସଙ୍ଗେ ସଙ୍ଗେ ଭଗବାନ୍‌ଙ୍କ ପ୍ରତି ଭକ୍ତି ଜାତ ହୁଏ ଓ ହରିଭକ୍ତମାନଙ୍କପ୍ରତି ଶ୍ରଦ୍ଧା ଜନ୍ମେ । ତେଣୁ ମୋତେ ସେଇ ହରିଚରିତ ଶୁଣାଇବାପାଇଁ ଯଦି ଆପଣ ଉଚିତ ମନେ କରୁଥାନ୍ତି, ତାହେଲେ ଶୁଣାଇବା ହୁଅନ୍ତୁ ।।୨।। ଶ୍ରୀ ଭଗବାନ୍ ମର୍ତ୍ତ୍ୟଲୋକରେ ଅବତୀର୍ଣ୍ଣ ହୋଇ ମନୁଷ୍ୟ ପରି ଅନ୍ୟ ଯେଉଁ ଅଦ୍ଭୁତ ବାଳଲୀଳା କରିଯାଇଛନ୍ତି, ତାହା ବର୍ଣ୍ଣନା କରନ୍ତୁ ।।୩।। ଶ୍ରୀ ଶୁକଦେବ କହିଲେ, ତିନି ମାସ ବୟସ ହେବାରୁ ନନ୍ଦଙ୍କର ପୁତ୍ର କଡ଼ ଲେଉଟାଇବା ଆରମ୍ଭ କଲେ । ସେଦିନ ତାଙ୍କର ଜନ୍ମନକ୍ଷତ୍ର ଥିଲା । ଘରେ ବହୁ ସ୍ତ୍ରୀଲୋକଙ୍କର ଭିଡ଼ ଲାଗି ଯାଇଥିଲା । ଗାଉଣା ବାଜଣା ଚାଲିଥିଲା । ସ୍ତ୍ରୀମାନଙ୍କ ସହିତ ସତୀ ଯଶୋଦା ପୁତ୍ରର ଅଭିଷେକ ମହୋତ୍ସବ କଲେ

ଓ ବ୍ରାହ୍ମଣମାନେ ମନ୍ତ୍ର ପଢ଼ି ସ୍ୱସ୍ତିବାଚନ କଲେ ।।୪।। ନନ୍ଦରାଣୀ ଯଶୋଦା ପୁତ୍ରକୁ ସ୍ନାନ କରାଇ ଗୋରୋଚନା ଓ ତିଳକ ଆଦି ଲଗାଇଦେଇ ଅନ୍ନ, ବସ୍ତ୍ର, ମାଲ୍ୟ ଓ ଧେନୁ ଆଦି ଦାନପୂର୍ବକ ବ୍ରାହ୍ମଣମାନଙ୍କୁ ପୂଜା କଲେ ଓ ପୁତ୍ରର ମଙ୍ଗଳପାଇଁ ସ୍ୱସ୍ତ୍ୟୟନ କରାଇଲେ । ପୁତ୍ରକୁ ନିଦ ଲାଗୁଥିବାର ଦେଖି ଧୀରେ ଧୀରେ ଶଯ୍ୟାରେ ଶୁଆଇଦେଲେ ।।୫।। କିଛି ସମୟପରେ କୃଷ୍ଣ ନିଦରୁ ଉଠି କାନ୍ଦିବାକୁ ଲାଗିଲେ । ସେଦିନର ଉତ୍ସବପାଇଁ ଉତ୍କଣ୍ଠିତା ଯଶୋଦା ସମାଗତ ବ୍ରଜବାସୀମାନଙ୍କର ସତ୍କାରରେ ଲାଗିପଡ଼ିଥିଲେ । ତେଣୁ ସେ କୃଷ୍ଣଙ୍କର କ୍ରନ୍ଦନଧ୍ୱନି ଶୁଣିପାରିଲେ ନାହିଁ । କୃଷ୍ଣ ସ୍ତନପାନପାଇଁ କାନ୍ଦି କାନ୍ଦି ନିଜ ପାଦ ଦୁଇଟି ଉଠାଇବାକୁ ଲାଗିଲେ ।।୬।। କୃଷ୍ଣ ଶଗଡ଼ ତଳେ ଶୋଇଥିଲେ । ତାଙ୍କର ପାଦ ପ୍ରବାଳପରି ନାଲି ଓ କୋମଳ ଥିଲା । କିନ୍ତୁ ତାଙ୍କର ସେହି ଛୋଟ ପାଦର ଆଘାତରେ ସେହି ବିଶାଳ ଶଗଡ଼ଟା ଓଲଟିଗଲା । ଶଗଡ଼ଟି ପଡ଼ିଯିବାରୁ ତାର ଚକ, ଅଖ ଓ ଅଖଦଣ୍ଡ ଭାଙ୍ଗିଯାଇ ଦୁଧ ଦହିରେ ପୂର୍ଣ୍ଣ ହୋଇଥିବା କଂସା ଓ ପିତଳର ବହୁ ପାତ୍ର ଓ ହାଣ୍ଡି ମାଠିଆ ସବୁ ଭାଙ୍ଗିଗଲା ।।୭।। ଯେଉଁ ସ୍ତ୍ରୀମାନେ ଏହି ଉତ୍ସବକୁ ଦେଖିବାକୁ ନନ୍ଦଙ୍କ ଘରକୁ ଆସିଥିଲେ, ଏବଂ ଯଶୋଦା, ରୋହିଣୀ ଆଦି ବ୍ରଜସ୍ତ୍ରୀମାନେ ଏହି ବିଚିତ୍ର ଘଟଣା ଦେଖି କହିବାକୁ ଲାଗିଲେ, ଏହା କିପରି ହେଲା ? ଶଗଡ଼ଟା ଆପେ ଆପେ ଓଲଟି ପଡ଼ିଲା । କିନ୍ତୁ ସେଠାରେ କେତେକ ବାଳକ ଖେଳୁଥିଲେ । ସେମାନେ ଗୋପୀ ଓ ଗୋପାଳମାନଙ୍କୁ କହିଲେ, କୃଷ୍ଣ କାନ୍ଦି କାନ୍ଦି ପାଦକୁ ଟେକିଦେବାରୁ ଏ ଶଗଡ଼ଟା ଓଲଟିଗଲା, ଏଥିରେ ସନ୍ଦେହ କର ନାହିଁ । ଗୋପାଳମାନେ କୃଷ୍ଣଙ୍କର ଅପ୍ରମିତ ବଳ ବିଷୟରେ ଜାଣି ନ ଥିଲେ । ତେଣୁ ଏ ପିଲାଙ୍କର କଥାରେ ତାଙ୍କର ବିଶ୍ୱାସ ହେଲା ନାହିଁ ।।୮-୧୦।। ଯଶୋଦା ଭୟକଲେ ଯେ ଏହା ଏକ ଗ୍ରହଯୋଗ ଥିଲା । ତେଣୁ ସେ ବ୍ରାହ୍ମଣମାନଙ୍କୁ ଡାକି ଗ୍ରହଶାନ୍ତିପାଇଁ ବେଦମନ୍ତ୍ରଦ୍ୱାରା ସ୍ୱସ୍ତ୍ୟୟନ କରାଇ କ୍ରନ୍ଦନରତ ପୁତ୍ରକୁ ସ୍ତନପାନ କରାଇଲେ ।।୧୧।। ଚକ, ଅଖ ଓ ଜୁଆଳି ଆଦି ପରିକର ଠିକ୍ କରି ବଳିଷ୍ଠ ଗୋପାଳମାନେ ଶଗଡ଼କୁ ପୁଣି ସିଧା କରି ରଖିଲେ । ବ୍ରାହ୍ମଣମାନେ ଗ୍ରହଶାନ୍ତିପାଇଁ ହୋମ କରି ଦହି, ଅରୁଆ ଚାଉଳ, କୁଶ ଓ ଜଳଦ୍ୱାରା ପୂଜା କଲେ ।।୧୨।। ଯେଉଁ ବ୍ରାହ୍ମଣମାନଙ୍କର ଅସୂୟା ଓ ଈର୍ଷା ନ ଥାଏ, ଯେ ମିଥ୍ୟା କହନ୍ତି ନାହିଁ, ଯେ ଦମ୍ଭ, ହିଂସା ବା ଅଭିମାନ କରନ୍ତି ନାହିଁ, ସେହି ସତ୍ୟନିଷ୍ଠମାନଙ୍କର ଆଶୀର୍ବାଦ କେବେ ଅନ୍ୟଥା ହୁଏ ନାହିଁ । ଏହା ଭାବି ନନ୍ଦ କୃଷ୍ଣଙ୍କୁ କୋଳକୁ ନେଲେ ଏବଂ ବ୍ରାହ୍ମଣମାନଙ୍କ ଦ୍ୱାରା ସାମ, ଋକ୍ ଓ ଯଜୁର୍ବେଦ ମନ୍ତ୍ରଦ୍ୱାରା ସଂସ୍କାର କରାଯାଇଥିବା ଓଷଧିଯୁକ୍ତ ଜଳ ନିଜ ପୁତ୍ରର ଦେହରେ ସିଞ୍ଚନ କଲେ ।।୧୩-୧୪।। ତା'ପରେ ନନ୍ଦରାଜ ସ୍ୱସ୍ତିବାଚନ ଓ ହୋମ କରାଇ ବ୍ରାହ୍ମଣମାନଙ୍କୁ ମହାର୍ହ ଅନ୍ନ ଭୋଜନ କରାଇଲେ ।।୧୫।। ନିଜ ପୁତ୍ରର ମଙ୍ଗଳପାଇଁ ସେ ସେମାନଙ୍କୁ ସୁବର୍ଣ୍ଣଜଡ଼ିତ ବସ୍ତ୍ର ଓ ସୁବର୍ଣ୍ଣର ମାଳରେ ଶୋଭିତ ଦୁଗ୍ଧବତୀ ଗାଭୀମାନ ଦାନ କଲେ । ବ୍ରାହ୍ମଣମାନେ ନନ୍ଦଙ୍କର ଦାନ ଗ୍ରହଣକରି ତାଙ୍କୁ ଆଶୀର୍ବାଦ କଲେ । ବେଦଜ୍ଞ ସଦାଚାରୀ ବ୍ରାହ୍ମଣମାନଙ୍କ ଉଚ୍ଚାରିତ ଆଶୀର୍ବାଦ କେବେ ନିଷ୍ଫଳ ହେବ ନାହିଁ, ଏହା ପ୍ରତ୍ୟକ୍ଷ ସତ୍ୟ ।।୧୬-୧୭।। ଦିନେ ଯଶୋଦା ପୁଅକୁ କୋଳରେ ଧରି ଗେଲ କରୁଥିଲେ । ହଠାତ୍ କୃଷ୍ଣ ଏକ ବଡ଼ ପଥର ଖଣ୍ଡ ପରି ଭାରୀ ହୋଇଗଲେ । ଯଶୋଦା ତାଙ୍କର ଓଜନ ସହିପାରିଲେ ନାହିଁ । ସେ ଆଶ୍ଚର୍ଯ୍ୟ ହୋଇ ତାଙ୍କୁ ତଳେ ଥୋଇଦେଲେ ଓ ଭଗବାନଙ୍କୁ ସ୍ମରଣ କରି ନିଜ କାମରେ ଲାଗିଗଲେ ।।୧୮-୧୯।। ଏହି ସମୟରେ କଂସର ଅନୁଚର ଦୈତ୍ୟ ତୃଣାବର୍ତ୍ତ କଂସଦ୍ୱାରା ପ୍ରେରିତ ହୋଇ ଏକ ଚକ୍ରବାତର ରୂପ ନେଲା ଏବଂ ଭୂଇଁରେ ବସିଥିବା ଶିଶୁ କୃଷ୍ଣଙ୍କୁ ଉଡ଼ାଇ ନେଇଗଲା ।।୨୦।। ଚକ୍ରବାତରେ ସମସ୍ତ ଗୋକୁଳ ଧୂଳିରେ ପୂରିଗଲା ଏବଂ କିଛି ଦେଖାଗଲା ନାହିଁ । ଦିଗବିଦିଗ ତା'ର ଘୋର ଗର୍ଜନରେ କମ୍ପି ଉଠିଲା ।।୨୧।। ମୁହୂର୍ତ୍ତକ ମଧ୍ୟରେ ସମସ୍ତ ବ୍ରଜ ଧୂଳି ଓ ଅନ୍ଧକାରରେ ଆଚ୍ଛନ୍ନ ହୋଇଗଲା । ଯଶୋଦା ଯେଉଁଠି ତାଙ୍କର ପୁଅକୁ ବସାଇଥିଲେ, ସେଠି ଦେଖିଲେ ଯେ ପୁଅ ନାହିଁ ।।୨୨।।

ଏହି ସମୟରେ ତୃଣାବର୍ତ୍ତ ଧୂଳିରେ ଚାରିଆଡ଼କୁ ଘୋଡ଼ାଇଦେଇ ପଥର ଗୋଡ଼ି ବୃଷ୍ଟି କଲା ଓ ସେଇ ଉପଦ୍ରବରେ ବ୍ରଜବାସୀମାନେ କେହି କାହାରିକୁ ଦେଖି ନ ପାରି ଅତିଶୟ ବ୍ୟସ୍ତ ହୋଇପଡ଼ିଲେ ।।୨୩।। ଏହିପରି ମୁହଁକୁ ମୁହଁ ଦିଶୁ ନ ଥିବା

ପ୍ରବଳ ଧୂଳିଝଡ଼ରେ ପୁଅକୁ ନ ପାଇ ଯଶୋଦା ଅତି କରୁଣ ସ୍ୱରରେ କାନ୍ଦିବାକୁ ଲାଗିଲେ । ବାଛୁରୀଟି ମରିଗଲେ ଗାଈର ଯେଉଁ ଅବସ୍ଥା ହୁଏ, ତାଙ୍କର ସେହି ଅବସ୍ଥା ହୋଇଥିଲା ।।୨୪।। ସେ ଭୂଇଁରେ କଚାଡ଼ି ହୋଇ ପଡ଼ିଗଲେ । ଧୂଳିଝଡ଼ କମି ଆସିବାପରେ ଯଶୋଦାଙ୍କର କ୍ରନ୍ଦନ ଶୁଣି ଗୋପୀମାନେ ଦଉଡ଼ି ଆସିଲେ । କୃଷ୍ଣଙ୍କୁ ନ ଦେଖି ସେମାନଙ୍କର ପ୍ରାଣ କାନ୍ଦିଉଠିଲା । ଆଖିରୁ ଲୁହଧାର ବହିବାକୁ ଲାଗିଲା ଏବଂ ସେମାନେ ମଧ୍ୟ ରୋଦନ କରିଲାଗିଲେ ।।୨୫।। କୃଷ୍ଣଙ୍କର ଓଜନ ସମ୍ଭାଳି ନ ପାରିବାରୁ ଧୂଳିଝଡ଼ର ରୂପ ନେଇଥିବା ରାକ୍ଷସ ତୃଣାବର୍ତ୍ତର ବେଗ କମି ଆସିଲା । ସେ ଆଉ ଆଗକୁ ଯାଇ ପାରିଲା ନାହିଁ । କୃଷ୍ଣ ତା'ଠାରୁ ବେଶି ଓଜନଦାର ଏକ ପାହାଡ଼ପରି ଜଣାଗଲେ । ସେ ତାଙ୍କୁ ପକାଇଦେବାକୁ ଚେଷ୍ଟା କରି ପାରିଲା ନାହିଁ । ଏହି ଅଦ୍ଭୁତ ଶିଶୁ ଜୋରରେ ତାର ଗଳାକୁ ଚାପି ଧରିଥିଲେ ।।୨୬-୨୭।। କୃଷ୍ଣ ତାର ଗଳାକୁ ଏପରି ଜୋରରେ ଚାପି ଧରିଥିଲେ ଯେ ସେ କିଛି କରିପାରିଲା ନାହିଁ । ତା ମୁହଁରୁ କଥା ବାହାରିଲା ନାହିଁ । ଆଖିଡୋଳା ବାହାରିପଡ଼ିଲା । ପ୍ରାଣ ହରାଇ ସେ କୃଷ୍ଣଙ୍କ ସହିତ ତଳେ ପଡ଼ିଗଲା ।।୨୮।। ଯେଉଁ ଗୋପସ୍ତ୍ରୀମାନେ କାନ୍ଦୁଥିଲେ, ସେମାନେ ଦେଖିଲେ ଯେ ପାହାଡ଼ ପରି ଏକ ଭୟଙ୍କର ରାକ୍ଷସ ଅନ୍ତରୀକ୍ଷରୁ ଖସି ପଥର ଚଟାଣ ଉପରେ ପଡ଼ିଗଲା । ରୁଦ୍ରଙ୍କ ଶରରେ ତ୍ରିପୁରାସୁର ପରି ଏହାର ସର୍ବାଙ୍ଗ ଚୂର୍ଣ୍ଣ ବିଚୂର୍ଣ୍ଣ ହୋଇଯାଇଥିଲା ।।୨୯।। କୃଷ୍ଣ ସେହି ରାକ୍ଷସର ଛାତି ଉପରେ ଲଟକି ରହିଥିଲେ । ତାଙ୍କର କିଛି ହୋଇ ନ ଥିଲା । ରାକ୍ଷସ ତାଙ୍କୁ ଆକାଶମାର୍ଗରେ ଅପହରଣ କରି ନେଇଥିଲେ ମଧ୍ୟ ସେ ମୃତ୍ୟୁମୁଖରୁ ଉଦ୍ଧାର ପାଇଛନ୍ତି । ଏହା ଦେଖି ବିସ୍ମିତ ଗୋପୀମାନେ ତାଙ୍କୁ ଉଠାଇ ଆଣି ଯଶୋଦାଙ୍କୁ ପ୍ରଦାନ କଲେ । ଶ୍ରୀକୃଷ୍ଣଙ୍କୁ ଫେରିପାଇ ଯଶୋଦା, ନନ୍ଦ ଓ ଅନ୍ୟ ଗୋପ ଗୋପୀମାନେ ଆନନ୍ଦରେ ଅଧୀର ହୋଇପଡ଼ିଲେ ।।୩୦।। ସେମାନେ କହିବାକୁ ଲାଗିଲେ, ଆଶ୍ଚର୍ଯ୍ୟର କଥା, ଏହି ଅଦ୍ଭୁତ ବାଳକକୁ ନିଷ୍ଠୁର ରାକ୍ଷସ ମାରିବା ପାଇଁ ନେଇଯାଇଥିଲା । କିନ୍ତୁ ସେ ମୃତ୍ୟୁମୁଖରୁ ଆମ ପାଖକୁ ଫେରିଆସିଛି ।।୩୧।। ଆମେ ଜାଣୁନା, ଜନ୍ମ ଜନ୍ମାନ୍ତରରେ ଆମେ କେତେ ତପସ୍ୟା କରିଥିଲୁ, କେତେ ଯଜ୍ଞ ଦାନ, ବ୍ରତ, ପ୍ରାଣିହିତକର କାର୍ଯ୍ୟ ଏବଂ ବିଷ୍ଣୁଙ୍କର ସେବା କରିଥିଲୁ । ଏହି ବାଳକ ଆମ ପିଣ୍ଡରେ ପ୍ରାଣ ଦେଇ ଆମ ପାଖକୁ ଫେରିଆସିଲା – ଏହା କମ୍ ସୌଭାଗ୍ୟର ବିଷୟ ନୁହେଁ ।।୩୨।।

ନନ୍ଦ ଗୋକୁଳରେ ଅଦ୍ଭୁତ ଘଟଣା ସବୁ ଦେଖି ବିସ୍ମିତ ହେଲେ ଏବଂ ବସୁଦେବଙ୍କ କଥାର ସତ୍ୟତା ଅନୁଭବ କଲେ ।।୩୩।। ଦିନେ ଯଶୋଦା କୃଷ୍ଣଙ୍କୁ ନିଜ କୋଳରେ ଧରି ସ୍ତନପାନ କରାଉଥିଲେ । ବାତ୍ସଲ୍ୟ ପ୍ରେମରେ ତାଙ୍କ ସ୍ତନରୁ କ୍ଷୀର ଝରିପଡୁଥିଲା । କୃଷ୍ଣ ସ୍ତନପାନ କରି ସାରିବାପରେ ତାଙ୍କ ହସ ହସ ମୁହଁରେ ଚୁମ୍ବନ ଦେବାବେଳେ ସେ ହାଇ ମାରିଦେଲେ । ଯଶୋଦା କୃଷ୍ଣଙ୍କ ମୁହଁ ମଧ୍ୟରେ ଆକାଶ, ସ୍ୱର୍ଗ, ପୃଥିବୀ, ଜ୍ୟୋତିଷ୍କଗଣ, ଦଶଦିଗ, ସୂର୍ଯ୍ୟ, ଚନ୍ଦ୍ର, ଅଗ୍ନି, ବାୟୁ, ସାତ ସମୁଦ୍ର, ସାତ ଦ୍ୱୀପ, ପର୍ବତ, ନଦୀ, ଅରଣ୍ୟ ଓ ବିଶ୍ୱର ସମସ୍ତ ଚରାଚର ପ୍ରାଣୀ ରହିଥିବାର ଦେଖିଲେ ।।୩୪-୩୬।। ଏହିପରି ନିଜ ପୁତ୍ରର ମୁଖ ମଧ୍ୟରେ ସମସ୍ତ ବ୍ରହ୍ମାଣ୍ଡକୁ ଦେଖି ମୃଗଶାବକ ପରି ଶଙ୍କିତନୟନା ଯଶୋଦା ଆଶ୍ଚର୍ଯ୍ୟ ହୋଇ ଆଖି ବୁଜି ଦେଲେ ଓ ତାଙ୍କର ଦେହ ଥରିଉଠିଲା ।।୩୭।।

## ଅଷ୍ଟମ ଅଧ୍ୟାୟ

# ନାମକରଣ ଓ ବାଳକ୍ରୀଡ଼ା

ବସୁଦେବ ଯଦୁବଂଶର ପୁରୋହିତ ମହାତପସ୍ୱୀ ଗର୍ଗାଚାର୍ଯ୍ୟଙ୍କୁ ନନ୍ଦଙ୍କର ବ୍ରଜକୁ ପଠାଇଲେ । ନନ୍ଦ ତାଙ୍କୁ ଦେଖି ଅତିଶୟ ଆନନ୍ଦିତ ହେଲେ ଏବଂ ଆସନରୁ ଉଠିପଡ଼ି ତାଙ୍କୁ ହାତ ଯୋଡ଼ି ପ୍ରଣାମ କଲେ ଓ ତାଙ୍କୁ ସ୍ୱୟଂ ଭଗବାନ ଭାବି ପୂଜା କଲେ । ତାଙ୍କୁ ପାଦ୍ୟ, ଆସନ ଓ ମଧୁପର୍କ ଆଦି ପ୍ରଦାନ କରି ସମ୍ମାନ ଓ ସତ୍କାର କରାଗଲା । ସେ ସୁଖରେ ଆସନରେ

ବସିବାପରେ ନମ୍ର ଓ ମଧୁର ଭାବରେ ନନ୍ଦ ତାଙ୍କୁ ପଚାରିଲେ, ବ୍ରହ୍ମନ୍, ଆପଣ ତ ସ୍ୱୟଂ ପୂର୍ଣ୍ଣକାମ । ମୁଁ ଆପଣଙ୍କର କ'ଣ ସେବା କରିପାରିବି ? ଆପଣଙ୍କପରି ମହାତ୍ମା ଆମପରି ଗରିବ ଗୃହସ୍ଥର ଘରେ ଯେ ପାଦ ପକାଇଛନ୍ତି, ତାହା କେବଳ ଆମର ମଙ୍ଗଳପାଇଁ, ଅନ୍ୟ କିଛି ନୁହେଁ ।।୧-୪।। ସୂର୍ଯ୍ୟ ଆଦି ଗ୍ରହର ଅବସ୍ଥିତି ଓ ସେଥିରୁ ଜୀବର ଶୁଭାଶୁଭ କର୍ମଫଳ ସାଧାରଣ ବୁଦ୍ଧିରେ ଜାଣିବାର ଉପାୟ କାହାର ନାହିଁ । ଆପଣ ଜ୍ୟୋତିଃଶାସ୍ତ୍ର ରଚନା କରି ସେ ଅଭାବ ଦୂର କରିଛନ୍ତି । ଆପଣଙ୍କ ଅନୁଗ୍ରହରୁ ଆପଣଙ୍କ ପ୍ରଣୀତ ଗ୍ରନ୍ଥ ପାଠ କରି ପୂର୍ବଜନ୍ମର କର୍ମଫଳ ଅନୁଯାୟୀ ଏ ଜନ୍ମର ଶୁଭାଶୁଭ ଗଣନା କରାଯାଏ । ବ୍ରାହ୍ମଣ ଜନ୍ମରୁ ହିଁ ମନୁଷ୍ୟମାନଙ୍କ ଗୁରୁ; ଆପଣ ପୁଣି ବ୍ରହ୍ମଜ୍ଞମାନଙ୍କ ମଧ୍ୟରେ ଶ୍ରେଷ୍ଠ । ଆପଣ ଦୟାକରି ମୋର ଏହି ଦୁଇଟି ପିଲାଙ୍କର ନାମକରଣ ଆଦି ସଂସ୍କାର କରିଦିଅନ୍ତୁ ।।୫-୬।। ଗର୍ଗାଚାର୍ଯ୍ୟ କହିଲେ, ସମସ୍ତେ ଜାଣନ୍ତି ଯେ, ମୁଁ ଯଦୁବଂଶର ଆଚାର୍ଯ୍ୟ । ମୁଁ ଯଦି ତୁମ ପୁତ୍ରଙ୍କର ନାମକରଣ ଆଦି କର୍ମ କରିବି, ତା'ହେଲେ ସେ ଦୁହେଁ ଦେବକୀପୁତ୍ର ବୋଲି କଂସର ଧାରଣା ହେବ । ପାପମତି କଂସ ବସୁଦେବଙ୍କ ସହିତ ତୁମର ବନ୍ଧୁତା ରହିଛି ବୋଲି ଜାଣେ । ସେ ମଧ୍ୟ ଦେବକୀଙ୍କ କନ୍ୟାଠାରୁ ଯାହା ଶୁଣିଲା, ସେଥିରୁ ଦେବକୀଙ୍କ ଅଷ୍ଟମ ଗର୍ଭ କେବେ କନ୍ୟା ହେବା ସମ୍ଭବ ନୁହେଁ ବୋଲି ସେ ବାରମ୍ବାର ମନରେ ଚିନ୍ତା କରୁଛି । ମୁଁ ତୁମ ପିଲାଙ୍କର ସଂସ୍କାର କର୍ମ କଲେ ତାର ଆଶଙ୍କା ଦୃଢ଼ୀଭୂତ ହେବ ଏବଂ ସେ ତୁମର ପୁତ୍ରର ପ୍ରାଣନାଶ କଲେ ଆମ ସମସ୍ତଙ୍କପାଇଁ ତାହା ଅତିଶୟ ଅନ୍ୟାୟ ହେବ ।।୭-୯।। ନନ୍ଦ କହିଲେ, ଆଚାର୍ଯ୍ୟ ମହୋଦୟ, ଆପଣ ଏକାନ୍ତରେ ଗୋଶାଳା ମଧ୍ୟରେ ଅଲକ୍ଷିତ ହୋଇ କେବଳ ସ୍ୱସ୍ତିବାଚନ (ଅନ୍ୟ କୌଣସି ବିଧିବିଧାନ ନ କରି) କରି ଏହି ବାଳକ ଦୁହିଁଙ୍କର ଦ୍ୱିଜାତିମାନଙ୍କ ପାଇଁ ଆବଶ୍ୟକ ନାମକରଣ ଓ ସଂସ୍କାରମାତ୍ର କରିଦିଅନ୍ତୁ । ତାହା କେହି ଜାଣିପାରିବେ ନାହିଁ, ଏପରିକି ମୋର ଆତ୍ମୀୟମାନେ ମଧ୍ୟ ।।୧୦।।

ଶ୍ରୀ ଶୁକଦେବ କହିଲେ, ଏହିପରି ନନ୍ଦଙ୍କର ବିଶେଷ ଅନୁରୋଧରେ ଗର୍ଗାଚାର୍ଯ୍ୟ ଏକାନ୍ତ ସ୍ଥାନରେ ଲୁଚି ବାଳକ ଦୁହିଁଙ୍କର ନାମକରଣ କଲେ । ଏହା ଗୋପନରେ ହେଉ ବୋଲି ମଧ୍ୟ ଗର୍ଗାଚାର୍ଯ୍ୟ ଚାହୁଁଥିଲେ ।।୧୧।। ଗର୍ଗାଚାର୍ଯ୍ୟ କହିଲେ, ରୋହିଣୀଙ୍କର ଏହି ପୁତ୍ର ନିଜର ସଦ୍‌ଗୁଣଦ୍ୱାରା ସମସ୍ତ ସୁହୃଦଙ୍କର ରମଣବର୍ଦ୍ଧନ କରିବେ । ସେଥିପାଇଁ 'ରାମ'ନାମରେ ସେ ଖ୍ୟାତ ହେବେ । ସେ ଅତିଶୟ ବଳଶାଳୀ ହୋଇଥିବା ହେତୁ 'ବଳ' ବୋଲି ମଧ୍ୟ ତାଙ୍କୁ ଡକାଯିବ । ସେ ବସୁଦେବ ଆଦି ଯଦୁମାନଙ୍କଠାରୁ ତୁମକୁ ପୃଥକ୍ ଦୃଷ୍ଟିରେ ଦେଖିବେ ନାହିଁ । ଏହି ସମ୍ୟକ୍ କର୍ଷଣ (ସମସ୍ତଙ୍କୁ ଏକାଠି କରିବା) ପାଇଁ ସେ ସଙ୍କର୍ଷଣ ନାମରେ ନାମିତ ହେବେ ।।୧୨।। ଯଶୋଦାଙ୍କର ଏହି ପୁତ୍ର ସମସ୍ତ ଯୁଗରେ ଅବତୀର୍ଣ୍ଣ ହୁଅନ୍ତି । ସେ ପୂର୍ବ ତିନି ଯୁଗରେ ଶୁକ୍ଳ ବର୍ଣ୍ଣ, ରକ୍ତ ବର୍ଣ୍ଣ ଓ ପୀତ ବର୍ଣ୍ଣ -- ଏହି ତିନି ବର୍ଣ୍ଣରେ ଜନ୍ମ ହୋଇଥିଲେ । ଏବେ ସେ କୃଷ୍ଣ ବର୍ଣ୍ଣରେ ଅବତୀର୍ଣ୍ଣ ହୋଇଛନ୍ତି । ସେଥିପାଇଁ ତାଙ୍କର ନାମ 'କୃଷ୍ଣ' ହେବ ।।୧୩।।

ନନ୍ଦ, ତୁମର ଏହି ପୁତ୍ର ପୂର୍ବେ ଏକ ସମୟରେ ବସୁଦେବଙ୍କର ପୁତ୍ରରୂପେ ଜନ୍ମ ହୋଇଥିଲେ । ସେଥିପାଇଁ ତତ୍ତ୍ୱଜ୍ଞାନୀମାନେ ତାଙ୍କୁ ବାସୁଦେବ ନାମରେ ଅଭିହିତ କରନ୍ତି ।।୧୪।। ତୁମର ଏହି ପୁତ୍ରର ଆହୁରି ବହୁତ ନାମ ଅଛି ଏବଂ ରୂପ ଅଛି । ଗୁଣ ଏବଂ କର୍ମ ଅନୁସାରେ ସେ ସେଇ ନାମରୂପରେ ଖ୍ୟାତ ହେବେ । ମୁଁ ସେ ସବୁ ଜାଣେ । କିନ୍ତୁ ସାଧାରଣ ଲୋକମାନେ ଜାଣନ୍ତି ନାହିଁ ।।୧୫।। ଗୋକୁଳର ଓ ଗୋପାଳମାନଙ୍କର ଆନନ୍ଦବର୍ଦ୍ଧନକାରୀ ତୁମର ଏହି ପୁତ୍ର ସମସ୍ତଙ୍କର ମଙ୍ଗଳ ବିଧାନ କରିବ । ଏହାଙ୍କ ଯୋଗୁଁ ତୁମେ ବହୁ ବଡ଼ ବଡ଼ ବିପଦରୁ ସହଜରେ ରକ୍ଷା ପାଇପାରିବ ।।୧୬।। ବ୍ରଜରାଜ, ପୂର୍ବେ ପୃଥିବୀ ଅରାଜକ ହୋଇପଡ଼ିଥିଲା । ଚତୁର୍ଦ୍ଦିଗରେ ଦସ୍ୟୁମାନେ ମାତିଥିଲେ । ସେତେବେଳେ ତୁମର ଏହି ପୁତ୍ର ସାଧୁ ଲୋକମାନଙ୍କୁ ରକ୍ଷା କରିଥିଲେ ଏବଂ ତାଙ୍କର ଶକ୍ତିଲାଭ କରି ଲୋକମାନେ ଦସ୍ୟୁମାନଙ୍କୁ ଜୟ କରିଥିଲେ ।।୧୭।। ଯେଉଁ ବ୍ୟକ୍ତିମାନେ ଏହି ପରମଭାଗ୍ୟଶାଳୀ ପୁରୁଷଙ୍କୁ ଆଶ୍ରୟ କରନ୍ତି ଏବଂ ତାଙ୍କର ଭକ୍ତମାନଙ୍କ ପ୍ରତି ଶ୍ରଦ୍ଧା ରଖନ୍ତି, ଦୁଷ୍ଟବ୍ୟକ୍ତିମାନେ

ତାଙ୍କର କିଛି କରିପାରନ୍ତି ନାହିଁ । ସେହିପରି ତୁମର ଏହି ପୁତ୍ରକୁ ପ୍ରେମ କରୁଥିବା ବ୍ୟକ୍ତିର କୌଣସି ପରାଭବ ନାହିଁ ॥୧୮॥ ନନ୍ଦରାଜ, ତୁମର ଏହି ପୁତ୍ର ସମସ୍ତ ଗୁଣ, ସମ୍ପଦ, ସୌନ୍ଦର୍ଯ୍ୟ, କୀର୍ତ୍ତି ଓ ପ୍ରଭାବଦ୍ୱାରା ନାରାୟଣଙ୍କ ସହିତ ସମାନ । ତେଣୁ ତୁମେ ସାବଧାନ ହୋଇ ଏହି ପୁତ୍ରକୁ ପାଳନ କର ॥୧୯॥ ଏହିପରି ନନ୍ଦଙ୍କୁ ଉପଦେଶ ଦେଇ ଗର୍ଗାଚାର୍ଯ୍ୟ ନିଜର ଆଶ୍ରମକୁ ଫେରିଗଲେ । ତାଙ୍କର କଥା ଶୁଣି ନନ୍ଦଙ୍କର ଏପରି ଆନନ୍ଦ ବଢ଼ିଗଲା ଯେ ସେ ମନେ କଲେ ତାଙ୍କର ସମସ୍ତପ୍ରକାର କାମନା ପୂର୍ଣ୍ଣ ହୋଇଗଲା । ସେ ନିଜକୁ କୃତକୃତ୍ୟ ମନେକଲେ ॥୨୦॥

ପରିକ୍ଷିତ, କିଛି ଦିନ ପରେ କୃଷ୍ଣ ଆଣ୍ଠେଇ ଆଣ୍ଠେଇ ଓ ବଳରାମ ବଙ୍କେଇ ବଙ୍କେଇ ଚାଲି ବ୍ରଜପୁରରେ ଖେଳିବାକୁ ଲାଗିଲେ । ଦୁଇ ଭାଇ ଏହିପରି ବ୍ରଜଦାଣ୍ଡର କାଦୁଅରେ ଯାଉଥାନ୍ତି; ସେତେବେଳେ ତାଙ୍କର ପାଦ ଓ କଟିର ଘୁଙ୍ଗୁରରୁ ରୁଣୁଝୁଣୁ ଶବ୍ଦ ହେଉଥାଏ । ତାହା ଶୁଣି ସେମାନଙ୍କୁ ଭାରି ଆନନ୍ଦ ଲାଗୁଥାଏ । କେବେ କେବେ ସେମାନେ କୌଣସି ଅଜଣା ଲୋକର ପଛେ ପଛେ ଯାଇ ପୁଣି ଭୟରେ ମା'ଙ୍କ ପାଖକୁ ଫେରିଆସନ୍ତି ॥୨୧-୨୨॥ ଯଶୋଦା ଓ ରୋହିଣୀ ପୁଅ ଦୁହିଁଙ୍କୁ ଟେକି ନେଇ ଛାତିରେ ଲଗାନ୍ତି । ବାତ୍ସଲ୍ୟପ୍ରେମରେ ତାଙ୍କର ସ୍ତନରୁ କ୍ଷୀର ଝରିପଡୁଥାଏ । ଅଳ୍ପ ଦାନ୍ତ ଉଠିଥିବା ତାଙ୍କର ସୁନ୍ଦର ହସ ହସ ମୁହଁକୁ ଦେଖି ସେମାନେ ଆନନ୍ଦରେ ପୂରିଉଠନ୍ତି ॥୨୩॥ ରାମ ଓ କୃଷ୍ଣ ବଡ଼ କୌତୁକିଆ ହୋଇଥାନ୍ତି । ତାଙ୍କୁ ଦେଖିବାପାଇଁ ଗୋପୀମାନଙ୍କୁ ବଡ଼ ଆନନ୍ଦ ଲାଗେ । ବେଳେବେଳେ ସେମାନେ ବାଛୁରୀଙ୍କର ଲାଙ୍ଗୁଡ଼ ଧରିପକାନ୍ତି । ବାଛୁରୀମାନେ ଏପଟ ସେପଟ ହୋଇଗଲେ ସେମାନେ ତଳେ ପଡ଼ିଯାଆନ୍ତି । ତାହା ଦେଖି ଗୋପୀମାନେ ଆନନ୍ଦରେ ହସିଉଠନ୍ତି ॥୨୪॥ ଏହିପରି କୃଷ୍ଣ, ବଳରାମ ବଡ଼ ଚପଳ ହୋଇଥାନ୍ତି । ସେ ଦୁହେଁ କେବେ କେବେ ଗାଈ ମଇଁଷିଙ୍କ ପାଖକୁ ଦଉଡ଼ି ଯାଆନ୍ତି ତ କେତେବେଳେ ନିଆଁ ସହିତ ଖେଳିବାପାଇଁ ବାହାରନ୍ତି । କେବେ କୁକୁର, ମାଙ୍କଡ଼, ସାପ, ପାଣି, କଣ୍ଟାବାଡ଼ ଆଡ଼କୁ ଦଉଡ଼ି ଯାଆନ୍ତି । ତାଙ୍କୁ ଆଟକ କରିବାପାଇଁ ରୋହିଣୀ ଓ ଯଶୋଦା ଆଉ ଘରକାମ କରିପାରୁ ନ ଥିଲେ । ତାଙ୍କର ମନ ଏହାଙ୍କପାଇଁ ସର୍ବଦା ଉଦ୍‌ବିଗ୍ନ ରହୁଥିଲା ॥୨୫॥ ରାଜର୍ଷି, ଏହିପରି କିଛିଦିନ ଗତ ହେବାପରେ ଆଣ୍ଠୁ ଓ ପାଦର ସାହାଯ୍ୟ ନ ନେଇ ଠିଆ ହୋଇ କୃଷ୍ଣ ଓ ବଳରାମ ସ୍ୱଚ୍ଛନ୍ଦରେ ଚାଲିବାକୁ ଲାଗିଲେ ॥୨୬॥ ସେ ଦୁହେଁ ସମବୟସ୍କ ବାଳକମାନଙ୍କ ସହିତ ମିଶି ନାନାପ୍ରକାର ଖେଳରେ ମାତିଗଲେ ଓ ବ୍ରଜନାରୀମାନେ ତାହା ଦେଖି ବହୁ ଆନନ୍ଦ ପାଉଥିଲେ ॥୨୭॥ ଗୋପୀମାନେ କୃଷ୍ଣଙ୍କର ମନୋହର ବାଳଚପଳତା ଦେଖି ଯଶୋଦାଙ୍କ ପାଖକୁ ଆସି ତାଙ୍କୁ ଶୁଣାଇ ଶୁଣାଇ କହିବାକୁ ଲାଗିଲେ, ଯଶୋଦା, ଗାଈ ଦୁହିଁବା ସମୟ ନ ହେଲେ ମଧ୍ୟ ତୁମର ପୁଅ ବାଛୁରୀମାନଙ୍କୁ ପଘାରୁ ଫିଟାଇଦେଉଛି । କେହି ଗାଳିଦେଲେ ସେ ଖାଲି ହସୁଛି । ତୁମ ପୁଅକୁ ଚୋରି କରିବାର ନାନା କୌଶଳ ଜଣା ଅଛି । ସେ ଦହି, ଦୁଧ ଚୋରିକରି ଖାଉଛି । ଖାଇବା ପୂର୍ବରୁ ସେ ମାଙ୍କଡ଼ମାନଙ୍କୁ ଦହି, ଦୁଧ ଖାଇବାକୁ ଦିଏ । ଯେତେବେଳେ ସେମାନେ ପେଟଭରି ଖାଇବାପରେ ଆଉ ଖାଇପାରନ୍ତି ନାହିଁ, ସେତେବେଳେ ସେ ଆମର ଦହି, ଦୁଧର ଭାଣ୍ଡ ସବୁ ଭାଂଗି ପକାଏ ଏବଂ ଦହି, ଦୁଧ ଖୋଜି ନ ପାଇଲେ ଶୋଇଥିବା ଛୋଟ ପିଲାଙ୍କୁ ନିଦରୁ ଉଠାଇ କନ୍ଦାଇ ଦେଇ ପଳାଇଯାଏ ॥୨୮-୨୯॥ ଯେତେବେଳେ ଗୋପର ଗୃହିଣୀମାନେ ଗୃହକାର୍ଯ୍ୟରେ ବ୍ୟସ୍ତ ରହୁଛନ୍ତି, ସେତେବେଳେ ତୁମର ପୁଅ ଘରେ ଶିକାରେ ଥିବା ଦହି,ଦୁଧ ସବୁ ନେବା ପାଇଁ ନାନା ଉପାୟ କରୁଛି । ହାତ ନ ପାଇଲେ, ଦୁଇ ଚାରୋଟି ପିଢ଼ାକୁ ଉପର ଉପର କରି ରଖି ଦେଉଛି ବା ଢିଙ୍କି ଉପରେ ଚଢ଼ିଯାଉଛି । ସେଥିରେ ସୁବିଧା ନ ହେଲେ ତଳୁ ହାଣ୍ଡିରେ କଣା କରିଦେଉଛି । କେଉଁ ଘଡ଼ି ବା ହାଣ୍ଡିରେ କ'ଣ ଅଛି ତାକୁ ତାହା ଭଲ ରୂପେ ଜଣା ଏବଂ ସେ ଏପରି ଭାବରେ କଣା କରୁଛି ଯେ, କେହି ଜାଣି ପାରୁ ନାହାନ୍ତି । ଯେତେବେଳେ ଆମେ ଅନ୍ଧାର ଘରେ କିଛି ଲୁଚାଇ ରଖୁଛୁ, ସେ ଯେଉଁ ମଣିମୟ ଅଳଙ୍କାର ପିନ୍ଧିଛି, ତା'ର ଜ୍ୟୋତିରେ ସବୁ ଦେଖାଯାଉଛି । ଏହାଛଡ଼ା ତା ଦେହରୁ ମଧ୍ୟ ଏକ ଜ୍ୟୋତି ବାହାରୁଛି ॥୩୦॥ ଯଶୋଦା, ଚୋରି କରିବାରେ ସିଦ୍ଧହସ୍ତ ତୁମର ପୁଅ ଏହିପରି ନାନା ଉତ୍ପାତ କରୁଛି । ବେଳେବେଳେ ଆମ ଘରେ ମଳ, ମୂତ୍ର

ମଧ୍ୟ ତ୍ୟାଗ କରୁଛି । କିନ୍ତୁ ସେ ଏବେ ତୁମ ପାଖରେ ଭଲପିଲାଟିଏପରି ବସିରହିଛି । ଗୋପବଧୂମାନେ ଏହା କହୁଥିବାବେଳେ ଆଖିରେ ଭୟମିଶ୍ରିତ କୃଷ୍ଣଙ୍କର ମୁଖମଣ୍ଡଳ ଖୁବ୍ ସୁନ୍ଦର ଦେଖାଯାଉଥିଲା । ଯଶୋଦା ହସି ହସି ଗୋପୀମାନଙ୍କଠାରୁ କୃଷ୍ଣଙ୍କର ବାଳଚପଳ କଥା ସବୁ ଶୁଣିଲେ, କିନ୍ତୁ କୃଷ୍ଣଙ୍କୁ କିଛି କହିଲେ ନାହିଁ ।।୩୧।। ଦିନେ ବଳରାମ ଆଦି ଗୋପାଳବାଳକମାନେ କୃଷ୍ଣଙ୍କ ସହିତ ଖେଳୁଥିଲେ । ସେମାନେ ଯଶୋଦାଙ୍କ ପାଖକୁ ଯାଇ କହିଲେ, ମା, କୃଷ୍ଣ ମାଟି ଖାଇଦେଇଚି ।।୩୨।।

ହିତକାରିଣୀ ମା ଯଶୋଦା ଭୟରେ ଠିଆ ହୋଇଥିବା କୃଷ୍ଣଙ୍କର ହାତକୁ ଧରି ଗାଳି ଦେବାକୁ ଲାଗିଲେ । କିରେ, ନଟଖଟିଆ, ତୁ ପୁଣି ଲୁଚାଇ ମାଟି ଖାଉଚୁ ? ତୋର ସାଙ୍ଗ ପିଲାମାନେ ଓ ଭାଇ ବଳରାମ ଏ କଥା କହୁଛନ୍ତି । କୃଷ୍ଣ କହିଲେ, ନାହିଁ ମା, ମୁଁ ମାଟି ଖାଇ ନାହିଁ, ଏମାନେ ସମସ୍ତେ ମିଛ କଥା କହୁଛନ୍ତି । ଯଦି ସେମାନଙ୍କ କଥା ସତ ବୋଲି ତୁମେ ମନେ କରୁଛ, ତା'ହେଲେ ମୋର ପାଟିକୁ ଦେଖ ।।୩୩-୩୫।। ଯଶୋଦା କହିଲେ, ଆଚ୍ଛା, ତୁ ତୋର ପାଟି ଖୋଲ । ମା ଏପରି କହିବାପରେ କୃଷ୍ଣ ନିଜର ପାଟି ଖୋଲିଦେଲେ । ଯଶୋଦା ଦେଖିଲେ ତା' ଭିତରେ ଚରାଚର ସମ୍ପୂର୍ଣ୍ଣ ଜଗତ୍ ରହିଛି । ଶୂନ୍ୟ, ଅନ୍ତରୀକ୍ଷ, ଦିଗ୍‌ବିଦିଗ,ପାହାଡ଼, ଦ୍ୱୀପ ଓ ସମୁଦ୍ରମାନଙ୍କ ସହିତ ସମସ୍ତ ପୃଥିବୀ ଏବଂ ବାୟୁ, ବିଜୁଳି, ଚନ୍ଦ୍ର, ଅଗ୍ନି ଓ ତାରାଙ୍କ ସହିତ ସମସ୍ତ ଜ୍ୟୋତିଷ୍କଗଣ, ଜଳ, ତେଜ, ପବନ, ଆକାଶ, ଅହଙ୍କାରର ବିକାରରୁ ଜାତ ଦେବତା, ମନ ଓ ଇନ୍ଦ୍ରିୟ, ପଞ୍ଚତନ୍ମାତ୍ର ଓ ସତ୍ତ୍ୱ ଆଦି ତିନି ଗୁଣ ସବୁ କୃଷ୍ଣଙ୍କର ପାଟି ମଧ୍ୟରେ ରହିଛି ।।୩୬-୩୮।। ପରିକ୍ଷିତ, ଜୀବ, କାଳ, ସ୍ୱଭାବ, କର୍ମ ଓ କର୍ମର ବାସନା ଏବଂ ଶରୀର ଆଦିଦ୍ୱାରା ବିଭିନ୍ନ ରୂପରେ ଦେଖାଯାଉଥିବା ଏହି ସମଗ୍ର ବିଚିତ୍ର ସଂସାର, ସଂପୂର୍ଣ୍ଣ ବ୍ରଜ ଓ ନିଜକୁ ଯଶୋଦା କୃଷ୍ଣଙ୍କର ପିଲାପାଟିରେ ଦେଖିବାକୁ ପାଇଲେ । ସେ ବଡ଼ ସନ୍ଦେହରେ ପଡ଼ିଗଲେ ।।୩୯।। ସେ ଭାବିଲେ, ଏ କଣ ସ୍ୱପ୍ନ ନା ଦେବମାୟା' ନା ମୋର ବୁଦ୍ଧିର ଭ୍ରମ ଘଟିଛି ? ବୋଧହୁଏ ମୋର ଏହି ପୁତ୍ରର କିଛି ଜନ୍ମଗତ ଯୋଗସିଦ୍ଧି ରହିଛି ।।୪୦।। ଚିତ୍ତ, ମନ, କର୍ମ ଓ ବାଣୀଦ୍ୱାରା ଯାହାଙ୍କୁ ସହଜରେ ଅନୁମାନ କରାଯାଇପାରେନା ସାରା ବିଶ୍ୱ ଯାହାଙ୍କୁ ଆଶ୍ରୟ କରି ରହିଛି, ଯେ ଏହାର ପ୍ରେରଣାଦାତା ଏବଂ ଯାହାଙ୍କର ସତ୍ତା ହେଉଛି ବିଶ୍ୱର ପ୍ରତୀକ, ସେହି ଅଚିନ୍ତ୍ୟ ପରମାତ୍ମାଙ୍କର ପାଦରେ ମୁଁ ପ୍ରଣାମ କରୁଛି ।।୪୧।। ଇଏ ମୁଁ, ଓ ଇଏ ମୋର ପତି, ଇଏ ମୋର ପୁଅ, ମୁଁ ବ୍ରଜରାଜାଙ୍କ ସମସ୍ତ ସମ୍ପତ୍ତିର ମାଲିକ, ତାଙ୍କର ଧର୍ମପତ୍ନୀ ; ଏହି ଗୋପୀମାନେ, ଗୋପ ଓ ଗୋଧନ ମୋର ଅଧୀନ -- ଯାହାଙ୍କର ମାୟାରୁ ମୋର ଏପରି ମନ୍ଦବୁଦ୍ଧି ଘଟିଛି, ସେହି ଭଗବାନ୍ ମୋର ଏକମାତ୍ର ଆଶ୍ରୟ । ମୁଁ ତାଙ୍କର ଶରଣାଗତ ।।୪୨।।

ଯଶୋଦା ଯେତେବେଳେ କୃଷ୍ଣଙ୍କର ତତ୍ତ୍ୱକୁ ବୁଝିଗଲେ, ସେତେବେଳେ ସର୍ବଶକ୍ତିମାନ୍, ସର୍ବବ୍ୟାପୀ ପ୍ରଭୁ ନିଜର ପୁତ୍ରସ୍ନେହମୟୀ ବୈଷ୍ଣବୀ ମାୟାକୁ ଯଶୋଦାଙ୍କ ହୃଦୟରେ ପୁଣି ସଞ୍ଚାର କରିଦେଲେ ।।୪୩।। ଯଶୋଦା ଖୁବ୍ ଶୀଘ୍ର ଘଟଣାଟିକୁ ଭୁଲିଗଲେ । ସେ ସ୍ନେହରେ ପୁଅକୁ କୋଳାଇ ନେଲେ । ପୂର୍ବରୁ ଯେପରି ତାଙ୍କର ହୃଦୟ ପୁତ୍ରସ୍ନେହରେ ଭରି ଉଠୁଥିଲା, ଏବେ ସେହିପରି ପୁତ୍ରସ୍ନେହରେ ଭରିଗଲା ।।୪୪।। ବେଦ, ଉପନିଷଦ, ସାଂଖ୍ୟ, ଯୋଗ ଓ ଭକ୍ତମାନେ ଯାହାଙ୍କ ମାହାତ୍ମ୍ୟର କୀର୍ତ୍ତନ କରନ୍ତି, ସେହି ଭଗବାନଙ୍କୁ ଯଶୋଦା ନିଜର ପୁତ୍ର ଜ୍ଞାନରେ ସ୍ନେହ କରୁଥିଲେ ।।୪୫।। ପରିକ୍ଷିତ କହିଲେ, ବ୍ରହ୍ମନ୍, ବ୍ରଜରାଜ ନନ୍ଦ ଏପରି କି ତପସ୍ୟା କରିଥିଲେ ଓ ଭାଗ୍ୟବତୀ ଯଶୋଦା କ'ଣ ଏପରି କରିଥିଲେ, ଯଦ୍ଦ୍ୱାରା ଭଗବାନ କୃଷ୍ଣ ସ୍ୱୟଂ ତାଙ୍କର ସ୍ତନପାନ କରୁଥିଲେ ।।୪୬।। ଶ୍ରୀକୃଷ୍ଣଙ୍କ ପରମ ମଧୁର ବାଲ୍ୟଲୀଳାର ଶ୍ରବଣ କୀର୍ତ୍ତନ କଲେ ସମସ୍ତ ଲୋକଙ୍କର ସକଳ ପାପ ଦୂର ହୋଇଯାଏ । ଯାହାଙ୍କର ବାଲ୍ୟଲୀଳା ମାଧୁରୀ ତ୍ରିକାଳଦର୍ଶୀ ଜ୍ଞାନୀମାନେ ଏବେ ମଧ୍ୟ କୀର୍ତ୍ତନ କରୁଛନ୍ତି, ତାଙ୍କରି ପିତାମାତା ବସୁଦେବ ଓ ଦେବକୀ ମଧ୍ୟ ତାର ରସ ଆସ୍ୱାଦନ କରିପାରିଲେ ନାହିଁ ।।୪୭।।

ଶ୍ରୀ ଶୁକଦେବ କହିଲେ, ବସୁମାନଙ୍କ ମଧ୍ୟରେ ସର୍ବଶ୍ରେଷ୍ଠ ଦ୍ରୋଣ ତାଙ୍କର ପତ୍ନୀ ଧରାଙ୍କ ସହିତ ବ୍ରହ୍ମାଙ୍କର ଆଦେଶ ପାଳନ କରିବାପାଇଁ ତାଙ୍କୁ କହିଲେ-- ।।୪୮।। ଭଗବନ୍, ଯେବେ ଆମେ ପୃଥିବୀରେ ଜନ୍ମ ନେବୁ, ତା'ହେଲେ ଭଗବାନ୍

ଶ୍ରୀକୃଷ୍ଣଙ୍କଠାରେ ଆମର ଅନନ୍ୟ ପ୍ରେମ ଓ ଭକ୍ତି ଜାତ ହେବାର ଅନୁଗ୍ରହ କରନ୍ତୁ ଯଦ୍ଦ୍ୱାରା ସଂସାରର ଲୋକମାନେ ସହଜରେ ସମସ୍ତ ଦୁର୍ଗତିରୁ ପାର ହୋଇ ପାରିବେ ।।୪୯।। ବ୍ରହ୍ମା କହିଲେ, ତାହା ହିଁ ହେବ । ପରମଭାଗବତ ଯଶସ୍ୱୀ ଦ୍ରୋଣ ବ୍ରଜରେ ନନ୍ଦରୂପରେ ଜନ୍ମ ହେଲେ ଏବଂ ତାଙ୍କର ପତ୍ନୀ ଧରା ହେଲେ ଯଶୋଦା ।।୫୦।। ପରିକ୍ଷିତ, ଏହି ଜନ୍ମରେ ଜନ୍ମମୃତ୍ୟୁଚକ୍ରରୁ ମୁକ୍ତିଦାତା ଭଗବାନ୍ ତାଙ୍କର ପୁତ୍ର ହୋଇଛନ୍ତି ଏବଂ ସମସ୍ତ ଗୋପଗୋପୀଙ୍କ ମଧ୍ୟରେ ସେ ଦୁହିଁଙ୍କର ବାତ୍ସଲ୍ୟ ପରିପୂର୍ଣ୍ଣ ଆକାରରେ ପ୍ରକାଶ ପାଇଛି ।।୫୧।। ପରମକୃପାଳୁ ଭଗବାନ୍ ଶ୍ରୀକୃଷ୍ଣ ବ୍ରହ୍ମାଙ୍କର କଥା ସତ୍ୟ ପ୍ରମାଣିତ କରିବାପାଇଁ ବଳରାମଙ୍କ ସହିତ ବ୍ରଜରେ ରହି ତାଙ୍କ ବାଲ୍ୟଲୀଳା ମାଧୁରୀରେ ସମସ୍ତ ବ୍ରଜବାସୀଙ୍କୁ ଆନନ୍ଦିତ କରୁଛନ୍ତି ।।୫୨।।

## ନବମ ଅଧ୍ୟାୟ

# ମାତା ଯଶୋଦା କୃଷ୍ଣଙ୍କୁ ବାନ୍ଧି ରଖିଲେ

ଶ୍ରୀ ଶୁକଦେବ କହିଲେ, ଦିନେ ନନ୍ଦରାଣୀ ଯଶୋଦା ଦାସୀମାନଙ୍କୁ ଅନ୍ୟ ଘରକାମରେ ଲଗାଇଦେଇ ନିଜେ ଦଧିମନ୍ଥନ କରୁଥିଲେ ।।୧।। ରାଜନ୍ ! ମୁଁ ପୂର୍ବରୁ କୃଷ୍ଣଙ୍କର ଯେଉଁ ସବୁ ବାଲ୍ୟଲୀଳା ବର୍ଣ୍ଣନା କରିଛି, ଦଧିମନ୍ଥନ କାଳରେ ଯଶୋଦା ସେ ସବୁ ସ୍ମରଣ କରି କରି ଗୀତ ଗାଉଥିଲେ ।।୨।। ଯଶୋଦାଙ୍କର ସ୍ଥୂଳ କଟି ଦେଶରେ ରେଶମି କଟିବସ୍ତ୍ର ବନ୍ଧା ହୋଇଥିଲା, ପୁତ୍ର ସ୍ନେହରେ ସ୍ତନଦ୍ୱୟରୁ କ୍ଷୀର ଝରି ପଡୁଥିଲା ଓ ତାହା କିଞ୍ଚିତ୍ ମନ୍ଥନଯୋଗୁଁ ଥରି ଉଠୁଥିଲା । ରଜ୍ଜୁଦ୍ୱାରା ଦୁଇ ହାତରେ ମନ୍ଥନଦଣ୍ଡକୁ ଆକର୍ଷଣ କରିବା ଫଳରେ ତାଙ୍କର କଙ୍କଣ, କୁଣ୍ଡଳ ମଧ୍ୟ ହଲୁଥିଲା । ସୁନ୍ଦର ଭ୍ରୂଲତାଯୁକ୍ତ ମୁହଁରୁ ଝାଳ ବୋହିପଡୁଥିଲା ଏବଂ କବରୀରୁ ମାଳତୀର ମାଳା ଖସିପଡୁଥିଲା । ସେହି ସମୟରେ ଶ୍ରୀକୃଷ୍ଣ ସ୍ତନପାନ କରିବାପାଇଁ ଦଧି ମନ୍ଥନ କରୁଥିବା ମା'ଙ୍କ ପାଖକୁ ଚାଲିଆସିଲେ । ମନ୍ଥନଦଣ୍ଡକୁ ଧରିପକାଇ ମା'ଙ୍କୁ ସେ କାର୍ଯ୍ୟରୁ ନିଷେଧ କଲେ ଓ ମା'ଙ୍କ ହୃଦୟରେ ବାତ୍ସଲ୍ୟପ୍ରେମକୁ ବଢ଼ାଇଦେଲେ । ସେ ଯଶୋଦାଙ୍କ କୋଳରେ ବସିପଡ଼ିଲେ । ବାତ୍ସଲ୍ୟସ୍ନେହରେ ତାଙ୍କ ସ୍ତନରେ କ୍ଷୀର ଭରିଯାଉଥିଲା; ଶ୍ରୀକୃଷ୍ଣ ସ୍ତନରୁ କ୍ଷୀର ପିଇବା ବେଳେ ଯଶୋଦା ତାଙ୍କର ମଧୁର ହାସ୍ୟମୟ ମୁଖକୁ ଦେଖିବାକୁ ଲାଗିଲେ । ଏହି ସମୟରେ ଚୁଲିରେ ବସିଥିବା କ୍ଷୀର ଉତୁରି ଆସିବାରୁ ଯଶୋଦା କୃଷ୍ଣଙ୍କୁ ଛାଡ଼ିଦେଇ ଚୁଲିରୁ କ୍ଷୀରହାଣ୍ଡିକୁ ଓହ୍ଲାଇଦେବାପାଇଁ ତରତର ହୋଇ ଚାଲିଗଲେ । କୃଷ୍ଣ ପେଟପୂରା କ୍ଷୀର ଖାଇ ନ ଥିଲେ । ତେଣୁ ସେ ରାଗିଗଲେ ଏବଂ ରାଗରେ ସେ ତାଙ୍କର ନାଲି ଓଠକୁ ଦାନ୍ତରେ କାମୁଡ଼ି ଶିଳପୁଆରେ ଦଧିହାଣ୍ଡିକୁ ଭାଙ୍ଗିଦେଲେ ଏବଂ କାନ୍ଦି କାନ୍ଦି ଅନ୍ୟ ଘରକୁ ଚାଲିଯାଇ ଲବଣି ଖାଇବାକୁ ଲାଗିଲେ ।।୩-୬।। ଯଶୋଦା ଚୁଲିରୁ ଦୁଧହାଣ୍ଡିକୁ ଓହ୍ଲାଇ ଦେଇ ପୁଣି ଦଧିମନ୍ଥନ କରିବାକୁ ଫେରି ଆସିଲେ ଓ ଦଧିହାଣ୍ଡି ଭାଙ୍ଗିଥିବାର ଦେଖି ତାହା ନିଜ ପୁଅର କାମ ବୋଲି ମନେ କଲେ ଓ ପୁଅକୁ ନ ଦେଖି ହସିବାକୁ ଲାଗିଲେ ।।୭।। ଚାରିଆଡ଼ ଖୋଜି ଯଶୋଦା ଦେଖିଲେ, କୃଷ୍ଣ ଏକ ଢିଙ୍କିକୁ ଓଲଟେଇ ଦେଇ ତା'ଉପରେ ଠିଆ ହୋଇ ଶିକାରେ ଥିବା ଲହୁଣି ଆଣି ମାଙ୍କଡ଼ଙ୍କୁ ଖୁଆଉଛି ଓ ଚୋରପରି ଚାରିଆଡ଼କୁ ଚାହୁଁଛି । ତାହା ଦେଖି ଯଶୋଦା ପଛରେ ଧୀରେ ଧୀରେ ତାଙ୍କ ପାଖରେ ଯାଇଁ ପହଞ୍ଚଗଲେ । ଯେତେବେଳେ କୃଷ୍ଣ ଦେଖିଲେ ଯେ ତାଙ୍କର ମା' ହାତରେ ବାଡ଼ି ଧରି ତାଙ୍କ ପାଖକୁ ଆସିଗଲେଣି, ସେ ଶୀଘ୍ର ଢିଙ୍କିରୁ ଡେଇଁପଡ଼ି ଭୟରେ ପଳାଇଗଲେ । ପରିକ୍ଷିତ, ବଡ଼ ବଡ଼ ଯୋଗୀମାନେ ଏକାଗ୍ର ଚିତ୍ତରେ ତପସ୍ୟା କରି ପରମ ବ୍ରହ୍ମରେ ଲୀନ ହେବାପାଇଁ ସମର୍ଥ ହେଲେ ମଧ୍ୟ ତାଙ୍କର ମନ ଯେଉଁ ପରମାତ୍ମାଙ୍କୁ ଛୁଇଁପାରେ ନାହିଁ, ସେହି କୃଷ୍ଣଙ୍କୁ ଧରିବାପାଇଁ ତାଙ୍କ ପଛେ ପଛେ ଯଶୋଦା ଦଉଡିବାକୁ ଲାଗିଲେ । ନିତମ୍ବ ଭାରରେ ଯଶୋଦା ଜୋରରେ ଦଉଡ଼ି ପାରୁ ନ ଥିଲେ ।

ଦଉଡ଼ିବାବେଳେ ତାଙ୍କର କବରୀ ଫିଟିଯାଇ ସେଥିରୁ ଫୁଲସବୁ ପଡ଼ିଯାଉଥାଏ । ଏହିପରି କିଛି ଦୂର ଯିବାପରେ ସେ କୃଷ୍ଣଙ୍କୁ ଧରି ପକାଇଲେ । କୃଷ୍ଣ ଦୋଷ କରିଛନ୍ତି, ମା'ଙ୍କର ମାଡ଼ଭୟରେ କାନ୍ଦି କାନ୍ଦି ମୁହଁ ଉପରକୁ କରି ତାଙ୍କୁ ଚାହୁଁଛନ୍ତି ଏବଂ ହାତରେ କଜଳଲଗା ଆଖିକୁ ମଳି ପକାଉଛନ୍ତି । ଯଶୋଦା କୃଷ୍ଣଙ୍କର ଗୋଟାଏ ହାତକୁ ଧରି ଧମକାଇ ତାଙ୍କୁ ଗାଳି ଦେଉଛନ୍ତି । ପୁତ୍ରବତ୍ସଳ ଯଶୋଦା ପୁଅ ଡରିଯାଇଥିବା ଦେଖି ହାତରୁ ବାଡ଼ିଟାକୁ ପକାଇଦେଲେ ଏବଂ ତାଙ୍କୁ କିଛି ସମୟ ବାନ୍ଧିରଖିବାପାଇଁ ଠିକ୍ କଲେ । ଯାହାର ଅନ୍ତର ନାହିଁ କି ବାହାର ନାହିଁ, ପୂର୍ବ ନାହିଁ କି ପର ନାହିଁ, ସର୍ବଦା ଜଗତର ଅନ୍ତରରେ ଓ ପୁଣି ବାହାରେ ବିଦ୍ୟମାନ, ଯେ ଜଗତର ପୂର୍ବ ଓ ପର, ଯେ ଜଗତ ରୂପରେ ବିରାଜିତ ଏବଂ ଯାହାଙ୍କ ସ୍ୱରୂପଠାରୁ ଜଗତ୍ ଭିନ୍ନ ନୁହେଁ, ସେହି ଭଗବାନ ମନୁଷ୍ୟରୂପ ଧାରଣ କରିଥିବାରୁ ତାଙ୍କୁ ନିଜ ପୁତ୍ରଜ୍ଞାନରେ ଯଶୋଦା ସାଧାରଣ ପିଲାକୁ ବାନ୍ଧିବାପରି ଏକ ଡ଼ିଙ୍ଗିରେ ବାନ୍ଧିଦେଲେ ।।୮-୧୪।। ନିଜର ଦୋଷୀ ପୁତ୍ରକୁ ବାନ୍ଧିବାବେଳେ ଯଶୋଦା ଯେଉଁ ଦଉଡ଼ିଟିକୁ ଆଣିଥିଲେ ତାହା ଦୁଇ ଆଙ୍ଗୁଳ ଛୋଟହେଲା । ସେଥିରେ ସେ ଆଉ ଗୋଟିଏ ଦଉଡ଼ି ଯୋଡ଼ି ଦେଲେ । ମାତ୍ର ସେ ଦଉଡ଼ିଟି ମଧ୍ୟ ଦୁଇ ଆଙ୍ଗୁଳ ଛୋଟ ହେଲା । ତା'ପରେ ଯଶୋଦା ଆହୁରି ଏକ ଦଉଡ଼ି ଯୋଡ଼ିଲେ, ଏହିପରି ସେ ଯେତେ ଦଉଡ଼ି ଯୋଡୁଥାନ୍ତି, ସବୁ ଦୁଇ ଆଙ୍ଗୁଳ ପରିମାଣରେ କମ୍ ହେଉଥାଏ । ଘରେ ଯେତେ ଦଉଡ଼ି ଥିଲା ସବୁ ଯୋଡ଼ି ସାରିଲେ ମଧ୍ୟ କୃଷ୍ଣଙ୍କୁ ବାନ୍ଧି ପାରିଲେ ନାହିଁ । ପ୍ରତିବେଶୀ ଗୋପୀମାନେ ଏହି କୌତୁକ ଦେଖି ହସିବାକୁ ଲାଗିଲେ । ଯଶୋଦା ମଧ୍ୟ ଆଶ୍ଚର୍ଯ୍ୟଚକିତ ହୋଇ ସେମାନଙ୍କ ସହିତ ହସିଲେ । କୃଷ୍ଣ ଦେଖିଲେ ଯେ, ମା' ବହୁତ ଥକିଗଲେଣି । ତାଙ୍କ ଦେହରୁ ଝାଳ ବୋହିବାରେ ଲାଗିଛି । କବରୀ ଫିଟି ଫୁଲମାଳସବୁ ତଳେ ପଡ଼ିଲାଣି । ତେଣୁ ମାଆଙ୍କ ପ୍ରତି ସଦୟ ହୋଇ ସେ ନିଜେ ଦଉଡ଼ିରେ ବାନ୍ଧି ହୋଇଗଲେ ।।୧୫-୧୮।। ବତ୍ସ ପରିକ୍ଷିତ, ଲୋକପାଳମାନଙ୍କ ସହିତ ଏହି ବିଶ୍ୱବ୍ରହ୍ମାଣ୍ଡ ଯାହାର ବଶୀଭୂତ, ସେହି ପରମ ସ୍ୱତନ୍ତ୍ର ଭଗବାନ ଶ୍ରୀକୃଷ୍ଣ ଦେଖାଇଦେଲେ ଯେ ସେ ହେଉଛନ୍ତି ଭକ୍ତର ଅଧୀନ ।।୧୯।। ସଦ୍ୟମୁକ୍ତିଦାତା ଭଗବାନଙ୍କର ଏହି ଯେଉଁ ପ୍ରସାଦ, ଯାହାକୁ ବ୍ରହ୍ମା ବା ଶିବ, ଏପରିକି ତାଙ୍କର ବକ୍ଷବିଳାସିନୀ ଲକ୍ଷ୍ମୀ ମଧ୍ୟ ପାଇବାପାଇଁ ସମର୍ଥ ହୋଇ ନାହାନ୍ତି, ତାହାକୁ ଗୋପାଳିନୀ ଯଶୋଦା ଲାଭ କରିଥିଲେ ।।୨୦।। ଯଶୋଦାନନ୍ଦନ କୃଷ୍ଣଙ୍କୁ ଭକ୍ତମାନେ ଯେପରି ସହଜରେ ଲାଭ କରିପାରନ୍ତି, ଦେହାଭିମାନୀ ଜ୍ଞାନୀମାନେ ଏପରିକି ତାଙ୍କଠାରୁ ଜାତ ବ୍ରହ୍ମାଦି ଦେବତାମାନେ ସେପରି ପାଇପାରନ୍ତି ନାହିଁ ।।୨୧।। ଏହାପରେ ମା' ଯଶୋଦା ଗୃହକାର୍ଯ୍ୟରେ ବ୍ୟସ୍ତ ହୋଇଗଲେ । ଏତିକିବେଳେ କୃଷ୍ଣ ଦୁଇଟି ଅର୍ଜୁନବୃକ୍ଷ ରୂପେ ରହିଥିବା କୁବେରଙ୍କର ଦୁଇ ଅଭିଶପ୍ତ ପୁତ୍ରଙ୍କ ପ୍ରତି କୃପାଦୃଷ୍ଟି ପକାଇଲେ । ଏହି ଦୁଇ ପୁତ୍ରଙ୍କର ନାମ ଥିଲା ନନ୍ଦକୁବର ଓ ମଣିଗ୍ରୀବ । ଧନ ଓ ରୂପ ଗର୍ବରେ ସେ ଦୁହେଁ ନାରଦଙ୍କଦ୍ୱାରା ଅଭିଶପ୍ତ ହୋଇ ବୃକ୍ଷ ପାଲଟି ଯାଇଥିଲେ ।।୨୨-୨୩।।

## ଦଶମ ଅଧ୍ୟାୟ

# ଯାମଳାର୍ଜୁନ ଭଞ୍ଜନ

ରାଜା ପରିକ୍ଷିତ ପଚାରିଲେ, ଭଗବନ୍, ନଳକୁବର ଓ ମଣିଗ୍ରୀବଙ୍କ ପ୍ରତି ଶାପର କାରଣ କ'ଣ ? ସେ ଦୁହେଁ ଏପରି କ'ଣ ଗର୍ହିତ କାମ କଲେ, ଯଦ୍ଦ୍ୱାରା ଦେବର୍ଷି ନାରଦଙ୍କର କ୍ରୋଧ ଜାତ ହେଲା ? ଆପଣ ତାହା ଦୟା କରି କହନ୍ତୁ ।।୧।। ଶ୍ରୀ ଶୁକଦେବ କହିଲେ, ନଳକୁବର ଓ ମଣିଗ୍ରୀବ କୁବେରଙ୍କର ପୁତ୍ର ଓ ଭଗବାନ ରୁଦ୍ରଙ୍କର ଅନୁଚରଭାବରେ ଗର୍ବରେ ଭାଙ୍ଗି ପଡୁଥିଲେ । ସେଦୁହେଁ ଦିନେ ବାରୁଣୀ ମଦିରା ପାନ କରି ମନ୍ଦାକିନୀ କୂଳରେ କୌଣସି ଉପବନରେ ବିଚରଣ କରୁଥିଲେ ।

ଅତ୍ୟଧିକ ମଦ୍ୟପାନଯୋଗୁଁ ତାଙ୍କର ଆଖି ଢଳଢଳ ହେଉଥିଲା । ସ୍ତ୍ରୀମାନଙ୍କ ସହିତ ଗୀତ ଗାଇ ଗାଇ ପୁଷ୍ପିତ ଉପବନରେ ସେ ଦୁହେଁ ବିହାର କରୁଥିଲେ ।।୨-୩।। ଏହିପରି ଗୀତଗାନ କରି କରି ସେ ଗଙ୍ଗାର ଜଳମଧ୍ୟରେ ପ୍ରବେଶ କଲେ । ହସ୍ତୀମାନେ ହସ୍ତିନୀଙ୍କ ସହିତ ଜଳକ୍ରୀଡ଼ା କରିବାପରି ଦୁହେଁ ଜଳମଧ୍ୟସ୍ଥ ପଦ୍ମବନରେ ଯୁବତୀ ସ୍ତ୍ରୀମାନଙ୍କ ସହିତ କ୍ରୀଡ଼ା କରିବାକୁ ଲାଗିଲେ । ପରିକ୍ଷିତ, ଏହି ସମୟରେ ସ୍ୱେଚ୍ଛାରେ ସର୍ବତ୍ର ଭ୍ରମଣ କରୁଥିବା ଦେବର୍ଷି ନାରଦ ସେଠାରେ ପହଞ୍ଚି ଏହି ଦୁଇଯୁବକଙ୍କୁ ଦେଖିଲେ ଏବଂ ପ୍ରବଳ ମଦ୍ୟପାନ କରିଥିବାର ଜାଣିପାରିଲେ ।।୪-୫।। କାଳେ ନାରଦ ଅଭିଶାପ ଦେବେ, ସେହି ଆଶଙ୍କାରେ ଯୁବତୀମାନେ ଲଜ୍ଜିତ ହୋଇ ସେମାନଙ୍କର ବସ୍ତ୍ରସବୁ ପିନ୍ଧି ପକାଇଲେ । ଉଲଗ୍ନ ହୋଇଥିବା ଏହି ଦୁଇ ଜଣ ଯକ୍ଷଯୁବକ କିନ୍ତୁ ବସ୍ତ୍ର ପିନ୍ଧିଲେ ନାହିଁ ।।୬।।

ଦେବପୁତ୍ର ହେଲେ ମଧ୍ୟ ଧନଗର୍ବରେ ଅନ୍ଧ ଓ ମଦମତ୍ତ ହୋଇ ନିଜକୁ ଭୁଲିଯାଉଥିବାର ଦେଖି ଦେବର୍ଷି ନାରଦଙ୍କର ତାଙ୍କ ପ୍ରତି ଦୟା ହେଲା । ସେ ଦୁଇଜଣଙ୍କୁ ଏହିପରି ଅଭିଶାପ ଦେଲେ-- ।।୭।। ନାରଦ କହିଲେ, ପ୍ରିୟ ବୋଲି ମନେ କରି ସେବନ କରୁଥିବା ବସ୍ତୁମାନଙ୍କ ମଧ୍ୟରେ ଧନ ହେଉଛି ସବୁଠାରୁ ଅନିଷ୍ଟକର । ଆଭିଜାତ୍ୟ ଆଦି ଗର୍ବ ତା ତୁଳନାରେ କିଛି ନୁହେଁ । ଧନର ଗର୍ବ ହେଲେ ଲୋକ ପରସ୍ତ୍ରୀଗମନ, ଦ୍ୟୂତକ୍ରୀଡ଼ା ଓ ମଦ୍ୟପାନ ଆଦି ଆସକ୍ତିରେ ବୁଡ଼ିରହେ ।।୮।। ଧନମଦରେ ମତ୍ତ ବ୍ୟକ୍ତିମାନେ ଏହି ନଶ୍ୱର ଦେହକୁ ଅଜର ଅମର ବୋଲି ମନେ କରନ୍ତି । ଇନ୍ଦ୍ରିୟସୁଖପାଇଁ ସେମାନେ ଅତି ନିର୍ଦ୍ଦୟ ଆଚରଣ କରିଥା'ନ୍ତି - ଏପରିକି ଜୀବହତ୍ୟା ଆଦି । ନରଲୋକର ଦେବତା ବୋଲି ଯେଉଁ ରାଜାମାନଙ୍କୁ କୁହାଯାଏ, ମୃତ୍ୟୁପରେ ସେମାନଙ୍କର ଦେହ ମଧ୍ୟ କୃମି, ବିଷ୍ଠା ବା ଭସ୍ମରେ ପରିଣତ ହୁଏ । ହିଂସ୍ରକ ବ୍ୟକ୍ତି ଏହି ନଶ୍ୱର ଦେହର ସ୍ୱାର୍ଥପାଇଁ ଲାଗି କ'ଣ ଲାଭ ପାଇବ ? ବରଂ ହିଂସାଫଳରେ ତାକୁ ନରକ ଭୋଗ କରିବାକୁ ହେବ । ଏ ଦେହ ଉପରେ କାହାରି ଅଧିକାର ନାହିଁ । ଅନ୍ନଦାତା, ପିତାମାତା, ପିତାମହ ବା ମାତାମହ ବା ବଳପୂର୍ବକ ଯେ ଏହି ଦେହକୁ କିଣି ନେଇ ତାର କାର୍ଯ୍ୟରେ ଲଗାଇ ଥାଏ କିମ୍ବା ମୃତ୍ୟୁପରେ ଯେଉଁ ଅଗ୍ନି ଏହାକୁ ଦାହ କରେ ବା କୁକୁର ଆଦି ପଶୁ ଯେଉଁମାନେ ଏହାକୁ ଭକ୍ଷଣ କରନ୍ତି, ଏ ଦେହ ସେମାନଙ୍କର କାହାରି ମଧ୍ୟ ନୁହେଁ । କେଉଁ ବିଜ୍ଞ ବ୍ୟକ୍ତି ଏହି ଶରୀରକୁ ମୋର ବୋଲି କହି ତା'ର ପାଳନ ପୋଷଣପାଇଁ ଜୀବହତ୍ୟା କରିବ ? ।।୯-୧୨।। ଧନଗର୍ବରେ ଅନ୍ଧ ହୋଇଥିବା ବ୍ୟକ୍ତିର ଶ୍ରେଷ୍ଠ ଔଷଧ ହେଉଛି ଦାରିଦ୍ର୍ୟ । କାରଣ ଦରିଦ୍ର ବ୍ୟକ୍ତି ନିଜ ସହିତ ଅନ୍ୟକୁ ତୁଳନା କରି ଦେଖିପାରେ । ଯାହା ପାଦରେ ଥରେ କଣ୍ଟା ପଶିଛି, ଅନ୍ୟ ଲୋକ ସେପରି କଷ୍ଟ ନ ପାଉ ବୋଲି ସେ ଇଚ୍ଛା କରିବ । କିନ୍ତୁ ଯା ପାଦରେ ଥରେ କଣ୍ଟା ପଶି ନାହିଁ, ପାଦରେ କଣ୍ଟା ପଶିଥିବାର ପୀଡ଼ା ସେ ଅନୁଭବ କରିପାରିବ ନାହିଁ । ଦରିଦ୍ର ବ୍ୟକ୍ତିର କୌଣସି ଅହଙ୍କାର ନ ଥାଏ । ସମସ୍ତପ୍ରକାର ମଦରୁ ବା ଗର୍ବରୁ ସେ ମୁକ୍ତ । ଦରିଦ୍ର ଅବସ୍ଥା ଯୋଗୁଁ କଷ୍ଟରେ ସେ ତାର ପରିବାର ପ୍ରତିପାଳନ କରେ । ତାହା ହିଁ ତାର ଶ୍ରେଷ୍ଠ ତପସ୍ୟା । କ୍ଷୁଧା, ତୃଷାରେ ଆତୁର ଦରିଦ୍ର ବ୍ୟକ୍ତି ସର୍ବଦା ଅନ୍ନର ଯୋଗାଡ଼ରେ ଲାଗିଥାଏ । ଇନ୍ଦ୍ରିୟଲାଳସା ତାର ଶୁଖି ଯାଇଥାଏ ଓ ପରକୁ ପୀଡ଼ା ଦେବାର ନ ଥାଏ ।।୧୩-୧୬।।

ସମଦର୍ଶୀ ସାଧୁମାନଙ୍କର ସଙ୍ଗ ଦରିଦ୍ର ବ୍ୟକ୍ତିପାଇଁ ସୁଲଭ ହୋଇଥାଏ । କାରଣ ପ୍ରଥମରୁ ହିଁ ତା'ର ବିଷୟଭୋଗ ଦୂର ହୋଇଯାଇଛି । ତେଣୁ ସାଧୁମାନଙ୍କର ସଙ୍ଗ ଲାଭ କରି ତାର ଅନ୍ତଃକରଣ ଶୁଦ୍ଧ ହୋଇଯାଏ । ଯେଉଁ ମହାତ୍ମାମାନଙ୍କର ହୃଦୟରେ ସମସ୍ତଙ୍କ ପ୍ରତି ସାମ୍ୟଭାବ ଥାଏ ଓ ଭଗବାନଙ୍କର ଚରଣାରବିନ୍ଦକୁ ଯେଉଁମାନେ ଆଶାକରି ରହିଥାନ୍ତି, ଧନଗର୍ବୀ ଆସୁରସ୍ୱଭାବର ଦୁଷ୍ଟଲୋକମାନଙ୍କୁ ସେମାନେ ସର୍ବଦା ଉପେକ୍ଷା କରିଥା'ନ୍ତି । କାରଣ ସେମାନଙ୍କଠାରୁ ତାଙ୍କର କିଛି ପାଇବାର ନ ଥାଏ । ଏହି ଦୁଇ ଜଣ ଯକ୍ଷଯୁବକ ବାରୁଣୀ ମଦରେ ଉନ୍ମତ୍ତ ଓ ଧନଗର୍ବରେ ଅନ୍ଧ ହୋଇଯାଇଛନ୍ତି ଏବଂ ଇନ୍ଦ୍ରିୟକୁ ବଶ କରି ନ ପାରି ଲମ୍ପଟ ହୋଇପଡ଼ିଛନ୍ତି । ଏହାଙ୍କର ଏହି ଗର୍ବକୁ ମୁଁ ହରଣ କରିବି ।।୧୭-୧୯।। ଏ ଦୁହେଁ ଗର୍ବରେ ଏପରି ଅନ୍ଧ

ହୋଇଯାଇଛନ୍ତି ଯେ, ନିଜକୁ ବିବସ୍ତ୍ର ବୋଲି ଜାଣିପାରୁ ନାହାନ୍ତି । ତେଣୁ ନିଜର କର୍ମ ଦୋଷରୁ ବୃକ୍ଷତ୍ୱ ଲାଭ କରନ୍ତୁ । ମୋର ଅନୁଗ୍ରହରୁ ଦୁହେଁ ଏ ଜନ୍ମର ସମସ୍ତ ବୃତ୍ତାନ୍ତ ସ୍ମରଣ କରିପାରିବେ, ଦେବତାମାନଙ୍କର ଶହେ ବର୍ଷ ଶେଷ ହେଲେ ବାସୁଦେବ ଭଗବାନଙ୍କର ସାନ୍ନିଧ୍ୟ ଲାଭ କରିବେ ଓ ପୁନର୍ବାର ଦେବଦେହ ଲାଭ କରି ଶ୍ରୀଗୋବିନ୍ଦଙ୍କ ପ୍ରତି ଭକ୍ତିପରାୟଣ ହେବେ ।।୨୦-୨୨।। ଶ୍ରୀ ଶୁକଦେବ କହିଲେ, ଏହିପରି ଅଭିଶାପ ଦେଇ ଦେବର୍ଷି ନାରଦ ବଦରିକାଶ୍ରମକୁ ଚାଲିଗଲେ । ନଳକୂବର ଓ ମଣିଗ୍ରୀବ ସେହିଦିନଠାରୁ ଦୁଇଟି ଅର୍ଜୁନବୃକ୍ଷ (ଯାମଳାର୍ଜୁନ) ହୋଇ ରହିଗଲେ । 'ଦେବର୍ଷି ନାରଦଙ୍କର ବାକ୍ୟକୁ ସତ୍ୟ କରିବାପାଇଁ ବାଳକ ଶ୍ରୀକୃଷ୍ଣ ଧୀରେ ଧୀରେ ଏହି ଯାମଳାର୍ଜୁନ ବୃକ୍ଷଆଡ଼କୁ ଅଗ୍ରସର ହେଲେ । ଦେବର୍ଷି ନାରଦ ମୋର ପ୍ରିୟତମ ଭକ୍ତ । ଏହି କୁବେରପୁତ୍ର ଦୁହିଁଙ୍କ ସମ୍ପର୍କରେ ସେ ମହାତ୍ମା ଯାହା କହିଛନ୍ତି, ତାହା ମୁଁ କାର୍ଯ୍ୟକାରୀ କରିବି' । ଏହା ଚିନ୍ତା କରି ଦୁଇଟି ଅର୍ଜୁନ ବୃକ୍ଷର ମଝିରେ ଥିବା ଫାଙ୍କରେ ପଶି ସେ ଅନ୍ୟପଟେ ବାହାରିଗଲେ । କିନ୍ତୁ ସେ ଯେଉଁ ଢିଙ୍କିରେ ବନ୍ଧା ହୋଇଥିଲେ ତାହା ତେରଛା ହୋଇ ବୃକ୍ଷ ଦୁଇଟିର ଦେହରେ ଲାଗି ରହିଗଲା ।।୨୩-୨୬।। ଯଶୋଦା ତାଙ୍କୁ ଯେଉଁ ଦଉଡ଼ିରେ ଢିଙ୍କିରେ ବାନ୍ଧି ଦେଇଥିଲେ, ସେ ସେହି ଦଉଡ଼ିଟିକୁ ଜୋରରେ ଟାଣିବାଦ୍ୱାରା ଅର୍ଜୁନ ଗଛ ଦୁଇଟିର ମୂଳ ଉପୁଡ଼ିବାକୁ ଲାଗିଲା ଓ ଗଛର ଗଣ୍ଡି, ଶାଖା, ଛୋଟ ଡାଳ ଏବଂ ପତ୍ରସବୁ କମ୍ପି ଉଠିଲା । ଖୁବ୍ ଜୋରରେ କଡ଼ମଡ଼ ଶବ୍ଦ କରି ଗଛ ଦୁଇଟି ଉପୁଡ଼ିପଡ଼ିଗଲା ।।୨୭।। ବୃକ୍ଷଦୁଇଟିରୁ ଅଗ୍ନିପରି ତେଜସ୍ୱୀ ଦୁଇ ଜଣ ସିଦ୍ଧପୁରୁଷ ବାହାରିଆସିଲେ । ତାଙ୍କର ସୌନ୍ଦର୍ଯ୍ୟ ଓ ଜ୍ୟୋତିରେ ଚତୁର୍ଦ୍ଦିଗ ଉଦ୍‌ଭାସିତ ହୋଇଉଠିଲା । ସମସ୍ତ ଲୋକର ଈଶ୍ୱର ଭଗବାନ ଶ୍ରୀକୃଷ୍ଣଙ୍କ ପାଖକୁ ଆସି ତାଙ୍କର ପାଦରେ ଶିର ଲଗାଇ ସେ ଦୁହେଁ ପ୍ରଣାମ କଲେ । ତାଙ୍କର ସମସ୍ତ ଗର୍ବ ଚୂର୍ଣ୍ଣ ହୋଇଯାଇଥିଲା । ଦୁହେଁ କୃତାଞ୍ଜଳି ହୋଇ ଏହିପରି ସ୍ତୁତି କରିବାକୁ ଲାଗିଲେ--।।୨୮।।

ହେ କୃଷ୍ଣ, ହେ ପରମଯୋଗେଶ୍ୱର, ଆପଣ ସମସ୍ତଙ୍କର ଚିତ୍ତ ଆକର୍ଷଣ କରିପାରନ୍ତି, ଆପଣ ପ୍ରକୃତିରୁ ଅତୀତ ପୁରୁଷ । ବେଦଜ୍ଞ ବ୍ରାହ୍ମଣମାନେ ଜାଣନ୍ତି ଯେ ବ୍ୟକ୍ତ ଏବଂ ଅବ୍ୟକ୍ତ ଏହି ସମ୍ପୂର୍ଣ୍ଣ ଜଗତ୍ ହେଉଛି ଆପଣଙ୍କର ସ୍ୱରୂପ ।।୨୯।। ଆପଣ ସମସ୍ତ ପ୍ରାଣୀଙ୍କର ଶରୀର, ପ୍ରାଣ, ଅନ୍ତଃକରଣ ଏବଂ ଇନ୍ଦ୍ରିୟମାନଙ୍କର ସ୍ୱାମୀ; ଆପଣ ସର୍ବଶକ୍ତିମାନ୍ କାଳ , ସର୍ବବ୍ୟାପୀ ଏବଂ ଅବିନଶ୍ୱର ।।୩୦।। ଆପଣ ମହତ୍ତତ୍ତ୍ୱ ଏବଂ ସତ୍ତ୍ୱ-ରଜ-ତମୋମୟୀ ସୂକ୍ଷ୍ମ ପ୍ରକୃତି । ଆପଣ ସମସ୍ତ ଦେହର ଅଧିଷ୍ଠାତା ପୁରୁଷ ଓ ସମସ୍ତ ଅବସ୍ଥାର ସାକ୍ଷୀ ।।୩୧।। ବୁଦ୍ଧି, ଅହଙ୍କାର ଓ ଇନ୍ଦ୍ରିୟ ଆଦି ଏହି ଦୃଶ୍ୟମାନ ପ୍ରକୃତିଦ୍ୱାରା ଆପଣଙ୍କୁ ଜାଣି ହୁଏ ନାହିଁ । ଜୀବମାନଙ୍କର ସୃଷ୍ଟିର ପୂର୍ବରୁ ହିଁ ଆପଣ ରହିଛନ୍ତି । ଦେହ ଅଭିମାନରେ ଆବଦ୍ଧ କେଉଁ ବ୍ୟକ୍ତି ଆପଣଙ୍କୁ ଜାଣିପାରିବ ? ।।୩୨।। ତେଣୁ ସୃଷ୍ଟିକର୍ତ୍ତା ବାସୁଦେବ ରୂପରେ ଆପଣଙ୍କୁ ଆମେ ନମସ୍କାର କରୁଛୁ । ଆପଣ ନିଜଠାରୁ ପ୍ରକାଶିତ ସତ୍ତ୍ୱ ଆଦି ଗୁଣଦ୍ୱାରା ନିଜ ମହିମାକୁ ଆଚ୍ଛାଦନ କରି ରହିଛନ୍ତି । ହେ ପରମବ୍ରହ୍ମ, ଆପଣଙ୍କୁ ଆମେ ନମସ୍କାର କରୁଛୁ ।।୩୩।। ଆପଣ ସାଧାରଣ ଦେହଧାରୀ ନୁହନ୍ତି । ତେଣୁ ଅନ୍ୟ ଦେହଧାରୀଙ୍କଠାରେ ଯାହା ଦେଖାଯାଏନା, ସେହି ଅତୁଳନୀୟ ଅତିଶୟ ବଳବୀର୍ଯ୍ୟଦ୍ୱାରା ହିଁ ଆପଣଙ୍କ ଅବତାର ଶରୀରର ପରିଚୟ ମିଳେ ।।୩୪।। ଆପଣ ସମସ୍ତ ଲୋକର ଅଭ୍ୟୁଦୟ ଓ ମଙ୍ଗଳପାଇଁ ସମସ୍ତ ଶକ୍ତି ଧାରଣ କରି ନିଜ କଳାରେ ଅବତୀର୍ଣ୍ଣ ହୋଇଛନ୍ତି । ଆପଣ ପରମ କଲ୍ୟାଣସ୍ୱରୂପ - ଆପଣଙ୍କୁ ନମସ୍କାର, ପରମ ମଙ୍ଗଳସ୍ୱରୂପ - ଆପଣଙ୍କୁ ନମସ୍କାର । ଆପଣ ପରମ ଶାନ୍ତସ୍ୱରୂପ । ହେ ଯଦୁପତି ବାସୁଦେବ, ଆପଣଙ୍କୁ ଆମେ ନମସ୍କାର କରୁଛୁ ।।୩୫-୩୬।। ହେ ଅନନ୍ତ, ଆପଣ ଜାଣନ୍ତି ଯେ, ଆମେ ଆପଣଙ୍କର ଦାସାନୁଦାସ । ଦେବର୍ଷି ନାରଦଙ୍କ କୃପାରୁ ଆମେ ଆପଣଙ୍କ ଦର୍ଶନ ଲାଭ କଲୁ । ଆମର ବାଣୀ ଆପଣଙ୍କର ଗୁଣ କୀର୍ତ୍ତନ କରୁ, କର୍ଣ୍ଣ ଆପଣଙ୍କର କଥା ଶ୍ରବଣ କରୁ, ହସ୍ତ ଆପଣଙ୍କର କର୍ମରେ ଲାଗିଥାଉ ଏବଂ ମନ ଆପଣଙ୍କର ପାଦପଦ୍ମକୁ ସର୍ବଦା ସ୍ମରଣ କରୁ । ଆପଣଙ୍କ ନିବାସସ୍ଥଳୀ ଏହି ଜଗତ୍ ପ୍ରତି ଆମର ମସ୍ତକ ସର୍ବଦା ପ୍ରଣତ ରହୁ । ଆପଣଙ୍କର ପ୍ରତ୍ୟକ୍ଷ ଶରୀରରୂପ ସାଧୁସନ୍ଥମାନଙ୍କୁ ଆମର ନେତ୍ର ସର୍ବଦା ଦେଖୁଥାଉ ।।୩୭-୩୮।।

ଶ୍ରୀ ଶୁକଦେବ କହିଲେ, ଏହିପରି ଯକ୍ଷଦ୍ୱୟ ସ୍ତୁତି କରିବାରୁ ଢିଙ୍କିରେ ବନ୍ଧା ହୋଇଥିବା ଗୋପେଶ୍ୱର କୃଷ୍ଣ ହସି ହସି କହିଲେ--ତୁମେ ଐଶ୍ୱର୍ଯ୍ୟମଦରେ ଅନ୍ଧ ହୋଇଯାଇଥିଲ । ସେଥିରୁ ରକ୍ଷା କରିବାପାଇଁ ପରମ କାରୁଣିକ ଦେବର୍ଷି ନାରଦ ଅଭିଶାପ ଦେଇ ତୁମକୁ ଅନୁଗୃହୀତ କରିଛନ୍ତି । ମୁଁ ତାହା ଜାଣିଥିଲି ।।୩୯-୪୦।। ସୂର୍ଯ୍ୟ ଉଦୟ ହେଲେ ଦେଖୁ ଦେଖୁ ଯେପରି ଅନ୍ଧକାର ଦୂର ହୋଇଯାଏ, ସେହିପରି ମୋ'ଠାରେ ନିଜର ଚିତ୍ତକୁ ସମର୍ପଣ କରିଥିବା ସମଦର୍ଶୀ ସାଧୁମାନଙ୍କର ଦର୍ଶନମାତ୍ରକେ ଆଉ ଭବବନ୍ଧନ ରହେ ନାହିଁ ।।୪୧।। ନଳକୂବର ଓ ମଣିଗ୍ରୀବ, ମୋଠାରେ ତୁମର ଯେଉଁ ଭକ୍ତିର ଅଭିଳାଷ ଥିଲା, ତାହା ପୂର୍ଣ୍ଣ ହୋଇଛି । ସଂସାରଚକ୍ରକୁ ଆଉ ତୁମର ଫେରିବାର ନାହିଁ । ଶୀଘ୍ର ତୁମେ ତୁମର ଘରକୁ ଫେରିଯାଅ ।।୪୨।। ଶ୍ରୀ ଶୁକଦେବ କହିଲେ, ଭଗବାନ ତାଙ୍କୁ ଏହିପରି କହିବାରୁ ନଳକୂବର ଓ ମଣିଗ୍ରୀବ ଢିଙ୍କିରେ ବନ୍ଧା ହୋଇଥିବା କୃଷ୍ଣଙ୍କୁ ପରିକ୍ରମା କରି ବାରମ୍ବାର ପ୍ରଣାମ କଲେ ଏବଂ ତାଙ୍କର ଅନୁମତି ନେଇ ଉତ୍ତରଦିଗକୁ ଯାତ୍ରା କଲେ ।।୪୩।।

## ଏକାଦଶ ଅଧ୍ୟାୟ

# ବତ୍ସାସୁର ଓ ବକାସୁରର ନିଧନ

ଶ୍ରୀ ଶୁକଦେବ କହିଲେ, ପରିକ୍ଷିତ, ଗଛ ଦୁଇଟି ଉପୁଡ଼ି ପଡ଼ିବାବେଳେ ଯେଉଁ ଭୟଙ୍କର ଶବ୍ଦ ହେଲା, ତାହା ଶୁଣି ଭୟଭୀତ ନନ୍ଦ ଆଦି ଗୋପାଳମାନେ ସେଠାକୁ ଦଉଡ଼ି ଆସିଲେ । ସେମାନେ ଦେଖିଲେ ଯେ, ଯାମଳାର୍ଜ୍ଜୁନ ବୃକ୍ଷ ଦୁଇଟି ଭୂଇଁରେ ଉପୁଡ଼ି ପଡ଼ିଛି । ଗଛ ପଡ଼ିବାର କାରଣ ସେମାନେ ଜାଣି ପାରିଲେ ନାହିଁ । ସେମାନଙ୍କର ଭ୍ରମ ଜାତ ହେଲା ।।୧-୨।। ସେମାନେ ଦେଖିଲେ ଢିଙ୍କିରେ ବନ୍ଧା ହୋଇଥିବା କୃଷ୍ଣ ଢିଙ୍କିକୁ ଟାଣିବାରେ ଲାଗିଛନ୍ତି । କିପରି ଏ ବ୍ୟୁତ୍ପାତ ଘଟିଲା ତାହା ଭାବି ସେମାନେ କାତର ହୋଇପଡ଼ିଲେ ।।୩।। ନିକଟରେ ଥିବା କେତେକ ପିଲା କହିଲେ, ସେମାନେ ଦେଖିଛନ୍ତି ଯେ ଦୁଇଟି ଗଛର ଫାଙ୍କରେ ପଶି କୃଷ୍ଣ ଚାଲି ଆସିଲା ବେଳେ ଢିଙ୍କିଟା ତେରଛା ହୋଇ ଦୁଇ ଗଛକୁ ଲାଗି ବାହାରେ ରହିଗଲା ଓ କୃଷ୍ଣ ତାକୁ ଟାଣିବା ଫଳରେ ଗଛ ଦୁଇଟା ଉପୁଡ଼ିପଡ଼ିଲା ଏବଂ ସେଥିରୁ ଦୁଇ ଜଣ ପୁରୁଷ ବାହାରି ଚାଲିଗଲେ । କିନ୍ତୁ ସେମାନେ ପିଲାଙ୍କର କଥା ବିଶ୍ୱାସ କଲେ ନାହିଁ । ସେମାନେ କହିଲେ, ଏହା କ'ଣ ସମ୍ଭବ ? ପିଲାଟାଏ ଟାଣିଦେବାରୁ ଦୁଇଟା ଗଛ ଉପୁଡ଼ିଗଲା ? କେତେକଙ୍କ ମନରେ(କାଳେ କୃଷ୍ଣଙ୍କ କାର୍ଯ୍ୟ ହୋଇଥିବ) ସନ୍ଦେହ ଲାଗି ରହିଲା । ନନ୍ଦ ଦେଖିଲେ ଯେ, ଦଉଡ଼ିରେ ବନ୍ଧା ହୋଇ କୃଷ୍ଣ ଢିଙ୍କିଟାକୁ ଟାଣିବାରେ ଲାଗିଛନ୍ତି । ସେ ହସିଦେଇ ତାଙ୍କୁ ସେଥିରୁ ଫିଟାଇଦେଲେ ।।୪-୬।।

ଗୋପୀମାନଙ୍କୁ ଖୁସି କରିବାପାଇଁ ଏକ ନିରୀହ ପିଲାପରି କେତେବେଳେ ସେ ନାଚୁଥିଲେ, ଗାଉଥିଲେ ଏବଂ ମୁଗ୍ଧ ଭାବରେ ଏକ କାଠକଣ୍ଢେଇ ପରି ସେମାନଙ୍କର ଇଚ୍ଛାଧୀନ ହୋଇଯାଉଥିଲେ ।।୭।। ସେମାନେ କହିଲେ ସେ ସେମାନଙ୍କ ଘରକୁ ଯାଇ ପିଢ଼ା, ବଟକରା, କଠଉ ଆଦି ମୁଣ୍ଡରେ ବୋହି ଆଣୁଥିଲେ, ସେମାନଙ୍କୁ ଖୁସି କରିବାପାଇଁ ବିଭିନ୍ନପ୍ରକାର ଅଙ୍ଗଭଙ୍ଗୀ ଓ ବାହୁଚାଳନା କରୁଥିଲେ ।।୮।। ଏହିପରି ସର୍ବଶକ୍ତିମାନ୍ ଭଗବାନ ନିଜ ବାଳଲୀଳାଦ୍ୱାରା ବ୍ରଜବାସୀଙ୍କର ଆନନ୍ଦବର୍ଦ୍ଧନ କରୁଥିଲେ ଏବଂ ସଂସାରରେ ଯେଉଁମାନେ ତାଙ୍କର ରହସ୍ୟ ଜାଣନ୍ତି, ସେମାନଙ୍କୁ ଦେଖାଇଦେଉଥିଲେ ଯେ ସେ ତାଙ୍କ ଭକ୍ତମାନଙ୍କର ସେବକ ।।୯।। ଦିନେ 'କୋଳି ନିଅ, କୋଳି' ବୋଲି ଡାକି ଜଣେ ଫଳ ବିକାଳି ସ୍ତ୍ରୀଲୋକ ଯାଉଥିଲା । ସଙ୍ଗେ ସଙ୍ଗେ କୃଷ୍ଣ ଆଞ୍ଜୁଳାରେ ଆଞ୍ଜୁଳାଏ ଧାନ ଧରି କୋଳି କିଣିବାପାଇଁ ଦଉଡ଼ି ଆସିଲେ । ବାଟରେ ଆଂଜୁଳାରୁ ଧାନ ସବୁ

ବାତ୍ୟାକ ଚୂର୍ଣ୍ଣ ହୋଇଯାଇଥିଲା । କିନ୍ତୁ କୋଳି ବିକାଳି ତାଙ୍କ ଆଞ୍ଜୁଳାରେ କୋଳି ଭରିଦେଲା । କୃଷ୍ଣଙ୍କର କୃପାଦୃଷ୍ଟିରେ ତାର ଟୋକେଇଟି ରତ୍ନରେ ପୂରିଗଲା ॥୧୦-୧୧॥

ଦିନେ ଯାମଳାର୍ଜ୍ଜୁନଭଞ୍ଜନ କୃଷ୍ଣ ବଳରାମ ଓ ଅନ୍ୟ ବାଳକଙ୍କ ସହିତ ଖେଳିଖେଳି ଯମୁନା କୂଳକୁ ଚାଲିଗଲେ ଓ ଖେଳରେ ମାତି ରହିଲେ । ରୋହିଣୀ ଡାକିଲେ, ହେ କୃଷ୍ଣ, ହେ ବଳରାମ, ଶୀଘ୍ର ଆସ । ଯେତେ ଡାକିଲେ ମଧ୍ୟ ସେ ଦୁହେଁ ଆସିଲେ ନାହିଁ, ଖେଳରେ ମାତି ରହିଲେ । ତହୁଁ ରୋହିଣୀ ପୁତ୍ରବତ୍ସଳା ଯଶୋଦାଙ୍କୁ ପଠାଇଲେ । ବହୁତ ବେଳ ଧରି କୃଷ୍ଣ ବଳରାମ ଓ ଅନ୍ୟମାନଙ୍କ ସହିତ ଖେଳରେ ମାତି ରହିଥିଲେ । ପୁତ୍ରସ୍ନେହରେ ଯଶୋଦାଙ୍କର ସ୍ତନରୁ କ୍ଷୀର ବୋହିଯାଉଥିଲା । 'ହେ କୃଷ୍ଣ, ହେ କମଳନୟନ, ବାପ ଧନ, କ୍ଷୀର ପିଇବୁ, ଶୀଘ୍ର ଚାଲି ଆ, ଖେଳିଖେଳି ତୋତେ ଭୋକ ହେବଣି, ହାଲିଆ ହୋଇଗଲୁଣି', କୃଷ୍ଣଙ୍କୁ ଏହା କହି ଯଶୋଦା ବଳରାମଙ୍କୁ ଡାକିଲେ । ରାମ, ତୁ ତ ସୁଧାର ପିଲା, ସମସ୍ତଙ୍କୁ ତୁ ଖୁସି କରିଦେଉ, ଛୋଟଭାଇକୁ ଧରି ଶୀଘ୍ର ଚାଲି ଆ । ବହୁତ ସକାଳୁ ତୁମେ ଯାହା ଖାଇଥିଲ । ଏବେ ଖାଇବାବେଳ ଗଡ଼ିଯାଉଛି ॥୧୨-୧୬॥ ''ବ୍ରଜରାଜ ଖାଇବାକୁ ବସିଲେଣି । ସେ ତୁମ ଦୁହିଁଙ୍କୁ ଚାହିଁ ରହିଛନ୍ତି । ମୋ କଥା ଶୁଣି ଆସ ବାବା, ଘରକୁ ଚାଲିଆସ'' ଯଶୋଦା ପୁଣି କହିଲେ, ''ଦେଖ ବାବା, ତୁମର ଦେହସବୁ କିପରି ଧୂଳିରେ ବୁଡିଗଲାଣି । ଶୀଘ୍ର ଗାଧୋଇ ପକାଅ । ଆଜି ତୁମର ଜନ୍ମ ଦିନ । ଶୀଘ୍ର ବ୍ରାହ୍ମଣମାନଙ୍କୁ ଗୋଦାନ କର ।'' ॥୧୭-୧୮॥ ''ଦେଖ, ତୁମର ସାଙ୍ଗମାନଙ୍କୁ ତାଙ୍କର ମା' ମାନେ କିପରି ଗାଧୋଇପାଧୋଇ ପୋଛାପୋଛି କରି ସଜ କରିଦେଲେଣି । ତୁମେ ସେହିପରି ଗାଧୋଇ ସାରି ଖିଆପିଆ କରି ଭଲ ଲୁଗା ପିନ୍ଧିପକାଅ ଓ ତା'ପରେ ଯାଇ ଖେଳ ।'' ॥୧୯॥ ପରିକ୍ଷିତ, ପୁତ୍ରସ୍ନେହରେ ବାୟାଣୀ ଯଶୋଦା ଏହିପରି ଡାକି ଡାକି ଗୋଟିଏ ହାତରେ ବଳରାମଙ୍କୁ ଓ ଅନ୍ୟ ହାତରେ କୃଷ୍ଣଙ୍କୁ ଧରି ଘରକୁ ଚାଲିଆସିଲେ । ତାପରେ ପୁତ୍ର ଦୁହିଁଙ୍କର ଗାଧୋଇବା ଖାଇବାର ବ୍ୟବସ୍ଥା କଲେ ॥୨୦॥

ଶ୍ରୀ ଶୁକଦେବ କହିଲେ, ନନ୍ଦ ଆଦି ଗୋପବୃଦ୍ଧମାନେ ବାରମ୍ବାର ବ୍ରଜରେ ଏହିପରି ଉତ୍ପାତ ଲାଗି ରହିଥିବାରୁ ସଭାରେ ମିଳିତ ହୋଇ କ'ଣ କରିବାକୁ ହେବ ବିଚାର କରିବାକୁ ଲାଗିଲେ ॥୨୧॥ ସେମାନଙ୍କ ମଧ୍ୟରେ ଉପନନ୍ଦ ନାମରେ ଜଣେ ବୟୋବୃଦ୍ଧ ଓ ଜ୍ଞାନବୃଦ୍ଧ ଗୋପାଳ ଥିଲେ । ସେ ଦେଶ-କାଳ-ପାତ୍ର ଆଦି ବିଚାର କରିବାରେ ଅତି ଅଭିଜ୍ଞ ଥିଲେ । ସେ ଚାହୁଁଥିଲେ, ରାମ ଓ କୃଷ୍ଣଙ୍କ ଉପରେ କୌଣସି ବିପଦ ନ ପଡୁ ॥୨୨॥ ସେ କହିଲେ, ଭାଇମାନେ ! ବହୁତ ବଡ଼ ବଡ଼ ବିପଦ ପଡ଼ିଲାଣି । ପିଲାମାନଙ୍କପାଇଁ ଏହା ଅତି ଅନିଷ୍ଟକର । ତେଣୁ ଗୋକୁଳବାସୀଙ୍କର ଯଦି ଆମେ ଭଲ ଆଶା କରୁଛେ, ତା'ହେଲେ ଆମେ ଏ ସ୍ଥାନ ଛାଡ଼ି ଅନ୍ୟ ସ୍ଥାନରେ ବାସ କରିବା ଉଚିତ ହେବ ॥୨୩॥ ବାଳଘାତିନୀ ପୂତନା ରାକ୍ଷସୀଠାରୁ ନନ୍ଦର ପୁଅ ଅଳ୍ପକରେ ବଞ୍ଚିଗଲା । ଏହାପରେ ଭଗବାନଙ୍କର କୃପାରୁ ଏତେବଡ଼ ଶଗଡ଼ ପଡ଼ିବାରୁ ସେ ରକ୍ଷା ପାଇଗଲା । ରାକ୍ଷସ ତୃଣାବର୍ତ୍ତ ଘୂର୍ଣ୍ଣିବାତ ହୋଇ କୃଷ୍ଣଙ୍କୁ ଉଡ଼ାଇନେଉଥିଲା । ଯେତେବେଳେ ସେ ଏ ପିଲାକୁ ଧରି ପଥର ଚଟାଣ ଉପରେ କଚାଡ଼ି ହୋଇପଡ଼ିଲା ସେତେବେଳେ ଆମ କୁଳଦେବତାଙ୍କ କୃପାରୁ କୃଷ୍ଣ ବଞ୍ଚିଗଲା ॥୨୪-୨୫॥ ଯାମଳାର୍ଜ୍ଜୁନ ବୃକ୍ଷ ପଡ଼ିବା ସମୟରେ ତାହା ପାଖରେ ଥିବା ଇଏ ବା ଅନ୍ୟ କୌଣସି ପିଲା ମରି ନାହାନ୍ତି ଏବଂ ଭଗବାନ ନାରାୟଣ ତାଙ୍କୁ ରକ୍ଷା କରିଛନ୍ତି । ତେଣୁ ଆହୁରି ଏକ ଭୟାନକ ବିପଦ ପଡ଼ି ଏହି ବ୍ରଜକୁ ନଷ୍ଟ କରିବା ପୂର୍ବରୁ ଆମେ ଆମର ପିଲାଛୁଆ ଗାଈଗୋରୁଙ୍କୁ ଧରି ଅନ୍ୟତ୍ର ଚାଲିଯିବା ॥୨୬-୨୭॥ ବୃନ୍ଦାବନ ନାମକ ଏକ ବନ ଅଛି । ତାହା ଗବାଦି ପଶୁମାନଙ୍କ ଚରିବା ପାଇଁ ଅତି ଭଲ ସ୍ଥାନ । ସେଠାରେ ଘାସ, ଲତା, ଗଛ ବୃଛ ଆଦି ପୂରି ରହିଛି । ସେଠାରେ ଗୋପ ଗୋପୀ, ଗୋରୁଗାଈଙ୍କର ବହୁତ ସୁବିଧା ହେବ ॥୨୮॥ ଯଦି ତୁମେମାନେ ଅନୁମୋଦନ କର, ତା'ହେଲେ ଆଜି ହିଁ ଆମେ ସେଠାକୁ ଚାଲିଯିବା । ଶୀଘ୍ର ଶଗଡ଼ ଯୋଚ । ଗୋରୁଗାଈଙ୍କୁ ଆଗରେ ପଠାଇ ଦିଅ ॥୨୯॥ ଉପନନ୍ଦଙ୍କ କଥାରେ ବ୍ରଜବାସୀମାନେ ଏକମତ ହେଲେ ଏବଂ 'ସାଧୁ ସାଧୁ' ବୋଲି କହି ତାଙ୍କୁ

ପ୍ରଶଂସା କଲେ । ସେମାନେ ନିଜର ଗାଈଗୋରୁଙ୍କୁ ଧରି ଶଗଡ଼ରେ ନିଜର ଜିନିଷପତ୍ର ଲଦି ବୃନ୍ଦାବନ ଯାତ୍ରା କଲେ ।।୩୦।। ପରିକ୍ଷିତ, ଗୋପାଳମାନେ ପିଲା, ବୁଢ଼ା ଓ ସ୍ତ୍ରୀଙ୍କୁ ଶଗଡ଼ରେ ବସାଇ ଘରର ଜିନିଷପତ୍ର ସବୁ ସେଥିରେ ଲଦି ପଛେ ପଛେ ଧନୁ ତୀର ଧରି ଚାଲିବାକୁ ଲାଗିଲେ ।।୩୧।। ଗାଈ ଓ ବାଛୁରୀ ପଲ ଆଗରେ ଚାଲୁଥିଲେ ଏବଂ ସେମାନଙ୍କ ପଛରେ ରହି ଏମାନେ ଜୋର୍‌ରେ ଶିଙ୍ଗା ଓ ତୂରୀ ବଜାଉଥିଲେ । ଏମାନଙ୍କ ସାଙ୍ଗରେ ପୁରୋହିତମାନେ ମଧ୍ୟ ଚାଲୁଥିଲେ ।।୩୨।। ଗୋପୀମାନେ ନିଜ ନିଜ ବକ୍ଷସ୍ଥଳରେ କୁଙ୍କୁମ ଲେପନ କରି ସୁନ୍ଦର ସୁନ୍ଦର ବସ୍ତ୍ର ଓ ସୁନାର ହାର ପିନ୍ଧି ରଥ ଉପରେ ବସିଥିଲେ ଏବଂ ଆନନ୍ଦରେ କୃଷ୍ଣଙ୍କର ଲୀଳା ଗାନ କରି କରି ଚାଲିଥିଲେ । ଯଶୋଦା ଓ ରୋହିଣୀ ସଜବାଜ ହୋଇ ଶ୍ରୀକୃଷ୍ଣ ଓ ବଳରାମଙ୍କ ସହିତ ଗୋଟିଏ ଶଗଡ଼ରେ ବସି ଯାଉଥିଲେ । ସେ ଦୁହେଁ ରାମ କୃଷ୍ଣଙ୍କର କଥା ଶୁଣି ଖୁସି ହେଉଥିଲେ ଓ ଆହୁରି ଶୁଣିବାକୁ ଇଚ୍ଛା କରୁଥିଲେ । ବୃନ୍ଦାବନ ଥିଲା ଏକ ସୁନ୍ଦର ବନ । ବର୍ଷର ସବୁ ଋତୁରେ ତାହା ସୁଖକର ଥିଲା । ସେଠାରେ ପହଞ୍ଚି ଗୋପାଳମାନେ ଅର୍ଦ୍ଧଚନ୍ଦ୍ରାକାରରେ ଶଗଡ଼ସବୁ ଠିଆ କରିଦେଲେ ଓ ସେମାନଙ୍କର ଭୋଜନପାଇଁ ଉପଯୁକ୍ତ ସ୍ଥାନର ବ୍ୟବସ୍ଥା କଲେ । ପରିକ୍ଷିତ, ବୃନ୍ଦାବନର ବନରାଜି, ଗୋବର୍ଦ୍ଧନ ପର୍ବତ ଓ ଯମୁନାକୂଳ ଆଦି ଦେଖି କୃଷ୍ଣ ଓ ବଳରାମ ଅତିଶୟ ଖୁସି ହୋଇଗଲେ ।।୩୬।।

ଏହି ପରି ବାଳକ ଦୁହେଁ ଏଠାରେ ବ୍ରଜବାସିମାନଙ୍କୁ ନିଜର କୋମଳକଥାରେ ଆନନ୍ଦ ଦେଲେ । କିଛିଦିନପରେ ଟିକିଏ ବଡ ହୋଇଯିବାରୁ ଦୁହେଁ ବାଛୁରୀ ଚରାଇବାକୁ ଲାଗିଲେ ।।୩୭।। ସେ ବହୁପ୍ରକାର ଖେଳଣା ଧରି ଗୋପାଳବାଳକଙ୍କସହିତ ଘରୁ ବାହାରି ପଡୁଥିଲେ ଏବଂ ଗାଈଗୋଠର ପାଖେ ପାଖେ ବାଛୁରୀମାନଙ୍କୁ ଚରାଉଥିଲେ ।।୩୮।। ରାମ ଓ କୃଷ୍ଣ କେବେ କେବେ ବେଣୁ ବାଦନ କରନ୍ତି ବା କେବେ କେବେ ବେଲ, ଅଁଳା ଆଦିରେ ଗୁଲି ମାରନ୍ତି ଓ କେବେ କେବେ ଗାଈ ବଳଦଙ୍କର ଅଭିନୟ କରନ୍ତି ଏବଂ କେବେ କେବେ ପାଦରେ କିଙ୍କିଣୀର ତାନ ଛାଡ଼ି ଦିଅନ୍ତି ।।୩୯।। କେତେବେଳେ ଷଣ୍ଢ ପରି ଶବ୍ଦ କରି ନିଜ ନିଜ ଭିତରେ ଲଢ଼ନ୍ତି, କେବେ କେବେ ଅନ୍ୟ ଜୀବମାନଙ୍କର ସ୍ୱରକୁ ଅନୁକରଣ କରନ୍ତି । ଏରୂପେ ସାଧାରଣ ବାଳକ ପରି ଦୁହେଁ ଖେଳକୌତୁକ କରୁଥାଆନ୍ତି ।।୪୦।। ଦିନେ କୃଷ୍ଣ ଓ ବଳରାମ ଯମୁନା କୂଳରେ ନିଜର ସାଙ୍ଗମାନଙ୍କ ସହିତ ବାଛୁରୀ ଚରାଉଥିବାବେଳେ ତାଙ୍କୁ ହତ୍ୟା କରିବାପାଇଁ ଏକ ରାକ୍ଷସ ଆସି ପହଞ୍ଚିଲା ।।୪୧।। ଶ୍ରୀକୃଷ୍ଣ ଦେଖିଲେ ଯେ ଏକ ବାଛୁରୀର ଛଦ୍ମବେଶ ଧରି ଅସୁରଟାଏ ବାଛୁରୀଙ୍କ ଗୋଠରେ ପଶିଗଲା । ଆଖି ମାରି ବଳରାମଙ୍କୁ କୃଷ୍ଣ ତାହା ଦେଖାଇଦେଲେ । କିଛି ନ ଜାଣିଲା ପରି ସେ ଧୀରେ ଧୀରେ ସେହି ବାଛୁରୀ ପାଖରେ ପହଞ୍ଚିଗଲେ, ଯେପରିକି ତାକୁ ଦେଖିବାପାଇଁ ତାଙ୍କର ଲୋଭ ହେଉଛି ।।୪୨।। ଭଗବାନ ଶ୍ରୀକୃଷ୍ଣ ଲାଙ୍ଗୁଡ଼ ସହିତ ତାର ପଛ ପାଦ ଦୁଇଟିକୁ ଧରିନେଇ ତାକୁ ଉପରକୁ ଟେକିବାକୁ ଲାଗିଲେ ଏବଂ ଯେତେବେଳେ ତାର ପ୍ରାଣ ଛାଡ଼ିଗଲା, ତାକୁ ଏକ କଇଥ ଗଛ ଉପରେ ବାଡ଼େଇଦେଲେ । ଏହି ପ୍ରକାଣ୍ଡକାୟ ରାକ୍ଷସର ଆଘାତରେ ବହୁ କଇଥ ଫଳ ଓ ଡାଳ ଭାଙ୍ଗି ତଳେ ପଡ଼ିଗଲା ଏବଂ ମୃତ ଅସୁରର ଦେହ ମଧ୍ୟ ତଳେ ପଡ଼ିଲା ।।୪୩।। ତାହା ଦେଖି ଆଶ୍ଚର୍ଯ୍ୟଚକିତ ଗୋପ ବାଳକମାନେ 'ସାଧୁ ସାଧୁ' ବୋଲି କହି କୃଷ୍ଣଙ୍କୁ ପ୍ରଶଂସା କଲେ ଓ ଦେବତାମାନେ ସନ୍ତୁଷ୍ଟ ହୋଇ ଆକାଶରୁ ପୁଷ୍ପବୃଷ୍ଟି କଲେ । ସମସ୍ତ ଲୋକଙ୍କର ପାଳକ କୃଷ୍ଣ ଏବଂ ବଳରାମ ବାଛୁରୀମାନଙ୍କର ପାଳକ ହେଲେ । ପ୍ରତିଦିନ ସକାଳୁ ଯାହା କିଛି ଖାଇଦେଇ ବନକୁ ବନ ବାଛୁରୀମାନଙ୍କୁ ଚରାଉଥିଲେ ।।୪୪-୪୫।।

ଦିନେ ଗୋପବାଳକମାନେ ବାଛୁରୀମାନଙ୍କୁ ପାଣି ପିଆଇବାପାଇଁ ନିଜ ନିଜ ବାଛୁରୀଙ୍କୁ ଧରି ଏକ ଜଳାଶୟକୂଳରେ ପହଞ୍ଚିଲେ ଏବଂ ବାଛୁରୀ ପଲଙ୍କୁ ପାଣି ପିଆଇ ସାରି ନିଜେ ମଧ୍ୟ କିଛି କିଛି ପିଇଲେ ।।୪୬।। ବଜ୍ରପାତଦ୍ୱାରା ଭାଙ୍ଗି ପଡ଼ିଥିବା ଗିରିଶୃଙ୍ଗପରି ଏକ ମହାକାୟ ଜନ୍ତୁକୁ ବସିଥିବାର ଦେଖି ଗୋପବାଳକମାନେ ଡରିଗଲେ । ସେହି ମହାକାୟ ପ୍ରାଣୀଟି ଏକ ବଗ ରୂପଧାରୀ ରାକ୍ଷସ ଥିଲା । ସେ କୃଷ୍ଣଙ୍କଆଡ଼କୁ ଦଉଡ଼ି ଆସି ତାର ତୀକ୍ଷ୍ଣ ଚଞ୍ଚୁରେ କୃଷ୍ଣଙ୍କୁ ଗିଳିବାକୁ ବସିଲା ।।୪୭-୪୮।।

ବଳରାମ ଆଦି ଗୋପବାଳକମାନେ ଏହି ବିଶାଳ ବଗ କୃଷ୍ଣଙ୍କୁ ଗିଳି ପକାଉଥିବାର ଦେଖି ଭୟରେ ମୂର୍ଚ୍ଛା ହୋଇଗଲେ ॥୪୯॥ ଭଗବାନ୍ ହେଲେ ଜଗଦ୍‌ଗୁରୁ ବ୍ରହ୍ମାଙ୍କର ପିତା । ତାଙ୍କୁ ଗ୍ରାସ କରିବାକୁ ଯାଇ ରାକ୍ଷସର ତାଳୁର ମୂଳ ନିଆଁରେ ପୋଡ଼ିଗଲା ପରି ହେଲା । ସଙ୍ଗେ ସଙ୍ଗେ ରାକ୍ଷସ କୃଷ୍ଣଙ୍କୁ ଉଦ୍‌ଗାରି ପକାଇଲା ଏବଂ କୃଷ୍ଣ ଅକ୍ଷତ ଶରୀରରେ ରହିଥିବାର ଦେଖି ତା'ର କ୍ରୋଧ ବଢ଼ିଗଲା । ତହୁଁ ସେ ତାର ଥଣ୍ଟରେ ତାଙ୍କୁ ମାରିବାପାଇଁ ବସିଲା । ବକାସୁର ନାମକ ଏହି ରାକ୍ଷସ ହେଲା କଂସର ସଖା । ସେ ଯେତେବେଳେ କୃଷ୍ଣଙ୍କଆଡ଼କୁ ଆସିଲା, କୃଷ୍ଣ ତାର ଥଣ୍ଟର ଦୁଇ ଫାଳକୁ ଦୁଇ ହାତରେ ଧରି ଗୋପବାଳକମାନେ ଦେଖୁ ଦେଖୁ ତାକୁ ବେଣାଘାସ ପରି ଚିରିଦେଲେ ॥୫୦-୫୧॥ ବକାରି କୃଷ୍ଣଙ୍କ ଉପରେ ସ୍ୱର୍ଗର ଦେବତାମାନେ ନନ୍ଦନବନର ମଲ୍ଲୀଫୁଲ ବୃଷ୍ଟି କରିବାକୁ ଲାଗିଲେ ଏବଂ ବାଦ୍ୟ ଓ ଶଙ୍ଖ ଆଦି ବଜାଇ ତାଙ୍କୁ ସ୍ତୁତି କଲେ । ତାହା ଦେଖି ଗୋପବାଳକମାନେ ବିସ୍ମିତ ହୋଇଗଲେ ॥୫୨॥

ଯେତେବେଳେ ବଳରାମ ଓ ଗୋପାଳମାନେ ଦେଖିଲେ ଯେ କୃଷ୍ଣ ବଗର ମୁହଁରୁ ବାହାରି ତାଙ୍କ ପାଖକୁ ଆସିଯାଇଛି, ସେତେବେଳେ ସେମାନଙ୍କ ପିଣ୍ଡରେ ପ୍ରାଣର ସଞ୍ଚାର ହେଲା ଏବଂ ସେମାନେ ଅତିଶୟ ଆନନ୍ଦରେ ନାଚି ଉଠିଲେ । ସମସ୍ତେ ତାଙ୍କୁ ଆଲିଙ୍ଗନ କଲେ ଏବଂ ବାଛୁରୀଗୋଠଙ୍କ ସହିତ ଘରକୁ ଫେରି ଲୋକମାନଙ୍କୁ ସମସ୍ତ ଘଟଣା ଶୁଣାଇଲେ ॥୫୩॥ ଏ ସବୁ ଘଟଣା ଶୁଣି ଗୋପ ଓ ଗୋପୀମାନେ ଆଶ୍ଚର୍ଯ୍ୟ ହୋଇଗଲେ । କୃଷ୍ଣ ମୃତ୍ୟୁମୁଖରୁ ଫେରି ଆସିଛି ବୋଲି ମନେକରି ସେମାନେ ଅତି ଉଦ୍‌ବେଗ ଓ ଆଦରରେ କୃଷ୍ଣଙ୍କୁ ଦେଖିବାକୁ ଲାଗିଲେ । ଯେତେ ଦେଖିଲେ ମଧ୍ୟ ସେମାନେ ତୃପ୍ତ ହେଲେ ନାହିଁ ॥୫୪॥ ସେମାନେ ନିଜ ନିଜ ମଧ୍ୟରେ କୁହାକୁହି ହେଲେ, ଏହି ଛୋଟ ପିଲାଟି କେତେଥର ମରୁ ମରୁ ବଞ୍ଚିଗଲାଣି । ଯେଉଁମାନେ ତାର ଅନିଷ୍ଟ କରିବାକୁ ଆସିଛନ୍ତି, ସେମାନଙ୍କର ହିଁ ଅନିଷ୍ଟ ହୋଇଛି । କାରଣ ସେମାନେ ପୂର୍ବରୁ ବହୁ ଜୀବଙ୍କର ଅନିଷ୍ଟ ଆଚରଣ କରିଛନ୍ତି । ଏହି ଭୟଙ୍କର ରାକ୍ଷସମାନେ କୃଷ୍ଣର କିଛି କରିପାରିନାହାନ୍ତି । କୃଷ୍ଣକୁ ମାରିବାକୁ ଆସି ଅଗ୍ନିରେ ପତଙ୍ଗ ପରି ସେମାନେ ନିଜେ ମରି ପଡ଼ିଛନ୍ତି ॥୫୫-୫୬॥ ଦେଖ, ବେଦଜ୍ଞ ବ୍ରାହ୍ମଣମାନଙ୍କର କଥା କେବେହେଲେ ଅସତ୍ୟ ହୁଏ ନାହିଁ । ଗର୍ଗାଚାର୍ଯ୍ୟ ଯାହା କହିଥିଲେ, ତାହା ଗୋଟିକ ପରେ ଗୋଟିଏ ସତ ଘଟୁଛି ॥୫୭॥ ନନ୍ଦ ଆଦି ଗୋପାଳମାନେ କୃଷ୍ଣ ଓ ରାମଙ୍କର କଥା ଆଲୋଚନା କରି ଯେତେବେଳେ ତନ୍ମୟ ହୋଇଯାଆନ୍ତି, ସଂସାରର ଦୁଃଖକଷ୍ଟ କ'ଣ, ସେମାନଙ୍କୁ ଜଣାପଡ଼େ ନାହିଁ ॥୫୮॥ ଏହିପରି ବ୍ରଜରେ କୃଷ୍ଣ ଏବଂ ବଳରାମ ଗୋପବାଳକଙ୍କ ସହିତ କେବେକେବେ ଆଖି ବନ୍ଦ କରିବା, ସେତୁ ବାନ୍ଧିବା, ମାଙ୍କଡ଼ଙ୍କ ପରି ଡେଇଁବା ଓ କୁଦିବା ଆଦି ବିଭିନ୍ନ ଖେଳକୌତୁକରେ ବାଲ୍ୟାବସ୍ଥା କଟାଇଦେଲେ ॥୫୯॥

## ଦ୍ୱାଦଶ ଅଧ୍ୟାୟ

# ଅଘାସୁରର ନିଧନ

ଶ୍ରୀ ଶୁକଦେବ କହିଲେ, ଦିନେ ବଣକୁ ଯାଇ ବଣଭୋଜି କରିବା ଉଦ୍ଦେଶ୍ୟରେ କୃଷ୍ଣ ବଡ଼ି ସକାଳୁ ଉଠିପଡ଼ିଲେ ଏବଂ ଶିଙ୍ଗାର ମଧୁର ଧ୍ୱନିରେ ଗୋପାଳ ବାଳକଙ୍କୁ ତାଙ୍କର ଇଚ୍ଛା ଜଣାଇଦେଲେ । ବାଛୁରୀମାନଙ୍କୁ ଆଗରେ ଧରି ସେ ବ୍ରଜକୁ ବାହାରିପଡ଼ିଲେ ॥୧॥ କୃଷ୍ଣଙ୍କ ସହିତ ହଜାର ସଂଖ୍ୟାରେ ତାଙ୍କର ସାଙ୍ଗ ଗୋପାଳବାଳକ ସୁନ୍ଦର ଶିକା, ବେତ, ଶିଙ୍ଗା ଓ ବେଣୁ ଆଦି ସହିତ ନିଜ ନିଜର ବାଛୁରୀପଲ ଧରି ଆନନ୍ଦରେ ବାହାରିଆସିଲେ ॥୨॥ ଗୋପାଳବାଳକମାନେ କୃଷ୍ଣଙ୍କ ବାଛୁରୀଗୋଠରେ

ନିଜ ନିଜର ବାଛୁରୀ ପଲକୁ ମିଶାଇ ଏକାଠି କରିଦେଲେ ଏବଂ ସେମାନଙ୍କୁ ଘାସ ଚରିବାକୁ ଛାଡ଼ିଦେଇ ବିଭିନ୍ନପ୍ରକାର ପିଲାଖେଳରେ ମାତିଗଲେ ।।୩।। ସେମାନେ ପୂର୍ବରୁ ନିଜ ନିଜ ମା'ଙ୍କ ପାଖରୁ କାଚ, ମୁକ୍ତା, ମଣି ଓ ସୁନାର ହାର ପିନ୍ଧି ଆସିଥିଲେ । ବୃନ୍ଦାବନକୁ ଆସି ବିଭିନ୍ନପ୍ରକାର ଫଳ, ପୋହଳା, ମୟୂରପୁଚ୍ଛ ଓ ଗୈରିକ ଆଦି ଧାତୁରେ ନିଜ ନିଜର ଦେହକୁ ସଜାଇବାକୁ ଲାଗିଲେ । ସେମାନେ ବଣକୁ ଆସି କାହାରି କାହାରି ସାଙ୍ଗର ବେତ, ବେଣୁ ଆଦି ଚୋରାଇ ଲୁଚାଇ ଦେଉଥିଲେ ଏବଂ ଧରାପଡ଼ିଲେ ତାହା ଦୂରକୁ ଫିଙ୍ଗି ଦେଉଥିଲେ । ତାକୁ ଆଣିବାକୁ ଗଲାବେଳେ ଅନ୍ୟ ଜଣେ ଗୋପବାଳକ ତାକୁ ପୁଣି ଦୂରକୁ ଫିଙ୍ଗି ଦେଉଥିଲା ଏବଂ କିଛି ସମୟପରେ ଯାହାର ଜିନିଷ ତାକୁ ହସି ହସି ଫେରାଇ ଦେଉଥିଲେ । କୃଷ୍ଣ ବୃନ୍ଦାବନର ଶୋଭା ଦେଖିବାପାଇଁ ଦୂରକୁ ଯିବାକୁ ବାହାରିବାବେଳେ ସେମାନେ କୃଷ୍ଣଙ୍କ ଦେହରେ ବାଡ଼େଇ ହୋଇଯାଇ ଦଉଡୁଥିଲେ ଏବଂ ସେଥିରେ ବହୁତ ଆନନ୍ଦ ପାଉଥିଲେ ।।୪-୬।।

କେହିକେହି ବେଣୁ ବଜାଉଥିଲେ ତ କେହି ଶିଙ୍ଗା ବଜାଉଥିଲେ । କେହିକେହି ଭଅଁରପରି ଗୁଣୁଗୁଣୁ ସ୍ୱରରେ ଗାଉଥିଲେ ବା କେହିକେହି କୁହୁକୁହୁ କରି କୋଇଲି ସ୍ୱରକୁ ଅନୁକରଣ କରୁଥିଲେ । କେହିକେହି ଆକାଶରେ ଉଡୁଥିବା ପକ୍ଷୀର ଛାଇପଛରେ ଗୋଡ଼ାଉଥିଲେ ତ କେହିକେହି ହଂସମାନଙ୍କୁ ଅନୁକରଣ କରୁଥିଲେ । କିଏ ବଗ ପରି ଏକ ଧ୍ୟାନରେ ବସି ପଡୁଥିଲେ ତ କିଏ ମୟୂରଙ୍କ ସହିତ ଯାଇ ନୃତ୍ୟ କରୁଥିଲେ । କିଏ ମାଙ୍କଡ଼ ଛୁଆକୁ ଧରିବାକୁ ଯାଇ ଗଛରେ ଚଢ଼ି ମାଙ୍କଡ଼ଙ୍କ ପରି ଡାଳମାଙ୍କୁଡ଼ି ଖେଳୁଥିଲେ । କେହି କେହି ଛୋଟ ଛୋଟ ପାଣିଧାରକୁ ବେଙ୍ଗପରି ବେଙ୍ଗଙ୍କ ସହିତ ଡେଇଁପଡୁଥିଲେ; ପୁଣି କେହି ପାଣିରେ ନିଜର ଛାଇ ଦେଖି ତା ସହିତ ହସଖୁସି ହେବାକୁ ଲାଗିଯାଉଥିଲେ ତ କେହି ନିଜର ପ୍ରତିଧ୍ୱନି ସହିତ ଚିତ୍କାର କରୁଥିଲେ । ଯେଉଁ ଭଗବାନଙ୍କୁ ଜ୍ଞାନୀ ଓ ଯୋଗୀମାନେ ବ୍ରହ୍ମ, ବ୍ରହ୍ମାନନ୍ଦ ଓ ବ୍ରହ୍ମାନୁଭବ ବୋଲି କହିଥାନ୍ତି, ଭକ୍ତମାନେ ପରମ ଦେବତା ବୋଲି କହନ୍ତି ଏବଂ ବିଷୟୀ ବ୍ୟକ୍ତିମାନେ ଯାହାଙ୍କୁ ସାମାନ୍ୟ ବାଳକ ବୋଲି ମନେ କରନ୍ତି, ସେହି ଭଗବାନ ଶ୍ରୀକୃଷ୍ଣଙ୍କ ସହିତ ପୁଣ୍ୟବାନ୍ ଗୋପାଳବାଳକ ନାନାପ୍ରକାର ବାଳକ୍ରୀଡ଼ାରେ ମାତିଯାଇଥିଲେ ।।୭-୧୧।। ଜନ୍ମ ଜନ୍ମାନ୍ତର କଷ୍ଟ କରି ଯେଉଁମାନେ ସାଧନା କରନ୍ତି ଏବଂ ନିଜର ଇନ୍ଦ୍ରିୟ ଓ ଅନ୍ତଃକରଣକୁ ବଶୀଭୂତ କରିଥା'ନ୍ତି, ସେହି ଯୋଗୀମାନଙ୍କପାଇଁ ଭଗବାନ୍ ଶ୍ରୀକୃଷ୍ଣଙ୍କ ପାଦପଦ୍ମର ରଜ ସହଜରେ ମିଳେ ନାହିଁ । ସେ ବ୍ରଜବାସୀ ଗୋପାଳବାଳକଙ୍କ ଆଖିଆଗରେ ରହି ତାଙ୍କ ସହିତ ଖେଳ କୌତୁକ କରୁଛନ୍ତି । ସେମାନଙ୍କପାଇଁ ଏହାଠାରୁ ସୌଭାଗ୍ୟର ବିଷୟ ଆଉ କ'ଣ ହୋଇପାରେ ? ।।୧୨।। ପରିକ୍ଷିତ, ଏହି ସମୟରେ ଅଘାସୁର ନାମକ ଏକ ମହାଦୈତ୍ୟ ସେଠାରେ ଆସି ପହଞ୍ଚିଲା । କୃଷ୍ଣ ଓ ଗୋପାଳବାଳକଙ୍କ ଖେଳ ଓ ମଉଜକୁ ସେ ସହିପାରିଲା ନାହିଁ । ତା'ର ହୃଦୟ ଜଳିଉଠିଲା । ସେହି ଅସୁର ଏପରି ଭୟଙ୍କର ଥିଲା ଯେ, ଅମୃତ ପାନ କରି ଅମର ହୋଇଥିବା ଦେବତାମାନେ ମଧ୍ୟ ତା' ଡରରେ ନିଜର ପ୍ରାଣରକ୍ଷାପାଇଁ ଚିନ୍ତିତ ହେଉଥିଲେ । ତେଣୁ କିପରି ତା'ର ମୃତ୍ୟୁ ଘଟିବ, ସେଥିପାଇଁ ସେମାନେ ଅପେକ୍ଷା କରି ରହିଥିଲେ ।।୧୩।। ଅଘାସୁର ପୂତନା ଓ ବକାସୁରର ଛୋଟ ଭାଇ ଥିଲା । ତେଣୁ କୃଷ୍ଣଙ୍କୁ ମାରିବାପାଇଁ କଂସ ତାକୁ ପଠାଇଥିଲା । ଅଘାସୁର ଦୂରରୁ କୃଷ୍ଣ ଓ ଗୋପବାଳକଙ୍କୁ ଦେଖି ମନେମନେ ଭାବିବାକୁ ଲାଗିଲା, ଏହି କୃଷ୍ଣ ମୋର ଭଉଣୀ ପୂତନାକୁ ଓ ଭାଇ ବକାସୁରକୁ ମାରିଛି । ମୁଁ ସେହି ମୃତ ଭାଇଭଉଣୀଙ୍କ ପ୍ରେତାତ୍ମାର ତୃପ୍ତିପାଇଁ ଏହି କୃଷ୍ଣକୁ ଅନ୍ୟ ଗୋପାଳବାଳକଙ୍କ ସହିତ ବିନାଶ କରିବି ।।୧୪।। ଏହି କୃଷ୍ଣ ଓ ଗୋପାଳବାଳକମାନେ ମୋ ହାତରେ ମଲେ, ମୋର ମୃତ ଭାଇଭଉଣୀଙ୍କ ପାଇଁ ଏହା ଯଥାର୍ଥ ତିଳତର୍ପଣ ହେବ ଏବଂ ଏମାନେ ମଲେ ବ୍ରଜବାସୀଙ୍କର ମୃତ୍ୟୁ ନିଶ୍ଚିତ, କାରଣ ସେମାନେ ନିଜର ପ୍ରାଣପରି ଏମାନଙ୍କୁ ଭଲପାଆନ୍ତି । ସନ୍ତାନରୂପକ ପ୍ରାଣ ଚାଲିଗଲେ, ଏମାନଙ୍କର ଶରୀର ବା କିପରି ରହିବ ? ।।୧୫।। ମନେ ମନେ ଏହିପରି ଚିନ୍ତା କରି ଅଘାସୁର ଏକ ଅଜଗର ସାପର ରୂପ ଧାରଣ କଲା ଏବଂ ବାଟରେ ଶୋଇ ରହିଲା । ତାର ଶରୀର ଏକ ଯୋଜନ ଲମ୍ବ ପର୍ବତ ପରି ସ୍ଥୁଳ ଓ ବିଶାଳ ଥିଲା ଏବଂ ଗୋପବାଳକମାନଙ୍କୁ ଗିଳି ଦେବାପାଇଁ

ସେ ଏକ ପାହାଡ଼ର ଗୁମ୍ଫା ପରି ନିଜର ମୁହଁକୁ ମେଲାଇ ଶୋଇଥିଲା । ତାହାର ଓଠ ଥିଲା ପୃଥିବୀରେ ଏବଂ ଅଧର ମେଘମାନଙ୍କୁ ଲାଗିଥିଲା । ତାର ପାଟି ପର୍ବତର ଗହ୍ୱରପରି ଓ ଦାନ୍ତସବୁ ଗିରିଶୃଙ୍ଗପରି ଜଣାଯାଉଥିଲା । ସେ ନିଃଶ୍ୱାସ ନେଲେ ଝଡଝଞ୍ଜା ହେବା ପରି ଲାଗୁଥିଲା ଏବଂ ଦାବାନଳ ପରି ତା'ର ଆଖି ଦୁଇଟା ଜଳୁଥିଲା ।।୧୬-୧୭।। ଗୋପାଳବାଳକମାନେ ଅଜଗରାକୃତି ଅଘାସୁରକୁ ଦେଖି ବୃନ୍ଦାବନର ତାହା ଶୋଭାବିଶେଷ ବୋଲି ମନେକରି, ଏହା ଅଜଗର ସାପର ମୁହଁପରି ଦେଖାଯାଉଛି ବୋଲି କହିଲେ । କେହି ଜଣେ କହିଲା, ଆଚ୍ଛା ସାଙ୍ଗମାନେ, କହ ଦେଖି, ଆମ ଆଗରେ ଏକ ପ୍ରକାଣ୍ଡ ଜନ୍ତୁ ପଡ଼ିରହିଛି କି ନାହିଁ ? ଆମକୁ ଗ୍ରାସ କରିବାପାଇଁ ଏକ ବିଶାଳ ସର୍ପ ତା'ର ମୁଖ ବ୍ୟାଦାନ କରି ରହିଛି କି ନାହିଁ ? ଏହି କଥା ଶୁଣି ଅନ୍ୟ ଜଣେ କହିଲା, ସତ କଥା, ସୂର୍ଯ୍ୟକିରଣ ପଡ଼ିଲେ ମେଘମାଳା ଯେପରି ରକ୍ତବର୍ଣ୍ଣ ଦେଖାଯାଏ, ସେହିପରି ଏହି ପ୍ରକାଣ୍ଡ ଅଜଗରର ଅଧର ରକ୍ତବର୍ଣ୍ଣ ଦେଖାଯାଉଛି କି ନାହିଁ ? ତା'ର ପ୍ରତିବିମ୍ବରେ ଏହି ନିମ୍ନ ଭୂମି ଯାହା କି ତାର ଓଠପରି, ତାହା ନାଲି ଦେଖାଯାଉଛି କି ନାହିଁ ? ତୃତୀୟ ବାଳକ କହୁଛି, ସତ କଥା, ବାମ ଓ ଦକ୍ଷିଣରେ ଥିବା ଦୁଇଟି ଗିରିଗୁହା ଏହି ଅଜଗରର ଓଠ ଓ ଅଧର ପରି ମନେ ହେଉଛି ଏବଂ ଉଚ୍ଚ ଗିରିଶୃଙ୍ଗ ସବୁ ଏହାର ଦାନ୍ତମାନଙ୍କପରି ଦେଖାଯାଉଛି । ଆମ ଆଗରେ ଥିବା ଏହି ବିସ୍ତୃତ ଦୀର୍ଘ ପଥ ଏହି ଅଜଗରର ଜିହ୍ୱା ପରି ମନେ ହେଉଛି ଏବଂ ଗିରିଗୁହାର ଭିତରେ ଥିବା ଅନ୍ଧକାର ପରି ଏହାର ପାଟି ଭିତର ଜଣାପଡୁଛି । ଆହୁରି ଜଣେ କହିଲା ଦେଖ ଦେଖ, ନିଆଁରେ ପୋଡ଼ିଯାଉଥିବା ବଣର ଝଞ୍ଜା ପବନ ଏହାର ନିଃଶ୍ୱାସ ବାୟୁପରି ମନେ ହେଉଛି ଏବଂ ବଣ ନିଆଁରେ ପୋଡ଼ିଯାଉଥିବା ଜନ୍ତୁମାନଙ୍କ ଦେହର ଦୁର୍ଗନ୍ଧ ପରି ଯା ଦେହଭିତରେ ଥିବା ଆମିଷ ଗନ୍ଧ ଭାସି ଆସୁଛି ।।୧୮-୨୩।। ସେମାନେ ସମସ୍ତେ କୁହାକୁହି ହେଲେ, ଯଦି ଆମେ ଏହାର ପାଟି ଭିତରେ ପଶିଯିବା, ସେ କ'ଣ ଆମକୁ ଗିଳିଦେବ ? ଯଦି ଗିଳିଦିଏ, ତା'ହେଲେ ତ କୃଷ୍ଣ ଅଛି, ବକାସୁରକୁ ଚିରି ପକାଇବା ପରି ଏହାକୁ ମାରିପକାଇବ । ଏହା କହି ସେମାନେ ଅଳ୍ପ ଦୂରରେ ଥିବା କୃଷ୍ଣଙ୍କର ସୁନ୍ଦର ମୁହଁ ଆଡ଼କୁ ଅନାଇ ଜୋର୍‌ରେ ହସି ହସି କରତାଳି ଦେଇ ଅଘାସୁରର ମୁଖଗହ୍ୱର ମଧ୍ୟରେ ପ୍ରବେଶ କଲେ ।।୨୪।। ସେହି ବାଳକମାନେ ଏହିପରି କୁହାକୁହି ହେବାର ଶୁଣି ସର୍ବାନ୍ତର୍ଯାମୀ ଶ୍ରୀକୃଷ୍ଣ ଭାବିଲେ ଯେ, ଏମାନେ ପ୍ରକୃତ ଅଜଗରକୁ ବୃନ୍ଦାବନର ଅନ୍ୟ ଏକ ଶୋଭା ବୋଲି ମନେ କରୁଛନ୍ତି । କିନ୍ତୁ ପ୍ରକୃତରେ ଏ ହେଉଛି ଅଘାସୁର ନାମକ ଏକ ଭୟଙ୍କର ରାକ୍ଷସ । ତେଣୁ ସେ ଗୋପାଳବାଳକଙ୍କୁ ଏହାର ମୁହଁରେ ପ୍ରବେଶ କରିବାକୁ ନିଷେଧ କରିବେ । କିନ୍ତୁ ସେ ସେମାନଙ୍କୁ ନିଷେଧ କରିବା ପୂର୍ବରୁ ସେମାନେ ବାଛୁରୀପଲ ସହିତ ଅଘାସୁରର ମୁଖଗହ୍ୱର ମଧ୍ୟରେ ପ୍ରବେଶ କରି ସାରିଥିଲେ । ଅଘାସୁର ନିଜ ଭାଇ ଓ ଭଉଣୀର ମରଣ କଥା ଚିନ୍ତା କରି, ଯେ ତାଙ୍କୁ ମାରିଛି, ସେହି କୃଷ୍ଣଙ୍କୁ ଅପେକ୍ଷା କରି ନିଜର ପାଟି ବନ୍ଦ କଲା ନାହିଁ । ସେ କୃଷ୍ଣଙ୍କୁ ଅପେକ୍ଷା କରିରହିଲା ।।୨୫-୨୬।। ଏହି ବାଳକମାନେ କୃଷ୍ଣଙ୍କୁ ଏକମାତ୍ର ପ୍ରଭୁ ବୋଲି ଗ୍ରହଣ କରିଥା'ନ୍ତି । କୃଷ୍ଣ ମଧ୍ୟ ସବୁ ସମୟରେ ସେମାନଙ୍କୁ ଅଭୟ ଦେଇଥା'ନ୍ତି । କିନ୍ତୁ ସେମାନେ ଏବେ ତାଙ୍କ ହାତରୁ ଖସିଯାଇ ଅଘାସୁରର ମୃତ୍ୟୁରୂପକ ଜଠରାଗ୍ନିରେ ଘାସପରି ପଡ଼ିଗଲେ । ତେଣୁ ଦୈବର ଏହି ବିଚିତ୍ର ଲୀଳାକୁ ଦେଖି ସେ ଆଶ୍ଚର୍ଯ୍ୟ ହେଲେ ଏବଂ ସେମାନଙ୍କ ପ୍ରତି ଦୟାରେ ତାଙ୍କର ହୃଦୟ ଭରିଗଲା ।।୨୭।। ସେ ଭାବିବାକୁ ଲାଗିଲେ ଏବେ ମୋର କ'ଣ କରିବା ଉଚିତ ହେବ । ଏହି ଦୁଷ୍ଟ ରାକ୍ଷସର ବିନାଶ ଏବଂ ସରଳପ୍ରାଣ ଗୋପବାଳକ ଓ ବାଛୁରୀଙ୍କର ଜୀବନରକ୍ଷା -- ଏହି ଦୁଇଟି କାର୍ଯ୍ୟ କିପରି ହେବ ଏହିପରି ଚିନ୍ତାକରି ସର୍ବଜ୍ଞ, ସର୍ବଦ୍ରଷ୍ଟା ଶ୍ରୀହରି ନିଜର କର୍ତ୍ତବ୍ୟ ସ୍ଥିର କଲେ ଓ ଅଘାସୁରର ମୁହଁମଧ୍ୟରେ ପଶିଗଲେ ।।୨୮।।

ଶ୍ରୀକୃଷ୍ଣ ଅଘାସୁରର ମୁହଁରେ ପଶିଯିବାର ଦେଖି ମେଘ ଆଢୁଆଳରେ ଥିବା ଦେବତାମାନେ ଭୟରେ ହାହାକାର କରିବାକୁ ଲାଗିଲେ ଏବଂ ଅଘାସୁରର ପରମ ବନ୍ଧୁ କଂସ ପ୍ରଭୃତି ଅସୁରମାନେ ଏହି ସମ୍ବାଦ ପାଇ ଅତିଶୟ ଆନନ୍ଦିତ ହେଲେ ।।୨୯।। ଅଘାସୁର କୃଷ୍ଣଙ୍କ ସହିତ ଗୋପବାଳକମାନଙ୍କୁ ଦାନ୍ତରେ ଚୋବାଇ ଚୂର୍ଣ୍ଣ ବିଚୂର୍ଣ୍ଣ କରିଦେବ ବୋଲି ଇଚ୍ଛା

କରି ଯେତେବେଳେ ପାଟି ବନ୍ଦ କରିବାକୁ ବସିଲା, ସେତେବେଳେ ଦେବତାମାନଙ୍କର ହାହାକାର ଶୁଣି ଭଗବାନ ଶ୍ରୀକୃଷ୍ଣ ନିଜ ଶରୀରକୁ ଖୁବ୍ ଶୀଘ୍ର ବଢ଼ାଇଦେଲେ । ସେ ନିଜର ଶରୀରକୁ ଏପରି ବଢାଇଦେଲେ ଯେ, ରାକ୍ଷସର କଣ୍ଠ ରୁଦ୍ଧ ହୋଇଗଲା ଓ ଆଖିଡୋଳା ଓଲଟି ଗଲା । ବ୍ୟାକୁଳ ହୋଇ ସେ ଛଟପଟ ହେବାକୁ ଲାଗିଲା ଏବଂ ଶ୍ୱାସରୁଦ୍ଧ ହେବାରୁ ବ୍ରହ୍ମରନ୍ଧ୍ର ଭେଦ କରି ତା'ର ପ୍ରାଣ ଚାଲିଗଲା ।।୩୦-୩୧।। ଏହିପରି ପ୍ରାଣ ଯିବା ସଙ୍ଗେ ସଙ୍ଗେ ତା'ର ସମସ୍ତ ଇନ୍ଦ୍ରିୟ ଶିଥିଳ ହୋଇପଡ଼ିଲା । ସେ ସମୟରେ ଭଗବାନ୍ ମୁକୁନ୍ଦ ଅମୃତଦୃଷ୍ଟିରେ ଚାହିଁ ବାଛୁରୀ ଓ ବାଳକମାନଙ୍କୁ ବଞ୍ଚାଇଦେଲେ ଏବଂ ସେମାନଙ୍କୁ ସାଙ୍ଗରେ ଧରି ଅଘାସୁରର ମୁହଁରୁ ବାହାରିଆସିଲେ ।।୩୨।। ଏହି ସମୟରେ ଅଜଗରର ସ୍ଥୂଳ ଶରୀରରୁ ଏକ ଅତିଶୟ ଉଜ୍ଜ୍ୱଳ ଜ୍ୟୋତି ବାହାରି ଆସିଲା ଓ ଦଶ ଦିଗକୁ ଆଲୋକିତ କରି କୃଷ୍ଣଙ୍କ ଫେରିବାର ପ୍ରତୀକ୍ଷାରେ ଆକାଶରେ ରହିଲା । ଯେତେବେଳେ କୃଷ୍ଣ ବାହାରି ଆସିଲେ, ଦେବତାମାନେ ଦେଖୁ ଦେଖୁ ସେହି ଜ୍ୟୋତି କୃଷ୍ଣଙ୍କ ଦେହରେ ଯାଇ ମିଶିଗଲା ।।୩୩।। ସେ ସମୟରେ ଦେବତାମାନେ ପୁଷ୍ପବୃଷ୍ଟି କଲେ । ଅପ୍‌ସରାମାନେ ନୃତ୍ୟ କଲେ । ଗନ୍ଧର୍ବମାନେ ଗାନ କଲେ । ବିଦ୍ୟାଧରମାନେ ବିଭିନ୍ନ ବାଦ୍ୟ ବାଦନ କଲେ । ବ୍ରାହ୍ମଣମାନେ ସ୍ତୁତି ପାଠ କଲେ ଏବଂ ପାର୍ଷଦମାନେ ଜୟ ଜୟ ଧ୍ୱନି କରି ଶ୍ରୀକୃଷ୍ଣଙ୍କୁ ଅଭିନନ୍ଦନ କଲେ । କାରଣ ଭଗବାନ୍ ଶ୍ରୀକୃଷ୍ଣ ଅଘାସୁରକୁ ମାରି ସେ ସମସ୍ତଙ୍କର ଇଚ୍ଛା ସାର୍ଥକ କରିଥିଲେ ।।୩୪।। ସତ୍ୟଲୋକ ନିକଟରେ ଏହିପରି ଅଦ୍ଭୁତ ସ୍ତୁତି, ବାଦ୍ୟ, ଗାନ ଓ ଜୟଧ୍ୱନି ପ୍ରଭୃତି ମହୋତ୍ସବ ଦେଖି ଓ ମଙ୍ଗଳଧ୍ୱନି ଶୁଣି ବ୍ରହ୍ମା ଅଲକ୍ଷିତ ଭାବରେ ବୃନ୍ଦାବନକୁ ଆସିଲେ ଓ କୃଷ୍ଣଙ୍କର ଅପାର ମହିମା ଦେଖି ଅତିଶୟ ବିସ୍ମିତ ହୋଇଗଲେ ।।୩୫।। ପରିକ୍ଷିତ, କାଳକ୍ରମେ ବୃନ୍ଦାବନରେ ସେହି ବିଶାଳ ଅଜଗର ସାପର ଚମଡା ଶୁଖିଗଲା, ତାହା ବହୁଦିନ ପର୍ଯ୍ୟନ୍ତ ବୃନ୍ଦାବନରେ ରହିଲା ଓ ବ୍ରଜବାଳକମାନେ କ୍ରୀଡ଼ାପାଇଁ ତାକୁ ଏକ ଗୁମ୍ଫାରୂପେ ବ୍ୟବହାର କଲେ ।।୩୬।। ପାଞ୍ଚ ବର୍ଷ ବୟସରେ କୃଷ୍ଣ ସେହି ମହା ଅଜଗର ସାପକୁ ବଧ କରି ଗୋପାଳବାଳକଙ୍କୁ ରକ୍ଷା କରିଥିଲେ । ଆଶ୍ଚର୍ଯ୍ୟ ହୋଇ ଗୋପବାଳକମାନେ କୃଷ୍ଣଙ୍କୁ ଛ' ବର୍ଷ ହେବା ପରେ ତାଙ୍କର ଏହି ଲୀଳାକୁ ବର୍ଣ୍ଣନା କରିଥିଲେ ।।୩୭।। ଅଘାସୁର ଥିଲା ପାପର ମୂର୍ତ୍ତିମନ୍ତ ପ୍ରତୀକ । ଭଗବାନଙ୍କର ପାଦସ୍ପର୍ଶ ମାତ୍ରେ ତାହାର ସମସ୍ତ ପାପ ଧୋଇ ହୋଇଗଲା ଏବଂ ତାକୁ ସାରୂପ୍ୟ ମୁକ୍ତି ମିଳିଗଲା । ପାପୀମାନଙ୍କୁ କେବେହେଲେ ଏହା ମିଳେ ନାହିଁ । କିନ୍ତୁ ଏଥିରେ ଆଶ୍ଚର୍ଯ୍ୟ ହେବାର କିଛି ନାହିଁ । କାରଣ ଏହା ହେଉଛି ପରମପୁରୁଷ ପରମାତ୍ମାଙ୍କର ଲୀଳା, ଯେ କି ବ୍ୟକ୍ତ, ଅବ୍ୟକ୍ତ ଓ କାର୍ଯ୍ୟକାରଣରୂପ ଜଗତର ଏକମାତ୍ର ବିଧାତା ରୂପରେ ମାନବଲୀଳା ରଚନା କରିଥିଲେ ।।୩୮।। ପରିକ୍ଷିତ, ଭଗବାନ୍ ଶ୍ରୀକୃଷ୍ଣଙ୍କର ମାନସ ପ୍ରତିମାକୁ ଧ୍ୟାନଦ୍ୱାରା ହୃଦୟରେ ଥରେ ମାତ୍ର ଧାରଣ କରି ପାରିଲେ ପରମଗତି ଲାଭ ହୁଏ, ଯାହାକି ପ୍ରହ୍ଲାଦ ଆଦି ଭଗବାନଙ୍କ ଭକ୍ତମାନଙ୍କୁ ମିଳିଥାଏ । ଭଗବାନ୍ ନିତ୍ୟସିଦ୍ଧ ଆତ୍ମାନନ୍ଦସ୍ୱରୂପ ; ମାୟା ତାଙ୍କଠାରୁ ଦୂରରେ ରହିଥାଏ । ଭଗବାନ୍ ସ୍ୱୟଂ ଅଘାସୁରର ମୁଖମଧ୍ୟରେ ପ୍ରବେଶ କରି ତାକୁ ଯେ ସଦ୍‌ଗତି ଦେଇଛନ୍ତି, ଏଥିରେ କ'ଣ କହିବାର ଥାଇପାରେ ? ।।୩୯।। ଶ୍ରୀସୂତ କହିଲେ, ଶୌନକ ଆଦି ଋଷିଗଣ ! ଶ୍ରୀକୃଷ୍ଣଙ୍କ ଲୀଳା ଶ୍ରବଣ କରିବାପାଇଁ ପରିକ୍ଷିତ ଅତିଶୟ ଉତ୍ସୁକ ହୋଇ ରହିଥିଲେ । ସେ ତାଙ୍କର ଜୀବନଦାତା ଯଦୁପତିଙ୍କର ବିଚିତ୍ର ଚରିତ ଶୁଣି, ପୁଣି ତାଙ୍କରି ଲୀଳାମାନ ଜାଣିବାପାଇଁ ଶୁକଦେବଙ୍କୁ ପ୍ରଶ୍ନ କଲେ ।।୪୦।। ପରିକ୍ଷିତ କହିଲେ, ବ୍ରହ୍ମନ୍, ଶ୍ରୀକୃଷ୍ଣ ପଞ୍ଚମ ବର୍ଷ ବୟସରେ ଯେଉଁ ଲୀଳା କରିଥିଲେ, ତାଙ୍କର ଛ'ବର୍ଷ ବୟସ ବେଳକୁ ବ୍ରଜବାଳକମାନେ ତାହା ବ୍ରଜରେ ଘୋଷଣା କରିଥିଲେ । ପଞ୍ଚମ ବର୍ଷର ଲୀଳା ଷଷ୍ଠ ବର୍ଷବେଳେ କୁହାଗଲେ, ତାହା କିପରି ତତ୍କାଳୀନ ହୋଇପାରିବ ? ।।୪୧।। ହେ ଗୁରୁ, ହେ ସର୍ବଜ୍ଞଶିରୋମଣି, ତାହା ଜାଣିବାପାଇଁ ମୋର କୌତୂହଳ ଜାତ ହେଉଛି । ଏହାର ପ୍ରକୃତ ରହସ୍ୟ କ'ଣ ଆପଣ କହନ୍ତୁ । ଏହା ନିଶ୍ଚୟ ଭଗବାନଙ୍କର ମାୟା ହୋଇଥିବ । ନଚେତ୍ ଏହା ସମ୍ଭବ ହୋଇ ନ ଥାନ୍ତା । ମୁଁ ଜଣେ ସାମାନ୍ୟ କ୍ଷତ୍ରିୟ ହେଲେ ମଧ୍ୟ ଗୁରୁଙ୍କ ମୁହଁରୁ ଝରିପଡୁଥିବା ପବିତ୍ର କୃଷ୍ଣଲୀଳାମୃତ

ପାନ କରି ନିଜକୁ ଧନ୍ୟ ମନେକରୁଛି ॥୪୨-୪୩॥ ଶ୍ରୀସୂତ କହିଲେ, ପରମ ଭାଗବତ ଶୌନକ, ରାଜା ପରିକ୍ଷିତ ଶୁକଦେବଙ୍କୁ ଏହିପରି ପ୍ରଶ୍ନ କରିବାରୁ ତାଙ୍କର ସ୍ମୃତିପଟରେ ପୁଣି ଭଗବାନ୍ ଶ୍ରୀକୃଷ୍ଣଙ୍କର ଲୀଳା ଉଦ୍‌ଭାସିତ ହୋଇଉଠିଲା । ତାଙ୍କର ସମସ୍ତ ଇନ୍ଦ୍ରିୟ ଓ ଚିତ୍ତ ଭଗବାନଙ୍କଠାରେ ନିବିଷ୍ଟ ହେଲା । କଷ୍ଟେମଷ୍ଟେ ବାହ୍ୟଜ୍ଞାନ ଲାଭ କରି ପୁଣି ସେ ଭଗବତ୍‌ଲୀଳା ବର୍ଣ୍ଣନା କରିବାକୁ ଲାଗିଲେ ॥୪୪॥

## ତ୍ରୟୋଦଶ ଅଧ୍ୟାୟ

# ବ୍ରହ୍ମାଙ୍କର ମୋହଭଙ୍ଗ

ଭକ୍ତଚୂଡ଼ାମଣି ପରିକ୍ଷିତ, ତୁମେ ଭାଗ୍ୟବାନ୍ । ଭଗବାନଙ୍କ କଥା ଯେତେ ଶୁଣିଲେ ମଧ୍ୟ ତୁମକୁ ତାହା ନିତ୍ୟନୂତନ ଲାଗୁଛି ॥୧॥ ସର୍ବଦା କାମିନୀମାନଙ୍କ ବିଷୟ ଶୁଣି ମଧ୍ୟ କାମୁକମାନେ ଯେପରି ତୃପ୍ତିଲାଭ କରିପାରନ୍ତି ନାହିଁ, ସେହିପରି ସାରଗ୍ରାହୀ ପରମ ଭକ୍ତଙ୍କର ସ୍ୱଭାବ ହେଉଛି, ନିଜର ବାକ୍ୟ, ଶ୍ରବଣଶକ୍ତି ଓ ଚିତ୍ତ ଆଦିକୁ କୃଷ୍ଣଙ୍କଠାରେ ଅର୍ପଣ କରି ମଧ୍ୟ ସେମାନେ କେବେ ତୃପ୍ତ ହୁଅନ୍ତି ନାହିଁ ଏବଂ କୃଷ୍ଣକଥା ତାଙ୍କୁ ସବୁବେଳେ ନୂଆ ନୂଆ ଲାଗେ ॥୨॥ ରାଜା, ସାବଧାନ ହୋଇ ଶୁଣ । କୃଷ୍ଣଙ୍କର ଲୀଳାକଥା ଗୋପନୀୟ ହେଲେ ମଧ୍ୟ ଶ୍ରଦ୍ଧାବାନ୍ ଶିଷ୍ୟ ଆଗରେ ଗୁରୁ ତାହା ପ୍ରକାଶ କରିବା ଉଚିତ ॥୩॥ ମୃତ୍ୟୁତୁଲ୍ୟ ଅଘାସୁର ମୁହଁରୁ ଗୋପାଳବାଳକ ଓ ବାଛୁରୀମାନଙ୍କୁ ଉଦ୍ଧାର କରି ଭଗବାନ ଶ୍ରୀକୃଷ୍ଣ ସେମାନଙ୍କୁ ଯମୁନାକୂଳକୁ ନେଇ ଆସିଲେ ଏବଂ କହିଲେ, ଦେଖ ସାଙ୍ଗମାନେ, ଯମୁନାକୂଳ କେଡ଼େ ସୁନ୍ଦର ଦେଖାଯାଉଛି । ଆମର ଖେଳିବାପାଇଁ ଏଠାରେ ସବୁକିଛି ଅଛି । ଶୁଭ୍ରକୋମଳ ବାଲୁକାମୟ ଭୂମି, ପ୍ରସ୍ଫୁଟିତ ପଦ୍ମଗନ୍ଧରେ ଆକୃଷ୍ଟ ଭ୍ରମର ଓ ପକ୍ଷୀମାନଙ୍କର ଗୁଂଜରଣ ଓ କୂଜନଧ୍ୱନି ଏବଂ ସେଥିରେ ପ୍ରତିଧ୍ୱନିତ ଧାଡ଼ି ଧାଡ଼ି ବୃକ୍ଷସବୁ କିପରି ସୁନ୍ଦର ଦେଖାଯାଉଛି ॥୪-୫॥ ଆମର ଦିନର ଭୋଜନସମୟ ଗଡ଼ିଯାଉଛି, ସମସ୍ତେ କ୍ଷୁଧାତୁର । ତେଣୁ ଏଠାରେ ବସି ଭୋଜନ କରିବା । ବାଛୁରୀମାନଙ୍କର ମଧ୍ୟ ନଦୀରେ ଜଳପାନ କରି ପାଖରେ ଘାସ ଚରିବା ସୁବିଧା ହେବ । ଗୋପବାଳକମାନେ କୃଷ୍ଣଙ୍କ କଥାରେ ରାଜି ହୋଇ ବାଛୁରୀମାନଙ୍କୁ ପାଣି ପିଆଇଲେ ଓ ନିକଟରେ ଥିବା ଘାସ ଭୂଇଁରେ ଚରିବାପାଇଁ ଛାଡ଼ିଦେଲେ । ସେମାନେ ଶିକାରେ ଯାହା ସବୁ ଖାଇବା ପଦାର୍ଥ ଆଣିଥିଲେ ତାଙ୍କ ସହିତ ମିଶି ଆନନ୍ଦରେ ଭୋଜନ କଲେ ॥୬-୭॥ ଫୁଟିଲା ପଦ୍ମକୋଷର ଚାରିପଟେ ପାଖୁଡ଼ା ସବୁ ଯେପରି ମଣ୍ଡଳାକାରରେ ରହିଥା'ନ୍ତି, ସେହିପରି ପ୍ରଫୁଲ୍ଲମନା ଗୋପବାଳକମାନେ କୃଷ୍ଣଙ୍କୁ ଚାରିଆଡୁ ଘେରି ଯମୁନା କୂଳରେ ବସିଥିଲେ । ସେମାନେ ଫୁଲର ପାଖୁଡ଼ା, ପତ୍ର, ଫଳ, ମୂଳ, କେହି ବା ବୃକ୍ଷର ବଲ୍‌କଳ ବା ପ୍ରସ୍ତରଖଣ୍ଡକୁ ଭୋଜନପାତ୍ର କରି ଖାଇବା ଆରମ୍ଭ କଲେ ॥୮-୯॥ ସେମାନେ ସାଙ୍ଗରେ ଆଣିଥିବା ନିଜ ନିଜର ଖାଦ୍ୟକୁ କୃଷ୍ଣଙ୍କ ସମେତ ପରସ୍ପର ମଧ୍ୟରେ ବାଣ୍ଟି ହସଖୁସି ହୋଇ ଖାଇବାକୁ ଲାଗିଲେ ॥୧୦॥ ସେତେବେଳେ କୃଷ୍ଣ ପେଟତଳେ ବନ୍ଧା ହୋଇଥିବା ଲୁଗାରେ ବଂଶୀଟିକୁ ଖୋସି ଦେଇଥିଲେ । ଶିଙ୍ଗା ଓ ବେତ ଥିଲା କାଖରେ । ବାଁ ହାତରେ ଦହିଭାତର ଗୁଣ୍ଡା ଏବଂ ଅଙ୍ଗୁଳି ମଧ୍ୟରେ ଅଦା ଓ କୋଳି ଆଚାର ଧରିଥିଲେ । ଚାରିପଟେ ଘେରି ବସିଥିବା ସାଙ୍ଗମାନଙ୍କ ମଝିରେ ବସି ସେମାନଙ୍କୁ ମଜା କଥା କହି ହସାଉଥିଲେ ଓ ଖାଇବାରେ ଲାଗିଥିଲେ । ପ୍ରତ୍ୟେକ ଯଜ୍ଞରେ ଯାହାଙ୍କୁ ପ୍ରଥମେ ଭୋଜ୍ୟଦ୍ରବ୍ୟ ଅର୍ପଣ କରାଯାଏ, ସେ କିପରି ବାଳଲୀଳାରେ ବସି ଭୋଜନ କରୁଛନ୍ତି, ସ୍ୱର୍ଗର ଦେବତାମାନେ ତାହା ଦେଖି ଆଶ୍ଚର୍ଯ୍ୟ ହେଉଥିଲେ ॥୧୧॥ ପରିକ୍ଷିତ, କୃଷ୍ଣ-ଗତ-ପ୍ରାଣ ଗୋପାଳବାଳକମାନେ ଏହିପରି ବସି ଖାଉଥିବାବେଳେ ଘାସଲୋଭରେ ବାଛୁରୀମାନେ ବଣଭିତରେ ଅନେକ

ଦୂରକୁ ଚାଲିଗଲେ । ବାଛୁରୀସବୁ କୁଆଡ଼େ ଚାଲିଗଲେ ବୋଲି ଭାବି ଗୋପବାଳକମାନେ ଭୟଭୀତ ହୋଇପଡ଼ିଲେ । କିନ୍ତୁ ସମସ୍ତ ଭୟଭଞ୍ଜନକାରୀ ଭଗବାନ୍ ଶ୍ରୀକୃଷ୍ଣ କହିଲେ, ଭାଇମାନେ, ତୁମେ ଖାଇବା ବନ୍ଦ କର ନାହିଁ । ମୁଁ ବାଛୁରୀପଲକୁ ଖୋଜି ନେଇ ଆସିବି ॥୧୨-୧୩॥ ଭଗବାନ୍ ଶ୍ରୀକୃଷ୍ଣ ହାତରେ ସେହିପରି ଦହିଭାତର ଗୁଣ୍ଡା ଧରିଥା'ନ୍ତି । ହଠାତ୍ ଉଠିପଡ଼ି ପାହାଡ଼, ପର୍ବତ, ଲତା, ବୁଦା ଓ ଭୟଙ୍କର ଘନଜଙ୍ଗଲ ମଧ୍ୟରେ ସେ ବାଛୁରୀମାନଙ୍କୁ ଖୋଜିବାପାଇଁ ଚାଲିଗଲେ ॥୧୪॥ କୁରୁଶ୍ରେଷ୍ଠ, ଭଗବାନ୍‌ଙ୍କ ନାଭିପଦ୍ମରୁ ଜାତ ବ୍ରହ୍ମା ପ୍ରଥମେ ଆକାଶରେ ଥାଇ ଅଘାସୁରର ଉଦ୍ଧାର ଦେଖି ଅତି ଆଶ୍ଚର୍ଯ୍ୟ ହୋଇଯାଇଥିଲେ । ମାୟାଶରୀରଧାରୀ ବାଳକ କୃଷ୍ଣଙ୍କର ଅନ୍ୟ କିଛି ମନୋହର ମହିମା ଦେଖିବାପାଇଁ ସେ ଇଚ୍ଛା କରୁଥିଲେ । ସେ ପ୍ରଥମେ ବାଛୁରୀମାନଙ୍କୁ ନେଇ ଯାଇଥିଲେ ଏବଂ କୃଷ୍ଣ ଚାଲିଯିବାପରେ ଗୋପାଳବାଳକମାନଙ୍କୁ ହରଣ କରି ଅନ୍ୟତ୍ର ରଖିଦେଲେ ଓ ନିଜେ ଅନ୍ତର୍ଦ୍ଧାନ ହୋଇଗଲେ ॥୧୫॥ କୃଷ୍ଣ ବାଛୁରୀପଲକୁ ବନମଧ୍ୟରେ ବହୁତ ଖୋଜିଲେ, ମାତ୍ର ପାଇଲେ ନାହିଁ । ଯମୁନାକୂଳକୁ ଆସି ସେ ଗୋପବାଳକଙ୍କୁ ଦେଖିଲେ ନାହିଁ । ତେଣୁ ସେ ଉଭୟଙ୍କୁ ଖୋଜିବାପାଇଁ ପୁଣି ବନମଧ୍ୟରେ ବୁଲିବାକୁ ଲାଗିଲେ ॥୧୬॥ ବଣମଧ୍ୟରେ ବାଛୁରୀ ବା ବାଛୁରୀପାଳକ କାହାରିକୁ ନ ଦେଖି କୃଷ୍ଣଙ୍କ ମନରେ ହଠାତ୍ ସନ୍ଦେହ ହେଲା । ସେ ତୁରନ୍ତ ଜାଣିପାରିଲେ ଯେ ଏହା ହେଉଛି ବ୍ରହ୍ମାଙ୍କର କାମ ॥୧୭॥ ପରେ ପରେ କୃଷ୍ଣ ବାଛୁରୀମାନଙ୍କର ଓ ବାଳକମାନଙ୍କର ମା'ମାନଙ୍କୁ ଏବଂ ତତ୍‌ସହିତ ବ୍ରହ୍ମାଙ୍କୁ ଖୁସି କରିବାପାଇଁ ଉଭୟ ବାଛୁରୀ ଓ ବାଳକ ରୂପ ଧାରଣ କଲେ । ଏହା ସାମାନ୍ୟ କଥା । ତାଙ୍କ ପାଖରେ ତ ସମ୍ପୂର୍ଣ୍ଣ ବିଶ୍ୱକୁ ସୃଷ୍ଟି କରିବାର ଶକ୍ତି ଅଛି ॥୧୮॥ ପରିକ୍ଷିତ, ଏହି ବାଳକ ଓ ବାଛୁରୀମାନେ ସଂଖ୍ୟାରେ ଯେତେ ଥିଲେ, ସେମାନଙ୍କର ଛୋଟ ଛୋଟ ଶରୀର ଯେପରି ଥିଲା, ହାତ ପାଦ ଯେପରି ଥିଲା, ସେମାନଙ୍କ ପାଖରେ ଯେପରି ଓ ଯେତେ ବେତ, ଶିଙ୍ଗା, ବଂଶୀ, ପତ୍ର, ଓ ଶିକା ଥିଲା ଏବଂ ଯେତେ ସଂଖ୍ୟାରେ ବସ୍ତ୍ର ଓ ଅଳଙ୍କାର ଥିଲା, ସେମାନଙ୍କର ସ୍ୱଭାବ, ଗୁଣ, ନାମ, ରୂପ ଆଦି ଯାହା ଥିଲା ଏବଂ ସେମାନେ ଯେଉଁ ଅବସ୍ଥାରେ ଥିଲେ, ଯେପରି ଖା'ପିଆ କରୁଥିଲେ ଓ ଚାଲୁଥିଲେ, ଠିକ୍ ସେହିପରି ସେହି ରୂପରେ ସର୍ବସ୍ୱରୂପ ଭଗବାନ୍ ଶ୍ରୀକୃଷ୍ଣ ପ୍ରକଟ ହୋଇଗଲେ ଏବଂ ଜଗତ୍ ଯେ ବିଷ୍ଣୁମୟ ଏଇ କଥାକୁ ପ୍ରମାଣିତ କଲେ ॥୧୯॥ ଭଗବାନ୍ କୃଷ୍ଣ ସ୍ୱୟଂ ବାଛୁରୀ ଓ ସ୍ୱୟଂ ବାଳକ ହୋଇଗଲେ । ଏହିପରି ନିଜ ସ୍ୱରୂପ ବାଛୁରୀ ଓ ନିଜ ସ୍ୱରୂପ ବାଳକ ହୋଇ ଓ ସେମାନଙ୍କ ଘେରରେ ରହି ନିଜେ ଖେଳି ଖେଳି ବ୍ରଜରେ ପ୍ରବେଶ କଲେ ॥୨୦॥ ପରିକ୍ଷିତ, ଯେଉଁ ବାଳକର ଯେଉଁ ବାଛୁରୀ ଥିଲେ ସେ ସେହି ବାଳକର ବେଶରେ ବାଛୁରୀମାନଙ୍କୁ ନେଇ ସେମାନଙ୍କ ନିଜ ନିଜ ଗୋଠରେ ପହଞ୍ଚାଇଦେଲେ ଏବଂ ଏହିପରି ସେ ଭିନ୍ନ ଭିନ୍ନ ବାଳକରୂପରେ ଭିନ୍ନ ଭିନ୍ନ ଗୃହରେ ପ୍ରବେଶ କରି ନିଜେ ନନ୍ଦ ଭବନରେ ପହଞ୍ଚିଗଲେ ॥୨୧॥ ଗୋପାଳବାଳକଙ୍କର ମା'ମାନେ ବଂଶୀର ସ୍ୱନ ଶୁଣି ଦଉଡି ଆସିଲେ । ନିଜର ପିଲାରୂପରେ ଆସୁଥିବା କୃଷ୍ଣଙ୍କୁ କୋଳକୁ ଉଠାଇ ନେଇ ନିଜର ସନ୍ତାନ ଭାବି ଆଲିଙ୍ଗନ କଲେ । ବାତ୍ସଲ୍ୟସ୍ନେହରେ ସେମାନଙ୍କ ସ୍ତନରୁ କ୍ଷୀର ଝରିପଡୁଥିଲା ଏବଂ ଅମୃତପରି ସ୍ୱାଦୁ ଓ ମାଦକ ଏହି କ୍ଷୀରକୁ ସେମାନେ ତାଙ୍କ ପିଲାଙ୍କୁ ପିଆଇଦେଲେ ॥୨୨॥ ପରିକ୍ଷିତ, ଏହିପରି ସନ୍ଧ୍ୟା ସମୟରେ ଭଗବାନ୍ ଶ୍ରୀକୃଷ୍ଣ ବାଳକମାନଙ୍କ ରୂପରେ ବନରୁ ଫେରି ଆସନ୍ତି ଓ ନିଜ ନିଜର ମାତାଙ୍କୁ ଆନନ୍ଦିତ କରନ୍ତି । ମା'ମାନେ ତାଙ୍କୁ କୋଳାଗ୍ରତ କରନ୍ତି, ସୁଗନ୍ଧି ଦ୍ରବ୍ୟ ଲଗାଇ ଗାଧୋଇ ଦିଅନ୍ତି, ଦେହରେ ଚନ୍ଦନ ଆଦି ବୋଳି ଦିଅନ୍ତି ଏବଂ ଭଲ ଲୁଗା ଓ ଅଳଙ୍କାରରେ ତାଙ୍କୁ ସଜାଇ ଦିଅନ୍ତି । କାହାରି ଦୃଷ୍ଟି ନ ପଡୁ ସେଥିପାଇଁ ଗୋରୋଚନା ଲଗାଇ ଦିଅନ୍ତି, ସ୍ନେହରେ ଭୋଜନ କରାନ୍ତି ଓ ଅତି ଯତ୍ନରେ ଲାଳନପାଳନ କରନ୍ତି ॥୨୩॥ ଗୋପବାଳକଙ୍କ ପରି ଗାଈମାନେ ମଧ୍ୟ ଜଙ୍ଗଲରେ ଚରିବୁଲି ଯେତେବେଳେ ଫେରି ଆସନ୍ତି, ସେମାନଙ୍କର ହମ୍ବାରଡ଼ି ଶୁଣି ବାଛୁରୀମାନେ ଦଉଡ଼ି ଆସନ୍ତି ଏବଂ ବାଛୁରୀଙ୍କୁ ସେମାନେ ବାରମ୍ବାର ଜିଭରେ ଚାଟି ଦୁଧ ପିଆନ୍ତି । ଅଧିକ ବାତ୍ସଲ୍ୟଯୋଗୁଁ ତାଙ୍କ ପହ୍ନାରୁ ଆପେ ଆପେ କ୍ଷୀର ବାହାରି ଆସୁଥାଏ ॥୨୪॥ ବ୍ରଜର ଗାଈମାନେ ନିଜ ବାଛୁରୀଙ୍କୁ ଓ ଗୋପୀମାନେ ନିଜ ପିଲାମାନଙ୍କୁ ଯେପରି ପୂର୍ବରୁ ସ୍ନେହ କରୁଥିଲେ,

ବାଛୁରୀରୂପୀ ଓ ବାଳକରୂପୀ କୃଷ୍ଣଙ୍କୁ ସେହିପରି ସ୍ନେହ କରିବାକୁ ଲାଗିଲେ । ବରଂ ଦିନକୁ ଦିନ ଏହି ସ୍ନେହ ବଢ଼ିବାକୁ ଲାଗିଲା । ଗାଈମାନଙ୍କପ୍ରତି ଓ ଗୋପୀମାନଙ୍କପ୍ରତି ତାଙ୍କର ପୁତ୍ରଭାବ ମଧ୍ୟ ବଢ଼ିଚାଲିଲା । ସେ ଯେ ସେମାନଙ୍କର ପୁଅ ନୁହନ୍ତି, ତାହା ସେ ଭଲ ଭାବରେ ଜାଣିଥିଲେ ।।୨୫।। ବ୍ରଜବାସୀ ଗାଈଗୋରୁ ଓ ଗୋପଗୋପୀଙ୍କର ନିଜ ନିଜର ବତ୍ସା ଓ ବାଳକମାନଙ୍କପ୍ରତି ସ୍ନେହମମତା ଦିନୁଦିନ ବଢ଼ିବାକୁ ଲାଗିଲା ଏବଂ ବର୍ଷେ ସମୟ ଏହିପରି କଟିଗଲା । ଶ୍ରୀକୃଷ୍ଣଙ୍କ ଠାରେ ତାଙ୍କର ଯେପରି ଅପାର ପ୍ରେମ ରହିଥିଲା ଏହି ବାଳକମାନଙ୍କପ୍ରତି ମଧ୍ୟ ସେହିପରି ହୋଇଗଲା । ଏହିପରି ସର୍ବାନ୍ତର୍ଯାମୀ ଶ୍ରୀକୃଷ୍ଣ ବାଛୁରୀ ଓ ବ୍ରଜବାଳକଙ୍କ ରୂପରେ ନିଜେ ନିଜକୁ ପାଳନ କରି ଏବଂ ଗୋଷ୍ଠରେ କ୍ରୀଡ଼ା କୌତୁକ କରି ଗୋଟିଏ ବର୍ଷ କଟାଇଦେଲେ ।।୨୬-୨୭।।

ବର୍ଷେ ପୂରିବାକୁ ପାଞ୍ଚ ଛ' ଦିନ ବାକି ଅଛି, ଦିନେ କୃଷ୍ଣ ବଳରାମଙ୍କ ସହିତ ବାଛୁରୀ ଚରାଇ ଚରାଇ ବଣରେ ପ୍ରବେଶ କଲେ ।।୨୮।। ସେତେବେଳେ ଗୋବର୍ଦ୍ଧନ ପର୍ବତ ଉପରେ ଚରୁଥିବା ଗାଈସବୁ ବ୍ରଜ ନିକଟରେ ଘାସ ଚରୁଥିବା ନିଜର ବାଛୁରୀମାନଙ୍କୁ ଦେଖିବାକୁ ପାଇଲେ ।।୨୯।। ବାଛୁରୀମାନଙ୍କୁ ଦେଖିବାମାତ୍ରେ ଗାଈମାନେ ବତ୍ସାସ୍ନେହରେ ଆତୁର ହୋଇଗଲେ । ସେମାନେ ନିଜ ରକ୍ଷକମାନଙ୍କୁ ନ ମାନି ଓ ଦୁର୍ଗମ ପର୍ବତ ଲଂଘନ କରି ଦଉଡ଼ିଲେ । ସେତେବେଳେ ସେମାନଙ୍କ ପହ୍ନାରୁ କ୍ଷୀର ବୋହିଯାଉଥିଲା । ସେମାନେ ଆଗ ଗୋଡ଼ ଓ ପଛ ଗୋଡ଼ ଦୁଇଟିକୁ ଏକାଠି କରି ବେକକୁ ଚୂଳ ଉପରକୁ ଉଠାଇ ଦେଇ ଲାଞ୍ଜ ଉପରକୁ ଟେକି ଦଉଡ଼ିବାକୁ ଲାଗିଲେ ।।୩୦।। ଯେଉଁ ଗାଈଙ୍କର ଏ ଭିତରେ ନୂଆ ବାଛୁରୀ ହୋଇଥିଲା, ସେମାନେ ନିଜର ପୂର୍ବ ବାଛୁରୀ ପାଖକୁ ଦଉଡ଼ି ଆସିଲେ ଏବଂ ସ୍ନେହବଶରେ ତାକୁ ଦୁଧ ପିଆଇବାକୁ ଲାଗିଲେ । ସେମାନେ ନିଜର ପିଲାମାନଙ୍କ ଦେହକୁ ଏପରି ଚାଟିବାକୁ ଲାଗିଲେ ଯେପରିକି ତାଙ୍କୁ ପୁଣି ନିଜର ପେଟ ଭିତରେ ରଖିବାକୁ ଚାହାନ୍ତି ।।୩୧।। ଏହି ଗୋରୁମାନଙ୍କର ରକ୍ଷକ ଗୋପାଳମାନେ ସେମାନଙ୍କୁ ଯେତେ ରୋକିବାକୁ ଚେଷ୍ଟା କଲେ ମଧ୍ୟ ରୋକିପାରିଲେ ନାହିଁ । ଏହାଫଳରେ ସେମାନେ ଲଜ୍ଜିତ ହେଲେ ଓ ଗାଈଙ୍କପ୍ରତି ସେମାନଙ୍କର ରାଗ ହେଲା । ସେମାନେ ବହୁ କଷ୍ଟରେ ଦୁର୍ଗମ ବାଟରେ ଆସି ସେଠାରେ ପହଞ୍ଚିଲେ ଏବଂ ବାଛୁରୀଙ୍କ ସହିତ ନିଜର ପିଲାମାନଙ୍କୁ ଦେଖିଦେଲେ ।।୩୨।। ପିଲାଙ୍କୁ ଦେଖି ସେମାନଙ୍କ ହୃଦୟ ସ୍ନେହରେ ଭରିଗଲା । ସ୍ନେହର ଆତିଶଯ୍ୟରେ ମନର କ୍ରୋଧ କୁଆଡ଼େ ଚାଲିଗଲା । ସେମାନେ ନିଜ ନିଜର ପିଲାଙ୍କୁ କ୍ରୋଡ଼ରେ ବସାଇ ମସ୍ତକକୁ ଚୁମ୍ବନ କରି ଆନନ୍ଦିତ ହେଲେ ।।୩୩।। ବୃଦ୍ଧ ଗୋପାଳମାନେ ବାଳକଙ୍କୁ ଆଲିଙ୍ଗନ କରି ବହୁ ଆନନ୍ଦ ଲାଭକଲେ ଏବଂ ବହୁକଷ୍ଟରେ ସେମାନଙ୍କୁ ଛାଡ଼ି ଧୀରେ ଧୀରେ ସେଠାରୁ ଚାଲିଗଲେ । ଯିବାପରେ ମଧ୍ୟ ବାଳକମାନଙ୍କୁ କୋଳାଗ୍ରତ କରିଥିବା ସ୍ମୃତିରେ ସେମାନଙ୍କ ଚକ୍ଷୁ ସଜଳ ହୋଇଉଠୁଥିଲା ।।୩୪।।

ବଳରାମ ଦେଖିଲେ ଯେ, ଯେଉଁ ବାଛୁରୀମାନେ ଟିକିଏ ବଡ଼ ହୋଇଯାଇଛନ୍ତି ଓ ସ୍ତନପାନ କରୁ ନାହାନ୍ତି, ଗୋରୁ ଓ ଗୋପାଳମାନଙ୍କର ସେମାନଙ୍କପ୍ରତି ଅତ୍ୟଧିକ ସ୍ନେହ ଓ ଉତ୍କଣ୍ଠା ବଢ଼ିବାରେ ଲାଗିଛି । ସେତେବେଳେ ସେ ଚିନ୍ତାରେ ପଡ଼ିଗଲେ । ସେ ଏହାର କାରଣ ଜାଣିପାରୁନଥିଲେ । ସେ ଭାବିଲେ, ଆଶ୍ଚର୍ଯ୍ୟର କଥା ଯେ ମୋର ଓ ବ୍ରଜବାସୀଙ୍କର କୃଷ୍ଣଙ୍କପ୍ରତି ଯେପରି ଅପୂର୍ବ ସ୍ନେହ ଅଛି, ଏହି ବାଳକ ଓ ବାଛୁରୀମାନଙ୍କପ୍ରତି ସେହିପରି ସ୍ନେହ କିପରି ବଢ଼ିବାରେ ଲାଗିଛି ।।୩୫-୩୬।। ଏହା କୌଣସି ଦୈବୀ ନା ଆସୁରୀ ମାୟା ନା ନରମାୟା ? ଏହା କୃଷ୍ଣର ମାୟା ହେବା ବିଚିତ୍ର ନୁହେଁ । କାରଣ କୌଣସି ମାୟାର ଏପରି ଶକ୍ତି ନାହିଁ ଯେ ମୋତେ ମୋହିତ କରିପାରିବ ।।୩୭।। ଏହିପରି ଚିନ୍ତା କରି ବଳରାମ ଜ୍ଞାନଦୃଷ୍ଟିରେ ଦେଖିଲେ ଯେ, କୃଷ୍ଣ ଏହି ସମସ୍ତ ଗୋପାଳବାଳକ ଓ ବତ୍ସାଙ୍କର ରୂପ ଧାରଣ କରିଛି । ସେ କୃଷ୍ଣଙ୍କୁ କହିଲେ, ହେ କୃଷ୍ଣ, ଏହି ଗୋପାଳବାଳକ ଓ ବାଛୁରୀମାନେ ଦେବତା ନୁହନ୍ତି କି ଋଷି ନୁହନ୍ତି । ତୁମେ ହିଁ ଏହି ଗୋପବାଳକ, ବାଛୁରୀ, ଶିଙ୍ଗା, ବେତ, ବେଣୁ ପ୍ରଭୃତି ଅସଂଖ୍ୟ ବିଚିତ୍ର ରୂପରେ ନିଜକୁ ପ୍ରକାଶ କରିଛ । ତୁମର ଏହି ଭିନ୍ନ ଭିନ୍ନ ବହୁ ମୂର୍ତ୍ତି

ପ୍ରକାଶ କରିବାର କାରଣ କ'ଣ, ମୋତେ କହିବ କି ? ତାହା ଶୁଣି କୃଷ୍ଣ ବ୍ରହ୍ମାଙ୍କର ଗୋବତ୍ସାଦି ହରଣଠାରୁ ସମସ୍ତ ବୃତ୍ତାନ୍ତ ଜଣାଇଲେ ।।୩୮-୩୯।।

ପରିକ୍ଷିତ, ବ୍ରହ୍ମା ନିଜ ଆୟୁ ଗଣନାରେ ଅଳ୍ପକ୍ଷଣ ମଧ୍ୟରେ ବୃନ୍ଦାବନକୁ ଫେରିଆସି ଦେଖିଲେ ଯେ କୃଷ୍ଣ ବାଛୁରୀ ଓ ଗୋପବାଳକଙ୍କ ସହିତ ପୂର୍ବ ପରି ବର୍ଷେ ପର୍ଯ୍ୟନ୍ତ ଖେଳୁଛନ୍ତି ।।୪୦।। ସେ ଭାବିବାକୁ ଲାଗିଲେ, ଗୋକୁଳରେ ଯେତେଜଣ ଗୋପବାଳକ ଓ ବାଛୁରୀ ଥିଲେ, ସେମାନେ ତ ମୋର ମାୟାରେ ଶଯ୍ୟାରେ ଶୋଇ ପଡ଼ିଛନ୍ତି । ମୁଁ ମୋର ମାୟାଦ୍ୱାରା ସେମାନଙ୍କୁ ଅଚେତ କରିଦେଇଛି । ସେହିଦିନଠାରୁ ତ ସେମାନେ ଆଉ ଉଠି ନାହାନ୍ତି ।।୪୧।। ମୋ ମାୟାରେ ମୋହିତ ସେମାନଙ୍କ ଛଡ଼ା ଏହି ଗୋପବାଳକ ଓ ବାଛୁରୀମାନେ କୁଆଡୁ ଆସିଲେ, ଯେଉଁମାନେ କି ବର୍ଷେ ହେଲା କୃଷ୍ଣଙ୍କ ସାଙ୍ଗରେ ଖେଳୁଛନ୍ତି ? ଏହିପରି ସ୍ୱୟମ୍ଭୂ ବ୍ରହ୍ମା ଏହି ଦୁଇଗୋଷ୍ଠୀ ମଧ୍ୟରେ କ'ଣ ପ୍ରଭେଦ ଅଛି, କିଏ ପ୍ରକୃତରେ ସତ୍ୟ ଓ କିଏ ନୁହେଁ, ତାହା ଜାଣିବାପାଇଁ ବହୁ ସମୟ ଚିନ୍ତା କଲେ । କିନ୍ତୁ ତାହା ଜାଣିପାରିଲେ ନାହିଁ । ବିଶ୍ୱବିମୋହନ ବିଷ୍ଣୁ ସମସ୍ତଙ୍କୁ ମୋହିତ କରିପାରନ୍ତି, କିନ୍ତୁ ତାଙ୍କୁ କୌଣସି ମାୟା ମୋହିତ କରିପାରେ ନାହିଁ । ବ୍ରହ୍ମା ନିଜ ମାୟାରେ ତାଙ୍କୁ ମୋହିତ କରିବାକୁ ଚେଷ୍ଟା କରିଥିଲେ; କିନ୍ତୁ ନିଜେ ମୋହିତ ହୋଇଗଲେ ।।୪୨-୪୪।। ରାତ୍ରିର ଘନ ଅନ୍ଧକାରରେ ଯେପରି କୁହୁଡ଼ିର ସତ୍ତା ରହେ ନାହିଁ, ଦିନବେଳେ ଯେପରି ଜୁଳୁଜୁଳିଆ ପୋକର ଜ୍ୟୋତି କୁଆଡ଼େ ଲୁଚିଯାଏ, ସେହିପରି ମହାପୁରୁଷଙ୍କ ଉପରେ ଯେ ନିଜର ମାୟା ପ୍ରୟୋଗ କରେ, ତାଙ୍କ ଉପରେ ସେଇ ମାୟାର କୌଣସି ପ୍ରଭାବ ପଡ଼େ ନାହିଁ, ବରଂ ତାର ନିଜର କ୍ଷତି ଘଟେ ।।୪୫।। ବ୍ରହ୍ମା ଦେଖୁ ଦେଖୁ ସଙ୍ଗେ ସଙ୍ଗେ ସମସ୍ତ ଗୋପାଳବାଳକ ଶ୍ରୀକୃଷ୍ଣଙ୍କ ରୂପ ଧାରଣ କଲେ । ସମସ୍ତେ ପୀତବସ୍ତ୍ର ପରିଧାନ କରିଥିଲେ । ସମସ୍ତେ ସଜଳ ମେଘପରି ଶ୍ୟାମବର୍ଣ୍ଣ, ସମସ୍ତଙ୍କ ଚତୁର୍ଭୁଜରେ ଶଙ୍ଖ, ଚକ୍ର, ଗଦା ଓ ପଦ୍ମ ଏବଂ ସମସ୍ତଙ୍କର ମୁକୁଟ, କୁଣ୍ଡଳ, ହାର ଓ ବନମାଳ ବିଦ୍ୟମାନ ।।୪୬-୪୭।। ସମସ୍ତଙ୍କ ବକ୍ଷରେ ଶ୍ରୀବତ୍ସ ଚିହ୍ନ, ବାହୁରେ ବାଜୁବଂଧ, ହାତରେ ବଳୟ ଓ ମଣିମୟ କଙ୍କଣ, ପାଦରେ ନୂପୁର ଓ କଡ଼ା, କଟିରେ କଟିସୂତ୍ର ଓ ଅଙ୍ଗୁଳିରେ ଅଙ୍ଗୁରୀୟ ଆଦି ଶୋଭା ପାଉଥିଲା । ଭକ୍ତମାନଙ୍କ ପ୍ରଦତ୍ତ ନବ ନବ ତୁଳସୀଦଳରେ ତାଙ୍କର ସର୍ବାଙ୍ଗ ଶୋଭମାନ ଦିଶୁଥିଲା ।।୪୮-୪୯।। ଚନ୍ଦ୍ରକିରଣପରି ଉଜ୍ଜ୍ୱଳ ମନ୍ଦହାସରେ ଓ ଅରୁଣିତ ନେତ୍ରର କଟାକ୍ଷରେ ସେ ଚାହୁଁଥିଲେ । ଜଣାଯାଉଥିଲା ସତେ ଯେପରି ରଜୋଗୁଣଦ୍ୱାରା ସେ ଭକ୍ତମାନଙ୍କ ସେବାର ଅଭିଳାଷ ସୃଷ୍ଟି କରୁଥିଲେ ଓ ନିର୍ମଳ ମନ୍ଦହାସରେ ସତ୍ତ୍ୱଗୁଣଦ୍ୱାରା ତାହା ପୂରଣ କରୁଥିଲେ ।।୫୦।।

ବ୍ରହ୍ମା ପୁଣି ଦେଖିଲେ ଯେ ତାଙ୍କପରି ଆହୁରି କେତେକ ବ୍ରହ୍ମା ନିଖିଳ ଚରାଚର ସହିତ ନୃତ୍ୟ, ଗୀତ, ବାଦ୍ୟ ଓ ଅନ୍ୟାନ୍ୟ ପୂଜାସାମଗ୍ରୀ ସହ ତାଙ୍କୁ ଉପାସନା କରୁଛନ୍ତି ।।୫୧।। ଅଣିମା, ଲଘିମା ଆଦି ଅଷ୍ଟସିଦ୍ଧି, ମାୟା, ବିଦ୍ୟା ଆଦି ବିବିଧ ଶକ୍ତି, ପ୍ରକୃତି ଓ ମହତ୍ତତ୍ତ୍ୱ ଆଦି ଚବିଶ ତତ୍ତ୍ୱ ତାଙ୍କୁ ଚାରିଆଡୁ ବେଷ୍ଟନ କରିରହିଛନ୍ତି ।।୫୨।। ପ୍ରକୃତିର କ୍ଷୋଭରୁ ଉତ୍ପନ୍ନ କାଳ, ତାର ପରିଣାମର କାରଣ ସ୍ୱଭାବ, ବାସନାମାନଙ୍କୁ ଜାଗରିତ କରୁଥିବା ସଂସ୍କାର, କାମନା, କର୍ମ ଓ ଗୁଣମାନେ ମୂର୍ତ୍ତିମନ୍ତ ହୋଇ ଭଗବାନଙ୍କୁ ଉପାସନା କରୁଛନ୍ତି । ତାଙ୍କର ସତ୍ତା ଓ ମହତ୍ତ୍ୱ ଆଗରେ ସେମାନେ ନିଜତ୍ୱ ହରାଇ ବସିଛନ୍ତି ।।୫୩।। ବ୍ରହ୍ମା ଦେଖିଲେ ଯେ ଭଗବାନଙ୍କର ପ୍ରତ୍ୟେକ ରୂପ କାଳାତୀତ । ସତ୍ୟ, ଜ୍ଞାନ ଓ ଆନନ୍ଦର ମୂର୍ତ୍ତିମନ୍ତ ସ୍ୱରୂପ ସେ । ଉପନିଷଦ୍‌ର ତତ୍ତ୍ୱଦର୍ଶୀମାନେ ମଧ୍ୟ ତାଙ୍କର ଏହି ଅନନ୍ତ ମହିମାକୁ ସ୍ପର୍ଶ କରିପାରନ୍ତି ନାହିଁ ।।୫୪।। ଯାହାଙ୍କର ତେଜରେ ସଚରାଚର ସକଳ ବିଶ୍ୱ ପ୍ରତିଭାତ ହେଉଛି, ସେହି ପରଂବ୍ରହ୍ମସ୍ୱରୂପ ଭଗବାନଙ୍କର ସଖା ଗୋପାଳବାଳକମାନଙ୍କୁ ସେ ସେହି କୃଷ୍ଣରୂପରେ ଦେଖିବାକୁ ପାଇଲେ ।।୫୫।। ଏହି ଆଶ୍ଚର୍ଯ୍ୟଜନକ ଦୃଶ୍ୟ ଦେଖି ବ୍ରହ୍ମାଙ୍କର ପଞ୍ଚ ଜ୍ଞାନେନ୍ଦ୍ରିୟ, ପଞ୍ଚ କର୍ମେନ୍ଦ୍ରିୟ ଓ ମନ ସ୍ତବ୍ଧ ହୋଇଗଲା । ବ୍ରଜର ଗ୍ରାମଦେବତୀଙ୍କ ନିକଟରେ ସେ ଏକ ଚତୁର୍ମୁଖୀ କାଠପିତୁଳି ପରି ନିଷ୍ପ୍ରଭ ଦେଖାଗଲେ ।।୫୬।। ପରିକ୍ଷିତ, ଭଗବାନ୍ ହେଉଛନ୍ତି ମହାମହିମ, ତର୍କର ଅତୀତ, ନିଜର ଜ୍ୟୋତିରେ ହିଁ ନିଜେ ପ୍ରକାଶିତ ଏବଂ ମାୟାବର୍ଜିତ । ବ୍ରହ୍ମା ସମସ୍ତ ବିଦ୍ୟାରେ

ପଣ୍ଡିତ ହେଲେ ମଧ୍ୟ ସମସ୍ତ ବେଦରେ ପ୍ରତିପାଦିତ ତାଙ୍କର ସେହି ରୂପ, ଗୁଣ, ଲୀଳା ଓ ମାଧୁର୍ଯ୍ୟ ଆଦି ଦର୍ଶନ କରି ମୂର୍ଚ୍ଛାପ୍ରାୟ ହୋଇଗଲେ ଏବଂ ତାଙ୍କ ଆଗରେ ଥିବା ଭଗବାନଙ୍କର ମୂର୍ତ୍ତିକୁ ଦର୍ଶନ କରିପାରିଲେ ନାହିଁ । ଭଗବାନ୍ ଶ୍ରୀକୃଷ୍ଣ ବ୍ରହ୍ମାଙ୍କର ଏହିପରି ମୂର୍ଚ୍ଛାପ୍ରାପ୍ତ ଅବସ୍ଥା ଦେଖି ନିଜର ମାୟାର ପରଦାକୁ ତତ୍‌କ୍ଷଣାତ୍ ହଟାଇନେଲେ ॥୫୭॥

ଏଥିରେ ବ୍ରହ୍ମାଙ୍କର ବାହ୍ୟଜ୍ଞାନ ଫେରିଆସିଲା । ମୃତ ବ୍ୟକ୍ତି ପୁଣି ଥରେ ଉଠିବସିବାପରି ସେ ଉଠିପଡ଼ି ବହୁ କଷ୍ଟରେ ଆଖି ମଳି ନିଜର ଓ ବିଶ୍ୱର ରୂପକୁ ଦେଖିପାରିଲେ ॥୫୮॥ ସେ ଚାରିଆଡକୁ ଚାହିଁଲେ । ପ୍ରଥମେ ତାଙ୍କ ଆଗରେ ବୃନ୍ଦାବନ ଦେଖାଗଲା । ସେଥିରେ ସମସ୍ତ ପ୍ରାଣୀଙ୍କର ଜୀବନଦାତା ଫଳ, ପତ୍ର ଓ ଫୁଲରେ ଶୋଭିତ ବୃକ୍ଷମାନଙ୍କୁ ସେ ଦେଖିଲେ ॥୫୯॥ ବୃନ୍ଦାବନ ଭଗବାନ୍‌ଙ୍କର ଲୀଳାଭୂମି ଥିଲା । ତେଣୁ ସେଠାରେ କ୍ରୋଧ, ଲୋଭ ଆଦି ଦୋଷ ପ୍ରବେଶ କରି ନ ଥିଲା ଏବଂ ପରସ୍ପରର ଶତ୍ରୁ ମନୁଷ୍ୟ ଓ ପଶୁପକ୍ଷୀମାନେ ବନ୍ଧୁପରି ପରସ୍ପରକୁ ସ୍ନେହ, ଶ୍ରଦ୍ଧା କରି ଏକତ୍ର ବାସ କରୁଥିଲେ ॥୬୦॥ ପୂର୍ବେ ବ୍ରହ୍ମା ସେହି ବୃନ୍ଦାବନରେ ଅଦ୍ୱିତୀୟ ପରଂବ୍ରହ୍ମଙ୍କୁ ଅନ୍ୟରୂପରେ ଦେଖିଥିଲେ । ସେତେବେଳେ ସେ ଏକ ଗୋପବାଳକ ହୋଇ କ୍ରୀଡ଼ା କରୁଥିଲେ । ହାତରେ ଦହିଭାତର ଗୁଣ୍ଡା ଧରି ସେ ବାଛୁରୀମାନଙ୍କୁ ଓ ନିଜର ସଖା ବାଳକମାନଙ୍କୁ ଚାରିଆଡ଼େ ଖୋଜୁଥିଲେ ॥୬୧॥ ଏବେ ଯେତେବେଳେ ସେ ଶ୍ରୀକୃଷ୍ଣଙ୍କୁ ଦେଖିଲେ, ତତ୍‌କ୍ଷଣାତ୍ ହଂସ ବାହନରୁ ଓହ୍ଲାଇପଡି ତାଙ୍କୁ ଦଣ୍ଡପ୍ରଣାମ କଲେ । ସୁବର୍ଣ୍ଣର ଦଣ୍ଡ ପରି ଶରୀରଧାରୀ ବ୍ରହ୍ମା ଭୂଇଁରେ ଶୋଇରହି ନିଜର ଚାରୋଟିଯାକ ମୁକୁଟର ଅଗ୍ରଭାଗରେ ତାଙ୍କ ପାଦପଦ୍ମକୁ ସ୍ପର୍ଶ କଲେ । ତାଙ୍କର ଆଖିରୁ ଅଶ୍ରୁଧାର ବହିଯାଉଥିଲା ॥୬୨॥ ପୂର୍ବରୁ ସେ ଭଗବାନ୍ କୃଷ୍ଣଙ୍କର ଯେଉଁ ମହିମା ଦେଖିଥିଲେ, ତାହା ବାରମ୍ବାର ସ୍ମରଣ କରି ଉଠି ଠିଆହୋଇ ପୁଣି ତାଙ୍କ ପାଦତଳେ ପଡ଼ିଯାଉଥିଲେ । ଏହିପରି ସେ ବାରମ୍ବାର କରିବାକୁ ଲାଗିଲେ । ତା'ପରେ ସେ ଧୀରେ ଧୀରେ ଉଠି ଆଖିରୁ ଲୁହ ପୋଛିଲେ । ଶ୍ରୀକୃଷ୍ଣଙ୍କୁ ଚାହିଁ ହାତ ଯୋଡ଼ି ପ୍ରାର୍ଥନା କଲେ ଓ ମୁଣ୍ଡ ନୁଆଇଁ ଅତି ନମ୍ରଭାବରେ ଗଦ୍‌ଗଦ ସ୍ୱରରେ ତାଙ୍କୁ ସ୍ତୁତି କରିବାକୁ ଲାଗିଲେ ।

## ଚତୁର୍ଦ୍ଦଶ ଅଧ୍ୟାୟ

# ବ୍ରହ୍ମାଙ୍କର ସ୍ତୁତି

ବ୍ରହ୍ମା ସ୍ତୁତି କରି କହିଲେ, ହେ ପ୍ରଭୁ, ହେ ସ୍ତବନୀୟ, ମୁଁ ଆପଣଙ୍କୁ ନମସ୍କାର କରୁଛି । ଆପଣଙ୍କ ଶରୀର ବର୍ଷାକାଳୀନ ମେଘ ପରି ଶ୍ୟାମବର୍ଣ୍ଣ । ଏଥିରେ ଶୋଭାପାଉଥିବା ପୀତାମ୍ବର ମେଘରେ ସ୍ଥିର ହୋଇ ରହିଥିବା ବିଜୁଳିପରି ଉଜ୍ଜ୍ୱଳ ଓ ସୁନ୍ଦର ଦେଖାଯାଉଛି । ଆପଣଙ୍କ କାନରେ କାଇଁଚର ଭୂଷଣ ଓ ମସ୍ତକରେ ମୟୂର ପୁଚ୍ଛର ମୁକୁଟ ଶୋଭାପାଉଛି । ପୁଣି ଆପଣ ବନଫୁଲର ମାଳା ପିନ୍ଧିଛନ୍ତି । ହାତରେ ସେହି ଦହିଭାତର ଗୁଣ୍ଡା । କଟିବସ୍ତ୍ରରେ ବେତ, ଶିଙ୍ଗା ଏବଂ ଆପଣଙ୍କ ବଂଶୀଟି ଶୋଭାପାଉଛି । ଆପଣଙ୍କର କୋମଳ କର ଦୁଇଟିକୁ ଓ ଗୋପାଳ ବାଳକ ବେଶକୁ ମୁଁ ନମସ୍କାର କରୁଛି ॥୧॥ ହେ ଦେବ, ଭକ୍ତମାନଙ୍କର ଇଚ୍ଛାପୂରଣ କରିବାପାଇଁ ଆପଣ ଏହି ରୂପ ଧାରଣ କରିଛନ୍ତି । ମୁଁ ଅନୁଗୃହୀତ ହୋଇଛି । ଆପଣଙ୍କର ଏହି ଶରୀର ପଞ୍ଚଭୂତ ଦ୍ୱାରା ରଚିତ ନୁହେଁ । ଏହା ଅପ୍ରାକୃତ, ଶୁଦ୍ଧସତ୍ତ୍ୱମୟ । ସମାଧିସ୍ଥ ହୋଇ ମଧ୍ୟ ମୁଁ ବା ଅନ୍ୟ କେହି ଆପଣଙ୍କୁ ଜାଣିବା ପାଇଁ ସମର୍ଥ ନୁହନ୍ତି । ଆପଣଙ୍କର ଏହି ଆନନ୍ଦମୟ ରୂପର ମହିମା କିଏ କଳନା କରିପାରିବ ? ॥୨॥ ହେ ଅଜିତ, କେବଳ ଭକ୍ତି ଛଡ଼ା ଜ୍ଞାନମାର୍ଗରେ କେହି ଆପଣଙ୍କୁ ବଶୀଭୂତ କରିପାରନ୍ତି ନାହିଁ । ଯେଉଁମାନେ ଜ୍ଞାନମାର୍ଗରେ ଟିକିଏ ହେଲେ ପ୍ରୟାସ ନକରି ନିଜର ଗୃହରେ ଥାଇ ବା ସତ୍‌ସଙ୍ଗରେ ରହି ଆପଣଙ୍କ

ଭକ୍ତମାନଙ୍କଠାରୁ ଆପଣଙ୍କ ଲୀଳା ଶ୍ରବଣ କରନ୍ତି ଓ କାୟମନୋବାକ୍ୟରେ ତାହାକୁ ମାନି ଜୀବନଧାରଣ କରନ୍ତି, ସେହିମାନେ ହିଁ ଆପଣଙ୍କୁ ବଶୀଭୂତ କରିଥାଆନ୍ତି ।।୩।।

ପ୍ରଭୁ, ଆପଣଙ୍କଠାରେ ଭକ୍ତି ହେଉଛି ସମସ୍ତ ମଙ୍ଗଳର ଉତ୍ପତ୍ତିସ୍ଥଳ । ଯେଉଁମାନେ ଏହାକୁ ଛାଡ଼ି କେବଳ ଜ୍ଞାନଲାଭ ପାଇଁ ବହୁଶ୍ରମ ଓ ଦୁଃଖଭୋଗ କରନ୍ତି, ସେମାନଙ୍କର ଏହି ଶ୍ରମ ଓ ଦୁଃଖଭୋଗ ହିଁ ସାର ହୁଏ । ଚଷୁ କୁଟିଲେ କେବେ ଚାଉଳ ମିଳେ ନାହିଁ ।।୪।। ପ୍ରଭୁ, ପୂର୍ବେ ଏ ଜଗତ୍‌ରେ ବହୁ ଯୋଗୀ ଜ୍ଞାନମାର୍ଗରେ ଯୋଗସାଧନାଦି ଦ୍ୱାରା କୌଣସି ଫଳ ନପାଇ ଶେଷରେ କାୟମନୋବାକ୍ୟରେ ସେମାନଙ୍କର ସମସ୍ତ କର୍ମ ଆପଣଙ୍କ ଚରଣତଳେ ଅର୍ପଣ କରିଥିଲେ । ଆପଣଙ୍କର ଲୀଳାଗାନ ଓ ସତ୍‌ସଂଗଦ୍ୱାରା ଆପଣଙ୍କପ୍ରତି ସେମାନଙ୍କର ଭକ୍ତିଭାବ ଜନ୍ମିଲା ଏବଂ ସେହି ଭକ୍ତିଦ୍ୱାରା ଆପଣଙ୍କର ସ୍ୱରୂପଜ୍ଞାନ ଲାଭ କରି ସେମାନେ ଅନାୟାସରେ ପରମପଦ ଲାଭ କଲେ ।।୫।। ହେ ମହିମାନ୍ୱିତ, ଆପଣଙ୍କ ସ୍ୱରୂପକୁ ଜାଣିବା କଷ୍ଟକର ହେଲେ ମଧ୍ୟ ଯେଉଁମାନେ ଇନ୍ଦ୍ରିୟମାନଙ୍କୁ ବଶ କରି ନିଜର ଅନ୍ତଃକରଣକୁ ଶୁଦ୍ଧ କରିଥା'ନ୍ତି, ଯେଉଁମାନଙ୍କର କୌଣସି ବିଷୟବିକାର ନ ଥାଏ, ସେମାନେ ନିଜର ଅନ୍ତଃକରଣରେ ଅନ୍ୟମାନଙ୍କର ଅବୋଧ୍ୟ ଆପଣଙ୍କ ନିର୍ଗୁଣ ସ୍ୱରୂପକୁ ଅନୁଭବ କରିପାରନ୍ତି । ଅନ୍ୟଥା ତାହା ସମ୍ଭବ ନୁହେଁ ।।୬।। ମହା ମହା ଯୋଗୀମାନେ ବହୁକାଳ ସାଧନା କରି ପୃଥିବୀର ଧୂଳିକଣା, ଆକାଶର ହିମକଣା ଓ ସୂର୍ଯ୍ୟାଦି ଜ୍ୟୋତିଷ୍କମାନଙ୍କର ରଶ୍ମିକଣା ଗଣନା କରିବାକୁ ହୁଏତ ସମର୍ଥ ହୋଇପାରନ୍ତି । କିନ୍ତୁ ଜଗତର ମଙ୍ଗଳପାଇଁ ଆପଣ ଯେଉଁ ସଗୁଣ ଶରୀରରେ ଅବତୀର୍ଣ୍ଣ ହୋଇଛନ୍ତି, ତାହାର ଅନନ୍ତଗୁଣକୁ ସେମାନେ କଳନା କରିପାରିବେ ନାହିଁ ।।୭।। ତେଣୁ ଯେଉଁ ବ୍ୟକ୍ତି ସୁଖ ଓ ଦୁଃଖ ରୂପ ନିଜର କର୍ମଫଳକୁ ଆପଣଙ୍କର ଅନୁଗ୍ରହ ବୋଲି ମନେକରେ ଏବଂ କାୟମନୋବାକ୍ୟରେ ଆପଣଙ୍କ ଶରଣାପନ୍ନ ହୁଏ, ସେ ହିଁ କେବଳ ଆପଣଙ୍କ ଚରଣସେବାର ଅନୁଗ୍ରହ ଲାଭ କରିପାରିବ ।।୮।। ହେ ସର୍ବଶକ୍ତିମାନ୍, ଅଗ୍ନିର ସ୍ଫୁଲିଙ୍ଗ ଯେପରି ଅଗ୍ନି ଆଗରେ ତୁଚ୍ଛ, ଆପଣଙ୍କ ଆଗରେ ମୁଁ ସେହିପରି ତୁଚ୍ଛ । ଆପଣ ମୋର ମୂର୍ଖତା ଦେଖନ୍ତୁ--ଯେ ଅନନ୍ତ, ଆଦିମୂଳ ଏବଂ ମାୟାବୀମାନଙ୍କୁ ମଧ୍ୟ ଯେ ମୋହିତ କରିପାରନ୍ତି, ସେହି ଭଗବାନଙ୍କୁ ମୁଁ ମାୟାଦ୍ୱାରା ନିଜର ବଡ଼ିମା ଦେଖାଇବାପାଇଁ ଚେଷ୍ଟାକରିଥିଲି ।

ଅଚ୍ୟୁତ, ମୁଁ ରଜୋଗୁଣରୁ ଜନ୍ମ । ଆପଣଙ୍କ ସ୍ୱରୂପକୁ ଜାଣେ ନାହିଁ । ମୁଁ ଅଜନ୍ମା ବୋଲି ଅଭିମାନ କରି ଆପଣଙ୍କଠାରୁ ସ୍ୱତନ୍ତ୍ର ବୋଲି ନିଜକୁ ବିଚାର କରୁଥିଲି । ମାୟାମୋହରେ ମୁଁ ଅନ୍ଧ ହୋଇପଡ଼ିଛି । ମୋତେ ନିଜର ଦାସ ବୋଲି ଗ୍ରହଣ କରି ଆପଣ ମୋର ଅପରାଧ କ୍ଷମା କରନ୍ତୁ ।।୧୦।। ହେ ମୋର ସ୍ୱାମୀ, ପ୍ରକୃତି, ମହତ୍ତତ୍ତ୍ୱ, ଅହଙ୍କାର, ଆକାଶ, ବାୟୁ, ଅଗ୍ନି, ଜଳ ଓ ପୃଥିବୀରୂପକ ଆବରଣରେ ବେଷ୍ଟିତ ଏହି ବ୍ରହ୍ମାଣ୍ଡ ହେଉଛି ମୋର ଶରୀର । କିନ୍ତୁ ଆପଣଙ୍କ ପ୍ରତ୍ୟେକ ଲୋମକୂପରେ ଅଗଣିତ ବ୍ରହ୍ମାଣ୍ଡ ଅଣୁ ପରମାଣୁ ପରି ଯାତାୟାତ କରୁଛି । ଆପଣଙ୍କର ଅନନ୍ତ ମହିମା କେଉଁଠି, ମୋ ପରି ସାତ ଚାଖଣ୍ଡ ଦେହଧାରୀ ଏକ ସାମାନ୍ୟ ଜୀବ ଅବା କେଉଁଠି ? ।।୧୧।। ପ୍ରଭୁ, ଆପଣ ଇନ୍ଦ୍ରିୟମାନଙ୍କର ଅଗୋଚର । ଗର୍ଭରେ ଥିବା ଶିଶୁର ପଦାଘାତକୁ କ'ଣ ମା' ଅପରାଧ ବୋଲି ଧରେ ? ଏ ବିଶ୍ୱରେ ଯେତେ ଅସ୍ତିବାଚକ ବା ନାସ୍ତିବାଚକ ବସ୍ତୁ ଅଛି, ତାହା ଆପଣଙ୍କ ଗର୍ଭର ବାହାରେ ଅଛି ବୋଲି କେହି କହିପାରିବ କି ? ପ୍ରଳୟଜଳରେ ଯେତେବେଳେ ତ୍ରିଭୁବନ ଲୀନ ଥିଲା, ସେତେବେଳେ ଶ୍ରୀ ନାରାୟଣଙ୍କ ନାଭିକମଳରୁ ବ୍ରହ୍ମାଙ୍କର ଜନ୍ମ ହୋଇଥିଲା । ଏହା ଶାସ୍ତ୍ରବାକ୍ୟ, ଏହା ଆଦୌ ମିଥ୍ୟା ନୁହେଁ । ତେଣୁ ଆପଣଙ୍କଠାରୁ କ'ଣ ମୁଁ ଜନ୍ମ ହୋଇ ନାହିଁ ? ।।୧୨-୧୩।। ସର୍ବେଶ୍ୱର, ସମସ୍ତ ଜୀବଙ୍କର ଆତ୍ମା, ଅଧୀଶ୍ୱର ଏବଂ ଅଖିଳ ଜଗତର ଦ୍ରଷ୍ଟା, ଆପଣ କ'ଣ ସେହି ନାରାୟଣ ନୁହନ୍ତି ? ଭଗବାନଙ୍କ ଅଙ୍ଗରୁ ଜାତ ଜଳରେ ଶୟନ କରୁଥିବାଯୋଗୁଁ ଯାହାଙ୍କୁ ନାରାୟଣ କୁହାଯାଏ, ସେ ମଧ୍ୟ ଆପଣଙ୍କର ଅଂଶ । କିନ୍ତୁ ସେ ସତ୍ୟ ନୁହଁନ୍ତି । ଆପଣଙ୍କର ମାୟା ବିଶେଷ ।।୧୪।। ଜଗତ୍‌ର ଆଶ୍ରୟସ୍ଥଳ ଆପଣଙ୍କର ସେହି ନାରାୟଣଶରୀର ଯଦି ଜଳରେ ରହିଥିଲା, ତେବେ ମୁଁ (ନାଭି କମଳରେ ପ୍ରବେଶ

କରି) କାହିଁକି ତାକୁ ଦେଖିପାରିଲି ନାହିଁ ? ଏବଂ ଯେତେବେଳେ (ତପସ୍ୟା ଦ୍ୱାରା) ହୃଦୟରେ ତାହାକୁ ଦର୍ଶନ କଲି, ତାହା ଦେଖି ନ ଦେଖିଥିବା ପରି (ସଙ୍ଗେ ସଙ୍ଗେ ଅନ୍ତର୍ଦ୍ଧାନ ହେବାଯୋଗୁଁ) ହେଲା ନାହିଁ କି ? ॥୧୫॥ ହେ ମାୟା ନିବାରକ ! ଏହି ଅବତାରରେ ମଧ୍ୟ ଆପଣ ବାହ୍ୟଜଗତକୁ ନିଜର ଜଠରମଧ୍ୟରେ ମାତା ଯଶୋଦାଙ୍କୁ ଦେଖାଇଦେଇ ନିଜର ମାୟାକୁ ପ୍ରକାଶ କରିଛନ୍ତି । ଯାହାଙ୍କର ଜଠରମଧ୍ୟରେ ତାଙ୍କ ସହିତ ବାହାରେ ଦେଖାଯାଉଥିବା ଏହି ସମ୍ପୂର୍ଣ୍ଣ ବିଶ୍ୱ ଦେଖାଗଲା, ତାହା ତାଙ୍କର ମାୟା ଛଡ଼ା ଆଉ କ'ଣ ହୋଇପାରେ ? ସେଦିନ ମୁଁ ଦେଖିଥିଲି, ଆପଣ ଏକ କୃଷ୍ଣ ଥିଲେ । ତାପରେ ସମସ୍ତ ଗୋପବାଳକ, ବାଛୁରୀ ଓ ବେଣୁ ଶିକା ଆଦି ମଧ୍ୟ ହୋଇଗଲେ ! ତାପରେ ମୁଁ ଦେଖିଲି, ଆପଣଙ୍କର ଏହି ସମସ୍ତ ରୂପ ଚତୁର୍ଭୁଜ ମୂର୍ତ୍ତି ହୋଇଗଲା, ଯାହାଙ୍କୁ ବ୍ରହ୍ମାଙ୍କ ସମେତ ସମସ୍ତ ଚରାଚର ଜୀବ ପୂଜା କରୁଛନ୍ତି । ଏବେ ମୁଁ ଦେଖୁଛି ଆପଣଙ୍କର ସେହି ଅଦ୍ୱିତୀୟ କୃଷ୍ଣ ରୂପ, ଯାହାକି ନରଦେହରେ ପରମ ବ୍ରହ୍ମଙ୍କର ସ୍ୱରୂପ ଅଟେ ॥୧୬-୧୮॥ ଅଜ୍ଞାନତାବଶରୁ ଯେଉଁମାନେ ଆପଣଙ୍କର ସ୍ୱରୂପକୁ ଜାଣନ୍ତି ନାହିଁ, ସେମାନେ ଆପଣଙ୍କୁ ପ୍ରକୃତିରେ ସ୍ଥିତ ଜୀବପରି ମନେ କରନ୍ତି ଏବଂ ସେମାନଙ୍କ ଉପରେ ମାୟା ବିସ୍ତାର କରି ଆପଣ ସୃଷ୍ଟି ସମୟରେ ବ୍ରହ୍ମା ରୂପରେ, ପାଳନ ସମୟରେ ବିଷ୍ଣୁ ରୂପରେ ଓ ସଂହାର ସମୟରେ ରୁଦ୍ର ରୂପରେ ପ୍ରତୀତ ହୁଅନ୍ତି । ପ୍ରଭୁ, ଆପଣ ସମସ୍ତ ଜଗତ୍‌ର ଈଶ୍ୱର ଏବଂ ଜନ୍ମଦାତା । ଆପଣ ନିଜେ ଜନ୍ମରହିତ ହେଲେ ମଧ୍ୟ ଦେବତା, ଋଷି, ମନୁଷ୍ୟ, ପଶୁପକ୍ଷୀ ଓ ଜଳଚର ଆଦି ଯୋନିରେ ଅବତୀର୍ଣ୍ଣ ହୋଇ ଦୁଷ୍ଟମାନଙ୍କର ଗର୍ବ ଖର୍ବ କରନ୍ତି ଓ ସାଧୁମାନଙ୍କୁ ଅନୁଗୃହୀତ କରନ୍ତି । ହେ ଯୋଗେଶ୍ୱର, ମହିମାମୟ ପରମାତ୍ମା, ଆପଣ କେଉଁଠି, କାହିଁକି, କେବେ ଏବଂ କେତେଥର ନିଜର ଯୋଗମାୟାକୁ ବିସ୍ତାର କରି କ୍ରୀଡ଼ା ରଚନା କରନ୍ତି, ଏ ତ୍ରିଲୋକରେ କେହି ନାହିଁ, ଯେ ତାହା ଜାଣିଛି । ତେଣୁ ଏହି ଅଶେଷ ବ୍ରହ୍ମାଣ୍ଡ ହେଉଛି ଅସତ୍; ସ୍ୱପ୍ନ ପରି ମିଥ୍ୟା, ଅପ୍ରତିଭ ଏବଂ ଦୁଃଖମୟ । ଆପଣଙ୍କ ମାୟାରୁ ଏହାର ଜନ୍ମ ଓ ମାୟାରୁ ଏହାର ବିଲୟ ଘଟେ । ସେହି ମାୟାଯୋଗୁଁ ହିଁ ଏହା ସତ୍ୟବସ୍ତୁ ପରି ପ୍ରତୀତ ହୁଏ ॥୧୯-୨୨॥ ପ୍ରଭୁ, ଆପଣ ସମସ୍ତଙ୍କର ଆତ୍ମା ସ୍ୱରୂପ ଏକମାତ୍ର ସତ୍ୟ, ସର୍ବବ୍ୟାପୀ ଓ ସର୍ବାନ୍ତର୍ଯାମୀ । ଆପଣ ପୁରାଣ ପୁରୁଷ । ସ୍ୱପ୍ରକାଶ, ଆଦିମୂଳ, ଅନନ୍ତ, ନିତ୍ୟ, ଅକ୍ଷର, ପୂର୍ଣ୍ଣାନନ୍ଦମୟ, ନିରଞ୍ଜନ, ପରିପୂର୍ଣ୍ଣ, ଅଦ୍ୱିତୀୟ, ଉପାଧିରହିତ ଏବଂ ଅବିନଶ୍ୱର । ଗୁରୁକୃପାରୁ ଯେଉଁମାନେ ତତ୍ତ୍ୱଜ୍ଞାନ ଲାଭ କରିଥା'ନ୍ତି ଏବଂ ଆପଣଙ୍କୁ ସମସ୍ତ ଆତ୍ମାର ଆତ୍ମାରୂପେ ଧାରଣା କରନ୍ତି, ସେମାନେ ଅନାୟାସରେ ସଂସାରରୂପକ ମୋହର ସମୁଦ୍ରକୁ ପାର ହୋଇଯାଆନ୍ତି । ଅଜ୍ଞାନତାବଶତଃ ରଜ୍ଜୁକୁ ସର୍ପ ବୋଲି ବିଚାର କଲେ ସେଥିରେ ଯେପରି ସାପର ଫଣା ପ୍ରଭୃତି ସବୁ ଦେଖାଯାଏ ଏବଂ ସର୍ପବୁଦ୍ଧି ଦୂର ହେଲେ, ଏହା ପ୍ରକୃତ ରଜ୍ଜୁ ରୂପେ ଜଣାଯାଏ, ସେହିପରି ଅଜ୍ଞାନତା ଯୋଗୁ ଯେଉଁମାନେ ନିଜର ସ୍ୱାର୍ଥବୁଦ୍ଧିରେ ମତ୍ତ ଥାଆନ୍ତି, ସେମାନେ 'ମୁଁ ଏବଂ ମୋର' ଜ୍ଞାନରେ ଆପଣଙ୍କର ସ୍ୱରୂପକୁ ଭୁଲିଯାଆନ୍ତି । କିନ୍ତୁ ଥରେ ଏହି ଅଜ୍ଞାନତା ଦୂର ହେଲେ ଆଉ ଅହଂକାର ବୁଦ୍ଧି ରହେ ନାହିଁ । ଅଜ୍ଞତାର ଦୁଇଟି ରୂପ -- ସଂସାରବନ୍ଧନ ଓ ସେଥିରୁ ମୁକ୍ତି । ସୂର୍ଯ୍ୟଙ୍କଠାରେ ଯେପରି ଦିନ କିମ୍ବା ରାତି ନଥାଏ, ସେହିପରି ଜୀବର ଦେହାତୀତ ଶୁଦ୍ଧଜ୍ଞାନ ସ୍ୱରୂପରେ ସଂସାରର ବନ୍ଧନ ବା ମୁକ୍ତି ରହେ ନାହିଁ । ଅଜ୍ଞ ଜୀବର ଭ୍ରମ ହେଉଛି, ସମସ୍ତ ଆତ୍ମାର ଆତ୍ମାସ୍ୱରୂପ ଆପଣଙ୍କୁ ସେ ଜୀବାତ୍ମା ବୋଲି ମନେକରି ଏବଂ ଆପଣଙ୍କୁ ନିଜମଧ୍ୟରେ ନ ଖୋଜି ବାହାରେ ଖୋଜି ଭ୍ରମି ହେଉଥାଏ ॥୨୩-୨୭॥

ଅନନ୍ତ, ସତ୍‌ପୁରୁଷମାନେ ଆପଣଙ୍କ ଛଡ଼ା ସମସ୍ତ ବିଷୟ ତ୍ୟାଗ କରି ଆପଣଙ୍କୁ ନିଜ ଶରୀରମଧ୍ୟରେ ଖୋଜନ୍ତି । କାରଣ ରଜ୍ଜୁରେ ସେମାନଙ୍କର ସର୍ପଜ୍ଞାନ ଦୂର ହୋଇଥାଏ । ହେ ଦେବ, ହେ ଭଗବାନ୍, ଯେ ଆପଣଙ୍କ ପଦ୍ମପାଦ ଦ୍ୱୟର କଣିକାଏ ମାତ୍ର ଅନୁଗ୍ରହ ଲାଭ କରିଛି, ସେ ଆପଣଙ୍କ ଅପାର ମହିମାର ତତ୍ତ୍ୱକୁ ଜାଣିପାରେ । ସେଥିରୁ ବଞ୍ଚିତ ଅନ୍ୟ ବ୍ୟକ୍ତି ଯେତେ ଖୋଜିଲେ ମଧ୍ୟ ଆପଣଙ୍କ ମହିମାକୁ ଜାଣିପାରେ ନାହିଁ । ତେଣୁ ପ୍ରଭୁ, ମୋର ଏହି ଜନ୍ମରେ କିମ୍ବା ଅନ୍ୟ କୌଣସି

ପଶୁ, ପକ୍ଷୀ ଆଦି ଜନ୍ମରେ ଏହି ମହାଭାଗ୍ୟ ହେଉ, ଯେପରିକି ମୁଁ ଆପଣଙ୍କର ସେବକମଧ୍ୟରୁ ଜଣେ ହୋଇ ଆପଣଙ୍କ ପଦପଲ୍ଲବ ସେବା କରିପାରିବି । ସମସ୍ତ ଯଜ୍ଞ ଅନୁଷ୍ଠାନ କରିମଧ୍ୟ ଯାହାଙ୍କୁ ଏପର୍ଯ୍ୟନ୍ତ ତୃପ୍ତ କରାଯାଇପାରିନାହିଁ, ସେହି ଭଗବାନ ବାଛୁରୀ ହୋଇ ଓ ଗୋପବାଳକ ହୋଇ ଆନନ୍ଦରେ ଯେଉଁ ଗାଈ ଓ ଗୋପୀମାନଙ୍କର ସ୍ତନପାନ କଲେ, ବ୍ରଜର ସେହି ଗାଈ ଓ ଗୋପୀମାନେ ବାସ୍ତବରେ ଧନ୍ୟ । ନନ୍ଦଗୋପରେ ଥିବା ବ୍ରଜବାସୀଙ୍କର ମହାଭାଗ୍ୟ ଯେ ପରମାନନ୍ଦ ଓ. ପରିପୂର୍ଣ୍ଣ ସନାତନ ବ୍ରହ୍ମ ସେମାନଙ୍କର ସଖା ହୋଇପାରିଛନ୍ତି ॥୨୮-୩୨॥ ଅଚ୍ୟୁତ, ବ୍ରଜବାସୀମାନଙ୍କର ତ ମହାଭାଗ୍ୟ । ଏକାଦଶ ଇନ୍ଦ୍ରିୟର ଅଧିଷ୍ଠାତାରୂପେ ଶିବ ଆଦି ଆମେ ଏଗାର ଜଣ ଦେବତା ମଧ୍ୟ ଧନ୍ୟ । କାରଣ ଆମ ଏକାଦଶ ଇନ୍ଦ୍ରିୟରୂପ ପାନପାତ୍ରରେ ଆମେ ଆପଣଙ୍କ ଚରଣକମଳର ମକରନ୍ଦକୁ ପାନ କରୁଛୁ ॥୩୩॥ ବେଦମାନେ ଏପର୍ଯ୍ୟନ୍ତ ଆପଣଙ୍କର ପଦରଜକୁ ଖୋଜି ପାଇ ନାହାନ୍ତି । କିନ୍ତୁ ବ୍ରଜଭୂମିର କୌଣସି ବନରେ ବିଶେଷତଃ ଗୋକୁଳରେ ଜନ୍ମ ହେଲେ ତାହା ଏକ ପରମସୌଭାଗ୍ୟ ହେବ । କାରଣ ଏଠାରେ ଜନ୍ମ ହେଲେ ଆପଣଙ୍କର କୌଣସି ନା କୌଣସି ଭକ୍ତର ପଦଧୂଳି ନିଜ ଉପରେ ପଡ଼ିପାରିବ । ମୁକୁନ୍ଦ, ଆପଣ ହିଁ ସେମାନଙ୍କର ପ୍ରାଣସ୍ୱରୂପ । ତେଣୁ ସେମାନଙ୍କର ପଦଧୂଳି ଆପଣଙ୍କର ପଦଧୂଳି ସହିତ ସମାନ । ଲୀଳାମୟ, କପଟ ବାତ୍ସଲ୍ୟପ୍ରେମରେ ଆପଣଙ୍କୁ ଦ୍ୱେଷ କରୁଥିବା ପୂତନା ରାକ୍ଷସୀ ସବଂଶ(ଅଘାସୁର, ବକାସୁର ଆଦିଙ୍କ ସହିତ) ଆପଣଙ୍କ ସ୍ୱରୂପକୁ ଲାଭ କରି କୃତାର୍ଥ ହୋଇଗଲା । ଯେଉଁ ବ୍ରଜବାସୀମାନେ ନିଜର ଘର, ଦ୍ୱାର, ସ୍ୱଜନ, ପ୍ରିୟଜନ, ଶରୀର, ପୁତ୍ର, ପ୍ରାଣ ଓ ମନ-ସବୁ କିଛି ଆପଣଙ୍କୁ ଅର୍ପଣ କରିଦେଇଛନ୍ତି, ସେହି ବ୍ରଜବାସୀମାନଙ୍କୁ ଆପଣ କି ଫଳ ଦେବାକୁ ଯାଉଛନ୍ତି ? କ'ଣ ଦେଲେ ଆପଣଙ୍କର ସର୍ବଫଳଦାତା ନାମ ସାର୍ଥକ ହେବ, ମୁଁ ତାହା ଭାବିପାରୁନାହିଁ । ହେ କୃଷ୍ଣ, ଯେପର୍ଯ୍ୟନ୍ତ ଲୋକମାନେ ଆପଣଙ୍କର ହୋଇନଥାନ୍ତି, ସେପର୍ଯ୍ୟନ୍ତ କାମ, ଦ୍ୱେଷ, ବାସନା ଆଦି ଚୋରମାନେ ଆସି ସେମାନଙ୍କର ବିବେକକୁ ହରି ନିଅନ୍ତି । ସେମାନଙ୍କ ନିଜର ଗୃହ କାରାଗୃହ ସହିତ ସମାନ ହୁଏ ଏବଂ ପାଦର ଶିକୁଳି ହୋଇ ମୋହ ତାଙ୍କୁ ବାନ୍ଧି ରଖିଥାଏ ॥୩୪-୩୬॥

ପ୍ରଭୁ, ଆପଣ ହେଉଛନ୍ତି ପ୍ରପଞ୍ଚରୁ ଅତୀତ ସଚ୍ଚିଦାନନ୍ଦ ବିଗ୍ରହ । କିନ୍ତୁ ଶରଣାଗତ ଭକ୍ତମାନଙ୍କର ଆନନ୍ଦବର୍ଦ୍ଧନ କରିବାପାଇଁ ଏହି ଜଗତରେ ଅବତୀର୍ଣ୍ଣ ହୋଇ ସାଂସାରିକ କାର୍ଯ୍ୟ କରି ଆପଣ ଲୀଳା ରଚନା କରୁଛନ୍ତି । ପ୍ରଭୁ, ବିଶେଷ କିଛି କହିବାର ଆବଶ୍ୟକତା ନାହିଁ। ଯେଉଁମାନେ ଆପଣଙ୍କର ମହିମା ଜାଣିଛନ୍ତି, ସେମାନେ ଜାଣିଥାନ୍ତୁ। କିନ୍ତୁ ମୁଁ କାୟମନୋବାକ୍ୟରେ ଆପଣଙ୍କର ମହିମା ଜାଣିବାପାଇଁ ସମ୍ପୂର୍ଣ୍ଣ ଅସମର୍ଥ ॥୩୭-୩୮॥ ହେ କୃଷ୍ଣ, ହେ ସର୍ବଦର୍ଶୀ, ଏ ସମସ୍ତ ଜଗତ ଆପଣଙ୍କଠାରେ ଅଧିଷ୍ଠିତ ଏବଂ ଆପଣ ହିଁ ତାହାର ଈଶ୍ୱର । ମୁଁ ଆପଣଙ୍କୁ ଅଧିକ କ'ଣ କହିବି ? ମୋତେ ଆପଣ ନିଜ ଲୋକକୁ ଫେରିବାପାଇଁ ଅନୁମତି ଦିଅନ୍ତୁ ॥୩୯॥ ହେ ଶ୍ରୀକୃଷ୍ଣ, ଆପଣ ଯଦୁକୁଳ ପଦ୍ମକୁ ବିକଶିତ କରିଥିବା ସୂର୍ଯ୍ୟ । ଆପଣ ସ୍ୱର୍ଗ, ମର୍ତ୍ତ୍ୟ, ଗୋ-ବ୍ରାହ୍ମଣ ରୂପ ସମୁଦ୍ରର ବୃଦ୍ଧିକାରୀ ଚନ୍ଦ୍ରମା । ଆପଣ ଅଜ୍ଞାନ ରୂପକ ଅନ୍ଧକାରର ହରଣକାରୀ । ରାକ୍ଷସକୁଳର ଅନ୍ତକ । ସୂର୍ଯ୍ୟମଣ୍ଡଳବ୍ୟାପୀ ସମଗ୍ର ବିଶ୍ୱର ପୂଜ୍ୟ । କଳ୍ପର ଶେଷପର୍ଯ୍ୟନ୍ତ (ଆଜୀବନ) ମୁଁ ଆପଣଙ୍କ ପ୍ରଣତ ହୋଇ ରହିଥିବି ॥୪୦॥

ଜଗତର ବିଧାତା ବ୍ରହ୍ମା ପରମ ମହିମାମୟ ଭଗବାନ ଶ୍ରୀକୃଷ୍ଣଙ୍କୁ ଏହିପରି ସ୍ତୁତି କରି ତାଙ୍କର ଚାରିପଟେ ତ୍ରିବାର ପରିକ୍ରମା କଲେ ଏବଂ ପ୍ରଣାମ କରି ସ୍ୱଧାମକୁ ଚାଲିଗଲେ । ଭଗବାନ ଶ୍ରୀକୃଷ୍ଣ ବ୍ରହ୍ମାଙ୍କୁ ଯିବାପାଇଁ ଅନୁମତି ଦେଇ ଯମୁନା କୂଳକୁ ଫେରିଆସିଲେ । ବ୍ରହ୍ମା ପୂର୍ବରୁ ବାଛୁରୀ ଓ ଗୋପବାଳକଙ୍କୁ ସେଠାରେ ଛାଡ଼ିଦେଇ ଯାଇଥିଲେ । ପରିକ୍ଷିତ, ନିଜର ପ୍ରାଣପ୍ରିୟ କୃଷ୍ଣଙ୍କୁ ଛାଡ଼ି ଯେଉଁ ବାଳକମାନେ କ୍ଷଣେ ମଧ୍ୟ ରହିପାରୁ ନ ଥିଲେ, ସେମାନଙ୍କର ବର୍ଷେ ବିତିଯାଇଥିଲା। କିନ୍ତୁ କୃଷ୍ଣଙ୍କର ମାୟାରେ ଏହି ବର୍ଷେ ସମୟ କ୍ଷଣାର୍ଦ୍ଧ ପରି ଲାଗିଲା । ଯେଉଁ ମାୟାରେ ମୋହିତ ହୋଇ ଜୀବ ନିଜର ଆତ୍ମାକୁ ଭୁଲିଯାଏ, ଆଉ କେଉଁ ବସ୍ତୁକୁ ବା ସେ ଭୁଲି ନ ଯିବ ? ॥୪୧-୪୪॥ ଭଗବାନ କୃଷ୍ଣଙ୍କୁ ଦେଖି ଗୋପବାଳକମାନେ

କହିଲେ, ଯାହା ହେଉ, କୃଷ୍ଣ, ତୁମେ ଫେରିଆସିଲ, ତୁମକୁ ସ୍ୱାଗତ । ସେହିପରି ଗୁଣ୍ଡାଟାକୁ ଧରିଛ, ଖାଇ ନାହଁ ? ଆସ ଆନନ୍ଦରେ ଭୋଜନ କର ।।୪୫।। କୃଷ୍ଣ ହସିହସି ସେମାନଙ୍କ ସହିତ ବସି ଭୋଜନ କଲେ ଏବଂ ଅଘାସୁରର ମୃତଦେହ ସେମାନଙ୍କୁ ଦେଖାଇ ଗୋପକୁ ଫେରିଆସିଲେ । ମୟୂରପୁଚ୍ଛ, ବନମାଳା ଓ ଗେରୁଆରଙ୍ଗ ଆଦିରେ ନିଜର ଦେହକୁ ସଜାଇ, ଉଚ୍ଚ ସ୍ୱରରେ ବେଣୁ ଓ ଶିଙ୍ଘା ବାଦନ କରି କୃଷ୍ଣ ଆନନ୍ଦରେ ମଗ୍ନ ହୋଇ ଚାଲିଥିଲେ ଓ ପଛେ ପଛେ ଗୋପବାଳକ ତାଙ୍କର ପବିତ୍ର କୀର୍ତିକୁ ଗାନ କରି ଚାଲିଥିଲେ । ତାଙ୍କ ଦୃଷ୍ଟିପାତରେ ଗୋପୀମାନଙ୍କୁ ସେ ମୁଗ୍ଧ କରୁଥିଲେ । ଏହିପରି ଶ୍ରୀକୃଷ୍ଣ ଗୋଷ୍ଠ ମଧ୍ୟରେ ପ୍ରବେଶ କଲେ । ସେଦିନ ବାଳକମାନେ ବ୍ରଜରେ ଯାଇ କହିଲେ, ଆଜି ଯଶୋଦାନନ୍ଦନ ଓ ନନ୍ଦନନ୍ଦନ ଏକ ବଡ଼ ଅଜଗର ସାପକୁ ମାରିଦେଇ ଆମକୁ ରକ୍ଷା କରିଛି ।।୪୬-୪୮।।

ପରିକ୍ଷିତ ପଚାରିଲେ, ବ୍ରହ୍ମନ୍, ଶ୍ରୀକୃଷ୍ଣ ତ ଅନ୍ୟର ପୁତ୍ର ଥିଲେ; ବ୍ରଜବାସୀଙ୍କର ତାଙ୍କପ୍ରତି ଏତେ ସ୍ନେହ କାହିଁକି ଥିଲା ? ନିଜ ନିଜ ଜନ୍ମିତ ପୁତ୍ରମାନଙ୍କଠାରୁ ସେମାନେ ତାଙ୍କୁ କାହିଁକି ଅଧିକ ସ୍ନେହ କରୁଥିଲେ ? ଆପଣ ଏହାର କାରଣ କହିବା ହୁଅନ୍ତୁ ।।୪୯।। ଶ୍ରୀଶୁକଦେବ କହିଲେ, ପରିକ୍ଷିତ, ସଂସାରରେ ସବୁ ଲୋକଙ୍କର ନିଜର ଆତ୍ମା ହିଁ ସବୁଠାରୁ ପ୍ରିୟ । ସେମାନେ ପୁତ୍ର ଓ ଧନ ଆଦି ବସ୍ତୁକୁ ଭଲ ପାଇବାର କାରଣ ହେଉଛି, ସେମାନଙ୍କର ଆତ୍ମାକୁ ହିଁ ତାହା ଭଲ ଲାଗିଥାଏ ।।୫୦।। ରାଜେନ୍ଦ୍ର, ପ୍ରାଣୀମାନଙ୍କର ନିଜ ନିଜ ପ୍ରତି ଯେତେ ସ୍ନେହ ଥାଏ, ସେତେ ସ୍ନେହମମତା ପୁତ୍ର, ବିତ୍ତ ବା ଗୃହ ଆଦିରେ ନ ଥାଏ ।।୫୧।। ନୃପଶ୍ରେଷ୍ଠ, ଯେଉଁ ଲୋକମାନେ ନିଜର ଦେହକୁ ଆତ୍ମା ବୋଲି ମନେ କରନ୍ତି, ସେମାନେ ସେଇ ଦେହକୁ ଯେତେ ଭଲ ପାଆନ୍ତି, ଦେହାନୁଗତ ଅନ୍ୟମାନଙ୍କୁ ସେତେ ଭଲ ପାଆନ୍ତି ନାହିଁ, ଯେହେତୁ ଦେହ ଜୀର୍ଣ୍ଣଶୀର୍ଣ୍ଣ ହୋଇଗଲେ ମଧ୍ୟ ମନୁଷ୍ୟର ବଞ୍ଚିବାର ଆଶା ପ୍ରବଳତର ହୋଇଉଠେ । କିନ୍ତୁ ଯେତେବେଳେ ବିଚାରଦ୍ୱାରା ମନୁଷ୍ୟ ଅନୁଭବ କରେ ଯେ ଆତ୍ମାଠାରୁ ଦେହ ଭିନ୍ନ, ସେତେବେଳେ ଦେହପ୍ରତି ତାର ସେପରି ମମତା ରହେ ନାହିଁ ।।୫୨-୫୩।। ତେଣୁ ସମସ୍ତ ଦେହଧାରୀଙ୍କର ଆତ୍ମା ହେଉଛି ପ୍ରିୟତମ । ଏହି ଆତ୍ମାର ସୁଖପାଇଁ ଚରାଚର ସମସ୍ତ ଜଗତ ରହିଛି ।।୫୪।। ରାଜା, ଯେଉଁ ଶ୍ରୀକୃଷ୍ଣ ନରଶରୀରରେ ରହିଥିଲେ, ସେ ପ୍ରକୃତରେ ପରମବ୍ରହ୍ମ । ସମସ୍ତ ଆତ୍ମାର ଆତ୍ମାସ୍ୱରୂପ । ଜଗତର ମଙ୍ଗଳ ପାଇଁ ଦେହଧାରୀ ଜୀବପରି ସେ ଯୁଗେ ଯୁଗେ ଅବତୀର୍ଣ୍ଣ ହୁଅନ୍ତି ।।୫୫।। ପରିକ୍ଷିତ, ତେଣୁ ଯେଉଁମାନେ ଭଗବାନ୍ ଶ୍ରୀକୃଷ୍ଣଙ୍କର ସ୍ୱରୂପକୁ ଜାଣିଛନ୍ତି, ସେମାନେ ଚରାଚର ଏହି ସମସ୍ତ ଜଗତକୁ କୃଷ୍ଣମୟ ବୋଲି ଜାଣନ୍ତି । କୃଷ୍ଣଙ୍କ ଭିନ୍ନ ସେମାନେ ଅନ୍ୟ କୌଣସି ରୂପ ଦର୍ଶନ କରନ୍ତି ନାହିଁ ।।୫୬।। କାରଣ ବିନା କାର୍ଯ୍ୟର କୌଣସି ପୃଥକ୍ ସତ୍ତା ନ ଥାଏ ; ଏହି କାରଣର ହିଁ ପରମକାରଣ ହେଲେ ଭଗବାନ୍ ଶ୍ରୀକୃଷ୍ଣ । ତେଣୁ ଶ୍ରୀକୃଷ୍ଣଙ୍କ ଭିନ୍ନ ଅନ୍ୟ କୌଣସି ବସ୍ତୁର କଳ୍ପନା ଅସମ୍ଭବ । ମହତ୍ ଲୋକମାନଙ୍କ ଆଶ୍ରୟସ୍ଥଳ ପୁଣ୍ୟଶ୍ଳୋକ ମୁରାରିଙ୍କର ପଦପଲ୍ଲବରୂପ ନୌକାକୁ ଯେ ଭଲ ଭାବରେ ଆଶ୍ରୟ କରିଥା'ନ୍ତି, ସେମାନଙ୍କ ନିକଟରେ ଏହି ଭବସିନ୍ଧୁ ଗୋଷ୍ପଦ ତୁଲ୍ୟ ହୋଇଥାଏ । ସେମାନେ ପରମପଦ ଲାଭ କରିଥାନ୍ତି ଓ ପଦେ ପଦେ ତାଙ୍କ ବିପଦମାନ ଦୂର ହୋଇଯାଏ । ପରିକ୍ଷିତ, ପାଞ୍ଚ ବର୍ଷ ବୟସରେ ଅଘାସୁରକୁ ବିନାଶ କରି କୃଷ୍ଣ ଯେଉଁ ଲୀଳା ରଚନା କରିଥିଲେ, ବର୍ଷକପରେ ତାଙ୍କର ପୌଗଣ୍ଡ ସମୟରେ ବ୍ରଜବାଳକମାନେ ତାହା କାହିଁକି ଘୋଷଣା କଲେ, ସେ ପ୍ରଶ୍ନର ସର୍ବଶେଷ ଉତ୍ତର ତୁମେ ମୋ'ଠାରୁ ଶୁଣିଲ ।।୫୮-୫୯।। ଭଗବାନ ମୁରାରିଙ୍କର ନିଜ ସଖା (ବ୍ରଜବାଳକ)ମାନଙ୍କ ସହିତ ବାଲ୍ୟଲୀଳା, ଅଘାସୁରର ବିନାଶ, ଯମୁନାକୂଳର ସବୁଜଘାସପୂର୍ଣ୍ଣ ଭୂମିରେ ଗୋପବାଳକଙ୍କ ସହିତ ଭୋଜନ, ଅସଂଖ୍ୟ ବାଛୁରୀ ଓ ଗୋପବାଳକଙ୍କର ରୂପ ଧାରଣ, ବ୍ରହ୍ମାଙ୍କର କୃଷ୍ଣସ୍ତୁତି ପ୍ରଭୃତି ଲୀଳାମାନ ଯେ ଶ୍ରଦ୍ଧାର ସହିତ ଶୁଣେ ଓ କୀର୍ତ୍ତନ କରେ , ତାର ସମସ୍ତ ଅଭୀଷ୍ଟ ପୂର୍ଣ୍ଣ ହୁଏ ।।୬୦।। ଏହିପରି ବ୍ରଜଭୂମିରେ ରାମକୃଷ୍ଣ ଦୁହେଁ ଲୁଚକାଳି ଓ ଡାଳମାଙ୍କୁଡ଼ି ଖେଳ ଏବଂ ପାଣିରେ ବନ୍ଧ ବାନ୍ଧିବା ଆଦି ଖେଳ କୌତୁକରେ ବାଲ୍ୟକାଳଟି କଟାଇଦେଲେ ।।୬୧।।

## ପଞ୍ଚଦଶ ଅଧ୍ୟାୟ

# ଧେନୁକାସୁର ଓ କାଳିୟନାଗ

ଶ୍ରୀଶୁକଦେବ କହିଲେ, ଏବେ ରାମ କୃଷ୍ଣ ଦୁଇ ଭାଇ ପୌଗଣ୍ଡ ବୟସରେ ପଦାର୍ପଣ କଲେ । ବ୍ରଜବାସୀ ବୃଦ୍ଧ ଗୋପାଳମାନେ ଗୋରୁ ଚରାଇବାପାଇଁ ସେଦୁହେଁ ସମର୍ଥ ବୋଲି ମନେ କରିବାରୁ ସମବୟସ୍କ ଗୋପ ବାଳକମାନଙ୍କ ସହିତ କୃଷ୍ଣ ଓ ବଳରାମ ବୃନ୍ଦାବନରେ ଗୋରୁ ଚରାଇବାକୁ ଲାଗିଲେ ଏବଂ ତାଙ୍କ ପାଦରେ ବୃନ୍ଦାବନକୁ ପବିତ୍ର କଲେ ॥୧॥ ଗୋରୁ ଚରାଇବାପାଇଁ ବୃନ୍ଦାବନ ଏକ ପ୍ରକୃଷ୍ଟ ସ୍ଥାନ ଥିଲା । ଗଛ, ଘାସ ଓ ପତ୍ର ଫୁଲରେ ତାହା ଭରିରହିଥିଲା, ଗାଈପଲ ଆଗେ ଆଗେ ଯାଉଥିଲେ ; ପଛରେ ଉଚ୍ଚ ସ୍ୱରରେ ବଂଶୀ ବଜାଇ ବଜାଇ କୃଷ୍ଣ, ବଳରାମ ଓ କୃଷ୍ଣଙ୍କର ଗୁଣଗାନ କରୁଥିବା ଗୋପବାଳକମାନେ ବନବିହାରପାଇଁ ବୃନ୍ଦାବନ ମଧ୍ୟରେ ପ୍ରବେଶ କଲେ ॥୨॥ ସେହି ବନରେ ଭ୍ରମରମାନେ ମଧୁରଭାବରେ ଗୁଞ୍ଜନ କରୁଥିଲେ । ପଲ ପଲ ହରିଣ ବୁଲୁଥିଲେ ଓ ବିଚିତ୍ର ବର୍ଣ୍ଣର ପକ୍ଷୀମାନେ କୂଜନ କରୁଥିଲେ । ସୁନ୍ଦର ସରୋବରମାନଙ୍କର ବିମଳ ଜଳ ସାଧୁମାନଙ୍କର ହୃଦୟ ପରି ସ୍ୱଚ୍ଛ ଓ ନିର୍ମଳ ଥିଲା । ସେଥିରେ ଫୁଟିଥିବା ପଦ୍ମଫୁଲର ସୁଗନ୍ଧରେ ସୁରଭିତ ବାୟୁ ମନ୍ଦ ମନ୍ଦ ବହୁଥିଲା । ଭଗବାନ ଶ୍ରୀକୃଷ୍ଣ ଏପରି ଏକ ରମଣୀୟ ବନରେ ବିହାର କରିବାପାଇଁ ମନଃସ୍ଥ କଲେ ॥୩॥

ବନଭୂମିର ଚାରିଆଡ଼େ ନାଲି ନାଲି ନୂଆପତ୍ରରେ ଭରା ବୃକ୍ଷଲତା ସବୁ ଫଳଫୁଲର ଭାରରେ ନଇଁପଡୁଥିଲେ । ହସି ହସି କୃଷ୍ଣ ବଳରାମଙ୍କୁ ଏହିପରି କହିଲେ । ଶ୍ରୀ ଭଗବାନ କହିଲେ, ଦେବଶ୍ରେଷ୍ଠ,ଏହି ବୃକ୍ଷମାନେ ପୂର୍ବ ଜନ୍ମର ଅପରାଧ ବୃକ୍ଷ ହୋଇ ଜନ୍ମ ହୋଇଛନ୍ତି । ସେଥିରୁ ମୁକ୍ତ ହେବାପାଇଁ ଶାଖାମାନଙ୍କର ଅଗ୍ରଭାଗରୂପ ନିଜର ମସ୍ତକରେ ଫଳଫୁଲ ଆଦି ଧାରଣ କରି ସେମାନେ ଆପଣଙ୍କର ଦେବବନ୍ଦିତ ପାଦପଦ୍ମରେ ପ୍ରଣାମ କରୁଛନ୍ତି ॥୪-୫॥ ହେ ନିଷ୍ପାପ, ଆଦିପୁରୁଷ, ଏହି ବୃନ୍ଦାବନରେ ଆପଣ ନିଜ ରୂପକୁ ଗୋପନ କରି ବାଳକ ପରି କ୍ରୀଡ଼ାରେ ମାତିଯାଇଛନ୍ତି । ତଥାପି ଆପଣଙ୍କର ଭକ୍ତଶ୍ରେଷ୍ଠ ମୁନିମାନେ ଆପଣଙ୍କୁ ଚିହ୍ନିପାରିଛନ୍ତି । ତେଣୁ ଭ୍ରମରରୂପରେ ସେମାନେ ତ୍ରିଭୁବନକୁ ପବିତ୍ର କରୁଥିବା ଆପଣଙ୍କର ଯଶୋଗାନ କରୁଛନ୍ତି ଏବଂ ଆପଣଙ୍କୁ ଛାଡ଼ି ଯାଉ ନାହାନ୍ତି ॥୬॥ ପୂଜନୀୟ, ଏଇ ମୟୂରମାନଙ୍କୁ ଦେଖନ୍ତୁ । କିପରି ଆନନ୍ଦରେ ନୃତ୍ୟ କରୁଛନ୍ତି । ଗୋପୀମାନଙ୍କ ପରି ଏହି ହରିଣୀମାନେ କିପରି ଉତ୍ସୁକ ହୋଇ ସ୍ନେହରେ ଆପଣଙ୍କୁ ଚାହିଁରହିଛନ୍ତି । କୋକିଳମାନେ ମଧୁର କୁହୁ କୁହୁ ସ୍ୱରରେ ଆପଣଙ୍କୁ ଆସୁଥିବାର ଦେଖି ସ୍ୱାଗତ କରୁଛନ୍ତି । ବନରେ ରହୁଥିବା ଏହି ପ୍ରାଣୀମାନେ ଧନ୍ୟ, ଯେକି ସାଧୁମାନଙ୍କ ପରି ନିଜର ଗୃହକୁ ଆସୁଥିବା ଅତିଥିଙ୍କୁ ଏପରି ସ୍ୱାଗତ କରନ୍ତି ॥୭॥ ଆଜି ଆପଣଙ୍କର ଆଗମନରେ ଏହି ବନଭୂମି ଧନ୍ୟ ହୋଇଗଲା । ଆପଣଙ୍କର ପାଦସ୍ପର୍ଶରେ ଦୂର୍ବାଦଳ, ଅଙ୍ଗୁଳିସ୍ପର୍ଶରେ ବୃକ୍ଷଲତା, ଦୃଷ୍ଟିପାତରେ ନଦୀ, ପର୍ବତ, ଖଗ, ମୃଗ ଆଦି କୃତାର୍ଥ ହୋଇଛନ୍ତି ଏବଂ ଲକ୍ଷ୍ମୀଙ୍କର ଅଭିଳଷିତ ଆପଣଙ୍କର ବକ୍ଷସ୍ପର୍ଶରେ ଗୋପୀମାନେ ଧନ୍ୟ ହୋଇଛନ୍ତି ॥୮॥

ଶ୍ରୀ ଶୁକଦେବ କହିଲେ, ଶ୍ରୀକୃଷ୍ଣ ଏହିପରି ବୃନ୍ଦାବନକୁ ଦେଖି ଅତିଶୟ ଆନନ୍ଦିତ ହେଲେ । ଗୋବର୍ଦ୍ଧନ ପର୍ବତର ତଟରେ ଓ ଯମୁନା ନଦୀର କୂଳରେ ଗୋପାଳବାଳକଙ୍କ ସହିତ ସେ ବିହାର କରିବାକୁ ଲାଗିଲେ । ଗୋଟିଏ ପଟେ ଶ୍ରୀକୃଷ୍ଣଙ୍କ ଚରିତକୁ ଧରି ବ୍ରଜବାଳକମାନଙ୍କ ଗାନର ମୂର୍ଚ୍ଛନା ଶୁଣାଯାଉଥିଲା ଓ ଅନ୍ୟପଟେ ବଳରାମଙ୍କ ସହିତ କୃଷ୍ଣ ବନମାଳା ପିନ୍ଧି ମତ୍ତଭ୍ରମରମାନଙ୍କ ସହିତ ସ୍ୱର ମିଳାଇ ମଧୁର ଗାନ ଗାଉଥିଲେ ॥୯-୧୦॥ ଶ୍ରୀକୃଷ୍ଣ କେବେ କେବେ ଜଳହଂସମାନଙ୍କୁ ଅନୁକରଣ କରି ସେମାନଙ୍କ ପରି କୂଜନ କରୁଥିଲେ । ନୃତ୍ୟକାରୀ ମୟୂରମାନଙ୍କ ସହିତ ହସି ହସି ନାଚୁଥିଲେ ॥୧୧॥ କେବେକେବେ ମେଘଗମ୍ଭୀର ସ୍ୱରରେ ଦୂରକୁ ଚାଲିଯାଇଥିବା ଗୋରୁମାନଙ୍କୁ ସେମାନଙ୍କ ନାମ ଧରି ସ୍ନେହରେ ଡାକ

ପକାଉଥିଲେ । ଏସବୁ ଦେଖି ଗୋପବାଳକମାନେ ବେଶ୍ ଖୁସି ହେଉଥିଲେ । ବେଳେବେଳେ ସେ ଚକୁଆ, କାଣ୍ଡିଆବଗ, ଭଦଭଦଳିଆ ପକ୍ଷୀ ଓ ମୟୂରମାନଙ୍କୁ ଅନୁକରଣ କରି ସେମାନଙ୍କ ପରି ରାବ କରୁଥିଲେ । ବେଳେବେଳେ ବାଘ, ସିଂହଙ୍କ ଗର୍ଜନରେ ଯେପରି ପିଲାଏ ଛାନିଆ ହୋଇପଡ଼ନ୍ତି, ସେ ସେହିପରି ଅଭିନୟ କରୁଥିଲେ । ବେଳେବେଳେ ଖେଳି ଖେଳି ହାଲିଆ ହୋଇଗଲେ ବଳରାମ କୌଣସି ଗୋପବାଳକର କୋଳରେ ମୁଣ୍ଡ ରଖି ଶୋଇଯାଉଥିବାବେଳେ କୃଷ୍ଣ ତାଙ୍କର ଗୋଡ଼ ଘଷିଦେଇ ଆରାମ ନେଉଥିଲେ । ବେଳେବେଳେ ଗୋପବାଳକମାନେ ନାଚୁଥିଲେ, ଗାଉଥିଲେ, ମିଛ କୁସ୍ତି କରି ଲଢ଼ିଯାଉଥିଲେ; ସେତେବେଳେ କୃଷ୍ଣ ଓ ବଳରାମ ହାତ ଧରାଧରି ହୋଇ ହସୁଥିଲେ ଓ ସେମାନଙ୍କୁ ପ୍ରଶଂସା କରୁଥିଲେ । ବେଳେବେଳେ ଗୋପାଳପିଲାଙ୍କ ସହିତ ଲଢ଼ି କୃଷ୍ଣ ଯେତେବେଳେ ଥକିଯାଆନ୍ତି, ସେତେବେଳେ ଗଛମୂଳ ଦେଖି କୌଣସି ନା କୌଣସି ଗୋପବାଳକର କ୍ରୋଡ଼ରେ ମୁଣ୍ଡ ରଖି ଶୋଇଯାଆନ୍ତି । ସେତେବେଳେ କେହି କେହି ଭାଗ୍ୟବାନ୍ ଗୋପବାଳକ ତାଙ୍କ ପାଦକୁ ଘଷି ଦେଇ ଓ ତାଳପତ୍ରରେ ତାଙ୍କୁ ବିଂଚି ବିଂଚି ସମସ୍ତ ପାପରୁ ମୁକ୍ତ ହୋଇଯାଆନ୍ତି ॥୧୨-୧୭॥ ମହାରାଜ, କୃଷ୍ଣଙ୍କ ସ୍ନେହରେ ମୁଗ୍ଧ ଅନ୍ୟ ଗୋପବାଳକ ତାଙ୍କର ପ୍ରିୟ, ସୁନ୍ଦର ଲୀଳାମାନ ଗାନକରନ୍ତି ॥୧୮॥

ଏହିପରି କୃଷ୍ଣ ନିଜର ମାୟାଦ୍ୱାରା ନିଜର ସ୍ୱରୂପକୁ ଗୋପନ ରଖୁଥିଲେ । ଜଣେ ଗୋପବାଳକପରି ସେ ବ୍ୟବହାର କରୁଥିଲେ । ସ୍ୱୟଂ ଲକ୍ଷ୍ମୀ ଯାହାଙ୍କର ପାଦପଦ୍ମରେ ସେବା କରନ୍ତି, ସେହି ମହାଐଶ୍ୱର୍ଯ୍ୟମୟ ଭଗବାନ୍ ଶ୍ରୀକୃଷ୍ଣ ଗ୍ରାମ୍ୟ ବାଳକଙ୍କ ସହିତ ଗ୍ରାମ୍ୟବାଳକପରି ଆଚରଣ କରୁଥିଲେ । ଶ୍ରୀଦାମା ନାମକ ଗୋପାଳବାଳକ ବଳରାମ ଓ କୃଷ୍ଣଙ୍କର ସଖା ଥିଲେ । ସୁବଳ ଓ ସ୍ତୋକକୃଷ୍ଣ ଆଦି ଗୋପବାଳକଙ୍କ ସହିତ ମିଶି ଦିନେ ସେ କୃଷ୍ଣଙ୍କୁ ଅତି ସ୍ନେହରେ କହିଲେ-- ॥୧୯-୨୦॥ ହେ ମହାବାହୁ ରାମ, ହେ ଦୁଷ୍ଟଦଳନ କୃଷ୍ଣ, ଏଠାରୁ ଅଳ୍ପ ଦୂରରେ ଏକ ବିଶାଳ ବନ ଅଛି ଏବଂ ତାହା ଧାଡ଼ି ଧାଡ଼ି ତାଳଗଛରେ ପୂର୍ଣ୍ଣ । ସେଠାରେ ବହୁତ ପାଚିଲା ତାଳ ପଡ଼ିଛି ଓ ଏବେ ମଧ୍ୟ ପଡୁଛି । କିନ୍ତୁ ଧେନୁକ ନାମକ ଏକ ଦୁଷ୍ଟ ରାକ୍ଷସ ତାକୁ ଜଗି ରହି କାହାକୁ ସେଠାକୁ ଛାଡ଼ିଦେଉ ନାହିଁ ॥୨୧-୨୨॥ ହେ ରାମ, ହେ କୃଷ୍ଣ, ଅତିଶୟ ବଳବାନ୍ ସେହି ରାକ୍ଷସ ଗଧରୂପ ଧରି ରହିଛି ଓ ତା'ପରି ବଳବାନ୍ ତାର ଅନ୍ୟ ଜ୍ଞାତିମାନେ ସେଠାରେ ଗଧରୂପରେ ବୁଲୁଛନ୍ତି । ହେ ଶତ୍ରୁହନ୍ତା, ସେହି ନରମାଂସାହାରୀକୁ ଭୟ କରି ଲୋକମାନେ ସେ ବଣକୁ ଯାଉ ନାହାନ୍ତି । ପଶୁପକ୍ଷୀମାନେ ମଧ୍ୟ ସେ ବଣକୁ ଯିବା ଛାଡ଼ିଦେଇଛନ୍ତି ॥୨୩-୨୪॥ ସେ ତାଳର ବାସ୍ନା ବହୁତ ବଢ଼ିଆ । ତାକୁ କେବେ କେହି ଖାଇନାହାନ୍ତି । ଏଠିକୁ ମଧ୍ୟ ତାର ବାସ୍ନା ଆସିଯାଉଛି ଓ ଚାରିଆଡ଼େ ମଧ୍ୟ ବାସ୍ନା ହେଉଛି । ମୋତେ ଏ ବାସ୍ନା ଏତେ ଭଲ ଲାଗୁଛି ଯେ, ମୋର ସେଠାକୁ ଯିବାକୁ ଇଚ୍ଛା ହେଉଛି । ରାମ ଓ କୃଷ୍ଣ, ଯଦି ତୁମର ଆପତ୍ତି ନଥାଏ, ଚାଲ ସେଠାକୁ ଯିବା ॥୨୫-୨୬॥ ନିଜ ସଖାଙ୍କର ଏହି କଥା ଶୁଣି, ସେମାନଙ୍କ ପ୍ରିୟ କାମନାରେ କୃଷ୍ଣ ଓ ବଳରାମ ହସି ହସି ସେମାନଙ୍କ ସହିତ ତାଳବନକୁ ଚାଲିଲେ । ଏକ ମତ୍ତଗଜର ବଳ ପରି ବଳରାମଙ୍କର ବଳ ଥିଲା । ସେଠାରେ ପହଞ୍ଚି ସେ ନିଜର ଦୁଇ ବାହୁରେ ତାଳଗଛମାନଙ୍କୁ ଏପରି ହଲେଇଲେ ଯେ, ଫଳସବୁ ଝଡ଼ିବାକୁ ଲାଗିଲା ॥୨୭-୨୮॥ ଫଳ ପଡ଼ିବାର ଶବ୍ଦ ଶୁଣି ସେହି ଗଧରୂପୀ ରାକ୍ଷସ ସେଠାକୁ ଦଉଡ଼ି ଆସିଲା । ତା' ପାଦର ପ୍ରଚଣ୍ଡ ଶବ୍ଦରେ ପୃଥିବୀ ଓ ପର୍ବତ ସବୁ କମ୍ପମାନ ହେଲା ॥୨୯॥ ବଳବାନ୍ ରାକ୍ଷସ ଦ୍ରୁତବେଗରେ ବଳରାମଙ୍କ ଆଡ଼କୁ ଦଉଡ଼ି ଆସି ତାର ପଛ ଦୁଇ ଗୋଡ଼ରେ ବଳରାମଙ୍କ ଛାତିକୁ ଏକ ଲାତ ମାରିଲା ଓ ଗଧପରି ଜୋର୍‌ରେ କେଁ କେଁ ଶବ୍ଦକରି କିଛିବାଟ ଘୁଞ୍ଚିଗଲା ॥୩୦॥ କ୍ରୋଧରେ ଅଧୀର ହୋଇ ପୁଣି ଆଘାତ କରିବାପାଇଁ ତାର ପଛ ପାଦ ଦୁଇଟା ଉଠାଇଲା । ବଳରାମ ଗୋଟାଏ ହାତରେ ତା'ର ପଛ ପାଦ ଦୁଇଟା ଧରିନେଇ ତାକୁ ଶୂନ୍ୟରେ ବୁଲାଇ ବୁଲାଇ ଏକ ତାଳ ଗଛରେ ପିଟିଦେଲେ । ସେ ତାକୁ ଜୋର୍‌ରେ ବୁଲାଉଥିବାବେଳେ ତାର ପ୍ରାଣ ଚାଲିଯାଇଥିଲା । ସେହି ବିଶାଳ ତାଳଗଛ ଭାଙ୍ଗି ଯାଇ ଆଉ ଗୋଟାଏ ଗଛ ଉପରେ ପଡ଼ିଲା ଏବଂ ଯାହା

ଉପରେ ପଡ଼ିଲା, ସେ ଗଛ ଭାଙ୍ଗିଯାଇ ଅନ୍ୟ ଗଛ ଉପରେ ପଡ଼ିଲା, ଏହିପରି ଗଛ ଉପରେ ଗଛ ପଡ଼ି ଭାଙ୍ଗିବାକୁ ଲାଗିଲା ।।୩୧-୩୩।। ବଳରାମଙ୍କର ଏହି ଲୀଳାରେ ଗଧରୂପ ଅସୁରଦେହର ଆଘାତରେ ତାଳବଣସାରା କମ୍ପିବାକୁ ଲାଗିଲା । ଶୁଣାଗଲା, ଯେପରି ତାଙ୍କ ଉପରେ ଏକ ପ୍ରବଳ ଝଡ଼ ବହିଯାଉଛି ।।୩୪।। ସୂତାରେ ଯେପରି ବସ୍ତ୍ର ବୁଣା ହୋଇଥାଏ, ସେହିପରି ସମଗ୍ର ଜଗତ୍ ଓତପ୍ରୋତ ଭାବରେ ଯାହାଙ୍କଠାରେ ରହିଛି, ଜଗତ୍‌ର ଈଶ୍ୱର ସେହି ବଳରାମଙ୍କ ପକ୍ଷରେ ଏହା କିଛି ବିଚିତ୍ର ନୁହେଁ । ଏହାପରେ ଧେନୁକାସୁରର ବନ୍ଧୁବାନ୍ଧବମାନେ ତାର ନିଧନରେ କ୍ରୁଦ୍ଧ ହୋଇ କୃଷ୍ଣ ଓ ବଳରାମଙ୍କ ଆଡ଼କୁ ମାଡ଼ି ଆସିଲେ ।।୩୫-୩୬।। ପରିକ୍ଷିତ, ସେମାନଙ୍କୁ ମାରିବା କୃଷ୍ଣ ଓ ବଳରାମଙ୍କୁ ଖେଳ ପରି ଲାଗିଲା । ସେମାନଙ୍କ ପଛ ଗୋଡ଼କୁ ଧରି ସେ ଦୁହେଁ ତାଙ୍କୁ ତାଳଗଛମାନଙ୍କ ଉପରେ ପିଟିବାକୁ ଲାଗିଲେ । ତାଳସବୁ ଝଡ଼ି ବଣସାରା ପୂରିଯାଇଥିଲା । ତା'ପରେ ପୁଣି ସେଠାରେ ରାକ୍ଷସଗୁଡ଼ାକ ମରିପଡ଼ିଲେ । ତାଳଗଛ, ତାଳ ଓ ଅସୁରଙ୍କ ମୃତ ଦେହରେ ଭରିଯାଇଥିବା ସେହି ତାଳବନ ମେଘାଚ୍ଛାଦିତ ଆକାଶ ପରି ଦେଖାଗଲା ।।୩୭-୩୮।।

ଶ୍ରୀକୃଷ୍ଣ ଓ ବଳରାମ ଏହିପରି ଏକ ମହତ୍ କର୍ମ କରିଥିବାର ଦେଖି ଦେବତାମାନେ ପୁଷ୍ପବୃଷ୍ଟି କଲେ ଓ ବାଦ୍ୟସବୁ ବାଜିଉଠିଲା । ସେମାନେ ଦୁହିଁଙ୍କୁ ସ୍ତୁତି କରିବାକୁ ଲାଗିଲେ । ଏହି ତାଳବନରେ ଧେନୁକାସୁର ମରିଯିବାପରେ ଲୋକେ ନିର୍ଭୟରେ ପଶି ପାଚିଲା ତାଳସବୁ ଖାଇଲେ ଓ ଗୋରୁମାନେ ସ୍ୱଚ୍ଛନ୍ଦରେ ଘାସ ଚରିବାକୁ ଲାଗିଲେ । ପଦ୍ମପତ୍ର ପରି ଆୟତଚକ୍ଷୁ କୃଷ୍ଣ, ବଳରାମଙ୍କୁ ସାଙ୍ଗରେ ଧରି ବ୍ରଜକୁ ଫେରିଆସିଲେ । ସେତେବେଳେ ତାଙ୍କର ଅନୁଗାମୀ ଗୋପବାଳକମାନେ ସେହି ପବିତ୍ର ଲୀଳା କୀର୍ତ୍ତନ ଓ ଶ୍ରବଣ କରି ତାଙ୍କ ସ୍ତୁତିଗାନ କରୁଥିଲେ ।।୩୯-୪୧।। ସେତେବେଳେ କୃଷ୍ଣଙ୍କର କେଶରାଶିରେ ଗୋଧୂଳି ଉଡ଼ି ଲାଗିଥିଲା ଏବଂ ମସ୍ତକରେ ମୟୂରଚୂଳ ଓ ବନଫୁଲ ଶୋଭାପାଉଥିଲା । ତାଙ୍କ ମଧୁର ହାସ ଓ ସୁନ୍ଦର ଚାହାଣି ମଧ୍ୟରେ ସେ ବେଣୁବାଦନ କରି ଆସୁଥିଲେ । ଗୋପବାଳକମାନେ ତାଙ୍କ ଯଶୋଗାନ କରୁଥିଲେ । ଗୋପୀମାନେ ତାଙ୍କୁ ଦେଖିବା ପାଇଁ ଜମା ହୋଇଯାଉଥିଲେ । ଗୋପୀମାନେ ନିଜ ନୟନ ଭ୍ରମରଦ୍ୱାରା କୃଷ୍ଣଙ୍କ ମୁଖପଦ୍ମର ମକରନ୍ଦକୁ ପାନ କରି ସାରାଦିନର ବିଚ୍ଛେଦଦୁଃଖକୁ ଦୂର କଲେ ଏବଂ କୃଷ୍ଣ ମଧ୍ୟ ସେମାନଙ୍କ ଲାଜ ଲାଜ ହସ ଓ ପ୍ରେମଭରା ଚାହାଣିକୁ ଉପଭୋଗ କରି ନିଜ ଗୃହରେ ପ୍ରବେଶ କଲେ । ପୁତ୍ରବତ୍ସଳା ଯଶୋଦା ଓ ରୋହିଣୀ ପୁତ୍ର ଦୁହିଁଙ୍କୁ ଯେପରି ସ୍ନେହ ଓ ଆଦରରେ ନେଇ ଖୁଆଇପିଆଇ ସୁସ୍ଥ କରାଇବାର କଥା, ସେହିପରି କଲେ । ମାତା ଦୁହେଁ ପାଣିରେ ଦେହକୁ ଘଷି ଦୁହିଁଙ୍କୁ ଗାଧୋଇ ଦେଲେ ଏବଂ ସେଥିରେ ତାଙ୍କର ପଥଶ୍ରମ ଦୂର ହୋଇଗଲା । ଦୁହେଁ ଭଲ ଲୁଗା ପିନ୍ଧି ଗନ୍ଧ, ଚନ୍ଦନ ଓ ମାଳାରେ ଭୂଷିତ ହେଲେ ଏବଂ ମା' ପରଶୁଥିବା ସ୍ୱାଦିଷ୍ଟ ଅନ୍ନ ଭୋଜନ କରି ଉତ୍ତମ ଶଯ୍ୟାରେ ଆରାମରେ ଶୋଇଗଲେ ।।୪୨-୪୬।। ଏହିପରି ଭଗବାନ କୃଷ୍ଣ ବୃନ୍ଦାବନରେ ଅନେକ ଲୀଳା କରିଥିଲେ । ଦିନେ ସେ ସାଙ୍ଗମାନଙ୍କୁ ଧରି ଯମୁନାକୂଳକୁ ଯାଇଥିଲେ । ସେଦିନ ବଳରାମ ତାଙ୍କ ସାଙ୍ଗରେ ନ ଥିଲେ । ପରିକ୍ଷିତ, ପ୍ରବଳ ନିଦାଘରେ କଷ୍ଟ ପାଇ ନିଜର ଶୋଷ ମେଣ୍ଟାଇବାପାଇଁ ଗୋପବାଳକମାନେ ଯମୁନାପାଣିକୁ ପିଇଦେଲେ । ଯମୁନାର ଜଳ ବଡ଼ ବିଷାକ୍ତ ଥିଲା । ତାହା ଜାଣି ନ ପାରି ସେମାନେ ପିଇଦେବା ମାତ୍ରେ ଯମୁନା କୂଳରେ ପ୍ରାଣହୀନ ଭାବରେ ପଡ଼ିରହିଲେ । କୃଷ୍ଣଙ୍କ ଛଡ଼ା ସେମାନଙ୍କର ଆଉ କେହି ନ ଥିଲେ । ସେମାନଙ୍କର ଏହି ଅବସ୍ଥା ଦେଖି ଯୋଗେଶ୍ୱରମାନଙ୍କର ଈଶ୍ୱର ଭଗବାନ୍ କୃଷ୍ଣ ସେମାନଙ୍କୁ ଅମୃତଦୃଷ୍ଟିରେ ଚାହିଁ ପୁଣି ବଞ୍ଚାଇଦେଲେ । ଚେତା ଆସିବାରୁ ସେମାନେ କୂଳରୁ ଉଠି ଆଶ୍ଚର୍ଯ୍ୟ ହୋଇ ପରସ୍ପର ଚାହିଁବାକୁ ଲାଗିଲେ । ସେମାନେ ଭାବିଲେ, ଆମେ ତ ବିଷାକ୍ତ ଜଳ ପିଇ ମରିଯାଇଥିଲେ, ପୁଣି ବଞ୍ଚିଲେ କିପରି ? ଏହା ଗୋବିନ୍ଦଙ୍କ ଅନୁଗ୍ରହ ଛଡ଼ା ଅନ୍ୟ କିଛି ନୁହେଁ । ସେମାନଙ୍କର ଅନୁମାନ ଠିକ୍ ଥିଲା ।।୪୭-୫୨।।

## ଷୋଡଶ ଅଧ୍ୟାୟ

# କାଳିୟ ଦଳନ

ଶ୍ରୀଶୁକଦେବ କହିଲେ, ପରିକ୍ଷିତ, ଶ୍ରୀକୃଷ୍ଣ ଦେଖିଲେ ଯେ ମହାବିଷଧର କାଳିୟ ନାଗ ଯମୁନାଜଳକୁ ବିଷାକ୍ତ କରିଦେଇଛି । ଏହି ଜଳକୁ ନିର୍ମଳ କରିବାପାଇଁ ସେ ସେଠାରୁ ତାକୁ ବାହାର କରିଦେଲେ ॥୧॥ ପରିକ୍ଷିତ ପଚାରିଲେ, ବ୍ରହ୍ମନ୍, ଭଗବାନ କୃଷ୍ଣ ଯମୁନାର ଅଗାଧ ଜଳରେ କିପରି ଏହି ସର୍ପକୁ ଦମନ କଲେ ଏବଂ କାଳିୟ କିପରି ସେଠାରେ ବହୁଯୁଗ ଧରି ବାସ କରୁଥିଲା, ତାହା ବର୍ଣ୍ଣନା କରନ୍ତୁ ॥୨॥ ବ୍ରହ୍ମନ୍, ମହାମହିମାମୟ ଭଗବାନ ଶ୍ରୀକୃଷ୍ଣ ସ୍ୱଚ୍ଛନ୍ଦରେ ଯେଉଁ ଲୀଳା କରିଥିଲେ, ଗୋପାଳରୂପରେ ତାଙ୍କର ସେହି ଅମୃତ ପରି ଉଦାର ଲୀଳା ଶ୍ରବଣ କରି କିଏ ବା ତୃପ୍ତ ହୋଇପାରିବ ? ॥୩॥ ଶ୍ରୀ ଶୁକଦେବ କହିଲେ, ପରିକ୍ଷିତ, ଯମୁନାମଧ୍ୟରେ କାଳିୟନାଗ ରହୁଥିବା ଏକ ବିଷାକ୍ତ ହ୍ରଦ ଥିଲା । କାଳିୟନାଗର ବିଷଜ୍ୱାଳାରେ ଜର୍ଜରିତ ସେହି ହ୍ରଦ ଉପରେ ଯେଉଁ ପକ୍ଷୀମାନେ ଉଡ଼ିଯାଉଥିଲେ, ସେମାନେ ବିଷ ତେଜରେ ମୂର୍ଚ୍ଛିତ ହୋଇ ସେଥିରେ ପଡୁଥିଲେ ॥୪॥ ଏହି ବିଷାକ୍ତ ହ୍ରଦର ଲହଡ଼ି ସ୍ପର୍ଶରେ ଆସି ପବନ ମଧ୍ୟ ବିଷାକ୍ତ ହୋଇଯାଉଥିଲା ଏବଂ ତାର କୂଳରେ କୌଣସି ଗଛ ବୃକ୍ଷ ଉଧଉ ନ ଥିଲେ ଏବଂ ସେ କୂଳରେ ଯେ ଯାଉଥିଲା, ସେ ମରିପଡୁଥିଲା ॥୫॥ ଭଗବାନ ଶ୍ରୀକୃଷ୍ଣ ଦେଖିଲେ ଯେ, ମହାବିଷଧର କାଳିୟ ନାଗ ଏ ଜଳମଧ୍ୟରେ ରହୁଛି ଓ ଯମୁନା ଜଳକୁ ସମ୍ପୂର୍ଣ୍ଣ ଦୂଷିତ କରିସାରିଲାଣି, ତେଣୁ ସେ ମନେ ମନେ ସେହି ଦୁଷ୍ଟକୁ ଦମନ କରିବାପାଇଁ ସ୍ଥିର କଲେ । କୂଳରେ କୌଣସି ମତେ ରହିଥିବା ଏକ କଦମ୍ବ ଗଛରେ ସେ ଚଢ଼ିଗଲେ ଓ ଅଣ୍ଟା ଭିଡ଼ି, ବାହାସ୍ଫୋଟ ମାରି ସେହି ବିଷାକ୍ତ ହ୍ରଦମଧ୍ୟକୁ ଡେଇଁପଡିଲେ ॥୬॥ ଶ୍ରୀକୃଷ୍ଣ ସାମାନ୍ୟ ପୁରୁଷ ନ ଥିଲେ । ତାଙ୍କ ପଡନର ବେଗରେ ସେହି ହ୍ରଦର ବିଷପୂର୍ଣ୍ଣ, କୃଷ୍ଣ ଓ ପୀତ ରଙ୍ଗର ଜଳରେ ଏପରି ଆଲୋଡନ ସୃଷ୍ଟି ହେଲା ଯେ ଚାରିଆଡ଼େ ଚାରିଶହ ହାତପର୍ଯ୍ୟନ୍ତ ଭୀଷଣ ତରଙ୍ଗମାନ ଖେଳିଗଲା ॥୭॥ ମହାମତ୍ତଗଜର ବଳ ଧାରଣ କରିଥିବା ଶ୍ରୀକୃଷ୍ଣ ତାଙ୍କ ଦୁଇ ହାତରେ ପାଣିକୁ ବାଡ଼େଇ କ୍ରୀଡ଼ା କରିବାକୁ ଲାଗିଲେ । ତାର ନିବାସସ୍ଥଳ ଏପରି ବିକ୍ଷୁବ୍ଧ ହେବାର ଦେଖି କାଳିୟ ସର୍ପ ତାହା ସହିପାରିଲା ନାହିଁ । ସେ କୃଷ୍ଣଙ୍କ ଆଡ଼କୁ ମାଡ଼ି ଆସିଲା । ସେ ଦେଖିଲା ଯେ ତା' ଆଗରେ ପୀତବସ୍ତ୍ର ପିନ୍ଧିଥିବା ମେଘପରି ଶ୍ୟାମଳ ରଙ୍ଗର ଏକ ସୁକୁମାର ବାଳକ ହସି ହସି ନିର୍ଭୟରେ ପଦ୍ମପରି କୋମଳ ତାର ପାଦ ଦୁଇଟିକୁ ପାଣିରେ ବାଡ଼େଇ ଖେଳିବାରେ ଲାଗିଛି । କ୍ରୁଦ୍ଧ କାଳିୟ ତାଙ୍କ ବକ୍ଷସ୍ଥଳକୁ ଦଂଶନ କରି ନିଜ ଦେହରେ ତାଙ୍କୁ ଗୁଡ଼ାଇଦେଲା ॥୯॥

କାଳିୟ ନାଗ ଏହିପରି କୃଷ୍ଣଙ୍କୁ ଗୁଡାଇ ଦେଉଥିବାର ଦେଖି କୃଷ୍ଣଗତପ୍ରାଣ ଗୋପବାଳକମାନେ ଦୁଃଖ, ଶୋକ ଓ ଭୟରେ ମୂର୍ଚ୍ଛା ହୋଇ ପଡିଗଲେ । ହ୍ରଦପାଖରେ ଥିବା ଗାଈ, ବାଛୁରୀ ଓ ବୃଷଭମାନେ ଦୁଃଖ ଓ ଭୟରେ ବାରମ୍ବାର ବୋବାଇବାକୁ ଲାଗିଲେ ଏବଂ ଏକଦୃଷ୍ଟିରେ କୃଷ୍ଣଙ୍କଆଡ଼କୁ ଚାହିଁ ନିଶ୍ଚଳ ଭାବରେ ଆଖିରୁ ଲୁହ ଗଡ଼ାଇବାକୁ ଲାଗିଲେ । ଏଣେ ବ୍ରଜଭୂମିରେ ଓ ଆକାଶରେ ନାନା ଉତ୍ପାତ ଦେଖାଗଲା ଏବଂ ଲୋକମାନେ ମଧ୍ୟ ନାନାପ୍ରକାର ଅଲକ୍ଷଣ ଅନୁଭବ କଲେ । ଏ ସବୁ ଅଲକ୍ଷଣ ଓ ଉତ୍ପାତ ଆଦି ଦେଖି ନନ୍ଦ ଆଦି ଗୋପାଳମାନେ ବଳରାମଙ୍କୁ ସାଂଗରେ ନେଇ କୃଷ୍ଣ ଗାଈ ଚରାଇବାକୁ ଯାଇଥିବା ଜାଣି ଆତଙ୍କିତ ହେଲେ । ସେମାନେ ସମସ୍ତେ କୃଷ୍ଣଗତପ୍ରାଣ, କୃଷ୍ଣଙ୍କ ଛଡା ଅନ୍ୟ କିଛି ଚିନ୍ତା କରୁ ନ ଥିଲେ । କୃଷ୍ଣଙ୍କର ବଳବୀର୍ଯ୍ୟ ସମ୍ପର୍କରେ ସେମାନଙ୍କର ଧାରଣା ନ ଥିଲା । ତେଣୁ ଏସବୁ ଦୁର୍ଲକ୍ଷଣ ଦେଖି କୃଷ୍ଣ ବୋଧ ହୁଏ ଆଉ ନାହାନ୍ତି ବୋଲି ଭାବି ସେମାନେ ଦୁଃଖ, ଶୋକ ଓ ଭୟରେ ଆତୁର ହୋଇପଡ଼ିଲେ । ବତ୍ସ ପରିକ୍ଷିତ, ଗାଈ ବାଛୁରୀଙ୍କୁ ସ୍ନେହ କରିବାପରି ବ୍ରଜବାସୀ ଆବାଳବୃଦ୍ଧବନିତା କୃଷ୍ଣଙ୍କୁ ସ୍ନେହ କରୁଥିଲେ । କୃଷ୍ଣଙ୍କୁ ବିପଦ ପଡ଼ିଥିବା ଜାଣି

ସେ କେଉଁଠି ଅଛନ୍ତି ଦେଖିବାପାଇଁ ସେମାନେ ବାହାରିଗଲେ । ବଳରାମ ତାଙ୍କ ସାନଭାଇଙ୍କର ଶକ୍ତି କ'ଣ ଜାଣିଥିଲେ । ସେ ବ୍ରଜବାସୀଙ୍କୁ ଏପରି କାତର ହେବା ଦେଖି ମନେ ମନେ ହସି କାହାରିକୁ କିଛି କହିଲେ ନାହିଁ । ଭଗବତ୍‌ଲକ୍ଷଣଯୁକ୍ତ ନିଜର ପ୍ରାଣପ୍ରିୟ କୃଷ୍ଣଙ୍କ ପାଦଚିହ୍ନକୁ ଅନୁସରଣ କରି କରି ସେମାନେ ଯମୁନାକୂଳରେ ଯାଇ ପହଞ୍ଚିଲେ । ପରିକ୍ଷିତ, ବାଟରେ ଗଲାବେଳେ ସେମାନେ ଗାଈ, ଗୋରୁ ଓ ଅନ୍ୟମାନଙ୍କର ପାଦଚିହ୍ନ ମଧ୍ୟରେ କୃଷ୍ଣଙ୍କର ପାଦଚିହ୍ନକୁ ଚିହ୍ନି ପାରୁଥିଲେ । ତାଙ୍କ ପାଦଚିହ୍ନରେ ପଦ୍ମ, ଯବ, ଅଙ୍କୁଶ ଓ ଧ୍ୱଜାର ଚିହ୍ନ ପରିଷ୍କାର ଭାବରେ ରହିଥିଲା । ସେହି ଚିହ୍ନକୁ ଦେଖି ହିଁ ସେମାନେ ଆସିଥିଲେ । ହ୍ରଦମଧ୍ୟରେ ସାପଦ୍ୱାରା ଗୁଡ଼ାଇ ହୋଇ କୃଷ୍ଣ ନିଶ୍ଚେଷ୍ଟ ହୋଇ ପଡ଼ିଥିବାର ଦେଖି ଏବଂ ଗୋପବାଳକମାନେ ମୂର୍ଚ୍ଛା ଯାଇଥିବାର ଓ ଗୋ-ମହିଷାଦି ପଶୁମାନେ ବୋବାଳି ଛାଡୁଥିବାର ଦେଖି ସେମାନେ ଦୁଃଖରେ ଅଧୀର ହୋଇପଡ଼ିଲେ ଏବଂ ମୂର୍ଚ୍ଛାପ୍ରାୟ ହୋଇଗଲେ । ଗୋପୀମାନଙ୍କର ମନ ଅନନ୍ତଗୁଣର ଆଧାର କୃଷ୍ଣଙ୍କର ପ୍ରେମରେ ଆସକ୍ତ ହୋଇରହିଥିଲା । ସେମାନେ ତାଙ୍କର ସୁହୃଦ୍‌ଭାବ, ସ୍ମିତହାସ ଓ ମଧୁର କଥାସବୁ ସ୍ମରଣ କରି ନିଜର ପ୍ରିୟତମଙ୍କୁ ସର୍ପର କବଳରେ ପଡ଼ିଥିବାର ଦେଖି ଦୁଃଖରେ ଭାଂଗି ପଡ଼ିଲେ । ପ୍ରିୟ ବିଚ୍ଛେଦରେ ତ୍ରିଭୁବନ ତାଙ୍କୁ ଶୂନ୍ୟ ଦେଖାଗଲା । ପୁତ୍ରବତ୍ସଳା ଯଶୋଦା କାଳିୟର ହ୍ରଦ ମଧ୍ୟକୁ ଡେଇଁ ପଡ଼ିବାକୁ ଯାଉଥିଲେ, କିନ୍ତୁ ଗୋପୀମାନେ ତାଙ୍କୁ ଭିଡ଼ି ଆଣିଲେ । ସେମାନେ ମଧ୍ୟ ତାଙ୍କ ପରି ବ୍ୟଥିତ ହେଉଥିଲେ ଏବଂ ସେମାନଙ୍କ ଆଖିରୁ ଧାର ଧାର ଲୁହ ବୋହିଯାଉଥିଲା । କୃଷ୍ଣଙ୍କର ଲୀଳାମାନ ବର୍ଣ୍ଣନା କରି ସେମାନେ ଯଶୋଦାଙ୍କୁ ଆଶ୍ୱାସନା ଦେଲେ ଏବଂ ଏକଦୃଷ୍ଟିରେ କୃଷ୍ଣଙ୍କ ଆଡକୁ ଚାହିଁରହିଲେ । ପରିକ୍ଷିତ, ନନ୍ଦ ଆଦି ଗୋପାଳମାନଙ୍କର ପ୍ରାଣ ଥିଲେ କୃଷ୍ଣ । ସେମାନେ କାଳିୟ ହ୍ରଦରେ ପଶିଯିବାପାଇଁ ବାହାରିଲେ । ବଳରାମ କୃଷ୍ଣଙ୍କର ପ୍ରଭାବ ଜାଣିଥିଲେ ; ତେଣୁ କୌଣସିମତେ ସେ ସେମାନଙ୍କୁ ସେଥିରୁ ନିବାରଣ କଲେ । ସାପର ଦେହରେ ଗୁଡ଼େଇ ହୋଇ ରହିବା କୃଷ୍ଣଙ୍କର ଲୀଳାମାତ୍ର ଥିଲା । ସ୍ତ୍ରୀ, ବାଳକ ସମେତ ବ୍ରଜବାସୀଙ୍କର ସେ ହିଁ ଏକମାତ୍ର ଆଶ୍ରୟ ବୋଲି ଜାଣି ମୁହୂର୍ତ୍ତକ ମଧ୍ୟରେ ସେ ସାପର ବନ୍ଧନରୁ ବାହାରିଆସିଲେ ।।୧୦-୨୩।। ଦେଖୁ ଦେଖୁ କୃଷ୍ଣଙ୍କର ଶରୀର ଫୁଲି ଉଠିଲା । କାଳିୟ ନାଗ ବ୍ୟସ୍ତ ହୋଇ ତାଙ୍କୁ ଛାଡ଼ିଦେଲା । କିନ୍ତୁ କ୍ରୋଧରେ ନିଜର ଫଣାକୁ ଉଠାଇ ଖୁବ୍ ଜୋରରେ ଫଁ ଫଁ ହେବାକୁ ଲାଗିଲା । ତାର ନାସାରନ୍ଧ୍ରରୁ ବିଷର ଉଦ୍‌ଗାର ହେବାକୁ ଲାଗିଲା । ଆଖି ଦୁଇଟା ଜଳୁଥିଲା ଓ ମୁହଁରୁ ଅଗ୍ନିକଣା ସବୁ ବାହାରି ଆସୁଥିଲା । ସେ କୃଷ୍ଣଙ୍କଆଡ଼କୁ ଚାହିଁ ରହିଲା । ଗରୁଡ଼ ଯେପରି ବିଷଧର ସାପକୁ କବଳିତ କରିବାପାଇଁ ତାର ଚାରିପଟେ ଘୂରେ, କୃଷ୍ଣ ସେହିପରି ତାର ଚାରିପଟେ ବୁଲିବାକୁ ଲାଗିଲେ ଏବଂ କୃଷ୍ଣଙ୍କୁ ଦଂଶନ କରିବାପାଇଁ ସୁବିଧା ଖୋଜି କାଳିୟନାଗ ମଧ୍ୟ ଚାରିପଟେ ବୁଲିବାକୁ ଲାଗିଲା । ସେତେବେଳେ ସେ ତାହାର ଦୁଇଫାଳିଆ ଜିଭକୁ ଲହ ଲହ କରି ଓଠର କଣକୁ ଚାଟୁଥିଲା ଓ ତାର ଜଳନ୍ତା ଆଖିରୁ ନିଆଁଝୁଲ ସବୁ ବାହାରୁଥିଲା ।।୨୫।। ଏହିପରି ବୁଲି ବୁଲି କାଳିୟର ବଳ ଯେତେବେଳେ କ୍ଷୀଣ ହୋଇଗଲା, କୃଷ୍ଣ ତାର ବିଶାଳ ଫଣାକୁ ନୁଆଁଇଦେଇ ତା'ଉପରେ ଚଢ଼ିଗଲେ । କାଳିୟର ଫଣାରେ ଥିବା ମଣିମାନଙ୍କର ତେଜରେ କୃଷ୍ଣଙ୍କର ପଦାମ୍ବୁଜ ତମ୍ବା ପରି ନାଲି ଦେଖା ହେଲା ଓ ସେ କାଳିୟର ଫଣାରେ ନୃତ୍ୟ କରିବାକୁ ଲାଗିଲେ ।।୨୬।। ସେ ନୃତ୍ୟ କରିବା ମାତ୍ରେ ତାଙ୍କର ପାର୍ଷଦଗଣ, ସିଦ୍ଧ, ଗନ୍ଧର୍ବ, ଦେବତା, ଋଷି, ଚାରଣ ଓ ଦେବାଙ୍ଗନାମାନେ ଅତି ଆନନ୍ଦରେ ମୃଦଙ୍ଗ, ପଣବ ଆଦି ବାଦ୍ୟ ବଜାଇ ଓ ଗୀତ ଗାଇ ପୁଷ୍ପବୃଷ୍ଟି କଲେ ଏବଂ କୃଷ୍ଣଙ୍କୁ ସ୍ତୁତି କରିବାକୁ ଆରମ୍ଭ କଲେ ।।୨୭।। କାଳିୟ ନାଗର ଶହେ ଫଣା ଥିଲା । ଯେତେବେଳେ ସେ ଫଣାକୁ ଉପରକୁ ଉଠାଉଥାଏ, ସେତେବେଳେ କୃଷ୍ଣ ତାକୁ ଶକ୍ତ ଦଣ୍ଡ ଦେବାପାଇଁ ତାର ଫଣାକୁ ଦଳିଦେଉଥାଆନ୍ତି । କାଳିୟ ନାଗର ଆୟୁଷ କ୍ଷୀଣ ହେବାକୁ ଲାଗିଲା ଏବଂ ସେ ମୁହଁ ଓ ନାକରୁ ରକ୍ତବାନ୍ତି କରି ମୂର୍ଚ୍ଛାପ୍ରାୟ ହୋଇଗଲା ।।୨୮।। ବେଳେବେଳେ କାଳିୟ କ୍ରୋଧରେ ଅଧୀର ହୋଇ ଆଖିରୁ

ବିଷ ବର୍ଷା କରୁଥାଏ ଓ ମାରିବାପାଇଁ ଫଣା ଉଠାଉଥାଏ; ସେ ଯେଉଁ ଫଣା ଉଠାଉଥାଏ, ଭଗବାନ ତାକୁ ପାଦରେ ଦଳି ଦେଇ ନୃତ୍ୟ କରୁଥା'ନ୍ତି । ଦେବତାମାନେ ସଙ୍ଗେ ସଙ୍ଗେ ପୁଷ୍ପ ବୃଷ୍ଟି କରିବାକୁ ଲାଗନ୍ତି ।।୨୯।।

ପରିକ୍ଷିତ, କୃଷ୍ଣଙ୍କର ସେହି ବିଚିତ୍ର ତାଣ୍ଡବ ନୃତ୍ୟରେ ଛତ୍ରରୂପକ କାଳିୟର ଶହେଯାକ ଫଣା ଭାଙ୍ଗିଗଲା ଓ ତାର ସମସ୍ତ ଦେହ ଚୂର୍ଣ୍ଣ ବିଚୂର୍ଣ୍ଣ ହୋଇଗଲା । ପ୍ରବଳ ବେଗରେ ସେ ରକ୍ତ ବାନ୍ତି କରିବାକୁ ଲାଗିଲା । ସେ ଜାଣିପାରିଲା ଯେ ତା'ର ମସ୍ତକ ଉପରେ ପୁରାଣପୁରୁଷ ଶ୍ରୀନାରାୟଣ ଅବସ୍ଥାନ କରିଛନ୍ତି । ତାଙ୍କୁ ମନେ ମନେ ସ୍ମରଣ କରି ସେ ତାଙ୍କରି ପାଦରେ ଶରଣାପନ୍ନ ହେଲା ।।୩୦।। ଭଗବାନ୍ ଶ୍ରୀକୃଷ୍ଣଙ୍କ ଉଦରରେ ସମସ୍ତ ବିଶ୍ୱ ରହିଛି । ତେଣୁ ତାଙ୍କ ବୋଝ ସମ୍ଭାଳି ନ ପାରି କାଳିୟ ନାଗ ଅବସନ୍ନ ହୋଇପଡ଼ିଲା । ତାଙ୍କରି ପାଦ ପ୍ରହାରରେ ଛତ୍ରପରି ରହିଥିବା କାଳିୟର ଫଣାସବୁ ଚୂର୍ଣ୍ଣ ବିଚୂର୍ଣ୍ଣ ହୋଇଗଲା । କାଳିୟର ପତ୍ନୀମାନେ ସ୍ୱାମୀର ଏହି ଦଶା ଦେଖି କୃଷ୍ଣଙ୍କୁ ଶରଣାଗତ ହେଲେ । ଭୟାତୁର ଅବସ୍ଥାରେ ଥିବାରୁ ସେମାନଙ୍କର ବସ୍ତ୍ର, ଅଳଙ୍କାର ଓ କେଶରାଶି ସବୁ ଅସ୍ତବ୍ୟସ୍ତ ହୋଇପଡ଼ିଥିଲା ।।୩୧।। ପତିପରାୟଣା କାଳିୟର ପତ୍ନୀମାନେ ନିଜ ସ୍ୱାମୀର ମରଣଭୟରେ ଅତିଶୟ ବ୍ୟାକୁଳ ହୋଇପଡ଼ିଲେ ଏବଂ ନିଜ ନିଜର ସନ୍ତାନମାନଙ୍କୁ କୃଷ୍ଣଙ୍କ ପାଦତଳେ ଅର୍ପଣ କରି ସ୍ୱାମୀର ଘୋର ଅପରାଧକୁ କ୍ଷମା ଦେବାପାଇଁ କୃଷ୍ଣଙ୍କର ଶରଣାପନ୍ନ ହେଲେ । ସେମାନେ ହାତ ଯୋଡ଼ି ପ୍ରଣାମ କରି କୃଷ୍ଣଙ୍କ ଗୋଡ଼ତଳେ ଲମ୍ୱ ହୋଇ ଶୋଇପଡ଼ିଲେ ।।୩୨।।

ନାଗପତ୍ନୀମାନେ ସ୍ତୁତି କରି କହିଲେ, ଏହି ମହା ଅପରାଧୀକୁ ଆପଣ ଦଣ୍ଡ ଦେଇ ଠିକ୍ କରିଛନ୍ତି । କାରଣ ଦୁଷ୍ଟଦମନପାଇଁ ଆପଣ ଆବିର୍ଭୂତ ହୁଅନ୍ତି । ଶତ୍ରୁ ଓ ପୁତ୍ର--ସମସ୍ତଙ୍କ ପ୍ରତି ଆପଣଙ୍କର ସମଦୃଷ୍ଟି ଥାଏ ଏବଂ ଅପରାଧୀର ନିଜ ମଙ୍ଗଳପାଇଁ ଆପଣ ତା'ର ଦଣ୍ଡବିଧାନ କରନ୍ତି । ଆପଣଙ୍କ ଅନୁଗ୍ରହରେ ତା'ର ସମସ୍ତ ପାପ କ୍ଷୟ ହୋଇଯାଏ । ତେଣୁ କାଳିୟକୁ ଦଣ୍ଡ ଦେଇ ଆପଣ ଆମମାନଙ୍କ ପ୍ରତି ଅନୁଗ୍ରହ କରିଛନ୍ତି । ମହା ଅପରାଧୀ ହୋଇଥିବାରୁ ସେ ସର୍ପଯୋନିରେ ଜନ୍ମ ହୋଇଛି । ତା ନ ହୋଇଥିଲେ ଆପଣଙ୍କର କ୍ରୋଧ ପ୍ରକାଶ ପାଇ ନ ଥାନ୍ତା ଏବଂ ଆମେ ଅନୁଗୃହୀତ ହୋଇ ନ ଥାନ୍ତୁ ।।୩୩-୩୪।। ପୂର୍ବଜନ୍ମରେ ହୁଏତ ଏହାର ଗର୍ବ ଓ ଅଭିମାନ ନ ଥିଲା । ଅନ୍ୟମାନଙ୍କୁ ସମ୍ମାନ ଦେଇ ସେ ତପସ୍ୟା କରିଥିଲା । ସେ ସମସ୍ତ ପ୍ରାଣିଙ୍କପ୍ରତି ଦୟା କରି ବହୁତ ବଡ ଧର୍ମ ଅର୍ଜନ କରିଥିଲା । ତା ନ ହୋଇଥିଲେ ଆପଣ ତା' ପ୍ରତି ସନ୍ତୁଷ୍ଟ ହୋଇ ନ ଥାନ୍ତେ ।।୩୫।। ଯେଉଁ ଚରଣଧୂଳି ଲାଭ କରିବାପାଇଁ ଆପଣଙ୍କର ପ୍ରେୟସୀ ଲକ୍ଷ୍ମୀଦେବୀ ସମସ୍ତ ବାସନା ତ୍ୟାଗ କରି ତପସ୍ୟା କରିଥିଲେ, କେଉଁ ପୁଣ୍ୟବଳରେ କାଳିୟ ସେହି ପଦରଜ ସ୍ପର୍ଶ କରିବାର ଅଧିକାର ଲାଭକଲା, ତାହା ଆମ ଧାରଣାର ଅତୀତ । ଆପଣଙ୍କ ଚରଣାଶ୍ରିତ ଭକ୍ତମାନେ ସ୍ୱର୍ଗଲୋକ ଚାହାନ୍ତି ନାହିଁ । ସସାଗରା ପୃଥିବୀର ଆଧିପତ୍ୟ, ପାତାଳର ଆଧିପତ୍ୟ, ଅଣିମାଦି ଅଷ୍ଟସିଦ୍ଧି, ବ୍ରହ୍ମପଦ, ଏପରିକି ମୁକ୍ତି ମଧ୍ୟ ଚାହାନ୍ତି ନାହିଁ ।।୩୬-୩୭।। ପ୍ରଭୁ, ସଂସାରଚକ୍ରରେ ଭ୍ରମୁଥିବା ଜୀବମାନେ ଆପଣଙ୍କ ଚରଣସେବାକୁ ଇଚ୍ଛା କରିବାମାତ୍ରେ ସହଜରେ ସମସ୍ତ ସମ୍ପଦ ଲାଭ କରିଥା'ନ୍ତି । ଶରଣାଗତ ନ ହେଲେ କେହି ଆପଣଙ୍କ ପରମପଦ ଲାଭ କରି ପାରେନା । ସର୍ପରାଜ କାଳିୟ ଅତିଶୟ କ୍ରୋଧୀ ଓ ତମୋଗୁଣସମ୍ପନ୍ନ ଯୋନିରେ ଉତ୍ପନ୍ନ । କିନ୍ତୁ ସେ ଆପଣଙ୍କ ଚରଣସ୍ପର୍ଶର ଅଧିକାର ଲାଭ କରିଛି ।।୩୮।। ପ୍ରଭୁ, ଆପଣ ମହାମହିମ ପୁରୁଷରୂପୀ ଭଗବାନ । ସମସ୍ତ ପ୍ରାଣୀଙ୍କର ଆଶ୍ରୟସ୍ଥଳ, ଜଗତର ଆଦିମୂଳ, ସମସ୍ତ କାରଣର କାରଣ ଓ ପରମବ୍ରହ୍ମ । ଆପଣ ଜ୍ଞାନ ଓ ବିଜ୍ଞାନର ଉତ୍ସ; ଅନନ୍ତ ଶକ୍ତିର ଆଧାର; ଭେଦରହିତ ଓ ଗୁଣରହିତ, ନିର୍ବିକାର ଏବଂ ପ୍ରକୃତିର ପ୍ରେରକ । ଆପଣ ସ୍ୱୟଂ କାଳ ଏବଂ କାଳରୂପରେ କାଳଶକ୍ତିର ଆଶ୍ରୟ । ବର୍ଷ, ମାସ, ଦଣ୍ଡ, ଆଦି ସମସ୍ତ କାଳଗଣନାର ସାକ୍ଷୀ । ଆପଣ ହେଉଛନ୍ତି ଏ ସମଗ୍ର ବିଶ୍ୱର ସ୍ୱରୂପ, ତାର ଦ୍ରଷ୍ଟା, କର୍ତ୍ତା ଓ କାରଣ ।।୩୯-୪୧।। ଆପଣ ଆକାଶ ଆଦି ପଞ୍ଚଭୂତ, ପଞ୍ଚ ତନ୍ମାତ୍ର, ଦଶ ଇନ୍ଦ୍ରିୟ, ପଞ୍ଚ ପ୍ରାଣ ଏବଂ

ମନ, ବୁଦ୍ଧି ଓ ଚିତ୍ତବୃତ୍ତି ପ୍ରଭୃତି ଅନ୍ତଃକରଣର ପ୍ରବର୍ତ୍ତକ । ଦେହାଭିମାନୀ ଜୀବମାନେ ଆପଣଙ୍କ ମାୟାରେ ଆତ୍ମସାକ୍ଷାତ୍‌କାରରୁ ବଞ୍ଚିତ ହୁଅନ୍ତି ॥୪୨॥ ଆପଣ ଅନନ୍ତ, ଅଜ୍ଞେୟ, ନିର୍ବିକାର ଏବଂ ସର୍ବଜ୍ଞ । ନାନା ମତବାଦୀଙ୍କ ନିକଟରେ ଅସ୍ତି, ନାସ୍ତି, ଏକ, ଅନେକ ପ୍ରଭୃତି ନାନା ଭାବରେ ପ୍ରତିଭାତ ହୁଅନ୍ତି । ଆପଣ ସମସ୍ତ ଶବ୍ଦ ରୂପରେ ଓ ଶବ୍ଦମାନଙ୍କର ଅର୍ଥରୂପରେ ଏବଂ ଉଭୟଙ୍କୁ ଯୋଡୁଥିବା ଶକ୍ତିରୂପରେ ବିଦ୍ୟମାନ । ଆପଣଙ୍କୁ ଆମର ନମସ୍କାର ॥୪୩॥

ଆପଣ ସମସ୍ତ ପ୍ରମାଣର ମୂଳସ୍ୱରୂପ । ଆପଣ ସମସ୍ତ ଶାସ୍ତ୍ରର ଉତ୍ସ ଓ ଜ୍ଞାନର ଆଧାର । ଆପଣ ଉଭୟ ପ୍ରବୃତ୍ତି ଓ ନିବୃତ୍ତି ମାର୍ଗ ଏବଂ ଉଭୟ ମାର୍ଗର ମୂଳଭୂତ ବେଦସ୍ୱରୂପ ॥୪୪॥ ଆପଣ ବସୁଦେବଙ୍କର ପୁତ୍ର ବାସୁଦେବ, ସଙ୍କର୍ଷଣ, ପ୍ରଦ୍ୟୁମ୍ନ ଏବଂ ଅନିରୁଦ୍ଧ । ଆପଣ ଭକ୍ତମାନଙ୍କର ସ୍ୱାମୀ । ଆପଣଙ୍କୁ ଆମର ନମସ୍କାର ॥୪୫॥ ଭକ୍ତମାନଙ୍କ ନିକଟରେ ଆପଣ ବାତ୍ସଲ୍ୟ ଆଦି ଗୁଣ ପ୍ରକାଶ କରନ୍ତି ଏବଂ ମାୟାଦ୍ୱାରା ଭକ୍ତମାନଙ୍କ ନିକଟରୁ ନିଜକୁ ଲୁଚାଇ ରଖନ୍ତି । ସତ୍ତ୍ୱ, ରଜ ଓ ତମ — ଏହି ତିନି ଗୁଣର କାର୍ଯ୍ୟକାରିଣୀ ଶକ୍ତିରୁ ଆପଣଙ୍କର ସ୍ୱରୂପ କିଞ୍ଚିତ୍ ଅନୁମିତ ହୁଏ । ଆପଣ ସେମାନଙ୍କୁ ନିୟନ୍ତ୍ରଣ କରନ୍ତି ଏବଂ ନିଜେ ହିଁ ନିଜକୁ ପ୍ରକାଶ କରିଥା'ନ୍ତି । ଆପଣଙ୍କୁ ଆମର ନମସ୍କାର ॥୪୬॥ ଆପଣଙ୍କର ଗୁଣ, ଓ ଲୀଳା ଅପ୍ରାକୃତ ହେଲେ ମଧ୍ୟ ପ୍ରାକୃତ ଭଳି ମନେ ହୁଏ । ହୃଷୀକେଶ, ଆପଣ ଆତ୍ମାରାମ ଏବଂ ସ୍ୱଭାବରେ ମୌନୀ । ଆପଣଙ୍କୁ ଆମର ନମସ୍କାର ॥୪୭॥ ଆପଣ କାରଣ ଓ କାର୍ଯ୍ୟର ରହସ୍ୟ ଜାଣନ୍ତି । ଆପଣ ସମସ୍ତଙ୍କର ଅଧିଷ୍ଠାତା – ବିଶ୍ୱର ନିୟନ୍ତା ଓ ବିଶ୍ୱର କାରଣ । ଆପଣଙ୍କୁ ଆମେ ପ୍ରଣାମ କରୁଛୁ ॥୪୮॥ ବିଭୁ, ଆପଣ ଅନାଦି କାଳର ଶକ୍ତି ଧାରଣ କରିଛନ୍ତି । ଆପଣ ନିଷ୍କ୍ରିୟ ଓ ନିର୍ବିକାର ହେଲେ ମଧ୍ୟ  ଜୀବମାନଙ୍କର ସଂସ୍କାରରୂପରେ ଥିବା ଗୁପ୍ତ ସ୍ୱଭାବକୁ ଜାଗରିତ କରନ୍ତି ଏବଂ ସତ୍ତ୍ୱ, ରଜ ଓ ତମ ଏହି ତିନି ଗୁଣଦ୍ୱାରା ଏହି ବିଶ୍ୱର ସୃଷ୍ଟି,ସ୍ଥିତି ଓ ସଂହାର କରିଥା'ନ୍ତି । ହେ ସତ୍ୟସଂକଳ୍ପ ଭଗବାନ୍, ଆପଣଙ୍କୁ ଆମେ ନମସ୍କାର କରୁଛୁ ॥୪୯॥ ଆପଣ ବିଶ୍ୱମୂର୍ତ୍ତି; ତେଣୁ ତିନିଲୋକର ସାତ୍ତ୍ୱିକ, ରାଜସିକ ଓ ତାମସିକ--ସମସ୍ତପ୍ରକାର ଦେହ ହେଉଛି ଆପଣଙ୍କର । ବର୍ତ୍ତମାନ ଆପଣ ଧର୍ମସଂସ୍ଥାପନ ଓ ସଜ୍ଜନପାଳନପାଇଁ ଅବତାର ଗ୍ରହଣ କରିଛନ୍ତି । ତେଣୁ ସାଧୁମାନେ ହିଁ ଆପଣଙ୍କର ପ୍ରିୟ ॥୫୦॥ ଯଦି ପୁତ୍ର ଅପରାଧ କରିଥାଏ, ତା'ହେଲେ ପିତା ତାକୁ ଥରେମାତ୍ର କ୍ଷମା ଦେବା ଉଚିତ । ତେଣୁ ହେ ଶାନ୍ତ, ଅଜାଣତରେ ଏହି ମୂଢ଼ କାଳିୟ ଯେଉଁ ଅପରାଧ କରିଛି, ଆପଣ ତାକୁ କ୍ଷମା ଦିଅନ୍ତୁ ॥୫୧॥ ପରମଦୟାଳୁ ପ୍ରଭୁ, କାଳିୟ ନାଗ ନିଜର ପ୍ରାଣ ତ୍ୟାଗ କରିବାକୁ ବସିଲାଣି । ତାକୁ ଆପଣ କ୍ଷମା ଦିଅନ୍ତୁ । ଆମେ ସର୍ପକୁଳରେ ଜାତ ଏବଂ ସ୍ତ୍ରୀଲୋକ, ତେଣୁ ସାଧୁମାନଙ୍କ ଅନୁଗ୍ରହର ପାତ୍ର, ପୁଣି ପତିପ୍ରାଣା; ତେଣୁ ଆମକୁ ଆମର ସ୍ୱାମୀଙ୍କୁ ଦେଇଦିଅନ୍ତୁ । ଆମେମାନେ ଆପଣଙ୍କର ଦାସୀ । ଆମର କର୍ତ୍ତବ୍ୟ କ'ଣ ଆପଣ ଆଦେଶ ଦିଅନ୍ତୁ । ଯେ ଶ୍ରଦ୍ଧାର ସହିତ ଆପଣଙ୍କର ଆଦେଶ ପାଳନ କରେ, ସେ ସମସ୍ତ ଭୟରୁ ମୁକ୍ତ ହୁଏ ॥୫୨-୫୩॥ ଶ୍ରୀ ଶୁକଦେବ କହିଲେ, ଭଗବାନ୍ ଶ୍ରୀକୃଷ୍ଣ ଏପରି ଭାବରେ ପାଦରେ ଦଳି କାଳିୟର ଫଣା ସବୁ ଭାଙ୍ଗି ଦେଇଥିଲେ ଯେ କାଳିୟ ମୂର୍ଚ୍ଛା ହୋଇ ଯାଇଥିଲା । କିନ୍ତୁ ତା'ର ପତ୍ନୀମାନେ ଏହିପରି ସ୍ତୁତି କରିବାରୁ ଭଗବାନ୍ ଦୟାପରବଶ ହୋଇ ତାକୁ ଛାଡ଼ିଦେଲେ ॥୫୪॥

ଧୀରେ ଧୀରେ କାଳିୟର ଇନ୍ଦ୍ରିୟମାନଙ୍କରେ ପ୍ରାଣ ପଶିଲା ଏବଂ ଅତିକଷ୍ଟରେ ସେ ନିଃଶ୍ୱାସ ନେବାକୁ ଲାଗିଲା । ଅତି କରୁଣ ଭାବରେ ହାତ ଯୋଡ଼ି ସେ କୃଷ୍ଣଙ୍କୁ ପ୍ରାର୍ଥନା କଲା ॥୫୫॥ ପ୍ରଭୁ, ଜନ୍ମରୁ ଆମେମାନେ ଦୁଷ୍ଟ । ତମୋଗୁଣରେ ଚାଳିତ ହେଉ । ବହୁଦିନ ପର୍ଯ୍ୟନ୍ତ ରାଗ ରଖୁ । ନିଜର ସ୍ୱଭାବ ଛାଡ଼ିବା କଷ୍ଟକର । ସ୍ୱଭାବ ଅନୁସାରେ ଜୀବ ଅସତ୍ କାର୍ଯ୍ୟରେ ପଶିଯାଏ । ବିଧାତା, ଆପଣ ଏହି ଜଗତ୍‌କୁ ସୃଷ୍ଟି କରିଛନ୍ତି । ଗୁଣଭେଦରେ ଆପଣଙ୍କର ସୃଷ୍ଟ ଜୀବମାନେ ନାନାପ୍ରକାର ସ୍ୱଭାବ, ଦେହର ଶକ୍ତି, ମନର ଶକ୍ତି, ଇନ୍ଦ୍ରିୟର ଶକ୍ତି, ମାତୃଶକ୍ତି, କାମନା, ବାସନା ଓ ଆକୃତି ନେଇ ଜନ୍ମ ହୋଇଥା'ନ୍ତି ॥୫୬-୫୭॥

ଆପଣଙ୍କର ସୃଷ୍ଟ ଏହି ଜଗତରେ ଆପଣଙ୍କ ମାୟାର ଅଧୀନ ଆମେମାନେ ହେଲୁ ସର୍ପଜାତି ଏବଂ କୋପନସ୍ୱଭାବ । ଆପଣ ଦୟା ନକଲେ ଆମେ ନିଜ ଶକ୍ତିରେ ଏହି ମାୟାର ପ୍ରଭାବକୁ ଲଂଘନ କରି ପାରିବୁ ନାହିଁ । ହେ ଜଗଦୀଶ୍ୱର, ଆପଣ ସର୍ବଜ୍ଞ । ତେଣୁ ଅଧିକ କ'ଣ କହିବି ? ମୋ' ପ୍ରତି ଆପଣ ଅନୁଗ୍ରହ କରନ୍ତୁ ବା ଦଣ୍ଡ ଦିଅନ୍ତୁ ; ଯାହା ଆପଣଙ୍କର ଇଚ୍ଛା ।।୫୮-୫୯।। ଏହା ଶୁଣି ମାନବ ଅବତାର ନେଇଥିବା ଭଗବାନ୍ ଶ୍ରୀକୃଷ୍ଣ କହିଲେ, କାଳିୟ, ତୁମର ଏଠାରେ ରହିବା ଆଉ ଉଚିତ ନୁହେଁ । ତୁମେ ତୁମର ସ୍ତ୍ରୀ, ପୁତ୍ର, ଜ୍ଞାତି, କୁଟୁମ୍ବଙ୍କ ସହିତ ସମୁଦ୍ରକୁ ଚାଲିଯାଅ । ମନୁଷ୍ୟ, ଗୋରୁଗାଈ, ଓ ଅନ୍ୟ ଜୀବମାନେ ଆରାମରେ ଯମୁନା ନଦୀର ଜଳ ସେବନ କରନ୍ତୁ । ଯେଉଁ ବ୍ୟକ୍ତି ସକାଳ ଓ ସନ୍ଧ୍ୟାରେ ତୁମକୁ ଦେଇଥିବା ମୋର ଆଜ୍ଞାକୁ ସ୍ମରଣ ବା କୀର୍ତ୍ତନ କରିବ, ତାର ସର୍ପଭୟ ରହିବ ନାହିଁ ।।୬୦-୬୧।। ଯେଉଁ ବ୍ୟକ୍ତି ଆମର ଲୀଳାକ୍ଷେତ୍ର ଏହି କାଳିନ୍ଦୀ ହ୍ରଦରେ ସ୍ନାନ କରି ଏହାର ଜଳରେ ଦେବତା, ଋଷି ଓ ପିତୃଗଣଙ୍କୁ ତର୍ପଣ କରିବ ଏବଂ ଉପବାସ କରି ମୋର ଲୀଳାକୁ ସ୍ମରଣ କରି ମୋତେ ପୂଜା କରିବ, ସେ ସମସ୍ତ ପାପରୁ ମୁକ୍ତ ହେବ ।।୬୨।। ଯେଉଁ ଗରୁଡ଼ଙ୍କ ଭୟରେ ତୁମେ ରମଣକ ଦ୍ୱୀପକୁ ଛାଡ଼ି ଏହି ହ୍ରଦରେ ବାସ କରୁଥିଲ, ତୁମ ଦେହରେ ମୋର ପାଦଚିହ୍ନ ଦେଖିଲେ ସେ ଆଉ ତୁମକୁ ଭକ୍ଷଣ କରିବେ ନାହିଁ ।।୬୩।। ଏହିପରି ଅଦ୍ଭୁତକର୍ମା ଭଗବାନ୍ କୃଷ୍ଣଙ୍କ ଦ୍ୱାରା ମୁକ୍ତ ହୋଇ କାଳିୟ ତାର ପତ୍ନୀମାନଙ୍କ ସହିତ କୃଷ୍ଣଙ୍କୁ ଆଦରରେ ପୂଜା କଲା । ସେମାନେ ଦିବ୍ୟବସ୍ତ୍ର, ମାଳା, ମଣି, ଅମୂଲ୍ୟ ଅଳଙ୍କାର, ସୁଗନ୍ଧି ଅଗୁରୁ, ଚନ୍ଦନ ଓ ପଦ୍ମମାଳା ଦ୍ୱାରା ଗରୁଡ଼ବାହନ ଭଗବାନ କୃଷ୍ଣଙ୍କୁ ପୂଜା କରି ତାଙ୍କୁ ପ୍ରସନ୍ନ କଲେ । ତାଙ୍କୁ ପ୍ରଦକ୍ଷିଣ କରି ଓ ଭକ୍ତି ସହକାରେ ତାଙ୍କ ପାଦରେ ବାରମ୍ବାର ପ୍ରଣାମ କରି ବିଦାୟ ମାଗିଲେ ଏବଂ କୃଷ୍ଣଙ୍କର ଅନୁମତି ନେଇ ନିଜର ସ୍ତ୍ରୀ, ପୁତ୍ର, ଜ୍ଞାତି, କୁଟୁମ୍ବଙ୍କ ସହିତ କାଳିୟନାଗ କାଳିନ୍ଦୀ ହ୍ରଦକୁ ଛାଡ଼ି ସମୁଦ୍ର ମଧ୍ୟରେ ଥିବା ରମଣକ ଦ୍ୱୀପ ଅଭିମୁଖରେ ଯାତ୍ରା କଲା ।।୬୪-୬୬।। ସେହିଦିନଠାରୁ ଯମୁନାର ଜଳ ବିଷମୁକ୍ତ ହୋଇ ଅମୃତପରି ମଧୁର ହୋଇଗଲା । ନରରୂପଧାରୀ ଭଗବାନ୍ ଶ୍ରୀକୃଷ୍ଣଙ୍କ କୃପାରୁ ଏହା ସମ୍ଭବ ହେଲା ।।୬୭।।

## ସପ୍ତଦଶ ଅଧ୍ୟାୟ

# କାଳିୟର କାହାଣୀ

ପରିକ୍ଷିତ ପଚାରିଲେ, କାଳିୟ ନାଗ ତାର ନିବାସସ୍ଥଳୀ ରମଣକ ଦ୍ୱୀପକୁ କାହିଁକି ଛାଡ଼ିଆସିଲା ଏବଂ ସେ ଏକା ଗରୁଡ଼ଙ୍କ ପାଖରେ କି ଅପରାଧ କରିଥିଲା ? ।।୧।। ଶ୍ରୀ ଶୁକଦେବ କହିଲେ, ମହାବାହୁ, ପୂର୍ବ କାଳରେ ରମଣକ ଦ୍ୱୀପରେ ସାପମାନେ ଏହିପରି ଏକ ବ୍ୟବସ୍ଥା କରିଥିଲେ । ସେମାନଙ୍କ ପକ୍ଷରୁ ପ୍ରତିମାସରେ ଏକ ନିର୍ଦ୍ଦିଷ୍ଟ ବୃକ୍ଷର ତଳେ ଗରୁଡ଼ଙ୍କପାଇଁ ବଳିସ୍ୱରୂପ ପ୍ରତି ପରିବାର ପକ୍ଷରୁ ଏକ ସାପ ରଖିଦିଆଯିବ । ଏହି ନିୟମ ଅନୁସାରେ ନାଗମାନେ ଆତ୍ମରକ୍ଷାପାଇଁ ମହାପରାକ୍ରମୀ ଗରୁଡ଼ଙ୍କୁ ନିଜ ନିଜର ଭାଗ ଦେଉଥିଲେ ।।୨-୩।। ସାପମାନଙ୍କ ମଧ୍ୟରେ କଦ୍ରୁଙ୍କର ପୁତ୍ର କାଳିୟନାଗ ନିଜର ବିଷ ଓ ବଳ ଗର୍ବରେ ଉନ୍ମତ୍ତ ହୋଇ ଗରୁଡ଼ଙ୍କୁ ନିଜର ଭାଗ ଦେଉ ନ ଥିଲେ ।।୪।। ପରୀକ୍ଷିତ, ଏହା ଶୁଣି ଭଗବାନଙ୍କର ପ୍ରିୟଭକ୍ତ ଗରୁଡ଼ କ୍ରୁଦ୍ଧ ହୋଇଉଠିଲେ । ସେ କାଳିୟ ନାଗକୁ ମାରିବାପାଇଁ ମହାବେଗରେ ତାକୁ ଆକ୍ରମଣ କଲେ । ବିଷଧର କାଳିୟନାଗ ଯେତେବେଳେ ଦେଖିଲା ଯେ ତୀବ୍ର ବେଗରେ ଗରୁଡ଼ ତାକୁ ମାରିବାକୁ ଆସୁଛନ୍ତି, ସେ ତା'ର ଶହେ ଏକ ଫଣାକୁ ଉଠାଇ

ଗରୁଡ଼ଙ୍କୁ ଦଂଶନ କରିବାପାଇଁ ମାଡ଼ି ଆସିଲା । ବିଷଦାନ୍ତକୁ ଆୟୁଧ କରି ଭୟାବହ ଜିଭକୁ ସେ ଲହ ଲହ କରୁଥିଲା । ତା'ର ଚକ୍ଷୁ ଭୟଙ୍କର ଦେଖାଯାଉଥିଲା ଓ ଘନ ଘନ ନିଃଶ୍ୱାସ ତ୍ୟାଗକରି ସେ ଗରୁଡ଼ଙ୍କୁ ଦଂଶନ କଲା । ତାର୍କ୍ଷ୍ୟଙ୍କର ପୁତ୍ର ଗରୁଡ଼ ସ୍ୱୟଂ ବିଷ୍ଣୁଙ୍କର ବାହନ ଏବଂ ତାଙ୍କ ବେଗ ଓ ପରାକ୍ରମର କୌଣସି ତୁଳନା ନ ଥିଲା । ସେ ପ୍ରଚଣ୍ଡ ବେଗରେ କାଳିୟକୁ ନିରସ୍ତ କଲେ ଏବଂ ସୁବର୍ଣ୍ଣ କାଣ୍ଡଯୁକ୍ତ ତାଙ୍କ ବାମ ପକ୍ଷଦ୍ୱାରା କାଳିୟକୁ ପ୍ରହାର କରି ଲାଗିଲେ ।।୫-୭।। ଗରୁଡ଼ଙ୍କ ମାଡ଼ରେ ଆହତ କାଳିୟକୁ ବୁଦ୍ଧି ଦିଶିଲା ନାହିଁ । ସେ ଭୟରେ ପଳାଇଆସି କାଳିନ୍ଦୀ ହ୍ରଦରେ ପଶିଗଲା । କାଳିନ୍ଦୀ ହ୍ରଦକୁ ତ ସହଜରେ କେହି ପଶି ପାରନ୍ତି ନାହିଁ; ପୁଣି ଗରୁଡ଼ଙ୍କପାଇଁ ସେଠାରେ ପ୍ରବେଶ କରିବା ନିଷେଧ ଥିଲା ।।୮।। ସେଠାରେ ଥରେ ଗରୁଡ଼ ଅତିଶୟ କ୍ଷୁଧାରେ ପୀଡ଼ିତ ହୋଇ ଏକ ମତ୍ସ୍ୟକୁ ଧରି ଖାଇଗଲେ । ସେଠାରେ ରହୁଥିବା ସୌଭରି ଋଷି ଯେତେ ମନା କଲେ ମଧ୍ୟ ଶୁଣିଲେ ନାହିଁ । ସେହି ମାଛଟି ପୁଣି ଥିଲା ମାଛମାନଙ୍କର ରାଜା । ଗରୁଡ଼ ତାକୁ ଖାଇଯିବାରୁ ମାଛମାନେ ଅତି ଦୁଃଖରେ ସୌଭରିଙ୍କୁ ନିବେଦନ କଲେ । ସୌଭରି ଦୟାପରବଶ ହୋଇ ସେମାନଙ୍କର ସୁରକ୍ଷାପାଇଁ ଗରୁଡଙ୍କୁ ଅଭିଶାପ ଦେଇ କହିଲେ, 'ଗରୁଡ଼ ଯଦି ପୁଣି ଏ ହ୍ରଦରେ ପ୍ରବେଶକରି ମାଛମାନଙ୍କୁ ଖାଇବେ, ତେବେ ସଙ୍ଗେ ସଙ୍ଗେ ତାଙ୍କର ପ୍ରାଣନାଶ ହେବ । ମୋର ଏହା ସତ୍ୟବାକ୍ୟ ବୋଲି ଜାଣିରଖ ।' ।।୯-୧୧।। କାଳିୟ ଛଡ଼ା ଏହି ଅଭିଶାପର ବିଷୟ ଅନ୍ୟ କୌଣସି ସାପ ଜାଣି ନ ଥିଲେ । ତେଣୁ ଗରୁଡ଼ଙ୍କ ଭୟରେ କାଳିୟ ଆସି ଏଠାରେ ରହୁଥିଲା । ଭଗବାନ ଶ୍ରୀକୃଷ୍ଣ କାଳିୟକୁ ଏହି ହ୍ରଦରୁ ନିର୍ବାସିତ କଲେ ।।୧୨।। ନାଗପତ୍ନୀମାନେ ଦେଇଥିବା ଦିବ୍ୟ ମାଳା, ଚନ୍ଦନ, ଉତ୍କୃଷ୍ଟ ମଣି ଓ ସୁବର୍ଣ୍ଣର ଅଳଙ୍କାର ଆଦି ପରିଧାନ କରି କୃଷ୍ଣ ସେ ହ୍ରଦରୁ ବାହାରି ଆସିଲେ । ବ୍ରଜବାସୀଙ୍କ ଦେହରେ ପ୍ରାଣ ପଶିଲା । ସେମାନେ ଆନନ୍ଦରେ ଉଠିପଡ଼ି କୃଷ୍ଣଙ୍କୁ ପ୍ରେମରେ ଆଲିଙ୍ଗନ କରିଲାଗିଲେ ।।୧୩-୧୪।।

ପରିକ୍ଷିତ, ହରାଇଥିବା ଧନ ଫେରିପାଇଲେ ମନ ଯେପରି ଆନନ୍ଦରେ ପୂରିଉଠେ, ସେହିପରି ଯଶୋଦା, ରୋହିଣୀ, ନନ୍ଦ, ଗୋପୀ ଓ ଗୋପାଳମାନେ ଆନନ୍ଦରେ କୃଷ୍ଣଙ୍କୁ ଘେରିଗଲେ ।।୧୫।। ପୂର୍ବରୁ ଶ୍ରୀକୃଷ୍ଣଙ୍କ ଶକ୍ତି ଜାଣିଥିବା ବଳରାମ ହସି ହସି କୃଷ୍ଣଙ୍କୁ ବାରମ୍ବାର ଆଲିଙ୍ଗନ କରିବାକୁ ଲାଗିଲେ । ଗାଈ, ବଳଦ, ବାଛୁରୀ ସମସ୍ତେ ଆନନ୍ଦରେ ମଗ୍ନ ହେଲେ ।।୧୬।। କୁଳପୁରୋହିତ ଓ ଅନ୍ୟାନ୍ୟ ବ୍ରାହ୍ମଣମାନେ ସସ୍ତ୍ରୀକ ଆସି ନନ୍ଦଙ୍କୁ କହିଲେ, ତୁମର ପରମଭାଗ୍ୟ । ତୁମର ପୁତ୍ର ଅକ୍ଷତ ଶରୀରରେ କାଳିୟସର୍ପର କବଳରୁ ମୁକ୍ତ ହୋଇ ଫେରି ଆସିଛନ୍ତି । ତୁମେ ବ୍ରାହ୍ମଣମାନଙ୍କୁ ଗୋରୁ ଓ ସୁବର୍ଣ୍ଣ ଆଦି ଦାନ କର । କୁଳଗୁରୁମାନଙ୍କ କଥା ଶୁଣି ନନ୍ଦ କୃଷ୍ଣଙ୍କର ମଙ୍ଗଳପାଇଁ ବ୍ରାହ୍ମଣମାନଙ୍କୁ ଗୋ-ସୁବର୍ଣ୍ଣ ଆଦି ଦାନକଲେ । ନିଜର ହରାଇଥିବା ପୁଅକୁ ପୁଣି ଫେରିପାଇ ମହାଭାଗ୍ୟବତୀ ଯଶୋଦା ତାଙ୍କୁ ବକ୍ଷରେ ଧାରଣ କରି ଗାଢ଼ ଆଲିଙ୍ଗନ କଲେ ଏବଂ ଆନନ୍ଦାଶ୍ରୁ ମୋଚନ କରିଲାଗିଲେ । ରାଜେନ୍ଦ୍ର, କ୍ଷୁଧା, ତୃଷା ଓ ଶ୍ରମରେ ଅବସନ୍ନ ହୋଇପଡ଼ିଥିବା ବ୍ରଜବାସୀଗଣ ଗୋମହିଷାଦି ପଶୁମାନଙ୍କସହିତ ସେଦିନ ରାତିଟି ଯମୁନା କୂଳରେ କଟାଇଦେଲେ । ନିଷିଦ୍ଧ ସମୟରେ ଯେତେବେଳେ ବ୍ରଜବାସୀଗଣ ସୁପ୍ତ, ସେତେବେଳେ ଏକ ଭୟଙ୍କର ଦାବାନଳ ଜାତ ହୋଇ ସମସ୍ତଙ୍କୁ ଗ୍ରାସ କରିବାକୁ ବସିଲା । ନିଦ୍ରାରୁ ଉଠି ବ୍ରଜବାସୀଗଣ ଦାବାନଳ ଭୟରୁ ରକ୍ଷା ପାଇବାପାଇଁ କୃଷ୍ଣଙ୍କ ଶରଣାପନ୍ନ ହେଲେ । ସେମାନେ କହିଲେ, ହେ କୃଷ୍ଣ, ହେ ବଳରାମ, ତୁମେ ମହାଭାଗ୍ୟବାନ୍ । ତୁମ ବଳର ତୁଳନା ନାହିଁ । ଏହି ଭୟଙ୍କର ଦାବାନଳ ତୁମର ପ୍ରିୟ ବ୍ରଜବାସୀଙ୍କୁ ଗ୍ରାସ କରିବାକୁ ଯାଉଛି । ଏହି ଦୁସ୍ତର କାଳାନଳରୁ ତୁମର ବନ୍ଧୁମାନଙ୍କୁ ଉଦ୍ଧାର କର । ଆମେ ତୁମର ଅଭୟ ପାଦପଦ୍ମକୁ ଛାଡ଼ି କୁଆଡେ ଯାଇପାରିବୁ ? ।।୧୯-୨୪।। ଜଗଦୀଶ୍ୱର କୃଷ୍ଣଙ୍କର ମହିମା ଅନନ୍ତ । ସେ ଅନନ୍ତ ଶକ୍ତିର ଅଧିକାରୀ ଥିଲେ । ସେ ଆତ୍ମୀୟ ସ୍ୱଜନ ବ୍ରଜବାସୀଙ୍କର ଏପରି ବିକଳ ଅବସ୍ଥା ଦେଖି, ସେହି ଭୟଙ୍କର ଦାବାନଳକୁ ପାନ କରିଦେଲେ ।।୨୫।।

## ଅଷ୍ଟାଦଶ ଅଧ୍ୟାୟ

# ପ୍ରଲମ୍ବାସୁର ବଧ

ଗୋପ ଗୋପୀମାନେ ଆନନ୍ଦରେ କୃଷ୍ଣଙ୍କର ଅଦ୍ଭୁତ ଲୀଳାମାନଙ୍କୁ ପ୍ରଶଂସା କରିବାକୁ ଲାଗିଲେ । ପ୍ରଭାତ ହେବାରୁ କୃଷ୍ଣ ସେମାନଙ୍କ ଗହଣରେ ଗୋରୁ ଓ ଗୋପାଳଙ୍କ ବାସସ୍ଥାନ ବ୍ରଜରେ ପ୍ରବେଶ କଲେ ।।୧।। ଏହିପରି କପଟ ଗୋପବାଳକ ରୂପରେ କୃଷ୍ଣ ଓ ବଳରାମ ନାନାପ୍ରକାର ଲୀଳା ରଚନା କରୁଥିଲେ । ଚାହୁଁ ଚାହୁଁ ସମସ୍ତ ପ୍ରାଣୀଙ୍କର ଦୁଃଖଦାୟକ ଗ୍ରୀଷ୍ମକାଳ ଆସିଗଲା । କିନ୍ତୁ ସାକ୍ଷାତ୍ ଭଗବାନ୍ କୃଷ୍ଣ ଓ ବଳରାମଙ୍କ ସହିତ ରହୁଥିବାରୁ ଗ୍ରୀଷ୍ମଋତୁ ବୃନ୍ଦାବନରେ ବସନ୍ତଋତୁ ପରି ଅନୁଭୂତ ହେଲା । ଝରଣାମାନଙ୍କର ମଧୁର ଝର୍ଝର ଶବ୍ଦରେ ଝିଙ୍କାରିମାନଙ୍କର କର୍କଶ ସ୍ୱର ଲୁଚି ଯାଉଥିଲା । ସେହି ଝରଣାମାନଙ୍କରୁ ଉଠୁଥିବା ଶୀତଳ ଜଳକଣାମାନଙ୍କଯୋଗୁଁ ଚାରିଆଡ଼େ ଗଛଲତା ସବୁ ସୁନ୍ଦର ଓ ସବୁଜ ଦେଖାଯାଉଥିଲା । ଚାରିଆଡ଼େ ଘାସଭୂମିରେ ବୃନ୍ଦାବନ ହରିତାୟମାନ ଦିଶୁଥିଲା । ନଦୀ, ସରୋବର ଆଦିରେ କୁମୁଦ, କହ୍ଲାର ଓ ପଦ୍ମ ଆଦି ଫୁଟି ସେମାନଙ୍କର ଶୋଭା ବଢ଼ାଉଥିଲା । ସେମାନଙ୍କର ଗନ୍ଧ ଓ ଶୀତଳ ଜଳକଣା ବହନ କରି ସର୍ବଦା ପବନ ବହୁଥିଲା ଏବଂ ଗ୍ରୀଷ୍ମକାଳର ପ୍ରଚଣ୍ଡ ସୂର୍ଯ୍ୟତାପ ଅନୁଭୂତ ହେଉ ନ ଥିଲା । ଗ୍ରୀଷ୍ମକାଳରେ ସୂର୍ଯ୍ୟର ପ୍ରଖର ତାପ ବିଷପରି ଲାଗେ । କିନ୍ତୁ ବୃନ୍ଦାବନରେ ନଦୀ ଓ ହ୍ରଦମାନଙ୍କର ଗଭୀର ଜଳରେ ତରଙ୍ଗମାନ ଉଠି ସବୁବେଳେ କୂଳକୁ ଧୋଇଦେଉଥାଏ ଓ କୂଳରେ ଥିବା ଭୂମି ଶ୍ୟାମଳ ଦୂର୍ବାଦଳରେ ପୂର୍ଣ୍ଣ ହୋଇଥାଏ । ସୂର୍ଯ୍ୟକିରଣ ତାକୁ ଶୁଷ୍କ କରିପାରୁ ନ ଥାଏ ।।୨-୬।। ବୃନ୍ଦାବନରେ ବୃକ୍ଷସବୁ ପତ୍ର ଓ ଫୁଲରେ ଭରା ଥିଲା । ଚିତ୍ରବିଚିତ୍ର ପକ୍ଷୀମାନେ କଳ ଧ୍ୱନି କରୁଥିଲେ ଓ ଚିତ୍ରିତ ମୃଗମାନେ ସ୍ୱଚ୍ଛନ୍ଦରେ ବିଚରଣ କରୁଥିଲେ । ମୟୂର, ଭ୍ରମର, କୋକିଳ ଓ ହଂସ ଆଦି ମଧୁର ଧ୍ୱନି କରିବାରେ ଲାଗିଥିଲେ । ବନବିହାରପାଇଁ କୃଷ୍ଣ ବଳରାମଙ୍କ ସହିତ ଏହି ବନମଧ୍ୟରେ ପ୍ରବେଶ କଲେ । ତାଙ୍କ ଆଗରେ ଗାଈପଲ ଓ ପଛରେ ଗୋପାଳବାଳକ ବୃନ୍ଦ । ସେ ଆନନ୍ଦରେ ବେଣୁ ବଜାଇ ବଜାଇ ଚାଲିଥିଲେ ।।୭-୮।।

କୃଷ୍ଣ, ବଳରାମ ଓ ଗୋପବାଳକ ନୂଆ ନୂଆ ପତ୍ର, ମୟୂରପୁଚ୍ଛ, ପୁଷ୍ପସ୍ତବକ ଓ ଗୈରିକ ଧାତୁରେ ନିଜର ଶରୀରକୁ ଅଳଙ୍କୃତ କରିଥିଲେ । ବାଟରେ ଗଲାବେଳେ କିଏ ନାଚି ନାଚି ଯାଉଥିଲା ତ କେହି କେହି ନିଜ ନିଜ ମଧ୍ୟରେ ଲଢ଼ି ଯାଉଥିଲେ । କେହି କେହି ବା ଗୀତ ବୋଲି ଚାଲିଥିଲେ ।।୯।। କୃଷ୍ଣ ନାଚୁଥିଲାବେଳେ କେହି କେହି ତାଳ ଦେଇ ଗୀତ ଗାଉଥା'ନ୍ତି । କେହି କେହି ବେଣୁ ବା ଶିଙ୍ଗା ବଜାଉଥା'ନ୍ତି । ଅନ୍ୟମାନେ ତାଙ୍କୁ ପ୍ରଶଂସାକରି ଚାଲିଥା'ନ୍ତି ।।୧୦।। ରାଜା, ନାଟୁଆମାନେ ସେମାନଙ୍କ ନାୟକକୁ ଯେପରି ପ୍ରଶଂସା କରନ୍ତି, ସେହିପରି ଦେବତାମାନେ ଗୋପାଳବାଳକ ରୂପରେ ଆସି ମାନବ ରୂପଧରିଥିବା କୃଷ୍ଣ ଓ ବଳରାମଙ୍କୁ ସ୍ତୁତି କରୁଥିଲେ ।।୧୧।। ବେଣୀ ପକାଇ କୃଷ୍ଣ ଓ ବଳରାମଙ୍କର କେଶ ସଜାଇ ଦିଆଯାଇଥିଲା । ବେଳେବେଳେ ସେ ଦୁହେଁ ହାତ ଧରାଧରି ହୋଇ ମଣ୍ଡଳାକାରରେ ବୁଲୁଥିଲେ । କେତେବେଳେ ପରସ୍ପର ଅଲଗା ହୋଇ ଡେଉଁଥିଲେ, କେତେବେଳେ ବାହୁସ୍ଫୋଟ ମାରି ଲଢ଼ିବାପାଇଁ ବାହାରୁଥିଲେ, କେତେବେଳେ ବା ଖେଳ ଖେଳରେ ଯୁଦ୍ଧ କରୁଥିଲେ । ଅନ୍ୟ ପିଲାମାନେ ନାଚୁଥିବାବେଳେ ସେ ଗାଉଥିଲେ ବା ବଂଶୀ ଓ ଶିଙ୍ଗା ବଜାଉଥିଲେ ଏବଂ ଅନ୍ୟ ସାଙ୍ଗମାନଙ୍କୁ ବାଃ ବାଃ କହି ପ୍ରଶଂସା କରୁଥିଲେ ।।୧୨-୧୩।। କେତେବେଳେ କୃଷ୍ଣ, ବଳରାମ ଓ ଗୋପାଳବାଳକଙ୍କ ମଧ୍ୟରୁ କେହି କେହି ଜାଇଫଳ ବା ଅଁଳା ତୋଳି ଆଣି ପରସ୍ପରକୁ ନିକ୍ଷେପ କରୁଥିଲେ, କେତେବେଳେ ଜଣେ ଅନ୍ୟର ଆଖି ବନ୍ଦ କରି ଲୁଚିଯାଉଥିଲା ଓ ତାକୁ ଖୋଜିବାପାଇଁ ଡାକୁଥିଲା, କେବେକେବେ ସେମାନେ ପଶୁପକ୍ଷୀଙ୍କୁ ଅନୁକରଣ କରି ଖତେଇ

ହେଉଥିଲେ, କେବେ ବେଙ୍ଗପରି ଡିଆଁ ମାରୁଥିଲେ ତ କେବେ ବିଭିନ୍ନ ପ୍ରକାର ହାସ୍ୟକର ଅଙ୍ଗଭଙ୍ଗୀ କରୁଥିଲେ । କେତେବେଳେ ଦୋଳି ଖେଳି, ଅନ୍ୟଙ୍କୁ ବସାଇ ଦୋଳି ଖେଳାଉଥିଲେ ବା କେତେବେଳେ ରାଜାପରି ଅଭିନୟ କରୁଥିଲେ । ଏହିପରି ବିଭିନ୍ନପ୍ରକାର ବାଲ୍ୟକ୍ରୀଡ଼ାରେ ମାତି ସେମାନେ ବନକୁ ବନ ବୁଲୁଥିଲେ ଏବଂ ବୃନ୍ଦାବନର ନଦୀ, ପାହାଡ଼, ଘାଟି, ବୃକ୍ଷ ଓ ଲତାକୁଞ୍ଜ ଓ ଘନ ଅରଣ୍ୟ ମଧ୍ୟରେ ବିଚରଣ କରୁଥିଲେ ।।୧୪-୧୬।।

ଦିନେ ବଳରାମ ଓ କୃଷ୍ଣ ବନରେ ଗାଇ ଚରାଉଥିଲେ । ଗୋପାଳ ବେଶରେ ପ୍ରଳମ୍ବ ନାମକ ଏକ ଅସୁର ତାଙ୍କୁ ଅପହରଣ କରିବାପାଇଁ ସେଠାରେ ଆସି ପହଞ୍ଚିଗଲା ।।୧୭।। ଯଦୁବଂଶର ଅଳଙ୍କାର ଭଗବାନ୍ କୃଷ୍ଣ ଥିଲେ ସର୍ବଜ୍ଞ । ସେ ତାହା ଜାଣି ପାରି ତାକୁ ମାରିବାର ଚିନ୍ତାରେ ତା'ସହିତ ବନ୍ଧୁ ହୋଇଗଲେ । କ୍ରୀଡାରେ ନିପୁଣ କୃଷ୍ଣ ଗୋପାଳମାନଙ୍କୁ ଡାକି କହିଲେ, ଚାଲ ଆଜି ଦୁଇ ଦଳ ହୋଇ ଖେଳିବା । କେତେକ କୃଷ୍ଣଙ୍କ ସଙ୍ଗରେ ମିଶି ଗୋଟିଏ ଦଳ କଲେ ଓ ଅନ୍ୟମାନେ ବଳରାମଙ୍କ ସାଙ୍ଗରେ ମିଶି ଅନ୍ୟ ଗୋଟିଏ ଦଳରେ ରହିଲେ । ସେମାନେ ବିଭିନ୍ନପ୍ରକାର ଖେଳ ଖେଳି ଠିକ୍ କରିଥିଲେ ଯେ, ଯେ ଖେଳରେ ହାରିବ, ସେ ଜିଣିଥିବା ଦଳର ପିଲାଙ୍କୁ ପିଠିରେ ବସାଇ ଖଣ୍ଡେ ଦୂର ଆଗେଇ ନେବ ।।୧୮-୨୧।। ଏହିପରି ପିଠିରେ ବସାଇ ବା ନିଜେ କାହାର ପିଠିରେ ବସି ଗାଇ ଚରାଇ ଚରାଇ କୃଷ୍ଣ ଆଦି ଗୋପାଳବାଳକ ଭାଣ୍ଡୀର ନାମକ ଏକ ବରଗଛ ମୂଳରେ ପହଞ୍ଚିଲେ ।।୨୨।। ଥରେ ବଳରାମଙ୍କ ଦଳରେ ଥିବା ଶ୍ରୀଦାମ ଓ ବୃଷଭ ଆଦି ବାଳକଙ୍କର ଜୟ ହେଲା । କୃଷ୍ଣଙ୍କ ସମେତ କୃଷ୍ଣଙ୍କ ଦଳର ପିଲାମାନେ ସେମାନଙ୍କୁ ପିଠିରେ ବସାଇ ବୋହିଲେ ।।୨୩।। ପରାଜିତ ଦଳରେ ଥିବା କୃଷ୍ଣ ଜିଣିଥିବା ଦଳର ଶ୍ରୀଦାମଙ୍କୁ ପିଠିରେ ବସାଇ ଆଗେଇ ନେଲେ, ଭଦ୍ରସେନ ବୃଷଭଙ୍କୁ ନେଲେ ଓ ପ୍ରଳମ୍ବ ବଳରାମଙ୍କୁ ପିଠିରେ ବସାଇ ଆଗକୁ ନେଲା ।।୨୪।। ମହାବଳୀ ପ୍ରଳମ୍ବ କୃଷ୍ଣଙ୍କ ପକ୍ଷରେ ଥିଲା । ସେ ଜାଣିଥିଲା ଯେ କୃଷ୍ଣଙ୍କୁ ହରାଇବା ସମ୍ଭବ ନୁହେଁ । ତେଣୁ ସେ ବଳରାମଙ୍କୁ ପିଠିରେ ବସାଇ ଦ୍ରୁତ ବେଗରେ ଦଉଡ଼ିବାକୁ ଲାଗିଲା ଏବଂ ଯେଉଁଠି ଓହ୍ଲାଇ ଦେବା କଥା, ସେ ଜାଗାକୁ ଟପି ଦୂରକୁ ଯିବାକୁ ଲାଗିଲା ।।୨୫।। କିନ୍ତୁ ବଳରାମ ପର୍ବତ ପରି ଭାରି ହୋଇଗଲେ । ତାଙ୍କୁ ସେ ବେଶୀ ଦୂର ନେଇ ନ ପାରି ନିଜ ରୂପ ଧାରଣ କଲା । ସୁବର୍ଣ୍ଣର ଅଳଙ୍କାର ଧାରଣ କରିଥିବା ତା'ର ମୂର୍ତ୍ତି ଦେଖି ମନେ ହେଉଥିଲା ଯେପରିକି କଳାମେଘରେ ବିଜୁଳି ଚମକୁଛି ବା ପୂର୍ଣ୍ଣଚନ୍ଦ୍ର ଶୋଭାପାଉଛି ।।୨୬।। ପ୍ରବଳ ବେଗରେ ସେ ଉପରକୁ ଉଠିଗଲା । ତାର ଆଖି ଦୁଇଟା ଜଳୁଥିଲା ଏବଂ ତାର ଭ୍ରୂକୁଟି ଓ ଦାନ୍ତ ଗୁଡ଼ାକ ଭୟଙ୍କର ଦେଖାଯାଉଥିଲା । ବାଳଗୁଡ଼ାକ ନିଆଁପରି ଉଜ୍ଜ୍ୱଳ ଦିଶୁଥିଲା । କିରୀଟ, କୁଣ୍ଡଳ ପିନ୍ଧି ସେ ଅତି ଭୟାନକ ଦେଖାଯାଉଥିଲା । ତାର ସେହି ଅଦ୍ଭୁତ ବିଶାଳ ଶରୀରକୁ ଦେଖି ବଳରାମ ପ୍ରଥମେ ଟିକିଏ ଡରିଗଲେ । ତା'ପରେ ନିଜର ସ୍ୱରୂପକୁ ମନେ ପକାଇ ନିର୍ଭୟ ହୋଇଗଲେ । ଚୋର ଧନ ନେଇ ପଳାଇବା ପରି ଅସୁର ତାଙ୍କୁ ନେଇ ଆକାଶମାର୍ଗରେ ପଳାଉଥିବା ଦେଖି, ସେ ଅସୁରର ମୁଣ୍ଡରେ ଏକ ଶକ୍ତ ମୁଷ୍ଟି ପ୍ରହାର କଲେ । ସେହି ମୁଷ୍ଟିର ଆଘାତରେ ଅସୁରର ମୁଣ୍ଡ ଖଣ୍ଡ ଖଣ୍ଡ ହୋଇଗଲା । ସେ ରକ୍ତ ବାନ୍ତି କରି ଆର୍ତ୍ତନାଦପୂର୍ବକ ପ୍ରାଣ ତ୍ୟାଗ କଲା ଏବଂ ଇନ୍ଦ୍ରଙ୍କର ବଜ୍ରରେ ଯେପରି ପର୍ବତମାନେ ଟଳି ପଡୁଥିଲେ, ସେହିପରି ତାର ପ୍ରାଣହୀନ ଶରୀରଟା ତଳେ ପଡ଼ିଗଲା ।।୨୭-୨୯।। ବଳଶାଳୀ ବଳଦେବଙ୍କଦ୍ୱାରା ପ୍ରଳମ୍ବାସୁର ନିହତ ହେବାର ଦେଖି ଗୋପାଳବାଳକମାନେ ଆନନ୍ଦ ଓ ବିସ୍ମୟରେ ବଳରାମଙ୍କୁ ପ୍ରଶଂସା କରି ଲାଗିଲେ ।।୩୦।। ସେମାନେ ମନେ କଲେ ବଳରାମ ମୃତ୍ୟୁମୁଖରୁ ଫେରି ଆସିଲେ । ସେମାନେ ଆନନ୍ଦରେ ଅଧୀର ହୋଇ ତାଙ୍କୁ ଆଲିଙ୍ଗନ କଲେ, ଏବଂ ଆଶୀର୍ବାଦ ଓ ପ୍ରଶଂସା ଶୁଣାଇଲାଗିଲେ ।।୩୧।। ପ୍ରଳମ୍ବ ଥିଲା ପାପର ମୂର୍ତ୍ତିମନ୍ତ ପ୍ରତୀକ । ତାର ମୃତ୍ୟୁରେ ଦେବତାମାନେ ଆନନ୍ଦରେ ପୁଷ୍ପବୃଷ୍ଟି କରି ଓ ସାଧୁ ସାଧୁ କହି ବଳରାମଙ୍କୁ ପ୍ରଶଂସା କରି ଲାଗିଲେ ।।୩୨।।

## ଊନବିଂଶ ଅଧ୍ୟାୟ

# ପୁଣି ଦାବାନଳ ପାନ

ଶ୍ରୀ ଶୁକଦେବ କହିଲେ, ପରିକ୍ଷିତ, କୃଷ୍ଣ, ବଳରାମ ଓ ଗୋପାଳବାଳକ ଏହିପରି ଖେଳରେ ମାତିଥିବାବେଳେ ଗୋରୁମାନେ ଚରି ଚରି ଭଲ ଘାସ ପାଇବା ଲୋଭରେ ଦୂରବନସ୍ତକୁ ଚାଲିଗଲେ ॥୧॥ ଗୋରୁ, ମଇଁଷି ଓ ଛେଳିମାନେ ଏ ବନରୁ ସେ ବନ ହୋଇ ଶେଷରେ ଏକ ଶରବଣରେ ପହଞ୍ଚିଲେ ଓ ଗ୍ରୀଷ୍ମତାପରେ ରଡ଼ି ଛାଡ଼ିବାକୁ ଲାଗିଲେ ॥୨॥ କୃଷ୍ଣ, ବଳରାମ ଆଦି ଗୋପାଳବାଳକ ଗୋରୁପଲଙ୍କୁ ନ ଦେଖି ବ୍ୟସ୍ତ ହୋଇପଡ଼ିଲେ । ସେମାନେ ଚାରିଆଡ଼େ ଖୋଜି ଖୋଜି ପଶୁମାନଙ୍କର ପଦଚିହ୍ନ ପାଇଲେ ନାହିଁ ॥୩॥ ଗୋ-ମହିଷାଦି ପଶୁମାନେ ହିଁ ତାଙ୍କର ଜୀବିକା । ତାହା ନଷ୍ଟ ହୁଅନ୍ତେ ସେମାନେ କ'ଣ କରିବେ ଜାଣି ପାରିଲେ ନାହିଁ । ସେମାନେ ଅଚେତନ ସେହି ଗୋରୁମାନଙ୍କ ଖୁରା ଓ ଦନ୍ତଦ୍ୱାରା ଛିନ୍ନ ତୃଣ ଏବଂ ପାଦଚିହ୍ନମାନ ଦେଖି ଗୋରୁଙ୍କ ମାର୍ଗକୁ ପୁଣି ଖୋଜିବାକୁ ଲାଗିଲେ ॥୪॥ ଶେଷରେ ସେମାନେ ଦେଖିଲେ ଯେ, ବାଟ ଭୁଲି ସେହି ଗାଈମାନେ ଶରବଣ ମଧ୍ୟରେ ପଶିଯାଇଛନ୍ତି ଏବଂ ଗ୍ରୀଷ୍ମ ତାପରେ ଆର୍ତ୍ତନାଦ କରୁଛନ୍ତି । ସେମାନଙ୍କୁ ଧରି କ୍ଳାନ୍ତ ଓ ତୃଷାର୍ତ୍ତ ଗୋପାଳବାଳକମାନେ କୃଷ୍ଣଙ୍କ ପାଖକୁ ଫେରାଇ ଆଣିଲେ ॥୫॥ କୃଷ୍ଣ ମଧ୍ୟ ମେଘଗମ୍ଭୀର ସ୍ୱରରେ ଗାଈମାନଙ୍କର ନାଁ ଧରି ଡାକୁଥିଲେ ଏବଂ ନିଜ ନିଜର ନାଁ ଶୁଣି ଆନନ୍ଦରେ ହମ୍ବାରଡ଼ି ଦେଇ ସେମାନେ କୃଷ୍ଣଙ୍କୁ ପ୍ରତ୍ୟୁତ୍ତର ଦେଉଥିଲେ ॥୬॥

ଏହି ସମୟରେ ବନମଧ୍ୟରେ ଏକ ପ୍ରଚଣ୍ଡ ଦାବାନଳ ଦେଖାଗଲା ଏବଂ ବାୟୁ ସାହାଯ୍ୟରେ ଲେଲିହାନ ଶିଖା ବିସ୍ତାର କରି ସ୍ଥାବର, ଜଙ୍ଗମ ସକଳ ପ୍ରାଣୀଙ୍କୁ ଗ୍ରାସ କରିବାକୁ ବାହାରିଲା ॥୭॥ ସେହି ଦାବାଗ୍ନିକୁ ମାଡ଼ିଆସୁଥିବାର ଦେଖି ଗୋରୁପଲ ଓ ଗୋପାଳବାଳକ ଅତିଶୟ ଭୟଭୀତ ହୋଇପଡ଼ିଲେ । ଆସନ୍ନ ମୃତ୍ୟୁଭୟରେ ଯେପରି ଲୋକ ଭଗବାନଙ୍କୁ ଡାକନ୍ତି, ସେହିପରି ଗୋପବାଳକମାନେ କୃଷ୍ଣ ଓ ବଳରାମଙ୍କ ଶରଣାପନ୍ନ ହୋଇ କହିଲେ--॥୮॥

ମହାବୀର କୃଷ୍ଣ, ମହାବଳଶାଳୀ ବଳରାମ, ଆମେ ଏହି ଦାବାନଳରେ ପୋଡ଼ିହୋଇ ଯିବାକୁ ବସିଛୁ । ତୁମର ଶରଣାଗତ ଜୀବମାନଙ୍କୁ ତୁମେ ରକ୍ଷା କର ॥୯॥ ହେ କୃଷ୍ଣ, ତୁମେ ଯାହାଙ୍କର ବନ୍ଧୁ, ସେମାନେ କେବେ ଦୁଃଖଭୋଗ କରନ୍ତି ନାହିଁ । ତୁମେ ସବୁ ଧର୍ମ ଜାଣିଛ । ଆମେ ତୁମର ଶରଣାପନ୍ନ, ତୁମଛଡ଼ା ଆମର କେହି ନାହାନ୍ତି ॥୧୦॥ ଭକ୍ତଙ୍କର ଦୁଃଖହାରୀ ଭଗବାନ୍, ନିଜ ବନ୍ଧୁ (ଗୋପାଳବାଳକ)ମାନଙ୍କର କରୁଣ ନିବେଦନ ଶୁଣି କହିଲେ, ତୁମେମାନେ ଭୟ କର ନାହିଁ । ଶୀଘ୍ର ଆଖି ବନ୍ଦ କରିଦିଅ ॥୧୧॥ କୃଷ୍ଣଙ୍କର କଥା ଶୁଣି ସେମାନେ ଆଖି ବନ୍ଦ କରିଦେଲେ । ଯୋଗେଶ୍ୱର ଭଗବାନ ନିଜ ମୁହଁରେ ସେହି ତୀବ୍ର ଦାବାନଳକୁ ପାନ କରିଦେଲେ ଏବଂ ଗୋଧନଙ୍କ ସହିତ ସେମାନଙ୍କୁ ଘୋର ବିପଦରୁ ରକ୍ଷାକଲେ ॥୧୨॥ ତାପରେ ସେମାନେ ଆଖି ଖୋଲି ଦେଖିଲେ ଯେ, ସମସ୍ତେ ଭାଣ୍ଡୀର ବରଗଛ ମୂଳକୁ ଆସିଯାଇଛନ୍ତି ଓ ଗୋ-ମହିଷାଦି ପଶୁମାନଙ୍କ ସହିତ ସେମାନେ ଦାବାନଳରୁ ରକ୍ଷା ପାଇଛନ୍ତି । ସେମାନଙ୍କ ବିସ୍ମୟର ସୀମା ରହିଲା ନାହିଁ ॥୧୩॥ ଦାବାଗ୍ନିରୁ ନିଜେ ରକ୍ଷା ପାଇବାର ଏବଂ କୃଷ୍ଣଙ୍କର ଅଚିନ୍ତନୀୟ ଶକ୍ତି ଥିବାର ଦେଖି ସେ ନିଶ୍ଚୟ କେହି ଦେବତା ହୋଇଥିବେ ବୋଲି ସେମାନେ ମନେକଲେ ॥୧୪॥ ପରିକ୍ଷିତ, ସନ୍ଧ୍ୟା ହେବାରୁ ଗାଈମାନଙ୍କୁ ଲେଉଟାଇ କୃଷ୍ଣ ବଳରାମଙ୍କ ସହିତ ବେଣୁ ବଜାଇ ବଜାଇ ଗୋପବାଳକଙ୍କଦ୍ୱାରା ସ୍ତୁତିଗାନ ମଧ୍ୟରେ ଗୋପରେ ପ୍ରବେଶ କଲେ ॥୧୫॥ ଶ୍ରୀକୃଷ୍ଣଙ୍କୁ ଦେଖି ବ୍ରଜର ଗୋପୀମାନେ ପରମ ଆନନ୍ଦ ଲାଭକଲେ । କୃଷ୍ଣଙ୍କୁ ନ ଦେଖି ସେମାନଙ୍କୁ ପ୍ରତି ମୁହୂର୍ତ୍ତ ଶହ ଶହ ଯୁଗ ପରି ଲାଗୁଥିଲା ॥୧୬॥

## ବିଂଶ ଅଧ୍ୟାୟ

# ବର୍ଷା ଓ ଶରତ ଋତୁ

ଶ୍ରୀଶୁକଦେବ କହିଲେ, ପରିକ୍ଷିତ, ଗୋପାଳ ବାଳକମାନେ ଘରକୁ ଫେରି ଆସି କୃଷ୍ଣ କିପରି ଦାବାଗ୍ନିରୁ ସେମାନଙ୍କୁ ଉଦ୍ଧାର କଲେ ଓ ବଳରାମ ପ୍ରଳମ୍ବାସୁରକୁ ବଧ କଲେ, ତାହା ନିଜର ମା' ଭଉଣୀମାନଙ୍କୁ କହିଲେ ॥୧॥ ବୟସ୍କ ଗୋପ ଓ ଗୋପୀମାନେ ତାହା ଶୁଣି ଆଶ୍ଚର୍ଯ୍ୟ ହୋଇଗଲେ । ସେମାନେ ମନେ କଲେ, ଦୁଇ ଜଣ ଶ୍ରେଷ୍ଠ ଦେବତା କୃଷ୍ଣ ଓ ବଳରାମ ରୂପରେ ବ୍ରଜକୁ ଆସିଛନ୍ତି ॥୨॥ ଏହାପରେ ସମସ୍ତ ପ୍ରାଣୀଙ୍କର ଜୀବନଦାତା ବର୍ଷାଋତୁ ଆସିଗଲା । ଆକାଶରେ ମେଘର ଗର୍ଜନ ସହିତ ବିଜୁଳିର ଆଲୋକରେ ଚତୁର୍ଦ୍ଦିଗ ଆଲୋକିତ ହୋଇଉଠିଲା । ସତ୍ତ୍ୱ ଆଦି ତ୍ରିଗୁଣରେ ଆଚ୍ଛନ୍ନ ହୋଇ ବ୍ରହ୍ମ ଯେପରି ଅସ୍ପଷ୍ଟ ରହେ, ସେହିପରି ଘନ କୃଷ୍ଣ ମେଘରେ ଆଚ୍ଛାଦିତ ହୋଇ ସୂର୍ଯ୍ୟ, ଚନ୍ଦ୍ର ଅଦୃଶ୍ୟ ରହିଲେ । କେବଳ ବଜ୍ର, ବିଦ୍ୟୁତ୍‌ର ଗର୍ଜନ ଶୁଣାଗଲା ॥୩-୪॥ ସୂର୍ଯ୍ୟ କାର୍ତ୍ତିକ ମାସରୁ ଜ୍ୟେଷ୍ଠମାସପର୍ଯ୍ୟନ୍ତ ଆଠ ମାସ ଧରି ନିଜର କିରଣଦ୍ୱାରା ପୃଥିବୀରୁ ଯେଉଁ ଜଳ ଶୋଷି ନେଇଥିଲେ, ବର୍ଷାଋତୁ ଆସିଲେ ବୃଷ୍ଟିରୂପରେ ତାହାକୁ ପୁଣି ଦାନ କରନ୍ତି ॥୫॥ ଦୟାଳୁ ପୁରୁଷମାନେ ପ୍ରାଣୀଙ୍କର ମଙ୍ଗଳପାଇଁ ଯେପରି ନିଜର ଜୀବନ ଦାନକରନ୍ତି, ସେହିପରି ବିଜୁଳିରେ ଝଟକୁଥିବା ଘନଘୋର ମେଘମାନେ ବାୟୁଦ୍ୱାରା ଚାଳିତ ହୋଇ ପ୍ରାଣୀଙ୍କର ମଙ୍ଗଳପାଇଁ ଜୀବନରୂପକ ଜଳ ବର୍ଷା କରିବାକୁ ଲାଗିଲେ ॥୬॥ ତପସ୍ୟାରେ କ୍ଷୀଣତନୁ ବ୍ୟକ୍ତି ଯେପରି ଅଭୀଷ୍ଟ ଫଳ ଲାଭ କରି ଆନନ୍ଦରେ ଫୁଲି ଉଠେ, ସେହିପରି ଗ୍ରୀଷ୍ମତାପରେ ଶୁଷ୍କ ହୋଇଥିବା ଧରଣୀ ବର୍ଷାଜଳରେ ସବୁଜ ସୁସ୍ଥ ହୋଇଉଠିଲା ॥୭॥

କଳିଯୁଗରେ ଯେପରି ବେଦଧର୍ମ ଲୋପ ହୋଇ ପାଖଣ୍ଡ ଧର୍ମର ପ୍ରସାର ହୁଏ, ସେହିପରି ବର୍ଷା ଆସିଲେ ଚନ୍ଦ୍ର, ସୂର୍ଯ୍ୟ, ତାରକା ଆଦି ଜ୍ୟୋତିଷ୍କମାନେ ଘୋଡ଼େଇ ହୋଇପଡ଼ନ୍ତି; କିନ୍ତୁ ଜୁଳୁଜୁଳିଆ ପୋକ ଗର୍ବରେ ଜକ ଜକ ଦେଖାଯାଉଥାଏ ॥୮॥ ଗୁରୁକୁଳରେ ଆଚାର୍ଯ୍ୟ ଯେପରି ନିଜର ନିତ୍ୟକର୍ମରେ ବ୍ୟସ୍ତ ଥିବାବେଳେ ଶିଷ୍ୟମାନେ ମୌନ ରହିଥା'ନ୍ତି ଏବଂ ନିତ୍ୟକର୍ମ ଶେଷ ହେଲେ ଆଚାର୍ଯ୍ୟ ଡାକିଲେ ସେମାନେ ମୌନ ଭଙ୍ଗ କରି ଶାସ୍ତ୍ରପାଠରେ ଲାଗିଯାଆନ୍ତି, ସେହିପରି ବର୍ଷା କାଳରେ ମେଘର ଡାକ ଶୁଣି ବେଙ୍ଗମାନେ ଚୁପ୍‌ଚାପ୍ ନ ରହି ଜୋରରେ ରାବ କରିବାକୁ ଲାଗିଲେ ॥୯॥ ଇନ୍ଦ୍ରିୟାଧୀନ ପୁରୁଷ ଯେପରି ନିଜର ଯୌବନ ଓ ଧନର ଗର୍ବରେ ବିପଥଗାମୀ ହୁଏ, ସେହିପରି ଶୁଷ୍କପ୍ରାୟ କ୍ଷୁଦ୍ର ନଦୀମାନେ ବର୍ଷାଜଳରେ ପୂରି ଉଠି ନିଜର ସୀମା ଲଙ୍ଘନ କଲେ ॥୧୦॥ ପୃଥିବୀ ସବୁଜ ଘାସରେ ହସିଉଠିଲା । ଏହି ଘାସ ଉପରେ ନାଲି ରଙ୍ଗର ସାଧବ ବୋହୂ ଜାତ ହୋଇ ଓ ଧଳା ରଙ୍ଗର ଛତୁ ସବୁ ଉଠି ରାଜାମାନଙ୍କର ରଙ୍ଗ ବେରଙ୍ଗ ସେନାଛାଉଣୀ ପରି ଦେଖାଗଲା ॥୧୧॥ ବିଲମାଳ ସବୁ ଶସ୍ୟ ସମ୍ପଦରେ ଭରି ଉଠି ଚାଷୀମାନଙ୍କର ଆନନ୍ଦ ବଢ଼ାଇ ଦେଲା । କିନ୍ତୁ ଶସ୍ୟ ଭଲ ହେବା ନ ହେବା ଦୈବର ଅଧୀନ । ତାହା ଜାଣି ନ ପାରି ଦେହାଭିମାନୀ ବ୍ୟକ୍ତି କେତେବେଳେ ଖୁସି ହୋଇଯାଏ ତ କେତେବେଳେ ଦୁଃଖ କରେ ॥୧୨॥ ଭଗବାନଙ୍କର ସେବା କରିବାଦ୍ୱାରା ସଂସାରତାପରେ ଦଗ୍ଧ ଜୀବମାନଙ୍କର ଭିତର ଓ ବାହାର ଯେପରି ଶୀତଳ ହୋଇଯାଏ, ସେହିପରି ବର୍ଷାଜଳର ସେବନରେ ଜଳସ୍ଥଳବାସୀ ସମସ୍ତ ପ୍ରାଣୀ ପ୍ରଫୁଲ୍ଲ ହୋଇଉଠିଲେ ॥୧୩॥ ଯେଉଁ ଯୋଗୀମାନେ ସିଦ୍ଧ ହୋଇ ନ ଥା'ନ୍ତି, ସେମାନଙ୍କର ଚିତ୍ତ ଯେପରି କାମନା ବାସନାଦ୍ୱାରା ଆଲୋଡ଼ିତ ହୁଏ, ସେହିପରି ନଦୀମାନଙ୍କ ସହିତ ମିଳିତ ହୋଇ ତରଙ୍ଗମାଳାରେ ସମୁଦ୍ର ବିକ୍ଷୁବ୍ଧ ହେବାକୁ ଲାଗିଲା ॥୧୪॥

ଯେଉଁ ଜୀବମାନଙ୍କର ଚିତ୍ତ ଭଗବାନଙ୍କଠାରେ ଅର୍ପିତ ହୋଇଥାଏ, ସେମାନେ ସଂସାରର ନାନା ଦୁଃଖ, ଦୈନ୍ୟ ମଧ୍ୟରେ ବ୍ୟଥିତ ହୁଅନ୍ତି ନାହିଁ । ସେହିପରି ମୁଷଳ ବର୍ଷାଧାରରେ ପର୍ବତମାନେ ବ୍ୟଥିତ ହେଲେ ନାହିଁ ॥୧୫॥ ଯିବା ଆସିବା

କମିଯାଇଥିବା ଚଲାବାଟରେ ଘାସ ମାଡ଼ିଯିବାରୁ ଲୋକେ ବାଟ ଭୁଲିଗଲେ । ଯେପରିକି ଅଭ୍ୟାସ ନ ଥିଲେ ବ୍ରାହ୍ମଣମାନେ ବେଦକୁ ଭୁଲିଯାଆନ୍ତି ।।୧୬।। ଚପଳା ସ୍ତ୍ରୀମାନେ ଯେପରି ଗୁଣବାନ୍ ପୁରୁଷଙ୍କ ପାଖରେ ସ୍ଥିରହୋଇ ରହିପାରନ୍ତି ନାହିଁ, ସେହିପରି ଲୋକମାନଙ୍କର ବନ୍ଧୁ ମେଘ ଦେହରେ ବିଜୁଳି ସ୍ଥିର ହୋଇ ରହିଲା ନାହିଁ ।।୧୭।। ମାୟାରୁ ଅତୀତ ନିର୍ଗୁଣ ଭଗବାନ ଯେପରି ମାୟାଗୁଣଯୁକ୍ତ ଜୀବର ଦେହରେ ଅବସ୍ଥାନ କରନ୍ତି, ସେହିପରି ଗୁଣ (ଧନୁର ହୁଳା) ନ ଥିବା ଇନ୍ଦ୍ରଧନୁ ମେଘଗର୍ଜନଯୁକ୍ତ ଆକାଶରେ ଶୋଭାପାଇଲା ।।୧୮।। ଅହଙ୍କାରରେ ଆଚ୍ଛନ୍ନ ଜୀବ ଯେପରି ନିଜର ସ୍ୱରୂପକୁ ଦେଖିପାରେ ନାହିଁ, ସେହିପରି ଚନ୍ଦ୍ରମାର ବିମଳ ଜ୍ୟୋତ୍ସ୍ନା ମେଘମାଳାରେ ଆଚ୍ଛନ୍ନ ହୋଇ ଦୃଶ୍ୟ ହେଲା ନାହିଁ ।।୧୯।। ସଂସାରର ପାପତାପରେ ଜଡ଼ିତ ଗୃହସ୍ଥ ବ୍ୟକ୍ତି ଭଗବାନଙ୍କର କେହି ଭକ୍ତ ଆସିଗଲେ ଯେପରି ଉତ୍‌ଫୁଲ୍ଲ ହୋଇଉଠେ, ସେହିପରି ଆକାଶରେ ମେଘମାନଙ୍କର ଆଡ଼ମ୍ବର ଦେଖି ମୟୂରମାନେ ଆନନ୍ଦରେ ନୃତ୍ୟ କରିବାକୁଲାଗିଲେ ।।୨୦।। କୌଣସି କାମନା ରଖି ତପସ୍ୟା କରୁଥିବା ବ୍ୟକ୍ତି କ୍ଷୀଣ ଓ ଶାନ୍ତ ହୋଇପଡ଼େ, ମାତ୍ର କାମନା ପୂର୍ଣ୍ଣ ହେବାପରେ ପୁଣି ସୁସ୍ଥ ଓ ସବଳ ହୋଇଉଠେ; ସେହିପରି ଗ୍ରୀଷ୍ମରେ ଶୁଷ୍କ ହୋଇଥିବା ବୃକ୍ଷମାନେ ବର୍ଷା ଆସିଯିବାରୁ ଚେର ସାହାଯ୍ୟରେ ଭୂତଳରୁ ଜଳପାନ କରି ପତ୍ରପୁଷ୍ପରେ ଭରା ହୋଇ ସତେଜ ଦେଖାଗଲେ ।।୨୧।। ବତ୍ସ ପରିକ୍ଷିତ, ଅବିବେକୀ ଲୋକ ଯେପରି ନାନା ଜଞ୍ଜାଳ ଓ ଅଶାନ୍ତି ମଧ୍ୟରେ ବି ସାମାନ୍ୟ ଗୃହସୁଖପାଇଁ ନିଜଘରେ ପଡ଼ି ରହିଥାଏ, ସେହିପରି ବର୍ଷାଦିନରେ ସାରସମାନେ ପଙ୍କ, ଗୁଳ୍ମ ଓ କଣ୍ଟା ଆଦିରେ ପୂର୍ଣ୍ଣ ପୋଖରୀ କୂଳକୁ ଛାଡି ପାରିଲେ ନାହିଁ ।।୨୨।। କଳିଯୁଗରେ ପାଖଣ୍ଡୀମାନେ ବାଦ ବିବାଦ ସୃଷ୍ଟିକରି ବେଦର ମାର୍ଗକୁ ଯେପରି ନଷ୍ଟ କରିଦିଅନ୍ତି, ସେହିପରି ବର୍ଷାକାଳର ପ୍ରବଳ ଜଳସ୍ରୋତରେ ବନ୍ଧବାଡ଼ ସବୁ ଭାଙ୍ଗି ନଷ୍ଟ ହୋଇଗଲା ।।୨୩।। ମନ୍ତ୍ରୀ ଓ ପୁରୋହିତଙ୍କ ପରାମର୍ଶରେ ରାଜାମାନେ ଧନଦାନ କରି ଯେପରି ପ୍ରଜାମାନଙ୍କର ଅଭିଳାଷ ପୂର୍ଣ୍ଣ କରନ୍ତି ସେହିପରି ବର୍ଷା କାଳରେ ବାୟୁଚାଳିତ ମେଘମାନେ ଲୋକମାନଙ୍କର ମଙ୍ଗଳପାଇଁ ଅମୃତମୟ ଜଳ ବୃଷ୍ଟି କଲେ ।।୨୪।।

ବର୍ଷା କାଳରେ ବୃନ୍ଦାବନ ଏହିପରି ପ୍ରାକୃତିକ ଶୋଭାରେ ହସିଉଠିଲା । ବୃକ୍ଷମାନେ ପାଚିଲା ଖଜୁରୀ ଓ ଜାମୁ କୋଳି ଫଳରେ ଭରିଗଲେ । ଏହି ସମୟରେ ବନବିହାରପାଇଁ କୃଷ୍ଣ ଓ ବଳରାମ ଗୋରୁପଲ ଓ ଗୋପାଳବାଳକଙ୍କ ସହିତ ବୃନ୍ଦାବନରେ ପ୍ରବେଶକଲେ ।।୨୫।। ଗୋରୁମାନଙ୍କର ପହ୍ନା କ୍ଷୀରରେ ଭରା ହୋଇଥିବାଯୋଗୁଁ ସେମାନେ ଧୀରେ ଧୀରେ ଯାଉଥିଲେ ଏବଂ କୃଷ୍ଣ ଡାକିଦେବା ମାତ୍ରେ ତାଙ୍କ ପାଖକୁ ଯିବାବେଳେ ସେମାନଙ୍କ ପହ୍ନାରୁ କ୍ଷୀରଧାର ବହି ଯାଉଥିଲା ।।୨୬।। କୃଷ୍ଣ ବୃନ୍ଦାବନର ଦୃଶ୍ୟ ଦେଖି ଆନନ୍ଦିତ ହେଲେ । ବନବାସୀ ଶବର ଶବରୀମାନେ ବେଶ୍ ହସ ଖୁସିରେ ରହିଥିଲେ । ଧାଡ଼ିଧାଡ଼ି ବୃକ୍ଷମାନଙ୍କରୁ ମହୁର ଧାର ଝରି ପଡୁଥିଲା । ପର୍ବତମାନଙ୍କରୁ ଝର ଝର ନାଦରେ ଝରଣାମାନ ଗଡ଼ିଆସୁଥିଲେ ଏବଂ ବର୍ଷାରେ ଆଶ୍ରୟ ଦେବାପାଇଁ ପର୍ବତର ଗୁହାସବୁ ସତେ ଯେପରି ଅପେକ୍ଷାକରି ରହିଥିଲେ ।।୨୭।। ଯଦି କେତେବେଳେ ପ୍ରବଳ ବର୍ଷା ହୋଇଗଲା, ତା'ହେଲେ କୃଷ୍ଣ ଗୋପବାଳକମାନଙ୍କ ସହିତ ଘଞ୍ଚ ବୃକ୍ଷମାନଙ୍କ ମୂଳରେ ବା ପର୍ବତଗୁହାରେ ଆଶ୍ରୟ ନେଉଥିଲେ ଏବଂ ସେଠାରେ କନ୍ଦମୂଳ ଓ ଅନ୍ୟାନ୍ୟ ଫଳମୂଳ ଖାଇ ଆରାମ କରୁଥିଲେ ।।୨୮।। ବେଳେବେଳେ ସେ ବଳରାମ ଓ ଗୋପାଳବାଳକଙ୍କ ସହିତ ଜଳାଶୟ କୂଳକୁ ଯାଇ ଶିଳାଖଣ୍ଡ ଉପରେ ବସିଯାଉଥିଲେ ଏବଂ ଘରୁ ଆଣିଥିବା ଦହିଭାତ ସବୁ ବାଣ୍ଟି ଖାଉଥିଲେ ।।୨୯।। ସବୁଜ ଘାସରେ ବନଭୂମି ଭରପୂର ହୋଇଥିଲା । ବଳଦ, ବାଛୁରୀ ଓ ନିଜ ପହ୍ନାର ଭାରରେ ଥକି ଯାଉଥିବା ଗାଈମାନେ ଘାସ ଚରି ସାରି ଘାସ ଭୂମି ଉପରେ ବସି ରହୁଥିଲେ ଏବଂ ଆନନ୍ଦରେ ପାକୁଳି କରୁଥିଲେ । ନିଃସନ୍ଦେହରୂପେ ବର୍ଷା ଋତୁ ଥିଲା ସମସ୍ତ ପ୍ରାଣୀଙ୍କୁ ସୁଖପ୍ରଦ ଏବଂ କୃଷ୍ଣ ସେ ସବୁ ଦେଖି ବର୍ଷା ଋତୁକୁ ବହୁତ ପ୍ରଶଂସା କରୁଥିଲେ ।।୩୦-୩୧।। ଏହିପରି ବର୍ଷାକାଳରେ ବିବିଧ କ୍ରୀଡ଼ା ଓ ବନବିହାର କରି କୃଷ୍ଣ ଓ ବଳରାମ ବ୍ରଜରେ ଅବସ୍ଥାନ କରୁଥିଲେ । ଠିକ୍ ସମୟରେ ଶରତ ଋତୁ ଆସିଗଲା । ଆକାଶରୁ ମେଘମାଳା ଅନ୍ତର୍ହିତ ହେଲା । ଜଳ ନିର୍ମଳ ହୋଇଗଲା ଏବଂ ବାୟୁର ବେଗ କମିଗଲା ।।୩୨।।

ଯୋଗଭ୍ରଷ୍ଟ ସାଧୁମାନଙ୍କର ବିଷୟ ଚିନ୍ତାଜନିତ ଆବିଳଚିତ୍ତ ଯେପରି ପୁଣି ଯୋଗାଭ୍ୟାସଦ୍ୱାରା ବିଶୁଦ୍ଧ ହୋଇଯାଏ, ସେହିପରି ଶରତ୍‌ର ଆଗମନରେ ଜଳାଶୟମାନଙ୍କର ବର୍ଷାକାଳୀନ ଆବିଳତା ଦୂର ହୋଇଗଲା ଏବଂ ତାର ନିର୍ମଳ ଜଳରେ ପଦ୍ମଫୁଲ ଫୁଟିବା ଆରମ୍ଭହେଲା ।।୩୩।। କୃଷ୍ଣଭକ୍ତିର ପ୍ରଭାବରେ ଯେପରି ଭକ୍ତମାନଙ୍କର ସମସ୍ତ ଅଶୁଭ ଦୂର ହୁଏ, ସେହିପରି ଶରତ ଋତୁର ଆଗମନରେ ଆକାଶରୁ ମେଘ ଦୂର ହୋଇଗଲା । ପାଣି କାଦୁଅରେ ରହୁଥିବା ପ୍ରାଣୀମାନଙ୍କର କଷ୍ଟ ଦୂର ହେଲା । ଭୂମିର ପଙ୍କିଳତା ଓ ଜଳର ଆବିଳତା ଦୂର ହେଲା ।।୩୪।। ସମସ୍ତ କାମନା, ବାସନା ତ୍ୟାଗ କରିଥିବା ନିଷ୍ପାପ ମୁନିମାନେ ଯେପରି ଶୁଦ୍ଧ ଓ ଶାନ୍ତ ଦେଖାଯା'ନ୍ତି, ସେହିପରି ମେଘମାନେ ତାଙ୍କର ସର୍ବସ୍ୱ ଜଳ ଦାନ କରି ଉଜ୍ଜ୍ୱଳ କାନ୍ତିରେ ଶୋଭା ପାଇବାକୁ ଲାଗିଲେ ।।୩୫।। ଜ୍ଞାନୀମାନେ ଯେପରି ପାତ୍ର ଅପାତ୍ରର ବିଚାର କରି ତତ୍ତ୍ୱ ଉପଦେଶ ପ୍ରଦାନ କରନ୍ତି ବା କରନ୍ତି ନାହିଁ, ସେହିପରି ଶରତ୍‌କାଳୀନ ପର୍ବତମାନେ କେତେବେଳେ ଝରଣାମାନଙ୍କରେ ସ୍ୱଚ୍ଛ ଜଳ ଦାନ କଲେ ତ କେତେବେଳେ କିଛି ଦେଲେ ନାହିଁ ।।୩୬।। ଖାଲ ବିଲରେ ଥିବା ଜଳ ଦିନକୁ ଦିନ ଶୁଖିଗଲା, କିନ୍ତୁ ସେଥିରେ ଥିବା ଜଳଚର ଜୀବ ତାହା ଜାଣିପାରିଲେ ନାହିଁ ; ଯେପରିକି ମୂଢ଼ ସଂସାରୀ ବ୍ୟକ୍ତିମାନେ ଦିନୁଦିନ ତାଙ୍କ ଆୟୁ କ୍ଷୟହେଉଥିବା କଥା ଜାଣିପାରନ୍ତିନାହିଁ ।।୩୭।। ନିଜ କୁଟୁମ୍ବର ଭରଣପୋଷଣରେ ବ୍ୟସ୍ତ ଦରିଦ୍ର କୃପଣ ବ୍ୟକ୍ତି ଇନ୍ଦ୍ରିୟବଶରୁ ଯେପରି ଦୁଃଖଜର୍ଜର ହୋଇରହିଥାଏ, ସେହିପରି ଅଳ୍ପ ଜଳରେ ରହୁଥିବା ଜଳଚର ଜୀବମାନେ ଶରତର ପ୍ରଖର ସୂର୍ଯ୍ୟତାପରେ ଦୁଃଖ ଭୋଗ କରିବାକୁ ଲାଗିଲେ ।।୩୮।।

ଶରୀର ଯେ ଆତ୍ମା ନୁହେଁ, ତାହା ଅନୁଭବ କରୁଥିବା ବିଜ୍ଞ ବ୍ୟକ୍ତିମାନେ ଯେପରି ଅହଙ୍କାର ଆଦି ସମସ୍ତ ମାୟା ମମତାକୁ ଛାଡ଼ିଦିଅନ୍ତି, ସେହିପରି ଶରତକାଳ ଆସିଯିବାରୁ ଭୂମି ଅପରିଷ୍କାର ପଙ୍କ, ଲଟା, ଗୁଳ୍ମ ଆଦିକୁ ଛାଡ଼ିଦେଲା ।।୩୯।। ମନ ସ୍ଥିର ହେଲେ ମୁନି ଯେପରି ବେଦ ଘୋଷିବାରୁ ନିବୃତ୍ତ ହୋଇ ଶାନ୍ତ ଦେଖାଯାଏ, ସେହିପରି ବିକ୍ଷୁବ୍ଧ ସମୁଦ୍ରର ଜଳ ଶରତ୍ କାଳରେ ଶାନ୍ତ ହୋଇଗଲା ।।୪୦।। ଯୋଗୀମାନେ ଯେପରି ଇନ୍ଦ୍ରିୟନିରୋଧ ଦ୍ୱାରା ଇନ୍ଦ୍ରିୟଚାଳିତ ଜ୍ଞାନକୁ ସଂଯତ କରି ରଖନ୍ତି, ସେହିପରି କୃଷକମାନେ ମଜଭୁତ ବନ୍ଧଦ୍ୱାରା ଶସ୍ୟକ୍ଷେତ୍ରରୁ ବହିଯାଉଥିବା ଜଳଧାରକୁ ଆବଦ୍ଧ କରି ରଖିଲେ ।।୪୧।। ଦେହାଭିମାନଜନିତ ତତ୍ତ୍ୱଜ୍ଞାନ ଯେପରି ପାପତାପ ଦୂର କରେ, ଶ୍ରୀକୃଷ୍ଣ ଯେପରି ବ୍ରଜ ରମଣୀମାନଙ୍କର ବିରହ ତାପ ଦୂରକରନ୍ତି, ସେହିପରି ଶରତ୍ କାଳର ଚନ୍ଦ୍ର ପ୍ରାଣୀମାନଙ୍କର ସୂର୍ଯ୍ୟତାପର କ୍ଲେଶ ଦୂରକରେ ।।୪୨।। ବେଦର ପ୍ରକୃତ ଅର୍ଥଜ୍ଞାନ ହେଲେ ଯେପରି ଚିତ୍ତ ନିର୍ମଳ ହୁଏ, ସେହିପରି ମେଘମୁକ୍ତ ତାରକାଶୋଭିତ ଶରତ୍‌କାଳୀନ ଆକାଶ ନିର୍ମଳ ଦେଖାଗଲା ।।୪୩।। ଯଦୁପତି କୃଷ୍ଣ ଯେପରି ଯାଦବମାନଙ୍କ ଗହଣରେ ରହି ପୃଥିବୀରେ ଶୋଭାପାଉଥିଲେ, ସେହିପରି ଶରତ୍‌କାଳର ପୂର୍ଣ୍ଣଚନ୍ଦ୍ର ତାରାମାନଙ୍କଦ୍ୱାରା ବେଷ୍ଟିତ ହୋଇ ନିର୍ମଳ ଗଗନରେ ଶୋଭାପାଇଲେ ।।୪୪।। ଶରତ୍‌କାଳର ପବନ ଅତି ଉଷ୍ଣ ବା ଅତି ଶୀତଳ ନୁହେଁ । ନାନା ପୁଷ୍ପର ସୁଗଂଧକୁ ବହି ଆଣୁଥିବା ଏହାର ସ୍ପର୍ଶରେ ଲୋକମାନଙ୍କ ତାପ ଦୂର ହେଲା । କିନ୍ତୁ କୃଷ୍ଣ ଯାହାଙ୍କ ଚିତ୍ତକୁ ହରଣ କରିଥିଲେ ସେହି ଗୋପୀମାନଙ୍କର ତାପ ଦୂର ହେଲା ନାହିଁ ।।୪୫।। ଭଗବାନଙ୍କଠାରେ ଅର୍ପଣ କରି କାର୍ଯ୍ୟ କଲେ, ଯେପରି ଫଳ ତାକୁ ଅନୁସରଣ କରେ, ସେହିପରି ଶରତ୍ କାଳଦ୍ୱାରା ପୁଷ୍ପବତୀ ହୋଇଥିବା ଗାଇ, ମୃଗୁଣୀ ପକ୍ଷିଣୀ ଓ ନାରୀମାନଙ୍କୁ ତାଙ୍କର ସ୍ୱଜାତୀୟ ପୁରୁଷମାନେ ଅନୁଧାବନ କଲେ ।।୪୬।। ପରିକ୍ଷିତ, ଯେପରି ରାଜାଙ୍କଦ୍ୱାରା ଦସ୍ୟୁମାନଙ୍କ ଛଡ଼ା ଅନ୍ୟ ପ୍ରଜାମାନେ ନିର୍ଭୟ ହୋଇ ଫୁଲିଉଠନ୍ତି, ସେହିପରି ସୂର୍ଯ୍ୟୋଦୟରେ ପୁଷ୍କରିଣୀମାନଙ୍କରେ କଇଁ ଫୁଲ ଛଡ଼ା ସବୁପ୍ରକାର ପଦ୍ମ ଫୁଲମାନ ଫୁଟି ଉଠିଲେ ।।୪୭।। ଶରତ୍‌କାଳରେ ନୂଆ ଧାନ ଆସିଯିବାରୁ ସହର ଓ ଗ୍ରାମମାନଙ୍କରେ ନବାନ୍ନ ଉତ୍ସବ ଓ ବିଭିନ୍ନ ଲୌକିକ ଉତ୍ସବ ଅନୁଷ୍ଠିତ ହେବାକୁ ଲାଗିଲା ଏବଂ ଏହି ପୃଥିବୀ ଶ୍ରୀକୃଷ୍ଣ ଓ ବଳରାମଙ୍କ ଉପସ୍ଥିତି ଯୋଗୁ ଅତ୍ୟନ୍ତ ସୁଶୋଭନ ଦେଖାଗଲା ।।୪୮।। ସିଦ୍ଧ ଯୋଗୀମାନେ ପ୍ରାରବ୍ଧ କ୍ଷୟ ହେଲେ ଯେପରି ଦେବାଦି ଦେହ ଲାଭକରନ୍ତି, ସେହିପରି ବର୍ଷା ଚାଲିଯିବା ପରେ ବଣିକ, ମୁନି, ରାଜା ଓ ସ୍ନାତକମାନେ ନିଜ ନିଜ ବାସସ୍ଥାନରୁ ବାହାରିଯାଇ ଅଭିଳଷିତ କାର୍ଯ୍ୟରେ ଲାଗିଗଲେ ।।୪୯।।

## ଏକବିଂଶ ଅଧ୍ୟାୟ

# ବେଣୁ ଗୀତ

ଶ୍ରୀ ଶୁକଦେବ କହିଲେ, ପରିକ୍ଷିତ, ଶରତ୍ ଋତୁରେ ବୃନ୍ଦାବନର ସୌନ୍ଦର୍ଯ୍ୟ ବଢ଼ିଗଲା । ଜଳ ନିର୍ମଳ ହେଲା ଏବଂ ସେଥିରେ ପଦ୍ମଫୁଲ ଫୁଟି ସୁନ୍ଦର ଦେଖାଗଲା । ଏହାର ସୁଗନ୍ଧକୁ ବହନ କରି ପବନ ମନ୍ଦ ମନ୍ଦ ବହୁଥିଲା । ଗୋପାଳ ବାଳକଙ୍କ ସହିତ ଗାଇପଲଙ୍କୁ ଧରି କୃଷ୍ଣ ସେହି ବନରେ ପ୍ରବେଶକଲେ ।।୧।। ପୁଷ୍ପିତବୃକ୍ଷମାନଙ୍କଦ୍ୱାରା ବୃନ୍ଦାବନର ବନଭୂମି ଉଲ୍ଲସିତ ଦେଖାଯାଉଥିଲା । ମତ୍ତ ଭ୍ରମରମାନେ ଗୁଞ୍ଜନ କରୁଥିଲେ ଏବଂ ଶୁଆ ଓ ମୟୂର ଆଦି ପକ୍ଷୀମାନେ ଆନନ୍ଦରେ କଳଧ୍ୱନି କରୁଥିଲେ । ନଦୀ, ସରୋବର, ପର୍ବତ ସବୁ ଏଥିରେ ପ୍ରତିଧ୍ୱନିତ ହୋଇଉଠୁଥିଲା । ମଧୁପତି ଶ୍ରୀକୃଷ୍ଣ ବଳରାମ ଓ ଗୋପବାଳକଙ୍କ ସହିତ ବନ ମଧ୍ୟରେ ପ୍ରବେଶ କରି ବଂଶୀ ବଜାଇ ବଜାଇ ଗାଈ ଚରାଉଥିଲେ ।।୨।। ସେହି ପ୍ରେମପୂର୍ଣ୍ଣ ବଂଶୀଧ୍ୱନି ଶୁଣି ଗୋପୀମାନଙ୍କର କାମଭାବ ଉଦ୍ଦୀପିତ ହେଲା । ସେମାନେ ଦୂରରେ ବ୍ରଜରେ ଥିଲେ ମଧ୍ୟ ନିଜ ନିଜ ମଧ୍ୟରେ କୃଷ୍ଣଙ୍କର ରୂପ, ଗୁଣ ଓ ବଂଶୀଧ୍ୱନିର ପ୍ରଶଂସା କରିବାକୁ ଲାଗିଲେ ।।୩।। ରାଜା, ସେହି ବଂଶୀଧ୍ୱନିର ବର୍ଣ୍ଣନା ଆରମ୍ଭ କରିବାବେଳେ ସେମାନେ କୃଷ୍ଣଙ୍କର ଲୀଳାମାନ ସ୍ମରଣ କରି କାମବଶତଃ ବ୍ୟାକୁଳ ହେବାକୁ ଲାଗିଲେ ଏବଂ ଆଉ ଅଧିକ ବର୍ଣ୍ଣନା କରିପାରିଲେ ନାହିଁ ।।୪।।

କୃଷ୍ଣଙ୍କର ନଟବର ବେଶ ଅତି ଲୋଭନୀୟ ଥିଲା । ଚୂଡ଼ାରେ ମୟୂର ପୁଚ୍ଛ, ଦୁଇ କାନରେ କନିଅର ଫୁଲ, କଟିରେ ପୀତବସ୍ତ୍ର । ଚମତ୍କାର ବୈଜୟନ୍ତୀ ମାଳା ପରିଧାନ କରି ଓ ବେଣୁର ପ୍ରତି ରନ୍ଧ୍ରରେ ତାଙ୍କ ଅଧରାମୃତକୁ ପୂରାଇ ସେ ମନୋହର ବଂଶୀଧ୍ୱନି କରୁଥିଲେ । ଗୋପାଳବାଳକମାନେ ତାଙ୍କ କୀର୍ତ୍ତିରାଜି ବର୍ଣ୍ଣନା କରି କରି ଚାଲିଥିଲେ । ଏହିପରି ନିଜର ଚରଣଚିହ୍ନରେ ବୃନ୍ଦାବନ ଭୂମିକୁ ଅଳଙ୍କୃତ କରି ସେ ତାହାମଧ୍ୟରେ ପ୍ରବେଶ କଲେ ।।୫।। ରାଜା, କର୍ଣ୍ଣ ଓ ମନକୁ ମୋହିତ କରୁଥିବା ତାଙ୍କର ବଂଶୀଧ୍ୱନିକୁ ଗୋପୀମାନେ ଶୁଣୁଥିଲେ ଓ ତାହାର ପ୍ରଶଂସା କରିବାକୁଯାଇ କୃଷ୍ଣଙ୍କୁ ନ ଦେଖି ଭାବାବେଗରେ ପରସ୍ପର ଆଲିଙ୍ଗନ କରିବାକୁ ଲାଗିଲେ ।।୬।। ଗୋପୀମାନେ ପରସ୍ପର କୁହାକୁହି ହେଲେ, ସଖୀ, ଅନୁମାନ କର, କୃଷ୍ଣ ଓ ବଳରାମ ଗୋପାଳବାଳକଙ୍କୁ ଧରି ନାନା ଡାକରେ ଗାଈ ପଲକୁ ଅଡ଼ାଇ ନେଉଛନ୍ତି ଏବଂ ତା' ସହିତ ତାଙ୍କ ମୁହଁରୁ ମୁରଲୀର ସ୍ୱର ଭାସିଆସୁଛି । ମୁରଲୀଧରଙ୍କ ମୁଖମଣ୍ଡଳର ସେହି ମଧୁର କଟାକ୍ଷ ଯେ ଦେଖିବାକୁ ପାଇଛି, ତାର ଚକ୍ଷୁ ସାର୍ଥକ ହୋଇଛି । ଚକ୍ଷୁଷ୍ମାନ୍‌ଙ୍କ ପକ୍ଷରେ ଏହାଠାରୁ ଅଧିକ ସାର୍ଥକତା କ'ଣ ଥାଇପାରେ ? ।।୭।। ଆଉ ଜଣେ କହୁଛି, ସଖୀ, କୃଷ୍ଣ ଓ ବଳରାମ ଯେତେବେଳେ ନୂଆ ନୂଆ ଆମ୍ରପତ୍ର, ମୟୂରପୁଚ୍ଛ ଓ ଫୁଲପେଣ୍ଡାକୁ ନିଜର କେଶଗୁଚ୍ଛରେ ଲଗାଇଥାଆନ୍ତି, କାନରେ କନିଅର, ଡାହାଣ ହାତରେ ଲୀଳାପଦ୍ମ, ଗଳାରେ ବୈଜୟନ୍ତୀମାଳା (ପଞ୍ଚବର୍ଣ୍ଣ ଫୁଲର ମାଳା), କଟିତଟରେ ପୀତବସ୍ତ୍ର ଓ ନୀଳ ବସ୍ତ୍ର ଧାରଣ କରି ଗୋପବାଳକମଧ୍ୟରେ ନାଚୁଥା'ନ୍ତି ବା ଗାଉଥା'ନ୍ତି, ସେତେବେଳେ ରଙ୍ଗମଞ୍ଚରେ ଅଭିନୟ କରୁଥିବା ଦୁଇ ଜଣ ନଟବୋଲକ ପରି ଦେଖାଯାଉଥା'ନ୍ତି । ତାଙ୍କର ସେହି ଅତୁଳନୀୟ ଶୋଭାକୁ କିଏ ବର୍ଣ୍ଣନା କରିପାରିବ ? ।।୮।। ଆଉ ଜଣେ କହୁଛି, କୃଷ୍ଣଙ୍କର ଏହି ବେଣୁ ପୂର୍ବ ଜନ୍ମରେ କି ପୁଣ୍ୟ କରିଥିଲା, ଯାହାଙ୍କର ଅଧରାମୃତ ଗୋପୀମାନେ ପାନ କରିବା କଥା, ତାହା ସେ ପାନ କରିବାରେ ଲାଗିଛି ଏବଂ ଆମମାନଙ୍କପାଇଁ କିଛି ହେଲେ ଛାଡୁ ନାହିଁ । ଯେଉଁ ବୃକ୍ଷମାନଙ୍କ ବଂଶରୁ ଏହି ବେଣୁର ଜନ୍ମ, ସେମାନେ କେତେ ଆନନ୍ଦିତ ହେଉଛନ୍ତି, ଯେପରି କୁଳରେ କେହି ଭଗବତ୍‌ଭକ୍ତ ଜନ୍ମ ହେଲେ କୁଳବୃଦ୍ଧମାନେ ଆନନ୍ଦିତ ହୋଇଉଠନ୍ତି । ପୁଣି ଯେଉଁମାନଙ୍କ ଜଳରେ ଏହି ବୃକ୍ଷମାନେ ପରିପୁଷ୍ଟ, ସେହି ସରୋବରମାନେ ନିଜର ବକ୍ଷରେ ପଦ୍ମମାନ

ଫୁଟାଇ କିପରି ପୁଲକିତ ହେଉଛନ୍ତି ! ॥୯॥ ଅନ୍ୟ ଜଣେ କହୁଛି, ସଖୀ, ଏହି ବୃନ୍ଦାବନଯୋଗୁଁ ପୃଥିବୀର କୀର୍ତ୍ତି କିପରି ବଢ଼ିବାରେ ଲାଗିଛି ! କାରଣ କୃଷ୍ଣଙ୍କର ପାଦପଦ୍ମକୁ ଧାରଣ କରି ଏହାର ଏପରି ଐଶ୍ୱର୍ଯ୍ୟ ବଢ଼ିଯାଇଛି, ଯାହାର ତୁଳନା ନାହିଁ । କୃଷ୍ଣ ଯେବେ ମଧୁର ସ୍ୱରରେ ମନ୍ଦ ମନ୍ଦ ବେଣୁବାଦନ କରନ୍ତି, ତାଙ୍କୁ ଦେଖି ମୟୂରମାନେ ଏହାକୁ ମେଘର ମନ୍ଦ ମନ୍ଦ ଗର୍ଜ୍ଜନ ବୋଲି ମନେ କରନ୍ତି । ତେଣୁ ସେମାନେ ନୃତ୍ୟ କରିବା ଆରମ୍ଭ କରିଦିଅନ୍ତି ଏବଂ ଅନ୍ୟ ପ୍ରାଣୀମାନେ ପର୍ବତର ସାନୁ ଦେଶରେ ରହି ତାହା ଦେଖି ଜଡ଼ପରି ଠିଆ ହୋଇଥା'ନ୍ତି ॥୧୦॥ ସଖୀ, ବୃନ୍ଦାବନର ହରିଣୀମାନେ ମୂଢ଼ମତି ପଶୁଜାତିର ହେଲେ କ'ଣ ହେବ, ସେମାନେ ଧନ୍ୟ । କାରଣ ବିଚିତ୍ର ବେଶ ଧାରଣ କରିଥିବା ନନ୍ଦନନ୍ଦନଙ୍କ ବେଣୁର ଧ୍ୱନି ଶୁଣି ସେମାନେ ପୁରୁଷ କୃଷ୍ଣସାର ମୃଗଙ୍କ ସହିତ ସେଠାକୁ ଆସି କୃଷ୍ଣଙ୍କୁ ପ୍ରେମଭରା ଚାହାଣିରେ ଦେଖନ୍ତି ଏବଂ ତାହାଦ୍ୱାରା ହିଁ କୃଷ୍ଣଙ୍କ ପ୍ରତି ତାଙ୍କର (ଯୋଗ୍ୟ) ପୂଜା ହୁଏ ॥୧୧॥ କୃଷ୍ଣଙ୍କ ରୂପର ସୌନ୍ଦର୍ଯ୍ୟ କାମିନୀମାନଙ୍କର ଚିତ୍ତହରଣ କରୁଥିଲା । ତାଙ୍କ ରୂପକୁ ଦେଖି ଏବଂ ତାଙ୍କର ସେଇ ବିଚିତ୍ର ବେଣୁଧ୍ୱନି ଶୁଣି ବିମାନରେ ବସିଥିବା ସ୍ୱର୍ଗର କାମାସକ୍ତ ଦେବୀମାନଙ୍କର ନୀବିବନ୍ଧ ଶିଥିଳ ହୋଇଯାଏ ଓ ଖଭାରୁ ଫୁଲମାନ ଖସିପଡୁଥାଏ ଏବଂ ସେମାନେ ଧୈର୍ଯ୍ୟ ହରାଇବସନ୍ତି ॥୧୨॥ ଗାଈମାନେ କାନ ଡେରି କୃଷ୍ଣଙ୍କ ମୁହଁରୁ ଭାସିଆସୁଥିବା ସେହି ବେଣୁଗୀତରୂପ ଅମୃତକୁ ପାନ କରୁଥା'ନ୍ତି । ସେମାନଙ୍କ ପହ୍ନାରୁ କ୍ଷୀର ପିଉଥିବା ବାଛୁରୀମାନେ ସ୍ତନପାନ ବନ୍ଦ କରି ତଟସ୍ଥ ଭାବରେ ଠିଆ ହୋଇରହନ୍ତି । ହଠାତ୍ ମୁହଁ ଆଡ଼େଇ ନେଲାବେଳେ ମା ସ୍ତନରୁ ପିଉଥିବା କ୍ଷୀର ବାଛୁରୀଙ୍କ ମୁହଁରୁ ଝରିପଡୁଥାଏ । କୃଷ୍ଣଙ୍କୁ ଦେଖି ସେମାନେ ତାଙ୍କୁ ହୃଦୟମଧ୍ୟରେ ଆଲିଙ୍ଗନ କରୁଥା'ନ୍ତି ଏବଂ ସେମାନଙ୍କର ଆନନ୍ଦାଶ୍ରୁ ବୋହିଯାଉଥାଏ ॥୧୩॥ ସଖୀଗଣ, ଏହି ବନରେ ଯେଉଁ ପକ୍ଷୀମାନେ ଅଛନ୍ତି, ସେମାନେ ମୁନି ହେବାପାଇଁ ଯୋଗ୍ୟ, କାରଣ ଅନ୍ୟବାଣୀ ପରିହାର କରି ନବପତ୍ରରେ ପଲ୍ଲବିତ ବୃକ୍ଷର ଶାଖାମାନଙ୍କ ମଧ୍ୟରେ ସ୍ଥିର ଭାବରେ ବସି ନିର୍ନିମେଷ ଦୃଷ୍ଟିରେ ସେମାନେ କୃଷ୍ଣଙ୍କର ରୂପକୁ ଦର୍ଶନ କରୁଥା'ନ୍ତି ଏବଂ ବଂଶୀର ମୋହନ ସ୍ୱରକୁ ଶୁଣୁଥା'ନ୍ତି ॥୧୪॥ ନଦୀମାନଙ୍କୁ ଦେଖ, ସେଥିରେ ଯେଉଁ ଭଉଁରି ସବୁ ହେଉଛି, ତାହା ଯେପରି କୃଷ୍ଣଙ୍କୁ ଆଲିଙ୍ଗନ କରିବାକୁ ସେମାନଙ୍କ ଇଚ୍ଛାର ସୂଚନା ଦେଉଛି । ସ୍ରୋତର ବେଗ ମଧ୍ୟ ବନ୍ଦ ହୋଇଗଲାଣି । ତାହା ଜଣାଇ ଦେଉଛି, ଅତି ପ୍ରେମରେ ତାଙ୍କ ବଂଶୀଧ୍ୱନି ଶୁଣିବାପାଇଁ ନଦୀ ସ୍ଥିର ହୋଇ ରହୁଛି ଓ ନିଜର ତରଙ୍ଗମାଳାରେ କୃଷ୍ଣଙ୍କର ପଦଦ୍ୱୟ ଧାରଣ କରି ସେ ଯେପରି ତାଙ୍କୁ ପଦ୍ମଫୁଲ ଉପହାର ଦେବାପାଇଁ ବ୍ୟସ୍ତ ହୋଇପଡୁଛି ॥୧୫॥ କୃଷ୍ଣ ଯେତେବେଳେ ବଳରାମ ଓ ଗୋପାଳବାଳକଙ୍କ ସହିତ ଅତି ଖରାରେ ଗାଈ ଚରାଉଥାଆନ୍ତି ଏବଂ ଉଚ୍ଚ ସ୍ୱରରେ ବଂଶୀ ବଜାଉଥା'ନ୍ତି, ସେତେବେଳେ ମେଘ ଆକାଶରେ ଉଠି ପୁଷ୍ପବୃଷ୍ଟି ଛଳରେ ଜଳକଣା ବୃଷ୍ଟି କରେ ଓ ସମସ୍ତ ଆକାଶକୁ ଘୋଟି ଯାଇ ସେମାନଙ୍କ ଉପରେ ଛତ୍ର ଧାରଣ କରେ ॥୧୬॥ ଶବରୀମାନଙ୍କୁ ଦେଖ, ପ୍ରିୟ କୃଷ୍ଣଙ୍କୁ ଆମେ ବକ୍ଷସ୍ଥଳକୁ ଉଠାଇବା ବେଳେ ଆମ କୁଚର କୁଙ୍କୁମ ତାଙ୍କ ପାଦରେ ଲାଗି ଯାଇଥାଏ ଏବଂ ବନରେ ବୁଲୁଥିବା ବେଳେ ତାହା ସବୁ ଘାସରେ ଲାଗେ, ସେହି କୁଙ୍କୁମକୁ ନେଇ ନିଜର ମୁହଁ ଓ ସ୍ତନରେ ବୋଳି ଏହି ଶବରୀମାନେ ସେମାନଙ୍କ କାମପୀଡ଼ାକୁ ଦୂର କରନ୍ତି ॥୧୭॥ ଗୋପୀଗଣ, ଏହି ଗୋବର୍ଦ୍ଧନ ପର୍ବତ ହେଉଛି ଭକ୍ତମାନଙ୍କ ମଧ୍ୟରେ ଶ୍ରେଷ୍ଠ । କାରଣ ରାମ ଓ କୃଷ୍ଣଙ୍କର ପାଦସ୍ପର୍ଶରେ ଏହା ହର୍ଷୋତ୍‌ଫୁଲ୍ଲ ହୋଇ ସ୍ୱଚ୍ଛ ଜଳ, କୋମଳ ଘାସ, ସୁନ୍ଦର ଗୁମ୍ଫା ଓ ଫଳମୂଳ ଆଦି ଦ୍ୱାରା ସେ ଗୋରୁ ଓ ଗୋପାଳବାଳକଙ୍କ ସହ ସେ ଦୁହିଁଙ୍କର ସେବା କରୁଛି ॥୧୮॥ ସଖୀମାନେ, କୃଷ୍ଣ ଓ ବଳରାମ ବନକୁ ବନ ଗୋରୁ ଚରାଇବାକୁ ଯାଉଥିବାବେଳେ ହାତରେ ଗାଈ ଦୁହିଁବାପାଇଁ ଗାଈଙ୍କ ପାଦରେ ଛନ୍ଦୁଥିବା ଦଉଡ଼ିକୁ ଓ ଦୁଷ୍ଟ ଗାଈଙ୍କୁ ବାନ୍ଧିବା ପାଇଁ ପଘାକୁ ହାତରେ ଧରି ବଂଶୀ ବାଦନ କରୁଥା'ନ୍ତି । ସେତେବେଳେ ବନଭୂମିରେ ଥିବା ପଶୁପକ୍ଷୀ ଓ ବୃକ୍ଷଲତା ଆଦି ଚରାଚର ପ୍ରାଣୀମାନେ ଆନନ୍ଦରେ ପୁଲକିତ ହୋଇଉଠନ୍ତି ॥୧୯॥ ବୃନ୍ଦାବନବିହାରୀ କୃଷ୍ଣଙ୍କର ଲୀଳାମାନ ଏହିପରି ବର୍ଣ୍ଣନାକରି ଗୋପୀମାନେ ସେଥିରେ ତନ୍ମୟ ହୋଇଯାଉଥିଲେ ॥୨୦॥

## ଦ୍ୱାବିଂଶ ଅଧ୍ୟାୟ

# ବସ୍ତ୍ର ହରଣ

ହେମନ୍ତଋତୁ ଆସିଗଲା । ଏହାର ପ୍ରଥମ ମାସରେ ଅର୍ଥାତ୍ କାର୍ତ୍ତିକରେ ବ୍ରଜକୁମାରୀମାନେ କାତ୍ୟାୟନୀ ଦେବୀଙ୍କର ପୂଜାପାଇଁ ବ୍ରତ ଧାରଣ କଲେ । ସେମାନେ ନିୟମିତ ହବିଷ୍ୟ ଅନ୍ନ ଭୋଜନ କରୁଥିଲେ । ଅରୁଣୋଦୟ ବେଳକୁ ସେମାନେ ଯମୁନାଜଳରେ ସ୍ନାନ କରି କୂଳରେ ବାଲିରେ କାତ୍ୟାୟନୀଙ୍କର ଏକ ପ୍ରତିମା ନିର୍ମାଣ କରୁଥିଲେ ଏବଂ ଏହି ପ୍ରତିମାକୁ ଗନ୍ଧ, ଚନ୍ଦନ, ମାଳା, ବସ୍ତ୍ର ଓ ଅଳଙ୍କାରାଦିରେ ଭୂଷିତ କରି ବିଭିନ୍ନ ପୂଜାଦ୍ରବ୍ୟ, ନବପତ୍ର, ଫଳ ଓ ଅରୁଆ ଚାଉଳ ଆଦିଦ୍ୱାରା ଦେବୀଙ୍କର ଅର୍ଚ୍ଚନା କରୁଥିଲେ ॥୧-୩॥ ପୂଜା କରିବା ସମୟରେ କୁମାରୀମାନେ ଏକ ମନ୍ତ୍ର ଜପ କରୁଥିଲେ - 'ଦେବୀ କାତ୍ୟାୟନୀ, ମହାମାୟା, ମହାଯୋଗିନୀ, ସମସ୍ତଙ୍କର ଅଧିଶ୍ୱରୀ ! ନନ୍ଦଗୋପଙ୍କର ପୁତ୍ର କୃଷ୍ଣଙ୍କୁ ମୋର ସ୍ୱାମୀ କରିଦିଅନ୍ତୁ' । ଏହିପରି କୃଷ୍ଣଙ୍କଠାରେ ନିଜର ଚିତ୍ତକୁ ଅର୍ପଣ କରି ମାସେ କାଳ ବ୍ରତ ଧାରଣ କଲେ ଏବଂ ନନ୍ଦସୁତଙ୍କୁ ନିଜର ପତିରୂପେ ପାଇବାପାଇଁ ନିଷ୍ଠାର ସହିତ ଭଦ୍ରକାଳୀଙ୍କୁ ପୂଜା କଲେ । ପ୍ରତ୍ୟୁଷରୁ ଉଠି ଏକାଠି ବାହୁ ଛନ୍ଦାଛନ୍ଦି ହୋଇ ସେମାନେ ଯମୁନାକୁ ସ୍ନାନ କରିବାକୁ ଯାଉଥିଲେ ଏବଂ ଉଚ୍ଚ ସ୍ୱରରେ କୃଷ୍ଣଙ୍କର ଲୀଳାଗାନ କରୁଥିଲେ ॥୪-୬॥ ଦିନେ ସେମାନେ ଯମୁନାକୂଳରେ ପୂର୍ବପରି ନିଜର ବସ୍ତ୍ରମାନ ନିକ୍ଷେପ କରି କୃଷ୍ଣଙ୍କ ଲୀଳା ଗାନପୂର୍ବକ ଆନନ୍ଦରେ ଯମୁନାଜଳରେ କ୍ରୀଡା କରୁଥିଲେ ॥୭॥ ଭଗବାନ୍ ଶ୍ରୀକୃଷ୍ଣ ଥିଲେ ଯୋଗେଶ୍ୱରମାନଙ୍କ ଈଶ୍ୱର । ଗୋପୀମାନଙ୍କର ଅଭିପ୍ରାୟ ସେ ଜାଣିପାରିଲେ । ତେଣୁ ସେମାନଙ୍କର ସଂକଳ୍ପ ସିଦ୍ଧ କରିବାପାଇଁ ସେ ଯମୁନାକୂଳରେ ଯାଇ ପହଞ୍ଚିଲେ ॥୮॥ ସେ କୁମାରୀମାନଙ୍କର ବସ୍ତ୍ରଯାକ ଏକାଠି ଧରି ନିକଟସ୍ଥ କଦମ୍ବ ଗଛରେ ଚଢ଼ିଗଲେ । ସାଙ୍ଗମାନେ ହସିବାକୁ ଲାଗିଲେ । କୃଷ୍ଣ ମଧ୍ୟ ସେମାନଙ୍କ ହସରେ ଯୋଗ ଦେଇ ପରିହାସ କରି କହିଲେ, କୁମାରୀମାନେ, ଯଦି ତୁମର ଇଚ୍ଛା ଅଛି, ତା'ହେଲେ ଏଠାକୁ ଆସି ବସ୍ତ୍ର ସବୁ ନେଇଯାଅ । ତୁମେମାନେ ବ୍ରତ କରି ଦୁର୍ବଳ ହୋଇପଡିଛ । ମୁଁ ସତ କହୁଛି, ତୁମକୁ ଥଟ୍ଟା କରୁ ନାହିଁ । ମୋର ସାଙ୍ଗମାନେ ଜାଣନ୍ତି, ମୁଁ ପୂର୍ବରୁ କେବେହେଲେ ମିଛ କହି ନାହିଁ । ସୁନ୍ଦରୀମାନେ, ତୁମେ ଜଣେ ଜଣେ ହୋଇ ବା ଏକାଠି ଆସି ତୁମର ବସ୍ତ୍ରସବୁ ନେଇଯାଅ ॥୯-୧୧॥ ପରିହାସ ଛଳରେ କୃଷ୍ଣ ଏହା କରିଛନ୍ତି ବୋଲି ଦେଖିପାରି କୃଷ୍ଣପ୍ରେମରେ ଗୋପୀମାନଙ୍କର ହୃଦୟ ଭରିଗଲା । ଲଜ୍ଜାରେ ସେମାନେ ପରସ୍ପରକୁ ଚାହିଁ ହସାହସି ହେଲେ । କିନ୍ତୁ ଜଳରୁ ବାହାରିଲେ ନାହିଁ ॥୧୨॥ ଗୋପୀମାନେ ଲଜ୍ଜାରେ ଯମୁନା ଜଳରେ ବେକଯାଏ ବୁଡ଼ିଥିଲେ । ଯମୁନାର ଥଣ୍ଡା ପାଣି ମଧ୍ୟରେ ଥିବା ହେତୁ ସେମାନଙ୍କ ଦେହ ଶୀତରେ ଥରୁଥିଲା । କୃଷ୍ଣ ସେମାନଙ୍କୁ ପରିହାସ କରୁଥିବାର ଦେଖି ସେମାନେ କହିଲେ, ହେ କୃଷ୍ଣ, ତୁମେ ନନ୍ଦଗୋପଙ୍କର ପୁତ୍ର, ବ୍ରଜର ଯୁବରାଜ । ତୁମେ ସମସ୍ତ ବ୍ରଜବାସୀଙ୍କର ପ୍ରିୟ, ତୁମେ ଦେଖୁଛ, ଆମେ କିପରି ଶୀତରେ ଥରିଯାଉଛୁ । ଶୀଘ୍ର ଆମର ବସ୍ତ୍ରମାନ ଫେରାଇଦିଅ । ହେ ଶ୍ୟାମସୁନ୍ଦର, ଆମେ ସବୁ ତୁମର ଦାସୀ, ତୁମେ ଯାହା କହିବ, ଆମେ ତା' କରିବୁ । ତେଣୁ ହେ ଧର୍ମଜ୍ଞ, ତୁମେ ଆମର ବସ୍ତ୍ର ସବୁ ଫେରାଇଦିଅ । ତା' ନ ହେଲେ ନନ୍ଦରାଜାଙ୍କ ପାଖରେ ଆମେ ଫେରାଦ କରିବାକୁ ବାଧ୍ୟ ହେବୁ ॥୧୩-୧୫॥ କୃଷ୍ଣ କହିଲେ, କୁମାରୀମାନେ, ତୁମେ ଯଦି ମୋର ଦାସୀ ବୋଲି କହୁଛ, ତା' ହେଲେ ଏଠାକୁ ଆସି ଖୁସିରେ ତୁମର ବସ୍ତ୍ର ସବୁ ନେଇଯାଅ । ନ ହେଲେ ମୁଁ ତୁମର ବସ୍ତ୍ର ଦେବି ନାହିଁ । ରାଜା କ୍ରୁଦ୍ଧ ହେଲେ ମୋର କ'ଣ କରିବେ ? ॥୧୬॥

ତାହା ଶୁଣି କାନ୍ଦି କାନ୍ଦି ଗୋପକୁମାରୀମାନେ ହାତରେ ନିଜର ଗୁପ୍ତାଙ୍ଗକୁ ଘୋଡ଼ାଇ ପାଣିରୁ ବାହାରିଆସିଲେ । ବାହାରେ ସେମାନଙ୍କୁ ଭୀଷଣ ଥଣ୍ଡା ଲାଗୁଥିଲା ॥୧୭॥ ଗୋପୀମାନେ ତାଙ୍କୁ ନିର୍ମଳ ହୃଦୟରେ ଶ୍ରଦ୍ଧା କରନ୍ତି ବୋଲି ପୂର୍ବରୁ କୃଷ୍ଣ

ଜାଣିଥିଲେ । ଏବେ ସେମାନେ ତାଙ୍କ କଥା ମାନିଥିବାରୁ ସେ ସେମାନଙ୍କ ଉପରେ ଆହୁରି ସନ୍ତୁଷ୍ଟ ହେଲେ ଓ କଦମ୍ବଡାଳରୁ ବସ୍ତ୍ର ସବୁ ଆଣି ନିଜ କାନ୍ଧରେ ରଖି ହସି ହସି କହିଲେ-- କୁମାରୀମାନେ, ତୁମେ ବ୍ରତଧାରଣ କରିଛ ସତ, କିନ୍ତୁ ଉଲଗ୍ନ ହୋଇ ଯମୁନାଜଳରେ ସ୍ନାନ କରୁଥିବାଯୋଗୁଁ ଦେବୀଙ୍କ ନିକଟରେ ଅପରାଧ କରିଛ । ସେହି ପାପର ପ୍ରାୟଶ୍ଚିତ୍ତ ସ୍ୱରୂପ ତୁମେମାନେ ହାତ ଯୋଡ଼ି ତଳକୁ ମୁହଁ କରି ଦେବୀଙ୍କୁ ପ୍ରଣାମ କର ଏବଂ ନିଜର ବସ୍ତ୍ରସବୁ ନେଇଯାଅ ॥୧୮-୧୯॥ ବ୍ରଜବାଳାମାନେ ମନେକଲେ ଯେ କୃଷ୍ଣ ସତ କଥା କହୁଛନ୍ତି । ସେମାନେ ଉଲଗ୍ନ ହୋଇ ସ୍ନାନ କରିବା ଯୋଗୁଁ ବ୍ରତରେ ତ୍ରୁଟି ଘଟିଛି । ତେଣୁ ବ୍ରତ ପୂର୍ଣ୍ଣ କରିବାପାଇଁ ବ୍ରତର ସାକ୍ଷାତ୍ ଫଳସ୍ୱରୂପ କୃଷ୍ଣଙ୍କୁ ସେମାନେ ପ୍ରଣାମ କଲେ ଏବଂ ସେମାନଙ୍କର ସମସ୍ତ ଦୋଷ ତ୍ରୁଟି ଦୂର ହୋଇଗଲା ବୋଲି ବିଚାରକଲେ ॥୨୦॥ ସେମାନଙ୍କୁ ସେପରି ପ୍ରଣତ ଅବସ୍ଥାରେ ଦେଖି କୃଷ୍ଣଙ୍କ ହୃଦୟରେ ଦୟା ଭରିଗଲା । ସେ ସେମାନଙ୍କ ବସ୍ତ୍ର ଫେରାଇଦେଲେ ॥୨୧॥ କୃଷ୍ଣ ଗୋପକୁମାରୀମାନଙ୍କୁ ନାନା ଭାବରେ ବଞ୍ଚନା କଲେ, ତାଙ୍କ ଲଜ୍ଜା ଛଡ଼ାଇଦେଲେ । ନାନା ଭାବରେ ସେମାନଙ୍କ ସହିତ ପରିହାସ କଲେ ଏବଂ ନିଜର ଖେଳନା କରି ସେମାନଙ୍କୁ ନଚାଇଲେ, ତଥାପି କୁମାରୀମାନେ ସେମାନଙ୍କର ପ୍ରିୟତମ କୃଷ୍ଣଙ୍କର ସଙ୍ଗଲାଭ କରି ତାଙ୍କଠାରେ କୌଣସି ଦୋଷ ଦେଖି ନ ଥିଲେ ॥୨୨॥ ସେମାନେ ପ୍ରିୟତମଙ୍କ ସହିତ ମିଳିତ ହେବା ଇଚ୍ଛାରେ ସଙ୍ଗେ ସଙ୍ଗେ ନିଜର ବସ୍ତ୍ର ସବୁ ପିନ୍ଧିପକାଇ କୃଷ୍ଣଙ୍କୁ ଲଜ୍ଜାଭରା ଦୃଷ୍ଟିରେ ଦେଖିବାକୁ ଲାଗିଲେ ଏବଂ ଆଉ ଘରକୁ ଫେରିଯିବା କଥା ଭାବିଲେ ନାହିଁ ॥୨୩॥

ତାଙ୍କର ପାଦସ୍ପର୍ଶ କାମନାରେ (ଅର୍ଥାତ୍ ତାଙ୍କୁ ପତିରୂପେ ବରଣ କରିବାପାଇଁ) ଗୋପବାଳାମାନେ ବ୍ରତ ଧାରଣ କରିଥିବାର ଜାଣି ଭକ୍ତବତ୍ସଳ ଭଗବାନ କହିଲେ, ସତୀ ଗୋପାଙ୍ଗନାଗଣ, ତୁମେ ଯେଉଁ ଇଚ୍ଛାରେ ମୋତେ ସେବା କରୁଛ, ତାହା ମୁଁ ଜାଣେ । ମୁଁ ମଧ୍ୟ ତାହା ଅନୁମୋଦନ କରୁଛି ଏବଂ ତୁମମାନଙ୍କର ଅଭିଳାଷ ନିଶ୍ଚୟ ପୂର୍ଣ୍ଣ ହେବ ॥୨୪-୨୫॥ ଯବ ଆଦି ବୀଜମାନଙ୍କୁ ଭାଜିଲେ ବା ସିଝାଇଦେଲେ ଯେପରି ସେଥିରୁ ଗଜା ବାହାରେ ନାହିଁ, ସେହିପରି ମୋ'ଠାରେ ଯିଏ ନିଜର ହୃଦୟକୁ ସମର୍ପଣ କରେ, ତାର କୌଣସିପ୍ରକାର କାମନା ବା ଚିତ୍ତବିକାର ଘଟେ ନାହିଁ ॥୨୬॥ ସାଧ୍ୱୀ ଗୋପବାଳାଗଣ, ଯେଉଁ ଉଦ୍ଦେଶ୍ୟରେ ତୁମେ କାତ୍ୟାୟନୀଙ୍କର ପୂଜା କରିଛ, ତାହା ସିଦ୍ଧ ହୋଇଛି । ବର୍ତ୍ତମାନ ତୁମେ ନିଜ ନିଜ ଘରକୁ ଫେରିଯାଅ । ଆଗାମୀ ପୂର୍ଣ୍ଣିମା ରାତିରେ ତୁମେମାନେ ମୋ'ସହିତ ରମଣ କରିପାରିବ ॥୨୭॥ ଶ୍ରୀଶୁକଦେବ କହିଲେ, ଭଗବାନଙ୍କର ଅନୁମତି ପାଇ ଗୋପକୁମାରୀମାନେ ନିଜ ନିଜର ଗୃହକୁ ଫେରିଗଲେ । ସେମାନଙ୍କର ସମସ୍ତ କାମନା ପୂର୍ଣ୍ଣ ହୋଇଥିଲା । ଯିବାକୁ ଇଚ୍ଛା ନ ଥିବାରୁ ସେମାନେ କଷ୍ଟରେ ଫେରିଲେ, କିନ୍ତୁ ଗଲାବେଳେ ଶ୍ରୀକୃଷ୍ଣଙ୍କର ପାଦପଦ୍ମକୁ ଧ୍ୟାନ କରୁଥିଲେ ॥୨୮॥

ଦିନେ କୃଷ୍ଣ ବଳରାମଙ୍କ ସହିତ ଗୋପାଳବାଳକଙ୍କୁ ସାଙ୍ଗରେ ଧରି ଗାଈ ଚରାଇବାପାଇଁ ବୃନ୍ଦାବନରେ ବହୁଦୂରକୁ ଚାଲିଗଲେ ॥୨୯॥ ଜୋର ଖରା ହେଉଥିଲା । କୃଷ୍ଣ ଓ ସେଇ ବାଳକମାନଙ୍କର ମୁଣ୍ଡ ଉପରେ ଛତା ଧରିବା ପରି ବୃକ୍ଷମାନେ ଛାୟା ଦାନ କରୁଥିଲେ । କୃଷ୍ଣ ସେଇ ବାଳକମାନଙ୍କୁ ସମ୍ବୋଧନ କରି କହିଲେ, ସ୍ତୋକକୃଷ୍ଣ, ଅଂଶୁ, ଶ୍ରୀଦାମ, ସୁବଳ, ଅର୍ଜୁନ, ବିଶାଳ, ଋଷଭ, ଓଜସ୍ୱୀ, ଦେବପ୍ରସ୍ଥ ଓ ବରୂଥପ, ଦେଖ, ଏହି ବୃକ୍ଷମାନେ କିପରି ଭାଗ୍ୟବାନ । ଅନ୍ୟମାନଙ୍କପାଇଁ ଏମାନେ ଜୀବନ ଧାରଣ କରିଛନ୍ତି । ବର୍ଷା, ଖରା, ଶୀତ, ପବନ ସବୁ ସହି ଆମାନଙ୍କୁ ସେଥିରୁ ରକ୍ଷା କରୁଛନ୍ତି ॥୩୦-୩୨॥ ଏମାନଙ୍କର ଜୀବନ ଧନ୍ୟ । କାରଣ ଏମାନଙ୍କୁ ଆଶ୍ରୟ କରି ସମସ୍ତ ପ୍ରାଣୀ ଜୀବନଧାରଣ କରନ୍ତି । କୌଣସି ସଜ୍ଜନର ଗୃହକୁ କୌଣସି ଆଶାୟୀ ବ୍ୟକ୍ତି ଯାଇ ଯେପରି ବ୍ୟର୍ଥ ହୋଇ ଫେରେ ନାହିଁ, ସେହିପରି ବୃକ୍ଷମାନଙ୍କ ନିକଟରୁ କେହି ବିମୁଖ ହୋଇ ଫେରନ୍ତି ନାହିଁ ॥୩୩॥ ପତ୍ର, ପୁଷ୍ପ, ଫଳ, ଛାୟା, ଚେରମୂଳ, କାଠ, ଝୁଣା ଆଦି ଗନ୍ଧ ଓ ରସ, ଭସ୍ମ, ଅଙ୍ଗାର, ଅଙ୍କୁର ଆଦି ଦ୍ୱାରା ବୃକ୍ଷମାନେ ପ୍ରାଣୀମାନଙ୍କର ବହୁ ପ୍ରୟୋଜନରେ ଲାଗନ୍ତି । ଏହି ସଂସାରରେ ସେହି ଲୋକର ଜନ୍ମ ସଫଳ ହୁଏ, ଯେ ନିଜର

ଦେହ, ପ୍ରାଣ, ଅର୍ଥ, ବୁଦ୍ଧି ଓ ବାକ୍ୟ ଦ୍ୱାରା ଅନ୍ୟର ମଙ୍ଗଳ କରେ ।।୩୪-୩୫।। ଏହିପରି ବୃକ୍ଷମାନଙ୍କୁ ପ୍ରଶଂସା କରି କୃଷ୍ଣ କୋମଳ ପତ୍ର, ପୁଷ୍ପ, ଫୁଲର ପେଣ୍ଡା ଓ ପତ୍ରରେ ଭରପୂର ନୁଆଁଣିଆ ଡାଳ ଥିବା ଗଛମାନଙ୍କ ଭିତରେ ପଶି ଯମୁନାକୂଳରେ ପହଞ୍ଚିଲେ । ଯମୁନାର ଜଳ ଅତିଶୟ ମଧୁର, ଶୀତଳ ଓ ନିର୍ମଳ ଥିଲା । ଗୋରୁମାନଙ୍କୁ ଏହି ଜଳ ପାନ କରାଇ ଗୋପାଳ ବାଳକମାନେ ମନଇଚ୍ଛା ଏହି ଜଳ ପାନକରି ତୃପ୍ତ ହେଲେ ।।୩୬-୩୭।। ଯମୁନାକୂଳ ଉପବନରେ ଇଚ୍ଛା ଅନୁଯାୟୀ ଗୋରୁମାନଙ୍କୁ ଚରାଇ ଭୋକ ଲାଗିବାରୁ ଗୋପାଳବାଳକେ କୃଷ୍ଣ ଓ ବଳରାମଙ୍କ ପାଖକୁ ଆସି କହିଲେ ।।୩୮।।

## ତ୍ରୟୋବିଂଶ ଅଧ୍ୟାୟ

# ବ୍ରାହ୍ମଣ ପତ୍ନୀଙ୍କର କୃଷ୍ଣଭକ୍ତି

ଗୋପବାଳକେ କହିଲେ, ବଳରାମ, ତୁମେ ପ୍ରବଳ ଶକ୍ତିମାନ୍ । କୃଷ୍ଣ, ତୁମେ ସବୁବେଳେ ଦୁଷ୍ଟମାନଙ୍କୁ ଦଣ୍ଡ ଦେଇଛ । ବର୍ତ୍ତମାନ ପ୍ରବଳ କ୍ଷୁଧାରେ ଆମେ କଷ୍ଟ ପାଉଛୁ । ତୁମେ ଆମପାଇଁ କିଛି ବ୍ୟବସ୍ଥା କର ।।୧।। ଶ୍ରୀ ଶୁକଦେବ କହିଲେ, ଗୋପାଳବାଳକେ କୃଷ୍ଣଙ୍କୁ ଏହିପରି ପ୍ରାର୍ଥନା କରିବାରୁ ତାଙ୍କର ଭକ୍ତ ବ୍ରାହ୍ମଣପତ୍ନୀଙ୍କୁ ଅନୁଗୃହୀତ କରିବାପାଇଁ କୃଷ୍ଣ ଏହିପରି କହିଲେ-- ।।୨।। ଏଠାରେ ଅଳ୍ପ ଦୂରରେ କେତେକ ବେଦଜ୍ଞ ବ୍ରାହ୍ମଣ ସ୍ୱର୍ଗଲାଭ ଇଚ୍ଛାରେ ଆଙ୍ଗିରସ ନାମକ ଯଜ୍ଞ କରୁଛନ୍ତି ।।୩।। ତୁମେମାନେ ସେଠାକୁ ଯାଇ, ଆମେ ଦୁହେଁ ପଠାଇଛୁ ବୋଲି କହି ସେମାନଙ୍କ ଠାରୁ କିଛି ଖାଦ୍ୟପଦାର୍ଥ ମାଗିଆଣ ।।୪।। ଏହିପରି କୃଷ୍ଣଙ୍କର ଆଜ୍ଞା ନେଇ ଗୋପାଳବାଳକେ ସେଠାରେ ପହଞ୍ଚି କୃତାଞ୍ଜଳି ହୋଇ ବ୍ରାହ୍ମଣମାନଙ୍କୁ ଦଣ୍ଡ ପ୍ରଣାମ କଲେ ଏବଂ ସେମାନଙ୍କୁ ଅନ୍ନ ମାଗି କହିଲେ, ଆପଣମାନେ ପୃଥିବୀର ଦେବତା ସ୍ୱରୂପ । ଆପଣମାନଙ୍କର ମଙ୍ଗଳ ହେଉ । ଆମେମାନେ ବ୍ରଜର ଗୋପାଳବାଳକ, କୃଷ୍ଣ ଓ ରାମଙ୍କ ଆଦେଶରେ ଏଠାକୁ ଆସିଛୁ । ଆପଣମାନେ ଆମର ପ୍ରାର୍ଥନା ପ୍ରତି ଧ୍ୟାନ ଦିଅନ୍ତୁ ।।୫-୬।। ବଳରାମ ଓ ଶ୍ରୀକୃଷ୍ଣ ଗାଈ ଚରାଇ ଚରାଇ ଏଠାରୁ ଅଳ୍ପ ଦୂରରେ ଆସି ପହଞ୍ଚିଛନ୍ତି । ସେମାନେ କ୍ଷୁଧାର୍ତ୍ତ । ଆପଣମାନେ ଧର୍ମଜ୍ଞ । ଯଦି ଆପଣଙ୍କର ଶ୍ରଦ୍ଧା ହେଉଥାଏ, ତା'ହେଲେ ଭୋଜନାର୍ଥୀ ସେ ଦୁହିଁଙ୍କୁ ଓ ଆମମାନଙ୍କୁ କିଛି ଅନ୍ନ ଦାନ କରନ୍ତୁ ।।୭।। ସଜ୍ଜନମାନେ, ଯେଉଁ ଯଜ୍ଞରେ ପଶୁବଳି ଦିଆଯାଏ, ସେ ଯଜ୍ଞର ଏବଂ ସୌତ୍ରାମଣୀ ଯଜ୍ଞସଂସ୍ଥାରେ ଦୀକ୍ଷିତ ପୁରୁଷର ଅନ୍ନ ଭୋଜନ କରିବା ଉଚିତ ନୁହେଁ । ଅନ୍ୟ ଯେକୌଣସି ଯଜ୍ଞରେ ଦୀକ୍ଷିତ ପୁରୁଷର ଅନ୍ନ ଭୋଜନରେ କୌଣସି ଦୋଷ ନାହିଁ ।।୮।।

ଏହିପରି ଭଗବାନଙ୍କର ଅନ୍ନ ମାଗିବା କଥା ଶୁଣି ମଧ୍ୟ ସେହି ବ୍ରାହ୍ମଣମାନେ ନ ଶୁଣିବା ପରି ହେଲେ । ସେମାନେ ସ୍ୱର୍ଗପରି ତୁଚ୍ଛ ଫଳ ନିମନ୍ତେ ଭାରି ବଡ଼ ଯଜ୍ଞ କରୁଛନ୍ତି ବୋଲି ମନରେ ଅଭିମାନ କରୁଥିଲେ ଏବଂ ବାଳକବୁଦ୍ଧିରେ ନିଜକୁ ବଡ ଜ୍ଞାନୀ ବୋଲି ମନେ କରୁଥିଲେ । ଦେଖ, ପୃଥକ୍ କାଳ ପୃଥକ୍ ଦ୍ରବ୍ୟ, ମନ୍ତ୍ର, ତନ୍ତ୍ର, ଋତ୍ୱିକ, ଅଗ୍ନି, ଦେବତା, ଯଜମାନ, ଯଜ୍ଞ ଓ ଧର୍ମ ରୂପରେ ଯେଉଁ ଈଶ୍ୱର ପ୍ରତିଭାତ ହୁଅନ୍ତି, ସେହି ସାକ୍ଷାତ୍ ପରବ୍ରହ୍ମ ଭଗବାନ୍ ଶ୍ରୀକୃଷ୍ଣ ଗୋପାଳବାଳକଙ୍କୁ ପଠାଇ ଅନ୍ନ ମାଗୁଥିଲେ, କିନ୍ତୁ ଏହି ମନ୍ଦବୁଦ୍ଧି ବ୍ରାହ୍ମଣମାନେ ତାଙ୍କୁ ସାଧାରଣ ଦୃଷ୍ଟିରେ ଜଣେ ମନୁଷ୍ୟ ବୋଲି ବିଚାର କରି ତାଙ୍କର ଯାଚଞ୍ଚାକୁ ସ୍ୱୀକାର କଲେ ନାହିଁ ।।୯-୧୧।। ପରିକ୍ଷିତ, ଯେତେବେଳେ ସେମାନେ ହଁ ନାହିଁ କିଛି କହିଲେ ନାହିଁ, ସେତେବେଳେ ସେହି ବାଳକମାନେ ନିରାଶହୋଇ ଫେରି ଆସି କୃଷ୍ଣ ଓ ବଳରାମଙ୍କୁ ସମସ୍ତ କଥା ଜଣାଇଲେ ।।୧୨।। ସେମାନଙ୍କ କଥା ଶୁଣି ଜଗଦୀଶ୍ୱର କୃଷ୍ଣ ହସିହସି ସେମାନଙ୍କୁ କହିଲେ, କାର୍ଯ୍ୟାର୍ଥୀ ବ୍ୟକ୍ତି ସଂସାରରେ ନିଜକୁ ଅସଫଳ ବୋଲି ମନେ କରିବା ଉଚିତ ନୁହେଁ । ତୁମେ ବ୍ରାହ୍ମଣମାନଙ୍କ ପତ୍ନୀଙ୍କ ପାଖକୁ ଯାଅ ଏବଂ ସେମାନଙ୍କୁ କହ, ବଳରାମ ଓ ମୁଁ ଏଠାକୁ ଆସିଛୁ । ସେମାନେ ମୋ'ପ୍ରତି ବଡ଼

ସ୍ନେହଶୀଳ ଏବଂ ମୋ'ଠାରେ ହିଁ ସେମାନଙ୍କ ଚିତ୍ତ ଲାଗି ରହିଥାଏ । ଯେତେ ଭୋଜନ ଦରକାର, ସବୁ ସେ ନିଶ୍ଚୟ ତୁମକୁ ଦେବେ ॥୧୩-୧୪॥ ଯଜ୍ଞସ୍ଥାନରେ ବ୍ରାହ୍ମଣପତ୍ନୀଙ୍କପାଇଁ ଯେଉଁ ପୃଥକ୍ ଶାଳା ଥିଲା, ଗୋପାଳବାଳକମାନେ ସେଠାରେ ଯାଇ ପହଞ୍ଚିଲେ ଏବଂ ସୁନ୍ଦର ବସ୍ତ୍ର ଓ ଅଳଙ୍କାରରେ ଭୂଷିତ ଦ୍ୱିଜପତ୍ନୀମାନଙ୍କୁ ନମସ୍କାର କରି ବିନୀତ ଭାବରେ କହିଲେ-- ॥୧୫॥ ବିପ୍ରପତ୍ନୀମାନଙ୍କୁ ଆମର ନମସ୍କାର । ଆପଣମାନେ ଆମ କଥା ଟିକିଏ ଶୁଣନ୍ତୁ । ଏଠାରୁ ଅଳ୍ପ ଦୂରରେ ଶ୍ରୀକୃଷ୍ଣ ଆସି ରହିଛନ୍ତି । ସେ ଆମକୁ ଆପଣଙ୍କ ପାଖକୁ ପଠାଇଛନ୍ତି । ବଳରାମ ଓ ଗୋପାଳବାଳକଙ୍କ ସହିତ ଗାଈ ଚରାଇ ଚରାଇ ସେ ବହୁ ଦୂରରୁ ଆସି ଯାଇଛନ୍ତି । ସେମାନେ ସମସ୍ତେ କ୍ଷୁଧିତ । ଆପଣମାନେ ସେମାନଙ୍କୁ କିଛି ଖାଇବାକୁ ଦିଅନ୍ତୁ ॥୧୬-୧୭॥

ବ୍ରାହ୍ମଣପତ୍ନୀମାନେ ପୂର୍ବରୁ ଶ୍ରୀକୃଷ୍ଣଙ୍କର କଥା ଶୁଣିଥିଲେ ଏବଂ ତାଙ୍କପ୍ରତି ସେମାନଙ୍କର ଚିତ୍ତ ଆକୃଷ୍ଟ ହୋଇଥିଲା ଏବଂ ଶ୍ରୀକୃଷ୍ଣଙ୍କୁ ଦେଖିବାପାଇଁ ସେମାନେ ସର୍ବଦା ବ୍ୟାକୁଳ ହେଉଥିଲେ । ବର୍ତ୍ତମାନ ବାଳକମାନଙ୍କଠାରୁ ଶ୍ରୀକୃଷ୍ଣ ନିଜେ ଆସି ପହଞ୍ଚିଥିବାର ଖବର ଶୁଣି ସେମାନେ ଆନନ୍ଦରେ ଆତ୍ମହରା ହୋଇଗଲେ । ନଦୀମାନେ ସେମାନଙ୍କ ପ୍ରିୟ ସମୁଦ୍ର ସହିତ ମିଳିତ ହେବା ପରି ବିପ୍ରପତ୍ନୀମାନେ ଚାରି ପ୍ରକାର ସ୍ୱାଦିଷ୍ଟ ଓ ସାରଯୁକ୍ତ ଅନ୍ନବ୍ୟଞ୍ଜନାଦି ଖାଦ୍ୟ ସାମଗ୍ରୀ ଧରି କୃଷ୍ଣଙ୍କ ପାଖକୁ ଯିବାପାଇଁ ବାହାରିପଡ଼ିଲେ ॥୧୮-୧୯॥ ପତି, ପୁତ୍ର, ଭାଇ, ବନ୍ଧୁ ସମସ୍ତେ ମନା କରିବା ସତ୍ତ୍ୱେ ସେମାନେ ମାନିଲେ ନାହିଁ । ସେମାନେ ପୂର୍ବରୁ ଉତ୍ତମଶ୍ଳୋକ ଭଗବାନଙ୍କର ନାମ, ରୂପ, ଗୁଣ ଓ ଲୀଳା ଆଦି କଥା ଶ୍ରବଣ କରି ତାଙ୍କୁ ଦେଖିବାପାଇଁ ବ୍ୟଗ୍ର ହୋଇ ରହିଥିଲେ ॥୨୦॥ ସେତେବେଳକୁ ଯମୁନା କୂଳରେ ଥିବା ଉପବନରେ ଅଶୋକବୃକ୍ଷସବୁ ନବପଲ୍ଲବରେ ମଣ୍ଡିତ ହୋଇଥିଲେ । ସେଠାରେ ବଳରାମ ଓ ଗୋପାଳ ବାଳକଙ୍କ ସହିତ କୃଷ୍ଣ ବିଚରଣ କରୁଥିବାର ସେମାନେ ଦେଖିପାରିଲେ ॥୨୧॥ ଶ୍ୟାମବର୍ଣ୍ଣ ପୀତାମ୍ବର କୃଷ୍ଣ ନବପତ୍ର, ବନମାଳା, ମୟୂରପୁଚ୍ଛ ଓ ଗୈରିକ ଆଦି ରଂଗ ଧାରଣ କରିଥିଲେ । ପାଖରେ ଥିବା ଜଣେ ଗୋପାଳବାଳକର କାନ୍ଧରେ ହାତ ରଖିଥିଲେ । ଅନ୍ୟ ହାତରେ ଲୀଳାପଦ୍ମ ଓ କାନରେ ପଦ୍ମଫୁଲ ଖୋସିଥିଲେ । ମୁଣ୍ଡର ବାଳ କପୋଳରେ ଆସି ପଡିଥିଲା ଓ ମୁଖପଦ୍ମ ହାସ୍ୟରେ ଭରା ଥିଲା ! ତାଙ୍କର ସେହି ନଟବର ବେଶ ଅତିଶୟ ସୁନ୍ଦର ଦେଖାଯାଉଥିଲା ॥୨୨॥ ପରିକ୍ଷିତ, ପୂର୍ବରୁ ଦ୍ୱିଜପତ୍ନୀମାନେ ପ୍ରିୟତମ ଶ୍ରୀକୃଷ୍ଣଙ୍କର ରୂପ, ଗୁଣ, ଲୀଳା ଓ ସୌନ୍ଦର୍ଯ୍ୟ ଆଦି କଥା ଶୁଣି ସେଥିରେ ସେମାନଙ୍କର ମନ ମାତି ଯାଇଥିଲା । ବର୍ତ୍ତମାନ କୃଷ୍ଣଙ୍କର ସାକ୍ଷାତ୍ ଦର୍ଶନ ଲାଭକରି ତାଙ୍କୁ ସେମାନେ ନିଜର ଅନ୍ତରମଧ୍ୟରେ ଗାଢ଼ ଆଲିଙ୍ଗନ କଲେ । ଶୋଇବାବେଳେ ଜୀବର ଯେପରି ଅହମିକା ଆଦି ସକଳ ଅଭିମାନ ଦୂର ହୋଇଯାଏ, ସେହିପରି ସେମାନଙ୍କର କୃଷ୍ଣବିରହଜନିତ ତାପ ଦୂର ହୋଇଗଲା ॥୨୩॥

ପରିକ୍ଷିତ, ଭଗବାନ ସମସ୍ତଙ୍କ ହୃଦୟର କଥା ଜାଣିପାରନ୍ତି । ସେ ସର୍ବଦର୍ଶୀ । ସେ ଜାଣି ପାରିଲେ ଯେ ବ୍ରାହ୍ମଣପତ୍ନୀମାନେ ସମସ୍ତ ଆଶା ଛାଡ଼ି କେବଳ ତାଙ୍କୁ ଦର୍ଶନ କରିବାକୁ ଆସିଛନ୍ତି, ତହୁଁ ସେ ହସି ହସି କହିଲେ--॥୨୪॥ ଶ୍ରୀକୃଷ୍ଣ କହିଲେ, ସୌଭାଗ୍ୟବତୀ ଦେବୀମାନେ, ଆପଣଙ୍କୁ ସ୍ୱାଗତ । ଆସନ୍ତୁ । ଉପବେଶନ କରନ୍ତୁ । ମୁଁ ଆପଣଙ୍କର କଣ ସତ୍କାର କରିପାରିବି ? ଆମକୁ ଦେଖିବାପାଇଁ ଆପଣମାନେ ଏଠାକୁ ଆସିଛନ୍ତି । ଆପଣଙ୍କ ସ୍ନେହ ଶ୍ରଦ୍ଧାର ଏହା ହିଁ ସମୁଚିତ ପ୍ରମାଣ ॥୨୫॥ ଏହା ନିଶ୍ଚିତ କଥା ଯେ ନିଜର ମଙ୍ଗଳ ଚିନ୍ତା କରୁଥିବା ଲୋକେ ମୋତେ ତାଙ୍କର ପ୍ରିୟତମ ମନେ କରି କୌଣସି ପ୍ରକାର କାମନା ବା ବ୍ୟବଧାନ ନରଖି ମୋତେ ପ୍ରେମ କରନ୍ତି ॥୨୬॥ ଆତ୍ମ-ସ୍ୱରୂପ ଯାହାଙ୍କ ସମ୍ପର୍କରେ ଆସିଲେ ପ୍ରାଣ, ବୁଦ୍ଧି, ମନ, ଶରୀର, ଜ୍ଞାତି-ସ୍ୱଜନ, ସ୍ତ୍ରୀ, ପୁତ୍ର ଓ ଧନ ଆଦି ସବୁ କିଛି ପ୍ରତ୍ୟେକ ଜୀବର ଏଡ଼େ ପ୍ରିୟ ହୋଇଥାଏ, ସେହି ପରମାତ୍ମାଙ୍କ ଠାରୁ ଆଉ ଅଧିକ ପ୍ରିୟ କିଏ ହୋଇପାରିବ ? ॥୨୭॥ ତେଣୁ ଆପଣମାନଙ୍କର ଏଠାକୁ ଆସିବା ଉଚିତ ହୋଇଛି । ବର୍ତ୍ତମାନ ଯଜ୍ଞଶାଳାକୁ ଫେରିଯା'ନ୍ତୁ । ଆପଣଙ୍କର ସ୍ୱାମୀମାନେ ବ୍ରାହ୍ମଣ ଗୃହସ୍ଥ । ଧର୍ମପତ୍ନୀ ସାଙ୍ଗରେ ରହିଲେ ଯାଇ ତାଙ୍କର ଯଜ୍ଞ ସମାପ୍ତ ହେବ ॥୨୮॥

ବ୍ରାହ୍ମଣପତ୍ନୀମାନେ କହିଲେ, ହେ ପ୍ରଭୁ, ଆମକୁ ଏପରି ନିଷ୍ଠୁର କଥା କହିବା ଠିକ୍ ହେଉ ନାହିଁ । ବେଦର ବାକ୍ୟ (ଆପଣଙ୍କ ପଦ ପ୍ରାପ୍ତ ହେଲେ ଆଉ କେହି ସଂସାରକୁ ଫେରେ ନାହିଁ) ସତ୍ୟ ବୋଲି ପ୍ରମାଣ କରନ୍ତୁ । ଆମେ ଆମର ସ୍ୱାମୀ

ପୁତ୍ର ଆଦି ସମସ୍ତ ବନ୍ଧୁ ପରିଜନଙ୍କୁ ଅବଜ୍ଞା କରି ଆପଣଙ୍କ ପାଦତଳକୁ ଆସିଚୁ, ଯେପରିକି ସେଇ ପାଦରୁ ଯେଉଁ ତୁଳସୀଦଳ ଖସି ପଡ଼ିବ, ଆମେ ତାକୁ ମସ୍ତକରେ ଧାରଣ କରିବୁ ।।୨୯।। ଅରିନ୍ଦମ, ଅନ୍ୟମାନଙ୍କ କଥା ଛାଡ଼ନ୍ତୁ, ଆମର ପୁତ୍ର, ପିତା, ମାତା, ଭାଇବନ୍ଧୁ କେହି ଆମକୁ ଆଉ ଗ୍ରହଣ କରିବେ ନାହିଁ । ଆମେ ତ ଆପଣଙ୍କ ପାଦତଳେ ପଡ଼ିରହିଚୁ । ତାକୁ ଛାଡ଼ି ଆମର ଅନ୍ୟଗତି ନାହିଁ, ତାହା ଜାଣି ଆମର ବ୍ୟବସ୍ଥା କରନ୍ତୁ ।।୩୦।। ଦ୍ୱିଜପତ୍ନୀଗଣ, ମୋର ଆଦେଶରେ ତୁମେମାନେ ଯଜ୍ଞସ୍ଥଳକୁ ଫେରିଗଲେ ପତି, ପୁତ୍ର, ପିତା, ମାତା, ଭାଇ, ବନ୍ଧୁ କେହି ତୁମଙ୍କୁ ଦୋଷଦୃଷ୍ଟିରେ ଦେଖିବେ ନାହିଁ । ଏପରିକି ଦେବତାମାନେ ମଧ୍ୟ ତୁମଙ୍କୁ ମାନ୍ୟ କରିବେ ।।୩୧।। ତୁମ ସହ ଏହି ଜନ୍ମରେ ମୋର ଅଙ୍ଗସଙ୍ଗ ଲୋକଙ୍କୁ ପ୍ରୀତିକର ହେବ ନାହିଁ । ଶ୍ରଦ୍ଧାର ସହିତ ମୋ'ଠାରେ ଚିତ୍ତ ନିବେଶ କର । ଶୀଘ୍ର (ଜନ୍ମାନ୍ତରେ) ମୋତେ ଲାଭ କରିପାରିବ ।।୩୨।।

ଶ୍ରୀ ଶୁକଦେବ କହିଲେ, ପରିକ୍ଷିତ, ଶ୍ରୀକୃଷ୍ଣଙ୍କ କଥା ମାନି ଦ୍ୱିଜପତ୍ନୀମାନେ ଯଜ୍ଞସ୍ଥଳକୁ ଫେରିଗଲେ । ବ୍ରାହ୍ମଣମାନେ ସେମାନଙ୍କୁ ପାପଦୃଷ୍ଟିରେ ନ ଦେଖି ସସ୍ତ୍ରୀକ ଯଜ୍ଞବିଧିକୁ ଶେଷ କଲେ ।।୩୩।। ଦ୍ୱିଜପତ୍ନୀମାନେ ଯଜ୍ଞଶାଳାରୁ ଶ୍ରୀକୃଷ୍ଣଙ୍କ ପାଖକୁ ଯିବାବେଳେ ସେମାନଙ୍କ ମଧ୍ୟରୁ ଜଣେ ପଛରେ ପଡ଼ି ଯାଇଥିଲା । ତାକୁ ଏକାକିନୀ ଦେଖି ତାର ସ୍ୱାମୀ ବଳପୂର୍ବକ ଅଟକାଇ ଦେଲା । କିନ୍ତୁ ସେ ମନ ଭିତରେ ଶ୍ରୀକୃଷ୍ଣଙ୍କୁ ଗ୍ରହଣ କରି ଏପରି ଧ୍ୟାନ କରୁଥିଲା ଯେ ତାର କର୍ମାଧୀନ ପାର୍ଥିବଶରୀର ତଳେ ପଡ଼ିଗଲା ।।୩୪।। ଭଗବାନ ଗୋବିନ୍ଦ ଦ୍ୱିଜପତ୍ନୀ ନେଇଥିବା ଚତୁର୍ବିଧ ଅନ୍ନ (ଚର୍ବ୍ୟ, ଚୋଷ୍ୟ, ଲେହ୍ୟ ଓ ପେୟ) କୁ ଗୋପାଳବାଳକଙ୍କୁ ଭୋଜନ କରାଇ ନିଜେ ଭୋଜନ କଲେ ।।୩୫।। ଏହିପ୍ରକାର ମନୁଷ୍ୟ ଶରୀରରେ ମନୁଷ୍ୟପରି ଲୀଳାମାନ କରି ଭଗବାନ ଶ୍ରୀକୃଷ୍ଣ ନରଲୋକକୁ ପ୍ରେମଭକ୍ତି ଶିକ୍ଷା ଦେଇଥିଲେ ଏବଂ ନିଜର ମନୋହର ରୂପ, ବାକ୍ୟ ଓ କର୍ମ ଦ୍ୱାରା ଗୋ,ଗୋପ ଓ ଗୋପୀମାନଙ୍କୁ ଆନନ୍ଦ ଦେଇ ନିଜେ ଆନନ୍ଦ ନେଉଥିଲେ ।।୩୬।।

ଏହାପରେ ସେହି ଯାଜ୍ଞିକ ବ୍ରାହ୍ମଣମାନେ ଭଗବାନ ଶ୍ରୀକୃଷ୍ଣ ଓ ବଳରାମଙ୍କୁ ସାମାନ୍ୟ ମଣି ତାହାଙ୍କ ଅନ୍ନ ଭିକ୍ଷାକୁ ପ୍ରତ୍ୟାଖ୍ୟାନ କରିଥିବାରୁ ଯେଉଁ ଅପରାଧ କରିଛନ୍ତି, ତାହା ବାରମ୍ବାର ଚିନ୍ତା କରି ଅତିଶୟ ଅନୁତପ୍ତ ହେଲେ ।।୩୭।। ଭଗବାନ କୃଷ୍ଣଙ୍କ ପ୍ରତି ନିଜ ସ୍ତ୍ରୀମାନଙ୍କର ଅଲୌକିକ ଭକ୍ତି ଦେଖି ଏବଂ ନିଜର ହୀନବୁଦ୍ଧିକୁ ଧିକ୍କାର କରି ସେମାନେ ଅନୁତାପ କରିଲାଗିଲେ ।।୩୮।। ସେମାନେ କହିଲେ, ଯେଉଁ ଦ୍ୱିଜ ଭଗବାନ କୃଷ୍ଣଙ୍କ ପ୍ରତି ବିମୁଖ, ସେ ଉଚ୍ଚ କୁଳରେ ଜନ୍ମ ହୋଇ, ଗାୟତ୍ରୀଗ୍ରହଣଦ୍ୱାରା ଦ୍ୱିଜ ବୋଲାଇ ଏବଂ ବେଦାଧ୍ୟୟନ ଓ ଯଜ୍ଞ ଆଦି କଲେ ମଧ୍ୟ କୌଣସି ଫଳ ପାଏ ନାହିଁ । ଏପରି ଲୋକର ଜନ୍ମକୁ ଧିକ୍, ବଂଶକୁ ଧିକ୍, ତାର ବିଦ୍ୟା ଓ ଯଜ୍ଞକର୍ମକୁ ଧିକ୍ ।।୩୯।। ନିଶ୍ଚୟ ଏହା ଭଗବାନଙ୍କର ମାୟା । ତାଙ୍କରି ମାୟାରେ ଯୋଗୀମାନେ ମଧ୍ୟ ମୋହ ହୋଇଯାନ୍ତି । ଆମେ ବ୍ରାହ୍ମଣ । ଲୋକମାନଙ୍କର ଗୁରୁ ହୋଇ ମଧ୍ୟ ସ୍ୱାର୍ଥବୁଦ୍ଧିରେ ମୂଢ଼ପରି କାର୍ଯ୍ୟ କଲୁ ।।୪୦।। ଦେଖ, ଜଗଦ୍‌ଗୁରୁ ଶ୍ରୀକୃଷ୍ଣଙ୍କପ୍ରତି ଆମ ସ୍ତ୍ରୀମାନଙ୍କର କିପରି ପ୍ରଗାଢ଼ ଭକ୍ତି ରହିଚି, ଯାହା ଫଳରେ ଦେହଗେହରୂପ ମୃତ୍ୟୁପାଶରୁ ସେମାନେ ମୁକ୍ତ ହୋଇଗଲେ ।।୪୧।। ସେମାନଙ୍କର ଯଜ୍ଞୋପବୀତ ଗ୍ରହଣ ଆଦି ଦ୍ୱିଜୋଚିତ ସଂସ୍କାର କିଛି ନାହିଁ, ଗୁରୁଗୃହକୁ ଯାଇ ନାହାନ୍ତି, ତପସ୍ୟା କରି ନାହାନ୍ତି, ନିଜ ଆତ୍ମାର ଅନୁସନ୍ଧାନ କରି ନାହାନ୍ତି । ସର୍ବଦା ଶୌଚରେ ରହି ଶୁଭ କର୍ମ ଆଦି କରି ନାହାନ୍ତି । ତଥାପି ଉତ୍ତମଶ୍ଳୋକ ଯୋଗେଶ୍ୱରଙ୍କ ଈଶ୍ୱର କୃଷ୍ଣଙ୍କଠାରେ ସେମାନଙ୍କର ଅଚଳା ଭକ୍ତି ରହିଚି । ଅଥଚ ସଂସ୍କାର ଆଦି ବିଭିନ୍ନ କର୍ମ ଦକ୍ଷତା ଥାଇ ମଧ୍ୟ ଆମର ସଚ୍ଚା ଭକ୍ତି ହେଲା ନାହିଁ ।।୪୨-୪୩।। ଆମେମାନେ ସ୍ୱାର୍ଥରେ ମୂଢ଼ ହୋଇଗଲୁ । ଗୃହଜଞ୍ଜାଳରେ ମତ୍ତ ରହି ଭଗବାନଙ୍କୁ ଭୁଲିଗଲୁ । ଏହା ମନେ ପକାଇ ଦେବାପାଇଁ ଭକ୍ତବତ୍ସଳ ଶ୍ରୀକୃଷ୍ଣ ଗୋପବାଳକଙ୍କୁ ପଠାଇଥିଲେ । ମାତ୍ର ଆମର ଜ୍ଞାନୋଦୟ ହେଲା ନାହିଁ ।।୪୪।। ଭଗବାନଙ୍କର କଣ ଅଭିଳାଷ ଅଛି ପୂର୍ଣ୍ଣ ହେବାପାଇଁ ? ସେ ତ ପୂର୍ଣ୍ଣକାମ । ସମସ୍ତ ପୁରୁଷାର୍ଥ, ଏପରିକି ମୋକ୍ଷପର୍ଯ୍ୟନ୍ତ ସେ ଦାନ କରିପାରନ୍ତି । ତାଙ୍କର କଣ ଦରକାର ଥିଲା ଅନ୍ନ ମାଗିବାପାଇଁ ସେହି ବାଳକମାନଙ୍କୁ ପଠାଇବା ? ।।୪୫।।

ଯାହାଙ୍କର ପାଦସ୍ପର୍ଶ ଆଶାରେ ଅନ୍ୟ ସମସ୍ତ ଦେବତାଙ୍କୁ ଛାଡ଼ି ଓ ନିଜର ଚଞ୍ଚଳତା ଆଦି ଦୋଷ ତ୍ୟାଗକରି ସ୍ୱୟଂ ଲକ୍ଷ୍ମୀ ଦେବୀ ସର୍ବଦା ଯାହାଙ୍କୁ ସେବା କରୁଥା'ନ୍ତି, ସେ ଯେ ସାମାନ୍ୟ ଭୋଜନର ଭିକ୍ଷା କରିବେ, ତାହା କେବଳ ସେହି ମାୟାଧରଙ୍କର ମାୟା ମାତ୍ର ।।୪୬।। ଦେଶ, କାଳ, ପୃଥକ୍ ପୃଥକ୍ ଦ୍ରବ୍ୟ, ମନ୍ତ୍ର, ତନ୍ତ୍ର, ଋତ୍ୱିକ, ଅଗ୍ନି, ଦେବତା, ଯଜମାନ, ଯଜ୍ଞ, ଯଜ୍ଞଫଳ ଆଦି ସବୁ ତାଙ୍କର ବିଭୂତି । ସେହି ଯଜ୍ଞେଶ୍ୱର ଭଗବାନ ଶ୍ରୀକୃଷ୍ଣ ଯଦୁକୁଳରେ ଜନ୍ମ ହୋଇଥିବା କଥା ଶୁଣି ମଧ୍ୟ ଆମେ ତାଙ୍କୁ ଚିହ୍ନି ପାରିଲୁ ନାହିଁ ।।୪୭-୪୮।। ତଥାପି ଆମେମାନେ ଧନ୍ୟ, ଏପରି ସ୍ତ୍ରୀ-ରତ୍ନମାନଙ୍କୁ ପାଇପାରିଚୁ, ଯେଉଁମାନଙ୍କ ଭକ୍ତିଯୋଗୁଁ ଭଗବାନ ଶ୍ରୀକୃଷ୍ଣଙ୍କ ପ୍ରତି ଆମର ଅତୁଟ ବିଶ୍ୱାସ ଜନ୍ମିପାରିଚି ।।୪୯।। ହେ କୃଷ୍ଣ, ହେ ପରମେଶ୍ୱର, ଆପଣ ଅମିତ ପ୍ରଜ୍ଞାର ଅଧିକାରୀ । ଆମେମାନେ ବଦ୍ଧଜୀବ । ଆପଣଙ୍କ ମାୟାରେ ମୋହିତ ହୋଇ ସଂସାରଚକ୍ରରେ ଘୂରି ବୁଲୁଚୁ । ଆପଣଙ୍କୁ ଆମର ନମସ୍କାର ।।୫୦।। ହେ ଆଦ୍ୟ ପୁରୁଷ, ଆପଣଙ୍କ ମାୟାବଶତଃ ଆମେ ମୂଢ଼ବୁଦ୍ଧିରେ ଆପଣଙ୍କର ପ୍ରଭୁତ୍ୱକୁ ଜାଣିପାରିଲୁ ନାହିଁ । ଆମର ଅପରାଧ କ୍ଷମା କରନ୍ତୁ ।।୫୧।। ଶ୍ରୀଶୁକଦେବ କହିଲେ, ପରିକ୍ଷିତ, କୃଷ୍ଣଙ୍କୁ ଅବଜ୍ଞା କରିଥିବା ଯାଜ୍ଞିକ ବ୍ରାହ୍ମଣମାନେ ଏହିପରି ଅନୁତାପ କରି କୃଷ୍ଣ ଓ ବଳରାମଙ୍କୁ ଦେଖିବାକୁ ଇଛାକରି ମଧ୍ୟ କଂସଭୟରେ ଯାଇପାରିଲେ ନାହିଁ ।।୫୨।।

## ଚତୁର୍ବିଂଶ ଅଧ୍ୟାୟ

# ଇନ୍ଦ୍ରପୂଜା ପରିବର୍ତ୍ତେ ଗୋବର୍ଦ୍ଧନପୂଜା

ଶ୍ରୀ ଶୁକଦେବ କହିଲେ, ଦିନେ ବଳଦେବଙ୍କ ସହିତ ଭଗବାନ୍ କୃଷ୍ଣ ଦୂରରେ ଥାଇ ଦେଖିଲେ ଯେ ବ୍ରଜବାସୀ ଗୋପାଳମାନେ ଏକ ଇନ୍ଦ୍ରଯଜ୍ଞର ଆୟୋଜନ କରୁଛନ୍ତି । ଭଗବାନ ଶ୍ରୀକୃଷ୍ଣ ସର୍ବାନ୍ତର୍ଯାମୀ । କୌଣସି ବିଷୟ ତାଙ୍କୁ ଅଛପା ନ ଥାଏ । ତଥାପି ବିଶଦ ଭାବରେ ନନ୍ଦପ୍ରମୁଖ ଗୋପବୃଦ୍ଧମାନଙ୍କୁ ସେ ପଚାରିଲେ-- ପିତା, କଣପାଇଁ ଏହି ଉତ୍ସବର ଆୟୋଜନ ଚାଲିଚି, ଏଥିରୁ କି ଫଳ ମିଳିବ ? କାହା ଉଦ୍ଦେଶ୍ୟରେ ଏହା କରାଯାଉଚି ଏବଂ କେଉଁ କେଉଁ ବସ୍ତୁଦ୍ୱାରା ଏହି କାର୍ଯ୍ୟ ସମ୍ପନ୍ନ ହେବାକୁ ଯାଉଚି ? ।।୧-୩।। ଆପଣ ମୋର ପିତା । ଏସବୁ କଥା ଶୁଣିବାପାଇଁ ମୋର ବଡ଼ ଆଗ୍ରହ ହେଉଚି । ଆତ୍ମପର ଭେଦ ବା ଶତ୍ରୁ-ମିତ୍ର-ଉଦାସୀନ ଏହି ଭେଦ ନ ଥିବା ସମଦର୍ଶୀ ସଜ୍ଜନମାନେ କୌଣସି କାର୍ଯ୍ୟ ଗୋପନୀୟ ରଖି କରନ୍ତି ନାହିଁ । କାରଣ ଆତ୍ମ-ପର ଭେଦଭାବ ରଖିଲେ କାର୍ଯ୍ୟସିଦ୍ଧିରେ ବହୁ ବିଘ୍ନ ଘଟେ । ଯଦି ଏପରି କିଛି ଭେଦ ଥାଏ, ତା'ହେଲେ ଶତ୍ରୁ ବା ଉଦାସୀନ (ନିରପେକ୍ଷ) ବ୍ୟକ୍ତିଠାରୁ ତାହା ଗୋପନ ରଖାଯାଇପାରେ, କିନ୍ତୁ ମିତ୍ରଠାରୁ ନୁହେଁ ।।୪--୫।। କେହି କେହି ମିତ୍ରମାନଙ୍କ ସହିତ ପରାମର୍ଶ କରି କାର୍ଯ୍ୟ କରନ୍ତି, କେହି କେହି ନ କରି କରିଥା'ନ୍ତି । ଯେଉଁମାନେ ମିତ୍ରଙ୍କ ସହ ପରାମର୍ଶ କରି କରନ୍ତି, ସେମାନଙ୍କର କାର୍ଯ୍ୟ ସିଦ୍ଧ ହୁଏ । ଯେଉଁମାନେ ପରାମର୍ଶ ନ କରି କରନ୍ତି, ସେମାନଙ୍କର ସେପରି ଫଳଲାଭ ହୁଏ ନାହିଁ ।।୬।। ତେଣୁ ଆପଣ ଯେଉଁ ଅନୁଷ୍ଠାନଟି କରିବାକୁ ଯାଉଛନ୍ତି, ତାହା ଶାସ୍ତ୍ରାନୁମୋଦିତ ନା ଏକ ଲୌକିକ ପରମ୍ପରା, ତାହା ଭଲଭାବରେ ମୋତେ ବୁଝାଇଦିଅନ୍ତୁ ।।୭।।

ନନ୍ଦ କହିଲେ, ବାବା, ଭଗବାନ ଇନ୍ଦ୍ର ବର୍ଷାର ଦେବତା । ମେଘ ହିଁ ତାଙ୍କର ସ୍ୱରୂପ । ଏହି ମେଘମାନେ ପ୍ରାଣୀମାନଙ୍କର ତୃପ୍ତିପ୍ରଦ ଓ ଜୀବନପ୍ରଦ ଜଳ ବର୍ଷା କରନ୍ତି । ଆମ ବ୍ରଜବାସୀଙ୍କ ଛଡ଼ା ଅନ୍ୟ ବ୍ୟକ୍ତିମାନେ ମଧ୍ୟ ମେଘମାନଙ୍କର ଈଶ୍ୱର ଇନ୍ଦ୍ର ଦେବତାଙ୍କୁ ତାଙ୍କରି ପ୍ରଦତ୍ତ ବିଭିନ୍ନ କୃଷିଜାତ ଦ୍ରବ୍ୟଦ୍ୱାରା ଯଜ୍ଞ କରି ଆରାଧନା କରନ୍ତି ।।୮-୯।। ତାଙ୍କୁ ଅର୍ପଣ କରିବା ପରେ ଯାହା କିଛି ରହେ, ସେହି ଅନ୍ନରେ ମନୁଷ୍ୟ ତ୍ରିବର୍ଗର ଅର୍ଥାତ୍ ଧର୍ମ-ଅର୍ଥ ଓ କାମର ସୁଫଳ ଲାଭ କରିବାପାଇଁ ଜୀବନ ନିର୍ବାହ

କରନ୍ତି ॥୧୦॥ ଏହା ହେଉଚି ଆମର ପରମ୍ପରାଗତ ଧର୍ମ । ଯେଉଁ ବ୍ୟକ୍ତି କାମ, ଲୋଭ, ଭୟ ବା ଦ୍ୱେଷଯୋଗୁଁ ପୂର୍ବରୁ ଚଳି ଆସୁଥିବା ଏହି ଧର୍ମକୁ ଛାଡିଦିଏ, ତାର କେବେହେଲେ ମଙ୍ଗଳ ହୁଏ ନାହିଁ ॥୧୧॥

ସ୍ୱୟଂ ଭଗବାନ ଶ୍ରୀକୃଷ୍ଣ ନନ୍ଦ ତଥା ଅନ୍ୟ ବ୍ରଜବାସୀଙ୍କଠାରୁ ଏହିପରି ଶୁଣି ଇନ୍ଦ୍ର ପ୍ରତି କୋପ ଜନ୍ମାଇବାପାଇଁ ପିତା ନନ୍ଦଙ୍କୁ କହିଲେ, ନିଜ କର୍ମଫଳରୁ ଜୀବର ଜନ୍ମ ହୁଏ ଓ ମୃତ୍ୟୁ ହୁଏ ଏବଂ କର୍ମବଶରୁ ହିଁ ପ୍ରାଣୀର ସୁଖ, ଦୁଃଖ, ଭୟ ଓ ମଙ୍ଗଳ ଆଦି ଘଟିଥାଏ ॥୧୨-୧୩॥ ଖାଲି କର୍ମ ଅନୁସାରେ ଫଳ ମିଳେ ନାହିଁ । ଜଣେ ଈଶ୍ୱର ଅଛନ୍ତି, ଯେକି କର୍ମର ଫଳ ଦିଅନ୍ତି ବୋଲି ଯଦି ମନେ କରାଯାଏ, ତା' ହେଲେ ଏ କଥା ମାନିବାକୁ ପଡ଼ିବ ଯେ କର୍ମ କଲେ ସେ ଫଳ ଦିଅନ୍ତି । କର୍ମ ନ କଲେ ଫଳ ଦିଅନ୍ତି ନାହିଁ ॥୧୪॥ ଯଦି ପ୍ରତ୍ୟେକ ପ୍ରାଣୀ ନିଜ ନିଜ କର୍ମ ଅନୁସାରେ ଫଳ ଭୋଗ କରନ୍ତି, ତା' ହେଲେ ଇନ୍ଦ୍ରର କଣ ଆବଶ୍ୟକତା ଅଛି ? ନିଜ ନିଜର ପୂର୍ବ ସଂସ୍କାର ଅନୁସାରେ ଲୋକମାନଙ୍କୁ ଯେଉଁ ସବୁ କର୍ମଫଳ ମିଳିବାର ଥାଏ, ଇନ୍ଦ୍ର କଣ ତାକୁ ଅନ୍ୟଥା କରିପାରିବ ? ॥୧୫॥ ମନୁଷ୍ୟର ସ୍ୱଭାବ ତା'ର ପୂର୍ବ ସଂସ୍କାରର ଅଧୀନ । ସ୍ୱଭାବର ଅନୁସରଣ କରି ସେ କାର୍ଯ୍ୟ କରିଯାଏ । ଦେବତା, ଅସୁର, ମନୁଷ୍ୟ ଆଦି ସମସ୍ତ ଜୀବଙ୍କ କର୍ମର ମୂଳରେ ସ୍ୱଭାବ ହିଁ ବିଦ୍ୟମାନ ॥୧୬॥ ପୂର୍ବକର୍ମର ଫଳ ଅନୁସାରେ ଜୀବ ଉତ୍ତମ ବା ଅଧମ ଶରୀରକୁ ଗ୍ରହଣ କରିଥାଏ । କର୍ମବଶରେ ଲୋକ ଶତ୍ରୁତା, ମିତ୍ରତା ବା ନିରପେକ୍ଷ ଭାବ ଅବଲମ୍ବନ କରେ । କର୍ମ ହେଉଚି ନିଜର ଗୁରୁ । କର୍ମହିଁ ଈଶ୍ୱର ॥୧୭॥ ତେଣୁ ସଂସ୍କାରଶୀଳ ବ୍ୟକ୍ତି ନିଜ ନିଜ ସଂସ୍କାର ଅନୁରୂପ କର୍ମ କରି ଜୀବିକାର୍ଜନ କରିବା ଉଚିତ ଓ କର୍ମକୁ ହିଁ ତା'ର ଇଷ୍ଟଦେବ ବୋଲି ମନେ କରିବା ଉଚିତ ॥୧୮॥ ଜାର ପୁରୁଷକୁ ଗ୍ରହଣ କରିଥିବା ଅସତୀ ସ୍ତ୍ରୀର ଯେପରି କୌଣସି ମଙ୍ଗଳ ହୁଏ ନାହିଁ, ସେହିପରି ଯାହାକୁ ଆଶ୍ରୟ କରି ଜୀବନଧାରଣ କରାଯାଏ, ତାକୁ ଛାଡ଼ି ଅନ୍ୟଠାରେ ମାତିଲେ କୌଣସି ସୁଖଶାନ୍ତି ମିଳେ ନାହିଁ ॥୧୯॥ ବ୍ରାହ୍ମଣ ବେଦର ଅଧ୍ୟୟନ ଓ ଅଧ୍ୟାପନାଦ୍ୱାରା, କ୍ଷତ୍ରିୟ ପୃଥିବୀକୁ ପାଳନ କରିବାଦ୍ୱାରା, ବୈଶ୍ୟ କୃଷି ଓ ବାଣିଜ୍ୟ ଆଦି ବୃତ୍ତିଦ୍ୱାରା ଏବଂ ଶୂଦ୍ର ଏହି ତିନି ବର୍ଣ୍ଣର ସେବାଦ୍ୱାରା ନିଜ ନିଜର ଜୀବିକାନିର୍ବାହ କରିବା ଉଚିତ ॥୨୦॥ ବୈଶ୍ୟମାନଙ୍କର ବୃତ୍ତି ହେଉଚି ଚାରି ପ୍ରକାର -- କୃଷି, ବାଣିଜ୍ୟ, ଗୋପାଳନ ଓ ଅର୍ଥ ଲଗାଇ ସୁଧ ଆଦାୟ କରିବା । ଏହି ଚାରି ପ୍ରକାର ବୃତ୍ତି ମଧ୍ୟରୁ ଆମେ ବ୍ରଜବାସୀ ଗୋପାଳନ କାର୍ଯ୍ୟରେ ସର୍ବଦା ଲାଗି ରହିଚୁ ॥୨୧॥

ଏହି ସଂସାରର ସ୍ଥିତି, ଉତ୍ପତ୍ତି ଓ ବିଲୟ ଯଥାକ୍ରମେ ସତ୍ତ୍ୱ ଗୁଣ, ରଜ ଗୁଣ ଓ ତମ ଗୁଣଦ୍ୱାରା ହୋଇଥାଏ । ରଜ ଗୁଣଦ୍ୱାରା ପ୍ରେରିତ ହୋଇ ସ୍ତ୍ରୀ ପୁରୁଷ ସଙ୍ଗମ କରନ୍ତି ଏବଂ ସେଥିରୁ ମନୁଷ୍ୟ ଆଦି ଜୀବଜଗତ ଉତ୍ପନ୍ନ ହୋଇଥାଏ ॥୨୨॥ ରଜ ଗୁଣ ଦ୍ୱାରା ପ୍ରେରିତ ହୋଇ ମେଘମାନେ ଚାରିଆଡ଼େ ଜଳ ବୃଷ୍ଟି କରନ୍ତି ଏବଂ ତାହା ଫଳରେ ପ୍ରାଣୀମାନଙ୍କର ଜୀବନଧାରଣ ସୁଗମ ହୋଇଥାଏ । ସେଥିରେ ଇନ୍ଦ୍ରର କଣ କରିବାର ଅଛି ? ॥୨୩॥ ବାବା, ଆମର କୌଣସି ଘରଦ୍ୱାର ନାହିଁ । ଗ୍ରାମ, ନଗର ଓ ଦେଶ ନାହିଁ । ଗାଈ ଚରାଇବା ପାଇଁ ଆମକୁ ସର୍ବଦା ବନ ପର୍ବତରେ ବାସ କରିବାକୁ ପଡ଼େ ॥୨୪॥ ସେଥିପାଇଁ ଆମେମାନେ ଗୋ, ବ୍ରାହ୍ମଣ ଓ ଗିରିରାଜ ଗୋବର୍ଦ୍ଧନର ପୂଜା କରିବା । ଇନ୍ଦ୍ରଯଜ୍ଞପାଇଁ ଯେଉଁ ସବୁ ପୂଜାସାମଗ୍ରୀ ଆସିଚି, ତାହା ଆମେ ଏଥିରେ ଲଗାଇବା ॥୨୫॥ ଖୀରି, କାକରା, ପୁରି, ଡାଲି, ଚକୁଳି, ବିଭିନ୍ନ ତରକାରି ରନ୍ଧା ଯାଉ ଏବଂ ତା' ସହିତ ସମସ୍ତ ଗାଈଙ୍କର ଦୁଧ ଏକାଠି ରଖାଯାଉ ॥୨୬॥ ବେଦଜ୍ଞ ବ୍ରାହ୍ମଣମାନଙ୍କଦ୍ୱାରା ଭଲ ରୂପେ ହବନ କରାଯାଉ ଏବଂ ସେମାନଙ୍କୁ ବହୁବିଧ ଅନ୍ନ ଓ ଧେନୁ ଆଦି ଦକ୍ଷିଣା ଦିଆଯାଉ ॥୨୭॥ ଯଜ୍ଞସ୍ଥଳକୁ ଆସିଥିବା ଅନ୍ୟ ଅତିଥିମାନଙ୍କୁ, ଚାଣ୍ଡାଳ ଓ ପତିତଗଣଙ୍କୁ,ଏପରିକି କୁକୁର ଆଦି (ଗୃହପାଳିତ) ପଶୁମାନଙ୍କୁ ଅନ୍ନ ବଣ୍ଟନ କରାଯାଉ । ଗୋରୁମାନଙ୍କ ପାଇଁ ଉତ୍କୃଷ୍ଟ ଘାସର ବ୍ୟବସ୍ଥା କରି ବିଭିନ୍ନ ପୂଜାଦ୍ରବ୍ୟଦ୍ୱାରା ଗିରି ଗୋବର୍ଦ୍ଧନର ପୂଜା କରାଯାଉ ॥୨୮॥ ଏହାପରେ ସମସ୍ତେ ପ୍ରସାଦ ସେବନ କରି ଏବଂ ସୁନ୍ଦର ବସ୍ତ୍ର, ଅଳଙ୍କାର ଓ ଗନ୍ଧ ଚନ୍ଦନଦ୍ୱାରା ଭୂଷିତ ହୋଇ ବ୍ରାହ୍ମଣ, ଅଗ୍ନି ଓ ଗିରି ଗୋବର୍ଦ୍ଧନଙ୍କୁ ପ୍ରଦକ୍ଷିଣ କରନ୍ତୁ ॥୨୯॥

ପିତା, ଏହା ହେଉଚି ମୋର ସ୍ପଷ୍ଟ ମତ । ଆପଣଙ୍କର ଯଦି ସମ୍ମତି ଥାଏ, ତା' ହେଲେ ଏହିପରି ଯଜ୍ଞ କରନ୍ତୁ, ଯଦ୍ୱାରା କି ମୋ' ସମେତ ଗୋରୁ ବ୍ରାହ୍ମଣ ଓ ଗିରିରାଜ ଗୋବର୍ଦ୍ଧନଙ୍କର ପ୍ରିୟକାର୍ଯ୍ୟ ସାଧିତ ହୋଇପାରିବ ।।୩୦।।

ଶ୍ରୀ ଶୁକଦେବ କହିଲେ, ଠିକ୍ ସମୟରେ ଠିକ୍ କାର୍ଯ୍ୟ କରିବାପାଇଁ କାଳର ନିୟନ୍ତା ଭଗବାନ ଶ୍ରୀକୃଷ୍ଣ ଇନ୍ଦ୍ରର ଦର୍ପଦଳନ ନିମନ୍ତେ ଏହିପରି କହିବାରୁ ନନ୍ଦଙ୍କ ସହ ବ୍ରଜବାସୀମାନେ ତାଙ୍କର ସାଧୁବାଦ କରି ସମ୍ମତି ଜଣାଇଲେ ।।୩୧।। କୃଷ୍ଣ ଯେପରି କହିଥିଲେ, ନନ୍ଦ ଆଦି ଗୋପାଳମାନେ ସେହିପରି ଗୋବର୍ଦ୍ଧନ ଯଜ୍ଞର ବ୍ୟବସ୍ଥା କଲେ । ବେଦଜ୍ଞ ବ୍ରାହ୍ମଣମାନଙ୍କ ଦ୍ୱାରା ସ୍ୱସ୍ତିବାଚନ ପୂର୍ବକ ଇନ୍ଦ୍ରପୂଜାପାଇଁ ସଂଗୃହୀତ ସାମଗ୍ରୀଯାକ ନେଇ ବ୍ରାହ୍ମଣମାନଙ୍କୁ ଓ ଗିରି ଗୋବର୍ଦ୍ଧନଙ୍କୁ ଉପହାର ଦେଲେ । ଗୋରୁମାନଙ୍କୁ ସ୍ନେହରେ କୋମଳ ଘାସ ଆଦି ଖୁଆଇଲେ । ତା'ପରେ ଗୋରୁମାନଙ୍କୁ ଆଗରେ ରଖି ଗୋବର୍ଦ୍ଧନ ପର୍ବତକୁ ପ୍ରଦକ୍ଷିଣ କଲେ ।।୩୨-୩୩।। ଗୋପୀ ଓ ଗୋପାଳମାନେ ବ୍ରାହ୍ମଣମାନଙ୍କର ଆଶୀର୍ବାଦ ଲାଭକରି ନାନା ଅଳଙ୍କାର ଓ ବେଶଭୂଷାରେ ସଜ୍ଜିତ ହେଲେ ଏବଂ ବଳଦଗାଡ଼ିମାନଙ୍କରେ ବସି କୃଷ୍ଣଙ୍କର ଲୀଳାଗାନପୂର୍ବକ ଗୋବର୍ଦ୍ଧନର ପରିକ୍ରମା କଲେ ।।୩୪।। ବ୍ରଜବାସୀଙ୍କର ବିଶ୍ୱାସ ଜନ୍ମାଇବା ପାଇଁ କୃଷ୍ଣ ଅନ୍ୟ ଏକ ରୂପ ଧାରଣ କଲେ । ଗୋବର୍ଦ୍ଧନ ଉପରେ ଏକ ବିଶାଳ ମୂର୍ତ୍ତିରେ ଆବିର୍ଭୂତ ହୋଇ ସେ କହିଲେ-- ମୁଁ ହେଉଚି ଗିରି ଗୋବର୍ଦ୍ଧନ । ଏହା କହି ସେଠାରେ ରଖାଯାଇଥିବା ପ୍ରଚୁର ଖାଦ୍ୟଦ୍ରବ୍ୟକୁ ଖାଇ ଶେଷ କରିଦେଲେ ।।୩୪-୩୫।। ବ୍ରଜବାସୀମାନେ ପରସ୍ପର କହିବାକୁ ଲାଗିଲେ, ଦେଖ, ଗୋବର୍ଦ୍ଧନ ପର୍ବତ ଆମ୍ଭମାନଙ୍କୁ ଅନୁଗ୍ରହ ଦେଖାଇବାପାଇଁ କିପରି ଏହି ରୂପ ଧାରଣ କରିଛନ୍ତି । ଏହି ପର୍ବତ ସମସ୍ତପ୍ରକାର ରୂପ ଧାରଣ କରିପାରନ୍ତି । ଏହାଙ୍କୁ ଅବଜ୍ଞା କଲେ, ଏହାଙ୍କ ଉପରେ ନିର୍ଭର କରୁଥିବା ବନବାସୀଙ୍କୁ ସେ ବିନାଶ କରିବେ । ତେଣୁ ନିଜର ଗାଈ ବାଛୁରୀଙ୍କର ମଙ୍ଗଳପାଇଁ ଆସ, ଆମେ ତାଙ୍କୁ ପ୍ରଣାମ କରିବା ।।୩୬-୩୭।। ଏହିପରି କୃଷ୍ଣଙ୍କ ପ୍ରେରଣାରେ ନନ୍ଦପ୍ରମୁଖ ବ୍ରଜବାସୀଗଣ ଗିରିରାଜ ଗୋବର୍ଦ୍ଧନଙ୍କ ସହିତ ଗୋବ୍ରାହ୍ମଣଙ୍କର ଯଥାବିଧି ପୂଜା କଲେ ଓ କୃଷ୍ଣଙ୍କ ସହିତ ବ୍ରଜକୁ ଫେରି ଆସିଲେ ।।୩୮।।

### ପଞ୍ଚବିଂଶ ଅଧ୍ୟାୟ

## ଗୋବର୍ଦ୍ଧନ ଧାରଣ

ଶ୍ରୀ ଶୁକଦେବ କହିଲେ, ପରିକ୍ଷିତ, ଇନ୍ଦ୍ର ଯେତେବେଳେ ଜାଣିଲେ ଯେ ଗୋପରେ ତାଙ୍କ ପୂଜା ବନ୍ଦ ହୋଇଗଲା, ସେତେବେଳେ ସେ କୃଷ୍ଣଙ୍କପାଳିତ ନନ୍ଦପ୍ରମୁଖ ବ୍ରଜବାସୀଙ୍କ ଉପରେ କ୍ରୁଦ୍ଧ ହୋଇ ଉଠିଲେ । 'ସେ ନିଜେ ହିଁ ଈଶ୍ୱର' ଏହି ଗର୍ବରେ ଅନ୍ଧ ହୋଇ ଇନ୍ଦ୍ର ସମ୍ୱର୍ତ୍ତକ ନାମକ ପ୍ରଳୟକାଳୀନ ମେଘମାନଙ୍କୁ ଡାକି କ୍ରୋଧରେ କହିଲେ, ଏହି ବନବାସୀ ଗୋପାଳମାନଙ୍କର ଆସ୍ପର୍ଦ୍ଧା ଦେଖ, ଐଶ୍ୱର୍ଯ୍ୟ ଗର୍ବରେ ସେମାନେ କୃଷ୍ଣପରି ଏକ ସାମାନ୍ୟ ପିଲାର କଥାରେ ଦେବତାଙ୍କର ଅବଜ୍ଞା କରିଛନ୍ତି ।।୧-୩।। ମନ୍ଦବୁଦ୍ଧି ଲୋକମାନେ ଯେପରି ଆତ୍ମବିଦ୍ୟାକୁ ଛାଡ଼ି କର୍ମମୟ ଯଜ୍ଞରୂପକ ଭଗ୍ନ ନୌକାକୁ ଆଶ୍ରୟ କରି ଭବସାଗର ପାରି ହେବାକୁ ବସନ୍ତି, ସେହିପରି ଏହି ବ୍ରଜବାସୀମାନେ କୃଷ୍ଣକୁ ଧରିଛନ୍ତି । କୃଷ୍ଣ ଏକ ପାଗଳ, ବାଚାଳ, ମୂର୍ଖ, ଅବିବେକୀ ବାଳକ । ସେ ନିଜକୁ ପଣ୍ଡିତ ବୋଲି ମନେ କରେ । ତା'ରି କଥାରେ ପଡ଼ି ସେମାନେ ମୋର ଅପ୍ରିୟ କାର୍ଯ୍ୟ କରିଛନ୍ତି ।।୪-୫।। ଗୋଧନ ବଳରେ ସେମାନଙ୍କର ଗର୍ବ ବଢ଼ିଯାଇଛି । କୃଷ୍ଣ ମଧ୍ୟ ତାଙ୍କରି ଆତ୍ମଗର୍ବ ଆହୁରି ବଢ଼ାଇ ଦେଇଚି । ତୁମେମାନେ ସେହି ଗୋଧନକୁ ନଷ୍ଟ କରି ସେମାନଙ୍କର ଗର୍ବ ଚୂର୍ଣ୍ଣ କର ।।୬।। ମୁଁ ନନ୍ଦର ବ୍ରଜକୁ ବିନାଶ

କରିବାପାଇଁ ଐରାବତ ହାତୀରେ ଚଢ଼ି ଅଣଚାଶ ପବନଙ୍କୁ ସାଙ୍ଗରେ ଧରି ତୁମ ପଛେ ପଛେ ଯାଉଚି ।।୭।। ଶ୍ରୀ ଶୁକଦେବ କହିଲେ, ଇନ୍ଦ୍ର ପ୍ରଳୟକାଳୀନ ମେଘମାନଙ୍କୁ ଏହିପରି ଆଜ୍ଞା ଦେବାରୁ ସେମାନେ ଆଉ କୌଣସି ବାଧା ବନ୍ଧନ ମାନିଲେ ନାହିଁ । ମୁଷଳ ଧାରାରେ ବୃଷ୍ଟି କରି ବ୍ରଜବାସୀଙ୍କୁ ନିର୍ଘାତ ପୀଡ଼ା ଦେବାକୁ ଲାଗିଲେ ।।୮।। ବିଜୁଳି ଆଲୋକରେ ଚତୁର୍ଦ୍ଦିଗ ଝଲସି ଉଠିଲା । ଘନ ଘନ ବଜ୍ରପାତ ହେଲା । ପ୍ରଚଣ୍ଡ ପବନରେ ଇତସ୍ତତଃ ମେଘମାନେ ଘୋର ଗର୍ଜନ କରି ବଡ଼ ବଡ଼ କୁଆପଥର ବୃଷ୍ଟି କରିବାକୁ ଲାଗିଲେ ।।୯।। ଏହିପରି ମେଘମାନେ ଅବିରତ ମୁଷଳ ଧାରାରେ ବର୍ଷା କରିବାରୁ ବନ୍ୟାଜଳରେ ଖାଲ ବିଲ କିଛି ଦେଖାଗଲା ନାହିଁ ।।୧୦।। ବହୁଳ ଜଳ ଓ ପ୍ରବଳ ଥଣ୍ଡା ପବନରେ ଗୋ ମହିଷାଦି ପଶୁମାନେ ଥରିବାକୁ ଲାଗିଲେ । ବ୍ରଜବାସୀ ଗୋପ ଗୋପୀମାନେ ମଧ୍ୟ ଏପରି ଥଣ୍ଡା ସହିପାରିଲେ ନାହିଁ । ସେମାନେ ଗୋବିନ୍ଦଙ୍କର ଶରଣାପନ୍ନ ହେଲେ ।।୧୧।। ପ୍ରବଳ ବର୍ଷା ଫଳରେ ସେମାନେ ନିଜେ ଥରୁଥିଲେ ମଧ୍ୟ କୌଣସିମତେ ମୁଣ୍ଡକୁ ଘୋଡ଼ାଇ ଓ ପିଲାମାନଙ୍କୁ ଦେହରେ ଢାକି ଧରି କୃଷ୍ଣଙ୍କ ପାଦମୂଳରେ ଆଶ୍ରୟ ନେବାପାଇଁ ବାହାରିଲେ ।।୧୨।। ସେମାନେ ପ୍ରାର୍ଥନା କଲେ, ହେ କୃଷ୍ଣ, ହେ ମହାଭାଗ, ହେ ଭକ୍ତବତ୍ସଳ ପ୍ରଭୁ, ତୁମେ ହିଁ ଗୋକୁଳବାସୀଙ୍କୁ ସର୍ବଦା ରକ୍ଷା କରିଆସିଚ । ବର୍ତ୍ତମାନ ଇନ୍ଦ୍ରକୋପରୁ ଆମମାନଙ୍କୁ ରକ୍ଷା କର ।।୧୩।। ପ୍ରବଳ କୁଆପଥର ମାଡ଼, ବର୍ଷା ଓ ପବନରେ ଅଚେତନପ୍ରାୟ ବ୍ରଜବାସୀଙ୍କୁ ଦେଖି ଭଗବାନ କୃଷ୍ଣ ଏହା କ୍ରୁଦ୍ଧ ଇନ୍ଦ୍ରର କାର୍ଯ୍ୟ ବୋଲି ବୁଝିପାରିଲେ ।।୧୪।। ଗୋପରେ ଇନ୍ଦ୍ରର ପ୍ରଭାବକୁ ଆମେ ଲୋପ କରିଥିବାର ଜାଣି ଇନ୍ଦ୍ର ଅକାଳରେ ପ୍ରଚଣ୍ଡ ଝଡ଼ ଓ ପ୍ରବଳ କୁଆପଥର ବୃଷ୍ଟି ଆରମ୍ଭ କରି ଦେଇଚି ।।୧୫।। ମୁଁ ଯୋଗମାୟାବଳରେ ଏହାର ପ୍ରତିକାର କରିବି ଏବଂ ନିଜକୁ ଲୋକପାଳବୋଲି ଅଭିମାନ କରିଥିବା ଇନ୍ଦ୍ରାଦି ଦେବତାଙ୍କର ଗର୍ବ ଖର୍ବ କରିବି ।।୧୬।। ସ୍ୱଭାବତଃ ଦେବତାମାନେ ସାତ୍ତ୍ୱିକ ପ୍ରକୃତିର । ନିଜକୁ ଈଶ୍ୱର ବୋଲି ଭାବି ଗର୍ବ କରିବାର କଥା ନୁହେଁ । ଆଜି କିନ୍ତୁ ସେମାନଙ୍କର ସ୍ୱଭାବ ବଦଳି ଯାଇଚି । ସେମାନଙ୍କ ଗର୍ବ ଚୂର୍ଣ୍ଣ କରି ସେମାନଙ୍କୁ ଠିକଣା ବାଟକୁ ଆଣିବାକୁ ହେବ ।।୧୭।। ସେଥିପାଇଁ ମୋର ଚରଣାଶ୍ରିତ ଏହି ଗୋକୁଳକୁ ଯୋଗଶକ୍ତିଦ୍ୱାରା ମୋତେ ରକ୍ଷା କରିବାକୁ ହେବ । ଶରଣାଗତ ସାଧୁମାନଙ୍କୁ ରକ୍ଷାକରିବା ମୋ ଜୀବନର ବ୍ରତ ।।୧୮।।

ଏହା କହି କୃଷ୍ଣ ଗୋବର୍ଦ୍ଧନ ପର୍ବତକୁ ଗୋଟିଏ ହାତରେ ଉଠାଇ ପିଲାଏ ଛତୁ ଧରିବା ପରି ସହଜରେ ଧାରଣ କଲେ ଏବଂ ବ୍ରଜବାସୀଙ୍କୁ ଡାକି କହିଲେ, ବାପା, ମାଆ ଓ ବ୍ରଜବାସୀ ସମସ୍ତେ ଏହି ପର୍ବତ ତଳକୁ ଚାଲିଆସ । ସାଙ୍ଗରେ ଘରର ଜିନିଷପତ୍ର ଓ ଗୋରୁଗାଈଙ୍କୁ ମଧ୍ୟ ନେଇ ଆସ ।।୧୯-୨୦।। ମୋ ହାତରୁ ଗୋବର୍ଦ୍ଧନ ପର୍ବତ କାଳେ ଖସି ପଡ଼ିବ ବୋଲି ଭୟଭୀତ ହୁଅ ନାହିଁ । ଝଡ଼ବର୍ଷା ପାଇଁ କୌଣସି ଭୟର କାରଣ ନାହିଁ । ମୁଁ ତୁମ ରକ୍ଷାର ଉପାୟ କରିଦେଇଚି ।।୨୧।। କୃଷ୍ଣଙ୍କଠାରୁ ଏହିପରି ଆଶ୍ୱାସନା ପାଇ ଶଗଡ, ବଳଦ, ଗାଈ ଗୋରୁ, ସ୍ତ୍ରୀ, ବାଳକ, ପୁରୋହିତ ଓ ବ୍ରଜବାସୀଙ୍କୁ ସାଙ୍ଗରେ ଧରି ଗୋପାଳମାନେ ଗୋବର୍ଦ୍ଧନପର୍ବତ ତଳେ ଆଶ୍ରୟ ନେଲେ ।।୨୨।। ବ୍ରଜବାସୀମାନେ ଦେଖୁଥା'ନ୍ତି, କୃଷ୍ଣ ଭୋକ, ଶୋଷ ଏବଂ ବିଶ୍ରାମ, ଶୟନ ଆଦି ସୁଖ ସବୁ ଭୁଲିଯାଇ ସେହିପରି ଗୋବର୍ଦ୍ଧନ ପର୍ବତକୁ ଗୋଟାଏ ହାତରେ ଧରି ଠିଆ ହୋଇଥାନ୍ତି ।।୨୩।। କୃଷ୍ଣଙ୍କ ଯୋଗମାୟାର ଏହି ପ୍ରଭାବ ଦେଖି ଇନ୍ଦ୍ର ଅତିଶୟ ଆଶ୍ଚର୍ଯ୍ୟରେ ସ୍ତମ୍ଭୀଭୂତ ହୋଇଗଲେ । ସେ ଯାହା କରିବେ ବୋଲି ଭାବିଥିଲେ, ତାହା ହୋଇପାରିଲା ନାହିଁ । ବାଧ୍ୟ ହୋଇ ସେ ମେଘମାନଙ୍କୁ ଫେରାଇ ଆଣିଲେ ।।୨୪।। ଭୟଙ୍କର ଝଡବର୍ଷା ବନ୍ଦ ହୋଇଗଲା । ଆକାଶ ମେଘମୁକ୍ତ ହୋଇ ସୂର୍ଯ୍ୟ ଦେଖାଗଲେ । ଗୋବର୍ଦ୍ଧନଧାରୀ କୃଷ୍ଣ ବ୍ରଜବାସୀଙ୍କୁ କହିଲେ, ମୋର ପ୍ରିୟ ଗୋପଗଣ, ଆଉ କୌଣସି ଭୟ ନାହିଁ, ଝଡ଼ବର୍ଷା ବନ୍ଦ ହୋଇଗଲାଣି । ନଦୀମାନଙ୍କରେ ଆଉ ବନ୍ୟା ଜଳ ନାହିଁ । ତୁମେମାନେ ସ୍ତ୍ରୀ, ପିଲା ଓ ଗୋଧନ ଆଦି ସହିତ ଗୋବର୍ଦ୍ଧନ ପର୍ବତ ତଳୁ ବାହାରିଯାଅ ।।୨୫-୨୬।। ତା'ପରେ ବ୍ରଜବାସୀମାନେ ବୃଦ୍ଧ, ବାଳକ ଓ ସ୍ତ୍ରୀ ଲୋକଙ୍କ ସହ ଗୋଧନ ଓ ଶଗଡ଼ ଆଦି ଗୃହ ଉପକରଣ ଧରି ଗୋବର୍ଦ୍ଧନ ତଳୁ ଧୀରେ ଧୀରେ ବାହାରି ଆସିଲେ ।।୨୭।। ଭଗବାନ ଶ୍ରୀକୃଷ୍ଣ ମଧ୍ୟ ସମସ୍ତେ ଚାହୁଁ ଚାହୁଁ ଗୋବର୍ଦ୍ଧନ ପର୍ବତକୁ ତାର ପୂର୍ବ ସ୍ଥାନରେ ପୁଣି ସେହିପରି ରଖିଦେଲେ ।।୨୮।।

ବ୍ରଜବାସୀଙ୍କର ହୃଦୟ କୃଷ୍ଣପ୍ରେମରେ ଭରିଗଲା । ସେମାନେ କୃଷ୍ଣଙ୍କ ପାଖକୁ ଦୌଡ଼ିଯାଇ ଆଲିଙ୍ଗନ ଓ ଚୁମ୍ବନ ଆଦି ଦେବାକୁ ଲାଗିଲେ । ଗୋପୀମାନେ ଆନନ୍ଦରେ ଓ ସ୍ନେହରେ ଦଧି ଓ ଅକ୍ଷତ ଆଦିଦ୍ୱାରା ତାଙ୍କୁ ପୂଜା କଲେ । କୁଳବୃଦ୍ଧମାନେ ଆଶୀର୍ବାଦ ଦେଲେ ॥୨୯॥ ଯଶୋଦା, ରୋହିଣୀ, ନନ୍ଦ ଓ ମହାବଳୀ ବଳରାମ ସ୍ନେହପୂର୍ଣ୍ଣ ହୃଦୟରେ କୃଷ୍ଣଙ୍କୁ ଆଲିଙ୍ଗନ କରି ଆଶୀର୍ବାଦ କରିଲାଗିଲେ ॥୩୦॥ ପରିକ୍ଷିତ, ଦେବତା, ସିଦ୍ଧ, ସାଧ୍ୟ, ଗନ୍ଧର୍ବ ଓ ଚାରଣମାନେ ତାଙ୍କୁ ସ୍ତୁତି କରି ସ୍ୱର୍ଗରୁ ପୁଷ୍ପବୃଷ୍ଟି କଲେ ॥୩୧॥ ରାଜା, ଦେବତାଙ୍କ ଦ୍ୱାରା ନିନାଦିତ ଶଙ୍ଖ ଦୁନ୍ଦୁଭି ବାଜିଉଠିଲା । ତୁମ୍ବୁରୁ ପ୍ରମୁଖ ଗନ୍ଧର୍ବପତିମାନେ କୃଷ୍ଣଙ୍କର ଜୟଗାନ କଲେ ॥୩୨॥ ଏହାପରେ, ପରିକ୍ଷିତ, ଭଗବାନ ଶ୍ରୀକୃଷ୍ଣ ବଳରାମ ଓ ଗୋପାଳ ବାଳକଙ୍କ ଗହଣରେ ବ୍ରଜକୁ ଯାତ୍ରା କଲେ । ପ୍ରେମମୟୀ ଗୋପୀମାନେ କୃଷ୍ଣଙ୍କର ହୃଦୟସ୍ପର୍ଶୀ ଲୀଳାମାନ ଗାନ କରି କରି ଚାଲିଥିଲେ ॥୩୩॥

## ଷଡ୍‌ବିଂଶ ଅଧ୍ୟାୟ

# ବ୍ରଜବାସୀଙ୍କ ପ୍ରଶଂସା

ଶ୍ରୀ ଶୁକଦେବ କହିଲେ, ପରିକ୍ଷିତ, ବ୍ରଜର ଗୋପାଳମାନେ (ବାଳକ ମନେ କରି) କୃଷ୍ଣଙ୍କର ଶକ୍ତି ବିଷୟରେ ବିଶେଷ କିଛି ଜାଣି ନ ଥିଲେ । କିନ୍ତୁ ଏହିପରି ତାଙ୍କର ଅଲୌକିକ କାର୍ଯ୍ୟମାନ ଦେଖି ଅତିଶୟ ଆଶ୍ଚର୍ଯ୍ୟ ହୋଇଗଲେ । ସେମାନେ ନନ୍ଦଙ୍କ ପାଖରେ ବସି ପରସ୍ପର କୁହାକୁହି ହେଲେ-- ॥୧॥ ଏହି ବାଳକର ଯେଉଁ ସବୁ ଅଦ୍ଭୁତ କର୍ମ ଦେଖିବାକୁ ମିଳୁଚି, ତହିଁରୁ ସେ ଏକ ଗ୍ରାମ୍ୟ ଗୋପାଳଗୃହରେ ଜନ୍ମ ହୋଇଥିବା ସମ୍ଭବ ଲାଗୁ ନାହିଁ ॥୨॥ ଗଜରାଜ ଏକ ପଦ୍ମଫୁଲକୁ ଶୁଣ୍ଢରେ ଧରିବା ପରି ସାତ ବର୍ଷର ଏକ ପିଲା ଗୋବର୍ଦ୍ଧନ ପରି ଏଡେବଡ଼ ପର୍ବତକୁ କିପରି ଖେଳିଲାପରି ହାତରେ ଧରି ରଖିଲା ! ॥୩॥ କାଳ ଯେପରି ଜୀବର ଆୟୁଷକୁ ହରଣ କରେ, ସେହିପରି ଶିଶୁ ବୟସରେ ଏହି କୃଷ୍ଣ ଆଖି ବନ୍ଦ କରି ଭୟଙ୍କରୀ ପୂତନା ରାକ୍ଷସୀର ସ୍ତନ ପିଉ ପିଉ ତା'ର ପ୍ରାଣ ହରଣ କଲା ॥୪॥ ତିନିମାସର ହୋଇଥିବାବେଳେ ଗୋଟାଏ ଶଗଡ଼ ତଳେ ତାକୁ ଶୁଆଇ ଦିଆଯାଇଥିଲା । କିଛି ସମୟ ପରେ ସ୍ତନପାନପାଇଁ କାନ୍ଦି କାନ୍ଦି ସେ ତା'ର ଗୋଡ଼ ବାଡ଼େଇଲା ଏବଂ ଶିଶୁର ସେଇ କଅଁଳ ପାଦ ବାଜି ଶଗଡ଼ଟା ଓଲଟି ପଡ଼ିଲା ॥୫॥ ବର୍ଷେ ହେଲାବେଳେ, ତାକୁ ବସିଥିବା ଅବସ୍ଥାରୁ ଉଠାଇ ନେଇ ରାକ୍ଷସ ତୃଣାବର୍ତ୍ତ ଆକାଶ ମାର୍ଗରେ ପଳାଇବାକୁ ବସିଥିଲା । କିନ୍ତୁ ବର୍ଷକର ପିଲା ରାକ୍ଷସର ଗଳାକୁ ଚାପି ଧରି ତାକୁ ହତ୍ୟା କଲା ॥୬॥ ଥରେ ଲହୁଣୀ ଚୋରାଇ ଖାଇବାଯୋଗୁଁ ମା ଯଶୋଦା ତାକୁ ଏକ ଢିଙ୍କିରେ ବାନ୍ଧି ଦେଇଥିଲେ । ସେ ଗୁରୁଣ୍ଡି ଗୁରୁଣ୍ଡି ଦୁଇଟା ଯାମଳାର୍ଜ୍ଜୁନ ବୃକ୍ଷ ମଧ୍ୟରେ ପଶି ଆରପଟକୁ ଚାଲିଗଲା । କିନ୍ତୁ ପଛରୁ ଢିଙ୍କିଟାକୁ ଭିଡ଼ିବାବେଳେ ପ୍ରକାଣ୍ଡ ଗଛ ଦୁଇଟା ଉପୁଡ଼ି ପଡ଼ିଲା । ଏହା ପୁଣି କିପରି ସମ୍ଭବ ହେଲା ? ॥୭॥ ବନରେ ବଳରାମ ଓ ଅନ୍ୟ ପିଲାଙ୍କ ସହିତ ବାଛୁରୀ ଚରାଉଥିବାବେଳେ ବକାସୁର ତାକୁ ମାରିବାକୁ ଆସିଲା । କିନ୍ତୁ ସେ ତାର ଥଣ୍ଟକୁ ଦୁଇ ହାତରେ ଧରି ମୁହଁରୁ ପଛପର୍ଯ୍ୟନ୍ତ ତାକୁ ଦୁଇ ଫାଳ କରି ଚିରିଦେଲା ॥୮॥ ବାଛୁରୀରୂପରେ ବତ୍ସାସୁର ତାକୁ ମାରିବାପାଇଁ ବାଛୁରୀଗୋଠ ମଧ୍ୟରେ ପଶିଥିଲା । କିନ୍ତୁ ବାଳକ କୃଷ୍ଣ ତାହା ଜାଣିପାରି ତାକୁ ହତ୍ୟା କଲା ଏବଂ ମୃତ ଦେହକୁ ଏତେ ଜୋରରେ ଫିଙ୍ଗି ଦେଲା ଯେ ତାହା କଇଥଗଛରେ ବାଜିବାରୁ କଇଥମାନଙ୍କୁ ପକାଇ ତଳେ ପଡ଼ିଲା ॥୯॥ ବଳରାମଙ୍କ ସହିତ ମିଶି ଧେନୁକାସୁରକୁ ସବଂଶ ନିପାତ କଲା ଏବଂ ସୁସ୍ୱାଦୁ ପାଚିଲା ଫଳରେ ଭରା ତାଳବନକୁ ନିରାପଦ କଲା ॥୧୦॥ ମହାବଳୀ ବଳରାମଙ୍କଦ୍ୱାରା ଉଦ୍ଧତ ପ୍ରଳମ୍ବାସୁରକୁ କ୍ରୀଡ଼ାଛଳରେ ନିହତ କରି ଘୋର ଦାବାନଳରୁ ଗୋରୁଗୋପାଳଙ୍କ ସହ ବ୍ରଜର ଚାରଣଭୂମିକୁ ରକ୍ଷା କଲା ॥୧୧॥ ମହାବିଷଧର କାଳିୟନାଗକୁ ମର୍ଦ୍ଦନ କରି ସେ ବଳପୂର୍ବକ ତାକୁ କାଳିନ୍ଦୀହ୍ରଦରୁ ନିର୍ବାସିତ କଲା ଏବଂ ଯମୁନାଜଳକୁ ବିଷମୁକ୍ତ କଲା ॥୧୨॥

ନନ୍ଦରାଜ, ତୁମର ପୁତ୍ର କୃଷ୍ଣପ୍ରତି ଆମ ସମସ୍ତ ବ୍ରଜବାସୀଙ୍କର କାହିଁକି ଏପରି ଅସୀମ ଅନୁରାଗ ଦେଖାଯାଉଚି ? ଏବଂ କୃଷ୍ଣର ମଧ୍ୟ ଆମ ପ୍ରତି ସ୍ୱାଭାବିକ ସ୍ନେହଶ୍ରଦ୍ଧା କାହିଁକି ପ୍ରକାଶ ପାଉଚି ।।୧୩।। କେଉଁଠି ସାତ ବର୍ଷର ଛୁଆ, କେଉଁଠି ଗୋବର୍ଦ୍ଧନ ପରି ଏତେବଡ଼ ପର୍ବତ ! ବ୍ରଜରାଜ, ତୁମର ପୁତ୍ର ବିଷୟରେ ଆମ ମନରେ ବହୁ ଶଙ୍କା ସୃଷ୍ଟି ହେଉଚି ।।୧୪।। ନନ୍ଦ କହିଲେ, ବ୍ରଜବାସୀ ଭାଇମାନେ ଶୁଣ, ମୋର ପୁତ୍ର ବିଷୟରେ ଗର୍ଗାଚାର୍ଯ୍ୟ କଣ କହିଥିଲେ, ମୁଁ ତୁମକୁ ଶୁଣାଉଚି-- ତା'ହେଲେ ଏ ବାଳକ ବିଷୟରେ ତୁମ ମନରୁ ସମସ୍ତ ସନ୍ଦେହ ଦୂର ହୋଇଯିବ ।।୧୫।। ଏହି ବାଳକ ପ୍ରତ୍ୟେକ ଯୁଗରେ ନର ଦେହରେ ଅବତୀର୍ଣ୍ଣ ହୁଏ । ପୂର୍ବ ତିନି ଯୁଗରେ ଏହାର ତିନି ବର୍ଣ୍ଣ ଥିଲା, ଯଥାକ୍ରମେ ଧଳା, ନାଲି ଓ ହଳଦିଆ । ଏ ଯୁଗରେ ତାର ରଙ୍ଗ ହେଉଚି କଳା(କୃଷ୍ଣ) ।।୧୬।। ପୂର୍ବେ ତୁମର ଏହି ପୁତ୍ର ବସୁଦେବଙ୍କର ପୁତ୍ର ରୂପେ ଜନ୍ମ ହୋଇଥିବାରୁ ବିଜ୍ଞ ବ୍ୟକ୍ତିମାନେ ତାକୁ ବାସୁଦେବ ବୋଲି ଅଭିହିତ କରନ୍ତି ।।୧୭।। ଗୁଣ ଓ କର୍ମ ଅନୁସାରେ ଏହି ପୁତ୍ରର ବହୁ ନାମ ଓ ବହୁ ରୂପ ଅଛି । ତାହା ମୁଁ ଜାଣେ । ଅନ୍ୟମାନେ ଜାଣନ୍ତି ନାହିଁ ।।୧୮।। ଏହି ପୁତ୍ର ଗୋପବାସୀଙ୍କର ଓ ଗୋସମ୍ପଦର ଅଶେଷ କଲ୍ୟାଣ କରିବ । ତୁମେ ତାହାର ସହାୟତାରେ ବହୁ ବଡ଼ ବଡ଼ ବିପଦରୁ ରକ୍ଷା ପାଇପାରିବ ।।୧୯।। ଗର୍ଗ ମୋତେ କହିଥିଲେ, ନନ୍ଦରାଜ, ପୂର୍ବକାଳରେ ଏକ ସମୟରେ ପୃଥିବୀ ଅରାଜକ ଥିଲା । ସାଧୁ ମହାତ୍ମାମାନେ ଦସ୍ୟୁମାନଙ୍କ ପୀଡ଼ାରେ ବହୁ କଷ୍ଟ ଭୋଗୁଥିଲେ । ତୁମର ଏହି ପୁତ୍ର ସେତେବେଳେ ଦସ୍ୟୁମାନଙ୍କୁ ଦମନ କରି ସାଧୁମାନଙ୍କୁ ରକ୍ଷା କରିଥିଲା ।।୨୦।। ଯେଉଁ ମହାଭାଗ୍ୟବାନ୍ ବ୍ୟକ୍ତିମାନେ ତୁମର ଏହି ପୁତ୍ରକୁ ଶ୍ରଦ୍ଧା କରିବେ, ସେମାନଙ୍କୁ ଶତ୍ରୁମାନେ କୌଣସି ପୀଡ଼ା ଦେବେ ନାହିଁ ଯେପରି ବିଷ୍ଣୁଙ୍କ ପକ୍ଷରେ ଥିବା ଲୋକଙ୍କୁ ଅସୁରମାନେ ପୀଡ଼ା ଦେଇପାରନ୍ତି ନାହିଁ ।।୨୧।। ତେଣୁ ହେ ନନ୍ଦ ! ଏହି କୁମାର ନିଜର ଗୁଣରେ ଏବଂ କୀର୍ତ୍ତି, ସମ୍ପଦ ଓ ପ୍ରଭାବରେ ନାରାୟଣଙ୍କ ସହିତ ସମାନ । ତେଣୁ ତାହାର କାର୍ଯ୍ୟରେ କିଛି ଆଶ୍ଚର୍ଯ୍ୟ ହେବାର ନାହିଁ ।।୨୨।। ଗର୍ଗାଚାର୍ଯ୍ୟ ପୁତ୍ର ସମ୍ବନ୍ଧରେ ଏହିପରି ମୋତେ ଅବହିତ କରାଇ ନିଜ ଗୃହକୁ ଫେରିଯାଇଥିଲେ । ସେହିଦିନଠାରୁ ମୁଁ କୃଷ୍ଣଙ୍କୁ ନାରାୟଣଙ୍କର ଅଂଶ ବୋଲି ଭାବିନେଇଚି । ସହଜରେ ସେ ଯେକୌଣସି ଅସାଧ୍ୟ କାର୍ଯ୍ୟକୁ ସାଧନ କରିପାରେ ।।୨୩।। ଗର୍ଗାଚାର୍ଯ୍ୟ ନନ୍ଦଙ୍କୁ ଯାହା କହିଥିଲେ, ତାହା ଶୁଣି ବ୍ରଜବାସୀମାନେ ଆନନ୍ଦିତ ହେଲେ । ସେମାନଙ୍କ ମନର ଶଙ୍କା ଦୂର ହେଲା ଏବଂ କୃଷ୍ଣ ଓ ନନ୍ଦ ଉଭୟଙ୍କୁ ସେମାନେ ଅଭିନନ୍ଦନ ଜଣାଇଲେ ।।୨୪।। ଇନ୍ଦ୍ରପୂଜା ବନ୍ଦ ହୋଇଯିବାରୁ କ୍ରୁଦ୍ଧ ଇନ୍ଦ୍ର ମୁଷଳଧାରାରେ ବର୍ଷା କରାଇ ଏବଂ ଭୟଙ୍କର କୁଆପଥର ବୃଷ୍ଟି, ପ୍ରବଳ ପବନ ଓ ଝଡ଼ ସୃଷ୍ଟି କରି ବାରମ୍ବାର ବଜ୍ରପାତ ଦ୍ୱାରା ବ୍ରଜବାସୀଙ୍କୁ ଘୋର କଷ୍ଟ ଦେବାକୁ ଲାଗିଲା । ନିଜର ଶରଣାଗତ ବ୍ରଜବାସୀଙ୍କ ଦଶା ଦେଖି କୃଷ୍ଣଙ୍କର ହୃଦୟ କରୁଣାରେ ଭରିଗଲା । ସେ ବାଳକର ବାଲ୍ୟକ୍ରୀଡ଼ାତୁଲ୍ୟ ଗୋବର୍ଦ୍ଧନ ପର୍ବତକୁ ଏକ ହସ୍ତରେ ଛତ୍ରପରି ଧାରଣ କଲେ ଏବଂ ଗୋପବାସୀଙ୍କୁ ରକ୍ଷା କରି ଇନ୍ଦ୍ରର ଦର୍ପ ଚୂର୍ଣ୍ଣ କଲେ । କୃତକର୍ମା ସେହି ଗୋବିନ୍ଦ ଆମ ପ୍ରତି ପ୍ରସନ୍ନ ହୁଅନ୍ତୁ ।।୨୫।।

## ସପ୍ତବିଂଶ ଅଧ୍ୟାୟ

# ଇନ୍ଦ୍ରପଦରେ କୃଷ୍ଣଙ୍କର ଅଭିଷେକ

ଶ୍ରୀ ଶୁକଦେବ କହିଲେ, ପରିକ୍ଷିତ, ଗିରିଗୋବର୍ଦ୍ଧନ ଧାରଣ ଓ ପ୍ରବଳ ବର୍ଷାରୁ ବ୍ରଜବାସୀଙ୍କୁ ରକ୍ଷଣ-- ଏହି ଅଲୌକିକ କାର୍ଯ୍ୟ କରିସାରିବାପରେ ଗୋଲୋକରୁ କାମଧେନୁ ସୁରଭି ଓ ସ୍ୱର୍ଗରୁ ଇନ୍ଦ୍ର ଆସି କୃଷ୍ଣଙ୍କର ଶରଣାପନ୍ନ ହେଲେ ।।୧।। ଭଗବାନ କୃଷ୍ଣଙ୍କୁ ସାମାନ୍ୟ ବାଳକ ଭାବି ଇନ୍ଦ୍ର ଯେପରି ଅବଜ୍ଞା କରିଥିଲେ, ସେଥିପାଇଁ ସେ ଲଜ୍ଜିତ ହୋଇ ଏକାନ୍ତରେ ତାଙ୍କୁ ଦଣ୍ଡପ୍ରଣାମ

କଲେ ଏବଂ ସୂର୍ଯ୍ୟପରି ଉଜ୍ଜ୍ୱଳ ତାଙ୍କର ମଣିମୟ ମୁକୁଟ କୃଷ୍ଣଙ୍କର ପାଦସ୍ପର୍ଶ କଲା ।।୨।। ଅମିତତେଜା କୃଷ୍ଣଙ୍କର ଅଦ୍ଭୁତ ଲୀଳା ସମ୍ପର୍କରେ ଇନ୍ଦ୍ର ପୂର୍ବରୁ ଶୁଣିଥିଲେ । ଏବେ ତାଙ୍କ କର୍ତ୍ତୃକ ଗୋବର୍ଦ୍ଧନ ଗିରି ଧାରଣ ସ୍ୱଚକ୍ଷୁରେ ଦେଖିଲେ । ତ୍ରିଲୋକର ଅଧୀଶ୍ୱର ବୋଲି ତାଙ୍କର ଯେଉଁ ଗର୍ବ ଥିଲା, ତାହା ଚୂର୍ଣ୍ଣ ହୋଇଗଲା ଏବଂ ସେ କୃତାଞ୍ଜଳି ହୋଇ କହିଲେ-- ।।୩।। ଇନ୍ଦ୍ର କହିଲେ, ଭଗବାନ୍, ଆପଣଙ୍କ ସ୍ୱରୁପ ହେଉଚି ଶାନ୍ତ ଓ ଶୁଦ୍ଧସତ୍ତ୍ୱମୟ । ସେଥିରେ ରଜ ଓ ତମ ଗୁଣର ସତ୍ତା ନାହିଁ । ସେହି ଜ୍ଞାନମୟ ସ୍ୱରୂପରେ ଅଜ୍ଞାନମୂଳକ ମାୟାମୟ ସଂସାରବନ୍ଧନ ଦେଖିବାକୁ ମିଳେ ନାହିଁ ।।୪।। ହେ ଈଶ୍ୱର, କାମ ଓ ଲୋଭ ଆଦି ଗୁଣଯୋଗୁଁ ସଂସାରବନ୍ଧନ ଲାଗି ରହିଥାଏ । ଦେହର ସହିତ ଏମାନଙ୍କର ସମ୍ବନ୍ଧ ଏବଂ ଏମାନଙ୍କଯୋଗୁଁ ଜୀବକୁ ଦେହ ଧାରଣ କରି ବାରମ୍ବାର ସଂସାରରେ ଜନ୍ମ ହେବାକୁ ପଡ଼େ । କିନ୍ତୁ ଆପଣଙ୍କ କ୍ଷେତ୍ରରେ ତାହା ପ୍ରଯୁଜ୍ୟ ନୁହେଁ । କାରଣ ଏହି ଅଜ୍ଞାନଜନିତ ଗୁଣମାନ ଆପଣଙ୍କୁ ସ୍ପର୍ଶ କରିପାରେ ନାହିଁ । ତଥାପି ଧର୍ମକୁ ରକ୍ଷା କରିବାପାଇଁ ଆପଣ ଦେହଧାରଣ କରି ଦୁଷ୍ଟଙ୍କୁ ଦମନ କରନ୍ତି ।।୫।। ଆପଣ ଜଗତ୍‌ର ପିତା, ଗୁରୁ ଓ ଅଧୀଶ୍ୱର । ଆପଣ ଜଗତର ମଙ୍ଗଳପାଇଁ ସ୍ୱେଚ୍ଛାରେ ଅବତୀର୍ଣ୍ଣ ହୁଅନ୍ତି ଓ ଆମମାନଙ୍କ ପରି ଯେଉଁମାନେ ନିଜକୁ ଈଶ୍ୱର ଭାବି ଗର୍ବ କରନ୍ତି, ସେମାନଙ୍କର ଗର୍ବ ଖଣ୍ଡନ କରନ୍ତି । ଯେତେବେଳେ ଯାହାକୁ ଯେପରି ଦଣ୍ଡ ଦେବାର କଥା, ତାହାକୁ ଆପଣ ସେପରି ଦିଅନ୍ତି । ଆପଣଙ୍କୁ ଲଙ୍ଘନ କରିବାର ଶକ୍ତି କାହାରି ନାହିଁ ।।୬।। ମୋ ପରି ଅଜ୍ଞ ବ୍ୟକ୍ତିମାନେ ନିଜକୁ ଜଗଦୀଶ୍ୱର ମନେ କରି ଅଭିମାନ କରିଥା'ନ୍ତି । ଯେତେବେଳେ ସେମାନେ ଦେଖନ୍ତି, ମହା ମହା ସଙ୍କଟ ସମୟରେ ଆପଣ ନିର୍ଭୟ ହୋଇ ରହନ୍ତି, ସେତେବେଳେ ସେମାନଙ୍କର ଗର୍ବ ଆପେ ଆପେ ଭାଙ୍ଗିଯାଏ । ସେମାନେ ଗର୍ବଶୂନ୍ୟ ହୋଇ ସଜ୍ଜନସେବିତ ଭକ୍ତିମାର୍ଗରେ ଯାଇ ଆପଣଙ୍କୁ ଭଜନ କରନ୍ତି । ପ୍ରଭୁ, ଆପଣଙ୍କର ପ୍ରତ୍ୟେକଟି ଲୀଳା ଦୁଷ୍ଟଙ୍କୁ ଦଣ୍ଡ ଦେବାପାଇଁ ଉଦ୍ଦିଷ୍ଟ ।।୭।। ପ୍ରଭୁ, ଐଶ୍ୱର୍ଯ୍ୟମଦରେ ମତ୍ତ ହୋଇ ମୁଁ ଆପଣଙ୍କ ନିକଟରେ ଅପରାଧ କରିଚି । ମୁଁ ଆପଣଙ୍କ ପ୍ରଭାବ ବିଷୟରେ କିଛି ଜାଣି ନ ଥିଲି । ମୋ'ପରି ଅଜ୍ଞ ମୂଢ଼ବୁଦ୍ଧି ବ୍ୟକ୍ତିକୁ ଆପଣ କ୍ଷମା କରିବା ଉଚିତ । ଆପଣଙ୍କ କୃପାରୁ ଏପରି କୁବୁଦ୍ଧି ପୁଣି ମୋର ନ ହେଉ ।।୮।।

ବିଷ୍ଣୁ ଭଗବାନ୍, ଆପଣ ନିଜକୁ ନିଜେ ପ୍ରକଟ କରନ୍ତି । ଯେଉଁ ଅସୁରରାଜାମାନେ ପୃଥିବୀର ଭାରସ୍ୱରୂପ ହୋଇଛନ୍ତି, ସେମାନଙ୍କର ବିନାଶପାଇଁ ଏବଂ ନିଜର ପାଦତଳେ ଆଶ୍ରୟ ନେଇଥିବା ସାଧୁମାନଙ୍କର ରକ୍ଷାପାଇଁ ଆପଣ ସଂସାରରେ ଅବତୀର୍ଣ୍ଣ ହୋଇଛନ୍ତି ।।୯।। ଆପଣ ସ୍ୱୟଂ ଭଗବାନ୍, ସର୍ବାନ୍ତର୍ଯାମୀ । ଆପଣ ମହାତ୍ମା, କୃଷ୍ଣ ବାସୁଦେବ ଓ ଯାଦବମାନଙ୍କର ସ୍ୱାମୀ । ଆପଣଙ୍କୁ ମୁଁ ବାରମ୍ବାର ନମସ୍କାର କରୁଚି ।।୧୦।। ଆପଣ ଭକ୍ତମାନଙ୍କ ଇଚ୍ଛାଧୀନ । ସେମାନେ ଇଚ୍ଛା କଲେ ଆପଣ ଦେହଧାରଣ କରନ୍ତି । ଆପଣଙ୍କର ମୂର୍ତ୍ତି ବିଶୁଦ୍ଧ ଜ୍ଞାନସ୍ୱରୂପ । ଆପଣ ମାୟାରେ ସମସ୍ତ ରୂପ ଧାରଣ କରନ୍ତି । ଆପଣ ସମସ୍ତ ବିଶ୍ୱର କାରଣସ୍ୱରୂପ ଓ ସକଳ ଜୀବଙ୍କର ଆତ୍ମାରୂପେ ବିଦ୍ୟମାନ । ମୁଁ ଆପଣଙ୍କୁ ନମସ୍କାର କରୁଚି ।।୧୧।। ଗୋପରେ ମୋର ଯଜ୍ଞ ନଷ୍ଟ ହେବାର ଦେଖି ଆହତ ଅଭିମାନରେ ମୋର କ୍ରୋଧ ତୀବ୍ରତର ହେଲା । ପ୍ରଚଣ୍ଡ ଝଡ଼ ବର୍ଷାଦ୍ୱାରା ଗୋକୁଳକୁ ମୁଁ ନଷ୍ଟ କରିବାକୁ ବସିଥିଲି ।।୧୨।। ମୋର ଉଦ୍ୟମକୁ ବ୍ୟର୍ଥ କରି ଓ ଗର୍ବକୁ ଚୂର୍ଣ୍ଣ କରି ଆପଣ ମୋତେ ଅନୁଗୃହୀତ କରିଛନ୍ତି । ଆପଣଙ୍କୁ ନିଜର ଆତ୍ମା, ଗୁରୁ ଓ ଈଶ୍ୱର ରୂପେ ଗ୍ରହଣ କରି ଶରଣାପନ୍ନ ହେଉଚି ।।୧୩।।

ଇନ୍ଦ୍ର ଭଗବାନ କୃଷ୍ଣଙ୍କୁ ଏହିପରି ସ୍ତୁତି କରିବାରୁ ମେଘଗମ୍ଭୀର ସ୍ୱରରେ ଉତ୍ତର ଦେଇ କୃଷ୍ଣ ହସି ହସି କହିଲେ-- ।।୧୪।। ଶ୍ରୀ ଭଗବାନ୍ କହିଲେ, ଇନ୍ଦ୍ର, ତୁମେ ତୁମ ଐଶ୍ୱର୍ଯ୍ୟ ଗର୍ବରେ ଅତିଶୟ ମତ୍ତ ହୋଇ ମୋତେ ଭୁଲି ଯାଇଥିଲ । ତୁମେ ଯେପରି ମୋତେ ସର୍ବଦା ସ୍ମରଣ କରିବ, ସେଥିପାଇଁ ତୁମ ଯଜ୍ଞ ଭଙ୍ଗକରି ମୁଁ ତୁମକୁ ଅନୁଗ୍ରହ ଦେଖାଇଚି ।।୧୫।। ଐଶ୍ୱର୍ଯ୍ୟ ଓ ଧନସମ୍ପତ୍ତିର ଗର୍ବରେ ଯେଉଁମାନେ ଅନ୍ଧ ହୋଇଯାନ୍ତି, ମୁଁ ଯେ ସେମାନଙ୍କୁ ଦଣ୍ଡ ଦେବାପାଇଁ ରହିଚି, ତାହା ସେମାନେ ଭୁଲିଯା'ନ୍ତି । ତେଣୁ ଯାହାକୁ ମୁଁ ଅନୁଗ୍ରହ କରିବାକୁ ଇଚ୍ଛା କରେ, ତାକୁ ତାର ସମ୍ପଦରୁ ଭ୍ରଷ୍ଟ କରେ ।।୧୬।। ଇନ୍ଦ୍ର, ତୁମର

ମଙ୍ଗଳ ହେଉ । ସ୍ୱର୍ଗକୁ ଫେରିଯାଅ । ଅହଙ୍କାର ତ୍ୟାଗ କର । ଗର୍ବଶୂନ୍ୟ ହୋଇ ପୂର୍ବେ ଯେପରି ମୋର ଅନୁଶାସନ ମାନି ଚାଲୁଥିଲ, ସେହିପରି କରି ନିଜର ଅଧିକାରକୁ ଭୋଗକର ।।୧୭।।

ଏହାପରେ ମନସ୍ୱିନୀ ସୁରଭି ଅନ୍ୟ ଗାଭୀମାନଙ୍କ ସହିତ ଗୋପାଳରୂପୀ କୃଷ୍ଣଙ୍କୁ ବନ୍ଦନା କରି କହିଲେ-- ।।୧୮।। ସୁରଭି କହିଲେ, ହେ ମହାଯୋଗେଶ୍ୱର କୃଷ୍ଣ, ଆପଣ ସଚରାଚର ବିଶ୍ୱର ଆତ୍ମା ଏବଂ ତାର କାରଣ । ହେ ଅଚ୍ୟୁତ, ସମସ୍ତ ଲୋକଙ୍କୁ ରକ୍ଷା କରି ଆପଣ ଆମ୍ଭଙ୍କୁ ରକ୍ଷା କରିଛନ୍ତି ।।୧୯।। ଆପଣ ହିଁ ଆମର ଶ୍ରେଷ୍ଠ ଦେବତା । ଜଗତ୍‌ର ସ୍ୱାମୀ । ଗୋ, ବ୍ରାହ୍ମଣ, ଦେବତା ଓ ସାଧୁମାନଙ୍କ ମଙ୍ଗଳବିଧାନ ପାଇଁ ଆପଣ ଆମର ଇନ୍ଦ୍ର(ପାଳକ) ହୁଅନ୍ତୁ ।।୨୦।। ହେ ବିଶ୍ୱାତ୍ମା, ଆପଣ ପୃଥିବୀର ଭାରହରଣପାଇଁ ଅବତୀର୍ଣ୍ଣ ହୋଇଛନ୍ତି । ବ୍ରହ୍ମାଙ୍କର ଆଦେଶରେ ଆମେ ଆପଣଙ୍କୁ ଇନ୍ଦ୍ର ପଦରେ ଅଭିଷିକ୍ତ କରିବୁ ।।୨୧।। ସୁରଭି ଏହିପରି କୃଷ୍ଣଙ୍କୁ ପ୍ରାର୍ଥନା କରି ନିଜର ଦୁଗ୍ଧଧାରାଦ୍ୱାରା ତାଙ୍କୁ ଅଭିଷେକ କଲେ । ଦେବରାଜ ଇନ୍ଦ୍ର ଦେବର୍ଷିମାନଙ୍କ ସହ ଦେବମାତାଙ୍କ ପ୍ରେରଣାରେ ଐରାବତର ଶୁଣ୍ଢରେ ଆକାଶଗଙ୍ଗାର ଜଳ ଆଣି ଯଦୁତିଳକ କୃଷ୍ଣଙ୍କୁ ଅଭିଷେକ କଲେ ଏବଂ ତାଙ୍କୁ ଗୋବିନ୍ଦ ଆଖ୍ୟା ଦେଲେ ।।୨୨-୨୩।। ତୁମ୍ବୁରୁ, ନାରଦ ଆଦି ଋଷି, ଗନ୍ଧର୍ବ, ବିଦ୍ୟାଧର, ସିଦ୍ଧ ଓ ଚାରଣମାନେ ମିଶି କୃଷ୍ଣଙ୍କର ନିର୍ମଳ ଯଶ ଗାଇବାକୁ ଲାଗିଲେ । ଆନନ୍ଦରେ ଅପ୍ସରାମାନେ ମିଶି ନୃତ୍ୟ କରିଲାଗିଲେ ।।୨୪।। ଏହି ସମୟରେ ପ୍ରଧାନ ପ୍ରଧାନ ଦେବତାମାନେ କୃଷ୍ଣଙ୍କୁ ସ୍ତୁତି କରି ଅଦ୍ଭୁତଭାବରେ ପୁଷ୍ପବୃଷ୍ଟି କଲେ । ତ୍ରିଲୋକ ପରମ ଆନନ୍ଦରେ ପୂରିଉଠିଲା । ଗାଇମାନଙ୍କର ଦୁଧ ଧାର ଧାର ହୋଇ ବହି ଭୂମିକୁ କର୍ଦ୍ଦମାକ୍ତ କଲା ।।୨୫।। କୃଷ୍ଣଙ୍କ ଅଭିଷେକ ସମୟରେ ଦୁଧ ଆଦି ନାନା ରସରେ ନଦୀମାନେ ଭରିଉଠିଲେ । ବୃକ୍ଷମାନଙ୍କରୁ ମହୁ ଝରିବାକୁ ଲାଗିଲା । ଚାଷକୁ ଅପେକ୍ଷା ନ କରି ଧାନ, ମୁଗ, ବିରି ଆଦି ପାଚି ଉଠିଲେ । ଖଣି ଖୋଳିବା ଦରକାର ପଡ଼ିଲା ନାହିଁ । ପାହାଡ଼ ସବୁ ସେମାନଙ୍କ ଗର୍ଭରେ ଥିବା ମଣିମାନଙ୍କୁ ବାହାରକୁ ଆଣି ଦେଖାଇଲେ ।।୨୬।। କୁରୁନନ୍ଦନ, କୃଷ୍ଣଙ୍କର ଅଭିଷେକ ସମୟରେ ସ୍ୱଭାବତଃ ନିଷ୍ଠୁର ଓ ପରସ୍ପର ବିରୋଧୀ ଜୀବମାନେ ନିଜର ବୈରଭାବ ତ୍ୟାଗକଲେ । ଏହିପରି ଧେନୁମାନଙ୍କର ସ୍ୱାମୀ ଓ ଗୋପର ଅଧିପତି ଗୋବିନ୍ଦଙ୍କୁ ଅଭିଷେକ କରି ଇନ୍ଦ୍ର ତାଙ୍କ ଅନୁମତି ନେଇ ଦେବତାମାନଙ୍କ ସହ ସ୍ୱର୍ଗକୁ ପ୍ରସ୍ଥାନ କଲେ ।।୨୭।।

### ଅଷ୍ଟାବିଂଶ ଅଧ୍ୟାୟ

## ବରୁଣ ଲୋକରୁ ନନ୍ଦଙ୍କର ମୁକ୍ତି

ଶ୍ରୀ ଶୁକଦେବ କହିଲେ, ପରିକ୍ଷିତ, ନନ୍ଦ କାର୍ତ୍ତିକ ଶୁକ୍ଳ ଏକାଦଶୀ ଦିନ ଉପବାସ କରିଥିଲେ ଏବଂ ଭଗବାନଙ୍କୁ ପୂଜା କରି ରାତିରେ ଦ୍ୱାଦଶୀ ଲଗ୍ନରେ ସ୍ନାନ କରିବାପାଇଁ ଯମୁନାଜଳରେ ପ୍ରବେଶ କଲେ ।।୧।। ରାତ୍ରିର ସେହି ସମୟ ଅସୁରମାନଙ୍କର ବେଳା ବୋଲି ଜାଣି ନ ପାରି ସେ ଜଳରେ ପ୍ରବେଶ କରିଥିଲେ । ବରୁଣଙ୍କର ଭୃତ୍ୟ ଜଣେ ଅସୁର ତାଙ୍କୁ ଧରି ବରୁଣଙ୍କ ପାଖକୁ ନେଇଗଲା ।।୨।। ବ୍ରଜବାସୀଗଣ ନନ୍ଦଙ୍କୁ ନ ଦେଖି 'ହେ କୃଷ୍ଣ, ହେ ରାମ' ବୋଲି ଡାକ ଛାଡ଼ିବାକୁ ଲାଗିଲେ । ତାହା ଶୁଣି ଭଗବାନ ଶ୍ରୀକୃଷ୍ଣ ଜାଣି ପାରିଲେ ଯେ ତାଙ୍କର ପିତାଙ୍କୁ ବରୁଣ ଅପହରଣ କରି ନେଇଛନ୍ତି । ଭକ୍ତମାନଙ୍କର ଅଭୟଦାତା ସର୍ବଶକ୍ତିମାନ୍ ଭଗବାନ ବରୁଣଙ୍କ ପାଖରେ ପହଞ୍ଚିଲେ ।।୩।। ଲୋକପାଳ ବରୁଣ ଦେଖିଲେ ଯେ, ସମସ୍ତ ଇନ୍ଦ୍ରିୟଙ୍କର ଈଶ୍ୱର ଭଗବାନ୍ ସ୍ୱୟଂ ତାଙ୍କ ନିକଟକୁ ଆସିଛନ୍ତି । ଭଗବାନଙ୍କ ଦର୍ଶନ ହିଁ ତାଙ୍କପାଇଁ ଏକ ମହୋତ୍ସବ ଥିଲା । ସେ ବହୁ ସମ୍ମାନର ସହ କୃଷ୍ଣଙ୍କୁ ପୂଜା କରି କହିଲେ-- ।।୪।। ପ୍ରଭୁ, ଆଜି ମୋର ଦେହଧାରଣ ସଫଳ ହେଲା । ଆପଣଙ୍କ ପାଦସେବାର ସୁଯୋଗ

ପାଇ ମୁଁ ପରମ ପୁରୁଷାର୍ଥ ଲାଭ କଲି ॥୫॥ ଆପଣ ଭକ୍ତମାନଙ୍କର ଭଗବାନ୍ । ବେଦାନ୍ତୀମାନଙ୍କର ବ୍ରହ୍ମ ଓ ଯୋଗୀମାନଙ୍କର ପରମାତ୍ମା । ଏହି ସଂସାରକୁ ସୃଷ୍ଟି କରୁଥିବା ମାୟା ଆପଣଙ୍କଠାରେ ଥିବା କଥା ଶୁଣାଯାଏ ନାହିଁ । ମୁଁ ଆପଣଙ୍କୁ ନମସ୍କାର କରୁଛି ॥୬॥ ଅଜାଣତରେ ନିଜର କର୍ତ୍ତବ୍ୟ କର୍ମ ଜାଣି ନ ପାରି ମୋର ଏକ ମୂର୍ଖ ସେବକ ଆପଣଙ୍କର ପିତାଙ୍କୁ ଏଠାକୁ ନେଇଆସିଛି । ଆପଣ ତାକୁ କ୍ଷମା ଦିଅନ୍ତୁ ॥୭॥ ହେ ଗୋବିନ୍ଦ, ଆପଣ ପିତୃବତ୍ସଳ, ସର୍ବାନ୍ତର୍ଯାମୀ । ଆପଣଙ୍କର ପିତାଙ୍କୁ ଗ୍ରହଣ କରି ମୋତେ ଅନୁଗୃହୀତ କରନ୍ତୁ ॥୮॥ ଶ୍ରୀ ଶୁକଦେବ କହିଲେ, ଭଗବାନ ଶ୍ରୀକୃଷ୍ଣ ଈଶ୍ୱରମାନଙ୍କର ଈଶ୍ୱର-- ସର୍ବେଶ୍ୱର । ସେ ବରୁଣଙ୍କର ସ୍ତୁତିରେ ପ୍ରସନ୍ନ ହେଲେ । ସେ ନିଜର ପିତାଙ୍କୁ ଫେରାଇଆଣି ବ୍ରଜବାସୀ ବନ୍ଧୁ ଓ ସଜ୍ଜନମାନଙ୍କୁ ଆହ୍ଲାଦିତ କଲେ ॥୯॥

ଲୋକପାଳ ବରୁଣଙ୍କର ପରମ ଐଶ୍ୱର୍ଯ୍ୟ ଦେଖି ନନ୍ଦ ଅଭିଭୂତ ହୋଇଥିଲେ । ତାହା ତାଙ୍କର କଳ୍ପନାତୀତ ଥିଲା । କିନ୍ତୁ ବରୁଣ ଏବଂ ତାଙ୍କ ପରିଚାରକମାନେ ଅତି ନମ୍ର ହୋଇ କୃଷ୍ଣଙ୍କୁ ପ୍ରଣାମ କରିବାରେ ସେ ଆହୁରି ଆଶ୍ଚର୍ଯ୍ୟ ହୋଇଗଲେ ଓ ଫେରି ଆସି ନିଜର ଭାଇବନ୍ଧୁମାନଙ୍କୁ ସେହି କଥା କହିଲେ ॥୧୦॥ ପରିକ୍ଷିତ, ଅତି ଆଗ୍ରହରେ ଗୋପାଳମାନେ ସେ ସବୁ କଥା ଶୁଣି କୃଷ୍ଣଙ୍କୁ ସ୍ୱୟଂ ଈଶ୍ୱର ବୋଲି ମନେ କଲେ ଏବଂ ଭଗବାନ୍ କେବେ ତାଙ୍କର ସେହି ସୂକ୍ଷ୍ମ ପରମଧାମ ସେମାନଙ୍କୁ ଦେଖାଇବେ, ସେଥିପାଇଁ ବ୍ୟଗ୍ର ହୋଇରହିଲେ ॥୧୧॥ ଭଗବାନ ସର୍ବଦର୍ଶୀ, ଅନ୍ତର୍ଯାମୀ । ସେ ନିଜ ଭକ୍ତ ଗୋପାଳମାନଙ୍କ ଅଭିପ୍ରାୟ ଜାଣିପାରିଲେ ଏବଂ ସେମାନଙ୍କ ସଙ୍କଳ୍ପକୁ ସଫଳ କରିବାପାଇଁ ଏହିପରି ଚିନ୍ତା କଲେ-- ॥୧୨॥ ଏହି ସଂସାରରେ ଲୋକମାନେ ଅଜ୍ଞତାଯୋଗୁଁ କାମନାଯୁକ୍ତ ବିଭିନ୍ନ କର୍ମ କରି ଉଚ୍ଚ, ନୀଚ ବିଭିନ୍ନ ଯୋନିରେ ବାରମ୍ବାର ଭ୍ରମଣ କରୁଛନ୍ତି ଏବଂ ନିଜ ଗତିମୁକ୍ତିର ଉପାୟ ଜାଣିପାରୁନାହାନ୍ତି ॥୧୩॥ ପରମକରୁଣାମୟ ଭଗବାନ୍ ଶ୍ରୀହରି ଏହିପରି ଚିନ୍ତାକରି ଅଜ୍ଞତାରୂପ ଅନ୍ଧକାରର ପରପାରରେ ଥିବା ନିଜର ପରମଧାମକୁ ସେମାନଙ୍କୁ ଦେଖାଇଦେଲେ ॥୧୪॥ ସମାଧିସ୍ଥ ମୁନିମାନେ ସମସ୍ତ ଗୁଣର ବିନାଶ ହେଲେ ଯେଉଁ ବ୍ରହ୍ମ ଦର୍ଶନ କରନ୍ତି, ସେହି ସତ୍ୟ ଓ ଜ୍ଞାନମୟ, ସନାତନ, ବ୍ରହ୍ମଙ୍କୁ ସେମାନେ ଜ୍ୟୋତିରୂପରେ ଦେଖିପାରିଲେ ॥୧୫॥ ପୂର୍ବେ ଯେଉଁ ଯମୁନାହ୍ରଦରେ ଭଗବାନ ଅକ୍ରୂରଙ୍କୁ ନିଜର ସ୍ୱରୂପ ଦର୍ଶନ କରାଇଥିଲେ, ସେଠାକୁ ସେ ଗୋପାଳମାନଙ୍କୁ ନେଇଗଲେ । କୃଷ୍ଣଙ୍କ ପରାମର୍ଶରେ ସେଥିରେ ସେମାନେ ବୁଡ଼ ପକାଇ ଉଠି ବ୍ରହ୍ମଲୋକ ଦର୍ଶନ କଲେ । ତାହା ଦେଖି ନନ୍ଦ ଆଦି ଗୋପାଳମାନେ ପରମାନନ୍ଦରେ ନିମଗ୍ନ ହେଲେ । ବେଦମାନେ ମୂର୍ତ୍ତିମନ୍ତ ହୋଇ କୃଷ୍ଣଙ୍କୁ ସ୍ତୁତି କରୁଥିବାର ଦେଖି ସେମାନେ ଅତିଶୟ ବିସ୍ମିତ ହେଲେ ॥୧୬-୧୭॥

## ଊନତ୍ରିଂଶ ଅଧ୍ୟାୟ

# ରାସଲୀଳା ଆରମ୍ଭ

ଶାରଦୀୟ ରାତିମାନ ମଲ୍ଲୀଫୁଲରେ ହସିଉଠୁଚି । ସେହି ରାତିମାନଙ୍କୁ ଦେଖି ଭଗବାନ ହେଲେ ମଧ୍ୟ କୃଷ୍ଣ ବିଚାରକଲେ, ରମଣପାଇଁ ଏ ରାତିଗୁଡ଼ିକ ହେଉଚି ଉତ୍କୃଷ୍ଟ ସମୟ । ସେଥିପାଇଁ ସେ ଯୋଗମାୟାଙ୍କୁ ଆଶ୍ରୟକଲେ ॥୧॥ ଶରତ୍ ପୂର୍ଣ୍ଣିମାର ଚନ୍ଦ୍ର ପୂର୍ବ ଦିଗରେ ଉଦିତ ହେଲେ । ଦୀର୍ଘକାଳ ପରେ ପ୍ରିୟତମଙ୍କ ସହିତ ମିଳନ ହେଲେ ପ୍ରାଣପ୍ରିୟାର ମୁଖମଣ୍ଡଳରେ ଯେପରି ଏକ ଅରୁଣିମା ଭାସି ଉଠେ, ସେହିପରି ପୂର୍ବ ଦିଗ୍‌ବଧୂର ମୁଖମଣ୍ଡଳ ଚନ୍ଦ୍ରମାର ଉଦୟରାଗରେ ଉଦ୍‌ଭାସିତ ହୋଇଉଠିଲା । ଏଥି ସହିତ ଜଗତ୍‌ବାସୀଙ୍କର ସୂର୍ଯ୍ୟତାପଜନିତ ଦିବସର କ୍ଲାନ୍ତି ଦୂରହେଲା ॥୨॥ ଏକ ମଣ୍ଡଳାକାରରେ ପୂର୍ଣ୍ଣଚନ୍ଦ୍ର ଉଦିତ

ହୋଇଥିଲେ । ନବ କୁଙ୍କୁମର ରଙ୍ଗ ପରି ସେ ଅରୁଣବର୍ଣ୍ଣ ଓ ଲକ୍ଷ୍ମୀଙ୍କ ମୁଖର ଶୋଭାପରି ଶୋଭମାନ ହୋଇ ସେ କଇଁ ଫୁଲମାନଙ୍କୁ ଫୁଟାଇଦେଲେ ଏବଂ ତାଙ୍କ ମଧୁର ଜ୍ୟୋତ୍ସ୍ନାରେ ସମଗ୍ର ବନଭୂମି ହସିଉଠିଲା । ଶ୍ରୀକୃଷ୍ଣ ବ୍ରଜରମଣୀଙ୍କ ଚିତ୍ତହରଣ କରିବାପାଇଁ ମଧୁର ସ୍ୱରରେ ବଂଶୀ ବଜାଇବାକୁ ଲାଗିଲେ ।।୩।। ସେହି କାମୋଦ୍ଦୀପକ ବଂଶୀଧ୍ୱନି ଶୁଣି ବ୍ରଜସ୍ତ୍ରୀମାନେ କୃଷ୍ଣପ୍ରେମରେ ତନ୍ମୟ ହୋଇଗଲେ ଏବଂ କେହି ଯେପରି ଦେଖି ନ ପାରିବେ, ସେହିପରି ଭାବରେ ଘରୁ ବାହାରିଆସି, ଯେଉଁଆଡ଼େ କୃଷ୍ଣ ଅଛନ୍ତି, ସେଆଡ଼କୁ ଶୀଘ୍ର ଯିବାକୁ ଲାଗିଲେ । ଦ୍ରୁତ ବେଗରେ ଯାଉଥିବାଯୋଗୁଁ ସେମାନଙ୍କ କାନର କୁଣ୍ଡଳମାନ ଜୋର୍‌ରେ ହଲୁଥିଲା ।।୪।। ବଂଶୀଧ୍ୱନି କାନରେ ପଡ଼ିବାମାତ୍ରେ ସେମାନେ ସମସ୍ତ କାମ ଛାଡ଼ି କୃଷ୍ଣଙ୍କ ମିଳନପାଇଁ ଦଉଡ଼ିଲେ । କିଏ ଗାଈ ଦୁହୁଁଥିଲା, ଦୁହିଁବା ବନ୍ଦ କରିଦେଲା, କିଏ ଚୁଲିରେ ଦୁଧ ବସାଇଥିବା ଭୁଲିଗଲା ତ କିଏ ଭାତ ବସାଇଥିବା ହାଣ୍ଡିକୁ ଚୁଲିରୁ ଓହ୍ଲାଇବାପାଇଁ ଭୁଲିଗଲା ।।୫।। କେହି କେହି ଗୋପୀ ନିଜ ଲୋକମାନଙ୍କୁ ଖାଇବାକୁ ଦେଉଥିଲେ, କିଏ ବା ପିଲାକୁ କ୍ଷୀର ପିଆଉଥିଲା, କିଏ ବାସନକୁସନ ମାଜୁଥିଲା, କିଏ ଆଖିରେ କଜଳ ଲଗାଉଥିଲା, କିଏ ଲୁଗା ପିନ୍ଧୁଥିଲା, କିଏ ଅଳଙ୍କାର ଲଗାଉଥିଲା-- ସବୁ ଛାଡି ଅସ୍ତବ୍ୟସ୍ତ ହୋଇ ଗୋପୀମାନେ କୃଷ୍ଣଙ୍କ ପାଖକୁ ଦଉଡ଼ିଗଲେ ।।୬-୭।। କୃଷ୍ଣପ୍ରେମରେ ଆତ୍ମହରା ମୁଗ୍ଧା ଗୋପୀମାନେ ସ୍ୱାମୀ, ବାପା, ଭାଇ ବନ୍ଧୁ ଯେତେ ମନା କଲେ ମଧ୍ୟ କାହାରି କଥା ଶୁଣିଲେ ନାହିଁ । ବାକୀ ଯେଉଁମାନେ ସ୍ୱାମୀସେବାରେ ରତ ହୋଇ କୌଣସିମତେ ଘରୁ ବାହାରିପାରିଲେ ନାହିଁ, ସେମାନେ ଆଖି ବୁଜି କେବଳ କୃଷ୍ଣଙ୍କୁ ହିଁ ଧ୍ୟାନ କରୁଥିଲେ ।।୮-୯।। ସେମାନଙ୍କ ପାଇଁ କୃଷ୍ଣଙ୍କର ବିରହ ଏପରି ଦୁଃସହ ହେଲା ଯେ, ତା'ର ତୀବ୍ରତାରେ ସେମାନଙ୍କର ସମସ୍ତ ଅମଙ୍ଗଳ ଦୂର ହୋଇଗଲା । ସେମାନେ ମନେ ମନେ କୃଷ୍ଣଙ୍କୁ ପାଇ ତାଙ୍କରି ଆଲିଙ୍ଗନ ସୁଖ ଅନୁଭବ କଲେ । ସେଥିରେ ତାଙ୍କର ପୁଣ୍ୟର ସଂସ୍କାର ସବୁ କ୍ଷୟ ହେଲା । ଜାରପୁରୁଷ ବୁଦ୍ଧିରେ ମଧ୍ୟ ପରମାତ୍ମାଙ୍କ ସହିତ ମିଳିତ ହେବା ଫଳରେ ସେମାନଙ୍କର ସମସ୍ତ ବନ୍ଧନ ତୁଟିଗଲା ଏବଂ ପାପ-ପୁଣ୍ୟର ସେହି ଗୁଣମୟ ଦେହକୁ ସେମାନେ ତୁରନ୍ତ ପରିତ୍ୟାଗ କଲେ ।।୧୦-୧୧।।

ରାଜା ପରିକ୍ଷିତ ଶ୍ରୀ ଶୁକଦେବଙ୍କୁ ପଚାରିଲେ, ମୁନି, ବ୍ରଜରମଣୀମାନେ କୃଷ୍ଣଙ୍କୁ ନିଜର ପ୍ରିୟତମ କାନ୍ତ ରୂପେ ଜାଣିଥିଲେ । ତାଙ୍କୁ ସେମାନେ ପରଂବ୍ରହ୍ମ ରୂପରେ ଦେଖୁ ନ ଥିଲେ । ତେଣୁ ଗୁଣାସକ୍ତ ସେହି ରମଣୀମାନଙ୍କ ଗୁଣମୟ ସଂସାର ପ୍ରବାହର କିପରି ଅବସାନ ଘଟିଲା ? ।।୧୨।। ଶ୍ରୀ ଶୁକଦେବ କହିଲେ, ଏ କଥା ମୁଁ ତୁମକୁ ପୂର୍ବରୁ (ସପ୍ତମ ସ୍କନ୍ଧରେ) କହିଚି । ଶିଶୁପାଳ ଶ୍ରୀକୃଷ୍ଣଙ୍କୁ ଦ୍ୱେଷ କରି ମଧ୍ୟ ଭବବନ୍ଧନରୁ ମୁକ୍ତ ହୋଇଥିଲେ । ଶ୍ରୀକୃଷ୍ଣଙ୍କୁ ପ୍ରେମ କରୁଥିବା ବ୍ରଜରମଣୀମାନେ ଯେ ଗୁଣମୟ ସଂସାର ବନ୍ଧନରୁ ମୁକ୍ତ ହେଲେ, ସେଥିରେ ଆଶ୍ଚର୍ଯ୍ୟ ହେବାର କଣ ଅଛି ? ।।୧୩।। ରାଜା, ମନୁଷ୍ୟମାନଙ୍କୁ ସେମାନଙ୍କ ସାଧନାର ଫଳ ଦେବାପାଇଁ ନିଜେ ଅବ୍ୟୟ, ଅପ୍ରମେୟ, ନିର୍ଗୁଣ ଓ ଗୁଣମାନଙ୍କର ନିୟନ୍ତା ଭଗବାନ୍ ଏହି ଜଗତ୍‌ରେ ଅବତୀର୍ଣ୍ଣ ହୁଅନ୍ତି ।।୧୪।। ଯେଉଁମାନେ କାମ, କ୍ରୋଧ, ଭୟ, ସ୍ନେହ, ଐକ୍ୟ ଓ ସୌହାର୍ଦ୍ଦ୍ୟ ଆଦି ଭାବରେ ଭଗବାନଙ୍କୁ ଭାବନା କରନ୍ତି, ସେହିଭାବରେ ସେମାନେ ତନ୍ମୟ ହୋଇପଡ଼ନ୍ତି ।।୧୫।। ପରିକ୍ଷିତ, ତୁମେ ଭଗବାନ କୃଷ୍ଣଙ୍କର ପରମଭକ୍ତ । ମାତୃଗର୍ଭରେ ଥାଇ ତୁମେ ତାଙ୍କରି ମହିମାର ପରିଚୟ ପାଇଚ । ତେଣୁ ଯୋଗେଶ୍ୱରମାନଙ୍କ ଈଶ୍ୱର ଭଗବାନ୍ କୃଷ୍ଣଙ୍କ ପ୍ରତି ତୁମର ବିସ୍ମୟଭାବ ଉଚିତ ନୁହେଁ, ଯେ କି ସ୍ଥାବର ଆଦି ଏ ଜଗତ୍‌କୁ ମଧ୍ୟ ମୁକ୍ତ କରନ୍ତି ।।୧୬।। ଶ୍ରୀକୃଷ୍ଣ ଦେଖିଲେ ଯେ ବଂଶୀଧ୍ୱନି ଶୁଣି ବ୍ରଜରମଣୀମାନେ ତାଙ୍କ ନିକଟକୁ ଆସିଗଲେଣି । ବାଗ୍ମୀମାନଙ୍କମଧ୍ୟରେ ସେ ଶ୍ରେଷ୍ଠ ଥିଲେ । ତେଣୁ ନିଜର ବାକ୍‌ଚାତୁରୀ ଦ୍ୱାରା ସେମାନଙ୍କୁ ମୋହିତକରି ଏହିପରି କହିଲେ-- ।।୧୭।। ଶ୍ରୀକୃଷ୍ଣ କହିଲେ, ଭାଗ୍ୟବତୀ ଗୋପାଙ୍ଗନାଏ, ତୁମକୁ ସ୍ୱାଗତ କରୁଚି । ତୁମର କି ପ୍ରିୟ କାମ ମୁଁ କରିପାରିବି, କହ । ବ୍ରଜର ସବୁ କୁଶଳ ତ? ତୁମର ଏଠାକୁ ଆସିବାର କାରଣ କ'ଣ? ।।୧୮।। ସୁନ୍ଦରୀମାନେ, ଏହା ହେଉଚି ଘୋର ନିଶାକାଳ । ଭୟଙ୍କର ହିଂସ୍ରଜନ୍ତୁମାନେ ଏହି ବନମଧ୍ୟରେ ରହିଛନ୍ତି ।

ଏତେବେଳେ ଏଠାରେ ତୁମପରି ସ୍ତ୍ରୀମାନଙ୍କର ରହିବା ଠିକ୍ ହେଉ ନାହିଁ । ତୁମେମାନେ ଶୀଘ୍ର ବ୍ରଜକୁ ଫେରିଯାଅ ॥୧୯॥ ତୁମର ମାତା, ପିତା, ସ୍ୱାମୀ, ପୁଅ ଓ ଭାଇମାନେ ତୁମକୁ ଘରେ ନ ଦେଖି ଚାରିଆଡ଼େ ଖୋଜୁଛନ୍ତି । ସେମାନଙ୍କ ମନରେ ତୁମର ଅନିଷ୍ଟ ଆଶଙ୍କା ସୃଷ୍ଟି କର ନାହିଁ ॥୨୦॥ ଫୁଲର ମହକରେ ସୁବାସିତ ଓ ଚନ୍ଦ୍ରର ଜ୍ୟୋତ୍ସ୍ନାରେ ଧୌତ ବୃକ୍ଷମାନ କେଡ଼େ ସୁନ୍ଦର ଦେଖାଯାଉଚି । ଯମୁନାର ଶୀତଳ ଜଳକୁ ସ୍ପର୍ଶ କରି ପବନ କିପରି ଧୀରେ ଧୀରେ ପ୍ରବାହିତ ହେଉଚି ଓ ବୃକ୍ଷର ପତ୍ର ସବୁ ହଲିବାରେ ଲାଗିଚି । ବୃନ୍ଦାବନର ଶୋଭା ତ ତୁମେ ଦେଖିସାରିଲଣି ॥୨୧॥ ଏବେ ଆଉ ଡେରି ନ କରି ବ୍ରଜକୁ ଫେରିଯାଅ । ତୁମେମାନେ ସତୀ ସ୍ତ୍ରୀ । ଶୀଘ୍ର ଯାଇ ନିଜ ପତିଙ୍କର ସେବା କର । ତୁମର ପିଲାମାନେ କାନ୍ଦୁଥିବେ । ବାଛୁରୀମାନେ ହମ୍ବାରଡ଼ି କରି ମା'ମାନଙ୍କୁ ଡାକୁଥିବେ । ପିଲାମାନଙ୍କୁ କ୍ଷୀର ପିଆଇ ଗାଈ ଦୁହିଁବାରେ ହେଳା କର ନାହିଁ ॥୨୨॥ ଯଦି ମୋ ପ୍ରତି ସ୍ନେହବଶରୁ ତୁମେମାନେ ଏଠାକୁ ଆସିଥାଅ, ତା ହେଲେ ଭଲ କଥା । କାରଣ ସମସ୍ତେ ମୋତେ ସ୍ନେହ କରନ୍ତି ॥୨୩॥ ମଙ୍ଗଳମୟୀ ବ୍ରଜବଧୂଗଣ ! ସ୍ୱାମୀର ସେବା, ଜ୍ଞାତିମାନଙ୍କର ପରିଚର୍ଯ୍ୟା ଓ ସନ୍ତାନମାନଙ୍କର ପାଳନପୋଷଣ ହେଉଚି, ସ୍ତ୍ରୀମାନଙ୍କର ଶ୍ରେଷ୍ଠ ଧର୍ମ ॥୨୪॥ ଯେଉଁ ସ୍ତ୍ରୀମାନେ ଇହଲୋକ ଓ ପରଲୋକରେ ନିଜର ମଙ୍ଗଳ କାମନା କରନ୍ତି, ସେମାନେ ସ୍ୱାମୀ ଦୁଷ୍ଟ ସ୍ୱଭାବର ହେଉ, ଭାଗ୍ୟହୀନ ହେଉ ଅଥବା ବୃଦ୍ଧ, ଜଡ, ରୋଗୀ ବା ନିର୍ଦ୍ଧନ ହେଉ, ତାକୁ ଛାଡ଼ିବା ଉଚିତ ନୁହେଁ । ଅବଶ୍ୟ ସ୍ୱାମୀ ପାତକ ଦୋଷରେ ଜଡ଼ିତ ଥିଲେ ଭିନ୍ନ କଥା ॥୨୫॥ କୁଳସ୍ତ୍ରୀ ପକ୍ଷରେ ଜାରପୁରୁଷ ଗ୍ରହଣ କରିବା ସର୍ବଥା ନିନ୍ଦନୀୟ । ଏହାଦ୍ୱାରା ପରଲୋକ ନଷ୍ଟ ହୋଇ ଇହଲୋକରେ ଅପଯଶ ମିଳେ । ତୁଚ୍ଛ ସୁଖପାଇଁ ଏହା ଅତ୍ୟନ୍ତ କଷ୍ଟଦାୟକ, ଭୟାବହ ଓ ସ୍ୱର୍ଗପ୍ରାପ୍ତିର ବାଧକ ହୁଏ ॥୨୬॥ ଗୋପୀଗଣ, ମୋ' ଲୀଳାର ଶ୍ରବଣ, ଦର୍ଶନ, ଧ୍ୟାନ ଓ କୀର୍ତ୍ତନ ଦ୍ୱାରା ମୋ' ଠାରେ ଯେପରି ପ୍ରୀତି ହୁଏ, ମୋର ଅଙ୍ଗସଙ୍ଗଦ୍ୱାରା ସେପରି ସମ୍ଭବ ନୁହେଁ । ତେଣୁ ତୁମେମାନେ ଶୀଘ୍ର ସ୍ୱଗୃହକୁ ଫେରିଯାଅ ॥୨୭॥

ଶ୍ରୀ ଶୁକଦେବ କହିଲେ, ଭଗବାନ୍ ଶ୍ରୀକୃଷ୍ଣଙ୍କଠାରୁ ଏହିପରି ଅପ୍ରିୟ କଥା ଶୁଣି ଗୋପୀମାନେ ବିଷଣ୍ଣ ହେଲେ । ସେମାନଙ୍କର ମନ ଭାଙ୍ଗିଗଲା ଏବଂ ସେମାନେ ଘୋର ଚିନ୍ତାରେ ପଡ଼ିଗଲେ ॥୨୮॥ ଗୁରୁ ଦୁଃଖଭାରରେ ପୀଡ଼ିତ ହୋଇ ଶୋକାର୍ତ୍ତ ଗୋପୀମାନେ ଦୀର୍ଘଶ୍ୱାସ ଛାଡ଼ିବାକୁ ଲାଗିଲେ । ସେମାନଙ୍କର ସୁନ୍ଦର ବିମ୍ବାଧର ସବୁ ଶୁଖିଗଲା । ଆଖିରୁ କଜ୍ଜଳମିଶା ଲୁହ ଝରି କୁଚର କୁଙ୍କୁମକୁ ଧୋଇଦେଲା । ସେମାନେ ଗୋଡ଼ ଆଙ୍ଗୁଠିରେ ଭୂଇଁରେ ଗାର ପକାଇ ଲାଗିଲେ ଏବଂ ତୁନି ହୋଇ ଠିଆହୋଇ ରହିଲେ ॥୨୯॥ ସବୁ କିଛି ଛାଡ଼ି ଦେଇ ଯାହାଙ୍କ ପ୍ରେମରେ ସେମାନେ ଏତେ ଭାସି ଯାଇଥିଲେ, ସେହି ପ୍ରିୟତମ କୃଷ୍ଣ ଇତର ବ୍ୟକ୍ତିପରି ଅପ୍ରିୟ ବାକ୍ୟ କହିବାର ଶୁଣି ଗୋପୀମାନେ କୌଣସିମତେ ନିଜର କୋହକୁ ଚାପି ଧରି ଲୁହ ପୋଛି ପୋଛି ଉତ୍ତର ଦେବା ଆରମ୍ଭ କଲେ । ପ୍ରେମଜନିତ କ୍ରୋଧରେ ସେମାନଙ୍କର କଣ୍ଠସ୍ୱର ଭରିଯାଇଥିଲା ॥୩୦॥ ଗୋପୀମାନେ କହିଲେ, ହେ ବିଭୁ, ହେ ଲୀଳାମୟ, ଏପରି ନିଷ୍ଠୁର କଥା କହିବା ତୁମ ପକ୍ଷରେ ଆଦୌ ଶୋଭା ପାଉ ନାହିଁ । ସମସ୍ତ ବିଷୟ ତ୍ୟାଗ କରି ତୁମରି ସେବା କରିବାପାଇଁ ତୁମରି ପାଦମୂଳକୁ ଆମେ ଦଉଡ଼ି ଆସିଚୁ । ତୁମେ ଆମକୁ ପରିତ୍ୟାଗ କର ନାହିଁ । ଆଦିପୁରୁଷ ନାରାୟଣ ମୁକ୍ତିକାମୀ ଭକ୍ତମାନଙ୍କର କାମନା ପୂର୍ଣ୍ଣ କରନ୍ତି, ତୁମେ ସେହିପରି ଆମର ମନୋରଥ ପୂରଣ କରି ଆମକୁ କୃତାର୍ଥ କର ॥୩୧॥ ପ୍ରିୟ କୃଷ୍ଣ, ତୁମେ ଧର୍ମର ତତ୍ତ୍ୱ ସବୁ କିଛି ଜାଣ । ସେଥିପାଇଁ ନିଜର ପତି, ପୁତ୍ର, ଭାଇବନ୍ଧୁଙ୍କର ସେବା କରିବା ସ୍ତ୍ରୀର ପରମ ଧର୍ମ ବୋଲି ତୁମେ ଯାହା ଉପଦେଶ ଦେଲ, ତାହା ଯଥାର୍ଥ । କିନ୍ତୁ ତୁମ ପ୍ରତି ଏହା ସବୁଠାରୁ ଅଧିକ ପ୍ରଯୁଜ୍ୟ । କାରଣ ତୁମେ ସମସ୍ତ ଉପଦେଶର ଚରମ ଲକ୍ଷ୍ୟ ସାକ୍ଷାତ୍ ଈଶ୍ୱର । ସମସ୍ତ ଜୀବଙ୍କର ପ୍ରିୟତମ ଆତ୍ମା ଓ ବନ୍ଧୁ ॥୩୨॥ ବିବେକୀ ପୁରୁଷମାନେ ତୁମକୁ ପ୍ରେମ କରନ୍ତି, କାରଣ ତୁମେ ସ୍ୱୟଂ ଆତ୍ମା ଏବଂ ନିତ୍ୟପ୍ରିୟ । ପତି ପୁତ୍ରଙ୍କର ପ୍ରେମ ଅନିତ୍ୟ ଓ ଦୁଃଖପ୍ରଦ । ତାର କଣ ଆବଶ୍ୟକତା ଅଛି ? ସେଥିପାଇଁ ଶ୍ରେଷ୍ଠ ବରଦାତା ରୂପେ ତୁମକୁ ଆମେ ପ୍ରାର୍ଥନା

କରୁଛୁ, ଆମ ପ୍ରତି ପ୍ରସନ୍ନ ହୁଅ । କମଳନୟନ, ତୁମର ସେବାପାଇଁ ଆମର ଚିରପୋଷିତ ଆଶାକୁ ଭାଙ୍ଗିଦିଅ ନାହିଁ ।।୩୩।। ଗୃହକର୍ମରେ ଆମର ଯେଉଁ ଚିତ୍ତ ସଂଲଗ୍ନ ଥିଲା, ହାତ ଦୁଇଟି ଲାଗିଥିଲା, ତାହା ତ ତୁମେ ଅପହରଣ କରି ନେଇଚ । ତୁମର ଚରଣ ଛାଡ଼ି ଆମ୍ଭେମାନେ ଗୋଟିଏ ପାଦ ମଧ୍ୟ ଆଗକୁ ଯାଇପାରୁ ନାହୁଁ । ଆମେ ଏଠାରୁ କିପରି ବ୍ରଜକୁ ଯିବୁ, ଯାଇ ଅବା ସେଠାରେ କଣ କରିବୁ ? ।।୩୪।। ପ୍ରିୟ, ତୁମର ମଧୁର ହାସ୍ୟ, ମନୋହର କଟାକ୍ଷ ଓ ସୁନ୍ଦର ବଂଶୀଧ୍ୱନି ଆମର ହୃଦୟରେ ଯେଉଁ କାମାଗ୍ନି ଜାଳି ଦେଇଚି, ତୁମର ଅଧରାମୃତ ଢାଳି ଦେଇ ତାକୁ ଶୀଘ୍ର ଲିଭାଇଦିଅ । ନଚେତ୍ ହେ ସଖା, ତୁମର ବିରହାଗ୍ନିରେ ଦଗ୍ଧ ହୋଇ ଆମେ ଶରୀରତ୍ୟାଗପୂର୍ବକ ଧ୍ୟାନରେ ତୁମ ପାଦତଳେ ମିଳିତ ହେବୁ ।।୩୫।।

କମଳନୟନ, ତୁମେ ଅରଣ୍ୟବାସୀଙ୍କର ପ୍ରିୟ ଓ ସେମାନେ ତୁମର ମଧ୍ୟ ପ୍ରିୟ । ଲକ୍ଷ୍ମୀଦେବୀଙ୍କୁ ମଧ୍ୟ ତୁମର ପାଦସେବା ସବୁ ସମୟରେ ମିଳେ ନାହିଁ । ବେଳେ ବେଳେ ମିଳେ । ଯେଉଁଦିନଠାରୁ ଆପଣଙ୍କ ପାଦସ୍ପର୍ଶର ସୁଯୋଗ ଆମକୁ ମିଳିଲାଣି, ସେହିଦିନଠାରୁ ଆମେ କାହାପାଖରେ ମୁହୂର୍ତ୍ତେ ମଧ୍ୟ ରହିବାକୁ ଇଚ୍ଛା କରୁନା ।।୩୬।। ଯେଉଁ ଲକ୍ଷ୍ମୀ ଦେବୀଙ୍କର କୃପାକଟାକ୍ଷ ଲାଭପାଇଁ ବ୍ରହ୍ମାଦି ଦେବତା ସର୍ବଦା ଉଦ୍ୟମ କରୁଥାନ୍ତି, ସେ ଭକ୍ତଜନସେବିତ ଆପଣଙ୍କର ପଦରଜ ପାଇବାପାଇଁ ତୁଳସୀ ସହିତ ପ୍ରତିଯୋଗିତା କରନ୍ତି । ଆମେମାନେ ତୁମର ସେହି ପଦରଜ ପାଇବାପାଇଁ ତୁମର ଶରଣାପନ୍ନ ହେଉଛୁ ।।୩୭।। ଯେଉଁମାନେ ତୁମର ପାଦତଳେ ଶରଣ ନିଅନ୍ତି, ତୁମେ ସେମାନଙ୍କର ଦୁଃଖ ହରଣ କର । ତୁମର ପାଦସେବା ଆଶାରେ ଆମ୍ଭେମାନେ ଆସିଚୁ । ଆମପ୍ରତି ପ୍ରସନ୍ନ ହୁଅ । ତୁମର ମଧୁର ସୁନ୍ଦର ହାସ୍ୟଯୁକ୍ତ କଟାକ୍ଷଦ୍ୱାରା ଆମେମାନେ କାମତାପରେ ବହୁ କଷ୍ଟ ପାଉଚୁ । ହେ ପୁରୁଷରତ୍ନ, ଆମକୁ ତୁମର ଦାସୀ ରୂପେ ଗ୍ରହଣ କର ।।୩୮।। ପ୍ରିୟତମ, ତୁମର ମୁଖମଣ୍ଡଳରେ ଆଲୁଳାୟିତ କେଶରାଶି, ଗଣ୍ଡସ୍ଥଳରେ କୁଣ୍ଡଳର ଶୋଭା, ଲୋଭନୀୟ ଅଧରାମୃତ, ହାସ୍ୟଯୁକ୍ତ ଦୃଷ୍ଟି, ଅଭୟଦାନକାରୀ ବାହୁଯୁଗଳ ଓ ଲକ୍ଷ୍ମୀଙ୍କର କ୍ରୀଡ଼ାସ୍ଥଳ ତୁମର ପ୍ରଶସ୍ତ ବକ୍ଷକୁ ଦେଖି ଆମେସବୁ ତୁମର ଦାସୀ ହୋଇଯାଇଛୁ ।।୩୯।। କୃଷ୍ଣ, ଏହି ତିନି ଭୁବନରେ ଏପରି କିଏ ସ୍ତ୍ରୀ ଅଛି, ଯେ କି ତୁମର ମଧୁର ପଦଯୁକ୍ତ ବଂଶୀଧ୍ୱନି ଶୁଣି ମୋହିତ ନ ହେବ ଏବଂ ତୁମର ତ୍ରୈଲୋକ୍ୟସୁନ୍ଦର ରୂପକୁ ଦେଖି ତା'ର ପତିବ୍ରତାଧର୍ମରୁ ବିଚ୍ୟୁତ ନ ହେବ ? ମନୁଷ୍ୟଙ୍କ କଥା ଦୂରେ ଥାଉ, ଗୋରୁ ଆଦି ପଶୁ, ପକ୍ଷୀ, ବୃକ୍ଷ ଲତା ମଧ୍ୟ ତୁମ ରୂପକୁ ଦେଖି ପୁଲକିତ ହୋଇଉଠନ୍ତି ।।୪୦।। ହେ ଆର୍ତ୍ତବନ୍ଧୁ, ଆଦିପୁରୁଷ ଶ୍ରୀ ନାରାୟଣ ଯେପରି ଦେବଲୋକର ରକ୍ଷାକର୍ତ୍ତା, ତୁମେ ସେହିପରି ବ୍ରଜବାସୀଙ୍କୁ ସମସ୍ତ ଦୁଃଖ ଓ ଭୟରୁ ରକ୍ଷା କରିବାପାଇଁ ଜନ୍ମ ହୋଇଛ । ଆମେମାନେ ତୁମର ଦାସୀ, କନ୍ଦର୍ପ ଜ୍ୱରରେ ଆକ୍ରାନ୍ତ । ଆମର ମସ୍ତକ ଓ ବକ୍ଷ ସ୍ଥଳରେ ତୁମେ ଟିକିଏ ହାତ ରଖ ।।୪୧।।

ଶ୍ରୀ ଶୁକଦେବ କହିଲେ, ଶ୍ରୀକୃଷ୍ଣ ସ୍ୱୟଂ ଆତ୍ମାରାମ । ଯୋଗେଶ୍ୱରମାନଙ୍କର ଈଶ୍ୱର । ଗୋପୀମାନଙ୍କର ଏପରି ବିକଳ ନିବେଦନ ଶୁଣି ତାଙ୍କ ହୃଦୟରେ ଦୟା ଜାତ ହେଲା । ସେ ସେମାନଙ୍କ ସହିତ ରମଣ କରିବାପାଇଁ ସମ୍ମତ ହେଲେ ।।୪୨।। ଗୋପୀମାନଙ୍କପ୍ରତି ତାଙ୍କର ବ୍ୟବହାର ସହଜ ଓ ପ୍ରେମପୂର୍ଣ୍ଣ ହେଲା । ମଧୁର ହାସ୍ୟଯୋଗୁଁ କୁନ୍ଦଫୁଲ ପରି ତାଙ୍କର ଦନ୍ତପନ୍ତି ଅତି ସୁନ୍ଦର ଦେଖାଯାଉଥିଲା । ପ୍ରିୟଦର୍ଶନରେ ଗୋପୀମାନଙ୍କର ମୁଖମଣ୍ଡଳ ତ ପ୍ରଫୁଲ୍ଲ ଦେଖାଯାଉଥିଲା । ଏବେ ସେମାନେ କୃଷ୍ଣଙ୍କୁ ବେଢ଼ି ଠିଆହେଲେ । ତାରାମାନଙ୍କ ମଧ୍ୟରେ ଚନ୍ଦ୍ରମାଙ୍କ ପରି କୃଷ୍ଣ ଶୋଭା ପାଇବାକୁ ଲାଗିଲେ ।।୪୩।। ଶହ ଶହ ବ୍ରଜବନିତାଙ୍କ ସହ ଗୋପୀବଲ୍ଲଭ ଶ୍ରୀକୃଷ୍ଣ ବକ୍ଷରେ ବୈଜୟନ୍ତୀମାଳା ଧାରଣକରି ଆନନ୍ଦରେ ଗୀତ ଗାଉଥିଲେ ଏବଂ ଗୋପୀମାନେ ମଧ୍ୟ ତାଙ୍କର ଗୁଣଗାନ କରୁଥିଲେ । ଏହିପରି ଗୋପୀପରିବେଷ୍ଟିତ ଶ୍ରୀକୃଷ୍ଣ ବୃନ୍ଦାବନରେ ବିଚରଣ କରିବାକୁ ଲାଗିଲେ ।।୪୪।। ଏହିପରି ବୁଲୁବୁଲୁ ସେମାନେ ଯମୁନା ପୁଳିନରେ ପ୍ରବେଶ କଲେ । ସେତେବେଳେ ଯମୁନାତରଙ୍ଗର ସ୍ପର୍ଶରେ ସୁଶୀତଳ ବାୟୁ ମନ୍ଦ ମନ୍ଦ ପ୍ରବାହିତ ହେଉଥିଲା ଏବଂ ତାହା ସହିତ ଭାସି ଆସୁଥିଲା ଫୁଟିଲା କଇଁଫୁଲମାନଙ୍କର ସୁଗନ୍ଧ । ଶୀତଳ ବାଲୁକା ଶେଯରେ କୃଷ୍ଣ ଗୋପୀମାନଙ୍କସହିତ କ୍ରୀଡ଼ା କଲେ ।।୪୫।। ସେ ବାହୁପ୍ରସାର କରି କାହା କାହାକୁ ଆଲିଙ୍ଗନ କଲେ, କାହାର

ହସ୍ତ, ଉରୁ, ନୀବି, କୁଚଦ୍ୱୟ ଓ କେଶରାଶିକୁ ସ୍ପର୍ଶ କଲେ ଏବଂ ଅଙ୍ଗରେ ନଖାଘାତ କଲେ । ମଧୁର ହସ ଓ କଟାକ୍ଷପାତ ଏବଂ ଏହିପରି ବିଭିନ୍ନ ହାବଭାବ ଦ୍ୱାରା ବ୍ରଜାଙ୍ଗନାମାନଙ୍କ କାମ ଭାବକୁ ଉଦ୍ଦୀପିତ କରି ସେ ସେମାନଙ୍କ ସହିତ ରମଣ କରିବାକୁ ଲାଗିଲେ ॥୪୬॥ ଏହିପରି ସମସ୍ତ ପୁରୁଷଙ୍କ ମଧ୍ୟରେ ଶ୍ରେଷ୍ଠ ଭଗବାନ୍ ଶ୍ରୀକୃଷ୍ଣଙ୍କର ପ୍ରେମ ଓ ଆଦର ଲାଭ କରି ଗୋପୀମାନଙ୍କର ଛାତି ଗର୍ବରେ ଫୁଲି ଉଠିଲା । ସେମାନେ ଭାବିଲେ ତାଙ୍କଠାରୁ ବଳି ଭାଗ୍ୟବତୀ ସ୍ତ୍ରୀ ଏହି ଜଗତରେ କେହି ନାହାନ୍ତି ॥୪୭॥ ସେମାନଙ୍କର ସେହି ସୌଭାଗ୍ୟର ଗର୍ବ ଓ ଆତ୍ମାଭିମାନ ଦେଖି ତାହା ଶାନ୍ତ କରି ସେମାନଙ୍କୁ ପ୍ରକୃତ ଆନନ୍ଦ ଦେବାପାଇଁ ଶ୍ରୀକୃଷ୍ଣ ସେଠାରେ ଅନ୍ତର୍ଦ୍ଧାନ ହୋଇଗଲେ ॥୪୮॥

## ତିରିଶ ଅଧ୍ୟାୟ

# କୃଷ୍ଣ ବିରହିଣୀ ଗୋପୀମାନଙ୍କ ଅବସ୍ଥା

ଶ୍ରୀ ଶୁକଦେବ କହିଲେ, ପରିକ୍ଷିତ, ଭଗବାନ୍ ଶ୍ରୀକୃଷ୍ଣ ହଠାତ୍ ଅନ୍ତର୍ହିତ ହୋଇଯିବାରୁ ମତ୍ତଗଜକୁ ନ ଦେଖି ହସ୍ତିନୀମାନଙ୍କର ଯେପରି କଷ୍ଟ ହୁଏ, କୃଷ୍ଣଙ୍କୁ ନ ଦେଖି ଗୋପୀମାନେ ସେହିପରି କଷ୍ଟ ଅନୁଭବକଲେ ॥୧॥ ତାଙ୍କ ଲୀଳାମୟ ଗତି, ଅନୁରାଗଭରା ମଧୁର ହସ, ଲଳିତ ଭ୍ରୂଭଙ୍ଗୀ, ମନୋରମ ଆଳାପ ଓ ବିଭିନ୍ନ ବିଳାସକଳାରେ ମୁଗ୍ଧା ଗୋପୀମାନେ ସେହି ଚିନ୍ତାରେ ଘାରି ହେବାକୁ ଲାଗିଲେ ॥୨॥ ପ୍ରିୟତମଙ୍କର ଚାଲିବା, ହସିବା, କହିବାର ଭଙ୍ଗୀ ଚିନ୍ତା କରି କରି କୃଷ୍ଣବିରହର ଭ୍ରମରେ ସେମାନେ ନିଜକୁ କୃଷ୍ଣବୋଲି ମନେ କଲେ ଏବଂ ପରସ୍ପର 'ମୁଁ କୃଷ୍ଣ, ମୁଁ କୃଷ୍ଣ' ବୋଲି କହିବାକୁ ଲାଗିଲେ ॥୩॥ ବ୍ରଜନାରୀମାନେ ଏକାଠି ଉଚ୍ଚସ୍ୱରରେ କୃଷ୍ଣଙ୍କର ଗୁଣଗାନ କରି ତାଙ୍କୁ ଖୋଜିବାପାଇଁ ବନକୁ ବନ ବୁଲିବାକୁ ଲାଗିଲେ । ସେମାନେ ପାଗଳିନୀପରି ହୋଇ 'କୃଷ୍ଣ କୁଆଡ଼େ ଗଲେ' ବୋଲି ବୃକ୍ଷମାନଙ୍କୁ ପଚାରିବାକୁ ଲାଗିଲେ । ସେମାନେ ଭୁଲିଗଲେ ଯେ କୃଷ୍ଣ ଆକାଶ ପରି ସେମାନଙ୍କର ଅନ୍ତରରେ ଓ ବାହାରେ ରହିଛନ୍ତି ॥୪॥ ହେ ଅଶ୍ୱତ୍ଥ, ହେ ଶାଳ, ହେ ବଟବୃକ୍ଷ, ତୁମେ ନନ୍ଦନନ୍ଦନ କୃଷ୍ଣଙ୍କୁ ଦେଖିଚ କି ? ସେ ତାଙ୍କର ପ୍ରେମହାସ୍ୟଭରା ଚାହାଣିରେ ଆମର ମନକୁ ଚୋରିକରି କୁଆଡ଼େ ଚାଲିଯାଇଛନ୍ତି ॥୫॥ ହେ କୁରୁବକ, ଅଶୋକ, ନାଗେଶ୍ୱର, ପୋଲାଙ୍ଗ, ଚମ୍ପା, ବଳରାମଙ୍କ ଛୋଟ ଭାଇ କୃଷ୍ଣଙ୍କୁ ଏହି ବାଟରେ ଯିବା ଦେଖିଚ କି ? ସେ ଟିକିଏ ହସି ଦେଲେ ଅଭିମାନିନୀମାନଙ୍କର ମାନମର୍ଦ୍ଦନ ହୋଇଯାଏ ॥୬॥ ହେ ତୁଳସୀ,ଭାଗ୍ୟବତୀ, ଗୋବିନ୍ଦଙ୍କର ପାଦ ତୁମର ଅତିଶୟ ପ୍ରିୟ । ସେ ତୁମକୁ ଧାରଣ କଲେ ଭ୍ରମରମାନେ ତୁମ ଚାରିପାଖରେ ଗୁଞ୍ଜନ କରୁଥାନ୍ତି । ତୁମର ଅତିପ୍ରିୟ ସେହି ଅଚ୍ୟୁତଙ୍କୁ ତୁମେ ଦେଖିଚ କି ? ॥୭॥

ହେ ମାଳତୀ, ମଲ୍ଲୀ, ଜାଇ, ଯୂଇ, ତୁମକୁ ହାତରେ ଛୁଇଁ ଛୁଇଁ କୃଷ୍ଣ ଏଇ ବାଟରେ ଯିବାର ତୁମେ ଦେଖିଚ କି ? ॥୮॥ ହେ ଆମ୍ବ, ପିଆଶାଳ, ପଣସ, ଅସନ, ଦେବଦାରୁ, ଜାମୁ, ଅରଖ, ବେଲ, ବଉଳ, କଦମ୍ବ, ନୀପ ବୃକ୍ଷମାନେ, ପରର ଉପକାର ପାଇଁ ଯମୁନା କୂଳରେ ତୁମର ଜନ୍ମ ହୋଇଚି । ଆମେମାନେ କୃଷ୍ଣବିରହିଣୀ । ତାଙ୍କୁ ଆମେ କେମିତି ପାଇବୁ, ଦୟା କରି କହିଦିଅ ॥୯॥ ହେ ପୃଥିବି ! ତୁମେ କି ତପସ୍ୟା କରିଥିଲ, କୃଷ୍ଣଙ୍କ ପାଦସ୍ପର୍ଶରେ ତୁମେ ଉଲ୍ଲସିତ ହୋଇଉଠୁଚ । ତୁମର ଅଙ୍ଗରେ ପୁଲକ(ଘାସ ଲତା ଆଦି ଛଳରେ) ଜାତ ହେଉଚି । ସେ ଯେ ବାମନରୂପରେ ତୁମକୁ ପାଦରେ ସ୍ପର୍ଶ କରିଥିଲେ ବା ବରାହରୂପରେ ତୁମକୁ ଆଲିଙ୍ଗନ କରିଥିଲେ--ତାହା ହିଁ ହେଉଚି ତୁମ ଆନନ୍ଦର କାରଣ ॥୧୦॥ ସଖୀ ହରିଣୀମାନେ, ତୁମ ନୟନର ଆନନ୍ଦ ବର୍ଦ୍ଧନକରି ନିଜର ପ୍ରେୟସୀ ସହିତ କୃଷ୍ଣ ଏଠାକୁ ଆସିଥିଲେ କି ? ପ୍ରେୟସୀକୁ ଆଲିଙ୍ଗନ କରିବାବେଳେ ତାର କୁଚକୁଙ୍କୁମ ବ୍ରଜପତିଙ୍କର ବକ୍ଷରେ ଥିବା କୁନ୍ଦଫୁଲର ମାଳାକୁ ନିଶ୍ଚୟ ରଞ୍ଜିତ କରିଥିବ ଏବଂ ସେହି ମାଳାର ସୁବାସ

ଚାରିଆଡ଼େ ଖେଳିଯାଇଥିବ ।।୧୧।। ବୃକ୍ଷମାନେ, ଶ୍ରୀକୃଷ୍ଣ ତାଙ୍କ ପ୍ରେୟସୀର କାନ୍ଧରେ ହାତ ରଖି ଏବଂ ଅନ୍ୟ ହାତରେ ଲୀଳାପଦ୍ମ ଧାରଣକରି ଏହି ବନକୁ ଆସିଥିଲେ କି ? ତୁଳସୀ ମଞ୍ଜରୀର ମଧୁଗନ୍ଧରେ ମତ୍ତ ଭ୍ରମରମାନେ ତାଙ୍କ ପଛେ ଗୋଡ଼ାଉଥିଲେ କି ? ଏବଂ ପ୍ରେମଭରା ଭଙ୍ଗୀରେ ତୁମ ଆଡକୁ ଚାହିଁ ତୁମର ଅଭିନନ୍ଦନ ଗ୍ରହଣ କରୁଥିଲେ କି ? ।।୧୨।। ବୃକ୍ଷଶାଖାମାନଙ୍କୁ ଆଲିଙ୍ଗନ କରି ରହିଥିବା ଏଇ ଲତାମାନଙ୍କୁ ଚାଲ ପଚାରିବା । କୃଷ୍ଣ ଗଲାବେଳେ ଫୁଲ ତୋଳିବା ଛଳରେ ସେମାନଙ୍କୁ ନିଶ୍ଚୟ ତାଙ୍କ ନଖରେ ସ୍ପର୍ଶ କରିଛନ୍ତି ଯେହେତୁ ସେମାନଙ୍କର ଅଙ୍ଗ ପୁଲକିତ ହୋଇଛି ।।୧୩।।

ଏହିପରି ଉନ୍ମାଦିନୀ ଗୋପୀମାନେ କୃଷ୍ଣଙ୍କୁ ଖୋଜି ଖୋଜି ବ୍ୟସ୍ତ ହୋଇପଡ଼ିଲେ ଏବଂ ତାଙ୍କ ଭାବରେ ତନ୍ମୟ ହୋଇ ତାଙ୍କରି ବିଭିନ୍ନ ଲୀଳାକୁ ଅନୁକରଣ କରିବାକୁ ଲାଗିଲେ ।।୧୪।। କେହି ଗୋପୀ ପୂତନାର ଅନୁକରଣ କଲାବେଳେ ଅନ୍ୟ ଜଣେ କୃଷ୍ଣ ହୋଇ ତାର ସ୍ତନପାନ କରିବାକୁ ଗଲା । ଆଉ ଜଣେ ଶୀଘ୍ର କୃଷ୍ଣଙ୍କୁ ଅନୁକରଣ କରି ପିଲାଭଳି କାନ୍ଦିଲା ଏବଂ ନିଜ ଗୋଡ଼ରେ ଶଗଡ଼ ହୋଇଥିବା ଅନ୍ୟ ଜଣେ ଗୋପୀକୁ ପଦାଘାତ କଲା ।।୧୫।। ଜଣେ ଗୋପୀ ନିଜେ ବାଳକ କୃଷ୍ଣଙ୍କୁ ଅନୁକରଣ କଲା ତ, ଅନ୍ୟ ଜଣେ ତୃଣାବର୍ତ୍ତ ଅସୁର ହୋଇ ତାଙ୍କୁ ହରଣ କରିନେବାକୁ ଚେଷ୍ଟା କଲା । ଅନ୍ୟ ଜଣେ ଶିଶୁକୃଷ୍ଣ ହୋଇ ନୂପୁର, କିଙ୍କିଣୀର ଧ୍ୱନିରେ ଗୁରୁଣ୍ଡି ଗୁରୁଣ୍ଡି ଚାଲିବାକୁ ଚେଷ୍ଟା କଲା ।।୧୬।। କେହି କେହି ରାମ କୃଷ୍ଣ ହେଲେ ଏବଂ ଅନ୍ୟମାନେ ଗୋପବାଳକ ହୋଇଗଲେ । ସେମାନଙ୍କ ମଧ୍ୟରୁ ଜଣେ ବତ୍ସାସୁର ହୋଇଗଲା ଏବଂ ଅନ୍ୟ ଜଣେ କୃଷ୍ଣ ହୋଇ ତା'ର ଦୁଇ ଗୋଡ଼କୁ ଧରି ତାକୁ ମାରିବାପାଇଁ ଚେଷ୍ଟା କଲା । ସେହିପରି ଆଉ ଜଣେ ବକାସୁର ହେଲା ଏବଂ ତାକୁ ମାରିବା ପାଇଁ ଅନ୍ୟ ଜଣେ କୃଷ୍ଣଙ୍କର ଅଭିନୟ କଲା ।।୧୭।। ଦୂରକୁ ଚାଲିଯାଇଥିବା ଗାଈମାନଙ୍କୁ କୃଷ୍ଣ ଯେପରି ଡାକନ୍ତି ଏବଂ ବେଣୁ ବଜାଇ କ୍ରୀଡ଼ା କରନ୍ତି, ଜଣେ ଗୋପୀ ସେପରି କରିବାକୁ ଚେଷ୍ଟା କଲା । ଅନ୍ୟ ଗୋପୀମାନେ ବାଃ ବାଃ କହି ତାର ପ୍ରଶଂସା କଲେ ।।୧୮।। କେହି ଜଣେ ଗୋପୀ କୃଷ୍ଣପ୍ରେମରେ ଏପରି ତନ୍ମୟ ହୋଇ ଯାଇଥିଲା ଯେ ଅନ୍ୟ ଜଣେ ଗୋପୀର କାନ୍ଧରେ ହାତ ରଖି ସୁଲଳିତ ଗତିରେ ପାଦ ପକାଇ କହିବାକୁ ଲାଗିଲା, 'ମୁଁ କୃଷ୍ଣ । ମୋର ଧୀର ଚାଲିକୁ ଦେଖ ।' ।।୧୯।। କେହି ଜଣେ ହାତରେ ଗୋବର୍ଦ୍ଧନ ପର୍ବତକୁ ଧାରଣ କରିବାର ଅଭିନୟ କରି କହିଲା, ଭୟ କର ନାହିଁ । ଝଡ଼ ବର୍ଷାରୁ ତୁମକୁ ରକ୍ଷା କରିବାର ବିହିତ ପ୍ରତିକାର ମୁଁ କରୁଛି । ଏହା କହି ସେ ନିଜର ଉତ୍ତରୀୟକୁ ଉପରକୁ ଟେକି ଧରିଲା ।।୨୦।।

ଦୁଇ ଜଣ ଗୋପୀ କାଳିୟଦଳନର ଅଭିନୟ କଲେ । ଜଣେ କାଳିୟନାଗ ହେଲା, ଆଉ ଜଣେ କୃଷ୍ଣ ହୋଇ ତା ଉପରକୁ ଉଠିଯାଇ ତାର ମୁଣ୍ଡକୁ ପାଦରେ ଆଘାତ କରି କହିଲା, ଦୁଷ୍ଟ କାଳିୟ, ତୁ ଶୀଘ୍ର କାଳିନ୍ଦୀ ହ୍ରଦରୁ ବାହାରିଯାଆ । ମୁଁ ଦୁଷ୍ଟଦଳନ କରିବାପାଇଁ ସଂସାରରେ ଅବତୀର୍ଣ୍ଣ ହୋଇଚି ।।୨୧।। କେତେଜଣ ଗୋପୀ ଦାବାନଳରେ ଭୟଭୀତ ହେବାର ଅଭିନୟ କଲେ । ଅନ୍ୟ ଜଣେ ବାହାରି କୃଷ୍ଣ ହୋଇ କହିଲା, ଏହି ଭୟଙ୍କର ଦାବାନଳକୁ ଦେଖ । ତୁମେମାନେ ଶୀଘ୍ର ଆଖି ବୁଜି ଦିଅ । ସହଜରେ ମୁଁ ତୁମକୁ ରକ୍ଷା କରିବାର ବ୍ୟବସ୍ଥା କରୁଛି ।।୨୨।। ଜଣେ ଗୋପୀ ଯଶୋଦା ହୋଇ କହିଲା, ଦହିହାଣ୍ଡି ଭାଙ୍ଗିଥିବା ଲହୁଣୀଚୋରକୁ ବର୍ତ୍ତମାନ ମୁଁ ଡିଙ୍କିରେ ବାନ୍ଧି ପକାଉଚି । ଏହା କହି ଶୀଘ୍ର କୃଷ୍ଣ ହୋଇଥିବା ଗୋପୀର ହାତକୁ ଡିଙ୍କି ଅଭିନୟ କରୁଥିବା ଅନ୍ୟ ଜଣେ ଗୋପୀର ହାତ ସହିତ ଫୁଲମାଳଦ୍ୱାରା ବାନ୍ଧିଦେଲା ।।୨୩।। ଗୋପୀମାନେ ଏହିପରି କୃଷ୍ଣଲୀଳାମାନ କରି ବୃନ୍ଦାବନର ବୃକ୍ଷଲତାମାନଙ୍କୁ କୃଷ୍ଣଙ୍କ କଥା ପଚାରି ପଚାରି ବୁଲୁଥିବାବେଳେ ହଠାତ୍ କୃଷ୍ଣଙ୍କର ପାଦଚିହ୍ନ ଦେଖିବାକୁ ପାଇଲେ ।।୨୪।। ସେଇ ପାଦଚିହ୍ନ ଦେଖି ସେମାନେ କହିଲେ, ଏହା ନିଶ୍ଚୟ ନନ୍ଦନନ୍ଦନ କୃଷ୍ଣଙ୍କର । କାରଣ ଏ ସବୁଥିରେ ଧ୍ୱଜ, ପଦ୍ମ, ଅଙ୍କୁଶ, ବଜ୍ର, ଯବ ଆଦି ଚିହ୍ନ ସ୍ପଷ୍ଟ ଦେଖାଯାଉଚି ।।୨୫।। ସେହି ପାଦଚିହ୍ନକୁ ଦେଖି ଦେଖି ସେମାନେ ଆଗକୁ ଚାଲିଲେ । କିଛି ଦୂର ଗଲାପରେ ସେମାନେ ଦେଖିଲେ ଯେ କୃଷ୍ଣଙ୍କର ପାଦଚିହ୍ନ ସହିତ ଆଉ ଜଣେ ବ୍ରଜବଧୂର ପାଦଚିହ୍ନ ମିଶି ଯାଇଚି । ଏହା ଦେଖି ସେମାନେ ବ୍ୟାକୁଳ ହୋଇ ପରସ୍ପର କହିବାକୁ ଲାଗିଲେ-- ।।୨୬।।

ହସ୍ତୀ ସହିତ ହସ୍ତିନୀ ଯିବାପରି ଏ ବ୍ରଜନାରୀ କିଏ, ଯାହା କାନ୍ଧରେ ନନ୍ଦନନ୍ଦନ ହାତ ପକାଇ ଚାଲିଛନ୍ତି ଏବଂ ତାଙ୍କ ପାଦପାଖରେ ତା'ର ପାଦଚିହ୍ନ ଦେଖିବାକୁ ମିଳୁଚି ? ॥୨୭॥ ନିଶ୍ଚୟ ସେ ଭଗବାନ ଶ୍ରୀକୃଷ୍ଣଙ୍କୁ ଆରାଧନା କରି ପ୍ରସନ୍ନ କରିଚି । ସେଥିପାଇଁ ଗୋବିନ୍ଦ ଆମକୁ ଛାଡି ଏକାନ୍ତସ୍ଥାନକୁ ତାକୁ ନେଇଯାଇଛନ୍ତି ॥୨୮॥ ଶ୍ରୀ ଗୋବିନ୍ଦଙ୍କ ପାଦପଦ୍ମର ଧୂଳି ହେଉଚି ଧନ୍ୟ । କାରଣ ସମସ୍ତ ଅମଙ୍ଗଳକୁ ନଷ୍ଟ କରିବାପାଇଁ ବ୍ରହ୍ମା, ଶିବ, ଲକ୍ଷ୍ମୀ ଆଦି ସେହି ପଦଧୂଳିକୁ ମସ୍ତକରେ ଧାରଣ କରନ୍ତି ॥୨୯॥ କୃଷ୍ଣଙ୍କର ସଙ୍ଗିନୀ ସେହି ବ୍ରଜବଧୂ ଆମ ସମସ୍ତ ଗୋପୀଙ୍କ ଧନ ଶ୍ରୀକୃଷ୍ଣଙ୍କର ସେହି ଅଧରମଧୁକୁ ଅପହରଣ କରି ଏକୁଟିଆ ଉପଭୋଗ କରୁଚି । ତାର ଏହିସବୁ ପଦଚିହ୍ନ ଦେଖି ଆମକୁ ବ୍ୟସ୍ତ ଲାଗୁଚି ॥୩୦॥ ଯେଉଁଠି ତା'ର ପାଦଚିହ୍ନ ଦେଖା ଯାଉ ନାହିଁ, ମନେ ହେଉଚି କୃଷ୍ଣସଙ୍ଗିନୀ ସେହି ଗୋପୀର ପାଦରେ ଘାସର ଆଘାତ ଲାଗି କଷ୍ଟ ହେଉଥିବାରୁ ପ୍ରିୟତମ ପ୍ରିୟାକୁ କାନ୍ଧରେ ବସାଇ ନେଇଛନ୍ତି ॥୩୧॥ ଦେଖ, ଏଠାରେ କୃଷ୍ଣଙ୍କର ପାଦଚିହ୍ନ ମାଟିରେ ଅଧିକ ଦବିଯାଇଚି । କାରଣ କାମାସକ୍ତ କୃଷ୍ଣ ତାକୁ ବୋହିନେବାରୁ ଅଧିକ ଭାର ପଡ଼ିଯାଇଚି ॥୩୨॥ ଦେଖ ଦେଖ, ଏଠାରେ ପୁଣି ତାଙ୍କ ପାଦଚିହ୍ନ ଭୂଇଁରେ ମିଶିଯାଇଚି । ପ୍ରିୟତମ କୃଷ୍ଣ ତାଙ୍କ ପ୍ରେୟସୀପାଇଁ ଫୁଲ ତୋଳିବାକୁ ଯାଇ ତାକୁ ଏଠି କାନ୍ଧରୁ ଓହ୍ଲାଇ ଦେଇଛନ୍ତି ଏବଂ ପାଦଅଗରେ ଠିଆହୋଇ ଫୁଲ ତୋଳିବାଯୋଗୁଁ ଗୋଇଠିର ଚିହ୍ନ ଦେଖାଯାଉ ନାହିଁ ॥୩୩॥ ଦେଖ, ଏଠାରେ କାମୁକ କୃଷ୍ଣ କାମୁକୀ ପ୍ରେୟସୀର କେଶକୁ ବାନ୍ଧିଛନ୍ତି ଏବଂ ଫୁଲରେ ସଜାଇବାପାଇଁ ବସିଯାଇଛନ୍ତି ॥୩୪॥ ପରିକ୍ଷିତ, ଭଗବାନ୍ ଶ୍ରୀକୃଷ୍ଣ ଆତ୍ମାରାମ । ନିତ୍ୟତୃପ୍ତ । ସେ ନିଜେ ଅଖଣ୍ଡ ଆନନ୍ଦର ଈଶ୍ୱର ହୋଇ କେବଳ ବିଷୟାସକ୍ତ କାମୀ ଲୋକମାନଙ୍କର ଦୀନତା ଓ ସ୍ତ୍ରୀମାନଙ୍କର ଅତୃପ୍ତି-ଜନିତ ପ୍ରତିକ୍ରିୟା ଦେଖାଇବାପାଇଁ ଜଣେ ଗୋପୀର ସହିତ ଏକାନ୍ତରେ ରମଣ କରିଥିଲେ ॥୩୫॥ ଏହିପରି ପାଦଚିହ୍ନ ଦେଖାଇ ଦେଖାଇ ଗୋପୀମାନେ ବ୍ୟାକୁଳ ହୋଇ ବନରେ ବୁଲିବାକୁ ଲାଗିଲେ ॥୩୬॥

କୃଷ୍ଣ ଅନ୍ୟ ସମସ୍ତ ଗୋପୀଙ୍କୁ ଛାଡ଼ି ଯେଉଁ ଗୋପୀଟିକୁ ଧରି ଏକାନ୍ତରେ ବନବିହାର କଲେ, ସେହି ଗୋପୀ ମନେ କଲା, ମୁଁ ସବୁ ସ୍ତ୍ରୀଙ୍କ ମଧ୍ୟରେ ଶ୍ରେଷ୍ଠ । କାରଣ ପ୍ରିୟତମ କୃଷ୍ଣ ସମସ୍ତ ଗୋପୀଙ୍କି ଛାଡ଼ି ମୋତେ ସ୍ନେହ ଓ ଆଦର କରୁଛନ୍ତି ! ॥୩୭॥ ତା'ର ମନରେ ଗର୍ବ ବଢ଼ିଗଲା । ସେ ବନରେ ଯାଉ ଯାଉ କୃଷ୍ଣଙ୍କୁ କହିଲା, ଆଉ ମୁଁ ଚାଲିପାରୁନାହିଁ । ଯେଉଁଠିକି ଯିବାକୁ ତୁମର ମନ ହେଉଚି, ମୋତେ ସେଠିକି ନେଇଚାଲ ॥୩୮॥ କୃଷ୍ଣ ସେହି ପ୍ରେମିକାର କଥା ଶୁଣି କହିଲେ, ଠିକ୍ ଅଛି, ତୁମେ ମୋର କାନ୍ଧରେ ଚଢ଼ିଯାଅ । ସେ ତାଙ୍କ କାନ୍ଧରେ ଚଢ଼ିବାକୁ ଯାଉଛି ତ, କୃଷ୍ଣ ଅନ୍ତର୍ଦ୍ଧାନ ହୋଇଗଲେ । ତା'ପରେ ସେଇ ବ୍ରଜବଧୂର ଅନୁତାପ ଆରମ୍ଭ ହେଲା ॥୩୯॥ ସେ ବିଳାପ କରି କହିଲା, ହା ନାଥ, ହା ପ୍ରିୟତମ, ହା ରମଣ, ହା ମହାଭୁଜ, ତୁମେ କେଉଁଠି ଅଛ ? କେଉଁଠି ଅଛ ? ମୁଁ ତୁମର ଦାସୀ । ହେ ସଖା, ଦୟା କରି ମୋ ପାଖକୁ ଆସି ଦର୍ଶନଦିଅ ॥୪୦॥ ଗୋପୀମାନେ କୃଷ୍ଣଙ୍କୁ ଖୋଜି ଖୋଜି ଯାଉଥିଲେ । ବାଟରେ ଅଦୂରରୁ କୃଷ୍ଣଙ୍କ ବିରହଦୁଃଖରେ ମୂର୍ଚ୍ଛିତପ୍ରାୟ ସେହି ସଖୀଟିକୁ ବିଳାପ କରୁଥିବାର ଦେଖିଲେ ॥୪୧॥ କୃଷ୍ଣ କିପରି ତାଙ୍କ ପ୍ରେମଦ୍ୱାରା ତାକୁ ମାନ ସମ୍ମାନ ଦେଉଥିଲେ ଏବଂ ତାର ଗର୍ବିତ ଆଚରଣଯୋଗୁଁ କିପରି ତାକୁ ଉପେକ୍ଷା କଲେ, ତାହାଠାରୁ ସେସବୁ କଥା ଶୁଣି ସେମାନେ ବିସ୍ମିତ ହେଲେ ॥୪୨॥

ଏହାପରେ ଗୋପୀମାନେ ବନମଧ୍ୟରେ ଯେପର୍ଯ୍ୟନ୍ତ ଚନ୍ଦ୍ରଜ୍ୟୋତ୍ସ୍ନା ପଡ଼ିଥିଲା, ସେପର୍ଯ୍ୟନ୍ତ କୃଷ୍ଣଙ୍କୁ ଖୋଜି ଖୋଜି ଗଲେ । ତହୁଁ ଘନ ଅରଣ୍ୟର ଅନ୍ଧକାରକୁ ଦେଖି ଆଉ ଆଗକୁ ନ ଯାଇ ଫେରି ଆସିଲେ ॥୪୩॥ ସେମାନଙ୍କର ମନ ତ କୃଷ୍ଣଙ୍କଠାରେ ଅର୍ପିତ ଥିଲା । କଥାରେ କଥାରେ କୃଷ୍ଣଙ୍କ ଛଡ଼ା ସେମାନେ ଅନ୍ୟ କିଛି କହୁ ନ ଥିଲେ । ହୃଦୟରେ ତାଙ୍କୁ ହିଁ ସେମାନେ ଖୋଜୁଥିଲେ । କୃଷ୍ଣଗତପ୍ରାଣା ସେହି ଗୋପୀମାନେ ସେମାନଙ୍କ ଘରଦ୍ୱାରକୁ ଏପରିକି ନିଜକୁ ଭୁଲିଯାଇ କୃଷ୍ଣଙ୍କର ଗୁଣଗାନ କରୁଥିଲେ ॥୪୪॥ ସେମାନେ କୃଷ୍ଣଙ୍କ କଥା ଭାବି ଭାବି ପୁଣି ଯମୁନା ପୁଳିନକୁ ଫେରିଆସିଲେ । କୃଷ୍ଣ କିପରି ଶୀଘ୍ର ଫେରି ଆସିବେ, ସେଥିପାଇଁ ସମସ୍ତେ ମିଳିତ କଣ୍ଠରେ ତାଙ୍କ ଗୁଣଗାନ କରିବାକୁ ଲାଗିଲେ ॥୪୫॥

## ଏକତିରିଶ ଅଧ୍ୟାୟ

# ଗୋପୀଗୀତ

ଗୋପୀମାନେ କହିଲେ, ହେ ପ୍ରାଣଦୟିତ, ତୁମର ଜନ୍ମଦ୍ୱାରା ବ୍ରଜଭୂମିର ଅଧିକ ଉନ୍ନତି ହୋଇଛି । ଲକ୍ଷ୍ମୀ ସବୁବେଳେ ଏଠାରେ ଆଶ୍ରୟ ନେଇଛନ୍ତି । ତୁମପାଇଁ ଜୀବନ ଧାରଣ କରିଥିବା ଗୋପୀମାନେ ତୁମକୁ ଚାରିଆଡେ ଖୋଜୁଛନ୍ତି । ଟିକିଏ ଦେଖାଦିଅ ।।୧।। ହେ ବରଦାତା, ରତିକ୍ରିୟାର ସ୍ୱାମୀ, ଶରତ କାଳର ଜଳାଶୟରେ ସଦ୍ୟ ପ୍ରସ୍ଫୁଟିତ ପଦ୍ମକୋଷର କାନ୍ତିକୁ ହରଣ କରୁଥିବା ତୁମର ନେତ୍ରଯୁଗଳ ଦ୍ୱାରା ଆମକୁ ବହୁତ ଆଘାତ ଦେଲଣି । ବିନା ମୂଲ୍ୟରେ ଆମେ ତ ତୁମର ଦାସୀ ହୋଇ ସାରିଛୁ । ନେତ୍ରଦ୍ୱାରା ବଧ କଲେ କଣ ବଧ ହୁଏ ନାହିଁ ? ।।୨।। ପୁରୁଷଶ୍ରେଷ୍ଠ, ବିଷ ଜ୍ୱାଳାରୁ, ସର୍ପରୂପୀ ଅଘାସୁରଠାରୁ, ବର୍ଷା ଓ ବତାସରୁ, ବଜ୍ରପାତଜନିତ ଅଗ୍ନିରୁ, ବୃଷଭାସୁର ଓ ବ୍ୟୋମାସୁର ଆଦିଙ୍କଠାରୁ ଏବଂ ବିଭିନ୍ନ ସମୟର ସମସ୍ତ ପ୍ରକାର ଭୟରୁ ତୁମେ ଆମକୁ ବାରମ୍ବାର ରକ୍ଷା କରିଛ ।।୩।। ସଖା, ତୁମେ କେବଳ ଯଶୋଦାଙ୍କର ପୁତ୍ର ନୁହଁ, ତୁମେ ସମସ୍ତ ଦେହଧାରୀ ଜୀବଙ୍କର ଅନ୍ତରାତ୍ମାସ୍ୱରୂପ । ବିଶ୍ୱର ପାଳନପାଇଁ ବ୍ରହ୍ମାଙ୍କର ପ୍ରାର୍ଥନାରେ ତୁମେ ଯାଦବକୁଳରେ ଅବତୀର୍ଣ୍ଣ ହୋଇଛ ।।୪।। ହେ ବୃଷ୍ଣିବଂଶର ଚୂଡ଼ାମଣି, ହେ କାନ୍ତ, ସଂସାର ଦୁଃଖଭୟରୁ ଯେଉଁମାନେ ତୁମର ଚରଣକୁ ଆଶ୍ରୟ କରନ୍ତି, ତୁମେ ତାଙ୍କୁ ଅଭୟ ପ୍ରଦାନକର । ଏବେ ଯେଉଁ ହସ୍ତରେ ତୁମେ ଲକ୍ଷ୍ମୀଙ୍କର ହସ୍ତକୁ ଧାରଣ କର, ସେହି କାମନାପୂରଣ କରୁଥିବା ହସ୍ତକୁ ଆମର ମସ୍ତକରେ ରଖ ।।୫।।

ବ୍ରଜବାସୀଙ୍କର ଦୁଃଖହରଣକାରୀ ହେ ଆର୍ତ୍ତତ୍ରାଣ ବୀର, ତୁମର ସ୍ମିତହାସ ନିଜ ଲୋକଙ୍କର ଗର୍ବକୁ ରଖେ ନାହିଁ, ଧ୍ୱଂସ କରିଦିଏ । ହେ ସଖା, ଆମେମାନେ ତ ତୁମର କିଙ୍କରୀ, ତେଣୁ ଆପଣଙ୍କର ସୁନ୍ଦର ପଦ୍ମମୁଖ ଟିକିଏ ଦେଖାଅ, ଆମର କାମନା ପୂର୍ଣ୍ଣ କର ।।୬।। ତୁମର ପାଦପଦ୍ମ ଲକ୍ଷ୍ମୀଙ୍କ ନିବାସସ୍ଥାନ ଏବଂ ଶରଣାଗତଙ୍କର ପାପ ଖଣ୍ଡନକରେ । ଗାଈମାନଙ୍କ ପଛେ ପଛେ ତୁମେ ସେହି ପାଦରେ ଯାତ୍ରା କର । ସେହି ପାଦକୁ ତୁମେ କାଳିୟ ନାଗର ଫଣାକୁ ମର୍ଦ୍ଦନ କରିଥିଲ । ଆମେ ପ୍ରାର୍ଥନା କରୁଛୁ, ତୁମେ ସେହି ପାଦକୁ ଆମ ବକ୍ଷସ୍ଥଳରେ ରଖି ଆମ ହୃଦୟର କାମତାପକୁ ଖଣ୍ଡନ କର ।।୭।। ହେ କମଳନୟନ, ହେ ବୀର, ତୁମର କୋମଳ ମଧୁର ବାଣୀ ପଣ୍ଡିତମାନଙ୍କର ମନ ହରଣ କରେ । ତଦ୍ୱାରା ମୁହ୍ୟମାନ ତୁମର ଏହି କିଙ୍କରୀମାନଙ୍କୁ ତୁମର ଅଧରାମୃତଦ୍ୱାରା ଆପ୍ୟାୟିତ କର ।।୮।। ବିଭିନ୍ନ ଲୀଳାଯୁକ୍ତ ତୁମର କଥା ହେଉଛି ଅମୃତ ସମାନ । ତାହା ସଂସାରତାପିତ ଜୀବର ଜୀବନ ସର୍ବସ୍ୱ । ପଣ୍ଡିତମାନେ ତାହାର ସ୍ତୁତି କରନ୍ତି, କାରଣ ତାହା ସମସ୍ତ ପାପ ହରଣ କରେ ଏବଂ ଶୁଣିବା ମାତ୍ରେ ପ୍ରାଣୀର ମଙ୍ଗଳ ହୁଏ । ସର୍ବତ୍ର ବିସ୍ତାରିତ ତୁମର ଏହି କଥାମୃତକୁ ଯେଉଁମାନେ ବୟାନ କରନ୍ତି, ସେଇମାନେ ପୃଥିବୀରେ ସବୁଠାରୁ ବଡ଼ ଦାତା ଅଟନ୍ତି ।।୯।। ହେ ପ୍ରିୟ, ହେ କପଟୀ, ତୁମର ମୃଦୁ ମଧୁର ହସ, ପ୍ରେମଭରା କଟାକ୍ଷ, ଲୀଳାବିହାର, ଯାହା ହୃଦୟକୁ ସ୍ପର୍ଶକରେ ଆଜି ଏହି ନିର୍ଜନ ବନରେ ତାହା ସବୁ ଆମର ମନକୁ ଆଲୋଡ଼ିତ କରୁଛି ।।୧୦।। ହେ ନାଥ, ହେ କାନ୍ତ, ଯେତେବେଳେ ଗାଈମାନଙ୍କୁ ଚରାଇବାପାଇଁ ତୁମେ ବ୍ରଜରୁ ଚାଲିଯାଅ, ସେତେବେଳେ ତୁମର କୋମଳ ପାଦପଦ୍ମରେ ପଥର କଣ୍ଟା ଆଦି ଲାଗି ତୁମକୁ କଷ୍ଟ ହେଉଥିବା ଭାବି ଆମର ମନ ବ୍ୟାକୁଳ ହୁଏ । ବୀର, ଦିନ ଶେଷରେ ତୁମେ ଯେତେବେଳେ ଫେରି ଆସ, ନୀଳକୁନ୍ତଳଆବୃତ ଧୂଳିଧୂସର ତୁମର ସେହି ବଦନକମଳକୁ ବାରମ୍ବାର ଦେଖାଇ ତୁମେ ଆମ ମନରେ ପ୍ରେମତୃଷ୍ଣା ଭରିଦିଅ ।।୧୧-୧୨।। ହେ ରମଣପ୍ରିୟ, ମନର ଦୁଃଖକୁ ତୁମେ ନାଶ କର ଏବଂ ତୁମର ପାଦପଦ୍ମ ପ୍ରଣତମାନଙ୍କର କାମନା ପୂର୍ଣ୍ଣ କରେ । ବ୍ରହ୍ମାଙ୍କର ଅର୍ଚ୍ଚିତ ତୁମର ଏହି ପାଦପଦ୍ମକୁ ବିପଦ ସମୟରେ ଧ୍ୟାନ କରାଯାଏ । ଏହା ଧରଣୀର ଭୂଷଣ ।

ସବୁଠାରୁ ମଙ୍ଗଳମୟ ତୁମର ସେହି ପାଦପଦ୍ମକୁ ଆମ ସ୍ତନଉପରେ ଅର୍ପଣକର ।।୧୩।। ବୀର, ତୁମର ଅଧରାମୃତ ସୁରତ ସୁଖ ବର୍ଦ୍ଧନ କରେ ଏବଂ ସମସ୍ତ ଶୋକ ନାଶକରେ । ବେଣୁ-ଚୁମ୍ବିତ ଏହି ଅଧରର ମଧୁର ଧ୍ୱନି ଶୁଣିବାମାତ୍ରେ ଅନ୍ୟ ସମସ୍ତ ଆସକ୍ତି ଦୂର ହୋଇଯାଏ । ସେହି ଅଧରାମୃତ ଆମକୁ ଟିକିଏ ବିତରଣ କର ।।୧୪।। ତୁମେ ଯେବେ ଦିନବେଳେ କାନନରେ ଭ୍ରମଣ କରୁଥାଅ, ତେବେ ତୁମକୁ ନଦେଖି ଅଳ୍ପ ଟିକିଏ ସମୟ (କ୍ଷଣାର୍ଦ୍ଧ) ଆମକୁ ଯୁଗ ପରି ଲାଗେ । ଦିନଶେଷରେ ଯେତେବେଳେ ତୁମେ ଫେରିଆସ, ସେତେବେଳେ ତୁମର କୁଞ୍ଚିତ କେଶ ଯେଉଁ ମୁହଁଉପରେ ପଡ଼ିଥାଏ, ଅପଲକ ନେତ୍ରରେ ଆମେ ସେଇ ମୁହଁକୁ ଚାହିଁ ରହିଥାଉ । ବେଳେବେଳେ ପଲକ ପଡିଗଲେ ପଲକ ସୃଷ୍ଟିକାରୀ ବିଧାତାକୁ ଆମେ ମୂର୍ଖ ବୋଲି କହୁ ।।୧୫।। ଅଚ୍ୟୁତ, ଆମେ କାହିଁକି ଏଠାକୁ ଆସିଛୁ, ତୁମକୁ ଭଲ ଭାବରେ ଜଣା ଅଛି । ତୁମ ବଂଶୀର ମୂର୍ଚ୍ଛନାରେ ମୋହିତ ହୋଇ ଆମେ ପତି, ପୁତ୍ର, ଜ୍ଞାତି, କୁଟୁମ୍ବ ସମସ୍ତଙ୍କୁ ଅବଜ୍ଞା କରି ତୁମ ପାଖକୁ ଚାଲି ଆସିଛୁ । କିନ୍ତୁ ହେ କପଟୀ ପ୍ରେମିକ, ରାତ୍ରିକାଳରେ ଯୁବତୀମାନଙ୍କୁ କିଏ ଛାଡ଼ିଯାଏ କି ? ।।୧୬।। ଏକାନ୍ତରେ କାମୋଦ୍ଦୀପକ ତୁମର ମଧୁର ଆଳାପ, ହସହସ ମୁଖ, ପ୍ରେମପୂର୍ଣ୍ଣ କଟାକ୍ଷ ଏବଂ ସୌନ୍ଦର୍ଯ୍ୟର ଧାମ ବିଶାଳ ବକ୍ଷକୁ ବାରମ୍ବାର ଦେଖି ଅତିଶୟ ରତିସ୍ପୃହାଯୋଗୁଁ ଆମର ମନ ମୋହିତ ହୋଇଯାଉଛି ।।୧୭।। ହେ କୃଷ୍ଣ, ବ୍ରଜବନବାସୀଙ୍କର ଦୁଃଖ ଖଣ୍ଡନପାଇଁ ତୁମର ଜନ୍ମ ଏବଂ ସମସ୍ତ ବିଶ୍ୱର କଲ୍ୟାଣପାଇଁ ତୁମର ଏହି ଅବତାର । ତୁମକୁ ଲାଭ କରିବାର ସ୍ପୃହାଯୋଗୁ ଆମର ଆତ୍ମା ଆଜି ପୀଡ଼ିତ । ଆମେ ତୁମର ନିଜର । ତେଣୁ ଆମର ହୃଦୟର କାମରୋଗ ଦୂର କରିବାପାଇଁ ଶୀଘ୍ର ଔଷଧର ବ୍ୟବସ୍ଥା କର ।।୧୮।। ତୁମର କୋମଳ ପାଦପଦ୍ମକୁ ଆମର କଠିନ ସ୍ତନ ଉପରେ ଆମେ ଡରି ଡରି ରଖୁ, କାଳେ ପାଦକୁ କଷ୍ଟ ହେବ ବୋଲି । ତୁମେ ଏବେ ରାତିରେ ବଣରେ ବୁଲୁଛ । ପାଦରେ କେଉଁଠି କଙ୍କର ବାଜି ବ୍ୟଥା ହେଉ ନାହିଁ ତ ! ଆମର ଚିତ୍ତ ଭ୍ରମି ଯାଉଛି, ତୁମପାଇଁ ତ ଆମେ ବଞ୍ଚି ରହିଛୁ ।।୧୯।।

ବତିଶ ଅଧ୍ୟାୟ

## ଗୋପୀଙ୍କୁ କୃଷ୍ଣଙ୍କର ସାନ୍ତ୍ୱନା

ଶ୍ରୀ ଶୁକଦେବ କହିଲେ, ପରିକ୍ଷିତ, କୃଷ୍ଣଙ୍କୁ ଦେଖିବାକୁ ଇଚ୍ଛାକରି ଗୋପୀମାନେ ଏହିପରି ନାନା ଭାବରେ ତାଙ୍କର ଗୁଣଗାନପୂର୍ବକ ଉଚ୍ଚ ସ୍ୱରରେ ବିଳାପ କରି ଲାଗିଲେ ।।୧।। ଏହି ସମୟରେ ଗୋପୀମାନଙ୍କ ମଧ୍ୟରେ ପୀତାମ୍ବରଧାରୀ ବନମାଳୀ ଉଭା ହୋଇଗଲେ । ତାଙ୍କର ସେହି ରୂପ ସାକ୍ଷାତ୍ କନ୍ଦର୍ପଙ୍କୁ ମଧ୍ୟ ମୋହିତ କରୁଥିଲା ।।୨।। ଗୋପୀମାନେ ତାଙ୍କର ପ୍ରିୟତମ କୃଷ୍ଣ ଆସିବାର ଦେଖି ପ୍ରେମରେ ଉତ୍‌ଫୁଲ୍ଲ ହୋଇଗଲେ । ଦେହରେ ପ୍ରାଣ ପଶିବାପରି ସେମାନେ ଏକାଠି ଉଠିପଡ଼ିଲେ ।।୩।। କେହି ଗୋପୀ ଆନନ୍ଦରେ ତାର ଦୁଇ ହାତରେ କୃଷ୍ଣଙ୍କର କରକମଳକୁ ଧରି ନେଲା, ଅନ୍ୟଜଣେ ଚନ୍ଦନଚର୍ଚ୍ଚିତ ତାଙ୍କର ବାହୁକୁ ନିଜର କାନ୍ଧରେ ଲଗାଇ ରଖିଲା ।।୪।। କେହି କୃଷ୍ଣ ଖାଉଥିବା ତାମ୍ବୁଳକୁ ନିଜ ଅଞ୍ଜୁଳାରେ ଧରିନେଲା ତ ଅନ୍ୟ ଜଣେ କାମତାପରେ ଦଗ୍ଧ ହୋଇ ତାଙ୍କର ପାଦପଦ୍ମକୁ ନିଜର ସ୍ତନ ଉପରେ ଚାପି ଧରିଲା ।।୫।। ଅତିଶୟ କାମାସକ୍ତା ଅନ୍ୟଜଣେ ଗୋପୀ ନିଜର ଭ୍ରୁକୁଟିକୁଞ୍ଚନ କରି ଓ ଦାନ୍ତରେ ଓଠକୁ କାମୁଡ଼ି ନିଜର କଟାକ୍ଷଦ୍ୱାରା ବାରମ୍ବାର କୃଷ୍ଣଙ୍କୁ ପ୍ରହାର କଲା ।।୬।। ଆଉ ଜଣେ ନିର୍ନିମେଷ ଦୃଷ୍ଟିରେ କୃଷ୍ଣଙ୍କର ମୁଖାରବିନ୍ଦକୁ ପାନ କରିବାକୁ ଲାଗିଲା । ସନ୍ଥମାନେ ତାଙ୍କର ପାଦପଦ୍ମକୁ ଦେଖି ଯେପରି ତୃପ୍ତ ହୁଅନ୍ତି ନାହିଁ, ସେହି ଗୋପୀ ସେହିପରି କୃଷ୍ଣଙ୍କୁ ଯେତେ ଦେଖିଲେ ମଧ୍ୟ ତୃପ୍ତ ହେଲା ନାହିଁ ।।୭।। ଆଉଜଣେ ନିଜର ନେତ୍ରଦ୍ୱାରରେ କୃଷ୍ଣଙ୍କର ରୂପକୁ ନେଇ ହୃଦୟମଧ୍ୟରେ ଥାପି ଆଖି ବୁଜିଦେଲା ।

ତାର ଶରୀର ପୁଲକିତ ହୋଇଉଠିଲା । ସିଦ୍ଧଯୋଗୀମାନେ ଭଗବାନଙ୍କ ରୂପକୁ ହୃଦୟରେ ରଖି ଯେପରି ପରମାନନ୍ଦ ଲାଭ କରନ୍ତି, ସେ ସେହିପରି ଅନୁଭବ କଲା ॥୮॥ ମୁକ୍ତିକାମୀ ବ୍ୟକ୍ତି ଈଶ୍ୱରଙ୍କୁ ଲାଭ କଲେ ଅଥବା ସଂସାରୀ ବ୍ୟକ୍ତି ବ୍ରହ୍ମଜ୍ଞାନୀଙ୍କୁ ଲାଭ କଲେ ଯେପରି ସଂସାରର ପାପତାପକୁ ଭୁଲିଯାଏ, ସେହିପରି କୃଷ୍ଣଦର୍ଶନର ଆନନ୍ଦରେ ଉଲ୍ଲସିତା ଗୋପୀମାନେ କୃଷ୍ଣଙ୍କର ବିରହଦୁଃଖ ଭୁଲିଗଲେ ॥୯॥ ବତ୍ସ ପରୀକ୍ଷିତ, ଐଶ୍ୱର୍ଯ୍ୟ ଆଦି ନିଜ ସ୍ୱରୂପର ଶକ୍ତିରେ ପରମାତ୍ମା ଯେପରି ଶୋଭାପାଆନ୍ତି, ସେହିପରି ଭଗବାନ୍ କୃଷ୍ଣ ବିରହଶୋକରୁ ମୁକ୍ତ ଗୋପୀମାନଙ୍କଦ୍ୱାରା ପରିବେଷ୍ଟିତ ହୋଇ ଅତିଶୟ ସୁନ୍ଦର ଦେଖାଗଲେ ॥୧୦॥ ଶରଦ ଚନ୍ଦ୍ରର ଉଜ୍ଜ୍ୱଳ କିରଣରେ କେଉଁଠି ହେଲେ ଅନ୍ଧାର ଦେଖାଯାଉ ନ ଥିଲା । କୁନ୍ଦ ଓ ମନ୍ଦାର ଫୁଲର ସୁବାସ ପବନରେ ଭାସି ଆସୁଥିଲା ଓ ଭ୍ରମରମାନେ ସେଥିରେ ଆକୃଷ୍ଟ ହୋଇ ବୁଲୁଥିଲେ । ସେତେବେଳେ ଶୁଭ୍ର ବାଲୁକାମୟ ଯମୁନାପୁଳିନରେ ଗୋପୀମାନଙ୍କ ଗହଣରେ କୃଷ୍ଣ ଅତିଶୟ ଶୋଭାପାଇବାକୁ ଲାଗିଲେ ॥୧୧-୧୨॥ ଶ୍ରୀକୃଷ୍ଣଙ୍କ ଦର୍ଶନଜନିତ ଆନନ୍ଦରେ ବ୍ରଜବଧୂମାନଙ୍କ ହୃଦୟର ବ୍ୟଥା ଦୂର ହୋଇଗଲା । ଯେପରି ବେଦ ଓ ଉପନିଷଦ୍‌ମାନଙ୍କର ଲକ୍ଷ୍ୟ ହେଉଛି ସମସ୍ତ କାମନା ଶାନ୍ତ କରି ପରମ ଆନନ୍ଦ ଲାଭ କରିବା, ସେହିପରି କୃଷ୍ଣଙ୍କୁ ଦେଖି ଗୋପୀମାନଙ୍କର ସମସ୍ତ ମନୋରଥ ପୂର୍ଣ୍ଣ ହେଲା ଏବଂ ସେମାନେ ପରମ ଆନନ୍ଦ ଲାଭକଲେ । ସେମାନଙ୍କର ବନ୍ଧୁ ଅନ୍ତର୍ଯାମୀ ଶ୍ରୀକୃଷ୍ଣଙ୍କର ବସିବା ନିମନ୍ତେ ସେମାନେ ନିଜର କୁଚକୁଙ୍କୁମ ରଂଜିତ ଉତ୍ତରୀୟ ସବୁ ବିଛାଇଦେଲେ ॥୧୩॥ ଯୋଗେଶ୍ୱରମାନେ ସେମାନଙ୍କ ହୃଦୟରେ ଯାହାଙ୍କର ଆସନକୁ କଳ୍ପନା କରିଥା'ନ୍ତି, ସେହି ପରମ ଐଶ୍ୱର୍ଯ୍ୟମୟ ଭଗବାନ୍ ଗୋପୀମାନଙ୍କ ସଭାରେ ସମ୍ମାନିତ ହୋଇ ସେମାନଙ୍କ ଉତ୍ତରୀୟ ଆସନରେ ଉପବେଶନ କଲେ । ସେତେବେଳେ ତ୍ରିଲୋକର ସକଳ ସୌନ୍ଦର୍ଯ୍ୟ ଏକତ୍ର ହୋଇ କୃଷ୍ଣଙ୍କ ଶରୀରରେ ରୂପାୟିତ ହେଲା ॥୧୪॥ ଶ୍ରୀକୃଷ୍ଣଙ୍କର ଏହି ଲାବଣ୍ୟମୟ ରୂପ ଗୋପୀମାନଙ୍କର ପ୍ରେମାଭିଳାଷକୁ ଆହୁରି ବଢ଼ାଇଦେଲା । ଗୋପୀମାନେ ନିଜର ମନ୍ଦହାସ, ପ୍ରେମପୂର୍ଣ୍ଣ ଦୃଷ୍ଟି ଓ ଭ୍ରୂଭଙ୍ଗୀ ଦ୍ୱାରା କୃଷ୍ଣଙ୍କୁ ସମ୍ମାନିତ କଲେ । କେହି କେହି କୃଷ୍ଣଙ୍କର ପାଦପଦ୍ମକୁ କ୍ରୋଡ଼ରେ ରଖିଲେ ଓ କେହି ତାଙ୍କର କରକମଳକୁ ଧରି ଆନନ୍ଦ ଅନୁଭବ କଲେ । ତା'ପରେ ସାମାନ୍ୟ ରାଗ ଓ ଅଭିମାନରେ ସେମାନେ କହିବାକୁ ଲାଗିଲେ ॥୧୫॥ ଗୋପୀମାନେ କହିଲେ କୃଷ୍ଣ, କେତେକ ବ୍ୟକ୍ତି ଅଛନ୍ତି ଯେଉଁମାନେ ସେମାନଙ୍କୁ ଭଜୁଥିବା ବ୍ୟକ୍ତିଙ୍କୁ ପ୍ରେମ କରନ୍ତି । ଆଉ କେତେକେ ସେମାନଙ୍କୁ ପ୍ରେମ ନ କରୁଥିବା ଲୋକଙ୍କୁ ମଧ୍ୟ ପ୍ରେମ କରନ୍ତି । ଆଉ କେତେକେ ଅଛନ୍ତି ଯେଉଁମାନେ ତାଙ୍କୁ ପ୍ରେମ କରୁଥିବା ଓ ନ କରୁଥିବା ଉଭୟଙ୍କୁ ଆଦୌ ପ୍ରେମ କରନ୍ତି ନାହିଁ । ପ୍ରିୟ ବନ୍ଧୁ, ଏମାନଙ୍କ ମଧ୍ୟରେ କିଏ ଠିକ୍, ତୁମେ ତା'ର ଉତ୍ତର ଦିଅ ॥୧୬॥ ଶ୍ରୀକୃଷ୍ଣ କହିଲେ, ହେ ମୋର ପ୍ରିୟ ସଖୀଗଣ, ଯେଉଁ ଲୋକକୁ ପ୍ରେମ କଲେ ସେ ପ୍ରେମ କରେ, କେବଳ ନିଜର ସ୍ୱାର୍ଥପାଇଁ ହିଁ ସେ ତାହା କରିଥାଏ । ସେଥିରେ ସୌହାର୍ଦ୍ଦ ନ ଥାଏ କିମ୍ୱା ଧର୍ମ ନ ଥାଏ । କେବଳ ସ୍ୱାର୍ଥସିଦ୍ଧି ଛଡ଼ା ତାର ଅନ୍ୟ କୌଣସି ଲକ୍ଷ୍ୟ ନ ଥାଏ ॥୧୭॥ ସୁନ୍ଦରୀମାନେ, ଯେଉଁମାନଙ୍କୁ ପ୍ରେମ ନ କଲେ ମଧ୍ୟ ସେମାନେ ପ୍ରେମ କରନ୍ତି, ପିତାମାତାଙ୍କପରି ସେମାନଙ୍କର ପ୍ରେମ ହେଉଛି ଧର୍ମଯୁକ୍ତ, ଶୁଦ୍ଧ ଓ ସୌହାର୍ଦ୍ଦପୂର୍ଣ୍ଣ । ଯେଉଁମାନଙ୍କୁ ପ୍ରେମ କଲେ ମଧ୍ୟ ସେମାନେ ପ୍ରେମ କରନ୍ତି ନାହିଁ, ସେମାନେ ହେଲେ ଚାରି ଶ୍ରେଣୀର । ପ୍ରଥମ ଆତ୍ମାରାମ--ନିଜ ମଧ୍ୟରେ ନିଜେ ଆନନ୍ଦରେ ମଗ୍ନ ଥାଆନ୍ତି । ଦ୍ୱିତୀୟ ପୂର୍ଣ୍ଣକାମ--ଯେଉଁମାନଙ୍କର ସମସ୍ତ କାମନା ପୂର୍ଣ୍ଣ ହୋଇ ସାରିଛି । ତୃତୀୟ ଅକୃତଜ୍ଞ--ଯେଉଁମାନେ ଉପକାରୀ ଲୋକର ଉପକାରକୁ ଭୁଲିଯାଆନ୍ତି । ଚତୁର୍ଥ ଗୁରୁଦ୍ରୋହୀ--ଯେଉଁମାନେ ଶ୍ରଦ୍ଧା ଓ ଉପକାର କରୁଥିବା ଗୁରୁତୁଲ୍ୟ ବ୍ୟକ୍ତିଙ୍କର ଦ୍ରୋହାଚରଣ କରନ୍ତି ॥୧୮-୧୯॥ ଗୋପୀମାନେ, ମୋତେ ଯେଉଁମାନେ ଭଜନକରନ୍ତି, ସେମାନଙ୍କପ୍ରତି ମୋର ବ୍ୟବହାର କିନ୍ତୁ ଅନ୍ୟ ପ୍ରକାରର । କୌଣସି ନିର୍ଦ୍ଧନ ବ୍ୟକ୍ତି ହଠାତ୍ ଧନ ଲାଭ କରି ପୁଣି ତାକୁ ହରାଇ ବସିଲେ ସେହି ଚିନ୍ତାରେ ଯେପରି ସେ ସର୍ବଦା ମଗ୍ନ ରହେ, ମୁଁ ଚାହେ ମୋତେ ଭଜନ କରୁଥିବା ବ୍ୟକ୍ତି ସେହିପରି ମୋତେ ନିରନ୍ତର

ଭଜନ କରୁ ॥୨୦॥ ଅବଳାଗଣ, ତୁମେ ମୋ'ପାଇଁ ବେଦଧର୍ମ ଏବଂ ନିଜର ଜ୍ଞାତିକୁଟୁମ୍ବ ତ୍ୟାଗ କରି ଦେଇଛ । ମୁଁ ତୁମର ଉତ୍କଣ୍ଠାବୃଦ୍ଧିପାଇଁ ଅନ୍ତର୍ହିତ ହୋଇଗଲି । ପ୍ରେୟସୀମାନେ, ମୁଁ ତୁମକୁ ପ୍ରେମ କରେ । ତୁମେମାନେ ସେଥିପାଇଁ ମୋତେ ଦୋଷ ଦିଅ ନାହିଁ ॥୨୧॥ ପ୍ରିୟ ଗୋପୀମାନେ, ଅଚ୍ଛେଦ୍ୟ ଗୃହଶୃଙ୍ଖଳକୁ ଛିନ୍ନ କରି ତୁମେମାନେ ମୋତେ ଭଜନକରିଛ, ତୁମର ଏହି ନିର୍ଦ୍ଦୋଷ ପ୍ରେମମୟ ମିଳନ ଓ ନିଃସ୍ୱାର୍ଥ ସେବାକୁ ମୁଁ କେବେହେଲେ ଭୁଲିପାରିବି ନାହିଁ । ଅନନ୍ତ କାଳପାଇଁ ଆୟୁଷ ଲାଭକଲେ ମଧ୍ୟ ମୁଁ ତୁମର ଋଣ ଶୁଝି ପାରିବି ନାହିଁ । ତୁମେ ତୁମର ନିଜ ଗୁଣରେ ଏହା ପରିଶୋଧ କରିପାର । କିନ୍ତୁ ମୁଁ ତୁମଠାରେ ଚିରଋଣୀ ହୋଇରହିବି ॥୨୨॥

## ତେତିଶ ଅଧ୍ୟାୟ

## ମହାରାସ

ଶ୍ରୀ ଶୁକଦେବ କହିଲେ, ପରିକ୍ଷିତ, ଗୋପୀମାନେ ଭଗବାନଙ୍କଠାରୁ ଏପରି ସୁମଧୁର ଓ କୋମଳ କଥାମାନ ଶୁଣି ଏବଂ ତାଙ୍କର ଅଂଗସ୍ପର୍ଶରେ ଆହ୍ଲାଦିତ ହୋଇ ସେମାନଙ୍କର ସକଳ ବିରହଜନିତ ଦୁଃଖ ଭୁଲିଗଲେ ॥୧॥ ପ୍ରେମମୟୀ ଗୋପୀମାନେ ସେହି ଯମୁନାକୂଳରେ ପରସ୍ପର ହାତ ଛନ୍ଦାଛନ୍ଦି ହୋଇ ଠିଆ ହୋଇଥିଲେ । ସେହି ସ୍ତ୍ରୀରତ୍ନମାନଙ୍କ ସହିତ ମିଳିତ ହୋଇ ଭଗବାନ୍ ଶ୍ରୀକୃଷ୍ଣ ରାସକ୍ରୀଡ଼ା ଆରମ୍ଭ କଲେ ॥୨॥

ଯୋଗେଶ୍ୱର ଶ୍ରୀକୃଷ୍ଣଙ୍କର ଦିବ୍ୟ ରାସୋତ୍ସବ ଆରମ୍ଭ ହେଲା । ମଣ୍ଡଳାକାରରେ ଗୋପୀମାନେ ରହିଗଲେ । ଦୁଇ ଦୁଇ ଗୋପୀଙ୍କ ମଧ୍ୟରେ ଜଣେ ଜଣେ କୃଷ୍ଣ--ଏହିପରି ଭଗବାନ୍ ଯୋଗମାୟାରେ ନିଜକୁ ପ୍ରକଟ କଲେ ଏବଂ ଗଳାରେ ଲଗାଇ ଗୋପୀମାନଙ୍କୁ ଆଲିଙ୍ଗନ କଲେ । ପ୍ରତ୍ୟେକ ଗୋପୀ ମନେକଲେ କୃଷ୍ଣ ତାଙ୍କପାଖରେ ରହିଛନ୍ତି । ରାସୋତ୍ସବ ଦେଖିବାର ଆଗ୍ରହରେ ସସ୍ତ୍ରୀକ ଦେବତାମାନେ ଶହ ଶହ ବିମାନରେ ନଭସ୍ଥଳରେ ସମବେତ ହେଲେ ॥୩-୪॥ ସ୍ୱର୍ଗରୁ ପୁଷ୍ପବୃଷ୍ଟି ହେବାକୁ ଲାଗିଲା ଓ ଦୁନ୍ଦୁଭିସବୁ ବାଜିଉଠିଲା । ଗନ୍ଧର୍ବମାନେ ନିଜ ସ୍ତ୍ରୀମାନଙ୍କ ସହିତ ଭଗବାନଙ୍କର ନିର୍ମଳ ଯଶ ଗାନ କରିବାକୁ ଲାଗିଲେ । ପ୍ରିୟତମଙ୍କ ସହିତ ନୃତ୍ୟ କରୁଥିବାବେଳେ ଗୋପୀମାନଙ୍କର ହସ୍ତର ବଳୟ, ପାଦର ନୂପୁର ଓ କଟିର କିଙ୍କିଣୀ ଝୁଣୁଝୁଣୁ ସ୍ୱରରେ ବାଜୁଥିଲା ଓ ସମସ୍ତଙ୍କର ମିଳିତ ତୁମୁଳ ଧ୍ୱନିରେ ରାସମଣ୍ଡଳ ପ୍ରତିଧ୍ୱନିତ ହେଉଥିଲା ॥୫-୬॥ ସୁବର୍ଣ୍ଣର ମଣିମାଳାରେ ଉଜ୍ଜ୍ୱଳ ନୀଳମଣି ଯେପରି ଶୋଭାପାଏ, ଗୋପୀମାନଙ୍କ ମଧ୍ୟରେ ଭଗବାନ୍ ଶ୍ରୀକୃଷ୍ଣ ସେହିପରି ଶୋଭା ପାଉଥିଲେ ॥୭॥ ଗୋପୀମାନେ ନୃତ୍ୟକଲାବେଳେ ନିଜର କବରୀ ଓ କଟିବସ୍ତ୍ରକୁ ଦୃଢ଼ ଭାବରେ ବାନ୍ଧିଥିଲେ । ସେମାନଙ୍କର ପାଦଚାଳନା ଓ ହସ୍ତଚାଳନା, ସ୍ମିତହାସ୍ୟ, ଭ୍ରୂଲତାର ଭାବଭଙ୍ଗୀ, କୃଶ କଟିତଟ, ଚଞ୍ଚଳ କୁଚ ଯୁଗଳ ଓ ପଟ୍ଟବସ୍ତ୍ର ଓ ଗଣ୍ଡସ୍ଥଳରେ ଦୋଳାୟିତ କୁଣ୍ଡଳଦ୍ୱାରା ସେମାନେ ଅତି ସୁନ୍ଦର ଦେଖାଯାଉଥିଲେ । କୃଷ୍ଣଙ୍କୁ ଧରି ଏହି କୃଷ୍ଣବଧୂମାନେ ନୃତ୍ୟ କରୁଥିବାବେଳେ କଳା ମେଘରେ ବିଜୁଳି ଝଟକିଲାପରି ଶୋଭାପାଉଥିଲେ ॥୮॥ କୃଷ୍ଣଙ୍କ ସଂସ୍ପର୍ଶରେ ଆସି ରତିପ୍ରିୟା ଗୋପୀମାନେ ଅତିଶୟ ଆନନ୍ଦ ଅନୁଭବ କଲେ । ଉଚ୍ଚ ସ୍ୱରରେ ଗାନ କରୁଥିବାବେଳେ ସେମାନଙ୍କର ଗଳା ଲାଲ ଦେଖାଗଲା ଏବଂ ସେମାନଙ୍କ ଗାନର ମୂର୍ଚ୍ଛନା ସଂସାରକୁ ବ୍ୟାପିଗଲା ॥୯॥ କେହି ଜଣେ ଗୋପୀ କୃଷ୍ଣଙ୍କ ସହ ସ୍ୱର ମିଶାଇ ଏପରି ଉଚ୍ଚ ସ୍ୱରରେ ଗାଉଥିଲା ଯେ କୃଷ୍ଣ ସନ୍ତୁଷ୍ଟ ହୋଇ ତାକୁ ସାଧୁ ସାଧୁ ବୋଲି ପ୍ରଶଂସା କରିଲାଗିଲେ । ଆଉ ଜଣେ ଗୋପୀ ଅତି ମଧୁର ସ୍ୱରରେ ଧ୍ରୁପଦରେ ଗାଇଲା । କୃଷ୍ଣ ତାକୁ ବହୁ ସମ୍ମାନ ଜଣାଇଲେ ॥୧୦॥ କେହି ଜଣେ ଗୋପୀ ନାଚି ନାଚି ଥକିଗଲା । ତାର

କେଶପାଶ ହୁଗୁଳା ହୋଇଯିବାରୁ କବରୀର ବଳୟ ଓ ମଲ୍ଲୀମାଳ ତଳକୁ ଖସିପଡ଼ିଲା । ସେ କୃଷ୍ଣଙ୍କ କାନ୍ଧକୁ ଜୋର୍‌ରେ ଚାପିଧରିଲା ॥୧୧॥ ଆଉ ଜଣେ ଗୋପୀର କାନ୍ଧରେ କୃଷ୍ଣ ତାଙ୍କର ହାତ ରଖିଥିଲେ । ସେହି ହାତଟି ଥିଲା ପଦ୍ମପୁଷ୍ପ ପରି ସୁଗନ୍ଧଯୁକ୍ତ; ପୁଣି ସୁଗନ୍ଧ ଚନ୍ଦନ ସେଥିରେ ବୋଳା ହୋଇଥିଲା । କୃଷ୍ଣପ୍ରେମରେ ଉଲ୍ଲସିତା ଗୋପୀଟି ବାରମ୍ବାର ତାଙ୍କୁ ଚୁମ୍ବନ କରିଲାଗିଲା ॥୧୨॥ ନାଚୁଥିବାବେଳେ କୌଣସି ଗୋପୀର କୁଣ୍ଡଳର କାନ୍ତିରେ ତାର ଗଣ୍ଡସ୍ଥଳ ଝଲକିଉଠୁଥିଲା । ସେ ତାର ଗଣ୍ଡକୁ କୃଷ୍ଣଙ୍କର ଗଣ୍ଡ ସ୍ଥଳରେ ରଖିବା ମାତ୍ରେ କୃଷ୍ଣ ନିଜେ ଖାଉଥିବା ତାମ୍ବୁଳଟିକୁ ତାର ପାଟିରେ ଦେଇଦେଲେ ॥୧୩॥ ଏହି ଗୋପୀ ନାଚୁଥିବା ଓ ଗାଉଥିବା ବେଳେ ତାର ପାଦର ନୂପୁର ଓ କଟିର କିଙ୍କିଣି ଝୁଣୁଝୁଣୁ ହୋଇ ବାଜୁଥିଲା । ସେ ଯେତେବେଳେ ଥକିଗଲା, ପାଖରେ ଠିଆହୋଇଥିବା କୃଷ୍ଣଙ୍କର କରକମଳକୁ ନିଜର ସ୍ତନଦ୍ୱୟ ଉପରେ ଥାପି ଆନନ୍ଦ ଅନୁଭବ କଲା ॥୧୪॥

ଏହିପରି ବ୍ରଜଗୋପୀମାନେ ଲକ୍ଷ୍ମୀଙ୍କର ଏକାନ୍ତବଲ୍ଲଭ ଅଚ୍ୟୁତଙ୍କୁ କାନ୍ତରୂପେ ଲାଭକରି ବିହାର କରିବାକୁ ଲାଗିଲେ । କୃଷ୍ଣ ତାଙ୍କ ଭୁଜଦ୍ୱୟରେ ସେମାନଙ୍କ ଗଳାକୁ ଆଲିଙ୍ଗନ କରୁଥିଲେ ଏବଂ ସେମାନେ ତାଙ୍କର ଯଶୋଗାନ କରି ଚାଲିଥିଲେ ॥୧୫॥ ସେହି ରାସମଣ୍ଡଳରେ ଗୁଞ୍ଜନକାରୀ ଭ୍ରମରମାନେ ଗାୟକ ସାଜିଥିଲେ । ଗୋପୀମାନଙ୍କର କଙ୍କଣ, ନୂପୁର ଓ କିଙ୍କିଣୀ ସବୁ ବାଦ୍ୟର ଧ୍ୱନି ତୋଳୁଥିଲେ । ସେମାନଙ୍କର କାନରେ ପଦ୍ମପୁଷ୍ପର କୁଣ୍ଡଳ ଓ କପୋଳ ଉପରେ ଆଲୁଳାୟିତ କେଶରାଶି ପଡ଼ି ଶୋଭା ପାଉଥିଲା । ଶ୍ରମଝାଳ ଲାଗି ମୁଖମଣ୍ଡଳ ସବୁ ଆହୁରି ସୁନ୍ଦର ଦେଖାଯାଉଥିଲା । ଏହିପରି ଭାବରେ ଗୋପୀମାନେ କୃଷ୍ଣଙ୍କ ସହିତ ଆନନ୍ଦରେ ନୃତ୍ୟ କରୁଥିଲେ ॥୧୬॥ ପରିକ୍ଷିତ, ଶିଶୁ ଯେପରି ନିଜର ଛାଇ ସହିତ ଖେଳେ, ରମାରମଣ କୃଷ୍ଣ ସେହିପରି ଗୋପୀମାନଙ୍କ ସହିତ ରମଣ କଲେ । କେତେବେଳେ ସେମାନଙ୍କୁ ସେ ଆଲିଙ୍ଗନ କରୁଥିଲେ ତ କେତେବେଳେ ସେମାନଙ୍କର ହାତକୁ ଚାପି ଧରୁଥିଲେ । କେତେବେଳେ ସ୍ନେହପୂର୍ଣ୍ଣ ଦୃଷ୍ଟିରେ ଦେଖୁଥିଲେ ଏବଂ କେତେବେଳେ ମନଖୋଲା ହସରେ ମୋହିତ କରି ସେମାନଙ୍କ ସହିତ ନାନାପ୍ରକାର କ୍ରୀଡ଼ା କରୁଥିଲେ ॥୧୭॥ ପରିକ୍ଷିତ, ଶ୍ରୀକୃଷ୍ଣଙ୍କର ଅଙ୍ଗସଙ୍ଗଦ୍ୱାରା ବ୍ରଜରମଣୀମାନେ ଆନନ୍ଦରେ ଏପରି ଅସ୍ଥିର ହୋଇପଡ଼ିଲେ ଯେ ସେମାନଙ୍କର ମୁଣ୍ଡରେ ଥିବା ଫୁଲମାଳ ଏବଂ ଦେହର ଅଳଙ୍କାରସବୁ ଖସିବାକୁ ଲାଗିଲା ଏବଂ ସେମାନେ ନିଜର ମୁକୁଳାବାଳ ଏବଂ ଖସି ଯାଉଥିବା ବସ୍ତ୍ର ଓ କୁଚ-କାଞ୍ଚୁଲାକୁ ବାନ୍ଧି ପାରୁ ନ ଥିଲେ ॥୧୮॥ କୃଷ୍ଣଙ୍କର ରାସଲୀଳା ଦେଖି ଆକାଶରେ ଥିବା ଦେବାଙ୍ଗନାମାନେ କାମପୀଡାରେ ମୂର୍ଚ୍ଛିତପ୍ରାୟ ହୋଇଗଲେ । ଚନ୍ଦ୍ରମା ଓ ଗ୍ରହ ନକ୍ଷତ୍ରଗଣ ବିମୋହିତ ହେଲେ । ଭଗବାନ୍ ଶ୍ରୀକୃଷ୍ଣ ଆତ୍ମାରାମ । ନିଜେ ଆନନ୍ଦମୟ; କିନ୍ତୁ ଗୋପୀମାନଙ୍କର ଆନନ୍ଦପାଇଁ ଯେତେ ଜଣ ଗୋପୀ ଥିଲେ ସେତେ ଜଣ ହୋଇ ସେ ସେମାନଙ୍କ ସହିତ ସ୍ୱଚ୍ଛନ୍ଦରେ ବିହାର କରିବାକୁ ଲାଗିଲେ ॥୧୯-୨୦॥

ରତିକ୍ରୀଡ଼ାରେ ଯେତେବେଳେ ଗୋପୀମାନେ କ୍ଲାନ୍ତ ହୋଇପଡ଼ିଲେ, କୃଷ୍ଣ ସେତେବେଳେ ବ୍ୟସ୍ତ ହୋଇପଡ଼ି ପ୍ରେମଭରେ ସେମାନଙ୍କ ମୁହଁର ଝାଳସବୁ ହାତରେ ପୋଛିଦେଲେ । କୃଷ୍ଣଙ୍କର ନଖସ୍ପର୍ଶରେ ଗୋପୀମାନେ ଉତ୍‌ଫୁଲ୍ଲ ହୋଇଗଲେ । କର୍ଣ୍ଣରେ ଦୋଳାୟିତ ସ୍ୱର୍ଣ୍ଣକୁଣ୍ଡଳ ଓ ଆଲୁଳାୟିତ ଚୂର୍ଣ୍ଣକୁନ୍ତଳ ଦ୍ୱାରା ସେମାନଙ୍କର ଗଣ୍ଡସ୍ଥଳ ଶୋଭାପାଉଥିଲା । ମଧୁର ବାକ୍ୟ, ମୃଦୁ ହାସ୍ୟ ଓ ମନୋହର ଦୃଷ୍ଟିପାତ ଦ୍ୱାରା ସେମାନେ କୃଷ୍ଣଙ୍କର ଆନନ୍ଦ ବର୍ଦ୍ଧନକଲେ ଏବଂ ତାଙ୍କରି ପବିତ୍ର ଲୀଳାମାନ ଗାନ କରିବାକୁ ଲାଗିଲେ ॥୨୧-୨୨॥ ଗଜେନ୍ଦ୍ର ନିଜର ହସ୍ତିନୀମାନଙ୍କ ସହିତ କ୍ରୀଡ଼ା କରି କ୍ଲାନ୍ତ ହୋଇଯିବାପରେ ଯେପରି ସେମାନଙ୍କ ସହିତ କୂଳର ଅତଡାକୁ ଭାଙ୍ଗି ଜଳ ମଧ୍ୟରେ ପ୍ରବେଶ କରେ, ସେହିପରି କୃଷ୍ଣ ନିଜର ଶ୍ରମ ଦୂର କରିବାପାଇଁ ଗୋପୀମାନଙ୍କଦ୍ୱାରା ପରିବେଷ୍ଟିତ ହୋଇ ଯମୁନାଜଳରେ ପ୍ରବେଶ କଲେ । ସେତେବେଳେ ଭଗବାନଙ୍କର ବକ୍ଷରେ ଥିବା ବନମାଳା ଗୋପୀଙ୍କ ଅଙ୍ଗସଙ୍ଗଯୋଗୁଁ ଛିନ୍ନଭିନ୍ନ ଓ ସେମାନଙ୍କ କୁଚକୁଙ୍କୁମ ଲାଗି ରଞ୍ଜିତ ହୋଇପଡ଼ିଥିଲା । ଗାନରତ ଗନ୍ଧର୍ବପତିମାନଙ୍କ ପରି ଗୁଞ୍ଜନରତ ଭ୍ରମରମାନେ ସେହି ପୁଷ୍ପମାଳାର ଗନ୍ଧରେ ଆମୋଦିତ ହୋଇ ତାଙ୍କ ପଛେ ପଛେ

ଚାଲିଥିଲେ ।।୨୩।। ପରିକ୍ଷିତ, ବ୍ରଜଯୁବତୀମାନେ ହସି ହସି ପ୍ରେମପୂର୍ଣ୍ଣ ଦୃଷ୍ଟିରେ ଚାରିଆଡୁ ତାଙ୍କ ଦେହରେ ପାଣି ପକାଇବାକୁ ଲାଗିଲେ । ଦେବତାମାନେ ପୁଷ୍ପବୃଷ୍ଟି କରି ତାଙ୍କୁ ସ୍ତୁତି କରୁଥିଲେ ଏବଂ ସେ ସ୍ୱୟଂ ଗଜେନ୍ଦ୍ର ପରି ଯମୁନାଜଳରେ କ୍ରୀଡା କରିବାକୁ ଲାଗିଲେ ।।୨୪।। ଜଳକ୍ରୀଡା ପରେ ମଦସ୍ରାବୀ ଗଜରାଜ ଯେପରି ହସ୍ତିନୀମାନଙ୍କଦ୍ୱାରା ବେଷ୍ଟିତ ହୋଇ ପାଣିରୁ ବାହାରିଆସେ, ସେହିପରି କ୍ରୀଡ଼ା ସାରି ଶ୍ରୀକୃଷ୍ଣ ବ୍ରଜନାରୀ ଓ ଭ୍ରମରଙ୍କଦ୍ୱାରା ବେଷ୍ଟିତ ହୋଇ ଯମୁନାର ଉପବନରେ ବିହାର କରିବାକୁ ଲାଗିଲେ ଏବଂ ତାଙ୍କ ଚତୁର୍ଦ୍ଦିଗରେ ଜଳ ଓ ସ୍ଥଳରେ ଫୁଟିଥିବା ଫୁଲସବୁ ଶୋଭା ପାଉଥିଲେ ।।୨୫।। ଶରତ୍ ପୂର୍ଣ୍ଣିମାର ରାତ୍ରିରେ ଚତୁର୍ଦ୍ଦିଗ ଚନ୍ଦ୍ରଜ୍ୟୋସ୍ନାରେ ଧୌତ ହୋଇଥିଲା । ଶୃଙ୍ଗାରରସାଶ୍ରିତ କାବ୍ୟରେ ଯେପରି ଏମାନଙ୍କର ବର୍ଣ୍ଣନା କରାଯାଏ, ଏହା ସେହିପରି ଥିଲା ଚମତ୍କାର ରାତ୍ରି । ଗୋପୀମାନଙ୍କ ପାଖରେ କୃଷ୍ଣ ପୂର୍ବରୁ ଯାହା ସତ୍ୟ କରିଥିଲେ, ତାହା ପାଳନ କଲେ ଏବଂ ରତିକ୍ରୀଡ଼ାରେ ନିଜର ଶୁକ୍ରକୁ ଶରୀର ମଧ୍ୟରେ ଅବରୁଦ୍ଧ କରି ସେ ସେମାନଙ୍କ ସହିତ ଏହି ଶାରଦୀୟ ରଜନୀମାନଙ୍କୁ ଉପଭୋଗ କଲେ । (ଏଣୁ ସେ କାମବିଜୟୀ ହେଲେ) ।।୨୬।।

ପରିକ୍ଷିତ କହିଲେ, ବ୍ରହ୍ମନ୍, ଧର୍ମର ସଂସ୍ଥାପନପାଇଁ ଏବଂ ଅଧର୍ମର ବିନାଶ କରିବାପାଇଁ ଜଗଦୀଶ୍ୱର ଭଗବାନ୍ ନିଜ ଅଂଶରେ ଅବତରଣ କରନ୍ତି । ତେଣୁ ଧର୍ମ ମର୍ଯ୍ୟାଦାର ସ୍ୱୟଂ କର୍ତ୍ତା, ପ୍ରବକ୍ତା ଓ ରକ୍ଷକ ଭଗବାନ କିପରି ଏହି ଧର୍ମବିରୁଦ୍ଧ ପରଦାରାସଙ୍ଗମ କଲେ ।।୨୭-୨୮।। ହେ ସତ୍ୟବ୍ରତ, ଭଗବାନ ସ୍ୱୟଂ ପୂର୍ଣ୍ଣକାମ । ତାଙ୍କ ଠାରେ କୌଣସି ବସ୍ତୁର କାମନା ନ ଥାଏ । ତେଣୁ କି ଅଭିପ୍ରାୟରେ ସେ ଏହି ନିନ୍ଦିତ କର୍ମ କରିଥିଲେ, ମୋର ଏହି ସନ୍ଦେହକୁ ଆପଣ ଦୂର କରନ୍ତୁ ।।୨୯।। ଶ୍ରୀ ଶୁକଦେବ କହିଲେ, ସମୟ ସମୟରେ ଧର୍ମମୁଖ୍ୟ ଦେବେଶ୍ୱରମାନଙ୍କର (ଆଚରଣରେ) ଧର୍ମର ବ୍ୟତିକ୍ରମ ଓ ସାହସିକତା ଦେଖିବାକୁ ମିଳେ । ସର୍ବଭକ୍ଷ ହୋଇ ଯେପରି ଅଗ୍ନି ଅପବିତ୍ର ହୁଏ ନାହିଁ, ସେହିପରି ଏଭଳି କଲେ (ପ୍ରଜାପତି, ଇନ୍ଦ୍ର, ସୋମ ଓ ବିଶ୍ୱାମିତ୍ରାଦି) ତେଜସ୍ୱୀ ପୁରୁଷମାନଙ୍କୁ କୌଣସି ଦୋଷ ଲାଗେ ନାହିଁ ।।୩୦।। ଯେଉଁମାନେ ସେମାନଙ୍କପରି ଈଶ୍ୱର ନୁହନ୍ତି, (ଦେହାଭିମାନୀ ଜୀବ) ସେମାନେ ମନରେ ମଧ୍ୟ କେବେ ଏହା କରିବା ଉଚିତ ନୁହେଁ । ଯଦି ମୂର୍ଖତାବଶତଃ କେହି ଏହାକୁ କରେ, ତା'ହେଲେ ତାର ବିନାଶ ଅବଶ୍ୟମ୍ଭାବୀ । ଭଗବାନ୍ ଶଙ୍କର ହଳାହଳ ବିଷ ପାନକରିଥିଲେ ବୋଲି ଅନ୍ୟ କେହି ତାହା କରିପାରିବ ନାହିଁ ।।୩୧।। ଏଣୁ ଭଗବାନ୍ ଶଙ୍କର ଆଦି ଈଶ୍ୱରଙ୍କର ବାକ୍ୟ ସତ୍ୟ; ଆଚରଣରେ କ୍ୱଚିତ୍ ବ୍ୟତିକ୍ରମ ଦେଖାଯାଏ । ଈଶ୍ୱରଙ୍କର ବାକ୍ୟକୁ ସତ୍ୟବୋଲି ଗ୍ରହଣ କରିବା ଉଚିତ । ତାଙ୍କର ଯେଉଁ ଉପଦେଶ ଯୁକ୍ତିଯୁକ୍ତ, ବିବେକୀ ବ୍ୟକ୍ତି ତାହାକୁ ହିଁ କରିବା ବାଞ୍ଛନୀୟ ।।୩୨।।

ରାଜା, ଏହି ନିରହଙ୍କାର ମହାପୁରୁଷମାନେ ସମସ୍ତ ପାପପୁଣ୍ୟର ଉର୍ଦ୍ଧ୍ୱରେ ଥିବାରୁ ସେମାନେ ପୁଣ୍ୟକାର୍ଯ୍ୟ କଲେ ପୁଣ୍ୟଫଳ ଘଟିବାର ଅଥବା ପାପକାର୍ଯ୍ୟ କଲେ ଅନର୍ଥ ଘଟିବାର ସମ୍ଭାବନା ନ ଥାଏ ।।୩୩।। ଅହଂଭାବ ନ ଥିବାଯୋଗୁଁ ଯଦି ମହାପୁରୁଷମାନଙ୍କ କାର୍ଯ୍ୟରେ କୌଣସି ଅର୍ଥ ବା ଅନର୍ଥ ହେବାର ନ ଥାଏ, ତାହେଲେ ଈଶ୍ୱରଙ୍କ ନିୟମାଧୀନ ପଶୁ, ପକ୍ଷୀ, ମନୁଷ୍ୟ ଓ ଦେବତା ପ୍ରଭୃତି ଜୀବମାନଙ୍କର ନିୟନ୍ତା ପରମାତ୍ମା ଶ୍ରୀକୃଷ୍ଣଙ୍କ ସହିତ ପାପପୁଣ୍ୟର ସମ୍ବନ୍ଧ କିପରି ବା ଯୋଡ଼ାଯାଇପାରିବ ? ।।୩୪।। ଯାହାଙ୍କର ଚରଣକମଳରଜ ସେବନ କରି ଭକ୍ତମାନେ ତୃପ୍ତ ହୁଅନ୍ତି, ଗୋପୀମାନେ ଯାହାଙ୍କ ଶରଣରେ ଆସି ଯୋଗପ୍ରଭାବରେ ନିଜର ସମସ୍ତ କର୍ମବନ୍ଧନକୁ ଛେଦନ କରି ସ୍ୱଚ୍ଛନ୍ଦରେ ବିଚରଣ କରନ୍ତି, ସ୍ୱେଚ୍ଛାରେ ଶରୀର ଧାରଣ କରିଥିବା ସେହି ଭଗବାନଙ୍କର ଗୋଟାଏ କର୍ମବନ୍ଧନ କ'ଣ ? ।।୩୫।। ସେ ହେଉଛନ୍ତି ଶ୍ରୀକୃଷ୍ଣ, ଅନ୍ୟ କେହି ନୁହନ୍ତି । ସେ ହେଉଛନ୍ତି ଗୋପୀମାନଙ୍କର, ସେମାନଙ୍କ ପତିମାନଙ୍କର ଓ ଅନ୍ୟ ସମସ୍ତ ଜୀବଙ୍କର ଅନ୍ତର୍ଯାମୀ, ସେମାନଙ୍କ ଅନ୍ତରର ଅଧୀଶ୍ୱର ରୂପେ ବିରାଜମାନ । ସେ ନିଜର ଲୀଳା ପାଇଁ ଦେହଧାରଣ କରିଛନ୍ତି ।।୩୬।। କେବଳ ଭକ୍ତମାନଙ୍କୁ ଅନୁଗୃହୀତ କରିବାପାଇଁ ସେ ମନୁଷ୍ୟଦେହ ଧାରଣକରିଛନ୍ତି । ତାଙ୍କର ଲୀଳାମାନ ଶ୍ରବଣକରି ଜୀବ ଭଗବତ୍‌ପରାୟଣ ହୋଇଯାଏ ।।୩୭।।

ଶ୍ରୀକୃଷ୍ଣଙ୍କ ମାୟାରେ ମୋହିତ ଗୋପାଳମାନେ ସେମାନଙ୍କର ପତ୍ନୀମାନେ ନିଜ ପାଖରେ ନିଜ ଅଛନ୍ତି ବୋଲି ମନେକରି କୃଷ୍ଣଙ୍କପ୍ରତି କୌଣସି ଅସୂୟାଭାବ ରଖିଲେ ନାହିଁ ।।୩୮।। ବ୍ରହ୍ମାଙ୍କର ରାତ୍ରି ପରି ଏହି ସୁଦୀର୍ଘ ରାତ୍ରିଟି କଟିଯାଇ ବ୍ରାହ୍ମମୁହୂର୍ତ୍ତ ଉପସ୍ଥିତ ହେଲା । ଘରକୁ ଫେରିବାପାଇଁ ଇଚ୍ଛା ନ ଥିଲେ ମଧ୍ୟ ଭଗବତପ୍ରିୟ ଗୋପୀମାନେ କୃଷ୍ଣଙ୍କର ଆଜ୍ଞାରେ ନିଜ ନିଜ ଘରକୁ ଫେରିଗଲେ ।।୩୯।। ଯେଉଁ ବ୍ୟକ୍ତି ଶ୍ରଦ୍ଧାର ସହିତ ବ୍ରଜବଧୂମାନଙ୍କ ସହ ଶ୍ରୀକୃଷ୍ଣଙ୍କର ଏହି ରାସଲୀଳା କଥା ଶ୍ରବଣ କରେ ଏବଂ ଶୁଣିସାରି ତାହା ଅନ୍ୟମାନଙ୍କୁ ବର୍ଣ୍ଣନା କରି ଶୁଣାଏ, ଖୁବ୍ ଶୀଘ୍ର ଶ୍ରୀକୃଷ୍ଣଙ୍କଠାରେ ତାର ପରମ ଭକ୍ତିଭାବ ଜାତ ହୁଏ ଏବଂ ହୃଦୟର ରୋଗସ୍ୱରୂପ କାମବାସନା ତାର ଦୂରୀଭୂତ ହୁଏ ।।୪୦।।

## ଚଉତିରିଶ ଅଧ୍ୟାୟ

# ସୁଦର୍ଶନ ଓ ଶଙ୍ଖଚୂଡ଼ ଉଦ୍ଧାର

ଥରେ ଗୋପାଳମାନେ ଶିବରାତ୍ରିପାଇଁ ଅତି ଆନନ୍ଦ ଉତ୍ସାହରେ ବଳଦଗାଡ଼ିମାନ ଯୋଚି ଅମ୍ବିକାବନକୁ ଯାତ୍ରା କଲେ ।।୧।। ସେଠାରେ ସେମାନେ ସରସ୍ୱତୀ ନଦୀରେ ସ୍ନାନ କଲେ ଏବଂ ପଶୁପତି ଭଗବାନ୍ ଶିବଙ୍କୁ ଓ ଭଗବତୀ ଅମ୍ବିକାଙ୍କୁ ଭକ୍ତିରେ ନାନାପ୍ରକାର ପୂଜାସାମଗ୍ରୀଦ୍ୱାରା ଅର୍ଚ୍ଚନା କଲେ । ଭଗବାନ୍ ଆମର ମଙ୍ଗଳ କରନ୍ତୁ -- ଏହା ମନାସି ସେମାନେ ବ୍ରାହ୍ମଣମାନଙ୍କୁ ମଧୁର ଅନ୍ନ, ବସ୍ତ୍ର, ସ୍ୱର୍ଣ୍ଣ, ଗାଭୀ ଓ ମଧୁ ଆଦି ଦାନ କଲେ ।।୨-୩।। ମହାଭାଗ୍ୟବାନ୍ ନନ୍ଦ, ସୁନନ୍ଦ ଆଦି ଗୋପାଳମାନେ ସେଦିନ ରାତ୍ରିରେ ଉପବାସ କରିଥିଲେ । ସାମାନ୍ୟ ଜଳମାତ୍ର ପାନ କରି ସେମାନେ ସରସ୍ୱତୀ ନଦୀକୂଳରେ ଶୋଇଥିଲେ ।।୪।। ସେହି ଅମ୍ବିକାବନରେ ରହୁଥିବା ଏକ କ୍ଷୁଧିତ ବିଶାଳ ଅଜଗର ସାପ ଇଚ୍ଛାନୁସାରେ ବୁଲୁ ବୁଲୁ ଶୋଇଥିବା ନନ୍ଦଙ୍କୁ ଧୀରେ ଧୀରେ ଗିଳିବାକୁଲାଗିଲା । ଅଜଗର ଗ୍ରାସରୁ ରକ୍ଷା ପାଇବାପାଇଁ ନନ୍ଦ ଚିତ୍କାର କରିବାକୁ ଲାଗିଲେ -- ହେ କୃଷ୍ଣ, ହେ ପୁତ୍ର, ଏକ ବିଶାଳ ଅଜଗର ସାପ ମୋତେ ଗିଳିବାରେ ଲାଗିଛି; ମୁଁ ତୋର ଆଶ୍ରିତ; ମୋତେ ରକ୍ଷା କର ।।୫-୬।। ନନ୍ଦଙ୍କର ପାଟି ଶୁଣି ଗୋପାଳମାନେ ଏକାବେଳେକେ ଉଠି ପଡ଼ିଲେ ଏବଂ ନନ୍ଦଙ୍କୁ ଏକ ଅଜଗର ସାପ ଗିଳି ପକାଇବାର ଦେଖି ସେମାନେ ବ୍ୟସ୍ତ ହୋଇ ଏକ ଜଳନ୍ତାକାଠରେ ତାକୁ ମାରିବାକୁ ଲାଗିଲେ ।।୭।। କିନ୍ତୁ ଜଳନ୍ତା କାଠରେ ମଧ୍ୟ ଅଜଗରର କିଛି ହେଲା ନାହିଁ । ଏହି ସମୟରେ ଭକ୍ତବତ୍ସଳ ଭଗବାନ୍ ସେଠାରେ ପହଞ୍ଚି ଅଜଗରକୁ ନିଜର ପାଦରେ ସ୍ପର୍ଶ କଲେ ।।୮।। ଭଗବାନଙ୍କ ଶ୍ରୀଚରଣ ସ୍ପର୍ଶରେ ଅଜଗର ସର୍ପର ସମସ୍ତ ଅଶୁଭ ଦୂର ହୋଇଗଲା ଏବଂ ସେ ସର୍ପଶରୀର ତ୍ୟାଗ କରି ଏକ ସୁନ୍ଦର ବିଦ୍ୟାଧରରୂପ ଧାରଣକରି ଠିଆ ହୋଇଗଲା ।।୯।। ତା'ର ଶରୀରରୁ ଏକ ଦିବ୍ୟ ଜ୍ୟୋତି ବାହାରୁଥିଲା ଏବଂ ସେ ଏକ ସୁବର୍ଣ୍ଣର ମାଳା ପିନ୍ଧିଥିଲା । ସେ କୃଷ୍ଣଙ୍କୁ ହାତ ଯୋଡ଼ି ପ୍ରଣାମ କରିବାରୁ ହୃଷୀକେଶ କୃଷ୍ଣ ପଚାରିଲେ, ତୁମେ କିଏ ? ତୁମର ଦେହରୁ ଏକ ଦିବ୍ୟ ଜ୍ୟୋତି ପ୍ରକାଶ ପାଉଛି । କେଉଁ କାରଣରୁ ବିବଶ ହୋଇ ତୁମେ ଏହି ନିନ୍ଦନୀୟ ଅଜଗର ଯୋନିରେ ଜନ୍ମ ହୋଇଥିଲ ? ।।୧୦-୧୧।। ସର୍ପ କହିଲା, ମୁଁ ଜଣେ ବିଦ୍ୟାଧର । ମୋର ନାମ ସୁଦର୍ଶନ ଥିଲା । ମୁଁ ତ ରୂପବାନ୍ ଥିଲି। ତା' ସହିତ ମୋର ପ୍ରଭୂତ ଐଶ୍ୱର୍ଯ୍ୟ ରହିଥିଲା । ମୁଁ ବିମାନରେ ଆରୋହଣ କରି ମନଇଚ୍ଛା ଚାରିଆଡ଼େ ବୁଲୁଥିଲି ।।୧୨।। ଦିନେ ରୂପଗର୍ବରେ ଗର୍ବିତ ହୋଇ ଅଙ୍ଗିରସ ଗୋତ୍ରର କେତେକ କୁରୂପ ଋଷିଙ୍କୁ ଦେଖି ଉପହାସ କରିବାରୁ, ସେମାନେ ମୋତେ ସର୍ପଯୋନିରେ ଜନ୍ମ ହେବାପାଇଁ ଅଭିଶାପ ଦେଲେ । ମୋର ପାପର ଫଳସ୍ୱରୂପ ମୁଁ

ସର୍ପ ହୋଇଗଲି ॥୧୩॥ କିନ୍ତୁ ସେହି ଋଷିମାନେ ବଡ଼ ଦୟାଳୁ ଥିଲେ । ସେମାନଙ୍କ ଅନୁଗ୍ରହରୁ ସମସ୍ତ ଚରାଚର ଜଗତ୍‌ର ଗୁରୁ ଆପଣଙ୍କ ସ୍ପର୍ଶଲାଭ କରି ମୋର ସମସ୍ତ ପାପ ଦୂର ହୋଇଗଲା ॥୧୪॥ ହେ ପାପହାରୀ, ଆପଣଙ୍କ ଚରଣକମଳ ସ୍ପର୍ଶରେ ମୁଁ ଶାପମୁକ୍ତ ହେଲି । ସଂସାରର ଦୁଃଖତାପରେ ଭୟଭୀତ ଜୀବ ଆପଣଙ୍କର ଶରଣାପନ୍ନ ହେଲେ ତା'ର ସମସ୍ତ ଭୟ ଦୂରହୁଏ । ବର୍ତ୍ତମାନ ନିଜ ଲୋକକୁ ଫେରିଯିବାପାଇଁ ଆପଣ ମୋତେ ଅନୁମତି ଦିଅନ୍ତୁ ॥୧୫॥ ହେ ମହାଯୋଗୀ, ହେ ମହାପୁରୁଷ, ହେ ସାଧୁ-ରକ୍ଷକ, ସମସ୍ତ ଲୋକପାଳଙ୍କ ଈଶ୍ୱର ଶ୍ରୀକୃଷ୍ଣ, ମୁଁ ଆପଣଙ୍କର ଶରଣାପନ୍ନ । ମୋତେ ଯିବାପାଇଁ ଅନୁମତି ଦିଅନ୍ତୁ ॥୧୬॥ ହେ ଅଚ୍ୟୁତ, ଆପଣଙ୍କ ଦର୍ଶନମାତ୍ରେ ମୁଁ ସଦ୍ୟ ବ୍ରହ୍ମଶାପରୁ ମୁକ୍ତ ହେଲି । ଯାହାଙ୍କର ନାମ ଥରେ ଉଚ୍ଚାରଣ କଲେ ଯେ ଉଚ୍ଚାରଣ କରେ, ତା'ର ଏବଂ ଯେ ଶୁଣେ ତା'ର ମଧ୍ୟ ଆତ୍ମା ପବିତ୍ର ହୋଇଯାଏ, ମୁଁ ଯେ ତାଙ୍କ ପାଦସ୍ପର୍ଶରେ ଶାପମୁକ୍ତ ହେଲି, ଏଥିରେ ଆଶ୍ଚର୍ଯ୍ୟ ହେବାର କଣ ଅଛି ? ॥୧୭॥ ଏହିପରି ଭଗବାନ୍ ଶ୍ରୀକୃଷ୍ଣଙ୍କର ଅନୁମତି ଲାଭ କରି ସୁଦର୍ଶନ ତାଙ୍କୁ ଅଭିନନ୍ଦନ ଓ ପରିକ୍ରମା କରି ସ୍ୱର୍ଗକୁ ଚାଲିଗଲା ଏବଂ ନନ୍ଦ ସଙ୍କଟରୁ ମୁକ୍ତ ହେଲେ ॥୧୮॥

କୃଷ୍ଣଙ୍କର ସେହି ଅଦ୍ଭୁତ ବିଭୂତି ଦର୍ଶନ କରି ବ୍ରଜବାସୀମାନେ ଆଶ୍ଚର୍ଯ୍ୟ ହୋଇଗଲେ । ସେହି ଅମ୍ବିକା ବନରେ ସେମାନଙ୍କ ବ୍ରତ ଶେଷ କରି ବ୍ରଜକୁ ଫେରିବାବେଳେ ଅତି ଶ୍ରଦ୍ଧାରେ ସେମାନେ କୃଷ୍ଣଙ୍କର ଏହି ଲୀଳା ଗାନ କରି କରି ଯାଉଥିଲେ ॥୧୯॥

ଆଉ ଦିନକର କଥା । ଅଦ୍ଭୁତକର୍ମା ଭଗବାନ୍ ଶ୍ରୀକୃଷ୍ଣ ଓ ବଳରାମ ରାତ୍ରିରେ ଗୋପୀମାନଙ୍କ ସହିତ ବନବିହାର କରୁଥିଲେ ॥୨୦॥ ଉଭୟ ନିର୍ମଳ ବସ୍ତ୍ର ପିନ୍ଧିଥିଲେ । ଗଳାରେ ଫୁଲମାଳ ଲମ୍ବିଥିଲା । ଦେହରେ ଚନ୍ଦନ ଆଦି ସୁଗନ୍ଧ ଦ୍ରବ୍ୟ ଓ ଭଲ ଭଲ ଅଳଙ୍କାର ଶୋଭାପାଉଥିଲା । ଗୋପୀମାନେ ପ୍ରେମରେ ଓ ଅତି ମଧୁର ସ୍ୱରରେ ଦୁହିଁଙ୍କର ଗୁଣଗାନ କରୁଥିଲେ ॥୨୧॥ ସନ୍ଧ୍ୟା ସମୟ । ଆକାଶରେ ଚନ୍ଦ୍ରମା ଓ ତାରାମାନେ ଉଦିତ ହେଉଥା'ନ୍ତି । ମଲ୍ଲୀଫୁଲର ସୁବାସରେ ମତ୍ତ ଭ୍ରମରମାନେ ଗୁଞ୍ଜନ କରୁଥା'ନ୍ତି । ଫୁଟିଲା କଇଁଫୁଲର ମହକ ମନ୍ଦ ମନ୍ଦ ବାୟୁରେ ଭାସି ଆସୁଥାଏ । ଏହି ଉତ୍ସବମୟ ସନ୍ଧ୍ୟାର ସମ୍ମାନରେ କୃଷ୍ଣ ଏବଂ ବଳରାମ ତାର ବର୍ଣ୍ଣନା କରିବାକୁ ଯାଇ ଯେଉଁ ଗାନ ଗାଇବା ଆରମ୍ଭ କଲେ, ତାର ସ୍ୱରମୂର୍ଚ୍ଛନା ସମସ୍ତ ପ୍ରାଣୀଙ୍କର କର୍ଣ୍ଣ ଓ ମନକୁ ଆନନ୍ଦରେ ଭରିଦେଲା ॥୨୨-୨୩॥ ପରିକ୍ଷିତ, ଗୋପୀମାନେ ସେହି ଗୀତଶ୍ରବଣରେ ଏପରି ମୋହିତ ହୋଇଗଲେ ଯେ ତାଙ୍କ ଦେହରୁ ବସନ ଓ ଜୁଡ଼ାରୁ ଫୁଲମାଳ ଖସିପଡ଼ିଲା । ସେମାନଙ୍କର କୌଣସି ବାହ୍ୟଜ୍ଞାନ ରହିଲା ନାହିଁ ॥୨୪॥ ବଳରାମ ଓ କୃଷ୍ଣ ଏହିପରି ସ୍ୱଚ୍ଛନ୍ଦ ବିହାର କରି ପ୍ରମତ୍ତ ଭଳି ଗାନ ଗାଉଥିବାବେଳେ, କୁବେରଙ୍କ ଅନୁଚର ଶଙ୍ଖଚୂଡ଼ ନାମକ ଏକ ଯକ୍ଷ ଆସି ପହଞ୍ଚିଲା ॥୨୫॥ ରାମକୃଷ୍ଣ ଦେଖୁ ଦେଖୁ ଯକ୍ଷ ଶଙ୍ଖଚୂଡ଼ ନିର୍ଭୟରେ ଗୋପାଙ୍ଗନାମାନଙ୍କୁ ଧରି ଉତ୍ତରଦିଗକୁ ନେଇଗଲା । କୃଷ୍ଣପ୍ରାଣା ସେହି ଗୋପୀମାନେ ବିକଳରେ ଡାକ ଛାଡ଼ିବାକୁ ଲାଗିଲେ ॥୨୬॥ ସେମାନେ 'ହେ କୃଷ୍ଣ, ହେ ରାମ' ବୋଲି ବିଳାପ କରୁଥିଲେ । ବ୍ୟାଘ୍ର ଗୋଧନକୁ ଗ୍ରାସ କଲେ ଗୋପାଳମାନେ ଯେପରି ଗୋଡ଼ାଇଯା'ନ୍ତି, ସେହିପରି କୃଷ୍ଣ ଓ ବଳରାମ ନିଜ ପ୍ରେମିକାମାନଙ୍କୁ ଏପରି ଅପହୃତ ହେଉଥିବାର ଦେଖି ଯକ୍ଷର ପଛେ ପଛେ ଦଉଡ଼ିଲେ ॥୨୭॥ 'ଡର ନାହିଁ, ଡର ନାହିଁ' ବୋଲି ଅଭୟ ଦେଇ ସେ ଦୁହେଁ ହାତରେ ଶାଳଗଛ ଧରି ଅତି ବେଗରେ ସେହି ଯକ୍ଷାଧମ ନିକଟରେ ପହଞ୍ଚିଗଲେ ॥୨୮॥ ମୂଢ଼ ଯକ୍ଷ ଦେଖିଲା ଯେ ଦୁଇ କାଳଯମ ପରି ସେହି ବଳୀୟାନ୍ ଭାଇ ଦୁହେଁ ତା ପାଖରେ ପହଞ୍ଚିଗଲେଣି । ସେ ପ୍ରାଣଭୟରେ ଗୋପସ୍ତ୍ରୀମାନଙ୍କୁ ଛାଡ଼ି ଦଉଡ଼ି ପଳାଇଗଲା ॥୨୯॥ ବଳରାମ ସ୍ତ୍ରୀମାନଙ୍କୁ ରକ୍ଷା କରିବାକୁ ରହିଲେ । କିନ୍ତୁ ସେ ଯକ୍ଷ ଯୁଆଡ଼େ ଦୌଡ଼ିଲା, କୃଷ୍ଣ ତାର ମସ୍ତକର ମଣି ହରଣ କରିବାପାଇଁ ସେଇଆଡ଼େ ତା ପଛେ ପଛେ ଗୋଡାଇଲେ ॥୩୦॥ ରାଜା, ଅଳ୍ପଦୂର ଯିବାପରେ ଭଗବାନ୍ ଶ୍ରୀକୃଷ୍ଣ ତାକୁ ଧରିପକାଇ ତାଙ୍କ ମୁଷ୍ଟିର ଆଘାତରେ ମଣି ସହ ସେହି ଦୁରାତ୍ମାର ମୁଣ୍ଡକୁ

ଛିଣ୍ଡାଇ ଦେଲେ ।।୩୧।। ଶଙ୍ଖଚୂଡ଼କୁ ବଧ କରି ଏବଂ ତାର ମସ୍ତକର ଉଜ୍ଜ୍ୱଳ ମଣିକୁ ଘେନିଆସି ଶ୍ରୀକୃଷ୍ଣ ସମସ୍ତ ଗୋପାଙ୍ଗନାଙ୍କ ଆଗରେ ଭାଇ ବଳରାମଙ୍କୁ ଶ୍ରଦ୍ଧାରେ ଉପହାର ଦେଲେ ।।୩୨।।

## ପଞ୍ଚତିରିଶ ଅଧ୍ୟାୟ

# ଯୁଗଳ ଗୀତ

ଶ୍ରୀ ଶୁକଦେବ କହିଲେ, ପରିକ୍ଷିତ, କୃଷ୍ଣ ବୃନ୍ଦାବନକୁ ପ୍ରତିଦିନ ଗାଇ ଚରାଇବାକୁ ଚାଲିଯିବା ପରେ ଗୋପୀମାନଙ୍କର ହୃଦୟ ତାଙ୍କୁ ଅନୁସରଣ କରି ଚାଲିଯାଏ । କୃଷ୍ଣଲୀଳା ଗାନ କରି ସେମାନେ ଦୁଃଖରେ ଦିନଟି କଟାଇଦିଅନ୍ତି ।।୧।।

ଗୋପୀମାନେ ପରସ୍ପର ସମ୍ବୋଧନ କରି କହନ୍ତି, ସଖୀମାନେ, କୃଷ୍ଣ ଯେତେବେଳେ ବାଁ ଗାଲରେ ବାଁ ହାତକୁ ରଖି ଅଧରରେ ବଂଶୀଟିକୁ ବଜାନ୍ତି, ସେତେବେଳେ ତାଙ୍କ କୋମଳ ଅଙ୍ଗୁଳିସ୍ପର୍ଶରେ ବଂଶୀର ସାତଟିଯାକ ଛିଦ୍ରରୁ ସପ୍ତସ୍ୱର ବାଜିଉଠେ । ସିଦ୍ଧସ୍ତ୍ରୀମାନେ ଆକାଶମାର୍ଗରେ ନିଜ ସ୍ୱାମୀମାନଙ୍କ ସହିତ ବ୍ୟୋମଯାନରେ ବସି ସେହି ବଂଶୀଧ୍ୱନି ଶୁଣି ଆଶ୍ଚର୍ଯ୍ୟ ହୋଇଯାଆନ୍ତି । ପରେ ସେମାନେ ସେଥିରେ ଏତେ ମଗ୍ନ ହୋଇଯାଆନ୍ତି ଯେ, ସ୍ୱଭାବତଃ ଲଜ୍ଜାଶୀଳା ହେଲେ ମଧ୍ୟ କାମବଶରେ ସେମାନଙ୍କର ନୀବିବନ୍ଧ ଖସିଗଲେ ମଧ୍ୟ ତାହା ସେମାନେ ଜାଣିପାରନ୍ତି ନାହିଁ ।।୨-୩।।

ଅବଳାମାନେ, ଆଉ ଏକ ବିଚିତ୍ର କଥା ଶୁଣ । ନନ୍ଦନନ୍ଦନଙ୍କର ବକ୍ଷରେ ଥିବା ଶ୍ରୀବତ୍ସଲାଞ୍ଛନ କଳାମେଘରେ ସ୍ଥିର ହୋଇ ରହିଥିବା ବିଜୁଳି ପରି ଦେଖାଯାଏ । କିନ୍ତୁ ସେ ଯେବେ ହସି ଦିଅନ୍ତି, ତାହା ଆହୁରି ଏକ ଆଭା ଧାରଣ କରେ । ସେ ଆର୍ତ୍ତଜନଙ୍କର ଆନନ୍ଦଦାତା । ଯେବେ ସେ ବଂଶୀ ବଜାନ୍ତି, ତା'ର ଧ୍ୱନିରେ ମୂର୍ଚ୍ଛିତ ହୋଇ ବ୍ରଜର ସମସ୍ତ ଧେନୁ, ମୃଗ ଓ ବୃଷଭ ଆଦି ପଶୁମାନେ ତାହା ଶୁଣିବାପାଇଁ ଦଉଡ଼ି ଆସନ୍ତି ଏବଂ କାନ ଟେକି ଚିତ୍ରାର୍ପିତ ପରି ଠିଆ ହୋଇ ରହନ୍ତି । ଏପରିକି ଆଉ ପାକୁଳି କରି ନ ପାରିବାଯୋଗୁଁ ମୁହଁରେ ଥିବା ଘାସ ତାଙ୍କର ସେହିପରି ରହିଥାଏ ।।୪-୫।।

ସଖୀମାନେ, ଯେତେବେଳେ କୃଷ୍ଣ ନିଜ ମସ୍ତକରେ ମୟୂରର ଚନ୍ଦ୍ରିକା ଓ କୁଞ୍ଚିତ କେଶରେ ପୁଷ୍ପଗୁଚ୍ଛ ଧାରଣ କରନ୍ତି ଏବଂ ଗୈରିକ ଆଦି ରଙ୍ଗରେ ଓ ନୂଆ ନୂଆ ପତ୍ରରେ ନିଜର ଦେହକୁ ସଜାଇଦିଅନ୍ତି, ସେତେବେଳେ ସେ ଏକ ମଲ୍ଲବୀର ପରି ଦେଖାଯା'ନ୍ତି ଏବଂ ବଳରାମ ଓ ଅନ୍ୟ ଗୋପବାଳକଙ୍କ ସହିତ ମିଶି ବଂଶୀଧ୍ୱନିଦ୍ୱାରା ଗାଇମାନଙ୍କୁ ଡାକନ୍ତି । ସେତେବେଳେ ପବନରେ ଚାଲି ଆସୁଥିବା ତାଙ୍କରି ଶ୍ରୀପଦରଜର ଲାଭ ଆଶାରେ ଆମମାନଙ୍କ ପରି ଅଳ୍ପପୁଣ୍ୟା ନଦୀମାନେ ମନ୍ଦ ଗତିରେ ସ୍ଥିର ହୋଇଯିବା ପରି ଦିଶନ୍ତି । ପ୍ରେମବଶରେ ଶରୀରର କମ୍ପନପରି ସେମାନଙ୍କ ତରଙ୍ଗ ସବୁ ଦେଖାଯାଉଥାଏ ।।୬-୭।। କୃଷ୍ଣ ବନରେ ନିଜର ସଖାମାନଙ୍କ ସହିତ ଆଦିପୁରୁଷ ନାରାୟଣଙ୍କପରି ବିଚରଣ କରୁଥିବାବେଳେ ପର୍ବତର ପାଦଦେଶରେ ଚରୁଥିବା ଗାଇମାନଙ୍କୁ ବଂଶୀଧ୍ୱନିରେ ଆହ୍ୱାନ କରନ୍ତି । ସଖାମାନେ ଅଚଳା ଶ୍ରୀସମ୍ପଦର ଅଧିକାରୀ କୃଷ୍ଣଙ୍କ ବୀରତ୍ୱପୂର୍ଣ୍ଣ ଲୀଳାମାନଙ୍କୁ ଗାନ କରୁଥା'ନ୍ତି । ସେତେବେଳେ ଫଳପୁଷ୍ପଭାରରେ ନଇଁ ପଡ଼ିଥିବା ବନଭୂମିର ତରୁଲତାମାନେ ସେମାନଙ୍କ ମଧ୍ୟରେ ସ୍ୱୟଂ ବିଷ୍ଣୁଙ୍କୁ ଅନୁଭବ କରି ପୁଲକିତ ହୋଇଉଠନ୍ତି ଏବଂ ପ୍ରେମଭରେ ମଧୁଧାରା ବର୍ଷଣ କରିବାକୁ ଲାଗନ୍ତି ।।୮-୯।। ଯେତେବେଳେ ପରମସୁନ୍ଦର ଶ୍ରୀକୃଷ୍ଣ ମୁରଲୀ ବଜାନ୍ତି, ସେତେବେଳେ ତାଙ୍କ ବନମାଳାରେ ଥିବା ଦିବ୍ୟଗନ୍ଧଯୁକ୍ତ ତୁଳସୀମଞ୍ଜରୀର ମଧୁଲୋଭରେ ମତ୍ତ ଭ୍ରମରମାନେ ଉଚ୍ଚସ୍ୱରରେ ଗୁଞ୍ଜନ କରୁଥା'ନ୍ତି, ତାହା କୃଷ୍ଣଙ୍କୁ ଆନନ୍ଦ ଦେଉଥାଏ । ସେତେବେଳେ ସରୋବର ମଧ୍ୟରେ ଥିବା ହଂସ ଓ ଅନ୍ୟ ପକ୍ଷୀମାନେ ତାଙ୍କ ମନୋରମ ବଂଶୀଧ୍ୱନିରେ ମୁଗ୍ଧ ହୋଇଯାଆନ୍ତି ଏବଂ ଆଖି ବୁଜି ସ୍ଥିରଭାବରେ ରହି

ତାହା ଶୁଣନ୍ତି, ମନେହୁଏ ଯେପରିକି ଏକାଗ୍ର ଚିତ୍ତରେ ସେମାନେ ତାଙ୍କୁ ଆରାଧନା କରୁଛନ୍ତି ।।୧୦-୧୧।। କୃଷ୍ଣ ଯେତେବେଳେ ଫୁଲମାଳାଗୁଡ଼ିକୁ ବକ୍ଷ, ମସ୍ତକ ଓ କର୍ଣ୍ଣରେ ଅଳଙ୍କାର ପିନ୍ଧିବା ପରି ପିନ୍ଧି ଗୋବର୍ଦ୍ଧନ ପର୍ବତର ସାନୁଦେଶରେ ବଳରାମଙ୍କ ସହିତ ବଂଶୀ ବାଦନ କରୁଥା'ନ୍ତି, ସେତେବେଳେ ସମଗ୍ର ବିଶ୍ୱରେ ଆନନ୍ଦ ଭରିଯାଏ । ମେଘମାନେ ଭଗବାନ୍ ଶ୍ରୀକୃଷ୍ଣଙ୍କୁ ଅତିକ୍ରମ କରିବାକୁ ସାହସ କରନ୍ତି ନାହିଁ । ଏମାନେ ମନ୍ଦ ମନ୍ଦ ଗର୍ଜନ କରି ପ୍ରିୟ ସୁହୃଦ୍ ନନ୍ଦନନ୍ଦନଙ୍କର ମସ୍ତକ ଉପରେ ଛତ୍ରପରି ନିଜର ଛାୟା ବିସ୍ତାର କରି ପୁଷ୍ପବୃଷ୍ଟିପରି ହିମକଣା ବର୍ଷଣ କରନ୍ତି ।।୧୨-୧୩।।

ମା ଯଶୋଦା, ଗୋପାଳମାନଙ୍କର ବିଭିନ୍ନ କାର୍ଯ୍ୟକଳାପରେ ତୁମର ପୁତ୍ର ଧୁରନ୍ଧର । ସେ ନିଜେ ନିଜେ ବହୁପ୍ରକାର ବେଣୁବାଦନ କୌଶଳ ଶିକ୍ଷା କରିଛନ୍ତି । ସେ ତାଙ୍କର ବିମ୍ବାଧରରେ ବଂଶୀଟି ରଖିବା ମାତ୍ରେ ସେହି ବଂଶୀରୁ ବହୁପ୍ରକାର ସ୍ୱରର ମୂର୍ଚ୍ଛନା ଭାସିଉଠେ । ଇନ୍ଦ୍ର, ଶଙ୍କର, ବ୍ରହ୍ମା ଆଦି ଶ୍ରେଷ୍ଠ ଦେବତା ଓ ଯୋଗେଶ୍ୱରମାନେ ସେହି ସ୍ୱରରେ ମୁଗ୍ଧ ହୋଇଯାଆନ୍ତି ଏବଂ ସେହି ସ୍ୱରାଳାପର ତତ୍ତ୍ୱ ନିର୍ଣ୍ଣୟ କରିବାକୁ ଅସମର୍ଥ ହୋଇ ମୁଣ୍ଡ ଓ କାନ୍ଧକୁ ନୁଆଁଇ ଅବସ୍ଥାନ କରନ୍ତି ।।୧୪-୧୫।। ଗଜରାଜ ପରି ମନ୍ଦ ମନ୍ଦ ଗତିରେ ବେଣୁବାଦନ କରି କୃଷ୍ଣ ଯେତେବେଳେ ଯାଉଥା'ନ୍ତି, ସେତେବେଳେ ଧ୍ୱଜ, ବଜ୍ର, ପଦ୍ମ ଓ ଅଙ୍କୁଶ ଚିହ୍ନିତ ତାଙ୍କରି କୋମଳ ପାଦସ୍ପର୍ଶରେ ଗୋରୁମାନଙ୍କ ଖୁରାରେ ଆହତ ବ୍ରଜଭୂମିର ବ୍ୟଥା ଦୂରହୋଇଯାଏ । ସେତେବେଳେ ଆମେମାନେ ତାଙ୍କର ପ୍ରେମପୂର୍ଣ୍ଣ ଦୃଷ୍ଟିଭଙ୍ଗୀରେ ମୋହିତ ହୋଇ ବୃକ୍ଷପରି ସ୍ଥାଣୁ ହୋଇଯାଉ ଏବଂ କନ୍ଦର୍ପର ବଶରେ ଆମର କବରୀ ଓ ବସନ ଖସିଯାଉଥିବାବେଳେ ଆମେ ତାହା ଜାଣିପାରୁ ନାହିଁ ।।୧୬-୧୭।। ଗୋରୁମାନଙ୍କୁ ଜାଣିବାପାଇଁ କୃଷ୍ଣ ଏକ ମଣିମାଳା ଧରିଥାନ୍ତି, ଏବଂ ତୁଳସୀର ଗନ୍ଧରେ ମୁଗ୍ଧ ହୋଇ ତୁଳସୀ ମଞ୍ଜରୀର ଏକ ମାଳା ମଧ୍ୟ ପରିଧାନ କରିଥା'ନ୍ତି । ମାଳାରେ ଥିବା ମଣିମାନଙ୍କ ସାହାଯ୍ୟରେ ଗାଭୀମାନଙ୍କୁ ଗଣନା କରିସାରି ନିଜର ପ୍ରିୟ ସଖାଙ୍କ କାନ୍ଧରେ ବାହୁ ରଖି ଯେତେବେଳେ ସେ ବେଣୁଗୀତ ଆରମ୍ଭ କରନ୍ତି, ସେତେବେଳେ ସ୍ତ୍ରୀ-କୃଷ୍ଣସାରମାନେ ବଂଶୀ ଧ୍ୱନିରେ ମୁଗ୍ଧ ହୋଇ ଗୁଣସାଗର କୃଷ୍ଣଙ୍କ ପଛେ ପଛେ ଯାଉଥା'ନ୍ତି । ଗୋପୀମାନଙ୍କପରି ସେମାନେ ଗୃହର ଆଶାକୁ ଜଳାଞ୍ଜଳି ଦେଇଥା'ନ୍ତି ।।୧୮-୧୯।। ପୁଣ୍ୟବତୀ ଯଶୋଦା, ତୁମର ପୁତ୍ର ନନ୍ଦନନ୍ଦନ ଶ୍ରୀକୃଷ୍ଣ ଗୋଧନପରିବୃତ ହୋଇ ଓ ସଖାମାନଙ୍କ ସହିତ ହାସପରିହାସ କରି ଯେତେବେଳେ ଯମୁନାକୂଳରେ ବିହାର କରୁଥା'ନ୍ତି, ସେତେବେଳେ କୁନ୍ଦଫୁଲମାଳାରେ କଉତୁକିଆ ବେଶ ହୋଇଥିବା ତୁମ କୃଷ୍ଣଙ୍କୁ ସୁଶୀତଳ ମଳୟ ପବନ ପଙ୍ଖା କରୁଥାଏ ଏବଂ ଗନ୍ଧର୍ବମାନେ ତାଙ୍କରି ସ୍ତୁତି କରି ଗୀତ, ବାଦ୍ୟ ଓ ପୁଷ୍ପବୃଷ୍ଟିର ଉପହାର ଦ୍ୱାରା ତାଙ୍କୁ ଉପାସନା କରନ୍ତି ।।୨୦-୨୧।। ବ୍ରଜବାସୀ ଓ ଗୋରୁମାନଙ୍କର ପ୍ରିୟ ଗୋବର୍ଦ୍ଧନଧାରୀ ଶ୍ରୀକୃଷ୍ଣ ଦିନଶେଷରେ ଗୋରୁମାନଙ୍କୁ ଏକାଠି କରି ବେଣୁବାଦନ କରି ଆସୁଥାନ୍ତି । ବ୍ରଜବୃଦ୍ଧମାନେ ବାଟରେ ତାଙ୍କ ପାଦବନ୍ଦନା କରୁଥାନ୍ତି, ସଖାମାନେ ତାଙ୍କର କୀର୍ତ୍ତିଗାନ କରୁଥାନ୍ତି, ସେତେବେଳେ ଧୂଳିଧୂସରିତ ତାଙ୍କରି କ୍ଳାନ୍ତ ସୁନ୍ଦର ରୂପର ଉତ୍ସବରେ ଆମେ ମୋହିତ ହୋଇଯାଉ । ସମୁଦ୍ରରୁ ଚନ୍ଦ୍ର ଉଠିବା ପରି ଦେବକୀଙ୍କ ଜଠରରୁ ଜାତ କୃଷ୍ଣରୂପକ ଚନ୍ଦ୍ର ଆମର ଅଭିଳାଷ ପୂର୍ଣ୍ଣ କରିବାକୁ ଆସୁଥିବାର ମନେହୁଏ ।।୨୨-୨୩।। କୃଷ୍ଣ ସୁହୃଦ୍‌ମାନଙ୍କର ମାନଦ । ସେ ଗୃହକୁ ଫେରି ଆସିବାବେଳେ ଶ୍ରମବଶତଃ ତାଙ୍କର ଚକ୍ଷୁ ଟିକିଏ ଢଳଢଳ ଦେଖାଯାଉଥାଏ । ଦରପାଚିଲା ବରକୋଳି ପରି ମୁହଁର ରଙ୍ଗ ପାଣ୍ଡୁର ଦିଶୁଥାଏ, ତଥାପି ବନମାଳା ଧାରଣ କରି ସେ ଅତି ପ୍ରଫୁଲ୍ଲ ଦେଖାଯାଉଥା'ନ୍ତି । କୁଣ୍ଡଳର ଶୋଭାରେ ଗଣ୍ଡସ୍ଥଳ ଓ ମୁଖମଣ୍ଡଳ ସୁନ୍ଦର ଦେଖାଯାଉଥାଏ । ଯଦୁପତି କୃଷ୍ଣ ଗଜରାଜ ଆସିବାପରି ସନ୍ଧ୍ୟା ସମୟରେ ଯେତେବେଳେ ଫେରିଆସୁଥାନ୍ତି, ମନେହୁଏ, ବ୍ରଜର ଗାଈମାନଙ୍କ ଦିନର ତାପ ନିବାରଣ କରିବାପାଇଁ ନିଶାପତି ଚନ୍ଦ୍ରମାଙ୍କର ଉଦୟ ହେଉଛି ।।୨୪-୨୫।। ରାଜା; କୃଷ୍ଣଙ୍କ ପ୍ରତି ମନପ୍ରାଣ ଢାଳି ଦେଇଥିବା ଭାଗ୍ୟବତୀ ଗୋପୀମାନେ ଦିନବେଳେ ମଧ୍ୟ ଏହିପରି କୃଷ୍ଣଲୀଳା ଗାନ କରିକରି ଆନନ୍ଦରେ ବିହାର କରୁଥିଲେ ।।୨୬।।

## ଛତିଶ ଅଧ୍ୟାୟ

# ବ୍ରଜକୁ ଯିବାପାଇଁ ଅକ୍ରୂରଙ୍କୁ କଂସର ଆଦେଶ

ଶ୍ରୀ ଶୁକଦେବ କହିଲେ, ପରିକ୍ଷିତ, କୃଷ୍ଣ ବ୍ରଜରେ ପ୍ରବେଶ କରିବା ସମୟରେ ଅରିଷ୍ଟ ନାମକ ଏକ ଅସୁର ବୃଷଭ ରୂପରେ ବ୍ରଜରେ ପ୍ରବେଶ କଲା । ସେହି ବିଶାଳକାୟ ବୃଷଭର ଚୂଳ ବହୁତ ବଡ଼ ଥିଲା ଏବଂ ତା'ର ଖୁରାଘାତରେ ବ୍ରଜଭୂମି କମ୍ପି ଉଠିଲା ॥୧॥ ସେ ଖୁବ୍ ଜୋର୍‌ରେ ଗର୍ଜନ କରି ଖୁରାରେ ଭୂଇଁକୁ ବିଦାରୁଥାଏ । ଲାଙ୍ଗୁଡ ଉପରକୁ ଟେକି ଶିଙ୍ଘରେ ମାଟି ତାଡ଼ି ପକାଉଥାଏ । ସେ ମଝି ମଝିରେ ମୂତି ପକାଉଥାଏ ଓ ହଗି ଦେଉଥାଏ ଓ କଟମଟ କରି ଚାହୁଁଥାଏ ॥୨॥ ରାଜା, ବଜ୍ରନାଦପରି ତା'ର ଭୟଙ୍କର ଗର୍ଜନରେ ଗୋପୀମାନଙ୍କର ଓ ଗାଈମାନଙ୍କର ଅକାଳ ଗର୍ଭପାତ ହେବାକୁ ଲାଗିଲା । ତାର ପିଠିର ଚୂଳ ପର୍ବତପରି ଉଚ୍ଚ ହୋଇଥିବାଯୋଗୁଁ ମେଘମାନେ ସେଥିରେ ଆସି ଲାଗିଥା'ନ୍ତି । ତା'ର ସେହି ଭୟଙ୍କର ମୁନିଆ ଶିଙ୍ଘକୁ ଦେଖି ଗୋପ ଓ ଗୋପୀମାନେ ଭୟରେ ଥରିବାକୁ ଲାଗିଲେ ॥୩-୪॥ ରାଜା, ଗବାଦି ପଶୁମାନେ ଅରିଷ୍ଟାସୁରକୁ ଦେଖି ଭୟରେ ବ୍ରଜଭୂମି ଛାଡ଼ି ପଳାଇଗଲେ ଏବଂ ଗୋପାଳମାନେ 'ହେ କୃଷ୍ଣ, ହେ କୃଷ୍ଣ, ରକ୍ଷା କର' ବୋଲି କହି କୃଷ୍ଣଙ୍କର ଶରଣାପନ୍ନ ହେଲେ ॥୫॥ ଭଗବାନ୍ ଶ୍ରୀକୃଷ୍ଣ ଗୋକୁଳର ଏପରି ଭୟାତୁର ଅବସ୍ଥା ଦେଖି, 'ଭୟ କରନା, ଭୟ କରନା' ବୋଲି ସେମାନଙ୍କୁ ଆଶ୍ୱାସନା ଦେଲେ ଏବଂ ଅରିଷ୍ଟାସୁରର ପାଖକୁ ଯାଇ କହିଲେ, 'ରେ ମନ୍ଦବୁଦ୍ଧି ଦୁରାତ୍ମା, ତୋ'ପରି ଦୁଷ୍ଟମାନଙ୍କୁ ଶାସ୍ତି ଦେବାପାଇଁ ମୁଁ ଥାଉଁ ଥାଉଁ ତୁ ଏହି ପଶୁମାନଙ୍କୁ ଓ ଗୋପାଳଙ୍କୁ କାହିଁକି ଭୟ ଦେଖାଉଛୁ ? ॥୬-୭॥ ଏହିପରି ବାହୁସ୍ଫୋଟ ମାରି ଓ ତାଳି ବଜାଇ କୃଷ୍ଣ ରାକ୍ଷସକୁ ରଗାଇ ଦେଲେ ଓ ନିଜର ଜଣେ ସାଙ୍ଗର କାନ୍ଧରେ ହାତ ରଖି ତାହା ଆଗରେ ଠିଆ ହୋଇ ରହିଲେ ॥୮॥ କ୍ରୁଦ୍ଧ ରାକ୍ଷସ ଖୁରାରେ ଭୂଇଁକୁ ରାମ୍ପିବାକୁ ଲାଗିଲା ଓ ଲାଞ୍ଜରେ ମେଘମାନଙ୍କୁ ପିଟି କୃଷ୍ଣଙ୍କ ଆଗରେ ଉପଦ୍ରବ ଆରମ୍ଭ କରିଦେଲା । ନାଲି ନାଲି ଆଖିରେ ଚାହିଁ ଗର୍ଜନ ତର୍ଜନ କରି ସେ କୃଷ୍ଣଙ୍କଆଡ଼କୁ ଧାଇଁ ଆସିଲା । ତାର ମୁନିଆ ଶିଙ୍ଘକୁ ଆଗକୁ କରି ସେ ଏପରି ବେଗରେ ଦଉଡି ଆସିଲା, ସତେ ଯେପରି ଇନ୍ଦ୍ର ତାଙ୍କ ବଜ୍ରପ୍ରହାର କରିବାକୁ ଯାଉଛନ୍ତି ॥୯-୧୦॥ ଭଗବାନ୍ ଶ୍ରୀକୃଷ୍ଣ ତତ୍‌କ୍ଷଣାତ୍ ଅରିଷ୍ଟାସୁରର ଶିଙ୍ଘ ଦୁଇଟାକୁ ଧରି ମତ୍ତହସ୍ତୀ ତାର ପ୍ରତିଦ୍ୱନ୍ଦ୍ୱୀ ହସ୍ତୀ ସହିତ ଲଢ଼ିବା ପରି ତାକୁ ଅଠର ପାଦ ପଛକୁ ଠେଲିଦେଲେ ॥୧୧॥ ରାକ୍ଷସ ତଳେ ପଡ଼ିଯାଇ ସଙ୍ଗେ ସଙ୍ଗେ ଉଠି ପଡ଼ିଲା । ତାର ଦେହରୁ ଝାଳ ବୋହିଲା । ସେ ଅତିଶୟ କ୍ରୋଧରେ ଦୀର୍ଘଶ୍ୱାସ ଛାଡ଼ି ପୁଣି କୃଷ୍ଣଙ୍କୁ ଆକ୍ରମଣ କରିବାକୁ ଦଉଡ଼ିଆସିଲା ॥୧୨॥ ରାକ୍ଷସ ପୁଣି ଆକ୍ରମଣ କରିବାକୁ ଆସୁଥିବାର ଦେଖି ଭଗବାନ୍ ଶ୍ରୀକୃଷ୍ଣ ତା'ର ଶିଙ୍ଘ ଦୁଇଟାକୁ ଧରିନେଇ ପାଦପ୍ରହାରରେ ତାକୁ ତଳକୁ ପକାଇଦେଲେ ଏବଂ ଓଦା ଲୁଗାକୁ ଚିପୁଡିବା ପରି ତାକୁ ମୋଡ଼ିବାକୁଲାଗିଲେ । ତା'ପରେ ତାର ଗୋଟାଏ ଶିଙ୍ଘ ଉପାଡ଼ି ଦେଇ ସେଇଥିରେ ତାକୁ ବଧ କଲେ । ରାକ୍ଷସ ମୂର୍ଚ୍ଛା ହୋଇପଡ଼ିଗଲା । ମଳମୂତ୍ର ତ୍ୟାଗକରି ରକ୍ତବାନ୍ତି କଲା । ତାର ଆଖି ଦୁଇଟା ଘୂରିବାକୁ ଲାଗିଲା, ସେ ତାର ଚାରିଟାଯାକ ଗୋଡ଼ ଛାଟି ଛାଟି ବଡ଼ କଷ୍ଟରେ ପ୍ରାଣତ୍ୟାଗ କଲା । ଦେବତାମାନେ କୃଷ୍ଣଙ୍କର ମସ୍ତକରେ ପୁଷ୍ପବୃଷ୍ଟି କରି ସ୍ତୁତି କଲେ ॥୧୩-୧୪॥ ଏହିପରି ଅରିଷ୍ଟାସୁରକୁ ହତ୍ୟାକରି ଓ ସ୍ୱଜାତି ଗୋପବୃନ୍ଦଙ୍କଦ୍ୱାରା ପ୍ରଶଂସିତ ହୋଇ ଗୋପୀମାନଙ୍କର ନୟନାଭିରାମ କୃଷ୍ଣ ବଳରାମଙ୍କ ସହିତ ବ୍ରଜରେ ପ୍ରବେଶ କଲେ ॥୧୫॥ ବ୍ରଜରେ ଅଦ୍ଭୁତକର୍ମା କୃଷ୍ଣଙ୍କ ଦ୍ୱାରା ଅରିଷ୍ଟାସୁର ନିହତ ହେବାପରେ ଦେବର୍ଷି ନାରଦ କଂସପାଖରେ ପହଞ୍ଚି ତାକୁ ଏହିପରି କହିଲେ-- ॥୧୬॥ ଦେବକୀର ଅଷ୍ଟମ ଗର୍ଭରୁ ଯେଉଁ କନ୍ୟା ଜନ୍ମହୋଇଥିଲା ବୋଲି ତୁ ଭାବିଛୁ, ସେ ଦେବକୀର କନ୍ୟା ନୁହେଁ, ଯଶୋଦାର କନ୍ୟା; ଏବଂ ବ୍ରଜରେ ଯଶୋଦାର ପୁତ୍ରରୂପେ ପ୍ରସିଦ୍ଧ କୃଷ୍ଣ ଯଶୋଦାର ପୁତ୍ର ନୁହେଁ, ଦେବକୀର ପୁତ୍ର ଏବଂ ରୋହିଣୀପୁତ୍ର

ବଳରାମ ଦେବକୀର ସପ୍ତମ ସନ୍ତାନ । ତୋର ଭୟରେ ବସୁଦେବ ସେହି ପୁତ୍ର ଦୁହିଁଙ୍କୁ ବନ୍ଧୁ ନନ୍ଦଙ୍କ ପାଖରେ ନ୍ୟାସରୂପରେ ଛାଡ଼ି ଦେଇଥିଲେ । ସେହି ଦୁଇ ପୁତ୍ର ତୋର ସମର୍ଥକ ରାକ୍ଷସମାନଙ୍କୁ ନିହତ କରିଛନ୍ତି ॥୧୭॥ ଏହା ଶୁଣି ଭୋଜରାଜ କଂସର ପ୍ରତ୍ୟେକ ଇନ୍ଦ୍ରିୟ ରାଗରେ ଥରି ଉଠିଲା । ସେ ବସୁଦେବଙ୍କୁ ମାରିବାପାଇଁ ସଙ୍ଗେ ସଙ୍ଗେ ଅସି ଉତ୍ତୋଳନ କଲା । କିନ୍ତୁ ନାରଦ ତାକୁ ସେଥିରୁ ନିବାରଣ କଲେ । ବସୁଦେବଙ୍କର ପୁତ୍ର କୃଷ୍ଣ ଓ ବଳରାମ ତାର ମୃତ୍ୟୁସ୍ୱରୂପ ବୋଲି ମନେ କରି ସେ ଦେବକୀ ଓ ବସୁଦେବଙ୍କୁ ଲୌହ ଶୃଙ୍ଖଳରେ ପୁଣି ଆବଦ୍ଧ କଲା ॥୧୮-୧୯॥ ଦେବର୍ଷି ନାରଦ ଯିବାପରେ କେଶୀ ଦୈତ୍ୟକୁ ଡାକି କଂସ ଆଦେଶ ଦେଲା, ଶୀଘ୍ର ରାମ ଓ କୃଷ୍ଣ ଦୁହିଁଙ୍କୁ ହତ୍ୟା କର ॥୨୦॥

ତାପରେ ଭୋଜରାଜ କଂସ ମୁଷ୍ଟିକ, ଚାଣୂର, ଶଳ, ତୋଶଳକ ପ୍ରଭୃତି ମଲ୍ଲମାନଙ୍କୁ, ମନ୍ତ୍ରୀମାନଙ୍କୁ ଓ ହସ୍ତୀରକ୍ଷକମାନଙ୍କୁ ଆହ୍ୱାନ କରି କହିଲା-- ॥୨୧॥ ହେ ବୀର ଚାଣୂର, ହେ ବୀର ମୁଷ୍ଟିକ, ତୁମେମାନେ ଶୁଣ । ବସୁଦେବର ଦୁଇପୁତ୍ର ରାମ ଓ କୃଷ୍ଣ ନନ୍ଦର ବ୍ରଜରେ ବାସ କରୁଛନ୍ତି । ସେ ଦୁହିଁଙ୍କଦ୍ୱାରା ମୋର ମୃତ୍ୟୁ ନିଶ୍ଚିତ ଭାବରେ ହେବ ବୋଲି ମୁଁ ଶୁଣିଛି । ସେ ଦୁହେଁ ଏଠାକୁ ଆସିଲେ ମଲ୍ଲଯୁଦ୍ଧଦ୍ୱାରା ତୁମେ ତାହାଙ୍କୁ ବିନାଶ କରିବ ॥୨୨-୨୩॥ ମଲ୍ଲକ୍ରୀଡ଼ା ସ୍ଥଳରେ ଚତୁର୍ଦ୍ଦିଗରେ ତୁମେମାନେ ବହୁପ୍ରକାର ମଞ୍ଚ ପ୍ରସ୍ତୁତ କର, ଯେପରିକି ନଗରବାସୀ ଓ ଗ୍ରାମବାସୀ ନିର୍ବିଘ୍ନରେ ଆମମାନଙ୍କର ସ୍ୱେଚ୍ଛାକୃତ ମଲ୍ଲଯୁଦ୍ଧ ଦେଖିପାରିବେ ॥୨୪॥ ମାହୁନ୍ତ ତୁମେ ଅତି ଚତୁର । ରଙ୍ଗସ୍ଥଳୀର ଦ୍ୱାରଦେଶରେ କୁବଳୟାପୀଡ଼ ହାତୀକୁ ରଖାଅ ଏବଂ ସେହି ହାତୀଦ୍ୱାରା ମୋର ଶତ୍ରୁ ରାମ ଓ କୃଷ୍ଣକୁ ବିନାଶ କରାଅ ॥୨୫॥

ଚତୁର୍ଦ୍ଦଶୀ ଦିନ ଯଥାବିଧି ଧନୁର୍ଯଜ୍ଞ ଆରମ୍ଭ କର । ଅଭୀଷ୍ଟ ଫଳଲାଭ ନିମନ୍ତେ ଭୂତେଶ୍ୱର ମହାଦେବଙ୍କ ପାଇଁ ପବିତ୍ର ପଶୁ ବଳିର ବ୍ୟବସ୍ଥା ହେଉ । ଏହିପରି ଆଦେଶ ଦେଇ ନିଜର ସ୍ୱାର୍ଥସିଦ୍ଧିରେ ନିପୁଣ କଂସ ଯାଦବଶ୍ରେଷ୍ଠ ଅକ୍ରୂରଙ୍କୁ ଡାକି ହାତ ଧରି କହିଲା- । ହେ ବଦାନ୍ୟ, ମୋପାଇଁ ଏକ ମିତ୍ରର କାର୍ଯ୍ୟ କରି ମୋତେ ଅନୁଗୃହୀତ କର । ଭୋଜ ଓ ବୃଷ୍ଣି ବଂଶରେ ତୁମକୁ ଛାଡ଼ି ଦେଲେ ମୋର ଅନ୍ୟ କେହି ହିତକାମୀ ବନ୍ଧୁ ନାହିଁ ॥୨୬-୨୮॥ ସୌମ୍ୟ, ଯେପରି ଇନ୍ଦ୍ର ବିଷ୍ଣୁଙ୍କୁ ଆଶ୍ରୟ କରି ନିଜର ଅଭୀଷ୍ଟ ଫଳ ଲାଭ କରନ୍ତି, ସେହିପରି ଏକ ଗୁରୁତର କାର୍ଯ୍ୟସାଧନ କରିବାପାଇଁ ନିଜେ ସମର୍ଥ ହେଲେ ମଧ୍ୟ ମୁଁ ତୁମକୁ ଆଶ୍ରୟ କରୁଛି ॥୨୯॥ ତୁମେ ନନ୍ଦଙ୍କର ବ୍ରଜକୁ ଯାତ୍ରା କରି ଯେଉଁଠି ବସୁଦେବଙ୍କର ପୁତ୍ର ଦୁହେଁ ଅଛନ୍ତି, ତାହାଙ୍କୁ ରଥରେ ବସାଇ ଏଠାକୁ ନେଇଆସ ॥୩୦॥ ବିଷ୍ଣୁଆଶ୍ରିତ ଦେବତାମାନେ ଏହି ଦୁହିଁଙ୍କ ହାତରେ ମୋର ମୃତ୍ୟୁ ହେବ ବୋଲି ନିର୍ଦ୍ଧାରଣ କରିଛନ୍ତି । ତୁମେ ସେ ଦୁହିଁଙ୍କୁ ଏଠାକୁ ନେଇଆସ ଏବଂ ନନ୍ଦ ଆଦି ଗୋପମାନଙ୍କୁ କହ, ବିଭିନ୍ନ ଉପାୟନ ସାମଗ୍ରୀ ଧରି ଏହି ଯଜ୍ଞରେ ଆସି ଯୋଗ ଦେବେ ॥୩୧॥ ସେଦୁହିଁଙ୍କୁ ମଥୁରାକୁ ଆଣି କାଳତୁଲ୍ୟ ହସ୍ତୀଦ୍ୱାରା ମୁଁ ନିହତ କରାଇବି । ଯଦି ସେଥିରୁ ଖସି ଯାଆନ୍ତି, ତା'ହେଲେ ବଜ୍ର ତୁଲ୍ୟ ମଲ୍ଲମାନଙ୍କଦ୍ୱାରା ହତ୍ୟା କରାଇବି ॥୩୨॥ ସେ ଦୁହେଁ ନିହତ ହେଲେ ଶୋକସନ୍ତପ୍ତ ବସୁଦେବ ପ୍ରମୁଖ ବୃଷ୍ଣି, ଭୋଜ ଓ ଦଶାର୍ହ ଆଦି ସେ ଦୁହିଁଙ୍କର ବନ୍ଧୁମାନଙ୍କୁ ମୁଁ ହତ୍ୟା କରିବି ॥୩୩॥ ମୋର ପିତା ଉଗ୍ରସେନ ବୃଦ୍ଧ ହେଲେ ମଧ୍ୟ ରାଜ୍ୟଲୋଭୀ । ତାଙ୍କୁ, ତାଙ୍କର ଭାଇ ଦେବକଙ୍କୁ ଓ ଅନ୍ୟ ଯେଉଁମାନେ ମୋ'ପ୍ରତି ଦ୍ୱେଷାଚରଣ କରନ୍ତି, ସେ ସମସ୍ତଙ୍କୁ ବଧ କରିବି ॥୩୪॥

ମିତ୍ର ଅକ୍ରୂର, ସେମାନେ ସମସ୍ତେ ଶେଷ ହୋଇଗଲେ ଏ ମହୀମଣ୍ଡଳ ନିଷ୍କଣ୍ଟକ ହେବ । ମନେରଖ, ସମ୍ରାଟ୍ ଜରାସନ୍ଧ ମୋର ଶ୍ୱଶୁର ଓ ବାନରରାଜ ଦ୍ୱିବିଦ ମୋର ପ୍ରିୟ ସଖା । ଶମ୍ବରାସୁର, ନରକାସୁର ଓ ବାଣାସୁର- ଏମାନେ ମୋ ସହିତ ମିତ୍ରତା ସୂତ୍ରରେ ଆବଦ୍ଧ । ସେମାନଙ୍କ ସହାୟତାରେ ଦେବତାଙ୍କ ପକ୍ଷରେ ଥିବା ରାଜାମାନଙ୍କୁ ବିନାଶ କରି ମୁଁ ପୃଥିବୀକୁ ଭୋଗକରିବି ॥୩୫-୩୬॥ ଏହା ଜାଣିବା ପରେ ତୁମେ ଶୀଘ୍ର ଯାଇ ସେହି ବାଳକ ରାମ ଓ କୃଷ୍ଣ ଦୁହିଁଙ୍କୁ ଏଠାକୁ ନେଇଆସ । ଧନୁଯଜ୍ଞ ଓ ମଥୁରାର ଶୋଭା ଦେଖିବାପାଇଁ ମୁଁ ତାହାଙ୍କୁ ଡକାଇଛି ବୋଲି କହ ॥୩୭॥ ଅକ୍ରୂର କହିଲେ, ରାଜା, ନିଜର

ମୃତ୍ୟୁକୁ ଦୂର କରିବାପାଇଁ ତୁମେ ଠିକ୍ ବିଚାର କରିଛ । କିନ୍ତୁ ଫଳାଫଳ ବିଷୟରେ ଉଦାସୀନ ହୋଇ କାର୍ଯ୍ୟ କରିବାକୁ ହେବ । କାରଣ ଦୈବ ହିଁ ପ୍ରକୃତରେ ଫଳଦାତା । ଦୈବ ଯେ ପ୍ରତିକୂଳ ବ୍ୟବସ୍ଥା କରିଛି ତାହା ଜାଣି ନ ପାରି ମନୁଷ୍ୟ ଉଚ୍ଚ ଅଭିଳାଷ କରି କେତେବେଳେ ଆନନ୍ଦ ପାଏ ତ କେତେବେଳେ ଶୋକଗ୍ରସ୍ତ ହୁଏ । ତଥାପି ମୁଁ ତୁମର ଆଦେଶ ଅବଶ୍ୟ ପାଳନ କରିବି ।।୩୮-୩୯।। ଶ୍ରୀ ଶୁକଦେବ କହିଲେ, ଏହିପରି ଅକ୍ରୂରଙ୍କୁ ଓ ମନ୍ତ୍ରୀମାନଙ୍କୁ ଆଦେଶ ଦେଇ ଓ ସେମାନଙ୍କୁ ବିଦା କରି କଂସ ନିଜ ଅନ୍ତଃପୁରରେ ପ୍ରବେଶ କଲା । ଅକ୍ରୂର ନିଜ ଘରକୁ ପ୍ରସ୍ଥାନ କଲେ ।।୪୦।।

## ସଇଁତିରିଶ ଅଧ୍ୟାୟ

# କେଶୀ ଦୈତ୍ୟ ବଧ

କଂସଦ୍ୱାରା ପ୍ରେରିତ ହୋଇ ରାକ୍ଷସ କେଶୀ ଏକ ବିଶାଳ ଅଶ୍ୱର ରୂପ ଧାରଣ କଲା । ସେ ତାର ହ୍ରେଷାରାବରେ ସମସ୍ତ ଜଗତକୁ ଭୟଭୀତ କଲା । ଖୁରାଘାତରେ ପୃଥିବୀକୁ କମ୍ପାଇଦେଲା । ବେକରେ ବାଳଯାକ ଠିଆ କରି ଆକାଶରେ ମେଘମାନଙ୍କୁ ଓ ଦେବତାଙ୍କ ବିମାନମାନଙ୍କୁ ଛିନ୍ନଛତ୍ର କରିଦେଲା ଏବଂ ନନ୍ଦଙ୍କର ବ୍ରଜରେ ଯାଇ ପହଞ୍ଚିଲା । ତା'ର ଗଳଦେଶ ଥିଲା ବହୁତ ବଡ଼ । ମୁଖଗହ୍ୱର ଭୟଙ୍କର ଏବଂ ଚକ୍ଷୁଦ୍ୱୟ ବିଶାଳ । ଦୁରାତ୍ମା କେଶୀ କଂସର ଅଭୀଷ୍ଟସାଧନ ଇଚ୍ଛାରେ ବ୍ରଜଧାମକୁ କମ୍ପାଇବାକୁ ଲାଗିଲା । ଭଗବାନ୍ ଶ୍ରୀକୃଷ୍ଣ ଆଗକୁ ଆସି ଦେଖିଲେ ଯେ, କେଶୀ ଦୈତ୍ୟ ତାର ହ୍ରେଷାରଡିରେ ବ୍ରଜବାସୀଙ୍କୁ ଭୟଭୀତ କରୁଛି ଏବଂ ପୁଚ୍ଛଦ୍ୱାରା ମେଘମାନଙ୍କୁ ଇତସ୍ତତଃ କରି ଯୁଦ୍ଧ କରିବାପାଇଁ ତାଙ୍କୁ ହିଁ ଖୋଜୁଛି । କୃଷ୍ଣ ତାକୁ ଯୁଦ୍ଧପାଇଁ ଆହ୍ୱାନ କରିବାରୁ ସେ ତତ୍‌କ୍ଷଣାତ୍ ସିଂହପରି ଗର୍ଜନ କରିଲାଗିଲା ।।୧-୩।। ସେହି ଦୁରାତ୍ମା ରାକ୍ଷସର ବେଗ ଅତି ପ୍ରଚଣ୍ଡ ଥିଲା ଏବଂ ସେ ଅତିଶୟ ଦୁର୍ଦ୍ଧର୍ଷ ଥିଲା । ସେ କମଳନୟନ କୃଷ୍ଣଙ୍କୁ ଦେଖି ଆକାଶକୁ ପିଇଯିବାପରି ମୁହଁ ମେଲା କରି ତାଙ୍କଆଡ଼କୁ ଧାଇଁ ଆସିଲା ଓ ପାଦରେ ପ୍ରହାର କରିବାପାଇଁ ଉଦ୍ୟମ କଲା । ଭଗବାନ୍ କୃଷ୍ଣ ତାର ଆକ୍ରମଣକୁ ଅବଜ୍ଞା କରି ଗରୁଡ଼ ମହାସର୍ପକୁ ଦୂରକୁ ଫିଙ୍ଗିଦେବାପରି କ୍ରୋଧରେ ତାର ପାଦ ଦୁଇଟିକୁ ଧରିନେଲେ ଏବଂ ତାକୁ ଘୂରାଇ ଘୂରାଇ ଚାରି ଶହ ହାତ ଦୂରକୁ ଫିଙ୍ଗିଦେଇ ଧୀର ସ୍ଥିର ଭାବରେ ଠିଆ ହୋଇରହିଲେ ।।୪-୫।। ସଂଜ୍ଞା ପାଇ ରାକ୍ଷସ କ୍ରୋଧରେ ମୁଖବ୍ୟାଦାନ କରି ପୁଣି କୃଷ୍ଣଙ୍କ ଆଡକୁ ଦଉଡ଼ି ଆସିଲା । କୃଷ୍ଣ ଅଳ୍ପ ହସି ଗାତ ଭିତରେ ସାପ ପଶିଯିବା ପରି ତାଙ୍କ ବାମ ହାତକୁ କେଶୀର ମୁହଁଭିତରେ ପୂରାଇଦେଲେ ।।୬।। ତାତିଲା ଲୁହାଖଣ୍ଡ ପରି ତାଙ୍କ ହାତର ସ୍ପର୍ଶରେ କେଶୀ ଦୈତ୍ୟର ଦାନ୍ତଗୁଡ଼ାକ ଝଡ଼ି ପଡିଲା । ତାଙ୍କ ହାତ ଉପେକ୍ଷିତ ଜଳୋଦର ରୋଗ ବଢ଼ିବାପରି କେଶୀର ଦେହ ଭିତରେ ପଶି ବଢ଼ିବାକୁ ଲାଗିଲା ।।୭।। ଏହିପରି କୃଷ୍ଣଙ୍କର ବାହୁ ବଢ଼ିବାରୁ ଦୈତ୍ୟର ଶ୍ୱାସ ପ୍ରଶ୍ୱାସ ବନ୍ଦ ହୋଇଗଲା । ସେ ଚାରିଆଡ଼କୁ ଗୋଡ ଛାଟିବାକୁ ଲାଗିଲା । ତା ଦେହରୁ ଝାଳ ବହିଗଲା । ଆଖି ଡୋଳା ଲେଉଟି ପଡ଼ିଲା ଏବଂ ସେ ମଳ ତ୍ୟାଗକରି ପ୍ରାଣ ଛାଡ଼ି ପଡ଼ିଗଲା ।।୮।। ମହାବାହୁ କୃଷ୍ଣ ଅନାୟାସରେ ଶତ୍ରୁବଧ କରି କାକୁଡ଼ି ପରି ବିଦୀର୍ଣ୍ଣ ତା'ର ପ୍ରାଣହୀନ ଦେହରୁ ନିଜର ବାହୁକୁ ବାହାରକୁ ନେଇ ଆସିଲେ ଏବଂ ସେଥିପାଇଁ ତାଙ୍କ ମନରେ ଗର୍ବ ରହିଲା ନାହିଁ । ସ୍ମିତମୁଖ ଦେବତାମାନେ ପୁଷ୍ପବୃଷ୍ଟି କରି ତାଙ୍କୁ ସ୍ତୁତି କରିବାକୁ ଲାଗିଲେ ।।୯।।

ପରିକ୍ଷିତ, ଭଗବାନଙ୍କର ଶ୍ରେଷ୍ଠ ଭକ୍ତ ଦେବର୍ଷି ନାରଦ ଅକ୍ଲେଶରେ କେଶୀ ବଧ ରୂପକ କର୍ମ କରିଥିବା ଶ୍ରୀକୃଷ୍ଣଙ୍କ ପାଖକୁ ଆସି ତାଙ୍କୁ ଏକାନ୍ତରେ କହିଲେ-- ।।୧୦।। ହେ କୃଷ୍ଣ, ହେ ଅପ୍ରମେୟସ୍ୱରୂପ, ଯୋଗେଶ, ଜଗଦୀଶ୍ୱର, ବାସୁଦେବ, ଅଖିଳ ବିଶ୍ୱର ଆଶ୍ରୟ, ଯଦୁପତି, ପ୍ରଭୁ, ସମସ୍ତ ପ୍ରାଣୀଙ୍କର ଏକମାତ୍ର ଆତ୍ମା । କାଷ୍ଠରେ ଥିବା ଅଗ୍ନିପରି ଗୂଢ଼ ଭାବରେ ଆପଣ

ହୃଦୟର ଗୁହାରେ ଅବସ୍ଥାନ କରନ୍ତି । ଆପଣ ସମସ୍ତଙ୍କର ସାକ୍ଷୀ ଈଶ୍ୱର ଓ ମହାପୁରୁଷ ॥୧୧-୧୨॥ ଆପଣ ସ୍ୱତନ୍ତ୍ର; ସୃଷ୍ଟିର ପୂର୍ବରୁ ନିଜର ମାୟାରୂପକ ଶକ୍ତିଦ୍ୱାରା ଆପଣ ସତ୍ତ୍ୱ ଆଦି ଗୁଣମାନଙ୍କୁ ସୃଷ୍ଟି କରିଛନ୍ତି ଏବଂ ସେହି ଗୁଣମାନଙ୍କଦ୍ୱାରା ଜଗତ୍‌ର ସୃଷ୍ଟି, ସ୍ଥିତି ଓ ପ୍ରଳୟ କରୁଛନ୍ତି । ଆପଣ ହେଉଛନ୍ତି ସତ୍ୟସଙ୍କଳ୍ପ ଓ ସର୍ବଶକ୍ତିମାନ୍ ॥୧୩॥ ଆପଣ ରାଜାରୂପୀ ଦୈତ୍ୟ, ପ୍ରମଥ ଓ ରାକ୍ଷସମାନଙ୍କର ବିନାଶ ନିମନ୍ତେ ଏବଂ ସାଧୁମାନଙ୍କ ରକ୍ଷା ନିମନ୍ତେ ସ୍ୱୟଂ ଅବତୀର୍ଣ୍ଣ ହୋଇଛନ୍ତି । ଯାହାର ହ୍ରେଷାରବ ଶୁଣି ଦେବତାମାନେ ସଙ୍ଗେ ସଙ୍ଗେ ସ୍ୱର୍ଗ ଛାଡ଼ି ପଳାଇଯା'ନ୍ତି, ଅଶ୍ୱରୂପୀ ସେହି ଦୈତ୍ୟକୁ ଖେଳିଲାପରି ଅତି ସହଜରେ ଆପଣ ଯେ ନିହତ କଲେ, ତାହା ଆନନ୍ଦର ବିଷୟ ॥୧୪-୧୫॥ ପ୍ରଭୁ, ପଅରଦିନ କିପରି ଆପଣଙ୍କ ହାତରେ ଚାଣୂର, ମୁଷ୍ଟିକ, ଅନ୍ୟ ମଲ୍ଲମାନେ, କୁବଳୟାପୀଡ ହାତୀ ଏବଂ କଂସ ନିଜେ ମଧ୍ୟ ମରିବ, ତାହା ମୁଁ ଦେଖିବି ॥୧୬॥ ତା'ପରେ ଶଙ୍ଖାସୁର, କାଳଯବନ, ମୁର ଓ ନରକାସୁରର ବିନାଶ ହେବ । ପାରିଜାତହରଣ ଓ ଇନ୍ଦ୍ରର ପରାଜୟ ଘଟିବ ॥୧୭॥ ଜଗତ୍‌ପତି, ଆପଣ ନିଜ ବୀରତ୍ୱର ବଳରେ ରୁକ୍ମିଣୀ ଆଦି ବୀରକନ୍ୟାମାନଙ୍କୁ ବିବାହ କରିବେ ଏବଂ ଦ୍ୱାରକାରେ ରହି ନୃଗରାଜାଙ୍କୁ ପାପମୁକ୍ତ କରିବେ ॥୧୮॥ ଆପଣ ଭାର୍ଯ୍ୟା ଜାମ୍ବବତୀଙ୍କ ସହ ସ୍ୟମନ୍ତକ ମଣିକୁ ଘେନି ଆସିବେ ଏବଂ ନିଜ ଧାମ ମହାକାଳପୁରରୁ ବ୍ରାହ୍ମଣଙ୍କୁ ତାଙ୍କ ମୃତପୁତ୍ରମାନଙ୍କୁ ଫେରାଇଦେବେ ॥୧୯॥ ଏହାପରେ ଆପଣ ପୌଣ୍ଡ୍ରକକୁ ବଧ କରି କାଶିପୁରୀକୁ ଜଳାଇଦେବେ । ଯୁଧିଷ୍ଠିରଙ୍କର ରାଜସୂୟ ଯଜ୍ଞରେ ଚେଦିରାଜ ଶିଶୁପାଳକୁ ନିହତ କରିବେ ଓ ପରେ ପରେ ଦନ୍ତବକ୍ତ୍ରକୁ ବଧ କରିବେ ॥୨୦॥ ଦ୍ୱାରକାରେ ଅବସ୍ଥାନ କାଳରେ ଆପଣ ଯେଉଁସବୁ ବୀରତ୍ୱପୂର୍ଣ୍ଣ କାର୍ଯ୍ୟ କରିବେ, ତାହା ମୁଁ ଦେଖିବି ଏବଂ ପୃଥିବୀରେ କବିମାନେ ସେ ସବୁ ଲୀଳା ଗାୟନ କରିବେ ॥୨୧॥ ଅର୍ଜୁନର ରଥରେ ସାରଥି ହୋଇ କାଳରୂପରେ ପୃଥିବୀର ଭାରକୁ ହରଣ କରିବାପାଇଁ ବହୁ ଅକ୍ଷୌହିଣୀ ସେନା ସଂହାର କରିବେ । ଏହି ସମସ୍ତ ଲୀଳା ମୁଁ ଦର୍ଶନ କରିବି ॥୨୨॥ ଆପଣ ବିଶୁଦ୍ଧ ବିଜ୍ଞାନମୟ । ନିଜ ସ୍ୱତନ୍ତ୍ର ସ୍ଥିତିଦ୍ୱାରା ଆପଣ ସବୁ କିଛି ଲାଭକରନ୍ତି । ଆପଣଙ୍କର ସଙ୍କଳ୍ପ ଅମୋଘ । ଆପଣଙ୍କ କର୍ତ୍ତୃକ ନିଜ ଶକ୍ତିଦ୍ୱାରା ମାୟାପ୍ରସୂତ ଏହି ତ୍ରିଗୁଣମୟ ସଂସାର ନିତ୍ୟନିବୃତ୍ତ ହୋଇଛି । ହେ ଭଗବାନ୍, ଆମେ ଆପଣଙ୍କର ଶରଣାପନ୍ନ ହେଉଛୁ ॥୨୩॥ ଆପଣ ଈଶ୍ୱର ରୂପେ ସମସ୍ତଙ୍କୁ ନିୟନ୍ତ୍ରଣ କରନ୍ତି । ଆପଣ ନିଜେ ନିଜର ଆଶ୍ରୟ । ନିଜର ମାୟାଦ୍ୱାରା ମହଦାଦି ବିଶ୍ୱର କଳ୍ପନା କରିଛନ୍ତି । ଏବେ ଏହି ସଂସାରଲୀଳା କରିବାପାଇଁ ମନୁଷ୍ୟଶରୀର ଧାରଣ କରିଛନ୍ତି । ଯଦୁ, ବୃଷ୍ଣି ଓ ସାତ୍ୱତକୁଳର ଶିରୋମଣି ପ୍ରଭୁ, ମୁଁ ଆପଣଙ୍କୁ ନମସ୍କାର କରୁଛି ॥୨୪॥

ଶ୍ରୀ ଶୁକଦେବ କହିଲେ, ପରିକ୍ଷିତ, ଦେବର୍ଷିଶ୍ରେଷ୍ଠ ନାରଦ ଏହିପରି ଭଗବାନଙ୍କୁ ସ୍ତୁତି କରି ପ୍ରଣାମ କଲେ । ଭଗବାନଙ୍କ ଦର୍ଶନରେ ସେ ପରମ ଆନନ୍ଦ ଲାଭ କରିଥିଲେ । ସେ ତାଙ୍କର ଅନୁମତି ନେଇ ଚାଲିଗଲେ ॥୨୫॥ ବ୍ରଜବାସୀଙ୍କର ସୁଖଦାୟକ ଭଗବାନ ଗୋବିନ୍ଦ କେଶୀ ଦୈତ୍ୟକୁ ଯୁଦ୍ଧରେ ନିହତ କରି ଆନନ୍ଦରେ ନିଜର ସଖାମାନଙ୍କ ସହିତ ପଶୁ ଚରାଇବାରେ ଲାଗିଗଲେ ॥୨୬॥ ଦିନେ ସେ ଗୋବର୍ଦ୍ଧନ ପର୍ବତର ତଳେ ଗୋପାଳପିଲାଙ୍କ ସହିତ ଗାଈ ଚରାଉଥିବାବେଳେ ଚୋର ଓ ପଶୁପାଳକଙ୍କ ଅଭିନୟ କରି ଏକ ଲୁଚକାଳି ଖେଳ ଆରମ୍ଭ କରିଦେଲେ ॥୨୭॥ ଗୋପାଳମାନଙ୍କ ମଧ୍ୟରେ ଦଳେ ହେଲେ ଚୋର, ଦଳେ ପାଳକ ଓ ଦଳେ ମେଷାଦି ପଶୁ ହୋଇ ନିର୍ଭୟରେ ଏହି କ୍ରୀଡ଼ାରେ ମାତିଗଲେ । ଏହି ସମୟରେ ମହାମାୟାବୀ ମୟଦାନବର ପୁତ୍ର ବ୍ୟୋମ ନାମକ ଅସୁର ଏକ ଗୋପାଳବାଳକର ବେଶ ଧାରଣ କରି ଚୋର ହେଲା ଏବଂ ମେଷରୂପୀ ଅନେକ ବାଳକଙ୍କୁ ଚୋରାଇନେଲା ॥୨୮-୨୯॥ ଏହି ମାୟାବୀ ଅସୁର ଚୋର ହୋଇ ବାରମ୍ବାର ଏମାନଙ୍କୁ ନେଇଯାଏ ଏବଂ ପାହାଡ଼ ଗୁମ୍ଫା ମଧ୍ୟରେ ଏକ ବଡ଼ ପଥର ଦ୍ୱାରା ଢାଙ୍କି ରଖେ । ଏହିପରି ନେବା ଫଳରେ ଶେଷରେ ସେଇ ବାଳକଙ୍କ ମଧ୍ୟରୁ ଚାରି ପାଞ୍ଚ ଜଣ ମାତ୍ର ରହିଲେ ॥୩୦॥ ସତ୍‌ପୁରୁଷମାନଙ୍କର ଶରଣଦାତା ଭଗବାନ୍ କୃଷ୍ଣ ଅସୁରର ଏହି କାର୍ଯ୍ୟକୁ ଜାଣିପାରି ସିଂହ ଗଧିଆକୁ ଧରିନେବା ପରି ତାକୁ ବଳପୂର୍ବକ ମାଡ଼ିବସିଲେ ॥୩୧॥ ବଳବାନ୍ ରାକ୍ଷସ ଏକ ବିଶାଳ ପର୍ବତପରି

ନିଜ ରୂପକୁ ଧାରଣ କରି କୃଷ୍ଣଙ୍କ କବଳରୁ ଖସିଯିବାପାଇଁ ଯେତେ ଚେଷ୍ଟା କଲେ ମଧ୍ୟ ଖସି ଯାଇପାରିଲା ନାହିଁ । କୃଷ୍ଣ ତାକୁ ଦୁଇ ହାତରେ ଟେକି ଭୂଇଁରେ କଚାଡି ଦେଲେ ଏବଂ ପଶୁକୁ ମାରିବା ପରି ଗଳା ଚିପି ହତ୍ୟା କଲେ । ଆକାଶରେ ଦେବତାମାନେ ରହି ତାଙ୍କର ଏହି ଅଦ୍ଭୁତ ଲୀଳା ଦେଖୁଥିଲେ ।।୩୨-୩୩।। ଏହାପରେ ଭଗବାନ୍ କୃଷ୍ଣ ଗୁମ୍ଫାଦ୍ୱାରରେ ମଡା ହୋଇଥିବା ପଥରକୁ ହଟାଇ ଗୋପାଳପିଲାଙ୍କୁ ସଙ୍କଟରୁ ଉଦ୍ଧାର କଲେ ଓ ଗୋପକୁ ଫେରିଆସିଲେ । ସ୍ୱର୍ଗସ୍ଥ ଦେବତା ଓ ବ୍ରଜର ଗୋପାଳମାନେ ତାଙ୍କୁ ସ୍ତୁତି କରିବାକୁ ଲାଗିଲେ ।।୩୪।।

## ଅଠତିରିଶ ଅଧ୍ୟାୟ

# ଗୋପପୁରରେ ଅକ୍ରୂର

ଶ୍ରୀ ଶୁକଦେବ କହିଲେ, ପରିକ୍ଷିତ, ମହାମତି ଅକ୍ରୂର ସେହି ଏକାଦଶୀ ରାତିଟି ମଥୁରାପୁରରେ କଟାଇ ପ୍ରଭାତ ହେବାରୁ ରଥାରୋହଣ କରି ଗୋକୁଳକୁ ଯାତ୍ରା କଲେ । ବାଟରେ ଯିବାବେଳେ ମହାଭାଗ୍ୟବାନ୍ ଅକ୍ରୂରଙ୍କର କମଳନୟନ ଭଗବାନ୍ ଶ୍ରୀକୃଷ୍ଣଙ୍କ ଠାରେ ଅମ୍ଳାନ ଭକ୍ତି ଜାତ ହେଲା । ସେ ଏହିପରି ଚିନ୍ତା କରିବାକୁ ଲାଗିଲେ ।।୧-୨।। ମୁଁ କ'ଣ ପୁଣ୍ୟ କାର୍ଯ୍ୟ କରିଛି, କ'ଣ ଶ୍ରେଷ୍ଠ ତପସ୍ୟା କରିଛି, ଯୋଗ୍ୟପାତ୍ରରେ କ'ଣ ବା ଦାନ ଦେଇଛି, ଯାହା ଫଳରେ ମୁଁ ଆଜି ଭଗବାନ୍ ଶ୍ରୀକଷ୍ଣଙ୍କୁ ଦର୍ଶନ କରିବି ।।୩।। ଶୂଦ୍ରଠାରୁ ଜାତ ବ୍ୟକ୍ତି ପକ୍ଷରେ ଯେପରି ବେଦପାଠ ଦୁର୍ଲଭ, ସେହିପରି ମୋ ଭଳି ବିଷୟୀ ପକ୍ଷରେ ଉତ୍ତମଶ୍ଳୋକ ଶ୍ରୀଭଗବାନଙ୍କର ଦର୍ଶନ ମଧ୍ୟ ଦୁର୍ଲଭ ବୋଲି ମୁଁ ମନେକରୁଛି ।।୪।। ନା, ମୋ ପରି ଅଧମର ମଧ୍ୟ ଶ୍ରୀକୃଷ୍ଣଦର୍ଶନ ହେବ । କାରଣ ନଦୀରେ ବହିଯାଉଥିବା ତୃଣ ଯେପରି ବେଳେବେଳେ କୂଳରେ ଲାଗିଯାଏ, ସେହିପରି କାଳସ୍ରୋତରେ ଭାସି ଯାଉଥିବା ବ୍ୟକ୍ତିମାନଙ୍କ ମଧ୍ୟରେ କେହି କେହି ସ୍ରୋତରୁ ପାର ହୋଇଯାନ୍ତି । ଆଜି ମୋର ସମସ୍ତ ଅଶୁଭ ନଷ୍ଟ ହୋଇଯାଇଛି । ମୋର ଜନ୍ମ ସଫଳ ହୋଇଛି । କାରଣ ଯୋଗୀମାନଙ୍କର ଧ୍ୟେୟ ଭଗବାନ ଶ୍ରୀକୃଷ୍ଣଙ୍କର ଚରଣକମଳକୁ ମୁଁ ନମସ୍କାର କରିପାରିବି ।।୫-୬।। ଆଶ୍ଚର୍ଯ୍ୟର କଥା ଯେ କଂସ ଆଜି ମୋ ପ୍ରତି ବହୁ ଅନୁଗ୍ରହ ଦେଖାଇଛି । କାରଣ ଯେଉଁ ଭଗବାନଙ୍କ ପାଦନଖର କିରଣରେ ପୂର୍ବେ ବହୁ ମୁନି ଋଷି ଏହି ସଂସାରର ଅଜ୍ଞାନରୂପକ ଅନ୍ଧକାରକୁ ପାର ହୋଇଯାଇଛନ୍ତି, ଆଜି ପୃଥିବୀ ଉପରେ ଅବତୀର୍ଣ୍ଣ ସେହି ଭଗବାନଙ୍କର ପାଦପଦ୍ମ ମୁଁ ଦର୍ଶନ କରିପାରିବି ।।୭।। ବ୍ରହ୍ମା, ଶଙ୍କର ପ୍ରଭୃତି ଦେବତାମାନେ, ସ୍ୱୟଂ ଲକ୍ଷ୍ମୀଦେବୀ, ମୁନିଋଷି ଓ ଭକ୍ତମାନେ ଯେଉଁ ପାଦପଦ୍ମର ଉପାସନା କରନ୍ତି, ଏବଂ ନିଜର ସଖାମାନଙ୍କ ସହିତ ବନରେ ଗୋରୁ ଚରାଉଥିବାବେଳେ ଯେଉଁ ପାଦପଦ୍ମ ଗୋପୀମାନଙ୍କର କୁଚକୁଙ୍କୁମରେ ରଞ୍ଜିତ ହୋଇଥାଏ, ମୁଁ ସେହି ପାଦପଦ୍ମକୁ ଆଜି ଦର୍ଶନ କରିବି ।।୮।। ମୋର ଦକ୍ଷିଣରେ ମୃଗମାନେ ଚାଲିଯାଉଥିବାଯୋଗୁଁ ମୁଁ ମନେ କରୁଛି ଆଜି ମୁଁ ନିଶ୍ଚୟ ମୁକୁନ୍ଦଙ୍କର ମୁଖଦର୍ଶନ କରିବି । କି ସୁନ୍ଦର ତାଙ୍କର ଶ୍ରୀମୁଖ, କପୋଳ ଓ ନାସିକା, କି ସୁନ୍ଦର ସ୍ମିତହାସ, ପ୍ରେମପୂର୍ଣ୍ଣ ଦୃଷ୍ଟି, ପଦ୍ମପରି ଅରୁଣବର୍ଣ୍ଣର ଚକ୍ଷୁ ଏବଂ କପୋଳରେ ଆଲୁଳାୟିତ କେଶରାଶି ।।୯।।

ପୃଥିବୀର ଭାର ଉଶ୍ୱାସ କରିବାପାଇଁ ସେ ନିଜ ଇଚ୍ଛାରେ ମନୁଷ୍ୟରୂପରେ ଅବତୀର୍ଣ୍ଣ ହୋଇଛନ୍ତି । ଆଜି ତାଙ୍କର ସେହି ଲାବଣ୍ୟମୟ ରୂପର ଦର୍ଶନ ହେବ ଓ ତଦ୍ୱାରା ମୋର ନେତ୍ର ସାର୍ଥକ ହେବ ।।୧୦।। ଯେ ଏହି କାର୍ଯ୍ୟକାରଣରୂପ ସଂସାରର ଦ୍ରଷ୍ଟା, ଅଥଚ ଅହଙ୍କାରରହିତ, ଯେ ନିଜର ଚିତ୍‌ଶକ୍ତିବଳରେ ଅଜ୍ଞାନରୁ ଓ ତହିଁରୁ ଜାତ ଭେଦଭ୍ରମରୁ ଦୂରରେ ରହନ୍ତି, ଯେ ନିଜର ଯୋଗମାୟା ବଳରେ ପ୍ରାଣ, ଇନ୍ଦ୍ରିୟ ଓ ବୁଦ୍ଧିର ସହିତ ନିଜର ସ୍ୱରୂପ ସାକ୍ଷାତ୍‌କାରପାଇଁ ନିଜଠାରେ ଏହି ଜୀବଜଗତକୁ

ରଚନା କରିଛନ୍ତି, ସେହି ଭଗବାନ୍ ବୃନ୍ଦାବନର କୁଞ୍ଜରେ ଓ ଗୋପୀମାନଙ୍କର ଘରେ ଲୀଳା ରଚନା କରୁଥିବାର ଦେଖାଯାଏ ॥୧୧॥ ଭଗବାନଙ୍କର ସୁମଙ୍ଗଳ ଗୁଣ, କର୍ମ ଓ ଲୀଳାମାନ ଗାନ କଲେ ସମସ୍ତ ପାପନାଶ ହୁଏ । ଯେଉଁ ବାଣୀମାନ ଏହା ଗାନ କରେ, ତାହା ଜଗତରେ ନୂତନ ଜୀବନ, ନୂତନ ଶୋଭା ଓ ପବିତ୍ରତା ଖେଳାଇଦିଏ । କିନ୍ତୁ ଭଗବାନଙ୍କ ସହିତ ସମ୍ପର୍କ ନ ଥିବା ବାଣୀ, ଯେତେ ଅଳଙ୍କାରଯୁକ୍ତ ହେଲେ ମଧ୍ୟ ତାହା କେବଳ ଶବକୁ ଅଳଙ୍କାରରେ ମଣ୍ଡିଲାପରି ହୋଇଥାଏ ॥୧୨॥ ସେ ନିଜରଚିତ ଧର୍ମମର୍ଯ୍ୟାଦାର ପାଳକ ଦେବତାମାନଙ୍କର ମଙ୍ଗଳପାଇଁ ଯଦୁବଂଶରେ ଅବତୀର୍ଣ୍ଣ ହୋଇଛନ୍ତି ଏବଂ ବ୍ରଜରେ ରହି ନିଜର ଯଶ ବିସ୍ତାର କରୁଛନ୍ତି । ଦେବତାମାନେ ତାଙ୍କର ସେହି ଅଶେଷମଙ୍ଗଳକର ଯଶକୁ ଗାନ କରୁଛନ୍ତି ॥୧୩॥ ମୋର ସୁପ୍ରଭାତ ମଙ୍ଗଳମୟ ହୋଇଛି । କାରଣ ଆଜି ସଜ୍ଜନମାନଙ୍କର ଏକମାତ୍ର ଗତି ଓ ଗୁରୁ, ଚକ୍ଷୁଷ୍ମାନ୍‌ମାନଙ୍କ ନେତ୍ରର ମହୋତ୍ସବ, ତ୍ରିଲୋକରେ ଏକମାତ୍ର କମନୀୟ ଏବଂ ଲକ୍ଷ୍ମୀଙ୍କର ବାଞ୍ଛିତ ଭଗବାନଙ୍କର ସେହି ଭୁବନମୋହନ ସୁଦର୍ଶନ ରୂପକୁ ମୁଁ ଦର୍ଶନ କରିବି ॥୧୪॥ ଯୋଗୀମାନେ କେବଳ ଧ୍ୟାନରେ ତାଙ୍କର ପାଦପଦ୍ମକୁ ଦେଖିବାକୁ ଚେଷ୍ଟା କରନ୍ତି । ମାତ୍ର ମୁଁ ରାମ, କୃଷ୍ଣଙ୍କୁ ଦେଖିବାମାତ୍ରେ ରଥରୁ ଓହ୍ଲାଇପଡି ତାଙ୍କୁ ପାଇବାପାଇଁ ତାଙ୍କ ପାଦପଦ୍ମରେ ପ୍ରଣତି ଜଣାଇବି ଓ ତାହା ସହିତ ତାଙ୍କର ସଖା ବୃନ୍ଦାବନବାସୀ ଗୋପମାନଙ୍କୁ ମଧ୍ୟ ପ୍ରଣାମ କରିବି ॥୧୫॥ କାଳରୂପକ ଭୁଜଙ୍ଗ ମାଡି ଆସୁଥିବାର ଦେଖି ଯେଉଁ ଲୋକମାନେ ଅତ୍ୟନ୍ତ ବ୍ୟାକୁଳ ହୋଇ ତାଙ୍କର ଶରଣ ଚାହାନ୍ତି, ସେମାନଙ୍କୁ ତାଙ୍କ ହସ୍ତ ଅଭୟଦାନ କରେ । ଆଜି ତାଙ୍କର ପାଦତଳେ ମୁଁ ପଡ଼ିଥିବାବେଳେ ସେଇ ବିଭୁ ନିଶ୍ଚୟ ମୋର ମସ୍ତକରେ ତାଙ୍କର ସେହି କରକମଳ ସ୍ଥାପନକରିବେ ॥୧୬॥ ଦେବରାଜ ଇନ୍ଦ୍ର ଓ ଦୈତ୍ୟରାଜ ବଳି ତାଙ୍କର ଯେଉଁ କରକମଳରେ ପୂଜାର ଉପହାର ଦେଇ ତ୍ରିଲୋକର ଇନ୍ଦ୍ରପଦ ଲାଭ କରିଥିଲେ, ତାଙ୍କର ସେହି କରକମଳ ମାନସରୋବରର ପଦ୍ମଗନ୍ଧ ପରି ସୁଗନ୍ଧଯୁକ୍ତ । ସେହି କରକମଳ ସ୍ପର୍ଶଦ୍ୱାରା ଗୋପୀମାନଙ୍କର ରାସକ୍ରୀଡାଜନିତ ସମସ୍ତ ଶରୀରଶ୍ରମ ଦୂର କରିଥିଲା ॥୧୭॥ ମୁଁ କଂସର ଦୂତ । ମୋତେ କଂସ ତାଙ୍କ ପାଖକୁ ପଠାଇଛି । ତଥାପି ସେ ସର୍ବଦର୍ଶୀ ହୋଇଥିବାରୁ ମୋ ପ୍ରତି କେବେହେଲେ ଶତ୍ରୁବୁଦ୍ଧି କରିବେ ନାହିଁ । କାରଣ ସେ ଅନ୍ତର୍ଯାମୀ ରୂପେ ନିର୍ମଳ ଦୃଷ୍ଟିରେ ମୋ ଚିତ୍ତର ଭିତର ବାହାର ଦେଖୁଛନ୍ତି ॥୧୮॥ ମୁଁ ତ ତାଙ୍କର ପଦପ୍ରାନ୍ତରେ କୃତାଞ୍ଜଳି ହୋଇ ପଡ଼ିଯିବି । ସେ ଈଷତ୍‌ହାସ୍ୟଯୁକ୍ତ ସ୍ନେହପୂର୍ଣ୍ଣ ଦୃଷ୍ଟିରେ ମୋତେ ଦେଖିବେ । ସେ ଦେଖିବା କ୍ଷଣି ମୋର ସମସ୍ତ ପାପ ସଙ୍ଗେ ସଙ୍ଗେ ଦୂର ହୋଇଯିବ ଏବଂ ମୋର ଶଙ୍କା ରହିବ ନାହିଁ । ମୋତେ କି ଆନନ୍ଦ ନ ମିଳିବ ? ॥୧୯॥ ମୁଁ ତାଙ୍କର ପରମସୁହୃଦ୍ ଓ ଜ୍ଞାତି । ତାଙ୍କ ଛଡ଼ା ମୋର ଅନ୍ୟ କେହି ଦେବତା ନାହିଁ । ତାଙ୍କର ବିଶାଳ ଭୁଜରେ ସେ ମୋତେ ଆଲିଙ୍ଗନ କଲେ, ମୋର ଆତ୍ମା ସଙ୍ଗେ ସଙ୍ଗେ ପବିତ୍ର ହୋଇଯିବ । ମୋର ସମସ୍ତ କର୍ମ ବନ୍ଧନ ଶିଥିଳ ହୋଇଯିବ ॥୨୦॥ ସେ ମୋତେ ଆଲିଙ୍ଗନ କରିବେ । ମୁଁ ହାତ ଯୋଡ଼ି ତାଙ୍କ ଆଗରେ ପ୍ରଣତ ହୋଇଥିବି । ସେତେବେଳେ ସେହି ମହାଯଶା ମୋତେ 'ହେ ଅକ୍ରୁର, ହେ ତାତ' ବୋଲି ସ୍ନେହରେ ସମ୍ବୋଧନ କରିବେ । ତା'ହେଲେ ମୋର ଜନ୍ମ ସାର୍ଥକ ହୋଇଯିବ । ଭଗବାନ୍ କୃଷ୍ଣଙ୍କଦ୍ୱାରା ଯେ ଆଦୃତ ହୁଏ ନାହିଁ, ତା'ର ଜନ୍ମ ଧିକ୍ ॥୨୧॥ ତାଙ୍କର କେହି ପ୍ରିୟ ନୁହେଁ କି ବନ୍ଧୁ ନୁହେଁ । କେହି ଅପ୍ରିୟ ନୁହେଁ ବା ଶତ୍ରୁ ନୁହେଁ । କାହାରିକୁ ମଧ୍ୟ ସେ ଉପେକ୍ଷା କରନ୍ତି ନାହିଁ; ତଥାପି କଳ୍ପବୃକ୍ଷର ପାଖକୁ ଯାଇ ମାଗିଲେ ସେ ଯେପରି ବାଞ୍ଛିତ ଫଳ ଦାନ କରେ, ସେହିପରି ଭକ୍ତମାନେ ତାଙ୍କୁ ଯେପରି ଭଜନ କରନ୍ତି ସେ ସେହିପରି ସେମାନଙ୍କୁ ପ୍ରେମ କରନ୍ତି ॥୨୨॥ ମୁଁ ବିନୀତ ଭାବରେ ମୁଣ୍ଡ ପାତି ଠିଆହୋଇଥିବାବେଳେ ଯଦୁଶ୍ରେଷ୍ଠ ବଳରାମ ମୋତେ ଆଲିଙ୍ଗନ କରି ମୋ' ହାତ ଧରି ଘରକୁ ନେଇଯିବେ ଏବଂ ସେଠାରେ ମୋର ସମସ୍ତ ସତ୍କାର କରି କଂସ ତାର ବନ୍ଧୁମାନଙ୍କ ସହିତ କିପରି ବ୍ୟବହାର କରୁଛି, ତାହା ନିଶ୍ଚୟ ପଚାରିବେ ॥୨୩॥

ଶ୍ରୀ ଶୁକଦେବ କହିଲେ, ପରିକ୍ଷିତ, ଶ୍ୱଫଲ୍‌କନନ୍ଦନ ଅକ୍ରୁର ବାଟଯାକ ଏହିପରି କୃଷ୍ଣଙ୍କ କଥା ଚିନ୍ତା କରି କରି ଗୋକୁଳରେ ପହଞ୍ଚିଲେ । ସେତେବେଳେ ସୂର୍ଯ୍ୟ ଅସ୍ତାଚଳକୁ ଯାଉଥିଲେ ॥୨୪॥ ଯେଉଁ କୃଷ୍ଣଙ୍କର ପବିତ୍ର ପଦରେଣୁକୁ

ଇନ୍ଦ୍ରାଦି ଲୋକପାଳମାନେ ନିଜର ଶିରଃସ୍ଥ ମୁକୁଟରେ ପ୍ରଣାମ କରନ୍ତି ତାଙ୍କର ସେହି ପାଦଚିହ୍ନମାନ ପୃଥିବୀର ଅଳଙ୍କାରସ୍ୱରୂପ ଏବଂ ପଦ୍ମ, ଯବ ଓ ଅଙ୍କୁଶ ଆଦିରେ ଚିହ୍ନିତ । ସେହି ପାଦଚିହ୍ନମାନ ବ୍ରଜଭୂମିକୁ ମଣ୍ଡିତ କରୁଥିବାର ସେ ଦେଖିପାରିଲେ । ତାହାସବୁ ଦେଖିବାମାତ୍ରକେ ଅକ୍ରୂର ଅତିଶୟ ଆନନ୍ଦରେ ବିହ୍ୱଳ ହୋଇପଡ଼ିଲେ । ପ୍ରେମରେ ତାଙ୍କର ରୋମ ଟାଙ୍କୁରି ଉଠିଲା ଏବଂ ସାଶ୍ରୁନୟନରେ ସେ ରଥରୁ ଅବତରଣ କରି, ଏ ସବୁ ପ୍ରଭୁଙ୍କର ପାଦଚିହ୍ନ ବୋଲି କହି ତା'ଉପରେ ଗଡ଼ିଗଲେ ॥୨୫-୨୬॥ ତାଙ୍କର ଦମ୍ଭ, ଭୟ ଏବଂ ଶୋକ କିଛି ରହିଲା ନାହିଁ । କଂସର ଆଦେଶଠାରୁ ଆରମ୍ଭ କରି ଭଗବାନ୍ ଶ୍ରୀକୃଷ୍ଣଙ୍କର ପଦଚିହ୍ନଦର୍ଶନ ଓ ଲୀଳାମାନ ଶ୍ରବଣ କରିବାପର୍ଯ୍ୟନ୍ତ ଅକ୍ରୂର ଯେଉଁ ପରମପୁରୁଷାର୍ଥ ଲାଭ କଲେ, ତାହା ସମସ୍ତ ଦେହଧାରୀଙ୍କର କାମ୍ୟ । ସେତେବେଳକୁ ବଳରାମ ଓ ଶ୍ରୀକୃଷ୍ଣ ବ୍ରଜର ଗାଈ ଦୁହିଁବା ସ୍ଥାନକୁ ଚାଲିଯାଇଥିଲେ । ପୀତାମ୍ବର ଓ ନୀଳାମ୍ବରଧାରୀ ଶରତ୍‌କାଳୀନ ପଦ୍ମପରି ସୁନୟନ ସେ ଦୁଇ ଜଣଙ୍କୁ ସେ ସେଠାରେ ଦର୍ଶନ କଲେ ॥୨୭-୨୮॥ ଦୁହେଁ କିଶୋର ବୟସର । ଜଣେ ଗୌରବର୍ଣ୍ଣ; ଅନ୍ୟ ଜଣେ ଶ୍ୟାମଳ ବର୍ଣ୍ଣ । ଅଙ୍ଗେ ଅଙ୍ଗେ ସୌନ୍ଦର୍ଯ୍ୟ ଫୁଟିଉଠୁଛି, ବିଶାଳବାହୁ, ସୁନ୍ଦର ମୁହଁ, ଶିଶୁହସ୍ତୀପରି ବଳଶାଳୀ ॥୨୯॥ ଧ୍ୱଜ, ବଜ୍ର, ଅଙ୍କୁଶ ଓ ପଦ୍ମଚିହ୍ନଯୁକ୍ତ ନିଜର ପାଦଚିହ୍ନରେ ବ୍ରଜଭୂମିକୁ ମଣ୍ଡିତକରି, ନିଜର ସ୍ମିତହାସ୍ୟ ଦ୍ୱାରା ଦୁହେଁ କରୁଣା ବର୍ଷଣ କରୁଥିବାପରି ଜଣାଯାଉଥିଲେ ॥୩୦॥ ଦୁହେଁ ବେକରେ ରତ୍ନହାର ଓ ବକ୍ଷରେ ବନମାଳା ଧାରଣ କରିଥିଲେ । ସ୍ନାନପରେ ଦେହରେ ସୁଗନ୍ଧ ଚନ୍ଦନ ଲେପନ କରି ନିର୍ମଳ ବସ୍ତ୍ର ପରିଧାନ କରିଥିଲେ । ତାହାଙ୍କ କ୍ରୀଡ଼ା ଉଦାର ଓ ରୁଚିର ଥିଲା ॥୩୧॥ ସେ ଦୁହେଁ ଆଦିମୂଳ ପ୍ରକୃତି ଓ ପୁରୁଷ । ଜଗତ୍‌ର କାରଣ ଓ ତାହାର ପ୍ରତିପାଳକ ଏବଂ ପୃଥିବୀର କଲ୍ୟାଣପାଇଁ ମୂର୍ତ୍ତିଭେଦରେ ବଳରାମ ଓ କୃଷ୍ଣ ରୂପରେ ଅବତୀର୍ଣ୍ଣ ହୋଇଛନ୍ତି ॥୩୨॥ ଦୁହେଁ ନିଜ ଅସାଧାରଣ ତେଜରେ ଦିଗମାନଙ୍କର ଅନ୍ଧକାର ଦୂର କରୁଥିଲେ । ଜଣେ ସ୍ୱର୍ଣ୍ଣଯୁକ୍ତ ଇନ୍ଦ୍ରନୀଳମଣିର ପର୍ବତ ପରି ଓ ଅନ୍ୟଜଣେ ସ୍ୱର୍ଣ୍ଣଯୁକ୍ତ ରୌପ୍ୟ ପର୍ବତପରି ଦେଖାଯାଉଥିଲେ ॥୩୩॥ ପ୍ରେମବିହ୍ୱଳ ଅକ୍ରୂର ଶୀଘ୍ର ରଥରୁ ଓହ୍ଲାଇ ପଡ଼ି ରାମକୃଷ୍ଣଙ୍କର ପାଦତଳେ ପଡ଼ିଯାଇ ଦଣ୍ଡପ୍ରଣାମ କଲେ ॥୩୪॥ ଭଗବାନଙ୍କ ଦର୍ଶନରେ ତାଙ୍କର ଚକ୍ଷୁ ଆନନ୍ଦାଶ୍ରୁରେ ଭରିଗଲା ଓ ଅଙ୍ଗ ପୁଲକିତ ହେଲା ଏବଂ ଉଦ୍‌ବେଗ ହେତୁ ସେ ନିଜର ପରିଚୟ ଦେବାକୁ ଭୁଲିଗଲେ ॥୩୫॥ ଶରଣବତ୍ସଳ ଭଗବାନ୍ ଶ୍ରୀକୃଷ୍ଣ ଅକ୍ରୂରଙ୍କର ମନର କଥା ଜାଣି ଚକ୍ରଚିହ୍ନିତ ହାତରେ ତାଙ୍କୁ ଉଠାଇଆଣି ଆଲିଙ୍ଗନ କଲେ । ଅନୁଜ କୃଷ୍ଣଙ୍କ ସହ ମହାମନା ବଳରାମ ପ୍ରଣତ ଅକ୍ରୂରଙ୍କୁ ଆଲିଙ୍ଗନ କରି ହାତ ଧରି ତାଙ୍କୁ ଘରକୁ ନେଇ ଆସିଲେ ॥୩୬-୩୭॥ ଏହାପରେ ତାଙ୍କର କୁଶଳ ଜିଜ୍ଞାସା କରି ତାଙ୍କୁ ସ୍ୱାଗତ କଲେ ଏବଂ ଉତ୍ତମ ଆସନରେ ବସାଇ ଓ ପାଦପ୍ରକ୍ଷାଳନ କରି ମଧୁପର୍କଦ୍ୱାରା ତାଙ୍କୁ ଯଥାବିଧି ସତ୍କାର କଲେ ॥୩୮॥ ତା'ପରେ ଭଗବାନ୍ ଶ୍ରୀକୃଷ୍ଣ ଅତିଥି ଅକ୍ରୂରଙ୍କୁ ଆଦରପୂର୍ବକ ଏକ ଗାଭୀ ଦାନ କଲେ ଓ ତାଙ୍କ ଶ୍ରମ ଅପନୋଦନପାଇଁ ତାଙ୍କ ପାଦ ସେବା ପୂର୍ବକ ବିଶୁଦ୍ଧ ବହୁସାରଯୁକ୍ତ ସୁସ୍ୱାଦୁ ଅନ୍ନଭୋଜନ କରାଇଲେ ॥୩୯॥ ଅକ୍ରୂର ଭୋଜନ ଶେଷ କରନ୍ତେ, ପରମ ଧର୍ମଜ୍ଞ ବଳରାମ ମୁଖବାସପାଇଁ ତାମ୍ବୁଳ, ଗନ୍ଧଚନ୍ଦନ ଓ ମାଲ୍ୟ ଆଦି ଦେଇ ତାଙ୍କର ପରମ ପ୍ରୀତିବିଧାନ କଲେ ॥୪୦॥ ଏହିପରି ସତ୍କାରପରେ ନନ୍ଦ ଅକ୍ରୂରଙ୍କୁ ପଚାରିଲେ -- ପ୍ରିୟ ଅକ୍ରୂର, ନିର୍ଦ୍ଦୟ କଂସର ରାଜତ୍ୱରେ ଆପଣମାନେ କିପରି ଦିନ କାଟୁଛନ୍ତି ? କଂସର ପାଳିତ ମେଣ୍ଢାମାନଙ୍କପରି ତ ଆପଣମାନଙ୍କର ଅବସ୍ଥା ! ॥୪୧॥ ଯେଉଁ ଦୁଷ୍ଟ କଂସ ନିଜର ପ୍ରାଣରତୃପ୍ତି ମେଣ୍ଟାଇବାପାଇଁ କାନ୍ଦୁଥିବା ଭଉଣୀର କୋଳରୁ ତାର ସଦ୍ୟଜାତ ପିଲାମାନଙ୍କୁ ନେଇ ଗୋଟିଗୋଟି କରି ହତ୍ୟା କରିପାରେ, ତା'ର ପ୍ରଜାମାନେ ଭଲରେ ଥିବେ ବୋଲି କ'ଣ ବା ଆଶା କରିବା ? ॥୪୨॥ ନନ୍ଦ ଏହିପରି ଅକ୍ରୂରଙ୍କର ସତ୍କାରକରି ଓ ମଧୁର ବାକ୍ୟରେ କୁଶଳ ଜିଜ୍ଞାସା କରି ତାଙ୍କର ପଥଶ୍ରମ ଦୂର କଲେ ॥୪୩॥

## ଅଣଚାଳିଶ ଅଧ୍ୟାୟ

# କୃଷ୍ଣ, ବଳରାମଙ୍କ ମଥୁରା ଯାତ୍ରା

ଶ୍ରୀ ଶୁକଦେବ କହିଲେ, ବାଟରେ ଆସୁଥିବାବେଳେ ଅକ୍ରୂର ଯାହା ସବୁ ଭାବିଭାବି ଆସୁଥିଲେ, ବଳରାମ ଓ କୃଷ୍ଣଙ୍କ ଠାରୁ ସେହିସବୁ ସ୍ନେହ ଓ ସମ୍ମାନ ଲାଭ କଲେ ॥୧॥ ରାଜା, ଯେଉଁ ଭଗବାନଙ୍କୁ ଲକ୍ଷ୍ମୀ ଆଶ୍ରୟ କରି ରହିଥା'ନ୍ତି, ସେ ପ୍ରସନ୍ନ ହେଲେ କ'ଣ ବା ମିଳି ନ ପାରେ ? ତଥାପି ତାଙ୍କ ଭକ୍ତମାନେ କୌଣସି ବସ୍ତୁକୁ ଇଚ୍ଛା କରନ୍ତି ନାହିଁ ॥୨॥ ଦେବକୀନନ୍ଦନ ଭଗବାନ୍ କୃଷ୍ଣ ସାନ୍ଧ୍ୟ ଭୋଜନ ଶେଷ କରି, ବନ୍ଧୁବାନ୍ଧବଙ୍କ ପ୍ରତି କଂସ କିପରି ବ୍ୟବହାର କରୁଛି, ଏବଂ ଆଉ କଣ କରିବାକୁ ଚାହୁଁଛି, ତାହା ସବୁ ଅକ୍ରୂରଙ୍କୁ ପଚାରିଲେ ॥୩॥ କୃଷ୍ଣ କହିଲେ, ହେ ତାତ, ହେ ସୌମ୍ୟ, ଭଲରେ ଆସିଲେ ତ ? ଆପଣଙ୍କର ମଙ୍ଗଳ ହେଉ । ଆମର ଜ୍ଞାତି କୁଟୁମ୍ବ ଓ ବନ୍ଧୁମାନେ ସବୁ ଭଲରେ ଅଛନ୍ତି ତ ? ॥୪॥ ତାତ, ପୁଣି ଭାବୁଛି ଆମର କୁଳର ଅମଙ୍ଗଳସ୍ୱରୂପ କଂସ ନାମରେ ଆମର ଯେଉଁ ମାମୁଁଟି ଅଛି, ତାର ଉନ୍ନତି ହେଉଥିବା ବେଳେ ପ୍ରଜାମାନେ କି ସୁଖରେ ଥିବେ ଯେ, ମୁଁ ସେମାନଙ୍କ କୁଶଳ ପ୍ରଶ୍ନ ପଚାରିବି ? ॥୫॥ ଆହା, ମୋ ପାଇଁ ମୋର ନିରୀହ ପିତାମାତାଙ୍କୁ କି ଦୁଃଖ ଭୋଗ କରିବାକୁ ହୋଇ ନାହିଁ ! ତାଙ୍କର ହାତଗୋଡ଼ ଲୁହା ଶିକୁଳିରେ ବନ୍ଧା ହୋଇ ତାଙ୍କୁ କାରାଗାରରେ ରହିବାକୁ ହେଲା ଏବଂ ମୋ' ପାଇଁ ତାଙ୍କର ଅନ୍ୟ ପିଲାମାନଙ୍କୁ ମଧ୍ୟ ହତ୍ୟା କରାଗଲା ॥୬॥ ସୌମ୍ୟ ଅକ୍ରୂର, ଆପଣଙ୍କ ପରି ସ୍ୱଜନଙ୍କୁ ଦେଖିବାପାଇଁ ମୋର ବହୁ ଦିନରୁ ଇଚ୍ଛା ଥିଲା । ଆଜି ସେହି ଇଚ୍ଛା ପୂର୍ଣ୍ଣ ହେଲା । କାହିଁକି ଆପଣ ଆସିଛନ୍ତି, ଏବେ ତାହା ବର୍ଣ୍ଣନାକରନ୍ତୁ ॥୭॥

ଶ୍ରୀ ଶୁକଦେବ କହିଲେ, ଭଗବାନ୍ ଶ୍ରୀକୃଷ୍ଣ ଏହିପରି ପଚାରିବାରୁ ମଧୁବଂଶୀ ଅକ୍ରୂର ଯାଦବମାନଙ୍କ ପ୍ରତି କଂସର ଶତ୍ରୁତା ଓ ବସୁଦେବଙ୍କୁ ବଧ କରିବାପାଇଁ ତାର ଚେଷ୍ଟା ବିଷୟ କହିଲେ ॥୮॥ କଂସର ଆଦେଶ, କଂସ ତାଙ୍କୁ ଦୂତ ଭାବରେ କେଉଁଥିପାଇଁ ପଠାଇଛି ଏବଂ ଦେବର୍ଷି ନାରଦ ବସୁଦେବଙ୍କ ପୁତ୍ରଭାବରେ କୃଷ୍ଣଙ୍କ ଜନ୍ମ ବିଷୟ ଯାହା ସବୁ କଂସକୁ କହିଥିଲେ, ସେ ସମସ୍ତ ବିଷୟ ଅକ୍ରୂର କୃଷ୍ଣଙ୍କୁ ଜଣାଇଲେ ॥୯॥ ଶତ୍ରୁହନ୍ତା ବଳରାମ ଓ କୃଷ୍ଣ ଅକ୍ରୂରଙ୍କ କଥା ଶୁଣି ହସି ହସି ପିତା ନନ୍ଦଙ୍କୁ ରାଜାର ଆଦେଶ କଥା ଜଣାଇଲେ ॥୧୦॥ ତାପରେ ନନ୍ଦ ଗୋପାଳମାନଙ୍କୁ ଆଦେଶ ଦେଲେ, ସମସ୍ତ ଦୁଧ, ଦହି ଆଦି ଏକତ୍ର କର ଏବଂ ଅନ୍ୟାନ୍ୟ ଭେଟି ଦ୍ରବ୍ୟ ଏକାଠି କରି ମଥୁରା ଯିବାପାଇଁ ଶଗଡ଼ସବୁ ପ୍ରସ୍ତୁତ କର ॥୧୧॥ ଆସନ୍ତାକାଲି ସକାଳେ ଆମେ ମଥୁରା ଯିବା ଓ ଦୁଧ ଦହି ସବୁ ରାଜା କଂସଙ୍କୁ ଭେଟି ଦେବା । ସେଠାରେ ଧନୁ ମହୋତ୍ସବ ଦେଖିବା । ଚାରିଆଡୁ ପ୍ରଜା ସେଠାକୁ ଯାଉଛନ୍ତି । ସାରା ବ୍ରଜରେ ନନ୍ଦ ଏହି ଆଦେଶ କଟୁଆଳଦ୍ୱାରା ଘୋଷଣା କରାଇଲେ ॥୧୨॥

ପରିକ୍ଷିତ, ବଳରାମ ଓ କୃଷ୍ଣଙ୍କୁ ମଥୁରାପୁରୀକୁ ନେଇଯିବାପାଇଁ ଅକ୍ରୂର ଆସିଥିବାର ଶୁଣି ଗୋପୀମାନେ ଅତ୍ୟନ୍ତ ବ୍ୟଥିତ ହେଲେ ॥୧୩॥ କେତେଜଣଙ୍କ ହୃଦୟର ତାପ ଏପରି ବଢ଼ିଗଲା ଯେ ସେମାନେ ନିଃଶ୍ୱାସ ଛାଡ଼ିବାକୁ ଲାଗିଲେ ଏବଂ ସେମାନଙ୍କ ମୁଖଶ୍ରୀ ମଳିନ ପଡ଼ିଗଲା । କାହାରି କାହାରି ଏପରି ଅବସ୍ଥା ହେଲା ଯେ ଅସ୍ତବ୍ୟସ୍ତ ଭାବରେ ସେମାନଙ୍କ ଅଙ୍ଗର ବସନ ଓ ହାତର କଙ୍କଣ ଖସିଗଲା ଏବଂ ଜୁଡ଼ାର ବନ୍ଧନ ଖୋଲିଗଲା ॥୧୪॥ ଅନ୍ୟ କେତେକେ ତାଙ୍କ କଥା ଚିନ୍ତା କରି କରି ନିଜର ଚିତ୍ତବୃତ୍ତି ହରାଇ ଥକ୍କା ହୋଇ ବସିପଡ଼ିଲେ । ମୁକ୍ତ ଲୋକଙ୍କ ପରି ସେମାନଙ୍କର ଦେହଜ୍ଞାନ ରହିଲା ନାହିଁ ॥୧୫॥ ଆହୁରି କେତେକ ଗୋପୀ ଶ୍ରୀକୃଷ୍ଣଙ୍କର ଅନୁରାଗପୂର୍ଣ୍ଣ ସ୍ମିତହାସ୍ୟ ଓ ହୃଦୟସ୍ପର୍ଶୀ, ମନୋହର କଥାମାନ ମନେ ପକାଇ ମୋହଗ୍ରସ୍ତ ହେଲେ ॥୧୬॥ କୃଷ୍ଣଙ୍କର ସୁନ୍ଦର ଚାଲି, ଚେଷ୍ଟା, ସ୍ନେହପୂର୍ଣ୍ଣ ହସ ଓ ଚାହାଣି, ହାସ-ପରିହାସ ଯାହାସବୁ ଦେଖି ଓ ଶୁଣି ଗୋପୀମାନଙ୍କର ଦୁଃଖ ଚାଲିଯାଉଥିଲା, ତାହା ଚିନ୍ତା କରି ଗୋପୀମାନେ ବିରହରେ ଅଧୀର ହୋଇପଡ଼ିଲେ । ସେମାନଙ୍କ ମନରେ ନାନା ଭୟ ଓ

ଆଶଙ୍କା ଜାତ ହେଲା । କୃଷ୍ଣପ୍ରାଣା ଗୋପୀମାନେ ଏକାଠି ମିଳି ଅଶ୍ରୁମୁଖରେ କହିବାକୁ ଲାଗିଲେ-- ॥୧୭-୧୮॥ ହେ ବିଧାତା, ତୁମର ଟିକିଏ ହେଲେ ଦୟା ନାହିଁ, ସ୍ନେହ ଓ ପ୍ରଣୟଦ୍ୱାରା ତୁମେ ପ୍ରାଣୀମାନଙ୍କୁ ପରସ୍ପର ସହିତ ମିଳାଇଦେଉଚ, କିନ୍ତୁ ସେମାନଙ୍କ ଆଶା ପୂର୍ଣ୍ଣହେବା ପୂର୍ବରୁ ପୁଣି ସେମାନଙ୍କୁ ପରସ୍ପରଠାରୁ ଛଡ଼ାଇ ନେଉଚ । ତୁମର ଏ ଆଚରଣ ପିଲାଖେଳ ପରି ମନେ ହେଉଚି ॥୧୯॥ ତୁମେ କୁଞ୍ଚିତକୁନ୍ତଳରେ ଯୁକ୍ତ ଶ୍ୟାମସୁନ୍ଦରଙ୍କ ମୁଖପଦ୍ମକୁ ଆମକୁ ଦେଖାଇଦେଲ । କେଡ଼େ ସୁନ୍ଦର ତାଙ୍କ ଉନ୍ନତ ନାସା ଓ କପୋଳ । ତାଙ୍କର ସେହି ସୁନ୍ଦର ମୁହଁରେ ହସ ଟିକକ ସମସ୍ତ ଦୁଃଖଶୋକ ଦୂରକରେ । କିନ୍ତୁ ତୁମେ ସେ ମୁହଁଟିକୁ ଆମଠାରୁ ଲୁଚାଇ ନେଉଚ । ଏହା କେଡେ ନିନ୍ଦାର ବିଷୟ ! ॥୨୦॥

ହେ ବିଧାତା, ହାୟ! ଅଜ୍ଞଭଳି ତୁମେ ଆମକୁ ଚକ୍ଷୁ ଦେଇ ପୁଣି ହରଣ କରିନେଉଛ । ଯେଉଁ ଚକ୍ଷୁରେ ଆମେ ଶ୍ରୀକୃଷ୍ଣଙ୍କର (ମୁଖମଣ୍ଡଳ ଆଦି) ପ୍ରତି ଅଙ୍ଗରେ ତୁମ ନିଖିଳ ସୃଷ୍ଟିର ସୌନ୍ଦର୍ଯ୍ୟ ଦେଖୁଥିଲୁ, କୃଷ୍ଣଙ୍କୁ ନେଇଯିବା ପରେ ସେ ଚକ୍ଷୁ ଥାଇ ନ ଥିବା ସଙ୍ଗେ ସମାନ । ବାସ୍ତବରେ ତୁମେ ଅତି କ୍ରୂର । କେବଳ ଅକ୍ରୂର ନାମ ଧାରଣ କରି ଏଠାକୁ ଆସିଛ ॥୨୧॥ ଆମ୍ଭେମାନେ ଘରଦ୍ୱାର, ପତି-ପୁତ୍ର, ବନ୍ଧୁ-ସ୍ୱଜନଙ୍କୁ ଛାଡ଼ି ସାକ୍ଷାତ୍ ତାଙ୍କ ଦାସୀ ହୋଇ ରହିଲୁ । କିନ୍ତୁ ତାଙ୍କୁ ଦେଖ, ସେ ନୂଆ ନୂଆ ପ୍ରେମିକାଙ୍କପାଇଁ, ତାଙ୍କ ବିରହରେ ଦୁଃଖୀ ଆମ ଆଡ଼କୁ ଚାହୁଁ ବି ନାହାନ୍ତି, ଯେହେତୁ ତାଙ୍କ ପ୍ରୀତି ସ୍ଥିର ନୁହେଁ ॥୨୨॥ ଆଜି ଏହି ରଜନୀ ପ୍ରଭାତ ହେଲେ ମଥୁରା ନଗରୀର ସ୍ତ୍ରୀମାନଙ୍କପାଇଁ ତାହା ନିଶ୍ଚୟ ସୁଖକର ହେବ । ସେମାନଙ୍କର ବହୁଦିନର ଅଭିଳାଷ ପୂର୍ଣ୍ଣହେବ । କାରଣ ବ୍ରଜେଶ୍ୱର କୃଷ୍ଣ ମଥୁରାରେ ପ୍ରବେଶ କଲେ ତାଙ୍କର ମନ୍ଦହାସ-ଯୁକ୍ତ ମୁଖାରବିନ୍ଦରସକୁ ପାନ କରି ମଥୁରାର ପୁରନାରୀଗଣ ଧନ୍ୟ ହେବେ ॥୨୩॥ ହେ ଅବଳାମାନେ ! ମଥୁରାର ଯୁବତୀମାନେ ସେମାନଙ୍କର ମଧୁର ମନୋହର କଥାରେ ନିଶ୍ଚୟ ମୁକୁନ୍ଦଙ୍କର ଚିତ୍ତ ହରଣ କରିବେ ଏବଂ ସେ ଧୈର୍ଯ୍ୟବାନ୍ ଓ ପିତାମାତାଙ୍କ ଅଧୀନ ହେଲେ ମଧ୍ୟ ଲଜ୍ଜାଯୁକ୍ତ ହାସଦ୍ୱାରା ତାଙ୍କୁ ସେମାନେ ବଶ କରିନେବେ । ଆମ ପରି ଗାଉଁଲୀ ସ୍ତ୍ରୀଲୋକମାନଙ୍କ ପାଖକୁ ସେ ଆଉ କାହିଁକି ଫେରି ଆସିବେ ? ॥୨୪॥

ଆଜି ନିଶ୍ଚେ ସେଠାରେ ଦାଶାର୍ହ, ଭୋଜ, ଅନ୍ଧକ, ବୃଷ୍ଣି ଓ ସାତ୍ୱତ -- ଏହି ସବୁ ଲୋକମାନଙ୍କ ଚକ୍ଷୁର ମହୋତ୍ସବ ହେବାକୁ ଯାଉଛି । କାରଣ ଆଜି ରମାରମଣ ଗୁଣନିଧି ଦେବକୀନନ୍ଦନଙ୍କୁ ସେମାନେ ମଥୁରା ଯିବାବାଟରେ ଦର୍ଶନ କରିବେ ॥୨୫॥ ଦେଖ, ଏହିପରି ନିଷ୍ଠୁର ବ୍ୟକ୍ତିର ନାମ ପୁଣି ଅକ୍ରୂର । ଯେ ଆମର ପ୍ରିୟତମକୁ ଆମଠାରୁ ଦୂରକୁ ନେଇଯାଉଛି । ଅଥଚ ଆମ ଦୁଃଖରେ ଟିକିଏ ହେଲେ ଆଶ୍ୱାସନା ଦେଉନାହିଁ । ତାକୁ ଅକ୍ରୂର ନ କହି ବରଂ କ୍ରୂର କହିବା ଉଚିତ ॥୨୬॥ ଦେଖ, ଏ କୃଷ୍ଣ କିପରି କଠୋରହୃଦୟ ହୋଇ ରଥରେ ଚଢ଼ିଗଲେଣି । ଏଇ ଦୁର୍ମଦ ଗୋପାଳମାନେ ଶଗଡ ନେଇ ତାଙ୍କ ପଛେ ପଛେ ଯିବାକୁ ତାଙ୍କୁ ତରତର କରୁଛନ୍ତି । କୁଳବୃଦ୍ଧମାନେ ମଧ୍ୟ ଉପେକ୍ଷା କରି କିଛି କହୁ ନାହାନ୍ତି । ଜଣାଯାଉଛି, ଦୈବ ହିଁ ଆଜି ଆମର ପ୍ରତିକୂଳ ସାଜିଛି ॥୨୭॥ ଚାଲ, ଆମେ ସମସ୍ତେ ମିଶି କୃଷ୍ଣଙ୍କୁ ଯିବାକୁ ଦେବା ନାହିଁ । କୁଳବୃଦ୍ଧ ଜ୍ଞାତିବନ୍ଧୁମାନେ ଆମର କ'ଣ କରିବେ ? ମୁହୂର୍ତ୍ତେ ମଧ୍ୟ ଯେଉଁ ମୁକୁନ୍ଦଙ୍କୁ ଛାଡ଼ି ଆମେ ରହିପାରୁ ନ ଥିଲେ, ଦୈବଯୋଗୁଁ ଆଜି ତାଙ୍କ ବିରହରେ ଆମର ମନ ପୋଡ଼ିଯାଉଛି । ଏହାଠାରୁ ଆଉ ଅଧିକ ଦଣ୍ଡ କିଏ ଆମକୁ ଦେଇପାରିବ ? ॥୨୮॥ ଯାହାଙ୍କର ମିଠା ହସ, ପ୍ରେମପୂର୍ଣ୍ଣ ଆଲିଙ୍ଗନ, ଠାରରେ ସଙ୍କେତ, ମଧୁର ଚାହାଣି ଓ ରାସକ୍ରୀଡାରେ ରମଣ ଆଦିଦ୍ୱାରା ଆମମାନଙ୍କର ଯେ କେତେ ରାତି ବିତିଯାଇଛି, ଆଜି ତାହା ମୁହୂର୍ତ୍ତପରି ଲାଗୁଛି । ସେହି କୃଷ୍ଣଙ୍କ ବିନା ଏବେ ଆମେମାନେ କିପରି ଏହି ଅପାର ଦୁଃଖ ସମୁଦ୍ରକୁ ପାରହେବୁ ? ॥୨୯॥ ଦିନଶେଷରେ ବଳରାମଙ୍କ ସହ ଗୋପାଳବାଳକଙ୍କ ମେଳରେ ସେ ଯେତେବେଳେ ବ୍ରଜରେ ପ୍ରବେଶ କରନ୍ତି ସେତେବେଳେ ଗୋଧୂଳି ଲାଗି ତାଙ୍କ ମସ୍ତକର କୁନ୍ତଳ ଓ ବକ୍ଷର ହାର ଧୂସର ଦେଖାଯାଉଥାଏ । ସେ ବଂଶୀ ବଜାଇ ବଜାଇ ତାଙ୍କ ଦରହାସଜନିତ କଟାକ୍ଷର ନିରୀକ୍ଷଣଦ୍ୱାରା ଆମର ମନକୁ ହରଣ କରି

ନେଇଥାଆନ୍ତି । ତାଙ୍କ ବିନା ଆମେ କିପରି ବଞ୍ଚି ରହିବା ? ।।୩୦।। ଶ୍ରୀଶୁକ କହିଲେ, ଏହିପରି କୃଷ୍ଣଙ୍କଠାରେ ଆସକ୍ତ ମନା ବ୍ରଜବଧୂମାନେ କୃଷ୍ଣଙ୍କ ବିରହରେ କାତର ହୋଇ, ସମସ୍ତ ଲଜ୍ଜା ତ୍ୟାଗ କରି 'ହେ ଗୋବିନ୍ଦ, ହେ ଦାମୋଦର, ହେ ମାଧବ' ବୋଲି କହି ଉଚ୍ଚ ସ୍ୱରରେ କ୍ରନ୍ଦନ କଲେ ।।୩୧।।

ସ୍ତ୍ରୀମାନେ ଏହିପରି କ୍ରନ୍ଦନ କରୁଥା'ନ୍ତି । ଅକ୍ରୂର ସକାଳର ସନ୍ଧ୍ୟାବନ୍ଦନାଦି କାର୍ଯ୍ୟ ଶେଷ କରି ସୂର୍ଯ୍ୟ ଉଦିତ ହେବାରୁ ରଥ ଚଳାଇବା ଆରମ୍ଭ କଲେ ।।୩୨।। ନନ୍ଦ ଆଦି ଗୋପାଳମାନେ ପ୍ରଚୁର ଉପହାର ସାମଗ୍ରୀ ଓ ଦୁଗ୍ଧପୂର୍ଣ୍ଣ କଳସମାନ ଧରି ଶଗଡ଼ରେ ବସି କୃଷ୍ଣଙ୍କ ରଥର ପଛେ ପଛେ ଚାଲିଲେ ।।୩୩।। (କୃଷ୍ଣପ୍ରେମରେ ମୁଗ୍ଧା) ଗୋପୀମାନେ ସେମାନଙ୍କ ପ୍ରିୟତମ କୃଷ୍ଣଙ୍କୁ ଅନୁସରଣ କରି ତାଙ୍କ ରଥ ସହିତ କିଛି ବାଟ ଗଲାପରେ କୃଷ୍ଣ କାଳେ ଫେରି ଆସିବେ ଭାବି ଠିଆ ହୋଇ ରହିଲେ ।।୩୪।। ସେ ଚାଲିଯାଉଥିବାଯୋଗୁଁ ଗୋପୀମାନଙ୍କ ଦୁଃଖ ଦେଖି ଯଦୂତ୍ତମ ଶ୍ରୀକୃଷ୍ଣ, 'ମୁଁ ଶୀଘ୍ର ଫେରିଆସିବି' ବୋଲି ପ୍ରେମପୂର୍ଣ୍ଣ ବାକ୍ୟଦ୍ୱାରା ଦୂତ ଜରିଆରେ ସେମାନଙ୍କୁ ସାନ୍ତ୍ୱନା ଦେଲେ ।।୩୫।। ଯେପର୍ଯ୍ୟନ୍ତ ରଥର ପତାକା ଓ ରଥର ଧୂଳି ଦେଖାଯାଉଥିଲା, ସେ ପର୍ଯନ୍ତ ସେମାନେ ନିଜ ନିଜ ଚିତ୍ତକୁ କୃଷ୍ଣଙ୍କ ପଛେ ପଛେ ପଠାଇ ଦେଇ ଚିତ୍ରାର୍ପିତ ପ୍ରତିମା ପରି ଠିଆ ହୋଇ ରହିଲେ ।।୩୬।। ତାପରେ କୃଷ୍ଣଙ୍କ ଫେରିବା ବିଷୟରେ ସେମାନେ ନିରାଶ ହୋଇ ଗୃହକୁ ଫେରିଆସିଲେ ଏବଂ ପ୍ରିୟତମ କୃଷ୍ଣଙ୍କର ଲୀଳା ଗାନ କରି କରି ସେମାନେ ଦୁଃଖକୁ ଲାଘବ କରିବାକୁ ଚେଷ୍ଟା କଲେ ।।୩୭।। ପରିକ୍ଷିତ, ବାୟୁପରି ବେଗବାନ୍ ରଥରେ ବସି କୃଷ୍ଣ ବଳରାମ ଅକ୍ରୂରଙ୍କ ସହିତ ପାପନାଶିନୀ ଯମୁନା କୂଳରେ ପହଞ୍ଚିଲେ ।।୩୮।। ଇନ୍ଦ୍ରନୀଳମଣି ପରି ଯମୁନାର ନିର୍ମଳ ନୀଳ ଜଳ ପାନ କରି ବୃକ୍ଷମାନଙ୍କ ଛାୟାରେ ଥିବା ରଥରେ କୃଷ୍ଣ ଓ ବଳରାମ ପୁଣି ଆରୋହଣ କଲେ । ଅକ୍ରୂର କୃଷ୍ଣ ଓ ବଳରାମଙ୍କୁ ରଥରେ ବସାଇ ତାଙ୍କର ଅନୁମତିକ୍ରମେ କାଳିନ୍ଦୀହ୍ରଦକୁ ଯାଇ ନିଜର ସ୍ନାନ ଶେଷ କଲେ । ଯେତେବେଳେ ଅକ୍ରୂର ଯମୁନା ଜଳରେ ବୁଡ଼ି ଗାୟତ୍ରୀମନ୍ତ୍ର ଜପ କରୁଥିଲେ ସେତେବେଳେ ସେ କୃଷ୍ଣ ଓ ବଳରାମ ଦୁଇ ଭାଇ ଏକାଠି ଜଳମଧ୍ୟରେ ବସିଥିବା ଦେଖିପାରିଲେ ।।୩୯-୪୧।। ଅକ୍ରୂରଙ୍କ ମନରେ ଶଙ୍କା ଉପସ୍ଥିତ ହେଲା । ବସୁଦେବଙ୍କର ପୁଅ ଦୁହିଁଙ୍କୁ ତ ମୁଁ ରଥରେ ବସାଇ ଆସିଥିଲି, ଦୁହେଁ ଜଳ ମଧ୍ୟକୁ ଆସିଲେ କିପରି ? ସେ କଣ ତା'ହେଲେ ରଥରେ ନାହାନ୍ତି ? ଏହା ଭାବି ସେ ପାଣିରୁ ଉଠି ରଥ ଆଡ଼କୁ ଅନାଇଲେ ଏବଂ ଦୁହିଁଙ୍କୁ ରଥରେ ପୂର୍ବପରି ବସିଥିବାର ଦେଖିଲେ । ସେ ପୁଣି ଏଥର ଭାବିଲେ, ଜଳମଧ୍ୟରେ ତାଙ୍କୁ ଦେଖିଥିବା କଥା କ'ଣ ମିଥ୍ୟା ? ଏହା ଭାବି ସେ ପୁଣି ଜଳରେ ବୁଡ଼ ପକାଇଲେ ।।୪୨-୪୩।। ଜଳ ମଧ୍ୟରେ ସେ ପୁଣି ଦେଖିଲେ ଯେ, ଶେଷନାଗ ଶ୍ରୀଅନନ୍ତ ବିରାଜମାନ । ସିଦ୍ଧ, ଚାରଣ, ଗନ୍ଧର୍ବ ଏବଂ ଅସୁରମାନେ ନିଜ ନିଜର ମୁଣ୍ଡ ନୁଆଇଁ ତାଙ୍କୁ ସ୍ତୁତି କରୁଛନ୍ତି । ସେ ସହସ୍ରଶିର ଏବଂ ତାଙ୍କର ପ୍ରତ୍ୟେକ ଫଣାରେ ମୁକୁଟ ଶୋଭା ପାଉଛି । ପଦ୍ମର ନାଡ଼ପରି ଶୁଭ୍ର ଶରୀରରେ ସେ ନୀଳାମ୍ବର ଧାରଣ କରିଛନ୍ତି । ବହୁ ଶୃଙ୍ଗଯୁକ୍ତ ଶୁଭ୍ର କୈଳାସପର୍ବତ ପରି ସେ ଦେଖାଯାଉଛନ୍ତି ।।୪୪-୪୫।। ସେହି ଅନନ୍ତଙ୍କ କୋଳରେ ମେଘପରି ଶ୍ୟାମବର୍ଣ୍ଣ ପୀତବାସ, ଚତୁର୍ଭୁଜ ଏକ ପ୍ରଶାନ୍ତପୁରୁଷଙ୍କୁ ସେ ଦେଖିବାକୁ ପାଇଲେ । ତାଙ୍କର ଚକ୍ଷୁଦ୍ୱୟ ପଦ୍ମପାଖୁଡ଼ା ପରି ଅରୁଣବର୍ଣ୍ଣ ଦେଖାଯାଉଛି ।।୪୬।। ତାଙ୍କର ମୁଖମଣ୍ଡଳ ପ୍ରସନ୍ନ ଦେଖାଯାଉଛି । ମଧୁର ହାସ୍ୟ ଓ ଦୃଷ୍ଟିଭଙ୍ଗୀ, ସୁନ୍ଦର ଭ୍ରୂଲତା, ନାସା ଓ କର୍ଣ୍ଣ, ମନୋହର କପୋଳ, ଅରୁଣାୟିତ ଅଧର, ସ୍ଥୂଳ ଆଜାନୁଲମ୍ବିତ ବାହୁ, ଉନ୍ନତ ସ୍କନ୍ଧ ଓ ବକ୍ଷସ୍ଥଳରେ ଲକ୍ଷ୍ମୀ, ଶଙ୍ଖ ପରି ସୁନ୍ଦର କଣ୍ଠଦେଶ, ନିମ୍ନ ନାଭି ଓ ତ୍ରିବଳୀଯୁକ୍ତ ଉଦର, ବିଶାଳ କଟିତଟ ଓ ନିତମ୍ବ, ହସ୍ତିଶୁଣ୍ଢ ପରି ସୁନ୍ଦର ଜାନୁ ଓ ଜଘନ ବେଶ୍ ଶୋଭାପାଉଛି ।।୪୭-୪୯।। ପରିକ୍ଷିତ, ତାଙ୍କ ପାଦର ଗୋଇଠି ଦୁଇଟି ଉଚ୍ଚ, ଅରୁଣବର୍ଣ୍ଣ ନଖମାନଙ୍କର ଆଭାରେ ଏବଂ ନବପତ୍ରପରି ଅଙ୍ଗୁଳିରେ ତାଙ୍କ ପାଦପଦ୍ମର ଶୋଭା ବଢ଼ିଯାଉଛି । ସେ ଏକ ବହୁମୂଲ୍ୟ ମଣିଯୁକ୍ତ ମୁକୁଟ, କଙ୍କଣ, ବାଜୁବନ୍ଧ, ମେଖଳା, ହାର, ନୂପୁର ଓ କୁଣ୍ଡଳ ପରିଧାନ କରିଛନ୍ତି । ଏହିପରି ଅଳଙ୍କୃତ ତାଙ୍କ ଦେହରେ ଏକ ଯଜ୍ଞୋପବୀତ ଶୋଭାପାଉଛି ।।୫୦-୫୧।। ତାଙ୍କ ହାତରେ ଶଙ୍ଖ, ଚକ୍ର, ଗଦା ଓ ପଦ୍ମ, ବକ୍ଷସ୍ଥଳରେ

ଶ୍ରୀବତ୍ସ ଚିହ୍ନ ଏବଂ କଣ୍ଠଦେଶରେ କୌସ୍ତୁଭମଣି ଓ ବନମାଳା ଶୋଭାପାଉଛି ।।୫୨।। ନନ୍ଦ, ସୁନନ୍ଦ ଆଦି ପାର୍ଷଦ, ସନକ ଆଦି ଋଷି, ବ୍ରହ୍ମା, ଇନ୍ଦ୍ର, ରୁଦ୍ର ଆଦି ଦେବତା, ମରୀଚି ଆଦି ଶ୍ରେଷ୍ଠ ନଅ ଜଣ ବ୍ରାହ୍ମଣ, ପ୍ରହ୍ଲାଦ, ନାରଦ, ଅଷ୍ଟବସୁ ପ୍ରମୁଖ ଭକ୍ତବୃନ୍ଦ ଶୁଦ୍ଧ ଭାବରେ ଓ ବିଭିନ୍ନ ମାର୍ଗରେ ପୂଜା ଓ ସ୍ତୁତି କରୁଛନ୍ତି ।।୫୩-୫୪।। ସେମାନଙ୍କ ସହିତ ଲକ୍ଷ୍ମୀ, ପୁଷ୍ଟି, ସରସ୍ୱତୀ, କାନ୍ତି, କୀର୍ତ୍ତି ଓ ତୁଷ୍ଟି, ଏବଂ ଶୌର୍ଯ୍ୟ, ବୀର୍ଯ୍ୟ, ଜ୍ଞାନ, ଶ୍ରୀ, ଯଶ ଓ ବୈରାଗ୍ୟ ଏହି ଷଡ଼ୈଶ୍ୱର୍ଯ୍ୟ, ଇଳା(ପୃଥିବୀ ଶକ୍ତି), ଊର୍ଜା (ଲୀଳା ଶକ୍ତି) ବିଦ୍ୟା, ଅବିଦ୍ୟା (ଜୀବର ମୋକ୍ଷ ଓ ବଂଧନର କାରଣରୂପା ବହିରଙ୍ଗ ଶକ୍ତି), ହ୍ଲାଦିନୀ, ସଂବିତ୍‌(ଅନ୍ତରଙ୍ଗା ଶକ୍ତି) ଏବଂ ମାୟା ଆଦି ଶକ୍ତିମାନେ ମୂର୍ତ୍ତିମତୀ ହୋଇ ତାଙ୍କୁ ସେବା କରୁଛନ୍ତି ।।୫୫।। ପରିକ୍ଷିତ, ଭଗବାନଙ୍କର ଏହି ଶୋଭା ଦେଖି ଅକ୍ରୂରଙ୍କର ହୃଦୟ ପରମାନନ୍ଦରେ ଭରିଗଲା । ଭକ୍ତିଭରେ ଓ ଆନନ୍ଦରେ ତାଙ୍କର ଶରୀର ରୋମାଞ୍ଚିତ ହେଲା । ପ୍ରେମରେ ଆଖି ଛଳଛଳ ହୋଇଗଲା । ସେ ଭଗବାନଙ୍କର ଚରଣତଳେ ପ୍ରଣାମ କଲେ ଏବଂ ମୁଣ୍ଡ ନୁଆଁଇ ହାତ ଯୋଡି ଧ୍ୟାନପୂର୍ବକ ଗଦ୍‌ ଗଦ ସ୍ୱରରେ ଭଗବାନଙ୍କୁ ସ୍ତୁତି କରିବାକୁ ଲାଗିଲେ ।।୫୬-୫୭।।

## ଚାଳିଶ ଅଧ୍ୟାୟ

# ଅକ୍ରୂରଙ୍କର ସ୍ତୁତି

ଅକ୍ରୂର କହିଲେ, ପ୍ରଭୁ, ଆପଣ ସମସ୍ତ କାରଣର କାରଣ ସ୍ୱରୂପ; ଆଦିମୂଳ, ଅବ୍ୟୟ, ପୁରୁଷ, ଶ୍ରୀନାରାୟଣ । ଆପଣଙ୍କୁ ମୁଁ ପ୍ରଣାମ କରୁଛି । ଆପଣଙ୍କ ନାଭିରୁ ଜନ୍ମିଥିବା ପଦ୍ମକୋଷରୁ ବ୍ରହ୍ମା ଆବିର୍ଭୂତ ହେଲେ ଏବଂ ସେହି ବ୍ରହ୍ମାଙ୍କଠାରୁ ଚରାଚର ଜଗତର ସୃଷ୍ଟି ହେଲା ।।୧।। ଏହି ପୃଥିବୀ, ଜଳ, ଅଗ୍ନି, ବାୟୁ, ଆକାଶ, ମହତ୍ତତ୍ତ୍ୱ, ଅହଙ୍କାର ତତ୍ତ୍ୱ, ମୂଳ ପ୍ରକୃତି ଓ ଏହାର ଆଦି ପୁରୁଷ, ମନ, ଦଶ ଇନ୍ଦ୍ରିୟ, ଇନ୍ଦ୍ରିୟଙ୍କ ଗ୍ରାହ୍ୟ ବିଷୟମାନ, ଇନ୍ଦ୍ରିୟଙ୍କ ଅଧିଷ୍ଠାତ୍ରୀ ଦେବତାମାନେ ଏବଂ ଯେଉଁମାନେ ଏହି ଜଗତ୍‌ର କାରଣସ୍ୱରୂପ -- ସେମାନେ ସମସ୍ତେ ଆପଣଙ୍କଠାରୁ ଜନ୍ମହୋଇଛନ୍ତି ।।୨।। ଜଡ଼ତା ଦୃଷ୍ଟିରୁ ପ୍ରକୃତି ଓ ପ୍ରକୃତିରୁ ଉତ୍ପନ୍ନ ସମସ୍ତ ପଦାର୍ଥ ଆତ୍ମସ୍ୱରୂପ ଆପଣଙ୍କୁ ଜାଣିପାରନ୍ତି ନାହିଁ । ବ୍ରହ୍ମା ଆପଣଙ୍କଠାରୁ ଜନ୍ମ ହୋଇ ମଧ୍ୟ ରଜୋଗୁଣାଦି ଦ୍ୱାରା ଯୁକ୍ତ ହୋଇଥିବାଯୋଗୁଁ ଗୁଣାତୀତ ଆପଣଙ୍କ ସ୍ୱରୂପକୁ ଜାଣିପାରନ୍ତି ନାହିଁ ।।୩।। ଯୋଗୀମାନେ ଆପଣଙ୍କୁ ମହାପୁରୁଷ ଓ ସାକ୍ଷାତ୍‌ ଈଶ୍ୱର ରୂପରେ ଧ୍ୟାନ କରନ୍ତି । ସାଧୁମାନେ ଆପଣଙ୍କୁ ନିଜର ଆତ୍ମାରୂପରେ ଅବସ୍ଥିତ, ସର୍ବଭୂତରେ ଅବସ୍ଥିତ ଏବଂ ସମସ୍ତଦେବତାଙ୍କ ମଧ୍ୟରେ ଅବସ୍ଥିତ ସର୍ବନିୟନ୍ତାରୂପେ ଉପାସନା କରନ୍ତି । କେହି କେହି କର୍ମଯୋଗୀ ବ୍ରାହ୍ମଣ ଋକ୍‌, ଯଜୁଃ ଓ ସାମ – ଏହି ତିନି ବେଦରେ ଥିବା କର୍ମକାଣ୍ଡ ଅନୁଯାୟୀ ବଡ଼ ବଡ଼ ଯଜ୍ଞଦ୍ୱାରା ଅନେକ ନାମରେ ଓ ଅନେକ ରୂପରେ ଆପଣଙ୍କୁ ଆରାଧନା କରିଥାନ୍ତି । ଜ୍ଞାନୀମାନେ କିନ୍ତୁ ସମସ୍ତ କର୍ମର ସନ୍ନ୍ୟାସ କରି ଶାନ୍ତଭାବରେ ଅବସ୍ଥାନ କରନ୍ତି । ସେମାନେ ଜ୍ଞାନଯଜ୍ଞଦ୍ୱାରା ଜ୍ଞାନସ୍ୱରୂପ ଆପଣଙ୍କୁ ଆରାଧନା କରିଥା'ନ୍ତି ।।୪-୬।। ଅନ୍ୟାନ୍ୟ ଶୁଦ୍ଧଚିତ୍ତ ବ୍ୟକ୍ତିମାନେ ଆପଣଙ୍କ ଦର୍ଶିତ ପଞ୍ଚରାତ୍ର ଆଦି ବିଧିରେ ତନ୍ମୟ ରହି ଆପଣଙ୍କୁ ବହୁମୂର୍ତ୍ତି (ବାସୁଦେବ, ସଙ୍କର୍ଷଣ, ପ୍ରଦ୍ୟୁମ୍ନ ଓ ଅନିରୁଦ୍ଧ) ବା ଏକମୂର୍ତ୍ତି (ନାରାୟଣ) ଭାବରେ ଅର୍ଚ୍ଚନା କରନ୍ତି ।।୭।। ଅନ୍ୟ କେହି କେହି ଭଗବାନ ଶିବଙ୍କ କଥିତ ମାର୍ଗରେ ଯାଇ ଶୈବ, ପାଶୁପତ ଆଦି ଆଚାର୍ଯ୍ୟଭେଦରେ ଆପଣଙ୍କୁ ଶିବ ରୂପରେ ପୂଜା କରନ୍ତି । ହେ ଭଗବାନ୍‌, ଯେଉଁମାନେ ଅନ୍ୟଦେବତାଙ୍କୁ ଆପଣଙ୍କଠାରୁ ଭିନ୍ନ ବୋଲି ଭାବି ଭକ୍ତି କରନ୍ତି, ସେମାନେ ସମସ୍ତେ ଆପଣଙ୍କର ହିଁ ଉପାସନା କରନ୍ତି, କାରଣ ଆପଣ ସର୍ବଦେବମୟ, ଏକ ପରମେଶ୍ୱର ।।୮-୯।। ପ୍ରଭୁ, ଯେପରି ପର୍ବତରୁ ଜାତ ବୃଷ୍ଟିଜଳପୂର୍ଣ୍ଣ ନଦୀମାନେ ଚାରିଆଡ଼କୁ ଯାଇ ସମୁଦ୍ରରେ ପ୍ରବେଶ କରନ୍ତି, ସେହିପରି ଉପାସନାର

ମାର୍ଗ ଭିନ୍ନ ଭିନ୍ନ ହେଲେ ମଧ୍ୟ ତାହା ଆପଣଙ୍କ ଠାରେ ଯାଇ ମିଳିତହୋଇଥାଏ ।।୧୦।। ଆପଣଙ୍କ ଶକ୍ତିସ୍ୱରୂପ ପ୍ରକୃତିର ତିନୋଟି ଗୁଣ ହେଉଛି ସତ୍ତ୍ୱ, ରଜ ଓ ତମ । ବ୍ରହ୍ମାଙ୍କଠାରୁ ଆରମ୍ଭ କରି ସ୍ଥାବର, ଜଙ୍ଗମପର୍ଯ୍ୟନ୍ତ ସେମାନେ ସମସ୍ତେ ପ୍ରକୃତି ଓ ସତ୍ତ୍ୱାଦି ଗୁଣଦ୍ୱାରା ଚାଳିତ । କେହି ଆପଣଙ୍କଠାରୁ ଅଲଗା ନୁହନ୍ତି ।।୧୧।। କିନ୍ତୁ ଆପଣ ନିର୍ଲିପ୍ତ, ସର୍ବାନ୍ତର୍ଯାମୀ, ସମସ୍ତ ବୃତ୍ତିର ସାକ୍ଷୀ । ପ୍ରକୃତିର ଗୁଣପ୍ରବାହରେ ଦେବତା, ମନୁଷ୍ୟ, ପଶୁପକ୍ଷୀ ଆଦି ଯେଉଁ ଦେହଧାରୀ ଜୀବମାନଙ୍କର ସୃଷ୍ଟି ହୋଇଥାଏ, ତାହା ଅବିଦ୍ୟାରଚିତ । ଆପଣ ଶୁଦ୍ଧଜ୍ଞାନମୟ, ଆପଣଙ୍କୁ ମୁଁ ନମସ୍କାର କରୁଛି ।।୧୨।। ଅଗ୍ନି ହେଉଛି ଆପଣଙ୍କର ମୁଖ, ପୃଥିବୀ ଆପଣଙ୍କର ପାଦଦ୍ୱୟ, ସୂର୍ଯ୍ୟ ଆପଣଙ୍କର ଚକ୍ଷୁ, ଆକାଶ ଆପଣଙ୍କର ନାଭି, ଦିଗ୍‌ବିଦିଗ ଆପଣଙ୍କର କର୍ଣ୍ଣ, ସ୍ୱର୍ଗ ମସ୍ତକ, ଇନ୍ଦ୍ର ଆଦି ଦେବଗଣ ଆପଣଙ୍କର ବାହୁ, ସମୁଦ୍ରମାନେ ଆପଣଙ୍କର ପେଟ ଏବଂ ବାୟୁ ଆପଣଙ୍କର ପ୍ରାଣ ଓ ବଳ ରୂପରେ କଳ୍ପିତ ହୁଏ ।।୧୩।।

ପରମେଶ୍ୱର, ବୃକ୍ଷ ଓ ଓଷଧିମାନେ ଆପଣଙ୍କର ଲୋମ, ମେଘମାନେ ଆପଣଙ୍କର କେଶ, ପର୍ବତମାନେ ଅସ୍ଥି ଓ ନଖ, ରାତି ଏବଂ ଦିବସ ଆପଣଙ୍କର ନିମେଷ, ପ୍ରଜାପତି ଆପଣଙ୍କର ଜନନେନ୍ଦ୍ରିୟ ଏବଂ ବୃଷ୍ଟି ଆପଣଙ୍କର ବୀର୍ଯ୍ୟ ରୂପେ ଖ୍ୟାତ ।।୧୪।। ହେ ଅବିନାଶୀ ପୁରୁଷ, ଯେପରି ଜଳରେ ଜଳଚର ଜୀବମାନେ ଓ ଡିମିରି ଆଦି ଫଳ ମଧ୍ୟରେ ମଶକ ଆଦି କୀଟମାନେ ରହନ୍ତି, ସେହିପରି ଶୁଦ୍ଧମନାମାନେ ଆପଣଙ୍କୁ ବିରାଟପୁରୁଷ ରୂପରେ କଳ୍ପନାକରି ଆପଣଙ୍କଠାରେ ଲୋକପାଳ ସମେତ ବହୁ ଜୀବପୂର୍ଣ୍ଣ ଏହି ବ୍ରହ୍ମାଣ୍ଡକୁ ଦର୍ଶନ କରିଥା'ନ୍ତି ।।୧୫।। ଆପଣ ଲୀଳା କରିବାପାଇଁ ଯେଉଁ ସବୁ ରୂପ ଧାରଣ କରିଥା'ନ୍ତି, ତଦ୍ଦ୍ୱାରା ଶୋକରହିତ ଜନଗଣ ଆନନ୍ଦରେ ଆପଣଙ୍କର ଯଶୋଗାନ କରିଥା'ନ୍ତି ।।୧୬।। ପ୍ରଭୁ, ପ୍ରଳୟସମୁଦ୍ରରେ ଆପଣ ବେଦ ଆଦିର ରକ୍ଷାପାଇଁ ମତ୍ସ୍ୟରୂପରେ ସ୍ୱଚ୍ଛନ୍ଦରେ ବିଚରଣ କରୁଥିଲେ । ହୟଗ୍ରୀବ ରୂପରେ ମଧୁ କୈଟଭ ଦୈତ୍ୟଦ୍ୱୟଙ୍କୁ ନିଧନ କରିଥିଲେ । ଆପଣଙ୍କୁ ମୋର ନମସ୍କାର ।।୧୭।। (ସମୁଦ୍ର ମନ୍ଥନରେ) ଆପଣ ଏକ ବିଶାଳ କୂର୍ମରୂପ ଧରି ମନ୍ଦର ପର୍ବତକୁ ଧାରଣ କରିଥିଲେ । ପୃଥିବୀକୁ ଉଦ୍ଧାର କରି ସେଥିରେ ବିହାର କରିବାପାଇଁ ଆପଣ ବରାହରୂପ ଧାରଣ କରିଥିଲେ । ଆପଣଙ୍କୁ ନମସ୍କାର ।।୧୮।। ହେ ସାଧୁ ଲୋକମାନଙ୍କ ଭୟହାରୀ, ଆପଣ ଅଦ୍ଭୁତ ନୃସିଂହରୂପ ଧାରଣ କରିଥିଲେ । ଆପଣଙ୍କୁ ନମସ୍କାର । ଆପଣ ବାମନରୂପରେ ତିନି ପାଦରେ ତ୍ରିଭୁବନକୁ ଘୋଡ଼ାଇ ଦେଇଥିଲେ । ଆପଣଙ୍କୁ ମୋର ନମସ୍କାର ।।୧୯।। ଭୃଗୁପତି ପରଶୁରାମ ରୂପରେ ଆପଣ ପୃଥିବୀକୁ ନିଃକ୍ଷତ୍ରିୟ କରିଥିଲେ । ରଘୁବୀର ରାମଚନ୍ଦ୍ରଙ୍କ ରୂପରେ ରାବଣଙ୍କୁ ବିନାଶ କରିଥିଲେ । ଆପଣଙ୍କୁ ମୋର ନମସ୍କାର ।।୨୦।। ଆପଣ ଭକ୍ତମାନଙ୍କର ପାଳକ । ଆପଣଙ୍କୁ ନମସ୍କାର । ଆପଣ ବାସୁଦେବ, ସଙ୍କର୍ଷଣ, ପ୍ରଦ୍ୟୁମ୍ନ ଓ ଅନିରୁଦ୍ଧ ; ଆପଣଙ୍କୁ ମୋର ନମସ୍କାର ।।୨୧।।

ଦୈତ୍ୟଦାନବମାନଙ୍କୁ ମୋହିତ କରିବାପାଇଁ ବୁଦ୍ଧ ରୂପରେ ଆପଣ ଶୁଦ୍ଧମାର୍ଗ( ଅହିଂସା) ପ୍ରବର୍ତ୍ତନ କରିବେ । ମୁଁ ଆପଣଙ୍କୁ ନମସ୍କାର କରୁଛି । କ୍ଷତ୍ରିୟମାନେ ଯେତେବେଳେ ମ୍ଳେଚ୍ଛପ୍ରାୟ ହୋଇଯିବେ, ସେମାନଙ୍କର ବିନାଶପାଇଁ ଆପଣ କଳ୍କୀ ରୂପରେ ଅବତୀର୍ଣ୍ଣ ହେବେ । ମୁଁ ଆପଣଙ୍କୁ ନମସ୍କାର କରୁଛି ।।୨୨।। ଭଗବାନ୍, ଏଇ ଜୀବଲୋକ ଆପଣଙ୍କ ମାୟାରେ ମୋହିତ ହୋଇଯାଏ । 'ମୁଁ ଏବଂ ମୋର'-ଏହି ତୁଚ୍ଛ ଭାବନା ନେଇ କର୍ମମାର୍ଗରେ ଭ୍ରମିହୁଏ ।।୨୩।। ମୁଁ ମୂଢ଼ପରି ସ୍ୱପ୍ନତୁଲ୍ୟ ଅସତ୍ ନିଜର ଦେହ, ଘର, ସ୍ତ୍ରୀ-ପୁତ୍ର, ଧନ ଓ ଜ୍ଞାତି କୁଟୁମ୍ବ ଆଦିକୁ ସତ୍ୟ ବୋଲି ମନେକରି ଭ୍ରମି ହେଉଛି ।।୨୪।। ମୋର ବୁଦ୍ଧିର ବିପର୍ଯ୍ୟୟ ଘଟିଛି । ଏହି ଦୁଃଖମୟ, ଅନିତ୍ୟ ବସ୍ତୁମାନଙ୍କରେ ମାତିରହି କେତେବେଳେ ସୁଖ ବା କେତେବେଳେ ଦୁଃଖଭୋଗଦ୍ୱାରା ଆରାମରେ ଅଛି ବୋଲି ଭାବୁଛି । ତମୋଗୁଣରେ ପରିଚାଳିତ ହୋଇ ପ୍ରିୟ ପରମାତ୍ମାଙ୍କୁ ମୁଁ ଜାଣିପାରୁ ନାହିଁ ।।୨୫।। ଯେପରି ଅଜ୍ଞାନୀ ବ୍ୟକ୍ତି ଜଳ ଖୋଜିବାକୁ ଯାଇ ଜଳୋତ୍ପନ୍ନ ତୃଣଦ୍ୱାରା ଆଚ୍ଛନ୍ନ ଜଳାଶୟକୁ ଛାଡ଼ି ମୃଗତୃଷ୍ଣା ପଛରେ ଗୋଡ଼ାଏ, ମୁଁ ସେହିପରି ଆପଣଙ୍କୁ ଛାଡ଼ି ବୃଥା ଦେହ ସୁଖରେ ଭ୍ରମି ହେଉଛି । ମୋ ବୁଦ୍ଧି କମ । ଇନ୍ଦ୍ରିୟମାନେ

ପ୍ରବଳ ହୋଇ ମୋତେ ବିଷୟବାସନା ଆଡ଼କୁ ଟାଣି ନେଉଛନ୍ତି ଏବଂ ନାନାପ୍ରକାର କ୍ରିୟାକର୍ମରେ ବିକ୍ଷିପ୍ତ ମୋର ମନକୁ ମୁଁ ସଂଯତ କରିପାରୁ ନାହିଁ ।।୨୬-୨୭।। ବିଷୟାସକ୍ତ ବ୍ୟକ୍ତିମାନଙ୍କପାଇଁ ଆପଣଙ୍କର ପାଦପଦ୍ମ ଦୁର୍ଲଭ । ମୁଁ ସେହିପ୍ରକାର ଜଣେ ଇନ୍ଦ୍ରିୟାସକ୍ତ ବ୍ୟକ୍ତି । ଆଜି ଆପଣଙ୍କର ଶରଣାଗତ । ଏହି ଶରଣାଗତିକୁ ହିଁ ମୁଁ ଆପଣଙ୍କର ଅନୁଗ୍ରହ ବୋଲି ମନେକରେ । ପଦ୍ମନାଭ, ଯେତେବେଳେ ମନୁଷ୍ୟର ସଂସାରବନ୍ଧନ କ୍ଷୟ ହେବାକୁ ବସେ, ସାଧୁସେବାଦ୍ୱାରା ଆପଣଙ୍କଆଡ଼କୁ ତାର ମତି ଆକର୍ଷିତ ହୁଏ ।।୨୮।। ଆପଣ ସମସ୍ତ ଜ୍ଞାନର ମୂଳ; ଚୈତନ୍ୟସ୍ୱରୂପ । ପ୍ରକୃତି, ପୁରୁଷ ଓ କାଳରୂପୀ ଅନନ୍ତଶକ୍ତିର ଆଧାର, ପୂର୍ଣ୍ଣ ବ୍ରହ୍ମ; ମୁଁ ଆପଣଙ୍କୁ ନମସ୍କାର କରୁଛି ।।୨୯।। ଆପଣ ସମସ୍ତ ପ୍ରାଣୀଙ୍କର ଆଶ୍ରୟସ୍ଥଳ । ହେ ବାସୁଦେବ, ଆପଣଙ୍କୁ ମୋର ନମସ୍କାର । ହେ ହୃଷୀକେଶ, ଆପଣଙ୍କୁ ମୁଁ ନମସ୍କାର କରୁଛି । ହେ ପ୍ରଭୁ, ମୁଁ ଆପଣଙ୍କର ଶରଣାଗତ, ମୋତେ ରକ୍ଷା କରନ୍ତୁ ।।୩୦।।

## ଏକଚାଳିଶ ଅଧ୍ୟାୟ

# ମଥୁରାରେ ଶ୍ରୀକୃଷ୍ଣ

ଶ୍ରୀ ଶୁକଦେବ କହିଲେ, ପରିକ୍ଷିତ, ଅକ୍ରୂର ଏହିପରି ସ୍ତୁତି କରୁଥିବାବେଳେ ଭଗବାନ ଶ୍ରୀକୃଷ୍ଣ ଜଳମଧ୍ୟରେ ତାଙ୍କର ଦିବ୍ୟ ମୂର୍ତ୍ତିକୁ ଦେଖାଇ ପୁଣି ତାହା ଉଭାନ କରିଦେଲେ । ନଟ ଯେପରି ତାର ଅଭିନୟ-ବେଶରେ ଦେଖାଦେଇ ଅଭିନୟଶେଷରେ ନିଜ ରୂପକୁ ଫେରିଆସେ, ସେହିପରି ଜଳମଧ୍ୟରେ ଥିବା ତାଙ୍କର ରୂପକୁ ସେ ଛପାଇଦେଲେ ।।୧।। ଭଗବାନଙ୍କର ରୂପ ଅନ୍ତର୍ହିତ ହୋଇଯିବାର ଦେଖି ଅକ୍ରୂର ଶୀଘ୍ର ଜଳମଧ୍ୟରୁ ଉଠି ଯାଇ ତର୍ପଣ ଆଦି ତାଙ୍କର ଆବଶ୍ୟକ କାର୍ଯ୍ୟ ଶେଷ କରି ଅତି ବିସ୍ମିତ ଅବସ୍ଥାରେ ରଥକୁ ଫେରିଆସିଲେ ।।୨।। କୃଷ୍ଣ ତାଙ୍କୁ ପଚାରିଲେ, ଜଳ, ସ୍ଥଳ ବା ଆକାଶରେ କୌଣସି ଅଦ୍ଭୁତ ଦୃଶ୍ୟ ଦେଖିଥିବା ଲୋକ ଭଳି ତୁମର ଚେହେରା ଦିଶୁଛି କାହିଁକି ? ।।୩।। ଅକ୍ରୂର କହିଲେ, ଜଳ, ସ୍ଥଳ ବା ଆକାଶରେ ଯାହା କିଛି ଅଦ୍ଭୁତ ବସ୍ତୁ ଅଛି ତାହା ଆପଣଙ୍କଠାରେ ହିଁ ଅଛି । କାରଣ ଆପଣ ବିଶ୍ୱାତ୍ମା । ଆପଣଙ୍କୁ ଦେଖିବାପରେ ମୁଁ ଆଉ କ'ଣ ନ ଦେଖିଛି ? ବ୍ରହ୍ମନ୍, ଯାହାଠାରେ ଅଦ୍ଭୁତ ବସ୍ତୁ ଅଛି, ପୃଥିବୀ, ଜଳ ବା ଆକାଶରେ ହେଉ, ତାହା ସବୁ ଆପଣଙ୍କଠାରେ ଥିବା ହେତୁ ମୁଁ ଆପଣଙ୍କୁ ହିଁ ଦେଖିଲି ।।୪-୫।। ଏହା କହି ଗାନ୍ଦିନୀନନ୍ଦନ ଅକ୍ରୂର ପୁଣି ରଥ ଚଳାଇବା ଆରମ୍ଭ କରିଦେଲେ । ବେଳ ରତରତ ହେଉଥିବାବେଳେ ସେ ରାମକୃଷ୍ଣଙ୍କୁ ଆଣି ମଥୁରାରେ ପହଞ୍ଚାଇଦେଲେ ।।୬।। ରାଜା, ସେମାନେ ଯେଉଁ ବାଟରେ ଆସିଲେ ସେ ବାଟରେ ଗ୍ରାମବାସୀମାନେ ବସୁଦେବଙ୍କ ଦୁଇ ପୁଅଙ୍କୁ ଦେଖି ଏପରି ଖୁସି ହୋଇଗଲେ ଯେ, ସେମାନେ ଆଖି ଫେରାଇ ପାରିଲେ ନାହିଁ ।।୭।। ବ୍ରଜବାସୀ ନନ୍ଦ ଓ ଗୋପାଳମାନେ ଆଗରୁ ମଥୁରାର ଉପକଣ୍ଠରେ ଥିବା ଉଦ୍ୟାନରେ ପହଞ୍ଚି ରାମକୃଷ୍ଣଙ୍କୁ ଅପେକ୍ଷା କରି ରହିଥିଲେ । ସେମାନଙ୍କ ପାଖକୁ ଆସି ଜଗଦୀଶ୍ୱର ଭଗବାନ ଶ୍ରୀକୃଷ୍ଣ ଅକ୍ରୂରଙ୍କର ହାତକୁ ନିଜ ହାତରେ ରଖି ହସି ହସି କହିଲେ, ଆପଣ ଆଗେ ରଥସହ ମଥୁରା ନଗରୀରେ ଥିବା ଆପଣଙ୍କ ଘରକୁ ଚାଲିଯାଆନ୍ତୁ । ଆମେ ଏଠାରେ ରଥରୁ ଓହ୍ଲାଇ କିଛି ସମୟପରେ ନଗରୀକୁ ଦେଖିବାକୁ ଯିବୁ ।।୮-୧୦।।

ଅକ୍ରୂର କହିଲେ, ପ୍ରଭୁ, ଆପଣଦୁହିଁଙ୍କୁ ଛାଡ଼ି ମୁଁ ମଥୁରା ନଗରୀକୁ ପଶିପାରିବି ନାହିଁ । ହେ ଭକ୍ତବତ୍ସଳ, ମୁଁ ଆପଣଙ୍କର ଭକ୍ତ । ହେ ନାଥ ! ମୋତେ ଆପଣ ଛାଡ଼ିଦେବା ଉଚିତ ହେଉ ନାହିଁ ।।୧୧।। ଆପଣ ମୋର ଶ୍ରେଷ୍ଠ ବନ୍ଧୁ । ଆପଣ ବଳରାମ, ନନ୍ଦ ଓ ଗୋପାଳମାନଙ୍କ ସହିତ ମୋତେ ଜଣେ ବଂଧୁବୋଲି ବିଚାରକରି ମୋ'ଘରକୁ ଚାଲନ୍ତୁ ।।୧୨।। ଆମପରି

ଗୃହସ୍ଥମାନଙ୍କର ଗୃହକୁ ଆପଣଙ୍କ ପଦରଜରେ ପବିତ୍ର କରନ୍ତୁ; ଆପଣଙ୍କ ପାଦଧୌତ ଜଳରେ ପିତୃପୁରୁଷ, ଅଗ୍ନି ଓ ଦେବତାମାନେ ତୃପ୍ତ ହୁଅନ୍ତି ।।୧୩।। ଆପଣଙ୍କର ପାଦ ଦୁଇଟିକୁ ଧୋଇ ଦେଇ ରାଜା ବଳି ବଡ଼ ହୋଇଗଲେ ଏବଂ ପବିତ୍ର ଯଶ ଅର୍ଜନ କରି ଅତୁଳନୀୟ ଐଶ୍ୱର୍ଯ୍ୟର ଅଧିକାରୀ ହେଲେ । କେବଳ ଆପଣଙ୍କର ଏକାନ୍ତ ଭକ୍ତମାନଙ୍କୁ ସେହି ଗତି ମିଳିଥାଏ ।।୧୪।। ଆପଣଙ୍କର ପାଦଧୌତ ପବିତ୍ର ଜଳରୂପିଣୀ ଗଙ୍ଗା ନଦୀ ତିନିଲୋକକୁ ପବିତ୍ର କଲେ । ତାଙ୍କୁ ପୁଣି ମହାଦେବ ନିଜ ମସ୍ତକରେ ଧାରଣ କଲେ ଓ ସଗରପୁତ୍ରମାନେ ସେହି ଜଳସ୍ପର୍ଶରେ ସ୍ୱର୍ଗ ଲାଭକଲେ ।।୧୫।। ହେ ଦେବଦେବ, ହେ ଉତ୍ତମଶ୍ଳୋକ, ହେ ଯଦୁପତି, ହେ ଜଗନ୍ନାଥ, ହେ ନାରାୟଣ, ତୁମର ଶ୍ରବଣ ଓ କୀର୍ତ୍ତନ ଅତିଶୟ ପବିତ୍ର । ଆପଣଙ୍କୁ ମୁଁ ନମସ୍କାର କରୁଛି ।।୧୬।।

କୃଷ୍ଣ କହିଲେ, ଅକ୍ରୂର, ମୁଁ ଜ୍ୟେଷ୍ଠଭ୍ରାତା ବଳରାମଙ୍କ ସହିତ ନିଶ୍ଚୟ ଆପଣଙ୍କ ଘରକୁ ଯିବି । କିନ୍ତୁ ତା ପୂର୍ବରୁ ଯଦୁକୁଳର ଶତ୍ରୁ କଂସକୁ ହତ୍ୟା କରି ବନ୍ଧୁମାନଙ୍କର ପ୍ରିୟ କାର୍ଯ୍ୟ ସାଧନକରିବି ।।୧୭।। ଶ୍ରୀ ଶୁକଦେବ କହିଲେ, ଭଗବାନ କୃଷ୍ଣ ଏପରି କହିବାରୁ ଅକ୍ରୂରଙ୍କର ମନ ମଉଳିଗଲା ଏବଂ ସେ ମଥୁରାପୁରୀରେ ପ୍ରବେଶ କରି ଓ କଂସକୁ ତାଙ୍କର କାର୍ଯ୍ୟ ବିଷୟ ଜଣାଇ ଘରକୁ ଫେରିଗଲେ ।।୧୮।। ଅପରାହ୍ନରେ ମଥୁରା ନଗରୀକୁ ଦେଖିବାପାଇଁ କୃଷ୍ଣ ବଳରାମଙ୍କ ସହିତ ନଗରୀମଧ୍ୟରେ ପ୍ରବେଶ କଲେ । ଗୋପାଳମାନେ ତାଙ୍କୁ ଘେରି ଚାଲିଥିଲେ ।।୧୯।। କୃଷ୍ଣ ମଥୁରାରେ ପ୍ରବେଶ କରି ଦେଖିଲେ ଯେ, ନଗରର ପ୍ରଧାନଦ୍ୱାର ଓ ଅନ୍ୟାନ୍ୟ ଦ୍ୱାରସବୁ ବହୁତ ଉଚ୍ଚ ଓ ସ୍ଫଟିକରେ ନିର୍ମିତ । କବାଟ ଓ ତୋରଣ ସବୁ ସୁନାରେ ତିଆରି । ଶସ୍ୟାଗାର ଓ ଅଶ୍ୱଶାଳାମାନ ତମ୍ବା ଓ ପିତଳରେ ତିଆରି । ନଗରକୁ ଚାରିଆଡ଼େ ପରିଖା ଘେରି ରହିଥିବାରୁ ତା ମଧ୍ୟରେ ପ୍ରବେଶ କରିବା ସମ୍ଭବ ନୁହେଁ । ସୁନ୍ଦର ଉଦ୍ୟାନ ଓ ଉପବନମାନଙ୍କଦ୍ୱାରା ନଗରୀର ଶୋଭା ବଢ଼ିଯାଇଛି ।।୨୦।। ସୁନାରେ ସଜ୍ଜା ହୋଇଥିବା ଛକ, ବିଭିନ୍ନ ଘରକରଣାରେ ସଜାହୋଇଥିବା ବଡ଼ ବଡ଼ କୋଠାଘର, କାରିଗରମାନଙ୍କର ବୈଠକଖାନା ଓ ସଭାଗୃହମାନଙ୍କ ଦ୍ୱାରା ମଥୁରାନଗରୀ ଶୋଭା ପାଉଥିଲା । ବୈଦୂର୍ଯ୍ୟ, ହୀରା, ସ୍ଫଟିକ, ନୀଳକାନ୍ତମଣି, ବିଦ୍ରୁମ, ମୁକ୍ତା ଓ ମରକତ ମଣିମାନଙ୍କରେ ଛାତ, ଝରକା, ବେଦୀ ଓ ଗବାକ୍ଷଆଦି ଝଲମଲ କରୁଥିଲା । ଗୃହମାନଙ୍କ ଉପରେ ପାରା ଓ ମୟୂରମାନେ ବସି କଳରବ କରୁଥିଲେ । ସଡ଼କ, ବଜାର, ଗଳି ଓ ଛକମାନଙ୍କରେ ସୁବାସିତ ଜଳ ଛିଞ୍ଚା ହୋଇଥିଲା । ସ୍ଥାନେ ସ୍ଥାନେ ଫୁଲହାର, ଦୂବ, ଅକ୍ଷତ ଓ ଖଇସବୁ ବିଞ୍ଚା ହୋଇଥିଲା । ଦ୍ୱାରଦେଶରେ କାନ୍ଧିପଡ଼ିଥିବା କଦଳୀ ଗଛ ଓ ଗୁଆ ଗଛ ସବୁ ପୋତା ହୋଇଥିଲା । ଦ୍ୱାରମାନଙ୍କରେ ଦହି, ଚନ୍ଦନ ଆଦି ଛିଞ୍ଚା ଯାଇ ପୂର୍ଣ୍ଣକୁମ୍ଭମାନ ବସିଥିଲା ଏବଂ ଫୁଲ, ଦୀପ ଓ ପତ୍ରମାଳଦ୍ୱାରା ସଜ୍ଜା ହୋଇଥିଲା । ଛୋଟ ଛୋଟ ପତାକା ଓ ପଟ୍ଟବସ୍ତ୍ରସବୁ ଝୁଲୁଥିଲା ।।୨୧-୨୩।।

ପରିକ୍ଷିତ, ମିତ୍ରମାନଙ୍କଦ୍ୱାରା ବେଷ୍ଟିତହୋଇ ମଥୁରା ରାଜଦାଣ୍ଡରେ ଯାଉଥିବା ବସୁଦେବନନ୍ଦନ କୃଷ୍ଣ ଓ ବଳରାମଙ୍କୁ ଦେଖିବାପାଇଁ ପୁରସ୍ତ୍ରୀମାନେ ବ୍ୟଗ୍ର ହୋଇ ଶୀଘ୍ର ଶୀଘ୍ର କୋଠାମାନଙ୍କ ଉପରେ ଚଢ଼ିଗଲେ ।।୨୪।। କୃଷ୍ଣଙ୍କୁ ଦେଖିବାପାଇଁ ସେମାନେ ଏତେ ବ୍ୟସ୍ତ ହୋଇପଡ଼ିଥିଲେ ଯେ ସେମାନଙ୍କର ଲୁଗା ପଟା ଓ ଅଳଙ୍କାର ଓଲଟ ପାଲଟ କରି ପିନ୍ଧିଲେ । କେହି ପଟେ କଙ୍କଣ ପିନ୍ଧି ଆରପଟକୁ ପିନ୍ଧିବାକୁ ଭୁଲିଗଲା, କେହି ଗୋଟିଏ କାନରେ କାନଫୁଲ ପିନ୍ଧିଲା ତ, କେହି ଗୋଟିଏ ପାଦରେ ନୂପୁର ପିନ୍ଧିଲା, ଅନ୍ୟ କେହି ଗୋଟିଏ ଆଖିରେ କଳା ଲଗାଇ ବାହାରିଲା ।।୨୫।। ଆଉ କେହି କେହି ସ୍ତ୍ରୀ ଲୋକ ଖାଇ ବସିଥିଲେ । ଖାଇବା ଛାଡ଼ି ଉଠିଗଲେ । କାହାରି କାହାରି ଦେହରେ ସଖୀମାନେ ତେଲ ଲଗାଇ ଦେଉଥିଲେ, ସେମାନେ ସ୍ନାନ ନ କରି ଦଉଡ଼ିଲେ । କେହି କେହି ଶେଯରେ ଶୋଇଥିଲେ, କୃଷ୍ଣଙ୍କ ଆସିବାର ଆନନ୍ଦଧ୍ୱନି ଶୁଣି ଉଠିପଡ଼ି ଦଉଡ଼ିଲେ । ମା'ମାନେ ପିଲାଙ୍କୁ ଦୁଧ ପିଆଉଥିଲେ, ଛାଡ଼ିଦେଇ ଚାଲିଗଲେ ।।୨୬।। କମଳନୟନ ଶ୍ରୀକୃଷ୍ଣ ମତ୍ତହସ୍ତୀପରି ବେଶ୍ ଥାଟରେ ଚାଲିଥିଲେ । ଲକ୍ଷ୍ମୀଙ୍କୁ ଆନନ୍ଦ ଦେଉଥିବା ତାଙ୍କର ସେହି ସୁନ୍ଦର ଶରୀରଦ୍ୱାରା ପୁରନାରୀଙ୍କ ଆଖିକୁ ଆନନ୍ଦ ଦେଲେ ଏବଂ ତାଙ୍କର କ୍ରୀଡ଼ାପୂର୍ଣ୍ଣ ସୁନ୍ଦରହସ ଓ ମଧୁର କଟାକ୍ଷଦ୍ୱାରା ସେ ସେମାନଙ୍କର ମନ ଚୋରାଇନେଲେ ।।୨୭।। ଅରିନ୍ଦମ, ମଥୁରାର

ସ୍ତ୍ରୀମାନେ ବହୁ ଦିନରୁ କୃଷ୍ଣଙ୍କର ଅଦ୍ଭୁତ ଲୀଳାମାନ ଶୁଣି ଆସୁଥିଲେ । ବହୁଦିନୁ କୃଷ୍ଣଙ୍କୁ ଦେଖିବା ପାଇଁ ସେମାନଙ୍କର ମନ ବ୍ୟାକୁଳ ହେଉଥିଲା । ଏବେ ତାଙ୍କୁ ସାକ୍ଷାତ୍‌ରେ ଦେଖିଲେ । ତାଙ୍କର ମନ୍ଦ ମନ୍ଦ ହସ ଓ ପ୍ରେମପୂର୍ଣ୍ଣ ଚାହାଣି ସେମାନଙ୍କ ହୃଦୟରେ ଅମୃତର ରସ ଭରିଦେଲା । ସେମାନେ ତାଙ୍କର ନେତ୍ରପଥରେ କୃଷ୍ଣଙ୍କର ଆନନ୍ଦମୟ ମୂର୍ତ୍ତିକୁ ହୃଦୟମଧ୍ୟକୁ ନେଇ ଆଲିଙ୍ଗନ କରିବାକୁ ଲାଗିଲେ । ସେମାନଙ୍କର ଦେହ ପୁଲକିତ ହେଲା । ସେମାନଙ୍କର ବହୁଦିନର ମନସ୍ତାପ ଦୂରହେଲା ॥୨୮॥ ସେଇ ପ୍ରମଦାମାନେ ପ୍ରାସାଦଶିଖର ଚଢ଼ି ବଳରାମ ଓ କୃଷ୍ଣଙ୍କ ଉପରେ ପୁଷ୍ପବୃଷ୍ଟି କରିବାକୁ ଲାଗିଲେ । କୃଷ୍ଣଙ୍କର ପ୍ରେମରେ ସେମାନଙ୍କ ମୁଖପଦ୍ମସବୁ ଫୁଟିଉଠୁଥିଲା ॥ ବ୍ରାହ୍ମଣ, କ୍ଷତ୍ରିୟ ଓ ବୈଶ୍ୟମାନେ ପ୍ରମୁଦିତ ହୋଇ ସ୍ଥାନେ ସ୍ଥାନେ ଜଳପାତ୍ର, ଦଧି, ଅକ୍ଷତ, ପୁଷ୍ପମାଲ୍ୟ, ଧୂପ, ଦୀପ ଆଦି ନାନାପ୍ରକାର ଭେଟିଦ୍ୱାରା କୃଷ୍ଣ ଓ ବଳରାମଙ୍କୁ ପୂଜାକଲେ ॥୩୦॥ ମଥୁରାର ପୁରନାରୀମାନେ ପରସ୍ପର କହିବାକୁ ଲାଗିଲେ, ଦେଖ, ବ୍ରଜବାସୀ ଗୋପୀମାନେ କେତେ ବଡ଼ ତପସ୍ୟା କରିଥିଲେ । ସେମାନେ ନରଲୋକର ଆନନ୍ଦମୂର୍ତ୍ତି ଏଇ କୃଷ୍ଣ ଓ ବଳରାମଙ୍କୁ ସର୍ବଦା ଦର୍ଶନ କରୁଥିଲେ ॥୩୧॥

ଏହି ସମୟରେ କୃଷ୍ଣ ଦେଖିଲେ, ଲୁଗାରେ ରଙ୍ଗ ଦେଉଥିବା ଜଣେ ରଜକ ଆସୁଛି । କୃଷ୍ଣ ତାକୁ ଦେଖି ଭଲ ଭାବରେ ଧୂଆ ହୋଇଥିବା ଅତି ଉତ୍ତମ ଲୁଗା ମାଗିବସିଲେ ॥୩୨॥ କୃଷ୍ଣ କହିଲେ, ରଜକ, ତୁମେ ଯେଉଁ ରଙ୍ଗୀନ ବସ୍ତ୍ର ନେଇଯାଉଛ, ତାହାସବୁ ଆମ ଦୁହିଁଙ୍କର ପିନ୍ଧିବାରଯୋଗ୍ୟ । ସେଥିରୁ ଆମକୁ କିଛି ପିନ୍ଧିବାକୁ ଦିଅ । ଦାତାର ନିଶ୍ଚୟ ଭବିଷ୍ୟତରେ ମଙ୍ଗଳ ହେବ ॥୩୩॥ କିନ୍ତୁ ସେହି ରଜକ ଥିଲା କଂସର ଭୃତ୍ୟ । ସେଥିପାଇଁ ତା'ର ବଡ଼ ଗର୍ବ ଥିଲା । କୃଷ୍ଣ ତାକୁ ଲୁଗା ମାଗିବାରୁ ସେ ରାଗିଯାଇ ଆକ୍ଷେପ କରି କହିଲା, ତୁମେମାନେ ସବୁ ବନ, ପର୍ବତରେ ବୁଲ । ତୁମର ବୁଦ୍ଧି ବୃତ୍ତି ଠିକ୍ ନାହିଁ । ତୁମେମାନେ କେବେ ଏପରି ପିନ୍ଧୁଥିଲ ଯେ ଆଜି ରାଜାଙ୍କର ଲୁଗାକୁ ମାଗୁଛ । ତୁମେମାନେ ଶୀଘ୍ର ଏଠାରୁ ପଳାଇଯାଅ । ନଚେତ୍ ରାଜପୁରୁଷମାନଙ୍କର ହାବୁଡ଼େ ପଡ଼ିଲେ ତୁମଠାରୁ ସବୁ ଛଡ଼ାଇନେଇ ତୁମକୁ ବାନ୍ଧିପକାଇ ନିଶ୍ଚୟ ବଧ କରିବେ । ଯଦି ବଞ୍ଚିରହିବାକୁ ଇଚ୍ଛାଥାଏ, ତା'ହେଲେ ଭୁଲରେ ଏପରି ମାଗିବ ନାହିଁ ॥୩୪-୩୬॥ ରଜକ ଏହିପରି ଗର୍ବରେ କହିବାରୁ କୃଷ୍ଣ ରାଗିଯାଇ ତାକୁ ଏପରି ଏକ ଚାପୁଡ଼ା ଦେଲେ ଯେ ତାର ମୁଣ୍ଡ ଗଣ୍ଡିରୁ ଛିଣ୍ଡି ପଡ଼ିଲା । ରଜକର ଅନୁଚରମାନେ ଲୁଗା ଗଣ୍ଠିଲା ସବୁ ଛାଡ଼ିଦେଇ ଯେ ଯୁଆଡ଼େ ପଳାଇଲେ । ଭଗବାନ ଶ୍ରୀକୃଷ୍ଣ ସେ ସବୁ ଲୁଗାପଟା ନେଇ ତା ଭିତରୁ ଭଲ ଭଲ ବାଛି ପିନ୍ଧିଲେ । ବଳରାମଙ୍କୁ ମଧ୍ୟ ପିନ୍ଧିବାକୁ ଦେଲେ । କିଛି ଗୋପାଳପିଲାଙ୍କୁ ଦେଇ ବାକିତକ ସେଠାରେ ଛାଡ଼ିଦେଇ ଚାଲିଗଲେ ॥୩୭-୩୯॥

କିଛିବାଟ ଯିବାପରେ କଂସର ଜଣେ ବେଶକାରୀ ସେ ଦୁହିଁଙ୍କୁ ଦେଖି ଏତେ ଖୁସି ହୋଇଗଲା ଯେ ବିଚିତ୍ର ରଙ୍ଗର ପୋଷାକସବୁ ପିନ୍ଧାଇଦେଲା । ନାନାପ୍ରକାର ସୁନ୍ଦର ପୋଷାକ ପିନ୍ଧି କୃଷ୍ଣ ଓ ବଳରାମ ଖୁବ୍ ସୁନ୍ଦର ଦେଖାଗଲେ । ଉତ୍ସବ ଦିବସରେ କୃଷ୍ଣ ଓ ଶୁକ୍ଳ ବର୍ଣ୍ଣର ଦୁଇଟି ସୁସଜ୍ଜିତ ବାଳହସ୍ତୀଙ୍କୁ ବାହାର କରିବାପରି କୃଷ୍ଣ ଓ ବଳରାମ ଶୋଭାପାଇବାକୁ ଲାଗିଲେ ॥୪୦-୪୧॥ ସେହି ବେଶକାରୀ ପ୍ରତି ପ୍ରସନ୍ନ ହୋଇ ଭଗବାନ ଶ୍ରୀକୃଷ୍ଣ ତାକୁ ସାରୂପ୍ୟ ମୁକ୍ତି ପ୍ରଦାନ କଲେ ଏବଂ ପ୍ରାରବ୍ଧ କର୍ମ ଭୋଗପାଇଁ ସେ ଇହଲୋକରେ ଯେତେଦିନ ରହିବ, ସେତେଦିନ ପର୍ଯ୍ୟନ୍ତ ଧନସମ୍ପତ୍ତି, ବଳ, ଐଶ୍ୱର୍ଯ୍ୟ, ଇନ୍ଦ୍ରିୟଶକ୍ତି ଓ ଏକାନ୍ତ ଭଗବତ୍ ଭକ୍ତି ପ୍ରଦାନକଲେ ॥୪୨॥ ତାପରେ ସେ ଦୁହେଁ ସୁଦାମା ମାଳୀର ଘରେ ଯାଇ ପହଞ୍ଚିଲେ । କୃଷ୍ଣ ଓ ବଳରାମଙ୍କୁ ଦେଖି ମାଳାକାର ଭୂଇଁରେ ମୁଣ୍ଡ ଲଗାଇ ପ୍ରଣାମ କଲା । ସେ ଦୁହିଁଙ୍କୁ ଯଥାଯୋଗ୍ୟ ଆସନ, ପାଦ୍ୟ, ଅର୍ଘ୍ୟ, ଅନ୍ୟାନ୍ୟ ପୂଜାସାମଗ୍ରୀ, ଫୁଲମାଳ, ଚନ୍ଦନ, ତାମ୍ବୁଳ ଆଦି ଦ୍ୱାରା ଅର୍ଚ୍ଚନା କଲା ॥୪୩-୪୪॥ ପୂଜାଶେଷ ପରେ ସୁଦାମା କହିଲା, ଆପଣ ଦୁଇ ଜଣ ମୋ' ଘରକୁ ଆସି ମୋ' ଜନ୍ମ ସାର୍ଥକ ଓ ବଂଶ ପବିତ୍ର କରିଛନ୍ତି । ପିତୃ, ଦେବତା ଏବଂ ଋଷିମାନେ ମୋ ପ୍ରତି ସନ୍ତୁଷ୍ଟ ହୋଇଛନ୍ତି । ଆପଣ ଦୁହେଁ ହେଉଛନ୍ତି ଏ ବିଶ୍ୱ ଜଗତ୍‌ର ପ୍ରଧାନ କାରଣସ୍ୱରୂପ । ଜଗତ୍‌ର

ମଙ୍ଗଳ ଓ ପାଳନପାଇଁ ନିଜ ଅଂଶରେ ଜନ୍ମ ନେଇଛନ୍ତି ।।୪୫-୪୬।। ଭକ୍ତକୁ ଆପଣ ଅନୁଗ୍ରହ କଲେ ମଧ୍ୟ ସମସ୍ତ ପ୍ରାଣୀଙ୍କୁ ସମାନ ଭାବରେ ଦେଖନ୍ତି । ଜଗତର ଆତ୍ମା ଓ ସୁହୃଦ୍ ହୋଇଥିବାରୁ ଆପଣଙ୍କଠାରେ କାହାରି ପ୍ରତି ବୈଷମ୍ୟ ନଥାଏ ।।୪୭।। ମୁଁ ଆପଣଙ୍କ ଆଜ୍ଞବହ ଭୃତ୍ୟ । କ'ଣ କରିବାକୁ ହେବ ମୋତେ ଆଦେଶ ଦିଅନ୍ତୁ । ଆପଣ ଯାହାକୁ ଯେଉଁଥିପାଇଁ ନିଯୁକ୍ତ କରନ୍ତି, ତାହା ତା'ପକ୍ଷରେ ଏକ ଅନୁଗ୍ରହ ଛଡ଼ା ଅନ୍ୟ କିଛି ନୁହେଁ ।।୪୮।। ପରିକ୍ଷିତ, ଏହା କହି ଭଗବାନଙ୍କ ଆଦେଶରେ ସୁଦାମା ସୁଗନ୍ଧିତ ପୁଷ୍ପମାନଙ୍କର ଦୁଇଟି ବଡ଼ବଡ଼ ମାଳା ରଚନା କରି କୃଷ୍ଣ ଓ ବଳରାମଙ୍କୁ ପ୍ରଦାନ କଲା ।।୪୯।। ଏହାପରେ ସୁଦାମା କୃଷ୍ଣଙ୍କର ଶରଣାଗତ ହୋଇ ମୁଣ୍ଡ ନୁଆଁଇ ପ୍ରଣତ ଭାବରେ ରହିଲା । ଗୋପାଳପିଲାଙ୍କ ସହିତ କୃଷ୍ଣ ଓ ବଳରାମ ସୁନ୍ଦର ସୁନ୍ଦର ମାଳାରେ ଭୂଷିତ ହୋଇ ପ୍ରଣତ ସୁଦାମାକୁ ବରଦାନ କଲେ ।।୫୦।। ସୁଦାମା ବର ମାଗିଲା, ହେ ପ୍ରଭୁ, ଆପଣ ସମସ୍ତ ପ୍ରାଣୀଙ୍କର ଆତ୍ମା । ଆପଣଙ୍କଠାରେ ଓ ଆପଣଙ୍କ ଭକ୍ତମାନଙ୍କଠାରେ ମୋର ଅଚଳା ଭକ୍ତି ରହୁ ଏବଂ ସମସ୍ତ ପ୍ରାଣୀଙ୍କ ପ୍ରତି ମୋର ଦୟା ଓ ସୌହାର୍ଦ୍ଦ ରହିଥାଉ ।।୫୧।। ସୁଦାମା ଯେଉଁ ବର ମାଗିଲା, ତାହା ତାକୁ ପ୍ରଦାନ କରି ଭଗବାନ ତାକୁ ବଳ, ଆୟୁ, ଯଶ, କାନ୍ତି ଓ କୁଳବର୍ଦ୍ଧିନୀ ଧନସଂପତ୍ତି ଦାନ କଲେ । ତାପରେ ବଳରାମଙ୍କ ସହିତ ସେଠାରୁ ସେ ବିଦାୟ ନେଲେ ।।୫୨।।

## ବୟାଳିଶ ଅଧ୍ୟାୟ

# ଧନୁ ଭଙ୍ଗ

ଶ୍ରୀ ଶୁକଦେବ କହିଲେ, ପରିକ୍ଷିତ, ଭଗବାନ ଶ୍ରୀକୃଷ୍ଣ ରାଜପଥରେ ଯିବାବେଳେ ଗୋଟିଏ କୁବ୍‌ଜା ଯୁବତୀକୁ ଦେଖିଲେ । ସେ ଦେହରେ ଚନ୍ଦନ ଲଗାଇବାର ପାତ୍ରଟିଏ ଧରି ଚାଲିଛି । କିନ୍ତୁ ତାର ମୁହଁଟି ବଡ଼ ସୁନ୍ଦର । ରସିକ ଶ୍ରୀହରି ତାକୁ ହସି ହସି ପଚାରିଲେ, ହେ ସୁନ୍ଦରୀ, ତୁମେ କିଏ ? କାହାପାଇଁ ଏ ଚନ୍ଦନ ନେଇ ଯାଉଛ ? ଆମକୁ ଠିକ୍ କଥା କହ । ତୁମର ଏହି ଚନ୍ଦନ, ଆମକୁ ଦେଲେ ହୁଅନ୍ତା ନାହିଁ ? ଆମକୁ ଦେଲେ ତୁମର ଅତି ଶୀଘ୍ର ମଙ୍ଗଳ ହେବ ।।୧-୨।।

ସତୀ କୁବ୍‌ଜା କହିଲା, ସୌମ୍ୟ, ମୋର ନାମ ତ୍ରିବକ୍ରା (ଗ୍ରୀବା, ବକ୍ଷ ଓ କଟିଦେଶ ବକ୍ର) । ମୁଁ ଭୋଜରାଜ କଂସଙ୍କର ଦାସୀ । ମୁଁ ରାଜାଙ୍କ ପାଇଁ ଚନ୍ଦନ ଓ ଅଙ୍ଗରାଗ ଆଦି ପ୍ରସ୍ତୁତ କରେ । ଭୋଜରାଜ କଂସ ତାହା ଶ୍ରଦ୍ଧା କରନ୍ତି । କିନ୍ତୁ ଚନ୍ଦନ ଲଗାଇବାପାଇଁ ଆପଣ ଦୁଇ ଜଣଙ୍କ ଛଡ଼ା ଆଉ କିଏ ଯୋଗ୍ୟପାତ୍ର ଅଛି ? ।।୩।। ଏହିପରି କହି ତ୍ରିବକ୍ରା ଭଗବାନଙ୍କର ସୁକୁମାର ରୂପ, ସୌନ୍ଦର୍ଯ୍ୟ, ରସିକତା, ମନ୍ଦ ମନ୍ଦ ହସ, ମଧୁର ଆଳାପ ଓ ସୁନ୍ଦର ଚାହାଣିରେ ମୋହିତ ହୋଇଗଲା ଏବଂ କୃଷ୍ଣ ଓ ବଳରାମଙ୍କୁ ସେ ନେଇଥିବା ଗାଢ଼ ଅଙ୍ଗଲେପନ ପ୍ରଦାନ କଲା ।।୪।। କୃଷ୍ଣ ତାଙ୍କ ଶ୍ୟାମଳବର୍ଣ୍ଣ ଶରୀରରେ ହଳଦୀ ରଙ୍ଗର ଓ ବଳରାମ ତାଙ୍କ ଗୋରା ଦେହରେ ନାଲିରଙ୍ଗର ଚନ୍ଦନ ଲଗାଇଲେ । ନାଭିର ଉପରିଭାଗରେ ଦୁହେଁ ଏହିପରି ଅଙ୍ଗରାଗ ଲଗାଇ ଅତି ସୁନ୍ଦର ଦେଖାଗଲେ ।।୫।। ଏହାପରେ କୃଷ୍ଣ କୁବ୍‌ଜା ତ୍ରିବକ୍ରା ଉପରେ ଖୁସି ହୋଇ ତାଙ୍କ ଦର୍ଶନର ଫଳ ତାକୁ ଦେବାପାଇଁ ସ୍ଥିର କଲେ । ସେ ଭାବିଲେ, ଏହି ସୁନ୍ଦରୀ ସ୍ତ୍ରୀର କୁବ୍‌ଜଟିକୁ ସିଧା କରିଦେବେ । ସେ ତାଙ୍କର ଦୁଇପାଦଦ୍ୱାରା କୁବ୍‌ଜାର ପାଦାଗ୍ରକୁ ଚାପିଧରି ଓ ତା'ର ଚିବୁକକୁ ଦୁଇଟି ଆଙ୍ଗୁଠିରେ ଧରି ତାର ଦେହକୁ ଉପରକୁ ଉଠାଇଲେ ।।୬-୭।। ଏହିପରି ଉଠାଇବାରୁ ତା'ର ଦେହ ସିଧା ଓ ସମାନ ହୋଇଗଲା । ଭଗବାନ ମୁକୁନ୍ଦଙ୍କର ପ୍ରସାଦରୁ ସେ ବିଶାଳ ନିତମ୍ବ ଓ ପୟୋଧରରେ ଶୋଭିତ ଏକ ସୁନ୍ଦରୀ ତରୁଣୀରେ ପରିଣତ ହୋଇଗଲା ।।୮।।

ଏହାପରେ ରୂପ, ଗୁଣ ଓ ଉଦାରତାରେ ପୂର୍ଣ୍ଣ କୁବ୍‌ଜାର ମନରେ କୃଷ୍ଣଙ୍କ ସହିତ ମିଳନର ଇଚ୍ଛା ଜାଗିଉଠିଲା । ସେ କୃଷ୍ଣଙ୍କର ଉତ୍ତରୀୟକୁ ଟାଣି ଅଳ୍ପ ହସି କହିଲା-- ॥୯॥ ହେ ବୀର, ମୋର ଘରକୁ ଚାଲନ୍ତୁ । ମୁଁ ଆପଣଙ୍କୁ ଛାଡ଼ି ଯାଇପାରିବି ନାହିଁ । ପୁରୁଷପୁଙ୍ଗବ, ଆପଣ ମୋର ଚିତ୍ତକୁ ବିଚଳିତ କରିଦେଇଛନ୍ତି । ମୋ'ପ୍ରତି ପ୍ରସନ୍ନ ହୁଅନ୍ତୁ ॥୧୦॥ ତାର ଏପରି ପ୍ରାର୍ଥନା ଶୁଣି କୃଷ୍ଣ ବଳରାମ ଓ ଗୋପାଳପିଲାଙ୍କ ମୁହଁକୁ ଚାହିଁ ଅଳ୍ପ ହସି କହିଲେ, ସୁନ୍ଦରି ! ମୁଁ ଯେଉଁ କାମପାଇଁ ଆସିଛି, ତାହା ଶେଷ କରି ତୋ' ଘରକୁ ଯିବି । ପୁରୁଷମାନଙ୍କ ମନର କ୍ଳାନ୍ତି ଦୂର କରିବାପାଇଁ ସ୍ତ୍ରୀମାନଙ୍କର ଘର । ଆମମାନଙ୍କ ପରି ଘର ନ ଥିବା ପଥିକମାନଙ୍କର ତୁ ହିଁ ଆଶ୍ରୟ ॥୧୧-୧୨॥ ଏହିପରି ମଧୁର ବାକ୍ୟରେ କୁବ୍‌ଜାକୁ ବିଦାୟ ଦେଇ ବଳରାମଙ୍କ ସହିତ କୃଷ୍ଣ ରାଜମାର୍ଗରେ ଚାଲିବାକୁ ଲାଗିଲେ । ଯେତେବେଳେ ସେ ମଥୁରା ହାଟରେ ପ୍ରବେଶକଲେ, ବ୍ୟବସାୟୀମାନେ ତାଙ୍କୁ ଫୁଲହାର, ଚନ୍ଦନ ଓ ତାମ୍ବୂଳ ଦେଇ ଅର୍ଚ୍ଚନାକଲେ ॥୧୩॥ କୃଷ୍ଣଙ୍କୁ ଦେଖିବାମାତ୍ରେ ସ୍ତ୍ରୀମାନଙ୍କ ହୃଦୟରେ କାମାବେଗ ବଢ଼ିଯାଉଥିଲା । ସେମାନଙ୍କର ବସନ, ଭୂଷଣ ଓ କବରୀ ଆଦି ଖସିପଡୁଥିଲା । ଚିତ୍ରାର୍ପିତ ପରି ସେମାନେ ସ୍ଥିର ହୋଇ ରହିଯାଉଥିଲେ ॥୧୪॥ ଏହାପରେ କୃଷ୍ଣ ପୁରବାସୀମାନଙ୍କୁ ଧନୁଯଜ୍ଞର ସ୍ଥାନ ପଚାରି ପଚାରି ସେଠାରେ ଆସି ପହଞ୍ଚିଲେ ଏବଂ ଇନ୍ଦ୍ରଙ୍କର ଧନୁପରି ଏକ ଅଦ୍ଭୁତ ଧନୁ ଥୁଆ ହୋଇଥିବାର ଦେଖିଲେ ॥୧୫॥ ସେହି ଧନୁ ବହୁ ମୂଲ୍ୟବାନ୍ ଧାତୁରେ ଅଳଙ୍କୃତ ଓ ବହୁ ପ୍ରହରୀଙ୍କଦ୍ୱାରା ସୁରକ୍ଷିତ ଥିଲା ଏବଂ ତାହାର ପୂଜା କରାଯାଉଥିଲା । ପ୍ରହରୀମାନଙ୍କର ବାରଣସତ୍ତ୍ୱେ କୃଷ୍ଣ ସେହି ଧନୁକୁ ଉଠାଇନେଲେ ॥୧୬॥ ସମସ୍ତେ ଦେଖୁଥିବାବେଳେ ପରାକ୍ରମଶାଳୀ କୃଷ୍ଣ ହାତରେ ସେ ଧନୁକୁ ଉଠାଇନେଇ ନିମିଷକ ମଧ୍ୟରେ ସେଥିରେ ଗୁଣ ଚଢ଼ାଇ ତାକୁ ଏପରି ଆକର୍ଷଣ କଲେ ଯେ ତାହା ମଝିରୁ ଦୁଇଖଣ୍ଡ ହୋଇ ଭାଙ୍ଗିଗଲା, ଯେପରି ମତ୍ତ ହାତୀ ଖଣ୍ଡେ ଆଖୁକୁ ସହଜରେ ଭାଙ୍ଗିଦିଏ ॥୧୭॥ ସେହି ଧନୁଭଙ୍ଗର ଶବ୍ଦ ଆକାଶ, ସ୍ୱର୍ଗ ଏବଂ ଦିଗ୍‌ବିଦିଗକୁ କମ୍ପାଇଦେଲା ଏବଂ ତାହା ଶୁଣି କଂସ ଭୟରେ କମ୍ପି ଉଠିଲା ॥୧୮॥ ଅସ୍ତ୍ରଧାରୀ ଧନୁରକ୍ଷକମାନେ କ୍ରୋଧରେ 'ଧରଧର ମାରମାର' ବୋଲି ଚିତ୍କାର କରି ରାମ ଓ କୃଷ୍ଣଙ୍କୁ ଘେରିଗଲେ ॥୧୯॥ ସେମାନଙ୍କର ଦୁରଭିସନ୍ଧି ବୁଝିପାରି ବଳରାମ ଓ କୃଷ୍ଣ ଭାଙ୍ଗିପଡ଼ିଥିବା ଧନୁର ଖଣ୍ଡକୁ ଧରି ସେଥିରେ ସମସ୍ତଙ୍କୁ ବଧ କଲେ ॥୨୦॥

ଏହିପରି କଂସପ୍ରେରିତ ସୈନ୍ୟମାନଙ୍କୁ ନିହତକରି କୃଷ୍ଣ ଓ ବଳରାମ ଯଜ୍ଞଶାଳାରୁ ବାହାରି ଆସିଲେ ଏବଂ ମଥୁରାପୁରୀର ସମ୍ପଦ ଦେଖିବାକୁ ଲାଗିଲେ ॥୨୧॥ ନଗରବାସୀମାନେ ସେ ଦୁହିଁଙ୍କ ଅଦ୍ଭୁତ ବୀରତ୍ୱର କଥା ଶୁଣି ଏବଂ ତାଙ୍କର ତେଜ, ରୂପ ଓ ପ୍ରଗଲ୍‌ଭତାକୁ ଦେଖି ଭାବିଲେ, ଶ୍ରେଷ୍ଠ ଦେବତା ଦୁଇ ଜଣ ଆସିଯାଇଛନ୍ତି ॥୨୨॥ ଏହିପରି ସେ ଦୁହେଁ ମନଇଚ୍ଛା ବୁଲୁ ବୁଲୁ ସୂର୍ଯ୍ୟାସ୍ତ ହୋଇଗଲା । ନଗରବାହାରେ ଯେଉଁଠି ଗୋପପୁରର ଶଗଡ଼ସବୁ ଆସି ରହିଥିଲା, ଗୋପାଳପିଲାଙ୍କ ସହିତ କୃଷ୍ଣ ଓ ବଳରାମ ସେଠାରେ ପହଞ୍ଚିଲେ ॥୨୩॥ ମୁକୁନ୍ଦଙ୍କର ବିରହରେ ବିରହଆତୁରା ଗୋପୀମାନେ ଯାହାସବୁ କହିଥିଲେ ତାହା ସତ୍ୟ ହେଲା । ମଥୁରାବାସୀ ଭଗବାନଙ୍କର ଅଙ୍ଗଶୋଭା ଦେଖି ଆନନ୍ଦରେ ମୁଗ୍ଧ ହୋଇଗଲେ । କି ଚମତ୍କାର ସେ ଅଙ୍ଗର ଶୋଭା ! ଶୋଭାମୟୀ ଲକ୍ଷ୍ମୀଙ୍କୁ ପାଇବାପାଇଁ ଶ୍ରେଷ୍ଠ ଦେବତାମାନେ ଇଚ୍ଛା କରୁଥିଲେ ମଧ୍ୟ ଲକ୍ଷ୍ମୀ ସେମାନଙ୍କୁ ଛାଡ଼ି ଶ୍ରୀ ଭଗବାନଙ୍କର ଶରୀରକୁ ଆଶ୍ରୟ କରିଥିଲେ ॥୨୪॥ କୃଷ୍ଣ ଓ ବଳରାମ ଗୋପମାନଙ୍କର ନିବାସସ୍ଥାନକୁ ଫେରିଆସି ପାଦପ୍ରକ୍ଷାଳନ କଲେ ଏବଂ ଦୁଗ୍ଧମିଶ୍ରିତ ଅନ୍ନ ଭକ୍ଷଣ କରି ଓ କଂସ କ'ଣ କରିବାକୁ ଯାଉଛି ତାହାର ଖବର ନେଇ ସୁଖରେ ରାତିଟିକୁ କଟାଇଦେଲେ ॥୨୫॥ ଯେତେବେଳେ କଂସ ଶୁଣିଲା ଯେ କୃଷ୍ଣ ଓ ବଳରାମ ତାର ଧନୁକୁ ଭାଙ୍ଗି ଦେଇଛନ୍ତି, ରକ୍ଷୀମାନଙ୍କୁ ଏବଂ ସେମାନଙ୍କ ସହାୟକ ସୈନ୍ୟମାନଙ୍କୁ ପିଲାଖେଳପରି ନିହତ କରିଛନ୍ତି, ସେତେବେଳେ ସେ ଅତି ଭୟଭୀତ ହୋଇପଡ଼ିଲା । ଦୁର୍ମତି କଂସର ଦୀର୍ଘ ରାତ୍ରିଯାଏ ନିଦ୍ରା ହେଲା ନାହିଁ ଏବଂ ସ୍ୱପ୍ନ ଓ ଜାଗରଣରେ ସେ ଏପରି ଅପଶକୁନମାନ ଦେଖିଲା, ଯାହାହିଁ ତାକୁ ମରଣର ସୂଚନା ଦେଉଥିଲା ॥୨୬-୨୭॥ ଜଳ ଓ ଦର୍ପଣରେ ନିଜର ପ୍ରତିବିମ୍ବ ଥିଲେ ମଧ୍ୟ

ସେଥିରେ ସେ ନିଜର ମୁଣ୍ଡକୁ ଦେଖିଲା ନାହିଁ; ସେ ଅଙ୍ଗୁଳିଆଦିଦ୍ୱାରା ନିଜର ଆଖିକୁ ଘୋଡ଼ାଇ ପାରିଲା ନାହିଁ, ତଥାପି ଚନ୍ଦ୍ର, ତାରା, ଦୀପ ଆଦି ଜ୍ୟୋତିର୍ମୟ ବସ୍ତୁସବୁ ତାକୁ ଦୁଇଦୁଇଟା କରି ଦେଖାଗଲା । ତାର ଛାଇରେ ଛିଦ୍ର ସବୁ ଦେଖାଯାଉଥିଲା । ଅଙ୍ଗୁଳିରେ କାନକୁ ବନ୍ଦ କଲେ ପ୍ରାଣବାୟୁର ଘୁଁ ଘୁଁ ଶବ୍ଦ ଶୁଣାଯାଉ ନ ଥିଲା । ଗଛ ସବୁ ସୁନେଲି ହୋଇଯାଉଥିଲା । କାଦୁଅ ଓ ବାଲିରେ ତା'ର ପାଦ ଚିହ୍ନଦେଖାଯାଉନଥିଲା ॥୨୮-୨୯॥ ସ୍ୱପ୍ନରେ ସେ ଦେଖିଲା, ପ୍ରେତମାନେ ତାକୁ ଆଲିଙ୍ଗନ କରୁଛନ୍ତି । ସେ ଗଧ ଉପରେ ବସି ଯାଉଛି । ସେ ବିଷ ଖାଇଦେଇଛି । ସେ ଦେହଯାକ ତେଲ ବୋଳିହୋଇ, ମନ୍ଦାର ଫୁଲମାଳା ପିନ୍ଧି, ଉଲଗ୍ନ ହୋଇଯାଉଛି ॥୩୦॥ ଏହିପରି ସ୍ୱପ୍ନରେ ଓ ଜାଗ୍ରତ ଅବସ୍ଥାରେ ଅଦ୍ଭୁତ ଦୃଶ୍ୟମାନ ଦେଖି ମରଣଭୟରେ କଂସକୁ ନିଦ୍ରା ହେଲା ନାହିଁ ଓ ନାନା ଦୁଷ୍ଚିନ୍ତା ତାକୁ ଘାରିବାକୁ ଲାଗିଲା ॥୩୧॥

ପରିକ୍ଷିତ, ସକାଳ ହେଲା । ସୂର୍ଯ୍ୟ ଉଦିତ ହେଲେ । କଂସ ମଲ୍ଲକ୍ରୀଡ଼ାର ମହୋତ୍ସବ ଆୟୋଜନ କଲା ॥୩୨॥ କର୍ମଚାରୀମାନେ ରଂଗଭୂମିକୁ ସଜେଇବାକୁ ଲାଗିଲେ । ଭେରୀ, ତୂରୀ ସବୁ ବାଜିଉଠିଲା । ପୁଷ୍ପମାଳା, ପତାକା ଓ ରଙ୍ଗୀନ ପଟ୍ଟବସ୍ତ୍ରମାନଙ୍କ ଦ୍ୱାରା ମଞ୍ଚ ଅଳଙ୍କୃତ ହେଲା ॥୩୩॥ ବ୍ରାହ୍ମଣ, କ୍ଷତ୍ରିୟ ଆଦି ଜନପଦ ଓ ନଗରବାସୀ ଲୋକମାନେ ମଞ୍ଚ ଉପରେ ନିଜ ନିଜର ସ୍ଥାନରେ ବସିଗଲେ । ରାଜାମାନେ ମଧ୍ୟ ଉପଯୁକ୍ତ ଆସନ ଗ୍ରହଣ କଲେ ॥୩୪॥ କଂସ ମନ୍ତ୍ରୀମାନଙ୍କଦ୍ୱାରା ପରିବେଷ୍ଟିତ ହୋଇ ମଣ୍ଡଳେଶ୍ୱରମାନଙ୍କ ମଧ୍ୟରେ ଥିବା ନିଜର ରାଜମଞ୍ଚରେ ଯାଇ ଉପବେଶନ କଲା । ସେତେବେଳେ ସେ ଅତି ଉଦ୍‌ବିଗ୍ନ ଦେଖାଯାଉଥିଲା ॥୩୫॥ ଏହାପରେ ତୂରୀବାଦନ ହେଲା । ମଲ୍ଲମାନଙ୍କ ତାଳିର ଶବ୍ଦ ତୂରୀଧ୍ୱନିକୁ ବଳିପଡ଼ିଲା ଏବଂ ନାନା ସାଜରେ ସଜ୍ଜିତ ହୋଇ ଗର୍ବିତ ମଲ୍ଲମାନେ ନିଜ ନିଜର ଗୁରୁମାନଙ୍କ ସହିତ ପ୍ରବେଶ କଲେ ॥୩୬॥ ଚାଣୂର, ମୁଷ୍ଟିକ, କୂଟ, ଶଳ ଓ ତୋଶଳ ଆଦି ମଲ୍ଲମାନେ ସୁନ୍ଦର ବାଦ୍ୟଧ୍ୱନିରେ ଆହ୍ଲାଦିତ ହୋଇ ମଞ୍ଚସ୍ଥଳକୁ ଆସିଗଲେ ॥୩୭॥ କଂସଦ୍ୱାରା ଆହୂତ ନନ୍ଦ ଓ ଗୋପାଳମାନେ କଂସକୁ ବିଭିନ୍ନ ଉପାୟନ ଓ ଭେଟି ପ୍ରଦାନ କରି ଗୋଟିଏ ମଞ୍ଚରେ ନିଜ ନିଜର ଆସନ ଗ୍ରହଣ କଲେ ॥୩୮॥

## ତେୟାଳିଶ ଅଧ୍ୟାୟ

# କୁବଳୟାପୀଡ଼ ବଧ

ହେ ଶତ୍ରୁଦମନ ପରିକ୍ଷିତ, ସ୍ନାନାଦି ଶୌଚ କାର୍ଯ୍ୟ ଶେଷ କରି କୃଷ୍ଣ ଓ ବଳରାମ ମଲ୍ଲମାନଙ୍କର ରଡ଼ି ଓ ଦୁନ୍ଦୁଭି ଧ୍ୱନି ଶୁଣି, ତାହା ଦେଖିବାପାଇଁ ଯାତ୍ରା କଲେ । ଦୁହେଁ ରଙ୍ଗସ୍ଥଳର ଦ୍ୱାରଦେଶରେ ଉପସ୍ଥିତ ହୋଇ ଦେଖିଲେ ଯେ, ସେଠାରେ ମାହୁନ୍ତଦ୍ୱାରା ଚାଳିତ କୁବଳୟାପୀଡ଼ ନାମକ ହସ୍ତୀ ଠିଆହୋଇଛି ॥୧-୨॥ ଶ୍ରୀକୃଷ୍ଣ ସଙ୍ଗେ ସଙ୍ଗେ ମାଲକଚ୍ଛା ଭିଡ଼ି ଓ ନିଜର କୁଞ୍ଚିତ କେଶପାଶକୁ ସଜାଡ଼ି ଦେଇ ମେଘଗମ୍ଭୀର ସ୍ୱରରେ ମାହୁନ୍ତକୁ କହିଲେ, ହେ ହସ୍ତୀପାଳକ ମାହୁନ୍ତ, ଆମ ଦୁଇ ଜଣଙ୍କୁ ଶୀଘ୍ର ବାଟ ଛାଡ଼ିଦିଅ, ନଚେତ୍ ଏହି ହସ୍ତୀ ସହିତ ତୁମକୁ ଯମାଳୟକୁ ପଠାଇଦେବି ॥୩-୪॥ କୃଷ୍ଣଙ୍କର ଏହିପରି କଠୋରବାକ୍ୟ ଶୁଣି ମାହୁନ୍ତ ରାଗିଗଲା ଏବଂ କାଳାନ୍ତକ ଯମସଦୃଶ ସେହି ହାତୀକୁ ମଧ୍ୟ ରଗାଇଦେଲା ଏବଂ ତାକୁ କୃଷ୍ଣଙ୍କ ଆଡ଼କୁ ଚଳାଇଆଣିଲା ॥୫॥ ମତ୍ତଗଜ ଅତି ବେଗରେ କୃଷ୍ଣଙ୍କ ଆଡ଼କୁ ଦଉଡ଼ିଯାଇ ଶୁଣ୍ଡରେ ତାଙ୍କୁ ଉଠାଇନେଲା । କୃଷ୍ଣ ସଙ୍ଗେ ସଙ୍ଗେ ତାର ଶୁଣ୍ଡରୁ ଖସିଯାଇ ମୁଷ୍ଟିଦ୍ୱାରା ତାକୁ ଆଘାତ କଲେ ଏବଂ ସଙ୍ଗେ ସଙ୍ଗେ ତାର ଗୋଡ଼ ଭିତରେ ଲୁଚିଗଲେ । କୁବଳୟାପୀଡ଼ କୃଷ୍ଣଙ୍କୁ ନ ଦେଖି ଅତିଶୟ ରାଗିଗଲା ଏବଂ ଶୁଙ୍ଘି ଶୁଙ୍ଘି କୃଷ୍ଣଙ୍କୁ ପୁଣିଥରେ ଶୁଣ୍ଡରେ ଧରିନେଲା । କୃଷ୍ଣ ବଳପୂର୍ବକ ତାର ଶୁଣ୍ଡରୁ

ପୁଣି ଖସିଗଲେ ।।୬-୭।। ଏହାପରେ କୃଷ୍ଣ ଖେଳିବା ପରି ସେହି ବଳବାନ୍ ହାତୀର ଲାଞ୍ଜକୁ ଧରିନେଇ ତାକୁ ଶହେ ହାତ ପଛକୁ ଘୋଷାଡ଼ି ଆଣିଲେ ଯେପରି ଗରୁଡ଼ ସାପକୁ ଧରି ଘୋସାରିନିଏ ।।୮।। ପିଲା ଯେପରି ଖେଳରେ ବାଛୁରିର ଲାଞ୍ଜ ଧରି ତାକୁ ଚାରିଆଡ଼କୁ ଘୂରାଉଥାଏ, ସେହିପରି ହାତୀର ଲାଙ୍ଗୁଡ଼ ଧରି କୃଷ୍ଣ ତା'ସହ ଖେଳିବାକୁ ଲାଗିଲେ । ହାତୀ ଡାହାଣକୁ ବୁଲି ତାଙ୍କୁ ଧରିବାକୁ ଗଲାବେଳେ ସେ ବାଁ କୁ ଚାଲି ଆସନ୍ତି ଏବଂ ହାତୀ ବାଁକୁ ବୁଲିଲେ ସେ ଡାହାଣକୁ ଚାଲିଆସନ୍ତି ।।୯।। ସେ ହାତୀର ଆଗକୁ ଚାଲିଆସି ତାକୁ ମୁଷ୍ଟିରେ ଆଘାତ କଲେ । ତା'ପରେ ସେ ହାତୀର ଆଗେ ଆଗେ ଏପରି ଦଉଡ଼ିଲେ ଯେପରିକି ହାତୀ ତାଙ୍କୁ ଧରିପକେଇବ । ଏହିପ୍ରକାରେ ଖେଳିବା ପରି ଦଉଡ଼ି ଦଉଡ଼ି ସେ ଭୂଇଁରେ ପଡ଼ିଗଲେ ଓ ସାଙ୍ଗେ ସାଙ୍ଗେ ଉଠି ଠିଆ ହୋଇପଡ଼ିଲେ । କ୍ରୁଦ୍ଧ ହସ୍ତୀ କୃଷ୍ଣ ପଡ଼ିରହିଛନ୍ତି ବୋଲି ଭାବି ତାର ଦୁଇଟି ଦାନ୍ତକୁ ମାଟିରେ ଭୁଷିଦେଲା । ମାତ୍ର ତାର ଏହି ଆକ୍ରମଣ ବ୍ୟର୍ଥ ହେବାରୁ ସେ ଆହୁରି ଜୋରରେ ଚିଡ଼ିଗଲା ଏବଂ ମାହୁନ୍ତର ଚାଳନାରେ ପୁଣି କୃଷ୍ଣଙ୍କଆଡ଼କୁ ଧାଇଁ ଆସିଲା ।।୧୦-୧୨।। ହାତୀ ତାଙ୍କ ଆଡ଼କୁ ମାଡ଼ି ଆସୁଥିବାର ଦେଖି ଭଗବାନ ଶ୍ରୀକୃଷ୍ଣ ତାର ଥୋଡ଼ପାହାରକୁ ହାତରେ ଧରିପକାଇ ତାକୁ ଭୂଇଁରେ କଚାଡ଼ି ଦେଲେ ।।୧୩।। କୃଷ୍ଣ ସିଂହବିକ୍ରମରେ ତଳେ ପଡ଼ିଥିବା ସେହି ହାତୀକୁ ପଦାଘାତ କରି, ତାର ଦାନ୍ତ ଦୁଇଟାକୁ ଉପାଡ଼ି ଆଣିଲେ । ହାତୀ ମରିବା ସଙ୍ଗେ ସଙ୍ଗେ ତାରି ଦାନ୍ତରେ ସେ ମାହୁନ୍ତକୁ ବଧ କଲେ ।।୧୪।। ମଲାହାତୀକୁ ଛାଡ଼ିଦେଇ କୃଷ୍ଣ ତାର ଦାନ୍ତକୁ ହାତରେ ଧରି ରଙ୍ଗସ୍ଥଳରେ ପ୍ରବେଶ କଲେ । ଦେହରେ ହାତୀର ମଦଜଳ ଓ ରକ୍ତ ଲାଗିଛି । ମୁଖପଦ୍ମରେ ବିନ୍ଦୁ ବିନ୍ଦୁ ଝାଳ । ଦୁଇ କାନ୍ଧରେ ହାତୀର ଦାନ୍ତ ଦୁଇଟିକୁ ରଖି କୃଷ୍ଣ ଅତି ସୁନ୍ଦର ଦେଖାଯାଉଥିଲେ ।।୧୫।। ପରିକ୍ଷିତ, ଗଜଦନ୍ତକୁ ଅସ୍ତ୍ରରୂପେ ଧରିଥିବା କୃଷ୍ଣ ଓ ବଳରାମ ଗୋପାଳପିଲାଙ୍କ ଘେରରେ ରଙ୍ଗସ୍ଥଳରେ ପ୍ରବେଶ କଲେ । ମଲ୍ଲମାନଙ୍କପାଇଁ ବଜ୍ରସମାନ, ମନୁଷ୍ୟମାନଙ୍କ ପାଇଁ ଶ୍ରେଷ୍ଠ ପୁରୁଷ,ସ୍ତ୍ରୀମାନଙ୍କପାଇଁ ମୂର୍ତ୍ତିମନ୍ତ କାମଦେବ, ଗୋପବାସୀଙ୍କ ସ୍ୱଜନ, ଦୁଷ୍ଟ ରାଜାଙ୍କ ଦଣ୍ଡଦାତା, ନିଜ ପିତାମାତାଙ୍କ ଆଗରେ ଶିଶୁପୁତ୍ର, ଭୋଜରାଜ କଂସର ଯମ, ଅଜ୍ଞ ଲୋକଙ୍କ ପାଇଁ ବିରାଟ ପୁରୁଷ, ଯୋଗୀମାନଙ୍କର ପରମତତ୍ତ୍ୱ ଏବଂ ବୃଷ୍ଣିବଂଶର ଇଷ୍ଟଦେବ -- ଏହିପରି କୃଷ୍ଣ ବଳରାମଙ୍କ ସହ ରଙ୍ଗଭୂମିରେ ପ୍ରବେଶ କଲାବେଳେ ଭିନ୍ନ ଭିନ୍ନ ରୂପରେ ଦେଖାଯାଉଥିଲେ ।।୧୬-୧୭।। କଂସ ନିଜେ ମହାବୀର ହେଲେ ମଧ୍ୟ କୁବଳୟାପୀଡ଼କୁ ନିହତ କରି କୃଷ୍ଣ ଓ ବଳରାମ ଯେ ଦୁର୍ଜ୍ଜୟ ତାହା ଭାବି ଉଦ୍‌ବିଗ୍ନ ହୋଇପଡ଼ିଲା ।।୧୮।।

ସୁନ୍ଦର ବେଶଧାରୀ ଅଭିନେତାଙ୍କ ପରି ବସ୍ତ୍ର, ଅଳଙ୍କାର, ମାଳା ଆଦିଦ୍ୱାରା ବିଚିତ୍ର ବେଶଭୂଷାରେ ମଣ୍ଡିତ ଏବଂ ରଙ୍ଗଭୂମିକୁ ଆଗତ ମହାବାହୁ କୃଷ୍ଣ ଓ ବଳରାମ ନିଜ ନିଜର ଅଙ୍ଗକାନ୍ତି ଦ୍ୱାରା ଦର୍ଶକମଣ୍ଡଳୀକୁ ଆକୃଷ୍ଟ କରିବାକୁ ଲାଗିଲେ ।।୧୯।। ପରିକ୍ଷିତ, ଏହି ପୁରୁଷରତ୍ନ ଦୁଇ ଜଣଙ୍କୁ ଦେଖି ମଞ୍ଚରେ ବସିଥିବା ନଗରବାସୀ ଓ ଜନପଦବାସୀ ଆନନ୍ଦରେ ଉତ୍‌ଫୁଲ୍ଲ ହୋଇଉଠିଲେ । ଦୁହିଁଙ୍କ ମୁହଁକୁ ଯେତେ ଦେଖିଲେ ମଧ୍ୟ ସେମାନଙ୍କର ଚକ୍ଷୁ ତୃପ୍ତ ହେଉ ନ ଥିଲା ।।୨୦।। ସେମାନେ ସେହି ରୂପକୁ ଆଖିରେ ଯେପରି ପିଇଯାଉଥିଲେ, ଜିଭରେ ସେହିପରି ଚାଟି ପକାଉଥିଲେ, ନାକରେ ଶୁଙ୍ଘି ଲାଗୁଥିଲେ ଓ ବାହୁରେ ଭିଡ଼ି ରଖୁଥିଲେ ।।୨୧।। ସେହି ଦୁହିଁଙ୍କର ରୂପ, ଗୁଣ, ମଧୁରିମା, ନିର୍ଭୀକତା ଓ ଗୋବର୍ଦ୍ଧନଧାରଣ ଆଦି ଅଦ୍ଭୁତ ଲୀଳାମାନ ଶୁଣିଥିବା ଦର୍ଶକମାନେ ସ୍ମୃତି ଚାରଣ କରି ପରସ୍ପର ଏହିପରି କୁହାକୁହି ହେଲେ-- ।।୨୨।। ଏ ଦୁହେଁ ସାକ୍ଷାତ୍ ନାରାୟଣଙ୍କ ଅଂଶରେ ଏଇ ପୁରରେ ପୂର୍ବେ ବସୁଦେବଙ୍କର ଘରେ ଅବତୀର୍ଣ୍ଣ ହୋଇଛନ୍ତି ।।୨୩।। ଏ ହେଉଛନ୍ତି କୃଷ୍ଣ, ଯେ କି ଦେବକୀଙ୍କ ଗର୍ଭରୁ ଜନ୍ମ । ଗୋକୁଳକୁ ଯାଇ ଏତେକାଳ ଧରି ଗୁପ୍ତରେ ନନ୍ଦଙ୍କ ଘରେ ବଢ଼ିଛନ୍ତି ।।୨୪।। ଏହି କୃଷ୍ଣ ରାକ୍ଷସୀ ପୂତନାକୁ ଓ ଦାନବ ତୃଣାବର୍ତ୍ତକୁ ମାରିଛନ୍ତି, ଯାମଳାର୍ଜ୍ଜୁନ ଭଞ୍ଜନ କରିଛନ୍ତି ଏବଂ ଶଙ୍ଖଚୂଡ଼ା, କେଶୀ, ଧେନୁକାସୁର ଓ ଅଘାସୁର ଆଦି ଅନ୍ୟ ଦୁଷ୍ଟ ଅସୁରଙ୍କୁ ବଧ କରିଛନ୍ତି ।।୨୫।। ଗୋରୁ ଓ ଗୋପାଳଙ୍କୁ ଦାବାଗ୍ନିରୁ ଉଦ୍ଧାର କରିଛନ୍ତି । କାଳିୟନାଗକୁ ଦମନ କରି ଇନ୍ଦ୍ରର ଗର୍ବକୁ ଖର୍ବ କରିଛନ୍ତି ।।୨୬।। ଏକ ସପ୍ତାହ ପର୍ଯ୍ୟନ୍ତ ଗୋଟାଏ ହାତରେ ଗୋବର୍ଦ୍ଧନଗିରିକୁ ଧରିଛନ୍ତି ଏବଂ ବର୍ଷା, ଝଡ଼ ଓ

ବଜ୍ରପାତରୁ ଗୋକୁଳକୁ ରକ୍ଷା କରିଛନ୍ତି ।।୨୭।। ଏ ସବୁବେଳେ ପ୍ରଫୁଲ୍ଲ । ତାଙ୍କର ହସ ହସ ମୁହଁ ଓ ଦୃଷ୍ଟିକୁ ଦେଖି ଗୋପୀମାନଙ୍କର ସମସ୍ତ ଦୁଃଖ ସଙ୍ଗେ ସଙ୍ଗେ ଉଭେଇଯାଏ ଏବଂ ସେମାନେ ଆନନ୍ଦରେ ଉଚ୍ଛୁଳି ପଡ଼ନ୍ତି ।।୨୮।। ସମସ୍ତେ କହୁଛନ୍ତି ଯେ, ଶ୍ରୀକୃଷ୍ଣଙ୍କଦ୍ୱାରା ଯଦୁବଂଶ ସୁରକ୍ଷିତ ହୋଇ ବହୁତ ବିଖ୍ୟାତ ହେବ ଏବଂ ଧନ ସମ୍ପଦ ଓ ଯଶ କୀର୍ତ୍ତି ଲାଭ କରିବ ।।୨୯।। ପଦ୍ମପରି ଆଉ ଯାହାଙ୍କ ସୁନ୍ଦର ମୁହଁଟିକୁ ଦେଖୁଛ, ସେ ହେଉଛନ୍ତି କୃଷ୍ଣଙ୍କର ବଡ଼ ଭାଇ ବଳରାମ । ପ୍ରଳମ୍ବ, ଧେନୁକ ବତ୍ସାସୁର ଓ ବକାସୁର ଆଦିଙ୍କୁ ସେ ନିହତ କରିଛନ୍ତି ।।୩୦।। ଲୋକମାନେ ଏହିପରି କୁହାକୁହି ହେଉଥିବାବେଳେ ଓ ଚାରିଆଡ଼େ ତୂର୍ଯ୍ୟନାଦ ହେଉଥିବାବେଳେ ମଲ୍ଲ ଚାଣୂର କୃଷ୍ଣ ଓ ବଳରାମଙ୍କୁ ଆହ୍ୱାନ କରି କହିଲା -- ।।୩୧।। ହେ ନନ୍ଦସୁତ କୃଷ୍ଣ ବଳରାମ, ତୁମ ଦୁହିଁଙ୍କୁ ବୀରମାନେ ମାନନ୍ତି । ମଲ୍ଲଯୁଦ୍ଧରେ ମଧ୍ୟ ତୁମେ କୁଶଳ । ମହାରାଜ କଂସ ତାହା ଶୁଣି ଏଠାରେ ତୁମର କୁସ୍ତି ଦେଖିବାପାଇଁ ତୁମକୁ ଡକାଇଛନ୍ତି ।।୩୨।। ଯେଉଁ ପ୍ରଜାମାନେ କାୟମନୋବାକ୍ୟରେ ରାଜାଙ୍କର ପ୍ରିୟ କାର୍ଯ୍ୟ କରନ୍ତି, ସେମାନଙ୍କର ମଙ୍ଗଳ ହୁଏ । ଯେଉଁମାନେ ଏହାକୁ ଅବଜ୍ଞା କରନ୍ତି, ସେମାନେ ବିପରୀତ ଫଳ ଭୋଗ କରନ୍ତି ।।୩୩।। ସମସ୍ତେ ଜାଣନ୍ତି, ଗାଈବାଛୁରୀ ଚରାଇ ଗୋପାଳମାନେ ବନମଧ୍ୟରେ ବୁଲୁଥା'ନ୍ତି ଓ ଆନନ୍ଦରେ କୁସ୍ତି ଲଢ଼ାଲଢ଼ି ହୋଇ ଖେଳନ୍ତି ।।୩୪।। ତେଣୁ ଆସ, ତୁମେ ଓ ଆମେ ମିଶି ରାଜାଙ୍କର ପ୍ରିୟ କାର୍ଯ୍ୟ କରିବା । ରାଜା ସନ୍ତୁଷ୍ଟ ହେଲେ ସମସ୍ତେ ସନ୍ତୁଷ୍ଟ ହେବେ । କାରଣ ରାଜା ସମସ୍ତଙ୍କୁ ପାଳନ କରନ୍ତି ।।୩୫।।

କୃଷ୍ଣ ମନେ ମନେ ଏହିପରି ମଲ୍ଲ ଯୁଦ୍ଧ କରିବାପାଇଁ ଚାହୁଥିଲେ । ଚାଣୂରର ପ୍ରସ୍ତାବକୁ ଅନୁମୋଦନ କରି ଦେଶ ଓ କାଳ ଅନୁଯାୟୀ ସେ ଏହିପରି ଉତ୍ତର ଦେଲେ -- ।।୩୬।। ଚାଣୂର, ଆମେ ବନଚାରୀ ହେଲେ ମଧ୍ୟ ଭୋଜରାଜ କଂସଙ୍କର ପ୍ରଜା । ଆମେ ନିତି ତାଙ୍କ ପ୍ରିୟ କାର୍ଯ୍ୟ କରୁଁ । ତାହା ଆମ ପ୍ରତି ତାଙ୍କର ପରମ ଅନୁଗ୍ରହ ।।୩୭।। କିନ୍ତୁ ଆମେ ବାଳକ । ତେଣୁ ଆମ ସମାନ ବଳବାନ୍ ବାଳକଙ୍କ ସହିତ ଆମେ କୁସ୍ତି ଲଢ଼ିବୁ । ସମାନ ବାଳକମାନଙ୍କ ମଧ୍ୟରେ କୁସ୍ତି ହେବା ଦରକାର ଯଦ୍ଦ୍ୱାରା ହେ ମଲ୍ଲ, ସଭାସଦମାନଙ୍କୁ ଅଧର୍ମ ସ୍ପର୍ଶ କରିବ ନାହିଁ ।।୩୮।। ଚାଣୂର କହିଲା, ତୁମେ ବାଳକ ବା କିଶୋର ନୁହଁ । ବଳରାମ ମଧ୍ୟ ବଳବାନ୍‌ଙ୍କ ମଧ୍ୟରେ ଶ୍ରେଷ୍ଠ । ହଜାର ହାତୀର ବଳ ଥିବା କୁବଳୟାପୀଡ଼କୁ ତୁମେ ଖେଳିଲାପରି ନିହତ କରିଛ । ତେଣୁ ସେହିପରି ସମାନ ବଳବାନ୍‌ଙ୍କ ସହିତ ତୁମେ ଦୁହେଁ ଲଢ଼ିବା ଉଚିତ । କୃଷ୍ଣ, ତୁମେ ମୋ ସହିତ ଲଢ଼ି ତୁମର ବିକ୍ରମ ଦେଖାଅ ଓ ମୁଷ୍ଟିକ ବଳରାମଙ୍କ ସହିତ ଲଢ଼ନ୍ତୁ ।।୩୯।।

### ଚଉରାଳିଶ ଅଧ୍ୟାୟ

## ଚାଣୂର, ମୁଷ୍ଟିକ ଓ କଂସର ନିଧନ

ଏମାନଙ୍କ ସହିତ ଲଢ଼ିବାପାଇଁ ଭଗବାନ ଶ୍ରୀକୃଷ୍ଣ ପୂର୍ବରୁ ସଙ୍କଳ୍ପ କରି ଆସିଥିଲେ । ସେ ଚାଣୂର ସହିତ ଓ ବଳରାମ ମୁଷ୍ଟିକର ସହିତ ଲଢ଼ିବା ପାଇଁ ବାହାରି ଆସିଲେ । ବିଜୟର ଆଶାରେ ପରସ୍ପର ହାତ ଓ ଗୋଡ଼କୁ ଛନ୍ଦି ନିଜ ଆଡ଼କୁ ଟାଣିବାକୁ ଲାଗିଲେ । ସେମାନେ ପଞ୍ଝାରେ ପଞ୍ଝା, ଆଣ୍ଠୁରେ ଆଣ୍ଠୁ ଓ ଛାତିରେ ଛାତିକୁ ଭିଡ଼ି ପରସ୍ପର ଆଘାତ କରିବାକୁ ଚେଷ୍ଟା କଲେ ।।୧-୩।। ଏକ ଅନ୍ୟକୁ ଜୋରରେ ଘୂରାଇବା, ଦୂରକୁ ଫିଙ୍ଗିଦେବା, ବାହୁଦ୍ୱାରା ବାହୁକୁ ଚିପି ଧରିବା, ତଳେ ପକାଇଦେବା, ଛାଡ଼ିଦେଇ କେତେବେଳେ ଆଗକୁ ମାଡ଼ିଯିବା ବା ପଛକୁ ହଟିଆସିବାଦ୍ୱାରା ଦୁହେଁ ପରସ୍ପରକୁ ପ୍ରତିରୋଧ କଲେ ।।୪।। ପରସ୍ପରକୁ ଜୟ କରିବା ଇଚ୍ଛାରେ ପ୍ରତିପକ୍ଷକୁ ତଳେ ପକାଇଦେଇ ତାର ଆଣ୍ଠୁ ଓ ପାଦକୁ ଏକାଠି ମାଡ଼ିଧରି ବା ତାକୁ ଉଠାଇ ଦୂରକୁ

ଠେଲିଦେଇ, ପୁଣି ଟାଣିଆଣି ନିଜର ହସ୍ତ ଓ ପାଦ ଦ୍ୱାରା ପ୍ରହାର କରିବାକୁ ଲାଗିଲେ ।।୫।। ପରିକ୍ଷିତ, ସେହି ସମୟରେ ସେଠାରେ ଉପସ୍ଥିତ ମହିଳାମାନେ ଦେଖିଲେ ଯେ ବଳବାନ୍ ମଲ୍ଲଙ୍କ ସହିତ ବାଳକ ଦୁହେଁ ଲଢୁଛନ୍ତି । କୃଷ୍ଣ ଓ ବଳରାମଙ୍କପ୍ରତି ତାଙ୍କର ଅନୁକମ୍ପା ଜାତ ହେଲା । ସେମାନେ ନିଜର ଶ୍ରେଣୀ ଅନୁସାରେ ଭିନ୍ନ ଭିନ୍ନ ସ୍ଥାନରେ ବସି ଏହିପରି କୁହାକୁହି ହେଲେ -- ।।୬।। ଦେଖ, କିପରି ଘୋର ଅଧର୍ମ କାର୍ଯ୍ୟ ହେଉଛି । ରାଜାଙ୍କ ଆଗରେ ରାଜାଙ୍କର ସଭାସଦ୍‌ମାନେ ବାଳକଙ୍କ ସହିତ ମଲ୍ଲଯୋଦ୍ଧାଙ୍କୁ ଲଢ଼ାଉଛନ୍ତି ।।୭।। ମଲ୍ଲମାନଙ୍କର ଶରୀର ହେଉଛି ବଜ୍ରପରି କଠିନ ଏବଂ ସେମାନେ ପର୍ବତ ପରି ବିଶାଳକାୟ । ଅଥଚ କୃଷ୍ଣ ଓ ବଳରାମ ଏ ଦୁଇ ଜଣ ସୁକୁମାର କିଶୋର । ଏପର୍ଯ୍ୟନ୍ତ ତାଙ୍କର ଯୁବାବସ୍ଥା ଆସି ନାହିଁ ।।୮।। ନିଶ୍ଚୟ ଏହି ସଭାର ଧର୍ମ ଲୋପ ପାଇଗଲାଣି । ଯେଉଁଠାରେ ଅଧର୍ମ, ସେଠାରେ କେବେହେଲେ ରହିବା ଉଚିତ ନୁହେଁ । ଏଭଳି ସଭାସଦ୍‌ମାନଙ୍କର ଦୋଷକୁ ଜାଣି ବୁଦ୍ଧିମାନ୍ ବ୍ୟକ୍ତିଙ୍କର ଏପରି ସଭାରେ ପ୍ରବେଶ କରିବା ଉଚିତ ନୁହେଁ । କାରଣ ସଭାକୁ ଯାଇ ନୀରବ ରହିବା, ଧର୍ମବିରୁଦ୍ଧ କଥା କହିବା ବା କିଛି ଜାଣି ନାହିଁ ବୋଲି କହିବାଦ୍ୱାରା ସଭାକୁ ଯାଇଥିବା ବ୍ୟକ୍ତି ସେହି ଦୋଷରେ ଭାଗୀ ହେବ ।।୯-୧୦।। ଚାଣୂରର ଚାରିପଟେ ବୁଲୁଥିବା ଏହି କୃଷ୍ଣଙ୍କର ମୁଖପଦ୍ମଟିକୁ ଦେଖ । ପଦ୍ମକୋଷରେ ଜଳବିନ୍ଦୁ ପରି ତାଙ୍କ ମୁହଁରେ କିପରି ବିନ୍ଦୁ ବିନ୍ଦୁ ଶ୍ରମଝାଳ ଦେଖାଯାଉଛି ।।୧୧।। ତୁମେ କ'ଣ ଦେଖୁ ନାହଁ ବଳରାମଙ୍କର ମୁହଁକୁ ? ମୁଷ୍ଟିକପ୍ରତି ରାଗରେ ତାଙ୍କ ଆଖି କିପରି ଲାଲ ହୋଇଯାଇଛି ଓ ମୁହଁରେ ବିଦ୍ରୂପ ଭରି ରହିଛି ।।୧୨।।

ଆହା ! କେଡ଼େ ପବିତ୍ର ସେ ବ୍ରଜଭୂମି, ଯେଉଁଠାରେ ଗୂଢ଼-ମନୁଷ୍ୟ ଦେହରେ ସନାତନ ପୁରୁଷ ଶ୍ରୀକୃଷ୍ଣ ବଳରାମଙ୍କ ସହିତ ବେଣୁବାଦନ କରି ଖେଳି ଖେଳି ଗୋରୁ ଚରାଉଥିଲେ । ଶିବ ଏବଂ ଲକ୍ଷ୍ମୀ ଯାହାଙ୍କର ପାଦପୂଜା କରନ୍ତି, ସେ ବିଚିତ୍ର ବନମାଳା ଧାରଣ କରି ସେଠାରେ ବିଚରଣ କରୁଥିଲେ ।।୧୩।। ଗୋପୀମାନେ କି ତପସ୍ୟା କରିଥିଲେ ଯେ ନେତ୍ରଦ୍ୱାରା ନିରନ୍ତର ସେହି ଅପରୂପ ରୂପଲାବଣ୍ୟକୁ ପାନ କରୁଥିଲେ । ଏହି ରୂପ ଏକାନ୍ତ ଦୁର୍ଲଭ ଓ ନିତ୍ୟନୂତନ । ସର୍ବଦା ଏହା ଯଶ ଏବଂ ଶ୍ରୀର ଆଶ୍ରୟସ୍ଥଳ ।।୧୪।। ଏହି ବ୍ରଜଗୋପୀମାନେ ଶ୍ରୀକୃଷ୍ଣଙ୍କ ପ୍ରତି ତାଙ୍କ ମନପ୍ରାଣ ଢାଳି ଦେଇଥା'ନ୍ତି । ସେମାନେ ତାଙ୍କ କଥା ଏତେ ଚିନ୍ତା କରୁଥା'ନ୍ତି ଯେ ଗାଈ ଦୁହିଁବା ବେଳେ, ଧାନ କୁଟିବାବେଳେ, ଦହି ମନ୍ଥିବା, ଘର ଲିପିବା, ଶିଶୁଙ୍କୁ ଦୋଳି ଖେଳାଇବା ଓ କାନ୍ଦୁଥିବା ପିଲାଙ୍କୁ ସାନ୍ତ୍ୱନା ଦେବା, ଘର ଓଳାଇବା, ପାଣି ଛିଞ୍ଚିବା ଆଦି ସବୁ କାମ କଲାବେଳେ ସାଶ୍ରୁମୁଖରେ କୃଷ୍ଣଙ୍କର ଲୀଳାଗାନ କରୁଥାନ୍ତି । ସେମାନେ ପ୍ରକୃତରେ ଧନ୍ୟ ।।୧୫।। ଏହି ବ୍ରଜନାରୀମାନେ ବହୁ ପୁଣ୍ୟ କରିଛନ୍ତି । କାରଣ ସକାଳୁ କୃଷ୍ଣ ଯେତେବେଳେ ଗାଈ ଚରାଇବାପାଇଁ ବ୍ରଜରୁ ବନକୁ ଚାଲିଯାଆନ୍ତି ଏବଂ ସନ୍ଧ୍ୟାବେଳେ ବ୍ରଜକୁ ଫେରିଆସନ୍ତି ସେତେବେଳେ ତାଙ୍କର ବଂଶୀଧ୍ୱନି ଶୁଣି ଘରୁ ବାହାରିଆସି ତାଙ୍କର ସେହି ସ୍ନେହପୂର୍ଣ୍ଣ ହସ ହସ ମୁହଁକୁ ଦେଖି ସେମାନେ ଖୁସି ହେଉଥା'ନ୍ତି ।।୧୬।।

ହେ ଭରତଶ୍ରେଷ୍ଠ, ସ୍ତ୍ରୀମାନେ ଏପରି କଥାଭାଷା ହେଉଥିବାବେଳେ ଯୋଗେଶ୍ୱର ଭଗବାନ ଶ୍ରୀକୃଷ୍ଣ ଶତ୍ରୁକୁ ସଂହାର କରିବାପାଇଁ ସ୍ଥିର କଲେ ।।୧୭।। ବସୁଦେବ ଓ ଦେବକୀ ସେଠାରେ ରହି ସ୍ତ୍ରୀ ଲୋକଙ୍କର ଏହି ଭୟପୂର୍ଣ୍ଣ କଥା ସବୁ ଶୁଣି ଶୋକରେ ବିହ୍ୱଳ ହୋଇପଡ଼ିଲେ । ସେ ଦୁହେଁ ନିଜ ପୁତ୍ର ଦୁହିଁଙ୍କର ବଳବୀର୍ଯ୍ୟ ଜାଣି ନ ଥିଲେ ।।୧୮।। କୃଷ୍ଣ ଓ ଚାଣୂର ମଲ୍ଲଯୁଦ୍ଧର ବିଭିନ୍ନ କୌଶଳ ଅବଲମ୍ବନ କରି ଲଢ଼ିବାକୁ ଲାଗିଲେ । ବଳରାମ ଓ ମୁଷ୍ଟିକ ମଧ୍ୟ ପରସ୍ପର ସେହିପରି ଲଢୁଥିଲେ ।।୧୯।। ଏହି ସମୟରେ ଭଗବାନଙ୍କ ଅଙ୍ଗର ପ୍ରହାର ବଜ୍ରପରି କଠୋର ହେବାକୁ ଲାଗିଲା । ଚାଣୂରର ଦେହର ହାଡ଼ସବୁ କଡ଼ମଡ଼ ଡାକିଲା ଏବଂ ସେ ବହୁ କଷ୍ଟ ଭୋଗିବାକୁ ଲାଗିଲା ।।୨୦।। ଛଞ୍ଚାଣପକ୍ଷୀପରି ସେ ବେଗରେ ଉଠିପଡ଼ିଲା ଏବଂ କ୍ରୋଧରେ ଦୁଇ ହାତକୁ ମୁଠା କରି କୃଷ୍ଣଙ୍କ ବକ୍ଷକୁ ଆଘାତ କଲା । ହାତୀକୁ ଫୁଲମାଳାରେ ଆଘାତ କଲେ ତାକୁ ଯେପରି କିଛି ଲାଗେ ନାହିଁ, ଚାଣୂରର ପ୍ରହାର କୃଷ୍ଣଙ୍କୁ କିଛି ଲାଗିଲା ନାହିଁ । ସେ ଆଦୌ ବିଚଳିତ ହେଲେ ନାହିଁ । ସେ ଅତି ବେଗରେ ଚାଣୂରର ଦୁଇ ବାହୁକୁ ଧରି ନେଇ ଭିଡ଼ି ଆଣିଲେ ଓ ବୁଲାଇ ବୁଲାଇ ତାକୁ ଭୂଇଁରେ କଚାଡ଼ିଦେଲେ । ତା'ର ପ୍ରାଣ ଛାଡ଼ିଗଲା ।

ତା' ଦେହର ଅଳଙ୍କାର, ବେଶବାସ ଓ ମାଳମାନ ବିକ୍ଷିପ୍ତ ହୋଇପଡ଼ିଲା ଏବଂ ଏହି ଅବସ୍ଥାରେ ଏକ ବିଶାଳ ପତାକା ତଳେ ପଡ଼ିଯିବା ପରି ସେ ପଡ଼ିରହିଲା ।।୨୧-୨୩।। ଏହିପରି ମୁଷ୍ଟିକ ମଧ୍ୟ ବଳରାମଙ୍କୁ ପ୍ରଥମେ ମୁଷ୍ଟିରେ ଆଘାତ କରିଥିଲା । କିନ୍ତୁ ବଳୀୟାନ୍ ବଳରାମ ଏପରି ଜୋର୍‌ରେ ତାକୁ ଏକ ଚାପୁଡ଼ା ଦେଲେ ଯେ ସେ ଥରିବାକୁ ଲାଗିଲା ଏବଂ ରକ୍ତବାନ୍ତି କରି ଝଡ଼ରେ ଉପୁଡ଼ିପଡ଼ିବା ଗଛ ପରି ପ୍ରାଣଶୂନ୍ୟ ହୋଇ ତଳେ ପଡ଼ିଗଲା ।।୨୪-୨୫।। ତା'ପରେ କୂଟ ନାମକ ଏକ ମଲ୍ଲ ବଳରାମଙ୍କ ସହିତ ଯୁଦ୍ଧ କରିବାକୁ ଆସିଲା । ବଳରାମ ମୁଷ୍ଟିପ୍ରହାରରେ ନିପୁଣ ଥିଲେ । ସେ ଅବଜ୍ଞାର ସହିତ ନିଜର ବାମ ହସ୍ତ ମୁଷ୍ଟିରେ ତାକୁ ପ୍ରହାର କରି ଅବଲୀଳାକ୍ରମେ ତାକୁ ନିହତ କଲେ ।।୨୬।। ଏହାପରେ ଶଳ ଓ ତୋଶଳକ ନାମକ ଦୁଇ ଜଣ ମଲ୍ଲ କୃଷ୍ଣଙ୍କ ସହିତ ଲଢ଼ିବାକୁ ଆସିବାରୁ କୃଷ୍ଣ ପଦାଘାତରେ ଶଳର ମୁଣ୍ଡକୁ ତାର ଗଣ୍ଡିରୁ ଅଲଗା କରିଦେଲେ ଏବଂ ତୋଶଳକକୁ ଚିରି ଦୁଇ ଖଣ୍ଡ କରିଦେଲେ ।।୨୭।। ଚାଣୂର, ମୁଷ୍ଟିକ, କୂଟ, ଶଳ ଓ ତୋଶଳକ ନିହତ ହେବାରୁ ଅନ୍ୟ ମଲ୍ଲମାନେ ପ୍ରାଣବିକଳରେ ଯିଏ ଯୁଆଡ଼େ ପଳାଇଲେ ।।୨୮।। ଏହାପରେ ତୂର୍ଯ୍ୟଧ୍ୱନି ମଧ୍ୟରେ ସାଙ୍ଗ ଗୋପାଳପିଲାଙ୍କୁ ଟାଣି ଆଣି ଆଲିଙ୍ଗନପୂର୍ବକ କୃଷ୍ଣ ଓ ବଳରାମ ନୃତ୍ୟ କରିବାକୁ ଲାଗିଲେ ଏବଂ ତାଙ୍କ ନୂପୁରର ଧ୍ୱନି ଶୁଣିବାକୁ ମିଳିଲା ।।୨୯।।

ରାମକୃଷ୍ଣଙ୍କର ଏହି ଅଦ୍ଭୁତ କାର୍ଯ୍ୟକୁ ଦେଖି ମୁଖ୍ୟ ମୁଖ୍ୟ ବ୍ରାହ୍ମଣ ଓ ସାଧୁମାନେ ଧନ୍ୟ ଧନ୍ୟ କରିବାକୁ ଲାଗିଲେ । କେବଳ କଂସ ହିଁ ଏକୁଟିଆ ହୋଇଯାଇଥିଲା ।।୩୦।। ମଲ୍ଲବୀରମାନେ ନିହତ ହେବାରୁ ଏବଂ ଅନ୍ୟ ମଲ୍ଲମାନେ ପଳେଇଯିବାରୁ ଭୋଜରାଜ କଂସ ତୂରୀ ବାଦ୍ୟସବୁ ବନ୍ଦ କରିଦେଲା ଏବଂ ନିଜର ଅନୁଚରମାନଙ୍କୁ କହିଲା, ବସୁଦେବର ଏହି ଦୁର୍ବୃତ୍ତ ପୁତ୍ର ଦୁହିଁଙ୍କୁ ଶୀଘ୍ର ଏଠାରୁ ହଟାଇଦିଅ । ଗୋପାଳମାନଙ୍କର ଧନ ହରଣ କର ଏବଂ ଦୁର୍ମତି ନନ୍ଦକୁ ବାନ୍ଧି ପକାଅ ।।୩୧-୩୨।। ଦୁରାତ୍ମା ଦୁଷ୍ଟ ବସୁଦେବକୁ ଶୀଘ୍ର ବଧ କର ଏବଂ ଶତ୍ରୁର ପକ୍ଷପାତୀ ମୋର ପିତା ଉଗ୍ରସେନକୁ ଓ ତାଙ୍କର ଅନୁଚରମାନଙ୍କୁ ମଧ୍ୟ ଶେଷ କରିଦିଅ ।।୩୩।। କଂସ ଏହିପରି ବଢ଼ି ବଢ଼ି କଥା କହୁଥିବାର ଶୁଣି ଅବିନଶ୍ୱର ଈଶ୍ୱର କୃଷ୍ଣ କ୍ରୁଦ୍ଧ ହୋଇ ଶୀଘ୍ର କଂସର ମଞ୍ଚଉପରକୁ କୁଦି ପଡ଼ିଲେ ଏବଂ ସହଜରେ ମଞ୍ଚଉପରେ ଚଢ଼ିଗଲେ ।।୩୪।। ନିଜର ମୃତ୍ୟୁରୂପ କୃଷ୍ଣଙ୍କୁ ମଞ୍ଚ ଉପରେ ଚଢ଼ିଯିବାର ଦେଖି କଂସ ଧୈର୍ଯ୍ୟ ନ ହରାଇ ଆସନରୁ ଉଠି ଠିଆ ହୋଇଗଲା ଏବଂ ଢାଲ ଓ ତରବାରିକୁ ଉଠାଇ ଧରିଲା ।।୩୫।। କଂସ ଖଣ୍ଡା ବୁଲାଇ କୃଷ୍ଣଙ୍କୁ ମାରିବାପାଇଁ ସୁଯୋଗ ଉଣ୍ଡିଲା ଏବଂ ଆକାଶରେ ଶ୍ୟେନପକ୍ଷୀ ଯେପରି ପଇଁତରା ମାରେ ସେ ସେହିପରି କେତେବେଳେ କୃଷ୍ଣଙ୍କ ବାଁ ପାଖକୁ ତ କେତେବେଳେ ଡାହାଣ ପାଖକୁ ଖେଦିବାକୁ ଲାଗିଲା । କିନ୍ତୁ ଗରୁଡ଼ ଯେପରି ସାପକୁ ଧରି ପକାଏ, ସେହିପରି ଅସହ୍ୟ ତେଜରେ କୃଷ୍ଣ କଂସକୁ ଧରିନେଲେ ।।୩୬।। କଂସର ମୁଣ୍ଡରୁ କିରୀଟ ଖସିପଡ଼ିଲା । ବିଶ୍ୱର ଆଶ୍ରୟ ପଦ୍ମନାଭ ଶ୍ରୀକୃଷ୍ଣ କଂସର କେଶ ଆକର୍ଷଣପୂର୍ବକ ମଞ୍ଚ ଉପରୁ ତାକୁ ତଳକୁ ନିକ୍ଷେପ କଲେ ଏବଂ ତା'ଉପରେ କୁଦି ପଡ଼ିଲେ ।।୩୭।। ମଞ୍ଚାରୁ ପଡ଼ି କଂସର ମୃତ୍ୟୁ ହେଲା । ସିଂହ ଯେପରି ମୃତହସ୍ତୀକୁ ଘୋଷାଡ଼ିନିଏ, ସେହିପରି ସମସ୍ତେ ଦେଖୁଦେଖୁ ଶ୍ରୀକୃଷ୍ଣ କଂସର ମୃତ ଦେହକୁ ଘୋଷାରିନେଲେ । ପରିକ୍ଷିତ, ସମସ୍ତେ ଉଚ୍ଚ ସ୍ୱରରେ ହାହାକାର କରିବାକୁ ଲାଗିଲେ ।।୩୮।। କଂସ କୃଷ୍ଣଙ୍କ ଚିନ୍ତାରେ ଉଦ୍‌ବିଗ୍ନ ହୋଇ ରହୁଥିଲା । ଖାଇବା, ପିଇବା, ବୁଲିବା, ଶୋଇବା ଓ ଏପରିକି ନିଃଶ୍ୱାସ ନେବାବେଳେ ମଧ୍ୟ ତାକୁ ଚକ୍ରଧାରୀ କୃଷ୍ଣଙ୍କର ରୂପ ଦେଖାଯାଉଥିଲା । ଏବେ ସେହି ଦୁର୍ଲଭ ରୂପକୁ ଲାଭ କରି କଂସର ସାରୂପ୍ୟମୁକ୍ତି ହୋଇଗଲା ।।୩୯।। ଏହାପରେ କଙ୍କ, ନ୍ୟଗ୍ରୋଧ ଆଦି କଂସର ଆଠ ଭାଇ ବଡ଼ଭାଇର ଋଣ ପରିଶୋଧ କରିବା ପାଇଁ କ୍ରୋଧରେ କୃଷ୍ଣଙ୍କଆଡ଼କୁ ଧାଇଁ ଆସିଲେ । କିନ୍ତୁ ରୋହିଣୀନନ୍ଦନ ବଳରାମ ସିଂହ ପଶୁମାନଙ୍କୁ ବଧ କରିବାପରି ଏକ ପରିଘ ଉଠାଇ ବେଗରେ ଆସୁଥିବା କଂସର ସେହି ଭାଇମାନଙ୍କୁ ସଙ୍ଗେ ସଙ୍ଗେ ନିପାତ କଲେ ।।୪୦-୪୧।।

ଆକାଶରେ ଦୁନ୍ଦୁଭିସବୁ ବାଜି ଉଠିଲା । ପରମେଶ୍ୱରଙ୍କର ବିଭୂତିସ୍ୱରୂପ ବ୍ରହ୍ମା ଶଙ୍କର ଆଦି ଦେବତାମାନେ ଆନନ୍ଦିତ ହୋଇ କୃଷ୍ଣଙ୍କ ଉପରେ ପୁଷ୍ପବୃଷ୍ଟି କରି ସ୍ତବ କରିବାକୁ ଲାଗିଲେ ଓ ଅପ୍‌ସରାମାନେ ନୃତ୍ୟ କଲେ ।।୪୨।। ମହାରାଜ ପରିକ୍ଷିତ,

ମରିପଡ଼ିଥିବା କଂସର ଓ ଅନ୍ୟାନ୍ୟ ଅସୁରମାନଙ୍କର ସ୍ତ୍ରୀମାନେ ସ୍ୱାମୀଙ୍କର ମରଣରେ ଶୋକାର୍ତ୍ତା ହୋଇ ମସ୍ତକରେ କରାଘାତ କରି କାନ୍ଦି କାନ୍ଦି ସେଠାରେ ଆସି ପହଞ୍ଚିଲେ । ସେହି ଶୋକାର୍ତ୍ତା ନାରୀମାନେ ବୀରଶଯ୍ୟାରେ ଶୋଇଥିବା ସ୍ୱାମୀମାନଙ୍କୁ ଆଲିଙ୍ଗନ କରି ବାରମ୍ବାର ଅଶ୍ରୁମୋଚନପୂର୍ବକ ଉଚ୍ଚ ସ୍ୱରରେ ବିଳାପ କରିବାକୁ ଲାଗିଲେ -- ହେ ନାଥ, ହେ ପ୍ରିୟ, ହେ ଧର୍ମଜ୍ଞ, ହେ ଦୟାଳୁ, ତୁମକୁ ହରାଇ ଗୃହ ଓ ସନ୍ତାନଙ୍କ ସହିତ ଆମେସବୁ ମଧ୍ୟ ଭାସିଗଲୁ ।।୪୩-୪୫।। ପୁରୁଷଶ୍ରେଷ୍ଠ, ତୁମ ବିରହରେ ବୈଧବ୍ୟଦଶା ଭୋଗ କରୁଥିବା ଏହି ମଧୁପୁରୀ ଆଜି ସମସ୍ତ ଉତ୍ସବ ଓ ମଙ୍ଗଳରୁ ବଞ୍ଚିତ ହୋଇଚି । ତୁମେ ନିରପରାଧ ବ୍ୟକ୍ତିମାନଙ୍କର ଯେଉଁ ଅନିଷ୍ଟ କରିଛ, ସେଥିପାଇଁ ତୁମର ଏହି ଦଶା ହୋଇଚି । ପ୍ରାଣୀମାନଙ୍କର ଅନିଷ୍ଟ କଲେ କେବେ କାହାର ମଙ୍ଗଳ ହୁଏ ନାହିଁ । ଏହି କୃଷ୍ଣ ହେଉଛନ୍ତି ସମସ୍ତ ପ୍ରାଣୀଙ୍କ ଉତ୍ପତ୍ତି ଓ ଲୟର କାରଣ । ସେ ସମସ୍ତଙ୍କର ରକ୍ଷକ । ତାଙ୍କୁ ଅବଜ୍ଞା କରି କେହି କେବେ ସୁଖରେ ରହିପାରିବ ନାହିଁ ।।୪୬-୪୮।।

ଶ୍ରୀ ଶୁକଦେବ କହିଲେ, ପରିକ୍ଷିତ, ସମସ୍ତ ଲୋକଙ୍କର ପାଳକ ଭଗବାନ ଶ୍ରୀକୃଷ୍ଣ ରାଜପତ୍ନୀମାନଙ୍କୁ ସାନ୍ତ୍ୱନା ଦେଇ ମୃତ ବ୍ୟକ୍ତିମାନଙ୍କର ବିଧିପୂର୍ବକ ଦାହାଦି ଅନ୍ତ୍ୟେଷ୍ଟି କ୍ରିୟା କରାଇଲେ । ମାତା-ପିତାଙ୍କୁ ବନ୍ଧନରୁ ମୁକ୍ତ କରି କୃଷ୍ଣ ଓ ବଳରାମ ମସ୍ତକରେ ତାଙ୍କ ପାଦ ସ୍ପର୍ଶକରି ବନ୍ଦନା କଲେ । ଦେବକୀ ଓ ବସୁଦେବ ବନ୍ଦନାକାରୀ ପୁତ୍ର ଦୁହିଁଙ୍କୁ ଜଗତର ଈଶ୍ୱର ବୋଲି ଜାଣି ଶଙ୍କିତ ହେଲେ । ତେଣୁ ଆଲିଙ୍ଗନ କରିପାରିଲେ ନାହିଁ ।।୪୯-୫୧।।

## ପଞ୍ଚଚାଳିଶ ଅଧ୍ୟାୟ

# ଗୁରୁକୁଳରେ କୃଷ୍ଣ ଓ ବଳରାମ

ଶ୍ରୀ ଶୁକଦେବ କହିଲେ, ପରିକ୍ଷିତ, ପୁରୁଷୋତ୍ତମ ଶ୍ରୀକୃଷ୍ଣ ପିତାମାତାଙ୍କଠାରେ ତାଙ୍କ ପ୍ରତି ପୁତ୍ରସ୍ନେହ ପରିବର୍ତ୍ତେ ଈଶ୍ୱରଭକ୍ତି ଦେଖି ଭାବିଲେ, ଏହାହେବା ଉଚିତ ନୁହେଁ । ସେ ସଙ୍ଗେ ସଙ୍ଗେ ନିଜର ମୋହିନୀ ମାୟା ବିସ୍ତାର କଲେ ।।୧।। ଯାଦବଶ୍ରେଷ୍ଠ ଶ୍ରୀକୃଷ୍ଣ ବଳରାମଙ୍କ ସହିତ ଦେବକୀ ଓ ବସୁଦେବଙ୍କୁ 'ହେ ମା' 'ହେ ବାପା' ବୋଲି ଆଦରରେ ସମ୍ବୋଧନ କରି ଖୁସି କରାଇଲେ ।।୨।। କୃଷ୍ଣ କହିଲେ, ବାପା ! ଆମେ ଦୁହେଁ ଆପଣଙ୍କର ପୁଅ । ଆମପାଇଁ ଆପଣ ଦୁହେଁ ସବୁବେଳେ ବ୍ୟସ୍ତ ହେଉଥିଲେ । ପୁତ୍ରର ବାଲ୍ୟ, ପୌଗଣ୍ଡ ଓ କୈଶୋର ଅବସ୍ଥାରେ ବାପା, ମା'ଯେଉଁ ଆନନ୍ଦ ପା'ନ୍ତି, ଆପଣଙ୍କୁ ତାହା ମିଳିଲା ନାହିଁ ।।୩।। ଦୈବଦ୍ୱାରା ବଞ୍ଚିତ ହୋଇ ହତଭାଗ୍ୟ ଆମେ ଦୁହେଁ ଆପଣଙ୍କ ପାଖରେ ରହିପାରିଲୁ ନାହିଁ । ବାପା ମା'ଙ୍କ ସାଙ୍ଗରେ ରହିଲେ ପିଲାବେଳେ ଯେଉଁ ଲାଳନପାଳନର ସୁଖ ମିଳେ, ଆମକୁ ତାହା ମଧ୍ୟ ମିଳିଲା ନାହିଁ ।।୪।। ଏହି ମନୁଷ୍ୟଦେହରେ ଧର୍ମ, ଅର୍ଥ, କାମ ଓ ମୋକ୍ଷ ସମ୍ଭବ ହୋଇଥାଏ । ସେ ଦେହଟିକୁ କିନ୍ତୁ ପିତା ମାତା ଜନ୍ମ ଦେଇଥାନ୍ତି ଓ ପାଳନ କରିଥା'ନ୍ତି । କେହି ବ୍ୟକ୍ତି ଶହେ ବର୍ଷ ବଂଚି ପିତା-ମାତାଙ୍କର ସେବା କଲେ ମଧ୍ୟ ତାଙ୍କର ଋଣ ପରିଶୋଧ କରିପାରିବନାହିଁ ।।୫।।

ଯେଉଁ ପୁତ୍ର ସମର୍ଥ ହୋଇ ଶରୀର ଓ ଧନ ଦ୍ୱାରା ବାପା-ମା'ଙ୍କର ସେବା କରେ ନାହିଁ, ମରିବା ପରେ ଯମଦୂତମାନେ ତାକୁ ତା ନିଜର ମାଂସକୁ ହିଁ ଖୁଆଇଥାଆନ୍ତି ।।୬।। ଯେଉଁ ପୁତ୍ର ସମର୍ଥ ହୋଇ ନିଜର ବୃଦ୍ଧ ପିତା-ମାତା, ସତୀ ସ୍ତ୍ରୀ, ଶିଶୁ ପୁତ୍ର, ଗୁରୁ, ବ୍ରାହ୍ମଣ ଓ ଶରଣାଗତ ବ୍ୟକ୍ତିଙ୍କର ପାଳନପୋଷଣ କରେନା, ସେ ବଞ୍ଚି ଥିଲେ ମଧ୍ୟ ମରିବା ସଙ୍ଗେ ସମାନ ।।୭।। କଂସଭୟରେ ଆମେ ଦୁହେଁ ଏତେ ଦିନ ଧରି ଉଦ୍‌ବିଗ୍ନ ହୋଇ ରହିଥିବାରୁ ଆପଣଙ୍କର ସେବା କରିପାରି ନାହୁଁ । ତେଣୁ ଏତେ

ଗୁଡ଼ିଏ ଦିନ ଆମର ବୃଥା ଚାଲିଗଲା ।।୮।। 'ହେ ବାପା, ହେ ମା', ଆମ ଦୁହିଁଙ୍କୁ କ୍ଷମା କରନ୍ତୁ । ଦୁଷ୍ଟ କଂସ ଆପଣଙ୍କୁ କ'ଣ କଷ୍ଟ ନ ଦେଇଛି ? କିନ୍ତୁ ଆମେ ପରାଧୀନ ଥିବାରୁ ଆପଣଙ୍କର କିଛି ସେବା ପରିପାରିଲୁ ନାହିଁ ।।୯।।

ଶ୍ରୀ ଶୁକଦେବ କହିଲେ, ଏହିପରି ମାୟା-ମନୁଷ୍ୟରୂପୀ ବିଶ୍ୱାତ୍ମା ଶ୍ରୀହରିଙ୍କର କଥାରେ ଦେବକୀ ଓ ବସୁଦେବ ମୋହିତ ହୋଇଗଲେ ଏବଂ କୃଷ୍ଣ ଓ ବଳରାମଙ୍କୁ କୋଳକୁ ଉଠାଇଆଣି ଆନନ୍ଦରେ ଆଲିଙ୍ଗନ କରିବାକୁ ଲାଗିଲେ ।।୧୦।।

ପରିକ୍ଷିତ, ପୁତ୍ରସ୍ନେହରେ ମୋହିତ ବସୁଦେବ ଓ ଦେବକୀଙ୍କ ଚକ୍ଷୁରୁ ଅଶ୍ରୁଧାରା ବୋହିବାକୁ ଲାଗିଲା । ସେଥିରେ ପୁତ୍ର ଦୁହେଁ ଓଦା ହୋଇଗଲେ । ପିତାମାତାଙ୍କର କଣ୍ଠ ବାଷ୍ପରୁଦ୍ଧ ହେବାରୁ କିଛି କହିପାରିଲେ ନାହିଁ ।।୧୧।। ପରିକ୍ଷିତ, ପିତାମାତାଙ୍କୁ ଆଶ୍ୱାସନା ଦେଇ ଦେବକୀନନ୍ଦନ ଶ୍ରୀକୃଷ୍ଣ ମାତାମହ ଉଗ୍ରସେନଙ୍କୁ ଯଦୁକୁଳର ରାଜା କରାଇଲେ ।।୧୨।। ଉଗ୍ରସେନଙ୍କୁ ରାଜା କରାଇ କୃଷ୍ଣ କହିଲେ, ମହାରାଜ, ଆମେସବୁ ଆପଣଙ୍କର ପ୍ରଜା, ଆପଣ ଆଦେଶ କରନ୍ତୁ; ଯଯାତିଙ୍କ ଅଭିଶାପରୁ ଯାଦବମାନେ ରାଜସିଂହାସନରେ ବସି ପାରୁ ନ ଥିଲେ ।(ବର୍ତ୍ତମାନ ମୋର ଆଦେଶରେ ସେ ଦୋଷ ଦୂର ହୋଇଛି) ।।୧୩।। ମୁଁ ଆପଣଙ୍କର ସେବକ । ଅନ୍ୟ ରାଜାମାନଙ୍କ କଥା ଛାଡ଼, ମୁଁ ଆପଣଙ୍କର ସେବା କରୁଥିବାବେଳେ ଦେବତାମାନେ ମୁଣ୍ଡ ନୁଆଇଁ ଆପଣଙ୍କୁ ପୂଜାସାମଗ୍ରୀ ଭେଟିଦେବେ ।।୧୪।। ପରିକ୍ଷିତ, ଯଦୁ, ବୃଷ୍ଣି, ଅନ୍ଧକ, ମଧୁ, ଦଶାର୍ହ, କୁକୁର ଆଦି ଶ୍ରୀକୃଷ୍ଣଙ୍କ ଜ୍ଞାତି ଓ ବନ୍ଧୁମାନେ କଂସଭୟରେ ରାଜ୍ୟ ଛାଡ଼ି ନାନା ଆଡ଼େ ରହୁଥିଲେ । ବିଶ୍ୱକର୍ତ୍ତା ଶ୍ରୀକୃଷ୍ଣ ସେମାନଙ୍କୁ ଡକାଇ ଆଣି ଆଶ୍ୱସ୍ତ କଲେ ଓ ଆଦରପୂର୍ବକ ସେମାନଙ୍କୁ ବହୁ ଧନସମ୍ପତ୍ତି ଦେଇ ନିଜ ନିଜ ଗୃହରେ ରଖାଇଲେ ।।୧୫-୧୬।। କୃଷ୍ଣ ଓ ବଳରାମଙ୍କ ବାହୁବଳରେ ରକ୍ଷିତ ଯାଦବମାନଙ୍କର ମନୋରଥ ପୂର୍ଣ୍ଣ ହେଲା । ସେମାନଙ୍କର କୌଣସି ଭୟ ବା ଉଦ୍‌ବେଗ ରହିଲା ନାହିଁ । ସେମାନେ ନିଜ ନିଜ ଗୃହରେ ଆନନ୍ଦରେ ରହିଲେ ।।୧୭।। ସଦା ପ୍ରଫୁଲ୍ଲ, ହାସ୍ୟ ଓ କଟାକ୍ଷ ଯୁକ୍ତ ଶ୍ରୀକୃଷ୍ଣଙ୍କର ସୁନ୍ଦର ମୁଖମଣ୍ଡଳକୁ ଅହରହ ଦର୍ଶନ କରି ଯାଦବମାନେ ସର୍ବଦା ଆନନ୍ଦ ଲାଭ କରୁଥିଲେ । ମଥୁରାର ବୃଦ୍ଧମାନେ ନିଜର ନେତ୍ରରୂପୀ ଭ୍ରମରଦ୍ୱାରା ଶ୍ରୀକୃଷ୍ଣଙ୍କର ମୁଖାରବିନ୍ଦ ମକରନ୍ଦକୁ ବାରମ୍ବାର ପାନ କରି ଯୁବକପରି ହୋଇଗଲେ । ସେମାନଙ୍କର ବଳ ଓ ତେଜ ବଢ଼ିଗଲା ।।୧୮-୧୯।। ମହାରାଜ, ଏହାପରେ ଦେବକୀନନ୍ଦନ ଭଗବାନ ଶ୍ରୀକୃଷ୍ଣ ଓ ବଳରାମ ନନ୍ଦଙ୍କ ପାଖରେ ପହଞ୍ଚି ତାଙ୍କୁ ଆଲିଙ୍ଗନ କରି କହିଲେ, ବାପା, ଆପଣ ଆମ ଦୁହିଁଙ୍କୁ ଅତି ସ୍ନେହରେ ଲାଳନ ପାଳନ କରିଛନ୍ତି । ଆପଣ ଏବଂ ମା' ଯଶୋଦା ଆମକୁ ନିଜର ଜନ୍ମିତପୁତ୍ରଠାରୁ ଅଧିକ ସ୍ନେହ ଦେଖାଇଛନ୍ତି ।।୨୦-୨୧।। ପାଳନ ପୋଷଣରେ ଅକ୍ଷମ ନିଜର ସ୍ୱଜନଙ୍କ ଦ୍ୱାରା ପରିତ୍ୟକ୍ତ ଶିଶୁଙ୍କୁ ଯେଉଁମାନେ ନିଜର ପୁତ୍ରପରି ପାଳନ କରନ୍ତି, ସେମାନେ ହିଁ ପ୍ରକୃତ ପିତା ମାତା ।।୨୨।। ବାପା, ବର୍ତ୍ତମାନ ଆପଣମାନେ ବ୍ରଜକୁ ଫେରିଯାଆନ୍ତୁ । ଏଠାରେ ଆମ ଜ୍ଞାତି ଓ ବନ୍ଧୁମାନଙ୍କର ସୁଖରେ ରହିବାର ବ୍ୟବସ୍ଥା କରି ଆମେ ଆପଣମାନଙ୍କୁ ଦେଖିବାକୁ ଆସିବୁ । ବାତ୍ସଲ୍ୟ ସ୍ନେହଯୋଗୁଁ ଆପଣମାନଙ୍କ ମନରେ ନିଶ୍ଚୟ ଦୁଃଖ ହେଉଥିବ ।।୨୩।। ମହାରାଜ ପରିକ୍ଷିତ, ବ୍ରଜବାସୀମାନଙ୍କ ସହିତ ନନ୍ଦଙ୍କୁ ଏହିପରି ସାନ୍ତ୍ୱନା ଦେଇ ଭଗବାନ ଶ୍ରୀକୃଷ୍ଣ ବସ୍ତ୍ର, ଅଳଙ୍କାର, ବାସନକୁସନ ଆଦି ଉପହାରଦ୍ୱାରା ସେମାନଙ୍କର ସତ୍କାର କଲେ ।।୨୪।। କୃଷ୍ଣଙ୍କର କଥା ଶୁଣି ପୁତ୍ରସ୍ନେହରେ ବିହ୍ୱଳ ନନ୍ଦ ଅଶ୍ରୁପୂର୍ଣ୍ଣ ନୟନରେ କୃଷ୍ଣ ଓ ବଳରାମଙ୍କୁ ଆଲିଙ୍ଗନ କରି ଗୋପାଳମାନଙ୍କ ସହିତ ବ୍ରଜକୁ ଫେରିଗଲେ ।।୨୫।।

ଏହାପରେ ଶୂରସେନଙ୍କର ପୁତ୍ର ବସୁଦେବ ପୁରୋହିତ ଓ ବ୍ରାହ୍ମଣମାନଙ୍କ ଦ୍ୱାରା ଦୁଇ ପୁତ୍ରଙ୍କର ଯଜ୍ଞୋପବୀତ ସଂସ୍କାର କରାଇଲେ ।।୨୬।। ବହୁପ୍ରକାର ବସ୍ତ୍ର ଅଳଙ୍କାରଦ୍ୱାରା ବ୍ରାହ୍ମଣମାନଙ୍କୁ ସତ୍କାର କରି ଦକ୍ଷିଣାସ୍ୱରୂପ ବତ୍ସା ସହ ବହୁ ଧେନୁ ଦାନକଲେ । ଧେନୁ ସବୁ ସୁବର୍ଣ୍ଣର ମାଳା ଓ ରେଶମୀ ବସ୍ତ୍ର ଆଦିଦ୍ୱାରା ସୁଶୋଭିତ ଥିଲେ ।।୨୭।। ମହାମନା ବସୁଦେବ କୃଷ୍ଣ ଓ ବଳରାମଙ୍କ ଜନ୍ମସମୟରେ ବ୍ରାହ୍ମଣମାନଙ୍କୁ ଯାହାସବୁ ଦାନ କରିବାପାଇଁ ମନେ ମନେ ସଂକଳ୍ପ କରିଥିଲେ, ତାହା ମନେ ପକାଇ ବ୍ରାହ୍ମଣମାନଙ୍କୁ ଦାନ କଲେ । ବ୍ରାହ୍ମଣମାନଙ୍କର ଗୋଧନ କଂସ ପୂର୍ବରୁ ଅପହରଣ କରିନେଇଥିଲା ।।୨୮।। ଉପନୟନ

ସଂସ୍କାରପରେ କୃଷ୍ଣ ଓ ବଳରାମ ଦ୍ୱିଜତ୍ୱ ଲାଭ କଲେ ଓ ଯଦୁକୁଳର ଗୁରୁ ଗର୍ଗାଚାର୍ଯ୍ୟଙ୍କଠାରୁ ନିଷ୍ଠାର ସହିତ ବ୍ରହ୍ମଚର୍ଯ୍ୟ ବ୍ରତ ଗ୍ରହଣ କଲେ । ଯେ ସମସ୍ତ ଜ୍ଞାନର ଆଧାର, ଯାହାଙ୍କଠାରୁ ସମସ୍ତ ବିଦ୍ୟା ଉତ୍ପନ୍ନ ହୋଇଛି, ସେ ଲୋକଶିକ୍ଷାପାଇଁ ନିଜର ସମସ୍ତ ସିଦ୍ଧି ଓ ଜ୍ଞାନକୁ ପ୍ରଚ୍ଛନ୍ନ ରଖି ଗୁରୁକୁଳରେ ବାସ କରିବା ପାଇଁ ଇଚ୍ଛା କଲେ ଏବଂ ଅବନ୍ତୀପୁର ନିବାସୀ କାଶ୍ୟପ ଗୋତ୍ରୀୟ ସାନ୍ଦୀପନି ମୁନିଙ୍କ ନିକଟକୁ ଗମନ କଲେ ।।୨୯-୩୧।। ସେଠାରେ ପହଞ୍ଚି ଜିତେନ୍ଦ୍ରିୟ କୃଷ୍ଣ ଓ ବଳରାମ ଶାସ୍ତ୍ରୀୟ ବିଧି ଅନୁସାରେ କିପରି ଚଳିବାକୁ ହେବ, ଗୁରୁଙ୍କୁ ପ୍ରସନ୍ନ ରଖିବାପାଇଁ କିପରି ବ୍ୟବହାର କରିବାକୁ ହେବ, ତାହା ନିଜେ କରି ଓ ଅନ୍ୟକୁ ଦର୍ଶାଇ ଭକ୍ତି ଓ ନିଷ୍ଠାର ସହ ଦେବତାଜ୍ଞାନରେ ଗୁରୁଙ୍କର ସେବା କରିବାକୁ ଲାଗିଲେ ।।୩୨।। ଦ୍ୱିଜଶ୍ରେଷ୍ଠ ସାନ୍ଦୀପନି କୃଷ୍ଣ ଓ ବଳରାମଙ୍କ ନିର୍ମଳ ଭକ୍ତିଭାବ ଓ ସେବାରେ ସନ୍ତୁଷ୍ଟ ହୋଇ ବେଦ, ବେଦାଙ୍ଗ ଓ ଉପନିଷଦ୍ ଆଦି ଶାସ୍ତ୍ରବିଷୟରେ ସମସ୍ତ ଶିକ୍ଷା ପ୍ରଦାନ କଲେ ।।୩୩।। ସେ ଧନୁର୍ବିଦ୍ୟାର ରହସ୍ୟ, ଧର୍ମଶାସ୍ତ୍ର, ମୀମାଂସାଦି ଦର୍ଶନଶାସ୍ତ୍ର, ତର୍କବିଦ୍ୟା ଓ ସନ୍ଧି ବିଗ୍ରହ ଆଦି ଛ'ପ୍ରକାର ରାଜନୀତି ବିଦ୍ୟା ସେ ଦୁହିଁଙ୍କୁ ଶିକ୍ଷାଦେଲେ ।।୩୪।। ମହାରାଜ ପରିକ୍ଷିତ, ଯେ ସମସ୍ତ ବିଦ୍ୟାର ପ୍ରବର୍ତ୍ତକ ଓ ମନୁଷ୍ୟମଧ୍ୟରେ ଶ୍ରେଷ୍ଠ, ସେହି କୃଷ୍ଣ ଓ ବଳରାମ, ଗୁରୁ ଥରେ ଯାହା କହୁଥିଲେ ତାହା ସଙ୍ଗେ ସଙ୍ଗେ ମନେ ରଖି ନେଉଥିଲେ । ଏହିପରି ସଂଯତ ଚିତ୍ତରେ କୃଷ୍ଣ ଓ ବଳରାମ ଚଉଷଠି ଦିନ ଓ ରାତି ମଧ୍ୟରେ ଗୁରୁଙ୍କଠାରୁ ଚଉଷଠି କଳା ଶିଖିଗଲେ । ଏହାପରେ ଗୁରୁଦକ୍ଷିଣା ଦେବାପାଇଁ ଗୁରୁଙ୍କୁ ପ୍ରାର୍ଥନା କରି ତାଙ୍କର ଯାହା ଇଚ୍ଛା ତାହା ପ୍ରକାଶ କରନ୍ତୁ ବୋଲି ଅନୁରୋଧ ଜଣାଇଲେ ।।୩୫-୩୬।। ରାଜା, ସାନ୍ଦୀପନି ମୁନିଙ୍କର ପୁତ୍ର ପ୍ରଭାସତୀର୍ଥରେ ସମୁଦ୍ରରେ ବୁଡ଼ି ମରିଯାଇଥିଲା । ସେ କୃଷ୍ଣ ଓ ବଳରାମଙ୍କର ଅଦ୍ଭୁତ ମହିମା ଓ ଅତିମାନବ ବୁଦ୍ଧିକୁ ଲକ୍ଷ୍ୟ କରି ପତ୍ନୀଙ୍କ ସହିତ ପରାମର୍ଶପୂର୍ବକ ମୃତ ପୁତ୍ରକୁ ଦକ୍ଷିଣାସ୍ୱରୂପ ପ୍ରାର୍ଥନା କଲେ ।।୩୭।। ଅନନ୍ତବିକ୍ରମ ମହାରଥୀ ଶ୍ରୀକୃଷ୍ଣ ଓ ବଳରାମ ତାହା ହିଁ ହେବ ବୋଲି ଅଙ୍ଗୀକାର କରି ରଥାରୋହଣ ପୂର୍ବକ ପ୍ରଭାସତୀର୍ଥରେ ଉପସ୍ଥିତ ହେଲେ । ସେ ସମୁଦ୍ରବେଳାରେ ଅଳ୍ପସମୟ ବସିଛନ୍ତି କି ନାହିଁ ସମୁଦ୍ର ତାଙ୍କୁ ପରମେଶ୍ୱର ବୋଲି ଜାଣି ନାନାପ୍ରକାର ପୂଜାର ଉପହାର ଆଣି ପ୍ରଦାନ କଲେ ।।୩୮।। ଭଗବାନ ଶ୍ରୀକୃଷ୍ଣ ସମୁଦ୍ରଙ୍କୁ କହିଲେ, ଏହି ପ୍ରଭାସତୀର୍ଥରେ ଯେଉଁ ବାଳକକୁ ତୁମେ ବିଶାଳ ତରଙ୍ଗଦ୍ୱାରା ଗ୍ରାସ କରିଛ, ସେହି ବାଳକଟି ହେଉଛି ଆମର ଗୁରୁପୁତ୍ର । ତୁମେ ତାକୁ ଶୀଘ୍ର ଫେରାଇଦିଅ ।।୩୯।।

ସମୁଦ୍ର କହିଲେ, 'ହେ କୃଷ୍ଣ, ମୁଁ ସେହି ବାଳକକୁ ଅପହରଣ କରି ନାହିଁ । ପଞ୍ଚଜନ ନାମକ ଏକ ମହାଦୈତ୍ୟ ଶଙ୍ଖରୂପ ଧାରଣ କରି ଜଳମଧ୍ୟରେ ବିଚରଣ କରୁଛି । ସେହି ଦୈତ୍ୟ ଦ୍ୱିଜପୁତ୍ରଙ୍କୁ ଅପହରଣ କରିଛି ।' ତାହା ଶୁଣି କୃଷ୍ଣ ଜଳମଧ୍ୟରେ ଶୀଘ୍ର ପ୍ରବେଶ କରି ପଞ୍ଚଜନକୁ ବଧ କଲେ, କିନ୍ତୁ ତାର ପେଟରେ ଗୁରୁପୁତ୍ରଙ୍କୁ ଦେଖିଲେ ନାହିଁ । ତାର ଶରୀରରୁ ଉତ୍ପନ୍ନ ଶଙ୍ଖଟିକୁ ନେଇ ରଥକୁ ଫେରିଆସିଲେ । ତା'ପରେ ଯମଙ୍କର ପ୍ରିୟନଗରୀ ସଂଯମନୀକୁ ଯାତ୍ରା କରି କୃଷ୍ଣ ବଳରାମଙ୍କ ସହିତ ସେଠାରେ ଶଙ୍ଖ ବାଦନ କଲେ ।।୪୦-୪୨।। ପ୍ରାଣୀମାନଙ୍କର ଦଣ୍ଡଦାତା ଯମ ଶଙ୍ଖଧ୍ୱନି ଶୁଣି ବାହାରିଆସିଲେ ଏବଂ ଭକ୍ତିଭରେ କୃଷ୍ଣ ଓ ବଳରାମଙ୍କୁ ପୂଜା କଲେ । ସମସ୍ତ ପ୍ରାଣୀଙ୍କର ହୃଦୟରେ ବିଦ୍ୟମାନ ଭଗବାନ ଶ୍ରୀକୃଷ୍ଣଙ୍କୁ ସେ ବିନୀତ ଭାବରେ କହିଲେ, ହେ ଲୀଳାପୁରୁଷ, ହେ ବିଷ୍ଣୁ, ମୁଁ ଆପଣ ଦୁହିଁଙ୍କର କ'ଣ କରିପାରିବି ? ।୪୩-୪୪।। ଶ୍ରୀକୃଷ୍ଣ କହିଲେ, ଯମରାଜ, କର୍ମବନ୍ଧନ ଅନୁଯାୟୀ ମୋର ଗୁରୁପୁତ୍ରଙ୍କୁ ଏଠାକୁ ଅଣାଯାଇଛି । ମୋର ଆଦେଶକୁ ପାଳନ କରି ତାଙ୍କୁ ଏଠାକୁ ନେଇଆସ । 'ଯେ, ଆଜ୍ଞା' ବୋଲି କହି ଯମରାଜ ଗୁରୁପୁତ୍ରଙ୍କୁ ନେଇ ଆସିଲେ ଏବଂ କୃଷ୍ଣ ଓ ବଳରାମ ସେହି ପୁତ୍ରକୁ ନେଇ ଗୁରୁଙ୍କ ପାଖରେ ଅର୍ପଣ କରି କହିଲେ, ଆଉ କିଛି ଦକ୍ଷିଣା ମାଗିବାର ଅଛି ତ ମାଗିନିଅନ୍ତୁ । ଗୁରୁ କହିଲେ, ବତ୍ସ, ତୁମେ ଦୁହେଁ ସମ୍ପୂର୍ଣ୍ଣ ଗୁରୁଦକ୍ଷିଣା ଦେଇଦେଇଛ । ତୁମପରି ଶିଷ୍ୟଙ୍କର ଯେ ଗୁରୁ, ତାର କାମନା କ'ଣ କେବେ ଅପୂର୍ଣ୍ଣ ରହିପାରେ ? ବୀର, ବର୍ତ୍ତମାନ ତୁମେ ଦୁହେଁ ନିଜ ଘରକୁ ଫେରିଯାଅ । ତୁମର କୀର୍ତ୍ତି ସଂସାରକୁ ପବିତ୍ର

କରୁ । ତୁମେ ଯେଉଁ ବିଦ୍ୟା ଅର୍ଜନ କରିଛ, ତାହା ବିସ୍ମୃତ ନ ହୁଅ ॥୪୫-୪୮॥ ପରିକ୍ଷିତ, ଗୁରୁଙ୍କର ଆଦେଶ ପାଇ ବାୟୁବେଗରେ ରଥ ଚଳାଇ କୃଷ୍ଣ ଓ ବଳରାମ ମଥୁରାକୁ ଫେରିଆସିଲେ । ବେଗଗାମୀ ରଥ ମେଘଗର୍ଜନପରି ଶବ୍ଦକରୁଥିଲା । ବହୁଦିନ ଧରି ରାମକୃଷ୍ଣଙ୍କୁ ନ ଦେଖି ମଥୁରାର ପ୍ରଜାମାନେ ଦୁଃଖରେ ଥିଲେ । ଏବେ ସେମାନେ ହଜାଇଥିବା ଧନକୁ ଫେରିପାଇବା ପରି ଆନନ୍ଦ ଅନୁଭବ କଲେ ॥୪୯-୫୦॥

## ଛୟାଳିଶ ଅଧ୍ୟାୟ

## ବ୍ରଜରେ ଉଦ୍ଧବ

ଶ୍ରୀ ଶୁକଦେବ କହିଲେ, ପରିକ୍ଷିତ, ବୁଦ୍ଧିମାନ୍ ଉଦ୍ଧବ ଥିଲେ କୃଷ୍ଣଙ୍କର ପ୍ରିୟ ସଖା, ସାକ୍ଷାତ୍ ବୃହସ୍ପତିଙ୍କର ଶିଷ୍ୟ ଓ ବୃଷ୍ଣି ବଂଶୀୟମାନଙ୍କର ପ୍ରଧାନ ମନ୍ତ୍ରୀ । ଶରଣାଗତଙ୍କର ଦୁଃଖହରଣକାରୀ ଭଗବାନ ଶ୍ରୀକୃଷ୍ଣ ଦିନେ ତାଙ୍କର ପ୍ରିୟତମ ଭକ୍ତ ଉଦ୍ଧବଙ୍କୁ ଏକାନ୍ତରେ ଡାକି ତାଙ୍କ ହାତକୁ ନିଜହାତରେ ଧରିପକାଇ କହିଲେ ॥୧-୨॥ ପ୍ରିୟ ଉଦ୍ଧବ, ତୁମେ ବ୍ରଜକୁ ଯାଅ । ତୁମକୁ ଦେଖିଲେ ମୋର ପିତା ମାତା ନନ୍ଦ ଓ ଯଶୋଦା ଖୁସି ହୋଇଯିବେ । ମୋ ବିରହଦୁଃଖରେ ଗୋପୀମାନେ ଦୁଃଖୀ ହୋଇ ରହିଛନ୍ତି । ତୁମେ ମୋର ସମ୍ବାଦ ଦେଇ ସେମାନଙ୍କର ମନଦୁଃଖ ଦୂର କର ॥୩॥ ମୋ'ଠାରେ ସେମାନେ ତାଙ୍କର ମନପ୍ରାଣ ଢାଳିଦେଇଛନ୍ତି । ମୋ'ପାଇଁ ସେମାନେ ସମସ୍ତ ଦୈହିକ ସୁଖ ଛାଡ଼ିଛନ୍ତି । ମୋତେ ତାଙ୍କ ଅନ୍ତରର ପ୍ରିୟତମ ବୋଲି ସେମାନେ ଧରିନେଇଛନ୍ତି ଏବଂ ମୋ'ପାଇଁ ସମସ୍ତ ଲୌକିକଧର୍ମ ତ୍ୟାଗ କରିଛନ୍ତି । ମୁଁ ସେମାନଙ୍କୁ ପାଳନ କରି ସୁଖୀ କରିବାକୁ ଚାହେ ॥୪॥ ପ୍ରିୟ ଉଦ୍ଧବ, ମୁଁ ସେହି ଗୋପୀମାନଙ୍କର ପରମ ପ୍ରିୟତମ । ମୁଁ ସେମାନଙ୍କଠାରୁ ଦୂରରେ ରହିଥିବାରୁ ମୋତେ ଭାବି ଭାବି ସେମାନେ ମୋ ବିରହରେ ବ୍ୟାକୁଳ ହେଉଥିବେ ଓ ବାରମ୍ବାର ମୂର୍ଚ୍ଛା ଯାଉଥିବେ ॥୫॥ ମୁଁ ଶୀଘ୍ର ଫେରି ଆସିବି ବୋଲି କହି ସେମାନଙ୍କୁ ଆଶ୍ୱାସନା ଦେଇଥିଲି । ମୋତେ ମନପ୍ରାଣ ଦେଇ ଭଲ ପାଉଥିବା ସେହି ଗୋପୀମାନେ ସେହି ବିଶ୍ୱାସରେ କୌଣସିମତେ ପ୍ରାଣ ଧରି ରହିଥିବେ ॥୬॥

ଶ୍ରୀ ଶୁକଦେବ କହିଲେ, ପରିକ୍ଷିତ, କୃଷ୍ଣ ଏହିପରି କହିବାରୁ ଉଦ୍ଧବ ସାଦରେ ରଥାରୋହଣପୂର୍ବକ ପ୍ରଭୁଙ୍କର ଆଦେଶ ନେଇ ନନ୍ଦବ୍ରଜକୁ ଯାତ୍ରା କଲେ ॥୭॥ ସୂର୍ଯ୍ୟ ଅସ୍ତ ହେଉଥିବା ସମୟରେ ଶ୍ରୀସମ୍ପନ୍ନ ଉଦ୍ଧବ ବ୍ରଜରେ ପ୍ରବେଶ କଲେ । ସେତେବେଳେ ଗୋରୁମାନେ ଫେରି ଆସୁଥିଲେ ଏବଂ ସେମାନଙ୍କ ଖୁରାର ଧୂଳିରେ ଉଦ୍ଧବଙ୍କର ରଥ ଲୁଚିଗଲା ॥୮॥ ଋତୁମତୀ ଧେନୁମାନଙ୍କପାଇଁ ମତ୍ତ ବୃଷଭମାନେ ନିଜ ନିଜ ମଧ୍ୟରେ ଲଢୁଥିଲେ ଏବଂ ସେମାନଙ୍କର ଗର୍ଜନରେ ବ୍ରଜଭୂମି କମ୍ପି ଯାଉଥିଲା । ସ୍ତନଭାରରେ ଗାଭୀମାନେ ନିଜ ନିଜ ବଛାଙ୍କୁ ହମ୍ବାରଡ଼ି ଦେଇ ଡାକି ଦଉଡୁଥିଲେ ॥୯॥ ଧବଳ ରଙ୍ଗର ବଛାମାନେ ଚାରିଆଡ଼େ କୁଦାମାରି ଦୌଡୁଥିବାରୁ ବ୍ରଜଭୂମି ସୁନ୍ଦର ଦେଖାଯାଉଥିଲା । ଗୋପାଳମାନଙ୍କ ଗୋଦୋହନର ଶବ୍ଦ ଓ ବେଣୁଧ୍ୱନିରେ ବ୍ରଜପୁରୀ ପୂରି ଉଠୁଥିଲା ॥୧୦॥ ସୁନ୍ଦର ବସ୍ତ୍ର ଓ ଅଳଙ୍କାର ଆଦି ପରିଧାନ କରି ଗୋପୀ ଓ ଗୋପାଳମାନେ ଶ୍ରୀକୃଷ୍ଣ ଓ ବଳରାମଙ୍କର ମଙ୍ଗଳମୟ ଚରିତ ଗାନ କରୁଥିଲେ । ସେଥିରେ ବ୍ରଜର ଶୋଭା ଆହୁରି ବଢ଼ିଯାଉଥିଲା ॥୧୧॥ ସେତେବେଳେ ଗୋପାଳମାନଙ୍କ ଗୃହରେ ଅଗ୍ନି, ସୂର୍ଯ୍ୟ, ଅତିଥି, ଗୋ, ବ୍ରାହ୍ମଣ, ପିତୃଗଣ ଓ ଦେବତାଙ୍କ ପୂଜା ଚାଲିଥିଲା । ଧୂପ, ଦୀପ ଓ ମାଳାରେ ମଣ୍ଡିତ ଗୃହସବୁ ଗୋପର ଶୋଭାବର୍ଦ୍ଧନ କରୁଥିଲେ ॥୧୨॥ ଚତୁର୍ଦ୍ଦିଗରେ ଥିବା ସବୁ ଫୁଲବନ ପକ୍ଷୀମାନଙ୍କର କାକଳିରେ ଓ ଭ୍ରମରମାନଙ୍କ ଗୁଞ୍ଜନରେ ମୁଖରି ଉଠୁଥିଲା । ହଂସ ଓ ଚକ୍ରବାକରେ ପୂର୍ଣ୍ଣ ସବୁ ପଦ୍ମବନ ବ୍ରଜପୁରୀକୁ ମଣ୍ଡନ

କରୁଥିଲେ ॥୧୩॥ ଶ୍ରୀକୃଷ୍ଣଙ୍କର ପ୍ରିୟ ସଖା ଓ ଅନୁଚର ଉଦ୍ଧବଙ୍କୁ ଦେଖି ନନ୍ଦ ଆନନ୍ଦରେ ତାଙ୍କୁ ଆଲିଙ୍ଗନ କଲେ ଏବଂ କୃଷ୍ଣ ଆସିଗଲେ ବୋଲି ଭାବି ତାଙ୍କର ସେବା ସତ୍କାର କଲେ ॥୧୪॥ ଉତ୍ତମ ଭୋଜନଦ୍ୱାରା ସେ ଉଦ୍ଧବଙ୍କୁ ଆପ୍ୟାୟିତ କରାଇଲେ ଏବଂ ଶଯ୍ୟାରେ ବସିବା ପରେ ଭୃତ୍ୟମାନେ ତାଙ୍କ ପାଦସେବା କରି ତାଙ୍କ ପଥଶ୍ରମ ଦୂର କଲେ । ତା'ପରେ ବ୍ରଜରାଜ ନନ୍ଦ ତାଙ୍କୁ ପଚାରିଲେ -- ॥୧୫॥ ମହାଭାଗ ଉଦ୍ଧବ, ବର୍ତ୍ତମାନ ଆମର ସଖା ବସୁଦେବ କାରାଗାରରୁ ମୁକ୍ତ ହୋଇ ବନ୍ଧୁ ଓ ପୁତ୍ରମାନଙ୍କ ସହିତ କୁଶଳରେ ଅଛନ୍ତି ତ ? ସୌଭାଗ୍ୟର ବିଷୟ ଯେ ନିଜ ପାପପାଇଁ ପାପାତ୍ମା କଂସ ତାର ଅନୁଚରମାନଙ୍କ ସହିତ ନିହତ ହୋଇଛି । ସେ ଧର୍ମାତ୍ମା ସାଧୁମାନଙ୍କୁ ଓ ଯାଦବମାନଙ୍କୁ ସବୁବେଳେ ଦ୍ୱେଷ କରୁଥିଲା । ଉଦ୍ଧବ, କୃଷ୍ଣ କେବେ ଆମ କଥା ମନେ ପକାନ୍ତି କି ନାହିଁ ? ମୋ କଥା, ମାତା ଯଶୋଦାଙ୍କ କଥା, ନିଜର ସଖା, ସୁହୃଦ୍, ଗୋପାଳମାନଙ୍କ କଥା, ଧେନୁମାନଙ୍କ କଥା, ବୃନ୍ଦାବନ, ଗୋବର୍ଦ୍ଧନ ଗିରି ଏବଂ ଯେଉଁ ବ୍ରଜଧାମ ତାଙ୍କୁ ଆପଣାର ବୋଲି ଗ୍ରହଣ କରିଛି, ସେ ସମସ୍ତଙ୍କୁ ସେ ମନେପକାନ୍ତି ଟି ? ଥରେ କ'ଣ ନିଜ ଲୋକଙ୍କୁ ଦେଖିବାପାଇଁ ସେ ବ୍ରଜକୁ ଆସିବେ ନାହିଁ ? ତାଙ୍କର ସେ ସୁନ୍ଦର ନାକ, ଆଖି ଓ ମୁହଁ ଆଉ କେବେ ଆମେ ଦେଖିବାକୁ ପାଇବୁ ? ॥୧୬-୧୯॥ ଉଦ୍ଧବ, କେତେ ବଡ଼ କୃଷ୍ଣଙ୍କର ହୃଦୟ--ସେ ଆମମାନଙ୍କୁ ଦାବାଗ୍ନିରୁ, ଝଡ଼ବୃଷ୍ଟିରୁ, ବୃଷ ଓ ସର୍ପରୂପୀ ଅସୁରଠାରୁ ଏବଂ ନିଶ୍ଚିତ ମୃତ୍ୟୁମୁଖରୁ ରକ୍ଷା କରିଛନ୍ତି । କୃଷ୍ଣଙ୍କର ସେହି ବୀରତ୍ୱପୂର୍ଣ୍ଣ କର୍ମ, ଲୀଳାମୟ କଟାକ୍ଷ, ମଧୁର ହସ ଓ କଥାସବୁ ସ୍ମରଣ କରି ଆମର ସବୁ କାମ ଶିଥିଳ ହୋଇଯାଇଛି । କୃଷ୍ଣଙ୍କର ପଦଚିହ୍ନ ପଡ଼ିଥିବା ଏହି ଯମୁନାକୂଳ ଅଛି, ଯେଉଁଠାରେ ସେ କ୍ରୀଡ଼ା କରୁଥିଲେ । ସେହି ଗୋବର୍ଦ୍ଧନ ଅଛି, ଯାହାକୁ ସେ ହାତରେ ଉଠାଇ ନେଇଥିଲେ, ସେହି ବନଦେଶ ଅଛି, ଯେଉଁଠାରେ ସେ ବିହାର କରୁଥିଲେ, ସେସବୁ ଦେଖି କେବଳ ତାଙ୍କରି କଥା ହିଁ ଆମର ମନେ ପଡୁଛି ॥୨୦-୨୨॥ ସୁରଶ୍ରେଷ୍ଠ କୃଷ୍ଣ ଓ ବଳରାମ ଦେବତାମାନଙ୍କର ମହତ୍ କାର୍ଯ୍ୟ ସାଧନ କରିବାପାଇଁ ଏ ସଂସାରକୁ ଆସିଛନ୍ତି ବୋଲି ଗର୍ଗାଚାର୍ଯ୍ୟ ଯାହା କହିଥିଲେ, ତାହା ମୁଁ ସତ୍ୟ ବୋଲି ମନେକରୁଛି । ପଶୁରାଜ ସିଂହ ଯେପରି ଅବଲୀଳାକ୍ରମେ ପଶୁମାନଙ୍କୁ ବଧ କରେ, କୃଷ୍ଣ ଓ ବଳରାମ ସେହିପରି ଅୟୁତ ହସ୍ତୀର ବଳ ଧରିଥିବା କଂସଙ୍କୁ, ଚାଣୂର ଓ ମୁଷ୍ଟିକ ସମେତ ମଲ୍ଲମାନଙ୍କୁ ଓ ଗଜରାଜ କୁବଳୟାପୀଡ଼କୁ ନିହତ କଲେ । ହାତୀ ଖଣ୍ଡେ କାଠକୁ ଭାଙ୍ଗିବା ପରି ତିନିତାଳଗଛ ଲମ୍ବା କଂସର ଶକ୍ତିଶାଳୀ ଧନୁକୁ ସେ ଅନାୟାସରେ ଭାଙ୍ଗି ଫିଙ୍ଗି ଦେଲେ । ସପ୍ତାହେ କାଳ ଗୋଟାଏ ହାତରେ ଗିରି ଗୋବର୍ଦ୍ଧନକୁ ଧରି ରଖିଲେ । ଦେବାସୁରଙ୍କୁ ଜୟ କରିଥିବା ପ୍ରଳମ୍ବ, ଧେନୁକ, ଅରିଷ୍ଟ, ତୃଣାବର୍ତ୍ତ ଓ ବକ ଆଦି ଦୈତ୍ୟମାନଙ୍କୁ କୃଷ୍ଣ ଓ ବଳରାମ ଅବଲୀଳାକ୍ରମେ ବଧ କଲେ । ଶ୍ରୀ ଶୁକଦେବ କହିଲେ, ପରିକ୍ଷିତ, ନନ୍ଦଙ୍କର ଚିତ୍ତ ସର୍ବଦା କୃଷ୍ଣଙ୍କଠାରେ ଲାଗି ରହିଥିଲା । ଏବେ ଏହିପରି ଗୋଟି ଗୋଟି କରି କୃଷ୍ଣଙ୍କର ଲୀଳା ସ୍ମରଣ କରୁଥିବା ବେଳେ ନନ୍ଦଙ୍କ ପ୍ରାଣର ଉଦ୍‌ବେଗ ବଢ଼ିବାକୁ ଲାଗିଲା । ପ୍ରେମରେ ତାଙ୍କ କଣ୍ଠ ରୁଦ୍ଧ ହୋଇଆସିଲା ଓ ସେ ତୂନୀ ହୋଇଗଲେ ॥୨୩-୨୭॥ ନନ୍ଦ କୃଷ୍ଣଙ୍କର ଚରିତ ବର୍ଣ୍ଣନାକଲା ବେଳେ ପୁତ୍ରସ୍ନେହରେ ଯଶୋଦାଙ୍କର ଆଖିରୁ ଲୁହ ବହିବାକୁ ଲାଗିଲା ଓ ସ୍ତନରୁ କ୍ଷୀର ଧାର ବହିଗଲା ॥୨୮॥ ଉଦ୍ଧବ ନନ୍ଦ ଓ ଯଶୋଦାଙ୍କ ହୃଦୟରେ କୃଷ୍ଣଙ୍କ ପ୍ରତି କିପରି ପ୍ରଗାଢ଼ ଅନୁରାଗ ଅଛି, ତାହା ଦେଖି ଆନନ୍ଦରେ ନନ୍ଦଙ୍କୁ କହିଲେ ॥୨୯॥

ଶ୍ରୀ ଉଦ୍ଧବ କହିଲେ, ମାନଦ, ଆପଣ ଦୁହେଁ ଦେହଧାରୀଙ୍କ ମଧ୍ୟରେ ଶ୍ରେଷ୍ଠ । କାରଣ ଚରାଚରର ଗୁରୁ ଶ୍ରୀ ନାରାୟଣଙ୍କଠାରେ ଆପଣଙ୍କର ଏପରି ଶ୍ରଦ୍ଧା ଭକ୍ତି ରହିଛି । ରାମ ଓ କୃଷ୍ଣ ଦୁଇ ଜଣ ହେଉଛନ୍ତି ଏହି ବିଶ୍ୱର ନିମିତ୍ତ ଓ ଉପାଦାନ ତାର ଏକମାତ୍ର କାରଣ । ଦୁହେଁ ହେଉଛନ୍ତି ପୁରାଣ ପୁରୁଷ ଏବଂ ଦୁହେଁ ପ୍ରାଣୀମାନଙ୍କ ମଧ୍ୟରେ ପ୍ରବେଶ କରି ବିଲକ୍ଷଣ ଜ୍ଞାନକୁ ଅର୍ଥାତ୍ ଅଭେଦଜ୍ଞାନକୁ ଓ ଜୀବକୁ ନିୟନ୍ତ୍ରଣ କରନ୍ତି ॥୩୦-୩୧॥ ଯେଉଁ ବ୍ୟକ୍ତି ମୃତ୍ୟୁସମୟରେ ମୁହୂର୍ତ୍ତକପାଇଁ ଶୁଦ୍ଧଭାବରେ କୃଷ୍ଣଙ୍କଠାରେ ମନୋନିବେଶ କରେ, ସମସ୍ତ କର୍ମବାସନା ତାର ଦୂର ହୋଇଯାଏ ଏବଂ ସୂର୍ଯ୍ୟପରି ତେଜୀୟାନ୍

ବ୍ରହ୍ମମୟ ମୂର୍ତ୍ତି ଧାରଣ କରି ସେ ପରମଗତି ଲାଭ କରେ । ସେହିପରି ଅଖିଳ ବିଶ୍ୱର ଆତ୍ମା ଓ କାରଣ ଏବଂ ପ୍ରୟୋଜନବଶତଃ ମନୁଷ୍ୟରୂପରେ ଅବତୀର୍ଣ୍ଣ ଭଗବାନ ଶ୍ରୀକୃଷ୍ଣଙ୍କ ପ୍ରତି ଆପଣମାନଙ୍କର ଯେଉଁ ପରମ ଭକ୍ତିଭାବ ରହିଛି, ତାହାଠାରୁ ଆଉ ଅଧିକ ଉତ୍ତମ କ'ଣ ଥାଇପାରେ ? ଆପଣମାନେ ପ୍ରକୃତରେ ଧନ୍ୟ ॥୩୨-୩୩॥ ଅଳ୍ପକାଳ ମଧ୍ୟରେ ଯଦୁପତି ଶ୍ରୀକୃଷ୍ଣ ବ୍ରଜକୁ ଆସିବେ । ଆପଣ ଦୁହେଁ ତାଙ୍କର ପିତାମାତା । ଆପଣ ଦୁହିଁଙ୍କର ସେ ଆନନ୍ଦ ବିଧାନ କରିବେ ॥୩୪॥ ରଙ୍ଗଭୂମିରେ ସମସ୍ତ ଯାଦବଙ୍କର ଶତ୍ରୁ କଂସକୁ ନିହତ କରି ବ୍ରଜକୁ ଫେରିଆସିବାପାଇଁ ସେ ଆପଣଙ୍କୁ କଥା ଦେଇଥିଲେ -- 'ମୁଁ ବ୍ରଜକୁ ଆସିଯିବି' । ତାହା ସେ ନିଶ୍ଚୟ ପାଳନ କରିବେ । ଆପଣ ଦୁହେଁ ମହା ଭାଗ୍ୟବାନ୍, ଦୁଃଖ କରନ୍ତୁ ନାହିଁ । ନିକଟରେ ହିଁ କୃଷ୍ଣଙ୍କୁ ଦେଖିପାରିବେ । କାଠରେ ନିଆଁ ରହିଥିବା ପରି ସେ ସମସ୍ତ ପ୍ରାଣୀଙ୍କ ଅନ୍ତରରେ ରହିଛନ୍ତି ॥୩୫-୩୬॥ ସେ ଅଭିମାନଶୂନ୍ୟ ହୋଇଥିବାରୁ ସମସ୍ତ ପ୍ରାଣୀଙ୍କ ପ୍ରତି ସମଭାବାପନ୍ନ । ତାଙ୍କ ନିକଟରେ କେହି ପ୍ରିୟ, ଅପ୍ରିୟ, ଉତ୍ତମ ବା ଅଧମ ନାହାନ୍ତି ଏବଂ ତାଙ୍କସହ ସମାନ ମଧ୍ୟ କେହି ନାହାନ୍ତି ॥୩୭॥ ତାଙ୍କର ମାତା ନାହିଁ, ପିତା ନାହିଁ, ଭାର୍ଯ୍ୟା ନାହିଁ, ପୁତ୍ର ନାହିଁ, କେହି ଆତ୍ମୀୟ ନାହାନ୍ତି କି ପର ନାହାନ୍ତି । ତାଙ୍କର ଦେହ ନାହିଁ କି ଜନ୍ମ ମଧ୍ୟ ନାହିଁ ॥୩୮॥ ଏହି ସଂସାରରେ ମଧ୍ୟ ତାଙ୍କର କୌଣସି କର୍ମ ନାହିଁ । ତଥାପି ସାଧୁମାନଙ୍କ ପରିତ୍ରାଣପାଇଁ ଲୀଳାରଚନା ନିମନ୍ତେ ସେ ଏହି ପ୍ରାକୃତ ଲୋକରେ ଦେବତା, ପଶୁ,ପକ୍ଷୀ ଓ ମନୁଷ୍ୟ ଆଦି ଯୋନିରେ ଶରୀର ଧାରଣ କରନ୍ତି ॥୩୯॥ ସେ ନିଜେ ନିର୍ଗୁଣ ହେଲେ ମଧ୍ୟ ସତ୍ତ୍ୱ, ରଜ ଓ ତମ ଗୁଣକୁ ସ୍ୱୀକାର କରି ପ୍ରାଣୀମାନଙ୍କର ମଙ୍ଗଳପାଇଁ ଲୀଳା ରଚନା କରନ୍ତି ଏବଂ ସତ୍ତ୍ୱଗୁଣରେ ବିଶ୍ୱର ସୃଷ୍ଟି, ରଜୋଗୁଣରେ ଏହାର ପାଳନ ଓ ତମୋଗୁଣରେ ଏହାର ସଂହାର କରନ୍ତି ॥୪୦॥ ପିଲାମାନେ 'ଚକା ଭଉଁରି' ଖେଳିବା ବେଳେ ଭୂଇଁଟା ଯେପରି ତାଙ୍କୁ ବୁଲିବାପରି ଦେଖାଯାଏ, ସେହିପରି ସବୁର କର୍ତ୍ତା ରୂପେ ଥାଉଁ ଥାଉଁ ଯେତେବେଳେ ଜୀବମଧ୍ୟରେ ଅହଂଭାବ ପଶିଯାଏ, ସେତେବେଳେ ଜୀବ ନିଜକୁ କର୍ତ୍ତା ବୋଲି ବିଚାର କରେ ॥୪୧॥ ଏହି ଭଗବାନ ଶ୍ରୀହରି କେବଳ ତୁମ ଦୁହିଁଙ୍କର ପୁତ୍ର ନୁହନ୍ତି, ଏ ହେଉଛନ୍ତି ସମସ୍ତ ପ୍ରାଣୀଙ୍କର ଆତ୍ମା, ପୁତ୍ର, ପିତା, ମାତା ଓ ସ୍ୱାମୀ ॥୪୨॥ ଯାହା ସବୁ ଦେଖାଯାଏ ବା ଶୁଣାଯାଏ, ତାହା ବର୍ତ୍ତମାନର ହେଉ, ଅତୀତର ହେଉ ବା ଭବିଷ୍ୟତର ହେଉ, ସ୍ଥାବର ହେଉ ବା ଜଙ୍ଗମ ହେଉ, ବଡ଼ ହେଉ ବା ଛୋଟ ହେଉ, ଶ୍ରୀକୃଷ୍ଣଙ୍କୁ ଛାଡ଼ି ତାହା କଳ୍ପନା କରାଯାଇ ନ ପାରେ । ସେ ସବୁଠାରେ ପରମାର୍ଥ ସତ୍ୟ ରୂପେ ବିଦ୍ୟମାନ ॥୪୩॥

ପରିକ୍ଷିତ, ଏହିପରି ନନ୍ଦ ଓ ଉଦ୍ଧବ କଥାଭାଷା ହେଉ ହେଉ ରାତି ପାହିଗଲା । ଗୋପୀମାନେ ସକାଳୁ ଶେଯରୁ ଉଠି ଦୀପ ଜଳାଇ କୃଷ୍ଣଙ୍କୁ ପୂଜା କଲେ ଏବଂ ଘରଦ୍ୱାର ଲିପାପୋଛା କରି ଗାଈ ଦୁହିଁବା କାର୍ଯ୍ୟରେ ଲାଗିଗଲେ ॥୪୪॥ ମନ୍ଥନ-ରଜ୍ଜୁ ଦ୍ୱାରା ଯେତେବେଳେ ସେମାନେ ଦଧି ମନ୍ଥନ କରୁଥିଲେ, ସେତେବେଳେ ସେମାନଙ୍କ ହାତର କଙ୍କଣ ଅତି ସୁନ୍ଦର ଦିଶୁଥିଲା । ତାଙ୍କର ନିତମ୍ବ, ସ୍ତନ ଓ ଗଳାର ହାର ସବୁ ହଲୁଥିଲା । କାନର କୁଣ୍ଡଳ ହଲି କୁଙ୍କୁମରଞ୍ଜିତ କପୋଳର ଶୋଭା ବଢ଼ାଇଦେଉଥିଲା ॥୪୫॥ ସେମାନେ ଉଚ୍ଚସ୍ୱରରେ କମଳନୟନ କୃଷ୍ଣଙ୍କର ଲୀଳା ଗାନ କରୁଥିଲେ । ସେହି ସ୍ୱର ଦଧିମନ୍ଥନର ଶବ୍ଦ ସହିତ ମିଶି ଗଗନପବନକୁ ମୁଖରିତ କରୁଥିଲା, ଯଦ୍ଦ୍ୱାରା ଚାରିଆଡ଼ର ଅମଙ୍ଗଳ ଦୂର ହୋଇଯାଉଥିଲା ॥୪୬॥ ସୂର୍ଯ୍ୟୋଦୟ ହେବାରୁ ବ୍ରଜବାସିନୀ ଗୋପୀମାନେ ଦେଖିଲେ, ନନ୍ଦଙ୍କ ଦ୍ୱାରରେ ଏକ ସୁବର୍ଣ୍ଣମୟ ରଥ ଠିଆ ହୋଇ ରହିଚି । ସେମାନେ ପରସ୍ପରକୁ ପଚାରିଲେ, 'ଏ କାହାର ରଥ ?' ॥୪୭॥ କଂସର ଉଦ୍ଦେଶ୍ୟସିଦ୍ଧିପାଇଁ ଯେଉଁ ଅକ୍ରୂର ଥରେ ଏଠାକୁ ଆସି କମଳନୟନ କୃଷ୍ଣଙ୍କୁ ମଥୁରା ନେଇଯାଇଥିଲେ, ସେ କ'ଣ ପୁଣି ଆସିଗଲେ କି ? ॥୪୮॥ ଅନ୍ୟ ଜଣେ ଗୋପୀ କହିଲା, ଏ କଣ ଆସିଚି, ଆମକୁ ନେଇ ତାର ପ୍ରଭୁ ମୃତ କଂସର ପିଣ୍ଡଦାନ କରିବ ? ଏହିପରି ଗୋପୀମାନେ କଥାଭାଷା ହେଉଥିବା ବେଳେ ଉଦ୍ଧବ ନିଜର ପ୍ରାତଃକର୍ମ ଶେଷ କରି ସେଠାରେ ଆସି ପହଞ୍ଚିଗଲେ ॥୪୯॥

## ସତଚାଳିଶ ଅଧ୍ୟାୟ

# ଭ୍ରମର ଗୀତ

ପରିକ୍ଷିତ, ଉଦ୍ଧବଙ୍କର ଆଜାନୁଲମ୍ବିତ ବାହୁ, ନବପଦ୍ମପତ୍ର ପରି ଆୟତଚକ୍ଷୁ, ପୀତବସ୍ତ୍ର, ପଦ୍ମର ମାଳା ଏବଂ ପଦ୍ମ ପରି ସୁନ୍ଦର ଓ ଉଜ୍ଜ୍ୱଳ କୁଣ୍ଡଳଯୁକ୍ତ ମୁଖମଣ୍ଡଳକୁ ଦେଖି ଗୋପୀମାନେ ଆଶ୍ଚର୍ଯ୍ୟ ହୋଇଗଲେ । 'କୃଷ୍ଣଙ୍କ ପରି ବେଶଭୂଷା ହୋଇଥିବା ଏହି ସୁଦର୍ଶନ ପୁରୁଷ ଜଣକ କିଏ ? କାହାର ଦୂତ ହୋଇ କେଉଁଠୁ ଆସିଛନ୍ତି ?' ଏହିପରି କୁହାକୁହି ହୋଇ ଉତ୍ତମଶ୍ଳୋକ କୃଷ୍ଣଙ୍କର ପାଦପଦ୍ମରେ ଆଶ୍ରିତ ଉଦ୍ଧବଙ୍କୁ ଜାଣିବାପାଇଁ ଗୋପୀମାନେ ତାଙ୍କୁ ଚାରିପଟେ ଘେରିଗଲେ ।।୧-୨।। ସେମାନେ ଜାଣିଲେ ଯେ କୃଷ୍ଣଙ୍କର ବାର୍ତ୍ତା ଘେନି ସେ ଆସିଛନ୍ତି । ସଲଜ୍ଜ ଦୃଷ୍ଟି, ହାସ, ମଧୁରକଥା ଆଦିଦ୍ୱାରା ଉଦ୍ଧବଙ୍କୁ ଆଦର କରି ସେମାନେ ତାଙ୍କୁ ନେଇ ଏକାନ୍ତରେ ଏକ ଉତ୍ତମ ଆସନରେ ବସାଇଲେ ।।୩।। ଗୋପୀମାନେ କହିଲେ, ଉଦ୍ଧବ, ଆମେ ଜାଣୁ, ତୁମେ ଯଦୁପତି କୃଷ୍ଣଙ୍କର ପାର୍ଷଦ । ପିତାମାତାଙ୍କର ପ୍ରିୟକାର୍ଯ୍ୟ କରିବାପାଇଁ ପ୍ରଭୁ ତୁମକୁ ଏଠାକୁ ପଠାଇଛନ୍ତି ।।୪।। ତା' ନହେଲେ ଏହି ଗୋପାଳମାନଙ୍କ ଗ୍ରାମରେ ତାଙ୍କର କଣ ବା ମନେ ପକାଇବାର ଅଛି ? ମୁନିମାନେ ମଧ୍ୟ ନିଜ ସ୍ୱଜନଙ୍କର ସ୍ନେହବନ୍ଧନ ଛାଡ଼ି ପାରନ୍ତିନାହିଁ ।।୫।। ସ୍ୱଜନଙ୍କ ଛଡ଼ା ଅନ୍ୟମାନଙ୍କ ସହ ଯେଉଁ ବନ୍ଧୁତା କରାଯାଏ, ତାହା କେବଳ ନିଜର ସ୍ୱାର୍ଥପାଇଁ କରାଯାଇଥାଏ -- ଯେପରିକି ପୁରୁଷ ଓ ସ୍ତ୍ରୀଙ୍କ ମଧ୍ୟରେ ସମ୍ବନ୍ଧ, ଅଥବା ଭ୍ରମରର ଫୁଲମାନଙ୍କ ପ୍ରତି ବନ୍ଧୁତା ।।୬।। ବେଶ୍ୟାମାନେ ନିର୍ଦ୍ଧନ ବ୍ୟକ୍ତିଙ୍କୁ ପରିତ୍ୟାଗ କରନ୍ତି ଏବଂ ରକ୍ଷା କରିବାରେ ଅସମର୍ଥ ରାଜାକୁ ପ୍ରଜାମାନେ ଛାଡ଼ିଦିଅନ୍ତି । ପାଠପଢ଼ା ସରିଲେ ଶିଷ୍ୟ ଗୁରୁଙ୍କୁ ଛାଡ଼ିଦିଏ ଏବଂ ଦକ୍ଷିଣା ପାଇଗଲେ ପୁରୋହିତମାନେ ଯଜମାନଙ୍କୁ ଛାଡ଼ି ଚାଲିଯାନ୍ତି ।।୭।। ଗଛର ଫଳ ଶେଷ ହୋଇଗଲେ ପକ୍ଷୀମାନେ ଆଉ ସେ ଗଛରେ ରହନ୍ତି ନାହିଁ । ଭୋଜନଶେଷରେ ଅତିଥିମାନେ ଗୃହସ୍ଥଙ୍କୁ ଛାଡ଼ି ଚାଲିଯା'ନ୍ତି । ବଣ ପୋଡ଼ିଗଲେ ପଶୁମାନେ ଆଉ ସେଥିରେ ରହନ୍ତି ନାହିଁ । ଜାର ପୁରୁଷମାନେ ଭୋଗ କରି ସାରିବା ପରେ ସେମାନଙ୍କ ପ୍ରତି ଅନୁରକ୍ତା ସ୍ତ୍ରୀଙ୍କୁ ଛାଡ଼ିଦିଅନ୍ତି ।।୮।।

ଗୋପୀମାନେ କାୟମନୋବାକ୍ୟରେ କୃଷ୍ଣଙ୍କର ହିଁ ଥିଲେ । କୃଷ୍ଣଙ୍କର ଦୂତ ଉଦ୍ଧବ ଆସିଥିବାର ଦେଖି ସେମାନେ ଲୋକଲଜ୍ଜା ଛାଡ଼ିଦେଲେ । ବାଲ୍ୟାବସ୍ଥା ଓ କୈଶୋର ଅବସ୍ଥାରେ କୃଷ୍ଣ ଯେଉଁ ସବୁ କର୍ମ କରିଥିଲେ, ତାହାକୁ ବାହୁନି ବାହୁନି ରୋଦନ କରିବାକୁ ଲାଗିଲେ ।।୯-୧୦।। ଏହି ସମୟରେ ଜଣେ ଗୋପୀ କୃଷ୍ଣଙ୍କର ମିଳନସୁଖ ଚିନ୍ତା କରୁଥିବାବେଳେ ଗୋଟିଏ ଭ୍ରମର ଉଡ଼ି ଆସୁଥିବାର ଦେଖିଲା । ପ୍ରିୟତମ ତାକୁ (ମାନ ଭାଙ୍ଗିବାପାଇଁ) ଦୂତରୂପେ ପଠାଇଛନ୍ତି ବୋଲି ଭାବି ସେ ଭ୍ରମରକୁ କହିବା ଛଳରେ ତାଙ୍କୁ ଏହିପରି କହିଲା -- ।।୧୧।। ଗୋପୀ କହିଲା, ରେ ମଧୁପ, ତୁ କପଟୀଙ୍କର ସଖା । ତୁ ଆମର ପାଦ ଛୁଅଁ ନାହିଁ । କୃଷ୍ଣଙ୍କ ବନମାଳା ଆମର ସଉତୁଣୀ ମଥୁରାପୁରୀର ନାରୀମାନଙ୍କ ବକ୍ଷସ୍ଥଳରେ ଲାଗି ସେଥିରେ ଲାଗିଥିବା କୁଙ୍କୁମରେ ରଞ୍ଜିତ ହୋଇଚି । ତୋର ଶ୍ମଶ୍ରୁ ମଧ୍ୟ ସେଥିପାଇଁ (ସେହି ବନମାଳାରେ ବସିଥିବା ଯୋଗୁଁ) ଲାଲ ଦେଖାଯାଉଚି । ନିଜ ବନମାଳାରେ ଲାଗିଥିବା ସେହି ମାନିନୀମାନଙ୍କର ସ୍ତନ-କୁଙ୍କୁମ କୃଷ୍ଣ ଯାଦବମାନଙ୍କ ସଭାରେ ଦେଖାଇହୁଅନ୍ତୁ । ତୁ ତାଙ୍କର ଦୂତ ହୋଇ ଆମକୁ ଠକିବାକୁ ଚେଷ୍ଟା କର ନାହିଁ ।।୧୨।। ଧୂର୍ତ୍ତ ଭ୍ରମର, ତୁ ଯେପରି ଫୁଲମାନଙ୍କରୁ ମହୁ ଚାଖି ସେମାନଙ୍କୁ ଛାଡ଼ି ଚାଲିଯାଉ, ସେ ସେହିପରି ତାଙ୍କର ଅଧର-ସୁଧା ଆମକୁ ଥରେ ମାତ୍ର ପାନ କରାଇ ଏବେ ଏବେ ଆମକୁ ଛାଡ଼ି ଚାଲିଯାଇଛନ୍ତି । ଆମେ ତ ବୁଝିପାରୁ ନାହୁଁ, ଲକ୍ଷ୍ମୀ କିପରି ତାଙ୍କ ପାଦପଦ୍ମ ସେବା କରୁଛନ୍ତି । ନିଶ୍ଚୟ ସେହି ଉତ୍ତମଶ୍ଳୋକ ଫୁସୁଲା ଫୁସୁଲି କରି ତାଙ୍କ ଚିତ୍ତହରଣ କରିନେଇଛନ୍ତି ।।୧୩।।

ରେ ଷଟ୍‌ପଦ, ତୋର ଗୁଞ୍ଜରଣଦ୍ୱାରା ତୁ ଯାହାଙ୍କର ଗୁଣଗାନ କରିବାରେ ଲାଗିଚୁ, ସେ ଯଦୁପତି ଶ୍ରୀକୃଷ୍ଣ ଆମ ପାଇଁ ନୂଆ ନୁହନ୍ତି । ଆମେ ତ ତାଙ୍କ ପାଇଁ ଘରଦ୍ୱାର ଛାଡ଼ି ଦେଇଚୁ । ଆମ ଠାରୁ ତୁ କଣ ପାଇବୁ ? ମଥୁରାବାସିନୀ ତାଙ୍କର ଯେଉଁ ନୂଆ ସଖୀମାନେ ଅଛନ୍ତି, ଯାହାଙ୍କ କୁଚର ପୀଡ଼ା ତାଙ୍କ ଦ୍ୱାରା ଦୂର ହୋଇଚି, ସେମାନଙ୍କ ଆଗରେ ତାଙ୍କ ପ୍ରସଙ୍ଗ ଗାନ କଲେ ଅବଶ୍ୟ ତୋର ଅଭୀଷ୍ଟ ପୂରଣ ହେବ ॥୧୪॥ ରେ ଧୂର୍ତ୍ତ, ସ୍ୱର୍ଗ ମର୍ତ୍ତ୍ୟ ଓ ପାତାଳ ଏହି ତ୍ରିଭୁବନରେ ଏପରି କେଉଁ ସ୍ତ୍ରୀ ଅଛି, ଯେକି ତାଙ୍କୁ ଅପ୍ରାପ୍ୟ ? ତାଙ୍କ କପଟ ମଧୁର ହାସ, କଟାକ୍ଷ ଓ ପ୍ରେମପୂର୍ଣ୍ଣ ଇଙ୍ଗିତଦ୍ୱାରା ଯେ କେହି ନାରୀ କିଣି ହୋଇଯିବ । ଅନ୍ୟଙ୍କ କଥା ଛାଡ଼, ସ୍ୱୟଂ ଲକ୍ଷ୍ମୀ ମଧ୍ୟ ତାଙ୍କ ପାଦଧୂଳିକୁ ସେବା କରୁଛନ୍ତି । ଆମେମାନେ ତ ନଗଣ୍ୟ । କିନ୍ତୁ ତାଙ୍କର କୀର୍ତ୍ତି ଚାରିଆଡ଼େ ବିସ୍ତାରିତ ହୋଇଥିବାରୁ ତାଙ୍କର ଯେଉଁ 'ଉତ୍ତମଶ୍ଳୋକ' ନାମ ଅଛି, ତାହା ଆମପରି ଅକିଞ୍ଚନଙ୍କ ପକ୍ଷରେ ସତ୍ୟ ହେଉ ॥୧୫॥ ରେ କପଟୀ, ତୋ ମୁଣ୍ଡରେ ଆମ ପାଦକୁ ଛୁଅଁନା । ଆମେ ତୋତେ ଜାଣୁ, ଆମକୁ ମନାଇବାପାଇଁ କୃଷ୍ଣ ତୋତେ ଦୂତ କରି ପଠାଇଛନ୍ତି । ତେଣୁ ଅନୁନୟ ବିନୟ ଆଦି ଚାଟୁକାର୍ଯ୍ୟରେ ତୁ ପାରଙ୍ଗମ । କିନ୍ତୁ ଯାହାଙ୍କପାଇଁ ଆମେ ଘରଦ୍ୱାର, ସ୍ୱାମୀ, ପୁତ୍ର, ଇହ, ପରଲୋକ ସବୁ କିଛି ତ୍ୟାଗ କରିଥିଲୁ, ସେହି ଅକୃତଜ୍ଞ ପୁରୁଷ ଆମକୁ ଛାଡ଼ି ଚାଲିଗଲେ । ଏବେ ତାଙ୍କ କଥାରେ କଣ ବା ବିଶ୍ୱାସ ଅଛି ? ॥୧୬॥ ସେ କେଡ଼େ ନିଷ୍ଠୁର ନୁହନ୍ତି ! ରାମାବତାରରେ ବ୍ୟାଧପରି ବାନରରାଜ ବାଳୀକୁ ନିହତ କଲେ । ନିଜ ସ୍ତ୍ରୀର ବଶୀଭୂତ ହୋଇ କାମାତୁରା ସୂର୍ପଣଖାର ନାକ କାନ କାଟିଦେଇ ତାକୁ ବିକଳାଙ୍ଗ କରିଦେଲେ । କାକ ଯେପରି କେହି ଦେଇଥିବା ଅନ୍ନକୁ ଖାଇ ସାରି (ଆହୁରି ଖାଇବାପାଇଁ) ତାର ଚାରିପଟେ ଉଡ଼ିବୁଲେ, ସେହିପରି ବାମନ ଅବତାରରେ ବଳିଠାରୁ ଦାନ ନେଇ ସେ ତାକୁ ବନ୍ଧନ କଲେ । ତେଣୁ କୃଷ୍ଣକଥା ଛାଡ଼ିବା କଠିନ ହେଲେ ମଧ୍ୟ ଆଉ ତାଙ୍କ ସହିତ ବନ୍ଧୁତାର ପ୍ରୟୋଜନ ନାହିଁ ॥୧୭॥ କୃଷ୍ଣଙ୍କ ଲୀଳାମୃତରୁ କଣିକାଏ ମଧ୍ୟ ଥରେମାତ୍ର ଯାହାର କାନରେ ପଡିଥାଏ, ସେ ସବୁ ଦୁଃଖ ସୁଖ ଆଦି ଦ୍ୱନ୍ଦ୍ୱଭାବ ଭୁଲିଯାଇ ତାଙ୍କର ସେବାରେ ହିଁ ନିଜକୁ ହଜାଇଦିଏ । ନିଜର ଘରଦ୍ୱାର ଓ କୁଟୁମ୍ବ ଆଦିଙ୍କୁ ଛାଡ଼ିଦେଇ ସେ ଅକିଞ୍ଚନ ହୋଇ ପକ୍ଷୀମାନଙ୍କ ପରି ଭିକ୍ଷାବୃତ୍ତି (ମାଧୁକରୀ) ଦ୍ୱାରା ପ୍ରାଣଧାରଣ କରେ ॥୧୮॥ ଯେପରି କୃଷ୍ଣସାର ମୃଗୀମାନେ ବ୍ୟାଧର ସୁମଧୁର ଗୀତରେ ମୋହିତ ହୋଇ ତାର ଶରାଘାତ ଦ୍ୱାରା ପୀଡ଼ିତ ହୁଅନ୍ତି, ସେହିପରି ଆମେ ସରଳବିଶ୍ୱାସୀ ଗୋପୀମାନେ ସେହି ଛଳିଆ ନାଗରଙ୍କର ମନଭୁଲାଣିଆ କଥାରେ ଭୁଲିଯାଇ ତାଙ୍କରି ନଖାଘାତଯୋଗୁଁ ପ୍ରବଳ କାମଜ୍ୱରରେ କଷ୍ଟ ଭୋଗୁଚୁ । ତେଣୁ କୃଷ୍ଣଦୂତ, ତୁମେ ତାଙ୍କ କଥା ନକହି ଅନ୍ୟ ଯାହା କହିବାର କହ ॥୧୯॥ ଭ୍ରମର, ତୁମେ ତ ଆମ ପ୍ରିୟତମଙ୍କର ସଖା । (ଏଠାରୁ ଯାଇ ପୁଣି ତାଙ୍କରି ବାର୍ତ୍ତା ନେଇ ଆସିଚ – ଏହି ଅର୍ଥରେ) ପୁଣି ସେ ତୁମକୁ ଏଠାକୁ ପଠାଇଛନ୍ତି କି ? ଅବଶ୍ୟ ତୁମେ ଆମର ପ୍ରିୟ, ଆମର ମାନନୀୟ । ଯଦି ଆମକୁ ତୁମର କିଛି ଅନୁରୋଧ କରିବାର ଅଛି, କହ । ଯଦି ଆମକୁ ଏଠାରୁ ନେବାକୁ ଚାହୁଁଚ, ଆମେ ସେଠାରେ ଯାଇ କଣ କରିବୁ ? ତାଙ୍କ ପାଖରେ ନିଶ୍ଚୟ କେହି ନା କେହି ସ୍ତ୍ରୀ ରହିଥିବେ । ତାଙ୍କ ପତ୍ନୀ ଲକ୍ଷ୍ମୀ ତ ସର୍ବଦା ତାଙ୍କରି ବକ୍ଷସ୍ଥଳରେ ଅବସ୍ଥାନ କରନ୍ତି ॥୨୦॥ ସୌମ୍ୟ, ଆର୍ଯ୍ୟପୁତ୍ର ଶ୍ରୀକୃଷ୍ଣ ଗୁରୁକୁଳରୁ ଫେରି ଏବେ ମଥୁରାରେ ଅଛନ୍ତି ତ ? ସେ ନନ୍ଦ, ଯଶୋଦା, ପିଲାଦିନର ସାଙ୍ଗସାଥି, ବନ୍ଧୁ ଓ ଗୋପାଳମାନଙ୍କୁ ମନେ ପକାନ୍ତି ତ ? କେବେ କେବେ ଆମପରି ଦାସୀମାନଙ୍କ କଥା ତାଙ୍କର ମନେ ପଡ଼େ ନା ନାହିଁ ? କେବେ ପୁଣି ଅଗୁରୁର ସୁଗନ୍ଧରେ ଭରିଥିବା ତାଙ୍କର ସେହି ସୁନ୍ଦର ଭୁଜକୁ ଆମ ମସ୍ତକରେ ଧାରଣ କରିବାର ସୁଯୋଗ ଆମକୁ ମିଳିବ ? ॥୨୧॥

ଶ୍ରୀ ଶୁକଦେବ କହିଲେ, ଶ୍ରୀକୃଷ୍ଣଙ୍କୁ ଦେଖିବା ଇଚ୍ଛାରେ ଗୋପୀଙ୍କର ଉଦ୍‌ବେଗ ଦେଖି ଓ ସେମାନଙ୍କ କଥା ଶୁଣି ଉଦ୍ଧବ ସେମାନଙ୍କୁ ସାନ୍ତ୍ୱନା ଦେବାପାଇଁ ପ୍ରିୟତମ କୃଷ୍ଣଙ୍କର ସନ୍ଦେଶ ଶୁଣାଇଲେ ॥୨୨॥ ଉଦ୍ଧବ କହିଲେ, ହେ ଗୋପୀମାନେ, ତୁମେସବୁ ଧନ୍ୟ, ତୁମର ଜୀବନ ସଫଳ ହୋଇଚି । କୃଷ୍ଣଙ୍କଠାରେ ନିଜର ହୃଦୟ ଅର୍ପଣ କରି ତୁମେ ସଂସାରରେ ପୂଜନୀୟ ହୋଇଛ ॥୨୩॥ ଦାନ,ବ୍ରତ, ତପ,ହୋମ,ଜପ, ବେଦାଧ୍ୟୟନ,ଧ୍ୟାନ, ଧାରଣା, ସଂଯମ ଓ ଅନ୍ୟ ବିଭିନ୍ନ ସାଧନାଦ୍ୱାରା କୃଷ୍ଣଭକ୍ତି ସମ୍ଭବ ହୁଏ ॥୨୪॥

କିନ୍ତୁ ତୁମେ ଉତ୍ତମଶ୍ଳୋକ ଭଗବାନ ଶ୍ରୀକୃଷ୍ଣଙ୍କ ପ୍ରତି ଯେଉଁ ପ୍ରେମଭକ୍ତି ଦେଖାଇଲ, ତାହା ସଂସାରର ଆଦର୍ଶ ହୋଇ ରହିବ ଏବଂ ମୁନିଋଷିଙ୍କ ପକ୍ଷରେ ମଧ୍ୟ ଦୁର୍ଲଭ ହେବ ।।୨୫।। ତୁମେମାନେ ନିଜର ପତି, ପୁତ୍ର, ଜ୍ଞାତି, ବନ୍ଧୁ ଓ ଘରଦ୍ୱାର ଛାଡ଼ିଦେଇ ପୁରୁଷୋତ୍ତମ କୃଷ୍ଣଙ୍କୁ ନିଜର ସ୍ୱାମୀ ରୂପେ ବରଣ କଲ ।।୨୬।। ତୁମେମାନେ ମହାଭାଗ୍ୟବତୀ । କାୟମନୋବାକ୍ୟରେ ତୁମେ କୃଷ୍ଣଭକ୍ତିରେ ବିହ୍ୱଳ ହୋଇଛ । ତୁମର କୃଷ୍ଣବିରହ ଦେଖି ମୁଁ ଅନୁପ୍ରାଣିତ ହୋଇଚି, ଅନୁଗୃହୀତ ହୋଇଚି ।।୨୭।। କଲ୍ୟାଣୀୟା ଗୋପୀମାନେ ! ତୁମ ପ୍ରିୟତମଙ୍କର ଏକାନ୍ତଦୂତ ରୂପେ ମୁଁ ତାଙ୍କର ଯେଉଁ ସନ୍ଦେଶ ଘେନି ତୁମ ପାଖକୁ ଆସିଚି, ତାହା ଶୁଣିଲେ ତୁମେ ସୁଖୀ ହେବ । ବର୍ତ୍ତମାନ ମୁଁ ତାହା କହୁଚି, ଶୁଣ ।।୨୮।। ଉଦ୍ଧବ କହିଲେ, କୃଷ୍ଣ କହିଛନ୍ତି, ମୁଁ ସମସ୍ତଙ୍କ ଆତ୍ମା ରୂପରେ ସମସ୍ତଙ୍କ ମଧ୍ୟରେ ବିଦ୍ୟମାନ । ତେଣୁ ତୁମମାନଙ୍କ ସହିତ ମୋର ବିୟୋଗ ହୋଇ ନ ପାରେ । ଯେପରି ପ୍ରତ୍ୟେକ ପ୍ରାଣୀର ଦେହ ଆକାଶ, ବାୟୁ, ଅଗ୍ନି, ଜଳ ଏବଂ ପୃଥ୍ୱୀ - ଏହି ପଞ୍ଚଭୂତକୁ ନେଇ ଗଠିତ, ସେହିପରି ମନ, ପ୍ରାଣ, ପଞ୍ଚଭୂତ, ଇନ୍ଦ୍ରିୟ ଓ ଇନ୍ଦ୍ରିୟମାନଙ୍କ ବିଷୟ ମୋତେ ଆଶ୍ରୟ କରିଛନ୍ତି ।।୨୯।। ମୁଁ ନିଜର ମାୟାଦ୍ୱାରା ଭୂତ, ଇନ୍ଦ୍ରିୟ ଓ ଇନ୍ଦ୍ରିୟର ବିଷୟ ରୂପରେ ନିଜକୁ ହିଁ ନିଜେ ସୃଷ୍ଟି କରେ, ପାଳନ କରେ ଏବଂ ଲୀନ କରେ ।।୩୦।। ଆତ୍ମା ଜ୍ଞାନମୟ, ଶୁଦ୍ଧ । ଗୁଣମାନଙ୍କ ଠାରୁ ଏହା ଭିନ୍ନ । ନିଦ୍ରା, ସ୍ୱପ୍ନ ଓ ଜାଗରଣ--ଏହି ତିନୋଟି ଅବସ୍ଥା ଭେଦରେ ଆତ୍ମାର ରୂପକୁ ଅନୁମାନ କରାଯାଏ ।।୩୧।। ସ୍ୱପ୍ନ ଯେପରି ମିଥ୍ୟା, ଜାଗ୍ରତ ଅବସ୍ଥାରେ ଦିଶୁଥିବା ଇନ୍ଦ୍ରିୟବିଷୟ ସବୁ ସେହିପରି ମିଥ୍ୟା । ତେଣୁ ଜାଗ୍ରତ ଅବସ୍ଥାରେ ଇନ୍ଦ୍ରିୟମାନଙ୍କର ନିରୋଧ ଆବଶ୍ୟକ । ତଦ୍ୱାରା ଆତ୍ମା-ସ୍ୱରୂପ ମୋର ସାକ୍ଷାତ୍‌କାର ସମ୍ଭବ ହେବ ।।୩୨।। ଯେପରି ନଦୀମାନେ ସମୁଦ୍ରରେ ପଡ଼ି ମିଳେଇଯାନ୍ତି, ସେହିପରି ମୋତେ ଲାଭ କରିବା ପରେ ବେଦାଭ୍ୟାସ, ଯୋଗସାଧନ, ସାଂଖ୍ୟ, ତ୍ୟାଗ, ତପସ୍ୟା, ଇନ୍ଦ୍ରିୟସଂଯମ ଓ ସତ୍ୟ ଆଦି ସମସ୍ତ ସାଧନା ଶେଷ ହୋଇଯାଏ ।।୩୩।। ଗୋପୀମାନେ, ମୁଁ ତୁମର ପ୍ରିୟ । ତୁମଠାରୁ ମୁଁ ଦୂରରେ ରହିବାର କାରଣ ହେଉଛି, ସବୁବେଳେ ତୁମେମାନେ ମୋ' ବିଷୟ ଚିନ୍ତା କରି ତୁମମାନଙ୍କ ମନମଧ୍ୟକୁ ମୋତେ ଟାଣିନେବ । ନିଜର ପ୍ରିୟତମ ଦୂର ଦେଶରେ ରହିଲେ ସ୍ତ୍ରୀମାନେ ତାଙ୍କୁ ମନଭିତରେ ଯେତେ ଚିନ୍ତା କରନ୍ତି, ଦୃଷ୍ଟିପଥରେ ରହିଲେ ସେତେ କରନ୍ତି ନାହିଁ ।।୩୪-୩୫।। ସମସ୍ତ ବିଷୟବୃତ୍ତିରୁ ମୁକ୍ତ ହୋଇ ମୋଠାରେ ମନୋନିବେଶ କଲେ ଏବଂ ମୋତେ ସବୁବେଳେ ସ୍ମରଣ କଲେ, ମୋତେ ଅତି ଶୀଘ୍ର ଲାଭ କରିପାରିବ । କଲ୍ୟାଣୀମାନେ, ଶାରଦୀୟ ରଜନୀରେ ଏହି ବୃନ୍ଦାବନରେ ମୁଁ ତୁମମାନଙ୍କ ସହିତ ରାସକ୍ରୀଡା କରୁଥିବାବେଳେ ଯେଉଁ ଗୋପୀମାନଙ୍କୁ ତାଙ୍କର ସ୍ୱାମୀମାନେ ଛାଡ଼ି ନଥିଲେ, ସେମାନେ ଘରଭିତରେ ରହି ମଧ୍ୟ ମୋର ଲୀଳା ସବୁ ସ୍ମରଣ କରି ମୋତେ ପ୍ରାପ୍ତ ହୋଇଥିଲେ ।।୩୬-୩୭।।

ଶ୍ରୀଶୁକଦେବ କହିଲେ, ପରିକ୍ଷିତ, ପ୍ରିୟତମ ଶ୍ରୀକୃଷ୍ଣଙ୍କର ସନ୍ଦେଶ ଶୁଣି ଗୋପୀମାନେ ଆନନ୍ଦିତ ହେଲେ ଏବଂ କୃଷ୍ଣଙ୍କର ଲୀଳାମାନ ମନେ ପଡ଼ିବାରୁ ସେମାନେ ଉଦ୍ଧବଙ୍କୁ କହିବାକୁ ଲାଗିଲେ-- ।।୩୮।। ପାପୀ କଂସ ଯାଦବମାନଙ୍କୁ ବହୁ କଷ୍ଟ ଦେଉଥିଲା । ସୌଭାଗ୍ୟର ବିଷୟ ସେ ଆଜି ତାର ଅନୁଚରମାନଙ୍କ ସହିତ ନିହତ ହୋଇଛି । ପୁଣି ସୌଭାଗ୍ୟର ବିଷୟ ଯେ, ଭଗବାନ୍ ଶ୍ରୀକୃଷ୍ଣ ତାଙ୍କ ଆତ୍ମୀୟମାନଙ୍କର ସକଳ ମନସ୍କାମନା ପୂର୍ଣ୍ଣ କରି ସେମାନଙ୍କ ସହ କୁଶଳରେ ଅଛନ୍ତି ।।୩୯।। କେହି କେହି ଗୋପୀ କହିଲେ, ସୌମ୍ୟ, ଆମେ ଯେପରି ସ୍ନେହ ଓ ଲାଜରେ ଟିକିଏ ହସିଦେଉ ଉଦାର ଚାହାଣିରେ ତାଙ୍କୁ ଆଦର କରୁଥିଲୁ ଏବଂ ଆମ ପ୍ରତି ତାଙ୍କର ଯେଉଁ ପ୍ରୀତିଭାବ ଥିଲା, ମଥୁରାର ପୁରନାରୀଙ୍କ ପ୍ରତି ତାଙ୍କର ସେଇ ପ୍ରୀତି ଅଛି ତ ? ।।୪୦।। ସେ ତ କାମକଳାରେ ଅତିଶୟ ଚତୁର; ଶ୍ରେଷ୍ଠ ସ୍ତ୍ରୀମାନଙ୍କର ପ୍ରିୟ । ମଥୁରାରମଣୀଙ୍କ ମଧୁର କଥା ଓ ବିଳାସପୂର୍ଣ୍ଣ ହାବଭାବ ଦେଖି ସେମାନଙ୍କ ପ୍ରତି ସେ କାହିଁକି ଆକୃଷ୍ଟ ହେଉ ନ ଥିବେ ? ।।୪୧।। ଆଉଜଣେ ଗୋପୀ କହିଲା, ସାଧୁ ଉଦ୍ଧବ, ଗୋବିନ୍ଦ ମଥୁରାନଗରୀର ସ୍ତ୍ରୀମାନଙ୍କ ମେଳରେ ରହି ଖୋଲାଖୋଲି ପ୍ରେମାଳାପ କରୁଥିବା ବେଳେ ଆମ ପରି ଗାଉଁଲି ସ୍ତ୍ରୀମାନଙ୍କ କଥା କେବେ କ'ଣ ମନେପକାନ୍ତି ? ।।୪୨।। ଆଉ କେତେକ ଗୋପୀ କହିଲେ, କୁମୁଦ ଓ କୁନ୍ଦ ପୁଷ୍ପଶୋଭିତ

ଜ୍ୟୋତ୍ସ୍ନାବିଧୌତ ବୃନ୍ଦାବନର ସେହି ରାତ୍ରିଗୁଡ଼ିକରେ ଯେତେବେଳେ ସେ ରାସମଣ୍ଡଳ କରି ଆମମାନଙ୍କ ସହିତ ନୃତ୍ୟ କରୁଥିଲେ, ପାଦରେ ନୂପୁରସବୁ ବାଜି ଉଠୁଥିଲା ଏବଂ ଆମେ ତାଙ୍କ ମଧୁର ମନୋହର ଲୀଳାସବୁ ଗାନ କରୁଥିଲୁ -- ସେହି ପ୍ରେମିକାମାନଙ୍କ ସହ ବିହାର କରୁଥିବା କଥା ବେଳେ ବେଳେ ତାଙ୍କର ମନେପଡ଼େ ତ ? ॥୪୩॥ ଆଉ କେହି କେହି ଗୋପୀ କହିଲେ, ଇନ୍ଦ୍ର ବର୍ଷା କରି ନିଦାଘଦ୍ୱାରା ସନ୍ତପ୍ତ ବନମଧ୍ୟରେ ଯେପରି ନୂତନ ପ୍ରାଣର ସଞ୍ଚାର କରନ୍ତି, ସେହିପରି ତାଙ୍କରି ବିରହଅଗ୍ନିଦ୍ୱାରା ସନ୍ତପ୍ତ ଆମମାନଙ୍କୁ ତାଙ୍କ ଅଙ୍ଗସ୍ପର୍ଶ ଦ୍ୱାରା ଜୀବନ ଦାନ କରିବାପାଇଁ ସେ କ'ଣ ଏଠାକୁ ଆସିବେ ନାହିଁ ? ॥୪୪॥ ଆଉ ଜଣେ ଗୋପୀ କହିଲା, କୃଷ୍ଣ ତାଙ୍କ ଶତ୍ରୁମାନଙ୍କୁ ମାରି ରାଜ୍ୟ ପାଇଗଲେଣି । ସେ ରାଜକନ୍ୟାଙ୍କୁ ବିବାହ କରି ତାଙ୍କର ବନ୍ଧୁ ଓ ସ୍ୱଜନମାନଙ୍କ ସହିତ ଆନନ୍ଦରେ ରହିବେ, ଏଠାକୁ କାହିଁକି ଆସିବେ ? ॥୪୫॥ ପୁଣି କେହି କେହି କହିଲେ, କୃଷ୍ଣଙ୍କର କ'ଣ ଅଭାବ ଅଛି ? ସେ ପୂର୍ଣ୍ଣକାମ । ସମସ୍ତ ଶକ୍ତି ଓ ସମ୍ପଦର ଅଧିକାରୀ । ଲକ୍ଷ୍ମୀଦେବୀଙ୍କର ସେ ପତି । ଆମପରି ବନବାସିନୀ ବା ରାଜନନ୍ଦିନୀଙ୍କ ସେଠାରେ ତାଙ୍କର କ'ଣ ବା ପ୍ରୟୋଜନ ଅଛି ? ॥୪୬॥ ବେଶ୍ୟା ହେଲେ ମଧ୍ୟ ପିଙ୍ଗଳା ଠିକ୍ କଥା କହିଥିଲା । କୌଣସି ଆଶା ନ ରହିଲେ ହିଁ ପ୍ରକୃତ ସୁଖ ମିଳିଥାଏ । ତାହା ଜାଣି ମଧ୍ୟ କୃଷ୍ଣଙ୍କ ଠାରେ ଆମର ଆଶା ଦୂର ହେଉନାହିଁ ॥୪୭॥ ଉତ୍ତମଶ୍ଳୋକ ଶ୍ରୀକୃଷ୍ଣଙ୍କ ସହିତ ଏକାନ୍ତ ଆଳାପ ଏପରି ଆକର୍ଷଣୀୟ ଯେ, ତାହା କିଏ ଛାଡ଼ିବାକୁ ଉତ୍ସାହିତ ହେବ ? ତାଙ୍କର ଇଚ୍ଛା ନ ଥିଲେ ମଧ୍ୟ ଲକ୍ଷ୍ମୀଦେବୀ ତାଙ୍କ ବକ୍ଷସ୍ଥଳକୁ କେବେହେଲେ ଛାଡ଼ିପାରୁ ନାହାନ୍ତି ॥୪୮॥ ଉଦ୍ଧବ, ଏହି ଯମୁନା, ଏହି ଗୋବର୍ଦ୍ଧନ ଓ ଏହି ବୃନ୍ଦାବନରେ ସେ ବେଣୁ ବଜାଇ ଗାଇମାନଙ୍କୁ ଚରାଉଥିଲେ । ଏମାନେ ବାରମ୍ବାର ଆମକୁ ସେହି ନନ୍ଦସୁତଙ୍କ କଥା ମନେ ପକାଇ ଦେଉଛନ୍ତି । ଏବେ ମଧ୍ୟ ସେଠାରେ ତାଙ୍କ ସୁନ୍ଦର ପଦଚିହ୍ନଗୁଡ଼ିକ ଦେଖାଯାଉଛି । ଆମେ ତାଙ୍କୁ କେବେ ଭୁଲି ପାରିବୁ ନାହିଁ ॥୪୯-୫୦॥ ତାଙ୍କର ସେହି ସୁନ୍ଦର ଚାଲି, ମନ୍ଦମନ୍ଦ ହସ, ମଧୁର କଟାକ୍ଷ ଓ କଥାସବୁ ଆମର ଚିତ୍ତକୁ ହରଣ କରିନେଇଛି । ଆମେ କିପରି ତାଙ୍କୁ ଭୁଲିପାରିବୁ ? ॥୫୧॥ ହେ କୃଷ୍ଣ, ହେ ଲକ୍ଷ୍ମୀପତି, ବ୍ରଜପତି, ଆର୍ତ୍ତତ୍ରାଣ, ଗୋବିନ୍ଦ, ଦୁଃଖସାଗରରେ ମଗ୍ନ ଏହି ବ୍ରଜମଣ୍ଡଳକୁ ତୁମେ ଉଦ୍ଧାର କର ॥୫୨॥

ଶ୍ରୀ ଶୁକଦେବ କହିଲେ, ପରିକ୍ଷିତ, କୃଷ୍ଣଙ୍କର ସନ୍ଦେଶ ଶୁଣି ଗୋପୀମାନଙ୍କର ବିରହଜ୍ୱାଳା ଶାନ୍ତ ହେଲା । କୃଷ୍ଣଙ୍କୁ ଇନ୍ଦ୍ରିୟ ଅତୀତ ନିଜର ଆତ୍ମା ବୋଲି ଜାଣି ସେମାନେ ଉଦ୍ଧବଙ୍କୁ ଆଦରସତ୍କାର କଲେ ॥୫୩॥ ଗୋପୀମାନଙ୍କର ଶୋକ ଦୂର କରିବାକୁ ଇଚ୍ଛାକରି ଉଦ୍ଧବ ବ୍ରଜରେ କିଛି ମାସ ରହିଗଲେ ଏବଂ କୃଷ୍ଣଲୀଳା କୀର୍ତ୍ତନ କରି ବ୍ରଜବାସୀଙ୍କୁ ଆନନ୍ଦିତ କଲେ ॥୫୪॥ ମହାରାଜ ପରିକ୍ଷିତ, ଉଦ୍ଧବ ଯେତେଦିନ ନନ୍ଦଙ୍କର ବ୍ରଜରେ ବାସ କଲେ ସେଇ ଦିନଗୁଡ଼ିକ କେବଳ କୃଷ୍ଣଙ୍କ ଆଲୋଚନାରେ କଟିଗଲା । ବ୍ରଜବାସୀଙ୍କୁ ସେତକ କ୍ଷଣପ୍ରାୟ ଲାଗିଲା ॥୫୫॥ କୃଷ୍ଣଙ୍କର ଦାସ ଭକ୍ତ ଉଦ୍ଧବ ବ୍ରଜର ନଦୀ, ବନ, ପର୍ବତ, କନ୍ଦର ଓ ପୁଷ୍ପିତ ବୃକ୍ଷରାଜିକୁ ଦେଖି ବ୍ରଜବାସୀଙ୍କୁ କୃଷ୍ଣଙ୍କର ଲୀଳାବିଷୟରେ ପଚାରୁଥିଲେ ଏବଂ ସେମାନେ ତାହାସବୁ ମନେପକାଇ ଆନନ୍ଦ ଅନୁଭବ କରୁଥିଲେ ॥୫୬॥ କୃଷ୍ଣପ୍ରାଣା ଗୋପୀମାନଙ୍କର କୃଷ୍ଣଙ୍କ ପ୍ରତି ହୃଦୟର ଆବେଗ ଦେଖି ଉଦ୍ଧବଙ୍କର ହୃଦୟ ଉଚ୍ଛୁଳି ପଡ଼ିଲା ଏବଂ ସେମାନଙ୍କୁ ନମସ୍କାର କରି ସେ ଏହିପରି ଗାଇବାକୁ ଲାଗିଲେ-- ॥୫୭॥

ସଂସାରରେ ଦେହଧାରୀଙ୍କ ମଧ୍ୟରେ ଏହି ଗୋପୀମାନେ ହିଁ ଶ୍ରେଷ୍ଠ । ସମସ୍ତ ପ୍ରାଣୀଙ୍କ ମଧ୍ୟରେ ସେମାନେ କୃଷ୍ଣଙ୍କୁ ହିଁ ଦେଖୁଛନ୍ତି । ଭବଭୟରେ ଭୀତ ମୁନିମାନେ ଓ ମୋପରି ବ୍ୟକ୍ତିମାନେ ଯାହା ବାଞ୍ଛା କରନ୍ତି, ତାହା ସେମାନେ ଲାଭ କରିଛନ୍ତି । ବ୍ରହ୍ମାଙ୍କର ଜନ୍ମମାନଙ୍କରେ ମଧ୍ୟ ଏପରି କୃଷ୍ଣଲୀଳାରସର ଆସ୍ୱାଦନ ସମ୍ଭବ ନୁହେଁ ॥୫୮॥ କୃଷ୍ଣଙ୍କ ଠାରେ ପରମ ପ୍ରେମଭାବ ରଖିଥିବା ଏହି ବନବାସିନୀ ଗୋପୀମାନେ ପୁଣି ବ୍ୟଭିଚାରିଣୀ ! ସେମାନେ କେଉଁଠି ଏବଂ କୃଷ୍ଣଙ୍କ ଠାରେ ନିଗୂଢ଼ ଭାବ କେଉଁଠି ? ଅଜାଣତରେ ଅମୃତ ସେବନ କଲେ ଯେପରି ସମସ୍ତ ରୋଗରୁ ଆରୋଗ୍ୟ ମିଳିଥାଏ, ସେହିପରି ଅଜ୍ଞବ୍ୟକ୍ତି ତାଙ୍କୁ ଭଜନ କଲେ ତାର ସମସ୍ତ ମଙ୍ଗଳ ହୁଏ ॥୫୯॥ ରାସଲୀଳା ସମୟରେ ଶ୍ରୀକୃଷ୍ଣ ବ୍ରଜାଙ୍ଗନାମାନଙ୍କର ଗଳାରେ ହାତ ରଖି ସେମାନଙ୍କୁ ଆଲିଙ୍ଗନ କରିବାଦ୍ୱାରା ସେମାନଙ୍କର ମନୋବାଞ୍ଛା ଯେପରି ପୂର୍ଣ୍ଣ କରିଥିଲେ, ଅନ୍ୟମାନଙ୍କ କଥା ଛାଡ଼, ଭଗବାନଙ୍କ

ଶ୍ରୀଅଙ୍ଗରେ ଜଡ଼ିତ ଲକ୍ଷ୍ମୀ ମଧ୍ୟ ସେପରି ଆନନ୍ଦ ପାଇ ନାହାନ୍ତି କିମ୍ବା ପଦ୍ମପରି ଅଙ୍ଗସୌରଭ, ଅଙ୍ଗକାନ୍ତି ଓ ସୌରଭସମ୍ପନ୍ନା ସ୍ୱର୍ଗର ଅପ୍‌ସରାମାନେ ମଧ୍ୟ ସେପରି ଆନନ୍ଦ ପାଇ ନାହାନ୍ତି ।।୬୦।। ଆହା ! ଯେଉଁ ବନ୍ଧୁ, ସ୍ୱଜନମାନଙ୍କୁ ସହଜରେ ଛାଡ଼ିହୁଏ ନାହିଁ, ସେମାନଙ୍କୁ ଛାଡ଼ିଦେଇ ଏବଂ ବେଦକଥିତ ଆର୍ଯ୍ୟମର୍ଯ୍ୟାଦା ତ୍ୟାଗକରି ଯେଉଁ ଗୋପୀମାନେ ଶ୍ରୀକୃଷ୍ଣଙ୍କର ଚରଣସେବା କରିଥିଲେ, ସେହି ଗୋପୀମାନଙ୍କର ପାଦଧୂଳି ପାଉଥିବା ବୃନ୍ଦାବନର ମୁଁ କୌଣସି ଗୁଳ୍ମ, ଲତା ବା ଓଷଧି ହୋଇଥାଆନ୍ତି କି ! ।।୬୧।। ପୂର୍ଣ୍ଣମନସ୍କାମ ବ୍ରହ୍ମାଦି ଦେବତା, ସ୍ୱୟଂ ଲକ୍ଷ୍ମୀଦେବୀ ଓ ଯୋଗେଶ୍ୱରମାନେ କୃଷ୍ଣଙ୍କର ଯେଉଁ ପାଦପଦ୍ମକୁ ହୃଦୟରେ ଆରାଧନା କରନ୍ତି, ରାସମଣ୍ଡଳୀରେ ରହି ଏହି ଗୋପୀମାନେ ସେହି ପାଦପଦ୍ମକୁ ନିଜର ସ୍ତନଉପରେ ଧାରଣ କରି ହୃଦୟର ସନ୍ତାପ ଦୂର କରିଛନ୍ତି ।।୬୨।। ହରିଲୀଳାଗାନଦ୍ୱାରା ଯେଉଁ ବ୍ରଜସ୍ତ୍ରୀମାନେ ତ୍ରିଭୁବନକୁ ପବିତ୍ର କରିଛନ୍ତି, ମୁଁ ସେହି ବ୍ରଜସ୍ତ୍ରୀଙ୍କର ପାଦଧୂଳିକୁ ବାରମ୍ବାର ବନ୍ଦନା କରୁଛି ।।୬୩।।

ଶ୍ରୀ ଶୁକଦେବ କହିଲେ, ପରିକ୍ଷିତ, ଏହାପରେ ଉଦ୍ଧବ ଗୋପୀ, ନନ୍ଦ ଓ ଯଶୋଦାଙ୍କ ଠାରୁ ଅନୁମତି ନେଇ ଓ ଅନ୍ୟଗୋପାଳଙ୍କୁ ସମ୍ଭାଷଣ କରି ମଥୁରା ଯିବାପାଇଁ ରଥରେ ଆରୋହଣ କଲେ ।।୬୪।। ତାଙ୍କୁ ଫେରିଯାଉଥିବା ଦେଖି ନନ୍ଦ ଆଦି ବ୍ରଜବାସୀମାନେ ଅନେକ ଉପହାର ଧରି ତାଙ୍କ ପାଖରେ ପହଞ୍ଚିଲେ ଏବଂ ସାଶ୍ରୁଲୋଚନରେ ତାଙ୍କୁ କହିଲେ, ଆମର ମନୋବୃତ୍ତି ସବୁ କୃଷ୍ଣଙ୍କର ପାଦପଦ୍ମକୁ ଆଶ୍ରୟ କରୁ । ଆମର ବାକ୍ୟସବୁ କୃଷ୍ଣଙ୍କର ନାମ ଓ ଲୀଳା କୀର୍ତ୍ତନରେ ରତ ହେଉ ଏବଂ ଆମର ଶରୀର ତାଙ୍କରି ସେବାରେ ନିଯୁକ୍ତ ହେଉ ।।୬୫-୬୬।। ଈଶ୍ୱରଙ୍କ ଇଚ୍ଛାରେ କର୍ମ ଅନୁସାରେ ଆମେ ଯେଉଁ ଯେଉଁ ଯୋନିରେ ଜନ୍ମ ହେବୁ, ଯେଉଁ ଯେଉଁ ସ୍ଥାନରେ ରହିବୁ, ସେଇଠି ସେଇଠି ସମସ୍ତ ମଙ୍ଗଳ କାର୍ଯ୍ୟ ଓ ଦାନ ଦ୍ୱାରା କୃଷ୍ଣଙ୍କଠାରେ ଆମର ମତି ରହୁ ।।୬୭।। ଏହିପରି ନନ୍ଦ ଆଦି ଗୋପଗଣଙ୍କଦ୍ୱାରା କୃଷ୍ଣଭକ୍ତିରେ ସମ୍ମାନିତ ହୋଇ ଉଦ୍ଧବ କୃଷ୍ଣପାଳିତ ମଥୁରାପୁରୀକୁ ଫେରିଆସିଲେ ।।୬୮।। କୃଷ୍ଣଙ୍କୁ ପ୍ରଣାମ କରି ବ୍ରଜବାସୀଙ୍କର ଯେଉଁ ଐକାନ୍ତିକ ଭକ୍ତି ଅଛି, ତାହା ବର୍ଣ୍ଣନା କଲେ ଏବଂ ବସୁଦେବ, ବଳରାମ ଓ ରାଜା ଉଗ୍ରସେନଙ୍କୁ ନନ୍ଦ ଦେଇଥିବା ଉପହାରସବୁ ପ୍ରଦାନ କଲେ ।।୬୯।।

## ଅଠଚାଳିଶ ଅଧ୍ୟାୟ

# କୁବ୍‌ଜା ଓ ଅକ୍ରୂରଙ୍କ ଘରେ ଶ୍ରୀକୃଷ୍ଣ

ଭଗବାନ୍ ସମସ୍ତଙ୍କ ଭିତର ଅଛନ୍ତି ଏବଂ ସବୁକିଛି ଦେଖୁଛନ୍ତି । ତାଙ୍କ ସହିତ ମିଳନ ଆକାଙ୍‌କ୍ଷାରେ କୁବ୍‌ଜା କାମପୀଡ଼ିତ ଥିବାର ଜାଣିପାରି ସେ ତାର ଗୃହକୁ ଗମନ କଲେ ।।୧।। କୁବ୍‌ଜାର ଘର ବହୁମୂଲ୍ୟ ଗୃହୋପକରଣ ଦ୍ୱାରା ସଜ୍ଜିତ ହୋଇଥିଲା । ବହୁ କାମୋଦ୍ଦୀପକ ବସ୍ତୁ ମଧ୍ୟ ରଖାଯାଇଥିଲା । ମୋତିର ଝାଲର, ପତାକା, ଚାନ୍ଦୁଆ, ସୁନ୍ଦର ସୁନ୍ଦର ଶଯ୍ୟା ଓ ଆସନ ଦ୍ୱାରା ଘରଟି ସଜା ହୋଇଥିଲା । ତା'ମଧ୍ୟରେ ଧୂପ, ଦୀପ ଓ ସୁବାସିତ ମାଳାରେ ଘରଟି ଚହଟି ଉଠୁଥିଲା । ତା' ଘରକୁ ଶ୍ରୀକୃଷ୍ଣ ଆସୁଥିବାର ଦେଖି ସେ ସଙ୍ଗେ ସଙ୍ଗେ ଆସନରୁ ଉଠିପଡ଼ି ସଖୀମାନଙ୍କ ସହିତ ସସମ୍ମାନେ ଭଗବାନଙ୍କୁ ପାଛୋଟି ଆଣିଲା ଏବଂ ତାଙ୍କୁ ଉପଯୁକ୍ତ ଆସନରେ ବସାଇଲା ।।୨-୩।। ଭକ୍ତ ଉଦ୍ଧବଙ୍କୁ ମଧ୍ୟ ସେ ଆଦରପୂର୍ବକ ସତ୍କାର କଲା । କିନ୍ତୁ ଉଦ୍ଧବ ଆସନରେ ନ ବସି କେବଳ ସ୍ପର୍ଶ କରି ତଳେ ବସିଗଲେ । କୃଷ୍ଣ ଲୋକାଚାର ଅନୁଯାୟୀ ବହୁମୂଲ୍ୟ ଶେଯ ଉପରେ ବସିଲେ ।।୪।। କୁବ୍‌ଜା ଘସି ମାଜି ହୋଇ ଓ ସ୍ନାନପରେ ପାଟଲୁଗା ପିନ୍ଧି ହାର, ଚନ୍ଦନ, କୁଙ୍କୁମ ଆଦି ଲଗାଇ ଏବଂ ତାମ୍ବୂଳ ଓ ସୁବାସିତ ଦ୍ରବ୍ୟ ସେବନ କରି କୃଷ୍ଣଙ୍କ ପାଖକୁ ଆସିଲା । ସେ ଅଳ୍ପ ହସି ସଲଜ ଆଖିରେ ଭଗବାନଙ୍କୁ ଦେଖିବାକୁ ଲାଗିଲା ।।୫।। ନୂତନ ମିଳନପାଇଁ

କୁବ୍‌ଜାର ଲଜ୍ଜା ଓ ଭୟକୁ ଦୂର କରି କୃଷ୍ଣ ତାର କଙ୍କଣଯୁକ୍ତ ହସ୍ତକୁ ଧରି ପାଖକୁ ଡାକି ଆଣିଲେ । କୁବ୍‌ଜା ପୂର୍ବରୁ ଭଗବାନଙ୍କୁ ସାମାନ୍ୟ ମାତ୍ର ଅଙ୍ଗରାଗ ଦାନ କରି ଯେଉଁ ପୁଣ୍ୟ ଅର୍ଜନ କରିଥିଲା, ତାହା ଫଳରେ ତାକୁ ଏପରି ସୁଯୋଗ ମିଳିଲା ଏବଂ କୃଷ୍ଣ ତାକୁ ଶେଯରେ ବସାଇ ବହୁଭାବରେ ରମଣ କଲେ ।।୬।। କୁବ୍‌ଜା ନିଜର କାମପୀଡ଼ିତ କୁଚଯୁଗଳ, ବକ୍ଷସ୍ଥଳ ଓ ନୟନରେ ଶ୍ରୀକୃଷ୍ଣଙ୍କ ଚରଣକୁ ଚାପି ରଖି ତାର ଦିବ୍ୟ ସୁଗନ୍ଧ ଆଘ୍ରାଣ କଲା ଏବଂ ସମସ୍ତ ଆଧିବ୍ୟାଧିରୁ ମୁକ୍ତ ହୋଇଗଲା । ଦୁଇହାତରେ ନିଜର ବକ୍ଷସ୍ଥଳ ମଧ୍ୟରେ ପ୍ରିୟତମ କୃଷ୍ଣଙ୍କର ଆନନ୍ଦମୟ ମୂର୍ତ୍ତିକୁ ଭିଡ଼ି ଧରି ସେ ଦୀର୍ଘଦିନର ଅଭିଳାଷ ପୂର୍ଣ୍ଣ କଲା ।।୭।। ମୋକ୍ଷଦାତା ଭଗବାନଙ୍କୁ କେହି କେବେ ସହଜରେ ପାଏ ନାହିଁ । ଅଭାଗିନୀ କୁବ୍‌ଜା ତାଙ୍କୁ ଅଙ୍ଗରାଗ ଅର୍ପଣ କରି ପାଇଗଲା । କିନ୍ତୁ ତାଙ୍କୁ କେବଳ ଏତିକି ମାଗିଲା, ହେ ପ୍ରିୟତମ, ମୋ ଗୃହରେ ଆପଣ କିଛି ଦିନ ରହି ମୋ ସହିତ ରମଣ କରନ୍ତୁ । କମଳନୟନ, ମୁଁ ଆପଣଙ୍କୁ ଛାଡ଼ି ରହିପାରିବି ନାହିଁ ।।୮-୯।। ଭଗବାନ୍ ସମସ୍ତଙ୍କର ମାନରକ୍ଷା କରନ୍ତି । ସେ ସର୍ବେଶ୍ୱର । କୁବ୍‌ଜାକୁ ତାର ମାଗିଥିବା ବରଦାନ ଦେଇସାରି ଉଦ୍ଧବଙ୍କ ସହିତ ସର୍ବଜନ ପୂଜିତ ସ୍ୱଗୃହକୁ ସେ ଫେରିଆସିଲେ ।।୧୦।। ଶ୍ରୀକୃଷ୍ଣ ସ୍ୱୟଂ ବିଷ୍ଣୁ । ସେ ବ୍ରହ୍ମାଦି ସମସ୍ତ ଲୋକପାଳଙ୍କର ଈଶ୍ୱର । ସେ ସହଜରେ ମିଳନ୍ତି ନାହିଁ । କିନ୍ତୁ ତାଙ୍କୁ ଲାଭ କରି ଯଦି କେବଳ ବିଷୟସୁଖର କାମନା କରାଯାଏ, ତା'ହେଲେ ତାହା ଦୁର୍ବୁଦ୍ଧି ବୋଲି କୁହାଯିବ ।।୧୧।।

ତା'ପରେ ବଳରାମ ଓ ଉଦ୍ଧବଙ୍କୁ ଧରି ପ୍ରଭୁ ଶ୍ରୀକୃଷ୍ଣ ଅକ୍ରୂରଙ୍କ ଗୃହକୁ ଯାତ୍ରା କଲେ । ଅକ୍ରୂରଙ୍କ ଦ୍ୱାରା କିଛି ପ୍ରିୟକାର୍ଯ୍ୟ କରାଇବା ତାଙ୍କର ଇଚ୍ଛା ଥିଲା ।।୧୨।। ଉଦ୍ଧବ ଓ ବଳରାମଙ୍କ ସହିତ କୃଷ୍ଣଙ୍କୁ ଆସୁଥିବାର ଦେଖି ଅକ୍ରୂର ସଙ୍ଗେ ସଙ୍ଗେ ଆସନରୁ ଉଠିଯାଇ ଆନନ୍ଦରେ ତାଙ୍କୁ ଆଲିଙ୍ଗନ ଓ ଅଭିନନ୍ଦନ କଲେ । ସେ ବଳରାମ ଓ କୃଷ୍ଣଙ୍କୁ ନମସ୍କାର କରିବାରୁ ସେ ଦୁହେଁ ମଧ୍ୟ ତାଙ୍କୁ ଅଭିବାଦନ କଲେ । ଆସନ ଗ୍ରହଣ କରିସାରିବା ପରେ ଅକ୍ରୂର ସେ ଦୁହିଙ୍କୁ ଯଥାବିଧି ପୂଜା କଲେ ।।୧୩-୧୪।। ପରିକ୍ଷିତ, ସେ ତାଙ୍କ ପାଦ ଧୋଇଦେଇ ପାଦୋଦକ ମସ୍ତକରେ ଧାରଣ କଲେ । ବହୁମୂଲ୍ୟ ବସ୍ତ୍ର, ଦିବ୍ୟଗନ୍ଧ, ମାଳା ଓ ଅଳଙ୍କାର ଆଦି ପୂଜାସାମଗ୍ରୀଦ୍ୱାରା ସେ କୃଷ୍ଣଙ୍କୁ ପୂଜା କଲେ ଏବଂ ପ୍ରଣତ ହୋଇ ତାଙ୍କ ପାଦ ଦୁଇଟିକୁ ମର୍ଦ୍ଦନ କଲେ । ବିନୀତ ଭାବରେ ସେ ରାମ ଓ କୃଷ୍ଣଙ୍କୁ କହିଲେ-- ।।୧୫-୧୬।। ସୌଭାଗ୍ୟର ବିଷୟ ଯେ, ପାପୀ କଂସ ନିଜର ଅନୁଚରମାନଙ୍କ ସହିତ ନିହତ ହୋଇଛି । ତାକୁ ମାରି ଘୋର ସଙ୍କଟରୁ ଆପଣ ଯଦୁକୁଳକୁ ଉଦ୍ଧାର କରିଛନ୍ତି ଏବଂ ତାର ଐଶ୍ୱର୍ଯ୍ୟବୃଦ୍ଧି କରିଛନ୍ତି ।।୧୭।। ଆପଣ ଦୁଇ ଜଣ ପୁରୁଷୋତ୍ତମ । ଜଗତର କାରଣ ଏବଂ ଜଗନ୍ମୟ । ଆପଣଙ୍କୁ ଛାଡ଼ି ଅନ୍ୟ କୌଣସି ବସ୍ତୁ ନାହିଁ, କୌଣସି କାର୍ଯ୍ୟ ବା କାରଣ ନାହିଁ ।।୧୮।। ବ୍ରହ୍ମନ୍, ଆପଣ ନିଜେ ହିଁ ବିଶ୍ୱକୁ ସୃଷ୍ଟି କରି ନିଜ ମାୟାରେ ତା ମଧ୍ୟରେ ପ୍ରବେଶ କରିଛନ୍ତି । ଏଣୁ ଯାହା ବିଭିନ୍ନରୂପରେ ଶୁଣାଯାଉଛି ବା ଦେଖାଯାଉଛି, ସେଥିରେ ଆପଣ ହିଁ ପ୍ରତୀୟମାନ ହୁଅନ୍ତି ।।୧୯।। କ୍ଷିତି, ଜଳ, ତେଜ ଆଦି ତତ୍ତ୍ୱଗଣ ସ୍ଥାବର ଜଙ୍ଗମ ପ୍ରଭୃତି ବିଭିନ୍ନ ଯୋନିରେ ପ୍ରାଣୀମାନଙ୍କ ମଧ୍ୟରେ ପ୍ରକାଶିତ ହୁଅନ୍ତି । କିନ୍ତୁ ଆପଣ ସ୍ୱତନ୍ତ୍ର ଓ ନିଜେ ହିଁ ନିଜର କର୍ତ୍ତା । ସ୍ୱ-ଇଚ୍ଛାରେ ଆପଣ ବହୁବିଧ ରୂପରେ ପ୍ରକଟ ହୁଅନ୍ତି ।।୨୦।। ପ୍ରଭୁ, ଆପଣ ରଜ, ତମ ଓ ସତ୍ତ୍ୱ ଗୁଣଦ୍ୱାରା ନିଜ ମାୟାବଳରେ ଏହି ବିଶ୍ୱକୁ ସୃଷ୍ଟି କରନ୍ତି, ପାଳନ କରନ୍ତି ଓ ସଂହାର କରନ୍ତି । କିନ୍ତୁ ସେହି ସବୁ ଗୁଣ ବା ତଦ୍ୱାରା କରାଯାଉଥିବା କର୍ମମାନ ଆପଣଙ୍କୁ ବାନ୍ଧି ପାରନ୍ତି ନାହିଁ । କାରଣ ଆପଣ ଶୁଦ୍ଧଜ୍ଞାନସ୍ୱରୂପ । କର୍ମବନ୍ଧନ ଆପଣଙ୍କୁ ଛୁଇଁ ପାରିବ ନାହିଁ ।।୨୧।। ଆପଣ ଜ୍ଞାନମୟ ଆତ୍ମସ୍ୱରୂପ ହୋଇଥିବା ଯୋଗୁଁ ଆପଣଙ୍କଠାରେ ଦେହାଦି ଉପାଧି ନ ଥାଏ । ସ୍ୱରୂପତଃ ଜୀବର ମଧ୍ୟ ଜନ୍ମମୃତ୍ୟୁ ନାହିଁ । ତେଣୁ ଆପଣଙ୍କର ଜନ୍ମ, ମୃତ୍ୟୁ ବା ଅନ୍ୟ କୌଣସି ଭେଦଭାବ ନାହିଁ । ବନ୍ଧନ ନାହିଁ କି ମୋକ୍ଷ ନାହିଁ । ତେଣୁ ଆପଣଙ୍କର ବନ୍ଧନ ଅଛି ବା ମୋକ୍ଷ ଅଛି ବୋଲି ଯେଉଁମାନେ କଳ୍ପନା କରନ୍ତି, ସେମାନେ ପ୍ରକୃତରେ ଅବିବେକୀ ।।୨୨।। ଆପଣଙ୍କଦ୍ୱାରା ପ୍ରଚଳିତ ଏହି ସନାତନ ବେଦମାର୍ଗ ଯେତେବେଳେ ପାଷଣ୍ଡମାନଙ୍କଦ୍ୱାରା ବାଧାପ୍ରାପ୍ତ ହୁଏ, ସେତେବେଳେ ଜଗତର କଲ୍ୟାଣପାଇଁ ଆପଣ ଶୁଦ୍ଧସତ୍ତ୍ୱମୟ ଶରୀର ଧାରଣ କରନ୍ତି ।।୨୩।। ସେଥିପାଇଁ ହେ ପ୍ରଭୁ, ଆପଣ ନିଜ ଅଂଶ ବଳରାମଙ୍କ ସହିତ ପୃଥିବୀର ଭାର ହରଣ କରିବାପାଇଁ ବସୁଦେବଙ୍କ ଗୃହରେ ଅବତୀର୍ଣ୍ଣ ହୋଇଛନ୍ତି । ଅସୁର

ଅଂଶରେ ଜାତ ରାଜାମାନଙ୍କର ଶହଶହ ଅକ୍ଷୌହିଣୀ ସେନା ବିନାଶ କରି ଆପଣ ନିଜ ବଂଶର ଯଶ ବିସ୍ତାର କରିବେ ।।୨୪।। ପ୍ରଭୁ, ଆପଣ ଜଗତର ଏକମାତ୍ର ପିତା ଓ ଗୁରୁ । ସମସ୍ତ ଲୋକପାଳ, ପିତୃ' ପ୍ରାଣୀ ଓ ଦେବତାଙ୍କର ଆପଣ ମୂର୍ତ୍ତିମନ୍ତ ପ୍ରତୀକ । ଆପଣଙ୍କର ପାଦଧୌତ ଜଳ ଗଙ୍ଗା ହୋଇ ତ୍ରିଭୁବନକୁ ପବିତ୍ର କରୁଛି । ତେଣୁ ମୋର ଭାଗ୍ୟ, ମୋ ଘରେ ଆଜି ଆପଣଙ୍କର ପାଦ ପଡ଼ିଲା ।।୨୫।। ଆପଣ ଭକ୍ତମାନଙ୍କର ପ୍ରିୟ ବଚନ ରକ୍ଷା କରନ୍ତି । ଆପଣ କୃତଜ୍ଞ ଓ ପ୍ରାଣୀମାନଙ୍କର ବନ୍ଧୁ । ତେଣୁ ଏପରି କିଏ ପଣ୍ଡିତ ଅଛି, ଯେ ଆପଣଙ୍କୁ ଛାଡ଼ି ଅନ୍ୟ କାହାର ଶରଣାଗତ ହେବ ! ଆପଣଙ୍କୁ ଭଜନ କଲେ ଆପଣ ସବୁ କିଛି ଦାନ କରନ୍ତି, ଏପରିକି ନିଜକୁ ମଧ୍ୟ । ଏହାଦ୍ୱାରା ଆପଣଙ୍କର କୌଣସି ବୃଦ୍ଧି ବା କ୍ଷୟ ହୁଏ ନାହିଁ ।।୨୬।। ବ୍ରହ୍ମାଦି ଲୋକପାଳ, ଇନ୍ଦ୍ରାଦି ଦେବେଶ୍ୱର ଓ ସନକାଦି ଯୋଗେଶ୍ୱରମାନେ ଆପଣଙ୍କ ସ୍ୱରୂପକୁ ଜାଣିପାରନ୍ତିନାହିଁ । ହେ ଜନାର୍ଦ୍ଦନ, ମୋ ସୌଭାଗ୍ୟ, ଆଜି ଆପଣ ମୋ ଗୃହରେ ମୋତେ ସାକ୍ଷାତ୍ ଦର୍ଶନ ଦେଇଛନ୍ତି । ନିଜର ପୁତ୍ର, ସ୍ତ୍ରୀ, ଧନ, ଗୃହ ଓ ଦେହ ଆଦି ପ୍ରତି ମୋର ଯେଉଁ ମୋହ ଅଛି ଆପଣ ତାହା ଶୀଘ୍ର ଛେଦନ କରନ୍ତୁ ।।୨୭।। ଶ୍ରୀ ଶୁକଦେବ କହିଲେ, ପରିକ୍ଷିତ, ଭକ୍ତ ଅକ୍ରୂର ଭଗବାନଙ୍କର ଏହିପରି ସତ୍କାର ଓ ସ୍ତୁତି କରିବାରୁ ଭଗବାନ ତାଙ୍କ ମଧୁର ହସ ଓ କଥାରେ ତାଙ୍କୁ ମୋହିତ କଲେ । ସେ କହିଲେ-- ।।୨୮।।

ଶ୍ରୀ ଭଗବାନ କହିଲେ, ଆପଣ ମୋର ଗୁରୁ, ମୋର ପିତୃବ୍ୟ, ମୋର ପୂଜ୍ୟ ଓ ହିତୈଷୀ ବନ୍ଧୁ । ଆମେ ଆପଣଙ୍କର ପୁତ୍ରତୁଲ୍ୟ । ଆପଣଙ୍କର ରକ୍ଷା, ପାଳନ ଓ କୃପାର ପାତ୍ର ।।୨୯।। ଯେଉଁ ଲୋକେ ନିଜର ମଙ୍ଗଳକାମନା କରନ୍ତି, ସେମାନେ ଆପଣଙ୍କ ପରି ମହାଭାଗ ଓ ଶ୍ରେଷ୍ଠ ସାଧୁଙ୍କୁ ସେବା କରିବା ଉଚିତ । କାରଣ ଦେବତାଙ୍କର ସ୍ୱାର୍ଥ ଥାଏ, କିନ୍ତୁ ସାଧୁମାନଙ୍କର କୌଣସି ସ୍ୱାର୍ଥ ନ ଥାଏ ।।୩୦।। ଜଳମୟ ନଦୀ ଓ ସରୋବର ତୀର୍ଥ ନୁହନ୍ତି । ମୃତ୍ତିକା ଓ ପ୍ରସ୍ତରନିର୍ମିତ ମୂର୍ତ୍ତିମାନେ ଦେବତା ନୁହନ୍ତି । ବହୁକାଳ ଧରି ସେମାନଙ୍କର ସେବା ପୂଜା କଲେ, ସେମାନେ ଅବଶ୍ୟ ପବିତ୍ର କରନ୍ତି, କିନ୍ତୁ ସାଧୁମାନେ ଦର୍ଶନମାତ୍ରେ ଲୋକଙ୍କୁ ପବିତ୍ର କରନ୍ତି ।।୩୧।। ଆପଣ ଆମର ହିତୈଷୀ ବନ୍ଧୁମାନଙ୍କ ମଧ୍ୟରେ ଶ୍ରେଷ୍ଠ । ତେଣୁ ପାଣ୍ଡବମାନଙ୍କର ମଙ୍ଗଳକାର୍ଯ୍ୟରେ ସେମାନଙ୍କ କୁଶଳଜିଜ୍ଞାସା ପାଇଁ ଆପଣ ହସ୍ତିନାପୁରକୁ ଯାତ୍ରା କରନ୍ତୁ । ସେମାନଙ୍କର ପିତା ରାଜା ପାଣ୍ଡୁଙ୍କର ମୃତ୍ୟୁପରେ ମାତା କୁନ୍ତୀଙ୍କ ସହିତ ସେମାନେ ଅତିଦୁଃଖରେ ଥିଲେ । ରାଜା ଧୃତରାଷ୍ଟ୍ର ସେମାନଙ୍କୁ ହସ୍ତିନାକୁ ନେଇ ଆସିଛନ୍ତି । ସେମାନେ ସେଠାରେ ଅଛନ୍ତି ବୋଲି ମୁଁ ଶୁଣିବାକୁ ପାଉଛି ।।୩୨-୩୩।। ରାଜା ଧୃତରାଷ୍ଟ୍ର ଅନ୍ଧ । ସେ ନିଜ ପୁତ୍ର ଦୁଷ୍ଟ ଦୁର୍ଯ୍ୟୋଧନର ବଶରେ ରହିଛନ୍ତି । ତେଣୁ ଦୁର୍ବଳମନା ରାଜା ତାଙ୍କ ପୁତୁରା ପାଣ୍ଡବମାନଙ୍କ ପ୍ରତି ସମାନ ବ୍ୟବହାର କରୁ ନାହାନ୍ତି । ପାଣ୍ଡବମାନେ ଭଲରେ ଅଛନ୍ତି କି ନାହିଁ, ଆପଣ ସେଠାକୁ ଯାଇ ବୁଝିଆସନ୍ତୁ । ଆପଣଙ୍କ ଠାରୁ ଶୁଣିବା ପରେ ଆମର ବନ୍ଧୁ ପାଣ୍ଡବମାନଙ୍କ ମଙ୍ଗଳପାଇଁ ଯାହା କରିବାର କଥା, ମୁଁ ତାହା କରିବି ।।୩୪-୩୫।। ଏହିପରି ଭଗବାନ୍ ଶ୍ରୀକୃଷ୍ଣ ଅକ୍ରୂରଙ୍କୁ ଆଦେଶ କରି ବଳରାମ ଓ ଉଦ୍ଧବଙ୍କ ସହ ନିଜଭବନକୁ ଫେରିଆସିଲେ ।।୩୬।।

## ଅଣଚାଶ ଅଧ୍ୟାୟ

# ଅକ୍ରୂରଙ୍କ ହସ୍ତିନାଯାତ୍ରା

ଶ୍ରୀ ଶୁକଦେବ କହିଲେ, ପରିକ୍ଷିତ, ଶ୍ରୀକୃଷ୍ଣଙ୍କ ଆଦେଶରେ ଅକ୍ରୂର ହସ୍ତିନାପୁର ଗଲେ । ସେଠାରେ କୁରୁବଂଶୀୟ ରାଜାମାନଙ୍କର କୀର୍ତ୍ତିସବୁ ଅଙ୍କିତ ହୋଇଥିଲା । ସେଠାରେ ସେ ଭୀଷ୍ମଙ୍କ ସହିତ ଧୃତରାଷ୍ଟ୍ର, ବିଦୁର, କୁନ୍ତୀ, ବାହ୍ଲୀକ ଓ ତାଙ୍କ ପୁତ୍ର ସୋମଦତ୍ତ, ଦ୍ରୋଣାଚାର୍ଯ୍ୟ ଓ କୃପାଚାର୍ଯ୍ୟ, କର୍ଣ୍ଣ, ଦୁର୍ଯ୍ୟୋଧନ, ଅଶ୍ୱତ୍ଥାମା, ଯୁଧିଷ୍ଠିରଙ୍କ ସହିତ ପଞ୍ଚପାଣ୍ଡବ ଓ ଅନ୍ୟାନ୍ୟ

ବନ୍ଧୁମାନଙ୍କ ସହିତ ସାକ୍ଷାତ୍ କଲେ ।।୧-୨।। ଗାନ୍ଦିନୀନନ୍ଦନ ଅକ୍ରୂର ନିଜର ମିତ୍ର ଓ ବନ୍ଧୁମାନଙ୍କ ସହିତ ମିଳିତ ହେଲେ । ସେତେବେଳେ ସେମାନେ ମଥୁରାବାସୀ ବନ୍ଧୁମାନଙ୍କର କଥା ପଚାରିଲେ । ଅକ୍ରୂର ତାର ଉତ୍ତର ଦେଇ ସେମାନଙ୍କର କୁଶଳ ଜିଜ୍ଞାସା କଲେ ।।୩।। କୃଷ୍ଣ ଯେଉଁଥିପାଇଁ ତାଙ୍କୁ ପଠାଇଥିଲେ, ତାହା ଜାଣିବାପାଇଁ ସେ କିଛି ମାସ ହସ୍ତିନାରେ ରହିଗଲେ । ସେ ଦେଖିଲେ ଯେ ଧୃତରାଷ୍ଟ୍ର ନିଜର ଦୁଷ୍ଟପୁତ୍ର ଦୁର୍ଯ୍ୟୋଧନ ଆଦିଙ୍କ ବିରୁଦ୍ଧରେ କିଛି କରିପାରିବେ ନାହିଁ, ଯେହେତୁ ସେ ଶକୁନି ଆଦି ଖଳଲୋକଙ୍କର ପରାମର୍ଶରେ ଚାଲିଛନ୍ତି ।।୪।। କୁନ୍ତୀ ଓ ବିଦୁରଙ୍କଠାରୁ ସେ ବୁଝିଲେ ଯେ ପାଣ୍ଡବମାନଙ୍କର ତେଜ, ସାହସ, ବଳ, ବୀର୍ଯ୍ୟ ଓ ପ୍ରଜାଙ୍କ ପ୍ରତି ଶ୍ରଦ୍ଧା ଆଦି ସଦ୍‌ଗୁଣସବୁକୁ ଧୃତରାଷ୍ଟ୍ରଙ୍କ ପୁତ୍ରମାନେ ସହିପାରୁ ନାହାନ୍ତି ଏବଂ ସେମାନଙ୍କୁ ବିଷପାନ କରାଇବା ଆଦି ନାନା ଅନିଷ୍ଟକର କାର୍ଯ୍ୟ କରିବାରେ ଲାଗିଛନ୍ତି ।।୫-୬।। ଅକ୍ରୂର କୁନ୍ତୀଙ୍କର ଭାଇ ଥିଲେ । କୁନ୍ତୀ ଅଶ୍ରୁପୂର୍ଣ୍ଣ ନୟନରେ ତାଙ୍କ ଜନ୍ମଭୂମି ବିଷୟରେ ମନେପକାଇ ଅକ୍ରୂରଙ୍କୁ ପଚାରିଲେ, ଭାଇ, ମୋର ବାପା, ମା', ଭାଇ, ଭଉଣୀ, ଭଣଜା, ଜାଆ ଓ ସଖୀମାନେ ଓ ମୋର ପିଲା ଦିନର ସାଙ୍ଗସାଥିମାନେ ମୋତେ ମନେପକାନ୍ତି ତ ? ।।୭-୮।। ଭକ୍ତବତ୍ସଳ ଓ ଶରଣରକ୍ଷକ ଭଗବାନ୍ ଶ୍ରୀକୃଷ୍ଣ ଏବଂ କମଳନୟନ ବଳରାମ ତାଙ୍କର ପିଉସୀପୁଅ ଭାଇଙ୍କ କଥା ମନେପକାନ୍ତି ତ ? ।।୯।। ହେଟାବାଘମାନଙ୍କ ମଧ୍ୟରେ ହରିଣୀଟିଏ ରହିବା ପରି ମୁଁ ଶତ୍ରୁମାନଙ୍କ ମଧ୍ୟରେ ପିତୃହୀନ ବାଳକମାନଙ୍କୁ ଧରି ଅତିଦୁଃଖରେ ରହିଛି । କୃଷ୍ଣ କେବେ ଆସି ମୋତେ ସାନ୍ତ୍ୱନା ଦେବେ ? ।।୧୦।। ହେ ମହାଯୋଗେଶ୍ୱର କୃଷ୍ଣ, ବିଶ୍ୱର ଆତ୍ମା, ବିଶ୍ୱର ପାଳକ, ମୁଁ ତୁମର ଶରଣାଗତା । ଶିଶୁପୁତ୍ରମାନଙ୍କ ସହିତ ବହୁ ଦୁଃଖରେ ରହିଛି । ହେ ଗୋବିନ୍ଦ, ମୋତେ ରକ୍ଷା କର ।।୧୧।। ଏହି ଜନ୍ମମରଣଶୀଳ ସଂସାରଚକ୍ରକୁ ଯେଉଁମାନେ ଭୟ କରନ୍ତି, ତୁମର ପାଦପଦ୍ମ ଛଡ଼ା ସେମାନଙ୍କର ଅନ୍ୟକୌଣସି ଆଶ୍ରୟସ୍ଥଳ ମୁଁ ଦେଖୁନାହିଁ ।।୧୨।। ହେ କୃଷ୍ଣ, ହେ ଶୁଦ୍ଧ, ହେ ପରମବ୍ରହ୍ମ, ହେ ପରମାତ୍ମା, ଯୋଗେଶ୍ୱର, ଯୋଗମୟ, ମୁଁ ତୁମକୁ ନମସ୍କାର କରୁଛି । ତୁମର ଶରଣାପନ୍ନ ହେଉଛି ।।୧୩।।

ଶ୍ରୀ ଶୁକଦେବ କହିଲେ, ପରିକ୍ଷିତ, ଏହିପରି ନିଜର ବନ୍ଧୁ ସ୍ୱଜନଙ୍କୁ ଓ ଜଗଦୀଶ୍ୱର ଶ୍ରୀକୃଷ୍ଣଙ୍କୁ ମନେପକାଇ ତୁମର ପ୍ରପିତାମହୀ କୁନ୍ତୀ ଦୁଃଖରେ ରୋଦନ କରିବାକୁ ଲାଗିଲେ ।।୧୪।। ଅକ୍ରୂର ଓ ଯଶସ୍ୱୀ ବିଦୁର ଦୁଃଖସୁଖରେ କୁନ୍ତୀଙ୍କର ଆପଣାର ଥିଲେ । କୁନ୍ତୀଙ୍କର ପୁତ୍ରମାନେ ଦେବତାଙ୍କ ଅଂଶରେ ଜନ୍ମ ହୋଇଛନ୍ତି ବୋଲି କହି ସେମାନେ କୁନ୍ତୀଙ୍କୁ ସାନ୍ତ୍ୱନା ଦେଲେ ।।୧୫।।

ଅତିରିକ୍ତ ପୁତ୍ରସ୍ନେହଯୋଗୁଁ ଧୃତରାଷ୍ଟ୍ର ପକ୍ଷପାତ କରୁଥିଲେ । ଧୃତରାଷ୍ଟ୍ର ତାଙ୍କ ବନ୍ଧୁମାନଙ୍କ ମଧ୍ୟରେ ଥିବାବେଳେ ଅକ୍ରୂର ସେଠାକୁ ଯାଇ କୃଷ୍ଣ ଓ ବଳରାମ ଯାହା କହିଥିଲେ, ତାଙ୍କୁ ଶୁଣାଇଲେ ।।୧୬।। ଅକ୍ରୂର କହିଲେ, ହେ ବିଚିତ୍ରବୀର୍ଯ୍ୟଙ୍କର ପୁତ୍ର, ଆପଣ କୌରବବଂଶର କୀର୍ତ୍ତି ବର୍ଦ୍ଧନ କରିଛନ୍ତି । ଆପଣଙ୍କର ଭ୍ରାତା ପାଣ୍ଡୁଙ୍କ ପରେ ଆପଣ ରାଜସିଂହାସନରେ ବସିଛନ୍ତି ।।୧୭।। ଧର୍ମରେ ପୃଥିବୀକୁ ପାଳନ କରି ସଦ୍‌ବ୍ୟବହାରରେ ପ୍ରଜାରଞ୍ଜନ କରନ୍ତୁ ଓ ସମାନ ଦୃଷ୍ଟିରେ ନିଜର ସ୍ୱଜନମାନଙ୍କୁ ଦେଖନ୍ତୁ । ତା'ହେଲେ ଆପଣ ମଙ୍ଗଳମୟ ଯଶ ଅର୍ଜନ କରିପାରିବେ ।।୧୮।। ତାହା ନହେଲେ ଲୋକେ ଆପଣଙ୍କୁ ନିନ୍ଦା କରିବେ ଏବଂ ଆପଣଙ୍କୁ ନରକକୁ ଯିବାକୁ ହେବ । ତେଣୁ ଆପଣ ନିଜର ପୁତ୍ରଙ୍କୁ ଓ ପାଣ୍ଡବମାନଙ୍କୁ ସମଦୃଷ୍ଟିରେ ଦେଖନ୍ତୁ ।।୧୯।। ଏହି ସଂସାରରେ କେବେ କେହି କାହାରି ସହିତ ସବୁଦିନ ରହିପାରିବ ନାହିଁ । ନିଜର ଦେହ ମଧ୍ୟ ଚିରଦିନ ରହେ ନାହିଁ । ସ୍ତ୍ରୀ, ପୁତ୍ର ବା କୁଆଡୁ ରହିବେ ? ।।୨୦।। ଜୀବ ଏକା ଏକା ଜନ୍ମ ହୁଏ ଓ ଏକା ଏକା ମରେ । ନିଜ ସୁକୃତ ଓ ଦୁଷ୍କୃତର ଫଳ ସେ ହିଁ ଏକାକୀ ଭୋଗ କରେ ।।୨୧।। ଯେପରି ଜଳଜନ୍ତୁମାନେ ଜଳରେ ରହି ତାହା ପାନ କରିଥାଆନ୍ତି, ସେହିପରି ମୂଢ଼ବୁଦ୍ଧି ଲୋକର ଅଧର୍ମରେ ଉପାର୍ଜିତ ଧନକୁ ତାହାରି ଲୋକମାନେ ହରଣ କରିନିଅନ୍ତି ।।୨୨।। ମୂର୍ଖ ବ୍ୟକ୍ତି ଅଧର୍ମବୁଦ୍ଧିରେ ନିଜର ବୋଲି ଭାବି ଯାହାଙ୍କୁ ପାଳନ ପୋଷଣ କରିଥାଏ, ସେହିମାନେ ତାକୁ ଛାଡ଼ି ଚାଲିଯାଆନ୍ତି । ତାର ଜୀବନ କେବେ ସାର୍ଥକ ହୁଏ ନାହିଁ ।।୨୩।। ନିଜ ଜୀବନର ପ୍ରକୃତ ସାର୍ଥକତା ଜାଣି ନ ଥିବା ଏହି ଧର୍ମବିମୁଖ ଜୀବ କେବଳ ପାପ ହିଁ ଅର୍ଜନ କରେ ଏବଂ

ସେମାନଙ୍କ ଦ୍ୱାରା ପରିତ୍ୟକ୍ତ ହୋଇ ଘୋର ନରକରେ ପଡ଼ିଥାଏ । ତେଣୁ କୌରବମାନଙ୍କର ପ୍ରଭୁ ହେ ରାଜା, ସ୍ୱପ୍ନ, ମାୟା ଓ ମନଗଢ଼ା କଳ୍ପନାପରି ଏହି ସଂସାରକୁ ଦେଖି ଆତ୍ମାକୁ ସଂଯତ କର ଏବଂ ଶାନ୍ତ ଓ ସମଦର୍ଶୀ ହୁଅ ॥୨୪-୨୫॥ ଧୃତରାଷ୍ଟ୍ର କହିଲେ, ମହାଦାନୀ ଅକ୍ରୂର, ତୁମେ ଯାହାସବୁ କହିଲ, ମୋର ମଙ୍ଗଳପାଇଁ କହିଲ । ଅମୃତକୁ ଲାଭ କଲେ ମଧ୍ୟ ତଦ୍ଦ୍ୱାରା ମୃତ୍ୟୁମୁଖୀ ଜୀବ ଯେପରି ତୃପ୍ତ ହୁଏନାହିଁ, ତୁମର କଥାରେ ମୁଁ ସେହିପରି ତୃପ୍ତ ହୋଇପାରୁ ନାହିଁ ॥୨୬॥ ହେ ବନ୍ଧୁ ଅକ୍ରୂର, ପୁତ୍ରଙ୍କ ପ୍ରତି ମମତାରେ ମୋର ଚିତ୍ତ ସବୁବେଳେ ଚଞ୍ଚଳ ରହୁଥିବାଯୋଗୁଁ ତୁମର ଭଲ କଥା ସବୁ ମେଘରେ ବିଜୁଳି ପରି ମୋ ହୃଦୟରେ ସ୍ଥିର ହୋଇ ରହିପାରୁ ନାହିଁ ॥୨୭॥ ଯଦୁକୁଳରେ ଯେଉଁ ଶ୍ରୀକୃଷ୍ଣ ଭୂଭାର ହରଣ କରିବାପାଇଁ ଜନ୍ମହୋଇଛନ୍ତି, ସେହି ଈଶ୍ୱରଙ୍କର ବିଧାନକୁ କିଏ ଅନ୍ୟଥା କରିବାକୁ ସମର୍ଥ ହେବ ? ॥୨୮॥ ଭଗବାନଙ୍କର ମାର୍ଗ ଅଚିନ୍ତନୀୟ । ନିଜ ମାୟାଦ୍ୱାରା ସେ ଏହି ଗୁଣମୟ ସଂସାରକୁ ସୃଷ୍ଟି କରି ସେଥିରେ ପ୍ରବେଶ କରନ୍ତି ଏବଂ ଗୁଣ ଓ କର୍ମର ବିଭାଗ କରନ୍ତି । ତାଙ୍କର ଏହି ଲୀଳାକୁ କେହି ବୁଝିପାରନ୍ତିନାହିଁ । ସଂସାରଚକ୍ରରେ ପ୍ରବେଶ କରିଥିବା ସେହି ପରମେଶ୍ୱରଙ୍କୁ ମୁଁ ନମସ୍କାର କରୁଛି ॥୨୯॥

ଶ୍ରୀ ଶୁକଦେବ କହିଲେ, ପରିକ୍ଷିତ, ଏହିପରି ରାଜା ଧୃତରାଷ୍ଟ୍ରଙ୍କର ଅଭିପ୍ରାୟ ଜାଣି ଏବଂ ସୁହୃଦ୍‌ମାନଙ୍କ ଠାରୁ ବିଦାୟ ନେଇ ଅକ୍ରୂର ମଥୁରାକୁ ଫେରି ଆସିଲେ । ସେଠାରେ ପହଞ୍ଚି ସେ ଭଗବାନ ଶ୍ରୀକୃଷ୍ଣ ଓ ବଳରାମଙ୍କୁ ସବୁକଥା କହିଲେ । ଯେଉଁ ଉଦ୍ଦେଶ୍ୟରେ ତାଙ୍କୁ ହସ୍ତିନାକୁ ପଠା ହୋଇଥିଲା, ପାଣ୍ଡବମାନଙ୍କପ୍ରତି ରାଜା ଧୃତରାଷ୍ଟ୍ରଙ୍କର ବ୍ୟବହାର ଓ କ୍ରିୟାକଳାପ ଆଦି ସମସ୍ତ ବିଷୟ ସେ ବର୍ଣ୍ଣନା କଲେ ॥୩୦॥

## ପଚାଶ ଅଧ୍ୟାୟ

## ଜରାସନ୍ଧ

ଶ୍ରୀ ଶୁକଦେବ କହିଲେ, ଭରତଶ୍ରେଷ୍ଠ ପରିକ୍ଷିତ, ଅସ୍ତି ଓ ପ୍ରାପ୍ତି ନାମରେ କଂସର ଦୁଇ ଜଣ ରାଣୀ ଥିଲେ । ସ୍ୱାମୀର ମୃତ୍ୟୁରେ ସେଦୁହେଁ ଶୋକାର୍ତ୍ତ ହୋଇ ନିଜର ପିତା ମଗଧରାଜ ଜରାସନ୍ଧଙ୍କ ଗୃହକୁ ଚାଲିଗଲେ । ଦୁହେଁ ଦୁଃଖରେ ଦୁହିଁଙ୍କ ବିଧବା ହେବାର କାରଣ ପିତାଙ୍କୁ ଜଣାଇଲେ ॥୧-୨॥ ପରିକ୍ଷିତ, ସେହି ଅପ୍ରିୟ ସମ୍ବାଦ ଶୁଣି ଜରାସନ୍ଧଙ୍କର ଶୋକ ଓ କ୍ରୋଧ ଜାତ ହେଲା । ସେ ପୃଥିବୀକୁ ଯାଦବଶୂନ୍ୟ କରିବାପାଇଁ ଏକ ପ୍ରଚଣ୍ଡ ଯୁଦ୍ଧର ଉଦ୍ୟମ କଲେ ॥୩॥ ସେ ତେଇଶି ଅକ୍ଷୌହିଣୀ ସେନା ଧରି ଚତୁର୍ଦ୍ଦିଗରୁ ମଥୁରାକୁ ଅବରୁଦ୍ଧ କଲେ । କୃଷ୍ଣ ଦେଖିଲେ ଯେ, କୂଳକୁ ମାଡ଼ିଆସୁଥିବା ସମୁଦ୍ର ପରି ଜରାସନ୍ଧର ସେନା ମଥୁରାକୁ ଅବରୁଦ୍ଧ କରିଛନ୍ତି ଓ ପୁରବାସୀମାନେ ଭୟଭୀତ ହୋଇପଡ଼ିଛନ୍ତି ॥୪-୫॥ ପୃଥିବୀର ଭାରହରଣ କରିବାପାଇଁ ଭଗବାନ ଶ୍ରୀକୃଷ୍ଣ ମନୁଷ୍ୟରୂପ ଧାରଣ କରିଥିଲେ । ତେଣୁ ନିଜ ଅବତାରର ଉଦ୍ଦେଶ୍ୟ ଏବଂ ଦେଶକାଳ ଦୃଷ୍ଟିରୁ କ'ଣ କରିବାକୁ ହେବ, ତାହା ସେ ଚିନ୍ତା କଲେ ॥୬॥ ମଗଧରାଜ ଜରାସନ୍ଧ ନିଜର ଅଧୀନ ସମସ୍ତ ରାଜାଙ୍କୁ ଏକାଠି କରି ଏଠାକୁ ଆସିଛି । ପଦାତିକ, ଅଶ୍ୱାରୋହୀ, ଗଜାରୋହୀ ଓ ରଥାରୋହୀ ଏକ ବିଶାଳ ଚତୁରଙ୍ଗ ସେନା ଏଠାରେ ଏକତ୍ରିତ ହୋଇଛନ୍ତି । ମୁଁ ସେ ସମସ୍ତଙ୍କୁ ବିନାଶ କରିବି, କିନ୍ତୁ ଜରାସନ୍ଧକୁ ନୁହେଁ । କାରଣ ସେ ଜୀବିତ ରହିଲେ ପୁଣି ଏହିପରି ଅସୁର ସେନାଙ୍କୁ ସଂଗ୍ରହ କରି ମୋତେ ଯୋଗାଇବ । ସେଥିପାଇଁ ଭୂଭାରହରଣ ନିମନ୍ତେ ମୋର ଅବତାର । ସାଧୁମାନଙ୍କୁ ରକ୍ଷା କରି ଦୁଷ୍ଟଙ୍କୁ ସଂହାର କରିବା ଏହାର ଉଦ୍ଦେଶ୍ୟ ॥୭-୯॥ ଧର୍ମରକ୍ଷାପାଇଁ ଓ ଅଧର୍ମର ବିନାଶପାଇଁ ମୁଁ ସମୟ ସମୟରେ ଅନ୍ୟ ଶରୀର ଧାରଣ କରି ଅବତୀର୍ଣ୍ଣ ହୋଇଛି ॥୧୦॥ ଏହିପରି ଶ୍ରୀକୃଷ୍ଣ ଚିନ୍ତା କରୁଥିବାବେଳେ ସୂର୍ଯ୍ୟପରି ତେଜୀୟାନ୍ ଦୁଇଟି ରଥ ସାରଥିସହିତ

ଆକାଶରୁ ଖସି ସେଠାରେ ଉପସ୍ଥିତ ହେଲା ॥୧୧॥ ପ୍ରସିଦ୍ଧ ଦିବ୍ୟ ଅସ୍ତ୍ରଶସ୍ତ୍ରମାନ ମଧ୍ୟ ସେଠାକୁ ଆସିଗଲା ଏବଂ ତାହାସବୁ ଦେଖି ହୃଷୀକେଶ କୃଷ୍ଣ ବଳରାମଙ୍କୁ କହିଲେ, ଭାଇ ଦେଖ, ତୁମେ ରକ୍ଷା କରିଥିବା ଯାଦବମାନଙ୍କ ପ୍ରତି କିଭଳି ବିପଦ ମାଡ଼ି ଆସିଛି । ଏ ହେଉଛି ତୁମର ରଥ ଓ ଏହିସବୁ ହେଉଛି ପ୍ରିୟ ଆୟୁଧ ॥୧୨-୧୩॥ ରଥାରୋହଣ କରି ଏହି ସୈନ୍ୟମାନଙ୍କୁ ବିନାଶ କର ଏବଂ ନିଜ ଲୋକମାନଙ୍କୁ ବିପଦରୁ ଉଦ୍ଧାର କର । ସାଧୁମାନଙ୍କର ମଙ୍ଗଳପାଇଁ ଏହିପରି କାର୍ଯ୍ୟ କରିବାକୁ ଆମର ଜନ୍ମ ହୋଇଛି । ଏହି ତେଇଶି ଅକ୍ଷୌହିଣୀ ସେନା ଏହି ସଂସାରର ଭାରସ୍ୱରୂପ । ଏହାକୁ ଶେଷ କରିବାକୁ ହେବ । ଏହିପରି ମନ୍ତ୍ରଣା କରି କୃଷ୍ଣ ଓ ବଳରାମ ରଥରେ ଚଢ଼ି ମଥୁରାପୁରୀରୁ ବାହାରି ଆସିଲେ ॥୧୪-୧୫॥ କୃଷ୍ଣ ଓ ବଳରାମ ଅଳ୍ପସଂଖ୍ୟକ ସୈନ୍ୟରେ ପରିବେଷ୍ଟିତ ଥିଲେ ଏବଂ ନିଜ ନିଜର ଅସ୍ତ୍ରଶସ୍ତ୍ରରେ ସଜ୍ଜିତ ଥିଲେ । ଦାରୁକ ଥିଲେ କୃଷ୍ଣଙ୍କ ରଥରେ ସାରଥି । ମଥୁରାରୁ ବାହାରି କୃଷ୍ଣ ଶଙ୍ଖଧ୍ୱନି କଲେ । ସେହି ଶଙ୍ଖଧ୍ୱନିରେ ଶତ୍ରୁସେନାର ହୃଦୟ ଭୟରେ ଥରି ଉଠିଲା । ସେ ଦୁହିଁଙ୍କୁ ଦେଖି ମଗଧରାଜ ଜରାସନ୍ଧ କହିଲା, ରେ ପୁରୁଷାଧମ କୃଷ୍ଣ, ତୋ'ପରି ପିଲାସହିତ ଏକାକୀ ଲଢ଼ିବାପାଇଁ ମୋତେ ଲାଜ ଲାଗୁଛି । ତୁ ତୋର ବନ୍ଧୁ (ମାତୁଳ)କୁ ହତ୍ୟା କରିଛୁ । କେଉଁଠି ଲୁଚିଥିଲୁ ? ବର୍ତ୍ତମାନ ମୋ ଆଗରୁ ପଳାଇ ଯା ॥୧୬-୧୮॥ ବଳରାମ, ଯଦି ତୋର ଇଚ୍ଛା ହେଉଛି, ତା'ହେଲେ ଧୈର୍ଯ୍ୟ ଧରି ମୋ' ସହିତ ଯୁଦ୍ଧ କର । ମୋର ବାଣାଘାତରେ ତୋର ଛିନ୍ନ ଦେହକୁ ତ୍ୟାଗ କରି ସ୍ୱର୍ଗକୁ ଯିବୁ । ଅଥବା ମୋତେ ବଧ କରିବୁ ॥୧୯॥ ଶ୍ରୀକୃଷ୍ଣ କହିଲେ, ମଗଧରାଜ, ଯେଉଁମାନେ ବୀର, ସେମାନେ ବୃଥା ବାକ୍ୟାଳାପ ନ କରି ନିଜର ପୌରୁଷ ଦେଖାନ୍ତି । ତୁମେ ମରିବାପାଇଁ ବ୍ୟାକୁଳ ହେଲଣି । ତେଣୁ ତୁମ କଥାକୁ ମୁଁ ଗ୍ରହଣ କରୁନାହିଁ ॥୨୦॥ ଶ୍ରୀ ଶୁକଦେବ କହିଲେ, ପରିକ୍ଷିତ, ବାୟୁଚାଳିତ ମେଘମାଳା ସୂର୍ଯ୍ୟଙ୍କୁ ଢାଙ୍କିଦିଏ ବା ଧୂଳିପଟଳ ଅଗ୍ନିକୁ ଢାଙ୍କିପକାଏ । ସେହିପରି ନିଜର ମହାବଳଶାଳୀ ସେନାଦ୍ୱାରା ଜରାସନ୍ଧ ଅଶ୍ୱ, ପତାକା ଓ ସାରଥି ସହିତ ରାମକୃଷ୍ଣଙ୍କୁ ଘୋଡ଼ାଇ ପକାଇଲା ॥୨୧॥ ମଥୁରାର ସ୍ତ୍ରୀମାନେ ଅଟ୍ଟାଳିକା, ପ୍ରାସାଦ ଓ ପୁରଦ୍ୱାର ଉପରେ ଠିଆ ହୋଇ ସେହି ଯୁଦ୍ଧ ଦେଖୁଥିଲେ । ଯେତେବେଳେ ସେମାନେ ଯୁଦ୍ଧସ୍ଥଳରେ ଶ୍ରୀକୃଷ୍ଣଙ୍କ ଗରୁଡ଼ଧ୍ୱଜ ରଥକୁ ଓ ବଳରାମଙ୍କ ତାଳଧ୍ୱଜ ରଥକୁ ଦେଖିବାକୁ ନ ପାଇଲେ, ସେମାନେ ମୂର୍ଚ୍ଛା ହୋଇଗଲେ ॥୨୨॥ ଜରାସନ୍ଧର ସୈନ୍ୟମାନେ ଯାଦବ ସେନାକୁ ଘେରିଯାଇ ମେଘବର୍ଷା ପରି ବାଣବର୍ଷା କରିବାକୁ ଲାଗିଲେ । ଶ୍ରୀକୃଷ୍ଣ ସେହି ଶରଜ୍ୱାଳାରେ ପୀଡ଼ିତ ନିଜ ସୈନ୍ୟମାନଙ୍କୁ ଦେଖି ଦେବାସୁରପୂଜିତ ତାଙ୍କ ଶାର୍ଙ୍ଗଧନୁରେ ଗୁଣ ଚଢ଼ାଇଲେ ॥୨୩॥ ସେ ଧନୁଷ୍ଟଙ୍କାରପୂର୍ବକ ସୁତୀକ୍ଷ୍ଣ ଶରମାନଙ୍କୁ ତୂଣୀରରୁ ବାହାର କରି ଜରାସନ୍ଧର ସେନାଉପରେ ନିକ୍ଷେପ କରିଲାଗିଲେ । ଶତ୍ରୁପକ୍ଷର ଅଶ୍ୱ, ଗଜ, ପଦାତିକ ଓ ରଥସବୁ ସେହି ବାଣାଘାତରେ ଟଳି ପଡ଼ିଲେ । ବନାଟି ଖେଳରେ ଚାରିଆଡ଼କୁ ଘୂରୁଥିବା ଜଳନ୍ତା ଚକ୍ରପରି ତାଙ୍କର ଧନୁ ଶୋଭା ପାଉଥିଲା ॥୨୪॥ ଶ୍ରୀକୃଷ୍ଣଙ୍କ ଶରପ୍ରହାରରେ ହସ୍ତୀମାନଙ୍କର ଶିର ବିଦୀର୍ଣ୍ଣ ହେବାରୁ ସେମାନେ ଟଳି ପଡ଼ିଲେ । ଅଶ୍ୱମାନଙ୍କର ବେକ ଛିଡ଼ିପଡ଼ିଲା ଏବଂ ଅଶ୍ୱ ଓ ସାରଥିଙ୍କ ସହିତ ନିହତ ରଥାରୋହୀମାନେ ଭୂଇଁରେ ଟଳି ପଡ଼ିଲେ । ପଦାତିକ ସୈନ୍ୟମାନଙ୍କର ବାହୁ, ଜଙ୍ଘ ଓ ବେକ ଆଦି ଅଙ୍ଗପ୍ରତ୍ୟଙ୍ଗ ଖଣ୍ଡ ଖଣ୍ଡ ହୋଇଗଲା ॥୨୫॥ ଅମିତତେଜା ବଳରାମ ମୁଷଳାଘାତରେ ଶତ୍ରୁର ଚତୁରଙ୍ଗ ସେନାକୁ ବିନାଶ କରି ଲାଗିଲେ । ଏହିପରି ଗଜ, ବାଜୀ ଓ ପଦାତିକ ସୈନ୍ୟମାନଙ୍କର ରକ୍ତରେ ଶହଶହ ରକ୍ତନଦୀ ପ୍ରବାହିତ ହେଲା । ଏହି ରକ୍ତନଦୀରେ ପୁରୁଷମାନଙ୍କର ବାହୁ ସବୁ ସର୍ପପରି ଓ ମସ୍ତକ ସବୁ କଚ୍ଛପପରି ଦେଖାଯାଉଥିଲା । ମୃତ ହସ୍ତୀମାନେ ଦ୍ୱୀପପରି ଓ ମୃତ ଅଶ୍ୱମାନେ କୁମ୍ଭୀରପରି ଦେଖାଯାଉଥିଲେ । ସେମାନଙ୍କର ହସ୍ତ ଓ ଉରୁ ମତ୍ସ୍ୟପରି, କେଶ ଶୈବାଳପରି, ଧନୁସବୁ ଲହଡ଼ିପରି, ସେମାନଙ୍କର ହାତରୁ ପଡ଼ିଥିବା ଅସ୍ତ୍ରଶସ୍ତ୍ର ସବୁ ଲତା ଓ ଗୁଳ୍ମ ପରି ଏବଂ ରଥର ଚକସବୁ ଏହି ରକ୍ତନଦୀର ଭଉଁରି ପରି ଦେଖାଯାଉଥିଲା । ପୁଣି ଉତ୍ତମ ମଣି ଓ ଅଳଙ୍କାରସବୁ ଏହି ନଦୀରେ ଶିଳାଖଣ୍ଡ ଓ ବାଲୁକାରାଶିପରି ଜଣାଯାଉଥିଲା । ଏହି ସବୁ ନଦୀ ଥିଲା, ଭୀରୁମାନଙ୍କର ଭୟାବହ ଓ ବୀରମାନଙ୍କ ଆନନ୍ଦପ୍ରଦ ॥୨୬-୨୮॥

ପରିକ୍ଷିତ, ଜରାସନ୍ଧର ସେନା ସମୁଦ୍ରପରି ଅପାର, ଦୁର୍ଗମ ଓ ଭୟଙ୍କର ଥିଲା । କିନ୍ତୁ କୃଷ୍ଣ ଓ ବଳରାମ ସେହି ଦୁର୍ଜୟ ସେନାକୁ ଅଳ୍ପ ସମୟମଧ୍ୟରେ ଶେଷ କରିଦେଲେ । ସେ ଦୁହେଁ ଜଗତର ପ୍ରଭୁ । ଗୋଟାଏ ସେନାକୁ ଧ୍ୱଂସକରିବା ତାଙ୍କ ପକ୍ଷରେ ଏକ ଖେଳର ଖେଳଭଳି ॥୨୯॥ ପରିକ୍ଷିତ, ଏହି ସଂସାରର ସୃଷ୍ଟି, ସ୍ଥିତି ଓ ସଂହାର ଅନନ୍ତଗୁଣସମ୍ପନ୍ନ ଭଗବାନଙ୍କର ଏକ ଲୀଳାମାତ୍ର । ତେଣୁ ତାଙ୍କ ପକ୍ଷରେ ଶତ୍ରୁକୁ ଦମନ କରିବାରେ କିଛି ଆଶ୍ଚର୍ଯ୍ୟ ହେବାର ନାହିଁ । ତେଣୁ ମନୁଷ୍ୟର ଶିକ୍ଷାପାଇଁ ମନୁଷ୍ୟବେଶରେ ତାଙ୍କର ଏହି କାର୍ଯ୍ୟକୁ ବଡ଼ ବୋଲି ବର୍ଣ୍ଣନା କରାଯାଏ ॥୩୦॥ ନିଜର ସେନା ଧ୍ୱସ୍ତ ଓ ରଥ ବିନଷ୍ଟ ହେବାରୁ ମହାବଳୀ ଜରାସନ୍ଧ ଶେଷକୁ କେବଳ ପ୍ରାଣ ଧରି ରହିଥିଲା । ସିଂହ ଅନ୍ୟ ଏକ ସିଂହକୁ ଯେପରି ବଳପୂର୍ବକ ଗ୍ରହଣ କରେ, ବଳରାମ ସେହିପରି ଜରାସନ୍ଧକୁ ଧରିନେଲେ । ଜରାସନ୍ଧ ପୂର୍ବେ ତା'ର ବହୁ ଶତ୍ରୁଙ୍କୁ ନିହତ କରିଥିଲା । ବର୍ତ୍ତମାନ ବଳରାମ ତାକୁ ବରୁଣପାଶ ଓ ମନୁଷ୍ୟଙ୍କ ପାଶରେ ବନ୍ଧନ କରିବାକୁ ଲାଗିଲେ । କିନ୍ତୁ ତାକୁ ଛାଡ଼ିଦେଲେ ଭବିଷ୍ୟତ୍‌ରେ କାର୍ଯ୍ୟସିଦ୍ଧି ହେବ (ପୁଣି ସେ ରାକ୍ଷସସେନା ଏକାଠି କରି ଆଣିବ ଓ ସେମାନଙ୍କୁ ମାରିବା ସହଜ ହେବ) ବୋଲି ଭାବି ଶ୍ରୀକୃଷ୍ଣ ବଳରାମଙ୍କୁ ନିବାରଣ କଲେ ॥୩୧-୩୨॥ ଜରାସନ୍ଧ ବୀରମାନଙ୍କର ମାନନୀୟ ଥିଲା । ଏଣୁ କୃଷ୍ଣ ଓ ବଳରାମ ତାକୁ ଛାଡ଼ି ଦେଇଥିବାଯୋଗୁଁ ତାକୁ ବଡ଼ ଲଜ୍ଜା ହେଲା । ସେ (ରାଜକାର୍ଯ୍ୟ ଛାଡ଼ିଦେଇ) ତପସ୍ୟା କରିବାପାଇଁ ସ୍ଥିର କଲା । କିନ୍ତୁ ରାସ୍ତାରେ ଯିବାବେଳେ ଅନ୍ୟ ରାଜାମାନେ ତାକୁ ସେଥିରୁ ବାରଣ କଲେ ॥୩୩॥ ସେମାନେ କହିଲେ, ଯାଦବମାନଙ୍କଠାରୁ ତୁମର ଏ ପରାଜୟ ନିଜ ପ୍ରାରବ୍ଧ କର୍ମର ଫଳ (ଏଥିରେ ତୁମେ ବିବ୍ରତ ହୁଅ ନାହିଁ) । ଏହିପରି ଲୌକିକ ନ୍ୟାୟରେ ସେମାନେ ଜରାସନ୍ଧକୁ ସାନ୍ତ୍ୱନା ଦେଲେ । କିନ୍ତୁ ଜରାସନ୍ଧର ସମସ୍ତ ସୈନ୍ୟ ନିହତ ହୋଇଥିବାଯୋଗୁଁ ଏବଂ ବଳରାମ ତାକୁ ଉପେକ୍ଷା କରି ଛାଡ଼ି ଦେଇଥିବାଯୋଗୁଁ ସେ ବହୁତ ମନଦୁଃଖରେ ମଗଧକୁ ଫେରିଗଲା ॥୩୪-୩୫॥ ନିଜର ସୈନ୍ୟମାନଙ୍କୁ ଅକ୍ଷତ ରଖି ଅନାୟାସରେ ଶତ୍ରୁର ସୈନ୍ୟସାଗରକୁ ଉତ୍ତୀର୍ଣ୍ଣ ହୋଇଥିବାଯୋଗୁଁ ଦେବତାମାନେ ସାଧୁ ସାଧୁ କହି ଶ୍ରୀକୃଷ୍ଣ ଓ ବଳରାମଙ୍କ କାର୍ଯ୍ୟର ଅନୁମୋଦନପୂର୍ବକ ଦୁହିଁଙ୍କ ଉପରେ ପୁଷ୍ପବୃଷ୍ଟି କରି ଲାଗିଲେ ଏବଂ ସୂତ, ମାଗଧ ଓ ବନ୍ଦୀମାନେ ତାଙ୍କର ଜୟଗାନ କଲେ । ହୃଷ୍ଟଚିତ୍ତ ଓ ସଙ୍କଟଶୂନ୍ୟ ମଥୁରାବାସୀଙ୍କ ସହିତ ମିଳିତ ହୋଇ ସେ ମଥୁରାନଗର ଅଭିମୁଖରେ ଯାତ୍ରା କଲେ ॥୩୬-୩୭॥ କୃଷ୍ଣ ଓ ବଳରାମ ମଥୁରାରେ ପ୍ରବେଶ କରିବାବେଳେ ବହୁ ସଂଖ୍ୟାରେ ଶଙ୍ଖ, ଦୁନ୍ଦୁଭି, ଭେରୀ, ତୂରୀ, ବୀଣା, ବେଣୁ ଓ ମୃଦଙ୍ଗ ଆଦି ବାଦ୍ୟ ବାଜି ଉଠିଲା ॥୩୮॥ ମଥୁରାର ରାସ୍ତାମାନଙ୍କରେ ପାଣି ଛିଞ୍ଚା ହୋଇଥିଲା । ଚାରିଆଡ଼ୁ ଲୋକମାନେ ଆନନ୍ଦରେ ବାହାରି ଆସୁଥିଲେ । ତୋରଣମାନ କରାଯାଇ ଛୋଟ ବଡ଼ ବିଜୟପତାକା ବନ୍ଧା ଯାଇଥିଲା ଓ ବ୍ରାହ୍ମଣମାନେ ବେଦଧ୍ୱନି କରୁଥିଲେ ॥୩୯॥ କୃଷ୍ଣଙ୍କୁ ଦେଖି ମଥୁରାର ନାରୀମାନେ ତାଙ୍କ ଉପରକୁ ଦୂବ, ଅରୁଆ ଚାଉଳ, ଦହି ଓ ଫୁଲମାଳ ବର୍ଷା କରିବାକୁ ଲାଗିଲେ ଏବଂ ସ୍ନେହ ଓ ପ୍ରେମପୂର୍ଣ୍ଣ ଦୃଷ୍ଟିରେ ତାଙ୍କଆଡ଼କୁ ଚାହିଁ ରହୁଥିଲେ ॥୪୦॥ ରଣଭୂମିରୁ ଜରାସନ୍ଧର ଯେଉଁ ଅପାର ଧନ ଓ ଯୋଦ୍ଧାମାନଙ୍କର ଯେଉଁ ଅଳଙ୍କାର ସଂଗ୍ରହ କରାଯାଇଥିଲା, ଭଗବାନ ଶ୍ରୀକୃଷ୍ଣ ତାହା ଯାଦବରାଜ ଉଗ୍ରସେନଙ୍କୁ ପ୍ରଦାନ କଲେ ॥୪୧॥

ପରିକ୍ଷିତ, ଜରାସନ୍ଧ ଏହିପରି ତେଇଶି ତେଇଶି ଅକ୍ଷୌହିଣୀ ସେନା ଏକାଠି କରି ସତରଥର ଶ୍ରୀକୃଷ୍ଣଙ୍କଦ୍ୱାରା ରକ୍ଷିତ ଯାଦବମାନଙ୍କ ସହିତ ଯୁଦ୍ଧ କଲା ॥୪୨॥ ଯାଦବମାନେ ଭଗବାନ ଶ୍ରୀକୃଷ୍ଣଙ୍କର ବଳର ସହାୟତାରେ ପ୍ରତ୍ୟେକ ଥର ତାର ସେନାବାହିନୀର ବିନାଶ କରୁଥିଲେ ଏବଂ ତା'ର ସବୁ ସେନା ନଷ୍ଟ ହେବାପରେ ଜରାସନ୍ଧକୁ ଉପେକ୍ଷା କରି ଛାଡ଼ିଦେଉଥିଲେ ଓ ସେ ମଗଧ ପଳାଇ ଆସୁଥିଲା ॥୪୩॥ ଯେତେବେଳେ ଅଷ୍ଟାଦଶବାର ତା'ର ମଥୁରା ଆକ୍ରମଣ କରିବାର ହେଲା, ସେତେବେଳେ ନାରଦଙ୍କଦ୍ୱାରା ପ୍ରେରିତ ହୋଇ ମହାବୀର କାଳଯବନ ମଥୁରାରେ ଆସି ଦେଖାଦେଲା ॥୪୪॥ ନରଲୋକରେ କାଳଯବନର ସମକକ୍ଷ କେହି ଯୋଦ୍ଧା ନ ଥିଲେ । ଯେତେବେଳେ ସେ ଶୁଣିଲା ଯେ ଯାଦବମାନେ ତା'ର ସମକକ୍ଷ ଯୋଦ୍ଧା, ସେ ତିନିକୋଟି ମ୍ଳେଚ୍ଛ ସୈନ୍ୟଙ୍କୁ ସାଙ୍ଗରେ ଧରି ମଥୁରା ଅବରୋଧ କଲା ॥୪୫॥

ଏହିପରି ହଠାତ୍ ମଥୁରା ଆକ୍ରମଣ କରିବାକୁ ଆସିଥିବା କାଳଯବନକୁ ଦେଖି ଶ୍ରୀକୃଷ୍ଣ ବଳରାମଙ୍କ ସହିତ ବିଚାର ବିମର୍ଶ କଲେ -- ଦେଖ, ଉଭୟପଟୁ ଯାଦବମାନଙ୍କୁ ବିପଦ ମାଡ଼ିଆସିଲାଣି । ଏହି ମହାବଳଶାଳୀ ଯବନ ଆଜି ମଥୁରା ଅବରୋଧ କରିଛି । କାଲି କିମ୍ବା ପଅରଦିନ ଜରାସନ୍ଧ ମଥୁରା ଅବରୋଧ କରିବାକୁ ଆସିବ ।।୪୬-୪୭।। କାଳଯବନ ସହିତ ଆମେ ଦୁଇ ଜଣ ଯୁଦ୍ଧ କରୁଥିବାବେଳେ ଜରାସନ୍ଧ ଯଦି ପହଞ୍ଚିଯାଏ, ତା'ହେଲେ ସେ ଆମର ବନ୍ଧୁ ସ୍ୱଜନଙ୍କୁ ବିନାଶ କରିବ କିମ୍ବା ସେମାନଙ୍କୁ ବନ୍ଦୀ କରି ନିଜ ନଗରୀକୁ ନେଇଯିବ । ତେଣୁ ମନୁଷ୍ୟମାନଙ୍କର ଦୁର୍ଗମ ଏକ ଦୁର୍ଗ ନିର୍ମାଣ କରି ଆମେ ଆମର ଜ୍ଞାତି ସ୍ୱଜନମାନଙ୍କୁ ସେଠାରେ ରଖାଇବା ଓ ତା'ପରେ କାଳଯବନକୁ ବଧ କରିବା ।।୪୮-୪୯।। ଏହିପରି ମନ୍ତ୍ରଣା କରି ଭଗବାନ ଶ୍ରୀକୃଷ୍ଣ ସମୁଦ୍ରମଧ୍ୟରେ ଦ୍ୱାଦଶଯୋଜନ ପରିମିତ ଏକ ଅଦ୍ଭୁତ ଦୁର୍ଗ ନିର୍ମାଣ କଲେ ।।୫୦।। ଏହି ଦୁର୍ଗର ପ୍ରତ୍ୟେକ ଅଂଶରେ ବିଶ୍ୱକର୍ମାଙ୍କର ବିଜ୍ଞାନ ଓ ଦକ୍ଷ ନିର୍ମାଣକଳା ପରିସ୍ଫୁଟ ହେଉଥିଲା । ଦୁର୍ଗ-ନଗରୀରେ ରାଜରାସ୍ତା, ଛକ ଓ ଛୋଟଛୋଟ ରାସ୍ତାମାନ ବାସ୍ତୁଶାସ୍ତ୍ର ଅନୁସାରେ ନିର୍ମାଣ କରାଯାଇଥିଲା ।।୫୧।। ଏହି ନଗର ସୁନ୍ଦର ସୁନ୍ଦର ଉଦ୍ୟାନ ଓ ଉପବନମାନଙ୍କଦ୍ୱାରା ଶୋଭା ପାଉଥିଲା । ଦିବ୍ୟବୃକ୍ଷ ଓ ଲତାମାନେ ବନ ଉପବନକୁ ମଣ୍ଡିତ କରୁଥିଲେ । ସ୍ଫଟିକନିର୍ମିତ ନଭସ୍ପର୍ଶୀ ଅଟ୍ଟାଳିକାମାନଙ୍କର ଚୂଡ଼ା ସୁବର୍ଣ୍ଣରେ ନିର୍ମିତ ଥିଲା । ଗୃହଦ୍ୱାର ସବୁ ରଜତରେ ନିର୍ମିତ ହୋଇଥିଲା । ଶସ୍ୟାଗାର ଓ ଅଶ୍ୱଶାଳାର ଦ୍ୱାରସବୁ ପିତଳରେ ନିର୍ମାଣ କରାଯାଇଥିଲା । ଗୃହସବୁ ସୁବର୍ଣ୍ଣରେ ନିର୍ମିତଥିଲା । ଗୃହର ଶିଖର ରତ୍ନଖଚିତଥିଲା ଓ ଗୃହତଳ ମର୍କତମଣିରେ ତିଆରି ହୋଇଥିଲା । ଗୃହମାନଙ୍କରେ ସୁବର୍ଣ୍ଣର କଳସ ସଜା ହୋଇଥିଲା ।।୫୨-୫୩।। ଏହାଛଡ଼ା ଏହି ନଗରୀରେ ବାସ୍ତୁଦେବତାଙ୍କର ମନ୍ଦିର, ଚନ୍ଦ୍ରଶାଳା ଆଦି ଶୋଭା ପାଉଥିଲା । ଏହା ବ୍ରାହ୍ମଣ, କ୍ଷତ୍ରିୟ, ବୈଶ୍ୟ ଓ ଶୂଦ୍ର--ଏହି ଚାରି ବର୍ଣ୍ଣର ଲୋକଙ୍କଦ୍ୱାରା ପରିପୂର୍ଣ୍ଣ ଥିଲା । ନଗରର ମଧ୍ୟଭାଗରେ ଯାଦବମୁଖ୍ୟମାନଙ୍କପାଇଁ ମନୋରମ ପ୍ରାସାଦମାନ ନିର୍ମିତ ହୋଇଥିଲା ।।୫୪।। ଦେବରାଜ ଇନ୍ଦ୍ର କୃଷ୍ଣଙ୍କର ସନ୍ତୋଷପାଇଁ ପାରିଜାତ ପୁଷ୍ପ ଓ ସୁଧର୍ମାସଭାକୁ ସେଠାକୁ ପଠାଇଦେଲେ । ଏହି ସୁଧର୍ମା ସଭାରେ ଅବସ୍ଥାନ କଲେ ମନୁଷ୍ୟର କୌଣସି କ୍ଷୁଧା ପିପାସା ଆଦି ରହେ ନାହିଁ ।।୫୫।। ଭଗବାନ୍ ଶ୍ରୀକୃଷ୍ଣଙ୍କର ସନ୍ତୋଷପାଇଁ ବରୁଣଦେବତା ଯେଉଁ ସବୁ ଅଶ୍ୱ ପଠାଇଲେ, ସେମାନଙ୍କର ଗୋଟିଏ ଗୋଟିଏ କାନ ଶ୍ୟାମବର୍ଣ୍ଣ ଥିଲା ଏବଂ ସେମାନେ ମନପରି ବେଗଗାମୀ ଥିଲେ । ଧନପତି କୁବେର ନିଜର ଅଷ୍ଟନିଧି (ସମସ୍ତ ପ୍ରକାର ଧନରତ୍ନ)କୁ ପଠାଇଦେଲେ । ଅନ୍ୟ ଲୋକପାଳମାନେ ଶ୍ରୀକୃଷ୍ଣଙ୍କୁ ନିଜ ନିଜର ଐଶ୍ୱର୍ଯ୍ୟ ଓ ବିଭୂତି ପ୍ରଦାନ କଲେ ।।୫୬।।

ପରିକ୍ଷିତ, ଏହିପରି ଦେବତା ଓ ଲୋକପାଳମାନଙ୍କୁ ଭଗବାନ ଯେଉଁସବୁ ସିଦ୍ଧି ଓ ଶକ୍ତି ଦେଇଥିଲେ, ପୃଥିବୀରେ ଅବତୀର୍ଣ୍ଣ ହୋଇ ଲୀଳା କରିବାବେଳେ ସେହି ସବୁ ସିଦ୍ଧି ସେମାନେ ଭଗବାନଙ୍କ ଚରଣରେ ଅର୍ପଣ କଲେ ।।୫୭।। ଶ୍ରୀକୃଷ୍ଣ ନିଜର ଯୋଗମାୟା ଶକ୍ତିର ପ୍ରଭାବରେ ଜ୍ଞାତି ସ୍ୱଜନମାନଙ୍କୁ ନୂତନ ଦୁର୍ଗକୁ ପଠାଇଦେଇ ପ୍ରଜାପାଳକ ବଳରାମଙ୍କୁ କହିଲେ, ଆପଣ ମଥୁରାକୁ ରକ୍ଷା କରନ୍ତୁ, ମୁଁ କାଳଯବନକୁ ମାରିବାପାଇଁ ଯାଉଛି । ଏହାପରେ ଗଳାରେ ଏକ ପଦ୍ମମାଳା ପିନ୍ଧି ବିନା ଅସ୍ତ୍ରଶସ୍ତ୍ରରେ ସେ ନଗରଦ୍ୱାରରୁ ବାହାରିଆସିଲେ ।।୫୮।।

## ଏକାବନ ଅଧ୍ୟାୟ

# କାଳଯବନ ଓ ମୁଚୁକୁନ୍ଦ

ଶ୍ରୀ ଶୁକଦେବ କହିଲେ, ପରିକ୍ଷିତ, ଯେତେବେଳେ ଭଗବାନ୍ ଶ୍ରୀକୃଷ୍ଣ ମଥୁରାନଗରୀର ମୁଖ୍ୟଦ୍ୱାରରୁ ବାହାରିଆସିଲେ, ସେତେବେଳେ ପୂର୍ବ ଦିଗରେ ଚନ୍ଦ୍ର ଉଦିତ ହେଉଥିବାପରି ଦେଖାଗଲା । ତାଙ୍କର ଶ୍ୟାମଳ ଶରୀର ଅତି ସୁନ୍ଦର ଦେଖାଯାଉଥିଲା ।

ସେ ପୀତ ପଟ୍ଟବସ୍ତ୍ର ପିନ୍ଧିଥିଲେ । ବକ୍ଷରେ ଶ୍ରୀବତ୍ସଲାଞ୍ଛନ, ଗଳାରେ ଜକ୍ ଜକ୍ କରୁଥିବା କୌସ୍ତୁଭର ମଣି । ଦୀର୍ଘ ଓ ପୃଥୁଳ ବାହୁ, ସଦ୍ୟ ଫୁଟିଥିବା ପଦ୍ମଫୁଲ ପରି ସୁନ୍ଦର ନେତ୍ରଦ୍ୱୟ । ମନୋହର ଗଣ୍ଡଦେଶ ଓ ମନ୍ଦହାସଯୁକ୍ତ ମୁଖପଦ୍ମରେ ମକରକୁଣ୍ଡଳ ଦୁଇଟି ଶୋଭାପାଉଥିଲା ॥୧-୩॥ ତାଙ୍କୁ ଦେଖି କାଳଯବନ ସ୍ଥିର କଲା, ଇଏ ହେଉଛନ୍ତି ବାସୁଦେବ । କାରଣ ତାଙ୍କର ବକ୍ଷରେ ଶ୍ରୀବତ୍ସଚିହ୍ନ । ସେ ଚତୁର୍ଭୁଜ, ପଦ୍ମନେତ୍ର, ଅତିସୁନ୍ଦର ଓ ବନମାଳା ଧାରଣ କରିଛନ୍ତି । ନାରଦ କୃଷ୍ଣଙ୍କର ଯେଉଁସବୁ ଲକ୍ଷଣ ବର୍ଣ୍ଣନା କରିଛନ୍ତି, ତାହା ସବୁ ଏହାଙ୍କ ଠାରେ ମିଳିଯାଉଛି । କୃଷ୍ଣଙ୍କ ଛଡ଼ା ଏ ଅନ୍ୟ କେହି ହୋଇପାରିବେ ନାହିଁ । ବିନା ଆୟୁଧରେ ସେ ପାଦରେ ଆସୁଛନ୍ତି । ମୁଁ ମଧ୍ୟ ତାଙ୍କ ସହିତ ବିନା ଅସ୍ତ୍ରଶସ୍ତ୍ରରେ ଯୁଦ୍ଧ କରିବି ॥୪-୫॥ ଏହା ସେ ମନେ ମନେ ସ୍ଥିର କରିବାମାତ୍ରେ ଦେଖିଲା ଯେ କୃଷ୍ଣ ତା ଆଡ଼କୁ ନ ଆସି ମୁହଁ ବୁଲାଇ ଚାଲିଯାଉଛନ୍ତି । ଯୋଗୀମାନେ ମଧ୍ୟ ଯାହାଙ୍କୁ ଧରିପାରନ୍ତି ନାହିଁ, ସେହି କୃଷ୍ଣଙ୍କୁ ଧରିବାପାଇଁ ସେ ତାଙ୍କ ପଛେ ପଛେ ଦଉଡ଼ିଲା ॥୬॥ କୃଷ୍ଣ ଏପରିଭାବରେ ଯାଉଥିଲେ ସତେ ଯେପରି କାଳଯବନ ତାଙ୍କ ପଛେ ପଛେ ଲାଗିଯାଇ ତାଙ୍କୁ ଧରିନେବ । ଏହିପରି ପଦେ ପଦେ ନିଜକୁ ହାତ ପାଇଲା ଭଳି ଦେଖାଇ ଦେଖାଇ ସେ ଏକ ଦୂରସ୍ଥ ପର୍ବତଗୁହାକୁ କାଳଯବନକୁ ନେଇଗଲେ ॥୭॥ ଯଦୁକୁଳରେ ଜାତ ତୁମ ପକ୍ଷରେ ପଳାୟନ ଉଚିତ ହେଉ ନାହିଁ -- କାଳଯବନ ଏହିପରି ପାଟିକରି କୃଷ୍ଣଙ୍କ ପଛେ ପଛେ ଦଉଡୁଥିଲା । କିନ୍ତୁ ତାର ଅଶୁଭ ଦୂର ହୋଇ ନ ଥିବା ଯୋଗୁ ସେ ତାଙ୍କୁ ଧରି ପାରିଲା ନାହିଁ ॥୮॥

କୃଷ୍ଣ ଗୁହାମଧ୍ୟରେ ପ୍ରବେଶ କରିବାରୁ ସେ ମଧ୍ୟ ଗୁହାରେ ପ୍ରବେଶ କଲା । ସେଠାରେ ସେ ଦେଖିଲା ଯେ କେହି ଜଣେ ବ୍ୟକ୍ତି ଶୋଇରହିଛି ॥୯॥ ସେ ଭାବିଲା, ଇଏ ମୋତେ ଦୂରକୁ ଆଣି ଏହି ସ୍ଥାନରେ ସାଧୁପରି ଶୋଇଯାଇଛି । ମୂଢ଼ ବୁଦ୍ଧିରେ ସେହି ସୁପ୍ତ ବ୍ୟକ୍ତିକୁ କୃଷ୍ଣ ବୋଲି ଭାବି ସେ ପଦାଘାତ କଲା ॥୧୦॥ ଦୀର୍ଘକାଳ ଧରି ଶୋଇ ରହିଥିବା ସେହି ବ୍ୟକ୍ତି ଜଣକ ଉଠିପଡ଼ି ଧୀରେ ଧୀରେ ଆଖି ଖୋଲି ଦେଖିଲେ ଯେ ତାଙ୍କ ପାଖରେ କାଳଯବନ ଠିଆ ହୋଇଛି ॥୧୧॥ ପରିକ୍ଷିତ, ସେ ରାଗରେ ତାକୁ ଚାହିଁଦେବା ମାତ୍ରେ ତା' ଦେହରେ ନିଆଁ ଲାଗିଗଲା ଏବଂ ସେଇ ନିଆଁରେ ପୋଡ଼ି ହୋଇ ସେ ତତ୍‌କ୍ଷଣାତ୍ ଭସ୍ମ ହୋଇଗଲା ॥୧୨॥

ପରିକ୍ଷିତ ପଚାରିଲେ, ବ୍ରହ୍ମନ୍, ଯେ ଚାହିଁଦେବା ମାତ୍ରେ କାଳଯବନକୁ ଜାଳିଦେଲେ, ସେହି ପୁରୁଷ ଜଣକ କିଏ ? ସେ କେଉଁ ବଂଶରେ ଜାତ ? କାହାର ପୁଅ ? କିପରି ସେ ଏହି ଶକ୍ତିର ଅଧିକାରୀ ହେଲେ ? ଏବଂ କେଉଁ କାରଣରୁ ସେ ପର୍ବତ ଗୁହାରେ ଯାଇ ଶୋଇଥିଲେ ? ॥୧୩॥ ଶ୍ରୀ ଶୁକଦେବ କହିଲେ, ପରିକ୍ଷିତ, ସେହି ମହାନ୍ ବ୍ୟକ୍ତି ଇକ୍ଷ୍ୱାକୁ ବଂଶରେ ଜାତ, ମାନ୍ଧାତାଙ୍କର ପୁତ୍ର ଏବଂ ମୁଚୁକୁନ୍ଦ ନାମରେ ଖ୍ୟାତ । ସେ ବ୍ରାହ୍ମଣମାନଙ୍କର ଭକ୍ତ । ଧର୍ମରକ୍ଷାପାଇଁ ସେ ଯୁଦ୍ଧ କରୁଥିଲେ ॥୧୪॥ ପୂର୍ବେ ଅସୁରମାନଙ୍କ ଭୟରେ ତ୍ରସ୍ତ ହୋଇ ଇନ୍ଦ୍ରାଦି ଦେବତାମାନେ ନିଜକୁ ରକ୍ଷା କରିବାପାଇଁ ମୁଚୁକୁନ୍ଦଙ୍କୁ ସାହାଯ୍ୟ ପ୍ରାର୍ଥନା କରିଥିଲେ ଓ ସେ ବହୁକାଳ ଧରି ସେମାନଙ୍କୁ ରକ୍ଷାକରିଥିଲେ ॥୧୫॥ ସ୍ୱର୍ଗକୁ ରକ୍ଷା କରିବାପାଇଁ କାର୍ତ୍ତିକେୟଙ୍କୁ ପାଇ, ସେମାନେ ଯାଇ ମୁଚୁକୁନ୍ଦଙ୍କୁ କହିଲେ, ମହାରାଜ, ଆମକୁ ପାଳନ କରିବାପାଇଁ ଆପଣ ଯେଉଁ କଷ୍ଟ କରୁଛନ୍ତି, ତହିଁରୁ ଏବେ ବିରତ ହୁଅନ୍ତୁ ॥୧୬॥ ବୀର, ଆପଣ ନରଲୋକରେ ନିଷ୍କଣ୍ଟକ ରାଜ୍ୟକୁ ଛାଡ଼ି ଆମକୁ ପାଳନ କରିବାପାଇଁ ସମସ୍ତ ଭୋଗବିଳାସ ତ୍ୟାଗ କରିଛନ୍ତି । ଆପଣଙ୍କର ସମକାଳୀନ ରାଣୀ, ପୁତ୍ର, ଜ୍ଞାତି, କୁଟୁମ୍ବ, ଅମାତ୍ୟ, ମନ୍ତ୍ରୀ ଓ ପ୍ରଜାମାନେ ସବୁ ମରି ଯାଇଛନ୍ତି, ବର୍ତ୍ତମାନ କେହି ଆଉ ନାହାନ୍ତି ॥୧୭-୧୮॥ କାଳ ହେଉଛି ବଳବାନଙ୍କ ମଧ୍ୟରେ ବଳୀୟାନ । କାଳ ହେଉଛି ଅବିନାଶୀ ଓ ସର୍ବନିୟନ୍ତା ଭଗବାନ୍ । ପଶୁପାଳକ ପଶୁମାନଙ୍କୁ ଯେପରି ଏଣେ ତେଣେ ଗଳାଏ, କାଳ ମଧ୍ୟ ସେହିପରି ଜୀବଜନ୍ତୁଙ୍କୁ ନିୟନ୍ତ୍ରଣ କରେ ॥୧୯॥ ଆପଣଙ୍କର ମଙ୍ଗଳ ହେଉ । ମୋକ୍ଷ ଛଡ଼ା ଆଉ ଯାହା ବର ମାଗିବାର କଥା ଆମଠାରୁ ମାଗିନିଅନ୍ତୁ । ଅବିନାଶୀ ଭଗବାନ ବିଷ୍ଣୁ ହେଉଛନ୍ତି ମୋକ୍ଷର ଏକମାତ୍ର ପ୍ରଭୁ ॥୨୦॥

ଦେବତାମାନେ ଏହିପରି କହିବାରୁ ମହାଯଶା ରାଜା ମୁଚୁକୁନ୍ଦ ସେମାନଙ୍କୁ ଅଭିବନ୍ଦନ କରି ଗୁହାରେ ପ୍ରବେଶ କଲେ ଏବଂ ଦେବପ୍ରଦତ୍ତ ଗଭୀର ନିଦ୍ରାରେ ଶୋଇପଡ଼ିଲେ ॥୨୧॥ ନିଦ୍ରାବର ସଙ୍ଗେ ସଙ୍ଗେ ମୁଚୁକୁନ୍ଦ ପୁଣି ବର ମାଗିଥିଲେ ଦେବଗଣ, ମୁଁ ଶୋଇଥିବାବେଳେ ଯଦି କେହି ମୋର ନିଦ୍ରା ଭଙ୍ଗ କରେ, ତେବେ ସେ ଶୀଘ୍ର ଜଳି ଭସ୍ମ ହୋଇଯିବ । ଦେବତାମାନେ କହିଲେ, ତାହା ହିଁ ହେବ । ଯଦି କୌଣସି ମୂର୍ଖ ଆପଣଙ୍କୁ ଉଠାଇବ, ତା'ହେଲେ ଆପଣଙ୍କ ଦୃଷ୍ଟି ପଡ଼ିବାମାତ୍ରେ ସେ ସଙ୍ଗେ ସଙ୍ଗେ ଭସ୍ମ ହୋଇଯିବ ॥୨୨॥ କାଳଯବନ ଭସ୍ମ ହେବାପରେ ଯଦୁପତି ଭଗବାନ୍ ଶ୍ରୀକୃଷ୍ଣ ଧୀମାନ୍ ମୁଚୁକୁନ୍ଦଙ୍କୁ ନିଜ ରୂପରେ ଦର୍ଶନ ଦେଲେ । ମେଘବର୍ଣ୍ଣର ଶ୍ୟାମ କାନ୍ତି, ପୀତ ପଟ୍ଟବସ୍ତ୍ର, ବକ୍ଷରେ ଶ୍ରୀବତ୍ସ ଚିହ୍ନ, ଗଳାରେ କୌସ୍ତୁଭର ମଣି, ଚତୁର୍ଭୁଜ, ବୈଜୟନ୍ତୀ ମାଳାରେ ଶୋଭମାନ, ସୁନ୍ଦର ପ୍ରସନ୍ନ ମୁଖମଣ୍ଡଳ, ଚମତ୍କାର ମକରକୁଣ୍ଡଳ, ଅନୁରାଗଭରା ମନ୍ଦମନ୍ଦ ହସ ଓ ଦୃଷ୍ଟି, ନବୀନ ବୟସ; ମତ୍ତସିଂହର ବିକ୍ରମ, ଧାରଣ କରିଥିବା ସେହି କମନୀୟ ମୂର୍ତ୍ତିର ତେଜରେ ରାଜା ମୁଚୁକୁନ୍ଦ ଚମକିପଡ଼ିଲେ । ତା'ପରେ ମହାବୁଦ୍ଧି ରାଜା ଶଙ୍କିତ ହୋଇ ଧୀର ସ୍ୱରରେ ପଚାରିଲେ-- ॥୨୩-୨୭॥

ଶ୍ରୀ ମୁଚୁକୁନ୍ଦ ପଚାରିଲେ, ଆପଣ ଏଠାକୁ କିପରି ଆସିଲେ ? ଏହି କଣ୍ଟକପୂର୍ଣ୍ଣ ଅରଣ୍ୟରେ ଓ ଗିରିଗୁହାମଧ୍ୟରେ ପଦ୍ମପତ୍ର ପରି କୋମଳ ପାଦରେ ବିଚରଣ କରୁଛନ୍ତି । ଆପଣ ତେଜସ୍ୱୀମାନଙ୍କର ତେଜ ଅଥବା ଅଗ୍ନି, ଚନ୍ଦ୍ର, ସୂର୍ଯ୍ୟ, ଦେବରାଜ ଇନ୍ଦ୍ର ବା ଅନ୍ୟକୌଣସି ଲୋକପାଳ କି ? ॥୨୮-୨୯॥ ଦୀପ ଆଲୋକରେ ଅନ୍ଧକାରକୁ ଦୂର କରିବାପରି ଆପଣ ନିଜ ତେଜରେ ଏହି ଗୁହାର ଅନ୍ଧକାରକୁ ଦୂର କରୁଛନ୍ତି । ମୁଁ ଭାବୁଛି, ବ୍ରହ୍ମା, ବିଷ୍ଣୁ ଓ ମହେଶ୍ୱର--ଏହି ତିନି ଦେବତାଙ୍କ ମଧ୍ୟରେ ଆପଣ ହେଉଛନ୍ତି ପୁରୁଷୋତ୍ତମ ବିଷ୍ଣୁ ॥୩୦॥ ପୁରୁଷଶ୍ରେଷ୍ଠ, ଆପଣଙ୍କ ବିଷୟରେ ଶୁଣିବାପାଇଁ ମୋର ଇଚ୍ଛା ହେଉଛି । ଆପଣଙ୍କର ଯଦି ଅଭିରୁଚି ହୁଏ, ତା'ହେଲେ କପଟ ନ କରି ଆପଣଙ୍କର ଜନ୍ମ, କର୍ମ ଓ ଗୋତ୍ର ମୋତେ ଶୁଣାଇବା ହୁଅନ୍ତୁ ॥୩୧॥ ପୁରୁଷୋତ୍ତମ, ମୁଁ ହେଉଛି ଇକ୍ଷ୍ୱାକୁ ବଂଶୀୟ କ୍ଷତ୍ରିୟାଧମ ମୁଚୁକୁନ୍ଦ । ରାଜା ଯୁବନାଶ୍ୱଙ୍କର ନାତି ଓ ମାନ୍ଧାତାଙ୍କର ପୁତ୍ର । ବହୁକାଳ ଧରି ଜାଗ୍ରତ ରହିବା ଫଳରେ ମୁଁ ଶ୍ରାନ୍ତ ହୋଇପଡ଼ିଥିଲି । ନିଦ୍ରାଦ୍ୱାରା ମୋ' ଇନ୍ଦ୍ରିୟମାନେ ନିସ୍ତେଜ ହୋଇପଡ଼ିଥିଲେ । ଏହି ନିର୍ଜନ ଗୁହାରେ ନିଜର ଇଚ୍ଛା ମୁତାବକ ଗଭୀର ନିଦ୍ରାରେ ଶୋଇଯାଇଥିଲି । ଏବେ କେହି ଜଣେ ମୋତେ ଉଠାଇଦେଇଛି । ସେ ମଧ୍ୟ ନିଜର ପାପଯୋଗୁଁ ନିଶ୍ଚେ ଭସ୍ମ ହୋଇଯାଇଛି । ଏବେ ଶତ୍ରୁନାଶନ ଶ୍ରୀମାନ୍‌ଙ୍କୁ ମୁଁ ଦେଖିବାକୁ ପାଉଛି । ଆପଣଙ୍କର ତେଜ ସହିବା କଷ୍ଟକର । ସେଥିରେ ମୋର ତେଜ, ବୀର୍ଯ୍ୟ ନଷ୍ଟ ହୋଇଗଲାଣି । ଆଉ ବେଶୀ ମୁଁ ଆପଣଙ୍କୁ ଦେଖିପାରିବି ନାହିଁ । ଆପଣ ସମସ୍ତ ଦେହଧାରୀଙ୍କର ମାନନୀୟ ॥୩୨-୩୫॥ ପରିକ୍ଷିତ, ରାଜା ମୁଚୁକୁନ୍ଦ ଏହିପରି କହିବାରୁ ସମସ୍ତ ପ୍ରାଣୀଙ୍କର ରକ୍ଷକ ଭଗବାନ୍ ଶ୍ରୀକୃଷ୍ଣ ହସି ହସି ମେଘଗମ୍ଭୀର ବାଣୀରେ ତାଙ୍କୁ ଉତ୍ତର ଦେଲେ-- ॥୩୬॥

ଶ୍ରୀ ଭଗବାନ କହିଲେ, ପ୍ରିୟ ମୁଚୁକୁନ୍ଦ, ମୋର ହଜାର ହଜାର ଜନ୍ମ, କର୍ମ ଓ ନାମ ଅଛି । ଅନନ୍ତ ହୋଇଥିବାରୁ ସେ ସବୁକୁ ସଂଖ୍ୟା କରିହେବ ନାହିଁ । ମୁଁ ମଧ୍ୟ ଗଣି ପାରିବି ନାହିଁ । ଜଣେ ହୁଏତ ଅନେକ ଜନ୍ମରେ ପୃଥିବୀର ଧୂଳିକଣାକୁ କଦାଚିତ୍ ଗଣିଦେଇପାରେ; କିନ୍ତୁ ମୋର ଜନ୍ମ, ଗୁଣ, କର୍ମ ଓ ନାମସବୁକୁ କଦାପି ଗଣନା କରିପାରିବ ନାହିଁ ॥୩୭-୩୮॥ ରାଜା, ଶ୍ରେଷ୍ଠ ଋଷିମାନେ ତ୍ରିକାଳସିଦ୍ଧ ମୋର ଜନ୍ମ, କର୍ମମାନଙ୍କୁ ଗଣନା କରିବାକୁ ଯାଇ ତାର ଅନ୍ତ ପାଆନ୍ତି ନାହିଁ । ତଥାପି ହେ ରାଜା, ମୋର ବର୍ତ୍ତମାନର ଜନ୍ମ କର୍ମଗୁଡ଼ିକ କଣ, ତାହା ମୁଁ ତୁମକୁ କହୁଛି, ଶୁଣ ॥୩୯॥ ପୂର୍ବେ ଧର୍ମରକ୍ଷା ନିମନ୍ତେ ଏବଂ ଅସୁରମାନଙ୍କର ସଂହାର କରି ପୃଥିବୀର ଭାର ହରଣପାଇଁ ବ୍ରହ୍ମା ମୋତେ ପ୍ରାର୍ଥନା କରିଥିଲେ ॥୪୦॥ ସେଥିପାଇଁ ଯଦୁବଂଶରେ ବସୁଦେବଙ୍କ ଗୃହରେ ମୁଁ ଅବତୀର୍ଣ୍ଣ ହେଲି । ବସୁଦେବଙ୍କର ପୁତ୍ର ହୋଇଥିବାରୁ ମୋତେ ବାସୁଦେବ ବୋଲି କହନ୍ତି ॥୪୧॥ ରାକ୍ଷସ କାଳନେମି ଯେ କଂସରୂପରେ ଜନ୍ମ ହୋଇଥିଲା, ତାକୁ ଓ ସାଧୁମାନଙ୍କର ବିଦ୍ୱେଷୀ ପ୍ରଲମ୍ବ ଆଦି ବହୁ ଅସୁରଙ୍କୁ ମୁଁ ସଂହାର କରିଛି । ତୁମର ତୀକ୍ଷ୍ଣ ଦୃଷ୍ଟିପାତରେ ଭସ୍ମ ହୋଇଥିବା ଏହି ବ୍ୟକ୍ତି ହେଉଛି କାଳଯବନ । ତୁମକୁ ଅନୁଗ୍ରହୀତ କରିବାପାଇଁ

ମୁଁ ଏହି ଗୁହାକୁ ଆସିଛି । କାରଣ ତୁମେ ମୋତେ ପୂର୍ବରୁ ବହୁ ପ୍ରାର୍ଥନା କରିଛ । ମୁଁ ହେଉଛି ଭକ୍ତବତ୍ସଳ ॥୪୨-୪୩॥ ରାଜର୍ଷି, ତୁମର ଯେଉଁ ବର ମାଗିବାକୁ ଇଚ୍ଛା ହେଉଛି, ମାଗ । ମୁଁ ତୁମକୁ ସକଳ କାମ୍ୟ ବସ୍ତୁ ଦେବି । ମୋତେ ଶରଣାପନ୍ନ କୌଣସି ବ୍ୟକ୍ତିକୁ ଅଲଭ୍ୟ ବସ୍ତୁପାଇଁ ଶୋକ କରିବାକୁ ପଡ଼େ ନାହିଁ ॥୪୪॥

ଶ୍ରୀ ଶୁକଦେବ କହିଲେ, ଯଦୁବଂଶରେ ଭଗବାନ୍ ଜନ୍ମ ହେବେ ବୋଲି ଗର୍ଗାଚାର୍ଯ୍ୟ ଯେଉଁ ଭବିଷ୍ୟତ୍ ବାଣୀ ଶୁଣାଇଥିଲେ, ମୁଚୁକୁନ୍ଦଙ୍କର ତାହା ମନେପଡ଼ିଗଲା । ତେଣୁ ଶ୍ରୀକୃଷ୍ଣଙ୍କ କଥା ଶୁଣି ସେ ତାଙ୍କୁ ନାରାୟଣ ବୋଲି ଜାଣି ପ୍ରଣାମପୂର୍ବକ ଆନନ୍ଦିତ ହୋଇ କହିବାକୁ ଲାଗିଲେ ॥୪୫॥ ମୁଚୁକୁନ୍ଦ କହିଲେ, ପ୍ରଭୁ, ଏହି ସଂସାରୀ ଲୋକ ଆପଣଙ୍କ ମାୟାରେ ବିମୋହିତ ହୋଇ ରହିଥାଏ । ସେ ପରମାର୍ଥସ୍ୱରୂପ ଆପଣଙ୍କୁ ଦେଖି ନ ପାରି ଭଜନ କରେ ନାହିଁ । ଆପଣଙ୍କ ସେବାରୁ ବଞ୍ଚିତ ସ୍ତ୍ରୀ ଓ ପୁରୁଷ ଉଭୟ ସୁଖପାଇଁ ଦୁଃଖମୂଳକ ଘରସଂସାରରେ ଆସକ୍ତ ହୋଇ ପଡ଼ିଥା'ନ୍ତି ॥୪୬॥ ହେ ନିଷ୍ପାପ, ସଂସାରରୂପକ ଏହି କର୍ମଭୂମିରେ ଦୁର୍ଲଭ ମନୁଷ୍ୟଜନ୍ମ ଲାଭକରି ଯେ ଅନିତ୍ୟ ବିଷୟସୁଖରେ ମାତି ରହି ଆପଣଙ୍କ ପାଦପଦ୍ମକୁ ଭଜନ କରେ ନାହିଁ, ସେ କୂଅରେ ପଡ଼ିଥିବା ପଶୁପରି ଗୃହରୂପକ ଅନ୍ଧକୂପରେ ପଡ଼ିରହେ ॥୪୭॥ ହେ ଅଜେୟ, ମୁଁ ଏହି ଦେହକୁ ହିଁ ଆତ୍ମା ରୂପେ ଭାବି ଦୁରନ୍ତ ଚିନ୍ତାରେ ସ୍ତ୍ରୀ, ପୁତ୍ର, ଧନ, ଭୂମି ଓ ରାଜପଦରେ ଆସକ୍ତ ରହି ମୋର ସମୟ ବୃଥାରେ ଚାଲିଗଲା । କୌଣସି ଫଳ ମିଳିଲା ନାହିଁ ॥୪୮॥ ଏ ଦେହ ହେଉଛି ଏକ ମାଟିକୁଡ଼ୁଆ ସହିତ ସମାନ । ଏହାରି ମଧ୍ୟରେ ରହି ମୁଁ ନିଜକୁ ରାଜା ବୋଲି ଅଭିମାନ କରି ଅଶ୍ୱ, ଗଜ, ରଥ ଓ ପଦାତିକ--ଏହି ଚତୁରଙ୍ଗ ସେନାର ସେନାପତିଙ୍କଦ୍ୱାରା ପରିବୃତ ହୋଇ ସାରା ପୃଥିବୀ ପର୍ଯ୍ୟଟନ କଲି ଏବଂ ଅତିଶୟ ଗର୍ବଯୋଗୁଁ ଆପଣଙ୍କୁ ଚିନ୍ତା କରିପାରିଲି ନାହିଁ ॥୪୯॥ 'ଯା କରିବି, ତା'କରିବି'--ଏହି ଚିନ୍ତାରେ ପ୍ରମତ୍ତ ହୋଇ ମନୁଷ୍ୟର ଲୋଭ ଓ ବିଷୟବାସନା ବଢ଼ିବାକୁ ଲାଗେ । କ୍ଷୁଧାରେ ଜିଭକୁ ଲହଲହ କରୁଥିବା ସାପ ଯେପରି ମୂଷାକୁ ହଠାତ୍ ଧରିନିଏ, ସେହିପରି ଅପ୍ରମତ୍ତ କାଳରୂପରେ ଆପଣ ଏପରି ବ୍ୟକ୍ତିକୁ ହରଣ କରି ନିଅନ୍ତି ॥୫୦॥ ପୂର୍ବେ ସୁବର୍ଣ୍ଣଖଚିତ ରଥରେ ବା ଗଜରେ ଆରୋହଣ କରି ଯେ 'ରାଜା' ସଂଜ୍ଞା ପାଇ ଚାଲିଥିଲା, ଦୁରନ୍ତ କାଳ ତାକୁ ଅପହରଣ କରିନେଇଚି ଏବଂ ତା'ର ଦେହ ବିଷ୍ଠା, କୀଟ ବା ଭସ୍ମରେ ପରିଣତ କରିଛି ॥୫୧॥ ହେ ପ୍ରଭୁ ! ଯେଉଁ ରାଜା ସବୁଦିଗକୁ ଜୟ କରି ସିଂହାସନରେ ବସିଥାଏ ଓ ପୂର୍ବେ ତା'ର ସମକକ୍ଷ ଥିବା ରାଜାମାନେ ଯାହାକୁ ବନ୍ଦନା କରିଥାନ୍ତି, ସେହି ରାଜା ରତିସୁଖପାଇଁ ଗୃହରେ ନାରୀମାନଙ୍କର ଖେଳନା ଗୃହପାଳିତ ପଶୁ ହୋଇ ଏଣେ ତେଣେ ଟଣା ହୋଇଥାଏ ॥୫୨॥ ଯେଉଁ ବ୍ୟକ୍ତି ନିଜର ବିଷୟଭୋଗ ଛାଡ଼ି ପୁଣି ରାଜ୍ୟାଦି ବିଷୟଭୋଗ ଆଶାରେ ଦାନ ପୁଣ୍ୟ କରୁଥାଏ ଏବଂ ପରଜନ୍ମରେ ମୁଁ ଚକ୍ରବର୍ତ୍ତୀ ହେବି ବୋଲି ଯାହାର ବିଷୟତୃଷ୍ଣା ବଢୁଥାଏ, ସେ କେବେହେଲେ ସୁଖ ପାଇବାକୁ ଯୋଗ୍ୟ ନୁହେଁ ॥୫୩॥ ହେ ଅଚ୍ୟୁତ, ଆପଣଙ୍କ ଅନୁଗ୍ରହରୁ ସଂସାରଚକ୍ରରେ ଭ୍ରମଣ କରୁଥିବା ବ୍ୟକ୍ତିର ଯେତେବେଳେ ସଂସାର ବନ୍ଧନରୁ ମୁକ୍ତିର ସମୟ ଆସେ ସେତେବେଳେ ସେ ସଜ୍ଜନଙ୍କର ସଙ୍ଗଲାଭ କରେ, ଏବଂ କାର୍ଯ୍ୟକାରଣନିୟନ୍ତା ଓ ସଦ୍‌ଗତିସ୍ୱରୂପ ଆପଣଙ୍କଠାରେ ହିଁ ତାର ମତି ନିବଦ୍ଧ ହୁଏ ଓ ତଦ୍ଦ୍ୱାରା ତା'ର ମୁକ୍ତି ହୁଏ ॥୫୪॥ ଏକାଙ୍ଗ ଚକ୍ରବର୍ତ୍ତୀ ହୋଇ ମଧ୍ୟ ଯେଉଁ ବିବେକୀ ରାଜାମାନେ ଏକନିଷ୍ଠାରେ ତପସ୍ୟା କରିବାପାଇଁ ବନରେ ପ୍ରବେଶ କରିବାକୁ ଇଚ୍ଛାକରନ୍ତି ଓ ରାଜ୍ୟରୂପ ବନ୍ଧନରୁ ମୁକ୍ତ ହେବାପାଇଁ ଆପଣଙ୍କୁ ପ୍ରାର୍ଥନା କରନ୍ତି, ଦୈବବଶରୁ ମୋର ସେହି ବନ୍ଧନ ଦୂର ହୋଇଯାଇଛି । ହେ ପରମେଶ୍ୱର, ଏହା ମୋ ପ୍ରତି ଆପଣଙ୍କର ଅନୁଗ୍ରହ ବୋଲି ମୁଁ ମନେକରେ ॥୫୫॥ ବିଭୁ, ଆପଣଙ୍କର ପାଦସେବା ଛଡ଼ା ମୋର ଅନ୍ୟ କୌଣସି ବରପାଇଁ କାମନା ନାହିଁ । ଆପଣଙ୍କର ଅକିଞ୍ଚନ ଭକ୍ତମାନେ ଏହି ଶ୍ରେଷ୍ଠ ବରକୁ ହିଁ ପ୍ରାର୍ଥନା କରନ୍ତି । ହେ ହରି ! ଆପଣ ମୋକ୍ଷଦାତା, ଆପଣଙ୍କୁ ଆରାଧନା କରି କେଉଁ ବିବେକୀ ପୁରୁଷ ପୁଣି ସଂସାର ବନ୍ଧନରେ ପଡ଼ିବାକୁ ବର ମାଗିବ ? ॥୫୬॥

ତେଣୁ ହେ ପରମେଶ୍ୱର, ସତ୍ତ୍ୱ, ରଜ ଓ ତମୋଗୁଣବିଶିଷ୍ଟ ସମସ୍ତ ଐଶ୍ୱର୍ଯ୍ୟ ଆଦିକୁ ପରିତ୍ୟାଗ କରି ନିର୍ଗୁଣ, ନିରଞ୍ଜନ, ଅଦ୍ୱୟ, ଜ୍ଞାନଘନ ଏକମାତ୍ର ପରମପୁରୁଷ ଆପଣଙ୍କଠାରେ ମୁଁ ଶରଣାପନ୍ନ ହେଉଛି ॥୫୭॥ ହେ ପରମାତ୍ମା, ଚିରକାଳ କର୍ମଫଳ ଦୋଷରୁ ମୁଁ ଏଠି କଷ୍ଟ ଭୋଗି ଆସୁଛି । ମୋର ଇନ୍ଦ୍ରିୟରୂପୀ ଷଡ଼ରିପୁଙ୍କର କେବେହେଲେ ତୃଷା ମେଣ୍ଟୁ ନାହିଁ ଏବଂ ମୁଁ କୌଣସିମତେ ଶାନ୍ତି ପାଇପାରୁ ନାହିଁ । ମୁଁ ସେଇ ବାସନାଦ୍ୱାରା ଅତିଶୟ ଅନୁତପ୍ତ । ହେ ଶରଣଦ, ମୁଁ ଆପଣଙ୍କର ଭୟ ମୃତ୍ୟୁ ଓ ଶୋକରହିତ ପାଦପଦ୍ମରେ ଶରଣାଗତ । ହେ ପରମେଶ୍ୱର, ମୋତେ ଆପଣ ରକ୍ଷା କରନ୍ତୁ ॥୫୮॥ ଭଗବାନ ଶ୍ରୀକୃଷ୍ଣ କହିଲେ, ସାର୍ବଭୌମ ମହାରାଜ, ତୁମର ବୁଦ୍ଧି ନିର୍ମଳ ଓ ଜ୍ଞାନଦୀପ୍ତ । ଯେହେତୁ ମୁଁ ତୁମକୁ ବହୁ ବର ଦେବାପାଇଁ ପ୍ରଲୋଭିତ କଲେ ମଧ୍ୟ କାମବାସନାରେ ତାହା ମୋହିତ ହେଲା ନାହିଁ ॥୫୯॥ ମୁଁ ତୁମକୁ ବର ଦେବାକୁ କହି ଯେ ପ୍ରଲୋଭିତ କରୁଥିଲି, ତାହା ତୁମକୁ କୌଣସି ପ୍ରମାଦରେ ପକାଇବାପାଇଁ ନୁହେଁ । ମୋର ଏକାନ୍ତ ଭକ୍ତମାନଙ୍କର ବୁଦ୍ଧି କେବେହେଲେ ବିଷୟଭୋଗଦ୍ୱାରା ମଧ୍ୟ ବିଚଳିତ ହୁଏ ନାହିଁ ॥୬୦॥ ରାଜା, ମୋ ପ୍ରତି ଭକ୍ତି ନଥାଇ ଯେଉଁମାନେ ପ୍ରାଣାୟାମ ଆଦିଦ୍ୱାରା ନିଜର ମନକୁ ବଶ କରିବାପାଇଁ ଚେଷ୍ଟା କରନ୍ତି, ସେମାନଙ୍କର ଭୋଗବାସନା କ୍ଷୀଣ ହୋଇ ନ ଥିବାଯୋଗୁଁ ସେମାନଙ୍କର ମନ ପୁଣି ବିଷୟାଭିମୁଖୀ ହୋଇଯାଏ ॥୬୧॥ ରାଜା, ତୁମେ ମୋଠାରେ ମନୋନିବେଶ କରି ଇଚ୍ଛାନୁସାରେ ଏହି ପୃଥିବୀରେ ଭ୍ରମଣ କର । ମୋଠାରେ ସର୍ବଦା ତୁମର ଏହିପରି ନିଶ୍ଚଳ ଭକ୍ତି ରହିଥାଉ ॥୬୨॥ ତୁମେ କ୍ଷାତ୍ରଧର୍ମ ଅବଲମ୍ବନ କରି ମୃଗୟାଦିଦ୍ୱାରା ବହୁ ପ୍ରାଣୀଙ୍କୁ ବଧ କରିଛ, ତେଣୁ ମୋ ଠାରେ ଚିତ୍ତ ନିବେଶପୂର୍ବକ ମୋତେ ଆଶ୍ରୟ କରି ତପସ୍ୟାଦ୍ୱାରା ସେହି ପାପକୁ ବିନାଶକର ॥୬୩॥ ରାଜା, ପରଜନ୍ମରେ ସମସ୍ତପ୍ରାଣୀଙ୍କର ପରମବନ୍ଧୁ ଶ୍ରେଷ୍ଠ ବ୍ରାହ୍ମଣ ହୋଇ ତୁମେ କେବଳ ମୋତେ ହିଁ ଲାଭକରିବ ॥୬୪॥

## ବାବନ ଅଧ୍ୟାୟ

# ଦ୍ୱାରକାଯାତ୍ରା ଓ ରୁକ୍ମିଣୀ-ସନ୍ଦେଶ

ଶ୍ରୀ ଶୁକଦେବ କହିଲେ, ପ୍ରିୟ ପରିକ୍ଷିତ, ଇକ୍ଷ୍ୱାକୁନନ୍ଦନ ମୁଚୁକୁନ୍ଦ କୃଷ୍ଣଙ୍କଦ୍ୱାରା ଏପରି ଅନୁଗୃହୀତ ହେବାରୁ ସେ ତାଙ୍କୁ ପରିକ୍ରମା ଓ ନମସ୍କାର କରି ଗୁହାରୁ ବାହାରିଗଲେ । ମନୁଷ୍ୟ, ପଶୁ, ବୃକ୍ଷ ଲତା ସବୁ କ୍ଷୁଦ୍ରାକାର ହୋଇଯାଇଥିବାର ଦେଖି ସେ ମନେକଲେ କଳିଯୁଗ ଆସିଗଲାଣି । ସେ ଉତ୍ତରଦିଗକୁ ଯାତ୍ରା କଲେ ॥୧-୨॥ ରାଜା ମୁଚୁକୁନ୍ଦ ବୀର ଥିଲେ ଓ ସମସ୍ତ ଆସକ୍ତିରୁ ମୁକ୍ତ ହୋଇଥିଲେ । ତାଙ୍କର ସମସ୍ତ ସଂଶୟ ଦୂର ହୋଇଥିଲା । ଭଗବାନ୍ ଶ୍ରୀକୃଷ୍ଣଙ୍କ ଠାରେ ମନୋନିବେଶ କରି ସେ ଗନ୍ଧମାଦନ ପର୍ବତରେ ପ୍ରବେଶ କଲେ ॥୩॥ ଭଗବାନ ନରନାରାୟଣଙ୍କର ବଦରିକା ଆଶ୍ରମରେ ପହଞ୍ଚି ସେ ଶାନ୍ତ ହୋଇ ଖରା, ବର୍ଷା, ଶୀତ, କାକର ସବୁ ସହି ତପସ୍ୟାଦ୍ୱାରା ଶ୍ରୀହରିଙ୍କୁ ଆରାଧନା କଲେ ॥୪॥ ଯବନବେଷ୍ଟିତ ମଥୁରାନଗରୀକୁ ଫେରିଆସି ଭଗବାନ ମ୍ଳେଚ୍ଛସେନାକୁ ବଧ କରି ଓ ସେମାନଙ୍କର ସମସ୍ତ ଧନ ଦ୍ୱାରକାକୁ ନେଇଗଲେ ॥୫॥ ଭଗବାନ ଶ୍ରୀକୃଷ୍ଣଙ୍କ ପ୍ରେରଣା ଅନୁସାରେ ମନୁଷ୍ୟ ଓ ବଳଦମାନଙ୍କଦ୍ୱାରା ଯେତେବେଳେ ସବୁ ଧନ ନିଆଯାଉଥିଲା, ସେହି ସମୟରେ ତେଇଶି ଅକ୍ଷୌହିଣୀ ସେନାର ପାଳକ ଜରାସନ୍ଧ ଆସି ପହଞ୍ଚିଗଲା ॥୬॥ ହେ ରାଜା, କୃଷ୍ଣ ଓ ବଳରାମ ଦେଖିଲେ ଯେ, ପ୍ରବଳ ବେଗରେ ଶତ୍ରୁସୈନ୍ୟ ମାଡ଼ିଆସୁଛନ୍ତି । ତାପରେ ସେ ସାଧାରଣ ମନୁଷ୍ୟ ପରି ଆଚରଣ କରି ଦ୍ରୁତଗତିରେ ସେଠାରୁ ପଳାଇଗଲେ ॥୭॥ ପ୍ରଚୁର ଧନସମ୍ପତ୍ତି ଛାଡ଼ିଦେଇ ପଳାଇବାବେଳେ ଦୁହିଁଙ୍କ ମନରେ ଟିକିଏ ହେଲେ ଭୟ ନ ଥିଲା । ପଦ୍ମପତ୍ରପରି କୋମଳ ଚରଣରେ ଦୁହେଁ ବହୁ ଦୂରସ୍ଥ ଦେଶକୁ ଦଉଡ଼ି ଦଉଡ଼ି ଚାଲିଗଲେ ॥୮॥ ମଗଧରାଜ ବଳବାନ୍ ଜରାସନ୍ଧ, ଦୁହିଁଙ୍କୁ ପଳାଇଯାଉଥିବାର

ଦେଖି ହସି ହସି ତା'ର ରଥାରୋହୀ ସୈନ୍ୟମାନଙ୍କୁ ଧରି ଈଶ୍ୱର ସ୍ୱରୂପ ସେ ଦୁହିଁଙ୍କ ବଳର ଇୟତ୍ତା ନ ଜାଣି ସେମାନଙ୍କ ପଛେପଛେ ଦଉଡ଼ିଲା ॥୯॥ ବହୁଦୂର ଦଉଡ଼ିବା ପରେ କୃଷ୍ଣ ବଳରାମ କ୍ଲାନ୍ତ ହୋଇପଡ଼ି ପ୍ରବର୍ଷଣ ନାମକ ଉତ୍ତୁଙ୍ଗ ପର୍ବତକୁ ଚଢ଼ିଗଲେ, ଯେଉଁଠାରେ ଭଗବାନ୍ ଇନ୍ଦ୍ର ସବୁବେଳେ ବର୍ଷା କରନ୍ତି ॥୧୦॥ ହେ ରାଜା, ପର୍ବତମଧ୍ୟରେ ଦୁହିଁଙ୍କୁ ଲୁଚିଥିବା ଜାଣି ଜରାସନ୍ଧ ଦୁହିଁଙ୍କୁ ଖୋଜି ଖୋଜି ମଧ୍ୟ ତାଙ୍କ ଲୁଚିବା ସ୍ଥାନ ନ ପାଇ ପର୍ବତର ଚତୁଃପାର୍ଶ୍ୱରେ ଶୁଖିଲା କାଠମାନଙ୍କରେ ନିଆଁ ଲଗାଇଦେଲା ॥୧୧॥ ଯେତେବେଳେ କୃଷ୍ଣ ଓ ବଳରାମ ଦେଖିଲେ ପର୍ବତର ତଳୁ ନିଆଁ ଲାଗିଲାଗି ଆସିଲାଣି, ସେମାନେ ଜରାସନ୍ଧ ସେନାର ଘେରକୁ ଅତିକ୍ରମ କରିବାପାଇଁ ପର୍ବତ ଶିଖରରୁ ଡେଇଁପଡ଼ିଲେ । ସେଇ ଏଗାରଯୋଜନ ଉଚ୍ଚ ପର୍ବତରୁ ଡେଇଁ ସେମାନେ ତଳେ ପଡ଼ିଲେ । ସେତେବେଳେ ଜରାସନ୍ଧ ତା'ର ଅନୁଗାମୀ ସୈନ୍ୟମାନଙ୍କ ସହିତ ସେଇ ଦୁଇ ଯଦୁଶ୍ରେଷ୍ଠଙ୍କୁ ଦେଖିପାରିଲା ନାହିଁ ॥୧୨-୧୩॥ ହେ ରାଜା, ସେଦୁହେଁ ସେଠାରୁ ପୁଣି ନିଜ ପୁରୀକୁ ଚାଲିଆସିଲେ । ତାର ଚତୁର୍ଦ୍ଦିଗରେ ସମୁଦ୍ର ପରିଖାପରି ଥିଲା । କୃଷ୍ଣ ଓ ବଳରାମ ବଣନିଆଁରେ ପୋଡ଼ି ଯାଇଛନ୍ତି ବୋଲି ମିଥ୍ୟା ଭାବନାର ବଶବର୍ତ୍ତୀହୋଇ ଜରାସନ୍ଧ ତା'ର ବିଶାଳସେନାକୁ ଧରି ମଗଧକୁ ଫେରିଗଲା ॥୧୪॥ ଆନର୍ତ୍ତ ଦେଶର ରାଜା ଶ୍ରୀମାନ୍ ରୈବତ ବ୍ରହ୍ମାଙ୍କ ପ୍ରେରଣାରେ ନିଜର କନ୍ୟା ରେବତୀଙ୍କୁ ବଳରାମଙ୍କୁ ଦେଲେ ବୋଲି ପୂର୍ବରୁ ମୁଁ ତୁମକୁ କହିଥିଲି । କୁରୁଶ୍ରେଷ୍ଠ, ଭଗବାନ ହୋଇ ମଧ୍ୟ ଶ୍ରୀକୃଷ୍ଣ ଲକ୍ଷ୍ମୀଙ୍କ ଅଂଶଜାତ ଭୀଷ୍ମକଙ୍କର କନ୍ୟା ବିଦର୍ଭରାଜକୁମାରୀ ରୁକ୍ମିଣୀଙ୍କୁ ସ୍ୱୟମ୍ବରରେ ବିବାହ କଲେ ॥୧୫॥ ଗରୁଡ଼ ଯେପରି ଦେବତାମାନଙ୍କୁ ପରାସ୍ତ କରି ବଳପୂର୍ବକ ଅମୃତ ହରଣ କରିଥିଲେ, ଚେଦିରାଜ ଶିଶୁପାଳଙ୍କ ପକ୍ଷରେ ଆସିଥିବା ଶାଲ୍ୱ ଆଦି ରାଜାମାନଙ୍କୁ ସେହିପରି ପଦାନତ କରି ସମସ୍ତେ ଦେଖୁ ଦେଖୁ ଶ୍ରୀକୃଷ୍ଣ ବଳପୂର୍ବକ ରୁକ୍ମିଣୀଙ୍କୁ ଅପହରଣ କରିଥିଲେ ॥୧୬-୧୭॥

ରାଜା କହିଲେ, ଭୀଷ୍ମକଙ୍କର କନ୍ୟା ସୁମୁଖୀ ରୁକ୍ମିଣୀଙ୍କୁ ଭଗବାନ୍ ଶ୍ରୀକୃଷ୍ଣ ଶାସ୍ତ୍ରୋକ୍ତ ରାକ୍ଷସବିଧିରେ ବିବାହ କରିଥିବା କଥା ମୁଁ ପୂର୍ବରୁ ଶୁଣିଥିଲି । ଭଗବନ୍, ଅମିତତେଜା ଭଗବାନ୍ ଶ୍ରୀକୃଷ୍ଣ ମଗଧରାଜ ଜରାସନ୍ଧ ଓ ଶାଲ୍ୱ ଆଦି ବୀରଙ୍କୁ ଯୁଦ୍ଧରେ ଜିଣି କିପରି ବିଦର୍ଭ- ରାଜକନ୍ୟାଙ୍କୁ ଅପହରଣ କରିଥିଲେ, ତାହା ମୁଁ ଶୁଣିବାକୁ ଇଚ୍ଛାକରୁଛି ॥୧୮-୧୯॥ ବ୍ରହ୍ମନ୍, ଲୋକମାନଙ୍କର ପାପହାରୀ ନିତ୍ୟ ନୂତନ ପବିତ୍ର ମଧୁର କୃଷ୍ଣ କଥାମାନ ଶୁଣିଲେ କେଉଁ ସୁଧୀ ଶ୍ରୋତା ସେଥିରେ ତୃପ୍ତ ନ ହେବ ॥୨୦॥ ଶ୍ରୀ ଶୁକଦେବ କହିଲେ, ଭୀଷ୍ମକ ନାମରେ ବିଦର୍ଭ ଦେଶର ଜଣେ ରାଜା ଥିଲେ । ତାଙ୍କର ପାଞ୍ଚ ପୁଅ ଓ ଗୋଟିଏ ଅତି ସୁମୁଖୀ କନ୍ୟା ଥିଲା । ବଡ଼ ପୁଅର ନାମ ଥିଲା ରୁକ୍ମୀ । ଅନ୍ୟ ପୁତ୍ରମାନେ ହେଲେ ରୁକ୍ମରଥ, ରୁକ୍ମବାହୁ, ରୁକ୍ମକେଶ, ରୁକ୍ମମାଳୀ । ଏମାନଙ୍କର ଭଉଣୀ ରୁକ୍ମିଣୀ ॥୨୧-୨୨॥ ତାଙ୍କ ଘରକୁ ଆସୁଥିବା ଲୋକଙ୍କଠାରୁ ରୁକ୍ମିଣୀ କୃଷ୍ଣଙ୍କର ରୂପ, ଗୁଣ, ବୀର୍ଯ୍ୟ ଓ ଐଶ୍ୱର୍ଯ୍ୟର ପ୍ରଶଂସା ଶୁଣି ତାଙ୍କୁ ଅନୁରୂପ ପତି ବୋଲି ମନେ କଲେ ॥୨୩॥ ଭଗବାନ୍ ଶ୍ରୀକୃଷ୍ଣ ମଧ୍ୟ ରୁକ୍ମିଣୀଙ୍କର ବୁଦ୍ଧି, ଲକ୍ଷଣ, ଉଦାରତା, ରୂପ, ଶୀଳ ଓ ଗୁଣ ବିଷୟ ଶୁଣି ସେ ତାଙ୍କର ଅନୁରୂପ ପତ୍ନୀ ହେବେ ବୋଲି ମନରେ ସ୍ଥିର କରି ନେଇଥିଲେ ॥୨୪॥ ରାଜା, ରୁକ୍ମିଣୀଙ୍କର ଭାଇମାନେ ମଧ୍ୟ ଶ୍ରୀକୃଷ୍ଣଙ୍କୁ ଭଉଣୀକୁ ଦେବାକୁ ଇଚ୍ଛା କରୁଥିଲେ । କିନ୍ତୁ ରୁକ୍ମୀ କୃଷ୍ଣଦ୍ୱେଷୀ ଥିବାରୁ ସେମାନଙ୍କୁ ନିବାରଣ କରି ଶିଶୁପାଳକୁ ତାଙ୍କ ଯୋଗ୍ୟ ବର ବୋଲି ମନେକଲା ॥୨୫॥ ତାହା ଜାଣିପାରି ରୁକ୍ମିଣୀଙ୍କର ଭାରି ମନକଷ୍ଟ ହେଲା । ସେ ବିଶେଷ ଚିନ୍ତା କରି ଜଣେ ବିଶ୍ୱସ୍ତ ବ୍ରାହ୍ମଣଙ୍କୁ ଶୀଘ୍ର କୃଷ୍ଣଙ୍କ ପାଖକୁ ପଠାଇଲେ ॥୨୬॥

ଦ୍ୱାରକାରେ ପହଞ୍ଚିବାପରେ ତାହାଙ୍କୁ ଦ୍ୱାରପାଳମାନେ ଭିତରକୁ ନେଇଗଲେ । ସେତେବେଳେ ଆଦିପୁରୁଷ ଶ୍ରୀକୃଷ୍ଣଙ୍କୁ ସୁବର୍ଣ୍ଣର ଆସନରେ ବସିଥିବାର ସେ ଦେଖିଲେ ॥୨୭॥ ଶ୍ରୀକୃଷ୍ଣ ବ୍ରାହ୍ମଣମାନଙ୍କୁ ପୂଜ୍ୟ ଦୃଷ୍ଟିରେ ଦେଖୁଥିଲେ । ତାଙ୍କୁ ଦେଖି ସେ ନିଜ ଆସନରୁ ଉଠିପଡ଼ି ଉପଯୁକ୍ତ ଆସନରେ ବସାଇଲେ ଏବଂ ଦେବତାମାନେ ତାଙ୍କ ନିଜକୁ ଯେପରି ପୂଜା କରନ୍ତି, ସେହିପରି ପୂଜାକଲେ ॥୨୮॥ ସେ ଖାଇପିଇ ବିଶ୍ରାମ କରିବା ପରେ ସଜ୍ଜନମାନଙ୍କର ଆଶ୍ରୟ ଭଗବାନ ଶ୍ରୀକୃଷ୍ଣ ତାଙ୍କ ପାଖକୁ

ଯାଇ ହାତରେ ତାଙ୍କର ଦୁଇ ପାଦକୁ ଆଉଁଶି ଦେଇ ଧୀରସ୍ଥିର ହୋଇ ତାଙ୍କୁ ପଚାରିଲେ --॥୨୯॥ ଦ୍ୱିଜଶ୍ରେଷ୍ଠ, ଆପଣଙ୍କର ମନ ତ ସବୁବେଳେ ସନ୍ତୁଷ୍ଟ ଅଛି । ଧର୍ମଜ୍ଞମାନଙ୍କର ଅନୁମୋଦିତ ଧର୍ମାଚରଣରେ ଆପଣଙ୍କୁ ବିଶେଷ କଷ୍ଟ ହେଉ ନାହିଁ ତ ? ॥୩୦॥ ଯେଉଁ ବ୍ରାହ୍ମଣ, ଯେନ କେନ ପ୍ରକାରରେ ସନ୍ତୁଷ୍ଟ ରହନ୍ତି ଏବଂ ସ୍ୱଧର୍ମରୁ ବିଚ୍ୟୁତ ହୁଅନ୍ତି ନାହିଁ, ସେ ଏହି ବିଶ୍ୱର ସମସ୍ତ କାମନା ପୂରଣ କରିପାରନ୍ତି ॥୩୧॥ ଯେ ସର୍ବଦା ଅସନ୍ତୁଷ୍ଟ, ସେ ସୁରପତି ଇନ୍ଦ୍ର ହେଲେ ମଧ୍ୟ ବାରମ୍ବାର (ସୁଖଆଶାରେ) ଲୋକରୁ ଲୋକାନ୍ତର ଘୂରି ବୁଲୁଥାଏ । କିନ୍ତୁ ଯେ ସନ୍ତୁଷ୍ଟ, ସେ ଅକିଞ୍ଚନ ହେଲେ ମଧ୍ୟ ଆନନ୍ଦରେ ନିଶ୍ଚିନ୍ତରେ ନିଦ୍ରାଯାଏ ॥୩୨॥ ଯାହା ମିଳେ ସେଥିରେ ଯେଉଁମାନେ ସନ୍ତୁଷ୍ଟ ଓ ପ୍ରାଣୀମାନଙ୍କର ହିତକାଙ୍‌କ୍ଷୀ ବନ୍ଧୁ, ସେହି ନିରହଙ୍କାର ସାଧୁ, ଶାନ୍ତ ବ୍ରାହ୍ମଣମାନଙ୍କୁ ମୁଁ ବାରମ୍ବାର ମୁଣ୍ଡ ନୁଆଇଁ ନମସ୍କାର କରେ । ହେ ବ୍ରାହ୍ମଣ, ଆପଣଙ୍କର ସବୁ କୁଶଳ ତ ? ଯେଉଁ ରାଜାର ରାଜୁତିରେ ପ୍ରଜାମାନେ ଠିକ୍‌ଭାବରେ ପାଳିତ ହୋଇ ଦେଶରେ ସୁଖରେ ରହନ୍ତି, ସେ ରାଜା ମୋର ପ୍ରିୟ ॥୩୩-୩୪॥ ଆପଣ ଯେଉଁଠାରୁ ଯେଉଁ ଇଚ୍ଛାରେ ଦୁର୍ଗମ ସମୁଦ୍ରକୁ ପାରହୋଇ ଏଠାକୁ ଆସିଛନ୍ତି, ତାହା ଯଦି ଗୋପନୀୟ ହୋଇ ନ ଥାଏ ତା'ହେଲେ ମୋତେ ସବୁ କହନ୍ତୁ । ମୁଁ ଆପଣଙ୍କର କି କାର୍ଯ୍ୟ କରିବି ? ॥୩୫॥ ନିଜର ଲୀଳା ରଚନାପାଇଁ ଦେହଧରିଥିବା ଭଗବାନ ଶ୍ରୀକୃଷ୍ଣ ତାଙ୍କୁ ଏହିପରି ପ୍ରଶ୍ନ ପଚାରିବାରୁ ସେହି ବ୍ରାହ୍ମଣ ତାଙ୍କୁ ଶୁଣାଇ ସମସ୍ତ ବିଷୟ ବର୍ଣ୍ଣନା କଲେ ॥୩୬॥

ରୁକ୍ମିଣୀ କହିଲେ-- ହେ ପ୍ରିୟ, ହେ ଭୁବନମୋହନ, ତୁମର ଯେଉଁ ଗୁଣାବଳୀ ଶ୍ରୋତାଙ୍କ କାନରେ ପ୍ରବେଶ କଲେ ମନର ସନ୍ତାପ ଦୂରକରେ ଏବଂ ଯେଉଁ ରୂପକୁ ଦେଖିଲେ ଚକ୍ଷୁଷ୍ମାନ୍ ବ୍ୟକ୍ତିଙ୍କର ଚକ୍ଷୁକୁ ସମସ୍ତ ସ୍ୱାର୍ଥ ମିଳିଯାଏ, ସେଇ ରୂପ ଓ ଗୁଣ ସମ୍ପର୍କରେ ଶୁଣି ମୋର ଚିତ୍ତରୁ ଲଜ୍ଜାଶର୍ମ ଦୂର ହୋଇଯାଇଛି ଏବଂ ତୁମଠାରେ ହିଁ ସେହି ଚିତ୍ତ ଲାଗିରହିଛି ॥୩୭॥ ହେ ପୁରୁଷସିଂହ, ହେ ମୁକୁନ୍ଦ, କୁଳ, ଶୀଳ, ରୂପ, ବିଦ୍ୟା, ବୟସ, ଧନ ଓ ପ୍ରଭାବ-- ସବୁବିଷୟରେ ତୁମେ ଅତୁଳନୀୟ । କେବଳ ତୁମେ ହିଁ ତୁମର ତୁଳନୀୟ । କେଉଁ ଧୀରା, ସତ୍‌କୁଳରେ ଜନ୍ମ ହୋଇଥିବା କନ୍ୟା ବିବାହଯୋଗ୍ୟ ହେଲେ ନରଲୋକର ମନୋହର ତୁମପରି ସୁନ୍ଦର ପତିକୁ ବରଣ ନ କରିବ ? ଏଥିପାଇଁ ହେ ପ୍ରିୟତମ, ମୁଁ ତୁମକୁ ପତିରୂପେ ବରଣ କରିସାରିଛି । ନିଜକୁ ତୁମଠାରେ ସମର୍ପଣ କରିଛି । ଏଣୁ ହେ ବିଭୁ, ତୁମେ ଏଠାକୁ ଆସି ତୁମର ସ୍ତ୍ରୀକୁ ନେଇଯାଅ । ହେ କମଳନୟନ, ମୁଁ ହେଉଛି (ତୁମ) ବୀରର ଭୋଗ୍ୟ । ସିଂହର ବଳିକୁ ଶୃଗାଳ ସ୍ପର୍ଶ କଲାପରି ଶିଶୁପାଳ ଶୀଘ୍ର ଆସି ମୋତେ ସ୍ପର୍ଶ ନ କରୁ ॥୩୮-୩୯॥ ଯଦି ମୁଁ (ଜନ୍ମଜନ୍ମାନ୍ତରେ) କୂପ, ପୁଷ୍କରିଣୀ ଖନନ ଆଦି ପୂର୍ତ୍ତକର୍ମ, ଯଜ୍ଞ ଆଦି ଇଷ୍ଟକର୍ମ, ସୁବର୍ଣ୍ଣାଦି ଦାନ, ତୀର୍ଥାଟନାଦି ନିୟମ, କୃଚ୍ଛାଦି ବ୍ରତ ତଥା ଦେବ, ବ୍ରାହ୍ମଣ ଓ ଗୁରୁଙ୍କ ସେବାଆଦିଦ୍ୱାରା ଭଗବାନ୍ ପରମେଶ୍ୱରଙ୍କୁ ଯଥେଷ୍ଟ ଆରାଧନା କରିଥାଏ, ତା'ହେଲେ ଭଗବାନ ଶ୍ରୀକୃଷ୍ଣ ଏଠାକୁ ଆସି ମୋର ପାଣିଗ୍ରହଣ କରନ୍ତୁ । ଦମଘୋଷପୁତ୍ର ଶିଶୁପାଳ ମୋତେ ସ୍ପର୍ଶ ନ କରୁ ॥୪୦॥ ହେ ଅଜିତ, କାଲି ମୋର ବିବାହ ହେବାକୁ ଯାଉଛି, ତା'ର ଦିନକ ଆଗରୁ ତୁମେ ଗୁପ୍ତଭାବରେ ବିଦର୍ଭ ରାଜ୍ୟକୁ ଆସି ସେନାପତିମାନଙ୍କ ବୀରତ୍ୱର ମୂଲ୍ୟ ଦେଇ ଶିଶୁପାଳ ଓ ଜରାସନ୍ଧର ସୈନ୍ୟବଳକୁ ବଳପୂର୍ବକ ମଥିତକରି ରାକ୍ଷସବିଧି ଅନୁସାରେ ମୋତେ ବିବାହ କର । ତୁମେ ଭାବିପାର, ତୁମେ ତ ଅନ୍ତଃପୁର ମଧ୍ୟରେ ଥିବ । ତୁମ ସ୍ୱଜନଙ୍କୁ ନିହତ ନ କରି ମୁଁ କିପରି ତୁମକୁ ବିବାହ କରିବି ? ଏଣୁ ମୁଁ ଉପାୟ ବତାଇ ଦେଉଛି, ବିବାହର ପୂର୍ବଦିନ ଆମ କୁଳଦେବୀଙ୍କର ବଡ଼ ଯାତ୍ରା ହେବ । ସେହି ଯାତ୍ରାରେ ଅନ୍ତଃପୁର ବାହାରେ ଥିବା ଅମ୍ବିକାଦେବୀଙ୍କୁ ପୂଜା କରିବାକୁ ନବବଧୂ ଆସିଥାଏ । ସେହି ସମୟରେ ଅମ୍ବିକା ଦେବୀଙ୍କ ମନ୍ଦିରରୁ ତୁମେ ମୋତେ ହରଣ କରିବ ॥୪୧-୪୨॥ କମଳାକ୍ଷ, ସାଧୁ ମହାତ୍ମାମାନେ ନିଜ ଅନ୍ତରର ଅଜ୍ଞାନ ନାଶ କରିବାପାଇଁ ଉମାପତି ମହାଦେବଙ୍କପରି ତୁମ ଚରଣପଦ୍ମରଧୂଳିରେ ସ୍ନାନ ଇଚ୍ଛା କରନ୍ତି । ଏଣୁ ତୁମର ଅନୁଗ୍ରହ ଲାଭ ନ କଲେ ମୁଁ ପ୍ରାଣତ୍ୟାଗ କରିବି । ଶହ ଶହ ଜନ୍ମ ଧରି ଯେ ପର୍ଯ୍ୟନ୍ତ ତୁମର ଅନୁଗ୍ରହ ମିଳି ନାହିଁ, ସେ ପର୍ଯ୍ୟନ୍ତ ବାରମ୍ବାର ଉପବାସ ଆଦି ବ୍ରତଦ୍ୱାରା ଶରୀରକୁ କ୍ଷୀଣ କରି ମୁଁ ପ୍ରାଣ ବିସର୍ଜନ କରୁଥିବି ॥୪୩॥ ବ୍ରାହ୍ମଣ କହିଲେ, ଯଦୁପତି, ମୁଁ ଏହି ସମସ୍ତ ଗୋପନୀୟ ସନ୍ଦେଶ ଆଣିଛି । ଏଣୁ ଏ ବିଷୟରେ ଯାହା କରଣୀୟ, ଆପଣ ଶୀଘ୍ର ବିଚାର କରି ତାହା କରିବା ହେବେ ॥୪୪॥

## ତେପନ ଅଧ୍ୟାୟ

# ରୁକ୍ମିଣୀହରଣ

ଶ୍ରୀ ଶୁକଦେବ କହିଲେ, ଯଦୁନନ୍ଦନ ଶ୍ରୀକୃଷ୍ଣ ରୁକ୍ମିଣୀଙ୍କର ସନ୍ଦେଶ ଶୁଣି ବ୍ରାହ୍ମଣଙ୍କର ହାତ ଧରି ହସିହସି କହିଲେ, ଦ୍ୱିଜ, ମୁଁ ମଧ୍ୟ ରୁକ୍ମିଣୀଙ୍କର କଥା ଭାବି ଭାବି ରାତିରେ ଶୋଇପାରୁ ନାହିଁ । ମୋତେ ଦ୍ୱେଷ କରି ରୁକ୍ମୀ ତାର ଭଗିନୀର ବିବାହ ମୋ ସହିତ କରାଇଦେଉ ନାହିଁ ବୋଲି ମଧ୍ୟ ମୁଁ ଜାଣେ । ସାମାନ୍ୟ କାଠ ଭିତରୁ ଯେପରି ଯତ୍ନର ସହିତ ନିଆଁ ବାହାର କରାଯାଏ, ସେହିପରି ଅଧମ କ୍ଷତ୍ରିୟ ରାଜାମାନଙ୍କୁ ଯୁଦ୍ଧରେ ଦଳିଦେଇ ମୋର ପ୍ରେମିକା ସେହି ଅନିନ୍ଦ୍ୟ ସୁନ୍ଦରୀ ରାଜକନ୍ୟାକୁ ସେମାନଙ୍କ ମଧ୍ୟରୁ ମୁଁ ବାହାର କରିଆଣିବି ॥୧-୩॥

ଶ୍ରୀ ଶୁକଦେବ କହିଲେ, ପରିକ୍ଷିତ, ମଧୁସୂଦନ ଶ୍ରୀକୃଷ୍ଣ ରୁକ୍ମିଣୀଙ୍କର ବିବାହ ନକ୍ଷତ୍ର ଜାଣି ସାରଥି ଦାରୁକଙ୍କୁ ତତ୍‌କ୍ଷଣାତ୍ ରଥ ଯୋଚିବାପାଇଁ ଆଦେଶ ଦେଲେ । ଦାରୁକ ଶୈବ୍ୟ, ସୁଗ୍ରୀବ, ମେଘପୁଷ୍ପ ଓ ବଳାହକ ନାମକ ଚାରୋଟି ଘୋଡ଼ାଙ୍କୁ ରଥରେ ଯୋଚି କୃଷ୍ଣଙ୍କ ସମ୍ମୁଖରେ କରଯୋଡ଼ି ଉପସ୍ଥିତ ହେଲେ ॥୪-୫॥ ଶ୍ରୀକୃଷ୍ଣ ରଥରେ ବ୍ରାହ୍ମଣଙ୍କୁ ଚଢ଼ାଇ ଓ ନିଜେ ଚଢ଼ି ବେଗଗାମୀ ଅଶ୍ୱମାନଙ୍କ ସାହାଯ୍ୟରେ ଏକ ରାତି ମଧ୍ୟରେ ଦ୍ୱାରକାରୁ ବିଦର୍ଭ ରାଜ୍ୟରେ ପହଞ୍ଚିଗଲେ ॥୬॥ ରାଜଧାନୀ କୁଣ୍ଡିନର ରାଜା ଭୀଷ୍ମକ ପୁତ୍ରସ୍ନେହର ବଶବର୍ତ୍ତୀ ହୋଇ ଶିଶୁପାଳଙ୍କୁ ନିଜର କନ୍ୟା ଦେବାପାଇଁ ବିହିତ କର୍ମମାନ କରିସାରିଥିଲେ ॥୭॥ କୁଣ୍ଡିନପୁରର ସମସ୍ତ ରାଜପଥ, ରଥଦାଣ୍ଡ, ଛକବଜାର ଆଦି ପରିଷ୍କାର ପରିଚ୍ଛନ୍ନ ହୋଇଥିଲା । ଚାରିଆଡ଼େ ପାଣି ଛିଞ୍ଚା ହୋଇଥିଲା । ସ୍ଥାନେ ସ୍ଥାନେ ତୋରଣମାନ ବିଚିତ୍ରବର୍ଣ୍ଣଯୁକ୍ତ ଧ୍ୱଜପତାକାରେ ଶୋଭାପାଉଥିଲା ॥୮॥ ନାଗରିକ ସ୍ତ୍ରୀ ପୁରୁଷମାନେ ହାର, ଗନ୍ଧ, ପୁଷ୍ପମାଲ୍ୟ, ବିଭିନ୍ନ ଅଳଙ୍କାର ଓ ବସ୍ତ୍ର ଆଦି ପରିଧାନ କରିଥିଲେ ॥୯॥ ରାଜା ଭୀଷ୍ମକ ପିତୃ ଓ ଦେବତାମାନଙ୍କର ଅର୍ଚ୍ଚନା କରି ବ୍ରାହ୍ମଣମାନଙ୍କୁ ଭୋଜନ ଦେଇ କନ୍ୟାପାଇଁ ଅନ୍ୟ ସମସ୍ତ ମଙ୍ଗଳ କାର୍ଯ୍ୟ କରାଇଥିଲେ ॥୧୦॥ ସୁନ୍ଦରୀ ରାଜକୁମାରୀଙ୍କୁ ସ୍ନାନପରେ ମଙ୍ଗଳସୂତ୍ର ପିନ୍ଧାଇ ଦୁଇଟି ନୂତନ ବସ୍ତ୍ର (ପାଟ ଓ ଖଣ୍ଡୁଆ) ଓ ଭଲ ଭଲ ଅଳଙ୍କାର ଆଣି ପିନ୍ଧାଇ ଦିଆଯାଇଥିଲା ॥୧୧॥ ଶ୍ରେଷ୍ଠ ବ୍ରାହ୍ମଣମାନେ ଋକ୍, ସାମ ଓ ଯଜୁର୍ବେଦର ମନ୍ତ୍ରସବୁ ଉଚ୍ଚାରଣ କରି କନ୍ୟାର ରକ୍ଷାବିଧାନ କରିଥିଲେ । ଅଥର୍ବ ବେଦଜ୍ଞ ପୁରୋହିତମାନେ ଗ୍ରହଶାନ୍ତିପାଇଁ ହୋମ କଲେ । ରାଜା ଭୀଷ୍ମକ ନିଜେ କୁଳପରମ୍ପରା ଓ ଶାସ୍ତ୍ରବିଧି ବିଷୟରେ ଅଭିଜ୍ଞ ଥିଲେ । ସେ ବ୍ରାହ୍ମଣମାନଙ୍କୁ ସ୍ୱର୍ଣ୍ଣ, ରୌପ୍ୟ, ବସ୍ତ୍ର, ଗୁଡ଼ମିଶ୍ରିତ ରାଶି ଓ ଗାଭୀମାନ ଦାନ କଲେ ॥୧୨-୧୩॥ ସେହିପରି ଚେଦି ରାଜ୍ୟର ରାଜା ଦମଘୋଷ ମଧ୍ୟ ନିଜ ପୁତ୍ର ଶିଶୁପାଳର ମଙ୍ଗଳପାଇଁ ମନ୍ତ୍ରଜ୍ଞ ବ୍ରାହ୍ମଣମାନଙ୍କଦ୍ୱାରା ସମସ୍ତପ୍ରକାର ମାଙ୍ଗଳିକ କାର୍ଯ୍ୟ ସମ୍ପାଦନ କରାଇଥିଲେ ॥୧୪॥ ମଦସ୍ରାବୀ ହସ୍ତୀ, ସ୍ୱର୍ଣ୍ଣମାଳାମଣ୍ଡିତ ରଥ, ପଦାତିକ ଓ ଅଶ୍ୱାରୋହୀ --ଏହି ଚତୁରଂଗ ସେନାଦ୍ୱାରା ପରିବେଷ୍ଟିତ ହୋଇ ରାଜା ଦମଘୋଷ ପୁତ୍ର ଶିଶୁପାଳ ସହିତ କୁଣ୍ଡିନପୁରରେ ପହଞ୍ଚିଗଲେ ॥୧୫॥ ବିଦର୍ଭରାଜ ଭୀଷ୍ମକ ତାଙ୍କୁ ଅଭ୍ୟର୍ଥନା କରି ତାଙ୍କପାଇଁ ନିର୍ମିତ ବାସଭବନରେ ତାଙ୍କୁ ନେଇ ଆନନ୍ଦରେ ରଖାଇଲେ ॥୧୬॥ ଚେଦିରାଜଙ୍କ ପକ୍ଷରେ ଥିବା ଶାଲ୍ୱ, ଜରାସନ୍ଧ, ଦନ୍ତବକ୍ତ୍ର, ବିଦୂରଥ, ପୌଣ୍ଡ୍ରକ ଆଦି ରାଜାମାନେ ଶହଶହ ସଂଖ୍ୟାରେ ସେଠାରେ ଉପସ୍ଥିତ ହେଲେ ॥୧୭॥ ସେମାନେ ବଳରାମ ଓ କୃଷ୍ଣଙ୍କୁ ଦ୍ୱେଷ କରୁଥିଲେ । କୃଷ୍ଣ ଓ ବଳରାମ ଯାଦବ ସୈନ୍ୟଙ୍କ ସହ ବିଦର୍ଭରୁ ଯଦି କନ୍ୟାଙ୍କୁ ହରଣ କରିବାପାଇଁ ଚେଷ୍ଟା କରନ୍ତି, ତା'ହେଲେ ମିଳିତ ଭାବରେ ତାଙ୍କ ସହିତ ଲଢ଼ି ସେମାନେ ଶିଶୁପାଳକୁ ରକ୍ଷା କରିବେ, ଏହି କଳ୍ପନାରେ ସେମାନେ ରଥ, ଘୋଡ଼ା, ହାତୀ ଓ ପଦାତିକ--ନିଜ ନିଜର ଚତୁରଙ୍ଗ ସେନା ସହିତ କୁଣ୍ଡିନପୁରୀକୁ ଆସିଥିଲେ ॥୧୮-୧୯॥

ବିପକ୍ଷ ରାଜାମାନଙ୍କର ଏହି ଉଦ୍ୟମର ସମ୍ବାଦ ପାଇ ଏବଂ କନ୍ୟାଙ୍କୁ ହରଣ କରିବାପାଇଁ କୃଷ୍ଣ ଏକାକୀ ଯାଇଥିବାର ଶୁଣି ବଳରାମ ବିବାଦର ଆଶଙ୍କା କଲେ । ଭାଇ କୃଷ୍ଣଙ୍କ ସ୍ନେହରେ ସେ ହାତୀ, ଘୋଡ଼ା, ରଥ ଓ ପଦାତିକଙ୍କର ଚତୁରଙ୍ଗ ସେନା ସହିତ ଶୀଘ୍ର କୁଣ୍ଡିନପୁରକୁ ଯାତ୍ରା କଲେ ।।୨୦-୨୧।। ପରମ ସୁନ୍ଦରୀ ରାଜକୁମାରୀ ରୁକ୍ମିଣୀ ଶ୍ରୀକୃଷ୍ଣଙ୍କ ବାଟ ଚାହିଁ ରହିଥିଲେ । ବ୍ରାହ୍ମଣଙ୍କୁ ଫେରି ଆସିବାର ନ ଦେଖି ସେ ଚିନ୍ତାରେ ପଡ଼ିଗଲେ । ଭାବିଲେ ହାୟ, କି ମନ୍ଦଭାଗ୍ୟ ! ରାତି ପାହିଲେ ବିବାହର ଲଗ୍ନ ଆସିଯିବ । କିନ୍ତୁ କମଳନୟନ ଶ୍ରୀକୃଷ୍ଣ ଏ ପର୍ଯ୍ୟନ୍ତ ଆସିଲେ ନାହିଁ । ମୋର ବାର୍ତ୍ତା ନେଇ ବ୍ରାହ୍ମଣ ଯାଇଥିଲେ । ସେ ମଧ୍ୟ ଫେରିଲେ ନାହିଁ । ମୁଁ ଏହାର କାରଣ ଜାଣିପାରୁ ନାହିଁ ।।୨୨-୨୩।। ସ୍ୱଭାବତଃ ଶ୍ରୀକୃଷ୍ଣ ଉଦାର । ସେ ନିଶ୍ଚୟ ଆସିବାକୁ ବାହାରିଥିବେ । ତେବେ କଣ ମୋର ଧୃଷ୍ଟତା ଦେଖି ସେ ମୋର ହାତ ଧରିବାକୁ ଆସୁ ନାହାନ୍ତି !।।୨୪।। ଦୁର୍ଭାଗ୍ୟକୁ ବିଧାତା ମୋର ଅନୁକୂଳ ନୁହନ୍ତି । ଭଗବାନ ଶଙ୍କର ମଧ୍ୟ ନୁହନ୍ତି । ଆମର କୁଳଦେବତା ରୁଦ୍ରପତ୍ନୀ ସତୀ ପାର୍ବତୀ ମଧ୍ୟ ମୋ'ପ୍ରତି ବିମୁଖ ଥିବାର ଦେଖୁଚି ।।୨୫।।

ଚିତ୍ତଚୋର ଗୋବିନ୍ଦଙ୍କ ଠାରେ ତ ରାଜକୁମାରୀ ରୁକ୍ମିଣୀ ନିଜକୁ ହଜାଇ ଦେଇଥିଲେ । 'ସମୟ ହେଲାଣି, ଆସିଯିବେ' ବୋଲି ଭାବି ଆଖିର ଲୁହକୁ ସେ ଆଖିରେ ମିଳାଇଦେଲେ ।।୨୬।। ପରିକ୍ଷିତ, ଏହିପରି ଶ୍ରୀକୃଷ୍ଣଙ୍କର ବାଟ ଚାହିଁ ରହିଥିବା ରୁକ୍ମିଣୀଙ୍କୁ ପ୍ରିୟତମଙ୍କ ଆସିବାର କେତେକ ଶୁଭ ସୂଚନା ମିଳିଗଲା । ବାଁ ଆଖି ତେଇଁଲା । ବାଁ ଜଙ୍ଘ ଓ ବାହୁ ମଧ୍ୟ କମ୍ପିତ ହେଲା ।।୨୭।। ପରେ ପରେ କୃଷ୍ଣଙ୍କ ନିର୍ଦ୍ଦେଶରେ ସେହି ବ୍ରାହ୍ମଣ ଆସି ଅନ୍ତଃପୁରଚାରିଣୀ ରାଜକୁମାରୀ ରୁକ୍ମିଣୀଙ୍କୁ ସାକ୍ଷାତ୍ କଲେ ।।୨୮।। ବ୍ରାହ୍ମଣଙ୍କର ପ୍ରସନ୍ନ ମୁଖ ଓ ତାଙ୍କଠାରେ କାର୍ଯ୍ୟସିଦ୍ଧିର ଅନ୍ୟ ଶୁଭ ଲକ୍ଷଣ ଆଦି ଦେଖି ରୁକ୍ମିଣୀ ଖୁସି ହୋଇ ତାଙ୍କୁ ସବୁ କଥା ପଚାରିଲେ ।।୨୯।। ବ୍ରାହ୍ମଣ ଶ୍ରୀକୃଷ୍ଣଙ୍କର ପ୍ରଶଂସା କରି କହିଲେ, ଯଦୁନନ୍ଦନ ଏଠାକୁ ଆସିଗଲେଣି । ସେ ତୁମକୁ ନେଇଯିବାପାଇଁ ସତ୍ୟ ପ୍ରତିଜ୍ଞା କରିଛନ୍ତି ।।୩୦।। କୃଷ୍ଣଙ୍କର ଆସିବା କଥା ଶୁଣି ରୁକ୍ମିଣୀଙ୍କର ଚିତ୍ତ ଆନନ୍ଦରେ ଭରିଗଲା । ସେ ବ୍ରାହ୍ମଣଙ୍କୁ କି ପ୍ରିୟ ବସ୍ତୁ ଦେବେ ତାହା ଭାବି ନ ପାରି କେବଳ ନମସ୍କାର କଲେ ।।୩୧।।

ନିଜ କନ୍ୟାର ବିବାହ ଉତ୍ସବ ଦେଖିବାପାଇଁ ଉତ୍ସୁକ ହୋଇ ବଳରାମ ଓ ଶ୍ରୀକୃଷ୍ଣ ଆସିଛନ୍ତି ଏହା ଶୁଣିପାରି ରାଜା ଭୀଷ୍ମକ ଭେରୀ ତୂରୀ ଆଦି ବାଦ୍ୟସହ ତାଙ୍କୁ ପାଛୋଟି ଆଣିଲେ ।।୩୨।। ମଧୁପର୍କ, ନିର୍ମଳ ବସ୍ତ୍ର ଓ ଉତ୍ତମ ଉପହାରମାନ ଦେଇ ସେ କୃଷ୍ଣ ଓ ବଳରାମଙ୍କର ବିଧିପୂର୍ବକ ସତ୍କାର କଲେ ।।୩୩।। ଉଦାରମନା ରାଜା ଭୀଷ୍ମକ ନିଜର ଅନୁଗାମୀ ଓ ସୈନ୍ୟମାନଙ୍କ ସହ ଆସିଥିବା କୃଷ୍ଣ ଓ ବଳରାମଙ୍କୁ ସୁସଜ୍ଜିତ ବାସଭବନ ଯୋଗାଇ ଦେଇ ଉପଯୁକ୍ତ ଆତିଥ୍ୟର ବ୍ୟବସ୍ଥା କଲେ ।।୩୪।। ସମବେତ ରାଜାମାନଙ୍କୁ ସେ ବୟସ, ବଳ, ସମ୍ପଦ ଓ ପ୍ରତିପତ୍ତି ଅନୁଯାୟୀ ସମସ୍ତ ଅଭିଳଷିତ ବସ୍ତୁ ଯୋଗାଇ ଦେଇ ଯଥାଯୋଗ୍ୟ ସତ୍କାର କଲେ ।।୩୫।। ଭଗବାନ୍ ଶ୍ରୀକୃଷ୍ଣ ଆସିଛନ୍ତିବୋଲି ଶୁଣି ବିଦର୍ଭର ନାଗରିକମାନେ ନିଜ ନିଜର ନେତ୍ରଦ୍ୱୟରେ ତାଙ୍କ ମୁଖପଦ୍ମର ସୁଧା ପାନକରିବାକୁ ଲାଗିଲେ ।।୩୬।। ରୁକ୍ମିଣୀ କେବଳ ଏହାଙ୍କର ଭାର୍ଯ୍ୟା ହେବାକୁ ଯୋଗ୍ୟା, ଅନ୍ୟ କାହାର ନୁହେଁ । ଏହି ଅନିନ୍ଦିତ କୃଷ୍ଣ ହିଁ ରାଜକୁମାରୀଙ୍କର ଉପଯୁକ୍ତ ପତି ।।୩୭।। ଆମର ଯତ୍‌କିଞ୍ଚିତ୍ ପୁଣ୍ୟ ଅଛି, ସେଥିରେ ତ୍ରିଲୋକର କର୍ତ୍ତା ଶ୍ରୀକୃଷ୍ଣ ସନ୍ତୁଷ୍ଟ ହୋଇ ଆମମାନଙ୍କୁ ଅନୁଗ୍ରହ କରନ୍ତୁ ଏବଂ ବିଦର୍ଭ-ରାଜକୁମାରୀଙ୍କର ପାଣିଗ୍ରହଣ କରନ୍ତୁ ।।୩୮।। ରୁକ୍ମିଣୀଙ୍କର ସ୍ନେହରେ ବଶୀଭୂତ ପୁରବାସୀମାନେ ଏହିପରି କୁହାକୁହି ହେଉଥିବାବେଳେ ରୁକ୍ମିଣୀ ଅନ୍ତଃପୁରରୁ ବାହାରି ଆସିଲେ । ସୈନ୍ୟମାନଙ୍କ ଦ୍ୱାରା ପରିରକ୍ଷିତ ହୋଇ ସେ ଅମ୍ବିକାଦେବୀଙ୍କ ମନ୍ଦିରକୁ ଯାତ୍ରା କଲେ ।।୩୯।। ସଖୀମାନେ ତାଙ୍କୁ ଘେରି ରହିଥିଲେ । ବୀର ସୈନିକମାନେ ତାଙ୍କର ସୁରକ୍ଷାପାଇଁ ଅସ୍ତ୍ର ଉତ୍ତୋଳନ କରି ଚାଲିଥିଲେ । ମୌନାବଲମ୍ବନପୂର୍ବକ କୃଷ୍ଣଙ୍କର ପାଦପଦ୍ମକୁ ଚିନ୍ତା

କରି କରି ମାତାମାନଙ୍କ ସହିତ ରୁକ୍ମିଣୀ ଅମ୍ବିକାଙ୍କର ପାଦଦର୍ଶନପାଇଁ ପଦବ୍ରଜରେ ଯାତ୍ରା କଲେ । ମୃଦଙ୍ଗ, ଶଙ୍ଖ, ତୂରୀ, ଭେରୀ ପଣବ ଆଦି ବାଦ୍ୟସମୂହ ବାଜି ଉଠୁଥିଲା ।।୪୦-୪୧।। ଶ୍ରେଷ୍ଠ ବାରାଙ୍ଗନାମାନେ ସହସ୍ର ସହସ୍ର ସଂଖ୍ୟାରେ ନାନା ପୂଜାସାମଗ୍ରୀ ଧରି ଚାଲିଥିଲେ । ବ୍ରାହ୍ମଣ ପତ୍ନୀମାନେ ମାଳା, ଚନ୍ଦନ, ବସ୍ତ୍ର ଓ ଅଳଙ୍କାରରେ ସଜ୍ଜିତ ହୋଇ ଯାଉଥିଲେ । ଗାୟକ, ବାଦକ, ସୂତ, ମାଗଧ ଓ ବନ୍ଦୀମାନେ ଗାନ ଓ ସ୍ତୁତି କରି କରି ଚାଲିଥିଲେ । ଏମାନେ ସମସ୍ତେ ରୁକ୍ମିଣୀଙ୍କୁ ଘେରି ଚାଲିଲେ ।।୪୨-୪୩।। ଦେବୀଙ୍କ ମନ୍ଦିରରେ ପହଞ୍ଚି ରୁକ୍ମିଣୀ ନିଜର ପାଦ ଓ ହାତ ଧୋଇ ଆଚମନ କଲେ । ଏହାପରେ ପବିତ୍ର ହୋଇ ଶାନ୍ତଭାବରେ ଦେବୀଙ୍କ ନିକଟରେ ଉପସ୍ଥିତ ହେଲେ ।।୪୪।। ବିଧିବିଧାନ ଜାଣିଥିବା ବୟସ୍କା ବ୍ରାହ୍ମଣପତ୍ନୀମାନେ ତାଙ୍କୁ ନେଇ ଶିବଙ୍କ ସହିତ ଶିବପତ୍ନୀ ପାର୍ବତୀଙ୍କର ବନ୍ଦନା କରାଇଲେ ।।୪୫।।

ରୁକ୍ମିଣୀ ସ୍ତୁତି କଲେ, ହେ ଦେବୀ ଅମ୍ବିକା, ତୁମର ସନ୍ତାନ ଗଣେଶ ଓ କାର୍ତ୍ତିକେୟଙ୍କ ସହିତ ତୁମକୁ ନମସ୍କାର କରୁଚି । ହେ ମଙ୍ଗଳମୟୀ, ତୁମକୁ ବାରମ୍ବାର ନମସ୍କାର କରି ପ୍ରାର୍ଥନା କରୁଚି, ଭଗବାନ କୃଷ୍ଣ ମୋର ପତି ହୁଅନ୍ତୁ । ଆପଣ ଏତିକି ଆଶୀର୍ବାଦ କରନ୍ତୁ ।।୪୬।। ଏହାପରେ ରୁକ୍ମିଣୀ ଜଳ, ଗନ୍ଧ, ଅକ୍ଷତ, ପୁଷ୍ପମାଲ୍ୟ, ହାର, ଅଳଙ୍କାର, ବହୁବିଧ ନୈବେଦ୍ୟ ଓ ଉପହାର ଦ୍ରବ୍ୟ ଏବଂ ଧୂପ, ଦୀପଦ୍ୱାରା ଅମ୍ବିକା ଦେବୀଙ୍କର ପୂଜା କଲେ ।।୪୭।। ତାହାପରେ ସଧବା ବ୍ରାହ୍ମଣପତ୍ନୀମାନେ ଏସବୁ ସାମଗ୍ରୀ ସହିତ ଲବଣ, ଗୁବାକ, ତାମ୍ବୂଳ, କଣ୍ଠସୂତ୍ର, ଆଖୁଖଣ୍ଡ ଓ ଫଳ ଆଦିଦ୍ୱାରା ଅମ୍ବିକା ଦେବୀଙ୍କୁ ବିଶେଷଭାବରେ ପୂଜା କଲେ ।।୪୮।। ବ୍ରାହ୍ମଣ ସ୍ତ୍ରୀମାନେ ରୁକ୍ମିଣୀଙ୍କୁ ନିର୍ମାଲ୍ୟ ପ୍ରଦାନ କରି ଆଶୀର୍ବାଦ କଲେ । ନବବଧୂ ରୁକ୍ମିଣୀ ସେମାନଙ୍କୁ ପ୍ରଣାମ କରି ନିର୍ମାଲ୍ୟ ଗ୍ରହଣ କଲେ ।।୪୯।। ତା'ପରେ ରୁକ୍ମିଣୀ ମୌନବ୍ରତ ପରିତ୍ୟାଗ କରି ରତ୍ନମୁଦିଯୁକ୍ତ ହସ୍ତରେ ଜଣେ ସଖୀର ହାତ ଧରି ଅମ୍ବିକା ମନ୍ଦିରରୁ ବାହାରିଆସିଲେ ।।୫୦।। ପରିକ୍ଷିତ, ଭଗବାନଙ୍କର ମାୟାସ୍ୱରୂପିଣୀ ରୁକ୍ମିଣୀ ଧୈର୍ଯ୍ୟଶୀଳମାନଙ୍କୁ ମଧ୍ୟ ମୋହିତ କରି ପାରୁଥିଲେ । ତାଙ୍କର କଟି ଦେଶ ସୁନ୍ଦର ଓ ମୁଖମଣ୍ଡଳ କୁଣ୍ଡଳଯୁକ୍ତ ହୋଇ ଶୋଭାପାଉଥିଲା । ତାଙ୍କର ବର୍ଣ୍ଣ ଥିଲା ତପ୍ତକାଞ୍ଚନ ପରି । ନିତମ୍ବରେ ରତ୍ନମେଖଳା ଶୋଭା ପାଉଥିଲା । ସ୍ତନଦ୍ୱୟ ଉଦ୍‌ଗତ ଓ କେଶରାଶି ପଡୁଥିବାରୁ ଚକ୍ଷୁ ଦୁଇଟି ଚଞ୍ଚଳ ଦେଖାଯାଉଥିଲା । ହାସ୍ୟଯୁକ୍ତ ପ୍ରଫୁଲ୍ଲ ମୁଖରେ କୁନ୍ଦଫୁଲପରି ଧବଳ ଦନ୍ତପଙ୍‌କ୍ତି ବିମ୍ବାଧରର ଅରୁଣିମାରେ ଈଷତ୍ ଲାଲ ପଡ଼ିଥିଲା । ସେ କଳହଂସ ଗତିରେ ଚାଲୁଥିବା ବେଳେ ନୂପୁରର ରୁଣଝୁଣୁ ଧ୍ୱନି ଶୁଣାଯାଉଥିଲା । ସେଠାରେ ସମବେତ ଯଶସ୍ୱୀ ବୀରମାନେ ରୁକ୍ମିଣୀଙ୍କୁ ଦେଖି କାମରେ ପୀଡ଼ିତ ହୋଇ ମୋହଗଲେ ।।୫୧-୫୨।। ତାଙ୍କ ସୁନ୍ଦର ମନ୍ଦ ମନ୍ଦ ହସ ଓ ସଲଜ୍ଜ ଚାହାଣି ଦେଖି ଗଜ ଓ ଅଶ୍ୱଯୁକ୍ତ ରଥରେ ଆରୂଢ଼ ରାଜାମାନେ ଏପରି ମୋହିତ ହୋଇଗଲେ ଯେ ସେମାନଙ୍କ ହାତରୁ ଅସ୍ତ୍ରଶସ୍ତ୍ର ଖସିପଡ଼ିଲା ଓ ସେମାନେ ଭୂମିଉପରେ ମୂର୍ଚ୍ଛିତ ହୋଇ ପଡ଼ିଗଲେ । ରୁକ୍ମିଣୀ କିନ୍ତୁ ଯାତ୍ରାଛଳରେ ଶ୍ରୀକୃଷ୍ଣଙ୍କୁ ହିଁ ତାଙ୍କ ରୂପର ଶୋଭା ଅର୍ପଣ କରୁଥିଲେ ।।୫୩।। ରୁକ୍ମିଣୀ ପଦ୍ମପତ୍ରପରି ତାଙ୍କ କୋମଳପାଦରେ ଧୀରେ ଧୀରେ ଚାଲୁଥିଲେ । ଦେଖୁଥିଲେ, କୃଷ୍ଣ କେଉଁଠି ଅଛନ୍ତି । ମୁହଁରେ ପଡୁଥିବା କେଶରାଶିକୁ ବାମ ଅଙ୍ଗୁଳିରେ ସଜାଡ଼ିଦେଇ ସମବେତ ରାଜାମାନଙ୍କୁ ଲଜ୍ଜାରେ ଚାହୁଁଥିବାବେଳେ ସେ ଶ୍ରୀକୃଷ୍ଣଙ୍କୁ ଦେଖିପାରିଲେ ।।୫୪।। କୃଷ୍ଣଙ୍କୁ ସ୍ପର୍ଦ୍ଧା କରୁଥିବା ରାଜାମାନେ ଦେଖୁ ଦେଖୁ କୃଷ୍ଣ ରୁକ୍ମିଣୀଙ୍କୁ ରଥଉପରକୁ ଉଠାଇନେଲେ ।।୫୫।। ଶୃଗାଳମାନଙ୍କ ମଧ୍ୟରୁ ସିଂହ ଯେପରି ନିଜର ଭାଗକୁ ଉଠାଇନିଏ, ସେହିପରି ଗରୁଡ଼ଧ୍ୱଜ ରଥରେ ରୁକ୍ମିଣୀଙ୍କୁ ଧରି ଭଗବାନ୍ ଶ୍ରୀକୃଷ୍ଣ ବଳରାମ ଓ ଯାଦବ ବୀରମାନଙ୍କ ସହିତ ସେଠାରୁ ପ୍ରସ୍ଥାନ କଲେ ।।୫୬।। କୃଷ୍ଣଙ୍କର ଶତ୍ରୁ ଜରାସନ୍ଧ ପ୍ରମୁଖ ଅଭିମାନୀ ରାଜାମାନେ ତାଙ୍କ ପରାଭବ ଓ ଯଶହାନିକୁ ସହିପାରିଲେ ନାହିଁ । ସେମାନେ କହିବାକୁ ଲାଗିଲେ, ଆମକୁ ଧିକ୍ । ସିଂହମାନଙ୍କର ଭୋଗ୍ୟ ବସ୍ତୁକୁ ଶୃଗାଳମାନେ ଅପହରଣ କରିବାପରି ଆମର ଯଶକୁ ଏହି ଗୋପାଳମାନେ ହରଣକଲେ ।।୫୭।।

## ଚଉବନ ଅଧ୍ୟାୟ

# ରାଜାମାନଙ୍କର ପରାଜୟ ଓ ରୁକ୍ମିଣୀ ବିବାହ

ଏହିପରି ଆଲୋଚନା କରି କ୍ରୁଦ୍ଧ ରାଜାମାନେ ନିଜ ନିଜ ବାହନରେ ଚଢ଼ି କବଚ ଓ କାର୍ମୁକ ଧାରଣପୂର୍ବକ ନିଜ ନିଜର ସେନା ସହିତ କୃଷ୍ଣଙ୍କୁ ଅନୁଧାବନ କଲେ ।।୧।। ଯାଦବ ଯୂଥପତିମାନେ ସେମାନଙ୍କୁ ଆସୁଥିବାର ଦେଖି ଧନୁଷ୍ଟଙ୍କାରପୂର୍ବକ ସେମାନଙ୍କ ସମ୍ମୁଖୀନ ହେଲେ ।।୨।। ଅଶ୍ୱ, ଗଜ ଓ ରଥଉପରେ ଚଢ଼ି ଶସ୍ତ୍ର-ନିପୁଣ ରାଜାମାନେ ଏପରି ଶରବର୍ଷା କଲେ ଯେ ପର୍ବତ ଉପରେ ମେଘବର୍ଷା ହେଉଥିବା ପରି ଜଣାଗଲା ।।୩।। କୃଷ୍ଣଙ୍କର ସେନା ଶତ୍ରୁସେନାର ଶରରେ ଆଚ୍ଛନ୍ନ ହୋଇଗଲା । ରୁକ୍ମିଣୀ ଭୟ କରିଗଲେ । ସେ କୃଷ୍ଣଙ୍କ ଆଡ଼କୁ ସଲଜ୍ଜ ଦୃଷ୍ଟିରେ ଚାହିଁବାକୁ ଲାଗିଲେ ।।୪।। ଶ୍ରୀକୃଷ୍ଣ ହସି ହସି କହିଲେ, ସୁନୟନୀ, ଭୟ କର ନାହିଁ । ଦେଖ, ବର୍ତ୍ତମାନ ତୁମର ସେନାଦ୍ୱାରା କିପରି ଶତ୍ରୁବଳ ନଷ୍ଟ ହେବାକୁ ଯାଉଛି । ଶତ୍ରୁମାନଙ୍କର ପରାକ୍ରମ ସହି ନ ପାରି ଗଦ ଓ ସଙ୍କର୍ଷଣ ଆଦି ଯଦୁବୀରମାନେ ଶରାଘାତରେ ଶତ୍ରୁପକ୍ଷର ଅଶ୍ୱ, ଗଜ ଓ ରଥ ଆଦିକୁ ବିନାଶ କରିଲାଗିଲେ ।।୫-୬।। ଅଶ୍ୱାରୋହୀ, ଗଜାରୋହୀ ଓ ରଥାରୋହୀ ସୈନ୍ୟମାନଙ୍କର କୁଣ୍ଡଳ, କିରୀଟ ଓ ପଗଡ଼ି ଲାଗିଥିବା ଅଗଣିତ ମୁଣ୍ଡ ଭୂଇଁରେ ଗଡ଼ିବାକୁ ଲାଗିଲା ।।୭।। ଖଡ୍ଗ, ଗଦା ଓ ଧନୁର୍ବାଣ ଧରିଥିବା ଅବସ୍ଥାରେ ସେମାନଙ୍କର ହାତ, କଟଚି, ଜଙ୍ଘ ଓ ପାଦସବୁ ଖଣ୍ଡ ଖଣ୍ଡ ହୋଇଗଲା । ଅଶ୍ୱ, ଖଚର, ହାତୀ, ଓଟ ଓ ଗଧଙ୍କ ସହ ପଦାତିକ ସୈନ୍ୟମାନଙ୍କର ମୁଣ୍ଡସବୁ ମଧ୍ୟ ଗଡ଼ିଗଲା ।।୮।। ବିଜୟାକାଙ୍କ୍ଷୀ ଯାଦବମାନଙ୍କଦ୍ୱାରା ନିଜର ସୈନ୍ୟବଳ ନିହତ ହେଉଥିବାର ଦେଖି ଜରାସନ୍ଧ ପ୍ରଭୃତି ରାଜାମାନେ ଯୁଦ୍ଧରୁ ବିମୁଖ ହୋଇ ପଳାୟନ କଲେ ।।୯।। ଶିଶୁପାଳ ଯେଉଁ କନ୍ୟାକୁ ବିବାହ କରିବାକୁ ଆସିଥିଲା, ସେ ଅପହୃତା ହେବାରୁ ଅତି କାତର ହୋଇପଡ଼ିଥିଲା । ତା'ର ଚେହେରା ମଉଳି ଯାଇଥିଲା । ମୁହଁ ଶୁଖି ଯାଇଥିଲା ଏବଂ ଯୁଦ୍ଧପାଇଁ ତାର ଉତ୍ସାହ ନଥିଲା । ଏହିପରି ଅବସ୍ଥାରେ ଜରାସନ୍ଧ ପ୍ରଭୃତି ତା ପାଖକୁ ଆସି କହିଲେ -- ।।୧୦।। ହେ ପୁରୁଷବ୍ୟାଘ୍ର, ଆଉ ମନଦୁଃଖ କର ନାହିଁ । ରାଜନ୍, ପ୍ରାଣୀର ଜୀବନରେ କେତେବେଳେ ପ୍ରିୟ ଅବା କେତେବେଳେ ଅପ୍ରିୟ ଘଟିବ, ତାର କୌଣସି ସ୍ଥିରତା ନ ଥାଏ ।।୧୧।। ନଟ ଯେପରି କାଠ ପୁତୁଳିକୁ ଇଚ୍ଛା ଅନୁସାରେ ନଚାଏ, ସେହିପରି ଦେହଧାରୀ ଜୀବର ସୁଖ, ଦୁଃଖ ଈଶ୍ୱରଙ୍କ ଇଚ୍ଛାର ଅଧୀନ ହୋଇଥାଏ ।।୧୨।। ତେଇଶି ଅକ୍ଷୌହିଣୀ ସୈନ୍ୟଙ୍କୁ ଧରି ମୁଁ କୃଷ୍ଣଙ୍କ ସହିତ ଲଢ଼ି ସତର ଥର ପରାସ୍ତ ହେବାପରେ କେବଳ ଶେଷଥର ଜୟଲାଭ କଲି । ତଥାପି ମୁଁ ଶୋକ କରୁ ନାହିଁ କି ଉତ୍‌ଫୁଲ୍ଲ ହେଉ ନାହିଁ । କାରଣ ମୁଁ ଜାଣେ ଦୈବବଶରେ କାଳଦ୍ୱାରା ହିଁ ଜଗତ ପରିଚାଳିତ ହେଉଛି ।।୧୩-୧୪।। ଆମେମାନେ ଏବେ ମଧ୍ୟ ବୀର ସେନାପତିମାନଙ୍କର ଅଧୀଶ୍ୱର । କିନ୍ତୁ କୃଷ୍ଣରକ୍ଷିତ ଅଳ୍ପସଂଖ୍ୟକ ଯାଦବସେନା ଆମକୁ ପରାଜିତ କଲେ ।।୧୫।। ଆମର ଶତ୍ରୁମାନେ ବିଜୟୀ ହେଲେ, କାରଣ କାଳ ତାଙ୍କୁ ଅନୁକୂଳ ଥିଲା । ଯେତେବେଳେ କାଳ ଆମକୁ ଅନୁକୂଳ ହେବ, ଆମେ ମଧ୍ୟ ଜୟଲାଭ କରିବା ।।୧୬।। ଏହିପରି ଜରାସନ୍ଧ ଆଦି ମିତ୍ରମାନଙ୍କର ପ୍ରବୋଧନାରେ ଆଶ୍ୱସ୍ତ ହୋଇ ନିଜର ଅନୁଗାମୀମାନଙ୍କ ସହିତ ଶିଶୁପାଳ ଚେଦି ରାଜ୍ୟକୁ ପ୍ରସ୍ଥାନ କଲା । ଯେଉଁସବୁ ରାଜାମାନେ ଯୁଦ୍ଧରେ ବଞ୍ଚି ରହିଥିଲେ, ସେମାନେ ନିଜ ନିଜ ରାଜ୍ୟକୁ ଫେରିଗଲେ ।।୧୭।।

କିନ୍ତୁ କୃଷ୍ଣଦ୍ୱେଷୀ ବଳବାନ୍ ରୁକ୍ମୀ ନିଜ ଭଉଣୀର ଏପରି ରାକ୍ଷସବିଧିରେ ବିବାହକୁ ସହିପାରିଲା ନାହିଁ । ସେ ବହୁ ଅକ୍ଷୌହିଣୀ ସୈନ୍ୟ ଧରି କୃଷ୍ଣଙ୍କୁ ଅନୁଧାବନ କଲା ।।୧୮।। କ୍ରୋଧରେ ଅସ୍ଥିର ହୋଇ ମହାବାହୁ ରୁକ୍ମୀ କବଚ ଓ ଶରାସନ ଧାରଣପୂର୍ବକ ସମସ୍ତ ରାଜାଙ୍କୁ ଜଣାଇ ଏହି ପ୍ରତିଜ୍ଞା କଲା ଯେ 'ଯୁଦ୍ଧରେ କୃଷ୍ଣକୁ ନିହତ କରି ରୁକ୍ମିଣୀକୁ ଫେରାଇ ଆଣିବାପର୍ଯ୍ୟନ୍ତ ମୁଁ କୁଣ୍ଡିନପୁରକୁ ଫେରିବି ନାହିଁ -- ଏହା ମୋର ସତ୍ୟ ସଙ୍କଳ୍ପ' ।।୧୯-୨୦।। ଏହିପରି କହି ରୁକ୍ମୀ ରଥରେ ଆରୋହଣ କରି

ସାରଥିକୁ କହିଲା, କୃଷ୍ଣ ଯେଉଁ ଆଡ଼େ ଯାଉଛି, ସେ ଦିଗକୁ ଶୀଘ୍ର ରଥଚାଳନା କର । କୃଷ୍ଣ ସହିତ ମୋର ଯୁଦ୍ଧ ହେବ ॥୨୧॥ ସେ ବଳପୂର୍ବକ ମୋର ଭଉଣୀକୁ ଅପହରଣ କରିଛି । ମୋର ତୀକ୍ଷ୍ଣ ଶରାଘାତରେ ସେହି ମନ୍ଦମତି ଗୋପାଳର ବଳଗର୍ବକୁ ମୁଁ ଛଡ଼ାଇଦେବି ॥୨୨॥ ଶ୍ରୀକୃଷ୍ଣଙ୍କର ବଳବୀର୍ଯ୍ୟ ସମ୍ପର୍କରେ ତାର ଆଦୌ ଧାରଣା ନ ଥିଲା । ତାକୁ ଦୁର୍ବୁଦ୍ଧି ଘାରିଥିଲା । ସେ ଏକୁଟିଆ ରଥରେ ବସି ବଳଗର୍ବରେ ଫାଟିପଡ଼ି କୃଷ୍ଣଙ୍କୁ 'ରହ ରହ' ବୋଲି ଡାକିବାକୁ ଲାଗିଲା ॥୨୩॥ ସେ ଦୃଢ଼ଭାବରେ ଧନୁ ଆକର୍ଷଣ କରି ତିନୋଟି ବାଣରେ କୃଷ୍ଣଙ୍କୁ ଆଘାତ କରି କହିଲା, ରେ ଯଦୁମାନଙ୍କର କୁଳପାଂଶୁଳ କୃଷ୍ଣ, ଟିକିଏ ରହିଯା । ମନ୍ଦମତି, କାକ ଯେପରି ଯଜ୍ଞର ଘୃତ ହରଣ କରେ, ତୁ ସେହିପରି ମୋର ଭଉଣୀକୁ ହରଣ କରି କୁଆଡ଼େ ଚାଲିଯାଉଛୁ ? ମୁଁ ଜାଣେ ତୁ ମାୟାବୀ, କପଟଯୋଦ୍ଧା । ଆଜି ମୁଁ ତୋର ଗର୍ବ ଖର୍ବ କରିବି ॥୨୪-୨୫॥ ମୋ' ବାଣରେ ନିହତ ହୋଇ ଯୁଦ୍ଧଭୂମିରେ ଶୟନ କରିବା ପୂର୍ବରୁ ମୋର ଭଉଣୀକୁ ଛାଡ଼ିଦେ । କୃଷ୍ଣ ରୁକ୍ମୀର କଥା ଶୁଣି ହସି ହସି ଛ'ଟି ବାଣରେ ତାର ଧନୁକୁ ଛେଦନ କଲେ । ଆଠଟି ବାଣରେ ତାର ସମସ୍ତ ରଥଚକ୍ରକୁ ଓ ତିନୋଟି ବାଣରେ ରଥର ଧ୍ୱଜାକୁ ଛେଦନ କରି ଦୁଇଟି ଶରରେ ସାରଥିକୁ ବିଦ୍ଧ କଲେ । ରୁକ୍ମୀ ପୁଣି ଏକ ଧନୁ ଧାରଣ କରି ପାଞ୍ଚୋଟି ବାଣରେ କୃଷ୍ଣଙ୍କୁ ବିଦ୍ଧ କଲା ॥୨୬-୨୭॥ ଶରାହତ ଅଚ୍ୟୁତ ଶରସନ୍ଧାନ କରି ପୁଣି ତା'ର ଧନୁକୁ ଛେଦନ କଲେ । ରୁକ୍ମୀ ଆଉ ଏକ ଧନୁ ଗ୍ରହଣ କରିବାରୁ ଅବିନାଶୀ ଭଗବାନ୍ ସେ ଧନୁକୁ ମଧ୍ୟ ଛେଦନ କରିଦେଲେ ॥୨୮॥ ପରିଘ, ପଟ୍ଟିଶ, ଶୂଳ, ଚର୍ମ, ଅସି, ଶକ୍ତି ଓ ତୋମର ଆଦି ଯେଉଁ ଯେଉଁ ଅସ୍ତ୍ର ରୁକ୍ମୀ ଗ୍ରହଣ କଲା, ଭଗବାନ୍ ଶ୍ରୀକୃଷ୍ଣ ସେ ସମସ୍ତ ଅସ୍ତ୍ରକୁ ଛେଦନ କଲେ ॥୨୯॥ ତା'ପରେ ଅସିହସ୍ତରେ ରୁକ୍ମୀ ରଥରୁ ଡେଇଁପଡ଼ି ପତଙ୍ଗ ନିଆଁଆଡ଼କୁ ଧାଇଁବାପରି କୃଷ୍ଣଙ୍କୁ ମାରିବାପାଇଁ ଦଉଡ଼ିଆସିଲା । ଶ୍ରୀକୃଷ୍ଣ ବାଣଦ୍ୱାରା ତା'ର ଢାଲ ଓ ଅସିକୁ ଟିକି ଟିକି କରିଦେଇ ତୀକ୍ଷ୍ଣ ତରବାରି ଧରି ତାକୁ ମାରିବାପାଇଁ ବାହାରିଲେ ॥୩୦-୩୧॥ ନିଜର ଭାଇ ମରିବାକୁ ଯାଉଛି ଦେଖି ସତୀ ରୁକ୍ମିଣୀ ଭୟରେ କାତର ହୋଇପଡ଼ିଲେ । ସେ ସ୍ୱାମୀଙ୍କର ପାଦତଳେ ପଡ଼ି କରୁଣ ସ୍ୱରରେ କହିଲେ, ହେ ଯୋଗେଶ୍ୱର, ଆପଣଙ୍କର ଶକ୍ତିକୁ କେହି କଳନା କରିପାରିବ ନାହିଁ, ହେ ଦେବଦେବ ଜଗଦୀଶ୍ୱର, ହେ ମଙ୍ଗଳମୟ, ହେ ମହାବାହୁ, ମୋର ଭାଇକୁ ମାରିବା ଆପଣଙ୍କ ପକ୍ଷରେ ଉଚିତ ହେବ ନାହିଁ ॥୩୨-୩୩॥

ଶ୍ରୀ ଶୁକଦେବ କହିଲେ, ପରିକ୍ଷିତ, ରୁକ୍ମିଣୀଙ୍କର ଦେହ ଭୟରେ ଥରୁଥିଲା । ଶୋକରେ ତାଙ୍କ ମୁହଁ ଶୁଖି ଯାଇଥିଲା ଓ କଣ୍ଠ ରୁଦ୍ଧ ହୋଇଯାଇଥିଲା । କାତରତାଯୋଗୁଁ ଗଳାରୁ ସୁବର୍ଣ୍ଣର ହାର ଖସି ପଡ଼ିଥିଲା । ସେ ଶ୍ରୀକୃଷ୍ଣଙ୍କର ପାଦଦୁଇଟି ଧରି ପକାଇବାରୁ ଶ୍ରୀକୃଷ୍ଣ ଦୟାପରବଶ ହୋଇ ରୁକ୍ମୀକୁ ବଧ କଲେ ନାହିଁ ॥୩୪॥ ସେହି ଅମଙ୍ଗଳକାରୀ ରୁକ୍ମୀକୁ ବସ୍ତ୍ରରେ ବାନ୍ଧିପକାଇ ତା'ର ନିଶ, ଦାଢ଼ି ଓ ମୁଣ୍ଡବାଳକୁ ସ୍ଥାନେ ସ୍ଥାନେ ଖିଅର କରି ତାକୁ ବିରୂପ କରିଦେଲେ । ହାତୀମାନେ ଯେପରି ପଦ୍ମବନକୁ ଦଳିଦିଅନ୍ତି ଯଦୁବୀରମାନେ ସେହିପରି ପ୍ରବଳ ଶତ୍ରୁସେନାକୁ ଦଳିଦେଲେ ॥୩୫॥ କୃଷ୍ଣଙ୍କ ନିକଟକୁ ଆସି ଯାଦବମାନେ ଦେଖିଲେ ଯେ ରୁକ୍ମୀ ବନ୍ଧା ହୋଇ ମୃତପ୍ରାୟ ଅବସ୍ଥାରେ ରହିଚି । ଦୟାର୍ଦ୍ର ବଳରାମ ତାକୁ ମୁକୁଳାଇ ଦେଇ କୃଷ୍ଣଙ୍କୁ କହିଲେ, କୃଷ୍ଣ ତୁ ଠିକ୍ କଲୁ ନାହିଁ । ତୁ ଯାହା କଲୁ, ସେଥିରେ ଆମର କୁଳକୁ ନିନ୍ଦା ହେବ । ଦାଢ଼ି, ନିଶ, ମୁଣ୍ଡବାଳ କାଟି ଦେଇ ବନ୍ଧୁକୁ ବିରୂପ କରିବା ବନ୍ଧୁର ହତ୍ୟା ସହିତ ସମାନ ॥୩୬-୩୭॥ ତାପରେ ବଳରାମ ରୁକ୍ମିଣୀଙ୍କୁ ସମ୍ବୋଧନ କରି କହିଲେ, ସାଧ୍ୱୀ, ତୁମର ଭାଇକୁ ବିରୂପ କରାଯାଇଚି ବୋଲି ତୁମେ ଆମ ପ୍ରତି ଦୋଷଦୃଷ୍ଟି କର ନାହିଁ । କାରଣ କେହି କାହାରିକୁ ଦୁଃଖ ବା ସୁଖ ଦିଏ ନାହିଁ, ଯେହେତୁ ଜୀବକୁ ନିଜର କର୍ମଫଳ ଭୋଗ କରିବାକୁହୁଏ ॥୩୮॥ ଯେଉଁ ଦୋଷପାଇଁ ବନ୍ଧୁକୁ ମୃତ୍ୟୁଦଣ୍ଡ ଦିଆଯିବାର କଥା, ତାହା ବନ୍ଧୁ ନିଜେ ଦେବା ଉଚିତ ନୁହେଁ । ତାକୁ ତ୍ୟାଗ କରିବା ଉଚିତ । କାରଣ ସେ ନିଜ ଦୋଷରେ ହିଁ ନିହତ ହୋଇ ସାରିଥାଏ ॥୩୯॥

ପ୍ରଜାପତି କ୍ଷତ୍ରିୟମାନଙ୍କପାଇଁ ଏହି ଧର୍ମର ବିଧାନ କରିଛନ୍ତି ଯେ ଭାଇ ମଧ୍ୟ ଭାଇକୁ ହତ୍ୟା କରିପାରେ । ତେଣୁ ଏହାଠାରୁ ଭୟାନକ ବିଷୟ କଣ ହୋଇପାରେ ! ॥୪୦॥ ରାଜ୍ୟ, ଭୂମି, ଧନ, ସ୍ତ୍ରୀ, ମାନ, ପରାକ୍ରମ ବା ଅନ୍ୟ କୌଣସି କାରଣରୁ ଐଶ୍ୱର୍ଯ୍ୟମଦରେ ଅନ୍ଧ ଅହଂକାରୀ ବ୍ୟକ୍ତିମାନେ ବନ୍ଧୁମାନଙ୍କୁ ଦୂର କରିଥା'ନ୍ତି ॥୪୧॥ ରୁକ୍ମିଣୀ, ତୁମେ ଅଜ୍ଞ ବ୍ୟକ୍ତି ପରି ସମସ୍ତଙ୍କୁ ସମାନ ଭାବରେ ନ ଦେଖି ତୁମର ବନ୍ଧୁମାନଙ୍କର ମଙ୍ଗଳ ଓ ଅନ୍ୟମାନଙ୍କର ଅମଙ୍ଗଳ ଚିନ୍ତା କରିବା ଭେଦବୁଦ୍ଧିର ପରିଚାୟକ ॥୪୨॥ ଭଗବାନଙ୍କ ମାୟାର ପ୍ରଭାବରେ ଦେହଧାରୀ ଜୀବମାନେ ନିଜର ଦେହକୁ ଆତ୍ମା ବୋଲି ଭାବି ଏ ଆମର ବନ୍ଧୁ, ଏ ଆମର ଶତ୍ରୁ, ଏ ଆମ ପ୍ରତି ନିରପେକ୍ଷ (ଉଦାସୀନ) ବୋଲି କଳ୍ପନା କରନ୍ତି ॥୪୩॥

ସମସ୍ତ ଦେହଧାରୀଙ୍କ ମଧ୍ୟରେ ଗୋଟିଏ ଆତ୍ମା ରହିଚି; ମାତ୍ର ଯେପରି ଗୋଟିଏ ସୂର୍ଯ୍ୟ, ଗୋଟିଏ ଚନ୍ଦ୍ର ବା ଗୋଟିଏ ଆକାଶ ଥିଲେ ମଧ୍ୟ ପ୍ରତିବିମ୍ବଦ୍ୱାରା ଅନେକ ଭଳି ଦେଖାଯା'ନ୍ତି, ସେହିପରି ମୂଢ଼ ବ୍ୟକ୍ତିମାନେ ଗୋଟିଏ ଆତ୍ମାକୁ ଜାଣି ନ ପାରି ଭିନ୍ନ ଭିନ୍ନ ଆତ୍ମା ଅଛି ବୋଲି ମନେ କରନ୍ତି ॥୪୪॥ ଦେହର ଜନ୍ମ ଓ ମୃତ୍ୟୁ ଅଛି । କାରଣ ଏହି ଦେହ ପଞ୍ଚଭୂତ, ଦଶ ଇନ୍ଦ୍ରିୟ, ମନ ଓ ଇନ୍ଦ୍ରିୟାଧିଷ୍ଠାତ୍ରୀ ଦେବତାଙ୍କଦ୍ୱାରା ଗଠିତ । ଆତ୍ମାରେ ଅବିଦ୍ୟାଦ୍ୱାରା କଳ୍ପିତ ଏହି ଦେହ ଜୀବକୁ ସଂସାରଚକ୍ରରେ ଘୂରାଉଛି ॥୪୫॥ ନେତ୍ରର ଦେବତା ସୂର୍ଯ୍ୟ । ନେତ୍ରଦ୍ୱାରା ଆମେ ବିଭିନ୍ନ ରୂପ ବା ବସ୍ତୁକୁ ଦେଖିପାରୁ । କିନ୍ତୁ ସୂର୍ଯ୍ୟର ନେତ୍ର ଓ ରୂପ ସହିତ ସଂଯୋଗ ବା ବିୟୋଗ ନ ଥାଏ । ସତୀ ରୁକ୍ମିଣୀ, ସେହିପରି ସମସ୍ତ ଭୂତ, ଇନ୍ଦ୍ରିୟ, ମନଓ ଦେବତାଙ୍କଦ୍ୱାରା ଗଠିତ ଶରୀର ଆତ୍ମାଦ୍ୱାରା ପ୍ରକାଶିତ ହେଲେ ମଧ୍ୟ ଆତ୍ମା ସେ ସବୁରୁ ପୃଥକ୍ । ସେ ସବୁସହିତ ଆତ୍ମାର ସଂଯୋଗ ବା ବିୟୋଗ ନାହିଁ ॥୪୬॥ ଜନ୍ମ ହେବା, ବାଳକ, ଯୁବକ ଓ ବୃଦ୍ଧ ହେବା ଆଦି ଅବସ୍ଥା ହେଉଚି ଶରୀରର ବିକାର, ଆତ୍ମାର ନୁହେଁ । କୃଷ୍ଣପକ୍ଷରେ ଚନ୍ଦ୍ରକଳାର ହ୍ରାସ ହେଲେ ଅମାବାସ୍ୟାରେ ଚନ୍ଦ୍ର ଦେଖାଯାଏ ନାହିଁ ; ଏବଂ ଲୋକେ ଅମାବାସ୍ୟାକୁ ଚନ୍ଦ୍ରକ୍ଷୟ ବୋଲି କହନ୍ତି । ସେହିପରି ଶରୀରର ବିକାର ବା କ୍ଷୟକୁ ଆତ୍ମାର କ୍ଷୟ ବୋଲି ଭ୍ରମ କରାଯାଏ ॥୪୭॥ ସ୍ୱପ୍ନାବସ୍ଥାରେ ବ୍ୟକ୍ତି ବିଭିନ୍ନ ଭୋଗ୍ୟବସ୍ତୁ ଭୋଗ କରେ ଓ ତା'ର ଫଳସ୍ୱରୂପ ସୁଖଦୁଃଖ ଅନୁଭବ କରେ । ତାହା ଯେପରି ସତ୍ୟ ନୁହେଁ, ଦେହାଭିମାନୀ ଅଜ୍ଞାନୀ ବ୍ୟକ୍ତି ଏହି ସଂସାରକୁ ସତ୍ୟ ବୋଲି ଗ୍ରହଣକରିବା ସେହିପରି ଠିକ୍ ନୁହେଁ ।୪୮॥ ସାଧ୍ୱୀ, ଅଜ୍ଞାନତାବଶରୁ ତୁମର ଶୋକ ଜାତ ହୋଇଚି । ତାହା ତୁମର ଅନ୍ତଃକରଣକୁ ଶୋଷି ନେଇଚି ଓ ତୁମର ମୋହ ଜାତ କରାଉଚି । ତୁମେ ତାହାକୁ ତ୍ୟାଗ କରି ଆତ୍ମସ୍ଥ ହୁଅ ॥୪୯॥ ଶ୍ରୀ ଶୁକଦେବ କହିଲେ, ଏହିପରି ଭଗବାନ୍ ବଳରାମ ସାନ୍ତ୍ୱନା ଦେବାରୁ ରୁକ୍ମିଣୀଙ୍କ ମନର ଗ୍ଲାନି ଦୂର ହେଲା ଏବଂ ସେ ନିଜର ଚିତ୍ତକୁ ସ୍ଥିର କଲେ ॥୫୦॥ ରୁକ୍ମୀର ସୈନ୍ୟବଳ ଓ ତେଜ ନଷ୍ଟ ହୋଇଗଲା । କେବଳ ସେ ପ୍ରାଣରେ ମାତ୍ର ବଞ୍ଚିଥିଲା । ତାର ସମସ୍ତ ଅଭିଳାଷ ଓ ସଙ୍କଳ୍ପ ବ୍ୟର୍ଥ ହୋଇଗଲା । ଶତ୍ରୁମାନେ ଯେ ତାକୁ ଅପମାନ ଦେଇ ବିରୂପ କରି ଛାଡ଼ି ଦେଇଛନ୍ତି, ତାହା ସେ ଭୁଲି ପାରିଲା ନାହିଁ । ଦୁର୍ମତି କୃଷ୍ଣକୁ ମାରି ମୋର ସାନ ଭଉଣୀ ରୁକ୍ମିଣୀକୁ ଉଦ୍ଧାର କରିବା ପର୍ଯ୍ୟନ୍ତ ମୁଁ କୁଣ୍ଡିନପୁରୀକୁ ଯିବି ନାହିଁ, ଏହା କହି ସେ ଭୋଜକଟ ନାମକ ଏକ ବିଶାଳ ନଗର ନିର୍ମାଣ କରି ସେଠାରେ ଅବସ୍ଥାନ କଲା ॥୫୧-୫୨॥ ପରିକ୍ଷିତ, ଭଗବାନ୍ ଶ୍ରୀକୃଷ୍ଣ ଏହିପରି ରାଜାମାନଙ୍କୁ ପରାସ୍ତ କଲେ ଓ ଭୀଷ୍ମକଙ୍କର କନ୍ୟା ରୁକ୍ମିଣୀଙ୍କୁ ଦ୍ୱାରକାକୁ ଆଣି ବିଧିପୂର୍ବକ ବିବାହ କଲେ ॥୫୩॥ ରାଜା, ଯଦୁପୁରୀ ଦ୍ୱାରକାରେ ଯଦୁପତି ଶ୍ରୀକୃଷ୍ଣଙ୍କର ଅନନ୍ୟଭକ୍ତ ଯାଦବମାନଙ୍କ ଘରେ ଘରେ ମହୋତ୍ସବ ଲାଗିଗଲା । ସ୍ତ୍ରୀପୁରୁଷମାନେ ଉଜ୍ଜ୍ୱଳ ମଣିମୟ କୁଣ୍ଡଳମାନ ଧାରଣ କଲେ । ସେମାନେ ଚିତ୍ରିତ ବସ୍ତ୍ର ପରିଧାନ କରିଥିବା ବରକନ୍ୟାଙ୍କ ପାଖକୁ ଆସି ନାନା ଉପହାରଦ୍ରବ୍ୟ ପ୍ରଦାନ କଲେ ॥୫୪-୫୫॥ ଦ୍ୱାରକାପୁରୀର ବିଭିନ୍ନ ସ୍ଥାନରେ ବଡ଼ବଡ଼ ପତାକାମାନ ଉଡୁଥିଲା । ବହୁ ରଙ୍ଗର

ମାଳା, ବସ୍ତ୍ର ଓ ରତ୍ନମୟ ତୋରଣମାନଙ୍କଦ୍ୱାରା ନଗର ସୁସଜ୍ଜିତ ହୋଇଥିଲା । ପ୍ରତ୍ୟେକ ଦ୍ୱାରରେ ଲିଆ, ଫୁଲ, ଦୂବ, ଅରୁଆଚାଉଳ ଆଦି ମାଙ୍ଗଳିକ ଦ୍ରବ୍ୟ ସହ ପୂର୍ଣ୍ଣକୁମ୍ଭ, ଅଗୁରୁ, ଧୂପ, ଦୀପସବୁ ଶୋଭା ପାଉଥିଲା ॥୫୬॥ ବନ୍ଧୁ ରାଜାମାନେ ନିମନ୍ତ୍ରିତ ହୋଇ ଆସିଥିଲେ । ସେମାନେ ଆଣିଥିବା ମତ୍ତହସ୍ତୀମାନଙ୍କର ଗଣ୍ଡସ୍ଥଳରୁ ମଦବାରି ଝରି ରାଜମାର୍ଗକୁ ସିକ୍ତ କରି ଦେଉଥିଲା । ପ୍ରତି ଦ୍ୱାରରେ କଦଳୀ ଗଛ ଓ ଗୁଆଗଛ ରୋପାଯାଇ ସୁନ୍ଦର ଦେଖାଯାଉଥିଲା ॥୫୭॥ କୁରୁ, ସୃଞ୍ଜୟ, କୈକେୟ, ବିଦର୍ଭ, ଯଦୁ ଓ ଭୋଜବଂଶୀୟ ଲୋକମାନେ ନଗରର ଚାରିଆଡ଼େ ଆନନ୍ଦରେ ବୁଲି ଉତ୍ସବ ପାଳନ କରୁଥିଲେ ॥୫୮॥ ଚତୁର୍ଦ୍ଦିଗରେ ରୁକ୍ମିଣୀହରଣ ବୃତ୍ତାନ୍ତ କୀର୍ତ୍ତିତ ହେଲା । ତାହା ଯେ ଶୁଣିଲା, ରାଜା ଓ ରାଜକନ୍ୟା, ସମସ୍ତେ ବିସ୍ମିତ ହେଲେ ॥୫୯॥ ରାଜା ପରିକ୍ଷିତ, ଶ୍ରୀପତି ଶ୍ରୀକୃଷ୍ଣ ଓ ରୁକ୍ମିଣୀଙ୍କର ମିଳନ ଦେଖି ଦ୍ୱାରକାର ପୁରବାସୀମାନଙ୍କ ମଧ୍ୟରେ ଅପୂର୍ବ ଆନନ୍ଦ ଖେଳିଗଲା ॥୬୦॥

## ପଞ୍ଚାବନ ଅଧ୍ୟାୟ

# ପ୍ରଦ୍ୟୁମ୍ନ ଓ ଶମ୍ବରାସୁର

କାମଦେବ ଭଗବାନ୍ ବାସୁଦେବଙ୍କର ଅଂଶ । ରୁଦ୍ରଙ୍କ କୋପାନଳରେ ସେ ଭସ୍ମ ହୋଇଯାଇଥିଲେ । ପୁଣି ଦେହଲାଭପାଇଁ ସେ ଭଗବାନ୍ ବାସୁଦେବଙ୍କର ଆଶ୍ରୟ ନେଲେ ॥୧॥ ଏବେ ସେ ଶ୍ରୀକୃଷ୍ଣଙ୍କ ଔରସରୁ ରୁକ୍ମିଣୀଙ୍କ ଗର୍ଭରେ ଜନ୍ମ ହୋଇ ପ୍ରଦ୍ୟୁମ୍ନ ନାମରେ ବିଖ୍ୟାତ ହେଲେ । ସେ କୌଣସି ଅଙ୍ଗରେ ପିତାଙ୍କ ଠାରୁ ନ୍ୟୂନ ନଥିଲେ ॥୨॥ ଶମ୍ବରାସୁର ମନେକଲା ଯେ ତାର ଶତ୍ରୁ ଜନ୍ମ ହୋଇଚି । ପ୍ରଦ୍ୟୁମ୍ନ ଦଶଦିନର ହୋଇ ନ ଥିବାବେଳେ ସେ ସୂତିକାଗୃହରୁ ତାଙ୍କୁ ଅପହରଣ କରିନେଲା ଏବଂ ସମୁଦ୍ରରେ ଫିଙ୍ଗି ଦେଇ ସ୍ୱଗୃହକୁ ପ୍ରସ୍ଥାନକଲା ॥୩॥ ଶିଶୁଟିକୁ ଏକ ବଡ଼ ବଲୁଆ ମାଛ ଗିଳିଦେଲା । ସେ ମାଛ ପୁଣି ଅନ୍ୟମାଛଙ୍କ ସହ କେଉଟମାନଙ୍କର ଏକ ବଡ଼ ଜାଲରେ ପଡ଼ିଗଲା ॥୪॥ କେଉଟମାନେ ସେ ବଡ଼ମାଛକୁ ନେଇ ଶମ୍ବରାସୁରକୁ ଉପହାର ଦେଲେ । ପାଚକମାନେ ରନ୍ଧନଶାଳାକୁ ନେଇ ସେ ମାଛଟିକୁ କାଟିବାକୁ ବାହାରିଲେ ॥୫॥ ମାଛର ପେଟରେ ଏକ ବାଳକକୁ ଦେଖି ସେମାନେ ମାୟାବତୀ ନାମକ ଜଣେ ସ୍ତ୍ରୀକୁ ତାହାକୁ ପ୍ରଦାନକଲେ । ଏହି ସମୟରେ ଦେବର୍ଷି ନାରଦ ଆସି ଶଙ୍କିତମନା ମାୟାବତୀକୁ ବାଳକର ଜନ୍ମରହସ୍ୟ କହିଲେ ॥୬॥ ମାୟାବତୀ ହେଲା କାମଦେଙ୍କର ପତିବ୍ରତା ସ୍ତ୍ରୀ ରତି । (ଶିବଙ୍କକୋପରେ) ପତି ଦଗ୍ଧ ହେବା ପରେ ଅନ୍ୟ ଦେହରେ ପୁଣି ତାଙ୍କର ଜନ୍ମପାଇଁ ସେ ପ୍ରତୀକ୍ଷା କରିଥିଲା ॥୭॥ ମାୟାବତୀକୁ ଶମ୍ବରାସୁର ଆଣି ତାର ରନ୍ଧନାଦି କାର୍ଯ୍ୟରେ ନିଯୁକ୍ତ କରିଥିଲା । ଯେତେବେଳେ ମାୟାବତୀ ଜାଣିଲା ଯେ ଏହି ଶିଶୁପୁତ୍ର ହେଉଚି କାମଦେବ, ସେ ଅତି ସ୍ନେହରେ ଶିଶୁଟିକୁ ପାଳନ କଲା ॥୮॥ ଅଳ୍ପକାଳରେ କୃଷ୍ଣଙ୍କର ପୁତ୍ର ଯୌବନପ୍ରାପ୍ତ ହୋଇ ତାଙ୍କୁ ଦେଖୁଥିବା ରମଣୀମାନଙ୍କର ମୋହ ଜାତ କରାଇଲେ ॥୯॥

ପରିକ୍ଷିତ, ପଦ୍ମପତ୍ରପରି ଆୟତଚକ୍ଷୁ, ଆଜାନୁଲମ୍ବିତ ବାହୁ ଓ ମର୍ତ୍ତ୍ୟଲୋକରେ ସବୁଠାରୁ ସୁନ୍ଦର ପ୍ରଦ୍ୟୁମ୍ନଙ୍କୁ ଦେଖି ସଲଜ୍ଜ ହାସପ୍ରଣୋଦିତ ପ୍ରେମପୂର୍ଣ୍ଣ କଟାକ୍ଷରେ ଚାହିଁ ମାୟାବତୀ ପ୍ରୀତିବଶରୁ ତାଙ୍କ ସହ ସୁରତପାଇଁ ଉପସ୍ଥିତ ହେଲା ॥୧୦॥ ପ୍ରଦ୍ୟୁମ୍ନ ପଚାରିଲେ, ମାତା, ତୋ ମନରେ କଣ ଅଛି ? ମୁଁ ତ ଦେଖୁଚି ମାତୃଭାବ ଛାଡ଼ି କାମୁକୀ ରମଣୀପରି ତୁ ମୋ'ସହିତ ବ୍ୟବହାର କରୁଛୁ ॥୧୧॥ ମାୟାବତୀ କହିଲା, ତୁମେ ହେଉଚ ଶ୍ରୀକୃଷ୍ଣଙ୍କର ପୁତ୍ର । ତାଙ୍କ ଗୃହରୁ ଶମ୍ବରାସୁର ତୁମକୁ ଅପହରଣ କରି ନେଇ ଆସିଚି । ସ୍ୱାମୀ, ତୁମେ ହେଉଚ କାମଦେବ ଏବଂ ମୁଁ ତୁମର ପତ୍ନୀ ରତି ॥୧୨॥ ପ୍ରଭୁ, ଶମ୍ବରାସୁର ତୁମକୁ

ଦଶଦିନ ନ ହେଉଣୁ ଶିଶୁ ଅବସ୍ଥାରେ ହରଣ କରି ସମୁଦ୍ରରେ ଫିଙ୍ଗି ଦେଇଥିଲା । ଗୋଟାଏ ମାଛ ତୁମକୁ ଗିଳି ଦେଇଥିଲା । ସେହି ମାଛ ପେଟରୁ ଏହି ସ୍ଥାନରେ ମୁଁ ତୁମକୁ ପାଇଲି ॥୧୩॥ ତୁମର ସେହି ଦୁର୍ଦ୍ଧର୍ଷ, ଦୁର୍ଜୟ, ଅତୀବ ମାୟାବୀ ଶତ୍ରୁକୁ ବର୍ତ୍ତମାନ ତୁମେ ମୋହନାଦି ମାୟାଦ୍ୱାରା ବିନାଶ କର ॥୧୪॥ ବାଛୁରି ନ ଥିଲେ ଗାଭୀ ଯେପରି ବିକଳ ହେଉଥାଏ, ସେହିପରି ପୁତ୍ରସ୍ନେହରେ ଆତୁରା ତୁମର ମାତା କୁରରୀ ପକ୍ଷୀପରି ଶୋକରେ କ୍ରନ୍ଦନ କରୁଛନ୍ତି ॥୧୫॥ ଏହିପରି କହି ମାୟାବତୀ ମହାତ୍ମା ପ୍ରଦ୍ୟୁମ୍ନଙ୍କୁ ମହାମାୟା ନାମକ ବିଦ୍ୟା ପ୍ରଦାନ କଲା, ତାହା ଏପରି ବିଦ୍ୟା ଥିଲା ଯେ ସମସ୍ତ ମାୟାକୁ ତା'ର କାଟିଦେବାର ଶକ୍ତି ଥିଲା ॥୧୬॥

ବର୍ତ୍ତମାନ ପ୍ରଦ୍ୟୁମ୍ନ ଶମ୍ବରାସୁର ପାଖକୁ ଯାଇ ତାକୁ ଅସହନୀୟ କଟୁ ଭାଷାରେ ଆକ୍ଷେପ କରିବାକୁ ଲାଗିଲେ ଏବଂ ତା ସହିତ କଳହ ସୃଷ୍ଟି କରି ତାକୁ ଯୁଦ୍ଧପାଇଁ ଆହ୍ୱାନ କଲେ ॥୧୭॥ ବିଷଧର ସର୍ପକୁ ପଦାଘାତ କଲେ ସେ ଯେପରି ରାଗରେ ଫଣା ଟେକି ଉଠେ, ପ୍ରଦ୍ୟୁମ୍ନଙ୍କ କଟୁ ବାକ୍ୟରେ ଶମ୍ବରାସୁରର ଚକ୍ଷୁ କ୍ରୋଧରେ ଲାଲ୍ ପଡ଼ିଗଲା ଏବଂ ସେ ଗଦା ଧରି ପ୍ରଦ୍ୟୁମ୍ନଙ୍କ ଆଡ଼କୁ ମାଡ଼ିଆସିଲା ॥୧୮॥ ସେ ବଜ୍ରଘାତ ପରି ଭୟଙ୍କର ରଡ଼ି ଛାଡ଼ି ତା'ର ଗଦାକୁ ଘୂରାଇ ଘୂରାଇ ପ୍ରଦ୍ୟୁମ୍ନଙ୍କ ଉପରକୁ ଫିଙ୍ଗିଦେଲା ॥୧୯॥ ପରିକ୍ଷିତ, ପ୍ରଦ୍ୟୁମ୍ନ ତାଙ୍କଆଡ଼କୁ ସେହି ଗଦା ଆସୁଥିବାର ଦେଖି ନିଜ ଗଦାଦ୍ୱାରା ତାକୁ ପ୍ରତିହତ କଲେ ଏବଂ କ୍ରୁଦ୍ଧ ହୋଇ ତାହା ଆଡ଼କୁ ଗଦା ନିକ୍ଷେପ କଲେ ॥୨୦॥ ଶମ୍ବରାସୁର ମୟଦାନବପ୍ରଦର୍ଶିତ ଆସୁରୀ ମାୟାକୁ ଆଶ୍ରୟ କରି ଆକାଶମାର୍ଗକୁ ଉଠିଗଲା ଏବଂ ସେଠାରୁ ତାଙ୍କ ଉପରେ ଶର ବର୍ଷିବାକୁ ଲାଗିଲା ॥୨୧॥ ରୁକ୍ମିଣୀଙ୍କ ପୁତ୍ର ମହାରଥୀ ପ୍ରଦ୍ୟୁମ୍ନ ଅସ୍ତ୍ରବର୍ଷାରେ ପୀଡ଼ିତ ହୋଇ ସମସ୍ତ ମାୟାକୁ ବିନାଶ କରୁଥିବା ସତ୍ତ୍ୱଗୁଣଯୁକ୍ତ ମହାବିଦ୍ୟାକୁ ପ୍ରୟୋଗ କଲେ ॥୨୨॥ ଅସୁର କୃଷ୍ଣପୁତ୍ରଙ୍କ ଉପରେ ଯକ୍ଷ, ଗନ୍ଧର୍ବ, ପିଶାଚ ଓ ନାଗ ଆଦିଙ୍କର ଶତ ଶତ ମାୟା ପ୍ରୟୋଗ କଲା । କିନ୍ତୁ ପ୍ରଦ୍ୟୁମ୍ନ ସେହି ସମସ୍ତ ମାୟାକୁ ମହାବିଦ୍ୟାଦ୍ୱାରା ବିନାଶ କଲେ ॥୨୩॥ ସେ ଏକ ତୀକ୍ଷ୍ଣଧାର ଖଡ୍ଗଦ୍ୱାରା ଶମ୍ବରାସୁରର କିରୀଟକୁଣ୍ଡଳଭୂଷିତ, ତାମ୍ରବର୍ଣ୍ଣର ଶ୍ମଶ୍ରୁମଣ୍ଡିତ ମସ୍ତକକୁ ତା'ର ଦେହରୁ ଅଲଗା କରିଦେଲେ ॥୨୪॥ ଦେବତାମାନେ ସ୍ୱର୍ଗରୁ ପୁଷ୍ପବୃଷ୍ଟି କରି ତାଙ୍କୁ ସ୍ତୁତି କଲେ । ତା'ପରେ ଅମ୍ବରଚାରିଣୀ ପତ୍ନୀ ମାୟାବତୀ ଆକାଶମାର୍ଗରେ ତାଙ୍କୁ ନେଇ ଦ୍ୱାରକାରେ ପହଞ୍ଚାଇଦେଲେ ॥୨୫॥

ପରିକ୍ଷିତ, ବିଜୁଳି ସହିତ ମେଘ ଆସିଯିବା ପରି ନିଜ ପତ୍ନୀ ସହିତ ପ୍ରଦ୍ୟୁମ୍ନ ଆକାଶମାର୍ଗରୁ ଶତଶତ ଲଳନାସଙ୍କୁଳ ଦ୍ୱାରକାର ଶ୍ରେଷ୍ଠ ଅନ୍ତଃପୁରମଧ୍ୟରେ ପ୍ରବେଶ କଲେ ॥୨୬॥ ପ୍ରଦ୍ୟୁମ୍ନଙ୍କର ଶରୀର ଥିଲା ମେଘପରି ଶ୍ୟାମଳବର୍ଣ୍ଣ । ସେ ପୀତ ପଟ୍ଟବସ୍ତ୍ର ପରିଧାନ କରିଥିଲେ । ତାଙ୍କର ଭୁଜଦ୍ୱୟ ଆଜାନୁଲମ୍ବିତ, ନେତ୍ରପ୍ରାନ୍ତ ଈଷତ୍ ତାମ୍ରବର୍ଣ୍ଣ; କୁଞ୍ଚିତ କୃଷ୍ଣକେଶଦ୍ୱାରା ଶୋଭା ପାଉଥିବା ତାଙ୍କ ହସହସ ମୁଖମଣ୍ଡଳକୁ ଦେଖି ଅନ୍ତଃପୁରର ରମଣୀମାନେ ତାଙ୍କୁ କୃଷ୍ଣ ବୋଲି ଭାବି ଯେ ଯେଉଁଠି ପାଇଲେ ଲାଜରେ ଲୁଚିଗଲେ ॥୨୭-୨୮॥ ପୁଣି ଧୀରେ ଧୀରେ ସେହି ସ୍ତ୍ରୀମାନେ ଜାଣି ପାରିଲେ ଯେ କୃଷ୍ଣଙ୍କଠାରୁ ତାଙ୍କ ଚେହେରାରେ କିଛି ଫରକ ଜଣାପଡ଼ୁଛି । ତା'ପରେ ସେମାନେ ଆନନ୍ଦ ଓ ଆଶ୍ଚର୍ଯ୍ୟପୂର୍ବକ ସେହି ସୁନ୍ଦର ଦମ୍ପତୀଙ୍କ ପାଖକୁ ଆସିଗଲେ ॥୨୯॥ ପରିକ୍ଷିତ, ଏହି ସମୟରେ ମଧୁରଭାଷିଣୀ ଓ କମଳନୟନା ରୁକ୍ମିଣୀଦେବୀ ସେଠାରେ ଆସି ପହଞ୍ଚିଲେ । ଏହି ନବଦମ୍ପତୀଙ୍କୁ ଦେଖି ତାଙ୍କର ହଜିଲା ପୁତ୍ରର କଥା ମନେପଡ଼ିଗଲା । ସନ୍ତାନସ୍ନେହରେ ତାଙ୍କ ସ୍ତନରୁ କ୍ଷୀର ଝରିବାକୁ ଲାଗିଲା ॥୩୦॥ ସେ ମନେ ମନେ ଭାବିଲେ ଏହି କମଳନୟନ ଶ୍ରେଷ୍ଠ ପୁରୁଷଟି କିଏ ? କାହାର ପୁତ୍ର ? କେଉଁ ରମଣୀ ଯାକୁ ଗର୍ଭରେ ଧାରଣ କରିଥିଲା ଏବଂ ସେ ସାଙ୍ଗରେ ଆଣିଥିବା ଏହି ସ୍ତ୍ରୀଲୋକଟି କିଏ ? ॥୩୧॥ ମୋର ପୁଅକୁ କିଏ ସୂତିକାଗୃହରୁ ହରଣ କରିନେଲା ? ତା'ପରେ ତାର କୌଣସି ଖୋଜଖବର ମିଳିଲା ନାହିଁ । ଯଦି କୌଣସି ମତେ ସେ ବଞ୍ଚିଥାଏ, ତା'ହେଲେ ତା'ର ଏତିକି ବୟସ ହୋଇଥିବ ଏବଂ ସେ ଏହିପରି ସୁନ୍ଦର ଦେଖାଯାଉଥିବ ॥୩୨॥ ଏ ପୁଣି ଆକୃତି, ଅବୟବ, ଗତି, କଣ୍ଠସ୍ୱର,

ହାସ୍ୟ ଓ କଟାକ୍ଷରେ ଶାର୍ଙ୍ଗଧନ୍ୱା ଶ୍ରୀକୃଷ୍ଣଙ୍କ ସହିତ ମିଶିଯାଉଛି । ଏପରି ରୂପରେଖ ସେ କେଉଁଠାରୁ ପାଇଲା ? ॥୩୩॥ ଯେଉଁ ଶିଶୁକୁ ମୁଁ ଗର୍ଭରେ ଧାରଣ କରିଥିଲି ଏ ନିଶ୍ଚୟ ସେହି ଶିଶୁ ହୋଇଥିବ । କାରଣ ଯା ପ୍ରତି କାହିଁକି ମୋର ଅଧିକ ସ୍ନେହ ଜନ୍ମୁଛି ଏବଂ ମୋର ବାମବାହୁ କାହିଁକି ସ୍ପନ୍ଦିତ ହେଉଛି ? ॥୩୪॥ ଏହିପରି ରୁକ୍ମିଣୀ ବିଚାର କରୁ କରୁ ଉତ୍ତମଶ୍ଳୋକ ଭଗବାନ ଶ୍ରୀକୃଷ୍ଣ ଦେବକୀ ଓ ବସୁଦେବଙ୍କ ସହିତ ସେଠାରେ ଆସି ପହଞ୍ଚିଗଲେ । ଏ ସମସ୍ତ ରହସ୍ୟ ଜାଣି ମଧ୍ୟ ଭଗବାନ୍ ଜନାର୍ଦ୍ଦନ ତୂନି ହୋଇ ରହିଲେ । ସେହି ସମୟରେ ଦେବର୍ଷି ନାରଦ ଆସି ଶମ୍ବରାସୁର ଦ୍ୱାରା ପ୍ରଦ୍ୟୁମ୍ନଙ୍କର ହରଣ ଆଦି ସମସ୍ତ ବିଷୟ ବର୍ଣ୍ଣନାକଲେ ॥୩୫-୩୬॥ ତାହା ଶୁଣି କୃଷ୍ଣଙ୍କ ଅନ୍ତଃପୁରର ସ୍ତ୍ରୀମାନେ ଅତିଶୟ ଆଶ୍ଚର୍ଯ୍ୟ ହୋଇଗଲେ । ମୃତ ବ୍ୟକ୍ତି ଫେରିଆସିବା ପରି ବହୁଦିନରୁ ନିରୁଦ୍ଦିଷ୍ଟ ପୁତ୍ରକୁ ସେମାନେ ଅଭିନନ୍ଦନ କଲେ ॥୩୭॥ ଦେବକୀ, ବସୁଦେବ, କୃଷ୍ଣ, ବଳରାମ, ରୁକ୍ମିଣୀ ଓ ଅନ୍ୟ ସ୍ତ୍ରୀମାନେ ପ୍ରଦ୍ୟୁମ୍ନ ଓ ମାୟାବତୀଙ୍କୁ ଅତି ଆନନ୍ଦରେ ଆଲିଙ୍ଗନ କଲେ ॥୩୮॥ କୃଷ୍ଣଙ୍କର ହଜିଲା ପୁଅ ପ୍ରଦ୍ୟୁମ୍ନ ଫେରିଆସିବାର ଶୁଣି ଦ୍ୱାରକାବାସୀ କହିବାକୁ ଲାଗିଲେ, ଅହୋ ! ମୃତତୁଲ୍ୟ ପୁତ୍ର ସୌଭାଗ୍ୟକ୍ରମେ ଫେରିଆସିଛି ! ॥୩୯॥ ପିତା ଶ୍ରୀକୃଷ୍ଣଙ୍କ ସହିତ ପ୍ରଦ୍ୟୁମ୍ନଙ୍କର ରୂପ, ଗୁଣ ଏପରି ମିଳି ଯାଉଥିଲା ଯେ ତାଙ୍କ ମାତାମାନେ ଅର୍ଥାତ ଶ୍ରୀକୃଷ୍ଣଙ୍କର ଅନ୍ୟପତ୍ନୀମାନେ ତାଙ୍କୁ ଦେଖି କୃଷ୍ଣ ବୋଲି ଧରିନେଇଥିଲେ ଏବଂ ଏକାନ୍ତରେ ତାଙ୍କରି କଥା ଚିନ୍ତା କରୁଥିଲେ । କାରଣ କାମଦେବଙ୍କର ଅବତାର ପ୍ରଦ୍ୟୁମ୍ନ ଶ୍ରୀକୃଷ୍ଣଙ୍କର ଅବିକଳ ପ୍ରତିବିମ୍ବ ହୋଇଥିବାଯୋଗୁଁ ତାଙ୍କପ୍ରତି ଏପରି ଭାବ ଜନ୍ମିବାରେ କିଛି ଆଶ୍ଚର୍ଯ୍ୟ ହେବାର ନାହିଁ । ଅନ୍ୟ ସ୍ତ୍ରୀମାନଙ୍କର କଥା ବା କ'ଣ କହିବା ! ॥୪୦॥

## ଛପନ ଅଧ୍ୟାୟ

# ସ୍ୟମନ୍ତକମଣି, ଜାମ୍ବବତୀ ଓ ସତ୍ୟଭାମା

ଶ୍ରୀ ଶୁକଦେବ କହିଲେ, ପରିକ୍ଷିତ, ସତ୍ରାଜିତ କୃଷ୍ଣଙ୍କପ୍ରତି ଅପରାଧ କରି ସେହି ଅପରାଧମାର୍ଜନ ପାଇଁ ସ୍ୟମନ୍ତକମଣି ସହିତ ନିଜର କନ୍ୟା ସତ୍ୟଭାମାଙ୍କୁ କୃଷ୍ଣଙ୍କୁ ପ୍ରଦାନ କଲେ ॥୧॥ ପରିକ୍ଷିତ ପଚାରିଲେ, ବ୍ରହ୍ମନ୍, ସତ୍ରାଜିତ କୃଷ୍ଣଙ୍କ ପାଖରେ କି ଅପରାଧ କରିଥିଲେ ? ସେ କେଉଁଠାରୁ ସ୍ୟମନ୍ତକମଣି ପାଇଥିଲେ ? କେଉଁ କାରଣରୁ ସେ ଶ୍ରୀକୃଷ୍ଣଙ୍କ ହସ୍ତରେ ତାଙ୍କର କନ୍ୟା ପ୍ରଦାନ କଲେ ? ॥୨॥

ଶ୍ରୀ ଶୁକଦେବ କହିଲେ, ସତ୍ରାଜିତ୍ ଥିଲେ ସୂର୍ଯ୍ୟଭକ୍ତ । ସୂର୍ଯ୍ୟଦେବ ତାଙ୍କ ଉପରେ ସନ୍ତୁଷ୍ଟ ହୋଇ ତାଙ୍କୁ ନିଜର ସଖା ପରି ଦେଖୁଥିଲେ ଏବଂ ତାଙ୍କୁ ସ୍ୟମନ୍ତକମଣି ଦାନ କରିଥିଲେ ॥୩॥ ମହାରାଜ, ସତ୍ରାଜିତ୍ ସେହି ମଣିକୁ କଣ୍ଠରେ ଧାରଣ କରି ତେଜରେ ସୂର୍ଯ୍ୟପରି ଦୀପ୍ତିମାନ୍ ଦେଖାଯାଉଥିଲେ । ସେ ଦ୍ୱାରକାରେ ପ୍ରବେଶ କରନ୍ତେ ତାଙ୍କୁ ଦ୍ୱାରକାବାସୀ ସତ୍ରାଜିତ ବୋଲି ଠଉରେଇ ପାରିଲେ ନାହିଁ ॥୪॥ ଲୋକେ ତାଙ୍କୁ ଦୂରରୁ ଦେଖି ତାଙ୍କ ତେଜରେ ଝଲକା ହୋଇଗଲେ । ଶ୍ରୀକୃଷ୍ଣ ସେତେବେଳେ ପଶାଖେଳରେ ବସିଥିଲେ । ସୂର୍ଯ୍ୟ ଆସୁଛନ୍ତି ବୋଲି ଭାବି ସେମାନେ କୃଷ୍ଣଙ୍କ ପାଖରେ ଯାଇ କହିଲେ, ହେ ନାରାୟଣ, ଶଙ୍ଖଚକ୍ରଗଦାଧର, ଦାମୋଦର, କମଳଲୋଚନ, ଗୋବିନ୍ଦ, ହେ ଯଦୁନନ୍ଦନ, ହେ ଜଗତ୍‌ପତି, ଆପଣଙ୍କୁ ଆମେ ନମସ୍କାର କରୁଛୁ । ଅଗ୍ନିଗର୍ଭ ସୂର୍ଯ୍ୟ ତାଙ୍କ ପ୍ରଖର କିରଣଜାଳରେ ଲୋକମାନଙ୍କର ଦୃଷ୍ଟିଶକ୍ତି ହରଣ କରି ଆପଣଙ୍କୁ ଦେଖିବାକୁ ଆସୁଛନ୍ତି ॥୫-୭॥ ପ୍ରଭୁ, ଶ୍ରେଷ୍ଠ ଦେବତାମାନେ ମଧ୍ୟ ତିନି ଲୋକରେ ଆପଣଙ୍କୁ ପାଇବାପାଇଁ ବାଟ ଖୋଜୁଥା'ନ୍ତି, କିନ୍ତୁ ପାଆନ୍ତି ନାହିଁ । ଆପଣ ଯଦୁକୁଳରେ ଲୁଚି ରହିଥିବା ଜାଣି ଆଜି ସୂର୍ଯ୍ୟଦେବ ଆପଣଙ୍କୁ ଦର୍ଶନ କରିବାକୁ ଆସୁଛନ୍ତି ॥୮॥

ଶ୍ରୀ ଶୁକଦେବ କହିଲେ, ମହାରାଜ, ଏହି ଅଜ୍ଞମାନଙ୍କର କଥା ଶୁଣି ଶ୍ରୀକୃଷ୍ଣ ହସିବାକୁ ଲାଗିଲେ । କହିଲେ, ସେ ସୂର୍ଯ୍ୟଦେବ ନୁହନ୍ତି, ସେ ହେଉଛି ସତ୍ରାଜିତ୍ । ମଣି ପିନ୍ଧିଥିବାଯୋଗୁଁ ସେପରି ଦୀପ୍ତିମନ୍ତ ଦେଖାଯାଉଛି ॥୯॥ ମଣିଯୋଗୁଁ ସତ୍ରାଜିତ୍‌ଙ୍କର ଗୃହରେ ମାଙ୍ଗଳିକ ଅନୁଷ୍ଠାନ ସବୁ କରାଯାଉଥିଲା । ନିଜର ସମୃଦ୍ଧ ଭବନରେ ପ୍ରବେଶ କରି ସତ୍ରାଜିତ୍ ବ୍ରାହ୍ମଣମାନଙ୍କ ଦ୍ୱାରା ନିର୍ଦ୍ଦିଷ୍ଟ ଦେବ ମନ୍ଦିରରେ ସେହି ମଣିଟିକୁ ସ୍ଥାପନକଲେ ॥୧୦॥ ପରିକ୍ଷିତ, ସେହି ମଣି ପ୍ରତିଦିନ ଆଠଭାର ସୁନା ସୃଷ୍ଟି କରୁଥିଲା । ଯେଉଁଠାରେ ସେ ମଣିର ପୂଜା ହେଉଥିଲା, ସେଠାରେ ଦୁର୍ଭିକ୍ଷ, ମହାମାରୀ, ବିଭିନ୍ନ ଉପଦ୍ରବ, ସର୍ପଭୟ, ମନଃପୀଡ଼ା ଓ ବ୍ୟାଧି ଆଦି କୌଣସି ଅଶୁଭ ଦେଖାଯାଉ ନ ଥିଲା । କୌଣସି ମାୟାବୀ ସେଠାରେ ରହିପାରୁ ନ ଥିଲେ ॥୧୧॥ ଦିନେ ଭଗବାନ୍ ଶ୍ରୀକୃଷ୍ଣ ସତ୍ରାଜିତ୍‌ଙ୍କୁ ଡାକି ରାଜା ଉଗ୍ରସେନଙ୍କୁ ସେଇ ମଣିଟିକୁ ଦେବାପାଇଁ କହିଲେ । କିନ୍ତୁ ଅର୍ଥଲୋଲୁପ ସତ୍ରାଜିତ୍ ଭଗବାନଙ୍କ ଆଦେଶଲଙ୍ଘନର ପରିଣାମ କଣ ତାହା ବିଚାର ନ କରି ମଣି ଦେବାପାଇଁ ମନା କରିଦେଲେ ॥୧୨॥ ଦିନେ ସତ୍ରାଜିତ୍‌ଙ୍କର ଭାଇ ପ୍ରସେନ ସେହି ଦୀପ୍ତିମନ୍ତ ମଣିଟିକୁ କଣ୍ଠରେ ଧାରଣ କରି ମୃଗୟାପାଇଁ ବନକୁ ଯାଇଥିଲା । ସେ ଇସମୟରେ ଏକ ସିଂହ ଆସି ଅଶ୍ୱସହିତ ପ୍ରସେନକୁ ମାରି ସେହି ମଣିଟିକୁ ଛଡ଼ାଇନେଲା । ସିଂହ ମଣିକୁ ଧରି ଗୁମ୍ଫାରେ ପ୍ରବେଶ କଲାବେଳେ ସେହି ମଣିପାଇଁ ଇଚ୍ଛୁକ ଋକ୍ଷରାଜ ଜାମ୍ବବାନ୍ ତାକୁ ବଧ କଲେ ॥୧୩-୧୪॥ ସେ ସେହି ମଣିଟିକୁ ନିଜ ଗୁମ୍ଫାକୁ ନେଇ ନିଜ ପୁଅକୁ ଖେଳିବାପାଇଁ ଦେଇଦେଲେ । ଭାଇ ପ୍ରସେନକୁ ନ ଫେରିବାର ଦେଖି ସତ୍ରାଜିତ୍ ପରିତାପ କରି କହିଲେ, ମୋର ଭାଇ ବେକରେ ମଣି ପିନ୍ଧି ବନକୁ ଯାଇଥିଲା । ସମ୍ଭବତଃ କୃଷ୍ଣ ତାକୁ ମାରି ଦେଇଛନ୍ତି । ତାହା ଶୁଣି ଲୋକମାନେ ନିଜ ନିଜ ମଧ୍ୟରେ ଫୁସ୍‌ଫାସ୍ ହେବାକୁ ଲାଗିଲେ ॥୧୫-୧୬॥

ଭଗବାନ୍ ଶ୍ରୀକୃଷ୍ଣ ନିଜ ଉପରେ ମିଥ୍ୟା ଅପବାଦ ବୋଲାହେଉଥିବାର ଶୁଣି, ତାହା ମାର୍ଜନକରିବାପାଇଁ ପ୍ରସେନକୁ ଖୋଜିବାକୁ ବାହାରିଲେ । ସେ କେତେକ ନଗରବାସୀଙ୍କୁ ଧରି ପ୍ରସେନ ଯେଉଁ ବାଟରେ ଯାଇଥିଲା ସେହି ବାଟକୁ ଅନୁସରଣ କରି ବନମଧ୍ୟରେ ପଶି ଦେଖିଲେ ଯେ ପ୍ରସେନ ତା'ର ଅଶ୍ୱ ସହିତ ସିଂହଦ୍ୱାରା ନିହତ ହୋଇଛି ଏବଂ ସିଂହ ମଧ୍ୟ ପର୍ବତଉପରେ ଭାଲୁଦ୍ୱାରା ନିହତ ହୋଇଥିବାର ଲୋକେ ଦେଖିଲେ ॥୧୭-୧୮॥ ସେ ସେଠାରେ ଭଲ୍ଲୁକରାଜର ଏକ ଅନ୍ଧକାରାଚ୍ଛନ୍ନ ଭୟଙ୍କର ଗୁହା ଥିବାର ଦେଖିପାରିଲେ । ସେ ନଗରବାସୀଙ୍କୁ ବାହାରେ ଅପେକ୍ଷା କରିବାକୁ କହି ଏକାକୀ ସେହି ଭୟାନକ ଗୁହାମଧ୍ୟରେ ପ୍ରବେଶ କଲେ ॥୧୯॥ ସେହି ଶ୍ରେଷ୍ଠ ସ୍ୟମନ୍ତକମଣିକୁ ନେଇ ଏକ ବାଳକ ଖେଳନା କରି ଖେଳୁଥିବାର ଦେଖି ତାକୁ ହରଣ କରିବାପାଇଁ ଶ୍ରୀକୃଷ୍ଣ ସେହି ବାଳକ ନିକଟରେ ଉପସ୍ଥିତ ହେଲେ । ବାଳକର ଧାଈ ଏକ ଅଦୃଷ୍ଟପୂର୍ବ ପୁରୁଷଙ୍କୁ ଦେଖି ଭୟରେ ଚିତ୍କାର କରିବାକୁ ଲାଗିଲା । ତାହା ଶୁଣି ବଳୀୟାନ୍‌ମାନଙ୍କ ମଧ୍ୟରେ ଶ୍ରେଷ୍ଠ ଜାମ୍ବବାନ୍ କ୍ରୋଧରେ ଧାଇଁ ଆସିଲେ ॥୨୦-୨୧॥ ଶ୍ରୀକୃଷ୍ଣଙ୍କର ପ୍ରଭାବ ନ ଜାଣି କ୍ରୁଦ୍ଧ ଜାମ୍ବବାନ୍ ତାଙ୍କୁ ଜଣେ ସାଧାରଣ ମନୁଷ୍ୟ ବୋଲି ବିଚାର କରି ତାଙ୍କ ସହିତ ଲଢ଼ିବାପାଇଁ ବାହାରିପଡ଼ିଲେ । ଯାହାଙ୍କ ସହିତ ସେ ଲଢ଼ିବାକୁ ଯାଉଛନ୍ତି ସେ ତାଙ୍କରି ପ୍ରଭୁ ଶ୍ରୀକୃଷ୍ଣ ବୋଲି ସେ ଜାଣି ନ ଥିଲେ ॥୨୨॥

ମାଂସଖଣ୍ଡପାଇଁ ଦୁଇଟି ଶ୍ୟେନପକ୍ଷୀ ଲଢ଼ିବାପରି ଜୟଲାଭ ଇଚ୍ଛାରେ ବୃକ୍ଷ ଓ ଶିଳାଖଣ୍ଡକୁ ଆୟୁଧ କରି ନିଜର ବାହୁଦ୍ୱାରା ଦୁହେଁ ତୁମୁଳ ଦ୍ୱନ୍ଦ୍ୱଯୁଦ୍ଧରେ ପ୍ରବୃତ୍ତ ହେଲେ ॥୨୩॥ ବଜ୍ରପରି କଠୋର ମୁଷ୍ଟିଦ୍ୱାରା ପରସ୍ପର ଆଘାତ କରି ଦୁହେଁ ଅଠେଇଶ ଦିନ ଅଠର ରାତି ଅବିଶ୍ରାନ୍ତଭାବରେ ଯୁଦ୍ଧ କଲେ । ଶେଷରେ ଭଗବାନ୍ ଶ୍ରୀକୃଷ୍ଣଙ୍କ ମୁଷ୍ଟିର ଆଘାତରେ ଜାମ୍ବବାନ୍ ତାଙ୍କ ଅଙ୍ଗ ପ୍ରତ୍ୟଙ୍ଗ ଓ ଆଣ୍ଠୁଗଣ୍ଠିରେ ଘୋର ପୀଡ଼ା ଅନୁଭବ କଲେ ଏବଂ ତାଙ୍କର ବଳ କ୍ଷୀଣ ହେବାକୁ ଲାଗିଲା । ସେ ଘର୍ମାକ୍ତ ଦେହରେ ଆଶ୍ଚର୍ଯ୍ୟ ହୋଇ ଶ୍ରୀକୃଷ୍ଣଙ୍କୁ କହିଲେ-- ॥୨୪-୨୫॥ ବର୍ତ୍ତମାନ ମୁଁ ଜାଣୁଛି ଆପଣ ସମସ୍ତପ୍ରାଣୀଙ୍କର ପ୍ରାଣ, ଓଜ, ବୀର୍ଯ୍ୟ ଓ ବଳସ୍ୱରୂପ ସେହି ପୁରାଣପୁରୁଷ ଭଗବାନ୍ ବିଷ୍ଣୁ ; ସର୍ବନିୟନ୍ତା ଓ ସର୍ବଶକ୍ତିମାନ୍ ॥୨୬॥ ଆପଣ ବିଶ୍ୱର ସ୍ରଷ୍ଟା ବ୍ରହ୍ମା ଆଦିଙ୍କୁ

ସୃଷ୍ଟି କରିଛନ୍ତି । ସମସ୍ତ ସୃଷ୍ଟିଯୋଗ୍ୟ ପଦାର୍ଥର ଏବଂ ମହତ୍ତତ୍ତ୍ୱାଦି ଯେଉଁ କାର୍ଯ୍ୟମାନଙ୍କଦ୍ୱାରା ଏହି ବିଶ୍ୱର ସୃଷ୍ଟି ହୋଇଛି, ଆପଣ ହିଁ ତା'ର କାରଣ ବା ସତ୍ତାସ୍ୱରୂପ । ଆପଣ ସମସ୍ତ କାଳର କାଳସ୍ୱରୂପ । ସର୍ବାତ୍ମା, ସର୍ବାନ୍ତର୍ଯାମୀ ॥୨୭॥ ରାମାବତାରରେ ଆପଣ ଟିକିଏ କ୍ରୋଧରେ କଟାକ୍ଷପାତ କରିବା ମାତ୍ରେ ମଗର-କୁମ୍ଭୀର-ତିମି-ତିମିଙ୍ଗିଳପୂର୍ଣ୍ଣ ବିକ୍ଷୁବ୍ଧ ସମୁଦ୍ର ଆପଣଙ୍କୁ ବାଟ ଛାଡ଼ିଦେଲା । ତଥାପି ଆପଣ ସେହି ସମୁଦ୍ର ଉପରେ ସେତୁ ନିର୍ମାଣ କରି ନିଜର ଯଶ ବିସ୍ତାର କରିଥିଲେ ଓ ଲଙ୍କାପୁରୀକୁ ଜାଳି ଦେଇଥିଲେ । ଆପଣଙ୍କର ବାଣାଘାତରେ ରାକ୍ଷସମାନଙ୍କର ଛିନ୍ନ ମସ୍ତକ ସବୁ ଭୂମିରେ ପଡ଼ି ଗଡ଼ିଥିଲା । (ଆପଣ ମୋର ସେହି ପ୍ରଭୁ ବୋଲି ବର୍ତ୍ତମାନ ଜାଣିଲି) ॥୨୮॥ ମହାରାଜ ପରିକ୍ଷିତ, ଏହିପରି ତତ୍ତ୍ୱଜ୍ଞାନ ପାଇଥିବା ଭକ୍ତ ଜାମ୍ବବାନ୍‌ଙ୍କୁ ଦେବକୀନନ୍ଦନ ଭଗବାନ୍ ଶ୍ରୀକୃଷ୍ଣ ତାଙ୍କର ମଙ୍ଗଳମୟ କରସ୍ପର୍ଶରେ ଆପ୍ୟାୟିତ କରି କୃପାପୂର୍ବକ ମେଘଗମ୍ଭୀର ସ୍ୱରରେ କହିଲେ, ସ୍ୟମନ୍ତକମଣିପାଇଁ ମୁଁ ଏହି ଗୁହାକୁ ଆସିଥିଲି । ସେହି ମଣିନେଇ ମୋ ନାମରେ ହୋଇଥିବା ମିଥ୍ୟା ଅପବାଦକୁ ଦୂର କରିବା ହେଲା ମୋର ଉଦ୍ଦେଶ୍ୟ ॥୨୯-୩୧॥

ଶ୍ରୀକୃଷ୍ଣଙ୍କ କଥା ଶୁଣି ଜାମ୍ବବାନ୍ ତାଙ୍କ ସମ୍ମାନାର୍ଥ ସ୍ୟମନ୍ତକମଣି ତ ଦାନ କଲେ, ତାହା ସହିତ ନିଜର କନ୍ୟା ଜାମ୍ବବତୀଙ୍କୁ ମଧ୍ୟ ପ୍ରଦାନ କଲେ ॥୩୨॥ କୃଷ୍ଣ ଗୁହାମଧ୍ୟରେ ପ୍ରବେଶ କରି ନ ଫେରିବାରୁ, ଲୋକମାନେ ବାରଦିନ ଧରି ଅପେକ୍ଷା କରି ନିଜ ନିଜର ଘରକୁ ଫେରିଗଲେ ॥୩୩॥ କୃଷ୍ଣ ଗୁହାମଧ୍ୟରୁ ବାହାରି ନାହାନ୍ତି ବୋଲି ଖବର ପାଇ ଦେବକୀ, ରୁକ୍ମିଣୀ, ବସୁଦେବ, ଅନ୍ୟ ଜ୍ଞାତି ଓ ସ୍ୱଜନମାନେ ଶୋକ କରିବାକୁ ଲାଗିଲେ ॥୩୪॥ ଦ୍ୱାରକାବାସୀ ଦୁଃଖିତ ହୋଇ ସତ୍ରାଜିତ୍‌ଙ୍କୁ ଅଭିଶାପ ଦେବାକୁ ଲାଗିଲେ । କୃଷ୍ଣଙ୍କୁ ଫେରିପାଇବା ପାଇଁ ସେମାନେ ଚନ୍ଦ୍ରଭାଗା ନାମରେ ଥିବା ଦେବୀ ଦୁର୍ଗାଙ୍କର ଆରାଧନା କଲେ ॥୩୫॥ ସେମାନେ ଦେବୀମନ୍ଦିରରୁ ଦେବୀଙ୍କର ଆଶୀର୍ବାଦ ପାଇ ଫେରୁଛନ୍ତି, ଏହି ସମୟରେ ସଫଳମନୋରଥ ହୋଇ ଶ୍ରୀକୃଷ୍ଣ ପତ୍ନୀ ଜାମ୍ବବତୀଙ୍କ ସହିତ ସେଠାରେ ଉପସ୍ଥିତ ହୋଇ ସମସ୍ତଙ୍କୁ ଆନନ୍ଦିତ କଲେ ॥୩୬॥ ଶ୍ରୀକୃଷ୍ଣ ଗ୍ରୀବାରେ ସ୍ୟମନ୍ତକମଣି ଥାଇ ପତ୍ନୀଙ୍କ ସହିତ ଫେରି ଆସିବାରୁ ଦ୍ୱାରକାବାସୀ ମୃତବ୍ୟକ୍ତି ଫେରିଆସିବାପରି ଅନୁଭବକରି ନାନା ଆନନ୍ଦ ଉତ୍ସବରେ ଲାଗିଲେ ॥୩୭॥ ଭଗବାନ୍ ଶ୍ରୀକୃଷ୍ଣ ସତ୍ରାଜିତ୍‌ଙ୍କୁ ସଭାକୁ ଡକାଇ ସ୍ୟମନ୍ତକମଣି ମିଳିବାର ସମସ୍ତ କଥା ବର୍ଣ୍ଣନା କଲେ ଓ ସତ୍ରାଜିତ୍‌ଙ୍କୁ ତାଙ୍କର ମଣିଟିକୁ ଫେରାଇଦେଲେ ॥୩୮॥ ସତ୍ରାଜିତ୍ ଅତିଶୟ ଲଜ୍ଜିତ ହୋଇ ମୁହଁ ପୋତି ରହିଲେ । ତାଙ୍କ ମୁହଁରୁ କଥା ବାହାରିଲା ନାହିଁ । ନିଜର ଅପରାଧପାଇଁ ଅନୁତାପ କରି ମଣିଟିକୁ ଧରି ସେ ନିଜ ଘରକୁ ଚାଲିଗଲେ ॥୩୯॥ ବଳଶାଳୀ ଶ୍ରୀକୃଷ୍ଣଙ୍କଠାରେ ଯେଉଁ ଅପରାଧ କରିଛନ୍ତି, ତାହା ଚିନ୍ତା କରି ସତ୍ରାଜିତ୍ ବ୍ୟାକୁଳ ହେବାକୁ ଲାଗିଲେ । 'କ'ଣ ହେଲେ ମୋର ଅପରାଧ ଦୂର ହେବ, କୃଷ୍ଣ ମୋଠାରେ ପ୍ରସନ୍ନ ହେବେ, ମୋର ମଙ୍ଗଳ ହେବ ଏବଂ ଲୋକମାନେ ମୋତେ ନୀଚ, ମୂଢ଼ ଓ ଧନଲୋଭୀ କହି ଗାଳି ନ ଦେବେ --ଏହିପରି ଭାବି ଭାବି ସେ ସ୍ଥିର କଲେ ଯେ ନିଜର କନ୍ୟାରତ୍ନ ସତ୍ୟଭାମାଙ୍କ ସହିତ ସ୍ୟମନ୍ତକମଣିକୁ କୃଷ୍ଣଙ୍କ ହସ୍ତରେ ଅର୍ପଣ କରିବେ । ଏହା ହିଁ ଏକମାତ୍ର ଉପାୟ । ଅନ୍ୟ କୌଣସି ବାଟରେ ତାଙ୍କ ଅପରାଧର ମାର୍ଜନା ହେବ ନାହିଁ ॥୪୦-୪୨॥ ନିଜ ବିବେକବୁଦ୍ଧିରେ ଏହିପରି ସ୍ଥିର କରି ନିଜ ଉଦ୍ୟମରେ ନିଜ କନ୍ୟା ମଙ୍ଗଳମୟୀ ସତ୍ୟଭାମାଙ୍କୁ ଓ ସ୍ୟମନ୍ତକମଣିକୁ ସେ କୃଷ୍ଣଙ୍କୁ ସମର୍ପଣ କଲେ ॥୪୩॥

ହେ ରାଜା ! ସତ୍ୟଭାମା ରୂପଲାବଣ୍ୟ, ସ୍ୱଭାବ ଓ ଉଦାରତା ଆଦି ନାନାଗୁଣରେ ଅଲଙ୍କୃତା ଥିଲେ ଏବଂ ବହୁ ବ୍ୟକ୍ତି ତାଙ୍କୁ ବିବାହ କରିବାପାଇଁ ପ୍ରାର୍ଥୀ ଥିଲେ । ଭଗବାନ ଶ୍ରୀକୃଷ୍ଣ ଶାସ୍ତ୍ରବିଧି ଅନୁସାରେ ତାଙ୍କୁ ବିବାହ କରି ସତ୍ରାଜିତ୍‌ଙ୍କୁ କହିଲେ, 'ମୁଁ ଏ ମଣିକୁ ନେବି ନାହିଁ, ଆପଣ ସୂର୍ଯ୍ୟଙ୍କର ଭକ୍ତ । ଆପଣଙ୍କ ପାଖରେ ଏ ମଣିଟି ଥାଉ । ଆମେ ଆପଣଙ୍କର ହୋଇଥିବାଯୋଗୁଁ ଏହାର ସୁଫଳ ମଧ୍ୟ ଆମେ ଭୋଗ କରିବୁ' ॥୪୪-୪୫॥

## ସତାବନ ଅଧ୍ୟାୟ

# ସ୍ୟମନ୍ତକ, ଶତଧନ୍ୱା, ଅକ୍ରୂର

ଶ୍ରୀ ଶୁକଦେବ କହିଲେ, ପରିକ୍ଷିତ, ଜତୁଗୃହ ଦାହବେଳେ ସୁଡ଼ଙ୍ଗ ଦ୍ୱାରରେ କୁନ୍ତୀଙ୍କ ସହିତ ପାଣ୍ଡବମାନେ ବାହାରିଯାଇଥିବା କଥା ଜାଣି ମଧ୍ୟ ଶ୍ରୀକୃଷ୍ଣ ଶୁଣିଲେ ଯେ, ମାତା କୁନ୍ତୀଙ୍କ ସହିତ ପାଣ୍ଡବମାନେ ଜତୁଗୃହ ସହିତ ଜଳି ଭସ୍ମ ହୋଇଯାଇଛନ୍ତି । ତାପରେ ସେ କୁଳପରମ୍ପରା ଅନୁଯାୟୀ ବଳରାମଙ୍କ ସହିତ ହସ୍ତିନାପୁରକୁ ଯାତ୍ରା କଲେ ॥୧॥ ଭୀଷ୍ମ, କୃପ, ବିଦୁର, ଗାନ୍ଧାରୀ ଓ ଦ୍ରୋଣଙ୍କ ପାଖକୁ ଯାଇ ଶ୍ରୀକୃଷ୍ଣ ସେମାନଙ୍କୁ ସମବେଦନା ଜ୍ଞାପନ କରି କହିଲେ, ହାୟ, ଏତେବଡ଼ ଦୁଃଖପୂର୍ଣ୍ଣ ଘଟଣା ଘଟିଗଲା ! ॥୨॥ ପରିକ୍ଷିତ, କୃଷ୍ଣ ଚାଲିଯିବାର ଅବସର ପାଇ ଅକ୍ରୂର ଓ କୃତବର୍ମା ଶତଧନ୍ୱାଙ୍କୁ କହିଲେ, ସତ୍ରାଜିତ୍‌ଙ୍କଠାରୁ ତୁମେ କାହିଁକି ମଣି ହରଣ କଲ ନାହିଁ ? ॥୩॥ ଯେ ଆମମାନଙ୍କୁ ପ୍ରତିଶ୍ରୁତି ଦେଇ ଶ୍ରୀକୃଷ୍ଣଙ୍କୁ କନ୍ୟାରତ୍ନ ଦାନ କଲା ଏବଂ ଆମକୁ ଅବଜ୍ଞା କଲା, ସେହି ସତ୍ରାଜିତ୍ କାହିଁକି ନିଜ ଭ୍ରାତାର ଅନୁଗମନ କରିବ ନାହିଁ ? ॥୪॥ ଏହିପରି ଅକ୍ରୂର ଓ କୃତବର୍ମାଙ୍କଦ୍ୱାରା ନିଜର ବୁଦ୍ଧି ଭ୍ରଷ୍ଟ ହେବାରୁ ଅଳ୍ପାୟୁ, ମନ୍ଦବୁଦ୍ଧି ଓ ପାପାତ୍ମା ଶତଧନ୍ୱା ମଣିଲୋଭରେ ନିଦ୍ରିତ ସତ୍ରାଜିତ୍‌ଙ୍କୁ ହତ୍ୟା କଲା ॥୫॥ ଅନାଥା ସ୍ତ୍ରୀମାନେ ଆର୍ତ୍ତନାଦ କରି ବିଳାପ କରିବାକୁ ଲାଗିଲେ । କିନ୍ତୁ ଶତଧନ୍ୱା କଂସେଇ ଯେପରି ପଶୁକୁ ହତ୍ୟା କରେ, ସେହିପରି ସତ୍ରାଜିତ୍‌ଙ୍କୁ ହତ୍ୟା କରି ସ୍ୟମନ୍ତକମଣି ନେଇ ପଳାଇଗଲା ॥୬॥

ନିଜର ପିତାଙ୍କୁ ନିହତ ହେବାର ଦେଖି ସତ୍ୟଭାମା ଶୋକାତୁରା ହୋଇପଡ଼ିଲେ । 'ହାୟ ପିତା, ହାୟ ପିତା, ମୁଁ ତ ମରିଗଲି' ବୋଲି କହି କହି ସେ ବିଳାପ କରିବାକୁ ଲାଗିଲେ ଓ ମଝିରେ ମଝିରେ ମୂର୍ଚ୍ଛା ହୋଇପଡୁଥିଲେ ॥୭॥ ସେ ମୃତ ପିତାଙ୍କର ଶବକୁ ଏକ ତୈଳଭାଣ୍ଡରେ ରଖି ହସ୍ତିନାକୁ ଯାଇ କୃଷ୍ଣଙ୍କୁ ପିତୃବଧର ସମସ୍ତ ବୃତ୍ତାନ୍ତ ଜଣାଇଲେ । କୃଷ୍ଣ କିନ୍ତୁ ତାହା ପୂର୍ବରୁ ଜାଣି ପାରିଥିଲେ ॥୮॥ ପରିକ୍ଷିତ, ତାହା ଶୁଣି କୃଷ୍ଣ ଓ ବଳରାମ ଈଶ୍ୱର ହୋଇ ମଧ୍ୟ 'ଆହା, କେତେ ବଡ଼ ଦୁଃଖ ଘଟିଗଲା' ବୋଲି କହି ସାଧାରଣ ଲୋକଙ୍କପରି ସାଶ୍ରୁ ନୟନରେ ବିଳାପ କରିବାକୁଲାଗିଲେ ॥୯॥ ଭଗବାନ୍ ଶ୍ରୀକୃଷ୍ଣ ଭାର୍ଯ୍ୟା ଓ ଅଗ୍ରଜଙ୍କୁ ସାଙ୍ଗରେ ଧରି ଦ୍ୱାରକାକୁ ଫେରିଆସିଲେ ଓ ଶତଧନ୍ୱାକୁ ମାରି ତା'ଠାରୁ ମଣି ହରଣ କରିବାପାଇଁ ଉଦ୍ୟମ କଲେ ॥୧୦॥ କୃଷ୍ଣଙ୍କର ଉଦ୍ୟମ ଜାଣିପାରି ଶତଧନ୍ୱା ପ୍ରାଣଭୟରେ କୃତବର୍ମାଙ୍କୁ ସାହାଯ୍ୟ ମାଗିଲା । କୃତବର୍ମା କହିଲେ, କୃଷ୍ଣ ଓ ବଳରାମ ସାକ୍ଷାତ୍ ଈଶ୍ୱର । ମୁଁ ତାଙ୍କୁ ବିରୋଧ କରିପାରିବି ନାହିଁ । ସେ ଦୁହିଁଙ୍କ ଶତ୍ରୁତା ଆଚରଣ କଲେ କେଉଁ ବ୍ୟକ୍ତିର ମଙ୍ଗଳ ହେବ ? ॥୧୧-୧୨॥ ତାଙ୍କ ପ୍ରତି ଦ୍ୱେଷ କରି କଂସର ଶିରୀ ତୁଟିଗଲା ଏବଂ ନିଜର ଅନୁଚରମାନଙ୍କ ସହିତ ସେ ନିହତ ହେଲା । ଜରାସନ୍ଧ ସତର ଥର ତାଙ୍କ ସହିତ ଯୁଦ୍ଧ କରି ପ୍ରତ୍ୟେକ ଥର ନିଜର ଯାନବାହନ ହରାଇ ପଳାଇଯାଉଥିଲା ॥୧୩॥ କୃତବର୍ମାଙ୍କଦ୍ୱାରା ଏହିପରି ପ୍ରତ୍ୟାଖ୍ୟାତ ହୋଇ ସେ ଅକ୍ରୂରଙ୍କ ପାଖକୁ ଯାଇ ସାହାଯ୍ୟ ମାଗିଲା । ଅକ୍ରୂର କହିଲେ, କେଉଁ ବିଜ୍ଞ ବ୍ୟକ୍ତି ସାକ୍ଷାତ୍ ଈଶ୍ୱର କୃଷ୍ଣ ଓ ବଳରାମଙ୍କର ବଳ ଜାଣି ତାଙ୍କୁ ବିରୋଧ କରିବ ? ॥୧୪॥ ସେ ନିଜର ଲୀଳାରେ ଏହି ବିଶ୍ୱକୁ ସୃଷ୍ଟି କରନ୍ତି, ପାଳନ କରନ୍ତି ଓ ସଂହାର କରନ୍ତି, ଏବଂ କେତେବେଳେ ସେ କ'ଣ କରନ୍ତି, ତାହା ତାଙ୍କ ମାୟାରେ ମୋହିତ ବ୍ରହ୍ମାଦି ବିଶ୍ୱସ୍ରଷ୍ଟାମାନେ ବ୍ରହ୍ମା ମଧ୍ୟ ଜାଣିପାରନ୍ତି ନାହିଁ ॥୧୫॥ ଛୋଟ ଛୋଟ ପିଲା ହାତରେ ବର୍ଷା ଫୁଟିଥିବା ଛତୁକୁ ଉପାଡ଼ି ଧରିବାପରି ଯେ ସାତ ବର୍ଷ ବୟସରେ ଗୋବର୍ଦ୍ଧନ ପର୍ବତକୁ ଉପାଡ଼ି ଦେଇ ଗୋଟାଏ ହାତରେ ଧାରଣ କରିଥିଲେ, ସେହି ଅଦ୍ଭୁତକର୍ମା ଭଗବାନ୍ କୃଷ୍ଣଙ୍କୁ ମୁଁ ନମସ୍କାର କରୁଛି । ସେହି ଆଦିପୁରୁଷ ଅନ୍ତର୍ଯାମୀ ଅନନ୍ତ ପରମାତ୍ମାଙ୍କୁ ମୁଁ ପ୍ରଣାମ କରୁଛି । ଏହିପରି ପ୍ରତ୍ୟାଖାତ ହୋଇ ଶତଧନ୍ୱା ସ୍ୟମନ୍ତକମଣିକୁ ସେଇଠି ଅକ୍ରୂରଙ୍କ ପାଖରେ ରଖିଦେଇ ଅଶ୍ୱାରୋହଣପୂର୍ବକ ଶହେ

ଯୋଜନ ଦୂରକୁ ପଳାୟନ କଲା ॥୧୬-୧୮॥ ପରିକ୍ଷିତ, ଶ୍ରୀକୃଷ୍ଣ ଓ ବଳରାମ ଗରୁଡ଼ଧ୍ୱଜ ରଥରେ ଆରୋହଣ କଲେ ଓ ଅତିଶୟ ବେଗଗାମୀ ଅଶ୍ୱମାନଙ୍କୁ ଯୋଚି ଶ୍ୱଶୁରଙ୍କ ହତ୍ୟାକାରୀ ଶତଧନ୍ୱାର ଅନୁଧାବନ କଲେ ॥୧୯॥ ଇତିମଧ୍ୟରେ ପଳାଇ ଯାଉଥିବାବେଳେ ମିଥିଳାର ଉପବନରେ ଶତଧନ୍ୱାର ଘୋଡ଼ାଟା ପଡ଼ିଗଲା । ସେ ତାକୁ ଛାଡ଼ିଦେଇ କୃଷ୍ଣଙ୍କ ଭୟରେ ଖାଲି ପାଦରେ ଦଉଡ଼ିଲା । କୃଷ୍ଣ ମଧ୍ୟ କ୍ରୋଧରେ ତାକୁ ଗୋଡ଼ାଇଲେ ॥୨୦॥ ଶତଧନ୍ୱା ପଦବ୍ରଜରେ ଦଉଡ଼ି ପଳାଉଥିବାରୁ କୃଷ୍ଣ ମଧ୍ୟ ପଦବ୍ରଜରେ ତାର ଅନୁଧାବନ କଲେ ଏବଂ ତୀକ୍ଷ୍ଣଧାର ଚକ୍ରରେ ତାର ଶିରଚ୍ଛେଦନ କଲେ ଏବଂ କେଉଁଠି ସେ ମଣି ଲୁଚାଇ ରଖିଛି ବୋଲି ତାର ବସ୍ତ୍ରାଦି ଖୋଜିବାକୁଲାଗିଲେ ॥୨୧॥ କିନ୍ତୁ ମଣି ନ ପାଇ ଶ୍ରୀକୃଷ୍ଣ ଅଗ୍ରଜ ବଳରାମଙ୍କୁ କହିଲେ, ମୁଁ ବୃଥାରେ ଶତଧନ୍ୱାକୁ ନିହତ କଲି । କିନ୍ତୁ ସ୍ୟମନ୍ତକମଣି ତା' ପାଖରେ ନାହିଁ ॥୨୨॥ ବଳରାମ କହିଲେ, ଶତଧନ୍ୱା ନିଶ୍ଚୟ ଅନ୍ୟ କାହା ପାଖରେ ସେହି ମଣିଟିକୁ ରଖିଛି । ତୁମେ ତାହାକୁ ଖୋଜିବାପାଇଁ ଦ୍ୱାରକାକୁ ଫେରିଯାଅ । ମୁଁ ମୋର ପ୍ରିୟତମ ବିଦେହରାଜାଙ୍କୁ ଦେଖିବାକୁ ଇଚ୍ଛା କରୁଛି । ପରିକ୍ଷିତ, ଏହା କହି ଯଦୁନନ୍ଦନ ବଳରାମ ମିଥିଳାରେ ପ୍ରବେଶ କଲେ ॥୨୩-୨୪॥

ମିଥିଳାର ରାଜା ପୂଜନୀୟ ବଳରାମଙ୍କୁ ଦେଖି ଆନନ୍ଦମନରେ ଆସନରୁ ଉଠିପଡ଼ି ବିଭିନ୍ନ ପୂଜା ସାମଗ୍ରୀ ଦ୍ୱାରା ତାଙ୍କୁ ଯଥାବିଧି ପୂଜା କଲେ ॥୨୫॥ ମହାତ୍ମା ଜନକଙ୍କର ଆଦର ଓ ସମ୍ମାନ ଲାଭ କରି ବଳରାମ ମିଥିଳାରେ କିଛି ବର୍ଷ ଅବସ୍ଥାନ କଲେ । ଏହି ସମୟରେ ଧୃତରାଷ୍ଟ୍ରନନ୍ଦନ ଦୁର୍ଯ୍ୟୋଧନ ସେଠାକୁ ଆସି ତାଙ୍କଠାରୁ ଗଦାଯୁଦ୍ଧ ଶିକ୍ଷା କରିଥିଲେ ॥୨୬॥ ଶ୍ରୀକୃଷ୍ଣ ଦ୍ୱାରକାକୁ ଫେରିଆସିଲେ । ପ୍ରିୟା ସତ୍ୟଭାମାଙ୍କର ପ୍ରିୟ କାର୍ଯ୍ୟ ସାଧନପାଇଁ ସେ ଶତଧନ୍ୱାକୁ ନିହତ କରିଥିଲେ ମଧ୍ୟ ସ୍ୟମନ୍ତକମଣିଟି ତା'ଠାରୁ ମିଳି ନ ଥିଲା । ତାହା ସେ ସତ୍ୟଭାମାଙ୍କୁ କହିଲେ ॥୨୭॥ ଶ୍ୱଶୁର ସତ୍ରାଜିତଙ୍କପାଇଁ ଯାହାକିଛି ପାରଲୌକିକ କ୍ରିୟା କରାଯିବାର କଥା, ଅନ୍ୟ ବନ୍ଧୁମାନଙ୍କ ସହିତ ମିଳି ତାହା ସେ ଶେଷ କଲେ । ଶତଧନ୍ୱାର ନିଧନ ଖବର ପାଇ ମଣିହରଣପାଇଁ ଉତ୍ସାହ ଦେଇଥିବା ଅକ୍ରୂର ଓ କୃତବର୍ମା ଭୟତ୍ରସ୍ତ ଅବସ୍ଥାରେ ଦ୍ୱାରକାରୁ ପଳାୟନ କଲେ ॥୨୮-୨୯॥ ଅକ୍ରୂର ପ୍ରବାସରେ ରହିବାରୁ ଦ୍ୱାରକାବାସୀଙ୍କର ନାନା ଅନିଷ୍ଟ ଦେଖାଗଲା । ଶାରୀରିକ, ମାନସିକ, ଦୈବିକ ଓ ଭୌତିକ ଆଦି କଷ୍ଟ ବାରମ୍ବାର ଲାଗିରହିଲା ॥୩୦॥ ମହାରାଜ, କେହି କେହି ଲୋକ ପୂର୍ବରୁ ବର୍ଣ୍ଣିତ ଶ୍ରୀକୃଷ୍ଣଙ୍କର ମାହାତ୍ମ୍ୟ ଭୁଲିଯାଇ କହିଲେ, ଯେଉଁ ଶ୍ରୀକୃଷ୍ଣଙ୍କଠାରେ ମୁନିମାନେ ବାସ କରନ୍ତି, ସେ ଦ୍ୱାରକାରେ ଥିବାବେଳେ ଏପରି ଅମଙ୍ଗଳ ଘଟିପାରେ କି ? ॥୩୧॥ କାଶିରାଜ୍ୟରେ ଇନ୍ଦ୍ର ବର୍ଷା କଲେ ନାହିଁ । କାଶିରାଜ ଶ୍ୱଫଳ୍କଙ୍କୁ ଡକାଇ ତାଙ୍କର କନ୍ୟା ଗାନ୍ଦିନୀଙ୍କୁ ତାଙ୍କୁ ପ୍ରଦାନ କରିଥିଲେ, ଯାହାଫଳରେ କାଶିରାଜ୍ୟରେ ବର୍ଷା ହେଲା ॥୩୨॥ ସେହି ଶ୍ୱଫଳ୍କଙ୍କର ପୁତ୍ର ହେଉଛନ୍ତି ଅକ୍ରୂର । ଅକ୍ରୂରଙ୍କର ମଧ୍ୟ ସେହି ଶକ୍ତି ରହିଛି; ସେ ଯେଉଁଠାରେ ବାସ କରନ୍ତି, ସେଠାରେ ଅନାବୃଷ୍ଟି, ରୋଗ ଓ ମହାମାରୀ ଆଦି ହୁଏ ନାହିଁ ॥୩୩॥ ଏହିପରି ବୃଦ୍ଧଲୋକଙ୍କର କଥା ଶୁଣି ଉପଦ୍ରବ ସବୁର ଏହା କାରଣ ନୁହେଁ ବୋଲି ଜାଣି ମଧ୍ୟ ଶ୍ରୀକୃଷ୍ଣ ଅକ୍ରୂରଙ୍କୁ ଡକାଇଆଣିଲେ ଓ ତାଙ୍କ ସହିତ ଆଲୋଚନା କଲେ ॥୩୪॥

ସମସ୍ତଙ୍କର ହୃଦୟକୁ ଜାଣିଥିବା ଭଗବାନ୍ ଶ୍ରୀକୃଷ୍ଣ ପ୍ରିୟ ବାକ୍ୟଦ୍ୱାରା ଅକ୍ରୂରଙ୍କୁ ଅଭିନନ୍ଦନ କରି ହସି ହସି କହିଲେ, ଆପଣ ଦାନପତି, ଦାନଧର୍ମର ପାଳକ । ଶତଧନ୍ୱା ଆପଣଙ୍କ ପାଖରେ ସ୍ୟମନ୍ତକମଣିଟି ରଖିଦେଇଯାଇଛି । ତାହା ମୋତେ ପୂର୍ବରୁ ଜଣା ଅଛି । ସତ୍ରାଜିତ୍‌ଙ୍କର ପୁତ୍ର ନ ଥିଲେ । ତାଙ୍କର ନାତି ହେଲେ ସେ ତାଙ୍କୁ ପାଣି ଦେବେ, ପିଣ୍ଡଦାନ କରିବେ ଏବଂ ଅଜାଙ୍କର ଋଣ ପରିଶୋଧ କରି ଅବଶିଷ୍ଟ ଧନର ଉତ୍ତରାଧିକାରୀ ହେବେ । ତଥାପି ଏହି ମଣିକୁ ଧାରଣ କରିବା ଅନ୍ୟ ପକ୍ଷରେ କଷ୍ଟକର । ଆପଣ ସାଧୁ, ବ୍ରତାଚାରୀ; ଆପଣଙ୍କଠାରେ ଏ ମଣିଟି ରହିଥାଉ । କିନ୍ତୁ ଗୋଟିଏ କଥା ଯେ ମୋର ଭାଇ ବଳରାମ ମୋତେ ବିଶ୍ୱାସ କରୁ ନାହାନ୍ତି । ମୁଁ ମଣିଟିକୁ ଲୁଚାଇରଖିଛି ବୋଲି ସେ ଭାବୁଛନ୍ତି । ତେଣୁ, ମହାଶୟ, ବନ୍ଧୁମାନଙ୍କ ମନର

ଶାନ୍ତିପାଇଁ ଆପଣ ଏ ମଣିଟିକୁ ସମସ୍ତଙ୍କୁ ଦେଖାଇଦିଅନ୍ତୁ । ମଣିଥିବାଯୋଗୁଁ ଆପଣଙ୍କର ସୁବର୍ଣ୍ଣବେଦୀରେ ନିରବଚ୍ଛିନ୍ନ ଭାବରେ ଯଜ୍ଞ ହୋଇପାରୁଛି ॥୩୫-୩୯॥ ଏହିପରି କୃଷ୍ଣଙ୍କ କଥାରେ ଆଶ୍ୱସ୍ତ ହୋଇ ଶ୍ୱଫଲ୍କଙ୍କର ପୁତ୍ର ଅକ୍ରୂର ବସ୍ତ୍ରମଧ୍ୟରେ ଘୋଡ଼ାଇ ରଖିଥିବା ମଣିଟିକୁ ଆଣି କୃଷ୍ଣଙ୍କୁ ପ୍ରଦାନ କଲେ । ସେହି ମଣି ସୂର୍ଯ୍ୟଙ୍କ ପରି ପ୍ରଭା ବିସ୍ତାର କରୁଥିଲା ॥୪୦॥ ନିଜର ଜ୍ଞାତିସ୍ୱଜନଙ୍କୁ ସ୍ୟମନ୍ତକମଣିକୁ ଦେଖାଇ ଶ୍ରୀକୃଷ୍ଣ ତାଙ୍କ ଉପରେ ହେଉଥିବା ଅପବାଦକୁ ଦୂର କଲେ ଏବଂ ଅକ୍ରୂରଙ୍କୁ ପୁଣି ସେହି ମଣିଟି ପ୍ରଦାନ କଲେ ॥୪୧॥ ସାକ୍ଷାତ୍ ପରମେଶ୍ୱର ଭଗବାନ୍ ବିଷ୍ଣୁଙ୍କର ଏହି ସ୍ୟମନ୍ତକମଣି ଆଖ୍ୟାନକୁ ଯେ ପାଠ କରେ, ଶ୍ରବଣ କରେ କିମ୍ବା ବାରମ୍ବାର ସ୍ମରଣ କରେ, ତା'ର ସମସ୍ତ ପାପ, ଦୁଷ୍କୃତି, ଓ ଦୁଃଖକଷ୍ଟ ଦୂର ହୁଏ । ଭଗବାନଙ୍କ ଶକ୍ତିରେ ଆଧାରିତ ଏହି ଉପାଖ୍ୟାନ ଅତ୍ୟନ୍ତ ମଙ୍ଗଳକର ଓ ଶାନ୍ତିପ୍ରଦ ॥୪୨॥

## ଅଠାବନ ଅଧ୍ୟାୟ

# ଇନ୍ଦ୍ରପ୍ରସ୍ଥରେ ଶ୍ରୀକୃଷ୍ଣ

ପରିକ୍ଷିତ, ଯେତେବେଳେ ଜଣାପଡ଼ିଲା ଯେ ପାଣ୍ଡବମାନେ ଜଉଘରେ ଜଳିଯାଇ ନାହାନ୍ତି, ଶ୍ରୀକୃଷ୍ଣ ସେମାନଙ୍କୁ ଦେଖିବାପାଇଁ ସାତ୍ୟକି ଆଦି ଯଦୁବୀରମାନଙ୍କ ସହିତ ଇନ୍ଦ୍ରପ୍ରସ୍ଥରେ ଉପସ୍ଥିତ ହେଲେ ॥୧॥ କୁନ୍ତୀଙ୍କର ବୀର ପୁତ୍ରମାନେ ଯେତେବେଳେ ଦେଖିଲେ ଯେ, ଜଗଦୀଶ୍ୱର ଭଗବାନ୍ ଶ୍ରୀକୃଷ୍ଣ ଆସିଛନ୍ତି, ସେତେବେଳେ ସେମାନଙ୍କ ପିଣ୍ଡରେ ପ୍ରାଣ ପଶିବାକୁ ଲାଗିଲା ଓ ସେମାନେ ଏକାବେଳକେ ଆସନରୁ ଉଠିପଡ଼ିଲେ ॥୨॥ ବୀରପାଣ୍ଡବମାନେ ଶ୍ରୀକୃଷ୍ଣଙ୍କୁ ଆଲିଙ୍ଗନ କରି ତାଙ୍କ ଅଙ୍ଗସଙ୍ଗଦ୍ୱାରା ସମସ୍ତ ଦୁଃଖ ଦୂର କଲେ । ସେମାନେ କୃଷ୍ଣଙ୍କର ସ୍ନେହପୂର୍ଣ୍ଣ ହସହସ ମୁହଁକୁ ଦେଖି ଆନନ୍ଦରେ ଉଚ୍ଛୁଳି ପଡ଼ିଲେ ॥୩॥ ଶ୍ରୀକୃଷ୍ଣ ଯୁଧିଷ୍ଠିର ଓ ଭୀମଙ୍କୁ ପାଦ ଛୁଇଁ ପ୍ରଣାମ କଲେ ଏବଂ ଅର୍ଜୁନଙ୍କୁ ଆଲିଙ୍ଗନ କଲେ । ନକୁଳ ଓ ସହଦେବ ଶ୍ରୀକୃଷ୍ଣଙ୍କର ପାଦ ବନ୍ଦନା କଲେ ॥୪॥ କୃଷ୍ଣ ଉତ୍ତମ ଆସନରେ ବସିବାପରେ ନବବିବାହିତା ଅନିନ୍ଦିତା ଦ୍ରୌପଦୀ କିଞ୍ଚିତ୍ ଲଜ୍ଜାର ସହିତ ଆସି ତାଙ୍କୁ ଅଭିନନ୍ଦନ କଲେ ॥୫॥ ଏହାପରେ ପାଣ୍ଡବମାନେ ସାତ୍ୟକିଙ୍କର ଯଥାବିଧି ସତ୍କାର କଲେ ଓ ତାଙ୍କୁ ସମ୍ମାନ ଜଣାଇଲେ । ଅନ୍ୟ ଯଦୁବଂଶୀୟ ବୀରମାନେ ମଧ୍ୟ ଯଥାବିଧି ସତ୍କୃତ ହୋଇ କୃଷ୍ଣଙ୍କର ଚାରିପଟେ ନିଜ ନିଜର ଆସନ ଗ୍ରହଣ କଲେ ॥୬॥ କିଛି ସମୟପରେ ଶ୍ରୀକୃଷ୍ଣ କୁନ୍ତୀଙ୍କ ନିକଟକୁ ଯାଇ ତାଙ୍କୁ ଅଭିବାଦନ କଲେ । କୁନ୍ତୀ ଅତି ସ୍ନେହରେ ଶ୍ରୀକୃଷ୍ଣଙ୍କୁ ଆଲିଙ୍ଗନ କଲାବେଳେ ତାଙ୍କର ଆଖି ଲୁହରେ ଛଳଛଳ ହୋଇଗଲା । କୁନ୍ତୀ ନିଜ ବାପଘରର କୁଶଳ ସମ୍ବାଦ ଜାଣିବାପାଇଁ କୃଷ୍ଣଙ୍କୁ ପଚାରିବାକୁ ଲାଗିଲେ । କୁନ୍ତୀଙ୍କୁ ତାର ଉତ୍ତର ଦେବା ପରେ କୃଷ୍ଣ ବୋହୂ ଦ୍ରୌପଦୀଙ୍କ ବିଷୟରେ ଓ କୁନ୍ତୀଙ୍କ ନିଜ ବିଷୟରେ କୁଶଳ ପ୍ରଶ୍ନ ପଚାରିଲେ ॥୭॥

ପ୍ରେମରେ ବିହ୍ୱଳ ହୋଇ କୁନ୍ତୀଙ୍କର କଣ୍ଠ ରୁଦ୍ଧ ହୋଇଗଲା । ଆଖିରେ ଲୁହ ଭରିଗଲା । ସବୁ ଦୁଃଖକଷ୍ଟ ତାଙ୍କର ମନେ ପଡ଼ିଗଲା । କିନ୍ତୁ କୃଷ୍ଣଙ୍କୁ ଦେଖି ତାହା ସେ ଭୁଲିଗଲେ । ସେ କହିବାକୁ ଲାଗିଲେ, କୃଷ୍ଣ, ତୁମେ ଆମ ନିଜର କୁଟୁମ୍ବ, ନିଜର ବନ୍ଧୁ; ଆମକୁ ମନେ ପକାଇ ତୁମେ ଭାଇ ଅକ୍ରୂରଙ୍କୁ ପଠାଇଥିଲ । ସେଥିରେ ଆମର ସବୁ ଦୁଃଖ କଟିଯାଇ ଆମକୁ ଆଶ୍ରା ମିଳିଗଲା । ତୁମେ ହେଉଛ ସମସ୍ତ ବିଶ୍ୱର ସୁହୃଦ୍ ଓ ଆତ୍ମାସ୍ୱରୂପ । ତୁମଠାରେ ଆପଣା ଓ ପର ଭେଦଭାବ ନାହିଁ । ତଥାପି ଭକ୍ତମାନଙ୍କର ହୃଦୟରେ ରହି ସେମାନେ ସ୍ମରଣ କରିବାମାତ୍ରେ ତୁମେ ତାଙ୍କ କ୍ଲେଶ ହରଣ କରିଥାଅ ॥୮-୧୦॥

ଯୁଧିଷ୍ଠିର କହିଲେ, ହେ ପରମେଶ୍ୱର, ଯୋଗେଶ୍ୱରମାନେ ମଧ୍ୟ ଯାହାଙ୍କର ଦର୍ଶନ ପାଆନ୍ତି ନାହିଁ, ଆମପରି ବିଷୟାସକ୍ତ ବ୍ୟକ୍ତିମାନେ କି ପୁଣ୍ୟ ଅର୍ଜନ କରିଥିଲୁ, ଆପଣଙ୍କର ଦର୍ଶନ ମିଳିଲା ॥୧୧॥ ଏହିପରି ରାଜା ଯୁଧିଷ୍ଠିରଙ୍କର ଆଦର ଅଭ୍ୟର୍ଥନା ଲାଭ କରି ଏବଂ ନିଜର ଦର୍ଶନଦ୍ୱାରା ସମସ୍ତଙ୍କୁ ଆନନ୍ଦ ପ୍ରଦାନ କରି ଭଗବାନ୍ ଶ୍ରୀକୃଷ୍ଣ ବର୍ଷା ଚାରି ମାସ ଇନ୍ଦ୍ରପ୍ରସ୍ଥରେ କଟାଇଦେଲେ ॥୧୨॥ ଦିନେ ଶତ୍ରୁହନ୍ତା ଅର୍ଜୁନ ଗାଣ୍ଡୀବ ଧନୁ ଓ ଅକ୍ଷୟ ଶର ଥିବା ଦୁଇଟି ତୂଣୀର ଧାରଣ କରି କୃଷ୍ଣଙ୍କ ସହିତ କପିଧ୍ୱଜ ରଥରେ ଆରୋହଣ କଲେ ଏବଂ ବନରେ ବିହାର କରିବାପାଇଁ ବହୁ ହିଂସ୍ରଜନ୍ତୁ ପରିପୂର୍ଣ୍ଣ ବିଶାଳ ଅରଣ୍ୟ ମଧ୍ୟରେ ପ୍ରବେଶ କଲେ ॥୧୪॥ ସେଠାରେ ଶରଦ୍ୱାରା ସେ ବହୁ ବାଘ, ବାରହା, ବଣ ମଇଁଷି, ସମ୍ବର, ଗୟଳ, ଗଣ୍ଡାର, ଖୁରୁଙ୍ଗ, ଠେକୁଆ, ଝିଙ୍କ ଆଦି ପଶୁଙ୍କୁ ବଧ କଲେ ॥୧୫॥ ସେତେବେଳେ ପର୍ବ ସମୟ ଆସିଥିବାରୁ ଭୃତ୍ୟମାନେ ଏହି ସବୁ ପଶୁମାନଙ୍କୁ ରାଜା ଯୁଧିଷ୍ଠିରଙ୍କ ପାଖକୁ ନେଇଗଲେ । କ୍ଲାନ୍ତ, ଶ୍ରାନ୍ତ ଓ ତୃଷାତୁର ଅର୍ଜୁନ କୃଷ୍ଣଙ୍କ ସହିତ ଯମୁନା କୂଳରେ ପହଞ୍ଚିଗଲେ । ସେଠାରେ ପହଞ୍ଚି ମହାରଥୀ କୃଷ୍ଣ ଓ ଅର୍ଜୁନ ମୁହଁ ହାତ ଧୋଇ ଯମୁନାର ନିର୍ମଳ ଜଳ ପାନ କଲେ ଏବଂ ସେଠାରେ ଏକ ସୁନ୍ଦରୀ କନ୍ୟା ବିଚରଣ କରୁଥିବାର ଦେଖିଲେ ॥୧୬-୧୭॥ ସେହି ସୁନ୍ଦରୀ କନ୍ୟାଟିର ମୁଖ, ଦନ୍ତପଂକ୍ତି ଓ କଟିଦେଶ ବେଶ୍ ସୁନ୍ଦର ଥିଲା । କୃଷ୍ଣଙ୍କଦ୍ୱାରା ପ୍ରେରିତ ହୋଇ ଅର୍ଜୁନ ସେହି ସୁନ୍ଦରୀ କନ୍ୟାକୁ ଯାଇ ପଚାରିଲେ, ସୁମଧ୍ୟମା, ତୁମେ କିଏ, କାହାର କନ୍ୟା ? କ'ଣ କରିବାକୁ ଚାହୁଁଛ ? ତୁମକୁ ଦେଖି ମନେ ହେଉଛି, ତୁମେ ସ୍ୱାମୀ ପାଇବାପାଇଁ ଇଚ୍ଛା କରୁଛ । ସୁନ୍ଦରି, ଏ ସମସ୍ତ ବିଷୟ ଆମକୁ କହ ॥୧୮-୧୯॥ କାଳିନ୍ଦୀ ନାମକ ସେହି କନ୍ୟା କହିଲେ, ମୁଁ ସୂର୍ଯ୍ୟଦେବଙ୍କର କନ୍ୟା । ବରେଣ୍ୟ ଓ ବରପ୍ରଦ ବିଷ୍ଣୁଙ୍କୁ ପତିରୂପେ ଇଚ୍ଛା କରି ତପସ୍ୟା କରୁଛି ॥୨୦॥ ବୀର, ସେହି ଶ୍ରୀନିବାସଙ୍କ ଛଡ଼ା ମୁଁ କାହାରିକୁ ପତିରୂପେ ବରଣ କରିବାକୁ ଚାହେ ନାହିଁ । ଅନାଥର ଆଶ୍ରୟ ସେହି ଭଗବାନ୍ ମୁକୁନ୍ଦ ମୋ' ଉପରେ ସନ୍ତୁଷ୍ଟ ହୁଅନ୍ତୁ ॥୨୧॥ ମୁଁ କାଳିନ୍ଦୀ ନାମରେ ଆଖ୍ୟାତ । ଯମୁନାର ଜଳ ମଧ୍ୟରେ ମୋର ପିତା ମୋ'ପାଇଁ ଗୋଟିଏ ବାସଭବନ ନିର୍ମାଣ କରିଛନ୍ତି । ଭଗବାନ୍ ଅଚ୍ୟୁତଙ୍କର ଦର୍ଶନ ନ ହେବାପର୍ଯ୍ୟନ୍ତ ମୁଁ ସେହିଠାରେ ରହିଥିବି ॥୨୨॥ ନିରଳସ ଅର୍ଜୁନ କାଳିନ୍ଦୀ ଯେପରି କହିଲେ, ସେପରି କୃଷ୍ଣଙ୍କୁ ଜଣାଇଲେ । କୃଷ୍ଣ ପୂର୍ବରୁ ତାହା ଜାଣିଥିଲେ । ସେ କାଳିନ୍ଦୀଙ୍କୁ ରଥରେ ବସାଇ ଧର୍ମରାଜ ଯୁଧିଷ୍ଠିରଙ୍କ ନିକଟକୁ ଘେନିଆସିଲେ ॥୨୩॥

ଇନ୍ଦ୍ରପ୍ରସ୍ଥରେ ଥିବା ସମୟରେ ପାଣ୍ଡବମାନଙ୍କ ଅନୁରୋଧରେ ଶ୍ରୀକୃଷ୍ଣ ବିଶ୍ୱକର୍ମାଙ୍କଦ୍ୱାରା ଏକ ଅଦ୍ଭୁତ ନଗରୀ ନିର୍ମାଣ କରାଇଥିଲେ । ନିଜ ଆତ୍ମୀୟମାନଙ୍କର ପ୍ରିୟକାର୍ଯ୍ୟ କରିବା ଇଚ୍ଛାରେ ଭଗବାନ ସେଠାରେ ରହିଥିଲେ ଏବଂ ଅଗ୍ନିଙ୍କୁ ଖାଣ୍ଡବବନ ଦେବାପାଇଁ ଅର୍ଜୁନଙ୍କ ରଥରେ ସାରଥି ହୋଇଥିଲେ । ପରିକ୍ଷିତ, ଅଗ୍ନି ସେଥିରେ ସନ୍ତୁଷ୍ଟ ହୋଇ ଅର୍ଜୁନଙ୍କୁ ଗାଣ୍ଡୀବ ଧନୁ, ଶ୍ୱେତ ବର୍ଣ୍ଣର ଅଶ୍ୱସମୂହ, ଦୁଇଟି ଅକ୍ଷୟ ତୂଣୀର ଓ ଏକ ଅଭେଦ୍ୟ ବର୍ମ ଦେଇଥିଲେ ॥୨୪-୨୬॥ ଖାଣ୍ଡବଦହନ ବେଳେ କୃଷ୍ଣ ଓ ଅର୍ଜୁନ ମୟଦାନବଙ୍କୁ ଅଗ୍ନିରୁ ଉଦ୍ଧାର କରିଥିଲେ । ତେଣୁ ସେ ଅର୍ଜୁନଙ୍କର ମିତ୍ର ହୋଇ ତାଙ୍କପାଇଁ ଏକ ସଭାଗୃହ ନିର୍ମାଣ କରି ଉପହାର ଦେଇଥିଲେ । ସେହି ସଭାଗୃହ ଏପରି ବିଚିତ୍ର ଥିଲା ଯେ ଦୁର୍ଯ୍ୟୋଧନଙ୍କର ସେଠାରେ ଜଳରେ ସ୍ଥଳର ଓ ସ୍ଥଳରେ ଜଳର ଭ୍ରମ ହୋଇଥିଲା ॥୨୭॥ (କାଳିନ୍ଦୀକୁ ନେଇ ଯୁଧିଷ୍ଠିରଙ୍କ ପାଖକୁ ଆସିବା ପରେ) ଭଗବାନ୍ ଶ୍ରୀକୃଷ୍ଣ ତାଙ୍କର ଅନୁମତି ଓ ସୁହୃଦ୍‌ମାନଙ୍କର ଅନୁମୋଦନ ଲାଭ କରି ସାତ୍ୟକି ଏବଂ ଅନ୍ୟ ଯଦୁବୀରଙ୍କ ସହିତ ଦ୍ୱାରକାକୁ ଫେରିଆସିଲେ ॥୨୮॥ ଭଗବାନ ଶ୍ରୀକୃଷ୍ଣ ସେଠାରେ ଜ୍ଞାତିମାନଙ୍କର ପରମ ମଙ୍ଗଳ ଓ ଆନନ୍ଦ ବର୍ଦ୍ଧନ କରି ଶୁଭ ଋତୁ ଓ ନକ୍ଷତ୍ର ବିଶିଷ୍ଟ ଶୁଭଲଗ୍ନରେ କାଳିନ୍ଦୀଙ୍କୁ ବିବାହ କଲେ ॥୨୯॥ ଅବନ୍ତୀ ଦେଶର ରାଜା ବିନ୍ଦ ଓ ଅନୁବିନ୍ଦ ଦୁର୍ଯ୍ୟୋଧନଙ୍କର ବଶବର୍ତ୍ତୀ ଥିଲେ । ସେ ଦୁହେଁ ନିଜ ଭଉଣୀ ମିତ୍ରବିନ୍ଦାଙ୍କର ସ୍ୱୟମ୍ବରସଭାର ଆୟୋଜନ କଲେ । ମିତ୍ରବିନ୍ଦା କୃଷ୍ଣଙ୍କପ୍ରତି ଅନୁରକ୍ତା ଥିଲେ, କିନ୍ତୁ ସେ ଦୁହେଁ କୃଷ୍ଣଙ୍କୁ ବରିବାପାଇଁ ନିଜ ଭଉଣୀକୁ ବାରଣ କରିଥିଲେ ॥୩୦॥ ରାଜନ୍, କୃଷ୍ଣ ସେହି ସ୍ୱୟମ୍ବର ସଭାକୁ ଯାଇ (ଉପସ୍ଥିତ)

ରାଜାମାନେ ଦେଖୁ ଦେଖୁ ନିଜର ପିଉସୀ ରାଜାଧିଦେବୀଙ୍କର କନ୍ୟା ମିତ୍ରବିନ୍ଦାଙ୍କୁ ବଳପୂର୍ବକ ହରଣ କରିନେଲେ ।।୩୧।। ହେ ନୃପ ! କୋଶଳଦେଶର ଜଣେ ଅତି ଧାର୍ମିକ ରାଜା ଥିଲେ ନଗ୍ନଜିତ୍ । ତାଙ୍କର ସତ୍ୟାନାମରେ ଏକ ସୁନ୍ଦରୀ କନ୍ୟା ଥିଲେ । ପିତାଙ୍କ ନାମାନୁସାରେ ସେ ନାଗ୍ନଜିତୀ ନାମରେ ପ୍ରସିଦ୍ଧ ଥିଲେ ।।୩୨।। ନଗ୍ନଜିତ୍‌ଙ୍କର ତୀକ୍ଷ୍ଣଶୃଙ୍ଗଧାରୀ ସାତଟି ଅତି ଦୁର୍ଦ୍ଧର୍ଷ ବୃଷଭ ଥିଲେ । ସେମାନେ ଏଡ଼େ ଦୁଷ୍ଟ ଥିଲେ ଯେ ବୀରମାନଙ୍କର ଗନ୍ଧ ସହିପାରୁ ନ ଥିଲେ । ରାଜାଙ୍କ ପଣ ଅନୁସାରେ ଏହି ଷଣ୍ଢମାନଙ୍କୁ କେହି ଜିଣି ନ ପାରି କନ୍ୟାଙ୍କୁ ବିବାହ କରିପାରୁ ନ ଥିଲେ ।।୩୩।। ଯଦୁବଂଶର ରକ୍ଷକ ଭଗବାନ୍ ଶ୍ରୀକୃଷ୍ଣ ଯେତେବେଳେ ଶୁଣିଲେ ଯେ କନ୍ୟାଙ୍କୁ ପାଇବା ଲାଗି ବୃଷଭମାନଙ୍କୁ ଜିଣିବାକୁ ହେବ, ସେ ଏକ ବିଶାଳ ସେନା ସହ କୋଶଳପୁରୀରେ ଉପସ୍ଥିତ ହେଲେ ।।୩୪।। କୋଶଳାଧିପତି ନଗ୍ନଜିତ୍ ଆନନ୍ଦରେ ଉଠିପଡ଼ି ଆସନାଦି ମହାର୍ହ ପୂଜାସାମଗ୍ରୀଦ୍ୱାରା କୃଷ୍ଣଙ୍କୁ ଅଭିନନ୍ଦନ କଲେ । କୃଷ୍ଣ ମଧ୍ୟ ତାଙ୍କୁ ପ୍ରତି-ଅଭିନନ୍ଦନ ଜଣାଇଲେ ।।୩୫।। ରାଜକନ୍ୟା ନାଗ୍ନଜିତୀ ରମାରମଣ ଶ୍ରୀକୃଷ୍ଣ ଆସିଥିବାର ଦେଖି ତାଙ୍କୁ ନିଜର ମନୋମତ ପତି ବୋଲି ମନେକଲେ । 'ଏ ମୋର ସ୍ୱାମୀ ହୁଅନ୍ତୁ' – ଏହି କାମନା କରି ସେ କହିଲେ, 'ଯଦି ମୁଁ ପ୍ରକୃତରେ ବ୍ରତ ଧାରଣ କରିଥାଏ, ତା'ହେଲେ ସେ ମୋର ଏହି ନିର୍ମଳ କାମନାକୁ ନିର୍ବିଘ୍ନରେ ସତ୍ୟ କରନ୍ତୁ' ।।୩୬।। ରାଜା ନଗ୍ନଜିତ୍ ଭାବିଲେ, ଯାହାଙ୍କ ପାଦପଦ୍ମର ଧୂଳି ଲକ୍ଷ୍ମୀ ବ୍ରହ୍ମା, ମହେଶ୍ୱର ଓ ଇନ୍ଦ୍ରାଦି ଲୋକପାଳଙ୍କ ସହିତ ମସ୍ତକରେ ଧାରଣ କରନ୍ତି, ଯେ ନିଜେ କରିଥିବା ଧର୍ମର ମର୍ଯ୍ୟାଦା ପରିପାଳନ ଇଚ୍ଛାରେ ବିଭିନ୍ନ ସମୟରେ ଲୀଳା ଦେହ ଧାରଣ କରୁଥାଆନ୍ତି, ସେହି ଭଗବାନ କିପରି ମୋ' ଉପରେ ସନ୍ତୁଷ୍ଟ ହେବେ ! ।।୩୭।। ସେ ଶ୍ରୀକୃଷ୍ଣଙ୍କୁ ପୁଣି ବନ୍ଦନା କରି କହିଲେ, ହେ ନାରାୟଣ, ହେ ଜଗତ୍‌ପତି, ଆପଣ ଆତ୍ମାନନ୍ଦରେ ପରିପୂର୍ଣ୍ଣ । ମୁଁ ଏକ କ୍ଷୁଦ୍ର ବ୍ୟକ୍ତି । ମୁଁ ଆପଣଙ୍କପାଇଁ କ'ଣ ବା କରିପାରିବି ? ।।୩୮।।

ଶ୍ରୀ ଶୁକଦେବ କହିଲେ, କୁରୁନନ୍ଦନ, ଭଗବାନ୍ ଶ୍ରୀକୃଷ୍ଣ ଆସନରେ ବସିସାରିବାପରେ ମେଘଗମ୍ଭୀର ସ୍ୱରରେ ହସି ହସି ରାଜା ନଗ୍ନଜିତ୍‌ଙ୍କୁ କହିଲେ-- ।।୩୯।। ଶ୍ରୀକୃଷ୍ଣ କହିଲେ, ମହାରାଜ, ଜ୍ଞାନୀମାନଙ୍କ ଦ୍ୱାରା ନିଜ ଧର୍ମରେ ରହିଥିବା ଅଧମ କ୍ଷତ୍ରିୟପକ୍ଷରେ ମଧ୍ୟ ମାଗିବାଟା ନିନ୍ଦନୀୟ । ତଥାପି ଆପଣଙ୍କ ସହିତ ବନ୍ଧୁତା ଇଚ୍ଛାରେ ମୁଁ ଆପଣଙ୍କ କନ୍ୟାକୁ ପ୍ରାର୍ଥନା କରୁଛି । କୌଣସି ଶୁଳ୍କ ଦେବା ପ୍ରଥା ଆମର ନାହିଁ ।।୪୦।। ନଗ୍ନଜିତ୍ କହିଲେ, ପ୍ରଭୁ, ଆପଣ ସମସ୍ତ ଗୁଣର ଆଧାର । ଆପଣଙ୍କ ବକ୍ଷସ୍ଥଳରେ ଚଞ୍ଚଳା ଲକ୍ଷ୍ମୀଦେବୀ ଅଚଳା ହୋଇ ରହିଛନ୍ତି ଏବଂ ଆପଣଙ୍କଠାରୁ ବଳି ମୋ' କନ୍ୟାର ଇପ୍ସିତ ବର ଅନ୍ୟ କିଏ ଥାଇପାରେ ? କିନ୍ତୁ ହେ ଯଦୁଶ୍ରେଷ୍ଠ, କନ୍ୟାପାଇଁ ଯୋଗ୍ୟ ବର ପାଇବା ଇଚ୍ଛାରେ ପୁରୁଷଙ୍କ ବଳପରୀକ୍ଷାର ଏକ ପଣ ମୁଁ ପୂର୍ବରୁ କରିସାରିଛି । ବୀର, ଏହି ସାତଟି ବୃଷଭ ହେଉଛନ୍ତି ଅତିଶୟ ଦୁର୍ଦ୍ଦାନ୍ତ । ତାଙ୍କୁ ଆୟତ୍ତ କରିବା ସହଜ ନୁହେଁ । ବହୁ ରାଜକୁମାର ଏମାନଙ୍କୁ ବଶ କରିବାକୁ ଆସି ଏପରି କ୍ଷତବିକ୍ଷତ ହୋଇଛନ୍ତି ଯେ ସେମାନଙ୍କର ସମସ୍ତ ଉତ୍ସାହ ଭାଙ୍ଗିଯାଇଛି । ହେ ଯଦୁନନ୍ଦନ, ହେ ଲକ୍ଷ୍ମୀପତି, ଆପଣ ଯଦି ଏମାନଙ୍କୁ ଦମନ କରି ପାରିବେ, ତା'ହେଲେ ମୋ' କନ୍ୟାର ଅଭିମତ ବର ହେବେ ।।୪୧-୪୪।।

ରାଜାଙ୍କର ଏହି ପଣ କଥା ଶୁଣି ଭଗବାନ୍ ଶ୍ରୀକୃଷ୍ଣ ଅଣ୍ଟା ଭିଡ଼ି ବାହାରିପଡ଼ିଲେ । ସେ ନିଜକୁ ସାତ ଜଣ କରି ଅନାୟାସରେ ସାତଟି ବୃଷଭଙ୍କୁ ଆୟତ୍ତ କରିନେଲେ ।।୪୫।। ବୃଷଭଙ୍କର ଦର୍ପ ଭାଙ୍ଗିଗଲା । ତେଜ ମଳିନ ପଡ଼ିଗଲା । କାଠବୃଷଭଙ୍କୁ ବେକରେ ଫାଶ ପକାଇ ପିଲା ଟାଣିଲାପରି ସେ ଦଉଡ଼ିରେ ସେମାନଙ୍କୁ ବାନ୍ଧି ଟାଣିଆଣିଲେ ।।୪୬।। ରାଜା ନଗ୍ନଜିତ୍ ବିସ୍ମୟ ଓ ଆନନ୍ଦରେ କୃଷ୍ଣଙ୍କୁ ନିଜର କନ୍ୟା ଦାନ କଲେ । ତାଙ୍କ ଉପଯୁକ୍ତା ସେହି କନ୍ୟାକୁ ଭଗବାନ୍ ବିଧିପୂର୍ବକ ବିବାହ କଲେ ।।୪୭।। ରାଜପତ୍ନୀମାନେ ଶ୍ରୀକୃଷ୍ଣଙ୍କୁ ନିଜ କନ୍ୟାର ଯୋଗ୍ୟପତିରୂପେ ଦେଖି ଅତିଶୟ ଆନନ୍ଦ ଲାଭ କଲେ ଏବଂ ରାଜ୍ୟରେ ମହୋତ୍ସବ ଲାଗିଗଲା ।।୪୮।। ଶଙ୍ଖ, ଭେରୀ, ଢୋଲ, ମୃଦଙ୍ଗ ଆଦି ବାଦ୍ୟମାନ ବାଜିଉଠିଲା । ବ୍ରାହ୍ମଣମାନେ ଆଶୀର୍ବାଦ କଲେ ।

ନରନାରୀମାନେ ସୁନ୍ଦର ବସ୍ତ୍ର, ମାଳା ଓ ଅଳଙ୍କାରରେ ମଣ୍ଡିତ ହୋଇ ଆନନ୍ଦ କରିବାକୁ ଲାଗିଲେ ।।୪୯।। ନଗ୍ନଜିତ୍ ଯୌତୁକସ୍ୱରୂପ ଦଶହଜାର ଗାଭୀ ଓ ସୁନ୍ଦର ବସ୍ତ୍ର-ଅଳଙ୍କାରରେ ମଣ୍ଡିତ ତିନି ହଜାର ଯୁବତୀଙ୍କୁ ଦାସୀରୂପେ ଦାନ କଲେ । ସେମାନଙ୍କ ସହିତ ନଅ ହଜାର ହାତୀ, ନଅ ଲକ୍ଷ ରଥ, ନଅ କୋଟି ଘୋଡ଼ା ଓ ନଅ ଅର୍ବୁଦ ସେବକଙ୍କୁ ମଧ୍ୟ ସେ ଶ୍ରୀକୃଷ୍ଣଙ୍କୁ ଯୌତୁକ ଦେଲେ ।।୫୦-୫୧।। ଏକ ବିଶାଳ ସେନା ପରିବୃତ ଝିଅ ଜ୍ୱାଇଁଙ୍କୁ ରଥରେ ଚଢ଼ାଇ କୋଶଳରାଜ ନଗ୍ନଜିତ୍ ବିଦାୟ ଦେଲେ । ସେତେବେଳେ ତାଙ୍କ ହୃଦୟ ବାତ୍ସଲ୍ୟ-ସ୍ନେହରେ ଭରି ଯାଇଥିଲା ।।୫୨।। ପୂର୍ବେ ବୃଷଭମାନଙ୍କଦ୍ୱାରା ହୀନବୀର୍ଯ୍ୟ ହୋଇ ଏବଂ ଏବେ ଯଦୁବୀରଙ୍କଦ୍ୱାରା ଲାଞ୍ଛିତ ହୋଇ ଯେଉଁ ରାଜାମାନେ ରହିଥିଲେ, ସେମାନେ ମିଶି କନ୍ୟାକୁ ନେଉଥିବା କୃଷ୍ଣଙ୍କ ପଥରୋଧ କଲେ ଏବଂ ବେଗରେ ବାଣ ବର୍ଷଣ କରିବାକୁ ଲାଗିଲେ । ତାହା ଦେଖି କୃଷ୍ଣଙ୍କର ପ୍ରିୟସଖା ଅର୍ଜୁନ କ୍ଷୁଦ୍ର ପଶୁମାନଙ୍କୁ ସିଂହ ଦଳିଦେବା ପରି ଗାଣ୍ଡୀବଧନୁ ଧରି ସେହି ରାଜାମାନଙ୍କୁ ବିତାଡ଼ିତ କଲେ ।।୫୩-୫୪।। ଯଦୁମାନଙ୍କର ବୃଷଭସ୍ୱରୂପ ଦେବକୀନନ୍ଦନ ଶ୍ରୀକୃଷ୍ଣ ସତ୍ୟାଙ୍କୁ ସଙ୍ଗରେ ଧରି ଦ୍ୱାରକାକୁ ଫେରିଆସିଲେ ଏବଂ ସେଠାରେ ତାଙ୍କ ସହ ବିହାର କଲେ ।।୫୫।। ଶ୍ରୀକୃଷ୍ଣଙ୍କର ପିଉସୀ ଶ୍ରୁତକୀର୍ତ୍ତି କେକୟଦେଶରେ ବିବାହ କରିଥିଲେ । ତାଙ୍କ କନ୍ୟାର ନାମ ଥିଲା ଭଦ୍ରା । ସନ୍ତର୍ଦନ ଆଦି ଭଦ୍ରାଙ୍କର ଭାଇମାନେ ତାଙ୍କୁ କୃଷ୍ଣଙ୍କ ହସ୍ତରେ ଅର୍ପଣ କଲେ ଏବଂ କୃଷ୍ଣ ତାଙ୍କୁ ବିବାହ କଲେ ।।୫୬।। ଏହାପରେ ଗରୁଡ଼ ଯେପରି ଏକାକୀ ଅମୃତକୁ ହରଣ କରିଥିଲେ, ସେହିପରି ଭଗବାନ୍ ଶ୍ରୀକୃଷ୍ଣ ଏକାକୀ ସ୍ୱୟମ୍ବର ସଭାରୁ ମଦ୍ରଦେଶର ସୁଲକ୍ଷଣା ରାଜକନ୍ୟା ଲକ୍ଷ୍ମଣାଙ୍କୁ ହରଣ କରି ଆଣିଲେ ।।୫୭।। ଏହିପରି କୃଷ୍ଣଙ୍କର ସହସ୍ର ସହସ୍ର ଭାର୍ଯ୍ୟା ଥିଲେ । ଭୌମାସୁରକୁ ନିହତ କରି ତା'ର ଅନ୍ତଃପୁରରେ ବନ୍ଦୀ ଥିବା ବହୁ ସହସ୍ର ସୁନ୍ଦରୀ ରାଜକନ୍ୟାଙ୍କୁ ସେ ଉଦ୍ଧାର କରିଥିଲେ ।।୫୮।।

## ଅଣଷଠି ଅଧ୍ୟାୟ

# ଭୌମାସୁର ସଂହାର

ରାଜା ପରିକ୍ଷିତ ପଚାରିଲେ, ବ୍ରହ୍ମନ୍, ଭୌମାସୁରକୁ ବଧ କରି ତା'ଦ୍ୱାରା ବନ୍ଦି ହୋଇଥିବା ସ୍ତ୍ରୀମାନଙ୍କୁ ଭଗବାନ ଶ୍ରୀକୃଷ୍ଣ କିପରି ଉଦ୍ଧାର କଲେ, ଶାର୍ଙ୍ଗଧନ୍ୱା କୃଷ୍ଣଙ୍କର ସେହି ବୀରତ୍ୱବିଷୟ ବର୍ଣ୍ଣନା କରନ୍ତୁ ।।୧।। ଶ୍ରୀ ଶୁକଦେବ କହିଲେ, ଭୌମାସୁର ଇନ୍ଦ୍ରଙ୍କର ଛତ୍ରକୁ ହରଣ କରିଥିଲା । ଇନ୍ଦ୍ରଙ୍କ ମାତା ଅଦିତିଙ୍କର କୁଣ୍ଡଳ ଦୁଇଟିକୁ ମଧ୍ୟ ସେ ହରଣ କରିନେଇଥିଲା । ଦେବତାମାନେ ମନ୍ଦର ପର୍ବତର ଯେଉଁଠି ଆରାମ କରନ୍ତି, ସେହି ଆରାମସ୍ଥଳଟିକୁ ମଧ୍ୟ ସେ ଅଧିକାର କରି ନେଇଥିଲା । ଇନ୍ଦ୍ର ଏହି ସମସ୍ତ କଥା କୃଷ୍ଣଙ୍କୁ ଜଣାଇବାରୁ ସେ ଭାର୍ଯ୍ୟା ସତ୍ୟଭାମାଙ୍କ ସହ ଗରୁଡ଼ପୃଷ୍ଠରେ ଆରୋହଣ କରି ପ୍ରାଗ୍‌ଜ୍ୟୋତିଷପୁରକୁ ଯାତ୍ରା କଲେ ।।୨।। ଭୌମାସୁରର ରାଜଧାନୀ ଅତିଶୟ ଦୁର୍ଗମ ଥିଲା । ତାର ଚାରିପାଖରେ ପର୍ବତର ଦୁର୍ଗ, ଶସ୍ତ୍ରର ଦୁର୍ଗ, ଜଳଦୁର୍ଗ (ଗଡ଼ଖାଇ), ଅଗ୍ନିଦୁର୍ଗ (ଜଳନ୍ତା ନିଆଁର ଘେର) ଏବଂ ବାୟୁଦୁର୍ଗମାନ (ଘୂର୍ଣ୍ଣି ବାତ୍ୟା) ଥିଲା ଏବଂ ମୁର ନାମକ ଦୈତ୍ୟର ଆୟୁତ ସଂଖ୍ୟକ ଭୟଙ୍କର ସୁଦୃଢ଼ ପାଶଦ୍ୱାରା ତାହା ସବୁଆଡୁ ଆବୃତ ଥିଲା ।।୩।। ଭଗବାନ୍ ଶ୍ରୀକୃଷ୍ଣ ଗଦାଦ୍ୱାରା ଗିରିଦୁର୍ଗକୁ, ବାଣମାନଙ୍କଦ୍ୱାରା ଶସ୍ତ୍ରଦୁର୍ଗ, ଚକ୍ରଦ୍ୱାରା ଅଗ୍ନି, ଜଳ ଓ ବାୟୁଦୁର୍ଗକୁ ଏବଂ ଖଡ୍ଗଦ୍ୱାରା ମୁର ଦୈତ୍ୟର ଜାଲପାଶମାନଙ୍କୁ ଭେଦ କରି ଖଣ୍ଡ ଖଣ୍ଡ କରିଦେଲେ । ଗଦାଧର ଶ୍ରୀକୃଷ୍ଣ ଶଙ୍ଖନାଦଦ୍ୱାରା ବୀରମାନଙ୍କର ହୃଦୟକୁ ଓ ମନ୍ଦର ପ୍ରାଚୀରରେ ଥିବା ଯନ୍ତ୍ରମାନଙ୍କୁ କମ୍ପିତକରି ତାଙ୍କ ଗୁରୁଭାର ଗଦାରେ ପ୍ରାଚୀରକୁ ଭାଙ୍ଗି ଖଣ୍ଡ ଖଣ୍ଡ କରିଦେଲେ ।।୪-୫।। ଯୁଗାନ୍ତକାଳୀନ ବଜ୍ରର ଧ୍ୱନିପରି ପାଞ୍ଚଜନ୍ୟ ଶଙ୍ଖର ଭୟଙ୍କର ଧ୍ୱନି ଶୁଣି ଜଳମଧ୍ୟରେ ଶୋଇଥିବା ପଞ୍ଚଶିରବିଶିଷ୍ଟ ମୁରାସୁର ଉଠିପଡ଼ିଲା ।।୬।।

ଯୁଗାନ୍ତକାଳୀନ ସୂର୍ଯ୍ୟ ଓ ଅଗ୍ନିପରି ସେ ଏପରି ତେଜୀୟାନ୍ ଥିଲା ଯେ ତାକୁ ଚାହିଁ ହେଉ ନ ଥିଲା । ସେ ତା'ର ପାଞ୍ଚଟା ମୁହଁ ମେଲାଇ ତ୍ରିଶୂଳ ଉଠାଇ ଯେତେବେଳେ ଭଗବାନ୍ କୃଷ୍ଣଙ୍କଆଡ଼କୁ ମାଡ଼ି ଆସିଲା, ଜଣାଗଲା ଯେ ସେ ଯେପରି ତ୍ରିଲୋକକୁ ଗିଳି ପକାଇବ । ସାପ ଗରୁଡ଼ଆଡ଼କୁ ଲମ୍ଫ ଦେବାପରି ସେ ଦଉଡ଼ିଆସିଲା । ତାପରେ ଦୈତ୍ୟ ତା'ର ଶୂଳକୁ ଉଠାଇ ଘୂରାଇ ଘୂରାଇ ଜୋରରେ ଗରୁଡ଼ଙ୍କ ଉପରକୁ ନିକ୍ଷେପ କଲା ଏବଂ ତା'ର ପାଞ୍ଚଟା ଯାକ ମୁହଁରେ ଏପରି ସିଂହରଡ଼ି କଲା ଯେ ତାହା ସ୍ୱର୍ଗ, ମର୍ତ୍ତ୍ୟ, ଦିଗବିଦିଗ ଓ ଆକାଶମଣ୍ଡଳ ସମେତ ସମସ୍ତ ବ୍ରହ୍ମାଣ୍ଡକୁ ପ୍ରତିଧ୍ୱନିତ କଲା ॥୭-୮॥

ଭଗବାନ୍ ଶ୍ରୀକୃଷ୍ଣ ଗରୁଡ଼ଙ୍କଆଡ଼କୁ ଆସୁଥିବା ତ୍ରିଶୂଳକୁ ବଳପୂର୍ବକ ଶରଦ୍ୱାରା ତିନି ଖଣ୍ଡ କରିଦେଲେ ଏବଂ ମୁର ଦୈତ୍ୟର ମୁଖଗହ୍ୱରକୁ ଶରଦ୍ୱାରା ବିଦ୍ଧ କଲେ । ଦୈତ୍ୟ କ୍ରୋଧରେ ଭଗବାନଙ୍କ ପ୍ରତି ଗଦା ନିକ୍ଷେପ କଲା ॥୯॥ ଭଗବାନ୍ ଶ୍ରୀକୃଷ୍ଣ ଯୁଦ୍ଧସ୍ଥଳରେ ତାଙ୍କ ଆଡ଼କୁ ଆସୁଥିବା ସେଇ ଗଦାକୁ ନିଜ ଗଦାଦ୍ୱାରା ହଜାର ଭାଗରେ ଖଣ୍ଡ ଖଣ୍ଡ କରିଦେଲେ । ଏହାପରେ ଅଜେୟ ଶ୍ରୀକୃଷ୍ଣ ବାହୁ ଉଠାଇ ତାଙ୍କଆଡ଼କୁ ଦଉଡ଼ି ଆସୁଥିବା ମୁରାସୁରର ପାଞ୍ଚଟିଯାକ ମୁଣ୍ଡକୁ ଚକ୍ରରେ ଛେଦନ କଲେ ॥୧୦॥ ମୁଣ୍ଡସବୁ କଟିଯିବାପରେ ମୁରାସୁର ପ୍ରାଣତ୍ୟାଗ କରି ଇନ୍ଦ୍ରବଜ୍ରରେ ପର୍ବତଶୃଙ୍ଗ ଭାଙ୍ଗି ପଡ଼ିବାପରି ଜଳମଧ୍ୟରେ ପଡ଼ିଗଲା । ମୁରର ସାତ ପୁଅ ଥିଲେ--ତାମ୍ର, ଅନ୍ତରିକ୍ଷ, ଶ୍ରବଣ, ବିଭାବସୁ, ବସୁ, ନଭସ୍ୱାନ୍ ଓ ଅରୁଣ । ପିତୃବଧରେ ଶୋକାତୁର ହୋଇ ପ୍ରତିଶୋଧ ନେବାପାଇଁ ସେମାନେ କ୍ରୋଧରେ ଅଧୀର ହୋଇପଡ଼ିଲେ । ନରକାସୁରଦ୍ୱାରା ପ୍ରେରିତ ହୋଇ ବିଭିନ୍ନ ଅସ୍ତ୍ରଶସ୍ତ୍ର ଧାରଣପୂର୍ବକ ପୀଠନାମକ ଦୈତ୍ୟକୁ ସେନାପତି କରି ସେମାନେ ରଣକ୍ଷେତ୍ରକୁ ବାହାରିଆସିଲେ ॥୧୧-୧୨॥ କ୍ରୋଧରେ ଉଗ୍ରମୂର୍ତ୍ତି ହୋଇ ସେହି ରାକ୍ଷସମାନେ ଯୁଦ୍ଧସ୍ଥଳରେ ଭଗବାନ୍ ଶ୍ରୀକୃଷ୍ଣଙ୍କୁ ଶର, ଖଡ୍ଗ, ଗଦା, ଶକ୍ତି, ଋଷ୍ଟି, ତ୍ରିଶୂଳାଦି ଶସ୍ତ୍ରମାନ ପ୍ରୟୋଗ କରିବାକୁ ଲାଗିଲେ । କିନ୍ତୁ ଅମିତତେଜା ଭଗବାନ୍ ନିଜ ବାଣରେ ଦୈତ୍ୟମାନଙ୍କର ସମସ୍ତ ଅସ୍ତ୍ରଶସ୍ତ୍ରକୁ ତିଳ ତିଳ କରି କାଟିପକାଇଲେ ॥୧୩॥

ଏହାପରେ ଭଗବାନ୍ ଶ୍ରୀକୃଷ୍ଣ ତାଙ୍କ ବାଣାଘାତରେ ରାକ୍ଷସମାନଙ୍କର ମସ୍ତକ, ଉରୁ, ବାହୁ, ପାଦ ଓ କବଚକୁ ଖଣ୍ଡଖଣ୍ଡ କରି ସେନାପତି ପୀଠ ସହିତ ସେମାନଙ୍କୁ ଯମାଳୟକୁ ପଠାଇଦେଲେ । ଭୂମିପୁତ୍ର ନରକାସୁର କୃଷ୍ଣଙ୍କର ଚକ୍ର ଓ ବାଣରେ ନିଜର ସେନାପତି ଓ ସୈନ୍ୟମାନେ ମରିପଡୁଥିବାର ଦେଖି ଅତିଶୟ କ୍ରୋଧରେ ସମୁଦ୍ରରୁ ଜାତ ମଦସ୍ରାବୀ ଗଜସେନାଙ୍କ ସହ ରାଜଧାନୀରୁ ବାହାରିଆସିଲା । ସୂର୍ଯ୍ୟପରି ତେଜସ୍ୱୀ ଗରୁଡ଼ ଉପରେ ମେଘ କୋଳରେ ବିଜୁଳି ଖେଳୁଥିବା ପରି ଭାର୍ଯ୍ୟା ସତ୍ୟଭାମାଙ୍କ ସହିତ ଭଗବାନ୍ ଶ୍ରୀକୃଷ୍ଣ ଶୋଭା ପାଉଥିଲେ । କୃଷ୍ଣଙ୍କୁ ନିରୀକ୍ଷଣ କରି ରାକ୍ଷସ ଶତଘ୍ନୀ ନାମକ ଗଦାକୁ ତାଙ୍କ ଉପରକୁ ନିକ୍ଷେପ କଲା । ତାର ସୈନ୍ୟମାନେ ମଧ୍ୟ ଏକାବେଳକେ ବହୁ ଅସ୍ତ୍ରଶସ୍ତ୍ର ବିନ୍ଧିବାକୁ ଲାଗିଲେ ॥୧୪-୧୫॥ ଭଗବାନ୍ ଶ୍ରୀକୃଷ୍ଣ ବିଚିତ୍ର ପଙ୍ଖଯୁକ୍ତ ତୀକ୍ଷ୍ଣ ଶରମାନଙ୍କଦ୍ୱାରା ନରକାସୁରର ଶତଘ୍ନୀକୁ ଏବଂ ଗଜ ଓ ଅଶ୍ୱ ସହିତ ତାର ବିଶାଳ ସୈନ୍ୟବାହିନୀକୁ ଛିନ୍ନଭିନ୍ନ କରିଦେଲେ । ସେମାନଙ୍କର ବାହୁ, ଉରୁ, କଣ୍ଠଦେଶ ଓ ଦେହସବୁ ଖଣ୍ଡବିଖଣ୍ଡ ହୋଇପଡ଼ିଲା ॥୧୬॥ ହେ କୁରୁଗୌରବ ! ନରକାସୁରର ଯୋଦ୍ଧାମାନେ କୃଷ୍ଣଙ୍କ ଉପରେ ଯେଉଁସବୁ ଅସ୍ତ୍ରଶସ୍ତ୍ର ପ୍ରୟୋଗ କରୁଥିଲେ, ଭଗବାନ୍ ତିନୋଟି ମାତ୍ର ତୀକ୍ଷ୍ଣ ଶରଦ୍ୱାରା ସେସବୁକୁ ଗୋଟି ଗୋଟି କରି କାଟିପକାଇଲେ ॥୧୭॥

ଭଗବାନଙ୍କୁ ପିଠିରେ ବୋହୁଥିବା ଗରୁଡ଼ ମଧ୍ୟ ନିଜର ପକ୍ଷାଘାତରେ ହସ୍ତୀମାନଙ୍କୁ ବିନାଶ କରୁଥିଲେ । ତାଙ୍କ ଚଞ୍ଚୁ, ପକ୍ଷ ଓ ନଖର ଆଘାତରେ ବିକଳ ହୋଇ ହସ୍ତୀମାନେ ଯୁଦ୍ଧଭୂମି ଛାଡ଼ି ନଗରମଧ୍ୟରେ ପ୍ରବେଶ କଲେ । ତାହା ଦେଖି ନରକ ଏକାକୀ ଯୁଦ୍ଧ କଲା ॥୧୮॥ ଗରୁଡ଼ଙ୍କଦ୍ୱାରା ପୀଡ଼ିତ ନିଜର ସେନା ଯୁଦ୍ଧଭୂମିରୁ ପଳାଉଥିବାର ଦେଖି ନରକାସୁର ଗରୁଡ଼ଙ୍କୁ ଏକ ଶକ୍ତିଦ୍ୱାରା ପ୍ରହାରକଲା, ଯେଉଁ ଶକ୍ତି ଆଗରେ ଅତୀତରେ ଇନ୍ଦ୍ରଙ୍କର ବଜ୍ର ମଧ୍ୟ ବିଫଳ ହୋଇଥିଲା । କିନ୍ତୁ ହାତୀକୁ ଏକ ଫୁଲମାଳରେ ଆହତକଲେ ସେ ଯେପରି ଆଦୌ ହଲଚଲ ହୁଏ ନାହିଁ, ଗରୁଡ଼ ସେହିପରି ସେହି ଶକ୍ତିଦ୍ୱାରା ବିଦ୍ଧ ହୋଇ

ଅଣୁମାତ୍ର ବିଚଳିତ ହେଲେ ନାହିଁ । ଗରୁଡ଼ଙ୍କୁ ମାରିବାରେ ଉଦ୍ୟମ ବ୍ୟର୍ଥ ହେବାରୁ ଭୌମାସୁର କୃଷ୍ଣଙ୍କୁ ମାରିବାପାଇଁ ଏକ ଶୂଳ ଧାରଣ କଲା ।।୧୯-୨୦।। କିନ୍ତୁ ଗଜାରୂଢ଼ ନରକାସୁର ସେହି ଶୂଳକୁ ଛାଡ଼ିବା ପୂର୍ବରୁ ଭଗବାନ୍ କ୍ଷୁରଧାର ଚକ୍ରଦ୍ୱାରା ତାର ଶିରଚ୍ଛେଦନ କଲେ ।।୨୧।। ସୁନ୍ଦର ମୁକୁଟ ଓ ଉଜ୍ଜଳ କୁଣ୍ଡଳଦ୍ୱାରା ଭୂଷିତ (ନରକାସୁରର) ସମୁଜ୍ଜ୍ୱଳ ମସ୍ତକ ଭୂମିଉପରେ ପତିତ ହେଲା । ନରକାସୁରର ସ୍ୱଜନମାନେ ହାହାକାର କଲେ । ଋଷିମାନେ ସାଧୁବାଦ କଲେ ଏବଂ ଇନ୍ଦ୍ରାଦି ଦେବତାମାନେ ଭଗବାନଙ୍କ ଉପରେ ପୁଷ୍ପମାଳା ବିଞ୍ଚି ସ୍ତୁତି କରିବାକୁ ଲାଗିଲେ ।।୨୨।। ଏହାପରେ ପୃଥିବୀ ଦେବୀ ମୂର୍ତ୍ତିମତୀ ହୋଇ ଶ୍ରୀକୃଷ୍ଣଙ୍କ ନିକଟରେ ଉପସ୍ଥିତ ହେଲେ ଏବଂ ତାଙ୍କୁ ବୈଜୟନ୍ତୀନାମକ ବନମାଳା ସହିତ ତପ୍ତ କାଞ୍ଚନରେ ଥିବା ରତ୍ନମାନଙ୍କଦ୍ୱାରା ସମୁଜ୍ଜ୍ୱଳ କୁଣ୍ଡଳଦୁଇଟିକୁ, ବରୁଣଙ୍କର ଛତ୍ରକୁ, (ମନ୍ଦରଶିଖରକୁ) ଓ ମହାମଣିକୁ ପ୍ରଦାନକଲେ ।।୨୩।। ରାଜନ୍, ଏହାପରେ ପୃଥ୍ୱୀ ଦେବୀ ଭକ୍ତିବିନମ୍ର ଚିତ୍ତରେ କୃତାଞ୍ଜଳି ହୋଇ ବ୍ରହ୍ମାଦି ଦେବତାମାନଙ୍କଦ୍ୱାରା ପୂଜିତ ବିଶ୍ୱେଶ୍ୱର ଶ୍ରୀକୃଷ୍ଣଙ୍କୁ ପ୍ରଣତ ହୋଇ ସ୍ତୁତି କରିବାକୁ ଲାଗିଲେ-- ।।୨୪।। ଭୂଦେବୀ କହିଲେ, ହେ ଶଙ୍ଖ-ଚକ୍ର-ଗଦାଧର, ହେ ଦେବଦେବେଶ, ଆପଣଙ୍କୁ ନମସ୍କାର । ହେ ପରମାତ୍ମା, ଭକ୍ତଙ୍କର ଇଚ୍ଛାରେ ଆପଣ ଶରୀର ଧାରଣକରିଛନ୍ତି । ଆପଣଙ୍କୁ ମୋର ନମସ୍କାର ।।୨୫।। ହେ ପଦ୍ମନାଭ, ପଦ୍ମମାଳୀ, ପଦ୍ମନେତ୍ର, ପଦ୍ମପାଦ, ଆପଣଙ୍କୁ ବାରମ୍ବାର ନମସ୍କାର । ଆପଣ ଭଗବାନ୍-- ସମସ୍ତ ଐଶ୍ୱର୍ଯ୍ୟର ଆଧାର । ସମସ୍ତ ପ୍ରାଣୀଙ୍କର ଆଶ୍ରୟସ୍ଥଳ, ବାସୁଦେବ ଏବଂ ସର୍ବବ୍ୟାପୀ ବିଷ୍ଣୁ । ଆପଣ ଏହି ଜଗତ୍‌ର ଆଦିମୂଳ ପୁରୁଷ । ଆପଣ ଆଦିବୀଜ-- ଅର୍ଥାତ୍ (ଜଗତ୍) କାରଣର ମଧ୍ୟ କାରଣ, ଏବଂ ସମସ୍ତ ଜ୍ଞାନ ଓ ଚେତନାର ସ୍ୱରୂପ । ଆପଣଙ୍କୁ ନମସ୍କାର ।।୨୬-୨୭।। ଆପଣଙ୍କର ଜନ୍ମ ନାହିଁ; କିନ୍ତୁ ଏହି ଜଗତ୍ ଆପଣଙ୍କଠାରୁ ଜନ୍ମ ନେଇଛି । ଆପଣ ଅନନ୍ତଶକ୍ତିଯୁକ୍ତ ବ୍ରହ୍ମ । ସ୍ଥୂଳ ଓ ସୂକ୍ଷ୍ମ ରୂପରେ ଯେଉଁ ଜଗତ୍ ରହିଛି, ଆପଣ ତାର ସ୍ୱରୂପ । ହେ ଭୂତାତ୍ମା, ହେ ପରମାତ୍ମା, ଆପଣଙ୍କୁ ନମସ୍କାର ।।୨୮।। ପ୍ରଭୁ, ଆପଣ ନିଜେ ନିର୍ଲିପ୍ତ ହେଲେ ମଧ୍ୟ ଜଗତ୍‌ସୃଷ୍ଟି ଇଚ୍ଛାକରି ପ୍ରଚଣ୍ଡ ରଜୋଗୁଣ ଧାରଣ କରନ୍ତି । ଜଗତର ପାଳନପାଇଁ ସତ୍ତ୍ୱଗୁଣକୁ ଓ ସଂହାରପାଇଁ ତମୋଗୁଣକୁ ଧାରଣ କରନ୍ତି । ହେ ଜଗଦୀଶ୍ୱର, ଆପଣ ପ୍ରକୃତି, ପୁରୁଷ ଏବଂ ଦୁହିଁଙ୍କର ସଂଯୋଗ ବିୟୋଗକାରୀ କାଳ ଏବଂ ଏମାନଙ୍କଠାରୁ ଭିନ୍ନ ହୋଇ ଏମାନଙ୍କ ଊର୍ଦ୍ଧ୍ୱରେ ବିଦ୍ୟମାନ ।।୨୯।।

ଭଗବାନ୍, ମୁଁ, ଜଳ, ତେଜ, ବାୟୁ, ଆକାଶ, ପଞ୍ଚତନ୍ମାତ୍ର, ଇନ୍ଦ୍ରିୟମାନଙ୍କ ଅଧିଷ୍ଠାତା ଦେବତା, ମନ, ଚକ୍ଷୁ ପ୍ରଭୃତି ଜ୍ଞାନେନ୍ଦ୍ରିୟ ଓ ବାକ୍ ପ୍ରଭୃତି କର୍ମେନ୍ଦ୍ରିୟ, ଏହାଙ୍କ ମୂଳ ଅହଙ୍କାର ଓ ମହତ୍ତତ୍ତ୍ୱ, ଏବଂ ଏହି ଅଖିଳ ଚରାଚର ଜଗତ୍ ଆପଣଙ୍କଠାରେ ଅବସ୍ଥିତ । ଏସବୁ ଆପଣଙ୍କଠାରୁ ପୃଥକ୍ ବୋଲି ଯାହା ମନେହୁଏ, ତାହା କେବଳ ଭ୍ରମମାତ୍ର । ଆପଣ ହିଁ ଅଦ୍ୱିତୀୟ ଏବଂ ଏହି ଭ୍ରମର ଆଧାର ।।୩୦।। ପ୍ରଭୁ, ଆପଣ ଶରଣାଗତର ଆର୍ତ୍ତି ହରଣ କରନ୍ତି । ଏ ହେଉଛି, ମୋ' ପୁତ୍ର ସେଇ ଭୌମାସୁରର ପୁତ୍ର ଭଗଦତ୍ତ । ଭୟଭୀତ ହୋଇ ଆପଣଙ୍କ ପାଦପଦ୍ମରେ ଆଶ୍ରୟ ନେବାକୁ ଆସିଛି । ତେଣୁ ଏହାକୁ ରକ୍ଷା କରନ୍ତୁ । ସକଳପାପହାରୀ ଆପଣଙ୍କ କରକମଳକୁ ଏହାର ମସ୍ତକରେ ସ୍ଥାପନ କରନ୍ତୁ ।।୩୧।। ଏହିପରି ବିନୟ ଭକ୍ତିରେ ପୃଥ୍ୱୀଦେବୀ ଭଗବାନ ଶ୍ରୀକୃଷ୍ଣଙ୍କୁ ପ୍ରାର୍ଥନା କଲେ । ଭଗବାନ ଭଗଦତ୍ତଙ୍କୁ ଅଭୟ ପ୍ରଦାନ କରି ଭୌମାସୁରର ସକଳ ଐଶ୍ୱର୍ଯ୍ୟପୂର୍ଣ୍ଣ ପ୍ରାସାଦରେ ପ୍ରବେଶ କଲେ ।।୩୨।। ସେଠାରେ ଶ୍ରୀକୃଷ୍ଣ ଦେଖିଲେ ଯେ, ଭୌମାସୁର ରାଜାମାନଙ୍କଠାରୁ ବଳପୂର୍ବକ ଷୋଳହଜାର ରାଜକନ୍ୟାଙ୍କୁ ଅପହରଣ କରି ରଖିଛି ।।୩୩।। ବୀରଶ୍ରେଷ୍ଠ ସେଇ ସଶ୍ରୀକୃଷ୍ଣଙ୍କୁ ସେଠାରେ ପ୍ରବେଶ କରିଥିବା ଦେଖି ସ୍ତ୍ରୀମାନେ ମୋହିତ ହୋଇଗଲେ । ଏହାକୁ ଦୈବୀ କୃପା ବୋଲି ମନେକରି ସେମାନେ ମନେମନେ ତାଙ୍କୁ ଅଭୀଷ୍ଟପତିରୂପେ ବରଣ କଲେ ।।୩୪।। 'ଏ ମୋର ପତି ହୁଅନ୍ତୁ, ବିଧାତା ତାହା ଅନୁମୋଦନ କରନ୍ତୁ'--ବୋଲି ଚିନ୍ତାକରି ସେମାନଙ୍କର ସମସ୍ତଙ୍କର ହୃଦୟ କୃଷ୍ଣମୟ ହୋଇଗଲା ।।୩୫।। ଏହାପରେ ଭଗବାନ୍ ଶ୍ରୀକୃଷ୍ଣ ସେହିସବୁ ନିର୍ମଳବସ୍ତ୍ରପରିହିତା ସୁନ୍ଦରୀ କନ୍ୟାମାନଙ୍କୁ ଶିବିକାରେ ବସାଇ ଦ୍ୱାରକାକୁ ପଠାଇଦେଲେ ଏବଂ ତା ସହିତ ମୂଲ୍ୟବାନ ରଥ, ଅଶ୍ୱ ଓ ବିପୁଳ ଧନରାଶିକୁ ମଧ୍ୟ ପଠାଇଦେଲେ । ଐରାବତ ବଂଶରେ ଜାତ ଏବଂ

ଚାରୋଟି ଦାନ୍ତବିଶିଷ୍ଟ ବେଗଗାମୀ ଚଉଷଠିଟି ଶ୍ୱେତହସ୍ତୀ ମଧ୍ୟ ଭଗବାନ୍ ଦ୍ୱାରକାକୁ ପଠାଇଲେ । ଏହାପରେ ଭଗବାନ୍ ଶ୍ରୀକୃଷ୍ଣ ଇନ୍ଦ୍ରପୁରୀକୁ ଯାଇ ଅଦିତିଙ୍କୁ କୁଣ୍ଡଳ ଦାନ କଲେ । ଇନ୍ଦ୍ର ଶଚୀଦେବୀଙ୍କ ସହିତ ସତ୍ୟଭାମା ଓ ଶ୍ରୀକୃଷ୍ଣଙ୍କୁ ପୂଜା କଲେ ।।୩୬-୩୮।। ଫେରି ଆସିବା ସମୟରେ ସତ୍ୟଭାମାଙ୍କ ପ୍ରେରଣାରେ ଭଗବାନ ଶ୍ରୀକୃଷ୍ଣ ପାରିଜାତ ବୃକ୍ଷକୁ ଉପାଡ଼ି ଗରୁଡ଼ଙ୍କ ପିଠିରେ ରଖିଦେଲେ । ଇନ୍ଦ୍ର ଓ ଦେବତାମାନେ ଏହାର ବିରୋଧ କରିବାରୁ ସେମାନଙ୍କୁ ଯୁଦ୍ଧରେ ପରାସ୍ତ କରି ପାରିଜାତକୁ ନେଇ କୃଷ୍ଣ ଦ୍ୱାରକାକୁ ଚାଲିଆସିଲେ ।।୩୯।। ଏହାପରେ ସେହି ପାରିଜାତ ବୃକ୍ଷକୁ ସତ୍ୟଭାମାଙ୍କ ଉଦ୍ୟାନରେ ରୋପଣ କରାଗଲା । ଏହାଦ୍ୱାରା ଉଦ୍ୟାନର ଶୋଭା ବଢ଼ିଗଲା । ପାରିଜାତଫୁଲର ଗନ୍ଧଲୋଭୀ ଓ ମଧୁଲୋଭୀ ଭ୍ରମରମାନେ ସ୍ୱର୍ଗରୁ ଦ୍ୱାରକାକୁ ଚାଲିଆସିଲେ ।।୪୦।। ପରିକ୍ଷିତ, ଯେତେବେଳେ ଇନ୍ଦ୍ରଙ୍କର କାମ ପଡ଼େ, ସେତେବେଳେ ସେ ମୁଣ୍ଡ ନୁଆଇଁ ତାଙ୍କ କିରୀଟଦ୍ୱାରା ଭଗବାନଙ୍କର ଚରଣ ସ୍ପର୍ଶ କରି ସାହାଯ୍ୟ ଭିକ୍ଷା କରନ୍ତି । କିନ୍ତୁ କାମ ସରିଗଲେ ସେ ସେହି କୃଷ୍ଣଙ୍କ ସହିତ ଲଢ଼ିବାକୁ ବାହାରିପଡ଼ନ୍ତି । ଦେବତାମାନଙ୍କର ଏହି ତମୋଗୁଣ ଓ ଧନଗର୍ବକୁ ଧିକ୍ ।।୪୧।।

ଏହାପରେ ଗୋଟିଏ ମୁହୂର୍ତ୍ତରେ ଭିନ୍ନ ଭିନ୍ନ ଭବନରେ ଯେତିକି କନ୍ୟା ସେତିକି କୃଷ୍ଣରୂପ ଧାରଣ କରି ସେଇ ସ୍ତ୍ରୀମାନଙ୍କୁ ଭଗବାନ୍ ଶ୍ରୀକୃଷ୍ଣ ଯଥାବିଧି ବିବାହ କଲେ । କାରଣ ସେ ସର୍ବଶକ୍ତିମାନ୍ ଓ ସ୍ୱୟଂସମ୍ପୂର୍ଣ୍ଣ ଥିଲେ ।।୪୨।। ସେହି ଅଚିନ୍ତ୍ୟକର୍ମା ଭଗବାନ୍ ନିଜେ ଆତ୍ମାନନ୍ଦରେ ତୃପ୍ତ ଥିଲେ ମଧ୍ୟ ଲକ୍ଷ୍ମୀଙ୍କ ଅଂଶଭୂତା ନିଜର ସ୍ତ୍ରୀମାନଙ୍କଠାରୁ କେବେହେଲେ ଅନ୍ତର ନ ହୋଇ ସେହିମାନଙ୍କ ଗୃହରେ ସାଧାରଣ ଲୋକପରି ଗାର୍ହସ୍ଥ୍ୟ ଧର୍ମ ଆଚରଣ କରୁଥିଲେ । ତାଙ୍କ ପତ୍ନୀମାନଙ୍କର ଗୃହ ସବୁଠାରୁ ଐଶ୍ୱର୍ଯ୍ୟଶାଳୀ ଥିଲା ଏବଂ ଶ୍ରୀକୃଷ୍ଣ ସେମାନଙ୍କ ସହ ନିତ୍ୟ ରମଣ କରୁଥିଲେ ।।୪୩।। ବ୍ରହ୍ମାଦି ଲୋକପାଳମାନେ ଯେଉଁ ଭଗବାନଙ୍କର ସ୍ୱରୂପ ଓ ଗତି ଜାଣିପାରନ୍ତି ନାହିଁ, ସେହି ରମାପତି ଶ୍ରୀକୃଷ୍ଣଙ୍କୁ ସ୍ୱାମୀରୂପେ ପାଇ ସ୍ତ୍ରୀମାନଙ୍କର ଆନନ୍ଦ ଦିନକୁ ଦିନ ବଢୁଥିଲା । ସେମାନେ ଅନୁରାଗ, ପ୍ରେମଭରା ଚାହାଣି, ନବସଙ୍ଗମ ଏବଂ ତାହାକୁ କେନ୍ଦ୍ରକରି ହାସ ପରିହାସ ଓ ଲଜ୍ଜା ଆଦି ସୁଖ ଅନୁଭବ କରୁଥିଲେ ।।୪୪।। ସେହି ସ୍ତ୍ରୀମାନଙ୍କ ମହଲରେ ଶହ ଶହ ସେବାକାରିଣୀ ଦାସୀ ରହିଥା'ନ୍ତି; ତଥାପି ଯେତେବେଳେ ସେମାନଙ୍କ ମହଲରେ ଭଗବାନ ପ୍ରବେଶ କରନ୍ତି, ସେତେବେଳେ ସେମାନେ ନିଜେ ଆଗକୁ ଚାଲିଆସି ଆଦରପୂର୍ବକ ତାଙ୍କୁ ପାଛୋଟି ନିଅନ୍ତି । ଶ୍ରେଷ୍ଠ ଆସନ ଉପରେ ବସାନ୍ତି ଏବଂ ଉତ୍ତମ ସାମଗ୍ରୀମାନଙ୍କଦ୍ୱାରା ପୂଜା କରନ୍ତି; ପାଦ ଧୋଇଦେବା, ପାନ ଖୁଆଇଦେବା, ପାଦ ମଞ୍ଚାଳିବା, ପଙ୍ଖା କରିବା ଏବଂ ଗନ୍ଧ-ମାଲ୍ୟ ପ୍ରଦାନ କରିବା, ମୁଣ୍ଡ କୁଣ୍ଡାଇଦେବା, ଶେଯ ସଜାଇବା, ଗାଧୋଇଦେବା ଓ ତାଙ୍କୁ ଖୁଆଇବା କାର୍ଯ୍ୟ ନିଜ ହାତରେ କରି ସେମାନେ ତାଙ୍କର ସେବା କରୁଥିଲେ ।।୪୫।।

## ଷାଠିଏ ଅଧ୍ୟାୟ

# ରୁକ୍ମିଣୀଙ୍କ ସହ ପ୍ରେମ କଳହ

ଶ୍ରୀ ଶୁକଦେବ କହିଲେ, ଦିନେ ଜଗତ୍‌ଗୁରୁ ଭଗବାନ ଶ୍ରୀକୃଷ୍ଣ ରୁକ୍ମିଣୀଙ୍କର ପଲଙ୍କରେ ଆରାମରେ ବସିଥିଲେ । ସେହି ସମୟରେ ଭୀଷ୍ମକଙ୍କର କନ୍ୟା ସଖୀମାନଙ୍କ ସହିତ ତାଙ୍କୁ ପଙ୍ଖା କରୁଥିଲେ । ଯେଉଁ ଈଶ୍ୱର ଅବଲୀଳାକ୍ରମେ ଏହି ବିଶ୍ୱର ସୃଷ୍ଟି, ପାଳନ ଓ ସଂହାର କରନ୍ତି, ସେ ଜନ୍ମରହିତ ହେଲେ ମଧ୍ୟ ନିଜକୃତ ଧର୍ମମର୍ଯ୍ୟାଦା ରକ୍ଷା ପାଇଁ ଯଦୁକୁଳରେ ଜନ୍ମ ହୋଇଥିଲେ ।।୧-୨।। ରୁକ୍ମିଣୀଙ୍କର ଅନ୍ଦର ମହଲ ସୁନ୍ଦର ଚାନ୍ଦୁଆରେ ଶୋଭା ପାଉଥିଲା । ଏହି ଚାନ୍ଦୁଆରେ ମୋତିର ଝାଲର ସବୁ ଝୁଲୁଥିଲା । ମଣିମୟ ଦୀପ ସବୁ ଗୃହକୁ ଆଲୋକିତ କରୁଥିଲା ।।୩।। ମଲ୍ଲୀମାଳାମାନଙ୍କରେ ଗୃହ ମହକିଉଠୁଥିଲା ।

ପୁଷ୍ପମାନଙ୍କରେ ଭ୍ରମରମାନେ ବସି ଗୁଞ୍ଜାରଣ କରୁଥିଲେ । ଜଳାକବାଟିମାନଙ୍କରୁ ଶୁଭ୍ର ଚନ୍ଦ୍ରଜ୍ୟୋସ୍ନା ଗୃହମଧ୍ୟରେ ପଡୁ ଥିଲା ।।୪।। ଉଦ୍ୟାନରୁ ପାରିଜାତ ଫୁଲର ଗନ୍ଧ ବହନ କରି ମନ୍ଦମନ୍ଦ ଶୀତଳ ବାୟୁ ବହିଆସୁଥିଲା । ଅଗୁରୁର ଧୂପ ଝରକା ଦେଇ ବାହାରକୁ ଯାଉଥିଲା । ପଲଙ୍କ ଉପରେ ଦୁଗ୍ଧଫେନନିଭ ଉତ୍ତମ ଶୁଭ୍ର ଶେଯରେ ଜଗଦୀଶ୍ୱର ଶ୍ରୀକୃଷ୍ଣ ସୁଖରେ ବସିଥିବା ବେଳେ ଦେବୀ ରୁକ୍ମିଣୀ ତାଙ୍କ ପାଖକୁ ଆସି ସଖୀର ହାତରୁ ରତ୍ନବେଣ୍ଟ ଲାଗିଥିବା ଚଅଁରଟିକୁ ଆଣି ତଦ୍ୱାରା ତାଙ୍କର ଚାମର ସେବା କରୁଥିଲେ ।।୫-୭।। ଶ୍ରୀକୃଷ୍ଣଙ୍କ ପାଖରେ ରୁକ୍ମିଣୀଙ୍କ କର କମଳରେ ରତ୍ନମୁଦି, କଙ୍କଣ ଓ ବ୍ୟଜନ ଶୋଭା ପାଉଥିଲା । ପାଦରେ ମଣିମୟ ନୂପୁର ରୁଣୁଝୁଣୁ କରୁଥିଲା । ବସ୍ତ୍ରାନ୍ତଦ୍ୱାରା ଆଚ୍ଛାଦିତ କୁଚଦ୍ୱୟର କୁଙ୍କୁମ ଲାଗି ଗଳାର ହାରଟି ରକ୍ତିମ ଦେଖାଯାଉଥିଲା । ତା'ର ତେଜଦ୍ୱାରା ନିତମ୍ବରେ ବହୁମୂଲ୍ୟ ଚନ୍ଦ୍ରହାର ଶୋଭା ପାଉଥିଲା । ରୁକ୍ମିଣୀଙ୍କର କୁଂଚିତ କୁନ୍ତଳ, କର୍ଣ୍ଣରେ କୁଣ୍ଡଳ, ଏବଂ କଣ୍ଠରେ ସୁବର୍ଣ୍ଣର ହାର ଶୋଭା ପାଉଥିଲା ତାଙ୍କ ମୁଖପଦ୍ମରୁ ସ୍ମିତହାସରୂପକ ସୁଧା ଝରିପଡୁଥିଲା ; ଲୀଳା କରିବାପାଇଁ ଭଗବାନ ଶ୍ରୀକୃଷ୍ଣ ଯେପରି ମନୁଷ୍ୟଶରୀର ଧାରଣ କରିଥିଲେ, ଲକ୍ଷ୍ମୀ ଦେବୀ ସେହିପରି ରୁକ୍ମିଣୀଙ୍କ ରୂପରେ ଅବତୀର୍ଣ୍ଣ ହୋଇଥିଲେ । କୃଷ୍ଣଙ୍କ ଛଡ଼ା ତାଙ୍କର ଅନ୍ୟ ଗତି ନ ଥିଲା । ତାଙ୍କୁ ଦେଖି ଆନନ୍ଦରେ ହସି ହସି ଶ୍ରୀକୃଷ୍ଣ କହିବାକୁ ଲାଗିଲେ-- ।।୮-୯।। ଭଗବାନ ଶ୍ରୀକୃଷ୍ଣ କହିଲେ, ରାଜନନ୍ଦିନୀ, ଲୋକପାଳଙ୍କପରି ଐଶ୍ୱର୍ଯ୍ୟଶାଳୀ ଏବଂ ରୂପ, ଉଦାରତା ଓ ବଳବୀର୍ଯ୍ୟ ସମ୍ପନ୍ନ ମହାପ୍ରଭାବଶାଳୀ ଓ ଧନଶାଳୀ ରାଜାମାନେ ତୁମକୁ ପାଇବାକୁ ଚାହୁଥିଲେ ।।୧୦।। ଚେଦିରାଜ ଶିଶୁପାଳ ଆଦି ତୁମପ୍ରତି କାମାସକ୍ତ ହୋଇପଡ଼ିଥିଲେ । ତୁମର ପିତା ଓ ବଡ଼ଭାଇ ତାଙ୍କ ସହିତ ତୁମକୁ ବିବାହ କରାଇବାପାଇଁ ବାକ୍‌ଦାନ କରିସାରିଥିଲେ । ତୁମେ ସେମାନଙ୍କୁ ଛାଡ଼ିଦେଇ ତୁମର ସମାନ ହୋଇ ନ ଥିବା ଆମକୁ କାହିଁକି ପତିରୂପେ ବରଣକଲ ? ।।୧୧।। ସୁନ୍ଦରି ! ଜରାସନ୍ଧ ଆଦି ରାଜାମାନଙ୍କୁ ଭୟକରି ଆମେ ସମୁଦ୍ରର ଶରଣାପନ ହୋଇଛୁ । ବଳବାନ୍ ରାଜାମାନେ ଶତ୍ରୁ ହୋଇ ଆମ ପଛରେ ଲାଗି ରହିଛନ୍ତି । ରାଜସିଂହାସନରୁ ମଧ୍ୟ ମୁଁ ବଞ୍ଚିତ ।।୧୨।। ସୁନ୍ଦରି ! ଯେଉଁ ଲୋକମାନେ କେଉଁ ବାଟରେ ଯାନ୍ତି ଓ କଣ କରନ୍ତି ତାହା ଜଣା ନ ଥାଏ, ଲୋକାଚାର ଦୃଷ୍ଟିରୁ ସେମାନଙ୍କ ଆଚରଣ ମଧ୍ୟ ଅନୁକୂଳ ନୁହେ ଓ ସ୍ତ୍ରୀମାନଙ୍କୁ ସନ୍ତୁଷ୍ଟ କରିବା ସେମାନଙ୍କୁ ଜଣା ନ ଥାଏ ସେପରି ପୁରୁଷମାନଙ୍କୁ ଅନୁସରଣ କରୁଥିବା ସ୍ତ୍ରୀଲୋକମାନେ ପ୍ରାୟ ଦୁଃଖ ଭୋଗ କରନ୍ତି ।।୧୩।। ଆମର କିଛି ନାହିଁ । କିଛି ନ ଥିବା ଲୋକମାନେ ଆମର ସବୁବେଳେ ପ୍ରିୟ । ତେଣୁ ହେ ସୁନ୍ଦରି ! ଧନାଢ୍ୟ ଲୋକମାନେ ପ୍ରାୟ ମୋତେ ପସନ୍ଦ କରନ୍ତି ନାହିଁ ।।୧୪।। ଧନ, କୁଳ, ରୂପ, ଐଶ୍ୱର୍ଯ୍ୟ ଓ ମାନ ଯେଉଁ ଦୁହେଁ ସମକକ୍ଷ, ସେ ଦୁହିଁଙ୍କର ବିବାହ ଓ ମିତ୍ରତା ହୁଏ । ଉତ୍ତମ ଓ ଅଧମ ଲୋକଙ୍କ ମଧ୍ୟରେ କ୍ୱଚିତ୍ ସମ୍ବନ୍ଧ କରାଯାଏ ।।୧୫।। ବିଦର୍ଭରାଜନନ୍ଦିନୀ, ତୁମେ ଅଦୂରଦର୍ଶିନୀ । ଏହା ଜାଣି ନ ପାରି ଭିକ୍ଷୁମାନଙ୍କଦ୍ୱାରା ବୃଥା ପ୍ରଶଂସିତ ଏବଂ ଗୁଣବିବର୍ଜିତ ମୋତେ ବରଣକଲ ।।୧୬।। ଏବେ ମଧ୍ୟ ସମୟ ଅଛି, ତୁମେ ନିଜର ଅନୁରୂପ କୌଣସି କ୍ଷତ୍ରିୟଶ୍ରେଷ୍ଠଙ୍କୁ ବରଣ କର, ଯାହାଙ୍କୁ ଆଶ୍ରୟକରି ତୁମେ ଇହଲୋକ ଓ ପରଲୋକରେ ବାସ୍ତବ ସୁଖସମ୍ଭୋଗ ଲାଭ କରିବ ।।୧୭।। ସୁନ୍ଦରି ! ଶିଶୁପାଳ, ଶାଲ୍ୱ, ଜରାସନ୍ଧ ଓ ଦନ୍ତବକ୍ର ପ୍ରଭୃତି ରାଜାମାନେ ଓ ତୁମର ବଡ଼ ଭାଇ ରୁକ୍ମୀ ମଧ୍ୟ ମୋର ଶତ୍ରୁତା କରୁଛନ୍ତି ।।୧୮।। କଲ୍ୟାଣି ! ମୁଁ ଦୁଷ୍ଟ ଲୋକଙ୍କର ତେଜହରଣ କରେ । ତେଣୁ ବୀର୍ଯ୍ୟମଦରେ ଅନ୍ଧ ଏହି ଦୃପ୍ତ ରାଜାମାନଙ୍କର ଗର୍ବ ହଟାଇବାପାଇଁ ମୁଁ ତୁମକୁ ଘେନିଆସିଛି । କିନ୍ତୁ ଘରଦ୍ୱାର ଓ ଦେହ ପ୍ରତି ମୁଁ ଉଦାସୀନ । ସ୍ତ୍ରୀ, ପୁତ୍ର, କନ୍ୟା ଓ ଧନପାଇଁ ମୋର କାମନା ନାହିଁ । ମୁଁ କେବଳ ନିଜର ସ୍ୱଭାବସିଦ୍ଧ ଆନନ୍ଦରେ ପୂର୍ଣ୍ଣ ରହିଥାଏ । ଦୀପର ଜ୍ୟୋତିପରି ମୁଁ ନିଷ୍କ୍ରିୟ ହୋଇ ରହିଥାଏ ।।୧୯-୨୦।। ଶ୍ରୀ ଶୁକଦେବ କହିଲେ, ଭଗବାନ ଶ୍ରୀକୃଷ୍ଣ ରୁକ୍ମିଣୀଙ୍କଠାରୁ କ୍ଷଣେମାତ୍ର ଅଲଗା ହେଉ ନ ଥିଲେ । ତେଣୁ ସେ ନିଜକୁ କୃଷ୍ଣଙ୍କର ସବୁଠାରୁ ପ୍ରିୟତମା ବୋଲି ସେ ନିଜକୁ ମନେ କରୁଥିଲେ । ତାଙ୍କ ଗର୍ବକୁ ଭାଙ୍ଗିବା ପାଇଁ ଏତିକି କହି ଭଗବାନ୍ ଶ୍ରୀକୃଷ୍ଣ ଚୁପ୍ ହୋଇଗଲେ ।।୨୧।। ଯେତେବେଳେ ରୁକ୍ମିଣୀ ତ୍ରିଲୋକର ସ୍ୱାମୀ ନିଜପ୍ରିୟ ପତିଙ୍କଠାରୁ ପୂର୍ବରୁ ଶୁଣି ନ ଥିବା ଏପରି ଅପ୍ରିୟ ବାକ୍ୟ ଶୁଣିଲେ, ତାଙ୍କର ହୃତ୍‌କମ୍ପ ଜାତ ହେଲା । ସେ ଭୟଭୀତ

ହୋଇ ରୋଦନ କରିବାକୁ ଲାଗିଲେ ଅଗାଧ ଚିନ୍ତାସାଗର ମଧ୍ୟରେ ବୁଡ଼ିଗଲେ ॥୨୨॥ ସେ ନିଜର କୋମଳ ପାଦର ଅରୁଣବର୍ଣ୍ଣ ନଖମାନଙ୍କଦ୍ୱାରା ଭୂମି ଉପରେ ଗାର ପକାଇବାକୁ ଲାଗିଲେ ଏବଂ ଲୁହଧାରରେ ଆଖିର କଜଳ ମିଶି କୁଚର କୁଙ୍କୁମକୁ ଧୋଇବାକୁ ଲାଗିଲା । ସେ ତଳକୁ ମୁହଁ ପୋତି ରହିଲେ । ଅତି ଦୁଃଖରେ ତାଙ୍କ ମୁହଁରୁ କଥା ବାହାରିଲା ନାହିଁ ॥୨୩॥ ଅତିଶୟ ଦୁଃଖ, ଭୟ ଓ ଶୋକଯୋଗୁଁ ତାଙ୍କର ବୁଦ୍ଧି ହଜିଗଲା । ହାତର କଙ୍କଣ ଶିଥିଳ ହୋଇଗଲା ଓ ଧରିଥିବା ଚାମରଟି ହାତରୁ ଖସିପଡ଼ିଲା । ପବନରେ କଦଳୀଗଛ ପଡ଼ିଯିବାପରି ସେ ବିଚଳିତ ହୋଇ ହଠାତ୍ ମୂର୍ଚ୍ଛାଯାଇ ତଳେ ପଡ଼ିଗଲେ ଏବଂ ତାଙ୍କର ବାଳ ମୁକୁଳା ହୋଇଗଲା ॥୨୪॥ ଭଗବାନ୍ ଶ୍ରୀକୃଷ୍ଣ ପରିହାସର ଫଳ କଣ ହେବ ତାହା ଜାଣି ନ ଥିବା ପ୍ରିୟତମା ପତ୍ନୀଙ୍କର ପ୍ରେମବନ୍ଧନକୁ ଦେଖି କରୁଣାରେ ଭରିଗଲେ ॥୨୫॥ ଚତୁର୍ଭୁଜ ଭଗବାନ୍ ଶୀଘ୍ର ପଲଙ୍କରୁ ଓହ୍ଲାଇପଡ଼ି ତାଙ୍କୁ ତଳୁ ଉଠାଇ ଆଣିଲେ ଏବଂ ତାଙ୍କ ଆଲୁଳାୟିତ କେଶରାଶିକୁ ବାନ୍ଧିଦେଇ କରକମଳରେ ତାଙ୍କର ମୁହଁକୁ ପୋଛିବାକୁ ଲାଗିଲେ ॥୨୬॥ ମହାରାଜ ପରିକ୍ଷିତ, ସାଧ୍ୱୀ ରୁକ୍ମିଣୀ ଶ୍ରୀକୃଷ୍ଣଙ୍କର ଗୂଢ଼ ପରିହାସର ମର୍ମ ବୁଝିପାରି ଶୋକବିହ୍ୱଳ ହୋଇପଡ଼ିଥିଲେ । ସେ ଏପରି ପରିହାସର ଅଯୋଗ୍ୟଥିଲେ । ଚାଟୁବାକ୍ୟରେ ଚତୁର ଭଗବାନ ଶ୍ରୀକୃଷ୍ଣ ତାଙ୍କର ଆଖିର ଲୁହ ଓ ଓଦା ହୋଇଥିବା ବକ୍ଷସ୍ଥଳକୁ ପୋଛିଦେଇ ଆଲିଙ୍ଗନପୂର୍ବକ ତାଙ୍କୁ ସାନ୍ତ୍ୱନା ଦେବାକୁଲାଗିଲେ ॥୨୭-୨୮॥ ଭଗବାନ କହିଲେ, ବିଦର୍ଭରାଜକୁମାରି ! ମୋତେ ଦୋଷ ଦିଅ ନାହିଁ । ମୁଁ ଜାଣେ ଯେ ତୁମେ ମୋପ୍ରତି ଏକାନ୍ତ ଅନୁରକ୍ତା । ସୁନ୍ଦରି ! ତୁମର (ପ୍ରେମପୂର୍ଣ୍ଣ) ବଚନ ଶୁଣିବା ଇଚ୍ଛାରେ ମୁଁ ପରିହାସ ଛଳରେ ଏପରି କହି ଦେଇଥିଲି । ପ୍ରଣୟ କୋପରେ ତୁମର ଅଧର କିପରି କମ୍ପିଉଠିବ, ତୁମର ସୁନ୍ଦର ଭ୍ରୂକୁଟି କୁଞ୍ଚିତ ହୋଇଯିବ, ଚକ୍ଷୁ ଆରକ୍ତ ହୋଇଯିବ ତାହା ମୁଁ ଦେଖିବାକୁ ଚାହୁଥିଲି । ହେ ଭୀରୁ, ଭାମିନୀ, ନିଜର ଗୃହରେ ପ୍ରିୟତମା ସହିତ ହାସ ପରିହାସରେ କିଛି ସମୟ କଟାଇ ଦେଲେ ଗୃହସ୍ଥକୁ ବହୁ ଆନନ୍ଦ ମିଳିଥାଏ ॥୨୯-୩୧॥

ଶ୍ରୀ ଶୁକଦେବ କହିଲେ, ମହାରାଜ ପରିକ୍ଷିତ, କୃଷ୍ଣଙ୍କଠାରୁ ଏହିପରି ସାନ୍ତ୍ୱନା ପାଇ, ସେ ତାଙ୍କୁ ପୂର୍ବରୁ ପରିହାସରେ ଏପରି କହିଥିଲେ ବୋଲି ରୁକ୍ମିଣୀ ଜାଣିନେଲେ । ତାଙ୍କର ପ୍ରିୟତମ ତାଙ୍କୁ କାଳେ ଛାଡ଼ିଦେବେ ବୋଲି ତାଙ୍କ ମନରେ ଯେଉଁ ଭୟ ହୋଇଥିଲା, ତାହା ଦୂର ହେଲା । ସେ ତାଙ୍କ ସଲଜ୍ଜ ସ୍ମିତହାସ ଓ ସ୍ନେହପୂର୍ଣ୍ଣ ଦୃଷ୍ଟିରେ ଶ୍ରୀକୃଷ୍ଣଙ୍କ ମୁହଁକୁ ଚାହିଁ ସେହି ପୁରୁଷପୁଙ୍ଗବଙ୍କୁ କହିବାକୁ ଲାଗିଲେ-- ॥୩୨-୩୩॥ ରୁକ୍ମିଣୀ କହିଲେ, କମଳଲୋଚନ, ଆପଣ କହିଲେ, ଆପଣ ମୋର ସମାନ ନୁହନ୍ତି । ତାହା ଯଥାର୍ଥ ବୋଲି ମୁଁ ମନେକରୁଛି । କାରଣ ମୁଁ ଆପଣଙ୍କ ସମକକ୍ଷ ନୁହେଁ । କାରଣ ଆପଣ ବ୍ରହ୍ମାଦିଙ୍କର ମଧ୍ୟ ଅଧୀଶ୍ୱର, ଅନନ୍ତ ମହିମାରେ ମଣ୍ଡିତ ସ୍ୱୟଂ ଭଗବାନ୍ ଏବଂ ମୁଁ ତ୍ରିଗୁଣ-ସ୍ୱଭାବସମ୍ପନ୍ନା ଗୁଣମୟୀ ପ୍ରକୃତି । କେବଳ କାମନାଯୁକ୍ତ ଅଜ୍ଞ ଲୋକମାନେ ହିଁ ମୋର ସେବା କରନ୍ତି । ତେଣୁ ଆପଣ କେଉଁଠି, ମୁଁ ଛାର ବା କେଉଁଠି ? ॥୩୪॥ ହେ ଉରୁକ୍ରମ, ଆପଣ ରାଜାମାନଙ୍କ ଭୟରେ ସମୁଦ୍ରରେ ଆଶ୍ରୟ ନେଇଛନ୍ତି ବୋଲି କହିଛନ୍ତି । ସେ କଥା ମଧ୍ୟ ସତ୍ୟ । ସତ୍ତ୍ୱ, ରଜ ଓ ତମୋ ଗୁଣରୁ ଜାତ ଶବ୍ଦାଦି ବିଷୟାସକ୍ତିର ଭୟରୁ ସତେଯେପରି ଆପଣ ଭକ୍ତମାନଙ୍କର ହୃଦୟରୂପକ ସମୁଦ୍ରରେ ନିଃସ୍ପୃହ ଭାବରେ ଶୟନକରିଥା'ନ୍ତି । ଆପଣ କହିଲେ -- ବଳବାନ୍ ବ୍ୟକ୍ତିମାନେ ଆପଣଙ୍କର ଶତ୍ରୁତା କରନ୍ତି । ତାହା ମଧ୍ୟ ଠିକ୍ । କାରଣ କୁତ୍ସିତ ଓ ବଳବାନ୍ ଇନ୍ଦ୍ରିୟମାନଙ୍କ ସହ ଆପଣ ସର୍ବଦା ଯୁଦ୍ଧରତ । ଆପଣ ରାଜପଦ ଛାଡ଼ିଛନ୍ତି ବୋଲି ମଧ୍ୟ କହିଛନ୍ତି, ଆପଣଙ୍କ କଥା ଛାଡ଼ନ୍ତୁ ! ଏହି ଘୋର ତମୋମୟ ରାଜପଦକୁ ଆପଣଙ୍କ ଭକ୍ତମାନେ ମଧ୍ୟ ପରିତ୍ୟାଗ କରିଥା'ନ୍ତି ॥୩୫॥ ମହିମାମୟ, ଆପଣ ଲୋକାଚାରକୁ ପରିହାର କରି କେଉଁ ବାଟରେ ଯାଆନ୍ତି ତାହା ଜଣା ନ ଥାଏ । ଆପଣ ତ ସ୍ୱୟଂ ଈଶ୍ୱର । ଆପଣଙ୍କ ଆଚରଣ ବିଷୟରେ ବା କ'ଣ କହିବା ? ଆପଣଙ୍କ ପାଦପଦ୍ମର ମକରନ୍ଦ ରସକୁ ସେବା କରୁଥିବା ମୁନିମାନେ ଯେଉଁ ବାଟରେ ଯାଆନ୍ତି, ତାହା ପଶୁପ୍ରବୃତ୍ତିଯୁକ୍ତ ସାଧାରଣ ମନୁଷ୍ୟମାନେ ମଧ୍ୟ ଜାଣି ପାରନ୍ତି ନାହିଁ । ଆପଣଙ୍କୁ ଅନୁସରଣ କରୁଥିବା ବ୍ୟକ୍ତିଙ୍କର ଆଚରଣ ଯେତେବେଳେ ଏପରି ଅଲୌକିକ, ଆପଣଙ୍କ ଆଚରଣ କିପରି ବିଚାର କରାଯାଇପାରିବ ? ॥୩୬॥

ଆପଣ ନିଷ୍କିଞ୍ଚନ ଯେଣୁ ଆପଣଙ୍କର କିଛି ନାହିଁ ବୋଲି ଯାହା କହିଛନ୍ତି, ତାହା ମଧ୍ୟ ସତ୍ୟ । କାରଣ ଅନ୍ୟମାନଙ୍କଠାରୁ ପୂଜା ଉପହାର ପାଉଥିବା ବ୍ରହ୍ମା ଆଦି ଲୋକପାଳମାନେ ଆପଣଙ୍କୁ ଯେଉଁସବୁ ପୂଜା ଉପହାର ଅର୍ପଣ କରନ୍ତି, ଆପଣଙ୍କର ସେ ସବୁ ବସ୍ତୁରେ କୌଣସି ପ୍ରୟୋଜନ ନ ଥାଏ । ଆପଣ କହିଲେ ଯେ ଅକିଞ୍ଚନ ଲୋକମାନେ ଆପଣଙ୍କର ପ୍ରିୟ ଓ ଧନାଢ଼୍ୟ ଲୋକମାନେ ଆପଣଙ୍କୁ ଭଜନ କରନ୍ତି ନାହିଁ । ତାହା ମଧ୍ୟ ସତ୍ୟ । କାରଣ ଧନ ଗର୍ବରେ ଅନ୍ଧ ମୂଢ଼ବୁଦ୍ଧିର ଲୋକମାନେ ସବୁବେଳେ ନିଜର ପ୍ରାଣତୃପ୍ତିପାଇଁ ଲାଗିଥା'ନ୍ତି । ତେଣୁ ଆପଣ ଯେ ସେମାନଙ୍କର କାଳରୂପୀ ଅନ୍ତକ, ତାହା ସେମାନେ ଜାଣି ପାରନ୍ତି ନାହିଁ । କିନ୍ତୁ ଅକିଞ୍ଚନ ମୁନିମାନେ ଆପଣଙ୍କର ଭକ୍ତ, ଆପଣଙ୍କର ପ୍ରିୟ ।।୩୭।। ବିଭୁ, ଆପଣ ପୁଣି କହିଛନ୍ତି, କୁଳ, ରୂପ ଓ ଐଶ୍ୱର୍ଯ୍ୟ ଦୃଷ୍ଟିରୁ ଯେଉଁ ଦୁହେଁ ପରସ୍ପର ଅନୁରୂପ ହୋଇଥା'ନ୍ତି, ସେ ଦୁହିଁଙ୍କ ମଧ୍ୟରେ ବିବାହ ଓ ମିତ୍ରତା ହେବା ଉଚିତ । କିନ୍ତୁ ଆପଣଙ୍କଠାରେ ସେ ସମସ୍ତ ପୁରୁଷାର୍ଥ ପୂରି ରହିଛି ! ତେଣୁ ବିବେକୀ ପୁରୁଷମାନେ ସମସ୍ତ ପୁରୁଷାର୍ଥର ଫଳସ୍ୱରୂପ ଆପଣଙ୍କୁ ହିଁ କାମନାକରି ବାକି ସମସ୍ତ ବସ୍ତୁକୁ ପରିତ୍ୟାଗ କରିଥା'ନ୍ତି । ତେଣୁ ସେମାନଙ୍କ ପକ୍ଷରେ ଆପଣଙ୍କ ସହ ସମ୍ବନ୍ଧ ସମୁଚିତ । ସମାନ ରୂପ, ଗୁଣ ଓ କୁଳସମ୍ପନ୍ନ ସ୍ତ୍ରୀ-- ପୁରୁଷଙ୍କ ମଧ୍ୟରେ ସମ୍ବନ୍ଧ ରହିବା କଥା ବୋଲି ଆପଣ ଯାହା କହିଲେ, ତାହା କେବଳ ସୁଖଦୁଃଖରେ ଆକୁଳ ହେବାର ସମ୍ବନ୍ଧ । ଆପଣଙ୍କ ସହିତ ମୋର ସମ୍ପର୍କ ତାହା ନୁହେଁ ।।୩୮।।

ଭିକ୍ଷୁମାନଙ୍କଠାରୁ ଆପଣଙ୍କର ମିଥ୍ୟା ପ୍ରଶଂସା ଶୁଣି ଅଦୂରଦର୍ଶିନୀ ହୋଇ ଆପଣଙ୍କୁ ମୁଁ ବରଣ କରିଛି ବୋଲି ଆପଣ କହିଛନ୍ତି । ଏହା ସତ୍ୟ ଯେ ଭିକ୍ଷାରେ ଜୀବନ ଧାରଣ କରୁଥିବା ସର୍ବତ୍ୟାଗୀ ମୁନିମାନେ ଆପଣଙ୍କୁ ପ୍ରଶଂସା କରନ୍ତି । ଆପଣ ସମସ୍ତ ପ୍ରାଣୀଙ୍କର ଆତ୍ମା ଏବଂ ଆପଣ ଆତ୍ମଜ୍ଞାନ ପ୍ରଦାନ କରିଥା'ନ୍ତି । ତେଣୁ ଆପଣଙ୍କର ପ୍ରଶଂସା ବୃଥା ହୁଏ ନାହିଁ । ଆପଣଙ୍କର ଭ୍ରୂ-ଯୁଗଳରୁ ଯେଉଁ କାଳର ଜନ୍ମ, ସେହି କାଳବଶରେ ସମସ୍ତଙ୍କର କାମ୍ୟ ଓ ଭୋଗ୍ୟ ବିଷୟ ନଷ୍ଟ ହୋଇଯାଏ । ଛାର ମନୁଷ୍ୟଙ୍କର କଥା ଅବା କଣ କହିବି ! ସେଥିପାଇଁ ବ୍ରହ୍ମା, ଇନ୍ଦ୍ର ପ୍ରଭୃତି ସ୍ୱର୍ଗାଧିପତିମାନଙ୍କୁ ଛାଡ଼ି ମୁଁ ଯଥାର୍ଥରେ ଆପଣଙ୍କୁ ପତିରୂପରେ ବରଣ କରିଛି । (ତେଣୁ ମୁଁ ଅଦୂରଦର୍ଶିନୀ ନୁହେଁ) ।।୩୯।। ହେ ଗଦାଗ୍ରଜ, ହେ ଲୀଳାମୟ, ସିଂହ ଯେପରି ତାର ଗର୍ଜନଧ୍ୱନିରେ ଅନ୍ୟ ପଶୁମାନଙ୍କୁ ବିତାଡ଼ିତ କରି ନିଜର ଆହାର୍ଯ୍ୟ ବସ୍ତୁକୁ ଗ୍ରହଣ କରେ, ସେହିପରି ଆପଣ ନିଜ ଶାର୍ଙ୍ଗଧନୁଷ୍ଟଙ୍କାରରେ ରାଜାମାନଙ୍କୁ ପରାଜିତ କରି ଆପଣଙ୍କ ପ୍ରାପ୍ୟ ସ୍ୱରୂପ ମୋତେ ହରଣ କରି ଆଣିଛନ୍ତି । ତେଣୁ ସେମାନଙ୍କ ଭୟରେ ଆପଣ ସମୁଦ୍ରମଧ୍ୟରେ ଶରଣ ନେଇଥିବା କଥା କେବଳ ଅଜ୍ଞାନ ଲୋକଙ୍କର ଭ୍ରମ ଛଡ଼ା ଅନ୍ୟ କିଛି ନୁହେ ।।୪୦।। ହେ କମଳନୟନ ! ଆପଣ କହିଛନ୍ତି, ଆପଣଙ୍କର ପଦବୀକୁ ଅନୁସରଣ କଲେ କେବଳ ଦୁଃଖଭୋଗ ହିଁ ସାର ହୁଏ । ପ୍ରାଚୀନ କାଳରେ ଅଙ୍ଗ, ପୃଥୁ, ଭରତ, ଯଯାତି ଓ ଗୟ ଆଦି ଯେଉଁ ନୃପଶିରୋମଣିମାନେ ଏକାଙ୍ଗ ଚକ୍ରବର୍ତ୍ତୀ ହୋଇ ମଧ୍ୟ ନିଜ ନିଜ ରାଜୈଶ୍ୱର୍ଯ୍ୟ ଛାଡ଼ିଦେଇ ଆପଣଙ୍କୁ ପାଇବା ଇଚ୍ଛାରେ ବନଗମନ କରିଥିଲେ, ସେମାନେ ଆପଣଙ୍କର ମାର୍ଗକୁ ଅନୁସରଣ କରି କେଉଁ ପ୍ରକାର କଷ୍ଟକର କରୁଛନ୍ତି ? ।।୪୧।। ଆପଣ ସମସ୍ତଗୁଣର ଆକର । ଲୋକଙ୍କର ମୋକ୍ଷସ୍ୱରୂପ, ଲକ୍ଷ୍ମୀଙ୍କର ଆଶ୍ରୟସ୍ଥଳ ଓ ଭକ୍ତମାନଙ୍କଦ୍ୱାରା କୀର୍ତ୍ତିତ ଆପଣଙ୍କ ପାଦପଦ୍ମର ଗନ୍ଧ ଆଘ୍ରାଣ କରି ଯେ ପରମାର୍ଥରେ ନିଜର ବିବେକ ବୁଦ୍ଧିକୁ ଜାଗରିତ କରିବାକୁ ଇଚ୍ଛାକରେ, ଏପରି କେଉଁ ମରଣଧର୍ମୀ ନାରୀ ଆପଣଙ୍କୁ ଅବଜ୍ଞାକରି ଅନ୍ୟକୁ ଆଶ୍ରୟକରିବ ? ।।୪୨।। ହେ ପ୍ରଭୁ, ଆପଣ ଚରାଚର ବିଶ୍ୱର ଅଧୀଶ୍ୱର ଓ ଆତ୍ମା । ଇହଲୋକ ଓ ପରଲୋକରେ ମନୁଷ୍ୟର ସକଳ କାମନାକୁ ପୂରଣ କରନ୍ତି । ମୁଁ ଆପଣଙ୍କୁ ମୋର ଅନୁରୂପ ଜ୍ଞାନରେ ବରଣ କରିଛି । କର୍ମ ଅନୁସାରେ ଦେବ-ତିର୍ଯ୍ୟକ୍ ଆଦି ବିଭିନ୍ନ ଯୋନିରେ ମୋତେ ଭ୍ରମଣ କରିବାକୁ ହେଉଛି । ସେଥିପାଇଁ ଆପଣଙ୍କର ଯେଉଁ ପାଦପଦ୍ମକୁ ଭଜନ କଲେ ଏହି ଅନିତ୍ୟ ସଂସାରରୁ ମୁକ୍ତି ମିଳିପାରିବ ଆପଣଙ୍କ ସେହି ପାଦପଦ୍ମ ସର୍ବଦା ମୋର ଆଶ୍ରୟ ହେଉ ।।୪୩।। ହେ ଅଚ୍ୟୁତ, ଆପଣଙ୍କର ଯେଉଁ କୀର୍ତ୍ତିଗାଥା ବ୍ରହ୍ମା ଏବଂ ଶଙ୍କରଙ୍କ ସଭାରେ ଗାନ କରାଯାଏ, ତାହା ଯେଉଁ ସ୍ତ୍ରୀର କର୍ଣ୍ଣ କୁହରରେ ପ୍ରବେଶ ନ କରେ, ଆପଣଙ୍କ କଥିତ ଶିଶୁପାଳ ଆଦି

ରାଜାମାନେ ସେଇ ଦୁର୍ଭାଗାର ପତି ହୁଅନ୍ତୁ । ହେ ଶତ୍ରୁନାଶନ ! ସେମାନେ ସ୍ତ୍ରୀମାନଙ୍କ ଘରେ ଗଧ ପରି ଭାର ବୁହନ୍ତୁ, ବଳଦପରି ଗୃହକର୍ମରେ ଲାଗିଥା'ନ୍ତୁ, କୁକୁର ଓ ବିରାଡ଼ି ପରି ତିରସ୍କୃତ ହୋଇ ସେମାନେ ଭୃତ୍ୟ ହୋଇ ରହିଥା'ନ୍ତୁ ॥୪୪॥ ଯେଉଁ ସ୍ତ୍ରୀ ଆପଣଙ୍କର ପାଦପଦ୍ମ ମକରନ୍ଦକୁ ଆଘ୍ରାଣ କରି ନାହିଁ, ଅତି ମୂଢ଼ ସେହି ସ୍ତ୍ରୀ ଯାହାକୁ ପତିରୂପେ ଭଜନ କରେ, ସେ ଏକ ଜୀବନ୍ତ ଶବ ସହିତ ସମାନ । ଏହି ଜୀବନ୍ତ ଶବର ବାହାରଟା ଚମଡ଼ା, ଦାଢ଼ି, ନିଶ, ଲୋମ, ନଖ ଓ ବାଳରେ ଆବୃତ, କିନ୍ତୁ ଭିତରଟା ମାଂସ, ଅସ୍ଥି, ରକ୍ତ, କୃମି, ବିଷ୍ଠା, କଫ, ପିତ୍ତ ଓ ବାତରେ ପରିପୂର୍ଣ୍ଣ ॥୪୫॥ କମଳନୟନ, ଆପଣ ନିଜ ଆତ୍ମସ୍ୱରୂପରେ ହିଁ ରମଣ କରନ୍ତି । ଅନ୍ୟ ବିଷୟରେ ଆପଣ ଉଦାସୀନ ବୋଲି ଯାହା କହିଛନ୍ତି, ତାହା ସତ୍ୟ । ଏପରିକି ମୁଁ ଆପଣଙ୍କର ପତ୍ନୀ ହେଲେ ମଧ୍ୟ ଆପଣଙ୍କର ମୋ'ପ୍ରତି ବିଶେଷ ଦୃଷ୍ଟି ନ ଥାଏ । ତଥାପି ଆପଣଙ୍କ ଚରଣ କମଳରେ ମୋର ଅନୁରାଗ ଥାଉ । ବିଶ୍ୱରେ ଜୀବସୃଷ୍ଟିର ବୃଦ୍ଧିନିମନ୍ତେ ଆପଣ ଯେତେବେଳେ ରଜୋଗୁଣରେ ଅନୁରାଗଭରା ଦୃଷ୍ଟିରେ ମୋତେ ଦେଖନ୍ତି, ତାହା ହିଁ ମୋ ପ୍ରତି ଆପଣଙ୍କର ପରମ ଅନୁଗ୍ରହ ବୋଲି ମୁଁ ମନେକରେ ॥୪୬॥ ମଧୁସୂଦନ, ଆପଣ ନିଜ ଅନୁରୂପ ପତିବରଣ ପାଇଁ ଯାହା କହିଛନ୍ତି, ତାହା ମିଥ୍ୟା ନୁହେଁ । ବିବାହ ପୂର୍ବରୁ ପ୍ରାୟ କନ୍ୟାର କୌଣସି ନା କୌଣସି ପୁରୁଷ ପ୍ରତି ଅନୁରାଗ ଜନ୍ମିଥାଏ, ଯେପରିକି କାଶିରାଜକନ୍ୟା ଅମ୍ବାର ଶାଲ୍ୱଙ୍କ ପ୍ରତି ଅନୁରାଗ ଥିଲା ॥୪୭॥ ବିବାହକରିଥିଲେ ମଧ୍ୟ ଦୁଶ୍ଚରିତ୍ରା ସ୍ତ୍ରୀର ମନ ନୂଆନୂଆ ପୁରୁଷଙ୍କପ୍ରତି ଆକୃଷ୍ଟ ହୋଇଥାଏ । ବିବେକୀ ବ୍ୟକ୍ତି ସେପରି ଅସତୀ ସ୍ତ୍ରୀକୁ ଭାର୍ଯ୍ୟା କରିବା ଉଚିତ ନୁହେଁ । କଲେ ଉଭୟ ଇହଲୋକ ଓ ପରଲୋକରୁ ସେ ବିଚ୍ୟୁତ ହୋଇଥାଏ ॥୪୮॥

ଭଗବାନ ଶ୍ରୀକୃଷ୍ଣ କହିଲେ , ସତୀ ରାଜକୁମାରି ! ଏହା ଶୁଣିବା ଇଚ୍ଛାରେ କେବଳ ତୁମକୁ ଉପହାସ କରି ମୁଁ ଯାହା କହିଲି ଏବଂ ତୁମେ ତାର ଯେଉଁ ବ୍ୟାଖ୍ୟା କଲ, ତାହା ନିରାଟ ସତ୍ୟ ॥୪୯॥ ଭାମିନୀ, ମୁଁ ପୂର୍ଣ୍ଣକାମ ହେଲେ ମଧ୍ୟ ମୋର ପ୍ରୀତିଲାଭପାଇଁ ତୁମେ କାମନା କରୁଛ । କଲ୍ୟାଣି ! ତୁମେ ମୋର ଏକାନ୍ତ ଭକ୍ତ ହୋଇଥିବାରୁ, ତୁମଠାରେ ମୋର ପ୍ରୀତି ସର୍ବଦା ବିଦ୍ୟମାନ ॥୫୦॥ ନିଷ୍ପାପା, ତୁମର ପତିପ୍ରେମ ଓ ପାତିବ୍ରତ୍ୟକୁ ମୁଁ ଉପଲବ୍ଧି କରୁଛି । ମୋ କଥାରେ ତୁମେ ବିଚଳିତ ହୋଇ ନାହଁ । ମୋଠାରେ ତୁମ ଚିତ୍ତ ଅତୁଟ ରହିଚି ॥୫୧॥ ମୁଁ ମୋକ୍ଷର ଅଧିପତି । କିନ୍ତୁ ଯେଉଁ ସକାମ ଭକ୍ତମାନେ ଦାମ୍ପତ୍ୟ ସୁଖଲାଭପାଇଁ ତପସ୍ୟା ଓ ବ୍ରତାଚରଣଦ୍ୱାରା ମୋତେ ଭଜନ କରନ୍ତି, ସେମାନେ ମୋର ମାୟାରେ ମୋହିତ ହୋଇଥା'ନ୍ତି ॥୫୨॥ ମାନିନୀ, ମୁଁ ମୋକ୍ଷ ସହିତ ଅନ୍ୟସମସ୍ତ ସମ୍ପଦର ଅଧିକାରୀ । କିନ୍ତୁ ମୋତେ ପାଇ ଯେଉଁମାନେ କେବଳ ବିଷୟସମ୍ପଦ କାମନାକରନ୍ତି, ସେମାନଙ୍କ ମନ ବିଷୟମୁଖୀ ହୋଇଥିବାରୁ ସେମାନେ ବାସ୍ତବରେ ମନ୍ଦଭାଗ୍ୟ । କାରଣ ପରିଣାମରେ ନରକଭୋଗ ବୋଲି ଜାଣି ମଧ୍ୟ ବିଷୟଭୋଗ ସେମାନଙ୍କୁ ଭଲ ଲାଗିଥାଏ ॥୫୩॥ ହେ ମୋ' ଗୃହର ଈଶ୍ୱରି ! ସୌଭାଗ୍ୟର ବିଷୟ ତୁମେ ନିରନ୍ତର ମୋର ଯେଉଁ ସେବା କରିଚାଲିଛ, ସେପରି ନିଶ୍ଚଳା ଭକ୍ତି ଭବବନ୍ଧନରୁ ମୁକ୍ତ କରିଥାଏ । ତାହା ଖଳମାନଙ୍କ ପାଇଁ ଅତି ଦୁଷ୍କର । ଯାହାଙ୍କର ଅଭିପ୍ରାୟ ମନ୍ଦ, ସେମାନେ କେବଳ ଇନ୍ଦ୍ରିୟତୃପ୍ତି ପାଇ ନାନା ଛନ୍ଦକପଟ କରିଥା'ନ୍ତି, କାରଣ ସେମାନଙ୍କ ପକ୍ଷରେ ନିଷ୍କାମ ସେବା ଆଦୌ ସମ୍ଭବ ନୁହେଁ ॥୫୪॥ ମାନିନୀ, ମୁଁ ଗୃହସ୍ଥାଶ୍ରମରେ ତୁମ ପରି ପ୍ରେମମୟୀ ଗୃହିଣୀଙ୍କୁ ଦେଖୁ ନାହିଁ । ନିଜ ବିବାହକାଳରେ ସମାଗତ ରାଜାମାନଙ୍କୁ ତୁମେ ଉପେକ୍ଷା କରି ଏବଂ କେବଳ ମୋର ପ୍ରଶଂସା ମାତ୍ର ଶୁଣି ମୋତେ ବରଣ କରିବାପାଇଁ ଗୋପନରେ ସମ୍ବାଦ ଦେଇ ଜଣେ ବ୍ରାହ୍ମଣଙ୍କୁ ପଠାଇଥିଲ ॥୫୫॥ ତୁମର ବଡ଼ ଭାଇ ରୁକ୍ମୀଙ୍କୁ ଯୁଦ୍ଧରେ ପରାସ୍ତ କରି ମୁଁ ବିରୂପ କରିଦେଇଥିଲି ଏବଂ ପରେ ଅନିରୁଦ୍ଧର ବିବାହ ସମୟରେ ପଶାଖେଳରେ ତାଙ୍କ ପ୍ରତି କ୍ରୁଦ୍ଧ ହୋଇ ବଳରାମ ତାଙ୍କୁ ବଧ କରିଥିଲେ । କିନ୍ତୁ ଆମ ସହିତ ବିଚ୍ଛେଦ ହେବା ଭୟରେ ତୁମେ ଭ୍ରାତୃବଧ ଦୁଃଖକୁ ମନରେ ମାରି ରହିଲ । କିଛି କହିଲ ନାହିଁ । ତା'ଦ୍ୱାରା ତୁମେ ଆମକୁ ଜୟ କରିଛ ॥୫୬॥ ମୋତେ ଲାଭ କରିବାପାଇଁ ତୁମେ ମୋ ପାଖକୁ ଗୁପ୍ତ ସମ୍ବାଦ ପଠାଇଥିଲ । ତୁମ ପାଖରେ ପହଞ୍ଚିବାରେ ମୁଁ ବିଳମ୍ବ କରିବାରୁ ତୁମକୁ ସମସ୍ତ ସଂସାର ଶୂନ୍ୟ ଦେଖାଗଲା

ଏବଂ ଏ ଦେହ ଅନ୍ୟ କାହାପାଇଁ ଯୋଗ୍ୟ ନୁହେଁ ବୋଲି ତୁମେ ତାହାକୁ ତ୍ୟାଗ କରିବାକୁ ଚାହିଥିଲ । ତୁମର ଏହି ଆଚରଣର କୌଣସି ପ୍ରତିଦାନ ନାହିଁ । ମୁଁ କେବଳ ତୁମକୁ ଅଭିନନ୍ଦନ କରୁଚି ॥୫୭॥ ଶ୍ରୀ ଶୁକଦେବ କହିଲେ, ପରିକ୍ଷିତ, ଭଗବାନ୍ ଜଗଦୀଶ୍ୱର ଶ୍ରୀକୃଷ୍ଣ ଆତ୍ମାରାମ ହୋଇ ମନୁଷ୍ୟରୂପରେ ଲୀଳା କରି, ଏହିପରି ପରିହାସମୟ ପ୍ରେମାଳାପଦ୍ୱାରା ସେ ଲକ୍ଷ୍ମୀରୂପିଣୀ ରୁକ୍ମିଣୀଙ୍କ ସହିତ ବିହାର କଲେ । ତଥା ସମସ୍ତ ଜଗତ୍‌ର ଗୁରୁ ଓ ସର୍ବବ୍ୟାପୀ ଭଗବାନ୍ ଗୃହସ୍ଥଭଳି ଅନ୍ୟପତ୍ନୀମାନଙ୍କ ଗୃହରେ ମଧ୍ୟ ଗାର୍ହସ୍ଥ୍ୟ ଧର୍ମ ପାଳନ କରି ରହୁଥିଲେ ॥୫୮-୫୯॥

## ଏକଷଠି ଅଧ୍ୟାୟ

# ଅନିରୁଦ୍ଧଙ୍କର ବିବାହ

ଶ୍ରୀ ଶୁକଦେବ କହିଲେ, ପରିକ୍ଷିତ, ଭଗବାନ୍ ଶ୍ରୀକୃଷ୍ଣଙ୍କର ସେଇ ପତ୍ନୀମାନେ ପ୍ରତ୍ୟେକେ ଦଶ ଦଶ କରି ପୁତ୍ର ଜନ୍ମକଲେ । ସେମାନେ ସକଳ ଆତ୍ମସମ୍ପଦରେ ପିତାଙ୍କ ଠାରୁ ନ୍ୟୁନ ନ ଥିଲେ ॥୧॥ ଭଗବାନ୍ ଶ୍ରୀକୃଷ୍ଣଙ୍କର ପତ୍ନୀ ରାଜକୁମାରୀମାନେ ଶ୍ରୀକୃଷ୍ଣ ଘର ଛାଡ଼ି ଅନ୍ୟ କେଉଁଠିକି ଯାଉ ନ ଥିବାର ଦେଖି ତାଙ୍କୁ ନିଜ ନିଜ ପ୍ରିୟତମ ବୋଲି ମନେକଲେ । ଯେଣୁ ଶ୍ରୀକୃଷ୍ଣଙ୍କର ପ୍ରକୃତ ତତ୍ତ୍ୱ ସେମାନେ ଜାଣି ନ ଥିଲେ ॥୨॥ ପଦ୍ମକୋଷପରି ତାଙ୍କ ସୁନ୍ଦର ମୁଖମଣ୍ଡଳ, ଆୟତ ନେତ୍ର ଓ ବାହୁଯୁଗଳ, ପ୍ରେମପୂର୍ଣ୍ଣ ହାସରସର ଚାହାଣି ଏବଂ ମଧୁର ଆଳାପରେ ସେମାନେ ସଂମୋହିତ ହେଉଥିଲେ । କିନ୍ତୁ ନିଜ ନିଜ ଲୀଳାବିଳାସଦ୍ୱାରା ପରିପୂର୍ଣ୍ଣ ଭଗବାନ୍ ଶ୍ରୀକୃଷ୍ଣଙ୍କର ମନକୁ ସେଇ ବନିତାମାନେ ଜିଣିବାକୁ ସମର୍ଥ ହେଲେ ନାହିଁ ॥୩॥ ଗୂଢ଼ହାସଯୁକ୍ତ କଟାକ୍ଷ, ତଦ୍ଦ୍ୱାରା ସୂଚିତ ଅଭିପ୍ରାୟ, ତଦ୍ଦ୍ୱାରା ମନୋହରଣଶୀଳ ଭ୍ରୂମଣ୍ଡଳ, ଏବଂ ତଦ୍ଦ୍ୱାରା ପ୍ରେରିତ ସୁରତମନ୍ତ୍ର କୁଶଳ ଅନଙ୍ଗବାଣମାନଙ୍କଦ୍ୱାରା ତଥା କାମଶାସ୍ତ୍ରୋକ୍ତ ଅନ୍ୟ ଉପାୟଦ୍ୱାରା ଷୋହଳ ହଜାର ପତ୍ନୀ ଯାହାଙ୍କ ମନକୁ କ୍ଷୁବ୍ଧ କରିବାକୁ ସମର୍ଥ ହେଲେ ନାହିଁ ॥୪॥ ବ୍ରହ୍ମାଦି ଶ୍ରେଷ୍ଠ ଦେବତାମାନେ ଯାହାଙ୍କର ସ୍ୱରୂପ ଜାଣିପାରନ୍ତି ନାହିଁ, ସେହି ଶ୍ରୀକୃଷ୍ଣଙ୍କୁ ସ୍ତ୍ରୀମାନେ ପତିରୂପେ ଲାଭ କରି ପ୍ରତି ଦିନ ନୂଆ ନୂଆ ଆନନ୍ଦରେ ମଗ୍ନ ହୋଇପଡୁଥିଲେ । ଅନୁରାଗପୂର୍ଣ୍ଣ ହାସ୍ୟ ଓ କଟାକ୍ଷଦ୍ୱାରା ସେମାନେ ନିତ୍ୟନୂତନ ସଙ୍ଗମ ଲାଳସା ବ୍ୟକ୍ତ କରୁଥିଲେ ॥୫॥ ପ୍ରତ୍ୟେକଙ୍କର ଏକଶହ କରି ଦାସୀ ଥିଲେ । ତଥାପି ସେମାନେ ନିଜେ ହିଁ ଭଗବାନ ଶ୍ରୀକୃଷ୍ଣଙ୍କର ସେବା କରୁଥିଲେ । ସେ ଆସିବାବେଳେ ତାଙ୍କୁ ପାଛୋଟି ଆଣିବା, ଉତ୍ତମ ଆସନରେ ବସାଇବା, ଶ୍ରେଷ୍ଠ ପୂଜାସାମଗ୍ରୀ ଦ୍ୱାରା ପୂଜା କରିବା, ପାଦ ଧୋଇଦେଇ ପାନ ଖୁଆଇଦେବା, ପାଦସେବାଦ୍ୱାରା ତାଙ୍କ ଶ୍ରମ ଦୂର କରିବା, ସ୍ନାନ କରାଇ କେଶ ପ୍ରସାଧନ କରିବା, ଚନ୍ଦନ ଆଦି ସୁବାସିତ ଦ୍ରବ୍ୟ ଲଗାଇ ମାଳା ପିନ୍ଧାଇଦେବା, ଶେଯ ସଜାଇଦେବା ଏବଂ ଭୋଜନ କରାଇବା ଆଦି ସମସ୍ତ ସେବାଦ୍ୱାରା ତାଙ୍କୁ ଆପ୍ୟାୟିତ କରୁଥିଲେ ॥୬॥ ପରିକ୍ଷିତ, ମୁଁ ପୂର୍ବରୁ କହିଛି ଯେ କୃଷ୍ଣଙ୍କ ସ୍ତ୍ରୀମାନଙ୍କର ପ୍ରତ୍ୟେକଙ୍କର ଦଶ ଦଶ କରି ପୁତ୍ର ଥିଲେ । ରୁକ୍ମିଣୀ, ସତ୍ୟଭାମା ଆଦି ଅଷ୍ଟ ପଟ୍ଟମହିଷୀଙ୍କର ପ୍ରଦ୍ୟୁମ୍ନ ଆଦି ଯେଉଁ ପୁତ୍ରମାନେ ହୋଇଥିଲେ, ସେମାନଙ୍କ ବିଷୟରେ ମୁଁ ବର୍ତ୍ତମାନ କହିବାକୁ ଯାଉଛି ॥୭॥ ବୀର ପ୍ରଦ୍ୟୁମ୍ନ, ଚାରୁଦେଷ୍ଣ, ସୁଦେଷ୍ଣ, ଚାରୁଦେହ, ସୁଚାରୁ, ଚାରୁଗୁପ୍ତ, ଭଦ୍ରଚାରୁ, ଚାରୁଚନ୍ଦ୍ର, ବିଚାରୁ ଓ ଚାରୁ --ଏହିପରି ଦଶ ପୁତ୍ର ରୁକ୍ମିଣୀଙ୍କ ଗର୍ଭରୁ ଜନ୍ମ ହୋଇଥିଲେ । ସେମାନେ କୌଣସି ଗୁଣରେ ପିତାଙ୍କଠାରୁ ନ୍ୟୁନ ନ ଥିଲେ ॥୮-୯॥ ଭାନୁ, ସୁଭାନୁ, ସ୍ୱର୍ଭାନୁ, ପ୍ରଭାନୁ, ଭାନୁମାନ୍, ଚନ୍ଦ୍ରଭାନୁ, ବୃହତ୍‌ଭାନୁ, ଅତିଭାନୁ, ଶ୍ରୀଭାନୁ ଓ ପ୍ରତିଭାନୁ--ସତ୍ୟଭାମାଙ୍କର ଏହି ଦଶ ପୁତ୍ର ଥିଲେ । ଜାମ୍ବବତୀଙ୍କର ପୁତ୍ର ହେଲେ ସାମ୍ବ, ସୁମିତ୍ର, ପୁରୁଜିତ୍, ଶତଜିତ୍, ସହସ୍ରଜିତ୍, ବିଜୟ, ଚିତ୍ରକେତୁ, ବସୁମାନ୍, ଦ୍ରବିଡ଼ ଏବଂ କ୍ରତୁ । ସାମ୍ବ

ପ୍ରମୁଖ ଏହି ପୁତ୍ରମାନେ ପିତା ଶ୍ରୀକୃଷ୍ଣଙ୍କର ଅନୁରୂପ ଥିଲେ ।।୧୦-୧୨।। ବୀର, ଚନ୍ଦ୍ର, ଅଶ୍ୱସେନ, ଚିତ୍ରଗୁ, ବେଗବାନ୍, ବୃଷ, ଆମ, ଶଙ୍କୁ, ବସୁ ଓ କୁନ୍ତି ନାମରେ ନାଗ୍ନଜିତୀଙ୍କର ଦଶ ଜଣ ପୁତ୍ର ଥିଲେ ।।୧୩।।

କାଳିନ୍ଦୀଙ୍କର ଦଶ ପୁତ୍ର ହେଲେ -- ଶ୍ରୁତ, କବି, ବୃଷ, ବୀର, ସୁବାହୁ, ଭଦ୍ର, ଶାନ୍ତି, ଦର୍ଶ, ପୂର୍ଣ୍ଣମାସ ଓ ସର୍ବକନିଷ୍ଠ ସୋମକ ।।୧୪।। ମଦ୍ରରାଜନନ୍ଦିନୀ ଲକ୍ଷ୍ମଣାଙ୍କର ଦଶ ପୁତ୍ର ହେଲେ -- ପ୍ରଘୋଷ, ଗାତ୍ରବାନ୍, ସିଂହ, ବଳ, ପ୍ରବଳ, ଊର୍ଦ୍ଧ୍ୱଗ, ମହାଶକ୍ତି, ସହ, ଓଜ ଓ ଅପରାଜିତ ।।୧୫।। ମିତ୍ରବିନ୍ଦାଙ୍କର ଦଶ ପୁତ୍ର ହେଲେ--ବୃକ, ହର୍ଷ, ଅନିଳ, ଗୃଧ୍ର, ବର୍ଦ୍ଧନ, ଅନ୍ନାଦ, ମହାଶ, ପାବନ, ବହ୍ନି ଓ କ୍ଷୁଧି ।।୧୬।। ଭଦ୍ରାଙ୍କର ଦଶ ପୁତ୍ର ହେଲେ--ସଂଗ୍ରାମଜିତ୍, ବୃହତ୍ସେନ, ସୁର, ପ୍ରହରଣ, ଅରିଜିତ୍, ଜୟ, ସୁଭଦ୍ର, ବାମ, ଆୟୁ ଓ ସତ୍ୟକ ।।୧୭।। ଶ୍ରୀକୃଷ୍ଣଙ୍କର ଅନ୍ୟ ଏକ ପ୍ରଧାନ ପତ୍ନୀ ରୋହିଣୀଙ୍କ ଗର୍ଭରୁ ଦୀପ୍ତିମାନ୍, ତାମ୍ରତପ୍ତ ପ୍ରଭୃତି ପୁତ୍ରମାନେ ଜନ୍ମ ହୋଇଥିଲେ । ମହାରାଜ ପରିକ୍ଷିତ, ଭୋଜକଟ ନାମକ ନଗରରେ ରୁକ୍ମୀଙ୍କର କନ୍ୟା ରୁକ୍ମବତୀଙ୍କ ଗର୍ଭରୁ ପ୍ରଦ୍ୟୁମ୍ନଙ୍କ ଔରସରେ ଅନିରୁଦ୍ଧ ନାମରେ ମହାବଳଶାଳୀ ପୁତ୍ର ଜନ୍ମ ହେଲେ । ମହାରାଜ, ଏହି କୃଷ୍ଣପୁତ୍ରମାନଙ୍କର କୋଟି କୋଟି ପୁତ୍ର-ପୌତ୍ରାଦି ହେଲେ । କାରଣ ସେମାନଙ୍କର ମାତାଙ୍କର ସଂଖ୍ୟା ଥିଲା ଷୋହଳ ହଜାର (ଅଷ୍ଟ ପାଟରାଣୀଙ୍କୁ ଛାଡ଼ି) ।।୧୮-୧୯।।

ପରିକ୍ଷିତ କହିଲେ, ହେ ବିଦ୍ୱାନ୍ ! ରୁକ୍ମୀ ଯୁଦ୍ଧରେ ଶ୍ରୀକୃଷ୍ଣଙ୍କଦ୍ୱାରା ପରାଜିତ, ଅପମାନିତ ହୋଇ ତାଙ୍କୁ ହତ୍ୟା କରିବାପାଇଁ ସର୍ବଦା ସୁଯୋଗ ଅପେକ୍ଷାରେ ରହିଥିଲେ । ସେହି ରୁକ୍ମୀ କିପରି ନିଜର ଶତ୍ରୁପୁତ୍ର ପ୍ରଦ୍ୟୁମ୍ନଙ୍କୁ କନ୍ୟାଦାନ କରିଥିଲେ ? ପରସ୍ପର ଦ୍ୱେଷୀ ରୁକ୍ମୀ ଓ କୃଷ୍ଣଙ୍କ ମଧ୍ୟରେ କିପରି ବୈବାହିକ ସମ୍ପର୍କ ହେଲା, ତାହା ଆପଣ ମୋତେ ବୁଝାଇ କୁହନ୍ତୁ ।।୨୦।। ମହାଯୋଗୀ, ଯୋଗୀମାନେ ଅତୀତ-ଭବିଷ୍ୟତ୍-ବର୍ତ୍ତମାନ, ଇନ୍ଦ୍ରିୟବର୍ହିଭୂତ, ଦୂରସ୍ଥ ଓ ବ୍ୟବହିତ ବିଷୟଙ୍କୁ ଭଲଭାବରେ ଦେଖି ପାରନ୍ତି ।।୨୧।। ଶ୍ରୀ ଶୁକଦେବ କହିଲେ, ପରିକ୍ଷିତ, ରୁକ୍ମୀଙ୍କର କନ୍ୟା ରୁକ୍ମବତୀ ପ୍ରଦ୍ୟୁମ୍ନରୂପୀ ସାକ୍ଷାତ୍ ମୂର୍ତ୍ତିମାନ୍ କାମଦେବଙ୍କୁ ସ୍ୱୟମ୍ବର ସଭାରେ ପତିରୂପେ ବରଣ କରିଥିଲେ । ଏକାକୀ ହୋଇଥିଲେ ମଧ୍ୟ ପ୍ରଦ୍ୟୁମ୍ନ ଯୁଦ୍ଧରେ ସମବେତ ରାଜାମାନଙ୍କୁ ପରାସ୍ତକରି ତାଙ୍କୁ ନେଇ ଆସିଥିଲେ ।।୨୨।। କୃଷ୍ଣଙ୍କଦ୍ୱାରା ଅପମାନିତ ରୁକ୍ମୀ ଯଦିଓ ପୂର୍ବ ଶତ୍ରୁତା କଥା ସ୍ମରଣ କରୁଥିଲେ, ତଥାପି ନିଜ ଭଗିନୀ ରୁକ୍ମିଣୀଙ୍କର ପ୍ରିୟକାର୍ଯ୍ୟ କରିବା ଇଚ୍ଛାରେ ଭଣଜା ପ୍ରଦ୍ୟୁମ୍ନଙ୍କୁ କନ୍ୟାଦାନ କରିଥିଲେ ।।୨୩।। ପରିକ୍ଷିତ, ରୁକ୍ମିଣୀଙ୍କର ଚାରୁମତୀ ନାମରେ ଏକ ସୁନ୍ଦରୀ କନ୍ୟା ଥିଲେ । ସେ କୃତବର୍ମାଙ୍କ ପୁତ୍ର ବଳୀଙ୍କୁ ବିବାହ କରିଥିଲେ । ଶ୍ରୀକୃଷ୍ଣଙ୍କ ପ୍ରତି ଶତ୍ରୁତା ଭାବ ଥିଲେ ମଧ୍ୟ ରୁକ୍ମୀ ନିଜର ନାତୁଣୀ (ପୁତ୍ରର କନ୍ୟା) ରୋଚନାଙ୍କୁ ନିଜର ନାତି (କନ୍ୟାର ପୁତ୍ର) ଅନିରୁଦ୍ଧଙ୍କ ସହିତ ବିବାହ ଦେଇଥିଲେ । ଏହା ଧର୍ମାନୁମୋଦିତ ନ ହେଲେ ମଧ୍ୟ ନିଜ ଭଗିନୀଙ୍କର ସ୍ନେହାନୁବନ୍ଧନରେ ସେ ଏହା କରିଥିଲେ ।।୨୪-୨୫।। ପରିକ୍ଷିତ, ସେହି ଉତ୍ସବରେ ଯୋଗ ଦେବାପାଇଁ ରୁକ୍ମିଣୀଙ୍କ ସହିତ କୃଷ୍ଣ, ବଳରାମ, ସାମ୍ବ, ପ୍ରଦ୍ୟୁମ୍ନ ଓ ଅନ୍ୟ ଯାଦବଗଣ ଭୋଜକଟକୁ ଯାଇଥିଲେ ।।୨୬।। ବିବାହ କାର୍ଯ୍ୟ ଶେଷ ହେଲା । କଳିଙ୍ଗ ଆଦି କେତେକ ଗର୍ବୀ ରାଜା ରୁକ୍ମୀଙ୍କୁ ଉସୁକାଇଲେ, 'ତୁମେ ପଶାଖେଳରେ ବଳରାମଙ୍କୁ ହରାଇଦିଅ ।' ।।୨୭।। ବଳରାମ ପଶାଖେଳ ଜାଣି ନଥିଲେ । କିନ୍ତୁ ଏହି ଖେଳପ୍ରତି ତାଙ୍କର ପ୍ରବଳ ନିଶା ଥିଲା । ରାଜାମାନେ ଉସୁକାଇବାରୁ ରୁକ୍ମୀ ବଳରାମଙ୍କୁ ଡାକି ପଶାଖେଳରେ ବସିଗଲେ ।।୨୮।। ବଳରାମ ଖେଳରେ ପ୍ରଥମେ ଶହେ, ତାପରେ ହଜାରେ ଏବଂ ତା'ପରେ ଦଶ ହଜାର ମୁଦ୍ରାର ବାଜି ଲଗାଇଲେ । ରୁକ୍ମୀ ବାଜି ଜିଣି ଯିବାରୁ କଳିଙ୍ଗ ବଳରାମଙ୍କୁ ଉପହାସ କରି ଦାନ୍ତ ଦେଖାଇ ଠୋ ଠୋ ହସିବାକୁ ଲାଗିଲା । ବଳରାମ ସହିପାରିଲେ ନାହିଁ ।।୨୯।। ସଙ୍ଗେ ସଙ୍ଗେ ରୁକ୍ମୀ ଏକ ଲକ୍ଷ ମୋହର ବାଜି ଲଗାଇଲେ । ଏଥର ବଳରାମ ଜିତିଗଲେ । କିନ୍ତୁ ଛଳର ଆଶ୍ରୟ ନେଇ ରୁକ୍ମୀ କହିଲେ, ମୁଁ ଜିଣିଚି ।।୩୦।। ସ୍ୱଭାବତଃ ବଳରାମଙ୍କ ଆଖି ଲାଲ୍ ଲାଲ୍ । ପୁଣି ରାଗରେ ତାହା ଆହୁରି ଲାଲ ପଡ଼ିଗଲା । ଅମାବାସ୍ୟା ବା ପୂର୍ଣ୍ଣିମାର ସମୁଦ୍ର ଜୁଆରରେ ଫୁଲି ଉଠିବାପରି ବଳରାମ କ୍ରୋଧରେ ଫୁଲିଉଠି ଦଶ କୋଟି ମୋହର ବାଜି ଲଗାଇଦେଲେ ।।୩୧।।

ବଳରାମ ଧର୍ମାନୁସାରେ ବାଜି ଜିତିଗଲେ । କିନ୍ତୁ ପୁଣି ଛଳର ଆଶ୍ରୟ ନେଇ ରୁକ୍ମୀ କହିଲେ, 'ମୁଁ ଜିତିଛି' । 'ମୁଁ ଜିତିଛି କି ନାହିଁ ସଭାସଦ୍‌ମାନେ ସତ କଥା କହନ୍ତୁ ।' ।।୩୨।। ଏହି ସମୟରେ ଆକାଶବାଣୀ ହେଲା ଯେ ବଳରାମ ପ୍ରକୃତରେ ଜିତିଛନ୍ତି । କିନ୍ତୁ ରୁକ୍ମୀ କେବଳ ମୁହଁରେ ଜିତିବା କଥା କହୁଛି । ତା' କଥା ମିଛ ।।୩୩।।

ଉକ୍ତ ଦୈବବାଣୀକୁ ନ ଶୁଣି ଦୁଷ୍ଟ ରାଜାମାନଙ୍କଦ୍ୱାରା ଉତ୍ସାହିତ ହୋଇ ରୁକ୍ମୀ ବଳରାମଙ୍କୁ ଉପହାସ କରିବାକୁ ଲାଗିଲେ ଏବଂ କାଳପ୍ରେରିତ ହୋଇ ତାଙ୍କୁ କହିଲେ, ତୁମେମାନେ ଗୋପାଳ । ବଣରେ ଗାଈ ଚରେଇବା ଲୋକ, ପଶାଖେଳ କଣ ତୁମେ ଜାଣ ନାହିଁ, କିନ୍ତୁ ରାଜାମାନେ ତୁମପରି ନୁହନ୍ତି, ସେମାନେ ବାଣ ଓ ପଶାକାଠି ଉଭୟ ଚଳାଇପାରନ୍ତି ।।୩୪-୩୫।। ରୁକ୍ମୀ ଏହିପରି ତିରସ୍କାର ଓ ରାଜାମାନେ ଉପହାସ କରୁଥିବା ଦେଖି ବଳରାମଙ୍କ ରାଗ ବଢ଼ିଗଲା । ସେ ପରିଘ ଉଠାଇ ସେହି ମଙ୍ଗଳସଭାରେ ହିଁ ରୁକ୍ମୀଙ୍କୁ ବଧ କଲେ । ଦାନ୍ତ ଦେଖାଇ ଯେଉଁ କଳିଙ୍ଗରାଜ ତାଙ୍କୁ ଉପହାସ କରୁଥିଲେ, ସେ ଉଠି ପଳାଇଗଲେ । ମାତ୍ର ଦଶ ପାଦରେ ବଳରାମ ରାଗରେ ଶ୍ରୀଘ୍ର ତାଙ୍କୁ ଧରି ପକାଇ ତାଙ୍କ ଦାନ୍ତଯାକ ଭାଙ୍ଗିଦେଲେ ।।୩୬-୩୭।। ପରିଘର ଆଘାତରେ ଅନ୍ୟ ରାଜାମାନଙ୍କର ବାହୁ, ଜାନୁ ଓ ମସ୍ତକ ଆଦି ରକ୍ତାକ୍ତ ହୋଇପଡ଼ିଲା । ସେମାନେ ଭୟରେ ଯେ ଯୁଆଡ଼େ ପଳାଇଗଲେ ।।୩୮।। ନିଜର ଶଳା ରୁକ୍ମୀ ନିହତ ହେବାର ଦେଖି କୃଷ୍ଣ ଭଲ ମନ୍ଦ କିଛି କହିଲେ ନାହିଁ । କାରଣ ଭଲ କହିଲେ ରୁକ୍ମିଣୀ ରୁଷ୍ଟ ହେବେ, ମନ୍ଦ କହିଲେ ବଳରାମ ଅସନ୍ତୁଷ୍ଟ ହେବେ, ସେଥିପାଇଁ ଉଭୟଙ୍କ ପ୍ରତି ସ୍ନେହଦୃଷ୍ଟିରୁ ସେ ନୀରବ ରହିଗଲେ ।।୩୯।। ନିଜର ଅଭୀଷ୍ଟ କାର୍ଯ୍ୟରେ ସଫଳ କୃଷ୍ଣଙ୍କ ଆଶ୍ରିତ ଯଦୁବୀରମାନେ ନବବିବାହିତା କନ୍ୟାସହ ଅନିରୁଦ୍ଧଙ୍କୁ ଏକ ଉତ୍ତମ ରଥରେ ବସାଇ ଭୋଜକଟରୁ ଦ୍ୱାରକାନଗରୀକୁ ଫେରିଆସିଲେ ।।୪୦।।

## ବାଷଠି ଅଧ୍ୟାୟ

# ଉଷା-ଅନିରୁଦ୍ଧଙ୍କ ବିବାହ

ରାଜା ପରିକ୍ଷିତ ଶୁକଦେବଙ୍କୁ ପଚାରିଲେ, ମହାଯୋଗୀ, ମୁଁ ଶୁଣିଛି ଯେ ଯଦୁଶ୍ରେଷ୍ଠ ଅନିରୁଦ୍ଧ ବାଣାସୁରଙ୍କ କନ୍ୟା ଉଷାଙ୍କୁ ବିବାହ କରିଥିଲେ । ସେଥିପାଇଁ କୃଷ୍ଣ ଓ ଶିବଙ୍କ ମଧ୍ୟରେ ଘୋର ଯୁଦ୍ଧ ହୋଇଥିଲା । ଏହି ସମସ୍ତ ବିଷୟ ଆପଣ ଦୟା କରି ମୋତେ କହିବା ହୁଅନ୍ତୁ ।।୧।। ଶ୍ରୀ ଶୁକଦେବ କହିଲେ, ପରିକ୍ଷିତ, ଯେଉଁ ମହାତ୍ମା ରାଜା ବଳି ବାମନରୂପୀ ଶ୍ରୀହରିଙ୍କୁ ଏହି ପୃଥିବୀକୁ ଦାନ କରିଥିଲେ, ତାଙ୍କର ଶହେ ପୁଅ ଥିଲେ । ସେମାନଙ୍କ ମଧ୍ୟରେ ବାଣାସୁର ଜ୍ୟେଷ୍ଠ ଥିଲେ ।।୨।। ବଳିଙ୍କ ଔରସରୁ ଜାତ ବାଣାସୁର ସର୍ବଦା ଶିବଭକ୍ତିରେ ରତ ଥିଲେ । ସେ ସମସ୍ତଙ୍କର ମାନ୍ୟ, ବୁଦ୍ଧିମାନ୍, ବଦାନ୍ୟ, ସତ୍ୟସନ୍ଧ ଓ ବ୍ରତଚାରୀ ଥିଲେ ।।୩।। ପୂର୍ବେ ଶୋଣିତପୁର ନାମକ ଏକ ରମଣୀୟ ନଗରରେ ସେ ରାଜପଣ କରୁଥିଲେ । ଶିବଙ୍କ ପ୍ରସାଦରୁ ଦେବତାମାନେ ତାଙ୍କ କିଙ୍କର ହୋଇ ରହିଥିଲେ । ବାଣାସୁର ତାଙ୍କ ହଜାର ବାହୁରେ ବାଦ୍ୟ ବଜାଇ ଶିବଙ୍କୁ ତାଣ୍ଡବନୃତ୍ୟ ସମୟରେ ସନ୍ତୁଷ୍ଟ କରୁଥିଲେ ।।୪।। ଭଗବାନ୍ ଶଙ୍କର ସମସ୍ତ ପ୍ରାଣୀଙ୍କର ସ୍ୱାମୀ, ଶରଣଯୋଗ୍ୟ ଓ ଭକ୍ତବତ୍ସଳ ଥିଲେ । ସେ ପ୍ରସନ୍ନ ହୋଇ ବାଣାସୁରକୁ ବର ମାଗିବାପାଇଁ କହିଲେ । ବାଣାସୁର ବର ମାଗିଲେ, ଆପଣ ମୋର ପୁରରକ୍ଷକ ହୁଅନ୍ତୁ ।।୫।। ଏକଦା ବଳଗର୍ବରେ ମତ୍ତ ହୋଇ ବାଣାସୁର ସୂର୍ଯ୍ୟପରି ଦୀପ୍ତିମନ୍ତ ତାର ମୁକୁଟଦ୍ୱାରା ପାଖରେ ଥିବା ମହାଦେବଙ୍କର ପାଦପଦ୍ମକୁ ଛୁଇଁ ପ୍ରଣାମ କଲା ଏବଂ କହିଲା, ଦେବାଧିଦେବ, ଆପଣ ସମସ୍ତ ଜଗତ୍‌ର ଗୁରୁ ଏବଂ ଈଶ୍ୱର । ଆପଣଙ୍କୁ ମୁଁ ନମସ୍କାର କରୁଛି । ଆପଣ କଳ୍ପତରୁ, ଯେଣୁ ଅପୂର୍ଣ୍ଣ ଥିବା ସମସ୍ତଙ୍କର ମନସ୍କାମନା ଆପଣ ପୂର୍ଣ୍ଣ କରନ୍ତି ।।୬-୭।। ଭଗବାନ୍, ଆପଣ ମୋତେ ହଜାରେ ବାହୁ ପ୍ରଦାନ

କରିଛନ୍ତି । ତାହା ମୋ ପକ୍ଷରେ ଭାରସ୍ୱରୂପ ହୋଇଚି । କାରଣ ତ୍ରିଲୋକରେ ଆପଣଙ୍କ ଛଡ଼ା ମୋର ତୁଲ୍ୟ କୌଣସି ପ୍ରତିଯୋଦ୍ଧାଙ୍କୁ ମୁଁ ଦେଖୁ ନାହିଁ ॥୮॥ ଆଦିଦେବ, ଥରେ ରଣକଣ୍ଡୁଯୋଗୁଁ ମୋର ଭାରସ୍ୱରୂପ ଏହି ବାହୁମାନଙ୍କଦ୍ୱାରା ମୁଁ ପର୍ବତମାନଙ୍କୁ ଚୂର୍ଣ୍ଣବିଚୂର୍ଣ୍ଣ କରି ଯୁଦ୍ଧ କରିବା ପାଇଁ ଦିଗ୍‌ଗଜମାନଙ୍କଆଡ଼କୁ ଧାଇଁଗଲି । କିନ୍ତୁ ସେମାନେ ଭୟରେ ପଳାୟନକଲେ ॥୯॥ ବାଣାସୁରଙ୍କ କଥା ଶୁଣି ଭଗବାନ ଶଙ୍କର କ୍ରୁଦ୍ଧ ହୋଇ କହିଲେ, ମୂଢ଼, ଯେଉଁଦିନ ତୋ’ ରଥର ଧ୍ୱଜା ଭାଙ୍ଗିଯିବ, ସେ ଦିନ ତୁ ମୋ’ସମାନ ବୀର ସହିତ ଲଢ଼ିବୁ ଏବଂ ତୋର ଗର୍ବ ଖର୍ବ ହେବ ॥୧୦॥ ମହାଦେବଙ୍କ କଥାରେ ସନ୍ତୁଷ୍ଟ ହୋଇ ମନ୍ଦମତି ବାଣାସୁର ନିଜ ଗୃହରେ ପ୍ରବେଶ କଲା ଏବଂ ମହାଦେବଙ୍କ କଥା ଅନୁସାରେ କେବେ ତାର ସେହି ଗର୍ବଖର୍ବକାରୀ ଯୁଦ୍ଧ ହେବ, ସେଥିପାଇଁ ଅପେକ୍ଷା କରିରହିଲା ॥୧୧॥

ବାଣାସୁରର ଉଷାନାମରେ ଏକ କନ୍ୟା ଥିଲା । ପ୍ରଦ୍ୟୁମ୍ନଙ୍କର ପୁତ୍ର ଅନିରୁଦ୍ଧ, ଯାହାଙ୍କୁ ସେ ଦେଖି ନାହିଁ ବା ଯାହାଙ୍କ କଥା ଶୁଣି ନାହିଁ, ଉଷା ତାଙ୍କ ସହିତ ବିହାର କରୁଥିବାର ସ୍ୱପ୍ନ ଦେଖିଲା । ତା’ପରେ ତାଙ୍କୁ ନ ଦେଖି ‘କାନ୍ତ ତୁମେ କୁଆଡ଼େ ଗଲ’ ବୋଲି ବିଳିବିଳେଇ ହୋଇ ଉଠିପଡ଼ିଲା । ସଖୀମାନେ ପାଖରେ ଶୋଇଥିଲେ; ତାହା ଦେଖି ସେ ଲାଜରେ ସଢ଼ିଗଲା ॥୧୨-୧୩॥ କୁମ୍ଭାଣ୍ଡ ନାମରେ ବାଣାସୁରଙ୍କର ଜଣେ ମନ୍ତ୍ରୀ ଥିଲେ । ତାଙ୍କ କନ୍ୟା ଚିତ୍ରଲେଖା ଥିଲା ଉଷାର ସଖୀ । ସେ କୌତୂହଳବଶତଃ ଉଷାକୁ ପଚାରିଲା, ସଖୀ, ତୁମେ କାହାକୁ ଖୋଜୁଛ ? ତୁମର ଇଚ୍ଛା କଣ ? ହେ ରାଜପୁତ୍ରୀ!ଏ ପର୍ଯ୍ୟନ୍ତ ତ ତୁମର ପାଣିଗ୍ରହଣକାରୀଙ୍କୁ ମୁଁ ଦେଖୁ ନାହିଁ ॥୧୪-୧୫॥ ଉଷା କହିଲା, ସଖୀ, ସ୍ୱପ୍ନରେ ଜଣେ ପୁରୁଷଙ୍କୁ ଦେଖିଲି । ଶ୍ୟାମଳବର୍ଣ୍ଣ, ପଦ୍ମପତ୍ରପରି ସୁନ୍ଦର ଚକ୍ଷୁ, ପୀତବସ୍ତ୍ର ପରିଧାନ କରିଛନ୍ତି; ଆଜାନୁଲମ୍ବିତ ବାହୁ ; ସ୍ତ୍ରୀମାନଙ୍କର ହୃଦୟକୁ ଟାଣିନିଅନ୍ତି ॥୧୬॥ ସେ ମୋତେ ତାଙ୍କ ଅଧରର ମଧୁ ପିଆଇଦେଇ ଓ ଦୁଃଖସାଗରରେ ଭସାଇ ଦେଇ କୁଆଡ଼େ ଚାଲିଗଲେ । ମୋର ସେହି କାନ୍ତଙ୍କୁ ମୁଁ ଖୋଜିବାରେ ଲାଗିଚି ॥୧୭॥ ଚିତ୍ରଲେଖା କହିଲା, ସଖୀ, ମୁଁ ତୁମର ଦୁଃଖ ଦୂରକରିବି । ଯଦି ତୁମର ସେହି ଚିତ୍ତଚୋର ତ୍ରିଭୁବନମଧ୍ୟରେ କେଉଁଠାରେ ହେଲେ ମିଳେ, ତା’ହେଲେ ମୁଁ ତାକୁ ଖୋଜିଆଣିବି । ତୁମେ ତାକୁ ଦେଖାଇଦିଅ (ମୋର ଅଙ୍କିତ ସୁନ୍ଦରପୁରୁଷମାନଙ୍କ ଚିତ୍ର ମଧ୍ୟରୁ) ॥୧୮॥ ଏହା କହି ଚିତ୍ରଲେଖା ଦେବତା, ଗନ୍ଧର୍ବ, ସିଦ୍ଧ, ଚାରଣ, ପନ୍ନଗ, ଦୈତ୍ୟ, ବିଦ୍ୟାଧର, ଯକ୍ଷ ଓ ମନୁଷ୍ୟମାନଙ୍କର ଚିତ୍ର ଠିକ୍ ଭାବରେ ଅଙ୍କନ କଲା ॥୧୯॥ ମନୁଷ୍ୟମାନଙ୍କ ମଧ୍ୟରେ ସେ ବୃଷ୍ଣିବଂଶୀ ଶୂର, ବସୁଦେବ, ବଳରାମ, କୃଷ୍ଣ ଆଦିଙ୍କର ଚିତ୍ର ଅଙ୍କନକଲା । ପ୍ରଦ୍ୟୁମ୍ନଙ୍କ ଚିତ୍ର ଦେଖି ଉଷା ଲଜ୍ଜିତା ହେଲା । ଯେତେବେଳେ ସେ ଅନିରୁଦ୍ଧଙ୍କର ଚିତ୍ର ଦେଖିଲା, ସେତେବେଳେ ଲଜ୍ଜାରେ ମୁଣ୍ଡ ନୁଆଁଇଦେଇ ହସି ହସି କହିଲା, ଏହି ସେହି ॥୨୦-୨୧॥ ଚିତ୍ରଲେଖା ଜଣେ ଯୋଗିନୀ ଥିଲା । ସେ ଅନିରୁଦ୍ଧଙ୍କୁ ଭଗବାନ୍ ଶ୍ରୀକୃଷ୍ଣଙ୍କର ନାତି ବୋଲି ଜାଣିପାରି ଆକାଶମାର୍ଗରେ କୃଷ୍ଣଙ୍କ ରକ୍ଷିତ ଦ୍ୱାରକାପୁରୀରେ ପହଞ୍ଚିଗଲା ॥୨୨॥ ସେଠାରେ ଅନିରୁଦ୍ଧ ଏକ ସୁନ୍ଦର ପଲଙ୍କରେ ଶୋଇଥିଲେ । ଚିତ୍ରଲେଖା ନିଜର ଯୋଗପ୍ରଭାବରେ ତାଙ୍କୁ ସୁପ୍ତ ଅବସ୍ଥାରେ ଶୋଣିତପୁରକୁ ଉଠାଇଆଣିଲା ଏବଂ ଉଷାକୁ ତା’ର ପ୍ରିୟତମଙ୍କୁ ଦେଖାଇଦେଲା ॥୨୩॥ ସେହି ପରମସୁନ୍ଦର ପୁରୁଷଙ୍କୁ ପାଇ ଉଷାର ମୁହଁରେ ଆନନ୍ଦ ଖେଳିଗଲା । ସେ ଅନିରୁଦ୍ଧଙ୍କ ସହିତ ନିଜର ମହଲରେ ବିହାର କରିବାକୁ ଲାଗିଲା । ଉଷାର ମହଲ ଏପରି ସୁରକ୍ଷିତ ଥିଲା ଯେ ତା ମଧ୍ୟରେ କୌଣସି ପୁରୁଷ ପ୍ରବେଶ କରିବା ସମ୍ଭବ ନ ଥିଲା ॥୨୪॥ ଉଷା ଅନିରୁଦ୍ଧଙ୍କୁ ଗୋପନଭାବରେ ରଖି ବହୁମୂଲ୍ୟ ବସ୍ତ୍ର, ମାଲ୍ୟ, ଗନ୍ଧ ଦ୍ରବ୍ୟ, ଧୂପ, ଦୀପ, ଆସନ ଆଦିଦ୍ୱାରା ଏବଂ ଉତ୍ତମ ପାନୀୟ ଓ ଭୋଜନ ଦ୍ୱାରା ସତ୍କାର କରି ତାଙ୍କର ଚିତ୍ତ ହରଣ କରିନେଲା । ଦିନକୁ ଦିନ ବଢ଼ୁଥିବା ତା’ର ପ୍ରେମରେ ବାନ୍ଧି ହୋଇ ଅନିରୁଦ୍ଧ ସେଠାରେ କେତେଦିନ ରହିଛନ୍ତି, ତାହା ଜାଣିପାରିଲେ ନାହିଁ ॥୨୫-୨୬॥ ଯଦୁବୀର ଅନିରୁଦ୍ଧଙ୍କ ସହିତ ସମ୍ଭୋଗରେ ମାତି ଉଷାର କୁମାରୀବ୍ରତ (ଅବସ୍ଥା) ଆଉ ରହିଲା ନାହିଁ । ସେ ବହୁତ ଖୁସିବାସିରେ ରହୁଥିବା ଦେଖାଯାଉଥିଲା । ତା’ର ଶରୀରରେ ଏପରି ଚିହ୍ନ ଦେଖାଗଲା, ଯାହାକି ସେ ଲୁଚାଇପାରିବା ସମ୍ଭବ ନ ଥିଲା ।

ଅନ୍ତଃପୁରର ରକ୍ଷୀମାନେ ଉଷାର ଚରିତ୍ରରେ ସନ୍ଦେହ କରି ରାଜାଙ୍କୁ ଯାଇ ନିବେଦନ କଲେ--'ମହାରାଜ, ଆପଣଙ୍କ ଅବିବାହିତା କନ୍ୟାର କୁଳକୁ ଦୂଷିତ କରିବାପରି ଆଚରଣ ଆମେ ଲକ୍ଷ୍ୟ କରୁଚୁ' ॥୨୭-୨୮॥ ପ୍ରଭୁ, ଆମେ ତ ଆପଣଙ୍କ କନ୍ୟାର ଅନ୍ତଃପୁରକୁ ଦିନରାତି ଜଗି ରହିଛୁ । ବାହାରୁ କୌଣସି ପୁରୁଷ ତାଙ୍କୁ ଦେଖିପାରିବ ନାହିଁ । ଏବେ କିପରି ତାଙ୍କର ଏ ଚରିତ୍ରଦୋଷ ଘଟିଲା, ଆମେ ଜାଣିପାରୁ ନାହୁଁ ॥୨୯॥ ରକ୍ଷୀମାନଙ୍କଠାରୁ କନ୍ୟାର ଚରିତ୍ରଦୋଷର ସମ୍ବାଦ ପାଇ ବାଣାସୁର ଅତିଶୟ ଦୁଃଖିତ ହେଲା । ସେ ତତ୍‌କ୍ଷଣାତ୍ ଉଷାର ମହଲକୁ ପଶିଯାଇ ସେଠାରେ ଯଦୁନନ୍ଦନ ଅନିରୁଦ୍ଧଙ୍କୁ ଦେଖିପାରିଲା ॥୩୦॥ ଅନିରୁଦ୍ଧ ସ୍ୱୟଂ କାମଦେବ (କାମାବତାର ପ୍ରଦ୍ୟୁମ୍ନ)ଙ୍କର ପୁତ୍ର ଥିଲେ । ସୌନ୍ଦର୍ଯ୍ୟରେ ସେ ଥିଲେ ଏହି ସଂସାରରେ ଅଦ୍ୱିତୀୟ । ପୀତାମ୍ବର, କମଳନୟନ, ଦୀର୍ଘବାହୁ ଓ ଶ୍ୟାମବର୍ଣ୍ଣ ଅନିରୁଦ୍ଧଙ୍କର କର୍ଣ୍ଣରେ କୁଣ୍ଡଳ ଓ ମସ୍ତକରେ କୃଷ୍ଣ କେଶରାଶି ଶୋଭା ପାଉଥିଲା । ଦୁଇ ବାହୁର ମଧ୍ୟରେ ବକ୍ଷସ୍ଥଳରେ ସେ ବସନ୍ତକାଳୀନ ମଲ୍ଲୀଫୁଲର ହାର ପିନ୍ଧିଥିଲେ; ସେଥିରେ ଉଷାଙ୍କ ସ୍ତନର କୁଙ୍କୁମ ଲାଗି ରହିଥିଲା । ସେ ମଙ୍ଗଳମୟୀ ପ୍ରିୟ ଉଷାଙ୍କ ଆଗରେ ଏକ ଉତ୍ତମ ଆସନରେ ବସି ତାଙ୍କ ସହିତ ପଶାଖେଳରେ ମାତିଥିଲେ । ଅନିରୁଦ୍ଧଙ୍କୁ ଦେଖି ବାଣାସୁର ବିସ୍ମିତ ହୋଇଗଲା ॥୩୧-୩୨॥ ବହୁ ଅସ୍ତ୍ରଶସ୍ତ୍ରଧାରୀ ସୈନ୍ୟଙ୍କଦ୍ୱାରା ପରିବେଷ୍ଟିତ ହୋଇ ବାଣାସୁର ଗୃହମଧ୍ୟରେ ପ୍ରବେଶ କରୁଥିବା ଦେଖି ତାକୁ ମାରିବା ଇଚ୍ଛାରେ ଅନିରୁଦ୍ଧ ଏକ ଭୟଙ୍କର ପରିଘ ଧରି ଯମପରି ଠିଆ ହୋଇ ପଡ଼ିଲେ ॥୩୩॥ ଶୂକରଙ୍କର ଦଳପତି କୁକୁରଦଳଙ୍କୁ ଯେପରି ମାରି ଘଉଡ଼ାଇଦିଏ, ସେହିପରି ତାଙ୍କୁ ଧରିବାକୁ ଆସୁଥିବା ସୈନ୍ୟମାନଙ୍କୁ ସେ ପରିଘଦ୍ୱାରା ତାଡ଼ନ କରିଲାଗିଲେ । କାହାର ମୁଣ୍ଡ ଫାଟିଗଲା, କାହାର ଉରୁ ଏବଂ କାହାର ବାହୁ ଭାଙ୍ଗିଗଲା । ଆହତ ସୈନିକମାନେ ଘରୁ ବାହାରି ପଳାଇଗଲେ ॥୩୪॥ ମହାବଳଶାଳୀ ବଳିପୁତ୍ର ବାଣାସୁର ନିଜ ସୈନ୍ୟମାନଙ୍କର ସଂହାର ଦେଖି ଅତିଶୟ କୁପିତ ହୋଇ ନାଗପାଶରେ ଅନିରୁଦ୍ଧଙ୍କୁ ବନ୍ଧନ କଲା । ଉଷା ଯେତେବେଳେ ଶୁଣିଲା ଯେ ନିଜର ପ୍ରିୟତମଙ୍କୁ ଏପରି ବାନ୍ଧି ନିଆଯାଉଚି, ସେ ଦୁଃଖ ଓ ଶୋକରେ ବିହ୍ୱଳ ହୋଇ ପଡ଼ିଲା । କାନ୍ଦି କାନ୍ଦି ତାର ଆଖିରୁ ଲୁହଧାର ବହିବାକୁ ଲାଗିଲା ॥୩୫॥

## ତେଷଠି ଅଧ୍ୟାୟ

# ବାଣ ପରାଜୟ

ଶ୍ରୀ ଶୁକଦେବ କହିଲେ, ପରିକ୍ଷିତ, ବର୍ଷା ଚାରି ମାସ ଚାଲିଗଲା । ଅନିରୁଦ୍ଧଙ୍କୁ ନ ଦେଖି ତାଙ୍କ ବନ୍ଧୁ ବାନ୍ଧବମାନେ ଶୋକାକୁଳ ହୋଇପଡ଼ିଲେ ॥୧॥ ସେତେବେଳେ ନାରଦ ଦ୍ୱାରକାକୁ ଆସି ଅନିରୁଦ୍ଧ ବାଣାସୁରଦ୍ୱାରା ବନ୍ଦି ହୋଇଥିବା ଖବର ଜଣାଇଲେ । ତାହା ଶୁଣି ଶ୍ରୀକୃଷ୍ଣଙ୍କୁ ଆରାଧ୍ୟ ଦେବତା କରିଥିବା ଯାଦବମାନେ ଶୋଣିତପୁରକୁ ଯାତ୍ରା କଲେ ॥୨॥ ଶ୍ରୀକୃଷ୍ଣ ଓ ବଳରାମଙ୍କ ସହିତ ପ୍ରଦ୍ୟୁମ୍ନ, ଯୁଯୁଧାନ, ଗଦ, ସାମ୍ବ, ସାରଣ, ନନ୍ଦ, ଉପନନ୍ଦ ଆଦି ଯଦୁବୀରମାନଙ୍କୁ ଧରି ବାର ଅକ୍ଷୌହିଣୀ ସେନାସହିତ କୃଷ୍ଣ ଓ ବଳରାମ ଚତୁର୍ଦ୍ଦିଗରୁ ବାଣର ରାଜଧାନୀ ଶୋଣିତପୁରକୁ ଅବରୋଧ କଲେ ଏବଂ ନଗରର ପ୍ରାଚୀର, ଉଦ୍ୟାନ, ଅଟ୍ଟାଳିକା ଓ ଗୋପୁର ଆଦି ଭାଙ୍ଗିବାକୁ ଲାଗିଲେ । ଏହା ଦେଖି ବାଣାସୁର ରୋଷାବିଷ୍ଟ ହୋଇ ବାର ଅକ୍ଷୌହିଣୀ ସୈନ୍ୟଙ୍କୁ ଧରି ଯୁଦ୍ଧ କରିବାକୁ ବାହାରି ଆସିଲା ॥୩-୫॥ ଭକ୍ତ ବାଣାସୁରପାଇଁ ଭଗବାନ ଶଙ୍କର ନିଜର ପୁତ୍ର କାର୍ତ୍ତିକେୟ ଓ ପ୍ରମଥଗଣଙ୍କ ସହିତ ଯୁଦ୍ଧଭୂମିକୁ ବାହାରି ଆସିଲେ । ବୃଷଧ୍ୱଜ ତାଙ୍କ ବାହନ ନନ୍ଦୀ ଉପରେ ଆରୋହଣ କରି କୃଷ୍ଣ ଓ ବଳରାମଙ୍କ ସହିତ ଯୁଦ୍ଧ କଲେ ॥୬॥ ଶ୍ରୀକୃଷ୍ଣଙ୍କ ସହିତ ଭଗବାନ ଶଙ୍କରଙ୍କର ତୁମୁଳ ଯୁଦ୍ଧ ହେଲା, ଯାହାକି ଅତିଶୟ ଅଦ୍ଭୁତ ଓ ରୋମହର୍ଷଣକର ଥିଲା । ପ୍ରଦ୍ୟୁମ୍ନ କାର୍ତ୍ତିକେୟଙ୍କ ସହିତ ଯୁଦ୍ଧ କଲେ ॥୭॥ ବଳରାମଙ୍କ ସହିତ କୁମ୍ଭାଣ୍ଡ ଓ କୂପକର୍ଣ୍ଣର, କୃଷ୍ଣଙ୍କ ପୁତ୍ର ସାମ୍ବଙ୍କ ସହିତ

ବାଣପୁତ୍ରର ଏବଂ ସାତ୍ୟକିଙ୍କ ସହିତ ବାଣାସୁରର ଯୁଦ୍ଧ ହେଲା ॥୮॥ ଏହି ଯୁଦ୍ଧ ଦେଖିବାପାଇଁ ବ୍ରହ୍ମାଦି ବଡ଼ବଡ଼ ଦେବତାମାନେ ଏବଂ ଋଷି, ମୁନି, ସିଦ୍ଧ ଚାରଣ, ଗନ୍ଧର୍ବ ଓ ଅପ୍ସରାମାନେ ନିଜ ନିଜ ବିମାନରେ ଚଢ଼ି ଆସିଗଲେ ॥୯॥ ଭଗବାନ୍ ଶ୍ରୀକୃଷ୍ଣ ଶାର୍ଙ୍ଗଧନୁରୁ ତୀକ୍ଷ୍ଣ ଶରମାନ ପ୍ରହାର କରି ଶିବଙ୍କର ଅନୁଚର ଭୂତ, ପ୍ରମଥ, ଗୁହ୍ୟକ, ଡାକିନୀ, ଯାତୁଧାନ, ବେତାଳ, ବିନାୟକ, ପ୍ରେତମାତା, ପିଶାଚ, କୃଷ୍ମାଣ୍ଡ ଓ ବ୍ରହ୍ମରାକ୍ଷସମାନଙ୍କୁ ବିତାଡ଼ିତ କଲେ ॥୧୦-୧୧॥ ଭଗବାନ୍ ଶଙ୍କର ପିନାକଧନୁରୁ ଶ୍ରୀକୃଷ୍ଣଙ୍କ ଉପରେ ଦିବ୍ୟାସ୍ତ୍ରମାନ ପ୍ରହାର କଲେ । କିନ୍ତୁ ଶାର୍ଙ୍ଗଧନ୍ୱା ଶ୍ରୀକୃଷ୍ଣ ସେଥିରେ ବିସ୍ମିତ ନ ହୋଇ ଅନ୍ୟ ପ୍ରତ୍ୟସ୍ତ୍ରମାନଙ୍କ ଦ୍ୱାରା ତାକୁ ପ୍ରତିରୋଧ କଲେ ॥୧୨॥ ଶ୍ରୀକୃଷ୍ଣ ବ୍ରହ୍ମାସ୍ତ୍ରକୁ ବ୍ରହ୍ମାସ୍ତ୍ରରେ, ବାୟବ୍ୟାସ୍ତ୍ରକୁ ପାର୍ବତାସ୍ତ୍ରରେ, ଆଗ୍ନେୟାସ୍ତ୍ରକୁ ମେଘାସ୍ତ୍ରରେ ଏବଂ ପାଶୁପତ ଅସ୍ତ୍ରକୁ ନିଜର ବୈଷ୍ଣବ ଅସ୍ତ୍ରଦ୍ୱାରା ଖଣ୍ଡନ କରି ଜୃମ୍ଭଣାସ୍ତ୍ର (ହାଇମାରିବା ଅସ୍ତ୍ର) ଦ୍ୱାରା ଭଗବାନ ଶଙ୍କରଙ୍କୁ ମୋହିତ କଲେ, ଯାହାଫଳରେ ସେ ଯୁଦ୍ଧରୁ ବିରତ ହୋଇ ହାଇ ମାରିବାକୁ ଲାଗିଲେ । ସେହି ଅବସରରେ କୃଷ୍ଣ ଖଡ୍ଗ, ଗଦା ଓ ଶରମାନଙ୍କଦ୍ୱାରା ବାଣର ସେନାକୁ ନିପାତ କରି ଲାଗିଲେ ॥୧୩-୧୪॥ ପ୍ରଦ୍ୟୁମ୍ନଙ୍କ ବାଣାଘାତରେ କାର୍ତ୍ତିକେୟଙ୍କ ଦେହରୁ ରକ୍ତଧାର ବହିବାକୁ ଲାଗିଲା । ସେ ନିଜର ବାହନ ମୟୂରସହିତ ରଣଭୂମି ଛାଡ଼ି ପଳାଇଗଲେ ॥୧୫॥ କୁମ୍ଭାଣ୍ଡ ଓ କୂପକର୍ଣ୍ଣ ବଳରାମଙ୍କ ମୁଷଳାଘାତରେ ଆହତ ହୋଇ ଧରାଶାୟୀ ହେଲେ । ସେନାପତିମାନେ ନିହତ ହେବାର ଦେଖି ବାଣାସୁରର ସମସ୍ତ ସେନା ଛତ୍ରଭଙ୍ଗ ଦେଲା ॥୧୬॥

ରଥାରୁଢ଼ ବାଣାସୁର ଦେଖିଲା ଯେ ଯୁଦ୍ଧରେ ନିଜର ସୈନ୍ୟମାନେ ଛତ୍ରଭଙ୍ଗ ଦେଲେଣି । ସେ ଅତିଶୟ କ୍ରୋଧରେ ସାତ୍ୟକିଙ୍କୁ ଛାଡ଼ି କୃଷ୍ଣଙ୍କଆଡ଼କୁ ଦୌଡ଼ି ଆସିଲା ॥୧୭॥ ରଣଦୁର୍ମଦ ବାଣାସୁର ତାର ସହସ୍ର ଭୁଜରେ ପାଞ୍ଚଶ ଧନୁ ଟଙ୍କାରି ପ୍ରତ୍ୟେକ ଧନୁରେ ଦୁଇଟି କରି ଏକାଥରକେ ହଜାରେ ଶର କୃଷ୍ଣଙ୍କୁ ନିକ୍ଷେପ କଲା ॥୧୮॥ ଭଗବାନ୍ ଶ୍ରୀକୃଷ୍ଣ ଏକାଥରକେ ତା'ର ସମସ୍ତ ଧନୁ, ଶର, ସାରଥି, ରଥ ଓ ଅଶ୍ୱମାନଙ୍କୁ କାଟିପକାଇ ଶଙ୍ଖଧ୍ୱନି କଲେ ॥୧୯॥ ପୁତ୍ରର ପ୍ରାଣରକ୍ଷାପାଇଁ ବାଣାସୁରଙ୍କ ମାତା କୋଟରା ବାଳ ମୁକୁଳା କରି ଉଲଗ୍ନ ଅବସ୍ଥାରେ କୃଷ୍ଣଙ୍କ ଆଗରେ ଠିଆହୋଇପଡ଼ିଲା । ଉଲଗ୍ନସ୍ତ୍ରୀକୁ ଦେଖିବେ ନାହିଁ ବୋଲି କୃଷ୍ଣ ତାଙ୍କ ମୁହଁ ବୁଲାଇ ନେବାରୁ ବିରଥ ଓ ଛିନ୍ନଧନୁ ବାଣାସୁର ଯୁଦ୍ଧଭୂମିରୁ ପଳାଇଯାଇ ନିଜ ନଗରମଧ୍ୟରେ ପ୍ରବେଶ କଲା ॥୨୦-୨୧॥ ରୁଦ୍ରଗଣ ପଳାଇଯିବାରୁ ତିନୋଟି ପାଦ ଓ ତିନୋଟି ମୁଣ୍ଡ ଥିବା ରୁଦ୍ରଜ୍ୱର ଦଶଦିଗକୁ ଦହନ କରି କୃଷ୍ଣଙ୍କ ଆଡ଼କୁ ମାଡ଼ିଆସିଲା । ତାହା ଦେଖି ଭଗବାନ୍ ଶ୍ରୀକୃଷ୍ଣ ବୈଷ୍ଣବ ଜ୍ୱର ସୃଷ୍ଟି କଲେ । ରୁଦ୍ରଜ୍ୱର ଓ ବିଷ୍ଣୁଜ୍ୱର ପରସ୍ପର ଲଢ଼ିବାକୁ ଲାଗିଲେ । ମାତ୍ର କିଛି ସମୟପରେ ଅଧିକ ବଳବାନ୍ ବିଷ୍ଣୁଜ୍ୱରଦ୍ୱାରା ପୀଡ଼ିତ ହୋଇ ରୁଦ୍ରଜ୍ୱର କ୍ରନ୍ଦନ କରିବାକୁ ଲାଗିଲା ଓ ଅନ୍ୟ କେଉଁଠାରୁ ଅଭୟ ନ ପାଇ କୃଷ୍ଣଙ୍କର ଶରଣାପନ୍ନ ହେଲା । କୃତାଞ୍ଜଳିପୁଟରେ ସେ ଭଗବାନ ହୃଷୀକେଶ (କୃଷ୍ଣ)ଙ୍କୁ ସ୍ତବ କରି ଲାଗିଲା ॥୨୨-୨୪॥

ପରିକ୍ଷିତ, ରୁଦ୍ରଜ୍ୱର ସ୍ତବ କରି କହିଲା, ଆପଣଙ୍କ ଶକ୍ତି ଅନନ୍ତ । ଆପଣ ବ୍ରହ୍ମା ଆଦି ଶ୍ରେଷ୍ଠ ଦେବତାଙ୍କର ମଧ୍ୟ ଈଶ୍ୱର । ଆପଣ ସମସ୍ତଙ୍କର ଆତ୍ମା, ଶୁଦ୍ଧ ଚୈତନ୍ୟମୟ । ଆପଣ ବିଶ୍ୱର ସୃଷ୍ଟି, ସ୍ଥିତି ଓ ସଂହାରର କାରଣ । ବେଦମାନେ କେବଳ ଅନୁମାନଦ୍ୱାରା ଆପଣଙ୍କୁ ବର୍ଣ୍ଣନା କରିଥାନ୍ତି । ସ୍ୱୟଂ ନିର୍ବିକାର ବ୍ରହ୍ମ ଆପଣଙ୍କୁ ମୁଁ ପ୍ରଣାମ କରୁଚି ॥୨୫॥ କାଳ, ଅଦୃଷ୍ଟ, କର୍ମ, ଜୀବ, ସ୍ୱଭାବ, ସୂକ୍ଷ୍ମଭୂତସମୂହ, ସ୍ଥୁଳ ଶରୀର, ପ୍ରାଣ, ଅହଙ୍କାର, ଏକାଦଶ ଇନ୍ଦ୍ରିୟ, ପଞ୍ଚ ମହାଭୂତ ଏବଂ ଏମାନଙ୍କ ସମସ୍ତଙ୍କ ସଂଯୋଗରେ ଯେଉଁ ଲିଙ୍ଗଦେହ ଗଠିତ ହୋଇଚି ଓ ସେ ଯେଉଁ କର୍ମ କରୁଚି ବୀଜରୁ ଅଙ୍କୁର ଓ ସେଥିରୁ ପୁଣି ବୀଜ ଓ ତହିଁରୁ ପୁଣି ଅଙ୍କୁର --ଏହି ନ୍ୟାୟରେ ଚାଳିତ ଯେଉଁ ମାୟାର ପ୍ରବାହ ଆପଣଙ୍କୁ ଲାଗେ ନାହିଁ, କେବଳ ଆପଣ ହିଁ ତାହାକୁ ହଟାଇ ଦେଇପାରନ୍ତି । ମୁଁ ଆପଣଙ୍କୁ ନମସ୍କାର କରୁଚି ॥୨୬॥ ପ୍ରଭୁ, ଆପଣ ସ୍ୱେଚ୍ଛାରେ ଲୀଳା କରିବାପାଇଁ ପ୍ରୟୋଜନାନୁସାରେ ଭିନ୍ନ ଭିନ୍ନ ରୂପ ଧାରଣ କରନ୍ତି, ଦେବତାମାନଙ୍କୁ, ସାଧୁମାନଙ୍କୁ ଓ ଧର୍ମର ମର୍ଯ୍ୟାଦାକୁ ରକ୍ଷା କରନ୍ତି ଏବଂ

ଏଥି ସହିତ କୁପଥଗାମୀ ହିଂସ୍ର ରାକ୍ଷସମାନଙ୍କୁ ସଂହାରକରନ୍ତି । ପୃଥିବୀର ଭାର ହରଣ କରିବାପାଇଁ ଆପଣ ଏହି ଅବତାରମାନ ଗ୍ରହଣ କରିଥାନ୍ତି ॥୨୭॥ ପ୍ରଭୁ, ଶାନ୍ତ ହେଲେ ମଧ୍ୟ ଆପଣଙ୍କର ଏହି ବିଷ୍ଣୁ ତେଜ (ଜ୍ୱର) ଅତିଶୟ ଉଗ୍ର ଓ ଭୟାନକ । ମୁଁ ସେହି ଜ୍ୱରକୁ ସହି ପାରୁ ନାହିଁ । ଯେ ପର୍ଯ୍ୟନ୍ତ ଆଶାୟୀ ଜୀବମାନେ ଆପଣଙ୍କ ପଦାମ୍ବୁଜ ସେବା ନ କରନ୍ତି, ସେ ପର୍ଯ୍ୟନ୍ତ ସେମାନେ ସନ୍ତପ୍ତ ହୋଇ ରହିଥା'ନ୍ତି ॥୨୮॥ ଭଗବାନ୍ ଶ୍ରୀକୃଷ୍ଣ ରୁଦ୍ରଜ୍ୱରକୁ କହିଲେ, ତ୍ରିଶର, ମୁଁ ତୁମପ୍ରତି ପ୍ରସନ୍ନ । ବର୍ତ୍ତମାନ ମୋ ଜ୍ୱରର ଭୟ ତୁମକୁ ରହିବ ନାହିଁ । ଯେଉଁ ବ୍ୟକ୍ତି ଆମ୍ଭ ଦୁହିଁଙ୍କର ଏହି ଆଳାପ ସ୍ମରଣ କରିବ, ତାର ମଧ୍ୟ ତୁମଠାରୁ କୌଣସି ଭୟ ରହିବ ନାହିଁ ॥୨୯॥ ଭଗବାନ୍‌ଙ୍କ ଦ୍ୱାରା ଏହିପରି ଆଶ୍ୱସ୍ତ ହୋଇ ରୁଦ୍ରଜ୍ୱର ତାଙ୍କୁ ପ୍ରଣାମ କରି ଚାଲିଗଲା । କିନ୍ତୁ ବାଣାସୁର ରଥାରୋହଣ କରି ପୁଣି ଯୁଦ୍ଧ କରିବା ପାଇଁ ତାଙ୍କ ସମ୍ମୁଖରେ ଉପସ୍ଥିତ ହେଲା ॥୩୦॥ ପରିକ୍ଷିତ, ବାଣାସୁର ତାର ହଜାର ହାତରେ ନାନାପ୍ରକାର ଆୟୁଧ ଧାରଣ କରିଥିଲା । ସେ ଅତିଶୟ କ୍ରୁଦ୍ଧ ହୋଇ ଚକ୍ରଧାରୀ କୃଷ୍ଣଙ୍କୁ ବାଣ ବର୍ଷଣ କରି ଲାଗିଲା । କ୍ଷୁରଧାର ଚକ୍ରଦ୍ୱାରା ଭଗବାନ ଶ୍ରୀକୃଷ୍ଣ ବାରମ୍ବାର ଅସ୍ତ୍ରଶସ୍ତ୍ରର ସୁଅ ଛୁଟାଉଥିବା ତାର ବାହୁମାନଙ୍କୁ କାଟିବାକୁ ଲାଗିଲେ । ଜଣାଗଲା, ସତେ ଯେପରି କେହି ଏକ ବୃକ୍ଷର ଡାଳସବୁ କାଟିବାରେ ଲାଗିଛି ॥୩୧-୩୨॥ ଭକ୍ତବତ୍ସଳ ଭଗବାନ୍ ଶଙ୍କର ବାଣର ବାହୁମାନ ଏପରି ଛିନ୍ନ ହେଉଥିବାର ଦେଖି ଚକ୍ରଧାରୀ ଶ୍ରୀକୃଷ୍ଣଙ୍କ ପାଖକୁ ଆସି କହିଲେ-- ॥୩୩॥

ରୁଦ୍ରଦେବ କହିଲେ, ଭଗବାନ, ଆପଣ ବେଦମନ୍ତ୍ରମାନଙ୍କରେ ଲୁକ୍କାୟିତ ପରମ ଜ୍ୟୋତିସ୍ୱରୂପ ପରଂବ୍ରହ୍ମ । ଶୁଦ୍ଧହୃଦୟ ଯୋଗୀମାନେ ଆପଣଙ୍କର ସର୍ବବ୍ୟାପୀ ସ୍ୱରୂପକୁ ଦର୍ଶନ କରନ୍ତି ॥୩୪॥ ଆକାଶ ଆପଣଙ୍କର ନାଭି, ଅଗ୍ନି ହେଉଛି ମୁଖ ଏବଂ ଜଳ ହେଉଛି ବୀର୍ଯ୍ୟ । ସ୍ୱର୍ଗ ଶିର, ଦିଗମାନେ କର୍ଣ୍ଣ ଏବଂ ପୃଥିବୀ ହେଉଛି ପାଦ । ଚନ୍ଦ୍ରମା ମନ, ସୂର୍ଯ୍ୟ ନେତ୍ର ଏବଂ ମୁଁ ହେଉଛି ଆପଣଙ୍କର ଅହଙ୍କାର । ସମୁଦ୍ର ଆପଣଙ୍କର ଜଠର ଏବଂ ଇନ୍ଦ୍ର ଭୁଜ । ଓଷଧିମାନେ ଆପଣଙ୍କର ଲୋମ । ମେଘମାଳା ଆପଣଙ୍କର କେଶ, ବ୍ରହ୍ମା ଆପଣଙ୍କର ବୁଦ୍ଧି, ପ୍ରଜାପତି ଲିଙ୍ଗ ଏବଂ ଧର୍ମ ହେଉଛି ଆପଣଙ୍କର ହୃଦୟ । ଆପଣ ହେଉଛନ୍ତି ଲୋକସ୍ରଷ୍ଟା ସେହି ବିରାଟପୁରୁଷ ॥୩୫-୩୬॥ ହେ ଅଖଣ୍ଡ ଜ୍ୟୋତିସ୍ୱରୂପ ଭଗବାନ, ଧର୍ମର ରକ୍ଷା ଓ ଜଗତର ଅଭ୍ୟୁଦୟପାଇଁ ଆପଣ ଅବତୀର୍ଣ୍ଣ ହୋଇଛନ୍ତି । ଆପଣଙ୍କଦ୍ୱାରା ପାଳିତ ହୋଇ ଆମେ ଏହି ସପ୍ତଭୁବନକୁ ପାଳନ କରୁଛୁ । ହେ ଭଗବାନ, ଆପଣ ଭେଦରହିତ ଏକ ଓ ଅଦ୍ୱିତୀୟ ଆଦିପୁରୁଷ । ଆପଣ ତୁରୀୟ ତତ୍ତ୍ୱ -- ଜାଗ୍ରତ୍, ସ୍ୱପ୍ନ ଓ ସୁଷୁପ୍ତି -- ଏହି ତିନୋଟି ଅବସ୍ଥାର ଭିତରେ ଓ ବାହାରେ ରହିଥା'ନ୍ତି । ଆପଣ ସ୍ୱୟଂପ୍ରକାଶମାନ, ଆପଣ ସମସ୍ତଙ୍କ କାରଣ; କିନ୍ତୁ ନିଜେ କାରଣରହିତ । ଆପଣ ସର୍ବେଶ୍ୱର । ଆପଣଙ୍କର ପ୍ରସିଦ୍ଧ ଗୁଣମୟୀ ମାୟାଦ୍ୱାରା ବିଭିନ୍ନ ଜୀବଙ୍କୁ ସୃଷ୍ଟି କରି ଆପଣ ଭିନ୍ନ ଭିନ୍ନ ରୂପରେ ପ୍ରତୀୟମାନ ହୋଇଥା'ନ୍ତି ॥୩୭-୩୮॥ ହେ ମହିମାମୟ, ସୂର୍ଯ୍ୟ ଯେପରି ନିଜର ଛାଇସ୍ୱରୂପ ମେଘଦ୍ୱାରା ଆଚ୍ଛାଦିତ ହୋଇ ମେଘ, ଛାଇ ଓ ବିଭିନ୍ନ ରୂପ ପ୍ରକାଶକରେ, ଆପଣ ସେହିପରି ନିଜ ମାୟାରେ ସୃଷ୍ଟ ଗୁଣମାନଙ୍କଦ୍ୱାରା ଆଚ୍ଛାଦିତ ହୋଇ ବିଭିନ୍ନଗୁଣଯୁକ୍ତ ଜୀବମାନଙ୍କୁ ପ୍ରକାଶିତ କରନ୍ତି । ଆପଣ ନିଜେ ହିଁ ନିଜର ଜ୍ୟୋତିସ୍ୱରୂପ ॥୩୯॥

ଭଗବାନ, ଆପଣଙ୍କ ମାୟାରେ ଜୀବମାନଙ୍କର ଚିତ୍ତ ମୋହିତ ହୋଇ ରହିଥାଏ । ସେମାନେ ସ୍ତ୍ରୀ-ପୁତ୍ର, ଗୃହାଦିରେ ଆସକ୍ତ ହୋଇ ଦୁଃଖସାଗରମଧ୍ୟରେ ଉବୁଟୁବୁ ହେଉଥାନ୍ତି ॥୪୦॥ ଆପଣ କୃପାପୂର୍ବକ ମନୁଷ୍ୟଙ୍କୁ ଏହି ମାନବ-ଶରୀର ଦିଅନ୍ତି । କିନ୍ତୁ ଏହା ଲାଭକରି ଯେ ଇନ୍ଦ୍ରିୟମାନଙ୍କଦ୍ୱାରା ବଶୀଭୂତ ହୋଇ ଆପଣଙ୍କ ପାଦପଦ୍ମର ଆଶ୍ରୟ ନିଏ ନାହିଁ, ନିଜକୁ ପ୍ରତାରଣା କରୁଥିବା ସେହି ବ୍ୟକ୍ତି ଶୋଚନାର ଯୋଗ୍ୟ ॥୪୧॥ ଏହି ମରଣଶୀଳ ସଂସାରରେ ଯେଉଁ ବ୍ୟକ୍ତି ଈଶ୍ୱରରୂପୀ ଆପଣଙ୍କୁ ଛାଡ଼ିଦିଏ, ସେ ଅମୃତକୁ ଛାଡ଼ି ବିଷ ଭକ୍ଷଣ କରେ ॥୪୨॥ ମୁଁ, ବ୍ରହ୍ମା, ଦେବତାମାନେ ଓ ଶୁଦ୍ଧହୃଦୟ ମୁନିମାନେ ସର୍ବତୋଭାବରେ ଆତ୍ମା, ପ୍ରିୟତମ ଓ ଈଶ୍ୱରରୂପେ ଆପଣଙ୍କୁ ଶରଣାପନ୍ନ ହୋଇଛୁ ॥୪୩॥ ଆପଣ ଜଗତ୍‌ର ଉତ୍ପତ୍ତି, ସ୍ଥିତି ଓ ପ୍ରଳୟର କାରଣ । ଆପଣ ସମସ୍ତଙ୍କୁ ସମଦୃଷ୍ଟିରେ ଦେଖନ୍ତି । ଆପଣ ଶାନ୍ତିର ଆଧାର । ସମସ୍ତଙ୍କର ସୁହୃଦ୍ ଆତ୍ମା ଏବଂ ଇଷ୍ଟଦେବ । ଆପଣ ଏକ,

ଅଦ୍ୱିତୀୟ ଏବଂ ଏହି ଜଗତର ନିଧାନ । ସଂସାରରୁ ମୁକ୍ତ ହେବାପାଇଁ ଆପଣଙ୍କୁ ଆମେ ଭଜନ କରୁଛୁ ॥୪୪॥ ଦେବ, ଏହି ବାଣାସୁର ମୋର ପ୍ରିୟ ଭକ୍ତ ଓ ଅନୁଗତ, ମୁଁ ତାକୁ ଅଭୟ ପ୍ରଦାନ କରିଛି । ଆପଣ ତାହା ସଫଳ କରନ୍ତୁ । ଆପଣ ଯେପରି ସେହି ବାଣର ପ୍ରପିତାମହ ଦୈତ୍ୟରାଜ ପ୍ରହ୍ଲାଦଙ୍କ ପ୍ରତି ଅନୁଗ୍ରହ ଦେଖାଇଥିଲେ, ଏହା ପ୍ରତି ମଧ୍ୟ ସେହିପରି ଅନୁଗ୍ରହ ଦେଖାନ୍ତୁ ॥୪୫॥

ଶ୍ରୀକୃଷ୍ଣ କହିଲେ, ଆପଣ ମୋତେ ଯାହା କହିଲେ, ତଦନୁଯାୟୀ ମୁଁ ଆପଣଙ୍କର ପ୍ରିୟ କାର୍ଯ୍ୟ ସମ୍ପାଦନ କରିବି । ଆପଣ ବାଣକୁ ଅଭୟ ଦାନ କରିଛନ୍ତି; ମୁଁ ତାହା ନିଶ୍ଚିତଭାବରେ ଅନୁମୋଦନ କରୁଛି । ମୋର ମଧ୍ୟ ଏ ଅବଧ୍ୟ । କାରଣ ବାଣ ହେଉଛି ବିରୋଚନଙ୍କର ନାତି ଏବଂ ବଳିଙ୍କର ପୁତ୍ର । 'ତୁମର କୌଣସି ବଂଶଧରଙ୍କୁ ମୁଁ ମାରିବି ନାହିଁ' ବୋଲି ପ୍ରହ୍ଲାଦଙ୍କୁ ପୂର୍ବରୁ ମୁଁ ବର ଦେଇସାରିଛି ॥୪୭॥ କେବଳ ଏହାର ଗର୍ବଖଣ୍ଡନପାଇଁ ମୁଁ ତା'ର ବାହୁମାନଙ୍କୁ ଛେଦନ କରିଛି ଏବଂ ତା'ସହିତ ଏହି ପୃଥିବୀର ଭାରସ୍ୱରୂପ ତାର ବିପୁଳ ସୈନ୍ୟବଳକୁ ମଧ୍ୟ ମୁଁ ସଂହାର କରିଛି ॥୪୮॥ ଏବେ ଏହାର ଚାରୋଟି ଭୁଜମାତ୍ର ଅବଶିଷ୍ଟ ଅଛି । ବାଣାସୁର ଅଜର ଅମର ହେବ, ଆପଣଙ୍କର ମୁଖ୍ୟ ପାର୍ଷଦ ହୋଇ ରହିବ ଏବଂ ଏହାର କୌଣସିଆଡୁ କିଛି ଭୟ ରହିବ ନାହିଁ ॥୪୯॥

ବାଣାସୁର ଏହିପରି ଅଭୟ ଲାଭ କରି ଭୂମିରେ ମୁଣ୍ଡ ଲଗାଇ ଶ୍ରୀକୃଷ୍ଣଙ୍କୁ ପ୍ରଣାମ କଲା, ଏବଂ ଉଷା ଓ ଅନିରୁଦ୍ଧଙ୍କୁ ରଥରେ ବସାଇ କୃଷ୍ଣଙ୍କ ପାଖକୁ ଘେନିଆସିଲା ॥୫୦॥ ଏହାପରେ ଭଗବାନ୍ ଶ୍ରୀକୃଷ୍ଣ ଭଗବାନ୍ ଶଙ୍କରଙ୍କ ସମ୍ମତିରେ ଉତ୍ତମ ବସ୍ତ୍ର ଓ ଅଳଙ୍କାରରେ ଭୂଷିତା ଉଷାର ସହିତ ଅନିରୁଦ୍ଧଙ୍କୁ ଆଗରେ ରଖି ଏକ ଅକ୍ଷୌହିଣୀ ସୈନ୍ୟ ସହିତ ଦ୍ୱାରକା ଅଭିମୁଖରେ ପ୍ରସ୍ଥାନ କଲେ ॥୫୧॥ ସେମାନଙ୍କର ଆଗମନପାଇଁ ଦ୍ୱାରକାବାସୀ ଅପେକ୍ଷା କରି ରହିଥିଲେ । ନଗରର ବିଭିନ୍ନ ସ୍ଥାନରେ ତୋରଣମାନ ନିର୍ମାଣ କରାଯାଇଥିଲା ଓ ପତାକାମାନ ଉଡୁଥିଲା । ପ୍ରଧାନ ପ୍ରଧାନ ସଡ଼କ ଓ ଛକମାନଙ୍କରେ ଚନ୍ଦନମିଶ୍ରିତ ସୁବାସିତ ଜଳ ଛିଞ୍ଚା ଯାଇଥିଲା । ନିଜର ବନ୍ଧୁବାନ୍ଧବ, ପୁରବାସୀ ଓ ବ୍ରାହ୍ମଣମାନଙ୍କଦ୍ୱାରା କୃଷ୍ଣଙ୍କର ଅଭ୍ୟର୍ଥନା କରାଗଲା । ଏହି ସମୟରେ ଶଙ୍ଖ, ନାଗରା ଓ ଦୁନ୍ଦୁଭି ଧ୍ୱନିରେ ଦ୍ୱାରକାନଗରୀ ପ୍ରତିଧ୍ୱନିତ ହେଉଥିଲା । ଏହିପରି ଭଗବାନ ଶ୍ରୀକୃଷ୍ଣ ନିଜ ରାଜଧାନୀରେ ପ୍ରବେଶ କଲେ ॥୫୨॥ ପରିକ୍ଷିତ, ଯେଉଁ ବ୍ୟକ୍ତି ପ୍ରାତଃକାଳରେ ଶେଯରୁ ଉଠି ଶ୍ରୀଶଙ୍କରଙ୍କ ସହିତ ଭଗବାନ ଶ୍ରୀକୃଷ୍ଣଙ୍କ ଯୁଦ୍ଧ ଓ ବିଜୟର ଗାଥା ସ୍ମରଣ କରେ, ତା'ର କେବେହେଲେ ପରାଜୟ ହୁଏ ନାହିଁ ॥୫୩॥

## ଚଉଷଠି ଅଧ୍ୟାୟ

# ନୃଗ ରାଜାଙ୍କ କାହାଣୀ

ଶ୍ରୀ ଶୁକଦେବ କହିଲେ, ପରିକ୍ଷିତ, ଦିନେ ସାମ୍ବ, ପ୍ରଦ୍ୟୁମ୍ନ, ଚାରୁ, ଭାନୁ ଏବଂ ଗଦ ପ୍ରଭୃତି ଯଦୁକୁମାରମାନେ କ୍ରୀଡ଼ା କରିବାପାଇଁ ଉପବନକୁ ଯାଇଥିଲେ । ସେଠାରେ ବହୁ ସମୟ ଧରି କ୍ରୀଡ଼ା କରିବା ପରେ ତୃଷାର୍ତ୍ତ ହୋଇ ଜଳ ଅନ୍ୱେଷଣରେ ଯାଉ ଯାଉ ଜଳଶୂନ୍ୟ କୂପରେ ଏକ ଅଦ୍ଭୁତ ପ୍ରାଣୀକୁ ଦେଖିବାକୁ ପାଇଲେ ॥୧-୨॥ ସେହି ଜୀବଟି ଥିଲା ପର୍ବତ ଆକାରର ଏକ ବିରାଟ ଏଣ୍ଡୁଅ । ତାକୁ ଦେଖି କୁମାରମାନେ ଆଶ୍ଚର୍ଯ୍ୟ ହୋଇଗଲେ ଏବଂ ଦୟାପରବଶ ହୋଇ ତାକୁ ସେହି କୂପରୁ ଉଦ୍ଧାର କରିବାପାଇଁ ଯତ୍ନ କଲେ ॥୩॥ ଚମଡ଼ା ଦଉଡ଼ିରେ ଫାଶ କରି କୂଅରେ ପଡ଼ିଥିବା ସେହି ଏଣ୍ଡୁଅକୁ ଉଦ୍ଧାର କରିବାପାଇଁ ସେମାନେ ଯେତେ ଚେଷ୍ଟା କଲେ ମଧ୍ୟ ପାରିଲେ ନାହିଁ । କୌତୂହଳବଶତଃ ସେମାନେ ସେ କଥା ଯାଇ କୃଷ୍ଣଙ୍କୁ କହିଲେ ॥୪॥

ଜଗତର ଜୀବନଦାତା କମଳନୟନ ଭଗବାନ୍ ଶ୍ରୀକୃଷ୍ଣ ସେଠାକୁ ଆସି ସେହି ଜୀବଟିକୁ ଦେଖିଲେ ଏବଂ ବାଁ ହାତରେ ତାକୁ ଅକ୍ଲେଶରେ ଉପରକୁ ଟେକିଆଣିଲେ ॥୫॥ ଉତ୍ତମଶ୍ଳୋକ ଶ୍ରୀକୃଷ୍ଣଙ୍କ ହାତର ସ୍ପର୍ଶମାତ୍ରକେ ସେହି ଜୀବ ତାର ଏଣ୍ଡୁଅ-ଦେହ ଛାଡ଼ି ଦେଇ ତପ୍ତକାଞ୍ଚନ ବର୍ଣ୍ଣର ଏକ ସୁନ୍ଦର ପୁରୁଷରୂପ ଧାରଣ କଲା । ତାର ଦିବ୍ୟ ରୂପରେ ସୁନ୍ଦର ବସ୍ତ୍ର, ଅଳଙ୍କାର ଓ ପୁଷ୍ପମାଳା ଆଦି ଶୋଭା ପାଉଥିଲା ॥୬॥ ସେ କାହିଁକି ଏଣ୍ଡୁଅ ହୋଇଥିଲା, ଭଗବାନ ଶ୍ରୀକୃଷ୍ଣଙ୍କୁ ତାହା ଅଜଣା ନ ଥିଲା । ତଥାପି ସେଇ କଥା ସମସ୍ତେ ଜାଣନ୍ତୁ, ଏହି ଉଦ୍ଦେଶ୍ୟରେ ସେ ପଚାରିଲେ, ମହାଭାଗ, ଆପଣ କିଏ ? ଆପଣଙ୍କର ଏ ବରେଣ୍ୟ ରୂପ ଦେଖି ମୁଁ ଆପଣଙ୍କୁ ଜଣେ ଶ୍ରେଷ୍ଠ ଦେବତାବୋଲି ମନେ କରୁଛି ॥୭॥ ଭଦ୍ର, କେଉଁ କର୍ମଫଳରୁ ଆପଣଙ୍କୁ ଏପରି ଦଶା ଭୋଗିବାକୁ ପଡ଼ିଥିଲା, ଆମେମାନେ ତାହା ଜାଣିବାକୁ ଚାହୁଁଛୁ । ଯଦି ତାହା ଆମକୁ କହିବା ଉଚିତ ମନେକରନ୍ତି, ତା'ହେଲେ ସମସ୍ତ କଥା ବର୍ଣ୍ଣନା କରନ୍ତୁ ॥୮॥

ଶ୍ରୀଶୁକଦେବ କହିଲେ, ପରିକ୍ଷିତ, ସେହି ପୁରୁଷ ଜଣେ ରାଜା ଥିଲେ । ଅନନ୍ତମୂର୍ତ୍ତି ଭଗବାନ୍ ଶ୍ରୀକୃଷ୍ଣ ତାଙ୍କୁ ଏପରି ପଚାରିବାରୁ ସୂର୍ଯ୍ୟପରି ଦୀପ୍ତିମନ୍ତ ତାଙ୍କ କିରୀଟକୁ ନୁଆଁଇ ଭଗବାନଙ୍କୁ ପ୍ରଣାମ କରି ସେ କହିଲେ-- ॥୯॥ ନୃଗ କହିଲେ, ପ୍ରଭୁ ମୁଁ ଇକ୍ଷ୍ୱାକୁଙ୍କର ପୁତ୍ର ନୃଗନାମକ ରାଜା । କେବେ ଯଦି କେହି ଆପଣଙ୍କୁ ଦାନୀ ରାଜାମାନଙ୍କ କଥା କହିଥିବ, ତା'ହେଲେ ମୋର ନାମ ଆପଣଙ୍କ କାନରେ ପଡ଼ିଥିବ ॥୧୦॥ ପ୍ରଭୁ, ଆପଣ ସମସ୍ତ ପ୍ରାଣୀଙ୍କ ଆତ୍ମାରେ ସାକ୍ଷୀ ରୂପରେ ବିଦ୍ୟମାନ । ଆପଣଙ୍କୁ କୌଣସି କଥା ଅଛପା ନାହିଁ । ଯେତେକାଳ ବିତିଗଲେ ମଧ୍ୟ ଆପଣଙ୍କର ଜ୍ଞାନ ଅତୁଟ ରହିଥାଏ । ତଥାପି ଆପଣ ଆଜ୍ଞା ଦେଇଥିବାରୁ ମୁଁ ମୋର କଥା କହିବାକୁ ଯାଉଛି ॥୧୧॥ ପୃଥିବୀରେ ଯେତେ ଧୂଳିକଣା ଅଛି, ଆକାଶରେ ଯେତେ ତାରକା ଅଛନ୍ତି ଏବଂ ବର୍ଷାରେ ଯେତେ ଜଳଧାରା ପଡୁଛି, ମୁଁ ସେତିକି ସଂଖ୍ୟକ ଗାଭୀ ଦାନ କରିଛି । ସେ ସମସ୍ତ ଗାଭୀ ନ୍ୟାୟରେ ଉପାର୍ଜିତ । ଦେଖିବାକୁ ସୁନ୍ଦର, ସୁଧାର ଓ ସୁଲକ୍ଷଣ ସେ ସମସ୍ତଙ୍କ ଶିଙ୍ଘରେ ସୁନା ଓ ଖୁରାରେ ରୁପା ଛାଉଣି କରାଯାଇଥିଲା । ବସ୍ତ୍ର ଓ ଅଳଙ୍କାରରେ ସେ ସମସ୍ତେ ସୁସଜ୍ଜିତା, ଯୁବତୀ ଓ ଦୁଗ୍ଧବତୀ ଥିଲେ । ବାଛୁରୀ ଲାଗିଥିବା ଏହି କପିଳା ଗାଭୀମାନଙ୍କୁ ମୁଁ ଦାନ କରିଥିଲି ॥୧୨-୧୩॥ ଯେଉଁ ବ୍ରାହ୍ମଣକୁମାରମାନେ ଯୁବକ, ସଦ୍‌ଗୁଣଯୁକ୍ତ, ତପସ୍ୟାରତ, ବେଦପାରଗ, ସତ୍ୟବ୍ରତ, ମାତ୍ର କଷ୍ଟରେ କୁଟୁମ୍ବ ପୋଷଣ କରନ୍ତି, ମୁଁ ସେମାନଙ୍କୁ ଗାଭୀପ୍ରଦାନ ପୂର୍ବରୁ ବସ୍ତ୍ର ଓ ଅଳଙ୍କାରରେ ଭୂଷିତ କରୁଥିଲି । ମୁଁ ସେମାନଙ୍କୁ ଧେନୁ, ଭୂମି, ସୁବର୍ଣ୍ଣ, ବାସଗୃହ, ଅଶ୍ୱ, ହସ୍ତୀ, ଦାସୀଙ୍କ ସହ କନ୍ୟା, ତିଳ, ରୌପ୍ୟ, ଶଯ୍ୟା, ବସ୍ତ୍ର, ରତ୍ନ, ପରିଚ୍ଛଦ ଓ ରଥ ସବୁ ଦାନ କରିଥିଲି । ମୁଁ ବହୁବିଧ ଯଜ୍ଞ, ଅଗ୍ନିହୋତ୍ରାଦି ଇଷ୍ଟକର୍ମ, ଓ କୂପ, ପୁଷ୍କରଣୀ ଖନନ ଆଦି ପୂର୍ତ୍ତ କାର୍ଯ୍ୟମାନ ସମ୍ପାଦନ କରିଥିଲି । ଦିନେ ଜଣେ ପ୍ରଧାନ ବ୍ରାହ୍ମଣଙ୍କର ଗାଇ ତାଙ୍କ ଗୁହାଳୁ ବାହାରି ଆସି ମୋ' ଗାଈଗୋଠରେ ମିଶିଗଲା । ମୁଁ ତାହା ଜାଣି ନ ଥିଲି; ମୁଁ ଅନ୍ୟ ଜଣେ ବ୍ରାହ୍ମଣଙ୍କୁ ସେହି ଗାଈଟି ଦାନ କରିଦେଲି । ସେହି ବ୍ରାହ୍ମଣ ଯେତେବେଳେ ଗାଈଟି ନେଇ ଯାଉଥିଲେ, ଗାଈର ପ୍ରକୃତ ମାଲିକ ତାହାକୁ ଦେଖିପାରି ଏ ଗାଈଟି ମୋର ବୋଲି ଦାବି କରିବାକୁ ଲାଗିଲେ । ଦାନ ନେଇଥିବା ବ୍ରାହ୍ମଣ ମଧ୍ୟ କହିଲେ, 'ଏ ଗାଈ କିନ୍ତୁ ମୋର, କାରଣ ମହାରାଜ ନୃଗ ମୋତେ ଏହାକୁ ଦାନ କରିଛନ୍ତି ।' ॥୧୪-୧୭॥ ଏହିପରି କଳହରତ ବ୍ରାହ୍ମଣ ଦୁଇ ଜଣ ମୋ ପାଖରେ ପହଞ୍ଚିଲେ । ଦାନ ଗ୍ରହଣ କରିଥିବା ବ୍ରାହ୍ମଣ କହିଲେ, 'ଆପଣ ମୋତେ ଏହି ଗାଈଟିକୁ ଦାନ କରିଛନ୍ତି ।' ଗାଈର ପ୍ରକୃତ ମାଲିକ ବ୍ରାହ୍ମଣ କହିଲେ, 'ଆପଣ ମୋର ଏହି ଗାଈଟିକୁ ଅପହରଣ କରିଛନ୍ତି ।' ଏହା ଶୁଣି ମୋର ଭ୍ରମ ଜାତ ହେଲା । ମୁଁ ଧର୍ମସଙ୍କଟରେ ପଡ଼ି ଅନୁନୟ ବିନୟ ହୋଇ ସେ ଦୁଇ ଜଣଙ୍କୁ କହିଲି, ମୋତେ ଏ ଗାଈଟିକୁ ଦେଇଦିଅନ୍ତୁ, ମୁଁ ଏହା ବଦଳରେ ଲକ୍ଷେ ଭଲ ଗାଈ ଦେଇଦେବି । ମୁଁ ଆପଣମାନଙ୍କ ଆଜ୍ଞାବହ ସେବକ । ଅଜାଣତରେ ମୁଁ ଭୁଲ କରିଦେଇଛି । ନରକଭୋଗରୂପ ମୋର ଏହି ଦୁଃଖ ଓ ସଙ୍କଟରୁ ଆପଣ ଦୁହେଁ ମୋତେ ରକ୍ଷା କରନ୍ତୁ ॥୧୮-୨୦॥ ଗାଈଟିର ପ୍ରକୃତ ମାଲିକ କହିଲେ, ମହାରାଜ, ମୁଁ ଆପଣଙ୍କର ଲକ୍ଷେ ଗାଈ ଚାହୁଁ ନାହିଁ; ଏହା କହି ସେ

ଚାଲିଗଲେ । ଦାନ ନେଇଥିବା ବ୍ରାହ୍ମଣ କହିଲେ, ଆପଣ ଏଇ ଗାଈଟିକୁ ଛାଡ଼ି ଲକ୍ଷେ କ'ଣ, ତା'ଠାରୁ ଅଧିକ ଦଶ ହଜାର ଗାଈ ଦେଲେ ମଧ୍ୟ ମୁଁ ନେବି ନାହିଁ । ଏହା କହି ସେ ମଧ୍ୟ ଚାଲିଗଲେ ॥୨୧॥ ହେ ଦେବଦେବ ଜଗଦୀଶ୍ୱର, ଏହି ଘଟଣାପରେ ଯେତେବେଳେ ମୋର ଆୟୁଷ ପୂରିଗଲା, ଯମଦୂତମାନେ ମୋତେ ଯମାଳୟକୁ ନେଇଗଲେ । ସେଠାରେ ଯମ ପଚାରିଲେ, ରାଜା, ଆପଣ ପ୍ରଥମେ ପାପକର୍ମର ଫଳ ଭୋଗ କରିବେ ନା ପୁଣ୍ୟ କର୍ମର ? ଆପଣ ଏତେ ଦାନଧର୍ମ କରିଛନ୍ତି ଯେ ଏହାର ଫଳସ୍ୱରୂପ କେତେକାଳ ଯାଏଁ ଆପଣ ଦିବ୍ୟ ସ୍ୱର୍ଗଲୋକ ଭୋଗ କରିବେ, ତାହା ମୁଁ କଳନା କରିପାରୁ ନାହିଁ ॥୨୨-୨୩॥ ମୁଁ କହିଲି, ଯମରାଜ, ପ୍ରଥମେ ମୁଁ ମୋର ପାପକର୍ମର ଫଳ ଭୋଗକରିବି । ଏହା କହିବା ମାତ୍ରେ ଯମରାଜ କହିଲେ, ତୁମର ପତନ ହେଉ । ପ୍ରଭୁ, ଏହା ପରେ ପରେ ମୁଁ ଏଠାରେ ପଡ଼ି ଏକ ଏଣ୍ଡୁଅ ହୋଇଗଲି ॥୨୪॥ ହେ କେଶବ, ମୁଁ ବ୍ରାହ୍ମଣଙ୍କର ହିତକାରୀ, ଆପଣଙ୍କର ସେବକ । ସବୁବେଳେ ଆପଣଙ୍କୁ ଦେଖିବାପାଇଁ ଇଚ୍ଛା କରୁଥିଲି । ମୋର ସେହି ସ୍ମୃତିଶକ୍ତି ଏବେ ମଧ୍ୟ ନଷ୍ଟ ହୋଇ ନାହିଁ ॥୨୫॥ ବିଭୁ, ଯେତେବେଳେ ଏହି ଭବସଂସାରରୁ କାହାର ମୁକ୍ତି ପାଇବାକୁ ଥାଏ, ସେତେବେଳେ ଆପଣ ତାକୁ ଦେଖାଦିଅନ୍ତି । ଶ୍ରେଷ୍ଠ ଯୋଗୀମାନେ ବେଦଶ୍ରବଣଜନିତ ଜ୍ଞାନଦୃଷ୍ଟିରେ ଓ ନିର୍ମଳ ହୃଦୟରେ ଆପଣଙ୍କୁ ଧ୍ୟାନ କରିଥାନ୍ତି । ଆପଣ ସମସ୍ତ ଇନ୍ଦ୍ରିୟର ଅତୀତ ସାକ୍ଷାତ୍ ପରମାତ୍ମା । ମୋ ପରି ବାରମ୍ବାର ଜନ୍ମ-ମରଣ ଦୁଃଖରେ ପୀଡ଼ିତ ବ୍ୟକ୍ତିର ଆଗରେ ଏ ସ୍ଥାନରେ ଆପଣ କିପରି ଦେଖାଦେଲେ ? ମୋ ପକ୍ଷରେ ଏହା କମ୍ ସୌଭାଗ୍ୟର ବିଷୟ ନୁହେଁ ॥୨୬॥ ଆପଣ ଦେବାଧିଦେବ ଜଗନ୍ନାଥ, ଗୋବିନ୍ଦ, ପୁରୁଷୋତ୍ତମ, ଅବ୍ୟୟ, ହୃଷୀକେଶ, ଅଚ୍ୟୁତ, ଅନ୍ତର୍ଯ୍ୟାମୀ ଓ ପୁଣ୍ୟଶ୍ଳୋକ ନାରାୟଣ । ହେ ପ୍ରଭୁ ଶ୍ରୀକୃଷ୍ଣ, ମୋତେ ବର୍ତ୍ତମାନ ଅନୁମତି ଦିଅନ୍ତୁ, ମୁଁ ଦେବଲୋକକୁ ଗମନ କରେ । ମୁଁ ଯେଉଁଠି ରହିଲେ ମଧ୍ୟ ମୋର ଚିତ୍ତ ଆପଣଙ୍କ ପାଦପଦ୍ମରେ ଆଶ୍ରୟ ନେଉ ॥୨୭॥ ଆପଣ ସମସ୍ତ ବିଶ୍ୱର କାରଣସ୍ୱରୂପ, ଅନନ୍ତଶକ୍ତିସମ୍ପନ୍ନ ପରଂବ୍ରହ୍ମ । ସମସ୍ତ ଯୋଗର ସ୍ୱାମୀ । ହେ କୃଷ୍ଣ, ହେ ବାସୁଦେବ, ଆପଣଙ୍କୁ ମୁଁ ବାରମ୍ବାର ନମସ୍କାର କରୁଛି । ଏହିପରି କହି ନୃଗ କୃଷ୍ଣଙ୍କୁ ପରିକ୍ରମା କରି ତାଙ୍କ ପାଦ ଦୁଇଟିରେ ମୁଣ୍ଡ ଲଗାଇ ପ୍ରଣାମ କଲେ ଏବଂ ତାଙ୍କର ଅନୁମତି ନେଇ ଲୋକମାନେ ଦେଖୁ ଦେଖୁ ଉତ୍ତମ ବିମାନରେ ଆରୋହଣ କରି ସ୍ୱର୍ଗକୁ ପ୍ରସ୍ଥାନ କଲେ ॥୨୯-୩୦॥

ନୃଗ ଚାଲିଯିବା ପରେ ବ୍ରାହ୍ମଣମାନଙ୍କର ଭକ୍ତ ଭଗବାନ୍ ଦେବକୀନନ୍ଦନ ଶ୍ରୀକୃଷ୍ଣ ସେଠାରେ ଉପସ୍ଥିତ ରାଜକୁମାରମାନଙ୍କୁ ଶିକ୍ଷା ଦେବା ଉଦ୍ଦେଶ୍ୟରେ ଏହିପରି କହିଲେ -- ॥୩୧॥ ଅହୋ, ଅଗ୍ନିପରି ତେଜସ୍ୱୀ ବ୍ୟକ୍ତି ଅତ୍ୟନ୍ତ ହେଲେ ମଧ୍ୟ ବ୍ରହ୍ମସ୍ୱକୁ ଭୋଗ କରି ଜୀର୍ଣ୍ଣ କରିପାରିବ ନାହିଁ । ଅଜ୍ଞାନତାବଶତଃ ଯେଉଁମାନେ ନିଜକୁ ଈଶ୍ୱର ବୋଲି ମନେ କରନ୍ତି, ସେହି ରାଜାମାନେ ବା ଏହାକୁ କିପରି ଜୀର୍ଣ୍ଣ କରିବେ ? ॥୩୨॥ ହାଳାହଳ ବିଷକୁ ଭୟାନକ ଓ ଗୁରୁତର ବୋଲି ମୁଁ ମନେ କରେ ନାହିଁ । କାରଣ ମନ୍ତ୍ର ଓ ଔଷଧ ଦ୍ୱାରା ତା'ର ପ୍ରତିକାର କରାଯାଇପାରିବ । କିନ୍ତୁ ବ୍ରହ୍ମସ୍ୱ ଯେଉଁ ବିଷ, ପୃଥିବୀରେ ତା'ର କୌଣସି ପ୍ରତିକାର ନାହିଁ ॥୩୩॥ ପାଣିଦ୍ୱାରା ନିଆଁକୁ ଲିଭାଯାଇପାରେ । ବିଷ କେବଳ ଖାଇବାଲୋକର ପ୍ରାଣ ହରଣ କରେ । କିନ୍ତୁ ବ୍ରହ୍ମସ୍ୱରୂପକ ଅରଣୀରୁ ଯେଉଁ ଅଗ୍ନି ଜାତ ହୁଏ, ସମସ୍ତ ବଂଶକୁ ସମୂଳେ ପୋଡ଼ି ତାହା ଧ୍ୱଂସ କରିଦିଏ ॥୩୪॥ ବ୍ରାହ୍ମଣର ଅନୁମତି ନ ନେଇ ତାର ଧନ ଭୋଗ କଲେ ତିନି ପୁରୁଷଙ୍କର ବିନାଶ ହୁଏ । ବ୍ରାହ୍ମଣର ଧନ ବଳପୂର୍ବକ ଭୋଗ କଲେ, ପୂର୍ବ ଦଶ ପୁରୁଷ ଓ ଆଗାମୀ ଦଶ ପୁରୁଷ ବିନଷ୍ଟ ହୁଅନ୍ତି ॥୩୫॥ ରାଜଲକ୍ଷ୍ମୀରେ ଅନ୍ଧ ହୋଇ ଯେଉଁ ରାଜାମାନେ ବ୍ରହ୍ମସ୍ୱ ଅପହରଣ କରିବାକୁ ସାଧୁ ବୋଲି ମନେକରନ୍ତି, ସେମାନେ ନିଜର ସର୍ବନାଶକୁ ଦେଖିପାରନ୍ତି ନାହିଁ । ସେମାନଙ୍କର ନିଶ୍ଚିତ ନରକଗତି ହୋଇଥାଏ ॥୩୬॥ ଦାନଶୀଳ ବ୍ରାହ୍ମଣମାନଙ୍କର ଧନକୁ ବଳପୂର୍ବକ ଅପହରଣ କରାଗଲେ ସେମାନଙ୍କ ପରିବାର ଯେଉଁ ଲୁହ ଗଡ଼ାନ୍ତି, ସେ ଲୁହବିନ୍ଦୁମାନଙ୍କରେ ଯେତିକି ଧୂଳିକଣା ଥାଏ, ଅପହରଣକାରୀ ରାଜା ବା ରାଜବଂଶୀମାନେ ସେତିକି ବର୍ଷ କୁମ୍ଭୀପାକ ନରକରେ ପଡ଼ି କଷ୍ଟ ଭୋଗକରନ୍ତି ॥୩୭-୩୮॥ ଯେଉଁ ବ୍ୟକ୍ତି ନିଜର ବା ଅନ୍ୟର ପ୍ରଦତ୍ତ ବ୍ରହ୍ମସ୍ୱକୁ ହରଣ କରେ, ସେ ଷାଠିଏ ହଜାର

ବର୍ଷ ବିଷ୍ଠାରେ କୃମି ହୋଇ ଜନ୍ମ ହୁଏ ।।୩୯।। ଯେଉଁ ବ୍ରହ୍ମସ୍ୱକୁ ଲୋଭ କଲେ ଲୋକମାନେ ଇହଜନ୍ମରେ ଅଳ୍ପାୟୁଷ ହୁଅନ୍ତି, ରାଜାମାନେ ପରାଜିତ ହୋଇ ରାଜ୍ୟଚ୍ୟୁତ ହୁଅନ୍ତି ଓ ପରଜନ୍ମରେ ଲୋକଙ୍କର ଭୟପ୍ରଦ ସର୍ପରୂପେ ଜନ୍ମ ହୁଅନ୍ତି, ସେହି ବ୍ରହ୍ମସ୍ୱ ଧନ କେବେ ଯେପରି ଆମର ରାଜକୋଷକୁ ନ ଆସେ ।।୪୦।। ସ୍ୱଜନଗଣ, ବ୍ରାହ୍ମଣ ଅପରାଧ କଲେ ମଧ୍ୟ କେବେ ତାହାର ଦ୍ରୋହ କରିବ ନାହିଁ । ବ୍ରାହ୍ମଣ ଯଦି ମାରିବାକୁ ବାହାରେ ବା ଅଭିଶାପ ଦେବାକୁ ଲାଗେ, ତେବେ ମଧ୍ୟ ତାଙ୍କୁ ସବୁବେଳେ ନମସ୍କାର କରୁଥିବ ।।୪୧।। ମୁଁ ଯେପରି ସବୁବେଳେ ସାବଧାନ ହୋଇ ବ୍ରାହ୍ମଣମାନଙ୍କୁ ନମସ୍କାର କରେ, ତୁମେମାନେ ମଧ୍ୟ ସେପରି ବ୍ରାହ୍ମଣମାନଙ୍କୁ ନମସ୍କାର କରିବ । ଯେ ଏହାର ଅନ୍ୟଥା କରିବ, ସେ ମୋର ଦଣ୍ଡନୀୟ ହେବ ।।୪୨।। ବ୍ରାହ୍ମଣର ଧେନୁ ଯେପରି ନୃଗରାଜାର ଅଧଃପତନ ଘଟାଇଥିଲା, ସେହିପରି ଅଜାଣତରେ ମଧ୍ୟ ବ୍ରହ୍ମସ୍ୱ ଅପହୃତ ହେଲେ ହରଣକାରୀର ଅଧଃପତନ ଘଟାଏ ।।୪୩।। (ମହାରାଜ ପରିକ୍ଷିତ,) ସମସ୍ତ ଲୋକଙ୍କ ପାବନ ଭଗବାନ୍ ଶ୍ରୀକୃଷ୍ଣ ଦ୍ୱାରକାବାସୀଙ୍କୁ ଏହିପରି ଉପଦେଶ ଦେଇ ନିଜ ଭବନରେ ପ୍ରବେଶ କଲେ ।।୪୪।।

## ପଞ୍ଚଷଠି ଅଧ୍ୟାୟ

# ବ୍ରଜରେ ବଳରାମ

ଶ୍ରୀ ଶୁକଦେବ କହିଲେ, କୁରୁଶ୍ରେଷ୍ଠ ପରିକ୍ଷିତ, ନିଜର ସ୍ୱଜନ ବନ୍ଧୁମାନଙ୍କୁ ଦେଖିବାପାଇଁ ଉତ୍କଣ୍ଠା ହେବାରୁ ଭଗବାନ୍ ବଳରାମ ଗୋକୁଳକୁ ଯାତ୍ରା କଲେ । ସେଠାରେ ଗୋପାଳ ଓ ଗୋପୀମାନେ ତାଙ୍କୁ ଦେଖିବାପାଇଁ ଅତି ଆଗ୍ରହରେ ଅପେକ୍ଷା କରି ରହିଥିଲେ । ବଳରାମ ପହଞ୍ଚିଯିବାରୁ ସେମାନେ ତାଙ୍କୁ ଅତି ପ୍ରେମରେ ଗଳାରେ ଲଗାଇ ଆଲିଙ୍ଗନ କଲେ । ନନ୍ଦ ଯଶୋଦା ତାଙ୍କୁ ଆଶୀର୍ବାଦ କରି ପାଛୋଟି ନେଲେ ।।୧-୨।। ତାଙ୍କୁ କୋଳକୁ ନେଇ ଆଲିଙ୍ଗନପୂର୍ବକ ନନ୍ଦ ଓ ଯଶୋଦା ତାଙ୍କୁ ନେତ୍ର ଜଳରେ ସିଞ୍ଚାଇ କହିଲେ, ହେ ଯଦୁବଂଶୀ ଜଗଦୀଶ୍ୱର, ତୁମେ ତୁମ ସାନ ଭାଇ କୃଷ୍ଣଙ୍କ ସହିତ ମିଶି ଆମମାନଙ୍କୁ ସର୍ବଦା ରକ୍ଷାକରୁଥାଅ ।।୩।। ବଳରାମ ବୟୋବୃଦ୍ଧ ଗୋପାଳମାନଙ୍କୁ ଯଥାବିଧି ଅଭିବାଦନ କଲେ ଏବଂ ବୟସରେ ସାନମାନେ ତାଙ୍କୁ ପ୍ରଣାମ ଜଣାଇଲେ । ଏହାପରେ ସମବୟସ୍କମାନଙ୍କ ପାଖକୁ ଯାଇ କାହାକୁ ହସିଦେଇ, କାହା ସହିତ ହାତ ମିଳାଇ ଏବଂ କାହା ସହିତ ମଧୁର ଆଳାପାଦି କରି ସେମାନଙ୍କ ସଙ୍ଗେ ବସିଗଲେ । ବଳରାମଙ୍କୁ ଚାରିପାଖରେ ବେଢ଼ି ବସିଥିବା ଗୋପାଳମାନେ ତାଙ୍କୁ କୁଶଳ ସମ୍ବାଦ ପଚାରିଲେ । ସେମାନଙ୍କର ମନଚୈତନ୍ୟ କମଳନୟନ କୃଷ୍ଣଙ୍କଠାରେ ହିଁ ନିହିତ ଥିଲା । ସୁଖରେ ବସିଥିବା ବଳରାମ ମଧ୍ୟ ପ୍ରେମ-ଗଦ୍‌ଗଦ ସ୍ୱରରେ ସେମାନଙ୍କୁ କୁଶଳ ବାର୍ତ୍ତା ପଚାରିଲେ ।।୪-୬।। ସେମାନେ ପଚାରିଲେ, ବଳରାମ, ଆମର ବନ୍ଧୁ ସ୍ୱଜନମାନେ କୁଶଳରେ ଅଛନ୍ତି ତ ? ତୁମେମାନେ ବର୍ତ୍ତମାନ ସ୍ତ୍ରୀ-ପିଲାମାନଙ୍କ ସହିତ ଭଲରେ ରହିଛ ? ବେଳେବେଳେ ଆମ କଥା ତୁମର ମନେ ପଡେ ତ ? ସୌଭାଗ୍ୟକ୍ରମେ ପାପିଷ୍ଠ କଂସ ନିହତ ହୋଇଛି । ଆମ ବନ୍ଧୁମାନେ ମୁକ୍ତ ହୋଇଛନ୍ତି । ତୁମେ ଶତ୍ରୁମାନଙ୍କୁ ପରାସ୍ତ ଓ ନିହତ କରି ଏକ ସୁରକ୍ଷିତ ଦୁର୍ଗ(ଦ୍ୱାରକା)ରେ ବାସ କରୁଛ ।।୭-୮।। ରାମଙ୍କ ଦର୍ଶନ ପାଇ ସ୍ନେହଶୀଳ ଗୋପୀମାନେ ହସିହସି ପଚାରିଲେ, ପୁରସ୍ତ୍ରୀମାନଙ୍କର ପ୍ରିୟ କୃଷ୍ଣ କିପରି ଅଛନ୍ତି ? କେବେ କେବେ ସେ ତାଙ୍କ ପିତା-ମାତା ଓ ଜ୍ଞାତି ବନ୍ଧୁମାନଙ୍କୁ ମନେପକାନ୍ତି ତ ? ଏବେ ତାଙ୍କ ମା'ଙ୍କୁ ଦେଖିବାପାଇଁ ସେ ଥରେ ହେଲେ ଏଠାକୁ ଆସିବେ ନାହିଁ ? ଆମେମାନେ ତାଙ୍କୁ ଯେଉଁ ସେବା କରିଥିଲୁ, ତାହା ତାଙ୍କର ମନେପଡୁ ନାହିଁ ?।।୯-୧୦।। ହେ ପ୍ରଭୁ ଯଦୁପତି, ଆମର ପିତାମାତା, ସ୍ୱାମୀ, ପୁତ୍ର, ଭାଇଭଉଣୀ ସମସ୍ତଙ୍କୁ ଆମେ ଯାହାଙ୍କ ପାଇଁ ଛାଡ଼ି ଦେଇଥିଲୁ, ସେ କୃଷ୍ଣ ହଠାତ୍ ଆମର ସ୍ନେହବନ୍ଧନକୁ

କାଟିଦେଇ ଚାଲିଗଲେ । ସେ ଆମକୁ ଯାହା କହିଥିଲେ, ଆମେ ସେଥିରେ ବିଶ୍ୱାସ କରିଗଲୁ । କିଏ ବା ତାଙ୍କ କଥାରେ ବିଶ୍ୱାସ ନ କରିବ ? ॥୧୧-୧୨॥ କେହି କେହି ଗୋପୀ କହିଲେ, ଆମ କଥା କାହିଁକି କହୁଛ ? ଅଧିକ ଜାଣିବାର ପୁରସ୍ତ୍ରୀମାନେ ମଧ୍ୟ ସେହି ଚଞ୍ଚଳଚିତ୍ତ କୃତଘ୍ନ କୃଷ୍ଣଙ୍କ କଥାରେ କିପରି ବିଶ୍ୱାସ କରିଯାଉଛନ୍ତି ! ଅନ୍ୟ କେତେ ଗୋପୀ କହିଲେ, କାହିଁକି ବିଶ୍ୱାସ ନ କରିବେ, ସେ ତ ବନେଇ ଚୁନେଇ କହିବାରେ ପାରଙ୍ଗମ । ତାଙ୍କ ସେହି ସୁନ୍ଦର ହସହସ ମୁହଁ ଓ ଚାହାଣିଦ୍ୱାରା ଯେଉଁ କାମଭାବ ଉଦ୍ଦୀପିତ ହୁଏ, ସେଥିରେ କିଏ ବିଚଳିତ ନ ହେବ ? ॥୧୩॥

ଅନ୍ୟ କେତେଜଣ କହିଲେ, ଗୋପୀମାନେ, ତାଙ୍କ କଥା ଆଉ କହି କ'ଣ ମିଳିବ ? ଅନ୍ୟ କଥା ପଡୁ । ଆମ ବିନା ଯଦି ତାଙ୍କର ସମୟ ଭଲରେ କଟିଯାଉଛି, ଆମର ମଧ୍ୟ ସେହିପରି ସମୟ କଟିଯାଉ ॥୧୪॥ ଗୋପୀମାନେ ଏହିପରି କହି ତାଙ୍କରି ହସ, ତାଙ୍କରି କଥାଭାଷା, ତାଙ୍କ ସୁନ୍ଦର ଚାହାଣି, ତାଙ୍କ ଗତି, ପ୍ରେମପୂର୍ଣ୍ଣ ହାବଭାବ ଓ ଆଲିଙ୍ଗନ ଆଦି ସ୍ମରଣ କରି ରୋଦନ କରିବାକୁ ଲାଗିଲେ ॥୧୫॥

ଭଗବାନ୍ ବଳରାମ ମଧ୍ୟ ଅନୁନୟ ବିନୟ କରିବାରେ ପାରଙ୍ଗମ ଥିଲେ । ସେ କୃଷ୍ଣଙ୍କର ସନ୍ଦେଶ ଦେଇ ଗୋପୀମାନଙ୍କୁ ସାନ୍ତ୍ୱନା ଦେଲେ । ବଳରାମ ସେଠାରେ ଚୈତ୍ର ଓ ବୈଶାଖ - ଏହି ଦୁଇଟି ମାସ କଟାଇଲେ । ସେଠାରେ ରହି ରାତ୍ରି ସମୟରେ ସେ ଗୋପୀମାନଙ୍କର ପ୍ରେମ ଓ ଅନୁରାଗ ବଢ଼ାଇଲେ । ପୂର୍ଣ୍ଣିମାର ରାତ୍ରି; ଚାରିଆଡ଼େ ଉଜ୍ଜ୍ୱଳ ଚନ୍ଦ୍ରକିରଣ ପଡ଼ିଥାଏ । ମତୁଆଲା ପବନ କଇଁଫୁଲର ସୁଗନ୍ଧକୁ ଚାରିଆଡ଼େ ବହି ଆଣୁଥିଲା । ଯମୁନାକୂଳର ଉପବନରେ ଗୋପୀମାନଙ୍କ ମେଳରେ ବଳରାମ ବିହାର କରିବାକୁ ଲାଗିଲେ ॥୧୬-୧୮॥ ବରୁଣଙ୍କ ପ୍ରେରିତ ବାରୁଣୀ ଦେବୀ ମଧ୍ୟ ଗଛର କୋରଡ଼ରୁ ଝରିପଡୁଥିଲେ ଓ ନିଜର ସୁଗନ୍ଧରେ ସମସ୍ତ ବନକୁ ସୁବାସିତ କରୁଥିଲେ ॥୧୯॥ ପବନରେ ମଧୁଧାରାର ସେହି ଗନ୍ଧ ବଳରାମଙ୍କ ପାଖରେ ପହଞ୍ଚିଲା । ବଳରାମ ସେଥିରେ ଆମୋଦିତ ହୋଇ ଗୋପଲଳନାମାନଙ୍କ ସହିତ ବାରୁଣୀ ମଦିରା ପାନ କରିଲାଗିଲେ ॥୨୦॥ ଏହାପରେ ସେହି ସୁନ୍ଦରୀ ଲଳନାମାନଙ୍କ ମେଳରେ ରହି ଭଗବାନ ବଳରାମ ସେମାନଙ୍କ ସହିତ ବିହାର କଲେ । ସେମାନେ ତାଙ୍କର ଯଶୋଗାନ କରୁଥିଲେ । ଇନ୍ଦ୍ରଙ୍କର ଐରାବତ ହସ୍ତିନୀମାନଙ୍କ ସହିତ ଯେପରି ବିହାର କରେ, ସେ ସେହିପରି ବିହାର କରିଲାଗିଲେ ॥୨୧॥ ଆକାଶ ଓ ସ୍ୱର୍ଗରେ ଦୁନ୍ଦୁଭିମାନ ବାଜିଉଠିଲା । ଦେବତାମାନେ ଆନନ୍ଦରେ ପୁଷ୍ପ ବୃଷ୍ଟି କଲେ । ଗନ୍ଧର୍ବ ଓ ମୁନିମାନେ ତାଙ୍କ ବଳବୀର୍ଯ୍ୟର ପ୍ରଶଂସା କରି ସ୍ତୁତି କଲେ ॥୨୨॥ ବ୍ରଜଲଳନାମାନେ ତାଙ୍କର ଚରିତ ଗାନ କରୁଥିଲେ । ମଦିରା ପାନରେ ତାଙ୍କ ଚକ୍ଷୁ ଢଳଢଳ ହେଉଥିଲା । ସେ ମତୁଆଲା ହୋଇ ବନକୁ ବନ ବିଚରଣ କଲେ ॥୨୩॥ ସେ ଗୋଟିଏ କାନରେ କୁଣ୍ଡଳ ପିନ୍ଧିଥିଲେ । ବୈଜୟନ୍ତୀମାଳା ପରିଧାନ କରିଥିଲେ । ମୁଖପଦ୍ମରେ ସ୍ୱେଦବିନ୍ଦୁ ଓ ଶିଶିରବିନ୍ଦୁ ସହ ସ୍ମିତହାସ୍ୟର ରେଖା । ବଳରାମ ଜଳକେଳି କରିବାପାଇଁ ଯମୁନାଙ୍କୁ ତାଙ୍କ ପାଖକୁ ଆସିବାପାଇଁ ଆହ୍ୱାନ କଲେ । ବଳରାମ ମତ୍ତ ଅବସ୍ଥାରେ ଅଛନ୍ତି ବୋଲି ଜାଣି ଯମୁନା ତାଙ୍କ ଆହ୍ୱାନକୁ ଅବଜ୍ଞା କଲେ । ଯମୁନା ନ ଆସିବାରୁ ବଳରାମ ଲଙ୍ଗଳର ଅଗ୍ରଭାଗରେ ତାଙ୍କୁ ଆକର୍ଷଣ କଲେ ॥୨୪-୨୫॥ ବଳରାମ କହିଲେ, ପାପିନୀ ଯମୁନା, ମୁଁ ତୋତେ ଡାକିଲି, ତୁ ମୋତେ ଅବଜ୍ଞା କରି ଆସିଲୁ ନାହିଁ । ତୁ ସ୍ୱେଚ୍ଛାଚାରିଣୀ ହୋଇଗଲୁଣି । ବର୍ତ୍ତମାନ ତୋତେ ଏହି ଲଙ୍ଗଳର ଅଗ୍ରଭାଗରେ ଟାଣି ଆଣି ଶହେ ଖଣ୍ଡ କରିଦେବି ॥୨୬॥ ପରିକ୍ଷିତ, ବଳରାମଙ୍କର ଗାଳି ଶୁଣି ଯମୁନା ଦେବୀ ଭୟଭୀତ ହୋଇପଡ଼ିଲେ ଏବଂ ଭୟରେ ତାଙ୍କ ପାଦତଳେ ପଡ଼ିଯାଇ କହିଲେ-- ॥୨୭॥ ହେ ରାମ, ହେ ମହାବାହୁ, ମୁଁ ଆପଣଙ୍କର ପରାକ୍ରମ ଜାଣି ନ ଥିଲି । ଜଗଦୀଶ୍ୱର, ଆପଣଙ୍କର ଅଂଶସ୍ୱରୂପ ଶେଷଦେବ ଜଗତ୍‌କୁ ଶିରରେ ଧାରଣ କରିଛନ୍ତି ॥୨୮॥ ହେ ଭଗବାନ୍ ବିଶ୍ୱାତ୍ମା, ଭକ୍ତବତ୍ସଳ, ଆପଣଙ୍କର ବିଶାଳ ମହିମା ଜାଣି ନ ପାରି ମୁଁ ଅପରାଧ କରିଛି । ମୁଁ ଆପଣଙ୍କର ଶରଣାଗତ, ମୋତେ ମୁକ୍ତ କରିଦିଅନ୍ତୁ ॥୨୯॥ ଯମୁନା ଏହିପରି ପ୍ରାର୍ଥନା କରିବାରୁ ବଳରାମ ତାଙ୍କୁ ଛାଡ଼ିଦେଲେ । ଗଜରାଜ ହସ୍ତିନୀମାନଙ୍କ ସହିତ

କ୍ରୀଡ଼ା କରିବାପରି ସେ ସ୍ତ୍ରୀମାନଙ୍କ ସହିତ ଜଳକ୍ରୀଡ଼ା କଲେ ।।୩୦।। କ୍ରୀଡ଼ାଶେଷରେ ଜଳରୁ ଉଠି ଆସିବାପରେ ଲକ୍ଷ୍ମୀଦେବୀ ତାଙ୍କୁ ନୀଳବର୍ଣ୍ଣ ବସ୍ତ୍ର, ଉତ୍ତରୀୟ, ଏବଂ ମହାମୂଲ୍ୟ ଅଳଙ୍କାରମାନଙ୍କ ସହ ଏକ ସୁବର୍ଣ୍ଣର ହାର ପ୍ରଦାନ କଲେ ।।୩୧।। ନୀଳାମ୍ବର ପିନ୍ଧି ଓ ସୁବର୍ଣ୍ଣର ହାରକୁ ଗଳାରେ ଲମ୍ବାଇ ଅଳଙ୍କାରଭୂଷିତ ଚନ୍ଦନଚର୍ଚ୍ଚିତ ବଳରାମ ଇନ୍ଦ୍ରଙ୍କର ଐରାବତ ପରି ଶୋଭା ପାଇବାକୁ ଲାଗିଲେ । ପରିକ୍ଷିତ, ଏବେ ମଧ୍ୟ ଯମୁନା ବକ୍ରଗତିରେ ପ୍ରବାହିତ ହୋଇ ବଳରାମଙ୍କଦ୍ୱାରା ଟଣା ହୋଇଥିବାର ସୂଚନା ଦେଉଛି ଏବଂ ଅନନ୍ତବୀର୍ଯ୍ୟ ବଳରାମଙ୍କ ବଳର ପରିଚୟ ମଧ୍ୟ ଦେଉଛି । ବ୍ରଜଲଳନାମାନଙ୍କ ଲୀଳାମାଧୁରୀରେ ବଳରାମଙ୍କର ଚିତ୍ତ ବିଚଳିତ ହୋଇଯାଉଥିଲା । ସେ ବ୍ରଜରେ ରହି ସେମାନଙ୍କ ସହିତ ବିହାର କରି ଯେତୋଟି ରାତି କଟାଇଲେ, ତାହା ତାଙ୍କୁ ଗୋଟିଏ ରାତିପରି ମନେହେଲା ।।୩୨-୩୪।।

## ଛଷଠି ଅଧ୍ୟାୟ

# ପୌଣ୍ଡ୍ରକ ଓ କାଶିରାଜଙ୍କର ନିଧନ

ଶ୍ରୀ ଶୁକଦେବ କହିଲେ, ପରିକ୍ଷିତ, ବଳରାମ ବ୍ରଜକୁ ଯାଇଥିବାବେଳେ କରୁଷ ଦେଶର ରାଜା ପୌଣ୍ଡ୍ରକ ମୂର୍ଖତାବଶତଃ କୃଷ୍ଣଙ୍କ ପାଖକୁ ଦୂତ ପଠାଇ ଖବର ଦେଲା - 'ମୁଁ ହେଉଛି ପ୍ରକୃତରେ ବାସୁଦେବ ଭଗବାନ୍ ।' ।।୧।। ମୂର୍ଖ ଲୋକମାନେ ସେହି ରାଜା ପୌଣ୍ଡ୍ରକକୁ 'ଆପଣ ହିଁ ଜଗଦୀଶ୍ୱର ଭଗବାନ୍ ବାସୁଦେବ, ପୃଥିବୀରେ ଅବତୀର୍ଣ୍ଣ ହୋଇଛନ୍ତି' ବୋଲି ଖୋସାମତଦ୍ୱାରା ଉତ୍ସାହିତ କରିବାରୁ ସେ ମୂର୍ଖ ନିଜକୁ ବାସୁଦେବ ଭଗବାନ୍ ମନେକଲା । ଖେଳରେ ଖେଳରେ ପିଲାମାନେ ଯେପରି ଜଣେ ପିଲାକୁ ରାଜା ବୋଲି ଧରି ନିଅନ୍ତି, ସେହିପରି ମୂର୍ଖଲୋକଙ୍କ କଥାରେ ନିଜକୁ ବାସୁଦେବ ବୋଲି ମନେକରି ସେହି ମୂର୍ଖବୁଦ୍ଧି ପୌଣ୍ଡ୍ରକ ଦ୍ୱାରକାପୁରକୁ ଦୂତ ପଠାଇଲା । କୃଷ୍ଣଙ୍କର ଅଚିନ୍ତ୍ୟ ଲୀଳା ସେ ଜାଣିନ ଥିଲା ।।୨-୩।। ଦୂତ ଦ୍ୱାରକାକୁ ଆସି ସଭାରେ ଉପସ୍ଥିତ ପ୍ରଭୁ ଶ୍ରୀକୃଷ୍ଣଙ୍କୁ ପୌଣ୍ଡ୍ରକର ବାର୍ତ୍ତା ଶୁଣାଇଲା । ବାର୍ତ୍ତା ହେଲା--ପ୍ରାଣୀମାନଙ୍କୁ କୃପା କରିବାପାଇଁ ମୁଁ କେବଳ ବାସୁଦେବ ରୂପରେ ଅବତୀର୍ଣ୍ଣ ହୋଇଛି । ଅନ୍ୟ କେହି ନୁହେଁ । ଏଣୁ ତୁମେ ତୁମର ମିଥ୍ୟା ନାମ ପରିତ୍ୟାଗ କର । ଯାଦବ, ମୂଢ଼ତାବଶତଃ ତୁମେ ମୋର ଯେଉଁ ସବୁ ଚିହ୍ନ ଧାରଣ କରିଛ, ତାହା ଶୀଘ୍ର ପରିତ୍ୟାଗ କରି ମୋର ଶରଣାଗତ ହୁଅ । ନଚେତ୍ ମୋ ସହିତ ଆସି ଯୁଦ୍ଧ କର ।।୪-୬।। ଶ୍ରୀ ଶୁକଦେବ କହିଲେ, ଅଳ୍ପବୁଦ୍ଧି ପୌଣ୍ଡ୍ରକର ବାର୍ତ୍ତା ଶୁଣି ରାଜା ଉଗ୍ରସେନ ଆଦି ସଭାସଦ୍‌ମାନେ ଉଚ୍ଚସ୍ୱରରେ ହସିବାକୁ ଲାଗିଲେ ।।୭।। ଭଗବାନ୍ ଶ୍ରୀକୃଷ୍ଣ ପରିହାସରେ (ପୌଣ୍ଡ୍ରକ ଉଦ୍ଦେଶ୍ୟରେ) ଦୂତକୁ କହିଲେ, 'ରେ ମୂଢ଼ବୁଦ୍ଧି, ଯେଉଁ କୃତ୍ରିମ ଚିହ୍ନସବୁ ଧାରଣକରି ତୋର ଆତ୍ମଗର୍ବ ବଢ଼ିଯାଇଛି, ମୁଁ ତାକୁ ଶୀଘ୍ର ଛଡ଼ାଇଦେଉଛି ।।୮।। 'ଯେଉଁ ମୁହଁରୁ ତୁ ଏହି କଥା କହୁଛୁ, ଯୁଦ୍ଧଭୂମିରେ ନିହତ ହୋଇ ସେହି ମୁହଁରେ ତୁ ଧୂଳିକୁ ଚୁମ୍ବନ କରିବୁ । କାଉ, ଶାଗୁଣା, ଚିଲ ଆଦି ପ୍ରାଣୀ ତୋତେ ଘେରି ରହିଥିବେ । ସେତେବେଳେ ତୋ' ମୃତଶରୀର କୁକୁରମାନଙ୍କ ଶରଣରେ ରହିଥିବ ।' ।।୯।। ଦୂତ କୃଷ୍ଣଙ୍କର ଏହି ତିରସ୍କାରପୂର୍ଣ୍ଣ ଉକ୍ତିକୁ ନିଜ ରାଜାଙ୍କ ପାଖରେ ଯାଇ ଜଣାଇଲା । ଏଣେ ଭଗବାନ୍ ଶ୍ରୀକୃଷ୍ଣ ରଥାରୋହଣ କରି କାଶିରାଜ୍ୟ ଉପରେ ଚଢ଼ାଉ କଲେ ।।୧୦।। ଭଗବାନ୍ ଶ୍ରୀକୃଷ୍ଣ ଯୁଦ୍ଧ କରିବାପାଇଁ ଆସିଗଲେଣି ଜାଣି ମହାରଥୀ ପୌଣ୍ଡ୍ରକ ଦୁଇ ଅକ୍ଷୌହିଣୀ ସୈନ୍ୟଙ୍କ ସହିତ ନଗରରୁ ବାହାରିଆସିଲା ।।୧୧।। ମହାରାଜ ପରକ୍ଷିତ, (ପୌଣ୍ଡ୍ରକ ତାର ମିତ୍ରରାଜ୍ୟ କାଶିରେ ରହୁଥିଲା) ତା'ର ମିତ୍ର କାଶିରାଜ ତାର ସହାୟତା ପାଇଁ ତିନି ଅକ୍ଷୌହିଣୀ ସୈନ୍ୟ ଧରି ତା' ପଛେ ପଛେ ବାହାରି ଆସିଲେ । ଭଗବାନ୍ ଶ୍ରୀକୃଷ୍ଣ ଦେଖିଲେ, ପୌଣ୍ଡ୍ରକର ଗଳାରେ ଏକ କୃତ୍ରିମ କୌସ୍ତୁଭ ମଣି ଓ ବନମାଳା ଝୁଲୁଛି । ସେ

ପୀତବର୍ଣ୍ଣର ବସ୍ତ୍ର ଓ ଉତ୍ତରୀୟ ପରିଧାନ କରିଛି । ତା' ରଥର ଧ୍ୱଜାରେ କୃତ୍ରିମ ଗରୁଡ଼ ଅବସ୍ଥିତ । ତାର ମସ୍ତକରେ ଏକ ମହାମୂଲ୍ୟ ମୁକୁଟ ଓ କାନରେ ମକରକୁଣ୍ଡଳ ଝଲମଲ ହେଉଛି ।।୧୨-୧୪।। ଏହିପରି ତା'ର ସମସ୍ତ ବେଶ କୃତ୍ରିମ ଥିଲା, ସତେ ଯେପରି କୌଣସି ଅଭିନେତା ଅଭିନୟ କରିବାପାଇଁ ରଙ୍ଗମଞ୍ଚ ଉପରକୁ ଆସିଯାଇଛି । ଭଗବାନ୍ ଶ୍ରୀକୃଷ୍ଣ ଖିଲି ଖିଲି ହୋଇ ହସିବାକୁ ଲାଗିଲେ ।।୧୫।। ଶୂଳ, ଗଦା, ପରିଘ, ଶକ୍ତି, ଋଷ୍ଟି, ପ୍ରାସ, ତୋମର, ଖଡ୍ଗ, ପଟ୍ଟିଶ ଏବଂ ବାଣ ଆଦି ଅସ୍ତ୍ରଶସ୍ତ୍ରରେ ଶତ୍ରୁମାନେ ଶ୍ରୀକୃଷ୍ଣଙ୍କୁ ପ୍ରହାର କରିବାକୁ ଲାଗିଲେ । ପ୍ରଳୟକାଳରେ ଅଗ୍ନି ଯେପରି ସବୁ ଶ୍ରେଣୀର ପ୍ରାଣୀଙ୍କୁ ଜାଳି ଭସ୍ମ କରିଦିଏ, ସେହିପରି ଶ୍ରୀକୃଷ୍ଣ ଗଦା, ଖଡ୍ଗ, ଚକ୍ର ଓ ବାଣ ଆଦି ଶସ୍ତ୍ରମାନଙ୍କଦ୍ୱାରା ପୌଣ୍ଡ୍ରକ ଓ କାଶିରାଜାର ହାତୀ, ରଥ, ଘୋଡ଼ା ଓ ପଦାତିକ -- ଏହି ଚତୁରଙ୍ଗ ସେନାକୁ ବିନାଶ କରିବାକୁ ଲାଗିଲେ ।।୧୬-୧୭।। ପରିକ୍ଷିତ, ସେ ସମୟରେ ସେହି ରଣସ୍ଥଳୀ ଚକ୍ରଦ୍ୱାରା ଖଣ୍ଡ ଖଣ୍ଡ ହୋଇଥିବା ରଥ, ଘୋଡ଼ା, ହାତୀ, ଗଧ, ଓଟ ଓ ପଦାତିକ ସୈନ୍ୟମାନଙ୍କ ମୃତଦେହରେ ଭରିଗଲା । ଏଥିରେ ବୀର ଯୋଦ୍ଧାମାନେ ଉତ୍ସାହିତ ହେଲେ । କିନ୍ତୁ ଅନ୍ୟମାନେ ଭୟଭୀତ ହୋଇପଡ଼ିଲେ । ଯୁଦ୍ଧଭୂମି ସେତେବେଳେ ଭୂତନାଥ ଶିବଙ୍କର କ୍ରୀଡ଼ାସ୍ଥଳୀ ପରି ଦେଖାଗଲା ।।୧୮।। ଶ୍ରୀକୃଷ୍ଣ ପୌଣ୍ଡ୍ରକକୁ କହିଲେ, ପୌଣ୍ଡ୍ରକ, ତୁ ଦୂତ ପଠାଇ ମୋତେ ଯାହା ଯାହା ଅସ୍ତ୍ର ଛାଡ଼ି ଦେବାପାଇଁ କହିଥିଲୁ ବର୍ତ୍ତମାନ ମୁଁ ତୋତେ ସେହି ସେହି ଅସ୍ତ୍ର ପ୍ରୟୋଗ କରୁଛି । ମୂର୍ଖ, ତୁ ଯେଉଁ ବାସୁଦେବ ନାମ ମିଛରେ ଧାରଣ କରିଛୁ, ଆଜି ମୁଁ ତାହା ଛଡ଼ାଇ ଦେବି । (ପୁଣି ତୋର ଶରଣ ନେବାପାଇଁ ତୁ ଦୂତମୁହଁରେ କହିଥିଲୁ) ମୁଁ ଯଦି ତୋ ସହିତ ଯୁଦ୍ଧ କରି ନ ପାରେ, ତା'ହେଲେ ନିଶ୍ଚୟ ତୋର ଶରଣ ନେବି ।।୧୯-୨୦।। ଏହିପରି ତିରସ୍କାର କରି ଭଗବାନ୍ ଶ୍ରୀକୃଷ୍ଣ ନିଜର ତୀକ୍ଷ୍ଣ ବାଣାଘାତରେ ପୌଣ୍ଡ୍ରକର ରଥକୁ ଖଣ୍ଡ ଖଣ୍ଡ କରିଦେଲେ ଏବଂ ଇନ୍ଦ୍ର ବଜ୍ରଦ୍ୱାରା ପର୍ବତର ଶୃଙ୍ଗକୁ ଖଣ୍ଡ ଖଣ୍ଡ କରିବାପରି ଚକ୍ରଦ୍ୱାରା ପୌଣ୍ଡ୍ରକର ଶିରଶ୍ଛେଦନ କଲେ ।।୨୧।। ତାପରେ ବାୟୁ ଯେପରି ପଦ୍ମକୋଷକୁ ଛିଣ୍ଡାଇ ଫୋପାଡ଼ି ଦିଏ, ଶ୍ରୀକୃଷ୍ଣ ସେହିପରି ବାଣାଘାତରେ କାଶିରାଜାର ମସ୍ତକକୁ ଛେଦନ କରି ତାହାକୁ କାଶିନଗର ମଧ୍ୟରେ ନିକ୍ଷେପ କଲେ ।।୨୨।। ଭଗବାନ୍ ଶ୍ରୀକୃଷ୍ଣ ଏହିପରି ପରଶ୍ରୀକାତର ପୌଣ୍ଡ୍ରକକୁ ତାର ମିତ୍ର କାଶିରାଜ ସହିତ ନିହତ କରି ଦ୍ୱାରକାକୁ ଫେରି ଆସିଲେ । ସିଦ୍ଧଗଣ ଭଗବାନଙ୍କର କଥାମୃତକୁ ଗାନ କରିବାକୁ ଲାଗିଲେ ।।୨୩।। ମହାରାଜ ପରିକ୍ଷିତ, ସବୁବେଳେ କୃଷ୍ଣଙ୍କ ଚିନ୍ତାରେ ତନ୍ମୟ ରହିବା ଫଳରେ ପୌଣ୍ଡ୍ରକର ସମସ୍ତ କର୍ମବନ୍ଧନ ଧ୍ୱଂସ ହୋଇଗଲା । ସେ ଶ୍ରୀହରିଙ୍କ ସମାନ ରୂପ ଧାରଣ କରି ସାରୂପ୍ୟ ମୁକ୍ତି ଲାଭ କଲା ।।୨୪।। ଏଣେ ରାଜନବର ଦ୍ୱାରରେ ଏକ କୁଣ୍ଡଳଭୂଷିତ ମସ୍ତକ ପଡ଼ିଥିବାର ଦେଖି କାଶିର ଜନତା 'ଏ କାହାର ମୁଣ୍ଡ' ବୋଲି ସଂଶୟ ପ୍ରକାଶ କଲେ । କିନ୍ତୁ କାଶିରାଜାଙ୍କ ରାଣୀମାନେ, ରାଜପୁତ୍ର ଓ ରାଜପରିବାରର ଲୋକମାନେ ତାହା କାଶିରାଜାଙ୍କ ମୁଣ୍ଡ ବୋଲି ଜାଣିପାରି ବିଳାପ କଲେ । ସେମାନଙ୍କ ସହିତ ପୁରବାସୀ ମଧ୍ୟ 'ହେ ରାଜା, ହେ ସ୍ୱାମୀ, ଆପଣଙ୍କର କ'ଣ ହୋଇଗଲା ବୋଲି' କହି ରୋଦନ କରି ଲାଗିଲେ ।।୨୫-୨୬।। କାଶିରାଜାଙ୍କ ପୁତ୍ର ସୁଦକ୍ଷିଣ ପିତାଙ୍କ ଅନ୍ତ୍ୟେଷ୍ଟିକ୍ରିୟା ଶେଷ କରି ମନେ ମନେ ସ୍ଥିର କଲା ଯେ ପିତୃହନ୍ତାକୁ ନିହତ କରି ପିତୃଋଣରୁ ମୁକ୍ତ ହେବି । ସେହି ଉଦ୍ଦେଶ୍ୟରେ ସେ ଆଚାର୍ଯ୍ୟଙ୍କୁ ଧରି ଅତିଶୟ ନିଷ୍ଠାର ସହିତ ମହାଦେବଙ୍କୁ ଅର୍ଚ୍ଚନା କଲା ।।୨୭-୨୮।। ତାର ପୂଜାରେ ସନ୍ତୁଷ୍ଟ ହୋଇ ମହାଦେବ ସୁଦକ୍ଷିଣକୁ ବର ମାଗିବାପାଇଁ କହିଲେ । ସୁଦକ୍ଷିଣ ପିତୃହନ୍ତାକୁ ହତ୍ୟା କରିବା ମୋର ଅଭିଳଷିତ ବର ବୋଲି ପ୍ରାର୍ଥନା କଲା ।।୨୯।। ଭଗବାନ୍ ଶଙ୍କର କହିଲେ, ତୁମେ ବ୍ରାହ୍ମଣମାନଙ୍କ ସହିତ ଅଭିଚାରବିଧାନରେ ଋତ୍ୱିକ୍‌ଙ୍କ ଭଳି ସ୍ୱନିୟୋଗକାରୀ ଦକ୍ଷିଣାଗ୍ନିକୁ ଆରାଧନା କର । ତଦ୍ୱାରା ସେହି ଅଗ୍ନି ପ୍ରକଟ ହେବେ ଏବଂ ପ୍ରମଥମାନଙ୍କଦ୍ୱାରା ପରିବେଷ୍ଟିତ ହୋଇ ତୁମର ସଙ୍କଳ୍ପ ପୂର୍ଣ୍ଣ କରିବେ । ଅବଶ୍ୟ ବ୍ରାହ୍ମଣମାନଙ୍କ ଅମଙ୍ଗଳକାରୀ ପ୍ରତି ହିଁ ଏହା ପ୍ରଯୁଜ୍ୟ ହେବ । ଏହିପରି ମହାଦେବଙ୍କର ଆଦେଶ ପାଇ ସୁଦକ୍ଷିଣ ବ୍ରତ ଧାରଣ କରି ଭଗବାନ୍ ଶ୍ରୀକୃଷ୍ଣଙ୍କ ଉଦ୍ଦେଶ୍ୟରେ ଅଭିଚାର କରିବାକୁ ଦକ୍ଷିଣାଗ୍ନିର ଅର୍ଚ୍ଚନା କଲା ।।୩୦-୩୧।।

ଅଭିଚାର ପୂର୍ଣ୍ଣ ହେବା ମାତ୍ରେ ଅଗ୍ନିକୁଣ୍ଡରୁ ଏକ ଅତି ଭୟଙ୍କର ଅଗ୍ନିମୂର୍ତ୍ତି ଆବିର୍ଭୂତ ହେଲା । ଜଳନ୍ତା ତମ୍ବାର ବର୍ଣ୍ଣପରି ତାର କେଶ, ଶ୍ମଶ୍ରୁ ଏବଂ ଲାଲ ଲାଲ ଚକ୍ଷୁ ସତେ ଯେପରି ଅଗ୍ନି ବର୍ଷଣ କରୁଥିଲା । ତୀକ୍ଷ୍ଣ ଦନ୍ତ ଓ କୁଟିଳ ଭ୍ରୂକୁଟିଦ୍ୱାରା ତାର ମୁହଁ ଅତି ବିକଟାଳ ଦେଖାଯାଉଥିଲା । ସେ ଉଲଗ୍ନ ହୋଇ ହାତରେ ଏକ ଜଳନ୍ତା ତ୍ରିଶୂଳ ଧରି ତାହାକୁ ବାରମ୍ବାର ବୁଲାଉଥିଲା ଏବଂ ଜିଭରେ ଓଠର ଦୁଇପଟକୁ ଚାଟୁଥିଲା ।।୩୨-୩୩।। ତାଳଗଛ ପରି ତାର ବଡ଼ ବଡ଼ ଗୋଡ଼ରେ ସେ ପୃଥିବୀକୁ କମ୍ପାଇ ଓ ତାର ଜ୍ୱାଳାରେ ଦଶଦିଗକୁ ଦଗ୍ଧ କରି ସେ ଦ୍ୱାରକାଆଡ଼କୁ ଦଉଡ଼ିଲା ।।୩୪।। ଦ୍ୱାରକାବାସୀ ଅଭିଚାର କ୍ରିୟା (ମାରଣମନ୍ତ୍ରର ପୁରଶ୍ଚରଣ)ରୁ ଉତ୍ପନ୍ନ ଏହି ଅଗ୍ନିକୁ ଦେଖି ବନାଗ୍ନିକୁ ଦେଖିଲେ ହରିଣମାନେ ଡରିଯିବା ପରି ଡରିଗଲେ । ସେମାନେ ଭୟାତୁର ହୋଇ 'ହେ ତ୍ରିଲୋକର ନାଥ, ଅଗ୍ନିରେ ଦ୍ୱାରକା ଦଗ୍ଧହେବାକୁ ବସିଛି, ଆପଣ ରକ୍ଷା କରନ୍ତୁ' - ବୋଲି ଡାକ ଛାଡ଼ି କୃଷ୍ଣଙ୍କ ପାଖକୁ ଦଉଡ଼ିଗଲେ । କୃଷ୍ଣ ସେତେବେଳେ ସଭାରେ ବସି ପଶା ଖେଳୁଥିଲେ ।।୩୫-୩୬।। ଶରଣରକ୍ଷକ ଭଗବାନ ଶ୍ରୀକୃଷ୍ଣ ଲୋକଙ୍କର ଏହି କାତର ଡାକ ଶୁଣି ଏବଂ ସେମାନଙ୍କର ଭୟଭୀତ ଅବସ୍ଥା ଦେଖି ହସି ହସି କହିଲେ, 'ତୁମେମାନେ ଭୟ କର ନାହିଁ । ମୁଁ ତୁମକୁ ରକ୍ଷା କରିବି ।' ।।୩୭।।

ପରିକ୍ଷିତ, ଭଗବାନ ସମସ୍ତଙ୍କ ଭିତର ଓ ବାହାରର କଥା ଜାଣି ପାରନ୍ତି । ସେହି ଅଗ୍ନିକୁ ଏକ ଶିବକୃତ୍ୟା (ଶିବଙ୍କ ସୃଷ୍ଟ ମାରକ ଦେବତା) ବୋଲି ଜାଣିପାରି ତାକୁ ପ୍ରତିହତ କରିବାକୁ ନିଜ ପାଖରେ ଥିବା ସୁଦର୍ଶନଚକ୍ରକୁ ସେ ଆଦେଶ ଦେଲେ ।।୩୮।। କୋଟି କୋଟି ସୂର୍ଯ୍ୟର ତେଜଧାରୀ ସୁଦର୍ଶନ ଚକ୍ର ପ୍ରଳୟର ଅଗ୍ନିପରି ଜାଜ୍ୱଲ୍ୟମାନ ହେଉଥିଲା । ସେ ନିଜ ତେଜରେ ଆକାଶ, ପୃଥିବୀ, ଅନ୍ତରୀକ୍ଷ ଓ ଦିଗ୍‌ବିଦିଗ୍‌କୁ ଝଲସାଇ ଦେଇ ଏହି ମାରକ ଅଗ୍ନିକୁ ପୀଡ଼ା ଦେବାକୁଲାଗିଲା ।।୩୯।। ପରିକ୍ଷିତ, ଚକ୍ରପାଣି ଭଗବାନ୍ ଶ୍ରୀକୃଷ୍ଣଙ୍କର ସୁଦର୍ଶନ ଚକ୍ରର ତେଜରେ ପ୍ରତିହତ ହୋଇ ସେ କାଶୀକୁ ଫେରିଆସିଲା ଏବଂ ଋତ୍ୱିକ୍‌ମାନଙ୍କ ସହିତ ସୁଦକ୍ଷିଣକୁ ଜାଳି ଭସ୍ମ କରିଦେଲା । (ଏହିପରି ବ୍ରାହ୍ମଣ-ପ୍ରିୟ ଶ୍ରୀକୃଷ୍ଣଙ୍କ ପ୍ରତି ଅପପ୍ରୟୋଗ କରିବାଫଳରେ ବିପରୀତ ଫଳ ଘଟିଲା) ।।୪୦।। କୃତ୍ୟାଗ୍ନିର ପଛେ ପଛେ ସୁଦର୍ଶନ ଚକ୍ର କାଶୀରେ ପ୍ରବେଶ କଲା ଏବଂ ସେଠାରେ ଥିବା ବହୁ ଅଟ୍ଟାଳିକା, ସଭାମଣ୍ଡପ, ପଣ୍ୟଶାଳା, ନଗର-ଦ୍ୱାର, ହସ୍ତିଶାଳା, ଅଶ୍ୱଶାଳା, ରଥଶାଳା ଓ ଶସ୍ୟାଗାର ସମନ୍ୱିତ ସେହି ବିଶାଳ ନଗରୀକୁ ଜାଳି ଧ୍ୱଂସ କରିଦେଲା ଏବଂ ଅକ୍ଳେଶରେ ନିଜର କର୍ମ ସଂପାଦନ କରି ଚକ୍ର ପୁଣି କୃଷ୍ଣଙ୍କ ପାଖକୁ ଫେରିଆସିଲା ।।୪୧-୪୨।। ଉତ୍ତମଶ୍ଳୋକ ଭଗବାନ ଶ୍ରୀକୃଷ୍ଣଙ୍କର ଏହି ଚରିତକୁ ଯେ ଏକାଗ୍ର ଚିତ୍ତରେ ଶୁଣେ ଓ ଅନ୍ୟକୁ ଶୁଣାଏ, ସେ ସମସ୍ତ ପାପରୁ ମୁକ୍ତ ହୋଇଯାଏ ।।୪୩।।

## ସତଷଠି ଅଧ୍ୟାୟ

# ଦ୍ୱିବିଦ ବାନର

ପରିକ୍ଷିତ କହିଲେ, ବ୍ରହ୍ମନ୍, ବଳରାମ ତ ଅଦ୍ଭୁତକର୍ମା ଥିଲେ । ତାଙ୍କର ଶକ୍ତି ଅନନ୍ତ ଓ ଅକଳନୀୟ ଥିଲା । ସେ କ'ଣ କ'ଣ କଲେ, ତାହା ମୁଁ ଶୁଣିବାକୁ ଇଚ୍ଛା କରେ ।।୧।। ଶ୍ରୀ ଶୁକଦେବ କହିଲେ, ପରିକ୍ଷିତ, ଦ୍ୱିବିଦ ନାମରେ ଏକ ମହାବୀର ବାନର ନରକାସୁରର ସଖା ଥିଲା । ସେ ଥିଲା ସୁଗ୍ରୀବଙ୍କର ମନ୍ତ୍ରୀ ଏବଂ ମୈନ୍ଦଙ୍କର ଭାଇ । ଯେତେବେଳେ ସେ ଶୁଣିଲା ଯେ ଶ୍ରୀକୃଷ୍ଣ ତାର ମିତ୍ର ଭୌମାସୁରକୁ ମାରିଦେଇଛନ୍ତି, ସେ ମିତ୍ରଋଣରୁ ମୁକ୍ତ ହେବାପାଇଁ ରାଷ୍ଟ୍ରବିପ୍ଳବ ଉଦ୍ଦେଶ୍ୟରେ ବାହାରିପଡ଼ିଲା । ସେ ବଡ଼ ବଡ଼ ନଗର, ଗ୍ରାମ, ଖଣି, ଖଦାନ ଓ ଗୋପାଳପଲ୍ଲୀ ଆଦିରେ ନିଆଁ ଲଗାଇଦେଲା । ସମୟ ସମୟରେ ସେ

ପର୍ବତମାନଙ୍କୁ ଉପାଡ଼ି ପକାଇ ଦେଶ ଓ ଗ୍ରାମମାନଙ୍କୁ ଚୂର୍ଣ୍ଣ ବିଚୂର୍ଣ୍ଣ କରିବାରେ ଲାଗିଲା । ବିଶେଷତଃ ତା' ମିତ୍ରର ବିନାଶକାରୀ ଭଗବାନ୍ ଶ୍ରୀକୃଷ୍ଣ ଯେଉଁ ଆନର୍ତ୍ତ ଦେଶରେ ରହୁଥିଲେ, ସେଠାରେ ସେ ଉତ୍ପାତ କରୁଥିଲା ॥୨-୪॥ ଦ୍ୱିବିଦ ବାନରର ଦଶ ହଜାର ହାତୀର ବଳ ଥିଲା । ସେ ସମୁଦ୍ରମଧ୍ୟରେ ଠିଆ ହୋଇ ହାତରେ ଏତେ ପାଣି ଖେଳାଉଥିଲା ଯେ କୂଳ ଉଚ୍ଛୁଳି କୂଳବର୍ତ୍ତୀ ଅଞ୍ଚଳଗୁଡ଼ିକ ବୁଡ଼ିଯାଉଥିଲା ॥୫॥ ସେହି ଦୁଷ୍ଟବାନର ଋଷିମାନଙ୍କ ଆଶ୍ରମରେ ପଶି ଗଛ ପତ୍ର ସବୁ ଭାଙ୍ଗି ପକାଉଥିଲା ଏବଂ ଯଜ୍ଞକୁଣ୍ଡରେ ମଳମୂତ୍ର ତ୍ୟାଗ କରି ତାକୁ ସବୁ ଅପବିତ୍ର କରିଦେଉଥିଲା । ଭ୍ରମର ଯେପରି ଅନ୍ୟ କୀଟମାନଙ୍କୁ ଧରି ଆଣି ନିଜ ନୀଡ଼ରେ ବନ୍ଦ କରିଦିଏ, ଦୃପ୍ତ ବାନର ସେହିପରି ସ୍ତ୍ରୀ ଓ ପୁରୁଷମାନଙ୍କୁ ବଳପୂର୍ବକ ଧରି ଆଣି ପର୍ବତର ଗୁମ୍ଫାମାନଙ୍କରେ ରଖି ବଡ଼ ବଡ଼ ଶିଳାଖଣ୍ଡ ଦ୍ୱାରା ସେ ସବୁର ମୁହଁ ବନ୍ଦ କରିଦେଉଥିଲା ॥୬-୭॥ ଏହିପରି ବାନର ଦ୍ୱିବିଦ ଦେଶ ଓ ଗ୍ରାମମାନଙ୍କୁ ଉଜାଡ଼ି ଦେଇ ଏବଂ କୁଳସ୍ତ୍ରୀମାନଙ୍କୁ ବଳପୂର୍ବକ ଧର୍ଷଣ ଓ ଦୂଷିତ କରି କରି ବୁଲୁଥିବାବେଳେ ସୁଲଳିତ ସ୍ୱରରେ କେହି ଗୀତ ବୋଲୁଥିବାର ଶୁଣି ରୈବତକ ପର୍ବତକୁ ଗଲା ॥୮॥ ସେଠାରେ ସେ ଯଦୁପତି ବଳରାମଙ୍କୁ ଦେଖିବାକୁ ପାଇଲା । ସେ ଦେଖିଲା, ବଳରାମ ବେକରେ ଏକ ପଦ୍ମମାଳା ପିନ୍ଧିଛନ୍ତି ଏବଂ ତାଙ୍କର ସମସ୍ତ ଅଙ୍ଗପ୍ରତ୍ୟଙ୍ଗ ଅତିଶୟ ସୁନ୍ଦର ଦେଖାଯାଉଚି । ସୁନ୍ଦରୀ ସ୍ତ୍ରୀମାନେ ତାଙ୍କୁ ଘେରି ରହିଛନ୍ତି । ବାରୁଣୀ ମଦିରା ପାନ କରି ତାଙ୍କ ଚକ୍ଷୁଦ୍ୱୟ ଢଳଢଳ ଦେଖାଯାଉଛି । ମତ୍ତହସ୍ତୀ ପରି ସେ ନିଜର ଅପୂର୍ବ ଅଙ୍ଗକାନ୍ତିରେ ବିରାଜମାନ ହୋଇଛନ୍ତି ॥୯-୧୦॥ ଦୁଷ୍ଟ ବାନର ସେଠାର ଗଛଡାଳମାନଙ୍କରେ ଚଢ଼ିଯାଇ ଓ ଗଛମାନଙ୍କୁ ଜୋର୍‌ରେ ହଲାଇ, କିଳିକିଳା ଶବ୍ଦ କରି ବଳରାମଙ୍କୁ ଦେଖାଇ ହେବାପାଇଁ ଚେଷ୍ଟା କଲା । ସ୍ୱଭାବତଃ ଚଞ୍ଚଳା ଓ ହାସ୍ୟପ୍ରିୟା ବଳରାମଙ୍କର ସେହି ସ୍ତ୍ରୀମାନେ ବାନରର ଅବଳୟ ଦେଖି ହସିବାକୁ ଲାଗିଲେ ॥୧୧-୧୨॥ ବାନର ବଳରାମଙ୍କ ଆଗକୁ ଆସି ଏବଂ ତାଙ୍କୁ ଅବଜ୍ଞା ପୂର୍ବକ ତାଙ୍କ ଆଗରେ ଦାନ୍ତ ଖେଙ୍କାରି ହେଲା ଏବଂ ଭ୍ରୂକୁଞ୍ଚନ କରି ସ୍ତ୍ରୀମାନଙ୍କୁ ନିଜର ଗୁପ୍ତାଙ୍ଗ ଦେଖାଇଲା ॥୧୩॥ ବଳବାନ୍‌ମାନଙ୍କ ମଧ୍ୟରେ ଶ୍ରେଷ୍ଠ ବଳରାମ କ୍ରୁଦ୍ଧ ହୋଇ ବାନରକୁ ଏକ ଶିଳାଖଣ୍ଡ ନିକ୍ଷେପକଲେ । ଧୂର୍ତ୍ତ ବାନର ସେଥିରୁ ଖସିଯାଇ ବଳରାମଙ୍କ ମଦ୍ୟଭାଣ୍ଡକୁ ଉଠାଇନେଇ ହସିବାକୁ ଲାଗିଲା ଏବଂ ଭାଣ୍ଡଟିକୁ ଭାଙ୍ଗିଦେଇ ସ୍ତ୍ରୀଲୋକଙ୍କର ଲୁଗାପଟା ଚିରିଦେଲା । ଏହିପରି ବଳରାମଙ୍କୁ ଅବଜ୍ଞା କରି ସେ ତାଙ୍କର କ୍ରୋଧ ବଢ଼ାଇ ଦେଲା ॥୧୪-୧୫॥ ତାର ସେହି ଧୃଷ୍ଟତା ଦେଖି ଏବଂ ଦେଶ ଓ ଗ୍ରାମମାନଙ୍କୁ ସେ ଉଜାଡୁ ଥିବାର ଦେଖି ତାକୁ ବଧ କରିବାପାଇଁ କ୍ରୁଦ୍ଧ ବଳରାମ ମୁଷଳ ଓ ହଳ ଧାରଣ କଲେ ॥୧୬॥

ମହାବୀର ଦ୍ୱିବିଦ ହାତରେ ଏକ ଶାଳଗଛକୁ ଉପାଡ଼ି ଆଣି ବଳରାମଙ୍କ ମସ୍ତକକୁ ନିକ୍ଷେପ କଲା । ବଳରାମ ସେଥିରେ ବିଚଳିତ ହେଲେ ନାହିଁ । ଅଟଳ ପର୍ବତ ପରି ଅବିଚଳିତ ରହି ମସ୍ତକରେ ପଡ଼ିବା ପୂର୍ବରୁ ସେ ସେଇ ଗଛଟାକୁ ଧରି ଫିଙ୍ଗିଦେଲେ ଏବଂ ସୁନନ୍ଦନାମକ ନିଜର ମୁଷଳଦ୍ୱାରା ସେହି ବାନରକୁ ଆଘାତ କଲେ ॥୧୭-୧୮॥ ମୁଷଳର ଆଘାତରେ ଦ୍ୱିବିଦର ମସ୍ତକରୁ ରକ୍ତଧାରା ବୋହିବାକୁ ଲାଗିଲା । ପର୍ବତ ଉପରେ ଗେରୁ ରଙ୍ଗର ଧାରପରି ତାହା ଦେଖାଗଲା । କିନ୍ତୁ ବାନର ସେଥିରେ ବିଚଳିତ ନହୋଇ ଆଉ ଏକ ବୃକ୍ଷ ଉପାଡ଼ି ତାକୁ ପତ୍ରଶୂନ୍ୟ କଲା ଏବଂ ସେହି ବୃକ୍ଷଦ୍ୱାରା ବଳରାମଙ୍କୁ ଆଘାତ କଲା । କିନ୍ତୁ ବଳରାମ ବୃକ୍ଷଟିକୁ ଶତଖଣ୍ଡରେ ଛେଦନ କଲେ । କ୍ରୁଦ୍ଧ ଦ୍ୱିବିଦ ପୁଣି ଏକ ଗଛ ଉପାଡ଼ି ବଳରାମଙ୍କୁ ପ୍ରହାର କରିବା ପୂର୍ବରୁ ବଳରାମ ତାକୁ କାଟି ଶହେ ଖଣ୍ଡ କରିଦେଲେ ॥୧୯-୨୧॥ ମହାରାଜ ପରିକ୍ଷିତ, ବଳରାମଙ୍କ ସହିତ ଯୁଦ୍ଧ କରିବାପାଇଁ ସେ ଗଛ ପରେ ଗଛ ଉପାଡ଼ିବାକୁ ଲାଗିଲା । ବଳରାମ ପ୍ରତ୍ୟେକ ଗଛକୁ ଖଣ୍ଡ ଖଣ୍ଡ କରିଦେଉଥିଲେ । ଏହିପରି ଦ୍ୱିବିଦ ବାନର ସେହି ବନକୁ ବୃକ୍ଷଶୂନ୍ୟ କରିଦେଲା ॥୨୨॥ ତା'ପରେ ସେହି ବାନର ଅତିଶୟ କ୍ରୁଦ୍ଧ ହୋଇ ବଳରାମଙ୍କ ଉପରକୁ ଶିଳା ବୃଷ୍ଟି କଲା । କିନ୍ତୁ ମୁଷଳଧାରୀ ବଳରାମ ସେହି ସମସ୍ତ ଶିଳାକୁ ଚୂର୍ଣ୍ଣ ବିଚୂର୍ଣ୍ଣ କରିଦେଉଥିଲେ ॥୨୩॥ ଏହାପରେ ବାନରରାଜ ଦ୍ୱିବିଦ ତାଳ ଗଛ ପରି ଲମ୍ବା ତାର ହାତଦୁଇଟାକୁ ମୁଠା କରି ବଳରାମଙ୍କଆଡକୁ ଦଉଡ଼ି ଆସିଲା ଏବଂ

ମୁଷ୍ଟିଦ୍ୱାରା ତାଙ୍କ ବକ୍ଷସ୍ଥଳକୁ ପ୍ରହାର କଲା ।।୨୪।। ଯଦୁଶ୍ରେଷ୍ଠ ବୀର ବଳରାମ ତାଙ୍କ ମୁଷଳ ଓ ଲଙ୍ଗଳକୁ ଛାଡ଼ିଦେଇ ଦୁଇ ମୁଷ୍ଟିରେ ବାନରର ଜତୁହାଡ଼କୁ ପ୍ରହାରକଲେ । ସେଥିରେ ସେ ରକ୍ତବାନ୍ତି କରି ତଳେ ପଡ଼ିଗଲା । ପରୀକ୍ଷିତ, ବାୟୁପ୍ରବାହଦ୍ୱାରା ଜଳରେ ଥିବା ନୌକା ଯେପରି ଦୋହଲିବାକୁ ଲାଗେ, ସେହିପରି ଦ୍ୱିବିଦର ପତନରେ ବୃକ୍ଷ ଓ ଶୃଙ୍ଗମାନଙ୍କ ସହିତ ସାରା ପର୍ବତ ଦୋହଲିଗଲା ।।୨୫-୨୬।। ଆକାଶରେ ଦେବତା, ସିଦ୍ଧ ଓ ମୁନିଶ୍ରେଷ୍ଠମାନେ ବଳରାମଙ୍କ ଉପରେ ପୁଷ୍ପବୃଷ୍ଟି କଲେ । 'ନମୋ ନମଃ', 'ସାଧୁ ସାଧୁ' - ବାଣୀ କହି ସେମାନେ ବଳରାମଙ୍କର ଜୟଧ୍ୱନି କଲେ ।।୨୭।। ମହାରାଜ ପରିକ୍ଷିତ, ଏରୂପେ ପୃଥିବୀର ଉପଦ୍ରବକାରୀ ଦ୍ୱିବିଦକୁ ବିନାଶ କରି ଭଗବାନ ବଳରାମ ଦ୍ୱାରକାପୁରରେ ପ୍ରବେଶ କଲେ । ଲୋକେ ତାଙ୍କର ସ୍ତୁତିଗାନ କରୁଥିଲେ ।।୨୮।।

## ଅଠଷଠି ଅଧ୍ୟାୟ

# ଶାମ୍ବଙ୍କ ବିବାହ

ସାମ୍ବ ଥିଲେ ଜାମ୍ବବତୀଙ୍କର ପୁତ୍ର । ସେ ଏକାକୀ ବହୁ ଶତ୍ରୁଙ୍କୁ ଜୟ କରିପାରୁଥିଲେ । ସେ ଦୁର୍ଯ୍ୟୋଧନର କନ୍ୟା ଲକ୍ଷ୍ମଣାକୁ ସ୍ୱୟମ୍ବର ସଭାରୁ ଅପହରଣ କଲେ । କ୍ରୁଦ୍ଧ କୌରବମାନେ କହିଲେ, ଏହି ଦୁର୍ବିନୀତ ବାଳକ ବନ୍ଧନଯୋଗ୍ୟ । ଏ ଆମମାନଙ୍କୁ ଅବଜ୍ଞା କରି ତାକୁ ଇଚ୍ଛା କରୁ ନ ଥିବା ଆମର କନ୍ୟାକୁ ବଳପୂର୍ବକ ହରଣକଲା । ଏହି ଉଦ୍ଧତ ବାଳକକୁ ବନ୍ଧନ କଲେ ଯାଦବମାନେ ଆମର କ'ଣ କରିବେ ? ସେମାନେ ଆମ ପ୍ରସାଦରୁ ଆମରି ପ୍ରଦତ୍ତ ଭୂମିରେ ବାସ କରି ରହିଛନ୍ତି ।।୧-୩।। ତାଙ୍କର ପୁତ୍ର ବନ୍ଦି ହୋଇଛି ବୋଲି ଶୁଣି ଯଦି ଯାଦବମାନେ ଏଠାକୁ ଆସିବେ, ତେବେ ପ୍ରାଣାୟାମଦ୍ୱାରା ଇନ୍ଦ୍ରିୟମାନେ ବଶୀଭୂତ ହେବାପରି ସେମାନଙ୍କର ଗର୍ବ ଭାଙ୍ଗିଗଲେ ସେମାନେ ସାବାଡ଼ ହୋଇଯିବେ ।।୪।। ଏହିପରି ସ୍ଥିର କରି କର୍ଣ୍ଣ, ଶଲ୍ୟ, ଭୂରିଶ୍ରବା, ଯଜ୍ଞକେତୁ ଓ ଦୁର୍ଯ୍ୟୋଧନ ଆଦି କୁରୁବୀରମାନେ ସାମ୍ବଙ୍କୁ ବାନ୍ଧି ନେବାପାଇଁ ପ୍ରସ୍ତୁତ ହେଲେ । କୁରୁବୃଦ୍ଧମାନେ ମଧ୍ୟ ତାହା ଅନୁମୋଦନ କଲେ ।।୫।। ମହାରଥୀ ସାମ୍ବ ଯେତେବେଳେ ଦେଖିଲେ ଯେ, ଧୃତରାଷ୍ଟ୍ରଙ୍କର ପୁତ୍ରମାନେ ତାଙ୍କୁ ବାନ୍ଧିନେବାପାଇଁ ଆସୁଛନ୍ତି, ସେ ଏକ ସୁନ୍ଦର ଧନୁ ଧରି ସିଂହପରି ଏକାକୀ ରଣଭୂମିରେ ଠିଆ ହେଲେ ।।୬।। କୌରବ ଯୋଦ୍ଧାମାନେ କର୍ଣ୍ଣଙ୍କୁ ସେନାପତି କରି ଧନୁର୍ବାଣ ସହ ସାମ୍ବଙ୍କ ପାଖରେ ଆସି ପହଞ୍ଚିଗଲେ ଏବଂ 'ରହ ରହ' ବୋଲି କହି କ୍ରୋଧରେ ବାଣବର୍ଷଣ କରିବାକୁ ଲାଗିଲେ ।।୭।।

କୁରୁଶ୍ରେଷ୍ଠ ପରିକ୍ଷିତ, କ୍ଷୁଦ୍ର ପଶୁମାନଙ୍କଦ୍ୱାରା ଆକ୍ରାନ୍ତ ହେଲେ ସିଂହ ଯେପରି ସହିପାରେ ନାହିଁ, ଅଚିନ୍ତ୍ୟ ଭଗବାନଙ୍କର ପୁତ୍ର ଯଦୁନନ୍ଦନ ସାମ୍ବ ସେହିପରି କୁରୁମାନଙ୍କର ବାଣାଘାତକୁ ସହିପାରିଲେ ନାହିଁ ।।୮।। ବୀର ସାମ୍ବ ତାଙ୍କ ସୁନ୍ଦର ଧନୁକୁ ସବଳେ ଆକର୍ଷଣ କରି କର୍ଣ୍ଣ ଆଦି ଛ'ଜଣ ରଥୀଙ୍କୁ ଛ' ଛ' ବାଣଦ୍ୱାରା ଏକ ସମୟରେ ବିଦ୍ଧ କଲେ । ଚାରି ଚାରୋଟି ବାଣଦ୍ୱାରା ସେମାନଙ୍କର ଚାରି ଚାରୋଟି ଅଶ୍ୱଙ୍କୁ ଏବଂ ଗୋଟିଏ ଗୋଟିଏ ବାଣଦ୍ୱାରା ସେମାନଙ୍କର ସାରଥିଙ୍କୁ ବିଦ୍ଧ କଲେ । କର୍ଣ୍ଣ ଆଦି ମହାଧନୁର୍ଦ୍ଧାରୀ ରଥୀମାନେ ତାଙ୍କର ସେହି କାର୍ଯ୍ୟକୁ ପ୍ରଶଂସା କରି ଲାଗିଲେ । କୌରବ ପକ୍ଷର ଛ'ଜଣ ରଥୀଙ୍କ ମଧ୍ୟରୁ ଚାରି ଜଣ ସାମ୍ବଙ୍କର ଚାରୋଟି ଅଶ୍ୱଙ୍କୁ ନିହତ କରି ତାଙ୍କୁ ବିରଥ କରିଦେଲେ । ଜଣେ ତାଙ୍କ ସାରଥିଙ୍କୁ ନିହତ କଲେ ଏବଂ ଅନ୍ୟ ଜଣେ ତାଙ୍କ ଶରାସନକୁ ଛେଦନ କଲେ । କୌରବମାନେ ଏହିପରି କଷ୍ଟରେ ସାମ୍ବଙ୍କୁ ରଥଚ୍ୟୁତ କରି ବନ୍ଧନ କଲେ ଏବଂ ଯୁଦ୍ଧ ଜୟକରି ଦୁର୍ଯ୍ୟୋଧନଙ୍କ କନ୍ୟାକୁ ଘେନି ହସ୍ତିନାପୁରରେ ପ୍ରବେଶ କଲେ ।।୯।। ପରିକ୍ଷିତ, ନାରଦଙ୍କଠାରୁ

ସମ୍ବାଦ ପାଇ କ୍ରୁଦ୍ଧ ଯାଦବମାନେ ଉଗ୍ରସେନଙ୍କର ଆଦେଶରେ କୌରବମାନଙ୍କ ସହିତ ଯୁଦ୍ଧ କରିବାକୁ ପ୍ରସ୍ତୁତ ହେଲେ । ବଳରାମ କଳହର ପକ୍ଷପାତୀ ନ ଥିଲେ । ସେ କୌରବ ଓ ଯାଦବମାନଙ୍କ ମଧ୍ୟରେ ବିବାଦ ହେବା ଚାହୁଁ ନ ଥିଲେ ଏବଂ ସେ ଯୁଦ୍ଧପାଇଁ ଉଦ୍ୟତ ହେଉଥିବା ଯାଦବ ବୀରମାନଙ୍କୁ ବୁଝାବୁଝି କରାଇ ନିଜେ ହସ୍ତିନାକୁ ଯାତ୍ରା କଲେ । କୁଳବୃଦ୍ଧ ଓ ବ୍ରାହ୍ମଣମାନଙ୍କଦ୍ୱାରା ପରିବେଷ୍ଟିତ ହୋଇ ସେ ଗ୍ରହପରିବେଷ୍ଟିତ ଚନ୍ଦ୍ରମା ପରି ଦେଖାଯାଉଥିଲେ । ସୂର୍ଯ୍ୟପରି ଦୀପ୍ତିମନ୍ତ ରଥରେ ଆରୋହଣ କରି ସେ ଯାତ୍ରା କଲେ ॥୧୩-୧୫॥ ହସ୍ତିନାକୁ ଯାତ୍ରା କରି ନଗରର ବାହାରେ ଥିବା ଉପବନରେ ବଳରାମ ଅବସ୍ଥାନ କଲେ ଏବଂ ଧୃତରାଷ୍ଟ୍ରଙ୍କର ଅଭିପ୍ରାୟ ଜାଣିବାପାଇଁ ଉଦ୍ଧବଙ୍କୁ ପଠାଇଲେ ॥୧୬॥ ଉଦ୍ଧବ ହସ୍ତିନାରେ ଧୃତରାଷ୍ଟ୍ର, ଭୀଷ୍ମ, ଦ୍ରୋଣ, ବାହ୍ଲୀକ ଓ ଦୁର୍ଯ୍ୟୋଧନଙ୍କୁ ବନ୍ଦନା କରି ବଳରାମ ଆସିଛନ୍ତି ବୋଲି ଜଣାଇଲେ ॥୧୭॥ ସେମାନଙ୍କର ପରମବନ୍ଧୁ ବଳରାମ ଆସିଛନ୍ତି ବୋଲି ଶୁଣନ୍ତେ ସେମାନେ ଅତିଶୟ ଆନନ୍ଦିତ ହେଲେ । ଉଦ୍ଧବଙ୍କର ଯଥାବିଧି ସତ୍କାର କରି ମାଙ୍ଗଳିକାଦି ଦ୍ରବ୍ୟର ସହିତ ସେମାନେ ବଳରାମଙ୍କ ପାଖକୁ ଯାତ୍ରା କଲେ ॥୧୮॥ ବଳରାମଙ୍କ ପାଖରେ ପହଞ୍ଚି ତାଙ୍କୁ ଯଥାବିଧି ଅର୍ଘ୍ୟ ଆଦି ଦାନ କଲେ । ସେମାନେ ବଳରାମଙ୍କ ପ୍ରଭାବ ଜାଣିଥିଲେ । ତେଣୁ ମୁଣ୍ଡ ନୁଆଁଇ ତାଙ୍କୁ ପ୍ରଣାମ କଲେ ॥୧୯॥ ପରସ୍ପର ମଙ୍ଗଳ ଓ କୁଶଳ ଜିଜ୍ଞାସା ପରେ ସମସ୍ତ ବନ୍ଧୁ କୁଶଳରେ ଅଛନ୍ତି ବୋଲି ଶୁଣି ସେମାନେ ଆନନ୍ଦିତ ହେଲେ । ତାପରେ ବଳରାମ ସ୍ପଷ୍ଟ ଓ ନିଷ୍କପଟ ଭାବରେ ଏହିପରି କହିଲେ-- ॥୨୦॥

କୌରବଗଣ, ରାଜାଧିରାଜ ଉଗ୍ରସେନ ଆପଣମାନଙ୍କୁ ଯାହା ଆଦେଶ ଦେଇଛନ୍ତି, ତାହା ଧୀର ସ୍ଥିର ଭାବରେ ଶୁଣି ଅବିଳମ୍ବେ ତାହା କାର୍ଯ୍ୟକାରୀ କରାନ୍ତୁ । ଅଧର୍ମାଚରଣ କରି ବହୁ ସଂଖ୍ୟାରେ ଆପଣମାନେ ଧାର୍ମିକ ସାମ୍ବଙ୍କୁ ପରାଜିତ କରି ବାନ୍ଧି ନେଇଛନ୍ତି । ବନ୍ଧୁବାନ୍ଧବଙ୍କ ମଧ୍ୟରେ ଏକତା ରକ୍ଷାକରିବାପାଇଁ ଆପଣଙ୍କର ଏହି କାର୍ଯ୍ୟକୁ ମୁଁ ସହ୍ୟ କରିଛି । ବର୍ତ୍ତମାନ ସେହି ଶାମ୍ବକୁ ଆଣି ଆପଣମାନେ ମୋତେ ଅର୍ପଣ କରନ୍ତୁ ॥୨୧-୨୨॥ ବଳଦେବ ଯାହା କହିଲେ, ତାହା ତାଙ୍କର ବୀର୍ଯ୍ୟ, ଶୌର୍ଯ୍ୟ, ବଳ ଓ ଆତ୍ମଶକ୍ତିର ଅନୁରୂପ ଥିଲା । ମାତ୍ର ତାହା ଶୁଣି କୌରବମାନେ କ୍ରୋଧାନ୍ୱିତ ହୋଇପଡ଼ିଲେ । ସେମାନେ କହିଲେ, ଆଶ୍ଚର୍ଯ୍ୟର କଥା, ସମୟ କ'ଣ ନ କରେ ! ଦେଖାଯାଉଛି କାଳର ଗତିକୁ କେହି ରୋକିପାରିବ ନାହିଁ । ତା'ନ ହେଲେ ଗୋଡ଼ର ଜୋତା ମୁକୁଟସେବିତ ମସ୍ତକଉପରେ ଚଢ଼ିବାପାଇଁ ଇଚ୍ଛା କରନ୍ତା ନାହିଁ ॥୨୩-୨୪॥ ବୈବାହିକ ସମ୍ପର୍କଯୋଗୁଁ ଏ ଯାଦବମାନେ ଆମ ସହିତ ଏକାଠି ବସୁଛନ୍ତି, ଶୋଉଛନ୍ତି ଓ ଖାଉଛନ୍ତି । ସେମାନେ ଯେଉଁ ରାଜସିଂହାସନରେ ବସିଛନ୍ତି, ତାହା ଆମେ ସେମାନଙ୍କୁ ଦେଇଛୁ । ସେଥିପାଇଁ ସେମାନେ ଆମସାଙ୍ଗେ ସମାନ ହୋଇଛନ୍ତି ॥୨୫॥ ଆମେ ଉଦାସୀନ ଥିବାଯୋଗୁଁ ସେମାନେ ଶ୍ୱେତ ଛତ୍ର, ଚାମର, ବ୍ୟଜନ, ଶଙ୍ଖ, କିରୀଟ, ରାଜସିଂହାସନ ଓ ଉତ୍ତମଶଯ୍ୟା ଆଦି ଉପଭୋଗ କରୁଛନ୍ତି ॥୨୬॥ ସାପକୁ କ୍ଷୀର ପିଇବାକୁ ଦେଲେ ଯେପରି ତାର ବିଷ ହିଁ ବଢ଼ିଥାଏ ଏବଂ କ୍ଷୀର ଦେବା ଲୋକର ସେ ଶତ୍ରୁତା କରେ, ସେହିପରି ଯାଦବମାନଙ୍କୁ କ୍ଷମତା ଦେବାରୁ ଆଜି ଆମପ୍ରତି ସେମାନେ ଏପ୍ରକାର ବ୍ୟବହାର କରୁଛନ୍ତି । ସେମାନେ ଆଉ ରାଜଚିହ୍ନ ଓ ରାଜୋଚିତ ସୁବିଧା ଆଦି ପାଇବାର ହକ୍‌ଦାର ନୁହନ୍ତି । ଏତେ ନିର୍ଲଜ୍ଜ ନହେଲେ, ସେମାନେ ଆମକୁ ଏପରି ଆଜ୍ଞା ଦିଅନ୍ତେ ନାହିଁ ॥୨୭॥ ସିଂହର ଗ୍ରାସକୁ ଯେପରି ମେଣ୍ଢା ନେଇ ନ ପାରେ, ସେହିପରି ଭୀଷ୍ମ, ଦ୍ରୋଣ, ଅର୍ଜୁନ ଆଦି କୌରବ ବୀରମାନେ ନିଜେ କିଛି ନ ଦେଲେ ଦେବରାଜ ଇନ୍ଦ୍ର ମଧ୍ୟ ତାହା ନେଇ ଭୋଗ କରିପାରିବେ ନାହିଁ ॥୨୮॥ ଶ୍ରୀ ଶୁକଦେବ କହିଲେ, ହେ ଭକ୍ତଶ୍ରେଷ୍ଠ ପରିକ୍ଷିତ, କୌରବମାନେ ନିଜ ବଂଶର ଅଭିମାନ, ଭୀଷ୍ମ, ଦ୍ରୋଣ, କର୍ଣ୍ଣ ଆଦିଙ୍କର ବଳ ଓ ନିଜ ଐଶ୍ୱର୍ଯ୍ୟର ଗର୍ବରେ ମତ୍ତ ହୋଇପଡ଼ିଥିଲେ । ଅସଭ୍ୟ ଲୋକଙ୍କ ପରି ସେମାନେ ବଳରାମଙ୍କୁ ଅତି ଅଶ୍ରାବ୍ୟ କୁବାକ୍ୟମାନ ପ୍ରୟୋଗ କରି ନଗରମଧ୍ୟକୁ ଚାଲିଗଲେ ॥୨୯॥ ବଳରାମ କୌରବମାନଙ୍କର ଏପରି ଦୁର୍ବ୍ୟବହାର ଦେଖି ଓ ଅଶାଳୀନ କଥା ସବୁ ଶୁଣି କ୍ରୋଧାନ୍ୱିତ ହେଲେ । ସେ ଏତେ ରାଗି ଯାଇଥିଲେ ଯେ, ତାଙ୍କୁ ଚାହିଁ ହେଉ ନ ଥିଲା । ସେ ବାରମ୍ବାର ଅଟ୍ଟହାସ କରି କହିଲେ, ଅହୋ,

ଯୁଦ୍ଧୋଦ୍ୟତ ଯାଦବମାନଙ୍କୁ ଏପରି କି କ୍ରୁଦ୍ଧ କୃଷ୍ଣଙ୍କୁ ବାରମ୍ବାର ବୁଝାଇ ଶୁଝାଇ ମୁଁ ଏମାନଙ୍କ ସହିତ ଶାନ୍ତିକାମନା କରି ଏଠାକୁ ଆସିଥିଲି । କିନ୍ତୁ ଏହି ମନ୍ଦମତି କୌରବମାନଙ୍କର ଗର୍ବ ବଢ଼ିଯାଇଛି । ସେମାନେ ଅତି ଦୁଷ୍ଟ ଓ କଳହପ୍ରିୟ । ସେମାନେ ମୋତେ ଅବଜ୍ଞା କରି  ବାରମ୍ବାର କୁଭାଷାମାନ ପ୍ରୟୋଗ କଲେ । ଧନ ଆଦି ଐଶ୍ୱର୍ଯ୍ୟର ଗର୍ବ ଯେଉଁମାନଙ୍କର ବଢ଼ିଯାଇଥାଏ, ସେହି ଦୁଷ୍ଟ ଲୋକମାନେ କେବେହେଲେ ଶାନ୍ତିକାମନା କରନ୍ତି ନାହିଁ । ଲଗୁଡ଼ଦ୍ୱାରା ଯେପରି ପଶୁମାନଙ୍କୁ ଶାସନ କରାଯାଏ, ସେହିପରି ଦୁଷ୍ଟଲୋକଙ୍କୁ ଦଣ୍ଡ ଦେବା ଦ୍ୱାରା ହିଁ ଶାନ୍ତି ସମ୍ଭବ ହୁଏ ।।୩୦-୩୩।। ଇନ୍ଦ୍ର ଆଦି ଲୋକପାଳମାନେ ଯାହାଙ୍କ ଆଦେଶକୁ ଅପେକ୍ଷା କରି ରହନ୍ତି, ଯେ ଭୋଜ, ବୃଷ୍ଣି ଓ ଅନ୍ଧକମାନଙ୍କର ଅଧୀଶ୍ୱର, ସେହି ଉଗ୍ରସେନ ପୁଣି ରାଜା ନୁହନ୍ତି ! ।।୩୪।। ଯେଉଁ ଶ୍ରୀକୃଷ୍ଣ ସ୍ୱର୍ଗର ସୁଧର୍ମା ସଭାକୁ ଅଧିକାର କରି ସେଠି ବିରାଜମାନ ହୋଇଥିଲେ, ଯିଏ ଦେବତାମାନଙ୍କ ପାରିଜାତ ବୃକ୍ଷକୁ ଆଣି ଉପଭୋଗ କରୁଛନ୍ତି, ସେ ଶ୍ରୀକୃଷ୍ଣ ପୁଣି ରାଜସିଂହାସନରେ ବସିବାପାଇଁ ଯୋଗ୍ୟ ନୁହନ୍ତି ! ।।୩୫।। ରୁକ୍ମିଣୀ ହେଉଛନ୍ତି ଲକ୍ଷ୍ମୀ ସ୍ୱରୂପିଣୀ । ସେ ଶ୍ରୀକୃଷ୍ଣଙ୍କର ପାଦଯୁଗଳ ସେବା କରନ୍ତି । ସେହି ଲକ୍ଷ୍ମୀପତି ଶ୍ରୀକୃଷ୍ଣ ପୁଣି ରାଜପୋଷାକ ପରିଧାନପାଇଁ ଯୋଗ୍ୟ ନୁହନ୍ତି ! ।।୩୬।। ଯାହାଙ୍କ ପାଦପଦ୍ମର ଧୂଳିକୁ ଇନ୍ଦ୍ରାଦି ଲୋକପାଳ ସେମାନଙ୍କର କିରୀଟମଣ୍ଡିତ ମସ୍ତକରେ ଧାରଣକରନ୍ତି, ଯାହାଙ୍କ ଅଂଶର ଅଂଶ ହେଉଛନ୍ତି ବ୍ରହ୍ମା, ଶିବ ଓ ମୁଁ ନିଜେ, ଏବଂ ଲକ୍ଷ୍ମୀଦେବୀ ଯାହାଙ୍କର ପଦଧୂଳିକୁ ସବୁବେଳେ ମସ୍ତକରେ ଧାରଣ କରିଥା'ନ୍ତି, ଯାହାଙ୍କର ପଦଧୂଳି ସମସ୍ତଙ୍କର ଉପାସ୍ୟ ତୀର୍ଥମାନଙ୍କୁ ମଧ୍ୟ ପବିତ୍ର କରେ, କେଉଁ ରାଜସିଂହାସନ ସେହି କୃଷ୍ଣଙ୍କପାଇଁ ଯୋଗ୍ୟ ହୋଇ ପାରିବ ? ।।୩୭।। କୌରବମାନେ ଦେଇଥିବା ଯୋଗୁଁ ଯାଦବମାନେ କିଛି ରାଜ୍ୟ ଭୋଗ କରୁଛନ୍ତି ଏବଂ ଆମେ ଯାଦବମାନେ ହେଲୁ ପାଦର ଜୋତା ଓ କୌରବମାନେ ମୁଣ୍ଡର ମୁକୁଟ !।।୩୮।। ମଦିରାସକ୍ତ ବ୍ୟକ୍ତିଙ୍କ ପରି ଐଶ୍ୱର୍ଯ୍ୟର ମଦରେ ପାଗଳ ହୋଇଯାଇଥିବା ଏହି ଗର୍ବୀ କୌରବମାନେ ଅତି ଅସଂଯତ ଓ ରୂକ୍ଷ ଭାବରେ କଥାଭାଷା କରୁଛନ୍ତି । ଏମାନଙ୍କୁ ଶାସନ କରିବା ପାଇଁ ଯୋଗ୍ୟ କେଉଁ ବ୍ୟକ୍ତି ଏହା ସହ୍ୟ କରିବ ? ।।୩୯।।

ଆଜି ଏହି ପୃଥିବୀକୁ ମୁଁ କୌରବଶୂନ୍ୟ କରିବାକୁ ଯାଉଛି । କ୍ରୁଦ୍ଧ ବଳରାମ ନିଜର ଲଙ୍ଗଳ ଧରି ଉଠିପଡ଼ିଲେ; ଜଣାଗଲା ଯେପରି କି ସେ ତ୍ରିଲୋକକୁ ଭସ୍ମ କରିଦେବେ ।।୪୦।। ହସ୍ତିନାପୁରୀକୁ ଉପାଡ଼ିଆଣି ଗଙ୍ଗାରେ ବୁଡ଼ାଇ ଦେବାପାଇଁ କ୍ରୋଧରେ ବଳରାମ ଲଙ୍ଗଳର ଅଗ୍ରଭାଗରେ ନଗରୀକୁ ଆକର୍ଷଣ କରିବାକୁ ଲାଗିଲେ । ତାଙ୍କ ଦ୍ୱାରା ହଳର ଅଗ୍ରଭାଗରେ ଟଣା ହୋଇ ହସ୍ତିନାପୁର ଜଳମଧ୍ୟରେ ନୌକା ପରି ଟଳମଳ ହେବାକୁ ଲାଗିଲା ଏବଂ ତାହା ଗଙ୍ଗାରେ ବୁଡ଼ିବାକୁ ଯାଉଛି ବୋଲି ଭୟ କରି କୌରବମାନେ କାତର ହୋଇ ପଡ଼ିଲେ ।।୪୧-୪୩।। ସେମାନେ କହିବାକୁ ଲାଗିଲେ, ହେ ପ୍ରଭୁ ବଳରାମ, ସମସ୍ତଙ୍କର ଶରଣଦାତା । ଆପଣଙ୍କର ପ୍ରଭାବ ଓ ପରାକ୍ରମ ଆମେ ଜାଣି ନ ଥିଲୁ । ହେ ସର୍ବେଶ୍ୱର, ଆମେ ହୀନବୁଦ୍ଧି ମୂଢ଼ । ଆପଣ ଆମକୁ କ୍ଷମା କରନ୍ତୁ ।।୪୪।। ପ୍ରଭୁ, ଆପଣ ଆଶ୍ରୟରହିତ ସ୍ୱୟମ୍ଭୂ । ଆପଣ ଏହି ଜଗତର ସୃଷ୍ଟି, ସ୍ଥିତି ଓ ଲୟର ଏକମାତ୍ର କାରଣ । ମୁନି ଋଷିମାନେ କହନ୍ତି ଯେ, ଆପଣ ଏହି ଜଗତ୍‌କୁ ଘେନି କ୍ରୀଡ଼ା କରନ୍ତି । ଏହି ଜଗତ୍ ଆପଣଙ୍କର କ୍ରୀଡ଼ନକ ସ୍ୱରୂପ ।।୪୫।। ହେ ସହସ୍ରଶିରା ଅନନ୍ତ, ଆପଣ ଅବଲୀଳାକ୍ରମେ ଏହି ଭୂମଣ୍ଡଳକୁ ନିଜ ମସ୍ତକରେ ଧାରଣ କରିଛନ୍ତି । ପ୍ରଳୟକାଳରେ ଏହି ବିଶ୍ୱ ଆପଣଙ୍କ ଠାରେ ହିଁ ଲୀନ ହୁଏ । ଏଣୁ ପ୍ରଳୟର ଶେଷରେ ଏକ ଏବଂ ଅଦ୍ୱିତୀୟ ରୂପେ ରହି ଆପଣ ଅନନ୍ତ ଶଯ୍ୟାରେ ଶୟନ କରନ୍ତି ।।୪୬।। ଆପଣ ସତ୍ତ୍ୱଗୁଣ ଅବଲମ୍ବନ କରି ଜଗତ୍‌ର ସ୍ଥିତି ଓ ପାଳନପାଇଁ ତତ୍ପର ହୋଇଥା'ନ୍ତି । ଆପଣ କୋପ କଲେ, କାହାରି ପ୍ରତି ଦ୍ୱେଷ ବା ଅସୂୟା ଦୃଷ୍ଟିରୁ କରନ୍ତି ନାହିଁ । କେବଳ ଲୋକଶିକ୍ଷାପାଇଁ କରିଥା'ନ୍ତି ।।୪୭।। ଆପଣ ସମସ୍ତ ପ୍ରାଣୀଙ୍କ ଆତ୍ମା । ସମସ୍ତ ଶକ୍ତିର ଆଧାର । ଆପଣଙ୍କର କ୍ଷୟ ନାହିଁ । ହେ ବିଶ୍ୱସ୍ରଷ୍ଟା ଭଗବାନ, ଆପଣଙ୍କୁ ଆମେ ବାରମ୍ବାର ନମସ୍କାର କରି ଶରଣାପନ୍ନ ହେଉଛୁ ।।୪୮।। ଶ୍ରୀ ଶୁକଦେବ କହିଲେ, ମହାରାଜ ପରିକ୍ଷିତ, ହସ୍ତିନାପୁର ଟଳମଳ ହେବାରୁ ଭୟଭୀତ କୌରବମାନେ ବଳରାମଙ୍କ ଶରଣାପନ୍ନ ହୋଇ ଏହିପରି ତାଙ୍କୁ ପ୍ରସନ୍ନ କରିବାପାଇଁ ଚେଷ୍ଟା କଲେ ।

ସନ୍ତୁଷ୍ଟ ହୋଇ ବଳରାମ 'ଭୟ କର ନାହିଁ' ବୋଲି କହି କୌରବମାନଙ୍କୁ ଅଭୟ ଦାନ କଲେ ।।୪୯।। ଦୁର୍ଯ୍ୟୋଧନ ନିଜର ଦୁହିତା ଲକ୍ଷ୍ମଣାଙ୍କୁ ଅତି ସ୍ନେହ କରୁଥିଲେ । ସେ ବାର ଶହ ବୟସ୍କ ହାତୀ, ବାର ଅୟୁତ ଘୋଡ଼ା, ସୂର୍ଯ୍ୟ ପରି ତେଜୀୟାନ୍ ଓ ସୁବର୍ଣ୍ଣରେ ମଣ୍ଡିତ ଛ'ହଜାର ରଥ ଏବଂ ପଦକକଣ୍ଠୀ ସୁନାହାର ପିନ୍ଧିଥିବା ଏକ ହଜାର ଦାସୀଙ୍କୁ ଯୌତୁକ ସ୍ୱରୂପ ପ୍ରଦାନ କଲେ ।।୫୦-୫୧।। ଯାଦବଶ୍ରେଷ୍ଠ ଭଗବାନ ବଳରାମ ଦୁର୍ଯ୍ୟୋଧନ-ପ୍ରଦତ୍ତ ସେ ସମସ୍ତ ଯୌତୁକ ସହ ପୁତୁରା ସାମ୍ବଙ୍କୁ ଓ ବଧୂ ଲକ୍ଷ୍ମଣାଙ୍କୁ ସାଙ୍ଗରେ ଧରି ଦ୍ୱାରକା ଅଭିମୁଖରେ ପ୍ରସ୍ଥାନ କଲେ ।।୫୨।। ବଳରାମ ଦ୍ୱାରକାପୁରୀରେ ପ୍ରବେଶ କରି ଅନୁରକ୍ତ ସ୍ୱଜନ ଓ ବନ୍ଧୁମାନଙ୍କ ସହିତ ମିଳିତ ହେଲେ । ତାପରେ ସଭା ମଧ୍ୟରେ କୌରବମାନଙ୍କ ସହ ତାଙ୍କର ଯାହା ସବୁ ଘଟିଗଲା, ତାହା ଯାଦବମୁଖ୍ୟମାନଙ୍କୁ ଶୁଣାଇଲେ ।।୫୩।। ମହାରାଜ ପରିକ୍ଷିତ, ଏବେ ମଧ୍ୟ ଆପଣଙ୍କ ହସ୍ତିନାପୁର ଦକ୍ଷିଣକୁ ଉଚ୍ଚ ହୋଇ ଓ ଗଙ୍ଗାଆଡ଼କୁ ନୀଚ ହୋଇ ରହିଛି ଏବଂ ବଳରାମଙ୍କ ପରାକ୍ରମର ସୂଚନା ଦେଉଛି ।।୫୪।।

## ଅଣସ୍ତରି ଅଧ୍ୟାୟ

# ଶ୍ରୀକୃଷ୍ଣଙ୍କ ଗୃହସ୍ଥାଶ୍ରମ

ଶ୍ରୀ ଶୁକଦେବ କହିଲେ, ପରିକ୍ଷିତ, ନରକାସୁରକୁ ନିହତ କରି କୃଷ୍ଣ ହଜାର ହଜାର ରାଜକନ୍ୟାଙ୍କୁ ବିବାହ କରିଛନ୍ତି, ତାହା ଶୁଣି ସେମାନଙ୍କୁ ଦେଖିବାପାଇଁ ନାରଦ ଇଚ୍ଛା କଲେ ।।୧।। ଶ୍ରୀକୃଷ୍ଣ ଗୋଟିଏ ଦେହରେ ଭିନ୍ନ ଭିନ୍ନ ଗୃହରେ ଷୋଳହଜାର ସ୍ତ୍ରୀଙ୍କୁ କିପରି ଏକ ସମୟରେ ବିବାହ କଲେ, ତାହା ନାରଦଙ୍କୁ ଆଶ୍ଚର୍ଯ୍ୟ ବୋଧ ହେଲା ।।୨।। ତେଣୁ ସେ ଭଗବାନଙ୍କ ଲୀଳା ଦେଖିବାପାଇଁ ଉତ୍ସୁକ ହୋଇ ଦ୍ୱାରକାରେ ଉପସ୍ଥିତ ହେଲେ । ସେତେବେଳେ ଦ୍ୱାରକାର ଉପବନ ଓ ଉଦ୍ୟାନମାନ ଫୁଲରେ ଭରିଯାଇଥିଲା ଏବଂ ପକ୍ଷୀମାନଙ୍କର କୂଜନ ଓ ଭ୍ରମରମାନଙ୍କର ଗୁଞ୍ଜନ ଧ୍ୱନିରେ ମୁଖରିତ ହେଉଥିଲା ।।୩।। ନୀଳ, ଲାଲ, ଶ୍ୱେତ ପଦ୍ମ ଓ କଇଁ ଫୁଲମାନଙ୍କଦ୍ୱାରା ସରୋବର ସବୁ ପୂରି ଉଠୁଥିଲା । ହଂସ ଓ ସାରସମାନେ ଉଚ୍ଚ ସ୍ୱରରେ କଳରବ କରୁଥିଲେ । ଦ୍ୱାରକାରେ ଶଙ୍ଖମଲମଲ ପଥର ଓ ରୂପାରେ ନିର୍ମିତ ନ'ଲକ୍ଷ ପ୍ରାସାଦ ଥିଲା ।।୪।। ଏହି ସବୁ ପ୍ରାସାଦ ମହାମରକତ ମଣି, ସୁବର୍ଣ୍ଣ ଓ ବହୁବିଧ ରତ୍ନଦ୍ୱାରା ଖଚିତ ହୋଇ ଶୋଭା ପାଉଥିଲା । ବିଭିନ୍ନ ଛକ, ରାଜପଥ, ହାତୀଶାଳ, ଘୋଡ଼ାଶାଳ, ସଭାଗୃହ ଓ ଦେବାଳୟ ଦ୍ୱାରା ସୁପରିକଳ୍ପିତ ନଗରଟି ସୁନ୍ଦର ଦେଖାଯାଇଥିଲା ।।୫।। ସଡ଼କ, ବଜାର, ଗଳିରାସ୍ତା ଓ ଦୁଆରମୁହଁ ଆଦିରେ ପାଣି ଛିଞ୍ଚା ଯାଇଥିଲା ଏବଂ ଚାରିଆଡ଼େ ଏତେ ସଂଖ୍ୟାରେ ପତାକା ଉଡୁଥିଲା ଯେ ସୂର୍ଯ୍ୟତାପ ନ ଥିଲା ।।୬।। ସେଠାରେ ଶ୍ରୀକୃଷ୍ଣଙ୍କର ଅନ୍ତଃପୁର ଅତ୍ୟନ୍ତ ସୁନ୍ଦର ଥିଲା । ଲୋକପାଳମାନଙ୍କ ଦ୍ୱାରା ତାହା ପ୍ରଶଂସିତ ହେଉଥିଲା । ସେହି ଅନ୍ତଃପୁରକୁ ନିର୍ମାଣ କରିବାରେ ବିଶ୍ୱକର୍ମା ତାଙ୍କର ସମସ୍ତ କାରିଗରୀ କୌଶଳ ପ୍ରୟୋଗ କରିଥିଲେ ।।୭।।

ଏହିପରି ଭଗବାନ୍ ଶ୍ରୀକୃଷ୍ଣଙ୍କ ଷୋଳହଜାର ଅନ୍ତଃପୁର ମଧ୍ୟରୁ ଦେବର୍ଷି ନାରଦ ଗୋଟିଏ ବିଶାଳ ଅନ୍ତଃପୁର ମଧ୍ୟରେ ପ୍ରବେଶ କଲେ ।।୮।। ମଣିମୟ ସ୍ତମ୍ଭରେ ବୈଦୂର୍ଯ୍ୟର ଛାଉଣି, ଇନ୍ଦ୍ରନୀଳମଣିର ଭିତ୍ତି ଉପରେ ଇନ୍ଦ୍ରନୀଳମଣିମୟ କାନ୍ଥସବୁ ଚମକିଉଠୁଥିଲା । ମୋତିର ଝାଲରସହ ଅନେକ ସୁନ୍ଦର ସୁନ୍ଦର ଚାନ୍ଦୁଆ ଲଗାଯାଇଥିଲା । ସୁନ୍ଦର ସୁନ୍ଦର ମଣିଜଡ଼ିତ ହାତୀଦାନ୍ତର ଆସନ ଓ ପଲଙ୍କ ସବୁ ଶୋଭା ପାଉଥିଲା । ସୁନ୍ଦର ସୁନ୍ଦର ବସ୍ତ୍ର ଓ ସୁନାହାରମାନ ପିନ୍ଧି ଅନେକ ଦାସୀ ସେବା କରୁଥିଲେ । ସୁନ୍ଦର ବସ୍ତ୍ର,ପଗଡ଼ି ଓ କୁଣ୍ଡଳମାନ ପିନ୍ଧି ଅନେକ ସେବକ ସେଠାରେ ନିଜ ନିଜ କାମରେ ବ୍ୟସ୍ତ ଥିଲେ ।।୯-୧୧।। ରତ୍ନଦୀପମାନଙ୍କ ଆଲୋକରେ ଅନ୍ଧକାର ଦୂର ହୋଇଯାଇଥିଲା । ଅଗୁରୁ ଧୂପର ଧୂଆଁ ଗବାକ୍ଷପଥରେ ଆସି ବାହାରେ ଏପରି

ଧୂଆଁ ସୃଷ୍ଟି କରୁଥିଲା, ଯାହାକୁ ମେଘ ବୋଲି ଭାବି ମୟୂରମାନେ ଉଚ୍ଚସ୍ୱରରେ କେକାରବ କରି ଚିତ୍ରିତ ପ୍ରାଚୀରମାନଙ୍କ ଉପରେ ନୃତ୍ୟ କରୁଥିଲେ ॥୧୨॥ ସେହି ଭବନଟି ଥିଲା ରୁକ୍ମିଣୀଙ୍କର । ଦେବର୍ଷି ନାରଦ ଦେଖିଲେ, ନିଜପରି ସମାନ ରୂପ-ଗୁଣସମ୍ପନ୍ନ, ସମାନ ବେଶ ଓ ଅଳଙ୍କାରଯୁକ୍ତ ଏକସହସ୍ର ସମବୟସୀ ଦାସୀମାନଙ୍କ ମେଳରେ ରହି ରୁକ୍ମିଣୀ ଦେବୀ ସୁବର୍ଣ୍ଣବେଷ୍ଟଲଗା ଚାମରରେ ଶ୍ରୀକୃଷ୍ଣଙ୍କୁ ପଙ୍ଖା କରୁଛନ୍ତି ॥୧୩॥ ସେତେବେଳେ ଧାର୍ମିକମାନଙ୍କର ଶିରୋମଣି ଭଗବାନ୍ ଶ୍ରୀକୃଷ୍ଣ ଦେବର୍ଷି ନାରଦଙ୍କୁ ଦେଖି ସଙ୍ଗେ ସଙ୍ଗେ ରୁକ୍ମିଣୀ ଦେବୀଙ୍କର ପଲଙ୍କରୁ ଉଠିପଡ଼ିଲେ ଏବଂ କୃତାଞ୍ଜଳି ହୋଇ ନିଜର କିରୀଟମଣ୍ଡିତ ମସ୍ତକ ଲଗାଇ ତାଙ୍କ ପାଦଯୁଗଳରେ ପ୍ରଣାମ କଲେ ଏବଂ ତାଙ୍କୁ ନିଜର ଆସନରେ ବସାଇଲେ ॥୧୪॥ ଭଗବାନ୍ ଶ୍ରୀକୃଷ୍ଣ ଥିଲେ ଜଗତର ସର୍ବଶ୍ରେଷ୍ଠ ଗୁରୁ ଓ ସାଧୁଶିରୋମଣି । ତାଙ୍କ ପାଦ ପ୍ରକ୍ଷାଳନ ଜନିତ ଯେଉଁ ଗଙ୍ଗାଜଳ ସମସ୍ତ ତୀର୍ଥର ଗୁଣ ବହନ କରୁଛି, ସେହି ଜଳରେ ଦେବର୍ଷି ନାରଦଙ୍କର ପାଦ ଧୋଇଦେଇ ସେହି ପାଦଧୂଆ ପାଣିକୁ ଶ୍ରୀକୃଷ୍ଣ ନିଜ ମସ୍ତକରେ ଛିଞ୍ଚିହେଲେ । ଭଗବାନ୍ ବ୍ରାହ୍ମଣମାନଙ୍କର ସେବକ ଓ ମଙ୍ଗଳକାରୀ ହୋଇଥିବାରୁ ତାଙ୍କର ଏକ ନାମ ହେଉଛି ବ୍ରହ୍ମଣ୍ୟଦେବ । ସେହି ଗୁଣ ଓ ନାମ ଅନୁସାରେ ସେ ଯଥୋଚିତ ଆଚରଣ କଲେ ॥୧୫॥ ପୁରାଣ ଯୁଗରେ ଶ୍ରୀକୃଷ୍ଣ ଥିଲେ ନାରାୟଣ ଋଷି । ନରଋଷିଙ୍କର ସଖା । ସେ ଏବେ ଦେବର୍ଷିଶ୍ରେଷ୍ଠ ନାରଦଙ୍କୁ ଶାସ୍ତ୍ରୋକ୍ତ ବିଧିରେ ପୂଜା କରି ଅମୃତତୁଲ୍ୟ ଅଳ୍ପ କଥା କହି ପଚାରିଲେ -- ପ୍ରଭୁ, ଆପଣ ସମସ୍ତ ଐଶ୍ୱର୍ଯ୍ୟରେ ପୂର୍ଣ୍ଣ । ଆପଣଙ୍କର କେଉଁ କାର୍ଯ୍ୟ ମୁଁ କରିପାରିବି ? ଦେବର୍ଷି ନାରଦ କହିଲେ, ବିଭୁ, ଲୋକେ ସମସ୍ତେ ଆପଣଙ୍କର ମିତ୍ର । ଆପଣ ସମସ୍ତ ଜଗତ୍‌ର ଈଶ୍ୱର । ତେଣୁ ଆପଣ ଯେ ମୋର ଏପରି ପରିଚର୍ଯ୍ୟା କଲେ, ସେଥିରେ କିଛି ଆଶ୍ଚର୍ଯ୍ୟ ହେବାର ନାହିଁ । ଦୁଷ୍ଟ ଲୋକଙ୍କୁ ଆପଣ ଯେଉଁ ଦଣ୍ଡ ଦିଅନ୍ତି, ତାହା ସେମାନଙ୍କ ମଙ୍ଗଳ କରିଥାଏ । ହେ ବିପୁଳଯଶା ଭଗବାନ୍, ଜଗତର ସ୍ଥିତି ଓ ପାଳନପାଇଁ ଆପଣ ଯେ ସ୍ୱେଚ୍ଛାରେ ଅବତାର ଗ୍ରହଣ କରନ୍ତି, ତାହା ମୁଁ ଭଲଭାବରେ ଜାଣିଛି ॥୧୬-୧୭॥ ପ୍ରଭୁ, ଅଗାଧଜ୍ଞାନୀ ବ୍ରହ୍ମା ଆଦି ଦେବଶ୍ରେଷ୍ଠମାନେ ହୃଦୟମଧ୍ୟରେ ଆପଣଙ୍କର ଯେଉଁ ପାଦଦ୍ୱୟକୁ ଚିନ୍ତା କରୁଥା'ନ୍ତି, ସଂସାରକୂପରେ ପଡ଼ିଥିବା ଲୋକମାନଙ୍କୁ ଉଦ୍ଧାର କରିବା ପାଇଁ ଯାହା ଅବଲମ୍ବନ ସ୍ୱରୂପ, ଜଗତ୍‌ର ମୁକ୍ତିପ୍ରଦ ସେହି ଚରଣ ଯୁଗଳକୁ ମୁଁ ଦର୍ଶନ କଲି । ସବୁଦିନ ପାଇଁ ଏହି ସ୍ମୃତିଟି ଯେପରି ମୋର ରହେ, ଆପଣ ମୋତେ ସେହିପରି ଅନୁଗ୍ରହ କରନ୍ତୁ । ଆପଣଙ୍କର ଏହି ପାଦପଦ୍ମକୁ ଧ୍ୟାନ କରି ମୁଁ ଯେପରି ଚାରିଆଡ଼େ ବୁଲୁଥିବି ॥୧୮॥

ମହାରାଜ ପରିକ୍ଷିତ, ଏହାପରେ ନାରଦ ଯୋଗେଶ୍ୱରମାନଙ୍କ ଈଶ୍ୱର ଭଗବାନ୍ ଶ୍ରୀକୃଷ୍ଣଙ୍କ ଯୋଗମାୟାର ପ୍ରଭାବ ଜାଣିବାପାଇଁ ଅନ୍ୟ ଜଣେ ସ୍ତ୍ରୀଙ୍କ ଗୃହରେ ପ୍ରବେଶ କଲେ । ସେଠାରେ ସେ ଦେଖିଲେ ଯେ ଭଗବାନ୍ ତାଙ୍କ ପ୍ରିୟ ପତ୍ନୀ ଓ ଉଦ୍ଧବଙ୍କ ସହିତ ବସି ପଶା ଖେଳୁଛନ୍ତି । ନାରଦ ଆସିଥିବା କଥା ପୂର୍ବରୁ ନ ଜାଣିବାପରି ହୋଇ ଭଗବାନ୍ ଶ୍ରୀକୃଷ୍ଣ ନିଜର ଆସନରୁ ଉଠିପଡ଼ିଲେ ଏବଂ ତାଙ୍କୁ ଆସନ ଆଦି ଦେଇ ଅତିଶୟ ଭକ୍ତିରେ ସତ୍କାର କଲେ ॥୧୯-୨୦॥ ଶ୍ରୀକୃଷ୍ଣ ପଚାରିଲେ, ବ୍ରହ୍ମନ୍, ଆପଣ କେବେ ଆସିଲେ ? ଆପଣ ସବୁଥିରେ ପରିପୂର୍ଣ୍ଣ । ଆମପରି ଅପୂର୍ଣ୍ଣ ବ୍ୟକ୍ତି ଆପଣଙ୍କର କି ସେବା କରିପାରିବ ? ଆପଣ ଆଦେଶ ଦେଇ ଆମର ଜନ୍ମ ସଫଳ କରନ୍ତୁ । ନାରଦ ଆଶ୍ଚର୍ଯ୍ୟ ହୋଇ ଉଠିପଡ଼ିଲେ । କିଛି ନ କହି ନୀରବରେ ଅନ୍ୟ ଏକ ଗୃହରେ ପ୍ରବେଶ କଲେ ॥୨୧-୨୨॥ ସେଠାରେ (ନାରଦ) ଦେଖିଲେ ଯେ, ଶିଶୁପୁତ୍ରମାନଙ୍କୁ ଶ୍ରୀକୃଷ୍ଣ ଲାଳନପାଳନ କରୁଛନ୍ତି । ସେଠାରୁ ସେ ଅନ୍ୟ ଏକ ଗୃହକୁ ଯାଇ ଦେଖିଲେ, ଭଗବାନ୍ ମଧ୍ୟାହ୍ନସ୍ନାନପାଇଁ ପ୍ରସ୍ତୁତ ହେଉଛନ୍ତି ॥୨୩॥ ପରିକ୍ଷିତ, ଏହିପରି ଘରକୁ ଘର ଯାଇ ନାରଦ ଦେଖିଲେ--କେଉଁଠି ଭଗବାନ ପଞ୍ଚଯଜ୍ଞ ଯଥା ବେଦପାଠ, ହୋମ, ଅତିଥିସେବା, ପିତୃ ତର୍ପଣ ଓ ଭୂତ ଯଜ୍ଞର ବ୍ୟବସ୍ଥା କରୁଛନ୍ତି ତ କେଉଁଠି ବ୍ରାହ୍ମଣଭୋଜନ କରାଉଛନ୍ତି ଏବଂ ଅନ୍ୟ କୌଣସି ଗୃହରେ ବ୍ରାହ୍ମଣମାନଙ୍କ ଭୁକ୍ତାବଶିଷ୍ଟ ଅନ୍ନକୁ ଭୋଜନ କରୁଛନ୍ତି ॥୨୪॥ ଆଉ କୌଣସି ଗୃହରେ ଦେଖିଲେ, ଭଗବାନ୍ ସନ୍ଧ୍ୟା କରିବାପାଇଁ ମୌନ ହୋଇ ବସି ଗାୟତ୍ରୀ ମନ୍ତ୍ର ଜପ କରୁଛନ୍ତି ଏବଂ ଆଉ ଏକ ଗୃହରେ ଢାଲ ତରବାରୀ ଧରି ତରବାରୀକୁ ବୁଲାଇ ଚାଲିଛନ୍ତି ॥୨୫॥

ନାରଦ ପୁଣି ଦେଖିଲେ, ଭଗବାନ୍ ଶ୍ରୀକୃଷ୍ଣ ଅଶ୍ୱ, ଗଜ ଓ ରଥରେ ଆରୋହଣ କରି ବିଚରଣ କରୁଛନ୍ତି ଏବଂ ଅନ୍ୟ ଏକ ସ୍ଥାନରେ ପଲଙ୍କ ଉପରେ ଶୋଇ ରହିଛନ୍ତି । ସ୍ତବକାରୀମାନେ ତାଙ୍କୁ ସ୍ତୁତି କରୁଚନ୍ତି ॥୨୬॥ ଅନ୍ୟ ଏକ ଗୃହରେ ଦେଖିଲେ, ଶ୍ରୀକୃଷ୍ଣ ଉଦ୍ଧବାଦି ମନ୍ତ୍ରୀମାନଙ୍କ ସହିତ ମନ୍ତ୍ରଣା କରୁଛନ୍ତି ଏବଂ ଅନ୍ୟ ଏକ ସ୍ଥାନରେ ଶ୍ରେଷ୍ଠ ବାରାଙ୍ଗନା ଓ ନିଜ ସ୍ତ୍ରୀମାନଙ୍କ ସହିତ ରହି ଜଳକ୍ରୀଡ଼ା କରୁଛନ୍ତି ॥୨୭॥ ପୁଣି ଏକ ସ୍ଥାନରେ ଦେଖିଲେ, ଭଗବାନ୍ ଶ୍ରୀକୃଷ୍ଣ ମୁଖ୍ୟ ବ୍ରାହ୍ମଣମାନଙ୍କୁ ଅଳଙ୍କାରମଣ୍ଡିତ ଉତ୍ତମ ଗାଭୀ ଦାନ କରୁଛନ୍ତି ଏବଂ ଅନ୍ୟ ଏକ ଗୃହରେ ସେ ମଙ୍ଗଳସଙ୍ଗୀତ, ଇତିହାସ ଏବଂ ପୁରାଣାଦି ଶ୍ରବଣ କରୁଛନ୍ତି ॥୨୮॥ ପୁଣି କୌଣସି ଗୃହରେ ସେ ଦେଖିବାକୁ ପାଇଲେ ଯେ, ଶ୍ରୀକୃଷ୍ଣ ନିଜର ପ୍ରିୟା ସହିତ ହାସ୍ୟ ପରିହାସରେ ମାତିଛନ୍ତି । ଅନ୍ୟ କେଉଁଠି ଧର୍ମାନୁମୋଦିତ ଅର୍ଥ ଓ କାମ ଉପଭୋଗ କରୁଛନ୍ତି ॥୨୯॥ ଅନ୍ୟ ଏକ ଗୃହରେ ଦେଖିଲେ ଶ୍ରୀକୃଷ୍ଣ ଏକାକୀ ଆସନରେ ବସି ପ୍ରକୃତିରୁ ଅତୀତ ପରମପୁରୁଷଙ୍କୁ ଧ୍ୟାନ କରୁଛନ୍ତି ଏବଂ ଅନ୍ୟ ଏକ ଗୃହରେ ବିଭିନ୍ନପ୍ରକାର କାମ୍ୟ ଓ ଉପଭୋଗ୍ୟ ଦ୍ରବ୍ୟମାନଙ୍କଦ୍ୱାରା ଗୁରୁଜନଙ୍କ ସେବା କରୁଛନ୍ତି ॥୩୦॥ ଅନ୍ୟ କେଉଁଠି ସେ ଯୁଦ୍ଧ କରୁଛନ୍ତି ତ ପୁଣି କେଉଁଠି ସନ୍ଧିସ୍ଥାପନ କରୁଛନ୍ତି ଏବଂ ଆହୁରି କେଉଁଠି ବଳରାମଙ୍କ ସହିତ ମିଶି ସଜ୍ଜନମାନଙ୍କ ମଙ୍ଗଳ ଚିନ୍ତା କରୁଛନ୍ତି ॥୩୧॥

ଆଉ ଏକ ସ୍ଥାନରେ ସେ ଦେଖିଲେ ନିଜ ବିଭବଦ୍ୱାରା ସେ ପୁତ୍ର ଓ କନ୍ୟାଙ୍କପାଇଁ ଉପଯୁକ୍ତ ପାତ୍ରୀ ଓ ପାତ୍ରର ବ୍ୟବସ୍ଥା କରୁଛନ୍ତି ଏବଂ ଅନ୍ୟ କେଉଁଠି ବିଧିପୂର୍ବକ ସେମାନଙ୍କ ବିବାହକାର୍ଯ୍ୟ ସମ୍ପାଦନ କରୁଛନ୍ତି ॥୩୨॥ ନାରଦ ଦେଖିଲେ, ଶ୍ରୀକୃଷ୍ଣ କେଉଁଠାରେ କନ୍ୟା ଓ ଜାମାତାଙ୍କୁ ବିଦାୟ ଦେଉଛନ୍ତି ତ କେଉଁଠାରେ ପୁତ୍ର ଓ ପୁତ୍ରବଧୂଙ୍କର ଆଗମନ ଉତ୍ସବ ପାଳନ କରୁଛନ୍ତି । ଯୋଗେଶ୍ୱରଙ୍କ ଈଶ୍ୱର ଶ୍ରୀକୃଷ୍ଣଙ୍କର ପୁତ୍ରକନ୍ୟାମାନଙ୍କର ଏହି ସବୁ ବିବାହ ମହୋତ୍ସବ ଦେଖି ଲୋକେ ଆଶ୍ଚର୍ଯ୍ୟ ହେଉଛନ୍ତି ॥୩୩॥ ପୁଣି ଦେଖିଲେ, କେଉଁଠାରେ ଧୂମ୍‌ଧାମ୍‌ରେ ଯଜ୍ଞ କରି ଦେବତାମାନଙ୍କୁ ପୂଜା କରୁଛନ୍ତି ଏବଂ କେଉଁଠାରେ କୂପ, ଉଦ୍ୟାନ ଓ ଦେବାଳୟମାନ ସ୍ଥାପନ କରୁଛନ୍ତି ॥୩୪॥ କେଉଁଠାରେ ସିନ୍ଧୁଦେଶୀୟ ଉତ୍କୃଷ୍ଟ ଘୋଡ଼ା ଉପରେ ଚଢ଼ି ଯାଦବବୀରଙ୍କ ସହିତ ମିଶି ମୃଗୟା କରୁଛନ୍ତି ଓ ଯଜ୍ଞପାଇଁ ଯୋଗ୍ୟ ପଶୁମାନଙ୍କୁ ବଧ କରୁଛନ୍ତି ॥୩୫॥ କେଉଁଠି ଯୋଗେଶ୍ୱର ଶ୍ରୀକୃଷ୍ଣ ଅମାତ୍ୟମାନଙ୍କ ଭିତରେ ଓ ଅନ୍ତଃପୁର ଗୃହିଣୀଙ୍କ ଭିତରେ ସେମାନଙ୍କ ମନୋଭାବ ଜାଣିବାପାଇଁ ଛଦ୍ମବେଶରେ ବୁଲୁଛନ୍ତି ॥୩୬॥ ପରିକ୍ଷିତ, ଏହିପରି ମାନବଲୀଳା କରୁଥିବା ଭଗବାନ୍ ଶ୍ରୀକୃଷ୍ଣଙ୍କ ଯୋଗମାୟାର ଉତ୍କର୍ଷ ଦେଖି ନାରଦ ହସିହସି ଶ୍ରୀକୃଷ୍ଣଙ୍କୁ କହିଲେ, ଯୋଗେଶ୍ୱର, ମାୟାକାରୀମାନେ ଯାହା ଦେଖିପାରନ୍ତି ନାହିଁ, ଆପଣଙ୍କ ପାଦସେବାଯୋଗୁଁ ମୋ' ହୃଦୟମଧ୍ୟରେ ପ୍ରକାଶିତ ଆପଣଙ୍କର ସେହି ଯୋଗମାୟାକୁ ମୁଁ ଜାଣିପାରିଛି ॥୩୭-୩୮॥ ଦେବ, ମୋତେ ଆଜ୍ଞା ଦିଅନ୍ତୁ, ତ୍ରିଭୁବନକୁ ପବିତ୍ର କରୁଥିବା ଆପଣଙ୍କର ଲୀଳା-ଗାଥାକୁ ଉଚ୍ଚସ୍ୱରରେ ଗାନ କରି କରି ମୁଁ ବିଭିନ୍ନ ଲୋକରେ ଭ୍ରମଣ କରୁଥିବି ॥୩୯॥

ଶ୍ରୀ ଭଗବାନ୍ କହିଲେ, ବ୍ରହ୍ମନ୍, ମୁଁ ଧର୍ମର ପ୍ରବକ୍ତା, ଧର୍ମର କର୍ତ୍ତା ଓ ଅନୁମୋଦନକାରୀ । ସେଥିପାଇଁ ଲୋକଶିକ୍ଷା ନିମନ୍ତେ ଏହି ସବୁ କାର୍ଯ୍ୟ କରି ଚାଲିଛି । ଏଣୁ ମୋର କାର୍ଯ୍ୟ ଦେଖି ଆପଣଙ୍କର ମନ ବିଚଳିତ ନହେଉ ॥୪୦॥ ଶ୍ରୀ ଶୁକଦେବ କହିଲେ, ପରିକ୍ଷିତ, ଏହିପରି ଦେବର୍ଷି ନାରଦ ଦେଖିଲେ ଯେ ଶ୍ରୀକୃଷ୍ଣ ସମସ୍ତଙ୍କ ଗୃହରେ ବିଦ୍ୟମାନ ଥାଇ ପାବନ ଗୃହସ୍ଥଧର୍ମକୁ ଆଚରଣ କରୁଥିଲେ । କୌତୂହଳର ବଶବର୍ତ୍ତୀ ଦେବର୍ଷି ନାରଦ ଅନନ୍ତଶକ୍ତି ଶ୍ରୀକୃଷ୍ଣଙ୍କ ଯୋଗମାୟାର ମହାପ୍ରଭାବ ବାରମ୍ବାର ଦେଖି ବିସ୍ମିତ ହୋଇଗଲେ । ଶ୍ରଦ୍ଧାର ସହିତ ଭଗବାନ ଶ୍ରୀକୃଷ୍ଣ ଧର୍ମ, ଅର୍ଥ ଓ କାମ--ଏହି ତ୍ରିବିଧ ପୁରୁଷାର୍ଥକୁ କିପରି ପାଳନ କରୁଛନ୍ତି, ତାହା ଦେଖି ଦେବର୍ଷି ନାରଦ ଅତିଶୟ ପ୍ରୀତ ହେଲେ ଏବଂ ଉପଯୁକ୍ତ ସତ୍କାର ପାଇ ଶ୍ରୀକୃଷ୍ଣଙ୍କୁ ଧ୍ୟାନ କରି କରି ସେଠାରୁ ପ୍ରସ୍ଥାନ କଲେ ॥୪୧-୪୩॥ ମହାରାଜ ପରୀକ୍ଷିତ, ନାନା ଦେହରେ ନାନାବିଧ ଅବତାର ଗ୍ରହଣ କରୁଥିବା ଭଗବାନ ନାରାୟଣ ଏହିପରି ସମସ୍ତ ଲୋକଙ୍କର ମଙ୍ଗଳନିମନ୍ତେ ମନୁଷ୍ୟୋଚିତ ଆଚରଣପୂର୍ବକ ନିଜର ଷୋଳହଜାର ଉତ୍ତମ ପତ୍ନୀଙ୍କର

ପ୍ରେମପୂର୍ଣ୍ଣ ସଲଜ୍ଜ ଦୃଷ୍ଟି, ହାସ୍ୟ, ପରିହାସ ଆଦି ଉପଭୋଗ କରି ଆନନ୍ଦରେ ବିହାର କରୁଥିଲେ ॥୪୪॥ ରାଜା, ଏହି ବିଶ୍ୱର ସଂହାର, ଉତ୍ପତ୍ତି ଓ ସ୍ଥିତିର କାରଣ ଭଗବାନ୍ ଶ୍ରୀକୃଷ୍ଣ ପୃଥିବୀରେ ଯେଉଁ ଅସାଧାରଣ କର୍ମମାନ କରିଯାଇଛନ୍ତି, ତାହା ଯେ ଗାଇବ, ଶୁଣିବ ଓ ହୃଦୟମଧ୍ୟରେ ଅନୁମୋଦନ କରିବ, ସେ ମୋକ୍ଷମାର୍ଗରେ ଗତି କରି ଭଗବତ୍‌ଭକ୍ତି ପାଇ ପାରିବ ॥୪୫॥

## ସତୁରି ଅଧ୍ୟାୟ

# ଶ୍ରୀକୃଷ୍ଣଙ୍କ ଦୈନନ୍ଦିନ କର୍ମ

ଶ୍ରୀ ଶୁକଦେବ କହିଲେ, ମହାରାଜ ପରିକ୍ଷିତ, ଯେତେବେଳେ ସକାଳ ହେବାକୁ ବସେ, କୁକୁଡ଼ାମାନେ ରାବନ୍ତି, ସେତେବେଳେ ଶ୍ରୀକୃଷ୍ଣଙ୍କ ପତ୍ନୀମାନେ ସେମାନଙ୍କର କଣ୍ଠଦେଶ ସ୍ୱାମୀଙ୍କ ବାହୁପାଶରୁ ମୁକ୍ତ ହୋଇଯିବା ଆଶଙ୍କାରେ କୁକୁଡ଼ାମାନଙ୍କୁ ଅଭିଶାପ ଦିଅନ୍ତି । ସେତେବେଳେ ପାରିଜାତର ସୁଗନ୍ଧରେ ଭରପୂର ପବନ ବହିବାକୁ ଲାଗେ । ଭ୍ରମରମାନେ ମଧୁର ସ୍ୱରରେ ଗୁଣୁଗୁଣୁ ହେଉଥା'ନ୍ତି । ପକ୍ଷୀମାନଙ୍କର ନିଦ ଭାଙ୍ଗିଯିବାରୁ ସେମାନେ ସ୍ତୁତିକାରୀ ବନ୍ଦିମାନଙ୍କ ପରି ଶ୍ରୀକୃଷ୍ଣଙ୍କୁ ଉଠାଇବାପାଇଁ ମଧୁର କଳରବ କରୁଥା'ନ୍ତି । ରୁକ୍ମିଣୀ ନିଜ ପ୍ରିୟତମଙ୍କର ବାହୁବନ୍ଧନରେ ରହିଥା'ନ୍ତି । ଆଲିଙ୍ଗନସୁଖ ଚାଲିଯିବା ଆଶଙ୍କାରେ ଅତି ରମଣୀୟ ବ୍ରାହ୍ମମୁହୂର୍ତ୍ତଟି ମଧ୍ୟ ତାଙ୍କପାଇଁ ଅସହ୍ୟ ହୋଇଉଠେ ॥୧-୩॥ ସେହି ବ୍ରାହ୍ମମୁହୂର୍ତ୍ତରେ ଶ୍ରୀକୃଷ୍ଣ ଉଠିପଡ଼ି ମୁହଁ, ହାତ ଆଦି ଧୋଇ ନିଅନ୍ତି ଏବଂ ପ୍ରସନ୍ନ ହୃଦୟରେ ପ୍ରକୃତିଠାରୁ ଭିନ୍ନ ପରମାତ୍ମାଙ୍କୁ ଧ୍ୟାନ କରନ୍ତି । ଏହି ପରମାତ୍ମା ହେଉଛନ୍ତି ଏକ ଓ ଅଦ୍ୱିତୀୟ, ସ୍ୱପ୍ରକାଶ, ଅନନ୍ୟ, ଅବ୍ୟୟ ଓ ସମସ୍ତପ୍ରକାର ଅବିଦ୍ୟାରୂପକ କଳୁଷରୁ ମୁକ୍ତ । ଏହି ବିଶ୍ୱର ଉତ୍ପତ୍ତି ଓ ବିନାଶର ହେତୁ । ପ୍ରକୃତି ଓ କାଳ ଆଦିଦ୍ୱାରା ଯାହାଙ୍କର ସତ୍ତା ସୂଚିତ ହୁଏ, ସେ ହେଉଛନ୍ତି ସେହି ଆନନ୍ଦରୂପ ବ୍ରହ୍ମ ॥୪-୫॥ ଏହାପରେ ସାଧୁଶ୍ରେଷ୍ଠ ଭଗବାନ୍ ଶ୍ରୀକୃଷ୍ଣ ନିର୍ମଳ ଜଳରେ ସ୍ନାନ କରି ବସ୍ତ୍ର ଓ ଉତ୍ତରୀୟ ପରିଧାନପୂର୍ବକ ଯଥାବିଧି ସନ୍ଧ୍ୟା ଉପାସନାଦି ଶେଷ କରନ୍ତି ଏବଂ ଅଗ୍ନିରେ ଆହୁତି ଦେଇ ମୌନ ଭାବରେ ଗାୟତ୍ରୀ ଜପ କରନ୍ତି ॥୬॥ ଏହାପରେ ଧୀର, ସ୍ଥିର ଓ ସଂଯତ ଭଗବାନ୍ ଶ୍ରୀକୃଷ୍ଣ ଉଦିତ ସୂର୍ଯ୍ୟଙ୍କୁ ଉପାସନା କରି ନିଜର ଅଂଶସ୍ୱରୂପ ଦେବତା, ଋଷି ଓ ପିତୃଙ୍କର ତର୍ପଣ କରନ୍ତି । ବୃଦ୍ଧମାନଙ୍କୁ ସେବା କରନ୍ତି ଓ ବ୍ରାହ୍ମଣଙ୍କୁ ବନ୍ଦନା କରନ୍ତି ॥୭॥ ଗାଈମାନଙ୍କର ଶିଙ୍ଘକୁ ସୁନାରେ ଏବଂ ଖୁରାକୁ ରୁପାରେ ଛାଉଣି କରି ସୁନ୍ଦର ବସ୍ତ୍ରାଳଙ୍କାରରେ ସଜାଇ ସେ ବ୍ରାହ୍ମଣମାନଙ୍କୁ ଦାନ କରନ୍ତି । ଏହି ସବୁ ଦୁଧିଆଳୀ ଗାଈଙ୍କର ପ୍ରଥମ ଛୁଆ ହୋଇଥାଏ । ଏହିପରି ବାଛୁରୀ ସହ ତେର ହଜାର ଚୌରାଅଶୀ ଗାଈଙ୍କୁ ପ୍ରତିଦିନ ଦାନ କଲାବେଳେ ସେ ବ୍ରାହ୍ମଣମାନଙ୍କୁ ପଟ୍ଟ ବସ୍ତ୍ର, ମୃଗଚର୍ମ ଓ ରାଶି ଆଦି ସହିତ ବହୁ ଅଳଙ୍କାର ଦେଇଥା'ନ୍ତି ॥୮-୯॥ ତା'ପରେ ନିଜ ବିଭୂତିସ୍ୱରୂପ ଗୋ-ବ୍ରାହ୍ମଣ, ଦେବତା, ବୃଦ୍ଧ ଓ ଗୁରୁଜନଙ୍କୁ ଓ ତତ୍‌ସହିତ ସମସ୍ତ ପ୍ରାଣୀଙ୍କୁ ସେ ନମସ୍କାର କରନ୍ତି ଏବଂ ମାଙ୍ଗଳିକ ଦ୍ରବ୍ୟମାନଙ୍କୁ ସ୍ପର୍ଶ କରିଥା'ନ୍ତି ॥୧୦॥

ତାପରେ ନରଲୋକର ଭୂଷଣସ୍ୱରୂପ ଭଗବାନ୍ ଶ୍ରୀକୃଷ୍ଣ ନିଜର ପୀତବସ୍ତ୍ର, କୌସ୍ତୁଭମଣି ଆଦି ଅଳଙ୍କାର, ଦିବ୍ୟମାଳା ଓ ଚନ୍ଦନ ଆଦି ଦ୍ୱାରା ନିଜକୁ ଭୂଷିତ କରନ୍ତି ॥୧୧॥ ଏହାପରେ ଘୃତ, ଦର୍ପଣ, ଗୋମାତା, ବୃଷଭ, ବ୍ରାହ୍ମଣ ଓ ଦେବବିଗ୍ରହମାନଙ୍କୁ ଦର୍ଶନ କରି ନଗରବାସୀ ଓ ଅନ୍ତଃପୁରବାସୀ ସମସ୍ତ ଲୋକଙ୍କର ଈପ୍‌ସିତ ବସ୍ତୁମାନ ସେମାନଙ୍କୁ ଦାନ କରି ଓ ଅମାତ୍ୟମାନଙ୍କୁ ମଧ୍ୟ ତଦ୍ରୂପ ଦାନଦ୍ୱାରା ସନ୍ତୁଷ୍ଟ କରି ନିଜେ ସେଥିରୁ ଆନନ୍ଦ ପାଆନ୍ତି ॥୧୨॥ ଏହାପରେ ସେ ମାଳା, ତାମ୍ବୁଳ ଓ ଚନ୍ଦନ କସ୍ତୁରୀ ଆଦି ଅଙ୍ଗରାଗକୁ ନିଜ ପାଖରେ ଥବା ବ୍ରାହ୍ମଣ, ଜ୍ଞାତି-ବନ୍ଧୁ, ମନ୍ତ୍ରୀ ଓ ରାଣୀମାନଙ୍କ ମଧ୍ୟରେ ବାଣ୍ଟି ସାରିବା ପରେ

ଯାହା ରହେ, ତାହା ନିଜେ ଗ୍ରହଣ କରନ୍ତି ॥୧୩॥ ଏହି ସମୟମଧ୍ୟରେ ସୁଗ୍ରୀବ ଆଦି ( ସୁଗ୍ରୀବ, ଶୈବ୍ୟ, ମେଘପୁଷ୍ପ ଓ ବଳାହକ) ଅଶ୍ୱମାନଙ୍କୁ ରଥରେ ଯୋଚି ସାରଥି ଶ୍ରୀକୃଷ୍ଣଙ୍କର ଅତ୍ୟାଶ୍ଚର୍ଯ୍ୟ ରଥକୁ ତାଙ୍କ ନିକଟକୁ ଆଣି ଓ ପ୍ରଣାମ କରି ତାଙ୍କ ଆଗରେ ଠିଆହୋଇଯାଏ ॥୧୪॥ ଭଗବାନ୍ ଶ୍ରୀକୃଷ୍ଣ ସାରଥିର ହାତକୁ ଧରି ସାତ୍ୟକି ଓ ଉଦ୍ଧବଙ୍କ ସହିତ ରଥରେ ଆରୋହଣ କରନ୍ତି । ଜଣାଯାଏ, ସତେ ଯେପରି ସୂର୍ଯ୍ୟ ଉଦୟାଚଳରେ ଅବସ୍ଥାନ କରୁଛନ୍ତି । ଅନ୍ତଃପୁରର ରାଣୀମାନେ ସଲଜ୍ଜ ଦୃଷ୍ଟିରେ ତାଙ୍କୁ ଚାହିଁଥା'ନ୍ତି । ଜଣାଯାଉଥାଏ ବହୁ କଷ୍ଟରେ ସତେ ଯେପରି ସେମାନେ କୃଷ୍ଣଙ୍କୁ ବିଦାୟ ଦେଉଛନ୍ତି । ହସ ହସ ମୁହଁରେ ସମସ୍ତଙ୍କ ମନକୁ ହରଣ କରି କରି ସେ ପ୍ରସ୍ଥାନ କରନ୍ତି ॥୧୫-୧୬॥ ପରିକ୍ଷିତ, ଯାଦବମାନଙ୍କଦ୍ୱାରା ପରିବେଷ୍ଟିତ ହୋଇ ସେ ସୁଧର୍ମା ସଭାରେ ପ୍ରବେଶ କରନ୍ତି । ଏହି ସଭାରେ ପ୍ରବେଶ କଲେ ଶୋକ ମୋହ ଆଦି (ଶୋକ, ମୋହ, ଜରା, ମୃତ୍ୟୁ, କ୍ଷୁଧା ଓ ପିପାସା) ଛ'ଟି ଯାକ କଷ୍ଟ ରହେ ନାହିଁ ॥୧୭॥ ଏହି ସଭାରେ ଉତ୍ତମ ଆସନରେ ଯଦୁଶ୍ରେଷ୍ଠ ଶ୍ରୀକୃଷ୍ଣ ବିରାଜମାନ ହେବାବେଳେ ସଭାର ଚତୁର୍ଦ୍ଦିଗ ଉଦ୍‌ଭାସିତ ହୋଇଉଠେ । ନରଶ୍ରେଷ୍ଠ ଯଦୁବୀରମାନଙ୍କ ମଧ୍ୟରେ ରହି ଭଗବାନ୍ ଶ୍ରୀକୃଷ୍ଣ ତାରକାବେଷ୍ଟିତ ଚନ୍ଦ୍ରମାଙ୍କ ପରି ଶୋଭାପାଆନ୍ତି ॥୧୮॥ ମହାରାଜ ପରିକ୍ଷିତ, ସେତେବେଳେ ସେଠାରେ ଥିବା ବିଦୂଷକମାନେ ନାନାପ୍ରକାର ହାସ୍ୟକର କଥା କହି ଶ୍ରୀକୃଷ୍ଣଙ୍କର ସନ୍ତୋଷବିଧାନ କରନ୍ତି । ମୃଦଙ୍ଗ, ବୀଣା, ମୁରଜ, ବଂଶୀ, କରତାଳ ଓ ଶଙ୍ଖ ଧ୍ୱନିର ତାଳେ ତାଳେ ନାଟ୍ୟଗୁରୁ ଓ ନର୍ତ୍ତକୀମାନେ ପୃଥକ୍ ପୃଥକ୍ ଭାବରେ ତାଣ୍ଡବ ଆଦି ବିଭିନ୍ନ ନୃତ୍ୟ ପରିବେଷଣ କରନ୍ତି ଏବଂ ସୂତ, ମାଗଧ ଓ ବନ୍ଦିମାନେ ସ୍ତୁତି କରିବାକୁ ଲାଗନ୍ତି ॥୧୯-୨୦॥ ସଭାରେ ବସିଥିବା ବେଦଜ୍ଞ ବ୍ରାହ୍ମଣମାନେ ବେଦମନ୍ତ୍ରମାନ ବ୍ୟାଖ୍ୟା କରିବା ସଙ୍ଗେ ସଙ୍ଗେ ପୁଣ୍ୟଶ୍ଳୋକ ପ୍ରାଚୀନ ରାଜାମାନଙ୍କର କଥା ବର୍ଣ୍ଣନା କରନ୍ତି ॥୨୧॥

ରାଜା ପରିକ୍ଷିତ, କୃଷ୍ଣ ସଭାରେ ବସିଥିବା ବେଳେ ଦିନେ ଜଣେ ସୁଦର୍ଶନ ପୁରୁଷ ଆସି ସେଠାରେ ଉପସ୍ଥିତ ହେଲେ । ପ୍ରତିହାରୀମାନେ ଶ୍ରୀକୃଷ୍ଣଙ୍କର ଅନୁମତି ନେଇ ତାଙ୍କୁ ଆଣି ସଭାରେ ଉପସ୍ଥିତ କରାଇଲେ । ସେ ପରମେଶ୍ୱର କୃଷ୍ଣଙ୍କୁ ନମସ୍କାର ହୋଇ କୃତାଞ୍ଜଳିପୂର୍ବକ ଜରାସନ୍ଧଦ୍ୱାରା ବନ୍ଦି ହୋଇଥିବା ରାଜାମାନଙ୍କର ଦୁଃଖ ଜଣାଇଲେ ॥୨୨-୨୩॥ ଜରାସନ୍ଧର ଦିଗ୍‌ବିଜୟ ସମୟରେ ଯେଉଁ ରାଜାମାନେ ତାହାର ବଶ୍ୟତା ସ୍ୱୀକାର ନ କଲେ, ସେହି କୋଡ଼ିଏ ହଜାର ରାଜାଙ୍କୁ ବଳପୂର୍ବକ ଆଣି ନିଜର ରାଜଧାନୀ ଗିରିବ୍ରଜରେ ସେ ବନ୍ଦି କରିରଖିଛି ॥୨୪॥ ରାଜାମାନେ ନିବେଦନ କରିଛନ୍ତି, ହେ କୃଷ୍ଣ, ହେ ଅମିତତେଜା, ହେ ଶରଣାଗତଙ୍କର ଭୟଭଞ୍ଜନକାରୀ, ସଂସାରଭୟରେ ଆମେମାନେ ଭୀତ ଏବଂ ଆମର ବୁଦ୍ଧି ବିଚଳିତ ହେଉଛି । ଆମେ ଆପଣଙ୍କର ଶରଣାପନ୍ନ ହେଉଛୁ ॥୨୫॥ ଭଗବାନ୍, ଆପଣଙ୍କ ପ୍ରଦର୍ଶିତ ମଙ୍ଗଳମୟ ସ୍ୱଧର୍ମକୁ ଭୁଲିଯାଇ ଜୀବମାନେ ବିଭିନ୍ନ ଅପକର୍ମରେ ଲାଗିରହନ୍ତି । ସେମାନେ ଭାବନ୍ତି, ଚିରକାଳ ଜୀବିତ ରହିବେ । କିନ୍ତୁ ଆପଣ କାଳରୂପରେ ସେମାନଙ୍କର ଜୀବିତାଶାକୁ ହଠାତ୍ ଛେଦନ କରିଦଅନ୍ତି । ସେହି କାଳରୂପୀ ଆପଣଙ୍କୁ ଆମେ ନମସ୍କାର କରୁଛୁ ॥୨୬॥ ଜଗଦୀଶ୍ୱର, ଆପଣ ସାଧୁମାନଙ୍କୁ ରକ୍ଷା କରିବାପାଇଁ ଓ ଦୁଷ୍ଟଙ୍କୁ ଦଣ୍ଡ ଦେବାପାଇଁ ନିଜର କଳାରେ ଅବତୀର୍ଣ୍ଣ ହୋଇଛନ୍ତି । କିନ୍ତୁ କେହି କେହି ଆପଣଙ୍କ ନିର୍ଦ୍ଦେଶକୁ ଅବଜ୍ଞା କରି ଚାଲିଛନ୍ତି ଏବଂ ଅନ୍ୟ କେତେକେ ଆପଣଙ୍କଦ୍ୱାରା ରକ୍ଷିତ ହୋଇ କୃତକର୍ମର ଫଳ ସ୍ୱରୂପ ଦୁଃଖ ଭୋଗ କରୁଛନ୍ତି । ଏହା କିପରି ଘଟୁଛି ଆମେ ଜାଣିପାରୁନାହୁଁ ॥୨୭॥ ପରମେଶ୍ୱର, ଆମେମାନେ ବର୍ତ୍ତମାନ ମୃତବ୍ୟକ୍ତି ପରି ଅତିଶୟ ଭୟଭୀତ ଅବସ୍ଥାରେ ଦେହର ଭାରକୁ ବହନ କରି ଚାଲିଛୁ । ରାଜପଦର ସୁଖ ସ୍ୱପ୍ନପରି, ଯେହେତୁ ଏହା ବିଷୟ ସାଧ୍ୟ; ଅନିତ୍ୟ ଗୃହ, ପୁତ୍ର, କଳତ୍ର ଆଦି ଚିନ୍ତାରେ ଆମେ ପରାଧୀନ । ନିଷ୍କାମ ଭାବରେ ଆପଣଙ୍କୁ ଭଜନ କଲେ ଯେଉଁ ସୁଖ ମିଳିବାର କଥା, ଆମେମାନେ ତାହା ଛାଡ଼ି ଆପଣଙ୍କ ମାୟାରେ ମୋହିତ ହୋଇ ଅତି ଦୁଃଖରେ କାଳାତିପାତ କରୁଛୁ ॥୨୮॥ ପ୍ରଭୁ, ଆପଣଙ୍କ ଚରଣଯୁଗଳ ପ୍ରଣତ ବ୍ୟକ୍ତିଙ୍କ ଶୋକ ହରଣ କରେ । ଆମେମାନେ ବର୍ତ୍ତମାନ ବନ୍ଦି; ଜରାସନ୍ଧ ନାମକ କର୍ମପାଶରୁ ଆପଣ ଆମକୁ ମୁକ୍ତ କରନ୍ତୁ । ଜରାସନ୍ଧ ଏକାକୀ ଦଶ ହଜାର ହାତୀର ବଳ ଧାରଣ କରିଚି । ପଶୁରାଜ ସିଂହ

ଯେପରି ନିଜ ଗୁହାରେ ମେଷମାନଙ୍କୁ ଅବରୁଦ୍ଧ କରି ରଖେ, ସେହିପରି ଜରାସନ୍ଧ ବହୁ ରାଜାଙ୍କୁ ଅବରୁଦ୍ଧ କରି ରଖିଛି । ଆପଣଙ୍କର ସୁଦର୍ଶନ ଚକ୍ର ସର୍ବଦା ଉଦ୍ୟତ (ଖଳମାନଙ୍କୁ ଦଣ୍ଡ ଦେବାପାଇଁ) । ସେହି ଜରାସନ୍ଧ ଆପଣଙ୍କ ସହିତ ସତରବାର ଯୁଦ୍ଧ କରି ପରାଜିତ ହୋଇଛି । ଆପଣ ଅପରିମିତ ବଳଶାଳୀ ହେଲେ ମଧ୍ୟ କୌଣସି ବିଶେଷ ଲୋକକଲ୍ୟାଣପାଇଁ ତାକୁ ଛାଡ଼ି ପଳାୟନ କରିଥିଲେ । ତେଣୁ ଆପଣଙ୍କୁ ଜୟ କରିଛି ବୋଲି ଭାବି ସେ ଅତିଶୟ ଗର୍ବସ୍ଫୀତ ହୋଇ ଆମମାନଙ୍କୁ ଉତ୍ପୀଡ଼ିତ କରୁଛି । ହେ ଅଜେୟ, ଆପଣ ଏହାର ଉଚିତ ବ୍ୟବସ୍ଥା କରନ୍ତୁ ।।୨୯-୩୦।। ଏହିପରି ରାଜାମାନଙ୍କର ନିବେଦନ ଜଣାଇ ଦୂତ କହିଲେ, ପ୍ରଭୁ, ଜରାସନ୍ଧ ଦ୍ୱାରା ବନ୍ଦି ହୋଇଥିବା ରାଜାମାନେ ଆପଣଙ୍କୁ ଦର୍ଶନ କରିବାପାଇଁ ଆପଣଙ୍କ ପାଦପଦ୍ମରେ ଶରଣାପନ୍ନ ହୋଇଛନ୍ତି । ଆପଣ ସେହି ଦୁଃଖାର୍ତ୍ତ ରାଜାମାନଙ୍କର ମଙ୍ଗଳବିଧାନ କରନ୍ତୁ ।।୩୧।।

ଶ୍ରୀ ଶୁକଦେବ କହିଲେ, ପରିକ୍ଷିତ, ରାଜଦୂତ ଏହିପରି କହୁଥିବା ସମୟରେ ପିଙ୍ଗଳବର୍ଣ୍ଣ ଜଟାଭାର ଧାରଣ କରିଥିବା ପରମ ତେଜୀୟାନ୍ ଦେବର୍ଷି ନାରଦ ସୂର୍ଯ୍ୟପରି ସେଠାରେ ଆବିର୍ଭୂତ ହେଲେ । ତାଙ୍କୁ ଦେଖି ସମସ୍ତ ଲୋକପାଳଙ୍କର ଈଶ୍ୱର ଭଗବାନ୍ ଶ୍ରୀକୃଷ୍ଣ ସଭାସଦ୍ ଓ ଅନୁଗାମୀଙ୍କ ସହିତ ଆସନରୁ ଉଠିପଡ଼ି ମୁଣ୍ଡ ନୁଆଇଁ ପ୍ରଣାମ କଲେ ।।୩୨-୩୩।। ଦେବର୍ଷି ନାରଦଙ୍କୁ ଉପଯୁକ୍ତ ଆସନ ଦେଇ ଏବଂ ଶ୍ରଦ୍ଧାରେ ଯଥାବିଧି ସତ୍କାର କରି ଭଗବାନ୍ ତାଙ୍କୁ ସନ୍ତୁଷ୍ଟ କଲେ । ତା'ପରେ ପ୍ରିୟ ମଧୁର ବାକ୍ୟରେ ପଚାରିଲେ, ବ୍ରହ୍ମନ୍, ଆପଣ ତ୍ରିଲୋକରେ ଭ୍ରମଣ କରୁଛନ୍ତି । କାହାର କୌଣସିଠାରେ କିଛି ଭୟ ନାହିଁ ତ ? ଆପଣଙ୍କଠାରୁ ସମ୍ବାଦ ପାଇ ଆମେ ନିଶ୍ଚୟ ଖୁସି ହେବୁ ।।୩୪-୩୫।। ଈଶ୍ୱରସୃଷ୍ଟ ଏହି ଲୋକସମୂହରେ ଆପଣଙ୍କୁ ଅଜଣା କିଛି ନାହିଁ । ବର୍ତ୍ତମାନ ପାଣ୍ଡବମାନେ କ'ଣ କରିବାକୁ ଚାହୁଁଛନ୍ତି, ତାହା ମୁଁ ଆପଣଙ୍କୁ ପଚାରିବାକୁ ଚାହୁଁଛି ।।୩୬।। ନାରଦ କହିଲେ, ହେ ମହିମାମୟ, ଆପଣଙ୍କ କୃପାରୁ ଆପଣଙ୍କର ବହୁବିଧ ଦୁରନ୍ତ ମାୟାକୁ ମୁଁ ଦର୍ଶନ କରିଛି । ବିଭୁ, ବିଶ୍ୱସ୍ରଷ୍ଟା ବ୍ରହ୍ମା ମଧ୍ୟ ଆପଣଙ୍କ ମାୟାରେ ମୋହିତ ଓ ନିୟନ୍ତ୍ରିତ ହୁଅନ୍ତି । ଅଗ୍ନି ପ୍ରଚ୍ଛନ୍ନ ଭାବରେ ରହିଥିବା ପରି ଆପଣ ଏହି ଚରାଚର ବିଶ୍ୱରେ ନିଜ ଶକ୍ତିରେ ସର୍ବଦା ପ୍ରଚ୍ଛନ୍ନରୂପେ ବିଦ୍ୟମାନ । ତେଣୁ ଆପଣଙ୍କର ମୋତେ ଏପରି ପ୍ରଶ୍ନ କରିବା ବିଚିତ୍ର ଜଣାଯାଉଛି । ବାହାରୁ ଯେଉଁ ବିଶ୍ୱକୁ ଆମେ ଦେଖି ପାରୁଛୁ, ତାହା ବାହାରୁ ମାତ୍ର ପ୍ରତୀୟମାନ ହେଉଛି ଏବଂ ଆପଣ ନିଜର ମାୟା ଶକ୍ତିଦ୍ୱାରା ସେହି ବିଶ୍ୱକୁ ସୃଷ୍ଟି କରନ୍ତି ଓ ସଂହାର କରନ୍ତି । ଅତଏବ ଆପଣଙ୍କର ଅଭିପ୍ରାୟ କ'ଣ ଏବଂ କ'ଣ ଆପଣ କରିବାକୁ ଚାହାନ୍ତି, ତାହା ଜାଣିବାପାଇଁ କେହି ସମର୍ଥ ନୁହେଁ । ତେଣୁ ଜୀବରୂପରୁ ଭିନ୍ନ ଆପଣଙ୍କର ଅଚିନ୍ତ୍ୟ ସ୍ୱରୂପକୁ ମୁଁ ନମସ୍କାର କରୁଛି ।।୩୭-୩୮।। ଏହି ସଂସାରଚକ୍ରରେ ଭ୍ରମୁଥିବା ଜୀବ ତା'ର ଅନର୍ଥରୂପୀ ଶରୀରରୁ କିପରି ମୁକ୍ତ ହେବ, ତାହା ସେ ଜାଣେ ନାହିଁ । ସେହି ଜୀବର ମୁକ୍ତିପାଇଁ ଆପଣ ନରଲୀଳାରେ ଅବତୀର୍ଣ୍ଣ ହୋଇ ନିଜର ଯଶରୂପକ ପ୍ରଦୀପକୁ ପ୍ରଜ୍ୱଳନ କରୁଛନ୍ତି । ମୁଁ ଆପଣଙ୍କୁ ଶରଣାପନ୍ନ ହେଉଛି । ତଥାପି ହେ ପରମାତ୍ମା, ନରଲୋକରେ ଲୀଳା କରୁଥିବା ଆପଣଙ୍କର ପିଉସୀପୁଅ ଭାଇ ଭକ୍ତ ଯୁଧିଷ୍ଠିର ଯାହା କରିବାକୁ ଚାହୁଁଛନ୍ତି, ତାହା ମୁଁ ଆପଣଙ୍କୁ ଶୁଣାଇବାକୁ ଯାଉଛି ।।୩୯-୪୦।। ରାଜା ଯୁଧିଷ୍ଠିର ପରମେଷ୍ଠି ପଦ ପାଇବା କାମନାରେ ଏକ ମହାନ୍ ରାଜସୂୟ ଯଜ୍ଞ କରି ଆପଣଙ୍କୁ ପୂଜା କରିବାପାଇଁ ଚାହୁଁଛନ୍ତି । ଆପଣ ତାହା ଅନୁମୋଦନ କରନ୍ତୁ । ହେ ଦେବ, ସେହି ଶ୍ରେଷ୍ଠ ଯଜ୍ଞରେ ଆପଣଙ୍କୁ ଦେଖିବାପାଇଁ ଦେବତାମାନେ ଓ ଯଶସ୍ୱୀ ରାଜାମାନେ ମଧ୍ୟ ସେଠାକୁ ଆସିବେ । ପରମେଶ୍ୱର, ପରଂବ୍ରହ୍ମସ୍ୱରୂପ ଆପଣଙ୍କ ନାମ ଓ ଗୁଣାବଳୀ ଶ୍ରବଣ, କୀର୍ତ୍ତନ ଓ ଧ୍ୟାନକରିବା ଫଳରେ ଚଣ୍ଡାଳମାନେ ମଧ୍ୟ ପବିତ୍ର ହୋଇଯାଆନ୍ତି । ତେଣୁ ଆପଣଙ୍କ ଦର୍ଶନ ଓ ସ୍ପର୍ଶଦ୍ୱାରା ଅନ୍ୟମାନେ ଯେ ପବିତ୍ର ହୋଇଯିବାର ଆଶା ରଖିଛନ୍ତି, ସେଥିରେ ଆଶ୍ଚର୍ଯ୍ୟ କ'ଣ ? ହେ ଭୁବନ-ମଙ୍ଗଳ, ଆପଣଙ୍କ ଯଶ ଓ କୀର୍ତ୍ତି ଆକାଶ, ପାତାଳ ଓ ଏହି ଭୂମଣ୍ଡଳରେ ସର୍ବତ୍ର ବିସ୍ତାରିତ । ସ୍ୱର୍ଗରେ ମନ୍ଦାକିନୀ, ମର୍ତ୍ତ୍ୟରେ ଗଙ୍ଗା ଓ ପାତାଳରେ ଭୋଗବତୀ ନାମରେ ବିଖ୍ୟାତ ଆପଣଙ୍କ ପାଦୋଦକ ସମଗ୍ର ବିଶ୍ୱକୁ ପବିତ୍ର କରୁଛି ।।୪୧-୪୪।। ଶ୍ରୀ ଶୁକଦେବ କହିଲେ, ପରିକ୍ଷିତ, ସେତେବେଳେ ଯାଦବମାନେ ଜରାସନ୍ଧକୁ ଜୟ

କରିବାକୁ ଇଚ୍ଛା କରି ନାରଦଙ୍କ କଥା ପ୍ରତି ଧ୍ୟାନ ଦେଲେ ନାହିଁ । କିନ୍ତୁ ଭଗବାନ ଶ୍ରୀକୃଷ୍ଣ ଅଳ୍ପ ହସି ମଧୁର ବାକ୍ୟରେ ଭକ୍ତ ଉଦ୍ଧବଙ୍କୁ କହିଲେ-- ॥୪୫॥

ଉଦ୍ଧବ, ତୁମେ ହେଉଛ ଆମମାନଙ୍କର ସୁହୃଦ, ଶ୍ରେଷ୍ଠ ଚକ୍ଷୁସ୍ୱରୂପ ଏବଂ ମନ୍ତ୍ରଣାରେ ନିପୁଣ; ତୁମର କଥା ପ୍ରତି ମୋର ଶ୍ରଦ୍ଧା ଅଛି । ବର୍ତ୍ତମାନ କ'ଣ କରିବା, ତୁମେ କହ ॥୪୬॥ ମହାରାଜ ପରିକ୍ଷିତ, ଉଦ୍ଧବ ଜାଣନ୍ତି ଯେ ଭଗବାନ୍ ଶ୍ରୀକୃଷ୍ଣ ସର୍ବଜ୍ଞ । ସେ ଅଜ୍ଞ ବ୍ୟକ୍ତି ପରି ତାଙ୍କ ସହିତ ମନ୍ତ୍ରଣା କରିବାକୁ ଚାହୁଁଥିବାର ଦେଖି ସେ ତାଙ୍କ ଆଜ୍ଞାକୁ ଶିରୋଧାର୍ଯ୍ୟ କଲେ ଓ ପ୍ରତ୍ୟୁତ୍ତର ଦେବାକୁ ଲାଗିଲେ ॥୪୭॥

## ଏକସ୍ତରି ଅଧ୍ୟାୟ

# ଶ୍ରୀକୃଷ୍ଣଙ୍କ ଇନ୍ଦ୍ରପ୍ରସ୍ଥ ଯାତ୍ରା

ମହାମତି ଉଦ୍ଧବ ଦେବର୍ଷି ନାରଦଙ୍କ କଥା, ସଭାସଦମାନଙ୍କ ମତ ଓ ଶ୍ରୀକୃଷ୍ଣଙ୍କ ମତ କ'ଣ ହୋଇପାରେ ତାହା ଅନୁମାନ କରି ନିଜର ମତ ପ୍ରକାଶ କଲେ ॥୧॥ ଉଦ୍ଧବ କହିଲେ, ଦେବର୍ଷି ନାରଦଙ୍କ କହିବା ଅନୁସାରେ ଯଜ୍ଞ କରିବାକୁ ଯାଉଥିବା ଆପଣଙ୍କର ପିଉସୀପୁଅ ଭାଇ ଯୁଧିଷ୍ଠିରଙ୍କୁ ଆପଣଙ୍କର ସାହାଯ୍ୟ କରିବା ଉଚିତ, ସେହିପରି ଶରଣାର୍ଥୀ ରାଜାମାନଙ୍କୁ ମଧ୍ୟ ରକ୍ଷାକରିବା ଉଚିତ ॥୨॥ ବିଭୁ, ସମସ୍ତଙ୍କୁ ଜୟ କରି ଚକ୍ରବର୍ତ୍ତୀ ରାଜା ହେବାପରେ ରାଜସୂୟ ଯଜ୍ଞ କରାଯାଏ । ତେଣୁ ଜରାସନ୍ଧଙ୍କୁ ମଧ୍ୟ ଜୟ କରିବାକୁ ହେବ । ଏହାଦ୍ୱାରା ଦୁଇଟିଯାକ କାର୍ଯ୍ୟ ସାଧିତ ହୋଇପାରିବ ବୋଲି ମୋର ମତ ॥୩॥ ଗୋବିନ୍ଦ, ଏହାଦ୍ୱାରା ଆମର ମଧ୍ୟ ଏକ ବଡ଼ ଲାଭ ହେବ । ଯାଦବମାନଙ୍କର ଶତ୍ରୁ ଜରାସନ୍ଧର ପରାଜୟ ହେଲେ ଏବଂ ବନ୍ଦି ରାଜାମାନେ ମୁକ୍ତ ହେଲେ ଆପଣଙ୍କର ଯଶ ପ୍ରସାରିତ ହେବ ॥୪॥ ରାଜା ଜରାସନ୍ଧ ଶହ ଶହ ହସ୍ତୀର ବଳ ଧାରଣ କରିଛି । ବଳବାନ୍‌ମାନଙ୍କ ମଧ୍ୟରେ ତା'ର ସମକକ୍ଷ କେବଳ ଭୀମଙ୍କ ଛଡ଼ା କେହି ତାକୁ ପରାସ୍ତ କରି ପାରିବେ ନାହିଁ । କେବଳ ଦ୍ୱନ୍ଦ୍ୱଯୁଦ୍ଧରେ ତାକୁ ଜିଣି ହେବ । ଶତ ଅକ୍ଷୌହିଣୀ ସୈନ୍ୟ ନେଇ ସେ ଯୁଦ୍ଧ କରିବାକୁ ଆସିଲେ ତାକୁ ପରାସ୍ତ କରି ହେବ ନାହିଁ । ଜରାସନ୍ଧ ବ୍ରାହ୍ମଣମାନଙ୍କର ଭକ୍ତ । କେହି ବ୍ରାହ୍ମଣ ତାକୁ କିଛି ମାଗିଲେ ସେ ମନା କରେ ନାହିଁ । ବ୍ରାହ୍ମଣବେଶ ଧାରଣ କରି ଭୀମସେନ ଯଦି ତା' ପାଖକୁ ଯାଇ ଯୁଦ୍ଧଭିକ୍ଷା କରନ୍ତି, ତା'ହେଲେ ଆପଣଙ୍କ ସମ୍ମୁଖରେ ଭୀମଙ୍କ ସହ ଦ୍ୱନ୍ଦ୍ୱଯୁଦ୍ଧରେ ହିଁ ସେ ଯେ ନିହତ ହେବ, ଏଥିରେ ସନ୍ଦେହ ନାହିଁ ॥୫-୭॥ ଆପଣ ନିରାକାର ପରମେଶ୍ୱର । ବିଶ୍ୱର ସୃଷ୍ଟିପାଇଁ ଆପଣ କାଳରୂପରେ ବ୍ରହ୍ମାଙ୍କୁ ଏବଂ ପ୍ରଳୟପାଇଁ ଶଙ୍କରଙ୍କୁ ସୃଷ୍ଟି କରିଥା'ନ୍ତି । କର୍ତ୍ତା ଆପଣ । ସେମାନେ ନିମିତ୍ତ ମାତ୍ର ( ଜରାସନ୍ଧବଧ ପାଇଁ ଭୀମ ନିମିତ୍ତମାତ୍ର ହେବେ) ॥୮॥ ରାଜାମାନଙ୍କର ଶତ୍ରୁ ଜରାସନ୍ଧକୁ ବଧ କରି ସେମାନଙ୍କୁ ବନ୍ଦୀଶାଳାରୁ ମୁକ୍ତ କଲେ ତାଙ୍କ ରାଣୀମାନେ ନିଜ ନିଜ ମହଲରେ ଆପଣଙ୍କ ବିମଳ ଯଶ ଗାନକରିବେ । ଆପଣ ପୂର୍ବରୁ ଏହିପରି ଗଜେନ୍ଦ୍ରକୁ ଉଦ୍ଧାର କରିଥିଲେ । ସୀତାଙ୍କୁ ଉଦ୍ଧାର କରିଥିଲେ । କଂସଠାରୁ ନିଜର ପିତାମାତାଙ୍କୁ ଉଦ୍ଧାର କରିଥିଲେ ଏବଂ ଗୋପ-ଗୋପୀମାନଙ୍କୁ ବହୁ ବିପଦରୁ ଉଦ୍ଧାର କରିଥିଲେ । ଆପଣଙ୍କର ଶରଣାଗତ ମୁନିମାନେ ଏବଂ ଆମେ ଆପଣଙ୍କର ଏହି ପବିତ୍ର ଲୀଳା ଗାନ କରିଥାଉ ॥୯॥ ହେ କୃଷ୍ଣ, ଜରାସନ୍ଧବଧ ହେଉଛି ବହୁ ଦୃଷ୍ଟିରୁ କାମ୍ୟ । ଜରାସନ୍ଧର ପାପଫଳରୁ ହେଉ ବା ରାଜାମାନଙ୍କର ପୁଣ୍ୟଫଳରୁ ହେଉ, ତାର ବଧଦ୍ୱାରା ରାଜସୂୟଯଜ୍ଞ ସମ୍ପନ୍ନ ହୋଇପାରିବ । ଏହା ମଧ୍ୟ ଆପଣଙ୍କର ମତ ହେବ ବୋଲି ମୁଁ ଭାବୁଛି ॥୧୦॥ ଶ୍ରୀ ଶୁକଦେବ କହିଲେ, ପରୀକ୍ଷିତ, ଉଦ୍ଧବଙ୍କର ଏହି ପରାମର୍ଶକୁ ସବୁଦୃଷ୍ଟିରୁ ମଙ୍ଗଳକର ଏବଂ ଯୁକ୍ତିଯୁକ୍ତ ମନେ କରି ଦେବର୍ଷି ନାରଦ, ଶ୍ରୀକୃଷ୍ଣ ଓ ଯଦୁବୃଦ୍ଧମାନେ ତାହା ଅନୁମୋଦନ କଲେ ॥୧୧॥

ତା'ପରେ ଦେବକୀନନ୍ଦନ ଭଗବାନ୍, ନିଜ ଗୁରୁଜନମାନଙ୍କର ଅନୁମତି ନେଇ ଇନ୍ଦ୍ରପ୍ରସ୍ଥଯାତ୍ରା ପାଇଁ ପ୍ରସ୍ତୁତ ହେଲେ ଏବଂ ସାରଥି ଦାରୁକ ଓ ଜୈତ୍ର ଆଦି ନିଜର ସେବକମାନଙ୍କୁ ଏଥିପାଇଁ ଆଦେଶ ଦେଲେ ॥୧୨॥ ଏହାପରେ ଶ୍ରୀକୃଷ୍ଣ ଯାଦବମାନଙ୍କ ରାଜା ଉଗ୍ରସେନଙ୍କର ଓ ବଳରାମଙ୍କର ଅନୁମତି ନେଲେ । ପତ୍ନୀମାନଙ୍କ ସହିତ ନିଜ ପୁତ୍ରମାନଙ୍କୁ ଆଗରୁ ଇନ୍ଦ୍ରପ୍ରସ୍ଥ ପଠାଇଦେଇ ପରେ ଦାରୁକ ଆଣିଥିବା ଗରୁଡ଼ଧ୍ୱଜ ରଥରେ ଆରୋହଣ କଲେ ॥୧୩॥ ଅନନ୍ତର ରଥାରୋହୀ, ଗଜାରୋହୀ, ଅଶ୍ୱାରୋହୀ ଓ ପଦାତି --ଏହି ଚତୁରଙ୍ଗ ବଳର ଏକ ବିଶାଳ ସେନାଦ୍ୱାରା ପରିବେଷ୍ଟିତ ହୋଇ ସେ ପ୍ରସ୍ଥାନ କଲେ । ମୃଦଙ୍ଗ, ଭେରୀ, ଢୋଲ, ଶଙ୍ଖ, ଶିଙ୍ଗା ଆଦି ବାଦ୍ୟର ଧ୍ୱନିଦ୍ୱାରା ଦିଗ୍‌ବିଦିଗ୍ କମ୍ପିତ ହେଲା ॥୧୪॥ କୃଷ୍ଣଙ୍କର ରାଣୀମାନେ ଯେଉଁ ସୁବର୍ଣ୍ଣ-ଶିବିକା ମାନଙ୍କରେ ଯାତ୍ରା କଲେ, ତାହା ମଧ୍ୟରୁ ଅନେକ ଅଶ୍ୱଚାଳିତ ଥିଲା ଏବଂ ଅବଶିଷ୍ଟ ଶିବିକା ବାହକମାନେ ନେଉଥିଲେ । ତାହାସବୁ ଢାଲ ତରବାରି ଧରିଥିବା ସୈନ୍ୟମାନଙ୍କଦ୍ୱାରା ସୁରକ୍ଷିତ ଥିଲା । ରାଣୀମାନେ ଉତ୍ତମ ବସ୍ତ୍ର, ଅଳଙ୍କାର, ଅଙ୍ଗରାଗ ଓ ମାଳା ଆଦି ପରିଧାନ କରିଥିଲେ । ନିଜ ନିଜ ସନ୍ତାନମାନଙ୍କସହ ସେମାନେ କୃଷ୍ଣଙ୍କୁ ଅନୁଗମନ କଲେ । ସେହିପରି କୃଷ୍ଣଙ୍କ ଅନୁଗାମୀଙ୍କର ସ୍ତ୍ରୀମାନେ ଓ ବାରାଙ୍ଗନାମାନେ ବେଶଭୂଷା ହୋଇ ଖସ୍‌ଖସ୍ କୁଡ଼ିଆ, ବହୁ ପ୍ରକାର ତମ୍ବୁ, କନାଟ, କମ୍ବଳ, ଚାଦର, ବିଛଣା ଓ ଅନ୍ୟାନ୍ୟ ଗୃହସାମଗ୍ରୀ, ମଣିଷ, ଓଟ, ବଳଦ, ମଇଁଷି, ଗଧ, ଖଚର ଓ ଶଗଡ଼ ଉପରେ ଲଦି ନିଜେ ନିଜେ ପାଲିଙ୍କି - ଓଟ-ଗଧ-ଗୋରୁ-ମହିଷ-ଘୋଡ଼ାଗାଡ଼ିମାନଙ୍କରେ ବା ହାତୀମାନଙ୍କ ଉପରେ ବସି ଚତୁର୍ଦ୍ଦିଗକୁ ଖେଦି ଚାଲିଥିଲେ ॥୧୫-୧୬॥ ଏହି ବିଶାଳ ସେନାକୁ ଏକ ସମୁଦ୍ର ସହିତ ତୁଳନା କରାଯାଇପାରେ । ତିମି, ତିମିଙ୍ଗିଳ ଓ ଲହଡ଼ିମାନଙ୍କଦ୍ୱାରା ବିକ୍ଷୁବ୍ଧ ସମୁଦ୍ର ପରି ପତାକା, ଛତ୍ର, ଚାମର ଆଦି ଉଡ଼ାଇ ଓ ସୂର୍ଯ୍ୟକିରଣରେ ଝଟକୁଥିବା ଅସ୍ତ୍ର, ଶସ୍ତ୍ର, ବସ୍ତ୍ର, ଅଳଙ୍କାର, ମୁକୁଟ, କବଚ ଆଦି ଧାରଣ କରି ଚାଲିଥିବା ଏହି ବିଶାଳ ସେନାର କୋଳାହଳରେ ଚତୁର୍ଦ୍ଦିଗ ପ୍ରକମ୍ପିତ ହେଉଥିଲା ॥୧୭॥ ଦେବର୍ଷି ନାରଦ ଶ୍ରୀକୃଷ୍ଣଙ୍କର ସିଦ୍ଧାନ୍ତ ଶୁଣି ଓ ତାଙ୍କଦ୍ୱାରା ସମ୍ମାନିତ ହୋଇ ଅତିଶୟ ଆନନ୍ଦିତ ହେଲେ । କୃଷ୍ଣଙ୍କର ଦର୍ଶନରେ ତାଙ୍କ ସମସ୍ତ ଇନ୍ଦ୍ରିୟ ଆନନ୍ଦରେ ଆପ୍ଳୁତ ହୋଇଥିଲା । ଏବେ ସେ ତାଙ୍କଠାରୁ ବିଦାୟ ନେଇ ଆକାଶ ମାର୍ଗରେ ଯାତ୍ରା କଲେ । କିନ୍ତୁ ଯିବାବେଳେ ଶ୍ରୀକୃଷ୍ଣଙ୍କର ଦିବ୍ୟରୂପକୁ ହୃଦୟରେ ଧାରଣ କରିଥିଲେ ॥୧୮॥ ରାଜାମାନେ ପଠାଇଥିବା ଦୂତଙ୍କୁ ଭଗବାନ୍ ଶ୍ରୀକୃଷ୍ଣ ମଧୁର ସ୍ୱରରେ ସୂଚନା ଦେଇ କହିଲେ, ଦୂତ, ଭୟ କର ନାହିଁ, ତୁମମାନଙ୍କର ମଙ୍ଗଳ ହେବ । ମୁଁ ଜରାସନ୍ଧକୁ ନିଶ୍ଚୟ ବଧ କରିବି । ଭଗବାନ୍ ଶ୍ରୀକୃଷ୍ଣ ଏହିପରି କହିବାରୁ ଦୂତ ରାଜାମାନଙ୍କ ନିକଟରେ ଉପସ୍ଥିତ ହୋଇ ସେମାନଙ୍କୁ ସମସ୍ତ ବିଷୟ ଜଣାଇଲା । ରାଜାମାନେ ମଧ୍ୟ କାରାଗାରରୁ ମୁକ୍ତିଲାଭ ଆଶାରେ କୃଷ୍ଣଙ୍କ ଦର୍ଶନକୁ ଅପେକ୍ଷା କରି ରହିଲେ ॥୧୯-୨୦॥

ଭଗବାନ୍ ଶ୍ରୀକୃଷ୍ଣ ଆନର୍ତ୍ତ, ସୌବୀର, ମରୁଦେଶ, କୁରୁକ୍ଷେତ୍ର ଏବଂ ବାଟରେ ପଡ଼ିଥିବା ପର୍ବତ, ନଦୀ, ପୁର, ଗ୍ରାମ, ଗୋପାଳପଲ୍ଲୀ ଓ ଖଣିଖଦାନ ସବୁ ପାର ହୋଇ ଆଗକୁ ଯିବାକୁ ଲାଗିଲେ । ଭଗବାନ ମୁକୁନ୍ଦ ବାଟରେ ଦୃଷଦ୍‌ୱତୀ ଓ ସରସ୍ୱତୀ ନଦୀ ପାର ହୋଇ ପାଞ୍ଚାଳ ଓ ମତ୍ସ୍ୟଦେଶ ଦେଇ ଇନ୍ଦ୍ରପ୍ରସ୍ଥରେ ପହଞ୍ଚିଲେ ॥୨୧-୨୨॥ ଲୋକମାନଙ୍କ ପକ୍ଷରେ ଯାହାଙ୍କ ଦର୍ଶନ ଦୁର୍ଲଭ, ସେହି ଭଗବାନ ଶ୍ରୀକୃଷ୍ଣ ଆସୁଛନ୍ତି ବୋଲି ଶୁଣି ଅଜାତଶତ୍ରୁ ଯୁଧିଷ୍ଠିର ତାଙ୍କ ଆଗମନରେ ବିଭୋର ହୋଇ ନିଜର ଆଚାର୍ଯ୍ୟ, ଜ୍ଞାତି ଏବଂ ସ୍ୱଜନଙ୍କ ମେଳରେ ନଗରର ବାହାରକୁ ଚାଲିଆସିଲେ । ମଙ୍ଗଳଗୀତ ଓ ବାଦ୍ୟଧ୍ୱନି ସହ ବ୍ରାହ୍ମଣମାନେ ବେଦଧ୍ୱନି କରିବାକୁ ଲାଗିଲେ । ଇନ୍ଦ୍ରିୟମାନେ ଯେପରି ସେମାନଙ୍କର ମୁଖ୍ୟ ପ୍ରାଣ ସହିତ ମିଳିତ ହୁଅନ୍ତି, ସେହିପରି ହୃଷୀକେଶଙ୍କ ସହିତ ମିଳିତ ହେବାପାଇଁ ଯୁଧିଷ୍ଠିର ବ୍ୟଗ୍ର ହୋଇଉଠିଲେ ॥୨୩-୨୪॥ ଶ୍ରୀକୃଷ୍ଣଙ୍କୁ ଦେଖି ଯୁଧିଷ୍ଠିରଙ୍କ ହୃଦୟ ସ୍ନେହରେ ଗଦ୍‌ଗଦ ହୋଇଗଲା । ବହୁଦିନ ପରେ ପ୍ରିୟତମ କୃଷ୍ଣଙ୍କୁ ଦେଖି ସେ ବାରମ୍ବାର ତାଙ୍କୁ ଆଲିଙ୍ଗନ କରିବାକୁ ଲାଗିଲେ ॥୨୫॥ ଲକ୍ଷ୍ମୀଦେବୀଙ୍କ ନିବାସସ୍ଥଳ ଭଗବାନଙ୍କ ଗାତ୍ରକୁ ଦୁଇ ବାହୁରେ ଆଲିଙ୍ଗନ କରିବାଦ୍ୱାରା ଯୁଧିଷ୍ଠିରଙ୍କର ସମସ୍ତ

ଅଶୁଭ ନଷ୍ଟ ହୋଇଗଲା । ତାଙ୍କ ଆଖି ଲୁହରେ ଛଳଛଳ ହୋଇଗଲା । ତନୁ ପୁଲକିତ ହୋଇଉଠିଲା । ସେ ପରମାନନ୍ଦ ସୁଖ ଲାଭ କରି ଲୋକାଚାରକୁ ଭୁଲିଗଲେ । ଏହାପରେ ଭୀମ ହସି ହସି ନିଜର ମାମୁଁପୁଅ ଭାଇ ଶ୍ରୀକୃଷ୍ଣଙ୍କୁ ଆଲିଙ୍ଗନ କଲେ । ତାଙ୍କର ହୃଦୟ ପ୍ରେମରେ ଭରିଗଲା । ତାପରେ ଅର୍ଜୁନ ଭଗବାନ ଶ୍ରୀକୃଷ୍ଣଙ୍କୁ ଆଲିଙ୍ଗନ କଲେ । ନକୁଳ ଓ ସହଦେବ ତାଙ୍କୁ ଅଭିବାଦନ କଲେ ଏବଂ ସ୍ୱୟଂ ଭଗବାନ୍ ଶ୍ରୀକୃଷ୍ଣ ବ୍ରାହ୍ମଣ ଓ କୁଳବୃଦ୍ଧମାନଙ୍କୁ ଯଥାବିଧି ବନ୍ଦନା କଲେ ॥୨୬-୨୮॥ କୁରୁ, ସୃଞ୍ଜୟ ଓ କେକୟ ଦେଶର ରାଜାମାନେ ଭଗବାନ୍ ଶ୍ରୀକୃଷ୍ଣଙ୍କୁ ସମ୍ମାନ ଜଣାଇଲେ ଏବଂ ଶ୍ରୀକୃଷ୍ଣ ମଧ୍ୟ ସେମାନଙ୍କୁ ଯଥୋଚିତ ସତ୍କାର କଲେ । ସୂତ, ମାଗଧ, ଗନ୍ଧର୍ବ, ବନ୍ଦୀ(ସ୍ତୁତିକାରୀ) ଓ ବ୍ରାହ୍ମଣମାନେ ତାଙ୍କୁ ସ୍ତୁତି କରିବାକୁ ଲାଗିଲେ । ମୃଦଙ୍ଗ, ଶଙ୍ଖ, ନାଗରା, ବୀଣା, ଢୋଲ ଏବଂ ଶିଙ୍ଗା ଆଦି ବାଜା ବାଜିଉଠିଲା । ଅନ୍ୟମାନଙ୍କ ସହିତ ବିଦୂଷକମାନେ ନାଚ ଓ ଗାନ ଦ୍ୱାରା ଶ୍ରୀକୃଷ୍ଣଙ୍କର ମନୋରଞ୍ଜନ କଲେ ॥୨୯-୩୦॥ ଏହିପରି ସୁହୃଦ୍‌ମାନଙ୍କଦ୍ୱାରା ପରିବେଷ୍ଟିତ ହୋଇ ପୁଣ୍ୟଶ୍ଳୋକମାନଙ୍କର ଶିରୋମଣି ଭଗବାନ୍ ଶ୍ରୀକୃଷ୍ଣ ଇନ୍ଦ୍ରପ୍ରସ୍ଥ ନଗରୀରେ ପ୍ରବେଶ କଲେ । ତାଙ୍କ ଆଗମନପାଇଁ ନଗରଟି ବିଶେଷଭାବରେ ସୁସଜ୍ଜିତ ହୋଇଥିଲା ଏବଂ ଲୋକମାନେ ତାଙ୍କର ସ୍ତୁତିଗାନ କରୁଥିଲେ ॥୩୧॥ ମଦସ୍ରାବୀ ହସ୍ତୀମାନଙ୍କର ମଦଜଳ ଓ ସୁବାସିତ ଜଳରେ ନଗରର ମାର୍ଗ ସବୁ ସିକ୍ତ ହୋଇଥିଲା । ବିଭିନ୍ନ ସ୍ଥାନରେ ଚିତ୍ରିତ ପତାକା, ସୁବର୍ଣ୍ଣଖଚିତ ତୋରଣ ଓ ପୂର୍ଣ୍ଣକୁମ୍ଭମାନ ସଜା ଯାଇଥିଲା । ନଗରର ସ୍ତ୍ରୀ-ପୁରୁଷମାନେ ନୂଆନୂଆ ପାଟଲୁଗା, ମାଳା ଓ ଅଳଙ୍କାରମାନ ପିନ୍ଧି ଏବଂ ଦେହରେ ଚନ୍ଦନ ଆଦି ସୁବାସିତ ଦ୍ରବ୍ୟ ଲଗାଇ ତାଙ୍କ ଶୋଭା ବଢ଼ାଉଥିଲେ ॥୩୨॥ ପ୍ରତ୍ୟେକ ଗୃହର ଦ୍ୱାରରେ ଦୀପମାନ ଜଳୁଥିଲା । ଗବାକ୍ଷରୁ ଧୂପର ମନୋରମ ଗନ୍ଧ ବାହାରି ଆସୁଥିଲା । ପତାକା ଓ ଫୁଲମାଳ ସବୁ ଶୋଭା ପାଉଥିଲା । ରଜତରେ ନିର୍ମିତ ପ୍ରାସାଦର ଶିଖର ଓ ସେଥିରେ ଥିବା ସୁବର୍ଣ୍ଣ କଳସ ଶୋଭା ପାଉଥିଲା । ଏହିପରି ପ୍ରାସାଦମାନଙ୍କରେ ପୂର୍ଣ୍ଣ ପାଣ୍ଡବମାନଙ୍କର ରାଜଧାନୀ ଇନ୍ଦ୍ରପ୍ରସ୍ଥକୁ ଦେଖି ଦେଖି ଭଗବାନ୍ ଶ୍ରୀକୃଷ୍ଣ ଚାଲିଥିଲେ ॥୩୩॥

ଯାହାଙ୍କର ରୂପମାଧୁରୀ ପାନ କରିବାପାଇଁ ନେତ୍ରଦ୍ୱୟ ବ୍ୟଗ୍ର ହୋଇଉଠେ, ସେହି ଶ୍ରୀକୃଷ୍ଣ ଆସୁଛନ୍ତି ବୋଲି ଶୁଣି ନଗରୀର ଯୁବତୀମାନେ ନିଜର କେଶବାସ ପ୍ରତି ଦୃଷ୍ଟି ନ ଦେଇ ଧଡ଼ପଡ଼ ହୋଇ ନିଜର ଘରକାମ ଛାଡ଼ି ଓ ଶେଯରେ ଥିବା ସ୍ୱାମୀମାନଙ୍କୁ ଛାଡ଼ିଦେଇ ରାଜପଥକୁ ଦଉଡ଼ି ଆସିଲେ ॥୩୪॥ ରାଜପଥରେ ହାତୀ, ଘୋଡ଼ା, ରଥ ଓ ଜନତାର ଭିଡ଼ ଲାଗିରହିଥିଲା । ଯୁବତୀ ସ୍ତ୍ରୀମାନେ ନିଜ ନିଜର ପ୍ରାସାଦ ଉପରେ ଚଢ଼ି କୃଷ୍ଣଙ୍କୁ ଓ ତାଙ୍କ ସ୍ତ୍ରୀମାନଙ୍କୁ ଦେଖିବାକୁ ପାଇଲେ । ମନମଧ୍ୟରେ ସେମାନେ ଶ୍ରୀକୃଷ୍ଣଙ୍କୁ ଆଲିଙ୍ଗନ କରି ହସ ହସ ଚାହାଣିରେ ତାଙ୍କୁ ସ୍ୱାଗତ କଲେ ଏବଂ ପୁଷ୍ପବୃଷ୍ଟି କରି ଲାଗିଲେ ॥୩୫॥ ରାଜପଥରେ ନିଜ ସ୍ତ୍ରୀମାନଙ୍କ ସହିତ ଯାଉଥିବାବେଳେ ଶ୍ରୀକୃଷ୍ଣ ତାରାମାନଙ୍କ ମଧ୍ୟରେ ଚନ୍ଦ୍ରମା ପରି ଶୋଭା ପାଉଥିଲେ । ଯୁବତୀମାନେ କୃଷ୍ଣଙ୍କର ପତ୍ନୀମାନଙ୍କୁ ଦେଖି କୁହାକୁହି ହେଲେ, 'ଏହି ସ୍ତ୍ରୀମାନେ କେଡ଼େ ପୁଣ୍ୟ କରି ନାହାନ୍ତି ! ସେଥିପାଇଁ ଏବେ ସ୍ୱଚକ୍ଷୁରେ ସେମାନେ ପୁରୁଷଶିରୋମଣି ଶ୍ରୀକୃଷ୍ଣଙ୍କର ହାସ୍ୟ ଓ କଟାକ୍ଷର ଆନନ୍ଦ ଅନୁଭବ କରୁଛନ୍ତି ।' ॥୩୬॥ ଭଗବାନ୍ ଶ୍ରୀକୃଷ୍ଣ ବାଟରେ ଗଲାବେଳେ ନିର୍ମଳହୃଦୟ ନାଗରିକ ଓ ଶ୍ରେଷ୍ଠୀମାନେ ନିଜ ନିଜ ଘରୁ ବାହାରି ଆସି ମାଙ୍ଗଳିକ ବସ୍ତୁମାନଙ୍କଦ୍ୱାରା ତାଙ୍କୁ ପୂଜା ଓ ସ୍ୱାଗତ କରୁଥିଲେ ॥୩୭॥ ଶ୍ରୀକୃଷ୍ଣଙ୍କୁ ଦେଖିବାମାତ୍ରେ ଅନ୍ତଃପୁର ସ୍ତ୍ରୀମାନଙ୍କ ଚକ୍ଷୁ ପ୍ରେମ ଓ ଆନନ୍ଦରେ ଭରିଗଲା । ସେମାନଙ୍କଦ୍ୱାରା ଅଭ୍ୟର୍ଥିତ ହୋଇ ଭଗବାନ୍ ଶ୍ରୀକୃଷ୍ଣ ରାଜଭବନରେ ପ୍ରବେଶ କଲେ ॥୩୮॥ ନିଜର ପୁତୁରା ତଥା ତ୍ରିଭୁବନର ଈଶ୍ୱର ଶ୍ରୀକୃଷ୍ଣଙ୍କୁ ଦେଖି କୁନ୍ତୀ ନିଜ ପୁତ୍ରବଧୂମାନଙ୍କ ସହ ପଲଙ୍କରୁ ଉଠିପଡ଼ିଲେ ଏବଂ ତାଙ୍କୁ ଆନନ୍ଦରେ ଆଲିଙ୍ଗନ କଲେ । ଦେବଦେବେଶ୍ୱର ଭଗବାନ୍ ଶ୍ରୀକୃଷ୍ଣଙ୍କୁ ରାଜଭବନକୁ ଆଣି ରାଜା ଯୁଧିଷ୍ଠିର ଆନନ୍ଦରେ ଆତ୍ମହରା ହୋଇଗଲେ ଏବଂ ତାଙ୍କୁ କିପରି ପୂଜା କରିବାକୁ ହେବ ଭୁଲିଗଲେ । ଭଗବାନ ଶ୍ରୀକୃଷ୍ଣ ନିଜର ପିଉସୀ କୁନ୍ତୀଙ୍କୁ ଏବଂ ଅନ୍ୟ ଗୁରୁସ୍ଥାନୀୟ ସ୍ତ୍ରୀମାନଙ୍କୁ ଅଭିବାଦନ କଲେ । ଭଉଣୀ ସୁଭଦ୍ରା ଓ ଦ୍ରୌପଦୀ ତାଙ୍କୁ ନମସ୍କାର କଲେ । ଏହାପରେ ଶାଶୂ କୁନ୍ତୀଦେବୀଙ୍କ ଦ୍ୱାରା

ଉତ୍ସାହିତ ହୋଇ ଦ୍ରୌପଦୀ କୃଷ୍ଣଙ୍କର ରାଣୀମାନଙ୍କୁ ସ୍ୱାଗତ ସମ୍ବର୍ଦ୍ଧନା କଲେ । ରୁକ୍ମିଣୀ, ସତ୍ୟଭାମା, ଭଦ୍ରା,ଜାମ୍ବବତୀ, କାଳିନ୍ଦୀ, ମିତ୍ରବିନ୍ଦା, ଶୈବ୍ୟା ଏବଂ ନାଗ୍ନଜିତୀ ପ୍ରମୁଖ କୃଷ୍ଣପତ୍ନୀମାନଙ୍କୁ ବସ୍ତ୍ର, ମାଳ ଓ ଅଳଙ୍କାର ଆଦିଦ୍ୱାରା ସେ ଅଭ୍ୟର୍ଥନା ଜଣାଇଲେ ।।୩୯-୪୩।। ନିଜର ଭାର୍ଯ୍ୟା, ସୈନ୍ୟ ଓ ଅନୁଗାମୀଙ୍କ ସହିତ ଭଗବାନ ଶ୍ରୀକୃଷ୍ଣ ଯେପରି ପ୍ରତ୍ୟହ ନିତ୍ୟନୂତନ ସୁଖସାମଗ୍ରୀ ଉପଭୋଗ କରିପାରିବେ, ଧର୍ମରାଜ ଯୁଧିଷ୍ଠିର ସେହିପରି ବିଶେଷ ଭାବରେ ଯତ୍ନବାନ୍ ଥିଲେ ।।୪୪।। ଅର୍ଜୁନଙ୍କ ସହିତ ରହି ଭଗବାନ ଶ୍ରୀକୃଷ୍ଣ ଖାଣ୍ଡବ ବନ ଦହନ କରାଇ ଅଗ୍ନିଙ୍କୁ ତୃପ୍ତ କରିଥିଲେ ଏବଂ ମୟଦାନବକୁ ରକ୍ଷା କରି ତାହାଦ୍ୱାରା ରାଜା ଯୁଧିଷ୍ଠିରଙ୍କପାଇଁ ଦିବ୍ୟସଭା ନିର୍ମାଣ କରାଇଥିଲେ ।।୪୫।। ରାଜା ଯୁଧିଷ୍ଠିରଙ୍କ ସନ୍ତୋଷପାଇଁ ଭଗବାନ୍ ଶ୍ରୀକୃଷ୍ଣ ଇନ୍ଦ୍ରପ୍ରସ୍ଥରେ କିଛିମାସ ଧରି ରହିଥିଲେ । ସେ ସମୟରେ ସେ ଅର୍ଜୁନଙ୍କ ସହିତ ରଥରେ ବସି ନିଜ ସୈନ୍ୟମାନଙ୍କ ସହ ପରିବେଷ୍ଟିତ ହୋଇ ବିଭିନ୍ନ ସ୍ଥାନରେ ବିହାର କରୁଥିଲେ ।।୪୬।।

## ବାସ୍ତରି ଅଧ୍ୟାୟ

# ପାଣ୍ଡବଙ୍କ ଦିଗ୍‌ବିଜୟ ଓ ଜରାସନ୍ଧ ବଧ

ଶ୍ରୀ ଶୁକଦେବ କହିଲେ, ପରିକ୍ଷିତ, ଏକଦା ମହାରାଜ ଯୁଧିଷ୍ଠିର ମୁନି, ବ୍ରାହ୍ମଣ, କ୍ଷତ୍ରିୟ ଓ ବୈଶ୍ୟ ଆଦି ପ୍ରଜାଗଣସହ ଭାଇ ବନ୍ଧୁ, ଆଚାର୍ଯ୍ୟ, କୁଳବୃଦ୍ଧ ଓ ନିଜ ସମ୍ବନ୍ଧୀମାନଙ୍କ ମଧ୍ୟରେ ସଭାସ୍ଥଳରେ ବସିଥିବାବେଳେ ସମସ୍ତଙ୍କୁ ଶୁଣାଇ ଭଗବାନ୍ ଶ୍ରୀକୃଷ୍ଣଙ୍କୁ ସମ୍ବୋଧନ କରି କହିଲେ-- ।।୧-୨।। ହେ ପ୍ରଭୁ, ହେ ଗୋବିନ୍ଦ, ମୁଁ ଶ୍ରେଷ୍ଠ ରାଜସୂୟଯଜ୍ଞଦ୍ୱାରା ଆପଣଙ୍କୁ ଏବଂ ଆପଣଙ୍କର ପବିତ୍ର ବିଭୂତି-ସ୍ୱରୂପ ଦେବତାମାନଙ୍କୁ ଅର୍ଚ୍ଚନା କରିବାକୁ ଚାହୁଁଛି । ଆପଣ ଆମର ସେହି ଯଜ୍ଞ କାର୍ଯ୍ୟ ସମ୍ପାଦନ କରନ୍ତୁ ।।୩।। ହେ ପଦ୍ମନାଭ, ହେ ପରମେଶ୍ୱର, ସମସ୍ତ ଅମଙ୍ଗଳନାଶନ, ଆପଣଙ୍କ ପାଦୁକା ଦୁଇଟିକୁ ଯେଉଁମାନେ ଅବିରତ ସେବା କରନ୍ତି, ମନରେ ଧ୍ୟାନ କରନ୍ତି ଓ ବଚନରେ କୀର୍ତ୍ତନ କରନ୍ତି, ସେମାନେ ପ୍ରକୃତରେ ପବିତ୍ରାତ୍ମା । ସେମାନେ ସଂସାରଚକ୍ରରୁ ମୁକ୍ତିଲାଭ କରନ୍ତି । ଯଦି କେହି ସଂସାରର ଭୋଗ୍ୟ ବସ୍ତୁପାଇଁ ଆପଣଙ୍କର ପ୍ରାର୍ଥୀ ହୁଅନ୍ତି, ତେବେ ତାହା ମଧ୍ୟ ସେମାନଙ୍କୁ ମିଳିଯାଏ । କିନ୍ତୁ ଯେଉଁମାନେ ଆପଣଙ୍କ ପ୍ରତି ବିମୁଖ, ସେମାନଙ୍କୁ କିଛି ମିଳେ ନାହିଁ ।।୪।। ହେ ଦେବଦେବ, ଏଇ ରାଜସୂୟଯଜ୍ଞରେ ଆପଣଙ୍କ ପାଦପଦ୍ମସେବାର ଫଳ ଲୋକ ଦେଖନ୍ତୁ । କୁରୁ ଓ ସୃଞ୍ଜୟବଂଶୀ ରାଜାମାନଙ୍କ ମଧ୍ୟରେ ଯେଉଁମାନେ ଆପଣଙ୍କୁ ଭଜନ କରନ୍ତି ବା ଯେଉଁମାନେ କରନ୍ତି ନାହିଁ, ଆପଣ ସେହି ଉଭୟଙ୍କ ସ୍ଥିତି ସମସ୍ତଙ୍କୁ ଦେଖାଇଦିଅନ୍ତୁ ।।୫।। ଶ୍ରୀକୃଷ୍ଣ, ଆପଣ ସ୍ୱୟଂ ପରଂବ୍ରହ୍ମ ଓ ସର୍ବାନ୍ତର୍ଯାମୀ । ଆପଣ ସମଦର୍ଶୀ ଏବଂ ନିଜ ଆନନ୍ଦ ଅନୁଭବରେ ବିଭୋର ଥାଆନ୍ତି । ଆପଣଙ୍କର ନିଜ-ପର ଭେଦଭାବ ନ ଥାଏ । ତଥାପି କଳ୍ପତରୁର ସେବା କଲେ ଯେପରି ଫଳ ମିଳେ, ସେହିପରି ଯେଉଁମାନେ ଆପଣଙ୍କର ସେବା କରନ୍ତି, ସେମାନେ ଆପଣଙ୍କ ଅନୁଗ୍ରହଦ୍ୱାରା ସେବାନୁରୂପ ଉନ୍ନତି ଲାଭ କରନ୍ତି । ଏହା କେବେ ଅନ୍ୟଥା ହୁଏ ନାହିଁ ।।୬।।

ଶ୍ରୀକୃଷ୍ଣ କହିଲେ, ହେ ଶତ୍ରୁଦମନ ମହାରାଜ, ଆପଣ ଯଥାର୍ଥ ସଙ୍କଳ୍ପ କରିଛନ୍ତି । ଏହାଫଳରେ ଆପଣଙ୍କର ମଙ୍ଗଳମୟ କୀର୍ତ୍ତି ସମସ୍ତ ଲୋକରେ ବିସ୍ତାରିତ ହେବ ।।୭।। ମହାରାଜ, ଏହି ଶ୍ରେଷ୍ଠ ଯଜ୍ଞ ଋଷିମାନଙ୍କର, ପିତୃ ଓ ଦେବଗଣଙ୍କର, ବନ୍ଧୁବାନ୍ଧବଙ୍କର ଓ ସମସ୍ତ ପ୍ରାଣୀଙ୍କର ; ଏପରିକି ଆମର ମଧ୍ୟ ଈପ୍ସିତ ଯଜ୍ଞ ।।୮।। ଏଥିପାଇଁ ସମସ୍ତ ରାଜାଙ୍କୁ ଜୟକରି ପୃଥିବୀକୁ ଆପଣାର ବଶୀଭୂତ କରନ୍ତୁ ଏବଂ ଆବଶ୍ୟକ ଯଜ୍ଞସାମଗ୍ରୀ ସଂଗ୍ରହ କରି ରାଜସୂୟ ଯଜ୍ଞର ଅୟୋଜନ କରନ୍ତୁ ।।୯।।

ମହାରାଜ, ଆପଣଙ୍କର ଭାଇମାନେ ଲୋକପାଳ (ବାୟୁ,ଇନ୍ଦ୍ର ଆଦି) ମାନଙ୍କ ଅଂଶରେ ଜନ୍ମ ହୋଇଛନ୍ତି । ଯେଉଁମାନେ ଇନ୍ଦ୍ରିୟକୁ ଜୟ କରି ନ ଥାନ୍ତି, ସେମାନେ ମୋତେ ବଶ କରିପାରନ୍ତି ନାହିଁ । କିନ୍ତୁ ଆପଣ ଜିତେନ୍ଦ୍ରିୟ ବୋଲି ମୋତେ ବଶ କରିଛନ୍ତି ॥୧୦॥ ତେଜ, ଯଶ, ସମ୍ପଦ ବା ଐଶ୍ୱର୍ଯ୍ୟ ଆଦିଦ୍ୱାରା କୌଣସି ବ୍ୟକ୍ତି ଏପରିକି ଦେବତା ମଧ୍ୟ ମୋର ଭକ୍ତକୁ ପରାଭୂତ କରିପାରେ ନାହିଁ । ଛାର ପାର୍ଥିବ ରାଜାମାନେ କଣ କରିପାରିବେ ? ॥୧୧॥ ଶ୍ରୀ ଶୁକଦେବ କହିଲେ, ପରିକ୍ଷିତ, ଶ୍ରୀକୃଷ୍ଣଙ୍କ କଥା ଶୁଣି ଅତିଶୟ ଆନନ୍ଦରେ ଯୁଧିଷ୍ଠିରଙ୍କର ମୁଖପଦ୍ମ ପ୍ରଫୁଲ୍ଲ ହୋଇ ଉଠିଲା । ସେ ବିଷ୍ଣୁତେଜରେ ବଳବାନ୍ ନିଜର ଭାଇମାନଙ୍କୁ ଦିଗ୍‌ବିଜୟ କାର୍ଯ୍ୟରେ ନିଯୁକ୍ତ କଲେ ॥୧୨॥ ରାଜା ଯୁଧିଷ୍ଠିର ଦିଗ୍‌ବିଜୟପାଇଁ ସୃଞ୍ଜୟବଂଶୀୟ ବୀରମାନଙ୍କ ସହିତ ସହଦେବଙ୍କୁ ଦକ୍ଷିଣ ଦିଗକୁ ପଠାଇଲେ । ମତ୍ସ୍ୟଦେଶୀୟ ବୀରମାନଙ୍କ ସହିତ ନକୁଳଙ୍କୁ ପଶ୍ଚିମ ଦିଗକୁ, କେକୟବଂଶୀୟ ବୀରମାନଙ୍କ ସହିତ ଅର୍ଜୁନଙ୍କୁ ଉତ୍ତର ଦିଗକୁ ଏବଂ ମଦ୍ରବୀରମାନଙ୍କ ସହିତ ଭୀମଙ୍କୁ ପୂର୍ବଦିଗକୁ ପଠାଇଲେ ॥୧୩॥ ପରିକ୍ଷିତ, ଯୁଧିଷ୍ଠିରଙ୍କର ଏହି ବୀର ଭାଇମାନେ ଚତୁର୍ଦ୍ଦିଗରେ ରାଜାମାନଙ୍କୁ ବଳପୂର୍ବକ ପରାଜିତ କରି ରାଜସୂୟଯଜ୍ଞ ପାଇଁ ପ୍ରଚୁର ଧନସମ୍ପଦ ଆଣି ଯୁଧିଷ୍ଠିରଙ୍କୁ ପ୍ରଦାନ କଲେ ॥୧୪॥ ଜରାସନ୍ଧକୁ କେହି ଜୟ କରିପାରି ନାହାନ୍ତି, ବୋଲି ଶୁଣି ଯୁଧିଷ୍ଠିର ମହାଚିନ୍ତାରେ ପଡ଼ିଗଲେ; ଆଦିମୂଳ ଭଗବାନ୍ ଶ୍ରୀକୃଷ୍ଣ ଉଦ୍ଧବ କହିଥିବା ଉପାୟଟିକୁ ରାଜା ଯୁଧିଷ୍ଠିରଙ୍କୁ ବତାଇ ଦେଲେ ॥୧୫॥

ପରିକ୍ଷିତ, ଏହାପରେ ଭୀମସେନ, ଅର୍ଜୁନ ଓ କୃଷ୍ଣ ବ୍ରାହ୍ମଣବେଶ ଧାରଣ କରି ବୃହଦ୍ରଥପୁତ୍ର ଜରାସନ୍ଧର ରାଜଧାନୀ ଗିରିବ୍ରଜରେ ପହଞ୍ଚିଲେ ॥୧୬॥ ଗୃହସ୍ଥମାନଙ୍କର ଅତିଥିସତ୍କାର ସମୟକୁ ଉପଯୁକ୍ତ ମନେ କରି ଏହି ତିନି ଜଣ ବ୍ରାହ୍ମଣ ବେଶ ଧରି ବ୍ରାହ୍ମଣଭକ୍ତ ଜରାସନ୍ଧଙ୍କ ପାଖକୁ ଯାଇ ଏହିପରି ନିବେଦନ କଲେ-- ॥୧୭॥ ମହାରାଜ, ଆମେମାନେ ବହୁ ଦୂରରୁ ଆସିଛୁ । ଆପଣ ଆମକୁ ଅତିଥିଭାବରେ ଗ୍ରହଣ କରନ୍ତୁ, ଏବଂ ଆମେ ଯାହା କାମନା କରୁଛୁ, ଆପଣ ତାହା ପ୍ରଦାନ କରନ୍ତୁ । ଆପଣଙ୍କର ମଙ୍ଗଳ ହେଉ ॥୧୮॥ ସହିଷ୍ଣୁମାନଙ୍କପାଇଁ କୌଣସି ବିଷୟ ଦୁଃସହ ନୁହେଁ । ଯେ କୌଣସି (ନିନ୍ଦନୀୟ) କର୍ମ ଅସାଧୁମାନଙ୍କ ପାଇଁ କରଣୀୟ । ବଦାନ୍ୟ ବ୍ୟକ୍ତିମାନଙ୍କପାଇଁ ଅଦେୟ ବୋଲି କିଛି ନାହିଁ । ସମଦର୍ଶୀ ବ୍ୟକ୍ତିଙ୍କର ପର ଆପଣା ବୋଲି କିଛି ନ ଥାଏ । ଯେ ନିଜେ ସମର୍ଥ ହୋଇ ଅନିତ୍ୟ ଶରୀରଦ୍ୱାରା ସଜ୍ଜନଙ୍କର କୀର୍ତ୍ତିତ ନିତ୍ୟଯଶକୁ ଅର୍ଜନ ନ କରେ, ସେ ହେଉଛି ନିନ୍ଦନୀୟ ଓ ଅନୁଶୋଚନାର ଯୋଗ୍ୟ ॥୧୯-୨୦॥ ରାଜା ହରିଶ୍ଚନ୍ଦ୍ର, ରନ୍ତିଦେବ, ଉଞ୍ଛବୃତ୍ତି କରୁଥିବା ମୁଦ୍‌ଗଲ, ରାଜା ଶିବି, ବଳି, ବ୍ୟାଧ ଓ କପୋତ ଆଦି ବହୁ ବ୍ୟକ୍ତି ଯାଚକମାନଙ୍କୁ ନିଜର ଅଧ୍ରୁବ ଶରୀର ଓ ସମ୍ପଦ ଦାନ କରି ଧ୍ରୁବଗତି ଲାଭ କରିଛନ୍ତି ॥୨୧॥

ଶ୍ରୀ ଶୁକଦେବ କହିଲେ, ପରିକ୍ଷିତ, ସେମାନଙ୍କର କଥା ଶୁଣି ଜରାସନ୍ଧ ସେମାନଙ୍କ କଣ୍ଠସ୍ୱର, ଆକୃତି ଏବଂ ମଣିବନ୍ଧରେ ଥିବା ଧନୁଧାରଣର ଚିହ୍ନ ଦେଖି ସେମାନେ କ୍ଷତ୍ରିୟ ବୋଲି ଠଉରେଇଲେ ଏବଂ ସେମାନଙ୍କୁ କେବେ ଦେଖିଥିବା କଥା ମନେମନେ ଚିନ୍ତା କଲେ । 'ଏମାନେ କ୍ଷତ୍ରିୟ ହୋଇ ମଧ୍ୟ ବ୍ରାହ୍ମଣବେଶ ଧାରଣ କରି ଆସିଛନ୍ତି, ତଥାପି ଏମାନେ ଯାହା ମାଗିବେ, ମୁଁ ତାହା ଦେବି, ଏପରିକି ନିଜର ଦୁସ୍ତ୍ୟଜ୍ୟ ପ୍ରାଣକୁ ମଧ୍ୟ ।' ॥୨୨॥ ବଳିରାଜା ଯେଉଁ ଇନ୍ଦ୍ରସମ୍ପଦ ଭୋଗ କରୁଥିଲେ, ବ୍ରାହ୍ମଣବେଶଧାରୀ ବିଷ୍ଣୁ ତାହାକୁ ଛଳପୂର୍ବକ ହରଣ କଲେ । ଦୈତ୍ୟରାଜ ବଳି ନିଜ ଗୁରୁ ଶୁକ୍ରାଚାର୍ଯ୍ୟଙ୍କଠାରୁ ସେ ବିଷ୍ଣୁ ବୋଲି ଜାଣି ତାଙ୍କ ବାରଣସତ୍ତ୍ୱେ ବିଷ୍ଣୁଙ୍କୁ ଏହି ପୃଥିବୀ ଦାନ କରିଥିଲେ । ସେହି ବଳିରାଜାଙ୍କର ବିମଳ କୀର୍ତ୍ତି ଏବେ ମଧ୍ୟ ଚତୁର୍ଦ୍ଦିଗରେ ଶୁଣାଯାଏ ॥୨୪-୨୫॥ ଦିନେ ନା ଦିନେ ଯେଉଁ ଦେହର ନାଶ ହେବ, କ୍ଷତ୍ରିୟର ସେହି ଦେହକୁ ବ୍ରାହ୍ମଣଙ୍କ ସ୍ୱାର୍ଥପାଇଁ ଦାନ କଲେ ବିପୁଳ ଯଶ ଅର୍ଜନ କରାଯାଇପାରିବ । ତା'ନ କଲେ ଜୀବନଧାରଣର କୌଣସି ମୂଲ୍ୟ ନାହିଁ ॥୨୬॥ ମହାରାଜ ପରିକ୍ଷିତ, ଉଦାରମନା ଜରାସନ୍ଧ ଏହିପରି ସ୍ଥିର କରି ଶ୍ରୀକୃଷ୍ଣ, ଅର୍ଜୁନ ଓ ଭୀମସେନଙ୍କୁ କହିଲେ, ବିପ୍ରଗଣ, ଆପଣଙ୍କ ଅଭିଳାଷ ପ୍ରକାଶ କରନ୍ତୁ । ଆପଣମାନେ ଇଚ୍ଛା କଲେ ନିଜର ମସ୍ତକ ମଧ୍ୟ ମୁଁ ଦାନ କରିପାରେ ॥୨୭॥ ଭଗବାନ୍ ଶ୍ରୀକୃଷ୍ଣ କହିଲେ,

ରାଜେନ୍ଦ୍ର, ଆମେମାନେ କ୍ଷତ୍ରିୟ । ଯୁଦ୍ଧପ୍ରାର୍ଥୀ ହୋଇ ଆପଣଙ୍କ ନିକଟରେ ଉପସ୍ଥିତ ହୋଇଛୁ । ଆମର ଅନ୍ୟ କିଛି ଅଭିଳାଷ ନାହିଁ; ଆପଣ ଆମକୁ ଦ୍ୱନ୍ଦ୍ୱଯୁଦ୍ଧ ପ୍ରଦାନ କରନ୍ତୁ ॥୨୮॥ ଏ ହେଉଛନ୍ତି କୁନ୍ତୀପୁତ୍ର ଭୀମସେନ ଏବଂ ତାଙ୍କ ସହିତ ତାଙ୍କର ଭାଇ ଅର୍ଜୁନ । ମୁଁ ଏହି ଉଭୟଙ୍କର ମାମୁପୁଅ ଭାଇ । ମୋତେ ଆପଣ ନିଜ ଶତ୍ରୁ କୃଷ୍ଣ ବୋଲି ଜାଣନ୍ତୁ ॥୨୯॥

ପରିକ୍ଷିତ, କୃଷ୍ଣଙ୍କର ଏହି ଆବେଦନ ଶୁଣି ରାଜା ଜରାସନ୍ଧ କ୍ରୋଧରେ ଅଟ୍ଟହାସ କରି କହିଲେ, ଅଧମଗଣ, ତୁମେ ଯେଉଁ ଦ୍ୱନ୍ଦ୍ୱଯୁଦ୍ଧ ଭିକ୍ଷା କରୁଛ, ମୁଁ ତୁମକୁ ତାହା ପ୍ରଦାନ କରିବି ॥୩୦॥ କୃଷ୍ଣ, ମୋ' ସହିତ ଯୁଦ୍ଧ କରି ତୁ ଭୟବିହ୍ୱଳ ହୋଇ ମଥୁରା ଛାଡ଼ି ପଳାଇଯାଇଥିଲୁ ଏବଂ ଏବେ ସମୁଦ୍ରପାଖରେ ଶରଣ ପଶି ରହିଛୁ ॥୩୧॥ ଅର୍ଜୁନ ହେଉଛି ବୟସରେ ମୋ'ଠାରୁ ସାନ । ବିଶେଷ ବଳବାନ୍ ନୁହେଁ ଓ ଦେହରେ ମଧ୍ୟ ମୋ ସହିତ ସମାନ ନୁହେଁ । ତେଣୁ ସେ ମୋର ଉପଯୁକ୍ତ ଯୋଦ୍ଧା ନୁହେଁ । ଭୀମର ବଳ ମୋ ସହିତ ତୁଳନୀୟ (ତେଣୁ ତା ସହିତ ମୋର ଦ୍ୱନ୍ଦ୍ୱଯୁଦ୍ଧ ହେବ) ॥୩୨॥

ପରିକ୍ଷିତ, ଏହିପରି କହି ଜରାସନ୍ଧ ଭୀମସେନଙ୍କୁ ଏକ ବିଶାଳ ଗଦା ପ୍ରଦାନ କଲେ ଏବଂ ନିଜେ ଦ୍ୱିତୀୟ ଗଦା ଗ୍ରହଣ କରି ନଗରରୁ ବାହାରିଆସିଲେ ॥୩୩॥

ଏହାପରେ ରଣଦୁର୍ମଦ ଉଭୟ ବୀର ଏକ ସମତଳ ଭୂମିରେ ମିଳିତ ହେଲେ ଏବଂ ବଜ୍ରତୁଲ୍ୟ ଗଦାମାନଙ୍କଦ୍ୱାରା ପରସ୍ପରକୁ ପ୍ରହାର କଲେ ॥୩୪॥ ଭୀମସେନ ଓ ଜରାସନ୍ଧ ଗଦାଯୁଦ୍ଧର ରୀତିରେ ବାମ, ଦକ୍ଷିଣ ଓ ବିଭିନ୍ନ ମଣ୍ଡଳରେ ବିଚରଣ କଲେ । ଯୁଦ୍ଧଭୂମିରେ ଏ ଦୁହିଁଙ୍କର ଏହି ଯୁଦ୍ଧ ରଙ୍ଗ ମଞ୍ଚରେ ଅଭିନୟ କରୁଥିବା ଦୁଇ ଜଣ ନିର୍ଭୀକ ଅଭିନେତାଙ୍କର ଯୁଦ୍ଧ ପରି ଶୋଭା ପାଉଥିଲା ॥୩୫॥ ପରିକ୍ଷିତ, ଦୁଇଟି ଦନ୍ତାହାତୀ ପରସ୍ପର ଲଢ଼ିଲାବେଳେ ଦୁହିଁଙ୍କର ଦନ୍ତାଘାତର ଶବ୍ଦପରି ଭୀମ ଓ ଜରାସନ୍ଧଙ୍କ ଯୁଦ୍ଧରେ ଗଦାଦୁଇଟିର ଘାତ ଓ ପ୍ରତିଘାତ ଦ୍ୱାରା ବଜ୍ରଧ୍ୱନିପରି ତୁମୁଳ ଚଟଚଟା ଧ୍ୱନି ଶୁଣାଯାଉଥିଲା ॥୩୬॥ ମହାରାଜ, ଅତି କ୍ରୋଧରେ ଯୁଦ୍ଧ କରୁଥିବା ଦୁଇଟି ହାତୀ ବୃକ୍ଷର ଶାଖାକୁ ଭାଙ୍ଗି ପରସ୍ପରକୁ ପିଟୁଥିବାବେଳେ ସେହି ଶାଖାମାନ ଯେପରି ଦୁହିଁଙ୍କ ଦୃଢ଼ ଶରୀରରେ ବାଜି ଚୂରମାର୍ ହୋଇଯାଏ, ସେହିପରି ବାହୁବଳରେ ଦୁହେଁ ପରସ୍ପରକୁ ଗଦାଘାତ କରିବାବେଳେ ଗଦାଦ୍ୱୟ ଉଭୟଙ୍କ ଦୃଢ଼ ଶରୀରର କାନ୍ଧ, ଅଣ୍ଟା, ପାଦ, ହାତ, ଉରୁ ଓ ହଂସୁଳି ହାଡ଼ରେ ବାଜି ଚୂର୍ଣ୍ଣବିଚୂର୍ଣ୍ଣ ହୋଇଗଲା ॥୩୭॥ ଗଦା ଦୁଇଟି ଏହିପରି ଭାଙ୍ଗିଯିବାରୁ ସେହି ଦୁଇ ବୀରଯୋଦ୍ଧା କ୍ଷୁବ୍ଧ ହୋଇ ଇସ୍ପାତପରି ଟାଣ ବଜ୍ରମୁଷ୍ଟିରେ ପରସ୍ପରକୁ ମାଡ଼ ମାରି ଅବଶ କରିବାକୁ ଉଦ୍ୟମ କଲେ । ଦୁହିଁଙ୍କ କରତଳର ସଂଘର୍ଷରେ ବଜ୍ରଧ୍ୱନି ପରି କଠୋର ଶବ୍ଦ ଶୁଣାଯାଉଥିଲା । ମହାରାଜ, ଭୀମସେନ ଓ ଜରାସନ୍ଧଙ୍କର ଶିକ୍ଷା, ବଳ ଓ ପ୍ରଭାବ ସମାନ ଥିଲା । ଏଣୁ ଉଭୟଙ୍କର ବଳ କ୍ଷୀଣ ହେଉ ନ ଥିଲା । ଏହିପରି ପ୍ରହାର କରି କରି ଯୁଦ୍ଧରେ କେହି କାହାକୁ ଜିଣି ପାରିଲେନାହିଁ ॥୩୮-୩୯॥

ମହାରାଜ, ଦୁଇ ଜଣଯାକ ଦିନବେଳେ ପ୍ରବଳ ଯୁଦ୍ଧ କରୁଥିଲେ । କିନ୍ତୁ ରାତ୍ରିକାଳରେ ପରସ୍ପର ମିତ୍ର ପରି ରହୁଥିଲେ । ଏହିପରି ସତେଇଶ ଦିନ ବିତିଗଲା । ଦିନେ ବୃକୋଦର ନିଜର ମାମୁପୁଅ ଭାଇ ଶ୍ରୀକୃଷ୍ଣଙ୍କୁ କହିଲେ, ମାଧବ, ମୁଁ ଜରାସନ୍ଧକୁ ଯୁଦ୍ଧରେ ଜିଣିବାପାଇଁ ସମର୍ଥ ହେଉ ନାହିଁ । ଶ୍ରୀହରି ଜରାସନ୍ଧର ଜନ୍ମ ଓ ମୃତ୍ୟୁର ରହସ୍ୟ ଜାଣିଥିଲେ ଏବଂ ଜରା ରାକ୍ଷସୀଦ୍ୱାରା ସେ କିପରି ଜୀବିତ ହୋଇଥିଲା, ତାହାସବୁ ଜାଣିଥିଲେ ତେଣୁ ନିଜର ତେଜରେ ଭୀମଙ୍କର ଶକ୍ତିକୁ ବଢ଼ାଇ ତା'ର ମୃତ୍ୟୁର ଉପାୟ ସେ ଚିନ୍ତା କଲେ ॥୪୦-୪୨॥ ଶତ୍ରୁବଧର ଉପାୟ ଚିନ୍ତା କରି ଅମିତତେଜା ଭଗବାନ୍ ଗୋଟିଏ ଗଛର ଡାଳକୁ ଦୁଇ ଖଣ୍ଡ କରିଦେଇ ସଂକେତଦ୍ୱାରା ଭୀମକୁ ତାହା ଦେଖାଇଦେଲେ । ପ୍ରହାରକାରୀଙ୍କ ମଧ୍ୟରେ ଶ୍ରେଷ୍ଠ ମହାବଳୀ ଭୀମ ତାହା ବୁଝିପାରିଲେ । ସେ ଶତ୍ରୁର ପାଦ ଦୁଇଟାକୁ ଟାଣି ତାକୁ ତଳେ ପକାଇଦେଲେ । ତାପରେ ଗଜରାଜ ଯେପରି ବୃକ୍ଷଶାଖାକୁ ବିଦାରଣ କରେ, ସେହିପରି ସେ ଜରାସନ୍ଧର ଗୋଟିଏ ପାଦକୁ ଚାପି ରଖି ଅନ୍ୟ ପାଦକୁ ଦୁଇ ହାତରେ ଧରି ଗୁହ୍ୟଦେଶରୁ ତାକୁ ଦୁଇ ଖଣ୍ଡ କରି ଚିରିଦେଲେ ॥୪୩-୪୪॥ ସେତେବେଳେ ଲୋକମାନେ ଦେଖିବାକୁ ପାଇଲେ, ଜରାସନ୍ଧର ଶରୀର

ଦୁଇ ଖଣ୍ଡ ହୋଇ ପଡ଼ିଛି । ପ୍ରତି ଖଣ୍ଡରେ ଗୋଟିଏ ଗୋଟିଏ ପାଦ, ଉରୁ, ଅଣ୍ଡକୋଷ, ଅଣ୍ଟା, ପିଠି, ସ୍ତନ, କାନ୍ଧ, ବାହୁ, ଆଖି, ଭ୍ରୂଲତା ଓ କାନ ପୃଥକ୍ ଭାବରେ ରହିଛି ।।୪୫।। ଏହିପରି ମଗଧରାଜ ଜରାସନ୍ଧ ନିହତ ହେବାରୁ ଚାରିଆଡ଼େ ହାହାକାର ଶବ୍ଦ ଶୁଣାଗଲା । ଅର୍ଜୁନ ଓ ଶ୍ରୀକୃଷ୍ଣ ଭୀମଙ୍କୁ ଆଲିଙ୍ଗନ କରି ତାଙ୍କୁ ପ୍ରଶଂସା କରି ଲାଗିଲେ ।।୪୬।। ତାପରେ ସମସ୍ତ ପ୍ରାଣୀଙ୍କର ରକ୍ଷକ ଭଗବାନ୍ ଶ୍ରୀକୃଷ୍ଣ ଜରାସନ୍ଧର ପୁତ୍ର ସହଦେବଙ୍କୁ ମଗଧର ରାଜାରୂପେ ଅଭିଷିକ୍ତ କରି ଜରାସନ୍ଧର ବନ୍ଦିଶାଳାରେ ଥିବା ରାଜାମାନଙ୍କୁ ମୁକ୍ତ କରିଦେଲେ ।।୪୭।।

## ତେସ୍ତରି ଅଧ୍ୟାୟ

# ଇନ୍ଦ୍ରପ୍ରସ୍ଥ ପ୍ରତ୍ୟାବର୍ତ୍ତନ

ଶ୍ରୀ ଶୁକଦେବ କହିଲେ, ମହାରାଜ ପରିକ୍ଷିତ, ଜରାସନ୍ଧ କୋଡ଼ିଏ ହଜାର ଆଠଶହ ରାଜାଙ୍କୁ ଯୁଦ୍ଧରେ ଜୟ କରି ପର୍ବତବେଷ୍ଟିତ ଦୁର୍ଗମଧ୍ୟରେ ବନ୍ଦୀ କରି ରଖିଥିଲା । ସେମାନଙ୍କର ଦେହ ଓ ପିନ୍ଧା ବସ୍ତ୍ରସବୁ ମଳିନ ଦେଖାଯାଉଥିଲା । କ୍ଷୁଧାରେ ଶରୀର ଝଡ଼ି ଯାଇଥିଲା । ମୁହଁ ଶୁଖି ଯାଇଥିଲା । ଦୀର୍ଘକାଳ ବନ୍ଦି ହୋଇ ରହିବା ଫଳରେ ସେମାନେ ବହୁ କଷ୍ଟ ଭୋଗ କରୁଥିଲେ । ଏବେ ବନ୍ଦିଶାଳାରୁ ବାହାରି ଆସି ପୀତବାସ ଘନଶ୍ୟାମଙ୍କୁ ଦେଖିବାକୁ ପାଇଲେ ।।୧-୨।। ତାଙ୍କ ବକ୍ଷରେ ଶ୍ରୀବତ୍ସ ଚିହ୍ନ, ଚତୁର୍ଭୁଜ, ଚକ୍ଷୁରେ ପଦ୍ମକୋଷର ଅରୁଣିମା, ମନୋହର ଓ ପ୍ରସନ୍ନ ମୁଖମଣ୍ଡଳ, କର୍ଣ୍ଣଦ୍ୱୟରେ ତେଜୀୟାନ୍ ମକରକୁଣ୍ଡଳ, ହସ୍ତରେ ଶଙ୍ଖ, ଚକ୍ର, ଗଦା ଓ ପଦ୍ମ; ଦେହରେ କିରୀଟ, ହାର, କଙ୍କଣ, ଚନ୍ଦ୍ରହାର ଓ ବାଜୁବନ୍ଧ; ଗ୍ରୀବାରେ କୌସ୍ତୁଭର ମଣି ଓ ବକ୍ଷରେ ବନମାଳା । ଏହିପରି ସୁନ୍ଦର ଶ୍ରୀକୃଷ୍ଣଙ୍କ ରୂପକୁ ଦର୍ଶନ କରି ସେମାନେ ବହୁଦିନଧରି ଯେଉଁ ବନ୍ଧନର ଦୁଃଖ ଭୋଗ କରିଥିଲେ, ତାହା ଦୂର ହୋଇଗଲା । ସେମାନଙ୍କର ସମସ୍ତ ପାପ ନଷ୍ଟ ହେଲା । ରାଜାମାନେ ଚକ୍ଷୁଦ୍ୱାରା କୃଷ୍ଣଙ୍କର ରୂପ ପାନ କରୁଥିଲେ, ଜିହ୍ୱାଦ୍ୱାରା ଲେହନ କରୁଥିଲେ, ନାସାଦ୍ୱାରା ଆଘ୍ରାଣ କରୁଥିଲେ, ବାହୁଦ୍ୱାରା ଆଲିଙ୍ଗନ କରୁଥିଲେ । କୃତାଞ୍ଜଳି ହୋଇ ନତମସ୍ତକରେ ସେମାନେ କୃଷ୍ଣଙ୍କର ପାଦବନ୍ଦନା କଲେ ଏବଂ ତାଙ୍କୁ ପ୍ରଶଂସା କରି ଲାଗିଲେ ।।୩-୭।।

ରାଜାମାନେ କହିଲେ, ହେ ଦେବଦେବେଶ୍ୱର, ହେ ଶରଣବତ୍ସଳ, ହେ ଅବିନଶ୍ୱର ଶ୍ରୀକୃଷ୍ଣ, ଆପଣଙ୍କୁ ଆମେ ନମସ୍କାର କରୁଛୁ । ଏବେ ଆମେ ସଂସାର ପ୍ରତି ବିରକ୍ତ । ଏଇ ସଂସାରଚକ୍ରରୁ ଆମକୁ ଉଦ୍ଧାର କରନ୍ତୁ । ଆମେ ଆପଣଙ୍କର ଶରଣାଗତ, ଆମକୁ ରକ୍ଷା କରନ୍ତୁ ।।୮।। ମଧୁସୂଦନ, ମଗଧରାଜ ଜରାସନ୍ଧକୁ ଆମେ ଦୋଷ ଦେଉ ନାହୁଁ । ଯେହେତୁ ରାଜାଙ୍କର ରାଜ୍ୟଚ୍ୟୁତି ଆପଣଙ୍କର ଅନୁଗ୍ରହ । ରାଜା ନିଜର ରାଜ୍ୟ ଓ ଐଶ୍ୱର୍ଯ୍ୟର ଗର୍ବରେ ମତ୍ତ ହୋଇ ଶ୍ରେୟ ଲାଭ କରେ ନାହିଁ । ଆପଣଙ୍କ ମାୟାରେ ମୋହିତ ହୋଇ ସେ ଅନିତ୍ୟ ସମ୍ପଦକୁ ଚିରସ୍ଥାୟୀ ମନେକରେ ।।୯-୧୦।। ମୂର୍ଖମାନେ ମୃଗତୃଷ୍ଣାକୁ ଯେପରି ଜଳାଶୟ ମନେ କରନ୍ତି, ସେହିପରି ଅବିବେକୀ ଲୋକମାନେ ଆପଣଙ୍କ ମାୟାର ବିକାରସ୍ୱରୂପ ଏହି ସୃଷ୍ଟିକୁ ସତ୍ୟ ମନେକରନ୍ତି ।।୧୧।। ପ୍ରଭୁ, ପୂର୍ବେ ଐଶ୍ୱର୍ଯ୍ୟଗର୍ବରେ ଆମ ବୁଦ୍ଧି ଭ୍ରଷ୍ଟ ହୋଇଥିଲା ଏବଂ ପୃଥିବୀ ଜୟ କରିବା ଇଚ୍ଛାରେ ଆମେ ପରସ୍ପର ପ୍ରତିଦ୍ୱନ୍ଦ୍ୱୀ ହୋଇ ନିଜ ନିଜ ପ୍ରଜାଙ୍କୁ ବିନାଶ କରି କରି ଆମର ହୃଦୟ ନିର୍ଦ୍ଦୟ ହୋଇ ଥିଲା । କାଳରୂପରେ ବିଦ୍ୟମାନ ଆପଣଙ୍କୁ ଆମେ ଅବଜ୍ଞା କରିଥିଲୁ ।।୧୨।। ହେ ଶ୍ରୀକୃଷ୍ଣ, ତୀବ୍ର ବେଗରେ ଗତି କରୁଥିବା ତୁମ ଦୁରନ୍ତ ବୀର୍ଯ କାଳକୁ କେହି ଅତିକ୍ରମ କରିପାରେ ନାହିଁ । କାଳରୂପୀ ଆପଣଙ୍କ ଅନୁକମ୍ପାଦ୍ୱାରା ଆମେ ରାଜ୍ୟ, ଐଶ୍ୱର୍ଯ୍ୟରୁ ବିଚ୍ୟୁତ ହୋଇଛୁ, ଆମର ଗର୍ବ ସମ୍ପୂର୍ଣ୍ଣ ଖର୍ବ ହୋଇଛି । ଆପଣଙ୍କ ପାଦପଦ୍ମକୁ ଆମେ ସ୍ମରଣ କରୁଛୁ ।।୧୩।। ଏହି ଶରୀର ସବୁବେଳେ ପତନଶୀଳ ଓ

ରୋଗମାନଙ୍କର ଭୂମି। ଏହି ଶରୀରଦ୍ୱାରା ପୁଣି ମୃଗତୃଷ୍ଣାପରି ମିଥ୍ୟା ରାଜଭୋଗ କରିବାକୁ ଆମେ ଇଚ୍ଛା କରୁନାହୁଁ । ନାନା କ୍ରିୟାକର୍ମଦ୍ୱାରା କର୍ଣ୍ଣରସାୟନ ଯେଉଁ ପରଲୋକର ସୁଖ କଳ୍ପନା କରାଯାଏ, ଆମର ମଧ୍ୟ ସେଥିରେ ସ୍ପୃହା ନାହିଁ । ଏହି ସଂସାରରେ ବାରମ୍ବାର ଜନ୍ମଲାଭ କଲେ ମଧ୍ୟ ଆପଣଙ୍କ ପାଦପଦ୍ମର ସ୍ମୃତି ଯେପରି ହଜି ନ ଯାଏ, ଆପଣ ସେହିପରି ଉପାୟ ଆମକୁ ବତାଇ ଦିଅନ୍ତୁ ॥୧୪-୧୫॥ ହେ କୃଷ୍ଣ, ହେ ବାସୁଦେବ, ହେ ପରମାତ୍ମା ଶ୍ରୀହରି, ଆପଣ ଶରଣାଗତର କ୍ଳେଶ ନାଶ କରନ୍ତି । ହେ ଗୋବିନ୍ଦ, ଆପଣଙ୍କୁ ବାରମ୍ବାର ନମସ୍କାର ॥୧୬॥

ଶ୍ରୀ ଶୁକଦେବ କହିଲେ, ପରିକ୍ଷିତ, ବନ୍ଧନମୁକ୍ତ ରାଜାମାନେ ଭଗବାନ୍ ଶ୍ରୀକୃଷ୍ଣଙ୍କୁ ଏହିପରି ସ୍ତୁତି କରିବାରୁ ଶରଣରକ୍ଷକ ଭଗବାନ୍ ଦୟାର୍ଦ୍ର ହୋଇ ସେମାନଙ୍କୁ ମଧୁର ବାକ୍ୟରେ ଏହିପରି କହିଲେ-- ॥୧୭॥ ଭଗବାନ୍ ଶ୍ରୀକୃଷ୍ଣ କହିଲେ, ରାଜାଗଣ, ତୁମେମାନେ ଯେପରି ପ୍ରାର୍ଥନା କଲ, ତଦନୁଯାୟୀ ଆଜିଠାରୁ ନିଖିଳଜଗତର ଈଶ୍ୱର ଓ ଆତ୍ମସ୍ୱରୂପ ମୋ'ଠାରେ ତୁମମାନଙ୍କର ଦୃଢ଼ଭକ୍ତି ରହିଥିବ ॥୧୮॥ ହେ ରାଜାମାନେ, ତୁମେ ସବୁ ସତ୍ୟଭାଷୀ । ମୋର ଭଜନ ହିଁ କର୍ତ୍ତବ୍ୟ ବୋଲି ତୁମେ ଯେଉଁ ସଙ୍କଳ୍ପ କଲ, ତାହା ସତ୍ୟ ଓ ଶୁଭ । ଶ୍ରୀ ଓ ଐଶ୍ୱର୍ଯ୍ୟର ଗର୍ବ ଯେ ରାଜାମାନଙ୍କୁ ପାଗଳ ଓ ସ୍ୱେଚ୍ଛାଚାରୀ କରିଦିଏ, ତାହା ମୁଁ ଏବେ ଦେଖୁଛି ॥୧୯॥ କାର୍ତ୍ତବୀର୍ଯ୍ୟ, ନହୁଷ, ବେଣ, ରାବଣ, ନରକାସୁର ଏବଂ ଦେବତା, ଦୈତ୍ୟ ଓ ରାଜାମାନେ ଐଶ୍ୱର୍ଯ୍ୟମଦ ହେତୁ ନିଜ ନିଜ ସ୍ଥାନରୁ ବିଚ୍ୟୁତ ହୋଇଛନ୍ତି ॥୨୦॥ ତୁମେମାନେ ଏହା ଜାଣି ରଖ ଯେ ଦେହାଦି ବସ୍ତୁଦ୍ୱାରା ଯାହା କିଛି ଉତ୍ପନ୍ନ ହୁଏ, ତା'ର ବିନାଶ ଘଟେ; ତେଣୁ ସାବଧାନ ହୋଇ ଯଜ୍ଞାଦ୍ୱାରା ମୋତେ ଅର୍ଚ୍ଚନା କରି ଧର୍ମରେ ପ୍ରଜାପାଳନ କର । ଆଜିଠାରୁ ତୁମେମାନେ ମୋ' ପ୍ରତି ଅନୁରକ୍ତ ରହି ପୁତ୍ରାଦି ସନ୍ତାନମାନଙ୍କୁ ବିସ୍ତାର କରୁଥିବ । ସୁଖ, ଦୁଃଖ, ଜନ୍ମ-ମୃତ୍ୟୁ ଯାହା ଯାହା ମିଳିବ, ସମାନ ଭାବରେ ଭୋଗ କରି ବିଚରଣ କରିବ ॥୨୧-୨୨॥ ଦେହାଦି ପ୍ରତି ଉଦାସୀନ ରହି ଓ (ମୋର ସେବାରୂପକ) ବ୍ରତ ଧାରଣ କରି ମୋ' ଠାରେ ଚିତ୍ତକୁ ସମ୍ୟକ୍‌ରୂପେ ନିବେଶ କରିବ ଏବଂ ଆତ୍ମାରେ ରମଣ କରି ଶେଷକୁ ପରଂବ୍ରହ୍ମ ସ୍ୱରୂପ ମୋତେ ଲାଭ କରିବ । ଶ୍ରୀ ଶୁକଦେବ କହିଲେ, ପରିକ୍ଷିତ, ଏହିପରି ରାଜାମାନଙ୍କୁ ଆଦେଶ ଦେଇ ଭୁବନେଶ୍ୱର ଭଗବାନ୍ ଶ୍ରୀକୃଷ୍ଣ ସେମାନଙ୍କର ସ୍ନାନାଦିକାର୍ଯ୍ୟରେ ଦାସଦାସୀମାନଙ୍କୁ ନିଯୁକ୍ତ କଲେ ॥୨୩-୨୪॥ ହେ ଭରତବଂଶୀ ପରିକ୍ଷିତ, ରାଜାମାନେ ସ୍ନାନ କରିସାରିବା ପରେ ଭଗବାନ୍ ଶ୍ରୀକୃଷ୍ଣ ସେମାନଙ୍କୁ ଉତ୍ତମ ଅନ୍ନ ଭୋଜନ କରାଇ ଜରାସନ୍ଧର ପୁତ୍ର ସହଦେବଙ୍କଦ୍ୱାରା ରାଜୋଚିତ ବସ୍ତ୍ର, ଅଳଙ୍କାର, ମାଳା ଓ ଚନ୍ଦନ ଆଦି ଅଙ୍ଗରାଗ ପ୍ରଦାନ କରାଇଲେ ଏବଂ ତାମ୍ବୂଳ ଆଦି ବିଭିନ୍ନ ରାଜୋଚିତ ଭୋଗ୍ୟବସ୍ତୁଦ୍ୱାରା ସେମାନଙ୍କର ଉତ୍ତମ ସତ୍କାର କରାଇଲେ ॥୨୫-୨୬॥ ରାଜାମାନେ ଭଗବାନ୍ ଶ୍ରୀକୃଷ୍ଣଙ୍କ ଦ୍ୱାରା ବନ୍ଧନକ୍ଳେଶରୁ ମୁକ୍ତ ହୋଇ ଏବଂ ସହଦେବଙ୍କ ଠାରୁ ଉପଯୁକ୍ତ ସତ୍କାର ପାଇ ଏବଂ ଅଳଙ୍କାର ଓ କୁଣ୍ଡଳାଦିଦ୍ୱାରା ଭୂଷିତ ହୋଇ ବର୍ଷାକାଳ ଶେଷରେ ଗ୍ରହ ନକ୍ଷତ୍ରମାନଙ୍କ ପରି ଶୋଭା ପାଇଲେ ॥୨୭॥ ଏହାପରେ ଭଗବାନ୍ ଶ୍ରୀକୃଷ୍ଣ ମଣିକାଞ୍ଚନଭୂଷିତ ଓ ଉତ୍ତମ--ଅଶ୍ୱଯୁକ୍ତ ରଥମାନଙ୍କରେ ସେମାନଙ୍କୁ ଚଢ଼ାଇ ଏବଂ ମଧୁର ବାକ୍ୟଦ୍ୱାରା ଆହ୍ଲାଦିତ କରି ନିଜ ନିଜ ଦେଶକୁ ପଠାଇଦେଲେ ॥୨୮॥ ପରିକ୍ଷିତ, ସେହି ରାଜାମାନେ ମହାତ୍ମା କୃଷ୍ଣଙ୍କଦ୍ୱାରା ଏହିପରି କ୍ଳେଶମୁକ୍ତ ହୋଇ ଜଗତ୍‌ର ସ୍ୱାମୀ ଶ୍ରୀକୃଷ୍ଣଙ୍କୁ ଓ ତାଙ୍କର ଲୀଳାମାନଙ୍କୁ ଧ୍ୟାନ କରି କରି ସ୍ୱଦେଶକୁ ଫେରି ଆସିଲେ । ସେମାନେ ନିଜ ପ୍ରଜାମାନଙ୍କ ଆଗରେ ମହାପୁରୁଷ ଶ୍ରୀକୃଷ୍ଣଙ୍କର କାର୍ଯ୍ୟାବଳୀ ବର୍ଣ୍ଣନା କଲେ ଏବଂ ଭଗବାନ୍ ତାଙ୍କୁ ଯେପରି ଅନୁଶାସନ ଦେଇଥିଲେ ନିରଳସ ଭାବରେ ସେମାନେ ସେହିପରି କରିବାକୁ ଲାଗିଲେ ॥୨୯-୩୦॥

ପରିକ୍ଷିତ, ଭୀମସେନଙ୍କ ଦ୍ୱାରା ଜରାସନ୍ଧର ନିଧନ ଘଟାଇ ଭଗବାନ୍ ଶ୍ରୀକୃଷ୍ଣ ସହଦେବଙ୍କଦ୍ୱାରା ପୂଜିତ ହେଲେ ଏବଂ ଭୀମ ଓ ଅର୍ଜୁନଙ୍କ ସହିତ ପ୍ରସ୍ଥାନ କଲେ ॥୩୧॥ ଭୀମ, ଅର୍ଜୁନ ଓ ଶ୍ରୀକୃଷ୍ଣ ଶତ୍ରୁକୁ ଜୟ କରି ଇନ୍ଦ୍ରପ୍ରସ୍ଥରେ ପହଞ୍ଚିଲେ ଏବଂ ନିଜ ବନ୍ଧୁମାନଙ୍କର ହର୍ଷବର୍ଦ୍ଧନ ପୂର୍ବକ ଶଙ୍ଖଧ୍ୱନି କଲେ । ଦୁଷ୍ଟମତି ଦୁର୍ଯ୍ୟୋଧନ ଆଦିଙ୍କୁ ତାହା ଭଲ ଲାଗୁ ନ

ଥିଲା ।।୩୨।। ଇନ୍ଦ୍ରପ୍ରସ୍ଥବାସୀ ସେହି ଶଙ୍ଖଧ୍ୱନି ଶୁଣି ଆନନ୍ଦିତ ହେଲେ ଏବଂ ଜରାସନ୍ଧ ନିହତ ହୋଇଛି ବୋଲି ଜାଣି ଆଶ୍ୱସ୍ତ ହେଲେ । ରାଜା ଯୁଧିଷ୍ଠିରଙ୍କର ମନୋରଥ ପୂର୍ଣ୍ଣ ହେଲା ।।୩୩।। ଭୀମ, ଅର୍ଜୁନ ଓ କୃଷ୍ଣ ରାଜା ଯୁଧିଷ୍ଠିରଙ୍କୁ ଅଭିବନ୍ଦନା କରି ଯାହା ଯାହା ନିଜେ ନିଜେ କରିଛନ୍ତି, ତାହା ସବୁ ତାଙ୍କୁ ଶୁଣାଇଲେ । ଧର୍ମରାଜ ଯୁଧିଷ୍ଠିର ଜରାସନ୍ଧବଧ କୃଷ୍ଣଙ୍କର କରୁଣା ବୋଲି ଅନୁଭବ କରି ପ୍ରେମରେ ତାଙ୍କୁ ଆଲିଙ୍ଗନ କଲେ । ଆଖିରୁ ତାଙ୍କର ଲୁହ ଝରି ପଡୁଥିଲା; ସେ କିଛି କହିପାରିଲେ ନାହିଁ ।।୩୪।।

## ଚଉସ୍ତରି ଅଧ୍ୟାୟ

# ଯଜ୍ଞରେ କିଏ ଅଗ୍ରପୂଜ୍ୟ ହେବ

ଶ୍ରୀ ଶୁକଦେବ କହିଲେ, ପରିକ୍ଷିତ, ଶ୍ରୀକୃଷ୍ଣଙ୍କ ମହିମାରୁ ଜରାସନ୍ଧବଧ ସମ୍ଭବ ହୋଇଛି ବୋଲି ଜାଣି ମହାରାଜ ଯୁଧିଷ୍ଠିର ପ୍ରସନ୍ନ ହେଲେ ଏବଂ ଶ୍ରୀକୃଷ୍ଣଙ୍କୁ ସମ୍ଭାଷଣ କରି ଏହିପରି କହିଲେ-- ।।୧।। ଯୁଧିଷ୍ଠିର କହିଲେ, ତ୍ରିଲୋକର ଗୁରୁସ୍ୱରୂପ ସନକାଦି ମୁନିମାନେ ଏବଂ ଲୋକପାଳମାନେ ଆପଣଙ୍କର ଆଜ୍ଞାକୁ ଦୁର୍ଲଭ ବୋଲି ମନେ କରି ତାହା ଶିରରେ ଧାରଣ କରିଥା'ନ୍ତି ।।୨।। ହେ କମଳନୟନ, ହେ ମହିମାମୟ, ରାଜା ବୋଲି ଆମମାନଙ୍କର ଅଭିମାନ ଥିଲେ ମଧ୍ୟ ହୀନଭାବରେ ଆମେ ଯେଉଁ ଆଦେଶ ଦେଇଥିଲୁ, ଆପଣ ଯେ ତାହା ପାଳନ କରିଛନ୍ତି, ତାହା ଅତ୍ୟନ୍ତ ବିଡ଼ମ୍ବନାର ବିଷୟ ।।୩।। ଉଦୟରେ ବା ଅସ୍ତରେ ସୂର୍ଯ୍ୟର ତେଜ ଯେପରି ବଢ଼େ ନାହିଁ ବା କମେ ନାହିଁ, ଏକ ଓ ଅଦ୍ୱିତୀୟ ବ୍ରହ୍ମ ଏବଂ ପରମାତ୍ମା ଭାବରେ ଆପଣ ଯାହାକିଛି କର୍ମ କଲେ ମଧ୍ୟ ଆପଣଙ୍କ ତେଜର ସେହିପରି ହ୍ରାସ ବା ବୃଦ୍ଧି ହୁଏ ନାହିଁ ।।୪।। ହେ ମାଧବ, ହେ ଅଜେୟ, 'ମୁଁ' ଓ 'ମୋର' ଏବଂ 'ତୁମେ' ଓ 'ତୁମର' ପଶୁମାନଙ୍କ ପରି ଶରୀରବିଷୟରେ ଏହିପରି ଯେଉଁ ଭେଦବୁଦ୍ଧି ରହେ, ତାହା ଆପଣଙ୍କ ଭକ୍ତମାନଙ୍କ ମଧ୍ୟରେ ନ ଥାଏ । ଏହି ଭେଦବୁଦ୍ଧି ଆପଣଙ୍କର ଯେ ନାହିଁ, ତାହା କହିବା ବାହୁଲ୍ୟ ମାତ୍ର ।।୫।।

ଶ୍ରୀ ଶୁକଦେବ କହିଲେ, ଧର୍ମରାଜ ଯୁଧିଷ୍ଠିର ଏହିପରି କହି ଶ୍ରୀକୃଷ୍ଣଙ୍କ ଅନୁମୋଦନକ୍ରମେ ଯଜ୍ଞର ନିର୍ଦ୍ଦିଷ୍ଟ ସମୟରେ ବେଦବାଦୀ ବ୍ରାହ୍ମଣମାନଙ୍କୁ ଋତ୍ୱିକରୂପରେ ବରଣ କଲେ ।।୬।। ଯୁଧିଷ୍ଠିର ନିଷ୍ପାପ ବେଦବ୍ୟାସ, ମହର୍ଷି ଭରଦ୍ୱାଜ, ସୁମନ୍ତୁ, ଗୌତମ, ଅସିତ, ବଶିଷ୍ଠ, ଚ୍ୟବନ, କଣ୍ୱ, ମୈତ୍ରେୟ, କବଷ, ତ୍ରିତ, ବିଶ୍ୱାମିତ୍ର, ବାମଦେବ, ସୁମତି, ଜୈମିନି, କ୍ରତୁ, ପୈଲ, ପରାଶର, ଗର୍ଗ, ବୈଶମ୍ପାୟନ, ଅଥର୍ବା, କଶ୍ୟପ, ଧୌମ୍ୟ, ପରଶୁରାମ, ଭାର୍ଗବ, ଆସୁରି, ବୀତିହୋତ୍ର, ମଧୁଚ୍ଛନ୍ଦା ଅକୃତବ୍ରଣ ଓ ବୀରସେନ ଆଦିଙ୍କୁ ଋତ୍ୱିକରୂପରେ ବରଣକଲେ ।।୭-୯।। ରାଜା ପରିକ୍ଷିତ, ସେହିପରି ଯୁଧିଷ୍ଠିର ଭୀଷ୍ମ, ଦ୍ରୋଣ ଓ କୃପାଚାର୍ଯ୍ୟଙ୍କୁ, ଦୁର୍ଯ୍ୟୋଧନାଦି ପୁତ୍ରମାନଙ୍କ ସହିତ ରାଜା ଧୃତରାଷ୍ଟ୍ରଙ୍କୁ ଓ ମହାମତି ବିଦୁରଙ୍କୁ ନିମନ୍ତ୍ରଣ କଲେ । ଏମାନଙ୍କ ସହିତ ବ୍ରାହ୍ମଣ, କ୍ଷତ୍ରିୟ, ବୈଶ୍ୟ ଓ ଶୂଦ୍ର ଆଦି ପ୍ରଜାଗଣ, ସମସ୍ତ ରାଜା ଓ ସେମାନଙ୍କର ପ୍ରଜାମାନେ ଯୁଧିଷ୍ଠିରଙ୍କଦ୍ୱାରା ନିମନ୍ତ୍ରିତ ହୋଇ ଯଜ୍ଞଦର୍ଶନ ପାଇଁ ସେଠାରେ ସମବେତ ହେଲେ ।।୧୦-୧୧।। ଏହାପରେ ବ୍ରାହ୍ମଣମାନେ ବୈଦିକ ବିଧି ଅନୁସାରେ ସୁବର୍ଣ୍ଣଲଙ୍ଗଳ ଦ୍ୱାରା ଯଜ୍ଞଭୂମିକୁ କର୍ଷଣ ଓ ଶୋଧନ କରି ରାଜା ଯୁଧିଷ୍ଠିରଙ୍କୁ ଯଜ୍ଞର ଦୀକ୍ଷା ପ୍ରଦାନ କଲେ ।।୧୨।। ପୂର୍ବେ ବରୁଣଙ୍କ ଯଜ୍ଞରେ ସୁବର୍ଣ୍ଣର ଉପକରଣମାନ ଥିଲା । ଯୁଧିଷ୍ଠିରଙ୍କ ରାଜସୂୟଯଜ୍ଞରେ ମଧ୍ୟ ସେହିପରି ସୁବର୍ଣ୍ଣମୟ ପାତ୍ରମାନ ବ୍ୟବହାର କରାଯାଇଥିଲା । ପରୀକ୍ଷିତ, ବ୍ରହ୍ମା, ଶଙ୍କର, ଇନ୍ଦ୍ରାଦି ଲୋକପାଳ, ସିଦ୍ଧ, ଗନ୍ଧର୍ବ, ବିଦ୍ୟାଧର ଓ ମୁନିଗଣ, ଯକ୍ଷ, ରାକ୍ଷସ, ମହାନାଗ, ବିହଙ୍ଗ,

କିନ୍ନର ଓ ଚାରଣମାନେ ଏବଂ ନିଜ ପତ୍ନୀମାନଙ୍କ ସହିତ ରାଜାମାନେ ସେହି ଯଜ୍ଞରେ ନିମନ୍ତ୍ରିତ ହୋଇ ଉପସ୍ଥିତ ହେଲେ । କୃଷ୍ଣଭକ୍ତ ପାଣ୍ଡୁପୁତ୍ର ଯୁଧିଷ୍ଠିର ଯେ ନିପୁଣ ଭାବରେ ଯଜ୍ଞଟିକୁ ସମ୍ପାଦନ କରିବାକୁ ଯାଉଛନ୍ତି, ଏଥିରେ ସେମାନେ ବିସ୍ମିତ ହେଲେ ନାହିଁ ।।୧୩-୧୫।। ପୂର୍ବେ ବରୁଣଙ୍କୁ ନେଇ ଦେବତାମାନେ ଯେପରି ଯଜ୍ଞ କରାଇଥିଲେ, ସେହିପରି ଦେବତୁଲ୍ୟ ତେଜସ୍ୱୀ ଋତ୍ୱିକମାନେ ଯୁଧିଷ୍ଠିରଙ୍କୁ ଧରି ବିଧିପୂର୍ବକ ରାଜସୂୟଯଜ୍ଞ କରାଇଲେ ।।୧୬।। ଏହାପରେ ସୋମାଭିଷବ (ସୋମଲତାରୁ ରସ ନିର୍ଯ୍ୟାସ କରିବା) ଦିନରେ ମହାରାଜ ଯୁଧିଷ୍ଠିର ଏକାଗ୍ରଚିତ୍ତରେ ସଭାସ୍ଥ ଶ୍ରେଷ୍ଠ ଋତ୍ୱିକ୍‌ମାନଙ୍କୁ ଯଥାବିଧି ଅର୍ଚ୍ଚନା କଲେ ।।୧୭।। ଯଜ୍ଞସ୍ଥଳରେ ବହୁ ଯୋଗ୍ୟ ବ୍ୟକ୍ତିଙ୍କର ଉପସ୍ଥିତି ଦୃଷ୍ଟିରୁ କିଏ ଅଗ୍ରପୂଜାର ଯୋଗ୍ୟ, ସେଥିପାଇଁ ସଭାସଦ୍‌ମାନେ ନିଜ ନିଜ ମଧ୍ୟରେ ଚର୍ଚ୍ଚା କରୁଥିବାବେଳେ ସହଦେବ ଠିଆ ହୋଇ କହିଲେ, ସଦସ୍ୟଗଣ, ଏହି ସଭାସ୍ଥଳରେ ଯଦୁବଂଶର ଶିରୋମଣି ଭଗବାନ୍ ଶ୍ରୀକୃଷ୍ଣ ଅଗ୍ରପୂଜାର ଯୋଗ୍ୟ । କାରଣ ସେ ସମସ୍ତ ଦେବତା ଏବଂ ଦେଶ କାଳ ଓ ଧନ ଆଦି ରୂପରେ ବିଦ୍ୟମାନ ।।୧୮-୧୯।। ସେ ହେଉଛନ୍ତି ଏଇ ବିଶ୍ୱର ସ୍ୱରୂପ ଓ ସମସ୍ତ ଯଜ୍ଞର ଆତ୍ମା । ସେ ହେଉଛନ୍ତି ଅଗ୍ନି, ଅଗ୍ନିରେ ପ୍ରଦତ୍ତ ଆହୁତି, ଉଚ୍ଚାରିତ ମନ୍ତ୍ର, ଜ୍ଞାନମାର୍ଗ ଓ ଯୋଗମାର୍ଗ ଆଦିର ଫଳସ୍ୱରୂପ ।।୨୦।। ହେ ସଦସ୍ୟବୃନ୍ଦ, ଏହି ଭଗବାନ୍ ଶ୍ରୀକୃଷ୍ଣ ହେଉଛନ୍ତି ଏକ ଓ ଅଦ୍ୱିତୀୟ, ଜନ୍ମରହିତ ଓ ଆତ୍ମାରାମ । ସେ ନିଜକୁ ଆଶ୍ରୟ କରି ଏହି ଜଗତକୁ ସୃଷ୍ଟି କରନ୍ତି ଏବଂ ଏହାର ପାଳନ ଓ ସଂହାର କରନ୍ତି । ଯେଣୁ ସେ ହେଉଛନ୍ତି ଏଇ ଜଗତର ଆତ୍ମା ଏବଂ ତା'ର କାରଣ ।।୨୧।। ଏହାଙ୍କ ଅନୁଗ୍ରହରୁ ଏହି ସଂସାରରେ ଲୋକମାନେ ବିଭିନ୍ନ ଶୁଭକର୍ମ କରନ୍ତି ଏବଂ ଧର୍ମାର୍ଜନର ଶ୍ରେୟ ପ୍ରାପ୍ତ ହୁଅନ୍ତି । ସେଥିପାଇଁ କୃଷ୍ଣଙ୍କୁ ହିଁ ପ୍ରଥମ ଅର୍ଘ୍ୟ ପ୍ରଦାନ କରାଯିବା ଉଚିତ । ତାଙ୍କୁ ପ୍ରଥମେ ପୂଜା କଲେ ସମସ୍ତ ପ୍ରାଣୀଙ୍କର ଓ ନିଜର ମଧ୍ୟ ପୂଜା ହୋଇପାରିବ ।।୨୨-୨୩।। ଯେ ଦାନର ଅକ୍ଷୟ ପୁଣ୍ୟ ଅର୍ଜନ କରିବାକୁ ଚାହେ, ସେ ସର୍ବଭୂତଙ୍କ ଆତ୍ମାସ୍ୱରୂପ, ସମଦର୍ଶୀ, ଶାନ୍ତ, ଓ ପରିପୂର୍ଣ୍ଣ ଭଗବାନ ଶ୍ରୀକୃଷ୍ଣଙ୍କୁ ହିଁ ପ୍ରଥମ ଅର୍ଘ୍ୟ ଦାନ କରିବା ଉଚିତ ।।୨୪।। କୃଷ୍ଣଙ୍କ ମହିମା ବିଷୟରେ ଅଭିଜ୍ଞ ସହଦେବ ଏହା କହି ନୀରବ ହେଲେ । ତାହା ଶୁଣି ସଜ୍ଜନମାନେ ସାଧୁ ସାଧୁ କହି ତାଙ୍କୁ ପ୍ରଶଂସା କଲେ ।।୨୫।। ବ୍ରାହ୍ମଣମାନଙ୍କର ସାଧୁବାଦ ଶୁଣି ଏବଂ ସଭାସ୍ଥ ଲୋକଙ୍କ ହୃଦୟର ଅଭିପ୍ରାୟ ଜାଣି ଯୁଧିଷ୍ଠିର ଆନନ୍ଦରେ ପ୍ରେମବିହ୍ୱଳ ହୋଇ ଭଗବାନ୍ ଶ୍ରୀକୃଷ୍ଣଙ୍କୁ ପୂଜା କଲେ ।।୨୬।। ଧର୍ମରାଜ ତାଙ୍କ ପାଦ ଦୁଇଟି ପ୍ରକ୍ଷାଳନ କରି ଭାର୍ଯ୍ୟା ଦ୍ରୌପଦୀ, ଭାଇ, ବନ୍ଧୁ, କୁଟୁମ୍ବ ଓ ମନ୍ତ୍ରୀମାନଙ୍କ ସହିତ ତାଙ୍କ ପବିତ୍ର ପାଦୋଦକକୁ ମସ୍ତକରେ ଧାରଣ କଲେ ।।୨୭।। ସେ ଭଗବାନଙ୍କୁ ପୀତ ପଟ୍ଟବସ୍ତ୍ର ଓ ମହାମୂଲ୍ୟ ଅଳଙ୍କାରମାନଙ୍କଦ୍ୱାରା ପୂଜା କରି ଅଶ୍ରୁପୂର୍ଣ୍ଣ ନୟନରେ ତାଙ୍କୁ ଚାହିଁ ପାରିଲେ ନାହିଁ ।।୨୮।। ଭଗବାନ୍ ଶ୍ରୀକୃଷ୍ଣଙ୍କୁ ଏହିପରି ପୂଜିତ ହେବାର ଦେଖି ଲୋକମାନେ କୃତାଞ୍ଜଳି ହୋଇ ଏବଂ 'ନମୋ ନମଃ', 'ଜୟ ଜୟ' ଆଦି ଧ୍ୱନି କରି ପ୍ରଣାମ କଲେ । ତାଙ୍କ ଆଡ଼କୁ ବହୁତ ପୁଷ୍ପବୃଷ୍ଟି ହେଲା ।।୨୯।।

ମହାରାଜ ପରିକ୍ଷିତ, ଏହି ସମୟରେ ଅସହିଷ୍ଣୁ ଦମଘୋଷପୁତ୍ର ଶିଶୁପାଳ କୃଷ୍ଣଙ୍କର ଗୁଣବର୍ଣ୍ଣନା ଶୁଣି କ୍ରୁଦ୍ଧ ହୋଇପଡ଼ିଲେ । ସମସ୍ତ ଡର ଭୟକୁ ଛାଡ଼ିଦେଇ ସେ ନିଜର ଆସନରୁ ଉଠିପଡ଼ି ଏବଂ ହାତ ଉଠାଇ ଶ୍ରୀକୃଷ୍ଣଙ୍କୁ ଅତି କଠୋର ବାକ୍ୟ ଶୁଣାଇ କହିବାକୁ ଲାଗିଲେ-- ।।୩୦।। ସର୍ବଶକ୍ତିମାନ୍ କାଳକୁ କେହି ଅତିକ୍ରମ କରିପାରନ୍ତି ନାହିଁ ବୋଲି ଯେଉଁ ଶ୍ରୁତିବାକ୍ୟ ଅଛି, ତାହା ସତ୍ୟ । ଯେହେତୁ ଅଳ୍ପବୁଦ୍ଧି ବାଳକ (ସହଦେବ)ର ବାକ୍ୟରେ ବୃଦ୍ଧମାନଙ୍କର ମଧ୍ୟ ବୁଦ୍ଧିଭେଦ ହେଉଛି ।।୩୧।। ହେ ଶ୍ରେଷ୍ଠ ସଦସ୍ୟଗଣ, ପାତ୍ରଜ୍ଞମାନଙ୍କ ମଧ୍ୟରେ ଆପଣମାନେ ଶ୍ରେଷ୍ଠ । କୃଷ୍ଣ ଅଗ୍ରପୂଜ୍ୟ ବୋଲି ଏହି ବାଳକ ସହଦେବ ଯାହା କହିଛି, ତାହା ଆପଣମାନେ ଗ୍ରହଣ କରନ୍ତୁ ନାହିଁ ।।୩୨।। ଏଠାରେ ମହା ମହା ତପସ୍ୱୀ, ବିଦ୍ୱାନ୍, ବ୍ରତଧାରୀ ନିଷ୍ପାପ ଜ୍ଞାନୀ, ଲୋକପାଳଙ୍କଦ୍ୱାରା ପୂଜିତ ବ୍ରହ୍ମନିଷ୍ଠ ମହର୍ଷି ଓ ଅନ୍ୟାନ୍ୟ ଶ୍ରେଷ୍ଠ ସଦସ୍ୟଗଣ ଉପସ୍ଥିତ ଥିବାବେଳେ ସେମାନଙ୍କୁ ଅବଜ୍ଞା କରି କୁଳପାଂଶୁଳ ଗୋପାଳକୁ ଅଗ୍ରପୂଜା କରିବା କାକକୁ ଯଜ୍ଞଭାଗ ଦେବା ପରି ହେବ । ଏହା କେଉଁ ଦୃଷ୍ଟିରୁ ଠିକ୍ ହେବ ? ।।୩୩-୩୪।। ଏହି କୃଷ୍ଣର ବର୍ଣ୍ଣ,

ଆଶ୍ରମ ବା କୁଳ କିଛି ହେଲେ ନାହିଁ । ଏ ଜଣେ ସକଳ ଧର୍ମଛଡ଼ା ସ୍ୱେଚ୍ଛାଚାରୀ ବ୍ୟକ୍ତି । ଏହାର କିଛି ହେଲେ ଭଲ ଗୁଣ ନାହିଁ । ଏ କିପରି ଅଗ୍ରପୂଜ୍ୟ ହେବ ? ॥୩୫॥ ରାଜା ଯଯାତି ଏମାନଙ୍କ ବଂଶକୁ (ପୁତ୍ର ଯଦୁଙ୍କର ବଂଶ) ଅଭିଶାପ ଦେଇଛନ୍ତି । ସଜ୍ଜନମାନେ ଏମାନଙ୍କୁ ବହିଷ୍କାର କରିଛନ୍ତି । ବୃଥା ମଦ୍ୟପାନରେ ଏମାନେ ବ୍ୟସ୍ତ ରହନ୍ତି । ତେଣୁ ଯାଦବ କୃଷ୍ଣ କିପରି ଅଗ୍ରପୂଜ୍ୟ ହେବ ? ॥୩୬॥ ବ୍ରହ୍ମର୍ଷିମାନଙ୍କଦ୍ୱାରା ସେବିତ ପୁଣ୍ୟ ବ୍ରହ୍ମାବର୍ତ୍ତକୁ ଏବଂ ବେଦାଭ୍ୟାସକୁ ଛାଡ଼ିଦେଇ ଏମାନେ ସମୁଦ୍ରମଧ୍ୟରେ ଦୁର୍ଗ କରି ରହିଛନ୍ତି ଏବଂ ଦସ୍ୟୁ ହୋଇ ପ୍ରଜାପୀଡ଼ନ କରୁଛନ୍ତି । (ତେଣୁ ଏ କୃଷ୍ଣ କିପରି ଅଗ୍ରପୂଜ୍ୟ ହେବ ?) ॥୩୭॥ ପରିକ୍ଷିତ, ଶିଶୁପାଳର ପୁଣ୍ୟ ନଷ୍ଟ ହୋଇଯାଇଥିଲା । ତେଣୁ ସେ ଏପ୍ରକାର ଅଶାଳୀନ ମନ୍ତବ୍ୟମାନ ଦେଉଥିଲା । ସିଂହ ଶୃଗାଳର ରାବ ଶୁଣି ନୀରବ ରହିବା ପରି ଶ୍ରୀକୃଷ୍ଣ ନୀରବ ରହିଲେ । କିଛି କହିଲେ ନାହିଁ ॥୩୮॥ କିନ୍ତୁ ସଭାସଦ୍‌ମାନଙ୍କ ପକ୍ଷରେ କୃଷ୍ଣଙ୍କର ନିନ୍ଦା ଅସହ୍ୟ ହେଲା । ସେମାନେ କାନ ବୁଜି କ୍ରୋଧରେ ଶିଶୁପାଳକୁ ଗାଳିଗୁଲଜ କରି ସଭା ଛାଡ଼ି ଚାଲିଗଲେ ॥୩୯॥ ଭଗବାନ୍‌ଙ୍କର ବା ଭଗବାନଙ୍କ ଭକ୍ତର ନିନ୍ଦା ଶୁଣି ଯେ ସେହି ସ୍ଥାନ ଛାଡ଼ି ଚାଲିଯାଏ ନାହିଁ, ତା'ର ସମସ୍ତ ସୁକୃତ ନଷ୍ଟ ହୁଏ ଏବଂ ସେ ନରକଗାମୀ ହୁଏ । ସେତେବେଳେ କ୍ରୁଦ୍ଧ ପାଣ୍ଡୁପୁତ୍ରମାନେ ଏବଂ ମତ୍ସ୍ୟ, କେକୟ ଓ ସୃଞ୍ଜୟ ବୀରମାନେ ଆୟୁଧମାନ ଉତ୍ତୋଳନ କରି ଶିଶୁପାଳକୁ ମାରିବାପାଇଁ ବାହାରିଲେ ॥୪୦-୪୧॥

ପରିକ୍ଷିତ, ମାତ୍ର ସେଥିରେ ଶିଶୁପାଳ ବିଚଳିତ ନ ହୋଇ ଢାଲ ଏବଂ ଖଡ୍ଗ ଗ୍ରହଣ କଲା ଏବଂ କୃଷ୍ଣଙ୍କ ପକ୍ଷରେ ଥିବା ରାଜାମାନଙ୍କୁ ସଭାସ୍ଥଳରେ ନାନା ଭର୍ତ୍ସନା କଲା ॥୪୨॥ ଭଗବାନ୍ ଶ୍ରୀକୃଷ୍ଣ ନିଜର ଲୋକମାନଙ୍କୁ ଯୁଦ୍ଧ କରିବାରୁ ନିବୃତ୍ତ କରି କ୍ରୋଧରେ ଶିଶୁପାଳ ଆଡ଼କୁ ମାଡ଼ିଯାଇ ତୀକ୍ଷ୍ଣଧାର ଚକ୍ରରେ ତାର ଶିରଚ୍ଛେଦନ କଲେ ॥୪୩॥ ଶିଶୁପାଳ ନିହତ ହେବାରୁ ମହାକୋଳାହଳ ଜାତ ହେଲା । ଶିଶୁପାଳର ଅନୁଗାମୀ ରାଜାମାନେ ନିଜ ନିଜର ଜୀବନରକ୍ଷାପାଇଁ ସେଠାରୁ ପଳାୟନ କଲେ । ଦେଖୁ ଦେଖୁ ଚେଦିରାଜ ଶିଶୁପାଳର ଦେହରୁ ଏକ ଜ୍ୟୋତି ନିର୍ଗତ ହୋଇ କୃଷ୍ଣଙ୍କ ଦେହରେ ଲୀନ ହୋଇଗଲା । ଆକାଶରୁ ଉଲ୍‌କା ପଡ଼ି ଭୂମିରେ ଲୀନ ହେବାପରି ମନେହେଲା ॥୪୪-୪୫॥ ତିନି ଜନ୍ମ (ହିରଣ୍ୟକଶିପୁ, ରାବଣ ଓ ଶିଶୁପାଳ) ଧରି ଭଗବାନଙ୍କ ପ୍ରତି ଶିଶୁପାଳର ଶତ୍ରୁତା ବସା ବାନ୍ଧି ରହିଥିଲା । ଅତିଶୟ କ୍ରୋଧରେ ସେ ସବୁବେଳେ ଶ୍ରୀକୃଷ୍ଣଙ୍କର ରୂପକୁ ହିଁ ଦେଖୁଥିଲା ଓ ତାଙ୍କ କଥା ଚିନ୍ତା କରୁଥିଲା । ତେଣୁ ମୃତ୍ୟୁକାଳରେ ସେ ତାଙ୍କର ସାରୂପ୍ୟ ଲାଭ କଲା । କାରଣ ଯେଉଁ ବସ୍ତୁକୁ ସବୁବେଳେ ଚିନ୍ତା କରାଯାଏ, ବିନାଶକାଳରେ ତାରି ସ୍ୱରୂପତା ହିଁ ପ୍ରାପ୍ତ ହୁଏ ॥୪୬॥ ଏହାପରେ ସମ୍ରାଟ ଯୁଧିଷ୍ଠିର ସଦସ୍ୟମାନଙ୍କ ସହିତ ଋତ୍ୱିକମାନଙ୍କୁ ପ୍ରଚୁର ଦକ୍ଷିଣା ପ୍ରଦାନ କଲେ । ଅନ୍ୟମାନଙ୍କୁ ଯଥାବିଧି ପୂଜା କରି ଯଜ୍ଞାନ୍ତ-ସ୍ନାନ ସମାପନ କଲେ ॥୪୭॥ ଯୋଗେଶ୍ୱରମାନଙ୍କ ଈଶ୍ୱର ଭଗବାନ୍ ଶ୍ରୀକୃଷ୍ଣ ରାଜା ଯୁଧିଷ୍ଠିରଙ୍କ ରାଜସୂୟ ଯଜ୍ଞ ଶେଷ କରି ପାଣ୍ଡବମାନଙ୍କ ଅନୁରୋଧରେ ଇନ୍ଦ୍ରପ୍ରସ୍ଥରେ କିଛି ମାସ କଟାଇଲେ ॥୪୮॥ ପରେ ଯୁଧିଷ୍ଠିରଙ୍କ ଇଚ୍ଛାବିରୁଦ୍ଧରେ ତାଙ୍କୁ ରାଜି କରାଇ ଦେବକୀନନ୍ଦନ ଭଗବାନ୍ ଶ୍ରୀକୃଷ୍ଣ ନିଜର ଅମାତ୍ୟ ଓ ଭାର୍ଯ୍ୟାମାନଙ୍କ ସହିତ ଦ୍ୱାରକାକୁ ପ୍ରସ୍ଥାନ କଲେ । ମହାରାଜ ପରିକ୍ଷିତ, ଋଷିଙ୍କର ଅଭିଶାପରୁ ବୈକୁଣ୍ଠବାସୀ ଜୟ ଓ ବିଜୟଙ୍କର ବାରମ୍ବାର ଜନ୍ମବୃତ୍ତାନ୍ତ ମୁଁ ତୁମ ନିକଟରେ ବର୍ଣ୍ଣନା କଲି । ରାଜସୂୟ ଯଜ୍ଞ ଶେଷପୂର୍ବକ ସ୍ନାନ କରି ରାଜା ଯୁଧିଷ୍ଠିର ବ୍ରାହ୍ମଣ ଓ କ୍ଷତ୍ରିୟମାନଙ୍କ ସଭାମଧ୍ୟରେ ଦେବରାଜ ଇନ୍ଦ୍ରଙ୍କପରି ଶୋଭା ପାଇବାକୁ ଲାଗିଲେ ॥୪୯-୫୧॥ ଯୁଧିଷ୍ଠିରଙ୍କ ଠାରୁ ଉପଯୁକ୍ତ ସତ୍କାର ଲାଭ କରି ଦେବତା, ମନୁଷ୍ୟ ଓ ଆକାଶଚାରୀଗଣ ସମସ୍ତେ ରାଜସୂୟଯଜ୍ଞ ଓ କୃଷ୍ଣଙ୍କର ପ୍ରଶଂସା କରି ନିଜ ନିଜ ଧାମକୁ ପ୍ରସ୍ଥାନ କଲେ । କିନ୍ତୁ ପାଣ୍ଡୁପୁତ୍ରଙ୍କର ଏହି ଶ୍ରୀବୃଦ୍ଧି ଦେଖି ପାପୀ କଳହପ୍ରିୟ ଓ କୁରୁକୁଳର ରୋଗସ୍ୱରୂପ ରାଜା ଦୁର୍ଯ୍ୟୋଧନ ସହିପାରିଲା ନାହିଁ ॥୫୨-୫୩॥ ଶ୍ରୀକୃଷ୍ଣଙ୍କ ଦ୍ୱାରା ଜରାସନ୍ଧବଧ, ବନ୍ଦି ରାଜାମାନଙ୍କର ମୁକ୍ତି, ଶିଶୁପାଳବଧ ଓ ଯୁଧିଷ୍ଠିରଙ୍କ ରାଜସୂୟ ଯଜ୍ଞର କଥା ଯେ କୀର୍ତ୍ତନ କରେ, ସେ ସମସ୍ତ ପାପରୁ ମୁକ୍ତ ହୋଇଯାଏ ॥୫୪॥

## ପଞ୍ଚସ୍ତରି ଅଧ୍ୟାୟ

# ଅପମାନିତ ଦୁର୍ଯ୍ୟୋଧନ

ରାଜା ପରିକ୍ଷିତ ଶ୍ରୀ ଶୁକଦେବଙ୍କୁ ପଚାରିଲେ, ଅଜାତଶତ୍ରୁ ରାଜା ଯୁଧିଷ୍ଠିରଙ୍କ ରାଜସୂୟଯଜ୍ଞ ମହୋତ୍ସବରେ ସମାଗତ ରାଜା, ଋଷି, ମୁନି ଓ ଦେବତାମାନେ ସମସ୍ତେ ସନ୍ତୁଷ୍ଟ ହୋଇଥିଲେ । କିନ୍ତୁ ଦୁର୍ଯ୍ୟୋଧନ ଖୁସି ହୋଇପାରି ନ ଥିଲେ । ଏହାର କାରଣ କ'ଣ ଆପଣ ମୋତେ କହିବା ହୁଅନ୍ତୁ ॥୧-୨॥ ଶ୍ରୀ ଶୁକଦେବ କହିଲେ, ତୁମ ପିତାମହ ମହାତ୍ମା ଯୁଧିଷ୍ଠିରଙ୍କ ପ୍ରେମବଶରୁ ତାଙ୍କ ବନ୍ଧୁବାନ୍ଧବମାନେ ଯଜ୍ଞରେ ବିଭିନ୍ନ ସେବା କାର୍ଯ୍ୟର ଦାୟିତ୍ୱ ନେଇଥିଲେ ॥୩॥ ଭୀମ ଭୋଜନାଳୟ ଦାୟିତ୍ୱରେ ଥିଲେ । ଦୁର୍ଯ୍ୟୋଧନ କୋଷାଧ୍ୟକ୍ଷ ଥିଲେ । ସହଦେବ ଅତିଥି ଅଭ୍ୟାଗତଙ୍କର ସତ୍କାରଦାୟିତ୍ୱରେ ନକୁଳ ବିଭିନ୍ନ ଆବଶ୍ୟକ ବସ୍ତୁର ସଂଗ୍ରହଦାୟିତ୍ୱରେ ଥିଲେ ॥୪॥ ଅର୍ଜୁନ ଗୁରୁଜନମାନଙ୍କର ସେବା ଶୁଶ୍ରୂଷା କରୁଥିଲେ ଏବଂ ଭଗବାନ୍ ଶ୍ରୀକୃଷ୍ଣ ଅତିଥିମାନଙ୍କର ପାଦ ଧୋଇଦେଉଥିଲେ । ଦ୍ରୌପଦୀ ପରିବେଷଣ ଦାୟିତ୍ୱରେ ଓ ମହାମତି କର୍ଣ୍ଣ ଦାନ ଦେବା କାର୍ଯ୍ୟରେ ନିଯୁକ୍ତ ଥିଲେ ॥୫॥ ସାତ୍ୟକି, ବିକର୍ଣ୍ଣ, ହାର୍ଦ୍ଦିକ୍ୟ, ବିଦୁର, ଭୂରିଶ୍ରବା ଓ ବାହ୍ଲୀକଙ୍କର ଅନ୍ୟପୁତ୍ରମାନେ ଏବଂ ସନ୍ତର୍ଦନ ଆଦି ରାଜାମାନେ ଏହି ମହାଯଜ୍ଞରେ ବିଭିନ୍ନ କାର୍ଯ୍ୟର ଦାୟିତ୍ୱ ନେଇଥିଲେ । ରାଜେନ୍ଦ୍ର ପରିକ୍ଷିତ, ଏମାନେ ସମସ୍ତେ ରାଜା ଯୁଧିଷ୍ଠିରଙ୍କର ପ୍ରିୟ କାର୍ଯ୍ୟ କରିବାରେ ଲାଗିଯାଇଥିଲେ ॥୬-୭॥ ଶିଶୁପାଳ ଭକ୍ତବତ୍ସଳ ଭଗବାନଙ୍କ ପାଦପଦ୍ମରେ ଲୀନ ହୋଇଯିବା ପରେ ଯଜ୍ଞକାରୀ ଋତ୍ୱିକ୍, ବିଜ୍ଞ ସଭାସଦ ଓ ବନ୍ଧୁବାନ୍ଧବଙ୍କୁ ରାଜା ଯୁଧିଷ୍ଠିର ଭୂରି ଦକ୍ଷିଣା ଓ ଉପହାରଦ୍ୱାରା ସତ୍କାର କରିଥିଲେ । ତାପରେ ଗଙ୍ଗାନଦୀରେ ଯଜ୍ଞାନ୍ତସ୍ନାନ କରିଥିଲେ । ମୃଦଙ୍ଗ, ଶଙ୍ଖ, ଢୋଲ, ନାଗରା, ଦୁନ୍ଦୁଭି, ଶିଙ୍ଗା ଆଦି ବିଚିତ୍ର ବାଦ୍ୟମାନ ଏହି ସ୍ନାନ ଉତ୍ସବରେ ବାଜି ଉଠିଥିଲା । ନର୍ତ୍ତକୀମାନେ ନୃତ୍ୟ କରୁଥିଲେ । ଗାୟକମାନେ ଦଳଦଳ ହୋଇ ଗାନ କରୁଥିଲେ । ସେମାନଙ୍କର ବୀଣା, ବେଣୁ, ଝାଞ୍ଜ ଆଦି ଧ୍ୱନିରେ ଆକାଶ ପ୍ରତିଧ୍ୱନିତ ହେଉଥିଲା । ସେତେବେଳେ ଚିତ୍ରିତ ଧ୍ୱଜା ଓ ପତାକାଯୁକ୍ତ ରଥମାନଙ୍କରେ ଆରୋହଣ କରି ସୁବର୍ଣ୍ଣହାରରେ ଭୂଷିତ ରାଜାମାନେ ନଗରରୁ ବାହାରି ଆସିଲେ ॥୮-୧୧॥ ଯଦୁବଂଶୀ ସୃଞ୍ଜୟ, କାମ୍ବୋଜ, କୁରୁ, କେକୟ ଓ କୋଶଳଦେଶୀୟ ରାଜାମାନେ ରାଜା ଯୁଧିଷ୍ଠିରଙ୍କୁ ଅଗ୍ରସର କରି ସ୍ନାନଯାତ୍ରା କଲେ । ସେମାନଙ୍କ ଚତୁରଙ୍ଗସେନାରେ ପୃଥିବୀ କମ୍ପିତ ହେବାକୁ ଲାଗିଲା । ସଭାସଦ୍ ଋତ୍ୱିକ ଓ ଶ୍ରେଷ୍ଠ ବ୍ରାହ୍ମଣମାନେ ଉଚ୍ଚସ୍ୱରରେ ବେଦଧ୍ୱନି କରୁଥିଲେ । ଦେବତା, ଋଷି, ପିତୃ ଓ ଗନ୍ଧର୍ବମାନେ ପୁଷ୍ପବୃଷ୍ଟି କରି ସ୍ତୁତି କରୁଥିଲେ । ନରନାରୀମାନେ ଉତ୍ତମ ଅଳଙ୍କାର ଓ ବସ୍ତ୍ରରେ ଭୂଷିତ ହୋଇ ମାଳା ଓ ଗନ୍ଧଚନ୍ଦନ ଆଦି ଲଗାଇ ଯାଉଥିଲେ ଏବଂ ସୁବାସିତ ଦ୍ରବ୍ୟ ପରସ୍ପର ଫିଙ୍ଗା ଫିଙ୍ଗି ହୋଇ ଓ ପରସ୍ପର ଦେହରେ ଲଗାଇ ଆମୋଦ କରୁଥିଲେ ॥୧୨-୧୪॥ ପୁରୁଷମାନେ କ୍ଷୀର, ତୈଳ, ହଳଦି, କୁଙ୍କୁମ ଓ ଅନ୍ୟାନ୍ୟ ସୁଗନ୍ଧ ଦ୍ରବ୍ୟ ବାରାଙ୍ଗନାମାନଙ୍କ ଦେହରେ ବୋଳି ଦେଉଥିଲେ ଏବଂ ବାରାଙ୍ଗନାମାନେ ମଧ୍ୟ ପୁରୁଷଙ୍କ ଦେହରେ ଏହି ସବୁ ଦ୍ରବ୍ୟ ବୋଳି ଆନନ୍ଦରେ ବିହାର କରୁଥିଲେ ॥୧୫॥ ସେଇ ସମୟରେ ଏହି ଉତ୍ସବ ଦେଖିବାପାଇଁ ଉତ୍ତମ ବିମାନମାନଙ୍କୁ ଆରୋହଣ କରି ଆକାଶରେ ଦେବାଙ୍ଗନାମାନେ ଆସିଯିବା ସଙ୍ଗେ ସଙ୍ଗେ ସୁନ୍ଦର ପାଲିଙ୍କିମାନଙ୍କରେ ବସି ରାଜପତ୍ନୀମାନେ ମଧ୍ୟ ବାହାରି ଆସିଲେ । ପାଣ୍ଡବମାନଙ୍କର ମାମୁପୁଅଭାଇ ଶ୍ରୀକୃଷ୍ଣ ଏବଂ ତାଙ୍କ ସଖାମାନେ ସେମାନଙ୍କ ଉପରେ ରଙ୍ଗମାନ ପକାଇବାରୁ ରାଣୀମାନଙ୍କର ମୁଖମଣ୍ଡଳ ଲଜ୍ଜା ଓ ହାସରେ ପ୍ରଫୁଲ୍ଲ ହୋଇ ଉଠୁଥିଲା ॥୧୬॥ ସେହିପରି ରଙ୍ଗପାଣି ଛିଞ୍ଚିବା ଫଳରେ ରାଜପତ୍ନୀମାନଙ୍କର ଶାଢ଼ିସବୁ ତିନ୍ତିଯାଇ ତାଙ୍କ ଦେହ, ସ୍ତନ, ଜଘନ ଓ କଟିଦେଶ ଆଦି ଫୁଟି ଦେଖାଯାଉଥିଲା । ସେମାନେ ମଧ୍ୟ ଶ୍ରୀକୃଷ୍ଣ ଆଦି ଦେବରମାନଙ୍କୁ ଓ ସଖୀମାନଙ୍କୁ ପିଚ୍‌କାରୀଦ୍ୱାରା ରଙ୍ଗପାଣି ଆଦି ପକାଇବାରେ ଲାଗିଥିଲେ ।

ଅସ୍ତବ୍ୟସ୍ତ ହେବାଯୋଗୁଁ ତାଙ୍କ କବରୀ ଫିଟିପଡୁଥିଲା ଓ କବରୀରେ ଥିବା ମାଳାଯାକ ତଳେ ଖସି ପଡୁଥିଲା । କିନ୍ତୁ ଏହି ମନୋହର ବିହାର ମଳିନଚିତ୍ତ କାମୁକ ବ୍ୟକ୍ତିମାନଙ୍କର ଚିତ୍ତଚାଞ୍ଚଲ୍ୟ ସୃଷ୍ଟି କରୁଥିଲା ॥୧୭॥

ସମ୍ରାଟ ଯୁଧିଷ୍ଠିର ନିଜ ପତ୍ନୀମାନଙ୍କ ସହିତ ସୁନ୍ଦର ଅଶ୍ୱ ଓ ସୁବର୍ଣ୍ଣ ହାରରେ ସଜ୍ଜିତ ରଥ ଉପରେ ବିରାଜମାନ ହେଲେ । ତାଙ୍କୁ ଦେଖି ମନେ ହେଲା ବିଭିନ୍ନ କ୍ରିୟା ସହିତ ରାଜସୂୟ ଯଜ୍ଞ ମୂର୍ତ୍ତିମନ୍ତ ହୋଇଛି ॥୧୮॥ ଋତ୍ୱିକମାନେ ଦ୍ରୌପଦୀଙ୍କ ସହିତ ରାଜା ଯୁଧିଷ୍ଠିରଙ୍କୁ ପତ୍ନୀସଂଯାଜ ନାମକ ଯଜ୍ଞକର୍ମ ଓ ଅବଭୃଥନାମକ ଯଜ୍ଞାନ୍ତସ୍ନାନ କରାଇ ଗଙ୍ଗାସ୍ନାନ କରାଇଲେ ॥୧୯॥ ଲୋକଙ୍କ ଦୁନ୍ଦୁଭିଧ୍ୱନି ସହିତ ଦେବଦୁନ୍ଦୁଭିମାନ ବାଜିଉଠିଲା ଏବଂ ଦେବତା, ଋଷି, ପିତୃଗଣ ଓ ମନୁଷ୍ୟମାନେ ପୁଷ୍ପବୃଷ୍ଟି କରିବାକୁ ଲାଗିଲେ ॥୨୦॥ ରାଜା ଯୁଧିଷ୍ଠିର ସ୍ନାନ କରିବା ପରେ ସମସ୍ତ ବର୍ଣ୍ଣ ଓ ଆଶ୍ରମର ଲୋକମାନେ ଗଙ୍ଗାଜଳରେ ସ୍ନାନ କଲେ । କାରଣ ଏହି ସ୍ନାନଦ୍ୱାରା ମହାପାପୀ ମଧ୍ୟ ତତ୍କ୍ଷଣାତ ପାପରୁ ମୁକ୍ତ ହୁଏ ॥୨୧॥ ଏହାପରେ ରାଜା ଯୁଧିଷ୍ଠିର ନୂତନ ପଟ୍ଟବସ୍ତ୍ର ଓ ଉତ୍ତରୀୟ ପରିଧାନ କରି ଏବଂ ବିଭିନ୍ନ ଅଳଙ୍କାରରେ ଭୂଷିତ ହୋଇ ଋତ୍ୱିକ୍, ସଭାସଦ୍ ଓ ବ୍ରାହ୍ମଣମାନଙ୍କୁ ବସ୍ତ୍ରାଳଙ୍କାର ପିନ୍ଧାଇ ବିଧିପୂର୍ବକ ପୂଜାକଲେ ॥୨୨॥ ତା'ପରେ ଭଗବତ୍‌ପରାୟଣ ରାଜା ଯୁଧିଷ୍ଠିର ଭାଇ, ବନ୍ଧୁ, ଜ୍ଞାତି, କୁଟୁମ୍ବ, ମିତ୍ର, ସୁହୃଦ୍, ଆଦି ସମସ୍ତଙ୍କୁ ବାରମ୍ବାର ସତ୍କାରପୂର୍ବକ ସମ୍ମାନିତ କଲେ ॥୨୩॥ ସେତେବେଳେ ମଣିମୟ କୁଣ୍ଡଳ, ମାଳା, ପଗଡ଼ି, ବହୁମୂଲ୍ୟ ହାର, ପଟ୍ଟବସ୍ତ୍ର ଓ ଚଦର ଆଦି ପରିଧାନ କରି ଲୋକମାନେ ଦେବତାଙ୍କ ପରି ଶୋଭା ପାଇଲେ । ଚୂର୍ଣ୍ଣ ଅଳକ ଓ କୁଣ୍ଡଳଯୁକ୍ତ ହୋଇ ଏବଂ ସୁନାର ଚନ୍ଦ୍ରହାରମାନ ପରିଧାନ କରି ସ୍ତ୍ରୀମାନେ ଅତି ସୁନ୍ଦର ଦେଖାଗଲେ ॥୨୪॥ ପରିକ୍ଷିତ, ଏହାପରେ ଋତ୍ୱିକ୍, ସତ୍‌ଚରିତ୍ର ସଭାସଦ ଓ ବେଦଜ୍ଞ ବ୍ରାହ୍ମଣ, ଅନ୍ୟାନ୍ୟ ବ୍ରାହ୍ମଣ, କ୍ଷତ୍ରିୟ, ବୈଶ୍ୟ ଓ ଶୂଦ୍ର, ରାଜନ୍ୟ, ଦେବତା, ଋଷି ଓ ପିତୃଗଣ ଏବଂ ଅନୁଚରଙ୍କ ସହିତ ଲୋକପାଳଗଣ ଓ ଭୂତଗଣ -- ସମସ୍ତ ଉପସ୍ଥିତ ବ୍ୟକ୍ତିଙ୍କୁ ରାଜା ଯୁଧିଷ୍ଠିର ଯଥାବିଧି ପୂଜା କଲେ ଏବଂ ସେମାନେ ତାଙ୍କ ଅନୁମତି ନେଇ ନିଜ ନିଜ ଧାମକୁ ପ୍ରସ୍ଥାନ କଲେ ॥୨୫-୨୬॥

ଅମୃତ ଯେତେ ପାନ କଲେ ମଧ୍ୟ ମରଣଶୀଳ ମନୁଷ୍ୟର ଯେପରି ତୃପ୍ତି ଆସେ ନାହିଁ, ସେହିପରି ଶ୍ରୀହରିଙ୍କ ଦାସ ରାଜର୍ଷି ଯୁଧିଷ୍ଠିରଙ୍କ ରାଜସୂୟ ଯଜ୍ଞର ସମୃଦ୍ଧି ଯେତେ ଦେଖିଲେ ମଧ୍ୟ ଲୋକେ ତୃପ୍ତ ହେଲେ ନାହିଁ । ସେମାନେ ବାରମ୍ବାର ତାଙ୍କର ପ୍ରଶସ୍ତି କରିବାକୁ ଲାଗିଲେ ॥୨୭॥ ତା'ପରେ ନିଜର ସୁହୃଦ୍, ସଖା ଓ ବନ୍ଧୁମାନଙ୍କୁ ବିଦାୟ ଦେବା ପାଇଁ ରାଜା ଯୁଧିଷ୍ଠିରଙ୍କର ମନ ବଳିଲା ନାହିଁ । ସେ ଅତ୍ୟନ୍ତ ପ୍ରେମରେ କୃଷ୍ଣଙ୍କୁ ଓ ଅନ୍ୟମାନଙ୍କୁ ଅନୁରୋଧ କରି ସେଠାରେ କିଛିଦିନ ରଖାଇଲେ ॥୨୮॥ ବତ୍ସ ପରିକ୍ଷିତ, ଯୁଧିଷ୍ଠିରଙ୍କର ପ୍ରିୟକାମୀ ଭଗବାନ୍ ଶ୍ରୀକୃଷ୍ଣ ସାମ୍ବ ଆଦି ଯଦୁବୀରମାନଙ୍କୁ କୁଶସ୍ଥଳୀ (ଦ୍ୱାରକା)କୁ ପଠାଇଦେଇ ନିଜେ ସେଠାରେ ରହିଗଲେ ॥୨୯॥ ଏହିପରି ଧର୍ମପୁତ୍ର ରାଜା ଯୁଧିଷ୍ଠିର ଶ୍ରୀକୃଷ୍ଣଙ୍କ ସାହାଯ୍ୟରେ ନିଜ ମନର ସଙ୍କଳ୍ପରୂପକ ଦୁସ୍ତର ମହାସମୁଦ୍ରକୁ ପାରିହୋଇ ନିଶ୍ଚିନ୍ତ ରହିଲେ ॥୩୦॥

ପରିକ୍ଷିତ, ଥରେ ଶ୍ରୀକୃଷ୍ଣଙ୍କର ଏକାନ୍ତ ଭକ୍ତ ରାଜା ଯୁଧିଷ୍ଠିରଙ୍କ ଅନ୍ତଃପୁରର ଐଶ୍ୱର୍ଯ୍ୟକୁ ଓ ରାଜସୂୟଯଜ୍ଞର ମହିମାକୁ ଦର୍ଶନ କରି ଦୁର୍ଯ୍ୟୋଧନ ଈର୍ଷାରେ ଜଳିଗଲେ ॥୩୧॥ ପାଣ୍ଡବମାନଙ୍କର ଅନ୍ତଃପୁର ମୟଦାନବଦ୍ୱାରା ନିର୍ମିତ ହୋଇଥିଲା । ତାର ଶୋଭା ମର୍ତ୍ତ୍ୟରେ ରାଜାମାନଙ୍କର, ପାତାଳରେ ବଳିଙ୍କର ଓ ସ୍ୱର୍ଗରେ ଇନ୍ଦ୍ରଙ୍କର ସମ୍ପଦକୁ ବଳି ଯାଇଥିଲା । ସେମାନଙ୍କର ବହୁ ପଦାର୍ଥ ସେଠାରେ ଶୋଭା ପାଉଥିଲା । ଦ୍ରୁପଦରାଜ-ନନ୍ଦିନୀ ସେ ସମସ୍ତ ବସ୍ତୁଦ୍ୱାରା ନିଜ ସ୍ୱାମୀମାନଙ୍କୁ ସେବା କରୁଥିଲେ । କୁରୁରାଜ ଦୁର୍ଯ୍ୟୋଧନ ସେଇ ଦ୍ରୌପଦୀଙ୍କ ପ୍ରତି ପ୍ରଲୋଭିତ ହୋଇ ଈର୍ଷାରେ ଜଳି ଯାଉଥିଲେ । ସେହି ଅନ୍ତଃପୁରରେ ଶ୍ରୀକୃଷ୍ଣଙ୍କର ହଜାରେ ରାଣୀ ମଧ୍ୟ ବାସ କରୁଥିଲେ । ନିତମ୍ବର ଭାର ବହନ କରି ସେମାନେ ଧୀରେ ଧୀରେ ଯାଉଥିଲେ ଏବଂ ଯିବାବେଳେ ସେମାନଙ୍କ ନୂପୁର ରୁଣୁଝୁଣୁ ଧ୍ୱନି କରୁଥିଲା । ସେମାନଙ୍କ ସୁନ୍ଦର କଟିଭାଗ, କୁଚକୁଙ୍କୁମଦ୍ୱାରା ରକ୍ତାରୁଣିତ ବକ୍ଷହାର, ଚୂର୍ଣ୍ଣ କୁନ୍ତଳ ଓ ଦୋଳାୟମାନ କୁଣ୍ଡଳଯୁକ୍ତ ମୁଖମଣ୍ଡଳ ଅତିଶୟ ଶୋଭା ପାଉଥିଲା ॥୩୨-୩୩॥ ଦିନେ ରାଜାଧିରାଜ ଯୁଧିଷ୍ଠିର ନିଜ

ଭାଇ, ବନ୍ଧୁ ଓ ନୟନର ତାରା ଶ୍ରୀକୃଷ୍ଣଙ୍କ ସହିତ ମୟଦାନବନିର୍ମିତ ସେହି ସଭାଗୃହରେ ସୁବର୍ଣ୍ଣସିଂହାସନ ଉପରେ ବିଜେ କରି ଦେବରାଜ ଇନ୍ଦ୍ରଙ୍କ ପରି ଶୋଭାପାଉଥିଲେ ଏବଂ ତାଙ୍କ ଐଶ୍ୱର୍ଯ୍ୟ ବ୍ରହ୍ମାଙ୍କ ଐଶ୍ୱର୍ଯ୍ୟ ସହିତ ସମାନ ଥିଲା । ଚାରଣମାନେ ତାଙ୍କ ସ୍ତୁତିଗାନ କରୁଥିଲେ ।।୩୪-୩୫।। ପରିକ୍ଷିତ, ଏହି ସମୟରେ କିରୀଟ ଓ ମାଳାପରିହିତ ଅଭିମାନୀ ଦୁର୍ଯ୍ୟୋଧନ ଭାଇମାନଙ୍କଦ୍ୱାରା ବେଷ୍ଟିତ ହୋଇ ହଠାତ୍ ଅସିହସ୍ତରେ ଦ୍ୱାରାପାଳମାନଙ୍କୁ ଗାଳିଗୁଲଜ କରି ଧସାଇ ପଶିଆସିଲେ ।।୩୬।। ମୟଦାନବର ମାୟାରେ ବିଭ୍ରାନ୍ତ ହୋଇ ସେ ସ୍ଥଳକୁ ଜଳ ମନେ କରି ଲୁଗା ଟେକି ଦେଲେ । ପୁଣି ଜଳକୁ ସ୍ଥଳ ବୋଲି ଭାବି ଅସାବଧାନତାହେତୁ ସେଥିରେ ପଡ଼ିଗଲେ । ତାଙ୍କୁ ପଡ଼ିଯିବାର ଦେଖି ଭୀମ ହସିଉଠିଲେ । ଅନ୍ୟ ରାଜା ଓ ସ୍ତ୍ରୀମାନେ ମଧ୍ୟ କୃଷ୍ଣଙ୍କଦ୍ୱାରା ଉତ୍ସାହିତ ହୋଇ ଯୁଧିଷ୍ଠିର ମନା କରିବା ସତ୍ତ୍ୱେ ହସିବାକୁ ଲାଗିଲେ ।।୩୭-୩୮।। ଦୁର୍ଯ୍ୟୋଧନ ଲଜ୍ଜିତ ହୋଇ ମୁହଁ ତଳକୁ କରିଦେଲେ ଏବଂ କ୍ରୋଧରେ ଜଳିଉଠି କିଛି ନ କହି ସେଠାରୁ ହସ୍ତିନାପୁର ଅଭିମୁଖରେ ବାହାରିଗଲେ । ସଜ୍ଜନମାନଙ୍କ ମଧ୍ୟରେ ହାହାକାର ଧ୍ୱନି ଶୁଣାଗଲା । ଅଜାତଶତ୍ରୁ ଯୁଧିଷ୍ଠିରଙ୍କ ମନ ଖରାପ ହୋଇଗଲା । ପରୀକ୍ଷିତ, ଭଗବାନ୍ ଶ୍ରୀକୃଷ୍ଣ କିନ୍ତୁ ଚୁପ୍ ହୋଇ ବସିଥିଲେ । ପୃଥିବୀର ଭାରହରଣ କରିବା ଇଚ୍ଛାରେ ତାଙ୍କ ଦୃଷ୍ଟି ପଡ଼ିବା ମାତ୍ରେ ଦୁର୍ଯ୍ୟୋଧନଙ୍କର ଏହି ଭ୍ରମ ସୃଷ୍ଟି ହୋଇଥିଲା ।।୩୯।। ମହାରାଜ ପରିକ୍ଷିତ, ଯୁଧିଷ୍ଠିରଙ୍କ ରାଜସୂୟ ମହାଯଜ୍ଞରେ ଦୁର୍ଯ୍ୟୋଧନଙ୍କ ଦୁଷ୍ଟପଣ ସମ୍ପର୍କରେ ତୁମେ ଯାହା ମୋତେ ପଚାରିଥିଲ ମୁଁ ତୁମକୁ ତାହା କହିଲି ।।୪୦।।

### ଛଅସ୍ତରି ଅଧ୍ୟାୟ

## ଶାଲ୍ୱର ଦ୍ୱାରକା ଆକ୍ରମଣ

ଶ୍ରୀ ଶୁକଦେବ କହିଲେ, ପରିକ୍ଷିତ, ନରଲୀଳା କରୁଥିବା କୃଷ୍ଣଙ୍କର ଅନ୍ୟ ଏକ ଅଦ୍ଭୁତ କର୍ମ ଶୁଣ--କିପରି ସୌଭରାଜ ଶାଲ୍ୱ ନିହତ ହେଲେ, ତାହା ମୁଁ ବର୍ଣ୍ଣନା କରୁଛି ।।୧।। ଶିଶୁପାଳର ସଖା ଶାଲ୍ୱ ରୁକ୍ମିଣୀଙ୍କର ବିବାହ ସମୟରେ ଆସିଥିଲା ଓ ସେତେବେଳେ ଯାଦବମାନଙ୍କଦ୍ୱାରା ଜରାସନ୍ଧ ଆଦି ରାଜାମାନଙ୍କ ସହିତ ଯୁଦ୍ଧରେ ପରାସ୍ତ ହୋଇଥିଲା । ସେ ପରାଜିତ ରାଜାମାନଙ୍କ ଆଗରେ ପ୍ରତିଜ୍ଞା କଲା, ସମସ୍ତେ ଶୁଣନ୍ତୁ, ମୁଁ ଦିନେ ଏହି ପୃଥିବୀକୁ ଯାଦବଶୂନ୍ୟ କରିବି ଓ ସମସ୍ତେ ମୋର ପୁରୁଷକାର ଦେଖିବେ ।।୨-୩।। ମୂଢ଼ବୁଦ୍ଧି ଶାଲ୍ୱ ଏହିପରି ପ୍ରତିଜ୍ଞା କରି ପଶୁପତି ଶିବଙ୍କର ଆରାଧନା କଲା ଏବଂ ଦିନକୁ ମୁଠାଏ ମାତ୍ର ପାଉଁଶ ଖାଉଥିଲା ।।୪।। ଶୀଘ୍ର ସନ୍ତୁଷ୍ଟ ହୁଅନ୍ତିବୋଲି ଉମାପତି ଶଙ୍କରଙ୍କୁ ଆଶୁତୋଷ କୁହାଯାଏ । ତାଙ୍କର ଶରଣାପନ୍ନ ଶାଲ୍ୱକୁ ସେ ବର୍ଷକ ପରେ ବରଦାନ କଲେ । ଶାଲ୍ୱ ବର ମାଗିଲା -- ଦେବାସୁର, ନାଗ, ନର, ଗନ୍ଧର୍ବ ଓ ରାକ୍ଷସ କେହି ଯାହାକୁ ଭେଦ କରିପାରିବେ ନାହିଁ, ଇଚ୍ଛା ଅନୁସାରେ ଯାଇ ପାରୁଥିବା ସେପରି ଏକ ଯାନ ମୋତେ ପ୍ରଦାନ କରନ୍ତୁ; ଯାହାକି ଯାଦବମାନଙ୍କପାଇଁ ଭୟାନକ ହେବ ।।୫-୬।। ଭଗବାନ୍ ଶଙ୍କର 'ତଥାସ୍ତୁ' କହି ଶାଲ୍ୱପାଇଁ ଏକ ଲୌହମୟ ନଗର ନିର୍ମାଣ କରିବାକୁ ମୟଦାନବକୁ ଆଦେଶଦେଲେ ଏବଂ ମୟଦାନବ ତାହାକୁ ନିର୍ମାଣ କରି ଶାଲ୍ୱକୁ ଦାନ କଲେ ।।୭।। ଶାଲ୍ୱ ଯେଉଁ ବିମାନଟି ଲାଭ କଲା, ତାହା ତାର ଇଚ୍ଛା ଅନୁସାରେ ଗତି କରୁଥିଲା ଏବଂ ଏପରି ଅନ୍ଧକାରାଚ୍ଛନ୍ନ ଥିଲା ଯେ ଅନ୍ୟମାନେ ତାହାକୁ ଦେଖିପାରୁ ନ ଥିଲେ । ଯାଦବମାନଙ୍କ ସହିତ ତା'ର ଶତ୍ରୁତାକୁ ମନେ ପକାଇ ଶାଲ୍ୱ ସେହି ଯାନରେ ବସି ଦ୍ୱାରାବତୀ ଯାତ୍ରା କଲା ।।୮।।

ପରିକ୍ଷିତ, ସେ ଏକ ବିଶାଳ ସେନା ସହିତ ଦ୍ୱାରକାକୁ ଅବରୁଦ୍ଧ କଲା ଏବଂ ଦ୍ୱାରକାର ଉଦ୍ୟାନ ଓ ଉପବନ ଧ୍ୱଂସ କରିବାକୁ ଲାଗିଲା ।।୯।। ସେ ତାର ଶ୍ରେଷ୍ଠ ବିମାନରୁ ଅସ୍ତ୍ର-ଶସ୍ତ୍ର ସହିତ ପ୍ରସ୍ତର, ବୃକ୍ଷ, ବଜ୍ର, ସର୍ପ ଓ ଶିଳା ବୃଷ୍ଟି କରିବାକୁ

ଲାଗିଲା । ପ୍ରବଳ ଘୂର୍ଣ୍ଣିବାତ୍ୟା ସୃଷ୍ଟି ହୋଇ ଚତୁର୍ଦ୍ଦିଗ ଧୂଳିରେ ଆଚ୍ଛାଦିତ ହେଲା । ଦ୍ୱାରକାର ନଗରଦ୍ୱାର, ପ୍ରାସାଦ, ଅଟ୍ଟାଳିକା, ପ୍ରାଚୀର, କ୍ରୀଡ଼ାସ୍ଥଳ ଓ ଘରଦ୍ୱାର ସବୁ ନଷ୍ଟଭ୍ରଷ୍ଟ ହେବାକୁ ଲାଗିଲା । ପୂର୍ବ କାଳରେ ତ୍ରିପୁରାସୁର ଯେପରି ପୃଥିବୀରେ ଉତ୍ପାତ କରିଥିଲା, ସେହିପରି ଶାଲ୍ୱ କୃଷ୍ଣଙ୍କର ନଗରୀକୁ ଉତ୍ପୀଡ଼ିତ କଲା । ଦ୍ୱାରକାର ନରନାରୀମାନେ ମୁହୂର୍ତ୍ତକପାଇଁ ମଧ୍ୟ ଶାନ୍ତି ପାଇଲେ ନାହିଁ ॥୧୦-୧୨॥ ନିଜ ପ୍ରଜାମାନେ ଏହିପରି କଷ୍ଟ ପାଉଥିବା ଦେଖି ଭଗବାନ୍ ପ୍ରଦ୍ୟୁମ୍ନ ସମସ୍ତଙ୍କୁ 'ଭୟ କର ନାହିଁ' ବୋଲି ସାନ୍ତ୍ୱନା ଦେଲେ ଏବଂ ରଥରେ ବସି ଶାଲ୍ୱସହିତ ଯୁଦ୍ଧପାଇଁ ବାହାରିଗଲେ ॥୧୩॥ ତାଙ୍କ ସହିତ ସାତ୍ୟକି, ଚାରୁଦେଷ୍ଣ, ସାମ୍ବ, ସାନଭାଇଙ୍କ ସହିତ ଅକ୍ରୂର, କୃତବର୍ମା, ଭାନୁବିନ୍ଦ, ଗଦ, ଶୁକ, ସାରଣ ଆଦି ଧନୁର୍ଦ୍ଧର ବୀରମାନେ ଯୁଦ୍ଧପାଇଁ ବାହାରିପଡ଼ିଲେ । ଏହି ମହାରଥୀମାନେ ବର୍ମ ଧାରଣ କରି ରଥ, ହସ୍ତୀ, ଅଶ୍ୱ ଓ ପଦାତିକବାହିନୀକୁ ସାଙ୍ଗରେ ଧରି ବାହାରିଲେ ॥୧୪-୧୫॥ ପ୍ରାଚୀନ କାଳରେ ଦେବତାମାନଙ୍କ ସହିତ ଅସୁରମାନଙ୍କର ଯେପରି ଯୁଦ୍ଧ ହୋଇଥିଲା, ଯାଦବମାନଙ୍କ ସହିତ ଶାଲ୍ୱ ଏବଂ ତାର ଅନୁଗାମୀମାନଙ୍କର ସେହିପରି ଏକ ତୁମୂଳ ଲୋମହର୍ଷଣ ଯୁଦ୍ଧ ଆରମ୍ଭ ହେଲା ॥୧୬॥ ସୂର୍ଯ୍ୟ ଉଦିତ ହୋଇ ରାତ୍ରିର ଅନ୍ଧକାରକୁ ଯେପରି ନାଶ କରେ, ସେହିପରି ରୁକ୍ମିଣୀନନ୍ଦନ ପ୍ରଦ୍ୟୁମ୍ନ ଦିବ୍ୟାସ୍ତ୍ରଦ୍ୱାରା କ୍ଷଣକମଧ୍ୟରେ ଶାଲ୍ୱର ମାୟାକୁ ନଷ୍ଟ କରିଦେଲେ ॥୧୭॥ ସେ ସୁବର୍ଣ୍ଣପୁଙ୍ଖ, ଅଦୃଶ୍ୟଗ୍ରନ୍ଥି ଓ ଲୌହମୁଖ ପଚିଶଟି ବାଣଦ୍ୱାରା ଶାଲ୍ୱର ସେନାପତିକୁ ବିଦ୍ଧ କଲେ । ଏହାପରେ ଶହେ ବାଣଦ୍ୱାରା ଶାଲ୍ୱକୁ, ଏକ ଏକ ବାଣ ଦ୍ୱାରା ତା' ସୈନ୍ୟମାନଙ୍କୁ, ଦଶଦଶଟି ବାଣଦ୍ୱାରା ସାରଥିମାନଙ୍କୁ ଏବଂ ତିନି ତିନୋଟି ବାଣଦ୍ୱାରା ଅଶ୍ୱ, ଗଜ, ରଥ ଆଦି ତା'ର ବାହନମାନଙ୍କୁ ପ୍ରହାର କଲେ ॥୧୮-୧୯॥ ମହାବୀର ପ୍ରଦ୍ୟୁମ୍ନଙ୍କର ସେହି ଅଦ୍ଭୁତକର୍ମ ଦର୍ଶନ କରି ନିଜ ପକ୍ଷର ଓ ଶତ୍ରୁ ପକ୍ଷର ସୈନିକମାନେ ତାଙ୍କୁ ପ୍ରଶଂସା କରିବାକୁ ଲାଗିଲେ ॥୨୦॥ କିନ୍ତୁ ମୟଦାନବ ନିର୍ମିତ ସେହି ମାୟାମୟ ରଥ କେତେବେଳେ ବହୁ ରୂପରେ ବା ଏକ ରୂପରେ ଦେଖାଯାଉଥିଲା ତ କେତେବେଳେ ଆଦୌ ଦେଖା ଯାଉ ନ ଥିଲା । ଯାଦବ ଯୋଦ୍ଧାମାନେ ଶତ୍ରୁର ଏହି ରଥକୁ ଠଉରାଇ ପାରୁ ନ ଥିଲେ ॥୨୧॥ ସୌଭ ନାମକ ସେହି ରଥ କେତେବେଳେ ପୃଥିବୀରେ, କେତେବେଳେ ଆକାଶରେ, କେତେବେଳେ ଗିରିଶିଖରରେ, କେତେବେଳେ ବା ଜଳମଧ୍ୟରେ ଅଲାତଚକ୍ର (ଜଳନ୍ତା ଚକ୍ର) ପରି ବୁଲୁଥିଲା ଏବଂ କେଉଁଠି ହେଲେ ସ୍ଥିର ହୋଇ ରହୁ ନ ଥିଲା ॥୨୨॥ ସୈନ୍ୟମାନଙ୍କ ସହିତ ରଥାରୋହୀ ଶାଲ୍ୱ ଯେଉଁ ଯେଉଁ ସ୍ଥାନରେ ଦେଖାଯାଉଥିଲା, ଯାଦବ ସେନାପତିମାନେ ସେହି ସେହି ସ୍ଥାନକୁ ଶରବୃଷ୍ଟି କରୁଥିଲେ । ଅଗ୍ନି ଓ ସୂର୍ଯ୍ୟଙ୍କ ପରି ଦାହିକାଶକ୍ତିସମ୍ପନ୍ନ ଓ ସର୍ପବିଷପରି ଭୟଙ୍କର ଯାଦବମାନଙ୍କ ବାଣର ଆଘାତରେ ଶାଲ୍ୱର ବିମାନ ଓ ସୈନ୍ୟମାନେ ପୀଡ଼ିତ ହେବାରୁ ଶାଲ୍ୱ କ'ଣ କରିବ, ଜାଣି ପାରିଲା ନାହିଁ । ଅନ୍ୟପକ୍ଷରେ ଯାଦବବୀରମାନେ ଶାଲ୍ୱ ଓ ତାର ସେନାପତିମାନଙ୍କ ଅସ୍ତ୍ରବୃଷ୍ଟିରେ ଅତିଶୟ ପୀଡ଼ିତ ହୋଇ ଇହଲୋକର କୀର୍ତ୍ତି ଓ ପରଲୋକର ଧର୍ମାର୍ଜନପାଇଁ ଯୁଦ୍ଧକ୍ଷେତ୍ର ଛାଡ଼ି ଗଲେ ନାହିଁ । ଦ୍ୟୁମାନ୍ ନାମକ ଶାଲ୍ୱର ଅମାତ୍ୟ ପ୍ରଦ୍ୟୁମ୍ନଙ୍କ ଦ୍ୱାରା ପୂର୍ବରୁ ଆହତ ହୋଇଥିଲା । ସେ ପ୍ରଦ୍ୟୁମ୍ନଙ୍କ ନିକଟକୁ ଆସି ଏକ ଲୌହମୟ ଗଦା ଦ୍ୱାରା ତାଙ୍କୁ ଆଘାତ କରି ଉଚ୍ଚ ସ୍ୱରରେ ଗର୍ଜନ କରିବାକୁ ଲାଗିଲା ॥୨୩-୨୬॥ ସେହି ଗଦାଘାତରେ ଅରିନ୍ଦମ ପ୍ରଦ୍ୟୁମ୍ନଙ୍କର ବକ୍ଷସ୍ଥଳ ବିଦୀର୍ଣ୍ଣ ହେଲା । ସେ ଅଚେତନ ହୋଇଗଲେ । ଦାରୁକଙ୍କର ପୁତ୍ର ଯେ କି ପ୍ରଦ୍ୟୁମ୍ନଙ୍କର ସାରଥି, ଯୁଦ୍ଧଧର୍ମ କ'ଣ ଜାଣିଥିଲେ । ସେ ପ୍ରଦ୍ୟୁମ୍ନଙ୍କୁ ଯୁଦ୍ଧସ୍ଥଳରୁ ଅନ୍ୟତ୍ର ନେଇଗଲେ ॥୨୭॥ ଅଳ୍ପ ସମୟ ମଧ୍ୟରେ ସଂଜ୍ଞା ଲାଭ କରି କୃଷ୍ଣଙ୍କ ପୁତ୍ର ପ୍ରଦ୍ୟୁମ୍ନ ସାରଥିକୁ କହିଲେ, ସାରଥି, ତୁମର ଯୁଦ୍ଧକ୍ଷେତ୍ରରୁ ପଳାଇଆସିବା ଠିକ୍ ହେଲା ନାହିଁ । ଯଦୁକୁଳରେ ଜନ୍ମ ହୋଇ କେହି ଯୁଦ୍ଧ ଛାଡ଼ି ପଳାଇଆସିବାର ଶୁଣାଯାଇ ନାହିଁ । ଦୁର୍ବଳଚିତ୍ତ ସାରଥିଯୋଗୁଁ ମୁଁ କଳଙ୍କିତ ହେଲି ॥୨୮-୨୯॥ ଯୁଦ୍ଧକ୍ଷେତ୍ରରୁ ପଳାଇଆସିବା ପରେ କୃଷ୍ଣ ଓ ବଳରାମଙ୍କ ସହିତ ମୋର ଯେବେ ଭେଟ ହେବ, ତେବେ ସେ ପଚାରିଲେ, ମୁଁ କି ଯୋଗ୍ୟ କାର୍ଯ୍ୟ କରିଛି ବୋଲି ତାଙ୍କୁ କହିବି ? ॥୩୦॥ ମୋର ଭାଉଜମାନେ ମୋତେ ଉପହାସ କରି କହିବେ, ଆଚ୍ଛା କହ, କହ, ଶତ୍ରୁମାନଙ୍କସହିତ ଯୁଦ୍ଧ କଲାବେଳେ ତୁମର କାହିଁକି ଏପରି କ୍ଳୀବତ୍ୱ ଘଟିଲା ! ॥୩୧॥ ସାରଥି କହିଲା, ଆୟୁଷ୍ମାନ୍,

ସାରଥି ବିପଦରେ ପଡ଼ିଲେ ରଥୀ ଯେପରି ତାକୁ ରକ୍ଷା କରେ, ସାରଥି ମଧ୍ୟ ବିପଦବେଳେ ରଥୀଙ୍କୁ ସେହିପରି ରକ୍ଷା କରିବା ଉଚିତ -- ଏହା କ୍ଷାତ୍ର ଧର୍ମ ବୋଲି ଜାଣି ମୁଁ ଏହିପରି କରିଛି ।।୩୨।। ଶତ୍ରୁର ଗଦାଘାତରେ ଆପଣ ପୀଡ଼ିତ ଓ ମୂର୍ଚ୍ଛିତ ହୋଇ ପଡ଼ିଥିଲେ । ସେଥିପାଇଁ ପୂର୍ବୋକ୍ତ ଧର୍ମ ଅନୁଯାୟୀ ମୁଁ ଆପଣଙ୍କୁ ଯୁଦ୍ଧଭୂମିରୁ ନେଇଆସିଛି ।।୩୩।।

## ସତସ୍ତରି ଅଧ୍ୟାୟ

# ଶାଲ୍ୱବଧ

ଶ୍ରୀ ଶୁକଦେବ କହିଲେ, ପରିକ୍ଷିତ, ପ୍ରଦ୍ୟୁମ୍ନ ମୁହଁ ହାତ ଧୋଇ ବର୍ମ ଓ ଧନୁ ଧାରଣପୂର୍ବକ 'ମୋତେ ବୀର ଦ୍ୟୁମାନ୍‌ଙ୍କ ପାଖକୁ ନେଇଚାଲ' ବୋଲି ସାରଥିକୁ ଆଦେଶ ଦେଲେ ।।୧।। ରୁକ୍ମିଣୀନନ୍ଦନ ପ୍ରଦ୍ୟୁମ୍ନ ଦେଖିଲେ ଯେ ଦ୍ୟୁମାନ୍ ତାଙ୍କ ସେନାକୁ ବିନାଶ କରିବାରେ ଲାଗିଛି । ପ୍ରଦ୍ୟୁମ୍ନ ତାକୁ ପ୍ରତିରୋଧ କରି ଆଠଟି ବାଣରେ ବିଦ୍ଧ କଲେ ।।୨।। ଚାରୋଟି ବାଣରେ ତାର ଘୋଡ଼ାମାନଙ୍କୁ ଏବଂ ଗୋଟିଏ ଗୋଟିଏ ବାଣରେ ତାର ସାରଥି, ଧନୁ ଓ ଧ୍ୱଜାକୁ କାଟିପକାଇ ଅନ୍ୟ ଏକ ଶରରେ ତାର ଶିରଚ୍ଛେଦନ କଲେ ।।୩।। ଗଦ, ସାତ୍ୟକି ଓ ସାମ୍ବ ଆଦି ଯଦୁବୀରମାନେ ସୌଭ ବିମାନରେ ଥିବା ଶାଲ୍ୱର ସୈନ୍ୟମାନଙ୍କୁ ବିନାଶ କରିବାକୁ ଲାଗିଲେ । ମୁଣ୍ଡ ଛିଣ୍ଡି ଯାଇ ସେମାନେ ସମୁଦ୍ରରେ ପଡ଼ିଲେ ।।୪।। ଏହିପରି ଯାଦବ ଓ ଶାଲ୍ୱର ସେନା ପରସ୍ପରକୁ ବିନାଶ କରିବାକୁ ଲାଗିଲେ ଏବଂ ସତେଇଶ ଦିନ ଧରି ଉଭୟଙ୍କ ମଧ୍ୟରେ ତୁମୁଳ ସଂଗ୍ରାମ ହେଲା ।।୫।।

ଧର୍ମପୁତ୍ର ଯୁଧିଷ୍ଠିରଙ୍କ ନିମନ୍ତ୍ରଣରେ କୃଷ୍ଣ ଇନ୍ଦ୍ରପ୍ରସ୍ଥ ଯାଇଥିଲେ । ଶିଶୁପାଳର ନିଧନ ଓ ରାଜସୂୟ ଯଜ୍ଞ ଶେଷ ହେବା ପରେ ଅତି ଭୟଙ୍କର ଦୁର୍ଲକ୍ଷଣମାନ ସେ ଦେଖିବାକୁ ପାଇଲେ । କୁରୁବୃଦ୍ଧ, ମୁନିଋଷି, କୁନ୍ତୀ ଓ ତାଙ୍କ ପୁତ୍ରମାନଙ୍କର ଅନୁମତି ନେଇ ସେ ଦ୍ୱାରକାକୁ ପ୍ରସ୍ଥାନ କଲେ ।।୬-୭।। ସେ ସ୍ୱଗତ ଭାବରେ କହିବାକୁ ଲାଗିଲେ, ମୁଁ ମୋର ପୂଜ୍ୟ ବଡ଼ଭାଇ ବଳରାମଙ୍କ ସହିତ ଏଠାକୁ ଚାଲି ଆସିଲି । ବର୍ତ୍ତମାନ ଶିଶୁପାଳର ପକ୍ଷପାତୀ ରାଜାମାନେ ଦ୍ୱାରକାପୁରୀକୁ ଛାରଖାର କରୁଥିବେ । ଏହିପରି ଭାବି ଭାବି ବ୍ୟଗ୍ରଚିତ୍ତରେ ଶ୍ରୀକୃଷ୍ଣ ଦ୍ୱାରକାକୁ ଆସି ଦେଖିଲେ ଯେ ସୌଭ-- ବିମାନରେ ଆରୋହଣ କରି ଶାଲ୍ୱ ଯାଦବମାନଙ୍କୁ ବହୁ କଷ୍ଟ ଦେଉଛି । ସେ ବଳରାମଙ୍କୁ ନଗରରକ୍ଷାର ଦାୟିତ୍ୱ ଦେଇ ସାରଥି ଦାରୁକକୁ କହିଲେ, ସାରଥି, ତୁମେ ଶୀଘ୍ର ମୋର ରଥକୁ ଶାଲ୍ୱପାଖକୁ ନେଇଯାଅ । ସୌଭ ବିମାନକୁ ଘେନି ସେ ବହୁ ମାୟା ରଚନା କରୁଛି । ତାକୁ ଆଦୌ ଭୟ କର ନାହିଁ ।।୮-୧୦।। ସାରଥି ଦାରୁକ ରଥରେ ବସି ଶାଲ୍ୱ-ଅଭିମୁଖରେ ରଥ ଚଳାଇଲେ । ନିଜ ପକ୍ଷର ଓ ଶତ୍ରୁପକ୍ଷର ସୈନ୍ୟମାନେ ଯୁଦ୍ଧଭୂମିରେ ଶ୍ରୀକୃଷ୍ଣଙ୍କ ଗରୁଡ଼ଧ୍ୱଜ ରଥ ପ୍ରବେଶ କରିବାର ଦେଖିପାରିଲେ ।।୧୧।। ସେତେବେଳକୁ ଶାଲ୍ୱର ସୈନ୍ୟମାନେ ପ୍ରାୟ ନିଃଶେଷ ହୋଇଯାଇଥିଲେ । ଯୁଦ୍ଧଭୂମିରେ କୃଷ୍ଣଙ୍କୁ ଦେଖି ଶାଲ୍ୱ ଭୟଙ୍କର ଶବ୍ଦ କରୁଥିବା ଏକ ଶକ୍ତିକୁ ସାରଥି ଦାରୁକଙ୍କଆଡ଼କୁ ନିକ୍ଷେପ କଲା । ଚତୁର୍ଦ୍ଦିଗ ଆଲୋକିତ କରି ଏକ ବିଶାଳ ଉଲ୍‌କାଖଣ୍ଡ ପରି ସେହି ଶକ୍ତି ପ୍ରବଳବେଗରେ ଆକାଶମାର୍ଗରୁ ଚାଲି ଆସୁଥିବାର ଦେଖି ଭଗବାନ୍ ଶ୍ରୀକୃଷ୍ଣ ନିଜ ବାଣମାନଙ୍କଦ୍ୱାରା ତାକୁ ଶହ ଶହ ଖଣ୍ଡରେ କାଟିପକାଇଲେ ।।୧୨-୧୩।। ଏହାପରେ ସେ ଷୋଳଟି ବାଣଦ୍ୱାରା ଶାଲ୍ୱକୁ ବିଦ୍ଧ କରି ସୂର୍ଯ୍ୟ କିରଣଜାଳରେ ଆକାଶକୁ ଭେଦ କରିବା ପରି ବାଣମାନଙ୍କଦ୍ୱାରା ଆକାଶରେ ଭ୍ରମଣ କରୁଥିବା ସୌଭ ବିମାନକୁ ବିନ୍ଧିବାକୁ ଲାଗିଲେ ।।୧୪।। ଅନ୍ୟ ଦିଗରେ ଶାଲ୍ୱ ଶାର୍ଙ୍ଗଧନୁଯୁକ୍ତ ଶ୍ରୀକୃଷ୍ଣଙ୍କ ବାମଭୁଜକୁ ବିଦ୍ଧ କଲା । ଶ୍ରୀକୃଷ୍ଣଙ୍କ ହସ୍ତରୁ ଶାର୍ଙ୍ଗଧନୁ ତଳକୁ ଖସି ପଡ଼ିଲା । ପରିକ୍ଷିତ, ଏହା ଆଶ୍ଚର୍ଯ୍ୟଜନକ ବୋଧ ହେଲା ।।୧୫।। ଯେଉଁମାନେ ସେଠାରେ ଏହି ତୁମୁଳ ଯୁଦ୍ଧକୁ ଦେଖୁଥିଲେ, ସେମାନଙ୍କ ମଧ୍ୟରେ ହାହାକାର ପଡ଼ିଗଲା । ସୌଭପତି ଶାଲ୍ୱ ଚିତ୍କାର କରି

ଜନାର୍ଦ୍ଦନ ଶ୍ରୀକୃଷ୍ଣଙ୍କୁ କହିଲା, ମୂର୍ଖ କୃଷ୍ଣ, ତୁ ଆମ ସମ୍ମୁଖରେ ଆମ ସଖା ଓ ତୋର ଭାଇ (ମାଉସୀ ପୁଅ)ର ଭାର୍ଯ୍ୟା ରୁକ୍ମିଣୀଙ୍କୁ ହରଣ କଲୁ ଏବଂ ସଖା ଶିଶୁପାଳ ଅସାବଧାନ ଥିବାବେଳେ ତାକୁ ସଭାମଧ୍ୟରେ ବଧ କରିଥିଲୁ । ତୋତେ କେହି ପରାଜିତ କରି ନାହାନ୍ତି ବୋଲି ତୋର ଗର୍ବ ବଢ଼ିଯାଇଛି । ଏବେ ଯଦି ତୁ ମୋ ଆଗରେ ତିଷ୍ଠି ରହୁ, ତା'ହେଲେ ମୁଁ ତୋତେ ଯମାଳୟକୁ ପଠାଇଦେବି ଏବଂ ତୁ ସେଠାରୁ ଆଉ ଫେରିବୁ ନାହିଁ ॥୧୬-୧୮॥

ଭଗବାନ୍ ଶ୍ରୀକୃଷ୍ଣ କହିଲେ, ମୂଢ଼, ତୋର ଯମକୁ ତୁ ତୋ ନିକଟରେ ଦେଖିପାରୁ ନାହୁଁ । ବୀରମାନେ ବୃଥା ଆସ୍ଫାଳନ ନ କରି ନିଜର ପୁରୁଷକାର ଦେଖାଇଥା'ନ୍ତି ॥୧୯॥ ଏହା କହି ଭଗବାନ୍ ଶ୍ରୀକୃଷ୍ଣ ଭୟଙ୍କର ବେଗରେ ଏକ ଗଦା ନିକ୍ଷେପ କରି ଶାଲ୍ୱର ହଂସୁଳିହାଡ଼ (ସ୍କନ୍ଧ ଓ ବାହୁର ମୂଳ)କୁ ପ୍ରହାର କଲେ । ସେଥିରେ ଶାଲ୍ୱ ରକ୍ତବାନ୍ତି କରିବାକୁ ଲାଗିଲା ॥୨୦॥ ଶ୍ରୀକୃଷ୍ଣଙ୍କ ପାଖକୁ ଗଦା ଫେରିଆସିଲା, କିନ୍ତୁ ଶାଲ୍ୱ ସେଠାରୁ ଅନ୍ତର୍ହିତ ହୋଇଗଲା । ଏହାର ପର ମୁହୂର୍ତ୍ତରେ ସେଠାରେ ଏକ ପୁରୁଷ ଆସି ଶ୍ରୀକୃଷ୍ଣଙ୍କୁ ମୁଣ୍ଡ ନୁଆଇଁ ପ୍ରଣାମ କଲା ଓ କାନ୍ଦିକାନ୍ଦି କହିଲା, ''ମାତା ଦେବକୀ ମୋତେ ଏଠାକୁ ପଠାଇଛନ୍ତି । ସେ କହିଛନ୍ତି, ହେ କୃଷ୍ଣ, ହେ ମହାବାହୁ, ହେ ପିତୃବତ୍ସଳ, କଂସେଇ ଯେପରି ପଶୁକୁ ବାନ୍ଧି ଘେନିଯାଏ, ସେହିପରି ଶାଲ୍ୱ ତୁମର ପିତାଙ୍କୁ ବାନ୍ଧି ନେଇଯାଇଛି ।'' ॥୨୧-୨୨॥ ମାନବଲୀଳାଯୋଗୁଁ ଶ୍ରୀକୃଷ୍ଣ ମନୁଷ୍ୟ ପ୍ରକୃତିର ଥିଲେ । ସେହି ଅଶୁଭ ସମ୍ବାଦ ଶୁଣି ସେ ବିଚଳିତ ହୋଇପଡ଼ିଲେ ଏବଂ ବସୁଦେବଙ୍କ ସ୍ନେହରେ ବିହ୍ୱଳ ହୋଇ କହିବାକୁ ଲାଗିଲେ-- ॥୨୩॥ ଦେବାସୁରଙ୍କର ଅଜେୟ ଏବଂ ସଦା ସାବଧାନ ମୋର ଅଗ୍ରଜ ବଳରାମଙ୍କୁ ଜୟ କରି ଏ ଛାର ଶାଲ୍ୱ କିପରି ମୋର ପିତାଙ୍କୁ ନେଇଗଲା ! ପ୍ରକୃତରେ ବିଧି ହିଁ ବଳବାନ୍ ॥୨୪॥ ଶ୍ରୀକୃଷ୍ଣ ଏହିପରି କହୁଥିବା ସମୟରେ ମାୟାବସୁଦେବଙ୍କୁ ସାଙ୍ଗରେ ଧରି ଶାଲ୍ୱ ସେଠାରେ ଆସି ଉପସ୍ଥିତ ହେଲା ଏବଂ କୃଷ୍ଣଙ୍କୁ କହିଲା, ରେ ମୂର୍ଖ, ଏଇଟା ହେଉଛି ତୋର ଜନ୍ମଦାତା ପିତା ଯାହାପାଇଁ ତୁ ଏହି ସଂସାରରେ ବଞ୍ଚିଛୁ । ବର୍ତ୍ତମାନ ତୋ ଆଗରେ ମୁଁ ଏହାକୁ ବଧ କରିବି । ଯଦି ତୋର ଶକ୍ତି ଥାଏ, ରକ୍ଷା କର । ସେହି ମାୟାବୀ ଏହିପରି ଶ୍ରୀକୃଷ୍ଣଙ୍କୁ ଭର୍ତ୍ସନା କରି ଖଡ୍ଗରେ ମାୟା-ବସୁଦେବଙ୍କ ଶିରଚ୍ଛେଦନ କରି ତାହାକୁ ନେଇ ଆକାଶରେ ଥିବା ନିଜ ବିମାନ ଉପରକୁ ଉଠିଗଲା ॥୨୫-୨୭॥ ମୁହୂର୍ତ୍ତକପାଇଁ ଅନ୍ତର୍ଯାମୀ ଶ୍ରୀକୃଷ୍ଣ ସାଧାରଣ ମନୁଷ୍ୟ ପରି ପିତୃସ୍ନେହବଶତଃ ଶୋକାକୁଳ ହୋଇପଡ଼ିଲେ । ମାତ୍ର ପରମୁହୂର୍ତ୍ତରେ ମହାମହିମ ଭଗବାନ୍ ମୟଦାନବଶିକ୍ଷାରେ ଶାଲ୍ୱ ଏହି ଆସୁରୀ ମାୟା ରଚନା କରିଛି ବୋଲି ଜାଣିପାରିଲେ । ସ୍ୱପ୍ନରେ ଦେଖିଥିବା ବସ୍ତୁକୁ ଜାଗ୍ରତ ବ୍ୟକ୍ତି ଯେପରି ଦେଖିପାରେ ନାହିଁ, ସେହିପରି ଭଗବାନ୍ ଶ୍ରୀକୃଷ୍ଣ ଏହା ଜାଣିପାରିବା ପରେ ଯୁଦ୍ଧସ୍ଥଳରେ ମାତା ପଠାଇଥିବା ସେ ଦୂତକୁ ବା ପିତାଙ୍କର ଶରୀରକୁ ଆଉ ଦେଖିଲେ ନାହିଁ । ସୌଭ ବିମାନରେ ବସିଥିବା ଆକାଶଚାରୀ ଶତ୍ରୁକୁ ଦେଖି ସେ ତାକୁ ମାରିବାପାଇଁ ଉଦ୍ୟତ ହେଲେ ॥୨୮-୨୯॥ ରାଜର୍ଷି ପରୀକ୍ଷିତ, ଋଷିମାନେ ପୂର୍ବାପର ବିଚାର ନ କରି ଏହିପରି କହିଥା'ନ୍ତି । ଭଗବାନଙ୍କ ବିଷୟରେ ଏପରି କହିବା ପରସ୍ପର-ବିରୋଧୀ ବୋଲି ସେମାନେ ଭୁଲିଯାଆନ୍ତି ॥୩୦॥ ଯେ ଅଖଣ୍ଡ ଜ୍ଞାନବିଜ୍ଞାନ ଓ ଐଶ୍ୱର୍ଯ୍ୟରେ ସର୍ବଦା ପରିପୂର୍ଣ୍ଣ, ସେଇ ଭଗବାନ୍ ଅଜ୍ଞଜନୋଚିତ ଶୋକ, ମୋହ ଓ ଭୟଦ୍ୱାରା କିପରି ପରିଚାଳିତ ହେବେ ? ॥୩୧॥ ଯାହାଙ୍କର ପାଦସେବା କରି ମୁନିଋଷିମାନେ ଆତ୍ମଜ୍ଞାନ ଲାଭ କରନ୍ତି ଏବଂ ଚିରକାଳ ଧରି ରହିଥିବା ସେମାନଙ୍କ ଆତ୍ମାର ବିକାରକୁ ବିନାଶ କରି ଅନନ୍ତ ଐଶ୍ୱର୍ଯ୍ୟ ଲାଭ କରନ୍ତି, ସାଧୁମାନଙ୍କର ଆଶ୍ରୟ ସେହି ପରମ ପୁରୁଷଙ୍କଠାରେ ମୋହ କିପରି ବା ସମ୍ଭବ ହେବ ? ॥୩୨॥ ପ୍ରକୃତ କଥା ହେଉଛି, ବଳପୂର୍ବକ ଶାଲ୍ୱ ଯେଉଁ ସବୁ ଅସ୍ତ୍ର-ଶସ୍ତ୍ର ପ୍ରହାର କରୁଥିଲା, ଅମିତବିକ୍ରମ ଭଗବାନ୍ ଶ୍ରୀକୃଷ୍ଣ ଶରଦ୍ୱାରା ତାହା ସବୁ ଛେଦନ କରି ଶାଲ୍ୱର ବର୍ମ, ଧନୁ ଓ ଶିରସ୍ଥ ମଣିକୁ ଛେଦନ କଲେ ଏବଂ ଗଦାଦ୍ୱାରା ତା'ର ସେହି ସୌଭ ନାମକ ବିମାନକୁ ଭାଙ୍ଗି ଦେଲେ । କୃଷ୍ଣଙ୍କ ହସ୍ତରୁ ନିକ୍ଷିପ୍ତ ସେହି ଗଦାଦ୍ୱାରା ଶାଲ୍ୱର ବିମାନ ହଜାର ହଜାର ଖଣ୍ଡରେ ଚୂର୍ଣ୍ଣବିଚୂର୍ଣ୍ଣ ହୋଇ ସମୁଦ୍ରରେ ପଡ଼ିଲା । ଶାଲ୍ୱ ତଳକୁ ଡେଇଁପଡ଼ି ଦ୍ରୁତବେଗରେ ଶ୍ରୀକୃଷ୍ଣଙ୍କଆଡ଼କୁ ଗଦା ଉଠାଇ ଦଉଡ଼ି ଆସିଲା । ଭଗବାନ୍ ଶ୍ରୀକୃଷ୍ଣ ଧାଇଁ ଆସୁଥିବା ଶାଲ୍ୱର

ଗଦାଯୁକ୍ତ ବାହୁକୁ ଭଲ୍ଲାସ୍ତ୍ରଦ୍ୱାରା ଛେଦନ କରି ଶାଲ୍ୱକୁ ମାରିବାପାଇଁ ପ୍ରଳୟସୂର୍ଯ୍ୟପରି ତେଜସ୍ୱୀ ତାଙ୍କ ଅବ୍ୟର୍ଥ ସୁଦର୍ଶନ ଚକ୍ରକୁ ଧାରଣ କଲେ । ସେତେବେଳେ ସେ ଉଦୟାଚଳର ସୂର୍ଯ୍ୟପରି ଶୋଭାପାଉଥିଲେ ।।୩୩-୩୫।। ଦେବରାଜ ଇନ୍ଦ୍ର ଯେପରି ବଜ୍ରଦ୍ୱାରା ବୃତ୍ରାସୁରର ଶିର ଛେଦନ କରିଥିଲେ, ସେହିପରି ଭଗବାନ୍ ଶ୍ରୀକୃଷ୍ଣ ତାଙ୍କ ଚକ୍ରଦ୍ୱାରା ଅତ୍ୟନ୍ତ ମାୟାବୀ ଶାଲ୍ୱର କିରୀଟକୁଣ୍ଡଳଯୁକ୍ତ ମସ୍ତକକୁ ଛେଦନ କଲେ । ଶାଲ୍ୱର ଲୋକଙ୍କ ମଧ୍ୟରେ ହାହାକାର ଧ୍ୱନି ଶୁଣାଗଲା ।।୩୬।। ରାଜା, ସେହି ପାପୀ ଶାଲ୍ୱ ନିହତ ହେବାରୁ ଓ ସୌଭ ନାମକ ତାର ବିମାନ ଚୂର୍ଣ୍ଣବିଚୂର୍ଣ୍ଣ ହେବାରୁ ସ୍ୱର୍ଗରେ ଦେବତାମାନେ ଦୁନ୍ଦୁଭି ବାଦ୍ୟ ବଜାଇଲେ । ଶିଶୁପାଳ ଓ ଶାଲ୍ୱ ଆଦି ବନ୍ଧୁଙ୍କର ଋଣ ପରିଶୋଧ କରିବା ପାଇଁ ଏହି ସମୟରେ ଦନ୍ତବକ୍ତ୍ର କ୍ରୋଧରେ ଶ୍ରୀକୃଷ୍ଣଙ୍କ ଆଡ଼କୁ ଧାବିତ ହେଲା ।।୩୭।।

## ଅଠସ୍ତରି ଅଧ୍ୟାୟ

# ଦନ୍ତବକ୍ତ୍ରର ନିଧନ

ଶ୍ରୀ ଶୁକଦେବ କହିଲେ, ପରିକ୍ଷିତ, ଶାଲ୍ୱ ଓ ପୌଣ୍ଡ୍ରକଙ୍କ ନିଧନ ପରେ ଦୁର୍ମତି ଦନ୍ତବକ୍ତ୍ର ଏକାକୀ ଏକ ଗଦା ଧରି ଯୁଦ୍ଧସ୍ଥଳରେ ପହଞ୍ଚିଲା । ମହାବଳୀ ଦନ୍ତବକ୍ତ୍ର ପଦବ୍ରଜରେ ଆସିବାବେଳେ ଯୁଦ୍ଧଭୂମି କମ୍ପିଉଠିଲା ।।୧-୨।। ତାକୁ ପଦବ୍ରଜରେ ଆସୁଥିବାର ଦେଖି କୃଷ୍ଣ ରଥରୁ ଡେଇଁ ପଡ଼ିଲେ ଏବଂ ସ୍ୱୟଂ ଗଦା ଧାରଣ କରି ବେଳାଭୂମି ସମୁଦ୍ରକୁ ପ୍ରତିରୋଧ କରିବା ପରି ତାକୁ ପ୍ରତିରୋଧ କଲେ ।।୩।। କରୂଷଦେଶର ରାଜା ରଣଦୁର୍ମଦ ଦନ୍ତବକ୍ତ୍ର ଗଦା ଉଠାଇ ଭଗବାନ୍ ମୁକୁନ୍ଦଙ୍କୁ କହିଲା, 'ଭାଗ୍ୟର କଥା ଯେ ଆଜି ତୁ ମୋର ଦୃଷ୍ଟିପଥରେ ପଡ଼ିଗଲୁ ।' ।।୪।। କୃଷ୍ଣ, ତୁ ମୋ ମାମୁପୁଅ ଭାଇ । ହେଲେ ମଧ୍ୟ ମୋର ମିତ୍ରହନ୍ତା ହୋଇ ଏବେ ମୋତେ ହତ୍ୟା କରିବାକୁ ବାହାରିଛୁ । ତେଣୁ ରେ ନୀଚ, ଆଜି ଏହି ବଜ୍ରତୁଲ୍ୟ ଗଦାରେ ମୁଁ ତୋତେ ନିହତ କରିବି ।।୫।। ମୂର୍ଖ, ମୁଁ ମିତ୍ରବତ୍ସଳ । ଦେହର ରୋଗପରି ତୋ ଭଳି ବନ୍ଧୁରୂପୀ ଶତ୍ରୁକୁ ହତ୍ୟା କରି ମୁଁ ମୋ' ମିତ୍ରମାନଙ୍କର ଋଣ ପରିଶୋଧ କରିବି ।।୬।। ଅଙ୍କୁଶଦ୍ୱାରା ହସ୍ତୀକୁ ତାଡ଼ନା କରିବା ପରି ଏପ୍ରକାର ରୂକ୍ଷ ବାକ୍ୟଦ୍ୱାରା ସେ କୃଷ୍ଣଙ୍କୁ ତାଡ଼ିତ କରି ତାଙ୍କ ମସ୍ତକରେ ଗଦା ପ୍ରହାର କଲା ଏବଂ ସିଂହଭଳି ଗର୍ଜିବାକୁ ଲାଗିଲା ।।୭।। ଗଦାଦ୍ୱାରା ଆହତ ହେଲେ ମଧ୍ୟ ଯଦୁକୁଳତିଳକ ଭଗବାନ୍ ଶ୍ରୀକୃଷ୍ଣ ଯୁଦ୍ଧଭୂମିରେ ଟିକିଏ ହେଲେ ବିଚଳିତ ହେଲେ ନାହିଁ ଏବଂ ତାଙ୍କ ବିଶାଳ କୌମୋଦକୀ ଗଦାରେ ତା'ର ବକ୍ଷସ୍ଥଳକୁ ପ୍ରହାର କଲେ ।।୮।। ଗଦାଘାତରେ ହୃଦୟ ବିଦୀର୍ଣ୍ଣ ହେବାରୁ ଦନ୍ତବକ୍ତ୍ର ରକ୍ତବାନ୍ତି କରିବାକୁ ଲାଗିଲା ଏବଂ ତା'ର ହାତ, ପାଦ ଓ ବାହୁ ବିସ୍ତାର କରି ତଳେ ପଡ଼ି ମରିଗଲା ।।୯।। ସମସ୍ତେ ଦେଖୁଥିବା ବେଳେ ତା' ଦେହରୁ ଏକ ଅତିସୂକ୍ଷ୍ମ ଜ୍ୟୋତି ବାହାରି କୃଷ୍ଣଙ୍କ ଦେହରେ ପ୍ରବେଶ କଲା । ଶିଶୁପାଳର ମୃତ୍ୟୁବେଳେ ମଧ୍ୟ ଏହିପରି ହୋଇଥିଲା ।।୧୦।।

ଭ୍ରାତୃଶୋକରେ ଅଧୀର ହୋଇ ତାର ଭାଇ ବିଦୂରଥ ଢାଲ ଓ ଖଣ୍ଡା ଧରି ଉର୍ଦ୍ଧ୍ୱଶ୍ୱାସ ପକାଇ କୃଷ୍ଣଙ୍କୁ ମାରିବା ପାଇଁ ବାହାରିଆସିଲା ।।୧୧।। ମହାରାଜ ପରିକ୍ଷିତ, ତାକୁ ଦଉଡ଼ି ଆସୁଥିବାର ଦେଖି ଭଗବାନ୍ ଶ୍ରୀକୃଷ୍ଣ ତାଙ୍କ କ୍ଷୁରଧାର ଚକ୍ରଦ୍ୱାରା କିରୀଟକୁଣ୍ଡଳଯୁକ୍ତ ତାର ମସ୍ତକକୁ ଛେଦନ କଲେ ।।୧୨।। ରଥସହିତ ଶାଲ୍ୱକୁ ଏବଂ ସାନଭାଇ ସହିତ ଦନ୍ତବକ୍ତ୍ରକୁ -- ଏହି ଦୁଃସହ ଶତ୍ରୁମାନଙ୍କୁ ନିହତ କରିବାରୁ ଦେବତା, ମନୁଷ୍ୟ, ମୁନି ଋଷି, ସିଦ୍ଧ, ଗନ୍ଧର୍ବ, ବିଦ୍ୟାଧର, ମହାସର୍ପ, ଅପ୍ସରା, ପିତୃଗଣ, ଯକ୍ଷ, କିନ୍ନର ଓ ଚାରଣମାନେ ଭଗବାନ୍ ଶ୍ରୀକୃଷ୍ଣଙ୍କୁ ପୂଜା କଲେ ଏବଂ ତାଙ୍କ ବିଜୟଗାଥା ଗାଇ ଗାଇ ତାଙ୍କ ଉପରେ ସବୁଆଡୁ ପୁଷ୍ପବୃଷ୍ଟି କଲେ । ଯାଦବ ମୁଖ୍ୟମାନଙ୍କ ଗହଣରେ ଶ୍ରୀକୃଷ୍ଣ ଅଳଂକୃତ ଦ୍ୱାରକାପୁରୀରେ ପ୍ରବେଶ କଲେ ।।୧୩-୧୫।। ଏହିପରି

ଯୋଗେଶ୍ୱର ବିଶ୍ୱନିୟନ୍ତା ଭଗବାନ୍ ଶ୍ରୀକୃଷ୍ଣ ମହାବଳୀମାନଙ୍କୁ ସହଜରେ ଜୟ କରିବା ଏବଂ ଜରାସନ୍ଧଆଦିଙ୍କ ଦ୍ୱାରା ପରାଜିତ ହେବା ଅଜ୍ଞମାନଙ୍କ ଦୃଷ୍ଟିରେ ପ୍ରତୀତ ହୁଏ । ବସ୍ତୁତଃ ତାଙ୍କର ହାର-ଜିଣା ନାହିଁ ।।୧୬।।

କୁରୁପାଣ୍ଡବମାନଙ୍କ ମଧ୍ୟରେ ଯୁଦ୍ଧର ପ୍ରସ୍ତୁତି ଚାଲିଛି ବୋଲି ଶୁଣି ବଳରାମ ତୀର୍ଥଯାତ୍ରା ଛଳରେ ଦ୍ୱାରକାରୁ ବାହାରିଗଲେ । କାରଣ ସେ ମଧ୍ୟସ୍ଥ ଥିଲେ ଓ କାହାରି ପକ୍ଷରେ ଲଢ଼ିବାକୁ ଚାହୁଁ ନ ଥିଲେ । ସେ ପ୍ରଭାସ ତୀର୍ଥରେ ସ୍ନାନପୂର୍ବକ ଦେବତା, ଋଷି, ପିତୃ ଓ ମନୁଷ୍ୟମାନଙ୍କୁ ତର୍ପଣ କଲେ ଏବଂ ବ୍ରାହ୍ମଣମାନଙ୍କ ଗହଣରେ ସରସ୍ୱତୀ ନଦୀ ସ୍ରୋତର ବିପରୀତ ଦିଗକୁ ଯାତ୍ରା କଲେ । ସେ ପୃଥୂଦକ, ବିନ୍ଦୁସର, ତ୍ରିତକୂପ, ସୁଦର୍ଶନ, ବିଶାଳ, ବ୍ରହ୍ମତୀର୍ଥ, ଚକ୍ରତୀର୍ଥ, ପ୍ରାଚୀ ଓ ସରସ୍ୱତୀ ଆଦି ତୀର୍ଥମାନଙ୍କୁ ଯାତ୍ରା କଲେ ।।୧୭-୧୯।। ପରିକ୍ଷିତ, ଏହାପରେ ସେ ଗଙ୍ଗା ଓ ଯମୁନା କୂଳରେ ଥିବା ତୀର୍ଥମାନ ପର୍ଯ୍ୟଟନ କରି ନୈମିଷାରଣ୍ୟରେ ପହଞ୍ଚିଲେ । ସେଠାରେ ଋଷିମାନେ ଏକ ବଡ଼ ଧରଣର ଯଜ୍ଞ କରୁଥିଲେ ।।୨୦।। ଦୀର୍ଘକାଳ ଧରି ଯଜ୍ଞ କରୁଥିବା ମୁନିମାନେ ବଳରାମ ଆସିଥିବାର ଦେଖି ନିଜ ନିଜ ଆସନରୁ ଠିଆହୋଇ ତାଙ୍କୁ ଯଥାବିଧି ଅଭିନନ୍ଦନ ଜଣାଇ ସ୍ୱାଗତ କରିଥିଲେ ଏବଂ ପ୍ରଣାମପୂର୍ବକ ପୂଜାର୍ଚ୍ଚନା କରିଥିଲେ ।।୨୧।। ଭଗବାନ୍ ବଳରାମ ତାଙ୍କ ସଙ୍ଗରେ ଥିବା ବ୍ରାହ୍ମଣମାନଙ୍କ ସହିତ ଏହିପରି ପୂଜିତ ହୋଇ ଆସନ ଗ୍ରହଣ କଲେ ଏବଂ ମହର୍ଷି ବ୍ୟାସଦେବଙ୍କ ଶିଷ୍ୟ ଲୋମହର୍ଷଣ ବ୍ୟାସାସନରେ ବସିଥିବାର ଦେଖିଲେ ।।୨୨।। ଲୋମହର୍ଷଣ ସୂତଜାତିର ଥିଲେ । କିନ୍ତୁ ସେ ବ୍ରାହ୍ମଣମାନଙ୍କଠାରୁ ଉଚ୍ଚାସନ (ବ୍ୟାସାସନ) ରେ ବସିଥିଲେ । ବଳରାମ ଆସିବାବେଳେ ସେ ଆସନରୁ ଉଠି ନ ଥିଲେ କିମ୍ବା ହାତ ଯୋଡ଼ି ତାଙ୍କୁ ପ୍ରଣାମ କରି ନ ଥିଲେ । ଏଥିରେ ବଳରାମଙ୍କର କ୍ରୋଧ ଜାତ ହେଲା ।।୨୩।। ସେ ମନେ ମନେ କହିବାକୁ ଲାଗିଲେ, ଏହି ବ୍ୟକ୍ତି ପ୍ରତିଲୋମଜାତ (କ୍ଷତ୍ରିୟ ପିତା ଓ ବ୍ରାହ୍ମଣୀ(ମାତା)ଠାରୁ ଜାତ, ଅଥବା ଶୂଦ୍ରପିତା ଓ କ୍ଷତ୍ରିୟ(ମାତା) ଠାରୁ ଜାତ) । ସେ ବ୍ରାହ୍ମଣମାନଙ୍କ ଠାରୁ ଅଧିକ ହୋଇ ଉଚ୍ଚ ଆସନରେ ବସିଛି । ସେ ଏହି ବିପ୍ରମାନଙ୍କ ମଧ୍ୟରେ ଏବଂ ଧର୍ମପାଳକ ଆମ ମଧ୍ୟରେ ବସିଛି କିପରି ? ବ୍ୟାସଦେବଙ୍କ ଶିଷ୍ୟଭାବରେ ଇତିହାସ, ପୁରାଣ, ଧର୍ମଶାସ୍ତ୍ରସବୁ ବହୁଳ ଅଧ୍ୟୟନ କରିଥିବାଯୋଗୁଁ ତାର ଗର୍ବ ବଢ଼ିଯାଇଛି । ସେ ବୃଥାରେ ନିଜକୁ ପଣ୍ଡିତ ବୋଲି ମନେ କରୁଛି । ସୁଆଙ୍ଗରେ ଅଭିନୟ କରୁଥିବା ଲୋକପରି ନିଜକୁ ଗୁଣୀ ବୋଲି ମନେ କଲେ କେହି ଗୁଣୀ ହୁଏ ନାହିଁ । ତେଣୁ ଏହି ଅଧମ ହେଉଛି ବଧର ଯୋଗ୍ୟ ।।୨୪-୨୬।। ଯେଉଁମାନେ ଧର୍ମଧ୍ୱଜୀ, ସେମାନେ ବଡ଼ ପାପୀ, ସେମାନେ ମୋର ବଧର ଯୋଗ୍ୟ; ସେଥିପାଇଁ ହିଁ ମୁଁ ଏ ସଂସାରରେ ଅବତୀର୍ଣ୍ଣ ହୋଇଛି ।।୨୭।। ତୀର୍ଥଯାତ୍ରାଯୋଗୁଁ ଦୁଷ୍ଟବଧ କାର୍ଯ୍ୟରୁ ନିବୃତ୍ତ ହୋଇଥିଲେ ମଧ୍ୟ ଲୋମହର୍ଷଣଙ୍କ ମୃତ୍ୟୁ ବିଧିପ୍ରେରିତ ଥିଲା । ତେଣୁ ବଳରାମ ଏତିକିମାତ୍ର କହି ନିଜ ହାତରେ ଧରିଥିବା କୁଶାଗ୍ରରେ ତାଙ୍କୁ ବିଦ୍ଧ କରି ହତ୍ୟା କଲେ ।।୨୮।। ବିଷଣ୍ଣମନା ମୁନିମାନେ ହାହାକାର କରି ଭଗବାନ ସଙ୍କର୍ଷଣଙ୍କୁ କହିଲେ, ପ୍ରଭୁ, ଆପଣ ବଡ଼ ଅଧର୍ମ କାର୍ଯ୍ୟ କଲେ । ଯଦୁନନ୍ଦନ, ଆମେମାନେ ତାଙ୍କୁ ଏହି ବ୍ରହ୍ମାସନ ଦେଇଛୁ । ଏହି ଯଜ୍ଞ ଶେଷହେବାପର୍ଯ୍ୟନ୍ତ ଆମେମାନେ ତାଙ୍କୁ ଆୟୁ ଓ ଆରୋଗ୍ୟ ଦାନ କରିଛୁ । ଆପଣ ତାହା ନ ଜାଣି ଯାହା କଲେ, ତାହା ବ୍ରହ୍ମହତ୍ୟା ଅଟେ । ଆପଣ ଯୋଗେଶ୍ୱର । ବ୍ରାହ୍ମଣ ହତ୍ୟାରଯୋଗ୍ୟ ନୁହେଁ ବୋଲି ଆପଣ ହିଁ ନିୟମ କରିଛନ୍ତି । ତେଣୁ ହେ ଲୋକପାବନ, ଆପଣଙ୍କୁ ଏହି ବ୍ରହ୍ମହତ୍ୟାର ପ୍ରାୟଶ୍ଚିତ୍ତ କରିବାକୁ ହେବ । ଅନ୍ୟମାନେ କହିବାଯୋଗୁଁ ନୁହେଁ, ଆପଣ ଯଦି ନିଜେ ଏହା କରନ୍ତି, ତାହା ହିଁ ପ୍ରକୃତ ଲୋକଶିକ୍ଷା ହେବ ।।୨୯-୩୨।। ଭଗବାନ୍ ବଳରାମ କହିଲେ, ଲୋକଙ୍କୁ ଅନୁଗ୍ରହ କରିବା କାମନାରେ ମୁଁ ନିଶ୍ଚୟ ଏହି ହତ୍ୟାର ପ୍ରାୟଶ୍ଚିତ୍ତ କରିବି । ପ୍ରଥମ କଳ୍ପରେ ଏହାର ଯେତିକି ନିୟମ, ତାହା ଆପଣମାନେ ବିଧାନ କରନ୍ତୁ । 'ଏହାଙ୍କୁ ଦୀର୍ଘ ଆୟୁ, ବଳ, ଇନ୍ଦ୍ରିୟପଟୁତା-ଯାହା ଦେବାପାଇଁ ଆପଣମାନେ ଚାହୁଁଛନ୍ତି, କିମ୍ବା ଅନ୍ୟ କିଛି ଚାହୁଁଛନ୍ତି, ତାହା ମୋତେ କହନ୍ତୁ । ମୁଁ ଯୋଗମାୟାଦ୍ୱାରା ତାହା ସାଧନ କରିବି, ।।୩୩-୩୪।। ଋଷିମାନେ କହିଲେ, ବଳରାମ, ଆପଣଙ୍କ ଅସ୍ତ୍ରର ବଳ, ଏହାଙ୍କର ମୃତ୍ୟୁ ଏବଂ ଆମ ବାକ୍ୟ ଯେପରି ବ୍ୟର୍ଥ ନ ହେବ, ଆପଣ ତାର ବିଧାନ କରନ୍ତୁ ।।୩୫।।

ଭଗବାନ୍ ବଳରାମ କହିଲେ, ଶ୍ରେଷ୍ଠ ମୁନିଗଣ, ଆତ୍ମା ପୁତ୍ରରୂପେ ଜନ୍ମ ହୁଏ ବୋଲି ବେଦବାକ୍ୟ ଅଛି । ତଦନୁସାରେ ଲୋମହର୍ଷଣଙ୍କ ପୁତ୍ର ଆୟୁଷ, ଆରୋଗ୍ୟ ଓ ଇନ୍ଦ୍ରିୟବଳରେ ଯୁକ୍ତ ହୋଇ ଆପଣମାନଙ୍କୁ ପୁରାଣ କଥା ବୟାନ କରିବେ । ମୁଁ ତାଙ୍କୁ ସେହି ସବୁ ଶକ୍ତି ଦାନ କରୁଛି । ଏହା ଛଡ଼ା ମୋତେ ଆଉ କ'ଣ କରିବାକୁ ହେବ, ଆପଣମାନେ କହନ୍ତୁ, ମୁଁ କରିବି । ମୁଁ ଯାହା କରିଛି, ତାର ଶାସ୍ତ୍ରୀୟ ପ୍ରାୟଶ୍ଚିତ୍ତ ମୋତେ ଜଣା ନାହିଁ । ଆପଣମାନେ ବିଜ୍ଞ; ତେଣୁ ତାହା ଚିନ୍ତା କରନ୍ତୁ ।।୩୬-୩୭।। ଋଷିମାନେ କହିଲେ, ହେ ଯଦୁନନ୍ଦନ, ଇଲ୍ୱଳର ପୁତ୍ର ବଲ୍ୱଳ ନାମକ ଏକ ଭୟଙ୍କର ରାକ୍ଷସ ଅଛି । ସେ ଅମାବାସ୍ୟା ଆଦି ପର୍ବ ଦିନରେ ଏଠାକୁ ଆସି ଆମର ଯଜ୍ଞକୁ ଦୂଷିତ କରୁଛି । ସେ ପୂଯ, ରକ୍ତ, ମଳ, ମୂତ୍ର, ମଦ୍ୟ, ମାଂସ ଆଦି ବର୍ଷଣ କରୁଛି । ଆପଣ ସେହି ପାପୀକୁ ବଧ କଲେ ଆମର ମହା ଉପକାର ସାଧିତ ହେବ । ଏହାପରେ ଆପଣ ସମଗ୍ର ଭାରତବର୍ଷ ପର୍ଯ୍ୟଟନ କରି ରାଗଦ୍ୱେଷରହିତ ଓ ପ୍ରଶାନ୍ତଚିତ୍ତ ହୋଇ ବିଭିନ୍ନ ତୀର୍ଥରେ ସ୍ନାନ କରିବେ । ଏହିପରି ଗୋଟିଏ ବର୍ଷ କରିବାଦ୍ୱାରା ଆପଣ ଶୁଦ୍ଧ ହୋଇଯିବେ ।।୩୮-୪୦।।

## ଅଣାଶୀ ଅଧ୍ୟାୟ

# ବଲ୍ୱଳ ବଧ ଓ ବଳରାମଙ୍କ ତୀର୍ଥଯାତ୍ରା

ଶ୍ରୀ ଶୁକଦେବ କହିଲେ, ରାଜା ପରିକ୍ଷିତ, ଏହାପରେ ପର୍ବଦିନ ଆସିଗଲା । ଭୟଙ୍କର ଧୂଳିବର୍ଷା ସହିତ ପ୍ରଚଣ୍ଡ ପବନ ବହିବାକୁ ଲାଗିଲା ଓ ଚତୁର୍ଦ୍ଦିଗ ପୂଯଗନ୍ଧରେ ପୂର୍ଣ୍ଣ ହୋଇଗଲା ।।୧।। ଏହାପରେ ଋଷିମାନଙ୍କ ଯଜ୍ଞଶାଳାରେ ବଲ୍ୱଳଦ୍ୱାରା ମଳ, ମୂତ୍ର ଆଦି ଅପବିତ୍ର ବସ୍ତୁ ସବୁ ବର୍ଷା ହେବାକୁ ଲାଗିଲା ଏବଂ ତ୍ରିଶୂଳଧାରୀ ରାକ୍ଷସ ସମସ୍ତଙ୍କର ଦୃଷ୍ଟିଗୋଚର ହେଲା ।।୨।। ଏହି ବିଶାଳକାୟ ଦାନବ ତ୍ରିପଣ୍ଡ କଳାରଙ୍ଗର ଥିଲା । ତାର କେଶ ଓ ଶ୍ମଶ୍ରୁ ତତଲା ତମ୍ବା ପରି ନାଲି ଦେଖାଯାଉଥିଲା । ବଡ଼ ବଡ଼ ଦାନ୍ତ ଓ ଭ୍ରୂକୁଟିଯୋଗୁଁ ତା'ର ମୁହଁ ଭୟଙ୍କର ଦିଶୁଥିଲା ।।୩।। ବଳରାମ ତାଙ୍କ ଆୟୁଧ ହଳମୁଷଳକୁ ସ୍ମରଣ କଲେ । ମୁଷଳ ଶତ୍ରୁସୈନ୍ୟଙ୍କୁ ଧ୍ୱଂସ କରେ ଏବଂ ହଳ ଦୈତ୍ୟମାନଙ୍କୁ ଦମନ କରେ । ଏହି ଦୁଇଟି ଅସ୍ତ୍ର ଶୀଘ୍ର ତାଙ୍କ ପାଖରେ ଆସି ପହଞ୍ଚିଗଲା ।।୪।। ଆକାଶଚାରୀ ରାକ୍ଷସକୁ ବଳରାମ ହଳର ଅଗ୍ରଭାଗରେ ଟାଣିଆଣି ମୁଷଳରେ ତାର ମସ୍ତକକୁ ପ୍ରହାର କଲେ । ଏହି ମାଡ଼ରେ ବ୍ରାହ୍ମଣଦ୍ରୋହୀ ରାକ୍ଷସର ମସ୍ତକ ବିଦୀର୍ଣ୍ଣ ହୋଇ ରକ୍ତଧାର ବୋହିବାକୁ ଲାଗିଲା ଏବଂ ସେ ଭୂତଳରେ ପଡ଼ି ଆର୍ତ୍ତନାଦପୂର୍ବକ ପ୍ରାଣତ୍ୟାଗ କଲା । ରାକ୍ଷସର ରକ୍ତାକ୍ତ ଦେହ ଲାଲ ରଙ୍ଗର (ବିଭିନ୍ନ ଧାତୁରେ ପୂର୍ଣ୍ଣ) ବଜ୍ରାହତ ପର୍ବତ ପରି ଦେଖାଗଲା ।।୫-୬।।

ବୃତ୍ରାସୁରକୁ ମାରିବା ପରେ ଇନ୍ଦ୍ରଙ୍କୁ ଦେବତାମାନେ ଯେପରି ଅଭିଷେକ କରିଥିଲେ, ବଲ୍ୱଳର ନିଧନ ପରେ ନୈମିଷାରଣ୍ୟର ମହାଭାଗ ମୁନିମାନେ ବଳରାମଙ୍କର ପ୍ରଶସ୍ତି ଓ ସ୍ତୁତି କରିବାକୁ ଲାଗିଲେ । ଅମୋଘ ଆଶୀର୍ବାଦ ପ୍ରଦାନ କରି ସେମାନେ ତାଙ୍କୁ ଅଭିଷିକ୍ତ କଲେ ।।୭।। ସେମାନେ ବଳରାମଙ୍କୁ ଅତି ସୁନ୍ଦର ସଜପଦ୍ମରେ ଗୁନ୍ଥା ହୋଇଥିବା ବୈଜୟନ୍ତୀ ମାଳା, ଦିବ୍ୟ ବସ୍ତ୍ର ଓ ଦିବ୍ୟ ଅଳଙ୍କାରମାନ ପ୍ରଦାନ କଲେ ।।୮।। ଏହାପରେ ବଳରାମ ମୁନିମାନଙ୍କର ଅନୁମତି ନେଇ ବ୍ରାହ୍ମଣମାନଙ୍କସହିତ କୌଶିକୀ ନଦୀକୁ ଆସି ସ୍ନାନ କଲେ । ସେଠାରୁ ସେ ସରଯୂ ନଦୀ ବାହାରିଥିବା ସରୋବର ପାଖରେ ପହଞ୍ଚିଲେ ଏବଂ ସରଯୂ କୂଳେ କୂଳେ ଯାଇ ପ୍ରୟାଗରେ ପହଞ୍ଚିଲେ । ସେଠାରେ ସ୍ନାନ କରି ଦେବତା ଆଦିଙ୍କୁ ତର୍ପଣ କଲେ ଏବଂ ସେଠାରୁ ପୁଲହଙ୍କର ଆଶ୍ରମକୁ ବାହାରିଗଲେ । ଗୋମତୀ, ଗଣ୍ଡକୀ, ବିପାଶା ଓ ଶୋଣରେ ସ୍ନାନ କରି ବଳରାମ ଗୟା

ଯାତ୍ରା କଲେ ଏବଂ ସେଠାରେ ପିତୃପୁରୁଷଙ୍କୁ ପୂଜା କରି ଗଙ୍ଗାସାଗର ସଙ୍ଗମକୁ ଯାତ୍ରା କଲେ । ଗଙ୍ଗାସାଗର ସ୍ନାନ ଶେଷ କରି ମହେନ୍ଦ୍ରପର୍ବତରେ ପର୍ଶୁରାମଙ୍କୁ ଦର୍ଶନ କଲେ ଏବଂ ତାଙ୍କୁ ବନ୍ଦନା କଲେ । ଏହାପରେ ସେ ସପ୍ତ ଗୋଦାବରୀ, ବେଣା, ପମ୍ପାସର ଓ ଭୀମରଥୀରେ ତୀର୍ଥ କଲେ ॥୯-୧୨॥ ସେଠାରେ ସେ କାର୍ତ୍ତିକେୟଙ୍କୁ ଦର୍ଶନ କରି ପ୍ରସିଦ୍ଧ ଶିବାଳୟ ଶ୍ରୀଶୈଳରେ ପହଞ୍ଚିଲେ । ଏହାପରେ ଦ୍ରାବିଡ଼ଦେଶରେ ଅତିପବିତ୍ର ବେଙ୍କଟଗିରିରେ ସେ ବେଙ୍କଟେଶ୍ୱରଙ୍କୁ ଦର୍ଶନ କଲେ ॥୧୩॥ ଏଠାରୁ କାମକୋଟି ଓ କାଞ୍ଚୀପୁରୀ ହୋଇ ନଦୀଶ୍ରେଷ୍ଠ କାବେରୀରେ ବୁଡ଼ ପକାଇଲେ ଏବଂ ସେଠାରୁ ଅତି ପବିତ୍ର ବିଷ୍ଣୁତୀର୍ଥ ଶ୍ରୀରଙ୍ଗମ୍‌ରେ ପହଞ୍ଚିଲେ ॥୧୪॥ ଶ୍ରୀହରିଙ୍କର କ୍ଷେତ୍ର ଋଷଭ ପର୍ବତ, ଦକ୍ଷିଣ ମଥୁରା ଓ ମହାପାତକନାଶନ ସମୁଦ୍ରତୀରବର୍ତ୍ତୀ ସେତୁବନ୍ଧ ରାମେଶ୍ୱରକୁ ଯାତ୍ରା କଲେ ॥୧୫॥ ସେଠାରେ ବଳରାମ ବ୍ରାହ୍ମଣମାନଙ୍କୁ ଦଶହଜାର ଧେନୁ ଦାନ କରିଥିଲେ । ତାପରେ କୃତମାଳା ଓ ତାମ୍ରପର୍ଣ୍ଣୀ ନଦୀରେ ସ୍ନାନ କରି ଅଷ୍ଟକୁଳାଚଳର ଅନ୍ୟତମ ମଳୟପର୍ବତରେ ପହଞ୍ଚିଲେ ॥୧୬॥ ଏହି ପର୍ବତରେ ଅଗସ୍ତ୍ୟ ଋଷି ବିରାଜମାନ ଥିଲେ । ସେ ତାଙ୍କୁ ନମସ୍କାର ଓ ଅଭିବାଦନ ଜଣାଇ ଏବଂ ତାଙ୍କ ଠାରୁ ଆଶୀର୍ବାଦ ଲାଭ କରି ତାଙ୍କ ଅନୁମତିପୂର୍ବକ ଦକ୍ଷିଣ ସମୁଦ୍ରକୁ ଯାତ୍ରା କଲେ ଓ ସେଠାରେ କନ୍ୟାକୁମାରୀ ରୂପରେ ଦୁର୍ଗାଦେବୀଙ୍କୁ ଦର୍ଶନ କଲେ ॥୧୭॥ ସେଠାରୁ ବଳରାମ ଫାଲଗୁନ ବା ଅନନ୍ତଶୟନ ତୀର୍ଥକୁ ଗଲେ ଏବଂ ସେଠାରେ ପଞ୍ଚାପ୍ସର ନାମକ ଉତ୍ତମ ତୀର୍ଥରେ ସ୍ନାନ କଲେ । ସେହିଠାରେ ବିଷ୍ଣୁ ନିତ୍ୟ ବିରାଜମାନ ଥାଆନ୍ତି । ସେଠାରେ ମଧ୍ୟ ବ୍ରାହ୍ମଣମାନଙ୍କୁ ସେ ଦଶ ହଜାର ଗାଭୀ ଦାନକଲେ । ସେଠାରୁ ସେ କେରଳ ଓ ତ୍ରିଗର୍ତ୍ତ ଦେଶ ଆଡ଼କୁ ଯାଇ ପ୍ରସିଦ୍ଧ ଶିବକ୍ଷେତ୍ର ଗୋକର୍ଣ୍ଣରେ ପହଞ୍ଚିଲେ । ସେହି କ୍ଷେତ୍ରରେ ଭଗବାନ୍ ଧୂର୍ଜଟୀ ନିତ୍ୟ-ବର୍ତ୍ତମାନ ଥାଆନ୍ତି ॥୧୮-୧୯॥ ସେଠାରେ ବଳରାମ ଦ୍ୱୀପସମ୍ଭବା ଭଗବତୀ ଅମ୍ବିକାଙ୍କୁ ଦର୍ଶନ କରି ଶୂର୍ପାରକ ନାମକ ତୀର୍ଥକୁ ଯାତ୍ରା କଲେ । ଏହାପରେ ସେ ତାପୀ, ପୟୋଷ୍ଣୀ ଓ ନିର୍ବିନ୍ଧ୍ୟା -- ଏହି ତୀର୍ଥମାନଙ୍କରେ ସ୍ନାନ କରି ଦଣ୍ଡକାରଣ୍ୟରେ ପ୍ରବେଶ କଲେ । ସେଠାରୁ ମାହିଷ୍ମତୀ ନଗରୀକୁ ଯାଇ ନର୍ମଦା ଜଳରେ ସ୍ନାନ କଲେ । ତାପରେ ସେ ମନୁତୀର୍ଥରେ ସ୍ନାନ କରି ପ୍ରଭାସତୀର୍ଥକୁ ଫେରିଆସିଲେ ॥୨୦-୨୧॥

ସେଠାରେ ପହଞ୍ଚି ସେ ବ୍ରାହ୍ମଣମାନଙ୍କ ମୁହଁରୁ ଶୁଣିବାକୁ ପାଇଲେ ଯେ, କୁରୁପାଣ୍ଡବଙ୍କ ଯୁଦ୍ଧରେ ସମସ୍ତ ରାଜା ନିହତ ହୋଇଛନ୍ତି । ତାହା ଶୁଣି ପୃଥିବୀର ଭାର ଉଶ୍ୱାସ ହେଲା ବୋଲି ସେ ମନେକଲେ ॥୨୨॥ ଯେଉଁ ସମୟରେ ଭୀମ ଓ ଦୁର୍ଯ୍ୟୋଧନ ସମରଭୂମିରେ ଗଦାଯୁଦ୍ଧ କରୁଥିଲେ ସେ ସମୟରେ ବଳରାମ ତାହା ବନ୍ଦ କରିବାପାଇଁ କୁରୁକ୍ଷେତ୍ରରେ ପହଞ୍ଚିଲେ । ସେଠାରେ ଯୁଧିଷ୍ଠିର, ନକୁଳ, ସହଦେବ, କୃଷ୍ଣ ଏବଂ ଅର୍ଜୁନ ବଳରାମଙ୍କୁ ଦେଖି ତାଙ୍କୁ ଅଭିବାଦନ କଲେ ଏବଂ 'ଇଏ କ'ଣ କହିବାକୁ ଏଠିକି ଆସିଛନ୍ତି' ବୋଲି ସନ୍ଦେହ କରି ଚୁପ୍ ହୋଇଗଲେ ॥୨୩-୨୪॥ ସେତେବେଳେ ଉଭୟ ଭୀମ ଓ ଦୁର୍ଯ୍ୟୋଧନ ଗଦାହସ୍ତରେ ପରସ୍ପରକୁ ହରାଇବା ଉଦ୍ଦେଶ୍ୟରେ ବିଚିତ୍ର ମଣ୍ଡଳାକାରରେ ବିଚରଣ କରୁଥିଲେ । ସେମାନଙ୍କୁ ଦେଖି ବଳରାମ କହିଲେ 'ହେ ଦୁର୍ଯ୍ୟୋଧନ, ହେ ଭୀମ, ତୁମ ଦୁଇ ଜଣଙ୍କର ବଳବୀର୍ଯ୍ୟ ସମାନ । ତୁମେ ଦୁଇଜଣଯାକ ସମାନ ବୀର । କିନ୍ତୁ ମୁଁ ତୁମ ଦୁଇ ଜଣଙ୍କ ମଧ୍ୟରୁ ଜଣକର ବଳ ଅଧିକ ଓ ଅନ୍ୟ ଜଣକର ଶିକ୍ଷା (ଗଦାଯୁଦ୍ଧ ଶିକ୍ଷା) ଅଧିକ ବୋଲି ମନେକରେ ॥୨୫-୨୬॥ ଏହି ଯୁଦ୍ଧରେ ତୁମ ଦୁଇ ଜଣ ସମଯୋଦ୍ଧାଙ୍କ ମଧ୍ୟରୁ ଜଣକର ଜୟ ଓ ଅନ୍ୟର ପରାଜୟ ହେବା ମୁଁ ଦେଖିପାରୁ ନାହିଁ । ତେଣୁ ତୁମେ ଦୁହେଁ ଏହି ନିଷ୍ଫଳ ଯୁଦ୍ଧରୁ ନିବୃତ୍ତ ହୁଅ ॥୨୭॥

କିନ୍ତୁ ଉଭୟଙ୍କ ମଧ୍ୟରେ ଶତ୍ରୁତା ଏପରି ବଢ଼ିଯାଇଥିଲା ଯେ ପରସ୍ପର କଟୁବାକ୍ୟ ଓ ଦୁର୍ବ୍ୟବହାର ବିଷୟ ସ୍ମରଣ କରି ଦୁହେଁ ବଳରାମଙ୍କର କଥା ଗ୍ରହଣ କଲେ ନାହିଁ ॥୨୮॥ ବଳରାମ ସେଇ ଯୁଦ୍ଧକୁ ପୂର୍ବ କର୍ମାର୍ଜିତ ଫଳ ବୋଲି ମନେକରି ଦ୍ୱାରକାକୁ ଫେରିଗଲେ ଏବଂ ସେଠାରେ ରାଜା ଉଗ୍ରସେନ ଓ ନିଜ ଜ୍ଞାତି କୁଟୁମ୍ବମାନଙ୍କ ସହିତ ମିଳିତ ହୋଇ ସେମାନଙ୍କର ଆନନ୍ଦବର୍ଦ୍ଧନ କଲେ ॥୨୯॥ ଦ୍ୱାରକାରୁ ବଳରାମ ପୁଣି ନୈମିଷାରଣ୍ୟକୁ ଗଲେ । ଯୁଦ୍ଧରୁ ନିର୍ଲିପ୍ତ ରହିଥିବା ଯଜ୍ଞପୁରୁଷ

ବଳରାମଙ୍କଦ୍ୱାରା ମୁନିମାନେ ସେଠାରେ ସମସ୍ତ ଯଜ୍ଞ କରାଇଲେ ॥୩୦॥ ଭଗବାନ ବଳରାମ ମୁନିମାନଙ୍କୁ ବିଶୁଦ୍ଧ ତତ୍ତ୍ୱଜ୍ଞାନ ଉପଦେଶ ଦେଲେ । ସେହି ଜ୍ଞାନ ଲାଭ କରି ପରମାତ୍ମାଙ୍କ ମଧ୍ୟରେ ଏହି ସମ୍ପୂର୍ଣ୍ଣ ବିଶ୍ୱ ଅବସ୍ଥିତ ଏବଂ ସ୍ୱୟଂ ପରମାତ୍ମା ବିଶ୍ୱବ୍ୟାପୀ ବୋଲି ମୁନିମାନେ ଅନୁଭବ କଲେ ॥୩୧॥ ଏହାପରେ ବଳରାମ ନିଜର ପତ୍ନୀ ରେବତୀଙ୍କ ସହିତ ଅବଭୃଥ ସ୍ନାନ କଲେ ଏବଂ ଉତ୍ତମ ବସ୍ତ୍ର ଓ ସୁଦୃଶ୍ୟ ଅଳଙ୍କାରମାନଙ୍କରେ ଭୂଷିତ ହୋଇ ନିଜ ଜ୍ଞାତିବନ୍ଧୁଙ୍କ ଭିଡ଼ରେ ତାରାମାନଙ୍କ ମଧ୍ୟରେ ଜ୍ୟୋତ୍ସ୍ନାମଣ୍ଡିତ ଚନ୍ଦ୍ରମାଙ୍କପରି ଶୋଭାପାଇଲେ ॥୩୨॥ ମହାରାଜ ପରିକ୍ଷିତ, ବଳରାମ ସ୍ୱୟଂ ଅନନ୍ତ; ତାଙ୍କର ଶକ୍ତି ଅତୁଳନୀୟ । ମାୟାରେ ସେ ମନୁଷ୍ୟଶରୀର ଧାରଣ କରିଛନ୍ତି । ସେହି ମହାବଳୀୟାନ୍ ବଳରାମଙ୍କର ଏହିପରି ଅସଂଖ୍ୟ ଲୀଳା ରହିଛି ॥୩୩॥ ଯେଉଁ ବ୍ୟକ୍ତି ସନ୍ଧ୍ୟାବେଳେ ଏବଂ ପ୍ରାତଃକାଳରେ ଅଦ୍ଭୁତକର୍ମା ଭଗବାନ ବଳରାମଙ୍କର ଲୀଳାମାନ ସ୍ମରଣ କରେ, ସେ ଭଗବାନ ବିଷ୍ଣୁଙ୍କର ପ୍ରିୟପାତ୍ର ହୋଇଥାଏ ॥୩୪॥

## ଅଶୀ ଅଧ୍ୟାୟ

# ସୁଦାମା ପ୍ରସଙ୍ଗ

ରାଜା ପରିକ୍ଷିତ କହିଲେ, ପରମାତ୍ମା ଶ୍ରୀକୃଷ୍ଣ ଅନନ୍ତଶକ୍ତିର ଅଧିକାରୀ ଥିଲେ । ତାଙ୍କର ଅନ୍ୟ ମଧୁର ଲୀଳାମାନ ମୁଁ ଶୁଣିବାକୁ ଇଚ୍ଛା କରେ ॥୧॥ କାମନାର ବାଣରେ ଜର୍ଜର ମନୁଷ୍ୟ ଭଗବତ୍‌କଥା ଶୁଣିବାଦ୍ୱାରା ହିଁ ପ୍ରକୃତ ଆନନ୍ଦ ଲାଭ କରେ । ତେଣୁ ଶ୍ରୀକୃଷ୍ଣଙ୍କର ପବିତ୍ର ଲୀଳାକଥାମାନ ଥରେ ଶୁଣି କିଏ ସନ୍ତୁଷ୍ଟ ହୋଇପାରିବ ? ॥୨॥ ଯେଉଁ ବାଣୀଦ୍ୱାରା ଭଗବାନଙ୍କର ଗୁଣକୀର୍ତ୍ତନ କରାଯାଏ, ତାହା ହିଁ ପ୍ରକୃତ ବାଣୀ । ଯେଉଁ ହସ୍ତ ତାଙ୍କରି ସେବାରେ ଲାଗିରହେ, ତାହା ହିଁ ପ୍ରକୃତ ହସ୍ତ । ସେ ଚରାଚର ଏହି ସମସ୍ତ ବସ୍ତୁରେ ଅବସ୍ଥିତ ବୋଲି ଯେଉଁ ମନ ସ୍ମରଣ କରେ, ତାହା ହିଁ ସାର୍ଥକ ମନ ଏବଂ ଯେଉଁ କର୍ଣ୍ଣ ତାଙ୍କରି ପବିତ୍ର ଲୀଳାମାନ ଶ୍ରବଣ କରେ, ସେହି କର୍ଣ୍ଣ ହିଁ ପ୍ରକୃତ କର୍ଣ୍ଣ ॥୩॥ ଯେଉଁ ମସ୍ତକ ସମସ୍ତ ପ୍ରାଣୀଙ୍କୁ ଭଗବାନଙ୍କର ସ୍ଥିର ଓ ଅସ୍ଥିର ପ୍ରତିମା ଭାବି ପ୍ରଣାମ କରେ, ତାହା ହେଉଛି ପ୍ରକୃତ ମସ୍ତକ । ଯେଉଁ ଚକ୍ଷୁ ତାଙ୍କର ସେହି ସ୍ୱରୂପକୁ ସର୍ବତ୍ର ଦର୍ଶନ କରେ, ତାହା ହେଉଛି ପ୍ରକୃତ ଚକ୍ଷୁ ଏବଂ ଶରୀରର ଯେଉଁସବୁ ଅଙ୍ଗ ଭଗବାନଙ୍କର ଓ ତାଙ୍କ ଭକ୍ତମାନଙ୍କର ପାଦୋଦକକୁ ସର୍ବଦା ସେବନ କରେ, ସେଗୁଡ଼ିକ ହିଁ ପ୍ରକୃତ ଅଙ୍ଗ ॥୪॥ ଶ୍ରୀସୂତ କହିଲେ, ପରିକ୍ଷିତ ଏହିପରି ପଚାରିବାରୁ ବ୍ୟାସପୁତ୍ର ଭଗବାନ୍ ଶୁକଦେବ କୃଷ୍ଣଙ୍କ ଚିନ୍ତାରେ ମଗ୍ନ ହୋଇ ଏହିପରି ଉତ୍ତର ଦେଲେ ॥୫॥ ଶ୍ରୀ ଶୁକଦେବ କହିଲେ, ପରିକ୍ଷିତ, ଇନ୍ଦ୍ରିୟଭୋଗରୁ ବିରତ ଜଣେ ବ୍ରାହ୍ମଣ ଭଗବାନ୍ ଶ୍ରୀକୃଷ୍ଣଙ୍କର ସଖା ଥିଲେ । ସେ ଅତିଶୟ ଶାନ୍ତଚିତ୍ତ, ବ୍ରହ୍ମଜ୍ଞ ଓ ଜିତେନ୍ଦ୍ରିୟ ଥିଲେ ॥୬॥ ଯାହା କିଛି ମିଳୁଥିଲା, ସେଥିରେ ସନ୍ତୁଷ୍ଟ ହୋଇ ସେ ଗୃହସ୍ଥାଶ୍ରମରେ ଥିଲେ । ତାଙ୍କ ଭାର୍ଯ୍ୟା ମଧ୍ୟ ଅଭାବରୁ ଚିରାଲୁଗା ପିନ୍ଧି ତାଙ୍କ ପରି ଭୋକଉପାସରେ ରହୁଥିଲେ ॥୭॥ ସେହି ପତିବ୍ରତା ବ୍ରାହ୍ମଣୀଙ୍କର ମୁଖ ଦୁଃଖରେ ମଳିନ ପଡ଼ିଯାଉଥିଲା । ଭୋକ ଉପାସରେ ଥରି ଥରି ଦିନେ ସେଇ ଜୀର୍ଣ୍ଣଶୀର୍ଣ୍ଣ ଦରିଦ୍ର ବ୍ରାହ୍ମଣୀ ସ୍ୱାମୀଙ୍କୁ କହିଲେ, ସ୍ୱାମୀ, ଯାଦବଶ୍ରେଷ୍ଠ ଭଗବାନ୍ ଶ୍ରୀକୃଷ୍ଣ ହେଉଛନ୍ତି ତୁମର ସଖା । ସେ ବ୍ରାହ୍ମଣମାନଙ୍କର ହିତକାରୀ, ଶରଣବତ୍ସଳ ଏବଂ ସାକ୍ଷାତ୍ ଲକ୍ଷ୍ମୀସ୍ୱରୂପା ରୁକ୍ମିଣୀଙ୍କର ସ୍ୱାମୀ । ସେ ସାଧୁ ସଜ୍ଜନମାନଙ୍କର ପରମ ଗତି । ମହାଭାଗ, ତୁମେ ତାଙ୍କ ପାଖକୁ ଯାଅ । ତୁମର କୁଟୁମ୍ବ ଓ ପରିବାର ଅଛି । ତୁମ ଦୁଃଖ ଦେଖିଲେ ସେ ନିଶ୍ଚୟ ତୁମକୁ ପ୍ରଚୁର ଧନ ଦାନକରିବେ ॥୮-୧୦॥ ଏବେ ସେ ଭୋଜ, ବୃଷ୍ଣି ଓ ଅନ୍ଧକମାନଙ୍କର ରାଜା ହୋଇ ଦ୍ୱାରକାରେ ରହୁଛନ୍ତି । ସେହି ଜଗତ୍‌ଗୁରୁ କୃଷ୍ଣ ତାଙ୍କ ପାଦପଦ୍ମକୁ ସ୍ମରଣ କରୁଥିବା ଲୋକଙ୍କୁ ସବୁ କିଛି, ଏପରିକି ନିଜକୁ ମଧ୍ୟ ଦେଇଦିଅନ୍ତି । ତେଣୁ ତାଙ୍କୁ

ଭଜନକରୁଥିବା ଲୋକଙ୍କୁ ସାମାନ୍ୟ ଅର୍ଥକାମ ଦେବା ତାଙ୍କ ପକ୍ଷରେ ବଡ଼ କଥା କଣ ? ॥୧୧॥ ଏହିପରି ବ୍ରାହ୍ମଣୀ ବହୁବାର ମୃଦୁଭାବରେ କହିବାରୁ ବ୍ରାହ୍ମଣ ଭାବିଲେ, କିଛି ନ ହେଉ, ଉତ୍ତମଶ୍ଳୋକ ଭଗବାନ୍ ଶ୍ରୀକୃଷ୍ଣଙ୍କର ଦର୍ଶନ ତ ହେବ ! ॥୧୨॥

ଏହିପରି ଚିନ୍ତାକରି ସେ କୃଷ୍ଣଙ୍କ ନିକଟକୁ ଯିବାପାଇଁ ମନ ସ୍ଥିର କଲେ ଓ ସ୍ତ୍ରୀଙ୍କୁ କହିଲେ, ହେ କଲ୍ୟାଣି, ଘରେ କ'ଣ ଅଛି, କିଛି ଦିଅ, ମୁଁ କୃଷ୍ଣଙ୍କୁ ଉପହାର ଦେବି ॥୧୩॥ ବ୍ରାହ୍ମଣୀ ଚାରି ମୁଠା ଚୂଡ଼ା ପଡ଼ୋଶୀ ଜଣେ ବିପ୍ରଙ୍କ ଘରୁ ମାଗିଆଣି ଖଣ୍ଡିଏ କନାରେ ବାନ୍ଧି କୃଷ୍ଣଙ୍କ ଉପହାରପାଇଁ ସ୍ୱାମୀଙ୍କ ହାତରେ ଦେଲେ ॥୧୪॥ ତାହା ଧରି ବ୍ରାହ୍ମଣ ଦ୍ୱାରକାକୁ ଯାତ୍ରା କଲେ, କୃଷ୍ଣଙ୍କୁ କିପରି ଭେଟିବେ ତାହା ବାଟଯାକ ଚିନ୍ତା କରି କରି ଚାଲିଲେ ॥୧୫॥ ଦ୍ୱାରକାରେ ପହଞ୍ଚି ସେହି ବ୍ରାହ୍ମଣ ଅନ୍ୟ ବ୍ରାହ୍ମଣଙ୍କ ମେଳରେ ତିନୋଟି ସୈନ୍ୟ ଛାଉଣୀ ଓ ତିନୋଟି ଅଗଣା ଅତିକ୍ରମ କଲେ । ତା'ପରେ ସେ କୃଷ୍ଣଭକ୍ତ ଅନ୍ଧକ ଓ ବୃଷ୍ଣିବଂଶୀୟ ଯାଦବମାନଙ୍କ ମହଲରେ ପ୍ରବେଶ କଲେ, ଯେଉଁଠି ପ୍ରବେଶ ସହଜ ନ ଥିଲା ॥୧୬॥ ଯେଉଁଠାରେ ଶ୍ରୀକୃଷ୍ଣଙ୍କର ଷୋଳହଜାର ରାଣୀ ରହୁଥିଲେ, ସେହି ଗୃହମାନଙ୍କ ମଧ୍ୟରୁ ଏକ ଅତ୍ୟନ୍ତ ଶୋଭାଯୁକ୍ତ ଗୃହରେ ସେ ପ୍ରବେଶ କଲେ ; ସତେ ଯେପରି ସେ ବ୍ରହ୍ମାନନ୍ଦ ପାଇଗଲେ ॥୧୭॥ ନିଜର ପ୍ରିୟତମା ରୁକ୍ମିଣୀଙ୍କର ପଲଙ୍କରେ ବସିଥିବା ଭଗବାନ୍ ଶ୍ରୀକୃଷ୍ଣ ଦୂରରୁ ସେହି ବ୍ରାହ୍ମଣଙ୍କୁ ଦେଖି ହଠାତ୍ ଉଠିପଡ଼ିଲେ ଏବଂ ତାଙ୍କ ପାଖକୁ ଯାଇ ଆନନ୍ଦରେ ବାହୁଦ୍ୱୟଦ୍ୱାରା ତାଙ୍କୁ ଆଲିଙ୍ଗନ କଲେ ॥୧୮॥ ପ୍ରିୟସଖା ସେହି ବିପ୍ରର୍ଷିଙ୍କର ଅଙ୍ଗସଙ୍ଗଦ୍ୱାରା କମଳନୟନ ଶ୍ରୀକୃଷ୍ଣ ଅତି ପ୍ରୀତ ଓ ଆନନ୍ଦିତ ହେଲେ ଓ ତାଙ୍କ ଚକ୍ଷୁରୁ ଆନନ୍ଦାଶ୍ରୁ ବହିବାକୁ ଲାଗିଲା ॥୧୯॥ ରାଜା ପରିକ୍ଷିତ, ଏହାପରେ ଲୋକପାବନ ଭଗବାନ୍ ଶ୍ରୀକୃଷ୍ଣ ବିପ୍ରଙ୍କୁ ପଲଙ୍କ ଉପରେ ବସାଇଲେ ଏବଂ ସ୍ୱୟଂ ପୂଜାସାମଗ୍ରୀ ଆଣି ତାଙ୍କୁ ପୂଜାକଲେ । ନିଜେ ତାଙ୍କ ପାଦ ଧୋଇ ଦେଇ ପାଦୋଦକକୁ ମସ୍ତକରେ ଧାରଣ କଲେ । ଏହାପରେ ଗନ୍ଧ, ଚନ୍ଦନ, ଅଗୁରୁ, କୁଙ୍କୁମ ଆଦି ଦିବ୍ୟ ଅଙ୍ଗରାଗଦ୍ୱାରା ତାଙ୍କ ଶରୀରକୁ ଲେପନ କଲେ ॥୨୦-୨୧॥ ଏହାପରେ ସୁଗନ୍ଧି ଧୂପ ଓ ଦୀପାବଳୀଦ୍ୱାରା ଆନନ୍ଦରେ ତାଙ୍କର ଆରତି କଲେ ଏବଂ ତାମ୍ବୂଳ ଓ ଗାଭୀଦାନ ସହ ତାଙ୍କର କୁଶଳ ଜିଜ୍ଞାସା କଲେ ॥୨୨॥ ବ୍ରାହ୍ମଣ ପୁରୁଣା ମଇଳା ଲୁଗା ପିନ୍ଧିଥିଲେ । ଶରୀର ମଳିନ ଓ ଦୁର୍ବଳ ଥିଲା । ଦେହର ଶିରାମାଳ ଦେଖାଯାଉଥିଲା । ସ୍ୱୟଂ ରୁକ୍ମିଣୀ ଦେବୀ ଚାମର ବ୍ୟଜନଦ୍ୱାରା ତାଙ୍କୁ ସେବା କରିବାକୁ ଲାଗିଲେ ॥୨୩॥ ବିମଳଯଶା ଭଗବାନ୍ ଶ୍ରୀକୃଷ୍ଣ ଜଣେ ଅବଧୂତଙ୍କୁ ଅତି ପ୍ରୀତିରେ ପୂଜା କରୁଥିବାର ଦେଖି ଅନ୍ତଃପୁରର ଲୋକମାନେ ଆଶ୍ଚର୍ଯ୍ୟ ହୋଇଗଲେ । ସେମାନେ କୁହାକୁହି ହେଲେ, ଏହି ନିନ୍ଦିତ ଶ୍ରୀହୀନ ଅଧମ ଭିକ୍ଷୁକ ଅବଧୂତ କେଉଁ ପୁଣ୍ୟ କରିଥିଲା ଯେ ତ୍ରିଲୋକର ଗୁରୁ ଶ୍ରୀନିବାସ ଭଗବାନ୍ ଶ୍ରୀକୃଷ୍ଣ ପଲଙ୍କ ଉପରେ ବସିଥିବା ଲକ୍ଷ୍ମୀରୂପା ରୁକ୍ମିଣୀ ଦେବୀଙ୍କୁ ଛାଡ଼ି ଦେଇ ନିଜର ଅଗ୍ରଜ ବଳରାମଙ୍କୁ ପୂଜା କରିବାପରି ଏହି ଅଧମ ବ୍ରାହ୍ମଣଙ୍କୁ ଆଲିଙ୍ଗନପୂର୍ବକ ତାର ସେବା-ସତ୍କାର କରୁଛନ୍ତି ! ॥୨୪-୨୬॥ ରାଜା ପରିକ୍ଷିତ, ପୁଣି ଭଗବାନ୍ ଶ୍ରୀକୃଷ୍ଣ ଏବଂ ଏହି ବ୍ରାହ୍ମଣ ଦୁହେଁ ନିଜର ହାତ ଧରାଧରି ହୋଇ ପୂର୍ବେ ଗୁରୁକୁଳରେ ଘଟିଥିବା ଆପଣା ଆମୋଦଦାୟକ ଗାଥା କୁହାକୁହି ହେଲେ ॥୨୭॥

ଶ୍ରୀକୃଷ୍ଣ କହିଲେ, ଧର୍ମଜ୍ଞ ବ୍ରାହ୍ମଣ, ଗୁରୁଦକ୍ଷିଣା ଦେଇ ଗୁରୁକୁଳ ଛାଡ଼ିବା ପରେ ନିଜର ଅନୁରୂପ ଭାର୍ଯ୍ୟା ବିବାହ କରିଛନ୍ତି ନା ନାହିଁ ? ମୁଁ ଜାଣିଛି ଯେ ଗୃହସ୍ଥ ହେଲେ ମଧ୍ୟ ଆପଣଙ୍କ ଚିତ୍ତ ବିଷୟଭୋଗରେ ପ୍ରାୟ ଆସକ୍ତ ନ ଥାଏ । ହେ ବିଦ୍ୱାନ୍, ଗୃହ ଓ ଧନ ସମ୍ପଦପ୍ରତି ଆପଣଙ୍କର ସେପରି ପ୍ରୀତି ନାହିଁ । ସଂସାରରେ କିଛି ଲୋକ ଅଛନ୍ତି, ଯେଉଁମାନଙ୍କ ଚିତ୍ତ କାମାସକ୍ତ ନୁହେଁ, ଏବଂ ଯେଉଁମାନେ ଈଶ୍ୱରମାୟାରଚିତ ବିଷୟବାସନା ଛାଡ଼ି ମୋ'ପରି ଲୋକଶିକ୍ଷାନିମନ୍ତେ କର୍ମ କରନ୍ତି ॥୨୮-୩୦॥ ବ୍ରାହ୍ମଣ, ଆପଣଙ୍କର ମନେ ଅଛି, ଯେତେବେଳେ ଆମେ ଦୁହେଁ ଏକାଠି ଗୁରୁକୁଳରେ ରହୁଥିଲେ ? ଅଜ୍ଞାନ ଅଂଧକାରର ପାରରେ ଥିବା ଯେଉଁ ମୋକ୍ଷଜ୍ଞାନ ସମସ୍ତଙ୍କର ଜ୍ଞେୟ, ତାହା କେବଳ ଦ୍ୱିଜ ଗୁରୁକୁଳରେ ହିଁ ଲାଭ କରିଥାଏ ॥୩୧॥ ହେ ସଖା, ବର୍ଣ୍ଣାଶ୍ରମଧର୍ମୀ ଦ୍ୱିଜାତି (ବ୍ରାହ୍ମଣ, କ୍ଷତ୍ରିୟ ଓ ବୈଶ୍ୟ)ଙ୍କର ଏହି ସଂସାରରେ ତିନି ଜଣ ଗୁରୁ ଅଛନ୍ତି । ଜନ୍ମଦାତା ପିତା ହେଉଛନ୍ତି ଆଦ୍ୟଗୁରୁ, ଉପନୟନାଦି ସଂସ୍କାର କରି ଯେ ବେଦଶିକ୍ଷା ଦ୍ୱାରା ସତ୍‌କର୍ମର ଉପଦେଶ ଦିଅନ୍ତି, ସେ ହେଉଛନ୍ତି ଦ୍ୱିତୀୟ ଗୁରୁ ;

ଏବଂ ବର୍ଣ୍ଣାଶ୍ରମରେ ରହି କିପରି ବ୍ରହ୍ମବିଦ୍ୟା ଲାଭ କରିହେବ--ତାହା ଯେ ଶିକ୍ଷା ଦିଅନ୍ତି, ସେ ତୃତୀୟ ଗୁରୁ ଏବଂ ସେ ହେଉଛନ୍ତି ମୋର ସ୍ୱରୂପ ॥୩୨॥ ବ୍ରହ୍ମନ୍, ଏହି ସଂସାରରେ ବର୍ଣ୍ଣାଶ୍ରମରେ ଥିବା ବ୍ୟକ୍ତିମାନଙ୍କ ମଧ୍ୟରୁ ଯେଉଁମାନେ ଗୁରୁରୂପୀ ମୋର ଉପଦେଶ ଅନୁସାରେ ସ୍ୱାର୍ଥ ଓ ପରମାର୍ଥକୁ ଭଲଭାବରେ ଜାଣିଥା'ନ୍ତି, ସେମାନେ ଅନାୟାସରେ ଭବସାଗର ପାରି ହୋଇଯାଆନ୍ତି ॥୩୩॥ ସଖା, ମୁଁ ଅନ୍ତର୍ଯାମୀ ରୂପରେ ସମସ୍ତ ପ୍ରାଣୀମାନଙ୍କ ମଧ୍ୟରେ ରହିଛି । ଗୁରୁସେବାଦ୍ୱାରା ମୋର ଯେପରି ସନ୍ତୋଷ ହୁଏ, ବ୍ରହ୍ମଚର୍ଯ୍ୟ, ଗାର୍ହସ୍ଥ୍ୟ, ବାନପ୍ରସ୍ଥ ଓ ଯତିବ୍ରତଦ୍ୱାରା ସେପରି ହୁଏ ନାହିଁ ॥୩୪॥ ବ୍ରାହ୍ମଣ, ଆମେ ଗୁରୁଗୃହରେ ବାସ କରୁଥିବାବେଳେ, ଦିନେ ଗୁରୁପତ୍ନୀ ଆମକୁ କାଠ ଆଣିବାପାଇଁ ବନକୁ ପଠାଇଥିଲେ । ସେ ଦିନ ଯେଉଁ ଘଟଣା ଘଟିଥିଲା, ତାହା ଆପଣଙ୍କର ମନେ ପଡୁଛି ? ॥୩୫॥

ଦ୍ୱିଜ, ସେଦିନ ଆମେ ଏକ ଘୋର ଅରଣ୍ୟମଧ୍ୟରେ ପ୍ରବେଶ କଲେ ଏବଂ ଅକାଳରେ ଭୟଙ୍କର ମେଘଗର୍ଜନ ସହ ଝଡ଼ିବର୍ଷା ଆରମ୍ଭ ହୋଇଗଲା । ସେତେବେଳକୁ ସୂର୍ଯ୍ୟାସ୍ତ ହୋଇଯାଇଥିଲା । ଚତୁର୍ଦ୍ଦିଗ ଅନ୍ଧକାରାଚ୍ଛନ୍ନ । ଚାରିଆଡ଼ ଏପରି ଜଳମଗ୍ନ ହୋଇଥିଲା ଯେ କେଉଁଟା ଖାଲ ଓ କେଉଁଟା ଢିପ, କିଛି ଜଣାପଡୁ ନ ଥିଲା ॥୩୬-୩୭॥ ଏହି ଜଳପ୍ଲାବିତ ବନମଧ୍ୟରେ ଆମେ ଦୁହେଁ ହାତ ଧରାଧରି ହୋଇ କାଠଭାର ଧରି ଆସୁଥିଲେ; ସେତେବେଳେ ଏପରି ଝଡ଼ିବର୍ଷା କୁଟୁଥିଲା ଯେ ଆମେ ଅତିଶୟ କାତର ହୋଇ ବାଟ ଜାଣି ପାରୁ ନ ଥିଲେ ॥୩୮॥ ଆମ ଗୁରୁ ଆଚାର୍ଯ୍ୟ ସାନ୍ଦୀପନି ଯେତେବେଳେ ଏହା ଜାଣିପାରିଲେ, ସେ ଆମ ଦୁହିଁଙ୍କୁ ଖୋଜି ଖୋଜି ସୂର୍ଯ୍ୟୋଦୟ ପୂର୍ବରୁ ଜଙ୍ଗଲରେ ପହଞ୍ଚିଲେ ଏବଂ ଆମକୁ ପାଇ ଆମର ଦୁର୍ଦ୍ଦଶା ଦେଖିଲେ ॥୩୯॥ ସେ କହି ଉଠିଲେ, ଆଶ୍ଚର୍ଯ୍ୟର କଥା, ବତ୍ସ ! ତୁମେ ମୋ' ପାଇଁ ଏପରି ଦୁର୍ଦ୍ଦଶା ଭୋଗ କଲ । ସମସ୍ତ ପ୍ରାଣୀଙ୍କର ସବୁଠାରୁ ପ୍ରିୟ ହେଉଛି ନିଜର ଶରୀର । କିନ୍ତୁ ତୁମେ ସେହି ଶରୀରକୁ ଖାତିର ନ କରି ମୋ' ସେବାରେ ଏତେ କଷ୍ଟ ପାଉଛ ! ଗୁରୁଙ୍କର ଋଣରୁ ମୁକ୍ତ ହେବାକୁ ହେଲେ ସତ୍‌ଶିକ୍ଷାଦ୍ୱାରା ନିର୍ମଳ ଚିତ୍ତରେ ଗୁରୁଙ୍କଠାରେ ନିଜକୁ ସମ୍ପୂର୍ଣ୍ଣଭାବେ ସମର୍ପଣ କରିବାକୁ ହେବ ॥୪୦-୪୧॥ ତୁମେମାନେ ଦ୍ୱିଜଶ୍ରେଷ୍ଠ । ମୁଁ ଅତିଶୟ ସନ୍ତୁଷ୍ଟ । ତୁମର ସମସ୍ତ ମନୋରଥ ପୂର୍ଣ୍ଣ ହେଉ । ତୁମେ ଯେଉଁ ବେଦାଧ୍ୟୟନ ଓ ଶାସ୍ତ୍ରଜ୍ଞାନ ଲାଭ କରିଛ, ତାହା ଇହଲୋକ ଓ ପରଲୋକରେ ପୂର୍ଣ୍ଣତଃ ଫଳପ୍ରଦ ହେଉ ॥୪୨॥

ପ୍ରିୟ ସଖା, ଗୁରୁଗୃହରେ ବାସ କରିବା ସମୟରେ ଏହିପରି ଆମର ଅନେକ ଘଟଣା ଘଟିଥିଲା । ଗୁରୁଙ୍କର ଅନୁଗ୍ରହରୁ ଚିତ୍ତ ଶାନ୍ତ ହୁଏ ଓ ମନୁଷ୍ୟର କାମନା ପୂର୍ଣ୍ଣ ହୁଏ ॥୪୩॥ ବ୍ରାହ୍ମଣ କହିଲେ, ହେ ଦେବଦେବ, ହେ ଜଗଦ୍‌ଗୁରୁ, ଆପଣଙ୍କର ସଂକଳ୍ପ ସର୍ବଦା ସତ୍ୟ ହୁଏ । ଆପଣ ଯେଉଁ ଗୁରୁଗୃହରେ ବାସ କରୁଥିଲେ, ସେଠାରେ ରହି ଆମର କିଛି ପାଇବାକୁ ବାକୀ ନ ଥିଲା । ପ୍ରଭୁ, ବେଦ ହେଉଛି ସମସ୍ତ ପୁରୁଷାର୍ଥ ସାଧନର ଉତ୍ସ । ଆପଣ ନିଜେ ବେଦମୟ ବ୍ରହ୍ମ । ତେଣୁ ଗୁରୁକୁଳରେ ବାସ କରିବା ଥିଲା ଆପଣଙ୍କ ପକ୍ଷରେ ବିଡମ୍ବନା ମାତ୍ର ! ॥୪୪-୪୫॥

## ଏକାଶୀ ଅଧ୍ୟାୟ

# ସୁଦାମାଙ୍କ ଦାରିଦ୍ର୍ୟଭଞ୍ଜନ

ଶ୍ରୀ ଶୁକଦେବ କହିଲେ, ମହାରାଜ ପରିକ୍ଷିତ, ଭଗବାନ୍ ଶ୍ରୀକୃଷ୍ଣ ବ୍ରାହ୍ମଣମାନଙ୍କର ହିତକାରୀ ଓ ସାଧୁମାନଙ୍କର ଏକାନ୍ତ ଆଶ୍ରୟ । ସେ ସମସ୍ତଙ୍କ ମନର କଥା ଜାଣିପାରନ୍ତି । ସେ ବ୍ରାହ୍ମଣଙ୍କ ସହିତ ଏହିପରି କଥାବାର୍ତ୍ତା କରି ସ୍ନେହରେ ତାଙ୍କଆଡ଼କୁ ଚାହିଁ ହାସ ପରିହାସ ଛଳରେ ଏହିପରି କହିଲେ ॥୧-୨॥ ଶ୍ରୀକୃଷ୍ଣ କହିଲେ, ବ୍ରହ୍ମନ୍, ମୋ' ପାଇଁ ତୁମେ ତୁମ ଘରୁ କ'ଣ

ଆଣିଛ ? ଭକ୍ତମାନେ ପ୍ରେମରେ ମୋ ପାଇଁ ସାମାନ୍ୟ କିଛି ଆଣିଲେ ମଧ୍ୟ ତାହା ମୋତେ ବହୁତ ବଡ଼ ଦେଖାଯାଏ । ମୋର ଭକ୍ତ ନ ହୋଇ ମୋ ପାଇଁ ଗୁଡ଼ାଏ ଆଣିଲେ ମଧ୍ୟ, ମୋର ସେଥିରେ ସନ୍ତୋଷ ହୁଏ ନାହିଁ ॥୩॥ ପତ୍ର, ପୁଷ୍ପ, ଫଳ, ଜଳ--ଯାହା କିଛି ମୋ' ଭକ୍ତ ମୋତେ ଶ୍ରଦ୍ଧାରେ ଦିଏ, ମୁଁ ତାହା ସାଦରେ ଗ୍ରହଣ କରେ ॥୪॥ ପରିକ୍ଷିତ, ଭଗବାନ୍ ଶ୍ରୀକୃଷ୍ଣ ଏପରି କହିବାରୁ ମହା ଐଶ୍ୱର୍ଯ୍ୟଶାଳୀ ସେହି ଭଗବାନଙ୍କୁ ସାମାନ୍ୟ ଚାରି ମୁଠା ଚୁଡ଼ା ଦେବାପାଇଁ ବ୍ରାହ୍ମଣ ସଙ୍କୋଚ ବୋଧ କଲେ । ସେ ମୁହଁ ତଳକୁ କରି ଚୁପ୍ ହୋଇ ରହିଲେ ॥୫॥ ଭଗବାନ୍ ତ ସମସ୍ତ ପ୍ରାଣୀଙ୍କ ଅନ୍ତରର କଥା ଜାଣିପାରନ୍ତି । ସେ ସର୍ବଦର୍ଶୀ । ସେ ବ୍ରାହ୍ମଣଙ୍କ ଆସିବାର କାରଣ ଜାଣିପାରି ଭାବିଲେ, ଏ ମୋର ପ୍ରିୟ ସଖା । ପୂର୍ବରୁ ସେ ଯେବେ ମଧ୍ୟ ମୋର ଭଜନ କରିଛନ୍ତି, ଧନଲୋଭର ଆଶା କେବେ ରଖିନାହାନ୍ତି । ଏବେ ନିଜ ପତିବ୍ରତା ପତ୍ନୀଙ୍କ ପ୍ରିୟକାମନାରେ ମୋ ପାଖକୁ ଆସିଛନ୍ତି । ମୁଁ ଏହି ବ୍ରାହ୍ମଣଙ୍କୁ ଏପରି ଧନସମ୍ପତ୍ତି ଦାନ କରିବି, ଯାହାକି ଏହି ମର୍ତ୍ତ୍ୟମଣ୍ଡଳରେ ଦୁର୍ଲଭ ହୋଇଥିବ ॥୬-୭॥ ଏହିପରି ଚିନ୍ତା କରି ଶ୍ରୀକୃଷ୍ଣ 'ଇଏ କଣ' ବୋଲି କହି ବ୍ରାହ୍ମଣ ଚିରାକନାରେ ବାନ୍ଧି ଯେଉଁ ଚୁଡ଼ାପୁଟୁଳିଟି ନିଜ ଲୁଗାଭିତରେ ଲୁଚାଇ ରଖିଥିଲେ, ସେଇଟି ତାଙ୍କଠାରୁ ଛଡ଼ାଇଆଣିଲେ ॥୮॥ ପୁଣି ସ୍ନେହରେ କହିଲେ, ହେ ସଖା, ତୁମେ ତ ମୋ' ମନ ଜାଣି ଆଣିଛ । ଏହା କେବଳ ମୋତେ ନୁହେଁ, ସାରା ବିଶ୍ୱକୁ ମଧ୍ୟ ତୃପ୍ତ କରିପାରିବ ॥୯॥

ଏହା କହି ଶ୍ରୀକୃଷ୍ଣ ସେଇ ପୁଡ଼ିଆରୁ ମୁଠାଟିଏ ନେଇ ଖାଇସାରି ମୁଠାଏ ଧରିଲାବେଳେକୁ ପତିପରାୟଣା ଲକ୍ଷ୍ମୀସ୍ୱରୂପିଣୀ ରୁକ୍ମିଣୀ ଦେବୀ ତାଙ୍କ ହାତକୁ ଧରି ପକାଇଲେ ଏବଂ କହିଲେ, ହେ ବିଶ୍ୱାତ୍ମା, ମନୁଷ୍ୟର ଇହଲୋକ ଓ ପରଲୋକର ସମସ୍ତ ସମ୍ପତ୍ତି ଓ ସମୃଦ୍ଧିପାଇଁ ଏଇ ମୁଠାକ ଚୁଡ଼ା ଯଥେଷ୍ଟ । ଆପଣଙ୍କ ସନ୍ତୋଷପାଇଁ ମଧ୍ୟ ଏତିକି ଯଥେଷ୍ଟ ॥୧୦-୧୧॥ ଏହାପରେ ସେହି ବ୍ରାହ୍ମଣ ଶ୍ରୀକୃଷ୍ଣଙ୍କ ଭବନରେ ରହି ଖାଇପିଇ ସୁଖରେ ରାତିଟି କଟେଇଲେ ଏବଂ ସ୍ୱର୍ଗସୁଖ ଅନୁଭବ କଲେ । ସକାଳ ହେବାରୁ ଅତିଶୟ ସୁଖରେ ଆପ୍ୟାୟିତ ବ୍ରାହ୍ମଣ ନିଜ ଗୃହକୁ ପ୍ରସ୍ଥାନ କଲେ ॥୧୨॥ ବିଶ୍ୱସ୍ରଷ୍ଟା ଭଗବାନ୍ ଶ୍ରୀକୃଷ୍ଣ ତାଙ୍କ ସହିତ କିଛି ବାଟ ଆସି ତାଙ୍କୁ ଆହୁରି ଆନନ୍ଦିତ କରି ପାଦବନ୍ଦନାପୂର୍ବକ ବିଦାୟ ଦେଲେ ॥୧୩॥ ବ୍ରାହ୍ମଣଙ୍କୁ ସିନା କୃଷ୍ଣଙ୍କ ଦର୍ଶନର ଆନନ୍ଦ ମିଳିଲା; କିନ୍ତୁ ସେ ତାଙ୍କୁ ଧନ ମାଗିଲେ ନାହିଁ । ତେଣୁ ଖାଲି ହାତରେ ଲଜ୍ଜାରେ ସେ ଘରକୁ ଫେରି ଯାଉଥିଲେ । ସେ ଚିନ୍ତାକଲେ, ଅହୋ, ବ୍ରାହ୍ମଣମାନଙ୍କର ହିତକାରୀ ଭଗବାନ୍ ଶ୍ରୀକୃଷ୍ଣଙ୍କର ବ୍ରାହ୍ମଣସେବା ସ୍ୱଚକ୍ଷୁରେ ଦେଖିଲି । ମୁଁ ସବୁଠାରୁ ଗରିବ ବ୍ରାହ୍ମଣଟାଏ । ଶ୍ରୀଦେବୀ ଲକ୍ଷ୍ମୀଙ୍କୁ ଯେ ବକ୍ଷରେ ଧାରଣ କରନ୍ତି, ସେ ମୋତେ ସେହି ବକ୍ଷରେ ଆଲିଙ୍ଗନ କଲେ ॥୧୪-୧୫॥ ମୋ ପରି ଗରିବ, ମୋ ପରି ପାପୀ କେଉଁଠି ଏବଂ ଐଶ୍ୱର୍ଯ୍ୟ ଓ ସୌନ୍ଦର୍ଯ୍ୟର ନିକେତନ ଭଗବାନ୍ ଶ୍ରୀକୃଷ୍ଣ କେଉଁଠି ! ତଥାପି ସେ ନିଜର ବାହୁଦ୍ୱୟରେ ଏ ଅଧମ ବ୍ରାହ୍ମଣକୁ ଆଲିଙ୍ଗନ କରିଛନ୍ତି ॥୧୬॥ ମୁଁ ପଥଶ୍ରମରେ କ୍ଳାନ୍ତ ହୋଇଥିବାର ଦେଖି ସେ ତାଙ୍କର ଭାଇପରି ମୋତେ ନେଇ ନିଜର ପ୍ରିୟା ସ୍ତ୍ରୀ ରୁକ୍ମିଣୀଦେବୀଙ୍କ ପଲଙ୍କରେ ବସାଇଲେ ଏବଂ ହାତରେ ଚାମର ଧରି ସ୍ୱୟଂ ରୁକ୍ମିଣୀ ଦେବୀ ମୋତେ ପଙ୍ଖା କଲେ । ନିଜେ ଶ୍ରୀକୃଷ୍ଣ ପାଦସେବା ଆଦି ଦ୍ୱାରା ମୋର ବହୁ ଶୁଶ୍ରୂଷା କଲେ । ସେ ନିଜେ ଦେବଦେବ ଓ ବ୍ରାହ୍ମଣମାନଙ୍କର ଦେବତା । ତଥାପି ମୋତେ ଦେବତା ଜ୍ଞାନରେ ପୂଜା କଲେ ॥୧୭-୧୮॥ ତାଙ୍କର ପାଦପୂଜା ଦ୍ୱାରା ମନୁଷ୍ୟକୁ ଏହି ସଂସାରରେ ସମସ୍ତ ସମ୍ପତ୍ତି, ସମସ୍ତ ସିଦ୍ଧି ଏବଂ ମୃତ୍ୟୁପରେ ସ୍ୱର୍ଗ ଓ ମୋକ୍ଷ ମିଳିଥାଏ ॥୧୯॥ 'ଇଏ ନିର୍ଦ୍ଧନ, ଧନ ପାଇଗଲେ ଗର୍ବରେ ମୋତେ ଆଉ ମନେ ପକାଇବ ନାହିଁ'--ଏହା ଭାବି ବୋଧହୁଏ ଦୟାମୟ କୃଷ୍ଣ ମୋତେ ସାମାନ୍ୟ ଧନ ମଧ୍ୟ ଦେଲେ ନାହିଁ ॥୨୦॥

ପରିକ୍ଷିତ, ଏହିପରି ଭାବି ଭାବି ବ୍ରାହ୍ମଣ ନିଜ ଘରପାଖରେ ଆସି ପହଞ୍ଚିଗଲେ । ସେଠାରେ ପହଞ୍ଚି ସେ ଯାହା ଦେଖିଲେ, ନିଜ ଆଖିକୁ ବିଶ୍ୱାସ କରିପାରିଲେ ନାହିଁ । ସୂର୍ଯ୍ୟ, ଚନ୍ଦ୍ର ଓ ଅଗ୍ନିପରି ତେଜୀୟାନ୍ ପ୍ରାସାଦସମୂହ; ବିଚିତ୍ର ଉପବନ ଓ ଉଦ୍ୟାନମାନ, ପକ୍ଷୀମାନଙ୍କ କୂଜନରେ ତାହା ପ୍ରତିଧ୍ୱନିତ ହେଉଛି; ତା'ମଧ୍ୟରେ ଥିବା ପୁଷ୍କରିଣୀମାନଙ୍କରେ ବିଭିନ୍ନ ରଙ୍ଗର ପଦ୍ମ ଓ କଇଁଫୁଲ

ସବୁ ଫୁଟିଛି; ବେଶଭୂଷା ହୋଇ ପୁରୁଷମାନେ ଓ ସୁନ୍ଦରୀ ସ୍ତ୍ରୀମାନେ ସେଠାରେ ଯା'ଆସ କରୁଛନ୍ତି । ତାହା ଦେଖି ବ୍ରାହ୍ମଣ ଭାବିଲେ, 'ଏ କ'ଣ ? ଏ କାହାର ଜାଗା' ? ପରେ ନିଜ ଜାଗା ବୋଲି ସ୍ଥିର କରି, ଏସବୁ କିପରି ହେଲା ବୋଲି ଚିନ୍ତା କରି ଲାଗିଲେ ॥୨୧-୨୩॥ ଏହିପରି ଚିନ୍ତା କରୁ କରୁ ସେହି ମହାଭାଗ୍ୟବାନ୍ ବ୍ରାହ୍ମଣଙ୍କୁ ବହୁ ପ୍ରକାର ଗୀତବାଦ୍ୟସହ ଦେବଦେବୀତୁଲ୍ୟ ତେଜୀୟାନ୍ ସେହି ନରନାରୀମାନେ ପାଛୋଟି ଆଣିଲେ । ନିଜର ପତି ଫେରି ଆସିଥିବା ବାର୍ତ୍ତା ଶୁଣି କମଳବନରୁ ଲକ୍ଷ୍ମୀଦେବୀ ବାହାରି ଆସୁଥିବା ପରି ଅତି ଆନନ୍ଦରେ ବ୍ରାହ୍ମଣଙ୍କ ସ୍ତ୍ରୀ ଶୀଘ୍ର ଗୃହରୁ ବାହାରି ଆସିଲେ । ସ୍ୱାମୀଙ୍କୁ ଦେଖିବା ମାତ୍ରେ ପ୍ରେମାବେଗରେ ପତିବ୍ରତା ସ୍ତ୍ରୀଙ୍କର ଚକ୍ଷୁ ଅଶ୍ରୁରେ ଭରିଗଲା । ଆଖି ବନ୍ଦ କରି ସେ ମନମଧ୍ୟରେ ତାଙ୍କୁ ପ୍ରଣାମ ଓ ଆଲିଙ୍ଗନ କଲେ ॥୨୪-୨୬॥ ବ୍ରାହ୍ମଣ ଦେଖିଲେ, ତାଙ୍କର ପତ୍ନୀ ବିମାନରେ ବସିଥିବା ଦୀପ୍ତିମୟୀ ଦେବୀଙ୍କ ପରି ଶୋଭା ପାଉଛନ୍ତି ଏବଂ ଚାରିପଟେ ସୁବର୍ଣ୍ଣର ପଦକ ଓ ଅଳଙ୍କାରମାନ ପିନ୍ଧି ଦାସୀମାନେ ତାଙ୍କୁ ଘେରି ରହିଛନ୍ତି । ସେ ଅତିଶୟ ଆଶ୍ଚର୍ଯ୍ୟ ହୋଇଗଲେ । ଆନନ୍ଦରେ ପତ୍ନୀଙ୍କ ସହିତ ମିଳିତ ହୋଇ ମଣିମୟ ସ୍ତମ୍ଭମାନଙ୍କଦ୍ୱାରା ଶୋଭିତ ଇନ୍ଦ୍ରଭବନତୁଲ୍ୟ ନିଜ ଭବନମଧ୍ୟରେ ପ୍ରବେଶ କଲେ ॥୨୭॥

ଦୁଗ୍ଧଫେନନିଭ ଶଯ୍ୟାମାନଙ୍କ ଉପରେ ସୁବର୍ଣ୍ଣଖଚିତ ଚାଦରମାନ ପଡ଼ିଛି । ପଲଙ୍କମାନ ଗଜଦନ୍ତନିର୍ମିତ । ଚାମରମାନଙ୍କରେ ସୁନାର ବେଣ୍ଟ ଲାଗିଛି । ସୁନାର ଆସନମାନଙ୍କରେ କୋମଳ ଗଦି ସବୁ ପଡ଼ିଛି ଏବଂ ଘରଭିତରେ ମୋତିର ଝାଲର ଥିବା ଚାନ୍ଦୁଆମାନ ଟଙ୍ଗା ହୋଇଛି । ମରକତମଣିଖଚିତ ସ୍ୱଚ୍ଛ ସ୍ଫଟିକମାନଙ୍କରେ ଘରର କାନ୍ଥସବୁ ନିର୍ମିତ ହୋଇଛି । ସେଥିରେ ଉଜ୍ଜ୍ୱଳ ରତ୍ନଦୀପମାନ ଖଞ୍ଜା ହୋଇଛି ଏବଂ ସୁନ୍ଦର ନାରୀମୂର୍ତ୍ତି ସବୁ ରଖା ହୋଇଛି ॥୨୯-୩୧॥ ସମସ୍ତ ଐଶ୍ୱର୍ଯ୍ୟରେ ପୂର୍ଣ୍ଣ ନିଜର ଭବନକୁ ଦେଖି ବ୍ରାହ୍ମଣ ସ୍ଥିରଚିତ୍ତରେ ଏହି ଐଶ୍ୱର୍ଯ୍ୟର କାରଣ କ'ଣ, ଚିନ୍ତା କରିବାକୁ ଲାଗିଲେ ॥୩୨॥ ସବୁବେଳେ ତ ମୁଁ ଭାଗ୍ୟହୀନ ଗରିବ ହୋଇ ରହିଥିଲି । ହଠାତ୍ ଏହି ସମୃଦ୍ଧିର ନିଶ୍ଚିତ କାରଣ ହେଉଛନ୍ତି ସେହି ଯଦୁଶ୍ରେଷ୍ଠ ଶ୍ରୀକୃଷ୍ଣ । ସେହି ମହାଐଶ୍ୱର୍ଯ୍ୟଶାଳୀ ଭଗବାନଙ୍କ ଦର୍ଶନର ଫଳ ଛଡ଼ା ଏହା ଅନ୍ୟ କିଛି ନୁହେଁ ॥୩୩॥ ସମସ୍ତ ଜଳ ସମ୍ପଦରେ ପୂରିଥିବା ମେଘମାନେ କେହି ନ ମାଗିଲେ ମଧ୍ୟ ବୃଷ୍ଟିଦ୍ୱାରା ଏହି ଜଗତ୍‌କୁ ସନ୍ତୁଷ୍ଟ କରନ୍ତି । ସେହିପରି ମୁଁ ନ ମାଗିଥିଲେ ମଧ୍ୟ ମୋ' ମନର କଥା ଜାଣିପାରି ମୋ' ଅଗୋଚରରେ ସେ ମୋତେ ଏପରି ବିପୁଳଐଶ୍ୱର୍ଯ୍ୟ ପ୍ରଦାନ କରିଛନ୍ତି ॥୩୪॥ ଭଗବାନ୍ ଶ୍ରୀକୃଷ୍ଣ ନିଜେ ଯାହା ଦିଅନ୍ତି, ତାହା ବହୁତ ବେଶୀ ହେଲେ ମଧ୍ୟ ଅତି ଅଳ୍ପ ବୋଲି ଭାବନ୍ତି । ଭକ୍ତ ଯେଉଁ ଉପହାରଟି ଦିଏ, ତାହା ସାମାନ୍ୟମାତ୍ର ହେଲେ ମଧ୍ୟ ତାହାକୁ ସେ ବଡ଼ କରି ଥିଅନ୍ତି । ମୁଁ ମୁଠାଏ ଚୁଡ଼ାମାତ୍ର ନେଇଥିଲି, କିନ୍ତୁ ସେ କେଡ଼େ ଆଗ୍ରହରେ ତାକୁ ଗ୍ରହଣ କରିନେଲେ ! ॥୩୫॥ ଜନ୍ମଜନ୍ମାନ୍ତରରେ ମୋତେ ତାଙ୍କରି ସୌହାର୍ଦ, ସଖ୍ୟ, ମୈତ୍ରୀ ମିଳିଥାଉ ଏବଂ ମୁଁ ତାଙ୍କରି ଦାସ ହୋଇ ରହିଥାଏ । ମୋର ଏ ଐଶ୍ୱର୍ଯ୍ୟ ଦରକାର ନାହିଁ । ସେ ମହାନୁଭାବ, ସର୍ବଗୁଣସମ୍ପନ୍ନ । ତାଙ୍କର ସଙ୍ଗ ଓ ତାଙ୍କର ଭକ୍ତମାନଙ୍କସଙ୍ଗ ହିଁ ମୁଁ ସର୍ବଦା କାମନା କରେ ॥୩୬॥ ଜନ୍ମରହିତ ଭଗବାନ୍ ଶ୍ରୀକୃଷ୍ଣ ତାଙ୍କ ଭକ୍ତର ଏହି ବିଚିତ୍ର ସମ୍ପତ୍ତି, ରାଜ୍ୟ ବା ଐଶ୍ୱର୍ଯ୍ୟକୁ ସମର୍ଥନ କରନ୍ତି ନାହିଁ । କାରଣ ଧନ ହେଲେ ଲୋକର ଗର୍ବ ବହୁତ ବଢ଼ିଯାଏ ଏବଂ ତାର ବିନାଶ ଘଟେ । ମୁଁ ଅବିବେକୀ ହୋଇଥିବାରୁ ମୋର ଭକ୍ତିରେ ଅଭାବ ଘଟିଛି ॥୩୭॥ ବ୍ରାହ୍ମଣ ଭଗବାନ୍ ଜନାର୍ଦନଙ୍କର ପରମଭକ୍ତ ଥିଲେ । ନିଜ ବୁଦ୍ଧିରେ ସେ ଏହିପରି ନିର୍ଣ୍ଣୟ କରି ଏହି ସମ୍ପତ୍ତିରେ ବିଶେଷ ଆସକ୍ତ ହେଲେ ନାହିଁ । ବାରମ୍ବାର ତ୍ୟାଗର ଅଭ୍ୟାସଦ୍ୱାରା ସେ ନିଜ ସ୍ତ୍ରୀଙ୍କ ସହିତ ଭଗବାନଙ୍କ ପ୍ରଦତ୍ତ ଏହି ସମ୍ପତ୍ତିକୁ ଅନାସକ୍ତ ଚିତ୍ତରେ ଭୋଗ କଲେ ॥୩୮॥

ଯଜ୍ଞପତି ପ୍ରଭୁ ଶ୍ରୀହରି ବ୍ରାହ୍ମଣମାନଙ୍କୁ ଏହିପରି ଦେବତାଜ୍ଞାନରେ ଭକ୍ତି କରୁଥିଲେ ଏବଂ ବ୍ରାହ୍ମଣଙ୍କଠାରୁ ଆଉ କେହି ଶ୍ରେଷ୍ଠ ନାହାନ୍ତି ବୋଲି ମନେ କରୁଥିଲେ ॥୩୯॥ ଭଗବାନଙ୍କର ପ୍ରିୟସଖା ସେହି ବ୍ରାହ୍ମଣ ଦେଖିଲେ ଯେ ଅଜେୟ ଭଗବାନଙ୍କୁ ସେ ଭକ୍ତିଦ୍ୱାରା ବଶ କରିପାରିଛନ୍ତି । ତେଣୁ ସେ ତାଙ୍କୁ ହିଁ ଭକ୍ତିଭରେ ଧ୍ୟାନ କରିବାକୁ ଲାଗିଲେ । ଅଳ୍ପକାଳ ପରେ ସମସ୍ତ ସଂସାରବନ୍ଧନରୁ ମୁକ୍ତ ହୋଇ ସେ ମୁକ୍ତ ବ୍ରହ୍ମବିଦ୍‌ମାନଙ୍କ ପରମଗତି ଭଗବତ୍‌ପଦ ଲାଭ କଲେ ॥୪୦॥

ବ୍ରାହ୍ମଣଭକ୍ତ ଭଗବାନ୍ ଶ୍ରୀକୃଷ୍ଣଙ୍କର ଏହି ବ୍ରାହ୍ମଣସେବା ବିଷୟ ଶ୍ରବଣ କଲେ ହୃଦୟରେ ଭଗବାନଙ୍କପ୍ରତି ଭକ୍ତିଭାବ ଜାତ ହୁଏ ଓ ମନୁଷ୍ୟ ସମସ୍ତ କର୍ମବନ୍ଧନରୁ ମୁକ୍ତ ହୋଇଯାଏ ।।୪୧।।

## ବୟାଶୀ ଅଧ୍ୟାୟ

# ଗୋପଗୋପୀଙ୍କ ସହିତ କୃଷ୍ଣ ବଳରାମଙ୍କର ଭେଟ

ଶ୍ରୀ ଶୁକଦେବ କହିଲେ, ପରିକ୍ଷିତ, ରାମକୃଷ୍ଣ ଦ୍ୱାରକାରେ ଥିବାବେଳେ ଏକ ବଡ଼ ଧରଣର ସୂର୍ଯ୍ୟୋପରାଗ ଘଟିଲା । ଏପରି ସୂର୍ଯ୍ୟୋପରାଗ କେବଳ ପ୍ରଳୟସମୟରେ ଘଟିଥାଏ ।।୧।। ରାଜା, ଚାରିଆଡ଼ୁ ଲୋକମାନେ ପୂର୍ବରୁ ଏହି ସୂର୍ଯ୍ୟୋପରାଗ ବିଷୟ ଜାଣିପାରି ପୁଣ୍ୟଲାଭପାଇଁ ସମନ୍ତପଞ୍ଚକ କ୍ଷେତ୍ର (କୁରୁକ୍ଷେତ୍ର)ରେ ଉପସ୍ଥିତ ହେଲେ ।।୨।। ଶସ୍ତ୍ରଧାରୀଙ୍କ ମଧ୍ୟରେ ଶ୍ରେଷ୍ଠ ପରଶୁରାମ ପୃଥିବୀକୁ ବାରମ୍ବାର ନିଃକ୍ଷତ୍ରିୟ କରି ରାଜାମାନଙ୍କ ରକ୍ତରେ ଏଠାରେ ପାଞ୍ଚଟି ମହାହ୍ରଦ ସୃଷ୍ଟି କରିଥିଲେ । ଭଗବାନ୍ ପରଶୁରାମ ସ୍ୱୟଂ ଈଶ୍ୱର ହୋଇଥିବାରୁ କୌଣସି କର୍ମର ଫଳ ତାଙ୍କୁ ସ୍ପର୍ଶ କରିପାରୁ ନ ଥିଲା । କିନ୍ତୁ ସେ ଲୋକଶିକ୍ଷା ପାଇଁ ତାଙ୍କ କ୍ଷତ୍ରିୟବଧଜନିତ ପାପର ପ୍ରାୟଶ୍ଚିତ୍ତପାଇଁ ଏହି କ୍ଷେତ୍ରରେ ଯଜ୍ଞ କରିଥିଲେ ।।୩-୪।। ଭାରତବାସୀ ସେହି ସୂର୍ଯ୍ୟୋପରାଗର କଥା ଶୁଣି ଚାରିଆଡ଼ୁ ଏହି ମହାନ୍ ତୀର୍ଥ କୁରୁକ୍ଷେତ୍ରରେ ପହଞ୍ଚିବାକୁ ଲାଗିଲେ ।।୫।। ପରିକ୍ଷିତ, ସେତେବେଳେ ବୃଷ୍ଣିମାନଙ୍କ ମଧ୍ୟରେ ଅକ୍ରୂର, ବସୁଦେବ ଓ ଉଗ୍ରସେନ ଆଦି ଯାଦବଜ୍ୟେଷ୍ଠମାନେ ଏବଂ ଗଦ, ପ୍ରଦ୍ୟୁମ୍ନ ଓ ସାମ୍ବ ଆଦି ଯଦୁବଂଶୀମାନେ ନିଜର ପାପକ୍ଷାଳନପାଇଁ କୁରୁକ୍ଷେତ୍ରକୁ ଆସିଥିଲେ; ସେତେବେଳେ ସେନାପତି କୃତବର୍ମା ଓ ଅନିରୁଦ୍ଧ ସୁଚନ୍ଦ୍ର, ଶୁକ ଓ ସାରଣଙ୍କ ସହିତ ଦ୍ୱାରକାନଗରୀର ରକ୍ଷା କାର୍ଯ୍ୟରେ ନିଯୁକ୍ତ ହୋଇଥିଲେ । ସେମାନେ ବେକରେ ସୁନାର ହାର ପିନ୍ଧିଥିଲେ । ଦିବ୍ୟପୁଷ୍ପର ମାଳା, ଦିବ୍ୟ ବସ୍ତ୍ର ଓ ବର୍ମ ଆଦି ଧାରଣକରି ଅତିଶୟ ତେଜସ୍ୱୀ ଦେଖାଯାଉଥିଲେ । ଦେବତାମାନେ ବିମାନରେ ବସି ତୀର୍ଥଯାତ୍ରା କଲାବେଳେ ଯେପରି ଦେଖାଯାଆନ୍ତି, ସେମାନେ ଦୀପ୍ତିମୟ ରଥମାନଙ୍କ ଉପରେ ବସି ସେହିପରି ଦେଖାଯାଉଥିଲେ । ସମୁଦ୍ରର ତରଙ୍ଗପରି ବେଗବାନ୍ ଅଶ୍ୱ, ମେଘ ପରି ଗର୍ଜନ କରୁଥିବା ଗଜ ଓ ବିଦ୍ୟାଧରମାନଙ୍କପରି ସୁନ୍ଦର ଦିଶୁଥିବା ପଦାତିସମୂହଦ୍ୱାରା ପରିବେଷ୍ଟିତ ହୋଇ ସେମାନେ ଦେବତୁଲ୍ୟ ଶୋଭା ପାଇବାକୁ ଲାଗିଲେ ।।୬-୮।। ମହାଭାଗ୍ୟବାନ୍ ଯାଦବମାନେ କୁରୁକ୍ଷେତ୍ର ତୀର୍ଥରେ ସ୍ଥିରଚିତ୍ତ ହୋଇ ସଂଯମପୂର୍ବକ ସ୍ନାନ କଲେ ଏବଂ ଉପବାସ କରି ବସ୍ତ୍ର, ହାର ଓ ପୁଷ୍ପମାଳରେ ସଜାଯାଇଥିବା ଗାଭୀଙ୍କୁ ବ୍ରାହ୍ମଣମାନଙ୍କୁ ଦାନ କଲେ ।।୯।। ଏହାପରେ ଯାଦବମାନେ ଶାସ୍ତ୍ରବିଧି ଅନୁସାରେ ପରଶୁରାମକୃତ ହ୍ରଦମାନଙ୍କରେ ପୁନରାୟ ସ୍ନାନ କରି 'ଭଗବାନ ଶ୍ରୀକୃଷ୍ଣଙ୍କ ପ୍ରତି ଆମର ଭକ୍ତି ରହିଥାଉ'--ବୋଲି ସଙ୍କଳ୍ପ କଲେ ଓ ଶ୍ରେଷ୍ଠ ବ୍ରାହ୍ମଣମାନଙ୍କୁ ଉତ୍ତମ ଅନ୍ନ ଦାନ କଲେ ।।୧୦।। ଏହିପରି ଶ୍ରୀକୃଷ୍ଣପରାୟଣ ଯାଦବମାନେ କୃଷ୍ଣଙ୍କ ଅନୁମତି ନେଇ ନିଜେ ଭୋଜନ କଲେ ଏବଂ ଶୀତଳ ଛାୟାଯୁକ୍ତ ବୃକ୍ଷମାନଙ୍କ ତଳରେ ବିଶ୍ରାମ କଲେ ।।୧୧।। ପରିକ୍ଷିତ, ଏହାପରେ ଯାଦବମାନେ ସେଠାକୁ ଆସିଥିବା ନିଜର ସୁହୃଦ, ସ୍ୱଜନ ଓ ଅନ୍ୟମାନଙ୍କ ସହିତ ମିଳିତ ହେଲେ । ସେଠାକୁ ମତ୍ସ୍ୟ, ଉଶୀନର, କୋଶଳ, ବିଦର୍ଭ, କୁରୁ, ସୃଞ୍ଜୟ, କାମ୍ବୋଜ, କେକୟ, ମଦ୍ର, କୁନ୍ତି, ଆନର୍ତ୍ତ, କେରଳ ପ୍ରଭୃତି ଶହ ଶହ ମିତ୍ରପକ୍ଷ ଓ ଶତ୍ରୁପକ୍ଷ ରାଜାମାନେ ଆସିଥିଲେ । ଏହାଛଡ଼ା ଯାଦବମାନଙ୍କର ବନ୍ଧୁ ନନ୍ଦ ଆଦି ଗୋପାଳମାନଙ୍କୁ ଓ କୃଷ୍ଣଙ୍କ ଦର୍ଶନପାଇଁ ଉତ୍ସୁକ ଗୋପୀମାନଙ୍କୁ ସାକ୍ଷାତ୍ କଲେ ।।୧୨-୧୩।। ପରସ୍ପର ଦର୍ଶନର ଆନନ୍ଦରେ ସେମାନଙ୍କର ହୃଦ୍‌ପଦ୍ମ ଓ ବଦନକମଳ ପ୍ରଫୁଲ୍ଲ ହୋଇଉଠିଲା । ସେମାନେ ପରସ୍ପର ଗାଢ଼ ଆଲିଙ୍ଗନ କରି ଆନନ୍ଦାଶ୍ରୁ ବିସର୍ଜନ କଲେ । ଆନନ୍ଦରେ ସେମାନଙ୍କର ଶରୀର ରୋମାଞ୍ଚିତ ହେଲା ଓ

କଣ୍ଠ ରୁଦ୍ଧ ହେବାରୁ ସେମାନେ କିଛି କହିପାରିଲେ ନାହିଁ ॥୧୪॥ ବନ୍ଧୁସ୍ନେହରେ ହସି ହସି ସମସ୍ତେ ପରସ୍ପରକୁ ସ୍ୱାଗତ କଲେ । କେହି କେହି ପରସ୍ପରକୁ କୁଙ୍କୁମରଞ୍ଜିତ ବକ୍ଷସ୍ଥଳରେ ଚାପି ଧରି ଆଲିଙ୍ଗନସୁଖ ଅନୁଭବ କଲେ ॥୧୫॥ ଏହାପରେ କନିଷ୍ଠମାନେ ଜ୍ୟେଷ୍ଠମାନଙ୍କୁ ଅଭିବାଦନ କଲେ । ଜ୍ୟେଷ୍ଠମାନେ ସେମାନଙ୍କ ଅଭିବାଦନ ଗ୍ରହଣ କରି କୁଶଳ ଜିଜ୍ଞାସାପୂର୍ବକ କୃଷ୍ଣଙ୍କର ମଧୁର ଲୀଳାମାନ ବର୍ଣ୍ଣନା କରିବାକୁଲାଗିଲେ ॥୧୬॥

କୁନ୍ତୀଦେବୀ ବସୁଦେବ ଆଦି ନିଜର ଭାଇଭଉଣୀ, ସେମାନଙ୍କର ପୁତ୍ରମାନଙ୍କୁ, ନିଜର ପିତାମାତା ଓ ଭାଉଜମାନଙ୍କୁ ଏବଂ ଭଗବାନ୍ ଶ୍ରୀକୃଷ୍ଣଙ୍କୁ ଦେଖି ସେମାନଙ୍କ ଠାରୁ ନିଜର ବିରହଜନିତ ସମସ୍ତ ଦୁଃଖ ଭୁଲିଗଲେ ॥୧୭॥ କୁନ୍ତୀ ବସୁଦେବଙ୍କୁ କହିଲେ, ଭାଇ, ମୁଁ ବଡ଼ ଅଭାଗିନୀ । ବୋଧହୁଏ କୌଣସି ପୁଣ୍ୟ କରିନାହିଁ । ତୁମପରି ସ୍ନେହଶୀଳ ଉତ୍ତମ ଭାଇ ଥାଇ ମଧ୍ୟ ବିପଦବେଳେ ମୋର କୌଣସି ଖବର ରଖ ନାହିଁ । ବିଧାତା ଯା'ର ବାମ ହୁଏ, ଭାଇ, ବନ୍ଧୁ, ପିତାମାତା, ସ୍ୱଜନ ତାକୁ ସମସ୍ତେ ଭୁଲିଯାଆନ୍ତି । ସେଥିରେ ତୁମର ବା ଦୋଷ କ'ଣ ? ॥୧୮-୧୯॥ ବସୁଦେବ କହିଲେ, ଭଉଣୀ, ଆମକୁ ଦୋଷ ଦିଅ ନାହିଁ । ଆମେ ସମସ୍ତେ ଦୈବର ଖେଳନା । ଦୈବବଶରୁ ହିଁ ଆମକୁ ସବୁ କରିବାକୁ ହୋଇଥାଏ । କଂସର ଅତ୍ୟାଚାରରେ ଆମେ କିଏ କୁଆଡ଼େ ପଳାଇଯାଇଥିଲୁ । ଏବେ ଦୈବର କୃପାରୁ ନିଜ ନିଜ ସ୍ଥାନକୁ ଫେରିଆସିଛୁ ॥୨୦-୨୧॥ ଶ୍ରୀ ଶୁକଦେବ କହିଲେ, ପରିକ୍ଷିତ, ସେଠାକୁ ଯେତେ ରାଜା ଚାରିଆଡୁ ଆସିଥିଲେ, ବସୁଦେବ ଓ ଉଗ୍ରସେନ ଆଦି ଯାଦବମାନେ ସେମାନଙ୍କୁ ସମ୍ମାନ ଦେଖାଇଲେ ଏବଂ ରାଜାମାନେ ଭଗବାନ୍ କୃଷ୍ଣଙ୍କୁ ଦର୍ଶନ କରି ଆନନ୍ଦିତ ହେଲେ ॥୨୨॥

ମହାରାଜ ପରିକ୍ଷିତ, ଭୀଷ୍ମ, ଦ୍ରୋଣ ଧୃତରାଷ୍ଟ୍ର, ଦୁର୍ଯ୍ୟୋଧନ ଆଦି ପୁତ୍ରମାନଙ୍କ ସହିତ ଗାନ୍ଧାରୀ, ନିଜର ପତ୍ନୀମାନଙ୍କ ସହିତ ପାଣ୍ଡବମାନେ, କୁନ୍ତୀ, ସଞ୍ଜୟ, ବିଦୁର, କୃପାଚାର୍ଯ୍ୟ, କୁନ୍ତିଭୋଜ, ବିରାଟ, ଭୀଷ୍ମକ, ମହାରାଜ ନଗ୍ନଜିତ୍, ପୁରୁଜିତ୍, ଦ୍ରୁପଦ, ଶଲ୍ୟ, ଧୃଷ୍ଟକେତୁ, କାଶିରାଜ, ଦମଘୋଷ, ବିଶାଳାକ୍ଷ, ମିଥିଳାନରେଶ, ମଦ୍ରଦେଶ ଓ କେକୟ ଦେଶର ରାଜାମାନେ, ଯୁଧାମନ୍ୟୁ, ସୁଶର୍ମା ଓ ନିଜ ପୁତ୍ରମାନଙ୍କ ସହିତ ବାହ୍ଲୀକ ଆଦି ରାଜାମାନେ ସେଠାରେ ଉପସ୍ଥିତ ଥିଲେ ॥୨୩-୨୫॥ ରାଜେନ୍ଦ୍ର, ଯେଉଁ ରାଜାମାନେ ଯୁଧିଷ୍ଠିରଙ୍କର ଅନୁଗତ ଥିଲେ, ସେମାନେ ନିଜ ସ୍ତ୍ରୀମାନଙ୍କ ସହିତ ପରମ ସୁନ୍ଦର ଶ୍ରୀକୃଷ୍ଣଙ୍କ ରୂପ ଦର୍ଶନ କରି ବିସ୍ମିତ ହେଲେ ॥୨୬॥ ବଳରାମ ଓ ଶ୍ରୀକୃଷ୍ଣ ସେମାନଙ୍କୁ ଯଥାବିଧି ସତ୍କାର କଲେ । ସେଥିରେ ସନ୍ତୋଷ ଲାଭ କରି ସେମାନେ ଶ୍ରୀକୃଷ୍ଣଙ୍କ ସ୍ୱଜନ ଯାଦବମାନଙ୍କ ସୌଭାଗ୍ୟର କଥା ଚିନ୍ତା କରି ସେମାନଙ୍କୁ ପ୍ରଶଂସା କରିବାକୁ ଲାଗିଲେ ॥୨୭॥ ସେମାନେ ରାଜା ଉଗ୍ରସେନଙ୍କୁ ସମ୍ବୋଧନ କରି କହିଲେ, ଭୋଜରାଜ, ଏହି ଜଗତ୍‌ରେ ତୁମର ଜନ୍ମ ସାର୍ଥକ ହୋଇଛି । କାରଣ ଯୋଗୀମାନେ ଯେଉଁ ଭଗବାନ୍‌ଙ୍କୁ ଦର୍ଶନ କରିପାରନ୍ତି ନାହିଁ, ଆପଣ ସେହି ଶ୍ରୀକୃଷ୍ଣଙ୍କୁ ବାରମ୍ବାର ଦର୍ଶନ କରୁଛନ୍ତି । ବେଦମାନେ ଯେଉଁ ଶ୍ରୀକୃଷ୍ଣଙ୍କର ଯଶୋଗାନ କରନ୍ତି, ଗଙ୍ଗା ଯାହାଙ୍କର ପାଦ ଧୋଇଦିଏ, ବେଦ ଯାହାଙ୍କର ବାକ୍ୟ ରୂପରେ ଜଗତ୍‌କୁ ପବିତ୍ରିତ କରେ, ଯାହାଙ୍କର ପାଦପଦ୍ମର ସ୍ପର୍ଶରେ ପୃଥିବୀ ଶକ୍ତିଶାଳୀ ହୁଏ, ଯେ ଆମମାନଙ୍କର ମନୋରଥ ପୂର୍ଣ୍ଣ କରୁଛନ୍ତି, ସେହି ଭଗବାନ ଶ୍ରୀକୃଷ୍ଣଙ୍କୁ ଆପଣ ସର୍ବଦା ଦେଖୁଛନ୍ତି, ସ୍ପର୍ଶ କରିପାରୁଛନ୍ତି, ତାଙ୍କ ସହିତ ଏକାଠି ଯାତ୍ରା କରୁଛନ୍ତି, କଥାବାର୍ତ୍ତା କରୁଛନ୍ତି, ଶୟନ, ଉପବେଶନ ଓ ଭୋଜନ କରୁଛନ୍ତି, ବିବାହ ସମ୍ବନ୍ଧ ଆଦି ସ୍ଥାପନ କରିପାରୁଛନ୍ତି । ଯେ ପ୍ରାଣୀମାନଙ୍କୁ ସ୍ୱର୍ଗର ଭୋଗ ଓ ମୋକ୍ଷର ଆନନ୍ଦ ଆଦି ଦାନକରି ସେମାନଙ୍କର ସମସ୍ତ ଅଭିଳାଷ ପୂର୍ଣ୍ଣ କରିପାରନ୍ତି, ସେହି ଶ୍ରୀକୃଷ୍ଣ ସଂସାରଧର୍ମୀ ଆପଣଙ୍କ ଗୃହରେ ଅବସ୍ଥାନ କରୁଛନ୍ତି ॥୨୯-୩୦॥

ଶ୍ରୀ ଶୁକଦେବ କହିଲେ, ପରିକ୍ଷିତ, ଶ୍ରୀକୃଷ୍ଣଙ୍କ ସହିତ ଯାଦବମାନେ ସେଠାକୁ ଆସିଛନ୍ତି ଜାଣି ନନ୍ଦ ଗୋପ ଓ ଗୋପୀମାନଙ୍କୁ ଧରି ସେଠାରେ ପହଞ୍ଚିଲେ । ସେ ଶଗଡ଼ରେ ବହୁ ଜିନିଷପତ୍ର ଆଣିଥିଲେ ॥୩୧॥ ଯାଦବମାନେ ନନ୍ଦଙ୍କୁ ଦେଖିବାପାଇଁ ବହୁଦିନୁଁ ବ୍ୟଗ୍ର ହୋଇ ରହିଥିଲେ । ସେମାନେ ତାଙ୍କ ଦେହର ପ୍ରାଣସ୍ୱରୂପ ଗୋପରାଜଙ୍କୁ ଦେଖି ଉଠିପଡ଼ିଲେ ଓ ତାଙ୍କୁ ଦୃଢ଼ଭାବରେ

ଆଲିଙ୍ଗନ କଲେ ।।୩୨।। ଆନନ୍ଦରେ ବିହ୍ୱଳ ହୋଇ ବସୁଦେବ ନନ୍ଦଙ୍କୁ ଆଲିଙ୍ଗନ କଲେ । କଂସ ତାଙ୍କୁ ଯେଉଁସବୁ କଷ୍ଟ ଦେଇଛି ଏବଂ ସେ ଯେପରି ଗୋକୁଳରେ ନନ୍ଦଙ୍କ ଗୃହରେ କୃଷ୍ଣଙ୍କୁ ଛାଡ଼ିଦେଇ ଆସିଥିଲେ, ସେ ସବୁ ଘଟଣା ତାଙ୍କର ମନେ ପଡ଼ିଗଲା ।।୩୩।। ପରିକ୍ଷିତ, କୃଷ୍ଣ ଓ ବଳରାମ ମାତା ଯଶୋଦାଙ୍କୁ ଓ ପିତା ନନ୍ଦଙ୍କୁ ପ୍ରଣାମପୂର୍ବକ ଆଲିଙ୍ଗନ କଲେ । ସେତେବେଳେ ପିତାମାତାଙ୍କ ପ୍ରେମରେ ତାଙ୍କର କଣ୍ଠ ରୁଦ୍ଧ ହୋଇଗଲା ଓ ଆଖି ଲୁହଛଳଛଳ ହୋଇଗଲା । ସେ କିଛି କହିପାରିଲେ ନାହିଁ ।।୩୪।। ରାଜା, ଯଶୋଦା ମହାଭାଗ୍ୟବତୀ ଥିଲେ । ସେ ଦୁଇ ପୁଅଙ୍କୁ କୋଳରେ ବସାଇ ବାହୁଦ୍ୱାରା ଆଲିଙ୍ଗନ କଲେ ଏବଂ ତାଙ୍କ ପୁତ୍ର ଦୁହିଁଙ୍କ ବିରହଦୁଃଖ ଦୂର ହୋଇଗଲା ।।୩୫।। ରୋହିଣୀ ଓ ଦେବକୀ ବ୍ରଜେଶ୍ୱରୀ ଯଶୋଦାଙ୍କୁ ଆଲିଙ୍ଗନ କଲେ । ଯଶୋଦାଙ୍କର ମିତ୍ରତା କଥା ମନେପକାଇ ଦୁହିଁଙ୍କର କଣ୍ଠ ବାଷ୍ପରୁଦ୍ଧ ହୋଇଗଲା । ସେ ଦୁହେଁ ଯଶୋଦାଙ୍କୁ କହିଲେ, ବ୍ରଜେଶ୍ୱରୀ, ତୁମେ ଏବଂ ନନ୍ଦ ଆମକୁ ଯେଉଁ ଅହେତୁକୀ ମିତ୍ରତା ଦେଖାଇଛ, ତାହା ଆମେ କେବେହେଲେ ଭୁଲିପାରିବୁ ନାହିଁ । ଇନ୍ଦ୍ରସମ୍ପଦ ଦାନ କଲେ ମଧ୍ୟ ଏ ମିତ୍ରତାର ଋଣ କେହି ପରିଶୋଧ କରିପାରିବନାହିଁ ।।୩୬-୩୭।। ବ୍ରଜେଶ୍ୱରୀ, ବଳରାମ ଓ ଶ୍ରୀକୃଷ୍ଣ ନିଜର ଜନକ ଓ ଜନନୀଙ୍କୁ ଦେଖି ନ ଥିଲେ । ବସୁଦେବ ସେ ଦୁହିଁଙ୍କୁ ତୁମ ଦୁହିଁଙ୍କ ହାତରେ ଟେକି ଦେଇଥିଲେ । ତୁମେ ତାଙ୍କର ଜନ୍ମ-ସଂସ୍କାର, ଲାଳନ, ପାଳନ, ପୋଷଣ ଆଦି କରି ତାଙ୍କୁ ବଢ଼ାଇଥିଲ ଏବଂ ସେ ଦୁହେଁ ନିର୍ଭୟରେ ତୁମ ପାଖରେ ରହିଥିଲେ । ତୁମ ପକ୍ଷରେ ଏହା ସ୍ୱାଭାବିକ । କାରଣ ସଜ୍ଜନମାନଙ୍କର ନିଜପର ଭେଦବୁଦ୍ଧି ନଥାଏ ।।୩୮।।

ଶ୍ରୀ ଶୁକଦେବ କହିଲେ, ପରିକ୍ଷିତ, ଆଖିର ପତା ସବୁବେଳେ ସ୍ଥିର ରହେ ନାହିଁ, ପଡ଼ିଯାଏ । ଗୋପୀମାନେ ଭଗବାନ୍ ଶ୍ରୀକୃଷ୍ଣଙ୍କୁ ସବୁବେଳେ ସ୍ଥିର ଦୃଷ୍ଟିରେ ଦେଖିବାକୁ ଚାହୁଁଥିଲେ । ସେଥିପାଇଁ ଆଖି ପତାର ନିର୍ମାତା ବିଧାତାଙ୍କୁ ନିନ୍ଦା କରୁଥିଲେ । ବର୍ତ୍ତମାନ ସେମାନେ ବହୁକାଳପରେ ନିଜର ପ୍ରିୟତମ କୃଷ୍ଣଙ୍କୁ ଦର୍ଶନ କଲେ ଏବଂ ନେତ୍ରଦ୍ୱାରରେ ତାଙ୍କ ରୂପକୁ ହୃଦୟରେ ଧାରଣ କରି ବାରମ୍ବାର ଆଲିଙ୍ଗନ କରିବାକୁ ଲାଗିଲେ ଏବଂ ଯୋଗିଜନଦୁର୍ଲଭ କୃଷ୍ଣପ୍ରେମରେ ତନ୍ମୟ ହୋଇଗଲେ ।।୩୯।। ଭଗବାନ୍ ଶ୍ରୀକୃଷ୍ଣ ଗୋପୀମାନଙ୍କର ସେପରି ତନ୍ମୟ ଅବସ୍ଥା ଦେଖି ଏକାନ୍ତରେ ସେମାନଙ୍କ ପାଖକୁ ଗଲେ ଏବଂ ଆଲିଙ୍ଗନପୂର୍ବକ ସେମାନଙ୍କର କୁଶଳବାର୍ତ୍ତା ପଚାରି ହସି ହସି କହିଲେ, ସଖୀମାନେ, ତୁମର କେବେ ମୋ କଥା ମନେପଡେ ? ନିଜର ଆତ୍ମୀୟ ସ୍ୱଜନଙ୍କ କର୍ମପାଇଁ ତୁମକୁ ଛାଡ଼ି ଚାଲିଆସିଲି । ଶତ୍ରୁପକ୍ଷକୁ ବିନାଶ କରିବାରେ ଲାଗିଯାଇଥିଲି । ସେଥିପାଇଁ ତୁମମାନଙ୍କ ସହିତ ସାକ୍ଷାତ୍ କରିବାରେ ବହୁ ବିଳମ୍ବ ହୋଇଗଲା ।।୪୦-୪୧।। ପ୍ରିୟ ସଖୀମାନେ, ମୁଁ ଅକୃତଜ୍ଞ ବୋଲି ତୁମ ମନରେ ନିଶ୍ଚୟ ଆଶଙ୍କା ହେଉଥିବ ଏବଂ ମୋ ବିଷୟ ତୁମେ ଭୁଲିଯାଇଥିବ । କିନ୍ତୁ ତୁମେ ଜାଣିରଖ ଯେ ଭଗବାନ୍ ହିଁ ପ୍ରାଣୀମାନଙ୍କ ମିଳନ ଓ ବିରହର କାରଣ ।।୪୨।। ବାୟୁ ଯେପରି ମେଘମାଳାଙ୍କୁ ଏବଂ ଘାସ, କୁଟା, ତୂଳା, ଧୂଳି ଆଦିକୁ ଏକାଠି କରି ଅଲଗା ଅଲଗା କରିଦିଏ, ସେହିପରି ପ୍ରାଣୀମାନଙ୍କର ସ୍ରଷ୍ଟା ଭଗବାନ୍ ପ୍ରାଣୀମାନଙ୍କୁ ଏକାଠି କରି ଅଲଗା ଅଲଗା କରିଦିଅନ୍ତି ।।୪୩।। ସଖୀମାନେ, ମୋ'ଠାରେ ଭକ୍ତିଭାବ ହିଁ ପ୍ରାଣୀମାନଙ୍କୁ ଅମୃତତ୍ୱ ଦାନ କରେ । ତୁମମାନଙ୍କର ମୋ'ପ୍ରତି ଯେଉଁ ସ୍ନେହ ଥିଲା, ତାହା କେବଳ ଭାଗ୍ୟରେ ହିଁ ମିଳେ ।।୪୪।। ଲଳନାମାନେ, ଆକାଶ, ବାୟୁ, ତେଜ, ଜଳ ଆଦି ପଞ୍ଚମହାଭୂତ ଯେପରି ଭୌତିକ ପଦାର୍ଥମାନଙ୍କର କାରଣ ଓ ଅବଶେଷ ଏବଂ ସେମାନଙ୍କର ଭିତର ଓ ବାହାର, ସେହିପରି ମୁଁ ହେଉଛି ସମସ୍ତ ପ୍ରାଣୀଙ୍କର ଆଦି, ଅନ୍ତ, ଭିତର ଓ ବାହାର ।।୪୫।। ଏହି ପଞ୍ଚମହାଭୂତ ସମସ୍ତ ପ୍ରାଣୀଙ୍କର ଦେହରେ କାରଣ ରୂପରେ ରହିଛନ୍ତି । ମାତ୍ର ଜୀବାତ୍ମା ସେହି ଦେହରେ ଭୋକ୍ତା ରୂପରେ ଅବସ୍ଥାନ କରୁଛି । କିନ୍ତୁ ମୁଁ ଏହି ଉଭୟ ଜଡ ଓ ଚେତନ ଠାରୁ ଭିନ୍ନ, ଅବିନାଶୀ ସତ୍ୟ । ଏହି ଉଭୟ ମୋଠାରେ ହିଁ ପ୍ରକଟିତ ହୁଅନ୍ତି । ତାହା ତୁମେମାନେ ଅନୁଭବ କର ।।୪୬।। ଶ୍ରୀ ଶୁକଦେବ କହିଲେ, ଭଗବାନ୍ ଶ୍ରୀକୃଷ୍ଣ ଗୋପୀମାନଙ୍କୁ ଏହିପରି ଭାବରେ ଅଧ୍ୟାତ୍ମ ଜ୍ଞାନ ଶିକ୍ଷା ଦେଲେ ଏବଂ ସେହି ଶିକ୍ଷା ଲାଭ କରି ଗୋପୀମାନେ ନିରନ୍ତର ତାହା ସ୍ମରଣ କରିବାକୁ ଲାଗିଲେ । ସେମାନଙ୍କର ଜୀବକୋଷ ବା ଅଜ୍ଞାନତାର ଆବରଣ ନଷ୍ଟ ହୋଇଗଲା ଏବଂ ସେମାନେ ଶ୍ରୀକୃଷ୍ଣଙ୍କ ସହିତ ଏକାକାର ହୋଇଗଲେ ।।୪୭।।

ସେମାନେ ଭଗବାନ୍ ଶ୍ରୀକୃଷ୍ଣଙ୍କୁ କହିଲେ, ହେ ପଦ୍ମନାଭ, ଅଗାଧଜ୍ଞାନୀ ଯୋଗିଶ୍ରେଷ୍ଠମାନେ ଆପଣଙ୍କର ଯେଉଁ ପାଦପଦ୍ମକୁ ସବୁବେଳେ ହୃଦୟରେ ଧ୍ୟାନ କରୁଥାନ୍ତି ଏବଂ ସଂସାରରୂପକ କୂପରେ ପଡ଼ିଥିବା ଜୀବମାନଙ୍କର ଉଦ୍ଧାରପାଇଁ ଯାହା ଏକମାତ୍ର ଅବଲମ୍ବନ ହୋଇଥାଏ, ଆମମାନଙ୍କପରି ଗୃହସ୍ଥମାନଙ୍କ ହୃଦୟରେ ତାହା ଯେପରି ଚିର ଜାଜ୍ଜ୍ୱଲ୍ୟମାନ ରହେ ଏବଂ କ୍ଷଣକପାଇଁ ଆମେ ଯେପରି ତାହା ଭୁଲି ନ ଯାଉ, ଆମପ୍ରତି ସେହିପରି ଦୟା ରଖିଥା'ନ୍ତୁ ॥୪୮॥

## ତେୟାଶୀ ଅଧ୍ୟାୟ

# ଶ୍ରୀକୃଷ୍ଣଙ୍କ ପାଟରାଣୀମାନଙ୍କ ସହିତ ଦ୍ରୌପଦୀ

ଗୋପୀମାନଙ୍କର ଗୁରୁ ଓ ଗତି ଭଗବାନ୍ ଶ୍ରୀକୃଷ୍ଣ ସେମାନଙ୍କୁ ଏହିପରି ଅନୁଗ୍ରହ କରି ଯୁଧିଷ୍ଠିର ଓ ଅନ୍ୟ ବନ୍ଧୁମାନଙ୍କୁ ସେମାନଙ୍କର କୁଶଳଜିଜ୍ଞାସା କଲେ ॥୧॥ ଭଗବାନ୍ ଶ୍ରୀକୃଷ୍ଣଙ୍କର ପାଦପଦ୍ମ ଦର୍ଶନମାତ୍ରକେ ସେମାନଙ୍କର ସମସ୍ତ ପାପ ନଷ୍ଟ ହୋଇଯାଇଥିଲା । ସେମାନଙ୍କୁ ଭଲରୂପେ ସତ୍କାର କରି ଭଗବାନ୍ ଶ୍ରୀକୃଷ୍ଣ ତାଙ୍କର କୁଶଳ ପଚାରିବାରୁ ସେମାନେ ଆନନ୍ଦରେ ଏହିପରି ଉତ୍ତର ଦେଲେ-- ॥୨॥ ସେମାନେ କହିଲେ, ପ୍ରଭୁ, ଯାହା ଦେହଧାରୀ ଜୀବମାନଙ୍କର ଦେହଜନିତ ଅଜ୍ଞାନକୁ ନଷ୍ଟ କରିଦିଏ, ଆପଣଙ୍କ ପାଦ-ପଦ୍ମର ମକରନ୍ଦସ୍ୱରୂପ ମହାପୁରୁଷମାନଙ୍କ ମୁଖନିଃସୃତ ଆପଣଙ୍କର ସେହି ଲୀଳାମୃତକୁ ଯେଉଁମାନେ କର୍ଣ୍ଣକୁହରରେ ପାନ କରନ୍ତି, ସେହି ଦେହଧାରୀମାନଙ୍କର କ'ଣ କେବେ ଅମଙ୍ଗଳ ହୋଇପାରେ ? ॥୩॥ ଆପଣ ନିଜତେଜରେ ନିଦ୍ରା, ସ୍ୱପ୍ନ ଓ ଜାଗରଣ - ଏହି ତିନୋଟି ଅବସ୍ଥାରୁ ସର୍ବଦା ନିବୃତ୍ତ ରହିଥା'ନ୍ତି । କାଳବଶରେ ଯେତେବେଳେ ବେଦସମୂହ ବୁଡ଼ିଯିବାକୁ ବସିଲା, ଆପଣ ସେତେବେଳେ ତା'ର ଉଦ୍ଧାର ଓ ପାଳନପାଇଁ ନିଜର ଯୋଗମାୟାଦ୍ୱାରା ବିଭିନ୍ନ ଅବତାର ଗ୍ରହଣ କଲେ ଏବଂ ଏବେ ଏହି ମନୁଷ୍ୟର ଆକୃତି ଧାରଣ କରିଛନ୍ତି । ଆପଣ ପରମହଂସମାନଙ୍କର ଗତିସ୍ୱରୂପ, ଆନନ୍ଦର ସାଗର ଏବଂ ପରିପୂର୍ଣ୍ଣ ଜ୍ଞାନରେ ଅଖଣ୍ଡିତ । ଆମେମାନେ ଆପଣଙ୍କୁ ନମସ୍କାର କରୁଛୁ ॥୪॥ ଶ୍ରୀ ଶୁକଦେବ କହିଲେ, ପରିକ୍ଷିତ, ଲୋକମାନେ ଏହିପରି ଉତ୍ତମଶ୍ଳୋକଶିରୋମଣି ଭଗବାନ୍ ଶ୍ରୀକୃଷ୍ଣଙ୍କୁ ସ୍ତୁତି କରିବାକୁ ଲାଗିଲେ ଯାଦବ ଓ କୌରବବଂଶୀୟ ସ୍ତ୍ରୀମାନେ ଏକତ୍ର ହୋଇ ପରସ୍ପର ଯେଉଁ କୃଷ୍ଣକଥା ଚର୍ଚ୍ଚା କରୁଥିଲେ ତ୍ରିଭୁବନବିଦିତ ସେହି କଥାକୁ ମୁଁ ବର୍ଣ୍ଣନା କରୁଛି, ଶୁଣ ॥୫॥ ଦ୍ରୌପଦୀ ପଚାରିଲେ ହେ ରୁକ୍ମିଣୀ, ଭଦ୍ରା, ଜାମ୍ବବତୀ, ସତ୍ୟା, ସତ୍ୟଭାମା, କାଳିନ୍ଦୀ, ଶୈବ୍ୟା, ଲକ୍ଷ୍ମଣା ଓ ରୋହିଣୀ ଆଦି କୃଷ୍ଣଙ୍କର ଅନ୍ୟ ପତ୍ନୀଗଣ ! କୃଷ୍ଣ କିପରି ନିଜ ମାୟାରେ ଲୋକରୀତିକୁ ଅନୁସରଣ କରି ତୁମମାନଙ୍କୁ ବିବାହ କଲେ ? ॥୬-୭॥ ରୁକ୍ମିଣୀ କହିଲେ, ଦ୍ରୌପଦୀ, ମୋତେ ଚେଦିରାଜ ଶିଶୁପାଳଙ୍କୁ ସଂପ୍ରଦାନ କରିବାପାଇଁ ଜରାସନ୍ଧ ପ୍ରଭୃତି ରାଜାମାନେ ଧନୁଧାରଣ କରି ଅବସ୍ଥାନ କରିଥିଲେ । ସିଂହ ଯେପରି ଛାଗଳ ଓ ମେଷ ପଲ ମଧ୍ୟରୁ ନିଜର ଭାଗକୁ ହରଣ କରିନିଏ, ଭଗବାନ୍ ଶ୍ରୀକୃଷ୍ଣ ସେହିପରି ମୋତେ ହରଣ କରି ନେଇଆସିଲେ । ଯାହାଙ୍କର ପଦଧୂଳିକୁ ଇନ୍ଦ୍ରାଦି ଲୋକପାଳଙ୍କର ଓ ଅନ୍ୟ ଅଜେୟ ବୀରମାନଙ୍କର ମୁକୁଟ ମଣ୍ଡନ କରେ, ସେହି ଭଗବାନ୍ ଶ୍ରୀକୃଷ୍ଣଙ୍କର ହିଁ ମୁଁ ଥିଲି ପ୍ରାପ୍ୟ । ଭଗବାନ ଶ୍ରୀନିବାସଙ୍କର ସେହି ପାଦ ସବୁବେଳେ ମୋର ସେବ୍ୟ ହେଉ ॥୮॥ ସତ୍ୟଭାମା କହିଲେ, ମୋର ପିତା ତାଙ୍କ ସହୋଦର ଭାଇଙ୍କର ମୃତ୍ୟୁରେ ଅତିଶୟ ଦୁଃଖରେ ଥିଲେ । କିନ୍ତୁ ସେହି ଭ୍ରାତୃବଧର କଳଙ୍କ ସେ ଶ୍ରୀକୃଷ୍ଣଙ୍କ ଉପରେ ଲଗାଇଲେ । ସେହି କଳଙ୍କକୁ ପୋଛିଦେବାପାଇଁ ସେ ଋକ୍ଷରାଜ ଜାମ୍ବବାନଙ୍କୁ ପରାଜିତ କରି ସ୍ୟମନ୍ତକ ମଣି ଆଣି ମୋର ପିତାଙ୍କୁ ଦେଇଥିଲେ । ମୋର ପିତା ନିଜକୃତ ଅପରାଧରେ ଭୀତ ହୋଇ ମୋତେ କୃଷ୍ଣଙ୍କୁ ସମର୍ପଣ କଲେ, ଯଦିଓ ପୂର୍ବରୁ ସେ ମୋତେ ଅନ୍ୟକୁ

ଦେବାପାଇଁ ବାଗ୍‌ଦାନ କରିଥିଲେ ।।୯।। ଜାମ୍ବବତୀ କହିଲେ, ଦ୍ରୌପଦୀ, ମୋର ପିତା ଜାମ୍ବବାନ୍ ଭଗବାନ୍ ଶ୍ରୀକୃଷ୍ଣଙ୍କୁ ନିଜର ଇଷ୍ଟଦେବ ସୀତାପତି ରାମଚନ୍ଦ୍ର ବୋଲି ଜାଣି ନ ପାରି ତାଙ୍କ ସହିତ ସତେଇଶ ଦିନ ଧରି ଯୁଦ୍ଧ କଲେ । ସେହି ଯୁଦ୍ଧର ପରୀକ୍ଷାରେ ସେ ତାଙ୍କ ପ୍ରକୃତ ସ୍ୱରୂପ ଜାଣିପାରିଲେ । ତାଙ୍କ ପାଦ ଦୁଇଟିକୁ ଧରି ସ୍ୟମନ୍ତକ ମଣି ସହ ଉପହାରସ୍ୱରୂପ ମୋତେ ସେ ତାଙ୍କୁ ଅର୍ପଣ କଲେ । ମୁଁ ସେହିଦିନ ଠାରୁ ପ୍ରଭୁ ଶ୍ରୀକୃଷ୍ଣଙ୍କର ଦାସୀ ହୋଇ ରହିଲି ।।୧୦।। କାଳିନ୍ଦୀ କହିଲେ, ଦ୍ରୌପଦୀ, ମୁଁ ଶ୍ରୀକୃଷ୍ଣଙ୍କର ପାଦ ସ୍ପର୍ଶ କରିବାପାଇଁ ତପସ୍ୟା କରୁଥିଲି । ସଖା ଅର୍ଜୁନଙ୍କଠାରୁ ତାହା ସେ ଜାଣିପାରି ମୋ ପାଖକୁ ଯାଇ ସେ ମୋର ପାଣିଗ୍ରହଣ କଲେ । ମୁଁ ବର୍ତ୍ତମାନ ଦାସୀ ହୋଇ ତାଙ୍କର ଗୃହ ମାର୍ଜନା କରୁଛି ।।୧୧।।

ମିତ୍ରବିନ୍ଦା କହିଲେ, ଦ୍ରୌପଦୀ, ନିଜର ଭାଗ ଆଦାୟ କରିବାପାଇଁ କୁକୁର ପଲ ମଧ୍ୟରେ ସିଂହ ପ୍ରବେଶକରିବା ପରି ମୋର ସ୍ୱୟମ୍ବର ସଭାରେ ଉପସ୍ଥିତ ହୋଇ ସମସ୍ତ ରାଜାଙ୍କୁ ଓ ମୋର ଭାଇମାନଙ୍କୁ ପରାସ୍ତ କରି ଶ୍ରୀକୃଷ୍ଣ ମୋତେ ତାଙ୍କର ପରମସୁନ୍ଦର ଭବନକୁ ନେଇଆସିଲେ । ଜନ୍ମଜନ୍ମାନ୍ତରରେ ସେହି ଭଗବାନ୍ ଶ୍ରୀକୃଷ୍ଣଙ୍କ ପାଦପ୍ରକ୍ଷାଳନର ସୌଭାଗ୍ୟ ମୋତେ ମିଳୁଥାଉ ।।୧୨।। ସତ୍ୟା କହିଲେ, ଦ୍ରୌପଦୀ, ମୋର ପିତା ନଗ୍ନଜିତ୍ ସବୁଠାରୁ ବଳବାନ୍ ଏକ ବୀର ହସ୍ତରେ ମୋତେ ସମର୍ପଣ କରିବାପାଇଁ ସ୍ଥିର କରିଥିଲେ । ସେହି ଉଦ୍ଦେଶ୍ୟରେ ରାଜାମାନଙ୍କର ବଳ ପରୀକ୍ଷା କରିବାପାଇଁ ସେ ଅତିଶୟ ବଳୀୟାନ୍ ତୀକ୍ଷ୍ଣ ଶିଙ୍ଘ ବିଶିଷ୍ଟ ସାତଟି ବୃଷଭଙ୍କୁ ରଖିଥିଲେ । ସେହି ବୃଷଭମାନେ ମଦ-ମତ୍ତ ବୀରମାନଙ୍କ ଗର୍ବକୁ ଖର୍ବ କରିଦେଉଥିଲେ । କିନ୍ତୁ ଭଗବାନ୍ ଶ୍ରୀକୃଷ୍ଣ ଛୋଟ ପିଲା ଛେଳିଛୁଆଙ୍କୁ ବାନ୍ଧିବାପରି ଖେଳି ଖେଳି ବୃଷଭମାନଙ୍କୁ ବାନ୍ଧି ପକାଇଲେ । ଏହିପରି ବହୁ ଦାସୀ ଓ ଚତୁରଙ୍ଗ ସେନାଙ୍କ ସହିତ ବୀର୍ଯ୍ୟଶୁଳ୍କଦ୍ୱାରା (ବୀରତ୍ୱର ମୂଲ୍ୟଦ୍ୱାରା) ଶ୍ରୀକୃଷ୍ଣ ମୋତେ ଘେନି ଆସିଲେ ଏବଂ ରାସ୍ତାରେ ଯେଉଁ ରାଜାମାନେ ବାଧା ଦେଉଥିଲେ, ସେମାନଙ୍କୁ ପରାଜିତ କଲେ । ଜନ୍ମଜନ୍ମାନ୍ତରରେ ସେହି ଭଗବାନଙ୍କର ଦାସୀ ହେବାର ସୌଭାଗ୍ୟ ମୋର ରହିଥାଉ ।।୧୩-୧୪।। ଭଦ୍ରା କହିଲେ, କୃଷ୍ଣା, ମୋର ମାମୁପୁଅ ଭାଇ କୃଷ୍ଣଙ୍କ କଥା ମୁଁ ସବୁବେଳେ ଚିନ୍ତା କରୁଥିଲି । ତାହା ଜାଣିପାରି ମୋର ପିତା ତାଙ୍କୁ ଡକାଇଆଣିଲେ ଏବଂ ଏକ ଅକ୍ଷୌହିଣୀ ସୈନ୍ୟ ଓ ସଖୀମାନଙ୍କ ସହିତ ତାଙ୍କ ହସ୍ତରେ ମୋତେ ଅର୍ପଣ କଲେ । କର୍ମଅନୁସାରେ ସଂସାରରେ ପ୍ରାଣୀ ଜନ୍ମ ହେଉଥାଏ । ମୋର କାମନା, ମୁଁ ଯେପରି ଜନ୍ମଜନ୍ମାନ୍ତରରେ ମୋର ଆତ୍ମାର କଲ୍ୟାଣପାଇଁ ଭଗବାନ୍ ଶ୍ରୀକୃଷ୍ଣଙ୍କର ପାଦସେବା ଲାଭ କରିପାରିବି ।।୧୫-୧୬।।

ଲକ୍ଷ୍ମଣା କହିଲେ, ହେ ରାଣୀ ଦ୍ରୌପଦୀ, ଭଗବାନ୍ ଅଚ୍ୟୁତଙ୍କର ଜନ୍ମ ଏବଂ କର୍ମର ଲୀଳା ଦେବର୍ଷି ନାରଦଙ୍କ ଠାରୁ ବାରମ୍ବାର ଶ୍ରବଣ କରି ଶ୍ରୀକୃଷ୍ଣଙ୍କ ପ୍ରତି ମୁଁ ଆସକ୍ତ ହୋଇଗଲି । ଲକ୍ଷ୍ମୀଦେବୀ ଯେପରି ଲୋକପାଳମାନଙ୍କୁ ଛାଡ଼ିଦେଇ ଭଗବାନ୍ ମୁକୁନ୍ଦଙ୍କୁ ବରଣ କରିଥିଲେ, ମୁଁ ସେହିପରି ତାଙ୍କୁ ବରଣ କଲି । ସତୀ, ମୋର ପିତା ବୃହଦ୍‌ସେନ ମୋତେ ବହୁତ ସ୍ନେହ କରୁଥିଲେ । ସେ ମୋର ଇଚ୍ଛା ଜାଣିପାରି ଏକ ଉପାୟ ସ୍ଥିର କଲେ ।।୧୭-୧୮।। ଅର୍ଜୁନଙ୍କୁ ଲାଭ କରିବା ଇଚ୍ଛାରେ ତୁମ ସ୍ୱୟମ୍ବରରେ ଯେପରି ଏକ ମତ୍ସ୍ୟବେଧ କରିବାର ଲକ୍ଷ୍ୟ ରଖାଯାଇଥିଲା, ମୋର ପିତା ମଧ୍ୟ ସେହିପରି ଏକ ଆୟୋଜନ କରିଥିଲେ । ମୋ ସ୍ୱୟମ୍ବରର ବିଶେଷତ୍ୱ ଥିଲା ଯେ ମତ୍ସ୍ୟକୁ ବାହାରେ ଘୋଡ଼ାଇ ରଖାଯାଇଥିଲା, ଜଳରେ ହିଁ କେବଳ ତା'ର ପ୍ରତିବିମ୍ବ ଦେଖାଯାଉଥିଲା । ତାହା ଶୁଣି ଚାରିଆଡ଼ୁ ହଜାର ହଜାର ରାଜା ସେମାନଙ୍କ ଆଚାର୍ଯ୍ୟମାନଙ୍କ ସହିତ ମୋ ପିତାଙ୍କ ରାଜଧାନୀକୁ ଆସିଥିଲେ । ସେମାନେ ସମସ୍ତେ ଅସ୍ତ୍ରଶସ୍ତ୍ର ଚାଳନାରେ ନିପୁଣ ଥିଲେ ।।୧୯-୨୦।। ସେମାନଙ୍କର ବଳବୀର୍ଯ୍ୟ ଓ ବୟସ ଅନୁଯାୟୀ ପିତା ସେମାନଙ୍କୁ ଯଥାବିଧି ସତ୍କାର କରିଥିଲେ । ମୋତେ ଲାଭ କରିବା ଇଚ୍ଛାରେ ଲକ୍ଷ୍ୟଭେଦ କରିବାପାଇଁ ସେମାନେ ସଭାସ୍ଥଳରେ ଥିବା ଧନୁର୍ବାଣକୁ ଉଠାଇବାପାଇଁ ଚେଷ୍ଟା କଲେ ।।୨୧।। ସେମାନଙ୍କ ମଧ୍ୟରୁ କେହି କେହି ଧନୁକୁ ଉଠାଇନେଲେ ମଧ୍ୟ ଧନୁରେ ଗୁଣ ଚଢ଼ାଇ ପାରିଲେ ନାହିଁ । କେହି କେହି ଧନୁର ଅଗପର୍ଯ୍ୟନ୍ତ ଗୁଣକୁ ଟାଣିନେଇ ଲଗାଇ ନ ପାରିବାରୁ ତାର ଆଘାତରେ ତଳେ ପଡ଼ିଗଲେ ।।୨୨।। ଭୀମସେନ, ଦୁର୍ଯ୍ୟୋଧନ, କର୍ଣ୍ଣ, ଜରାସନ୍ଧ, ଅମ୍ବଷ୍ଠ ଓ ଶିଶୁପାଳ ଆଦି

ଅନ୍ୟାନ୍ୟ ବୀରମାନେ ଧନୁରେ ଗୁଣ ଚଢ଼ାଇ ଶର ମାରିବାକୁ ଗଲାବେଳେ ମତ୍ସ୍ୟଟି କେଉଁଠି ଅଛି, ଜାଣିପାରିଲେ ନାହିଁ । ତେଣୁ ସେମାନେ ସେଥିରୁ ନିବୃତ୍ତ ହେଲେ ।।୨୩।। ଅର୍ଜୁନ ସ୍ୱୟମ୍ବରରେ ଥିବା ପାତ୍ରର ଜଳରେ ମତ୍ସ୍ୟର ପ୍ରତିବିମ୍ବ ଦେଖି ମତ୍ସ୍ୟ କେଉଁଠି ଅଛି ଜାଣି ପାରିଲେ; କିନ୍ତୁ ତାହା ପ୍ରତି ଶର ନିକ୍ଷେପ କରିବାରୁ ତାହା କେବଳ ମତ୍ସ୍ୟକୁ ସ୍ପର୍ଶ କରିଗଲା, ମାତ୍ର ତାହାକୁ ଛିଣ୍ଡାଇ ତଳେ ପକାଇପାରିଲା ନାହିଁ ।।୨୪।। ଏହିପରି ଅଭିମାନୀ କ୍ଷତ୍ରିୟ ବୀରମାନଙ୍କର ମାନମର୍ଦ୍ଦନ ହେବାରୁ ଭଗବାନ୍ ଶ୍ରୀକୃଷ୍ଣ ଧନୁଧାରଣ କଲେ । ସେତେବେଳେ ମଧ୍ୟାହ୍ନ ସମୟ ଏବଂ ସୂର୍ଯ୍ୟ ସର୍ବଫଳପ୍ରଦ ଅଭିଜିତ୍ ମୁହୂର୍ତ୍ତରେ ମଧ୍ୟ ଆକାଶରେ ଅବସ୍ଥାନ କରୁଥିଲେ । ଶ୍ରୀକୃଷ୍ଣ ଅତି ସହଜରେ ଧନୁଟିକୁ ଉଠାଇ ଆଣି ସେଥିରେ ଗୁଣ ଲଗାଇଲେ ଏବଂ ଶରସଂଯୋଗ କରି ଥରେମାତ୍ର ଜଳରେ ଥିବା ମତ୍ସ୍ୟର ପ୍ରତିବିମ୍ବ ଦେଖିଲେ ଏବଂ ଶରଦ୍ୱାରା ତାହାକୁ ଛିଣ୍ଡାଇ ତଳେ ପକାଇଦେଲେ ।।୨୫-୨୬।। ତତ୍‌କ୍ଷଣ ସ୍ୱର୍ଗ ଓ ପୃଥିବୀରେ ଜୟଧ୍ୱନି ସହ ଦୁନ୍ଦୁଭିମାନ ବାଜିଉଠିଲା । ଦେବତାମାନେ ଆନନ୍ଦବିହ୍ୱଳ ହୋଇ ପୁଷ୍ପବୃଷ୍ଟି କରିବାକୁ ଲାଗିଲେ ।।୨୭।। ମୁଁ ଦେହରେ ନୂଆ ପାଟ ପତନି ପିନ୍ଧି, ସୁନାରେ ଜକଜକ କରୁଥିବା ରତ୍ନହାର ଗଳାରେ ପକାଇ, କବରୀରେ ଫୁଲମାଳା ଗୁଡ଼ାଇ ସଲଜ୍ଜ ଓ ହସ ହସ ମୁହଁରେ ରଙ୍ଗସ୍ଥଳରେ ପ୍ରବେଶ କଲି । ଚାଲିଲାବେଳେ ପାଦର ନୂପୁର ଦୁଇଟି ରୁଣୁଝୁଣୁ ଧ୍ୱନି କରୁଥିଲା ।।୨୮।। ପୂର୍ବରୁ ତ ମୋର ଚିତ୍ତ ଭଗବାନ୍ ଶ୍ରୀକୃଷ୍ଣଙ୍କଠାରେ ମଜ୍ଜି ଯାଇଥିଲା । ସେତେବେଳେ ମସ୍ତକରେ ଘନକୁନ୍ତଳ ଓ ଗଣ୍ଡସ୍ଥଳରେ କୁଣ୍ଡଳଦ୍ୱୟ ମୋ' ମୁଖମଣ୍ଡଳର ଶୋଭା ବଢ଼ାଇ ଦେଉଥିଲା । ମୁଁ ମୁହଁ ଉଠାଇ ମଧୁର ହାସ ଓ କଟାକ୍ଷ ଦ୍ୱାରା ଚାରିଆଡ଼େ ବସିଥିବା ରାଜାମାନଙ୍କୁ ଚାହିଁଲି ଏବଂ ପରେ ଧୀରେ ଧୀରେ ଯାଇ ଭଗବାନ୍ ମୁରାରିଙ୍କ ସ୍କନ୍ଧରେ ବରଣମାଳା ଲମ୍ବାଇଦେଲି ।।୨୯।। ସଙ୍ଗେ ସଙ୍ଗେ ଢୋଲ, ମୃଦଙ୍ଗ, ଶଙ୍ଖ, ଭେରୀ, ନାଗରା ଆଦି ବାଜି ଉଠିଲା । ନର୍ତ୍ତକ ନର୍ତ୍ତକୀମାନେ ନାଚିବାକୁ ଲାଗିଲେ ଏବଂ ଗାୟକମାନେ ଗାନ ଗାଇବାକୁ ଲାଗିଲେ ।।୩୦।। ଯାଜ୍ଞସେନୀ, ମୁଁ ଭଗବାନ୍ ଶ୍ରୀକୃଷ୍ଣଙ୍କୁ ବରଣ କରିବାରୁ ଅଭିମାନୀ କାମାତୁର ରାଜାମାନେ ତାହା ସହିପାରିଲେ ନାହିଁ । ତହୁଁ ଭଗବାନ୍ ଶ୍ରୀକୃଷ୍ଣ ଚତୁର୍ଭୁଜ ହୋଇ ମୋତେ ଚାରୋଟି ଶ୍ରେଷ୍ଠ ଅଶ୍ୱଯୁକ୍ତ ରଥରେ ଉଠାଇ ଯୁଦ୍ଧପାଇଁ ପ୍ରସ୍ତୁତ ହୋଇଗଲେ । ସେ ବର୍ମ ପରିଧାନ କରି ଦୁଇ ହାତରେ ତାଙ୍କ ଶାର୍ଙ୍ଗଧନୁକୁ ଉଠାଇଲେ ଏବଂ ଅନ୍ୟ ଦୁଇ ବାହୁରେ ମୋତେ ଆଲିଙ୍ଗନ କରି ଧରିଥିଲେ ।।୩୧-୩୨।। ସିଂହ ଯେପରି ପଶୁମାନଙ୍କୁ ଭ୍ରୂକ୍ଷେପ ନ କରି ତାଙ୍କ ଭିତରେ ଚାଲିଯାଏ, କୃଷ୍ଣଙ୍କର ସାରଥି ଦାରୁକ ସେହିପରି ଏହି ରାଜାମାନଙ୍କୁ ଭ୍ରୂକ୍ଷେପ ନ କରି ସ୍ୱର୍ଣ୍ଣମୟ ଘୋଡ଼ଣୀଯୁକ୍ତ ସେହି ରଥକୁ ଧରି ସେମାନଙ୍କ ଭିତରେ ଚାଲିଗଲା ।।୩୩।। ସେମାନଙ୍କ ମଧ୍ୟରୁ କେତେକ ରାଜା ପଥମଧ୍ୟରେ ବାଧା ଦେବାପାଇଁ ପଛେ ପଛେ ଗୋଡ଼ାଇଲେ । କେତେଜଣ କୁକୁର ପୁଚ୍ଛ ଟେକି ସିଂହକୁ ଅବରୋଧ କରିବାପରି ଆଗକୁ ଯାଇ ଧନୁ ଧରି ଠିଆ ହୋଇଗଲେ ।।୩୪।। କୃଷ୍ଣଙ୍କ ଶାର୍ଙ୍ଗଧନୁରୁ ଶର ଛୁଟିବାକୁ ଲାଗିଲା । ସେଥିରେ କାହାର ବାହୁ ଛିଣ୍ଡିଗଲା ତ କାହାର ପାଦ ଛିଣ୍ଡିଗଲା; ଆଉ କାହାର ମୁଣ୍ଡ କଟିଯିବାରୁ ସେ ଭୂପତିତ ହେଲା । ଅନ୍ୟମାନେ ଯୁଦ୍ଧଭୂମି ଛାଡ଼ି ପଳାଇଗଲେ ।।୩୫।। ସୂର୍ଯ୍ୟ ନିଜର ନିବାସସ୍ଥାନ ଅସ୍ତାଚଳକୁ ଯିବାପରି ଭଗବାନ୍ ଶ୍ରୀକୃଷ୍ଣ ଦ୍ୱାରକାପୁରୀରେ ଯାଇ ପହଞ୍ଚିଲେ । ସୁସଜ୍ଜିତ ଦ୍ୱାରକାପୁରୀ ଧ୍ୱଜା, ପତାକା ଓ ତୋରଣମାନଙ୍କଦ୍ୱାରା ଏପରି ସୁନ୍ଦର ଦେଖାଯାଉଥିଲା ଯେ ସ୍ୱର୍ଗରେ ବା ମର୍ତ୍ତ୍ୟରେ ତାର ତୁଳନା ନଥିଲା । ଏହି ସବୁ ତୋରଣ ଓ ପତାକା ସୂର୍ଯ୍ୟତାପକୁ ନିବାରଣ କରୁଥିଲା ।।୩୬।। ଦ୍ରୌପଦୀ, ମୋର ବିବାହସମୟରେ ପିତା ବହୁମୂଲ୍ୟ ବସ୍ତ୍ର, ଅଳଙ୍କାର, ଶଯ୍ୟା, ଆସନ ଓ ପରିଚ୍ଛଦଦ୍ୱାରା ନିଜର ବନ୍ଧୁବାନ୍ଧବ, ଜ୍ଞାତି ଓ ସ୍ୱଜନମାନଙ୍କୁ ସତ୍କାରପୂର୍ବକ ସମ୍ମାନିତ କଲେ ।।୩୭।। ଭଗବାନ୍ ଶ୍ରୀକୃଷ୍ଣ ସ୍ୱୟଂସମ୍ପୂର୍ଣ୍ଣ । ତଥାପି ତାଙ୍କୁ ମୋର ପିତା ଭକ୍ତିର ସହିତ ଦାସ, ଦାସୀ, ରଥ, ଗଜ, ଅଶ୍ୱ, ପଦାତି ଓ ବହୁମୂଲ୍ୟ ଆୟୁଧ ଆଦି ସମ୍ପଦ ପ୍ରଦାନ କରିଥିଲେ ।।୩୮।। ପୂର୍ବଜନ୍ମରେ ସମସ୍ତ ଆସକ୍ତି ତ୍ୟାଗ କରି ମୁଁ ବହୁ ତପସ୍ୟା କରିଥିଲି । ସେଥିପାଇଁ ଏ ଜନ୍ମରେ ମୁଁ ଆତ୍ମାରାମ ଭଗବାନ୍ ଶ୍ରୀକୃଷ୍ଣଙ୍କର ଗୃହକର୍ମରେ ଦାସୀ ହୋଇପାରିଲି ।।୩୯।।

କୃଷ୍ଣଙ୍କର ଅନ୍ୟପତ୍ନୀମାନେ କହିଲେ, ଦ୍ରୌପଦୀ, ଆମେମାନେ ରାଜକନ୍ୟା ଥିଲୁ । ନରକାସୁର ଦିଗ୍‌ବିଜୟରେ ରାଜାମାନଙ୍କୁ ପରାଜିତ କରି ଆମମାନଙ୍କୁ ଆଣି ବନ୍ଦି ଘରେ ରଖିଥିଲା । ଯେଉଁ ପାଦପଦ୍ମ ସ୍ମରଣ କଲେ ସଂସାରରୁ ମୋକ୍ଷ ମିଳେ, ଆମେମାନେ ସେଠାରେ ଶ୍ରୀକୃଷ୍ଣଙ୍କ ସେହି ପାଦପଦ୍ମକୁ ସର୍ବଦା ଧ୍ୟାନ କରୁଥିଲୁ । କୌଣସି କାମନା ନ ଥିଲେ ମଧ୍ୟ ଭକ୍ତବତ୍ସଳ ମୁକୁନ୍ଦ ଯୁଦ୍ଧରେ ସୈନ୍ୟ ଓ ସେନାପତିଙ୍କ ସହିତ ନରକାସୁରକୁ ବଧ କରିସାରି ଆମ୍ଭମାନଙ୍କୁ ମୁକ୍ତ କରି ବିବାହ କଲେ ।।୪୦।। ସାଧ୍ୱୀ ଦ୍ରୌପଦୀ, ଆମେମାନେ ଏଠାରେ ସାମ୍ରାଜ୍ୟ, ସ୍ୱର୍ଗର ଇନ୍ଦ୍ରପଦ, କିମ୍ବା ଏ ଉଭୟର ଭୋଗ-ଅଧିକାର, ଅଣିମା ଆଦି ଐଶ୍ୱର୍ଯ୍ୟ, ବ୍ରହ୍ମାଙ୍କର ପଦ ଏବଂ ସାଲୋକ୍ୟ, ସାରୂପ୍ୟ ଆଦି ମୋକ୍ଷପଦ ଚାହୁ ନାହୁଁ । ଆମେ କେବଳ ଏତିକି ଚାହୁ ଯେ ତାଙ୍କ ପାଦପଦ୍ମର ଧୂଳି ଆମେ ମସ୍ତକରେ ଧାରଣ କରିବୁ । ଲକ୍ଷ୍ମୀଙ୍କ ବକ୍ଷସ୍ଥଳର କୁଙ୍କୁମରେ ସୁଗନ୍ଧିତ ସେହି କୋମଳ ପାଦପଦ୍ମର ଧୂଳି ହିଁ ଆମର କାମ୍ୟ ।।୪୧-୪୨।। ବ୍ରଜସ୍ତ୍ରୀମାନେ, ବନବାସିନୀ ଶବରୀମାନେ, ବୃନ୍ଦାବନର ତୃଣଲତାମାନେ ଏବଂ ଗାଈ ଚରାଉଥିବା ଗୋପାଳମାନେ ମହାପୁରୁଷଙ୍କର ଯେଉଁ ପାଦସ୍ପର୍ଶ କାମନା କରନ୍ତି, ଆମର ତାହା ହିଁ କାମ୍ୟ ।।୪୩।।

## ଚୌରାଶୀ ଅଧ୍ୟାୟ

## ବସୁଦେବଙ୍କ ଯଜ୍ଞ

ଶ୍ରୀ ଶୁକଦେବ କହିଲେ, ପରିକ୍ଷିତ, କୁନ୍ତୀ, ଗାନ୍ଧାରୀ, ଦ୍ରୌପଦୀ, ସୁଭଦ୍ରା, ଅନ୍ୟ ସବୁ ରାଜରାଣୀ ଏବଂ ସେମାନଙ୍କ ସହିତ ଭଗବାନଙ୍କ ସ୍ୱକୀୟ ବ୍ରଜଗୋପୀମାନେ ସମସ୍ତପ୍ରାଣିଙ୍କ ଆତ୍ମା ଭଗବାନ୍ ଶ୍ରୀକୃଷ୍ଣଙ୍କ ଠାରେ ତାଙ୍କ ପତ୍ନୀମାନଙ୍କର ପ୍ରେମ ଓ ଅନୁରାଗ ବିଷୟ ଶୁଣି ଅତିଶୟ ଆଶ୍ଚର୍ଯ୍ୟ ହେଲେ । ସେମାନଙ୍କର ଆଖି ଲୁହଛଳଛଳ ହୋଇଗଲା ।।୧।। ରାଜା,ସ୍ତ୍ରୀମାନେ ସ୍ତ୍ରୀଙ୍କ ସହିତ ଓ ପୁରୁଷମାନେ ପୁରୁଷଙ୍କ ସହିତ କଥାଭାଷା କରୁଥିବାବେଳେ ମୁନିଋଷିମାନେ ସେଠାରେ ଆସି ଉପସ୍ଥିତ ହେଲେ । ବ୍ୟାସ, ନାରଦ, ଚ୍ୟବନ, ଦେବଳ, ଅସିତ, ବିଶ୍ୱାମିତ୍ର, ଶତାନନ୍ଦ, ଭରଦ୍ୱାଜ, ଗୌତମ, ନିଜ ଶିଷ୍ୟମାନଙ୍କ ସହିତ ଭଗବାନ୍ ପରଶୁରାମ, ବଶିଷ୍ଠ, ଗାଲବ, ଭୃଗୁ, ପୁଲସ୍ତ୍ୟ, କଶ୍ୟପ, ଅତ୍ରି, ମାର୍କଣ୍ଡେୟ, ବୃହସ୍ପତି, ଦ୍ୱିତ, ତ୍ରିତ, ଏକତ, ବ୍ରହ୍ମାଙ୍କର ସନକାଦି ପୁତ୍ରଗଣ, ଅଙ୍ଗିରା, ଅଗସ୍ତ୍ୟ, ଯାଜ୍ଞବଲ୍କ୍ୟ ଓ ବାମଦେବ ପ୍ରଭୃତି ମୁନି ଏମାନଙ୍କ ମଧ୍ୟରେ ରହିଥିଲେ ।।୨-୫।। ଉପସ୍ଥିତ ରାଜାମାନେ, ପାଣ୍ଡବମାନେ, ଭଗବାନ୍ ଶ୍ରୀକୃଷ୍ଣ ଓ ବଳରାମ ଏହି ବିଶ୍ୱବନ୍ଦ୍ୟ ଋଷିମାନଙ୍କୁ ଦେଖି ନିଜ ନିଜ ଆସନରୁ ଉଠି ଠିଆ ହୋଇପଡ଼ିଲେ ଏବଂ ସେମାନଙ୍କୁ ପ୍ରଣାମ କଲେ ।।୬।। ଏହାପରେ କୃଷ୍ଣ, ବଳରାମ ଓ ଅନ୍ୟ ରାଜାମାନେ ସ୍ୱାଗତ, ଆସନ, ପାଦ୍ୟ, ଅର୍ଘ୍ୟ, ପୁଷ୍ପ ଓ ଚନ୍ଦନ ଆଦିଦ୍ୱାରା ସେମାନଙ୍କୁ ଯଥାବିଧି ଅର୍ଚ୍ଚନା କଲେ ।।୭।। ସେମାନେ ସୁଖରେ ବସି ସାରିବାପରେ ଧର୍ମରକ୍ଷାପାଇଁ ଅବତୀର୍ଣ୍ଣ ଭଗବାନ୍ ଶ୍ରୀକୃଷ୍ଣ ସେମାନଙ୍କୁ ଯାହାସବୁ କହିଲେ, ତାହା ସମସ୍ତସଭା ନିବିଷ୍ଟ ଚିତ୍ତରେ ଶ୍ରବଣ କଲା ।।୮।।

ଭଗବାନ୍ ଶ୍ରୀକୃଷ୍ଣ କହିଲେ, ଏହି ଯୋଗେଶ୍ୱରମାନଙ୍କ ଦର୍ଶନ ଦେବତାମାନଙ୍କୁ ଦୁର୍ଲଭ । ସେମାନଙ୍କ ଦର୍ଶନ ଲାଭ କରି ଆମମାନଙ୍କ ଜନ୍ମ ସମ୍ପୂର୍ଣ୍ଣ ସଫଳ ହୋଇଗଲା ।।୯।। ଦେବପ୍ରତିମାମାନଙ୍କର ପୂଜା ଓ ତୀର୍ଥଯାତ୍ରା ଆଦିଦ୍ୱାରା ଯେଉଁମାନେ ସାମାନ୍ୟ ପୁଣ୍ୟ ଅର୍ଜନ କରିଥା'ନ୍ତି, ସେମାନଙ୍କ ପକ୍ଷରେ ଏହି ମୁନିଋଷିମାନଙ୍କର ଦର୍ଶନ, ସ୍ପର୍ଶ, ସ୍ୱାଗତ, ପ୍ରଣାମ ଏବଂ ସେମାନଙ୍କର ପାଦବନ୍ଦନା ଆଦି କରିବା କମ୍ ସୌଭାଗ୍ୟର ବିଷୟ ନୁହେଁ ।।୧୦।। କେବଳ ଜଳମୟ (ନଦୀ, ହ୍ରଦ, ସମୁଦ୍ର) ତୀର୍ଥମାନେ ତୀର୍ଥ ନୁହନ୍ତି । କେବଳ ମୃତ୍ତିକା ବା ପାଷାଣରେ ନିର୍ମିତ ଦେବପ୍ରତିମା ଦେବତା ନୁହନ୍ତି । ସେମାନେ ବହୁକାଳପରେ

ପବିତ୍ର କରନ୍ତି । କିନ୍ତୁ ଯେଉଁମାନେ ଦର୍ଶନମାତ୍ରେ ପବିତ୍ର କରନ୍ତି, ସେହି ସାଧୁ ମହାତ୍ମାମାନେ ହିଁ ପ୍ରକୃତ ତୀର୍ଥ ଓ ପ୍ରକୃତ ଦେବତା ॥୧୧॥ ଅଗ୍ନି, ସୂର୍ଯ୍ୟ, ଚନ୍ଦ୍ର, ତାରକା, ପୃଥିବୀ, ଜଳ, ଆକାଶ, ବାୟୁ, ବାକ୍ୟ ଓ ମନ -- ଏମାନେ ଭେଦବୁଦ୍ଧିରେ ଉପାସିତ ହେଲେ ଭେଦକାରୀର ପାପ ଦୂର କରନ୍ତି ନାହିଁ । କିନ୍ତୁ ମୁହୂର୍ତ୍ତେ ମାତ୍ର ସେବାଦ୍ୱାରା ଜ୍ଞାନିମାନେ ସେବକର ସମସ୍ତ ପାପ ନାଶ କରନ୍ତି ॥୧୨॥ ବାତ, ପିତ୍ତ ଓ କଫ -- ଏହି ତିନି ଧାତୁରେ ନିର୍ମିତ ଶବତୁଲ୍ୟ ଶରୀରକୁ ଯେ ଆତ୍ମା ବୋଲି ମନେ କରେ, ସ୍ତ୍ରୀ, ପୁତ୍ରଙ୍କୁ ଆପଣାର ବୋଲି ଭାବେ, ମାଟିର ପ୍ରତିମାକୁ ଦେବତା ବୋଲି ପୂଜା କରେ ଓ ଜଳକୁ ତୀର୍ଥ ବୋଲି ଗ୍ରହଣ କରେ, ପଶୁମାନଙ୍କ ମଧ୍ୟରେ ଗର୍ଦ୍ଦଭ ପରି ସେ ତତ୍ତ୍ୱଜ୍ଞମାନଙ୍କ ମଧ୍ୟରେ ଅବିବେକୀ ରୂପେ ଗଣ୍ୟ ହୁଏ ॥୧୩॥ ଶ୍ରୀ ଶୁକଦେବ କହିଲେ, ପରିକ୍ଷିତ, ଅକୁଣ୍ଠବୁଦ୍ଧି ଭଗବାନ୍ ଶ୍ରୀକୃଷ୍ଣଙ୍କଠାରୁ ଏହିପରି ଗୂଢ଼ ତତ୍ତ୍ୱ ଶୁଣି ମୁନିମାନଙ୍କ ବୁଦ୍ଧିଭ୍ରମ ଘଟିଲା । ସେମାନେ ନୀରବ ହୋଇ ରହିଲେ ॥୧୪॥

ବହୁ ସମୟ ଚିନ୍ତା କରି ସେମାନେ ବୁଝିଲେ ଯେ କେବଳ ଲୋକଶିକ୍ଷା ଦୃଷ୍ଟିରୁ ସ୍ୱୟଂ ଈଶ୍ୱର ଏହିପରି ଆଚରଣ କରନ୍ତି । ସେମାନେ ହସି ହସି ଜଗଦ୍‌ଗୁରୁ ଶ୍ରୀକୃଷ୍ଣଙ୍କୁ କହିଲେ, ଭଗବାନ୍, ଆମେମାନେ ଓ ବ୍ରହ୍ମାଙ୍କ ପ୍ରଜାପତିମାନେ ତତ୍ତ୍ୱଜ୍ଞାନୀଙ୍କ ମଧ୍ୟରେ ଶ୍ରେଷ୍ଠ ହେଲେ ମଧ୍ୟ ଆପଣଙ୍କର ମାୟାରେ ମୋହିତ ହୋଇଯାଉଛୁ । ଆପଣ ସ୍ୱୟଂ ଈଶ୍ୱର ହୋଇ ମଧ୍ୟ ଲୋକଶିକ୍ଷାପାଇଁ ଯେପରି (ମନୁଷ୍ୟୋଚିତ) ଆଚରଣ ଦେଖାଉଛନ୍ତି, ତାହା ବାସ୍ତବରେ ବିଚିତ୍ର ଓ ବିସ୍ମୟକର ॥୧୫-୧୬॥ ଏହି ଭୂମି ଯେପରି ବିକାରଭେଦରେ କାଷ୍ଠ, ପାଷାଣ, ଘଟ ଆଦି ବିଭିନ୍ନ ନାମ ଓ ରୂପ ଧାରଣ କରେ, ସେହିପରି ଆପଣ ଏକ ଓ ନିଷ୍କ୍ରିୟ ହେଲେ ମଧ୍ୟ ଅନେକ ରୂପ ଧାରଣ କରି ଏହି ଜଗତର ସୃଷ୍ଟି ପାଳନ ଓ ସଂହାର କରନ୍ତି । କିନ୍ତୁ କୌଣସି କର୍ମଫଳ ଆପଣଙ୍କୁ ବାନ୍ଧି ପାରେ ନାହିଁ । ବାସ୍ତବରେ ଏହା ହିଁ ହେଉଛି ଆପଣଙ୍କ ମହିମାମୟ ଚରିତ୍ରର ବିଡ଼ମ୍ବନା । ଆପଣ ନିଷ୍କ୍ରିୟ ହୋଇ ମଧ୍ୟ ବର୍ଣ୍ଣାଶ୍ରମ ଧର୍ମର ପ୍ରବର୍ତ୍ତନ କରିଛନ୍ତି । ଆପଣ ପରମ ପୁରୁଷ ଠିକ୍ ସମୟରେ ନିଜ ଭକ୍ତମାନଙ୍କର ରକ୍ଷାପାଇଁ ଓ ଦୁଷ୍ଟମାନଙ୍କର ଦମନପାଇଁ ଆପଣ ଶୁଦ୍ଧ, ସତ୍ତ୍ୱ ରୂପ ଧାରଣକରନ୍ତି ଏବଂ ନିଜ ଲୀଳାଦ୍ୱାରା ସନାତନ ବେଦମାର୍ଗକୁ ରକ୍ଷା କରନ୍ତି ॥୧୭-୧୮॥ ହେ ବ୍ରହ୍ମନ୍, ବେଦ ହେଉଛି ଆପଣଙ୍କର ଶୁଦ୍ଧ ହୃଦୟର ସ୍ୱରୂପ । ସେହି ବେଦର ମାଧ୍ୟମରେ ତପସ୍ୟା, ସ୍ୱାଧ୍ୟାୟ ଓ ସଂଯମଦ୍ୱାରା ଆପଣଙ୍କର ସାକାର, ନିରାକାର ଓ ପରଂବ୍ରହ୍ମ ସ୍ୱରୂପର ଦର୍ଶନ ମିଳିପାରେ । ହେ ପରମାତ୍ମା, ଏହି ବେଦକୁ ଭଲଭାବରେ ଉପଲବ୍ଧି କରିବାକୁ ହେଲେ ବ୍ରାହ୍ମଣମାନଙ୍କୁ ହିଁ ଆଶ୍ରୟ କରିବାକୁ ହୁଏ । ଏଥିପାଇଁ ବ୍ରାହ୍ମଣକୁଳକୁ ଆପଣ ଏପରି ସମ୍ମାନିତ କରୁଛନ୍ତି । ଆପଣ ବ୍ରାହ୍ମଣ ଭକ୍ତମାନଙ୍କ ମଧ୍ୟରେ ଅଗ୍ରଣୀ ॥୧୯-୨୦॥ ଆଜି ଆମମାନଙ୍କର ଜନ୍ମ, ବିଦ୍ୟା, ତପସ୍ୟା ଓ ନେତ୍ର ସଫଳହେଲା । କାରଣ ଆପଣ ସମସ୍ତ ମଙ୍ଗଳର ସାର ଓ ସଜ୍ଜନମାନଙ୍କର ଗତି ଏବଂ ଆମେ ଆଜି ଆପଣଙ୍କର ସଙ୍ଗଲାଭ କରିପାରିଲୁ ॥୨୧॥ ସେଇ ଅକୁଣ୍ଠବୁଦ୍ଧି, ପରମାତ୍ମା ଓ ଭଗବାନ୍ ଶ୍ରୀକୃଷ୍ଣଙ୍କୁ ନମସ୍କାର । ଯୋଗମାୟାଦ୍ୱାରା ନିଜ ନିଜର ମହିମାକୁ ସେ ଆଚ୍ଛନ୍ନ କରି ରଖିଛନ୍ତି ॥୨୨॥ ଯାହାଙ୍କ ସହିତ ଏକ ସ୍ଥାନରେ ଆରାମ କରୁଥିବା ଏହି ରାଜାମାନେ ଏବଂ ଯାଦବମାନେ ସେ ଯେ ସ୍ୱୟଂ କାଳରୂପୀ ଈଶ୍ୱର, ତାହା ଜାଣିପାରୁ ନାହାନ୍ତି । କାରଣ ମାୟାର ପରଦାରେ ସେ ନିଜକୁ ଘୋଡ଼ାଇ ରଖିଛନ୍ତି ॥୨୩॥ ନିଦ୍ରିତ ବ୍ୟକ୍ତି ଯେପରି ସ୍ୱପ୍ନରେ ଯାହାସବୁ କରେ, ତାର ସେହି ସବୁ ଗୁଣ ଓ କାର୍ଯ୍ୟକୁ ସତ୍ୟ ବୋଲି ମନେକରେ ଓ ନିଜର ଆତ୍ମସ୍ୱରୂପକୁ ଭୁଲିଯାଏ, ସେହିପରି ଇନ୍ଦ୍ରିୟପରାୟଣ ବ୍ୟକ୍ତି ମାୟାରେ ଅଭିଭୂତ ହୋଇ ଆପଣଙ୍କ ସ୍ୱରୂପକୁ ଜାଣିପାରେ ନାହିଁ । କାରଣ ଆପଣଙ୍କ ମାୟାରେ ନାମମାତ୍ର କାର୍ଯ୍ୟମାନଙ୍କରେ ଲାଗିରହି ତା'ର ଚିତ୍ତବିଭ୍ରମ ଘଟିଥାଏ ॥୨୪-୨୫॥ ହେ ଆଦିମୂଳ, ଯେଉଁ ପରମ ତୀର୍ଥ ଗଙ୍ଗା ଜଳ ଜୀବର ପାପରାଶିକୁ ନାଶ କରେ, ସେ ଆପଣଙ୍କ ପାଦପଦ୍ମକୁ ଆଶ୍ରୟ କରି ରହିଛି । ଚରମ ଯୋଗମାନଙ୍କଦ୍ୱାରା ଯୋଗୀମାନେ ସେହି ପାଦପଦ୍ମକୁ ହୃଦୟରେ ଧାରଣ କରିଥା'ନ୍ତି । ଆଜି ଆମେ ତାହା ଦର୍ଶନ କଲୁ । ହେ ପ୍ରଭୁ, ଆମେମାନେ ଆପଣଙ୍କର

ଭକ୍ତ । ଆପଣ ଆମମାନଙ୍କୁ ଅନୁଗ୍ରହ କରନ୍ତୁ । ଆପଣଙ୍କ ପ୍ରତି ଉତ୍କଟ ଭକ୍ତିଦ୍ୱାରା ଯାହାଙ୍କ ଆଶୟଗତ ଜୀବକୋଷ ନଷ୍ଟ ହୋଇଥିଲା, ପୂର୍ବେ ସେମାନେ ଆପଣଙ୍କ ଗତି ପାଇଥିଲେ ।।୨୬।।

ଶ୍ରୀ ଶୁକଦେବ କହିଲେ, ରାଜର୍ଷି ପରିକ୍ଷିତ, ମୁନିମାନେ ଏହିପରି ସ୍ତୁତି କରି ଭଗବାନ୍ ଶ୍ରୀକୃଷ୍ଣ, ଧୃତରାଷ୍ଟ୍ର ଓ ଯୁଧିଷ୍ଠିରଙ୍କର ଅନୁମତି ନେଇ ନିଜ ନିଜ ଆଶ୍ରମକୁ ଫେରିଯିବାକୁ ବସିଲେ । ତାହା ଦେଖି ମହାଯଶା ବସୁଦେବ ସେମାନଙ୍କ ନିକଟକୁ ଆସି ପ୍ରଣାମପୂର୍ବକ ସେମାନଙ୍କ ପାଦ ଧରି ନିବେଦନ କଲେ ।।୨୭-୨୮।। ବସୁଦେବ କହିଲେ, ଋଷିଗଣ, ଆପଣମାନେ ସାକ୍ଷାତ୍ ସମସ୍ତ ଦେବତାଙ୍କର ସ୍ୱରୂପ । ମୁଁ ଆପଣଙ୍କୁ ପ୍ରଣାମ କରୁଛି । ମୋର ପ୍ରାର୍ଥନା ଶୁଣିବା ହୁଅନ୍ତୁ । କର୍ମଦ୍ୱାରା କର୍ମର ବିନାଶ ଯେପରି ହୁଏ, ତାହା କୁହନ୍ତୁ ।।୨୯।। ନାରଦ କହିଲେ, ହେ ବିପ୍ରମାନେ ! ବସୁଦେବ ନିଜର ପୁତ୍ର କୃଷ୍ଣଙ୍କୁ ପିଲା ବୋଲି ଭାବି ନିଜର ମଙ୍ଗଳବିଷୟ ବୁଝିବା ଇଚ୍ଛାରେ ଆମମାନଙ୍କୁ ଯାହା ପଚାରୁଛନ୍ତି, ଏଥିରେ ଆଶ୍ଚର୍ଯ୍ୟ ହେବାର ନାହିଁ ।।୩୦।। କାରଣ ସଂସାରରେ ମନୁଷ୍ୟମାନଙ୍କ ମଧ୍ୟରେ ନିକଟରେ ଥିବା ଲୋକଙ୍କୁ ଅନାଦର କରାଯାଏ । ଗଙ୍ଗାକୂଳରେ ଥିବା ଲୋକ ଶୁଦ୍ଧି ହେବାପାଇଁ ଅନ୍ୟ ତୀର୍ଥକୁ ଯିବା ଦେଖାଯାଏ ।।୩୧।। ମୁନିମାନେ, ଭଗବାନ ଶ୍ରୀକୃଷ୍ଣଙ୍କର ଅନୁଭୂତି ବିଶ୍ୱର ସୃଷ୍ଟି, ସ୍ଥିତି ଓ ବିଲୟରେ ନଷ୍ଟ ହୁଏ ନାହିଁ ଏବଂ ଏହାର କାରଣ ସ୍ୱରୂପ ଅନନ୍ତକାଳ ମଧ୍ୟ ତାହା ନଷ୍ଟ କରିପାରେ ନାହିଁ ଏହା ସ୍ୱତଃ ବା ଅନ୍ୟ କୌଣସି କାରଣରୁ କିମ୍ୱା ସତ୍ତ୍ୱ, ରଜ, ତମ ଆଦି ଗୁଣମାନଙ୍କଦ୍ୱାରା କ୍ଷୀଣ ହୁଏ ନାହିଁ ।।୩୨।। ମେଘ ଓ କୁହୁଡ଼ି ସୂର୍ଯ୍ୟଙ୍କୁ ଘୋଡ଼ାଇରଖିଛି ବା ସୂର୍ଯ୍ୟଙ୍କୁ ରାହୁ ଗ୍ରାସକରିଛି ବୋଲି ଯାହା କୁହାଯାଏ, ତାହା ଦୃଷ୍ଟିର ବିକାର ମାତ୍ର । ସେହିପରି ନିଜର କର୍ମ ଫଳ ସ୍ୱରୂପ ସତ୍ତ୍ୱ, ରଜ, ତମୋଗୁଣର ପ୍ରଭାବରେ ଲୋକ ସଂସାରରେ ବାରମ୍ୱାର ଜନ୍ମ ହୁଏ । ଦୁଃଖର କାରଣ ଦେହ, ଇନ୍ଦ୍ରିୟ, ମନ ଓ ବୁଦ୍ଧି ଦ୍ୱାରା ପରିଚାଳିତ ହୋଇ ସେ ଏକ ଏବଂ ଅଦ୍ୱିତୀୟ ପରମାତ୍ମାଙ୍କର ସ୍ୱରୂପକୁ ଜାଣିପାରେ ନାହିଁ । (ସେ ମନୁଷ୍ୟ ରୂପରେ ଥିଲେ ମଧ୍ୟ ତାଙ୍କର ଅଖଣ୍ଡ ଅନୁଭୂତିକୁ ଜାଣିପାରେ ନାହିଁ) ।।୩୩।।

ମହାରାଜ ପରିକ୍ଷିତ, ଏହାପରେ ମୁନିମାନେ ଶ୍ରୀକୃଷ୍ଣ ଓ ବଳରାମ ଓ ସମସ୍ତ ରାଜାଙ୍କର ସମ୍ମୁଖରେ ବସୁଦେବଙ୍କୁ ସମ୍ବୋଧନ କରି କହିଲେ, ଶ୍ରଦ୍ଧାର ସହିତ ଯଜ୍ଞ ଆଦିଦ୍ୱାରା ଯଜ୍ଞେଶ୍ୱର ଶ୍ରୀକୃଷ୍ଣଙ୍କୁ ଅର୍ଚ୍ଚନା କରାଗଲେ, ଏହି କର୍ମଦ୍ୱାରା କର୍ମକ୍ଷୟ ହୋଇପାରିବ ।।୩୪-୩୫।। ଏହା ହେଉଛି ଚିତ୍ତର ଶାନ୍ତି ଓ ମୋକ୍ଷପ୍ରାପ୍ତିର ସହଜ ଉପାୟ । ଏହାହେଉଛି ଆତ୍ମାକୁ ଆନନ୍ଦ ଦେବାର ଧର୍ମ । ଶାସ୍ତ୍ର ଦୃଷ୍ଟିରେ ଜ୍ଞାନୀମାନେ ଏହା ଦର୍ଶାଇଛନ୍ତି ।।୩୬।। ନ୍ୟାୟରେ ଉପାର୍ଜିତ ଧନଦ୍ୱାରା ଶ୍ରଦ୍ଧାପୂର୍ବକ ପୁରୁଷୋତ୍ତମ ଭଗବାନଙ୍କୁ ଅର୍ଚ୍ଚନା କରିବା ହିଁ ଗୃହସ୍ଥପାଇଁ ଏକମାତ୍ର କଲ୍ୟାଣର ପନ୍ଥା ।।୩୭।। ବସୁଦେବ, ଜ୍ଞାନୀ ବ୍ୟକ୍ତିଙ୍କୁ ଇହକାଳରେ ଯଜ୍ଞକର୍ମ ଓ ଦାନଦ୍ୱାରା ଧନ, ଗୃହସ୍ଥାଶ୍ରମର ଭୋଗ ଓ ସ୍ତ୍ରୀ-ସନ୍ତାନ ଆଦି କାମନା ଓ ପରକାଳରେ ସ୍ୱର୍ଗଲାଭର ଇଚ୍ଛା ଆଦି କାଳକ୍ରମେ ତ୍ୟାଗ କରିବାକୁ ହୋଇଥାଏ । ଏହାସବୁ ତ୍ୟାଗକରି ସେ ତପୋବନକୁ ଯାତ୍ରା କରେ(ବାନପ୍ରସ୍ଥ ଗ୍ରହଣ କରେ) ।।୩୮।। ବସୁଦେବ, ବ୍ରାହ୍ମଣ, କ୍ଷତ୍ରିୟ ଓ ବୈଶ୍ୟ -- ଏହି ଦ୍ୱିଜାତିମାନେ ଦେବଋଣ, ଋଷିଋଣ ଓ ପିତୃଋଣ--ଏହି ତିନି ଋଣକୁ ଧରି ଜନ୍ମ ହୋଇଥା'ନ୍ତି । ଯଜ୍ଞଦ୍ୱାରା ଦେବଋଣ, ବେଦଅଧ୍ୟୟନଦ୍ୱାରା ଋଷିଋଣ ଏବଂ ପୁତ୍ରଦ୍ୱାରା ପିତୃଋଣ ପରିଶୋଧ ନ କରି ଗୃହସ୍ଥାଶ୍ରମ ତ୍ୟାଗ କଲେ ଲୋକ ପତିତ ହୁଏ ।।୩୯।। ମହାମନା ବସୁଦେବ, ତୁମେ ବେଦାଧ୍ୟୟନ ଓ ପୁତ୍ରଦ୍ୱାରା ଋଷିଋଣ ଓ ପିତୃଋଣରୁ ମୁକ୍ତ ହୋଇଛ । ଏବେ ଯଜ୍ଞାନୁଷ୍ଠାନଦ୍ୱାରା ଦେବଋଣକୁ ପରିଶୋଧ କରି ସମ୍ପୂର୍ଣ୍ଣ ଋଣମୁକ୍ତ ହୁଅ ଏବଂ ଗୃହସ୍ଥାଶ୍ରମ ତ୍ୟାଗ କର ।।୪୦।। ବସୁଦେବ, ତୁମେ ପରମ ଭକ୍ତିରେ ଜଗଦୀଶ୍ୱର ଶ୍ରୀହରିଙ୍କୁ ଅର୍ଚ୍ଚନା କରିଥିଲ । ତେଣୁ ସେ ତୁମ ଦୁହିଁଙ୍କର ପୁତ୍ର ହୋଇ ଜନ୍ମ ହୋଇଛନ୍ତି ।।୪୧।। ଶ୍ରୀ ଶୁକଦେବ କହିଲେ, ପରିକ୍ଷିତ, ମହାମନା ବସୁଦେବ ଋଷିମାନଙ୍କର କଥା ଶୁଣି ମୁଣ୍ଡ ନୁଆଁଇ ସେମାନଙ୍କୁ ପ୍ରଣାମ କଲେ ଏବଂ ସେମାନଙ୍କୁ ପ୍ରସନ୍ନ କରାଇ ଯଜ୍ଞପାଇଁ ଋତ୍ୱିକ ପଦରେ ବରଣ କଲେ ।।୪୨।। ରାଜା, ବିଧିପୂର୍ବକ ସେମାନଙ୍କୁ ଋତ୍ୱିକ ରୂପରେ ବରଣ କରାଯିବାରୁ ଋଷିମାନେ ଧାର୍ମିକ ବସୁଦେବଙ୍କଦ୍ୱାରା ବହୁ ଉତ୍ତମ ଉତ୍ତମ ଯଜ୍ଞ କରାଇଲେ ।।୪୩।।

ପରିକ୍ଷିତ, ବସୁଦେବ ଯଜ୍ଞର ଦୀକ୍ଷା ଗ୍ରହଣ କରିବାରୁ ଯାଦବମାନେ ଓ ସେଠାରେ ଥିବା ରାଜାମାନେ ସ୍ନାନ କରି ସୁନ୍ଦର ସୁନ୍ଦର ବସ୍ତ୍ର, ଅଳଙ୍କାର ଓ ପଦ୍ମମାଳମାନ ଧାରଣ କରି ଯଜ୍ଞସ୍ଥଳରେ ପହଞ୍ଚିଲେ ।।୪୪।। ବସୁଦେବଙ୍କର ମହିଷୀମାନେ ଦେହରେ ଉତ୍ତମ ବସ୍ତ୍ର ଓ ବେକରେ ସୁନାର ହାରମାନ ପିନ୍ଧି ହାତରେ ମାଙ୍ଗଳିକ ଦ୍ରବ୍ୟମାନ ଧରି ଦୀକ୍ଷାଗୃହରେ ଉପସ୍ଥିତ ହେଲେ । ସେହି ସମୟରେ ମୃଦଙ୍ଗ, ଭେରୀ, ଶଙ୍ଖ, ଢୋଲ ଓ ନାଗରା ଆଦି ବାଦ୍ୟମାନ ବାଜିବାକୁ ଲାଗିଲା । ନର୍ତ୍ତକ-ନର୍ତ୍ତକୀମାନେ ନାଚିବାକୁ ଲାଗିଲେ । ସୂତ ଓ ମାଗଧଗଣ ସ୍ତୁତି ଆରମ୍ଭ କଲେ ଏବଂ ସୁନ୍ଦରୀ ଗନ୍ଧର୍ବପତ୍ନୀମାନେ ସ୍ୱାମୀମାନଙ୍କ ସହିତ ମିଶି ଗାନ ଗାଇବାକୁ ଲାଗିଲେ ।।୪୫-୪୬।। ଋତ୍ୱିକମାନେ ତାରାମାନଙ୍କ ମଧ୍ୟରେ ଚନ୍ଦ୍ରମାଙ୍କ ପରି ଅଠର ଜଣ ସ୍ତ୍ରୀଙ୍କ ମଧ୍ୟରେ ବିରାଜମାନ ବସୁଦେବଙ୍କୁ ଅଭିଷିକ୍ତ କରାଇଲେ । ଏହାପୂର୍ବରୁ ବସୁଦେବ ଆଖିରେ ଅଞ୍ଜନ ଓ ଦେହରେ ଲହୁଣି ଲଗାଇଥିଲେ ।।୪୭।। ବସୁଦେବ ପଟ୍ଟବସ୍ତ୍ର, କଙ୍କଣ, ହାର, ନୂପୁର ଓ କୁଣ୍ଡଳଦ୍ୱାରା ଅଳଙ୍କୃତ ତାଙ୍କ ସ୍ତ୍ରୀମାନଙ୍କ ସହିତ ଯଜ୍ଞରେ ଦୀକ୍ଷା ଗ୍ରହଣ କଲେ ଏବଂ ମୃଗଚର୍ମ ପରିଧାନ କରି ବିଶେଷ ଶୋଭା ପାଇବାକୁ ଲାଗିଲେ ।।୪୮।। ମହାରାଜ ପରିକ୍ଷିତ, ଋତ୍ୱିକ ଓ ସଦସ୍ୟମାନେ ପୀତ ରଙ୍ଗର ପଟ୍ଟ ବସ୍ତ୍ରମାନ ପରିଧାନ କରି ବୃତ୍ରହନ୍ତା ଇନ୍ଦ୍ରଙ୍କ ଯଜ୍ଞର ଆଚାର୍ଯ୍ୟ ଓ ଦେବତାମାନଙ୍କପରି ଶୋଭା ପାଉଥିଲେ ।।୪୯।। ତହୁଁ ଜୀବମାନଙ୍କର ଈଶ୍ୱର କୃଷ୍ଣ ଓ ବଳରାମ ନିଜର ସ୍ତ୍ରୀ, ପୁତ୍ର ଓ ବନ୍ଧୁମାନଙ୍କ ସହିତ ସେଠାରେ ଉପସ୍ଥିତ ହୋଇ ସ୍ୱକୀୟ ବିଭୂତିରେ ପ୍ରତିଭାତ ହେଲେ ।।୫୦।।

ଏହାପରେ ବସୁଦେବ ପ୍ରତ୍ୟେକ ଯଜ୍ଞରେ ଜ୍ୟୋତିଷ୍ଟୋମ, ଦର୍ଶ ଓ ପୂର୍ଣ୍ଣମାସ ଆଦି ପ୍ରାକୃତ ଯଜ୍ଞଦ୍ୱାରା, ସୌର, ସତ୍ର ଆଦି ବୈକୃତ ଯଜ୍ଞଦ୍ୱାରା ଏବଂ ଅଗ୍ନିହୋତ୍ର ଆଦି ଅନ୍ୟାନ୍ୟ ଯଜ୍ଞମାନଙ୍କଦ୍ୱାରା ପୁରୋଡାଶ ଆଦି ଯଜ୍ଞଦ୍ରବ୍ୟ, ଯଜ୍ଞମନ୍ତ୍ର ଓ ଯଜ୍ଞକର୍ମର ଈଶ୍ୱର ଭଗବାନ୍ ବିଷ୍ଣୁଙ୍କୁ ଆରାଧନା କଲେ ।।୫୧।। ବିହିତ ସମୟରେ ବସୁଦେବ ବେଦୋକ୍ତ ବିଧି ଅନୁଯାୟୀ ବସ୍ତ୍ର ଓ ଅଳଙ୍କାରରେ ମଣ୍ଡିତ ଋତ୍ୱିକମାନଙ୍କୁ ବହୁ ପରିମାଣରେ ଧନ, ରତ୍ନ, ଗାଭୀ, ଭୂମି ଓ କନ୍ୟାମାନଙ୍କୁ ଦକ୍ଷିଣାସ୍ୱରୂପ ପ୍ରଦାନ କଲେ ।।୫୨।। ଏହାପରେ ମହର୍ଷି ଆଚାର୍ଯ୍ୟମାନେ ବସୁଦେବଙ୍କ ଦ୍ୱାରା ପତ୍ନୀ-ସଂଯାଜ (ଯଜ୍ଞର ଏକ ଅଙ୍ଗ ବିଶେଷ) ଓ ଅବଭୃଥ (ଯଜ୍ଞାନ୍ତ ସ୍ନାନ) ସମ୍ପର୍କୀୟ କାର୍ଯ୍ୟମାନ ଶେଷ କରାଇ ତାଙ୍କୁ ଧରି ପରଶୁରାମଙ୍କ ନିର୍ମିତ ପବିତ୍ର ହ୍ରଦରେ ସ୍ନାନ କରାଇଲେ ।।୫୩।। ଶେଷରେ ବସୁଦେବ ଓ ତାଙ୍କ ପତ୍ନୀମାନେ ବସ୍ତ୍ର ଓ ଅଳଙ୍କାର ଆଦିକୁ ସୂତ, ମାଗଧ ପ୍ରଭୃତି ସେବାକାରୀମାନଙ୍କୁ ପ୍ରଦାନ କଲେ ଏବଂ ନିଜେ ନୂତନ ବସ୍ତ୍ର ଓ ଅଳଙ୍କାରାଦି ପରିଧାନ କରି କୁକୁରଙ୍କଠାରୁ ଆରମ୍ଭ କରି ବ୍ରାହ୍ମଣଙ୍କପର୍ଯ୍ୟନ୍ତ ସମସ୍ତଙ୍କୁ ଭୋଜନଦ୍ୱାରା ସନ୍ତୁଷ୍ଟ କରାଇଲେ ।।୫୪।। ଏହାପରେ ବସୁଦେବ ସ୍ତ୍ରୀ ଓ ପୁତ୍ରମାନଙ୍କ ସହିତ ଆସିଥିବା ନିଜର ବନ୍ଧୁବାନ୍ଧବଙ୍କୁ, କୋଶଳ, କୁରୁ, କାଶୀ, କେକୟ ଓ ସୃଞ୍ଜୟ ଦେଶୀୟ ରାଜାମାନଙ୍କୁ ଏବଂ ସହକାରୀଙ୍କ ସହିତ ଋତ୍ୱିକ, ଦେବତା, ମନୁଷ୍ୟ, ପିତୃଗଣ, ଭୂତଗଣ ଓ ଚାରଣମାନଙ୍କୁ ପ୍ରଚୁର ପରିମାଣରେ ପ୍ରୀତି-ଉପହାର ଦ୍ୱାରା ସମ୍ମାନିତ କଲେ । ସେମାନେ ସମସ୍ତେ ଶ୍ରୀନିବାସ ଭଗବାନ୍ ଶ୍ରୀକୃଷ୍ଣଙ୍କର ଅନୁମତି ନେଇ ଯଜ୍ଞର ପ୍ରଶସ୍ତି କରି କରି ପ୍ରସ୍ଥାନ କଲେ ।।୫୫-୫୬।। ଏହାପରେ ଧୃତରାଷ୍ଟ୍ର, ବିଦୁର, ଯୁଧିଷ୍ଠିର, ଭୀମସେନ, ଅର୍ଜୁନ, ଭୀଷ୍ମ, ଦ୍ରୋଣ, କୁନ୍ତୀ, ନକୁଳ, ସହଦେବ, ଦେବର୍ଷି ନାରଦ, ଭଗବାନ୍ ବ୍ୟାସଦେବ, ସୁହୃଦ୍, ସମ୍ବନ୍ଧୀ, ଜ୍ଞାତି, ବନ୍ଧୁଗଣ ଓ ଅନ୍ୟ ସମସ୍ତ ଜନତା ପ୍ରେମପୂର୍ବକ ଯାଦବମାନଙ୍କୁ ଆଲିଙ୍ଗନ କରି ବିଦାୟ ନେଲେ । ଯାଦବମାନଙ୍କଠାରୁ ବିଦାୟକାଳୀନ ବିରହଦୁଃଖ ସେମାନଙ୍କୁ ବାଧୁଥିଲା ।।୫୭-୫୮।। କିନ୍ତୁ ବନ୍ଧୁବତ୍ସଳ ନନ୍ଦ କୃଷ୍ଣ, ବଳରାମ ଓ ଉଗ୍ରସେନ ଆଦିଙ୍କଦ୍ୱାରା ବିଶେଷ ଆଦର ସତ୍କାର ଲାଭ କରି ବ୍ରଜବାସୀଙ୍କ ସହିତ ସେହିଠାରେ ହିଁ ରହିଗଲେ । ମହାରାଜ ପରିକ୍ଷିତ, ବସୁଦେବ ଏହିପରି ତାଙ୍କ ଅଭିଳାଷ ପୂରଣ କରି ଯଜ୍ଞରୂପକ ମହାସାଗରକୁ ଉତ୍ତୀର୍ଣ୍ଣ ହେଲେ ଏବଂ ନିଜ ବନ୍ଧୁମାନଙ୍କ ଦ୍ୱାରା ପରିବେଷ୍ଟିତ ହୋଇ ଆନନ୍ଦମନରେ ନନ୍ଦରାଜଙ୍କ ହାତ ଧରି ଏହିପରି କହିବାକୁ ଲାଗିଲେ-- ।।୬୦।। ବସୁଦେବ କହିଲେ, ଭାଇ ନନ୍ଦ, ମନୁଷ୍ୟମାନଙ୍କର ସ୍ନେହ ନାମକ ଯେଉଁ ପାଶଟି ରହିଛି, ତାହା ଭଗବାନଙ୍କ ସୃଷ୍ଟ । ମୋ' ମତରେ ତାହାକୁ ଶୂର,

ବୀର ଓ ଯୋଗିଋଷିମାନେ ମଧ୍ୟ କାଟିପାରନ୍ତି ନାହିଁ ।।୬୧।। ଆପଣମାନେ ସଜ୍ଜନମାନଙ୍କ ମଧ୍ୟରେ ଶ୍ରେଷ୍ଠ । କିନ୍ତୁ ଆମେମାନେ ଅକୃତଜ୍ଞ । ଆପଣମାନେ ଆମମାନଙ୍କ ପ୍ରତି ଯେଉଁ ବନ୍ଧୁତା ଦେଖାଇଛନ୍ତି, କୌଣସି ପ୍ରତ୍ୟୁପକାରଦ୍ୱାରା ଆମେ ତାହା ଶୁଝାଇ ପାରିବୁ ନାହିଁ । ତେଣୁ ଆମର ଏ ସମ୍ବନ୍ଧ କେବେହେଲେ ଭାଙ୍ଗିବ ନାହିଁ ।।୬୨।। ଭାଇ, ପୂର୍ବରୁ ଆମେ (ବନ୍ଦିଶାଳାରେ ଥିବାଯୋଗୁଁ) ଆପଣଙ୍କର କୌଣସି ଉପକାର କରିବାପାଇଁ ସମର୍ଥ ନ ଥିଲୁ । ବର୍ତ୍ତମାନ ଐଶ୍ୱର୍ଯ୍ୟ ଗର୍ବରେ ଆମେମାନେ ଅନ୍ଧ । ଆପଣ ଆମର ସମ୍ମୁଖରେ ଅଛନ୍ତି । ଆପଣଙ୍କୁ ଆମେ କିନ୍ତୁ ଦେଖିପାରୁ ନାହୁଁ ! ।।୬୩।। ମାନଦ, ମନୁଷ୍ୟ ରାଜ୍ୟସମ୍ପଦ ଦ୍ୱାରା ଅନ୍ଧ ହୋଇ ବିବେକଜ୍ଞାନ ହରାଇବସେ ଏବଂ ଜ୍ଞାତିବନ୍ଧୁମାନଙ୍କୁ ଦେଖିପାରେ ନାହିଁ । ତେଣୁ ଯେଉଁମାନେ ହିତକାମୀ, ସେମାନଙ୍କୁ ରାଜ୍ୟଲକ୍ଷ୍ମୀ ମିଳିବା ଉଚିତ ନୁହେଁ ।।୬୪।।

ଶ୍ରୀ ଶୁକଦେବ କହିଲେ, ପରିକ୍ଷିତ, ଏହିପରି କହୁ କହୁ ବସୁଦେବଙ୍କର ଆଖି ଛଳଛଳ ହୋଇଗଲା । ନନ୍ଦଙ୍କର ମିତ୍ରତା ବିଷୟ ସ୍ମରଣ କରି ସ୍ନେହରେ ତାଙ୍କ ହୃଦୟ ବିଗଳିତ ହୋଇଗଲା । ତେଣୁ ସେ ରୋଦନ କରିବାକୁ ଲାଗିଲେ ।।୬୫।। ନନ୍ଦ ମଧ୍ୟ ବସୁଦେବଙ୍କର ମିତ୍ରତା, କୃଷ୍ଣ ଓ ବଳରାମଙ୍କ ପ୍ରେମ ଏବଂ ଯାଦବମାନଙ୍କ ଶ୍ରଦ୍ଧା-ଭକ୍ତିରେ ବାନ୍ଧି ହୋଇ ସେଠାରେ ତିନି ମାସ ରହିଗଲେ । ଆଜି କାଲି ହୋଇ ଯାଇପାରିଲେ ନାହିଁ ।।୬୬।। ପରେ ନିଜର ବନ୍ଧୁବାନ୍ଧବ ଓ ବ୍ରଜବାସୀ ଗୋପ-ଗୋପୀଙ୍କ ସହିତ ନନ୍ଦ ନିଜ ଗୃହକୁ ପ୍ରସ୍ଥାନ କଲେ । ବହୁମୂଲ୍ୟ ଅଳଙ୍କାର, ପଟ୍ଟ ବସ୍ତ୍ର ଓ ଭୋଗ୍ୟବସ୍ତୁମାନଙ୍କ ସହିତ ଯାଦବମାନେ ତାଙ୍କୁ ବିଦାୟ ଦେଲେ । ବସୁଦେବ, ଉଗ୍ରସେନ, ଶ୍ରୀକୃଷ୍ଣ, ଉଦ୍ଧବ ଓ ବଳରାମ ପୃଥକ୍ ପୃଥକ୍ ଭାବରେ ତାଙ୍କୁ ବହୁ ପ୍ରକାର ଉପହାର ଦେଲେ । ଯାଦବ ସୈନ୍ୟମାନଙ୍କଦ୍ୱାରା ସୁରକ୍ଷିତ ହୋଇ ନନ୍ଦ ବ୍ରଜକୁ ପ୍ରସ୍ଥାନ କଲେ ।।୬୭-୬୮।। ନନ୍ଦଙ୍କ ସହିତ ଗୋପ ଓ ଗୋପୀମାନେ ଗୋବିନ୍ଦଙ୍କ ପାଦପଦ୍ମରେ ନିଜର ଚିତ୍ତକୁ ଏପରି ଅର୍ପଣ କରିଥିଲେ ଯେ ସେମାନେ ତାଙ୍କଠାରୁ ତାହାକୁ ଆଉ ଫେରାଇ ଆଣି ନ ପାରି ବ୍ରଜକୁ ଫେରିଗଲେ ।।୬୯।। ପରିକ୍ଷିତ, ଜ୍ଞାତି ବନ୍ଧୁ ସମସ୍ତେ ଚାଲିଯିବା ପରେ କୃଷ୍ଣଙ୍କୁ ଦେବତା ବୋଲି ମାନିଥିବା ଯାଦବମାନେ ବର୍ଷାକାଳ ଆସି ଯାଉଥିବାର ଦେଖି ଦ୍ୱାରକାକୁ ଫେରିଗଲେ ।।୭୦।। ଦ୍ୱାରକାକୁ ଫେରିଆସି ଯାଦବମାନେ ତୀର୍ଥଯାତ୍ରାରେ ବସୁଦେବଙ୍କର ଯଜ୍ଞମହୋତ୍ସବ ଓ ସୁହୃଦ୍‌ମାନଙ୍କର ଦର୍ଶନ ଆଦି ଯାହାସବୁ ଘଟିଥିଲା, ତାହା ସମସ୍ତଙ୍କୁ ଶୁଣାଇଲେ ।।୭୧।।

### ପଞ୍ଚାଶୀ ଅଧ୍ୟାୟ

## ଦେବକୀଙ୍କ ମୃତ ପୁତ୍ରମାନେ ଫେରିଆସିଲେ

ଶ୍ରୀ ଶୁକଦେବ କହିଲେ, ପରିକ୍ଷିତ, ସବୁଦିନ କୃଷ୍ଣ ଓ ବଳରାମ ପିତାମାତାଙ୍କର ପାଦବଂଦନା କରନ୍ତି । ବସୁଦେବ ମୁନିମାନଙ୍କଠାରୁ ପୁତ୍ରଙ୍କର ମହିମାବିଷୟ ଶୁଣିଥିଲେ ଏବଂ ପୁତ୍ରଙ୍କର ବଳ, ବୀର୍ଯ୍ୟ ମଧ୍ୟ ସ୍ୱୟଂ ଦେଖିଥିଲେ । ତେଣୁ ସେ ଦୁହେଁ ଯେ ଭଗବାନ୍, ତାଙ୍କର ସେ ଦୃଢ଼ବିଶ୍ୱାସ ଜନ୍ମିଥିଲା । ଦିନେ କୃଷ୍ଣ ଓ ବଳରାମ ତାଙ୍କ ପାଦ ବନ୍ଦନା କରିବା ପରେ ସେ ଦୁହିଁଙ୍କୁ ପ୍ରେମରେ ଅଭିବାଦନ କରି ଏହିପରି କହିଲେ-- ।।୧-୨।। ହେ ମହାଯୋଗୀ କୃଷ୍ଣ, ହେ ସନାତନ ପୁରୁଷ ବଳରାମ, ମୁଁ ଜାଣେ ଯେ ତୁମେ ଦୁଇ ଜଣ ଏ ବିଶ୍ୱର ନିୟନ୍ତା, ସାକ୍ଷାତ୍ ପୁରୁଷୋତ୍ତମ ପରମେଶ୍ୱର ।।୩।। ତୁମେ ଦୁହେଁ ଏ ଜଗତ୍‌ର କାରଣ, କର୍ତ୍ତା ଓ ଉପାଦାନ ସ୍ୱରୂପ । ତୁମେ ଏହି ସମଗ୍ର ଜଗତ୍‌ର ସ୍ୱାମୀ ଏବଂ ଜଗତ୍ ମଧ୍ୟ ତୁମ କ୍ରୀଡ଼ାର ବସ୍ତୁ । ଯେତେବେଳେ ଯେଉଁ ରୂପରେ ଯାହା କିଛି ରହିଥାଏ ବା ହୁଏ, ସେ ସବୁ ତୁମର ସ୍ୱରୂପ । ପ୍ରକୃତି ରୂପରେ ତୁମେ ଏହି ଜଗତ୍‌ର ଭୋଗ୍ୟ ଓ

ପୁରୁଷ ରୂପରେ ଭୋକ୍ତା । କିନ୍ତୁ ଏହି ଉଭୟଙ୍କର ନିୟାମକ ସାକ୍ଷାତ୍ ଭଗବାନ ପରମେଶ୍ୱର ॥୪॥ ହେ ଆତ୍ମନ୍, ହେ ଅଧୋକ୍ଷଜ, ନାନାବିଧ ଏହି ବିଶ୍ୱକୁ ତୁମେ ହିଁ ରଚନା କରିଛ । ଆତ୍ମା ରୂପରେ ତୁମେ ସେଥିରେ ପ୍ରବେଶ କରିଛ ଏବଂ ପ୍ରାଣ ଓ ଜୀବ ରୂପରେ ତାହାକୁ ପାଳନ କରୁଛ ॥୫॥ ବିଶ୍ୱର ସୃଷ୍ଟିକାରୀ ପ୍ରାଣଶକ୍ତି ସ୍ୱତନ୍ତ୍ର ନୁହେ । ତାହା ତୁମର ଅଧୀନ । ଚେତନ ଓ ଅଚେତନ ବା ଚରାଚର ସଂସାରରେ ଯେତେ ଜୀବ ଓ ପଦାର୍ଥ ରହିଛନ୍ତି, ସେମାନେ ଈଶ୍ୱରଙ୍କ ଶକ୍ତିରେ ହିଁ ପରିଚାଳିତ ॥୬॥ ଚନ୍ଦ୍ରର କମନୀୟ ଜ୍ୟୋତ୍ସ୍ନା, ଅଗ୍ନିର ତେଜ, ସୂର୍ଯ୍ୟର ପ୍ରଭା, ବିଦ୍ୟୁତ୍ ଓ ନକ୍ଷତ୍ରମାନଙ୍କର ସତ୍ତା, ପର୍ବତମାନଙ୍କର ସ୍ଥିରତା, ପୃଥିବୀର ପ୍ରାଣୀମାନଙ୍କୁ ଧାରଣ କରିବାର ଶକ୍ତି ଓ ଗନ୍ଧ ଆଦି ଗୁଣ--ଏ ସବୁ ତୁମର ହିଁ ସ୍ୱରୂପ ॥୭॥ ତୁମେ ହିଁ ଜଳର ତୃପ୍ତିକାରୀ ଜୀବନୀଶକ୍ତି ଓ ତାର ରସ, ତୁମେ ବାୟୁର ଓଜଃ, ବୀର୍ଯ୍ୟ, ସାହସ, ବଳ, ଚେଷ୍ଟା ଓ ଗତି । ହେ ଈଶ୍ୱର, ଏହା ହିଁ ତୁମର ଶକ୍ତିକୁ ପ୍ରତିପାଦିତ କରେ । ଏହି ବିସ୍ତୀର୍ଣ୍ଣ ଦିଗ୍‌ବିଦିଗ-ସମୂହ, ଏହି ଆକାଶ ଏବଂ ତାର ଶବ୍ଦଗୁଣ, ନାଦ, ଓଁକାର ଓ ଅକ୍ଷର ଏବଂ ବିଭିନ୍ନ ଆକାରବିଶିଷ୍ଟ ପଦାର୍ଥମାନଙ୍କର ତୁମେ ହେଉଛ ଆଶ୍ରୟସ୍ୱରୂପ ॥୮-୯॥ ତୁମେ ହେଉଛ ଇନ୍ଦ୍ରିୟ ଓ ଇନ୍ଦ୍ରିୟମାନଙ୍କର ବିଷୟପ୍ରକାଶକ ଶକ୍ତି । ତୁମେ ସେମାନଙ୍କର ଅଧିଷ୍ଠାତା ଦେବତା ଓ ଅଧିଷ୍ଠାନ ଶକ୍ତି । ତୁମେ ବୁଦ୍ଧିର ଅବବୋଧ (ଅଧ୍ୟବସାୟ ଶକ୍ତି) ଓ ଜୀବର ବିଶୁଦ୍ଧ ସ୍ମୃତିସ୍ୱରୂପ ॥୧୦॥ ତୁମେ ହେଉଛ ପୃଥିବୀ ଆଦି ଭୂତଙ୍କର କାରଣ ତାମସ ଅହଙ୍କାର, ଇନ୍ଦ୍ରିୟମାନଙ୍କର କାରଣ ତୈଜସ ଅହଙ୍କାର ଏବଂ ଦେବତାମାନଙ୍କର କାରଣ ସତ୍ତ୍ୱରୂପକ ବୈକାରିକ ଅହଙ୍କାର ଏବଂ ଜୀବମାନଙ୍କ ସଂସାରଚକ୍ରର କାରଣ ॥୧୧॥

ଏହି ସଂସାରର ସମସ୍ତ ନାଶଶୀଳ ବସ୍ତୁମଧ୍ୟରେ ତୁମେ ଅବିନଶ୍ୱର ଭାବରେ ବିଦ୍ୟମାନ, ଯେପରିକି ମୃତ୍ତିକା ବା ସୁବର୍ଣ୍ଣ ଘଟ ବା କୁଣ୍ଡଳରେ ରୂପାନ୍ତରିତ ହୋଇ ବିଦ୍ୟମାନ ଥାଏ । ତୁମେ ସ୍ୱୟଂ ପରଂବ୍ରହ୍ମ । ତୁମର ଯୋଗମାୟାଦ୍ୱାରା ସତ୍ତ୍ୱ, ରଜ ଓ ତମ ଏହି ଗୁଣମାନ ଓ ମହତ୍ ଆଦି ସେମାନଙ୍କର ବୃତ୍ତି ବା ପରିଣାମ ପରିକଳ୍ପିତ ହୋଇଥାଏ ॥୧୨-୧୩॥ ତୁମର ମାୟାଦ୍ୱାରା ସେମାନେ କଳ୍ପିତ ହୋଇଥିବାଯୋଗୁଁ, ସେମାନଙ୍କର ସ୍ୱତନ୍ତ୍ର ସତ୍ତା ନ ଥାଏ । ଅନ୍ୟଭାବରେ ଦେଖିଲେ ଏହି ରୂପାନ୍ତରିତ ପଦାର୍ଥମାନଙ୍କ ମଧ୍ୟରେ ତୁମେ ହିଁ ରହିଥାଅ ॥୧୪॥ ଏହି ଅଜ୍ଞାନ ସଂସାରଚକ୍ର ମଧ୍ୟରେ ଅନ୍ତର୍ଯାମୀରୂପେ ରହିଥିବା ତୁମର ସୂକ୍ଷ୍ମସ୍ୱରୂପକୁ ବୁଝି ନ ପାରି ଦେହାଭିମାନୀ ପ୍ରାଣୀମାନେ ଏହି ସଂସାରମଧ୍ୟରେ ବାରମ୍ବାର ଘାଣ୍ଟି ହୁଅନ୍ତି ॥୧୫॥ ପରମେଶ୍ୱର, କର୍ମଫଳ ଅନୁସାରେ ମୋତେ ଏହି ସୁକଳ୍ପିତ ଦୁର୍ଲଭ ମନୁଷ୍ୟତ୍ୱ ମିଳିଛି । ତୁମର ମାୟାବଶରୁ ନିଜର ସ୍ୱାର୍ଥରେ ମତ୍ତ ହୋଇ ମୋର ବୟସ ଗଡ଼ିଗଲାଣି । 'ମୁଁ' ଏବଂ 'ମୋର'--ଏହି ସ୍ନେହବନ୍ଧନରେ ତୁମେ ଏହି ସମସ୍ତ ଜୀବଜଗତକୁ ମାୟାରେ ବାନ୍ଧି ରଖିଛ । ତୁମେ ଦୁହେଁ ମୋର ପୁତ୍ର ନୁହଁ, ସାକ୍ଷାତ୍ ପରମେଶ୍ୱର । ପୃଥିବୀର ଭାରସ୍ୱରୂପ ରାଜାମାନଙ୍କୁ ବିନାଶ କରିବାପାଇଁ ତୁମେ ଯେ ଅବତୀର୍ଣ୍ଣ ହୋଇଛ, ତାହା ପୂର୍ବରୁ ତୁମେ ମୋତେ କହିଛ ॥୧୬-୧୮॥ ହେ ଆର୍ତ୍ତବନ୍ଧୁ, ଯେଉଁମାନେ ତୁମ ପାଦପଦ୍ମରେ ଶରଣାପନ୍ନ ହୁଅନ୍ତି, ସେମାନଙ୍କର ସଂସାରଭୟ ରହେ ନାହିଁ । ମୁଁ ଆପଣଙ୍କର ପଦାରବିନ୍ଦରେ ଶରଣାପନ୍ନ । ଇନ୍ଦ୍ରିୟଲାଳସାର ବଶବର୍ତ୍ତୀ ହୋଇ ମୁଁ ଏ ପର୍ଯ୍ୟନ୍ତ ଏହି ମରଣଶୀଳ ଶରୀରକୁ ଆତ୍ମା ବୋଲି ବିଚାର କରିଥିଲି । ତୁମେ ପରମାତ୍ମା ହେଲେ ମଧ୍ୟ ପୁତ୍ରବୁଦ୍ଧିରେ ତୁମକୁ ଦେଖୁଥିଲି । ଏବେ ଆଉ ତାହା ହେବ ନାହିଁ ॥୧୯॥ ସୂତିକାଗୃହରେ ତୁମେ ମୋତେ ଓ ଦେବକୀଙ୍କୁ କହିଥିଲ ଯେ ନିଜକୃତ ଧର୍ମମର୍ଯ୍ୟାଦାର ରକ୍ଷାପାଇଁ ଅଜନ୍ମା ହେଲେ ମଧ୍ୟ ତୁମେ ଯୁଗେ ଯୁଗେ ଜନ୍ମ ଗ୍ରହଣ କର । ରଙ୍ଗ ଓ ରୂପହୀନ ଆକାଶ ଯେପରି ବିଭିନ୍ନ ରଙ୍ଗ, ରୂପ ଧାରଣ କରେ, ତୁମେ ସେହିପରି ନାନା ଦେହରେ ଅବତୀର୍ଣ୍ଣ ହୋଇଛ । ହେ, ମହାମହିମ, ପୁଣ୍ୟଶ୍ଳୋକ, ତୁମର ବିଭୂତିରୂପକ ମାୟାକୁ କିଏ ବୁଝିପାରିବ ॥୨୦॥

ଶ୍ରୀ ଶୁକଦେବ କହିଲେ, ପରିକ୍ଷିତ, ଯଦୁଶ୍ରେଷ୍ଠ ଭଗବାନ୍ ଏହିପରି ପିତୃବାକ୍ୟ ଶ୍ରବଣ କରି ନମ୍ରଭାବରେ ସ୍ନେହଭରା କଣ୍ଠରେ ହସି ହସି ଉତ୍ତର ଦେଲେ ॥୨୧॥ ଶ୍ରୀଭଗବାନ୍ କହିଲେ, ତାତ, ଆମେ ଆପଣଙ୍କର ପୁତ୍ର । ଆମ ଦୁହିଁଙ୍କୁ ଲକ୍ଷ୍ୟ କରି ଆପଣ ଯେଉଁ

ତତ୍ତ୍ୱଜ୍ଞାନର ଉପଦେଶ ଦେଇଛନ୍ତି, ଆମେ ତାହା ଅନୁମୋଦନ କରୁଛୁ । ହେ ପିତା, ହେ ଯଦୁଶ୍ରେଷ୍ଠ, ଆପଣମାନେ, ମୁଁ ଓ ବଳରାମ, ସମସ୍ତ ଦ୍ୱାରକାବାସୀ ଏବଂ ଏହି ସଚରାଚର ଜଗତ୍ -- ସମସ୍ତଙ୍କ ମଧ୍ୟରେ ଏକ ବ୍ରହ୍ମ ହିଁ ବିଦ୍ୟମାନ ।।୨୨-୨୩।। ପିତା, ଏହି ଏକ ଆତ୍ମା ନିତ୍ୟ ଓ ନିର୍ଗୁଣ ହେଲେ ମଧ୍ୟ ନିଜ ସୃଷ୍ଟ ଗୁଣମାନଙ୍କଦ୍ୱାରା ସେ ଅନିତ୍ୟ ଓ ସଗୁଣ-ପ୍ରାଣୀମାନଙ୍କୁ ସୃଷ୍ଟି କରି ସେମାନଙ୍କ ମଧ୍ୟରେ ନାନାରୂପରେ ଦୃଶ୍ୟମାନ ହୁଏ, ଯଦିଓ ସେ ନିଜେ ସ୍ୱୟଂ ପ୍ରକାଶମାନ ଜ୍ୟୋତିସ୍ୱରୂପ ।।୨୪।। ଯେପରି ଆକାଶ, ବାୟୁ, ତେଜ, ଜଳ ଓ ପୃଥିବୀ - ଏହି ପଞ୍ଚ ମହାଭୂତ ଘଟ, କୁଣ୍ଡଳ ଆଦି ପ୍ରକଟ, ଅପ୍ରକଟ, ଛୋଟ, ବଡ଼, ଅଳପ, ବହୁତ - ଆଦି ଅନେକ ରୂପରେ ପ୍ରତୀୟମାନ ହୁଅନ୍ତି, କିନ୍ତୁ ସତ୍ତାରୂପରେ ସେମାନେ ଏକ ହୋଇ ରହିଥା'ନ୍ତି, ସେହିପରି ଆତ୍ମା ଦେହଭେଦରେ ନାନା ରୂପରେ ପ୍ରତୀୟମାନ ହେଲେ ମଧ୍ୟ ଏକ ରହିଥାଏ ।।୨୫।। ଶ୍ରୀ ଶୁକଦେବ କହିଲେ, ପରିକ୍ଷିତ, ଭଗବାନ୍ ଶ୍ରୀକୃଷ୍ଣ ଏହିପରି ଉଦାହରଣ ଦେଇ ବୁଝାଇଦେବା ଫଳରେ ବସୁଦେବଙ୍କର ନାନାପ୍ରକାର ବିଚାରଭ୍ରମ ନଷ୍ଟ ହୋଇଗଲା ଏବଂ ସେ ଆନନ୍ଦମନରେ ତୂନି ହୋଇ ରହିଗଲେ ।।୨୬।।

କୁରୁଶ୍ରେଷ୍ଠ, କୃଷ୍ଣ ଓ ବଳରାମ ତାଙ୍କ ଗୁରୁପୁତ୍ରଙ୍କୁ ମୃତ୍ୟୁଲୋକରୁ ଫେରାଇଆଣିଥିବା କଥା ପୂର୍ବରୁ ଶୁଣି ଦେବକୀ ଆଶ୍ଚର୍ଯ୍ୟ ହୋଇଯାଇଥିଲେ । ଏବେ ସେହି ସର୍ବଦେବମୟୀ ମାତା କଂସଦ୍ୱାରା ନିହତ ନିଜ ପୁତ୍ରମାନଙ୍କ କଥା ସ୍ମରଣ କରି କୃଷ୍ଣ ଓ ବଳରାମଙ୍କୁ କାନ୍ଦି କାନ୍ଦି ଅତି କରୁଣ ଭାବରେ ଏହିପରି କହିଲେ-- ।।୨୭-୨୮।। ପୁତ୍ର ଦୁହିଁଙ୍କୁ ସମ୍ବୋଧନ କରି ଦେବକୀ କହିଲେ, ହେ ଅମିତବିକ୍ରମ ରାମ, ହେ ଯୋଗେଶ୍ୱରଶ୍ରେଷ୍ଠ କୃଷ୍ଣ, ମୁଁ ଜାଣେ ଯେ ପ୍ରଜାପତି ଓ ଲୋକପାଳମାନଙ୍କ ଈଶ୍ୱରରୂପରେ ତୁମେ ଦୁହେଁ ଆଦି ପୁରୁଷ ।।୨୯।। ଯେଉଁମାନେ କାଳକ୍ରମେ ନିଜର ଧୈର୍ଯ୍ୟ, ସଂଯମ ଓ ସତ୍ତ୍ୱଗୁଣକୁ ହଜାଇଦିଅନ୍ତି ଏବଂ ଶାସ୍ତ୍ରର ଆଜ୍ଞାକୁ ଉଲ୍ଲଂଘନ କରି ସ୍ୱେଚ୍ଛାଚାରୀ ହୋଇଯାଆନ୍ତି, ପୃଥିବୀର ଭାରସ୍ୱରୂପ ସେମାନଙ୍କର ବିନାଶପାଇଁ ତୁମେ ମୋ ଗର୍ଭରୁ ଜନ୍ମ ନେଇଛ ।।୩୦।। ମାୟା ହେଉଛି ତୁମର ଅଂଶମାତ୍ର, ଗୁଣମାନ ସେହି ମାୟାର ଅଂଶବିଶେଷ ଏବଂ ଏହି ଗୁଣମାନଙ୍କର ସାମାନ୍ୟତମ ଅଂଶରେ ଏହି ବିଶ୍ୱର ଉତ୍ପତ୍ତି ଓ ବିଲୟ ଆଦି ଘଟିଥାଏ । ହେ ବିଶ୍ୱାତ୍ମା, ଆଜି ମୁଁ ତୁମର ଶରଣାପନ୍ନ । ମୁଁ ଶୁଣିଛି ଯେ ତୁମର ଗୁରୁ ସାନ୍ଦୀପନିଙ୍କର ପୁତ୍ର ବହୁଦିନରୁ ମରିଯାଇଥିଲେ । କାଳର ପ୍ରେରଣାରେ ତଥା ଗୁରୁଙ୍କର ଆଜ୍ଞାରେ ତୁମେ ତାଙ୍କୁ ପିତୃଲୋକରୁ ଆଣି ଗୁରୁଦକ୍ଷିଣା ସ୍ୱରୂପ ଗୁରୁଙ୍କୁ ପ୍ରଦାନ କରିଥିଲ ।।୩୧-୩୨।। ହେ ଯୋଗେଶ୍ୱରଙ୍କ ଈଶ୍ୱର, ବର୍ତ୍ତମାନ ତୁମେ ଦୁହେଁ ମୋର କାମନାକୁ ପୂର୍ଣ୍ଣ କର । କଂସଦ୍ୱାରା ନିହତ ମୋ ପୁତ୍ରମାନଙ୍କୁ ମୁଁ ଦେଖିବାକୁ ଇଚ୍ଛା କରୁଛି ।।୩୩।।

ଶ୍ରୀ ଶୁକଦେବ କହିଲେ, ପରିକ୍ଷିତ, ମାତାଙ୍କଦ୍ୱାରା ପ୍ରେରିତ ହୋଇ କୃଷ୍ଣ ଓ ବଳରାମ ଯୋଗମାୟାକୁ ଆଶ୍ରୟ କରି ସୁତଳ ଲୋକରେ ପ୍ରବେଶ କଲେ ।।୩୪।। ସୁତଳର ଅଧୀଶ୍ୱର ଦୈତ୍ୟରାଜ ବଳି ଯେତେବେଳେ ଦେଖିଲେ ଯେ ଜଗତର ଆତ୍ମା ତଥା ନିଜର ଇଷ୍ଟଦେବ ଭଗବାନ୍ ଶ୍ରୀକୃଷ୍ଣ ଓ ବଳରାମ ସେଠାରେ ପ୍ରବେଶ କରିଛନ୍ତି, ସେତେବେଳେ ତାଙ୍କର ହୃଦୟ ଆନନ୍ଦରେ ପୂରିଉଠିଲା । ସେ ସଙ୍ଗେ ସଙ୍ଗେ ଆସନରୁ ଉଠି ନିଜର ପରିବାରସହ ଭଗବାନଙ୍କ ପାଦତଳେ ପ୍ରଣାମ କଲେ ।।୩୫।। ସେ ଆନନ୍ଦରେ ଉଭୟଙ୍କୁ ପାଛୋଟି ଆଣି ଉତ୍ତମ ଆସନରେ ବସାଇଲେ ଏବଂ ସେହି ଦୁଇ ମହାପୁରୁଷଙ୍କର ପାଦ ପ୍ରକ୍ଷାଳନ କରି ପାଦୋଦକକୁ ସପରିବାର ଶିରରେ ଧାରଣ କଲେ । ଭଗବାନଙ୍କର ଏହି ପାଦୋଦକ ବ୍ରହ୍ମଲୋକକୁ ବ୍ୟାପି ସମସ୍ତ ଜଗତକୁ ପବିତ୍ର କରେ ।।୩୬।। ବହୁମୂଲ୍ୟ ବସ୍ତ୍ର, ଅଳଙ୍କାର, ଅଙ୍ଗରାଗ, ତାମ୍ବୂଳ, ପ୍ରଦୀପ, ଅମୃତୋପମ ଭୋଜନ ଏବଂ ଅନ୍ୟାନ୍ୟ ଉପହାର ଓ ସତ୍କାରଦ୍ୱାରା ରାଜା ବଳି ଦୁହିଁଙ୍କୁ ସମ୍ୟକ୍ ଅର୍ଚ୍ଚନା କଲେ ଏବଂ ନିଜର ବଂଶ, ପରିବାର, ଧନସମ୍ପତ୍ତି ସହ ନିଜକୁ ତାଙ୍କ ପାଦରେ ସମର୍ପଣ କଲେ ।।୩୭।। ଇନ୍ଦ୍ରସେନ ବଳି ପ୍ରେମବିହ୍ୱଳ ଚିତ୍ତରେ ଭଗବାନଙ୍କର ପଦାମ୍ବୁଜକୁ ବାରମ୍ବାର ଧାରଣ କରିବାକୁ ଲାଗିଲେ, ଆନନ୍ଦରେ ତାଙ୍କର ଚକ୍ଷୁ ଅଶ୍ରୁପୂର୍ଣ୍ଣ ହୋଇଗଲା । ଦେହ ରୋମାଞ୍ଚିତ ହେଲା । ସେ ଗଦ୍‌ଗଦ ସ୍ୱରରେ ଭଗବାନଙ୍କୁ ସ୍ତୁତି କରିବାକୁ ଲାଗିଲେ--।।୩୮।।

ବଳି କହିଲେ, ବିଶାଳଯଶା ଅନନ୍ତଙ୍କୁ ଓ ବିଶ୍ୱବିଧାତା ଶ୍ରୀକୃଷ୍ଣଙ୍କୁ ମୁଁ ନମସ୍କାର କରୁଛି । ଯେଉଁ ବ୍ରହ୍ମରୂପୀ ପରମାତ୍ମା ସାଂଖ୍ୟଯୋଗର ବିସ୍ତାର କରିଛନ୍ତି, ତାଙ୍କୁ ମୁଁ ନମସ୍କାର କରୁଛି ।।୩୯।। ଆପଣଙ୍କ ଯେଉଁ ଦର୍ଶନ ରଜୋଗୁଣ ଓ ତମୋଗୁଣ ସମ୍ପନ୍ନ ବ୍ୟକ୍ତିମାନଙ୍କ ପକ୍ଷରେ ଦୁଷ୍ପ୍ରାପ୍ୟ ଓ ଦୁର୍ଲଭ, ତାହା ସ୍ୱତଃ ଆମକୁ ସୁଲଭ ହୋଇଛି ।।୪୦।। ଆପଣଙ୍କ ଶ୍ରୀ ବିଗ୍ରହ ବିଶୁଦ୍ଧ ସତ୍ତ୍ୱମୟ ଓ ବେଦସ୍ୱରୂପ; କିନ୍ତୁ ଆପଣଙ୍କ ଠାରେ ସିଦ୍ଧ, ବିଦ୍ୟାଧର, ଚାରଣ, ଯକ୍ଷ, ରକ୍ଷ ଓ ପ୍ରମଥପତି ଆଦି ଆମମାନଙ୍କର ଭକ୍ତି ନ ଥାଏ । ଆପଣଙ୍କ ପ୍ରତି ଆମମାନଙ୍କର ବଦ୍ଧମୂଳ ବୈରଭାବ ଅନ୍ୟମାନଙ୍କ ଠାରେ ଦେଖାଯାଏନାହିଁ । କେତେକ ବଦ୍ଧମୂଳ ଶତ୍ରୁତାଦ୍ୱାରା, କେତେକ ଭକ୍ତିଦ୍ୱାରା ଓ କେତେକ ସକାମ ପ୍ରାର୍ଥନାଦ୍ୱାରା ଆପଣଙ୍କୁ ଲାଭ କରିଥା'ନ୍ତି, କିନ୍ତୁ ଆପଣଙ୍କ ସମୀପରେ ଥିବା ସତ୍ତ୍ୱସମ୍ପନ୍ନ ଦେବତାମାନେ ଆପଣଙ୍କୁ ପାଇବାପାଇଁ ସମର୍ଥ ହୁଅନ୍ତି ନାହିଁ ।।୪୧-୪୩।। ହେ ଯୋଗେଶ୍ୱରଙ୍କର ଈଶ୍ୱର, ଯୋଗେଶ୍ୱରମାନେ ମଧ୍ୟ ଆପଣଙ୍କ ଯୋଗମାୟାର ସ୍ୱରୂପ କ'ଣ, ଠିକ୍ ରୂପେ, ତାହା ଜାଣି ପାରନ୍ତି ନାହିଁ । ଆମେ ବା କିପରି ଜାଣିବୁ ? ।।୪୪।। ହେ ପ୍ରଭୁ, ତୁମେ ମୋ ପ୍ରତି ପ୍ରସନ୍ନ ହୁଅ; ମୋର ଚିତ୍ତବୃତ୍ତି ଆପଣଙ୍କ ପାଦପଦ୍ମରେ ଲାଗିଥାଉ । ନିରପେକ୍ଷ (ଆପ୍ତକାମ) ପରମହଂସମାନେ ଯେଉଁ ଚରଣକମଳର ଅନ୍ୱେଷଣ କରୁଥା'ନ୍ତି, ମୁଁ ଯେପରି ତାହାକୁ ଆଶ୍ରୟ କରି ଏହି ଗୃହରୂପକ ଅନ୍ଧକୂପରୁ ଉଦ୍ଧାର ପାଇଯାଏ । ଏହି ସଂସାରକୁ ରକ୍ଷା କରୁଥିବା ବୃକ୍ଷମାନଙ୍କର ଯେଉଁସବୁ ଫଳ ସେମାନଙ୍କ ମୂଳରେ ପଡୁଥିବ, ତାହାକୁ ସେବନ କରି ମୁଁ ଶାନ୍ତଭାବରେ ଜୀବନ ଧାରଣ କରିବି । ଏକାକୀ ବୁଲୁଥିବି କିମ୍ବା ପରମହିତୈଷୀ ସନ୍ଥମାନଙ୍କ ସହିତ ଭ୍ରମଣ କରୁଥିବି ।।୪୫।। ହେ ପ୍ରଭୁ, ଆପଣଙ୍କ ଶାସନରେ ରଖି ମୋତେ ଶିକ୍ଷା ଦିଅନ୍ତୁ ଏବଂ ମୋର ପାପ ଦୂର କରିଦିଅନ୍ତୁ । ଆପଣଙ୍କ ଅନୁଶାସନରେ ଥିବା ଶ୍ରଦ୍ଧାଳୁ ପୁରୁଷମାନେ ସମସ୍ତ ବିଧିନିଷେଧର ବନ୍ଧନରୁ ମୁକ୍ତ ହୋଇଯାଆନ୍ତି ।।୪୬।।

ଭଗବାନ୍ ଶ୍ରୀକୃଷ୍ଣ କହିଲେ, ଦୈତ୍ୟରାଜ, ସ୍ୱାୟମ୍ଭୁବ ମନ୍ୱନ୍ତରରେ ପ୍ରଜାପତି ମରୀଚିଙ୍କ ଔରସରୁ ତାଙ୍କର ପତ୍ନୀ ଊର୍ଣ୍ଣାଙ୍କ ଗର୍ଭରେ ଛ'ଜଣ ପୁତ୍ର ଜନ୍ମ ହୋଇଥିଲେ । ଏହି ଛ'ଜଣ ଦେବତା ଯେତେବେଳେ ଦେଖିଲେ ଯେ ବ୍ରହ୍ମା ନିଜର କନ୍ୟାଙ୍କ ସହିତ ରମଣ କରିବାକୁ ଯାଉଛନ୍ତି, ସେମାନେ ତାଙ୍କୁ ଉପହାସ କଲେ । ବ୍ରହ୍ମା ସେମାନଙ୍କୁ ଅଭିଶାପ ଦେବାରୁ ସେମାନେ ଅସୁରଯୋନିରେ ହିରଣ୍ୟକଶିପୁର ପୁତ୍ରରୂପରେ ଜନ୍ମ ହେଲେ । ଯୋଗମାୟା ସେମାନଙ୍କୁ ସେଠାରୁ ନେଇଯାଇ ଦେବକୀଙ୍କ ଗର୍ଭରେ ସ୍ଥାପନ କଲେ ଏବଂ ଜନ୍ମ ହେବାମାତ୍ରେ କଂସ ସେମାନଙ୍କୁ ଗୋଟି ଗୋଟି କରି ହତ୍ୟା କଲା । ବର୍ତ୍ତମାନ ଦେବକୀ ସେମାନଙ୍କୁ ମନେପକାଇ ଶୋକ କରୁଛନ୍ତି । ଦେବକୀଙ୍କର ସେହି ପୁତ୍ରମାନେ ବର୍ତ୍ତମାନ ତୁମ ପାଖରେ ଅଛନ୍ତି ।।୪୭-୪୯।। ବର୍ତ୍ତମାନ ମାତାଙ୍କର ଶୋକ ଦୂର କରିବାପାଇଁ ମୁଁ ସେମାନଙ୍କୁ ଏଠାରୁ ନେଇଯିବି । ସେମାନଙ୍କର ଦୁଃଖ ଦୂର ହେବ ଏବଂ ସେମାନେ ଶାପମୁକ୍ତ ହୋଇ ଦେବଲୋକକୁ ଫେରିଯିବେ । ସେମାନଙ୍କର ନାମ ହେଲା - ସ୍ମର, ଉଦ୍‌ଗୀଥ, ପରିଷ୍ୱଙ୍ଗ, ପତଙ୍ଗ, କ୍ଷୁଦ୍ରଭୃତ୍ ଓ ଘୃଣୀ । ମୋର ପ୍ରସାଦରୁ ଏହି ଛ'ଜଣ ପୁଣି ସଦ୍‌ଗତି ଲାଭ କରିବେ ।।୫୦-୫୧।। ଏହା କହି ଶ୍ରୀକୃଷ୍ଣ ଓ ବଳରାମ ଦୈତ୍ୟରାଜ ବଳିଙ୍କଦ୍ୱାରା ପୂଜିତ ହୋଇ ମାତା ଦେବକୀଙ୍କର ପୁତ୍ରମାନଙ୍କୁ ସାଙ୍ଗରେ ଧରି ଦ୍ୱାରକାକୁ ଫେରିଆସିଲେ ।।୫୨।। ସେହି ବାଳକମାନଙ୍କୁ ଦେଖି ପୁତ୍ରସ୍ନେହରେ ଦେବକୀଙ୍କର ସ୍ତନରୁ କ୍ଷୀର ବୋହିବାକୁ ଲାଗିଲା । ସେ ସେମାନଙ୍କୁ କୋଳରେ ବସାଇ ଛାତିରେ ଚାପିଧରିଲେ ଏବଂ ବାରମ୍ବାର ସେମାନଙ୍କ ଶିର ଚୁମ୍ବନ କରିଲାଗିଲେ ।।୫୩।। ଯେଉଁ ବିଷ୍ଣୁଙ୍କର ମାୟାରେ ଏହି ଜଗତର ସୃଷ୍ଟି, ସେହି ମାୟାରେ ମୋହିତ ହୋଇ ପୁତ୍ରମାନଙ୍କ ସ୍ପର୍ଶରେ ଦେବକୀଙ୍କ ହୃଦୟ ଭରିଗଲା ଏବଂ ସେ ପୁତ୍ରମାନଙ୍କୁ ସ୍ତନପାନ କରିବାକୁ ଲାଗିଲେ ।।୫୪।। ପୂର୍ବେ ଗଦାଧର ଶ୍ରୀକୃଷ୍ଣ ଯେଉଁ ସ୍ତନ ପାନ କରିଥିଲେ, ସେହି ସ୍ତନରୁ ଅମୃତସ୍ୱରୂପ କ୍ଷୀର ପାନ କରି ଏବଂ ଭଗବାନଙ୍କ ଅଙ୍ଗସ୍ପର୍ଶ ଲାଭ କରି ସେହି କୁମାରମାନଙ୍କର ଆତ୍ମସାକ୍ଷାତ୍‌କାର ହୋଇଗଲା । ସେମାନେ ଦେବକୀ, ବସୁଦେବ, କୃଷ୍ଣ ଓ ବଳରାମଙ୍କୁ ନମସ୍କାର କରି ସମସ୍ତଙ୍କ ସମ୍ମୁଖରେ ଦେବଲୋକକୁ

ପ୍ରସ୍ଥାନ କଲେ ।।୫୫-୫୬।। ପରିକ୍ଷିତ, ମୃତପୁତ୍ରମାନଙ୍କର ଏହିପରି ଆସିବା ଓ ଯିବା ଦେଖି ଦେବକୀ ଆଶ୍ଚର୍ଯ୍ୟ ହୋଇଗଲେ ଏବଂ କୃଷ୍ଣଙ୍କର ମାୟାକୁ ବୁଝିପାରିଲେ ।।୫୭।। ପରିକ୍ଷିତ, ଅନନ୍ତଶକ୍ତିର ଅଧିକାରୀ ପରମାତ୍ମା ଶ୍ରୀକୃଷ୍ଣଙ୍କର ଏହିପରି ଅଦ୍ଭୁତ କାର୍ଯ୍ୟମାନ ରହିଛି, ଯାହାର କି କୌଣସି ଅନ୍ତ ନାହିଁ ।।୫୮।। ସୂତ କହିଲେ, ଶୌନକ, ବ୍ୟାସପୁତ୍ର ଶୁକଦେବଙ୍କଦ୍ୱାରା ବର୍ଣ୍ଣିତ ମୁରାରିଙ୍କର ଏହି ଅମୃତମୟ ଚରିତ ଯେ ଶୁଣେ ବା ଶୁଣାଏ, ଭଗବାନଙ୍କଠାରେ ତାର ଚିତ୍ତବୃତ୍ତି ଲାଗିଯାଏ ଏବଂ ସେ ମଙ୍ଗଳମୟ ଧାମ ପ୍ରାପ୍ତ ହୁଏ । ଭକ୍ତମାନଙ୍କର କର୍ଣ୍ଣାଳଙ୍କାରରୂପେ ସେହି ଚରିତ ଜଗତ୍‌ର ପାପକୁ ସମୂଳେ ନଷ୍ଟ କରିଦିଏ ।।୫୯।।

## ଛୟାଶୀ ଅଧ୍ୟାୟ

# ସୁଭଦ୍ରାହରଣ

ରାଜା ପରିକ୍ଷିତ କହିଲେ, ବ୍ରହ୍ମନ୍, ରାମ ଓ କୃଷ୍ଣଙ୍କର ଭଉଣୀ ମୋର ଜେଜେମା ସୁଭଦ୍ରାଙ୍କୁ ଅର୍ଜୁନ କିପରି ବିବାହ କଲେ, ତାହା ମୁଁ ଜାଣିବାକୁ ଇଚ୍ଛା କରୁଛି ।।୧।। ଶ୍ରୀ ଶୁକଦେବ କହିଲେ, ବୀର ଅର୍ଜୁନ ତୀର୍ଥଯାତ୍ରାରେ ସାରା ପୃଥିବୀ ପର୍ଯ୍ୟଟନ କରି ପ୍ରଭାସ ତୀର୍ଥରେ ପହଞ୍ଚିଲେ ଏବଂ ସେଠାରେ ଶୁଣିବାକୁ ପାଇଲେ ଯେ, ନିଜର ମାମୁଝିଅ ଭଉଣୀ ସୁଭଦ୍ରାଙ୍କୁ ବଳରାମ ଦୁର୍ଯ୍ୟୋଧନଙ୍କୁ ପ୍ରଦାନକରିବେ । କିନ୍ତୁ ଅନ୍ୟମାନେ (କୃଷ୍ଣ ଓ ବସୁଦେବ ଆଦି) ତାହା ଚାହୁ ନାହାନ୍ତି । ସୁଭଦ୍ରାଙ୍କୁ ଲାଭ କରିବା ଇଚ୍ଛାରେ ଅର୍ଜୁନ ଏକ ତ୍ରିଦଣ୍ଡୀ ଯତିରବେଶ ଧାରଣ କରି ଦ୍ୱାରକାରେ ପହଞ୍ଚିଲେ ।।୨-୩।। ନିଜର ସ୍ୱାର୍ଥସାଧନପାଇଁ ସେଠାରେ ସେ ବର୍ଷା ଚାରି ମାସ ଅବସ୍ଥାନ କଲେ । ବଳରାମ ତାଙ୍କୁ ଜାଣିପାରିଲେ ନାହିଁ । ସେ ଓ ପୁରବାସୀମାନେ ତାଙ୍କୁ ବହୁତ ସତ୍କାର କଲେ ।।୪।। ଦିନେ ଅତିଥି ଭାବରେ ନିମନ୍ତ୍ରଣ କରି ବଳରାମ ତାଙ୍କୁ ନିଜ ଘରକୁ ନେଇଆସିଲେ । ଶ୍ରଦ୍ଧାରେ ସେ ଅର୍ଜୁନଙ୍କୁ ଯେଉଁ ସବୁ ଭିକ୍ଷାନ୍ନ ପ୍ରଦାନ କଲେ, ତାହା ସେ ଆନନ୍ଦରେ ଭୋଜନ କଲେ ।।୫।। ସେଠାରେ ସେ ବୀରମାନଙ୍କର ହୃଦୟ ହରଣ କରୁଥିବା ଏକ ସୁନ୍ଦରୀ କନ୍ୟାଙ୍କୁ ଦେଖିଲେ । ତାଙ୍କୁ ଦେଖିବା ମାତ୍ରେ ଅର୍ଜୁନଙ୍କର ଚକ୍ଷୁ ଆନନ୍ଦରେ ଉତ୍‌ଫୁଲ୍ଲ ହୋଇଉଠିଲା ଏବଂ କାମବଶରେ ତାଙ୍କ ମନ କ୍ଷୁବ୍ଧ ହୋଇ ସୁଭଦ୍ରାଙ୍କଠାରେ ଲାଗିରହିଲା ।।୬।। ନାରୀମାନଙ୍କ ହୃଦୟ ଜିଣି ପାରୁଥିବା ଅର୍ଜୁନଙ୍କୁ ଦେଖି ସୁଭଦ୍ରା କାମାସକ୍ତ ହେଲେ । ସେ ଅଳ୍ପ ହସି ସଲଜ୍ଜ ନେତ୍ରକୋଣଦ୍ୱାରା ଅର୍ଜୁନଙ୍କ ଠାରେ ନିଜର ମନ ଓ ନୟନକୁ ଅର୍ପଣକଲେ ।।୭।। ଏହାପରେ ଅର୍ଜୁନ କେବଳ ସୁଭଦ୍ରାଙ୍କୁ ଭାବି ଭାବି ତାଙ୍କୁ ପାଇବାର ଇଚ୍ଛାରେ ସୁଯୋଗ ଖୋଜିଲାଗିଲେ । ସେହି ଚିନ୍ତାରେ ତାଙ୍କର ହୃଦୟ ଭ୍ରମିବାକୁ ଲାଗିଲା ଏବଂ ତାଙ୍କୁ ଆଉ ଶାନ୍ତି ମିଳିଲା ନାହିଁ ।।୮।। ଥରେ ଏକ ବଡ଼ ଧରଣର ଦେବଯାତ୍ରା ଉପଲକ୍ଷରେ ରଥରେ ବସି ସୁଭଦ୍ରା ଦୁର୍ଗର ବାହାରକୁ ଆସିଯାଇଥିଲେ । ମହାବୀର ଅର୍ଜୁନ ସୁଭଦ୍ରାଙ୍କ ପିତାମାତା (ବସୁଦେବ ଓ ଦେବକୀ) ଓ ଭାଇ (କୃଷ୍ଣ)ଙ୍କର ଅନୁମତି ଲାଭ କରି ସୁଭଦ୍ରାଙ୍କୁ ହରଣ କଲେ ।।୯।। ଯେଉଁ ବୀର ଯୋଦ୍ଧାମାନେ ତାଙ୍କୁ ଚାରିଆଡୁ ବାଧା ଦେବାକୁ ଆସିଲେ, ବୀର ଅର୍ଜୁନ ରଥରେ ବସି ଧନୁଧାରଣ ପୂର୍ବକ ସେଇ ସମସ୍ତଙ୍କୁ ମାରି ଘଉଡ଼ାଇ ଦେଲେ, ଏବଂ ନିଜ ଲୋକେ ପାଟି କରୁ କରୁ (ସେମାନଙ୍କ ଆଗରେ) ସିଂହ ତାର ଭାଗକୁ ହରଣ କରିବା ପରି ସୁଭଦ୍ରାଙ୍କୁ ହରଣକଲେ ।।୧୦।। ଅମାବାସ୍ୟାରେ (ଓ ପୂର୍ଣ୍ଣିମାରେ) ମହାସମୁଦ୍ର ଯେପରି ଫୁଲିଉଠେ, ବଳରାମ ତାହା ଶୁଣି ସେହିପରି ରାଗରେ ଫୁଲିଉଠିଲେ । ସେତେବେଳେ ଶ୍ରୀକୃଷ୍ଣ ଓ ଅନ୍ୟ ଜ୍ଞାତି ବନ୍ଧୁମାନେ ତାଙ୍କ ପାଦଧରି ତାଙ୍କୁ ଶାନ୍ତ କଲେ ।।୧୧।। ଏହାପରେ ଶାନ୍ତ ବଳରାମ ପ୍ରସନ୍ନ ହୋଇ ବହୁ ଧନସମ୍ପତ୍ତି, ବହୁମୂଲ୍ୟ ଅଳଙ୍କାର, ହାତୀ, ରଥ, ଅଶ୍ୱ ଓ ଦାସଦାସୀଙ୍କୁ ବରବଧୂଙ୍କ ଯୌତୁକସ୍ୱରୂପ ପଠାଇଦେଲେ ।।୧୨।।

ଶ୍ରୀ ଶୁକଦେବ କହିଲେ, ପରିକ୍ଷିତ, ଭଗବାନ୍ ଶ୍ରୀକୃଷ୍ଣଙ୍କର ଅନନ୍ୟଭକ୍ତ ଶ୍ରୁତଦେବ ନାମରେ ଜଣେ ବ୍ରାହ୍ମଣ ଥିଲେ । ସେ ପରମଜ୍ଞାନୀ ଥିଲେ । ତାଙ୍କର ବିଷୟଭୋଗପାଇଁ କୌଣସି ଅଭିଳାଷ ନ ଥିଲା । ସେ ଶାନ୍ତ ଓ ଅନାସକ୍ତ ଭାବରେ ରହୁଥିଲେ । ଏହି ଦ୍ୱିଜଶ୍ରେଷ୍ଠ ବିଦେହର ରାଜଧାନୀ ମିଥିଳାରେ ଜଣେ ଗୃହସ୍ଥ ଥିଲେ ଏବଂ ବିନା ଚେଷ୍ଟାରେ ଯାହା ଭୋଗ୍ୟ ପଦାର୍ଥ ମିଳିଯାଉଥିଲା, ସେଥିରେ ସେ ନିଜର କ୍ରିୟାକର୍ମ ଚଳାଇ ନେଉଥିଲେ ॥୧୩-୧୪॥ ଜୀବନଯାତ୍ରାପାଇଁ ପ୍ରତିଦିନ ଯେତିକି ଆବଶ୍ୟକ ଦୈବାତ୍ ତାଙ୍କୁ ସେତିକି ମିଳିଯାଉଥିଲା, ତାହାଠାରୁ ଅଧିକ ନୁହେଁ, ଏବଂ ସେତିକିରେ ସନ୍ତୁଷ୍ଟ ହୋଇ ସେ ଯଥୋଚିତ କ୍ରିୟାମାନ କରୁଥିଲେ ॥୧୫॥ ପରିକ୍ଷିତ, ସେ ସମୟରେ ବହୁଳାଶ୍ୱ ନାମରେ ଜଣେ ରାଜା ମିଥିଳାରେ ରାଜପଣ କରୁଥିଲେ । ସେ ଅତ୍ୟନ୍ତ ନିରହଙ୍କାର ଥିଲେ ଏବଂ ସେ ରାଜା ଓ ବ୍ରାହ୍ମଣ ଉଭୟେ କୃଷ୍ଣଙ୍କର ପରମଭକ୍ତ ଥିଲେ ॥୧୬॥ ଦୁହିଁଙ୍କ ପ୍ରତି ପ୍ରସନ୍ନ ହୋଇ ଭଗବାନ୍ ଶ୍ରୀକୃଷ୍ଣ ସାରଥି ଦାରୁକକୁ ଡକାଇ ରଥାରୋହଣପୂର୍ବକ ମୁନିମାନଙ୍କ ସହ ବିଦେହ ଯାତ୍ରା କଲେ ॥୧୭॥ ନାରଦ, ବାମଦେବ, ଅତ୍ରି, ବ୍ୟାସ, ପର୍ଶୁରାମ, ଅସିତ, ଅରୁଣି,ବୃହସ୍ପତି, କଣ୍ୱ, ମୈତ୍ରେୟ, ମୁଁ ନିଜେ (ଶୁକଦେବ) ଓ ଚ୍ୟବନ ଆଦି ମୁନିମାନେ ସମସ୍ତେ ଭଗବାନ୍ ଶ୍ରୀକୃଷ୍ଣଙ୍କ ସହ ବିଦେହଯାତ୍ରା କରିଥିଲେ ॥୧୮॥ ପରିକ୍ଷିତ, ଭିନ୍ନ ଭିନ୍ନ ସ୍ଥାନରେ ସେ ପହଞ୍ଚିବାମାତ୍ରେ ନଗରବାସୀ ଓ ଗ୍ରାମବାସୀମାନେ ହାତରେ ପୂଜା ଦ୍ରବ୍ୟମାନ ଧରି ତାଙ୍କୁ ପୂଜା କରୁଥିଲେ । ସେମାନଙ୍କ ଗହଣରେ ଭଗବାନ୍ ଶ୍ରୀକୃଷ୍ଣ ଗ୍ରହମାନଙ୍କଦ୍ୱାରା ପୂଜିତ ହେଉଥିବା ଉଦିତ ସୂର୍ଯ୍ୟଙ୍କ ପରି ଦେଖାଯାଉଥିଲେ ॥୧୯॥ ପରିକ୍ଷିତ, ଆନର୍ତ୍ତ, ମରୁ, କୁରୁଜାଙ୍ଗଳ, କଙ୍କ, ମତ୍ସ୍ୟ, ପାଞ୍ଚାଳ, କୁନ୍ତି, ମଧୁ, କେକୟ, କୋଶଳ, ଅର୍ଣ ଓ ଅନ୍ୟ ଦେଶର ନରନାରୀମାନେ କୃଷ୍ଣଙ୍କୁ ଦେଖିବାପାଇଁ ଜମା ହେଉଥିଲେ ଏବଂ ଶ୍ରୀକୃଷ୍ଣଙ୍କର ଉଦାର ହାସ୍ୟ ଓ ସ୍ନେହପୂର୍ଣ୍ଣ ଦୃଷ୍ଟିଯୁକ୍ତ ମୁଖପଦ୍ମକୁ ନିଜ ନିଜ ନୟନଦ୍ୱାରା ପିଇଯାଉଥିଲେ ॥୨୦॥ ତ୍ରିଲୋକର ଗୁରୁ ଭଗବାନ୍ ଶ୍ରୀକୃଷ୍ଣଙ୍କର ଦର୍ଶନମାତ୍ରକେ ସେମାନଙ୍କ ଅଜ୍ଞାନ ଦୃଷ୍ଟି ନଷ୍ଟ ହୋଇଗଲା । ଭଗବାନ୍ ନିଜ ଦୃଷ୍ଟିଦ୍ୱାରା ସେମାନଙ୍କୁ ମଙ୍ଗଳ ଓ ତତ୍ତ୍ୱଜ୍ଞାନ ଦେଇ ଦେଇ ଯାଉଥିଲେ । ତାଙ୍କ ଅଶୁଭନାଶକ ଓ ଦିଗନ୍ତ-ଧବଳ ଯଶକୁ ଦେବତା ଓ ମନୁଷ୍ୟମାନେ ଗାନକରୁଥିଲେ । ତାହାକୁ ଶୁଣି ଶୁଣି ଭଗବାନ୍ ଶ୍ରୀକୃଷ୍ଣ ଧୀରେ ଧୀରେ ବିଦେହ ଦେଶରେ ପହଞ୍ଚିଲେ ॥୨୧॥

ପରିକ୍ଷିତ, ବିଦେହ ଦେଶର ନଗରବାସୀ ଓ ଗ୍ରାମବାସୀ ଶ୍ରୀକୃଷ୍ଣ ଆସିଗଲେଣି ଶୁଣି ଆନନ୍ଦରେ ପୂଜା ଉପହାର ଧରି ତାଙ୍କୁ ଭେଟିବାପାଇଁ ବାହାରି ଆସିଲେ ॥୨୨॥ ଉତ୍ତମଶ୍ଳୋକ ଭଗବାନ୍ ଶ୍ରୀକୃଷ୍ଣଙ୍କୁ ଦେଖି ଓ ପୂର୍ବରୁ ଶୁଣିଥିବା ମୁନିମାନଙ୍କୁ ଦେଖି ସେମାନଙ୍କ ଅନ୍ତଃକରଣ ଓ ମୁଖ ଆନନ୍ଦରେ ଉତ୍‌ଫୁଲ୍ଲ ହେଲା । ସେମାନେ କୃତାଞ୍ଜଳି ହୋଇ ପ୍ରଣାମକଲେ ॥୨୩॥ ମିଥିଳା ନରେଶ ବହୁଳାଶ୍ୱ ଓ ବ୍ରାହ୍ମଣ ଶ୍ରୁତଦେବ ଜଗଦ୍‌ଗୁରୁ ଶ୍ରୀକୃଷ୍ଣ ତାଙ୍କ ଦୁହିଁଙ୍କୁ ଅନୁଗ୍ରହ କରିବାକୁ ଆସିଛନ୍ତି ବୋଲି ମନେକରି ପ୍ରଭୁଙ୍କ ପାଦତଳେ ପଡ଼ିଗଲେ ॥୨୪॥ ତା'ପରେ ସେ ଦୁହେଁ କୃତାଞ୍ଜଳି ହୋଇ ମୁନିମାନଙ୍କସହିତ ଯଦୁଶ୍ରେଷ୍ଠ ଶ୍ରୀକୃଷ୍ଣଙ୍କୁ ନିଜ ନିଜ ଗୃହରେ ଆତିଥ୍ୟ ଗ୍ରହଣପାଇଁ ନିମନ୍ତ୍ରଣ କଲେ । ଭଗବାନ ଶ୍ରୀକୃଷ୍ଣ ଉଭୟଙ୍କର ନିମନ୍ତ୍ରଣ ସ୍ୱୀକାରକଲେ ଏବଂ ଉଭୟଙ୍କର ପ୍ରିୟ ସାଧନପାଇଁ ଉଭୟଙ୍କ ଗୃହରେ ଏକସମୟରେ ସମାନରୂପରେ ପ୍ରବେଶ କଲେ ॥୨୫-୨୬॥ ଅସାଧୁ ଲୋକମାନଙ୍କପାଇଁ ଯେଉଁ ଭଗବାନଙ୍କର ଦର୍ଶନ ଦୂରେ ଥାଉ ତାଙ୍କର ନାମ ମଧ୍ୟ ଶୁଣିବା ଦୁର୍ଲଭ, ସେହି ଭଗବାନ୍ ଜନକବଂଶୀୟ ରାଜା ବହୁଳାଶ୍ୱଙ୍କ ଗୃହରେ ମୁନିମାନଙ୍କସହିତ ଉପସ୍ଥିତ ହୋଇଛନ୍ତି, ଏଥିରେ ରାଜାଙ୍କର ହୃଦୟ ଆନନ୍ଦରେ ଉଚ୍ଛୁଳି ପଡୁଥିଲା ଏବଂ ଚକ୍ଷୁରୁ ଲୋତକର ଧାର ବହିଯାଉଥିଲା । ସେ ଅତିଶୟ ଭକ୍ତିରେ ନଇଁପଡ଼ି ତାଙ୍କର ପାଦପ୍ରକ୍ଷାଳନ କଲେ ଏବଂ ସକୁଟୁମ୍ବ ସେହି ପାଦୋଦକକୁ ମସ୍ତକରେ ଧାରଣକରି ଭଗବାନଙ୍କୁ ଉତ୍ତମ ଆସନରେ ବସାଇ ପୂଜାକଲେ । ଗନ୍ଧ, ମାଲ୍ୟ, ବସ୍ତ୍ର, ଅଳଙ୍କାର, ଧୂପ, ଦୀପ ଓ ଗାଭି ଓ ବୃଷଭମାନ ସମର୍ପଣକରି ତାଙ୍କର ଅର୍ଚ୍ଚନାକଲେ ॥୨୭-୨୯॥ ଭଗବାନ୍ ଭୋଜନସାରିବା ପରେ ତାଙ୍କ ପାଦ ଦୁଇଟିକୁ ନିଜ କୋଳରେ ଧରି ରାଜା ଅତି ଆନନ୍ଦରେ ତାହାକୁ ମଞ୍ଜାଳି ମଞ୍ଜାଳି ଧୀର ଓ ମଧୁର ସ୍ୱରରେ ଭଗବାନଙ୍କୁ ସ୍ତୁତି କରିବାକୁ ଲାଗିଲେ ॥୩୦॥

ରାଜା ବହୁଳାଶ୍ୱ କହିଲେ, ପ୍ରଭୁ, ଆପଣ ସ୍ୱୟଂ ପ୍ରକାଶମାନ; ସମସ୍ତ ପ୍ରାଣୀଙ୍କର ଆତ୍ମା ଏବଂ ସାକ୍ଷିସ୍ୱରୂପ । ସେଥିପାଇଁ ଆପଣଙ୍କ ପାଦପଦ୍ମକୁ ସ୍ମରଣ କରୁଥିବା ଆମମାନଙ୍କୁ ଆପଣ ଆଜି ଦର୍ଶନ ଦେଇଛନ୍ତି ।।୩୧।। ପ୍ରଭୁ, 'ମୋର ଏକାନ୍ତ ଭକ୍ତ ଅପେକ୍ଷା ଅନନ୍ତଦେବ, ଲକ୍ଷ୍ମୀଦେବୀ ଓ ପୁତ୍ର ବ୍ରହ୍ମା ମଧ୍ୟ ମୋର ଅଧିକ ପ୍ରିୟ ନୁହନ୍ତି' ବୋଲି ଆପଣ ଯାହା କହିଛନ୍ତି, ତାହା ସତ୍ୟବୋଲି ପ୍ରମାଣିତ କରିବା ପାଇଁ ଆପଣ ଆମମାନଙ୍କୁ ଦର୍ଶନ ଦେଇଛନ୍ତି । ଆପଣ ଅକିଞ୍ଚନ ପ୍ରଶାନ୍ତଚେତା ମୁନିମାନଙ୍କୁ ନିଜକୁ ମଧ୍ୟ ଦେଇଦିଅନ୍ତି -- ଏହା ଜାଣି କେଉଁ ବ୍ୟକ୍ତି ଆପଣଙ୍କ ପାଦପଦ୍ମକୁ ଛାଡ଼ିପାରିବ ? ।।୩୨-୩୩।। ବାରମ୍ବାର ଜନ୍ମମରଣ ଦୁଃଖରେ ଘାଣ୍ଟି ହେଉଥିବା ଲୋକମାନଙ୍କ ଦୁଃଖ ମୋଚନ କରିବାପାଇଁ ଆପଣ ଯଦୁବଂଶରେ ଅବତୀର୍ଣ୍ଣ ହୋଇ ତ୍ରୈଲୋକ୍ୟର ପାପ ହରଣକାରୀ ଯଶ ବିସ୍ତାର କରିଛନ୍ତି ।।୩୪।। ହେ ସୁଶାନ୍ତ, ତପସ୍ୟାରତ ନାରାୟଣ ଋଷି, ଆପଣଙ୍କ କାମର କଳନା ନାହିଁ । ହେ ଭଗବାନ୍ କୃଷ୍ଣ, ମୁଁ ଆପଣଙ୍କୁ ନମସ୍କାର କରୁଛି ।।୩୫।। ମହାମହିମ, ଦ୍ୱିଜମାନଙ୍କ ସହିତ କିଛିଦିନ ଆମ ଗୃହରେ ଆପଣ ଅବସ୍ଥାନ କରନ୍ତୁ ଏବଂ ଆପଣଙ୍କ ପଦଧୂଳି ଦ୍ୱାରା ନିମିଙ୍କର ବଂଶକୁ ପବିତ୍ର କରନ୍ତୁ ।।୩୬।। ରାଜା ପରିକ୍ଷିତ, ରାଜା ବହୁଳାଶ୍ୱଙ୍କ ଦ୍ୱାରା ଏହିପରି ନିମନ୍ତ୍ରିତ ହୋଇ ଲୋକପାଳକ ଭଗବାନ୍ ଶ୍ରୀକୃଷ୍ଣ ମିଥିଳାବାସୀ ନରନାରୀଙ୍କର କଲ୍ୟାଣ କରିବାପାଇଁ ସେଠାରେ ଅବସ୍ଥାନ କଲେ ।।୩୭।।

ପରିକ୍ଷିତ, ରାଜା ବହୁଳାଶ୍ୱଙ୍କ ପରି ଶ୍ରୁତଦେବ ମଧ୍ୟ ନିଜ ଗୃହରେ ଭଗବାନ୍ ଶ୍ରୀକୃଷ୍ଣ ଓ ମୁନିମାନଙ୍କୁ ଲାଭକରି ପ୍ରଣାମ କଲେ ଏବଂ ଅତିଶୟ ଆନନ୍ଦରେ ନିଜର ଉତ୍ତରୀୟକୁ ହଲାଇ ହଲାଇ ନାଚିବାକୁ ଲାଗିଲେ-- ।।୩୮।। ତାପରେ ସେ କୁଶ ଓ ଘାସର ଆସନମାନ ଆଣି ଭଗବାନ୍ ଶ୍ରୀକୃଷ୍ଣଙ୍କୁ ଓ ମୁନିମାନଙ୍କୁ ସେଥିରେ ବସାଇଲେ ଏବଂ ସ୍ୱାଗତ ଅଭିନନ୍ଦନ ଜଣାଇ ନିଜ ଭାର୍ଯ୍ୟାଙ୍କ ସହିତ ଆନନ୍ଦରେ ସେମାନଙ୍କ ପାଦପ୍ରକ୍ଷାଳନ କଲେ ।।୩୯।। ଶ୍ରୁତଦେବ ବହୁଭାଗ୍ୟବାନ୍ ଥିଲେ । ତାଙ୍କର ସମସ୍ତ ମନୋରଥ ପୂର୍ଣ୍ଣ ହୋଇଗଲା । ସେ ଭଗବାନ୍ ଶ୍ରୀକୃଷ୍ଣଙ୍କର ଓ ଋଷିମାନଙ୍କର ପାଦୋଦକକୁ ଅତିଶୟ ଆନନ୍ଦରେ ନିଜେ ଛିଞ୍ଚି ହେଲେ ଏବଂ ଅନ୍ୟ ଜ୍ଞାତି କୁଟୁମ୍ବଙ୍କ ଉପରେ ମଧ୍ୟ ଛିଞ୍ଚିଲେ ।।୪୦।। ପୁଣି ଶ୍ରୁତଦେବ ଅଁଳା ଆଦି ବିଭିନ୍ନ ଫଳ, ଗନ୍ଧ, ପୁଷ୍ପ ଆଦି ପୂଜାଦ୍ରବ୍ୟ, ସୁବାସିତ ବେଣାଚେର, ଅମୃତକଳ୍ପ ଶୀତଳ ଜଳ, ସୁଗଂଧ ମୃତ୍ତିକା, ତୁଳସୀ, କୁଶ, ପଦ୍ମ, ଏବଂ ବଳବର୍ଦ୍ଧକ ଅନ୍ନଦ୍ୱାରା ସେମାନଙ୍କୁ ଆରାଧନା କଲେ ।।୪୧।। ଦ୍ୱିଜଶ୍ରେଷ୍ଠ ଶ୍ରୁତଦେବ ମନେ ମନେ ଭାବିଲେ, ମୁଁ ଗୃହରୂପକ ଅନ୍ଧକୂପରେ ପଡ଼ି ରହିଥିଲି । ଯାହାଙ୍କ ପାଦଧୂଳି ସମସ୍ତ ତୀର୍ଥର ଆଶ୍ରୟସ୍ୱରୂପ ଏବଂ ଯେଉଁ ଶ୍ରୀକୃଷ୍ଣଙ୍କର ସ୍ୱରୂପ ଦେବତାରୂପୀ ମୁନିମାନେ ସର୍ବଦା ଧ୍ୟାନ କରନ୍ତି, ସେହି ଶ୍ରୀକୃଷ୍ଣ ଓ ମୁନିମାନଙ୍କ ସହିତ ମୋର ଏହି ମିଳନ କିପରି ସମ୍ଭବ ହୋଇପାରିଲା ! ।।୪୨।।

ବ୍ରାହ୍ମଣଙ୍କର ଆତିଥ୍ୟ ସ୍ୱୀକାର କରି ସମସ୍ତେ ସୁଖରେ ଉପବେଶନ କଲେ । ତା'ପରେ ନିଜର ସ୍ତ୍ରୀ, ପୁତ୍ର, ଜ୍ଞାତି, କୁଟୁମ୍ବଙ୍କ ସହିତ ଶ୍ରୁତଦେବ ଶ୍ରୀକୃଷ୍ଣଙ୍କ ପାଦ ସ୍ପର୍ଶକରି କହିଲେ ।।୪୩।। ଶ୍ରୁତଦେବ କହିଲେ, ପରମପୁରୁଷ, ଆପଣ ଏହି ଜଗତକୁ ସୃଷ୍ଟି କରି ନିଜ ଶକ୍ତିରେ ସତ୍ତ୍ୱାଦିଗୁଣଦ୍ୱାରା ଅନ୍ତର୍ଯାମୀରୂପେ ସମସ୍ତଙ୍କ ହୃଦୟରେ ପ୍ରବେଶ କରିଛନ୍ତି । କିନ୍ତୁ ଆଜି ହିଁ ଆପଣଙ୍କର ସ୍ୱରୂପ ଆମେ ଦର୍ଶନକଲୁ ।।୪୪।। ସୁପ୍ତ ବ୍ୟକ୍ତି ନିଜର ଅବିଦ୍ୟାଯୋଗୁଁ ଯେପରି ଏକ ସ୍ୱପ୍ନଜଗତ ସୃଷ୍ଟି କରେ ଏବଂ ତା ମଧ୍ୟରେ ପ୍ରବେଶ କରି ନାନା କାର୍ଯ୍ୟ କରିଥାଏ, ଆପଣ ସେହିପରି ଆତ୍ମମାୟାରେ ଏହି ଜଗତକୁ ସୃଷ୍ଟିକରି ତା ମଧ୍ୟରେ ପ୍ରବେଶ କରିଛନ୍ତି ଏବଂ ଅନେକ ରୂପରେ ଦେଖା ଯାଉଛନ୍ତି ।।୪୫।। ଯେଉଁମାନେ ଆପଣଙ୍କ କଥା ଶୁଣନ୍ତି, ଆଲୋଚନା କରନ୍ତି ଓ କହନ୍ତି, ଏବଂ ଆପଣଙ୍କୁ ଅର୍ଚ୍ଚନ ଓ ଅଭିବନ୍ଦନ କରନ୍ତି ସେମାନଙ୍କର ନିର୍ମଳ ହୃଦୟରେ ଆପଣ ପ୍ରକାଶିତ ହୁଅନ୍ତି ।।୪୬।। ଆପଣ ସମସ୍ତଙ୍କ ହୃଦୟରେ ରହିଥା'ନ୍ତି; କିନ୍ତୁ ନାନା କର୍ମରେ ଯେଉଁମାନଙ୍କର ଚିତ୍ତ ବିଚଳିତ, ସେମାନଙ୍କଠାରୁ ଆପଣ ଦୂରେଇ ରହନ୍ତି । କାରଣ ନିଜର ଅହଙ୍କାରଯୋଗୁଁ ସେମାନେ ଆପଣଙ୍କୁ ଗ୍ରହଣ କରି ପାରନ୍ତି ନାହିଁ । କିନ୍ତୁ ଯେଉଁମାନେ ଆପଣଙ୍କର ଶ୍ରବଣ, କୀର୍ତ୍ତନ ଆଦି ସଂସ୍କାରଦ୍ୱାରା ନିଜର ଅନ୍ତଃକରଣକୁ ଶୁଦ୍ଧ ରଖିଥା'ନ୍ତି, ଆପଣ ସେମାନଙ୍କର ନିକଟବର୍ତ୍ତୀ

ହୁଅନ୍ତି ॥୪୭॥ ଦେହାଦି ଅହଙ୍କାର ନ ଥିବା ଆତ୍ମଜ୍ଞାନୀମାନଙ୍କର ଆପଣ ପରମାତ୍ମାରୂପେ ବିଦ୍ୟମାନ । କିନ୍ତୁ ଯେଉଁମାନେ ଆତ୍ମତତ୍ତ୍ୱକୁ ଜାଣନ୍ତି ନାହିଁ, ଦେହକୁ ଆତ୍ମାରୂପେ ବିଚାରକରନ୍ତି, ସେମାନେ ଆପଣଙ୍କୁ ଲାଭ କରନ୍ତିନାହିଁ, କେବଳ ସଂସାରରୂପକ ଜନ୍ମ-ମରଣକୁ ଲାଭ କରନ୍ତି । ଆପଣ ଭକ୍ତକୁ ଅନୁଗ୍ରହ ଓ ଅଭକ୍ତଙ୍କୁ ନିଗ୍ରହ କରିବାପାଇଁ ଅବତାର-ଶରୀର ଗ୍ରହଣ କରନ୍ତି । ଆପଣଙ୍କ ମାୟାଶକ୍ତି ପ୍ରଭାବରୁ ସେମାନଙ୍କର ଦୃଷ୍ଟିଶକ୍ତି ଘୋଡ଼ାଇ ହୋଇପଡ଼େ । ମୁଁ ଆପଣଙ୍କୁ ନମସ୍କାର କରୁଛି ॥୪୮॥ ଦେବ, ଆମେମାନେ ଆପଣଙ୍କର ଭୃତ୍ୟ । ଆପଣଙ୍କର ଆମେ କି ସେବା କରିବୁ, ଆଦେଶ ଦିଅନ୍ତୁ । ଆପଣ ଦୃଷ୍ଟିଗୋଚର ହେବାମାତ୍ରେ ଲୋକଙ୍କର ଦୁଃଖକଷ୍ଟ ଦୂର ହୋଇଯାଏ ॥୪୯॥

ଶ୍ରୀଶୁକଦେବ କହିଲେ, ଶରଣାଗତଙ୍କର ଦୁଃଖହାରୀ ଭଗବାନ୍ ଶ୍ରୀକୃଷ୍ଣ ବ୍ରାହ୍ମଣଙ୍କର ଏପରି କଥା ଶୁଣି ତାଙ୍କ ହାତକୁ ନିଜ ହାତରେ ଧରି ହସିହସି ଏହିପରି କହିଲେ-- ॥୫୦॥ ଶ୍ରୀ ଭଗବାନ୍ କହିଲେ, ବ୍ରାହ୍ମଣ, ତୁମେ ଜାଣିରଖ ଯେ ତୁମକୁ ଅନୁଗ୍ରହ କରିବାପାଇଁ ଏହି ମୁନିମାନେ ଏଠାରେ ଉପସ୍ଥିତ ହୋଇଛନ୍ତି । ସେମାନଙ୍କର ପଦଧୂଳିଦ୍ୱାରା ଲୋକମାନଙ୍କୁ ପବିତ୍ର କରି କରି ସେମାନେ ମୋ ସହିତ ବିଚରଣ କରନ୍ତି ॥୫୧॥ ଦେବତା, ପୁଣ୍ୟକ୍ଷେତ୍ର ଓ ତୀର୍ଥମାନେ ଦର୍ଶନ, ସ୍ପର୍ଶନ ଓ ବହୁକାଳ ଅର୍ଚ୍ଚନଦ୍ୱାରା ଧୀରେ ଧୀରେ ପବିତ୍ର ହୁଅନ୍ତି ଏବଂ ତାହା ସମ୍ଭବ ହୁଏ ଭଗବତ୍‌ଭକ୍ତ ସାଧୁମାନଙ୍କ ଦୃଷ୍ଟି ପକାଇଥିବାଯୋଗୁଁ ॥୫୨॥ ଏହି ସଂସାରରେ ଜନ୍ମଦ୍ୱାରା ବ୍ରାହ୍ମଣ ସବୁ ପ୍ରାଣୀମାନଙ୍କ ମଧ୍ୟରେ ଶ୍ରେଷ୍ଠ । ସେ ତପସ୍ୟା, ବିଦ୍ୟା, ସନ୍ତୋଷ ଏବଂ ମୋର ଉପାସନାଦ୍ୱାରା ଯୁକ୍ତ । ତେଣୁ ସେ ଶ୍ରେଷ୍ଠ ନ ହେବ କାହିଁକି ? ॥୫୩॥ ବ୍ରାହ୍ମଣଙ୍କଠାରୁ ମୋର ଏହି ଚତୁର୍ଭୁଜ ରୂପ ଅଧିକ ପ୍ରିୟ ନୁହେଁ । କାରଣ ବ୍ରାହ୍ମଣ ସର୍ବବେଦମୟ ଏବଂ ମୁଁ ସର୍ବଦେବମୟ ॥୫୪॥ ମନ୍ଦବୁଦ୍ଧି ଲୋକମାନେ ଏହିପ୍ରକାରେ ବ୍ରାହ୍ମଣଙ୍କର ପ୍ରଭାବ ଜାଣିନପାରି ତାଙ୍କପ୍ରତି ଅସୂୟାଭାବ ରଖି ଏବଂ ପ୍ରତିମା ପୂଜା କରି ଗୁରୁସ୍ୱରୂପ, ମୋ' ସ୍ୱରୂପ ଓ ଆତ୍ମା ସ୍ୱରୂପ ବ୍ରାହ୍ମଣଙ୍କୁ ଅବଜ୍ଞା କରନ୍ତି ॥୫୫॥ ବ୍ରାହ୍ମଣ ଏହି ଚରାଚର ବିଶ୍ୱର କାରଣ ସ୍ୱରୂପ ମହତ୍ ଆଦି ବସ୍ତୁମାନଙ୍କ ମଧ୍ୟରେ ମୋର ରୂପକୁ ହିଁ ଦେଖିଥା'ନ୍ତି । ଏହିପରି ଚାରିଆଡ଼େ ମୋର ସ୍ୱରୂପ ଦର୍ଶନକରି ମୋତେ ହିଁ ସେମାନେ ହୃଦୟରେ ଧାରଣ କରିଥା'ନ୍ତି ॥୫୬॥ ତେଣୁ ହେ ଶ୍ରୁତଦେବ, ମୋ ପ୍ରତି ତୁମର ଯେତିକି ଶ୍ରଦ୍ଧାଭକ୍ତି ରହିଛି, ସେତିକି ଶ୍ରଦ୍ଧାଭକ୍ତିଦ୍ୱାରା ତୁମେ ଏହି ବ୍ରହ୍ମର୍ଷିମାନଙ୍କୁ ପୂଜା କର । ତା'ହେଲେ ମୋର ସାକ୍ଷାତ୍‌ପୂଜା ହେଲା ବୋଲି ମୁଁ ଅନୁଭବ କରିବି, ଅନ୍ୟଥା ପ୍ରଚୁର ବିଭବଦ୍ୱାରା ମୋର ପୂଜା କରାଗଲେ ମୁଁ ତାକୁ ପୂଜା ବୋଲି ଗ୍ରହଣ କରିବି ନାହିଁ ॥୫୭॥ ଶ୍ରୀଶୁକଦେବ କହିଲେ, ବିପ୍ର ଶ୍ରୁତଦେବ ଏହିପ୍ରକାରେ ପ୍ରଭୁଙ୍କଦ୍ୱାରା ଆଦିଷ୍ଟ ହୋଇ ଏକାନ୍ତ ନିଷ୍ଠା ଓ ଭକ୍ତିରେ କୃଷ୍ଣଙ୍କ ସହ ଦ୍ୱିଜଶ୍ରେଷ୍ଠମାନଙ୍କୁ ଆରାଧନା କରି ସଦ୍‌ଗତି ଲାଭକଲେ ଏବଂ ମିଥିଳାରାଜ ବହୁଳାଶ୍ୱ ମଧ୍ୟ ତାହା ଲାଭକଲେ ॥୫୮॥ ରାଜା ପରିକ୍ଷିତ, ଭକ୍ତଙ୍କୁ ଭକ୍ତି କରୁଥିବା ଭଗବାନ୍ ଶ୍ରୀକୃଷ୍ଣ ଏହିପରି ଭକ୍ତ ବହୁଳାଶ୍ୱ ଓ ଶ୍ରୁତଦେବଙ୍କ ସହିତ କିଛିଦିନ ବାସ କରି ଏବଂ ଦୁହିଁଙ୍କୁ ସତ୍‌ମାର୍ଗର ଉପଦେଶ ଦେଇ ଦ୍ୱାରକାକୁ ଫେରିଆସିଲେ ॥୫୯॥

## ସତାଶୀ ଅଧ୍ୟାୟ

# ବେଦସ୍ତୁତି

ରାଜା ପରିକ୍ଷିତ ପଚାରିଲେ, ବ୍ରହ୍ମନ୍, ବ୍ରହ୍ମ ତ୍ରିଗୁଣାତୀତ, କାର୍ଯ୍ୟ ଓ କାରଣରହିତ ; ସମସ୍ତ ସୂକ୍ଷ୍ମ ଓ ସ୍ଥୁଳ ବସ୍ତୁ ଠାରୁ ଭିନ୍ନ । ତେଣୁ ସତ୍ତ୍ୱ, ରଜ ଓ ତମ -- ଏହି ତିନି ଗୁଣର ବୃତ୍ତି ଯାହାଙ୍କର ସେଇ ବେଦମାନେ କିପରି ନିର୍ଗୁଣ ବ୍ରହ୍ମରେ ବିଚରଣ କରିବେ ? ॥୧॥ ଶ୍ରୀ ଶୁକଦେବ କହିଲେ, ଭଗବାନ୍ ଜୀବପାଇଁ ବୁଦ୍ଧି, ଇନ୍ଦ୍ରିୟ, ମନ ଓ ପ୍ରାଣକୁ ସୃଷ୍ଟି କରିଛନ୍ତି । ତଦ୍ୱାରା ସେ

ଯଥାକ୍ରମେ ନିଜର ବିଷୟଭୋଗକୁ ଚରିତାର୍ଥ କରିପାରେ କିମ୍ବା ମୋକ୍ଷ ଲାଭ କରିପାରେ ।।୨।। ବ୍ରହ୍ମ ସମ୍ପର୍କୀୟ ଏହି ଉପନିଷଦ୍‌ର ତତ୍ତ୍ୱକୁ ପୂର୍ବଜମାନଙ୍କର ବହୁପୂର୍ବରୁ ସନକାଦି ଋଷିମାନେ ନିଜର ହୃଦୟରେ ଧାରଣ କରିଥିଲେ । ତେଣୁ ଏହି ତତ୍ତ୍ୱକୁ ଯେ ଶ୍ରଦ୍ଧାପୂର୍ବକ ଧାରଣକରିବ, ସମସ୍ତ ବିଷୟରୁ ଅନାସକ୍ତ ସେହି ବ୍ୟକ୍ତିର ହିଁ ଯଥାର୍ଥ କଲ୍ୟାଣହେବ ।।୩।। ବର୍ତ୍ତମାନ ମୁଁ ନାରାୟଣଙ୍କ ସମ୍ପର୍କୀୟ ଆଖ୍ୟାୟିକା ତୁମଆଗରେ ବର୍ଣ୍ଣନା କରିବି । ତାହା ହେଉଛି ନାରଦ ଓ ନାରାୟଣ ଋଷିଙ୍କ ମଧ୍ୟରେ କଥୋପକଥନ ।।୪।।

ଦିନେ ଭଗବାନଙ୍କର ପ୍ରିୟ ଭକ୍ତ ନାରଦ ତ୍ରିଲୋକ ପର୍ଯ୍ୟଟନ କରି କରି ନାରାୟଣ ଋଷିଙ୍କୁ ଦର୍ଶନ କରିବାପାଇଁ ତାଙ୍କ ଆଶ୍ରମକୁ ଗଲେ । ସେଠାରେ ନାରାୟଣ ଋଷି ଭାରତବର୍ଷର ଲୋକମାନଙ୍କର ଲୌକିକ କଲ୍ୟାଣ ଓ ଆଧାତ୍ମିକମୁକ୍ତିପାଇଁ ତପସ୍ୟା କରୁଥିଲେ । ସେ ଧର୍ମ, ଜ୍ଞାନ ଓ ସଂଯମଯୁକ୍ତ ହୋଇ କଳ୍ପର ଆରମ୍ଭରୁ ତପସ୍ୟାରତ ଥିଲେ ।।୫-୬।। କୁରୁଶ୍ରେଷ୍ଠ, କଳାପଗ୍ରାମବାସୀ ସିଦ୍ଧଋଷିମାନଙ୍କ ଦ୍ୱାରା ପରିବେଷ୍ଟିତ ହୋଇ ଭଗବାନ୍ ନାରାୟଣ ଆଶ୍ରମରେ ବସିଥିଲେ । ଦେବର୍ଷି ନାରଦ ସେଠାରେ ଉପସ୍ଥିତ ହୋଇ ନାରାୟଣ ଋଷିଙ୍କୁ ପ୍ରଣାମ କଲେ ଏବଂ ତୁମେ ଯାହା ପଚାରିଛ, ସେହି ପ୍ରଶ୍ନଟି ହିଁ ତାଙ୍କୁ ପଚାରିଲେ ।।୭।। ପୂର୍ବେ ଜନଲୋକବାସୀ ସନକାଦି ଋଷିମାନଙ୍କଦ୍ୱାରା ଯେଉଁ ବ୍ରହ୍ମବାଦର ନିର୍ଣ୍ଣୟ କରାଯାଇଥିଲା, ନାରାୟଣ ଋଷି ଉପସ୍ଥିତ ଋଷିମାନଙ୍କୁ ଶୁଣାଇ ତାହା ନାରଦଙ୍କୁ କହିଲେ-- ।।୮।।

ନାରାୟଣ ଋଷି କହିଲେ, ହେ ବ୍ରହ୍ମାଙ୍କର ପୁତ୍ର, ପୂର୍ବେ ଜନଲୋକରେ ଥିବା ବ୍ରହ୍ମାଙ୍କର ମାନସପୁତ୍ର ସନକାଦି ଊର୍ଦ୍ଧ୍ୱରେତା ମୁନିମାନେ ବ୍ରହ୍ମନିର୍ଣ୍ଣୟରୂପକ ଏକ ଯଜ୍ଞ କରିଥିଲେ । ଶ୍ୱେତଦ୍ୱୀପର ଈଶ୍ୱରଙ୍କୁ ଦର୍ଶନ କରିବାପାଇଁ ତୁମେ ସେଠାକୁ ଯାଇଥିବାବେଳେ ଏହି ବ୍ରହ୍ମନିର୍ଣ୍ଣୟର ବିଚାର ଜନଲୋକରେ ଆରମ୍ଭ ହୋଇଥିଲା । ତୁମେ ବର୍ତ୍ତମାନ ମୋତେ ଯେଉଁ ପ୍ରଶ୍ନ ପଚାରୁଛ, ସେଠାରେ ସେହି ପ୍ରଶ୍ନର ବିଚାର ହୋଇଥିଲା ।।୯-୧୦।। ଯଦିଓ ସେହି ମୁନିମାନେ ସମସ୍ତେ ଶାସ୍ତ୍ରଜ୍ଞାନ, ଆଚରଣ ଓ ତପସ୍ୟାରେ ସମାନ ଥିଲେ ଏବଂ ଶତ୍ରୁ ମିତ୍ର ଓ ଉଦାସୀନଙ୍କୁ ସମାନ ଦୃଷ୍ଟିରେ ଦେଖୁଥିଲେ, ତଥାପି ସେମାନେ ଜଣକୁ ବକ୍ତା କଲେ ଓ ଅନ୍ୟମାନେ ଶ୍ରୋତା ହେଲେ ।।୧୧।। ସନନ୍ଦନ ଋଷି କହିଲେ, ସମ୍ରାଟଙ୍କ ଅନୁଜୀବୀ ବନ୍ଦିମାନେ ପ୍ରତ୍ୟୂଷ ସମୟରେ ନିଦ୍ରିତ ସମ୍ରାଟଙ୍କୁ ଉଠାଇବାପାଇଁ ସୁନ୍ଦର ଶ୍ଳୋକମାନଙ୍କ ଦ୍ୱାରା ତାଙ୍କରି ଗୁଣ ବର୍ଣ୍ଣନା କରି ଯେପରି ତାଙ୍କୁ ନିଦରୁ ଉଠାଇଦିଅନ୍ତି, ସେହିପରି ନିଜସୃଷ୍ଟ ଏହି ବିଶ୍ୱକୁ ସଂହାର କରି ନିଜର ଶକ୍ତିମାନଙ୍କ ସହ ପ୍ରଳୟଜଳରେ ଭଗବାନ୍ ଅନନ୍ତ ଶୟନ କରୁଥିବା ବେଳେ ମୂର୍ତ୍ତିମନ୍ତ ବେଦମାନେ ଭଗବାନଙ୍କୁ ତାଙ୍କ ଦ୍ୱାରା ରୂପ, ଗୁଣ ଆଦି ସ୍ତୁତିକରି ତାଙ୍କୁ ଜାଗ୍ରତ କରାଇଲେ ।।୧୨-୧୩।।

ବେଦମାନେ କହିଲେ, - ହେ ଅଜିତ, ଆପଣଙ୍କର ଜୟ ହେଉ, ଜୟ ହେଉ । ଆପଣଙ୍କ ପ୍ରତି ବିମୁଖ ହୋଇ ଜୀବମାନେ ଆପଣଙ୍କ ମାୟାଶକ୍ତିଦ୍ୱାରା ଦୋଷରୂପୀ ଯେଉଁ ବିଷୟଗୁଣସବୁ ଗ୍ରହଣ କରିଥା'ନ୍ତି, ଆପଣ ସେହି ମାୟାକୁ ବିନାଶ କରନ୍ତୁ । ଆପଣ ସ୍ଥାବର, ଜଙ୍ଗମ ସମସ୍ତଙ୍କ ଶରୀରରେ ପ୍ରାଣ ଶକ୍ତିର ସଞ୍ଚାରଣ କରନ୍ତି । ଆପଣ ସ୍ୱଭାବତଃ ସମସ୍ତ ଐଶ୍ୱର୍ଯ୍ୟରେ ପରିପୂର୍ଣ୍ଣ । ବେଦ ଆପଣଙ୍କ ସୃଷ୍ଟିର ଲୀଳାକୁ ଏବଂ ସୃଷ୍ଟିର ପରେ ଆପଣଙ୍କର ସଚ୍ଚିଦାନନ୍ଦ ସ୍ୱରୂପକୁ ପ୍ରତିପାଦନ କରିଥାଏ ।।୧୪।। ପ୍ରଭୁ, ଘଟ ଆଦି ପଦାର୍ଥ ମୃତ୍ତିକାର ବିକାର, କାରଣ ତାହା ମାଟିରୁ ହୋଇଥାଏ ଓ ମାଟିରେ ମିଶିଯାଏ; ସେହିପରି ଏହି ବିଶ୍ୱ ବ୍ରହ୍ମସ୍ୱରୂପ ଆପଣଙ୍କର ମାୟା ବା ବିକାରମାତ୍ର । ଆପଣଙ୍କଠାରୁ ଏହାର ସୃଷ୍ଟି ଓ ଆପଣଙ୍କଠାରେ ଏହାର ଲୟ ହୋଇଥାଏ । ମନ୍ତ୍ରଦ୍ରଷ୍ଟା ଋଷିମାନେ ବେଦରେ ଦେବତାମାନଙ୍କର ଯେଉଁ ସଗୁଣ ସ୍ୱରୂପ ବର୍ଣ୍ଣନା କରିଥା'ନ୍ତି, ତାହା ପଛରେ ସେମାନେ ଆପଣଙ୍କର ନିର୍ଗୁଣ ନିର୍ବିକାର ବ୍ରହ୍ମସ୍ୱରୂପ ହିଁ ଦର୍ଶନ କରିଥା'ନ୍ତି । ମନୁଷ୍ୟ ଇଟା, ପଥର ବା କାଠ ଉପରେ ପାଦ ରଖିଲେ ମଧ୍ୟ ମାଟି ଉପରେ ପାଦ ରଖିଥାଏ; ତେଣୁ ଋଷିମାନେ ବିଭିନ୍ନ ନାମ-ରୂପରେ ଆପଣଙ୍କୁ ବର୍ଣ୍ଣନା କଲେ ମଧ୍ୟ ସେମାନଙ୍କ ମନମଧ୍ୟରେ ଆପଣଙ୍କର ନିର୍ବିକାରତ୍ୱ ରହିଥାଏ ।।୧୫।। ଆପଣ ସତ୍ତ୍ୱ, ରଜ ଓ ତମ - ଏହି ତିନି ଗୁଣର ଅଧୀଶ୍ୱର । ବିବେକୀ ସତ୍ ପୁରୁଷମାନେ ଆପଣଙ୍କର ଅଖିଳପାପହାରୀ କୀର୍ତ୍ତି-ସୁଧା-ସିନ୍ଧୁରେ ସ୍ନାନ କରି ସମସ୍ତ ପାପତାପରୁ ମୁକ୍ତ ହୋଇଯାଆନ୍ତି । ଆପଣଙ୍କ

ଲୀଳାକୀର୍ତ୍ତନଦ୍ୱାରା ଯଦି ଏପରି ଫଳ ମିଳିପାରେ, ତା'ହେଲେ ନିଜର ଆତ୍ମାମଧ୍ୟରେ ଆପଣଙ୍କର ସ୍ୱରୂପ ଦର୍ଶନ କରୁଥିବା ବ୍ୟକ୍ତିମାନେ ଅନ୍ତଃକରଣର ଧର୍ମରୁ ଓ ଜରା, ମୃତ୍ୟୁ ଆଦି କାଳର ଧର୍ମରୁ ମୁକ୍ତ ହୋଇ ଆପଣଙ୍କ ସେହି ସ୍ୱରୂପକୁ ସର୍ବଦା ଭଜନ କରିବାଦ୍ୱାରା ଯେ ଅଜସ୍ର ଆନନ୍ଦ ଅନୁଭବ କରନ୍ତି, ଏଥିରେ ଆଶ୍ଚର୍ଯ୍ୟ ହେବାର କ'ଣ ଅଛି ? ।।୧୬।। ଯଥାର୍ଥରେ ଆପଣଙ୍କ ଅନୁବର୍ତ୍ତୀ ଜୀବମାନଙ୍କର ପ୍ରାଣ ସଫଳ ହୋଇଥାଏ । ଅନ୍ୟମାନେ କେବଳ କମାର-ଭାତିପରି ଶ୍ୱାସ ପ୍ରଶ୍ୱାସ ନେଇ ବୃଥା ଜୀବନ କଟାନ୍ତି । ମହତ୍ତତ୍ତ୍ୱ ଓ ଅହଙ୍କାର ଆଦି ଆପଣଙ୍କ ଅନୁଗ୍ରହରୁ ଏହି ବ୍ରହ୍ମାଣ୍ଡକୁ ସୃଷ୍ଟି କଲେ ; ଆପଣ ଅନ୍ନମୟ, ପ୍ରାଣମୟ, ମନୋମୟ, ବିଜ୍ଞାନମୟ ଓ ଆନନ୍ଦମୟ- ଏହି ପଞ୍ଚକୋଷ ମଧ୍ୟରେ ପରମ ପୁରୁଷରୂପରେ ଅବସ୍ଥାନ କରନ୍ତି । ଆପଣ ରହିଥିବାଯୋଗୁଁ ଏହି କୋଷମାନଙ୍କର ଅସ୍ତିତ୍ୱ ଅନୁଭୂତ ହୁଏ; ଏହି କୋଷମାନଙ୍କର ବିନାଶ ହୋଇଗଲେ ଆପଣ ହିଁ ଅବଶିଷ୍ଟ ରହିଥାନ୍ତି ; ତେଣୁ ଆପଣ ହିଁ ଏକମାତ୍ର ସତ୍ୟ ।।୧୭।। ଆପଣଙ୍କୁ ଲାଭ କରିବାପାଇଁ ଋଷିମାନେ ବହୁ ପନ୍ଥା ଅବଲମ୍ବନ କରନ୍ତି । ଯେଉଁମାନେ ସ୍ଥୂଳଦୃଷ୍ଟିସମ୍ପନ୍ନ, ସେମାନେ ମଣିପୂର ଚକ୍ରରେ ଆପଣଙ୍କୁ ଅଗ୍ନିରୂପରେ ଉପାସନା କରନ୍ତି । ଆରୁଣି ସଂପ୍ରଦାୟର ଋଷିମାନେ ନାଡ଼ିମାନଙ୍କ ବାହାରିଥିବା ସ୍ଥାନ ହୃଦୟଚକ୍ରରେ ଆପଣଙ୍କ ସୂକ୍ଷ୍ମ ସ୍ୱରୂପକୁ ଉପାସନା କରନ୍ତି । ମୂଳାଧାରରୁ ହୃଦୟମଧ୍ୟ ଦେଇ ସୁଷୁମ୍ନା ନାମକ ଯେଉଁ ପରମ ଜ୍ୟୋତିର୍ମୟ ନାଡ଼ି ମସ୍ତକରେ ଥିବା ବ୍ରହ୍ମରନ୍ଧ୍ରରେ ମିଶିଛି, ସେଠାକୁ ଯାଇପାରିଲେ ମନୁଷ୍ୟ ଆଉ ଜନ୍ମମୃତ୍ୟୁ ଚକ୍ରରେ ପଡ଼େ ନାହିଁ ।।୧୮।। ଦେବତା, ମନୁଷ୍ୟ, ପଶୁପକ୍ଷୀ ଆଦି ବିଭିନ୍ନ ଯୋନି ହେଉଛି ଆପଣଙ୍କର ସୃଷ୍ଟି । ସେହି ସମସ୍ତ ଯୋନିରେ ଉପାଦାନସ୍ୱରୂପ ଆପଣ ରହିଥାନ୍ତି । ଯେପରି କାଠର ଆକାରକୁ ନେଇ ନିଆଁ ଆକାରରେ ଛୋଟ ବଡ଼ ହୋଇଥାଏ, ସେହିପରି ଆପଣଙ୍କ ସୃଷ୍ଟ ଏହି ଯୋନିମାନଙ୍କର ଆକାର ପ୍ରକାର ଭେଦରେ ଆପଣ ବିଭିନ୍ନ ରୂପ ଧାରଣ କରନ୍ତି; ତେଣୁ ସାଧୁ ସନ୍ଥମାନେ ନିର୍ମଳ ବୁଦ୍ଧିରେ ସତ୍ୟ ଅସତ୍ୟର ବିଚାର କରି ଜଗତ୍ର ଏହି ମିଥ୍ୟା ରୂପରେ ବିଭ୍ରାନ୍ତ ହୁଅନ୍ତି ନାହିଁ ଏବଂ ଆପଣଙ୍କର ଅଭିନ୍ନ ସତ୍ୟ-ସ୍ୱରୂପକୁ ସାକ୍ଷାତ୍ କରିଥାନ୍ତି ।।୧୯।। ଜୀବ ନିଜର କର୍ମଦ୍ୱାରା ହିଁ ଶରୀର ଲାଭ କରିଥାଏ । କାର୍ଯ୍ୟ-କାରଣରୂପୀ ଏହି ଶରୀର ତାର ଆବରଣ ହୋଇଥାଏ । ମନୀଷୀମାନେ ଏହି ଜୀବାତ୍ମାକୁ ଆପଣଙ୍କର ଅଂଶମାତ୍ର ବୋଲି ଗ୍ରହଣ କରି ବେଦୋକ୍ତ ସମସ୍ତ କର୍ମକୁ ଆପଣଙ୍କଠାରେ ଅର୍ପଣ କରି ଆପଣଙ୍କର ପାଦପଦ୍ମକୁ ଉପାସନା କରନ୍ତି ଏବଂ ତଦ୍ୱାରା ସେମାନଙ୍କର ସଂସାରନିବୃତ୍ତି ଘଟେ ।।୨୦।। ଈଶ୍ୱର, ଆପଣଙ୍କର ତତ୍ତ୍ୱ ସହଜରେ ବୋଧଗମ୍ୟ ହୁଏ ନାହିଁ । ତେଣୁ ତାକୁ ଜଣାଇବାପାଇଁ ଆପଣ ବିଭିନ୍ନ ଆକାର ଧାରଣ କରି ଲୀଳା ରଚନା କରନ୍ତି । ଅମୃତସାଗରତୁଲ୍ୟ ଆପଣଙ୍କର ସେହି ଲୀଳାରେ ଯେଉଁମାନେ ଅବଗାହନ କରନ୍ତି, ସେମାନଙ୍କର ସଂସାରର ସମସ୍ତ ଶ୍ରମ ଓ ସମସ୍ତ କଷ୍ଟ ଦୂର ହୋଇଯାଏ । ଆପଣଙ୍କ ପାଦପଦ୍ମପ୍ରେମୀ ପରମହଂସମାନଙ୍କ ସଂସର୍ଗରେ ଆସି ସେହି ଗୃହତ୍ୟାଗୀ ସନ୍ନ୍ୟାସୀମାନେ ମୁକ୍ତିକୁ ମଧ୍ୟ କାମନା କରନ୍ତି ନାହିଁ ।।୨୧।। ଆପଣ ସମସ୍ତ ପ୍ରାଣୀଙ୍କର ପ୍ରିୟ ଆତ୍ମା ଓ ହିତୈଷୀ ବନ୍ଧୁ । ଯେଉଁ ବ୍ୟକ୍ତି ଆପଣଙ୍କପ୍ରତି ଅନୁରକ୍ତ ହୋଇ ଆପଣଙ୍କ ପଥ ଅନୁସରଣ କରେ, ସଂସାର ବନ୍ଧନରୂପ ଏହି ଶରୀର ତାର ପ୍ରକୃତ ବନ୍ଧୁ ଓ ସୁହୃଦ୍ ଭଳି ଆଚରଣ କରେ । କିନ୍ତୁ ବ୍ୟକ୍ତି ଯେତେବେଳେ ଆପଣଙ୍କୁ ଛାଡ଼ି ଏହି ନଶ୍ୱର ଦେହ ଗୃହ ଆଦିର ଉପାସନା କରେ, ସେତେବେଳେ ତାହା ତାର ଆତ୍ମହତ୍ୟା- ସ୍ୱରୂପ ହୋଇଥାଏ । ବନ୍ଧନର ଭୋଗଲାଳସାରେ ନାନା କୁତ୍ସିତଦେହ ଧାରଣପୂର୍ବକ ଏହି ଭୟଙ୍କର ସଂସାରଚକ୍ରରେ ତାକୁ ବାରମ୍ବାର ଭ୍ରମିବାକୁ ପଡ଼େ ।।୨୨।। ପ୍ରାଣ, ମନ ଓ ଇନ୍ଦ୍ରିୟକୁ ସଂଯମ କରି ଦୃଢ଼ ଯୋଗବଳରେ ମୁନିମାନେ ସେମାନଙ୍କ ହୃଦୟମଧ୍ୟରେ ଯେଉଁ ପରମତତ୍ତ୍ୱର ଉପାସନା କରନ୍ତି, ଆପଣଙ୍କ ଶତ୍ରୁମାନେ ସବୁବେଳେ ଆପଣଙ୍କ କଥା ସ୍ମରଣ କରି ଯେଉଁ ପରମ ପଦ ଲାଭ କରିଥା'ନ୍ତି, ବ୍ରଜନାରୀମାନେ ଆପଣଙ୍କ ପ୍ରତି କାମାସକ୍ତା ହୋଇ ଭୁଜଗେନ୍ଦ୍ରତୁଲ୍ୟ ଆପଣଙ୍କ କୋମଳ ବଳିଷ୍ଠ ବାହୁର ଆଲିଙ୍ଗନରେ ଯେଉଁ ପରମ ସୁଖ ଲାଭ କରନ୍ତି, ଆମେ ଶ୍ରୁତିମାନେ ଭାବରେ ସର୍ବତ୍ର ଆପଣଙ୍କୁ ଏକରୂପରେ ଦେଖି ଆପଣଙ୍କ ପାଦପଦ୍ମର ସେହି ସୁଧାରସ ପାନ କରୁ । କାରଣ ଆପଣ ସମସ୍ତଙ୍କୁ ସମାନ ଭାବରେ

ଦେଖନ୍ତି ।।୨୩।। ପ୍ରଭୁ, ସୃଷ୍ଟିର ପୂର୍ବରୁ ଆପଣ ଅଛନ୍ତି । ପରେ ଜନ୍ମମରଣଶୀଳ ଯେଉଁ ସୃଷ୍ଟ ଜୀବମାନେ ଆସିଛନ୍ତି, ସେମାନେ ଆପଣଙ୍କ ଅନାଦି ଅନନ୍ତ ସ୍ୱରୂପକୁ କିପରି ଜାଣିପାରିବେ ? ଆପଣଙ୍କଠାରୁ ଆଦି ଋଷି ବ୍ରହ୍ମା ଜନ୍ମ ହୋଇଛନ୍ତି । ବ୍ରହ୍ମାଙ୍କ ପରେ ଆଧିଭୌତିକ ଓ ଆଧିଦୈବିକ ଦେବତାମାନଙ୍କ ଜନ୍ମ । (ବା ନିବୃତ୍ତିପରାୟଣ ସନକାଦିଙ୍କର ଓ ପ୍ରବୃତ୍ତିପରାୟଣ ମରୀଚି ଆଦି ଋଷିଙ୍କର ଜନ୍ମ) ପୁଣି ତା'ପରେ ଜନ୍ମମରଣଶୀଳ ପ୍ରାଣୀଙ୍କର ଜନ୍ମ । ପ୍ରଳୟକାଳରେ ଏହି ସମସ୍ତ ଜଗତକୁ ନିଜମଧ୍ୟରେ ସଂହରଣ କରି ଆପଣ ଯେତେବେଳେ ଶୋଇଯା'ନ୍ତି, ସେତେବେଳେ ଏହି ସୃଷ୍ଟିର କୌଣସି ସାଧନ-ସାମଗ୍ରୀ ମଧ୍ୟ ଆପଣଙ୍କ ସହିତ ରହି ନ ଥାଏ । ଆକାଶାଦି ସ୍ଥୂଳ ପଦାର୍ଥ ବା ମହତ୍ତତ୍ତ୍ୱ ପ୍ରଭୃତି ସୂକ୍ଷ୍ମ ପଦାର୍ଥ ନ ଥାଏ । ଏହି ଉଭୟଙ୍କଦ୍ୱାରା ନିର୍ମିତ ଶରୀର ନ ଥାଏ କିମ୍ବା ସୃଷ୍ଟିର କ୍ଷୋଭକାରକ କାଳ ବା କୌଣସି ଶାସ୍ତ୍ର ମଧ୍ୟ ନ ଥାଏ । ତେଣୁ ଜୀବଗଣଙ୍କ ପକ୍ଷରେ ଆପଣଙ୍କ ବିଷୟରେ ଜ୍ଞାନଲାଭ ଅସମ୍ଭବ ।।୨୪।। ଦାର୍ଶନିକମାନେ ଜୀବ, ଜଗତ୍, ଈଶ୍ୱର ଓ ପରଂବ୍ରହ୍ମଙ୍କୁ ଘେନି ବହୁ ମତବାଦ ସୃଷ୍ଟି କରିଛନ୍ତି । ବୈଶେଷିକ ମତବାଦୀମାନେ କହନ୍ତି ଅସତ୍‌ରୁ ଜଗତର ଉତ୍ପତ୍ତି । ପତଞ୍ଜଳିଙ୍କ ଯୋଗଶାସ୍ତ୍ର ମତରେ ଅସତ୍‌ରୁ ବ୍ରହ୍ମତ୍ୱର ଉତ୍ପତ୍ତି । ନ୍ୟାୟଶାସ୍ତ୍ରର ମତରେ ଏକୋଇଶପ୍ରକାର ଦୁଃଖର ବିନାଶ ହେଉଚି ମୋକ୍ଷ । ସାଂଖ୍ୟ ମତରେ ଆତ୍ମା ହେଉଚି ଅନେକ । ମୀମାଂସକମାନଙ୍କ ମତରେ ଇହଲୋକରେ ଓ ପରଲୋକରେ କର୍ମଫଳ ଭୋଗ ହେଉଚି ସତ୍ୟ । କିନ୍ତୁ ଏହି ସବୁ ମତ ଆରୋପିତ ବା ଭ୍ରାନ୍ତିକର । ପୁରୁଷ ହେଉଚି ସତ୍ତ୍ୱ, ରଜ ଓ ତମ ଏହି ତିନି ଗୁଣରେ ଯୁକ୍ତ । ତେଣୁ ଏ ପ୍ରକାର ଭେଦଭାବ ତାର ଅଜ୍ଞାନରୁ ଜାତ ହୋଇଥାଏ । କିନ୍ତୁ ଆପଣ ତ ଅଜ୍ଞାନତାରୁ ଊର୍ଦ୍ଧ୍ୱରେ । ତେଣୁ ଜ୍ଞାନସ୍ୱରୂପ ଆପଣଙ୍କ ଠାରେ କୌଣସି ଭେଦଭାବ ସମ୍ଭବ ହୁଏ ନାହିଁ ।।୨୫।। ବ୍ରହ୍ମାଙ୍କପର୍ଯ୍ୟନ୍ତ ସମସ୍ତ ଜୀବଙ୍କୁ ବଶ କରିବାପାଇଁ ଏହି ତ୍ରିଗୁଣାତ୍ମକ ମନ ସମର୍ଥ ହୋଇଥାଏ । କିନ୍ତୁ ଆପଣଙ୍କୁ ବଶ କରିବାପାଇଁ ତାହା ଅସମର୍ଥ । କାରଣ ଯେଉଁ ମାୟାକୁ ଆପଣ ସୃଷ୍ଟି କରାନ୍ତି, ମନ ସେହି ମାୟାର ଅଧୀନ । ଆତ୍ମତତ୍ତ୍ୱଜ୍ଞ ବ୍ୟକ୍ତିମାନେ ଏହି ମନସମେତ ଅଖିଳ ବିଶ୍ୱକୁ ସତ୍ୟସ୍ୱରୂପ ବ୍ରହ୍ମଙ୍କଠାରୁ ଉତ୍ପନ୍ନ ବୋଲି ସତ୍ୟରୂପେ ଗ୍ରହଣ କରନ୍ତି । ସୁବର୍ଣ୍ଣକୁ ଇଚ୍ଛା କରୁଥିବା ବ୍ୟକ୍ତି ଯେପରି ସୁବର୍ଣ୍ଣର ବିକାର କୁଣ୍ଡଳାଦି ଅଳଙ୍କାରକୁ ସୁବର୍ଣ୍ଣ ବୋଲି ଗ୍ରହଣ କରେ, ପରିତ୍ୟାଗ କରେ ନାହିଁ, ସେହିପରି ବିବେକୀ ଜ୍ଞାନୀମାନେ ଆପଣଙ୍କ କୃତ ଏହି ବିଶ୍ୱରେ ସତ୍ୟସ୍ୱରୂପ ଆପଣ ଅନୁପ୍ରବେଶ କରିଥିବାଯୋଗୁଁ ତାହାକୁ ସତ୍ୟ ବୋଲି ଗ୍ରହଣ କରନ୍ତି ।।୨୬।। ସକଳ ପ୍ରାଣୀଙ୍କର ଅଧିଷ୍ଠାନ ଅନ୍ତର୍ଯାମୀରୂପେ ଆପଣଙ୍କୁ ଜାଣି ଯେଉଁମାନେ ଆପଣଙ୍କୁ ସେବା କରନ୍ତି, ସେମାନେ ମୃତ୍ୟୁର ମସ୍ତକରେ ପାଦ ଦେଇ ଅମୃତତ୍ୱ ଲାଭ କରନ୍ତି । ଯେଉଁମାନେ ଆପଣଙ୍କପ୍ରତି ବିମୁଖ, ସେମାନେ ଶାସ୍ତ୍ରଜ୍ଞାନରେ ଯେତେ ପଣ୍ଡିତ ହେଲେ ମଧ୍ୟ ସେହି ଶାସ୍ତ୍ରଦ୍ୱାରା ଆପଣ ସେମାନଙ୍କୁ ପଶୁପରି ବାନ୍ଧି ରଖିଥା'ନ୍ତି । କେବଳ ଆପଣଙ୍କର ଭକ୍ତମାନେ ହିଁ ନିଜକୁ ପବିତ୍ର କରି ଅନ୍ୟମାନଙ୍କୁ ପବିତ୍ର କରିପାରନ୍ତି ।।୨୭।। ଆପଣଙ୍କର ଇନ୍ଦ୍ରିୟସମ୍ବନ୍ଧୀ କୌଣସି କ୍ରିୟା ନ ଥାଏ । କିନ୍ତୁ ଆପଣ ସମସ୍ତ ପ୍ରାଣୀଙ୍କ ଇନ୍ଦ୍ରିୟଶକ୍ତିର ପ୍ରବର୍ତ୍ତକ; ସ୍ୱୟଂ ପ୍ରକାଶମାନ ଓ ସ୍ୱତଃସିଦ୍ଧ । ହେ ଅଜେୟ, ସାମନ୍ତ ରାଜାମାନେ ଯେପରି ଚକ୍ରବର୍ତ୍ତୀ ସମ୍ରାଟଙ୍କୁ ନାନାବିଧ ଉପହାର ପ୍ରଦାନ କରନ୍ତି, ସେହିପରି ଇନ୍ଦ୍ରାଦି ଦେବତାମାନେ ଓ ବ୍ରହ୍ମାଦି ବିଶ୍ୱସ୍ରଷ୍ଟାମାନେ ଆପଣଙ୍କୁ ପୂଜା-ଉପହାର ପ୍ରଦାନ କରି ଯଜ୍ଞରେ ମନୁଷ୍ୟମାନଙ୍କ ପ୍ରଦତ୍ତ ହବିର୍ଭାଗ ଆଦି ଭୋଗ କରନ୍ତି ଏବଂ ଆପଣ ସେମାନଙ୍କୁ ଯେଉଁ ଯେଉଁ ଅଧିକାରରେ ନିଯୁକ୍ତ କରିଛନ୍ତି, ଆପଣଙ୍କ ଭୟରେ ତାହା ସେମାନେ ନିର୍ବାହ କରନ୍ତି ।।୨୮।। ହେ ନିତ୍ୟମୁକ୍ତ, ଆପଣ ଆପଣଙ୍କ ସୃଷ୍ଟ ମାୟାସହିତ କ୍ରୀଡ଼ା କରିବାପାଇଁ ତାହା ଆଡ଼କୁ ଚାହିଁଦେବାମାତ୍ରେ ଚରାଚର ଜୀବମାନଙ୍କ ସୁପ୍ତ କର୍ମସଂସ୍କାର ସବୁ ଜାଗ୍ରତ ହୋଇଉଠେ ଏବଂ ଜୀବ ଜଗତର ସୃଷ୍ଟି ହୋଇଯାଏ । ହେ ପରମଦୟାଳୁ, ଆପଣ ଆକାଶତୁଲ୍ୟ ନିର୍ଲିପ୍ତ ହୋଇଥିବାରୁ ଆପଣଙ୍କର କେହି ପର ବା ଆପଣାର ନ ଥା'ନ୍ତି । ଆପଣ ସବୁରି ବାକ୍ୟ ଓ ମନର ଅଗୋଚର ତତ୍ତ୍ୱ ।।୨୯।। ହେ ଭଗବାନ୍, ଆପଣ ଧ୍ରୁବ, ଆପଣ ଚିରସ୍ଥାୟୀ । ଆପଣଙ୍କର ସୃଷ୍ଟ ଅସଂଖ୍ୟ ଜୀବ ଯଦି ଆପଣଙ୍କ ପରି ଚିରସ୍ଥାୟୀ ଓ ସର୍ବବ୍ୟାପୀ ହୋଇଯାନ୍ତି,

ତା'ହେଲେ ନିୟମ ବା ନିୟାମକ ରହିବେ ନାହିଁ । ଆପଣ ସର୍ବନିୟନ୍ତା । ଜୀବଗଣ ଆପଣଙ୍କଦ୍ୱାରା ଶାସିତ । ଏହା ଅନ୍ୟଥା ହେବାର ନୁହେଁ । ଆପଣଙ୍କ ମାୟାରୂପ ବିକାରରୁ ଏହି ଜୀବଜଗତର ଜନ୍ମ । ଆପଣଙ୍କୁ ଛାଡ଼ି ଦେଇ ତାହା କିପରି ନିଜର ନିୟାମକ ହୋଇପାରିବ ? ଆପଣ ସମସ୍ତଙ୍କ ମଧ୍ୟରେ ସମରୂପରେ ରହିଥିଲେ ମଧ୍ୟ ଆପଣଙ୍କ ସ୍ୱରୂପକୁ କେହି ଜାଣି ନାହାନ୍ତି । ନ ଜାଣି ସେମାନେ ଯେଉଁ ମତ ପ୍ରକାଶ କରନ୍ତି, ତାହା ଅଜ୍ଞତାପ୍ରସୂତ ॥୩୦॥ ଅନାଦି ହୋଇଥିବାଯୋଗୁଁ ପ୍ରକୃତି ଓ ପୁରୁଷଙ୍କର ଜନ୍ମ ନାହିଁ । ଯେପରି ଜଳ ଓ ବାୟୁର ସଂଯୋଗରେ ବୁଦ୍‌ବୁଦର ଜନ୍ମ, ସେହିପରି ପ୍ରକୃତି ଓ ପୁରୁଷର ସଂଯୋଗରେ ପ୍ରାଣ ଓ ଶରୀରଯୁକ୍ତ ଜୀବଜନ୍ତୁମାନଙ୍କର ଜନ୍ମ ହୋଇଥାଏ, ପୁଣି ନଦୀମାନେ ସମୁଦ୍ରରେ ମିଶି ଲୀନ ହୋଇଯିବାପରି ଏବଂ ଫୁଲର ରସସବୁ ମହୁରେ ଲୀନ ହୋଇଯିବାପରି ଭିନ୍ନ ଭିନ୍ନ ନାମଯୁକ୍ତ ଓ ଗୁଣଯୁକ୍ତ ଏହି ଜଡ଼ ଜଗତ୍ ଓ ଜୀବଜଗତ୍ ଆପଣଙ୍କଠାରେ ଲୀନ ହୋଇଯାଏ ॥୩୧॥ ଆପଣଙ୍କ ମାୟାରେ ଜୀବର ଭ୍ରମସୃଷ୍ଟି ହେଉଥିବାର ଜାଣି ବିବେକୀ ବ୍ୟକ୍ତିମାନେ ଆପଣଙ୍କଠାରେ ନିରନ୍ତର ପ୍ରେମଭାବ ସ୍ଥାପନ କରିଥା'ନ୍ତି । କାରଣ ସେମାନେ ଜାଣନ୍ତି ଯେ ସଂସାରଚକ୍ରରୁ ଆପଣ ହିଁ ଉଦ୍ଧାର କରିପାରିବେ । ଆପଣଙ୍କୁ ଭଜନ କରୁଥିବା ବ୍ୟକ୍ତିଙ୍କର କୌଣସି ଭବଭୟ ନ ଥାଏ । କିନ୍ତୁ ଯେଉଁମାନେ ଆପଣଙ୍କୁ ଭଜନ କରନ୍ତି ନାହିଁ, ଆପଣଙ୍କ ଭ୍ରୂକୁଟିରୂପକ ତ୍ରିକାଳ ସର୍ବଦା ସେମାନଙ୍କର ଭୟସୃଷ୍ଟି କରୁଥାଏ ॥୩୨॥ ହେ ଅଜନ୍ମା, ମନ ଅତ୍ୟନ୍ତ ଚଞ୍ଚଳ ଓ ଦୁର୍ଦାନ୍ତ । ଯୋଗଦ୍ୱାରା ଇନ୍ଦ୍ରିୟମାନଙ୍କୁ ଓ ଶ୍ୱାସପ୍ରଶ୍ୱାସକୁ ଜୟ କରିଥିବା ଯୋଗୀମାନେ ମଧ୍ୟ ମନରୂପକ ଅଶ୍ୱକୁ ବଶୀଭୂତ କରିପାରନ୍ତି ନାହିଁ । ଗୁରୁଚରଣକୁ ଆଶ୍ରୟ ନ କରି ଶତାଧିକ ଉପାୟଦ୍ୱାରା ମନକୁ ବଶ କରିବାପାଇଁ ଚେଷ୍ଟା କଲେ ମଧ୍ୟ କେବଳ ଦୁଃଖ ଓ ଶ୍ରମ ଛଡ଼ା କୌଣସି ଫଳ ମିଳେ ନାହିଁ । ସମୁଦ୍ରମଧ୍ୟରେ ଯାତ୍ରା କରୁଥିବା ନାବିକବିହୀନ ବଣିକମାନଙ୍କପରି ସେମାନଙ୍କ ଅବସ୍ଥା ଦୁଃଖମୟ ହୋଇଥାଏ ॥୩୩॥ ପରମାନନ୍ଦସ୍ୱରୂପ ଆପଣଙ୍କୁ ଆଶ୍ରୟ କରିଥିବା ବ୍ୟକ୍ତିର ଏହି ତୁଚ୍ଛ ଜ୍ଞାତିକୁଟୁମ୍ବରେ, ସ୍ତ୍ରୀ-ପୁତ୍ର-ଦେହ-ଗୃହ ଓ ଭୂମି ଆଦି ସମ୍ପଦରେ ବା ରଥ ଆଦି ପ୍ରତିପତ୍ତିରେ ପ୍ରୟୋଜନ କଣ ? କିନ୍ତୁ ଏସବୁର ଅବାସ୍ତବତା ଉପଲବ୍ଧି କରୁ ନ ଥିବା ମୂର୍ଖବ୍ୟକ୍ତି ସ୍ତ୍ରୀସମ୍ଭୋଗ ଆଦି ସାମାନ୍ୟ ସୁଖରେ ମାତି ଏହି ଅନିତ୍ୟ, ଅସାର ସଂସାରକୁ ହିଁ ଶ୍ରେୟବୋଲି ମନେକରେ ॥୩୪॥ ଆପଣଙ୍କର ପାଦପଦ୍ମକୁ ହୃଦୟରେ ଧାରଣ କରିଥିବା ନିରହଙ୍କାର ଋଷିମାନେ ନିଜର ପାଦୋଦକ ଦ୍ୱାରା ଅନ୍ୟର ପାପ ଦୂର କରିବାପାଇଁ ସମର୍ଥ । ତଥାପି (ସଜ୍ଜନଙ୍କ ସଙ୍ଗଲାଭପାଇଁ) ସେମାନେ ପୃଥିବୀର ବିଭିନ୍ନ ପୁଣ୍ୟ ତୀର୍ଥ ଓ ପୁଣ୍ୟ କ୍ଷେତ୍ରମାନଙ୍କୁ ଉପାସନା କରନ୍ତି । ଆପଣ ନିତ୍ୟ ଆନନ୍ଦମୟ । ଆପଣଙ୍କଠାରେ ଥରେ ଚିତ୍ତ ଲାଗିଗଲେ ବିବେକବୁଦ୍ଧି ହରଣକରୁଥିବା ଗୃହସୁଖ ପ୍ରତି ଲୋକ ଆଉ ଆସକ୍ତ ହୁଏ ନାହିଁ ॥୩୫॥ ଏହି ଜଗତ୍ ସତ୍‌ରୁ ଉଦ୍ଭିତ ହୋଇଥିବାରୁ ଏହା ସତ୍ - ଏଇ ଉକ୍ତି ତର୍କବିରୁଦ୍ଧ । ଯେହେତୁ ସୁନାରୁ କୁଣ୍ଡଳ ଉତ୍ପନ୍ନ, କିନ୍ତୁ କୁଣ୍ଡଳର ବିନାଶରେ ସୁନାର ବିନାଶ ହୁଏ ନାହିଁ । ଏଣୁ କୁଣ୍ଡଳ ଅସତ୍ ଏବଂ ସୁନା ସତ୍ । ପିତା ଠାରୁ ପୁତ୍ର ଉତ୍ପନ୍ନ, କିନ୍ତୁ ପିତାର ମୃତ୍ୟୁରେ ପୁତ୍ରର ମୃତ୍ୟୁ ହୁଏ ନାହିଁ ଅଥବା ବିପରୀତ ମଧ୍ୟ ହୁଏ ନାହିଁ । ପୁଣି ରଜ୍ଜୁରୁ ମିଥ୍ୟା-ସର୍ପର ଉତ୍ପନ୍ନ ହୁଏ, ଏବଂ ମିଥ୍ୟାସର୍ପର ବିନାଶରେ ରଜ୍ଜୁର ବିନାଶ ହୁଏ ନାହିଁ । ଏଣୁ ଏ ବିଶ୍ୱ ଅବିଦ୍ୟାଯୁକ୍ତ ସତ୍ୟରୁ ଜାତ ହେଲେ ମଧ୍ୟ ସତ୍ ନୁହେଁ । ଯେହେତୁ କାରଣ 'ରଜ୍ଜୁ' ସତ୍ ଏବଂ କାର୍ଯ୍ୟ ସର୍ପ ଅସତ୍, ଯଦି କୁହ, ବ୍ୟବହାରରୁ ବିଶ୍ୱ ଉତ୍ପନ୍ନ, ତାହା ଠିକ୍ ନୁହେଁ, ଯେହେତୁ ବ୍ୟବହାର ଭ୍ରମାତ୍ମକ; ଯେପରି କେବେ କେବେ ନକଲି ସୁନା ଅସଲି ସୁନାରୂପେ ବ୍ୟବହାରରେ ଚଳିଯାଏ, ମାତ୍ର ତାହା କେବେ ଅସଲି ସୁନା ନୁହେଁ । ଅନ୍ଧ ପରମ୍ପରା ନ୍ୟାୟରେ ଏ ଜଗତ୍ ବ୍ୟବହାର-ସତ୍ୟରୂପେ ଗୃହୀତ ହୁଏ । ଯଦି କୁହ, ଶ୍ରୁତି ବାକ୍ୟରେ କର୍ମର ଫଳକୁ ନିତ୍ୟ କୁହାଯାଇଥିବାରୁ ଏ ଜଗତ୍ ସତ ହେବ । ତାହା ମଧ୍ୟ ଠିକ୍ ନୁହେଁ; କାରଣ କର୍ମଜଡ଼ ଲୋକଙ୍କୁ କର୍ମରେ ପ୍ରବର୍ତ୍ତାଇବାପାଇଁ ଏହା କେବଳ ଅର୍ଥବାଦପରକ, ତତ୍ତ୍ୱପରକ ନୁହେଁ । ଏଣୁ ବେଦବାଦରେ ଜଗତ୍ ଅସତ୍ ॥୩୬॥ ଏହି ଜଗତ୍ ସୃଷ୍ଟିପୂର୍ବରୁ ନ ଥିଲା ଏବଂ ଭବିଷ୍ୟତରେ ପ୍ରଳୟ ପରେ ନ ଥିବ । ସେଥିପାଇଁ ସୃଷ୍ଟି ଓ ପ୍ରଳୟ ମଧ୍ୟରେ ଆପଣଙ୍କଠାରେ ତାର ଅବସ୍ଥିତି ମିଥ୍ୟାବୋଲି

ପ୍ରତୀୟମାନ ହୁଏ । ଯେପରି ପ୍ରଥମେ ଘଟ ନ ଥାଏ, ମାଟିରୁ ତାହା ନିର୍ମିତ ହୁଏ ଏବଂ ପରେ ତାହା ନ ଥାଏ, ପୁଣି ମାଟିରେ ମିଶିଯାଏ, ସେହିପରି ସୁବର୍ଣ୍ଣରୁ କୁଣ୍ଡଳ; ଜଗତ୍ ସମ୍ପର୍କରେ ଏହି ଦୃଷ୍ଟାନ୍ତମାନ ଦିଆଯାଏ । ମୃତ୍ତିକା ଓ ସୁବର୍ଣ୍ଣ ଆଦି ବସ୍ତୁ ଯେପରି ସତ୍ୟ, ସେହିପରି ସେଥିରୁ ଉତ୍ପନ୍ନ ଘଟ ଓ କୁଣ୍ଡଳ ଅସ୍ଥାୟୀ ହେଲେ ମଧ୍ୟ ମୃତ୍ତିକା ଓ ସୁବର୍ଣ୍ଣ ରୂପ ସତ୍ୟ । ତେଣୁ ଏହି ଜଗତ୍‌ରେ ମିଥ୍ୟାତ୍ୱ ଆରୋପ କରାଯିବା ଅଜ୍ଞତା ମାତ୍ର ॥୩୭॥

ଜୀବ ମାୟାରେ ମୋହିତହୋଇ ଅବିଦ୍ୟାର ବଶବର୍ତ୍ତୀ ହୁଏ ଏବଂ ଅବିଦ୍ୟାର କାର୍ଯ୍ୟ ଦେହ ଓ ଇନ୍ଦ୍ରିୟାଦିଙ୍କୁ ଆତ୍ମାରୂପେ ମନେକରି ତାଙ୍କରି ସେବାରେ ଲାଗିରହେ ଏବଂ ସେମାନଙ୍କ ସୁଖ, ଦୁଃଖ, ଜନ୍ମ, ମୃତ୍ୟୁ ଆଦିକୁ ନିଜର ଜନ୍ମ ମୃତ୍ୟୁ ବୋଲି ମନେ କରି ସଂସାରଚକ୍ରରେ ଘୂରି ବୁଲୁଥାଏ । କିନ୍ତୁ ଆପଣ ଅଷ୍ଟସିଦ୍ଧିଯୁକ୍ତ ଅପରିମିତ ଐଶ୍ୱର୍ଯ୍ୟର ଅଧିକାରୀ । ସାପ ଯେପରି ନିର୍ବିଚାରରେ ନିଜର କାତିକୁ ଛଡ଼ାଇଥାଏ, ଆପଣ ସେହିପରି ଅନାସକ୍ତ ଭାବରେ ମାୟା ଓ ଅବିଦ୍ୟାକୁ ସର୍ବଦା ଛାଡ଼ି ଦିଅନ୍ତି ॥୩୮॥ ଯଦି ଯତିମାନେ ହୃଦୟମଧ୍ୟରୁ କାମବାସନାକୁ ମୂଳୋତ୍ପାଟନ ନ କରି ଆପଣଙ୍କୁ ଲାଭ କରିବାପାଇଁ ଚେଷ୍ଟା କରନ୍ତି, ତେବେ ସେହି ଅସାଧୁମାନଙ୍କର ହୃଦୟରେ ରହି ମଧ୍ୟ ଆପଣ ସେମାନଙ୍କପାଇଁ ଦୁର୍ଲଭ ହୋଇପଡ଼ନ୍ତି, ଯେପରିକି କେବେ କେବେ ନିଜର କଣ୍ଠରେ ପିନ୍ଧିଥିବା ମଣିକୁ ଭୁଲିଯାଇ ଲୋକ ଚାରିଆଡ଼େ ଖୋଜିହୁଏ । ନିଜର ଇନ୍ଦ୍ରିୟତୃପ୍ତିରେ ଲାଗିଥିବା ଏହି ଅସାଧୁ ଯୋଗୀମାନଙ୍କୁ ଇହଲୋକରେ ନିଜର ଅତୃପ୍ତ ବାସନାପାଇଁ ଦୁଃଖ ଭୋଗିବାକୁ ହୁଏ ଏବଂ ନିଜର ଧର୍ମ କର୍ମ ଛାଡ଼ି ଦେଇଥିବାଯୋଗୁଁ ପରଲୋକରେ ନରକର ଦଣ୍ଡ ଭୋଗ ସାରି ଅଶେଷ ଦୁଃଖ ଓ ଭୟରେ ରହିବାକୁ ହୁଏ ॥୩୯॥ ଆପଣ ମନୁଷ୍ୟର ପୁଣ୍ୟ ଓ ପାପ କର୍ମର ଫଳସ୍ୱରୂପ ତାକୁ ସୁଖଦୁଃଖ ପ୍ରଦାନ କରିଥା'ନ୍ତି । କିନ୍ତୁ ଯେଉଁ ଯୋଗୀ ଆପଣଙ୍କ ସ୍ୱରୂପକୁ ଜାଣେ, ତାକୁ ଏହି କର୍ମଫଳ ଭୋଗ କରିବାକୁ ପଡ଼େ ନାହିଁ । ଦେହାଭିମାନୀ ବ୍ୟକ୍ତିଙ୍କର ନିନ୍ଦା ବା ପ୍ରଶଂସା ମଧ୍ୟ ତାକୁ ବିଚଳିତ କରିପାରେ ନାହିଁ । ଯୁଗେ ଯୁଗେ କୀର୍ତ୍ତିତ ଆପଣଙ୍କର ଲୀଳାସ୍ୱରୂପ ଅନନ୍ତ ଅଚିନ୍ତ୍ୟ ମହିମାବଳୀ ଯେ ପ୍ରତିଦିନ ଶ୍ରବଣ କରେ ଏବଂ କର୍ଣ୍ଣପଥ ଦେଇ ହୃଦୟରେ ଧାରଣ କରେ, ସୁଖଦୁଃଖ ଓ ନିନ୍ଦାସ୍ତୁତିରେ ଅବିଚଳିତ ରହି ସେହି ବ୍ୟକ୍ତି ମୋକ୍ଷପଦ ବାଚ୍ୟ ଆପଣଙ୍କୁ ଲାଭକରେ । ତାହାର କୌଣସି ପ୍ରାରବ୍ଧ ରହେ ନାହିଁ ॥୪୦॥ ଆକାଶରେ ଅଗଣିତ ଧୂଳିକଣାପରି ଆପଣଙ୍କ ଲୋମକୂପରେ ସପ୍ତ ଆବରଣ (କ୍ଷିତି, ଜଳ, ତେଜ, ବାୟୁ, ଆକାଶ, ମହତ୍ତତ୍ତ୍ୱ ଓ ପ୍ରକୃତି)ଯୁକ୍ତ ଅନନ୍ତ ବ୍ରହ୍ମାଣ୍ଡ କାଳଚକ୍ରଦ୍ୱାରା ଚାଲିଥାଏ । ସ୍ୱର୍ଗ ଆଦି ଲୋକର ଅଧୀଶ୍ୱର ବ୍ରହ୍ମା, ରୁଦ୍ର, ଇନ୍ଦ୍ର ଆଦି ଲୋକପାଳଗଣ ଆପଣଙ୍କ ସ୍ୱରୂପର ଅନ୍ତ ପାଆନ୍ତି ନାହିଁ । ନିଜେ ଅନନ୍ତ ହୋଇଥିବାଯୋଗୁଁ ଆପଣଙ୍କୁ ମଧ୍ୟ ଆପଣଙ୍କର ସୀମା ଜଣା ନ ଥାଏ । ଆମେ ବେଦମାନେ ଆପଣଙ୍କୁ କଣ ବା ବର୍ଣ୍ଣନା କରିବୁ ? ଆପଣଙ୍କ ଛଡ଼ା ଅନ୍ୟ ବସ୍ତୁମାନଙ୍କୁ ଦେଖାଇ ଆପଣ ଏହା ନୁହନ୍ତି, ତାହା ନୁହନ୍ତି--ବୋଲି କହି କହି ଶେଷରେ ଆପଣଙ୍କଠାରେ ହିଁ ଆମେ ଅଟକିଯାଉ, କାରଣ ଆପଣ ହିଁ ସବୁଠାରୁ ବିଲକ୍ଷଣ ବ୍ରହ୍ମସ୍ୱରୂପ । ଏଣୁ ଶ୍ରୁତିମାନେ ଆପଣଙ୍କୁ ପ୍ରତିପାଦନ କରି ସଫଳ ହୁଅନ୍ତି ॥୪୧॥

ଭଗବାନ୍ ନାରାୟଣ ଋଷି କହିଲେ, ନାରଦ, ସନକାଦି ବ୍ରହ୍ମାଙ୍କର ପୁତ୍ରମାନେ ସନନ୍ଦନ ଋଷିଙ୍କଠାରୁ ଆତ୍ମତତ୍ତ୍ୱ ସମ୍ପର୍କୀୟ ଏହି ଉପଦେଶ ଶୁଣି ଆତ୍ମାର ସ୍ୱରୂପକୁ ଜାଣିପାରିଲେ ଏବଂ ନିଜେ ସିଦ୍ଧ ହେଲେ ମଧ୍ୟ କୃତକୃତ୍ୟ ହୋଇ ସନନ୍ଦନଙ୍କୁ ପୂଜା କଲେ ॥୪୨॥ ସନକାଦି ଋଷିମାନେ ସୃଷ୍ଟିର ଆରମ୍ଭରେ ଜନ୍ମ ହୋଇଥିଲେ । ସେହି ବ୍ୟୋମଚାରୀ ମହାତ୍ମାମାନେ ସମସ୍ତ ବେଦ, ପୁରାଣ, ଓ ଉପନିଷଦ୍‌ର ରସ ଆସ୍ୱାଦନ କରି ତାର ସାରତତ୍ତ୍ୱ ଏହିପରି ନିର୍ଣ୍ଣୟ କରିଛନ୍ତି ॥୪୩॥ ନାରଦ, ତୁମେ ମଧ୍ୟ ସେମାନଙ୍କ ପରି ବ୍ରହ୍ମାଙ୍କର ପୁତ୍ର । ତୁମେ ମଧ୍ୟ ଶ୍ରଦ୍ଧାର ସହିତ ଏହି ବ୍ରହ୍ମବିଦ୍ୟାକୁ ହୃଦୟରେ ଧାରଣ କରି ସ୍ୱଚ୍ଛନ୍ଦରେ ପୃଥିବୀରେ ବିଚରଣ କର ॥୪୪॥

ଶ୍ରୀ ଶୁକଦେବ କହିଲେ, ଦେବର୍ଷି ନାରଦ ବ୍ରହ୍ମନିଷ୍ଠ ନୈଷ୍ଠିକ ବ୍ରହ୍ମଚାରୀ ଥିଲେ । ସେ କୃତକୃତ୍ୟ ହୋଇ ଏହି ବ୍ରହ୍ମବିଦ୍ୟାକୁ ହୃଦୟରେ ଧାରଣ କଲେ ଏବଂ ନାରାୟଣ ଋଷିଙ୍କ ଆଦେଶକୁ ଶିରୋଧାର୍ଯ୍ୟ କରି ଏହିପରି କହିଲେ-- ॥୪୫॥ ଦେବର୍ଷି ନାରଦ

କହିଲେ, ସମସ୍ତ ଜୀବଙ୍କୁ ସଂସାରରୁ ଉଦ୍ଧାର କରିବାପାଇଁ ନିଜର ଅଂଶକଳାରେ ଯେ ଅବତୀର୍ଣ୍ଣ ହୁଅନ୍ତି, ସେହି ବିମଳକୀର୍ତ୍ତି ଭଗବାନ୍ ଶ୍ରୀକୃଷ୍ଣଙ୍କୁ ମୁଁ ନମସ୍କାର କରୁଚି ॥୪୬॥ ମହାରାଜ ପରିକ୍ଷିତ, ଦେବର୍ଷି ନାରଦ ଏହିପରି କହି ଏବଂ ଭଗବାନ୍ ନାରାୟଣ ଋଷିଙ୍କୁ ଓ ତାଙ୍କ ଶିଷ୍ୟମାନଙ୍କୁ ପ୍ରଣାମ କରି ମୋର ପିତା ମହର୍ଷି ବେଦବ୍ୟାସଙ୍କ ଆଶ୍ରମରେ ପହଞ୍ଚିଲେ ॥୪୭॥ ମହର୍ଷି ବେଦବ୍ୟାସ ତାଙ୍କୁ ପୂଜା ଓ ସତ୍‌କାର କରି ଉପଯୁକ୍ତ ଆସନରେ ବସାଇଲେ । ଦେବର୍ଷି ନାରଦ ନାରାୟଣ ଋଷିଙ୍କ ମୁହଁରୁ ଯାହା ଶୁଣିଥିଲେ, ତାହା ତାଙ୍କ ନିକଟରେ ବର୍ଣ୍ଣନା କଲେ ॥୪୮॥ ପରିକ୍ଷିତ, ତୁମେ ମୋତେ ଯେଉଁ ପ୍ରଶ୍ନ କରିଥିଲ ଯେ 'ନିର୍ଗୁଣ ଅନିର୍ଦ୍ଦେଶ୍ୟ ବ୍ରହ୍ମରେ ଚିତ୍ତ କିପରି ନିବିଷ୍ଟ ହୋଇପାରିବ ?' ମୁଁ ତୁମକୁ ତାର ଉତ୍ତର ଦେଲି ॥୪୯॥ ପରମାତ୍ମା ପରମେଶ୍ୱର ଜୀବମାନଙ୍କ ପୁରୁଷାର୍ଥର ସିଦ୍ଧିପାଇଁ ଏହି ସୃଷ୍ଟିର ସଙ୍କଳ୍ପ କରିଥା'ନ୍ତି । ସେ ଏହି ବିଶ୍ୱର ସୃଷ୍ଟି, ସ୍ଥିତି ଓ ଲୟରେ ଯଥାକ୍ରମେ କାରଣ, ଆଶ୍ରୟ ଓ ଅନ୍ତକ ରୂପେ ରହନ୍ତି । ସେ ପ୍ରକୃତି ଓ ପୁରୁଷ ଉଭୟଙ୍କର କାରଣ ଈଶ୍ୱର । ପ୍ରଜାପତି ବ୍ରହ୍ମାରୂପେ ବିଶ୍ୱକୁ ସେ ସୃଷ୍ଟି କରି ତାହା ମଧ୍ୟରେ ପ୍ରବେଶ କରନ୍ତି । ଭୋଗମୟ ଶରୀରକୁ ନିର୍ମାଣ କରି ତାହାକୁ ନିୟନ୍ତ୍ରଣ କରନ୍ତି । ସୁପ୍ତ ବ୍ୟକ୍ତି ଯେପରି ନିଜର ସ୍ଥୂଳ ଶରୀରକୁ ଭୁଲିଯାଏ, ସେହିପରି ଭଗବତ୍‌ଧ୍ୟାୟୀ ଓ ସେବାପରାୟଣ ଜୀବ ଭଗବାନଙ୍କୁ ଲାଭ କରି ମାୟାରୁ ମୁକ୍ତ ହୋଇଯାଏ । ସଂସାର ଭୟବିନାଶନ ସେହି କୈବଲ୍ୟଦାତା ଶ୍ରୀହରିଙ୍କୁ ନିରନ୍ତର ଧ୍ୟାନ କରିବା ଉଚିତ ॥୫୦॥

## ଅଠାଶୀ ଅଧ୍ୟାୟ

# ଶିବଙ୍କର ସଙ୍କଟ

ରାଜା ପରିକ୍ଷିତ ପଚାରିଲେ, ଭଗବାନ୍ ଶିବ ସର୍ବତ୍ୟାଗୀ ଯୋଗୀ, କିନ୍ତୁ ଦେବତା, ଅସୁର ଓ ମନୁଷ୍ୟମାନଙ୍କ ମଧ୍ୟରେ ଯେଉଁମାନେ ତାଙ୍କୁ ଉପାସନା କରିଥାନ୍ତି, ପ୍ରାୟ ସେମାନେ ଧନୀ ହୋଇଯାଆନ୍ତି । ଅଥଚ ଭଗବାନ୍ ଶ୍ରୀହରି ହେଉଛନ୍ତି ଲକ୍ଷ୍ମୀପତି, ସମସ୍ତ ଐଶ୍ୱର୍ଯ୍ୟର ଅଧୀଶ୍ୱର, କିନ୍ତୁ ତାଙ୍କୁ ଯେଉଁମାନେ ଉପାସନା କରନ୍ତି, ସେମାନେ ନିର୍ଦ୍ଧନ ହୁଅନ୍ତି । ଏଥିରେ ମୋର ବଡ଼ ସନ୍ଦେହ ହେଉଛି । ପରସ୍ପର ବିରୁଦ୍ଧ ସ୍ୱଭାବର ଏହି ଦୁଇ ଜଣ ପ୍ରଭୁ ନିଜର ଭକ୍ତମାନଙ୍କୁ କାହିଁକି ସ୍ୱଭାବର ବିପରୀତ ଫଳ ଦେଇଥା'ନ୍ତି ? ଏହାର କାରଣ କ'ଣ ମୁଁ ଜାଣିବାକୁ ଚାହୁଛି ॥୧-୨॥ ଶ୍ରୀ ଶୁକଦେବ କହିଲେ, ଶିବ ସର୍ବଦା ଶକ୍ତିଙ୍କ ସହିତ ଯୁକ୍ତ ହୋଇଥା'ନ୍ତି । ସେ ସତ୍ତ୍ୱ ଆଦି ଗୁଣଯୁକ୍ତ ଓ ଅହଙ୍କାରର ଅଧିଷ୍ଠାତା । ଅହଙ୍କାର ତିନି ପ୍ରକାର - ବୈକାରିକ, ତୈଜସ ଓ ତାମସ । ସେମାନଙ୍କ ମଧ୍ୟରୁ ଷୋଡ଼ଶ ବିକାର ଜାତ ହୁଏ - ଦଶ ଇନ୍ଦ୍ରିୟ, ପଞ୍ଚ ମହାଭୂତ ଓ ମନ । ଏହି ବିକାରମାନଙ୍କ ମଧ୍ୟରୁ କୌଣସି ଗୋଟିଏ ବିକାରର ଅଧିଷ୍ଠାତା ଶିବଙ୍କୁ ଉପାସନା କଲେ, ସେହି ବିକାର ଅନୁରୂପ ସମସ୍ତ ଐଶ୍ୱର୍ଯ୍ୟ ମିଳିଯାଏ ॥୩-୪॥ କିନ୍ତୁ ଭଗବାନ୍ ଶ୍ରୀହରି ହେଉଛନ୍ତି ନିର୍ଗୁଣ; ପ୍ରକୃତି ଠାରୁ ଭିନ୍ନ ପୁରୁଷ । ତାଙ୍କୁ ଉପାସନା କଲେ ଉପାସକ ନିଜେ ନିର୍ଗୁଣ ହୋଇଯାଏ ॥୫॥ ପରିକ୍ଷିତ, ଅଶ୍ୱମେଧ ଯଜ୍ଞ ଶେଷ ହେବାପରେ ତୁମର ପିତାମହ ରାଜା ଯୁଧିଷ୍ଠିର ଭଗବାନ ଶ୍ରୀକୃଷ୍ଣଙ୍କଠାରୁ ଧର୍ମକଥା ଶୁଣିବାପାଇଁ ଏହି ପ୍ରଶ୍ନଟି ପଚାରିଥିଲେ ଏବଂ ଭଗବାନ୍ ଶ୍ରୀକୃଷ୍ଣ ଆନନ୍ଦରେ ତାଙ୍କୁ ତାହାର ଉତ୍ତର ଦେଇଥିଲେ । ସେ ତ ମନୁଷ୍ୟମାନଙ୍କର କଲ୍ୟାଣପାଇଁ ଯଦୁବଂଶରେ ଅବତୀର୍ଣ୍ଣ ହୋଇଥିଲେ ॥୬-୭॥

ଭଗବାନ୍ ଶ୍ରୀକୃଷ୍ଣ କହିଲେ, ମହାରାଜ ଯୁଧିଷ୍ଠିର, ମୁଁ ଯାହାକୁ ଅନୁଗ୍ରହ କରେ ତା' ଧନକୁ ଧୀରେ ଧୀରେ ହରଣ କରିନିଏ । ସେ ନିର୍ଦ୍ଧନ ହୋଇଗଲେ ଦୁଃଖ ଉପରେ ଦୁଃଖ ଭୋଗ କରୁଥିବା ସେହି ବ୍ୟକ୍ତିକୁ ତାର ଆତ୍ମୀୟ ସ୍ୱଜନମାନେ ପରିତ୍ୟାଗ କରନ୍ତି ॥୮॥ ପୁଣି ଧନ ଅର୍ଜନ କରିବାକୁ ଚେଷ୍ଟା କଲେ ସେଥିରେ ସେ ବିଫଳ ହୁଏ । ଏହିପରି ବାରମ୍ବାର

ବିଫଳହେଲେ ତାର ବୈରାଗ୍ୟ ଜାତ ହୁଏ ଏବଂ ମୋର ଏକାନ୍ତ ଭକ୍ତମାନଙ୍କ ସହିତ ମିତ୍ର ହେବାରୁ ମୁଁ ତାକୁ ଅନୁଗ୍ରହ କରେ ।।୯।। ମୁଁ ସେଇ ବ୍ରହ୍ମ; ଅନନ୍ତ, ସୂକ୍ଷ୍ମ, ସତ୍, ଚିତ୍ ଓ ପରମ, ଏବଂ ମୋତେ ଆରାଧନା କରିବା ଅତିଶୟ କଷ୍ଟସାଧ୍ୟ । ତେଣୁ ମୋତେ ଆରାଧନା ନକରି ଲୋକେ ଅନ୍ୟାମାନଙ୍କୁ ଆରାଧନା କରନ୍ତି । ସେମାନେ ଆଶୁତୋଷ ଶିବ ଓ ବ୍ରହ୍ମା ଆଦିଙ୍କଠାରୁ ରାଜଲକ୍ଷ୍ମୀ ଓ ଅନ୍ୟାନ୍ୟ ଐଶ୍ୱର୍ଯ୍ୟ ଲାଭ କରି ଉଚ୍ଛୃଙ୍ଖଳ ଓ ମଦମତ୍ତ ହୋଇପଡ଼ନ୍ତି ଏବଂ ବରଦାତାଙ୍କୁ ଭୁଲିଯାଇ ତାଙ୍କୁ ଅବଜ୍ଞା କରନ୍ତି ।।୧୦-୧୧।। ବ୍ରହ୍ମା, ବିଷ୍ଣୁ ଓ ଶିବ - ଏହି ତିନିହେଁ ଅଭିଶାପ ଓ ବରଦାନ କରିବାକୁ ସମର୍ଥ । ଶିବ ଓ ବ୍ରହ୍ମା ତୁଷ୍ଟ ହୋଇ ବା ରୁଷ୍ଟ ହୋଇ ଶୀଘ୍ର ବରଦାନ ବା ଅଭିଶାପ ଦିଅନ୍ତି । କିନ୍ତୁ ଭଗବାନ ବିଷ୍ଣୁ ତାହା କରନ୍ତି ନାହିଁ ।।୧୨।। ଏ ବିଷୟରେ ଜ୍ଞାନିମାନେ ଏଇ ପୁରାତନ ଇତିହାସକୁ କହିଥାଆନ୍ତି । ବୃକାସୁରକୁ ଭଗବାନ୍ ଶଙ୍କର ବରଦାନ କରି ସଙ୍କଟରେ ପଡ଼ିଯାଇଥିଲେ ।।୧୩।। ବୃକାସୁର ଥିଲା ଶକୁନି ନାମକ ଅସୁରର ପୁତ୍ର । ସେହି ମନ୍ଦବୁଦ୍ଧି ଅସୁର ଦିନେ ବାଟରେ ଦେବର୍ଷି ନାରଦଙ୍କୁ ଦେଖି ବ୍ରହ୍ମା, ବିଷ୍ଣୁ ଓ ମହେଶ୍ୱର - ଏହି ତିନି ଜଣଙ୍କ ମଧ୍ୟରେ କିଏ ଶୀଘ୍ର ପ୍ରସନ୍ନ ହୁଅନ୍ତି ବୋଲି ତାଙ୍କୁ ପଚାରିଲା ।।୧୪।। ନାରଦ କହିଲେ, ଭଗବାନ୍ ଶଙ୍କରଙ୍କୁ ଉପାସନା କଲେ ସେ ଶୀଘ୍ର ସନ୍ତୁଷ୍ଟ ହୋଇଯାଆନ୍ତି । ଅଳ୍ପଗୁଣ ଦେଖିଲେ ଶୀଘ୍ର ସନ୍ତୁଷ୍ଟ ହୁଅନ୍ତି ଏବଂ ଅଳ୍ପ ଦୋଷ ଦେଖିଲେ ଶୀଘ୍ର ରାଗିଯାଆନ୍ତି ।।୧୫।। ଦଶାସ୍ୟ ରାବଣ ଓ ବାଣାସୁର ବନ୍ଦିମାନଙ୍କପରି କେବଳ ତାଙ୍କୁ ସ୍ତୁତି କରିଥିଲେ । ସେଥିରେ ସନ୍ତୁଷ୍ଟ ହୋଇ ସେ ସେଇ ଦୁହିଁଙ୍କୁ ଅତୁଳ ବିଭବ ପ୍ରଦାନ କରିଥିଲେ ଏବଂ ନିଜେ ସଙ୍କଟରେ ପଡ଼ିଥିଲେ । (ରାବଣ କୈଳାସ ପର୍ବତକୁ ଉଠାଇଲା ଏବଂ ବାଣାସୁର ତାଙ୍କୁ ନଗରରକ୍ଷକ କଲା) ।।୧୬।। ନାରଦଙ୍କଠାରୁ ଏହିପରି ଶୁଣି ବୃକାସୁର କେଦାରକ୍ଷେତ୍ରକୁ ଦଉଡ଼ିଗଲା ଏବଂ ଅଗ୍ନିଙ୍କୁ ଭଗବାନ୍ ଶଙ୍କରଙ୍କର ମୁଖ ବୋଲି ମନେକରି ନିଜ ଦେହରୁ ମାଂସ କାଟି ସେଥିରେ ଆହୁତି ଦେଲା ।।୧୭।। ଏହିପରି କରି ମଧ୍ୟ ସେ ତାଙ୍କ ଦର୍ଶନ ନ ପାଇଲାରୁ ସପ୍ତମ ଦିନ କେଦାରତୀର୍ଥରେ ସ୍ନାନ ସାରି ନିଜର ଜଳସିକ୍ତ ଶିରକୁ ଖଡ୍ଗରେ ଛେଦନ କରିବାପାଇଁ ଉଦ୍ୟତ ହେଲା ।।୧୮।। କେହି ଆତ୍ମହତ୍ୟା କରିବାକୁ ଯାଉଥିଲେ ଆମେ ଯେପରି ବାରଣ କରୁ, ମହାକାରୁଣିକ ଭଗବାନ୍ ଶଙ୍କର ସେହିପରି ଅଗ୍ନିମଧ୍ୟରୁ ଉଠି ତାଙ୍କ ଦୁଇ ବାହୁରେ ତା'ର ଦୁଇ ହାତକୁ ଧରି ପକାଇଲେ । ତାଙ୍କ ସ୍ପର୍ଶରେ ଅସୁରର ଦେହ ପୁଣି ପୂରିଉଠିଲା ।।୧୯।। ଭଗବାନ୍ ଶଙ୍କର କହିଲେ, ପ୍ରିୟ ବୃକାସୁର, ଭକ୍ତ ଲୋକ ସାମାନ୍ୟ ଜଳଟିକିଏ ଦେଲେ ମୁଁ ସେଥିରେ ସନ୍ତୁଷ୍ଟ ହୋଇଯାଏ, ତୁମେ ତୁମ ଶରୀରକୁ କାହିଁକି ଏତେ କଷ୍ଟ ଦେଲ ? ଆଉ ଏପରି କର ନାହିଁ । କ'ଣ ବର ମାଗିବ ମାଗ ।।୨୦।।

ତା' ପରେ ପାପୀ ଅସୁର ମହାଦେବଙ୍କୁ କହିଲା, 'ମୁଁ ଯାହା ମୁଣ୍ଡରେ ହାତ ଦେବି ସେ ସଙ୍ଗେ ସଙ୍ଗେ ମରିବ' --ଏହିପରି ଏକ ଭୟଙ୍କର ବର ସେ ପ୍ରାର୍ଥନା କଲା ।।୨୧।। ହେ ଭରତବଂଶୀୟ ରାଜା, ତାହା ଶୁଣି ଭଗବାନ୍ ମହାଦେବ ଦୁଃଖିତ ହେଲେ ମଧ୍ୟ ଅଳ୍ପ ହସି ସର୍ପକୁ ଅମୃତ ଦାନ କରିବା ପରି 'ତଥାସ୍ତୁ' କହି ତାକୁ ସେହି ବର ଦାନ କଲେ ।।୨୨।। ବରଲାଭ କରି ସେହି ଅସୁର ଶଙ୍କରଙ୍କର ପତ୍ନୀ ପାର୍ବତୀଙ୍କୁ ହରଣ କରିବାପାଇଁ ଇଚ୍ଛା କଲା ଏବଂ ବରର ସତ୍ୟତା ପରୀକ୍ଷା କରିବାକୁ ମହାଦେବଙ୍କ ମସ୍ତକରେ ହାତ ରଖିବାପାଇଁ ଉଦ୍ୟତ ହେଲା । ଭଗବାନ୍ ଶଙ୍କର ଦୁଷ୍ଟକୁ ବର ଦେଇଥିବାଯୋଗୁଁ ଭୟଭୀତ ହୋଇପଡ଼ିଲେ, ଏବଂ ଭୟରେ ଥରି ଥରି ଅସୁରଠାରୁ ରକ୍ଷା ପାଇବାପାଇଁ ଉତ୍ତର ଦିଗକୁ ପଳାଇଲେ । ଅସୁର ତାଙ୍କ ପଛେ ପଛେ ଗୋଡ଼ାଇଲା; ଅସୁର ତାଙ୍କ ପଛେ ପଛେ ଗୋଡ଼ାଉଥିବା ଦେଖି ସେ ସ୍ୱର୍ଗ ଓ ପୃଥିବୀ ଆଦି ଚତୁର୍ଦ୍ଦିଗର ସୀମାପାର ପର୍ଯ୍ୟନ୍ତ ଦଉଡ଼ିବାକୁ ଲାଗିଲେ ।।୨୩-୨୪।। ଦେବତା ଓ ଲୋକପାଳ ପ୍ରତିକାରର ଉପାୟ ନପାଇ ଚୁପ୍ ହୋଇରହିଲେ । ଭଗବାନ୍ ଶଙ୍କର ଦଉଡ଼ି ଦଉଡ଼ି ମାୟାରୁ ମୁକ୍ତ ଉଜ୍ଜ୍ୱଳ ବୈକୁଣ୍ଠଧାମରେ ପହଞ୍ଚିଲେ । ସେଠାରେ ହିଂସାମୁକ୍ତ ଶାନ୍ତଚିତ୍ତ ସାଧୁ ଭକ୍ତମାନଙ୍କର ପରମଗତି ଭଗବାନ୍ ନାରାୟଣ ଅବସ୍ଥାନ କରୁଥିଲେ । ଜୀବାତ୍ମା ସେଠାକୁ ଗଲେ ଆଉ ସଂସାରଚକ୍ରକୁ ଫେରେ ନାହିଁ । ଆର୍ତ୍ତତ୍ରାଣ ଭଗବାନ୍ ନାରାୟଣ ଦୂରରୁ ଶଙ୍କରଙ୍କୁ ଓ ତାଙ୍କ ପଛରେ ଗୋଡ଼ାଉଥିବା ବୃକାସୁରକୁ ଦେଖି ଶଙ୍କର ମହାସଙ୍କଟରେ ପଡ଼ିଥିବାର ଜାଣିପାରିଲେ । ସଙ୍ଗେ ସଙ୍ଗେ ନିଜ ଯୋଗମାୟାରେ ସେ

ଜଣେ ବାଳକ ବ୍ରହ୍ମଚାରୀ ହୋଇଗଲେ ଏବଂ ଧୀରେ ଧୀରେ ବୃକାସୁରଆଡ଼କୁ ଆସିଲେ । ତାଙ୍କ କଟିରେ ମେଖଳା ଓ କୃଷ୍ଣବର୍ଣ୍ଣର ମୃଗଚର୍ମ ଶୋଭା ପାଉଥିଲା । ସେ ହସ୍ତରେ ଏକ ଦଣ୍ଡ ଓ ରୁଦ୍ରାକ୍ଷର ମାଳା ଧାରଣ କରିଥିଲେ । ତାଙ୍କ ଦେହରୁ ଅଗ୍ନି ପରି ତେଜ ବାହାରୁଥିଲା । କୁଶହସ୍ତ ବ୍ରହ୍ମଚାରୀଙ୍କୁ ଦେଖି ବୃକାସୁର ତାଙ୍କୁ ବିନୟରେ ପ୍ରଣାମ କଲା ।।୨୫-୨୮।। ଭଗବାନ୍ କହିଲେ, ଶକୁନିନନ୍ଦନ ବୃକ, ତୁମେ ବହୁ ଦୂରରୁ ଆସି ଥକିପଡ଼ିଥିବାର ଦେଖାଯାଉଛ, ଟିକିଏ ବିଶ୍ରାମ କର । ଶରୀର କୁଶଳ ଥିଲେ ସମସ୍ତ କାମନା ପୂରଣ ହୋଇଯାଏ ।।୨୯।। ହେ ମହାବଳି, ତୁମେ କ'ଣ କରିବାକୁ ଇଚ୍ଛା କର । ଯଦି ମୋର ଶୁଣିବାର କଥା, ତା'ହେଲେ କୁହ । କାରଣ ନିଜର ସ୍ୱାର୍ଥ ହାସଲ କରିବାପାଇଁ ମନୁଷ୍ୟ ଅନ୍ୟମାନଙ୍କର ସାହାଯ୍ୟ ନେଇଥାଏ ।।୩୦।। ଶ୍ରୀ ଶୁକଦେବ କହିଲେ, ପରିକ୍ଷିତ, ଭଗବାନଙ୍କ କଥାରୁ ସତେ ଯେପରି ଅମୃତବର୍ଷା ହେଉଥିଲା, ତାହା ଶୁଣି ବୃକାସୁରର କ୍ଳାନ୍ତି ଦୂର ହୋଇଗଲା । ପୂର୍ବରୁ ଯାହା ଯାହା ସବୁ ଘଟିଯାଇଛି ତାହା ସେ ବର୍ଣ୍ଣନା କଲା ।

ଶ୍ରୀ ଭଗବାନ୍ କହିଲେ, ଯଦି ଏହା ହୋଇଥାଏ, ତେବେ ସୁଦ୍ଧା ଶଙ୍କରଙ୍କ ବରଦାନରେ ମୋର ବିଶ୍ୱାସ ହେଉନାହିଁ । କାରଣ ସେ ଦକ୍ଷ ପ୍ରଜାପତିଙ୍କ ଅଭିଶାପରୁ ପିଶାଚ ହୋଇ ଭୂତପ୍ରେତଙ୍କର ସମ୍ରାଟ୍ ହୋଇଛନ୍ତି ।।୩୨।। ଦାନବେନ୍ଦ୍ର, ଯଦି ତୁମେ ଶଙ୍କରଙ୍କୁ ଜଗଦ୍‌ଗୁରୁ ବୋଲି ଭାବି ତାଙ୍କ କଥାରେ ବିଶ୍ୱାସ କରୁଥାଅ, ତା'ହେଲେ ହେ ବତ୍ସ, ନିଜ ଶିରରେ ହାତ ରଖି ତୁମେ ସେହି କଥାର ସତ୍ୟତା ପରୀକ୍ଷା କର ।।୩୩।। ଦାନବରାଜ, ଯଦି ମହାଦେବଙ୍କର କଥା କିଞ୍ଚିନ୍‌ମାତ୍ର ଅସତ୍ୟ ବୋଲି ଜଣାଗଲା, ତା'ହେଲେ ତୁମେ ତାହାଙ୍କୁ ହତ୍ୟା କରିବ, ଯେପରିକି ସେ ଆଉ କେବେ କାହାକୁ ମିଥ୍ୟା କହିବାର ସୁଯୋଗ ପାଇବେ ନାହିଁ ।।୩୪।। ଭଗବାନଙ୍କର ଏ ପ୍ରକାର ବିଚିତ୍ର ମଧୁର ବାକ୍ୟରେ ମନ୍ଦମତି ଦୈତ୍ୟର ବୁଦ୍ଧିଭ୍ରଂଶ ଘଟିଲା, ଏବଂ ରାକ୍ଷସ ବରର ତାତ୍ପର୍ଯ୍ୟ ଭୁଲିଯାଇ ନିଜ ମସ୍ତକରେ ହସ୍ତ ସ୍ଥାପନ କଲା ।।୩୫।। ସଙ୍ଗେ ସଙ୍ଗେ ଅସୁରର ମସ୍ତକ ଛିନ୍ନ ଭିନ୍ନ ହୋଇଗଲା ଏବଂ ବଜ୍ର ପଡ଼ିଲାପରି ଶବ୍ଦକରି ସେ ତଳେ ଗଡ଼ି ମରିଗଲା । ଆକାଶରୁ ଜୟଧ୍ୱନି ସହ 'ନମୋ ନମଃ' 'ସାଧୁ ସାଧୁ' ଶବ୍ଦ ଶୁଣାଗଲା ।।୩୬।। ପାପୀ ବୃକାସୁର ନିହତ ହେବାରୁ ଦେବତା, ଋଷି ଓ ଗନ୍ଧର୍ବମାନେ ପୁଷ୍ପବୃଷ୍ଟି କଲେ ଏବଂ ଘୋର ସଙ୍କଟରୁ ଶିବ ମୁକ୍ତ ହେଲେ । ପୁରୁଷୋତ୍ତମ ଭଗବାନ ସଙ୍କଟମୁକ୍ତ ଶଙ୍କରଙ୍କୁ କହିଲେ, ହେ ଦେବଦେବ ମହାଦେବ, ଏହି ପାପୀ ରାକ୍ଷସ ନିଜ ପାପରୁ ନିହତ ହେଲା ।।୩୭-୩୮।। ହେ ଈଶ୍ୱର, ମହତ୍ ବ୍ୟକ୍ତିଙ୍କଠାରେ ପାପ କରି କେଉଁ ପ୍ରାଣୀ କୁଶଳରେ ରହିପାରିବ ? ଯେ ପୁଣି ଜଗଦ୍‌ଗୁରୁ ବିଶ୍ୱେଶ୍ୱରଙ୍କଠାରେ ଅପରାଧ କରିବ, ସେ ବା କିପରି ରହିବ ? ।।୩୯।। ଭଗବାନ୍ ବାକ୍ୟମନର ଅଗୋଚର ଅନନ୍ତଶକ୍ତିର ସମୁଦ୍ର । ସେହି ଶ୍ରୀହରି ହେଉଛନ୍ତି ପ୍ରକୃତି ଓ ପୁରୁଷରୁ ପର ସାକ୍ଷାତ୍ ପରମାତ୍ମା । ତାଙ୍କ କୃତ ମହାଦେବଙ୍କ ମୋକ୍ଷ ବିଷୟ ଯେ କୀର୍ତ୍ତନ ବା ଶ୍ରବଣ କରେ, ସେ ସଂସାର ଭ୍ରମଣରୁ ଓ ଶତ୍ରୁଙ୍କ ଭୟରୁ ମୁକ୍ତ ହୋଇଯାଏ ।।୪୦।।

## ଅଣନବେ ଅଧ୍ୟାୟ

# ମୃତ ବ୍ରାହ୍ମଣବାଳକ ଫେରି ଆସିଲେ

ପରୀକ୍ଷିତ, ଥରେ ସରସ୍ୱତୀ ନଦୀକୂଳରେ ମୁନିଋଷିମାନେ ଯଜ୍ଞ କରିବାପାଇଁ ସମବେତ ହୋଇଥିଲେ । ବ୍ରହ୍ମା, ବିଷ୍ଣୁ ଓ ମହେଶ୍ୱର -- ଏହି ତିନିଜଣ ଈଶ୍ୱରଙ୍କ ମଧ୍ୟରେ କିଏ ଶ୍ରେଷ୍ଠ, ସେମାନଙ୍କ ମଧ୍ୟରେ ଏହି ତର୍କ ଚାଲିଥିଲା ।।୧।। ରାଜା, ସେମାନେ ତାହା ଜାଣିବାପାଇଁ ବ୍ରହ୍ମାଙ୍କର ପୁତ୍ର ଭୃଗୁମୁନିଙ୍କୁ ପଠାଇଲେ । ଭୃଗୁମୁନି ପ୍ରଥମେ ବ୍ରହ୍ମାଙ୍କ ସଭାରେ ଯାଇ ପହଞ୍ଚିଲେ ।।୨।। ଭୃଗୁ ବ୍ରହ୍ମାଙ୍କୁ ପରୀକ୍ଷା କରିବାପାଇଁ ତାଙ୍କୁ ସ୍ତୁତି କିମ୍ବା ନମସ୍କାର କଲେ ନାହିଁ । ତାହା ଦେଖି ଭଗବାନ୍ ବ୍ରହ୍ମା ନିଜ ତେଜରେ

ପ୍ରଜ୍ୱଳିତହୋଇ ଭୃଗୁଙ୍କପ୍ରତି କ୍ରୁଦ୍ଧ ହେଲେ । କିନ୍ତୁ ଲୋକେ ଯେପରି ଅଗ୍ନିଠାରୁ ଜାତ ପାଣିଦ୍ୱାରା ଅଗ୍ନିକୁ ଶାନ୍ତ କରନ୍ତି, ବ୍ରହ୍ମା ସେହିପରି ନିଜଠାରୁ ଜାତ ପୁତ୍ରକୁ ଦେଖି ନିଜେ ନିଜେ ନିଜର ମନ ମଧ୍ୟରେ କ୍ରୋଧକୁ ଚାପିରଖିଲେ ।।୩-୪।। ସେଠାରୁ ଯାଇ ଭୃଗୁମୁନି କୈଳାସରେ ପହଞ୍ଚିଲେ । ମହାଦେବ ତାଙ୍କୁ ଦେଖି ଉଠିପଡ଼ି ଆନନ୍ଦରେ ଭାଇକୁ ଆଲିଙ୍ଗନ କରିବାକୁ ବାହାରିଲେ । କିନ୍ତୁ 'ତୁମେ ବିପଥଗାମୀ' ବୋଲି କହି ଭୃଗୁ ତାଙ୍କ ଆଲିଙ୍ଗନ ଇଚ୍ଛା କଲେ ନାହିଁ । ମହାଦେବଙ୍କ କ୍ରୋଧ ଜାତ ହେଲା । ତୀକ୍ଷ୍ଣ ଦୃଷ୍ଟିରେ ସେ ତ୍ରିଶୂଳ ଉଠାଇ ତାଙ୍କୁ ହତ୍ୟା କରିବାକୁ ଉଦ୍ୟତ ହେଲେ ।।୫-୬।। ଏହି ସମୟରେ ପାର୍ବତୀ ଦେବୀ ଶିବଙ୍କର ପାଦତଳେ ପଡ଼ି ତାଙ୍କୁ ସାନ୍ତ୍ୱନା ଦେଲେ । ତା'ପରେ ଭୃଗୁମୁନି ନାରାୟଣ ରହୁଥିବା ବୈକୁଣ୍ଠ ଧାମକୁ ଗଲେ । ସେତେବେଳେ ସେ ଲକ୍ଷ୍ମୀଦେବୀଙ୍କର କୋଳରେ ଶୋଇଥିଲେ । ଭୃଗୁ ଋଷି ଭଗବାନଙ୍କ ବକ୍ଷରେ ଏକ ଗୋଇଠା ପକାଇଲେ । ସଙ୍ଗେ ସଙ୍ଗେ ଭକ୍ତ ବତ୍ସଳ ଭଗବାନ ଉଠି ଲକ୍ଷ୍ମୀଙ୍କ ସହିତ ଶେଯରୁ ଓହ୍ଲାଇ ମୁନିକୁ ମୁଣ୍ଡ ନୁଆଁଇ ପ୍ରଣାମ କଲେ ଏବଂ କହିଲେ, 'ବ୍ରହ୍ମନ୍, ଆପଣଙ୍କୁ ସ୍ୱାଗତ କରୁଛି । ଏହି ଆସନରେ କ୍ଷଣେ ବସି ଯାଆନ୍ତୁ । ଆପଣ ଆସିଛନ୍ତି ବୋଲି ଆମେ ଜାଣି ନ ଥିବାଯୋଗୁଁ ଆମକୁ କ୍ଷମା କରନ୍ତୁ ।।୭-୯।। ମହାମୁନି, ଆପଣଙ୍କର ପାଦ ଦୁଇଟି ଅତିଶୟ କୋମଳ । ଏହା କହି ଭଗବାନ୍ ସ୍ୱହସ୍ତରେ ବିପ୍ରଙ୍କର ପାଦଦୁଇଟିକୁ ଚାପିବାକୁ ଲାଗିଲେ ।।୧୦।। ଭଗବାନ୍ କହିଲେ, ଆପଣଙ୍କର ପାଦୋଦକ ତୀର୍ଥମାନଙ୍କୁ ତୀର୍ଥ କରେ । ସେହି ପାଦୋଦକଦ୍ୱାରା ଏହି ବୈକୁଣ୍ଠଲୋକସହିତ ମୋତେ, ଏବଂ ମୋର ଅନୁଗତ ଲୋକପାଳମାନଙ୍କୁ ପବିତ୍ର କରନ୍ତୁ ।।୧୧।। ଭଗବନ୍, ଆପଣଙ୍କ ପଦାଘାତଦ୍ୱାରା ଆଜି ମୋର ପାପକ୍ଷୟ ହୋଇଗଲା ଏବଂ ଲକ୍ଷ୍ମୀଙ୍କର ମୁଁ ଏକାନ୍ତ ଯୋଗ୍ୟ ହୋଇଗଲେ । ସେ ଏଣିକି ମୋର ବକ୍ଷସ୍ଥଳରେ ବାସ କରିବେ । ('ଶ୍ରୀଃ ବତ୍ସ୍ୟତି' -- ଉକ୍ତିରୁ 'ଶ୍ରୀବତ୍ସ' ସେଇ ପାଦଚିହ୍ନର ନାମ ହେଲା) ।।୧୨।।

ଶ୍ରୀ ଶୁକଦେବ କହିଲେ, ମହାରାଜ ପରିକ୍ଷିତ, ବୈକୁଣ୍ଠବିହାରୀ ଭଗବାନ୍ ଏହିପରି କହିବାରୁ ତାଙ୍କ ମନ୍ଦ୍ର ମଧୁର ବାଣୀରେ ଭୃଗୁଋଷି ଆପ୍ୟାୟିତ ଓ ଆନନ୍ଦିତ ହୋଇ ତୁନି ରହିଲେ । ଭକ୍ତିରେ ତାଙ୍କ ଚକ୍ଷୁ ଅଶ୍ରୁପୂର୍ଣ୍ଣ ଓ କଣ୍ଠ ଗଦ୍‌ଗଦ ହୋଇଗଲା । ପରିକ୍ଷିତ, ସେଠାରୁ ଭୃଗୁଋଷି ବ୍ରହ୍ମବାଦୀ ଋଷିମାନଙ୍କର ଯଜ୍ଞସ୍ଥଳରେ ପହଞ୍ଚି ସମ୍ପୂର୍ଣ୍ଣ ଭାବରେ ନିଜର ଅନୁଭୂତିକୁ ବର୍ଣ୍ଣନା କଲେ । ତାହା ଶୁଣି ମୁନିମାନଙ୍କର ବିସ୍ମୟ ଓ ସଂଶୟମୋଚନ ହେଲା । ଭଗବାନ୍ ବିଷ୍ଣୁ ବ୍ରହ୍ମା ଓ ଶିବଙ୍କଠାରୁ ବଡ଼ ବୋଲି ସେମାନେ ବିଶ୍ୱାସ କଲେ । କାରଣ କେବଳ ତାଙ୍କଠାରୁ ଶାନ୍ତି ଓ ଅଭୟ ମିଳେ ।।୧୩-୧୫।। ବିଷ୍ଣୁଙ୍କୁ ଉପାସନା କଲେ ସାକ୍ଷାତ୍ ଧର୍ମଲାଭ ହୁଏ । ଜ୍ଞାନ, ଜ୍ଞାନଯୁକ୍ତ ବୈରାଗ୍ୟ, ମୋକ୍ଷ, ଅଷ୍ଟୈଶ୍ୱର୍ଯ୍ୟ ଏବଂ ଆତ୍ମାକୁ ନିର୍ମଳ କରୁଥିବା ଯଶ ତାଙ୍କଠାରୁ ଲାଭହୁଏ । ଅହିଂସାପରାୟଣ, ଶାନ୍ତଚିତ୍ତ, ସମଦର୍ଶୀ, ଅକିଞ୍ଚନ ସାଧୁମାନଙ୍କର ସେ ପରମଗତି ବୋଲି ପଣ୍ଡିତମାନେ କହନ୍ତି । ବିଶୁଦ୍ଧ ସତ୍ତ୍ୱଗୁଣ ହେଉଛି ତାଙ୍କର ପ୍ରିୟ ମୂର୍ତ୍ତି ଓ ବ୍ରାହ୍ମଣମାନେ ତାଙ୍କର ଇଷ୍ଟ ଦେବତା । ନିଷ୍କାମ, ଶାନ୍ତ ଓ ନିପୁଣବୁଦ୍ଧି ସାଧୁମାନେ ତାଙ୍କୁ ଭଜନ କରନ୍ତି । ତାଙ୍କ ଗୁଣମୟୀ ମାୟାଦ୍ୱାରା ତାଙ୍କର ରାକ୍ଷସ, ଅସୁର ଓ ଦେବତା--ଏହି ତ୍ରିବିଧ ଶରୀର ରଚିତ ହୋଇଛି । ଏହା ମଧ୍ୟରୁ ସତ୍ତ୍ୱଗୁଣ ଦ୍ୱାରା ହିଁ ସେହି ପରମ ପୁରୁଷାର୍ଥ ଲାଭହୁଏ ।।୧୬-୧୯।। ଶ୍ରୀ ଶୁକଦେବ କହିଲେ, ପରିକ୍ଷିତ, ମନୁଷ୍ୟମାନଙ୍କ ସଂଶୟ ଦୂର କରିବାକୁ ସରସ୍ୱତୀ ନଦୀ ତଟରେ ସମବେତ ମୁନିଋଷିମାନେ ପରମପୁରୁଷ ବିଷ୍ଣୁଙ୍କ ପାଦପଦ୍ମ ସେବା କରି ତାଙ୍କର ପରମପଦକୁ ଲାଭ କଲେ ।।୨୦।। ସୂତମୁନି କହିଲେ, ଶୌନକାଦି ଋଷିମାନେ, ଭଗବାନ ପୁରୁଷୋତ୍ତମଙ୍କର ଏହି କମନୀୟ କୀର୍ତ୍ତିଗାଥା ଜନ୍ମ ମୃତ୍ୟୁରୂପ ସଂସାରଭୟକୁ ଦୂର କରେ । ବ୍ୟାସନନ୍ଦନ ଶୁକଦେବଙ୍କ ମୁଖପଦ୍ମରୁ ଏହି ମଧୁର ଅମୃତଧାରା ପ୍ରବାହିତ ହୋଇଚି । ସଂସାର ପଥରେ କ୍ଳାନ୍ତ ଯେଉଁ ପଥିକ କର୍ଣ୍ଣପୁଟରେ ଏହାକୁ ବାରମ୍ବାର ପାନକରେ, ତା'ର ପଥଭ୍ରମଣଜନିତ ପଥଶ୍ରମ ଦୂର ହୋଇଯାଏ ।।୨୧।।

ଶ୍ରୀ ଶୁକଦେବ କହିଲେ, ପରିକ୍ଷିତ, ଦିନେ ଦ୍ୱାରକାପୁରୀରେ ଜଣେ ବ୍ରାହ୍ମଣୀଙ୍କ ଗର୍ଭରୁ ଏକ ପୁତ୍ର ଜନ୍ମ ହୋଇ ଭୂମିସ୍ପର୍ଶମାତ୍ରେ ମରିଗଲା ।।୨୨।। ବ୍ରାହ୍ମଣ ମନଦୁଃଖରେ ସେହି ମୃତପୁତ୍ରକୁ ଧରି ରାଜଦ୍ୱାରରେ ଥୋଇ କାତର ଭାବରେ ବିଳାପ କଲେ । ସେ

କହିବାକୁ ଲାଗିଲେ, ଏହି ନୀଚ ରାଜାର କର୍ମଦୋଷରୁ ହିଁ ମୋ ପୁତ୍ରର ମୃତ୍ୟୁ ଘଟିଛି । ଏହି ରାଜା ହେଉଛି ବ୍ରାହ୍ମଣଦ୍ୱେଷୀ, ଶଠବୁଦ୍ଧି, ଲୋଭୀ ଓ ବିଷୟ ଭୋଗରେ ଆସକ୍ତ । ଯେଉଁ ହିଂସାରତ ଦୁଷ୍ଟସ୍ୱଭାବ ରାଜା ନିଜର ଇନ୍ଦ୍ରିୟମାନଙ୍କୁ ଜୟ କରି ନ ଥାଏ, ତା'ର ପ୍ରଜାମାନେ ଦରିଦ୍ର ଓ ସର୍ବଦା ଦୁଃଖିତ ହୋଇ ନାନା କଷ୍ଟ ଭୋଗ କରନ୍ତି ॥୨୩-୨୫॥ ପରୀକ୍ଷିତ, ଏହିପରି ସେହି ବ୍ରାହ୍ମଣଙ୍କର ଦ୍ୱିତୀୟ ଓ ତୃତୀୟ ପୁତ୍ର ଜନ୍ମ ହେଉ ହେଉ ମରିଗଲେ, ଏବଂ ବ୍ରାହ୍ମଣ ସେଇ ମୃତ ପୁତ୍ରଙ୍କୁ ରାଜଦ୍ୱାରରେ ଛାଡ଼ିଦେଇ ସେହିପରି ଗାଳି ଦେବାକୁ ଲାଗିଲେ ॥୨୬॥ ଏହିପରି ବ୍ରାହ୍ମଣଙ୍କର ନବମ ପୁତ୍ର ମରିଯିବାରୁ ବ୍ରାହ୍ମଣ ଯେତେବେଳେ ଆସି ପୁଣି ସେହି କଥା କହିଲେ, ସେତେବେଳେ କୃଷ୍ଣଙ୍କ ନିକଟରେ ଅର୍ଜୁନ ବସିଥିଲେ । ସେ ବ୍ରାହ୍ମଣଙ୍କୁ କହିଲେ, ଆପଣଙ୍କର ଏହି ଦ୍ୱାରକାରେ କଣ କେହି ଧନୁର୍ଦ୍ଧାରୀ କ୍ଷତ୍ରିୟ ନାହାନ୍ତି, ? କ୍ଷତ୍ରିୟମାନେ ଏଠାରେ କ୍ଷାତ୍ରବୃତ୍ତି ଛାଡ଼ି ବୋଧହୁଏ ବ୍ରାହ୍ମଣ ହୋଇ ଯାଗଯଜ୍ଞ କରୁଛନ୍ତି ? ଯେଉଁ କ୍ଷତ୍ରିୟଙ୍କ ମଧ୍ୟରେ ବ୍ରାହ୍ମଣମାନେ ଶୋକାତୁର ହୁଅନ୍ତି ସେଇ କ୍ଷତ୍ରିୟମାନେ ରାଜାବେଶରେ ନଟମାନଙ୍କ ପରି ପ୍ରାଣ ପୋଷଣ କରନ୍ତି । ବ୍ରାହ୍ମଣ, ମୁଁ ଏଠାରେ ରହି ଶୋକାତୁର ତୁମ ଦୁହିଁଙ୍କର ସନ୍ତାନଙ୍କୁ ରକ୍ଷା କରିବି । ଯଦି ମୋର ପ୍ରତିଜ୍ଞା ମୁଁ ନ ରଖେ, ତା'ହେଲେ ପ୍ରାୟଶ୍ଚିତ୍ତ ସ୍ୱରୂପ ଅଗ୍ନିରେ ପ୍ରବେଶ କରିବି ॥୨୭-୩୦॥ ବ୍ରାହ୍ମଣ କହିଲେ, ଧନୁର୍ଦ୍ଧରମାନଙ୍କ ମଧ୍ୟରେ ଶ୍ରେଷ୍ଠ ସଙ୍କର୍ଷଣ, ବାସୁଦେବ ଓ ପ୍ରଦ୍ୟୁମ୍ନ ଏବଂ ଅଦ୍ୱିତୀୟ ରଥୀ ଅନିରୁଦ୍ଧ ମଧ୍ୟ ଯାହାକୁ ରକ୍ଷା କରିପାରୁ ନାହାନ୍ତି, ସ୍ୱୟଂ ଜଗଦୀଶ୍ୱରଙ୍କ ପକ୍ଷରେ ଯାହା ଦୁଷ୍କର, ତୁମେ କିପରି ତାହା କରିବାକୁ ଇଚ୍ଛା କରୁଛ ? ଏହା ତୁମର ବାଚାଳତା ମାତ୍ର । ଏଥିରେ ମୋର ବିଶ୍ୱାସ ହେଉ ନାହିଁ ॥୩୧-୩୨॥ ଅର୍ଜୁନ କହିଲେ ବ୍ରହ୍ମନ୍ ମୁଁ ବଳରାମ ନୁହେଁ, କୃଷ୍ଣ ନୁହେଁ, ବା ପ୍ରଦ୍ୟୁମ୍ନ ନୁହେଁ । ମୁଁ ହେଉଛି ଅର୍ଜୁନ ଏବଂ ମୋର ଧନୁର ନାମ ଗାଣ୍ଡୀବ । ମୋର ବଳବୀର୍ଯ୍ୟରେ ମୁଁ ମହାଦେବଙ୍କୁ ସନ୍ତୁଷ୍ଟ କରିପାରିଛି । ତେଣୁ ମୋତେ ତୁମେ ଅବଜ୍ଞା କର ନାହିଁ । ଯୁଦ୍ଧରେ ମୃତ୍ୟୁକୁ ଜୟ କରି ମୁଁ ତୁମର ପୁତ୍ରକୁ ଆଣିଦେଇ ପାରିବି ॥୩୩-୩୪॥ ହେ ଅରିନ୍ଦମ ପରିକ୍ଷିତ, ବ୍ରାହ୍ମଣ ଅର୍ଜୁନଙ୍କଦ୍ୱାରା ଏହିପରି ଆଶ୍ୱସ୍ତ ହୋଇ ଏବଂ ତାଙ୍କର ପରାକ୍ରମ ଶ୍ରବଣ କରି ପ୍ରସନ୍ନ ହୋଇ ନିଜ ଗୃହକୁ ଫେରିଗଲେ ॥୩୫॥ ପୁଣି ବ୍ରାହ୍ମଣଙ୍କ ଭାର୍ଯ୍ୟାଙ୍କର ପ୍ରସବ ସମୟ ନିକଟ ହେବାରୁ ବ୍ରାହ୍ମଣ ଅର୍ଜୁନଙ୍କ ପାଖକୁ ଆସି ବ୍ୟସ୍ତ ହୋଇ କହିଲେ, ଅର୍ଜୁନ ବର୍ତ୍ତମାନ ମୋ ସନ୍ତାନକୁ ମୃତ୍ୟୁରୁ ରକ୍ଷା କର ॥୩୬॥ ଅର୍ଜୁନ ପବିତ୍ର ଜଳକୁ ସ୍ପର୍ଶ କରି ଭଗବାନ୍ ମହେଶ୍ୱରଙ୍କୁ ନମସ୍କାର କଲେ ଏବଂ ଦିବ୍ୟ ଅସ୍ତ୍ରମାନଙ୍କୁ ସ୍ମରଣ କରି ଗୁଣ ଚଢ଼ାଇ ଗାଣ୍ଡୀବ ଧନୁକୁ ଧାରଣକଲେ । ସେ ନାନା ଅସ୍ତ୍ରରେ ଯୋଜିତ ଶରମାନଙ୍କରେ ପ୍ରସବଗୃହକୁ ଅବରୁଦ୍ଧ କଲେ; ଉପର, ତଳ ଓ ତିର୍ଯକ୍ ଭାବରେ ଅର୍ଜୁନ ବାଣର ଗୋଟିଏ ପିଞ୍ଜରା କଲେ । ତା'ପରେ ବ୍ରାହ୍ମଣୀଙ୍କର ଗୋଟିଏ ପୁତ୍ର ଜନ୍ମ ହେଲା ଏବଂ ବାରମ୍ବାର ରୋଦନ କରିବାକୁ ଲାଗିଲା । କିନ୍ତୁ ଦେଖୁଦେଖୁ ସଶରୀରେ ଶିଶୁଟି ଆକାଶରେ ଅନ୍ତର୍ଦ୍ଧାନ ହୋଇଗଲା ॥୩୭-୩୯॥ ତହୁଁ ବ୍ରାହ୍ମଣ କୃଷ୍ଣଙ୍କ ଆଗରେ ଅର୍ଜୁନଙ୍କୁ ନିନ୍ଦା କରିବାକୁ ଲାଗିଲେ । ସେ କହିଲେ, ମୋର ମୂର୍ଖତାକୁ ଦେଖ । ଏକ ନପୁଂସକର ଆତ୍ମବଡ଼ିମାରେ ମୁଁ ବିଶ୍ୱାସ କରିଗଲି । ଯାହାକୁ ପ୍ରଦ୍ୟୁମ୍ନ, ଅନିରୁଦ୍ଧ, ବଳରାମ ଓ କୃଷ୍ଣ ରକ୍ଷା କରିପାରିଲେ ନାହିଁ, ଅନ୍ୟ କିଏ ତାକୁ ରକ୍ଷା କରିବାକୁ ସମର୍ଥ ହେବ ? ମିଥ୍ୟାବାଦୀ ଅର୍ଜୁନଙ୍କୁ ଧିକ୍ । ଯେଉଁ ଦୁର୍ମତି ଅର୍ଜୁନ ମୂଢ଼ ବୁଦ୍ଧିରେ ଦୈବ ଦ୍ୱାରା ଅପହୃତ ମୋର ପୁତ୍ରକୁ ଫେରାଇଆଣିବାକୁ ଚାହୁଁଥିଲା, ସେଇ ଆତ୍ମଶ୍ଳାଘାକାରୀର ଧନୁକୁ ଧିକ୍ ॥୪୦-୪୨॥ ବ୍ରାହ୍ମଣ ଏହିପରି ନିନ୍ଦା କରୁଥିବାବେଳେ ଅର୍ଜୁନ ସର୍ବତ୍ର ପ୍ରବେଶ କରିବାର ବିଦ୍ୟାକୁ ଆଶ୍ରୟ କରି ଭଗବାନ୍ ଯମ ରହୁଥିବା ସଂଯମନୀ ପୁରୀକୁ ଶୀଘ୍ର ପ୍ରସ୍ଥାନ କଲେ ॥୪୩॥ ସେଠାରେ ବ୍ରାହ୍ମଣଙ୍କ ପୁତ୍ରମାନଙ୍କୁ ନଦେଖି ଅସ୍ତ୍ରଧାରଣପୂର୍ବକ ଇନ୍ଦ୍ର, ଅଗ୍ନି, ନିର୍ଋତି, ସୋମ, ବାୟୁ ଓ ବରୁଣଙ୍କପୁରୀମାନଙ୍କୁ ଏବଂ ରସାତଳ, ସ୍ୱର୍ଗଲୋକ ଓ ଅନ୍ୟ ସ୍ଥାନମାନଙ୍କୁ ଗଲେ ॥୪୪॥ କିନ୍ତୁ ସେହି ସେହି ସ୍ଥାନରେ ବ୍ରାହ୍ମଣପୁତ୍ରମାନଙ୍କୁ ନ ପାଇ ନିଜର ପ୍ରତିଜ୍ଞା ରଖି ପାରିଲେ ନାହିଁ । ତେଣୁ ସେ ଅଗ୍ନିରେ ପ୍ରବେଶ କରିବା ପାଇଁ ପ୍ରସ୍ତୁତ ହେଲେ । ମାତ୍ର ଶ୍ରୀକୃଷ୍ଣ ତାଙ୍କୁ ସେଥିରୁ ନିବୃତ୍ତ କରାଇ କହିଲେ, ଅର୍ଜୁନ, ତୁମେ ନିଜକୁ ନିଜେ ଅବଜ୍ଞା କର ନାହିଁ । ବର୍ତ୍ତମାନ ମୁଁ ତୁମକୁ ବ୍ରାହ୍ମଣର ପୁତ୍ରମାନଙ୍କୁ

ଦେଖାଇଦେଉଛି । ତୁମର ନିନ୍ଦୁକମାନେ ତୁମର ବିମଳକୀର୍ତ୍ତିକୁ ଏହି ମର୍ତ୍ତ୍ୟଲୋକରେ ସ୍ଥାପନ କରିବେ ।।୪୫-୪୬।। ଏହିପରି କହି ଭଗବାନ୍ ଶ୍ରୀକୃଷ୍ଣ ଅର୍ଜୁନଙ୍କ ସହ ନିଜର ଦିବ୍ୟରଥରେ ବସି ପଶ୍ଚିମ ଦିଗକୁ ଯାତ୍ରାକଲେ ।।୪୭।। ସେ ଅର୍ଜୁନଙ୍କ ସହିତ ସପ୍ତସମୁଦ୍ର, ସାତ ସାତଟି ପର୍ବତଯୁକ୍ତ ସପ୍ତଦ୍ୱୀପ ଏବଂ ଲୋକାଲୋକ ପର୍ବତକୁ ଅତିକ୍ରମ କରି ନିବିଡ଼ ଅଂଧକାର ମଧ୍ୟରେ ପ୍ରବେଶ କଲେ ।।୪୮।। ଭରତବଂଶୀୟ ପରିକ୍ଷିତ, ଶୈବ୍ୟ, ସୁଗ୍ରୀବ, ମେଘପୁଷ୍ପ ଓ ବଳାହକ ନାମକ ଭଗବାନଙ୍କ ରଥର ଚାରୋଟିଯାକ ଅଶ୍ୱ ସେହି ନିବିଡ଼ ଅନ୍ଧକାରରେ ବାଟ ନପାଇ ଆଗକୁ ଯାଇ ପାରିଲେ ନାହିଁ ।।୪୯।। ଭଗବାନ୍ ଶ୍ରୀକୃଷ୍ଣ ଥିଲେ ମହାଯୋଗେଶ୍ୱରଙ୍କ ଈଶ୍ୱର । ଏହା ଦେଖି ସେ ସହସ୍ର ସୂର୍ଯ୍ୟସମ ତେଜୀୟାନ୍ ନିଜ ଚକ୍ରକୁ ଆଗକୁ ପଠାଇଲେ ।।୫୦।। ରାଜା ପରୀକ୍ଷିତ, ଭଗବାନ୍ ଶ୍ରୀରାମଙ୍କ ଧନୁର୍ଗୁଣରୁ ଚ୍ୟୁତ ବାଣ ଯେପରି ରାକ୍ଷସ ସେନାଙ୍କୁ ବିଦୀର୍ଣ୍ଣ କରି ସେମାନଙ୍କ ମଧ୍ୟରେ ପ୍ରବେଶ କରିଥିଲା, ସେହିପରି ମନରୂପୀ ଦ୍ରୁତଗାମୀ ସୁଦର୍ଶନଚକ୍ର ସେହିପରି ନିଜର ବିପୁଳତର ତେଜରେ ପ୍ରକୃତିସୃଷ୍ଟ ସେହି ନିବିଡ଼ ଅନ୍ଧକାରକୁ ଚିରି ଚିରି ତା ମଧ୍ୟରେ ପ୍ରବେଶକଲା ।।୫୧।। ଘନ ଅନ୍ଧକାର ମଧ୍ୟରେ ଚକ୍ର ଯେଉଁ ପଥ ଦେଇ ଯାଉଥିଲା, ଅର୍ଜୁନ ସେହି ପଥର ଆରପାରରେ ସେଇ ଅନ୍ଧକାରକୁ ବ୍ୟାପି ଯାଉଥିବା ଏକ ସୀମାହୀନ ଜ୍ୟୋତିର୍ମଣ୍ଡଳ ଦେଖିବାରୁ ତାଙ୍କର ଦୁଇ ଆଖି ଝଲସିଗଲା ଏବଂ ସେ ଆଖି ବୁଜି ଦେଲେ ।।୫୨।। ତାହାପରେ ଭଗବାନ୍ ଶ୍ରୀକୃଷ୍ଣ ପ୍ରବଳବାୟୁଚାଳିତ ବିଶାଳ ତରଙ୍ଗମାଳାରେ ଯୁକ୍ତ ସମୁଦ୍ର ମଧ୍ୟରେ ପ୍ରବେଶ କଲେ ଏବଂ ସେଠାରେ ଜକ୍ ଜକ୍ କରୁଥିବା ସହସ୍ର ମଣିମୟ ସ୍ତମ୍ଭମାନଙ୍କଦ୍ୱାରା ଶୋଭିତ ଏକ ଅଦ୍ଭୁତ ଜ୍ୟୋତିର୍ମୟ ଭବନ ଦେଖିବାକୁ ପାଇଲେ ।।୫୩।। ସେଠାରେ ନିଜର ସହସ୍ର ଫଣାର ମଣିରକାନ୍ତିରେ ଜାଜ୍ୱଲ୍ୟମାନ, ଦୁଇ ସହସ୍ର ନୟନଯୁକ୍ତ, ଅତି ଭୟଙ୍କର ଓ ଶୁଭ୍ର ରଜତପର୍ବତର ଆଭାଯୁକ୍ତ, ନୀଳକଣ୍ଠ ଓ ନୀଳଜିହ୍ୱ ଅନନ୍ତନାଗଙ୍କୁ ଦେଖିଲେ ।।୫୪।। ଅର୍ଜୁନ ଦେଖିଲେ, ଭଗବାନ ଶେଷଦେବଙ୍କର ସୁଖ ଶଯ୍ୟାରେ ମହାତେଜସ୍ୱୀ ପୁରୁଷୋତ୍ତମ ବିଦ୍ୟମାନ ଅଛନ୍ତି । ତାଙ୍କର ଦେହ ବର୍ଷାକାଳୀନ ମେଘପରି ଶ୍ୟାମଳବର୍ଣ୍ଣ । ସେ ସୁନ୍ଦର ସୁନେଲିବସ୍ତ୍ର ପରିଧାନ କରିଛନ୍ତି । ତାଙ୍କର ନେତ୍ର ସୁନ୍ଦର ଓ ଆୟତ ଏବଂ ମୁଖମଣ୍ଡଳ ପ୍ରସନ୍ନ । ମହାମଣି ଖଚିତ କିରୀଟ ଓ କୁଣ୍ଡଳର ପ୍ରଭାରେ ତାଙ୍କର ବିକ୍ଷିପ୍ତ କେଶରାଶି ଦୀପ୍ତିମାନ ଓ ସୁନ୍ଦର ଦେଖାଯାଉଚି । ତାଙ୍କର ଦୀର୍ଘ ଓ ଚାରୁ ଅଷ୍ଟଭୁଜ, ଗଳାରେ କୌସ୍ତୁଭମଣି, ବକ୍ଷସ୍ଥଳରେ ଶ୍ରୀବତ୍ସ ଚିହ୍ନ ଏବଂ ସେ ବନମାଳାରେ ପରିବୃତ ।।୫୫-୫୬।। ସୁନନ୍ଦ, ନନ୍ଦ ପ୍ରଭୃତି ନିଜ ପାର୍ଷଦ, ସୁଦର୍ଶନ ଚକ୍ର ଆଦି ନିଜ ମୂର୍ତ୍ତିମନ୍ତ ଆୟୁଧ, ମୂର୍ତ୍ତିମତୀ ପୁଷ୍ଟି, ଶ୍ରୀ ଓ କୀର୍ତ୍ତି ସହିତ ମାୟା(ଅଜ), ଏବଂ ମୂର୍ତ୍ତିମତୀ ଅଣିମା ଆଦି ଅଷ୍ଟସିଦ୍ଧି ଭଗବାନଙ୍କ ସେବାରେ ନିଯୁକ୍ତ ଅଛନ୍ତି । ବ୍ରହ୍ମାଦି ଲୋକପାଳଙ୍କ ଈଶ୍ୱର ସେହି ଭଗବାନ୍‌ଙ୍କୁ ଅର୍ଜୁନ ଦର୍ଶନ କଲେ ।।୫୭।। ଭଗବାନ୍ ଶ୍ରୀକୃଷ୍ଣ ଆତ୍ମସ୍ୱରୂପ ଅନନ୍ତଙ୍କୁ ବନ୍ଦନା କଲେ । ଅର୍ଜୁନ ତାଙ୍କୁ ଦେଖି ଭୟଭୀତ ହୋଇଥିଲେ ମଧ୍ୟ ତାଙ୍କୁ ବନ୍ଦନା କଲେ ଏବଂ ଉଭୟେ କୃତାଞ୍ଜଳି ହୋଇ ରହିଲେ । ସେତେବେଳେ ପରମେଷ୍ଠୀମାନଙ୍କ ସ୍ୱାମୀ ମହା ମହିମ ଭଗବାନ ଅଟ୍ଟହସି ଗମ୍ଭୀର ସ୍ୱରରେ କହିଲେ, ହେ କୃଷ୍ଣାର୍ଜୁନ, ତୁମ ଦୁହିଁଙ୍କୁ ଦେଖିବା ଇଚ୍ଛାରେ ମୁଁ ସେହି ବ୍ରାହ୍ମଣପୁତ୍ରମାନଙ୍କୁ ଏଠାକୁ ନେଇଆସିଛି । ତୁମେ ଦୁହେଁ ଧର୍ମରକ୍ଷାପାଇଁ ମୋର କଳାରେ ପୃଥିବୀରେ ଅବତୀର୍ଣ୍ଣ ହୋଇଛ । ଅବନୀର ଭାରସ୍ୱରୂପ ଅସୁରମାନଙ୍କୁ ସଂହାର କରି ମୋ ନିକଟକୁ ଶୀଘ୍ର ଫେରିଆସ । ତୁମେ ଦୁହେଁ ନରନାରାୟଣ ଋଷି । ତୁମର ସମସ୍ତ କାମନା ପୂର୍ଣ୍ଣ ହୋଇଛି ଏବଂ ତୁମେ ସମସ୍ତଙ୍କ ମଧ୍ୟରେ ଶ୍ରେଷ୍ଠ । କେବଳ ସଜ୍ଜନଙ୍କର ରକ୍ଷାପାଇଁ ଲୋକଶିକ୍ଷା ରୂପକ ଧର୍ମ ଆଚରଣ କର ।।୫୮-୬୦।। ଏହିପରି ଭଗବାନ୍ ପରମେଷ୍ଠୀଙ୍କଦ୍ୱାରା ଆଦିଷ୍ଟ ହୋଇ ଶ୍ରୀକୃଷ୍ଣ ଓ ଅର୍ଜୁନ ତାଙ୍କର ଆଦେଶକୁ ଶିରୋଧାର୍ଯ୍ୟ କରି ତାଙ୍କୁ ନମସ୍କାର କଲେ ଏବଂ ବ୍ରାହ୍ମଣବାଳକମାନଙ୍କୁ ଧରି ଯେଉଁ ବାଟରେ ଯାଇଥିଲେ, ସେହି ବାଟରେ ନିଜ ଧାମକୁ ପ୍ରଫୁଲ୍ଲ ମନରେ ଫେରିଆସିଲେ । ସେହି ବିପ୍ରଙ୍କୁ କୃଷ୍ଣ ଓ ଅର୍ଜୁନ ବୟସରେ ବଡ଼ ହୋଇଯାଇଥିବା ତାଙ୍କର ପୁତ୍ରମାନଙ୍କୁ ଅର୍ପଣକଲେ ।।୬୧-୬୨।। ଭଗବାନ୍ ବିଷ୍ଣୁଙ୍କର ପରମଧାମକୁ ଦେଖି ଅର୍ଜୁନ ଅତିଶୟ ଆଶ୍ଚର୍ଯ୍ୟ ହେଲେ । ମନୁଷ୍ୟମାନଙ୍କର ଯାହାକିଛି ପୁରୁଷକାର, ତାହା ଭଗବାନ୍ କୃଷ୍ଣଙ୍କର

ଅନୁକମ୍ପା ବୋଲି ସେ ସ୍ୱୀକାର କଲେ । ଭଗବାନ୍ ଶ୍ରୀକୃଷ୍ଣ ଏହି ପୃଥିବୀରେ ଏହିପରି ଅନେକ ପରାକ୍ରମ ଓ ବୀରତ୍ୱପୂର୍ଣ୍ଣ ଲୀଳାମାନ ପ୍ରଦର୍ଶନ କରିଥିଲେ । ସାଧାରଣ ଲୋକପରି ବିଷୟଭୋଗ କରୁଥିଲେ ଓ ରାଜାମାନଙ୍କ ପରି ଏବଂ ଅତି ଉତ୍କୃଷ୍ଟ ଯଜ୍ଞମାନ କରୁଥିଲେ ॥୬୩-୬୪॥ ଇନ୍ଦ୍ର ଯେପରି ବାଞ୍ଛିତ ସମୟରେ ଜଳବୃଷ୍ଟି କରି ଲୋକଙ୍କୁ ପାଳନକରନ୍ତି, ସର୍ବଶ୍ରେଷ୍ଠ ଭଗବାନ୍ ଶ୍ରୀକୃଷ୍ଣ ସେହିପରି ବ୍ରାହ୍ମଣଆଦି ପ୍ରଜାମାନଙ୍କ ମଧ୍ୟରେ ସକଳ ଅଭୀଷ୍ଟ ବସ୍ତୁମାନ ବିତରଣ କରୁଥିଲେ । ସେ ଅଧର୍ମୀ ରାଜାମାନଙ୍କୁ ନିଜେ ନିହତ କରି ଏବଂ ଅର୍ଜୁନାଦିଙ୍କ ଦ୍ୱାରା ନିହତ କରାଇ ଧର୍ମପୁତ୍ର ଯୁଧିଷ୍ଠିର ଆଦିଙ୍କ ଦ୍ୱାରା ଅନାୟାସରେ ଧର୍ମର ସ୍ଥାପନ କରାଇଥିଲେ ॥୬୫-୬୬॥

## ନବେ ଅଧ୍ୟାୟ

# ଦ୍ୱାରକାପୁରୀରେ ଶ୍ରୀକୃଷ୍ଣଙ୍କ ବିହାର

ଶ୍ରୀ ଶୁକଦେବ କହିଲେ, ପରିକ୍ଷିତ, ଲକ୍ଷ୍ମୀପତି ଭଗବାନ୍ ଶ୍ରୀକୃଷ୍ଣ ନିଜର ପୁରୀ ଦ୍ୱାରକାରେ ଷୋଳହଜାର ସ୍ତ୍ରୀଙ୍କର ଏକମାତ୍ର ସ୍ୱାମୀ ରୂପେ ସୁଖରେ ବାସ କରୁଥିଲେ ଏବଂ ପତ୍ନୀମାନଙ୍କ ଗୃହରେ ବିହାର କରୁଥିଲେ । ଦ୍ୱାରକା ଥିଲା ସମସ୍ତ ସମ୍ପତ୍ତିରେ ସମୃଦ୍ଧ । ଯାଦବଶ୍ରେଷ୍ଠମାନେ ସେଠାରେ ସୁନ୍ଦର ଅଟ୍ଟାଳିକାମାନଙ୍କରେ ବାସ କରୁଥିଲେ । ବେଶଭୂଷାରେ ସଜ୍ଜିତ ସୁନ୍ଦରୀ ନବଯୌବନା ସ୍ତ୍ରୀମାନେ କନ୍ଦୁକ କ୍ରୀଡ଼ାରେ ରତ ଥିବାବେଳେ ତାଙ୍କ ଅଙ୍ଗପ୍ରତ୍ୟଙ୍ଗ ବିଜୁଳିପରି ଝଟକୁଥିଲା । ରାଜମାର୍ଗମାନଙ୍କରେ ମଦସ୍ରାବୀ ମତ୍ତଗଜମାନେ, ଅଳଙ୍କୃତ ପଦାତିକ ସୈନ୍ୟମାନେ, ଅଶ୍ୱମାନେ ଓ ସୁବର୍ଣ୍ଣମଣ୍ଡିତ ରଥମାନ ସର୍ବଦା ଯାତାୟାତ କରୁଥିଲେ । ଉଦ୍ୟାନ ଓ ଉପବନମାନଙ୍କର ଚାରିଆଡ଼େ ପୁଷ୍ପିତ ବୃକ୍ଷମାନଙ୍କର ଶୋଭା, ପକ୍ଷୀମାନଙ୍କର କୂଜନ ଓ ଭ୍ରମରମାନଙ୍କର ଗୁଞ୍ଜନ ନଗରର ଶୋଭା ବଢ଼ାଇଦେଉଥିଲା । ଜଳାଶୟମାନଙ୍କରେ ବିଭିନ୍ନପ୍ରକାର ପଦ୍ମ ଓ କଇଁଫୁଲମାନ ଫୁଟୁଥିଲା ଏବଂ ଫୁଲର ରେଣୁରେ ପୁଷ୍କରିଣୀମାନଙ୍କର ଜଳ ନିର୍ମଳ ଓ ସୁବାସିତ ଥିଲା ଏବଂ ପକ୍ଷୀମାନେ କଳରବ କରୁଥିଲେ ॥୧-୬॥ ସମସ୍ତ ବିଭବଯୁକ୍ତ ଭଗବାନ୍ ଶ୍ରୀକୃଷ୍ଣ ଏହି ସବୁ ପୁଷ୍କରିଣୀରେ ସ୍ନାନ କଲାବେଳେ ପତ୍ନୀମାନଙ୍କର ଆଲିଙ୍ଗନଦ୍ୱାରା ସେମାନଙ୍କ ସ୍ତନର କୁଙ୍କୁମ ତାଙ୍କ ଦେହରେ ବୋଳିହୋଇଯାଉଥିଲା । ସେହି ସମୟରେ ସୂତ, ମାଗଧ ଓ ବନ୍ଦିମାନେ ଆନନ୍ଦରେ ମୃଦଙ୍ଗ, ଢୋଲ, ନାଗରା ଓ ବୀଣା ଆଦି ବାଦନ କରୁଥିଲେ ଓ ଗନ୍ଧର୍ବମାନେ ତାଙ୍କ ଯଶ ଗାନ କରୁଥିଲେ ॥୭-୮॥ ସ୍ନାନସମୟରେ କୃଷ୍ଣଙ୍କର ସ୍ତ୍ରୀମାନେ ହସି ହସି କେବେକେବେ ପିଚକାରିରେ ପାଣି ପକାଇ ତାଙ୍କୁ ତିନ୍ତାଇ ଦେଉଥିଲେ ଏବଂ କୃଷ୍ଣ ମଧ୍ୟ ସେମାନଙ୍କୁ ଛାଡ଼ୁନଥିଲେ ଅର୍ଥାତ୍ ତାଙ୍କ ଉପରେ ପାଣି ପକାଉଥିଲେ । ଯକ୍ଷରାଜ କୁବେର ଯକ୍ଷିଣୀମାନଙ୍କ ସହିତ ବିହାର କରିବା ପରି ଭଗବାନ୍ ନିଜର ପତ୍ନୀମାନଙ୍କ ସହିତ କ୍ରୀଡ଼ା କରୁଥିଲେ ॥୯॥ କୃଷ୍ଣଙ୍କ ସ୍ତ୍ରୀମାନଙ୍କର ଲୁଗା ଓଦା ହୋଇଯିବା ଫଳରେ ସେମାନଙ୍କର କୁଚ ଓ ଜଘନ ସବୁ ଫୁଟି ଦେଖାଯାଉଥିଲା, ଏବଂ ସେମାନଙ୍କର କବରୀରୁ ଫୁଲସବୁ ଖସି ପଡୁଥିଲା । ସେମାନେ ପାଣି ପକାଉଥିବାବେଳେ କୃଷ୍ଣଙ୍କ ହାତରୁ ପିଚକାରି ଛଡ଼ାଇନେବା ବାହାନାରେ ତାଙ୍କୁ ଆଲିଙ୍ଗନ କରୁଥିଲେ । ଏହିପରି କନ୍ଦର୍ପ ଉତ୍ସବରେ ବିଳାସ କରି ସେମାନେ ଅତିଶୟ ପ୍ରଫୁଲ୍ଲ ଦେଖାଯାଉଥିଲେ ॥୧୦॥ ସ୍ତ୍ରୀମାନଙ୍କ ଆଲିଙ୍ଗନ ଫଳରେ ଭଗବାନ୍ ଶ୍ରୀକୃଷ୍ଣଙ୍କ ବକ୍ଷସ୍ଥ ମାଳାରେ ସେମାନଙ୍କ ସ୍ତନର କୁଙ୍କୁମ ବୋଳି ହୋଇଯାଉଥିଲା ଏବଂ ସେ କ୍ରୀଡ଼ାରେ ମତ୍ତ ହୋଇଯିବାରୁ ତାଙ୍କ କୁଞ୍ଚିତ କେଶରାଶି ମୁକୁଳା ହୋଇପଡୁଥିଲା । ସେ ତାଙ୍କ ପତ୍ନୀମାନଙ୍କୁ ଏବଂ ପତ୍ନୀମାନେ ତାଙ୍କୁ ବାରମ୍ବାର ଓଦା କରିବାରେ ଲାଗୁଥିଲେ । ହସ୍ତିନୀମାନଙ୍କଦ୍ୱାରା ପରିବେଷ୍ଟିତ ଗଜରାଜ ଜଳକ୍ରୀଡ଼ା କରିବାପରି କୃଷ୍ଣ ତାଙ୍କ ପତ୍ନୀମାନଙ୍କ ସହିତ ଜଳକ୍ରୀଡ଼ା କରୁଥିଲେ ॥୧୧॥ ସ୍ନାନ ସାରିବାପରେ କୃଷ୍ଣ ଓ

ତାଙ୍କ ପତ୍ନୀମାନେ ନଟ ଓ ନର୍ତ୍ତକୀଙ୍କୁ ଏବଂ ଗୀତବାଦ୍ୟକୁ ଜୀବିକା କରିଥିବା ଅନ୍ୟମାନଙ୍କୁ ବସ୍ତ୍ର ଓ ଅଳଙ୍କାର ଆଦି ଦାନ କରୁଥିଲେ ॥୧୨॥ ଏହିପରି ବିହାର କରି କୃଷ୍ଣ ନିଜର ଗତି, ଆଳାପ, ଦୃଷ୍ଟି, ହାସ୍ୟ-ପରିହାସ ଓ ଆଲିଙ୍ଗନ ଆଦିଦ୍ୱାରା ତାଙ୍କ ସ୍ତ୍ରୀମାନଙ୍କର ଚିତ୍ତକୁ ହରଣ କରିନେଉଥିଲେ ॥୧୩॥ ପରିକ୍ଷିତ, ମୁକୁନ୍ଦଙ୍କ ଠାରେ ନିଜର ଚିତ୍ତ ସମର୍ପଣ କରିଥିବା ଏହି ସ୍ତ୍ରୀମାନେ କମଳନୟନ କୃଷ୍ଣଙ୍କ ବିଚ୍ଛେଦରେ କିପରି ପାଗଳପ୍ରାୟ ପ୍ରଳାପ କରୁଥିଲେ, ତାହା ବର୍ତ୍ତମାନ ମୁଁ କହୁଛି, ଶୁଣ ॥୧୪॥

କୃଷ୍ଣଙ୍କର ରାଣୀମାନେ କୁରରୀ ପକ୍ଷୀକୁ ଦେଖି କହୁଥିଲେ, ମନୁଷ୍ୟଲୋକରେ ଭଗବାନ୍ ଶ୍ରୀକୃଷ୍ଣ ନିଜର ସ୍ୱରୂପକୁ ଗୋପନ ରଖି ରାତ୍ରି ସମୟରେ ଗାଢ଼ନିଦ୍ରା ଯାଇଛନ୍ତି । ଆଶ୍ଚର୍ଯ୍ୟର କଥା ତୁମେ ନିଦ୍ରା ତ୍ୟାଗ କରି କାହିଁକି ବିଳାପ କରୁଛ ? ସେହି କମଳନୟନ କୃଷ୍ଣଙ୍କର ଉଦାର ହାସ୍ୟଯୁକ୍ତ କଟାକ୍ଷ ତୁମର ହୃଦୟକୁ ବିଦ୍ଧ କରୁଛି କି ? ॥୧୫॥ ହେ ଚକୋରୀ, ତୁମର ବନ୍ଧୁଙ୍କୁ ରାତିରେ ନ ଦେଖି କରୁଣ ବିଳାପରେ ଏହି ବିନିଦ୍ର ରଜନୀକୁ କଟାଉଛ କି ? କିମ୍ବା ଆମମାନଙ୍କ ପରି ଶ୍ରୀକୃଷ୍ଣଙ୍କର ଦାସୀ ହୋଇ ତାଙ୍କ ଚରଣଚିହ୍ନିତ ମାଳାକୁ କବରୀରେ ଧାରଣ କରିବାକୁ ଇଚ୍ଛା କରୁଛ କି ? ଏବଂ ତାହା ନ ପାଇ ଏପରି କ୍ରନ୍ଦନ କରୁଛ କି ? ॥୧୬॥ ହେ ସମୁଦ୍ର, ତୁମେ କେତେବେଳେ ହେଲେ ନିଦ୍ରା ଯାଅ ନାହିଁ, ସବୁବେଳେ ଜାଗ୍ରତ ରହି ଗର୍ଜନ କର । ସର୍ବସ୍ୱ ହରାଇଥିବା ଆମମାନଙ୍କପରି କୌସ୍ତୁଭମଣି ଆଦି ହରାଇ ତୁମର ଏହି ଦୁର୍ଦ୍ଦଶା ଘଟି ନାହିଁ ତ ? ॥୧୭॥ ହେ ଚନ୍ଦ୍ର, ବଳବାନ୍ ଯକ୍ଷ୍ମାରୋଗଦ୍ୱାରା ତୁମେ ଆକ୍ରାନ୍ତ ହୋଇଛ । ସେଥିପାଇଁ ଏପରି କ୍ଷୀଣ ହୋଇଯାଇ ନିଜର ତେଜରେ କ'ଣ ଅନ୍ଧକାରକୁ ଦୂର କରିପାରୁନାହଁ ? କିମ୍ବା ଆମପରି କୃଷ୍ଣଙ୍କର ହାସ୍ୟ ପରିହାସ ବାକ୍ୟମାନଙ୍କ ବିସ୍ମରଣ ଯୋଗୁଁ ତୁମେ କଥାବାର୍ତ୍ତା ବନ୍ଦ କରି ଏପରି ଚୁପ ହୋଇଯାଇଛ ? ॥୧୮॥ ମଳୟାନିଳ, ଆମେ ତୁମର କ'ଣ ଅପ୍ରିୟ କାର୍ଯ୍ୟ କରିଛୁ ? ଗୋବିନ୍ଦଙ୍କ କଟାକ୍ଷପାତରେ ଆମର ହୃଦୟ ବିଦ୍ଧ ହେଉଛି, ତୁମେ ପୁଣି କନ୍ଦର୍ପକୁ ପଠାଇ ଆମକୁ ଆହୁରି ଦୁଃଖ ଦେଉଛ ? ॥୧୯॥ ହେ ମେଘ, ହେ ଶ୍ରୀମାନ୍, ତୁମର ଶ୍ୟାମବର୍ଣ୍ଣଯୋଗୁଁ ତୁମେ ତ ନିଶ୍ଚୟ ଯାଦବେନ୍ଦ୍ରଙ୍କର ପ୍ରିୟ ସଖା; ତୁମେ ତାଙ୍କର ପ୍ରେମରେ ବନ୍ଧା ହୋଇଛ ଏବଂ ଆମପରି ସେହି ଶ୍ରୀବତ୍ସଲାଞ୍ଛନଙ୍କୁ ସର୍ବଦା ଧ୍ୟାନ କରୁଛ । ଆମପରି ମଧ୍ୟ ତୁମେ ଅତିଶୟ ଉତ୍କଣ୍ଠାରେ ବ୍ୟାକୁଳ ହୋଇ ବାରମ୍ବାର ତାଙ୍କୁ ସ୍ମରଣ କରି କରି ବାଷ୍ପଧାରା ମୋଚନ କରୁଛ । ହେ ମେଘ, ଶ୍ରୀଶ୍ୟାମସୁନ୍ଦରଙ୍କ ପ୍ରସଙ୍ଗ ବାସ୍ତବରେ ଦୁଃଖପ୍ରଦ ॥୨୦॥ ହେ କୋକିଳ, ତୁମର କୁହୁ ଧ୍ୱନି ମୃତସଞ୍ଜୀବନୀ ଆଣିଦିଏ । ତୁମେ କୃଷ୍ଣଙ୍କ ବିଷୟରେ ନିଶ୍ଚୟ ଗାୟନ କରୁଛ । ହେ ମଧୁରକଣ୍ଠ କୋକିଳ, ଆମେ ତୁମର କି ପ୍ରିୟ କାର୍ଯ୍ୟ କରିବୁ, କହ ॥୨୧॥ ହେ ଭୂଧର, ହେ ପର୍ବତ, ତୁମେ ଉଦାରବୁଦ୍ଧିସମ୍ପନ୍ନ । ଗମ୍ଭୀର ଭାବରେ ତୁମେ କେଉଁ କଥା ଚିନ୍ତା କରୁଛ ? ତୁମେ ତ ଯାଅ ନାହିଁ, କି କହ ନାହିଁ, ଅଥବା ଆମମାନଙ୍କପରି ତୁମେ ବସୁଦେବନନ୍ଦନ କୃଷ୍ଣଙ୍କର ପାଦପଦ୍ମକୁ ତୁମର ସ୍ତନତୁଲ୍ୟ ଶୃଙ୍ଗମାନଙ୍କରେ ଧାରଣ କରିବାକୁ ଇଚ୍ଛାକରୁଛ କି ? ॥୨୨॥ ହେ ସିନ୍ଧୁପତ୍ନୀ ନଦୀମାନେ, ଆମର ଅଭିଳଷିତ ଭର୍ତ୍ତା ଯଦୁପତିଙ୍କର ପ୍ରେମପୂର୍ଣ୍ଣ ଦୃଷ୍ଟି ଲାଭ ନକରି ଆମର ଚିତ୍ତ ବ୍ୟଥିତ ହେଉଛି ଏବଂ ଆମେ କ୍ଷୀଣ ହୋଇଯାଉଛୁ । ତୁମେମାନେ ମଧ୍ୟ ତୁମର ପ୍ରିୟ ସମୁଦ୍ରର ପ୍ରେମପୂର୍ଣ୍ଣ ଦୃଷ୍ଟିରୁ ବଞ୍ଚିତ ହୋଇ (ଗ୍ରୀଷ୍ମକାଳରେ) କ୍ଷୀଣ ହୋଇଯାଉଛ ଏବଂ ତୁମ ମଧ୍ୟରେ ପଦ୍ମଫୁଲର ଶୋଭା ଆଉ ଦେଖାଯାଉ ନାହିଁ ॥୨୩॥ ହେ ହଂସ, ତୁମକୁ ସ୍ୱାଗତ କରୁଛୁ । ତୁମେ ଏଠାରେ ବସ । କିଛି କ୍ଷୀର ପାନ କର । ଆମେ ତୁମକୁ କୃଷ୍ଣଙ୍କର ଦୂତ ବୋଲି ଜାଣୁ । ତେଣୁ ତାଙ୍କ କଥା ଆମକୁ କହ । ସେ କୁଶଳରେ ଅଛନ୍ତି ତ ? ଅଥବା ତାଙ୍କର ଚଞ୍ଚଳ ପ୍ରଣୟଯୋଗୁଁ ସେ ପୂର୍ବରୁ ଆମକୁ ଯାହା କହିଥିଲେ, ତାହା ମନେ ପକାଉଛନ୍ତି କି ନାହିଁ ? ସେ ଆମକୁ କାହିଁକି ମନେ ପକାଇବେ ? ତୁମେ ଏତିକି ଟିକିଏ କାମ କର । ଲକ୍ଷ୍ମୀଦେବୀଙ୍କୁ ଛାଡ଼ି ସେହି ସର୍ବକାମପ୍ରଦ କୃଷ୍ଣଙ୍କ ସହିତ ଆଳାପ କର ଏବଂ ପଚାର--ଆମମାନଙ୍କ ମଧ୍ୟରେ ଲକ୍ଷ୍ମୀ କ'ଣ ତାଙ୍କର ଏକମାତ୍ର ନିଷ୍ଠାପର ପତ୍ନୀ ? ॥୨୪॥

ଶ୍ରୀକୃଷ୍ଣଙ୍କର ପତ୍ନୀମାନେ ଯୋଗେଶ୍ୱରଙ୍କ ଈଶ୍ୱର କୃଷ୍ଣଙ୍କଠାରେ ଏହିପରି ଶ୍ରଦ୍ଧା ରଖିଥିଲେ, ଯାହା ଫଳରେ ସେମାନେ ପରମଗତି ଲାଭ କଲେ ॥୨୫॥ ବହୁକୀର୍ତ୍ତିତ ଭଗବାନ୍ ଶ୍ରୀକୃଷ୍ଣଙ୍କର କୀର୍ତ୍ତିଗାଥା ଶୁଣିବାମାତ୍ରେ ପତ୍ନୀମାନଙ୍କର ମନ ଅତି ବେଗରେ ତାଙ୍କଆଡ଼କୁ ଆକୃଷ୍ଟ ହୋଇଥାଏ । ଏଣୁ ଯେଉଁମାନେ ତାଙ୍କ ସାକ୍ଷାତ୍ ଦର୍ଶନ ପାଉଥିଲେ, ସେମାନଙ୍କ କଥା କ'ଣ ଅବା କହିବା ? ॥୨୬॥ ଯେଉଁ ସ୍ତ୍ରୀଲୋକମାନେ ଜଗଦ୍‌ଗୁରୁ ଶ୍ରୀକୃଷ୍ଣଙ୍କୁ ପତିରୂପେ ପାଇ ପ୍ରେମରେ ତାଙ୍କ ପାଦସେବା କରୁଥିଲେ, ସେମାନେ ଯେ କେତେ ତପସ୍ୟା କରି ତାହା ପାଇଥିଲେ, ତାହା ବର୍ଣ୍ଣନା କରାଯାଇ ନ ପାରେ । ସାଧୁମାନଙ୍କର ପରମଗତି ଭଗବାନ୍ ଏହିପରି ବେଦୋକ୍ତ ଧର୍ମ ଆଚରଣ କରୁଥିଲେ । ଗୃହସ୍ଥାଶ୍ରମରେ ରହି ଧର୍ମ, ଅର୍ଥ ଓ କାମ-ଏହି ତ୍ରିବିଧ ପୁରୁଷାର୍ଥର ସ୍ଥାନ କଣ, ତାହା ସେ ଦେଖାଇଦେଉଥିଲେ ॥୨୭-୨୮॥ ମହାରାଜ ପରିକ୍ଷିତ, ଗୃହସ୍ଥର ଶ୍ରେଷ୍ଠଧର୍ମ ଆଚରଣ କରୁଥିବା ଭଗବାନ୍ ଶ୍ରୀକୃଷ୍ଣଙ୍କର ଷୋଳହଜାର ଏକଶହ ଆଠ ଜଣ ମହିଷୀ ଥିଲେ । ଏହି ସ୍ତ୍ରୀରତ୍ନମାନଙ୍କ ମଧ୍ୟରେ ରୁକ୍ମିଣୀ ଆଦି ଅଷ୍ଟ-ପାଟବଂଶୀ ଏବଂ ତାଙ୍କ ପୁତ୍ରମାନଙ୍କ କଥା ପୂର୍ବରୁ ମୁଁ ବର୍ଣ୍ଣନା କରିଛି ॥୨୯-୩୦॥ ରତିକ୍ରିୟାରେ ଭଗବାନ୍ ଶ୍ରୀକୃଷ୍ଣ ଥିଲେ ଅନନ୍ୟ ଏବଂ ତାଙ୍କ ଅନ୍ୟ ଭାର୍ଯ୍ୟାମଧ୍ୟରୁ ପ୍ରତ୍ୟେକଙ୍କର ଦଶ ଜଣ ଲେଖାଁଏ ପୁତ୍ର ଜନ୍ମ ହୋଇଥିଲେ ॥୩୧॥ ମହାବଳଶାଳୀ କୃଷ୍ଣଙ୍କ ପୁତ୍ରମାନଙ୍କ ମଧ୍ୟରେ ଅଠର ଜଣ ଥିଲେ ଯଶସ୍ୱୀ ମହାରଥୀ । ସେମାନଙ୍କର ନାମ ହେଲା--ପ୍ରଦ୍ୟୁମ୍ନ, ଅନିରୁଦ୍ଧ, ଦୀପ୍ତିମାନ୍, ଭାନୁ, ସାମ୍ବ, ମଧୁ, ବୃହଦ୍‌ଭାନୁ, ଚିତ୍ରଭାନୁ, ବୃକ, ଅରୁଣ, ପୁଷ୍କର, ବେଦବାହୁ, ଶ୍ରୁତଦେବ, ସୁନନ୍ଦନ, ଚିତ୍ରବାହୁ, ବିରୂପ, କବି ଓ ନ୍ୟଗ୍ରୋଧ ॥୩୨-୩୪॥ ରାଜେନ୍ଦ୍ର, ମଧୁସୂଦନଙ୍କର ଏହି ପୁତ୍ରମାନଙ୍କ ମଧ୍ୟରେ ରୁକ୍ମିଣୀନନ୍ଦନ ପ୍ରଦ୍ୟୁମ୍ନ ଥିଲେ ସବୁଠାରୁ ଶ୍ରେଷ୍ଠ ଏବଂ ସବୁଗୁଣରେ ପିତୃତୁଲ୍ୟ । ମହାରଥୀ ପ୍ରଦ୍ୟୁମ୍ନ ରୁକ୍ମୀଙ୍କର କନ୍ୟାକୁ ବିବାହ କରିଥିଲେ ଏବଂ ପ୍ରଦ୍ୟୁମ୍ନଙ୍କ ଔରସରୁ ତାଙ୍କ ସ୍ତ୍ରୀଙ୍କ ଗର୍ଭରେ ଦଶ ସହସ୍ର ହସ୍ତୀର ବଳ ଥିବା ବୀର ଅନିରୁଦ୍ଧ ଜନ୍ମ ହୋଇଥିଲେ । ଅନିରୁଦ୍ଧ ରୁକ୍ମୀଙ୍କ ପୌତ୍ରୀ (ପୁଅର ଝିଅ)କୁ ବିବାହ କରିଥିଲେ ଓ ଏହି ପତ୍ନୀଙ୍କ ଗର୍ଭରୁ ଅନିରୁଦ୍ଧଙ୍କର ବଜ୍ର ନାମକ ପୁତ୍ର ଜନ୍ମ ହୋଇଥିଲେ । ବ୍ରାହ୍ମଣଙ୍କ ଅଭିଶାପରେ ମୁଷଳଦ୍ୱାରା ଧ୍ୱଂସପ୍ରାପ୍ତ ଯଦୁବଂଶର ସେ ଏକମାତ୍ର କୁଳାଙ୍କୁର ଥିଲେ ॥୩୫-୩୭॥ ବଜ୍ରଙ୍କର ପୁତ୍ର ହେଲେ ପ୍ରତିବାହୁ । ପ୍ରତିବାହୁଙ୍କର ପୁତ୍ର ସୁବାହୁ । ସୁବାହୁଙ୍କ ।ରୁ ଶାନ୍ତସେନ ଓ ଶାନ୍ତସେନଙ୍କଠାରୁ ଶତସେନ ଜନ୍ମହେଲେ । ଏହି ବଂଶରେ କେହି ନିର୍ଧନ, ଅଳ୍ପସନ୍ତାନ, ଅବ୍ରହ୍ମଣ୍ୟ ଅଳ୍ପାୟୁଷ ବା ଅଳ୍ପବଳ ନଥିଲେ । ସେମାନେ ବହୁ ସନ୍ତାନର ଜନକ ଥିଲେ ଏବଂ ସମସ୍ତେ ବ୍ରାହ୍ମଣଙ୍କର ଭକ୍ତ ଥିଲେ ॥୩୮-୩୯॥ ଯଦୁବଂଶରେ ଯେଉଁ ବିଖ୍ୟାତ-କର୍ମା ପୁରୁଷମାନେ ଜନ୍ମ ହୋଇଥିଲେ ହଜାରେ ବର୍ଷରେ ମଧ୍ୟ ସେମାନଙ୍କର ସଂଖ୍ୟା ଗଣନା କରିହେବ ନାହିଁ । ଶୁଣାଯାଏ ଯେ ଯଦୁବଂଶର ଏହି ଅଗଣିତ କୁମାରମାନଙ୍କୁ ଶିକ୍ଷା ଦେବାପାଇଁ ତିନି କୋଟି ଅଠାଶୀ ଲକ୍ଷ ଆଚାର୍ଯ୍ୟ ନିଯୁକ୍ତ ହୋଇଥିଲେ । ଏପରି ସ୍ଥଳେ ଯାଦବମାନଙ୍କର ସଂଖ୍ୟା କିଏ ଗଣନା କରିପାରିବ ? କେବଳ ଯଦୁବଂଶର ରାଜା ଉଗ୍ରସେନଙ୍କସହିତ ଏକ ନୀଳ (୧୦୦୦୦୦୦୦୦୦୦୦୦୦) ସୈନ୍ୟ ରହୁଥିଲେ ॥୪୦-୪୨॥

ପ୍ରାଚୀନକାଳରେ ଦେବାସୁର ଯୁଦ୍ଧରେ ଅତି ନିଷ୍ଠୁର ଯେଉଁ ଦୈତ୍ୟମାନେ ନିହତ ହୋଇଥିଲେ, ସେମାନେ ପରେ ମନୁଷ୍ୟମାନଙ୍କ ମଧ୍ୟରେ ଜନ୍ମ ଗ୍ରହଣ କରି ଅତି ଦର୍ପରେ ପ୍ରଜାପୀଡ଼ନ କରୁଥିଲେ । ସେମାନଙ୍କୁ ଦମନ କରିବାପାଇଁ ଭଗବାନ୍ ଶ୍ରୀହରିଙ୍କ ଆଦେଶରେ ଦେବଗଣ ଯଦୁକୁଳରେ ଅବତୀର୍ଣ୍ଣ ହେଲେ । ଏହି ଯଦୁବଂଶରେ ଶହେ ଏକ ଶାଖା ଥିଲା । ସେମାନେ ସମସ୍ତେ ଭଗବାନ୍ ଶ୍ରୀକୃଷ୍ଣଙ୍କୁ ନିଜର ପ୍ରଭୁ ବୋଲି ଗ୍ରହଣ କରିଥିଲେ । ଶ୍ରୀକୃଷ୍ଣଙ୍କ ଅନୁଗାମୀ ଭାବରେ ସେମାନଙ୍କର ସମସ୍ତ ଶ୍ରୀବୃଦ୍ଧି ଘଟିଥିଲା ॥୪୩-୪୫॥ କୃଷ୍ଣଗତପ୍ରାଣ ଯାଦବମାନେ ଶୟନ, ଉପବେଶନ, ଭ୍ରମଣ, ଆଳାପ, କ୍ରୀଡ଼ା ଓ ସ୍ନାନାଦି କାର୍ଯ୍ୟରେ ନିରତ ରହି ଅନେକ ସମୟରେ ନିଜକୁ ନିଜେ ଚିହ୍ନିପାରୁ ନ ଥିଲେ ॥୪୬॥ ପରିକ୍ଷିତ, ଶ୍ରୀକୃଷ୍ଣଙ୍କର ଆବିର୍ଭାବ ପୂର୍ବରୁ ସୁରଧୁନୀ ଗଙ୍ଗା ସବୁଠାରୁ ଶ୍ରେଷ୍ଠତୀର୍ଥ ଥିଲା । କିନ୍ତୁ ଭଗବାନ୍ ଶ୍ରୀକୃଷ୍ଣ ଯେତେବେଳେ ଯଦୁବଂଶରେ ଜନ୍ମହେଲେ, ସମସ୍ତ

ତୀର୍ଥର ଆଧାର ତାଙ୍କରି ଯଶରେ ଗଙ୍ଗାଜଳର ମହିମା ଆପେ ଆପେ କମିବାକୁ ଲାଗିଲା । ଭଗବାନଙ୍କର ମହିମା ଏପରି ଥିଲା ଯେ ତାଙ୍କୁ ପ୍ରେମ କରୁଥିବା ଭକ୍ତ ଓ ଦ୍ୱେଷ କରୁଥିବା ଶତ୍ରୁ ଉଭୟ ହିଁ ତାଙ୍କ ସାରୂପ୍ୟ ଲାଭ କରିଥିଲେ । ଯେଉଁ ଲକ୍ଷ୍ମୀଙ୍କୁ ଲାଭ କରିବାପାଇଁ ବ୍ରହ୍ମାଦି ବଡ଼ବଡ଼ ଦେବତାମାନେ ଲାଗିପଡ଼ିଥା'ନ୍ତି, ସେହି ଲକ୍ଷ୍ମୀଦେବୀ ଅହରହ ଭଗବାନଙ୍କର ସେବା କରୁଥା'ନ୍ତି । ଯାହାଙ୍କର ନାମ ଶୁଣିଲେ ବା ଉଚ୍ଚାରଣ କଲେ, ସମସ୍ତ ଅମଙ୍ଗଳ ନଷ୍ଟ ହୋଇଯାଏ, ଯେ ଋଷିମାନଙ୍କର କୁଳଧର୍ମର ପ୍ରବର୍ତ୍ତକ ଏବଂ କାଳରୂପକ ଚକ୍ର ଯାହାଙ୍କର ଆୟୁଧ, ସେହି ସର୍ବେଶ୍ୱର ଭଗବାନ୍ ଶ୍ରୀକୃଷ୍ଣ ଏହି ପୃଥିବୀର ଭାର ଯେ ହରଣ କରିଥିଲେ, ସେଥିରେ ଆଶ୍ଚର୍ଯ୍ୟ ହେବାର କିଛି ନାହିଁ ।।୪୭।। ଭଗବାନ୍ ଶ୍ରୀକୃଷ୍ଣ ସମସ୍ତ ଜୀବଙ୍କର ଆଶ୍ରୟସ୍ଥଳ । ସେ ଜନ୍ମରହିତ ହେଲେ ମଧ୍ୟ ସମସ୍ତଙ୍କର କହିବାପାଇଁ ସେ ଦେବକୀଙ୍କ ଗର୍ଭରୁ ଜନ୍ମ ହୋଇଥିଲେ । ଶ୍ରେଷ୍ଠ ଯଦୁବଂଶୀୟ ବୀରମାନେ ସଭାସଦ୍‌ରୂପେ ତାଙ୍କୁ ସେବା କରୁଥିଲେ । ସେ ନିଜର ଭୁଜବଳଦ୍ୱାରା ଅବଲୀଳାକ୍ରମେ ଅଧର୍ମକୁ ଦୂର କରିଥିଲେ ଏବଂ ଚରାଚର ସମସ୍ତ ପ୍ରାଣୀଙ୍କର ପାପ ଓ ଦୁଃଖ ହରଣ କରିଥିଲେ । ତାଙ୍କର ମଧୁର ହାସ୍ୟଯୁକ୍ତ ମୁଖପଦ୍ମ ବ୍ରଜରମଣୀ ଓ ପୁରସ୍ତ୍ରୀମାନଙ୍କର କାମବର୍ଦ୍ଧନ କରୁଥିଲା । ସେହି ଶ୍ରୀକୃଷ୍ଣ ଭଗବାନ୍‌ଙ୍କର ଜୟହେଉ ।।୪୮।। ଏହିପରି ପରମାତ୍ମା ନିଜଦ୍ୱାରା ସ୍ଥାପିତ ଧର୍ମମର୍ଯ୍ୟାଦା ରକ୍ଷା କରିବାପାଇଁ ଲୀଳାବିଗ୍ରହ ଧାରଣକରିଥିଲେ ଏବଂ ତଦନୁରୂପ ଯେଉଁ ଅଦ୍ଭୁତ କର୍ମମାନ କରିଗଲେ, ଯଦୁକୁଳତିଳକ ଶ୍ରୀକୃଷ୍ଣଙ୍କର ସେହି କର୍ମମାନ ଶ୍ରବଣ କଲେ ସମସ୍ତ କର୍ମବନ୍ଧନ ନଷ୍ଟ ହୋଇଯାଏ । ତାଙ୍କ ଚରଣସେବାକୁ ଇଚ୍ଛା କରୁଥିବା ବ୍ୟକ୍ତିର ତାଙ୍କ ଏହି ଲୀଳାକଥା ଶ୍ରବଣ କରିବା ବାଞ୍ଛନୀୟ ।।୪୯।। ପରିକ୍ଷିତ, କ୍ଷିତିପତି ରାଜାମାନେ ମଧ୍ୟ ତାଙ୍କୁ ଲାଭକରିବାପାଇଁ ନିଜ ରାଜ୍ୟସମ୍ପଦକୁ ଛାଡ଼ିଦେଇ ବନକୁ ଯାତ୍ରା କରୁଥିଲେ । ଭଗବାନ୍ ମୁକୁନ୍ଦଙ୍କର ପରମ ରମଣୀୟ ଲୀଳାକଥା ଶ୍ରବଣ, କୀର୍ତ୍ତନ ଓ ଚିନ୍ତନଦ୍ୱାରା ତାଙ୍କପ୍ରତି ଯେଉଁ ସେବାଭକ୍ତି ଜାତ ହୁଏ, ତଦ୍ୱାରା ମନୁଷ୍ୟ ଦୁରନ୍ତ ମୃତ୍ୟୁର ଅତୀତ ତାଙ୍କ ପରମଧାମକୁ ପ୍ରାପ୍ତ ହୁଏ ।।୫୦।।

## ଏକାଦଶ ସ୍କନ୍ଧ

### ପ୍ରଥମ ଅଧ୍ୟାୟ

# ଯଦୁବଂଶୀମାନଙ୍କୁ ଋଷିମାନଙ୍କର ଅଭିଶାପ

ବ୍ୟାସନନ୍ଦନ ଶ୍ରୀ ଶୁକଦେବ କହିଲେ, ମହାରାଜ, ଶ୍ରୀବଳରାମ ଓ ଯଦୁବଂଶୀୟମାନଙ୍କ ସହ ମିଶି ଭଗବାନ୍ ଶ୍ରୀକୃଷ୍ଣ ଦୈତ୍ୟମାନଙ୍କୁ ବଧ କଲେ ଏବଂ କୌରବ ଓ ପାଣ୍ଡବଙ୍କ ମଧ୍ୟରେ ପ୍ରବଳ କଳହ ସୃଷ୍ଟି କରି ପୃଥିବୀର ଭାର ହରଣ କଲେ ॥୧॥ କୌରବମାନେ ପାଣ୍ଡବମାନଙ୍କୁ ଅତିଶୟ ଅବଜ୍ଞା କରୁଥିଲେ ଓ ଅପମାନ ଦେଉଥିଲେ । କପଟପାଶା, ଦ୍ରୌପଦୀଙ୍କର କେଶକର୍ଷଣ ଏବଂ ଅନ୍ୟାନ୍ୟ ଅନେକ ଘଟଣାରେ ସେମାନେ ପାଣ୍ଡବମାନଙ୍କୁ ବାରମ୍ବାର ଅପମାନିତ ଓ କ୍ରୋଧିତ କଲେ । ପାଣ୍ଡବମାନଙ୍କୁ ନିମିତ୍ତ କରି କୁରୁକ୍ଷେତ୍ର ଯୁଦ୍ଧରେ ଉଭୟ ପକ୍ଷରୁ ସମବେତ ଯୋଦ୍ଧାମାନଙ୍କୁ ନିହତ କରି ଶ୍ରୀକୃଷ୍ଣ ପୃଥିବୀର ଭାର ଉଶ୍ୱାସ କରିଥିଲେ ॥୨॥ ଭଗବାନ୍ ଶ୍ରୀକୃଷ୍ଣଙ୍କ ମହିମା ଅକଳନୀୟ । ତାଙ୍କର ବାହୁବଳରେ ସୁରକ୍ଷିତ ଯାଦବମାନଙ୍କଦ୍ୱାରା ସେ ଦୁଷ୍ଟରାଜାଙ୍କୁ ଓ ତାଙ୍କ ସୈନ୍ୟମାନଙ୍କୁ ଯୁଦ୍ଧରେ ବିନାଶ କରିଥିଲେ । ତା'ପରେ ସେ ଚିନ୍ତା କଲେ, ମୋର ସୁରକ୍ଷାରେ ରହି ଯାଦବମାନେ ଅତିଶୟ ଉଚ୍ଛୃଙ୍ଖଳ ହୋଇଗଲେଣି । ତେଣୁ ଏମାନେ ଯଦି ରହିଯିବେ, ତାହେଲେ ପୃଥିବୀର ଭାର ଉଶ୍ୱାସ ହେବ ନାହିଁ । ମୋ ଦ୍ୱାରା ରକ୍ଷିତ ଏହି ଯାଦବମାନଙ୍କୁ କେହି ପରାସ୍ତ କରିପାରିବେ ନାହିଁ । ଐଶ୍ୱର୍ଯ୍ୟ ବଢ଼ି ଚାଲିବା ସଙ୍ଗେ ସଙ୍ଗେ ସେମାନଙ୍କର ଔଦ୍ଧତ୍ୟ ମଧ୍ୟ ବଢ଼ିଯାଇଛି । ପରସ୍ପର ଘଷି ହେବାଦ୍ୱାରା ଯେପରି ବାଉଁଶଗଛରୁ ନିଆଁ ବାହାରି ସବୁ ବାଉଁଶକୁ ଭସ୍ମ କରିଦିଏ, ସେହିପରି ଏମାନଙ୍କ ମଧ୍ୟରେ କଳହ ସୃଷ୍ଟି କଲେ ମୁଁ ଶାନ୍ତି ଲାଭକରି ସ୍ୱଧାମକୁ ଫେରିଯିବି ॥୩-୪॥

ରାଜା ପରିକ୍ଷିତ, ଭଗବାନ୍ ସବୁବେଳେ ନିଜର ସଙ୍କଳ୍ପକୁ ସତ୍ୟ କରିଥାନ୍ତି, ତେଣୁ ଋଷିମାନଙ୍କର ଅଭିଶାପ ଛଳରେ ସେ ନିଜ ବଂଶର ସଂହାର କଲେ ॥୫॥ ଭଗବାନ୍ ତାଙ୍କ ଲାବଣ୍ୟମୟ ମୂର୍ତ୍ତି ଓ ମଧୁର ମନୋହର ବାକ୍ୟଦ୍ୱାରା ଲୋକମାନଙ୍କର ନୟନ, ମନ ଓ ବାଣୀକୁ ହରଣ କରିନେଉଥିଲେ । ତାଙ୍କ କଥା ସ୍ମରଣ କରିବାମାତ୍ରେ ଲୋକଙ୍କର ଚିତ୍ତ ତାଙ୍କଠାରେ ଲାଗିରହୁଥିଲା; ତାଙ୍କ ପଦଚିହ୍ନକୁ ଦେଖିଲେ ଲୋକେ ଅନ୍ୟପଥରେ ଯିବାକୁ ଇଚ୍ଛା କରୁ ନ ଥିଲେ । ସୁନ୍ଦର ଶ୍ଳୋକମାନଙ୍କଦ୍ୱାରା କବିମାନେ ତାଙ୍କ ପବିତ୍ର କୀର୍ତ୍ତିକୁ ଲୋକରେ ବିସ୍ତାରିତ କରିଥିଲେ, ଯାହା ଶ୍ରବଣ କଲେ ଲୋକଙ୍କର ଅଜ୍ଞାନତା ଦୂର ହେବ । ଏହାପରେ (ନିଜ ଅବତାରଗ୍ରହଣର କାର୍ଯ୍ୟ ଶେଷ ହୋଇଗଲା ବୋଲି ବିଚାର କରି) ଭଗବାନ୍ ସ୍ୱଧାମକୁ ଫେରିଯାଇଥିଲେ ॥୬-୭॥

ପରିକ୍ଷିତ ପଚାରିଲେ, ହେ ବ୍ରହ୍ମନ୍, ଯାଦବମାନେ ବ୍ରାହ୍ମଣଭକ୍ତ, ଦାନଶୀଳ ଓ କୁଳବୃଦ୍ଧମାନଙ୍କର ଅନୁଗତ ଥିଲେ ଏବଂ ଭଗବାନ୍ ଶ୍ରୀକୃଷ୍ଣଙ୍କଠାରେ ନିଜର ଚିତ୍ତକୁ ସମର୍ପଣ କରିଥିଲେ । ସେମାନଙ୍କୁ ପୁଣି କିପରି ବ୍ରହ୍ମଶାପ ଭୋଗିବାକୁ ହେଲା ? ଅଭିନ୍ନହୃଦୟ ଯାଦବମାନଙ୍କ ମଧ୍ୟରେ କିପରି ଭେଦବୁଦ୍ଧି ସୃଷ୍ଟି ହେଲା ? ଦ୍ୱିଜୋତ୍ତମ, ଏ ସବୁ ମୋତେ ବିସ୍ତାରିତ ଭାବରେ କହିବା ହୁଅନ୍ତୁ ॥୮-୯॥ ଶୁକଦେବ କହିଲେ, ଭଗବାନ୍ ଶ୍ରୀକୃଷ୍ଣଙ୍କର ଶରୀର ଥିଲା ଯାବତୀୟ ସୌନ୍ଦର୍ଯ୍ୟର ଆଧାର । ସେ ପୂର୍ଣ୍ଣକାମ ଥିଲେ । ତଥାପି ସଂସାରକୁ ଆସିଥିବାଯୋଗୁଁ ତାଙ୍କୁ ଅନେକ ମଙ୍ଗଳମୟ କର୍ମ କରିବାକୁ ହୋଇଥିଲା । ଦ୍ୱାରକାପୁରୀକୁ ନିର୍ମାଣ କରି ସେଠାରେ ସ୍ୱଚ୍ଛନ୍ଦରେ ସେ ବିହାର କରୁଥିଲେ । ଚତୁର୍ଦ୍ଦିଗରେ ତାଙ୍କ ଉଦାରକୀର୍ତ୍ତିକୁ ସ୍ଥାପନ କରିବାପରେ ସେ

ନିଜର କୁଳକୁ ସଂହାର କରିବାପାଇଁ ଇଚ୍ଛା କରିଥିଲେ । କାରଣ ପୃଥିବୀର ଭାର ହରଣ କରିବାପାଇଁ ଶେଷକୁ ଏତିକି କାର୍ଯ୍ୟ ରହିଯାଇଥିଲା ।।୧୦।। ଭଗବାନ୍ ଶ୍ରୀକୃଷ୍ଣ ଯେଉଁ ମଙ୍ଗଳମୟ ପବିତ୍ର ଲୀଳାମାନ କରିଗଲେ, ତାହା ଗାନ କଲେ ଲୋକମାନଙ୍କର କଳିକଲୁଷ ଦୂର ହୋଇଯାଏ । ବର୍ତ୍ତମାନ ଭଗବାନ୍ ଶ୍ରୀକୃଷ୍ଣ ବସୁଦେବଙ୍କ ଗୃହରେ ନିଜ ବଂଶର କାଳସ୍ୱରୂପ ହୋଇ ବାସ କରୁଥିଲେ । ସେହି ସମୟରେ ଦିନେ ବିଶ୍ୱାମିତ୍ର, ଅସିତ, ଦୁର୍ବାସା, ଭୃଗୁ, ଅଙ୍ଗିରା, କଶ୍ୟପ, ବାମଦେବ, ଅତ୍ରି, ବଶିଷ୍ଠ ଓ ନାରଦ ଆଦି ମୁନିମାନେ ତାଙ୍କଠାରୁ ବିଦାୟ ନେଇ ଦ୍ୱାରକା ନିକଟବର୍ତ୍ତୀ ପିଣ୍ଡାରକ ତୀର୍ଥକୁ ଯାତ୍ରା କଲେ ।।୧୧-୧୨।।

ସେହି ସମୟରେ କେତେକ ଗର୍ବୀ ଯାଦବକୁମାର କପଟବିନୟ ପ୍ରକାଶ କରି ସେମାନଙ୍କ ପାଦ ଧରି ପ୍ରଣାମ କଲେ ଏବଂ ନାରୀବେଶଧାରୀ ଶାମ୍ବକୁ ଦେଖାଇ ପଚାରିଲେ - ଏହି କଜ୍ଜଳନୟନା ସ୍ତ୍ରୀଲୋକଟି ଆସନ୍ନପ୍ରସବା; ସେ ପୁତ୍ର କାମନା କରୁଛି ଓ ନିଜେ ପଚାରିବାପାଇଁ ଲଜ୍ଜା କରୁଛି । ଆପଣମାନେ ସର୍ବଜ୍ଞ, ତାର କ'ଣ ହେବ ? ପୁଅ ହେବ ନା ଝିଅ ହେବ ? କୁମାରମାନେ ଜାମ୍ବବତୀଙ୍କ ପୁତ୍ର ଶାମ୍ବକୁ ନାରୀବେଶ କରି ଓ ତାଙ୍କ କପଟଗର୍ଭ ଦେଖାଇ ଏହିପରି ପ୍ରଶ୍ନ କଲେ ।।୧୩-୧୫।। ମୁନିମାନେ ଏହି ଉଦ୍ଧତ ଯୁବକମାନଙ୍କର ଉପହାସ ସହି ପାରିଲେ ନାହିଁ । ସେମାନେ କ୍ରୁଦ୍ଧ ହୋଇ କହିଲେ, ହେ ମନ୍ଦବୁଦ୍ଧି, ଏ ଏକ ମୁଷଳ ପ୍ରସବ କରିବ, ଯାହାକି ତୁମର ବଂଶନାଶକ ହେବ ।।୧୬।। ତାହା ଶୁଣି ସେହି ଯାଦବ କୁମାରମାନେ ଭୟଭୀତ ହୋଇଗଲେ ଓ ଶାମ୍ବଙ୍କ ପେଟରୁ ବସ୍ତ୍ର ଖୋଲି ଦେଖିଲେ, ସେଠାରେ ଏକ ଲୌହମୟ ମୁଷଳ ରହିଛି ।।୧୭।। ସେମାନେ ଅନୁତାପ କରିବାକୁ ଲାଗିଲେ, ଆମର ଭାଗ୍ୟ କେଡ଼େ ମନ୍ଦ ! ଆମେ କ'ଣ କଲେ ? ଲୋକମାନେ ଆମକୁ କ'ଣ କହିବେ ? ଏହିପରି ଦୁଃଖରେ ବିହ୍ୱଳ ହୋଇ ମୁଷଳଟିକୁ ଧରି ଗୃହକୁ ପ୍ରସ୍ଥାନ କଲେ ।।୧୮।। ଭୟରେ ସେମାନଙ୍କର ମୁହଁ ଶୁଖି ଯାଇଥିଲା । ସେମାନେ ଯାଦବମାନଙ୍କର ସଭାକୁ ସେହି ମୁଷଳଟିକୁ ଆଣି ରାଜା ଉଗ୍ରସେନଙ୍କ ଆଗରେ ସବୁକଥା ଫିଟାଇ କହିଲେ ।।୧୯।। ପରିକ୍ଷିତ, ସେହି ଅମୋଘ ବ୍ରହ୍ମଶାପର କଥା ଶୁଣି ଓ ମୁଷଳକୁ ଦେଖି ଦ୍ୱାରକାବାସୀ ବିସ୍ମିତ ଓ ଭୟତ୍ରସ୍ତ ହୋଇଗଲେ ।।୨୦।। ରାଜା ଉଗ୍ରସେନ ସେହି ମୁଷଳଟିକୁ ଚୂର୍ଣ୍ଣ କରି ବାକିଥିବା ଅଙ୍ଗଟିକେ ଲୁହା ସହ ତାହାକୁ ସମୁଦ୍ରଜଳକୁ ଫିଙ୍ଗିଦେଲେ ।।୨୧।। **ସେହି ଛୋଟ ଲୁହାଖଣ୍ଡକୁ ଗୋଟିଏ ମାଛ ଗିଳିଦେଲା ଏବଂ ଲୁହାଚୂର୍ଣ୍ଣଯାକ ସମୁଦ୍ରଲହଡ଼ିରେ ଭାସିଆସି କୂଳରେ ଲାଗିଲା । ସମୟକ୍ରମେ ସେଠାରେ ଏକ ଏରକା ବଣ ହୋଇଗଲା ।।୨୨।।** ସମୁଦ୍ରରେ ଜାଲ ପକାଉଥିବା ମତ୍ସ୍ୟଜୀବୀମାନେ ସେଇ ମାଛଟିକୁ ଧରିନେଲେ ଏବଂ ମାଛପେଟରେ ଯେଉଁ ଛୋଟ ଲୁହାଖଣ୍ଡ ଥିଲା, ତାହାକୁ ଆଣି ଜଣେ ବ୍ୟାଧ ନିଜର ଶରମୁନ କଲା ।।୨୩।। ସର୍ବଜ୍ଞ ଭଗବାନ୍ ଶ୍ରୀକୃଷ୍ଣ ସମସ୍ତ କାର୍ଯ୍ୟପାଇଁ ସ୍ୱୟଂସମର୍ଥ ହେଲେ ମଧ୍ୟ ବିପ୍ରଶାପକୁ ଅନ୍ୟଥା କରିବାକୁ ଇଚ୍ଛା କଲେ ନାହିଁ ଏବଂ କାଳରୂପୀ ହୋଇ ଋଷିମାନଙ୍କର ଶାପକୁ ଅନୁମୋଦନ କଲେ ।।୨୪।।

## ଦ୍ୱିତୀୟ ଅଧ୍ୟାୟ

# ରାଜା ଜନକଙ୍କର କିମ୍ବଦନ୍ତୀ

ଶ୍ରୀ ଶୁକଦେବ କହିଲେ, କୁରୁଶ୍ରେଷ୍ଠ ପରିକ୍ଷିତ, ନାରଦ କେଉଁଠି ହେଲେ ବେଶୀ ସମୟ ରହନ୍ତି ନାହିଁ । କିନ୍ତୁ କୃଷ୍ଣ-ଉପାସନାର ଲାଳସା ତାଙ୍କର ଏତେ ପ୍ରବଳ ଥିଲା ଯେ କୃଷ୍ଣଙ୍କ ବାହୁବଳରେ ରକ୍ଷିତ ଦ୍ୱାରକାପୁରୀରେ ସେ ବାରମ୍ବାର ଆସି ରହୁଥିଲେ ।।୧।। ଇନ୍ଦ୍ରାଦି ଦେବତାମାନେ ଯେଉଁ ମୁକୁନ୍ଦଙ୍କର ପାଦପଦ୍ମକୁ ସର୍ବଦା ଭଜନ କରନ୍ତି, ଚାରିଆଡ଼େ ମୃତ୍ୟୁ ଘେରିଥିବା ଏହି ସଂସାରରେ କେଉଁ ଇନ୍ଦ୍ରିୟବାନ୍ ବ୍ୟକ୍ତି ଅଛି ଯେକି ତାଙ୍କରି ପାଦପଦ୍ମକୁ ଭଜନ ନ କରିବ ? ।।୨।। ଦିନେ ଦେବର୍ଷି ନାରଦ

ବସୁଦେବଙ୍କ ଗୃହରେ ଆସି ପହଞ୍ଚିଲେ । ବସୁଦେବ ତାଙ୍କୁ ଅଭିବାଦନ କଲେ ଏବଂ ସେ ଆରାମରେ ବସିବା ପରେ ତାଙ୍କର ପୂଜାର୍ଚ୍ଚନା କରି ଏହିପରି ପଚାରିଲେ-- ॥୩॥ ବସୁଦେବ କହିଲେ, ଭଗବନ୍, ପିତାମାତା ଆସି ପହଞ୍ଚିଲେ ସନ୍ତାନର କୁଶଳ ହୁଏ । ଭଗବତ୍ ମାର୍ଗର ପଥିକ ସାଧୁ ମହାତ୍ମାମାନେ ଆସିଗଲେ ଭଗବତ୍‌ବିମୁଖମାନଙ୍କର କଲ୍ୟାଣ ହୁଏ । କିନ୍ତୁ ଆପଣଙ୍କର ଶୁଭାଗମନରେ ସମସ୍ତ ପ୍ରାଣୀଙ୍କର ମଙ୍ଗଳ ହୋଇଥାଏ । ଦେବତାମାନଙ୍କ ଆଚରଣରେ କେତେବେଳେ ପ୍ରାଣୀମାନଙ୍କର ମଙ୍ଗଳ ହୁଏ ବା କେତେବେଳେ ଅମଙ୍ଗଳ ହୁଏ; କିନ୍ତୁ ଆପଣ କୃଷ୍ଣଗତପ୍ରାଣ । ଆପଣଙ୍କପରି ମହାତ୍ମାମାନଙ୍କ ସଙ୍ଗରେ ହିଁ କେବଳ ସୁଖଲାଭ ହୋଇଥାଏ ॥୪-୫॥ ଦେବତାମାନଙ୍କୁ ଯେ ଯେପରି ଭାବରେ ଭଜନ କରେ ସେହି ଅନୁସାରେ ସେମାନେ ତାକୁ ଫଳ ଦେଇଥା'ନ୍ତି; କିନ୍ତୁ ଦୁଃଖୀମାନଙ୍କର ବନ୍ଧୁ ସାଧୁମାନେ ଛାଇପରି ସେମାନଙ୍କ ସହିତ ରହି ସେମାନଙ୍କ କର୍ମରେ ସହାୟତା କରିଥାନ୍ତି ॥୬॥ ବ୍ରହ୍ମନ୍, ତଥାପି ଭଗବତ୍‌ଧର୍ମ ବିଷୟରେ ମୁଁ ଆପଣଙ୍କୁ ପଚାରୁଛି--ଯାହା ଶ୍ରଦ୍ଧାରେ ଶୁଣିଲେ ମନୁଷ୍ୟ ସମସ୍ତ ଭୟରୁ ମୁକ୍ତ ହୋଇଯାଏ ॥୭॥ ସଂସାରର ମୁକ୍ତିଦାତା ଭଗବାନ୍ ଅନନ୍ତଙ୍କୁ ପୁତ୍ରକାମନାରେ ଆରାଧନା କରିଥିଲି । ସେତେବେଳେ ଦେବମାୟାରେ ମୋହିତ ହୋଇ ମୁଁ ମୋକ୍ଷ ଚାହିନଥିଲି । ହେ ସୁବ୍ରତ, ଏହି ସଂସାର ବଡ଼ ବିଚିତ୍ର । ଏଠାରେ ବିଶ୍ୱର ସମସ୍ତ ଦୁଃଖ ଓ ସମସ୍ତ ଭୟ ରହିଛି । ଏଥିରୁ ସହଜରେ କିପରି ଆମେ ମୁକ୍ତିଲାଭ କରିବୁ, ଆପଣ ତା'ର ପରାମର୍ଶ ଦିଅନ୍ତୁ ॥୮-୯॥ ଶ୍ରୀ ଶୁକଦେବ କହିଲେ, ପରିକ୍ଷିତ, ଧୀମାନ୍ ବସୁଦେବ ଏହିପରି ପ୍ରଶ୍ନ କରିବାରୁ ପ୍ରୀତ ହୋଇ ଦେବର୍ଷି ନାରଦ ଭଗବାନଙ୍କର ଗୁଣାବଳୀ ସ୍ମରଣପୂର୍ବକ ଏହିପରି ଉତ୍ତର ଦେଲେ-- ॥୧୦॥

ଭକ୍ତପ୍ରବର ନାରଦ କହିଲେ, ଭକ୍ତଶ୍ରେଷ୍ଠ ବସୁଦେବ । ବିଶ୍ୱର କଲ୍ୟାଣକାରୀ ଭଗବତ୍‌ଧର୍ମ ସମ୍ପର୍କରେ ତୁମେ ଯଥାର୍ଥ ପ୍ରଶ୍ନ ପଚାରିଛ ॥୧୧॥ ବସୁଦେବ, ସଂସାରରେ ସବୁଠାରୁ ଦ୍ରୋହାଚରଣ କରିଥିବା ବ୍ୟକ୍ତି ଯଦି ଏହି ସତ୍‌ଧର୍ମ କଥା ଶୁଣେ, ପାଠ କରେ, ଧ୍ୟାନ କରେ, ଆଦର କରେ ବା ଅନୁମୋଦନ କରେ, ତାହାହେଲେ ସେ ସଙ୍ଗେ ସଙ୍ଗେ ପବିତ୍ର ହୋଇଯାଏ ॥୧୨॥ ଯାହାଙ୍କର ପବିତ୍ର କଥା ଶୁଣିଲେ ବା କୀର୍ତ୍ତନ କଲେ ପରମ କଲ୍ୟାଣ ସାଧିତ ହୁଏ, ମୋର ଆରାଧ୍ୟ ଦେବତା ସେହି ଭଗବାନ୍ ନାରାୟଣଙ୍କୁ ତୁମେ ଆଜି ମୋତେ ସ୍ମରଣ କରାଇଦେଇଛ । ଏ ସମ୍ପର୍କରେ ଲୋକେ ଏକ ପୁରାତନ ଇତିହାସର ଉଦାହରଣ ଦିଅନ୍ତି । ତାହା ହେଉଛି ବିଦେହରାଜା ନିମି ଓ ଋଷଭଦେବଙ୍କ ପୁତ୍ରମାନଙ୍କର ସମ୍ବାଦ ॥୧୩-୧୪॥ ସ୍ୱାୟଂଭୁବ ମନୁଙ୍କର ପ୍ରିୟବ୍ରତ ନାମରେ ଜଣେ ପୁତ୍ର ଥିଲେ । ପ୍ରିୟବ୍ରତଙ୍କର ପୁତ୍ର ଆଗ୍ନୀଧ୍ର, ତାଙ୍କ ପୁତ୍ର ନାଭି ଓ ତାଙ୍କ ପୁତ୍ର ଥିଲେ ଋଷଭ । ଋଷଭଙ୍କୁ ଭଗବାନ୍ ବାସୁଦେବଙ୍କର ଅଂଶ ବୋଲି କୁହାଯାଏ । ମୋକ୍ଷଧର୍ମ ବିଷୟରେ ଉପଦେଶ ଦେବାପାଇଁ ସେ ସଂସାରରେ ଅବତୀର୍ଣ୍ଣ ହୋଇଥିଲେ ଏବଂ ବ୍ରହ୍ମବିଦ୍ୟାରେ ପାରଙ୍ଗମ ତାଙ୍କର ଶହେ ଜଣ ପୁଅ ଥିଲେ ॥୧୫-୧୬॥ ସେମାନଙ୍କ ମଧ୍ୟରେ ଜ୍ୟେଷ୍ଠ ହେଲେ ଭରତ, ଯେ କି ନାରାୟଣଙ୍କର ପରମ ଭକ୍ତ ଥିଲେ । ତାଙ୍କରି ନାମରେ ଏହି ଭାରତ ବର୍ଷ ନାମିତ ହୋଇ ବିଖ୍ୟାତ ହୋଇଛି । ସାରା ପୃଥିବୀର ରାଜ୍ୟଭୋଗ କରି ଶ୍ରୀହରିଙ୍କୁ ତପସ୍ୟାରେ ଭଜନ କରିବାପାଇଁ ସେ ରାଜଭୋଗ ତ୍ୟାଗ କରିଥିଲେ ଏବଂ ବନକୁ ଯାଇ ଭଗବାନଙ୍କର ଉପାସନା କଲେ । ତିନି ଜନ୍ମରେ ସେ ଭଗବତ୍ ପଦ ଲାଭ କରିଥିଲେ ॥୧୭-୧୮॥ ଋଷଭଦେବଙ୍କର ଅବଶିଷ୍ଟ ପୁଅମାନଙ୍କ ମଧ୍ୟରୁ ନଅ ଜଣ ଭାରତବର୍ଷର ଚତୁର୍ଦ୍ଦିଗରେ ଥିବା (ବ୍ରହ୍ମାବର୍ତ୍ତ ଆଦି) ନଅଟି ଦ୍ୱୀପର ରାଜା ହୋଇଥିଲେ ଏବଂ ଏକାଅଶୀ ଜଣ କର୍ମକାଣ୍ଡ ପ୍ରବର୍ତ୍ତନ କରି ବ୍ରାହ୍ମଣ ହୋଇଗଲେ ॥୧୯॥ ତାଙ୍କର ବାକୀ ନଅ ଜଣ ପୁତ୍ର ଆତ୍ମବିଦ୍ୟାରେ ବିଶାରଦ ସନ୍ନ୍ୟାସୀ ଥିଲେ । ସେହି ମହାତ୍ମାମାନେ ପରମାର୍ଥ ବିଷୟ ନିରୂପଣ କରିଥିଲେ । ସେଥିପାଇଁ ସେମାନେ କଠୋର ପରିଶ୍ରମ କରୁଥିଲେ ଓ ଦିଗମ୍ବର ଥିଲେ । ସେମାନେ ହେଲେ କବି, ହରି, ଅନ୍ତରିକ୍ଷ, ପ୍ରବୁଦ୍ଧ, ପିପ୍ପଲାୟନ, ଆବିର୍ହୋତ୍ର, ଦ୍ରୁମିଳ, ଚମସ ଓ କରଭାଜନ ॥୨୦-୨୧॥ ସେହି ମୁନିମାନେ ସ୍ଥୁଳ ଓ ସୂକ୍ଷ୍ମ ଏହି ବିଶ୍ୱକୁ ଭଗବାନ୍‌ଙ୍କର ସ୍ୱରୂପ ଓ ନିଜର ଆତ୍ମାଠାରୁ ଅଭିନ୍ନ

ବୋଲି ଜାଣି ସ୍ୱଚ୍ଛନ୍ଦରେ ପୃଥିବୀରେ ବିଚରଣ କରୁଥିଲେ ।।୨୨।। ସେମାନେ ଯୁଆଡ଼େ ଇଚ୍ଛା ସିଆଡ଼େ ଯାଇପାରୁଥିଲେ ଓ ସେମାନଙ୍କୁ କେହି ବାଧା ଦେବାକୁ ନ ଥିଲା । ସେମାନେ ଦେବ, ସିଦ୍ଧ, ସାଧ୍ୟ, ଗନ୍ଧର୍ବ, ଯକ୍ଷ, ନର, କିନ୍ନର ଓ ନାଗଲୋକରେ, ମୁନି, ଚାରଣ ଓ ଭୂତନାଥ ଶିବଙ୍କର କୈଳାଶରେ ଏବଂ ବିଦ୍ୟାଧର, ବ୍ରାହ୍ମଣ ଓ ଗୋପାଳଙ୍କ ଗ୍ରାମମାନଙ୍କରେ ସ୍ୱଚ୍ଛନ୍ଦରେ ବିଚରଣ କରୁଥିଲେ ।।୨୩।।

ଏହି ଭାରତବର୍ଷରେ ଏକଦା ମହାତ୍ମା ନିମି ବଡ଼ ବଡ଼ ଋଷିମାନଙ୍କୁ ଧରି ଏକ ବଡ଼ ଧରଣର ଯଜ୍ଞ କରୁଥିଲେ । ଏହି ନଅ ଜଣ ମୁନି ସ୍ୱଚ୍ଛନ୍ଦରେ ବୁଲୁ ବୁଲୁ ସେଠାରେ ଆସି ପହଞ୍ଚିଲେ । ଭଗବାନ୍‌ଙ୍କର ପରମଭକ୍ତ ସୂର୍ଯ୍ୟପରି ତେଜସ୍ୱୀ ସେହି ମୁନିମାନଙ୍କୁ ଦେଖି ଯଜ୍ଞର ଯଜମାନ ନିମି, ଆହବନୀୟ ଆଦି ଯଜ୍ଞର ମୂର୍ତ୍ତିମନ୍ତ ଅଗ୍ନି ଓ ଋତ୍ୱିକ ବ୍ରାହ୍ମଣମାନେ ଠିଆହୋଇପଡ଼ି ତାଙ୍କୁ ଅଭିବାଦନ କଲେ । ବିଦେହରାଜ ନିମି ସେମାନେ ନାରାୟଣଙ୍କର ପରମଭକ୍ତ ବୋଲି ଜାଣିପାରି ଆନନ୍ଦରେ ତାଙ୍କୁ ଉତ୍ତମ ଆସନରେ ବସାଇଲେ ଓ ଯଥାଯୋଗ୍ୟ ପୂଜା କଲେ ।।୨୪-୨୬।। ବ୍ରହ୍ମାଙ୍କର ପୁତ୍ର ସନକାଦିଙ୍କ ପରି ନିଜର ଅଙ୍ଗକାନ୍ତିରେ ସେମାନେ ଅତୀବ ଜାଜ୍ୱଲ୍ୟମାନ ଦେଖାଯାଉଥିଲେ । ଆନନ୍ଦରେ ବିଭୋର ହୋଇ ବିନୀତ ରାଜା ଏହିପରି ଜିଜ୍ଞାସା କଲେ ।।୨୭।। ନିମି କହିଲେ, ମୋର ମନେ ହେଉଛି ଆପଣମାନେ ସାକ୍ଷାତ୍ ଭଗବାନ୍ ମଧୁସୂଦନଙ୍କର ପାର୍ଷଦ । କାରଣ ବିଷ୍ଣୁଭକ୍ତମାନେ ଅଖିଳ ସଂସାରର ଲୋକଙ୍କ ଉଦ୍ଧାରପାଇଁ ସର୍ବତ୍ର ବିଚରଣ କରୁଥାନ୍ତି ।।୨୮।। ଜୀବମାନଙ୍କ ପକ୍ଷରେ ମନୁଷ୍ୟଦେହ ଲାଭ କରିବା କଠିନ । ସେହି କ୍ଷଣଭଙ୍ଗୁର ଦେହ ଧରି ଭଗବାନଙ୍କ ପ୍ରିୟ ଭକ୍ତମାନଙ୍କର ଦର୍ଶନପକ୍ଷେ ଆହୁରି ଦୁର୍ଲଭ ବୋଲି ମୁଁ ମନେକରେ ।।୨୯।। ଏହି ସଂସାରରେ କ୍ଷଣାର୍ଦ୍ଧର ସତ୍‌ସଂଗ ଲୋକମାନଙ୍କପାଇଁ ଏକ ମହାନିଧିଲାଭ ସହିତ ସମାନ । ଏଣୁ ହେ ନିଷ୍ପାପ ମହାତ୍ମାମାନେ, ମନୁଷ୍ୟପକ୍ଷେ ସବୁଠାରୁ ମଙ୍ଗଳକର କ'ଣ, ତାହା ଜାଣିବାପାଇଁ ମୁଁ ଆପଣମାନଙ୍କୁ ପଚାରୁଛି ।।୩୦।। ମୁନିଗଣ, ଭଗବାନ ଜନ୍ମରହିତ । ସେ ପ୍ରସନ୍ନ ହେଲେ ନିଜକୁ ମଧ୍ୟ ଭକ୍ତମାନଙ୍କୁ ଦାନ କରିଦିଅନ୍ତି । ଯଦ୍ୱାରା ସେ ପ୍ରସନ୍ନ ହୁଅନ୍ତି, ସେହି ଭାଗବତ ଧର୍ମ ଶୁଣିବାପାଇଁ ଆପଣମାନେ ଯଦି ଆମକୁ ଯୋଗ୍ୟ ବୋଲି ବିଚାରୁଥାନ୍ତି, ତାହେଲେ ତାହା କହିବା ହୁଅନ୍ତୁ ।।୩୧।। ଶ୍ରୀ ନାରଦ କହିଲେ, ବସୁଦେବ, ରାଜା ନିମି ଏହିପରି ପଚାରିବାରୁ ସେହି ମହାତ୍ମାମାନେ ତାଙ୍କୁ ପ୍ରତି-ଅଭିବାଦନ ଜଣାଇ ସମସ୍ତ ଋତ୍ୱିକ୍ ଓ ସଭାସଦ୍‌ମାନଙ୍କସହିତ ରାଜାଙ୍କୁ ଏହିପରି ଆନନ୍ଦରେ ଉତ୍ତର ଦେଲେ-- ।।୩୨।।

ମହାତ୍ମାମାନଙ୍କ ମଧ୍ୟରୁ କବି କହିଲେ, ସଂସାରରେ ଭଗବାନ୍ ଅଚ୍ୟୁତଙ୍କର ପାଦପଦ୍ମକୁ ନିତ୍ୟ ଉପାସନା କରିବାଦ୍ୱାରା ସମସ୍ତ ଭୟ ଦୂର ହୋଇଯାଏ । ନିଜର ଦେହକୁ ଆତ୍ମା ବୋଲି ମନେ କରୁଥିବା ମନୁଷ୍ୟ ସର୍ବଦା ଭୟ ଓ ଉଦ୍‌ବେଗରେ ରହିଥାଏ । ବିଶ୍ୱାତ୍ମା ପରମେଶ୍ୱରଙ୍କ ସେବାରେ ହିଁ ଭୟ ଦୂର ହୁଏ ବୋଲି ମୁଁ ମନେକରେ ।।୩୩।। ଆତ୍ମଲାଭପାଇଁ ଅପଣ୍ଡିତ, ଅଜ୍ଞଲୋକମାନେ ମଧ୍ୟ ଯେପରି ବୁଝିପାରିବେ, ସେହିପରି ଉପାୟମାନ ଭଗବାନ୍ ନିଜ ମୁହଁରେ ଉପଦେଶ ଦେଇଛନ୍ତି । ତାହା ହିଁ ଭାଗବତ ଧର୍ମ ବୋଲି ବୁଝିନିଅ ।।୩୪।। ରାଜା, ଯେଉଁ ଧର୍ମଗୁଡ଼ିକୁ ଆଶ୍ରୟ କଲେ ଲୋକର କେବେ ହେଲେ ତ୍ରୁଟିବିଚ୍ୟୁତି ହୁଏ ନାହିଁ, ଆଖିବୁଜି ଧାଇଁଲେ ମଧ୍ୟ ପତନ ବା ସ୍ଖଳନ ଘଟେ ନାହିଁ, ସେଇଗୁଡ଼ିକ ହିଁ ଭାଗବତ ଧର୍ମ ।।୩୫।। କାୟାଦ୍ୱାରା, ମନଦ୍ୱାରା ଓ ବାକ୍ୟଦ୍ୱାରା, ଇନ୍ଦ୍ରିୟଦ୍ୱାରା, ବୁଦ୍ଧିଦ୍ୱାରା ବା ଅହଙ୍କାରଦ୍ୱାରା ଏବଂ ବ୍ରାହ୍ମଣତ୍ୱଆଦି ସ୍ୱଭାବଦ୍ୱାରା ଯେଉଁ ସବୁ କାର୍ଯ୍ୟ କରାଯାଏ, ତାହା ପରଂବ୍ରହ୍ମ ନାରାୟଣଙ୍କଠାରେ ସମର୍ପିତ ହେବା ଉଚିତ । ଦେହକୁ ଆତ୍ମାବୋଲି ମନେକରିବା ଯୋଗୁଁ ଭୟ ଜାତ ହୁଏ । ଈଶ୍ୱରବିମୁଖ ବ୍ୟକ୍ତିର ଭଗବତ୍ ସ୍ମରଣ ହୁଏ ନାହିଁ । ଏହି ଦେହାତ୍ମବୁଦ୍ଧି ଭଗବାନଙ୍କ ମାୟାରୁ ହିଁ ସୃଷ୍ଟି ହୁଏ । ତେଣୁ ଗୁରୁଦେବଙ୍କର ଏକାନ୍ତ ସେବା କରି ଭକ୍ତିଦ୍ୱାରା କେବଳ ଭଗବାନଙ୍କର ଉପାସନା କରିବା ଉଚିତ ।।୩୬-୩୭।। ରାଜା, ପରମାତ୍ମା ଭଗବାନ୍‌ଙ୍କ ବ୍ୟତୀତ ଅନ୍ୟ କୌଣସି ବସ୍ତୁ ନାହିଁ । ସ୍ୱପ୍ନରେ ଦେଖୁଥିବା ବିଷୟମାନ ଯେପରି ଅଳୀକ, କିନ୍ତୁ

ମନୁଷ୍ୟ ତାକୁ ସତ୍ୟ ବୋଲି ଗ୍ରହଣ କରେ, ସେହିପରି ଏହି ସଂସାର ହେଉଛି ଅଳୀକ, କଳ୍ପନାବିଳାସ ମାତ୍ର । ବିବେକୀ ବ୍ୟକ୍ତି ବିଭିନ୍ନ ସଙ୍କଳ୍ପ ବିକଳ୍ପ କରୁଥିବା ଏହି ମନକୁ ସଂଯତ କଲେ ଅଭୟପଦ ମିଳେ ॥୩୮॥ ସଂସାରରେ ଚକ୍ରପାଣି ଭଗବାନଙ୍କର ଜନ୍ମ ଓ କର୍ମରୂପକ ବହୁ ମଙ୍ଗଳମୟ ଲୀଳା ଅଛି । ତାଙ୍କର ବହୁନାମ ଓ ସାର୍ଥକ କର୍ମମାନ ମଧ୍ୟ ଗାନ କରାଯାଇଛି । ଅନାସକ୍ତ ଭାବରେ ଏବଂ ବିନା ଲଜ୍ଜା ସଂକୋଚରେ ସେହି ସବୁ ନାମକୁ ଗାୟନ କରାଯିବା ବିଧେୟ ॥୩୯॥ ଯେଉଁ ବ୍ୟକ୍ତି ଏହିପରି ବ୍ରତ ଗ୍ରହଣ କରେ ଏବଂ ନିଜର ପ୍ରିୟ ଭଗବାନ୍‌ଙ୍କର ନାମ କୀର୍ତ୍ତନ କରେ, ତାର ହୃଦୟରେ ଭଗବାନ୍‌ଙ୍କ ପ୍ରତି ଅନୁରାଗ ଜାତ ହୁଏ । ତାର ହୃଦୟ ଖୋଲିଯାଏ ଓ ସେ ବାହ୍ୟଜ୍ଞାନ ହରାଇ ଜୋର୍‌ରେ ହସେ, ଚିତ୍କାର କରେ, କାନ୍ଦେ, ଗାଏ ଓ ପାଗଳପରି ନାଚେ ॥୪୦॥ ତା'ର ମନରେ କୌଣସି ଦ୍ୱୈତ ଭାବ ରହେ ନାହିଁ । ସେ ଆକାଶ, ବାୟୁ, ଅଗ୍ନି, ଜଳ, ପୃଥିବୀ, ଗ୍ରହ, ନକ୍ଷତ୍ର, ସମସ୍ତ ପ୍ରାଣୀ, ଦିଗ୍‌ବିଦିଗ, ବୃକ୍ଷଲତା, ନଦୀ ସମୁଦ୍ର ଆଦି ଯାହା କିଛି ବସ୍ତୁ ଅଛି ସେ ସବୁ ଭଗବାନଙ୍କର ଶରୀର ବୋଲି ମନେକରି ପ୍ରଣାମ କରେ । ଭୋଜନକାରୀର ଯେପରି ତୁଷ୍ଟି, ପୁଷ୍ଟି ଓ କ୍ଷୁଧା-ନିବୃତ୍ତି -- ଏହି ତିନୋଟିଯାକ ଏକ ସମୟରେ ହୋଇଯାଏ, ସେହିପରି ଭଗବାନଙ୍କ ସେବକ ଭକ୍ତର ଭଗବାନଙ୍କଠାରେ ଭକ୍ତି, ଭଗବତ୍ ଅନୁଭବ ଓ ବୈରାଗ୍ୟ ଏହି ତିନୋଟିଯାକ ଭାବ ଏକ ସମୟରେ ଘଟିଥାଏ ॥୪୧-୪୨॥ ଏହିପରି ହୃଦୟର ଅନୁରାଗରେ ଭଗବାନଙ୍କର ପାଦପଦ୍ମକୁ ଭଜନ କଲେ ଭକ୍ତର ଭକ୍ତି ଓ ଅନ୍ୟ ବସ୍ତୁରେ ବିରକ୍ତିଭାବ ସହିତ ଭଗବାନଙ୍କର ଅନୁଭବ ଘଟିଥାଏ ଏବଂ ତଦ୍ଦ୍ୱାରା ସାକ୍ଷାତ୍ ପରମ ଶାନ୍ତି ଲାଭ ହୁଏ ॥୪୩॥ ରାଜା ନିମି ପଚାରିଲେ, ବ୍ରହ୍ମନ୍, ଆପଣ ଦୟାକରି ଭଗବତ୍‌ଭକ୍ତର ଲକ୍ଷଣ ବର୍ଣ୍ଣନା କରନ୍ତୁ । ତାର ସ୍ୱଭାବ କ'ଣ, ଆଚରଣ କ'ଣ, କିପରି କଥାଭାଷା କରେ ଏବଂ କାହିଁକି ସେ ଭଗବାନଙ୍କର ପ୍ରିୟ ହୁଏ -- ଏ ସମସ୍ତ ବିଷୟରେ କହିବା ହୁଅନ୍ତୁ ॥୪୪॥

ତା'ପରେ ମୁନିମାନଙ୍କ ମଧ୍ୟରୁ ହରି ଏହିପରି ଉତ୍ତର ଦେଲେ । ଯେଉଁ ବ୍ୟକ୍ତି ସମସ୍ତ ପ୍ରାଣୀଙ୍କ ମଧ୍ୟରେ ଭଗବାନଙ୍କୁ ଓ ନିଜକୁ ଦର୍ଶନ କରେ ଏବଂ ନିଜସ୍ୱରୂପ ଭଗବାନଙ୍କଠାରେ ସମସ୍ତ ପ୍ରାଣୀଙ୍କୁ ଦର୍ଶନ କରେ, ସେ ହେଉଛି ଉତ୍ତମ ଭଗବତ୍‌ଭକ୍ତ । ଯେ ଈଶ୍ୱରଙ୍କଠାରେ, ଈଶ୍ୱରଙ୍କ ଭକ୍ତଙ୍କଠାରେ, ମୂର୍ଖ ଲୋକଙ୍କଠାରେ ଓ ଶତ୍ରୁଙ୍କଠାରେ ଯଥାକ୍ରମେ ପ୍ରେମ, ମୈତ୍ରୀ, କୃପା ଓ ଉପେକ୍ଷା ଦେଖାଏ, ସେ ହେଉଛି ମଧ୍ୟମ ଶ୍ରେଣୀର ଭକ୍ତ ॥୪୫-୪୬॥ ଯେଉଁ ବ୍ୟକ୍ତି ଭଗବାନ୍‌ଙ୍କ ଉଦ୍ଦେଶ୍ୟରେ ଶ୍ରଦ୍ଧାପୂର୍ବକ ତାଙ୍କ ପ୍ରତିମାକୁ ହିଁ ପୂଜାକରେ, କିନ୍ତୁ ଭଗବତ୍‌ଭକ୍ତ ବା ଅନ୍ୟ କାହାରିକୁ କରେ ନାହିଁ, ତାକୁ ଅଧମଭକ୍ତ କୁହାଯାଏ ॥୪୭॥ ଯେଉଁ ବ୍ୟକ୍ତି ଇନ୍ଦ୍ରିୟମାନଙ୍କଦ୍ୱାରା ବିଷୟସବୁ ଗ୍ରହଣ କଲେ ମଧ୍ୟ ଦ୍ୱେଷ ବା ଆନନ୍ଦ ପ୍ରକାଶ କରେ ନାହିଁ ଏବଂ ଏହି ସଂସାରକୁ ଭଗବାନଙ୍କର ମାୟା ବୋଲି ମନେ କରେ, ସେ ହେଉଛି ଭଗବାନଙ୍କର ଉତ୍ତମ ଭକ୍ତ ॥୪୮॥ ଯେ ସର୍ବଦା ଶ୍ରୀହରିଙ୍କୁ ସ୍ମରଣ କରୁଥିବା ଯୋଗୁଁ ଦେହ, ଇନ୍ଦ୍ରିୟ, ପ୍ରାଣ, ମନ ଓ ବୁଦ୍ଧିଦ୍ୱାରା ଲବ୍ଧ ଜନ୍ମ, ମୃତ୍ୟୁ, କ୍ଷୁଧା, ଭୟ, ତୃଷ୍ଣା ଆଦି ସଂସାରକଷ୍ଟରେ ମୁହ୍ୟମାନ ହୁଏ ନାହିଁ, ସେ ହେଉଛି ଭଗବାନଙ୍କର ପ୍ରଧାନ ଭକ୍ତ ॥୪୯॥ ଯାହାର ହୃଦୟରେ କାମନା, ବାସନାରୂପକ କର୍ମର ବୀଜ ଜାତ ହୁଏ ନାହିଁ, ଏବଂ ଶ୍ରୀବାସୁଦେବଙ୍କୁ ନିଜର ଏକମାତ୍ର ଆଶ୍ରୟ ବୋଲି ଯେ ଗ୍ରହଣ କରେ, ସେ ଭଗବାନଙ୍କର ଉତ୍ତମ ଭକ୍ତ ମଧ୍ୟରେ ଗଣାଯାଏ ॥୫୦॥ ବଂଶର ଅହଙ୍କାର, କୌଣସି କର୍ମପାଇଁ ପ୍ରଶଂସା ବା ବର୍ଣ୍ଣାଶ୍ରମଜନିତ ଅଭିମାନ ଯାହାର ହୃଦୟକୁ ସ୍ପର୍ଶ କରେ ନାହିଁ, ସେ ହେଉଛି ଭଗବାନଙ୍କର ପ୍ରିୟଭକ୍ତ ॥୫୧॥ ଯେ ଧନ ବା ବିଷୟାଦିରେ ନିଜ-ପର ଭେଦଭାବ ରଖେ ନାହିଁ, ସମସ୍ତ ପ୍ରାଣୀଙ୍କୁ ସମାନ ଭାବରେ ଦେଖେ, ସେହି ଶାନ୍ତ ବ୍ୟକ୍ତି ହିଁ ଭଗବାନଙ୍କର ଉତ୍ତମ ଭକ୍ତ ॥୫୨॥ ତ୍ରୈଲୋକ୍ୟର ବିଭବପାଇଁ ମଧ୍ୟ ଯାହାର ଚିତ୍ତ ବିଚଳିତ ହୁଏ ନାହିଁ, ବ୍ରହ୍ମା, ଇନ୍ଦ୍ର ଆଦି ଦେବଗଣ ସର୍ବଦା ଅନ୍ୱେଷଣ କରୁଥିବା ଭଗବାନଙ୍କର ପାଦପଦ୍ମରୁ ଯେ ନିମିଷାର୍ଦ୍ଧମାତ୍ର ଭ୍ରଷ୍ଟ ହୁଏ ନାହିଁ, ସେ ହେଉଛି ବିଷ୍ଣୁଭକ୍ତଙ୍କ ମଧ୍ୟରେ ଅଗ୍ରଗଣ୍ୟ ॥୫୩॥ ଚନ୍ଦ୍ର ଉଦୟ ହେଲେ

ଯେପରି ସୂର୍ଯ୍ୟତାପ ଦୂର ହୁଏ, ସେହିପରି ଭଗବାନଙ୍କ ପାଦର ନଖମାନଙ୍କ ଆଭାରେ ଭକ୍ତର ହୃଦୟର ସନ୍ତାପ ଦୂର ହୋଇଯାଏ ଏବଂ ଥରେ ତାହା ଦୂର ହେଲେ ବିଷୟସନ୍ତାପ ପୁଣି ତାକୁ ପ୍ରଭାବିତ କରିପାରେ ନାହିଁ ।।୫୪।। ସାକ୍ଷାତ୍ ଭଗବାନ ଯାହାର ହୃଦୟକୁ ତ୍ୟାଗ କରନ୍ତି ନାହିଁ, ସେ ବିବଶ ହୋଇ ତାଙ୍କ ନାମ ସ୍ମରଣ କରିବା ମାତ୍ରେ ତାର ସମସ୍ତ ପାପରାଶି ସେ ନଷ୍ଟ କରିଦିଅନ୍ତି । ଯେଉଁ ଭକ୍ତର ପ୍ରେମପାଶରେ ତାଙ୍କର ପାଦପଦ୍ମ ବଂଧା ହୋଇରହିଥାଏ, ସେ ହିଁ ଭଗବାନଙ୍କର ପ୍ରଧାନ ଭକ୍ତ ରୂପେ ଅଭିହିତ ହୁଏ ।।୫୫।।

## ତୃତୀୟ ଅଧ୍ୟାୟ

# ମାୟା, ବ୍ରହ୍ମ, କର୍ମଯୋଗ

ରାଜା ନିମି ପଚାରିଲେ, ଯୋଗେଶ୍ୱରଗଣ, ସର୍ବଶକ୍ତିମାନ୍ ପରମାତ୍ମା ଭଗବାନ୍ ବିଷ୍ଣୁଙ୍କର ମାୟା ଏପରି ଯେ ତାହା ମାୟାବୀମାନଙ୍କୁ ମଧ୍ୟ ମୋହିତ କରିଦିଏ । ମୁଁ ସେହି ମାୟା ସମ୍ପର୍କରେ ଜାଣିବାକୁ ଇଚ୍ଛା କରୁଛି, ମୋତେ କହିବା ହୁଅନ୍ତୁ ।।୧।। ମୁଁ ଏକ ମରଣଶୀଳ ମନୁଷ୍ୟ । ସଂସାରଦୁଃଖରେ ବହୁ କଷ୍ଟ ପାଉଛି । ଆପଣଙ୍କ ଠାରୁ ଯେଉଁ ହରିକଥାମୃତ ଶୁଣୁଛି, ତାହା ହେଉଛି ତାର ଏକମାତ୍ର ଔଷଧ । ଯେତେ ଶୁଣିଲେ ମଧ୍ୟ ମୋର ତୃପ୍ତି ହେଉନାହିଁ ।।୨।।

ମୁନିମାନଙ୍କ ମଧ୍ୟରୁ ଶ୍ରୀ ଅନ୍ତରିକ୍ଷ ଉତ୍ତର ଦେଲେ । ସେ କହିଲେ, ଆଦିପୁରୁଷ ଭଗବାନ୍ ହେଉଛନ୍ତି ସମସ୍ତ ଜୀବଙ୍କର ଆତ୍ମାସ୍ୱରୂପ । ସେ ନିଜର ଅଂଶଦ୍ୱାରା ଉତ୍କୃଷ୍ଟ, ନିକୃଷ୍ଟ ସମସ୍ତ ଜୀବଙ୍କୁ ସୃଷ୍ଟି କରିଛନ୍ତି ଏବଂ ତଦ୍ଦ୍ୱାରା ତାଙ୍କ ସ୍ୱରୂପର ଆଭାସ ଦେଇଛନ୍ତି ।।୩।। ଏହିପରି ପଞ୍ଚ ମହାଭୂତଦ୍ୱାରା ପ୍ରାଣୀମାନଙ୍କୁ ସୃଷ୍ଟି କରି ସେମାନଙ୍କ ମଧ୍ୟରେ ଭଗବାନ୍ ଅନ୍ତର୍ଯାମୀ ରୂପେ ପ୍ରବେଶ କରନ୍ତି । ପାଞ୍ଚ ଜ୍ଞାନେନ୍ଦ୍ରିୟ ଓ ପାଞ୍ଚ କର୍ମେନ୍ଦ୍ରିୟଦ୍ୱାରା ଦଶଭାଗରେ ଆତ୍ମାକୁ ବିଭକ୍ତ କରି ଗୋଟିଏ ମନଦ୍ୱାରା ସେମାନଙ୍କ ଜରିଆରେ ବିଷୟ ଭୋଗ କରନ୍ତି । ଜୀବ ନିଜର ଆତ୍ମାରେ ଥିବା ଅନ୍ତର୍ଯାମୀଙ୍କ ମାୟାରେ ପ୍ରଚୋଦିତ ହୋଇ ଇନ୍ଦ୍ରିୟମାନଙ୍କ ଦ୍ୱାରା ବିଷୟ ଭୋଗ କରେ ଓ ନିଜର ଶରୀରକୁ ଆତ୍ମା ବୋଲି ଜ୍ଞାନ କରେ ।।୪-୫।। ଦେହଧାରୀ ଜୀବ କର୍ମେନ୍ଦ୍ରିୟମାନଙ୍କ ଦ୍ୱାରା କାମନାବାସନାଯୁକ୍ତ କର୍ମମାନ କରି ସୁଖ-ଦୁଃଖପ୍ରଦ ସେହି କର୍ମମାନଙ୍କର ଫଳ ଭୋଗ କରେ । ଏହିପରି କରି ସେ ସଂସାରଚକ୍ରରେ ଘୂରିବୁଲୁଥାଏ ।।୬।। ଅବଶ ମନୁଷ୍ୟ ବହୁ ଅମଙ୍ଗଳପୂର୍ଣ୍ଣ ଏହି କର୍ମଗତିରେ ପ୍ରଳୟକାଳ ପର୍ଯ୍ୟନ୍ତ ବିଚରଣ କରି ଜନ୍ମ-ମୃତ୍ୟୁର ଦୁଃଖ ଭୋଗ କରୁଥାଏ । ଯେତେବେଳେ ପଞ୍ଚମହାଭୂତଙ୍କ ପ୍ରଳୟର ସମୟ ଆସିଯାଏ, ସେତେବେଳେ ଅନାଦି ଓ ଅନନ୍ତ କାଳ ଦ୍ରବ୍ୟଗୁଣଯୁକ୍ତ ଏହି ସମସ୍ତ ବ୍ୟକ୍ତ ସୃଷ୍ଟି (ଯାବତୀୟ ପ୍ରକାଶମାନ ପଦାର୍ଥ)କୁ ଅବ୍ୟକ୍ତଆଡ଼କୁ ଟାଣିନିଏ । ସେତେବେଳେ ପୃଥିବୀରେ ଶହେବର୍ଷ କାଳ ଭୟଙ୍କର ଅନାବୃଷ୍ଟି ହୁଏ ଓ ପ୍ରଳୟଙ୍କର ସୂର୍ଯ୍ୟର ତାପରେ ତ୍ରିଲୋକ ସନ୍ତାପିତ ହୁଏ ।।୭-୯।। ଅନନ୍ତଙ୍କ ମୁଖର ଅଗ୍ନି ବାୟୁଦ୍ୱାରା ଚାଳିତ ହୋଇ ପାତାଳ ଲୋକରୁ ଆରମ୍ଭ କରି ଊର୍ଦ୍ଧ୍ୱଶିଖାରେ ସମସ୍ତ ବସ୍ତୁକୁ ଦଗ୍ଧ କରେ ଓ ବଢ଼ି ବଢ଼ି ଚାଲେ ।।୧୦।। ସଂବର୍ତ୍ତକ ନାମକ ପ୍ରଳୟକାଳର ମେଘମାନେ ଶହେବର୍ଷ ପର୍ଯ୍ୟନ୍ତ ଜଳଧାରା ବର୍ଷଣ କରି ଚାଲନ୍ତି, ଯଦ୍ଦ୍ୱାରା ସମସ୍ତ ବ୍ରହ୍ମାଣ୍ଡ ଜଳମଗ୍ନ ହୋଇଯାଏ ।।୧୧।। ରାଜା, ଏହି ସମୟରେ ଇନ୍ଧନ ନ ଥିଲେ ଅଗ୍ନି ଯେପରି ଲିଭିଯାଏ, ସେହିପରି ବିରାଟ ପୁରୁଷ ନିଜର ବ୍ରହ୍ମାଣ୍ଡ ଶରୀରକୁ ପରିତ୍ୟାଗ କରି ନିଜର ସୂକ୍ଷ୍ମ ସ୍ୱରୂପ ଅବ୍ୟକ୍ତ ମଧ୍ୟରେ ଲୀନ ହୋଇଯା'ନ୍ତି ।।୧୨।। ପ୍ରଳୟବାୟୁ ପୃଥିବୀର ସମସ୍ତ ଗନ୍ଧ ହରଣ କରିନିଏ । ସେଥିରେ ପୃଥିବୀ ଜଳ ହୋଇଯାଏ ଏବଂ ବାୟୁ ଜଳର ରସକୁ ହରଣ କରେ । ଜଳ ନିଜର କାରଣ ଅଗ୍ନିରୂପରେ ପରିଣତ ହୁଏ ।।୧୩।। ଯେତେବେଳେ ଅନ୍ଧକାର ଅଗ୍ନିର

ରୂପକୁ ହରଣ କରେ, ସେତେବେଳେ ତାହା ବାୟୁରେ ଲୀନ ହୋଇଯାଏ । ଆକାଶ ଯେତେବେଳେ ବାୟୁର ସ୍ପର୍ଶଗୁଣକୁ ହରଣ କରିନିଏ, ସେତେବେଳେ ବାୟୁ ଆକାଶରେ ଲୀନ ହୋଇଯାଏ ଏବଂ କାଳରୂପୀ ଆତ୍ମା ଯେତେବେଳେ ଆକାଶର ଶବ୍ଦଗୁଣକୁ ହରଣକରେ, ସେତେବେଳେ ଆକାଶ ତାମସ ଅହଙ୍କାରରେ ଲୀନ ହୋଇଥାଏ ।।୧୪।। ଇନ୍ଦ୍ରିୟ ଓ ବୁଦ୍ଧି ରାଜସ ଅହଙ୍କାରରେ ଲୀନ ହୋଇଯାଆନ୍ତି; ଦେବତା ସହିତ ମନ ସାତ୍ତ୍ୱିକ ଅହଙ୍କାରରେ ଲୀନ ହୋଇଯାଏ ଏବଂ ନିଜର ତିନିପ୍ରକାର ବିକାର (ଗୁଣ) ସହିତ ଅହଙ୍କାର ମହତ୍ତତ୍ତ୍ୱରେ ଲୀନ ହୁଏ ଏବଂ ମହତ୍ତତ୍ତ୍ୱ ପ୍ରକୃତିରେ ବିଲୀନ ହୁଏ ।।୧୫।। ରାଜା, ସୃଷ୍ଟି, ସ୍ଥିତି ଓ ସଂହାରକାରୀ ଭଗବାନଙ୍କର ଏହି ତ୍ରିଗୁଣରୂପିଣୀ ମାୟାର ମୁଁ ବର୍ଣ୍ଣନା କଲି । ଆପଣ ଆଉ ଅଧିକ କ'ଣ ଶୁଣିବାକୁ ଚାହୁଁଛନ୍ତି ? ।।୧୬।। ରାଜା ନିମି ପଚାରିଲେ, ମହର୍ଷି, ଇନ୍ଦ୍ରିୟମାନଙ୍କୁ ଯେଉଁମାନେ ବଶୀଭୂତ କରି ନାହାନ୍ତି, ସେମାନଙ୍କ ପକ୍ଷରେ ଭଗବାନ୍‌ଙ୍କ ମାୟାକୁ ପାର ହେବା ଅତୀବ କଷ୍ଟକର । ତେଣୁ ସ୍ଥୁଳବୁଦ୍ଧି ମନୁଷ୍ୟ କିପରି ସହଜରେ ତାଙ୍କ ମାୟାକୁ ପାର ହୋଇପାରିବ, ତାହା ଆପଣ ଦୟା କରି କହନ୍ତୁ ।।୧୭।।

ଚତୁର୍ଥ ଯୋଗେଶ୍ୱର ପ୍ରବୁଦ୍ଧ କହିଲେ, ରାଜା, ସ୍ତ୍ରୀ-ପୁରୁଷ ଭାବରେ ସଂପୃକ୍ତ ମନୁଷ୍ୟମାନେ ଦୁଃଖବିନାଶ ଓ ସୁଖଲାଭ ଆଶାରେ ଯେଉଁ ସବୁ କର୍ମ କରିଥାନ୍ତି, ତାର ଫଳ ବିପରୀତ ହୋଇଥାଏ ।।୧୮।। ମୃତ୍ୟୁର ଭୟ ସବୁବେଳେ ଲାଗିରହିଥିବାରୁ ନିଜର କଷ୍ଟଲବ୍ଧ ଧନ, ଗୃହ, ସନ୍ତାନସନ୍ତତି, ଗୋମହିଷାଦି ପଶୁ ସେମାନଙ୍କୁ ଆଦୌ ଆନନ୍ଦ ଦେଇପାରନ୍ତି ନାହିଁ ।।୧୯।। କର୍ମନିର୍ମିତ ଇହଲୋକ ଓ ପରଲୋକ ହେଉଚି ନଶ୍ୱର । ମଣ୍ଡଳାଧିପତିମାନଙ୍କ ମଧ୍ୟରେ ଯେପରି ଈର୍ଷା, ଅସୂୟା ଓ ନିଜ ବିନାଶର ଆଶଙ୍କା ରହିଥାଏ, ସେହିପରି ଜୀବମାନଙ୍କ ମଧ୍ୟରେ ଏହି ଭାବ ଅପରିହାର୍ଯ୍ୟ ।।୨୦।। ସେଥିପାଇଁ ହେ ରାଜା, ଯାହା ଉତ୍ତମ ଓ ମଙ୍ଗଳକର, ତାହା ଜାଣିବାକୁ ଇଚ୍ଛା କରୁଥିବା ବ୍ୟକ୍ତି ବେଦଜ୍ଞ, ବ୍ରହ୍ମଜ୍ଞାନୀ ଓ ଶାନ୍ତଚିତ୍ତ ସଦ୍‌ଗୁରୁଙ୍କର ଆଶ୍ରୟ ନେବା ଉଚିତ ।।୨୧।। ଗୁରୁଙ୍କୁ ନିଜର ଆତ୍ମସ୍ୱରୂପ ଓ ଇଷ୍ଟଦେବ ମନେକରି ଭାଗବତ ଧର୍ମ ତାଙ୍କରିଠାରୁ ଶିକ୍ଷାକରିବା ଉଚିତ । ସରଳ ହୃଦୟରେ ନିଷ୍ଠାର ସହିତ ତାଙ୍କୁ ସେବା କରି ଯେଉଁ କର୍ମଦ୍ୱାରା ଆତ୍ମଜ୍ଞାନଦାତା ଭଗବାନ୍ ଶ୍ରୀହରି ସନ୍ତୁଷ୍ଟ ହେବେ, ତାହା ତାଙ୍କଠାରୁ ଶିକ୍ଷାକରିବା ଉଚିତ ।।୨୨।। ପ୍ରଥମତଃ ମନରେ ଅନାସକ୍ତ ଭାବ, ସାଧୁସଙ୍ଗ, ସର୍ବଭୂତେ ଦୟା, ମୈତ୍ରୀ ଓ ବିନୟ ଶିକ୍ଷା କରିବା ଉଚିତ । ତା'ପରେ ଶୌଚ, ତପସ୍ୟା, ତିତିକ୍ଷା, ମୌନ, ସ୍ୱାଧ୍ୟାୟ, ସରଳତା, ବ୍ରହ୍ମଚର୍ଯ୍ୟ, ଅହିଂସା, ସୁଖ-ଦୁଃଖଆଦି ଦ୍ୱନ୍ଦ୍ୱରେ ହର୍ଷ-ବିଷାଦଶୂନ୍ୟତା, ସର୍ବତ୍ର ନିଜକୁ ଓ ଈଶ୍ୱରଙ୍କୁ ଦର୍ଶନ କରିବା, ସମଦର୍ଶିତା, ଗୃହାଦିରେ ଅଭିମାନ ତ୍ୟାଗ, ନିଜର ପରିଧେୟ ବଲ୍‌କଲକୁ ଶୁଦ୍ଧ ରଖିବା, ଯାହା ମିଳିବ ସେଥିରେ ସନ୍ତୋଷ ଲାଭ, ଭାଗବତ ଶାସ୍ତ୍ରପ୍ରତି ଶ୍ରଦ୍ଧା କରିବା ତଥା ଅନ୍ୟ ଶାସ୍ତ୍ରମାନଙ୍କୁ ନିନ୍ଦା ନ କରିବା, କାୟମନୋବାକ୍ୟରେ ସଂଯମ ରକ୍ଷା କରିବା, ଅନ୍ତର ଓ ବାହ୍ୟ ଇନ୍ଦ୍ରିୟମାନଙ୍କୁ ନିୟନ୍ତ୍ରଣ କରିବା, ବିଚିତ୍ରକର୍ମା ଭଗବାନ ଶ୍ରୀହରିଙ୍କର ଜନ୍ମ, କର୍ମ ଓ ଗୁଣାବଳୀର ଶ୍ରବଣ, କୀର୍ତ୍ତନ ଓ ଧ୍ୟାନ କରିବା, କେବଳ ଭଗବାନଙ୍କ ଉଦ୍ଦେଶ୍ୟରେ ସମସ୍ତ କର୍ମ କରିଯିବା, ଯଜ୍ଞ, ଦାନ, ଜପ, ତପ ଓ ସଦାଚାରକୁ ଏବଂ ସ୍ତ୍ରୀ, ପୁତ୍ର, ଗୃହ, ଏପରିକି ପ୍ରାଣକୁ ମଧ୍ୟ ଭଗବାନଙ୍କଠାରେ ଅର୍ପଣ କରିବା -- ଏହା ହିଁ ଭାଗବତ ଧର୍ମ ଓ ଏହାକୁ ହିଁ ଶିକ୍ଷା କରିବାକୁ ହେବ ।।୨୩-୨୮।।

ଏହିପରି କୃଷ୍ଣଙ୍କୁ ଯେଉଁମାନେ ନିଜର ଆତ୍ମା ଓ ନିଜର ସବୁକିଛି ମନେ କରନ୍ତି ଏବଂ ସମସ୍ତ ଲୋକଙ୍କୁ ନିଜର ସୁହୃତ୍ ବୋଲି ମନେ କରନ୍ତି, ସେମାନେ ସ୍ଥାବର, ଜଙ୍ଗମ ସମସ୍ତ ପ୍ରାଣୀଙ୍କୁ, ମନୁଷ୍ୟ ଏବଂ ମନୁଷ୍ୟମାନଙ୍କ ମଧ୍ୟରେ ସାଧୁ ମହାତ୍ମାମାନଙ୍କୁ ଓ ତାଙ୍କ ମଧ୍ୟରେ ଭାଗବତପ୍ରେମୀ ସନ୍ଥମାନଙ୍କୁ ସେବା କରିବା ସେମାନଙ୍କପାଇଁ ଅବଶ୍ୟ କର୍ତ୍ତବ୍ୟ ।।୨୯।। ଭଗବାନ୍‌ଙ୍କର ଯଶୋମୟ ପାବନ ଲୀଳାକୁ ନିଜ ନିଜ ମଧ୍ୟରେ କୀର୍ତ୍ତନ କରିବା, ପରସ୍ପର ପ୍ରତି ଶ୍ରଦ୍ଧା, ସନ୍ତୋଷ ଓ ସଂସାରରୁ ନିବୃତ୍ତ ରହି

ଆତ୍ମାର ଶାନ୍ତିକୁ ଅନୁଭବ କରିବା--ଏହି ଭାଗବତ ଧର୍ମ ଶିକ୍ଷା କରିବା ଉଚିତ ।।୩୦।। ଭଗବାନ୍ ଶ୍ରୀହରି ହେଉଛନ୍ତି ସର୍ବପାପହର । ତେଣୁ ତାଙ୍କୁ ସ୍ମରଣ କରିବା ସଙ୍ଗେ ସଙ୍ଗେ ଅନ୍ୟମାନେ ତାଙ୍କୁ ଯେପରି ସ୍ମରଣ କରନ୍ତି, ତାହା କରାଇବା ଉଚିତ । ଏହିପରି ନିଷ୍କାପର ଭାବରେ ସାଧନା କଲେ ତାଙ୍କ ପ୍ରତି ପ୍ରେମଭକ୍ତି ଜାତ ହେବ ଓ ତଦ୍ଦ୍ୱାରା ତନୁ ପୁଲକିତ ହୋଇଉଠିବ । ଏହିପରି ଭକ୍ତମାନେ ଅଚ୍ୟୁତଙ୍କୁ ଚିନ୍ତା କରି କେତେବେଳେ କାନ୍ଦିପକାନ୍ତି ତ କେତେବେଳେ ହସିଉଠନ୍ତି ବା କେତେବେଳେ ଖୁସିହୋଇ ଅଲୌକିକ କଥାମାନ କହିଚାଲନ୍ତି । କେବେ କେବେ ଶ୍ରୀକୃଷ୍ଣଙ୍କ ଲୀଳାମାନ ଅଭିନୟ କରି ଗୀତ ଗାଇ ନାଚିଯାଆନ୍ତି । ପୁଣି ଯେତେବେଳେ ସେମାନେ ମନେ କରନ୍ତି, ଭଗବାନ୍ ତାଙ୍କ ନିକଟରେ ଅଛନ୍ତି, ସେତେବେଳେ ମୌନ ରହି ସେମାନେ ପରମଶାନ୍ତି ଅନୁଭବ କରନ୍ତି ।।୩୧-୩୨।। ମାୟାକୁ କେହି ସହଜରେ ପାରିହୋଇ ପାରନ୍ତି ନାହିଁ । କିନ୍ତୁ ଯେଉଁ ବ୍ୟକ୍ତି ଭକ୍ତିର ସହିତ ଭାଗବତ ଧର୍ମ ସବୁ ଶିକ୍ଷା କରେ, ନାରାୟଣପରାୟଣ ହୋଇଯାଏ, ସେ ସହଜରେ ମାୟାରୁ ତରିଯାଏ ।।୩୩।। ରାଜା ନିମି ପଚାରିଲେ, ହେ ବ୍ରହ୍ମଜ୍ଞାନୀମାନେ, ଯେଉଁ ପରଂବ୍ରହ୍ମ ପରମାତ୍ମାଙ୍କୁ ନାରାୟଣ ବୋଲି ଅଭିହିତ କରାଯାଏ, ତାଙ୍କର ସ୍ୱରୂପ କ'ଣ, ଆପଣମାନେ ଦୟା କରି ବର୍ଣ୍ଣନା କରନ୍ତୁ ।।୩୪।।

ମୁନିମାନଙ୍କ ମଧ୍ୟରୁ ପିପ୍ପଳାୟନ କହିଲେ, ରାଜେନ୍ଦ୍ର, ଯେ ହେଉଛନ୍ତି ବିଶ୍ୱର ସୃଷ୍ଟି, ସ୍ଥିତି ଓ ପ୍ରଳୟର କାରଣ, ସେ ହେଉଛନ୍ତି ସ୍ୱୟଂ କାରଣରହିତ । ପ୍ରାଣୀର ସ୍ୱପ୍ନ, ଜାଗରଣ ଓ ସୁଷୁପ୍ତି ଆଦିର ସେ ସାକ୍ଷୀ ଭାବରେ ରହିଥା'ନ୍ତି । ଦେହ, ଇନ୍ଦ୍ରିୟ ଓ ପ୍ରାଣ — ଯାହାଙ୍କଦ୍ୱାରା ସଂଜୀବିତ ହୋଇ କର୍ମ କରିବାକୁ ସମର୍ଥ ହୁଅନ୍ତି, ସେ ହେଉଛନ୍ତି ସେହି ପରଂବ୍ରହ୍ମ ନାରାୟଣ ।।୩୫।। ଯେପରି ଅଗ୍ନିକୁ ଅଗ୍ନିକଣା ପ୍ରକାଶିତ କରିପାରେ ନାହିଁ, ସେହିପରି ମନ, ବାକ୍ୟ, ଚକ୍ଷୁ, ବୁଦ୍ଧି, ପ୍ରାଣ ଓ ଇନ୍ଦ୍ରିୟଗଣ ପରମତତ୍ତ୍ୱକୁ ପ୍ରକାଶ କରିପାରନ୍ତିନାହିଁ, ଅର୍ଥାତ୍ ତାଙ୍କୁ କଳ୍ପନା କରିପାରନ୍ତି ନାହିଁ, କଥାରେ କହି ପାରନ୍ତି ନାହିଁ, ଆଖିରେ ଦେଖି ପାରନ୍ତି ନାହିଁ ଓ ବୁଦ୍ଧିଦ୍ୱାରା ଜାଣି ପାରନ୍ତି ନାହିଁ ଏବଂ ପ୍ରାଣ ଓ ଇନ୍ଦ୍ରିୟଗଣ ସେ ପର୍ଯ୍ୟନ୍ତ ପହଂଚି ପାରନ୍ତି ନାହିଁ । ସେ ଏହା ନୁହନ୍ତି, ତାହା ନୁହନ୍ତି — ଏହିପରି ନିଷେଧ ବାକ୍ୟଦ୍ୱାରା ସେହି ପରମତତ୍ତ୍ୱକୁ ବୁଝାଇବାକୁ ଚେଷ୍ଟା କରାଯାଏ । କିନ୍ତୁ ଏହି 'ନେତି'ର ମଧ୍ୟ ଶେଷ ନାହିଁ । ତେଣୁ ଯାହାଙ୍କୁ କୌଣସି ପ୍ରକାରେ ବ୍ୟକ୍ତ କରାଯାଇପାରେ ନାହିଁ, ସେ ହିଁ ପରଂବ୍ରହ୍ମ ।।୩୬।। ସୃଷ୍ଟିର ପୂର୍ବରୁ ବହୁଶକ୍ତିସମ୍ପନ୍ନ ଏକମାତ୍ର ବ୍ରହ୍ମ ହିଁ ଥିଲେ । ତା'ପରେ ସେହି ବ୍ରହ୍ମ ସୃଷ୍ଟି ରଚନାପାଇଁ ସତ୍ତ୍ୱ, ରଜ ଓ ତମୋଗୁଣ ବିଶିଷ୍ଟ ପ୍ରକୃତିରୂପେ ପ୍ରତିଭାତ ହେଲେ । ଜ୍ଞାନପ୍ରଧାନ(ଇନ୍ଦ୍ରିୟମାନଙ୍କର ଅଧିଷ୍ଠାତ୍ରୀ ଦେବତା) ହେବାରୁ ସେ ମହତ୍ତତ୍ତ୍ୱ, କ୍ରିୟା ଓ ଅର୍ଥପ୍ରଧାନ(ଇନ୍ଦ୍ରିୟ ଓ ଇନ୍ଦ୍ରିୟର ବିଷୟ) ହେବାରୁ ସେ ସୂତ୍ରାତ୍ମା ଏବଂ ଜୀବର ଉପାଧି ଭାବରେ ସେ ଅହଙ୍କାର ରୂପରେ ବର୍ଣ୍ଣିତ ହୁଅନ୍ତି । ତାଙ୍କର ଶକ୍ତି ଅନନ୍ତ । ସମସ୍ତ ଶକ୍ତି ତାଙ୍କଠାରୁ ହିଁ ପ୍ରକଟ ହୁଏ । ଯାହା କିଛି ଦୃଶ୍ୟ, ଅଦୃଶ୍ୟ, କାର୍ଯ୍ୟ, କାରଣ, ସତ୍ ଓ ଅସତ୍ ଅଛି ଏବଂ ଏହାପରେ ମଧ୍ୟ ଯାହା କିଛି ରହିଛି, ତାହା ହିଁ ହେଉଛି ବ୍ରହ୍ମ ।।୩୭।। ଏହି ବ୍ରହ୍ମସ୍ୱରୂପ ଆତ୍ମାର ଜନ୍ମ ନାହିଁ, ମରଣ ନାହିଁ, ବୃଦ୍ଧି ନାହିଁ ବା କ୍ଷୟ ନାହିଁ । ଏହି ସଂସାରର ସମସ୍ତ ପରିବର୍ତ୍ତନଶୀଳ ପଦାର୍ଥର ତାହା ହେଉଛି ସାକ୍ଷୀ । କିନ୍ତୁ ତାହା ନିଜେ ପରିବର୍ତ୍ତିତ ହୁଏ ନାହିଁ । ଏହି ଅବିନଶ୍ୱର ବ୍ରହ୍ମ ଦେଶ, କାଳ ଓ ପାତ୍ର ଦ୍ୱାରା ସୀମିତ ନୁହେଁ, ତାହା ଉପଲବ୍ଧିମାତ୍ର । ଯେପରି ପ୍ରାଣ ଏକ ହେଲେ ମଧ୍ୟ ବିଭିନ୍ନ ଜୀବ ବା ଶରୀର ଭେଦରେ ତାହା ଅନେକ ରୂପ ଧାରଣ କରେ; ସେହିପରି ବ୍ରହ୍ମ ଏକ ହେଲେ ମଧ୍ୟ ବିଭିନ୍ନ ରୂପରେ କଳ୍ପିତ ହୋଇଥାଏ । ଜଗତ୍‌ରେ ଯେଉଁ ଚାରିପ୍ରକାର ଜୀବ ଅଛନ୍ତି--ଯଥା ଅଣ୍ଡଜ(ପକ୍ଷୀ ଓ ସାପ ଆଦି ପ୍ରାଣୀ), ଜରାୟୁଜ (ପଶୁ ଓ ମନୁଷ୍ୟ ଆଦି ପ୍ରାଣୀ), ଉଦ୍ଭିଜ (ବୃକ୍ଷ ଲତା ଆଦି) ଏବଂ ସ୍ୱେଦଜ ( ଛାରପୋକ), ସେମାନଙ୍କ ଶରୀର ଭିନ୍ନ ହେଲେ ମଧ୍ୟ ସେମାନଙ୍କ ମଧ୍ୟରେ ଗୋଟିଏ ମାତ୍ର ପ୍ରାଣଶକ୍ତି ରହିଛି । ଜୀବ ଶୋଇଥିବା ଅବସ୍ଥାରେ ଯେତେବେଳେ ସମସ୍ତ ଇନ୍ଦ୍ରିୟ ସୁପ୍ତ ଥାଆନ୍ତି, ସେତେବେଳେ ଆତ୍ମା ଏକା ହିଁ ଜାଗ୍ରତ ଥାଏ ଏବଂ ଶୋଇବାର ଅନୁଭୂତି ହିଁ

ଆତ୍ମସତ୍ତାର ପ୍ରମାଣ ଦିଏ ।।୩୮-୩୯।। ଯେତେବେଳେ ଭଗବାନ୍ ପଦ୍ମନାଭଙ୍କର ପାଦପଦ୍ମପ୍ରତି ପ୍ରଗାଢ଼ ଭକ୍ତି ଜାତ ହୁଏ, ସେତେବେଳେ ଚିତ୍ତର ସମସ୍ତ ମଳିନତା ଧୋଇହୋଇଯାଏ । ଆଖି ପରିଷ୍କାର ଥିଲେ ସୂର୍ଯ୍ୟର ପ୍ରକାଶକୁ ଯେପରି ଦେଖିହୁଏ, ସେହିପରି ଚିତ୍ତ ଶୁଦ୍ଧ ହେଲେ ଆତ୍ମତତ୍ତ୍ୱର ସାକ୍ଷାତ୍‌ଲାଭ ହୁଏ ।।୪୦।।

ରାଜା ନିମି କହିଲେ, ମୁନିମାନେ, ବର୍ତ୍ତମାନ ମୋତେ କର୍ମଯୋଗ ବିଷୟରେ ଉପଦେଶ ଦିଅନ୍ତୁ, ଯଦ୍ଦ୍ୱାରା ବ୍ୟକ୍ତି ସିଦ୍ଧ ହୋଇ ଶୀଘ୍ର କର୍ମଫଳରୁ ନିବୃତ୍ତ ହେବାଦ୍ୱାରା ପରମଜ୍ଞାନ ଲାଭ କରିପାରେ । ଦିନେ ମୁଁ ମୋର ପିତା (ଇକ୍ଷ୍ୱାକୁ) ଙ୍କ ପାଖରେ ବ୍ରହ୍ମାଙ୍କର ପୁତ୍ର ସନକାଦି ମୁନିମାନଙ୍କୁ ଏହି ପ୍ରଶ୍ନ ପଚାରିଥିଲି; ସେମାନେ ତା'ର ଉତ୍ତର ଦେଇ ନ ଥିଲେ । ଏହାର କାରଣ କ'ଣ କହିବାହୁଅନ୍ତୁ ।।୪୧-୪୨।।

ମୁନିମାନଙ୍କ ମଧ୍ୟରୁ ଆବିର୍ହୋତ୍ର କହିଲେ, କର୍ମ (ଶାସ୍ତ୍ରବିହିତ), ଅକର୍ମ (ଶାସ୍ତ୍ରନିଷିଦ୍ଧ) ଓ ବିକର୍ମ (ଶାସ୍ତ୍ର ବିହିତ କର୍ମ ନ କରିବା) - ଏହି ତିନି ପ୍ରକାର କର୍ମ କେବଳ ବେଦରେ କଥିତ ହୋଇଛି । ଲୌକିକ ରୀତିରେ ଏହାର ବ୍ୟବସ୍ଥା ନାହିଁ । ବେଦ ମନୁଷ୍ୟକୃତ ନୁହେଁ, ଏହା ଭଗବାନଙ୍କର ସ୍ୱରୂପ; ତେଣୁ ତାର ତାତ୍ପର୍ଯ୍ୟ ନିରୂପଣ କରିବା ଅତିଶୟ କଷ୍ଟକର । ବଡ଼ ବଡ଼ ପଣ୍ଡିତମାନେ ମଧ୍ୟ ସେଥିରେ ବାଉଳା ହୋଇଯାଆନ୍ତି ।।୪୩।। ବେଦରେ ସବୁ କିଛି ପରୋକ୍ଷବାଦରେ କୁହାଯାଇଛି । ଯେପରି ମିଠାଇ ଲାଳସା ଦେଖାଇ ପିଲାମାନଙ୍କୁ ତିକ୍ତ ଔଷଧ ଖୁଆଇଦିଆଯାଏ, ସେହିପରି ସ୍ୱର୍ଗ ଆଦିର ପ୍ରଲୋଭନ ଦେଖାଇ ବେଦରେ କର୍ମବନ୍ଧନରୁ ମୁକ୍ତି ପାଇବାପାଇଁ ବିଭିନ୍ନ କର୍ମର ଉପଦେଶ ଦିଆଯାଇଥାଏ । ତେଣୁ ଯେ ବେଦୋକ୍ତ କର୍ମର ଆଚରଣ କରେ ନାହିଁ, ସେ ହେଉଛି ଅଜ୍ଞ ଓ ଅଜିତେନ୍ଦ୍ରିୟ । ତା' ନ କରିବାଦ୍ୱାରା ସେ ଯେଉଁ ଅଧର୍ମ କରେ, ତଦ୍ଦ୍ୱାରା ସେ ଅନନ୍ତ ଜନ୍ମର ଯମଯାତନା ଭୋଗ କରେ ।।୪୪-୪୫।। ଅନାସକ୍ତ ରହି ଈଶ୍ୱରଙ୍କଠାରେ ନିଜକୁ ଅର୍ପଣ କରି ଯଦି ବେଦୋକ୍ତ କର୍ମମାନ କରାଯାଏ, ତା'ହେଲେ ନୈଷ୍କର୍ମ୍ୟର ସିଦ୍ଧି ପ୍ରାପ୍ତ ହୁଏ । ବେଦରେ ସ୍ୱର୍ଗ ଆଦି ଯେଉଁ ଫଳ ମିଳିବା କଥା କୁହାଯାଇଛି, ତାହା ବାସ୍ତବରେ ସତ୍ୟ ନୁହେଁ । ତାହା କେବଳ କର୍ମରେ ରୁଚି ଜନ୍ମାଇବାପାଇଁ କରାଯାଇଛି ।।୪୬।। ଜୀବାତ୍ମା ହୃଦୟର ଗ୍ରନ୍ଥି ବା ଅହଙ୍କାରରୂପ ବନ୍ଧନ ଛେଦ କରିବାକୁ ଇଚ୍ଛା କଲେ ବେଦ ଓ ତନ୍ତ୍ର ବିହିତ କର୍ମଦ୍ୱାରା ଭଗବାନ୍ କେଶବଙ୍କର ଆରାଧନା କରିବା ଉଚିତ ।।୪୭।। ଗୁରୁଙ୍କର କୃପା ଲାଭ କରି ତାଙ୍କରି ଦର୍ଶିତ ପୂଜାପ୍ରଣାଳୀରେ ନିଜର ମନୋନୀତ ମୂର୍ତ୍ତିରୂପରେ ମହାପୁରୁଷ ଭଗବାନଙ୍କର ପୂଜା କରାଯିବା ଉଚିତ ।।୪୮।। ଶୁଚିମନ୍ତ ହୋଇ ମୂର୍ତ୍ତିର ସମ୍ମୁଖରେ ବସି ପ୍ରାଣାୟାମ ଓ ଭୂତଶୁଦ୍ଧି ଆଦିଦ୍ୱାରା ନିଜର ଦେହଶୋଧନପୂର୍ବକ ସତ୍‌ନ୍ୟାସ ଆଦିଦ୍ୱାରା ଆତ୍ମରକ୍ଷା କରି ଶ୍ରୀଭଗବାନଙ୍କୁ ପୂଜା କରିବା ଉଚିତ ।।୪୯।। ପ୍ରଥମେ ପୁଷ୍ପ ଆଦି ପୂଜାଦ୍ରବ୍ୟକୁ, ମାଟିକୁ ଓ ଦେହକୁ ଶୁଦ୍ଧ କରିବ ଏବଂ ସ୍ନାନାଦି ଦ୍ୱାରା ମୂର୍ତ୍ତିକୁ ଶୋଧନ କରି ଆସନରେ ବସି ମନ୍ତ୍ରୋଚ୍ଚାରଣ ପୂର୍ବକ ପାଦ୍ୟ ଓ ଅର୍ଘ୍ୟ ଆଦି ପାତ୍ରକୁ ସ୍ଥାପନ କରିବ । ତା'ପରେ ପ୍ରତିମାର ହୃଦୟ, ଶିର, ଶିଖା, କବଚ, ନେତ୍ର ଓ ଅସ୍ତ୍ରର ମନ୍ତ୍ରମାନଙ୍କରେ ଅଙ୍ଗନ୍ୟାସ କରି ହୃଦୟରେ ଭଗବାନଙ୍କୁ ଧ୍ୟାନ କରିବ ଏବଂ ମୂଳମନ୍ତ୍ରରେ ପୂଜା କରିବ ।।୫୦-୫୧।। ପାର୍ଷଦମାନଙ୍କ ସହିତ ଭଗବାନଙ୍କର ସମସ୍ତ ଅଙ୍ଗ ଓ ଆୟୁଧ ଆଦି ଉପାଙ୍ଗମାନଙ୍କୁ ଏହି ଇଷ୍ଟମୂର୍ତ୍ତିଙ୍କ ରୂପରେ ଚିନ୍ତାକରି ପାଦ୍ୟ, ଅର୍ଘ୍ୟ, ଆଚମନୀୟ, ମଧୁପର୍କ, ସ୍ନାନୀୟ, ବସ୍ତ୍ର, ଅଳଙ୍କାର, ଗନ୍ଧ, ମାଲ୍ୟ, ତିଳକ, ଧୂପ, ଦୀପ ଓ ନୈବେଦ୍ୟ ଦ୍ୱାରା ଯଥାବିହିତ ପୂଜା ଓ ସ୍ତୁତି କରି ସପରିବାର ପ୍ରଣାମ କରିବ ।।୫୨-୫୩।। ଭଗବାନଙ୍କଠାରେ ତନ୍ମୟ ହୋଇଯାଇ ତାଙ୍କ ମୂର୍ତ୍ତିକୁ ପୂଜା କରିବ । ମସ୍ତକରେ ନିର୍ମାଲ୍ୟ ଧାରଣ କରି ଏବଂ ତାଙ୍କ ମୂର୍ତ୍ତିକୁ ହୃଦୟମଧ୍ୟରେ ସ୍ଥାପନ କରି ପୂଜାକାର୍ଯ୍ୟ ଶେଷ କରିବ ।।୫୪।। ଯେଉଁ ବ୍ୟକ୍ତି ଏହିପରି ଅଗ୍ନି, ସୂର୍ଯ୍ୟ, ଜଳ, ଅତିଥି ଏବଂ ନିଜର ହୃଦୟସ୍ଥ ଭଗବାନଙ୍କୁ ପୂଜା କରେ, ସେ ଅଚିରେ ମୁକ୍ତ ହୋଇଯାଏ ।।୫୫।।

## ଚତୁର୍ଥ ଅଧ୍ୟାୟ

# ଭଗବାନଙ୍କ ଅବତାର ବର୍ଣ୍ଣନା

ରାଜା ନିମି କହିଲେ, ଭଗବାନ୍ ଶ୍ରୀହରି ସ୍ୱେଚ୍ଛାରେ ଏହି ପୃଥିବୀରେ କେଉଁ କେଉଁ ଅବତାର ଗ୍ରହଣ କରି କେଉଁ କେଉଁ କର୍ମ କରିଛନ୍ତି, କରୁଛନ୍ତି ବା କରିବେ, ତାହା କହିବା ହୁଅନ୍ତୁ ।।୧।। ମୁନିମାନଙ୍କ ମଧ୍ୟରୁ ଦ୍ରୁମିଳ କହିଲେ, ରାଜା, ଭଗବାନ୍ ଅନନ୍ତ । ତାଙ୍କ ଅନନ୍ତ ଗୁଣର ଗଣନା କରିବାକୁ ଯିବା କେବଳ ବାଳକବୁଦ୍ଧିର ପରିଚାୟକ । ପୃଥିବୀରେ ଯେତେ ଧୂଳି ଅଛି, ବହୁକାଳ ଧରି ଲାଗି ତାକୁ କେହି ଗଣନା କରିପାରେ; କିନ୍ତୁ ସମସ୍ତ ଶକ୍ତିର ଆଧାର ଭଗବାନଙ୍କର ଗୁଣକୁ କେହି ଗଣନା କରିପାରିବେ ନାହିଁ ।।୨।।

ଯେତେବେଳେ ପଞ୍ଚମହାଭୂତକୁ ସୃଷ୍ଟି କରି ଆଦିଦେବ ନାରାୟଣ ଏହି ବ୍ରହ୍ମାଣ୍ଡକୁ ରଚନା କଲେ ଏବଂ ସେଥିରେ ନିଜେ ପ୍ରବେଶ କଲେ, ସେତେବେଳେ ତାଙ୍କୁ ପୁରୁଷ ନାମରେ ଅଭିହିତ କରାଗଲା ।।୩।। ତାଙ୍କରି ସେହି ବିରାଟ ବ୍ରହ୍ମାଣ୍ଡ ଶରୀରରେ ତିନିଲୋକ ଅବସ୍ଥାନ କରିଛନ୍ତି । ତାଙ୍କ ଇନ୍ଦ୍ରିୟମାନଙ୍କଦ୍ୱାରା ଦେହଧାରୀମାନଙ୍କର ଜ୍ଞାନେନ୍ଦ୍ରିୟ ଓ କର୍ମେନ୍ଦ୍ରିୟ ଉତ୍ପନ୍ନ ହୋଇଛି । ତାଙ୍କ ସ୍ୱରୂପରୁ ଜ୍ଞାନର ଏବଂ ଶ୍ୱାସରୁ ଜୀବମାନଙ୍କ ବଳ, ଓଜ ଓ ଚେଷ୍ଟାର ବିକାଶ ଘଟିଛି । ସତ୍ତ୍ୱ ଆଦି ଗୁଣମାନଙ୍କଦ୍ୱାରା ସେ ସଂସାରର ସୃଷ୍ଟି, ସ୍ଥିତି ଓ ପାଳନର କର୍ତ୍ତା । ପ୍ରଥମେ ସେ ଜଗତ୍‌ର ସୃଷ୍ଟିପାଇଁ ନିଜ ରଜୋଗୁଣର ଅଂଶରୁ ବ୍ରହ୍ମାଙ୍କୁ ଉତ୍ପନ୍ନ କଲେ । ସତ୍ତ୍ୱଗୁଣର ଅଂଶରୁ ବ୍ରାହ୍ମଣଙ୍କୁ ଓ ଧର୍ମର ରକ୍ଷକ ଯଜ୍ଞପତି ବିଷ୍ଣୁଙ୍କୁ ସୃଷ୍ଟି କଲେ ଏବଂ ତମୋଗୁଣର ଅଂଶରୁ ସଂହାରକର୍ତ୍ତା ରୁଦ୍ରଙ୍କୁ ଉତ୍ପନ୍ନ କଲେ । ତାଙ୍କର ଏହି ବ୍ୟବସ୍ଥାରେ ସମସ୍ତ ଜୀବଙ୍କର ଉତ୍ପତ୍ତି, ସ୍ଥିତି ଓ ସଂହାର କାର୍ଯ୍ୟ ନିରନ୍ତର ଲାଗି ରହିଛି ।।୪-୫।।

ଦକ୍ଷଙ୍କର କନ୍ୟା ଓ ଧର୍ମଙ୍କର ପତ୍ନୀ ମୂର୍ତ୍ତିଙ୍କର ଗର୍ଭରୁ ସେ ପ୍ରଶାନ୍ତଚେତା ଋଷିପ୍ରବର ନାରାୟଣ ରୂପେ ଅବତୀର୍ଣ୍ଣ ହୋଇ ନିଷ୍କାମକର୍ମର ଉପଦେଶ ଦେଇଥିଲେ ଏବଂ ସ୍ୱୟଂ ତାହା ଆଚରଣ କରୁଥିଲେ । ସେ ଏବେ ମଧ୍ୟ ବିଦ୍ୟମାନ ଓ ବଡ଼ ବଡ଼ ମୁନି ଋଷିମାନେ ଏବେ ମଧ୍ୟ ତାଙ୍କର ପାଦସେବା କରନ୍ତି ।।୬।। ନରନାରାୟଣ ଋଷି ତପସ୍ୟାଦ୍ୱାରା କାଳେ ଇନ୍ଦ୍ରପଦ ଅଧିକାର କରିନେବେ, ଏହି ଆଶଙ୍କାରେ ଇନ୍ଦ୍ର ତାଙ୍କ ତପୋଭଙ୍ଗପାଇଁ କାମଦେବଙ୍କୁ ତାଙ୍କ ଦଳବଳ ସହିତ ନିଯୁକ୍ତ କଲେ । କାମଦେବ ତାଙ୍କର ମହିମା ଜାଣି ନଥିଲେ । ସେ ଅପ୍‌ସରାମାନଙ୍କସହିତ ବଦରିକାଶ୍ରମକୁ ଗଲେ । ବସନ୍ତ ଋତୁ ଓ ମନ୍ଦ ମଧୁର ପବନର ସହାୟତାରେ ସେ କାମିନୀମାନଙ୍କର କଟାକ୍ଷବାଣରେ ଋଷିଙ୍କୁ ବିଦ୍ଧ କଲେ ।।୭।। ଆଦିଦେବ ନରନାରାୟଣ ଇନ୍ଦ୍ରକୃତ ଅପରାଧକୁ ଜାଣିପାରିଲେ; କିନ୍ତୁ ସେଥିରେ ବିସ୍ମିତ ହେଲେ ନାହିଁ । ଶାପଭୟରେ ଥରୁଥିବା କନ୍ଦର୍ପ ଆଦିଙ୍କୁ ସେ ହସି ହସି କହିଲେ, ହେ ମଦନ, ହେ ମାରୁତ, ହେ ଦେବବଧୂ ଅପ୍‌ସରାମାନେ, ତୁମେ ଭୟକର ନାହିଁ । ତୁମେମାନେ ଆମ ଆତିଥ୍ୟ ଗ୍ରହଣ କରି ଆମର ଆଶ୍ରମକୁ କୃତାର୍ଥ କର ।।୮।। ରାଜା, ନରନାରାୟଣ ଏହିପରି ଅଭୟ ପ୍ରଦାନ କରି କହିବାରୁ କନ୍ଦର୍ପ ଆଦି ଦେବଦେବୀମାନେ ଲଜ୍ଜାରେ ମୁଣ୍ଡ ନୁଆଁଇ ରହିଲେ । ସେମାନେ ଦୟାଳୁ ଋଷିଙ୍କୁ କହିଲେ, ଆପଣ ମାୟାରୁ ଅତୀତ, ନିର୍ବିକାର । ଆତ୍ମାରାମ ଧୀର ପୁରୁଷମାନେ ସର୍ବଦା ଆପଣଙ୍କର ପାଦପଦ୍ମକୁ ପ୍ରଣାମ କରନ୍ତି ।।୯।। ଆପଣଙ୍କର ସେବକମାନେ ଦେବତାମାନଙ୍କର ସମସ୍ତ ବାଧାବିଘ୍ନସତ୍ତ୍ୱେ ସ୍ୱର୍ଗକୁ ଅତିକ୍ରମ କରି ଆପଣଙ୍କ ପରମପଦରେ ଉପନୀତ ହୁଅନ୍ତି । ନିଜର ବଳିଭାଗ ପାଇ କେବଳ ଯଜ୍ଞକାରୀମାନଙ୍କୁ ସେମାନେ ବାଧା ଦିଅନ୍ତି ନାହିଁ, କିନ୍ତୁ ଆପଣ ଯାହାର ରକ୍ଷକ, ସେ ବିଘ୍ନର ମସ୍ତକରେ ପଦାଘାତ କରି ଆଗକୁ ଚାଲେ ।।୧୦।।

ଏପରି ଅନେକ ଲୋକ ଅଛନ୍ତି, ଯେଉଁମାନେ ଭୋକ-ଶୋଷ, ଥଣ୍ଡା-ଗରମ, ଝଡ଼ି-ବର୍ଷାର କଷ୍ଟ ତଥା ରସନେନ୍ଦ୍ରିୟର ଓ ଜନନେନ୍ଦ୍ରିୟର ବାଧାକୁ -- ଯାହାକି ବାଧାର ଏକ ଅଗାଧ ସମୁଦ୍ରସହିତ ସମାନ, ଅତିକ୍ରମକରି ମଧ୍ୟ ଗୋରୁପାଦ ବୁଡ଼ିବା ଭଳି କ୍ରୋଧରୂପକ ଅଳ୍ପ ଜଳରେ ବୁଡ଼ିଯାଆନ୍ତି । ସେମାନଙ୍କର ସମସ୍ତ ତପସ୍ୟା ବୃଥା ହୋଇଯାଏ । (ସେମାନଙ୍କୁ ଭୋଗ ମିଳେ ନାହିଁ ବା ମୋକ୍ଷ ମିଳେ ନାହିଁ) ॥୧୧॥ କାମଦେବ ଆଦି ଇନ୍ଦ୍ରଙ୍କର ଅନୁଚରମାନେ ଏହିପରି ସ୍ତୁତି କରୁଥିବା ବେଳେ ସର୍ବଶକ୍ତିମାନ୍ ଭଗବାନ୍ ଏପରି କେତେକ ଅପୂର୍ବ ସୁନ୍ଦରୀ ସ୍ତ୍ରୀଙ୍କୁ ସୃଷ୍ଟି କଲେ ଯେଉଁମାନେ ନିଜର ଅପରୂପ ଲାବଣ୍ୟରେ ଶୋଭା ପାଉଥିଲେ । ସେମାନେ ଭଗବାନ୍ ନରନାରାୟଣଙ୍କର ସେବାରେ ରତ ଥିଲେ ॥୧୨॥ ଇନ୍ଦ୍ରଙ୍କର ସେହି ଅନୁଚରମାନେ ଲକ୍ଷ୍ମୀଙ୍କ ପରି ରୂପବତୀ ସେହି ସ୍ତ୍ରୀମାନଙ୍କୁ ଦେଖି ସେମାନଙ୍କ ଶରୀରର ସୁବାସରେ ମୋହିତ ହୋଇଗଲେ ଏବଂ ନିଜେ ଶ୍ରୀହୀନ ଓ ମଳିନ ପଡ଼ିଗଲେ ॥୧୩॥ ଇନ୍ଦ୍ରଙ୍କର ଅନୁଚରଙ୍କ ମୁଣ୍ଡ ନଇଁଗଲା । ଦେବାଧିଦେବ ଭଗବାନ୍ ନରନାରାୟଣ ସେମାନଙ୍କୁ ଅଳ୍ପ ହସି କହିଲେ, ଏହି ସ୍ତ୍ରୀଙ୍କ ମଧ୍ୟରୁ ଜଣଙ୍କୁ ତୁମେ ବାଛିପାର, ଯେ ସ୍ୱର୍ଗକୁ ଯାଇ ସ୍ୱର୍ଗର ଶୋଭା ବଢ଼ାଇ ପାରିବ ॥୧୪॥ କନ୍ଦର୍ପ ଆଦି ଇନ୍ଦ୍ରଙ୍କର ଅନୁଚରମାନେ 'ଯେ ଆଜ୍ଞା' ବୋଲି କହି ମୁଣ୍ଡ ନୁଆଇଁ ସ୍ୱୀକୃତି ଜଣାଇଲେ । ନାରାୟଣଙ୍କ ରଚିତ ସ୍ତ୍ରୀମାନଙ୍କ ମଧ୍ୟରେ ଉର୍ବଶୀଙ୍କୁ ଶ୍ରେଷ୍ଠ ଅପ୍‌ସରା ବୋଲି ଭାବି ତାଙ୍କୁ ଆଗରେ ରଖି ସେମାନେ ସ୍ୱର୍ଗଲୋକକୁ ଫେରିଗଲେ ॥୧୫॥ ସେମାନେ ଦେବସଭାକୁ ଯାଇ ନମସ୍କାରପୂର୍ବକ ଇନ୍ଦ୍ରଙ୍କୁ ଓ ସମସ୍ତ ଦେବତାଙ୍କୁ ନାରାୟଣଙ୍କର ବଳ ଓ ପ୍ରଭାବ ବିଷୟ ଶୁଣାଇଲେ । ତାହା ଶୁଣି ଇନ୍ଦ୍ରଙ୍କର ବିସ୍ମୟ ଓ ଭୟ ଜାତ ହେଲା ॥୧୬॥ ହଂସରୂପୀ ଭଗବାନ୍ ଅଚ୍ୟୁତ, ଭଗବାନ୍ ଦତ୍ତାତ୍ରେୟ, ସନତ୍‌କୁମାର ଏବଂ ଆମ ପିତା ଋଷଭଦେବ ଆତ୍ମସାକ୍ଷାତ୍‌କାରର ଉପାୟ କହିଥିଲେ ଏବଂ ପ୍ରାଣୀଙ୍କ ମଙ୍ଗଳ ନିମନ୍ତେ ବିଷ୍ଣୁ କଳାରେ ଏହି ସମସ୍ତ ଅବତାର ଗ୍ରହଣ କରିଥିଲେ ଏବଂ ହୟଗ୍ରୀବ ଅବତାରରେ ମଧୁଦୈତ୍ୟଙ୍କୁ ବଧ କରି ବେଦ ଉଦ୍ଧାର କରିଥିଲେ ॥୧୭॥ ଭଗବାନ୍ ପ୍ରଳୟ କାଳରେ ମତ୍ସ୍ୟାବତାର ହୋଇ ମନୁ, ପୃଥିବୀ, ଓଷଧି ଓ ବନସ୍ପତିମାନଙ୍କୁ ରକ୍ଷା କରିଥିଲେ । ବରାହାବତାରରେ ସମୁଦ୍ରମଧ୍ୟରୁ ପୃଥିବୀକୁ ଉଦ୍ଧାର କରିବାବେଳେ ଦୈତ୍ୟ ହିରଣ୍ୟାକ୍ଷକୁ ନିହତ କରିଥିଲେ । କୂର୍ମ ଅବତାରରେ ସମୁଦ୍ରମନ୍ଥନ ସମୟରେ ନିଜ ପୃଷ୍ଠଭାଗରେ ମନ୍ଦରପର୍ବତକୁ ଧାରଣ କରିଥିଲେ ଏବଂ ସେ କୁମ୍ଭୀରର କବଳରୁ ଶରଣାଗତ ଓ ଆର୍ତ୍ତ ଗଜେନ୍ଦ୍ରକୁ ଉଦ୍ଧାର କରିଥିଲେ ॥୧୮॥ ଅତି କ୍ଷୁଦ୍ରକାୟ ବାଲଖିଲ୍ୟ ଋଷିମାନେ ଗୋଷ୍ପଦ(ସାମାନ୍ୟ ଜଳ) ରେ ପଡ଼ି ବୁଡ଼ିଯାଉଥିଲେ । ସେମାନେ ସ୍ତୁତି କରିବାରୁ ଭଗବାନ୍ ସେମାନଙ୍କୁ ରକ୍ଷା କରିଥିଲେ । ବୃତ୍ରାସୁରକୁ ବଧ କରିବାରୁ ଇନ୍ଦ୍ରଙ୍କୁ ବ୍ରହ୍ମହତ୍ୟା ପାପ ଲାଗିଥିଲା । ତାଙ୍କୁ ସେଥିରୁ ସେ ଉଦ୍ଧାର କରିଥିଲେ । ଅସୁର ଗୃହରେ ଆବଦ୍ଧ ଅନାଥା ଦେବାଙ୍ଗନାମାନଙ୍କୁ ସେ ମୁକ୍ତ କରିଥିଲେ ॥୧୯॥ ସମସ୍ତ ମନ୍ୱନ୍ତରରେ ନିଜ କଳାରେ ଅବତୀର୍ଣ୍ଣ ହୋଇ ଦେବାସୁରଯୁଦ୍ଧରେ ଦେବକାର୍ଯ୍ୟସାଧନପାଇଁ ସେ ଦୈତ୍ୟମାନଙ୍କୁ ବଧ କରିଥିଲେ ଓ ତ୍ରିଭୁବନକୁ ରକ୍ଷା କରିଥିଲେ । ବାମନ ଅବତାରରେ ମାଗିବା ଛଳରେ ବଳିଙ୍କ ଠାରୁ ପୃଥିବୀକୁ ଛଡ଼ାଇ ଆଣି ଅଦିତିଙ୍କର ପୁତ୍ର ଦେବତାମାନଙ୍କୁ ଅର୍ପଣ କରିଥିଲେ ॥୨୦॥ ହୈହୟକୁଳର ପ୍ରଳୟାଗ୍ନିସ୍ୱରୂପ ପରଶୁରାମ-ଅବତାରରେ ସେ ପୃଥିବୀକୁ ଏକୋଇଶବାର ନିଃକ୍ଷତ୍ରିୟ କରିଥିଲେ । ରାମ ଅବତାରରେ ସମୁଦ୍ରରେ ସେତୁ ବାନ୍ଧି ଲଙ୍କାସମେତ ରାବଣଙ୍କୁ ବିନାଶ କରିଥିଲେ । ଲୋକମାନଙ୍କର ପାପନାଶନ ସେହି ସୀତାପତି ଶ୍ରୀହରିଙ୍କର ଜୟ ହେଉ ॥୨୧॥ ଭଗବାନ୍ ଅଜନ୍ମା ହେଲେ ମଧ୍ୟ ଭୂଭାର ହରଣପାଇଁ ଯଦୁକୁଳରେ ଜନ୍ମ ହୋଇ ଦେବତାଙ୍କ ଦୁଷ୍କର କାର୍ଯ୍ୟମାନ ସାଧନ କରିବେ । ବୁଦ୍ଧ-ଅବତାରରେ ଯଜ୍ଞପାଇଁ ଅଯୋଗ୍ୟ ଯଜ୍ଞକାରୀ ବ୍ୟକ୍ତିମାନଙ୍କୁ ସେ ଯୁକ୍ତିତର୍କଦ୍ୱାରା ବିମୋହିତ କରିବେ । କଳିଯୁଗ ଶେଷରେ କଳ୍କୀ ଅବତାର ହୋଇ ଶୂଦ୍ର ରାଜାମାନଙ୍କୁ ନିଧନ କରିବେ ॥୨୨॥ ହେ ମହାବାହୁ, ଅମିତଯଶା ଜଗଦୀଶ୍ୱର ଭଗବାନଙ୍କର ଏହିପରି ବହୁ ଜନ୍ମ ଓ କର୍ମର ବିଷୟ ମୁଁ ବର୍ଣ୍ଣନାକଲି ॥୨୩॥

## ପଞ୍ଚମ ଅଧ୍ୟାୟ

# ଭଗବାନଙ୍କ ପୂଜାବିଧି

ହେ ଆତ୍ମଜ୍ଞ ମୁନିମାନେ, ଯେଉଁମାନେ ଶ୍ରୀହରିଙ୍କୁ ଭଜନ କରନ୍ତି ନାହିଁ, ଇନ୍ଦ୍ରିୟକୁ ଜୟ କରି ନ ଥିବା ସେହି ଅଶାନ୍ତକାମ ବ୍ୟକ୍ତିମାନଙ୍କର ଦଶା କ'ଣ ହୁଏ ? ॥୧॥ ମୁନି ଚମସ କହିଲେ, ବିରାଟ ପୁରୁଷଙ୍କର ମୁଖ, ବାହୁ, ଉରୁ ଓ ପାଦରୁ ଯଥାକ୍ରମେ ସତ୍ତ୍ୱପ୍ରଧାନ ବ୍ରାହ୍ମଣ, ରଜୋଗୁଣପ୍ରଧାନ କ୍ଷତ୍ରିୟ, ରଜ ଓ ତମୋଗୁଣ ପ୍ରଧାନ ବୈଶ୍ୟ ଏବଂ ତମୋଗୁଣପ୍ରଧାନ ଶୂଦ୍ର ଜନ୍ମ ହେଲେ । ଭଗବାନଙ୍କର ଜଙ୍ଘରୁ ଗୃହସ୍ଥାଶ୍ରମ, ହୃଦୟରୁ ବ୍ରହ୍ମଚର୍ଯ୍ୟ, ବକ୍ଷରୁ ବାନପ୍ରସ୍ଥ ଓ ମସ୍ତକରୁ ସନ୍ନ୍ୟାସ--ଏହିପରି ଚାରି ଆଶ୍ରମର ଜନ୍ମ ହେଲା । ସେମାନଙ୍କ ମଧ୍ୟରେ ଯେଉଁମାନେ ନିଜର ଜନକ ସେହି ଭଗବାନଙ୍କୁ ଭଜନ କରନ୍ତି ନାହିଁ, ସେମାନେ ବର୍ଣ୍ଣାଶ୍ରମ ଧର୍ମରୁ ଭ୍ରଷ୍ଟ ହୋଇ ଅଧଃପତିତ ହୁଅନ୍ତି ॥୨-୩॥ ଯେଉଁଠାରେ ହରିକଥା ହେଉଥାଏ ଏବଂ ଅଚ୍ୟୁତଙ୍କର କୀର୍ତ୍ତନ ହୁଏ, କେତେକ ଲୋକ ସେଠାରୁ ଦୂରକୁ ଚାଲିଯାଆନ୍ତି । ସେହିପରି ଲୋକ ଏବଂ ସ୍ତ୍ରୀ ଓ ଶୂଦ୍ରମାନେ ଆପଣଙ୍କ ପରି ମହତ୍‌ବ୍ୟକ୍ତିଙ୍କ ଦୟାର ପାତ୍ର ॥୪॥ ବ୍ରାହ୍ମଣ, କ୍ଷତ୍ରିୟ ଓ ବୈଶ୍ୟମାନେ ନିଜର ଜନ୍ମଦ୍ୱାରା ଏବଂ ଉପନୟନ ଓ ଅଧ୍ୟୟନ ଆଦି କର୍ମ ଦ୍ୱାରା ଶ୍ରୀହରିଙ୍କ ପାଦର ସାନ୍ନିଧ୍ୟ ଲାଭ କରିବାର ଅଧିକାର ପାଇଲେ ମଧ୍ୟ ବେଦ-ବାଦଦ୍ୱାରା ମୋହିତ ହୁଅନ୍ତି । ପ୍ରକୃତ କର୍ମ କ'ଣ ସେମାନେ ଜାଣନ୍ତି ନାହିଁ ଏବଂ ମୂର୍ଖ ହେଲେ ମଧ୍ୟ ସେହି ପଣ୍ଡିତମ୍ମନ୍ୟ ବ୍ୟକ୍ତିମାନେ ନିଜ ପାଣ୍ଡିତ୍ୟର ଅଭିମାନରେ ବେଦର ଚାଟୁବାକ୍ୟ ଦ୍ୱାରା ମୁଗ୍ଧ ହୋଇଯାଆନ୍ତି ଏବଂ ନିଜେ ଏହି ସବୁ ବାକ୍ୟମାନ କହିବାରେ ଲାଗନ୍ତି ॥୫-୬॥ ରଜୋଗୁଣସମ୍ପନ୍ନ ଏହି ବ୍ୟକ୍ତିମାନଙ୍କର ସଙ୍କଳ୍ପ ଭୟଙ୍କର ହୋଇଥାଏ । ସେମାନେ ସର୍ପତୁଲ୍ୟ କ୍ରୋଧୀ ହୁଅନ୍ତି । କାମୁକ, ଦାମ୍ଭିକ, ଅଭିମାନୀ ଓ ପାପୀମାନେ ଭଗବାନଙ୍କର ପ୍ରିୟ ଭକ୍ତମାନଙ୍କୁ ଉପହାସ କରନ୍ତି ॥୭॥ ସେମାନେ ମୈଥୁନସୁଖ ପାଇଁ ସ୍ତ୍ରୀସେବାରେ ଲାଗିଥା'ନ୍ତି । ନିଜ ନିଜ ମଧ୍ୟରେ କୁଶଳବାର୍ତ୍ତା କୁହାକୁହି ହୁଅନ୍ତି । ଯେଉଁ ଯଜ୍ଞ କରନ୍ତି, ସେଥିରେ ଅନ୍ନଦାନ ବା ଦକ୍ଷିଣା ଦିଅନ୍ତି ନାହିଁ । ହିଂସାକୁ ଦୋଷ ବୋଲି ନ ଜାଣି ନିଜର ଜୀବିକା ପାଇଁ ପଶୁହତ୍ୟା କରନ୍ତି ॥୮॥ ସେମାନେ ଧନସମ୍ପଦ, ଐଶ୍ୱର୍ଯ୍ୟ, ଆଭିଜାତ୍ୟ, ବିଦ୍ୟା, ଦାନ, ରୂପ, ବଳ ଓ କର୍ମ ଗର୍ବରେ ଅନ୍ଧ ହୋଇ ଶ୍ରୀହରିଙ୍କ ସମେତ ହରିଭକ୍ତ ସାଧୁମାନଙ୍କୁ ଅବମାନନା କରନ୍ତି । ସମସ୍ତ ଦେହଧାରୀଙ୍କ ମଧ୍ୟରେ ଯେ ଆକାଶପରି ନିତ୍ୟ ଅବସ୍ଥାନ କରନ୍ତି, ବେଦରେ ବର୍ଣ୍ଣିତ ସେହି ଅଭୀଷ୍ଟ ଈଶ୍ୱରଙ୍କ କଥା ନଶୁଣି ନାନା ମନଗଢ଼ା କଥାରେ ପ୍ରବୃତ୍ତ ହୁଅନ୍ତି ॥୯-୧୦॥

ସଂସାରରେ ମନୁଷ୍ୟମାତ୍ରେ ସ୍ତ୍ରୀସହବାସ, ଆମିଷଭୋଜନ ଓ ମଦ୍ୟପାନପ୍ରତି ଆସକ୍ତ ହୁଅନ୍ତି । ଶାସ୍ତ୍ରରେ ତାର କୌଣସି ନିତ୍ୟ ବିଧାନ ନାହିଁ । ତଥାପି ସ୍ତ୍ରୀର ଋତୁକାଳରେ ସହବାସ, ଯଜ୍ଞଶେଷରେ ଆମିଷ ଗ୍ରହଣ ଓ ସୌତ୍ରାମଣି ନାମକ ଅନୁଷ୍ଠାନରେ ମଦ୍ୟପାନର କଥା କୁହାଯାଇଥିଲେ ମଧ୍ୟ ଏସବୁରୁ ନିବୃତ୍ତ ହେବା ବାଞ୍ଛନୀୟ ॥୧୧॥ ଧନର ଏକମାତ୍ର ଫଳ ହେଉଛି ଧର୍ମ, କାରଣ ଧର୍ମଦ୍ୱାରା ପରମାତ୍ମାଙ୍କ ଲାଭ କରିବାର ପ୍ରତ୍ୟକ୍ଷ ଓ ପରୋକ୍ଷ ଜ୍ଞାନ ସହିତ ପ୍ରକୃତ ଶାନ୍ତି ମିଳିଥାଏ । କିନ୍ତୁ ମୂଢ଼ ବ୍ୟକ୍ତି ନିଜର ଦେହ ଓ ଗୃହର (ବିଷୟ ଭୋଗ) ସୁଖ ନିମନ୍ତେ ଧନକୁ ବ୍ୟବହାର କରେ । ସେ ଜାଣିପାରେ ନାହିଁ ଯେ, ଦୁରନ୍ତ ମୃତ୍ୟୁ ଦିନେ ନା ଦିନେ ଶରୀରକୁ ଗ୍ରାସକରିବ ॥୧୨॥ ସୌତ୍ରାମଣି ନାମକ ଯଜ୍ଞରେ ମଦର କେବଳ ଆଘ୍ରାଣର ବିଧି ଅଛି; ପାନ ନିଷିଦ୍ଧ । ସେହିପରି ଯଜ୍ଞରେ ପଶୁହତ୍ୟାକୁ ହିଂସା କୁହାଯାଏ ନାହିଁ (ମାତ୍ର ଅନ୍ୟ ଉଦ୍ଦେଶ୍ୟରେ ତାହା ହିଂସା ଅଟେ) । ସନ୍ତାନଲାଭପାଇଁ ସ୍ତ୍ରୀ ସହବାସ ବିହିତ; ରତିସୁଖପାଇଁ ନୁହେଁ । କିନ୍ତୁ କାମୀ ବ୍ୟକ୍ତି ଏହାକୁ ନିଜର ଶୁଦ୍ଧ ସ୍ୱଧର୍ମ ବୋଲି ଗ୍ରହଣ କରେ ନାହିଁ । ଯେ ଏହା ନ ଜାଣେ, ସେହି ଅସାଧୁ, ଅହଙ୍କାରୀ, ଅଭିମାନୀ, ମୂଢ଼ ବ୍ୟକ୍ତି ନିର୍ଭୟରେ ପଶୁହିଂସା କରିଚାଲେ ।

ପରକାଳରେ ସେହି ପଶୁ ହିଁ ତାକୁ ଖାଇଥାଏ । ଯେଉଁ ବ୍ୟକ୍ତି ନିଜର ମର ଦେହ ପ୍ରତି ଓ ସେହି ଦେହ ସହିତ ସମ୍ପୃକ୍ତ ପୁତ୍ର ଆଦି ସ୍ୱଜନଙ୍କ ପ୍ରତି ସ୍ନେହପାଶରେ ଆବଦ୍ଧ ହୋଇ ଅନ୍ୟମାନଙ୍କୁ ଦ୍ୱେଷ କରେ, ତଦ୍ଦ୍ୱାରା ସେ ଅନ୍ୟ ଦେହରେ ଥିବା ଆତ୍ମସ୍ୱରୂପ ଭଗବାନ୍ ଶ୍ରୀହରିଙ୍କୁ ମଧ୍ୟ ଦ୍ୱେଷ କରେ । ସେପରି ବ୍ୟକ୍ତିର ଅଧଃପତନ ସୁନିଶ୍ଚିତ ॥୧୩-୧୫॥ ଯେଉଁମାନେ ଏହି ମୂଢ଼ତାକୁ ଅତିକ୍ରମ କରିଛନ୍ତି, କିନ୍ତୁ ମୋକ୍ଷପ୍ରାପ୍ତିର ତତ୍ତ୍ୱ ଲାଭ କରି ନାହାନ୍ତି, ସେମାନେ ଧର୍ମ, ଅର୍ଥ ଓ କାମକୁ ହିଁ ସବୁକିଛି ମନେକରି ସେଥିରେ ନିରତ ରହି ନିଜର ଆତ୍ମଘାତୀ ହୁଅନ୍ତି ॥୧୬॥ ଅଜ୍ଞାନକୁ ଜ୍ଞାନବୋଲି ମନେ କରୁଥିବା ଏହି ଆତ୍ମଘାତୀମାନେ କେବେହେଲେ ଶାନ୍ତି ଲାଭ କରନ୍ତି ନାହିଁ । ଅକର୍ମରେ କର୍ମ ବୁଦ୍ଧି ରଖି ସେମାନଙ୍କର ସମସ୍ତ ଅଭୀଷ୍ଟ କର୍ମ ନଷ୍ଟ ହୋଇଯାଏ ଏବଂ ସେମାନେ କେବଳ କଷ୍ଟ ହିଁ ଭୋଗ କରିଥା'ନ୍ତି ॥୧୭॥ ଭଗବାନ୍ ବାସୁଦେବଙ୍କ ପ୍ରତି ବିମୁଖ ଏହି ବ୍ୟକ୍ତିମାନେ ନିଜର ଅନିଚ୍ଛାସତ୍ତ୍ୱେ କଷ୍ଟୋପାର୍ଜିତ ଗୃହ, ପୁତ୍ର, ସୁହୃଦ୍ ଓ ସମ୍ପତ୍ତି ପରିତ୍ୟାଗ କରି ନରକରେ ପ୍ରବେଶ କରନ୍ତି ॥୧୮॥ ରାଜା ନିମି ପଚାରିଲେ, ବ୍ରହ୍ମଜ୍ଞମାନେ, କେଉଁ କାଳରେ ଭଗବାନଙ୍କର କିପରି ବର୍ଣ୍ଣ, କିପରି ଆକାର, କିପରି ନାମ ଥିଲା ଏବଂ କେଉଁ ବିଧିରେ ମନୁଷ୍ୟମାନେ ତାଙ୍କୁ ପୂଜା କରୁଥିଲେ, ତାହା କହିବା ହୁଅନ୍ତୁ ॥୧୯॥

ମୁନି ଶ୍ରୀ କରଭାଜନ କହିଲେ, ଭଗବାନ୍ କେଶବ ସତ୍ୟ, ତ୍ରେତା, ଦ୍ୱାପର ଓ କଳି – ଏହି ସବୁ ଯୁଗରେ ବିଭିନ୍ନ ବର୍ଣ୍ଣ, ନାମ ଓ ରୂପରେ ପ୍ରକଟିତ ହୋଇଥିଲେ ଏବଂ ବିଭିନ୍ନ ବିଧିରେ ତାଙ୍କର ପୂଜା କରାଯାଉଥିଲା ॥୨୦॥ ସତ୍ୟ ଯୁଗରେ ଭଗବାନ୍ ଶୁକ୍ଳବର୍ଣ୍ଣ, ଚତୁର୍ଭୁଜ, ଜଟାଜୁଟ ଓ ବଲ୍କଳଧାରୀ ଥିଲେ ଏବଂ କୃଷ୍ଣ ମୃଗଚର୍ମର ଉପବୀତ, ରୁଦ୍ରାକ୍ଷମାଳା, ଦଣ୍ଡ ଓ କମଣ୍ଡଳୁ ଧାରଣ କରିଥିଲେ । ସେହି ଯୁଗରେ ମନୁଷ୍ୟମାନେ ଶାନ୍ତ, ଶତ୍ରୁଶୂନ୍ୟ, ସମଦର୍ଶୀ ଓ ପରସ୍ପର ବନ୍ଧୁ ଥିଲେ । ସେମାନେ ଇନ୍ଦ୍ରିୟମାନଙ୍କୁ ଓ ମନକୁ ଶାନ୍ତ ଓ ସଂଯତ କରି ତପସ୍ୟାଦ୍ୱାରା ଭଗବାନଙ୍କର ଆରାଧନା କରୁଥିଲେ । ସେମାନେ ଭଗବାନଙ୍କୁ ହଂସ, ସୁପର୍ଣ୍ଣ, ବୈକୁଣ୍ଠ, ଧର୍ମ, ଯୋଗେଶ୍ୱର, ଅମଳ, ଈଶ୍ୱର, ପୁରୁଷ, ଅବ୍ୟକ୍ତ ଓ ପରମାତ୍ମା ନାମରେ ଅଭିହିତ କରି ତାଙ୍କର ଗୁଣଗାନ କରୁଥିଲେ ॥୨୧-୨୩॥ ତ୍ରେତା ଯୁଗରେ ଭଗବାନଙ୍କର ଥିଲା ରକ୍ତ ବର୍ଣ୍ଣ । ସେ ଚତୁର୍ଭୁଜ ଥିଲେ ଓ ତିନୋଟି ମେଖଳା ପରିଧାନ କରୁଥିଲେ । ତାଙ୍କର କେଶ ଥିଲା ପିଙ୍ଗଳବର୍ଣ୍ଣ । ସେଇ ବେଦାତ୍ମା ଭଗବାନ୍ ସ୍ରୁକ୍, ସ୍ରୁବ ଆଦି ଯଜ୍ଞପାତ୍ର ଧାରଣ କରୁଥିଲେ । ଲୋକମାନେ ଧର୍ମଜ୍ଞ ଓ ସତ୍ୟବାଦୀ ଥିଲେ ଏବଂ ସର୍ବଦେବମୟ ଶ୍ରୀହରିଙ୍କୁ ବେଦୋକ୍ତ ବିଧାନରେ ଆରାଧନା କରୁଥିଲେ ॥୨୪-୨୫॥ ସେ ଯୁଗରେ ତାଙ୍କୁ ବିଷ୍ଣୁ, ଯଜ୍ଞ, ପୃଶ୍ନିଗର୍ଭ, ସର୍ବଦେବ, ଉରୁକ୍ରମ, ବୃଷାକପି, ଜୟନ୍ତ ଓ ଉରୁଗାୟ -- ଏହି ସବୁ ନାମରେ ଅଭିହିତ କରାଯାଉଥିଲା ॥୨୬॥ ଦ୍ୱାପର ଯୁଗରେ ଭଗବାନଙ୍କର ଶ୍ୟାମବର୍ଣ୍ଣ ଥିଲା । ସେ ପୀତ ବସ୍ତ୍ର ପରିଧାନ କରୁଥିଲେ । ଚକ୍ରକୁ ନିଜର ଅସ୍ତ୍ରରୂପେ ଧାରଣ କରୁଥିଲେ । ବକ୍ଷରେ ଶ୍ରୀବତ୍ସ ଚିହ୍ନ ଓ ଅନ୍ୟାନ୍ୟ ଲକ୍ଷଣଦ୍ୱାରା ଶୋଭା ପାଉଥିଲେ । ରାଜା, ସେତେବେଳେ ତତ୍ତ୍ୱଜିଜ୍ଞାସୁ ମନୁଷ୍ୟମାନେ ଛତ୍ର ଚାମର ଆଦି ମହାରାଜୋଚିତ ଏବଂ ଐଶ୍ୱର୍ଯ୍ୟଯୁକ୍ତ ଭଗବାନଙ୍କୁ ବେଦ ଓ ତନ୍ତ୍ର ବିଧି ଦ୍ୱାରା ପୂଜା କରୁଥିଲେ । ହେ ଭଗବାନ୍ ବାସୁଦେବ, ଆପଣଙ୍କୁ ନମସ୍କାର । ହେ ସଙ୍କର୍ଷଣ, ଆପଣଙ୍କୁ ନମସ୍କାର । ହେ ପ୍ରଦ୍ୟୁମ୍ନ, ହେ ଅନିରୁଦ୍ଧ, ଆପଣଙ୍କୁ ନମସ୍କାର । ହେ ନାରାୟଣ, ଋଷି, ମହାତ୍ମା, ପୁରୁଷ, ବିଶ୍ୱେଶ୍ୱର, ବିଶ୍ୱ ଓ ସର୍ବଭୂତାତ୍ମା, ଆପଣଙ୍କୁ ନମସ୍କାର । ଦ୍ୱାପରଯୁଗରେ ଜଗଦୀଶ୍ୱର ଭଗବାନଙ୍କୁ ଏହିପରି ସ୍ତୁତି କରୁଥିଲେ । କଳିଯୁଗରେ ନାନା ପ୍ରକାର ତାନ୍ତ୍ରିକ ବିଧିବିଧାନରେ ଭଗବାନଙ୍କୁ ଯେପରି ପୂଜା କରାଯାଏ – ତାହା ମୁଁ କହୁଛି ଶୁଣ ॥୨୭-୩୧॥ କଳିଯୁଗରେ ବିବେକୀ ବ୍ୟକ୍ତିମାନେ ଇନ୍ଦ୍ରନୀଳମଣିକାନ୍ତି ଭଗବାନଙ୍କୁ ଅଙ୍ଗ (ହୃଦୟାଦି), ଉପାଙ୍ଗ (କୌସ୍ତୁଭାଦି), ଅସ୍ତ୍ର (ସୁଦର୍ଶନାଦି) ଓ ପାର୍ଷଦ (ସୁନନ୍ଦଆଦି)ଙ୍କ ସହିତ ସଂକୀର୍ତ୍ତନପ୍ରଧାନ ଯଜ୍ଞଦ୍ୱାରା ଅର୍ଚ୍ଚନା କରନ୍ତି ॥୩୨॥ କଳିଯୁଗରେ ଭଗବାନଙ୍କୁ ଏହିପରି ଧ୍ୟାନ କରାଯିବା ଉଚିତ । ହେ ମହାପୁରୁଷ, ଆପଣଙ୍କର ଚରଣାରବିନ୍ଦକୁ ମୁଁ ବନ୍ଦନା କରୁଛି । ତାହା ସଂସାରଜନିତ ବିଭିନ୍ନ ଅବଜ୍ଞା, ଅପମାନକୁ ଦୂର କରେ । ଭକ୍ତମାନଙ୍କର ମନୋରଥ ପୂରଣ କରେ । ତାହା

ପରମତୀର୍ଥ ସ୍ୱରୂପ ଏବଂ ବ୍ରହ୍ମା ଓ ଶିବଙ୍କ ଦ୍ୱାରା ବନ୍ଦନୀୟ । ତାହା ଆଶ୍ରିତ ବ୍ୟକ୍ତିର ସମସ୍ତ ଦୁଃଖ ଦୂର କରେ । ହେ ଶରଣରକ୍ଷକ, ଆପଣଙ୍କର ପାଦପଦ୍ମ ଭବସାଗରକୁ ପାର ହେବାର ନୌକା ।।୩୩।। ଦେବତାମାନଙ୍କର ଈପ୍ସିତ ଯେଉଁ ରାଜ୍ୟଲକ୍ଷ୍ମୀଙ୍କୁ ସହଜରେ କେହି ପରିତ୍ୟାଗ କରିପାରେ ନାହିଁ, ଆପଣ ତାହାଙ୍କୁ ତ୍ୟାଗ କରିଦେଇଥିଲେ । ଆପଣ ଧର୍ମିଷ୍ଠ । ତେଣୁ ପିତାଙ୍କ ବଚନ ଅନୁସାରେ ବନଗମନ କରିଥିଲେ । ଆପଣଙ୍କର ଯେଉଁ ପାଦପଦ୍ମ ନିଜ ପ୍ରେୟସୀଙ୍କ ଈପ୍‌ସିତ ମାୟାମୃଗ ପଛରେ ଧାବିତ ହୋଇଥିଲା, ହେ ମହାପୁରୁଷ, ମୁଁ ତାହାକୁ ବନ୍ଦନା କରୁଛି ।।୩୪।। ହେ ରାଜା, ଏହିପରି ବିଭିନ୍ନ ଯୁଗରେ ଯୁଗାନୁରୂପ ନାମରୂପଦ୍ୱାରା ମନୁଷ୍ୟମାନେ ନିଜର କଲ୍ୟାଣପାଇଁ ଭଗବାନଙ୍କୁ ଅର୍ଚ୍ଚନା କରିଥା'ନ୍ତି ।।୩୫।। କଳିଯୁଗରେ କେବଳ ନାମସଂକୀର୍ତ୍ତନଦ୍ୱାରା ସମସ୍ତ ସ୍ୱାର୍ଥ ମିଳେ । ଏଣୁ କଳିର ଗୁଣ ଜାଣିଥିବା ସାରଗ୍ରାହୀ ସାଧୁପୁରୁଷମାନେ ଏହି ଯୁଗର ପ୍ରଶଂସା କରନ୍ତି । ଦେହାଭିମାନୀ ଜୀବମାନେ ଏହି ସଂସାରଚକ୍ରରେ ସର୍ବଦା ଘୂରୁଥା'ନ୍ତି । ଏଣୁ ଯେଉଁ ନାମସଂକୀର୍ତ୍ତନଦ୍ୱାରା ଲୋକ ପରମ ଶାନ୍ତି ଲାଭକରେ ଓ ସଂସାରବନ୍ଧନରୁ ମୁକ୍ତ ହୋଇଯାଏ ତାହାଠାରୁ ବଳି ଆଉ ପରମ ଲାଭ ନାହିଁ ।।୩୬-୩୭।। ହେ ରାଜା, ସତ୍ୟଯୁଗର ମନୁଷ୍ୟମାନେ କଳିଯୁଗରେ ଜନ୍ମ ହେବାପାଇଁ ଇଚ୍ଛା କରନ୍ତି । କାରଣ କଳିରେ ସେମାନେ ନାରାୟଣଙ୍କର ଏକାନ୍ତ ଭକ୍ତ ହେବେ ।।୩୮।। ମହାରାଜ, କଳିଯୁଗରେ ଦ୍ରାବିଡ଼ ଦେଶ(ଦାକ୍ଷିଣାତ୍ୟ)ରେ ତାମ୍ରପର୍ଣ୍ଣୀ, କୃତମାଳା, ପୟସ୍ୱିନୀ, ମହାପୁଣ୍ୟା କାବେରୀ, ମହାନଦୀ ଓ ପ୍ରତୀଚୀ ପ୍ରବାହିତ ହୁଅନ୍ତି । ମହାରାଜ, ଯେଉଁମାନେ ଏହି ନଦୀମାନଙ୍କର ଜଳପାନ କରନ୍ତି, ସେମାନଙ୍କର ଚିତ୍ତ ଶୁଦ୍ଧ ହୁଏ ଏବଂ ସେମାନେ ବହୁ ସଂଖ୍ୟାରେ ବାସୁଦେବ ଭଗବାନଙ୍କର ଭକ୍ତ ହୋଇଯାଆନ୍ତି ।।୩୯।। ଯେ କୃତ୍ୟକର୍ମ ବା ଭେଦ ପରିତ୍ୟାଗ କରି ସମସ୍ତଙ୍କ ଶରଣର ସ୍ଥଳ ଭଗବାନ୍ ମୁକୁନ୍ଦଙ୍କର ସର୍ବତୋଭାବେ ଶରଣାପନ୍ନ ହୁଏ, ସେ ଦେବତା, ଋଷି, ପିତୃପୁରୁଷ, ପ୍ରାଣୀ ଓ କୁଟୁମ୍ବଙ୍କର ଋଣରୁ ମୁକ୍ତ ହୋଇଯାଏ । ସେ କାହାର କିଙ୍କର ବା ଋଣୀ ହୁଏ ନାହିଁ ।।୩୯-୪୦।। ଯେ ଦେହାଦିରେ ବା ଅନ୍ୟ ଦେବତାଙ୍କଠାରେ ଭାବ ଛାଡ଼ି ଭଗବାନଙ୍କର ପାଦପଦ୍ମକୁ ସେବା କରୁଥାଏ, ପରମେଶ୍ୱର ଶ୍ରୀହରି ସେହି ପ୍ରିୟ ଭକ୍ତର ହୃଦୟରେ ପ୍ରବେଶ କରନ୍ତି । ସେ ଯଦି କୌଣସି ପ୍ରକାର ବିକର୍ମ କରିପକାଏ, ତାହେଲେ ତାକୁ ସେଥିରୁ ଉଦ୍ଧାର କରନ୍ତି ।।୪୨।।

ନାରଦ କହିଲେ, ବସୁଦେବ, ମିଥିଳାର ରାଜା ନିମି ଏହିପରି ଭାଗବତ ଧର୍ମମାନ ଶ୍ରବଣ କରି ଆପ୍ୟାୟିତ ହେଲେ ଏବଂ ଆଚାର୍ଯ୍ୟମାନଙ୍କ ସହିତ ସେହି ମୁନିମାନଙ୍କର ପାଦପୂଜା କଲେ ।।୪୩।। ତା'ପରେ ସମସ୍ତଙ୍କ ଆଖି ଆଗରେ ସେହି ସିଦ୍ଧ ପୁରୁଷମାନେ ଅନ୍ତର୍ଦ୍ଧାନ ହୋଇଗଲେ । ରାଜା ନିମି ସେମାନଙ୍କର ଉପଦିଷ୍ଟ ଭାଗବତ ଧର୍ମକୁ ଅନୁଷ୍ଠାନ କରି ପରମଗତି ଲାଭକଲେ ।।୪୪।। ମହାଭାଗ ବସୁଦେବ, ଶ୍ରଦ୍ଧାର ସହିତ ଶ୍ରୁତ ଏହି ସବୁ ଭାଗବତ ଧର୍ମରେ ଅବସ୍ଥାନ କଲେ ତୁମର ମଧ୍ୟ କୌଣସି ଆସକ୍ତି ରହିବ ନାହିଁ ଏବଂ ତୁମେ ପରମ ପଦ ଲାଭକରିବ ।।୪୫।। ଜଗଦୀଶ୍ୱର ଭଗବାନ ଶ୍ରୀହରି ତୁମର ଓ ଦେବକୀଙ୍କର ପୁତ୍ରରୂପେ ଜନ୍ମ ହୋଇଛନ୍ତି । ତେଣୁ ତୁମ ଦୁହିଁଙ୍କର ଯଶରେ ଏହି ଜଗତ ପୂରିଉଠିଛି ।।୪୬।। ଦର୍ଶନ, ଆଲିଙ୍ଗନ, ମଧୁର ଆଳାପ, ଶଯ୍ୟା, ଆସନ, ଭୋଜନ ଆଦି କାର୍ଯ୍ୟରେ କୃଷ୍ଣଙ୍କ ପ୍ରତି ତୁମେ ଦୁହେଁ ଯେଉଁ ପୁତ୍ରସ୍ନେହ କରୁଛ, ତଦ୍ୱାରା ତୁମର ଆତ୍ମା ପବିତ୍ର ହୋଇଯାଇଛି ।।୪୭।। ଶିଶୁପାଳ, ପୌଣ୍ଡ୍ର ଓ ଶାଲ୍ୱ ଆଦି ରାଜାମାନେ ଶତ୍ରୁତାଦ୍ୱାରା ଶୟନ, ଆସନ ଆଦି ଅବସ୍ଥାରେ ତାଙ୍କୁ ଚିନ୍ତା କରୁଥିଲେ । ତାଙ୍କର ଗତି, ତାଙ୍କର ଲୀଳା, ତାଙ୍କର ଦୃଷ୍ଟି ଆଦି ସେମାନଙ୍କୁ ତନ୍ମୟ କରି ରଖୁଥିଲା ତାଙ୍କୁ ଧ୍ୟାନ କରି କରି ସେମାନେ ତାଙ୍କର ସାରୂପ୍ୟ ଲାଭ କରିଥିଲେ । ତେଣୁ ଯାହାଙ୍କ ଚିତ୍ତ ତାଙ୍କଠାରେ ଅନୁରକ୍ତ, ସେମାନଙ୍କ ସାରୂପ୍ୟ ଲାଭ ବିଷୟରେ କ'ଣ ବା କହିବାର ଅଛି ? ।।୪୮।। ଭଗବାନ୍ ଶ୍ରୀକୃଷ୍ଣ ହେଉଛନ୍ତି ଅବ୍ୟୟ ପରଂବ୍ରହ୍ମ । ସମସ୍ତଙ୍କର ଆତ୍ମାସ୍ୱରୂପ ସାକ୍ଷାତ୍ ଈଶ୍ୱର । ମାୟାମନୁଷ୍ୟରୂପଦ୍ୱାରା ତାଙ୍କ ଈଶ୍ୱରତ୍ୱ ଘୋଡ଼ାଇ ହୋଇପଡ଼ିଛି । ତାଙ୍କଠାରେ ତୁମେ ପୁତ୍ରବୁଦ୍ଧି କର ନାହିଁ ।।୪୯।। ସାଧୁମାନଙ୍କର ରକ୍ଷା ନିମନ୍ତେ ଏବଂ ପୃଥିବୀର ଭାରସ୍ୱରୂପ ହୋଇଥିବା ଅସୁର ସ୍ୱଭାବର ରାଜାମାନଙ୍କୁ

ନିହତ କରି ମୁକ୍ତି ଦେବାପାଇଁ ସେ ଅବତୀର୍ଣ୍ଣ ହୋଇଛନ୍ତି । ତିନି ଲୋକରେ ତାଙ୍କର ଯଶ ପ୍ରସାରିତ ହେଉଛି ॥୫୦॥ ଶ୍ରୀ ଶୁକଦେବ କହିଲେ, ମହାଭାଗ୍ୟବାନ୍ ବସୁଦେବ ଓ ମହାଭାଗ୍ୟବତୀ ଦେବକୀ ତାହା ଶୁଣି ଅତି ବିସ୍ମିତ ହେଲେ ଏବଂ ନିଜର ମୋହ ତ୍ୟାଗ କଲେ ॥୫୧॥ ଯେ ନିଷ୍ଠାର ସହିତ ଏହି ପବିତ୍ର ଇତିହାସକୁ ହୃଦୟରେ ଧାରଣ କରେ, ସେ ଏହି ଦେହରେ ମୋହକୁ ବିନାଶ କରି ବ୍ରହ୍ମତ୍ୱ ଲାଭ ପାଇଁ ଯୋଗ୍ୟ ହୁଏ ।

## ଷଷ୍ଠ ଅଧ୍ୟାୟ

# ସ୍ୱଧାମକୁ ଫେରିଯିବାପାଇଁ ଭଗବାନଙ୍କୁ ପ୍ରାର୍ଥନା

ଶ୍ରୀ ଶୁକଦେବ କହିଲେ, ପରିକ୍ଷିତ, ନାରଦ ଚାଲିଯିବା ପରେ ବ୍ରହ୍ମା ସନକାଦି ନିଜ ପୁତ୍ର, ଦେବତା ଓ ପ୍ରଜାପତିମାନଙ୍କଦ୍ୱାରା ଏବଂ ଭଗବାନ୍ ଶଙ୍କର ଭୂତଗଣଙ୍କଦ୍ୱାରା ବେଷ୍ଟିତ ହୋଇ ଦ୍ୱାରକାରେ ଆସି ପହଞ୍ଚିଲେ । ମରୁତ୍‌ମାନଙ୍କ ସହିତ ଦେବରାଜ ଇନ୍ଦ୍ର ମଧ୍ୟ ଆସିଲେ । ଆଦିତ୍ୟମାନେ, ବସୁମାନେ, ଦୁଇ ଅଶ୍ୱିନକୁମାର, ଋଭୁ, ଅଙ୍ଗିରା ଗୋତ୍ରର ଋଷିମାନେ, ରୁଦ୍ରଗଣ, ବିଶ୍ୱେଦେବମାନେ, ସାଧ୍ୟ ଓ ଅନ୍ୟ ଦେବତାମାନେ, ଗନ୍ଧର୍ବ, ଅପ୍ସରା, ନାଗ, ସିଦ୍ଧ, ଚାରଣ, ଗୁହ୍ୟକ, ବିଦ୍ୟାଧର, କିନ୍ନର, ଋଷି ଓ ପିତୃଗଣ -- ସମସ୍ତେ କୃଷ୍ଣଙ୍କ ଦର୍ଶନପାଇଁ ଇଚ୍ଛୁକ ହୋଇ ଦ୍ୱାରକାରେ ପହଞ୍ଚିଲେ । ସେତେବେଳେ ଭଗବାନ୍ ଶ୍ରୀକୃଷ୍ଣ ତାଙ୍କ ଶରୀରର କାନ୍ତିରେ ନରଲୋକର ମନୋହରଣ କରି ଅବସ୍ଥାନ କରୁଥିଲେ । ତାଙ୍କର ଯଶ ତିନି ଲୋକରେ ବିସ୍ତାରିତ ହୋଇଥିଲା ଓ ସମସ୍ତ ଲୋକଙ୍କର ପାପତାପ ସେ ହରଣ କରୁଥିଲେ ॥୧-୪॥ ଦ୍ୱାରକାପୁରୀ ସମସ୍ତ ସମ୍ପଦ ଓ ଐଶ୍ୱର୍ଯ୍ୟରେ ପୂରି ଉଠୁଥିଲା । ଦେବତାମାନେ ଶ୍ରୀକୃଷ୍ଣଙ୍କର ଅପୂର୍ବ ରୂପକୁ ଯେତେ ଦେଖିଲେ ମଧ୍ୟ ତୃପ୍ତ ହେଲେ ନାହିଁ ॥୫॥ ବ୍ରହ୍ମା ଆଦି ଦେବତାମାନେ ସ୍ୱର୍ଗର ଉଦ୍ୟାନରେ ହୋଇଥିବା ଦିବ୍ୟ ପୁଷ୍ପମାନଙ୍କ ମାଳାରେ ଶ୍ରୀକୃଷ୍ଣଙ୍କୁ ମଣ୍ଡିତ କରି ବିଚିତ୍ର ପଦ ଓ ଅର୍ଥଯୁକ୍ତ ଭାଷାରେ ତାଙ୍କୁ ସ୍ତୁତି କରିବାକୁଲାଗିଲେ ॥୬॥

ଦେବତାମାନେ କହିଲେ, ସ୍ୱାମୀ, ଭୟଙ୍କର କର୍ମବନ୍ଧନରୁ ମୁକ୍ତି ପାଇବାପାଇଁ ଆପଣଙ୍କର ଭକ୍ତମାନେ ବୁଦ୍ଧି, ଇନ୍ଦ୍ରିୟ, ପ୍ରାଣ, ମନ ଓ ବାକ୍ୟରେ ଅତିଶୟ ଭକ୍ତିରେ ଆପଣଙ୍କ ପାଦପଦ୍ମକୁ ସର୍ବଦା ଚିନ୍ତା କରୁଥା'ନ୍ତି । ଆମେମାନେ ସେହି ପାଦପଦ୍ମକୁ ପ୍ରଣାମ କରୁଛୁ ॥୭॥ ହେ ଅଜିତ, ଆପଣ ତ୍ରିଗୁଣାତ୍ମକ ମାୟା ଦ୍ୱାରା ଏହି ଅଚିନ୍ତନୀୟ ଜଗତ୍ ପ୍ରପଞ୍ଚ (ମହତ୍ ଆଦି)କୁ ସୃଷ୍ଟି କରନ୍ତି, ପାଳନ କରନ୍ତି ଓ ସଂହାର କରନ୍ତି । କିନ୍ତୁ ଏହି କାର୍ଯ୍ୟରେ ନିଯୁକ୍ତ ଥିଲେ ମଧ୍ୟ ଆପଣ ନିର୍ଲିପ୍ତ । କାରଣ ଆପଣ ଅନବଦ୍ୟ (ରାଗ, ଦ୍ୱେଷ ଆଦିରୁ ମୁକ୍ତ) । ଆପଣ ସ୍ୱରୂପର ଆନନ୍ଦରେ ମଗ୍ନ ଥା'ନ୍ତି (ସେଥିପାଇଁ ଭକ୍ତମାନେ ଆପଣଙ୍କୁ ଆତ୍ମାରାମ କହିଥାନ୍ତି) ॥୮॥ ହେ ପୂଜନୀୟ, ହେ ଋଷଭ, ଆପଣଙ୍କର ଯଶୋମୟ ପବିତ୍ର ଲୀଳାମାନ ଶ୍ରବଣ କଲେ, ଆପଣଙ୍କ ପ୍ରତି ଯେପରି ଶ୍ରଦ୍ଧା ଜାତ ହୁଏ ଏବଂ ତାହା କ୍ରମଶଃ ବୃଦ୍ଧି ପାଇ ଚିତ୍ତକୁ ଯେପରି ଶୁଦ୍ଧ କରେ, କିନ୍ତୁ କଳୁଷିତ ହୃଦୟର ଲୋକମାନେ ଯେତେ ବିଦ୍ୟାର୍ଜନ, ବେଦାଧ୍ୟୟନ, ଦାନ, ତପସ୍ୟା ଓ ଯଜ୍ଞାଦି କର୍ମ କଲେ ମଧ୍ୟ ସେପରି ଶ୍ରଦ୍ଧା ବା ଚିତ୍ତଶୁଦ୍ଧି ହୁଏ ନାହିଁ ॥୯॥ ମୋକ୍ଷକାମୀ ମୁନିମାନେ ପ୍ରେମାର୍ଦ୍ର ହୃଦୟରେ ଆପଣଙ୍କର ଯେଉଁ ପାଦପଦ୍ମକୁ ଧାରଣ କରିଥାନ୍ତି, ଐଶ୍ୱର୍ଯ୍ୟ ଲାଭ ଆଶାରେ ଭକ୍ତମାନେ ବାସୁଦେବ ଆଦି ମୂର୍ତ୍ତିରେ ଯାହାକୁ ଅର୍ଚ୍ଚନା କରନ୍ତି, ଜ୍ଞାନୀମାନେ ସ୍ୱର୍ଗଲାଭକୁ ଉପେକ୍ଷା କରି ବୈକୁଣ୍ଠପଦ ଲାଭପାଇଁ ତ୍ରିକାଳରେ ଯାହାକୁ ପୂଜାକରନ୍ତି, ଯାଜ୍ଞିକମାନେ କୃତାଞ୍ଜଳି ହୋଇ ହବି ଗ୍ରହଣ କରି ବେଦୋକ୍ତ ବିଧି ଅନୁସାରେ ଯଜ୍ଞରେ ଅଗ୍ନିମଧ୍ୟରେ ଯାହାକୁ ଚିନ୍ତା କରନ୍ତି, ଆତ୍ମମାୟାର ରହସ୍ୟ ଜାଣିବାପାଇଁ ଯୋଗୀମାନେ ଅଧ୍ୟାତ୍ମଯୋଗରେ

ଯାହାକୁ ଧ୍ୟାନ କରନ୍ତି ଏବଂ ଆପଣଙ୍କର ପରମଭକ୍ତମାନେ ସର୍ବଥା ଯାହାକୁ ପୂଜା କରନ୍ତି, ହେ ଈଶ୍ୱର, ଆପଣଙ୍କର ସେହି ପାଦପଦ୍ମ ଆମର ଅଶୁଭ ବିନାଶପାଇଁ ଧୂମକେତୁସ୍ୱରୂପ ହେଉ ।।୧୦-୧୧।। ବିଭୁ, ଲକ୍ଷ୍ମୀ ଆପଣଙ୍କ ବକ୍ଷସ୍ଥଳରେ ନିବାସ କରିଥା'ନ୍ତି । ଯଦି କେହି ଭକ୍ତ ଆପଣଙ୍କ ବକ୍ଷରେ ଏକ ବାସି ବନମାଳା ଲମ୍ୱାଇ ଦିଏ, ତେବେ ତାହାକୁ ନିଜର ସଉତୁଣୀ ଭାବି ସେ ଈର୍ଷା କରନ୍ତି ; କିନ୍ତୁ ଆପଣ ଲକ୍ଷ୍ମୀଙ୍କୁ ଉପେକ୍ଷା କରି ଭକ୍ତ ଦେଇଥିବା ସେହି ବାସି ଫୁଲମାଳାକୁ ପ୍ରେମରେ ଧାରଣ କରିଥାନ୍ତି । ହେ ଭଗବାନ୍, ଆପଣଙ୍କ ପରି ପ୍ରଭୁଙ୍କ ପାଦପଦ୍ମ ଆମର ଅଶୁଭ ବିନାଶପାଇଁ ଧୂମକେତୁ ପରି ହେଉ ।।୧୨।।

ହେ ମହିମାମୟ, ବାମନ ଅବତାରରେ ଆପଣଙ୍କର ତିନୋଟି ପାଦ ମଧ୍ୟରୁ ଦ୍ୱିତୀୟ ପାଦ ସତ୍ୟଲୋକରେ ପହଞ୍ଚିଯାଇଥିଲା ଏବଂ ତାହା ଆପଣଙ୍କର ବିଜୟ ଧ୍ୱଜା ପରି ମନେହେଉଥିଲା । ଆପଣଙ୍କର ପାଦରୁ ବାହାରି ଗଙ୍ଗା ତିନୋଟି ଧାରାରେ ତିନି ଲୋକରେ ପ୍ରବାହିତହେଲା । ସେହି ତିନିଧାରା ତିନୋଟି ଭାଗରେ ବିଭକ୍ତ ଆପଣଙ୍କର ବିଜୟ ପତାକା ପରି ହୋଇଥିଲା । ଆପଣଙ୍କର ସେହି ପାଦ ଅସୁରମାନଙ୍କର ଭୟପ୍ରଦ ଓ ଦେବତାମାନଙ୍କର ଅଭୟପ୍ରଦ ହୋଇଥାଏ । ସାଧୁମାନଙ୍କର ଊର୍ଦ୍ଧ୍ୱଗତି ଓ ଖଳମାନଙ୍କର ଅଧୋଗତି ସ୍ୱରୂପ ସେହି ପାଦପଦ୍ମ ଭଜନକାରୀ ଆମମାନଙ୍କର ପାପ ନାଶ କରୁ ।।୧୩।। ହେ ପ୍ରଭୁ, ଆପଣ କାଳସ୍ୱରୂପ ଓ ପ୍ରକୃତିପୁରୁଷର ଅତୀତ ପୁରୁଷୋତ୍ତମ । ବ୍ରହ୍ମାଙ୍କଠାରୁ ଆରମ୍ଭ କରି ଏ ସୃଷ୍ଟିରେ ଯେତେ ଦେହଧାରୀ ଅଛନ୍ତି, ସେମାନେ ପରସ୍ପର ପ୍ରତି ରାଗ, ଦ୍ୱେଷଦ୍ୱାରା ସର୍ବଦା ପୀଡ଼ିତ । ନାସାରେ ରଜ୍ଜୁଦ୍ୱାରା ବନ୍ଧାହୋଇଥିବା ବଳଦ ପରି ସେମାନେ ଆପଣଙ୍କ ବଶରେ ରହିଥାନ୍ତି । ଆପଣଙ୍କର ପାଦପଦ୍ମ ଆମର ମଙ୍ଗଳ ବିଧାନ କରୁ ।।୧୪।। ଯେ ଏହି ଜଗତର ସୃଷ୍ଟି, ସ୍ଥିତି ଓ ପ୍ରଳୟର କାରଣ, ଯେ ପ୍ରକୃତି, ପୁରୁଷ ଓ ମହତ୍ତତ୍ତ୍ୱର ନିୟନ୍ତା, ଯେ ଏହି ବିଶ୍ୱକୁ ଗ୍ରାସ କରିବାପାଇଁ ଶୀତ, ଗ୍ରୀଷ୍ମ ଓ ବର୍ଷା -- ଏହି ତିନୋଟି ନାଭିଯୁକ୍ତ ସମ୍ୱତ୍ସରରୂପେ ସମସ୍ତଙ୍କର କ୍ଷୟକାରୀ କାଳସ୍ୱରୂପ, ସେ ହେଉଛନ୍ତି ସ୍ୱୟଂ ଆପଣ ପୁରୁଷୋତ୍ତମ ।।୧୫।। ଆଦିପୁରୁଷ ଆପଣଙ୍କ ଠାରୁ ଶକ୍ତିଲାଭ କରି ଅମୋଘବୀର୍ଯ୍ୟ ହୋଇଯାଏ ଓ ମାୟା ସହ ଏଇ ବିଶ୍ୱର ଗର୍ଭତୁଲ୍ୟ ମହତ୍ତତ୍ତ୍ୱକୁ ଧାରଣ କରେ । ପୁଣି ସେହି ମହତ୍ତତ୍ତ୍ୱ ମାୟାର ଅନୁଗତହୋଇ ସପ୍ତ (ପୃଥ୍ୱୀ, ଜଳ, ତେଜ, ବାୟୁ, ଆକାଶ, ଅହଙ୍କାର ଓ ମନ) ଆବରଣବିଶିଷ୍ଟ ସୁବର୍ଣ୍ଣ ବର୍ଣ୍ଣର ବ୍ରହ୍ମାଣ୍ଡକୁ ରଚନା କରେ ।।୧୬।।

ହେ ହୃଷୀକେଶ, ସ୍ଥାବର, ଜଙ୍ଗମ ପ୍ରାଣୀଙ୍କର ଆପଣ ଅଧୀଶ୍ୱର । ମାୟାରୁ ଉତ୍ପନ୍ନ ଗୁଣ ( ସତ୍ତ୍ୱ, ରଜ ଓ ତମ) ର ବିକାରରେ ଯେଉଁ ସବୁ ଇନ୍ଦ୍ରିୟଭୋଗ୍ୟ ବିଷୟମାନଙ୍କର ସୃଷ୍ଟି, ତାହା ସବୁ ଆପଣ ଭୋଗ କଲେ ମଧ୍ୟ ସେଥିରେ ଆପଣ ଲିପ୍ତ ହୁଅନ୍ତି ନାହିଁ । କିନ୍ତୁ ଅନ୍ୟମାନେ (ଯୋଗୀମାନେ) ଏହି ସବୁ ବିଷୟବାସନାକୁ ପରିତ୍ୟାଗ କରିଥିଲେ ମଧ୍ୟ ସବୁବେଳେ ଏହାକୁ ଭୟ କରି ରହନ୍ତି ।।୧୭।। ଆପଣଙ୍କର ଷୋଳହଜାରରୁ ଅଧିକ ପତ୍ନୀ ଅଛନ୍ତି । ସେମାନେ ମନ୍ଦହାସ ଓ ମଧୁର କଟାକ୍ଷପାତ ସହିତ ସୁନ୍ଦର ଭ୍ରୂଭଙ୍ଗୀର ଚାଳନାରେ ଓ ସୁରତ ସମ୍ପର୍କୀୟ ଆଳାପରେ ଆପଣଙ୍କୁ ମୋହିତ କରିବାପାଇଁ ଚେଷ୍ଟାକରନ୍ତି, କିନ୍ତୁ ସେମାନଙ୍କର କନ୍ଦର୍ପବାଣରେ ଆପଣଙ୍କର ମନ ବିଚଳିତ ହୁଏ ନାହିଁ ।।୧୮।। ହେ ପ୍ରଭୁ, ଆପଣ ତ୍ରିଲୋକର ପାପରାଶିକୁ ଧୋଇଦେବାପାଇଁ ଦୁଇ ପ୍ରକାର ପବିତ୍ର ନଦୀ ବୁହାଇ ଦେଇଛନ୍ତି । ଗୋଟିଏ ହେଉଛି ଆପଣଙ୍କର ଅମୃତମୟୀ ଲୀଳାରେ ଭରା କଥାନଦୀ ଏବଂ ଅନ୍ୟଟି ଆପଣଙ୍କ ପାଦପ୍ରକ୍ଷାଳନ ଜଳରୁ ଜାତ ଗଙ୍ଗାନଦୀ । ଆଶ୍ରମଧର୍ମରେ ଥିବା ବିବେକୀ ବ୍ୟକ୍ତିମାନେ କର୍ଣ୍ଣଦ୍ୱାରା ଆପଣଙ୍କ କଥାନଦୀରେ ଓ ଅଙ୍ଗସଙ୍ଗଦ୍ୱାରା ଗଙ୍ଗାଜଳରେ ସ୍ନାନ କରି ଏହି ଦୁଇଟି ତୀର୍ଥଦ୍ୱାରା ନିଜର ସମସ୍ତ ପାପ ତାପ ଦୂର କରିଦିଅନ୍ତି ।।୧୯।। ଶ୍ରୀଶୁକଦେବ କହିଲେ, ପରିକ୍ଷିତ, ସମସ୍ତ ଦେବତା ଓ ଭଗବାନ୍ ଶଙ୍କରଙ୍କ ସହିତ ବ୍ରହ୍ମା ଭଗବାନ୍ ଶ୍ରୀକୃଷ୍ଣଙ୍କର ସ୍ତୁତି କରି ଆକାଶମାର୍ଗରେ ଅବସ୍ଥାନପୂର୍ବକ ପ୍ରଣତ ହୋଇ ଏହିପରି କହିଲେ ।।୨୦।।

ବ୍ରହ୍ମା କହିଲେ, ପ୍ରଭୁ, ପୃଥିବୀର ଭାର ହରଣ କରିବାପାଇଁ ପୂର୍ବେ ଆପଣଙ୍କୁ ଆମେ ପ୍ରାର୍ଥନା କରିଥିଲୁ । ହେ ବିଶ୍ୱାତ୍ମା, ଆପଣ ଆମର ସେହି ପ୍ରାର୍ଥନାକୁ ପୂରଣକରିଛନ୍ତି ।।୨୧।। ଆପଣ ସତ୍ୟସନ୍ଧ ସାଧୁମାନଙ୍କର ମଙ୍ଗଳପାଇଁ ଧର୍ମର ସ୍ଥାପନା

କରିଛନ୍ତି ଏବଂ ସମସ୍ତ ଲୋକରେ ପାପହରଣକାରୀ ପବିତ୍ର କୀର୍ତ୍ତି ଚତୁର୍ଦ୍ଦିଗରେ ବିସ୍ତାର କରିଛନ୍ତି । ଆପଣ ଉତ୍ତମ ରୂପ ଧରି ଯଦୁବଂଶରେ ଜନ୍ମ ହୋଇ ଜଗତର ମଙ୍ଗଳ ପାଇଁ ଉଦ୍ଦାମ କର୍ମମାନ କରିଯାଇଛନ୍ତି ।।୨୨-୨୩।। ହେ ଈଶ୍ୱର, କଳିକାଳରେ ଆପଣଙ୍କର ସେ ସମସ୍ତ କର୍ମ ଶ୍ରବଣ ଓ କୀର୍ତ୍ତନ କରି ସାଧୁମାନେ ଏହି ସଂସାରରୁ ସହଜରେ ତରି ଯାଇପାରିବେ ।।୨୪।। ହେ ପୁରୁଷୋତ୍ତମ, ହେ ପ୍ରଭୁ, ଯଦୁବଂଶରେ ଅବତୀର୍ଣ୍ଣ ହୋଇ ଆପଣ ଶହେ ପଚିଶ ବର୍ଷ ଅତିକ୍ରମ କରି ସାରିଲେଣି । ହେ ଅକ୍ଷୟ ଜଗତର ଆଧାର, ଆପଣଙ୍କର ଆଉ କୌଣସି ଦେବକାର୍ଯ୍ୟ କରିବାପାଇଁ ବାକି ନାହିଁ । ଆପଣଙ୍କର କୁଳ ମଧ୍ୟ ବ୍ରହ୍ମଶାପରେ ପ୍ରାୟ ନଷ୍ଟ ହେବାକୁ ବସିଲାଣି ।।୨୫-୨୬।। ଏବେ ଆପଣ ଯଦି ଉଚିତ ମନେ କରନ୍ତି, ତେବେ ଆପଣଙ୍କର ନିଜର ପରମଧାମରେ ପ୍ରବେଶ କରନ୍ତୁ ଏବଂ ବୈକୁଣ୍ଠର କିଙ୍କର ଆମେମାନେ ଯେତେ ଲୋକପାଳ ଅଛୁ ଓ ଆମର ଲୋକମାନେ ଅଛନ୍ତି, ଆପଣ ସେମାନଙ୍କୁ ପାଳନ କରନ୍ତୁ ।।୨୭।। ଭଗବାନ୍ ଶ୍ରୀକୃଷ୍ଣ କହିଲେ, ଦେବେଶ୍ୱର, ଆପଣ ଯାହା କହିଲେ, ମୁଁ ପୂର୍ବରୁ ତାହା ସ୍ଥିର କରିସାରିଛି । ମୁଁ ପୃଥିବୀର ଭାରକୁ ହରଣ କରି ଆପଣମାନଙ୍କର ସମସ୍ତ କାର୍ଯ୍ୟକୁ ଶେଷ କରିଛି ।।୨୮।। ସମୁଦ୍ର ଯେପରି ବେଳାଭୂମିକୁ ଅବରୋଧ କରେ, ସେହିପରି ଶୌର୍ଯ୍ୟ, ବୀର୍ଯ୍ୟ ଓ ଐଶ୍ୱର୍ଯ୍ୟରେ ଉଦ୍ଧତ ଏହି ଯାଦବକୁଳକୁ ମୁଁ ଅବରୁଦ୍ଧ କରି ରଖିଛି । ଯଦି ମୁଁ ଏହି ଗର୍ବୀ ଓ ଉଚ୍ଛୃଙ୍ଖଳ ବିପୁଳ ଯଦୁବଂଶକୁ ଧ୍ୱଂସ ନ କରି ଚାଲିଯାଏ, ତାହେଲେ ସେମାନେ ସମସ୍ତ ମର୍ଯ୍ୟାଦାକୁ ଉଲ୍ଲଘଂନ କରି ସଂସାରର ବିନାଶ ଘଟାଇବେ ।।୨୯-୩୦।। ହେ ନିଷ୍ପାପ ବ୍ରହ୍ମା, ବ୍ରହ୍ମଶାପରୁ ବର୍ତ୍ତମାନ ଯଦୁକୁଳର ବିନାଶ ଆରମ୍ଭ ହୋଇଛି । ଏହା ଶେଷ ହୋଇଗଲେ ତୁମର ବ୍ରହ୍ମଲୋକ ହୋଇ ମୁଁ ବୈକୁଣ୍ଠକୁ ଫେରିଯିବି ।।୩୧।।

ଶ୍ରୀ ଶୁକଦେବ କହିଲେ, ଲୋକେଶ୍ୱର ଭଗବାନ୍ ଶ୍ରୀକୃଷ୍ଣ ଏହିପରି କହିବାରୁ, ବ୍ରହ୍ମା ତାଙ୍କୁ ପ୍ରଣାମ କରି ଦେବତାମାନଙ୍କ ସହିତ ନିଜ ଧାମକୁ ଫେରିଗଲେ । ଏହାପରେ ଦ୍ୱାରକାରେ ଭୟଙ୍କର ଉତ୍ପାତମାନ ଦେଖାଗଲା । ଯଦୁବଂଶର ବୟୋବୃଦ୍ଧ ଯାଦବମାନେ ଏହିସବୁ ଉତ୍ପାତ ଦେଖି ଶ୍ରୀକୃଷ୍ଣଙ୍କ ନିକଟରେ ପହଞ୍ଚିବାରୁ ଭଗବାନ୍ ସେମାନଙ୍କୁ କହିଲେ, ଆମମାନଙ୍କର ବଂଶକୁ ବ୍ରାହ୍ମଣମାନେ ଯେଉଁ ଅଭିଶାପ ଦେଇଛନ୍ତି, ସେଥିରୁ ନିଷ୍କୃତି ପାଇବା କଷ୍ଟକର । ସେଥିପାଇଁ ଚାରିଆଡ଼େ ଏହିପରି ଭୟଙ୍କର ଉତ୍ପାତମାନ ଦେଖାଯାଉଛି । ବଂଚିବାର ଇଚ୍ଛା ଥିଲେ ଆଉ ଏଠାରେ ରହିବା ଉଚିତ ନୁହେଁ । ଏ ସ୍ଥାନ ଶୀଘ୍ର ଛାଡ଼ି ପବିତ୍ର ପ୍ରଭାସ ତୀର୍ଥକୁ ଆଜି ହିଁ ଚାଲିଯିବା ଉଚିତ ।।୩୨-୩୫।। ଚନ୍ଦ୍ରମା ଦକ୍ଷଙ୍କର ଶାପରେ ଯକ୍ଷ୍ମାରୋଗଗ୍ରସ୍ତ ହୋଇ ଏହି ପ୍ରଭାସ ତୀର୍ଥରେ ସ୍ନାନ କରି ପାପମୁକ୍ତ ହୋଇଥିଲେ ଏବଂ ପୂର୍ବପରି ତାଙ୍କର ସମସ୍ତ କଳାର ପୂର୍ଣ୍ଣ ବୃଦ୍ଧି ଘଟିଥିଲା । ଆମେମାନେ ସେହି ପ୍ରଭାସ ତୀର୍ଥରେ ସ୍ନାନ କରି ଦେବତାମାନଙ୍କୁ ଓ ପିତୃଗଣଙ୍କୁ ତର୍ପଣ କରିବା ଏବଂ ଅନେକ ରସଯୁକ୍ତ ଅନ୍ନ ପ୍ରସ୍ତୁତ କରି ଶ୍ରେଷ୍ଠ ବ୍ରାହ୍ମଣମାନଙ୍କୁ ଭୋଜନ କରାଇବା । ଶ୍ରଦ୍ଧାର ସହିତ ସତ୍ପାତ୍ର ସ୍ୱରୂପ ଏହି ବ୍ରାହ୍ମଣମାନଙ୍କୁ ବହୁବିଧ ଦାନଦକ୍ଷିଣା ଦେବା । ନାବରେ ସମୁଦ୍ରକୁ ତରିଯିବାପରି ଏତଦ୍ଦ୍ୱାରା ଏହି ଦୁଃଖରୁ ଆମେ ତରିଯିବା ।।୩୬-୩୮।। ଶ୍ରୀ ଶୁକଦେବ କହିଲେ, ପରିକ୍ଷିତ, ଏହିପରି ଭଗବାନ୍ କୃଷ୍ଣଙ୍କର ଆଦେଶରେ ଯାଦବମାନେ ପ୍ରଭାସତୀର୍ଥକୁ ଯିବାପାଇଁ ମନସ୍ଥ କରି ରଥମାନଙ୍କୁ ଯୋଚିବାକୁ ଲାଗିଲେ ।।୩୯।। ଶ୍ରୀ ଶୁକଦେବ କହିଲେ, ପରିକ୍ଷିତ, ଉଦ୍ଧବ ଥିଲେ ଭଗବାନ ଶ୍ରୀକୃଷ୍ଣଙ୍କର ନିତ୍ୟ ଅନୁରକ୍ତ ଭକ୍ତ । ସେ ଭଗବାନଙ୍କର କଥା ଶୁଣି ଏବଂ ଯାଦବମାନଙ୍କର ଯାତ୍ରାର ପ୍ରସ୍ତୁତି ଓ ଦ୍ୱାରକାରେ ଭୟଙ୍କର ଉତ୍ପାତ ହେଉଥିବାର ଦେଖି ଏକାନ୍ତରେ କୃଷ୍ଣଙ୍କ ପାଖରେ ପହଞ୍ଚିଲେ ଏବଂ ମୁଣ୍ଡ ନୁଆଁଇ ଭଗବାନ ଜଗଦୀଶ୍ୱରଙ୍କୁ ପ୍ରଣାମ କରି ହାତ ଯୋଡ଼ି ଏହିପରି କହିବାକୁ ଲାଗିଲେ-- ।।୪୦-୪୧।।

ଦେବଦେବ, ଆପଣଙ୍କର ନାମ ଶ୍ରବଣ ଓ କୀର୍ତ୍ତନ କରିବା ଦ୍ୱାରା ଲୋକ ପବିତ୍ର ହୋଇଯାଏ । ହେ ଯୋଗେଶ, ମୋର ମନେ ହେଉଛି ଆପଣ ଏହି ଯଦୁକୁଳକୁ ସଂହାର କରି ମର୍ତ୍ତ୍ୟଲୋକ ତ୍ୟାଗ କରିବେ । କାରଣ ଆପଣ ସାକ୍ଷାତ୍ ଈଶ୍ୱର ହୋଇ ବିପ୍ରଶାପକୁ ପ୍ରତିହତ କରିବା ପାଇଁ ସମର୍ଥ ଥିଲେ ମଧ୍ୟ ତାହା କଲେନାହିଁ । ହେ କେଶବ, ଆପଣଙ୍କର ପାଦପଦ୍ମକୁ ମୁଁ କ୍ଷଣାର୍ଦ୍ଧ

ପାଇଁ ମଧ୍ୟ ଛାଡ଼ିପାରିବି ନାହିଁ । ଅତଏବ ହେ ନାଥ, ମୋତେ ମଧ୍ୟ ଆପଣଙ୍କ ଧାମକୁ ନେଇ ଚାଲନ୍ତୁ ।।୪୨-୪୩।। ପରମ ମଙ୍ଗଳମୟ, କର୍ଣ୍ଣର ଅମୃତସ୍ୱରୂପ ଆପଣଙ୍କର ଲୀଳାକୁ ଆସ୍ୱାଦନ କରି ଲୋକମାନେ ଏ ଜଗତରେ ଅନ୍ୟ ସମସ୍ତ ସ୍ପୃହାକୁ ତ୍ୟାଗ କରିଥାନ୍ତି । ଶୟନ, ଆସନ, ଭ୍ରମଣ, ସ୍ନାନ, ଭୋଜନ, କ୍ରୀଡ଼ା ଆଦିରେ ଆପଣ ଆମମାନଙ୍କର ପ୍ରିୟ ଆତ୍ମା ରୂପେ ରହିଆସିଛନ୍ତି । ସେବକ ଓ ଭକ୍ତ ହୋଇ ଆପଣଙ୍କୁ ଛାଡ଼ି ଆମେ କିପରି ରହିପାରିବୁ ? ।।୪୪-୪୫।। ଯେଉଁ ସବୁ ମାଳା, ଗନ୍ଧ, ବସ୍ତ୍ର ଓ ଅଳଙ୍କାରମାନ ଆପଣ ଶ୍ରୀଅଙ୍ଗରେ ପରିଧାନ କରି ଛାଡ଼ି ଦେଇଥାନ୍ତି, ଆମେ ତାହା ପରିଧାନ କରି ଆପଣଙ୍କର ଉଚ୍ଛିଷ୍ଟଭୋଗୀ ସେବକରୂପେ ଆପଣଙ୍କର ମାୟାକୁ ଅବଶ୍ୟ ଜୟ କରିପାରିବୁ ।।୪୬।। ଶାନ୍ତ, ଶୁଦ୍ଧହୃଦୟ, ଊର୍ଦ୍ଧ୍ୱରେତା, ଦିଗମ୍ବର ସନ୍ନ୍ୟାସୀ ଓ ଋଷିମାନେ ବ୍ରହ୍ମନାମକ ଆପଣଙ୍କର ଧାମକୁ ପ୍ରାପ୍ତ ହୁଅନ୍ତି । ମହାଯୋଗେଶ୍ୱର, ଆମେମାନେ ଏହି କର୍ମମୟ ସଂସାରପଥରେ ଆପଣଙ୍କର ଭକ୍ତମାନଙ୍କ ସହିତ ଭ୍ରମଣ କରି କରି ଆପଣଙ୍କର ଗତିବିଳାସ, ହାସ୍ୟପରିହାସ, ଚାହାଣି, କଥାବାର୍ତ୍ତା ଓ ଅଦ୍ଭୁତ ଲୀଳାଖେଳା ଆଦି ସ୍ମରଣ ଓ କୀର୍ତ୍ତନ କରି କରି ଏହି ଦୁସ୍ତର ତମୋମୟ ସଂସାରକୁ ଅବଶ୍ୟ ତରିଯାଇ ପାରିବୁ ।।୪୭-୪୯।। ଶ୍ରୀ ଶୁକଦେବ କହିଲେ, ପରିକ୍ଷିତ, ଦେବକୀନନ୍ଦନ ଭଗବାନ୍ ଶ୍ରୀକୃଷ୍ଣ ଉଦ୍ଧବଙ୍କର ପ୍ରାର୍ଥନା ଶୁଣି ଏକାନ୍ତରେ ନିଜର ପ୍ରିୟ ଭକ୍ତଙ୍କୁ ଡାକି ଏହିପରି ଉପଦେଶ ଦେଲେ-- ।।୫୦।।

## ସପ୍ତମ ଅଧ୍ୟାୟ

# ଅବଧୂତ ଉପାଖ୍ୟାନ

ଶ୍ରୀକୃଷ୍ଣ କହିଲେ, ମହାଭାଗ ଉଦ୍ଧବ, ତୁମେ ମୋତେ ଯାହା ପଚାରିଚ, ମୁଁ ତାହା ହିଁ କହିବାକୁ ଯାଉଚି । ବ୍ରହ୍ମା, ରୁଦ୍ର ଓ ଲୋକପାଳମାନେ ଚାହାନ୍ତି ଯେ ମୁଁ ନିଜ ଧାମକୁ ଚାଲିଯାଏ ।।୧।। ଦେବତାମାନଙ୍କ ପାଇଁ ଯାହା ମୋର କାର୍ଯ୍ୟ କରିବାର ଥିଲା, ତାହା ମୁଁ ନିଷ୍ପନ୍ନ କରି ସାରିଛି । ବ୍ରହ୍ମାଙ୍କର ପ୍ରାର୍ଥନାଯୋଗୁଁ ମୁଁ ଏହି ଧରାଧାମରେ ନିଜ କଳାରେ ଅବତୀର୍ଣ୍ଣ ହୋଇଥିଲି ।।୨।। ବର୍ତ୍ତମାନ ଯଦୁକୁଳ ବ୍ରହ୍ମଶାପରେ ଦଗ୍ଧ ହୋଇସାରିଚି । ଯଦୁବଂଶୀମାନେ ନିଜ ନିଜ ମଧ୍ୟରେ ଲଢ଼ି ନଷ୍ଟ ହୋଇଯିବେ ଏବଂ ଆଜିଠାରୁ ସାତ ଦିନ ମଧ୍ୟରେ ଦ୍ୱାରକାପୁରୀକୁ ସମୁଦ୍ର ଗ୍ରାସ କରିବ ।।୩।। ମୁଁ ଇହ ଲୋକକୁ ତ୍ୟାଗ କରିବାକ୍ଷଣି କଳି ଏହାକୁ ଗ୍ରାସ କରିଯିବ ଏବଂ ଲୋକଙ୍କର ସମସ୍ତ ମଙ୍ଗଳ ନଷ୍ଟ ହେବ ।।୪।। ଭଦ୍ର ଉଦ୍ଧବ, ମୁଁ ପୃଥିବୀକୁ ଛାଡ଼ିଯିବାପରେ ତୁମେ ଆଉ ଏଠାରେ ରହିବା ଉଚିତ ହେବ ନାହିଁ । କାରଣ କଳିଯୁଗରେ ଅଧର୍ମ ପ୍ରତି ହିଁ ଲୋକଙ୍କର ରୁଚି ହେବ ।।୫।। ତୁମେ ତୁମର ବନ୍ଧୁ ସ୍ୱଜନଙ୍କ ପ୍ରତି ସମସ୍ତ ସ୍ନେହ ମମତା ତ୍ୟାଗ କରି ମୋ'ଠାରେ କେବଳ ମନୋନିବେଶ କର ଏବଂ ସମଦର୍ଶୀ ହୋଇ ସ୍ୱଚ୍ଛନ୍ଦରେ ପୃଥିବୀରେ ବିଚରଣ କର ।।୬।। ଏହି ସଂସାରରେ ଯାହା କିଛି ଦେଖାଯାଏ, ଶୁଣାଯାଏ, କୁହାଯାଏ ଓ ମନରେ ଚିନ୍ତା କରି ଗ୍ରହଣ କରାଯାଏ, ତାହା ସବୁ ମନ ଓ ମାୟାର ବିଳାସମାତ୍ର ।।୭।। ଚିତ୍ତ ବିକ୍ଷିପ୍ତ ହେଲେ ମନୁଷ୍ୟର ଭେଦବୁଦ୍ଧି ଜାତ ହୁଏ ଏବଂ ମତିଭ୍ରମଯୋଗୁଁ ସେ ସମସ୍ତ ବସ୍ତୁର ଦୋଷଗୁଣ ବିଚାର କରେ । କେତେକ କାର୍ଯ୍ୟକୁ ଠିକ୍ କାମ ବୋଲି ଏବଂ ଠିକ୍ କାମ ନ କଲେ ତାହାକୁ ଅକର୍ମ ବୋଲି ଓ ଅନ୍ୟ କେତେକକୁ ବେଠିକ୍ କାମ ବୋଲି ମନେକରେ ।।୮।। ତେଣୁ ଇନ୍ଦ୍ରିୟମାନଙ୍କୁ ଓ ଚିତ୍ତକୁ ସଂଯତ କରି ନିଜର ଆତ୍ମାରେ ଏହି ଜଗତକୁ ଦର୍ଶନ କର ଏବଂ ଜାଣିରଖ ଯେ ମୁଁ ହେଉଚି ସମସ୍ତ ଜୀବଙ୍କର ଅଧୀଶ୍ୱର ଏବଂ ମୋଠାରେ ଏହି ଜଗତ ଅବସ୍ଥିତ ।।୯।। ବେଦୋକ୍ତ ଏହି ତତ୍ତ୍ୱକୁ ନିଜର ଅନୁଭୂତି ସହିତ ମିଳାଇ ତୁମେ ଯେବେ ସବୁ ଦେହଧାରୀ ଜୀବଙ୍କ ଆତ୍ମାରେ ନିଜ ଆତ୍ମାକୁ ଦର୍ଶନ କରିପାରିବ, ତା'ହେଲେ ତୁମେ ପରମ ଆନନ୍ଦ ଲାଭ କରିବ ଏବଂ

ଯେକୌଣସି ବାଧାବିଘ୍ନକୁ ପ୍ରତିହତ କରିପାରିବ ॥୧୦॥ ବାଳକର କୌଣସି ଗୁଣଦୋଷମୂଳକ ଭେଦଭାବ ନ ଥାଏ । ସେ କୌଣସି କାର୍ଯ୍ୟ କଲାବେଳେ ଭଲମନ୍ଦ ବିଚାର କରେନାହିଁ । ସେହିପରି ପୂର୍ବସଂସ୍କାର ଦୃଷ୍ଟିରୁ ଗୁଣଦୋଷରୂପକ ଭେଦବୁଦ୍ଧିରୁ ଅତୀତ ହୋଇଥିବା ବ୍ୟକ୍ତି ସମସ୍ତ କାର୍ଯ୍ୟ କରିଥାଏ । ଯଦି କୌଣସି ନିଷିଦ୍ଧ କର୍ମ ସେ ନ କରେ ତା'ହେଲେ ତାହା ଦୋଷବିଚାରରୁ ନୁହେଁ ଏବଂ ଯଦି ସେ ବିହିତ କର୍ମ କରେ, ତା'ହେଲେ ତାହା ଗୁଣ ବିଚାରରୁ ନୁହେଁ ॥୧୧॥ ଏହିପରି ତତ୍ତ୍ୱଜ୍ଞାନ ଓ ଅନୁଭୂତି ଏହି ଉଭୟଦ୍ୱାରା ନିଷ୍ଠିତ ବ୍ୟକ୍ତି ସମସ୍ତ ପ୍ରାଣୀଙ୍କ ଠାରେ ମିତ୍ରଭାବ ରଖି ପରମ ଶାନ୍ତି ଲାଭ କରେ ଏବଂ ଏହି ବିଶ୍ୱକୁ ମୋର ଆତ୍ମସ୍ୱରୂପ ବୋଲି ଦର୍ଶନ କରି ଆଉ ପୁଣି ସଂସାରଚକ୍ରରେ ପଡ଼େ ନାହିଁ ॥୧୨॥

ଶ୍ରୀ ଶୁକଦେବ କହିଲେ, ପରିକ୍ଷିତ, ଉଦ୍ଧବ ଭଗବାନ୍ ଶ୍ରୀକୃଷ୍ଣଙ୍କର ପରମ ଭକ୍ତ ଥିଲେ । ସେ ଶ୍ରୀକୃଷ୍ଣଙ୍କ ଆଦେଶ ପାଇ ତାଙ୍କୁ ପ୍ରଣିପାତ କଲେ ଏବଂ ତତ୍ତ୍ୱଜ୍ଞାନ ଜାଣିବାପାଇଁ ତାଙ୍କୁ ଏହିପରି ପଚାରିଲେ-- ॥୧୩॥ ଉଦ୍ଧବ କହିଲେ, ଆପଣ ଯୋଗର ଈଶ୍ୱର ଏବଂ ଯୋଗର ଆତ୍ମା; ଯୋଗ ଆପଣଙ୍କଠାରୁ ଜନ୍ମ ନେଇଚି ଓ ସମସ୍ତ ଯୋଗ କର୍ମ ଆପଣଙ୍କଠାରେ ନ୍ୟସ୍ତ କରାଯାଏ । ମୋର ମଙ୍ଗଳପାଇଁ ସନ୍ନ୍ୟାସ-ଲକ୍ଷଣ ତ୍ୟାଗର କଥା ଆପଣ କହିଛନ୍ତି । ମହିମାମୟ, କାମୀ ବିଷୟାସକ୍ତ ଲୋକମାନଙ୍କପାଇଁ ଏହି ସଂସାରରେ ସନ୍ନ୍ୟାସ-ଲକ୍ଷଣ ତ୍ୟାଗ ହେଉଚି ଦୁଷ୍କର । ସମସ୍ତଙ୍କ ଆତ୍ମାସ୍ୱରୂପ ଆପଣଙ୍କଠାରେ ସର୍ବଦା ମୋର ମତି ରହିଥାଉ, ଏହାହିଁ ମୋର ପ୍ରାର୍ଥନା ॥୧୪-୧୫॥ 'ମୁଁ' ଏବଂ 'ମୋର' ଏହି ଅହଂକାରରେ ମୋର ମୂଢ଼ବୁଦ୍ଧି ଘଟିଚି । ଆପଣଙ୍କ ମାୟାରେ ଦେହ, ଗୃହ, ପୁତ୍ର କଳତ୍ରାଦି ସଂସାରବନ୍ଧନରେ ମୁଁ ପଡିରହିଚି । ତେଣୁ ହେ ଭଗବାନ୍, ଆପଣ ଯେଉଁ ବିଷୟ କହିଲେ, ମୁଁ କିପରି ତାହା ସହଜରେ ସାଧନ କରିପାରିବି, ଆପଣଙ୍କର ଏହି ଭୃତ୍ୟକୁ ତାହା ଭଲ ଭାବରେ ବୁଝାଇଦିଅନ୍ତୁ ॥୧୬॥ ପ୍ରଭୁ, ଆପଣ ହେଉଛନ୍ତି ସତ୍ୟ, ସ୍ୱପ୍ରକାଶ, ଆତ୍ମସ୍ୱରୂପ । ଆତ୍ମଜ୍ଞାନର ଉପଦେଶ ଦେବାପାଇଁ ଆପଣଙ୍କ ଛଡ଼ା ଅନ୍ୟ କୌଣସି ଦେବତାଙ୍କୁ ମୁଁ ଦେଖୁ ନାହିଁ । ଆପଣଙ୍କ ମାୟାରେ ସମସ୍ତେ ବିମୋହିତ ହୋଇଛନ୍ତି । ଇନ୍ଦ୍ରିୟ-ବିଷୟମାନଙ୍କପ୍ରତି ଆସକ୍ତବୁଦ୍ଧି ଶରୀରଧାରୀ ବ୍ରହ୍ମା ଆଦି ଦେବତାମାନେ ବି ଆପଣଙ୍କ ମାୟାରେ ବିମୋହିତ ॥୧୭॥ ଭଗବାନ୍, ଦୁଃଖରେ ମୋର ଚିତ୍ତ ବିଚଳିତ । ମୁଁ ନିର୍ବେଦ (କିଂକର୍ତ୍ତବ୍ୟବିମୂଢ଼) । ଆପଣ ସର୍ବଜ୍ଞ, ଅନନ୍ତ ଜ୍ଞାନର ଅଧିକାରୀ । ହେ ନାରାୟଣ, ଦୁଃଖତପ୍ତ ମନୁଷ୍ୟର ସଖା ରୂପେ ଆପଣଙ୍କଠାରେ ମୁଁ ଶରଣାପନ୍ନ ହେଉଚି ॥୧୮॥

ଭଗବାନ୍ ଶ୍ରୀକୃଷ୍ଣ କହିଲେ, ଉଦ୍ଧବ, ସଂସାରରେ ଯେଉଁମାନେ ଲୋକତତ୍ତ୍ୱକୁ ଜାଣିଛନ୍ତି, ସେମାନେ ଶୀଘ୍ର ଆତ୍ମଜ୍ଞାନଦ୍ୱାରା ନିଜକୁ ବିଷୟବାସନାରୁ ଉଦ୍ଧାର କରିଥାନ୍ତି ॥୧୯॥ ତେଣୁ ପୁରୁଷ ହେଉଚି ନିଜେ ନିଜର ଗୁରୁ । ଯେଉଁଥିରେ ତାର ମଙ୍ଗଳ ହେବ, ତାହା ପ୍ରତ୍ୟକ୍ଷ ଓ ଅନୁମାନଦ୍ୱାରା ସେ ଲାଭ କରିଥାଏ ॥୨୦॥ ସାଂଖ୍ୟଯୋଗବିଶାରଦ ପଣ୍ଡିତମାନେ ସମସ୍ତ ଜୀବଙ୍କ ମଧ୍ୟରେ ପ୍ରକଟିତ ସର୍ବଶକ୍ତିମାନ୍ ପୁରୁଷ ରୂପରେ ମୋତେ ଦର୍ଶନ କରନ୍ତି । ଏକପାଦ, ଦୁଇପାଦ, ତ୍ରିପାଦ, ଚତୁଷ୍ପାଦ, ବହୁପାଦ ଏବଂ ପାଦହୀନ - ଏହିପରି ବହୁ ଜୀବଙ୍କ ଶରୀର ପୃଥିବୀରେ ପୂର୍ବରୁ ରହିଛି । କିନ୍ତୁ ସେମାନଙ୍କ ମଧ୍ୟରେ ମନୁଷ୍ୟଶରୀର ହିଁ ମୋର ସବୁଠାରୁ ପ୍ରିୟ ॥୨୧-୨୨॥ ମୁଁ ଇନ୍ଦ୍ରିୟମାନଙ୍କର ଅତୀତ ହୋଇଥିବାଯୋଗୁଁ ଧୀର । ଏକାଗ୍ରଚିତ୍ତ ପୁରୁଷମାନେ ଶରୀରମଧ୍ୟରେ ଗୂଢ଼ ଭାବରେ ରହିଥିବା ଗୁଣ ଓ ଚିହ୍ନ ଆଦିଦ୍ୱାରା ଅନୁମାନ କରି ମୋତେ ଅନ୍ତର୍ଯାମୀ ଈଶ୍ୱର ରୂପରେ ଅନ୍ୱେଷଣ କରିଥା'ନ୍ତି ॥୨୩॥ ଏହି ବିଷୟରେ ପୁରାତନ ଇତିହାସର ଉଦାହରଣ ଦିଆଯାଏ । ଅମିତତେଜା ଯଦୁ ଏବଂ ଅବଧୂତଙ୍କର କଥୋପକଥନ ॥୨୪॥

ଦିନେ ଜଣେ ତ୍ରିକାଳଦର୍ଶୀ ତରୁଣ ଅବଧୂତ ବ୍ରାହ୍ମଣଙ୍କୁ ନିର୍ଭୟରେ ବିଚରଣ କରୁଥିବାର ଦେଖି ଧର୍ମଜ୍ଞ ରାଜା ଯଦୁ ତାଙ୍କୁ ଏହିପରି ପ୍ରଶ୍ନ କରିଥିଲେ-- ॥୨୫॥ ରାଜା ଯଦୁ ପଚାରିଲେ, ବ୍ରହ୍ମନ୍, ଯେଉଁ ଅତିନିପୁଣ ବୁଦ୍ଧି ଦ୍ୱାରା ଆପଣ ବିଦ୍ୱାନ୍ ହୋଇ ନିଷ୍କର୍ମା ବାଳକପରି ବୁଲୁଛନ୍ତି, ସେହି ବିଲକ୍ଷଣ ବୁଦ୍ଧି ଆପଣଙ୍କର କୁଆଡୁ ଆସିଲା ? ॥୨୬॥ ପ୍ରାୟ ଦେଖାଯାଏ ଯେ ମନୁଷ୍ୟମାନେ

ଆୟୁ, ଯଶ ଓ ଐଶ୍ୱର୍ଯ୍ୟ ଲାଭ ନିମନ୍ତେ ଧର୍ମ, ଅର୍ଥ, କାମ ଓ ଆତ୍ମତତ୍ତ୍ୱର ବିଚାରରେ ପ୍ରବୃତ୍ତ ହୁଅନ୍ତି । ଆପଣ ତ କର୍ମ କରିବାପାଇଁ ସମର୍ଥ; ବିଦ୍ୱାନ୍, ଦକ୍ଷ, ଦର୍ଶନୀୟ ଏବଂ ଆପଣଙ୍କର ଭାଷା ଅମୃତପରି ଲାଗୁଛି । ତଥାପି ଆପଣ କୌଣସି କାର୍ଯ୍ୟ କରୁ ନାହାନ୍ତି ବା କୌଣସି ବସ୍ତୁକୁ ଇଚ୍ଛା କରୁ ନାହାନ୍ତି । ଜଡ଼, ପାଗଳ ଓ ପିଶାଚ ପରି ବ୍ୟବହାର କରୁଛନ୍ତି ।।୨୭-୨୮।। କାମ ଓ ଲୋଭରୂପକ ଦାବାଗ୍ନିରେ ଲୋକମାନେ ଜଳିଯାଉଛନ୍ତି । କିନ୍ତୁ ଗଙ୍ଗାଜଳରେ ବୁଡ଼ିରହିଥିବା ହାତୀପରି ଆପଣ ଏଥିରେ ଦଗ୍ଧ ହେଉ ନାହାନ୍ତି । ବ୍ରହ୍ମନ୍, ଆପଣଙ୍କର ସ୍ତ୍ରୀ, ପୁତ୍ର ନାହାନ୍ତି; ବିଷୟସୁଖ ଭୋଗ ନାହିଁ; ମୁଁ ପଚାରୁଛି, ଆପଣଙ୍କ ଆତ୍ମାରେ ଆନନ୍ଦର କାରଣ କ'ଣ, ତାହା କହିବା ହୁଅନ୍ତୁ ।।୨୯-୩୦।। ଭଗବାନ୍ ଶ୍ରୀକୃଷ୍ଣ କହିଲେ, ଉଦ୍ଧବ, ଯଦୁଙ୍କର ହୃଦୟ ଶୁଦ୍ଧ ଥିଲା । ବ୍ରାହ୍ମଣମାନଙ୍କ ପ୍ରତି ତାଙ୍କର ଭକ୍ତି ଥିଲା । ସେ ବିନୟରେ ପଚାରିବାରୁ ଭାଗ୍ୟବାନ୍ ବ୍ରାହ୍ମଣ ତାଙ୍କୁ ଏହିପରି ଉତ୍ତର ଦେଲେ-- ।।୩୧।।

ବ୍ରାହ୍ମଣ କହିଲେ, ରାଜା, ଏ ସଂସାରରେ ମୋର ବହୁତ ଗୁରୁ ଅଛନ୍ତି । ମୁଁ ଯେଉଁ ଗୁରୁମାନଙ୍କଠାରୁ ଜ୍ଞାନ ଲାଭ କରି ମୁକ୍ତ ଭାବରେ ଏହି ପୃଥିବୀରେ ବିଚରଣ କରୁଛି, ସେମାନଙ୍କ ବିଷୟରେ କହୁଛି, ଶୁଣ ।।୩୨।। ମୋର ସେହି ଗୁରୁମାନେ ହେଲେ—ପୃଥିବୀ, ବାୟୁ, ଆକାଶ, ଜଳ, ଅଗ୍ନି, ଚନ୍ଦ୍ରମା, ସୂର୍ଯ୍ୟ, କପୋତ, ଅଜଗର, ସମୁଦ୍ର, ପତଙ୍ଗ, ମହୁମାଛି, ହାତୀ, ମଧୁହରଣକାରୀ ବ୍ୟକ୍ତି, ହରିଣ, ମୀନ, ପିଙ୍ଗଳାବେଶ୍ୟା, କୁରରପକ୍ଷୀ, ବାଳକ, କୁମାରୀ, ଶରନିର୍ମାତା, ସାପ, ବୁଢ଼ିଆଣୀ ଓ ଏଣ୍ଡିପୋକ ।।୩୩-୩୪।। ହେ ଯଯାତିନନ୍ଦନ, ଏହିପରି ସଂସାରରେ ମୁଁ ଚବିଶଟି ଗୁରୁ କରିଛି ଏବଂ ସେମାନଙ୍କ ଆଚରଣରୁ ପୃଥକ୍ ପୃଥକ୍ ଭାବରେ ମୁଁ ଯାହା ଶିକ୍ଷା କରିଛି, ପୁରୁଷପ୍ରବର, ତାହା ମୁଁ ତୁମକୁ ବୁଝାଇକହୁଛି, ମନ ଦେଇ ଶୁଣ ।।୩୫-୩୬।। ପ୍ରାଣୀମାନେ ପୃଥିବୀ ଉପରେ ବହୁ ଉତ୍ପାତ କଲେ ମଧ୍ୟ ପୃଥିବୀ ତାହା ସହିନିଏ । ସେହିପରି ପଣ୍ଡିତମାନେ ଅନ୍ୟମାନଙ୍କଦ୍ୱାରା କଷ୍ଟ ପାଇଲେ ମଧ୍ୟ ଦୈବବଶରୁ ତାହା ହେଉଛି ବୋଲି ମନେ କରି ତାହାକୁ ଉପେକ୍ଷା କରନ୍ତି ।।୩୭।। ଏହି ପୃଥିବୀର ଅନ୍ୟ ରୂପ ହେଉଚି ପର୍ବତ ଓ ବୃକ୍ଷମାନେ । କେବଳ ପରୋପକାରପାଇଁ ସେମାନଙ୍କର ଜନ୍ମ । ସେମାନଙ୍କଠାରୁ ଏହା ଶିକ୍ଷଣୀୟ । ମୁନିମାତ୍ରେ ପ୍ରାଣଧାରଣପାଇଁ ଯେତିକି ଆବଶ୍ୟକ, ସେତିକିରେ ସନ୍ତୁଷ୍ଟ ରହନ୍ତି । ଇନ୍ଦ୍ରିୟସୁଖପାଇଁ କୌଣସି ବସ୍ତୁର କାମନା କରନ୍ତି ନାହିଁ । ଯଦ୍ୱାରା ବୁଦ୍ଧି ବିକୃତ ଓ ମନ ଚଞ୍ଚଳ ନ ହୁଏ ଏବଂ କଥା ଅନ୍ୟଥା ହୁଏ ନାହିଁ, ସେହିପରି କାର୍ଯ୍ୟ କରିବା ଉଚିତ । ପ୍ରାଣବାୟୁଠାରୁ ଏହା ଶିକ୍ଷଣୀୟ ।।୩୮-୩୯।। ଯୋଗୀ ବ୍ୟକ୍ତି ନାନା କର୍ମରେ ନିରତ ହେଲେ ମଧ୍ୟ ବାୟୁପରି ଗୁଣ-ଦୋଷରୁ ମୁକ୍ତ ଓ ନିର୍ଲିପ୍ତ ରହନ୍ତି । ଗନ୍ଧ ବାୟୁର ଗୁଣ ନୁହେଁ, ପୃଥିବୀର ଗୁଣ । କିନ୍ତୁ ବାୟୁ ଏହି ଗନ୍ଧକୁ ବହନ କଲେ ମଧ୍ୟ ବାୟୁର ଏହା ସହିତ ସମ୍ପର୍କ ରହେ ନାହିଁ । ତେଣୁ ନିଜକୁ ଆତ୍ମାରୂପେ ଦେଖି ଶରୀରର ଧର୍ମକୁ ପାଳନ କରୁଥିବା ଯୋଗୀ ଦେହଧର୍ମରୁ ନିର୍ଲିପ୍ତ ରହେ । (ତେଣୁ ବାହାରର ବାୟୁଠାରୁ ସେ ଏହି ଶିକ୍ଷା ଲାଭ କରେ) ।।୪୦-୪୧।। ଦେହଧାରୀ ମୁନି ନିଜକୁ ବ୍ରହ୍ମସ୍ୱରୂପ ବୋଲି ମନେ କରି ସ୍ଥାବର, ଜଙ୍ଗମ ମଧ୍ୟରେ ସେହି ବ୍ରହ୍ମ ପରିବ୍ୟାପ୍ତ ବୋଲି ମନେ କରେ । ଆକାଶ ଯେପରି ସର୍ବତ୍ର ପରିବ୍ୟାପ୍ତ, ନିରବଚ୍ଛିନ୍ନ ଓ ନିଃସଙ୍ଗ, ବାୟୁ ଚାଳିତ ମେଘ ସହିତ ତାର ସମ୍ପର୍କ ନ ଥାଏ, ସେହିପରି କାଳଦ୍ୱାରା ସୃଷ୍ଟ ଗୁଣମୟ ଶରୀର ଆତ୍ମାକୁ ସ୍ପର୍ଶ କରିପାରେ ନାହିଁ ।।୪୨-୪୩।। ତୀର୍ଥ ଜଳ ଯେପରି ନିର୍ମଳ, ସ୍ୱଭାବତଃ ସ୍ନିଗ୍ଧ ଓ ମଧୁର, ସେହିପରି ସ୍ୱଭାବତଃ ମନୁଷ୍ୟମାନଙ୍କଠାରେ ସ୍ନେହକରି ନିର୍ମଳସ୍ୱଭାବ ମୁନିମାନେ ସେମାନଙ୍କ ସହିତ ମଧୁର ଆଳାପ କରିବା ବାଞ୍ଛନୀୟ । ତୀର୍ଥଜଳ ପରି ଦର୍ଶନ, ସ୍ପର୍ଶନ ଓ କୀର୍ତ୍ତନଦ୍ୱାରା ଜଗତକୁ ପବିତ୍ର କରିବା ସେମାନଙ୍କର କର୍ତ୍ତବ୍ୟ ।।୪୪।।

ସର୍ବଭକ୍ଷ ଅଗ୍ନି ଯେପରି ସମସ୍ତ ପଦାର୍ଥକୁ ଉଦରସ୍ଥ କରି ମଧ୍ୟ ସେସବୁ ପଦାର୍ଥର ଦୋଷଗୁଣରେ ଲିପ୍ତ ହୁଏ ନାହିଁ, ସେହିପରି ତପୋଦୀପ୍ତ ତେଜସ୍ୱୀ ସାଧୁ ଆତ୍ମାକୁ ଶୁଦ୍ଧ ଓ ସଂଯତ ରଖି ଦାତାର ଅନ୍ନରେ ଉଦରପୋଷଣ କଲେ ମଧ୍ୟ ଦାତାର ଦୋଷକୁ ଗ୍ରହଣ କରେ ନାହିଁ ।।୪୫।। ଅପ୍ରକଟ ଅଗ୍ନି ଯଜ୍ଞରେ ପ୍ରକଟିତ ହୁଏ ଓ ହବିର୍ଭାଗ ଗ୍ରହଣ କରେ ଏବଂ ଦାତାର ସମସ୍ତ

ଅମଙ୍ଗଳକୁ ଦଗ୍ଧ କରିଦିଏ । ସେହିପରି ସାଧୁ ନିଜକୁ ଗୁପ୍ତ ରଖେ ଓ ଲୋକମାନଙ୍କର ମଙ୍ଗଳପାଇଁ ବେଳେବେଳେ ନିଜକୁ ପ୍ରକାଶିତ କରେ ଏବଂ ଦାତାର ଅନ୍ନ ଗ୍ରହଣ କରି ତା'ର ଅତୀତ ଓ ଭବିଷ୍ୟତର ଅମଙ୍ଗଳକୁ ନାଶ କରିଦିଏ ।।୪୬।। ଅଗ୍ନିର ନିଜର କୌଣସି ଆକାର ନ ଥାଏ । ଯେଉଁ କାଠରେ ସେ ଜଳେ, ସେହି କାଠର ଆକାର ଅନୁସାରେ ତାର ତେଜ ବାହାରିଥାଏ । ସେହିପରି ସର୍ବବ୍ୟାପୀ ଆତ୍ମା ନିଜ ମାୟାରେ ରଚିତ ଜୀବମାନଙ୍କ ଶରୀରରେ ରହି ବିଭିନ୍ନ ନାମ ଓ ରୂପରେ ପ୍ରକାଶିତ ହୁଏ; କିନ୍ତୁ କୌଣସି ନାମ ବା ରୂପ ସହିତ ତାର ସମ୍ପର୍କ ନ ଥାଏ (ଅଗ୍ନିଙ୍କଠାରୁ ଏହି ଶିକ୍ଷା ମିଳେ) ।।୪୭।। କାଳର ଗତି କେହି ଜାଣନ୍ତି ନାହିଁ । ତଦ୍ୱାରା ଚନ୍ଦ୍ରକଳାର କ୍ଷୟବୃଦ୍ଧି ହେଲେ ମଧ୍ୟ ପ୍ରକୃତରେ ଚନ୍ଦ୍ରମାର କ୍ଷୟ ବା ବୃଦ୍ଧି ହୁଏ ନାହିଁ । ଜନ୍ମଠାରୁ ମୃତ୍ୟୁପର୍ଯ୍ୟନ୍ତ ଦେହର ବିଭିନ୍ନ ଅବସ୍ଥା ଓ ପରିଣତି ଘଟିଥାଏ । ଆତ୍ମାର ତା ସହିତ କୌଣସି ସମ୍ପର୍କ ନ ଥାଏ । (ଚନ୍ଦ୍ରମାଠାରୁ ଏହି ଶିକ୍ଷା ଲାଭ କରାଯାଏ) ।।୪୮।। ବାୟୁପରି ବେଗଧର୍ମୀ କାଳର ପ୍ରଭାବରେ ଶରୀରର ଜନ୍ମ, ମୃତ୍ୟୁ ଘଟିଥାଏ । ମାତ୍ର ଆତ୍ମାର ନୁହେଁ । ଯେପରି ଅଗ୍ନିର ଶିଖା ବାହାରିଲେ ବା ଲୁଚିଗଲେ ଅଗ୍ନିର ସ୍ୱରୂପ ବଦଳେ ନାହିଁ ।।୪୯।। ସୂର୍ଯ୍ୟ ଯେପରି ନିଜର କିରଣରେ ଜଳ ଶୋଷଣ କରି ଠିକ ସମୟରେ ତାହାକୁ ବର୍ଷାରୂପେ ଛାଡ଼ିଦିଏ, କିନ୍ତୁ ନିଜେ ସେଥିରେ ଆସକ୍ତ ହୁଏ ନାହିଁ, ସେହିପରି ଯୋଗୀମାନେ ଇନ୍ଦ୍ରିୟଦ୍ୱାରା ଗୃହୀତ ବସ୍ତୁକୁ ପ୍ରାର୍ଥୀମାନଙ୍କୁ ଦାନ କରିଦିଅନ୍ତି, ନିଜେ ସେଥିରେ ଆସକ୍ତ ହୁଅନ୍ତି ନାହିଁ ।।୫୦।। ବହୁ ପାତ୍ରରେ ସୂର୍ଯ୍ୟର ପ୍ରତିବିମ୍ବକୁ ଦେଖି ସ୍ଥୂଳବୁଦ୍ଧି ବ୍ୟକ୍ତି ଅଲଗା ଅଲଗା ସୂର୍ଯ୍ୟ ଅଛି ବୋଲି ଭାବେ, କିନ୍ତୁ ପ୍ରତିବିମ୍ବ ଅନେକ ହେଲେ ମଧ୍ୟ ସୂର୍ଯ୍ୟ ଏକ; ସେହିପରି ଆତ୍ମା ଏକ ଏବଂ ବିଭିନ୍ନ ଜୀବଙ୍କ ମଧ୍ୟରେ ଥିବା ଏହି ଆତ୍ମାକୁ ସ୍ଥୂଳବୁଦ୍ଧି ବ୍ୟକ୍ତିମାନେ ଭିନ୍ନଭିନ୍ନ ବୋଲି କଳ୍ପନା କରିଥା'ନ୍ତି ।।୫୧।।

କେବେ ମଧ୍ୟ କାହାଠାରେ ହେଲେ ଅତି ସ୍ନେହ ବା ଆସକ୍ତି ରଖିବ ନାହିଁ । ଏହା କଲେ ଦୁଃଖରେ ବିଳାପ କରୁଥିବା କପୋତ ପରି କେବଳ ଦୁଃଖଲାଭ ହୋଇଥାଏ ।।୫୨।। କୌଣସି ଏକ ଜଙ୍ଗଲରେ ଗୋଟିଏ କପୋତ ଗଛରେ ବସା ବାନ୍ଧି ତାର ଭାର୍ଯ୍ୟା କପୋତୀ ସହିତ କିଛି ବର୍ଷ ରହିଥିଲା । ସେହି ଗୃହସ୍ଥଧର୍ମୀ କପୋତକପୋତୀ ଦୁହିଁଙ୍କ ମଧ୍ୟରେ ପରସ୍ପର ସ୍ନେହ ବଢ଼ିବାକୁ ଲାଗିଥିଲା । ଏପରିକି ଦୁହେଁ ଦୁହିଁଙ୍କ ଦୃଷ୍ଟିରେ ଦୃଷ୍ଟି, ଅଙ୍ଗରେ ଅଙ୍ଗ ଓ ବୁଦ୍ଧିରେ ବୁଦ୍ଧିକୁ ବାନ୍ଧି ରଖିଥିଲେ । ଶୋଇବା, ବୁଲିବା, କଥାଭାଷା ହେବା, ଖେଳିବା ଓ ଖାଇବା ପିଇବାରେ ଦୁହେଁ ଏକାଠି ହୋଇ ନିର୍ଭୟରେ ବନମଧ୍ୟରେ ବିଚରଣ କରୁଥିଲେ । ରାଜା, କପୋତୀ ଯାହା ଯାହା ଚାହୁଁଥିଲା, କଷ୍ଟ ହେଲେ ମଧ୍ୟ କାମାସକ୍ତ କପୋତ ତାହା ସବୁ ଆଣି ଦେଉଥିଲା ଏବଂ କପୋତୀ ମଧ୍ୟ କପୋତର ସହବାସ ଓ ସମ୍ଭାଷଣରେ ବେଶ୍ ଖୁସିହୋଇ ରହୁଥିଲା ।।୫୩-୫୬।। କାଳକ୍ରମେ କପୋତୀର ପ୍ରଥମ ଗର୍ଭ ହେଲା ଏବଂ ସେ ନିଜର ସ୍ୱାମୀ ଆଗରେ ବସାମଧ୍ୟରେ ଅଣ୍ଡାମାନ ଦେଲା । ଭଗବାନଙ୍କ ଅଚିନ୍ତନୀୟ ଶକ୍ତିର ପ୍ରଭାବରେ କୋମଳାଙ୍ଗ ଶାବକମାନେ ସେହି ଅଣ୍ଡା ଫୁଟାଇ ବାହାରିଲେ । ସନ୍ତାନବତ୍ସଳ କପୋତ କପୋତୀ ଦୁହେଁ ଶାବକମାନଙ୍କୁ ଲାଳନ ପାଳନ କଲେ । ଦୁହେଁ ସେମାନଙ୍କର ଚେଁ ଚାଁ ଶବ୍ଦ ଓ ଦରୋଟି ଭାଷାରେ ଖୁସି ହୋଇ ରହୁଥିଲେ ।।୫୭-୫୯।। ଛୁଆମାନେ ତ ସବୁବେଳେ ଖୁସ୍ ରହୁଥିଲେ । ସେମାନେ ତାଙ୍କ ସୁକୁମାର ପକ୍ଷରେ ବାପା ମା'ଙ୍କୁ ଛୁଇଁ ଦେଉଥିଲେ । ଶିଶୁସୁଲଭ କ୍ରୀଡ଼ା ଓ କୂଜନ କରୁଥିଲେ । କପୋତଦମ୍ପତୀଙ୍କର ଆନନ୍ଦର ସୀମା ନ ଥିଲା ।।୬୦।। ବିଷ୍ଣୁମାୟାରେ ପରସ୍ପର ସ୍ନେହବନ୍ଧନରେ ବାନ୍ଧି ହୋଇଥିବା କପୋତକପୋତୀ ଦୁଇ ଜଣ ନିଜର ଶିଶୁ ସନ୍ତାନମାନଙ୍କୁ ପାଳନ କରିବାକୁ ଲାଗିଲେ । ପିଲାମାନଙ୍କର ପାଳନପୋଷଣ ଦିନୁ ଦିନ ବଢୁଥିବାରୁ କପୋତକପୋତୀ ଦୁହେଁ ଖାଦ୍ୟ ସଂଗ୍ରହପାଇଁ ବନସାରା ବୁଲୁଥିଲେ । ଦିନେ ସେମାନେ ବହୁ ସମୟ ଧରି ବନରେ ବୁଲିବାକୁ ଲାଗିଲେ । ସେହି ଅବସରରେ ଜଣେ ବ୍ୟାଧ ଇଚ୍ଛାକ୍ରମେ ବନମଧ୍ୟରେ ବୁଲୁ ବୁଲୁ ଏହି କପୋତ ଛୁଆମାନଙ୍କୁ ସେମାନଙ୍କ ବସାପାଖରେ ବୁଲୁଥିବାର ଦେଖିବାକୁ ପାଇଲା ଏବଂ ସେମାନଙ୍କୁ ସେ ଜାଲ ପକାଇ ଧରିନେଲା । ନିଜର ଛୁଆମାନଙ୍କୁ ପାଳନ କରିବାପାଇଁ ସର୍ବଦା ଉତ୍ସୁକ ଥିବା କପୋତ କପୋତୀ ଦୁହେଁ ଖାଦ୍ୟ ଧରି

ନିଜର ବସାକୁ ଫେରି ଆସିଲେ । କପୋତୀ ନିଜର ଛୁଆମାନଙ୍କୁ ଜାଲରେ ପଡ଼ି ଚେଁ ଚେଁ ହେଉଥିବାର ଦେଖି ଅତି ଦୁଃଖରେ ରାବ କରି ସେମାନଙ୍କ ପାଖକୁ ଦଉଡ଼ିଗଲା ।।୬୧-୬୫।। ବିଷ୍ଣୁମାୟାରେ ମୋହିତା କପୋତୀ ସନ୍ତାନସ୍ନେହରେ ବାନ୍ଧି ହୋଇଯାଇଥିଲା । ସେ ନିଜର ଶିଶୁ ସନ୍ତାନମାନଙ୍କୁ ଜାଲରେ ପଡ଼ିଥିବାର ଦେଖି ହତଜ୍ଞାନ ହୋଇ ନିଜେ ସେହି ଜାଲରେ ପଡ଼ିଗଲା ।।୬୬।।

ନିଜର ପ୍ରାଣାଧିକ ପ୍ରିୟ ସନ୍ତାନ ଓ ଭାର୍ଯ୍ୟା ଜାଲରେ ପଡ଼ିଛନ୍ତି ଦେଖି କପୋତର ଦୁଃଖ ବଢ଼ିଗଲା ଏବଂ ସେ ଅତି ଦୀନ ଭାବରେ ବିଳାପ କରିବାକୁ ଲାଗିଲା ।।୬୭।। ମୋର ଅଭାଗ୍ୟକୁ କ'ଣ ଘଟି ନ ଗଲା ! ମୋର ପୁଣ୍ୟ ଅଳ୍ପ, ବୁଦ୍ଧି ମନ୍ଦ । ଧର୍ମ, ଅର୍ଥ ଓ କାମଯୁକ୍ତ ଗୃହସ୍ଥାଶ୍ରମ ମୋର ନଷ୍ଟ ହୋଇଗଲା । ସେହି ଆଶ୍ରମରେ ଏପର୍ଯ୍ୟନ୍ତ ମୋର ତୃପ୍ତି ଆସି ନ ଥିଲା । ମୋର କାର୍ଯ୍ୟ ମଧ୍ୟ ସରି ନ ଥିଲା ।।୬୮।। ଏ ଭାର୍ଯ୍ୟା ମୋର ଅନୁରୂପ ଥିଲା ଏବଂ ମୁଁ ଯାହା କହୁଥିଲି, କରୁଥିଲା । ପତିକୁ ଦେବତା ବୋଲି ମନେକରୁଥିଲା । ବର୍ତ୍ତମାନ ସେ ମୋତେ ଶୂନ୍ୟଗୃହରେ ଛାଡ଼ିଦେଇ ସୁପୁତ୍ରମାନଙ୍କ ସହିତ ସ୍ୱର୍ଗକୁ ଯାଉଛି । ଏବେ ମୁଁ ମୃତଦାର, ମୋର ପୁତ୍ର ସନ୍ତାନମାନେ ମଧ୍ୟ ଚାଲିଗଲେ । ଘର ମୋର ଶୂନ୍ୟ ହୋଇଗଲା । କେଉଁ କାରଣରୁ ମୁଁ ଆଉ ଶୋକାର୍ତ୍ତ ହୋଇ ବଞ୍ଚି ରହିବି ? ।।୬୯-୭୦।। ଶାବକମାନେ ଜାଲରେ ପଡ଼ି ହଲଚଲ ହେଉ ନାହାନ୍ତି । ମୃତ୍ୟୁ ସେମାନଙ୍କୁ ଗ୍ରାସ କଲାଣି । ଏହା ଦେଖି ଅବୋଧ, ଦୀନ କପୋତ ନିଜେ ଯାଇ ସେହି ଜାଲରେ ପଡ଼ିଗଲା ।।୭୧।। ନିଷ୍ଠୁର ବ୍ୟାଧ ଏହି ଗୃହସ୍ଥ କପୋତ, କପୋତୀ ଓ ତାଙ୍କ ଛୁଆମାନଙ୍କୁ ଧରି ସଫଳକାମ ଭାବରେ ନିଜର ଘରକୁ ଫେରିଗଲା ।।୭୨।। ଯେଉଁ ଅଶାନ୍ତ ବ୍ୟକ୍ତି ଗୃହସ୍ଥଧର୍ମରେ ଅତିଶୟ ଆସକ୍ତ ହୋଇ ନିଜର କୁଟୁମ୍ବପୋଷଣରେ ଲାଗିପଡ଼ିଥାଏ, ସେହି ଦୀନ ବ୍ୟକ୍ତି କପୋତ ପକ୍ଷୀ ପରି ବନ୍ଧନରେ ପଡ଼ି ଦୁଃଖ ଭୋଗ କରେ ।।୭୩।। ମନୁଷ୍ୟଜନ୍ମ ଲାଭ କଲେ ମୋକ୍ଷର ଦ୍ୱାର ଖୋଲା ହୋଇଥାଏ । କିନ୍ତୁ ଯେ କପୋତ ପକ୍ଷୀ ପରି ଗୃହରେ ଆସକ୍ତ ହୋଇପଡ଼େ ଲୋକେ ତାକୁ ଆରୂଢ଼ଚ୍ୟୁତ (ଉପରକୁ ଉଠି ତଳକୁ ଖସି ପଡ଼ିଥିବା) ବୋଲି କହନ୍ତି(ଏହିପରି କପୋତ ମଧ୍ୟ ଏକ ଗୁରୁ) ।।୭୪।।

## ଅଷ୍ଟମ ଅଧ୍ୟାୟ

# ପୁଣି ଅବଧୂତ ଉପାଖ୍ୟାନ

ଅବଧୂତ ବ୍ରାହ୍ମଣ କହିଲେ, ରାଜା, ଦେହୀ ବ୍ୟକ୍ତି ସ୍ୱର୍ଗ ଓ ନରକକୁ ଯାଇ ଯଥାକ୍ରମେ ଇନ୍ଦ୍ରିୟଜନିତ ସୁଖ ଓ ଦୁଃଖ ଭୋଗ କରେ । ପଣ୍ଡିତମାନେ ସେଥିପାଇଁ ତାହା ଇଚ୍ଛା କରନ୍ତି ନାହିଁ । ସ୍ୱାଦଯୁକ୍ତ ହେଉ ବା ସ୍ୱାଦହୀନ ହେଉ, ଅଧିକ ହେଉ ବା ଅଳ୍ପ ହେଉ, ବିନା ଚେଷ୍ଟାରେ ଯାହା କିଛି ଦୈବାତ୍ ଖାଇବାକୁ ମିଳେ, ଅଜଗର ବୃତ୍ତି ଗ୍ରହଣ କରିଥିବା ମୁନି ତାହା ସନ୍ତୋଷରେ ଖାଇବା ଉଚିତ । କିଛି ନ ମିଳିଲେ ମଧ୍ୟ ଅଜଗର ସାପ ଅନାହାରରେ ବହୁ ଦିନ ଧରି ଶୋଇରହିଥାଏ, ସେ ଯେପରି କୌଣସି ଚେଷ୍ଟା କରେ ନାହିଁ, ଜ୍ଞାନୀ ବ୍ୟକ୍ତି ସେହିପରି ଶରୀରପୋଷଣପାଇଁ କୌଣସି ଚେଷ୍ଟା ନ କରି ଦୈବ ଉପରେ ନିର୍ଭର କରିବା ଉଚିତ ।।୧-୩।। ନିଜର ଇନ୍ଦ୍ରିୟବଳ, ମନୋବଳ ଓ ଶରୀରବଳ- ସବୁ ଥିଲେ ମଧ୍ୟ କୌଣସି ଚେଷ୍ଟା କରିବା ଉଚିତ ନୁହେଁ । ନିଦ୍ରାଶୂନ୍ୟ ହେଲେ ମଧ୍ୟ ନିର୍ବେଦ ହୋଇ ପଡ଼ିରହିବା ଉଚିତ( ଅଜଗରଠାରୁ ଏହି ଶିକ୍ଷା ମିଳେ) ।।୪।। ମୁନି ସମୁଦ୍ରଠାରୁ ଏହି ଶିକ୍ଷା ଲାଭ କରେ -- ବାହାରେ ପ୍ରସନ୍ନ, କିନ୍ତୁ ଅନ୍ତରରେ ଗମ୍ଭୀର ହେବା ଉଚିତ । ଅକଳନ ସମୁଦ୍ରପରି ମୁନିଙ୍କ ଅଭିପ୍ରାୟ ଅକଳନୀୟ ହେବା ଉଚିତ । ସମୁଦ୍ରକୁ ଅତିକ୍ରମ କରିବା ଯେପରି କଷ୍ଟକର, ନିଜର ତେଜରେ ତେଜୀୟାନ୍ ମୁନି ସେହିପରି

ଅନତିକ୍ରମଣୀୟ ହେବା ଉଚିତ । ନିଶ୍ଚଳ ଓ ନିର୍ବିକାର ସମୁଦ୍ରପରି ମୁନିଙ୍କର ସ୍ୱଭାବ ହେବା ଉଚିତ ॥୫॥ ନଈ ବଢ଼ିଲେ ଯେପରି ସମୁଦ୍ର ବଢ଼େ ନାହିଁ, କିମ୍ବା ନଈ ଶୁଖିଗଲେ ଯେପରି ସମୁଦ୍ର ଶୁଖେ ନାହିଁ, ସେହିପରି ଭଗବତ୍‌ପରାୟଣ ମୁନି ସମୃଦ୍ଧିରେ ବା ସମୃଦ୍ଧିହାନିରେ ବିଚଳିତ ହେବା ଉଚିତ ନୁହେଁ ॥୬॥ ଯେଉଁ ବ୍ୟକ୍ତି ଇନ୍ଦ୍ରିୟକୁ ଜୟ କରି ନ ଥାଏ, ଦେବମାୟାରୂପିଣୀ ସ୍ତ୍ରୀକୁ ଦେଖି ପ୍ରଲୋଭିତ ହୋଇଯାଏ, ଅଗ୍ନିରେ ପତଙ୍ଗ ପଡ଼ିବାପରି ସେ ଅନ୍ଧକାରମୟ ନରକରେ ପଡ଼ିଥାଏ ॥୭॥ କାମିନୀର ଉପଭୋଗ୍ୟ କାଞ୍ଚନ, ବସ୍ତ୍ର, ଅଳଙ୍କାର ଆଦି ବସ୍ତୁସବୁ ମାୟାରେ ରଚିତ ହୋଇଥାଏ । ଯେଉଁ ମୂଢ଼ ବ୍ୟକ୍ତି ଉପଭୋଗ ବୁଦ୍ଧିରେ ସେଥିପ୍ରତି ଲାଳାୟିତ ହୁଏ, ସେ ବିବେକବୁଦ୍ଧି ହରାଇ ପତଙ୍ଗପରି ନାଶ ଯାଏ ॥୮॥ ଗୃହସ୍ଥମାନଙ୍କୁ ଯେପରି କଷ୍ଟ ନହୁଏ, ସେହିପରି ଯେତିକି ଭିକ୍ଷା କଲେ ଦେହରକ୍ଷା ହେବ, ସେମାନଙ୍କଠାରୁ ମହୁମାଛି ପରି ସେତିକି ମାତ୍ର ଗ୍ରହଣ କରିବା ଉଚିତ । ଏଣୁ ମୁନି ମାଧୁକରୀ (ମହୁମାଛିର) ବୃତ୍ତି ଅବଲମ୍ବନ କରିବା ବିଧେୟ ॥୯॥ ମହୁମାଛି ଯେପରି ଛୋଟ ବଡ଼ ସବୁ ଫୁଲରୁ ମଧୁ ସଂଗ୍ରହ କରେ, ମୁନି ସେହିପରି ଛୋଟ ବଡ଼ ସମସ୍ତ ଶାସ୍ତ୍ରରୁ ସାର ଗ୍ରହଣ କରିବା ଉଚିତ ॥୧୦॥ ଭିକ୍ଷାସଂଗ୍ରହ କଲାବେଳେ ସନ୍ଧ୍ୟାବେଳପାଇଁ ବା ପରଦିନପାଇଁ ଭିକ୍ଷା ଆଣିବା ଉଚିତ ନୁହେଁ । ନିଜର ହାତରେ ବା ପେଟରେ ଯେତିକି ଧରିବ ସେତିକି ଗ୍ରହଣ କରିବା ଉଚିତ ॥୧୧॥ ଭିକ୍ଷୁ ସନ୍ଧ୍ୟା ବା ପରଦିନପାଇଁ ଭିକ୍ଷା ସଂଗ୍ରହ କରେ ନାହିଁ । କଲେ ମହୁମାଛି ଯେପରି ମହୁ ସଞ୍ଚୟ କରି ଶେଷରେ ନାଶ ଯାଏ, ତା'ର ସେହି ଅବସ୍ଥା ହୋଇଥାଏ ॥୧୨॥

ଯୁବତୀକୁ ଏପରିକି କାଷ୍ଠମୟୀ ଯୁବତୀ ମୂର୍ତ୍ତି ହେଲେ ମଧ୍ୟ ତାହାକୁ ପାଦରେ ସୁଦ୍ଧା ସ୍ପର୍ଶ କରିବନାହିଁ । କଲେ ହସ୍ତିନୀର ସଙ୍ଗରେ ରହି ହସ୍ତୀ ଯେପରି ନାଶ ଯାଏ, ଅର୍ଥାତ୍ ତା'ଠାରୁ ଅଧିକ ବଳବାନ୍ ହସ୍ତୀ ତାକୁ ମାରିପକାଏ, ସେହିପରି ସ୍ତ୍ରୀସଙ୍ଗଯୋଗୁଁ ଅନ୍ୟ ବଳବାନ୍ ପୁରୁଷଦ୍ୱାରା ସେ ନିହତ ହୋଇଥାଏ ॥୧୩-୧୪॥ ଦାନ ନ କରି ବା ଭୋଗ ନ କରି ଲୋଭୀ ଲୋକ ଦୁଃଖରେ ଯେଉଁ ଧନ ସଞ୍ଚୟ କରେ, ଅନ୍ୟ ଲୋକ ହିଁ ତାହା ଭୋଗ କରିଥାଏ; ଯେପରିକି ମହୁମାଛି କଷ୍ଟରେ ମହୁ ସଞ୍ଚୟ କରେ, କିନ୍ତୁ ଅନ୍ୟ ବ୍ୟକ୍ତି ତାହା ହରଣ କରିନିଏ । ମଙ୍ଗଳକାମୀ ଗୃହସ୍ଥ ନିଜର ଦୁଃଖ ଅର୍ଜିତ ଧନରେ ସନ୍ନ୍ୟାସୀ ବା ଅତିଥିମାନଙ୍କର ପରିଚର୍ଯ୍ୟା କରି ନିଜେ ତାହା ଭୋଗ କରିବା ଉଚିତ( ମଧୁହରଣକାରୀ ଠାରୁ ଏହି ଶିକ୍ଷା ମିଳିଥାଏ) ॥୧୫-୧୬॥ ବନବାସୀ ସନ୍ନ୍ୟାସୀମାନେ କେବେହେଁ ଗ୍ରାମ୍ୟଗୀତ ଶୁଣିବା ଉଚିତ ନୁହେଁ । ବ୍ୟାଧର ସଙ୍ଗୀତ ଶୁଣି ମୁଗ୍ଧ ହରିଣ ବନ୍ଧନରେ ପଡ଼ିଯାଏ । ମୃଗୀସୁତ ଋଷ୍ୟଶୃଙ୍ଗ ମୁନି ରମଣୀମାନଙ୍କର ନୃତ୍ୟ, ଗୀତ, ବାଦ୍ୟ ଆଦି ଦ୍ୱାରା ମୋହିତ ହୋଇ ସେମାନଙ୍କର କ୍ରୀଡ଼ନକ ହୋଇଯାଇଥିଲେ ॥୧୭-୧୮॥ ଜିହ୍ୱାଲାଳସାକୁ ଦମନ କରିବା ଅତୀବ କଷ୍ଟକର । ବନ୍‌ସୀ କଣ୍ଟାରେ ଥିବା ଆମିଷର ଲୋଭରେ ପଡ଼ି ମାଛ ଯେପରି ମୃତ୍ୟୁବରଣ କରେ, ସେହିପରି ବିଭିନ୍ନ ରସଯୁକ୍ତ ଖାଦ୍ୟର ଲୋଭରେ ପଡ଼ି ମନ୍ଦବୁଦ୍ଧିର ଲୋକ ମୃତ୍ୟୁମୁଖରେ ପଡ଼ିଥାଏ ॥୧୯॥ ମନୀଷୀମାନେ ଆହାର ଛାଡ଼ି ଇନ୍ଦ୍ରିୟମାନଙ୍କୁ ଜୟ କରିଥା'ନ୍ତି । କାରଣ ଆହାର ନ ଛାଡ଼ିଲେ ଜିହ୍ୱାର ଲାଳସା ବଢ଼ିବାକୁ ଲାଗେ । ଯେ ପର୍ଯ୍ୟନ୍ତ ରସନେନ୍ଦ୍ରିୟକୁ ଜୟ କରାଯାଇ ନାହିଁ, ସେ ପର୍ଯ୍ୟନ୍ତ ବ୍ୟକ୍ତି ଅନ୍ୟ ଇନ୍ଦ୍ରିୟମାନଙ୍କୁ ଜୟ କଲେ ମଧ୍ୟ ସେ ଜୟ ସମ୍ପୂର୍ଣ୍ଣ ହୁଏ ନାହିଁ । ଜିହ୍ୱାର ଲାଳସାକୁ ଜୟ କଲେ ସବୁ ଇନ୍ଦ୍ରିୟକୁ ଜୟ କରାଯାଇପାରେ ॥୨୦-୨୧॥

ବିଦେହ ନଗରୀରେ ପୂର୍ବେ ପିଙ୍ଗଳା ନାମରେ ଏକ ବେଶ୍ୟା ଥିଲା । ରାଜା, ତାହାଠାରୁ ଯାହା ଶିକ୍ଷା ଲାଭ କରିଛି, ତାହା ଶୁଣ । ଦିନେ ସେହି ବେଶ୍ୟା ନିଜର ମନୋମତ ପୁରୁଷକୁ ରତିସ୍ଥାନକୁ ଆଣିବା ପାଇଁ ଉତ୍ତମ ବେଶଭୂଷାରେ ସଜ୍ଜିତ ହୋଇ ନିଜ ଘରର ବାହାରଦ୍ୱାରରେ ଠିଆ ହୋଇଥିଲା । ହେ ପୁରୁଷ ଶ୍ରେଷ୍ଠ, ଅର୍ଥଲାଳସୀ ପିଙ୍ଗଳା ବେଶ୍ୟା ଧନୀ ବ୍ୟକ୍ତିମାନେ ସେ ବାଟରେ ଗଲାବେଳେ ତାକୁ ଧନ ଦେଇ ଉପଭୋଗ କରିବେ ବୋଲି ମନେକରୁଥିଲା ॥୨୨-୨୪॥ ବାଟରେ ଯିବା ଆସିବା କରୁଥିବା

ଲୋକମାନଙ୍କ ମଧ୍ୟରୁ କେହି ଜଣେ ଆସି ତାକୁ ବହୁଧନ ଦେଇ ତା'ସହ ରତିକ୍ରୀଡ଼ା କରିବ ବୋଲି ସେ ଚିନ୍ତା କରିବାକୁ ଲାଗିଲା ।।୨୫।। ଏପ୍ରକାର ଦୁରାଶାରେ ଅନିଦ୍ରା ରହି ରାତି ଅଧଯାଏ ସେ କେବଳ ଦ୍ୱାରଦେଶରେ ଠିଆ ହୋଇ ରହିଲା ଏବଂ ଘରର ଭିତରବାହାର ହେଉଥିଲା ।।୨୬।। ଏହିପରି ଧନ ଚିନ୍ତା କରି କରି ତାର ମୁହଁ ଶୁଖି ଗଲା, ମନ ବ୍ୟାକୁଳ ହେବାକୁ ଲାଗିଲା ଏବଂ ଶେଷରେ ତାର ସୁଖର କାରଣ ପରମ ବୈରାଗ୍ୟ ଜାତ ହେଲା ।।୨୭।। ରାଜା, ବିଷଣ୍ଣ ହୃଦୟରେ ପିଙ୍ଗଳା ଯେଉଁ ଦୁଃଖଦ ଗୀତ ଗାଇଥିଲା, ତାହା ମୁଁ ତୁମକୁ ଶୁଣାଉଛି । ମନୁଷ୍ୟର ଆଶାରୂପକ ବନ୍ଧନକୁ ଛେଦନ କରିବା ପାଇଁ ବୈରାଗ୍ୟ ହିଁ ଉପଯୁକ୍ତ ଅସ୍ତ୍ର । ଅଜ୍ଞାନ ମନୁଷ୍ୟ ଯେପରି ମାୟାମମତାକୁ ଛାଡ଼ିପାରେ ନାହିଁ, ସେହିପରି ଯେପର୍ଯ୍ୟନ୍ତ ତାର ବୈରାଗ୍ୟ ଉପସ୍ଥିତ ନ ହୁଏ, ସେପର୍ଯନ୍ତ ସେ ଦେହବନ୍ଧନରୁ ମୁକ୍ତ ହୋଇ ପାରେ ନାହିଁ ।।୨୮-୨୯।।

ପିଙ୍ଗଳା କହିଲା, ମୋର କେତେବଡ଼ ମୋହ ହୋଇଛି, ଦେଖ । ମୁଁ ଅଜ୍ଞାନତା ହେତୁରୁ ଅସାଧୁ ପୁରୁଷଠାରୁ ରତିକ୍ରୀଡା ଇଚ୍ଛା କରୁଛି, ଯେ କି ମୋର କାମନା ପୂରଣ କରିପାରିବ ନାହିଁ, ଏବଂ ଦୁଃଖ, ଭୟ, ବ୍ୟାଧି, ଶୋକ ଏବଂ ମୋହର କାରଣ ହେବ ।।୩୦-୩୧।। ଆଶ୍ଚର୍ଯ୍ୟର କଥା, ବେଶ୍ୟାବୃତ୍ତିପରି ଅତି ନିନ୍ଦନୀୟ ଜୀବିକା ଗ୍ରହଣ କରି ମୁଁ ଲୁବ୍ଧ, ଲମ୍ପଟ, ଶୋଚନୀୟ ପୁରୁଷମାନଙ୍କ ନିକଟରେ ଧନ ଓ ରତିସୁଖର ଆଶାରେ ନିଜକୁ ବିକ୍ରି କରି ଆତ୍ମାକୁ ସନ୍ତାପିତ କରୁଛି ।।୩୨।। ଏହି ଶରୀରକୁ ଗୋଟିଏ ଘରରୂପେ କଳ୍ପନା କରାଯାଏ । ହସ୍ତ, ପାଦ ଓ ଅସ୍ଥି ହେଉଛି ଏହାର ଖମ୍ବସ୍ୱରୂପ । ପିଠିର ଦୀର୍ଘ ଅସ୍ଥି ହେଉଛି ଏହାର ଶେଣି । ତାର ଦୁଇ ପାଖରେ ଥିବା ଅସ୍ଥି ହେଉଛନ୍ତି ରୁଅ । ଚର୍ମ, ନଖ ଓ ଲୋମ ଦ୍ୱାରା ଏହି ଘରକୁ ଛାଆଣି କରାଯାଇଛି । ଏହି ଘରର ମଇଳା ସବୁ ବାହାରି ଯିବାପାଇଁ ନଅଟି ଦ୍ୱାର ରଖାଯାଇଛି । ଏହି ଦେହରୂପକ ଘରଟି ହେଉଛି ମଳମୂତ୍ର ଆଦି ମଇଳାରେ ପରିପୂର୍ଣ୍ଣ । ମୋ ଛଡ଼ା ଆଉ କେଉଁ ସ୍ତ୍ରୀ ଲୋକ ଏହି ନରଦେହକୁ ଶ୍ରେୟ ମନେକରି ଶ୍ରଦ୍ଧା କରିବ ? ଏହି ବିଦେହ ନଗରୀରେ ମୁଁ ହେଉଛି ଏକମାତ୍ର ମୂଢ଼ବୁଦ୍ଧିର ଅସତୀ ସ୍ତ୍ରୀ । କାରଣ ଆତ୍ମଜ୍ଞାନଦାୟୀ ଅଚ୍ୟୁତ ଭଗବାନଙ୍କୁ ଛାଡ଼ି ମୁଁ ଅନ୍ୟ ସ୍ୱାମୀଙ୍କୁ କାମନା କରିଛି । ହେ ଦେହୀମାନଙ୍କ ଆତ୍ମା ପରମବନ୍ଧୁ ଓ ସ୍ୱାମୀ, ନିଜକୁ ଆପଣଙ୍କଠାରେ ବିକ୍ରି କରି ଦେଇ ମୁଁ ଆପଣଙ୍କୁ କିଣିନେବି ଓ ରମାଙ୍କ ପରି ଆପଣଙ୍କ ସହିତ ରମଣ କରିବି ।।୩୩-୩୫।। ସମସ୍ତ କାମନାର ଆଦି ଓ ଅନ୍ତ ଅଛି । କାମ ଦାନ କରୁଥିବା ଦେବତା ଓ ମନୁଷ୍ୟମାନେ କାଳର କର୍ତ୍ତୃତ୍ୱରେ ଜନ୍ମ ହୁଅନ୍ତି ଓ ମୃତ୍ୟୁର ବଶବର୍ତ୍ତୀ ହୁଅନ୍ତି । ଏପରି ଅବସ୍ଥାରେ ସେମାନେ ନିଜ ଭାର୍ଯ୍ୟାର କ'ଣ ବା ପ୍ରିୟ ସାଧନ କରିପାରିବେ ? ମୁଁ ଏପରି କିଛି କାମ କରିଛି, ଯେଉଁଥିପାଇଁ ଭଗବାନ୍ ବିଷ୍ଣୁ ମୋ ପ୍ରତି ସନ୍ତୁଷ୍ଟ ହୋଇଛନ୍ତି । ଦୁରାଶାରୁ ମୋର ବୈରାଗ୍ୟ ଜାତ ହେଲା ଏବଂ ଏହି ବୈରାଗ୍ୟ ହିଁ ମୋପାଇଁ ସୁଖାବହ ।।୩୬-୩୭।। ଦୁଃଖ ହିଁ ବୈରାଗ୍ୟର କାରଣ । ମୋର ଭାଗ୍ୟ ମନ୍ଦ ଥିବା ଯୋଗୁଁ ମୋତେ ଦୁଃଖ ଭୋଗ କରିବାକୁ ହେଲା । ଭାଗ୍ୟ ମନ୍ଦହେବାଯୋଗୁଁ ଯେ ମୁଁ ବୈରାଗ୍ୟର କାରଣ ଦୁଃଖ ଭୋଗ କଲି, ତାହା ଠିକ୍ ନୁହେଁ । କାରଣ ଦୁଃଖଭୋଗରେ ହିଁ ବ୍ୟକ୍ତି ସଂସାର ବନ୍ଧନ ଛେଦନ କରି ଶାନ୍ତି ଲାଭକରେ । ଭଗବାନଙ୍କର ଉପକାର ମୁଁ ମୁଣ୍ଡ ପାତି ଗ୍ରହଣ କରୁଛି । ବିଷୟବାସନାର ଦୁରାଶା ଛାଡି ସେହି ଜଗଦୀଶ୍ୱରଙ୍କ ଠାରେ ଶରଣାପନ୍ନ ହେଉଛି । ମୋର ଏହି ସଂକଳ୍ପରେ ପୂର୍ଣ୍ଣ ବିଶ୍ୱାସ ରଖି ଯାହା କିଛି ମିଳିବ, ସେଇଥିରେ ମୁଁ ଜୀବନ ଧାରଣ କରିବି ଏବଂ ପରମ ରମଣୀୟ ଏହି ଆତ୍ମସ୍ୱରୂପ ପ୍ରଭୁଙ୍କ ସହିତ ରମଣ କରିବି । ବ୍ୟକ୍ତି ବିଷୟସୁଖରେ ଅନ୍ଧ ହୋଇ ସଂସାରକୂପରେ ପଡ଼ିଥାଏ ଏବଂ କାଳରୂପକ ସର୍ପ ତାକୁ ଗ୍ରାସ କରେ । ଏପରି ଅବସ୍ଥାରେ କେବଳ ପରମେଶ୍ୱରଙ୍କ ଛଡ଼ା ଆଉ କେହି ତାକୁ ରକ୍ଷା କରିପାରନ୍ତି ନାହିଁ ।।୩୮-୪୧।। ସାବଧାନ ହୋଇ ଦେଖିବା ଦରକାର, କିପରି ଏହି ଜଗତକୁ କାଳସର୍ପ ଗ୍ରାସିବାରେ ଲାଗିଛି । ସମସ୍ତ ବସ୍ତୁ ପ୍ରତି ବୈରାଗ୍ୟ ଜାତ ହେଲେ ନିଜେ ହିଁ ନିଜର ରକ୍ଷକ ହୋଇପାରିବ ।।୪୨।।

ବ୍ରାହ୍ମଣ ଅବଧୂତ କହିଲେ, ଏହିପରି ସଙ୍କଳ୍ପ କରି ପିଙ୍ଗଳା ବେଶ୍ୟା ଧନଲାଭ ଆଶାରେ କାନ୍ତ ଅନ୍ୱେଷଣରୁ ନିରସ୍ତ ହୋଇ ଶାନ୍ତିଲାଭପୂର୍ବକ ନିଜ ଶଯ୍ୟାରେ ଶୋଇଗଲା ।।୪୩।। ଆଶା ହେଉଛି ପରମ ଦୁଃଖ, ଏବଂ ନିରାଶାର ଭାବ ହେଉଛି ପରମ ସୁଖର କାରଣ । ପିଙ୍ଗଳା ଯେତେବେଳେ ଧନପାଇଁ କାନ୍ତଲାଭର ଆଶା ଛାଡ଼ିଦେଲା, ସେ ସୁଖରେ ଶୋଇପାରିଲା ।।୪୪।।

## ନବମ ଅଧ୍ୟାୟ

# ପୁଣି ଅବଧୂତ ଉପାଖ୍ୟାନ

ବ୍ରାହ୍ମଣ ଅବଧୂତ କହିଲେ, ସଂସାରରେ ପ୍ରିୟ ବସ୍ତୁମାନଙ୍କର ସଂଗ୍ରହରେ ଲାଗିପଡ଼ିବା ହେଉଛି ଦୁଃଖର କାରଣ । ତାହା ନ କରି ଅକିଞ୍ଚନ ବିଦ୍ୱାନ୍ ବ୍ୟକ୍ତି ଅନନ୍ତ ସୁଖ ଲାଭ କରନ୍ତି ।।୧।। ଥରେ ଏକ କୁରର ପକ୍ଷୀ ନିଜ ଥଣ୍ଟରେ ମାଂସଖଣ୍ଡେ ଧରିଥିଲା । ଅନ୍ୟ ବଳବାନ୍ ପକ୍ଷୀମାନେ ମାଂସଲୋଭରେ ତାକୁ ଘେରି ଯାଇ ଥଣ୍ଟରେ ଖୁମ୍ପିବାକୁ ଲାଗିଲେ । ଶେଷରେ ସେ ତାର ଥଣ୍ଟରୁ ମାଂସଖଣ୍ଡକ ପକାଇଦେଲା, ତାପରେ ଯାଇ ସେ ସୁଖରେ ରହିପାରିଲା ।।୨।। ମୋର କୌଣସି ମାନ ନାହିଁ କି ଅପମାନ ନାହିଁ । ଘର, ପରିବାରର ଚିନ୍ତା ମଧ୍ୟ ନାହିଁ । ତେଣୁ ଏହି ସଂସାରରେ ପରମ ସନ୍ତୋଷରେ ଆତ୍ମାର ସହିତ କ୍ରୀଡ଼ା କରି ବାଳକପରି ମୁଁ ବିଚରଣ କରୁଛି ।।୩।। ଏହି ସଂସାରରେ ଦୁଇ ପ୍ରକାର ବ୍ୟକ୍ତି ନିଶ୍ଚିନ୍ତ ହୋଇ ପରମାନନ୍ଦ ଲାଭ କରନ୍ତି । ଜଣେ ହେଉଛି ଅଜ୍ଞ, ନିରୀହ ବାଳକ ଏବଂ ଅନ୍ୟ ଜଣେ ହେଉଛି ସତ୍ତ୍ୱ, ରଜ ଓ ତମ ଏହି ତ୍ରିଗୁଣମୟୀ ପ୍ରକୃତି ଅତୀତ ଈଶ୍ୱରଙ୍କୁ ଯେ ଲାଭ କରିଛି ।।୪।।

ଥରେ ଗୋଟିଏ କୁମାରୀ କନ୍ୟାକୁ ବରଣ କରିବାପାଇଁ ବରପକ୍ଷର କିଛି ଲୋକ ତା ଘରକୁ ଆସିଥିଲେ । ଘରେ ତାର ଭାଇବନ୍ଧୁ କେହି ନଥିବାରୁ କୁମାରୀଟି ନିଜେ ଅତିଥିମାନଙ୍କର ସତ୍କାର କଲା ।।୫।। ରାଜା, ସେମାନଙ୍କର ଭୋଜନପାଇଁ ସେ ଧାନ କୁଟି ଚାଉଳ କରିବାକୁ ବାହାରିଲା । ଏହି ସମୟରେ ତା'ର ହାତରେ ଥିବା ଚୁଡ଼ି ସବୁ ଝଣଝଣ ଶବ୍ଦ କରିବାରୁ ଅତିଥିମାନେ କ'ଣ ଭାବିବେ ବୋଲି ସେ ଲଜ୍ଜା କରି ନିଜ ହାତରେ ଥିବା ଚୁଡ଼ିଗୁଡ଼ିକୁ ଭାଙ୍ଗି ଦେଇ କେବଳ ଦୁଇପଟ ଲେଖାଏଁ ଚୁଡ଼ି ରଖିଲା । କିନ୍ତୁ ସେ ଦୁଇ ପଟ ଚୁଡ଼ି ପରସ୍ପର ସହିତ ବାଜି ପୁଣି ଝଣଝଣ ଶବ୍ଦ କରିବାରୁ ସେ ଗୋଟିଏ ଚୁଡ଼ି ରଖି ଆର ଚୁଡ଼ିଟିକୁ ଭାଙ୍ଗିଦେଲା । ତାପରେ ଆଉ ଚୁଡ଼ିଶବ୍ଦ ହେଲା ନାହିଁ ।।୬-୮।। ଅରିନ୍ଦମ, ଲୋକଚରିତ୍ର ଶିକ୍ଷାପାଇଁ ଚାରିଆଡ଼େ ବୁଲିବାବେଳେ ଏହି କୁମାରୀଟିର କାର୍ଯ୍ୟରୁ ମୁଁ ଏହି ଶିକ୍ଷା ଲାଭ କଲି ଯେ, ବହୁଲୋକ ଏକାଠି ରହିଲେ କଳି ସୃଷ୍ଟି ହୁଏ । ଏପରିକି ଦୁଇଜଣ ଏକାଠି ହେଲେ ମଧ୍ୟ ସେ ଦୁହିଁଙ୍କ ମଧ୍ୟରେ କଥାବାର୍ତ୍ତା ହେବ । ତେଣୁ କୁମାରୀର ଚୁଡ଼ିପରି ମୁଁ ଏକାକୀ ରହି ବିଚରଣ କରୁଛି ।।୯-୧୦।। ପରମାନନ୍ଦ ଭଗବାନଙ୍କଠାରେ ମନ ଲାଗିଗଲେ କର୍ମଜନିତ ବାସନା ସବୁ ଦୂର ହୋଇଯାଏ । ସତ୍ତ୍ୱଗୁଣର ବୃଦ୍ଧିଯୋଗୁଁ ରଜ ଓ ତମ ଗୁଣର ଯେପରି କ୍ଷୟ ହୋଇଥାଏ ଏବଂ ଇନ୍ଧନର ଅଭାବରେ ଅଗ୍ନି ଯେପରି ଶାନ୍ତ ହୋଇଯାଏ, ମନ ସେହିପରି ସମ୍ପୂର୍ଣ୍ଣ ଶାନ୍ତ ହୋଇଯାଏ । ଶରନିର୍ମାଣ କରୁଥିବା ବ୍ୟକ୍ତି ଯେପରି ସମ୍ପୂର୍ଣ୍ଣ ମନ ଲଗାଇ ସେହି କାର୍ଯ୍ୟ କରୁଥାଏ ଏବଂ ବାହାରେ ଯାଉଥିବା କୌଣସି ରାଜାର ଗୀତ, ବାଦ୍ୟ ବା ସୈନ୍ୟସାମନ୍ତଙ୍କର କୋଳାହଳ ତାକୁ ହଲଚଲ କରିପାରେ ନାହିଁ, ସେହିପରି ଆତ୍ମାରେ ସମ୍ପୂର୍ଣ୍ଣ ମନ ଲାଗିଗଲେ ଭିତର ଓ ବାହାରର ଜ୍ଞାନ ରହେ ନାହିଁ (ବାଣକାର ଠାରୁ ମୁଁ ଏହି ଶିକ୍ଷା ଲାଭ କରିଛି) ।।୧୧-୧୩।।

ରାଜା, (ମୁଁ ସାପଠାରୁ ଏହି ଶିକ୍ଷା ଲାଭ କରିଛି ଯେ) ସମସ୍ତଙ୍କ ଅଲକ୍ଷ୍ୟରେ ସନ୍ନ୍ୟାସୀ ଏକାକୀ ବିଚରଣ କରିବା ଉଚିତ । ସେ କୌଣସି ଗୃହରେ ନ ରହି ଗୁହାରେ ରହିବା ଉଚିତ । ଅଳ୍ପଭାଷୀ ହେବା ଉଚିତ । କୌଣସି ପ୍ରମାଦ କରିବା ବା କାହାରି ସହାୟତା ନେବା ଉଚିତ ନୁହେଁ । କ୍ଷଣଭଙ୍ଗୁର ଦେହଧାରୀ ବ୍ୟକ୍ତିର ଗୃହାରମ୍ଭ ବିଫଳ ଓ ଦୁଃଖପ୍ରଦ ହୋଇଥାଏ । ସର୍ପ ନିଜପାଇଁ ବାସସ୍ଥାନ ନିର୍ମାଣ କରେ ନାହିଁ, ସେ ଅନ୍ୟର ବାସସ୍ଥାନରେ ସୁଖରେ ରହିଥାଏ ॥୧୪-୧୫॥ ସର୍ବଶକ୍ତିମାନ୍ ନାରାୟଣ ଶ୍ରୀହରି ପୂର୍ବକଳ୍ପରେ କାହାରି ସହାୟତା ନ ନେଇ ନିଜରଚିତ ଏହି ଜଗତକୁ କଳ୍ପାନ୍ତ ସମୟରେ କାଳଶକ୍ତିଦ୍ୱାରା ସଂହାର କରିନିଅନ୍ତି ଏବଂ ଏକ ଓ ଅଦ୍ୱିତୀୟ ହୋଇ ରହନ୍ତି । ସମସ୍ତଙ୍କର ଆଶ୍ରୟ ଏବଂ ଆତ୍ମାର ଆଧାର ସେହି ପ୍ରକୃତି-ପୁରୁଷ ରୂପକ ଆଦିପୁରୁଷ ନିଜ କାଳଶକ୍ତିର ପ୍ରଭାବରେ ସତ୍ତ୍ୱ ଆଦି ଗୁଣମାନଙ୍କୁ ସାମ୍ୟ ଅବସ୍ଥାରେ ପହଞ୍ଚାଇଦେଇ କେବଳ ନିଜେ ହିଁ ଅବଶିଷ୍ଟ ରହନ୍ତି । ସେଥିପାଇଁ ସେ କୈବଲ୍ୟ (ମୋକ୍ଷ) ଓ ପରମାନନ୍ଦସ୍ୱରୂପ ଓ ତାଙ୍କର କୌଣସି ଉପାଧି ନ ଥାଏ ॥୧୬-୧୮॥ ଅରିନ୍ଦମ, ସେହି ଆଦିଦେବ ପୁଣି କାଳଶକ୍ତି ଦ୍ୱାରା ନିଜର ତ୍ରିଗୁଣମୟୀ ମାୟାକୁ କ୍ଷୋଭିତ କରନ୍ତି ଏବଂ ତଦ୍ଦ୍ୱାରା ପ୍ରଥମେ କ୍ରିୟାଶକ୍ତିପ୍ରଧାନ ମହତ୍ତତ୍ତ୍ୱ (ସୂତ୍ର) କୁ ରଚନା କରନ୍ତି । ସୂତ୍ରରୂପକ ଏହି ମହତ୍ତତ୍ତ୍ୱ ହେଉଛି ସତ୍ତ୍ୱ, ରଜ ଓ ତମ -- ଏହି ତିନିଗୁଣର ପ୍ରଥମ ଅଭିବ୍ୟକ୍ତି ଏବଂ ସମସ୍ତପ୍ରକାର ସୃଷ୍ଟିର ମୂଳ କାରଣ । ସାରା ବିଶ୍ୱ ଏହି ସୂତ୍ରରେ ହିଁ ଗୁନ୍ଥା ହୋଇ ରହିଥାଏ ॥୧୯-୨୦॥ ବୁଢ଼ିଆଣୀ ଯେପରି ନିଜ ହୃଦୟରୁ ଜାଲ ସୃଷ୍ଟିକରି ମୁଖଦ୍ୱାରା ତାହା ବିସ୍ତାର କରେ, ଏବଂ ସେଥିରେ କ୍ରୀଡ଼ା କରି ପୁଣି ତାକୁ ଗ୍ରାସ କରିପକାଏ, ସେହିପରି ମହାଶକ୍ତିଶାଳୀ ଭଗବାନ୍ ଆତ୍ମାରୁ ଏହି ଜଗତ୍‌କୁ ସୃଷ୍ଟିକରି ସେଥିରେ ଜୀବରୂପରେ ବିହାର କରନ୍ତି ଏବଂ ପୁଣି ତାକୁ ନିଜ ମଧ୍ୟରେ ଲୀନ କରିଦିଅନ୍ତି । ସେଥିପାଇଁ ବୁଢ଼ିଆଣୀ ହେଉଛି ମୋର ଗୁରୁ ॥୨୧॥ ଜୀବ ସ୍ନେହ, ଦ୍ୱେଷ ବା ଭୟ -- ଯେଉଁ କାରଣରୁ ହେଉନା କାହିଁକି, କୌଣସି ବସ୍ତୁକୁ ସମ୍ପୂର୍ଣ୍ଣ ମନ ଦେଇ ଧ୍ୟାନ କଲେ, ସେ ସେହି ବସ୍ତୁ ହିଁ ପାଲଟିଯାଏ ॥୨୨॥

ରାଜା, ଯେପରି ଭଅଁର କୌଣସି କୀଟକୁ ଆଣି ତାର ଗାତମଧ୍ୟରେ ବନ୍ଦ କରି ରଖେ; କୀଟ ଭୟରେ ସେହି ଭଅଁରର ରୂପକୁ ଚିନ୍ତା କରି କରି ନିଜର ପୂର୍ବଦେହ ନ ଛାଡ଼ି ସେହି ରୂପ ଧାରଣ କରେ ॥୨୩॥ ରାଜା, ଏହିପରି ଗୁରୁମାନଙ୍କଠାରୁ ମୁଁ ଏହି ସବୁ ଶିକ୍ଷା ଲାଭ କରିଛି । ଏବେ ନିଜ ଦେହରୁ ମୁଁ ଯାହା ଶିକ୍ଷା ଲାଭ କରିଛି, ତାହା ମୁଁ କହୁଛି ଶୁଣ । ଏହି ଦେହ ମୋର ଗୁରୁ । ସେ ମୋତେ ବିବେକ ଓ ବୈରାଗ୍ୟ ଶିକ୍ଷା ଦିଏ । ବଞ୍ଚିବା ଓ ମରିବା ହେଉଛି ଏ ଦେହର ଧର୍ମ । ଏହି ଶରୀରକୁ ଧାରଣ କରିବାର ଫଳ ହେଉଛି, ବହୁ ଦୁଃଖ, କଷ୍ଟ ଭୋଗ କରିବା । ଯଦିଓ ଏହି ଶରୀର ତତ୍ତ୍ୱବିଚାରରେ ସହାୟକ ହୋଇଥାଏ, ତଥାପି ତାକୁ କେବେ ମୁଁ ନିଜର ବୋଲି ଭାବେ ନାହିଁ । ମୁଁ ଜାଣେ, ଦିନେ ନା ଦିନେ ଏହାକୁ କୁକୁର ବିଲୁଆ ଖାଇଯିବେ । ତେଣୁ ଏ ଦେହ ପ୍ରତି ଅନାସକ୍ତ ହୋଇ ମୁଁ ବିଚରଣ କରୁଛି ॥୨୪-୨୫॥ ଜୀବ ନିଜ ଦେହର ପ୍ରିୟ ସାଧନ କରିବା ପାଇଁ ସ୍ତ୍ରୀ, ପୁତ୍ର, ଧନ, ଗୃହ, ଗୃହପାଳିତ ପଶୁ ଓ ବନ୍ଧୁବାନ୍ଧବମାନଙ୍କୁ ବଢ଼ାଇ ସେମାନଙ୍କର ପାଳନ ପୋଷଣ କରେ । ବହୁ କଷ୍ଟ କରି ଧନସଞ୍ଚୟ କରେ, କିନ୍ତୁ ଦେହପାଇଁ ଅତି କଷ୍ଟରେ ଧନ ଅର୍ଜନ କଲେ ମଧ୍ୟ ଆୟୁଷ ପୂରିଗଲେ ସେ ଦେହ ଆଉ ରହେ ନାହିଁ । ମରିବା ସଙ୍ଗେ ସଙ୍ଗେ ବୃକ୍ଷର ଧର୍ମପରି ପୁଣି କଷ୍ଟ ଭୋଗିବାପାଇଁ କର୍ମରୂପକ ବୀଜ ଛାଡ଼ିଦେଇ ଯାଇଥାଏ ॥୨୬॥ ଦେହାଭିମାନୀ ପୁରୁଷକୁ ତାର ଇନ୍ଦ୍ରିୟମାନେ ସଉତୁଣୀମାନଙ୍କ ପରି ଟଣା ଓଟରା କରୁଥାନ୍ତି । ଜିହ୍ୱା ସୁସ୍ୱାଦୁ ଜିନିଷ ଖାଇବାକୁ ବା ଶୋଷ ହେଲେ ପାଣି ପିଇବାକୁ ଟାଣୁଥାଏ । ଲିଙ୍ଗ ସ୍ତ୍ରୀସହବାସଆଡ଼କୁ, ଚର୍ମ ସ୍ପର୍ଶସୁଖଆଡ଼କୁ, ପେଟ ଭୋଜନ ଆଡ଼କୁ, କାନ ଶବ୍ଦଆଡ଼କୁ, ନାକ ଗନ୍ଧଆଡ଼କୁ ଓ ଦୃଷ୍ଟି ରୂପଆଡ଼କୁ ଜୀବକୁ ଟଣାଟଣି କରନ୍ତି ଏବଂ ଏହିପରି କର୍ମେନ୍ଦ୍ରିୟ ଓ ଜ୍ଞାନେନ୍ଦ୍ରିୟମାନେ ଜୀବକୁ କଷ୍ଟ ଦେଇଥାନ୍ତି ॥୨୭॥ ପରମେଶ୍ୱର ଭଗବାନ୍ ନିଜର ଦୁର୍ବାର ମାୟା ଦ୍ୱାରା ବୃକ୍ଷ, ସରୀସୃପ, ପଶୁ ପକ୍ଷୀ ଓ ବିଷାକ୍ତ କୀଟ ଆଦି ପ୍ରାଣୀ ମାନଙ୍କୁ ସୃଷ୍ଟି କଲେ ।

ତାପରେ ଅତୃପ୍ତହୃଦୟ ହୋଇ ନବଦ୍ୱାରଯୁକ୍ତ ଦେହଧାରୀ ମନୁଷ୍ୟଙ୍କୁ ସୃଷ୍ଟିକରି ଆନନ୍ଦ ଲାଭକଲେ; ଯେହେତୁ ଏହି ମନୁଷ୍ୟ ଭିତରେ ବ୍ରହ୍ମଙ୍କୁ ସାକ୍ଷାତ୍ କରିବାର ବୁଦ୍ଧି ବିଦ୍ୟମାନ ।।୨୮।। ଏହି ମନୁଷ୍ୟଶରୀର ଅନିତ୍ୟ । ମନୁଷ୍ୟଶରୀର ଅନିତ୍ୟ ହେଲେ ମଧ୍ୟ ଏହାଦ୍ୱାରା ପରମ ପୁରୁଷାର୍ଥ ଲାଭ କରାଯାଇପାରେ । ଏଥିପାଇଁ ଅନେକ ଜନ୍ମ ପରେ ଏହି ଦୁର୍ଲଭ ମନୁଷ୍ୟଶରୀର ଲାଭକରି ବୁଦ୍ଧିମାନ୍ ବ୍ୟକ୍ତି ମୃତ୍ୟୁପୂର୍ବରୁ ମୋକ୍ଷଲାଭପାଇଁ ଯତ୍ନ କରିବା ଆବଶ୍ୟକ (ବିଷୟ ଭୋଗ ମୋକ୍ଷ ନୁହେଁ) । କାରଣ ଯେ କୌଣସି ଦେହରେ ବିଷୟଭୋଗ ଲାଭ କରାଯାଇପାରିବ ।।୨୯।। ରାଜା, ଏହିପରି ବିଚାର କରି ମୋର ସଂସାରପ୍ରତି ବୈରାଗ୍ୟ ଆସିଯାଇଛି ଓ ମୋର ହୃଦୟକୁ ତତ୍ତ୍ୱଜ୍ଞାନର ଜ୍ୟୋତି ଆଲୋକିତ କରୁଛି । ସମସ୍ତ ବିଷୟଭୋଗରୁ ଓ ଅହଙ୍କାରାଦିରୁ ମୁକ୍ତ ହୋଇ ମୁଁ ସ୍ୱଚ୍ଛନ୍ଦରେ ବିଚରଣ କରୁଛି ।।୩୦।। ରାଜା, କେବଳ ଜଣେ ଗୁରୁଙ୍କଠାରୁ ନିଶ୍ଚିତ ଓ ପୂର୍ଣ୍ଣ ଜ୍ଞାନ ମିଳେ ନାହିଁ। ଦେଖ, ଋଷିମାନେ କିପରି ଏକ ଓ ଅଦ୍ୱିତୀୟ ବ୍ରହ୍ମଙ୍କୁ ବହୁ ପ୍ରକାରରେ ଗାନ କରିଛନ୍ତି ।।୩୧।।

ଶ୍ରୀ ଭଗବାନ୍ କହିଲେ, ଉଦ୍ଧବ, ଗଭୀରଜ୍ଞାନସମ୍ପନ୍ନ ଅବଧୂତ ବ୍ରାହ୍ମଣ ରାଜା ଯଦୁଙ୍କୁ ଏହିପରି ଉପଦେଶ ଦେଲେ । ରାଜାଙ୍କ ଠାରୁ ଅଭ୍ୟର୍ଥନା ଲାଭକରି ଆନନ୍ଦରେ ସେ ନିଜ ବାଟରେ ଚାଲିଗଲେ ।।୩୨।। ଆମ ପୂର୍ବସୂରୀମାନଙ୍କର ପୂର୍ବଜ ରାଜା ଯଦୁ ଅବଧୂତଙ୍କର କଥା ଶୁଣି ସମସ୍ତ ଆସକ୍ତିରୁ ମୁକ୍ତ ହୋଇ ସମଦର୍ଶୀ ହୋଇଥିଲେ ।।୩୩।।

## ଦଶମ ଅଧ୍ୟାୟ

# ଭୋଗର ଅସାରତା

ଭଗବାନ୍ ଶ୍ରୀକୃଷ୍ଣ କହିଲେ, ମୋର ଆଶ୍ରିତ ଭକ୍ତମାନେ ମୋର ଉପଦେଶ ଅନୁଯାୟୀ ନିଷ୍କାମ ଭାବରେ ସ୍ୱଧର୍ମ ପାଳନପୂର୍ବକ ବର୍ଣ୍ଣାଶ୍ରମ ଧର୍ମ ଓ ନିଜର କୁଳାଚାର ପାଳନ କରିବେ ।।୧।। ବିଷୟାସକ୍ତ ଲୋକମାନେ ବିଷୟସୁଖପାଇଁ ଯାହା କିଛି କରନ୍ତି, ତା'ର ଫଳ ବିପରୀତ ହୋଇଥାଏ । ତତ୍ତ୍ୱଜ୍ଞାନରେ ସ୍ୱଧର୍ମ ଆଚରଣ କଲେ ବିଶୁଦ୍ଧାତ୍ମା ବ୍ୟକ୍ତି ନିଷ୍କାମ କର୍ମ କରିଥାଏ । ବିଷୟଭୋଗକୁ ଧ୍ୟାନ କରି କରି ଲୋକ ଶୋଇ ପଡ଼ିଲେ ସେ ସ୍ୱପ୍ନରେ ଯାହା ଦେଖେ, ତାହା ବାସ୍ତବରେ ସଫଳ ହୁଏ ନାହିଁ । ସେହିପରି ଇନ୍ଦ୍ରିୟଦ୍ୱାରା ପରିଚାଳିତ ହୋଇ ସେ ଭେଦବୁଦ୍ଧିରେ ନାନା ବିଷୟରେ ଯାହା ସବୁ କରିଯାଏ, ତାହା ବିଫଳ ହୋଇଥାଏ ।।୨-୩।। ମୋଠାରେ ମନ ଲଗାଇ ଏପରି କର୍ମ କରିବ, ଯେଉଁଥିରେ ଫଳଲାଭର ଆଶା ନଥିବ । ଫଳ ଆଶାରେ ପ୍ରବୃତ୍ତ ସକାମ କର୍ମକୁ ପରିତ୍ୟାଗ କରିବ । ଆତ୍ମଜ୍ଞାନ ଲାଭ କରିବାର ପ୍ରବୃତ୍ତି ହେଲେ ନିତ୍ୟ, ନୈମିତ୍ତିକ ଓ କାମ୍ୟ କର୍ମକୁ ମଧ୍ୟ ଆଦର କରିବ ନାହିଁ ।।୪।। ମୋ'ଠାରେ ଅନୁରକ୍ତ ହୋଇ ଅହିଂସା ନୀତି ପାଳନ କରିବ। ନିତ୍ୟନୈମିତ୍ତିକ କାର୍ଯ୍ୟମାନ କରୁଥିବ । କିନ୍ତୁ ମୋର ସ୍ୱରୂପକୁ ଜାଣିଥିବା ଶାନ୍ତଚେତା ଗୁରୁଙ୍କୁ ମୋର ଆତ୍ମା ବୋଲି ଭାବି ଉପାସନା କରିବ ।।୫।। ପରମାର୍ଥ ବିଷୟରେ ଜିଜ୍ଞାସୁ ବ୍ୟକ୍ତି କାହା ପ୍ରତି ମାତ୍ସର୍ଯ୍ୟ ନ ରଖି ଓ ନିଜର ଅଭିମାନ ତ୍ୟାଗ କରି ଗୁରୁଙ୍କଠାରେ ଦୃଢ଼ ଆସ୍ଥା ସ୍ଥାପନ କରିବ । କୌଣସି ବସ୍ତୁରେ ମମତା ରଖିବ ନାହିଁ; ନିରଳସ ରହିବ । ଚଞ୍ଚଳମତି ହେବ ନାହିଁ ଏବଂ ବୃଥା ବାକ୍ୟାଳାପ କରିବ ନାହିଁ ।।୬।। ପତ୍ନୀ, ପୁତ୍ର, ଗୃହ, ଭୂମି, ସ୍ୱଜନ ଓ ଧନସମ୍ପତ୍ତି ପ୍ରତି ସମ୍ପୂର୍ଣ୍ଣ ଉଦାସୀନ ରହିବ । ସମଦର୍ଶୀ ଭାବରେ ନିଜର ଆତ୍ମାକୁ ସମସ୍ତଙ୍କ ମଧ୍ୟରେ ଦେଖୁଥିବ ।।୭।। ସ୍ଥୂଳ ଶରୀର ଓ ମନବୁଦ୍ଧିଦ୍ୱାରା ନିର୍ମିତ ସୂକ୍ଷ୍ମ ଶରୀରଠାରୁ ଆତ୍ମା ହେଉଛି ଭିନ୍ନ; ଯେପରି କାଷ୍ଠ ଆଦି ବାହ୍ୟ ବସ୍ତୁଠାରୁ ଦାହକ ଅଗ୍ନି ହେଉଛି ଭିନ୍ନ । ସେ ହେଉଛି ସ୍ୱୟଂ ପ୍ରକାଶମାନ ଏବଂ ସର୍ବଦ୍ରଷ୍ଟା ।।୮।। କାଠରେ ପ୍ରବେଶ କରିଥିବା ଅଗ୍ନି ଯେପରି କାଠର ଉତ୍ପତ୍ତି, ବିନାଶ, କ୍ଷୁଦ୍ରବୃହତ୍ ଆଦି ଆକାର ଓ ଗୁଣକୁ ଗ୍ରହଣ କରେ,

ସେହିପରି ଆତ୍ମା ଶରୀରମଧ୍ୟରେ ପ୍ରବେଶକରି ଶରୀରର ଗୁଣମାନଙ୍କୁ ଧାରଣ କରିଥିବା ପରି ଜଣାଯାଏ ॥୯॥ ଈଶ୍ୱରଙ୍କ ମାୟାରେ ରଚିତ ଜୀବର ଏହି ଦେହ ତାର ସଂସାରର ଓ ସଂସାରବନ୍ଧନର କାରଣ । କେବଳ ଆତ୍ମଜ୍ଞାନଲାଭଦ୍ୱାରା ଏହି ସଂସାରବନ୍ଧନକୁ ଛେଦନ କରାଯାଇପାରେ । କାର୍ଯ୍ୟକାରଣ ରୂପରେ ଅବସ୍ଥିତ ଏହି ଆତ୍ମାକୁ କେବଳ ବିଚାରବୁଦ୍ଧିରେ ଭଲ ଭାବରେ ଜାଣିପାରିଲେ ଦେହରେ ବସ୍ତୁବୁଦ୍ଧି ରହିବ ନାହିଁ ॥୧୦-୧୧॥ ଗୁରୁ ହେଉଛନ୍ତି ଅରଣି (ଅଗ୍ନି ଉତ୍ପାଦନପାଇଁ ଘର୍ଷଣକାଷ୍ଠ)ର ଉପର କାଠ, ଶିଷ୍ୟ ତଳ କାଠ, ଉପଦେଶ ମନ୍ଥନ କାଠ । ଏହାର ସଂଘର୍ଷଜନିତ ଅଗ୍ନିତୁଲ୍ୟ ହେଉଛି ବିଦ୍ୟା ଏବଂ ଏହି ବିଦ୍ୟାଲାଭ ଦ୍ୱାରା ସୁଖ ମିଳିଥାଏ ॥୧୨॥ ନିଆଁ ଯେପରି କାଠକୁ ଜାଳିସାରି ଆପେ ଆପେ ଲିଭିଯାଏ, ଗୁରୁଙ୍କର ଉପଦେଶ ପାଇ ଶିଷ୍ୟ ସେହିପରି ଯେଉଁ ଜ୍ଞାନାର୍ଜନ କରେ, ତାହା ତ୍ରିଗୁଣଜାତ ମାୟାକୁ ଲୋପ କରିଦେଇ ସଂସାରକୁ ଉତ୍ପନ୍ନ କରିଥିବା ଗୁଣମାନଙ୍କୁ ମଧ୍ୟ ଲୋପ କରିଦିଏ ଏବଂ ତା'ପରେ ଏହି କାମାଗ୍ନି ଶାନ୍ତ ହୋଇଯାଏ ॥୧୩॥

ପ୍ରିୟ ଉଦ୍ଧବ, ଯଦି କର୍ମ କରି ସୁଖଦୁଃଖ ଭୋଗକରୁଥିବା ଏହି ଜୀବାତ୍ମାକୁ ଅନେକ ଏବଂ ଜଗତ୍, କାଳ, ବେଦ ଏବଂ ଜୀବାତ୍ମାକୁ ନିତ୍ୟ ବୋଲି ତୁମେ ମନେକର, ଯେତେ ଭୋଗ୍ୟପଦାର୍ଥ ଅଛି ସେସବୁର ଉତ୍ପତ୍ତି ଓ ସ୍ଥିତି ନିତ୍ୟ ବୋଲି ସ୍ୱୀକାର କର, ଏବଂ ଯଦି ମନେକର ଯେ ଏମାନଙ୍କର ଆକାର ଓ ପ୍ରକାର ଭେଦରେ ଏମାନଙ୍କ ସଂପର୍କରେ ଜୀବର ଜ୍ଞାନ ଜାତ ହୁଏ, ବା ତାହା ବଦଳିଯାଏ ତାହେଲେ ଭୋଗପାଇଁ ଜୀବାତ୍ମାର ଦେହ-ସଂଯୋଗ ରହିବ ଓ ଯୁଗ ଯୁଗ ଧରି କାଳବଶରେ ଜନ୍ମ, ମରଣ ଲାଗି ରହିଥିବ ॥୧୪-୧୬॥ ତେଣୁ କର୍ମ କରି ସୁଖଦୁଃଖ ଭୋଗ କରୁଥିବା ପରାଧୀନ ବ୍ୟକ୍ତି ନିଜେ ସର୍ବଦା ବିବଶ ହୋଇ ରହିଥାଏ ଏବଂ ତା'ଦ୍ୱାରା କୌଣସି ପୁରୁଷାର୍ଥ ବା ପରମାର୍ଥ ସାଧିତ ହୋଇପାରେ ନାହିଁ ॥୧୭॥ ବ୍ୟକ୍ତି କର୍ମକୁଶଳ ହେଲେ ଯେ ତାକୁ ସୁଖ ମିଳେ, ତାହା ନୁହେଁ ଏବଂ ମୂଢ଼ ହେଲେ ଯେ ତାକୁ ଦୁଃଖ ମିଳେ, ତାହା ମଧ୍ୟ ନୁହେଁ । ତେଣୁ ବୁଦ୍ଧି ଥିଲେ ସୁଖ ମିଳିବ ବୋଲି ଯେଉଁ ଅହଙ୍କାର କରାଯାଏ, ତାହା ଠିକ୍ ନୁହେଁ । ହୁଏତ ବୁଦ୍ଧିମାନ୍ ବ୍ୟକ୍ତି ସୁଖର ପ୍ରାପ୍ତି ଓ ଦୁଃଖର ନିବୃତ୍ତି କିପରି ହୁଏ, ତାହା ଜାଣିଛି ବୋଲି କହିପାରେ; କିନ୍ତୁ ମୃତ୍ୟୁର ପ୍ରଭାବରୁ ମୁକ୍ତ ହେବାର ଉପାୟ ସେ ଜାଣେ ନାହିଁ ॥୧୮-୧୯॥ ବଧଭୂମିକୁ ନିଆଯାଉଥିବା ବ୍ୟକ୍ତି ଯେପରି ମୃତ୍ୟୁଚିନ୍ତାରେ ବିବଶ ହୋଇ ସୁଖ ପାଇପାରେ ନାହିଁ, ସେହିପରି ଏ ମର ଶରୀର ଅର୍ଥ ଓ କାମ ଭୋଗରେ କିପରି ସୁଖ ପାଇପାରିବ ? ॥୨୦॥ ଇହ ଲୋକରେ ସୁଖ ନାହିଁ ଓ ପରଲୋକରେ ସ୍ୱର୍ଗସୁଖ ମିଳେ ବୋଲି ଯାହା ଶୁଣାଯାଏ, ତାହା ମଧ୍ୟ ଈର୍ଷା, ଅସୂୟା, ପକ୍ଷପାତିତା ଓ ପୁଣ୍ୟକ୍ଷୟ ଆଦି ଦୋଷଦ୍ୱାରା ଦୂଷିତ । ନାନା ବାଧାବିଘ୍ନ ଘଟିଲେ କୃଷିକାର୍ଯ୍ୟ ଯେପରି ନିଷ୍ଫଳ ହୁଏ, ସେହିପରି ସ୍ୱର୍ଗସୁଖରୁ ମଧ୍ୟ କୌଣସି ଫଳ ମିଳେ ନାହିଁ ॥୨୧॥ ବିନା ବାଧାବିଘ୍ନରେ ଧର୍ମାନୁଷ୍ଠାନ କରି ଯେଉଁ ସ୍ଥାନ ଅର୍ଜନ କରାଯାଏ, ସେ ବିଷୟରେ ମୁଁ କହୁଚି, ଶୁଣ ॥୨୨॥ ଯଜ୍ଞ କରିଥିବା ବ୍ୟକ୍ତି ଇହଲୋକରେ ବହୁବିଧ ଯଜ୍ଞଦ୍ୱାରା ଦେବତାମାନଙ୍କୁ ପୂଜା କରି ସ୍ୱର୍ଗଲୋକକୁ ଯାଏ ଏବଂ ସେଠାରେ ପୁଣ୍ୟ କର୍ମଦ୍ୱାରା ଅର୍ଜିତ ଦିବ୍ୟ ଭୋଗମାନ ଉପଭୋଗ କରେ ॥୨୩॥ ସେଠାରେ ସୁନ୍ଦର ବେଶ ପରିଧାନ କରି ଓ ନିଜର ପୁଣ୍ୟରୁ ଅର୍ଜିତ ଏକ ଶୁଭ୍ର ବିମାନରେ ବସି ଦେବାଙ୍ଗନାମାନଙ୍କ ସହିତ ସେ ବିହାର କରେ ଏବଂ ଗନ୍ଧର୍ବମାନେ ତା'ର ଗୁଣଗାନ କରନ୍ତି ॥୨୪॥ ବିମାନରେ କିଙ୍କିଣୀର ମାଳା ସବୁ ଖଞ୍ଜା ହୋଇଥାଏ । ଯୁଆଡ଼େ ଚାହ, ସେଆଡ଼େ ସେ ବିମାନ ଯାଉଥାଏ । ସେ ସ୍ୱର୍ଗର ନନ୍ଦନବନରେ ଅପ୍ସରାମାନଙ୍କ ସହିତ କ୍ରୀଡ଼ା କଲାବେଳେ ଭୁଲିଯାଏ ଯେ ଦିନେ ନା ଦିନେ ତା'ର ପତନ ଘଟିବ ॥୨୫॥ ନିଜର ପୁଣ୍ୟ ଶେଷ ହେବା ପର୍ଯ୍ୟନ୍ତ ସେ ସ୍ୱର୍ଗଲୋକରେ ଆମୋଦ ପ୍ରମୋଦ କରେ । ପୁଣ୍ୟ ଶେଷ ହୋଇଗଲେ ନିଜର ଅନିଚ୍ଛାସତ୍ତ୍ୱେ କାଳପ୍ରେରିତ ହୋଇ ସ୍ୱର୍ଗଲୋକରୁ ତଳକୁ ଖସିପଡ଼େ ॥୨୬॥ ଅସାଧୁ ସଙ୍ଗରେ ରହି ଅଧର୍ମରେ ରତ ଥିବା ବ୍ୟକ୍ତି ନିଜର ଇନ୍ଦ୍ରିୟମାନଙ୍କୁ ଜୟ କରି ନ ପାରି କାମୁକ, କୃପଣ, ଲୋଭୀ, ଲମ୍ପଟ ଓ ପ୍ରାଣୀହିଂସୁକ ହୋଇଥାଏ ॥୨୭॥ ନିୟମ ନ ମାନି ପଶୁବଳିଦ୍ୱାରା ସେ ଭୂତପ୍ରେତମାନଙ୍କର ଉପାସନା କରେ ଏବଂ ମୃତ୍ୟୁପରେ ନରକକଷ୍ଟ ଭୋଗ କରି ଶେଷରେ ବୃକ୍ଷଲତା ଆଦି ସ୍ଥାବର ଯୋନିରେ

ଜନ୍ମ ହୁଏ ।।୨୮।। ସକାମ କର୍ମର ପରିଣାମ ହେଉଚି ଦୁଃଖମୟ । ଏହି ଦେହରେ ସେହି ସବୁ କର୍ମ କରିବା ଦ୍ୱାରା ବାରମ୍ବାର ଦେହଧାରଣ କରିବାକୁ ହୁଏ । ତେଣୁ ଜନ୍ମମରଣଶୀଳ ଜୀବର କି ସୁଖ ଅଛି ? ।।୨୯।। ଯେଉଁମାନେ ଇନ୍ଦ୍ରାଦି ଲୋକପାଳ ଏବଂ ଗୋଟିଏ କଳ୍ପପର୍ଯ୍ୟନ୍ତ ଯେଉଁମାନେ ବଞ୍ଚନ୍ତି, ସେ ସମସ୍ତଙ୍କର ମୋ'ପ୍ରତି ଭୟ ଥାଏ । ଏପରିକି ବ୍ରହ୍ମାଙ୍କର ମଧ୍ୟ । ଦୁଇ ପରାର୍ଦ୍ଧପର୍ଯ୍ୟନ୍ତ ଆୟୁଷ ଥିଲେ ମଧ୍ୟ ସେ ମୋତେ ଭୟ କରନ୍ତି ।।୩୦।। ସତ୍ତ୍ୱ ଆଦି ଗୁଣମାନେ ଇନ୍ଦ୍ରିୟମାନଙ୍କୁ କର୍ମରେ ପ୍ରବୃତ୍ତ କରନ୍ତି । ଜୀବ ଗୁଣଯୁକ୍ତ ହୋଇଥିବାଯୋଗୁଁ ଏହିସବୁ କର୍ମର ଫଳ ଭୋଗ କରେ ।।୩୧।। ଯେପର୍ଯ୍ୟନ୍ତ ସତ୍ତ୍ୱାଦି ଗୁଣଯୁକ୍ତ ଜୀବର ଅହଙ୍କାର ଆଦି ବିଷମତା ରହିଥାଏ, ସେପର୍ଯ୍ୟନ୍ତ ଆତ୍ମା ଏକ ନୁହେଁ, ଅନେକ ବୋଲି ସେ କଳ୍ପନା କରେ ଏବଂ ପରାଧୀନ ହୋଇ ରହିଯାଏ ।।୩୨।। ଯେପର୍ଯ୍ୟନ୍ତ ପରାଧୀନତା ଥାଏ, ସେପର୍ଯ୍ୟନ୍ତ ଈଶ୍ୱରଙ୍କ ପ୍ରତି ଭୟ ଥାଏ । ଯେଉଁ ବ୍ୟକ୍ତି ଏହି ବିଷମତାଯୋଗୁଁ ଭୋଗମୟ କର୍ମରେ ଲାଗିରହେ, ପରିଣାମରେ ସେ ଘୋର ଶୋକରେ ମୁହ୍ୟମାନ ହୋଇପଡ଼େ ।।୩୩।। ଗୁଣମାନଙ୍କର କ୍ଷୋଭଯୋଗୁଁ ମୋତେ କାଳ, ଆତ୍ମା, ଆଗମ, ଲୋକ, ସ୍ୱଭାବ, ଧର୍ମ ଆଦି ବହୁ ନାମରେ ଅଭିହିତ କରାଯାଏ ।।୩୪।।

ଉଦ୍ଧବ କହିଲେ, ପ୍ରଭୁ, ସତ୍ତ୍ୱ ଆଦି ଗୁଣର କାର୍ଯ୍ୟ ହେଉଚି ଜୀବକୁ ତାର ଦେହ ସଂପୃକ୍ତ ସୁଖ-ଦୁଃଖଦାୟକ କର୍ମ ଆଦିରେ ନିୟୋଜିତ କରିବା । ତେଣୁ ଗୁଣଯୁକ୍ତ ଜୀବ କିପରି ଅନାସକ୍ତ ରହିପାରେ ? ଏବଂ ଗୁଣରୁ ନିର୍ଲିପ୍ତ ଜୀବ କିପରି ବା କର୍ମରେ ବାନ୍ଧି ହୁଏ ? ।।୩୫।। ବଦ୍ଧ ଜୀବଙ୍କୁ ଓ ମୁକ୍ତ ଜୀବଙ୍କୁ କେଉଁ କେଉଁ ଲକ୍ଷଣଦ୍ୱାରା ଚିହ୍ନିହେବ, ସେମାନେ କିପରି ରହନ୍ତି, କଣ ଖାଆନ୍ତି, କଣ କଣ ଛାଡ଼ନ୍ତି, କିପରି ଶୁଅନ୍ତି, ବସନ୍ତି, ଯା'ଆସ କରନ୍ତି, ବିହାର କରନ୍ତି -- ହେ ଅଚ୍ୟୁତ, ବଦ୍ଧ ଓ ମୁକ୍ତ ଜୀବର ଆତ୍ମା କିପରି ଏକ, ସେ ବିଷୟରେ ମୋର ଭ୍ରମ ଜାତ ହେଉଚି । ଆପଣ ପ୍ରଶ୍ନବେତ୍ତାମାନଙ୍କ ମଧ୍ୟରେ ଶ୍ରେଷ୍ଠ । ଆପଣ ମୋର ଏହି ପ୍ରଶ୍ନର ଉତ୍ତର ଦିଅନ୍ତୁ ।।୩୬-୩୭।।

## ଏକାଦଶ ଅଧ୍ୟାୟ

# ବଦ୍ଧ ଓ ମୁକ୍ତ ଜୀବଙ୍କର ଲକ୍ଷଣ

ବସ୍ତୁତଃ ଆତ୍ମାର ବନ୍ଧନ ନାହିଁ କି ମୋକ୍ଷ ନାହିଁ । ମୋ' ଅଧୀନରେ ଥିବା ଗୁଣରୁ ହିଁ ତାହା ହୋଇଥାଏ । ଗୁଣ ହେଉଚି ମୋର ମାୟାରୁ ଜାତ ଏବଂ ଏହି ମାୟାରୂପକ ଗୁଣଯୋଗୁଁ ଜୀବାତ୍ମାକୁ ବଦ୍ଧ ବା ମୁକ୍ତ ବୋଲି ବ୍ୟାଖ୍ୟା କରାଯାଏ ।।୧।। ଶୋକ, ମୋହ, ସୁଖ, ଦୁଃଖ ଏବଂ ଶରୀରର ଉତ୍ପତ୍ତି ମାୟାଦ୍ୱାରା ହିଁ ହୋଇଥାଏ । ତେଣୁ ମାୟାର ଗୁଣରୁ ଜାତ ଏହି ସଂସାର ସ୍ୱପ୍ନପରି ଅଳୀକ । ଏହା ବାସ୍ତବ ନୁହେଁ ।।୨।। ମୋକ୍ଷକାରୀ ବିଦ୍ୟା ଓ ବନ୍ଧନକାରୀ ଅବିଦ୍ୟା – ଉଭୟ ଅନାଦିକାଳରୁ ମୋର ମାୟାଦ୍ୱାରା ନିର୍ମିତ । ତେଣୁ ଶରୀରଧାରୀଙ୍କ ବିଦ୍ୟା ଓ ଅବିଦ୍ୟା ମୋର ଶକ୍ତି ( ତନୁ) ବୋଲି ଜାଣିବ ।।୩।। ମହାମତି ଉଦ୍ଧବ, ମୁଁ ଅନାଦି । ଜୀବ ମୋର ଏକ ଅଂଶ । ମୋର ଅଂଶସ୍ୱରୂପ ଜୀବର ଅବିଦ୍ୟା ଦ୍ୱାରା ବନ୍ଧନ ହୁଏ ଓ ବିଦ୍ୟାଦ୍ୱାରା ମୋକ୍ଷ ପ୍ରାପ୍ତ ହୁଏ ।।୪।। ବତ୍ସ ଉଦ୍ଧବ, (ମୋର ଅଂଶରୂପେ) ଏକ ଆଶ୍ରୟରେ ଥିଲେ ମଧ୍ୟ ବଦ୍ଧ ଓ ମୁକ୍ତ ଜୀବ କିପରି ପରସ୍ପର ବିରୋଧୀ ଆଚରଣ କରନ୍ତି ଏବଂ ସେହି ବିରୋଧାତ୍ମକ ଲକ୍ଷଣ ବର୍ତ୍ତମାନ ମୁଁ ତୁମକୁ କହିବାକୁ ଯାଉଚି ।।୫।। ଶରୀର ରୂପକ ଅଶ୍ୱତ୍ଥ ବୃକ୍ଷରେ ଦୁଇଟି ସୁନ୍ଦର ପକ୍ଷଯୁକ୍ତ ପକ୍ଷୀ ବସା ବାନ୍ଧି ରହିଛନ୍ତି -- ଜୀବ ଓ ଈଶ୍ୱର । ସ୍ୱଭାବବଶରେ ସେମାନେ ଗୋଟିଏ ବୃକ୍ଷରେ ଥିବାଯୋଗୁଁ ପରସ୍ପରର ସଖା ହୋଇ ରହିଥାନ୍ତି । ତାହା ମଧ୍ୟରୁ ଜଣେ ଅଶ୍ୱତ୍ଥ ଫଳ (କର୍ମ ଫଳ) ଭୋଜନ କରି ରହେ । ଅନ୍ୟ ଜଣକ

ନିରାହାର ହେଲେ ମଧ୍ୟ ଅନ୍ୟ ପକ୍ଷୀଠାରୁ ବଳୀୟାନ୍ ହୋଇଥାଏ ।।୬।। ଏ ଦୁହିଙ୍କ ମଧ୍ୟରେ ଯେ ବିଦ୍ୟାଯୁକ୍ତ ସେ ଆତ୍ମାକୁ ଓ ଅନ୍ୟକୁ ଜାଣେ । ସେ ଫଳ ଭୋଗ କରେ ନାହିଁ । ଅନ୍ୟଟି ହେଉଚି ଅବିଦ୍ୟାଯୁକ୍ତ ଓ ନିତ୍ୟବଦ୍ଧ । କିନ୍ତୁ ଯେ ବିଦ୍ୟାଯୁକ୍ତ, ସେ ନିତ୍ୟମୁକ୍ତ ।।୭।। ସ୍ୱପ୍ନ ଭାଙ୍ଗିଗଲେ ଜାଗ୍ରତ ପୁରୁଷର ଯେପରି ସ୍ୱପ୍ନଶରୀର ସହିତ କୌଣସି ସଂପର୍କ ନ ଥାଏ, ସେହିପରି ଜ୍ଞାନୀ ପୁରୁଷ ଶରୀରସ୍ଥ ହେଲେ ମଧ୍ୟ ଶରୀର ସହିତ ତାର କୌଣସି ସମ୍ପର୍କ ରହେ ନାହିଁ । କିନ୍ତୁ ବ୍ୟକ୍ତି ସ୍ୱପ୍ନଶରୀରରେ ବଦ୍ଧ ହେବାପରି ଅଜ୍ଞାନୀ ବ୍ୟକ୍ତି ଶରୀର ସହିତ ସଂପୃକ୍ତ ନ ଥାଇ ମଧ୍ୟ ଶରୀରସ୍ଥ ହୋଇ ରହିଥାଏ ।।୮।। ଗୁଣର ପ୍ରଭାବରେ ଇନ୍ଦ୍ରିୟମାନେ ଇନ୍ଦ୍ରିୟର ବିଷୟ (ଶବ୍ଦ, ସ୍ପର୍ଶ ଆଦି) ମାନଙ୍କୁ ଗ୍ରହଣ କରନ୍ତି । କିନ୍ତୁ ଆତ୍ମା ନିର୍ଗୁଣ ହୋଇଥିବାରୁ କୌଣସି ବସ୍ତୁକୁ ଗ୍ରହଣ କରେ ନାହିଁ । ନିର୍ବିକାର ଜ୍ଞାନୀ ବ୍ୟକ୍ତି ଏହା ହୃଦୟଙ୍ଗମ କରି ବିଷୟମାନଙ୍କୁ ଗ୍ରହଣ ବା ତ୍ୟାଗ କରିବାରେ କୌଣସି ଅଭିମାନ ରଖେ ନାହିଁ ।।୯।। ଏହି ଶରୀର ଦୈବ (ପ୍ରାରବ୍ଧ) ର ଅଧୀନ । ଇନ୍ଦ୍ରିୟଜନିତ କର୍ମଦ୍ୱାରା ପ୍ରବର୍ତ୍ତିତ ହୋଇ ଜୀବ ନିଜକୁ ହିଁ କର୍ତ୍ତା ବୋଲି ଭାବେ ଏବଂ ଏହି ଅଭିମାନଯୋଗୁଁ ସେ ସେହି ଶରୀର ଆଦିରେ ବନ୍ଧନରେ ପଡ଼େ ।।୧୦।। ମାତ୍ର ବିଦ୍ୱାନ୍ ବ୍ୟକ୍ତି ଶୟନ, ଆସନ, ଗମନାଗମନ, ସ୍ନାନ, ଦର୍ଶନ, ସ୍ପର୍ଶନ, ଆଘ୍ରାଣ,ଭୋଜନ, ଶ୍ରବଣ ଆଦି କାର୍ଯ୍ୟ କଲେ ମଧ୍ୟ ନିଜକୁ ତାର କର୍ତ୍ତା ବୋଲି ଭାବେନାହିଁ । ତେଣୁ କର୍ମବନ୍ଧନରେ ପଡ଼େ ନାହିଁ । ପ୍ରକୃତି ମଧ୍ୟରେ ଥାଇ ମଧ୍ୟ ସେ ସୂର୍ଯ୍ୟ, ଆକାଶ ଓ ବାୟୁ ପରି ଅନାସକ୍ତ ରହେ । (ସୂର୍ଯ୍ୟ ଜଳଦ୍ୱାରା, ଆକାଶ ଶବ୍ଦଦ୍ୱାରା ଏବଂ ବାୟୁ ଗନ୍ଧଦ୍ୱାରା ଆସକ୍ତ ହୁଏ ନାହିଁ ) । ବୈରାଗ୍ୟ-ବୁଦ୍ଧିରେ ତାର ଜ୍ଞାନ-ଦୃଷ୍ଟି ଅଧିକ ତୀକ୍ଷ୍ଣ ହେବାରୁ ତାର ସମସ୍ତ ସଂଶୟ ଛିନ୍ନ ହୋଇଯାଏ । ସ୍ୱପ୍ନରୁ ଜାଗ୍ରତ ବ୍ୟକ୍ତିପରି ସେ ସମସ୍ତ ବିଷୟବାସନାରୁ ନିବୃତ୍ତ ରହେ ।।୧୧-୧୩।। ଯାହାର ପ୍ରାଣ, ଇନ୍ଦ୍ରିୟ, ମନ ଓ ବୁଦ୍ଧିର ବୃତ୍ତିମାନ ସଙ୍କଳ୍ପ (ଅହଙ୍କାର) ରହିତ, ସେ ଦେହଧାରଣ କରିଥିଲେ ମଧ୍ୟ ଦେହର ଗୁଣରୁ ମୁକ୍ତ ରହେ ।।୧୪।। ଯଦି କୌଣସି ହିଂସ୍ର ବ୍ୟକ୍ତି ତାର ଶରୀରକୁ ପୀଡ଼ା ଦିଏ ବା ଅନ୍ୟ କେହି ସ୍ୱେଚ୍ଛାରେ ତାକୁ ପୂଜା କରେ, ତେବେ ସେ ହିଂସାରେ ଦୁଃଖୀ ବା ପୂଜାରେ ସୁଖୀ ହୁଏ ନାହିଁ ।।୧୫।। ଗୁଣଦୋଷରହିତ ସମଦର୍ଶୀ ମୁନିଙ୍କର କେହି ଉପକାର ବା ଅପକାର କଲେ, କିମ୍ବା ପ୍ରଶଂସା ବା ନିନ୍ଦା କଲେ ସେ ଉପକାରୀ ବା ପ୍ରଶଂସାକାରୀର ତାରିଫ୍ କରନ୍ତି ନାହିଁ କିମ୍ବା ଅପକାରୀ ବା ନିନ୍ଦୁକର ନିନ୍ଦା କରନ୍ତି ନାହିଁ ।।୧୬।। ମୁନି ଭଲ ବା ମନ୍ଦ କିଛି କରିବା, କହିବା ବା ଚିନ୍ତାକରିବା ଉଚିତ ନୁହେଁ । ଏହି ବୃତ୍ତି ଦ୍ୱାରା ଆତ୍ମାନନ୍ଦରେ ମଜ୍ଜି ରହି ସେ ଜଡପରି ବିଚରଣ କରିବା ଉଚିତ ।।୧୭।। ଯଦି କେହି ବ୍ୟକ୍ତି ବେଦରେ ପାରଙ୍ଗମ ହୁଏ, ମାତ୍ର ପରଂବ୍ରହ୍ମଙ୍କ ପ୍ରତି ଧ୍ୟାନାଦିରେ ଅନୁରକ୍ତ ହୁଏ ନାହିଁ, ତେବେ କ୍ଷୀର ଦେଉ ନଥିବା ଗାଈକୁ ପାଳୁଥିବା ଲୋକର ଶ୍ରମ ପରି ତାର ସମସ୍ତ ଶ୍ରମ ବିଫଳ ହୁଏ ।।୧୮।। ବତ୍ସ ଉଦ୍ଧବ, ଦୁଧ ଦେଉନଥିବା ଗାଈ, ଅସତୀ ଭାର୍ଯ୍ୟା, ପରର ଅଧୀନ ଦେହ, ଦୁଷ୍ଟ ପୁତ୍ର, ସତ୍‌ପାତ୍ରରେ ଲାଗୁନଥିବା ଧନ, ଭଗବତ୍‌କଥାରହିତ ବାଣୀ ଲୋକର ଦୁଃଖ ପରେ ଦୁଃଖ ବଢ଼ାଇଦିଏ ।।୧୯।।

ପ୍ରିୟ ଉଦ୍ଧବ, ଯେଉଁ କଥାରେ ଜଗତ୍‌ର ସୃଷ୍ଟି, ସ୍ଥିତି ଓ ଲୟରୂପକ ମୋର ପବିତ୍ର କର୍ମ କୀର୍ତ୍ତିତ ହୁଏ ନାହିଁ ଏବଂ ଲୀଳା ଅବତାରପାଇଁ ମୁଁ ଯେଉଁ ଇପ୍‌ସିତ ଜନ୍ମ ଗ୍ରହଣ କରେ, ତାହା ବର୍ଣ୍ଣିତ ହୁଏ ନାହିଁ, ଧୀର ବ୍ୟକ୍ତି ସେପରି ନିଷ୍ଫଳ କଥାରେ ମନ ଦେବା ଉଚିତ ନୁହେଁ ।।୨୦।। ତେଣୁ ଉଦ୍ଧବ, ଆତ୍ମଜିଜ୍ଞାସା ଦ୍ୱାରା ବ୍ୟକ୍ତି ଆତ୍ମାରେ ନାନାତ୍ୱ ଭ୍ରମକୁ ଦୂର କରି ଏବଂ ସର୍ବବ୍ୟାପୀ (ପରିପୂର୍ଣ୍ଣ) ମୋ'ଠାରେ ନିଜର ନିର୍ମଳ ଚିତ୍ତକୁ ସମର୍ପଣ କରି ସବୁଥିରୁ ନିବୃତ୍ତ ହେବା ଉଚିତ । ତା' ହେଲେ ସଂସାର ପ୍ରତି ଆସକ୍ତି ରହିବ ନାହିଁ ।।୨୧।। ଯଦି ପରଂବ୍ରହ୍ମଙ୍କଠାରେ ମନକୁ ନିଶ୍ଚଳ କରିପାରୁ ନାହଁ, ତା'ହେଲେ ସମସ୍ତ କର୍ମ ମୋ ପାଇଁ କରୁଛ ବୋଲି ଭାବି ନିରପେକ୍ଷ ହୋଇ କରିଯାଅ ।।୨୨।। ସମସ୍ତ ଲୋକର ପବିତ୍ରକାରୀ ମୋର ମଙ୍ଗଳମୟ କଥା ଶ୍ରଦ୍ଧାବାନ୍ ବ୍ୟକ୍ତି ବାରଂବାର ଶ୍ରବଣ କରିବା ଉଚିତ । ମୋର ବିଭିନ୍ନ ଅବତାର ଓ ଲୀଳାମାନ ବାରଂବାର ଗାନ କରିବା, ସ୍ମରଣ କରିବା

ଓ ଅଭିନୟ କରିବା ଉଚିତ ॥୨୩॥ ଉଦ୍ଧବ, ମୁଁ ସନାତନ ପୁରୁଷ । ମୋର ଆଶ୍ରିତ ହୋଇ ମୋ ଉଦ୍ଦେଶ୍ୟରେ ଧର୍ମ ଅର୍ଥ ଓ କାମର ସେବନ କଲେ ମୋ' ପ୍ରତି ନିଶ୍ଚଳା ଭକ୍ତି ଜାତହୁଏ ॥୨୪॥ ସତ୍‌ସଙ୍ଗ ଦ୍ୱାରା ସହଜରେ ଭକ୍ତି ପ୍ରାପ୍ତହୁଏ ଏବଂ ଭକ୍ତିରେ ମୋର ଉପାସନା କଲେ ସାଧୁଜନଦର୍ଶିତ ମୋର ପରମପଦ ସହଜରେ ଲାଭ କରାଯାଇପାରେ ॥୨୫॥

ଉଦ୍ଧବ କହିଲେ, ଉତ୍ତମଶ୍ଳୋକ, ଆପଣଙ୍କ ମତରେ ସାଧୁ ପୁରୁଷର ଲକ୍ଷଣ କଣ ? ଆପଣଙ୍କ ପ୍ରତି ସାଧୁ ଲୋକଙ୍କ ଦ୍ୱାରା ଆଦୃତ କିପରି ଭକ୍ତି କରାଯିବା ଉଚିତ ? ॥୨୬॥ ହେ ପୁରୁଷୋତ୍ତମ, ଲୋକନାଥ, ଜଗତ୍‌ର ପ୍ରଭୁ, ମୁଁ ଆପଣଙ୍କଠାରେ ପ୍ରଣତ, ଶରଣାଗତ ଓ ଅନୁରକ୍ତ । ଆପଣ ଦୟା କରି ମୋତେ କହିବା ହୁଅନ୍ତୁ ॥୨୭॥ ହେ ଭଗବାନ୍, ଆପଣ ପରଂବ୍ରହ୍ମ, ଆକାଶପରି ଅସଙ୍ଗ, ପ୍ରକୃତିରୁ ଅତୀତ । ସ୍ୱେଚ୍ଛାରେ (ଭକ୍ତଙ୍କ ଇଚ୍ଛାରେ) ପୃଥକ୍ ଶରୀର ଧାରଣ କରି ଆପଣ ଅବତୀର୍ଣ୍ଣ ହୋଇଛନ୍ତି ॥୨୮॥

ଶ୍ରୀ ଭଗବାନ କହିଲେ, ମୋର ଭକ୍ତ ଦୟାଳୁ , କାହାରି ପ୍ରତି ଦ୍ରୋହ ଆଚରଣ କରେ ନାହିଁ । କ୍ଷମାଶୀଳ; ସତ୍ୟ ହିଁ ତାର ବଳ । କାହାରି ପ୍ରତି ତାର ଅସୂୟା ନ ଥାଏ । ସମଦର୍ଶୀ ; ସମସ୍ତଙ୍କର ଉପକାର କରେ । ବିଷୟବୁଦ୍ଧି ଦ୍ୱାରା ବିଚଳିତ ହୁଏ ନାହିଁ । ଜିତେନ୍ଦ୍ରିୟ; ମଧୁର ସ୍ୱଭାବ, ଶୁଚିମାନ୍, କୌଣସି ବସ୍ତୁ ବା ଧନସଞ୍ଚୟ କରେନାହିଁ ; ନିରୀହ, ଶାନ୍ତ, ସ୍ଥିର ଓ ମୋର ଶରଣାପନ୍ନ ହୁଏ । ସାବଧାନ, ନିର୍ବିକାର, ଧୈର୍ଯ୍ୟଶୀଳ ହୋଇ କ୍ଷୁଧା-ପିପାସା ଶୋକ, ମୋହ ଓ ଜରାମୃତ୍ୟୁ ଏହି ଷଡ଼ ବିଷୟକୁ ସେ ଜୟ କରିଥାଏ । ନିଜର ମାନ ଅଭିମାନ ନ ଥାଏ, ମାତ୍ର ଅନ୍ୟକୁ ସମ୍ମାନ ଦିଏ । ନିଜେ ଜ୍ଞାନୀ ହୋଇ ଅନ୍ୟମାନଙ୍କୁ ଜ୍ଞାନ ବିତରଣ କରେ । ସମସ୍ତ ପ୍ରାଣୀଙ୍କ ପ୍ରତି ତାର ମିତ୍ରତା ଓ କରୁଣା ଭରି ରହିଥାଏ । ନିଜର ଗୁଣ ଦୋଷ ବିଷୟରେ ସଚେତନ ରହି ମୋ ଦ୍ୱାରା ଉପଦିଷ୍ଟ ହେଲେ ମଧ୍ୟ ସମସ୍ତ ବୈଦିକ ଧର୍ମକୁ ଛାଡ଼ି ମୋର ଭଜନରେ ହିଁ ଲାଗିରହେ । ମୁଁ କିଏ, କଣ, ମୋର ସ୍ୱରୂପ ବିଷୟରେ କିଛି ଜାଣୁ ବା ନ ଜାଣୁ, ଯେ ଅନନ୍ୟ ଭାବରେ ମୋର ଭଜନ କରେ, ମୋ' ମତରେ ସେହି ହେଉଚି, ମୋର ପରମ ଭକ୍ତ ॥୨୯-୩୩॥ ମୋର ପ୍ରତିମା ଓ ମୋର ଭକ୍ତମାନଙ୍କର ଦର୍ଶନ, ସ୍ପର୍ଶ ଓ ପୂଜା, ମୋର ସେବା, ସ୍ତୁତି, ନମସ୍କାର ଓ ଗୁଣକର୍ମାବଳିର କୀର୍ତ୍ତନ ; ମୋର ଲୀଳାଶ୍ରବଣରେ ଶ୍ରଦ୍ଧା, ମୋର ଧ୍ୟାନ, ସମସ୍ତ ପ୍ରକାର ଲବ୍ଧ ବସ୍ତୁକୁ ମୋ'ଠାରେ ସମର୍ପଣ, ଦାସ୍ୟ ଭାବରେ ଆତ୍ମ ନିବେଦନ, ମୋର ଜନ୍ମ, କର୍ମ ଆଦି ଲୀଳାର ବର୍ଣ୍ଣନ, ମୋର ଜନ୍ମଦିନ ଓ ମୋ ସମ୍ପର୍କୀୟ ପର୍ବଦିନମାନଙ୍କର ଶ୍ରଦ୍ଧାର ସହିତ ପାଳନ, ଗୀତ, ନୃତ୍ୟ ଓ ବାଦ୍ୟ ସହିତ ସପରିବାର ମୋର ମନ୍ଦିରରେ ଉତ୍ସବ ପାଳନ, ବର୍ଷଯାକର ପର୍ବମାନଙ୍କରେ ପୁଷ୍ପହାର ଆଦି ପ୍ରଦାନ, ବୈଦିକ ବା ତାନ୍ତ୍ରିକ ଦୀକ୍ଷାରେ ମୋର ବ୍ରତ ଗ୍ରହଣ, ମୋର ପ୍ରତିମା ପ୍ରତିଷ୍ଠାରେ ନିଷ୍ଠା, ନିଜର ସାମର୍ଥ୍ୟରେ ବା ଅନ୍ୟମାନଙ୍କ ସାହାଯ୍ୟରେ ମୋର ଉଦ୍ଦେଶ୍ୟରେ ଉଦ୍ୟାନ, ଉପବନ, କ୍ରୀଡ଼ାଭୂମି, ନଗର, ମନ୍ଦିର ପ୍ରଭୃତି ନିର୍ମାଣ, ଭୃତ୍ୟ ପରି ଅମାୟିକ ଭାବରେ ମନ୍ଦିର ପରିସରର ସମାର୍ଜନ, ଲେପନ, ଚିତ୍ର ଓ ସଂସ୍କାର ଆଦି କାର୍ଯ୍ୟ ସମାପନ, ଗର୍ବ, ଅଭିମାନ ଆଦି ତ୍ୟାଗ, ନିଜ ସେବା କାର୍ଯ୍ୟକୁ ଅନ୍ୟଆଗରେ ପ୍ରକାଶ ନ କରିବା, ମୋତେ ଦିଆଯାଇଥିବା ଦୀପାଲୋକ(ଆରତି) କେବଳ ନିଜେ ଭୋଗ ନ କରି ଅନ୍ୟ ଭକ୍ତମାନଙ୍କୁ ପ୍ରଦାନ କରିବା -- ଉଦ୍ଧବ ଏହିସବୁ ହେଉଚି ମୋର ଭକ୍ତର ଲକ୍ଷଣ ॥୩୪-୪୦॥ ସଂସାର ମଧ୍ୟରେ ଯାହା ଯାହା ସବୁଠାରୁ ଅଭୀଷ୍ଟ ଏବଂ ଯାହା ନିଜର ସବୁଠାରୁ ପ୍ରିୟ, ତାହା ତାହା ମୋତେ ନିବେଦନ କରିବା ଉଚିତ । ତଦ୍ଦ୍ୱାରା ସେ ଅକ୍ଷୟ ଫଳ ଲାଭ କରେ ॥୪୧॥ ଭଦ୍ର ଉଦ୍ଧବ, ସୂର୍ଯ୍ୟ, ଅଗ୍ନି, ଗୋ, ବ୍ରାହ୍ମଣ, ବୈଷ୍ଣବ, ଆକାଶ, ବାୟୁ, ଜଳ, ଭୂମି, ଆତ୍ମା ଓ ସମସ୍ତ ପ୍ରାଣୀ ହେଉଛନ୍ତି ମୋର ପୂଜାର ସ୍ଥଳ ॥୪୨॥ ଋଗ୍, ଯଜୁଃ ଓ ସାମ ବେଦର ମନ୍ତ୍ର ଦ୍ୱାରା ସୂର୍ଯ୍ୟରୂପରେ ମୋର ପୂଜା କରିବ । ଘୃତ ଦ୍ୱାରା ଅଗ୍ନି, ଆତିଥ୍ୟ ଦ୍ୱାରା ଶ୍ରେଷ୍ଠ ବ୍ରାହ୍ମଣ, ତୃଣ ଦ୍ୱାରା ଗାଭୀ, ବନ୍ଧୁତ୍ୱଦ୍ୱାରା ବୈଷ୍ଣବ, ହୃଦୟରେ

ଧ୍ୟାନଦ୍ୱାରା ଆକାଶ, ମୁଖ୍ୟ ପ୍ରାଣରୂପେ ବାୟୁ, ଫଳପୁଷ୍ପାଦିଦ୍ୱାରା ଜଳରୂପରେ ମୋର ପୂଜାକରିବ ।।୪୩-୪୪।। ଗୁପ୍ତ ମନ୍ତ୍ରଦ୍ୱାରା ନ୍ୟାସ କରି ମାଟିର ବେଦୀରେ, ବିଭିନ୍ନ ଭୋଗରାଗଦ୍ୱାରା ନିଜର ଆତ୍ମାକୁ ଆତ୍ମାରେ, ସମଦୃଷ୍ଟିଦ୍ୱାରା ସମସ୍ତ ପ୍ରାଣୀଙ୍କୁ ମୋତେ ଭାବି ପୂଜା କରିବ । କାରଣ ସମସ୍ତ ପ୍ରାଣୀଙ୍କ ମଧ୍ୟରେ ମୁଁ କ୍ଷେତ୍ରଜ୍ଞ ରୂପେ ବିଦ୍ୟମାନ ।।୪୫।। ଏହି ସବୁ ସ୍ଥାନରେ ଶଙ୍ଖ-ଚକ୍ର-ଗଦା-ପଦ୍ମଦ୍ୱାରା ଯୁକ୍ତ ମୋର ଶାନ୍ତ, ଚତୁର୍ଭୁଜ ମୂର୍ତ୍ତିକୁ ଧ୍ୟାନ କରି କରି ଏକାଗ୍ର ହୋଇ ଆରାଧନା କରିବ ।।୪୬।। ଯଜ୍ଞ ଆଦି ଇଷ୍ଟକର୍ମ, କୂପ, ପୁଷ୍କରିଣୀ, ଉଦ୍ୟାନ ଉପବନ ଆଦି ପୂର୍ତ୍ତକର୍ମଦ୍ୱାରା ଏକାଗ୍ର ଚିତ୍ତରେ ଯେ ମୋତେ ଉପାସନା କରେ, ମୋଠାରେ ତାର ଉତ୍ତମ ଭକ୍ତି ଲାଭ ହୁଏ ଏବଂ ସାଧୁସଙ୍ଗଦ୍ୱାରା ମୋର ସ୍ୱରୂପଜ୍ଞାନ ପ୍ରାପ୍ତହୁଏ ।।୪୭।। ଉଦ୍ଧବ, ଭକ୍ତିଯୋଗ ଓ ସତ୍‌ସଙ୍ଗ ବିନା ଏହି ସଂସାରକୁ ତରିବାର ଅନ୍ୟ ଉପାୟ ନାହିଁ । କାରଣ ମୁଁ ହେଉଚି ସାଧୁମାନଙ୍କର ଏକମାତ୍ର ଆଶ୍ରୟ ।।୪୮।। ଯଦୁନନ୍ଦନ ଉଦ୍ଧବ, ଏବେ ଏହି ଅତିଶୟ ଗୋପନୀୟ ବିଷୟ ଶୁଣ । ତୁମେ ମୋର ଭୃତ୍ୟ, ସୁହୃତ୍ ଏବଂ ସଖା । ତେଣୁ ଅତି ଗୋପନୀୟ ହେଲେ ମଧ୍ୟ ତୁମକୁ ଏହି ବିଷୟ ମୁଁ କହିବି ।।୪୯।।

## ଦ୍ୱାଦଶ ଅଧ୍ୟାୟ

## ସତ୍‌ସଙ୍ଗ

ସତ୍‌ସଙ୍ଗ ସମସ୍ତ ଆସକ୍ତିକୁ ଛେଦନ କରେ । ସତ୍‌ସଙ୍ଗ ହିଁ ମୋତେ ବଶୀଭୂତ କରେ । ଯୋଗ ନୁହେଁ, ସାଂଖ୍ୟ ନୁହେଁ, ଧର୍ମପାଳନ, ସ୍ୱାଧ୍ୟାୟ, ତ୍ୟାଗ-ତପସ୍ୟା, ଇଷ୍ଟାପୂର୍ତ୍ତ (ଅଗ୍ନିହୋତ୍ରାଦି ଇଷ୍ଟ ଏବଂ କୂପ, ପୁଷ୍କରିଣୀ ଖନନ ଆଦି ପୂର୍ତ୍ତ), ଦାନ-ଦକ୍ଷିଣା ଆଦି ନୁହେଁ, ବ୍ରତ, ଯଜ୍ଞ, ବେଦ, ତୀର୍ଥ, ଯମ-ନିୟମ ନୁହେଁ -- କେହି ସତ୍‌ସଙ୍ଗ ପରି ମୋତେ ବଶ କରିପାରେ ନାହିଁ ।।୧-୨।। ନିଷ୍ପାପ ଉଦ୍ଧବ, ଦୈତ୍ୟ, ରାକ୍ଷସ, ପଶୁ-ପକ୍ଷୀ, ଗଂଧର୍ବ, ଅପ୍‌ସରା, ନାଗ, ସିଦ୍ଧ, ଚାରଣ, ଗୁହ୍ୟକ, ବିଦ୍ୟାଧର, ମଣିଷମାନଙ୍କ ମଧ୍ୟରେ ବୈଶ୍ୟ, ଶୂଦ୍ର, ଅନ୍ତ୍ୟଜା ସ୍ତ୍ରୀ, ରଜୋଗୁଣ ଓ ତମୋଗୁଣ ପ୍ରକୃତିର ବହୁଲୋକ ସତ୍‌ସଙ୍ଗଦ୍ୱାରା ମୋର ପରମପଦ ଲାଭ କରିଛନ୍ତି । ବୃତ୍ରାସୁର, ପ୍ରହ୍ଲାଦ, ବୃଷପର୍ବା, ବଳି, ବାଣାସୁର, ମୟଦାନବ, ବିଭୀଷଣ, ସୁଗ୍ରୀବ, ହନୁମାନ, ଜାମ୍ବବାନ, ଗଜେନ୍ଦ୍ର, ଜଟାୟୁ, ତୁଳାଧାର ବୈଶ୍ୟ, ଧର୍ମବ୍ୟାଧ, କୁବ୍‌ଜା, ବ୍ରଜର ଗୋପୀମାନେ, ଯଜ୍ଞଦୀକ୍ଷିତ ବ୍ରାହ୍ମଣ ପତ୍ନୀ (ବ୍ରଜରେ) ତଥା ଅନ୍ୟମାନେ ସତ୍‌ସଂଗର ପ୍ରଭାବରେ ମୋତେ ଲାଭକରିଛନ୍ତି ।।୩-୬।। ଏମାନେ କେହି ବେଦ ପଢ଼ି ନ ଥିଲେ । ମହାପୁରୁଷଙ୍କ ଉପାସନା କରି ନ ଥିଲେ । ବ୍ରତ ଧରି ନ ଥିଲେ ଏବଂ ତପସ୍ୟା ମଧ୍ୟ କରି ନ ଥିଲେ । କେବଳ ସତ୍‌ସଙ୍ଗର ପ୍ରଭାବରୁ ମୋତେ ପାଇଥିଲେ ।।୭।। କେବଳ ଭାବଦ୍ୱାରା ବ୍ରଜର ଗୋପୀମାନେ, ଧେନୁମାନେ, ଯମଳାର୍ଜୁନାଦି ବୃକ୍ଷମାନେ, ମୃଗଆଦି ପଶୁମାନେ, କାଳିୟ ଆଦି ନାଗମାନେ ଏବଂ ଅନ୍ୟ ମୂଢ଼ମତି ପ୍ରାଣୀମାନେ ମୋତେ ସହଜରେ ପାଇଥିଲେ, ଯାହାଙ୍କୁ ଯୋଗ, ସାଂଖ୍ୟ, ଦାନ, ବ୍ରତ, ତପସ୍ୟା, ଯଜ୍ଞ, ବେଦର ବ୍ୟାଖ୍ୟା, ସ୍ୱାଧ୍ୟାୟ ଓ ସନ୍ନ୍ୟାସ ଦ୍ୱାରା ଯତ୍ନବାନ୍ ବ୍ୟକ୍ତି ମଧ୍ୟ ପାଇବାକୁ ସମର୍ଥ ହୁଏ ନାହିଁ ।।୮-୯।। ଅକ୍ରୂର ବଳରାମଙ୍କ ସହିତ ମୋତେ ମଥୁରାକୁ ନେଇଗଲେ । ଗାଢ଼ ପ୍ରେମରେ ଗୋପୀମାନଙ୍କର ଚିତ୍ତ ମୋ'ଠାରେ ଏପରି ଅନୁରକ୍ତ ଥିଲା ଯେ, ସେମାନେ ମୋର ବିରହଜ୍ୱାଳାରେ ବ୍ୟାକୁଳ ହୋଇ ମୋ ବ୍ୟତୀତ ସୁଖପାଇଁ ଅନ୍ୟ କୌଣସି ବିଷୟକୁ ଦେଖି ପାରିଲେ ନାହିଁ ।।୧୦।। ଉଦ୍ଧବ, ମୁଁ ଗୋପୀମାନଙ୍କର ଏପରି ପ୍ରିୟତମ ଥିଲି ଯେ, ବୃନ୍ଦାବନରେ ମୋ ସହିତ ସେମାନେ ରାସଲୀଳା କଲାବେଳେ ଯେଉଁ ଯେଉଁ ରାତି ଗୁଡ଼ିକ କଟାଇଥିଲେ ସେଗୁଡ଼ିକ ସେମାନଙ୍କୁ କ୍ଷଣାର୍ଦ୍ଧ ପରି ଲାଗିଥିଲା । କିନ୍ତୁ ମୋ ବିନୁଁ ସେମାନଙ୍କର ସେହି ସେହି ରାତି ଏକ ଏକ କଳ୍ପ ସମାନ ହୋଇଗଲା ।।୧୧।।

ସମାଧି ଅବସ୍ଥାରେ ଯେପରି ମୁନିମାନେ ନିଜ ନାମ ଓ ରୂପକୁ ଭୁଲି ଯାଆନ୍ତି ଏବଂ ନଦୀମାନେ ସମୁଦ୍ରରେ ମିଶିଯାଇ ଯେପରି ନିଜର ନାମରୂପକୁ ହଜାଇଦିଅନ୍ତି, ସେହିପରି ମୋ ପ୍ରତି ଆସକ୍ତିଦ୍ୱାରା ବଦ୍ଧଚିତ୍ତା ଗୋପୀମାନେ ଓ ନିଜର ପତିପୁତ୍ରମାନଙ୍କୁ ନିଜଦେହକୁ ଏବଂ ଇହଲୋକ ଓ ପରଲୋକକୁ ଭୁଲିଗଲେ ।।୧୨।। ସହସ୍ର ସହସ୍ର ଅବଳା ମୋର ସ୍ୱରୂପକୁ ନ ବୁଝି ମୋତେ ଜାର ଭାବରେ ମୋ' ସହିତ ରମଣ କରୁଥିଲେ, କିନ୍ତୁ ସେହି ସତ୍‌ସଙ୍ଗଦ୍ୱାରା ସେମାନେ ଜାରବୁଦ୍ଧି ଥିବା ସତ୍ତ୍ୱେ ପରଂବ୍ରହ୍ମସ୍ୱରୂପ ମୋତେ ହିଁ ଲାଭକଲେ ।।୧୩।। ଉଦ୍ଧବ, ସେଥିପାଇଁ ଶ୍ରୁତି, ସ୍ମୃତି, (ବିଧି, ନିଷେଧ,) ପ୍ରବୃତ୍ତି, ନିବୃତ୍ତି, ଶ୍ରୁତ, ଶ୍ରୋତବ୍ୟ - ସବୁ ପରିତ୍ୟାଗ କରି ସର୍ବାତ୍ମଭାବେ କେବଳ ମୋତେ ଶରଣାପନ୍ନ ହୁଅ । ମୁଁ ହେଉଛି ସମସ୍ତ ଜୀବଙ୍କର ଆତ୍ମା ଓ ଏକମାତ୍ର ଆଶ୍ରୟସ୍ଥଳ । ମୋ' ଦ୍ୱାରା ତୁମର କୌଣସି ଆଡୁ ଭୟ ରହିବ ନାହିଁ ।।୧୪-୧୫।। ଉଦ୍ଧବ କହିଲେ, ହେ ଯୋଗେଶ୍ୱରଙ୍କ ଈଶ୍ୱର, ଆପଣଙ୍କ କଥା ଶୁଣି ମଧ୍ୟ ମୋର ଆତ୍ମବିଷୟକ ସଂଶୟ ଦୂର ହେଉ ନାହିଁ, ଯେଉଁ ସଂଶୟଦ୍ୱାରା ମୋର ମନ ଭ୍ରମି ହେଉଛି ।।୧୬।।

ଶ୍ରୀ ଭଗବାନ କହିଲେ, ଯେଉଁ ପରମାତ୍ମାଙ୍କ ଶରଣନେବା କଥା ତୁମକୁ ମୁଁ କହିଲି, ସେ ଜୀବରୂପେ ଜୀବଦେହରେ ଛ'ଟି ଆଧାର-ଚକ୍ରରେ ରହିଥାନ୍ତି । ସେ ହିଁ ପ୍ରାଣୀକୁ ଜୀବନ ଦାନ କରନ୍ତି । ଅନାହତ ନାଦରୂପକ ପ୍ରାଣପବନ ସହିତ ସେ ମୂଳାଧାର ଚକ୍ରରେ ପ୍ରବେଶ କରନ୍ତି, ଏହାପରେ ମଣିପୂର ଚକ୍ର(ନାଭିସ୍ଥଳ)କୁ ଆସି ମନୋମୟ ସୂକ୍ଷ୍ମ ରୂପ ଧାରଣ କରନ୍ତି । ତା'ପରେ କଣ୍ଠଦେଶରେ ଥିବା ବିଶୁଦ୍ଧନାମକ ଚକ୍ରରେ ପ୍ରବେଶ କରନ୍ତି । ତାପରେ ମୁଖକୁ ଆସି ହ୍ରସ୍ୱ, ଦୀର୍ଘ ଆଦି ମାତ୍ରା, ଉଦାତ୍ତ, ଅନୁଦାତ୍ତ ଆଦି ସ୍ୱର ଓ କ-ଖ ଆଦି ବର୍ଣ୍ଣରୂପକ ସ୍ଥୂଳ ବାଣୀ ରୂପରେ ପ୍ରକାଶିତ ହୁଅନ୍ତି । ପ୍ରଥମେ ଅଗ୍ନି ଯେପରି କାଷ୍ଠ ମଧ୍ୟରେ ଥିବା ଆକାଶ (ଶୂନ୍ୟସ୍ଥାନ)ରେ କେବଳ ଅତି ସୂକ୍ଷ୍ମତାପ ରୂପରେ ରହିଥାଏ, ତା'ପରେ କାଠ ସହିତ କାଠକୁ ଘଷିଲେ ମଧ୍ୟମ ଅବସ୍ଥାରେ ବାୟୁର ସଂଯୋଗରେ ତାହା ଯେପରି ସ୍ଥୂଳ ଅଗ୍ନିକଣା ରୂପରେ ପ୍ରକାଶ ପାଏ ଏବଂ ଶେଷ ଅବସ୍ଥାରେ ତହିଁରେ ଘିଅ ଢ଼ାଳା ହେଲେ ତାହା ଯେପରି ଅତିସ୍ଥୂଳ ପ୍ରବଳ ଆକାରରେ ବାହାରି ପଡ଼େ, ସେହିପରି ମୋର ଅଭିବ୍ୟକ୍ତି ଏହି ବେଦରୂପକ ବାଣୀ । ମୁହଁର କଥା, ହସ୍ତର କର୍ମ, ପାଦର ଗତି, ପାୟୁ ଓ ଉପସ୍ଥର ମଳମୂତ୍ରତ୍ୟାଗ, ନାସିକାର ଆଘ୍ରାଣ, ରସନାର ରସାସ୍ୱାଦନ, ଚକ୍ଷୁର ଦର୍ଶନ,ତ୍ୱକ୍‌ର ସ୍ପର୍ଶ, କର୍ଣ୍ଣର ଶ୍ରବଣ, ମନର ସଂକଳ୍ପ, ବୁଦ୍ଧିର ବିଜ୍ଞାନ, ଅହଙ୍କାରର ଅଭିମାନ--ଏସବୁହେଉଛି ମାୟାର ସୂତ୍ର ; ସତ୍ତ୍ୱ, ରଜ ଓ ତମର ବିକାରରୂପକ ମୋର ଅଭିବ୍ୟକ୍ତି ।।୧୭-୧୯।।

ବୃକ୍ଷର ବୀଜ ଯେପରି ଭୂମିରେ ପଡ଼ି ବହୁ ବୃକ୍ଷ ରୂପରେ ଅଙ୍କୁରିତ ହୁଏ, ସେହିପରି ତ୍ରିଗୁଣମୟ ସୃଷ୍ଟିର କାରଣ ଏହି ଏକ ଅନାଦି ଓ ଅବ୍ୟକ୍ତ ପୁରୁଷ କାଳକ୍ରମେ ନିଜର ମାୟାରେ ବହୁଧା ବିଭକ୍ତ ହୋଇ ବହୁରୂପରେ ପ୍ରକାଶିତ ହୁଅନ୍ତି ।।୨୦।। ତନ୍ତୁମାନଙ୍କ ମଧ୍ୟରେ ବୁଣା ହେବାକୁ ଯାଉଥିବା ବସ୍ତ୍ର ଯେପରି ଓତପ୍ରୋତ ଭାବରେ ରହିଥାଏ, ସେହିପରି ଏହି ବିଶ୍ୱ ଓତପ୍ରୋତ ଭାବରେ ଭଗବାନଙ୍କ ମଧ୍ୟରେ ରହିଥାଏ । ସେହି ଅନାଦି କର୍ମାତ୍ମକ ସଂସାର-ବୃକ୍ଷ ଭୋଗ ଓ ମୋକ୍ଷ ରୂପକ ଫଳ ଓ ପୁଷ୍ପ ପ୍ରସବ (ପ୍ରଦାନ) କରେ ।।୨୧।। ସେହି ସଂସାରତରୁର ଦୁଇଟି ବୀଜ -- ପାପ ଓ ପୁଣ୍ୟ । ଅପରିମିତ ବାସନା ହେଉଛି ତାର ଶହଶହ ଚେର, ମୂଳ । ସତ୍ତ୍ୱ, ରଜ ଓ ତମ -- ଏହି ତିନୋଟି ଗୁଣ ହେଉଛି ତାର ତିନୋଟି ଗଣ୍ଡି । କ୍ଷିତି ଆଦି ପଞ୍ଚମହାଭୂତ ତାର ପାଞ୍ଚଟି ସ୍କନ୍ଧ । ଶବ୍ଦ ଆଦି ପାଞ୍ଚଟି ବିଷୟ ହେଉଛି ପଞ୍ଚରସ । କର୍ମେନ୍ଦ୍ରିୟ, ଜ୍ଞାନେନ୍ଦ୍ରିୟ ଓ ମନ -- ଏହି ଏଗାରଟି ହେଉଛି ତାର ଶାଖା । ସେଠାରେ ଜୀବାତ୍ମା ଓ ପରମାତ୍ମା - ଏହି ପକ୍ଷୀ ଦୁଇଜଣ ବସା ନିର୍ମାଣ କରି ରହିଥାନ୍ତି । କଫ, ବାତ ଓ ପିତ୍ତ ହେଉଛି ଏହାର ତିନୋଟି ବକଳ । ସୁଖ ଓ ଦୁଃଖ ହେଉଛି ଏହାର ଦୁଇଟି ଫଳ । ଏହି ବୃକ୍ଷ ସୂର୍ଯ୍ୟମଣ୍ଡଳ ପର୍ଯ୍ୟନ୍ତ ବ୍ୟାପ୍ତ ହୋଇଥାଏ ।।୨୨।। ଗୃହସ୍ଥମାନେ ବହୁ ଫଳ ଲୋଭରେ ତାର ଦୁଃଖମୟ ଫଳକୁ ଭୋଗ କରିଥାନ୍ତି । କିନ୍ତୁ ପରମହଂସ ସନ୍ନ୍ୟାସୀମାନେ ତାର ସୁଖମୟ ଫଳଟିକୁ ଭୋଗକରନ୍ତି । ଯେ ପୂଜ୍ୟ ଗୁରୁଙ୍କଠାରୁ ଏହି ବହୁରୂପୀ ମାୟାମୟ ସଂସାରର ତତ୍ତ୍ୱକୁ

ଜାଣିଥାଏ, ସେ ପରମତତ୍ତ୍ୱକୁ ଲାଭ କରେ ।।୨୩।। ତେଣୁ ହେ ଉଦ୍ଧବ, ଧୀର ସ୍ଥିର ହୋଇ ଏକାନ୍ତ ଭକ୍ତିଭରେ ତୁମର ଗୁରୁଙ୍କର ସେବା କର ଏବଂ ସେହି ସେବାଲବ୍ଧ ତୀକ୍ଷ୍ଣଧାର ଜ୍ଞାନରୂପକ କୁଠାରରେ ନିଜର ଜୀବଭାବକୁ ଛେଦନକର । ତା'ପରେ ପରମାତ୍ମାଙ୍କୁ ଲାଭକରି ଏହି ସାଧନା--ରୂପକ ଅସ୍ତ୍ର (ଉପାୟ) ମାନଙ୍କୁ ଛାଡ଼ିଦିଅ ।।୨୪।।

## ତ୍ରୟୋଦଶ ଅଧ୍ୟାୟ

# ହଂସ ଗୀତି

ଭଗବାନ୍ ଶ୍ରୀକୃଷ୍ଣ କହିଲେ, ଉଦ୍ଧବ, ଏହି ତିନୋଟି ଗୁଣ ହେଉଛି ବୁଦ୍ଧିର, ଆତ୍ମାର ନୁହେଁ । ସତ୍ତ୍ୱଗୁଣଦ୍ୱାରା ରଜ ଓ ତମ ଗୁଣକୁ ଜୟ କରି ପୁଣି ସେହି ସତ୍ତ୍ୱଗୁଣଦ୍ୱାରା ସତ୍ତ୍ୱଗୁଣାତ୍ମକ ଦାନ ଆଦି ବୃତ୍ତିକୁ ଶାନ୍ତ କରାଯିବା ଦରକାର । ସତ୍ତ୍ୱଗୁଣ ବୃଦ୍ଧି ହେଲେ ମନୁଷ୍ୟର ମୋ'ଠାରେ ଭକ୍ତିରୂପକ ସ୍ୱଧର୍ମ ଜାତ ହୁଏ । ସର୍ବଦା ସାତ୍ତ୍ୱିକ ପଦାର୍ଥମାନଙ୍କୁ ସେବନ କରିବା ଦ୍ୱାରା ସତ୍ତ୍ୱଗୁଣର ବୃଦ୍ଧି ହୁଏ ଏବଂ ତଦ୍ଦ୍ୱାରା ମୋର ଭକ୍ତିରୂପକ ସ୍ୱଧର୍ମରେ ପ୍ରବୃତ୍ତି ଆସେ । ସତ୍ତ୍ୱ ଗୁଣର ବୃଦ୍ଧି ଯୋଗୁ ଯେଉଁ ଶ୍ରେଷ୍ଠ ଧର୍ମର ଉଦୟ ହୁଏ, ତଦ୍ଦ୍ୱାରା ରଜ ଗୁଣ ଓ ତମ ଗୁଣ ନଷ୍ଟ ହୋଇଯାଏ । ଏହି ଦୁଇଟି ଗୁଣ ଅଧର୍ମର ମୂଳ ହୋଇଥିବାଯୋଗୁଁ ସ୍ୱଧର୍ମର ମଧ୍ୟ ନାଶ ହୁଏ ।।୧-୩।। ଶାସ୍ତ୍ର, ଜଳ, ପ୍ରଜା, ଦେଶ, ସମୟ, କର୍ମ, ଜନ୍ମ, ଧ୍ୟାନ, ମନ୍ତ୍ର ଓ ସଂସ୍କାର -- ଏହି ଦଶଟି ବସ୍ତୁ ଯଦି ସାତ୍ତ୍ୱିକ ହୁଅନ୍ତି, ତାହାହେଲେ ସତ୍ତ୍ୱଗୁଣକୁ ବୃଦ୍ଧିକରନ୍ତି ।।୪।। ଏହି ଗୁଣମାନଙ୍କ ମଧ୍ୟରୁ ଜ୍ଞାନବୃଦ୍ଧମାନେ ଯେଉଁ ଗୁଣର ପ୍ରଶଂସା କରନ୍ତି, ତାହା ସାତ୍ତ୍ୱିକ ; ଯାହାର ନିନ୍ଦା କରନ୍ତି, ତାହା ତାମସିକ ଏବଂ ଯାହାର ଉପେକ୍ଷା କରନ୍ତି ତାହା ହେଉଛି ରାଜସିକ ।।୫।। ଯେପର୍ଯ୍ୟନ୍ତ ଆତ୍ମସାକ୍ଷାତ୍କାର ହୋଇ ନାହିଁ ଏବଂ ଏହି ସ୍ଥୁଳ ଓ ସୂକ୍ଷ୍ମ ଶରୀରର ଏବଂ ତାର କାରଣସ୍ୱରୂପ ତିନୋଟିଯାକ ଗୁଣର ଲୋପ ହୋଇନାହିଁ, ସେପର୍ଯ୍ୟନ୍ତ ସତ୍ତ୍ୱଗୁଣର ବୃଦ୍ଧିପାଇଁ ସାତ୍ତ୍ୱିକ ଶାସ୍ତ୍ର ଆଦିର ସେବା ବାଞ୍ଛନୀୟ । କାରଣ ତଦ୍ଦ୍ୱାରା ଧର୍ମର ଉଦୟ ହୁଏ ଏବଂ ଆତ୍ମତତ୍ତ୍ୱର ଜ୍ଞାନ ମିଳିଥାଏ ।।୬।। ଦୁଇଟି ବାଉଁଶ ଗଛର ସଂଘର୍ଷରୁ ଯେଉଁ ନିଆଁ ସୃଷ୍ଟି ହୁଏ, ତାହା ସମସ୍ତ ବଣକୁ ଜାଳି ସାରିବାପରେ ଶାନ୍ତ ହୋଇଥାଏ । ସତ୍ତ୍ୱ ଆଦି ଗୁଣର ବିକାରରୁ ଜାତ ଏହି ଦେହରେ ଜ୍ଞାନର ଉଦୟ ହେଲେ ତାହା ସେହିପରି ଜୀବର ଗୁଣମାନଙ୍କୁ ଜାଳି ଦେଇ ସ୍ୱୟଂ ଶାନ୍ତ ହୋଇଥାଏ ।।୭।।

ଉଦ୍ଧବ କହିଲେ, ହେ କୃଷ୍ଣ, ମନୁଷ୍ୟମାନେ ଜାଣନ୍ତି ଯେ ବିଷୟଭୋଗ ହେଉଛି ସମସ୍ତ ବିପତ୍ତିର ମୂଳ କାରଣ, ତଥାପି କୁକୁର, ଗଧ ଓ ଛେଳିଙ୍କ ପରି ତାଡ଼ନା ସହି ମଧ୍ୟ ମନୁଷ୍ୟ ବିଷୟଭୋଗରେ ଲାଗିଥାଏ, ଏହାର କାରଣ କଣ ? ।।୮।।

ଶ୍ରୀକୃଷ୍ଣ କହିଲେ, ଲୋକ ବିବେକକୁ ହରାଇଲେ ଦେହରେ ଅହଙ୍କାରର ମିଥ୍ୟାବୁଦ୍ଧି ଜାତ ହୁଏ ଏବଂ ମନ ସତ୍ତ୍ୱପ୍ରଧାନ ହେଲେ ମଧ୍ୟ ଘୋର ରଜୋଗୁଣ ଆଡ଼କୁ ଧାବିତ ହୁଏ ।।୯।। ରଜୋଗୁଣଯୁକ୍ତ ମନରେ ନାନା ସଂକଳ୍ପବିକଳ୍ପ ଜାତ ହୁଏ ଓ ବିଷୟଚିନ୍ତାରେ ମନ କାମର ବଶବର୍ତ୍ତୀ ହୋଇପଡ଼େ । ସେତେବେଳେ ଆଉ ଦୁଷ୍ଟମତି ଲୋକର ନିସ୍ତାର ନ ଥାଏ ।।୧୦।। ରଜୋଗୁଣର ବଳରେ ବିମୋହିତ ହୋଇ ସେ ନିଜର ଇନ୍ଦ୍ରିୟମାନଙ୍କୁ ବଶ କରିପା ରେନାହିଁ । ବିଷୟଭୋଗର ପରିଣାମ ଦୁଃଖମୟ ହେବ ବୋଲି ଜାଣି ମଧ୍ୟ କାମବଶରୁ ସେ ନାନା କର୍ମ କରି ଚାଲିଥାଏ ।।୧୧।। ବିଦ୍ୱାନ୍ ବ୍ୟକ୍ତିର ଚିତ୍ତ ବେଳେ ବେଳେ ରଜୋଗୁଣ ଓ ତମୋଗୁଣ ଦ୍ୱାରା ବିଚଳିତ ହେଲେ ମଧ୍ୟ ବିଷୟଭୋଗର ଦୋଷ କ'ଣ ତାହା ଜାଣିଥିବାରୁ ସେ ମନକୁ ସଂଯତ କରିନିଏ ଓ ବିଷୟ ପ୍ରତି ଆକୃଷ୍ଟ ହୁଏ ନାହିଁ ।।୧୨।। ନିରଳସ ସାଧକ ଅବିଚଳିତ ରହି ଆସନ ଓ ପ୍ରାଣାୟାମଦ୍ୱାରା ନିଜକୁ ସମ୍ପୂର୍ଣ୍ଣ ସଞ୍ଜତ ରଖି ଏବଂ ମୋ'ଠାରେ ତିନି ସନ୍ଧ୍ୟାରେ ମନୋନିବେଶ କରି ସମାହିତ ହେବା ଉଚିତ ।।୧୩।। ମୋର

ଶିଷ୍ୟ ସନକାଦି ଋଷିମାନେ ଏତିକି ମାତ୍ର ଯୋଗର ମାର୍ଗ ଦେଖାଇଛନ୍ତି । ତାହା ହେଉଛି ସବୁଆଡୁ ମନକୁ ଟାଣି ଆଣି କେବଳ ମୋଠାରେ ହିଁ ନିବିଷ୍ଟ କରିବ ॥୧୪॥

ଉଦ୍ଧବ କହିଲେ, କେଶବ, ଆପଣ ଯେଉଁରୂପରେ ଓ ଯେଉଁ ସମୟରେ ସନକାଦି ଋଷିମାନଙ୍କୁ ଯୋଗ ଶିକ୍ଷା ଦେଇଥିଲେ, ତାହା ମୁଁ ଜାଣିବାକୁ ଇଚ୍ଛା କରୁଛି ॥୧୫॥ ଭଗବାନ୍ ଶ୍ରୀକୃଷ୍ଣ କହିଲେ, ସନକାଦି ଋଷିମାନେ ହିରଣ୍ୟଗର୍ଭ ବ୍ରହ୍ମାଙ୍କର ମାନସପୁତ୍ର । ସେମାନେ ଥରେ ତାଙ୍କର ପିତାଙ୍କୁ ଯୋଗର ସୂକ୍ଷ୍ମସ୍ୱରୂପ ଓ ପରାକାଷ୍ଠା ବିଷୟରେ ପ୍ରଶ୍ନ କରିଥିଲେ ॥୧୬॥ ସନକାଦି ଋଷିମାନେ କହିଲେ, ଚିତ୍ତ ଗୁଣ(ବିଷୟଭୋଗ)ମାନଙ୍କ ମଧ୍ୟରେ ପ୍ରବେଶକରେ । ଗୁଣମାନେ ମଧ୍ୟ ଚିତ୍ତମଧ୍ୟରେ ପ୍ରବେଶ କରନ୍ତି । ଏଣୁ ସଂସାରକୁ ପାରିହେବାକୁ ଇଚ୍ଛା କରୁଥିବା ବ୍ୟକ୍ତି କିପରି ଏମାନଙ୍କୁ ପରସ୍ପରଠାରୁ ଅଲଗା କରିପାରିବ ? ॥୧୭॥ ଭଗବାନ୍ ଶ୍ରୀକୃଷ୍ଣ କହିଲେ, ପ୍ରାଣୀମାନଙ୍କର ସ୍ରଷ୍ଟା, ସ୍ୱୟଂଭୂ ଭଗବାନ୍ ବ୍ରହ୍ମା କିଛି ସମୟ ଧ୍ୟାନସ୍ଥ ହୋଇ ପ୍ରଶ୍ନର ବୀଜ ବା ମୂଳଟିକୁ ଜାଣିପାରିଲେ ନାହିଁ । କାରଣ କର୍ମଦ୍ୱାରା ତାଙ୍କର ଚିତ୍ତ ବିକ୍ଷିପ୍ତ ଥିଲା ॥୧୮॥ ପ୍ରଶ୍ନର ଉତ୍ତର ବା ଅଭିପ୍ରାୟ ଜାଣିବାପାଇଁ ସେ ମୋତେ ଧ୍ୟାନ କଲେ । ମୁଁ ଗୋଟିଏ ହଂସରୂପରେ ତାଙ୍କ ପାଖକୁ ଗଲି । ମୋତେ ଦେଖି ବ୍ରହ୍ମାଙ୍କୁ ଆଗରେ ରଖି ସନକାଦି ଋଷିମାନେ ମୋ ନିକଟକୁ ଆସି ମୋର ପାଦବନ୍ଦନା କରି, ଆପଣ କିଏ ବୋଲି ମୋତେ ପଚାରିଲେ ॥୧୯-୨୦॥ ତତ୍ତ୍ୱ ଜିଜ୍ଞାସୁ ମୁନିମାନେ ମୋତେ ଏପରି ପଚାରିବାରୁ ମୁଁ ସେମାନଙ୍କୁ ଯାହା କହିଥିଲି ହେ ଉଦ୍ଧବ, ତୁମେ ତାହା ସାବଧାନ ହୋଇ ଶୁଣ ॥୨୧॥

ମୁଁ କହିଲି, ହେ ବିପ୍ରଗଣ, ଆତ୍ମା ସମ୍ପର୍କରେ ଆପଣମାନଙ୍କର ଏହି ପ୍ରଶ୍ନ କେତେଦୂର ସଙ୍ଗତ ? ଯଦି ପରମାତ୍ମାଙ୍କ ମଧ୍ୟରେ ନାନାତ୍ୱ ନାହିଁ, ତା'ହେଲେ ମୁଁ କେଉଁ ଜାତିଗୁଣାଦି ବିଷୟକୁ ଆଶ୍ରୟକରି ଆପଣମାନଙ୍କୁ ଉତ୍ତର ଦେବି ? ବସ୍ତୁତଃ ପଞ୍ଚଭୂତ ଜୀବ ଏବଂ ପରମାତ୍ମା ହେଉଛନ୍ତି ସମାନ । ତେଣୁ 'ଆପଣ କିଏ' ବୋଲି ତୁମେମାନେ ଯେଉଁ ପ୍ରଶ୍ନ କଲ ତାହା ଏକ ନିରର୍ଥକ ପ୍ରଶ୍ନ ॥୨୨-୨୩॥ ମନ, ବାକ୍ୟ ଓ ଦୃଷ୍ଟିଦ୍ୱାରା ଏବଂ ଅନ୍ୟ ଇନ୍ଦ୍ରିୟମାନଙ୍କଦ୍ୱାରା ଯାହା ଗ୍ରହଣ କରାଯାଏ, ତାହା ହେଉଛି ଏକମାତ୍ର ମୁଁ । ମୋ'ଛଡ଼ା ଆଉ କିଛି ନାହିଁ; ତାହା ତୁମେ ତତ୍ତ୍ୱ ବିଚାରଦ୍ୱାରା ବୁଝିରଖ ॥୨୪॥ ବତ୍ସ, ଚିତ୍ତ ବିଷୟର ଆବେଗରେ ଓ ବିଷୟ ଚିତ୍ତର ଆବେଗରେ ରହେ । ଏଣୁ ଚିତ୍ତ ଓ ବିଷୟ ଉଭୟ ମୋର ସ୍ୱରୂପ ଜୀବର ଦେହମାତ୍ର । ବାରମ୍ବାର ବିଷୟ ସେବାର ଫଳରେ ଚିତ୍ତ ବିଷୟରେ ଆବିଷ୍ଟ ହୁଏ ଏବଂ ବିଷୟ ବାସନା ମଧ୍ୟ ଚିତ୍ତ ମଧ୍ୟରେ ପ୍ରବେଶ କରିଯାଏ । କିନ୍ତୁ ମୋର ଜପ ଓ ଧ୍ୟାନ କରୁଥିବା ଭକ୍ତ ଏ ଉଭୟଙ୍କୁ ପରିତ୍ୟାଗ କରିବା ଉଚିତ ॥୨୫-୨୬॥ ଜାଗରଣ, ସ୍ୱପ୍ନ ଓ ସୁଷୁପ୍ତି – ବୁଦ୍ଧିର ଏହି ତିନୋଟି ବୃତ୍ତି ସତ୍ତ୍ୱ ଆଦି ଗୁଣରୁ ଉତ୍ପନ୍ନ ହୋଇଥାଏ ଏବଂ ଜୀବ ସେହି ବୃତ୍ତିମାନଙ୍କର ସାକ୍ଷୀରୂପେ ଥାଏ । ତେଣୁ ଜୀବ ଯେ ସେମାନଙ୍କ ଠାରୁ ପୃଥକ୍, ତାହା ପ୍ରମାଣିତ ॥୨୭॥ ଯେଣୁ ବୁଦ୍ଧିବୃତ୍ତିଦ୍ୱାରା ଘଟୁଥିବା ଏହି ସଂସାର ବନ୍ଧନ ଆତ୍ମାକୁ ତ୍ରିଗୁଣମୟୀ ବୃତ୍ତି ପ୍ରଦାନ କରେ । ତେଣୁ ତିନୋଟି ଅବସ୍ଥା (ଜାଗ୍ରତ୍, ସ୍ୱପ୍ନ ଓ ସୁଷୁପ୍ତି)ରୁ ପୃଥକ୍ ତୁରୀୟ (ଚୈତନ୍ୟମୟ) ରୂପୀ ମୋ' ଠାରେ ମନୋନିବେଶ କରି ବୁଦ୍ଧିର ବନ୍ଧନକୁ ପରିତ୍ୟାଗ କରିବା । ତାହେଲେ ଚିତ୍ତ ଓ ବିଷୟ – ଉଭୟଙ୍କୁ ତ୍ୟାଗ କରାଯାଇପାରିବ ॥୨୮॥ ଏହି ବନ୍ଧନ ଅହଙ୍କାରକୃତ ଏବଂ ଆତ୍ମାର ଅନର୍ଥର ହେତୁ ବିଦ୍ୱାନ୍ ବ୍ୟକ୍ତି ଏହା ଦୁଃଖମୟ ବୋଲି ଜାଣି ମୋର ଚୈତନ୍ୟମୟ ତୁରୀୟ ସ୍ୱରୂପରେ ରହି ସଂସାରର ଚିନ୍ତାକୁ ତ୍ୟାଗକରିବା ଉଚିତ ॥୨୯॥ ଯେପର୍ଯ୍ୟନ୍ତ ବ୍ୟକ୍ତି ଯୁକ୍ତିଦ୍ୱାରା ନାନାପ୍ରକାର ବିଷୟବୁଦ୍ଧିରୁ ନିବୃତ୍ତ ନ ହୁଏ, ସେପର୍ଯ୍ୟନ୍ତ ସେହି ଅଜ୍ଞ ବ୍ୟକ୍ତି କର୍ମାଦିରେ ଜାଗ୍ରତ ଥିଲେ ମଧ୍ୟ ସୁପ୍ତ ହେବାପରି ରହିଥାଏ, ଯେପରିକି ସ୍ୱପ୍ନ ଅବସ୍ଥାରେ ନିଜକୁ ଜାଗ୍ରତ ବୋଲି ମନେକରେ ॥୩୦॥ ଆତ୍ମାଛଡ଼ା ଅନ୍ୟ ଦେହାଦି ଭାବମାନଙ୍କର କୌଣସି ସତ୍ତା ନ ଥାଏ । ତେଣୁ ଦେହାଦିଦ୍ୱାରା ବର୍ଣ୍ଣାଶ୍ରମ ଆଚରଣରୂପକ ଭେଦ, ସ୍ୱର୍ଗାଦି ଫଳ ଏବଂ ସେଥିପାଇଁ କରାଯାଉଥିବା କର୍ମସବୁ ଆତ୍ମାର ସମ୍ପର୍କରେ ସ୍ୱପ୍ନ ଦେଖିବା ପରି ମିଥ୍ୟା ॥୩୧॥ ଯେଉଁ ବ୍ୟକ୍ତି ଜାଗ୍ରତ ଅବସ୍ଥାରେ ବାହାରେ ଥିବା କ୍ଷଣଭଙ୍ଗୁର ବିଷୟମାନଙ୍କୁ ଇନ୍ଦ୍ରିୟମାନଙ୍କ ଦ୍ୱାରା ଉପଭୋଗ କରେ, ଏବଂ ସ୍ୱପ୍ନସମୟରେ

ହୃଦୟମଧ୍ୟରେ ସେହିପରି ଅସ୍ଥାୟୀ ବାସନାପୂର୍ଣ୍ଣ ବସ୍ତୁର ସେବାକରେ ଏବଂ ଯେ ସୁଷୁପ୍ତି ଅବସ୍ଥାରେ ବିଷୟଭୋଗରୁ ମୁକ୍ତ ରହେ, ସେ ହେଉଛି ଏକ ଆତ୍ମା । କାରଣ ସେ ସମସ୍ତ ଇନ୍ଦ୍ରିୟର ଅଧୀଶ୍ୱର ଏବଂ ଗୁଣବୃତ୍ତିମାନଙ୍କର ଦ୍ରଷ୍ଟା । ଆତ୍ମା ହେଉଛି ଜାଗ୍ରତ ଅବସ୍ଥାରେ ଇନ୍ଦ୍ରିୟମାନଙ୍କର, ସ୍ୱପ୍ନାବସ୍ଥାରେ ମନର ଓ ନିଦ୍ରାବସ୍ଥାରେ ବୁଦ୍ଧିର ସ୍ୱାମୀ ॥୩୨॥ ଏହିପରି ବିଚାରବୁଦ୍ଧି ଦ୍ୱାରା ସତ୍ତ୍ୱ ଆଦି ଗୁଣଯୋଗୁଁ ମନର ଯେଉଁ ତିନୋଟି ଅବସ୍ଥା ସୃଷ୍ଟି ହୁଏ, ତାହା ମୋର ସୃଷ୍ଟ ମାୟାଦ୍ୱାରା ମୋର ଅଂଶରୂପକ ଜୀବ ମଧ୍ୟରେ କଳ୍ପିତ ହୋଇଛି ବୋଲି ନିଶ୍ଚୟ କରି ସାଧୁମାନଙ୍କର ଉପଦେଶ ଓ ଜ୍ଞାନର ତୀକ୍ଷ୍ଣ ଖଡ୍ଗଦ୍ୱାରା ଅହଙ୍କାରକୁ ଛେଦନକର ଓ ହୃଦୟସ୍ଥ ମୋତେ ଭଜନକର ॥୩୩॥ ଏହି ଭ୍ରମାତ୍ମକ ଜଗତ ହେଉଛି ମନର ବିଳାସମାତ୍ର । ଦେଖିବା ମାତ୍ରେ ଏହା ନଷ୍ଟ ହୋଇଥାଏ । ଅଲାତଚକ୍ର (ବନାଟି) ପରି ଏହା ଚଳଚଞ୍ଚଳ । ଆତ୍ମା ହେଉଛି ଏକ, ବିଜ୍ଞାନମୟ । ତିନି ଗୁଣର ଦୋଷରୁ ଏହାର ବହୁ ପ୍ରକାର ଭେଦ ଦେଖାଯାଏ । ମାତ୍ର ତାହା ସ୍ୱପ୍ନ ପରି ମାୟାମୟ ॥୩୪॥ ଏଥିପାଇଁ ବାହ୍ୟ ଜଗତରୁ ଦୃଷ୍ଟି ଫେରାଇଆଣ । ତୃଷ୍ଣା ଛାଡ଼ି ନୀରବରେ ଆତ୍ମାନନ୍ଦ ଅନୁଭବ କର । ସମସ୍ତ ବିଷୟରୁ ନିଶ୍ଚେଷ୍ଟ ରହ । ଯଦି କେତେବେଳେ ପ୍ରାଣଧାରଣ ପାଇଁ ଆହାରାଦି ବ୍ୟାପାରରେ ଚେଷ୍ଟା କରିବାକୁ ପଡ଼େ, ଅକିଞ୍ଚିତ୍‌କର ବୋଲି ଭାବି ସେଥିରୁ ନିବୃତ୍ତ ହେବା ଉଚିତ । କାରଣ ତାହାଯୋଗୁଁ ଦେହପାତପର୍ଯ୍ୟନ୍ତ ଦେହର ଏହି ସଂସ୍କାର ସ୍ମୃତିରୂପରେ ରହିଥାଏ ॥୩୫॥ ମଦ୍ୟପାନରେ ଅନ୍ଧବ୍ୟକ୍ତି ତାର ପରିହିତ ବସ୍ତ୍ର ତା ଦେହରେ ଅଛି ନା ଖସି ପଡ଼ିଛି, ତାହା ଯେପରି ଜାଣିପାରେ ନାହିଁ, ସେହିପରି ସିଦ୍ଧଜ୍ଞାନୀ ବ୍ରହ୍ମସ୍ୱରୂପ ଲାଭ କରିଥିବାରୁ ବସିବା ଉଠିବା ଆଦି ଏହି ନଶ୍ୱର ଦେହର ସ୍ଥିତି ପ୍ରତି ଆଦୌ ଦୃଷ୍ଟି ଦିଏ ନାହିଁ । ପ୍ରାରବ୍ଧ କର୍ମ ଥିବା ପର୍ଯ୍ୟନ୍ତ ଏହି ଦେହ ଓ ପ୍ରାଣ ହେଉଛି ଦୈବର ଅଧୀନ । କିନ୍ତୁ ସମାଧି ଯୋଗରେ ରହିଲେ ପରମାର୍ଥ ଲାଭ ହୁଏ । ତାହାହେଲେ ସ୍ୱପ୍ନ ପରି ଇନ୍ଦ୍ରିୟଭୋଗରେ ଲିପ୍ତ ଏହି ଦେହକୁ ଆଉ ଭଜନ କରାଯାଏ ନାହିଁ ॥୩୬-୩୭॥

ବ୍ରାହ୍ମଣମାନେ, ମୁଁ ତୁମକୁ ଯେଉଁ ଗୋପନୀୟ ବିଷୟ କହିଲି ତାହା ହେଉଛି ସାଂଖ୍ୟ ଓ ଯୋଗର ବିଷୟ । ମୋତେ ଯଜ୍ଞପୁରୁଷ ଈଶ୍ୱର ବୋଲି ଜାଣ । ତୁମମାନଙ୍କୁ ତତ୍ତ୍ୱଜ୍ଞାନ ଦେବାର ଇଚ୍ଛାରେ ମୁଁ ଏଠାକୁ ଆସିଛି ॥୩୮॥ ଦ୍ୱିଜଶ୍ରେଷ୍ଠମାନେ, ମୁଁ ହେଉଛି ଯୋଗ, ସାଂଖ୍ୟ, ସତ୍ୟ, ଋତ, ତେଜ, ଶ୍ରୀ, କୀର୍ତ୍ତି ଓ ସଂଯମର ଶ୍ରେଷ୍ଠ ଆଶ୍ରୟସ୍ଥଳ ॥୩୯॥ ସବୁ ଗୁଣମାନେ ମୋତେ ଭଜନ କରନ୍ତି ; ମୁଁ କିନ୍ତୁ ନିର୍ଗୁଣ ଓ ନିରପେକ୍ଷ । ସାମ୍ୟ ଓ ଅନାସକ୍ତି ଆଦି ନିତ୍ୟ ଗୁଣସବୁ ମୋର ସେବା କରନ୍ତି । ମୁଁ ସମସ୍ତଙ୍କର ହିତୈଷୀ, ବନ୍ଧୁ, ପ୍ରିୟ ଓ ଆତ୍ମାସ୍ୱରୂପ ॥୪୦॥ ଏହିପରି ସନକାଦି ମୁନିମାନେ ମୋର ଉପଦେଶ-ବାକ୍ୟଦ୍ୱାରା ସଂଶୟଶୂନ୍ୟ ହୋଇ ପରମ ଭକ୍ତିର ସହିତ ମୋତେ ପୂଜା କରି ସମ୍ମିଳିତ ସ୍ତବଦ୍ୱାରା ମୋର ସ୍ତୁତି କରିବାକୁ ଲାଗିଲେ ॥୪୧॥ ସେହି ମୁନିମାନଙ୍କର ଉତ୍ତମ ପୂଜା ଓ ସ୍ତୁତିପରେ ବ୍ରହ୍ମା ଚାହୁଁ ଚାହୁଁ ମୁଁ ଅନ୍ତର୍ଦ୍ଧାନ ହୋଇଯାଇ ମୋର ବୈକୁଣ୍ଠଧାମକୁ ଫେରିଗଲି ॥୪୨॥

## ଚତୁର୍ଦ୍ଦଶ ଅଧ୍ୟାୟ

# ଭକ୍ତିଯୋଗ ଓ ଧ୍ୟାନବିଧି

ଉଦ୍ଧବ ପଚାରିଲେ, ଶ୍ରୀକୃଷ୍ଣ, ବ୍ରହ୍ମବାଦୀମାନେ ମନୁଷ୍ୟର କଲ୍ୟାଣପାଇଁ ବହୁପ୍ରକାର ସାଧନାର ଉପଦେଶ ଦିଅନ୍ତି । ତା’ ମଧ୍ୟରୁ କେଉଁ ଗୋଟିକ ପ୍ରଧାନ ନା ପ୍ରତ୍ୟେକେ ନିଜେ ନିଜେ ପ୍ରଧାନ ? ॥୧॥ ପ୍ରଭୁ,ଯାହାଦ୍ୱାରା ସବୁଆଡୁ ଆସକ୍ତି ତ୍ୟାଗ କରି ତୁମଠାରେ ମନ ଆବିଷ୍ଟ ହୁଏ, ସେହି ଅହୈତୁକ ଭକ୍ତିଯୋଗକୁ ଆପଣ କହିଛନ୍ତି ॥୨॥ ଶ୍ରୀ ଭଗବାନ୍ କହିଲେ, ବେଦସଂଜ୍ଞକ ମୋର ଏହି ବାଣୀ ପ୍ରଳୟକାଳରେ ନଷ୍ଟ ହୋଇଯାଇଥିଲା । ସୃଷ୍ଟିର ଆଦିରେ ମୁଁ ବ୍ରହ୍ମାଙ୍କୁ ଏହି ବାଣୀ କହିଥିଲି ॥୩॥ ବ୍ରହ୍ମା

ନିଜର ଜ୍ୟେଷ୍ଠ ପୁତ୍ର ସ୍ୱାୟଂଭୁବ ମନୁଙ୍କୁ ତାହା ଉପଦେଶ ଦେଲେ ଏବଂ ତାଙ୍କଠାରୁ ଭୃଗୁ, ଅଙ୍ଗିରା, ମରୀଚି, ପୁଲହ, ଅତ୍ରି, ପୁଲସ୍ତ୍ୟ ଏବଂ କ୍ରତୁ -- ଏହି ସାତ ଜଣ ପ୍ରଜାପତି ମହର୍ଷି ତାହା ଲାଭ କଲେ । ତାହାପରେ ପୁତ୍ରପରମ୍ପରାରେ ସେମାନଙ୍କଠାରୁ ଦେବ, ଦାନବ, ଗୁହ୍ୟକ, ମନୁଷ୍ୟ, ସିଦ୍ଧ, ଗନ୍ଧର୍ବ, ବିଦ୍ୟାଧର, ଚାରଣ, କିଂଦେବ, କିନ୍ନର, ନାଗ, ରାକ୍ଷସ, କିଂପୁରୁଷ ଆଦି ଏହି ଜ୍ଞାନ ଲାଭକଲେ । ସତ୍ତ୍ୱ, ରଜ ଓ ତମ ଗୁଣଜାତ ସେମାନଙ୍କର ସ୍ୱଭାବ ଭିନ୍ନ ଭିନ୍ନ ହେଲା ।।୪-୬।। ଏହି ବୈଷମ୍ୟଯୋଗୁଁ ଦେବାସୁର ମନୁଷ୍ୟାଦି ଭୂତମାନଙ୍କ ମଧ୍ୟରେ ଭେଦଭାବ ଦେଖାଯିବା ସଙ୍ଗେ ସଙ୍ଗେ ସେମାନଙ୍କ ମତିଗତି ମଧ୍ୟ ଭିନ୍ନ ହେଲା । ନିଜ ନିଜର ବାସନା ଅନୁସାରେ ସେମାନେ ବେଦବାଣୀର ବିଚିତ୍ର ବ୍ୟାଖ୍ୟାନ କଲେ । ଏହିପରି ପ୍ରକୃତିମାନଙ୍କ ବୈଚିତ୍ର୍ୟ ଯୋଗୁଁ ଲୋକମାନଙ୍କ ମତିରେ ଭେଦ ଦେଖାଗଲା । କେତେକ ପରମ୍ପରା ଅନୁଯାୟୀ ବେଦବିରୋଧୀ ପାଖଣ୍ଡ ମତକୁ ପୋଷଣ କଲେ ।।୭-୮।।

ପୁରୁଷଶ୍ରେଷ୍ଠ ଉଦ୍ଧବ, କେତେକଙ୍କର ବୁଦ୍ଧି ମୋ ମାୟାରେ ମୋହିତ ହୋଇଯାଏ । କର୍ମ ଅନୁସାରେ ଏବଂ ରୁଚି ଅନୁସାରେ ମଙ୍ଗଳପାଇଁ ବହୁବାଟ ଅଛି ବୋଲି ସେମାନେ କହନ୍ତି ।।୯।। ମୀମାଂସକମାନେ ଧନକୁ, କବିମାନେ ଯଶକୁ, କାମମାର୍ଗୀମାନେ(ବାତ୍ସାୟନ ଆଦି)କାମକୁ, ଯୋଗୀମାନେ ସତ୍ୟ, ସଂଯମ ଓ ଶାନ୍ତିକୁ, ଦଣ୍ଡନୀତିକାରମାନେ ଐଶ୍ୱର୍ଯ୍ୟକୁ, ତ୍ୟାଗକୁ ଏବଂ ଚାର୍ବାକପନ୍ଥୀମାନେ ଭୋଗକୁ ଶ୍ରେୟ ବୋଲି ମନେ କରନ୍ତି । କେତେକ ଲୋକ ଯଜ୍ଞ, ତପ, ଦାନ, ବ୍ରତ, ଯମ ନିୟମ ଆଦିକୁ ପ୍ରାଧାନ୍ୟ ଦିଅନ୍ତି । କିନ୍ତୁ ଏହି କର୍ମ ଫଳରେ ପରେ ଯେଉଁ ସ୍ୱର୍ଗ ଲୋକ ଆଦି ଲାଭହୁଏ, ତାହାର ଆରମ୍ଭ ଅଛି ଓ ଶେଷ ମଧ୍ୟ ଅଛି । ସେଥିରୁ ଭୋଗ ଆନନ୍ଦ ଖୁବ୍ କମ୍ ମିଳେ ଏବଂ ଭୋଗ ସମୟରେ ଅସୂୟା ଆଦି ଦୋଷ ଲାଗିରହେ । ଭୋଗ ଶେଷ ହୋଇଗଲେ ଏହା ଦୁଃଖମୟ ହୋଇଯାଏ ।।୧୦-୧୧।। ହେ ଉଦ୍ଧବ, ଯେଉଁ ବ୍ୟକ୍ତି କେଉଁଆଡୁ କିଛି ଫଳ ପ୍ରାପ୍ତିର ଆଶା ନ ରଖି ନିଜକୁ ମୋ'ଠାରେ ଅର୍ପଣ କରିଦେଇଥାଏ, ସେ ପରମାନନ୍ଦ ସ୍ୱରୂପ ମୋ' ଦ୍ୱାରା ଯେଉଁ ଆତ୍ମାନନ୍ଦ ଲାଭ କରେ, ତାହା ବିଷୟପ୍ରତି ଆସକ୍ତ ଲୋକଙ୍କୁ ମିଳିବ କିପରି ? ।।୧୨।। ଯେଉଁ ବ୍ୟକ୍ତି ଅକିଞ୍ଚନ, ଜିତେନ୍ଦ୍ରିୟ, ଶାନ୍ତ, ସମଦର୍ଶୀ ଏବଂ ମୋର ଅନୁଗ୍ରହଦ୍ୱାରା ସନ୍ତୁଷ୍ଟମନା, ଚତୁର୍ଦିଗ ତା ପାଇଁ ସୁଖମୟ ହୋଇଥାଏ । ଯେ ମୋଠାରେ ନିଜକୁ ଅର୍ପଣ କରିଥାଏ, ସେ ମୋ ଛଡା ଅନ୍ୟ କୌଣସି ବସ୍ତୁକୁ ଇଚ୍ଛା କରେ ନାହିଁ, ବ୍ରହ୍ମାଙ୍କର ପଦବୀରେ ବା ଇନ୍ଦ୍ରପଦରେ ତାର ଶ୍ରଦ୍ଧା ନ ଥାଏ, ସେ ସମଗ୍ର ପୃଥିବୀର ଏକଛତ୍ର ଅଧିକାର ଚାହେ ନାହିଁ । ସେ ରସାତଳର ଆଧିପତ୍ୟ ଚାହେ ନାହିଁ । ଯୋଗର ସିଦ୍ଧିମାନଙ୍କୁ ଏପରିକି ମୋକ୍ଷକୁ ମଧ୍ୟ ସେ ଇଚ୍ଛା କରେ ନାହିଁ ।।୧୩-୧୪।। ଉଦ୍ଧବ, ତୁମେ ମୋର ଯେପରି ପ୍ରିୟ, ବ୍ରହ୍ମା, ଶଙ୍କର, ବଳରାମ, ଲକ୍ଷ୍ମୀ ଏପରିକି ମୋର ଦେହ ମଧ୍ୟ ମୋ'ପାଇଁ ସେପରି ପ୍ରିୟ ନୁହେଁ । ଯେଉଁ ବ୍ୟକ୍ତିର କିଛି ଅପେକ୍ଷା ନ ଥାଏ, ଯେ ସମସ୍ତଙ୍କୁ ସମାନ ଦୃଷ୍ଟିରେ ଦେଖେ, କାହାରିପ୍ରତି ଶତ୍ରୁତା ନଥାଏ, ସେହି ଶାନ୍ତଚେତା ମୁନିଙ୍କର ପଛେ ପଛେ ମୁଁ ରହିଥାଏ ଯେପରିକି ତାଙ୍କରି ପଦଧୂଳି ମୋ ଉପରେ ପଡ଼ିଲେ ମୁଁ ପବିତ୍ର ହୋଇଯିବି ।।୧୫-୧୬।। ଯେଉଁମାନେ ଅକିଞ୍ଚନ, ମୋ'ପ୍ରତି ଯାହାଙ୍କ ଚିତ୍ତ ଅନୁରକ୍ତ, ଯେ ନିରଭିମାନ, ଶାନ୍ତଚିତ୍ତ, ସମସ୍ତ ପ୍ରାଣୀଙ୍କପ୍ରତି ଶ୍ରଦ୍ଧାଶୀଳ, ଯେଉଁମାନଙ୍କର ବୁଦ୍ଧିକୁ କାମନା ସ୍ପର୍ଶ କରେ ନାହିଁ, ସେମାନେ ନିରପେକ୍ଷ ଲୋକଙ୍କ ଲଭ୍ୟ ଯେଉଁ ସୁଖ ଭୋଗକରନ୍ତି, ତାହା ଅନ୍ୟମାନେ ପାଆନ୍ତି ନାହିଁ ।।୧୭।। ମୋର ଯେଉଁ ଭକ୍ତ ଇନ୍ଦ୍ରିୟକୁ ଜୟ କରିନାହିଁ, ସେ ବିଷୟବାସନାଦ୍ୱାରା ବାରମ୍ବାର ଆକୃଷ୍ଟ ହେଉଥିଲେ ମଧ୍ୟ, ମୋ'ପ୍ରତି ତାର ପ୍ରବଳ ଭକ୍ତି ଥିବା ଯୋଗୁଁ ସେ ବିଷୟଦ୍ୱାରା ବଶୀଭୂତ ହୁଏ ନାହିଁ ।।୧୮।। ହେ ଉଦ୍ଧବ, ଯେପରି ପ୍ରବଳ ତେଜରେ ଜଳୁଥିବା ଅଗ୍ନି ସମସ୍ତ ଇନ୍ଧନକୁ ଭସ୍ମୀଭୂତ କରିଦିଏ, ସେହିପରି ମୋ'ଠାରେ ଭକ୍ତି ସମସ୍ତ ପାପକୁ ଜାଳି ଭସ୍ମ କରିଦିଏ ।।୧୯।। ଉଦ୍ଧବ, ଯୋଗସାଧନ, ସାଂଖ୍ୟଦର୍ଶନ, ଧର୍ମାନୁଷ୍ଠାନ, ସ୍ୱାଧ୍ୟାୟ, ତପ ବା ତ୍ୟାଗଦ୍ୱାରା ମୋତେ କେହି ସହଜରେ ପାଇ ପାରନ୍ତି ନାହିଁ ଯେପରି କି ଉଜ୍ଜ୍ୱଳ ନିର୍ମଳ ଭକ୍ତିଦ୍ୱାରା ପାଇପାରନ୍ତି ।।୨୦।। ସାଧୁମାନଙ୍କର ପ୍ରିୟଆତ୍ମାସ୍ୱରୂପ ମୋତେ ଅନନ୍ୟ ଭକ୍ତି ଓ

ଶ୍ରଦ୍ଧାଦ୍ୱାରା ଲାଭ କରାଯାଏ । ମୋର ଏକାନ୍ତ ଭକ୍ତି, କୁକୁରମାଂସଭୋଜୀ ଚାଣ୍ଡାଳମାନଙ୍କୁ ମଧ୍ୟ ଜନ୍ମଦୋଷରୁ ପବିତ୍ର କରେ । ଯେଉଁ ବ୍ୟକ୍ତିର ମୋଠାରେ ଭକ୍ତି ନ ଥାଏ, ସତ୍ୟ ଓ ଦୟାଯୁକ୍ତ ଧର୍ମ ଅଥବା ତପସ୍ୟାଯୁକ୍ତ ବିଦ୍ୟା ତାହାର ଆତ୍ମାକୁ ସମ୍ୟକ୍ ରୂପେ ପବିତ୍ର କରିପାରେ ନାହିଁ ।।୨୧-୨୨।। ମୋର ଭକ୍ତିଦ୍ୱାରା ଯଦି ଦେହ ରୋମାଞ୍ଚିତ ହେଉ ନାହିଁ, ହୃଦୟ ଦ୍ରବୀଭୂତ ହେଉ ନାହିଁ ଏବଂ ଚକ୍ଷୁଦ୍ୱୟରୁ ଆନନ୍ଦାଶ୍ରୁ ଝରୁ ନାହିଁ, ତେବେ ଭକ୍ତି ବିନା କିପରି ଚିତ୍ତଶୁଦ୍ଧି ହେବ ? ।।୨୩।। ଯେଉଁ ଭକ୍ତର ଚିତ୍ତ ଦ୍ରବୀଭୂତ ଏବଂ ବାଣୀ ଗଦ୍‌ଗଦ ହୋଇଯାଏ, ଯେ ବାରଂବାର କାନ୍ଦେ ଏବଂ କ୍ୱଚିତ୍ ହସେ, ଲଜ୍ଜା ତ୍ୟାଗ କରି ଉଚ୍ଚ ସ୍ୱରରେ ଗାଏ ଏବଂ ନାଚେ । ମୋର ଭକ୍ତିଯୁକ୍ତ ସେଇ ବ୍ୟକ୍ତି ସଂସାରକୁ ପବିତ୍ର କରିଥାଏ ।।୨୪।। ନିଆଁରେ ପୋଡ଼ାହେଲେ ସୁନା ଯେପରି ତାର ମଇଳା ଛାଡ଼ିଦିଏ ଏବଂ ଫୁକା ହେଲେ ନିଜ ରୂପ ପାଇ ଜକ୍ ଜକ୍ କରେ, ମୋ' ଭକ୍ତି ଯୋଗଦ୍ୱାରା ଜୀବାତ୍ମା ସେହିପରି ସମସ୍ତ କର୍ମବାସନା ତ୍ୟାଗକରି ମୋତେ ଭଜନ କରେ ।।୨୫।। ଆଖିରେ ଅଞ୍ଜନ ଲଗାଇଲେ ଯେପରି ତାହା ସୂକ୍ଷ୍ମ ବସ୍ତୁ ଦେଖିପାରେ, ସେହିପରି ମୋର ପବିତ୍ର ଗାଥା ଶ୍ରବଣ ଓ ଚର୍ଚ୍ଚାଦ୍ୱାରା ଯେତିକି ଯେତିକି ଚିତ୍ତ ଶୁଦ୍ଧ ହୁଏ, ସେତିକି ସେତିକି ସେ ସୂକ୍ଷ୍ମ ବସ୍ତୁ ବା ତତ୍ତ୍ୱଦର୍ଶନ କରିପାରେ ।।୨୬।। ଯେପରି ବିଷୟ ଚିନ୍ତାରେଥିବା ଲୋକର ମନ ବିଷୟରେ ହିଁ ଆସକ୍ତ ହୋଇପଡ଼େ, ସେହିପରି ମୋତେ ବାରମ୍ବାର ସ୍ମରଣ କରୁଥିବା ଲୋକର ଚିତ୍ତ ମୋ'ଠାରେ ହିଁ ଲୀନ ହୋଇଯାଏ ।।୨୭।। ଏଣୁ ମୋ'ଛଡ଼ା ଯାହାସବୁ ଅଛି, ତାହାର ଧ୍ୟାନ ସ୍ୱପ୍ନ ବା ମନର କଳ୍ପନାପରି ଅଳୀକ । ତେଣୁ ତାହା ଛାଡ଼ି ଦେଇ ମୋ ଭଜନଦ୍ୱାରା ମନକୁ ଶୁଦ୍ଧ କରି ମୋଠାରେ ସମାହିତ କର । ସ୍ତ୍ରୀମାନଙ୍କର ଓ ସ୍ତ୍ରୀପ୍ରତି ଆସକ୍ତ ଲୋକମାନଙ୍କର ସଙ୍ଗ ଦୂରରୁ ପରିତ୍ୟାଗ କରି ନିର୍ଭୟ ଓ ଧୀର ପୁରୁଷ ନିର୍ଜନ ସ୍ଥାନରେ ବସି ନିରଳସ ଭାବରେ ମୋତେ ଚିନ୍ତା କରିବା ଉଚିତ ।।୨୮-୨୯।। ସ୍ତ୍ରୀ-ସଙ୍ଗ ବା ସ୍ତ୍ରୀ-ସଙ୍ଗୀ ବ୍ୟକ୍ତିମାନଙ୍କ ସମ୍ପର୍କ ସଙ୍ଗରୁ ପୁରୁଷର ଯେପରି ଦୁଃଖ ଓ ବନ୍ଧନର କାରଣ ହୁଏ, ଅନ୍ୟ କୌଣସି ପ୍ରସଙ୍ଗରୁ ସେପରି ହୁଏ ନାହିଁ ।।୩୦।।

ଉଦ୍ଧବ କହିଲେ, କମଳନୟନ, ମୋକ୍ଷକାମୀ ବ୍ୟକ୍ତି କିପରି କେଉଁଭଳି ଆପଣଙ୍କୁ ଧ୍ୟାନ କରିବ, ସେ ବିଷୟରେ ମୋତେ ଆପଣ କହିବାହୁଅନ୍ତୁ ।।୩୧।। ଭଗବାନ୍ ଶ୍ରୀକୃଷ୍ଣ କହିଲେ, ସମତଳ ଆସନରେ ଦେହକୁ ସିଧାକରି ସୁଖରେ ବସିବ ଏବଂ ହାତ ଦୁଇଟିକୁ ନିଜର କୋଳରେ ରଖିବ । ନାସିକାର ଅଗ୍ରଭାଗକୁ ଦୃଷ୍ଟି ନିକ୍ଷେପ କରିବ; ଇଡ଼ାଦ୍ୱରା ପୂର୍ଣ୍ଣ ନିଃଶ୍ୱାସ ନେଇ ପିଙ୍ଗଳାଦ୍ୱାରା ସେହି ନିଃଶ୍ୱାସକୁ ଛାଡିବ । ପୁଣି ପିଙ୍ଗଳାଦ୍ୱାରା ବିପରୀତ ଭାବରେ ପୂରକ, କୁମ୍ଭକ ଓ ରେଚକଦ୍ୱାରା ବିପରୀତ ଭାବରେ ପୂର୍ଣ୍ଣ ନିଃଶ୍ୱାସ ନେଇ ଇଡ଼ାଦ୍ୱାରା ତାହା ପରିତ୍ୟାଗ କରିବ । ଏହିପରି ପ୍ରାଣାୟାମଦ୍ୱାରା ନାଡ଼ି ଶୋଧନ ହେବ । ଏହା ଦ୍ୱାରା ଧୀରେ ଧୀରେ ଇନ୍ଦ୍ରିୟମାନଙ୍କୁ ଜୟ କରିପାରିବ ।।୩୨-୩୩।। ପ୍ରାଣାୟାମ ହେଉଛି ଦୁଇ ପ୍ରକାର । ସଗର୍ଭ ଓ ଅଗର୍ଭ । ଶ୍ରେଷ୍ଠତ୍ୱ ଦୃଷ୍ଟିରୁ ସଗର୍ଭକୁ ଓଁକାରଗର୍ଭ କୁହାଯାଏ । କମଳନାଳ ତନ୍ତୁ ତୁଲ୍ୟ ସୂକ୍ଷ୍ମ ଓ ଅବିଚ୍ଛିନ୍ନ ଏହି ଓଁକାରକୁ ପ୍ରାଣଦ୍ୱାରା ମୂଳାଧାରରୁ ଆରମ୍ଭ କରି ମୂର୍ଦ୍ଧନୀ ପର୍ଯ୍ୟନ୍ତ ଦ୍ୱାଦଶ ଆଙ୍ଗୁଳ ଉର୍ଦ୍ଧ୍ୱକୁ ଆଣି ଘଣ୍ଟାନାଦ ତୁଲ୍ୟ ଏହାର ଉଦାତ୍ତ ସ୍ୱରକୁ ପୁଣି ପ୍ରଶ୍ୱାସଦ୍ୱାରା ହୃଦୟରେ ଧାରଣ କରିବ । ଏହି ଓଁକାର ସଂଯୁକ୍ତ ପ୍ରାଣାୟମକୁ ଦିନକୁ ଦଶ ଥର କରି ତିନିବେଳା ଅଭ୍ୟାସ କରିବ ଏବଂ ଗୋଟିଏ ମାସରେ ତୁମର ପ୍ରାଣବାୟୁକୁ ତୁମେ ନିଜର ବଶକୁ ଆଣିପାରିବ ।।୩୪-୩୫।। ତା'ପରେ ଅନ୍ତଃସ୍ଥ ହୃଦପଦ୍ମକୁ ଏକ ଓଲଟା ପଦ୍ମ ଫୁଲପରି ଚିନ୍ତା କରିବ, ଯାହାର ମୁହଁ ହେଉଛି ତଳକୁ ଓ ନାଡ଼ ହେଉଛି ଉପରକୁ । ଏହି କେଶରଯୁକ୍ତ ପଦ୍ମଫୁଲ ଉପରକୁ ଆଠଟି ପାଖୁଡ଼ା ମେଲାଇ ଫୁଟି ରହିଥାଏ ।।୩୬।। କେଶରମଧ୍ୟରେ ସୂର୍ଯ୍ୟ, ଚନ୍ଦ୍ର ଓ ଅଗ୍ନିକୁ ଉତ୍ତରୋତ୍ତର ନ୍ୟାସ କରିବ ଏବଂ ଅଗ୍ନିମଧ୍ୟରେ ମୋର ରୂପକୁ ସ୍ମରଣ କରିବ; ଫଳେ ସେହି ରୂପ ଧ୍ୟାନ ପାଇଁ ହିତକର ହେବ । ମୋର ସେହି ରୂପ ହେଉଛି ସୁଗଠିତ ଓ ପ୍ରଶାନ୍ତ । ମୁଖମଣ୍ଡଳ ସୁନ୍ଦର ଏବଂ ଚାରୋଟିଯାକ ବାହୁ ହେଉଛି ଦୀର୍ଘ ଓ ସୁନ୍ଦର । ଗ୍ରୀବା ମନୋରମ । ସୁନ୍ଦର କପୋଳରେ ପବିତ୍ର ମଧୁର ହାସ୍ୟ, ସମାନ ଆକାରର ଦୁଇଟିଯାକ କାନରେ ମକର

କୁଣ୍ଡଳ, ପୀତାମ୍ବର, ଶ୍ୟାମଘନ ରୂପ, ଶ୍ରୀବତ୍ସଲାଞ୍ଛନ, ଶଙ୍ଖ, ଚକ୍ର, ଗଦା, ପଦ୍ମ ଓ ବନମାଳାଦ୍ୱାରା ଭୂଷିତ, ପାଦରେ ଚମତ୍କାର ନୂପୁର ଏବଂ ବକ୍ଷରେ କୌସ୍ତୁଭର ଆଭା, ଜ୍ୟୋତିର୍ମୟ କିରୀଟ, କଙ୍କଣ, କଟିସୂତ୍ର ଓ ବାଜୁବନ୍ଧ -- ସର୍ବାଙ୍ଗସୁନ୍ଦର ଏହି ରମଣୀୟ ଓ ସୁକୁମାର ରୂପକୁ ସର୍ବଦା ମନମଧ୍ୟରେ ରଖିବ ଏବଂ ଅନୁଭବ କରିପାରିବ ଯେ ମୋର ସୁନ୍ଦର ମୁଖ ଏବଂ ପ୍ରେମପୂର୍ଣ୍ଣ କଟାକ୍ଷ ଯେପରିକି ଆଶୀର୍ବାଦ ବର୍ଷା କରୁଛି ।।୩୭-୪୧।। ମନଦ୍ୱାରା ଇନ୍ଦ୍ରିୟମାନଙ୍କୁ ଇନ୍ଦ୍ରିୟବିଷୟରୁ ଆକର୍ଷଣ କରି ମନକୁ ବୁଦ୍ଧିରୂପକ ସାରଥିଦ୍ୱାରା ଧୀର ବ୍ୟକ୍ତି ସର୍ବତୋଭାବେ ମୋ'ଠାରେ ହିଁ ପ୍ରେମ କରିବ ।।୪୨।। ଚିତ୍ତ ହେଉଛି ସର୍ବବ୍ୟାପକ । ଏହା ଚାରିଆଡ଼କୁ ଧାଉଁଥାଏ, ଏହାକୁ ଟାଣିଆଣି ଗୋଟିଏ ଅଙ୍ଗରେ ଧାରଣ କରିବ; ପୁଣି ମୋର ସ୍ମିତହାସ୍ୟଯୁକ୍ତ ମୁଖମଣ୍ଡଳକୁ ହିଁ ଭାବନା କରିବ । ଅନ୍ୟାନ୍ୟ ଅଙ୍ଗମାନଙ୍କୁ ଚିନ୍ତା କରିବ ନାହିଁ ।।୪୩।। ମୋର ମୁଖମଣ୍ଡଳରେ ଏହିପରି ଚିତ୍ତ ସ୍ଥିର ହୋଇ ରହିବା ପରେ ତାହାକୁ ମୋର ନିରାକାର ସ୍ୱରୂପରେ ଧାରଣ କରିବ । ତା'ପରେ ମୋର ଶୁଦ୍ଧ ବ୍ରହ୍ମସ୍ୱରୂପକୁ ଲାଭ କରି ଆଉ କୌଣସି ଚିନ୍ତା କରିବନାହିଁ । ଏହିପରି ମନକୁ ସମାଧାନ କରିବାଦ୍ୱାରା ମୋତେ ନିଜ ଆତ୍ମାରେ ଏବଂ ସମସ୍ତଙ୍କ ଆତ୍ମାରେ ଦର୍ଶନ କରିବ, ଯେପରି ଗୋଟିଏ ଜ୍ୟୋତି ଅନ୍ୟ ଜ୍ୟୋତି ମଧ୍ୟରେ ମିଶିଯାଇଥାଏ ।।୪୪-୪୫।। ଯେଉଁ ଯୋଗୀ ଏହିପରି କଠୋର ଧ୍ୟାନଦ୍ୱାରା ମୋଠାରେ ମନକୁ ଯୁକ୍ତକରେ, ତାହାର ଦୃଶ୍ୟ, ଦ୍ରଷ୍ଟା ଓ ଦର୍ଶନଭ୍ରମ ଅଥବା ଦ୍ରବ୍ୟ, ଜ୍ଞାନ ଓ କ୍ରିୟାର ଭ୍ରମ ରହେ ନାହିଁ ।।୪୬।।

## ପଞ୍ଚଦଶ ଅଧ୍ୟାୟ

# ସିଦ୍ଧିମାନଙ୍କର ନାମ ଓ ଲକ୍ଷଣ

ଭଗବାନ୍ ଶ୍ରୀକୃଷ୍ଣ କହିଲେ, ସ୍ଥିରଚିତ୍ତ, ଜିତଶ୍ୱାସ ଓ ଜିତେନ୍ଦ୍ରିୟ ଯୋଗୀ ମୋଠାରେ ଚିତ୍ତକୁ ଧାରଣା କରି ସାଧନା କଲେ ସିଦ୍ଧିମାନେ ତା' ଆଗରେ ଆପେ ଆପେ ପହଞ୍ଚିଯାଆନ୍ତି ।।୧।। ଉଦ୍ଧବ କହିଲେ, ଅଚ୍ୟୁତ, ଆପଣ ହିଁ ଯୋଗୀମାନଙ୍କର ସିଦ୍ଧିଦାତା । ତେଣୁ ସିଦ୍ଧି କେତେ ପ୍ରକାର ? ଧାରଣା କେତେ ପ୍ରକାର ? ସିଦ୍ଧିମାନଙ୍କର ନାମ କଣ ଏବଂ କେଉଁ କେଉଁ ଧାରଣା କଲେ କି କି ସିଦ୍ଧି ମିଳିପାରେ, ଆପଣ ତାହା କହିବାହୁଅନ୍ତୁ ।।୨।।

ଭଗବାନ୍ କହିଲେ, ଉଦ୍ଧବ ଯୋଗରେ ପାରଙ୍ଗମ ଯୋଗୀମାନେ କହନ୍ତି ଯେ ସିଦ୍ଧି ହେଉଛି ଅଠର ପ୍ରକାର, ଧାରଣା ମଧ୍ୟ ଅଠର ପ୍ରକାର ଏବଂ ତା ମଧ୍ୟରୁ ଆଠଟି ସିଦ୍ଧି ମୋତେ ସ୍ୱଭାବତଃ ଆଶ୍ରୟ କରିରହିଥାନ୍ତି ଏବଂ ବାକୀ ଦଶଟି ସତ୍ତ୍ୱଗୁଣର ବିକାଶଯୋଗୁଁ ଘଟିଥାଏ ।।୩।। ତିନୋଟି ସିଦ୍ଧି ହେଉଛି ଶରୀରର - ଅଣିମା, ମହିମା ଓ ଲଘିମା । ଇନ୍ଦ୍ରିୟମାନଙ୍କର ସିଦ୍ଧି ହେଲା ପ୍ରାପ୍ତି । ଇହଲୋକ ଓ ପରଲୋକରେ ଯେତେ ଭୋଗ୍ୟ ବସ୍ତୁ ଅଛି, ଇଚ୍ଛା ଅନୁସାରେ ତାହା ଲାଭ କରିବାର ସିଦ୍ଧି ହେଉଛି- ପ୍ରାକାମ୍ୟ । ମାୟା ଏବଂ ତାହାର କାର୍ଯ୍ୟ ଚାଳନା କରିବାର ଯେଉଁ ସିଦ୍ଧି, ତାର ନାମ ହେଉଛି - ଈଶିତା । ବିଷୟପ୍ରତି ଅନାସକ୍ତିର ନାମ ହେଲା - ବଶିତା ଏବଂ ନିଜର ଈପ୍ସିତ ସୁଖର ଶେଷ ସୀମାରେ ପହଞ୍ଚିବାର ସିଦ୍ଧି ହେଉଛି - କାମାବସାୟିତା । ମୋ'ମତରେ ଏହା ହେଉଛି ମୋର ସ୍ୱାଭାବିକ ଅଷ୍ଟସିଦ୍ଧି ।।୪-୫।। ଏହାଛଡ଼ା ଅନ୍ୟ କେତେକ ସିଦ୍ଧି ହେଲା, ଶରୀରରେ କ୍ଷୁଧା, ତୃଷା ଆଦିର ପ୍ରଭାବ ନ ରହିବା, ବହୁଦୂରରେ ଥିବା ବସ୍ତୁକୁ ଦେଖିପାରିବା । ବହୁତ ଦୂରର କଥା ଶୁଣିପାରିବା । ମନରେ ଚିନ୍ତା କରିବା ମାତ୍ରେ ଯେ କୌଣସି ସ୍ଥାନରେ ପହଞ୍ଚିଯିବା, ଇଚ୍ଛା ଅନୁସାରେ ଯେକୌଣସି ରୂପ ଧାରଣକରିବା, ଅନ୍ୟର ଦେହରେ ପ୍ରବେଶ କରିବା (ପରକାୟାପ୍ରବେଶ), ଇଚ୍ଛାମୃତ୍ୟୁ, ଅପ୍‌ସରାମାନଙ୍କ ସହିତ ଦେବତାମାନଙ୍କର କ୍ରୀଡ଼ାକୁ ଦର୍ଶନ କରିବା, ନିଜର ସଙ୍କଳ୍ପର ସିଦ୍ଧି, ବିନା ବାଧାରେ ଯେ କୌଣସି ସ୍ଥାନରେ ପହଞ୍ଚିଯିବା, ଅମୋଘ ଆଦେଶ ଦେବାର ଅଧିକାର, ତ୍ରିକାଳଜ୍ଞାନ,

ଶୀତ ଓ ଉଷ୍ଣ ଆଦି ଅନୁଭବ ନ କରିବା, ଅଗ୍ନିସ୍ତମ୍ଭନ, ସୂର୍ଯ୍ୟସ୍ତମ୍ଭନ, ଜଳସ୍ତମ୍ଭନ, ବିଷସ୍ତମ୍ଭନ ଏବଂ କେଉଁଠି ପରାଜୟ ନ ଘଟିବା, ଏହିପରି ଅଷ୍ଟାଦଶ ସିଦ୍ଧି ଯୋଗୀମାନଙ୍କର ପ୍ରାପ୍ୟ ॥୬-୮॥ ଉଦ୍ଧବ, ଯୋଗଧାରଣାଦ୍ୱାରା ଯେଉଁସବୁ ସିଦ୍ଧିଲାଭ ହୁଏ, ତାହା ନାମାନୁସାରେ ମୁଁ ତୁମକୁ କହିଗଲି । କିନ୍ତୁ କେଉଁ କେଉଁ ଧାରଣାଦ୍ୱାରା କେଉଁ କେଉଁ ସିଦ୍ଧି ଲାଭ ହୁଏ, ତାହା ମୁଁ ତୁମକୁ କହୁଛି, ଶୁଣ ॥୯॥ ଉଦ୍ଧବ, ପଞ୍ଚଭୂତଙ୍କର ସୂକ୍ଷ୍ମତମ ମାତ୍ରା ହେଉଛି ମୋର ଶରୀର । ସେଥିରେ ତନ୍ମୟ ହୋଇ ସାଧକ ଯଦି ମୋର ଶରୀରକୁ ଉପାସନା କରେ ଓ ତା'ଛଡ଼ା ଅନ୍ୟ କୌଣସି ବସ୍ତୁକୁ ଚିନ୍ତା କରେ ନାହିଁ, ତାହେଲେ ସେ ଅଣିମା ନାମକ ସିଦ୍ଧିକୁ ଲାଭକରେ ॥୧୦॥ ଜ୍ଞାନଶକ୍ତିପ୍ରଧାନ ମହତତ୍ତ୍ୱ ମୋର ଉପାଧି ଏବଂ ଆକାଶାଦି ପଞ୍ଚଭୂତ ମୋର ଉପାଧି । ଯିଏ ମୋର ମହତତ୍ତ୍ୱ ଉପାଧିରେ ତନ୍ମୟ ହୋଇ ମୋ'ଠାରେ ତାର ମନୋନିବେଶ କରେ ସେ ମହିମା ନାମକ ସିଦ୍ଧି ଲାଭକରେ ଏବଂ ପୃଥକ୍ ପୃଥକ୍ ଭାବରେ ଆକାଶ, ବାୟୁ ଆଦି ପଞ୍ଚଭୂତ ଉପାଧିରେ ମନ ଲଗାଇଲେ, ସେହିମାନଙ୍କର ମହିମା ତାକୁ ପ୍ରାପ୍ତ ହୁଏ ॥୧୧॥ ପଞ୍ଚଭୂତଙ୍କର ପରମାଣୁ ହେଉଛନ୍ତି ମୋର ଉପାଧି । ମୋର ସେହି ପରମାଣୁ ଉପାଧିରେ ନିଜର ଚିତ୍ତକୁ ନିବେଶ କଲେ ଯେଉଁ ସିଦ୍ଧି ମିଳେ, ତାର ନାମ ହେଉଛି ଲଘିମା । ଏହା ହେଉଛି ପରମାଣୁରୂପ କାଳର ସମାନ ସୂକ୍ଷ୍ମବସ୍ତୁ ହେବାର ସାମର୍ଥ୍ୟ ॥୧୨॥ ଅହଙ୍କାରତତ୍ତ୍ୱ ହେଉଛି ମୋର ବୈକାରିକ ରୂପ । ସେହି ରୂପରେ ତନ୍ମୟ ହୋଇ ମନୋନିବେଶ କଲେ ସମସ୍ତ ଇନ୍ଦ୍ରିୟର ଅଧିଷ୍ଠାତା ଦେବତା ରୂପରେ ଯେଉଁ ସିଦ୍ଧି ଆସେ, ତାହାର ନାମ ହେଉଛି ପ୍ରାପ୍ତି । ମୋର ଜନ୍ମ ହେଉଛି ଅବ୍ୟକ୍ତ । କ୍ରିୟାଶକ୍ତି ପ୍ରଧାନ ମୋର ମହତତ୍ତ୍ୱରୂପକ ସୂତ୍ରକୁ ଯେ ମନ ମଧ୍ୟରେ ଧାରଣ କରେ, ସେ ମୋର ପ୍ରାକାମ୍ୟ ନାମକ ସିଦ୍ଧି ଲାଭକରେ । ବିଷ୍ଣୁ ହେଉଛନ୍ତି ତ୍ରିଗୁଣ ମାୟାର ନିୟନ୍ତା । ଏଣୁ ସେହି ରୂପରେ ଅନ୍ତର୍ଯାମୀ ବିଷ୍ଣୁଙ୍କୁ ଚିତ୍ତରେ ଧାରଣ କଲେ ଈଶିତା ନାମକ ଶକ୍ତି ଲାଭହୁଏ । ଏହା ହେଉଛି ଜୀବମାନଙ୍କୁ ସଶରୀରରେ ପ୍ରେରଣ କରିବାର ଶକ୍ତି ॥୧୩-୧୫॥

ଭଗବାନରୂପେ କଥିତ ମୁଁ ତୁରୀୟ ନାରାୟଣ ନାମରେ ଅଭିହିତ । ଯେଉଁ ଯୋଗୀ ମୋର ଏହି ବିରାଟ ସ୍ୱରୂପରେ ମନୋନିବେଶ କରେ, ସେ ମୋର ସ୍ୱାଭାବିକ ଗୁଣ ଲାଭକରି ବଶିତା ନାମକ ସିଦ୍ଧି ପ୍ରାପ୍ତହୁଏ ॥୧୬॥ ମୁଁ ହେଉଛି ନିର୍ଗୁଣ ବ୍ରହ୍ମ । ଯେ ନିଜର ନିର୍ମଳ ମନକୁ ମୋ'ଠାରେ ଧାରଣା କରେ, ସେ ପରମାନନ୍ଦରୂପକ କାମାବସାୟିତା ନାମକ ସିଦ୍ଧି ଲାଭ କରେ, ଯେଉଁଠି ତାହାର ସମସ୍ତ କାମନା ସମାପ୍ତ ହୋଇଥାଏ ॥୧୭॥ ଉଦ୍ଧବ, ମୁଁ ହେଉଛି ଶ୍ୱେତଦ୍ୱୀପର ଅଧିପତି; ଶୁଦ୍ଧ ଏବଂ ଧର୍ମମୟ । ଯେଉଁ ବ୍ୟକ୍ତି ମୋର ଏହି ରୂପରେ ଚିତ୍ତକୁ ଧାରଣ କରେ, ସେ ମୋର ଶୁଦ୍ଧ ରୂପକୁ ଲାଭକରେ ଏବଂ କ୍ଷୁଧା, ପିପାସା, ଜନ୍ମ, ମୃତ୍ୟୁ, ଶୋକ ଓ ମୋହ -- ଏ ଛ' ପ୍ରକାର ଦୁଃଖ (ଊର୍ମି)ରୁ ମୁକ୍ତ ହୋଇଯାଏ ॥୧୮॥ ମୁଁ ହେଉଛି ପ୍ରାଣସ୍ୱରୂପ ଆକାଶର ଆତ୍ମା । ଯେ ମୋର ଏହି ପ୍ରାଣ ସ୍ୱରୂପରେ ମନଦ୍ୱାରା ଅନାହତବାଦକୁ ଚିନ୍ତନ କରେ, ସେହି ଜୀବ (ହଂସ) ଦୂରଶ୍ରବଣ ନାମକ ସିଦ୍ଧି ଲାଭ କରେ, ଅର୍ଥାତ୍ ଆକାଶରେ ଅଭିବ୍ୟକ୍ତ ବିଭିନ୍ନ ପ୍ରାଣୀଙ୍କର ବିଚିତ୍ର କଥା ସବୁ ଶୁଣିପାରେ ॥୧୯॥ ଯେ ସୂର୍ଯ୍ୟଙ୍କଠାରେ ଚକ୍ଷୁକୁ ଏବଂ ଚକ୍ଷୁରେ ସୂର୍ଯ୍ୟଙ୍କୁ ସଂଯୋଜିତ କରି ସ୍ୱତଃ ମନଦ୍ୱାରା ମୋତେ ଧ୍ୟାନ କରିବାକୁ ଲାଗେ, ସେ ଦୂରଦର୍ଶନ ନାମକ ସିଦ୍ଧି ଲାଭକରେ, ଯଦ୍ଦ୍ୱାରା ସେ ସାରା ବିଶ୍ୱକୁ ଦୂରରୁ ଦେଖିପାରେ ॥୨୦॥ ଯେଉଁ ବ୍ୟକ୍ତି ମନ ଏବଂ ଦେହକୁ ପ୍ରାଣବାୟୁଦ୍ୱାରା ମୋ ସହିତ ସଂଯୋଜିତ କରେ ଏବଂ ମୋତେ ଧାରଣକରେ ଓ ଅନୁଭବ କରେ ସେ 'ମନୋଜବ' ନାମକ ସିଦ୍ଧି ଅର୍ଜନ କରେ । ଯଦ୍ଦ୍ୱାରା ସେ ଯୁଆଡ଼େ ଯିବାକୁ ଇଚ୍ଛା କରେ, ସେଆଡ଼େ ତା ଦେହ ତାକୁ ପହଞ୍ଚାଇଦିଏ ॥୨୧॥ ମନକୁ ଉପାଦାନ ରୂପେ କଳ୍ପନା କରି ସେ ଯେବେ ଯେଉଁ ଯେଉଁ ରୂପ ହେବାକୁ ଇଚ୍ଛାକରେ, ମୋ'ଠାରେମନକୁ ଧାରଣ କରିବା ଯୋଗୁଁ ସେ ସେହି ସେହି ରୂପ ଲାଭ କରିଥାଏ ॥୨୨॥ ସିଦ୍ଧ ଯୋଗୀ ଯେଉଁ ଶରୀରରେ ପ୍ରବେଶ (ପରକାୟା ପ୍ରବେଶ) କରିବାକୁ ଚାହେ, ମୁଁ ସେହି ଶରୀରରେ ଅଛି ବୋଲି ସେ ଚିନ୍ତା କରିବା ଉଚିତ । ଭ୍ରମର ଯେପରି ଗୋଟିଏ ଫୁଲରୁ ଅନ୍ୟ ଫୁଲକୁ ପ୍ରବେଶ କରେ, ସେହିପରି ତାର ନିଜ ଶରୀରକୁ ତ୍ୟାଗ କରି ଅନ୍ୟ ଶରୀରରେ ପ୍ରବେଶ କରିଥାଏ ॥୨୩॥

ଶରୀର ତ୍ୟାଗ କରିବାକୁ ହେଲେ ଯୋଗୀ ପ୍ରଥମେ ଗୋଇଠିଦ୍ୱାରା ମଳଦ୍ୱାରକୁ ଚାପିରଖି ପ୍ରାଣବାୟୁକୁ କ୍ରମଶଃ ହୃଦୟ, ବକ୍ଷ, କଣ୍ଠ ଓ ମସ୍ତକରେ ସ୍ଥାପନ କରି ତାପରେ ମୂର୍ଦ୍ଧା (ବ୍ରହ୍ମରନ୍ଧ୍ର) ଦ୍ୱାରଦେଇ ପ୍ରାଣବାୟୁକୁ ମନଦ୍ୱାରା ବ୍ରହ୍ମରେ ଲୀନ କରି ଶରୀର ତ୍ୟାଗ କରିବ ॥୨୪॥

ଯଦି ସେ ଦେବତାମାନଙ୍କ ଉଦ୍ୟାନରେ ବିହାର କରିବାକୁ ଇଚ୍ଛାକରିବ, ତା'ହେଲେ ସେ ମୋର ଶୁଦ୍ଧ ସତ୍ତ୍ୱମୟ ମୂର୍ତ୍ତିକୁ ଚିନ୍ତା କରିବ । ତାହେଲେ ସତ୍ତ୍ୱାଂଶଭୂତ ଦେବାଙ୍ଗନାମାନେ ବିମାନରେ ବସି ତା'ପାଖରେ ଆସି ପହଞ୍ଚିବେ ॥୨୫॥ ଅକାଳରେ ମଧ୍ୟ ଯେଉଁ ବ୍ୟକ୍ତି ମୋ' ପ୍ରତି ଏକାନ୍ତ ଅନୁଗତ ହୋଇ ମୋର ସତ୍ୟସଙ୍କଳ୍ପ ସ୍ୱରୂପରେ ମନୋନିବେଶ କରେ, ସେ ଯାହା ଇଚ୍ଛାକରେ, ତାହା ଲାଭକରିଥାଏ ॥୨୬॥ ମୁଁ ସର୍ବନିୟନ୍ତା ଓ ଈଶ୍ୱର -- ଯେ ଈଶିତା ଓ ବଶିତା (ନିୟନ୍ତ୍ରଣ ଶକ୍ତି ଓ ସ୍ୱତନ୍ତ୍ରତା)- ମୋର ଏହି ଦୁଇ ସିଦ୍ଧିକୁ ଲାଭକରେ, ସେ କୌଣସି ଶକ୍ତି ଦ୍ୱାରା ପ୍ରତିହତ ହୁଏ ନାହିଁ । ତାର ଆଜ୍ଞା ମୋ' ଆଜ୍ଞାପରି ଅଲଂଘ୍ୟ ହୋଇଯାଏ ॥୨୭॥ ମୋ' ପ୍ରତି ଏକାନ୍ତ ଭକ୍ତିଦ୍ୱାରା ଯୋଗୀର ହୃଦୟ ଶୁଦ୍ଧ ହୋଇଯାଏ । ତଦ୍ୱାରା ତା'ର ବୁଦ୍ଧି, ଜନ୍ମ, ମୃତ୍ୟୁ ଆଦି ଅଦୃଷ୍ଟ ବସ୍ତୁକୁ ଜାଣିପାରେ ଓ ସେ ତ୍ରିକାଳଦର୍ଶୀ ହୋଇଯାଏ ॥୨୮॥ ଯେପରି ଜଳ ଜଳଜନ୍ତୁମାନଙ୍କ ବିନାଶର କାରଣ ହୁଏ ନାହିଁ, ସେହିପରି ମୋ' ସହିତ ଯୁକ୍ତ ହୋଇଥିବା ଶାନ୍ତଚିତ୍ତ ଯୋଗୀର ଯୋଗମୟ ଶରୀରକୁ ଅଗ୍ନି, ଜଳ ଆଦି କୌଣସି ପଦାର୍ଥ ନଷ୍ଟ କରି ପାରନ୍ତି ନାହିଁ ॥୨୯॥ ଧ୍ୱଜ, ଛତ୍ର ଓ ଚାମର ବ୍ୟଜନ ସହ ଶଙ୍ଖ, ଚକ୍ର, ଗଦା, ଆଦି ଅସ୍ତ୍ର ଓ ଶ୍ରୀବତ୍ସ ଦ୍ୱାରା ବିଭୂଷିତ ମୋର ଅବତାରମାନଙ୍କୁ ଯେଉଁ ବ୍ୟକ୍ତି ସର୍ବତୋଭାବରେ ଧ୍ୟାନ କରେ, ସେ ଅପରାଜିତ ରହେ ॥୩୦॥ ଏହିପରି ପୃଥକ୍ ଯୋଗଧାରଣାମାନଙ୍କଦ୍ୱାରା ମୋତେ ଉପାସନା କରୁଥିବା ମୁନିର ପୂର୍ବକଥିତ ସିଦ୍ଧିମାନ ସ୍ୱୟଂ ପ୍ରାପ୍ତ ହୋଇଯାଏ ॥୩୧॥ ମୋର ଧାରଣାରେ ଅଭ୍ୟସ୍ତ, ସଂଯତମନା ଜିତେନ୍ଦ୍ରିୟ, ଜିତାତ୍ମା ଓ ପ୍ରାଣାୟାମଦ୍ୱାରା ନିଜର ଶ୍ୱାସକୁ ଜୟ କରିଥିବା ଯୋଗୀର ପାଇଁ କୌଣସି ସିଦ୍ଧି ଦୁର୍ଲଭ ନୁହେଁ ॥୩୨॥ ମୋତେ ପାଇବାକୁ ଇଚ୍ଛା କଲେ, ଉତ୍ତମ ଯୋଗଯୁକ୍ତ ପୁରୁଷପାଇଁ ଏହି ସିଦ୍ଧିମାନେ ଅନ୍ତରାୟ ହୁଅନ୍ତି ବୋଲି ଭକ୍ତି ଯୋଗରେ ଅଭିଜ୍ଞ ବିଦ୍ୱାନ୍‌ମାନେ ମତପୋଷଣ କରନ୍ତି । କାରଣ ଏଥିପାଇଁ ବୃଥା ସମୟ ବ୍ୟୟ ହୋଇଥାଏ ॥୩୩॥ ଇହଲୋକରେ ଜନ୍ମ, ଔଷଧି, ତପସ୍ୟା ଓ ମନ୍ତ୍ର ଦ୍ୱାରା ଯେଉଁସବୁ ସିଦ୍ଧି ମିଳେ, ତାହା ଯୋଗବଳରେ ଲାଭ କରାଯାଇପାରେ । କିନ୍ତୁ ଭକ୍ତିଯୋଗ ବିନା ମୋର ସାରୂପ୍ୟ ଓ ସାଲୋକ୍ୟ ଆଦି ଗତି ପ୍ରାପ୍ତ ହୁଏ ନାହିଁ । ବ୍ରହ୍ମବାଦୀମାନେ ଯୋଗ, ସାଂଖ୍ୟ ଓ ଧର୍ମ ଆଦି ବହୁପ୍ରକାର ସାଧନାର ଉପଦେଶ ଦେଇଥା'ନ୍ତି । ମୁଁ ହେଉଛି ଏହି ସମସ୍ତ ସାଧନା ଓ ସିଦ୍ଧିର କାରଣ ଏବଂ ସ୍ୱାମୀ ॥୩୪-୩୫॥ ପଞ୍ଚମହାଭୂତ ଯେପରି ଚତୁର୍ବିଧ ପ୍ରାଣୀମାନଙ୍କ ଭିତରେ ଏବଂ ବାହାରେ ରହିଥା'ନ୍ତି, ସେହିପରି ମୁଁ ସବୁ ଦେହୀମାନଙ୍କର ନିରାବରଣ ଆତ୍ମା ରୂପେ ସେମାନଙ୍କ ଭିତରେ ଓ ବାହାରେ ରହିଥାଏ ॥୩୬॥

## ଷୋଡ଼ଶ ଅଧ୍ୟାୟ

# ଭଗବାନଙ୍କର ବିଭୂତି

ଭଗବାନ, ଆପଣ ସ୍ୱୟଂ ପରଂବ୍ରହ୍ମ । ଆପଣଙ୍କର ଆଦି ନାହିଁ କି ଅନ୍ତ ନାହିଁ । ଆପଣଙ୍କର କୌଣସି ଆବରଣ ନାହିଁ । ଆପଣ ସକଳ ପ୍ରାଣୀଙ୍କର ଓ ପଦାର୍ଥମାନଙ୍କର ଉତ୍ପତ୍ତି, ସ୍ଥିତି, ରକ୍ଷା ଏବଂ ବିନାଶର କାରଣ । ଆପଣ ଉଚ୍ଚ, ନୀଚ ସମସ୍ତ ପ୍ରାଣୀଙ୍କ ମଧ୍ୟରେ ଅବସ୍ଥିତ । ଯେଉଁମାନେ ମନ ଓ ଇନ୍ଦ୍ରିୟକୁ ବଶ କରିନାହାନ୍ତି, ସେମାନେ ଆପଣଙ୍କୁ ଜାଣନ୍ତି ନାହିଁ । କେବଳ ବେଦର ତତ୍ତ୍ୱ ଜାଣିଥିବା ବିଦ୍ୱାନ୍‌ମାନେ ହିଁ ଆପଣଙ୍କର ଉପାସନା କରନ୍ତି । ବଡ଼ ବଡ଼ ଋଷିମାନେ କେଉଁ କେଉଁ

ଭାବରେ ଭକ୍ତିରେ ଆପଣଙ୍କୁ ଉପାସନା କରି ସିଦ୍ଧି ଲାଭକରନ୍ତି, ତାହା ଆପଣ ମୋତେ କହିବା ହୁଅନ୍ତୁ । ଆପଣ ସମସ୍ତଙ୍କର ରକ୍ଷାକର୍ତ୍ତା । ସମସ୍ତ ପ୍ରାଣୀଙ୍କର ଅନ୍ତର୍ଯାମୀ । ଆପଣ ଗୂଢ଼ ଭାବରେ ବିଚରଣ କରନ୍ତି । ମୋହଗ୍ରସ୍ତ ପ୍ରାଣୀମାନେ ଆପଣଙ୍କୁ ଦେଖି ପାରନ୍ତି ନାହିଁ, କିନ୍ତୁ ଆପଣ ସେମାନଙ୍କୁ ଦେଖନ୍ତି । ହେ ମହା ଐଶ୍ୱର୍ଯ୍ୟଶାଳି ! ପୃଥିବୀ, ସ୍ୱର୍ଗ, ପାତାଳ ଏବଂ ଦିଗ୍‌ବିଦିଗରେ ଆପଣଙ୍କର କୌଣସି ଶକ୍ତିଦ୍ୱାରା ଯେଉଁ ସବୁ ବିଭୂତି ସଂଯୋଜିତ ରହିଛି, ଆପଣ ମୋତେ ତାହା କୁହନ୍ତୁ । ସମସ୍ତ ତୀର୍ଥର ଆସ୍ପଦସ୍ୱରୂପ ଆପଣଙ୍କର ପାଦପଦ୍ମକୁ ମୁଁ ବନ୍ଦନା କରୁଛି ॥୧-୫॥ ଶ୍ରୀକୃଷ୍ଣ କହିଲେ, ଉଦ୍ଧବ, ଉତ୍ତମ ପ୍ରଶ୍ନ କରୁଥିବା ଲୋକଙ୍କ ମଧ୍ୟରେ ତୁମେ ଶ୍ରେଷ୍ଠ । କୁରୁକ୍ଷେତ୍ରରେ ଶତ୍ରୁମାନଙ୍କ ସହିତ ଯୁଦ୍ଧ କରିବାକୁ ଇଚ୍ଛୁକ ଅର୍ଜୁନ ମୋତେ ଏହି ପ୍ରଶ୍ନ କରିଥିଲେ ॥୬॥ ରାଜ୍ୟଲାଭପାଇଁ ଜ୍ଞାତିବଧ କରିବା ନିନ୍ଦନୀୟ ଓ ଧର୍ମବିରୁଦ୍ଧ ଏବଂ ଏମାନଙ୍କୁ ନିଧନ କଲେ ମୁଁ ହତ୍ୟାକାରୀ ହେବି -- ଏହି ପ୍ରକାର ଲୌକିକ ବୁଦ୍ଧିରେ ଅର୍ଜୁନ ଜ୍ଞାତିବଧରୁ ନିବୃତ୍ତ ହେଲେ ॥୭॥ କୁରୁକ୍ଷେତ୍ର-ରଣଭୂମିରେ ସେହି ପୁରୁଷବ୍ୟାଘ୍ର ଅର୍ଜୁନଙ୍କୁ ଯୁକ୍ତିଦ୍ୱାରା ବୁଝାଇ ସୁଝାଇ କହିବାପରେ ସେ ମୋତେ ଏହି ପ୍ରଶ୍ନ କରିଥିଲେ, ଯେପରି ତୁମେ ଏବେ ମୋତେ ପଚାରୁଛ ॥୮॥ ଉଦ୍ଧବ, ମୁଁ ଏଇ ପ୍ରାଣୀମାନଙ୍କର ଆତ୍ମା, ସୁହୃଦ୍ ଓ ଈଶ୍ୱର । ମୁଁ ସମସ୍ତ ପ୍ରାଣୀରୂପରେ ଅବସ୍ଥିତ ଏବଂ ସେମାନଙ୍କର ସୃଷ୍ଟି, ସ୍ଥିତି ଓ ବିନାଶର କାରଣ । ମୁଁ ହେଉଛି ଗତିଶୀଳମାନଙ୍କର ଗତି, ବଶକାରୀମାନଙ୍କର କାଳ । ମୁଁ ସତ୍ତ୍ୱାଦିଗୁଣମାନଙ୍କର ସାମ୍ୟାବସ୍ଥା ଅର୍ଥାତ୍ ପ୍ରକୃତି ଏବଂ ଗୁଣଯୁକ୍ତ ବସ୍ତୁରେ ସ୍ୱାଭାବିକ ଗୁଣ ॥୯-୧୦॥ ଗୁଣୀ ବା ଗୁଣଯୁକ୍ତ ବସ୍ତୁମାନଙ୍କରେ ମୁଁ ହେଉଛି ସୂତ୍ର (ପ୍ରଥମ କାର୍ଯ୍ୟ)। ମହତ୍ ପଦାର୍ଥମାନଙ୍କ ମଧ୍ୟରେ ମୁଁ ହେଉଛି ମହତ୍ତତ୍ତ୍ୱ । ସୂକ୍ଷ୍ମ ବସ୍ତୁଙ୍କ ମଧ୍ୟରେ ମୁଁ ହେଉଛି ଜୀବ ଏବଂ ଦୁର୍ଜ୍ଜୟମାନଙ୍କ ମଧ୍ୟରେ ମୁଁ ହେଉଛି ମନ ॥୧୧॥ ମୁଁ ହେଉଛି ବେଦମାନଙ୍କ ଅଧ୍ୟାପକ ବ୍ରହ୍ମା, ମନ୍ତ୍ରମାନଙ୍କ ମଧ୍ୟରେ ମୁଁ ତିନି ଅକ୍ଷରରୂପ ପ୍ରଣବ (ଓଁକାର) । ଅକ୍ଷରମାନଙ୍କ ମଧ୍ୟରେ ମୁଁ ହେଉଛି 'ଅ'କାର ଏବଂ ଛନ୍ଦମାନଙ୍କ ମଧ୍ୟରେ ତ୍ରିପଦା ଗାୟତ୍ରୀ ॥୧୨॥ ଦେବମାନଙ୍କ ମଧ୍ୟରେ ମୁଁ ଇନ୍ଦ୍ର, ବସୁମାନଙ୍କ ମଧ୍ୟରେ ଅଗ୍ନି, ଆଦିତ୍ୟମାନଙ୍କ ମଧ୍ୟରେ ବିଷ୍ଣୁ ଏବଂ ରୁଦ୍ରଗଣଙ୍କ ମଧ୍ୟରେ ନୀଳଲୋହିତ (ସଦାଶିବ) ॥୧୩॥ ବ୍ରହ୍ମର୍ଷିମାନଙ୍କ ମଧ୍ୟରେ ମୁଁ ଭୃଗୁ, ରାଜର୍ଷିମାନଙ୍କ ମଧ୍ୟରେ ମନୁ, ଦେବର୍ଷିମାନଙ୍କ ମଧ୍ୟରେ ନାରଦ ଏବଂ ଧେନୁମାନଙ୍କ ମଧ୍ୟରେ କାମଧେନୁ ॥୧୪॥ ସିଦ୍ଧେଶ୍ୱରମାନଙ୍କ ମଧ୍ୟରେ ମୁଁ କପିଳ । ପକ୍ଷୀମାନଙ୍କ ମଧ୍ୟରେ ଗରୁଡ଼, ପ୍ରଜାପତିମାନଙ୍କ ମଧ୍ୟରେ ଦକ୍ଷପ୍ରଜାପତି ଓ ପିତୃମାନଙ୍କମଧ୍ୟରେ ଅର୍ଯ୍ୟମା ॥୧୫॥ ଉଦ୍ଧବ, ଦୈତ୍ୟମାନଙ୍କମଧ୍ୟରେ ମୁଁ ଅସୁରଙ୍କ ଈଶ୍ୱର ପ୍ରହ୍ଲାଦ, ମୁଁ ନକ୍ଷତ୍ର ଓ ଓଷଧିମାନଙ୍କ ପ୍ରଭୁ ଚନ୍ଦ୍ର ଏବଂ ମୁଁ ଯକ୍ଷ-ରାକ୍ଷସଙ୍କ ପ୍ରଭୁ କୁବେର ବୋଲି ଜାଣିରଖ ॥୧୬॥ ଗଜେନ୍ଦ୍ରଙ୍କ ମଧ୍ୟରେ ମୁଁ ଐରାବତ, ଜଳଜନ୍ତୁଙ୍କ ମଧ୍ୟରେ ସେମାନଙ୍କ ସ୍ୱାମୀ ବରୁଣ, ତାପଦାତା ଜ୍ୟୋତିଷ୍ମାନଙ୍କ ମଧ୍ୟରେ ସୂର୍ଯ୍ୟ ଓ ମଣିଷଙ୍କ ମଧ୍ୟରେ ମୁଁ ରାଜା ଅଟେ ॥୧୭॥ ଅଶ୍ୱଙ୍କ ମଧ୍ୟରେ ମୁଁ ଉଚ୍ଚୈଃଶ୍ରବା, ଧାତୁଙ୍କ ମଧ୍ୟରେ ମୁଁ କାଞ୍ଚନ, ଦଣ୍ଡଧରଙ୍କ ମଧ୍ୟରେ ମୁଁ ଯମ ଓ ସର୍ପଙ୍କ ମଧ୍ୟରେ ବାସୁକି ॥୧୮॥ ନାଗେନ୍ଦ୍ରଙ୍କ ମଧ୍ୟରେ ମୁଁ ଅନନ୍ତ, ଶିଙ୍ଗ ଓ ଦାନ୍ତ ଥିବା ପଶୁଙ୍କ ମଧ୍ୟରେ ମୁଁ ସିଂହ, ଆଶ୍ରମଙ୍କ ମଧ୍ୟରେ ମୁଁ ସନ୍ନ୍ୟାସ ଓ ବର୍ଣ୍ଣଙ୍କ ମଧ୍ୟରେ ବ୍ରାହ୍ମଣ ॥୧୯॥ ନଦୀ ଓ ତୀର୍ଥଙ୍କ ମଧ୍ୟରେ ମୁଁ ଗଙ୍ଗା, ସ୍ଥିର ଜଳରାଶିମଧ୍ୟରେ ମୁଁ ସମୁଦ୍ର, ଆୟୁଧଙ୍କ ମଧ୍ୟରେ ମୁଁ ଧନୁ ଓ ଧନୁର୍ଦ୍ଧାରୀଙ୍କ ମଧ୍ୟରେ ମୁଁ ତ୍ରିପୁରାରି ମହାଦେବ ॥୨୦॥ ନିବାସସ୍ଥାନ ମଧ୍ୟରେ ମୁଁ ସୁମେରୁ, ଦୁର୍ଗମ ସ୍ଥାନ ମଧ୍ୟରେ ହିମାଳୟ, ବୃକ୍ଷଙ୍କ ମଧ୍ୟରେ ଅଶ୍ୱତ୍ଥ ଓ ଓଷଧିଙ୍କ ମଧ୍ୟରେ ମୁଁ ଯବ ॥୨୧॥ ପୁରୋଧାମାନଙ୍କ ମଧ୍ୟରେ ମୁଁ ବଶିଷ୍ଠ, ବେଦବେତ୍ତାଙ୍କ ମଧ୍ୟରେ ମୁଁ ବୃହସ୍ପତି, ସେନାପତିଙ୍କ ମଧ୍ୟରେ କାର୍ତ୍ତିକେୟ ଓ ସନ୍ମାର୍ଗପ୍ରବର୍ତ୍ତକଙ୍କ ମଧ୍ୟରେ ବ୍ରହ୍ମା ॥୨୨॥ ଯଜ୍ଞମାନଙ୍କ ମଧ୍ୟରେ ମୁଁ ବ୍ରହ୍ମଯଜ୍ଞ, ବ୍ରତମାନଙ୍କ ମଧ୍ୟରେ ମୁଁ ଅହିଂସା ବ୍ରତ ଏବଂ ଶୋଧକ ତଥା ମାର୍ଜନ, ତକ୍ଷଣ ଓ ଘର୍ଷଣାଦି ବସ୍ତୁମାନଙ୍କ ମଧ୍ୟରେ ମୁଁ ଶୋଧନକାରୀ ବାୟୁ, ଅଗ୍ନି, ଜଳ, ସୂର୍ଯ୍ୟ ଓ ବାକ୍ ରୂପରେ ବିଦ୍ୟମାନ ॥୨୩॥ ଅଷ୍ଟାଙ୍ଗ ଯୋଗ ମଧ୍ୟରେ ମୁଁ ହେଉଛି ଆତ୍ମସଂଯମ, ବିଜୟାଭିଳାଷୀ ବ୍ୟକ୍ତିମାନଙ୍କ ମଧ୍ୟରେ ମୁଁ ହେଉଛି ନୀତିଶାସ୍ତ୍ର, ବିବେକୀମାନଙ୍କ ମଧ୍ୟରେ ଆନ୍ୱୀକ୍ଷିକୀ ବିଦ୍ୟା(ଆତ୍ମ-

ଅନାତ୍ମ ବିଚାରର ବିଦ୍ୟା) ଖ୍ୟାତି ଓ ଅଖ୍ୟାତିର ବିଚାରକମାନଙ୍କ ମଧ୍ୟରେ ମୁଁ ହେଉଛି ବିକଳ୍ପ ।।୨୪।। ନାରୀଙ୍କ ମଧ୍ୟରେ ମୁଁ ଶତରୂପା, ପୁରୁଷଙ୍କ ମଧ୍ୟରେ ସ୍ୱାୟଂଭୁବ ମନୁ, ମୁନିଙ୍କ ମଧ୍ୟରେ ନରନାରାୟଣ ଓ ବ୍ରହ୍ମଚାରୀଙ୍କ ମଧ୍ୟରେ ସନତ୍‌କୁମାର । ଧର୍ମମାନଙ୍କ ମଧ୍ୟରେ ମୁଁ ସନ୍ନ୍ୟାସ (ପ୍ରାଣୀଙ୍କୁ ଅଭୟଦାନ), ଅଭୟସ୍ଥାନ ମଧ୍ୟରେ ମୁଁ ହେଉଛି ଅନ୍ତରର ନିଷ୍ଠା । ଗୋପନୀୟବ୍ୟାପାର ମଧ୍ୟରେ ମୁଁ ହେଉଛି ପ୍ରିୟ ବାକ୍ୟ ଓ ମୌନ । ମିଥୁନ (ପତି-ପତ୍ନୀ)ଙ୍କ ମଧ୍ୟରେ ମୁଁ ହେଉଛି ପ୍ରଜାପତି ବ୍ରହ୍ମା ।।୨୫-୨୬।। ଅପ୍ରମତ୍ତମାନଙ୍କ ମଧ୍ୟରେ ମୁଁ କାଳରୂପୀ ସମ୍ବତ୍ସର, ଋତୁମାନଙ୍କ ମଧ୍ୟରେ ବସନ୍ତ, ମାସମାନଙ୍କ ମଧ୍ୟରେ ମାର୍ଗଶିର ଓ ନକ୍ଷତ୍ରଙ୍କ ମଧ୍ୟରେ ଅଭିଜିତ୍ (ଉତ୍ତରାଷାଢ଼ାର ଚତୁର୍ଥ ପାଦ ଏବଂ ଶ୍ରବଣାର ପ୍ରଥମ ପାଦ) ।।୨୭।। ଯୁଗମାନଙ୍କ ମଧ୍ୟରେ ମୁଁ ସତ୍ୟଯୁଗ । ଧୀରମାନଙ୍କ ମଧ୍ୟରେ ମୁଁ ମହର୍ଷି ଅସିତ ଓ ଦେବଳ; ବ୍ୟାସମାନଙ୍କ ମଧ୍ୟରେ ମୁଁ କୃଷ୍ଣ ଦ୍ୱୈପାୟନ ଏବଂ ବିଦ୍ୱାନ୍‌ମାନଙ୍କ ମଧ୍ୟରେ ଆତ୍ମଜ୍ଞାନୀ ଶୁକ୍ରାଚାର୍ଯ୍ୟ ।।୨୮।। ଉତ୍ପତ୍ତି, ପ୍ରଳୟ, ପ୍ରାଣୀମାନଙ୍କର ଆଗତି ଓ ଗତି, ବିଦ୍ୟା ଓ ଅବିଦ୍ୟା -- ଏଇ ଛ'ଟି ବିଷୟ ଯେ ଜାଣନ୍ତି ସେ ହେଉଛନ୍ତି ଭଗବାନ୍ । ସେହିପରି ଭଗବାନ୍‌ଙ୍କ ମଧ୍ୟରେ ମୁଁ ହେଉଛି ବାସୁଦେବ । ଭକ୍ତମାନଙ୍କ ମଧ୍ୟରେ ମୁଁ ହେଉଛି ତୁମେ (ଅର୍ଥାତ୍ ଉଦ୍ଧବ), କିଂପୁରୁଷମାନଙ୍କ ମଧ୍ୟରେ ମୁଁ ହନୁମାନ ଓ ବିଦ୍ୟାଧରମାନଙ୍କ ମଧ୍ୟରେ ସୁଦର୍ଶନ ।।୨୯।। ରତ୍ନମାନଙ୍କ ମଧ୍ୟରେ ମୁଁ ପଦ୍ମରାଗ, ସୁନ୍ଦର ବସ୍ତୁଙ୍କ ମଧ୍ୟରେ ପଦ୍ମକୋଷ, ତୃଣମାନଙ୍କ ମଧ୍ୟରେ ମୁଁ କୁଶ ଓ ଘୃତମଧ୍ୟରେ ଗବ୍ୟ ଘୃତ ।।୩୦।।

ମୁଁ ହେଉଛି ବ୍ୟବସାୟୀଙ୍କ ମଧ୍ୟରେ ଥିବା ଲକ୍ଷ୍ମୀ (ଧନାଦି ସଂପଦ), ମୁଁ ଛଳକପଟୀଙ୍କର କପଟପାଶା, କ୍ଷମାଶୀଳମାନଙ୍କର କ୍ଷମା ଏବଂ ସାତ୍ତ୍ୱିକମାନଙ୍କର ସତ୍ତ୍ୱଗୁଣ ।।୩୧।। ବଳବନ୍ତମାନଙ୍କର ମୁଁ ଉତ୍ସାହ ଓ ପରାକ୍ରମ । ମୁଁ ଭକ୍ତମାନଙ୍କର ଭକ୍ତିକୃତ କର୍ମ ଏବଂ ଭକ୍ତମାନଙ୍କର ନବମୂର୍ତ୍ତି (ବାସୁଦେବ, ସଙ୍କର୍ଷଣ, ପ୍ରଦ୍ୟୁମ୍ନ, ଅନିରୁଦ୍ଧ, ନାରାୟଣ, ହୟଗ୍ରୀବ, ବରାହ, ନୃସିଂହ ଓ ବ୍ରହ୍ମା)ଙ୍କ ମଧ୍ୟରେ ମୁଁ ହେଉଛି ଶ୍ରେଷ୍ଠ ଆଦିମୂର୍ତ୍ତି ବାସୁଦେବ ।।୩୨।। ଗଂଧର୍ବଙ୍କ ମଧ୍ୟରେ ମୁଁ ବିଶ୍ୱାବସୁ ଏବଂ ଅପ୍ସରାଙ୍କ ମଧ୍ୟରେ ମୁଁ ପୂର୍ବଚିତ୍ତି । ମୁଁ ହେଉଚି ପର୍ବତଙ୍କ ସ୍ଥୈର୍ଯ୍ୟ ଏବଂ ପୃଥିବୀର ଅବିକୃତଗଂଧ । ମୁଁ ହେଉଛି ଜଳର ମଧୁର ରସ, ତେଜିଷ୍ଠଙ୍କ ମଧ୍ୟରେ ଅଗ୍ନି; ମୁଁ ସୂର୍ଯ୍ୟ, ଚନ୍ଦ୍ର ଓ ତାରାମାନଙ୍କର ପ୍ରଭା ଏବଂ ଆକାଶର ମହାଶବ୍ଦ ।।୩୩-୩୪।। ବ୍ରାହ୍ମଣଭକ୍ତମାନଙ୍କ ମଧ୍ୟରେ ମୁଁ ବଳି ଓ ବୀରମାନଙ୍କ ମଧ୍ୟରେ ଅର୍ଜୁନ । ମୁଁ ହେଉଛି ପ୍ରାଣୀମାନଙ୍କର ଉତ୍ପତ୍ତି, ସ୍ଥିତି ଓ ପ୍ରଳୟ । ମୁଁ ପଞ୍ଚ କର୍ମେନ୍ଦ୍ରିୟର ଗତି, ଉକ୍ତି, ତ୍ୟାଗ, ଗ୍ରହଣ ଓ ଆନନ୍ଦ, ଏବଂ ପଞ୍ଚଜ୍ଞାନେନ୍ଦ୍ରିୟର ଦର୍ଶନ, ସ୍ପର୍ଶନ, ଶ୍ରବଣ, ଆସ୍ୱାଦନ ଓ ଘ୍ରାଣ । ସମସ୍ତ ଇନ୍ଦ୍ରିୟଙ୍କର ମୁଁ ହେଉଛି ବିଷୟ ଗ୍ରହଣ ଶକ୍ତି ।।୩୫-୩୬।। ମୁଁ ହେଉଛି ସାତଟି ପ୍ରକୃତି ଓ ବିକୃତି ତତ୍ତ୍ୱ ଯଥା-- ଗନ୍ଧ, ରସ, ରୂପ, ସ୍ପର୍ଶ ଓ ଶବ୍ଦ ଏବଂ ଅହଙ୍କାର ଓ ମହତତ୍ତ୍ୱ । ମୁଁ ବିକାରସ୍ୱରୂପ ଷୋଳଟି ତତ୍ତ୍ୱ ଯଥା- ପଞ୍ଚମହାଭୂତ ଓ ଏକାଦଶ ଇନ୍ଦ୍ରିୟ । ମୁଁ ହେଉଛି ଜୀବ, ବ୍ରହ୍ମ, ଅବ୍ୟକ୍ତ ପ୍ରକୃତି, ସତ୍ତ୍ୱ, ରଜ ଓ ତମ ଗୁଣ ।।୩୭।। ମୁଁ ଏହି ତତ୍ତ୍ୱମାନଙ୍କର ଗଣନା, ଲକ୍ଷଣଦ୍ୱାରା ଏମାନଙ୍କ ଜ୍ଞାନ ଓ ତା'ର ତତ୍ତ୍ୱଜ୍ଞାନରୂପକ ଫଳ । ଈଶ୍ୱର-ଜୀବ, ଗୁଣ-ଗୁଣୀ ଓ କ୍ଷେତ୍ର-କ୍ଷେତ୍ରଜ୍ଞ ରୂପକ ଯେଉଁ ଦ୍ୱିବିଧ ଭାବ-- ଏସବୁ ହେଉଛି ମୁଁ; ମୋ ଛଡ଼ା ଅନ୍ୟ କୌଣସି ଭାବ ନାହିଁ ।।୩୮।। ମୁଁ ହିଁ ଦୀର୍ଘ କାଳ ଦ୍ୱାରା ପୃଥିବୀଆଦ ପରମାଣୁମାନଙ୍କର ଗଣନା କରି କହି ପାରିବି, କିନ୍ତୁ ମୋ' ଦ୍ୱାରା ସୃଷ୍ଟ କୋଟି କୋଟି ବ୍ରହ୍ମାଣ୍ଡର ବିଭୂତିମାନଙ୍କୁ ମୁଁ ଗଣିପାରିବି ନାହିଁ ।।୩୯।। ଯାହାଙ୍କଠାରେ ତେଜ, ଶ୍ରୀ, କୀର୍ତ୍ତି, ଐଶ୍ୱର୍ଯ୍ୟ, ଲଜ୍ଜା, ତ୍ୟାଗ, ସୌନ୍ଦର୍ଯ୍ୟ, ସୌଭାଗ୍ୟ, ବୀର୍ଯ୍ୟ, ତିତିକ୍ଷା ଓ ବିଜ୍ଞାନ ରହିଛି, ସେ ମୋର ବିଭୂତି ।।୪୦।। ମୁଁ ତୁମ ନିକଟରେ ମୋର ଏହି ବିଭୂତିସବୁ ସଂକ୍ଷେପରେ ବର୍ଣ୍ଣନା କଲି । ଏହାସବୁ କେବଳ ମନର ବିକାର; ପରମାର୍ଥ ନୁହେଁ ।।୪୧।। ଉଦ୍ଧବ, ବାଣୀ, ମନ, ପ୍ରାଣ ଓ ଇନ୍ଦ୍ରିୟଙ୍କୁ ସଂଯତ କର ଏବଂ ରାଜସିକ ଓ ତାମସିକ ବୁଦ୍ଧିକୁ ସାତ୍ତ୍ୱିକ ବୁଦ୍ଧିଦ୍ୱାରା ସଂଯତ କର । ତାହେଲେ ତୁମେ ପୁନର୍ବାର ଏହି ସଂସାରମାର୍ଗକୁ ଆସିବ ନାହିଁ । ଯେଉଁ ଯତି ବୁଦ୍ଧିଦ୍ୱାରା ବାଣୀ ଓ ମନକୁ ସମ୍ୟକ୍ ସଂଯତ କରିପାରେ ନାହିଁ, କଞ୍ଚାମାଟିର ଘଟରୁ ଯେପରି ଜଳ ବାହାରିପଡ଼େ,

ସେହିପରି ତାର ବ୍ରତ, ତପସ୍ୟା ଓ ଦାନ ବୃଥା ହୋଇଯାଏ ।।୪୨-୪୩।। ସେଥିପାଇଁ ମୁଁ ହିଁ ପରମ ଗତି ବୋଲି ବୁଝି ମୋ' ପ୍ରତି ଭକ୍ତିଯୁକ୍ତ ବୁଦ୍ଧିରେ ମନ, ବଚନ ଓ ପ୍ରାଣକୁ ସଂଯତ କରିବା ଉଚିତ । ଏହାଦ୍ୱାରା ଲୋକ କୃତକୃତ୍ୟ ହୁଏ ଓ ତାର ଆଉ କିଛି କରିବା ଆବଶ୍ୟକ ହୁଏ ନାହିଁ ।।୪୪।।

## ସପ୍ତଦଶ ଅଧ୍ୟାୟ

# ବର୍ଣ୍ଣାଶ୍ରମ ଧର୍ମ

ଉଦ୍ଧବ କହିଲେ, କମଳନୟନ, ଆପଣ ପୂର୍ବେ ବର୍ଣ୍ଣାଶ୍ରମ ଧର୍ମ ଆଚରଣ କରୁଥିବା ଓ କରୁ ନ ଥିବା ଲୋକଙ୍କର ଯଦ୍ୱାରା ଭକ୍ତି ଜାତ ହେବ, ସେହି ଧର୍ମର ବର୍ଣ୍ଣନା କରିଛନ୍ତି । ବର୍ତ୍ତମାନ କହନ୍ତୁ, କିପରି ନିଜ ସ୍ୱଧର୍ମ ଅନୁଷ୍ଠାନ କଲେ ମନୁଷ୍ୟମାନଙ୍କର ଆପଣଙ୍କଠାରେ ଭକ୍ତି ଜାତ ହେବ ।।୧-୨।। ହେ ପ୍ରଭୁ, ହେ ମହାବାହୁ, ହେ ମାଧବ ! ପୂର୍ବେ ଆପଣ ହଂସରୂପରେ ବ୍ରହ୍ମାଙ୍କୁ ସୁଖରୂପକ ପରମ ଧର୍ମ କହିଥିଲେ । ଅରିନ୍ଦମ, ବହୁକାଳ ବିତିଯିବା ପରେ ଆପଣଙ୍କର ସେହି ପୂର୍ବୋକ୍ତ ଧର୍ମ ମର୍ତ୍ତ୍ୟଲୋକରେ ଏବେ ଆଉ ବହୁଳ ଭାବେ ପ୍ରଚଳିତ ହେଉନାହିଁ ।।୩-୪।। ଅଚ୍ୟୁତ, ପୃଥିବୀରେ ଆପଣ ଏହି ଧର୍ମର ବକ୍ତା, କର୍ତ୍ତା ଓ ରକ୍ଷକ; ଆପଣଙ୍କ ଛଡ଼ା ଅନ୍ୟ କେହି ନାହାନ୍ତି । ଏପରିକି ବେଦାଦି ବିଦ୍ୟା ମୂର୍ତ୍ତିମତୀ ହୋଇଥିବା ବ୍ରହ୍ମାଙ୍କ ସଭାରେ ମଧ୍ୟ ଆଉ କେହି ନାହାନ୍ତି ।।୫।। ହେ ମଧୁସୂଦନ, ଏହି ଧର୍ମର କର୍ତ୍ତା, ପ୍ରବକ୍ତା ଓ ରକ୍ଷକ ଆପଣ ଏହି ପୃଥିବୀକୁ ଛାଡ଼ି ଚାଲିଗଲେ, ଏହି ଧର୍ମ ନଷ୍ଟ ହୋଇଯିବ । ଆଉ କିଏ ବା ତାକୁ ବୁଝାଇ କହିବ ? ।।୬।। ହେ ସର୍ବ ଧର୍ମଜ୍ଞ, ହେ ପ୍ରଭୁ, । ତେଣୁ ଆମ ମନୁଷ୍ୟମାନଙ୍କ ମଧ୍ୟରେ ଆପଣଙ୍କର ଭକ୍ତିଲକ୍ଷଣଯୁକ୍ତ ଧର୍ମ--ଯାହା' ପକ୍ଷରେ ଯେପରି ବିଧେୟ, ମୋ ଆଗରେ ତାହା ବର୍ଣ୍ଣନା କରନ୍ତୁ ।।୭।।

ଶ୍ରୀ ଶୁକଦେବ କହିଲେ, ନିଜ ଭୃତ୍ୟଙ୍କ ମଧ୍ୟରେ ମୁଖ୍ୟ ଉଦ୍ଧବ ଏହିପରି ପଚାରିବାରୁ ଭଗବାନ ଶ୍ରୀହରି ପ୍ରସନ୍ନ ହେଲେ ଓ ସଂସାରୀ ଲୋକଙ୍କର ମଙ୍ଗଳପାଇଁ ସନାତନ ଧର୍ମ କଥା ଏହିପରି କହିଚାଲିଲେ-- ।।୮।। ଶ୍ରୀ ଭଗବାନ୍ କହିଲେ, ଉଦ୍ଧବ, ବର୍ଣ୍ଣାଶ୍ରମ ଆଚରଣ କରୁଥିବା ବ୍ୟକ୍ତିମାନଙ୍କ ପାଇଁ ତୁମର ଏହି ଧର୍ମଯୁକ୍ତ ପ୍ରଶ୍ନ ଏକାନ୍ତ ମଙ୍ଗଳକର । ମୁଁ ତାହା କହୁଚି ମନ ଦେଇ ଶୁଣ ।।୯।। ପ୍ରଥମେ ସତ୍ୟ ଯୁଗରେ ମନୁଷ୍ୟ ବର୍ଣ 'ହଂସ' ନାମରେ ଖ୍ୟାତ ଥିଲା । ପ୍ରଜାମାନେ ଜନ୍ମଦ୍ୱାରା କୃତକୃତ୍ୟ ଥିଲେ । ସେଥିପାଇଁ ସେହି ଯୁଗକୁ କୃତଯୁଗ କହନ୍ତି ।।୧୦।। ପ୍ରଥମେ ପ୍ରଣବ ହିଁ ଥିଲା ବେଦ । ମୁଁ ଥିଲି ବୃଷଭରୂପଧାରୀ ଧର୍ମ । ନିଷ୍ପାପ ତପୋନିଷ୍ଠ ଲୋକମାନେ ମୋର ଶୁଦ୍ଧ ହଂସରୂପକୁ ଧ୍ୟାନ କରୁଥିଲେ ।।୧୧।। ମହାଭାଗ, ତା'ପରେ ତ୍ରେତାଯୁଗ ଆସିବାରୁ ମୋର ହୃଦୟରୁ ଶ୍ୱାସ ପ୍ରଶ୍ୱାସଦ୍ୱାରା ତ୍ରୟୀ (ଋକ୍,ସାମ ଓ ଯଜୁଃ ରୂପକ) ବିଦ୍ୟାର ଆବିର୍ଭାବ ହେଲା । ସେଇ ତ୍ରୟୀ ବିଦ୍ୟାରୁ ମୁଁ ହୋତା, ଅଧ୍ୱର୍ଯ୍ୟୁ ଓ ଉଦ୍‌ଗାତା ରୂପେ ଯଜ୍ଞ ହୋଇ ପ୍ରକାଶିତ ହେଲି ।।୧୨।। ବିରାଟପୁରୁଷରୂପକ ମୋର ମୁଖ, ବାହୁ, ଉରୁ ଓ ପାଦରୁ ଯଥାକ୍ରମେ ନିଜର ଆଚରଣ ଜ୍ଞାପକ ବ୍ରାହ୍ମଣ, କ୍ଷତ୍ରିୟ, ବୈଶ୍ୟ ଓ ଶୂଦ୍ର - ଏହି ଚାରି ବର୍ଣ୍ଣଙ୍କର ଜନ୍ମ ହେଲା । ମୋର ଜଙ୍ଘରୁ ଗୃହସ୍ଥାଶ୍ରମ, ହୃଦୟରୁ ବ୍ରହ୍ମଚର୍ଯ୍ୟ ଓ ବକ୍ଷରୁ ବାନପ୍ରସ୍ଥ ଆଶ୍ରମର ଉତ୍ପତ୍ତି ହେଲା ଏବଂ ସନ୍ନ୍ୟାସ ମୋର ମସ୍ତକରେ ରହିଥିଲା । ଉତ୍ପତ୍ତିସ୍ଥାନ ଅନୁସାରେ ବର୍ଣ୍ଣ ଏବଂ ଆଶ୍ରମ ଉଚ୍ଚ ନୀଚ ହେଲେ । ଅର୍ଥାତ୍ ନୀଚ ସ୍ଥାନରୁ ଜାତ ନୀଚ ଓ ଉତ୍ତମ ସ୍ଥାନରୁ ଜାତ ଉତ୍ତମ ହେଲେ-- ଏବଂ ମନୁଷ୍ୟମାନଙ୍କର ପୃଥକ୍ ପୃଥକ୍ ପ୍ରକୃତି ହେଲା ।।୧୩-୧୫।। ଶମ, ଦମ, ତପ, ଶୌଚ, ସନ୍ତୋଷ, କ୍ଷାନ୍ତି, ସରଳତା,

ଦୟା, ସତ୍ୟ ଓ ଭଗବତ୍ ଭକ୍ତି -ଏହା ସବୁ ହେଲା ବ୍ରାହ୍ମଣର ପ୍ରକୃତି ॥୧୬॥ ତେଜ, ବଳ, ଧୈର୍ଯ୍ୟ, ଶୌର୍ଯ୍ୟ, ତିତିକ୍ଷା, ଉଦାରତା, ଉଦ୍ୟମ, ସ୍ଥୈର୍ଯ୍ୟ, ବ୍ରାହ୍ମଣଙ୍କ ପ୍ରତି ଭକ୍ତି ଓ ଐଶ୍ୱର୍ଯ୍ୟ - ଏଗୁଡ଼ିକ ହେଲା କ୍ଷତ୍ରିୟର ପ୍ରକୃତି ॥୧୭॥ ଈଶ୍ୱରବିଶ୍ୱାସ, ଦାନଶୀଳତା, ଗର୍ବହୀନତା, ବ୍ରାହ୍ମଣଙ୍କର ସେବା, ଅର୍ଥବୃଦ୍ଧି ସତ୍ତ୍ୱେ ଅସନ୍ତୋଷ--ଏଗୁଡ଼ିକ ହେଉଛି ବୈଶ୍ୟର ପ୍ରକୃତି ॥୧୮॥ ନିଷ୍କପଟ ଭାବରେ ଦେବ ଓ ଗୋ-ବ୍ରାହ୍ମଣଙ୍କ ସେବା ଏବଂ ତହିଁରୁ ଯାହା କିଛି ପ୍ରାପ୍ୟ, ସେଥିରେ ସନ୍ତୁଷ୍ଟ ରହିବା ହେଉଛି ଶୂଦ୍ରର ପ୍ରକୃତି ॥୧୯॥ ଅଶୌଚ, ମିଥ୍ୟାଭାଷଣ, ଚୌର୍ଯ୍ୟ, ନାସ୍ତିକତା, ବୃଥା ବିବାଦ, କାମ, କ୍ରୋଧ ଓ ଲୋଭ - ଏସବୁ ହେଉଛି ଅନ୍ତ୍ୟଜ ଜାତିର ପ୍ରକୃତି ॥୨୦॥ ଅହିଂସା, ସଦାଚାର, ଚୋରି ନକରିବା, କାମ, କ୍ରୋଧ ଓ ଲୋଭକୁ ଛାଡ଼ିବା, ପ୍ରାଣୀଙ୍କର ହିତ ଓ ପ୍ରିୟ କରିବାର ଚେଷ୍ଟା -- ଏସବୁ ହେଉଛି ସର୍ବସାଧାରଣ ଧର୍ମ ॥୨୧॥

ବ୍ରାହ୍ମଣ, କ୍ଷତ୍ରିୟ ଓ ବୈଶ୍ୟ - ଏହି ତିନି ବର୍ଣ୍ଣର ଲୋକେ ଗର୍ଭାଧାନ ଆଦି ସଂସ୍କାର ସହ 'ଉପନୟନ' ନାମକ ଦ୍ୱିତୀୟ ଜନ୍ମ ଲାଭ କଲେ ସେମାନଙ୍କୁ ଦ୍ୱିଜ କୁହାଯାଏ । ତାପରେ ଗୁରୁ କୁଳରେ ବ୍ରହ୍ମଚର୍ଯ୍ୟ ବ୍ରତ ପାଳନପୂର୍ବକ ଗୁରୁଙ୍କର ଆହ୍ୱାନରେ ବେଦାଧ୍ୟୟନ କରିବା ଉଚିତ ॥୨୨॥ କୁଶନିର୍ମିତ ମେଖଳା, ମୃଗଚର୍ମ, ଦଣ୍ଡ, ରୁଦ୍ରାକ୍ଷମାଳା, ଯଜ୍ଞସୂତ୍ର, କମଣ୍ଡଳୁ ଓ ଶିରରେ ଜଟା ଧାରଣ କରି ଗୁରୁକୁଳରେ ବାସ କରିବ । ଦାନ୍ତ ବା ବସ୍ତ୍ର ଧୌତ କରିବ ନାହିଁ ଏବଂ ରକ୍ତବର୍ଣ୍ଣ ପିଢ଼ାରେ ବସିବ ନାହିଁ ॥୨୩॥ ସ୍ନାନ, ଭୋଜନ ଓ ହୋମ ସମୟରେ, ସନ୍ଧ୍ୟା ବନ୍ଦନ ଆଦି କାର୍ଯ୍ୟରେ ଏବଂ ମଳମୂତ୍ର ତ୍ୟାଗବେଳେ ମୌନ ରହିବ । ନଖ ବା ରୋମ ଛିଣ୍ଡାଇବ ନାହିଁ । କାଖରେ ବା ଲିଙ୍ଗ ପାଖରେ ଥିବା ବାଳକୁ ମଧ୍ୟ କାଟିବ ନାହିଁ ॥୨୪॥ ନୈଷ୍ଠିକ ବ୍ରହ୍ମଚାରୀ କେବେହେଲେ ଶୁକ୍ରକ୍ଷରଣ କରିବ ନାହିଁ । ଯଦି ଦୈବାତ(ସ୍ୱପ୍ନରେ) ଶୁକ୍ର ସ୍ଖଳିତ ହୁଏ, ତାହେଲେ ସ୍ନାନ କରି ପ୍ରାଣାୟମ ପୂର୍ବକ ଗାୟତ୍ରୀ ଜପ କରିବ ॥୨୫॥ ଏକାଗ୍ର ଚିତ୍ତରେ ଅଗ୍ନି, ସୂର୍ଯ୍ୟ, ଆଚାର୍ଯ୍ୟ, ଗୋ, ବ୍ରାହ୍ମଣ, ଗୁରୁ, ବୃଦ୍ଧଲୋକ ଓ ଦେବତାମାନଙ୍କୁ ଉପାସନା କରିବ । ବାକ୍‌ସଂଯମ କରି ପ୍ରାତଃ ଓ ସଂଧ୍ୟା ସମୟରେ ଗାୟତ୍ରୀ ଜପ କରିବ ॥୨୬॥ ଆଚାର୍ଯ୍ୟଙ୍କୁ 'ମୁଁ' ବୋଲି ଜାଣିବ । ତାଙ୍କୁ କେବେହେଲେ ଅବମାନନା କରିବ ନାହିଁ । ମନୁଷ୍ୟବୁଦ୍ଧିରେ ତାଙ୍କ ଦୋଷ ଦେଖିବ ନାହିଁ, କାରଣ ସେ ସର୍ବଦେବମୟ ॥୨୭॥ ସନ୍ଧ୍ୟାକାଳ ଓ ପ୍ରାତଃକାଳରେ ଗୁରୁଙ୍କ ଉପାସନା କରି ଭିକ୍ଷା ବା ଅନ୍ୟ କିଛି ମାଗି ଆଣି ଗୁରୁଙ୍କୁ ନିବେଦନ କରିବ ଏବଂ ସେ ଯାହା ଆଜ୍ଞା ଦେବେ, ସଂଯତଭାବରେ ତାହା ଭୋଜନ କରିବ ॥୨୮॥ ନୀଚଭଳି ଆଚାର୍ଯ୍ୟଙ୍କର ସେବା ଓ ଉପାସନା କରିବ । ସେ ଯାଉଥିବାବେଳେ ତାଙ୍କ ପଛେ ପଛେ ଯିବ, ଶୋଇଥିବାବେଳେ ସତର୍କ ହୋଇ ପାଖରେ ଶୋଇଥିବ, ଶ୍ରାନ୍ତ ଥିବାବେଳେ ପାଖରେ ବସି ପାଦ ମୋଡ଼ିବ ଏବଂ ବସିଥିବା ବେଳେ ଅଳ୍ପ ଦୂରରେ କୃତାଞ୍ଜଳି ହୋଇ ଠିଆହେବ ॥୨୯॥ ବିଦ୍ୟାଧ୍ୟୟନ ଶେଷ ହେବାପର୍ଯ୍ୟନ୍ତ ବ୍ରହ୍ମଚାରୀ ଅଖଣ୍ଡ ବ୍ରହ୍ମଚର୍ଯ୍ୟ ବ୍ରତ ଧାରଣକରି ଓ ଭୋଗ ବିଳାସରୁ ଦୂରରେ ରହି ଗୁରୁକୁଳରେ ବାସକରିବ ॥୩୦॥ ବ୍ରହ୍ମଚାରୀ ଯଦି ମହର୍ଲୋକ ବା ବ୍ରହ୍ମଲୋକ ଯିବାକୁ ଇଚ୍ଛା କରିବ, ତା'ହେଲେ ଆଜୀବନ ବ୍ରହ୍ମଚର୍ଯ୍ୟର ବ୍ରତ ଗ୍ରହଣ କରି ସ୍ୱାଧ୍ୟାୟପାଇଁ ଗୁରୁଙ୍କଠାରେ ନିଜକୁ ସମର୍ପଣ କରିଦେବ ॥୩୧॥ ବ୍ରହ୍ମତେଜସମ୍ପନ୍ନ ନିଷ୍ପାପ ବ୍ୟକ୍ତି ଅଗ୍ନି, ଗୁରୁ, ଆତ୍ମା ଓ ସମସ୍ତ ପ୍ରାଣୀଙ୍କ ପ୍ରତି ସମଦର୍ଶୀ ହୋଇ ପରମାତ୍ମାରୂପେ ମୋର ଉପାସନା କରିବ ॥୩୨॥ ସ୍ତ୍ରୀଙ୍କୁ ଭୋଗବୁଦ୍ଧିରେ ଚାହିଁବ ନାହିଁ, ସ୍ପର୍ଶ କରିବ ନାହିଁ, ସେମାନଙ୍କ ସହିତ ଆଳାପ ବା ହାସପରିହାସ କରିବ ନାହିଁ । ବ୍ରହ୍ମଚାରୀ ଗୃହସ୍ଥ ନ ହୋଇ ମୈଥୁନରତ ପ୍ରାଣୀଙ୍କୁ ଦୃଷ୍ଟି ଦେବ ନାହିଁ ॥୩୩॥ କୁଳନନ୍ଦନ ଉଦ୍ଧବ, ଶୌଚ, ଆଚମନ, ସ୍ନାନ, ସନ୍ଧ୍ୟା-ଉପାସନା, ସରଳତା, ତୀର୍ଥସେବା, ଜପ, ଅସ୍ପୃଶ୍ୟ, ଅଭକ୍ଷ୍ୟ ଓ ଅକଥ୍ୟର ବର୍ଜନ -- ଏହି ନିୟମ ସମସ୍ତ ଆଶ୍ରମପାଇଁ ପ୍ରଯୁଜ୍ୟ । ସବୁ ପ୍ରାଣୀଙ୍କ ମଧ୍ୟରେ ମୋର ଦର୍ଶନ ଏବଂ କାୟମନୋବାକ୍ୟର ସଂଯମ ସର୍ବଥା କରଣୀୟ ॥୩୪-୩୫॥ ଏହିପରି ଆଜୀବନ ବ୍ରହ୍ମଚାରୀବ୍ରତ ଧାରଣ କରୁଥିବା ବ୍ରାହ୍ମଣ ଅଗ୍ନିଭଳି ଜଳୁଥାଏ ଏବଂ ନିଷ୍କାମ ହେଲେ ତୀବ୍ର ତପସ୍ୟାଦ୍ୱାରା ଅନ୍ତଃକରଣକୁ ଦଗ୍ଧ କରି ମୋର ଭକ୍ତ ହୋଇଯାଏ ॥୩୬॥

ଯେଉଁ ବ୍ରହ୍ମଚାରୀ ପରବର୍ତ୍ତୀ ଆଶ୍ରମରେ (ଗୃହସ୍ଥାଶ୍ରମ) ପ୍ରବେଶ କରିବାପାଇଁ ଇଚ୍ଛା କରୁଥିବେ, ସେ ବେଦାର୍ଥ ବିଚାରରେ ନିପୁଣ ହେବାପରେ ଗୁରୁଙ୍କୁ ଦକ୍ଷିଣା ଦେଇ ତାଙ୍କ ଅନୁମୋଦନ କ୍ରମେ ସମାବର୍ତ୍ତନ ସଂସ୍କାର କରି ସ୍ନାତକ ହେବେ ଓ ତାପରେ ଗୁରୁକୁଳ ପରିତ୍ୟାଗ କରିବେ ।।୩୭।। ସକାମ ବ୍ରହ୍ମଚାରୀ ଗୃହସ୍ଥାଶ୍ରମରେ ଓ ନିଷ୍କାମ ବ୍ରହ୍ମଚାରୀ ବାନପ୍ରସ୍ଥାଶ୍ରମରେ ପ୍ରବେଶକରିବେ ଏବଂ ବ୍ରାହ୍ମଣ ହେଲେ ସନ୍ନ୍ୟାସ ବି ନେଇପାରିବେ । ଆଶ୍ରମଗ୍ରହଣ ପର୍ଯ୍ୟାୟକ୍ରମେ (ବ୍ରହ୍ମଚର୍ଯ୍ୟ, ଗାର୍ହସ୍ଥ୍ୟ, ବାନପ୍ରସ୍ଥ ଇତ୍ୟାଦି କ୍ରମରେ) କରିବାକୁ ହେବ, ମୋର ଆଜ୍ଞାକାରୀ ଭକ୍ତ ଏହାର ଅନ୍ୟଥା କରିବେ ନାହିଁ ।।୩୮।। ଗୃହାର୍ଥୀ ନିଜର ଅନୁରୂପ, ବୟସରେ ସାନ, ସ୍ୱଜାତୀୟ ଏବଂ କୁଳିନ ସ୍ତ୍ରୀ ହିଁ ବିବାହକରିବ । ଅନ୍ୟ ବର୍ଣ୍ଣର ହେଲେ, କେବଳ ଉଚ୍ଚବର୍ଣ୍ଣର ବ୍ୟକ୍ତି ତାଙ୍କଠାରୁ ନୀଚ ବର୍ଣ୍ଣର କନ୍ୟାକୁ ବିବାହ କରିପାରିବେ ।।୩୯।। ଯଜନ, ଅଧ୍ୟୟନ ଓ ଦାନର ଅଧିକାର ବ୍ରାହ୍ମଣ, କ୍ଷତ୍ରିୟ ଏବଂ ବୈଶ୍ୟ - ଏହି ତିନି ବର୍ଣ୍ଣର ସମାନ ଭାବରେ ରହିଛି । କିନ୍ତୁ ଦାନ ନେବା, ପଢ଼ାଇବା ଓ ଯଜ୍ଞ ଅଧିକାର କେବଳ ବ୍ରାହ୍ମଣମାନଙ୍କର ଅଛି । ଏହି ତିନୋଟିମଧ୍ୟରୁ ଦାନଗ୍ରହଣ କରିବା ତପସ୍ୟା, ତେଜ ଓ ଯଶକୁ ନାଶକରେ ବୋଲି ଯଦି କେହି ଭାବନ୍ତି, ତା'ହେଲେ ଅଧ୍ୟାପନା ଓ ଯାଜନଦ୍ୱାରା ଜୀବିକା ନିର୍ବାହ କରିବା ଉଚିତ ଏବଂ ଏଦୁଇଟି ମଧ୍ୟ ଦୋଷଯୁକ୍ତ ବୋଲି ଯଦି କେହି ମନେ କରନ୍ତି, ତାହେଲେ ଶିଳବୃତ୍ତି(ଶସ୍ୟ କଟା ହେବା ପରେ ଭୂଇଁରେ ପଡ଼ିଥିବା ଶସ୍ୟଦାନାର ସଂଗ୍ରହ) ଅବଲମ୍ବନ କରିବେ ।।୪୦-୪୧।। ଉଦ୍ଧବ, ବ୍ରାହ୍ମଣର ଏହି ଶରୀର ଦୁର୍ଲଭ । ତାହା ତୁଚ୍ଛ ଭୋଗ ପାଇଁ ଉଦ୍ଦିଷ୍ଟ ନୁହେଁ । ଇହଲୋକରେ କଠୋର ତପସ୍ୟାପାଇଁ ଓ ପରଲୋକରେ ଅନନ୍ତ ସୁଖପାଇଁ ତାହା ଉଦ୍ଦିଷ୍ଟ । ଯେଉଁ ବ୍ରାହ୍ମଣ ଘରେ ରହି ନିଜର ନିଷ୍କାମ ଓ ମହାନ୍ ଧର୍ମକୁ ପାଳନ କରେ, ଶିଳବୃତ୍ତି ଓ ଉଂଛବୃତ୍ତିଦ୍ୱାରା ସନ୍ତୋଷରେ ରହେ ଏବଂ ଆତ୍ମାକୁ ମୋଠାରେ ସମର୍ପିତ କରେ, ସେହି ଅନାସକ୍ତ ବ୍ୟକ୍ତି ସମ୍ୟକ୍ ଶାନ୍ତି ଲାଭକରେ ।।୪୨-୪୩।। ମୋର ଏକାନ୍ତ ଭକ୍ତ ବ୍ରାହ୍ମଣ କଷ୍ଟ ପାଉଥିଲେ, ତାଙ୍କୁ ଯେଉଁମାନେ ସେଥିରୁ ଉଦ୍ଧାରକରନ୍ତି, ସମୁଦ୍ରରୁ ନୌକାପରି ମୁଁ ସେମାନଙ୍କୁ ଶୀଘ୍ର ବିପଦ ରୂପ ଭବାର୍ଣ୍ଣବରୁ ଉଦ୍ଧାର କରେ ।।୪୪।। ଯେପରି ଗଜରାଜ ଦୁଃଖରେ ଥିବା ତା'ର ଗଜଦଳଙ୍କୁ ଉଦ୍ଧାର କରେ, ସେହିପରି ପିତୃତୁଲ୍ୟ ରାଜା ସବୁ ପ୍ରଜାମାନଙ୍କୁ ବିପଦରୁ ଉଦ୍ଧାର କରି ନିଜେ ନିଜକୁ ଉଦ୍ଧାରକରେ ।।୪୫।। ଯେଉଁ ରାଜା ଏହିପରି କରେ, ସେ ସମସ୍ତ ଅଶୁଭ ଓ ପାପରୁ ମୁକ୍ତ ହୋଇ ସୂର୍ଯ୍ୟର ତେଜ ପରି ତେଜୀୟାନ୍ ବିମାନରେ ବସି ଇନ୍ଦ୍ରଙ୍କ ସହିତ ମିଳିତ ହୁଏ ଓ ସ୍ୱର୍ଗସୁଖ ଭୋଗକରେ ।।୪୬।। ପୂର୍ବକଥିତ ଉପାୟମାନଙ୍କ ଦ୍ୱାରା ଚଳି ପାରୁନଥିବା (ଅବସନ୍ନ) ବ୍ରାହ୍ମଣ କ୍ରୟବିକ୍ରୟ ଯୋଗ୍ୟ ଦ୍ରବ୍ୟମାନଙ୍କରେ ବୈଶ୍ୟ ବୃତ୍ତି ଅବଲମ୍ବନ କରିବା ଉଚିତ । ତା' ନହେଲେ ଖଡ୍ଗଧାରଣ କରି କ୍ଷତ୍ରିୟବୃତ୍ତି ଗ୍ରହଣ କରିବ । କିନ୍ତୁ କୌଣସିମତେ ନୀଚସେବାଦ୍ୱାରା ଜୀବିକା ନିର୍ବାହ ଉଚିତ ନୁହେଁ । ସେହିପରି କ୍ଷତ୍ରିୟ ଦୁଃଖରେ ପଡ଼ିଲେ ମୃଗୟାଦ୍ୱାରା, ବୈଶ୍ୟବୃତ୍ତିଦ୍ୱାରା ବା ବ୍ରାହ୍ମଣରୂପରେ ଅଧ୍ୟାପନାଦିଦ୍ୱାରା ନିଜର ଅର୍ଜ୍ଜନ ଜୀବିକା କରିବା ଉଚିତ । କିନ୍ତୁ ନୀଚସେବାଦ୍ୱାରା ନୁହେଁ ।।୪୭-୪୮।। ବୈଶ୍ୟ ଦୁଃଖ ପାଇଲେ ଶୂଦ୍ରବୃତ୍ତି କରିବ ଏବଂ ଶୂଦ୍ରର ଦୁଃଖ ହେଲେ କାରୁକାର୍ଯ୍ୟ ଆଦି କରି କିମ୍ବା କୁଲାଟୋକେଇ ଆଦି ବୁଣି ଜୀବିକା ନିର୍ବାହ କରିବ । କିନ୍ତୁ ଦୁଃଖରୁ ମୁକ୍ତ ହେଲେ ନିନ୍ଦନୀୟ (ନିମ୍ନ ବର୍ଣ୍ଣର ବୃତ୍ତି) ବୃତ୍ତି କେବେହେଲେ କରିବ ନାହିଁ ।।୪୯।। ଋଷି, ଦେବତା, ପିତୃଗଣଙ୍କୁ ଓ ପ୍ରାଣୀମାନଙ୍କୁ ମୋର ସ୍ୱରୂପ ବୋଲି ମନେକରି ବେଦାଧ୍ୟୟନପୂର୍ବକ ବ୍ରହ୍ମଯଜ୍ଞ, ତର୍ପଣରୂପକ ପିତୃଯଜ୍ଞ, ହବନରୂପକ ଦେବଯଜ୍ଞ, କାକବଳି ଆଦି ଭୂତଯଜ୍ଞ ଓ ଅନ୍ନଦାନ ଆଦି ଅତିଥିଯଜ୍ଞଦ୍ୱାରା ସେମାନଙ୍କର ଯଥାଶକ୍ତି ଅର୍ଚ୍ଚନା କରିବ ।।୫୦।। ଅନାୟାସଲବ୍ଧ ବା ସ୍ୱଧର୍ମରେ ଉପାର୍ଜିତ ନିଜର ବିଶୁଦ୍ଧ ଧନକୁ ଯଜ୍ଞରେ ନିୟୋଜିତ କରିବା ଉଚିତ, ଯେପରିକି ନିଜର ଆଶ୍ରିତ ସ୍ୱଜନ ବା ଭୃତ୍ୟମାନଙ୍କର କୌଣସି କଷ୍ଟ ନ ହୁଏ ।।୫୧।। ଗୃହସ୍ଥ ବ୍ୟକ୍ତି କୁଟୁମ୍ବରେ ଆସକ୍ତ ହେବା ଉଚିତ ନୁହେଁ । କୁଟୁମ୍ବ ବଢ଼ିଲେ ମଧ୍ୟ ଭଗବାନଙ୍କ ଭଜନନିଷ୍ଠାରେ ତ୍ରୁଟି କରିବ ନାହିଁ । ବୁଦ୍ଧିମାନ୍ ବ୍ୟକ୍ତି ଇହଲୋକର ସୁଖପରି ପରଲୋକର ସୁଖକୁ ମଧ୍ୟ ଅନିତ୍ୟ ବିଚାର କରିବ ।।୫୨।। ସ୍ତ୍ରୀ, ପୁତ୍ର ଓ ବନ୍ଧୁବାନ୍ଧବଙ୍କ ମେଳରେ ରହି ନିଜକୁ ଜଣେ ପଥିକ ବୋଲି ମନେକରିବ । ସ୍ୱପ୍ନ ଯେପରି

ନିଦ୍ରା ପରେ ଶେଷ ହୋଇଯାଏ, ସେହିପରି ସେମାନଙ୍କର ଦେହ ଦିନେ ବିନାଶ ପ୍ରାପ୍ତହେବ ।।୫୩।। ଏହିପରି ନିଶ୍ଚୟପୂର୍ବକ ମୁକ୍ତ ହୋଇ ନିରହଙ୍କାର ଓ ମମତାଶୂନ୍ୟ ଅତିଥିପରି ନିଜ ଗୃହରେ ବାସ କରିବ ଏବଂ ଗୃହ ଧନ୍ଦାରେ ବଦ୍ଧ ହେବ ନାହିଁ ।।୫୪।। ଭକ୍ତିମାନ୍ ପୁରୁଷ ଗୃହସ୍ଥର କର୍ତ୍ତବ୍ୟ କର୍ମଦ୍ୱାରା ମୋର ଆରାଧନା କରୁଥିବ । ଯଦି ତାର ପୁତ୍ରଜାତ ହୁଏ, ତାହେଲେ ସନ୍ନ୍ୟାସ ପୂର୍ବକ ବନମଧ୍ୟରେ ପ୍ରବେଶକରିବ ।।୫୫।। ଯେଉଁ ବ୍ୟକ୍ତିର ମନ ଗୃହରେ ଆସକ୍ତ, ଯେଉଁ ବ୍ୟକ୍ତି ପୁତ୍ର ଓ ଧନର ଅନ୍ୱେଷଣରେ ବ୍ୟାକୁଳ ଏବଂ ଯେ ସ୍ତ୍ରୈଣ ଓ କୃପଣବୁଦ୍ଧି, ସେଇ ମୂଢ଼ 'ମୁଁ ଓ ମୋର' ଭାବନାରେ ବାନ୍ଧିହୋଇ ରହେ ।।୫୬।। ସେ ହାହାକାର କରି କହେ, ମୋର ପିତାମାତା ବୃଦ୍ଧ, ମୋର ଭାର୍ଯ୍ୟା ହେଉଛି ଶିଶୁ ସନ୍ତାନଙ୍କର ମାତା, ମୁଁ ମରିଗଲେ ସେ ବିଚାରାମାନେ ଅନାଥ ହୋଇଯିବେ ଏବଂ କିପରି ଦୁଃଖରେ ଜୀବନ ଧାରଣ କରିବେ ? ଏହିପରି ଯେଉଁ ଗୃହସ୍ଥ ଗୃହରେ ଆସକ୍ତ ହୋଇଯାଏ, ସେହି ଅତୃପ୍ତ ମୂଢ଼ବୁଦ୍ଧି ପୁରୁଷ ମୃତ୍ୟୁପରେ ତମୋମୟ ନରକରେ ପଡ଼ିଥାଏ ।।୫୭-୫୮।।

### ଅଷ୍ଟାଦଶ ଅଧ୍ୟାୟ

## ବାନପ୍ରସ୍ଥ ଏବଂ ସନ୍ନ୍ୟାସଧର୍ମ

ଭଗବାନ୍ ଶ୍ରୀକୃଷ୍ଣ କହିଲେ, ଉଦ୍ଧବ, ବାନପ୍ରସ୍ଥ କରିବାପାଇଁ ଇଚ୍ଛା କରୁଥିବା ବ୍ୟକ୍ତି ପତ୍ନୀକୁ ପୁତ୍ରପାଖରେ ନ୍ୟସ୍ତ କରିବ କିମ୍ବା ପତ୍ନୀକୁ ସାଙ୍ଗରେ ନେଇ ବନଗମନ କରିବ ଏବଂ ନିଜ ବୟସର ତୃତୀୟଭାଗ ଶାନ୍ତଚିତ୍ତରେ ବନରେ କଟାଇବ ।।୧।। ପବିତ୍ର କନ୍ଦମୂଳ ବା ଅନ୍ୟ ବଣ୍ୟଫଳରେ ଶରୀର ଧାରଣକରିବ । ବଲ୍କଳ ପରିଧାନ କରିବ ଏବଂ କୁଶ, ପତ୍ର ବା ମୃଗଚର୍ମରେ ଉପବେଶନ କରିବ । କେଶ, ଲୋମ, ନଖ ଓ ନିଶ, ଦାଢ଼ି ଆଦି କାଟିବ ନାହିଁ ଓ ଦାନ୍ତ ଘଷିବ ନାହିଁ । ତ୍ରିସନ୍ଧ୍ୟାରେ ସ୍ନାନ କରିବ । ଭୂମିରେ ଶୟନ କରିବ ।।୨-୩।। ଗ୍ରୀଷ୍ମକାଳରେ ପଞ୍ଚାଗ୍ନିର ତାପ, ବର୍ଷାକାଳରେ ବର୍ଷାଜଳର ମାଡ଼ ଏବଂ ଶୀତଋତୁରେ ବେକଯାଏ ପାଣିରେ ବୁଡ଼ିରହି କଠିନ ତପସ୍ୟା କରିବ ।।୪।। କନ୍ଦମୂଳ ଆଦି ଖାଦ୍ୟ ପଦାର୍ଥ ନିଆଁରେ ପୋଡ଼ି ଖାଇପାରିବ । ଅଥବା କାଳପକ୍ୱ (ଗଛରେ ପାଚିଥିବା) ଫଳକୁ ଖାଇପାରିବ । କୁଟୁଣି ବା ପଥରରେ କୁଟି ଶସ୍ୟକୁ ଖାଦ୍ୟରେ ପରିଣତ କରିବ ବା ଦାନ୍ତରେ ଚୋବାଇ ଖାଇପାରିବ ।।୫।। ସ୍ଥାନ, କାଳ ଓ ବଳକୁ ଜାଣି ବଞ୍ଚିବାପାଇଁ ଯାହା ସବୁ ଆବଶ୍ୟକ, ତାହା ନିଜେ ସଂଗ୍ରହ କରିବ । ଅନ୍ୟ କାଳେ ଅଣାଯାଇଥିବା ପଦାର୍ଥକୁ ଗ୍ରହଣ କରିବ ନାହିଁ ।।୬।। ବାନପ୍ରସ୍ଥୀ ନୀବାର ଆଦି ବନ୍ୟଶସ୍ୟ ଦ୍ୱାରା ଚରୁ ଓ ପୁରୋଡ଼ାଶ ଆଦି ପ୍ରସ୍ତୁତ କରି ସମୟୋଚିତ ନବାନ୍ନଭୋଜନ ଆଦି (ନିର୍ବପନ) କର୍ମ କରିବ, କିନ୍ତୁ ପଶୁମେଧଶ୍ରୌତଦ୍ୱାରା ମୋର ପୂଜା କରିବ ନାହିଁ ।।୭।। ବେଦବାଦୀ ପଣ୍ଡିତମାନେ ଅଗ୍ନିହୋତ୍ର, ଅମାବାସ୍ୟା ଓ ପୂର୍ଣ୍ଣିମାର ଇଷ୍ଟିଯଜ୍ଞ ଓ ଚାତୁର୍ମାସ୍ୟ ବ୍ରତ ମୁନିଙ୍କପାଇଁ ବିହିତ ବୋଲି କହିଥା'ନ୍ତି ।।୮।। ଏହିପରି କଠୋର ତପଶ୍ଚରଣଦ୍ୱାରା ବାନପ୍ରସ୍ଥୀର ଦେହରେ ମାଂସ ଶୁଖିଯାଇ କେବଳ ଶିରାମାନ ଦେଖାଯାଏ । ଏହି ତପୋମୟ ରୂପରେ ମୋତେ ଆରାଧନା କରି ସେ ପ୍ରଥମେ ଋଷିଲୋକକୁ ଯାଏ ଓ ସେଠାରୁ ମୋ ସହିତ ମିଳିତ ହୁଏ ।।୯।। କଷ୍ଟସାଧିତ ଓ ମୋକ୍ଷଫଳରୂପୀ ଏହି କଠିନ ତପସ୍ୟାକୁ ଯେ ନିଜର କ୍ଷୁଦ୍ର ଭୋଗପାଇଁ ପ୍ରୟୋଗକରେ, ତା'ଠାରୁ ବଳି ମୂର୍ଖ ଆଉ କିଏ ଥାଇପାରେ ? ।।୧୦।। ଯଦି ଜରାଯୋଗୁଁ ତାର ଶରୀର ଥରିବାକୁ ଲାଗେ ଏବଂ ଆଶ୍ରମର ନିୟମପାଳନପାଇଁ ସେ ଅସମର୍ଥ ହୋଇପଡ଼େ, ତା'ହେଲେ ନିଜର ଆତ୍ମାମଧ୍ୟରେ ଅଗ୍ନିମାନଙ୍କୁ ଆରୋପଣ କରି ମୋ'ଠାରେ ଚିତ୍ତକୁ ନିବେଶ କରିବ ଏବଂ ଅଗ୍ନିମଧ୍ୟରେ ପ୍ରବେଶ କରିବ ।।୧୧।। ନିଜର କର୍ମଫଳଯୋଗୁଁ ଦୁଃଖମୟ ସଂସାରରେ ରହି ଯେତେବେଳେ ସଂସାର ପ୍ରତି ବିଶେଷ ଭାବରେ ବିରକ୍ତି ଜାତହେବ, ତାହେଲେ ସେ ଅଗ୍ନିହୋତ୍ର ଆଦି ଗୃହସ୍ଥର କର୍ମ

ପରିତ୍ୟାଗ କରି ସନ୍ନ୍ୟାସ ଗ୍ରହଣକରିବ ।।୧୨।। ଶାସ୍ତ୍ରୋପଦେଶ ଅନୁଯାୟୀ ମୋର ଆରାଧନାପୂର୍ବକ ନିଜର ସର୍ବସ୍ୱ ଆଚାର୍ଯ୍ୟଙ୍କୁ ଅର୍ପଣ କରି ନିଜର ଆତ୍ମାରେ ଅଗ୍ନିକୁ ଆରୋପ କରିବ ଓ କାହାରିକୁ ଅପେକ୍ଷା ନ କରି ସନ୍ନ୍ୟାସୀ ହୋଇଯିବ ।।୧୩।। ଏଇ ବ୍ରାହ୍ମଣ ସନ୍ନ୍ୟାସଦ୍ୱାରା ଆମମାନଙ୍କୁ ଅତିକ୍ରମକରି କାଳେ ପରମ ପଦକୁ ଚାଲିଯିବ, ସେହି ଭାବନାରେ ଦେବତାମାନେ ସ୍ତ୍ରୀ, ପୁତ୍ର, ଜ୍ଞାତି, କୁଟୁମ୍ବର ରୂପ ଧରି ବହୁପ୍ରକାର ବିଘ୍ନ ସୃଷ୍ଟିକରନ୍ତି ।।୧୪।। ମୁନି ଯଦି କୌପୀନ ଛଡ଼ା ଅନ୍ୟ ବସ୍ତ୍ର ଧାରଣ କରିବ, ତାହେଲେ କୌପୀନପରିମିତ ବସ୍ତ୍ରକୁ ଦେହରେ ଗୁଡ଼ାଇହେବ । ଆପଦ ନ ଥିବା ସମୟରେ ସେ ଦଣ୍ଡ କମଣ୍ଡଳୁ ଛଡ଼ା ଅନ୍ୟ ବସ୍ତୁ ଗ୍ରହଣ କରିବ ନାହିଁ । ସନ୍ନ୍ୟାସୀ ତଳକୁ ଚାହିଁ ଚାଲିବ । ବସ୍ତ୍ରରେ ଛାଣି ଜଳପାନ କରିବ । ସତ୍ୟ ବଚନ କହିବ ଏବଂ ମନଃପୂତ (ବିବେକଦର୍ଶିତ) ଆଚରଣ କରିବ । ଖାଲି ବାଉଁଶର ଦଣ୍ଡ (ବାଡ଼ି) ଧରିଲେ ଜଣେ ସନ୍ନ୍ୟାସୀ ହୁଏ ନାହିଁ, ବଚନର ଦଣ୍ଡ ହେଉଛି ମୌନ ରହିବା । ଶରୀରପାଇଁ ଦଣ୍ଡ ହେଉଛି କାମ୍ୟ କର୍ମ ନ କରିବା ଓ ମନପାଇଁ ଦଣ୍ଡ ହେଉଛି ପ୍ରାଣାୟାମ କରିବା । ଏହି ତିନୋଟି ଦଣ୍ଡ ନ ଥିଲେ କେହି ସନ୍ନ୍ୟାସୀ ହୋଇ ନ ପାରେ ।।୧୫-୧୭।। ଅଭିଶପ୍ତ ଓ ପତିତ (ଜାତିଭ୍ରଷ୍ଟ) ବ୍ୟକ୍ତିଙ୍କୁ ଛାଡ଼ିଦେଲେ ସନ୍ନ୍ୟାସୀ ଚାରିବର୍ଣ୍ଣମଧ୍ୟରୁ ଯେ କୌଣସି ବର୍ଣ୍ଣରୁ ଭିକ୍ଷା କରିପାରିବେ ଏବଂ ଅନିର୍ଦ୍ଦିଷ୍ଟ ଭାବରେ ସାତୋଟି ଘରୁ ଯେତିକି ମିଳିବ, ସେତିକିରେ ସନ୍ତୁଷ୍ଟ ହେବେ ।।୧୮।। ଗ୍ରାମ ବାହାରେଥିବା ଜଳାଶୟକୁ ଯାଇ ବାକ୍‌ସଂଯମପୂର୍ବକ ଜଳରେ ଆଚମନ କରି ଯେଉଁ ଦେବତା ଓ ଋଷିମାନଙ୍କ ଉଦ୍ଦେଶ୍ୟରେ ଭିକ୍ଷାର ଭାଗ ଦେବାର କଥା, ତାହା ଦାନକରି ଅବଶିଷ୍ଟ ଭିକ୍ଷାନ୍ନକୁ ଭୋଜନ କରିବେ ଏବଂ କିଛି ସଞ୍ଚୟ କରିବେ ନାହିଁ ବା ପୁଣି ମାଗିବାକୁ ଯିବେ ନାହିଁ ।।୧୯।। ଅନାସକ୍ତ ଓ ଜିତେନ୍ଦ୍ରିୟ ହୋଇ ଏକାକୀ ପୃଥିବୀରେ ଭ୍ରମଣ କରିବେ, ନିଜ ମଧ୍ୟରେ ନିଜେ କ୍ରୀଡ଼ା କରି ଆନନ୍ଦ ଲାଭ କରିବେ ଏବଂ ଆତ୍ମଜ୍ଞାନରେ ସମସ୍ତଙ୍କୁ ସମାନଭାବରେ ଦେଖିବେ ।।୨୦।। ମୁନି ନିର୍ଜନ ଓ ନିର୍ଭୟ ସ୍ଥାନକୁ ଆଶ୍ରୟ କରି ମୋଠାରେ ଭାବନାଦ୍ୱାରା ଚିତ୍ତକୁ ଶୁଦ୍ଧ କରିଥିବେ ଏବଂ ତାଙ୍କ ସହିତ ଏକ ଓ ଅଭିନ୍ନ ଭାବରେ ମୋତେ ଆତ୍ମାରୂପେ ଚିନ୍ତାକରିବେ ।।୨୧।। ଇନ୍ଦ୍ରିୟମାନଙ୍କର ବିକ୍ଷେପ ହେଉଛି ବଂଧନ ଏବଂ ସେମାନଙ୍କର ସଂଯମ ହେଉଛି ମୋକ୍ଷ -- ଏହି ଜ୍ଞାନନିଷ୍ଠାଦ୍ୱାରା ନିଜର ବନ୍ଧନ ଓ ମୋକ୍ଷକୁ ଅନୁକ୍ଷଣ ହୃଦୟଙ୍ଗମ କରିବେ ।।୨୨।। ଏହାପରେ କାମଆଦି ଷଡ଼ରିପୁଙ୍କୁ ଜୟକରି ତୁଚ୍ଛ କାମନାମାନଙ୍କଠାରୁ ନିଜକୁ ଦୂରରେ ରଖିବେ ଓ ମୋର ଭାବନାରେ ପରମ ଆନନ୍ଦ ଅନୁଭବକରି ଯଦୃଚ୍ଛା ବିଚରଣ କରିବେ ।।୨୩।। ସେ ଭିକ୍ଷାପାଇଁ ବନ, ପର୍ବତ, ଆଶ୍ରମ, ଗ୍ରାମ, ନଗର, ଗୋପାଳପଲ୍ଲୀ ଆଦି ଜନସମାଜ ଥିବା ଏହି ପୃଥିବୀ ପର୍ଯ୍ୟଟନ କରିବେ ।।୨୪।। ସେ ବାରମ୍ବାର ବାନପ୍ରସ୍ଥ-ଆଶ୍ରମମାନଙ୍କରେ ଭିକ୍ଷା କରିବେ, କାରଣ ଶିଳବୃତ୍ତି ଦ୍ୱାରା ମିଳୁଥିବା ସେହି ଆଶ୍ରମର ଅନ୍ନକୁ ଭୋଜନ କଲେ, ତାଙ୍କର ଚିତ୍ତ ଶୁଦ୍ଧ ହେବ ଏବଂ ଖୁବ୍ ଶୀଘ୍ର ମୋହମୁକ୍ତ ହୋଇ ସେ ସିଦ୍ଧି ପାଇବେ ।।୨୫।। ଅନ୍ନ ଆଦି ସମସ୍ତ ଦୃଶ୍ୟମାନ ବସ୍ତୁକୁ ସତ୍ୟ ବୋଲି ଗ୍ରହଣ କରିବ ନାହିଁ, କାରଣ ଏସବୁ ବିନାଶଶୀଳ । ଉଭୟ ଇହଲୋକ ଓ ପରଲୋକପ୍ରତି ଅନାସକ୍ତ ହୋଇ ସେସଂପର୍କୀୟ ସମସ୍ତ କାର୍ଯ୍ୟରୁ ବିରତହେବେ ।।୨୬।। ମନୋ-ବାକ୍ୟ ଓ ପ୍ରାଣଯୁକ୍ତ ଏହି ଜଗତ୍ ହେଉଛି ମାୟାର ବିଳାସ ମାତ୍ର । ଏହି ବିବେକ ବିଚାରରେ ବୁଦ୍ଧି ସ୍ଥିର ରଖି ଜାଗତିକ ବିଷୟମାନଙ୍କୁ ଆଉ ସ୍ମରଣ କରିବ ନାହିଁ । ମୋର ଯେଉଁ ଭକ୍ତ ନିଷ୍କାମ, ଜ୍ଞାନବାନ୍ ଓ ଅନାସକ୍ତ, ସେ ତ୍ରିଗୁଣଯୁକ୍ତ ଏହି ବର୍ଣ୍ଣାଶ୍ରମ ଧର୍ମକୁ ତ୍ୟାଗକରି ଶାସ୍ତ୍ରର ବିଧିବିଧାନଠାରୁ ଦୂରରେ ରହି ସୁଖରେ ବିଚରଣ କରିବେ ।।୨୭-୨୮।। ବିବେକବାନ୍ ପୁରୁଷ ମଧ୍ୟ ବାଳକପରି ଖେଳିବ । ନିପୁଣ ହୋଇ ମଧ୍ୟ ଜଡ଼ ପରି ଆଚରଣ କରିବ । ବିଦ୍ୱାନ୍ ହୋଇ ମଧ୍ୟ ପାଗଳପରି କଥାଭାଷା କରିବ । ବେଦଜ୍ଞ ହେଲେ ମଧ୍ୟ ପଶୁପରି ବ୍ୟବହାର କରିବ ( ଆହାର ବ୍ୟବହାରରେ ତା'ର ଶୁଦ୍ଧାଶୁଦ୍ଧ ଜ୍ଞାନ ରହିବ ନାହିଁ) ।।୨୯।। ସନ୍ନ୍ୟାସୀ ବେଦବାଦରେ ରତ ହେବେ ନାହିଁ । ପାଖଣ୍ଡୀ ହେବେ ନାହିଁ । ତର୍କବିତର୍କର ଦୂରରେ ରହିବେ ଏବଂ ଶୁଷ୍କ ବାଦବିବାଦରେ କୌଣସି ପକ୍ଷ ଗ୍ରହଣ କରିବେ ନାହିଁ ।।୩୦।।

ଧୀର ସନ୍ନ୍ୟାସୀ କେବେହେଲେ ଉଦ୍‌ବିଗ୍ନ ହେବେ ନାହିଁ ବା ଅନ୍ୟମାନଙ୍କୁ ଉଦ୍‌ବିଗ୍ନ କରାଇବେ ନାହିଁ । କୌଣସି କଥାକୁ ଅତିରଞ୍ଜିତ କରିବେ ନାହିଁ । ଅନ୍ୟକୁ ଅବଜ୍ଞା କରିବେ ନାହିଁ ଏବଂ ଦେହ ଜ୍ଞାନରେ ଅନ୍ୟମାନଙ୍କୁ ବିଚାରକରି ସେମାନଙ୍କ ପ୍ରତି ଶତ୍ରୁତା ଆଚରଣ କରିବେ ନାହିଁ । ବିଭିନ୍ନ ଜଳପାତ୍ରରେ ଯେପରି ଏକ ଚନ୍ଦ୍ରର ପ୍ରତିବିମ୍ବ ଭିନ୍ନ ଭିନ୍ନ ଦେଖାଯାଏ, ସେହିପରି ଏକ ପରମାତ୍ମା ଭିନ୍ନ ଭିନ୍ନ ପ୍ରାଣୀଙ୍କ ମଧ୍ୟରେ ରହିଥା'ନ୍ତି ॥୩୧-୩୨॥ ଯେତେବେଳେ ମିଳିବ ତ ଭୋଜନ କରିବ । କିଛି ନମିଳିଲେ ବିଷଣ୍ଣ ହେବ ନାହିଁ ଏବଂ ମିଳିଲେ ହୃଷ୍ଟ ହେବ ନାହିଁ । କାରଣ ଏହି ମିଳିବା ନ ମିଳିବା ହେଉଛି ଦୈବର ଅଧୀନ ॥୩୩॥ ପ୍ରାଣଧାରଣପାଇଁ ଆହାର ସମୀଚୀନ ଏବଂ ସେଥିପାଇଁ ଭିକ୍ଷା ଯୁକ୍ତିଯୁକ୍ତ । କାରଣ ପ୍ରାଣରକ୍ଷା ହେଲେ ଯାଇ ତତ୍ତ୍ୱ--ବିଚାର କରିହେବ ଓ ତଦ୍ୱାରା ମୁକ୍ତି ମିଳିବ ॥୩୪॥ ଦୈବାତ୍ ସ୍ୱାଦୁ ବା ଅସ୍ୱାଦୁ ଯାହା କିଛି ମିଳୁ, ବିନା ବିଚାରରେ ତାହା ଭୋଜନ କରିବ ଏବଂ ସେହିନ୍ୟାୟରେ ଶଯ୍ୟା ବା ବସ୍ତ୍ରକୁ ମଧ୍ୟ ଗ୍ରହଣ କରିବ ॥୩୫॥ ଜ୍ଞାନୀ ଶୌଚ, ଆଚମନ ଓ ସ୍ନାନ କରିବ, କିନ୍ତୁ ବିଧିରକ୍ଷା ଯୋଗୁଁ କରିବ ନାହିଁ । ସେହିପରି ଅନ୍ୟ ନିୟମ ମଧ୍ୟ ପାଳନକରିବ କାରଣ ମୁଁ କୌଣସି ବିଧିବିଧାନର ଅଧୀନ ନହୋଇ ମଧ୍ୟ ଏହିସବୁ ଆଚରଣ କରେ ॥୩୬॥ ମୋ ଛଡ଼ା ଜ୍ଞାନୀ ବ୍ୟକ୍ତିର ଅନ୍ୟ ବିକଳ୍ପ ନାହିଁ, ଯାହା କିଛି ବିକଳ୍ପ ଥାଏ ତାହା ଆତ୍ମସାକ୍ଷାତକାର ଦ୍ୱାରା ନଷ୍ଟ ହୋଇଯାଏ । ଯଦି ସାମାନ୍ୟ କିଛି ଭେଦଭାବ ମନରେ ରହିଥାଏ ଦେହତ୍ୟାଗ ପରେ ସେ ମୋ ସହିତ ଲୀନ ହୋଇଯାଆନ୍ତି ॥୩୭॥ ଆତ୍ମନିଷ୍ଠ ବ୍ୟକ୍ତି କାମର ପରିଣାମ ଦୁଃଖମୟ ବୋଲି ଜାଣି କାମ ପ୍ରତି ବିତୃଷ୍ଣ ହେବ ଏବଂ ଯଦି ସେ ମୋତେ ପାଇବାର ଉପାୟ ଜାଣି ନ ଥାଏ, ତାହେଲେ ମୁନିବୃତ୍ତିସମ୍ପନ୍ନ ସଦ୍‌ଗୁରୁଙ୍କର ଶରଣନେବ ॥୩୮॥ ଯେ ପର୍ଯ୍ୟନ୍ତ ବ୍ରହ୍ମଜ୍ଞାନ ହୋଇନାହିଁ, ସେ ପର୍ଯନ୍ତ ମୋ ପ୍ରତି ଶ୍ରଦ୍ଧାବାନ୍ ଭକ୍ତ ଅସୂୟାଶୂନ୍ୟ ହୋଇ ମୋତେ ଗୁରୁରୂପେ ଗ୍ରହଣ କରି ଆଦରସହକାରେ ଆରାଧନା କରୁଥିବ ॥୩୯॥ ପ୍ରଚଣ୍ଡ ଇନ୍ଦ୍ରିୟମାନେ ଯା'ର ସାରଥି, ଷଡ଼ରିପୁକୁ ଯେ ଜୟ କରି ନାହିଁ, ଯାହାର ହୃଦୟରେ ଜ୍ଞାନ ଓ ବୈରାଗ୍ୟ ଜାତ ହୋଇ ନାହିଁ, ସେପରି ବ୍ୟକ୍ତି ଜୀବିକା ପାଇଁ ତ୍ରିଦଣ୍ଡୀ ସନ୍ନ୍ୟାସୀ ହୋଇଥାଏ । ସେ ଦେବତାମାନଙ୍କୁ ଓ ତାର ହୃଦୟରେ ଆତ୍ମାରୂପେ ରହିଥିବା ମୋତେ ଠକିବାକୁ ଚେଷ୍ଟା କରେ ଓ ସେହି ଅପରିପକ୍ୱ ବ୍ୟକ୍ତି କେବଳ କଷାୟ ବସ୍ତ୍ର ଧାରଣକରି ଧର୍ମହାନି ଯୋଗୁଁ ଇହଲୋକ ଓ ପରଲୋକରୁ ବିଚ୍ୟୁତ ହୋଇଥାଏ ॥୪୦-୪୧॥ ସନ୍ନ୍ୟାସୀର ଧର୍ମ ହେଉଛି ଶାନ୍ତି ଓ ଅହିଂସା । ବାନପ୍ରସ୍ଥୀର ଧର୍ମ ହେଲା ତପସ୍ୟା ଓ ଆତ୍ମାର ଦର୍ଶନ । ଗୃହସ୍ଥର ଧର୍ମ ହେଲା ପ୍ରାଣୀମାନଙ୍କର ରକ୍ଷା ଓ ଯାଗଯଜ୍ଞ । ବ୍ରହ୍ମଚାରୀର ଧର୍ମ ହେଲା ଗୁରୁଙ୍କର ସେବା କରିବା ॥୪୨॥ ବ୍ରହ୍ମଚର୍ଯ୍ୟ, ତପସ୍ୟା, ଶୌଚ, ସନ୍ତୋଷ, ସମସ୍ତ ପ୍ରାଣୀଙ୍କ ପ୍ରତି ସହୃଦୟତା ହେଉଛି ଗୃହସ୍ଥର ଧର୍ମ । କେବଳ ଋତୁକାଳରେ ହିଁ ସ୍ତ୍ରୀସହବାସ ବିଧେୟ । ଚାରୋଟିଯାକ ଆଶ୍ରମରେ ମୋର ଉପାସନା ବିଧେୟ । ନିଜର ବର୍ଣ୍ଣାଶ୍ରମ ଧର୍ମ ପାଳନ କରି ଯେଉଁ ବ୍ୟକ୍ତି ଅନନ୍ୟ ଭାବରେ ମୋତେ ସେବା କରିଥାଏ, ସମସ୍ତ ପ୍ରାଣୀଙ୍କ ମଧ୍ୟରେ ସେ ମୋତେ ହିଁ ଅନୁଭବ କରେ । ମୋ ପ୍ରତି ତାର ଦୃଢ଼ ଭକ୍ତି ଜନ୍ମିଯାଏ ॥୪୩-୪୪॥ ଉଦ୍ଧବ, ମୁଁ ହେଉଛି ସର୍ବଲୋକର ମହେଶ୍ୱର । ମୁଁ ହେଉଛି ସମସ୍ତ ଜଗତର ଉତ୍ପତ୍ତି ଓ ପ୍ରଳୟର କାରଣ । ଏହିପରି ମୋର ବ୍ରହ୍ମ ସ୍ୱରୂପକୁ ଜାଣି ଅଚଳାଭକ୍ତି ଦ୍ୱାରା ଯେ ମୋତେ ଉପାସନା କରେ, ସେ ହିଁ ମୋତେ ପ୍ରାପ୍ତହୁଏ ॥୪୫॥ ଏହିପରି ସ୍ୱଧର୍ମ ପାଳନଦ୍ୱାରା ଚିତ୍ତକୁ ଶୁଦ୍ଧ କରିଥିବା ଏବଂ ମୋର ସ୍ୱରୂପକୁ ନିଃଶେଷରୂପେ ଜାଣିଥିବା ଜ୍ଞାନ-ବିଜ୍ଞାନ-ସମ୍ପନ୍ନ ବ୍ୟକ୍ତି ଶୀଘ୍ର ମୋତେ ନିକଟରେ ଲାଭ କରେ ॥୪୬॥ ବର୍ଣ୍ଣାଶ୍ରମ ଧର୍ମ କ'ଣ ଏବଂ ତାର ଆଚାରର ଲକ୍ଷଣ କ'ଣ ତାହା ମୁଁ କହିଗଲି । ମୋ ପ୍ରତି ଭକ୍ତିଯୁକ୍ତ ହୋଇ ଯେ ଏହି ଧର୍ମକୁ ପାଳନ କରେ, ସେ ପରମ କଲ୍ୟାଣ କରି ମୋକ୍ଷ ଲାଭକରେ ॥୪୭॥ ସାଧୁ ଉଦ୍ଧବ, ତୁମେ ଯାହା ମୋତେ ପଚାରିଥିଲ ମୁଁ ତାହାର ଉତ୍ତର ଦେଲି । ସ୍ୱଧର୍ମରେ ରହି ଭକ୍ତ ଯେପରି ମୋର ପରମପଦ ଲାଭ କରିବ, ତାହା ତୁମକୁ ଶୁଣାଇଲି ॥୪୮॥

## ଊନବିଂଶ ଅଧ୍ୟାୟ

# ଜ୍ଞାନ, ଭକ୍ତି ଓ ଯମ-ନିୟମ ଆଦିର ସାଧନା

ଭଗବାନ୍ ଶ୍ରୀକୃଷ୍ଣ କହିଲେ, ବେଦାଧ୍ୟୟନଦ୍ୱାରା ଯେଉଁ ଜ୍ଞାନ ହୁଏ, ତାହା ଆନୁମାନିକ ଓ ମାୟାମାତ୍ର ବୋଲି ଜାଣି ଆତ୍ମଜ୍ଞ ବ୍ୟକ୍ତି ସେହିଜ୍ଞାନକୁ ମୋଠାରେ ସମର୍ପଣ କରେ । ମୁଁ ହେଉଛି ଜ୍ଞାନୀ ବ୍ୟକ୍ତିର ଅଭୀଷ୍ଟ ଫଳ, ତାର ସାଧ୍ୟ ଓ ସାଧନ, ସ୍ୱର୍ଗ ଏବଂ ମୋକ୍ଷ । ମୋ ଛଡ଼ା ତାର ଅନ୍ୟ କୌଣସି ପ୍ରିୟବସ୍ତୁ ନାହିଁ ।।୧-୨।। ଜ୍ଞାନ-ବିଜ୍ଞାନ-ସମ୍ପନ୍ନ ସିଦ୍ଧ ପୁରୁଷ ମୋର ପରମପଦକୁ ହିଁ ଜାଣିଥାଏ ଏବଂ ଏହି ଜ୍ଞାନବଳରେ ମୋତେ ଧାରଣ କରି ମୋର ପ୍ରିୟତମ ହୋଇଥାଏ ।।୩।। ଜ୍ଞାନର ଏକ କଳାଦ୍ୱାରା ଯେଉଁ ସିଦ୍ଧି ହୁଏ, ତାହା ତପସ୍ୟା, ତୀର୍ଥଭ୍ରମଣ, ଜପ, ଦାନ ବା ଅନ୍ୟ କୌଣସି ପବିତ୍ରକର କାର୍ଯ୍ୟଦ୍ୱାରା ସମ୍ଭବ ହୁଏ ନାହିଁ । ତେଣୁ ହେ ଉଦ୍ଧବ, ଜ୍ଞାନଦ୍ୱାରା ନିଜର ଆତ୍ମାକୁ ଜାଣିବାପାଇଁ ଚେଷ୍ଟା କର ଏବଂ ଜ୍ଞାନବିଜ୍ଞାନଯୁକ୍ତ ହୋଇ ଭକ୍ତିରେ ମୋତେ ଭଜନ କର ।।୪-୫।। ଜ୍ଞାନ-ବିଜ୍ଞାନ ରୂପକ ଯଜ୍ଞରେ ମୁଁ ହେଉଛି ଇଷ୍ଟ, ସମସ୍ତଙ୍କ ଆତ୍ମାମଧ୍ୟରେ ଆତ୍ମା ଏବଂ ସମସ୍ତ ଯଜ୍ଞର ଅଧିପତି । ଏହିପରି ମୋତେ ଜାଣିଥିବା ମୁନି ପରମସିଦ୍ଧି ଲାଭ କରନ୍ତି ।।୬।। ଉଦ୍ଧବ, ଆଧ୍ୟାତ୍ମିକ, ଆଧିଦୈବିକ ଓ ଆଧିଭୌତିକ — ତୁମର ଏହି ତିନି ପ୍ରକାର ବିକାରଯୁକ୍ତ ଶରୀର କେବଳ ହେଉଛି ମାୟା । ଏହି ଶରୀର ପ୍ରଥମେ ନ ଥିଲା ଓ ପରେ ରହିବ ନାହିଁ; ମଝିରେ ତାହା କେବଳ ଦୃଶ୍ୟମାନ ହେଉଛି । ଯାହାର ଆଦି ନାହିଁ କି ଅନ୍ତ ନାହିଁ, ମଝିରେ ତା'ର ଅସ୍ତିତ୍ୱ କିପରି ରହିପାରିବ ? ।।୭।।

ଉଦ୍ଧବ କହିଲେ, ହେ ବିଶ୍ୱେଶ୍ୱର, ବିଶ୍ୱମୂର୍ତ୍ତି, ବୈରାଗ୍ୟ-ବିଜ୍ଞାନରେ ଯୁକ୍ତ ଏହି ମହାଜ୍ଞାନ ହେଉଛି ଅତିଶୟ ଶୁଦ୍ଧ ଓ ପୁରାତନ । ଆପଣ ମୋତେ ଏହି ଜ୍ଞାନର ଉପଦେଶ ଦିଅନ୍ତୁ ଏବଂ ତାହା ସହିତ ଆପଣଙ୍କ ଭକ୍ତିଯୋଗର ମଧ୍ୟ ଉପଦେଶ ଦିଅନ୍ତୁ ଯାହାକି ବ୍ରହ୍ମା ଆଦି ମହାତ୍ମାମାନେ ଖୋଜି ହେଉଥା'ନ୍ତି ।।୮।। ହେ ପ୍ରଭୁ, ତ୍ରିତାପଜ୍ୱାଳାରେ ଦଗ୍ଧ ହୋଇ ଏହି ଘୋର ବନ୍ଧୁର ସଂସାରପଥର ଯାତ୍ରୀପାଇଁ ଆପଣଙ୍କର ଅମୃତବର୍ଷୀ ପଦଯୁଗଳର ଛତ୍ରଛାୟା ଛଡ଼ା ଅନ୍ୟ ଆଶ୍ରୟ ମୁଁ ଦେଖୁ ନାହିଁ ।।୯।। ଏହି ସଂସାରରୂପକ କୂପରେ ପଡ଼ି ସାମାନ୍ୟ ସୁଖପାଇଁ ଯାହାର ତୃଷ୍ଣା ବଢ଼ି ବଢ଼ି ଚାଲେ, କାଳରୂପକ ସର୍ପଦ୍ୱାରା ଦଂଶିତ ସେହି ବ୍ୟକ୍ତି ଉପରେ ଦୟାପୂର୍ବକ ଆପଣଙ୍କ ମୋକ୍ଷ ଉପଦେଶର ସୁଧାଧାରା ଛିଞ୍ଚି ଉଦ୍ଧାର କରନ୍ତୁ ।।୧୦।।

ଭଗବାନ୍ ଶ୍ରୀକୃଷ୍ଣ କହିଲେ, ଉଦ୍ଧବ, ତୁମେ ଯାହା ମୋତେ ପଚାରିଲ, ପୂର୍ବେ ରାଜା ଯୁଧିଷ୍ଠିର ଧାର୍ମିକମାନଙ୍କ ମଧ୍ୟରେ ଶ୍ରେଷ୍ଠ ଭୀଷ୍ମ ପିତାମହଙ୍କୁ ତାହା ପଚାରିଥିଲେ । ସେତେବେଳେ ମହାଭାରତ ଯୁଦ୍ଧ ଶେଷ ହୋଇଥିଲା । ନିଜ ସ୍ୱଜନମାନଙ୍କ ନିଧନରେ ଅଜାତଶତ୍ରୁ ରାଜା ଯୁଧିଷ୍ଠିର ଶୋକବିହ୍ୱଳ ହୋଇପଡ଼ିଥିଲେ । ସେ ଭୀଷ୍ମଙ୍କଠାରୁ ଧର୍ମସମ୍ପର୍କୀୟ ବହୁ ଉପଦେଶ ଶୁଣିବା ପରେ ମୋକ୍ଷଧର୍ମ ସମ୍ପର୍କରେ ପଚାରିଲେ । ସମସ୍ତଙ୍କୁ ଶୁଣାଇ ଭୀଷ୍ମ ପିତାମହ ତା'ର ଉତ୍ତର ଦେଇଥିଲେ ।।୧୧-୧୨।। ମୁଁ ଭୀଷ୍ମଙ୍କ ମୁହଁରୁ ଯାହା ସବୁ ଶୁଣିଥିଲି, ତାହା ତୁମକୁ କହିବାକୁ ଯାଉଛି । ଜ୍ଞାନ, ବୈରାଗ୍ୟ, ବିଜ୍ଞାନ, ଶ୍ରଦ୍ଧା ଓ ଭକ୍ତି ଭାବରେ ତାହା ପରିପୂର୍ଣ୍ଣ ଥିଲା ।।୧୩।। ପ୍ରକୃତି, ପୁରୁଷ, ମହତ୍ତତ୍ତ୍ୱ, ଅହଙ୍କାର, ପଞ୍ଚତନ୍ମାତ୍ର, ଏକାଦଶ ଇନ୍ଦ୍ରିୟ, ପଞ୍ଚମହାଭୂତ ଓ ତିନିଗୁଣ -- ଏହି ଅଠେଇଶିଟି ତତ୍ତ୍ୱ ତୃଣଠାରୁ ଆରମ୍ଭକରି ବ୍ରହ୍ମାଙ୍କ ପର୍ଯ୍ୟନ୍ତ ସମସ୍ତ ଚରାଚର ଜୀବଙ୍କଠାରେ ଦେଖାଯାଏ । ଏମାନଙ୍କ ମଧ୍ୟରେ ଯେଉଁ ଏକ ପରମାତ୍ମା ତତ୍ତ୍ୱ ନିହିତ ଥାଏ; ତାହା ଯଦ୍ୱାରା ଅନୁଭୂତ ହୁଏ, ତାହାହିଁ ଜ୍ଞାନ ବୋଲି ମୋର ମତ ।।୧୪।। ପ୍ରତ୍ୟେକ ତତ୍ତ୍ୱରେ ଯଦି ଏହି ଏକାତ୍ମକ ତତ୍ତ୍ୱକୁ ଅନୁଗତ ବୋଲି ପୂର୍ବରୁ ଦେଖୁଥିବା ବ୍ୟକ୍ତି ତାହାକୁ ପୂର୍ବପରି ନ ଦେଖି ଯେବେ କେବଳ ଏକ ପରମକାରଣ ବ୍ରହ୍ମକୁ ହିଁ ଦେଖେ, ତେବେ

ତାହାକୁ ବିଜ୍ଞାନ (ଅପରୋକ୍ଷ ଜ୍ଞାନ) ବୋଲି କୁହାଯାଏ । ଯେତେ ସବୁ ତ୍ରିଗୁଣାତ୍ମକ ଅବୟବବିଶିଷ୍ଟ ପଦାର୍ଥ ଅଛି, ତାର ଉତ୍ପତ୍ତି, ସ୍ଥିତି ଓ ବିନାଶ ଅଛି । ପରମାତ୍ମତତ୍ତ୍ୱ ସୃଷ୍ଟିର ଆଦ୍ୟରେ ଅଛି, ଶେଷରେ ଅଛି ଓ ମଧ୍ୟରେ ରହିଛି ଏବଂ ପ୍ରଳୟପରେ ମଧ୍ୟ ତାହା ଅବଶିଷ୍ଟ ରହିବ । ତାହା ହିଁ ଏକମାତ୍ର ସତ୍ୟ ॥୧୫-୧୬॥ ଶ୍ରୁତି, ପ୍ରତ୍ୟକ୍ଷ ଅନୁଭୂତି ଐତିହ୍ୟ, (ମହାପୁରୁଷମାନଙ୍କର ବାକ୍ୟ) ଓ ଅନୁମାନ -- ଏହି ଚାରୋଟିକୁ ପ୍ରମାଣ ବୋଲି ଧରାଯାଏ । ଏହି ସବୁ ପ୍ରମାଣଦ୍ୱାରା ଦୃଶ୍ୟମାନ ଜଗତର ଅବସ୍ଥିତି ନ ଥିବାରୁ ଓ ସତ୍ୟର କୌଣସି ବିକଳ୍ପ ନ ଥିବାରୁ ଜ୍ଞାନୀ ବ୍ୟକ୍ତି ସଂସାର ପ୍ରତି ବିରକ୍ତ ହୋଇଯାଏ । ବ୍ରହ୍ମଲୋକ ପର୍ଯ୍ୟନ୍ତ ସମସ୍ତ କର୍ମର ଫଳ ଅଛି । ତାହା ଅଦୃଷ୍ଟ ହେଲେ ମଧ୍ୟ ପ୍ରତ୍ୟକ୍ଷ ଦୃଷ୍ଟ ପଦାର୍ଥ ପରି ନଶ୍ୱର । ତେଣୁ ବିବେକୀ ବ୍ୟକ୍ତି ଏହାକୁ ଦୁଃଖମୟବୋଲି ଦର୍ଶନ କରେ ॥୧୭-୧୮॥

ନିଷ୍ପାପ ଉଦ୍ଧବ, ଭକ୍ତିଯୋଗ ବିଷୟ ମୁଁ ତୁମକୁ ପୂର୍ବରୁ କହିଛି । ପୁନର୍ବାର ମୋ'ଠାରେ କିପରି ଭକ୍ତି ହେବ, ତା'ର ପ୍ରଧାନ ଉପାୟମାନଙ୍କ ବିଷୟରେ ମୁଁ କହିବାକୁ ଯାଉଛି ॥୧୯॥ ମୋର କଥାମୃତରେ ଶ୍ରଦ୍ଧା, ସର୍ବଦା ମୋର ନାମକୀର୍ତ୍ତନ, ମୋର ପୂଜାରେ ନିଷ୍ଠା, ଭଜନମାନଙ୍କ ଦ୍ୱାରା ମୋର ସ୍ତୁତିଗାନ, ମୋର ସେବାରେ ଆଦର, ସାଷ୍ଟାଙ୍ଗ ପ୍ରଣିପାତ, ମୋର ଭକ୍ତକୁ ମୋ'ଠାରୁ ଅଧିକ ପୂଜା କରିବା, ସମସ୍ତପ୍ରାଣୀଙ୍କ ମଧ୍ୟରେ ମୋତେ ଅନୁଭବ କରିବା, ମୋ ସେବାପାଇଁ ନିଜର ଅଙ୍ଗ ପ୍ରତ୍ୟଙ୍ଗକୁ କର୍ମଠ କରିବା, କଥାକଥାରେ ମୋର ଗୁଣ ଗାନ କରିବା, ମୋଠାରେ ଚିତ୍ତ ନିବେଶ କରିବା, ମୋପାଇଁ ସମସ୍ତ କାମନା ତ୍ୟାଗ କରିବା ଭୋଗସୁଖର କୌଣସି ପ୍ରୟୋଜନ ନ ଦେଖିବା, ଜଳାଶୟାଦି ଖନନ କରିବା ଏବଂ ଦାନ, ହୋମ, ବ୍ରତ ଆଦି ସବୁ କିଛି ମୋ ଉଦ୍ଦେଶ୍ୟରେ କରିବା -- ମୋଠାରେ ନିଜକୁ ସମର୍ପଣ ପୂର୍ବକ ଏହାସବୁ କରାଗଲେ, ମୋ ପ୍ରତି ଭକ୍ତି ଜାତ ହୁଏ ଏବଂ ମୋର ଭକ୍ତର ଏହା ଛଡ଼ା ଆଉ କିଛି ପାଇବାର ନ ଥାଏ ॥୨୦-୨୪॥ ଏହିପରି ସାତ୍ତ୍ୱିକଗୁଣଯୁକ୍ତ ଶାନ୍ତଚିତ୍ତ ଭକ୍ତ ମୋଠାରେ ସମର୍ପିତ ହେଲେ ଧର୍ମ, ଜ୍ଞାନ ଓ ଭାଗ୍ୟଯୁକ୍ତ ଐଶ୍ୱର୍ଯ୍ୟ ସ୍ୱୟଂ ଆସି ତା'ନିକଟରେ ଉପସ୍ଥିତ ହୁଏ ॥୨୫॥ ଏହାର ବିପରୀତପକ୍ଷରେ ଇନ୍ଦ୍ରିୟମାନଙ୍କଦ୍ୱାରା ପରିଚାଳିତ ମନ ରଜୋଗୁଣଯୁକ୍ତ ହୋଇ ଅସତ୍ କର୍ମର ଆଚରଣ କରେ ଏବଂ ତଦ୍ଦ୍ୱାରା ଚିତ୍ତର ବିପର୍ଯ୍ୟୟ ଘଟେ ॥୨୬॥ ମୋ'ଠାରେ ଭକ୍ତି ରଖି ଯାହା କରାଯାଏ, ତାହା ହେଉଛି ପ୍ରକୃଷ୍ଟ ଧର୍ମ । ସମସ୍ତ ପ୍ରାଣୀଙ୍କ ମଧ୍ୟରେ ଏକ ଏବଂ ଅଭିନ୍ନ ଆତ୍ମାର ଦର୍ଶନ ହେଉଛି ପ୍ରକୃତ ଜ୍ଞାନ । ବିଷୟମାନଙ୍କପ୍ରତି ଆସକ୍ତ ନ ହେବା ହେଲା ବୈରାଗ୍ୟ ଏବଂ ଅଣିମା ଆଦି ଅଷ୍ଟସିଦ୍ଧି ହେଉଛି ଐଶ୍ୱର୍ଯ୍ୟ ॥୨୭॥

ଉଦ୍ଧବ ପଚାରିଲେ, ହେ ଅରିନ୍ଦମ କୃଷ୍ଣ, ହେ ପ୍ରଭୁ, ଯମ ଓ ନିୟମ କେତେ ପ୍ରକାରର ଅଛି ? ଶମ, ଦମ, ତିତିକ୍ଷା ଓ ଧୃତି କାହାକୁ କୁହାଯାଏ ? ଦାନ, ତପ, ଶୌର୍ଯ୍ୟ, ସତ୍ୟ, ଋତ, ତ୍ୟାଗ, ଅଭ୍ୟର୍ଥିତ ଧନ, ଯଜ୍ଞ ଓ ଦକ୍ଷିଣା କ'ଣ ? ॥୨୮-୨୯॥ ଶ୍ରୀମାନ୍, ପୁରୁଷର ବଳ କାହାକୁ କୁହାଯାଏ ? ହେ କେଶବ, ଭଗ (ଐଶ୍ୱର୍ଯ୍ୟ) କ'ଣ, ଲାଭ କ'ଣ, ପରାବିଦ୍ୟା କ'ଣ, ଲଜ୍ଜା, ଶ୍ରୀ, ସୁଖ ବା ଦୁଃଖ କ'ଣ ? ॥୩୦॥ କିଏ ପଣ୍ଡିତ, କିଏ ମୂର୍ଖ,କ'ଣ ପନ୍ଥା ଓ କୁମାର୍ଗ କ'ଣ, ସ୍ୱର୍ଗ ଓ ନରକଭ କ'ଣ, ବଂଧୁ କିଏ ଓ ଗୃହ କାହାକୁ କୁହାଯାଏ ? ॥୩୧॥ ଧନୀ କିଏ, ଦରିଦ୍ର କିଏ, କୃପଣ କିଏ ଓ ଈଶ୍ୱର ମଧ୍ୟ କିଏ ? ହେ ସନ୍ଥପାଳକ, ମୋର ଏହି ସବୁ ପ୍ରଶ୍ନ ଓ ଏମାନଙ୍କ ବିପରୀତ ଆଉ ଯେଉଁ ପ୍ରଶ୍ନ ସବୁ ରହିଯାଇଛି, ତାର ଉତ୍ତର ମୋତେ ବୁଝାଇ କହନ୍ତୁ ॥୩୨॥

ଭଗବାନ୍ ଶ୍ରୀକୃଷ୍ଣ କହିଲେ, ଯମ ହେଉଛି ବାରପ୍ରକାର - ଅହିଂସା, ସତ୍ୟ, ଅସ୍ତେୟ(ଅଚୌର୍ଯ୍ୟ), ଅନାସକ୍ତି, ଲଜ୍ଜା, ଅସଞ୍ଚୟ, ଈଶ୍ୱରବିଶ୍ୱାସ, ବ୍ରହ୍ମଚର୍ଯ୍ୟ, ମୌନ, ସ୍ଥୈର୍ଯ୍ୟ, କ୍ଷମା ଓ ନିର୍ଭୀକତା । ନିୟମ ମଧ୍ୟ ବାରପ୍ରକାର--ଅନ୍ତଃଶୁଦ୍ଧି ଓ ବାହ୍ୟଶୁଦ୍ଧି, ଜପ, ତପ, ହୋମ, ଶ୍ରଦ୍ଧା, ଅତିଥିସେବା, ମୋର ଆରାଧନା, ତୀର୍ଥଭ୍ରମଣ, ପରପାଇଁ ଚେଷ୍ଟା, ସନ୍ତୋଷ ଓ ଗୁରୁସେବା । ଉଦ୍ଧବ, ଏହି ଦ୍ୱାଦଶସଂଖ୍ୟକ ଯମ ଓ ନିୟମମାନଙ୍କୁ ପାଳନ କଲେ ତାହା ସବୁ କାମଧେନୁପରି ମୋକ୍ଷ ଓ ଅଭ୍ୟୁଦୟ ପ୍ରଦାନ କରନ୍ତି ॥୩୩-୩୫॥ ମୋ'ଠାରେ ବୁଦ୍ଧିର ନିଷ୍ଠା ହେଉଛି ଶମ । ଇନ୍ଦ୍ରିୟସଂଯମ ହେଉଛି ଯମ । ଶାସ୍ତ୍ରବିହିତ

ଦୁଃଖ ସହିବା ହେଉଛି ତିତିକ୍ଷା । ଜିହ୍ୱା ଓ ଜନନେନ୍ଦ୍ରିୟର ଜୟ ହେଉଛି ଧୃତି ।।୩୬।। କାହା ପ୍ରତି ଦ୍ରୋହ ନ କରିବା ହେଉଛି ଶ୍ରେଷ୍ଠ ଦାନ । ଭୋଗମାନଙ୍କୁ ଉପେକ୍ଷାକରିବା ହେଉଛି ତପ । ବାସନାମାନଙ୍କୁ ପ୍ରତିରୋଧକରିବା ହେଉଛି ଶୌର୍ଯ୍ୟ । ସମଦର୍ଶନ ଅର୍ଥାତ୍ ବ୍ରହ୍ମସଂବନ୍ଧୀ ଆଲୋଚନା ହେଉଛି ସତ୍ୟ ।।୩୭।। ସତ୍ୟ ଓ ପ୍ରିୟ ବଚନକୁ ଋଷିମାନେ ଋତ ବୋଲି କହିଥା'ନ୍ତି । କର୍ମରେ ଆସକ୍ତ ନ ହେବା ହେଉଛି ଶୌଚ, ଓ ସନ୍ନ୍ୟାସ ହେଉଛି ତ୍ୟାଗ। 'ସନ୍ନ୍ୟାସ' ଅର୍ଥ ସମ୍ୟକ୍‌ରୂପେ ସବୁ କିଛି ନ୍ୟାସ କରିବା ।।୩୮।। ଧର୍ମ ହେଉଛି ମନୁଷ୍ୟମାନଙ୍କର ଅଭୀଷ୍ଟ ଧନ । ମୁଁ ପରମେଶ୍ୱର ହେଉଛି ଯଜ୍ଞ(ଏଇ ବିଚାରରେ ଯଜ୍ଞ ଅନୁଷ୍ଠେୟ) । ଜ୍ଞାନପାଇଁ ଉପଦେଶ ଦେବା ହେଉଛି ଦକ୍ଷିଣା ଏବଂ ପ୍ରାଣାୟାମ ହେଉଛି ମନୁଷ୍ୟର ଶ୍ରେଷ୍ଠ ବଳ ।।୩୯।। ମୋର ଐଶ୍ୱର୍ଯ୍ୟ ଆଦି ଷଡ଼୍‌ବିଧ ଗୁଣ ହେଉଛି ଭଗ, ମୋର ଭକ୍ତି ହେଉଛି ଉତ୍ତମ ଲାଭ । ଆତ୍ମାରେ ପ୍ରତୀତ ଭେଦର ନିରାକରଣ ହେଉଛି ବିଦ୍ୟା । ପାପ କର୍ମ ପ୍ରତି ଘୃଣା ହେଉଛି ଲଜ୍ଜା(ହ୍ରୀ) ।।୪୦।। ନିରପେକ୍ଷତା ଆଦି ଗୁଣ ହେଉଛି ଶରୀରର ମଣ୍ଡନ। ଦୁଃଖ ଓ ସୁଖର ଅତିକ୍ରମ ହେଉଛି ସୁଖ ଓ ବିଷୟଭୋଗପାଇଁ ଅପେକ୍ଷା ହେଉଛି ଦୁଃଖ । ବନ୍ଧନ ଓ ମୋକ୍ଷର ତତ୍ତ୍ୱ ଜାଣିଥିବା ବ୍ୟକ୍ତି ପଣ୍ଡିତ ।।୪୧।। ଯାହାର ଦେହାଦିରେ 'ମୁଁ-ମୋର' ବୁଦ୍ଧି ଥାଏ, ସେ ହେଉଛି ମୂର୍ଖ । ମୋତେ ଲାଭ କରିବାର ନିବୃତ୍ତି-ମାର୍ଗ ହେଉଛି ପନ୍ଥା (ସୁମାର୍ଗ) । ଚିତ୍ତବିକ୍ଷେପ (ପ୍ରବୃତ୍ତି ମାର୍ଗ) ହେଉଛି ଉତ୍‌ପଥ ବା କୁମାର୍ଗ । ସତ୍ତ୍ୱଗୁଣର ଉଦୟ ହେଉଛି ସ୍ୱର୍ଗ ।।୪୨।। ସଖା ଉଦ୍ଧବ, ତମୋଗୁଣର ଉଦ୍ରେକ ହେଉଛି ନରକ । ଗୁରୁ ହିଁ ବନ୍ଧୁ ଏବଂ ମୁଁ ସେହି ଗୁରୁ । ମନୁଷ୍ୟଶରୀର ହେଉଛି ଗୃହ (ସାଧନର ଆୟତନ) । ସଦ୍‌ଗୁଣ ଥିବା ବ୍ୟକ୍ତିକୁ ଧନୀ (ଆଢ୍ୟ) କୁହାଯାଏ ।।୪୩।। ଯେ ଅସନ୍ତୁଷ୍ଟ ରହେ, ସେ ହେଉଛି ଦରିଦ୍ର ଏବଂ ଇନ୍ଦ୍ରିୟକୁ ଜୟକରି ନ ଥିବା ବ୍ୟକ୍ତି ହିଁ କୃପଣ (ଶୋଚ୍ୟ)। ବିଷୟରେ ଅନାସକ୍ତ ବୁଦ୍ଧି ଯାହାର ସେ ହେଉଛି ଈଶ୍ୱର ବା ସ୍ୱତନ୍ତ୍ର ଏବଂ ବିଷୟରେ ଯାହାର ଆସକ୍ତି ସେ ଅନୀଶ୍ୱର ବା ପରାଧୀନ (ବିପର୍ଯ୍ୟୟ) ।।୪୪।। ଉଦ୍ଧବ, ତୁମର ଏହି ପ୍ରଶ୍ନମାନଙ୍କର ମୁଁ ଯଥାର୍ଥ ଉତ୍ତର ଦେଇଛି । ଗୁଣଦୋଷର ଲକ୍ଷଣ କଣ ବା ବର୍ଣ୍ଣନା କରିବି ? ଦୋଷଗୁଣ ଦେଖିବା ହେଉଛି ଦୋଷ ଏବଂ ଉଭୟକୁ ନ ଦେଖିବା ହେଉଛି ଗୁଣ ।।୪୫।।

### ବିଂଶ ଅଧ୍ୟାୟ

## ଜ୍ଞାନଯୋଗ, କର୍ମଯୋଗ ଓ ଭକ୍ତିଯୋଗ

ହେ କମଳନୟନ, ବେଦ ହେଉଛି ଆପଣଙ୍କର ଆଜ୍ଞାରୂପକ ବାଣୀ । ଏଥିରେ ବିଧି ଅଛି, ନିଷେଧ ଅଛି ଏବଂ କର୍ମର ଗୁଣ ଓ ଦୋଷକୁ ବିଚାର କରାଯାଇ ଏହା କରାଯାଇଛି ।।୧।। ବର୍ଣ୍ଣାଶ୍ରମରେ ଭେଦବିଚାର, ପ୍ରତିଲୋମ ଓ ଅନୁଲୋମରେ ବର୍ଣ୍ଣସଙ୍କର ବିଚାର, ଦ୍ରବ୍ୟ, ଦେଶ, ବୟସ, କାଳ ଓ ନରକ ଆଦିର ଭେଦବିଚାର ବେଦରେ କରାଯାଇଛି ।।୨।। ଆପଣଙ୍କର ବେଦବାଣୀରେ ଗୁଣ-ଦୋଷର ଭେଦଦୃଷ୍ଟି ରହିଛି । ତାହେଲେ ବିଧି-ନିଷେଧ-ଯୁକ୍ତ ଏହି ବେଦବାଣୀ କିପରି ଲୋକମାନଙ୍କର କଲ୍ୟାଣପାଇଁ ଉଦ୍ଦିଷ୍ଟ ? ।।୩।। ହେ ଈଶ୍ୱର, ପିତୃଗଣ ଦେବତା ଓ ମନୁଷ୍ୟମାନଙ୍କ ପାଇଁ ଆପଣଙ୍କର ବେଦବାଣୀ ହେଉଛି ଚକ୍ଷୁସ୍ୱରୂପ । ସ୍ୱର୍ଗ ଓ ମୋକ୍ଷ ପାଇଁ କ'ଣ ମଙ୍ଗଳକର ଏବଂ ଏହି ସଂସାରରେ କେଉଁ କାର୍ଯ୍ୟ କିପରି କରାଯିବା ଉଚିତ, ବେଦରେ ଏସବୁର ବିଚାର କରାଯାଇଛି ।।୪।। ଗୁଣ ଓ ଦୋଷର ଭେଦଦୃଷ୍ଟି ଆପଣଙ୍କର ବେଦରେ ହିଁ ନିହିତ । ଏହା ଅନ୍ୟକାହାର କଳ୍ପନା ନୁହେଁ । ବେଦରେ କେତେକ କାର୍ଯ୍ୟକୁ ନିଷେଧ କରାଯାଇଛି । ତେଣୁ ମୋ ମନରେ ଯେଉଁ ଭ୍ରମ ସୃଷ୍ଟି ହେଉଛି, ଆପଣ ତାହା ଦୂର କରନ୍ତୁ ।।୫।।

ଭଗବାନ୍ ଶ୍ରୀକୃଷ୍ଣ କହିଲେ, ଲୋକମାନଙ୍କର ମଙ୍ଗଳପାଇଁ ମୁଁ ତିନୋଟି ଯୋଗର କଥା କହିଛି -- ଜ୍ଞାନ, କର୍ମ ଓ ଭକ୍ତି । ଏହାଛଡ଼ା ଅନ୍ୟ କୌଣସି ଉପାୟ ନାହିଁ ॥୬॥ କର୍ମରେ ବିରକ୍ତ ହୋଇଥିବା କର୍ମତ୍ୟାଗୀମାନଙ୍କପାଇଁ ଜ୍ଞାନଯୋଗ, ସେଥିରେ ବିରକ୍ତ ନ ହୋଇ କାମନାପରାୟଣ ବ୍ୟକ୍ତିପାଇଁ କର୍ମଯୋଗ ଏବଂ ମୋର କଥା ଯାହା ମନରେ ଶ୍ରଦ୍ଧା ଜାତକରେ, ସେହି ଅନାସକ୍ତ ବ୍ୟକ୍ତିପାଇଁ ଭକ୍ତିଯୋଗର କଥା କୁହାଯାଇଛି ॥୭-୮॥ ଯେ ପର୍ଯ୍ୟନ୍ତ କର୍ମ ଏବଂ କର୍ମଫଳ ପ୍ରତି ବୈରାଗ୍ୟ ଆସି ନାହିଁ କିମ୍ବା ମୋର କଥା ଶ୍ରବଣ ଆଦିରେ ଶ୍ରଦ୍ଧା ଜାତ ହୋଇ ନାହିଁ, ସେ ପର୍ଯ୍ୟନ୍ତ କର୍ମସବୁ କରିବାକୁ ହେବ ॥୯॥ ଯେଉଁ ବ୍ୟକ୍ତି ନିଜର ବର୍ଣ୍ଣାଶ୍ରମ ଧର୍ମରେ ରହି, କୌଣସି ଆଶା ନ ରଖି ଯଜ୍ଞଦ୍ୱାରା ମୋର ଆରାଧନା କରେ ଏବଂ କୌଣସି ନିଷିଦ୍ଧ କର୍ମର ଆଚରଣ କରେ ନାହିଁ, ସ୍ୱର୍ଗ କିମ୍ବା ନରକ କେଉଁଠିକି ହେଲେ ତାକୁ ଯିବାକୁ ପଡ଼େ ନାହିଁ ॥୧୦॥ ପାପକର୍ମରୁ ନିବୃତ୍ତ ହୋଇ ସ୍ୱଧର୍ମ ପାଳନ କରୁଥିବା ବ୍ୟକ୍ତି ଏହି ସଂସାରରେ ପବିତ୍ର ହୋଇଯାଏ । ସେ ବିଶୁଦ୍ଧ ଜ୍ଞାନ ଲାଭ କରେ ଓ ମୋ ପ୍ରତି ତାର ସ୍ୱତଃ ଭକ୍ତି ଜାତହୁଏ ॥୧୧॥ ସ୍ୱର୍ଗର ଅଧିବାସୀ ଓ ନରକବାସୀମାନେ ଏହି ମର୍ତ୍ତ୍ୟଲୋକରେ ଜନ୍ମହେବାପାଇଁ ଇଚ୍ଛାକରନ୍ତି । କାରଣ ନରଦେହରେ କେବଳ ଜ୍ଞାନ ଓ ଭକ୍ତିର ସାଧନା କରାଯାଇପାରେ । ଉଭୟ ସ୍ୱର୍ଗ ଓ ନରକବାସୀ ଦେହଧାରୀଙ୍କ ପକ୍ଷରେ ଜ୍ଞାନ ଭକ୍ତିର ସାଧନା ହୋଇପାରେ ନାହିଁ ॥୧୨॥ ବିଚକ୍ଷଣ ବ୍ୟକ୍ତି ସ୍ୱର୍ଗ ବା ନରକ କେଉଁଠିକୁ ହେଲେ ଯିବାପାଇଁ ଇଚ୍ଛା କରେ ନାହିଁ, ଏପରିକି ମର୍ତ୍ତ୍ୟଲୋକ ମଧ୍ୟ ଇଚ୍ଛା କରେ ନାହିଁ । କାରଣ ଦେହଧାରଣ ମାତ୍ରେ ସମସ୍ତ ପ୍ରମାଦ ଘଟିଥାଏ ॥୧୩॥ ମନୁଷ୍ୟର ଶରୀର ମରଣଶୀଳ ହେଲେ ମଧ୍ୟ ଏହା ମୋକ୍ଷପ୍ରଦ । ଏ କଥା ଜାଣି ବିଦ୍ୱାନ୍ ବ୍ୟକ୍ତି ମୃତ୍ୟୁ ପୂର୍ବରୁ ନିରଳସ ଭାବେ ମୋକ୍ଷପାଇଁ ଯତ୍ନବାନ୍ ହୁଏ ॥୧୪॥

ପକ୍ଷୀ ଗଛରେ ବସା କରିଥାଏ । ସେ ଯେତେବେଳେ ଦେଖେ ଯେ ନିର୍ଦ୍ଦୟ ବ୍ୟକ୍ତିମାନେ ସେହି ଗଛକୁ କାଟିବାକୁ ଲାଗିଲେଣି ସେ ଅନାସକ୍ତ ଭାବରେ ନିଜର ବସା ଛାଡ଼ି ନିରାପଦ ସ୍ଥାନକୁ ଚାଲିଯାଏ ॥୧୫॥ ଅହୋରାତ୍ର ଶରୀରର ଆୟୁ କ୍ଷୀଣ ହେବାରେ ଲାଗିଛି । ଏହା ଜାଣିପାରି ଭୟରେ କମ୍ପିତ ବ୍ୟକ୍ତି ସମସ୍ତ ଆସକ୍ତି ଛାଡ଼ିଦିଏ ଓ ମୃତ୍ୟୁ ସଂପର୍କରେ ଉଦାସୀନ ରହି ପରମତତ୍ତ୍ୱଜ୍ଞାନରେ ଶାନ୍ତି ଲାଭକରେ ॥୧୬॥ ସମସ୍ତ କର୍ମଫଳର ମୂଳ ଏହି ଦୁର୍ଲଭ ନରଦେହ କେବଳ ଦୈବୀକୃପାରୁ ସହଜରେ ମିଳିଥାଏ । ଏହା ଏକ ସୁଗଠିତ ନୌକାସ୍ୱରୂପ । ଗୁରୁ ଏହାର କର୍ଣ୍ଣଧାର । ମୁଁ ଅନୁକୂଳ ବାୟୁରୂପରେ ପ୍ରବାହିତହୋଇ ଏହାକୁ ଚଳାଇଥାଏ । ଯେଉଁ ବ୍ୟକ୍ତି ଏହି ନୌକାଦ୍ୱାରା ଭବସାଗର ପାରିହୁଏ ନାହିଁ, ତାକୁ ଆତ୍ମଘାତୀ ବୋଲି ବୁଝିବାକୁ ହେବ ॥୧୭॥ ଯେତେବେଳେ ବ୍ୟକ୍ତି ନିଜେ ଆରମ୍ଭ କରୁଥିବା କର୍ମସବୁ ଦୁଃଖମୟ ବୋଲି ଜାଣିପାରେ, ସେତେବେଳେ ଏହାପ୍ରତି ତା'ର ବିରକ୍ତି ଆସିଯାଏ । ଇନ୍ଦ୍ରିୟମାନଙ୍କୁ ସଂଯତ କରି ସେ ଯୋଗାଭ୍ୟାସ ଦ୍ୱାରା ନିଜର ମନକୁ ମୋଠାରେ ହିଁ ସ୍ଥିର ରଖେ ॥୧୮॥ ସେତେବେଳେ ଯଦି ଏହି ମନ ଚଞ୍ଚଳହୁଏ ଓ ବିଚଳିତ ହୋଇଯାଏ, ମନର କିଛି ଓରମାନକୁ ମେଣ୍ଟାଇ ତାକୁ ନିଜବଶରେ ଆଣିବାକୁ ହେବ ॥୧୯॥ ପ୍ରାଣ ଓ ଇନ୍ଦ୍ରିୟକୁ ଜୟ କରିଥିବା ବ୍ୟକ୍ତି ମନର ପ୍ରବୃତ୍ତିକି ସମ୍ପୂର୍ଣ୍ଣ ଉପେକ୍ଷା କରିବ ନାହିଁ । ସତ୍ତ୍ୱସମ୍ପନ୍ନ ବୁଦ୍ଧିଦ୍ୱାରା ମନକୁ ଧୀରେ ଧୀରେ ନିଜର ବଶକୁ ଆଣିବ ॥୨୦॥ ଘୋଡ଼ାର ସଇସ ଯେପରି ପ୍ରଥମେ ତାଲିମ୍ ଦେବାବେଳେ ଘୋଡ଼ାର ଇଚ୍ଛାରେ କିଛି ବାଟ ନେଇଯାଏ ଏବଂ ତା'ପରେ ଲଗାମ୍ ଦ୍ୱାରା ତାକୁ ନିଜ ବଶକୁ ଆଣେ, ସେହିପରି ମନକୁ ବଶକରିବା ହେଉଛି ଏକ ଶ୍ରେଷ୍ଠ ଯୋଗ ॥୨୧॥ ସାଂଖ୍ୟ ଶାସ୍ତ୍ରରେ ପ୍ରକୃତିରୁ ଆରମ୍ଭ କରି ଶରୀରପର୍ଯ୍ୟନ୍ତ ସୃଷ୍ଟିର ଯେଉଁ କ୍ରମବିକାଶ କଥା କୁହାଯାଉଛି, ସେହି ଅନୁସାରେ ସୃଷ୍ଟିର ଚିନ୍ତା କରି ଯେପରି ଶରୀର ଆଦି ପ୍ରକୃତିରେ ଲୀନ ହୋଇଯାଆନ୍ତି, ସେହି ଲୀନହେବା ବା ବିଲୟର ଚିନ୍ତା କରିବା ଉଚିତ । ଯେ ପର୍ଯ୍ୟନ୍ତ ମନ ସ୍ଥିର ହୋଇ ନାହିଁ, ସେପର୍ଯ୍ୟନ୍ତ ଏହି କ୍ରମକୁ ଜାରି ରଖିବ ॥୨୨॥ ଅବିବେକୀ ନିର୍ଲିପ୍ତ ବ୍ୟକ୍ତି ସଂସାର ପ୍ରତି ବିରକ୍ତ ଗୁରୁଙ୍କର ଉପଦେଶକୁ ବାରମ୍ବାର ଚିନ୍ତା କରି ମନର ଦୌରାତ୍ମ୍ୟକୁ ତ୍ୟାଗ କରିବ ॥୨୩॥ ଯମ, ନିୟମ ଆଦି ଯୋଗବିଦ୍ୟାଦ୍ୱାରା,

ବସ୍ତୁତତ୍ତ୍ୱର ପରୀକ୍ଷା-ନିରୀକ୍ଷାରୂପକ ଆତ୍ମବିଦ୍ୟା (ଆନ୍ୱୀକ୍ଷିକୀ) ଦ୍ୱାରା ବା ମୋର ପୂଜା ଉପାସନାଦ୍ୱାରା ମନ ପରମାତ୍ମାଙ୍କୁ ଚିନ୍ତାକରେ । ଅନ୍ୟ କୌଣସି ଉପାୟରେ ନୁହେଁ ।।୨୪।। ଯଦି ପ୍ରମାଦବଶରୁ ଯୋଗୀ କୌଣସି ଗର୍ହିତ କାମ କରେ, ତା'ହେଲେ ଯୋଗଦ୍ୱାରା ସେ ପାପକୁ ଦଗ୍ଧ କରିପାରିବ । ତାର ଅନ୍ୟ କୌଣସି ଉପାୟ ନାହିଁ ।।୨୫।। ନିଜ ନିଜ ଅଧିକାରରେ ଥିବା ନିଷ୍ଠାକୁ ଗୁଣ କୁହାଯାଏ । କର୍ମ ହେଉଛି ଜନ୍ମରୁ ଅଶୁଦ୍ଧ । ଗୁଣ-ଦୋଷ କ'ଣ ଏବଂ ସେଥିପାଇଁ ଯେଉଁ ବିଧି-ନିଷେଧର ବିଧାନ ଅଛି, ତାହା ପାଳନ କଲେ ବିଷୟ ପ୍ରତି ଆସକ୍ତି ରହେନାହିଁ ଓ ଅଶୁଦ୍ଧ କର୍ମର ପ୍ରବୃତ୍ତିକୁ ସଙ୍କୁଚିତ କରାଯାଏ ।।୨୬।। ସମସ୍ତ କର୍ମ ଦୁଃଖମୟବୋଲି ଜାଣି ସେଥିପ୍ରତି ବିରକ୍ତି ଓ ମୋ ପ୍ରତି ଶ୍ରଦ୍ଧା ଥାଇ ମଧ୍ୟ ବ୍ୟକ୍ତି ଭୋଗବାସନା ପରିତ୍ୟାଗ କରିବାରେ ଅସମର୍ଥ ହୁଏ । ଏପରି ଅବସ୍ଥାରେ ବିଷୟଭୋଗ କରୁଥିଲେ ମଧ୍ୟ ତାହା ଦୁଃଖମୟବୋଲି ବିଚାର କରି ସେଥିରୁ ମୁକ୍ତିପାଇଁ ଦୃଢ଼ ନିଶ୍ଚୟ ହୋଇ ପରମଶ୍ରଦ୍ଧା ଓ ପ୍ରେମରେ ମୋର ଭଜନ କରିବା ଉଚିତ ।।୨୭-୨୮।। ଏହିପରି ମୋ' କଥିତ ଭକ୍ତିଯୋଗଦ୍ୱାରା ଯେ ମୋତେ ନିରନ୍ତର ଭଜନ କରେ, ମୁଁ ତାର ହୃଦୟମଧ୍ୟରେ ବାସ କରେ ଏବଂ ମୋର ରହିବା ଦ୍ୱାରା ତାର ସମସ୍ତ କାମବାସନା ନଷ୍ଟ ହୋଇଯାଏ ।।୨୯।। ମୁଁ ହେଉଛି ଅଖିଳ ଜୀବଙ୍କର ଆତ୍ମା । ଏହିପରି ଯେ ମୋତେ ଦର୍ଶନ କରେ, ତାହାର ଅହଙ୍କାରରୂପକ ହୃଦୟଗ୍ରନ୍ଥି ଛିନ୍ନ ହୋଇଯାଏ ଏବଂ ସମସ୍ତ ସଂଶୟ ଦୂର ହୋଇ ସକଳ କର୍ମର କ୍ଷୟ ଘଟେ ।।୩୦।। ତେଣୁ ମୋ ପ୍ରତି ଭକ୍ତିଥିବା ଓ ମୋଠାରେ ନିଜକୁ ସମର୍ପଣ କରିଥିବା ଯୋଗୀର ଜ୍ଞାନ ଓ ବୈରାଗ୍ୟର କୌଣସି ଆବଶ୍ୟକତା ରହେ ନାହିଁ । ମୋର ଭକ୍ତି ହିଁ ତାର ସମସ୍ତ ମଙ୍ଗଳ ସାଧନ କରିଥାଏ ।।୩୧।। କର୍ମଦ୍ୱାରା, ତପସ୍ୟାଦ୍ୱାରା, ଜ୍ଞାନ ଓ ବୈରାଗ୍ୟଦ୍ୱାରା, ଯୋଗ ଓ ଦାନଧର୍ମଦ୍ୱାରା ଅଥବା ଅନ୍ୟାନ୍ୟ ଶ୍ରେୟକର୍ମଦ୍ୱାରା ଯାହା ଯାହା ମିଳିଯାଏ, ସେ ସବୁ ଏବଂ ସ୍ୱର୍ଗ, ମୋକ୍ଷ ଓ ମୋର ଧାମ ଯାହା କିଛି ଭକ୍ତ ଇଚ୍ଛା କରେ ତତ୍କ୍ଷଣାତ୍ ତାହା ଲାଭକରେ ।।୩୨-୩୩।। ମୋର ଏକାନ୍ତ ଭକ୍ତ ଧୀର ଓ ସାଧୁ ବ୍ୟକ୍ତି କୌଣସି କାମନା କରେ ନାହିଁ । ମୁଁ ତାକୁ କୈବଲ୍ୟ ବା ମୁକ୍ତି ଯାଚିଲେ ମଧ୍ୟ ସେ ତାହା ଇଚ୍ଛା କରେ ନାହିଁ ।।୩୪।। କାମନାର ତ୍ୟାଗ ହିଁ ସେଥିପାଇଁ ପରମ ମଙ୍ଗଳକର ବୋଲି କୁହାଯାଇଛି । ତେଣୁ ନିଷ୍କାମ ଓ ନିରପେକ୍ଷ ବ୍ୟକ୍ତିକୁ ଶୀଘ୍ର ମୋର ଭକ୍ତି ମିଳିଯାଏ ।।୩୫।। ପ୍ରକୃତିର ଅତୀତ ପରମାତ୍ମାଙ୍କୁ ଯେଉଁମାନେ ଲାଭ କରନ୍ତି, ମୋର ଅନନ୍ୟ ଭକ୍ତ ସେହି ସମଦର୍ଶୀ ମହାତ୍ମାମାନଙ୍କୁ ବିଧିନିଷେଧ ଲାଗେ ନାହିଁ ଏବଂ ସେଥିରୁ ଜାତ ପାପ, ପୁଣ୍ୟ ସହିତ ସେମାନଙ୍କର କୌଣସି ସମ୍ପର୍କ ନ ଥାଏ ।।୩୬।। ଏହିପରି ମୋର ଉପଦେଶ (ଜ୍ଞାନ, ଭକ୍ତି ଓ କର୍ମମାର୍ଗ)କୁ ଯେ ଆଶ୍ରୟ କରେ, ସେ ମୋର ପରମ ମଙ୍ଗଳମୟ ଧାମକୁ ଲାଭକରେ ଏବଂ ପରଂବ୍ରହ୍ମତତ୍ତ୍ୱକୁ ଜାଣିପାରେ ।।୩୭।।

### ଏକବିଂଶ ଅଧ୍ୟାୟ

## ଗୁଣ-ଦୋଷର ସ୍ୱରୂପ

ଭଗବାନ୍ ଶ୍ରୀକୃଷ୍ଣ କହିଲେ, ଉଦ୍ଧବ, ମୋତେ ପାଇବାପାଇଁ ଯେଉଁ ତିନୋଟି ପନ୍ଥା ଅଛି, ତାହା ହେଉଛି ଭକ୍ତିଯୋଗ, ଜ୍ଞାନଯୋଗ ଓ କ୍ରିୟାଯୋଗ । ଯେ ଏହାକୁ ଛାଡ଼ି ଚଞ୍ଚଳ ଇନ୍ଦ୍ରିୟମାନଙ୍କଦ୍ୱାରା ତୁଚ୍ଛ ଭୋଗରେ ମାତିଥାଏ, ସଂସାରଚକ୍ରରେ ତାକୁ ବାରମ୍ବାର ଭ୍ରମଣ କରିବାକୁ ପଡ଼େ । ନିଜ ନିଜର ଅଧିକାର ଅନୁଯାୟୀ ଧର୍ମରେ ଦୃଢ଼ନିଷ୍ଠା ରଖିବା ହେଉଛି ଗୁଣ । ଏହାର ବିପରୀତ ଅନଧିକାର ଚର୍ଚ୍ଚା ହେଉଛି ଦୋଷ । ଏହିପରି ଅଧିକାର ଭେଦରେ ଗୁଣ ଓ ଦୋଷର ନିର୍ଣ୍ଣୟ କରାଯାଏ; ବସ୍ତୁ ଅନୁସାରେ ନୁହେଁ ।।୧-୨।। ସମାନ ବସ୍ତୁମାନଙ୍କରେ ଶୁଦ୍ଧି, ଅଶୁଦ୍ଧି ବିଚାର କରିବାର ବିଧାନ ଅଛି । ସେହି ଅନୁସାରେ ବସ୍ତୁର

ପରୀକ୍ଷା ନିରୀକ୍ଷା କରାଯାଇ ତାର ଗୁଣ, ଦୋଷ ଓ ଶୁଭାଶୁଭ ନିର୍ଣ୍ଣୀତ ହୁଏ ।।୩।। ନିଷ୍ପାପ ଉଦ୍ଧବ, ଧର୍ମପାଇଁ, ସାମାଜିକ ବ୍ୟବହାରପାଇଁ ଓ ନିଜର ଜୀବିକାନିର୍ବାହ ପାଇଁ ଧର୍ମର ଭାରବାହୀ କର୍ମଜଡ଼ ଜୀବମାନଙ୍କ ନିମନ୍ତେ (ମନୁସ୍ମୃତି ଆଦି ଗ୍ରନ୍ଥାନୁସାରେ) ମୁଁ ଉପଦେଶ ଦେଇଛି ।।୪।। ଭୂମି, ଜଳ, ତେଜ, ବାୟୁ ଓ ଆକାଶ -- ଏହି ପଞ୍ଚଭୂତ ବ୍ରହ୍ମାଙ୍କଠାରୁ ସ୍ଥାବର ପର୍ଯ୍ୟନ୍ତ ସବୁ ଶରୀରର ମୂଳ କାରଣ ଏବଂ ଏହି ସବୁ ଶରୀରରେ ଏକ ଆତ୍ମା ରହିଥାଏ ।।୫।। ଉଦ୍ଧବ, ସମସ୍ତପ୍ରାଣୀଙ୍କ ଶରୀରରେ ପଞ୍ଚଭୂତ ସମାନ ହେଲେ ମଧ୍ୟ ସେମାନଙ୍କର ପ୍ରୟୋଜନସିଦ୍ଧି ପାଇଁ ବେଦରେ ସେମାନଙ୍କୁ ଭିନ୍ନ ଭିନ୍ନ ନାମ ଓ ରୂପ ଦିଆଯାଇଛି, ଯେପରିକି ସେମାନେ ନିଜର ପ୍ରବୃତ୍ତିକୁ ସଂଯତ କରି ଧର୍ମ ଆଦି (ଧର୍ମ, ଅର୍ଥ,କାମ ଓ ମୋକ୍ଷ) ପୁରଷାର୍ଥର ସିଦ୍ଧି ହାସଲ କରିପାରିବେ ।।୬।। ସାଧୁ ଉଦ୍ଧବ, କର୍ମସବୁର ନିୟନ୍ତ୍ରଣପାଇଁ ଦେଶ ଓ କାଳ ଅନୁଯାୟୀ ସମସ୍ତ ପଦାର୍ଥର ଗୁଣ ଓ ଦୋଷର ମୁଁ ବିଧାନ କରିଛି ।।୭।। ଦେଶମାନଙ୍କ ମଧ୍ୟରୁ ଯେଉଁ ଦେଶରେ କୃଷ୍ଣସାରମୃଗ ଓ ବ୍ରାହ୍ମଣଭକ୍ତ ନ ଥାନ୍ତି, ତାହା ଅପବିତ୍ର । କୃଷ୍ଣସାରମୃଗ ଥିଲେ ମଧ୍ୟ ଯେଉଁଦେଶରେ ସଜ୍ଜନ ନଥାନ୍ତି, ମାର୍ଜନାଦିଶୂନ୍ୟ ବା ମ୍ଳେଚ୍ଛବହୁଳ ସେହି ଦେଶ ଅନୁର୍ବର ଓ ଅପବିତ୍ର ହୋଇଥାଏ ।।୮।। ଉପଯୁକ୍ତ ଦ୍ରବ୍ୟମାନଙ୍କ ଯୋଗରେ ହେଉ ବା ପୂର୍ବାହ୍ନ ଆଦି ଅନ୍ୟ କାରଣରୁ ହେଉ, କର୍ମ କରିବାର ଠିକଣା ସମୟକୁ ଶୁଦ୍ଧ କୁହାଯାଏ ଏବଂ ସମୟର ପ୍ରଭାବରୁ (ସୂତିକିଆ ଓ ମୃତିକିଆ ଆଦିରେ) ଯେତେବେଳେ କର୍ମ କରିବା ସମ୍ଭବ ହୁଏ ନାହିଁ, ସେହି ସମୟକୁ ଅଶୁଦ୍ଧ ଓ କର୍ମର ଅଯୋଗ୍ୟ ବୋଲି କୁହାଯାଏ ।।୯।। ଜଳାଦିରେ ଦ୍ରବ୍ୟ ଶୁଦ୍ଧ ହୁଏ ଓ ମଳମୂତ୍ରାଦିରେ ଅଶୁଦ୍ଧ ହୁଏ । ଶୁଦ୍ଧି, ଅଶୁଦ୍ଧି ବିଷୟରେ ସନ୍ଦେହ ସୃଷ୍ଟି ହେଲେ ବ୍ରାହ୍ମଣର ବାକ୍ୟକୁ ପ୍ରମାଣବୋଲି ଧରାଯାଏ । ସଂସ୍କାରଦ୍ୱାରା ସମୟର ପ୍ରଭାବ ଅନୁଯାୟୀ ଓ ପରିମାଣ ଅନୁଯାୟୀ ଦ୍ରବ୍ୟର ଶୁଦ୍ଧି ଓ ଅଶୁଦ୍ଧି ବିଚାର କରାଯାଏ ।।୧୦।। ସାମର୍ଥ୍ୟ, ଅସାମର୍ଥ୍ୟ, ବୁଦ୍ଧି ଓ ବିଭବ ଅନୁସାରେ ଶୁଦ୍ଧି ଓ ଅଶୁଦ୍ଧିର ବିଚାର କରାଯାଏ । ସ୍ଥାନଭେଦରେ ଓ ବ୍ୟବହାର କରୁଥିବା ବ୍ୟକ୍ତିର ବୟସ ଭେଦରେ ବସ୍ତୁର ଶୁଦ୍ଧି-ଅଶୁଦ୍ଧି ନିର୍ଣ୍ଣୀତ ହୁଏ ।।୧୧।। ଧାନ, କାଠ, ହାତୀଦାନ୍ତ ଆଦି ହାଡ଼, ତନ୍ତୁ, ତେଲ ଓ ଘିଅ ଆଦି ରସଯୁକ୍ତ ବସ୍ତୁ, ସୁବର୍ଣ୍ଣ ଆଦି ଧାତୁ ଓ ମୃଗଚର୍ମ ଆଦି ବସ୍ତୁର ବ୍ୟବହାର କାଳ, ବାୟୁ, ଅଗ୍ନି, ମୃତ୍ତିକା ଓ ଜଳ ଆଦି ପାର୍ଥିବ ପଦାର୍ଥର ଯୋଗାଯୋଗଦ୍ୱାରା ଶୁଦ୍ଧ ବା ଅଶୁଦ୍ଧ ବୋଲି ବିଚାର କରାଯାଏ ।।୧୨।। ଅପବିତ୍ର ବସ୍ତୁର ଲେପନଯୋଗୁଁ ବସ୍ତୁ ଅପବିତ୍ର ହୁଏ । ସେହି ବସ୍ତୁରଗଂଧ,ଲେପ ଓ ମଳିନତାକୁ ଯେଉଁ ପ୍ରକ୍ରିୟାଦ୍ୱାରା ଦୂର କରାଯାଇ ତାର ପୂର୍ବାବସ୍ଥାକୁ ଅଣାଯାଏ, ତାହା ହିଁ କରାଯିବା ଉଚିତ ।।୧୩।। ସ୍ନାନ, ଦାନ, ତପ, କୌମାର ଆଦି ଅବସ୍ଥା, ଶକ୍ତି, ଉପନୟନ ଆଦି ସଂସ୍କାରକର୍ମ ଏବଂ ମୋର ସ୍ମରଣଦ୍ୱାରା ଆତ୍ମା ଶୁଦ୍ଧ ହୁଏ । ଏହିପରି ଶୁଦ୍ଧ ହୋଇ ବ୍ରାହ୍ମଣ, କ୍ଷତ୍ରିୟ ଓ ବୈଶ୍ୟ ସେମାନଙ୍କ ବିହିତ କର୍ମ କରିଯିବା ଉଚିତ ।।୧୪।। ଗୁରୁଙ୍କର ମୁହଁରୁ ଶୁଣି ହୃଦୟଙ୍ଗମ କଲେ ମନ୍ତ୍ରର ଶୁଦ୍ଧି ହୁଏ ଏବଂ ମୋତେ ସମର୍ପଣ କଲେ କର୍ମର ଶୁଦ୍ଧି ହୁଏ । ଉଦ୍ଧବ,ଏହିପରି ଦେଶ, କାଳ, ପଦାର୍ଥ, କର୍ତ୍ତା, ମନ୍ତ୍ର ଓ କର୍ମ -- ଏହି ଛ'ଟିର ଶୁଦ୍ଧିଦ୍ୱାରା ଧର୍ମ ସମ୍ପାଦିତ ହୋଇଥାଏ ଏବଂ ଅଶୁଦ୍ଧ ହେଲେ ଅଧର୍ମ ହୁଏ ।।୧୫।।

ଶାସ୍ତ୍ରବିଧି ଅନୁଯାୟୀ କେତେକ ସ୍ଥଳରେ ଗୁଣ ଦୋଷ ହୁଏ ଏବଂ କେତେକ ସ୍ଥଳରେ ଦୋଷ ମଧ୍ୟ ଗୁଣ ହୁଏ । ତେଣୁ ଗୁଣ-ଦୋଷର ନିୟାମକ ଶାସ୍ତ୍ର ହିଁ ଏହି ଗୁଣ-ଦୋଷର ପାର୍ଥକ୍ୟ ନିର୍ଣ୍ଣୟ କରିବାରେ ସମର୍ଥ ।।୧୬।। ଯେଉଁ ବ୍ୟକ୍ତି ପତିତ, ସେ ପତିତ ପରି ଆଚରଣ କଲେ ତାକୁ ପାତକ ଲାଗେ ନାହିଁ । କିନ୍ତୁ ଅନ୍ୟମାନଙ୍କପାଇଁ ଏହା ପାତକ ହୋଇଥାଏ । ଯତିପାଇଁ ଯେଉଁ ଆସକ୍ତି ଦୋଷାବହ, ଗୃହସ୍ଥପାଇଁ ତାହା ଦୋଷାବହ ନୁହେଁ । ଯେ ତଳେ ଶୋଇଛି ସେ ଆଉ ତଳେ ପଡ଼ିବ ନାହିଁ । ଯେ ପତିତ ତା'ର ଆଉ କ'ଣ ବା ପତନ ହେବ ? ।।୧୭।। ତୁମେ ଯେଉଁ ଯେଉଁ ବସ୍ତୁରୁ ନିବୃତ୍ତ ରହିବ, ସେହି ସେହି ବସ୍ତୁରୁ ତୁମକୁ ମୁକ୍ତି ମିଳିଯିବ । ମାନବମାନଙ୍କପାଇଁ ଏହି ଧର୍ମ ଶୋକ, ମୋହ ଓ ଭୟ ହରଣ କରେ । ତେଣୁ ତାହା ମଙ୍ଗଳମୟ ।।୧୮।। ବିଷୟଭୋଗରେ ଗୁଣର ଆରୋପ କଲେ ସେଥିରେ ଆସକ୍ତି ଜାତ ହୁଏ ଏବଂ ଆସକ୍ତିରୁ କାମ, କାମରୁ କଳହ ଓ କଳହରୁ

ଭୟାନକ କ୍ରୋଧ ଉତ୍ପନ୍ନ ହୁଏ । ସଙ୍ଗେ ସଙ୍ଗେ ମୋହ ଆସି କ୍ରୋଧକୁ ଅନୁସରଣ କରେ ଏବଂ ଏହି ମୋହ ପୁରୁଷର ହୃଦୟରେ ଥିବା ଚୈତନ୍ୟକୁ ଗ୍ରାସ କରିଯାଏ । ଚୈତନ୍ୟଶୂନ୍ୟ ହେଲେ ମନୁଷ୍ୟ ସର୍ବଶୂନ୍ୟ ହୁଏ ଏବଂ ସେହି ଅବସ୍ଥାରେ ସେ ମୂର୍ଚ୍ଛିତ ଓ ମୃତକଳ୍ପ ହୋଇ ତାର ସମସ୍ତ ପୁରୁଷାର୍ଥ ହରାଇବସେ ।।୧୯-୨୧।। ବିଷୟବଶରୁ ସେ ଆତ୍ମା ବା ପରମାତ୍ମାଙ୍କ ସ୍ୱରୂପ ଜାଣିପାରେନାହିଁ । ବୃକ୍ଷପରି ତା'ର ଜୀବନ ଜଡ଼ ହୋଇଯାଏ । କମାର ଭାତିପରି ତା ଦେହରେ ବୃଥା ନିଃଶ୍ୱାସପ୍ରଶ୍ୱାସ ଚାଲିଥାଏ ।।୨୨।। ରୋଗୀକୁ ରୁଚୁ ନ ଥିବା ଔଷଧ ଦେବାପାଇଁ ଯେପରି ମିଷ୍ଟାନ୍ନ ଆଦି ଦ୍ୱାରା ପ୍ରଲୋଭିତ କରାଯାଏ, ସେହିପରି ବେଦରେ ମନୁଷ୍ୟର ମଙ୍ଗଳପାଇଁ ଯଜ୍ଞ, କର୍ମ ଆଦିର ଫଳଶ୍ରୁତି ଅଛି । ଏହା ପୁରୁଷାର୍ଥ ନୁହେଁ । କଲ୍ୟାଣକର କର୍ମରେ ରୁଚି ଜନ୍ମାଇବା ପାଇଁ ଏହା କୁହାଯାଇଥାଏ ।।୨୩।। ସ୍ୱଭାବ-ଗୁଣରୁ ଏହି ମରଦେହୀ ମଣିଷ କାମନା, ବାସନା ଆଦି ଇନ୍ଦ୍ରିୟଭୋଗରେ ଓ ପୁତ୍ର, କଳତ୍ର ଆଦି ସ୍ୱଜନମାନଙ୍କ ଠାରେ ଆସକ୍ତ ହୋଇଯାଏ, ଯାହାକି ତାର ଅନର୍ଥର କାରଣ ହୁଏ ।।୨୪।। ନିଜର ପୁରୁଷାର୍ଥ କଣ ତାହା ଜାଣି ନ ଥିବା ବ୍ୟକ୍ତି ଭୋଗବାସନାରେ ଭ୍ରମି ଭ୍ରମି ବୃକ୍ଷ ଆଦି ତମୋମୟ ଯୋନିରେ ପ୍ରବେଶ କରେ । ଏପରି ବ୍ୟକ୍ତିକୁ ବେଦ ବା ବିଦ୍ୱାନ୍ କିପରି ନିବୃତ୍ତିମାର୍ଗରେ ଚଳାଇ ପାରିବେ ? ।।୨୫।। ବେଦର ଏହି ଅଭିପ୍ରାୟକୁ ଜାଣି ନ ପାରି କେତେକ କୁବୁଦ୍ଧି ବ୍ୟକ୍ତି ବେଦର ଫଳଶ୍ରୁତିକୁ ସତ୍ୟ ବୋଲି ମନେ କରିଥା'ନ୍ତି । କିନ୍ତୁ ପ୍ରକୃତ ବେଦଜ୍ଞମାନେ ତାହା କରନ୍ତି ନାହିଁ ।।୨୬।। ଯେଉଁମାନେ କାମୀ, କୃପଣ ଓ ଲୋଭୀ, ଯଜ୍ଞକର୍ମକୁ ସେମାନେ ଶ୍ରେଷ୍ଠଫଳ ବୋଲି ମନେକରି ସେଇଥିରେ ମାତିଯାଆନ୍ତି; ଯଜ୍ଞ-ଅଗ୍ନିର ଧୂଆଁରେ ହିଁ ସେମାନେ ବାଟବଣା ହୁଅନ୍ତି ଏବଂ ସ୍ୱଲୋକ ବା ଆତ୍ମତତ୍ତ୍ୱକୁ ଜାଣିପାରନ୍ତି ନାହିଁ ।।୨୭।। ଉଦ୍ଧବ, ମୁଁ ତାହାଙ୍କ ହୃଦୟରେ ଥିଲେ ମଧ୍ୟ ସେମାନେ ମୋତେ ଜାଣିପାରନ୍ତି ନାହିଁ । ପଶୁହିଂସାଦ୍ୱାରା ସେମାନେ ନିଜର ଇନ୍ଦ୍ରିୟ ଓ ପ୍ରାଣକୁ ତୃପ୍ତ କରୁଥା'ନ୍ତି ଏବଂ କୁହୁଡ଼ିଦ୍ୱାରା ଦୃଷ୍ଟି ଆଚ୍ଛନ୍ନ ହେଲେ, ମନୁଷ୍ୟ ଯେପରି ନିକଟସ୍ଥ ପଦାର୍ଥ ଦେଖିପାରେ ନାହିଁ, ସେମାନଙ୍କର ସେହିପରି ଅବସ୍ଥା ହୁଏ ।।୨୮।। ପଶୁହତ୍ୟା ଯେପରି ସ୍ୱାଭାବିକ ପ୍ରବୃତ୍ତି ନ ହୁଏ, ସେଥିପାଇଁ କେବେକେବେ ଯଜ୍ଞରେ ପଶୁ ବଳିଦ୍ୱାରା ମାଂସଭକ୍ଷଣର କଥା କୁହାଯାଇଛି । ମାତ୍ର ବିଷୟାସକ୍ତ ଖଳ ବ୍ୟକ୍ତିମାନଙ୍କପାଇଁ ହିଂସା ହେଉଛି ଏକ ଖେଳ । ସେମାନେ ମୋର ପରୋକ୍ଷ ମତକୁ ଜାଣନ୍ତି ନାହିଁ । ନିଜର ସୁଖପାଇଁ ପଶୁମାନଙ୍କୁ ମାରି ବହୁଳ ଯଜ୍ଞକର୍ମଦ୍ୱାରା ଦେବତା, ପିତୃପୁରୁଷ ଓ ଭୂତପତିମାନଙ୍କୁ ସେମାନେ ପୂଜା କରନ୍ତି ।।୨୯-୩୦।।

ବଣିକ ଯେପରି ଅଧିକ ଧନଲାଭର ଆଶାରେ ନିଜର ସଞ୍ଚିତ ଧନକୁ ମୂଳଧନରୂପେ ଖଟାଇ ମୂଳଧନକୁ ଓ ଅଧିକ ଲାଭର ଆଶା (ଉଭୟକୁ) ହରାଇବସେ, ସେହିପରି ଏହି ମନ୍ଦମତି ବ୍ୟକ୍ତିମାନେ ଶ୍ରୁତିମଧୁର, ମାତ୍ର ସ୍ୱପ୍ନପରି ଅଳୀକ ପରଲୋକର ସୁଖଲାଭପାଇଁ ଯଜ୍ଞରେ ନିଜର ଅର୍ଥନାଶ କରନ୍ତି ।।୩୧।। ରଜ, ସତ୍ତ୍ୱ ଓ ତମୋଯୁକ୍ତ ବ୍ୟକ୍ତିମାନେ ରଜ, ସତ୍ତ୍ୱ ଓ ତମୋଗୁଣର ସେବା କରୁଥିବା ଇନ୍ଦ୍ରାଦି ଦେବତାମାନଙ୍କୁ ଯେପରି ପୂଜାକରନ୍ତି, ସେପରି ମୋତେ ପୂଜା କରନ୍ତି ନାହିଁ ।।୩୨।। ଦେବତାମାନଙ୍କୁ ଯଜ୍ଞଦ୍ୱାରା ଇହଲୋକରେ ପୂଜା କଲେ ସ୍ୱର୍ଗକୁ ଯାଇ ଦିବ୍ୟସୁଖ ଭୋଗ କରିବେ ଏବଂ ଭୋଗଶେଷରେ ପୁଣି ଏଇ ସଂସାରରେ ବଡ଼ଘରେ ଓ ଉଚ୍ଚକୁଳରେ ଜନ୍ମ ହେବେ- ବେଦର ଏହିସବୁ ପୁଷ୍ପିତ ବାକ୍ୟଦ୍ୱାରା ସେମାନଙ୍କର ଚିତ୍ତ ବିଚଳିତ ହୋଇଯାଏ ଏବଂ ଗର୍ବରେ ସେମାନେ ନିଜକୁ ବଡ଼ ବୋଲି ଭାବନ୍ତି ଓ ମୋର ବାର୍ତ୍ତା ସେମାନଙ୍କୁ ରୁଚିକର ହୁଏ ନାହିଁ ।।୩୩-୩୪।। କର୍ମ, ବ୍ରହ୍ମ ଓ ଦେବତା --ଏହି ତିନୋଟି କାଣ୍ଡର ବିଷୟ ବେଦରେ ଅଛି । ତା' ମଧ୍ୟରେ ଆତ୍ମା ହେଉଛି ବ୍ରହ୍ମ, ସଂସାରୀ ନୁହେଁ - ବେଦର ଏହି ତତ୍ତ୍ୱକୁ ଯେଉଁ ମନ୍ତ୍ରଦ୍ରଷ୍ଟା ଋଷିମାନେ ଜାଣନ୍ତି, ସେମାନେ ପରୋକ୍ଷରେ ତାହା କହିଛନ୍ତି । ସେମାନଙ୍କ ଏହି ପରୋକ୍ଷବାକ୍ୟ ହେଉଛି ମୋର ପ୍ରିୟ ।।୩୫।। ବେଦ ହେଉଛି ଶବ୍ଦବ୍ରହ୍ମ । ଏହାର ରହସ୍ୟ ବୁଝିବା କଷ୍ଟକର । ଏହା ହେଉଛି ପ୍ରାଣମୟ (ପରା) ଇନ୍ଦ୍ରିୟମୟ (ପଶ୍ୟନ୍ତୀ) ଓ ମନୋମୟ (ମଧ୍ୟମା) । ସମୁଦ୍ରପରି ସୀମାହୀନ ଓ ଗମ୍ଭୀର ଏବଂ ଏହାକୁ କେହି କଳନା କରିପାରିବ ନାହିଁ ।।୩୬।। ଉଦ୍ଧବ, ମୁଁ ହେଉଛି ଅନନ୍ତ ଶକ୍ତିର ଅଧିକାରୀ ପରଂବ୍ରହ୍ମ । ମୁଁ ହିଁ ବେଦବାଣୀର ବିସ୍ତାର

କରିଛି । ପଦ୍ମନାଡ଼ରେ ଥିବା ସୂକ୍ଷ୍ମ ସୂତାପରି ମୁଁ ପ୍ରାଣୀମାନଙ୍କ ହୃଦୟରେ ଅନାହତ ନାଦରୂପରେ ଅବସ୍ଥିତ ।।୩୭।। ମାଙ୍କଡ଼ସା ଯେପରି ତା'ର ପେଟଭିତରୁ ମୁହଁବାଟ ଦେଇ ସୂତା ବାହାରକରେ, ସେହିପରି ଅନାହତ ଶବ୍ଦର ରୂପରେ ହୃଦୟଆକାଶରେ ବିଦ୍ୟମାନ ବେଦମୟ, ଅମୃତମୟ ଭଗବାନ୍ ବହୁମାର୍ଗବିଶିଷ୍ଟ ଅନନ୍ତ ଅପାର ବେଦବାଣୀକୁ ମନରୂପକ କାରଣ ଦ୍ୱାରା ସ୍ୱୟଂ ପ୍ରକାଶ କରନ୍ତି । ଓଁକାର ରୂପରେ ବ୍ୟକ୍ତ ଏହିବାଣୀ ସ୍ପର୍ଶ(କ ଠାରୁ ମ ପର୍ଯ୍ୟନ୍ତ - ୨୫), ସ୍ୱର (ଅ ଠାରୁ ଔ ପର୍ଯ୍ୟନ୍ତ -୯), ଉଷ୍ମା (ଶ,ଷ,ସ,ହ) ଏବଂ ଅନ୍ତଃସ୍ଥ (ଯ,ର,ଲ,ବ) - ଏହି ବର୍ଣ୍ଣମାନଙ୍କରେ ଭୂଷିତ ହୋଇଛି । ସେଥିରେ ଏପରି ଛନ୍ଦମାନ ଅଛି, ଯେଉଁଥିରେ ଉତ୍ତରୋତ୍ତର ଚାରି, ଚାରି ବର୍ଣ୍ଣ ବଢ଼ିଯାଏ ଏବଂ ବିଚିତ୍ର ଭାଷାରୂପରେ ଏହି ବାଣୀ ବିସ୍ତାରିତ ହୁଏ ।।୩୮-୪୦।। ବେଦର ଛନ୍ଦମାନ ହେଲେ - ଗାୟତ୍ରୀ, ଉଷ୍ଣିକ୍, ଅନୁଷ୍ଟୁପ୍, ବୃହତୀ, ପଙ୍‌କ୍ତି, ତ୍ରିଷ୍ଟୁପ୍, ଜଗତୀ, ଅତିଛନ୍ଦ, ଅତ୍ୟଷ୍ଟି, ଅତିଜଗତୀ ଓ ଅତି ବିରାଟ୍ ।।୪୧।। ସେହି ତ୍ରିକାଣ୍ଡ ବେଦ କର୍ମକାଣ୍ଡରେ ବିଧିବାକ୍ୟଦ୍ୱାରା କଣ ବିଧାନ କରେ, ଦେବତାକାଣ୍ଡରେ ମନ୍ତ୍ରବାକ୍ୟଦ୍ୱାରା କଣ ପ୍ରକାଶ କରେ ଏବଂ ଜ୍ଞାନକାଣ୍ଡରେ କ'ଣ ଅନୁବାଦ କରି ନିଷେଧ କରେ, ତାହା ତ୍ରିଲୋକରେ ମୋ ଛଡ଼ା କେହି ଜାଣେ ନାହିଁ ।।୪୨।। ବେଦ ଯଜ୍ଞରୂପରେ କେତେବେଳେ ମୋର ବିଧାନ କରିଛି ତ କେତେବେଳେ ଦେବତାରୂପରେ ମୋତେ ଅଭିହିତ କରିଛି ଏବଂ ଜ୍ଞାନକାଣ୍ଡରେ ମୋଠାରେ ଆକାଶାଦି ବସ୍ତୁମାନଙ୍କୁ ଆରୋପ କରାଯାଇ ପୁଣି ସେମାନଙ୍କର ନିଷେଧ କରାଯାଇଛି । ସମ୍ପୂର୍ଣ୍ଣ ବେଦର ତାତ୍ପର୍ଯ୍ୟ ହେଉଛି, ଏହା ମୋତେ ଆଶ୍ରୟ କରି ମୋଠାରେ ଭେଦକୁ ଆରୋପ କରେ, ପୁଣି ସେହି ଭେଦକୁ ମାୟାମାତ୍ର କହି ତାହାର ଅନୁବାଦ କରେ ଏବଂ ଶେଷରେ ତାହାକୁ ମଧ୍ୟ ନିଷେଧ କରି ମୋତେ ହିଁ ପ୍ରତିପାଦନ କରି ଶାନ୍ତ ହୋଇଯାଏ ।।୪୩।।

## ଦ୍ୱାବିଂଶ ଅଧ୍ୟାୟ

# ତତ୍ତ୍ୱମାନଙ୍କର ସଂଖ୍ୟା

ହେ ପ୍ରଭୁ ବିଶ୍ୱେଶ୍ୱର, ଋଷିମାନେ ତତ୍ତ୍ୱମାନଙ୍କ ସଂଖ୍ୟା ବିଷୟରେ କହିଛନ୍ତି । ଆପଣ ଏହା ପୂର୍ବରୁ ନ, ଏଗାର, ପାଞ୍ଚ ଓ ତିନି – ଏହି ଅଠେଇଶିଟି ତତ୍ତ୍ୱର କଥା କହିଛନ୍ତି । ତାହା ମୁଁ ଶୁଣିଛି । କିନ୍ତୁ କେହି କେହି କହନ୍ତି, ତତ୍ତ୍ୱ ହେଉଛି ଛବିଶ, ଆଉ କିଏ କହନ୍ତି ପଚିଶ; କିଏ ବା ସାତ, ଛ', ନଅ, ଚାରି ଓ ଏଗାର ବୋଲି କହନ୍ତି; କେହି କେହି ସତର, ଷୋହଳ ଓ ତେର ବୋଲି କହନ୍ତି; ଋଷିମାନେ ତତ୍ତ୍ୱର ସଂଖ୍ୟାବିଷୟରେ କାହିଁକି ଏପରି ପୃଥକ୍ ମତ ପୋଷଣ କରନ୍ତି, ତାହା ଆପଣ ଦୟା କରି କହନ୍ତୁ ।।୧-୩।। ଭଗବାନ୍ ଶ୍ରୀକୃଷ୍ଣ କହିଲେ, ଉଦ୍ଧବ, ବେଦଜ୍ଞ ବ୍ରାହ୍ମଣମାନେ ଏହି ବିଷୟରେ ଯାହା ଯାହା ନିର୍ଣ୍ଣୟ କରିଛନ୍ତି, ତାହା ସବୁ ଠିକ୍ । କାରଣ ଏହି ସବୁ ତତ୍ତ୍ୱ ଅନ୍ୟ ସବୁ ତତ୍ତ୍ୱ ମଧ୍ୟରେ ଅନ୍ତର୍ନିହିତ । ମୋର ମାୟା ସ୍ୱୀକାର କଲେ କୌଣସି ଅର୍ଥ ଦୁରୂହ ନୁହେଁ ।।୪।। ଯେଉଁମାନେ ବିବାଦ କରନ୍ତି, ସେହି ଦୁଇପକ୍ଷର ଉକ୍ତି - 'ତୁମ୍ଭେ ଯାହା କହୁଛ ଠିକ୍ ନୁହେଁ, ମୁଁ ଯାହା କହୁଛି ଠିକ୍' -- ଏହି ଉକ୍ତିର କାରଣ ହେଉଛି ମୋର ସତ୍ତ୍ୱ ଆଦି ଶକ୍ତି ଯାହାକୁ କେହି ଅତିକ୍ରମ କରିପାରନ୍ତି ନାହିଁ । ଏହି ସବୁ ଶକ୍ତିର କ୍ଷୋଭଯୋଗୁଁ ବିବାଦକାରୀଙ୍କ ଭାବ ଭେଦଯୁକ୍ତ ହୁଏ । ଶମ, ଦମ ଆଦି ଅବସ୍ଥା ଉତ୍ପନ୍ନ ହେଲେ ସେହି ଭେଦଭାବ ରହେ ନାହିଁ । ଯେତେ ବିବାଦ ଥାଉ, ତାହା ଦୂର ହୋଇ ଶାନ୍ତ ପଡ଼ିଯାଏ ।।୫-୬।। ପୁରୁଷଶ୍ରେଷ୍ଠ ଉଦ୍ଧବ, ତତ୍ତ୍ୱମାନେ ପରସ୍ପର ଅନୁପ୍ରବେଶ କରିଥିବାଯୋଗୁଁ ବକ୍ତା ନିଜର ଉଦ୍ଦେଶ୍ୟ ଅନୁସାରେ କାର୍ଯ୍ୟକାରଣରୂପରେ ସେମାନଙ୍କୁ ଗଣନା କରେ । ଦେଖାଯାଏ ଯେ କାରଣତତ୍ତ୍ୱ କାର୍ଯ୍ୟତତ୍ତ୍ୱ ମଧ୍ୟରେ ଓ କାର୍ଯ୍ୟତତ୍ତ୍ୱ କାରଣତତ୍ତ୍ୱ ମଧ୍ୟରେ ଅନୁପ୍ରବେଶ କରିଥାଆନ୍ତି । (ଯେପରିକି କାରଣତତ୍ତ୍ୱ

ମୃତ୍ତିକାରେ ନିର୍ମିତ ଘଟ ଓ କାର୍ଯ୍ୟତତ୍ତ୍ୱ ଘଟରେ ଥିବା ମୃତ୍ତିକା) ।।୭-୮।। ଏଣୁ ଏହି ସମସ୍ତ ତତ୍ତ୍ୱର କାର୍ଯ୍ୟକାରଣ ବିଚାରରେ ବାଦୀ-ପ୍ରତିବାଦୀଙ୍କର ଯାହା ଯାହା କହିବାର ଅଭିଳାଷ ଥାଏ, ତାହା ଯୁକ୍ତିଯୁକ୍ତ ବୋଲି ମୁଁ ଗ୍ରହଣ କରେ ।।୯।। ଅନାଦି ଅବିଦ୍ୟାସମ୍ପନ୍ନ ପୁରୁଷ ସ୍ୱତଃ ଯଥାର୍ଥ ଆତ୍ମଜ୍ଞାନଲାଭ କରିପାରେ ନାହିଁ । ତେଣୁ ଅନ୍ୟ ତତ୍ତ୍ୱଜ୍ଞ ବ୍ୟକ୍ତି ତା'ର ଜ୍ଞାନଦାତା ହୁଅନ୍ତି ।।୧୦।। ଜୀବ ଓ ଈଶ୍ୱରଙ୍କ ମଧ୍ୟରେ ସାମାନ୍ୟମାତ୍ର ବୈଷମ୍ୟ ନ ଥାଏ । ତେଣୁ ଉଭୟଙ୍କ ମଧ୍ୟରେ ଭେଦର କଳ୍ପନା ବ୍ୟର୍ଥ । ଯେଉଁ ଜ୍ଞାନଦ୍ୱାରା ଏହି ଭେଦର କଳ୍ପନା କରାଯାଏ, ତାହା ହେଉଛି ପ୍ରକୃତିର ଗୁଣ ମାତ୍ର ।।୧୧।। ସତ୍ତ୍ୱାଦିଗୁଣର ସାମ୍ୟ ହେଉଛି ପ୍ରକୃତି । ଗୁଣ ହେଉଛି ପ୍ରକୃତିର, ଆତ୍ମାର ନୁହେଁ । ସୃଷ୍ଟି, ସ୍ଥିତି ଓ ପ୍ରଳୟର କାରଣ ହେଉଛି ତିନୋଟିଯାକ ଗୁଣ - ରଜ, ସତ୍ତ୍ୱ ଓ ତମ ।।୧୨।। ସତ୍ତ୍ୱ ଗୁଣରୁ ଜ୍ଞାନ, ରଜ ଗୁଣରୁ କର୍ମ ଓ ତମ ଗୁଣରୁ ଅଜ୍ଞାନ ଜାତ ହୁଏ ବୋଲି ଶାସ୍ତ୍ରରେ କଥିତ ଅଛି ଏବଂ ଏହି ଗୁଣମାନଙ୍କର ବିକାର ଯେଉଁ ଈଶ୍ୱରଙ୍କ ଦ୍ୱାରା ହୋଇଥାଏ, ସେ ହିଁ କାଳ । ମହତତ୍ତ୍ୱ ହିଁ ସ୍ୱଭାବ ।।୧୩।। ପୁରୁଷ, ପ୍ରକୃତି, ମହତତ୍ତ୍ୱ, ଅହଙ୍କାର, ଆକାଶ, ବାୟୁ,ତେଜ, ଜଳ ଓ ପୃଥିବୀ – ଏହି ନଅଟି ତତ୍ତ୍ୱର କଥା ମୁଁ ପ୍ରଥମରୁ କହିଛି ।।୧୪।। କାନ, ଚମ, ଚକ୍ଷୁ, ନାକ ଓ ଜିଭ - ଏହି ପାଞ୍ଚଟି ଜ୍ଞାନେନ୍ଦ୍ରିୟ । ମୁହଁ, ହାତ, ଜନନେନ୍ଦ୍ରିୟ, ମଳଦ୍ୱାର ଓ ପାଦ - ଏହି ପାଞ୍ଚଟି କର୍ମେନ୍ଦ୍ରିୟ । ମନ ହେଉଛି ଉଭୟ ଜ୍ଞାନେନ୍ଦ୍ରିୟ ଓ କର୍ମେନ୍ଦ୍ରିୟ ।।୧୫।। ଶବ୍ଦ, ସ୍ପର୍ଶ, ରସ, ଗଂଧ ଓ ରୂପ – ଏହି ପାଞ୍ଚଟି ହେଲା ଜ୍ଞାନେନ୍ଦ୍ରିୟର ବିଷୟ । ଗତି, ଉକ୍ତି, ମଳ ଓ ମୂତ୍ର ତ୍ୟାଗ ଓ ମୈଥୁନ-- ଏହା ହେଉଛି ପାଞ୍ଚଟି କର୍ମେନ୍ଦ୍ରିୟର ବିଷୟ ( ଏହା ତତ୍ତ୍ୱ ନୁହେଁ) ।।୧୬।। କାର୍ଯ୍ୟକାରଣ ରୂପକ ପ୍ରକୃତି ସତ୍ତ୍ୱ, ରଜ ଓ ତମ ଗୁଣର ସାହାଯ୍ୟରେ ଏହି ବିଶ୍ୱର ସୃଷ୍ଟି, ସ୍ଥିତି ଓ ସଂହାର ଅବସ୍ଥାକୁ ଧାରଣ କରେ । ପୁରୁଷ କେବଳ ସାକ୍ଷୀ ରୂପେ ରହିଥାଏ ।।୧୭।। ପୁରୁଷ ଚାହିଁବା ମାତ୍ରେ ମହତତ୍ତ୍ୱ ଆଦି ଧାତୁମାନଙ୍କର ବିକାର ହୁଅନ୍ତେ ସେମାନେ ଶକ୍ତିଶାଳୀ ହୁଅନ୍ତି ଓ ସମସ୍ତେ ଏକାଠି ମିଳିତ ହୋଇ ପ୍ରକୃତିର ଆଶ୍ରୟରେ ଏହି ସୃଷ୍ଟିକୁ ରଚନା କରନ୍ତି ।।୧୮।।

ଉଦ୍ଧବ, ଯେଉଁମାନେ ତତ୍ତ୍ୱର ସଂଖ୍ୟା ସାତ ବୋଲି କହନ୍ତି, ସେମାନଙ୍କ ବିଚାରରେ ଆକାଶ, ବାୟୁ, ତେଜ, ଜଳ ଏବଂ ପୃଥିବୀ - ହେଲେ ପଞ୍ଚ ମହାଭୂତ । ଷଷ୍ଠ ହେଉଛି ଜୀବ ଏବଂ ସପ୍ତମ ଆତ୍ମା, ଯେ କି ଦ୍ରଷ୍ଟା ଜୀବର ଓ ଦୃଶ୍ୟ ଜଗତ୍‌ର -- ଏ ଦୁହିଁଙ୍କର ଅଧିଷ୍ଠାତା ।।୧୯।। ଯେଉଁମାନେ ଛ' ତତ୍ତ୍ୱର କଥା କହନ୍ତି, ସେମାନଙ୍କ ବିଚାରରେ ପଞ୍ଚଭୂତ ପାଞ୍ଚ ଏବଂ ପରମପୁରୁଷ ହେଉଛନ୍ତି ଷଷ୍ଠ ତତ୍ତ୍ୱ । ସେ ପଞ୍ଚଭୂତରେ ଯୁକ୍ତ ହୋଇ ଦେହ ଆଦି ସୃଷ୍ଟି କରନ୍ତି ଓ ଜୀବରୂପରେ ତା' ମଧ୍ୟରେ ପ୍ରବେଶ କରନ୍ତି ।।୨୦।। ଯେଉଁମାନେ ଚାରି ତତ୍ତ୍ୱର କଥା କହନ୍ତି, ସେମାନଙ୍କ ମତରେ ତେଜ, ଜଳ, ପୃଥିବୀ ଓ ଆତ୍ମା -- ଏହିମାନେ ହେଲେ ଚାରି ତତ୍ତ୍ୱ । ଏହି ଚାରି ତତ୍ତ୍ୱରୁ ସମସ୍ତ ଜଗତର ଜନ୍ମ । କାର୍ଯ୍ୟର ଉତ୍ପତ୍ତି ମଧ୍ୟ ଏହା ମଧ୍ୟରେ ଅନ୍ତର୍ଭୁକ୍ତ । ଯେଉଁମାନେ ତତ୍ତ୍ୱର ସଂଖ୍ୟା ସତର ବୋଲି କହନ୍ତି, ସେମାନଙ୍କ ମତରେ ତାହା ହେଉଛି ପୃଥିବୀ ଆଦି ପଞ୍ଚ ମହାଭୂତ, ପଞ୍ଚ ଜ୍ଞାନେନ୍ଦ୍ରିୟ, ପଞ୍ଚକର୍ମେନ୍ଦ୍ରିୟ ଏବଂ ମନ ଓ ଆତ୍ମା ।।୨୧-୨୨।। ଯେଉଁମାନେ ତତ୍ତ୍ୱର ସଂଖ୍ୟା ଷୋହଳ ବୋଲି କହନ୍ତି, ସେମାନଙ୍କ ମତରେ ତାହା ହେଉଛି -- ପଞ୍ଚ ମହାଭୂତ, ଦଶ ଇନ୍ଦ୍ରିୟ ଓ ଏକ ମନ ଏବଂ ସେମାନେ ଆତ୍ମାକୁ ହିଁ ମନ ବୋଲି କହନ୍ତି । ତତ୍ତ୍ୱର ସଂଖ୍ୟା ତେର କହୁଥିବା ଲୋକଙ୍କ ମତରେ ପଞ୍ଚ ମହାଭୂତ, ପଞ୍ଚ ଜ୍ଞାନେନ୍ଦ୍ରିୟ, ମନ, ଜୀବାତ୍ମା ଓ ପରମାତ୍ମା ମିଶି ତେର ହୁଅନ୍ତି ।।୨୩।। ତତ୍ତ୍ୱର ସଂଖ୍ୟା ଏଗାର ବୋଲି କହୁଥିବା ଲୋକଙ୍କ ମତରେ ପଞ୍ଚ ମହାଭୂତ, ପଞ୍ଚ ଇନ୍ଦ୍ରିୟ ଓ ଏକ ଆତ୍ମା -- ଏମାନେ ମିଶି ଏଗାର । ଯେଉଁମାନେ ତତ୍ତ୍ୱର ସଂଖ୍ୟା ନଅ ବୋଲି କହନ୍ତି, ସେମାନେ ଅଷ୍ଟ ପ୍ରକୃତି ଓ ପୁରୁଷ (ପଞ୍ଚମହାଭୂତ, ମନ, ବୁଦ୍ଧି, ଅହଙ୍କାର ଏବଂ ପୁରୁଷ)କୁ ମିଶାଇ ତତ୍ତ୍ୱର ସଂଖ୍ୟା ନଅ ବୋଲି ଧରନ୍ତି ।।୨୪।। ଉଦ୍ଧବ, ଏହିପରି ମୁନିଋଷିମାନେ ତତ୍ତ୍ୱମାନଙ୍କର ଭିନ୍ନ ଭିନ୍ନ ଗଣନା କରିଛନ୍ତି । ଯୁକ୍ତିଯୁକ୍ତ ହୋଇଥିବା ଯୋଗୁଁ ଏ ସମସ୍ତ ନ୍ୟାଯ୍ୟ । ତତ୍ତ୍ୱଜ୍ଞାନୀଙ୍କର ଉକ୍ତି ଆଦୌ ଅସଙ୍ଗତ ନୁହେଁ ।।୨୫।।

ଉଦ୍ଧବ କହିଲେ, ହେ କୃଷ୍ଣ, ସ୍ୱଭାବତଃ ପ୍ରକୃତି ଓ ପୁରୁଷ ପରସ୍ପର ଭିନ୍ନ ହେଲେ ମଧ୍ୟ ଦୁହେଁ ଏପରି ଭାବରେ ମିଶି ଯାଇଛନ୍ତି ଯେ, ଦୁହିଁଙ୍କର ଭେଦ ଜାଣି ହୁଏ ନାହିଁ । ପ୍ରକୃତିରେ ପୁରୁଷ ଓ ପୁରୁଷରେ ପ୍ରକୃତି ଅଭିନ୍ନ ଜଣାଯାଆନ୍ତି । ତେଣୁ ହେ ପୁଣ୍ଡରୀକାକ୍ଷ, ମୋର ମନରେ ଏକ ମହାନ୍ ସଂଶୟ ଜାତ ହୋଇଛି । ଆପଣ ସର୍ବଜ୍ଞ, ଯୁକ୍ତିଯୁକ୍ତ ବାଣୀଦ୍ୱାରା ମୋର ଏହି ସଂଶୟ ମୋଚନ କରନ୍ତୁ ।।୨୬-୨୭।। ଭଗବାନ୍, ଆପଣଙ୍କଠାରୁ ଜୀବମାନେ ଜ୍ଞାନଲାଭ କରନ୍ତି ଏବଂ ନିଜ ମାୟାଶକ୍ତିଦ୍ୱାରା ଆପଣ ତାହା ହରଣ କରିନିଅନ୍ତି । ଏଣୁ ନିଜ ମାୟାର ମହିମା ଆପଣ ହିଁ କେବଳ ଜାଣନ୍ତି, ଅନ୍ୟ କେହି ଜାଣିପାରନ୍ତି ନାହିଁ ।।୨୮।। ଭଗବାନ୍ ଶ୍ରୀକୃଷ୍ଣ କହିଲେ, ଉଦ୍ଧବ, ପ୍ରକୃତି ଓ ପୁରୁଷ-ଏହି ଉଭୟଙ୍କ ସ୍ୱରୂପ ହେଉଛି ଭିନ୍ନ । ପ୍ରକୃତିର ଗୁଣକ୍ଷୋଭଯୋଗୁଁ ଏହି ବିକାରାତ୍ମକ ଜଗତର ସୃଷ୍ଟି ହୋଇଛି ।।୨୯।। ପ୍ରିୟ ଉଦ୍ଧବ, ମୋର ଗୁଣମୟୀ ମାୟା ଅନେକପ୍ରକାର ଗୁଣଯୋଗୁଁ ଭେଦବୁଦ୍ଧି ଜାତ କରାଏ । ଭେଦ ତିନିପ୍ରକାର -- ଆଧ୍ୟାତ୍ମିକ, ଆଧିଭୌତିକ ଓ ଆଧିଦୈବିକ । ଚକ୍ଷୁ ଇନ୍ଦ୍ରିୟ ହେଉଛି ଆଧ୍ୟାତ୍ମିକ, ଚକ୍ଷୁର ବିଷୟ ରୂପ ହେଉଛି ଆଧିଭୌତିକ ଏବଂ ଚକ୍ଷୁର ଗୋଲକରେଥିବା ସୂର୍ଯ୍ୟର ଅଂଶ ହେଉଛି ଆଧିଦୈବିକ । ଏହି ତିନୋଟି ପରସ୍ପରକୁ ଆଶ୍ରୟ କରି ପ୍ରକାଶିତ ହୁଅନ୍ତି । କିନ୍ତୁ ଆକାଶରେ ଥିବା ସୂର୍ଯ୍ୟମଣ୍ଡଳ ଏମାନଙ୍କୁ ଅପେକ୍ଷା ନ କରି ସ୍ୱୟଂ ପ୍ରକାଶିତ ହୋଇଥାଏ । ସେହିପରି ଆତ୍ମା ଏହି ତିନୋଟି ଭେଦର ମୂଳ କାରଣ, ସେମାନଙ୍କର ସାକ୍ଷୀ ଓ ପ୍ରକାଶକ । କାରଣ ସେ ସ୍ୱୟଂସିଦ୍ଧ । ଏହିପରି ଚର୍ମ, ଶ୍ରୋତ୍ର, ଜିହ୍ୱା, ନାସିକା ଓ ଚିତ୍ତ ଆଦି ପ୍ରତ୍ୟେକଟିରେ ଏହି ତିନୋଟି ଭେଦ ଦେଖାଯାଏ ।।୩୦-୩୧।। ପ୍ରକୃତିର ଗୁଣକ୍ଷୋଭଜାତ ବିକାରରୁ ମହତ୍ତତ୍ତ୍ୱ ସୃଷ୍ଟି ହୁଏ ଏବଂ ମହତ୍ତତ୍ତ୍ୱରୁ ଅହଙ୍କାରର ସୃଷ୍ଟି ହୁଏ । ଏହିପରି ଅହଙ୍କାର ମଧ୍ୟ ପ୍ରକୃତିର ଗୁଣକ୍ଷୋଭରୁ ଜାତ ଏକ ବିକାରମାତ୍ର । ଅହଙ୍କାର ତିନିପ୍ରକାର । ବୈକାରିକ, ତାମସ ଓ ତୈଜସ । ଅହଙ୍କାର ହେଉଛି ଅଜ୍ଞାନର ଓ ସୃଷ୍ଟିବୈଚିତ୍ର୍ୟର ମୂଳ କାରଣ ।।୩୨।। ଆତ୍ମା ଜ୍ଞାନମୟ । କିନ୍ତୁ ଯେଉଁମାନେ ଆତ୍ମା ଅଛି କି ନାହିଁ --ଏହି ବିବାଦରେ ଲାଗିଥାନ୍ତି, ମୋଠାରୁ ବିମୁଖ ହୋଇଥିବା ଯାଗୁଁ ସେମାନଙ୍କର ଏହି ବ୍ୟର୍ଥ ବିବାଦ ଶେଷ ହୁଏ ନାହିଁ ।।୩୩।।

ଉଦ୍ଧବ ପଚାରିଲେ, ପ୍ରଭୁ, ଆପଣଙ୍କ ପ୍ରତି ପରାଙ୍‌ମୁଖ ବ୍ୟକ୍ତିମାନେ ନିଜକୃତ କର୍ମମାନଙ୍କଦ୍ୱାରା କିପରି ଉତ୍ତମ ଓ ଅଧମ ଦେହ ଧାରଣ କରନ୍ତି ଓ ତ୍ୟାଗ କରନ୍ତି, ତାହା ଆପଣ କହିବା ହୁଅନ୍ତୁ । ଆତ୍ମଜ୍ଞାନ ନ ଥିବା ବ୍ୟକ୍ତିମାନେ ଏହା ସହଜରେ ଭାବିପାରନ୍ତି ନାହିଁ । ଆପଣଙ୍କ ମାୟାରେ ମୋହିତ ହୋଇଥିବାରୁ ଏହି ଆତ୍ମାକୁ ଜାଣିଥିବା ବ୍ୟକ୍ତି ପ୍ରାୟ ନାହାନ୍ତି ।।୩୪-୩୫।। ଶ୍ରୀକୃଷ୍ଣ କହିଲେ, ମନୁଷ୍ୟମାନଙ୍କର ପଞ୍ଚେନ୍ଦ୍ରିୟଯୁକ୍ତ ମନ ହେଉଛି କର୍ମମୟ । ସେହି ଇନ୍ଦ୍ରିୟଯୁକ୍ତ ମନ ଲୋକରୁ ଲୋକାନ୍ତର ଯାତ୍ରା କଲାବେଳେ ଆତ୍ମା ପୃଥକ୍ ଭାବରେ ତାକୁ ଅନୁସରଣ କରିଥାଏ ।।୩୬।। କର୍ମାଧୀନ ମନ କର୍ମ କରିବାବେଳେ ଯାହା ଯାହା ଦେଖିଥାଏ ବା ଶୁଣିଥାଏ, ସେ ସବୁ ଚିନ୍ତା କରି କରି ସେଥିରେ ଲୀନ ହୋଇଯାଏ ଓ ପରେ ପରେ ତାର ପୂର୍ବସ୍ମୃତି ମଧ୍ୟ ନଷ୍ଟ ହୋଇଯାଏ ।।୩୭।। କର୍ମବଶରୁ ନୂତନ ଦେହରେ ଅବସ୍ଥାପିତ ଜୀବ ସେଥିରେ ଏପରି ଆସକ୍ତ ହୋଇଯାଏ ଯେ ତାର ପୂର୍ବ ଶରୀରର ସ୍ମୃତି ଆଉ ରହେ ନାହିଁ । କୌଣସି ନା କୌଣସି କାରଣ (ହର୍ଷ, ବିଷାଦ ଆଦି)ରୁ ଶରୀରକୁ ସମ୍ପୂର୍ଣ୍ଣ ଭୁଲିଯିବା ହିଁ ମୃତ୍ୟୁ ।।୩୮।। ଉଦାର ଉଦ୍ଧବ, ନୂତନ ଦେହକୁ ସର୍ବତୋଭାବେ ଆତ୍ମାରୂପେ ସ୍ୱୀକାର କରିବାକୁ ହିଁ ଜନ୍ମ କୁହାଯାଏ, ଯେପରି ସ୍ୱପ୍ନଦ୍ରଷ୍ଟା ଶରୀରରେ ଅଭିମାନକୁ ସ୍ୱପ୍ନମନୋରଥ କୁହାଯାଏ ।।୩୯।। ନୂତନ ଦେହଧାରୀ ଜୀବ ପୂର୍ବ ଦେହର ସ୍ୱପ୍ନ ଓ ସଂକଳ୍ପକୁ ସ୍ମରଣ କରେ ନାହିଁ । ପୂର୍ବସିଦ୍ଧ ଆତ୍ମା ଏ ଦେହରେ ତାକୁ ଅପୂର୍ବ ଜଣାଯାଏ ।।୪୦।। ଉଦ୍ଧବ, ମନ ହେଉଛି ଇନ୍ଦ୍ରିୟମାନଙ୍କର ଆଶ୍ରୟ । ସେହି ମନର ଦେହାନ୍ତରରେ ଅବସ୍ଥାନ ପାଇଁ ଯେଉଁ ଉତ୍ତମ, ମଧ୍ୟମ ବା ଅଧମ ଶରୀର ସୃଷ୍ଟିକରେ ସେଥିରେ ଜୀବାତ୍ମା ରହି ବାହାରର ବସ୍ତୁ (ଉତ୍ତମ, ମଧ୍ୟମ, ଅଧମ ଆଦି ଗୁଣ) ଦ୍ୱାରା ପ୍ରଭାବିତ ହେବାପରି ଜଣାଯାଏ, ଯେପରିକି ଦୁଷ୍ଟ ପୁତ୍ରକୁ ଜନ୍ମ ଦେଇଥିବା ପିତା ପୁତ୍ରାଭିମାନରୁ ପୁତ୍ରର ଶତ୍ରୁ ମିତ୍ରଙ୍କଦ୍ୱାରା ପ୍ରଭାବିତ ହୋଇଥାଏ ।।୪୧।।

ପ୍ରିୟ ଉଦ୍ଧବ, ପ୍ରତି ମୁହୂର୍ତ୍ତରେ ପ୍ରାଣୀମାନଙ୍କର ଜନ୍ମ ଓ ମୃତ୍ୟୁ ହୋଇଥାଏ । ଅତିସୂକ୍ଷ୍ମ କାଳର ଗତିରେ ଏହା ଘଟୁଥିବା କଥା ଅବିବେକୀ ଲୋକମାନେ ଲକ୍ଷ୍ୟ କରିପାରନ୍ତି ନାହିଁ ॥୪୨॥ ଯେପରି କାଳର ପ୍ରଭାବରେ ଦୀପର ଶିଖାମାନଙ୍କର, ନଦୀର ସ୍ରୋତମାନଙ୍କର ଓ ବୃକ୍ଷର ଫଳମାନଙ୍କର ଆକାର ଓ ଅବସ୍ଥା ବଦଳି ଚାଲିଥାଏ, ସେହିପରି ସମସ୍ତ ପ୍ରାଣୀଙ୍କର, ଆୟୁ ଓ ଅବସ୍ଥା ପ୍ରତିମୁହୂର୍ତ୍ତରେ ବଦଳୁଥାଏ । ଯେପରି ବଦଳୁଥିବା ଦୀପର ଶିଖାକୁ ଦୀପ ବୋଲି ଓ ବଦଳୁଥିବା ନଦୀର ସ୍ରୋତକୁ ଜଳ ବୋଲି ବୁଝିବା ଓ କହିବା ମିଥ୍ୟା, ସେହିପରି ପରିବର୍ତ୍ତନଶୀଳ ଶରୀରକୁ ଆତ୍ମା ବୋଲି କହିବା ଓ ବୁଝିବା ହେଉଛି ମିଥ୍ୟା ॥୪୩-୪୪॥ କର୍ମବୀଜଦ୍ୱାରା ଜୀବାତ୍ମାର ଜନ୍ମ ବା ମୃତ୍ୟୁ ହୁଏ ନାହିଁ, ସେ ଅଜନ୍ମା ଓ ଅମର । ଭ୍ରମବଶତଃ ଏହାର ଜନ୍ମ ବା ମୃତ୍ୟୁ ହେବାପରି ଜଣାଯାଏ, ଯେପରି କାଠରୁ ଅଗ୍ନିର ଜନ୍ମ ହୁଏ ଓ କାଠ ଜଳିଗଲେ ଅଗ୍ନି ଅଦୃଶ୍ୟ ହୋଇଯାଏ ॥୪୫॥ ଗର୍ଭାଧାନ, ଗର୍ଭବୃଦ୍ଧି,ଜନ୍ମ, ବାଲ୍ୟାବସ୍ଥା, କୈଶୋର, ଯୌବନ, ପ୍ରୌଢ଼ାବସ୍ଥା, ବାର୍ଦ୍ଧକ୍ୟ ଓ ମୃତ୍ୟୁ--ଶରୀରର ଏହି ନଅଟି ଅବସ୍ଥା ଥାଏ ॥୪୬॥ ଶରୀରର ଏହି ମନୋମୟୀ ଉତ୍ତମ ଓ ଅଧମ ଅବସ୍ଥା ମନ ଅନୁସାରେ ହୋଇଥାଏ । ଏଥିରେ ଆତ୍ମାର ସମ୍ପର୍କ ନ ଥାଏ । କିନ୍ତୁ ଗୁଣମାନଙ୍କରେ ଆସକ୍ତିଯୋଗୁଁ ଜୀବ ଏହାକୁ ନିଜର ବୋଲି ଗ୍ରହଣ କରେ । ବେଳେବେଳେ ବିବେକର ଉଦୟହେଲେ ତାହା ସେ ଛାଡ଼ିଦିଏ ॥୪୭॥ ପୁତ୍ରର ଜନ୍ମ ଓ ପିତାର ମୃତ୍ୟୁକୁ ଦେଖି ନିଜର ଜନ୍ମ ଓ ମରଣକୁ ସହଜରେ ଅନୁମାନ କରାଯାଇପାରେ । ଜନ୍ମମୃତ୍ୟୁଯୁକ୍ତ ଦେହର ଦ୍ରଷ୍ଟା ଏହି ଜନ୍ମ-ମରଣର ଦେହ ନୁହେଁ ॥୪୮॥ ମଞ୍ଜି ବୁଣି ଫସଲ କାଟିବା ପର୍ଯ୍ୟନ୍ତ ଚାଷୀ ହିଁ ତାହାର ସାକ୍ଷୀ ହୋଇଥାଏ । ତେଣୁ ଚାଷୀ ଯେପରି ଫସଲଠାରୁ ପୃଥକ୍, ସେହିପରି ଶରୀର ଓ ତାର ଅବସ୍ଥାମାନଙ୍କର ଯେ ସାକ୍ଷୀ, ସେ ହେଉଛି ଏ ଶରୀରଠାରୁ ପୃଥକ୍ ॥୪୯॥ ଯେଉଁ ବ୍ୟକ୍ତି ପ୍ରକୃତି ବା ଶରୀରଠାରୁ ଆତ୍ମା ଭିନ୍ନ ବୋଲି ବୁଝି ନ ଥାଏ, ସେ ହେଉଛି ଅବୋଧ, ଅଜ୍ଞାନ । ସେ ସର୍ବଦା ସଂସାରବନ୍ଧନରେ ହିଁ ପଡ଼ିରହିଥାଏ ॥୫୦॥ ଏହିପରି ବ୍ୟକ୍ତି ସାତ୍ତ୍ୱିକ କାର୍ଯ୍ୟଦ୍ୱାରା ଋଷିଲୋକରେ ଓ ଦେବଲୋକରେ ଜନ୍ମେ ଏବଂ ରାଜସିକ କର୍ମଦ୍ୱାରା ମନୁଷ୍ୟ ଓ ଅସୁର ଯୋନିରେ ଜନ୍ମ ହୁଏ ତଥା ତାମସିକ କର୍ମରେ ଆସକ୍ତି ଯୋଗୁଁ ଭୂତ, ପ୍ରେତ ଓ ପଶୁ, ପକ୍ଷୀ ଆଦି ଯୋନିରେ ଜନ୍ମ ହୁଏ ॥୫୧॥ ଜଣେ ଲୋକକୁ ନାଚୁଥିବାର ବା ଗାଉଥିବାର ଦେଖିଲେ ଅନ୍ୟ ଜଣେ ଯେପରି ତାକୁ ଅନୁକରଣ କରେ, ସେହିପରି ନିଜେ ନିଷ୍କ୍ରିୟ ହେଲେ ମଧ୍ୟ ବୁଦ୍ଧିର ଗୁଣମାନଙ୍କୁ ଦେଖି ଜୀବ ସେ ସବୁକୁ ଅନୁକରଣ କରିବାକୁ ବାଧ୍ୟ ହୋଇଥାଏ ॥୫୨॥ ଦ୍ରୁତବେଗରେ ଜଳସ୍ରୋତରେ ଗଲାବେଳେ କୂଳର ବୃକ୍ଷପାଳ ଯେପରି ଯାଉଥିବା ପରି ଦେଖାଯାଏ, ନିଜେ ଘୂରି ଘୂରି ବୁଲିଲେ ଯେପରି ଭୂଇଁଟା ଘୂରୁଥିବା ପରି ଦେଖାଯାଏ; କିନ୍ତୁ ପ୍ରକୃତରେ ତାହା ନୁହେଁ, ସେହିପରି ମନରେ ଚିନ୍ତା କରିଥିବା ଓ ସ୍ୱପ୍ନରେ ଦେଖିଥିବା ଭୋଗ ପଦାର୍ଥ ସବୁ ମିଥ୍ୟା । ହେ ଯଦୂତ୍ତମ ଉଦ୍ଧବ, ସେହିପରି ଆତ୍ମାପାଇଁ ଏହି ସଂସାର ହେଉଛି ସ୍ୱପ୍ନଦର୍ଶନ ପରି ଅସତ୍ୟ ॥୫୩-୫୪॥ ବିଷୟ ସତ୍ୟ ନ ହେଲେ ମଧ୍ୟ ଜୀବ ସଂସାରଭୋଗରୁ ନିବୃତ୍ତ ହୁଏ ନାହିଁ । ସ୍ୱପ୍ନରେ ଅଳୀକ ବସ୍ତୁମାନଙ୍କୁ ଦେଖିବା ପରି ସେ ବିଷୟମାନଙ୍କୁ ଚିନ୍ତା କରିବାରେ ଲାଗିଥାଏ ॥୫୫॥ ତେଣୁ ହେ ଉଦ୍ଧବ, ଅସତ୍ ଇନ୍ଦ୍ରିୟମାନଙ୍କ ଦ୍ୱାରା ବିଷୟଭୋଗ କର ନାହିଁ । ଆତ୍ମା ସମ୍ପର୍କରେ ଅଜ୍ଞାନତା ଯୋଗୁଁ ଏହି ପ୍ରତୀୟମାନ ସଂସାରକୁ ବୁଦ୍ଧିର ବିକାରରୂପକ ଭ୍ରମ ବୋଲି ଦେଖ ॥୫୬॥ ଦୁଷ୍ଟ ଅଜ୍ଞ ବ୍ୟକ୍ତି ତିରସ୍କାର କରୁ, ଅପମାନିତ କରୁ, ତାଡ଼ନା ବା ଉପହାସ କରୁ, ମିଥ୍ୟାର ଆରୋପ କରୁ, ଅବରୁଦ୍ଧ କରି ରଖୁ ବା ଜୀବିକାରୁ ବଂଚିତ କରୁ, ଛେପ ବା ମୂତ୍ର ନିକ୍ଷେପ କରି ଅପବିତ୍ର କରୁ କିମ୍ବା ଭଗବତ୍ ନିଷ୍ଠାରୁ ବିଚଳିତ କରୁ -- ଏହିପରି ନାନା କଷ୍ଟରେ ରହି ମଧ୍ୟ ନିଜର କଲ୍ୟାଣ କାମନା କରୁଥିବା ବ୍ୟକ୍ତି ନିଜବୁଦ୍ଧିରେ ନିଜର ଆତ୍ମାକୁ ଉଦ୍ଧାର କରିବା ଉଚିତ ॥୫୭-୫୮॥ ଉଦ୍ଧବ କହିଲେ, ହେ ବିଶ୍ୱାତ୍ମା, ବଳବାନ୍ ପ୍ରକୃତିକୁ ଅତିକ୍ରମ କରିବା କଷ୍ଟକର । ଅସତ୍‌ଲୋକମାନଙ୍କର ଏହି ଆକ୍ରମଣ ଆପଣଙ୍କର ଶାନ୍ତ ଚରଣରେ ଆଶ୍ରିତ ଭକ୍ତମାନଙ୍କର ଶରଣବିନା ବିଜ୍ଞବ୍ୟକ୍ତିମାନଙ୍କ ପକ୍ଷରେ ମଧ୍ୟ ଦୁଃସହ ବୋଲି ମୁଁ ମନେକରେ । ତେଣୁ ହେ ବାଗ୍ମିପ୍ରବର, ଏ ବିଷୟରେ ଆପଣ ମୋତେ ଉପଦେଶ ଦେବାହୁଅନ୍ତୁ ॥୫୯-୬୦॥

## ତ୍ରୟୋବିଂଶ ଅଧ୍ୟାୟ

# ଭିକ୍ଷୁଗୀତି

ଶ୍ରୀ ଶୁକଦେବ କହିଲେ, ପ୍ରେମଦାତା ବା ମୁକ୍ତିଦାତା ଭଗବାନଙ୍କର ବିକ୍ରମ କଥା ସର୍ବଥା ଶ୍ରବଣଯୋଗ୍ୟ । ଭକ୍ତଶ୍ରେଷ୍ଠ ଉଦ୍ଧବ ଏହିପରି ପ୍ରାର୍ଥନା କରିବାରୁ ଯଦୁବଂଶମୁଖ୍ୟ ଭଗବାନ ମୁକୁନ୍ଦ ତାଙ୍କୁ ଉତ୍ତର ଦେଇ ଶୁଣାଇଲେ ॥୧॥ ଶ୍ରୀ ଭଗବାନ୍ କହିଲେ, ହେ ବୃହସ୍ପତିଙ୍କର ଶିଷ୍ୟ ଉଦ୍ଧବ, ଏ ସଂସାରରେ ଏପରି ସାଧୁପୁରୁଷ ନାହାନ୍ତି, ଯେ କି ଦୁର୍ଜନଙ୍କ ଉଚ୍ଚାରିତ କଟୁବାକ୍ୟଦ୍ୱାରା ବିଦ୍ଧ ନିଜର ହୃଦୟକୁ ସମ୍ଭାଳିପାରିବେ ॥୨॥ ଦୁର୍ଜନଙ୍କର ମର୍ମଭେଦୀ କଠୋର ବାକ୍ୟବାଣ ହୃଦୟକୁ ଯେତେ କଷ୍ଟ ଦିଏ, ଧନୁର୍ବାଣରେ ବିଦ୍ଧ ହେଲେ ଲୋକକୁ ସେତେ କଷ୍ଟ ଲାଗେ ନାହିଁ ॥୩॥ ଉଦ୍ଧବ, ଏ ପ୍ରସଙ୍ଗରେ ମହାତ୍ମାମାନେ ଏକ ଅତି ପବିତ୍ର ଇତିହାସ କଥା କହିଛନ୍ତି, ଯାହାକୁ ମୁଁ ବର୍ଣ୍ଣନା କରିବାକୁ ଯାଉଛି । ତୁମେ ତାହା ମନୋଯୋଗପୂର୍ବକ ଶୁଣ ॥୪॥ ଦୁଷ୍ଟଲୋକଙ୍କ ଦ୍ୱାରା କଷ୍ଟ ପାଉଥିବା କେହି ଜଣେ ଭିକ୍ଷୁ ତାହାକୁ ନିଜ କର୍ମର ଫଳ ବୋଲି ଭାବି ଧୈର୍ଯ୍ୟ ହରାଇ ନ ଥିଲା ଏବଂ ଏହିପରି ଏକ ଗୀତ ଗାନ କରିଥିଲା ॥୫॥

ଉଜ୍ଜୟିନୀରେ ଜଣେ ବ୍ରାହ୍ମଣ ଥିଲେ । ସେ କୃଷି ବାଣିଜ୍ୟ ଆଦି ବୃତ୍ତି ଦ୍ୱାରା ବହୁତ ଶ୍ରୀସମ୍ପନ୍ନ ଥିଲେ । ସେ ଅତିଶୟ କ୍ରୋଧୀ, କୃପଣ, ଲୋଭୀ ଓ କାମାସକ୍ତ ଥିଲେ ॥୬॥ ସେ ନିଜର ଜ୍ଞାତି-ବନ୍ଧୁ ଓ ଅତିଥିମାନଙ୍କୁ ଭଲରେ କଥାପଦେ କହୁ ନ ଥିଲେ । ଭୋଗ୍ୟବସ୍ତୁଦ୍ୱାରା ନିଜ ଆତ୍ମାର ତୃପ୍ତିପାଇଁ ମଧ୍ୟ ଗୃହରେ କୌଣସି ଧର୍ମ-କର୍ମ କରୁ ନ ଥିଲେ ॥୭॥ କଦର୍ଯ୍ୟ ସ୍ୱଭାବ ଓ ଦୁର୍ବ୍ୟବହାରଯୋଗୁଁ ତାଙ୍କ ପୁତ୍ର କନ୍ୟା, ସ୍ତ୍ରୀ, ବନ୍ଧୁବାନ୍ଧବ ଓ ଚାକରବାକରମାନେ ବିଷଣ୍ଣ ରହି ତାଙ୍କପ୍ରତି ଭଲ ଆଚରଣ କରୁ ନ ଥିଲେ । ବରଂ ଶତ୍ରୁତା କରୁଥିଲେ ॥୮॥ ଯକ୍ଷପରି ଧନ ସଞ୍ଚୟ କରି କୌଣସି ଧର୍ମ କାମନା କରୁନଥିବାରୁ ଉଭୟ ଇହଲୋକରୁ ଓ ପରଲୋକରୁ ତାଙ୍କର ପତନ ଘଟିଥିଲା ଏବଂ ପଞ୍ଚଯଜ୍ଞ କର୍ମରେ ଭାଗ ପାଉଥିବା ଦେବତାମାନେ ତାଙ୍କ ଉପରେ କ୍ରୁଦ୍ଧ ହେଲେ ॥୯॥ ହେ ଉଦ୍ଧବ ! ଦେବତାମାନଙ୍କର ଅନାଦରଯୋଗୁଁ ତାଙ୍କର ପୂର୍ବପୁଣ୍ୟ ସବୁ କ୍ଷୟ ହେବାକୁ ଲାଗିଲା ଏବଂ ବହୁକଷ୍ଟ ଓ ପରିଶ୍ରମରେ ସେ ଯେଉଁ ଧନ ଅର୍ଜନ କରିଥିଲେ, ତାହା ନଷ୍ଟ ହୋଇଗଲା ॥୧୦॥ ସେହି କଦର୍ଯ୍ୟ ବ୍ରାହ୍ମଣଙ୍କର ଧନ କିଛି ଜ୍ଞାତି କୁଟୁମ୍ବମାନେ ହରଣ କଲେ, କିଛି ଦସ୍ୟୁମାନେ ନେଇଗଲେ, କିଛି ଦୈବଯୋଗ (ଗୃହଦାହ ଆଦି)ରୁ ଏବଂ କିଛି ସମୟର ଚାପରେ ଚାଲିଗଲା । ବାକୀତକ ଠକ ଲୋକ ଓ ରାଜ କର୍ମଚାରୀମାନେ ନେଇଗଲେ ॥୧୧॥ ଯେତେବେଳେ ଧର୍ମ-କାମନା ବିବର୍ଜିତ ସେହି ବ୍ରାହ୍ମଣଙ୍କର ଧନ ନଷ୍ଟ ହୋଇଗଲା ଏବଂ ନିଜର ଜ୍ଞାତି-ସ୍ୱଜନମାନେ ପଚାରିଲେ ନାହିଁ, ସେତେବେଳେ ସେ ଘୋର ଚିନ୍ତାରେ ପଡ଼ିଗଲେ ॥୧୨॥ ଧନ ନଷ୍ଟ ହେବାରୁ ଦୀର୍ଘଦିନ ଚିନ୍ତା କରି କରି ତାଙ୍କର ହୃଦୟ ସନ୍ତାପିତ ହେବାକୁ ଲାଗିଲା । କଣ୍ଠ ବାଷ୍ପରୁଦ୍ଧ ହେଲା ଓ ସଂସାର ପ୍ରତି ଘୋର ବୈରାଗ୍ୟ ଜାତ ହେଲା ॥୧୩॥ ସେହି ଅନୁତପ୍ତ ବ୍ରାହ୍ମଣ ମନକୁ ମନ କହିବାକୁ ଲାଗିଲେ, ହାୟ, ବୃଥାରେ ମୁଁ ଦେହକୁ କଷ୍ଟ ଦେଲି । ଯେଉଁ ଧନ ଅର୍ଜନ ପାଇଁ ଏତେ କଷ୍ଟ କରିଥିଲି, ତାହାକୁ ଧର୍ମପାଇଁ ବା ଭୋଗପାଇଁ ଲଗାଇପାରିଲି ନାହିଁ ॥୧୪॥ ପ୍ରାୟ ଦେଖାଯାଏ ଯେ କୃପଣମାନଙ୍କର ଅର୍ଥ କେବେହେଲେ ସେମାନଙ୍କ ସୁଖରେ ଲାଗେ ନାହିଁ । ଇହଲୋକରେ ତାହା ଦେହକୁ କଷ୍ଟ ଦେବାପାଇଁ ଓ ମୃତ୍ୟୁପରେ ନରକ ଭୋଗପାଇଁ ସାର ହୁଏ ॥୧୫॥ ଧବଳକୁଷ୍ଠ ଯେପରି ମନୁଷ୍ୟର ଇପ୍‌ସିତ ରୂପକୁ ନଷ୍ଟ କରିଦିଏ, ସେହିପରି ଅତ୍ୟଳ୍ପ ଲୋଭ ଯଶସ୍ୱୀମାନଙ୍କର ନିର୍ମଳ ଯଶକୁ ଓ ଗୁଣୀମାନଙ୍କର ପ୍ରଶଂସନୀୟ ଗୁଣମାନଙ୍କୁ ନାଶ କରେ ॥୧୬॥ ଅର୍ଥୋପାର୍ଜନର ଉପାୟ କରିବା, ପରିଶ୍ରମ କରି ଉପାର୍ଜିତ ଅର୍ଥକୁ ବଢ଼ାଇବା, ରକ୍ଷା କରିବା, ବ୍ୟୟ କରିବା, ଉପଭୋଗ କରିବା ଏବଂ ଅର୍ଥନାଶଯୋଗୁଁ,

ଭୟ ଓ ମନସ୍ତାପ ଏ ସମସ୍ତ କରିବାକୁ ହୋଇଥାଏ । ସେଥିପାଇଁ ମନୁଷ୍ୟମାନଙ୍କର ମତିଭ୍ରମ ଘଟିଥାଏ ।।୧୭।। ଚୋରି, ହିଂସା, ମିଥ୍ୟା, ଦମ୍ଭ, କାମ, କ୍ରୋଧ, ଗର୍ବ, ଅହଙ୍କାର, ଭେଦ, ଶତ୍ରୁତା, ଅବିଶ୍ୱାସ, ସ୍ପର୍ଦ୍ଧା, ସ୍ତ୍ରୀ ଲମ୍ପଟତା, ଜୁଆଖେଳ ଓ ମଦ୍ୟପାନ--ଏହି ପନ୍ଦରଟିଯାକ ଅନର୍ଥର ମୂଳରେ ଅର୍ଥ ଅଛି ବୋଲି ଲୋକଙ୍କ ମତ । ତେଣୁ ନିଜର ମଙ୍ଗଳକାମନା କରୁଥିବା ବ୍ୟକ୍ତି ଏହି ଅର୍ଥନାମକ ଅନର୍ଥକୁ ଦୂରରୁ ତ୍ୟାଗକରିବା ଉଚିତ ।।୧୮-୧୯।। ଭାଇ-ଭଉଣୀ, ବାପ-ମା, ସ୍ତ୍ରୀ-ସ୍ୱାମୀ ଓ ବନ୍ଧୁବାନ୍ଧବ--ଯେଉଁମାନେ ସ୍ନେହର ବନ୍ଧନରେ ଏକପ୍ରାଣ ଓ ଅତିପ୍ରିୟ ହୋଇ ରହିଥାନ୍ତି, ମାତ୍ର ପାଞ୍ଚ ପଇସାପାଇଁ ସେମାନେ ସମସ୍ତେ ତତ୍‌କ୍ଷଣାତ୍ ପରସ୍ପର ଶତ୍ରୁ ହୋଇଯାନ୍ତି ।।୨୦।। ଅଳ୍ପ ଅର୍ଥ ପାଇଁ ଏମାନେ କ୍ଷୁବ୍ଧ ଓ କ୍ରୋଧାନ୍ୱିତ ହୁଅନ୍ତି ଏବଂ ହଠାତ୍ ପରସ୍ପରର ସ୍ନେହ ସୌହାର୍ଦ୍ଦ ଭୁଲିଯାଇ ସର୍ବନାଶ ଘଟାନ୍ତି ।।୨୧।। ଦେବତାମାନଙ୍କ ପ୍ରାର୍ଥିତ ମନୁଷ୍ୟଜନ୍ମ ଲାଭକରି ଏବଂ ମନୁଷ୍ୟଙ୍କ ମଧ୍ୟରେ ପୁଣି ଶ୍ରେଷ୍ଠ ବ୍ରାହ୍ମଣ ହୋଇ ଯେଉଁମାନେ ସେହି ମନୁଷ୍ୟତ୍ୱ ଓ ବ୍ରାହ୍ମଣତ୍ୱର ଅନାଦର କରନ୍ତି, ସେମାନେ ନିଜର ପ୍ରକୃତ ସ୍ୱାର୍ଥ ଭୁଲିଯାଇ ଅଶୁଭ ଗତି ପାଇଥାନ୍ତି ।।୨୨।। ସ୍ୱର୍ଗ ଓ ମୋକ୍ଷର ଦ୍ୱାର ସ୍ୱରୂପ ଏହି ନରଦେହ ଲାଭକରି କେଉଁ ମରଣଶୀଳ ବ୍ୟକ୍ତି ଅନର୍ଥର ଧାମ ଧନରେ ଆସକ୍ତ ହେବ ? ।।୨୩।। ଯେଉଁ ବ୍ୟକ୍ତି ଦେବ, ଋଷି, ପିତୃ, ଭୂତ( ପ୍ରାଣୀ), ଜ୍ଞାତି, ବନ୍ଧୁ ଓ ଅର୍ଜ୍ଜିତ ଧନର ଅଂଶୀଦାରଙ୍କୁ ଏବଂ ନିଜକୁ ଭାଗ ଦିଏ ନାହିଁ, ସେ ଯକ୍ଷ ପରି ଧନ ରଖି ଅଧୋଗତି ଲାଭକରେ ।।୨୪।। ବ୍ୟର୍ଥ ଅର୍ଥ ଚେଷ୍ଟାରେ ମାତିଥିବା ମୋର ବିତ୍ତ, ବଳ ଓ ବୟସ ବୃଥା ଚାଲିଗଲା । ବୃଦ୍ଧ ହୋଇଗଲି, ମାତ୍ର ବିବେକୀମାନେ ଯେଉଁ ସାଧନାଦ୍ୱାରା ମୁକ୍ତି ଲାଭ କରନ୍ତି, ତାହା ମୁଁ କିପରି ବା ସାଧନ କରିପାରିବି ?।।୨୫।। ବିଦ୍ୱାନ୍ ବ୍ୟକ୍ତି ବୃଥା ଅର୍ଥ ଚେଷ୍ଟାରେ ଲାଗି କାହିଁକି ବାରଂବାର ଦୁଃଖ ଭୋଗକରେ ? ନିଶ୍ଚୟ କାହାରି ମାୟାରେ ଏହି ସଂସାର ମୋହିତ ହୋଇରହିଚି ।।୨୬।। ମୃତ୍ୟୁଗ୍ରସ୍ତ ହେଉଥିବା ଏହି ମନୁଷ୍ୟର ଧନରେ ବା ଧନଦାତାଠାରେ, ଭୋଗ୍ୟ ବସ୍ତୁରେ ବା ଭୋଗ୍ୟବସ୍ତୁ ପ୍ରଦାନ କରୁଥିବା ଲୋକପାଖରେ କି ଲାଭ ଅଛି ? ଅଥବା ମୃତ୍ୟୁଦ୍ୱାରା ଗ୍ରସ୍ତ ମନୁଷ୍ୟର ଜନ୍ମପ୍ରଦ କର୍ମମାନଙ୍କରେ ବା କି ଲାଭ ଅଛି ? ।।୨୭।।

ସର୍ବଦେବମୟ ଭଗବାନ୍ ଶ୍ରୀହରି ନିଶ୍ଚୟ ମୋ ଉପରେ ସନ୍ତୁଷ୍ଟ ହୋଇଛନ୍ତି, ଯେକି ମୋତେ ଏହି ଦଶାରେ ଆଣି ପକାଇଛନ୍ତି । କାରଣ ବୈରାଗ୍ୟ ହିଁ ନିଜକୁ ପାରି କରାଇବାର ନୌକା ।।୨୮।। ବର୍ତ୍ତମାନ ମୋର ବୟସର ଅବଶିଷ୍ଟ ସମୟ ମୁଁ ତପସ୍ୟା କରିବି ଓ ତଦ୍ୱାରା ଶରୀରକୁ ଶୀର୍ଣ୍ଣ କରିବି । ଧର୍ମାଦିସାଧନରେ ଅବିଚଳିତ ହୋଇ ସମସ୍ତ ସ୍ୱାର୍ଥର ସାର ପରମାତ୍ମାଙ୍କ ଚିନ୍ତନ ଦ୍ୱାରା ଆତ୍ମାରେ ସନ୍ତୋଷ ଲାଭ କରିପାରିବି ।।୨୯।। ତ୍ରିଲୋକର ଈଶ୍ୱର ଦେବତାମାନେ ମୋତେ ଅନୁଗ୍ରହ କରନ୍ତୁ । ମୁଁ ରାଜା ଖଟ୍ୱାଙ୍ଗଙ୍କ ପରି ମୁହୂର୍ତ୍ତକର ସାଧନାଦ୍ୱାରା ବ୍ରହ୍ମଲୋକ ଲାଭ କରିପାରିବି ।।୩୦।। ଭଗବାନ୍ ଶ୍ରୀକୃଷ୍ଣ କହିଲେ, ଉଜ୍ଜୟିନୀରେ ଥିବା ସେହି ବ୍ରାହ୍ମଣପ୍ରବର ମନରେ ଏହିପରି ସ୍ଥିର କରି ନିଜ ହୃଦୟର ସମସ୍ତ ଗଣ୍ଠିକୁ ଖୋଲି ଏବଂ ଶାନ୍ତ ଓ ମୌନ ରହି ଭିକ୍ଷୁ ହୋଇଗଲେ ।।୩୧।। ନିଜର ମନ, ପ୍ରାଣ ଓ ଇନ୍ଦ୍ରିୟକୁ ସଂଯତ କରି ସେ ଏଇ ପୃଥିବୀରେ ବିଚରଣ କରିବାକୁ ଲାଗିଲେ । କୌଣସି ବସ୍ତୁରେ ତାଙ୍କର ଆସକ୍ତି ନ ଥିଲା । ଭିକ୍ଷା ପାଇଁ ଜଣେ ଅଚିହ୍ନା ଲୋକ ଭାବରେ ସେ ନଗର ଓ ଗ୍ରାମମାନଙ୍କରେ ପ୍ରବେଶ କରୁଥିଲେ ।।୩୨।। ଭଦ୍ର ଉଦ୍ଧବ ! ସେହି ମଳିନ ବୟସ୍କ ଭିକ୍ଷୁଙ୍କୁ ଦେଖି ଦୁଷ୍ଟଲୋକମାନେ ତାଙ୍କୁ ଅପମାନ ଦେଇ ବହୁ ତିରସ୍କାର କରିବାକୁ ଲାଗିଲେ ।।୩୩।। କେତେକେ ତାଙ୍କ ତ୍ରିଦଣ୍ଡ ନେଇଗଲେ, କେତେକେ କମଣ୍ଡଳୁ ନେଇଗଲେ । କିଏ ଆସନ, କିଏ ରୁଦ୍ରାକ୍ଷମାଳା, କିଏ କନ୍ଥା, ଆଉ କିଏ ତାଙ୍କ କୌପୀନ କନା ନେଇଗଲେ ।।୩୪।। କେହି କେହି କୌଣସି ଦ୍ରବ୍ୟକୁ ଦେଖାଇ, 'ଆଜ୍ଞା ନିଅନ୍ତୁ' ବୋଲି କହି ପୁଣି ଛଡ଼ାଇ ନେଉଥିଲେ । ସେ ନଦୀକୂଳରେ ବସି ଭିକ୍ଷାରୁ ସଂଗୃହୀତ ଅନ୍ନ ଭୋଜନ କରୁଥିବା ବେଳେ ଦୁଷ୍ଟଲୋକମାନେ ତାଙ୍କ ମୁଣ୍ଡ ଉପରେ ଛେପ ପକାଉଥିଲେ ଏବଂ ଅନ୍ନରେ ମୂତ୍ର ତ୍ୟାଗ କରୁଥିଲେ । ସେ ନୀରବ ରହୁଥିଲେ ମଧ୍ୟ ସେମାନେ ତାଙ୍କୁ ଅଭାଷା ଭାଷାରେ ଗାଳି ଗୁଲଜ କରୁଥିଲେ; କିଛି ନ କହିଲେ ପିଟୁଥିଲେ, କେତେକ 'ଏଇଟା ଚୋର' ବୋଲି କହି ଧମକାଉଥିଲେ ଏବଂ ଆଉ କେତେକ 'ଏହାକୁ ବାନ୍ଧ, ବାନ୍ଧ'

ବୋଲି କହି ଦଉଡ଼ିରେ ବାନ୍ଧି ପକାଉଥିଲେ ।।୩୫-୩୭।। କେହି କେହି ଅବଜ୍ଞାପୂର୍ବକ ତିରସ୍କାର କରି କହୁଥିଲେ, ଏ ଗୋଟାଏ ଧର୍ମଧ୍ୱଜୀ ଠକ । ଧନକ୍ଷୟ ହେବାରୁ ନିଜର ଲୋକମାନେ ଏହାକୁ ତଡ଼ି ଦେଇଛନ୍ତି । ଏଣୁ ସେ ଏହି ଭିକମଗା ଧନ୍ଦା କରିଛି ।।୩୮।। ଆଉ କେତେ କହୁଥିଲେ--ଆରେ ! ଏଇ ଲୋକଟା ଭାରୀ ବଳୁଆ । ପାହାଡ଼ ପରି ଧୈର୍ଯ୍ୟବାନ୍ ଏବଂ ବଗପରି ମୂକ ଓ ଦୃଢ଼ ସଙ୍କଳ୍ପ ରହି ନିଜର କାମ ହାସଲ କରିବାକୁ ବସିଚି ।।୩୯।। ଏହିପରି କେହି କେହି ତାଙ୍କୁ ଉପହାସ କରୁଥିଲେ ତ କେହି କେହି ତାଙ୍କ ଉପରେ ଦୁର୍ବାୟୁ ଛାଡୁଥିଲେ । କେହି କେହି ତାଙ୍କୁ ଶୁଆସାରୀଙ୍କ ଭଳି ଶିକୁଳିରେ ବାନ୍ଧି ଗୃହରେ ବନ୍ଦକରି ରଖୁଥିଲେ ।।୪୦।। ଏହିପରି ଦୁର୍ଜନଙ୍କର ପୀଡ଼ା, ଜ୍ୱର ଆଦି ଦେହର ପୀଡ଼ା, ଗରମ ଓ ଥଣ୍ଡା ଆଦି ଦୈବିକ ପୀଡ଼ା ଭୋଗକରି ସେ ବୁଝି ନେଇଥିଲେ ଯେ ଏ ସବୁ ପୀଡ଼ା ନିଜ ଦୈବକୃତ ଏବଂ ତାହା ଅବଶ୍ୟ ଭୋଗିବାକୁ ହେବ ।।୪୧।। ତାଙ୍କୁ ଧର୍ମରୁ ଖସାଉଥିବା ଅଧମ ଲୋକମାନେ ବିଚଳିତ କଲେ ମଧ୍ୟ ସେ ସାତ୍ତ୍ୱିକ ଧୈର୍ଯ୍ୟ ଧରି ନିଜ ଧର୍ମରେ ରହିଲେ ଏବଂ ଏହି ଗାଥା ଗାନ କଲେ-- ।।୪୨।।

ବ୍ରାହ୍ମଣ କହିଲେ, କୌଣସି ଲୋକ, କୌଣସି ଦେବତା, ଆତ୍ମା, ଗ୍ରହ, କର୍ମ ବା କାଳ ମୋ ସୁଖ ଦୁଃଖର କାରଣ ନୁହେଁ । ସଂସାରଚକ୍ରକୁ ଘୂରାଉଥିବା ମନ ହିଁ ସୁଖଦୁଃଖର କାରଣ ବୋଲି ଋଷିମାନେ କହନ୍ତି ।।୪୩।। ବଳୀୟାନ୍ ମନ ସତ୍ତ୍ୱ ଆଦି ଗୁଣମାନଙ୍କୁ ସୃଷ୍ଟିକରେ ଏବଂ ସେହିସବୁ ଗୁଣଅନୁସାରେ ଜୀବ ସାତ୍ତ୍ୱିକ, ରାଜସିକ ଓ ତାମସିକ ଭେଦରେ ନାନା କର୍ମମାନ କରିଥାଏ । ସେହି ସବୁ କର୍ମ ଅନୁସାରେ ଦେବ, ତିର୍ଯ୍ୟକ୍ ଓ ମନୁଷ୍ୟଯୋନି ମିଳିଥାଏ ।।୪୪।। ମନ ସହିତ ଥିଲେ ମଧ୍ୟ ଆତ୍ମା ନିଷ୍କ୍ରିୟ ଓ ଅନାସକ୍ତ ରହେ । ଜ୍ଞାନପ୍ରଧାନ ଆତ୍ମା ମୋ ପରି ଜୀବର ସନାତନ ସଖା । ସେ କିଛି ନକରି ସବୁ ଦେଖୁଥାଏ । କିନ୍ତୁ ଲିଙ୍ଗଶରୀର ଧାରଣ କରି ମନ ବିଷୟଭୋଗ ପାଇଁ ଗୁଣର ସଂସର୍ଗରେ ଆସକ୍ତ ହୋଇପଡ଼େ ।।୪୫।। ଦାନ, ସ୍ୱଧର୍ମ, ନିୟମ, ସଂଯମ, ବେଦପାଠ ଓ ସତ୍‌କର୍ମମାନଙ୍କୁ ହିଁ ଶ୍ରେଷ୍ଠ ବ୍ରତ ବୋଲି କୁହାଯାଏ । ସମସ୍ତଙ୍କର ଲକ୍ଷ୍ୟ ହେଉଛି ମନକୁ ନିୟନ୍ତ୍ରଣ କରିବା । ମନକୁ ସ୍ଥିର ଓ ସଂଯତ ରଖିବା ହିଁ ପ୍ରକୃତ ଯୋଗ ।।୪୬।। ଯାହାର ମନ ଶାନ୍ତ ଓ ସମାହିତ, ଦାନାଦି ଦ୍ୱାରା ତାକୁ ଆଉ ଅଧିକ ଫଳ ମିଳିବାର ନାହିଁ ଓ ଯାହାର ମନ ଅସଂଯତ, ଆଳସ୍ୟପରାୟଣ, ସେ ଦାନ ଆଦି ଯେତେ ଭଲ କାମ କଲେ ମଧ୍ୟ ତାର କୌଣସି ଫଳ ହୁଏ ନାହିଁ ।।୪୭।। ଅନ୍ୟ ଇନ୍ଦ୍ରିୟମାନେ ମନର ଅଧୀନ ହୋଇଥା'ନ୍ତି । ମନ କୌଣସି ଇନ୍ଦ୍ରିୟଙ୍କର ଅଧୀନ ନ ଥାଏ । ମନ ହେଉଚି ବଳବାନ୍‌ଙ୍କଠାରୁ ବଳୀୟାନ୍ । ଏହା ଏକ ଭୟଙ୍କର ଦେବ । ମନକୁ ଯେ ନିଜ ବଶକୁ ଆଣିପାରେ, ସେ ଦେବ-ଦେବ ହୋଇଯାଏ ।।୪୮।। ମନ ହେଉଚି ଦୁର୍ଜୟ ଶତ୍ରୁ, ତାହାର ବେଗକୁ କେହି ସହିପାରନ୍ତି ନାହିଁ । ସେ ମର୍ମସ୍ଥଳକୁ ବ୍ୟଥାଦିଏ । ଯେଉଁ କେତେକ ବ୍ୟକ୍ତି ମନରୂପକ ଶତ୍ରୁକୁ ଜୟ ନକରି ଅନ୍ୟ କେତେକଙ୍କସହିତ ବ୍ୟର୍ଥ ଝଗଡ଼ା କରନ୍ତି – ଯଦ୍ଦ୍ୱାରା କି ଶତ୍ରୁ, ମିତ୍ର ଓ ଉଦାସୀନମାନଙ୍କର ସୃଷ୍ଟି ହୁଏ, ସେମାନେ ଅତି ମୂଢ଼ ।।୪୯।। ଅହଙ୍କାର ଓ ମମତାବୋଧରେ ମନର କଳ୍ପିତ ଏହି ଦେହକୁ 'ମୁଁ ଓ ମୋର' ବୋଲି କଳ୍ପନା କରାଯାଏ ଓ ଅନ୍ୟ ବ୍ୟକ୍ତିକୁ ନିଜଠାରୁ ପୃଥକ୍ ବୋଲି ମନେ କରାଯାଏ । ଏହି ଭ୍ରମରେ ପଡ଼ି ମନୁଷ୍ୟ ସଂସାରରୂପୀ ଅପାର ଅନ୍ଧକାରରେ ଘୂରି ବୁଲୁଥାଏ ।।୫୦।।

ମନୁଷ୍ୟ ଯଦି ନିଜର ସୁଖ ଦୁଃଖର କାରଣ ହୁଏ, ତା'ହେଲେ ଆତ୍ମାର ସେଥି ସହିତ କି ସମ୍ବନ୍ଧ ଅଛି ? ଦାନ୍ତରେ ଜିଭ କାମୁଡ଼ି ହୋଇ ଯଦି କଷ୍ଟହୁଏ,ସେଥିପାଇଁ ଅନ୍ୟ କାହା ଉପରେ ରାଗିବାର କାରଣ ନାହିଁ ? ।।୫୧।। ଯଦି ଇନ୍ଦ୍ରିୟର ଅଧିଷ୍ଠାତା ଦେବତାମାନେ ଦୁଃଖର ହେତୁ ହୁଅନ୍ତି,ତେବେ ସେଥିରେ ଆତ୍ମାର କଣ ଦୋଷ ଅଛି ? ଇନ୍ଦ୍ରିୟମାନଙ୍କର ଅଧିଷ୍ଠାତା ଦେବତାମାନେ ସମସ୍ତଙ୍କ ଦେହରେ ଅଛନ୍ତି । ଦେହର ଗୋଟିଏ ଅଙ୍ଗ ଅନ୍ୟ ଅଙ୍ଗକୁ ଆଘାତ କଲେ (ଦାନ୍ତଜିଭ ନ୍ୟାୟ)ଯେପରି କାହାରିକୁ ଦୋଷ ଦିଆଯାଇ ପାରିବ ନାହିଁ, ସେହିପରି ସେହି ଏକ ଦେବତା ଦୁଇଟି ଦେହରେ ଥିବାଯୋଗୁଁ ଜଣେ ଅନ୍ୟକୁ ଆଘାତକଲେ ତାହା ପ୍ରତି କ୍ରୋଧକରିବା ଠିକ୍ ହେବ ନାହିଁ ।।୫୨।। ଯଦି ଆତ୍ମାକୁ ସୁଖ ଦୁଃଖର କାରଣ ବୋଲି ବିଚାର କରାଯାଏ, ତା'ହେଲେ

ସେ ହେଉଚି ନିଜର । ଅନ୍ୟ କାହାର ନୁହେ । ଆତ୍ମା ଛଡ଼ା ଅନ୍ୟ କିଛି ନାହିଁ । ଯଦି ଅନ୍ୟ କିଛି ଅଛି ବୋଲି ଦେଖାଯାଏ, ତା'ହେଲେ ତାହା ମିଥ୍ୟା । ସେହି ଦୃଷ୍ଟିରୁ ସୁଖ ବା ଦୁଃଖ କିଛି ନାହିଁ । ତା'ହେଲେ କାହାରି ଉପରେ ରାଗ କରିବା ଅନୁଚିତ ॥୫୩॥ ଯଦି ଗ୍ରହମାନଙ୍କୁ ସୁଖ ଦୁଃଖର କାରଣ ବୋଲି ଧରାଯାଏ ତା'ହେଲେ ଅଜନ୍ମା ଆତ୍ମାର ସେଥିରେ ଯାଏ ଆସେ କେତେ ? ଗ୍ରହମାନଙ୍କ ଅବସ୍ଥାନକୁ ଘେନି ଗ୍ରହପୀଡ଼ାର ନିର୍ଣ୍ଣୟ କରାଯାଏ । ଜୀବ ଦେହଠାରୁ ଭିନ୍ନ ହୋଇଥିବାଯୋଗୁଁ କାହାରିକୁ ରାଗ କରାଯାଇ ପାରିବ ନାହିଁ ॥୫୪॥ କର୍ମକୁ ଯଦି ସୁଖ ଦୁଃଖର କାରଣ ବୋଲି କୁହାଯାଏ,ତା'ହେଲେ ଆତ୍ମାର ସେଥିରେ କଣ ଅଛି ? କାରଣ ଦେହ ଜଡ଼ ଓ ଆତ୍ମା ଚେତନ । ଜଡ଼ଦ୍ୱାରା କର୍ମ ସମ୍ଭବ ନୁହେ । ଚେତନା ବା ଶୁଦ୍ଧଜ୍ଞାନ ସ୍ୱରୂପ ଆତ୍ମା କର୍ମ କରେ ନାହିଁ । ତେଣୁ କର୍ମର ମୂଳ କିଏ ନଜାଣି କାହାପ୍ରତି କ୍ରୋଧ କରାଯାଇପାରିବ ? ॥୫୫॥ କାଳ ଯବି ସୁଖ ଦୁଃଖର କାରଣ ହୁଏ, ତା'ହେଲେ ଆତ୍ମାର ସେଥିରେ କ'ଣ ଯାଏ ଆସେ ? କାଳ ହେଉଚି ଆତ୍ମାର ସ୍ୱରୂପ । ନିଆଁ ଯେପରି ନିଆଁକୁ ଜଳାଇ ପାରେ ନାହିଁ, ବରଫ ବରଫକୁ ତରଳାଇ ପାରେ ନାହିଁ, ସେହିପରି କାଳ ଆତ୍ମାକୁ ସୁଖ ଦୁଃଖରେ ଲିପ୍ତ କରି ପାରିବ ନାହିଁ । ତେଣୁ କାହାକୁ କ୍ରୋଧ କରାଯିବ ? ॥୫୬॥ ଆତ୍ମା ପ୍ରକୃତିରୁ ପୃଥକ୍, ଦ୍ୱନ୍ଦ୍ୱାତୀତ । କେବେହେଲେ କାହାଦ୍ୱାରା କୌଣସି ପ୍ରକାର ଦ୍ୱନ୍ଦ୍ୱ ସଂସାର ଚକ୍ରରେ ଘୂରି ବୁଲୁଥିବା ଅହଙ୍କାରକୁ ସ୍ପର୍ଶକରେ, ଆତ୍ମାକୁ ସ୍ପର୍ଶ କରିପାରେ ନାହିଁ । ଯେ ଏହାକୁ ଜାଣିଚି, ସେ କୌଣସି ପ୍ରାଣୀକୁ ଭୟ କରେ ନାହିଁ ॥୫୭॥ ପୂର୍ବେ ମହର୍ଷିମାନେ ପରମାତ୍ମାଙ୍କଠାରେ ଯେପରି ନିଷ୍ଠା ସ୍ଥାପନ କରିଥିଲେ, ମୁଁ ସେହି ନିଷ୍ଠାକୁ ଆଶ୍ରୟ କରି ଭଗବାନ୍ ମୁକୁନ୍ଦଙ୍କର ପାଦପଦ୍ମର ସେବାଦ୍ୱାରା ଦୁସ୍ତର ଅଜ୍ଞାନ ଅନ୍ଧକାରରୁ ଉଦ୍ଧାର ପାଇଯିବି ॥୫୮॥

ଭଗବାନ୍ ଶ୍ରୀକୃଷ୍ଣ କହିଲେ, ସେହି ବ୍ରାହ୍ମଣଙ୍କର ସମସ୍ତ ଧନ ନଷ୍ଟ ହୋଇଗଲା । ସେ ସଂସାର ପ୍ରତି ବିତୃଷ୍ଣ ହୋଇ ସନ୍ନ୍ୟାସ ଗ୍ରହଣ କଲେ ଏବଂ କୌଣସି କ୍ଳାନ୍ତି ଅନୁଭବ ନକରି ପୃଥିବୀ ପର୍ଯ୍ୟଟନ କଲେ । ଦୁଷ୍ଟ ଲୋକମାନେ ତାଙ୍କୁ ଯେତେ ଦୁଃଖ କଷ୍ଟ ଦେଲେ ମଧ୍ୟ ସେ ସ୍ୱଧର୍ମରୁ ବିଚଳିତ ନହୋଇ ଏହି ଗୀତଟି ଗାନ କରିଥିଲେ ॥୫୯॥ ପୁରୁଷର ମତିଭ୍ରମ ଛଡ଼ା ତାଙ୍କୁ ଅନ୍ୟ କେହି ସୁଖ-ଦୁଃଖ ଦିଏନାହିଁ । ସଂସାରରୂପକ ଅଜ୍ଞାନତାରୁ ହିଁ ଶତ୍ରୁ, ମିତ୍ର, ଉଦାସୀନ -- ଏହି ତିନି ଶ୍ରେଣୀର ଲୋକଙ୍କର ସୃଷ୍ଟି ହୋଇଥାଏ ॥୬୦॥ ପ୍ରିୟ ଉଦ୍ଧବ, ସେଥିପାଇଁ ମୋ'ଠାରେ ଚିତ୍ତନିବେଶ କରି ସର୍ବତୋଭାବରେ ମନକୁ ସଂଯତ କର । ଏହିପରି ମୋ'ଠାରେ ଯୁକ୍ତ ହେବା ହିଁ ହେଉଚି ଯୋଗ ॥୬୧॥ ବ୍ରହ୍ମରେ ନିଷ୍ଠାପାଇଁ ଯେଉଁ ବ୍ୟକ୍ତି ଏହି ଭିକ୍ଷୁଗୀତକୁ ଚିତ୍ତରେ ଧାରଣ କରେ, ଶ୍ରବଣ କରେ ଓ ଅନ୍ୟମାନଙ୍କୁ ଶୁଣାଏ, ସୁଖ-ଦୁଃଖ ଆଦି ଦ୍ୱନ୍ଦ୍ୱ ତାଙ୍କୁ ଅଭିଭୂତ କରି ପାରେନାହିଁ ॥୬୨॥

## ଚତୁର୍ବିଂଶ ଅଧ୍ୟାୟ

# ସାଂଖ୍ୟ ଯୋଗ

ଶ୍ରୀ ଭଗବାନ୍ କହିଲେ, ଉଦ୍ଧବ, ବର୍ତ୍ତମାନ ମୁଁ ତୁମକୁ ପୂର୍ବସୂରୀମାନଙ୍କର ନିର୍ଣ୍ଣୀତ ସାଂଖ୍ୟଯୋଗ ବିଷୟରେ ଶୁଣାଇବାକୁ ଯାଉଚି । ତାହା ଜାଣିଲେ ଲୋକ ଭେଦବୁଦ୍ଧିଜନିତ ଭ୍ରମକୁ ସଂଗେ ସଂଗେ ଛାଡିଦିଏ ॥୧॥ ସତ୍ୟଯୁଗରେ ଲୋକମାନେ ବିବେକନିପୁଣ ଥିଲେ । ଯୁଗମାନଙ୍କ ପୂର୍ବରୁ ପ୍ରଳୟକାଳରେ ଏବଂ ସତ୍ୟଯୁଗର ଆରମ୍ଭରେ ଏକମାତ୍ର ଜ୍ଞାନ ହିଁ ରହିଥିଲା ଏବଂ ତାହାର କୌଣସି ବିକଳ୍ପ ନଥିଲା ॥୨॥ ବାକ୍ୟ ଓ ମନର ଅଗୋଚର ସେହି ବୃହତ୍ ପରଂବ୍ରହ୍ମ ନିର୍ବିକଳ୍ପ ସତ୍ୟ ତାଙ୍କର ମାୟାର ଫଳ ସ୍ୱରୂପ ଦୁଇଭାଗ ହୋଇଗଲେ ॥୩॥ ସେଇ ଦୁଇଟି ମଧ୍ୟରୁ ଗୋଟିଏ ହେଲା ଅର୍ଥ' ଯାହାକି କାର୍ଯ୍ୟକାରଣରୂପ ପ୍ରକୃତି

ଏବଂ ଅନ୍ୟଟି ହେଲା ଭାବ ଯାହାକି ଜ୍ଞାନସ୍ୱରୂପ ପୁରୁଷ ॥୪॥ ମୁଁ ଜୀବସୃଷ୍ଟିପାଇଁ ପ୍ରକୃତିକୁ କ୍ଷୋଭିତ କରିବାରୁ ସେଥିରେ ସତ୍ତ୍ୱ, ରଜ ଓ ତମ--ଏହି ତିନି ଗୁଣ ଉତ୍ପନ୍ନ ହେଲେ ॥୫॥ ସେହି ଗୁଣମାନଙ୍କରୁ ମହତ୍ ତତ୍ତ୍ୱର ସୃଷ୍ଟି ହେଲା । ମହତ୍ତତ୍ତ୍ୱ ହେଉଚି ଉଭୟ ଜ୍ଞାନ ଓ କ୍ରିୟାଶକ୍ତି ପ୍ରଧାନ । ତାର ବିକାରରୁ ଅହଂକାରର ସୃଷ୍ଟି ହେଲା, ଯେ କି ଜୀବକୁ ସର୍ବଦା ବିମୋହିତ କରେ ॥୬॥ ଅହଙ୍କାର ହେଉଚି ସାତ୍ତ୍ୱିକ, ରାଜସିକ ଓ ତାମସିକ--ଏହି ତିନି ପ୍ରକାର ଏବଂ ଏହା ପଞ୍ଚ ତନ୍ମାତ୍ର, ପଞ୍ଚ ମହାଭୂତ, ଦଶ ଇନ୍ଦ୍ରିୟ ଓ ମନର କାରଣ । ଏହା ଉଭୟ ଜଡ଼ ଓ ଚେତନ ॥୭॥ ତନ୍ମାତ୍ରମାନଙ୍କର କାରଣ ତାମସଅହଂକାରରୁ ପଞ୍ଚମହାଭୂତଙ୍କର ଜନ୍ମ ହେଲା । ରାଜସ ଅହଂକାରରୁ ଜ୍ଞାନେନ୍ଦ୍ରିୟ ଓ କର୍ମେନ୍ଦ୍ରିୟମାନେ ଏବଂ ସାତ୍ତ୍ୱିକ ଅହଙ୍କାରରୁ ଏହି ଦଶ ଇନ୍ଦ୍ରିୟଙ୍କର ଓ ମନର ଅଧିଷ୍ଠାତ୍ରୀ ଦେବତାମାନେ (ଦିଗ, ବାୟୁ, ସୂର୍ଯ୍ୟ,ବରୁଣ, ଅଶ୍ୱିନକୁମାରଦ୍ୱୟ, ଅଗ୍ନି, ଇନ୍ଦ୍ର, ଉପେନ୍ଦ୍ର, ମିତ୍ର ପ୍ରଜାପତି ଓ ଚନ୍ଦ୍ର) ଜାତ ହେଲେ ॥୮॥ ମୋ'ଦ୍ୱାରା ପ୍ରେରିତ ସବୁ ଭାବମାନେ ଏକାଠି ହୋଇ କାର୍ଯ୍ୟ କରିବାକୁ ସମର୍ଥ ହେବାରୁ ବ୍ରହ୍ମାଣ୍ଡରୂପକ ମୋର ଉତ୍ତମ ନିବାସସ୍ଥାନକୁ ଉତ୍ପନ୍ନ କଲେ ॥୯॥ ସେହି ଜଳସ୍ଥିତ ଅଣ୍ଡମଧ୍ୟରେ ମୁଁ ନାରାୟଣରୂପେ ଅବସ୍ଥାନ କଲି ଏବଂ ମୋର ନାଭିରେ ବିଶ୍ୱର କାରଣସ୍ୱରୂପ ପଦ୍ମ ଜାତ ହେଲା ଏବଂ ସେହି ପଦ୍ମମଧ୍ୟରେ ବ୍ରହ୍ମାଙ୍କର ଆବିର୍ଭାବ ହେଲା ॥୧୦॥ ବ୍ରହ୍ମା ତପସ୍ୟା ପୂର୍ବକ ମୋ ଅନୁଗ୍ରହରୁ ରଜୋଗୁଣ ଯୁକ୍ତହୋଇ ଭୂଃ, ଭୁବଃ ଓ ସ୍ୱଃ--ଏହିପରି ତିନି ଲୋକ ଓ ଲୋକପାଳମାନଙ୍କୁ ଉତ୍ପନ୍ନ କଲେ । ଦେବତାମାନଙ୍କର ନିବାସସ୍ଥଳ ହେଲା ସ୍ୱର୍ଲୋକ ଏବଂ ଭୂତ, ପ୍ରେତ, ପିଶାଚ ଆଦିଙ୍କର ଭୁବର୍ଲୋକ ଓ ମନୁଷ୍ୟମାନଙ୍କର ଭୂଲୋକ । ଏହି ତିନି ଲୋକଙ୍କର ଉପରେ ସିଦ୍ଧମାନଙ୍କର ନିବାସ ପାଇଁ ମହର୍ଲୋକ ଆଦିର ସୃଷ୍ଟି ହେଲା । ଭୂଲୋକର ତଳେ ବ୍ରହ୍ମା ଅସୁର ଓ ନାଗମାନଙ୍କ ରହିବାପାଇଁ ଅତଳ ଆଦି ସ୍ଥାନ ସୃଷ୍ଟି କଲେ । ସତ୍ତ୍ୱ, ରଜ ଓ ତମ ଗୁଣ ପ୍ରଧାନ କର୍ମ ଅନୁଯାୟୀ ଜୀବମାନେ ସକଳ ଗତି ସ୍ୱର୍ଗ, ମର୍ତ୍ତ୍ୟ ଓ ପାତାଳ-- ଏହି ତିନିଲୋକ ପ୍ରାପ୍ତ ହୁଅନ୍ତି ॥୧୧-୧୩॥ ଯୋଗ, ତପସ୍ୟା ଓ ସନ୍ନ୍ୟାସଦ୍ୱାରା ଯଥାକ୍ରମେ ମହର୍ଲୋକ, ଜନଲୋକ, ତପଲୋକ ଓ ସତ୍ୟଲୋକରେ ଉତ୍ତମ ଗତି ଲାଭ ହୁଏ । ଭକ୍ତିଦ୍ୱାରା ମୋତେ ଲାଭ କରାଯାଏ ॥୧୪॥ କର୍ମଯୁକ୍ତ ଏହି ଜଗତର ମୁଁ ହେଉଛି କାଳରୂପକ ଆତ୍ମା । କର୍ମଯୁକ୍ତ ଏହି ଜଗତକୁ ମୁଁ ଧାରଣ କରିଚି ଓ ହେତୁଭୂତ ପରମେଶ୍ୱର (ଧାତା) । ଗୁଣମୟ ଏହି ସଂସାରସ୍ରୋତରେ ମୋ'ଦ୍ୱାରା ଜୀବ କେତେବେଳେ ଉତ୍ତମ ଗତି ଓ କେତେବେଳେ ନୀଚ ଗତି ଲାଭକରେ ॥୧୫॥ ଜଗତ୍‌ରେ ଅଣୁ-ବୃହତ୍, ସୂକ୍ଷ୍ମ-ସ୍ଥୁଳ ଆଦି ଯେଉଁ ଯେଉଁ ପଦାର୍ଥ ଅଛି, ତାହା ସବୁ ଉଭୟ ପ୍ରକୃତି ଓ ପୁରୁଷ ସଂଯୋଗରେ ଉତ୍ପନ୍ନ ହୁଏ ॥୧୬॥

ଯେଉଁ ପଦାର୍ଥ ଆଦ୍ୟରେ ଥାଏ, ଅନ୍ତରେ ଥାଏ, ସେ ବି ମଧ୍ୟରେ ଥାଏ ଓ ତାହା ହେଉଚି ସତ୍ୟ । ବ୍ୟବହାରପାଇଁ ପଦାର୍ଥର ବିକାରକୁ କଳ୍ପନା କରାଯାଇଥାଏ । ଯଥା ସୁବର୍ଣ୍ଣର ବିକାରରେ କୁଣ୍ଡଳ ଓ କଙ୍କଣ ଆଦି ଏବଂ ମୃତ୍ତିକାର ବିକାରରେ ଘଟ ଓ ସରା ଆଦି । ତେଣୁ ଯେଉଁ ଉପାଦାନରେ ଏମାନେ ପ୍ରସ୍ତୁତ, ତାହା ପ୍ରଥମରୁ ଯାହା ଥିଲା, ଏବେ ମଧ୍ୟ ଅଛି ଏବଂ ପରେ ମଧ୍ୟ ତାହା ରହିବ । କାର୍ଯ୍ୟର ସତ୍ତା ଯାହା ପ୍ରଥମରୁ ଥିଲା, ତାହା ଶେଷରେ ରହିବ ଏବଂ ତାହା ହିଁ ସତ୍ୟ । ଦୃଶ୍ୟମାନ ବସ୍ତୁ କଳ୍ପନାର ପରିପ୍ରକାଶ ମାତ୍ର ॥୧୭-୧୮॥ ଏହି କାର୍ଯ୍ୟ ବା ବିଶ୍ୱ ସୃଷ୍ଟିର ଉପାଦାନ ହେଲା ପ୍ରକୃତି ଓ ଆଧାର ହେଲା ପୁରୁଷ । କାଳଦ୍ୱାରା ହିଁ ଏହା ପ୍ରକଟିତ ହୁଏ । ସୃଷ୍ଟିର ଉପାଦାନ ପ୍ରକୃତି, ଆଧାରପୁରୁଷ ଓ ଉଭୟଙ୍କ ସଂଯୋଗରେ ହେଉଥିବା ସୃଷ୍ଟିକାର୍ଯ୍ୟ--ଏହି ତିନୋଟିଯାକ ହେଉଛନ୍ତି ବ୍ରହ୍ମର ସ୍ୱରୂପ ଏବଂ ମୁଁ ହେଉଚି ସେହି ବ୍ରହ୍ମ ॥୧୯॥ ପୂର୍ବାପର ପିତା-ପୁତ୍ର ପରମ୍ପରାରେ ଗୁଣ ଅନୁଯାୟୀ କର୍ମ କରିବାପାଇଁ ଏହି ଜୀବସୃଷ୍ଟି ଲାଗି ରହିଥାଏ । ଭଗବାନଙ୍କ ଇଚ୍ଛା ଶକ୍ତିରେ ସୃଷ୍ଟି, ପାଳନ ଓ ଅନ୍ତ ଘଟିଥାଏ ॥୨୦॥ ଅହରହ ସୃଷ୍ଟି, ସ୍ଥିତି ଓ ବିନାଶଯୁକ୍ତ ଏହି ବିରାଟ ବ୍ରହ୍ମାଣ୍ଡ ମୋ ଦ୍ୱାରା ପରିବ୍ୟାପ୍ତ ହୋଇଚି । ମୁଁ ଯେତେବେଳେ ପ୍ରଳୟର ସଙ୍କଳ୍ପ କରେ, ସେତେବେଳେ ସମସ୍ତ ଭୁବନସହିତ ଏହି ବ୍ରହ୍ମାଣ୍ଡ

ଖଣ୍ଡ ଖଣ୍ଡ ହୋଇଯାଏ ।।୨୧।। ସେତେବେଳେ ଏହି ଶରୀର ଅନ୍ନରେ ଲୀନ ହୁଏ । ଅନ୍ନ ବୀଜରେ, ବୀଜ ଭୂମିରେ, ଭୂମି ଗନ୍ଧରେ, ଗନ୍ଧ ଜଳରେ, ଜଳ ନିଜର ରସଗୁଣରେ, ରସ ତେଜରେ, ତେଜରୂପରେ, ରୂପ ବାୟୁରେ, ବାୟୁ ସ୍ପର୍ଶରେ, ସ୍ପର୍ଶ ଆକାଶରେ ଏବଂ ଆକାଶ ଶବ୍ଦ ତନ୍ମାତ୍ରରେ ଲୀନ ହୋଇଯାଏ । ଇନ୍ଦ୍ରିୟମାନେ ନିଜ ନିଜର ପ୍ରବର୍ତ୍ତକ ଦେବତାମାନଙ୍କ ଠାରେ ଲୀନ ହୋଇଯାନ୍ତି ।।୨୨-୨୪।। ସୌମ୍ୟ ଉଦ୍ଧବ, ଇନ୍ଦ୍ରିୟଙ୍କ ଅଧିଷ୍ଠାତା ଦେବତାମାନେ ସେମାନଙ୍କ ନିୟନ୍ତା ମନରେ ଲୀନ ହୁଅନ୍ତି, ଶବ୍ଦତନ୍ମାତ୍ର ପଞ୍ଚଭୂତର କାରଣ ତାମସ ଅହଂକାରରେ ଲୀନ ହୁଏ ଏବଂ ତ୍ରିବିଧ ଅହଙ୍କାର ମହତ୍ତତ୍ତ୍ୱରେ ଲୀନ ହୁଏ ।।୨୫।। ଜ୍ଞାନଶକ୍ତି ଓ କ୍ରିୟାଶକ୍ତିଯୁକ୍ତ ମହତ୍ତତ୍ତ୍ୱ ନିଜର କାରଣସ୍ୱରୂପ ଗୁଣମାନଙ୍କରେ, ଗୁଣମାନେ ଅବ୍ୟକ୍ତ ପ୍ରକୃତିରେ ଲୀନ ହୁଅନ୍ତି ଏବଂ ପ୍ରକୃତି ନିଜର ପ୍ରେରଣାଦାତା ଅବିନାଶୀ କାଳରେ ଲୀନ ହୋଇଯାଏ ।।୨୬।। କାଳ ମାୟାମୟ ଜୀବରେ ଏବଂ ଜୀବ ମୋଠାରେ ଲୀନ ହୁଏ । ମୁଁ ହେଉଚି ଆତ୍ମା । ନିଜ ଆତ୍ମସ୍ୱରୂପରେ ରହିଥାଏ । ମୋର କୌଣସି ଉପାଧି ନ ଥାଏ କି ମୁଁ କାହାଠାରେ ଲୀନ ହୁଏ ନାହିଁ ।।୨୭।। ଯେ ଏହିପରି ବିବେକ ଦୃଷ୍ଟିରେ ଦେଖେ, ତାର ସଂସାରର ଭ୍ରମ ହୁଏ ନାହିଁ । ସୂର୍ଯ୍ୟୋଦୟରେ ଯେପରି ଆକାଶର ଅନ୍ଧକାର ଦୂର ହୁଏ, ସେହିପରି ମନର ଭ୍ରମ ହୃଦୟରେ ତିଷ୍ଠି ପାରେ ନାହିଁ ।।୨୮।। ଉଦ୍ଧବ, ସଂଶୟ ଗ୍ରନ୍ଥିର ମୋଚକ ଏହି ସାଂଖ୍ୟ-ବିଧି ଅନୁଲୋମ ଓ ପ୍ରତିଲୋମ କ୍ରମରେ (ସୃଷ୍ଟିରୁ ପ୍ରଳୟ ଓ ପ୍ରଳୟରୁ ସୃଷ୍ଟି ପର୍ଯ୍ୟନ୍ତ) ମୁଁ ତୁମକୁ କହିଗଲି । କାରଣ ମୁଁ ହେଉଚି କାର୍ଯ୍ୟ ଓ କାରଣର ଦ୍ରଷ୍ଟା ।।୨୯।।

### ପଞ୍ଚବିଂଶ ଅଧ୍ୟାୟ

## ତିନି ଗୁଣର ବୃତ୍ତିନିରୂପଣ

ଭଗବାନ୍ ଶ୍ରୀକୃଷ୍ଣ କହିଲେ, ପୁରୁଷଶ୍ରେଷ୍ଠ ଉଦ୍ଧବ, ଗୁଣମାନଙ୍କର ମିଶ୍ରଣ ହୋଇନଥିବାଯୋଗୁଁ ଗୁଣଭେଦରେ ବ୍ୟକ୍ତିମାନଙ୍କ ସ୍ୱଭାବରେ ଭେଦ ଦେଖାଯାଏ । ତେଣୁ କେଉଁ ଗୁଣଯୋଗୁଁ ପୁରୁଷର ସ୍ୱଭାବ କଣ ହୋଇଥାଏ, ତାହା ମୁଁ କହୁଚି । ତୁମେ ମନ ଦେଇ ଶୁଣ ।।୧।। ସତ୍ତ୍ୱଗୁଣର ସ୍ୱଭାବ ହେଉଚି ମନର ସଂଯମ, ଇନ୍ଦ୍ରିୟ-ନିଗ୍ରହ, ସହିଷ୍ଣୁତା, ବିବେକ, ତପ, ସତ୍ୟ, ଦୟା, ପୂର୍ବାପର ଅନୁସନ୍ଧାନ, ସନ୍ତୋଷ, ତ୍ୟାଗ, ବିଷୟଭୋଗ ପ୍ରତି ଅନିଚ୍ଛା, ଶ୍ରଦ୍ଧା, ଲଜ୍ଜା, ଆତ୍ମରତି, ଦାନ, ବିନୟ ଓ ସରଳତା ।।୨।। ରଜୋଗୁଣର ସ୍ୱଭାବ ହେଉଚି - ବିଭିନ୍ନ କାମନା, ପ୍ରଯତ୍ନ, ତୃଷ୍ଣା, ଗର୍ବ, ଧନାଦି ଲାଭପାଇଁ ଦେବତାଙ୍କୁ ପ୍ରାର୍ଥନା, ଭେଦବୁଦ୍ଧି, ସୁଖଭୋଗ, ଯୁଦ୍ଧରେ ମାତିବାର ଉତ୍ସାହ, ଯଶୋଲାଭରେ ପ୍ରୀତି, ଉପହାସ କରିବା, ପରାକ୍ରମ ଦେଖାଇବା ଓ ବଳଦ୍ୱାରା ଉଦ୍ୟମ କରିବା ।।୩।। ତମୋଗୁଣର ସ୍ୱଭାବ ହେଉଚି - କ୍ରୋଧ, ଲୋଭ, ମିଥ୍ୟା, ହିଂସା, ଯାଚଞ୍ଚା, ଦମ୍ଭ, କ୍ଲାନ୍ତି, କଳହ, ଶୋକ, ମୋହ, ବିଷାଦ, ଦୈନ୍ୟ, ନିଦ୍ରା, ଆଶା, ଭୟ ଓ ଆଳସ୍ୟ ।।୪।। କ୍ରମାନୁସାରେ ସତ୍ତ୍ୱ, ରଜ ଓ ତମ -- ଏହି ତିନି ଗୁଣର ବୃତ୍ତିମାନ ପ୍ରାୟ ବର୍ଣ୍ଣିତ ହେଲା । ବର୍ତ୍ତମାନ ସେମାନଙ୍କ ମିଶ୍ରଣଜନିତ ବୃତ୍ତିକୁ ମୁଁ ବର୍ଣ୍ଣନା କରୁଚି, ଶୁଣ ।।୫।।

ଉଦ୍ଧବ, 'ମୁଁ ଏବଂ ମୋର' - ଏହି ବୁଦ୍ଧି ତିନୋଟି ଗୁଣର ମିଶ୍ରଣ ଅଟେ । ମନ, ଇନ୍ଦ୍ରିୟ, ଇନ୍ଦ୍ରିୟମାନଙ୍କ ବିଷୟ ଓ ପ୍ରାଣଦ୍ୱାରା ଏହି ମିଶ୍ରଣର ବ୍ୟାବହାରିକ ପ୍ରୟୋଗ ଘଟିଥାଏ ।।୬।। ମନୁଷ୍ୟ ଧର୍ମ, ଅର୍ଥ ଓ କାମ ପ୍ରତି ନିଷ୍ଠାବାନ୍ ହେଲେ ସେହି ନିଷ୍ଠାରୁ ଗୁଣମାନଙ୍କ ମିଶ୍ରଣଯୋଗୁଁ ସତ୍ତ୍ୱଗୁଣରୁ ଶ୍ରଦ୍ଧା, ରଜୋଗୁଣରୁ ରତି ଓ ତମୋଗୁଣରୁ ଧନ ଲାଭ ହୋଇଥାଏ ।।୭।। ସକାମ କର୍ମ, ଗୃହସ୍ଥାଶ୍ରମ ଓ ସ୍ୱଧର୍ମାଚରଣରେ ଯଦି ମନୁଷ୍ୟର ନିଷ୍ଠା ଜାତ ହୁଏ, ତା'ହେଲେ ତାହା ତିନିଗୁଣର ମିଶ୍ରଣ ବୋଲି ବୁଝିବାକୁ ହେବ ।।୮।।

ଶମ-ଦମ ଆଦି ଗୁଣଦ୍ୱାରା ପୁରୁଷ ସାତ୍ତ୍ୱିକ, କାମାଦି ଗୁଣଦ୍ୱାରା ରାଜସିକ ଓ କ୍ରୋଧାଦିଗୁଣଦ୍ୱାରା ତାମସିକ ବୋଲି ଅନୁମାନ କରାଯାଇପାରେ ।।୯।। କର୍ମ ଫଳ ପ୍ରତି ଆଶା ନ ରଖି ମୋତେ ଯେ ଭକ୍ତିରେ ଭଜନ କରେ, ସେ ପୁରୁଷ ହେଉ ବା ସ୍ତ୍ରୀ ହେଉ, ତାକୁ ସତ୍ତ୍ୱସ୍ୱଭାବର ବୋଲି ବୁଝିବାକୁ ହେବ ।।୧୦।। କେହି ଯଦି ନିଜ କର୍ମର ସିଦ୍ଧି ଆଶାରେ ମୋତେ ଭଜନ କରେ, ତା ହେଲେ ସେ ରଜୋଗୁଣଯୁକ୍ତ ବୋଲି ଜାଣିବ ଏବଂ ଯଦି ଅନ୍ୟ ପ୍ରତି ହିଂସା ରଖି ମୋତେ ଭଜନ କରେ, ତା'ହେଲେ ସେ ତମୋଗୁଣଯୁକ୍ତ ବୋଲି ଜାଣିବ ।।୧୧।। ସତ୍ତ୍ୱ, ରଜ ଓ ତମ ଏହି ତିନୋଟିଯାକ ଗୁଣ ହେଉଚି ଜୀବର । ମୋର ନୁହେଁ । ଏମାନେ ଚିତ୍ତରୁ ଜାତ ହୋଇ ପ୍ରାଣୀମାନଙ୍କୁ ଦେହାଦି ବନ୍ଧନରେ ପକାଇ ଦିଅନ୍ତି ।।୧୨।। ସତ୍ତ୍ୱଗୁଣ ହେଉଚି ଉଜ୍ଜ୍ୱଳ, ନିର୍ମଳ ଓ ମଙ୍ଗଳମୟ । ଯେତେବେଳେ ଜୀବ ସତ୍ତ୍ୱଗୁଣଦ୍ୱାରା ଅନ୍ୟ ଦୁଇ ଗୁଣକୁ ଅର୍ଥାତ୍ ରଜୋଗୁଣ ଓ ତମୋଗୁଣକୁ ଜୟ କରେ, ସେତେବେଳେ ସେ ସୁଖ ଓ ଧର୍ମଜ୍ଞାନାଦିଯୁକ୍ତ ହୋଇଥାଏ ।।୧୩।। ଯେତେବେଳେ ରଜଗୁଣ ସତ୍ତ୍ୱଗୁଣ ଓ ତମଗୁଣକୁ ଦବାଇଦିଏ, ସେତେବେଳେ ସେ ଆସକ୍ତି, ଭେଦବୁଦ୍ଧି ଓ ପ୍ରବୃତ୍ତିର କାରଣ ହୋଇଥାଏ । ସେ କର୍ମରେ ନିୟୋଜିତ ହୋଇ ଯଶ ଓ ଐଶ୍ୱର୍ଯ୍ୟ ସହିତ ଦୁଃଖଲାଭ କରିଥାଏ ।।୧୪।। ଯେତେବେଳେ ରଜଗୁଣ ଓ ସତ୍ତ୍ୱଗୁଣକୁ ଦବାଇଦେଇ ତମଗୁଣ ପ୍ରଧାନ ହୋଇଯାଏ, ସେତେବେଳେ ସେ ବିବେକକୁ ନଷ୍ଟ କରିଦିଏ, ଅଜ୍ଞାନ ଓ ଆଳସ୍ୟ ବୃଦ୍ଧି କରେ ଏବଂ ଆଶା ବଢ଼ିଯିବାରୁ ଜୀବ ଶୋକ, ମୋହ, ନିଦ୍ରା ଓ ହିଂସାଦ୍ୱାରା ଚାଳିତ ହୁଏ ।।୧୫।। ମୋତେ ପାଇବାର ସାଧନ ହେଉଚି ସତ୍ତ୍ୱଗୁଣ । କାରଣ ଏହି ଗୁଣଦ୍ୱାରା ଚିତ୍ତ ପ୍ରସନ୍ନ ରହେ ; ଇନ୍ଦ୍ରିୟମାନେ ଶାନ୍ତ ହୁଅନ୍ତି, ଦେହରେ ଭୟ ନ ଥାଏ ଏବଂ ମନ ଅନାସକ୍ତ ହୁଏ ।।୧୬।। ଯେତେବେଳେ କର୍ମର ବିକାର ଘଟେ, ସେତେବେଳେ ଚିତ୍ତ ବିକ୍ଷିପ୍ତ ହୋଇ ବିଷୟଭୋଗରେ ଆସକ୍ତ ହୋଇଯାଏ । ଇନ୍ଦ୍ରିୟମାନେ ଅସୁସ୍ଥ ହୁଅନ୍ତି ଓ ମନ ଭ୍ରାନ୍ତ ହୋଇପଡ଼େ । ଏହିସବୁ ରଜଗୁଣର ଲକ୍ଷଣ ବୋଲି ଜାଣିବ ।।୧୭।। ଚିତ୍ତ ଯଦି ସର୍ବଦା ବ୍ୟାକୁଳହୁଏ, ଜ୍ଞାନେନ୍ଦ୍ରିୟ ଦ୍ୱାରା ବିଷୟ ଗ୍ରହଣରେ ଅସମର୍ଥ ହୋଇପଡ଼େ ଓ ଚେତନ ଶକ୍ତିର ଲୋପ ହୋଇଯାଏ, ସଂକଳ୍ପାତ୍ମକ ମନ ଭ୍ରଷ୍ଟହୁଏ ଏବଂ ଅଜ୍ଞାନ ଓ ବିଷାଦ ଆସିଯାଏ, ତା'ହେଲେ ତମୋଗୁଣ ବଢ଼ିଯାଇଚି ବୋଲି ଜାଣିପାରିବ ।।୧୮।। ଉଦ୍ଧବ, ସତ୍ତ୍ୱଗୁଣ ବଢ଼ିଲେ ଦେବତାମାନଙ୍କର ବଳ ବଢ଼େ, ରଜୋଗୁଣ ବଢ଼ିଲେ ଅସୁରମାନଙ୍କର ବଳ ବଢ଼େ ଏବଂ ତମୋଗୁଣ ବଢ଼ିଲେ ରାକ୍ଷସମାନଙ୍କର ବଳ ବଢ଼ିଯାଏ ।।୧୯।। ସତ୍ତ୍ୱଗୁଣ ଦ୍ୱାରା ଜାଗ୍ରତ ଅବସ୍ଥା ହୁଏ ବୋଲି ଜାଣିବ, ରଜୋଗୁଣଦ୍ୱାରା ସ୍ୱପ୍ନାବସ୍ଥା ଓ ତମୋଗୁଣଦ୍ୱାରା ପ୍ରାଣିର ସୁଷୁପ୍ତି ଅବସ୍ଥା ଜାଣିବ । ତୁରୀୟାବସ୍ଥା ତିନି ଅବସ୍ଥା ମଧ୍ୟରେ ବ୍ୟାପ୍ତ ଥାଏ । ତୁରୀୟାବସ୍ଥା ହେଉଚି ଏକରୂପ ଆତ୍ମତତ୍ତ୍ୱ ।।୨୦।।

ବେଦାନୁଷ୍ଠାନ କରୁଥିବା ବ୍ୟକ୍ତିମାନେ ସତ୍ତ୍ୱଗୁଣଦ୍ୱାରା ଉତ୍ତରୋତ୍ତର ଊର୍ଦ୍ଧ୍ୱଲୋକକୁ ଯାତ୍ରା କରନ୍ତି । ତମୋ ଗୁଣଦ୍ୱାରା ତଳକୁ ତଳକୁ ସ୍ଥାବରପର୍ଯ୍ୟନ୍ତ ଗତି ଲାଭ କରନ୍ତି ଓ ରଜୋଗୁଣ ଦ୍ୱାରା ମନୁଷ୍ୟ ଶରୀର ମିଳିଥାଏ ।।୨୧।। ସତ୍ତ୍ୱଗୁଣର ବୃଦ୍ଧିବେଳେ ମୃତ୍ୟୁହେଲେ ମନୁଷ୍ୟ ସ୍ୱର୍ଗକୁ ଯାଏ । ରଜୋଗୁଣର ବୃଦ୍ଧିବେଳେ ମୃତ୍ୟୁ ହେଲେ ନରଲୋକକୁ ଆସେ ଏବଂ ତମୋ ଗୁଣର ବୃଦ୍ଧିବେଳେ ମୃତ୍ୟୁ ହେଲେ ନରକ ଗତି ଅଟେ । କିନ୍ତୁ ଯେଉଁମାନେ ଜୀବିତାବସ୍ଥାରେ ଏହି ଗୁଣମାନଙ୍କରୁ ମୁକ୍ତ, ସେମାନେ ମୋତେ ଲାଭ କରନ୍ତି ।।୨୨।। ମୋତେ ଅର୍ପଣ କରି ଯେତେବେଳେ ନିଷ୍କାମ କର୍ମ କରାଯାଏ, ସେତେବେଳେ ତାହା ସାତ୍ତ୍ୱିକ ହୋଇଥାଏ । ଯଦି ସେଥିରେ ଫଳ ଲାଭର ଆଶାଥାଏ, ତାହେଲେ ତାହା ରାଜସିକ । ହିଂସା ଉଦ୍ଦେଶ୍ୟରେ ଯେଉଁ କର୍ମ କରାଯାଏ, ତାହା ତାମସିକ ହୁଏ ।।୨୩।। ଦେହର ଅତିରିକ୍ତ ଆତ୍ମଜ୍ଞାନ ହେଉଛି ସାତ୍ତ୍ୱିକ । ଦେହରେ ରହି ଆତ୍ମାକୁ ଭୋଗ କରୁଛି ବୋଲି ମନେ କରିବା ହେଉଛି ରାଜସିକ ଏବଂ ବାଳକ ବା ମୂକଙ୍କ ପରି ଆତ୍ମାକୁ ଶରୀର ବୋଲି ବିଚାର କରିବାର ଜ୍ଞାନ ହେଉଛି ତାମସିକ ଓ ମୋଠାରେ ନିଷ୍ଠା ରଖିବା ହେଉଛି ନିର୍ଗୁଣ ଜ୍ଞାନ ।।୨୪।। ବଣରେ ବାସକରିବା ହେଉଛି ସାତ୍ତ୍ୱିକ, ଗ୍ରାମରେ ବାସ କରିବା ରାଜସିକ, ଜୁଆ ଆଡ଼ଡାରେ ରହିବା ହେଉଛି ତାମସିକ ଏବଂ ଭଗବାନଙ୍କ ମନ୍ଦିରରେ ରହିବା ହେଉଛି ନିର୍ଗୁଣ-

ନିବାସ ।।୨୫।। ଅନାସକ୍ତ କର୍ତ୍ତା ହେଉଛି ସାତ୍ତ୍ୱିକ, ଆସକ୍ତିରେ ଅନ୍ଧ କର୍ତ୍ତା ରାଜସିକ; ଆଗପଛ ବିଚାରଶୂନ୍ୟ କର୍ତ୍ତା ତାମସିକ । ମୋର ଏକାନ୍ତ ଶରଣାଗତ ନିରହଙ୍କାର କର୍ତ୍ତା ହେଉଛି ନିର୍ଗୁଣ ।।୨୬।। ଆଧ୍ୟାତ୍ମିକ ଶ୍ରଦ୍ଧା ହେଉଛି ସାତ୍ତ୍ୱିକ, କର୍ମଶ୍ରଦ୍ଧା ହେଉଛି ରାଜସିକ, ଅଧର୍ମପ୍ରତି ଶ୍ରଦ୍ଧା ହେଉଛି ତାମସିକ ଏବଂ ମୋ ସେବାରେ ଶ୍ରଦ୍ଧା ହେଉଛି ନିର୍ଗୁଣ ।।୨୭।। ଯାହା ହିତକର, ପବିତ୍ର ଓ ସହଜରେ ପ୍ରାପ୍ତ, ସେହି ଖାଦ୍ୟ ସାତ୍ତ୍ୱିକ । ଜିହ୍ୱାର ପ୍ରିୟ କଟୁ ଅମ୍ଳାଦି ଖାଦ୍ୟ ରାଜସିକ । ଅପବିତ୍ର ଦୁଃଖଦାୟକ ଖାଦ୍ୟ ତାମସିକ ଏବଂ ମୋତେ ନିବେଦିତ ଖାଦ୍ୟ ନିର୍ଗୁଣ ।।୨୮।। ଆତ୍ମୋପଲବ୍ଧିରୁ ଯେଉଁ ସୁଖ ମିଳେ ତାହା ସାତ୍ତ୍ୱିକ । ବିଷୟଭୋଗଜନିତ ସୁଖ ରାଜସିକ । ମୋହ ଓ ଦୀନ ଅବସ୍ଥାରୁ ଜାତ ସୁଖ ତାମସିକ ଏବଂ ମୋ ଆଶ୍ରୟ--ଜନିତ ସୁଖ ନିର୍ଗୁଣ ।।୨୯।। ଦ୍ରବ୍ୟ, ଦେଶ, ଫଳ, କାଳ, ଜ୍ଞାନ, କର୍ମ, କର୍ତ୍ତା, ଶ୍ରଦ୍ଧା, ଅବସ୍ଥା, ଶରୀର ଓ ନିଷ୍ଠା--ଏସବୁ ଭାବ ତ୍ରିଗୁଣାତ୍ମକ ।।୩୦।। ପୁରୁଷଶ୍ରେଷ୍ଠ ଉଦ୍ଧବ, ଦୃଷ୍ଟ, ଶ୍ରୁତ ଓ ବୁଦ୍ଧିଦ୍ୱାରା ବିବେଚିତ ଏହି ସବୁ ଭାବ ପ୍ରକୃତି ଓ ପୁରୁଷକୁ ଆଶ୍ରୟ କରିଥାନ୍ତି, ଏଣୁ ସେମାନେ ଗୁଣମୟ ।।୩୧।। ଗୁଣ ଓ କର୍ମର ବନ୍ଧନଯୋଗୁଁ ଜୀବ ବାରମ୍ବାର ସଂସାରକୁ ଆସେ । ସୌମ୍ୟ, ଯେଉଁ ପୁରୁଷ ହୃଦୟରୁ ଜାତ ଏହି ସବୁ ଗୁଣକୁ ବଶୀଭୂତ କରି ଭକ୍ତିଯୋଗଦ୍ୱାରା ମୋଠାରେ ଚିତ୍ତନିବେଶ କରେ, ସେ ମୋର ଭାବ ବା ମୋକ୍ଷ ପାଇବାକୁ ଯୋଗ୍ୟ ହୁଏ ।।୩୨।। ତେଣୁ ଜ୍ଞାନ-ବିଜ୍ଞାନର ଜନକ ଏହି ନରଦେହ ଲାଭ କରି ବିଚକ୍ଷଣ ପୁରୁଷମାନେ ଗୁଣମାନଙ୍କ ପ୍ରତି ଆସକ୍ତି ତ୍ୟାଗ କରି ମୋତେ ହିଁ ଭଜନ କରନ୍ତୁ ।।୩୩।। ଯେଉଁ ଅନାସକ୍ତ, ବିଜ୍ଞ ଓ ଜିତେନ୍ଦ୍ରିୟ ମୁନି ସାବଧାନ ରହି ମୋତେ ଭଜନ କରେ, ସେ ସତ୍ତ୍ୱଗୁଣର ସେବାଦ୍ୱାରା ରଜୋଗୁଣ ଓ ତମୋଗୁଣକୁ ଜୟ କରେ ।।୩୪।। ଜିତେନ୍ଦ୍ରିୟ ଶାନ୍ତଚିତ୍ତ ମୁନି ମୋ ଭକ୍ତିରୁ ଜାତ ବୈରାଗ୍ୟଦ୍ୱାରା ସତ୍ତ୍ୱଗୁଣକୁ ମଧ୍ୟ ଜୟ କରିପାରିବେ । ଏହିପରି କଲେ ସେ ଗୁଣମୁକ୍ତ ହୋଇ ଲିଙ୍ଗଶରୀରକୁ ପରିତ୍ୟାଗ କରିବେ ଓ ମୋତେ ଲାଭ କରିପାରିବେ ।।୩୫।। ଜୀବର କାରଣ ହେଉଛି ତାର ଲିଙ୍ଗ ଶରୀର । ଗୁଣମାନେ ଅନ୍ତଃକରଣ ବା ଇଚ୍ଛାରୁ ଜାତ ହୋଇଥାନ୍ତି । ଏ ଦୁଇଟିରୁ ମୁକ୍ତ ହୋଇ ଯେ ବ୍ରହ୍ମସ୍ୱରୂପ ମୋଠାରେ ମିଳିତ ହୁଏ, ତାର ବାହାର ବା ଅନ୍ତରର କୌଣସି ବିଷୟପ୍ରତି ବାସନା ରହେ ନାହିଁ ।।୩୬।।

## ଷଡ଼ବିଂଶ ଅଧ୍ୟାୟ

# ପୁରୂରବାଙ୍କ ବୈରାଗ୍ୟ

ମୋର ସ୍ୱରୂପକୁ ଜାଣିବାକୁ ହେଲେ ଏହି ଉପାଦେୟ ନରଦେହ ଲାଭ କରି ମନୁଷ୍ୟ ମୋ'ପ୍ରତି ସର୍ବଦା ଶ୍ରଦ୍ଧାବାନ୍ ହେବା ଉଚିତ । ତା'ହେଲେ ତାର ଅନ୍ତଃକରଣରେ ଥିବା ପରମାନନ୍ଦ ଓ ପରମାତ୍ମା-ସ୍ୱରୂପ ମୋତେ ସେ ଲାଭ କରିପାରିବ ।।୧।। ଜ୍ଞାନ-ନିଷ୍ଠା ଦ୍ୱାରା ତ୍ରିଗୁଣମୟୀ ଜୀବ-ଯୋନିରୁ ପୁରୁଷ ମୁକ୍ତ ହୋଇଯାଏ । ସତ୍ତ୍ୱ, ରଜ ଆଦି ଯେଉଁ ଗୁଣମାନ ଦେଖାଯାଏ, ତାହା ମାୟାମାତ୍ର । ଜ୍ଞାନର ଉଦୟ ହେଲେ ସେହି ଗୁଣମାନଙ୍କ ମଧ୍ୟରେ ଥାଇ ମଧ୍ୟ ପୁରୁଷ ସେଥିରେ ଆବଦ୍ଧ ହୁଏ ନାହିଁ, କାରଣ ତାହାସବୁ ମାୟା ଓ ସତ୍ତା-ହୀନ ।।୨।। ଅସାଧୁଲୋକମାନଙ୍କ ସହିତ କେବେହେଁ ସାଙ୍ଗ ହେବ ନାହିଁ; କାରଣ ସେମାନେ ନିଜ ଉଦରର ତୃପ୍ତି ଓ ମୈଥୁନର ଆନନ୍ଦରେ ରହିଥା'ନ୍ତି । ଅନ୍ଧକୁ ଧରି ବାଟ ଚାଲୁଥିବା ଲୋକ ଯେପରି ଖାତରେ ପଡ଼େ, ସେମାନଙ୍କ ଅନୁସରଣ କଲେ ଲୋକ ସେହିପରି ଘୋର ନରକରେ ପଡ଼ିଥାଏ । ଇଳାଙ୍କର ପୁତ୍ର ଯଶସ୍ୱୀ ସମ୍ରାଟ ପୁରୂରବା ଉର୍ବଶୀଙ୍କ ବିରହରେ ମୁହ୍ୟମାନ ହୋଇ ନିଜର ଶୋକସମ୍ବରଣପୂର୍ବକ ଉପରୋକ୍ତ ଗାନଟିକୁ ଗାଇଥିଲେ ।।୩-୪।। ଉର୍ବଶୀ ପୁରୂରବାଙ୍କୁ ଛାଡ଼ି ଚାଲିଯିବା ବେଳେ ଉଲଗ୍ନ ରାଜା ପାଗଳ ପରି ବିଳାପ କରି ତାଙ୍କ ପଛେ ପଛେ ଦଉଡୁଥିଲେ ଓ କହୁଥିଲେ,

ହେ ନିଷ୍ଠୁର, ତୁମେ ରହିଯାଅ ॥୫॥ ଅନୁଦିନ କ୍ଷୁଦ୍ର କାମଭୋଗରେ ମାତିରହି ସେ କେବେହେଲେ ତୃପ୍ତି ଅନୁଭବ କରୁ ନ ଥିଲେ । କାରଣ ଉର୍ବଶୀ ତାଙ୍କର ଚିତ୍ତକୁ ସମ୍ପୂର୍ଣ୍ଣ ଆକର୍ଷଣ କରିନେଇଥିଲେ । ବର୍ଷ ବର୍ଷ ଧରି ଦିନରାତି କିପରି କଟିଯାଉଛି, ସେ ତାହା ଜାଣି ପାରୁ ନ ଥିଲେ ॥୬॥

ପୁରୂରବା କହିଲେ, ହାୟ, ମୋର ଘୋର ମୂର୍ଖତାକୁ ଦେଖ । ପ୍ରେମବଶରେ ଉର୍ବଶୀ ମୋର କଣ୍ଠ ଦେଶକୁ ଆଲିଙ୍ଗନ କରି ଏପରି କାମଗ୍ରସ୍ତ ହୋଇ ପଡୁଥିଲେ ଯେ ଦିନ ପରେ ଦିନ ସମୟ ଚାଲିଯାଉଥିଲା ଓ ତାହା ମୁଁ ଜାଣି ପାରୁ ନ ଥିଲି ॥୭॥ ଉର୍ବଶୀଙ୍କ ପ୍ରେମରେ ବୁଡ଼ି ରହି ମୁଁ ସୂର୍ଯ୍ୟଙ୍କର ଉଦୟ ବା ଅସ୍ତ ଜାଣିପାରୁନଥିଲି ଓ ଆଉ ଏକ ଦୁଃଖର ବିଷୟ ହେଉଛି ଉର୍ବଶୀ ଦ୍ୱାରା ବଞ୍ଚିତ ହୋଇ ବର୍ଷ ବର୍ଷ ଧରି ମୋର ସମୟ ଗଡ଼ିଗଲା, ତାହା ବି ମୁଁ ଜାଣିପାରିଲି ନାହିଁ ॥୮॥ ମୋର କି ମୋହ ଘଟି ନ ଥିଲା ! ସମସ୍ତ ରାଜାଙ୍କର ଶିରୋମଣି ଚକ୍ରବର୍ତ୍ତୀ ସମ୍ରାଟ ହୋଇ ମୁଁ ଏକ ସ୍ତ୍ରୀ ଲୋକର ଖେଳନା ହୋଇଗଲି ॥୯॥ ଏତେବଡ ଚକ୍ରବର୍ତ୍ତୀ ରାଜା ହେଲେ ମଧ୍ୟ ମୋତେ ସେ ତୃଣପରି ତ୍ୟାଗ କଲା ଏବଂ ମୁଁ ତାର ପଛେ ପଛେ ପାଗଳପରି ଲଙ୍ଗଳା ହୋଇ ଗୋଡ଼ାଇଲି ॥୧୦॥ ମାଈ ଗଧଠାରୁ ନାତ ଖାଇ ମଧ୍ୟ ଅଣ୍ଡିରା ଗଧ ଯେପରି ତାର ପଛେ ପଛେ ଗୋଡ଼ାଏ ମୁଁ ସେହିପରି ଏକ ସ୍ତ୍ରୀର ପଛେ ପଛେ ଦଉଡୁଥିଲି । କୁଆଡ଼େ ଗଲା ମୋର ପ୍ରଭାବ, ତେଜ ଓ ପ୍ରଭୁତ୍ୱ ? ସ୍ତ୍ରୀ ଯାହାର ମନକୁ ହରଣ କରି ନିଏ, ତାର ବିଦ୍ୟା, ତପସ୍ୟା, ତ୍ୟାଗ, ବେଦପାଠ, ଏକାନ୍ତରେ ବାସ କରିବା ଓ ମୌନ ହୋଇ ରହିବାର କୌଣସି ଅର୍ଥ ରହେ ନାହିଁ । ମୋ ପରି ପଣ୍ଡିତମ୍ମନ୍ୟ ମୂର୍ଖକୁ ଧିକ୍, ଯେ ନିଜର ପ୍ରକୃତ ସ୍ୱାର୍ଥକୁ ଜାଣିପାରିଲା ନାହିଁ । ପୃଥିବୀର ସ୍ୱାମିତ୍ୱ ଲାଭ କରି ମଧ୍ୟ ମୁଁ ଗୋ-ଗର୍ଦ୍ଦଭଙ୍କପରି ଗୋଟାଏ ସ୍ତ୍ରୀ ଦ୍ୱାରା ପରାସ୍ତ ହୋଇଗଲି । ଘୃତର ଆହୁତିଦ୍ୱାରା ଯେପରି ଅଗ୍ନିକୁ ସନ୍ତୁଷ୍ଟ କରାଯାଇପାରେ ନାହିଁ, ମୁଁ ସେହିପରି ଏତେ ବର୍ଷ ଧରି ଉର୍ବଶୀର ଅଧରାମୃତ ପାନକରି ନିଜଠାରୁ ଜାତ କାମନାକୁ ତୃପ୍ତ କରିପାରିଲି ନାହିଁ ॥୧୧-୧୪॥ ଗୋଟାଏ ବେଶ୍ୟା ମୋର ଚିତ୍ତକୁ ହରଣ କରିନେଲା । କେବଳ ଆତ୍ମାରାମ ଭଗବାନ୍ ପ୍ରଭୁ ନାରାୟଣଙ୍କ ଛଡ଼ା ମୋତେ କେହି ରକ୍ଷା କରିପାରିବେ ନାହିଁ ॥୧୫॥ ଉତ୍ତମ ଶାସ୍ତ୍ରୀୟ ଉପଦେଶ ଦ୍ୱାରା ଉର୍ବଶୀ ମୋତେ ବହୁତ ବୁଝାଇଛି ! କିନ୍ତୁ ମୁଁ ମନ୍ଦମତି । ଇନ୍ଦ୍ରିୟମାନେ ମୋର ଆୟତ୍ତର ବାହାରେ । ମନ ମଧ୍ୟରେ ଥିବା ମୋର ମହାମୋହ ଦୂର ହେଉ ନାହିଁ ॥୧୬॥ ଇନ୍ଦ୍ରିୟମାନେ ମୋର ବଶରେ ନ ଥିବାରୁ ମୁଁ ରଜ୍ଜୁକୁ ସର୍ପ ବୋଲି ଗ୍ରହଣ କରିଛି । ସେଥିରେ ରଜ୍ଜୁର କ'ଣ ବା ଦୋଷ ଅଛି ? ଏଣୁ ଉର୍ବଶୀ ମୋର କି ଅପକାର କରିଛି ? ॥୧୭॥ କାହିଁ ଏହି ଅତି ମଇଳା ଓ ଦୁର୍ଗନ୍ଧରେ ଭରା ଅପବିତ୍ର ଶରୀର ଏବଂ କାହିଁ କୋମଳତା, ପବିତ୍ରତା ଓ ସୁଗନ୍ଧ ଆଦି ପୁଷ୍ପୋଚିତ ଗୁଣ ! କିନ୍ତୁ ମୁଁ ଅଜ୍ଞାନତାବଶତଃ ଅତି ଅସୁନ୍ଦର ବସ୍ତୁରେ ସୌନ୍ଦର୍ଯ୍ୟର ଆରୋପ କରିଛି ॥୧୮॥ ଏହି ଶରୀର କାହାର ? ପିତା-ମାତାଙ୍କର, ଭାର୍ଯ୍ୟାର, ମାଲିକର, ଅଗ୍ନିର, କୁକୁର-ଶାଗୁଣାଙ୍କର, ଆତ୍ମାର ବା ସୁହୃଦ୍‌ମାନଙ୍କର-- ଏହା ନିଶ୍ଚୟ କରାଯାଇ ନାହିଁ ॥୧୯॥ ହାୟ, ଯେଉଁ ଶରୀରର ପରିଣାମ ହେଉଛି ତୁଚ୍ଛ ଓ ଅପବିତ୍ର ; ସ୍ତ୍ରୀମାନଙ୍କର ସୁନ୍ଦର ନାସିକା ଓ ସ୍ମିତହାସ୍ୟଯୁକ୍ତ ମୁଖମଣ୍ଡଳରେ ମୁଗ୍ଧ ହୋଇ ପୁରୁଷ ତା ପ୍ରତି ଆସକ୍ତ ହୋଇପଡ଼େ । ଏହି ଶରୀର ହେଉଛି ଚର୍ମ, ମାଂସ, ରୁଧିର, ସ୍ନାୟୁ, ମେଦ, ମଜ୍ଜା ଓ ଅସ୍ଥିର ସମାହାର ଓ ମଳମୂତ୍ରରେ ପୂର୍ଣ୍ଣ । ଏଥିରେ ରମଣ କରୁଥିବା ବ୍ୟକ୍ତି ଓ କୃମି କୀଟଙ୍କ ମଧ୍ୟରେ କ'ଣ ପ୍ରଭେଦ ଅଛି ? ॥୨୦-୨୧॥ ସେଥିପାଇଁ ବିବେକୀ ବ୍ୟକ୍ତି ସ୍ତ୍ରୀ ଓ ଲମ୍ପଟପୁରୁଷମାନଙ୍କ ସହିତ କୌଣସି ସମ୍ପର୍କ ରଖିବା ଉଚିତ ନୁହେଁ । ନଚେତ୍ ବିଷୟ ଓ ଇନ୍ଦ୍ରିୟମାନଙ୍କ ଯୋଗୁଁ ମନ ସର୍ବଦା ବିଚଳିତ ହେବ ॥୨୨॥ କୌଣସି ପଦାର୍ଥକୁ ନ ଦେଖିଲେ ଓ ସେ ବିଷୟରେ ନ ଶୁଣିଲେ ସେଥିରେ ମନ ବିଚଳିତ ହୁଏ ନାହିଁ; ତେଣୁ ଯେଉଁ ପ୍ରାଣ ଓ ଇନ୍ଦ୍ରିୟମାନେ ଦେଖନ୍ତି ବା ଶୁଣନ୍ତି ସେମାନଙ୍କୁ ସଂଯତ କରିପାରିଲେ ମନ ଶାନ୍ତ ଓ ନିଶ୍ଚଳ ହୁଏ ॥୨୩॥ ତେଣୁ ଇନ୍ଦ୍ରିୟମାନଙ୍କ ଦ୍ୱାରା ସ୍ତ୍ରୀ ଓ ଲମ୍ପଟମାନଙ୍କ ସହିତ ଆଦୌ ସମ୍ପର୍କ ରଖିବା ଉଚିତ ନୁହେଁ । ଜ୍ଞାନୀମାନଙ୍କର ମଧ୍ୟ ଇନ୍ଦ୍ରିୟମାନେ ଅବିଶ୍ୱାସର ପାତ୍ର । ତେଣୁ ମୋ ପରି ବ୍ୟକ୍ତିପାଇଁ ସେମାନେ କ'ଣ ହୋଇପାରନ୍ତି କଳ୍ପନା କରାଯାଇପାରେ ॥୨୪॥

ଶ୍ରୀ ଭଗବାନ୍ କହିଲେ, ରାଜଚକ୍ରବର୍ତ୍ତୀ ପୁରୂରବା ଏହିପରି ଗାନ କରି ଉର୍ବଶୀ ଲୋକକୁ ପରିତ୍ୟାଗ କଲେ । ସମସ୍ତ ମୋହ ଦୂରୀଭୂତ ହେବାରୁ ତାଙ୍କର ଜ୍ଞାନର ଉଦୟ ହେଲା ଏବଂ ଆତ୍ମସ୍ୱରୂପ 'ମୋତେ' ଉପଲବ୍ଧ କରି ସେ ତନୁ ତ୍ୟାଗକଲେ ।।୨୫।। ସାଧୁମାନେ ସଦୂକ୍ତିଦ୍ୱାରା ମନର ପ୍ରବଳ ଆସକ୍ତିକୁ ଛେଦନ କରନ୍ତି । ଦୁଃସଙ୍ଗ ତ୍ୟାଗକରି ବୁଦ୍ଧିମାନ୍ ସତ୍‌ସଙ୍ଗ ପ୍ରତି ଅନୁରକ୍ତ ହେବା ବାଞ୍ଛନୀୟ ।।୨୬।। ସାଧୁମାନେ କାହାରିକୁ ଅପେକ୍ଷା କରନ୍ତି ନାହିଁ । ମୋ'ଠାରେ ଚିତ୍ତ ଅର୍ପଣ କରିଥାନ୍ତି । ସେମାନେ ପ୍ରଶାନ୍ତ ଓ ସମଦର୍ଶୀ । ମମତାଶୂନ୍ୟ ଓ ନିରହଙ୍କାର । ସେମାନଙ୍କର କୌଣସି ଦ୍ୱନ୍ଦ୍ୱ (ସୁଖ-ଦୁଃଖ, ଶୀତ-ଉଷ୍ଣ ଆଦି) ନଥାଏ, ବା ସ୍ତ୍ରୀ-ପୁତ୍ରାଦିଙ୍କ ପ୍ରତି ଆସକ୍ତି ନଥାଏ ।।୨୭।। ମହାଭାଗ ଉଦ୍ଧବ, ସେହି ମହାଭାଗ୍ୟବାନ୍ ସାଧୁମାନଙ୍କ ମଧ୍ୟରେ ସର୍ବଦା ମୋର ଲୀଳାକଥାର ଚର୍ଚ୍ଚା ହେଉଥାଏ । ମନୁଷ୍ୟମାନଙ୍କର ମଙ୍ଗଳକର ସେହି କଥାକୁ ସେବନ କରିବାଦ୍ୱାରା ଲୋକଙ୍କର ସମସ୍ତ ପାପ ଦୂର ହୋଇଯାଏ ।।୨୮।। ଯେଉଁମାନେ ତାହା ଶ୍ରବଣ କରନ୍ତି, ଗାନ କରନ୍ତି, ଅନୁମୋଦନ କରନ୍ତି ଓ ତାର ଆଦର କରନ୍ତି, ଭଗବତ୍‌ପରାୟଣ ସେହି ଶ୍ରଦ୍ଧାଳୁ ବ୍ୟକ୍ତିମାନଙ୍କର ମୋଠାରେ ଭକ୍ତିଭାବ ଜାତହୁଏ ।।୨୯।। ଏହି ଭକ୍ତିଲାଭ କରିଥିବା ସାଧୁମାନଙ୍କର ଆଉ ପାଇବାପାଇଁ କିଛି ଅବଶିଷ୍ଟ ନ ଥାଏ । ସେମାନେ ନିଜ ମଧ୍ୟରେ ମୋର ଅନନ୍ତ ଗୁଣର ଦର୍ଶନ ଓ ବ୍ରହ୍ମାନନ୍ଦ ଲାଭ କରନ୍ତି ।।୩୦।। ଅଗ୍ନି ଭଗବାନଙ୍କୁ ଆଶ୍ରୟ କରିଥିବା ବ୍ୟକ୍ତିର ଯେପରି ଶୀତ ଭୟ ରହେ ନାହିଁ ଓ ସମସ୍ତ ଅନ୍ଧକାର ଦୂରୀଭୂତ ହୋଇଯାଏ, ସେହିପରି ସାଧୁମାନଙ୍କର ସେବାକରୁଥିବା ବ୍ୟକ୍ତିର ସଂସାର ଭୟ ଓ ଅଜ୍ଞାନ ଦୂର ହୋଇଯାଏ ।।୩୧।। ବୁଡ଼ିଯାଉଥିବା ଲୋକ ନୌକାର ଆଶ୍ରୟ ଦ୍ୱାରା ଯେପରି ଉଦ୍ଧାର ପାଏ, ସେହିପରି ଘୋର ଭବସିନ୍ଧୁ ମଧ୍ୟରେ ବୁଡ଼ିଯାଉଥିବା ବ୍ୟକ୍ତିମାନଙ୍କପାଇଁ ବ୍ରହ୍ମଜ୍ଞାନୀ, ଶାନ୍ତ ସାଧୁମାନେ ହିଁ ଏକମାତ୍ର ଆଶ୍ରୟ ହୋଇଥାନ୍ତି ।।୩୨।। ଅନ୍ନ ଯେପରି ପ୍ରାଣୀମାନଙ୍କର ପ୍ରାଣ, ମୁଁ ସେହିପରି ଆର୍ତ୍ତ ଲୋକମାନଙ୍କର ଏକମାତ୍ର ଶରଣ । ପରଲୋକପାଇଁ ଧର୍ମ ଯେପରି ଲୋକମାନଙ୍କର ଏକମାତ୍ର ଧନ, ସେହିପରି ସଂସାର ଭୟରେ ଭୀତ ଲୋକମାନଙ୍କପାଇଁ ସାଧୁମାନେ ହିଁ ଏକମାତ୍ର ଶରଣ ହୋଇଥା'ନ୍ତି ।।୩୩।। ଉଦିତ ସୂର୍ଯ୍ୟ ଯେପରି ଲୋକଙ୍କର ବାହାରର ଦୃଷ୍ଟିକୁ ଜାଗରିତ କରନ୍ତି, ସାଧୁ ପୁରୁଷମାନେ ସେହିପରି ଆତ୍ମସ୍ୱରୂପ ଭଗବାନଙ୍କୁ ଦେଖିବାପାଇଁ ଅନ୍ତର୍ଦୃଷ୍ଟି ଦାନକରନ୍ତି । ସାଧୁମାନେ ହେଉଛନ୍ତି ପ୍ରକୃତ ଦେବତା, ହିତୈଷୀ ବନ୍ଧୁ ଓ ପ୍ରିୟତମ ଆତ୍ମା ଏବଂ ମୋର ସ୍ୱରୂପ ।।୩୪।। ଉଦ୍ଧବ, ଇଳାଙ୍କର ପୁତ୍ର ପୁରୂରବାଙ୍କର ଉର୍ବଶୀଲୋକ ପ୍ରତି କୌଣସି ସ୍ପୃହା ରହିଲା ନାହିଁ । ସେ ସମସ୍ତ ଆସକ୍ତି ତ୍ୟାଗ କରି ଆତ୍ମାରାମ ଭାବରେ ଏହି ପୃଥିବୀରେ ବିଚରଣ କରିବାକୁ ଲାଗିଲେ ।।୩୫।।

## ସପ୍ତବିଂଶ ଅଧ୍ୟାୟ

# କ୍ରିୟାଯୋଗ ବର୍ଣ୍ଣନା

ଉଦ୍ଧବ କହିଲେ, ଯଦୁଶ୍ରେଷ୍ଠ, ଭକ୍ତମାନେ ଯଦ୍ୱାରା ଓ ଯେଉଁପରି ଆପଣଙ୍କୁ ଆରାଧନା କରନ୍ତି ଆପଣ ଦୟାକରି ମୋତେ ସେହି କ୍ରିୟାଯୋଗର ଉପଦେଶ ଦିଅନ୍ତୁ ।।୧।। ନାରଦ, ଭଗବାନ୍ ବ୍ୟାସ, ଦେବଗୁରୁ ବୃହସ୍ପତି ଆଦି ମୁନିମାନେ ଆପଣଙ୍କର ଆରାଧନା ମନୁଷ୍ୟମାନଙ୍କପାଇଁ ଶ୍ରେୟସ୍କର ବୋଲି କହିଛନ୍ତି ।।୨।। ଆପଣଙ୍କର ମୁଖପଦ୍ମରୁ ନିଃସୃତ ଏହି କ୍ରିୟାଯୋଗ ପ୍ରଥମେ ଭଗବାନ ବ୍ରହ୍ମା ଶୁଣି ତାଙ୍କର ପୁତ୍ର ଭୃଗୁ ଆଦି ମହର୍ଷିମାନଙ୍କୁ ଶୁଣାଇଥିଲେ ଏବଂ ଭଗବାନ୍ ଶଙ୍କର ପାର୍ବତୀଙ୍କୁ ତାହା ଉପଦେଶ ଦେଇଥିଲେ ।।୩।। ମାନଦ, ସମସ୍ତ ବର୍ଣ୍ଣ ଓ ଆଶ୍ରମ ନିର୍ବିଶେଷରେ ସମସ୍ତଙ୍କପାଇଁ ଏହା ଉଦ୍ଦିଷ୍ଟ । ସ୍ତ୍ରୀ ଓ ଶୁଦ୍ରମାନଙ୍କର

ମଙ୍ଗଳପାଇଁ ଏହା ଆବଶ୍ୟକ ବୋଲି ମୁଁ ମନେକରେ ।।୪।। କମଳନୟନ, ଆପଣ ବିଶ୍ୱେଶ୍ୱରମାନଙ୍କର ଈଶ୍ୱର । ମୁଁ ଆପଣଙ୍କର ଅନୁରକ୍ତ ଭକ୍ତ । କର୍ମ ବଂଧନରୁ ମୁକ୍ତି ପାଇବାପାଇଁ ମୋତେ ଆପଣ ଏହାର ଉପଦେଶ ଦିଅନ୍ତୁ ।।୫।।

ଭଗବାନ୍ ଶ୍ରୀକୃଷ୍ଣ କହିଲେ, ଉଦ୍ଧବ, କର୍ମକାଣ୍ଡର ପୂଜାବିଧି ହେଉଛି ଅନନ୍ତ ଓ ଅପାର । ପୂର୍ବାପରକ୍ରମରେ ମୁଁ ତାହା ସଂକ୍ଷେପରେ ବର୍ଣ୍ଣନା କରିବାକୁ ଯାଉଛି ।।୬।। ବୈଦିକ, ତାନ୍ତ୍ରିକ ଓ ମିଶ୍ର -- ମୋର ଏହି ତିନିପ୍ରକାର ପୂଜା ମଧ୍ୟରୁ ଯେ ଯେପରି ଇଚ୍ଛା କରେ, ସେହିପରି ବିଧିରେ ମୋର ପୂଜା କରିବ ।।୭।। ପୁରୁଷ ବେଦୋକ୍ତ ବିଧାନ ଅନୁସାରେ ଦ୍ୱିଜତ୍ୱ ଲାଭ କରି ଯେପରି ଭକ୍ତି ଓ ଶ୍ରଦ୍ଧାର ସହିତ ମୋତେ ପୂଜା କରିବ, ତାହା ମୁଁ କହୁଛି ଶୁଣ ।।୮।। ଅମାୟିକ ଭାବରେ ଭକ୍ତିଯୁକ୍ତ ହୋଇ ଓ ମୋତେ ନିଜର ଗୁରୁବୋଲି ମନେକରି ପ୍ରତିମାରେ, ବେଦୀରେ, ଅଗ୍ନିରେ, ସୂର୍ଯ୍ୟଙ୍କଠାରେ, ଜଳରେ ବା ନିଜର ହୃଦୟମଧ୍ୟରେ ପୂଜା ସାମଗ୍ରୀଦ୍ୱାରା ମୋର ପୂଜାକରିବ ।।୯।। ପୂର୍ବରୁ ଶରୀରର ଶୁଦ୍ଧିପାଇଁ ଦନ୍ତମାର୍ଜନାଦି ପୂର୍ବକ ସ୍ନାନକରିବ । ବୈଦିକ ଓ ତାନ୍ତ୍ରିକ ମନ୍ତ୍ରରେ ପୁଣି ଥରେ ମୃତ୍ତିକା ଆଦି ବୋଳି ହୋଇ ସ୍ନାନକରିବ ।।୧୦।। ବେଦରେ ଯେପରି କୁହାଯାଇଛି, ସେହିପରି ଭାବରେ ସନ୍ଧ୍ୟା ଉପାସନା ଆଦି କରିବ ଓ ତାପରେ କର୍ମ ବନ୍ଧନକୁ ଛିନ୍ନ କରୁଥିବା ଉତ୍ତମ ସଙ୍କଳ୍ପ ଦ୍ୱାରା ମୋର ପୂଜାକରିବ ।।୧୧।। ପ୍ରତିମା ହେଉଛି ଆଠ ପ୍ରକାର । ପଥରରେ ତିଆରି, ଦାରୁରେ ତିଆରି, ଲୁହା ଓ ସୁବର୍ଣ୍ଣ ଆଦି ଧାତୁରେ ତିଆରି, ମୃତ୍ତିକା ଓ ଚନ୍ଦନରେ ତିଆରି, ପଟରେ ବା କାନ୍ଥରେ ଅଙ୍କିତ, ବାଲିରେ ତିଆରି, ମନୋମୟୀ ଓ ମଣିମୟୀ ମୂର୍ତ୍ତି ।।୧୨।। ଉଦ୍ଧବ, ଭଗବାନଙ୍କ ମନ୍ଦିରରେ ଚଳନ୍ତି ପ୍ରତିମା ଓ ଅଚଳନ୍ତି ପ୍ରତିମା - ଏହିପରି ଦୁଇ ପ୍ରକାର ମୂର୍ତ୍ତି ଥାଆନ୍ତି । ଅଚଳନ୍ତି ପ୍ରତିମାର ପୂଜାରେ ପ୍ରତିଦିନ ଆବାହନ ଓ ବିସର୍ଜନ କରାଯାଏ ନାହିଁ ।।୧୩।। ଚଳନ୍ତି ପ୍ରତିମାରେ କେବଳ ବିକଳ୍ପ ରହିଛି । ମାଟି ବା ଚନ୍ଦନରେ ହୋଇଥିବା ପଟ୍ଟ ବା ଚିତ୍ରରେ ଲିଖିତ ପ୍ରତିମାକୁ ସ୍ନାନ କରାଯାଏ ନାହିଁ, କେବଳ ମାର୍ଜନା କରାଯାଏ ।।୧୪।। ପ୍ରତିମା ଆଦିରେ ମୋର ପୂଜାକୁ ଉତ୍ତମ ସାମଗ୍ରୀଦ୍ୱାରା କରାଯିବା ଉଚିତ । ଉପଚାର ଆଦି ଅଭାବରେ ନିଷ୍କାମ ଭକ୍ତ ଭକ୍ତିପୂର୍ଣ୍ଣ ହୃଦୟରେ ମୋର ପୂଜା କରିବା ଉଚିତ ।।୧୫।। ଉଦ୍ଧବ, ସ୍ନାନ ଓ ଅଳଙ୍କାର ଆଦି ଶିଳା ବା ଧାତୁ ନିର୍ମିତ ପ୍ରତିମାର ପୂଜାପାଇଁ ଉତ୍ତମ ବିବେଚିତ ହୁଏ । ବେଦୀରେ ପୂଜା କରିବାକୁ ହେଲେ ଅଙ୍ଗପ୍ରଧାନ ଦେବତାମାନଙ୍କୁ ମନ୍ତ୍ରଦ୍ୱାରା ଯଥାସ୍ଥାନରେ ସ୍ଥାପନ କରିବ । ଅଗ୍ନିରେ ପୂଜା କରିବାକୁ ହେଲେ ଘୃତମିଶ୍ରିତ ହବନ ସାମଗ୍ରୀ ଦ୍ୱାରା ଆହୁତି ଦେବ ।।୧୬।। ସୂର୍ଯ୍ୟଙ୍କ ରୂପରେ ପୂଜା କଲେ ଦିନରେ ଅର୍ଘ୍ୟଦାନ, ଉପସ୍ଥାନ ଓ ତର୍ପଣ କରି ମୋର ଉପାସନା କରିବ । ଯଦି ମୋର ଭକ୍ତ ଶ୍ରଦ୍ଧାରେ କେବଳ ଜଳଦାନ କରି ମୋର ଉପାସନା କରେ, ତାହାକୁ ମୁଁ ପ୍ରିୟତମ ଉପହାର ଭାବରେ ଗ୍ରହଣକରେ ।।୧୭।। ମୋ'ପ୍ରତି ଭକ୍ତି ନ ଥାଇ ଭୂରିଭୂରି ଉପହାର ଦେଲେ ମୋର ସେଥିରେ ସନ୍ତୋଷ ନାହିଁ । ଗନ୍ଧ, ଧୂପ, ପୁଷ୍ପ, ଦୀପ, ଅନ୍ନ ଆଦି ନୈବେଦ୍ୟ ଯାହା କିଛି ସମର୍ପଣ କରାଗଲେ ମଧ୍ୟ ବିନାଭକ୍ତିରେ ତାହା ଗ୍ରହଣୀୟ ନୁହେଁ ।।୧୮।।

ପ୍ରଥମେ ପବିତ୍ର ହୋଇ ପୂଜା ସାମଗ୍ରୀକୁ ଏକତ୍ର କରିବ । ଆସନ ରୂପେ କଳ୍ପନା କରି କୁଶସବୁକୁ ପୂର୍ବଦିଗକୁ ମୁହଁକରି ରଖିବ । ତା'ପରେ ପୂର୍ବ ବା ଉତ୍ତର ଆଡକୁ ମୁହଁକରି ଆସନରେ ବସିବ । ଅଚଳ ମୂର୍ତ୍ତି ହୋଇଥିଲେ ପୂଜା କରିବାପାଇଁ ପ୍ରତିମାର ସମ୍ମୁଖରେ ବସିବ ।।୧୯।। କରନ୍ୟାସ ଓ ଅଙ୍ଗନ୍ୟାସ କରି ମୋର ମୂର୍ତ୍ତିକୁ ମାର୍ଜନା କରିବ । ଜଳପୂର୍ଣ୍ଣ କଳସ ଓ ପ୍ରୋକ୍ଷଣ ପାତ୍ର ଇତ୍ୟାଦିକୁ ଫୁଲଚନ୍ଦନଦ୍ୱାରା ସଂସ୍କାର କରିବ ।।୨୦।। ପୂଜାର ସ୍ଥାନ, ପୂଜା ଦ୍ରବ୍ୟ ଓ ନିଜ ଦେହକୁ ପ୍ରୋକ୍ଷଣ-ପାତ୍ରର ଜଳରେ ପ୍ରୋକ୍ଷଣ କରିବ । ପାଦ୍ୟ, ଅର୍ଘ୍ୟ ଓ ଆଚମନପାଇଁ କଳସୀରୁ ଜଳ ଆଣି ତିନୋଟି ପାତ୍ରରେ ପୂର୍ଣ୍ଣ କରି ରଖିବ । ପୂଜାବିଧି ଅନୁସାରେ ପୂଜାଦ୍ରବ୍ୟମାନଙ୍କୁ ସେଥିରେ ରଖିବ (ଦୂବ, ଅରୁଆ ଚାଉଳ, ଚନ୍ଦନ, ତୁଳସୀ ଦଳ, ଫୁଲ, ରାଶି, ଜାଇଫଳ, ଲବଙ୍ଗ ଆଦି) ।।୨୧।। ଏହାପରେ ପୂଜକ ଏହି ତିନୋଟି ପାତ୍ରକୁ ଯଥାକ୍ରମେ ହୃଦୟର,ଶିରର ଓ ଶିଖାର ମନ୍ତ୍ରରେ ଅଭିମନ୍ତ୍ରିତ କରି ଶେଷରେ ଗାୟତ୍ରୀ ମନ୍ତ୍ରଦ୍ୱାରା ପୁଣି ଅଭିମନ୍ତ୍ରିତ କରିବ ।।୨୨।। ଏହାପରେ ପ୍ରାଣାୟାମଦ୍ୱାରା ପ୍ରାଣବାୟୁ

ଏବଂ ଭାବନାସବୁଦ୍ୱାରା ଶରୀରସ୍ଥିତ ଅଗ୍ନି ଶୁଦ୍ଧ ହେବାପରେ ହୃଦୟକମଳରେ ଥିବା ଅତିଶୟ ସୂକ୍ଷ୍ମ ଓ ଶ୍ରେଷ୍ଠ ଦୀପଶିଖାପରି ମୋର ଜୀବକଳା (ନାରାୟଣ ମୂର୍ତ୍ତି) ପ୍ରଣବର ଉଚ୍ଚାରଣ ପରେ ଧ୍ୟାନ କରିବ । ସିଦ୍ଧ ମୁନିଋଷିମାନେ ପ୍ରଣବ ବା ଓଁକାରର ଅକାର, ଉକାର, ମକାର, ବିନ୍ଦୁ ଓ ନାଦ -- ଏହି ପାଞ୍ଚକଳାର ଶେଷରେ ଜୀବକଳାକୁ ଧ୍ୟାନ କରନ୍ତି ।।୨୩।। ଏହି ଆତ୍ମାସ୍ୱରୂପ ଜୀବକଳାର ତେଜରେ ସମସ୍ତ ଅନ୍ତଃକରଣ ଓ ଶରୀର ଆଲୋକିତ ହୋଇଯିବ । ତାପରେ ମନ ସେହି ପୂଜାପାଇଁ ତନ୍ମୟ ହୋଇଉଠିବ । ତା'ପରେ ମୋତେ ଆବାହନ କରି ପ୍ରତିମା ଆଦିରେ ସ୍ଥାପନ କରିବ । ପୁଣି ମନ୍ତ୍ରଦ୍ୱାରା ଅଙ୍ଗନ୍ୟାସ କରି ମୋର ପୂଜା କରିବ ।।୨୪।। ମୋର ଆସନରେ ଧର୍ମ ଆଦି ନ'ଟି ଗୁଣ ଓ ବିମଳା ଆଦି ନ'ଟି ଶକ୍ତିଙ୍କର କଳ୍ପନା କରିବ । ଆସନର ଚାରୋଟି କୋଣରେ ଧର୍ମ, ଜ୍ଞାନ, ବୈରାଗ୍ୟ ଏବଂ ଐଶ୍ୱର୍ଯ୍ୟ -- ଏହି ଚାରୋଟି ପାଦ; ଅଧର୍ମ, ଅଜ୍ଞାନ, ଅବୈରାଗ୍ୟ ଓ ଅନୈଶ୍ୱର୍ଯ୍ୟ - ଚାରି ଦିଗରେ ଏହି ଚାରୋଟି ଦଣ୍ଡ; ସତ୍ତ୍ୱ, ରଜ ଓ ତମରେ ନିର୍ମିତ ପୀଠ ଓ ଏହାର ଉପରେ ବିମଳା, ଉତ୍କର୍ଷିଣୀ,ଜ୍ଞାନା, କ୍ରିୟା, ଯୋଗା, ପ୍ରହ୍ୱୀ, ସତ୍ୟା, ଇଶାନା ଓ ଅନୁଗ୍ରହା - ଏହି ନ'ଟି ଶକ୍ତି ବିଦ୍ୟମାନ । ଏହି ଆସନ ଉପରେ ଏକ ଅଷ୍ଟଦଳ ପଦ୍ମ ଅଛି । ଏହାର ପାଖୁଡ଼ା ସବୁ ଭଲ ଭାବରେ ଫୁଟି ରହିଛି ଓ ଏହାର ହଳଦିଆରଙ୍ଗର କେଶର ସବୁ ରହିଛି । ଏହିପରି ଆସନର କଳ୍ପନା କରି ପାଦ୍ୟ, ଆଚମନୀୟ ଓ ଅର୍ଘ୍ୟ ଆଦି ଉପଚାର ପ୍ରସ୍ତୁତ କରିବ । ଏହାପରେ ଭୋଗ ଏବଂ ମୋକ୍ଷର ସିଦ୍ଧି ପାଇଁ ବୈଦିକ ଓ ତାନ୍ତ୍ରିକ ବିଧିରେ ମୋର ପୂଜା କରିବ ।।୨୫-୨୬।। ସୁଦର୍ଶନ ଚକ୍ର, ପାଞ୍ଚଜନ୍ୟ ଶଙ୍ଖ, କୌମୋଦକୀ ଗଦା, ଖଡ୍ଗ, ବାଣ, ଧନୁ, ହଳ ଓ ମୁଷଳ ଏହି ଆଠଟି ଆୟୁଧକୁ ଆଠ ଦିଗରେ ପୂଜା କରିବ ଏବଂ କୌସ୍ତୁଭମଣି, ବୈଜୟନ୍ତୀ ମାଳା ଓ ଶ୍ରୀବତ୍ସ ଚିହ୍ନକୁ ଯଥାସ୍ଥାନ ବକ୍ଷସ୍ଥଳରେ ପୂଜା କରିବ ।।୨୭।। ନନ୍ଦ, ସୁନନ୍ଦ, ପ୍ରଚଣ୍ଡ, ଚଣ୍ଡ, ମହାବଳ, ବଳ, କୁମୁଦ ଓ କୁମୁଦେକ୍ଷଣ -- ଏହି ଆଠଜଣ ପାର୍ଷଦଙ୍କୁ ଆଠ ଦିଗରେ ଓ ଗରୁଡଙ୍କୁ ସମ୍ମୁଖରେ ରଖିବ ଏବଂ ଦୁର୍ଗା, ବିନାୟକ, ବ୍ୟାସ ଓ ବିଷ୍ୱକ୍‌ସେନଙ୍କୁ ଚାରିକୋଣରେ ସ୍ୱ ସ୍ୱ ସ୍ଥାନରେ ସ୍ଥାପନ କରି ପୂଜା କରିବ । ବାଁ ପଟେ ଗୁରୁଙ୍କୁ ଓ ପୂର୍ବାଦି ଦିଗମାନଙ୍କରେ ଇନ୍ଦ୍ର ଆଦି ଅଷ୍ଟ ଲୋକପାଳଙ୍କୁ ସ୍ଥାପନ କରି ପ୍ରୋକ୍ଷଣ ଓ ଅର୍ଘ୍ୟଦାନ ଆଦି କ୍ରମରେ ପୂଜା କରିବ ।।୨୮-୨୯।। ଯଦି ଶକ୍ତି ଥାଏ, ତାହେଲେ ଚନ୍ଦନ, ବେଣାଚେର, କର୍ପୂର, କୁଙ୍କୁମ ଓ ଅଗୁରୁଦ୍ୱାରା ସୁବାସିତ ଜଳରେ ମୋତେ ପ୍ରତିଦିନ ସ୍ନାନ କରାଇବ । ସେହି ସମୟରେ 'ସୁବର୍ଣ୍ଣଂ ଘର୍ମଂ' ଇତ୍ୟାଦି ସ୍ୱର୍ଣ୍ଣଘର୍ମାନୁବାକ, 'ଜିତଂ ତେ ପୁଣ୍ଡରୀକାକ୍ଷ' ଇତ୍ୟାଦି ମହାପୁରୁଷବିଦ୍ୟା, 'ସହସ୍ରଶୀର୍ଷା ପୁରୁଷଃ' ଇତ୍ୟାଦି ପୁରୁଷସୂକ୍ତ ଏବଂ 'ଇନ୍ଦ୍ରଂ ନର ନେମଧିତା ହବନ୍ତେ' ଇତ୍ୟାଦି ମନ୍ତ୍ରୋକ୍ତ ରାଜନାଦି ସାମ ପାଠ କରୁଥିବ ।।୩୦-୩୧।। ମୋର ଭକ୍ତ ପ୍ରେମରେ ମୋତେ ବସ୍ତ୍ର, ଯଜ୍ଞୋପବୀତ, ଅଳଙ୍କାର, ପତ୍ର, ମାଳା, ଗଂଧ ଓ ଚନ୍ଦନ ଆଦିରେ ଯଥୋଚିତ ଅଳଙ୍କୃତ କରିବେ । ପୂଜକ ଶ୍ରଦ୍ଧାର ସହିତ ମୋତେ ପାଦ୍ୟ, ଆଚମନୀୟ, ଗନ୍ଧ, ପୁଷ୍ପ, ଅକ୍ଷତ, ଧୂପ, ଦୀପ ଆଦି ଉପହାରମାନ ଅର୍ପଣ କରିବେ । ଯଦି ବିଭବ ଥାଏ ଗୁଡ଼, ପାୟସ, ଘୃତ, ଚକୁଳି ପିଠା, ରାଶିଲଡୁ, ଦହି, ହାଲୁଆ ଓ ବ୍ୟଞ୍ଜନ ଆଦି ପ୍ରସ୍ତୁତ କରି ମୋତେ ନୈବେଦ୍ୟ କରିବେ । ବିଭବ ଥିଲେ ବିଗ୍ରହଙ୍କ ଅଙ୍ଗମର୍ଦ୍ଦନ, ଦର୍ପଣ, ଦନ୍ତମାର୍ଜନ, ପଞ୍ଚାମୃତରେ ସ୍ନାନ, ସୁଗନ୍ଧିଧିତ ପଦାର୍ଥରେ ଲେପନ, ଭୋଜ୍ୟ ଆଦି ଦିବ୍ୟ ଅନ୍ନ ପ୍ରଦାନ ଓ ନୃତ୍ୟ ଗୀତ ଆଦିର ବ୍ୟବସ୍ଥା କରିବେ । ଶକ୍ତି ଥିଲେ, ପ୍ରତିଦିନ ଅଥବା ଶକ୍ତି ନ ଥିଲେ ପର୍ବଦିନମାନଙ୍କରେ ଏହିପରି କରିବେ ।।୩୨-୩୫।। ଉଦ୍ଧବ, ପୂଜାପରେ ଶାସ୍ତ୍ରୋକ୍ତ ବିଧିରେ ତିଆରି ହୋଇଥିବା କୁଣ୍ଡରେ ଅଗ୍ନିକୁ ସ୍ଥାପନା କରିବେ । ମେଖଳା, (ହସ୍ତ ମାତ୍ର) ଗର୍ତ୍ତ ଓ ବେଦିଦ୍ୱାରା ଏହି କୁଣ୍ଡ ଶୋଭିତ ହେବ । ଅଗ୍ନିକୁ ପ୍ରଜ୍ୱଳିତ କରି କୁଣ୍ଡର ଚାରିଆଡୁ ଏହାକୁ ହାତରେ ଏକାଠି କରିବେ । କୁଣ୍ଡର ଚାରିଆଡ଼େ କୋଡ଼ିଏଟି ଲେଖାଏ କୁଶ ବିଛାଇ ମନ୍ତ୍ର ପଢ଼ି ସେଥିରେ ପାଣି ଛିଞ୍ଚିବେ । ଅନ୍ୱାଧାନସଂଜ୍ଞକ ବ୍ୟାହୃତିଦ୍ୱାରା ସମିଧମାନ ପକାଇ ଅଗ୍ନିର ଉତ୍ତର ଭାଗରେ ହୋମର ଉପଯୋଗୀ ସାମଗ୍ରୀମାନ ରଖିବେ ଏବଂ ପ୍ରୋକ୍ଷଣପାତ୍ରର ଜଳଦ୍ୱାରା ପ୍ରୋକ୍ଷଣ କରିବ । ତାପରେ ଅଗ୍ନିରେ ମୋତେ ଧ୍ୟାନ କରିବେ ।।୩୬-୩୭।।

ମୋର ମୂର୍ତ୍ତି ତପ୍ତକାଞ୍ଚନ ବର୍ଣ୍ଣପରି । ଶଙ୍ଖ, ଚକ୍ର, ଗଦା ଓ ପଦ୍ମ ଦ୍ୱାରା ମୋର ଚତୁର୍ଭୁଜ ଶୋଭମାନ । ମୋର ବସ୍ତ୍ର ପଦ୍ମକେଶର ପରି ଏବଂ ମୂର୍ତ୍ତି ପ୍ରଶାନ୍ତ ।।୩୮।। ମୋର ମସ୍ତକରେ କିରୀଟ, ହାତରେ କଙ୍କଣ, କଟିରେ କଟିସୂତ୍ର, ବାହୁରେ ଉତ୍କୃଷ୍ଟ ବାଜୁବନ୍ଧ, ବକ୍ଷରେ ଶ୍ରୀବତ୍ସ ଏବଂ ଗଳାରେ କୌସ୍ତୁଭମଣି ଓ ବନମାଳା ଶୋଭାପାଉଛି ।।୩୯।। ଏହିପରି ଅଗ୍ନିରେ ମୋର କଳ୍ପିତ ମୂର୍ତ୍ତିକୁ ଧ୍ୟାନ କରି ତାର ପୂଜା କରିବେ । ଏହାପରେ ଶୁଖିଲା ସମିଧ ସବୁ ଘିଅରେ ବୁଡ଼ାଇ ଆହୁତି ଦେବେ ଏବଂ ଆଜ୍ୟଭାଗ ଓ ଆଘାର ନାମକ ଦୁଇ ଦୁଇଟି ଆହୁତି ଦ୍ୱାରା ହବନ କରିବେ । ତା'ପରେ ଘିଅରେ ବୁଡ଼ାଇ ଅନ୍ୟ ହବନ ସାମଗ୍ରୀମାନଙ୍କୁ ଆହୁତି ଦେବେ ।।୪୦।। ଏହାପରେ ନିଜର ଇଷ୍ଟମନ୍ତ୍ର ବା 'ଓଁ ନମୋ ନାରାୟଣାୟ' - ଏହି ଅଷ୍ଟାକ୍ଷର ମନ୍ତ୍ର ଦ୍ୱାରା ପୁରୁଷ ସୂକ୍ତର ଷୋହଳ ମନ୍ତ୍ର ଦ୍ୱାରା ହବନ କରିବ । ବିଜ୍ଞ ବ୍ୟକ୍ତି ଧର୍ମ ଆଦି ଅନ୍ୟ ଦେବତାମାନଙ୍କୁ ମନ୍ତ୍ରରେ ବିଧିପୂର୍ବକ ହବନ କରିବ ଏବଂ ସ୍ୱିଷ୍ଟକୃତ(ଅଗ୍ନେୟ ଇଷ୍ଟକୃତେ ସ୍ୱାହା) ବୋଲି କହି ଆହୁତି ଦେବ ।।୪୧।। ଏହିପରି ଅଗ୍ନି ମଧ୍ୟରେ ଥିବା ମୋତେ ପୂଜା ଓ ନମସ୍କାର କରି ନନ୍ଦ ଆଦି ମୋର ପାର୍ଷଦମାନଙ୍କୁ ପୂଜା ଉପହାର ଓ ଘୃତ ଆଦି ଆହୁତି ଦେବ । ଏହାପରେ ପ୍ରତିମାଙ୍କର ଆଗରେ ବସି ପରଂବ୍ରହ୍ମ ନାରାୟଣ ଶ୍ରୀଭଗବାନଙ୍କୁ ସ୍ମରଣ କରି ମୂଳମନ୍ତ୍ର ( ଓଁ ନମୋ ନାରାୟଣାୟ) ଜପ କରିବେ । ଏହାପରେ ଭଗବାନଙ୍କୁ ଆଚମନ କରାଇବ ଏବଂ ତାଙ୍କର ପ୍ରସାଦ ବିଷ୍ୱକ୍ସେନଙ୍କୁ ନିବେଦନ କରିବ । ଏହାପରେ ଇଷ୍ଟଦେବତାଙ୍କର ସେବା ନିମନ୍ତେ ସୁବାସିତ ତାମ୍ବୁଳଆଦି ମୁଖବାସ ଓ ପୁଷ୍ପାଞ୍ଜଳି ସମର୍ପଣ କରିବ ।।୪୨-୪୩।।

ମୋର ଲୀଳାମାନଙ୍କୁ ଗାନକରି, ବର୍ଣ୍ଣନାକରି ଓ ଅଭିନୟକରି ପ୍ରେମରେ ନୃତ୍ୟକରିବ । ମୋର ଲୀଳା କଥା ନିଜେ ଶୁଣିବ ଓ ଅନ୍ୟମାନଙ୍କୁ ଶୁଣାଇବ । ମୁହୂର୍ତ୍ତକପାଇଁ ସବୁ ଜଞ୍ଜାଳ ଭୁଲିଯାଇ ମୋଠାରେ ତନ୍ମୟ ହୋଇଯିବ ।।୪୪।। ପ୍ରାଚୀନ ଋଷିମାନେ ଗାନକରିଥିବା ସ୍ତୋତ୍ର ବା ପ୍ରାକୃତଭାଷାରେ ଭକ୍ତମାନଙ୍କର ରଚିତ ଛୋଟବଡ଼ ସ୍ତୁତି ଆଦି ପାଠ କରି ମୋତେ ପ୍ରାର୍ଥନା ପୂର୍ବକ କହିବ - 'ହେ ଭଗବାନ୍, ମୋ ପ୍ରତି ପ୍ରସନ୍ନ ହୁଅନ୍ତୁ' । ଏହାପରେ ଦଣ୍ଡ ପ୍ରଣାମ କରିବ ।।୪୫।। ପ୍ରଣାମ କଲାବେଳେ ମୁଣ୍ଡକୁ ମୋର ପାଦ ଦୁଇଟିରେ ଲଗାଇବ । ଡାହାଣ ହାତରେ ମୋର ଡାହାଣ ପାଦ ଓ ବାମ ହାତରେ ମୋର ବାମ ପାଦ ଧାରଣ କରି କହିବ 'ହେ ଭଗବାନ୍, ଏ ସଂସାର ସାଗରରେ ମୁଁ ଭୟଭୀତ ହୋଇପଡ଼ିଛି । ମୃତ୍ୟୁ ରୂପକ ଗ୍ରହ ମୋତେ ଗ୍ରାସିବାକୁ ଯାଉଛି, ମୁଁ ଆପଣଙ୍କର ଶରଣାଗତ । ମୋତେ ରକ୍ଷା କରନ୍ତୁ' ।।୪୬।। ଏହିପରି ପୂଜା ଶେଷରେ ମୋର ନିର୍ମାଲ୍ୟକୁ ସାଦରେ ମସ୍ତକରେ ଧାରଣ କରିବ । ଯଦି ମୂର୍ତ୍ତିକୁ ବିସର୍ଜନ କରିବାକୁ ହୁଏ, ତା ହେଲେ ଏପରି ଚିନ୍ତା କରିବ ଯେ ପ୍ରତିମାରୁ ଏକ ଦିବ୍ୟଜ୍ୟୋତି ବାହାରି ଆସି ମୋର ହୃଦୟସ୍ଥ ଜ୍ୟୋତିରେ ଲୀନ ହୋଇଗଲା । ଏହା ହିଁ ହେଉଚି ବିସର୍ଜନ ।।୪୭।। ଉଦ୍ଧବ, ପ୍ରତିମାଦି ଯେଉଁଥିରେ ଯାହାର ଶ୍ରଦ୍ଧା, ସେ ସେଥିରେ ମୋର ପୂଜା କରିବେ । କାରଣ ମୁଁ ସର୍ବାତ୍ମା, ସମସ୍ତ ପ୍ରାଣୀଙ୍କଠାରେ ଆତ୍ମାରୂପେ ଅବସ୍ଥିତ ଓ ସମସ୍ତ ପ୍ରାଣୀଙ୍କର ଆତ୍ମା ମୋଠାରେ ଅବସ୍ଥିତ । ଉଦ୍ଧବ, ଯେଉଁ ବ୍ୟକ୍ତି ଏହିପରି ବୈଦିକ ଓ ତାନ୍ତ୍ରିକ କ୍ରିୟାଯୋଗର ମାର୍ଗରେ ମୋର ପୂଜା କରେ, ସେ ଇହଲୋକ ଓ ପରଲୋକ ଉଭୟର ଅଭୀଷ୍ଟ ଫଳ ପ୍ରାପ୍ତହୁଏ ।।୪୮-୪୯।।

ଯଦି ଶକ୍ତିଥାଏ, ତାହେଲେ ଉପାସକ ଏକ ସୁନ୍ଦର ଓ ସୁଦୃଢ଼ ମନ୍ଦିର ନିର୍ମାଣ କରିବେ ଏବଂ ସେଥିରେ ମୋର ପ୍ରତିମା ସ୍ଥାପନ କରିବେ । ସୁନ୍ଦର ସୁନ୍ଦର ଫୁଲ ବଗିଚାମାନ କରି ପ୍ରତିଦିନର ପୂଜା ଓ ପର୍ବଦିନମାନଙ୍କରେ ଯାତ୍ରା ଉତ୍ସବ ଆଦି ଅନୁଷ୍ଠାନ କରିବେ । ଏହିପରି ପ୍ରତିଦିନର ପୂଜା, ପର୍ବ ଓ ଉତ୍ସବମାନଙ୍କୁ ନିୟମିତ ଚଳାଇବାକୁ ହେଲେ ଜମିବାଡ଼ି, ବଜାରହାଟ, ନଗର ଓ ଗ୍ରାମାଦି ମୋର ନାମରେ ସମର୍ପଣ କରିବେ । ତଦ୍ୱାରା ମୋର ଐଶ୍ୱର୍ଯ୍ୟତୁଲ୍ୟ ଐଶ୍ୱର୍ଯ୍ୟ ଲାଭ କରାଯାଏ ।।୫୦-୫୧।। ମୋର ମୂର୍ତ୍ତି ପ୍ରତିଷ୍ଠାଦ୍ୱାରା ଏକଛତ୍ର ରାଜ୍ୟ ମିଳିଥାଏ । ମନ୍ଦିର ପ୍ରତିଷ୍ଠାଦ୍ୱାରା ତିନିଲୋକର ସାମ୍ରାଜ୍ୟ, ପୂଜା ଆଦି ବ୍ୟବସ୍ଥା ଦ୍ୱାରା ବ୍ରହ୍ମଲୋକ ପ୍ରାପ୍ତହୁଏ ଏବଂ ଏହି ତିନୋଟି କାର୍ଯ୍ୟ କରିବାଦ୍ୱାରା ମୋର ସମାନତା ଲାଭହୁଏ ।।୫୨।। ଯେ ନିଷ୍କାମ ଭାବରେ ମୋର ପୂଜା କରେ, ମୋପ୍ରତି ତାର ଭକ୍ତିଯୋଗ ଜାତ ହୁଏ ଏବଂ ଏହି ନିରପେକ୍ଷ ଭକ୍ତିଯୋଗଦ୍ୱାରା ମୋତେ ସେ ଲାଭ

କରିଥାଏ ।।୫୩।। ଯେଉଁ ବ୍ୟକ୍ତି ନିଜେ ଦେଇସାରିଥିବା ବା ଅନ୍ୟ ଦ୍ୱାରା ପ୍ରଦତ୍ତ ଦେବତା ଓ ବ୍ରାହ୍ମଣଙ୍କର ଜୀବିକା ହରଣ କରେ, ସେ ଅୟୁତ ଅୟୁତ ବର୍ଷ ଧରି ବିଷ୍ଠାଭୋଜୀ କୀଟ ହୋଇରହେ ।।୫୪।। ଯେଉଁ ବ୍ୟକ୍ତି ଏହିପରି କର୍ମରେ ସାହାଯ୍ୟ କରେ ବା ତାହାକୁ ଉତ୍ସାହିତ କରେ ବା ଅନୁମୋଦନ କରେ, ସେ ମଧ୍ୟ କରିଥିବା ଲୋକପରି ସମାନ ପାପର ଫଳ ଭୋଗକରେ । ପାପରେ ସହଯୋଗୀ ଲୋକଙ୍କପାଇଁ ପରଲୋକରେ ଭୟଙ୍କର ଫଳ ଭୋଗକରିବାକୁ ହୋଇଥାଏ ।।୫୫।।

## ଅଷ୍ଟାବିଂଶ ଅଧ୍ୟାୟ

# ପରମାର୍ଥ ନିରୂପଣ

ଭଗବାନ୍ ଶ୍ରୀକୃଷ୍ଣ କହିଲେ, ପୁରୁଷ ଓ ପ୍ରକୃତି ଦୃଷ୍ଟିରୁ ବିଶ୍ୱ ହେଉଛି ଏକ । ଯେ ଏହିପରି ଦେଖିପାରେ ସେ ପରର ସ୍ୱଭାବ ବା କର୍ମକୁ ପ୍ରଶଂସା କରେନାହିଁ କି ନିନ୍ଦା କରେ ନାହିଁ । ଯେ ପରର ସ୍ୱଭାବ ବା କର୍ମକୁ ପ୍ରଶଂସା କରେ ବା ନିନ୍ଦା କରେ, ଅସତ୍ୟ ବସ୍ତୁରେ ଅଭିନିବେଶଯୋଗୁଁ ନିଜର ଜ୍ଞାନ-ନିଷ୍ଠାରୁ ସେ ଭ୍ରଷ୍ଟହୁଏ ।।୧-୨।। ରାଜସ ଅହଙ୍କାରର କାର୍ଯ୍ୟ ସ୍ୱରୂପ ଇନ୍ଦ୍ରିୟମାନେ ଯେତେବେଳେ ନିଦ୍ରାଭିଭୂତ ହୁଅନ୍ତି, ସେତେବେଳେ ଦେହାଭିମାନୀ ଜୀବ ଚେତନାଶୂନ୍ୟ ହୋଇଯାଏ । ଅର୍ଥାତ୍ ତାର ବାହ୍ୟଶରୀରର ସ୍ମୃତି ରହେ ନାହିଁ । ସେତେବେଳେ ମନ ସ୍ୱପ୍ନରେ ମିଥ୍ୟା ଦୃଶ୍ୟ ସବୁ ଦେଖୁଥାଏ । ଯେତେବେଳେ ମନ ଲୀନ ହୁଏ, ସେତେବେଳେ ଜୀବ ମୃତ୍ୟୁତୁଲ୍ୟ ଗାଢ଼ନିଦ୍ରାରେ ଶୋଇଯାଏ । ସେହିପରି ନିଜର ଆତ୍ମ-ସ୍ୱରୂପକୁ ଭୁଲିଯାଇଥିବା ପୁରୁଷ ନାନା ମିଥ୍ୟା ଦୃଶ୍ୟରେ ଭୁଲିଯାଏ ବା ମୃତ୍ୟୁ ପରି ଅଜ୍ଞାନରେ ଲୀନ ହୋଇଯାଏ ।।୩।। ଉଦ୍ଧବ, ଯଦି ଦ୍ୱୈତନାମକ ବସ୍ତୁ ନ ଥାଏ, ତା'ହେଲେ କିଏ ଭଲ ବା କିଏ ଖରାପ ଏବଂ କିଏ କେତେ ଭଲ ବା କେତେ ଖରାପ ତାହା କହିବାର ଯଥାର୍ଥତା ନାହିଁ । ମିଥ୍ୟା ବା ମନର ଭାବନା ଛଡ଼ା ତାହା ଅନ୍ୟ କିଛି ନୁହେଁ ।।୪।। ବସ୍ତୁ ନ ଥିବାଯୋଗୁଁ ତାର ପ୍ରତିବିମ୍ବ, ପ୍ରତିଧ୍ୱନି ବା ଆଭାସ ନ ଥାଏ, ତଥାପି ଥିବାପରି ଏକ ଧାରଣା ସୃଷ୍ଟିହୁଏ । ସେହିପରି ଦେହାଦି ବସ୍ତୁ ମିଥ୍ୟାହେଲେ ମଧ୍ୟ ମନରେ ସର୍ବଦା ମୃତ୍ୟୁର ଭୟ ସୃଷ୍ଟି କରନ୍ତି ।।୫।। ସର୍ବଶକ୍ତିମାନ୍ ପ୍ରଭୁ ବିଶ୍ୱାତ୍ମା ଏହି ବିଶ୍ୱକୁ ସୃଷ୍ଟି କରନ୍ତି ଓ ନିଜେ ସୃଷ୍ଟ ହୁଅନ୍ତି, ପାଳନ କରନ୍ତି ଓ ପାଳିତ ହୁଅନ୍ତି, ସଂହାର କରନ୍ତି ଓ ସଂହୃତ ହୁଅନ୍ତି । ତେଣୁ ଆତ୍ମା ଦୃଷ୍ଟିରୁ ପରମାତ୍ମାଙ୍କ ବ୍ୟତୀତ ଅନ୍ୟ କୌଣସି ବସ୍ତୁଥିବାର ସାବ୍ୟସ୍ତ ହୁଏ ନାହିଁ । ଆତ୍ମାରେ ଆଧ୍ୟାତ୍ମିକ, ଆଧିଭୌତିକ ଓ ଆଧିଦୈବିକ ବୋଲି ଯେଉଁ ତିନିପ୍ରକାର ପ୍ରତୀତି ଜାତ ହୁଏ, ତାହା ଅମୂଳକ । ତାହା ସତ୍ତ୍ୱ, ରଜ ଓ ତମ ଏହି ତ୍ରିଗୁଣମାୟାର ସୃଷ୍ଟି ।।୬-୭।। ଜ୍ଞାନ ବିଜ୍ଞାନଯୁକ୍ତ ଯେଉଁ ଖାରା କଥା ମୁଁ କହିଲି, ତାହା ଜାଣିଥିବା ବିଦ୍ୱାନ୍ ବ୍ୟକ୍ତି କାହାର ନିନ୍ଦା କରେ ନାହିଁ ବା କାହାର ପ୍ରଶଂସା କରେ ନାହିଁ । ସେ ସୂର୍ଯ୍ୟପରି ସମଦର୍ଶୀ ଭାବରେ ସଂସାରରେ ବିଚରଣକରେ ।।୮।। ପ୍ରତ୍ୟକ୍ଷ, ଅନୁମାନ, ଶାସ୍ତ୍ର ଓ ନିଜର ଅନୁଭୂତି ଦ୍ୱାରା ଏହା ସିଦ୍ଧ ହୋଇଛି ଯେ ଏହି ଜଗତର ସୃଷ୍ଟି ଅଛି ଓ ବିନାଶ ଅଛି; ତେଣୁ ଏହା ଅନିତ୍ୟ ଓ ଅସତ୍ୟ । ଏହା ଜାଣିଥିବା ବ୍ୟକ୍ତି ସଂସାରରେ ଅନାସକ୍ତ ଭାବରେ ବିଚରଣ କରିବା ଉଚିତ ।।୯।।

ଉଦ୍ଧବ ପଚାରିଲେ, ଭଗବାନ୍, ଜୀବ ହେଉଛି ଦ୍ରଷ୍ଟା ଏବଂ ଦେହ ହେଉଛି ଦୃଶ୍ୟ । ଏହି ଦୃଶ୍ୟମାନ ସଂସାର ଦ୍ରଷ୍ଟାରୂପକ ସଚେତନ ଆତ୍ମାର ନୁହେଁ ଓ ଅଚେତନ ଦେହର ନୁହେଁ; ତାହେଲେ ଏହା କାହାର ବୋଲି ବୁଝିବାକୁ ହେବ ? ।।୧୦।। ଆତ୍ମା ଅବିନାଶୀ, ନିର୍ଗୁଣ, ଶୁଦ୍ଧ, ସ୍ୱୟଂପ୍ରକାଶ ଏବଂ ଆବରଣହୀନ । ଆତ୍ମା ହେଉଛି ଅଗ୍ନିପରି ଏବଂ ଦେହ ଦାରୁତୁଲ୍ୟ ଅଚେତନ । ତାହେଲେ ଏହି ଜନ୍ମ-ମୃତ୍ୟୁ ରୂପକ ସଂସାର ହେଉଛି କାହାର ? ।।୧୧।।

ଭଗବାନ ଶ୍ରୀକୃଷ୍ଣ କହିଲେ, ସଂସାରର ଅସ୍ତିତ୍ୱ ନାହିଁ; ତଥାପି ଦେହ, ଇନ୍ଦ୍ରିୟ ଏବଂ ପ୍ରାଣର ସହିତ ଆତ୍ମାର ସମ୍ବନ୍ଧ ଅଛି ବୋଲି ଭ୍ରାନ୍ତ ଧାରଣାର ବଶବର୍ତ୍ତୀ ହୋଇ ଅବିବେକୀ ପୁରୁଷମାନେ ଏହି ସଂସାରକୁ ଫଳଦାୟକ (ସଂସାରର ଅସ୍ତିତ୍ୱ) ବୋଲି ମନେ କରନ୍ତି । ଯେପରି ସ୍ୱପ୍ନରେ ଅନେକ ବିପଦ ଆସେ, କିନ୍ତୁ ବାସ୍ତବରେ ତାହା ନ ଥାଏ; ତେଣୁ ସ୍ୱପ୍ନ ଭାଙ୍ଗିଗଲେ ତାର ଅସ୍ତିତ୍ୱ ମିଳେ ନାହିଁ, ସେହିପରି ସଂସାରର ଅସ୍ତିତ୍ୱ ନ ଥିଲେ ମଧ୍ୟ ସଂସାର ବିଷୟକୁ ଚିନ୍ତା କରୁଥିବା ବ୍ୟକ୍ତିକୁ ଜନ୍ମ-ମୃତ୍ୟୁରୂପ ସଂସାର ଚକ୍ରରୁ ନିବୃତ୍ତି ମିଳେ ନାହିଁ ॥୧୨-୧୩॥ ନିଦ୍ରିତ ବ୍ୟକ୍ତି ସ୍ୱପ୍ନରେ ବହୁ ଅନର୍ଥ ଦେଖେ ଓ ସେଥିରେ ତାର ମୋହ ଜାତହୁଏ । କିନ୍ତୁ ଜାଗ୍ରତ ହେଲେ ତାର ସେ ସବୁ ଅନର୍ଥ ଓ ମୋହ ରହେ ନାହିଁ । ସେହିପରି ଯେଉଁ ଶୋକ, ହର୍ଷ, ଭୟ, କ୍ରୋଧ, ଲୋଭ,ମୋହ, ସ୍ପୃହା ଓ ଜନ୍ମ-ମୃତ୍ୟୁର ଚକ୍ର -- ଏହା ହେଉଛି ଅହଙ୍କାରର ଦୃଶ୍ୟ । ଆତ୍ମା ସହିତ ଏହାର କୌଣସି ସମ୍ପର୍କ ନ ଥାଏ ॥୧୪-୧୫॥ ଦେହ, ଇନ୍ଦ୍ରିୟ, ପ୍ରାଣ ଓ ମନରେ ସ୍ଥିତ ଆତ୍ମା -- ଯେତେବେଳେ ଏସବୁକୁ ନିଜର ବୋଲି ଅଭିମାନ କରେ, ସେତେବେଳେ ତାର ନାମ ଜୀବ ହୁଏ । ଏହା ହେଉଛି ସୂକ୍ଷ୍ମାତିସୂକ୍ଷ୍ମ ଆତ୍ମାର ମୂର୍ତ୍ତି-ଗୁଣ ଓ କର୍ମଦ୍ୱାରା ନିର୍ମିତ ଲିଙ୍ଗଶରୀର । ଏହାକୁ ସୂତ୍ରାତ୍ମା, ମହତ୍ତତ୍ତ୍ୱ ଆଦି ବହୁନାମରେ କୁହାଯାଇଥାଏ । କାଳସ୍ୱରୂପ ପରମେଶ୍ୱରଙ୍କର ଅଧୀନ ଏହି ଜୀବ ଜନ୍ମ-ମୃତ୍ୟୁରୂପ ସଂସାର ଚକ୍ରରେ ଘୂରିବୁଲୁଥାଏ ॥୧୬॥ ଏହି ସଂସାର ଅମୂଳକ ହେଲେ ମଧ୍ୟ ଅହଙ୍କାରବଶରୁ ମନ, ବାକ୍ୟ, ପ୍ରାଣ ଓ ଶରୀରର ଚେଷ୍ଟାଦ୍ୱାରା ତାହା ବହୁରୂପରେ ପ୍ରକାଶିତ ହୁଏ । ଉପାସନା-ଲବ୍ଧ ଜ୍ଞାନରୂପକ ତୀକ୍ଷ୍ଣ ଖଡ୍ଗ ଦ୍ୱାରା ସେହି ଅହଙ୍କାରକୁ ଛେଦନ କରି ବିତୃଷ୍ଣ ମୁନି ସ୍ୱଚ୍ଛନ୍ଦରେ ପୃଥିବୀ ବିଚରଣ କରନ୍ତି ॥୧୭॥ ଯେଉଁ ବିବେକଦ୍ୱାରା ଆତ୍ମା ଓ ଅନାତ୍ମାର ପାର୍ଥକ୍ୟକୁ ବିବେଚନା କରାଯାଇପାରେ, ତାହାର ନାମ ହେଉଛି ଜ୍ଞାନ । ବେଦ, ତପସ୍ୟା, ପ୍ରତ୍ୟକ୍ଷ ଅନୁଭବ, ଉପଦେଶ ଓ ଅନୁମାନଦ୍ୱାରା ଏହି ଜ୍ଞାନ ଲାଭ କରାଯାଏ । ଏହି ଜ୍ଞାନ ବଳରେ ସୃଷ୍ଟିର ଆରମ୍ଭରେ ଓ ଅନ୍ତରେ ଯେଉଁ କାଳ ଓ କାରଣ ରହିଥାଏ, ମଧ୍ୟରେ ବା ସ୍ଥିତି ସମୟରେ ତାହା ବିଦ୍ୟମାନ ବୋଲି ଉପଲବ୍ଧ ହୁଏ ॥୧୮॥ ସୁନାରେ ଅଳଙ୍କାରମାନ କରାଯାଇ ନାନାରୂପରେ ବ୍ୟବହାର କରାଯାଏ । ପୁଣି ଅଳଙ୍କାର ଭାଙ୍ଗିଗଲେ ସୁନା ହୋଇରହେ । ଯେପରି ପ୍ରଥମରେ ଥିବା ସୁନା ଅଳଙ୍କାର ରୂପରେ ସୁନା ଓ ପରେ ସେହି ସୁନାହୋଇ ରହିଥାଏ, ସେହିପରି ବିଶ୍ୱର ସୃଷ୍ଟି ପୂର୍ବରୁ ମୁଁ, ପ୍ରଳୟ ପରେ ମୁଁ ଏବଂ ମଧ୍ୟରେ ବା ବିଶ୍ୱର ସ୍ଥିତି ସମୟରେ ମୁଁ (ନାନା ନାମ ରୂପରେ) ହିଁ ରହିଥାଏ ॥୧୯॥ ହେ ଉଦ୍ଧବ, ମନର ତିନୋଟି ଅବସ୍ଥା -- ଜାଗରଣ, ସ୍ୱପ୍ନ ଓ ସୁଷୁପ୍ତି । ଏହାର ତିନୋଟି କାରଣ ହେଲା ସତ୍ତ୍ୱ, ରଜ ଓ ତମ--ଏହି ତିନି ଗୁଣ ଏବଂ ଜଗତର ତିନୋଟି ଭେଦ ହେଲା ଅଧ୍ୟାତ୍ମ ବା କାରଣ, ଅଧିଭୂତ ବା କାର୍ଯ୍ୟ, ଅଧିଦୈବ ବା କର୍ତ୍ତା । ଯାହାଙ୍କ ସତ୍ତାଦ୍ୱାରା ଜଗତର ଏହି ତ୍ରିବିଧ ଅବସ୍ଥା ସତ୍ୟବୋଲି ମନେହୁଏ ଏବଂ ସମାଧି ଆଦି ଅବସ୍ଥାରେ ଏହି ତ୍ରିବିଧ ଅବସ୍ଥା ନ ରହିଲେ ମଧ୍ୟ ଯାହାଙ୍କର ସତ୍ତା ଜାଗରୂକ ଥାଏ, ତାହା ହେଉଛି ତୁରିୟତତ୍ତ୍ୱ, ନିର୍ଗୁଣ ବ୍ରହ୍ମର ତତ୍ତ୍ୱ ; ଏବଂ ତାହା'ହିଁ ସତ୍ୟ ॥୨୦॥ ଯେଉଁ ପ୍ରକାଶମାନ ବସ୍ତୁ ଉତ୍ପତ୍ତିପୂର୍ବରୁ ନ ଥିଲା, ପ୍ରଳୟ ପରେ ନଥିବ ଏବଂ ମଝିରେ ମଧ୍ୟ ନାହିଁ, ତାହା କେବଳ ନାମ ମାତ୍ର । ଯାହା ଅନ୍ୟଦ୍ୱାରା ଉତ୍ପନ୍ନ ଓ ଅନ୍ୟଦ୍ୱାରା ପ୍ରକାଶିତ, ତାହାର ପୃଥକ୍ ସତ୍ତା ନ ଥାଏ । ତାହା'ହିଁ ମୋର ବିଚାର ॥୨୧॥ ଯେଉଁସବୁ ବସ୍ତୁ ନ ଥିଲେ ମାତ୍ର ଥିବାପରି ଜଣାଯାଉଛି, ତାହାହେଉଛି ବ୍ରହ୍ମାଙ୍କଦ୍ୱାରା ବିକାରମୟ ରଜଗୁଣର ସୃଷ୍ଟି । ବ୍ରହ୍ମ ନିଜେ ସ୍ୱୟଂପ୍ରକାଶ । ସେଥିପାଇଁ ଇନ୍ଦ୍ରିୟ, ପଞ୍ଚତନ୍ମାତ୍ର, ମନ ଓ ପଞ୍ଚମହାଭୂତ ଆଦି ଯେତେ ଯେତେ ଚିତ୍ର-ବିଚିତ୍ର ନାମରୂପ ଅଛି, ସେସବୁ ରୂପରେ ବ୍ରହ୍ମ ହିଁ ପ୍ରତୀତ ହୁଅନ୍ତି । ବିବେକ-ବୁଦ୍ଧିଦ୍ୱାରା ଦେହାଦି ଅଭିମାନ ଦୂର କରି ମହାପୁରୁଷମାନଙ୍କର ଆଶ୍ରୟରେ ଆତ୍ମାବିଷୟକ ସଂଶୟ ମୋଚନ କରିବାକୁ ହେବ । ସମସ୍ତ ବିଷୟବାସନାରୁ ମୁକ୍ତ ହୋଇ ଅନାସକ୍ତ ଭାବରେ ଆତ୍ମାନନ୍ଦରେ ମଜ୍ଜିରହିବ । ତଦ୍ଦ୍ୱାରା ହିଁ ବ୍ରହ୍ମଜ୍ଞାନର ଉଦୟ ଘଟିବ ॥୨୨-୨୩॥ ଦେହ ପାର୍ଥିବ, ତାହା ଆତ୍ମା ନୁହେଁ । ଇନ୍ଦ୍ରିୟ, ଦେବତା, ପ୍ରାଣ, ମନ, ବୁଦ୍ଧି, ଚିତ୍ତ

ଓ ଅହଙ୍କାର--ଏସବୁ ହେଉଛନ୍ତି ଅନ୍ନଦ୍ୱାରା ପୁଷ୍ଟ; ତେଣୁ ଏମାନେ ଆତ୍ମା ନୁହନ୍ତି । ବାୟୁ, ଜଳ, ଅଗ୍ନି, ଆକାଶ, ପୃଥିବୀ ଓ ଶବ୍ଦ ଆଦି ବିଷୟ ଏବଂ ଗୁଣମାନଙ୍କ ସାମ୍ୟାବସ୍ଥା ରୂପ, ପ୍ରକୃତି ମଧ୍ୟ ଆତ୍ମା ନୁହେଁ, କାରଣ ଏମାନେ ଜଡ଼ ।।୨୪।।

ଉଦ୍ଧବ, ଯାହା ନିକଟରେ ମୋର ସ୍ୱରୂପ ନିଃସନ୍ଦେହ ରୂପେ ନିର୍ଣ୍ଣୀତ ହୋଇଛି, ତାହାର ଇନ୍ଦ୍ରିୟମାନେ ସଂଯତ ହେଲେ କିଛି ଲାଭ ନାହିଁ, କିମ୍ବା ଚଞ୍ଚଳ ହେଲେ କିଛି ଦୋଷ ନାହିଁ । ସୂର୍ଯ୍ୟ ମେଘଯୁକ୍ତ ହେଉ ବା ମେଘମୁକ୍ତ ହେଉ, ସେଥିରେ ତାର କିଛି ଯାଏ ଆସେ ନାହିଁ ।।୨୫।। ବାୟୁ, ଅଗ୍ନି, ଜଳ, ପୃଥିବୀ ବା ଋତୁର ଗୁଣରେ ଯେପରି ଆକାଶ ପ୍ରଭାବିତ ହୁଏ ନାହିଁ, ସେହିପରି ଅହଙ୍କାରରୁ ଉଦ୍‌ଭୂତ ଓ ସଂସାରର କାରଣ ସ୍ୱରୂପ ସତ୍ତ୍ୱ, ରଜ ଓ ତମ ଗୁଣ ଅକ୍ଷୟ ପରଂବ୍ରହ୍ମକୁ ଦୂଷିତ କରିପାରେ ନାହିଁ ।।୨୬।। ତଥାପି ଯେ ପର୍ଯ୍ୟନ୍ତ ଦୃଢ଼ ଭଗବତ୍ ଭକ୍ତିଯୋଗଦ୍ୱାରା ମନର ରଜଗୁଣରୂପକ ମଳିନତା ଦୂର ହେବା ପର୍ଯ୍ୟନ୍ତ ମାୟାରଚିତ ଗୁଣମାନଙ୍କ ପ୍ରତି ଆସକ୍ତି ବର୍ଜନକରିବାକୁ ହେବ ।।୨୭।। ମନୁଷ୍ୟମାନଙ୍କର ରୋଗର ଚିକିତ୍ସା ଠିକ୍ ଭାବରେ ନହେଲେ ରୋଗ ଯେପରି ବାରମ୍ବାର ବାହାରେ ଏବଂ ଅତିଶୟ କଷ୍ଟଦିଏ, ସେହିପରି ବାସନାଯୁକ୍ତ ମନର ମଳିନତା ଯେ ପର୍ଯ୍ୟନ୍ତ ଦୂର ନ ହୋଇଛି, ସେ ପର୍ଯ୍ୟନ୍ତ ବିଷୟାସକ୍ତିରେ ବ୍ୟଥିତ ଯୋଗୀ ବାରମ୍ବାର ଯୋଗଭ୍ରଷ୍ଟ ହୁଏ ।।୨୮।। ବେଳେବେଳେ ଦୈବପ୍ରେରଣାରେ ମନୁଷ୍ୟରୂପରେ, ବନ୍ଧୁ ଓ ଶିଷ୍ୟ ଆଦିରୂପରେ ଦୈବ୍ୟ ପ୍ରେରିତ ହୋଇ ନିଜର ପୁତ୍ର, ଶିଷ୍ୟ ଓ ବନ୍ଧୁମାନେ ଯୋଗୀର ବହୁ ବିଘ୍ନ ଘଟାଇଥାନ୍ତି । କିନ୍ତୁ ପୂର୍ବ ଜନ୍ମର ଅଭ୍ୟାସ ଦୃଷ୍ଟିରୁ ଯୋଗୀ ପୁଣି ଯୋଗାଭ୍ୟାସରେ ଲାଗିଯାଏ । ତା'ର କର୍ମରେ ପ୍ରବୃତ୍ତି ରହେ ନାହିଁ ।।୨୯।। ଜୀବ ସଂସ୍କାରବଶରୁ ଜୀବନସାରା କର୍ମ କରୁଥାଏ । ବେଳେବେଳେ କର୍ମ କରିକରି ବିକାରଗ୍ରସ୍ତ ହୁଏ । କିନ୍ତୁ ଜ୍ଞାନୀ ବ୍ୟକ୍ତି ପ୍ରକୃତ ଦେହଧାରଣ କରିଥିଲେ ମଧ୍ୟ କର୍ମଦ୍ୱାରା ବିକୃତ ହୁଏ ନାହିଁ । କାରଣ ଆତ୍ମାନନ୍ଦର ଅନୁଭୂତିଦ୍ୱାରା କାମନାବାସନାପ୍ରତି ତାର ଆଦୌ ସ୍ପୃହା ନ ଥାଏ ।।୩୦।। ପରମାତ୍ମାଙ୍କଠାରେ ଯାହାର ମତି ସ୍ଥିର ରହେ ତାର ଦେହାଦିବୁଦ୍ଧି ରହେ ନାହିଁ । ଯଥା, ସେ ଠିଆ ହୋଇଛି ନା ବସିଛି, ଚାଲୁଛି ନା ଶୋଇଛି, ମଳମୂତ୍ର ତ୍ୟାଗ କରୁଛି ବା ଭୋଜନ କରୁଛି ବା ଅନ୍ୟ କୌଣସି ସ୍ୱାଭାବିକ କର୍ମ କରୁଛି ତାହା ଜାଣିପାରେ ନାହିଁ। ଜ୍ଞାନୀ ବ୍ୟକ୍ତି ଯଦି କେବେ ବାହ୍ୟ ଇନ୍ଦ୍ରିୟମାନଙ୍କର ରୂପ, ରସ ଆଦି ବିଷୟମାନ ଦର୍ଶନ କରେ, ତାହାକୁ ସେ ସତ୍ୟ ବୋଲି ମନେ କରେ ନାହିଁ । ସ୍ୱପ୍ନ-ଦୃଷ୍ଟ ବସ୍ତୁ ପରି ତାହା ପକ୍ଷରେ ସେ ସବୁ ତତ୍‌କ୍ଷଣାତ୍ ଅନ୍ତର୍ହିତ ହୋଇଯାଏ ।।୩୧-୩୨।। ଉଦ୍ଧବ, ଅନେକ ପ୍ରକାର ଗୁଣ ଓ କର୍ମରେ ଯୁକ୍ତ ଦେହ ଓ ଇନ୍ଦ୍ରିୟ ଆଦି ବସ୍ତୁ ଅଜ୍ଞାନତା କାରଣରୁ ଆତ୍ମାଠାରୁ ଅଭିନ୍ନ ବୋଲି ମନେହୁଏ, କିନ୍ତୁ ଆତ୍ମଦୃଷ୍ଟି ଜାତ ହେଲେ ଏହି ଅଜ୍ଞାନଜନିତ କାର୍ଯ୍ୟର ନିବୃତ୍ତି ଘଟେ । କିନ୍ତୁ କୌଣସିରୂପେ ଆତ୍ମାକୁ ଗ୍ରହଣ କରାଯାଇପାରେ ନାହିଁ ବା ତ୍ୟାଗ କରାଯାଇପାରେ ନାହିଁ ।।୩୩।। ଯେପରି ସୂର୍ଯ୍ୟୋଦୟ ମନୁଷ୍ୟର ଚକ୍ଷୁ ଆଗରେ ଥିବା ଅନ୍ଧକାରର ପରଦା ହଟାଇଦିଏ; କିନ୍ତୁ ଚକ୍ଷୁ ପ୍ରଦାନ କରେ ନାହିଁ, ସେହିପରି ମୋର ସ୍ୱରୂପ ସମ୍ପର୍କରେ ଦୃଢ଼ଜ୍ଞାନ ଜାତ ହେଲେ ପୁରୁଷର ବୁଦ୍ଧିରେ ଥିବା ଅଜ୍ଞାନର ଆବରଣ ମାତ୍ର ଦୂର ହୋଇଯାଏ । ଏହି ପରମାତ୍ମା ସ୍ୱୟଂ -- ପ୍ରକାଶ, ଜନ୍ମରହିତ, ଅପରିସୀମ, ଚିତ୍‌ଘନ, ଏକ ଓ ଅଦ୍ୱିତୀୟ, ବାକ୍ୟ ଓ ମନର ଆଗୋଚର, ଯାହାଙ୍କର ପ୍ରେରଣାରେ ବାକ୍ୟ ସ୍ଫୁରିତ ହୁଏ ଓ ପ୍ରାଣବାୟୁ ପ୍ରବାହିତ ହୁଏ ।।୩୪-୩୫।।

ଅଭିନ୍ନ ଆତ୍ମାରେ ଭେଦଜ୍ଞାନ ହେଉଛି ମନର ଭ୍ରମ ଏବଂ ଏହି ଭ୍ରମ ହେଉଛି ଏକ ପ୍ରଧାନ ଆତ୍ମାମୋହ; କାରଣ ଆତ୍ମା ବ୍ୟତୀତ ଏହାର ଅନ୍ୟ କିଛି ଅବଲମ୍ବନ ନାହିଁ ।।୩୬।। ନାମ ଓ ରୂପରଯୋଗୁଁ ପଞ୍ଚଭୂତରୁ ଉଦ୍‌ଭୂତ ଓ ଇନ୍ଦ୍ରିୟମାନଙ୍କର ଗ୍ରାହ୍ୟ ତାହାର ଦ୍ୱିତ୍ୱ ପଣ୍ଡିତମ୍ମନ୍ୟ ବ୍ୟକ୍ତିମାନେ ସତ୍ୟ ବୋଲି ଯୁକ୍ତି କରନ୍ତି; କିନ୍ତୁ ତାହା ଅର୍ଥହୀନ ବାକ୍ୟର ଆଡ଼ମ୍ବର ମାତ୍ର ।।୩୭।। ଯୋଗାଭ୍ୟାସ କରିବା ସମୟରେ ଅପକ୍ୱଯୋଗୀର ଶରୀର ଯଦି ରୋଗ ଆଦି ଉପସର୍ଗଦ୍ୱାରା ପୀଡ଼ିତ ହୁଏ, ତାହେଲେ ତାହାର ଏହିପରି ପ୍ରତିକାର ବ୍ୟବସ୍ଥା କରାଯାଇଛି - ।।୩୮।। ଗରମ ଓ ଥଣ୍ଡା ଆଦିର ପ୍ରତିକାର ଯୋଗଧାରଣାଦ୍ୱାରା, ବାତ ରୋଗ ଆଦି ବାୟୁଧାରଣ ଯୋଗ୍ୟ ଆସନଦ୍ୱାରା ଏବଂ ଗ୍ରହ ଓ ସର୍ପାଦିକୃତ ଉପସର୍ଗ ସବୁ ତପସ୍ୟା, ମନ୍ତ୍ର ଔଷଧଦ୍ୱାରା ନଷ୍ଟ

କରାଯାଇପାରେ ।।୩୯।। ଧୈର୍ଯ୍ୟର ସହିତ ମୋର ଧ୍ୟାନ ଓ ନାମ ସଂକୀର୍ତ୍ତନ ଆଦି ଦ୍ୱାରା କାମ, କ୍ରୋଧ ଆଦି ବିଘ୍ନକୁ ଦୂର କରାଯାଇପାରିବ ଏବଂ ଶ୍ରେଷ୍ଠ ସାଧୁମାନଙ୍କର ସେବାଦ୍ୱାରା ଦମ୍ଭ, ମୋହ ଆଦି ଅଶୁଭ ବସ୍ତୁକୁ ଦୂର କରାଯାଇପାରିବ ।।୪୦।। କେହି କେହି ଧୀର ବ୍ୟକ୍ତି ବୟସ ଥିବାବେଳେ ନାନା ଉପାୟଦ୍ୱାରା ଏହି ଦେହକୁ ସ୍ୱାସ୍ଥ୍ୟବାନ୍ ଓ ଦୀର୍ଘଜୀବୀ କରି ବିଭିନ୍ନ ପ୍ରକାର ସିଦ୍ଧି ଲାଭ ପାଇଁ ଯତ୍ନବାନ୍ ହୁଅନ୍ତି ।।୪୧।। ସାଧୁମାନଙ୍କଦ୍ୱାରା ଆହୃତ ଅନ୍ୟମାନେ ବୃକ୍ଷର ଫଳ ପରି ଏହି ଶରୀର ନାଶଶୀଳ ବୋଲି ବିଚାର କରି ଶରୀରପାଇଁ ଏତେ ପରିଶ୍ରମ କରିବା ନିରର୍ଥକ ବୋଲି ମନେ କରନ୍ତି ।।୪୨।। ଯଦି ଯୋଗଚର୍ଯ୍ୟା ଦ୍ୱାରା ଶରୀର ସୁସ୍ଥ ଓ ଦୀର୍ଘ ସ୍ଥାୟୀ ହୁଏ, ଜ୍ଞାନୀ ବ୍ୟକ୍ତି ସେଥିରେ ସନ୍ତୁଷ୍ଟ ହୁଏ ନାହିଁ; କାରଣ ସେ ତାହା ଛାଡ଼ି ମୋ' ଠାରେ ଏକନିଷ୍ଠ ଶ୍ରଦ୍ଧା ରଖିଥାଏ ।।୪୩।। ଯୋଗୀ ଯଦି ମୋତେ ଆଶ୍ରୟ କରି ଯୋଗଚର୍ଯ୍ୟା କରେ, ତା'ହେଲେ ସେ କୌଣସି ବିଘ୍ନ ଦ୍ୱାରା ବାଧାପ୍ରାପ୍ତ ନ ହୋଇ ସମ୍ପୂର୍ଣ୍ଣ ନିସ୍ପୃହ ଓ ଆତ୍ମାନନ୍ଦରେ ମଗ୍ନ ହୋଇରହେ ।।୪୪।।

## ଊନତ୍ରିଂଶ ଅଧ୍ୟାୟ

# ଭାଗବତ ଧର୍ମ

ଉଦ୍ଧବ ପଚାରିଲେ, ଯେ ନିଜର ମନକୁ ବଶୀଭୂତ କରେ ନାହିଁ, ତା ପକ୍ଷରେ ଯୋଗାଚରଣ ଅତିଶୟ ଦୁଃସାଧ୍ୟ । ତେଣୁ ହେ ଅଚ୍ୟୁତ, ମନୁଷ୍ୟ ଯଦ୍ଦ୍ୱାରା ସହଜରେ ସିଦ୍ଧିଲାଭ କରିପାରିବ, ତାହା ମୋତେ ଉପଦେଶ ଦିଅନ୍ତୁ ।।୧।। ପୁଣ୍ଡରୀକାକ୍ଷ, ବ୍ରହ୍ମରେ ମନୋନିବେଶ କରିବାକୁଯାଇ ଯୋଗୀମାନେ ସମାଧିରେ ଅସମର୍ଥ ହେଲେ ମନକୁ ନିୟନ୍ତ୍ରଣ କରିପାରନ୍ତି ନାହିଁ ଓ ଅବସାଦରେ ବିଷଣ୍ଣ ହୁଅନ୍ତି ।।୨।। କମଳନୟନ, ଏଣୁ ପରମହଂସମାନେ, ଯେଉଁଥିରେ ପ୍ରକୃତ ସୁଖ ଅଛି ସେଥିରେ ନିଶ୍ଚିତ ରହି ଆପଣଙ୍କର ଆନନ୍ଦଦାୟୀ ପାଦପଦ୍ମକୁ ସେବା କରନ୍ତି । ବିଶ୍ୱେଶ୍ୱର, ଆପଣଙ୍କର ଏହି ଭକ୍ତମାନେ ବିଷଣ୍ଣ ହୁଅନ୍ତି ନାହିଁ । କିନ୍ତୁ ଯେଉଁମାନେ ଆତ୍ମାଭିମାନୀ ସେମାନେ ଯୋଗ ଓ କର୍ମରେ ଗର୍ବ ଅନୁଭବ କରି ଆପଣଙ୍କର ମାୟାଦ୍ୱାରା ବିଷାଦଗ୍ରସ୍ତ ହୁଅନ୍ତି ।।୩।। ହେ ଅଚ୍ୟୁତ, ଆପଣ ଅଖିଳ ଜଗତର ବନ୍ଧୁ । ଆପଣଙ୍କର ଏକାନ୍ତ ଶରଣାଗତ ଭକ୍ତମାନଙ୍କର ଯେ ଆପଣ ଅଧୀନ ହୋଇଯାଆନ୍ତି ଏଥିରେ ଆଶ୍ଚର୍ଯ୍ୟ ହେବାର କିଛି ନାହିଁ । କାରଣ ରାମାବତାରରେ ଆପଣ ପ୍ରେମବଶରେ ବାନରମାନଙ୍କ ସହିତ ମିତ୍ରତା କରିଥିଲେ । ଅଥଚ ଆପଣଙ୍କପ୍ରତି ପ୍ରଣତ ବ୍ରହ୍ମାଦି ଲୋକପାଳମାନଙ୍କର କିରୀଟର ଅଗ୍ରଭାଗ ଆପଣଙ୍କ ପାଦପୀଠରେ ଲୁଣ୍ଠିତ ହେଉଥିଲା ।।୪।। ପ୍ରଭୁ, ଆପଣ ସମସ୍ତଙ୍କର ପ୍ରିୟତମ, ସମସ୍ତଙ୍କର ସ୍ୱାମୀ ଓ ଆଶ୍ରିତମାନଙ୍କୁ ସମସ୍ତ ଫଳ ଦାନ କରନ୍ତି; ତାହା ଜାଣି କିଏ ଆପଣଙ୍କୁ ଛାଡ଼ି ଦେଇପାରିବ ? ତୁଚ୍ଛ ଐଶ୍ୱର୍ଯ୍ୟ ଲାଭପାଇଁ କିଏ ବା ଆପଣଙ୍କୁ ଭୁଲିଯାଇପାରିବ ? ଆପଣଙ୍କ ପାଦରେ ସେବା କରୁଥିବା ମୋ'ପରି ଲୋକର କ'ଣ ବା ଅଭାବ ରହିପାରେ ? ।।୫।। ପ୍ରଭୁ, ବାହାରେ ମନ୍ତ୍ରଗୁରୁ ରୂପରେ ଓ ଅନ୍ତରରେ ଅନ୍ତର୍ଯାମୀ ରୂପରେ ବିରାଜମାନ ଆପଣ ଦେହୀମାନଙ୍କର ସମସ୍ତ ବିଷୟବାସନା ଦୂରକରି ନିଜ ରୂପରେ ପ୍ରକଟିତ ହୁଅନ୍ତି । ତେଣୁ ପରମାନନ୍ଦ ଲାଭ କରିଥିବା ବିବେକୀ ପୁରୁଷମାନେ ଆପଣଙ୍କର ଉପକାର ସର୍ବଦା ସ୍ମରଣ କରନ୍ତି । ହେଲେ ମଧ୍ୟ ବ୍ରହ୍ମାଙ୍କ ପରି ଆୟୁ ଲାଭକରି ବି ସେମାନେ ଆପଣଙ୍କର ଋଣକୁ ପରିଶୋଧ କରିପାରନ୍ତି ନାହିଁ ।।୬।।

ଶ୍ରୀ ଶୁକଦେବ କହିଲେ, ନିଜର ଅନୁରକ୍ତ ଭକ୍ତ ଏହିପରି କହିବାରୁ ଯେ ନିଜ ଶକ୍ତିରେ ବ୍ରହ୍ମା, ବିଷ୍ଣୁ ଓ ରୁଦ୍ର -- ଏହି ତିନିମୂର୍ତ୍ତି ଧାରଣ କରିଥା'ନ୍ତି, ଏହି ଜଗତ୍ ଯାହାର କ୍ରୀଡ଼ନକ ସେହି ପରମେଶ୍ୱର ଭଗବାନ୍ ଶ୍ରୀକୃଷ୍ଣ ସୁନ୍ଦର ପ୍ରେମପୂର୍ଣ୍ଣ ମନ୍ଦ ହାସ୍ୟଦ୍ୱାରା ଉତ୍ତର ଦେଲେ ।।୭।। ବତ୍ସ ଉଦ୍ଧବ, ଶ୍ରଦ୍ଧାର ସହିତ ଯେଉଁ ଧର୍ମର ଆଚରଣ କରି ମରଣଶୀଳ ବ୍ୟକ୍ତି ଦୁର୍ଜୟ

ମୃତ୍ୟୁକୁ ଜୟ କରିପାରେ, ମୋର ସେହି ମଙ୍ଗଳଦାୟକ ଧର୍ମ ସମ୍ପର୍କରେ ବର୍ତ୍ତମାନ ତୁମକୁ କହିବାକୁ ଯାଉଛି- ॥୮॥ ମନ ଓ ବୁଦ୍ଧିକୁ ମୋ'ଠାରେ ଅର୍ପଣ କଲେ ନିଜର ଆତ୍ମା ଓ ମନରେ ମୋର ଧର୍ମ ପ୍ରତି ପ୍ରୀତି ଜାତ ହେବ ଏବଂ ମନରେ କୌଣସି ଉଦ୍‌ବେଗ ନ ରଖି ମୋତେ ମନେପକାଇ ମୋପାଇଁ କରୁଛ ବୋଲି ଭାବି ସମସ୍ତ କର୍ମ କରିଯିବ । ମୋର ଭକ୍ତ ସାଧୁମାନେ ଯେଉଁ ଦେଶରେ ବାସ କରନ୍ତି, ସେହି ପବିତ୍ର ଦେଶରେ ବାସ କରିବ ଏବଂ ଦେବାସୁର, ମନୁଷ୍ୟମାନଙ୍କ ମଧ୍ୟରେ ଯେଉଁମାନେ ମୋର ପରମଭକ୍ତ ସେମାନଙ୍କର ଆଚରଣ ଅନୁସରଣ କରିବ ॥୯-୧୦॥ ପୃଥକ୍ ଭାବରେ କିମ୍ବା ମିଳିତ ଭାବରେ ବିପୁଳ ସମ୍ଭାରଦ୍ୱାରା ମୋର ପର୍ବ, ଯାତ୍ରା ଆଦି ମହୋତ୍ସବମାନଙ୍କୁ ନୃତ୍ୟ, ଗୀତ ଓ ବାଦ୍ୟ ସହକାରେ ଅନୁଷ୍ଠିତ କରାଇବ ॥୧୧॥ ସମସ୍ତ ପ୍ରାଣୀଙ୍କର ଭିତରେ ଓ ବାହାରେ ସର୍ବବ୍ୟାପୀ ଆକାଶପରି ମୁଁ ଯେ ବିରାଜମାନ, ତାହା ଦର୍ଶନ କରିବ । ଏହିପରି ଶୁଦ୍ଧ ହୃଦୟରେ ନିଜ ଅନ୍ତଃକରଣରେ ଓ ଅନ୍ୟମାନଙ୍କ ମଧ୍ୟରେ ମୋର ସ୍ଥିତିକୁ ଅନୁଭବକରିବ ॥୧୨॥ ପ୍ରାଜ୍ଞ ଉଦ୍ଧବ, ଜ୍ଞାନ ଦୃଷ୍ଟିରେ ସମସ୍ତ ପ୍ରାଣୀ ଓ ବସ୍ତୁ ମଧ୍ୟରେ ଯେ ମୋତେ ଦର୍ଶନ କରେ ଓ ସେହିପରି ରୂପରେ ମୋତେ ଆରାଧନା କରେ, ବ୍ରାହ୍ମଣ, ଚାଣ୍ଡାଳ, ତସ୍କର, ସୂର୍ଯ୍ୟ, ଅଗ୍ନି, କୁଟିଳ ଓ ସରଳ -- ଏ ସମସ୍ତଙ୍କୁ ସମାନ ଦୃଷ୍ଟିରେ ଦେଖେ, ସେ ହେଉଛି ପ୍ରକୃତ ପଣ୍ଡିତ । ଏହା ମୋର ମତ ବୋଲି ଜାଣ ॥୧୩-୧୪॥ ଯେଉଁ ବ୍ୟକ୍ତି ସମସ୍ତ ପ୍ରାଣୀଙ୍କ ମଧ୍ୟରେ ମୁଁ ଅଛି ବୋଲି ନିରନ୍ତର ଚିନ୍ତାକରେ, ଅହଙ୍କାର, ସ୍ପର୍ଦ୍ଧା, ଅସୂୟା ଓ ଆକ୍ରୋଶ ଆଦି ଦୋଷ ତାହାର ଶୀଘ୍ର ନଷ୍ଟ ହୋଇଯାଏ । ସ୍ୱଜନମାନଙ୍କର ଉପହାସ, ଉଚ୍ଚ, ନୀଚ ବିଚାର ଏବଂ ସେଥିଯୋଗୁଁ ଜାତ ଲଜ୍ଜା ଆଦିକୁ ଉପେକ୍ଷା କରି କୁକୁର, ଚାଣ୍ଡାଳ, ଗୋରୁ ଓ ଗଧଙ୍କପର୍ଯ୍ୟନ୍ତ ସମସ୍ତ ପ୍ରାଣୀଙ୍କୁ ଦଣ୍ଡ ପ୍ରଣାମ କରେ ॥୧୫-୧୬॥ ସମସ୍ତ ପ୍ରାଣୀଙ୍କ ମଧ୍ୟରେ ମୁଁ ଅଛିବୋଲି ଭାବନା ଜାତ ହେବା ପର୍ଯ୍ୟନ୍ତ କାୟମନୋବାକ୍ୟରେ ଏହିପରି ମୋର ଉପାସନା କରିବା ଉଚିତ । ଏହିପରି କାର୍ଯ୍ୟକଲେ ସମସ୍ତ ଜଗତ୍ ବ୍ରହ୍ମମୟ ଓ ସର୍ବତ୍ର ଈଶ୍ୱର ବିଦ୍ୟମାନ ଏହି ଜ୍ଞାନଲାଭ ହୁଏ ଏବଂ ସମସ୍ତ ସଂଶୟ ଦୂରହୋଇ ସଂସାର କ୍ରିୟାରୁ ନିବୃତ୍ତି ମିଳେ॥୧୭-୧୮॥ କାୟମନୋବାକ୍ୟରେ ସମସ୍ତ ପ୍ରାଣୀଙ୍କ ମଧ୍ୟରେ ମୋର ଭାବନା ସୃଷ୍ଟି -- ସମସ୍ତ ଉପାୟଠାରୁ ଶ୍ରେଷ୍ଠ ଓ ସମୀଚୀନ ବୋଲି ମୁଁ ମନେକରେ ॥୧୯॥

ବତ୍ସ ଉଦ୍ଧବ, ମୋର ଏହି ଭାଗବତଧର୍ମର ଆଚରଣ କେହି ଥରେ ଆରମ୍ଭ କଲେ କୌଣସି ବିକାର ବା ବାଧାବିଘ୍ନ ତାର ଲେଶମାତ୍ର କ୍ଷତି କରିପାରନ୍ତି ନାହିଁ । କାରଣ ଏହି ନିଷ୍କାମ ଓ ନିର୍ଗୁଣ ଧର୍ମକୁ ମୁଁ ଶ୍ରେଷ୍ଠ ବୋଲି ନିଶ୍ଚିତ କରିଛି । ସାଧୁ ଉଦ୍ଧବ, ଭୟ ଏବଂ ଶୋକରେ ଯେଉଁ ଶ୍ରମ କରାଯାଏ ତାହା ନିରର୍ଥକ । କିନ୍ତୁ ନିଷ୍କାମ ଭାବରେ ମୋଠାରେ ତାହା ଅର୍ପଣ କଲେ ତାହା ଧର୍ମ ହୋଇଯାଏ ॥୨୦-୨୧॥ ଏହି ବିନାଶଶୀଳ ଅସତ୍ୟ ଦେହରେ ମୃତ୍ୟୁହୀନ ସତ୍ୟସ୍ୱରୂପ ମୋତେ ଲାଭ କରିବା ହେଉଛି ବିବେକୀ ବ୍ୟକ୍ତିର ବୁଦ୍ଧି ଓ ଚତୁରତାର ପ୍ରମାଣ ॥୨୨॥ ଦେବତାମାନଙ୍କର ଦୁର୍ଲଭ ବ୍ରହ୍ମତତ୍ତ୍ୱର ସାରକଥା ମୁଁ ସଂକ୍ଷେପରେ ଓ ବିସ୍ତାରିତ ଭାବରେ ତୁମ ଆଗରେ ବର୍ଣ୍ଣନା କଲି । ଏହି ସ୍ପଷ୍ଟ ଯୁକ୍ତିସମ୍ମତ ଜ୍ଞାନଲାଭଦ୍ୱାରା ପୁରୁଷ ସଂଶୟମୁକ୍ତ ହୋଇ ମୁକ୍ତିଲାଭ କରେ ॥୨୩-୨୪॥ ମୁଁ ତୁମ ପ୍ରଶ୍ନର ଉତ୍ତର ଦେଇଦେଲି । ଯେଉଁ ପୁରୁଷ ଏହି ଉତ୍ତରକୁ ଚିତ୍ତରେ ଧାରଣ କରେ, ସେ ବେଦରେ କଥିତ ଗୂଢ଼ ସନାତନ ପରଂବ୍ରହ୍ମଙ୍କୁ ଲାଭ କରେ ॥୨୫॥ ମୋର ଭକ୍ତମାନଙ୍କ ମଧ୍ୟରେ ଯେଉଁ ବ୍ୟକ୍ତି ଏହାକୁ ସମ୍ୟକ୍ ଭାବରେ ବୁଝାଇଦିଏ, ମୁଁ ନିଜକୁ ସେହି ବ୍ୟକ୍ତି ପାଖରେ ଅର୍ପଣ କରେ । ଯେ ଏହି ପବିତ୍ର ଓ ଚିତ୍ତଶୁଦ୍ଧିକର ଉପାଖ୍ୟାନକୁ ଉଚ୍ଚସ୍ୱରରେ ପାଠକରେ, ସେ ଅନ୍ୟମାନଙ୍କୁ ଜ୍ଞାନଦୀପ ଦେଖାଇ ଅହରହ ଶୁଦ୍ଧ ହୋଇଯାଏ ॥୨୬-୨୭॥ ଯେଉଁ ବ୍ୟକ୍ତି ଏକାଗ୍ର ଚିତ୍ତରେ ଶ୍ରଦ୍ଧାର ସହିତ ଏହାକୁ ନିତ୍ୟ ଶ୍ରବଣ କରେ, ମୋଠାରେ ତା'ର ପରମଭକ୍ତି ଜାତହୁଏ ଏବଂ ସେ ଆଉ କର୍ମ ବନ୍ଧନରେ ପଡ଼େ ନାହିଁ । ସଖା ଉଦ୍ଧବ, ତୁମେ ମୋର ବର୍ଣ୍ଣିତ ଏହି ବ୍ରହ୍ମତତ୍ତ୍ୱକୁ ବୁଝିପାରୁଛ ତ ? ତୁମର ମୋହ ଓ ତୁମର ମନରେ ଥିବା ସନ୍ଦେହ ଦୂର ହୋଇଛି ତ ? ॥୨୮-୨୯॥ ଯେଉଁ ବ୍ୟକ୍ତି ଦାମ୍ଭିକ, ନାସ୍ତିକ, ଶଠ, ଶ୍ରଦ୍ଧାହୀନ,

ଦୁର୍ବିନୀତ ଏବଂ ଭକ୍ତିହୀନ -- ସେପରି ବ୍ୟକ୍ତିଙ୍କୁ ତୁମେ ଏହି ଧର୍ମୋପଦେଶ ଦେବ ନାହିଁ । ଯେଉଁମାନେ ଏହିସବୁ ଦୋଷରୁ ମୁକ୍ତ, ସାଧୁ, ଶୁଦ୍ଧ ଓ ଭଗବତ୍‌ପ୍ରିୟ ସେମାନଙ୍କୁ ଏହା ପ୍ରଦାନ କରିବ । ଶୂଦ୍ର ଓ ସ୍ତ୍ରୀମାନଙ୍କ ମଧ୍ୟରେ ଯେଉଁମାନଙ୍କର ମୋ'ପ୍ରତି ଭକ୍ତି ଥିବ, ସେମାନଙ୍କୁ ମଧ୍ୟ ତୁମେ କହିପାରିବ ।।୩୦-୩୧।। ସୁସ୍ୱାଦୁ ଅମୃତ ପାନପରେ ଯେପରି ଅନ୍ୟକିଛି ପାନ କରିବାପାଇଁ ଇଚ୍ଛା ହୁଏ ନାହିଁ, ସେହିପରି ଏହି ତତ୍ତ୍ୱ ଜାଣିବାପରେ ଜିଜ୍ଞାସୁର ଅନ୍ୟ କିଛି ଜ୍ଞାତବ୍ୟ ବିଷୟ ରହେନାହିଁ । ଉଦ୍ଧବ, ଜ୍ଞାନ, କର୍ମ, ଯୋଗ, କୃଷି ବାଣିଜ୍ୟ ଆଦି ବୃତ୍ତି ଓ ଦଣ୍ଡନୀତି, ଲୋକମାନଙ୍କର ଯାହା କିଛି ପ୍ରୟୋଜନ, ମୁଁ ହେଉଛି ତୁମପାଇଁ ସେହି ଚତୁର୍ବିଧ ପୁରୁଷାର୍ଥ ।।୩୨-୩୩।। ଯେଉଁ ବ୍ୟକ୍ତି ସମସ୍ତ କର୍ମ ତ୍ୟାଗ କରି ମୋଠାରେ ନିଜକୁ ସମର୍ପଣ କରେ, ସେ ବିଶେଷ କର୍ମ କରିବାପାଇଁ ମୋର ପ୍ରିୟ ହୋଇଯାଏ ଏବଂ ମୋକ୍ଷ ପ୍ରାପ୍ତ ହୋଇ ମୋ ସହିତ ଏକ ହୋଇଯିବାର ଯୋଗ୍ୟତା ଲାଭକରେ ।।୩୪।।

ଶୁକଦେବ କହିଲେ, ଏହିପରି ଯୋଗମାର୍ଗର ଉପଦେଶ ଲାଭକରି ପୁଣ୍ୟଶ୍ଳୋକ ଶ୍ରୀକୃଷ୍ଣଙ୍କର ବାକ୍ୟ ଶ୍ରବଣ ଦ୍ୱାରା ପ୍ରେମରେ ଉଦ୍ଧବଙ୍କର କଣ୍ଠ ବାଷ୍ପରୁଦ୍ଧ ହୋଇଗଲା । ସେ ହାତଯୋଡ଼ି କିଛି କହିବାକୁ ଚେଷ୍ଟାକଲେ ମଧ୍ୟ କହିପାରିଲେ ନାହିଁ । ପ୍ରେମାବେଗରେ ତାଙ୍କର ଚିତ୍ତ ବିହ୍ୱଳ ହୋଇଗଲା । ସେ ଧୈର୍ଯ୍ୟଦ୍ୱାରା ନିଜକୁ ସମ୍ଭାଳିନେଇ ମସ୍ତକ ଦ୍ୱାରା ଯଦୁବଂଶ ଶିରୋମଣି ଭଗବାନ ଶ୍ରୀକୃଷ୍ଣଙ୍କର ପାଦ ସ୍ପର୍ଶ କଲେ ଓ ନିଜକୁ କୃତାର୍ଥ ମନେକରି କହିବାକୁ ଲାଗିଲେ-- ।।୩୫-୩୬।। ଉଦ୍ଧବ କହିଲେ, ହେ ବ୍ରହ୍ମାଣ୍ଡର ଜନକ, ମୋହମୟ ଅନ୍ଧକାରକୁ ମୁଁ ଆଶ୍ରୟ କରି ରହିଛି । ଅଗ୍ନିର ପାଖରେ ଯେପରି ଶୀତ ଓ ଅନ୍ଧକାରର ଭୟ ରହେ ନାହିଁ, ସେହିପରି ଆପଣଙ୍କ ସାନ୍ନିଧ୍ୟ ଦ୍ୱାରା ମୋର ମୋହରୂପକ ଅନ୍ଧକାର ଦୂରହୋଇଗଲା ।।୩୭।। ମୁଁ ଆପଣଙ୍କର ଦାସ । ଆପଣ ନିଜ ମାୟାରେ ମୋର ବିଜ୍ଞାନମୟ ପ୍ରଦୀପକୁ ଅପହରଣ କରିନେଇଥିଲେ ତାହା ଦୟାପୂର୍ବକ ଫେରାଇଦେଇଛନ୍ତି । ତେଣୁ କେଉଁ କୃତଜ୍ଞ ବ୍ୟକ୍ତି ଆପଣଙ୍କର ପାଦମୂଳକୁ ପରିତ୍ୟାଗ କରି ଅନ୍ୟର ଶରଣାପନ୍ନ ହେବ ? ।।୩୮।। ସୃଷ୍ଟିର ବିସ୍ତାର କରିବାପାଇଁ ଆପଣ ନିଜ ମାୟାରେ ଦାଶାର୍ହ, ବୃଷ୍ଣି, ଅନ୍ଧକ ଓ ସାତ୍ୱତବଂଶୀୟ ଯାଦବମାନଙ୍କ ସହିତ ଯେଉଁ ସୁଦୃଢ଼ ସ୍ନେହପାଶରେ ମୋତେ ବାନ୍ଧିଦେଇଥିଲେ, ବର୍ତ୍ତମାନ ଆପଣଙ୍କର ଦତ୍ତ ଆତ୍ମଜ୍ଞାନରୂପକ ଶସ୍ତ୍ରଦ୍ୱାରା ତାହା ଛିନ୍ନ ହୋଇଗଲା ।।୩୯।। ହେ ମହାଯୋଗୀ, ଆପଣଙ୍କୁ ନମସ୍କାର । ଯେପରି ଆପଣଙ୍କ ପାଦପଦ୍ମରେ ମୋର ଅଚଳାଭକ୍ତି ରହିବ, ମୁଁ ଆପଣଙ୍କର ଶରଣାପନ୍ନ, ଆପଣ ମୋତେ ସେହି ଶିକ୍ଷା ପ୍ରଦାନ କରନ୍ତୁ ।।୪୦।।

ଭଗବାନ୍ ଶ୍ରୀକୃଷ୍ଣ କହିଲେ, ଉଦ୍ଧବ, ମୋର ଆଦେଶରେ ତୁମେ ମୋର ବଦରିକାଶ୍ରମକୁ ଯାତ୍ରାକର ଏବଂ ମୋର ପାଦଧୂଳିଦ୍ୱାରା ପବିତ୍ର ହୋଇଥିବା ସେଠାରେ ଗଙ୍ଗାର ତୀର୍ଥ ଜଳରେ ସ୍ନାନ ଓ ଆଚମନ କରି ପବିତ୍ର ହୁଅ ।।୪୧।। ଉଦ୍ଧବ, ବଦରିକାଶ୍ରମରେ ଅଳକାନନ୍ଦା ଦର୍ଶନଦ୍ୱାରା ସମସ୍ତ ପାପ ଦୂରୀଭୂତ ହୁଏ । କୌଣସି ବସ୍ତୁରେ ସ୍ପୃହା ନ ରଖି ବୃକ୍ଷର ବଲ୍‌କଳ ପରିଧାନ କର ଓ ବଣ୍ୟ ଫଳମୂଳ ଭକ୍ଷଣ କର । ତଦ୍ୱାରା ଶୀତୋଷ୍ଣ, ସୁଖଦୁଃଖ ଆଦି ଦ୍ୱନ୍ଦ୍ୱରେ ତୁମର ସହିଷ୍ଣୁତା ଜାତ ହେବ । ତୁମେ ସୁଶୀଳ, ଜିତେନ୍ଦ୍ରିୟ ଓ ଶାନ୍ତ ହୋଇଯିବ ଏବଂ ଜ୍ଞାନ ବିଜ୍ଞାନରେ ଯୁକ୍ତ ହୋଇ ମୋଠାରୁ ଯେଉଁ ସବୁ ଶିକ୍ଷା ଲାଭ କଲ, ତାହା ସୁବିଚାରରେ ଗ୍ରହଣ କରିବାକୁ ସମର୍ଥ ହେବ ଏବଂ ମୋଠାରେ ବାକ୍ୟ ଓ ମନ ନିବେଶ କରି ମୋର ଭକ୍ତି-ଧର୍ମରେ ଅନୁରକ୍ତ ହେବ । ତା'ପରେ ସତ୍ତ୍ୱାଦି ତ୍ରିଗୁଣକୁ ଅତିକ୍ରମକରି ମୋତେ ଲାଭକରିବ ।।୪୨-୪୪।।

ଶ୍ରୀ ଶୁକଦେବ କହିଲେ, ଯାହାଙ୍କୁ ସ୍ମରଣ କଲେ ସଂସାର-ପାଶ ଛିନ୍ନ ହୋଇଯାଏ, ସେହି କୃଷ୍ଣଙ୍କର ଉପଦେଶ ଲାଭ କରି ଉଦ୍ଧବ ତାଙ୍କୁ ପ୍ରଦକ୍ଷିଣ କଲେ ଏବଂ ତାଙ୍କର ପାଦଯୁଗଳରେ ନିଜର ମସ୍ତକ ନ୍ୟସ୍ତକଲେ । ଉଦ୍ଧବଙ୍କର ହୃଦୟ ପ୍ରେମରେ ଆଦ୍ର ହୋଇଯାଇଥିଲା । ତାହା ବାହାରେ ଅଶ୍ରୁକଣା ରୂପେ ପଡ଼ି ତାଙ୍କର ଦେହକୁ ଓଦା କରିଦେଲା । ସେ ନିର୍ଦ୍ୱନ୍ଦ୍ୱ ହୋଇ ସେଠାରୁ ଯିବାପାଇଁ ଉପକ୍ରମ କଲେ । କିନ୍ତୁ କୃଷ୍ଣଙ୍କର ସ୍ନେହକୁ ସହଜରେ ଛାଡ଼ିବା ସମ୍ଭବ ନୁହେଁ । ତାହା ଛାଡ଼ିବାପାଇଁ ଅସମର୍ଥ ହୋଇ କାତର ଉଦ୍ଧବ କୃଷ୍ଣଙ୍କର ପାଦୁକା ଦୁଇଟିକୁ ମୁଣ୍ଡରେ ଧାରଣକଲେ ଏବଂ ଶ୍ରୀକୃଷ୍ଣଙ୍କୁ ବାରମ୍ବାର ନମସ୍କାର କରି

ସେଠାରୁ କଷ୍ଟରେ ପ୍ରସ୍ଥାନ କଲେ ।।୪୫-୪୬।। ଏହାପରେ ମହାଭକ୍ତ ଉଦ୍ଧବ ଭଗବାନ ଶ୍ରୀକୃଷ୍ଣଙ୍କୁ ହୃଦୟରେ ସ୍ଥାପନ କଲେ ଏବଂ ଜଗତର ଏକମାତ୍ର ବନ୍ଧୁଙ୍କର ଉପଦେଶକୁ ଗ୍ରହଣ କରି ବଦରିକାଶ୍ରମରେ ପହଞ୍ଚିଲେ ଏବଂ ସେଠାରେ ତପସ୍ୟା କରି ଶ୍ରୀହରିଙ୍କର ପରମଗତି ଲାଭକଲେ ।।୪୭।। ଯୋଗେଶ୍ୱରମାନେ ଯାହାଙ୍କର ଚରଣଯୁଗଳର ସେବା କରନ୍ତି, ସେହି କୃଷ୍ଣ ଭକ୍ତ ଉଦ୍ଧବଙ୍କୁ ଯେଉଁ ଜ୍ଞାନାମୃତର ଉପଦେଶ ଦେଇଥିଲେ, ଆନନ୍ଦ ସମୁଦ୍ରରୁ ଜାତ ସେହି ଜ୍ଞାନରୂପକ ଅମୃତକୁ ଯେ ଶ୍ରଦ୍ଧାର ସହିତ ସେବନକରେ ସେ ନିଜେ ମୁକ୍ତ ହୁଏ ଏବଂ ତା'ର ସଂସର୍ଗରେ ଆସି ଜଗତ ମଧ୍ୟ ମୁକ୍ତ ହୋଇଯାଏ ।।୪୮।। ଯେ ବେଦର ନିୟାମକ, ଯେ ଭବଭୟ ହରଣ ପାଇଁ ପୁଷ୍ପରୁ ସାର ସଂଗ୍ରହ କରୁଥିବା ଭ୍ରମର ପରି ଜ୍ଞାନବିଜ୍ଞାନର ସାର ବେଦର ତତ୍ତ୍ୱକୁ ସଙ୍କଳନ କରିଥିଲେ ଏବଂ ଯେ ସମୁଦ୍ରରୁ ସାରସ୍ୱରୂପ ଅମୃତକୁ ଆଣି ନିଜର ଅନୁଗତ ଦେବତାମାନଙ୍କୁ ପାନ କରାଇଥିଲେ, ସେହି ପୁରୁଷଶ୍ରେଷ୍ଠ କୃଷ୍ଣନାମକ ଆଦିପୁରୁଷଙ୍କୁ ମୁଁ ନମସ୍କାର କରୁଛି ।।୪୯।।

## ତ୍ରିଂଶ ଅଧ୍ୟାୟ

# ଯଦୁବଂଶ ଧ୍ୱଂସ

ରାଜା ପରିକ୍ଷିତ କହିଲେ, ମହାଭାଗବତ ଉଦ୍ଧବ ବନକୁ ଚାଲିଯିବା ପରେ ପ୍ରାଣୀମାନଙ୍କ ପାଳକ ଭଗବାନ୍ ଶ୍ରୀକୃଷ୍ଣ ଦ୍ୱାରକାରେ କ'ଣ କ'ଣ କଲେ ? ନିଜର ବଂଶ ବ୍ରହ୍ମଶାପଗ୍ରସ୍ତ ହୁଅନ୍ତେ ଭଗବାନ୍ ଶ୍ରୀକୃଷ୍ଣ ସମସ୍ତଙ୍କ ଚକ୍ଷୁର ପ୍ରିୟତମ ନିଜର ତନୁକୁ କିପରି ତ୍ୟାଗ କଲେ ? ।।୧-୨।। ଯାହାଙ୍କ ରୂପରେ ମୁଗ୍ଧ ହୋଇ ଅବଳାମାନେ ସେମାନଙ୍କର ଦୃଷ୍ଟି ଫେରାଇ ପାରନ୍ତି ନାହିଁ, ଯାହାଙ୍କର ଲୀଳାମୃତ କଥା ଭକ୍ତ ସାଧୁମାନଙ୍କର ଶ୍ରବଣ ପଥରେ ପ୍ରବେଶ କରି ହୃଦୟରେ ଲେଖା ହୋଇରହେ, ଯାହାଙ୍କର ରୂପ ଲାବଣ୍ୟ କବିମାନଙ୍କ ଦ୍ୱାରା କୀର୍ତ୍ତିତ ହୋଇ ସେମାନଙ୍କର କାବ୍ୟ ପ୍ରତି ବିଶେଷ ପ୍ରୀତି ଜନ୍ମାଇ ଥାଏ, ଅର୍ଜୁନଙ୍କ ସାରଥିରୂପରେ ତାହାଙ୍କ ରଥରେ ଉପବିଷ୍ଟ ଯେଉଁ କୃଷ୍ଣଙ୍କର ରୂପ ଦର୍ଶନକରି ଯୁଦ୍ଧରେ ମୃତ ବ୍ୟକ୍ତିମାନେ ସାରୂପ୍ୟ ମୁକ୍ତି ଲାଭ କରିଥିଲେ, ସେ କିପରି ଭାବରେ ତନୁ ତ୍ୟାଗ କଲେ ? ।।୩।। ଶ୍ରୀ ଶୁକଦେବ କହିଲେ, ଆକାଶରେ, ଭୂତଳରେ ଓ ଅନ୍ତରୀକ୍ଷରେ ସମୁତ୍ଥିତ ମହା ଉତ୍ପାତମାନଙ୍କୁ ଦେଖି କୃଷ୍ଣ ସୁଧର୍ମାସଭାରେ ଆସୀନ ଯାଦବମାନଙ୍କୁ ଏହିପରି କହିଲେ-- ।।୪।। ଯମର ପତାକାମାନଙ୍କପରି ଦ୍ୱାରାବତୀରେ ଏଇ ଭୟଙ୍କର ଉତ୍ପାତମାନ ଦେଖାଦେଲାଣି । ଯାଦବମୁଖ୍ୟମାନେ, ଏଠାରେ ମୁହୂର୍ତ୍ତେ ମଧ୍ୟ ଆମର ଆଉ ରହିବା ଉଚିତ ନୁହେଁ । ସ୍ତ୍ରୀ, ବାଳକ ଓ ବୃଦ୍ଧମାନେ ଏଠାରୁ ଶଙ୍ଖୋଦ୍ଧାର କ୍ଷେତ୍ରକୁ ଯାତ୍ରା କରନ୍ତୁ । ତା'ପରେ ଆମେମାନେ ପ୍ରଭାସ କ୍ଷେତ୍ରକୁ ଚାଲିଯିବା, ଯେଉଁଠି ସରସ୍ୱତୀ ନଦୀ ପଶ୍ଚିମ ଦିଗକୁ ପ୍ରବାହିତ ହେଉଛି । ଆମେମାନେ ସରସ୍ୱତୀ- ଜଳରେ ସ୍ନାନ କରି ପବିତ୍ର ହେବା ଏବଂ ଉପବାସରେ ରହି ସଂଯତ ଚିତ୍ତରେ ସ୍ନାନ କରାଇବା ସାମଗ୍ରୀ, ଆଲେପନ ସାମଗ୍ରୀ ଓ ପୂଜାର ଉପହାରଦ୍ୱାରା ଦେବତାମାନଙ୍କୁ ପୂଜାକରିବା । ଯେଉଁ ମହାଭାଗ ବ୍ରାହ୍ମଣମାନେ ଆମର ସ୍ୱସ୍ତ୍ୟୟନ କରିବେ, ସେମାନଙ୍କୁ ଧେନୁ, ଭୂମି, ସୁବର୍ଣ୍ଣ, ବସ୍ତ୍ର, ଗଜ, ଅଶ୍ୱ, ରଥ ଓ ଗୃହ ଦାନଦ୍ୱାରା ଆମେ ଆପ୍ୟାୟିତ କରିବା । ପ୍ରାଣୀମାନଙ୍କ ପକ୍ଷରେ ଗୋ, ବ୍ରାହ୍ମଣ ଓ ଦେବତାମାନଙ୍କ ପୂଜା ପରମ ମଙ୍ଗଳଦାୟକ । ଏହାଦ୍ୱାରା ସମସ୍ତ ଅରିଷ୍ଟ ଦୂର ହୁଏ ।।୫-୯।। ଯଦୁବୃଦ୍ଧମାନେ ଏହିପରି କୃଷ୍ଣଙ୍କ ବାକ୍ୟ ଶୁଣି ତାଙ୍କ କଥାକୁ ଅଭିନନ୍ଦନ କଲେ ଏବଂ ନୌକାଯୋଗେ ସମୁଦ୍ର ପାର ହୋଇ ରଥଦ୍ୱାରା ପ୍ରଭାସକ୍ଷେତ୍ରକୁ ଯାତ୍ରାକଲେ ।।୧୦।। ସେଠାରେ ପହଞ୍ଚି ଯଦୁମାନଙ୍କର ଦେବତା ଭଗବାନ୍ ଶ୍ରୀକୃଷ୍ଣଙ୍କର ଆଦେଶାନୁରୂପ ଯାଦବମାନେ ପରମଭକ୍ତିରେ ସମସ୍ତ ମାଙ୍ଗଳିକ କାର୍ଯ୍ୟମାନ କଲେ । ଏହାପରେ ଦୈବଦ୍ୱାରା ସେମାନଙ୍କର

ବୁଦ୍ଧିଭ୍ରଂଶ ହେଲା । ଯେଉଁ ମଦିରାଦ୍ୱାରା ବୁଦ୍ଧି ଭ୍ରଷ୍ଟ ହୁଏ ସେହି ମୈରେୟ ନାମକ ମଦିରାକୁ ବହୁପରିମାଣରେ ସେମାନେ ପାନ କରି ଲାଗିଲେ ॥୧୧-୧୨॥ ସେହି ମଦିରାପାନଦ୍ୱାରା ସେମାନେ ଉନ୍ମତ୍ତ ହୋଇପଡ଼ିଲେ । କୃଷ୍ଣମାୟାରେ ବିମୋହିତ ହୋଇ ଗର୍ବିତମନା ଯଦୁବୀରମାନଙ୍କ ମଧ୍ୟରେ ତୁମୁଳ ସଂଘର୍ଷ ହେଲା ॥୧୩॥ ସମୁଦ୍ରବେଳାରେ ସେହି ଆତତାୟୀମାନେ କ୍ରୋଧାବିଷ୍ଟ ହୋଇ ଧନୁ, ଖଡ୍ଗ, ଭଲ୍ଲ, ଗଦା, ତୋମର ଓ ଋଷ୍ଟି ଦ୍ୱାରା ପରସ୍ପର ଲଢ଼ିବାକୁ ଲାଗିଲେ ॥୧୪॥ ଅରଣ୍ୟରେ ହସ୍ତୀମାନେ ଦାନ୍ତରେ ଯେପରି ଆଘାତ କରନ୍ତି, ସେହିପରି ଅତି ଦୁର୍ମଦ ଯାଦବମାନେ ଇତସ୍ତତଃ ଚଳମାନ ପତାକାଯୁକ୍ତ ରଥ, ହାତୀ, ଘୋଡ଼ା, ଖଚର, ଗଧ, ଓଟ,ଗୋରୁ, ମହିଷ ଓ ମଣିଷଙ୍କ ଉପରେ ଆରୋହଣ କରି ପରସ୍ପରକୁ ଆଘାତ କରିବାକୁ ଲାଗିଲେ ॥୧୫॥ ପ୍ରଦ୍ୟୁମ୍ନ-ଶାମ୍ବ, ଅକ୍ରୂର-ଭୋଜ, ଅନିରୁଦ୍ଧ-ସାତ୍ୟକି, ସୁଭଦ୍ର-ସଂଗ୍ରାମଜିତ୍, କୃଷ୍ଣଙ୍କର ସୁଦାରୁଣ ଭାଇ ଗଦ ଓ ପୁଅ ଗଦ, ସୁମିତ୍ର ଓ ଅସୁରଥ ଯୁଦ୍ଧରେ ପରସ୍ପର ମହାକ୍ରୁଦ୍ଧ ହୋଇ ଭେଟାଭେଟି ହେଲେ ଏବଂ ସହସ୍ରଜିତ୍, ଶତଜିତ୍, ନିଶଠ, ଉଲ୍ମୁକ ଓ ଭାନୁ ଆଦି ଅନ୍ୟାନ୍ୟ ପ୍ରଧାନ ବୀର କୃଷ୍ଣଙ୍କଦ୍ୱାରା ଅତ୍ୟନ୍ତ ମୋହିତ ହୋଇ ଏବଂ ମଦାନ୍ଧ ଭାବରେ ପରସ୍ପରକୁ ହତ୍ୟା କରିବାକୁ ଲାଗିଲେ ॥୧୬-୧୭॥ ଦାଶାର୍ହ, ଭୋଜ, ବୃଷ୍ଣି, ଅନ୍ଧକ, ସାତ୍ୱତ, ମଧୁ, ଅର୍ବୁଦ,ମାଥୁର, ଶୂରସେନ, ବିସର୍ଜନ, କୁକୁର, କୁନ୍ତି - ଏହି ସବୁ ବଂଶୀୟ ଓ ଦେଶୀୟ ବୀରମାନେ ନିଜ ନିଜ ବନ୍ଧୁତାକୁ ଭୁଲିଯାଇ (ପରସ୍ପରକୁ ପ୍ରହାର କଲେ) ॥୧୮॥ ଏଇ ମୂଢ଼ମାନେ ବାପ-ପୁଅ, ଭାଇ-ଭାଇ, ମାମୁ-ଭଣଜା, ଅଜା-ନାତି, ସାଙ୍ଗ-ସାଥି, ସୁହୃଦ-ସୁହୃଦ, ଜ୍ଞାତି-ଜ୍ଞାତି ଲଢ଼ିବାକୁ ଲାଗିଲେ ॥୧୯॥

ଯୁଦ୍ଧ କରୁ କରୁ ଯେତେବେଳେ ବାଣସବୁ ଶେଷ ହୋଇଗଲା, ଧନୁ ଯାକ ଭାଙ୍ଗିଗଲା, ଅସ୍ତ୍ରଶସ୍ତ୍ରମାନ ଶେଷ ହୋଇଗଲା, ସେତେବେଳେ ସେମାନେ (ସମୁଦ୍ର କୂଳରେ ଉଠିଥିବା) ଏରକା ନାମକ ତୃଣଗୁଡ଼ିକୁ ମୁଠାଇ ଧରିଲେ ॥୨୦॥ ମୁଠାରେ ଧରିଯାଇଥିବା ସେହି ସବୁ ଏରକା ବଜ୍ରପରି କଠୋର ଲୌହଦଣ୍ଡରେ ପରିଣତ ହୋଇଗଲା । ଶ୍ରୀକୃଷ୍ଣ ଯେତେ ମନା କଲେ ମଧ୍ୟ ସେମାନେ ମାନିଲେ ନାହିଁ ଏବଂ ପରସ୍ପରକୁ ପ୍ରହାର କରି ଲାଗିଲେ । ସେମାନେ କୃଷ୍ଣଙ୍କ ପର୍ଯ୍ୟନ୍ତ ମଧ୍ୟ ମାଡ଼ିଗଲେ ॥୨୧॥ ରାଜା ପରିକ୍ଷିତ, ଆତ୍ମଘାତୀ ମୂଢ଼ ଯାଦବମାନେ ବଳରାମଙ୍କୁ ଶତ୍ରୁ ମନେକରି ତାଙ୍କୁ ମଧ୍ୟ ମାରିବାକୁ ବାହାରିଲେ ॥୨୨॥ କୁରୁନନ୍ଦନ ପରିକ୍ଷିତ, ଅନନ୍ତର କୃଷ୍ଣ ଓ ବଳରାମ ଦୁହେଁ କ୍ରୁଦ୍ଧ ହୋଇ ସେହି ଏରକାରୂପକ ପରିଘ ହାତରେ ଉଠାଇ ସେମାନଙ୍କୁ ବୁଲି ବୁଲି ପ୍ରହାର କଲେ ॥୨୩॥ ବାଉଁଶବଣରେ ଅଗ୍ନି ଜାତ ହେଲେ ତାହା ଯେପରି ସମସ୍ତବନକୁ ପୋଡ଼ିଜାଳି ଭସ୍ମ କରିଦିଏ, ସେହିପରି ବ୍ରହ୍ମଶାପଗ୍ରସ୍ତ ଏବଂ କୃଷ୍ଣଙ୍କ ମାୟାରେ ମୋହିତ ଯାଦବମାନଙ୍କର ସ୍ପର୍ଦ୍ଧା ଜନିତ କ୍ରୋଧ ସେମାନଙ୍କ କୁଳକୁ ଶେଷ କରିଦେଲା ॥୨୪॥ ଏହିପରି ନିଜର ସମସ୍ତ ବଂଶର ବିନାଶ ହେବାରୁ ଭଗବାନ୍ ଶ୍ରୀକୃଷ୍ଣ ମନେକଲେ ଯେ ପୃଥିବୀର ଭାର ଯାହା କିଛି ବାକୀଥିଲା, ତାହାର ମଧ୍ୟ ହରଣ ହୋଇଗଲା ॥୨୫॥ ସମୁଦ୍ରବେଳାରେ ବଳରାମ ପରମପୁରୁଷଙ୍କର ଧ୍ୟାନରୂପକ ଯୋଗରେ ଅବସ୍ଥାନ କରି ଆତ୍ମାରେ ଆତ୍ମାକୁ ସଂଯୋଗ କରାଇ ମାନବଦେହ ତ୍ୟାଗ କଲେ । ବଳରାମଙ୍କର ମହାପ୍ରସ୍ଥାନକୁ ଦେଖି ଦେବକୀନନ୍ଦନ ଭଗବାନ୍ ଶ୍ରୀକୃଷ୍ଣ ଏକ ଅଶ୍ୱତ୍ଥ ବୃକ୍ଷକୁ ଆଉଜି ଭୂମି ଉପରେ ନୀରବ ହୋଇ ବସିଗଲେ । ସେ ଚତୁର୍ଭୁଜ ରୂପ ଧାରଣ କରି ନିଜର ତେଜଦ୍ୱାରା ଦିଗମାନଙ୍କର ଅନ୍ଧକାର ଦୂରକରି ଧୂମହୀନ ଅଗ୍ନିପରି ଶୋଭା ପାଇବାକୁ ଲାଗିଲେ ॥୨୬-୨୮॥ ତାଙ୍କର ବକ୍ଷସ୍ଥଳରେ ଶ୍ରୀବତ୍ସ ଚିହ୍ନ, ବର୍ଷାକାଳୀନ ମେଘପରି ଶ୍ୟାମଳ ଦେହରେ, ତପ୍ତକାଞ୍ଚନ ପରି କାନ୍ତି, ପୀତ ପଟ୍ଟବସ୍ତ୍ର ଓ ଉତ୍ତରୀୟଦ୍ୱାରା ତାଙ୍କର ମଙ୍ଗଳମୟ ରୂପ ଶୋଭାପାଉଥିଲା ॥୨୯॥ ମୁଖପଦ୍ମ, ରକ୍ତାଭ ସୁନ୍ଦର ଓ ଈଷତ୍ ହାସ୍ୟଯୁକ୍ତ, ମସ୍ତକରେ କୃଷ୍ଣ କେଶର ଶୋଭା, ପଦ୍ମତୁଲ୍ୟ କମନୀୟ ଚକ୍ଷୁ, କର୍ଣ୍ଣଦ୍ୱୟରେ ଦୀପ୍ତ ମକରକୁଣ୍ଡଳ, କଟିରେ ମେଖଳା, ସ୍କନ୍ଧଦେଶରେ ଯଜ୍ଞସୂତ୍ର, ମସ୍ତକରେ କିରୀଟ, ବାହୁରେ ବାଜୁବନ୍ଧ, ଗଳାରେ ବନମାଳା, କରରେ କଙ୍କଣ ଏବଂ ଚକ୍ର

ଓ ଗଦା ଆଦି ମୂର୍ତ୍ତିମନ୍ତ ଆୟୁଧମାନ ଶୋଭାପାଉଥିଲା । ସେ ନିଜର ଦକ୍ଷିଣ ଜଙ୍ଘ ଉପରେ ବାମଚରଣ ରଖି ବସିଥିଲେ । ପାଦର ତଳିପା ରକ୍ତପଦ୍ମପରି ଲାଲ ଦେଖାଯାଉଥିଲା ।।୩୦-୩୨।। ମୁଷଳରୁ ଯେଉଁ ଲୁହାଖଣ୍ଡ ଟିକକ ରହିଯାଇଥିଲା, ଜରାନାମକ ଶବର ସେଥିରେ ତାର ବାଣର ମୁନ ପ୍ରସ୍ତୁତ କରିଥିଲା । ସେ ଭଗବାନ କୃଷ୍ଣଙ୍କର ମୃଗମୁଖାକାର ପାଦକୁ ମୃଗର ମୁଖ ବୋଲି ଶଙ୍କାକରି ବାଣବିଦ୍ଧ କଲା ।।୩୩।। ପାଖକୁ ଆସି ସେ ଦେଖିଲା କୃଷ୍ଣଙ୍କର ଚତୁର୍ଭୁଜ ମୂର୍ତ୍ତି । ସେ ଘୋର ପାପ କରିଛି ବୋଲି ଅସୁରାରି କୃଷ୍ଣଙ୍କର ପାଦଯୁଗଳେ ମୁଣ୍ଡ ଛାଟି ପଡ଼ିଗଲା । ସେ କହିଲା, ମଧୁସୂଦନ, ମୁଁ ପାପୀ ଅଜାଣତରେ ଏହି ପାପ କରିଛି । ହେ ଉତ୍ତମଶ୍ଳୋକ, ହେ ନିଷ୍ପାପ, ଆପଣ ମୋ' ସମ ପାପୀକୁ କ୍ଷମା ଦିଅନ୍ତୁ ।।୩୪-୩୫।।

ହେ ପ୍ରଭୁ, ଯାହାଙ୍କ ଅନୁଚିନ୍ତନ ମନୁଷ୍ୟମାନଙ୍କର ଅଜ୍ଞାନଅନ୍ଧକାର ନାଶ କରେ ବୋଲି ପଣ୍ଡିତମାନେ କହନ୍ତି, ସେହି ବିଷ୍ଣୁସ୍ୱରୂପ ଆପଣଙ୍କ ପ୍ରତି ମୁଁ ଅନୁଚିତ କାର୍ଯ୍ୟ କରିଛି । ସେଥିପାଇଁ ହେ ବୈକୁଣ୍ଠ(ବିକୁଣ୍ଠାର ପୁତ୍ର), ମୁଁ ଯେପରି ପୁଣି ସଜ୍ଜନମାନଙ୍କର ଏଇ ପ୍ରକାରେ ଅବଜ୍ଞା ନ କରେ, ମୋ ପରି ମୃଗଲୋଲୁପ ପାପାତ୍ମାକୁ ଶୀଘ୍ର ବଧ କରନ୍ତୁ ।।୩୬-୩୭।। (ବେଦପତି) ବ୍ରହ୍ମା ଓ ତାଙ୍କ ପୁତ୍ର ରୁଦ୍ର ଆଦି ଦେବତାମାନେ ଏବଂ ବେଦର ଦ୍ରଷ୍ଟା ଋଷିମାନେ ମଧ୍ୟ ଆପଣଙ୍କ ଅଧୀନ ମାୟାଦ୍ୱାରା ରଚିତ ପ୍ରପଞ୍ଚକୁ ବୁଝିପାରନ୍ତି ନାହିଁ । ସେପରି ସ୍ଥଳେ ଆମ ପରି ଆପଣଙ୍କ ମାୟାରେ ଆବୃତଚକ୍ଷୁ ଏବଂ ପାପଯୋନିଗତ ବ୍ୟକ୍ତି ଆପଣଙ୍କର ଏଇ ମହିମାକୁ କିପରି ବା ବର୍ଣ୍ଣ ପାରିବୁ ? ।।୩୮।। ଶ୍ରୀ ଭଗବାନ୍ କହିଲେ, ଜରା, ଭୟ କର ନାହିଁ, ଉଠ । ମୁଁ ଯାହା ଇଚ୍ଛା କରିଥିଲି, ହେଇଟି, ତାହା'ହିଁ କରିଛି । ମୋର ଆଜ୍ଞାରେ ପୁଣ୍ୟବନ୍ତ ଲୋକଙ୍କ ନିବାସସ୍ଥାନ ସ୍ୱର୍ଗକୁ ଯାଅ ।।୩୯।। ପରିକ୍ଷିତ, ଏହିପରି ଇଚ୍ଛାଶରୀରଧାରୀ ଭଗବାନ୍ କୃଷ୍ଣଙ୍କ ଆଜ୍ଞାରେ ଜରା ତାଙ୍କୁ ତିନି ଥର ପ୍ରଦକ୍ଷିଣ କରି ନମସ୍କାର କଲା ଏବଂ ବିମାନରେ ବସି ସ୍ୱର୍ଗକୁ ଚାଲିଗଲା ।।୪୦।। ଏହି ଅବସରରେ କୃଷ୍ଣଙ୍କର ସାରଥି ଦାରୁକ କୃଷ୍ଣଙ୍କର ପାଦଚିହ୍ନ ଦେଖି ଦେଖି ଏବଂ ତାଙ୍କର ଶ୍ରୀଅଙ୍ଗରେ ଥିବା ତୁଳସୀ ଗନ୍ଧଦ୍ୱାରା ଆମୋଦିତ ବାୟୁ ଆଘ୍ରାଣ କରି କରି ପ୍ରଭୁଙ୍କ ପାଖରେ ପହଞ୍ଚିଲେ । ସେଠାରେ ଅଶ୍ୱତ୍ଥ ବୃକ୍ଷମୂଳରେ ଆୟୁଧମାନଙ୍କୁ ଧାରଣ କରି ଶ୍ରୀକୃଷ୍ଣ ଆସନ ଗ୍ରହଣ କରିଥିଲେ । ତେଜସ୍ୱୀ ଦାରୁକଙ୍କର ଚକ୍ଷୁ ଅଶ୍ରୁସିକ୍ତ । ସ୍ନେହରେ ତାଙ୍କର ହୃଦୟ ପୂରିଉଠୁଥିଲା । ସେ ରଥରୁ ଓହ୍ଲାଇ ପଡ଼ି ଭଗବାନଙ୍କର ପାଦତଳେ ପଡ଼ିଗଲେ ଏବଂ କହିଲେ, ପ୍ରଭୁ, ଆପଣଙ୍କ ପାଦପଦ୍ମର ଦର୍ଶନ ନ କରି ମୋତେ ଚାରିଆଡ଼ ଅନ୍ଧକାର ଦିଶୁଥିଲା; ଯେପରିକି ମୋର ଦୃଷ୍ଟିଶକ୍ତି ନଷ୍ଟ ହୋଇଯାଇଛି । ରାତିରେ ଚନ୍ଦ୍ର ନ ଥିଲେ ଯେପରି ଅବସ୍ଥା ହୁଏ, ସେହିପରି ମୋତେ କୌଣସି ଦିଗ ଦେଖାଯାଉ ନାହିଁ ଓ ମନରେ ଶାନ୍ତି ଆସୁ ନାହିଁ ।।୪୧-୪୩।। ପରୀକ୍ଷିତ, ସାରଥି ଦାରୁକ ଏହିପରି କହୁଛନ୍ତି, ଦେଖୁ ଦେଖୁ ଭଗବାନଙ୍କର ପତାକା ଓ ଅଶ୍ୱଯୁକ୍ତ ସେହି ଗରୁଡ଼ଧ୍ୱଜ ରଥ ଆକାଶକୁ ଉଡ଼ିଗଲା; ବିଷ୍ଣୁଙ୍କର ଚକ୍ର ଏବଂ ଗଦା ଆଦି ଦିବ୍ୟ ଆୟୁଧମାନେ ସେହି ରଥର ଅନୁସରଣ କଲେ । ତାହା ଦେଖି ଦାରୁକ ବିସ୍ମିତ ହୋଇଗଲେ । ଶ୍ରୀକୃଷ୍ଣ ସାରଥିଙ୍କୁ କହିଲେ-- ।।୪୪-୪୫।। ଦାରୁକ, ଦ୍ୱାରକାକୁ ଚାଲିଯାଅ । ଜ୍ଞାତି ଯାଦବମାନେ କିପରି ପରସ୍ପର ସହିତ ଲଢ଼ି ନିହତ ହୋଇଛନ୍ତି, ବଳରାମଙ୍କର ନିର୍ବାଣ ଘଟିଛି ଏବଂ ମୋର ଅବସ୍ଥା ସମସ୍ତବିଷୟ ବନ୍ଧୁମାନଙ୍କୁ ଜଣାଇଦିଅ । ସେମାନଙ୍କୁ କହିଦିଅ ଯେ ସେମାନେ ସପରିବାର ଦ୍ୱାରକା ଛାଡ଼ିଦିଅନ୍ତୁ; କାରଣ ମୁଁ ଛାଡ଼ିଆସିଥିବା ଦ୍ୱାରକାପୁରୀକୁ ଶୀଘ୍ର ସମୁଦ୍ର ଗ୍ରାସ କରିଯିବ । ଆମର ପିତା-ମାତା ଓ ନିଜ ନିଜର ପରିବାରକୁ ଧରି ସମସ୍ତେ ଅର୍ଜୁନଙ୍କଦ୍ୱାରା ରକ୍ଷିତହୋଇ ଇନ୍ଦ୍ରପ୍ରସ୍ଥ ଚାଲିଯାଆନ୍ତୁ । ତୁମେ ମୋର ଭକ୍ତି-ଧର୍ମର ଆଶ୍ରୟ ନେଇ ଓ ଜ୍ଞାନ-ନିଷ୍ଠ ଉଦାସୀନ ହୋଇ ଏ ସବୁ ମୋର ମାୟାରଚିତ ବୋଲିଜାଣି ଶାନ୍ତି ଲାଭକର ।।୪୬-୪୯।। ଏହା ଶୁଣି ଦାରୁକ କୃଷ୍ଣଙ୍କୁ ପରିକ୍ରମା କରି ଓ ନିଜର ମସ୍ତକ ତାଙ୍କ ପାଦପଦ୍ମରେ ରଖି ବାରମ୍ବାର ପ୍ରଣାମ କଲେ ଏବଂ ବିଷଣ୍ଣମନରେ ଦ୍ୱାରକାକୁ ଫେରିଗଲେ ।।୫୦।।

## ଏକତ୍ରିଂଶ ଅଧ୍ୟାୟ

# ଶ୍ରୀକୃଷ୍ଣଙ୍କ ସ୍ୱଧାମ ଯାତ୍ରା

ଶ୍ରୀ ଶୁକଦେବ କହିଲେ, ପରିକ୍ଷିତ, ଦାରୁକ ଚାଲିଯିବା ପରେ ବ୍ରହ୍ମା, ଶିବ, ପାର୍ବତୀ, ଇନ୍ଦ୍ର ଆଦି ଲୋକପାଳମାନେ, ମରୀଚି ଆଦି ପ୍ରଜାପତିଗଣ, ଋଷି, ମୁନି, ପିତର, ସିଦ୍ଧ, ଗନ୍ଧର୍ବ, ବିଦ୍ୟାଧର, ନାଗ, ଚାରଣ, ଯକ୍ଷ-ରାକ୍ଷସ, କିନ୍ନର, ଅପ୍‌ସରା ଓ ଗରୁଡ଼ ଲୋକରେ ରହୁଥିବା ପକ୍ଷୀଗଣ ସେଠାରେ ଉପସ୍ଥିତ ହେଲେ । ସେମାନେ ଭଗବାନ୍ ଶ୍ରୀକୃଷ୍ଣଙ୍କର ସ୍ୱାଧାମ ଯାତ୍ରା ଦେଖିବାପାଇଁ ଅତି ଆଗ୍ରହରେ ସେଠାକୁ ଆସିଥିଲେ । ସେମାନେ ଭଗବାନ୍ ଶ୍ରୀକୃଷ୍ଣଙ୍କର ଜନ୍ମ ଓ କର୍ମଆଦି ଲୀଳାମାନଙ୍କର ବର୍ଣ୍ଣନା ଓ ଗାୟନ କରୁଥିଲେ । ବିମାନମାନଙ୍କ ଦ୍ୱାରା ସମସ୍ତ ଆକାଶକୁ ଆଚ୍ଛାଦିତ କରି ପରମଭକ୍ତିରେ ସେମାନେ କୃଷ୍ଣଙ୍କ ଉପରେ ପୁଷ୍ପ ବୃଷ୍ଟି କରିବାକୁ ଲାଗିଲେ । ଭଗବାନ୍ ଶ୍ରୀକୃଷ୍ଣ, ପିତାମହ ବ୍ରହ୍ମା ଓ ନିଜର ବିଭୂତିସ୍ୱରୂପ ଏମାନଙ୍କୁ ସମସ୍ତଙ୍କୁ ଦେଖି ନିଜର ଆତ୍ମାକୁ ସ୍ୱରୂପରେ ସ୍ଥିତକଲେ ଏବଂ ନିଜର କମଳନୟନ ଦୁଇଟିକୁ ବନ୍ଦ କରିଦେଲେ । ଧ୍ୟାନ ଓ ଧାରଣାଦ୍ୱାରା ଲୋକମାନେ ଯେଉଁ ମନୋହର ମଙ୍ଗଳମୟ ମୂର୍ତ୍ତିର କଳ୍ପନା କରନ୍ତି, ଯୋଗଧାରଣାର ଅଗ୍ନିଦ୍ୱାରା ନିଜର ସେହି ଶରୀରକୁ ଦଗ୍ଧ ନ କରି ସ୍ୱଦେହରେ ସେ ନିଜଧାମକୁ ପ୍ରସ୍ଥାନକଲେ ।।୧-୬।। ସ୍ୱର୍ଗରେ ଦୁନ୍ଦୁଭିମାନ ବାଜି ଉଠିଲା ଏବଂ ଆକାଶରୁ ପୁଷ୍ପବୃଷ୍ଟି ହେବାକୁ ଲାଗିଲା ଏବଂ ପୃଥିବୀରୁ ସତ୍ୟ, ଧର୍ମ ଧୃତି, କୀର୍ତ୍ତି ଏବଂ ଶ୍ରୀ ତାଙ୍କ ପଛେ ପଛେ ଚାଲିଗଲେ ।।୭।। ଯେତେବେଳେ ଭଗବାନ୍ ଶ୍ରୀକୃଷ୍ଣ ସ୍ୱଧାମରେ ପ୍ରବେଶ କଲେ, ବ୍ରହ୍ମାଦି ଦେବତାମାନେ ତାଙ୍କୁ ଦେଖିପାରିଲେ ନାହିଁ । କାରଣ ସେ ମନ ଓ ବାକ୍ୟର ଅଗୋଚର । ସେମାନେ ସମସ୍ତେ ବିସ୍ମିତ ହୋଇଗଲେ ।।୮।। ମେଘମଣ୍ଡଳକୁ ଛାଡ଼ି ବିଜୁଳି ଯେତେବେଳେ ଆକାଶରେ ଲୁଚିଯାଏ, ମନୁଷ୍ୟମାନେ ତା'ର ଗତିକୁ ଦେଖି ପାରନ୍ତି ନାହିଁ, ସେହିପରି ମର୍ତ୍ତ୍ୟମଣ୍ଡଳକୁ ତ୍ୟାଗକରି କୃଷ୍ଣ ଚାଲିଯିବା ପରେ ଦେବତାମାନେ ତାଙ୍କର ଗତିକୁ ଦେଖିପାରିଲେ ନାହିଁ ।।୯।। ବ୍ରହ୍ମା ଓ ରୁଦ୍ରଆଦି ଦେବତାମାନେ ଭଗବାନ୍ ଶ୍ରୀକୃଷ୍ଣଙ୍କର ଯୋଗମୟୀ ଗତିକୁ ଲକ୍ଷ୍ୟ କରି ବିସ୍ମିତ ହେଲେ ଓ ତା'ର ପ୍ରଶଂସା କରି କରି ନିଜ ନିଜର ଲୋକକୁ ଚାଲିଗଲେ ।।୧୦।। ରାଜା ପରିକ୍ଷିତ, ନଟର ଅଭିନୟ-କୌଶଳ ପରି ଲୋକମାନଙ୍କ ମଧ୍ୟରେ ଭଗବାନଙ୍କର ଜନ୍ମ ଓ ତିରୋଧାନ ଲୀଳା ବିଡ଼ମ୍ବନାମୟ ବୋଲି ବୁଝିବାକୁ ହେବ । କାରଣ ନିଜର ଆତ୍ମାରୁ ସେ ଏହି ଜଗତ୍‌କୁ ସୃଷ୍ଟି କରି ଅନ୍ତର୍ଯାମୀ ରୂପରେ ସେଥିରେ ପ୍ରବେଶ କରନ୍ତି ଏବଂ ପ୍ରଳୟ ସମୟରେ ତାହାକୁ ସଂହାର କରି ନିଜର ଅନନ୍ତ ମହିମାରେ ଅବସ୍ଥିତ ହୁଅନ୍ତି ।।୧୧।। ଯମଲୋକଗତ ଗୁରୁ ସାନ୍ଦିପନୀଙ୍କର ପୁତ୍ରକୁ ଯେ ସଦେହରେ ଯବପୁରୀରୁ ଫେରାଇ ଆଣିଥିଲେ, ଯେଉଁ ଶରଣରକ୍ଷକ ବ୍ରହ୍ମାସ୍ତ୍ରରେ ଦଗ୍ଧ ତୁମକୁ ରକ୍ଷା କରିଥିଲେ, ଯମର ମଧ୍ୟ ସଂହାରକାରକ ଶଙ୍କରଙ୍କୁ ଯେ ଯୁଦ୍ଧରେ ପରାସ୍ତ କରିଥିଲେ, ବ୍ୟାଧକୁ ସ୍ୱଦେହରେ ସ୍ୱର୍ଗକୁ ପଠାଇଦେଲେ, ସେ କ'ଣ ନିଜର ରକ୍ଷାପାଇଁ ଅସମର୍ଥ ଥିଲେ ? ।।୧୨।। ନିଖିଳ ଜଗତର ସୃଷ୍ଟି, ସ୍ଥିତି ଓ ସଂହାରର ଯେ ଏକମାତ୍ର ହେତୁ, ଯେ ଅଶେଷ ଶକ୍ତିର ଅଧିକାରୀ, ସେ ଯାଦବମାନଙ୍କୁ ସଂହାର କରି ନିଜର ଶରୀରକୁ ଆଉ ରକ୍ଷା କରିବାକୁ ଇଚ୍ଛା କଲେ ନାହିଁ ଓ ନିଜର ଦିବ୍ୟଧାମକୁ ଚାଲିଗଲେ । ସେ ଦେଖାଇଦେଇ ଗଲେ ଯେ, ଏହି ମରଣଶୀଳ ଶରୀରରେ ବା କି ପ୍ରୟୋଜନ ଅଛି ? ।।୧୩।। ଯେଉଁ ବ୍ୟକ୍ତି ପ୍ରାତଃକାଳରୁ ଉଠି ଶ୍ରୀକୃଷ୍ଣଙ୍କର ମହାପ୍ରୟାଣକୁ ଭକ୍ତି ସହିତ କୀର୍ତ୍ତନ କରେ, ସେ ଉତ୍ତମ କୃଷ୍ଣପଦ (ପରମପଦ) ଲାଭ କରେ । କୃଷ୍ଣଙ୍କ ବିରହରେ ଦାରୁକ ଦ୍ୱାରକାକୁ ଆସି ବସୁଦେବ ଓ ଉଗ୍ରସେନଙ୍କର ପାଦତଳେ ପଡ଼ିଗଲେ ଏବଂ ନେତ୍ରଜଳରେ ସେମାନଙ୍କର ପାଦ ଅଭିଷିକ୍ତ କଲେ ।।୧୪-୧୫।। ରାଜା, ଦାରୁକ ଯେତେବେଳେ ଯାଦବମାନଙ୍କର ନିଧନବୃତ୍ତାନ୍ତ ବିଶଦଭାବରେ ବର୍ଣ୍ଣନା କଲେ, ତା'ଶୁଣି ଲୋକମାନଙ୍କର ଚିତ୍ତ ବ୍ୟାକୁଳ ହୋଇପଡ଼ିଲା ଏବଂ ସେମାନେ ଶୋକରେ ମୂର୍ଚ୍ଛା ହୋଇଗଲେ ।।୧୬।।

କୃଷ୍ଣଙ୍କ ବିରହରେ ବ୍ୟାକୁଳ ତାଙ୍କର ଜ୍ଞାତିମାନେ ଶିର ତାଡ଼ନା କରି କରି ଯେଉଁଠାରେ ଯାଦବମାନେ ନିଷ୍ପ୍ରାଣ ହୋଇ ଶୋଇ ରହିଥିଲେ, ସେଠାରେ ଶୀଘ୍ର ଯାଇ ପହଞ୍ଚିଲେ ।।୧୭।। ଦେବକୀ, ରୋହିଣୀ ଓ ବସୁଦେବ ନିଜର ପୁତ୍ର କୃଷ୍ଣ ଓ ବଳରାମଙ୍କୁ ନ ଦେଖି ଶୋକାର୍ତ୍ତ ହେଲେ ଓ ନିଜର ଚେତନା ହରାଇ ବସିଲେ ଓ ସଙ୍ଗେ ସଙ୍ଗେ ସେମାନଙ୍କର ପ୍ରାଣବାୟୁ ଉଡ଼ିଗଲା । କୃଷ୍ଣଙ୍କ ବିରହରେ ବ୍ୟାକୁଳ ଯଦୁକୁଳର ସ୍ତ୍ରୀମାନେ ନିଜ ନିଜର ପତିଙ୍କୁ ଆଲିଙ୍ଗନ କରି ଚିତାଗ୍ନିରେ ପ୍ରବେଶ କଲେ ।।୧୮-୧୯।। ବଳରାମଙ୍କର ପତ୍ନୀମାନେ ବଳରାମଙ୍କର ଦେହକୁ ଧରି, ବସୁଦେବଙ୍କର ପତ୍ନୀମାନେ ବସୁଦେବଙ୍କର ଦେହକୁ ଧରି, କୃଷ୍ଣଙ୍କର ପୁତ୍ରବଧୂମାନେ ନିଜ ନିଜର ସ୍ୱାମୀଙ୍କ ଶବକୁ ଧରି ଓ ରୁକ୍ମିଣୀ ଆଦି ଭଗବାନଙ୍କର ପାଟରାଣୀମାନେ ଭଗବାନଙ୍କୁ ହୃଦୟରେ ଧାରଣକରି ଅଗ୍ନିରେ ପ୍ରବେଶକଲେ ।।୨୦।। ଅର୍ଜୁନ ନିଜର ପ୍ରିୟସଖା କୃଷ୍ଣଙ୍କର ବିରହରେ ପ୍ରଥମେ ବ୍ୟାକୁଳ ହୋଇ ପଡ଼ିଲେ, ମାତ୍ର ପରେ ଭଗବତ୍‌ଗୀତାରେ କୃଷ୍ଣ ଦେଇଥିବା ସଦୁପଦେଶକୁ ସ୍ମରଣ କରି ନିଜକୁ ସାନ୍ତ୍ୱନା ଦେଲେ ।।୨୧।। ଯେଉଁ ବନ୍ଧୁମାନଙ୍କର ମୃତ୍ୟୁପରେ ସେମାନଙ୍କର ଗୋତ୍ରରେ କେହି ନ ଥିଲେ, ସେମାନଙ୍କର ପିଣ୍ଡଦାନ ଆଦି କାର୍ଯ୍ୟ ସେ ଯଥାବିଧି ନିର୍ବାହକଲେ ।।୨୨।। କୃଷ୍ଣ ଛାଡ଼ି ଚାଲିଯିବା ପରେ ଶ୍ରୀକୃଷ୍ଣଙ୍କ ନିବାସସ୍ଥଳ ବ୍ୟତୀତ ସମୁଦ୍ର କ୍ଷଣକ ମଧ୍ୟରେ ସମଗ୍ର ଦ୍ୱାରକାକୁ ବୁଡ଼ାଇଦେଲା ।।୨୩।। ସେହି ନିବାସସ୍ଥଳରେ ଭଗବାନ୍ ମଧୁସୂଦନ ନିତ୍ୟନିବାସ କରନ୍ତି । ସେହି ସ୍ଥାନକୁ ସ୍ମରଣ କରିବାମାତ୍ରେ ଅଶେଷ ଅଶୁଭ ଦୂର ହୋଇ ସମସ୍ତ ପ୍ରକାର ମଙ୍ଗଳ ଲାଭ ହୁଏ ।।୨୪।। (ଯଦୁବଂଶ ଧ୍ୱଂସରୁ) ଅବଶିଷ୍ଟ ଯେଉଁ ସ୍ତ୍ରୀ, ବାଳକ ଓ ବୃଦ୍ଧମାନେ ଥିଲେ, ଅର୍ଜୁନ ସେମାନଙ୍କୁ ଇନ୍ଦ୍ରପ୍ରସ୍ଥ ଘେନିଗଲେ ଏବଂ ସେଠାରେ ଅନିରୁଦ୍ଧଙ୍କର ପୁତ୍ର ବଜ୍ରଙ୍କୁ ରାଜପଦରେ ଅଧିଷ୍ଠିତ କଲେ ।।୨୫।। ତୁମର ପିତାମହ ପାଣ୍ଡବମାନେ ସୁହୃଦ୍ ଓ ଜ୍ଞାତିମାନଙ୍କର ଏହି ନିଧନ ସମ୍ବାଦ ଅର୍ଜୁନଙ୍କଠାରୁ ପାଇ ତୁମକୁ ବଂଶଧର ରୂପେ ରଖି ମହାପଥରେ ଯାତ୍ରା କଲେ ।।୨୬।। ଯେଉଁ ବ୍ୟକ୍ତି ଦେବଦେବ ବିଷ୍ଣୁଙ୍କର ଏହିସବୁ ଜନ୍ମ ଓ କର୍ମର ଲୀଳା ଶ୍ରଦ୍ଧାର ସହିତ କୀର୍ତ୍ତନ କରେ, ସେ ସମସ୍ତ ପାପରୁ ମୁକ୍ତ ହୋଇଯାଏ ।।୨୭।। ଯେଉଁ ବ୍ୟକ୍ତି ଭଗବାନ ଶ୍ରୀହରିଙ୍କର ଭାଗବତରେ ଓ ଅନ୍ୟ ପୁରାଣ ମାନଙ୍କରେ କୀର୍ତ୍ତିତ ମନୋହର ଅବତାର-ଲୀଳା, ବୀରତ୍ୱପୂର୍ଣ୍ଣ କର୍ମ ଓ ମଙ୍ଗଳମୟ ବାଲ୍ୟଚରିତକୁ କୀର୍ତ୍ତନ କରେ, ସେ ପରମହଂସମାନଙ୍କର ପ୍ରାପ୍ତ ଭଗବାନଙ୍କର ପରାଭକ୍ତି ଲାଭକରେ ।।୨୮।।

# ଦ୍ୱାଦଶ ସ୍କନ୍ଧ

## ପ୍ରଥମ ଅଧ୍ୟାୟ

## କଳି ଯୁଗରେ ରାଜବଂଶାବଳୀ

ରାଜା ପରିକ୍ଷିତ କହିଲେ ହେ ମୁନି ! ଯଦୁବଂଶର ବିଭୂଷଣ ଭଗବାନ୍ ଶ୍ରୀକୃଷ୍ଣ ସ୍ୱଧାମକୁ ଯିବାପରେ ପୃଥିବୀରେ କେଉଁ ବଂଶ ରାଜତ୍ୱ କଲେ, ତାହା ମୋତେ କହିବାହୁଅନ୍ତୁ ।।୧।। ଶ୍ରୀ ଶୁକଦେବ କହିଲେ, ହେ ରାଜା ! (ଜରାସନ୍ଧଙ୍କର ପିତା) ବୃହଦ୍‌ରଥଙ୍କର ବଂଶରେ ପୁରଞ୍ଜୟ ନାମରେ ଶେଷ ରାଜା ହେବେ । ତାଙ୍କର ଅମାତ୍ୟ ଶୁନକ ରାଜାଙ୍କୁ ହତ୍ୟା କରି ନିଜର ପୁତ୍ର ପ୍ରଦ୍ୟୋତଙ୍କୁ ରାଜା କରିବେ । ପ୍ରଦ୍ୟୋତଙ୍କର ପୁତ୍ର ପାଳକ । ପାଳକଙ୍କର ପୁତ୍ର ବିଶାଖଯୂପ । ତାଙ୍କର ପୁତ୍ର ରଜକ ଏବଂ ରଜକଙ୍କର ପୁତ୍ର ନନ୍ଦିବର୍ଦ୍ଧନ । ପ୍ରଦ୍ୟୋତଙ୍କ ବଂଶରେ ଏହି ପାଞ୍ଚ ଜଣ ରାଜା ଏକଶହ ଅଣତିରିଶ ବର୍ଷ ପୃଥିବୀକୁ ଭୋଗକରିବେ ।।୨-୪।। ଏହାପରେ ରାଜା ହେବେ ଶିଶୁନାଗ । ଶିଶୁନାଗଙ୍କର ପୁତ୍ର କାକବର୍ଣ୍ଣ । ତାଙ୍କ ପୁତ୍ର କ୍ଷେମଧର୍ମା ଏବଂ ତାଙ୍କ ପୁତ୍ର ହେବେ କ୍ଷେତ୍ରଜ୍ଞ । କ୍ଷେତ୍ରଜ୍ଞଙ୍କର ପୁତ୍ର ବିଧିସାର, ତାଙ୍କ ପୁତ୍ର ଅଜାତଶତ୍ରୁ ହେବେ । ଅଜାତଶତ୍ରୁଙ୍କର ପୁତ୍ର ଦର୍ଭ ଏବଂ ଦର୍ଭଙ୍କର ପୁତ୍ର ହେବେ ଅଜୟ ।।୫-୬।। ଅଜୟଙ୍କ ପୁତ୍ର ନନ୍ଦିବର୍ଦ୍ଧନ ଏବଂ ତାଙ୍କର ପୁତ୍ର ମହାନନ୍ଦି ହେବେ । ଶିଶୁନାଗ ବଂଶର ଏହି ଦଶଜଣ ରାଜା ତିନି ଶହ ଷାଠିଏ ବର୍ଷ କଳିଯୁଗରେ ପୃଥିବୀରେ ରାଜପଣ କରିବେ । ପରିକ୍ଷିତ, ମହାନନ୍ଦିଙ୍କର ଶୂଦ୍ରପତ୍ନୀଙ୍କ ଗର୍ଭରୁ ନନ୍ଦନାମକ ପୁତ୍ର ଜନ୍ମ ହେବେ । ସେ ମହାପଦ୍ମସଂଖ୍ୟକ ସେନା ଓ ଧନର ଅଧିପତି ହେବେ । ତାଙ୍କ ସମୟରେ କ୍ଷାତ୍ରଧର୍ମର ବିନାଶ ଘଟିବ ଓ ରାଜାମାନେ ଅଧାର୍ମିକ ଶୂଦ୍ର ପରି ହୋଇଯିବେ ।।୭-୯।। ଏହି ମହାପଦ୍ମ ନନ୍ଦ ପୃଥିବୀରେ ଏକଚ୍ଛତ୍ରଶାସକ ହେବେ । ତାଙ୍କର ଶାସନକୁ କେହି ଉଲ୍ଲଂଘନ କରିପାରିବେ ନାହିଁ । କ୍ଷତ୍ରିୟଙ୍କୁ ବିନାଶ କରିବାରେ ସେ ଦ୍ୱିତୀୟ ପରଶୁରାମ ହେବେ । ସୁମାଲ୍ୟପ୍ରମୁଖ ତାଙ୍କର ଆଠ ଜଣ ପୁତ୍ର ହେବେ । ସେମାନେ ଶହେ ବର୍ଷ ପର୍ଯ୍ୟନ୍ତ ପୃଥିବୀକୁ ଉପଭୋଗ କରିବେ ।।୧୦-୧୧।। ଜଣେ ବ୍ରାହ୍ମଣ ଏହି ବିଖ୍ୟାତ ନ'ଜଣ ନନ୍ଦବଂଶୀୟଙ୍କୁ ସମୂଳ ବିନାଶ କରିବେ ଏବଂ ନନ୍ଦମାନେ ଯିବାପରେ କଳିଯୁଗରେ ମୌର୍ଯ୍ୟବଂଶୀୟମାନେ ପୃଥିବୀରେ ରାଜପଣ କରିବେ । ସେହି ବ୍ରାହ୍ମଣ ଚନ୍ଦ୍ରଗୁପ୍ତମୌର୍ଯ୍ୟଙ୍କୁ ରାଜପଦରେ ଅଭିଷିକ୍ତ କରିବେ । ଚନ୍ଦ୍ରଗୁପ୍ତଙ୍କର ପୁତ୍ର ହେବେ ବାରିସାର ଓ ତାଙ୍କର ପୁତ୍ର ହେବେ ଅଶୋକବର୍ଦ୍ଧନ ।।୧୨-୧୩।। ଅଶୋକବର୍ଦ୍ଧନଙ୍କର ପୁତ୍ର ସୁଯଶା, ତାଙ୍କର ପୁତ୍ର ସଙ୍ଗତ, ସଙ୍ଗତଙ୍କର ପୁତ୍ର ଶାଳିଶୂକ, ତାଙ୍କ ପୁତ୍ର ସୋମଶର୍ମା ହେବେ । ସୋମଶର୍ମାଙ୍କର ପୁତ୍ର ଶତଧନ୍ୱା ଏବଂ ତାଙ୍କର ପୁତ୍ର ବୃହଦ୍‌ରଥ । ଏହିପରି ମୌର୍ଯ୍ୟ ବଂଶର ଦଶ ଜଣ ରାଜା ଶହେ ସଇଁତିରିଶ ବର୍ଷ ପର୍ଯ୍ୟନ୍ତ ପୃଥିବୀକୁ ଭୋଗ କରିବେ । ହେ କୁରୁକୁଳଶିରୋମଣି, ମୌର୍ଯ୍ୟ ବୃହଦ୍‌ରଥଙ୍କୁ ହତ୍ୟା କରି ତାଙ୍କର ସେନାପତି ପୁଷ୍ପ ମିତ୍ର ଶୁଙ୍ଗ ନିଜେ ରାଜା ହେବେ । ପୁଷ୍ପମିତ୍ରଙ୍କର ପୁତ୍ର ହେବେ ଅଗ୍ନିମିତ୍ର । ତାଙ୍କର ପୁତ୍ର ସୁଜ୍ୟେଷ୍ଠ ।।୧୪-୧୬।। ସୁଜ୍ୟେଷ୍ଠଙ୍କର ପୁତ୍ର ବସୁମିତ୍ର ଓ ତାଙ୍କ ପୁତ୍ର ଭଦ୍ରକ । ଭଦ୍ରକଙ୍କର ପୁତ୍ର ପୁଲିନ୍ଦ, ତାଙ୍କ ପୁତ୍ର ଘୋଷ ଓ ତାଙ୍କର ପୁତ୍ର ହେବେ ବଜ୍ରମିତ୍ର ।।୧୭।। ବଜ୍ରମିତ୍ରଙ୍କର ପୁତ୍ର ହେବେ ଭାଗବତ ଓ ତାଙ୍କ ପୁତ୍ର ହେବେ ଦେବଭୂତି । ଏହିପରି ଶୁଙ୍ଗବଂଶର ଦଶଜଣ ରାଜା ଶହେ ବର୍ଷରୁ ଅଧିକ କାଳ ପୃଥିବୀକୁ ଭୋଗ କରିବେ ।।୧୮।। ହେ ପରିକ୍ଷିତ, ଏହାପରେ କଣ୍ୱ

ବଂଶୀୟ ରାଜାମାନଙ୍କ ପାଖକୁ ରାଜ୍ୟ ଚାଲିଯିବ । ଶୁଙ୍ଗବଂଶର ଶେଷ ରାଜା କାମୀ ଦେବଭୂତିଙ୍କୁ ହତ୍ୟା କରି ଅମାତ୍ୟ କଣ୍ୱ ନିଜେ ରାଜା ହେବେ । ଏହି ମହାମନାଙ୍କର ନାମ ବସୁଦେବ । ବସୁଦେବଙ୍କର ପୁତ୍ର ଭୂମିତ୍ର, ତାଙ୍କର ପୁତ୍ର ନାରାୟଣ ଏବଂ ନାରାୟଣଙ୍କର ପୁତ୍ର ସୁଶର୍ମାଙ୍କର ନାମ ବିଖ୍ୟାତ ହେବ ॥୧୯-୨୦॥ ଏଇ କଣ୍ୱ ବଂଶୀୟ ରାଜାମାନେ କଳିଯୁଗରେ ତିନିଶହ ପଇଁଚାଳିଶ ବର୍ଷ ଧରି ପୃଥିବୀକୁ ଭୋଗ କରିବେ ॥୨୧॥ କଣ୍ୱବଂଶୀୟ ରାଜା ସୁଶର୍ମାଙ୍କର ଜଣେ ଆନ୍ଧ୍ରଜାତୀୟ ଶୂଦ୍ରସେବକ ବଳପୂର୍ବକ ତାଙ୍କୁ ହତ୍ୟା କରି ରାଜ୍ୟ ଭୋଗ କରିବେ ॥୨୨॥ ତାଙ୍କର କୃଷ୍ଣ ନାମକ ଭାଇ ପୃଥିବୀର ଅଧୀଶ୍ୱର ହେବେ । ତାଙ୍କ ପୁତ୍ର ହେବେ ଶ୍ରୀ ଶାନ୍ତକର୍ଣ୍ଣ ଓ ତାଙ୍କର ପୁତ୍ର ହେବେ ପୌର୍ଣ୍ଣମାସ ॥୨୩॥ ପୌର୍ଣ୍ଣମାସଙ୍କର ପୁତ୍ର ଲମ୍ବୋଦର ଓ ତାଙ୍କ ପୁତ୍ର ଚିବିଲକ, ତାଙ୍କ ପୁତ୍ର ମେଘସ୍ୱାତି, ତାଙ୍କର ପୁତ୍ର ଅଟମାନ ଓ ଅଟମାନଙ୍କର ପୁତ୍ର ଅନିଷ୍ଟକର୍ମା । ତାଙ୍କର ପୁତ୍ର ହାଲେୟ । ହାଲେୟଙ୍କର ପୁତ୍ର ତଳକ । ତଳକଙ୍କର ପୁତ୍ର ପୁରୀଷଭୀରୁ ଓ ତାଙ୍କର ପୁତ୍ର ସୁନନ୍ଦନ ରାଜା ହେବେ ॥୨୪-୨୫॥ ସୁନନ୍ଦନଙ୍କର ପୁତ୍ର ଚକୋର । ତାଙ୍କର ବହୁସଂଜ୍ଞକ ଆଠ ପୁତ୍ର ହେବେ । ବଡ଼ ପୁଅଙ୍କର ନାମ ହେବ ଶିବସ୍ୱାତି । ସେହି ରାଜା ବହୁ ଶତ୍ରୁଙ୍କୁ ଦମନ କରିବେ । ତାଙ୍କ ପୁତ୍ରଙ୍କର ନାମ ହେବ ଗୋମତୀପୁତ୍ର ଏବଂ ତାଙ୍କ ଠାରୁ ପୁରୀମାନ୍ ଜନ୍ମ ହେବେ । ପୁରୀମାନ୍‌ଙ୍କଠାରୁ ମେଦଃଶିରା, ତାଙ୍କର ପୁଅ ଶିବସ୍କନ୍ଦ, ତାଙ୍କର ପୁଅ ଯଜ୍ଞଶ୍ରୀ ଏବଂ ତାଙ୍କର ପୁତ୍ର ବିଜୟ । ବିଜୟଙ୍କର ଚନ୍ଦ୍ରବିଜ୍ଞ ଓ ସଲୋମଧି ନାମରେ ଦୁଇ ପୁଅ ହେବେ ॥୨୬॥ ପରିକ୍ଷିତ, ଏହି ତିରିଶ ଜଣ ରାଜା ଚାରି ଶହ ଛପନ ବର୍ଷ ଧରି ପୃଥିବୀକୁ ଭୋଗକରିବେ ॥୨୮॥ ଏହାପରେ ଅବଭୃତି ନାମକ ନଗରୀର ସାତ ଜଣ ଆଭୀର, ଦଶ ଜଣ ଗର୍ଦ୍ଦଭ ଓ ଅତିଲୋଭୀ ଷୋଳଜଣ କଙ୍କ ପୃଥିବୀରେ ରାଜା ହେବେ ॥୨୯॥

ଏହାଙ୍କ ପରେ ଆଠ ଜଣ ଯବନ ଓ ଚଉଦ ଜଣ ତୁରସ୍କ ଏବଂ ତାପରେ ଦଶ ଜଣ ଗୁରୁଣ୍ଡ ଓ ଏଗାର ଜଣ ମୌନ ରାଜା ହେବେ । ଆଭୀର ଆଦି ଏହି ରାଜାମାନେ ଏକହଜାର ଅନେଶତ ବର୍ଷପର୍ଯ୍ୟନ୍ତ ଏବଂ ଏଗାର ଜଣ ମୌନ ରାଜା ତିନି ଶହ ବର୍ଷପର୍ଯ୍ୟନ୍ତ ରାଜତ୍ୱ କରିବେ । ତାପରେ କିଳିକିଳା ନାମକ ନଗରୀରେ ଭୂତନନ୍ଦ ନାମକ ରାଜା ତାଙ୍କର ପୁଅ ବଙ୍ଗିରି, ବଙ୍ଗିରିଙ୍କ ଭାଇ ଶିଶୁନନ୍ଦି, ତା'ପରେ ତାଙ୍କ ଭାଇ ଯଶୋନନ୍ଦି ଓ ପ୍ରବୀରକ -- ଏମାନେ ଶହେ ଛ' ବର୍ଷ ରାଜତ୍ୱ କରିବେ ॥୩୦-୩୩॥ ଏମାନଙ୍କର ବାହ୍ଲୀକ ନାମକ ତେର ଜଣ ପୁଅ ହେବେ । ସେମାନଙ୍କ ପରେ ପୁଷ୍ପମିତ୍ର ନାମକ ଜଣେ ରାଜା ହେବେ ଓ ତାଙ୍କର ପୁଅ ହେବେ ଦୁର୍ମିତ୍ର । ଏକ ସମୟରେ ଏମାନେ ବିଭିନ୍ନ ରାଜ୍ୟରେ ରାଜ୍ୟଶାସନ କରିବେ । ସାତଜଣ ଆନ୍ଧ୍ରଦେଶରେ, ସାତଜଣ କୋଶଳରେ ଏବଂ ଅନ୍ୟମାନେ ବିଦୂର ଓ ନିଷଧ ଦେଶମାନଙ୍କର ରାଜା ହେବେ ॥୩୪-୩୫॥ ମଗଧ ଦେଶର ରାଜା ହେବେ ବିଶ୍ୱସ୍ଫୁର୍ଜି । ସେ ପୁରଞ୍ଜୟ ନାମରେ ପ୍ରସିଦ୍ଧ ହେବେ । ସେ ଉଚ୍ଚ ବର୍ଣ୍ଣର ଲୋକମାନଙ୍କୁ ପୁଳିନ୍ଦ, ଯଦୁ ଓ ମଦ୍ରକ ଆଦି ମ୍ଳେଚ୍ଛ ଜାତିରେ ପରିଣତ କରିବେ ॥୩୬॥ ସେହି ମନ୍ଦମତି ରାଜା ବ୍ରାହ୍ମଣ, କ୍ଷତ୍ରିୟ ଓ ବୈଶ୍ୟମାନଙ୍କୁ ନାଶକରି ଶୂଦ୍ର ରାଜ୍ୟ ସ୍ଥାପନ କରିବେ ଓ ପଦ୍ମାବତୀ ତା'ର ରାଜଧାନୀ ହେବ । ହରଦ୍ୱାରରୁ ଆରମ୍ଭ କରି ପ୍ରୟାଗପର୍ଯ୍ୟନ୍ତ ସେ ରାଜ୍ୟ ଭୋଗ କରିବେ ॥୩୭॥ ସୌରାଷ୍ଟ୍ର, ଅବନ୍ତୀ, ଆଭୀର, ଶୂର, ଅର୍ବୁଦ ଓ ମାଳବ ଦେଶର ବ୍ରାହ୍ମଣମାନେ ଉପନୟନ ଆଦି ସଂସ୍କାର ଛାଡ଼ିଦେଇ ବ୍ରାତ୍ୟ ହୋଇଯିବେ । ରାଜାମାନେ ଶୂଦ୍ରପ୍ରାୟ ହୋଇଯିବେ ॥୩୮॥ ସିନ୍ଧୁତଟ, ଚନ୍ଦ୍ରଭାଗା, କୌନ୍ତୀ, କାଶ୍ମୀରମଣ୍ଡଳ -- ଏହି ରାଜ୍ୟମାନଙ୍କରେ ବେଦାଚାର ଶୂନ୍ୟ ବ୍ରାତ୍ୟ, ଶୂଦ୍ର ଓ ମ୍ଳେଚ୍ଛମାନେ ଶାସନ କରିବେ ॥୩୯॥ ପରିକ୍ଷିତ, ସମୟକୁ ଚାହିଁ ଏହି ରାଜାମାନେ ମ୍ଳେଚ୍ଛପ୍ରାୟ ହୋଇଯିବେ । ଏମାନେ ଅଧର୍ମୀ, ମିଥ୍ୟାବାଦୀ ଓ ଅତିକ୍ରୋଧୀ ହେବେ ଏବଂ ଖୁବ୍ କମ୍ ଦାନପୁଣ୍ୟ କରିବେ ॥୪୦॥ ଏମାନେ ସ୍ତ୍ରୀ, ବାଳକ ଓ ବ୍ରାହ୍ମଣମାନଙ୍କୁ ହତ୍ୟା କରିବେ । ପରଦାର ଓ ପରଧନ ଅପହରଣ କରିବେ । ସେମାନେ ଅଳ୍ପାୟୁଷ ଓ ଅଳ୍ପପ୍ରାଣ ହେବେ । ସେମାନଙ୍କର ବୃଦ୍ଧି ହେବା ସଙ୍ଗେ ସଙ୍ଗେ କ୍ଷୟ ହୋଇ ଯାଉଥିବ । ଏ ରାଜାମାନେ ସଂସ୍କାରହୀନ, କ୍ରିୟାହୀନ ଏବଂ ରଜ ଓ ତମଗୁଣରେ ଆଚ୍ଛନ୍ନ ହୋଇ ରାଜା ରୂପରେ ମ୍ଳେଚ୍ଛଙ୍କ ପରି ପ୍ରଜାମାନଙ୍କୁ

ଶୋଷଣ କରିବେ ॥୪୧-୪୨॥ ଏହିପରି ରାଜାମାନଙ୍କୁ ପାଇ ପ୍ରଜାମାନେ ସେମାନଙ୍କର ସ୍ୱଭାବ ବା ଆଚରଣକୁ ଅନୁକରଣ କରିବେ ଓ ରାଜାମାନଙ୍କଦ୍ୱାରା ଉତ୍ପୀଡ଼ିତ ହୋଇ ପରସ୍ପରକୁ ପୀଡ଼ା ଦେବାଦ୍ୱାରା ବିନଷ୍ଟ ହୋଇଯିବେ ॥୪୩॥

## ଦ୍ୱିତୀୟ ଅଧ୍ୟାୟ

# କଳି ଯୁଗର ଧର୍ମ

ପରିକ୍ଷିତ, ସମୟ ହେଉଛି ବଳବାନ୍ । ପ୍ରବଳ କଳିର ପ୍ରଭାବରେ ଦିନକୁ ଦିନ ମନୁଷ୍ୟମାନଙ୍କର ଧର୍ମ, ସତ୍ୟ, ଶୌଚ, କ୍ଷମା, ଦୟା, ଆୟୁ, ବଳ ଓ ସ୍ମରଣଶକ୍ତି ନାଶ ହେବାକୁ ଲାଗିବ । କଳିଯୁଗରେ ଧନ ହେବ ଲୋକମାନଙ୍କ କୁଳୀନତା, ସଦାଚାର ଓ ସଦ୍‌ଗୁଣଉଦୟର ମାପକାଠି ଏବଂ ବଳ ହେବ ଧର୍ମ ଓ ନ୍ୟାୟ ନିରୂପଣର ନିୟାମକ ॥୧-୨॥ କୁଳଶୀଳ ବିବେଚନା ନକରି ଯୁବକ, ଯୁବତୀମାନେ ନିଜର ରୁଚି ଅନୁସାରେ ବିବାହ କରିବେ । ବ୍ୟବସାୟ, ବାଣିଜ୍ୟ କ୍ଷେତ୍ରରେ ଛଳନା ଏବଂ ରତିରେ ପଟୁତା ହିଁ ସ୍ତ୍ରୀ-ପୁରୁଷଙ୍କ ସମ୍ପର୍କର ଏକମାତ୍ର ଆଧାର ହେବ । କେବଳ ପଇତାଦ୍ୱାରା ବ୍ରାହ୍ମଣମାନେ ଚିହ୍ନିତ ହେବେ ॥୩॥ ବସ୍ତ୍ର, ଦଣ୍ଡ କମଣ୍ଡଳୁ ଆଦିଦ୍ୱାରା ବ୍ରହ୍ମଚାରୀ, ସନ୍ନ୍ୟାସୀ ଆଦି ଆଶ୍ରମବାସୀଙ୍କର ପରିଚୟ ମିଳିବ; ଆଚାରଦ୍ୱାରା ନୁହେଁ । ବିଭିନ୍ନ ଚିହ୍ନ ଧାରଣ କରି ସେମାନେ ଏକ ଆଶ୍ରମରୁ ଅନ୍ୟ ଆଶ୍ରମକୁ ଯିବେ । ଯେ ଅର୍ଥ ଦେଇ ପାରିବ ନାହିଁ, ନ୍ୟାୟାଳୟରେ ପରାଜିତ ହେବ ! ବଚନର ଚାତୁରୀ ହେବ ପାଣ୍ଡିତ୍ୟର ଲକ୍ଷଣ ॥୪॥ ଯେ ଧନାଢ୍ୟ ନୁହେଁ, ତାକୁ ଅସାଧୁ ବୋଲି ବିବେଚନା କରାଯିବ ଏବଂ ଯେ ଦମ୍ଭ ଦେଖାଇବ, ସେ ହେବ ସାଧୁ । ସ୍ତ୍ରୀ, ପୁରୁଷ ପରସ୍ପରକୁ ସ୍ୱୀକାର କରିଗଲେ ତାହା ବିବାହ ବୋଲି ବିବେଚିତ ହେବ ଓ ନିଜକୁ ସଜାଇନେଲେ ସ୍ନାନ ହୋଇଗଲା ବୋଲି ଧରାଯିବ ॥୫॥ ଦୂରରେ ଥିବା ଜଳାଶୟକୁ ତୀର୍ଥ ବୋଲି ଧରାଯିବ ଏବଂ ବେଶୀ ବାଳ ରଖିବା ହେବ ସୌନ୍ଦର୍ଯ୍ୟର ଲକ୍ଷଣ । ପେଟ ପୋଷିବା ହେବ ଏକମାତ୍ର ପୁରୁଷାର୍ଥ ଓ ଧୃଷ୍ଟାଚାରକୁ ସତ୍ୟ ବୋଲି କୁହାଯିବ ॥୬॥ ନିଜର କୁଟୁମ୍ବ ପୋଷି ପାରିଲେ ଦକ୍ଷତା ପ୍ରମାଣିତ ହେବ । କେବଳ ଯଶଲାଭପାଇଁ ଲୋକେ ଧର୍ମାଚରଣ କରିବେ । ଏହିପରି ଦୁଷ୍ଟ ଲୋକଙ୍କଦ୍ୱାରା ସାରା ପୃଥିବୀ ପୂର୍ଣ୍ଣ ହୋଇଯିବ ॥୭॥ ବ୍ରାହ୍ମଣ, କ୍ଷତ୍ରିୟ, ବୈଶ୍ୟ ଓ ଶୂଦ୍ରମାନଙ୍କ ମଧ୍ୟରେ ଯେ ସବୁଠାରୁ ବଳବାନ୍ ହେବ ସେ ରାଜା ହେବ । ଲୋଭୀ, ନିର୍ଦ୍ଦୟ ଓ ଦସ୍ୟୁପରି ଆଚରଣ କରୁଥିବା ରାଜାମାନେ ପ୍ରଜାମାନଙ୍କର ସ୍ତ୍ରୀ ଓ ଧନକୁ ଅପହରଣ କରିବେ । ପ୍ରଜାମାନେ ଘରଦ୍ୱାର ଛାଡ଼ି ପାହାଡ଼ ଜଙ୍ଗଲକୁ ପଳାଇବେ ଏବଂ ସେଠାରେ ବଣଶାଗ, ଚେର ମୂଳ, ଆମିଷ, ମହୁ, ଫଳ, ଫୁଲ ଓ ଟାକୁଆ ଆଦି ଯାହାକିଛି ପାଇବେ, ସେଥିରେ ଜୀବନ ଧାରଣକରିବେ ॥୮-୯॥ ମରୁଡ଼ି ଓ ଦୁର୍ଭିକ୍ଷ ସମୟରେ ଲୋକେ କରଭାରରେ ପ୍ରପୀଡ଼ିତ ହେବେ । ଅତିଶୟ ଥଣ୍ଡା, ଅତିଶୟ ଗରମ, ଝଡ଼ି-ବର୍ଷା, ଶୀତ-କାକର, କ୍ଷୁଧା, ତୃଷ୍ଣା ଓ ରୋଗରେ କାତର ପ୍ରଜାମାନେ ଘୋର ସନ୍ତାପରେ କାଳ କାଟି ବିନଷ୍ଟ ହେବେ । କଳିରେ ଲୋକମାନଙ୍କର ପରମାୟୁ ମାତ୍ର କୋଡ଼ିଏ ତିରିଶ ବର୍ଷ ହେବ ॥୧୦-୧୧॥ କଳିକାଳର ଦୋଷରୁ ଲୋକମାନଙ୍କ ଶରୀରର କ୍ଷୟ ହେଲେ ବେଦମାର୍ଗ ଓ ବର୍ଣ୍ଣାଶ୍ରମ ଧର୍ମ ନଷ୍ଟ ହୋଇଯିବ । ଧର୍ମ ନାମରେ ପାଖଣ୍ଡମାନଙ୍କର ସଂଖ୍ୟା ବଢ଼ିଯିବ ଓ ଶାସକମାନେ ଡକାୟତଙ୍କ ଭଳି ନିଷ୍ଠୁର ହେବେ । ମନୁଷ୍ୟମାନେ ଚୋରି କରିବେ । ବୃଥାରେ ହିଂସା ଓ ମିଥ୍ୟାଚାର ଆଦି ବୃତ୍ତି କରି ଜୀବନ ନିର୍ବାହକରିବେ ॥୧୨-୧୩॥ ସବୁ ବର୍ଣ୍ଣର ଲୋକ ଶୂଦ୍ରପରି ଆଚରଣ କରିବେ । ଗାଈମାନେ ଛେଳିଙ୍କ ପରି ଛୋଟ ହେବେ ଓ ଅଳ୍ପ ଦୁଧ ଦେବେ । ସବୁ ଆଶ୍ରମ ଗୃହସ୍ଥାଶ୍ରମ ପରି ଆଚରଣ କରିବେ । ବିବାହସମ୍ବନ୍ଧ ହିଁ ବନ୍ଧୁତାର କାରଣ ହେବ ॥୧୪॥ ଶସ୍ୟମାନଙ୍କର ବର୍ଣ୍ଣ ଶ୍ୟାମଳ ଓ ଆକାର ଛୋଟ ହୋଇଯିବ । ବୃକ୍ଷମାନଙ୍କ

ମଧ୍ୟରେ କେବଳ କଣ୍ଟାଗଛ ହିଁ ଅଧିକ ହେବ । ମେଘରେ ଅଧିକ ବିଜୁଳି ଦେଖାଦେବ । (କୌଣସି ଧର୍ମକାର୍ଯ୍ୟ ନ ଥିବାରୁ) ଗୃହଗୁଡ଼ାକ ପ୍ରାୟ ଶୂନ୍ୟ ଦେଖାଯିବ । କଳି ଯୁଗ ଶେଷ ହେବାବେଳକୁ ମନୁଷ୍ୟମାନଙ୍କର ସ୍ୱଭାବ ଗଧର ସ୍ୱଭାବପରି ହୋଇଯିବ । ଏପରି ପରିସ୍ଥିତି ହେଲେ ଧର୍ମରକ୍ଷା କରିବାପାଇଁ ସତ୍ତ୍ୱଗୁଣ ବିସ୍ତାର କରି ଭଗବାନ ଧରାରେ ଅବତରଣ କରିବେ ॥୧୫-୧୬॥

ଅଖିଳ ବିଶ୍ୱର ଆତ୍ମା ସର୍ବଶକ୍ତିମାନ୍ ଭଗବାନ ବିଷ୍ଣୁ ହେଉଛନ୍ତି ଚରାଚର ଜଗତର ଗୁରୁ । ସାଧୁମାନଙ୍କର ଧର୍ମରକ୍ଷାପାଇଁ ଓ ସେମାନଙ୍କୁ କର୍ମବନ୍ଧନରୁ ମୁକ୍ତି ଦେବାପାଇଁ ସେ ଜନ୍ମ ଗ୍ରହଣ କରନ୍ତି । ଶମ୍ଭଳ ନାମକ ଗ୍ରାମର ବିଷ୍ଣୁଯଶା ନାମକ ଶ୍ରେଷ୍ଠ ବ୍ରାହ୍ମଣଙ୍କ ଗୃହରେ ଭଗବାନ୍ କଳ୍କି ଅବତୀର୍ଣ୍ଣ ହେବେ । ଅଷ୍ଟସିଦ୍ଧିଯୁକ୍ତ ଓ ସର୍ବଗୁଣସମ୍ପନ୍ନ ସେହି ଭଗବାନ୍ ଜଗଦୀଶ୍ୱର ଦେବଦତ୍ତ ନାମକ ଏକ ଦ୍ରୁତଗାମୀ ଅଶ୍ୱକୁ ଆରୋହଣ କରି ଖଡ୍ଗଦ୍ୱାରା ଅସାଧୁମାନଙ୍କୁ ଦମନ କରିବେ ॥୧୭-୧୯॥ ଅଲୌକିକଦ୍ୟୁତି ଭଗବାନ୍ କଳ୍କି କ୍ଷିପ୍ରଗାମୀ ଅଶ୍ୱଦ୍ୱାରା ପୃଥିବୀରେ ବୁଲି ବୁଲି କୋଟି କୋଟି ସଂଖ୍ୟାରେ ରାଜବେଶଧାରୀ ଦସ୍ୟୁମାନଙ୍କୁ ନିହତ କରିବେ ॥୨୦॥ ଏହିପରି ସମସ୍ତ ଦସ୍ୟୁ ନିହତ ହେଲେ ଭଗବାନଙ୍କ ଅଙ୍ଗରାଗର ପବିତ୍ର ଗନ୍ଧ ବାୟୁଦ୍ୱାରା ପ୍ରବାହିତ ହୋଇ ନଗରବାସୀ ଓ ଜନପଦବାସୀଙ୍କର ଦେହରେ ଲାଗିବ ଓ ସେମାନଙ୍କର ମନକୁ ପବିତ୍ର କରିଦେବ ॥୨୧॥ ସତ୍ତ୍ୱମୂର୍ତ୍ତି ଭଗବାନ୍ ବାସୁଦେବ ଲୋକମାନଙ୍କର ହୃଦୟରେ ବିରାଜମାନ ହେଲେ ପ୍ରଚୁର ପ୍ରଜାସୃଷ୍ଟି ସମ୍ଭବ ହେବ । ଧର୍ମର ରକ୍ଷକ ଭଗବାନ୍ ଶ୍ରୀହରି କଳ୍କି ଅବତାର ଗ୍ରହଣ କଲେ ସତ୍ୟଯୁଗ ଆରମ୍ଭ ହୋଇଯିବ ଓ ପ୍ରଜାମାନଙ୍କର ସନ୍ତାନମାନେ ସତ୍ତ୍ୱଗୁଣଯୁକ୍ତ ହେବେ । ଯେତେବେଳେ ଚନ୍ଦ୍ର, ସୂର୍ଯ୍ୟ ଓ ବୃହସ୍ପତି ଏକ ରାଶିରେ ପୁଷ୍ୟା ନକ୍ଷତ୍ରରେ ଏକାଠି ପ୍ରବେଶ କରିବେ, ସେତେବେଳେ ସତ୍ୟଯୁଗ ହେବ ॥୨୨-୨୪॥ ଚନ୍ଦ୍ରବଂଶ ଓ ସୂର୍ଯ୍ୟବଂଶରେ ଯେଉଁ ଯେଉଁ ରାଜାମାନେ ପୂର୍ବରୁ ଥିଲେ, ବର୍ତ୍ତମାନ ଅଛନ୍ତି ଓ ଭବିଷ୍ୟତରେ ହେବେ, ତାହା ମୁଁ ସଂକ୍ଷେପରେ ତୁମକୁ କହିଲି । ତୁମ ଜନ୍ମରୁ ଆରମ୍ଭ କରି ରାଜା ନନ୍ଦଙ୍କର ଅଭିଷେକ ସମୟ ହେଉଛି ଏଗାର ଶହ ପନ୍ଦର ବର୍ଷ ॥୨୫॥

ଆକାଶରେ ସପ୍ତର୍ଷିମଣ୍ଡଳ ଉଦିତ ହେବା ପୂର୍ବରୁ ସେମାନଙ୍କ ମଧ୍ୟରେ ଦୁଇଟି ତାରା ପ୍ରଥମେ ଦେଖାଯାଆନ୍ତି । ସେହି ଦୁହିଁଙ୍କର ମଝିରେ ଦକ୍ଷିଣଭାଗରେ ସମଦୂରତ୍ୱରେ ଅଶ୍ୱିନୀ ଆଦି ଗୋଟିଏ ଗୋଟିଏ ନକ୍ଷତ୍ର ରାତିରେ ଦେଖାଯାଆନ୍ତି । ସେହି ଗୋଟିଏ ଗୋଟିଏ ନକ୍ଷତ୍ର ସହିତ ଯୁକ୍ତ ହୋଇ ସପ୍ତର୍ଷିମଣ୍ଡଳ ମନୁଷ୍ୟମାନଙ୍କ ହିସାବରେ ଶହେ ବର୍ଷ ଅବସ୍ଥାନ କରନ୍ତି । ସେହି ସପ୍ତର୍ଷି ବର୍ତ୍ତମାନ ମଘାନକ୍ଷତ୍ରକୁ ଆଶ୍ରୟକରି ରହିଛନ୍ତି ॥୨୬-୨୮॥ ଭଗବାନ୍ ବିଷ୍ଣୁଙ୍କର ଏହି କୃଷ୍ଣାବତାର ରୂପକ ସୂର୍ଯ୍ୟ ଅନ୍ତର୍ହିତ ହୋଇଯିବା ପରେ କଳିଯୁଗ ସମସ୍ତ ଲୋକଙ୍କ ହୃଦୟକୁ ଅଧିକାର କରିଛି, ଯାହା ଫଳରେ ସମସ୍ତେ ପାପରେ ପ୍ରବୃତ୍ତ ହୋଇଛନ୍ତି ॥୨୯॥ ଯେଉଁ ପର୍ଯ୍ୟନ୍ତ ସେହି ରମାପତି ଭଗବାନ୍ ଶ୍ରୀକୃଷ୍ଣ ନିଜର ପାଦପଦ୍ମଦ୍ୱାରା ଏହି ପୃଥିବୀକୁ ସ୍ପର୍ଶ କରୁଥିଲେ, ସେ ପର୍ଯ୍ୟନ୍ତ କଳି ପୃଥିବୀକୁ ଆକ୍ରମଣ କରିପାରୁ ନ ଥିଲା ॥୩୦॥ ଯେଉଁ ସମୟରେ ସପ୍ତର୍ଷିମାନେ ମଘା ନକ୍ଷତ୍ରରେ ବିଚରଣ କରନ୍ତି, ସେହି ସମୟଠାରୁ କଳିଯୁଗର ଆରମ୍ଭ ହୁଏ ଏବଂ ବାରଶହ ବର୍ଷଧରି (ଦେବତାମାନଙ୍କ ଗଣନା ଅନୁଯାୟୀ) କଳିଯୁଗ ରହେ । ଯେତେବେଳେ ମଘା ନକ୍ଷତ୍ରରୁ ସପ୍ତର୍ଷିମାନେ ପୂର୍ବାଷାଢ଼ା ନକ୍ଷତ୍ରକୁ ଯିବେ, ସେତେବେଳେ ରାଜାନନ୍ଦଙ୍କଠାରୁ କଳିଯୁଗର ବୃଦ୍ଧି ଘଟିବ । ଯେଉଁଦିନ ଯେଉଁ ସମୟରେ କୃଷ୍ଣ ସ୍ୱଧାମକୁ ପ୍ରସ୍ଥାନ କଲେ, ସେହିଦିନ ସେହି ସମୟରେ କଳିଯୁଗର ପ୍ରବେଶ ହେଲା ବୋଲି ପୁରାତତ୍ତ୍ୱବିତ୍‌ମାନେ କହିଛନ୍ତି । ଦେବତାମାନଙ୍କ ହଜାର ବର୍ଷପରେ ଚତୁର୍ଥ କଳିଯୁଗ ଶେଷ ହେଲେ ପୁଣି ସତ୍ୟଯୁଗ ଆରମ୍ଭହେବ ଏବଂ ଲୋକଙ୍କ ମନ ନିଜର ପ୍ରକୃତ ସ୍ୱରୂପକୁ ପ୍ରକାଶ କରିବ ॥୩୧-୩୪॥ ପରିକ୍ଷିତ, ପୃଥିବୀରେ ଯେପରି ମନୁବଂଶୀୟ ରାଜାଙ୍କ ବଂଶର ସଂଖ୍ୟାଗଣନା କରାଯାଏ ସେହିପରି ବ୍ରାହ୍ମଣ, ବୈଶ୍ୟ ଓ ଶୂଦ୍ରମାନଙ୍କର ବଂଶଗଣନା ପ୍ରତ୍ୟେକ ଯୁଗରେ ହୁଏ ବୋଲି ଜାଣିବ ॥୩୫॥ ପରିକ୍ଷିତ, ଯେଉଁସବୁ ପୁରୁଷ ଓ ମହାତ୍ମାମାନଙ୍କ ବିଷୟରେ ବର୍ଣ୍ଣନା କରାଗଲା, ସେମାନେ ନାହାନ୍ତି । ନାମ ଅନୁସାରେ ସେମାନେ ପରିଚିତ ହୁଅନ୍ତି । କିନ୍ତୁ ସେମାନଙ୍କର କଥା ଓ କୀର୍ତ୍ତି ପୃଥିବୀରେ

ରହିଯାଇଛି ।।୩୬।। ସୋମବଂଶୀୟ ଶାନ୍ତନୁଙ୍କର ଭ୍ରାତା ଦେବାପି ଓ ଇକ୍ଷ୍ୱାକୁ ବଂଶର ମରୁ କଳାପଗ୍ରାମରେ ବାସ କରୁଛନ୍ତି । ସେମାନେ ଶ୍ରୀକୃଷ୍ଣଙ୍କଠାରୁ ଶିକ୍ଷା ଲାଭ କରି ମହା ଯୋଗ ଓ ବଳଯୁକ୍ତ ହୋଇଛନ୍ତି । କଳିଯୁଗ ଶେଷହେଲେ ସେମାନେ ଏଠାକୁ ଆସି ସତ୍ୟଯୁଗରେ ପୁଣି ବର୍ଣ୍ଣାଶ୍ରମ ଧର୍ମର ବିସ୍ତାର କରିବେ । ସତ୍ୟ, ତେତ୍ରା, ଦ୍ୱାପର ଓ କଳି ଏକାଦିକ୍ରମରେ ଏହି ପୃଥିବୀରେ ପ୍ରାଣୀମାନଙ୍କ ଉପରେ ପ୍ରଭାବବିସ୍ତାର କରନ୍ତି ।।୩୭-୩୯।। ପରିକ୍ଷିତ, ମୁଁ ଯେଉଁ ଦେବତୁଲ୍ୟ ରାଜା, ବ୍ରାହ୍ମଣ, ବୈଶ୍ୟ ଶୂଦ୍ର ଓ ଅନ୍ୟଲୋକମାନଙ୍କର କଥା ଉଲ୍ଲେଖ କଲି ସେମାନେ ପୃଥିବୀରେ ନିଜର ଅହମିକା ବିସ୍ତାର କରି ଅନ୍ତକାଳରେ ପୃଥିବୀକୁ ଛାଡ଼ି ମୃତ୍ୟୁବରଣ କରିଛନ୍ତି । ଯେଉଁମାନେ ରାଜାନାମରେ ଏହି ପୃଥିବୀରେ ପରିଚିତ, ମୃତ୍ୟୁପରେ ସେମାନେ କୃମି, ବିଷ୍ଠା ଓ ଭସ୍ମରେ ପରିଣତ ହୁଅନ୍ତି । ଏପରି ଅବସ୍ଥାରେ ପେଟ ପୋଷିବାପାଇଁ ଯେଉଁ ପ୍ରାଣୀ ହିଂସା କରେ, ସେ ନିଜର ପ୍ରକୃତ ସ୍ୱାର୍ଥ ବୁଝିପାରେ ନାହିଁ । କାରଣ ଏହି ଜୀବହିଂସାପାଇଁ ସେ ନରକଗାମୀ ହୋଇଥାଏ ।।୪୦-୪୧।। ନିଜର ମମତା ଛାଡ଼ି ନ ପାରି ଯେଉଁ ରାଜାଭାବେ ମୋର ପୂର୍ବପୁରୁଷମାନେ ଏହି ଅଖଣ୍ଡ ଭୂମଣ୍ଡଳକୁ ପାଳନ କରୁଥିଲେ; ମୁଁ ଏହାକୁ ଶାସନ କରୁଛି; ମୋର ଅନ୍ତେ ମୋର ପୁତ୍ର, ପୌତ୍ର ଓ ଜ୍ଞାତିମାନେ ଏହାକୁ କିପରି ଲାଭ କରିବେ; ସେହି ନିର୍ବୋଧ ରାଜାମାନେ ମମତାରେ ପଡ଼ି ତେଜ, ଜଳ ଓ ଅନ୍ନମୟ ଏହି କ୍ଷଣଭଂଗୁର ଦେହ ଓ ଭୂମଣ୍ଡଳକୁ ନିଜର ବୋଲି ମନେ କରିଥା'ନ୍ତି । କିନ୍ତୁ ଆୟୁ ଶେଷ ହୋଇଗଲେ ସେମାନେ ଦେହ ଓ ଭୂମଣ୍ଡଳ ଉଭୟକୁ ଛାଡ଼ି କୁଆଡ଼େ ଅନ୍ତର୍ହିତ ହୋଇଯାଆନ୍ତି ।।୪୨-୪୩।। ରାଜା, ଯେଉଁ ଯେଉଁ ରାଜାମାନେ ବଳପୂର୍ବକ ଏହି ପୃଥିବୀକୁ ଭୋଗ କରନ୍ତି, କାଳବଶରେ ସେମାନେ କୁଆଡ଼େ ଚାଲିଯାଆନ୍ତି ଓ କେବଳ କଥାର କଥା ହୋଇ ରହନ୍ତି ।।୪୪।।

## ତୃତୀୟ ଅଧ୍ୟାୟ

# ଯୁଗଧର୍ମ ଓ ନାମ ସଂକୀର୍ତ୍ତନ

ଶ୍ରୀ ଶୁକଦେବ କହିଲେ, ପୃଥିବୀକୁ ଜୟ କରିବାପାଇଁ ବ୍ୟଗ୍ର ରାଜାମାନଙ୍କୁ ଦେଖି ପୃଥିବୀ ବହୁତ ହସେ ଓ କହେ, ଏହି ରାଜାମାନେ ହେଉଛନ୍ତି ମୃତ୍ୟୁର ଖେଳନା । ଏମାନେ ପୁଣି ମୋତେ ଜୟ କରିବାକୁ ଇଚ୍ଛା କରୁଛନ୍ତି ! ।।୧।। ଯେଉଁ ରାଜାମାନେ କ୍ଷଣସ୍ଥାୟୀ ଫେଣପରି ଏହି ଦେହକୁ ଏତେ ବିଶ୍ୱାସ କରନ୍ତି, ସେହି ରାଜାମାନଙ୍କର ଏପରିକି ବିଦ୍ୱାନ୍‌ମାନଙ୍କର ପୃଥିବୀ ଜୟର ଅଭିଳାଷ ବିଡ଼ମ୍ବନା ମାତ୍ର ।।୨।। ଯେଉଁ ରାଜାମାନେ ଭାବନ୍ତି, ସେମାନେ ଇନ୍ଦ୍ରିୟମାନଙ୍କୁ ଜୟକରି ବଳସଞ୍ଚୟ କରିବାଦ୍ୱାରା ଶତ୍ରୁପକ୍ଷର ରାଜମନ୍ତ୍ରୀମାନଙ୍କୁ ବଶୀଭୂତ କରିବେ ଏବଂ ତାପରେ ଅମାତ୍ୟ, ନାଗରିକ, ରାଜାର ଜ୍ଞାତି, ସ୍ୱଜନ ଓ ହସ୍ତୀରକ୍ଷକମାନଙ୍କୁ ବଶୀଭୂତ କରି ଶତ୍ରୁକୁ ଜୟ କରିବେ ଏବଂ ଏହିପରି ସସାଗରା ପୃଥିବୀକୁ ଜୟ କରିବେ, ସେମାନେ ତାଙ୍କର ପାଖେ ପାଖେ ଥିବା ଯମକୁ (ମୃତ୍ୟୁ) ଦେଖିପାରନ୍ତି ନାହିଁ ।।୩-୪।। କେହି କେହି ରାଜା ସମୁଦ୍ରବେଷ୍ଟିତ ପୃଥିବୀକୁ ଜୟ କରି ପୁଣି ସମୁଦ୍ରରେ ପ୍ରବେଶ କରନ୍ତି(ସାଗରଯାତ୍ରା କରନ୍ତି); ଏହାଦ୍ୱାରା କିପରି ଇନ୍ଦ୍ରିୟ ଜୟ ହୁଏ ? ଇନ୍ଦ୍ରିୟ ଜୟର ଏକମାତ୍ର ଫଳ ହେଉଛି ମୁକ୍ତି ।।୫।। କୁରୁଶ୍ରେଷ୍ଠ ପରିକ୍ଷିତ, (ପୃଥିବୀ କହୁଛନ୍ତି) ମନୁଗଣ ଓ ତାଙ୍କର ପୁତ୍ରମାନେ ଯୁଦ୍ଧରେ ଜୟର ଆଶା ଛାଡ଼ିଦେଇ ବୈରାଗ୍ୟବଶତଃ ମୋତେ ତ୍ୟାଗ କରି ଯେଉଁଠାରୁ ଆସିଛନ୍ତି, ସେଠାକୁ ଫେରିଯାଇଛନ୍ତି । କିନ୍ତୁ ଏବେ ଏହି ନିର୍ବୋଧ ରାଜାମାନେ ମୋତେ ଜୟ କରିବାକୁ ଇଚ୍ଛା କରୁଛନ୍ତି ।।୬।। ମୋ ପ୍ରତି ମମତାରେ ଆବଦ୍ଧଚେତା ଦୁଷ୍ଟ ରାଜାମାନଙ୍କ ରାଜ୍ୟରେ ମୋ'ପାଇଁ ପିତାପୁତ୍ର ଓ ଭାଇଭାଇଙ୍କ ମଧ୍ୟରେ ଲଢ଼େଇ ହୁଏ ।।୭।। 'ରେ ମୂଢ଼, ଏ ସମଗ୍ର ପୃଥିବୀ ମୋର, ତୋର ନୁହେଁ '-

- ଏହା କହି ରାଜାମାନେ ପରସ୍ପରକୁ ସ୍ପର୍ଦ୍ଧା କରନ୍ତି ଓ ପରସ୍ପରକୁ ହତ୍ୟା କରିବାକୁ ଯାଇ ମୃତ୍ୟୁବରଣ କରନ୍ତି ॥୮॥ ପୃଥୁ, ପୁରୂରବା, ଗାଧି, ନହୁଷ, ଭରତ, ସହସ୍ରାର୍ଜୁନ, ମାନ୍ଧାତା, ସଗର, ରାମ, ଖଟ୍ୱାଙ୍ଗ, ଧୁନ୍ଧୁମାର, ରଘୁ, ତୃଣବିନ୍ଦୁ, ଯଯାତି, ଶର୍ଯାତି, ଶନ୍ତନୁ, ଗୟ, ଭଗୀରଥ, କୁବଳୟାଶ୍ୱ, କକୁତ୍ସ୍ଥ, ନଳ, ନୃଗ, ହିରଣ୍ୟକଶିପୁ, ବୃତ୍ରାସୁର, ନମୁଚି, ଲୋକଙ୍କର କଷ୍ଟଦାତା ରାବଣ, ଶମ୍ବର, ଭୌମାସୁର, ହିରଣାକ୍ଷ, ତାରକାସୁର ଏବଂ ଆହୁରି ଅନେକ ଶକ୍ତିଶାଳୀ ଦୈତ୍ୟ ଓ ରାଜା ଥିଲେ । ସେମାନେ ବୀର ଓ ସମସ୍ତ ବିଷୟରେ ପଣ୍ଡିତଥିଲେ । ସେମାନେ ନିଜେ ଅଜେୟ ହୋଇ ସବୁ କିଛି ଜୟ କରିପାରିଥିଲେ । ମୋ (ପୃଥିବୀ) ପ୍ରତି ସେମାନଙ୍କର ମମତା ବହୁତ ବେଶୀ ଥିଲା । କିନ୍ତୁ ସେମାନେ ଯେ ମରଣଶୀଳ ! ସେମାନେ କିଛି କରିପାରିଲେ ନାହିଁ ଏବଂ କିମ୍ବଦନ୍ତୀ ହୋଇ ରହିଗଲେ ॥୯-୧୩॥ ପରିକ୍ଷିତ, ପରଲୋକଗତ ଏହି ମହୀୟାନ୍ ରାଜାମାନେ ପୃଥିବୀରେ ଯଶ ବିସ୍ତାର କରି ବିଦାୟ ନେଇଛନ୍ତି । ସେମାନଙ୍କର ବିଭୂତି ବିଷୟରେ ତୁମକୁ ଯାହା ମୁଁ କହିଲି ତାହା ପରମାର୍ଥ ଲାଭର ବିଷୟ ନୁହେଁ । ଜ୍ଞାନ ଓ ବୈରାଗ୍ୟର ଉପଦେଶ ଦେବା ଛଳରେ ମୁଁ ତାହା ସବୁ ତୁମକୁ ଶୁଣାଇଲି ॥୧୪॥ ଉତ୍ତମଶ୍ଲୋକ ଭଗବାନ୍ ଶ୍ରୀକୃଷ୍ଣଙ୍କ ଗୁଣାବଳୀର କୀର୍ତ୍ତନ ସମସ୍ତ ଅମଙ୍ଗଳକୁ ସଂଗେ ସଙ୍ଗେ ନଷ୍ଟ କରିଦିଏ । ଭଗବାନ୍ ଶ୍ରୀକୃଷ୍ଣଙ୍କଠାରେ ଯେ ନିର୍ମଳଭକ୍ତି ପାଇବାକୁ ଇଚ୍ଛା କରେ, ସେ ନିତ୍ୟ ତାଙ୍କର ସେଇ ଗୁଣାବଳୀକୁ ହିଁ ଶ୍ରବଣ କରିବା ଉଚିତ ॥୧୫॥ ପରିକ୍ଷିତ ପଚାରିଲେ, ଭଗବାନ୍, କଳିରେ ସଞ୍ଚିତ କଳିର ଦୋଷମାନଙ୍କୁ ଲୋକମାନେ କେଉଁ ଉପାୟରେ ନାଶ କରିବେ, ତାହା ମୋତେ ଦୟାକରି କହନ୍ତୁ, ଏବଂ ଏଥି ସହିତ ଯୁଗ ଓ ଯୁଗଧର୍ମ ଲକ୍ଷଣ, ସଂହାରକାଳ ଓ ସ୍ଥିତିକାଳର ପରିମାଣ ଏବଂ କାଳରୂପୀ ଭଗବାନ୍ ପରମେଶ୍ୱରଙ୍କର ଗତି--ଏହି ସମସ୍ତ ବିଷୟ ଆପଣ ବର୍ଣ୍ଣନା କରନ୍ତୁ ॥୧୬-୧୭॥

ଶ୍ରୀ ଶୁକଦେବ କହିଲେ, ରାଜା, ଲୋକମାନେ ଯାହାକୁ ଧାରଣ କରନ୍ତି, ସେ ସମୟରେ ତାହା ହେଉଛି ଧର୍ମ । ସତ୍ୟ ଯୁଗରେ ଧର୍ମର ଚାରୋଟି ପାଦ ଥାଏ--ସତ୍ୟ, ଦୟା, ତପ ଓ ଦାନ ଏବଂ ସତ୍ୟ ଯୁଗରେ ଲୋକମାନେ ସନ୍ତୁଷ୍ଟ, ଦୟାବନ୍ତ, ମିତ୍ରଭାବାପନ୍ନ, ଶାନ୍ତ, ସଂଯତ, ସହିଷ୍ଣୁ, ଆତ୍ମାରାମ, ସମଦର୍ଶୀ ଓ ପ୍ରାୟ ସତ୍ତ୍ୱଗୁଣସମ୍ପନ୍ନ ହୁଅନ୍ତି ॥୧୮-୧୯॥ ତ୍ରେତାଯୁଗରେ ଧର୍ମର ଚାରି ପାଦରୁ ଏକଚତୁର୍ଥାଂଶର ହାନି ଘଟେ । ମିଥ୍ୟା, ହିଂସା, ଅସନ୍ତୋଷ ଓ କଳହ -- ଅଧର୍ମର ଏହି ଚାରୋଟି ପାଦ ଅଛି । ଏମାନଙ୍କ ଦ୍ୱାରା ଏହି ହାନି ଘଟିଥାଏ । ତ୍ରେତାଯୁଗରେ ବର୍ଣ୍ଣମାନଙ୍କ ମଧ୍ୟରେ ବ୍ରାହ୍ମଣମାନଙ୍କର ସଂଖ୍ୟା ଅଧିକ ରହିଥାଏ । ଲୋକମାନେ କର୍ମକାଣ୍ଡ ଓ ତପସ୍ୟାରେ ନିଷ୍ଠା ରଖନ୍ତି । ଅତି ହିଂସ୍ର ବା ଲମ୍ପଟ ହୁଅନ୍ତି ନାହିଁ । ବେଦବିଦ୍ୟାରେ ପ୍ରବୀଣ ହୋଇ ଧର୍ମ, ଅର୍ଥ ଓ କାମ - ଏହି ତିନୋଟି ପୁରୁଷାର୍ଥର ସେବା କରନ୍ତି ॥୨୦-୨୧॥ ଦ୍ୱାପର ଯୁଗରେ ହିଂସା, ଅସନ୍ତୋଷ, ମିଥ୍ୟା ଓ ଦ୍ୱେଷରୂପକ ଅଧର୍ମର ଲକ୍ଷଣଦ୍ୱାରା ତପସ୍ୟା, ସତ୍ୟ, ଦୟା ଓ ଦାନରୂପକ ଧର୍ମର ଅର୍ଦ୍ଧଭାଗ କ୍ଷୀଣ ହୁଏ । ଏ ଯୁଗରେ ଲୋକମାନେ ପ୍ରଶଂସାପ୍ରିୟ, ଉଚ୍ଚମନା, ବେଦାଧ୍ୟୟନରତ, ଧନୀ, ବହୁକୁଟୁମ୍ବୀ ଓ ହୃଷ୍ଟପୁଷ୍ଟ ହୁଅନ୍ତି । କ୍ଷତ୍ରିୟ ଓ ବ୍ରାହ୍ମଣ -- ଏହି ଉଭୟ ବର୍ଣ୍ଣର ପ୍ରାଧାନ୍ୟ ରହିଥାଏ ॥୨୨-୨୩॥ କଳିଯୁଗରେ ଅଧର୍ମର ବୃଦ୍ଧିଯୋଗୁଁ ଧର୍ମର ଯେଉଁ ଏକ ଚତୁର୍ଥାଂଶ ଅବଶିଷ୍ଟ ଥାଏ, ତାହା କ୍ଷୟ ହୋଇ ହୋଇ ଶେଷକୁ ନଷ୍ଟ ହୋଇଯାଏ ॥୨୪॥ କଳିଯୁଗରେ ଲୋକମାନେ ଲୋଭୀ, ଦୁରାଚାରୀ, ନିର୍ଦ୍ଦୟ, ବିନାକାରଣରେ କଳହରତ, ଦୁର୍ଭାଗା ଏବଂ ପ୍ରଚୁର କାମାସକ୍ତ ହୁଅନ୍ତି । ବର୍ଣ୍ଣମାନଙ୍କ ମଧ୍ୟରେ ଶୂଦ୍ର ଓ କୈବର୍ତ୍ତ ଆଦି ପ୍ରଧାନ ହୁଅନ୍ତି ॥୨୫॥ ପୁରୁଷମାନଙ୍କ ମଧ୍ୟରେ ସତ୍ତ୍ୱ, ରଜ ଓ ତମଗୁଣ ଦେଖାଯାଏ । କାଳର ପ୍ରେରଣାରେ ଏହି ଗୁଣମାନଙ୍କର ହ୍ରାସ-ବୃଦ୍ଧି ଘଟିଥାଏ ॥୨୬॥

ଯେଉଁ ସମୟରେ ମନ, ବୁଦ୍ଧି ଓ ଇନ୍ଦ୍ରିୟମାନେ ସତ୍ତ୍ୱଗୁଣରେ ପ୍ରତିଷ୍ଠିତ ହୁଅନ୍ତି ଏବଂ ଜ୍ଞାନ ଓ ତପସ୍ୟାପ୍ରତି ବିଶେଷ ରୁଚି ଜନ୍ମେ, ତାହା ସତ୍ୟ ଯୁଗ ବୋଲି ବୁଝିବାକୁ ହେବ ॥୨୭॥ ବୁଦ୍ଧିମାନ୍ ପରିକ୍ଷିତ, ଯେତେବେଳେ ମନୁଷ୍ୟମାନଙ୍କର କାମ୍ୟ କର୍ମ ଓ ଯଶ ପ୍ରତି ବିଶେଷ ଆସକ୍ତି ଜନ୍ମେ, ତାହା ରଜୋଗୁଣ ପ୍ରଧାନ ତ୍ରେତାଯୁଗବୋଲି ଜାଣିବ ॥୨୮॥ ଯେତେବେଳେ ଲୋଭ,

ଅସନ୍ତୋଷ, ଅଭିମାନ, ଦମ୍ଭ ଓ ମାତ୍ସର୍ଯ୍ୟ ଆଦି ଦୋଷ ଦେଖାଯାଏ, ତାହା ଦ୍ୱାପର ଯୁଗବୋଲି ବୁଝିବାକୁ ହେବ । ଏହି ସମୟରେ ଲୋକମାନେ ରଜ ଓ ତମ ଗୁଣର ବଶବର୍ତ୍ତୀ ହୋଇ ସକାମ କର୍ମରେ ଲାଗିପଡ଼ନ୍ତି ॥୨୯॥ ଯେତେବେଳେ ଲୋକମାନେ ମାୟା, ମିଥ୍ୟା, ତନ୍ଦ୍ରା, ନିଦ୍ରା, ହିଂସା, ଦୁଃଖ, ଶୋକ, ମୋହ, ଭୟ ଓ ଦାରିଦ୍ର୍ୟରେ ପୀଡ଼ିତ ହୁଅନ୍ତି, ତାହାକୁ ତମୋମୟ କଳିକାଳ ବୋଲି ବୁଝିବାକୁ ହେବ ॥୩୦॥ କଳିଯୁଗର ପ୍ରଭାବରେ ମନୁଷ୍ୟମାନଙ୍କର ଦୃଷ୍ଟି ଛୋଟ ହୋଇଯାଏ । ସେମାନଙ୍କର ଭାଗ୍ୟ ମଧ୍ୟ ଛୋଟ ହୋଇଯାଏ । ସେମାନେ ବହୁତ ଖାଇବାକୁ ଭଲ ପାଆନ୍ତି । ସେମାନେ ନିର୍ଦ୍ଧନ ଅଥଚ କାମାସକ୍ତ ହୁଅନ୍ତି । ନାରୀମାନେ ବେଶ୍ୟାବୃତ୍ତି କରି ଅସତୀ ହୁଅନ୍ତି । ରାଜ୍ୟରେ ଦସ୍ୟୁମାନଙ୍କର ଅତ୍ୟାଚାର ବଢ଼ିଯାଏ । ପାଷଣ୍ଡମାନେ ବେଦର କଦର୍ଥ କରି ତାହାକୁ ଦୂଷିତ କରନ୍ତି । ରାଜାମାନେ ପ୍ରଜାପୀଡ଼କ ହୁଅନ୍ତି ଓ ବ୍ରାହ୍ମଣମାନେ ନିଜର ଜନନେନ୍ଦ୍ରିୟ ଓ ଉଦରର ତୃପ୍ତିପାଇଁ ଲାଗିପଡ଼ନ୍ତି । ଉପନୟନ ନ ହୋଇ ବ୍ରାହ୍ମଣବାଳକମାନେ ଅପବିତ୍ର ହୁଅନ୍ତି । କୁଟୁମ୍ବବହୁଳ ହୋଇ ଗୃହସ୍ଥମାନେ ଭିକ୍ଷା ଦେଇପାରନ୍ତି ନାହିଁ; ବରଂ ନିଜେ ଭିକ୍ଷା ମାଗନ୍ତି । ତପସ୍ୱୀମାନେ ବନବାସ ଛାଡ଼ି ନଗରବାସୀ ହୁଅନ୍ତି ଓ ସର୍ବତ୍ୟାଗୀ ସନ୍ନ୍ୟାସୀମାନେ ଅତିଶୟ ଅର୍ଥଲୋଭୀ ହୋଇଯାଆନ୍ତି ॥୩୧-୩୩॥ କଳିକାଳରେ ସ୍ତ୍ରୀମାନେ କ୍ଷୁଦ୍ରକାୟ, ବହୁଭୋଜୀ, ବହୁସନ୍ତାନବତୀ, ଲଜ୍ଜାହୀନା, କଟୂ ଭାଷିଣୀ ଏବଂ ଚୋରି ଓ କପଟ ବ୍ୟବହାରରେ ନିପୁଣ ହୁଅନ୍ତି ॥୩୪॥ ବ୍ୟବସାୟୀମାନେ ବ୍ୟବସାୟ ବାଣିଜ୍ୟରେ କପଟୀ ଓ କ୍ଷୁଦ୍ରମନା ହୁଅନ୍ତି ଓ ଠକାମିଦ୍ୱାରା ସାଧୁମାନଙ୍କର ନିନ୍ଦିତ ନିଜର ବ୍ୟବସାୟକୁ ଚଳାଇ ରଖନ୍ତି । ନାରୀମାନେ ନିର୍ଦ୍ଧନ ପତିକୁ ଛାଡ଼ିଦିଅନ୍ତି । ଭୃତ୍ୟମାନେ ସର୍ବଗୁଣସମ୍ପନ୍ନ ସ୍ୱାମୀଙ୍କୁ ଛାଡ଼ି ପଳାନ୍ତି । ଭୃତ୍ୟ ଯେତେ ପୁରୁଣା ହେଲେ ମଧ୍ୟ ବିପଦରେ ପଡ଼ିଲେ ଗୃହସ୍ୱାମୀ ତାକୁ ଛାଡ଼ିଦିଏ ଓ ଗାଈମାନେ କ୍ଷୀର ଦେବା ବନ୍ଦ କରିଦେଲେ ଲୋକମାନେ ତାଙ୍କୁ ଛାଡ଼ିଦିଅନ୍ତି ॥୩୫-୩୬॥ କଳିଯୁଗରେ ପୁରୁଷମାନେ ସ୍ତ୍ରୈଣ ଓ ଲମ୍ପଟ ହୁଅନ୍ତି । ବିବାହ କରି ନିଜର ପିତା, ମାତା, ଜ୍ଞାତି ବନ୍ଧୁଙ୍କୁ ଛାଡ଼ି ଦିଅନ୍ତି ଓ ନିଜର ଶାଳୀ ଓ ଶଳାମାନଙ୍କ ସହିତ ସଂପର୍କ ରଖନ୍ତି । ପେଟ ପୋଷିବାପାଇଁ ତପସ୍ୱୀର ବେଶ ଧାରଣକରି ଶୂଦ୍ରମାନେ ଦାନ ଗ୍ରହଣ କରନ୍ତି । ଧର୍ମ ବିଷୟରେ ଜାଣି ନ ଥିବା ଲୋକମାନେ ଉଚ୍ଚ ଶାସନରେ ବସି ଧର୍ମ ବିଷୟରେ ବକ୍ତୃତା ଦିଅନ୍ତି ॥୩୭-୩୮॥ ଦୁର୍ଭିକ୍ଷ ଓ କରଭାରରେ ପୀଡ଼ିତ ପ୍ରଜାମାନେ ସବୁବେଳେ ଉଦ୍‌ବିଗ୍ନ ମନରେ ସମୟ କଟାନ୍ତି ଓ ମରୁଡ଼ିରେ ପୀଡିତ ହୋଇ ଅନାହାରରେ କାଳଯାପନ କରନ୍ତି ॥୩୯॥ କଳିଯୁଗରେ ପ୍ରଜାମାନେ ବସନ, ଭୂଷଣ, ଖାଦ୍ୟ, ପାନୀୟ, ଶଯ୍ୟା, ମୈଥୁନ ଓ ସ୍ନାନ ଆଦିର ଅଭାବରେ ପିଶାଚ ପରି ଦେଖାଯାଆନ୍ତି ॥୪୦॥ କଳିଯୁଗରେ ପାଞ୍ଚପଇସା (କୋଡ଼ିଏଟି କଉଡ଼ି) ପାଇଁ ଲୋକେ ବନ୍ଧୁଙ୍କୁ ଛାଡ଼ିଦିଅନ୍ତି, ପ୍ରାଣ ଦେଇ ଦିଅନ୍ତି ଓ ନିଜ ଲୋକଙ୍କୁ ହତ୍ୟା କରନ୍ତି । ସେମାନଙ୍କର ମନୋଭାବ ଏତେ ନୀଚ ହୋଇଯାଏ ଯେ ସେମାନେ ନିଜର ଉଦର ଓ କାମବାସନାର ଚରିତାର୍ଥପାଇଁ ସବୁ କରନ୍ତି । କିନ୍ତୁ ନିଜର ବୃଦ୍ଧ ପିତା-ମାତା, ପୁତ୍ର ଓ କୁଳୀନ ଭାର୍ଯ୍ୟାର ଭରଣ ପୋଷଣ କରନ୍ତି ନାହିଁ ॥୪୧-୪୨॥

ହେ ରାଜା, ତ୍ରିଲୋକର ଅଧୀଶ୍ୱର ବ୍ରହ୍ମାଦି ଦେବତାମାନେ ଯାହାଙ୍କର ପାଦ ପଦ୍ମରେ ନିଜର ମସ୍ତକକୁ ଅବନତ କରିଥା'ନ୍ତି, ପାଖଣ୍ଡମାନଙ୍କ ପ୍ରରୋଚନାରେ କଳିଯୁଗର ଲୋକମାନେ ବୋଧଶକ୍ତି ହରାଇ ଜଗତର ସେହି ପରମପିତା ଭଗବାନ୍ ଅଚ୍ୟୁତଙ୍କୁ ପୂଜା କରିବେ ନାହିଁ ॥୪୩॥ ମରଣକାଳରେ ଭୟ ବା ରୋଗରେ ଆତୁର ଅବସ୍ଥାରେ ପଡ଼ିଯିବାବେଳେ, ପତନ ବା ସ୍ଖଳନ ସମୟରେ ବିବଶ ହୋଇ ଯେଉଁ ପୁରୁଷ ଭଗବାନଙ୍କର ନାମକୁ ଉଚ୍ଚାରଣ କରେ, କର୍ମ ବନ୍ଧନରୁ ସେ ମୁକ୍ତ ହୋଇଯାଏ ଓ ଉତ୍ତମ ଗତି ପ୍ରାପ୍ତହୁଏ । କିନ୍ତୁ ସେହି ଭଗବାନଙ୍କୁ କଳିଯୁଗର ଲୋକେ ପୂଜା କରିବେ ନାହିଁ ॥୪୪॥ ସେହି ଭଗବାନ୍ ପୁରୁଷୋତ୍ତମ ମନୁଷ୍ୟର ହୃଦୟରେ ରହି ଦେଶରେ, ଦ୍ରବ୍ୟରେ ଓ ମନୁଷ୍ୟର ମନ ମଧ୍ୟରେ ଉତ୍ପନ୍ନ କଳିକାଳର ସମସ୍ତ ଦୋଷକୁ ହରଣ କରନ୍ତି । ଭଗବାନଙ୍କର ନାମ ରୂପ, ଲୀଳା ଆଦି ଶ୍ରବଣ କଲେ, କୀର୍ତ୍ତନ କଲେ, ଧ୍ୟାନ କଲେ, ପୂଜା କଲେ ଓ ଆଦର କଲେ ହୃଦୟସ୍ଥ ଭଗବାନ୍ ମନୁଷ୍ୟମାନଙ୍କର ଅୟୁତଜନ୍ମର ଅମଙ୍ଗଳକୁ ଦୂର କରିଦିଅନ୍ତି । ସୁନାରେ ଥାଇ ନିଆଁ ଯେପରି

ତାହାର ସମସ୍ତ ଧାତୁଗତ ମଳିନତାକୁ ଦୂରକରେ, ସେହିପରି ହୃଦୟସ୍ଥ ଭଗବାନ୍ ବିଷ୍ଣୁ ଯୋଗୀର ସମସ୍ତ ଅଶୁଭ ସଂସ୍କାରକୁ ଦୂର କରିଦିଅନ୍ତି ।।୪୫-୪୭।। ବିଦ୍ୟା, ତପସ୍ୟା, ପ୍ରାଣାୟାମ, ପ୍ରାଣୀମାନଙ୍କଠାରେ ମିତ୍ରଭାବ, ତୀର୍ଥଯାତ୍ରା, ଅଭିଷେକ, ବ୍ରତ, ଦାନ ଓ ଜପ ଦ୍ୱାରା ଯାହା ଶୁଦ୍ଧ ହୁଏ ନାହିଁ, ଭଗବାନ ଅନନ୍ତ ହୃଦୟରେ ବିରାଜମାନ କଲେ ତାହା ହୋଇଥାଏ ।।୪୮।। ସେଥିପାଇଁ ହେ ପରିକ୍ଷିତ, ବର୍ତ୍ତମାନ ତୁମର ମୃତ୍ୟୁ ସମୟ ଆସି ଉପସ୍ଥିତ ହେବାକୁ ଯାଉଛି । ସର୍ବାନ୍ତଃକରଣରେ ହୃଦୟମଧ୍ୟରେ ଭଗବାନ୍ କେଶବଙ୍କୁ ସ୍ଥାପିତ କର ; ନିଶ୍ଚୟ ତୁମର ପରମଗତି ଲାଭହେବ ।।୪୯।। ପ୍ରିୟ ପରିକ୍ଷିତ, ଭଗବାନ୍ ସମସ୍ତଙ୍କର ଆତ୍ମାରେ ଓ ସମସ୍ତଙ୍କର ଆଶ୍ରୟରୂପରେ ରହିଛନ୍ତି । ମ୍ରିୟମାଣ ଅବସ୍ଥାରେ ଥିବା ମନୁଷ୍ୟ ତାଙ୍କୁ ଧ୍ୟାନ କଲେ ସେ ସର୍ବଦା ତାକୁ ନିଜର ସ୍ୱରୂପରେ ଲୀନ କରିଦିଅନ୍ତି ।।୫୦।। ଦୋଷମାନଙ୍କର ଆକର କଳିଯୁଗର ଗୋଟିଏ ପ୍ରଧାନ ଗୁଣ ଅଛି । କେବଳ କୃଷ୍ଣଙ୍କର ନାମକୀର୍ତ୍ତନ କଲେ ଜୀବର ସମସ୍ତ ଆସକ୍ତି ଦୂର ହୋଇ ସେ ପରମଗତି ଲାଭ କରେ ।।୫୧।। ସତ୍ୟ ଯୁଗରେ ଭଗବାନଙ୍କୁ ଧ୍ୟାନ କଲେ, ତ୍ରେତୟା ଯୁଗରେ ଯଜ୍ଞଦ୍ୱାରା ଆରାଧନା କଲେ, ଦ୍ୱାପରରେ ସେବାପୂଜା କଲେ ଯେଉଁ ଫଳ ମିଳେ, କଳି ଯୁଗରେ କେବଳ ହରିନାମ କୀର୍ତ୍ତନଦ୍ୱାରା ସେହି ଫଳ ମିଳିଥାଏ ।।୫୨।।

## ଚତୁର୍ଥ ଅଧ୍ୟାୟ

# ପ୍ରଳୟର ଭେଦ

ଶ୍ରୀ ଶୁକଦେବ କହିଲେ, ପରିକ୍ଷିତ, ପରମାଣୁରୁ ଆରମ୍ଭ କରି ଦୁଇ ପରାର୍ଦ୍ଧପର୍ଯ୍ୟନ୍ତ କାଳର ସ୍ୱରୂପ ଓ ଯୁଗମାନଙ୍କର ପରିମାଣ ମୁଁ ତୁମକୁ କହିସାରିଛି । ବର୍ତ୍ତମାନ କଳ୍ପର ସ୍ଥିତି ଓ ତା'ର ପ୍ରଳୟର ବିଷୟ ଶୁଣ ।।୧।। ହେ ରାଜା, ଚାରି ହଜାର ଯୁଗରେ ବ୍ରହ୍ମାଙ୍କର ଗୋଟିଏ ଦିନ ହୁଏ । ତାହାର ନାମ କଳ୍ପ । ଗୋଟିଏ କଳ୍ପମଧ୍ୟରେ ଯଥାକ୍ରମେ ଚଉଦ ଜଣ ମନୁ ହୁଅନ୍ତି ।।୨।। ତା'ପରେ କଳ୍ପଶେଷ ହୋଇ ପ୍ରଳୟ ହୁଏ । ବ୍ରହ୍ମାଙ୍କର ଗୋଟିଏ ଦିନ ଯେତିକି, ରାତ୍ରି ମଧ୍ୟ ସେତିକି, ଅର୍ଥାତ୍ ଚାରିହଜାର ଯୁଗ । ବ୍ରହ୍ମାଙ୍କର ସେହି ରାତ୍ରିକାଳରେ ଏଇ ତ୍ରିଲୋକର ପ୍ରଳୟ ଘଟେ ।।୩।। ଏହାର ନାମ ହେଉଛି ନୈମିତ୍ତିକ ପ୍ରଳୟ । ଏହି ପ୍ରଳୟକାଳରେ ବିଶ୍ୱସ୍ରଷ୍ଟା ଶ୍ରୀ ନାରାୟଣ ବିଶ୍ୱକୁ ନିଜ ଅନ୍ତର ମଧ୍ୟରେ ଲୀନ କରି ଅନନ୍ତ ଶଯ୍ୟାରେ ଶୟନ କରନ୍ତି । ଏହିପରି (ମନୁଷ୍ୟମାନଙ୍କର ଗଣନାରେ) ପରମେଷ୍ଠୀ ବ୍ରହ୍ମାଙ୍କର ଦୁଇ ପରାର୍ଦ୍ଧ (ବ୍ରହ୍ମାଙ୍କ ଗଣନାରେ) ଶହେ ବର୍ଷ ଶେଷ ହେଲେ ମହତତ୍ତ୍ୱ, ଅହଙ୍କାର ଓ ପଞ୍ଚତନ୍ମାତ୍ର--ଏହି ସପ୍ତସଂଖ୍ୟକ ପ୍ରକୃତି ନିଜର କାରଣସ୍ୱରୂପ ମୂଳପ୍ରକୃତିରେ ଲୀନ ହୋଇଯାଏ ।।୫।। ରାଜା, ଏହାର ନାମ ହେଉଛି ପ୍ରାକୃତିକ ପ୍ରଳୟ । ମହତତ୍ତ୍ୱ ଆଦି ସପ୍ତ ପ୍ରକୃତିର ସମଷ୍ଟିରେ ଯେଉଁ ବ୍ରହ୍ମାଣ୍ଡ ଗଢ଼ା ହୋଇଛି, ତାହାର ସ୍ଥୂଳ ରୂପର ମଧ୍ୟ ବିଳୟ ଘଟେ ।।୬।। ରାଜା, ଯେବେ ଶହେ ବର୍ଷ ଧରି ମେଘ ପୃଥିବୀରେ ବର୍ଷା କରେ ନାହିଁ, ତେବେ ଖାଦ୍ୟାଭାବରେ କ୍ଷୁଧିତ ପ୍ରଜାମାନେ ପରସ୍ପରକୁ ଭକ୍ଷଣ କରନ୍ତି ।।୭।। ଏହିପରି ଉପଦ୍ରବ ଘଟି କାଳକ୍ରମେ ସମସ୍ତ ପ୍ରଜା କ୍ଷୟ ହୋଇଯା'ନ୍ତି । ପ୍ରଳୟକାଳୀନ ସାମ୍ବର୍ତ୍ତକ ସୂର୍ଯ୍ୟର ପ୍ରଚଣ୍ଡ କିରଣଜାଳରେ ସମୁଦ୍ରର ଜଳ, ମୃତ୍ତିକାର ରସ ଓ ଦେହର ରକ୍ତ ଆଦି ସବୁ ଶୁଖିଯାଏ । ଟୋପାଏ ମଧ୍ୟ ବର୍ଷା ହୁଏ ନାହିଁ । ସେତେବେଳେ ଭଗବାନ୍ ସଙ୍କର୍ଷଣଙ୍କ ମୁହଁରୁ ସମ୍ବର୍ତ୍ତକ ନାମକ ପ୍ରଳୟର ଅଗ୍ନି ବାହାରେ । ସେହି ଅଗ୍ନି ବାୟୁବେଗରେ ବଢ଼ିଯାଇ ପ୍ରାଣୀଶୂନ୍ୟ ସପ୍ତ ପାତାଳକୁ ଭସ୍ମ କରିଦିଏ । ଏହିପରି ପ୍ରଚଣ୍ଡ ସୂର୍ଯ୍ୟକିରଣ ଓ ଅଗ୍ନିଶିଖାଦ୍ୱାରା ଉପର ତଳ ଓ ଚାରିଆଡ଼େ ଏହି ବ୍ରହ୍ମାଣ୍ଡ ଏପରି ଜଳିଯାଏ ଯେ, ନିଆଁରେ ପୋଡ଼ିଯାଇଥିବା ଗୋବର ଘଷିପରି ଦେଖାଯାଏ । ଏହାପରେ ଅତି ପ୍ରଚଣ୍ଡ ପ୍ରଳୟକାଳୀନ ସାମ୍ବର୍ତ୍ତକ ବାୟୁ ଶତାଧିକ ବର୍ଷ ଧରି ପ୍ରବାହିତ ହୁଏ

ଆକାଶମଣ୍ଡଳ ଧୂଳି ଓ ଧୂଆଁରେ ଆଚ୍ଛାଦିତ ହୁଏ । ଏହାପରେ ବିଚିତ୍ର ବର୍ଣ୍ଣର ମେଘମାଳା ବହୁଳ ଭାବରେ ଦେଖାଦିଏ ଏବଂ ଶହେ ବର୍ଷ ପର୍ଯ୍ୟନ୍ତ ଭୀଷଣ ଗର୍ଜନ କରି ବର୍ଷା କରିବାକୁ ଲାଗେ । ତା'ପରେ ବ୍ରହ୍ମାଣ୍ଡ ବିବର ମଧ୍ୟରେ ଥିବା ବିଶ୍ୱ ଗୋଟିଏ ଜଳରାଶିରେ ପରିଣତ ହୋଇଯାଏ ॥୮-୧୩॥

ଏହିପରି ସମଗ୍ର ବିଶ୍ୱ ଜଳରେ ପ୍ଲାବିତ ହେଲେ ଜଳ ଭୂମିର ଗନ୍ଧଗୁଣକୁ ଗ୍ରାସ କରେ ଏବଂ ଗନ୍ଧହୀନ ହୋଇ ପୃଥିବୀ ଜଳରେ ସମ୍ପୂର୍ଣ୍ଣ ଲୀନ ହୋଇଯାଏ ଓ ତାହାର ସତ୍ତା ରହେ ନାହିଁ । ଏହାପରେ ତେଜ ଜଳର ଗୁଣକୁ ଗ୍ରାସ କରିବା ଫଳରେ ଜଳ ନୀରସ ହୋଇ ତେଜରେ ଲୀନ ହୁଏ । ବାୟୁ ତେଜର ରୂପକୁ ଗ୍ରାସ କରିବାଦ୍ୱାରା ତେଜ ରୂପହୀନ ହୋଇ ବାୟୁରେ ମିଶିଯାଏ । ରାଜା, ବାୟୁର ଗୁଣକୁ ଆକାଶ ଗ୍ରାସ କରିନିଏ, ଯାହାଫଳରେ ବାୟୁ ଆକାଶରେ ମିଶିଯାଏ । ତା'ପରେ ତାମସ ଅହଙ୍କାର ଆକାଶର ଗୁଣ ଶବ୍ଦକୁ ଗ୍ରାସ କରିଯାଏ, ଯାହାଫଳରେ ଆକାଶ ତାମସ ଅହଙ୍କାରରେ ଲୀନ ହୋଇଯାଏ । ଏହିପରି ତୈଜସ ଅହଙ୍କାର ଇନ୍ଦ୍ରିୟମାନଙ୍କୁ ଗ୍ରାସ କରେ । ସାତ୍ତ୍ୱିକ ଅହଙ୍କାର ଇନ୍ଦ୍ରିୟମାନଙ୍କର ଅଧିଷ୍ଠାତ୍ରୀ ଦେବତାମାନଙ୍କୁ ସେମାନଙ୍କର ଇନ୍ଦ୍ରିୟବୃତ୍ତି ସହିତ ନିଜ ମଧ୍ୟରେ ଗ୍ରାସ କରିଯାଏ । ଏହାପରେ ମହତ୍ତତ୍ତ୍ୱ ଅହଙ୍କାରକୁ ଗ୍ରାସ କରେ ଏବଂ ସତ୍ତ୍ୱ ଆଦି ଗୁଣ ମହତ୍ତତ୍ତ୍ୱକୁ ଗ୍ରାସ କରେ । କାଳଦ୍ୱାରା ପ୍ରେରିତ ହୋଇ ଅବ୍ୟକ୍ତ ପ୍ରକୃତି ଗୁଣମାନଙ୍କୁ ଗ୍ରାସ କରିଯାଏ ॥୧୪-୧୮॥ କାଳର ଅବୟବ ଅହୋରାତ୍ର, ମାସ, ବର୍ଷ, ଯୁଗ ଆଦିଦ୍ୱାରା ପ୍ରକୃତିର କ୍ଷୟ-ବୃଦ୍ଧି ଆଦି ପରିଣାମ ଘଟେ ନାହିଁ । ପ୍ରକୃତି ହେଉଛି ଅନାଦି, ଅନନ୍ତ, ଅବ୍ୟକ୍ତ, ନିତ୍ୟ ଓ ଅବିନାଶୀ । ତାହା ହେଉଛି ଏହି ସମସ୍ତ ସୃଷ୍ଟିର ମୂଳ କାରଣ ॥୧୯॥ ପ୍ରକୃତିରେ ବାକ୍, ମନ, ସତ୍ତ୍ୱ, ରଜ ଓ ତମ ଆଦି ଗୁଣ, ମହତ୍ତତ୍ତ୍ୱ ଆଦି ତତ୍ତ୍ୱ, ପ୍ରାଣ, ବୁଦ୍ଧି, ଇନ୍ଦ୍ରିୟ ଓ ସେମାନଙ୍କର ଦେବତା କେହି ହେଲେ ନଥାନ୍ତି ଓ ସୃଷ୍ଟିରେ କଳ୍ପିତ ଲୋକମାନଙ୍କର ସତ୍ତା ମଧ୍ୟ ନ ଥାଏ ॥୨୦॥ ତାହା ମଧ୍ୟରେ ସ୍ୱପ୍ନ, ଜାଗରଣ ଓ ସୁଷୁପ୍ତି ନ ଥାଏ । ଆକାଶ, ଜଳ, ପୃଥିବୀ, ବାୟୁ, ଅଗ୍ନି ଓ ସୂର୍ଯ୍ୟ -- ଏମାନେ କେହି ନ ଥାନ୍ତି । ଅଥଚ ପଣ୍ଡିତମାନେ ତାହାକୁ ଏହି ସମସ୍ତଙ୍କର ମୂଳଭୂତ କାରଣ ବୋଲି କହିଥା'ନ୍ତି ॥୨୧॥ ଯେତେବେଳେ ପ୍ରକୃତି-ପୁରୁଷର ସତ୍ତ୍ୱ ଆଦି ଶକ୍ତିସମୂହ କାଳବଶରେ ବିବଶ ହୋଇ ବିଲୀନ ହୋଇଯାଆନ୍ତି, ସେତେବେଳେ ଏହାକୁ ପ୍ରାକୃତିକ ପ୍ରଳୟ ବୋଲି କୁହାଯାଏ ॥୨୨॥

ପରିକ୍ଷିତ, ବୁଦ୍ଧି, ଇନ୍ଦ୍ରିୟ ଓ ଇନ୍ଦ୍ରିୟମାନଙ୍କର ବିଷୟରୂପେ ଜ୍ଞାନ ପ୍ରକାଶିତ ହୁଏ । ବୁଦ୍ଧି ଓ ଇନ୍ଦ୍ରିୟ ଆଦିଙ୍କର ଆଦି ଓ ଅନ୍ତ ଥିବାଯୋଗୁଁ ସେମାନେ ଦୃଶ୍ୟ ହୁଅନ୍ତି; କିନ୍ତୁ ମୂଳକାରଣ ଛଡ଼ା ସେମାନଙ୍କର କିଛି ସତ୍ତା ନ ଥିବା ହେତୁ ସେମାନେ ଅବସ୍ତୁ ବା ମିଥ୍ୟା । ଯେପରି ପ୍ରଦୀପ, ଚକ୍ଷୁ ଓ ରୂପ ତେଜଠାରୁ ଭିନ୍ନ ନୁହେଁ; ସେହିପରି ବୁଦ୍ଧି, ଇନ୍ଦ୍ରିୟ ଓ ସେମାନଙ୍କର ତନ୍ମାତ୍ରମାନେ ନିଜର ଅଧିଷ୍ଠାନସ୍ୱରୂପ ବ୍ରହ୍ମଠାରୁ ଭିନ୍ନ ନୁହନ୍ତି ॥୨୩-୨୪॥ ଜାଗରଣ, ସ୍ୱପ୍ନ ଓ ସୁଷୁପ୍ତି -- ଏହା ବୁଦ୍ଧିର ଅବସ୍ଥାବିଶେଷ ବୋଲି କୁହାଯାଏ । ସେହିପରି ରାଜା, ଅନ୍ତରାତ୍ମାରେ ଯେଉଁ ନାନାତ୍ୱର ଆରୋପ କରାଯାଏ, ତାହା ମାୟାମାତ୍ର ॥୨୫॥ ମେଘମାନେ ଆକାଶରେ ବେଳେବେଳେ ରହନ୍ତି, ବେଳେବେଳେ ରହନ୍ତି ନାହିଁ, ସେହିପରି ବ୍ରହ୍ମଠାରେ ଏହି ବିଶ୍ୱର କେତେବେଳେ ବିକାଶ ବା କେତେବେଳେ ବିନାଶ ଘଟେ । ଏହିପରି ଉତ୍ପତ୍ତିଧର୍ମୀ ଓ ବିନାଶଧର୍ମୀ ହୋଇଥିବାହେତୁ ଅବୟବଥିବା ବସ୍ତୁ ପରି ଏହା ଅନିତ୍ୟ ॥୨୬॥

ରାଜା, ସୂତ୍ର ହେଉଛି ଅବୟବ ଓ ବସ୍ତ୍ର ଅବୟବୀ । ବସ୍ତ୍ର ନ ଥିଲେ ମଧ୍ୟ ସୂତ୍ରର ଅସ୍ତିତ୍ୱକୁ ଗ୍ରହଣ କରାଯାଏ । ସେହିପରି ଅବୟବୀ ପଦାର୍ଥ ନଥିଲେ ମଧ୍ୟ ଅବୟବର ସତ୍ୟତା ପ୍ରତୀୟମାନ ହୁଏ ॥୨୭॥ କାର୍ଯ୍ୟକାରଣ ରୂପରେ ଯାହା ଉପଲବ୍ଧ ହୁଏ, ତାହା ଭ୍ରମ । କାର୍ଯ୍ୟ ଓ କାରଣ ପରସ୍ପର ଆପେକ୍ଷିକ । ଏଣୁ କାରଣକୁ ସାମାନ୍ୟ ଓ କାର୍ଯ୍ୟକୁ ବିଶେଷବୋଲି ବିଚାର କରି ବୁଦ୍ଧିର ଭ୍ରମ ସୃଷ୍ଟି ହୁଏ । କାର୍ଯ୍ୟ ଓ କାରଣ ଉଭୟଙ୍କର ଆଦି ଓ ଅନ୍ତ ଅଛି । ସେଥିପାଇଁ ଉଭୟ ଅବସ୍ତୁ ॥୨୮॥

ଏହି ବିଶ୍ୱ ପ୍ରପଞ୍ଚ ଏକ ବିକାରରୂପରେ ପ୍ରତୀତ ହେଲେ ମଧ୍ୟ ନିଜର ଅଧିଷ୍ଠାନ ବ୍ରହ୍ମସ୍ୱରୂପ ଆତ୍ମାଠାରୁ ଭିନ୍ନ ନୁହେ । ଆତ୍ମାଠାରୁ ଭିନ୍ନ ରୂପରେ ଏହାକୁ କେହି ଅଣୁମାତ୍ର ନିରୂପଣ କରିପାରିବ ନାହିଁ । ଯଦି ଆତ୍ମାଠାରୁ ଏହାର ପୃଥକ୍ ସତ୍ତା ଅଛି ବୋଲି ଧରିନିଆଯାଏ, ତାହାହେଲେ ତାହା ଚିତ୍‌ରୂପକ ଆତ୍ମା ପରି ପ୍ରକାଶିତ ସ୍ୱୟଂ ଏକରୂପ ହୋଇଯିବ ॥୨୯॥ ସତ୍ୟ ବସ୍ତୁରେ ନାନାତ୍ୱ ନ ଥାଏ । ଯଦି କୌଣସି ଅଜ୍ଞାନୀ ବ୍ୟକ୍ତି ସେଥିରେ ନାନାତ୍ୱର ଆରୋପ କରେ, ତାହେଲେ ମହାକାଶ ଓ ଘଟାକାଶ ମଧ୍ୟରେ, ଆକାଶସ୍ଥ ସୂର୍ଯ୍ୟ ଓ ଜଳରେ ପ୍ରତିବିମ୍ବିତ ସୂର୍ଯ୍ୟ ମଧ୍ୟରେ ଏବଂ ବାହ୍ୟ ବାୟୁ ଓ ଦେହସ୍ଥ ବାୟୁ ମଧ୍ୟରେ ଭେଦ ଅଛି ବୋଲି ମାନିବାକୁ ହେବ ॥୩୦॥

ଏକ ସୁନା -- ତାକୁ ଅଳଙ୍କାର ଆଦି ବ୍ୟବହାର୍ଯ୍ୟ ବସ୍ତୁରୂପେ ପ୍ରସ୍ତୁତ କରାଯାଏ । ପ୍ରସ୍ତୁତି ଭେଦରେ ତାହା ଯେପରି ଅନେକ ରୂପରେ ଦେଖାଯାଏ, ସେହିପରି ଏକମାତ୍ର ଭଗବାନ୍ ବିଷ୍ଣୁ ଲୌକିକ ଓ ବୈଦିକ ମତରେ ଲୋକମାନଙ୍କଦ୍ୱାରା ଭିନ୍ନ ଭିନ୍ନ ରୂପରେ କଥିତ ହୁଅନ୍ତି ॥୩୧॥ ସୂର୍ଯ୍ୟଙ୍କଠାରୁ ମେଘର ଉତ୍ପତ୍ତି ଓ ସୂର୍ଯ୍ୟଙ୍କଦ୍ୱାରା ହିଁ ତାହା ପ୍ରକାଶିତ ହୁଏ । କିନ୍ତୁ ମେଘର ଆବରଣଯୋଗୁଁ ଏହି ଚକ୍ଷୁ ସୂର୍ଯ୍ୟଙ୍କର ଅଂଶ ହେଲେ ମଧ୍ୟ ସୂର୍ଯ୍ୟଙ୍କୁ ଦେଖିପାରେ ନାହିଁ । ସେହିପରି ଅହଙ୍କାର ବ୍ରହ୍ମଠାରୁ ଉତ୍ପନ୍ନ ହୁଏ, ବ୍ରହ୍ମଦ୍ୱାରା ପ୍ରକାଶିତ ହୁଏ; କିନ୍ତୁ ବ୍ରହ୍ମଙ୍କର ଅଂଶ ଏହି ଜୀବର ବ୍ରହ୍ମସ୍ୱରୂପକୁ ସାକ୍ଷାତ୍ କରିବାରେ ତାହା ବାଧା ସୃଷ୍ଟି କରିଥାଏ ॥୩୨॥ ଯେତେବେଳେ ସୂର୍ଯ୍ୟଙ୍କ ପ୍ରଭାବରେ ଆକାଶରେ ମେଘ ଖଣ୍ଡ ଖଣ୍ଡ ହୋଇଯାଏ, ସେତେବେଳେ ଚକ୍ଷୁ ତା'ର ସ୍ୱରୂପ ସୂର୍ଯ୍ୟଙ୍କୁ ଦେଖିପାରେ । ସେହିପରି ଯେତେବେଳେ ଆତ୍ମଜିଜ୍ଞାସାଦ୍ୱାରା ଆତ୍ମାକୁ ଢାଙ୍କିରଖିଥିବା ଅହଙ୍କାର ତିରୋହିତ ହୁଏ, ସେତେବେଳେ ଜୀବ ବ୍ରହ୍ମର ସ୍ୱରୂପକୁ ସାକ୍ଷାତ୍ କରେ ॥୩୩॥ ପରିକ୍ଷିତ, ଯେତେବେଳେ ବିବେକର ଅସ୍ତ୍ରଦ୍ୱାରା ଆତ୍ମାର ବନ୍ଧନସ୍ୱରୂପ ମାୟାମୟ ଅହଙ୍କାରକୁ ଛେଦନ କରାଯାଏ, ସେତେବେଳେ ଆତ୍ମାରେ ଭଗବାନଙ୍କୁ ଅନୁଭବ କରାଯାଇପାରେ । ତାହାକୁ ଆତ୍ୟନ୍ତିକ ପ୍ରଳୟ କୁହାଯାଏ ॥୩୪॥ ହେ ଶତ୍ରୁଦମନକାରୀ ରାଜା, କେହି କେହି ସୂକ୍ଷ୍ମଦର୍ଶୀ କହନ୍ତି, ବ୍ରହ୍ମାଙ୍କଠାରୁ ଆରମ୍ଭ କରି ସ୍ଥାବର ଜଙ୍ଗମ ସମସ୍ତ ଜୀବଙ୍କର ନିତ୍ୟ ଉତ୍ପତ୍ତି ଓ ପ୍ରଳୟ ଲାଗି ରହିଥାଏ ॥୩୫॥ କାଳସ୍ରୋତର ବେଗରେ ସର୍ବଦା ଆକୃଷ୍ଟ ଏହି ଦେହର ଶୀଘ୍ର ପରିବର୍ତ୍ତନ ଘଟିବାକୁ ଲାଗିଥାଏ; ତାହା ହିଁ ହେଉଛି ଜନ୍ମ ଓ ବିନାଶର ଲକ୍ଷଣ । ଆକାଶରେ ଜ୍ୟୋତିଷମାନଙ୍କର ଯେପରି ସୂକ୍ଷ୍ମ ଗତି ପରିଲକ୍ଷିତ ହୁଏ ନାହିଁ, ସେହିପରି ଜନ୍ମ ଓ ମୃତ୍ୟୁ ରହିତ ଈଶ୍ୱରଙ୍କ ମୂର୍ତ୍ତିସ୍ୱରୂପ କାଳର ବଶରେ ପ୍ରତି ମୁହୂର୍ତ୍ତରେ ପ୍ରାଣୀମାନଙ୍କର ଅବସ୍ଥାରେ ଯେଉଁ ପରିବର୍ତ୍ତନ ଘଟେ, ତାହା ଅନୁଭୂତ ହୁଏ ନାହିଁ । ନିତ୍ୟ ନୈମିତ୍ତିକ, ପ୍ରାକୃତିକ ଓ ଆତ୍ୟନ୍ତିକ ପ୍ରଳୟମାନଙ୍କ ବିଷୟରେ ମୁଁ ତୁମକୁ କହିଲି । କାରଣ କାଳର ଗତି ଏହିପରି ହୋଇଥାଏ । କୁରୁଶ୍ରେଷ୍ଠ, ସମସ୍ତ ଜୀବଙ୍କର ଆଶ୍ରୟ ଓ ଜଗତ୍‌ର ବିଧାତା ନାରାୟଣଙ୍କର ଲୀଳାକଥା ମୁଁ ତୁମକୁ ସଂକ୍ଷେପରେ କହିଗଲି । ସ୍ୱୟଂ ବ୍ରହ୍ମା ମଧ୍ୟ ତାଙ୍କର ଲୀଳାକୁ ସମ୍ପୂର୍ଣ୍ଣରୂପେ ବର୍ଣ୍ଣନା କରିପାରିବେ ନାହିଁ ॥୩୬-୩୯॥ ନାନା ଦୁଃଖରେ ପୀଡ଼ିତ ମନୁଷ୍ୟ ଦୁସ୍ତର ସଂସାର ସାଗରକୁ ପାରହେବାପାଇଁ ଇଚ୍ଛା କଲେ ନୌକାସ୍ୱରୂପ ଭଗବାନ୍ ପୁରୁଷୋତ୍ତମଙ୍କର ଲୀଳା କଥାର ରସ ସେବନ ବ୍ୟତୀତ ଅନ୍ୟ ଉପାୟ ନାହିଁ ॥୪୦॥ ମହାରାଜ ପରିକ୍ଷିତ, ଏହି ପୁରାଣସଂହିତା ପୂର୍ବେ ସନାତନ ନାରାୟଣ ଋଷି ନାରଦଙ୍କୁ କହିଥିଲେ । ନାରଦ ତାହା କୃଷ୍ଣ ଦ୍ୱୈପାୟନ (ବେଦବ୍ୟାସ) ଙ୍କୁ କହିଲେ । ମୋର ପିତା ବେଦବ୍ୟାସ ପ୍ରସନ୍ନ ହୋଇ ମୋତେ ବେଦସମ୍ମତ ଭାଗବତ ଶୁଣାଇଥିଲେ । ତା'ପରେ ନୈମିଷାରଣ୍ୟରେ ଶୌନକ ଆଦି ମୁନିମାନେ ଯେଉଁ ଦୀର୍ଘକାଳ ବ୍ୟାପୀ ଯଜ୍ଞ କରିଥିଲେ, ସେଥିରେ ସୂତ ମୁନି ସେମାନଙ୍କର ପ୍ରଶ୍ନର ଉତ୍ତର ଛଳରେ ଏହାକୁ ଶୁଣାଇବେ ॥୪୧-୪୩॥

## ପଞ୍ଚମ ଅଧ୍ୟାୟ

# ଶ୍ରୀ ଶୁକଦେବଙ୍କର ଅନ୍ତିମ ଉପଦେଶ

ଶ୍ରୀ ଶୁକଦେବ କହିଲେ, ଯାହାଙ୍କର ପ୍ରସାଦରୁ ବ୍ରହ୍ମାଙ୍କର ଜନ୍ମ, ଯାହାଙ୍କର କ୍ରୋଧରୁ ରୁଦ୍ରଙ୍କର ଉଦ୍‌ଭବ, ସେହି ବିଶ୍ୱାତ୍ମା ଭଗବାନ୍ ଶ୍ରୀହରିଙ୍କର ବିଷୟ ବିଶେଷଭାବରେ ଏହି ଭାଗବତ ଗ୍ରନ୍ଥରେ ବର୍ଣ୍ଣିତ ହୋଇଛି ॥୧॥ ପରିକ୍ଷିତ, 'ମୁଁ ମରିବି' -- ଏହି ଅବିବେକ ବୁଦ୍ଧି ପରିତ୍ୟାଗ କର । ଏହି ଦେହର ବିନାଶ ହେବ, ମାତ୍ର ତୁମର ନୁହେ । ଏହି ଦେହ ଆଗରୁ ନ ଥିଲା । ଏବେ ଏହାର ଜନ୍ମହେଲା ଏବଂ ପରେ ଏହାର ବିନାଶ ହେବ ॥୨॥ ବୀଜରୁ ଅଙ୍କୁର ଜନ୍ମିବା ପରି କାହାର ପୁତ୍ରପୌତ୍ରାଦିରୂପେ ତୁମେ ଜନ୍ମ ହୋଇଥିଲେ ମଧ୍ୟ, ପୁଣି ଆଉ ଜନ୍ମ ହେବ ନାହିଁ । ନିଆଁ ଯେପରି କାଠରୁ ଭିନ୍ନ, ତୁମେ ମଧ୍ୟ ସେହିପରି ଦେହଠାରୁ ପୃଥକ୍ ॥୩॥ ସ୍ୱପ୍ନରେ ନିଜର ଶିରଶ୍ଛେଦନ ଦେଖିବା ଓ ଜାଗ୍ରତ ଅବସ୍ଥାରେ ଦେହର ମୃତ୍ୟୁ ଘଟିବା--ଏସବୁ ଭ୍ରମମାତ୍ର । ପ୍ରକୃତରେ ଆତ୍ମାର ମୃତ୍ୟୁ ନାହିଁ । ଘଟ ଭାଙ୍ଗିଗଲେ, ପୂର୍ବରୁ ଥିବା ମହା ଆକାଶରେ ଯେପରି ଘଟାକାଶ ମିଶିଯାଏ, ସେହିପରି ଦେହର ମୃତ୍ୟୁ ହେଲେ ଜୀବ ବ୍ରହ୍ମରେ ମିଶିଯାଏ ॥୪-୫॥ ମନ ଜୀବର ଦେହ, ଗୁଣ ଓ କର୍ମସବୁ ସୃଷ୍ଟି କରେ, ସେହି ମନରୁ ମାୟାର ମଧ୍ୟ ସୃଷ୍ଟି ଏବଂ ଏହି ମାୟାଯୋଗୁଁ ହିଁ ଜୀବ ସଂସାରଚକ୍ରରେ ଘୂରୁଥାଏ ॥୬॥ ତେଲ, ତେଲର ଆଧାର ଦୀପ, ବତୀ ଓ ବତୀରେ ଅଗ୍ନିସଂଯୋଗଦ୍ୱାରା ପ୍ରକୃତ ଦୀପ ହୋଇଥାଏ; ସେହିପରି ସତ୍ତ୍ୱ, ରଜ ଓ ତମ ଗୁଣର ବୃତ୍ତିଦ୍ୱାରା ଦେହର ଉତ୍ପତ୍ତି ହୁଏ ଓ ବିନାଶ ହୁଏ, କିନ୍ତୁ ସ୍ୱୟଂ ଜ୍ୟୋତିସ୍ୱରୂପ ଆତ୍ମାର ଜନ୍ମ ନାହିଁ କି ବିନାଶ ନାହିଁ । କାରଣ ତାହା ବ୍ୟକ୍ତ ଓ ଅବ୍ୟକ୍ତ ଏବଂ ସ୍ଥୂଳ ଓ ସୂକ୍ଷ୍ମ ଦେହଠାରୁ ଭିନ୍ନ; ସ୍ୱୟଂପ୍ରକାଶ । ଆକାଶପରି ତାହା ସମସ୍ତଙ୍କର ଆଧାର, ନିତ୍ୟ ଓ ଅନନ୍ତ । ଆତ୍ମା ହିଁ ଆତ୍ମାର ଉପମା ॥୭-୮॥

ରାଜା, ତୁମେ ନିଜର ବିଶୁଦ୍ଧ ବିବେକବୁଦ୍ଧିକୁ ପରମାତ୍ମାଙ୍କ ଚିନ୍ତାରେ ନିବେଶ କର ଏବଂ ନିଜର ଅନ୍ତରରେ ଥିବା ପରମାତ୍ମାଙ୍କୁ ସାକ୍ଷାତ୍ କର । ତା'ହେଲେ ତୁମେ ମୃତ୍ୟୁର ମୃତ୍ୟୁ ହେବ । ଅର୍ଥାତ୍ ମୃତ୍ୟୁ ତୁମକୁ ଗ୍ରାସ କରିପାରିବ ନାହିଁ । ବିପ୍ରଶାପରେ ପ୍ରେରିତ ତକ୍ଷକ ଈଶ୍ୱରସ୍ୱରୂପ ତୁମକୁ ଦଗ୍ଧ କରିପାରିବ ନାହିଁ ॥୯-୧୦॥ ମୁଁ ହେଉଛି ପରମଧାମ ବ୍ରହ୍ମ ଏବଂ ବ୍ରହ୍ମ ହେଉଛି ପରମପଦ ମୁଁ -- ଏହିପରି ଚିନ୍ତାକରି ତୁମେ ନିଜକୁ ନିଜର ସ୍ୱରୂପରେ ପ୍ରତିଷ୍ଠିତ କର । ଲେଲିହାନ ବିଷପୂର୍ଣ୍ଣ ଜିହ୍ୱାରେ ତକ୍ଷକ ତୁମର ପାଦକୁ ଦଂଶନ କଲାବେଳେ, ତୁମେ ତାକୁ ତ ଦେଖିବ ନାହିଁ, ଆତ୍ମାଠାରୁ ପୃଥକ୍ ଶରୀର ଓ ବିଶ୍ୱକୁ ମଧ୍ୟ ଦେଖିବ ନାହିଁ ।୧୧-୧୨॥ ରାଜା, ତୁମେ ଆତ୍ମା ବିଷୟରେ ମୋତେ ଯାହା ପଚାରିଥିଲ, ମୁଁ ତୁମକୁ ତାହା କହିଲି । ବତ୍ସ, ବିଶ୍ୱାତ୍ମା ଶ୍ରୀହରିଙ୍କର ଆଉ କେଉଁ ଲୀଳା ତୁମେ ଶୁଣିବାକୁ ଇଚ୍ଛା କରୁଛ ? ॥୧୩॥

## ଷଷ୍ଠ ଅଧ୍ୟାୟ

# ଜନ୍ମେଜୟଙ୍କର ସର୍ପଯଜ୍ଞ

ସୂତ କହିଲେ, ସମଗ୍ର ଜଗତକୁ ସମଦୃଷ୍ଟିରେ ଦେଖୁଥିବା ବ୍ୟାସନନ୍ଦନ ଶୁକଦେବଙ୍କ ମୁହଁରୁ ଏହି ଭାଗବତ ଉପଦେଶ ଶୁଣି ବିଷ୍ଣୁଭକ୍ତ ରାଜା ପରିକ୍ଷିତ ମୁଣ୍ଡ ନୁଆଁଇ ଓ କୃତାଞ୍ଜଳି ହୋଇ ଏହିପରି କହିଲେ-- ॥୧॥ ଆପଣ ଦୟାର୍ଦ୍ର ହୃଦୟରେ ଅନାଦି, ଅନନ୍ତ ସାକ୍ଷାତ୍ ଶ୍ରୀ ହରିଙ୍କ ଲୀଳା ମୋତେ ଶୁଣାଇଲେ । ତଦ୍ଦ୍ୱାରା ମୋର ମନୋରଥ ସଫଳ ହେଲା ଓ ମୁଁ ଅନୁଗୃହୀତ

ହେଲି ।।୨।। ସଂସାରତାପରେ ଦଗ୍ଧ ଅଜ୍ଞ ପ୍ରାଣୀମାନଙ୍କପ୍ରତି ଆପଣଙ୍କ ପରି ଭଗବଦ୍‌ଭକ୍ତ ମହାତ୍ମାଙ୍କର ଅନୁଗ୍ରହ ମୋତେ ଆଶ୍ଚର୍ଯ୍ୟ ଲାଗୁନାହିଁ । ଯାହାଙ୍କର ନାମ ଶ୍ରବଣ ଓ କୀର୍ତ୍ତନ କଲେ ପ୍ରାଣୀଙ୍କର ମଙ୍ଗଳ ହୁଏ, ସେହି ଭଗବାନ ଶ୍ରୀହରିଙ୍କର ବର୍ଣ୍ଣନା ଥିବା ଭାଗବତ ପୁରାଣ ଆପଣ ଆମକୁ ଶୁଣାଇଛନ୍ତି । ଭଗବନ୍, ଆପଣ ଅଭୟର ଦର୍ଶନ କରାଇ ଦେଇଛନ୍ତି । ମୁଁ ବ୍ରହ୍ମନିର୍ବାଣରେ ପ୍ରବେଶ କରିଛି । ମୃତ୍ୟୁ ବା ତକ୍ଷକ ଆଦି କାହାରି ପ୍ରତି ମୋର ଭୟ ନାହିଁ ।।୩-୫।। ବ୍ରହ୍ମନ୍, ମୋତେ ଅନୁମତି ଦିଅନ୍ତୁ, ଭଗବାନ ବିଷ୍ଣୁଙ୍କଠାରେ ମୁଁ ମୋର ବାକ୍ ଆଦି ଇନ୍ଦ୍ରିୟମାନଙ୍କୁ ନ୍ୟସ୍ତ କରିବି । ସମସ୍ତ କାମନା ଓ ବାସନାରୁ ମୋର ଚିତ୍ତ ମୁକ୍ତ ହୋଇଛି । ମୁଁ ସେହି ପରମାତ୍ମାଙ୍କ ସ୍ୱରୂପରେ ଲୀନ ହୋଇ ପ୍ରାଣତ୍ୟାଗ କରିବି ।।୬।। ଆପଣ ମୋତେ ଭଗବାନଙ୍କର ମଙ୍ଗଳମୟ ପରମପଦକୁ ଦେଖାଇଦେଇଛନ୍ତି । ଜ୍ଞାନ ଓ ବିଜ୍ଞାନପ୍ରତି ମୋର ନିଷ୍ଠାଯୋଗୁଁ ମୋର ଅଜ୍ଞାନ ଦୂରୀଭୂତ ହୋଇଛି ।।୭।।

ସୂତ କହିଲେ, ପରୀକ୍ଷିତ ଏହିପରି ତାଙ୍କୁ ପୂଜା ଓ ପ୍ରାର୍ଥନା କରିବାରୁ ତାଙ୍କୁ ଅନୁମତି ଦେଇ ଋଷିମାନଙ୍କ ସହିତ ଶ୍ରୀଶୁକଦେବ ସେଠାରୁ ପ୍ରସ୍ଥାନ କଲେ ।।୮।। ରାଜର୍ଷି ପରିକ୍ଷିତ ମଧ୍ୟ ନିଜର ଆତ୍ମାକୁ ପରମାତ୍ମାଙ୍କଠାରେ ନିବିଷ୍ଟ କରି ଧ୍ୟାନସ୍ଥ ହେଲେ ଓ ବୃକ୍ଷପରି ନିଶ୍ଚଳ ହୋଇଗଲେ ।।୯।। ତାଙ୍କର ସମସ୍ତ ଆସକ୍ତି ଓ ସଂଶୟ ଦୂର ହୋଇଥିଲା । ସେ ଗଙ୍ଗାକୂଳରେ କୁଶମାନଙ୍କୁ ପୂର୍ବଦିଗକୁ ରଖି ନିଜେ ଉତ୍ତରମୁଖ ହୋଇ ବସିଥିଲେ । ଏହିପରି ଭାବରେ ମହାଯୋଗୀ ପରିକ୍ଷିତ ବ୍ରହ୍ମସ୍ୱରୂପରେ ମିଶିଗଲେ ।।୧୦।।

ସୂତ କହିଲେ, ଶୌନକ ଆଦି ମୁନିମାନେ, ଋଷିପୁତ୍ରଙ୍କର ଶାପଦ୍ୱାରା ପ୍ରେରିତ ତକ୍ଷକ ପରିକ୍ଷିତଙ୍କୁ ମାରିବାପାଇଁ ଆସୁଥିଲେ ଏବଂ ବାଟରେ ସେ କଶ୍ୟପ ନାମକ ବ୍ରାହ୍ମଣଙ୍କୁ ଦେଖିଲେ । କଶ୍ୟପ ସର୍ବ ବିଷହରଣରେ ସିଦ୍ଧହସ୍ତ ଥିଲେ । ତକ୍ଷକ ବହୁ ଧନଦାନଦ୍ୱାରା ତାଙ୍କୁ ସନ୍ତୁଷ୍ଟ କରି ଫେରାଇଦେଲେ ଏବଂ ଏକ କପଟ-ବ୍ରାହ୍ମଣର ବେଶ ଧାରଣ କରି ପରିକ୍ଷିତଙ୍କୁ ଦଂଶନ କଲେ । ରାଜା ପରିକ୍ଷିତ ବ୍ରହ୍ମରେ ଲୀନ ହୋଇଯାଇଥିଲେ । ଚାହୁଁ ଚାହୁଁ ତାଙ୍କର ଦେହ ତକ୍ଷକଙ୍କ ବିଷାଗ୍ନିରେ ଜଳି ଭସ୍ମ ହୋଇଗଲା ।।୧୧-୧୩।। ପୃଥିବୀ, ଆକାଶ ଓ ଚତୁର୍ଦିଗରେ ପ୍ରବଳ ହାହାକାର ଧ୍ୱନି ଉତ୍‌ଥିତ ହେଲା । ଦେବାସୁର, ମନୁଷ୍ୟ ଆଦି ସମସ୍ତେ ପରିକ୍ଷିତଙ୍କର ପରମଗତି ଦେଖି ବିସ୍ମିତ ହେଲେ । ସ୍ୱର୍ଗରେ ଦେବଦୁନ୍ଦୁଭିମାନ ବାଜି ଉଠିଲା, ଗନ୍ଧର୍ବ, ଅପ୍‌ସରାମାନେ ଜୟଗାନ କଲେ । ଦେବତାମାନେ ସାଧୁବାଦ କରି ପୁଷ୍ପବୃଷ୍ଟି କଲେ ।।୧୪-୧୫।।

ପରିକ୍ଷିତଙ୍କର ପୁତ୍ର ଜନ୍ମେଜୟ ନିଜର ପିତାଙ୍କୁ ତକ୍ଷକ ସର୍ପ ଗ୍ରାସ କରିଛି ବୋଲି ଶୁଣି ଅତିଶୟ କ୍ରୋଧରେ ଏକ ଯଜ୍ଞ କଲେ । ସେ ବ୍ରାହ୍ମଣମାନଙ୍କଦ୍ୱାରା ବିଧିପୂର୍ବକ ଯଜ୍ଞ କରାଇ ନାଗମାନଙ୍କୁ ଆହୂତି ଦେବାକୁ ଲାଗିଲେ ।।୧୬।। ସେହି ସର୍ପଯଜ୍ଞର ପ୍ରଜ୍ୱଳିତ ଅଗ୍ନିରେ ମହା ମହା ନାଗମାନେ ପଡ଼ି ଜଳିଯାଉଥିବାର ଦେଖି ଭୟବିହ୍ୱଳ ତକ୍ଷକ ଇନ୍ଦ୍ରଙ୍କର ଶରଣାପନ୍ନ ହେଲେ ।।୧୭।। ରାଜା ଜନ୍ମେଜୟ ତକ୍ଷକଙ୍କୁ ନ ଦେଖି ବ୍ରାହ୍ମଣମାନଙ୍କୁ କହିଲେ, ସର୍ପାଧମ ତକ୍ଷକ କାହିଁକି ଦଗ୍ଧ ହେଉ ନାହିଁ ? ।।୧୮।। ବ୍ରାହ୍ମଣମାନେ କହିଲେ, ରାଜେନ୍ଦ୍ର, ତକ୍ଷକ ଇନ୍ଦ୍ରଙ୍କର ଶରଣ ପଶିଛି । ସେଥିପାଇଁ ଇନ୍ଦ୍ର ତାଙ୍କୁ ରକ୍ଷା କରୁଛନ୍ତି । ତକ୍ଷକ ଯେପରି ହୋମାଗ୍ନିରେ ଆସି ନ ପଡ଼େ, ସେଥିପାଇଁ ଇନ୍ଦ୍ର ନିଜର ଆସନରେ ତାକୁ ବାନ୍ଧି ରଖିଛନ୍ତି ।।୧୯।। ଉଦାରବୁଦ୍ଧି ଜନ୍ମେଜୟ ତାହା ଶୁଣି ପୁରୋହିତମାନଙ୍କୁ ପଚାରିଲେ, ବ୍ରାହ୍ମଣମାନେ, ଇନ୍ଦ୍ରଙ୍କ ସହିତ ତକ୍ଷକକୁ କଣ ଅଗ୍ନିରେ ପକାଯାଇ ପାରିବ ନାହିଁ ? ବ୍ରାହ୍ମଣମାନେ ତାହା ଶୁଣି 'ମରୁତ୍‌ଗଣଯୁକ୍ତ ଇନ୍ଦ୍ରର ସହିତ ତକ୍ଷକ ଏହି ନିଆଁରେ ପଡୁ' ଏହିପରି ମନ୍ତ୍ର ଉଚ୍ଚାରଣପୂର୍ବକ ଇନ୍ଦ୍ରଙ୍କ ସହିତ ତକ୍ଷକର ଉଦ୍ଦେଶ୍ୟରେ ଆହୁତି ଦେଲେ ।।୨୦-୨୧।। ଯେତେବେଳେ ବ୍ରାହ୍ମଣମାନେ ଏହି କଠୋର ଆକର୍ଷଣ-ମନ୍ତ୍ର ପାଠ କଲେ, ସେତେବେଳେ ଇନ୍ଦ୍ର ନିଜ ସ୍ଥାନରୁ ବିଚଳିତ ହୋଇଗଲେ ଓ ବିମାନରେ ବସି ତକ୍ଷକର ସହିତ ଘୂରିବାକୁ ଲାଗିଲେ ।।୨୨।। ଅଙ୍ଗିରାଙ୍କର ପୁତ୍ର ବୃହସ୍ପତି ବିମାନରେ ତକ୍ଷକସହିତ ଇନ୍ଦ୍ର ଅନ୍ତରୀକ୍ଷରୁ ଖସି ପଡୁଥିବାର ଦେଖି ରାଜା ଜନ୍ମେଜୟଙ୍କୁ କହିଲେ, ହେ ମାନବେନ୍ଦ୍ର, ଏହି ସର୍ପରାଜ ତକ୍ଷକ ତୁମର ବଧ୍ୟ ନୁହେଁ; କାରଣ ଅମୃତ ପାନ କରି ସେ ଅମର

ହୋଇଛି ।।୨୩-୨୪।। ରାଜା, ନିଜ କର୍ମବଶରୁ ହିଁ ପ୍ରାଣୀର ଜୀବନ, ମରଣ ଓ ମରଣୋତ୍ତର ଗତି ହୋଇଥାଏ । କର୍ମ ଛଡ଼ା ଆଉ କେହି କାହାର ସୁଖଦୁଃଖର କାରଣ ନୁହେଁ ।।୨୫।। ରାଜା, ସର୍ପ, ଚୌର, ଅଗ୍ନି, ବିଦ୍ୟୁତ୍, କ୍ଷୁଧା, ତୃଷା ଓ ରୋଗବ୍ୟାଧିଦ୍ୱାରା ଜନ୍ତୁମାନେ ମୃତ୍ୟୁମୁଖରେ ପଡ଼ନ୍ତି । ତାହା ତାଙ୍କର ପ୍ରାରବ୍ଧ କର୍ମଯୋଗୁଁ ହୋଇଥାଏ । ସେଥିପାଇଁ ହେ ରାଜା, ଏହିପରି ଅବିଚାରମୂଳକ ଯଜ୍ଞକୁ ଏହିଠାରେ ସମାପ୍ତ କରନ୍ତୁ । ବହୁ ନିରପରାଧ ସର୍ପ ଜଳି ଭସ୍ମ ହୋଇଗଲେଣି । ଅବଶ୍ୟ ସେଥିରେ ତୁମର ଦୋଷ ନାହିଁ । କାରଣ ପ୍ରାଣୀମାତ୍ରେ ହିଁ ନିଜର କର୍ମଫଳ ଭୋଗ କରନ୍ତି ।।୨୬-୨୭।। ସୂତ କହିଲେ, ଋଷିମାନେ, ମହର୍ଷି ବୃହସ୍ପତିଙ୍କର ଉପଦେଶ ସାଦରେ ସ୍ୱୀକାର କରି ଜନ୍ମେଜୟ 'ତାହା ହେଉ' କହି ସର୍ପଯଜ୍ଞରୁ ନିବୃତ୍ତ ହେଲେ ଓ ବିଧିପୂର୍ବକ ବୃହସ୍ପତିଙ୍କୁ ପୂଜା କଲେ ।।୨୮।। ଏହା ହେଉଛି ବିଷ୍ଣୁଙ୍କର ଅଲଂଘନୀୟ ମାୟା । ଅଲକ୍ଷ୍ୟରେ ଏହି ମାୟା ବଳରେ ବିଷ୍ଣୁଙ୍କର ଅଂଶୀଭୂତ ପ୍ରାଣୀମାନେ କ୍ରୋଧ ଆଦି ଗୁଣ ବୃତ୍ତିଦ୍ୱାରା ଦେହଧାରୀ ପ୍ରାଣୀମାନଙ୍କୁ ମୋହିତ କରନ୍ତି ।।୨୯।। ଆତ୍ମବାଦୀ ପୁରୁଷର ଆତ୍ମବାଦର ଚର୍ଚ୍ଚାଦ୍ୱାରା ମାୟା ଆଉ ସ୍ଥିର ହୋଇ ରହିପାରେ ନାହିଁ । ମାୟା ନ ରହିଲେ ତାକୁ ଆଶ୍ରୟ କରିଥିବା ବିଭିନ୍ନ ବିବାଦ ରହେ ନାହିଁ । ମନର ସଙ୍କଳ୍ପବିକଳ୍ପ ବୃତ୍ତି (କଣ କର୍ତ୍ତବ୍ୟ ଓ କ'ଣ ଅକର୍ତ୍ତବ୍ୟ, ଏଇ ଅସ୍ଥିର ଭାବ) ରହେନାହିଁ ।।୩୦।। କର୍ତ୍ତାର କରିଥିବା କର୍ମ, କର୍ମର କାରକରୂପୀ ସାମଗ୍ରୀ ଓ ତାର ସାଧ୍ୟ ଫଳ -- ଏହି ତିନୋଟିଯାକର ସଂଯୋଗରେ ଯେଉଁ ଅହଙ୍କାର ବା ଜୀବଭାବ ଥାଏ ତାହା ଦୂର ହୋଇଗଲେ ଜୀବ ଆତ୍ମସ୍ୱରୂପ ହୋଇଯାଏ । ଅହଙ୍କାରଶୂନ୍ୟ ହୋଇ ମୁନି ନିଜର ଆତ୍ମସ୍ୱରୂପରେ ବିହାର କରୁଥାଏ । 'ନେତି ନେତି' -- ବଚନଦ୍ୱାରା ଆତ୍ମା ଛଡ଼ା ଅନ୍ୟ ପଦାର୍ଥକୁ ତ୍ୟାଗ କରିଥିବା ମମତାଶୂନ୍ୟ ଯୋଗୀମାନେ ଦେହର ଦୌରାତ୍ମ୍ୟସ୍ୱରୂପ ଅହଂଭାବକୁ ତ୍ୟାଗ କରି ସମାଧିଦ୍ୱାରା ହୃଦୟରେ ଆତ୍ମତତ୍ତ୍ୱକୁ ଅନୁଭବ କରନ୍ତି ଓ ତାହା ହିଁ ପରମ ବୈଷ୍ଣବପଦ ବୋଲି ବିଚାର କରାଯାଏ ।।୩୧-୩୨।। ଯେଉଁମାନଙ୍କଠାରେ ଦେହ ଓ ଗୃହରୁ ଜାତ ଅହଙ୍କାର ଓ ମମତା ଦୋଷ ନଥାଏ, ସେମାନେ ବିଷ୍ଣୁଙ୍କର ପରମପଦ ଲାଭ କରନ୍ତି । ଅତଏବ ଅତି ତର୍କ ତ୍ୟାଗ କରିବା ଉଚିତ । କାହାରିକୁ ଅବଜ୍ଞା କରିବା ଉଚିତ ନୁହେଁ ଏବଂ ଦେହର ସ୍ୱାର୍ଥପାଇଁ କାହା ସହିତ ଶତ୍ରୁତା କରିବା ମଧ୍ୟ ଠିକ୍ ନୁହେଁ ।।୩୩-୩୪।।

ସୂତ କହିଲେ, ଯାହାଙ୍କର ପାଦପଦ୍ମକୁ ଧ୍ୟାନ କରି ଏହି ଭାଗବତ ସଂହିତା ମୁଁ ଲାଭ କରିଛି, ସେହି ମହାଜ୍ଞାନୀ ଭଗବାନ୍ କୃଷ୍ଣଦ୍ୱୈପାୟନଙ୍କୁ ମୋର ନମସ୍କାର ।।୩୫।। ଶୌନକ ପଚାରିଲେ, ହେ ସୌମ୍ୟ, ବ୍ୟାସଙ୍କର ଶିଷ୍ୟ ବେଦାଚାର୍ଯ୍ୟ ପୈଳ ଆଦି ମହାତ୍ମା ବେଦକୁ କେତେ ଭାଗରେ ବିଭକ୍ତ କରିଥିଲେ, ତାହା ଆମକୁ କହିବା ହୁଅନ୍ତୁ ।।୩୬।। ସୂତ କହିଲେ, ଶୌନକ, ବ୍ରହ୍ମା ଯେତେବେଳେ ସମାଧିସ୍ଥ ହୋଇ ବସିଥିଲେ, ତାଙ୍କର ହୃଦାକାଶରୁ ଗୋଟିଏ ଶବ୍ଦର (ନାଦ) ଆବିର୍ଭାବ ହେଲା । ଯେତେବେଳେ ଜୀବ ନିଜର ଶ୍ରବଣବୃତ୍ତି (କାନପୁଡ଼ା ବନ୍ଦକରି) ସମ୍ପୂର୍ଣ୍ଣ ନିରୋଧ କରିପାରେ ତାହେଲେ, ସେ ମଧ୍ୟ ଏହି ଅନାହତ ନାଦକୁ ଅନୁଭବ କରିଥାଏ ।।୩୭।। ଏହି ନାଦର ଉପାସନାଦ୍ୱାରା ଯୋଗୀମାନେ ଦ୍ରବ୍ୟ, କ୍ରିୟା ଓ କାରକ (ଆଧିଭୌତିକ, ଆଧ୍ୟାତ୍ମିକ ଓ ଆଧିଦୈବିକ) ରୂପ ମଳିନତାକୁ ଧୋଇ ଦେଇ ମୋକ୍ଷଲାଭ କରନ୍ତି, ଅର୍ଥାତ୍ ଆଉ ସଂସାରରେ ଜନ୍ମ ହୁଅନ୍ତି ନାହିଁ ।।୩୮।। ଏହି ନାଦରୁ ଅ, ଉ, ମ--ଏହି ତ୍ରିମାତ୍ରାଯୁକ୍ତ ଓଁକାର ଧ୍ୱନି ସୃଷ୍ଟି ହେଲା । ଏହି ଓଁକାର ଅବ୍ୟକ୍ତ ଓ ଅନାଦି ପରମାତ୍ମାଙ୍କର ସ୍ୱରୂପ ହୋଇଥିବାଯୋଗୁଁ ସ୍ୱୟଂପ୍ରକାଶ ।।୩୯।। ଇନ୍ଦ୍ରିୟହୀନ ହେଲେ ମଧ୍ୟ ଯାହାଙ୍କର ଜ୍ଞାନ ଥାଏ ଏବଂ ଶ୍ରବଣେନ୍ଦ୍ରିୟକୁ ଆଚ୍ଛାଦିତ କରି ମଧ୍ୟ ଯେ ସେହି ନାଦକୁ ଶୁଣିପାରନ୍ତି ଏବଂ ଯାହାଙ୍କ ବେଦରୂପକ ଧ୍ୱନି ଆକାଶରେ ବ୍ୟକ୍ତ ହୁଏ, ସେ ହେଉଛନ୍ତି ଓଁକାର । ନିଜର ଆଶ୍ରୟ ପରଂବ୍ରହ୍ମ ପରମାତ୍ମାଙ୍କର ବାକ୍‌ରୂପକ ସ୍ୱରୂପ ଏବଂ ସମସ୍ତ ମନ୍ତ୍ର, ଉପନିଷଦ୍ ଓ ବେଦର ସନାତନ ବୀଜ ।।୪୦-୪୧।। ହେ ଭାର୍ଗବଶ୍ରେଷ୍ଠ (ଶୌନକ), ସେହି ଓଁକାରରେ ଅ'କାର ଆଦି ତିନୋଟି ବର୍ଣ୍ଣ ଅଛି, ଯଥା - ଅ, ଉ, ମ । ଏହି ତିନି ବର୍ଣ୍ଣ ହେଲେ ଋକ୍, ଯଜୁଃ ଓ ସାମ-ଏଇ ବେଦତ୍ରୟୀ; ସତ୍ତ୍ୱ, ରଜ ଓ ତମ -- ଏହି ତିନି ଗୁଣ,

ଭୂଃ, ଭୁବଃ ଓ ସ୍ୱଃ - ଏହି ତିନୋଟି ଅର୍ଥ ଏବଂ ଜାଗ୍ରତ୍, ସ୍ୱପ୍ନ ଓ ସୁଷୁପ୍ତି -- ଏହି ତିନୋଟି ବୃତ୍ତିର ଆଧାର ।।୪୨।। ଏହାପରେ ଭଗବାନ ବ୍ରହ୍ମା ଏହି ଓଁକାରରୁ ବର୍ଣ୍ଣମାଳାର ସୃଷ୍ଟି କଲେ । ଯଥା-ଅନ୍ତଃସ୍ଥ (ଯ, ର, ଲ, ବ), ଉଷ୍ମ(ଶ,ଷ,ସ,ହ), ସ୍ୱର (ଅ ଠାରୁ ଆରମ୍ଭ କରି ଔ ପର୍ଯ୍ୟନ୍ତ), ସ୍ପର୍ଶ (କ ଠାରୁ ଆରମ୍ଭ କରି ମ ପର୍ଯ୍ୟନ୍ତ) ତଥା ହ୍ରସ୍ୱ ଓ ଦୀର୍ଘ ଆଦି ମାତ୍ରା ।।୪୩।। ଏହି ବର୍ଣ୍ଣମାଳାଦ୍ୱାରା ଚତୁର୍ମୁଖ ବ୍ରହ୍ମା ହୋତା, ଉଦ୍‌ଗାତା, ଅଧ୍ୱର୍ଯ୍ୟୁ ଓ ବହ୍‌ବୃଚ -- ଏହି ଚାରି ପ୍ରକାର ଯଜ୍ଞକାରୀ ଋତ୍ୱିଜଙ୍କର କର୍ମ କରିବାପାଇଁ ନିଜର ଚତୁର୍ମୁଖରୁ ଓଁକାର ଓ ଭୂଃ, ଭୁବଃ, ସ୍ୱଃ ଆଦି ବ୍ୟାହୃତି ସହିତ ଚାରୋଟି ବେଦର ସୃଷ୍ଟି କଲେ ଏବଂ ବେଦର ଉଚ୍ଚାରଣରେ ନିପୁଣ ମହର୍ଷି ମରୀଚି ଆଦି ପୁତ୍ରମାନଙ୍କୁ ସେହି ବେଦର ଅଧ୍ୟୟନ କରାଇଲେ । ଧର୍ମୋପଦେଷ୍ଟା ମରୀଚି ଆଦି ଋଷିମାନେ ତାଙ୍କ ନିଜ ନିଜର ପୁତ୍ରମାନଙ୍କୁ ବେଦାଧ୍ୟୟନ କରାଇଲେ ।।୪୪-୪୫।। ବ୍ରତ ଧାରଣ କରିଥିବା ମରୀଚି ପ୍ରଭୃତିଙ୍କ ଶିଷ୍ୟପ୍ରଶିଷ୍ୟମାନେ ପରମ୍ପରାକ୍ରମେ ଚାରି ଯୁଗରେ ଏହି ସମସ୍ତ ବେଦ ପ୍ରାପ୍ତ ହୋଇ ଆସିଛନ୍ତି । ଏହି ପରମ୍ପରାରେ ଆସିଥିବା ମହର୍ଷିମାନେ ଦ୍ୱାପରଯୁଗର ଶେଷ ଭାଗରେ ବେଦର ବିଭାଗ କଲେ ।।୪୬।। ଯେତେବେଳେ ବ୍ରହ୍ମର୍ଷିମାନେ ଦେଖିଲେ ଯେ କାଳକ୍ରମେ ଲୋକମାନଙ୍କର ଆୟୁଷ କ୍ଷୀଣ ହୋଇଯାଉଛି, ଶକ୍ତି ଓ ବୁଦ୍ଧି ମଧ୍ୟ କ୍ଷୀଣ ହେବାରେ ଲାଗିଛି, ସେତେବେଳେ ସେମାନେ ନିଜର ହୃଦୟରେ ଥିବା ଭଗବାନଙ୍କ ପ୍ରେରଣାରେ ବେଦମାନଙ୍କର ବିଭାଗ କଲେ ।।୪୭।। ମହାଭାଗ ଶୌନକ, ଏହି ଅବସରରେ ଲୋକମାନଙ୍କର ପାଳକ ସର୍ବଶକ୍ତିମାନ୍ ଭଗବାନ୍ ବ୍ରହ୍ମା ରୁଦ୍ର ଆଦି ଲୋକପାଳଙ୍କର ପ୍ରାର୍ଥନାରେ ପରାଶରଙ୍କଠାରୁ ସତ୍ୟବତୀଙ୍କ ଗର୍ଭରେ ନିଜର ଅଂଶାଂଶ କଳାସ୍ୱରୂପ ବ୍ୟାସଦେବଙ୍କ ରୂପରେ ଅବତୀର୍ଣ୍ଣ ହେଲେ । ସେହି ବ୍ୟାସ ବେଦକୁ ଚାରି ଭାଗରେ ବିଭକ୍ତ କଲେ ।।୪୮-୪୯।।

ରାଶି ରାଶି ମଣିମଧ୍ୟରୁ ପଦ୍ମରାଗ ମଣିକୁ ଉଦ୍ଧାର କରିବାପରି, ବେଦର ରାଶିରାଶି ମନ୍ତ୍ରମଧ୍ୟରୁ ଭିନ୍ନ ଭିନ୍ନ ପ୍ରକରଣ ଅନୁସାରେ ମନ୍ତ୍ରୋଦ୍ଧାର କରି ସେ ଋକ୍, ଅଥର୍ବ, ଯଜୁଃ ଓ ସାମ ରୂପକ ଚାରୋଟି ସଂହିତା ପ୍ରଣୟନ କଲେ ।।୫୦।। ଶୌନକ, ବିଶାଳବୁଦ୍ଧି ବ୍ୟାସଦେବ ତାଙ୍କର ଚାରି ଜଣ ଶିଷ୍ୟଙ୍କୁ ପାଖକୁ ଡକାଇ ଜଣଜଣକୁ ଏକ ଏକ କରି ସଂହିତା ପ୍ରଦାନ କଲେ ।।୫୧।। ସେମାନଙ୍କ ମଧ୍ୟରୁ 'ବହ୍‌ବୃଚ' ନାମକ ପ୍ରଥମ ଋକ୍ ସଂହିତା ପୈଲଙ୍କୁ, 'ନିଗଦ' ନାମକ ଯଜୁଃସଂହିତା ବୈଶମ୍ପାୟନଙ୍କୁ, ସାମମାନଙ୍କର 'ଛାନ୍ଦୋଗ' ନାମକ ସଂହିତା ଜୈମିନିଙ୍କୁ ଓ 'ଅଥର୍ବାଙ୍ଗିରସ' ସଂହିତା ସୁମନ୍ତୁଙ୍କୁ ଉପଦେଶ ଦେଲେ ।।୫୨-୫୩।। ପୈଲ ଋଷି ନିଜର ସଂହିତାକୁ ଦୁଇ ଭାଗ କରି ଗୋଟିକର ଅଧ୍ୟୟନ ଇନ୍ଦ୍ରପ୍ରମିତିଙ୍କଦ୍ୱାରା ଏବଂ ଅନ୍ୟଟିର ବାଷ୍କଳଙ୍କଦ୍ୱାରା କରାଇଲେ । ବାଷ୍କଳ ନିଜର ଶାଖାକୁ ଚାରି ଭାଗରେ ବିଭକ୍ତ କରି ବୋଧ୍ୟ, ଯାଜ୍ଞବଲ୍‌କ୍ୟ, ପରାଶର ଓ ଅଗ୍ନିମିତ୍ର - ଏହି ଚାରି ଜଣ ଶିଷ୍ୟଙ୍କୁ ପଢ଼ାଇଲେ । ଆତ୍ମଜ୍ଞ ଇନ୍ଦ୍ରପ୍ରମିତି ଋଷି ମାଣ୍ଡୂକେୟ ନାମକ ନିଜର ପ୍ରତିଭାବାନ୍ ଶିଷ୍ୟଙ୍କୁ ନିଜର ସହିଂତାକୁ ପଢ଼ାଇଲେ । ମାଣ୍ଡୂକେୟଙ୍କର ଶିଷ୍ୟ ଦେବମିତ୍ର ସୌଭରି ଆଦି ଋଷିଙ୍କୁ ନିଜର ସଂହିତାକୁ ଉପଦେଶ ଦେଲେ ।।୫୪-୫୬।। ମାଣ୍ଡୂକେୟଙ୍କର ପୁତ୍ର ଶାକଲ୍ୟ ନିଜର ସଂହିତାକୁ ପାଞ୍ଚ ଭାଗରେ ବିଭକ୍ତ କରି ସେସବୁକୁ ବାତ୍ସ୍ୟ, ମୁଦ୍‌ଗଲ, ଶାଳୀୟ, ଗୋଖଲ୍ୟ ଓ ଶିଶିର ନାମକ ଶିଷ୍ୟମାନଙ୍କୁ ପଢ଼ାଇଲେ ।।୫୭।। ଶାକଲ୍ୟଙ୍କର ଅନ୍ୟ ଜଣେ ଶିଷ୍ୟ ମୁନି ଜାତୂକର୍ଣ୍ଣ ନିଜ ସଂହିତାକୁ ତିନି ଭାଗ କରି ନିରୁକ୍ତର ସହିତ ବଳାକ, ପୈଜ, ବୈତାଳ ଓ ବିରଜଙ୍କୁ ପ୍ରଦାନ କଲେ ।।୫୮।। ବାଷ୍କଳଙ୍କ ପୁତ୍ର ବାଷ୍କଳି ସବୁ ଶାଖାରୁ ସଂଗ୍ରହ କରି 'ବାଳଖିଲ୍ୟ' ନାମକ ଏକ ସଂହିତା ପ୍ରଣୟନ କଲେ । ବାଳାୟନି, ଭଜ୍ୟ ଓ କାସାର -- ତାଙ୍କର ଏହି ତିନି ଜଣ ଶିଷ୍ୟ ତାହା ଧାରଣ କଲେ ।।୫୯।। ପୂର୍ବୋକ୍ତ ଏହି ବ୍ରହ୍ମର୍ଷିମାନେ ଏହି ବହ୍‌ବୃଚ୍ ସଂହିତାମାନଙ୍କୁ ଧାରଣ କରିଥିଲେ । ଯେଉଁ ବ୍ୟକ୍ତି ବେଦମାନଙ୍କର ଏହି ବିଭାଗକୁ ଶ୍ରବଣ କରେ, ସେ ସମସ୍ତ ପାପରୁ ମୁକ୍ତ ହୋଇଯାଏ ।।୬୦।।

ଶୌନକ, (ଯଜୁର୍ବେଦ ସଂହିତାର) ବୈଶମ୍ପାୟନଙ୍କ ଶିଷ୍ୟମାନେ ଚ଼ରକ ଅଧ୍ୱର୍ଯ୍ୟୁ ହେଲେ ଏବଂ ନିଜ ଗୁରୁଙ୍କର ବ୍ରହ୍ମହତ୍ୟା--ପାପନାଶପାଇଁ ଏକବ୍ରତ ଆଚରଣ କଲେ । ସେଥିପାଇଁ ସେମାନେ ଚରକ ନାମରେ ପ୍ରସିଦ୍ଧ ହେଲେ ।।୬୧।।

ବୈଶମ୍ପାୟନଙ୍କର ଅନ୍ୟ ଜଣେ ଶିଷ୍ୟ ଯାଜ୍ଞବଲ୍କ୍ୟ । ସେ ଦୁଃଖ କରି କହିଥିଲେ, ହେ ଗୁରୁ, ଏହି ଅଳ୍ପଶକ୍ତିସମ୍ପନ୍ନ ଶିଷ୍ୟମାନଙ୍କର ପ୍ରାୟଶ୍ଚିତ୍ତ ଆଚରଣଦ୍ୱାରା ଆପଣଙ୍କୁ କେତେ ଫଳ ମିଳିବ ? ଏମାନେ ସେଥିରୁ ବିରତ ହୁଅନ୍ତୁ । ମୁଁ ଦୁଷ୍କର ତପସ୍ୟା କରିବି ॥୬୨॥ ଏହା ଶୁଣି ଗୁରୁ କ୍ରୁଦ୍ଧ ହୋଇ କହିଲେ-- ତୁ ଚାଲି ଯା', ତୋ' ଭଳି ଶିଷ୍ୟଦ୍ୱାରା କିଛି କାମ ନାହିଁ । ତୁ ବିପ୍ରଙ୍କୁ ଅବମାନନା କଲୁ । ଏଣୁ ମୋ'ଠୁ ଯାହା ପଢ଼ିଛୁ, ତାକୁ ଶୀଘ୍ର ଭୁଲିଯାଅ ॥୬୩॥ ତହୁଁ ଦେବରାତଙ୍କର ପୁତ୍ର ଯାଜ୍ଞବଲ୍କ୍ୟ ଗୁରୁଙ୍କଠାରୁ ପଢ଼ିଥିବା ଯଜୁଃମାନଙ୍କୁ ବାନ୍ତି କରିଦେଇ ସେଠାରୁ ପ୍ରସ୍ଥାନ କଲେ । ବାନ୍ତି ହୋଇଥିଲେ ମଧ୍ୟ ତାହା ବେଦ ବୋଲି ଦେଖି ମୁନିମାନେ ବିପ୍ରରୂପରେ ବମିତ ମନ୍ତ୍ର ଗ୍ରାହ୍ୟ ନୁହେଁ ବୋଲି ବିଚାରି ତିତ୍ତିର ପକ୍ଷୀ ହୋଇ ତାହାକୁ ସବୁ ଗ୍ରହଣ କରିନେଲେ । ସେଥିପାଇଁ ଯଜୁର୍ବେଦର ରମଣୀୟ ଶାଖାମାନଙ୍କର ନାମ ହେଲା 'ତୈତ୍ତିରୀୟ' ॥୬୪-୬୫॥ ଶୌନକ, ଏହାପରେ ଯାଜ୍ଞବଲ୍କ୍ୟ ନିଜର ଗୁରୁଙ୍କଠାରେ ନଥିବା(ଅବିଦ୍ୟମାନ) ଛନ୍ଦ (ବେଦ)ମାନଙ୍କୁ ଅଧିକ ପରିମାଣରେ ଖୋଜୁ ଖୋଜୁ ବେଦପତି ସୂର୍ଯ୍ୟ ଭଗବାନଙ୍କୁ ଉପାସନା କଲେ ॥୬୬॥

ଯାଜ୍ଞବଲ୍କ୍ୟ କହିଲେ, ଓଁ ଭଗବାନ ଆଦିତ୍ୟଙ୍କୁ ମୋର ନମସ୍କାର । ହେ ଦେବ ! ଆପଣ ଅଖିଳ ଜଗତର ଆତ୍ମାସ୍ୱରୂପ ଓ କାଳସ୍ୱରୂପ । ବ୍ରହ୍ମାଙ୍କଠାରୁ ଆରମ୍ଭ କରି ତୃଣପର୍ଯ୍ୟନ୍ତ ଜରାୟୁଜ, ଅଣ୍ଡଜ,ସ୍ୱେଦଜ ଓ ଉଦ୍‌ଭିଜ୍ଜ ପ୍ରାଣୀମାନେ ଆପଣଙ୍କୁ ଆଶ୍ରୟ କରି ରହିଛନ୍ତି । ସେମାନଙ୍କ ଭିତରେ ଓ ବାହାରେ ଆପଣ ଉପାଧିବିହୀନ ଆକାଶ ପରି ବ୍ୟାପି ରହିଛନ୍ତି । ଆପଣ କ୍ଷଣ, ଲବ, ନିମେଷ ଆଦି ଅବୟବଦ୍ୱାରା ବର୍ଦ୍ଧିତ ସମ୍ବତ୍ସର । ଆପଣ ନିଜ ତେଜରେ ଜଳର ଆଦାନ ଓ ବିସର୍ଜନଦ୍ୱାରା ଲୋକସମୂହର ଏଇ ଜୀବନଯାତ୍ରା ଚଳାଉଛନ୍ତି ॥୬୭॥ ହେ ଦେବଶ୍ରେଷ୍ଠ ସବିତା, ନିତ୍ୟ ତ୍ରିସନ୍ଧ୍ୟାରେ ବେଦବିଧିଦ୍ୱାରା ଭକ୍ତମାନେ ଆପଣଙ୍କର ସ୍ତୁତି କରନ୍ତି ଏବଂ ସେମାନଙ୍କର ସମସ୍ତ ପାପ ଓ ଦୁଃଖର ବୀଜକୁ ଆପଣ ନଷ୍ଟ କରିଦିଅନ୍ତି । ଭଗବାନ୍, ଆପଣଙ୍କର ସୂର୍ଯ୍ୟମଣ୍ଡଳଙ୍କୁ ମୁଁ ସମ୍ପୂର୍ଣ୍ଣ ଧ୍ୟାନ କରୁଛି ॥୬୮॥ ହେ ଜଗତ୍‌ର ପିତା, ଚରାଚର ଜଗତ ହେଉଛି ଆପଣଙ୍କ ଘର । ଆପଣ ଜୀବମାନଙ୍କର ଜଡ଼ ମନ, ଇନ୍ଦ୍ରିୟ ଓ ପ୍ରାଣମାନଙ୍କୁ ଅନ୍ତର୍ଯାମୀରୂପେ ନିଜ ନିଜ କାର୍ଯ୍ୟ କରିବାପାଇଁ ପ୍ରେରଣା ଦିଅନ୍ତି ॥୬୯॥ ପରମକାରୁଣିକ, ଏହି ଲୋକ ପ୍ରତିଦିନ ଅନ୍ଧକାରସଂଜ୍ଞକ ଅଜଗରର ବିକରାଳ ମୁହଁରେ ପଡ଼ି ମୃତବତ୍ ଅଚେତନ ହୋଇ ରହିଥାଏ । ଆପଣ ନିଜର ଦୟାଦୃଷ୍ଟିରେ ଏହାକୁ ସଚେତନ କରି ଉଠାଇ ଦିଅନ୍ତି ଏବଂ ଏହାକୁ ସ୍ୱଧର୍ମରେ ପ୍ରବୃତ୍ତ କରିବାକୁ ଯାତ୍ରା କରନ୍ତି, ଯେପରି ରାଜା ଅସାଧୁମାନଙ୍କ ଭୟ ଜନ୍ମାଇବାପାଇଁ ପଦଯାତ୍ରା କରେ ॥୭୦॥ ଭଗବନ୍, ଚତୁର୍ଦ୍ଦିଗରେ ଦିଗପାଳମାନେ ପଦ୍ମକୋରକ ପରି ନିଜର ଅଞ୍ଜଳିରେ ଆପଣଙ୍କୁ ଉପହାର ଦେଇ ନାନା ସ୍ଥାନରେ ଅର୍ଚ୍ଚନା କରନ୍ତି ॥୭୧॥ ଭଗବନ୍, ଏଣୁ ତ୍ରିଭୁବନର ଗୁରୁମାନେ ଆପଣଙ୍କ ପାଦପଦ୍ମଯୁଗଳକୁ ବନ୍ଦନା କରନ୍ତି । ଯେଉଁ ଯଜୁଃ ଅନ୍ୟମାନଙ୍କୁ ଜଣା ନାହିଁ, ମୁଁ ତାହାର ପ୍ରାପ୍ତିନିମନ୍ତେ ଆପଣଙ୍କ ପଦଯୁଗଳକୁ ଆଶ୍ରୟ କରୁଛି ॥୭୨॥

ସୂତ କହିଲେ, ଯାଜ୍ଞବଲ୍କ୍ୟ ଏହିପରି ସ୍ତୁତି କରିବାରୁ ଭଗବାନ ସୂର୍ଯ୍ୟ ପ୍ରସନ୍ନ ହୋଇ ତାଙ୍କୁ ଯଜୁଃମାନଙ୍କୁ ପ୍ରଦାନକଲେ, ଯାହାକି ଅନ୍ୟମାନେ ପାଇପାରି ନ ଥିଲେ ॥୭୩॥ ଯାଜ୍ଞବଲ୍କ୍ୟ ଯଜୁଃ ବେଦର ଅସଂଖ୍ୟ ମନ୍ତ୍ରକୁ ପନ୍ଦରଟି ଶାଖାରେ ରୂପାୟିତ କଲେ । କାଣ୍ୱ, ମାଧ୍ୟନ୍ଦିନ ଆଦି ଋଷିମାନେ ଏହି ସବୁ ଶାଖା ଅଧ୍ୟୟନ କରିଥିଲେ । ଅଶ୍ୱରୂପୀ ସୂର୍ଯ୍ୟଙ୍କର ବାଜସ୍ ଅର୍ଥାତ୍ କେଶରରୁ ନିଃସୃତ ହୋଇଥିବାଯୋଗୁ ଏହାକୁ ବାଜସନେୟ ଶାଖାବୋଲି କୁହାଯାଏ ॥୭୪॥ ଜୈମିନି ସାମସଂହିତା ଗାନ କରୁଥିଲେ । ସେ ତାଙ୍କର ପୁତ୍ର ସୁମନ୍ତୁଙ୍କୁ ଓ ନାତି ସୁନ୍ୱାନ୍‌ଙ୍କୁ ଗୋଟିଏ ଲେଖାଁଏ ସଂହିତା କହିଥିଲେ ॥୭୫॥

ଶୌନକ, ଜୈମିନିଙ୍କ ଶିଷ୍ୟ ସୁକର୍ମା ସାମବେଦରୂପକ ବୃକ୍ଷକୁ ସହସ୍ର ଶାଖାରେ ବିଭକ୍ତ କରିଥିଲେ । ତାଙ୍କର ଶିଷ୍ୟ କୋଶଳଦେଶବାସୀ ହିରଣ୍ୟନାଭ ଓ ପୌଷ୍ୟଂଜୀ ଏବଂ ଅନ୍ୟ ଜଣେ ବ୍ରହ୍ମଜ୍ଞ ଶିଷ୍ୟ ଆବନ୍ତ୍ୟ ସେହି ସାମସଂହିତାମାନ ଅଧ୍ୟୟନ କରିଥିଲେ ॥୭୬-୭୭॥ ପୌଷ୍ୟଞ୍ଜୀ ଓ ଆବନ୍ତ୍ୟଙ୍କର ପାଞ୍ଚଶହ ଶିଷ୍ୟ ଥିଲେ । ଉତ୍ତରଦେଶୀୟ ହୋଇଥିବାଯୋଗୁଁ ସେମାନେ

ଉଦୀଚ୍ୟ ବୋଲାଉଥିଲେ । ସେମାନଙ୍କୁ ପ୍ରାଚ୍ୟ ମଧ୍ୟ କୁହାଯାଏ ।।୭୮।। ପୌଷ୍ୟଞ୍ଜୀଙ୍କର ଅନ୍ୟ ଶିଷ୍ୟମାନେ ମଧ୍ୟ ଥିଲେ - ଲୌଗାକ୍ଷି, ମାଙ୍ଗଳି, କୁଲ୍ୟ,କୁସୀଦ ଏବଂ କୁକ୍ଷି । ଏମାନେ ପ୍ରତ୍ୟେକେ ଶହ ଶହ ସଂହିତା ଗ୍ରହଣ କରିଥିଲେ ।।୭୯।। ହିରଣ୍ୟନାଭଙ୍କର ଶିଷ୍ୟ କୃତ ନିଜ ଶିଷ୍ୟମାନଙ୍କୁ ଚବିଶଟି ସଂହିତା କହିଥିଲେ । ବାକୀ ଯାହାସବୁ ପ୍ରସିଦ୍ଧ ସଂହିତା ଥିଲା, ଆତ୍ମଜ୍ଞାନୀ ଆବନ୍ତ୍ୟ ନିଜ ଶିଷ୍ୟମାନଙ୍କୁ ତାହା କହିଥିଲେ ।।୮୦।।

## ସପ୍ତମ ଅଧ୍ୟାୟ

# ଅଥର୍ବ ବେଦର ଶାଖା ଓ ପୁରାଣମାନଙ୍କର ଲକ୍ଷଣ

ଶ୍ରୀସୂତ କହିଲେ, ଅଥର୍ବବେଦଜ୍ଞ ସୁମନ୍ତୁମୁନି ନିଜର ସଂହିତାକୁ ଶିଷ୍ୟ କବନ୍ଧଙ୍କୁ ପଢ଼ାଇଥିଲେ । କବନ୍ଧ ତାହାକୁ ଦୁଇ ଭାଗରେ ବିଭକ୍ତ କରି ନିଜର ଶିଷ୍ୟ ପଥ୍ୟଙ୍କୁ ଓ ବେଦଦର୍ଶଙ୍କୁ କହିଥିଲେ ।।୧।। ଶୌକ୍ଲାୟନି, ବ୍ରହ୍ମବଳି, ମୋଦୋଷ ଓ ପିପ୍ପଳାୟନି - ଏହି ଚାରିଜଣ ବେଦଦର୍ଶଙ୍କର ଶିଷ୍ୟ ଥିଲେ । ବର୍ତ୍ତମାନ ପଥ୍ୟଙ୍କର ଶିଷ୍ୟମାନଙ୍କ ନାମ ଶୁଣ - କୁମୁଦ, ଶୁନକ ଓ ଅଥର୍ବବିଦ୍ ଜାଜଳି --ଏହି ତିନି ଜଣ ପଥ୍ୟଙ୍କର ଶିଷ୍ୟ ଥିଲେ ।।୨।। ଅଙ୍ଗିରାଙ୍କ ପୁତ୍ର ଶୁନକଙ୍କର ଦୁଇଜଣ ଶିଷ୍ୟ ଥିଲେ - ବଭ୍ରୁ ଓ ସୈନ୍ଧବାୟନ । ସେଦୁହେଁ ଦୁଇଟି ସଂହିତା ଅଧ୍ୟୟନ କରିଥିଲେ । ତା'ପରେ ସାବର୍ଣ୍ଣି ପ୍ରଭୃତି ଶୁନକଙ୍କର ଅନ୍ୟ ଶିଷ୍ୟମାନେ ସେଇ ଦୁଇଟି ଗ୍ରହଣକଲେ । ନକ୍ଷତ୍ରକଳ୍ପ, ଶାନ୍ତି, କଶ୍ୟପ, ଆଙ୍ଗିରସ ଆଦି ଅନେକ ବିଦ୍ୱାନ୍ ଅଥର୍ବବେଦର ଆଚାର୍ଯ୍ୟ ହୋଇଥିଲେ । ଏବେ ପୁରାଣାଚାର୍ଯ୍ୟମାନଙ୍କର ନାମ ଶ୍ରବଣ କର ।।୩-୪।। ତ୍ରୟ୍ୟାରୁଣି, କଶ୍ୟପ, ସାବର୍ଣ୍ଣି, ଅକୃତବ୍ରଣ, ବୈଶମ୍ପାୟନ ଓ ହାରୀତ--ଏହି ଛ ଜଣ ହେଲେ ପୁରାଣାଚାର୍ଯ୍ୟ ।।୫।। ମୋର ପିତା ବ୍ୟାସଙ୍କର ଶିଷ୍ୟ ରୋମହର୍ଷଣଙ୍କଠାରୁ ସେମାନେ ଏକ ଏକ କରି ଛଟି ପୁରାଣସଂହିତା ଅଧ୍ୟୟନ କରିଥିଲେ । ଏହି ଛ'ଜଣ ପୌରାଣିକଙ୍କର ଶିଷ୍ୟ ଭାବରେ ମୁଁ ସେମାନଙ୍କ ଠାରୁ ସମସ୍ତ ସଂହିତା ଅଧ୍ୟୟନ କରିଥିଲି ।।୬।। କଶ୍ୟପ, ସାବର୍ଣ୍ଣି, ପରଶୁରାମଙ୍କର ଶିଷ୍ୟ ଅକୃତବ୍ରଣ ଏବଂ ମୁଁ ବ୍ୟାସଙ୍କର ଶିଷ୍ୟ ମୋର ପିତା ରୋମହର୍ଷଣଙ୍କ ନିକଟରୁ ଚାରୋଟିଯାକ ମୂଳ ସଂହିତା ଅଧ୍ୟୟନ କରିଛୁ ।।୭।।

ବ୍ରହ୍ମନ୍, ବେଦ ଓ ଶାସ୍ତ୍ର ଅନୁଯାୟୀ ବ୍ରହ୍ମର୍ଷିମାନେ ପୁରାଣର ଲକ୍ଷଣ ନିରୂପଣ କରିଛନ୍ତି । ତାହା ତୁମେ ମନ ଦେଇ ଶୁଣ ।।୮।। ସର୍ଗ (ବିଶ୍ୱର ପ୍ରକାଶ), ବିସର୍ଗ (ଜୀବସୃଷ୍ଟି), ବୃତ୍ତି, ରକ୍ଷା, ମନ୍ୱନ୍ତର, ବଂଶ, ବଂଶାନୁଚରିତ, ସଂସ୍ଥା(ପ୍ରଳୟ), ହେତୁ ଓ ଅପାଶ୍ରୟ--ଏହି ଦଶଟି ଶବ୍ଦଦ୍ୱାରା ପୁରାଣଜ୍ଞମାନେ ମହାପୁରାଣର ଲକ୍ଷଣ କହିଛନ୍ତି । ବ୍ରହ୍ମନ୍, କେହି କେହି ପାଞ୍ଚଟି ଲକ୍ଷଣର କଥା କହିଥା'ନ୍ତି । ଦୁଇଟିଯାକ ମତ ଠିକ୍ । କାରଣ ବୃହତ୍ ପୁରାଣର ଦଶ ଲକ୍ଷଣ ଓ ଛୋଟ ପୁରାଣର ପାଞ୍ଚ ଲକ୍ଷଣ ଥାଏ ।।୯-୧୦।। ଯେତେବେଳେ ମୂଳ ପ୍ରକୃତିରେ ଲୀନ ହୋଇଥିବା ଗୁଣମାନଙ୍କର କ୍ଷୋଭ ହୁଏ, ସେତେବେଳେ ମହତ୍ତତ୍ତ୍ୱ ଉତ୍ପନ୍ନ ହୁଏ । ମହତ୍ତତ୍ତ୍ୱରୁ ତାମସିକ, ରାଜସିକ ଓ ସାତ୍ତ୍ୱିକ - ଏହି ତ୍ରିବିଧ ଅହଙ୍କାରର ଉତ୍ପତ୍ତି । ଅହଙ୍କାରରୁ ପଞ୍ଚଭୂତ ପଞ୍ଚତନ୍ମାତ୍ର, ଇନ୍ଦ୍ରିୟ ଓ ଇନ୍ଦ୍ରିୟମାନଙ୍କ ଅଧିଷ୍ଠାତା ଦେବତାମାନେ ଉତ୍ପନ୍ନ ହୁଅନ୍ତି । ସେହି ଉତ୍ପତ୍ତିର ନାମ ସର୍ଗ(ସୃଷ୍ଟି) ।।୧୧।। ପରମେଶ୍ୱରଙ୍କର ଅନୁଗ୍ରହରେ ସୃଷ୍ଟିର ସାମର୍ଥ୍ୟ ଲାଭ କରିଥିବା ଏହି ମହତ୍ତତ୍ତ୍ୱ ଆଦିରେ ପୂର୍ବସୃଷ୍ଟିର କର୍ମବାସନାମାନ ରହିଥାଏ । ଏହି ବାସନାରୂପବୀଜରୁ ପୁଣି ବାସନାର ଜନ୍ମ । ତେଣୁ ଏହାର ସମାହାରରେ ଯେତେ ଚରାଚର ଜଗତର ପ୍ରବାହ ଚାଲିଥାଏ, ତାହା ହେଉଚି ବିସର୍ଗ ।।୧୨।। ବୃତ୍ତି ହେଉଚି ଜୀବିକା । ଜୀବନଧାରଣପାଇଁ ଅଚରପ୍ରାଣୀ ଓ ପଦାର୍ଥମାନେ ହେଲେ ଚରପ୍ରାଣୀଙ୍କର ବୃତ୍ତି । ମନୁଷ୍ୟମାନେ ସ୍ୱଭାବତଃ କାମନା ଅନୁଯାୟୀ ବା ବିଧିବଶତଃ (ଶାସ୍ତ୍ରାନୁସାରେ) ଚର ଓ ଅଚର ଉଭୟଙ୍କୁ ବୃତ୍ତିରୂପେ

ଗ୍ରହଣ କରିଥାନ୍ତି ॥୧୩॥ ଭଗବାନ୍ ଯୁଗେ ଯୁଗେ ପଶୁ, ପକ୍ଷୀ, ମନୁଷ୍ୟ, ଋଷି ଓ ଦେବତାରୂପରେ ଅବତୀର୍ଣ୍ଣ ହୋଇ ତାଙ୍କ ଲୀଳା କରିଥା'ନ୍ତି ଏବଂ ବେଦ-ଦ୍ୱେଷୀମାନଙ୍କୁ ସଂହାର କରି ବିଶ୍ୱକୁ ରକ୍ଷା କରନ୍ତି । ସେଥିପାଇଁ ଏହାକୁ 'ରକ୍ଷା' କୁହାଯାଏ ॥୧୪॥ ମନୁ, ଦେବଗଣ, ମନୁପୁତ୍ରଗଣ, ଇନ୍ଦ୍ର, ସପ୍ତ ଋଷି ଓ ଭଗବାନଙ୍କର ଏକ ଅଂଶାବତାର -- ଏମାନେ ନିଜ ନିଜ ଅଧିକାରରେ ପ୍ରତିଷ୍ଠିତ ଥିବାଯୋଗୁ ଏହାକୁ ଷଡ୍‌ବିଧ 'ମନ୍ୱନ୍ତର' କୁହାଯାଏ ॥୧୫॥

ବ୍ରହ୍ମାଙ୍କଠାରୁ ଯେତେ ରାଜାଙ୍କର ସୃଷ୍ଟି ହୋଇଚି, ସେମାନଙ୍କ ଭୂତ, ଭବିଷ୍ୟତ୍ ଓ ବର୍ତ୍ତମାନ ସନ୍ତାନ-ପରମ୍ପରାକୁ 'ବଂଶ' କୁହାଯାଏ । ସେହି ରାଜାଙ୍କର ଓ ସେମାନଙ୍କ ବଂଶଧରମାନଙ୍କର ଚରିତକୁ 'ବଂଶାନୁଚରିତ' କୁହାଯାଏ ॥୧୬॥ ସ୍ୱଭାବବଶତଃ ବିଶ୍ୱବ୍ରହ୍ମାଣ୍ଡର ପ୍ରଳୟ ହୁଏ । ପ୍ରଳୟ ହେଉଚି ଚାରି ପ୍ରକାର -- ନୈମିତ୍ତିକ, ପ୍ରାକୃତିକ, ନିତ୍ୟ ଓ ଆତ୍ୟନ୍ତିକ । ଋଷିମାନେ ଏହାକୁ 'ସଂସ୍ଥା' ବୋଲି କହିଥା'ନ୍ତି ॥୧୭॥ ଏହି ଜଗତ୍‌ର ସୃଷ୍ଟି ଆଦିର ହେତୁ ହେଉଚି ଜୀବ । ଅଜ୍ଞାନ ( ଅବିଦ୍ୟା) ବଶତଃ ସେ ନାନା କର୍ମ କରୁଥାଏ । ଏହି ଜୀବକୁ କେହି କେହି 'ଅନୁଶୟୀ' ( ପ୍ରକୃତିରେ ଶୟନ) କରିଥିବା ଓ କେହି କେହି 'ପ୍ରଧାନ' କହିଥାନ୍ତି ॥୧୮॥ ଜାଗ୍ରତ୍, ସ୍ୱପ୍ନ ଓ ସୁଷୁପ୍ତି ଏହି ତିନୋଟି ହେଉଚି ଜୀବର ବୃତ୍ତି । ଏହା ମାୟାମୟ । ଚୈତନ୍ୟସ୍ୱରୂପ ଯେ ଜୀବ ମଧ୍ୟରେ ସାକ୍ଷୀରୂପେ ରହିଥା'ନ୍ତି ଏବଂ ସମାଧି ଅବସ୍ଥାରେ ଯେ ଏହାର ବ୍ୟତିରେକ ବା ଏହାଠାରୁ ସ୍ୱତନ୍ତ୍ର ଭାବରେ ରହନ୍ତି, ସେହି ବ୍ରହ୍ମଙ୍କୁ ଅପାଶ୍ରୟ କୁହାଯାଏ ॥୧୯॥ ରୂପ ଓ ନାମ ବିଶିଷ୍ଟ ପଦାର୍ଥରେ ଯେପରି ତା'ର ମୂଳଦ୍ରବ୍ୟ (ଘଟ ମଧ୍ୟରେ ମୃତ୍ତିକାପରି) ଯୁକ୍ତ ହୋଇଥାଏ ଓ ପଦାର୍ଥ ନଷ୍ଟ ହୋଇଗଲେ ତାହା ଯେପରି ସେଥିରୁ ଅଲଗା ହୋଇଯାଏ, ସେହିପରି ଶରୀରର ଗର୍ଭାଧାନଠାରୁ ମୃତ୍ୟୁପର୍ଯ୍ୟନ୍ତ (ବ୍ରହ୍ମାଣ୍ଡର ସୃଷ୍ଟିରୁ ପ୍ରଳୟ ପର୍ଯ୍ୟନ୍ତ) ବିଭିନ୍ନ ଅବସ୍ଥାରେ ଯେଉଁ ସତ୍ତା ପ୍ରତୀତ ହୁଏ, ଶରୀରଠାରୁ ଭିନ୍ନ ସେହି ସତ୍ତା ହେଉଚି ବ୍ରହ୍ମ, ଯାହାହିଁ ପୁରାଣକଥିତ ଆଶ୍ରୟତତ୍ତ୍ୱ (ଅପାଶ୍ରୟ) ॥୨୦॥ ସ୍ୱୟଂ ଚିତ୍ତ ଯେତେବେଳେ ଯୋଗାଭ୍ୟାସ ବା ଆତ୍ମବିଚାରଦ୍ୱାରା ସତ୍ତ୍ୱଗୁଣ, ରଜୋଗୁଣ ଓ ତମୋଗୁଣ-ପ୍ରଭାବିତ ବିଷୟବୃତ୍ତି ମାନଙ୍କୁ ତ୍ୟାଗ କରି ସେଥିରୁ ବିରତ ହୋଇଯାଏ, ସେତେବେଳେ ସେ ସମସ୍ତପ୍ରକାର କର୍ମପ୍ରବୃତ୍ତିରୁ ଓ ବାସନାରୁ ନିବୃତ୍ତ ହୁଏ ॥୨୧॥ ପୁରାତତ୍ତ୍ୱବିତ୍ ମୁନିମାନେ ଏହିସବୁ ଲକ୍ଷଣଦ୍ୱାରା ପୁରାଣମାନଙ୍କୁ ଚିହ୍ନିତ କରନ୍ତି ଏବଂ ଏହିସବୁ ଲକ୍ଷଣଯୁକ୍ତ ଛୋଟ ବଡ଼ ହୋଇ ଅଠରଟି ପୁରାଣ ଅଛି ॥୨୨॥ ସେମାନେ ସବୁ ହେଲେ -- ବ୍ରହ୍ମପୁରାଣ, ବିଷ୍ଣୁ ପୁରାଣ, ଶିବପୁରାଣ, ଲିଙ୍ଗପୁରାଣ, ଗରୁଡ଼ ପୁରାଣ, ନାରଦ ପୁରାଣ, ଭାଗବତ-ପୁରାଣ, ଅଗ୍ନି ପୁରାଣ, ସ୍କନ୍ଦ ପୁରାଣ, ଭବିଷ୍ୟ ପୁରାଣ, ବ୍ରହ୍ମବୈବର୍ତ୍ତ ପୁରାଣ, ମାର୍କଣ୍ଡେୟ ପୁରାଣ, ବାମନ ପୁରାଣ, ବରାହ-ପୁରାଣ, ମତ୍ସ୍ୟ ପୁରାଣ, କୂର୍ମ ପୁରାଣ ଏବଂ ବ୍ରହ୍ମାଣ୍ଡ ପୁରାଣ ॥୨୩-୨୪॥ ଶୌନକ, ମହର୍ଷି ବ୍ୟାସଦେବଙ୍କ ଶିଷ୍ୟପ୍ରଶିଷ୍ୟଗଣ ପରମ୍ପରାକ୍ରମେ ଯେପରି ବେଦସଂହିତା ଓ ପୁରାଣସଂହିତାମାନଙ୍କର ଅଧ୍ୟୟନ, ଅଧ୍ୟାପନ ଓ ବିଭାଜନ କରିଛନ୍ତି, ତାହା ମୁଁ ଭଲଭାବରେ ବର୍ଣ୍ଣନା କଲି । ଏହି ପ୍ରସଙ୍ଗ ପଢ଼ିଲେ ବା ଶୁଣିଲେ ବ୍ରହ୍ମତେଜର ଅଭିବୃଦ୍ଧି ହୁଏ ॥୨୫॥

## ଅଷ୍ଟମ ଅଧ୍ୟାୟ

# ମାର୍କଣ୍ଡେୟଙ୍କ ତପସ୍ୟା

ଶୌନକ କହିଲେ, ହେ ସାଧୁ ସୂତ, ଆପଣ ଚିରଂଜୀବୀ ହୁଅନ୍ତୁ । ସଂସାରରୂପକ ଅନ୍ଧାରମଧ୍ୟରେ ଭ୍ରମି ହେଉଥିବା ଜୀବମାନଙ୍କପାଇଁ ଆପଣ ଏକମାତ୍ର ପଥପ୍ରଦର୍ଶକ । ହେ ବାଗ୍ମିପ୍ରବର, ମୃକଣ୍ଡଙ୍କର ପୁତ୍ର ଯେଉଁ ମାର୍କଣ୍ଡେୟ ଋଷି ଚିରଞ୍ଜୀବୀ ଥିଲେ, କଳ୍ପାନ୍ତ- ସମୟରେ ଏହି ଜଗତ୍ ବିଲୁପ୍ତ ହେବାବେଳେ ସେ କିପରି ବଞ୍ଚି ରହିଥିଲେ, ତାହା ଆମମାନଙ୍କୁ କହିବା

ହୁଅନ୍ତୁ ॥୧॥ ଭାର୍ଗବଶ୍ରେଷ୍ଠ ସେହି ମାର୍କଣ୍ଡେୟ ଋଷି ଏହି କଳ୍ପରେ ଆମମାନଙ୍କ ବଂଶରେ ଜନ୍ମ ହୋଇଛନ୍ତି ଏବଂ ଏବଯାଏଁ ପ୍ରାଣୀମାନଙ୍କର ପ୍ରଳୟ ହୋଇ ନାହିଁ ॥୨-୩॥ ଏପରିସ୍ଥିତିରେ କିପରି କୁହାଯାଏଯେ ମାର୍କଣ୍ଡେୟ ପ୍ରଳୟଜଳରେ ଭାସିଯାଉଥିବାବେଳେ ବଟପତ୍ର ଉପରେ ଶୋଇଥିବା ଏକ ଅଦ୍ଭୁତ ବାଳକଙ୍କୁ ଦେଖିବାକୁ ପାଇଲେ ॥୪॥ ସୂତ, ତେଣୁ ଆମ ମନରେ ବଡ଼ ସଂଶୟ ଓ କୌତୂହଳ ଜାତ ହେଉଚି । ଆପଣ ଜଣେ ମହାଯୋଗୀ । ପୁରାଣରେ ପ୍ରବୀଣ । ଦୟାକରି ଆମର ସଂଶୟ ଦୂର କରନ୍ତୁ ॥୫॥

ସୂତ କହିଲେ, ମହର୍ଷି ଶୌନକ, ଲୋକମାନଙ୍କର ଏ ବିଷୟରେ ଯେଉଁ ଭ୍ରମ ରହିଚି, ଆପଣଙ୍କ ପ୍ରଶ୍ନଦ୍ୱାରା ସେହି ଭ୍ରମ ଦୂର ହେବ । ଭଗବାନ୍ ନାରାୟଣଙ୍କର ସେହି ଲୀଳା ଗାନ କଲେ, କଳିଯୁଗର ସମସ୍ତ ମାଳିନ୍ୟ ଦୂର ହୋଇଯାଏ ॥୬॥ ମାର୍କଣ୍ଡେୟ ନିଜର ପିତାଙ୍କଠାରୁ ବ୍ରାହ୍ମଣର ସମସ୍ତ ସଂସ୍କାର ଯଥା ସମୟରେ ଲାଭ କରିଥିଲେ । ସେ ବେଦାଧ୍ୟୟନ କରି ସ୍ୱାଧ୍ୟାୟ ଓ ତପସ୍ୟାଦ୍ୱାରା ଧର୍ମାଚରଣ କରୁଥିଲେ ॥୭॥ ସେ ବ୍ରହ୍ମଚାରିବ୍ରତ ଧାରଣ କରୁଥିଲେ । ବସ୍ତ୍ରରୂପେ ବଲ୍କଳ ପିନ୍ଧୁଥିଲେ । ଶିରରେ ଜଟା ରଖି ଦଣ୍ଡ, କମଣ୍ଡଳୁ, ଯଜ୍ଞୋପବୀତ ଓ ମେଖଳା ଧାରଣ କରୁଥିଲେ ॥୮॥ ସେ କଠୋର ନୀତିନିୟମ ପାଳନ କରି କୃଷ୍ଣ ମୃଗଚର୍ମ, ରୁଦ୍ରାକ୍ଷମାଳା ଓ କୁଶଧାରଣ କରୁଥିଲେ ଏବଂ ସନ୍ଧ୍ୟା ଓ ପ୍ରାତଃ କାଳରେ ଅଗ୍ନି, ସୂର୍ଯ୍ୟ, ଗୁରୁ, ବିପ୍ର ଓ ଆତ୍ମସ୍ଥ ଶ୍ରୀହରିଙ୍କର ଉପାସନା କରୁଥିଲେ ॥୯॥ ସକାଳେ ଓ ସନ୍ଧ୍ୟାରେ ସେ ଗୁରୁଙ୍କପାଇଁ ଭିକ୍ଷାନ୍ନ ସଂଗ୍ରହ କରୁଥିଲେ ଏବଂ ମୌନ ରହି ଗୁରୁ ଅନୁମତି ଦେଲେ ଦିନକୁ ଥରେ ଖାଉଥିଲେ । ନଚେତ୍ ଉପବାସ ରହୁଥିଲେ ॥୧୦॥ ମାର୍କଣ୍ଡେୟ ଅୟୁତ ଅୟୁତ ବର୍ଷ ଧରି ତପସ୍ୟା ଓ ସ୍ୱାଧ୍ୟାୟଦ୍ୱାରା ଭଗବାନ ହୃଷୀକେଶଙ୍କୁ ଆରାଧନା କଲେ ଏବଂ ଯେଉଁ ମୃତ୍ୟୁକୁ ଜୟ କରିବା କଷ୍ଟକର ସେହି ମୃତ୍ୟୁ ଉପରେ ବିଜୟ ହାସଲ କଲେ ॥୧୧॥ ବ୍ରହ୍ମା, ଶିବ, ଭୃଗୁ, ଦକ୍ଷ ପ୍ରଜାପତି, ମରୀଚି ଓ ବ୍ରହ୍ମାଙ୍କର ଅନ୍ୟ ପୁତ୍ରମାନେ ତଥା ମନୁଷ୍ୟ, ଦେବତା, ପିତୃଗଣ ଓ ଅନ୍ୟ ପ୍ରାଣୀମାନେ ମାର୍କଣ୍ଡେୟଙ୍କର ସଫଳତାରେ ଆଶ୍ଚର୍ଯ୍ୟ ହୋଇଗଲେ । ତପସ୍ୟା, ସ୍ୱାଧ୍ୟାୟ, ଅଖଣ୍ଡ ବ୍ରହ୍ମଚର୍ଯ୍ୟ ଓ ସଂଯମଦ୍ୱାରା ମାର୍କଣ୍ଡେୟଙ୍କ ଅନ୍ତରାତ୍ମାର ସମସ୍ତ କ୍ଲେଶ ଦୂର ହୋଇଗଲା ଏବଂ ସେ ଶାନ୍ତ ଚିତ୍ତରେ ଅଚ୍ୟୁତଙ୍କର ଚିନ୍ତା କରିବାକୁ ଲାଗିଲେ ॥୧୨-୧୩॥ ଯୋଗୀ ମାର୍କଣ୍ଡେୟ ମହାଯୋଗଦ୍ୱାରା ଭଗବାନଙ୍କଠାରେ ନିଜର ଚିତ୍ତ ନିବିଷ୍ଟ କଲେ । ଏହି ସମୟ ମଧ୍ୟରେ ଛ'ଟି ମନ୍ୱନ୍ତର କଟିଗଲା ॥୧୪॥

ଏହି ସପ୍ତମ ମନ୍ୱନ୍ତରରେ ଇନ୍ଦ୍ର ମାର୍କଣ୍ଡେୟଙ୍କର ତପସ୍ୟାର ବୃତ୍ତାନ୍ତ ଜାଣି ଓ ତାଙ୍କର ତପସ୍ୟାରେ ଭୟଭୀତ ହୋଇ ସେଥିରେ ବିଘ୍ନ ଘଟାଇବାପାଇଁ ଚେଷ୍ଟିତ ହେଲେ ॥୧୫॥ ସେ ମୁନିଙ୍କ ପାଖକୁ ଗନ୍ଧର୍ବ, ଅପ୍ସରା, କାମଦେବ, ବସନ୍ତ, ମଳୟପବନ ଏବଂ ରଜୋଗୁଣର ତନୟ ଲୋଭ ଓ ମଦ -- ଏମାନଙ୍କୁ ପ୍ରେରଣ କଲେ ॥୧୬॥ ଶୌନକ ମହାଶୟ, ହିମାଳୟର ଉତ୍ତର ପଟେ ଯେଉଁଠି ପୁଷ୍ପଭଦ୍ରା ନଦୀ ବହିଯାଉଛି ଓ ଚିତ୍ରନାମରେ ଏକ ପାହାଡ଼ ଅଛି, ସେ ସ୍ଥାନରେ ମୁନିଙ୍କର ଆଶ୍ରମରେ ଏମାନେ ସବୁ ଯାଇ ପହଞ୍ଚିଲେ ॥୧୭॥ ପବିତ୍ର ବୃକ୍ଷଲତାପୂର୍ଣ୍ଣ ସେହି ଆଶ୍ରମସ୍ଥଳରେ ପୁଣ୍ୟାତ୍ମା ମୁନିଋଷିମାନେ ରହୁଥିଲେ । ଜଳାଶୟ ପବିତ୍ର ନିର୍ମଳ ଜଳରେ ପୂର୍ଣ୍ଣ ଥିଲା । ମତ୍ତ ଭ୍ରମରମାନେ ଗୁଞ୍ଜନ କରୁଥିଲେ । ମତ୍ତ କୋକିଳମାନେ କୂଜନ କରୁଥିଲେ । ମତ୍ତ ମୟୂରମାନେ ନୃତ୍ୟ କରି କେକା ରବ କରୁଥିଲେ । ମତ୍ତ ପକ୍ଷୀମାନେ ଦଳ ଦଳ ହୋଇ ଉଡ଼ି ବୁଲୁଥିଲେ ॥୧୮-୧୯॥ ସୁରଭି କୁସୁମଯୁକ୍ତ ମଳୟ ପବନ ସେହି ଆଶ୍ରମରେ ପ୍ରବେଶ କରି ଝରଣାର ଶୀତଳ ଜଳକଣାକୁ ସଂଗ୍ରହ କଲା ଏବଂ କାମ ଭାବର ଉଦ୍ଦୀପନ କରି ଧୀରେ ଧୀରେ ପ୍ରବାହିତ ହେଲା ॥୨୦॥ ବସନ୍ତ ଆସିଗଲା । ବୃକ୍ଷ, ଲତାମାନେ ନବପତ୍ର ଓ ପୁଷ୍ପସ୍ତବକରେ ଭରିଗଲେ । ସନ୍ଧ୍ୟାରେ ଚନ୍ଦ୍ର ଉଦିତ ହେଲେ । ଜ୍ୟୋସ୍ନାସ୍ନିଗ୍ଧ ତରୁଲତାମାନଙ୍କର ଶୋଭା ବଢ଼ିଗଲା ॥୨୧॥ ଅପ୍ସରା ଦଳର ନେତା କାମଦେବ ନିଜର ପୁଷ୍ପଧନୁ ଓ ସମ୍ମୋହନ ଶର ଧରି ଉପସ୍ଥିତ ହେଲେ ।

ଗୀତ, ବାଦ୍ୟ ସହ ଗନ୍ଧର୍ବଦଳ ତାଙ୍କ ଆଗେ ଆଗେ ଚାଲିଲେ ।।୨୨।। ଇନ୍ଦ୍ରଙ୍କର ଏହି ଅନୁଚରମାନେ ଆଶ୍ରମକୁ ଆସି ଦେଖିଲେ ଯେ ମାର୍କଣ୍ଡେୟ ଅଗ୍ନିରେ ଆହୁତି ଦେଇ ମୂର୍ତ୍ତିମନ୍ତ ଅଗ୍ନିପରି ଦେଖାଯାଉଛନ୍ତି ଓ ଚକ୍ଷୁ ବନ୍ଦ କରି ଭଗବାନଙ୍କୁ ଧ୍ୟାନ କରୁଛନ୍ତି ।।୨୩।। ଏହାପରେ ଅପ୍‌ସରାମାନେ ଋଷିଙ୍କ ଆଗରେ ନୃତ୍ୟ କରିବାକୁ ଲାଗିଲେ । ଗାୟକମାନେ ଗାନ କରୁଥିଲେ ଏବଂ ବାଦକମାନେ ମୃଦଙ୍ଗ, ବୀଣା ଓ ପଣବ ଆଦି ବାଦ୍ୟଯନ୍ତ୍ର ଦ୍ୱାରା ମନୋରମ ଧ୍ୱନି ସୃଷ୍ଟି କରିବାକୁ ଲାଗିଲେ । କାମଦେବ ନିଜର ପୁଷ୍ପଧନୁରେ ଶୋଷଣ, ଦୀପନ, ସମ୍ମୋହନ, ତାପନ ଓ ଉନ୍ମାଦନ ନାମକ ପଞ୍ଚମୁଖ ବାଣକୁ ସନ୍ଧାନ କଲେ । ଏହିପରି ବସନ୍ତ ଓ ଲୋଭ ମଦ ଆଦି ଇନ୍ଦ୍ରଙ୍କର ଅନୁଚରଗଣ ମୁନିଙ୍କର ମନକୁ ବିଚଳିତ କରିବାପାଇଁ ଚେଷ୍ଟା କଲେ । ମୁନିଙ୍କ ଆଗରେ ପୁଞ୍ଜିକସ୍ଥଳୀ ନାମକ ପ୍ରସିଦ୍ଧ ଅପ୍‌ସରା କନ୍ଦୁକକ୍ରୀଡ଼ା ଆରମ୍ଭ କରିଦେଲା । କନ୍ଦୁକର ଗତି ଅନୁସାରେ ସେ ବୁଲିବା ଦ୍ୱାରା ତାର କେଶଗୁଚ୍ଛରେ ଥିବା ମାଳାସବୁ ଇତସ୍ତତଃ ହୋଇପଡୁଥିଲା । ସ୍ତନଭାରରେ ତାର କଟିଦେଶ ଉଦ୍‌ବିଗ୍ନ ହୋଇ ଉଠୁଥିଲା ଏବଂ ତାର କଟିବନ୍ଧ ଖୋଲି ଯିବାରୁ ପବନ ତାର ପିନ୍ଧିଥିବା ସୂକ୍ଷ୍ମ ବସ୍ତ୍ରକୁ ଉଡ଼ାଇନେଲା ।।୨୪-୨୭।। କାମଦେବ ମନେକଲେ, ଋଷି ତାଙ୍କର ବଶୀଭୂତ । ଏହା ଭାବି ସେହି ଅବସରରେ ସେ ତାଙ୍କର ପଞ୍ଚବାଣକୁ ତାଙ୍କ ଉପରକୁ ନିକ୍ଷେପ କଲେ । କିନ୍ତୁ ଭାଗ୍ୟହୀନ ବ୍ୟକ୍ତିର ଯେପରି ସମସ୍ତ ଚେଷ୍ଟା ବ୍ୟର୍ଥ ହୁଏ, ସେହିପରି ତାଙ୍କର ସକଳ ଚେଷ୍ଟା ବ୍ୟର୍ଥ ହୋଇଗଲା ।।୨୮।। ଏହିପରି ମୁନିଙ୍କର ଅପକାର କରିବାକୁ ଆସିଥିବା କାମଦେବ ଆଦି ଇନ୍ଦ୍ରଙ୍କର ଅନୁଚରମାନେ ମୁନିଙ୍କର ତେଜରେ ଜଳି ଯିବାକୁ ବସିଲେ । ଶୋଇଥିବା ସାପ ଉଠିପଡ଼ିଲେ ପିଲାମାନେ ଯେପରି ଦଉଡ଼ି ପଳାନ୍ତି, ସେହିପରି ସେମାନେ ସେଠାରୁ ପଳାଇଗଲେ ।।୨୯।।

ବ୍ରହ୍ମନ୍, ଇନ୍ଦ୍ରଙ୍କର ଅନୁଚରମାନଙ୍କଦ୍ୱାରା ଏହିପରି ଧର୍ଷିତ ହୋଇ ମଧ୍ୟ ମହାମୁନି ମାର୍କଣ୍ଡେୟଙ୍କର କୌଣସିପ୍ରକାର ଅହଙ୍କାରଜନିତ ବିକାର ଦେଖାଗଲା ନାହିଁ । ମହାପୁରୁଷମାନଙ୍କ ପକ୍ଷରେ ଏହା କିଛି ବିଚିତ୍ର ନୁହେଁ ।।୩୦।। ଦେବରାଜ ଇନ୍ଦ୍ର ଦେଖିଲେ ଯେ ନିଜର ଅନୁଚରମାନଙ୍କ ସହିତ କାମଦେବ ନିସ୍ତେଜ ହୋଇ ଫେରିଆସିଛନ୍ତି । ସେ ବ୍ରହ୍ମର୍ଷି ମାର୍କଣ୍ଡେୟଙ୍କର ପ୍ରଭାବ ଦେଖି ଅତିଶୟ ଆଶ୍ଚର୍ଯ୍ୟ ହୋଇଗଲେ ।।୩୧।। ତପସ୍ୟା, ବେଦପାଠ ଓ ସଂଯମରେ ଏହିପରି ଚିତ୍ତ ନିବେଶ କରୁଥିବା ମାର୍କଣ୍ଡେୟ ଋଷିଙ୍କୁ ଅନୁଗ୍ରହ ଦେଖାଇବା ପାଇଁ ଭଗବାନ୍ ନରନାରାୟଣ ସେଠାରେ ଆବିର୍ଭୂତ ହେଲେ । ନରନାରାୟଣ ଦୁହିଁଙ୍କ ମଧ୍ୟରୁ ଜଣେ ଗୌରବର୍ଣ୍ଣ ଓ ଜଣେ କୃଷ୍ଣବର୍ଣ୍ଣ ଥିଲେ । ଦୁହିଁଙ୍କର ଚକ୍ଷୁଦ୍ୱୟ ସତେଜ ପଦ୍ମଫୁଲପରି ଶୋଭାପାଉଥିଲା । ଦୁହେଁ ଚତୁର୍ଭୁଜ ଥିଲେ । ଜଣେ କୃଷ୍ଣ ମୃଗଚର୍ମ ଓ ଅନ୍ୟ ଜଣେ ବଲ୍‌କଳ ପିନ୍ଧିଥିଲେ । କାନ୍ଧରେ ତିନିସୂତ୍ରବିଶିଷ୍ଟ ଯଜ୍ଞୋପବୀତ, ହାତରେ କମଣ୍ଡଳୁ, ବାଉଁଶର ଦଣ୍ଡ ଓ କୁଶଘାସ ଶୋଭାପାଉଥିଲା ।।୩୨।। ମୂର୍ତ୍ତିମନ୍ତ ତପଃସ୍ୱରୂପ ସେହି ଦୁଇ ଜଣ ଉନ୍ନତ ପୁରୁଷଙ୍କ ମଧ୍ୟରୁ ଜଣେ କମଳର ମାଳା ଓ ଅନ୍ୟ ଜଣେ ରୁଦ୍ରାକ୍ଷମାଳା ଧାରଣ କରିଥିଲେ । ଲୋକଙ୍କୁ ପବିତ୍ର କରୁଥିବା କୁଶଗୁଚ୍ଛ ସେଦୁହିଁଙ୍କର ହାତରେ ରହିଥିଲା । ଶ୍ରେଷ୍ଠ ଦେବତାମାନଙ୍କଦ୍ୱାରା ବନ୍ଦିତ ସେହି ଦୁହିଁଙ୍କର ଅଙ୍ଗକାନ୍ତି ବିଜୁଳିର ଝଲକପରି ତେଜୀୟାନ୍ ଥିଲା ।।୩୩-୩୪।। ମାର୍କଣ୍ଡେୟ ଭଗବାନଙ୍କର ସାକ୍ଷାତ୍ ବିଗ୍ରହ ନରନାରାୟଣଙ୍କୁ ଦର୍ଶନ କରି ସଙ୍ଗେ ସଙ୍ଗେ ଉଠିପଡ଼ିଲେ ଓ ଭୂଇଁରେ ପଡ଼ିଯାଇ ଦଣ୍ଡପ୍ରଣାମ କଲେ ।।୩୫।। ଭଗବାନଙ୍କ ଦର୍ଶନରେ ତାଙ୍କର ଦେହ, ଇନ୍ଦ୍ରିୟ ଓ ମନ ପ୍ରସନ୍ନ ହୋଇଉଠିଲା । ଶରୀର ରୋମାଞ୍ଚିତ ହେଲା ଓ ଚକ୍ଷୁ ଅଶ୍ରୁଜଳରେ ଭରିଗଲା । ସେ ସେଦୁହିଁଙ୍କୁ ଚାହିଁ ପାରିଲେ ନାହିଁ ।।୩୬।।

ସେ ଠିଆ ହୋଇପଡ଼ି ନମ୍ରଭାବରେ କର ଯୋଡ଼ି କହିବାକୁ ଲାଗିଲେ, 'ଆପଣ-ଦୁହିଁଙ୍କୁ ନମସ୍କାର ।' ଜଣାପଡୁଥିଲା, ଯେପରି କି ସେ ଉତ୍କଣ୍ଠାରେ ନରନାରାୟଣଙ୍କୁ ଆଲିଙ୍ଗନ କରିପକାଇବେ ।।୩୭।। ମାର୍କଣ୍ଡେୟ ସେଦୁହିଁଙ୍କୁ ଆସନ ପ୍ରଦାନ କରି ପାଦପ୍ରକ୍ଷାଳନପୂର୍ବକ ଅର୍ଘ୍ୟ, ଚନ୍ଦନ, ଧୂପ ଓ ମାଳା ଆଦି ସାମଗ୍ରୀଦ୍ୱାରା ପୂଜା କଲେ ।।୩୮।। ପ୍ରସନ୍ନ ଋଷିଦ୍ୱୟ ସୁଖରେ ଆସନ

ଉପରେ ବସିବା ପରେ ମାର୍କଣ୍ଡେୟ ପୁଣି ଦୁହିଁଙ୍କ ପାଦତଳେ ପ୍ରଣାମ କରି ଏହିପରି ସ୍ତୁତି କରିବାକୁ ଲାଗିଲେ-- ।।୩୯।। ଶ୍ରୀ ମାର୍କଣ୍ଡେୟ କହିଲେ, ବିଭୁ, ମୁଁ ଆପଣଙ୍କୁ କିପରି ବର୍ଣ୍ଣନା କରିବି ? ଆପଣଙ୍କ ପ୍ରେରଣାରେ ମୋର ଏ ପ୍ରାଣ ପରିଚାଳିତ । ଆପଣଙ୍କୁ ଅନୁସରଣ କରି ମୋର ବାକ୍ୟ, ମନ ଓ ଇନ୍ଦ୍ରିୟମାନେ ଚଳପ୍ରଚଳ ହେଉଛନ୍ତି । ସାଧାରଣ ଜୀବଙ୍କ କଥା କ'ଣ କୁହାଯିବ ? ମୁଁ ଆପଣଙ୍କ ଦ୍ୱାରା ଯେପରି ଚାଳିତ, ବ୍ରହ୍ମା ଏବଂ ଶିବ ମଧ୍ୟ ସେହିପରି ଚାଳିତ ହେଉଛନ୍ତି । ଆପଣ ଭାବର ବନ୍ଧୁ । ଆପଣଙ୍କୁ ଯେ ଭଜନ କରେ ଆପଣ ତାର ପ୍ରେମରେ ଆକୃଷ୍ଟ ହୋଇ ତାର ବଶ ହୋଇଯାଆନ୍ତି ।।୪୦।। ଭଗବନ୍, ଆପଣଙ୍କର ଏହି ମୂର୍ତ୍ତି ତ୍ରିଲୋକର ମଙ୍ଗଳ ପାଇଁ, ଦୁଃଖର ବିରତି ଓ ମୁକ୍ତିର ପ୍ରାପ୍ତିପାଇଁ । ଏହି ବିଶ୍ୱକୁ ପାଳନ କରିବାପାଇଁ ଆପଣ ନାନା ଦେହ ଧାରଣ କରନ୍ତି ଏବଂ ଊର୍ଣ୍ଣନାଭ ପରି ନିଜର ସୃଷ୍ଟିକୁ ନିଜେ ଗ୍ରାସ କରନ୍ତି ।।୪୧।। ଆପଣ ସ୍ଥାବର-ଜଙ୍ଗମଙ୍କର ଈଶ୍ୱର ଓ ରକ୍ଷକ । ଆପଣଙ୍କର ପାଦମୂଳକୁ ଆଶ୍ରୟ କଲେ କର୍ମ, ଗୁଣ ଓ କାଳର ମଳିନତା ସ୍ପର୍ଶ କରେ ନାହିଁ । ସେଥିପାଇଁ ବେଦପ୍ରାଣ ମୁନିମାନେ ଏହି ପାଦମୂଳରେ ଆଶ୍ରୟ ନେବାପାଇଁ ଆପଣଙ୍କୁ ସ୍ତୁତି କରନ୍ତି ଓ ପ୍ରଣାମ କରନ୍ତି ଏବଂ ପୂଜା କରନ୍ତି ଓ ଧ୍ୟାନ କରନ୍ତି ।।୪୨।।

ପ୍ରଭୁ, ଆପଣ ସାକ୍ଷାତ୍ ମୋକ୍ଷମୂର୍ତ୍ତି । ଆପଣଙ୍କ ଚରଣାଶ୍ରୟ ବିନା ସଂସାର-ଭୀତ ଲୋକମାନଙ୍କର ଅନ୍ୟ କେଉଁଥିରେ ମଙ୍ଗଳ ହୁଏ ନାହିଁ । ବ୍ରହ୍ମାଙ୍କର ଆୟୁ ଅତିଦୀର୍ଘ ଦୁଇ ପରାର୍ଦ୍ଧ ସମୟ । ତଥାପି ଆପଣଙ୍କର ଭ୍ରୂକୁଟିକୁଟିଳ କାଳକୁ ସେ ଭୟ କରନ୍ତି । ଏଣୁ ବାକୀ ତାଙ୍କ ସୃଷ୍ଟ ପ୍ରାଣୀମାନଙ୍କର କଥା କ'ଣ ବା କହିବା ! ।।୪୩।। ଏହି ଦେହ ଓ ଗୃହାଦି ବସ୍ତୁ ନିଷ୍ଫଳ, ଅସତ୍ୟ ଓ ବିନାଶଶୀଳ । ଏହା ଆତ୍ମଭ୍ରମ ସୃଷ୍ଟି କରେ ଓ ଆତ୍ମସ୍ୱରୂପକୁ ଘୋଡ଼ାଇ ରଖେ । ମୁଁ ଏହି ଦେହାଦିର ଅଭିମାନ ତ୍ୟାଗ କରି ସତ୍ୟ-ଜ୍ଞାନ-ସ୍ୱରୂପ ଆପଣଙ୍କ ପାଦମୂଳକୁ ଭଜନ କରୁଛି ; କାରଣ ଏହାଦ୍ୱାରା ସମସ୍ତ ଅଭୀଷ୍ଟ ପୂର୍ଣ୍ଣ ହୋଇପାରିବ ।।୪୪।। ହେ ପ୍ରାଣୀମାନଙ୍କର ପ୍ରଭୁ, ସତ୍ତ୍ୱ, ରଜ ଓ ତମ -- ଏହି ତିନି ଗୁଣ ହେଉଛନ୍ତି ଆପଣଙ୍କର ମୂର୍ତ୍ତି । ଏମାନଙ୍କ ଦ୍ୱାରା ଆପଣ ସୃଷ୍ଟି, ସ୍ଥିତି ଓ ଲୟ ଆଦି ଅନେକ ମାୟାମୟ ଲୀଳା କରିଥା'ନ୍ତି । ତଥାପି ଏହି ଗୁଣମାନଙ୍କ ମଧ୍ୟରେ ଆପଣଙ୍କର ସତ୍ତ୍ୱମୟ ମୂର୍ତ୍ତି ହିଁ ପ୍ରାଣୀଙ୍କୁ ଶାନ୍ତି ପ୍ରଦାନ କରେ । ଅନ୍ୟ ଦୁଇଟି ଗୁଣ ଏହା କରନ୍ତି ନାହିଁ । ସେମାନେ କେବଳ ମନୁଷ୍ୟମାନଙ୍କର ଦୁଃଖ, ମୋହ ଓ ଭୟର କାରଣ ହୋଇଥା'ନ୍ତି । ତେଣୁ ଭଗବନ୍, ଆପଣଙ୍କ ଉପାସନାରେ ନିପୁଣ ଉପାସକମାନେ ଆପଣଙ୍କ ପ୍ରିୟ ଓ ଭକ୍ତମାନଙ୍କର ପ୍ରିୟ ଏହି ଶୁଦ୍ଧ, ସତ୍ତ୍ୱମୟ ନରନାରାୟଣଙ୍କ ମୂର୍ତ୍ତିକୁ ଉପାସନା କରନ୍ତି । କାରଣ ଆପଣଙ୍କର ଏହି ରୂପର ସେବାଦ୍ୱାରା ଅଭୟ ଓ ଆତ୍ମ ସୁଖର ନିଧାନ ବୈକୁଣ୍ଠଲୋକ ସେମାନଙ୍କୁ ମିଳିଥାଏ । ଭଗବନ୍, ଆପଣ ହେଉଛନ୍ତି ବିଶ୍ୱରୂପ, ବିଶ୍ୱଗୁରୁ, ପରମେଶ୍ୱର, ପୁରୁଷୋତ୍ତମ । ଆପଣ ଶୁଦ୍ଧ, ସଂଯତବାକ୍ ଓ ବେଦମାର୍ଗର ପ୍ରବର୍ତ୍ତକ । ହେ ନରୋତ୍ତମ, ନରନାରାୟଣ ଋଷି, ମୁଁ ଆପଣଙ୍କୁ ନମସ୍କାର କରୁଛି ।।୪୫-୪୭।। ଆପଣ ପ୍ରାଣୀର ଇନ୍ଦ୍ରିୟରେ, ପ୍ରାଣରେ, ଦୃଷ୍ଟିପଥରେ, ଏପରିକି ତାର ହୃଦୟମଧ୍ୟରେ ବିଦ୍ୟମାନ ଥିଲେ ମଧ୍ୟ ଆପଣଙ୍କ ମାୟାରେ ତାର ବିବେକବୁଦ୍ଧି ଲୁଚି ଯାଇଥାଏ । ତେଣୁ ସେ କପଟ ଇନ୍ଦ୍ରିୟମାର୍ଗରେ ବିଚରଣ କରି ଆପଣଙ୍କୁ ଭୁଲିଯାଏ । ହେ ଅଖିଳ ଜଗତର ଗୁରୁ, ଆପଣଙ୍କର କୃପା ହେଲେ ଆପଣଙ୍କ ପ୍ରବର୍ତ୍ତିତ ବେଦତତ୍ତ୍ୱକୁ ଉପଲବ୍ଧ କରି ସେ ଆପଣଙ୍କର ସାକ୍ଷାତ୍ ଦର୍ଶନ କରିଥାଏ ।।୪୮।। ଆପଣଙ୍କ ସ୍ୱରୂପଜ୍ଞାନର ରହସ୍ୟ ବେଦରେ ପ୍ରକାଶିତ ହୁଏ । ତେଣୁ ବେଦରେ ହିଁ ଆପଣଙ୍କୁ ଦର୍ଶନ କରାଯାଏ । ବ୍ରହ୍ମା ଆଦି ମନୀଷୀମାନେ ଆପଣଙ୍କର ସ୍ୱରୂପକୁ ଜାଣିବାପାଇଁ ଯତ୍ନ କରି ମଧ୍ୟ ମୋହଗ୍ରସ୍ତ ହୁଅନ୍ତି । ଯେଉଁମାନେ ଆପଣଙ୍କ ସ୍ୱରୂପବିଷୟରେ ବିଭିନ୍ନ ମତ ପୋଷଣ କରନ୍ତି, ଆପଣ ସେମାନଙ୍କ ମତ ଅନୁଯାୟୀ ଭିନ୍ନ ଭିନ୍ନ ରୂପ ଗ୍ରହଣ କରନ୍ତି । ତେଣୁ ଦେହଧାରୀ ପକ୍ଷରେ ଆପଣଙ୍କୁ ଜାଣିବା ସହଜ ନୁହେଁ । ହେ ମହାନ୍ ପୁରୁଷ, ମୁଁ ଆପଣଙ୍କୁ ବନ୍ଦନା କରୁଛି ।।୪୯।।

## ନବମ ଅଧ୍ୟାୟ

# ଭଗବାନଙ୍କ ମାୟାର ଦର୍ଶନ

ମନୀଷୀ ମାର୍କଣ୍ଡେୟ ଭଗବାନ୍ ନରନାରାୟଣଙ୍କୁ ଏହିପରି ସ୍ତୁତି କରିବାରୁ ଭଗବାନ ପ୍ରସନ୍ନ ହୋଇ ତାଙ୍କୁ ଏହିପରି କହିଲେ--॥୧॥ ଶ୍ରୀଭଗବାନ୍ କହିଲେ, ହେ ବ୍ରହ୍ମର୍ଷିପ୍ରବର, ତପସ୍ୟା, ସ୍ୱାଧ୍ୟାୟ ଓ ସଂଯମ ଦ୍ୱାରା ଏକାଗ୍ର ଚିତ୍ତରେ ମୋ'ପ୍ରତି ଏକାନ୍ତ ଭକ୍ତିଭାବ ରଖି ତୁମେ ସିଦ୍ଧି ଲାଭ କରିଛ । ତୁମର ନୈଷ୍ଠିକ ବ୍ରହ୍ମଚର୍ଯ୍ୟ ବ୍ରତରେ ଆମେ ସନ୍ତୁଷ୍ଟ । ଭଦ୍ର, ଆମେ ତୁମକୁ ବରଦାନ କରୁଛୁ । ଅଭୀଷ୍ଟ ବର ଗ୍ରହଣ କର ॥୨-୩॥ ମାର୍କଣ୍ଡେୟ କହିଲେ, ହେ ଦେବଦେବ ମହେଶ୍ୱର, ଶରଣାଗତର ଦୁଃଖହରଣକାରୀ ଅଚ୍ୟୁତ, ଆପଣଙ୍କର ଜୟ ହେଉ; ଆପଣ ଯେ ପ୍ରତ୍ୟକ୍ଷରେ ଦେଖାଦେଇଛନ୍ତି, ସେହି ବର ହିଁ ମୋର ଯଥେଷ୍ଟ । ଅନ୍ୟ ବରର ପ୍ରୟୋଜନ ନାହିଁ ॥୪॥ ଏକାଗ୍ର ଯୋଗସାଧନ ଦ୍ୱାରା ମନମଧ୍ୟରେ ଯାହାଙ୍କର ପାଦପଦ୍ମକୁ ଦର୍ଶନ କରି ବ୍ରହ୍ମାଦି ଦେବତାମାନେ କୃତାର୍ଥ ହୁଅନ୍ତି, ସେହି ଭଗବାନ୍ ମୋତେ ସାକ୍ଷାତ୍ ଦର୍ଶନ ଦେଇଛନ୍ତି (ଏହାଠାରୁ ଆଉ ଅଧିକ କ'ଣ ମୋର ଦରକାର ?) ॥୫॥ ହେ ପୁଣ୍ୟଶ୍ଳୋକମାନଙ୍କ ଶିରୋମଣି, ହେ କମଳନୟନ, ଆପଣଙ୍କର ଯେଉଁ ମାୟାଦ୍ୱାରା ବ୍ରହ୍ମାଦି ଲୋକପାଳଙ୍କ ସହିତ ସମସ୍ତ ଲୋକ ଅଦ୍ୱିତୀୟ ବ୍ରହ୍ମରେ ଅନେକ ଭେଦ ଦେଖନ୍ତି, ମୁଁ ଆପଣଙ୍କର ସେହି ମାୟାକୁ ଦର୍ଶନ କରିବାକୁ ଇଚ୍ଛା କରେ ॥୬॥ ଶୌନକ, ମାର୍କଣ୍ଡେୟଙ୍କର ସ୍ତୁତି ଓ ପୂଜାରେ ଯଥେଷ୍ଟ ସନ୍ତୁଷ୍ଟ ହୋଇ ଭଗବାନ ନରନାରାୟଣ ତଥାସ୍ତୁ କହି ବଦରିକାଶ୍ରମକୁ ଚାଲିଗଲେ । ମହର୍ଷି ମାର୍କଣ୍ଡେୟ ନିଜର ଆଶ୍ରମରେ ରହି ଅଗ୍ନି, ସୂର୍ଯ୍ୟ, ଚନ୍ଦ୍ର, ଜଳ, ପୃଥିବୀ, ବାୟୁ, ଆକାଶ ଓ ନିଜ ଅନ୍ତଃକରଣ ମଧ୍ୟରେ ସର୍ବତ୍ର ଶ୍ରୀହରିଙ୍କୁ ଧ୍ୟାନ କରି କରି ଏହି ମାୟାକୁ କେବେ ଦର୍ଶନ କରିବେ, ତାହା ଚିନ୍ତା କରିବାକୁ ଲାଗିଲେ । ମାନସ ଉପଚାରରେ ସେ ଭଗବାନ ଶ୍ରୀହରିଙ୍କୁ ପୂଜା କରୁଥିଲେ । ବେଳେବେଳେ ପ୍ରବଳ ପ୍ରେମବଶରୁ ପୂଜା ମଧ୍ୟ ଭୁଲିଯାଉଥିଲେ ॥୭-୯॥ ଭୃଗୁଶ୍ରେଷ୍ଠ ଶୌନକ, ଦିନେ ସନ୍ଧ୍ୟା ସମୟରେ ପୁଷ୍ପଭଦ୍ରା ନଦୀ କୂଳରେ ମାର୍କଣ୍ଡେୟ ବସିଛନ୍ତି, ହଠାତ୍ ପ୍ରଚଣ୍ଡ ବାୟୁ ପ୍ରବାହିତ ହେଲା । ବାୟୁର ଗର୍ଜନ ସହିତ ଚକ୍ରାକାରରେ ଆକାଶରେ ମେଘମାନେ ଉଠି ଘନ ଘନ ବିଜୁଳି, ଘଡ଼ଘଡ଼ି ଓ ଚଡ଼ଚଡ଼ି ଶବ୍ଦ ସହ ମୁଷଳଧାରାରେ ବର୍ଷା କରିବାକୁ ଲାଗିଲେ ॥୧୦-୧୧॥ ତା'ପରେ ମାର୍କଣ୍ଡେୟ ଦେଖିଲେ, ଚାରିଆଡୁ ଚାରୋଟି ସମୁଦ୍ର ପୃଥିବୀକୁ ଗ୍ରାସ କରିବାକୁ ମାଡ଼ିଆସୁଛନ୍ତି । ବାୟୁବେଗରେ ଉତ୍ତାଳ ତରଙ୍ଗମାନ ଉଠୁଛି । କୁମ୍ଭୀର ଆଦି ଭୟଙ୍କର ଜୀବଜନ୍ତୁ ସହ ଓ ଭୀଷଣ ଭଉଁରି ସହ ଗର୍ଜନ କରି ସମୁଦ୍ର ମାଡ଼ି ଆସୁଛି । ପୃଥିବୀ ଜଳାର୍ଣ୍ଣବ ହୋଇଯାଉଛି । ଏପରିକି ଜଳରାଶି ଆକାଶକୁ ସ୍ପର୍ଶ କରୁଛି । ପ୍ରଖର ସୂର୍ଯ୍ୟକିରଣ, ଘନ ଘନ ବିଜୁଳି ଓ ପ୍ରଚଣ୍ଡ ବାୟୁପ୍ରବାହରେ ଜରାୟୁଜ ଆଦି ଚତୁର୍ବିଧ ପ୍ରାଣିଜଗତ୍ ସନ୍ତାପିତ ହେଉଛି । ନିଜେ ମଧ୍ୟ ମାର୍କଣ୍ଡେୟ ଅସହ୍ୟ ତାପ ଅନୁଭବ କରୁଛନ୍ତି । ମାର୍କଣ୍ଡେୟଙ୍କର ମହାଭୟ ଉପସ୍ଥିତ ହେଲା ॥୧୨-୧୩॥ ଋଷିଙ୍କ ସମକ୍ଷରେ ପ୍ରଳୟସମୁଦ୍ରରେ ଭୟଙ୍କର ଲହଡ଼ିମାନ ଉଠୁଥିଲା । ଘୂର୍ଣ୍ଣିବାୟୁଦ୍ୱାରା ଜଳରାଶି ବିକ୍ଷୁବ୍ଧ ହେଉଥିଲା । ମେଘମାନଙ୍କର ପ୍ରବଳ ବର୍ଷାହେତୁ ଯେଉଁ ଜଳରାଶି ସୃଷ୍ଟି ହେଲା, ତାହା ସମୁଦ୍ର ସହିତ ମିଶି ଦ୍ୱୀପ, ଦେଶ ଓ ପର୍ବତମାନଙ୍କ ସହିତ ସମଗ୍ର ପୃଥିବୀକୁ ଗ୍ରାସ କଲା । ପୃଥିବୀ, ଅନ୍ତରୀକ୍ଷ, ସୂର୍ଯ୍ୟ ଓ ଜ୍ୟୋତିଷ୍କମଣ୍ଡଳ ସହିତ ତିନି ଲୋକର ଦିଗ୍‌ବିଦିଗ୍ ସବୁ ଜଳରେ ପ୍ଳାବିତ ହେଲା । କେବଳ ଜଣେ ଅବଶିଷ୍ଟ ରହିଲେ; ସେ ହେଲେ ମାର୍କଣ୍ଡେୟ । ପାଗଳ ଓ ଅଂଧପରି ନିଜର ଜଟା ବିସ୍ତାର କରି ସେ ଭାସି ଭାସି ଯାଉଥିଲେ ॥୧୪-୧୫॥ କ୍ଷୁଧାତୃଷାରେ ବ୍ୟାକୁଳ, ମଗରମାନଙ୍କ ଦ୍ୱାରା ଆକ୍ରାନ୍ତ ଏବଂ ଉର୍ଦ୍ଧ୍ୱକୁ ଉଠୁଥିବା ତରଙ୍ଗମାନଙ୍କଦ୍ୱାରା ଆହତ ହୋଇ କ୍ଳାନ୍ତ, ଶ୍ରାନ୍ତ ମାର୍କଣ୍ଡେୟ ଘୋର ଅନ୍ଧକାର ମଧ୍ୟରେ ଆକାଶ, ପୃଥିବୀ,

ଦିଗ୍‌ବିଦିଗ୍ କିଛି ଦେଖିପାରିଲେ ନାହିଁ ।।୧୬।। କେତେବେଳେ ସେ ଭଉଁରିମାନଙ୍କ ଭିତରେ ବୁଡ଼ିଯାଉଥିଲେ ବା କେତେବେଳେ ଲହଡ଼ିମାଡ଼ରେ କଷ୍ଟ ପାଉଥିଲେ ବା କେତେବେଳେ ଜଳଜନ୍ତୁମାନେ ତାଙ୍କୁ ଭକ୍ଷଣ କରିବାକୁ ଆସୁଥିଲେ । ତେଣୁ ସେ ଶୋକ, ମୋହ, ଦୁଃଖ, ଭୟ ଆଦି ବିକାରଦ୍ୱାରା ବିପର୍ଯ୍ୟସ୍ତ ହୋଇ ପଡୁଥିଲେ । କେତେବେଳେ ଟିକିଏ ଭଲ ଲାଗିଲା ତ ପୁଣି ରୋଗାକ୍ରାନ୍ତ ହୋଇ ସେ ମୃତକଳ୍ପ ହୋଇଗଲେ ।।୧୭-୧୮।। ବିଷ୍ଣୁମାୟାରେ ମୋହିତ ଏବଂ ଏହି ମହାର୍ଣ୍ଣବରେ ଭାସମାନ ମାର୍କଣ୍ଡେୟଙ୍କୁ ଲାଗିଲା, ସତେ ଯେପରି ଅୟୁତ ଅୟୁତ ଲକ୍ଷ ଲକ୍ଷ ବର୍ଷ ବିତିଗଲାଣି ।।୧୯।। ଏହି ଅବସ୍ଥାରେ ଭାସି ଯାଉଯାଉ କୌଣସି ଉଚ୍ଚସ୍ଥାନରେ ଆଶ୍ରୟସ୍ୱରୂପ ସେ ଗୋଟିଏ ବରଗଛ ଦେଖିବାକୁ ପାଇଲେ । ସେ ଦେଖିଲେ, ସେହି ବରଗଛର ପୂର୍ବ-ଉତ୍ତର କୋଣରେ ଗୋଟିଏ ବରପତ୍ର ପୁଡ଼ାରେ ଜଣେ ଶିଶୁ ଶୋଇରହିଛି । ସେହି ଶିଶୁର ତେଜରେ ପ୍ରଳୟର ଘନ ଅନ୍ଧକାର ଦୂର ହୋଇଯାଉଛି ।।୨୦-୨୧।। ସେହି ଶିଶୁର ମୁଖପଦ୍ମ ମହାମରକତ ମଣିପରି ଶ୍ୟାମବର୍ଣ୍ଣ । ଗ୍ରୀବା ଶଙ୍ଖପରି, ବକ୍ଷ ପ୍ରଶସ୍ତ, ଶୁକଚଞ୍ଚୁପରି ନାସିକା ଓ ଭ୍ରୂଯୁଗଳ ସୁନ୍ଦର । ନିଜର ନିଃଶ୍ୱାସ ପବନରେ ଇତସ୍ତତଃ ହେଉଥିବା କେଶରାଶିଦ୍ୱାରା ମୁଖମଣ୍ଡଳ ସୁଶୋଭିତ । ଡାଳିମ୍ବ ଫୁଲପରି କର୍ଣ୍ଣଦ୍ୱୟ ସୁନ୍ଦର, ପୋହଳାପରି ରକ୍ତିମ ଅଧର, ଅମୃତ ଝରିପଡୁଥିବା ସୁନ୍ଦର ସ୍ମିତ-ହାସ । ଚକ୍ଷୁର ପ୍ରାନ୍ତଭାଗ ପଦ୍ମପରି ରକ୍ତବର୍ଣ୍ଣ । ହୃଦୟଗ୍ରାହୀ ହାସ୍ୟ ଓ ଦୃଷ୍ଟି, ଶ୍ୱାସବେଗହେତୁ ତ୍ରିବଳିଯୁକ୍ତ ଗଭୀର ନାଭିମଣ୍ଡଳ, ଅଶ୍ୱତ୍ଥ ପତ୍ର ପରି ସୁନ୍ଦର ଉଦର; ସେ ଶିଶୁପରି ଅଙ୍ଗୁଳି ଦୁଇଟିଦ୍ୱାରା ନିଜର ପାଦପଦ୍ମକୁ ଆଣି ମୁହଁ ମଧ୍ୟରେ ରଖି ଚୁଚୁମୁଥିବାର ଦେଖି ମାର୍କଣ୍ଡେୟ ଆଶ୍ଚର୍ଯ୍ୟ ହୋଇଗଲେ ।।୨୨-୨୫।।

ସେହି ଶିଶୁକୁ ଦର୍ଶନ କରି ଋଷିଙ୍କର ସମସ୍ତ କ୍ଳାନ୍ତି ଦୂର ହୋଇଗଲା । ତାଙ୍କର ନେତ୍ରପଦ୍ମ ଓ ହୃଦୟପଦ୍ମ ପ୍ରଫୁଲ୍ଲିତ ହୋଇଉଠିଲା । ଦେହରେ ରୋମାଞ୍ଚ ଜାତ ହେଲା । ଶିଶୁଟି କିଏ ତାହା ପଚାରିବା ପାଇଁ ଶଙ୍କିତ ହୃଦୟରେ ସେ ତାହାଆଡ଼କୁ ଗଲେ ।।୨୬।। ମଶା ଯେପରି ପାଟିରେ ପଶିଯାଏ, ସେହିପରି ମାର୍କଣ୍ଡେୟ ଶିଶୁର ଶ୍ୱାସପବନରେ ତାର ପେଟଭିତରେ ପଶିଗଲେ । ପ୍ରଳୟ ପୂର୍ବରୁ ସେ ଜଗତ୍‌କୁ ଯେପରି ଦେଖିଥିଲେ, ଶିଶୁର ଉଦର ମଧ୍ୟରେ ସେ ସେହି ଜଗତକୁ ଦର୍ଶନ କରି ବିସ୍ମୟରେ ମୋହିତ ହୋଇଗଲେ ।।୨୭।। ଆକାଶ, ସ୍ୱର୍ଗ, ପୃଥିବୀ, ନକ୍ଷତ୍ରଗଣ, ପର୍ବତ ଓ ସମୁଦ୍ର, ସମସ୍ତ ଦ୍ୱୀପ, ଦିଗ୍‌ବିଦିଗ, ସୁରାସୁର, ବନ, ଦେଶ, ନଦୀ, ଖଣି ଖଦାନ, ଚଷା ସାହି ଓ ଗୋପାଳଙ୍କ ଗ୍ରାମ, ବର୍ଣ୍ଣାଶ୍ରମବୃତ୍ତିଧାରୀ ଲୋକମାନେ, ପଞ୍ଚମହାଭୂତ ଓ ସେମାନଙ୍କ ଠାରୁ ଜାତ ପ୍ରାଣିମାନେ, କାଳ, ଭିନ୍ନ ଭିନ୍ନ ଯୁଗ ଓ କଳ୍ପର ସୃଷ୍ଟି ଏବଂ ବିଭିନ୍ନ ବ୍ୟବହାର୍ଯ୍ୟ ବସ୍ତୁ — ଏହିପରି ବିଶ୍ୱ ଅସତ୍ୟ ହେଲେ ମଧ୍ୟ ତାଙ୍କୁ ସବୁ ସତ୍ୟପରି ଦେଖାଗଲା ।।୨୮-୨୯।। ହିମାଳୟ ପର୍ବତ, ପୁଷ୍ପଭଦ୍ରାନଦୀ ଏବଂ ତା'ର କୂଳରେ ତାଙ୍କର ଯେଉଁ ଆଶ୍ରମରେ ସେ ନରନାରାୟଣ ଋଷିଙ୍କୁ ଦର୍ଶନ କରିଥିଲେ, ତାହା ସେ ଦେଖିଲେ ଏବଂ ତାହା ସହିତ ସେ ବିଶ୍ୱକୁ ଦର୍ଶନ କରୁକରୁ ପୁଣି ସେହି ଶିଶୁର ଶ୍ୱାସ ବେଗରେ ବାହାରକୁ ବାହାରି ଆସି ପ୍ରଳୟ ଜଳରେ ପଡ଼ିଗଲେ ।।୩୦।। ମାର୍କଣ୍ଡେୟ ଦେଖିଲେ, ମାଟିକୁଦ ଉପରେ ପୁଣି ସେହି ବରଗଛଟି ରହିଛି ଓ ତା'ର ପତ୍ର ଉପରେ ଶିଶୁଟି ଶୋଇରହିଛି । ସେହି କ୍ଷୁଦ୍ର ଶିଶୁର ସ୍ମିତହାସକୁ ଦେଖି ସେ ଅନୁଭବ କଲେ, ଶିଶୁଟି ଯେପରି ତାଙ୍କ ଆଡ଼କୁ ଚାହିଁ ରହିଛି ।।୩୧।। ସେହି ବାଳକଟି ତାଙ୍କର ଦୃଷ୍ଟି ପଥରେ ଯାଇ ହୃଦୟ ମଧ୍ୟରେ ଅବସ୍ଥାନ କରି ସାରିଥିଲା । ସେ ତାକୁ ଆଲିଙ୍ଗନ କରିବାପାଇଁ ଅତି ନିକଟକୁ ଚାଲିଗଲେ ।।୩୨।। ଦୈବୀ କୃପା ନ ଥିଲେ କର୍ମ ନିଷ୍ଫଳ ହେବାପରି ଋଷି ଆଲିଙ୍ଗନ କରିବାକୁ ଯାଉଥିବାବେଳେ (ଶିଶୁରୂପଧାରୀ) ସେହି ଯୋଗେଶ୍ୱର ଅନ୍ତର୍ଯାମୀ ଭଗବାନ୍ ଅନ୍ତର୍ଦ୍ଧାନ ହୋଇଗଲେ ।।୩୩।। ଶୌନକ, ଏହା ପରେ ପରେ ସେହି ବଟବୃକ୍ଷ ଓ ପ୍ରଳୟର ଜଳ କ୍ଷଣକ ମଧ୍ୟରେ ଅଦୃଶ୍ୟ ହୋଇଗଲା । ମାର୍କଣ୍ଡେୟ ଦେଖିଲେ ସେ ନିଜ ଆଶ୍ରମରେ ପୂର୍ବପରି ବସିଛନ୍ତି ।।୩୪।।

## ଦଶମ ଅଧ୍ୟାୟ

# ମାର୍କଣ୍ଡେୟଙ୍କୁ ଶିବଙ୍କର ବରଦାନ

ସୂତ କହିଲେ, ଶ୍ରୀ ନାରାୟଣଙ୍କ ରଚିତ ଯୋଗମାୟାର ଏହି ବିଭୂତି ଅନୁଭବ କରି ମାର୍କଣ୍ଡେୟ ତାଙ୍କୁ ଶରଣାପନ୍ନ ହେଲେ ।।୧।। ଶ୍ରୀ ମାର୍କଣ୍ଡେୟ କହିଲେ, ହେ ହରି, ଆପଣଙ୍କ ପାଦମୂଳ ଶରଣାଗତମାନଙ୍କୁ ଅଭୟ ପ୍ରଦାନ କରେ । ସତ୍ୟ ବୋଲି ଜଣାଯାଉଥିବା ଆପଣଙ୍କର ମାୟାଦ୍ୱାରା ଜ୍ଞାନୀମାନେ ମଧ୍ୟ ମୋହଗ୍ରସ୍ତ ହୁଅନ୍ତି । ମୁଁ ଆପଣଙ୍କ ଶରଣାପନ୍ନ ହେଉଛି ।।୨।। ସୂତ କହିଲେ, ଦିନେ ଭଗବାନ୍ ଶଙ୍କର ପାର୍ବତୀଙ୍କ ସହିତ ବୃଷଭ ବାହନରେ ଆକାଶମାର୍ଗରେ ବିଚରଣ କରୁ କରୁ ସଂଯତଚିତ୍ତ ସେଇ ମାର୍କଣ୍ଡେୟ ଋଷିଙ୍କୁ ଦେଖିଲେ । ଶିବଙ୍କ ସହିତ ନିଜଗଣମାନେ ମଧ୍ୟ ଯାଉଥିଲେ ।।୩-୪।। ସେହି ଋଷିଙ୍କୁ ଦେଖି ପାର୍ବତୀ ଶିବଙ୍କୁ କହିଲେ, ଭଗବନ୍, ଦେଖ; ଏହି ବ୍ରାହ୍ମଣଙ୍କର ଦେହ, ଇନ୍ଦ୍ରିୟ ଓ ମନ ନିଶ୍ଚଳ । ପବନ ନଥିଲେ ଜଳଜନ୍ତୁପୂର୍ଣ୍ଣ ସମୁଦ୍ର ଯେପରି ଶାନ୍ତ ଦେଖାଯାଏ, ଏ ସେହିପରି ଦେଖାଯାଉଛନ୍ତି । ଆପଣ ସିଦ୍ଧି ପ୍ରଦାନ କରନ୍ତି । ଏହାଙ୍କ ତପସ୍ୟାର ସମ୍ୟକ୍ ଫଳ ପ୍ରଦାନ କରନ୍ତୁ ।।୫।। ଭଗବାନ ଶଙ୍କର କହିଲେ, ଏହି ଋଷି ଅବ୍ୟୟ ପୁରୁଷ ଭଗବାନଙ୍କଠାରେ ପରମଭକ୍ତି ପ୍ରାପ୍ତ ହୋଇଛନ୍ତି । ତେଣୁ ସେ କୌଣସିପ୍ରକାର ଆଶିଷ ବା ମୋକ୍ଷ କାମନା କରନ୍ତିନାହିଁ ।।୬।। ତଥାପି, ଭବାନୀ, ଏହି ସାଧୁଙ୍କସହିତ ମୁଁ ବାର୍ତ୍ତାଳାପ କରିବି । କାରଣ ଏହି ସାଧୁସଙ୍ଗ ହେଉଛି ମନୁଷ୍ୟମାନଙ୍କର ଶ୍ରେଷ୍ଠ ଲାଭ ।।୭।। ସବୁ ବିଦ୍ୟାର ଈଶ୍ୱର, ଜୀବଙ୍କର ଈଶ୍ୱର ଓ ସାଧୁମାନଙ୍କର ଗତି ଭଗବାନ୍ ଶଙ୍କର ଏହା କହି ମାର୍କଣ୍ଡେୟ ଋଷିଙ୍କ ପାଖରେ ଉପସ୍ଥିତ ହେଲେ ।।୮।। ଋଷି ମାର୍କଣ୍ଡେୟ ନିଜ ଅନ୍ତଃକରଣର ସମସ୍ତ ବୃତ୍ତିକୁ ନିରୋଧ କରି ରହିଥିଲେ । ନିଜ ବିଷୟରେ ବା ବାହାରର ବିଶ୍ୱବିଷୟରେ ତାଙ୍କର କୌଣସି ଧ୍ୟାନ ନ ଥିଲା । ତେଣୁ ଜଗତ୍‌ର ଆତ୍ମାସ୍ୱରୂପ ସାକ୍ଷାତ୍ ଭଗବାନ୍ ଶଙ୍କର ଓ ପାର୍ବତୀଙ୍କର ଆଗମନକୁ ସେ ଜାଣିପାରିଲେ ନାହିଁ ।।୯।। ଭଗବାନ୍ ଶଙ୍କର ତାହା ଜାଣିପାରି ବାୟୁ ଛିଦ୍ରମଧ୍ୟରେ ପ୍ରବେଶ କରିବାପରି ନିଜର ଯୋଗମାୟାଦ୍ୱାରା ଋଷିଙ୍କର ହୃଦୟାକାଶରେ ପ୍ରବେଶ କଲେ ।।୧୦।। ମାର୍କଣ୍ଡେୟ ଦେଖିଲେ, ତାଙ୍କ ହୃଦୟମଧ୍ୟରେ ଭଗବାନ୍ ଶିବ ପ୍ରବେଶ କରିଛନ୍ତି । ସେ ବିଦ୍ୟୁତ୍ ପରି ପିଙ୍ଗଳବର୍ଣ୍ଣର ଜଟା ଧାରଣ କରିଛନ୍ତି । ତ୍ରିନୟନ, ଦଶଭୁଜ, ଉଦିତ ସୂର୍ଯ୍ୟ ପରି ତେଜୀୟାନ୍; ଦେହରେ ବ୍ୟାଘ୍ରଚର୍ମରୂପକ ବସ୍ତ୍ର, ହାତରେ ତ୍ରିଶୂଳ, ଖଟ୍ୱାଙ୍ଗ, ଢାଲ, ରୁଦ୍ରାକ୍ଷମାଳା, ଡମ୍ବରୁ, ଖର୍ପର, ଖଡ୍ଗ ଓ ଧନୁ ।।୧୧-୧୨।। ନିଜ ହୃଦୟରେ ହଠାତ୍ ଭଗବାନ ଶଙ୍କରଙ୍କ ରୂପ ଦେଖି ସେ ବିସ୍ମିତ ହୋଇଗଲେ । ଏହା କ'ଣ ? କେଉଁଠୁ ଆସିଲା ? ଭାବିବା ସଙ୍ଗେ ସଙ୍ଗେ ମୁନିଙ୍କର ସମାଧି ଭାଙ୍ଗିଗଲା ।।୧୩।। ସେ ଆଖି ଖୋଲିବାମାତ୍ରେ ଦେଖିଲେ ଯେ ତ୍ରିଭୁବନର ଏକମାତ୍ର ଗୁରୁ ଭଗବାନ୍ ଶଙ୍କର ପାର୍ବତୀଙ୍କୁ ଘେନି ରୁଦ୍ରଗଣଙ୍କ ସହିତ ସେଠାକୁ ଆସିଛନ୍ତି । ସେ ମୁଣ୍ଡ ନୁଆଇଁ ତାଙ୍କୁ ନମସ୍କାର କଲେ ।।୧୪।। ମାର୍କଣ୍ଡେୟ ମୁନି ସ୍ୱାଗତ ଜଣାଇ ଆସନ, ପାଦ୍ୟ, ଅର୍ଘ୍ୟ, ଗନ୍ଧ, ପୁଷ୍ପ, ମାଲ୍ୟ, ଧୂପ, ଦୀପାଦି ଉପଚାରଦ୍ୱାରା ଉମା ଓ ରୁଦ୍ରଗଣଙ୍କ ସହିତ ଭଗବାନ୍ ଶଙ୍କରଙ୍କୁ ପୂଜା କଲେ ।।୧୫।।

ଏହାପରେ ଋଷି କହିଲେ, ହେ ବିଭୁ, ହେ ଈଶାନ, ଆପଣଙ୍କ ଦ୍ୱାରା ଏହି ଜଗତର ଦୁଃଖ ନିବାରିତ ହୁଏ । ଆପଣ ନିଜ ଆତ୍ମାନୁଭୂତିଦ୍ୱାରା ପୂର୍ଣ୍ଣକାମ । ମୁଁ ଆପଣଙ୍କର କ'ଣ କରିପାରିବି ? ।।୧୬।। ଆପଣ ଶାନ୍ତ, ଶୁଦ୍ଧସତ୍ତ୍ୱମୂର୍ତ୍ତି ଓ ଜଗତର ସୁଖଦାତା । ଆପଣ ରଜୋଯୁକ୍ତ ହୋଇ ମଧ୍ୟ ତମୋଯୁକ୍ତ ଅଘୋରରୂପକୁ ଧାରଣ କରନ୍ତି । ମୁଁ ଆପଣଙ୍କୁ ନମସ୍କାର କରୁଛି ।।୧୭।। ସୂତ କହିଲେ, ମାର୍କଣ୍ଡେୟ ଏହିପରି ସ୍ତୁତି କରିବାରୁ ସାଧୁମାନଙ୍କର ଆଶ୍ରୟ ଆଦିଦେବ ଭଗବାନ ଶଙ୍କର ତାଙ୍କ ଉପରେ ସନ୍ତୁଷ୍ଟ ହୋଇ ପ୍ରସନ୍ନ ଚିତ୍ତରେ ହସି ହସି କହିଲେ-- ।।୧୮।। ବ୍ରହ୍ମା, ବିଷ୍ଣୁ ଓ ମୁଁ ବରଦାତାମାନଙ୍କର ଈଶ୍ୱର । ମରଣଶୀଳ ମନୁଷ୍ୟ

ଆମଠାରୁ ଅମୃତ ଲାଭ କରେ ଏବଂ ଆମର ଦର୍ଶନ କେବେ ବ୍ୟର୍ଥ ହୁଏ ନାହିଁ । ତେଣୁ ତୁମେ ଇଚ୍ଛାନୁସାରେ ବର ମାଗିନିଅ ॥୧୯॥ ବ୍ରାହ୍ମଣମାନେ ସାଧୁ, ଶାନ୍ତ ଓ ଅନାସକ୍ତ । ସେମାନେ ପ୍ରାଣୀଙ୍କୁ ଶ୍ରଦ୍ଧା କରନ୍ତି । ସମଦର୍ଶୀ ହୋଇଥିବାରୁ କାହାରିପ୍ରତି ତାଙ୍କର ଶତ୍ରୁତା ନ ଥାଏ ଏବଂ ସେମାନେ ଆମଠାରେ ଏକାନ୍ତ ଭକ୍ତି ରଖିଥା'ନ୍ତି ॥୨୦॥ ଲୋକମାନେ ଓ ଲୋକପାଳମାନେ ସେମାନଙ୍କର ବନ୍ଦନା, ପୂଜା ଓ ଉପାସନା କରନ୍ତି । ବ୍ରହ୍ମା, ସ୍ୱୟଂ ବିଷ୍ଣୁ ଓ ମୁଁ ମଧ୍ୟ ସେମାନଙ୍କର ବନ୍ଦନା କରୁ । ସେମାନେ ମୋଠାରେ, ବିଷ୍ଣୁଙ୍କଠାରେ, ବ୍ରହ୍ମାଙ୍କଠାରେ, ଏପରିକି ନିଜ ଓ ସାଧାରଣ ପ୍ରାଣୀଙ୍କ ମଧ୍ୟରେ କୌଣସି ପ୍ରଭେଦ ଦେଖନ୍ତି ନାହିଁ । ତେଣୁ ଆମେ ତୁମମାନଙ୍କପରି ସାଧୁ-ମହାତ୍ମାମାନଙ୍କର ଭଜନା କରୁ ॥୨୧-୨୨॥ କେବଳ ଜଳମୟ ସ୍ଥାନ ତୀର୍ଥ ନୁହେଁ ଓ ଚେତନାଶୂନ୍ୟ ପ୍ରତିମା ଦେବତା ନୁହଁନ୍ତି । କାରଣ ଦୀର୍ଘକାଳ ସେବା ଲାଭଦ୍ୱାରା ସେମାନେ ପବିତ୍ର ହୁଅନ୍ତି । କିନ୍ତୁ ତୁମପରି ସାଧୁମହାତ୍ମାମାନେ ଦେଖିବାମାତ୍ରେ ଲୋକଙ୍କୁ ପବିତ୍ର କରିଦିଅନ୍ତି ॥୨୩॥ ଯେଉଁମାନେ ଚିତ୍ତର ଏକାଗ୍ରତା, ତପସ୍ୟା, ବେଦାଧ୍ୟୟନ ଓ ଇନ୍ଦ୍ରିୟସଂଯମଦ୍ୱାରା ଆମର ବେଦମୟ ରୂପକୁ ଧାରଣ କରନ୍ତି, ସେହି ବ୍ରାହ୍ମଣମାନଙ୍କୁ ଆମେ ନମସ୍କାର କରୁ । ଆପଣମାନଙ୍କୁ ଦର୍ଶନ କଲେ, ବା ଶ୍ରବଣ କଲେ ମହାପାତକୀମାନେ ଏପରିକି ଚଣ୍ଡାଳମାନେ ମଧ୍ୟ ଶୁଦ୍ଧ ହୋଇଯାଆନ୍ତି । ତେଣୁ ଆପଣମାନଙ୍କ ସହ ଆଦର ଅନୁଗ୍ରହଦ୍ୱାରା କ'ଣ ହୋଇ ନ ପାରେ ? ॥୨୪-୨୫॥

ସୂତ କହିଲେ, ଚନ୍ଦ୍ରମୌଳି ଭଗବାନ୍ ଶଙ୍କରଙ୍କର ଧର୍ମରହସ୍ୟଯୁକ୍ତ ଅମୃତମୟ କଥା କାନରେ ଶୁଣି ଋଷିଙ୍କ ତୃପ୍ତିର ଶେଷ ହେଲା ନାହିଁ । ସେ ବିଷ୍ଣୁମାୟାରେ ଭ୍ରମି ଭ୍ରମି ଅତିଶୟ କ୍ଲାନ୍ତ ହୋଇପଡ଼ିଥିଲେ । ଭଗବାନ୍ ଶିବଙ୍କର ବଚନାମୃତ ତାଙ୍କର ସମସ୍ତ କଷ୍ଟକୁ ଦୂର କରିଦେଲା ॥୨୬-୨୭॥ ମାର୍କଣ୍ଡେୟ ଋଷି କହିଲେ, ଈଶ୍ୱରଙ୍କର ଏହି ଲୀଳା ଦେହଧାରୀମାନେ କେବେ ଚିନ୍ତା କରିପାରିବେ ନାହିଁ । କାରଣ ଯେ ସମଗ୍ର ଜଗତ୍‌ର ନିୟନ୍ତା, ସେ ତାଙ୍କଦ୍ୱାରା ସୃଷ୍ଟ ମୋ'ପରି ଜୀବକୁ ସ୍ତୁତି କରୁଛନ୍ତି ଓ ନମସ୍କାର କରୁଛନ୍ତି ! ॥୨୮॥ ଯେଉଁମାନେ ଧର୍ମକୁ ବୁଝାଇବାପାଇଁ ଲୋକମାନଙ୍କ ପ୍ରବକ୍ତା ହୁଅନ୍ତି, ସେମାନେ ପ୍ରାୟ (ଲୋକଶିକ୍ଷାପାଇଁ) ସେହି ଧର୍ମକୁ ନିଜେ ଆଚରଣ କରନ୍ତି ଏବଂ ଅନ୍ୟମାନେ ଆଚରଣ କଲେ ତାହାକୁ ଅନୁମୋଦନ କରନ୍ତି ଓ ପ୍ରଶଂସା କରନ୍ତି ॥୨୯॥ ଯାଦୁକର ଯେପରି ତା'ର ବୃତ୍ତିଦୃଷ୍ଟିରୁ ମାୟା ବା କୁହୁକ ଦେଖାଏ ଓ ତାହା ଦୋଷଯୁକ୍ତ ହୁଏ ନାହିଁ, ସେହିପରି ମାୟାମୟ ଭଗବାନଙ୍କର ସାଧୁମାନଙ୍କୁ ସ୍ତୁତି କରିବା ଦୋଷାବହ ନୁହେଁ। ବରଂ ତାହା ତାଙ୍କର ମହାନୁଭବତା ॥୩୦॥ ସେ ଯେ ବିନା ଉପକରଣରେ ମନଦ୍ୱାରା ଏହି ବିଶ୍ୱକୁ ସୃଷ୍ଟି କରିଛନ୍ତି ଏବଂ ଆତ୍ମସ୍ୱରୂପରେ ସେହି ସୃଷ୍ଟିରେ ପ୍ରବେଶ କରି ଓ କ୍ରିୟାଶୀଳ ଗୁଣମାନଙ୍କଦ୍ୱାରା କର୍ମ କରାଇ ନିଜେ କର୍ତ୍ତାରୂପେ ପ୍ରତିଭାତ ହୁଅନ୍ତି, ତାହା ସ୍ୱପ୍ନଦର୍ଶନ ପରି ସତ୍ୟ ନୁହେଁ । କାରଣ ସେ ଅକର୍ତ୍ତା । ଗୁଣାତ୍ମକରୂପେ ପ୍ରତୀତ ହେଲେ ମଧ୍ୟ ସେ ଗୁଣାତୀତ । ସେହି ଅଦ୍ୱିତୀୟ ବ୍ରହ୍ମମୂର୍ତ୍ତିଙ୍କୁ ମୁଁ ନମସ୍କାର କରୁଛି ॥୩୧-୩୨॥ ହେ ମହିମାମୟ, ଯାହାଙ୍କ ଦର୍ଶନଦ୍ୱାରା ମନୁଷ୍ୟର ସମସ୍ତ ଅଭୀଷ୍ଟ ପୂର୍ଣ୍ଣ ହୁଏ ଓ ତାକୁ ପୂର୍ଣ୍ଣ ଆନନ୍ଦ ମିଳିଥାଏ, ସେହି ଦର୍ଶନଠାରୁ ବଳି ଆଉ କ'ଣ ବର ଅଛି ଯେ ମୁଁ ଆପଣଙ୍କୁ ମାଗିବି ? ॥୩୩॥ ତଥାପି ସକଳ ଅଭୀଷ୍ଟଦାତା ଆପଣଙ୍କୁ ଏହି ବର ପ୍ରାର୍ଥନା କରୁଛି ଯେ, ଆପଣଙ୍କ ଭକ୍ତମାନଙ୍କଠାରେ ଓ ଆପଣଙ୍କଠାରେ ମୋର ଅଚଳା ଭକ୍ତି ରହିଥାଉ ॥୩୪॥ ସୂତ କହିଲେ, ଏହିପରି ଉତ୍ତମ ବାକ୍ୟଦ୍ୱାରା ମାର୍କଣ୍ଡେୟ ଭଗବାନ ଶଙ୍କରଙ୍କୁ ସ୍ତୁତି ଓ ପୂଜା କରିବାରୁ ପାର୍ବତୀଙ୍କ ଅନୁରୋଧକ୍ରମେ ଭଗବାନ୍ କହିଲେ-- ॥୩୫॥

ମହର୍ଷି ମାର୍କଣ୍ଡେୟ, ତୁମେ ଭଗବାନ ବିଷ୍ଣୁଙ୍କଠାରେ ସର୍ବଦା ଭକ୍ତି ରଖିଛ । ତେଣୁ ତୁମର ସମସ୍ତ ଅଭିଳାଷ ପୂର୍ଣ୍ଣ ହେଉ । ତୁମେ କଳ୍ପକାଳପର୍ଯ୍ୟନ୍ତ ପବିତ୍ର ଯଶ ବିସ୍ତାର କରି ଅଜର ଓ ଅମର ହୋଇ ରହ ॥୩୬॥ ବ୍ରହ୍ମନ୍, ତୁମେ ବ୍ରହ୍ମତେଜା ଓ ତ୍ରିକାଳଜ୍ଞ ହୁଅ । ନିଷ୍କାମ ବ୍ରହ୍ମଜ୍ଞାନ ଲାଭ କରି ପୁରାଣମାନଙ୍କର ଆଚାର୍ଯ୍ୟ ପଦବୀ ଲାଭ କର ॥୩୭॥ ସୂତ କହିଲେ,

ତ୍ରିଲୋଚନ ଭଗବାନ ଶଙ୍କର ଦେବୀ ପାର୍ବତୀଙ୍କୁ ମାର୍କଣ୍ଡେୟଙ୍କର ତପସ୍ୟା ଓ ପୂର୍ବେ ତାଙ୍କର ପ୍ରଳୟର ଅନୁଭୂତି ବିଷୟ ବର୍ଣ୍ଣନା କରି ମୁନିଙ୍କୁ ବରଦାନପୂର୍ବକ ସେଠାରୁ ପ୍ରସ୍ଥାନ କଲେ ॥୩୮॥ ସେହି ଭାର୍ଗବଶ୍ରେଷ୍ଠ ମାର୍କଣ୍ଡେୟ ପରମ ଯୋଗମାହାତ୍ମ୍ୟ ଲାଭ କରି ଭଗବାନଙ୍କର ଏକାନ୍ତ ଭକ୍ତ ଭାବରେ ଏବେ ପୃଥିବୀରେ ବିଚରଣ କରୁଛନ୍ତି ॥୩୯॥ ଭଗବାନଙ୍କର ଅଦ୍ଭୁତ ମାୟାର ବିଭୂତି, ଯାହା ଧୀମାନ୍ ମାର୍କଣ୍ଡେୟ ମୁନି ଅନୁଭବ କରିଥିଲେ, ତାହା ମୁଁ ତୁମ ଆଗରେ ବର୍ଣ୍ଣନା କଲି । ଭଗବାନ ପ୍ରଳୟର ଯେଉଁ ମାୟା ରଚନା କରିଥିଲେ, ତାହାକୁ ବୁଝି ନ ପାରି କେହିକେହି ଅନାଦିକାଳରୁ ଭଗବାନଙ୍କର ପ୍ରବର୍ତ୍ତିତ ପ୍ରଳୟମାନଙ୍କ ମଧ୍ୟରୁ ଏହାକୁ ଏକ ସୁପ୍ତ ପ୍ରଳୟ ବୋଲି କହନ୍ତି । ଶୌନକ, ଚକ୍ରପାଣି ନାରାୟଣଙ୍କର ପ୍ରଭାବରେ ପ୍ରଭାବିତ ମାର୍କଣ୍ଡେୟ ଋଷିଙ୍କର ବୃତ୍ତାନ୍ତ ଯେଉଁ ବ୍ୟକ୍ତି ଶୁଣେ ଏବଂ ଯେ ଅନ୍ୟକୁ ଶୁଣାଏ, ଉଭୟ କର୍ମବାସନାଯୁକ୍ତ ସଂସାରରୁ ମୁକ୍ତ ହୋଇଯାଆନ୍ତି ॥୪୦॥

ଏକାଦଶ ଅଧ୍ୟାୟ

# ଭଗବାନଙ୍କର ଅଙ୍ଗ, ଉପାଙ୍ଗ ଓ ଆୟୁଧମାନଙ୍କର ବର୍ଣ୍ଣନା ଓ ସୂର୍ଯ୍ୟଙ୍କର ଗତି

ଶୌନକ କହିଲେ, ସୂତ, ଆପଣ ଭଗବାନଙ୍କର ପରମଭକ୍ତ । ଆପଣ ବହୁତ କଥା ଜାଣନ୍ତି । ତନ୍ତ୍ରମାନଙ୍କର ସିଦ୍ଧାନ୍ତ ଆପଣଙ୍କୁ ଜଣାଅଛି ଏବଂ ଆପଣ ତତ୍ତ୍ୱଜ୍ଞାନୀ । ତେଣୁ ସେ ସମ୍ପର୍କରେ ଆପଣଙ୍କୁ ଏକ ପ୍ରଶ୍ନ ଆମେ ପଚାରିବାକୁ ଚାହୁଁ । କୈବଲ୍ୟପ୍ରଦ ଭଗବାନ୍ ଲକ୍ଷ୍ମୀପତିଙ୍କର ସେବାପୂଜାପାଇଁ ତାନ୍ତ୍ରିକ ଉପାସକମାନେ ତାଙ୍କର ଚରଣ ଆଦି ଅଙ୍ଗ, ଗରୁଡ଼ ଆଦି ଉପାଙ୍ଗ, ସୁଦର୍ଶନ ଆଦି ଅସ୍ତ୍ର ଓ କୌସ୍ତୁଭ ଆଦି ଅଳଙ୍କାର କେଉଁ ତତ୍ତ୍ୱରେ ଯେଉଁଭଳି ଭାବରେ କଳ୍ପନା କରିଥା'ନ୍ତି,କେଉଁ କ୍ରିୟାକୁଶଳତାଦ୍ୱାରା ମରଣଶୀଳ ବ୍ୟକ୍ତି ଅମୃତତ୍ତ୍ୱ ଲାଭ କରେ, ସେହି କ୍ରିୟାଯୋଗ ଆମେ ଜାଣିବାପାଇଁ ଇଚ୍ଛା କରୁ । ଆମ୍ଭମାନଙ୍କୁ ସେହି ମଙ୍ଗଳକର କ୍ରିୟାଯୋଗ ବିଷୟ ବର୍ଣ୍ଣନା କରନ୍ତୁ ॥୧-୩॥ ସୂତ କହିଲେ, ବ୍ରହ୍ମା ଆଦି ଆଚାର୍ଯ୍ୟମାନେ ବେଦ ଓ ତନ୍ତ୍ରଦ୍ୱାରା ବିଷ୍ଣୁଙ୍କର ଯେଉଁ ବିଭୂତିମାନଙ୍କୁ କହିଛନ୍ତି, ଗୁରୁମାନଙ୍କୁ ନମସ୍କାର କରି ମୁଁ ସେଇ ବିଭୂତିମାନଙ୍କୁ କହିବାକୁ ଯାଉଛି ॥୪॥ ମାୟା ଆଦି ନଅଟି ତତ୍ତ୍ୱ (ପ୍ରକୃତି, ସୂତ୍ର, ମହତତ୍ତ୍ୱ, ଅହଙ୍କାର, ପଞ୍ଚତନ୍ମାତ୍ର) ଓ ଷୋହଳ ବିକାର (ଏଗାର ଇନ୍ଦ୍ରିୟ ଓ ପଞ୍ଚମହାଭୂତ) ଦ୍ୱାରା ନିର୍ମିତ ଏବଂ ଭଗବାନଙ୍କ ଚେତନାରେ ଅଧିଷ୍ଠିତ ବିରାଟ ପୁରୁଷଙ୍କ ସ୍ୱରୂପ ଏହି ଦୃଶ୍ୟମାନ ହେଉଛି ତ୍ରିଭୁବନ ॥୫॥ ଭଗବାନଙ୍କର ସ୍ୱରୂପ ଏହି ବିରାଟ ପୁରୁଷଙ୍କର ରୂପ ଏହିପରି - ପୃଥିବୀ ହେଉଛି ତାଙ୍କ ପାଦ, ସ୍ୱର୍ଗ ମସ୍ତକ, ଅନ୍ତରୀକ୍ଷ ନାଭି, ସୂର୍ଯ୍ୟ ଚକ୍ଷୁ, ବାୟୁ ନାସା ଓ ଦିଗମାନେ କର୍ଣ୍ଣ । ପ୍ରଜାପତି ଏହାଙ୍କର ଜନନେନ୍ଦ୍ରିୟ, ମୃତ୍ୟୁ ମଳଦ୍ୱାର, ଲୋକପାଳମାନେ ଭୁଜ, ଚନ୍ଦ୍ରମା ମନ ଏବଂ ଭ୍ରୂଲତାଦ୍ୱୟ ଯମ । ଓଷ୍ଠ ହେଉଛି ଲଜ୍ଜା, ଅଧର ଲୋଭ, ଦନ୍ତସମୂହ ଜ୍ୟୋତ୍ସ୍ନା ଓ ହାସ୍ୟ ହେଉଛି ମାୟା । ତରୁଲତା, ପର୍ବତାଦି ତାଙ୍କ ଦେହର ଲୋମ ଏବଂ ମେଘମାନେ ତାଙ୍କର କେଶରାଶି ॥୬-୮॥ ଯେପରି ସାଧାରଣ ପୁରୁଷ ନିଜ ହାତରେ ସାତ ଚାଖଣ୍ଡ, ସେହିପରି ଏହି ବିରାଟ ପୁରୁଷ ନିଜର ସେହି ପରିମିତ ମାପରେ ବିଦ୍ୟମାନ ॥୯॥ ସେହି ଅଜନ୍ମା ପୁରୁଷଙ୍କର କୌସ୍ତୁଭଭୂଷଣ ହେଉଛି, ନିଜ ଶୁଦ୍ଧ (ଜୀବ)ଚୈତନ୍ୟରୂପକ ଆତ୍ମଜ୍ୟୋତି । ସେହି କୌସ୍ତୁଭମଣିର ପ୍ରଭା ଚତୁର୍ଦ୍ଦିଗକୁ ଆଲୋକିତ କରି ଶ୍ରୀବତ୍ସରୂପରେ ତାଙ୍କର ବକ୍ଷରେ ବିଦ୍ୟମାନ । ସେ ଧାରଣ କରିଥିବା ବନମାଳା ହେଉଛି, ତାଙ୍କ ନାନାଗୁଣମୟୀ ମାୟା । ପୀତବସ୍ତ୍ର ବେଦମାନଙ୍କର ସ୍ୱରୂପ ଏବଂ ଅ-ଉ-ମ -- ଏହି ତିନି ମାତ୍ରାଯୁକ୍ତ ପ୍ରଣବକୁ ସେ ଯଜ୍ଞୋପବୀତରୂପେ ଧାରଣ କରନ୍ତି । ସାଂଖ୍ୟ ଓ ଯୋଗରୂପକ ମକରକୁଣ୍ଡଳ ଦୁଇଟିକୁ ସେ କର୍ଣ୍ଣରେ ଧାରଣକରନ୍ତି ଏବଂ ସମସ୍ତ ଲୋକର ଅଭୟପ୍ରଦ

ବ୍ରହ୍ମଲୋକକୁ ସେ ମୁକୁଟ ରୂପରେ ପରିଧାନ କରିଥାନ୍ତି । ମୂଳ ପ୍ରକୃତି ହେଉଛି ତାଙ୍କ ଶେଷ-ଶଯ୍ୟା ଏବଂ ଧର୍ମଜ୍ଞାନ ଆଦି ସତ୍ତ୍ୱଗୁଣ ତାଙ୍କର ନାଭିପଦ୍ମ ।।୧୦-୧୩।। ଓଜଃ, ସହ ଓ ବଳଯୁକ୍ତ ପ୍ରାଣତତ୍ତ୍ୱ ହେଉଚି ତାଙ୍କର ଗଦା, ଜଳତତ୍ତ୍ୱ ତାଙ୍କର ଶଙ୍ଖ । ତେଜତତ୍ତ୍ୱରୂପକ ସୁଦର୍ଶନ ଚକ୍ରକୁ ସେ ଧାରଣ କରନ୍ତି ।।୧୪।। ଆକାଶପରି ନିର୍ମଳ ନଭସ୍ତତ୍ତ୍ୱ ତାଙ୍କ ଖଡ୍ଗ, ତମୋମୟ ଅଜ୍ଞାନ ତାଙ୍କ ଢାଲ, କାଳ ତାଙ୍କ ଶାର୍ଙ୍ଗଧନୁ, କର୍ମ ତୂଣୀର, ଇନ୍ଦ୍ରିୟମାନେ ଶର, କ୍ରିୟାଶକ୍ତିଯୁକ୍ତ ମନ ତାଙ୍କର ରଥ, ପଞ୍ଚତନ୍ମାତ୍ର ସେହି ରଥର ବାହ୍ୟ ରୂପ ଏବଂ ବରାଭୟ ଆଦି ମୁଦ୍ରା ହେଉଛି ତାଙ୍କ କ୍ରିୟାଶୀଳତା ।।୧୫-୧୬।। ସୂର୍ଯ୍ୟମଣ୍ଡଳ ତାଙ୍କ ପୂଜାସ୍ଥଳ, ଅନ୍ତଃକରଣର ଶୁଦ୍ଧି ହେଉଛି ମନ୍ତ୍ରଦୀକ୍ଷା ଏବଂ ସମସ୍ତ ପାପର ବିନାଶ ହିଁ ତାଙ୍କ ପୂଜା ।।୧୭।। ଐଶ୍ୱର୍ଯ୍ୟ, ବୀର୍ଯ୍ୟ, ଯଶ, ଲକ୍ଷ୍ମୀ, ଜ୍ଞାନ ଓ ବୈରାଗ୍ୟ -- ଏହି ଛ'ଟି ବସ୍ତୁ (ଭଗ) ହିଁ ତାଙ୍କର ଲୀଳାକମଳ, ଯାହାକୁ ସେ ହସ୍ତରେ ଧାରଣ କରନ୍ତି । ଧର୍ମ ତାଙ୍କର ଚାମର ଏବଂ ଯଶ ବ୍ୟଜନ । ହେ ଦ୍ୱିଜମାନେ, ନିର୍ଭୟ ବୈକୁଣ୍ଠଧାମ ତାଙ୍କର ଛତ୍ର; ଋକ୍, ଯଜୁଃ ଓ ସାମ ହେଉଛି ଗରୁଡ଼ ନାମକ ତାଙ୍କ ବାହନ, ଯେକି ଯଜ୍ଞପୁରୁଷଙ୍କୁ ବହନ କରେ ।।୧୮-୧୯।। ସାକ୍ଷାତ୍ ଲକ୍ଷ୍ମୀ ହେଉଛନ୍ତି ଭଗବାନ୍ ଶ୍ରୀହରିଙ୍କର ଆତ୍ମସ୍ୱରୂପିଣୀ ଓ ତାଙ୍କଠାରୁ ଭିନ୍ନ ନୁହନ୍ତି । ପଞ୍ଚରାତ୍ର ଆଦି ଆଗମମାନେ ତାଙ୍କର ତନ୍ତ୍ରମୂର୍ତ୍ତି; ପ୍ରଧାନପାର୍ଷଦ ବିଷ୍ୱକ୍‌ସେନ ଏବଂ ଦ୍ୱାରପାଳ ନନ୍ଦ ପ୍ରଭୃତି ତାଙ୍କର ଅଣିମାଦି ଆଠଟି ଗୁଣ (ଅଷ୍ଟସିଦ୍ଧି) ।।୨୦।। ଶୌନକ, ସ୍ୱୟଂ ଭଗବାନ୍ ବାସୁଦେବ, ସଙ୍କର୍ଷଣ, ପ୍ରଦ୍ୟୁମ୍ନ ଓ ଅନିରୁଦ୍ଧ -- ଏହି ଚାରୋଟି ମୂର୍ତ୍ତିରେ ବିଦ୍ୟମାନ । ତେଣୁ ତାଙ୍କୁ ମୂର୍ତ୍ତିବ୍ୟୂହ ବୋଲି କୁହାଯାଏ ।।୨୧।। ଜୀବର ଜାଗ୍ରତ୍ ଅବସ୍ଥାରେ 'ବିଶ୍ୱ' ହୋଇ ଭଗବାନ୍ ଶବ୍ଦ, ସ୍ପର୍ଶ ଆଦି ବାହ୍ୟ ବିଷୟମାନଙ୍କୁ ଗ୍ରହଣ କରନ୍ତି । ଜୀବର ସ୍ୱପ୍ନାବସ୍ଥାରେ 'ତୈଜସ' ହୋଇ ବାହ୍ୟ ବିଷୟମାନଙ୍କ ବିନା ମନମଧ୍ୟରେ ଅନେକ ବିଷୟ ଦେଖନ୍ତି ଏବଂ ଗ୍ରହଣ କରନ୍ତି ଓ ଜୀବର ସୁଷୁପ୍ତି ଅବସ୍ଥାରେ 'ପ୍ରାଜ୍ଞ' ହୋଇ ଇନ୍ଦ୍ରିୟ, ବିଷୟ ଓ ମନର ସଂସ୍କାରରେ ଲିପ୍ତ ଅଜ୍ଞାନକୁ ଢାଙ୍କି ଦିଅନ୍ତି ଏବଂ ସମସ୍ତଙ୍କର ସାକ୍ଷୀ 'ତୁରୀୟ' ଭାବରେ ସମସ୍ତ ଜ୍ଞାନର ଅଧିଷ୍ଠାନ ହୁଅନ୍ତି ।।୨୨।। ଏହିପରି ଅଙ୍ଗ, ଉପାଙ୍ଗ, ଆୟୁଧ ଓ ଭୂଷଣଦ୍ୱାରା ମଣ୍ଡିତ ଭଗବାନ ଶ୍ରୀହରି ବାସୁଦେବ ଆଦି ଚାରୋଟି ମୂର୍ତ୍ତିରେ ଓ ବିଶ୍ୱ ଆଦି ଚାରୋଟି ରୂପରେ ପ୍ରକାଶିତ ହୁଅନ୍ତି ।।୨୩।।

ଦ୍ୱିଜସତ୍ତମ, ଯେ ବେଦର କାରଣସ୍ୱରୂପ, ସ୍ୱୟଂପ୍ରକାଶ ଓ ସ୍ୱମହିମାରେ ପରିପୂର୍ଣ୍ଣ, ସେହି ଭଗବାନ୍ ନିଜର ମାୟାଦ୍ୱାରା ସୃଷ୍ଟି, ସ୍ଥିତି ଓ ସଂହାର କରନ୍ତି । ଏହି ସବୁ କର୍ମ ଓ ନାମଦ୍ୱାରା ତାଙ୍କର ଜ୍ଞାନ କେବେ ଆବୃତ ହୁଏ ନାହିଁ । ଶାସ୍ତ୍ର ଆଦିରେ ତାଙ୍କୁ ଭିନ୍ନ ଭିନ୍ନ ନାମରେ କୁହାଗଲେ ମଧ୍ୟ ଭକ୍ତମାନେ କେବଳ ଆତ୍ମଜ୍ଞାନଦ୍ୱାରା ତାଙ୍କୁ ଲାଭ କରିପାରନ୍ତି ।।୨୪।। ହେ ଶ୍ରୀକୃଷ୍ଣ, ତୁମେ ଅର୍ଜୁନଙ୍କର ସଖା, ବୃଷ୍ଣିବଂଶର ଶିରୋମଣି, ତୁମେ ପୃଥିବୀର ଶତ୍ରୁରୂପେ ରାଜାମାନଙ୍କର ବଂଶ ଲୋପ କରିଛ । ତୁମର ବୀର୍ଯ୍ୟ ଅକ୍ଷୁଣ୍ଣ । ଗୋପବନିତା ଓ ବ୍ରଜର ଭକ୍ତମାନେ ତୁମର ପବିତ୍ର କୀର୍ତ୍ତି ଗାନ କରିଛନ୍ତି । ତୁମର ନାମଶ୍ରବଣରେ ତୀର୍ଥର ଫଳ ମିଳିଯାଏ । ହେ ମଙ୍ଗଳମୟ ଗୋବିନ୍ଦ, ତୁମର ସେବକ ଭକ୍ତମାନଙ୍କୁ ରକ୍ଷା କର ।।୨୫।। ଯେଉଁ ବ୍ୟକ୍ତି ପ୍ରଭାତରୁ ଉଠି ପବିତ୍ର ହୋଇ ତନ୍ମୟ ଚିତ୍ତରେ ମହାପୁରୁଷଙ୍କର ସମସ୍ତ ଲକ୍ଷଣକୁ ଜପ କରେ, ସେ ତାର ଫଳସ୍ୱରୂପ ନିଜର ହୃଦୟସ୍ଥ ପରମାତ୍ମାଙ୍କୁ ଦର୍ଶନ କରିଥାଏ ।।୨୬।।

ଶ୍ରୀ ଶୌନକ କହିଲେ, ଭଗବାନ ଶୁକଦେବ ପ୍ରଶ୍ନକର୍ତ୍ତା ପରିକ୍ଷିତଙ୍କୁ ଯାହା କହିଥିଲେ, ସୂର୍ଯ୍ୟସମ୍ବନ୍ଧୀ ସପ୍ତଗଣ ହେଉଛନ୍ତି ଋଷି, ଗନ୍ଧର୍ବ, ନାଗ, ଅପ୍‌ସରା, ଯକ୍ଷ, ରାକ୍ଷସ ଓ ଦେବତା । ଏମାନେ ମାସ ଭେଦରେ ଭିନ୍ନ ଭିନ୍ନ ରୂପରେ ଦୃଶ୍ୟ ହୁଅନ୍ତି । ସେମାନେ ନିଜ ନିଜର ଅଧିପତିଙ୍କଦ୍ୱାରା ନିୟୋଜିତ ହୋଇଥା'ନ୍ତି । ସେମାନଙ୍କର ନାମ ଓ କର୍ମ ସମ୍ପର୍କରେ ଶୁଣିବାପାଇଁ ଆମର ଶ୍ରଦ୍ଧା ହେଉଛି । ସେହି ସୂର୍ଯ୍ୟାତ୍ମା ଶ୍ରୀହରିଙ୍କର ବିଭାଗ ବିଷୟରେ ଆମକୁ ବର୍ଣ୍ଣନାକରନ୍ତୁ ।।୨୭-୨୮।। ସୂତ କହିଲେ, ସମସ୍ତ ପ୍ରାଣୀଙ୍କର ଆତ୍ମଭୂତ ବିଷ୍ଣୁଙ୍କର ମାୟାଦ୍ୱାରା ଲୋକଯାତ୍ରାର ପ୍ରବର୍ତ୍ତକ ସୂର୍ଯ୍ୟ ତ୍ରିଲୋକରେ ଭ୍ରମଣ

କରନ୍ତି । ସମସ୍ତ ଜୀବଙ୍କର ସ୍ରଷ୍ଟା ଓ ଆତ୍ମା ଭଗବାନ୍ ଶ୍ରୀହରି ସମସ୍ତ ବେଦୋକ୍ତ କର୍ମର ମୂଳସ୍ୱରୂପ । ଋଷିମାନେ ତାଙ୍କୁ ବହୁ ରୂପରେ ବର୍ଣ୍ଣନା କରନ୍ତି ।।୨୯-୩୦।। ଶୌନକ, କାଳ, ଦେଶ, କ୍ରିୟା, କର୍ତ୍ତା, କରଣ, କାର୍ଯ୍ୟ, ଆଗମ, ଦ୍ରବ୍ୟ ଓ ଫଳ - ଏହି ନଅଟି ରୂପରେ ଭଗବାନଙ୍କ ସ୍ୱରୂପକୁ କୁହାଯାଇଥାଏ । କାଳରୂପୀ ଭଗବାନ୍ ସୂର୍ଯ୍ୟ ଲୋକମାନଙ୍କର ଜୀବିକାନିର୍ବାହପାଇଁ ଦ୍ୱାଦଶଗଣଙ୍କ ସହିତ ଚୈତ୍ର ଆଦି ବାର ମାସରେ ଭିନ୍ନ ଭିନ୍ନ ଭାବରେ ଭ୍ରମଣ କରନ୍ତି । ଧାତା ନାମକ ସୂର୍ଯ୍ୟ, କୃତସ୍ଥଳୀ ନାମକ ଅପ୍ସରା, ହେତି ନାମକ ରାକ୍ଷସ, ବାସୁକି ନାଗ, ରଥକୃତ୍ ଯକ୍ଷ, ପୁଲସ୍ତ୍ୟ ଋଷି ଓ ତୁମ୍ବୁରୁ ଗନ୍ଧର୍ବ ଏମାନେ ଚୈତ୍ରମାସରେ ବିଚରଣ କରନ୍ତି ।।୩୧-୩୩।। ଅର୍ଯ୍ୟମା ନାମକ ସୂର୍ଯ୍ୟ, ପୁଲହ ଋଷି, ଅଥୌଜା ଗନ୍ଧର୍ବ, ପ୍ରହେତି ରାକ୍ଷସ, ପୁଞ୍ଜିକସ୍ଥଳୀ ଅପ୍ସରା, ନାରଦ ନାମକ ଗନ୍ଧର୍ବ ଓ କଚ୍ଛନୀର ନାଗ -- ବୈଶାଖମାସରେ ବିଚରଣ କରନ୍ତି ।।୩୪।। ମିତ୍ର ନାମକ ସୂର୍ଯ୍ୟ, ଅତ୍ରି ଋଷି, ପୌରୁଷେୟ ରାକ୍ଷସ, ତକ୍ଷକ ନାଗ, ରଥସ୍ୱନ ଯକ୍ଷ, ମେନକା ଅପ୍ସରା, ହହା ଗନ୍ଧର୍ବ -- ଏମାନେ ଜ୍ୟେଷ୍ଠ ମାସରେ ବିଚରଣ କରନ୍ତି ।।୩୫।। ବରୁଣ ନାମକ ସୂର୍ଯ୍ୟ, ବସିଷ୍ଠ ଋଷି, ରମ୍ଭା ଅପ୍ସରା, ସହଜନ୍ୟ ରାକ୍ଷସ, ହୂହୂ ଗନ୍ଧର୍ବ, ଶୁକ୍ର ନାଗ ଓ ଚିତ୍ରସ୍ୱନ ଯକ୍ଷ -- ଆଷାଢ଼ ମାସରେ ବିଚରଣ କରନ୍ତି ।।୩୬।। ଇନ୍ଦ୍ର ନାମକ ସୂର୍ଯ୍ୟ, ଅଙ୍ଗିରା ଋଷି, ବିଶ୍ୱାବସୁ ଗନ୍ଧର୍ବ, ଶ୍ରୋତା ଯକ୍ଷ, ଏଳାପତ୍ର ନାଗ, ପ୍ରମ୍ଳୋଚା ଅପ୍ସରା ଓ ବର୍ଯ୍ୟ ରାକ୍ଷସ -- ଏମାନେ ଶ୍ରାବଣ ମାସରେ ବିଚରଣ କରନ୍ତି ।।୩୭।। ବିବସ୍ୱାନ୍ ନାମକ ସୂର୍ଯ୍ୟ, ଭୃଗୁ ଋଷି, ଉଗ୍ରସେନ ଗନ୍ଧର୍ବ, ବ୍ୟାଘ୍ର ରାକ୍ଷସ, ଆସାରଣ ଯକ୍ଷ, ଅନୁମ୍ଳୋଚା ଅପ୍ସରା ଓ ଶଙ୍ଖପାଳ ନାଗ -- ଏମାନେ ଭାଦ୍ରବ ମାସରେ ବିଚରଣ କରନ୍ତି ।।୩୮।। ପୂଷା ନାମକ ସୂର୍ଯ୍ୟ, ଗୌତମ ଋଷି, ଧନଞ୍ଜୟ ନାଗ, ବାତ ରାକ୍ଷସ, ସୁଷେଣ ଗନ୍ଧର୍ବ, ସୁରୁଚି ଯକ୍ଷ ଓ ଘୃତାଚୀ ଅପ୍ସରା -- ଏମାନେ ମାଘ ମାସରେ ରହନ୍ତି ।।୩୯।। ପର୍ଜନ୍ୟ ନାମକ ସୂର୍ଯ୍ୟ, ଭରଦ୍ୱାଜ ଋଷି, କ୍ରତୁ ନାମକ ଯକ୍ଷ, ବର୍ଚ୍ଚାଃ ନାମକ ରାକ୍ଷସ, ସେନଜିତ୍ ଅପ୍ସରା, ବିଶ୍ୱ ଗନ୍ଧର୍ବ ଓ ଐରାବତ ନାଗ -- ଏମାନେ ଫାଲ୍‌ଗୁନ ମାସରେ ରହନ୍ତି ।।୪୦।। ଅଂଶୁ ନାମକ ସୂର୍ଯ୍ୟ, କଶ୍ୟପ ଋଷି, ତାର୍କ୍ଷ୍ୟ ଯକ୍ଷ, ଋତସେନ ଗନ୍ଧର୍ବ, ଉର୍ବଶୀ ଅପ୍ସରା, ବିଦ୍ୟୁଚ୍ଛତ୍ରୁ ରାକ୍ଷସ ଓ ମହାଶଙ୍ଖ ନାଗ -- ଏମାନେ ମାର୍ଗଶିର ମାସରେ ରହନ୍ତି ।।୪୧।। ଭଗ ନାମକ ସୂର୍ଯ୍ୟ, ଆୟୁ ଋଷି, ସ୍ଫୂର୍ଜ ନାମକ ରାକ୍ଷସ, ଅରିଷ୍ଟନେମି ଗନ୍ଧର୍ବ, ପୂର୍ବଚିତ୍ତି ଅପ୍ସରା, ଊର୍ଣ୍ଣ ଯକ୍ଷ, କର୍କଟୋକ ନାଗ -- ଏମାନେ ପୌଷ ମାସରେ ରହନ୍ତି ।।୪୨।। ତ୍ୱଷ୍ଟା ନାମକ ସୂର୍ଯ୍ୟ, ଜମଦଗ୍ନି ଋଷି, କମ୍ବଳ ନାଗ, ତିଳୋତ୍ତମା ଅପ୍ସରା, ବ୍ରହ୍ମାପେତ ରାକ୍ଷସ, ଶତଜିତ୍ ଯକ୍ଷ ଓ ଧୃତରାଷ୍ଟ୍ର ଗନ୍ଧର୍ବ -- ଏହି ସାତ ଜଣ ଆଶ୍ୱିନ ମାସରେ ରହନ୍ତି ।।୪୩।। ବିଷ୍ଣୁ ନାମ ସୂର୍ଯ୍ୟ, ବିଶ୍ୱାମିତ୍ର ଋଷି, ଅଶ୍ୱତର ନାଗ, ରମ୍ଭା ଅପ୍ସରା, ସୂର୍ଯବର୍ଚ୍ଚା ଗନ୍ଧର୍ବ, ସତ୍ୟଜିତ୍ ଯକ୍ଷ ଓ ମଖାପେତ ରାକ୍ଷସ -- ଏମାନେ କାର୍ତ୍ତିକ ମାସରେ ରହନ୍ତି ।।୪୪।। ଯେଉଁ ମନୁଷ୍ୟମାନେ ଭଗବାନ ସୂର୍ଯ୍ୟ ନାରାୟଣଙ୍କର ଏହି ସମସ୍ତ ବିଭୂତି ସଂଧ୍ୟା ଓ ସକାଳେ ସ୍ମରଣ କରନ୍ତି, ସେମାନଙ୍କର ଦୈନନ୍ଦିନ ପାପରାଶି ନଷ୍ଟ ହୋଇଯାଏ ।।୪୫।। ସୂର୍ଯ୍ୟଦେବ ଏହିପରି ଭିନ୍ନ ଭିନ୍ନ ଛ'ଜଣଙ୍କ ସହିତ ବାରମାସରେ ସର୍ବତ୍ର ବିଚରଣ କରି ଇହଲୋକ ଓ ପରଲୋକରେ ବିବେକ-ବୁଦ୍ଧି ବିସ୍ତାର କରନ୍ତି । ଋଷିମାନେ ସୂର୍ଯ୍ୟଙ୍କୁ ଋକ୍, ସାମ, ଓ ଯଜୁଃ ମନ୍ତ୍ରରେ ସ୍ତବ କରନ୍ତି । ଗନ୍ଧର୍ବମାନେ ଗାନ କରୁଥା'ନ୍ତି । ଅପ୍ସରାମାନେ ଆଗରେ ନାଚି ନାଚି ଯାଉଥାନ୍ତି । ନାଗମାନେ ତାଙ୍କର ରଥକୁ ଭଲ ଭାବରେ ବାନ୍ଧି ଦେଇଥାନ୍ତି । ଯକ୍ଷମାନେ ରଥର ସାଜସଜ୍ଜା କରନ୍ତି ଓ ବଳବାନ୍ ରାକ୍ଷସମାନେ ପଛରେ ରହି ରଥକୁ ଠେଲୁଥା'ନ୍ତି ।।୪୬-୪୮।। ବାଲଖିଲ୍ୟ ନାମକ ଷାଠିଏ ହଜାର ଶୁଦ୍ଧଚେତା ବ୍ରହ୍ମର୍ଷି ସୂର୍ଯ୍ୟଙ୍କଆଡ଼କୁ ମୁହଁ କରି ତାଙ୍କୁ ସ୍ତୁତି କରି କରି ଆଗରେ ଚାଲିଥାନ୍ତି । ଏହିପରି ଅନାଦି, ଅଜନ୍ମା, ଅନନ୍ତ, ସର୍ବନିୟନ୍ତା ଓ ନିର୍ବିକାର ସ୍ୱରୂପରେ ଭଗବାନ୍ ଶ୍ରୀହରି ପ୍ରତି କଳ୍ପରେ ନିଜର ସ୍ୱରୂପକୁ ବିଭାଗ କରି ଲୋକମାନଙ୍କୁ କର୍ମମାର୍ଗରେ ପ୍ରବର୍ତ୍ତିତ କରନ୍ତି ।।୪୯-୫୦।।

## ଦ୍ୱାଦଶ ଅଧ୍ୟାୟ

# ସ୍କନ୍ଧମାନଙ୍କର କ୍ରମ

ଶ୍ରୀସୂତ କହିଲେ, ହରିଭକ୍ତିର ଲକ୍ଷଣସ୍ୱରୂପ ଧର୍ମକୁ ନମସ୍କାର । ଜଗତ୍‌କର୍ତ୍ତା କୃଷ୍ଣଙ୍କୁ ନମସ୍କାର । ଏବେ ବ୍ରାହ୍ମଣମାନଙ୍କୁ ନମସ୍କାର କରି ମୁଁ ସନାତନ ଧର୍ମ ବିଷୟରେ କହିବାକୁ ଯାଉଛି ॥୧॥ ବିପ୍ରଗଣ, ଆପଣମାନେ ମୋତେ ଯେଉଁ ପ୍ରଶ୍ନ କରିଥିଲେ, ସବୁ ଲୋକଙ୍କର ଶ୍ରବଣଯୋଗ୍ୟ ଭଗବାନ୍ ବିଷ୍ଣୁଙ୍କର ସେଇ ଅଦ୍ଭୁତ ଚରିତ ମୁଁ ଆପଣମାନଙ୍କୁ କହିଲି ॥୨॥ ଏହି ଭାଗବତରେ ସର୍ବପାପହାରୀ ଭଗବାନ୍ ଶ୍ରୀହରିଙ୍କର ସମ୍ୟକ୍ କୀର୍ତ୍ତନ କରାଯାଇଛି । ସେ ନାରାୟଣରୂପରେ ସମସ୍ତ ଜୀବଙ୍କର ଆଶ୍ରୟ । ହୃଷୀକେଶ ରୂପରେ ଇନ୍ଦ୍ରିୟମାନଙ୍କର ନିୟନ୍ତା । ପୁଣି ଭଗବତ୍ ଭକ୍ତମାନଙ୍କର ପାଳକ ॥୩॥ ଏହି ଭାଗବତ ଗ୍ରନ୍ଥରେ ପରମ ରହସ୍ୟମୟ ବ୍ରହ୍ମତତ୍ତ୍ୱର ବର୍ଣ୍ଣନା କରାଯାଇଛି । ଏହି ବ୍ରହ୍ମଙ୍କ ସ୍ୱରୂପରେ ଜଗତ୍‌ର ସ୍ଥିତି, ଉତ୍ପତ୍ତି ଓ ପ୍ରଳୟ ନିହିତ ଥାଏ । ଏଥିରେ ପରମତତ୍ତ୍ୱର ଜ୍ଞାନ ଓ ତା'ର ସାଧନରୂପକ ବିଜ୍ଞାନ ପ୍ରକୃଷ୍ଟ ଭାବରେ ବର୍ଣ୍ଣନା କରାଯାଇଛି । ଏଥିରେ ଭକ୍ତି ଯୋଗର ବ୍ୟାଖ୍ୟା କରାଯାଇ ସେଥିରୁ ନିଷ୍ପନ୍ନ ବୈରାଗ୍ୟ, ପରିକ୍ଷିତଙ୍କ ଉପାଖ୍ୟାନ ଓ ନାରଦଙ୍କ ବିଷୟ ବିଶେଷ ଭାବରେ ବର୍ଣ୍ଣିତ ହୋଇଛି । ବ୍ରହ୍ମ ଶାପରେ ରାଜର୍ଷି ପରିକ୍ଷିତଙ୍କର ପ୍ରାୟୋପବେଶନ ଓ ବ୍ରହ୍ମର୍ଷିପ୍ରବର ଶୁକ ଓ ପରିକ୍ଷିତଙ୍କର ସମ୍ବାଦ ବର୍ଣ୍ଣିତ ହୋଇଛି ॥୪-୬॥ ଏଥିରେ ଯୋଗଧାରଣାଦ୍ୱାରା ଶରୀର ତ୍ୟାଗର ବିଧି, ବ୍ରହ୍ମା ଓ ନାରଦଙ୍କର ସମ୍ବାଦ, ଅବତାର କଥା ଓ ପ୍ରକୃତିରୁ ମହତ୍ତତ୍ତ୍ୱ ଆଦି କ୍ରମରେ ଜଗତର ଉତ୍ପତ୍ତି କୀର୍ତ୍ତିତ ହୋଇଛି ॥୭॥ ବିଦୁର ଓ ଉଦ୍ଧବଙ୍କ ସମ୍ବାଦ, ବିଦୁର ମୈତ୍ରେୟଙ୍କର କଥୋପକଥନ, ପୁରାଣ ଓ ସଂହିତା ବିଷୟକ ପ୍ରଶ୍ନ ଓ ପ୍ରଳୟ ସମୟରେ ପରମ ପିତାଙ୍କର ସ୍ଥିତି ସମ୍ପର୍କରେ କୁହାଯାଇଛି ॥୮॥ ତା'ପରେ ପ୍ରକୃତିର ଗୁଣ କ୍ଷୋଭଯୋଗୁଁ ପ୍ରାକୃତିକ ସୃଷ୍ଟି, ମହତ୍ ଆଦି ସାତ ପ୍ରକାର ବିକାର ଓ ସେଥିରୁ ବ୍ରହ୍ମାଙ୍କର ଉତ୍ପତ୍ତି, ବିରାଟ ପୁରୁଷଙ୍କର ରୂପ ବିଷୟରେ ବର୍ଣ୍ଣନା କରାଯାଇଛି ॥୯॥ ସ୍ଥୂଳ ଓ ସୂକ୍ଷ୍ମ କାଳର ସ୍ୱରୂପ, ପଦ୍ମଯୋନି ବ୍ରହ୍ମା, ସାଗର ମଧ୍ୟରୁ ପୃଥିବୀର ଉଦ୍ଧାର ଓ ସେ ସମୟରେ ହିରଣାକ୍ଷ-ବଧର କଥା ବର୍ଣ୍ଣିତ ହୋଇଛି ॥୧୦॥ ସ୍ୱର୍ଗ, ମର୍ତ୍ତ୍ୟ ଓ ପାତାଳର ସୃଷ୍ଟି, ରୁଦ୍ରଙ୍କର ଉତ୍ପତ୍ତି, ବ୍ରହ୍ମାଙ୍କ ଦେହରୁ ଅର୍ଦ୍ଧେକ ନର ଓ ଅର୍ଦ୍ଧେକ ନାରୀଙ୍କର ଜନ୍ମ । ନର ହେଉଛନ୍ତି ସ୍ୱାୟଂଭୁବ ମନୁ ଓ ନାରୀ ଶତରୂପା ; ପ୍ରଜାପତି କର୍ଦ୍ଦମଙ୍କର ଚରିତ ଓ ତାଙ୍କର ଧର୍ମପତ୍ନୀ ଓ ସନ୍ତାନଙ୍କ କଥା ବର୍ଣ୍ଣିତ ହୋଇଛି । ମହାତ୍ମା କପିଳ ରୂପରେ ଭଗବାନଙ୍କର ଅବତାର ଓ କପିଳ-ଦେବହୂତି ସଂବାଦ ଏଥିରେ ବର୍ଣ୍ଣନା କରାଯାଇଛି ॥୧୧-୧୩॥ ଚତୁର୍ଥ ସ୍କନ୍ଧରେ ମରୀଚି ଆଦି ନ'ଜଣ ପ୍ରଜାପତିଙ୍କର ଉତ୍ପତ୍ତି, ଦକ୍ଷଯଜ୍ଞର ବିନାଶ, ଧ୍ରୁବ ଓ ପୃଥୁଙ୍କର ଚରିତ, ପ୍ରାଚୀନବର୍ହି ଓ ନାରଦଙ୍କର ସମ୍ବାଦ ବର୍ଣ୍ଣିତ । ପଞ୍ଚମ ସ୍କନ୍ଧରେ ପ୍ରିୟବ୍ରତଙ୍କର ଉପାଖ୍ୟାନ, ନାଭି, ଋଷଭ ଓ ଭରତଙ୍କର ଚରିତ, ଦ୍ୱୀପ, ବର୍ଷ, ସମୁଦ୍ର, ପର୍ବତ ଓ ନଦୀମାନଙ୍କର ବର୍ଣ୍ଣନା, ଜ୍ୟୋତିଷ୍କଚକ୍ରର ଅବସ୍ଥାନ ଏବଂ ପାତାଳ ଓ ନରକର ସ୍ଥିତି ନିରୂପିତ ହୋଇଚି ॥୧୪-୧୬॥

ଷଷ୍ଠ ସ୍କନ୍ଧରେ ପ୍ରଚେତାଙ୍କଠାରୁ ଦକ୍ଷ ପ୍ରଜାପତିଙ୍କ ଉତ୍ପତ୍ତି, ଦକ୍ଷ କନ୍ୟାମାନଙ୍କର ସନ୍ତାନ ସନ୍ତତି -- ଦେବତା, ଅସୁର, ମନୁଷ୍ୟ, ପଶୁ, ସରୀସୃପ, ପର୍ବତ ଓ ପକ୍ଷୀମାନଙ୍କର ଜନ୍ମ, ବୃତ୍ରାସୁରର ଜନ୍ମ ଓ ମୃତ୍ୟୁ ବର୍ଣ୍ଣିତ ହୋଇଚି ॥୧୭॥ ସପ୍ତମ ସ୍କନ୍ଧରେ ଦୈତ୍ୟରାଜ ହିରଣ୍ୟକଶିପୁ ଓ ମହାତ୍ମା ପ୍ରହ୍ଲାଦଙ୍କର ଚରିତ ବର୍ଣ୍ଣନା କରାଯାଇଚି ॥୧୮॥

ଅଷ୍ଟମ ସ୍କନ୍ଧରେ ମନ୍ୱନ୍ତରମାନଙ୍କର କଥା, ଗଜେନ୍ଦ୍ର ମୋକ୍ଷ, ବିଭିନ୍ନ ମନ୍ୱନ୍ତରରେ ଭଗବାନ ବିଷ୍ଣୁଙ୍କର କୂର୍ମ, ଧନ୍ୱନ୍ତରି, ମତ୍ସ୍ୟ, ବାମନ ଓ ହୟଗ୍ରୀବ ଆଦି ଅବତାରର କଥା କୁହାଯାଇଚି । ସମୁଦ୍ରମନ୍ଥନ ଓ ଅମୃତ ପାଇଁ ଦେବତା ଓ ଅସୁରମାନଙ୍କ ମଧ୍ୟରେ ଭୀଷଣ ଯୁଦ୍ଧର କଥା ବର୍ଣ୍ଣିତ ହୋଇଚି । ନବମ ସ୍କନ୍ଧରେ ରାଜବଂଶମାନଙ୍କର ବର୍ଣ୍ଣନା, ଇକ୍ଷ୍ୱାକୁଙ୍କର ଜନ୍ମ, ତାଙ୍କର

ବଂଶ, ମହାତ୍ମା ସୁଦ୍ୟୁମ୍ନ, ଇଳା ଓ ତାରାଙ୍କର ଉପାଖ୍ୟାନ ସବୁ ବର୍ଣ୍ଣନା କରାଯାଇଚି । ସୂର୍ଯ୍ୟବଂଶର ବୃତ୍ତାନ୍ତ, ଶଶାଦ ଓ ନୃଗ ଆଦି ରାଜାମାନଙ୍କର କଥା, ସୁକନ୍ୟା, ଶର୍ଯାତି, ଧୀମାନ୍ କକୁତସ୍ଥ, ଖଟ୍ୱାଙ୍ଗ, ମାନ୍ଧାତା, ସୌଭରି ଓ ସଗରଙ୍କ ଚରିତ ସହିତ ଏହି ସ୍କନ୍ଧରେ ସର୍ବପାପହାରୀ କୋଶଳେନ୍ଦ୍ର ଭଗବାନ୍ ଶ୍ରୀରାମଙ୍କ ଚରିତ ବର୍ଣ୍ଣିତ ହୋଇଚି । ତା'ପରେ ରାଜା ନିମିଙ୍କର ଦେହତ୍ୟାଗ ଓ ଜନକଙ୍କର ଜନ୍ମ କଥା କୁହାଯାଇଚି । ଭୃଗୁବଂଶପ୍ରଧାନ ପରଶୁରାମଙ୍କର ପୃଥିବୀକୁ ନିଃକ୍ଷତ୍ରିୟ କରିବା କଥା ମଧ୍ୟ ଏଥିରେ ଅଛି । ଚନ୍ଦ୍ରବଂଶ, ପୁରୂରବା, ଯଯାତି, ନହୁଷ, ଦୁଷ୍ମନ୍ତଙ୍କ ପୁତ୍ର ଭରତ, ଶାନ୍ତନୁ ଓ ତାଙ୍କ ପୁତ୍ର ଭୀଷ୍ମଙ୍କର ବିଷୟ ସବୁ ଏହି ସ୍କନ୍ଧରେ କୁହାଯାଇଚି । ଯଯାତିଙ୍କର ଜ୍ୟେଷ୍ଠପୁତ୍ର ଯଦୁଙ୍କର ବଂଶ ବର୍ଣ୍ଣନା କରାଯାଇଚି ॥୧୯-୨୬॥

ଏହି ଯଦୁବଂଶରେ ଜଗଦୀଶ୍ୱର ଭଗବାନ୍ ଶ୍ରୀକୃଷ୍ଣଙ୍କର ଜନ୍ମ । ସେ ବସୁଦେବଙ୍କ ଗୃହରେ ଜନ୍ମ ହୋଇ ଗୋକୁଳରେ ବଢ଼ିଥିଲେ । ଅସୁରଙ୍କ ଶତ୍ରୁ ସେହି ଭଗବାନଙ୍କର ଲୀଳାମାନ ଏପରି ବିସ୍ତାରିତ ଯେ ତାର କେହି ପାର ପାଇପାରିବେ ନାହିଁ । ଶିଶୁ ହୋଇ ସ୍ତନ୍ୟପାନଦ୍ୱାରା ସେ ପୂତନାର ପ୍ରାଣ ହରଣ କରିଥିଲେ ଓ ଗୋଟାଏ ଶଗଡ଼କୁ ଓଲଟାଇ ଦେଇଥିଲେ । ତାହା ସବୁ ଦଶମ ସ୍କନ୍ଧରେ କୀର୍ତ୍ତିତ ହୋଇଚି ॥୨୭-୨୮॥ ତୃଣାବର୍ତ୍ତର ନିଷ୍ପେଷଣ, ବକାସୁର ଓ ବତ୍ସାସୁରର ନିଧନ, ଭ୍ରାତା ସହ ଧେନୁକାସୁର ବଧ, ପ୍ରଲମ୍ବାସୁରର ବିନାଶ, ମାଡ଼ିଆସୁଥିବା ବଣ ନିଆଁରୁ ଗୋପାଳମାନଙ୍କୁ ରକ୍ଷା କରିବା, କାଳୀୟ ନାଗର ଦମନ, ମହାସର୍ପଠାରୁ ନନ୍ଦଙ୍କର ମୁକ୍ତି ବିଷୟ ଏଥିରେ ବର୍ଣ୍ଣନା କରାଯାଇଚି ॥୨୯-୩୦॥ ଗୋପକନ୍ୟାମାନଙ୍କର ବ୍ରତାଚରଣ ଓ ସେଥିରେ ଶ୍ରୀକୃଷ୍ଣଙ୍କର ସନ୍ତୋଷ, ଯାଜ୍ଞିକ ବ୍ରାହ୍ମଣମାନଙ୍କ ପତ୍ନୀଙ୍କ ପ୍ରତି କୃପା ଓ ବ୍ରାହ୍ମଣମାନଙ୍କର ଅନୁତାପ, ଗୋବର୍ଦ୍ଧନ ପର୍ବତ ଧାରଣ, ଇନ୍ଦ୍ର ଓ କାମଧେନୁ ସୁରଭିଙ୍କଦ୍ୱାରା କୃଷ୍ଣଙ୍କର ଯଜ୍ଞାଭିଷେକ, ଗୋପ ସ୍ତ୍ରୀମାନଙ୍କ ସହିତ ରାତ୍ରି କାଳରେ ତାଙ୍କର ରାସ କ୍ରୀଡ଼ା -- ଏ ସମସ୍ତ ବିଷୟ ମଧ୍ୟ ବର୍ଣ୍ଣିତ ହୋଇଚି ।୩୧-୩୨॥ ଦୁର୍ବୁଦ୍ଧି ଶଙ୍ଖଚୂଡ଼ର ବଧ,ରାକ୍ଷସ ଅରିଷ୍ଟ ଓ କେଶୀଦୈତ୍ୟର ନିଧନ, ଅକ୍ରୂରଙ୍କ ଆଗମନ ଓ ରାମକୃଷ୍ଣଙ୍କର ମଥୁରା ଯାତ୍ରା, ବ୍ରଜବାସୀଙ୍କର ବିଳାପ, କୃଷ୍ଣ ବଳରାମଙ୍କର ମଥୁରାଦର୍ଶନ, କୁବଳୟାପୀଡ଼ ହସ୍ତୀ, ମୁଷ୍ଟିକ, ଚାଣୂର ଓ କଂସର ବଧ, ଗୁରୁ ସାନ୍ଦୀପନିଙ୍କର ମୃତପୁତ୍ରକୁ ଫେରାଇ ଆଣିବା, ଉଦ୍ଧବ ଓ ବଳରାମଙ୍କ ସହିତ ମିଶି ମଥୁରାବାସୀ ଯାଦବମାନଙ୍କର ବିଭିନ୍ନ ପ୍ରିୟକାର୍ଯ୍ୟ ସାଧନ, ଜରାସନ୍ଧର ସମ୍ମିଳିତ ସୈନ୍ୟମାନଙ୍କୁ ବହୁ ସଂଖ୍ୟାରେ ବଧ, କାଳଯବନର ବିନାଶ ଓ କୁଶ ସ୍ଥଳୀରେ ନିବାସ -- ଏ ସମସ୍ତ ବିଷୟ ଏଥିରେ ବର୍ଣ୍ଣନା କରାଯାଇଛି ।।୩୩-୩୬॥ ଭଗବାନ୍ ଶ୍ରୀକୃଷ୍ଣ ଇନ୍ଦ୍ରପୁରୀରୁ ପାରିଜାତ ପୁଷ୍ପ ଓ ସୁଧର୍ମା ସଭାକୁ ଘେନି ଆସିଥିଲେ । ଯୁଦ୍ଧରେ ଶତ୍ରୁମାନଙ୍କୁ ପରାଜିତ କରି ରୁକ୍ମିଣୀଙ୍କୁ ହରଣ କରିଥିଲେ । ପୁଣି ଭଗବାନ୍ ଶଙ୍କରଙ୍କର ଜୃମ୍ଭଣ(ହାଇ ମାରିବା) ସୃଷ୍ଟିକରି ବାଣାସୁରର ବାହୁମାନଙ୍କୁ ଛେଦନ କରିଥିଲେ ଓ ପ୍ରାଗ୍‌ଜ୍ୟୋତିଷପୁରର ଅଧିପତି ନରକାସୁରକୁ ହତ୍ୟା କରି ସେ ବନ୍ଦୀ କରିଥିବା କନ୍ୟାମାନଙ୍କୁ ହରଣ କରି ଆଣିଥିଲେ ।।୩୭-୩୮॥ ପୁଣି କୃଷ୍ଣ ଭଗବାନ୍ ଶିଶୁପାଳ, ପୌଣ୍ଡ୍ରକ, ଶାଲ୍ୱ, ଦୁର୍ମତି ଦନ୍ତବକ୍ର, ଶମ୍ବରାସୁର, ଦ୍ୱିବିଦ ବାନର, ପୀଠ, ମୁରାସୁର ଓ ପଞ୍ଚଜନ ଆଦିଙ୍କୁ ବଧ କରି ସେମାନଙ୍କର ପ୍ରଭାବକୁ ଶେଷ କରି ଦେଇଥିଲେ । ବାରାଣାସୀକୁ ଦଗ୍ଧ କରିଥିଲେ । ପାଣ୍ଡବମାନଙ୍କୁ ନିମିତ୍ତ କରି ପୃଥିବୀର ଭାରକୁ ଉଶ୍ୱାସ କରିଥିଲେ ।।୩୯-୪୦॥

ଏକାଦଶ ସ୍କନ୍ଧରେ ଋଷିମାନଙ୍କର ଶାପଛଳରେ ନିଜ କୁଳର ସଂହାର ଏବଂ ଉଦ୍ଧବ ଓ କୃଷ୍ଣଙ୍କ ମଧ୍ୟରେ ଅଦ୍ଭୁତ ସଂବାଦ ।।୪୧॥ ସେଥିରେ ସମ୍ପୂର୍ଣ୍ଣ ଆତ୍ମବିଦ୍ୟା ଓ ବର୍ଣ୍ଣାଶ୍ରମ ଧର୍ମର ନିର୍ଣ୍ଣୟ ଭଲଭାବେ କୁହାଯାଇଚି । ତା'ପରେ ନିଜ ଯୋଗର ପ୍ରଭାବରୁ ମନୁଷ୍ୟତ୍ୱର ଅନ୍ତର୍ଧାନ ।।୪୨॥ ଦ୍ୱାଦଶ ସ୍କନ୍ଧରେ ଯୁଗମାନଙ୍କର ଲକ୍ଷଣ ଓ ସେହି ଯୁଗର ଲୋକମାନଙ୍କର ବୃତ୍ତି, କଳିଯୁଗରେ ଲୋକଙ୍କର ବିପରୀତ ଆଚରଣ, ଚତୁର୍ବିଧ ପ୍ରଳୟ ଓ ତିନି ପ୍ରକାର ସୃଷ୍ଟିର ବିଷୟ ବର୍ଣ୍ଣନା କରାଯାଇଚି ।।୪୩॥ ଧୀମାନ୍ ରାଜର୍ଷି ପରିକ୍ଷିତଙ୍କର ଦେହତ୍ୟାଗ, ବେଦମାନଙ୍କର ଶାଖା ପ୍ରଣୟନ, ମାର୍କଣ୍ଡେୟ ଋଷିଙ୍କର ସୁନ୍ଦର ଚରିତ, ଭଗବାନଙ୍କର ଅଙ୍ଗ ଉପାଙ୍ଗ ଆଦିର ବର୍ଣ୍ଣନା, ଜଗତ୍‌ର ଆତ୍ମା ସ୍ୱରୂପ ସୂର୍ଯ୍ୟଙ୍କର ଗତି ବିଷୟମାନ ସେଥିରେ ରହିଛି ।।୪୪॥ ଶ୍ରେଷ୍ଠ ବ୍ରାହ୍ମଣଗଣ,

ଆପଣମାନେ ଯାହା ପଚାରିଥିଲେ, ତାର ମୁଁ ଉତ୍ତର ଦେଲି । ଭଗବାନଙ୍କର ଲୀଳା, ଅବତାର ଓ କର୍ମମାନ ଭଲଭାବରେ କୀର୍ତ୍ତନ କଲି ।।୪୫।। ଯେଉଁ ବ୍ୟକ୍ତି ପଡ଼ିଯିବା ଅବସ୍ଥାରେ, ସ୍ଖଳନ ସମୟରେ, କ୍ଷୁଧାର୍ତ୍ତ ବା ବିବ୍ରତ ଅବସ୍ଥାରେ 'ହରିଙ୍କୁ ନମସ୍କାର' (ହରୟେ ନମଃ) ଏତିକି କହିଦିଏ, ସେ ସମସ୍ତ ପାପରୁ ମୁକ୍ତ ହୋଇଯାଏ ।।୪୬।। ସୂର୍ଯ୍ୟ ଅନ୍ଧକାରକୁ ଦୂର କରିବାପରି ଏବଂ ପ୍ରବଳ ବାୟୁରେ ମେଘ ସବୁ ଉଡ଼ିଯିବା ପରି, ଯେଉଁମାନେ ଭଗବାନ୍ ଅନନ୍ତଙ୍କର ମହିମା ଶ୍ରବଣ ଓ କୀର୍ତ୍ତନ କରନ୍ତି, ସେମାନଙ୍କ ହୃଦୟରେ ଭଗବାନ୍ ପ୍ରବେଶ କରନ୍ତି ଓ ସେମାନଙ୍କର ଅଶେଷ ଦୁଃଖ ଦୂର କରିଦିଅନ୍ତି । ବିପ୍ରଗଣ, ଯେଉଁ ବାଣୀରେ ଭଗବାନ୍ ବିଷ୍ଣୁଙ୍କର ବର୍ଣ୍ଣନା ନ ଥାଏ, ଭଲ ଭାବରେ ଜାଣିରଖ, ସେ ବାଣୀ ହେଉଛି ମିଥ୍ୟା, ସାରହୀନ ଓ ନିରର୍ଥକ । କିନ୍ତୁ ଯେଉଁ ବାଣୀରେ ଭଗବାନଙ୍କର ଗୁଣାବଳୀ କୀର୍ତ୍ତିତ ହୋଇଥାଏ, ତାହା ସତ୍ୟ, ପବିତ୍ର ଓ ମଙ୍ଗଳକର ।।୪୭-୪୮।। ଯେଉଁଥିରେ ଉତ୍ତମଶ୍ଳୋକ ଭଗବାନଙ୍କର ଯଶୋଗାନ କରାଯାଏ, ତାହା ହିଁ ହୁଏ ରୁଚିକର, ରମଣୀୟ ଓ ନିତ୍ୟ ନୂତନ; ତାହା ହିଁ ଲୋକମାନଙ୍କର ଶୋକସମୁଦ୍ରକୁ ଶୁଖାଇଦିଏ ଏବଂ ତାହା ହିଁ ଅନୁକ୍ଷଣ ମନକୁ କରମାନନ୍ଦ ଦାନ କରେ ।।୪୯।। ଯହିଁରେ ବିଚିତ୍ର ପଦମାନ ଥିଲେ ମଧ୍ୟ ଜଗତ୍‌ର ପବିତ୍ରକାରକ ଶ୍ରୀହରିଙ୍କର ଯଶୋଗାନ ନାହିଁ, ତାହା କାକତୁଲ୍ୟ ମନୁଷ୍ୟମାନଙ୍କର ଉଚ୍ଛିଷ୍ଟ ଭକ୍ଷଣର ସ୍ଥାନ, ମାତ୍ର ହଂସତୁଲ୍ୟ ଜ୍ଞାନୀମାନଙ୍କର ସେବନୀୟ (ସ୍ଥାନ) ନୁହେଁ । ଯେଉଁଠି ଅଚ୍ୟୁତଙ୍କର କୀର୍ତ୍ତନ, ସେଠାରେ ଶୁଦ୍ଧ ସାଧୁମାନଙ୍କର ସମାଗମ ହୁଏ ।।୫୦।। ଯେଉଁ ରଚନାର ପ୍ରତି ଶ୍ଳୋକରେ ଭଗବାନ ଅନନ୍ତଙ୍କର ନାମ ଓ ଯଶ ଅଙ୍କିତ ହୋଇଥାଏ, ବ୍ୟାକରଣ ଦୃଷ୍ଟିରୁ ଦୋଷଯୁକ୍ତ ହେଲେ ମଧ୍ୟ ସେହି ସବୁ ବାକ୍ୟର ପ୍ରୟୋଗଦ୍ୱାରା ଲୋକମାନଙ୍କର ପାପରାଶି ଧ୍ୱଂସ ହୋଇଥାଏ ଏବଂ ସାଧୁ ମହାତ୍ମାମାନେ ତାହା ଶ୍ରବଣ କରନ୍ତି, ଗାନ କରନ୍ତି ଓ କୀର୍ତ୍ତନ କରନ୍ତି ।।୫୧।। ନିର୍ଗୁଣ କର୍ମ ଓ ସେଥିରୁ ଲବ୍ଧ ନିର୍ମଳ ଜ୍ଞାନ ଯଦି ହରିଭକ୍ତି ବର୍ଜିତ ହୁଏ, ତା'ହେଲେ ତାହା ଶୋଭାପାଏ ନାହିଁ । କର୍ମ ଯେତେ ଉତ୍ତମ ହେଲେ ମଧ୍ୟ ତାହା ଯଦି ଭଗବାନଙ୍କଠାରେ ଅର୍ପିତ ନ ହୁଏ, ତାହା ସାଧନ ସମୟରେ ଓ ପରିଣାମରେ ଦୁଃଖପ୍ରଦ ହୋଇଥାଏ ।।୫୨।। ବର୍ଣ୍ଣାଶ୍ରମର ଆଚରଣ, ତପସ୍ୟା, ବେଦାଧ୍ୟୟନ ଆଦିରେ ଯେଉଁ ପରିଶ୍ରମ କରାଯାଏ, ତାହା କେବଳ ଯଶ ଓ ସମ୍ପଦ ଲାଭପାଇଁ । କିନ୍ତୁ ଭଗବାନଙ୍କର ଗୁଣ ଓ ଲୀଳା ଆଦିର କୀର୍ତ୍ତନ ଓ ସେଥିପ୍ରତି ଶ୍ରଦ୍ଧା ଭକ୍ତିଦ୍ୱାରା ତାଙ୍କର ପାଦପଦ୍ମରେ ଅଚଳାଭକ୍ତି ଜାତ ହୁଏ ।।୫୩।। ଶ୍ରୀକୃଷ୍ଣଙ୍କର ପଦାରବିନ୍ଦକୁ ନିତ୍ୟ ସ୍ମରଣ କରିବାଦ୍ୱାରା ସମସ୍ତ ଅମଙ୍ଗଳର ନାଶ ହୁଏ ଓ ଅଧିକରୁ ଅଧିକ ଶାନ୍ତି ମିଳେ । ଆତ୍ମଶୁଦ୍ଧି ଦ୍ୱାରା ପରମାତ୍ମାଙ୍କଠାରେ ଭକ୍ତି ଓ ବୈରାଗ୍ୟଯୁକ୍ତ ଜ୍ଞାନର ଆସ୍ୱାଦନ ମିଳେ ।।୫୪।।

ଆପଣମାନେ ଦ୍ୱିଜଶ୍ରେଷ୍ଠ । ବହୁ ଭାଗ୍ୟବାନ୍ । କାରଣ ଆପଣମାନେ ସର୍ବଦା ଏକମାତ୍ର ଆରାଧ୍ୟ ଦେବତା ଭାବରେ ସର୍ବାନ୍ତର୍ଯାମୀ, ସର୍ବନିୟନ୍ତା ଭଗବାନ୍ ନାରାୟଣଙ୍କୁ ହୃଦୟରେ ସ୍ଥାପନ କରି ଅଜସ୍ର ଭକ୍ତିରେ ତାଙ୍କର ଭଜନ କରୁଛନ୍ତି ।।୫୫।। ରାଜା ପରିକ୍ଷିତ ପ୍ରାୟୋପବେଶନ କରି ପ୍ରଧାନ ପ୍ରଧାନ ମହର୍ଷିମାନଙ୍କ ସଭାରେ ଋଷିଶ୍ରେଷ୍ଠ ଶୁକଦେବଙ୍କଠାରୁ ଆତ୍ମତତ୍ତ୍ୱ (ଭାଗବତ ରୂପକ) ଶ୍ରବଣ କରିଥିଲେ । ମୁଁ ସେଠାରେ ଥାଇ ତାହା ଶୁଣିଥିଲି । ଆପଣମାନେ ତାହା ସ୍ମରଣ କରାଇଦେଇ ମୋତେ ଅନୁଗୃହୀତ କରିଛନ୍ତି ।।୫୬।। ବିପ୍ରଗଣ, ବାସୁଦେବ ଶ୍ରୀକୃଷ୍ଣଙ୍କର ମାହାତ୍ମ୍ୟ ସମସ୍ତ ଅମଙ୍ଗଳକୁ ନଷ୍ଟ କରିଦିଏ । ସର୍ବଦା କୀର୍ତ୍ତନୀୟ ତାଙ୍କର ଉତ୍ତମ ଲୀଳାମାନ ମୁଁ ଆପଣମାନଙ୍କ ନିକଟରେ ବର୍ଣ୍ଣନା କଲି । ବିପ୍ରଗଣ, ଯେଉଁ ବ୍ୟକ୍ତି ଏକାଗ୍ରଚିତ୍ତରେ ଦିନରେ ଘଡ଼ିକ ପାଇଁ ବା କ୍ଷଣକପାଇଁ ଏହି ଭାଗବତର ଗୋଟିଏ ଶ୍ଳୋକ ବା ଅଧେ ଶ୍ଳୋକ କୀର୍ତ୍ତନ କରେ ବା ଶ୍ରଦ୍ଧାର ସହିତ ଶ୍ରବଣ କରେ, ସେ ତା'ର ଆତ୍ମାକୁ ପବିତ୍ର କରିଥାଏ । ଯେ ଦ୍ୱାଦଶୀ ବା ଏକାଦଶୀରେ ଶ୍ରବଣକରେ, ସେ ଆୟୁଷ୍ମାନ୍ ହୁଏ, ସେଦିନ ଉପବାସ କରି ପାଠ କଲେ ସମସ୍ତ ପାପରୁ ମୁକ୍ତ ହୋଇଯାଏ । ପୁଷ୍କର, ମଥୁରା ବା ଦ୍ୱାରକାରେ ସଂଯତ ହୋଇ ଉପବାସ କରି ଏହା ପାଠ କଲେ ସମସ୍ତ ଭୟ ଦୂର ହୋଇଯାଏ । ଏହାର ଶ୍ରବଣ ଓ କୀର୍ତ୍ତନଦ୍ୱାରା ଦେବତା, ଋଷି ମୁନି, ରାଜା

ମନୁ ଓ ପିତୃଗଣ ଅଭୀଷ୍ଟବର ପ୍ରଦାନ କରନ୍ତି । ଏହି ସଂହିତା ପାଠ କଲେ ବ୍ରାହ୍ମଣମାନେ ଋକ୍‌ବେଦ, ଯଜୁଃ ବେଦ ଓ ସାମ ବେଦ ଅଧ୍ୟୟନର ଫଳ ପା'ନ୍ତି ଏବଂ ମଧୁକୁଲ୍ୟା, ଦୁଗ୍ଧକୁଲ୍ୟା ଓ ଘୃତକୁଲ୍ୟା ଦାନର ପୁଣ୍ୟ ପ୍ରାପ୍ତ ହୁଅନ୍ତି । ସ୍ୱୟଂ ଭଗବାନଙ୍କ କଥିତ ଏହି ପୁରାଣକୁ ଯେଉଁ ବ୍ରାହ୍ମଣ ସଂଯତ ହୋଇ ପାଠକରେ, ସେ ଏଥିରେ କଥିତ ପରମପଦକୁ ଲାଭ କରେ ॥୫୭-୬୩॥ ଏହି ଭାଗବତ ଅଧ୍ୟୟନ ଫଳରେ ବିପ୍ର ପ୍ରଜ୍ଞାବାନ୍ ହୁଏ । ରାଜା ସସାଗରା ଧରାର ଅଧୀଶ୍ୱର ହୁଏ । ବୈଶ୍ୟ ମହାଧନୀ ହୁଏ ଓ ଶୂଦ୍ର ପାପମୁକ୍ତ ହୋଇଯାଏ ॥୬୪॥ କଳିକଲ୍ମଷ ନାଶକରିବାରେ ଅଗ୍ନିତୁଲ୍ୟ ବିଶ୍ୱେଶ୍ୱର ଶ୍ରୀହରିଙ୍କର ବର୍ଣ୍ଣନା ଯେପରି ଏହି ଗ୍ରନ୍ଥର ପଦେ ପଦେ କରାଯାଇଛି, ଅନନ୍ତଙ୍କର ସେପରି ବର୍ଣ୍ଣନା ଅନ୍ୟ କୌଣସି ଗ୍ରନ୍ଥରେ ନାହିଁ ॥୬୫॥ ଯେ ନିଜର ରଜ, ସତ୍ତ୍ୱ ଓ ତମ ଶକ୍ତିବଳରେ ଜଗତ୍‌ର ଉତ୍ପତ୍ତି, ସ୍ଥିତି ଓ ସଂହାର କରନ୍ତି, ବ୍ରହ୍ମା, ଇନ୍ଦ୍ର ଓ ଶଙ୍କର ପ୍ରଭୃତି ଦେବତାମାନେ ଯାହାଙ୍କୁ ସ୍ତୁତି କରି ଜାଣନ୍ତି ନାହିଁ, ସେହି ଅଜନ୍ମା, ଅନନ୍ତ ଓ ଆତ୍ମତତ୍ତ୍ୱରୂପ, ଅଚ୍ୟୁତଙ୍କୁ ମୁଁ ନିତ୍ୟ ନମସ୍କାର କରୁଛି ॥୬୬॥ ଯେ ନିଜର ସ୍ୱରୂପରେ ପ୍ରକୃତି ଆଦି ନବ ଶକ୍ତିର ଉଦ୍ରେକ କରି ଏହି ଚରାଚର ଜଗତର ସୃଷ୍ଟି କରିଛନ୍ତି ଓ ତାର ଅଧିଷ୍ଠାନ ରୂପେ ରହିଛନ୍ତି, କେବଳ ଧ୍ୟାନଦ୍ୱାରା ଯାହାଙ୍କର ପରମପଦ କେବଳ ମାତ୍ର ଅନୁଭୂତ ହୁଏ, ଦେବଶ୍ରେଷ୍ଠ ସେହି ସନାତନ ଭଗବାନଙ୍କୁ ମୁଁ ନମସ୍କାର କରୁଛି ॥୬୭॥ ବ୍ରହ୍ମାନନ୍ଦରେ ଯାହାଙ୍କର ହୃଦୟ ପରିପୂର୍ଣ୍ଣ, ତଦ୍ୱାରା ଯେ ମନରୁ ଅନ୍ୟ ଭାବନା ଦୂର କରିପାରିଛନ୍ତି, ଭଗବାନ୍ ଶ୍ରୀକୃଷ୍ଣଙ୍କର ମନୋହର ଲୀଳାରସରେ ଯାହାଙ୍କର ଚିତ୍ତ ଆକୃଷ୍ଟ ଓ ନିବିଷ୍ଟ, ଯେ ଜୀବମାନଙ୍କପ୍ରତି କୃପା କରି ସର୍ବପାପନାଶକ ଓ ପରମାର୍ଥ ତତ୍ତ୍ୱର ପ୍ରଦୀପସ୍ୱରୂପ ଭାଗବତ ଗ୍ରନ୍ଥର ବିସ୍ତାର କରିଛନ୍ତି, ସେହି ବ୍ୟାସସୁତ ଶୁକଦେବଙ୍କୁ ମୁଁ ପ୍ରଣାମ କରୁଛି ॥୬୮॥

## ତ୍ରୟୋଦଶ ଅଧ୍ୟାୟ

# ଭାଗବତର ମହିମା

ସୂତ ସ୍ତୁତି କଲେ - ବ୍ରହ୍ମା, ବରୁଣ, ଇନ୍ଦ୍ର, ରୁଦ୍ର ଓ ମରୁଦ୍‌ଗଣ ଦିବ୍ୟ ସ୍ତବମାନଙ୍କଦ୍ୱାରା ଯାହାଙ୍କୁ ସ୍ତୁତି କରନ୍ତି, ସାମଗାନକାରୀମାନେ (ଶିକ୍ଷା ଆଦି) ଅଙ୍ଗ, ପଦ କ୍ରମ ଓ ଉପନିଷଦ୍ ସହିତ ବେଦମାନଙ୍କ ଦ୍ୱାରା ଯାହାଙ୍କୁ ଗାନ କରନ୍ତି, ଧ୍ୟାନଦ୍ୱାରା ମନକୁ ତନ୍ମୟ ଓ ସ୍ଥିର ରଖି ଯୋଗୀମାନେ ଯାହାଙ୍କୁ ଦର୍ଶନ କରନ୍ତି, ସୁରାସୁରମାନେ ଯାହାଙ୍କର ଅନ୍ତ ପାଆନ୍ତି ନାହିଁ, ମୁଁ ସେହି ଦେବତାଙ୍କୁ ନମସ୍କାର କରୁଛି ॥୧॥ ସମୁଦ୍ରମନ୍ଥନ ସମୟରେ କୂର୍ମରୂପରେ ମନ୍ଦର ପର୍ବତକୁ ମନ୍ଥନ ଦଣ୍ଡରୂପେ ନିଜର ପିଠିରେ ଧାରଣ କରି ମୁନିଆ ପଥରର ଘର୍ଷଣ ଫଳରେ ଭଗବାନଙ୍କ ପିଠିରେ ଯେଉଁ କଣ୍ଡୂୟନ ଜାତ ହେଲା, ସେଥିରେ ସେ ସୁଖ ଅନୁଭବ କରି ନିଦ୍ରିତ ହୋଇଗଲେ ଏବଂ ତାଙ୍କର ଶ୍ୱାସ ବାୟୁର ଧକ୍କାରେ ସମୁଦ୍ର ଜଳରେ ଜୁଆର ଭଟ୍ଟା ସୃଷ୍ଟି ହୋଇ ବେଳାଭୂମିକୁ ବିକ୍ଷୁବ୍ଧ କଲା । ସେହିଦିନଠାରୁ ସମୁଦ୍ର ଜଳର ବିଶ୍ରାମ ନାହିଁ । କୂର୍ମରୂପୀ ଭଗବାନଙ୍କ ସେହି ଶ୍ୱାସବାୟୁ ଆପଣମାନଙ୍କୁ ରକ୍ଷା କରୁ ॥୨॥ ବିପ୍ରଗଣ, ପୁରାଣମାନଙ୍କର ସଂଖ୍ୟା, ସମାହାର, ବିଷୟ, ପ୍ରୟୋଜନ, ପୁରାଣଦାନ, ପୁରାଣପାଠ ଓ ତାର ମାହାତ୍ମ୍ୟ ମନଦେଇ ଶୁଣନ୍ତୁ ॥୩॥ ବ୍ରହ୍ମପୁରାଣରେ ଦଶ ହଜାର, ପଦ୍ମପୁରାଣରେ ପଞ୍ଚାବନ ହଜାର, ବିଷ୍ଣୁପୁରାଣରେ ତେଇଶି ହଜାର, ଶିବ ପୁରାଣରେ ଚବିଶ ହଜାର, ଭାଗବତପୁରାଣରେ ଅଠର ହଜାର, ନାରଦପୁରାଣରେ ପଚିଶ ହଜାର, ମାର୍କଣ୍ଡପୁରାଣରେ ନଅ ହଜାର, ଅଗ୍ନିପୁରାଣରେ ପନ୍ଦର ହଜାର ଚାରିଶହ, ଭବିଷ୍ୟପୁରାଣରେ ଚଉଦ ହଜାର ପାଞ୍ଚଶହ, ବ୍ରହ୍ମବୈବର୍ତ୍ତପୁରାଣରେ ଅଠର ହଜାର, ଲିଙ୍ଗପୁରାଣରେ ଏଗାର ହଜାର, ବରାହପୁରାଣରେ ଚବିଶ ହଜାର, ସ୍କନ୍ଦପୁରାଣରେ ଏକାଶୀ ହଜାର ଏକଶହ,

ବାମନପୁରାଣରେ ଦଶ ହଜାର, କୂର୍ମପୁରାଣରେ ସତର ହଜାର, ମତ୍ସ୍ୟପୁରାଣରେ ଚଉଦ ହଜାର, ଗରୁଡ଼ପୁରାଣରେ ଉଣେଇଶ ହଜାର ଓ ବ୍ରହ୍ମାଣ୍ଡପୁରାଣରେ ବାର ହଜାର ଶ୍ଳୋକ ଅଛି ।।୪-୮।। ଏହିପରି ଗଣନାଦ୍ୱାରା ପୁରାଣମାନଙ୍କର ଶ୍ଳୋକସଂଖ୍ୟା ଚାରି ଲକ୍ଷ ବୋଲି ନିର୍ଦ୍ଦିଷ୍ଟ କରାଯାଇଛି । ସେଥିରେ ଶ୍ରୀମଦ୍ ଭାଗବତର ଶ୍ଳୋକସଂଖ୍ୟା ଅଠରହଜାର ବୋଲି କୁହାଯାଇଛି ।।୯।। ନିଜ ନାଭିକମଳରେ ସ୍ଥିତ ଓ ସଂସାର ଭୟଭୀତ ବ୍ରହ୍ମାଙ୍କପାଇଁ ଦୟାପୂର୍ବକ ଭଗବାନ ନିଜେ ପୂର୍ବେ ଏହାକୁ ପ୍ରକାଶ କରିଥିଲେ ।।୧୦।। ଏହି ଭାଗବତର ଆଦି, ମଧ୍ୟ ଓ ଅନ୍ତ ବୈରାଗ୍ୟଯୁକ୍ତ ଆଖ୍ୟାନରେ ପୂର୍ଣ୍ଣ । ଏହାର ହରିଲୀଳାକଥାରସରୂପକ ଅମୃତର ଆସ୍ୱାଦନଦ୍ୱାରା ସାଧୁ, ବୈଷ୍ଣବରୂପକ ଦେବତାମାନେ ଆନନ୍ଦିତ ହୁଅନ୍ତି । ଏହା ହେଉଛି ସମସ୍ତ ବେଦାନ୍ତର ସାର । ଏଥିରେ ବ୍ରହ୍ମ ଓ ଆତ୍ମାର ଏକତ୍ୱସୂଚକ ଅଦ୍ୱିତୀୟ ବସ୍ତୁ ନିରୂପିତ ହୋଇଛି । କୈବଲ୍ୟ ମୁକ୍ତି ହିଁ ଏହାର ଏକମାତ୍ର ପ୍ରୟୋଜନ ।।୧୧-୧୨।। ଭାଦ୍ରବ ମାସର ପୂର୍ଣ୍ଣମୀ ଦିନ ଯେଉଁ ବ୍ୟକ୍ତି ସୁବର୍ଣ୍ଣ ସିଂହାସନରେ ରଖି ଏହି ଭାଗବତ ପୋଥିକୁ ଦାନକରେ, ସେ ପରମଗତି ଲାଭ କରେ ।।୧୩।। ପୁରାଣଶ୍ରେଷ୍ଠ ଶ୍ରୀମଦ୍‌ଭାଗବତର ସାକ୍ଷାତ୍ ଦର୍ଶନ ପର୍ଯ୍ୟନ୍ତ ସାଧୁମାନଙ୍କ ସମାଜରେ ଅନ୍ୟ ପୁରାଣମାନେ ଶୋଭା ପାଆନ୍ତି ।।୧୪।। ଶ୍ରୀମଦ୍ ଭାଗବତ ହେଉଛି ସମସ୍ତ ବେଦାନ୍ତର ସାର । ଏହାର ରସାମୃତରେ ତୃପ୍ତ ବ୍ୟକ୍ତିର ଅନ୍ୟ ରସରେ ରୁଚି ହୁଏ ନାହିଁ ।।୧୫।। ନଦୀମାନଙ୍କ ମଧ୍ୟରେ ଯେପରି ଗଙ୍ଗା, ଦେବତାମାନଙ୍କ ମଧ୍ୟରେ ବିଷ୍ଣୁ, ବୈଷ୍ଣବମାନଙ୍କ ମଧ୍ୟରେ ଯେପରି ଶିବ ଶ୍ରେଷ୍ଠ, ସେହିପରି ପୁରାଣମାନଙ୍କ ମଧ୍ୟରେ ଭାଗବତ ଶ୍ରେଷ୍ଠ ।।୧୬।। ହେ ଦ୍ୱିଜମାନେ ! ସବୁ କ୍ଷେତ୍ରଙ୍କ ମଧ୍ୟରେ କାଶୀ ଯେପରି ଶ୍ରେଷ୍ଠ, ପୁରାଣମାନଙ୍କ ମଧ୍ୟରେ ଭାଗବତ ସେହିପରି ସର୍ବଶ୍ରେଷ୍ଠ ।।୧୭।। ଯେଉଁଥିରେ ପରମହଂସମାନଙ୍କର ପ୍ରାପ୍ୟ ଏକମାତ୍ର ଶୁଦ୍ଧ ଓ ଶ୍ରେଷ୍ଠ ଜ୍ଞାନ କୀର୍ତ୍ତନ କରାଯାଇଛି, ଯେଉଁ ପବିତ୍ର ଶ୍ରୀମଦ୍ ଭାଗବତ ପୁରାଣ ବୈଷ୍ଣବମାନଙ୍କର ପ୍ରିୟ, ଯେଉଁଥିରେ ଜ୍ଞାନ, ବୈରାଗ୍ୟ ଓ ଭକ୍ତିଯୁକ୍ତ ନିଷ୍କାମ ଧର୍ମ ଆବିଷ୍କୃତ ହୋଇଛି, ତାହା ଭକ୍ତିର ସହିତ ଶୁଣିଲେ, ପଢ଼ିଲେ ଓ ଶ୍ରଦ୍ଧାର ସହିତ ବିଚାର କଲେ ମନୁଷ୍ୟ ମୁକ୍ତ ହୋଇଯାଏ ।।୧୮।। ପୂର୍ବ କାଳରେ ଭଗବାନ୍ ବ୍ରହ୍ମାଙ୍କ ନିକଟରେ ଏହି ଭାଗବତରୂପୀ ଅତୁଳନୀୟ ଜ୍ଞାନପ୍ରଦୀପକୁ ଉଦ୍‌ଭାସିତ କରିଥିଲେ । ତା'ପରେ ବ୍ରହ୍ମା ନାରଦଙ୍କ ନିକଟରେ, ନାରଦ କୃଷ୍ଣ ଦ୍ୱୈପାୟନ ବ୍ୟାସଙ୍କ ନିକଟରେ, ବ୍ୟାସ ଯୋଗୀଶ୍ରେଷ୍ଠ ଶୁକଙ୍କ ନିକଟରେ ଏବଂ କରୁଣାମୟ ଶୁକଦେବ ବିଷ୍ଣୁଭକ୍ତ ପରିକ୍ଷିତଙ୍କ ନିକଟରେ ଏହି ଭାଗବତର କୀର୍ତ୍ତନ କରିଥିଲେ । ପରମ ଶୁଦ୍ଧ, ପବିତ୍ର, ଶୋକାପହ, ଅମୃତମୟ, ପରମସତ୍ୟ ଭଗବାନଙ୍କୁ ମୁଁ ଧ୍ୟାନ କରୁଛି ।।୧୯।। ଯେ ମୁକ୍ତିକାମୀ ବ୍ରହ୍ମାଙ୍କ ନିକଟରେ ଏହି ଭାଗବତର ବ୍ୟାଖ୍ୟାନ କରିଥିଲେ, ସେହି ସର୍ବସାକ୍ଷୀ ଭଗବାନ୍ ବାସୁଦେବଙ୍କୁ ମୁଁ ନମସ୍କାର କରୁଛି ।।୨୦।। ଯେ ସଂସାରରୂପ ସର୍ପଦ୍ୱାରା ଦଂଶିତ ବିଷ୍ଣୁଭକ୍ତ ପରିକ୍ଷିତଙ୍କୁ ମୁକ୍ତି ଦେଇଥିଲେ ସେହି ଯୋଗିଶ୍ରେଷ୍ଠ ବ୍ରହ୍ମରୂପୀ ଶୁକଦେବଙ୍କୁ ମୁଁ ନମସ୍କାର କରୁଛି ।।୨୧।। ହେ ଦେବେଶ, ହେ ପ୍ରଭୁ ! ଜନ୍ମ ଜନ୍ମାନ୍ତରରେ ତୁମର ପାଦ-ପଦ୍ମରେ ଯେପରି ଭକ୍ତି ଜାତ ହୁଏ, ଆପଣ ତାର ବିଧାନ କରନ୍ତୁ । କାରଣ ଆପଣ ହିଁ ମୋର ଏକମାତ୍ର ସ୍ୱାମୀ ।।୨୨।। ଯାହାଙ୍କର ନାମସଂକୀର୍ତ୍ତନଦ୍ୱାରା ସମସ୍ତ ପାପ ଧ୍ୱଂସ ହୋଇଯାଏ, ଯାହାଙ୍କୁ ପ୍ରଣାମ କଲେ ସମସ୍ତ ଦୁଃଖ ଦୂର ହୁଏ, ସେହି ପରମପୁରୁଷ ଶ୍ରୀହରିଙ୍କୁ ମୁଁ ନମସ୍କାର କରୁଛି ।।୨୩।।

***



ବିଶିଷ୍ଟ ଜନନାୟକ ଶ୍ରୀ ଜାନକୀ ବଲ୍ଲଭ ପଟ୍ଟନାୟକଙ୍କ ନାମ ଉଭୟ ସୃଜନଶୀଳ ଓ ଅନୁବାଦ ସାହିତ୍ୟ କ୍ଷେତ୍ରରେ ସୁପ୍ରତିଷ୍ଠିତ । କେନ୍ଦ୍ର ସାହିତ୍ୟ ଏକାଡେମୀ, ଓଡ଼ିଶା ସାହିତ୍ୟ ଏକାଡେମୀ ଏବଂ ଅନ୍ୟାନ୍ୟ ସମ୍ମାନଜନକ ଅନୁଷ୍ଠାନଦ୍ୱାରା ପୁରସ୍କୃତ ଶ୍ରୀ ପଟ୍ଟନାୟକଙ୍କର ଉଲ୍ଲେଖନୀୟ କୃତିଗୁଡ଼ିକ ହେଉଛି 'ସିନ୍ଧୁ ଉପତ୍ୟକା' (କବିତା ସଂକଳନ), ଭର୍ତ୍ତୃହରିଙ୍କ 'ଶୃଙ୍ଗାର ଶତକ', 'ନୀତି ଶତକ' ଓ 'ବୈରାଗ୍ୟ ଶତକ' (ସଂସ୍କୃତରୁ ଅନୂଦିତ), 'ଗୌତମ ବୁଦ୍ଧ' (ଜୀବନୀ), 'ସ୍ୱପ୍ନ ଓ ସଂକଳ୍ପ' (ଆଲୋଚନା), 'ନିର୍ବାଚିତ ପ୍ରବନ୍ଧ ସଂକଳନ', 'ବଙ୍କିମ ଉପନ୍ୟାସମାଳା' (ବଙ୍କିମଚନ୍ଦ୍ର ଚଟ୍ଟୋପାଧ୍ୟାୟଙ୍କ ଉପନ୍ୟାସ ସମଗ୍ରର ଅନୁବାଦ), 'ମାଲୁଣୀର ଫୁଲ ଓ ଅନ୍ୟାନ୍ୟ ଗଳ୍ପ' ('ରାମକୃଷ୍ଣ କଥାମୃତ'ର ପୁନର୍କଥନ), 'ବାଚସ୍ପତି ମହୋଦୟ'(ବିଧାନସଭାରେ ବିରୋଧୀ ଦଳ ନେତା ଭାବରେ ପ୍ରଦତ୍ତ ଅଭିଭାଷଣ), 'ନୀଳଶୈଳ' (ସୁରେନ୍ଦ୍ର ମହାନ୍ତିଙ୍କ 'ନୀଳଶୈଳ'ର ସଂକ୍ଷିପ୍ତ ରୂପ) ଓ 'ଗୋକୁଳାନନ୍ଦ ଗ୍ରନ୍ଥାବଳୀ' (ସଂପାଦିତ) । ଏତଦ୍‌ଭିନ୍ନ ଓଡ଼ିଆ ଭାଷାରେ ପ୍ରକାଶିତ ତାଙ୍କର 'ରାମାୟଣ' ଓ 'ମହାଭାରତ' ଓଡ଼ିଆ ଭାଷା, ସାହିତ୍ୟକୁ ଦୁଇଟି ଉଲ୍ଲେଖନୀୟ ଅବଦାନ। ଶ୍ରୀ ପଟ୍ଟନାୟକଙ୍କ 'ଶ୍ରୀମଦ୍‌ଭାଗବତ' ବ୍ୟାସଦେବକୃତ ସଂସ୍କୃତ ଭାଗବତର ଏକକ ଓଡ଼ିଆ ଗଦ୍ୟରୂପ ।

୧୯୨୭ ଜାନୁଆରି ତିନି ତାରିଖରେ ଅଧୁନା ଖୋର୍ଦ୍ଧା ଜିଲ୍ଲା ଅନ୍ତର୍ଗତ ରାମେଶ୍ୱରଠାରେ ଶ୍ରୀ ପଟ୍ଟନାୟକ ଜନ୍ମଗ୍ରହଣ କରିଥିଲେ । ଛାତ୍ର ରାଜନୀତିରୁ ନିଜର ସୁଦୀର୍ଘ ରାଜନୈତିକ ଯାତ୍ରା ଆରମ୍ଭ କରି ସେ ଓଡ଼ିଶା ଓ ଭାରତର ରାଜନୀତି କ୍ଷେତ୍ରକୁ ଆସିଛନ୍ତି । ବହୁବାର ବିଧାୟକ ଓ ସାଂସଦ ଭାବରେ ନିର୍ବାଚିତ ଶ୍ରୀ ପଟ୍ଟନାୟକ କେନ୍ଦ୍ରରେ ବିଭିନ୍ନ ବିଭାଗର ମନ୍ତ୍ରୀ ହେବା ସହିତ ତିନିଥର ଓଡ଼ିଶାର ମୁଖ୍ୟମନ୍ତ୍ରୀ ଏବଂ ଥରେ ବିଧାନସଭାରେ ବିରୋଧୀଦଳ ନେତା ଦାୟିତ୍ୱ ଗ୍ରହଣ କରିଛନ୍ତି । ୨୦୦୯ ରୁ ୨୦୧୪ ମସିହା ପର୍ଯ୍ୟନ୍ତ ଆସାମର ରାଜ୍ୟପାଳ ଭାବରେ ସଫଳ ଦାୟିତ୍ୱ ନିର୍ବାହ ତାଙ୍କ ବ୍ୟକ୍ତିତ୍ୱର ଆଉ ଏକ ଗୌରବମୟ ଗାଥା । ଦୀର୍ଘଦିନ ଧରି 'ପ୍ରଜାତନ୍ତ୍ର' ଓ 'ଇଷ୍ଟର୍ଣ୍ଣ ଟାଇମ୍‌ସ'ର (୧୯୫୨-୬୭) ସଂପାଦକ ଥିବା ଶ୍ରୀ ପଟ୍ଟନାୟକ ଲୋକପ୍ରିୟ ପତ୍ରିକା 'ପୌରୁଷ'ର ପ୍ରତିଷ୍ଠାତା ସଂପାଦକ । ଭାବ ପ୍ରକାଶରେ ସମର୍ଥ ସରଳ ଶବ୍ଦ ସଂଯୋଜନା ଓ ସ୍ୱଚ୍ଛ ପ୍ରକାଶଭଙ୍ଗୀ ତାଙ୍କ ସାହିତ୍ୟର ଉଲ୍ଲେଖନୀୟ ବୈଶିଷ୍ଟ୍ୟ ।